॥ ଶ୍ରୀହରିଃ ॥

2266

# ସଂକ୍ଷିପ୍ତ

# ଶିବପୁରାଣ

(ସଚିତ୍ର, ବଡ଼ ଅକ୍ଷର)

ଓଡ଼ିଆ ଅନୁବାଦ

**संक्षिप्त शिवपुराण ( ओड़िआ )**

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ମୂଳ ହିନ୍ଦୀ ସମ୍ପାଦନା—**ହନୁମାନ ପ୍ରସାଦ ପୋଦ୍ଦାର**

# ନିବେଦନ

'ଶିବପୁରାଣ' ଗୋଟିଏ ସୁପ୍ରସିଦ୍ଧ ଓ ପ୍ରମୁଖ ପୁରାଣ । ଏଥିରେ ପରାତ୍ପର ପରବ୍ରହ୍ମ ପରମେଶ୍ୱରଙ୍କର 'ଶିବ' (କଲ୍ୟାଣକାରୀ) ସ୍ୱରୂପର ତାତ୍ତ୍ୱିକ ବିଶ୍ଳେଷଣ ହେବା ସଙ୍ଗେ ସଙ୍ଗେ ତାଙ୍କର ରହସ୍ୟ, ମହିମା ଓ ଉପାସନାର ସୁବିସ୍ତୃତ ବର୍ଣ୍ଣନା ହୋଇଛି । ଭଗବାନ ଶିବ କେବଳ ପୌରାଣିକ ଦେବତା ନୁହନ୍ତି, ବରଂ ସେ ପଞ୍ଚଦେବତାଙ୍କ ମଧ୍ୟରେ ପ୍ରଧାନ, ଅନାଦିସିଦ୍ଧ ପରମେଶ୍ୱର ଏବଂ ନିଗମ-ଆଗମ ପ୍ରଭୃତି ସମସ୍ତ ଶାସ୍ତ୍ରରେ ମହିମାମଣ୍ଡିତ ମହାଦେବ ଅଟନ୍ତି । ବେଦମାନେ ତାଙ୍କୁ ଅବ୍ୟକ୍ତ, ଅଜନ୍ମା, ସବୁରି କାରଣ, ସ୍ୱୟମ୍ଭୂ, ପରମତତ୍ତ୍ୱ, ବିଶ୍ୱପ୍ରପଞ୍ଚର ସ୍ରଷ୍ଟା, ପାଳକ ଓ ସଂହାରକ ତଥା ଈଶ୍ୱରଙ୍କର ମଧ୍ୟ ପରମ ମହେଶ୍ୱରରୂପେ ପ୍ରତିପାଦିତ କରି ତାଙ୍କର ସ୍ତୁତି କରିଛନ୍ତି । 'ଶିବ' ଶବ୍ଦର ଅର୍ଥ—'କଲ୍ୟାଣସ୍ୱରୂପ' ଓ 'କଲ୍ୟାଣପ୍ରଦାତା' । ପରମ ବ୍ରହ୍ମଙ୍କର ଏହି କଲ୍ୟାଣମୟ ରୂପର ଉପାସନା ବଡ଼ ବଡ଼ ଉଚ୍ଚକୋଟିର ସିଦ୍ଧ ମହାତ୍ମା, ଆତ୍ମକଲ୍ୟାଣକାମୀ ସାଧକ, ଆସ୍ତିକ ଜନ ଓ ସର୍ବସାଧାରଣଙ୍କ ପାଇଁ ପରମ ମଙ୍ଗଳମୟ, ପରମ କଲ୍ୟାଣକାରୀ, ସର୍ବସିଦ୍ଧିପ୍ରଦାୟକ ଓ ସର୍ବଶ୍ରେୟସ୍କର ଅଟେ । ଶାସ୍ତ୍ରମାନଙ୍କରେ ଉଲ୍ଲେଖ ମିଳେ ଯେ କେବଳ ଦେବ, ଦନୁଜ, ମନୁଜ, ଋଷି, ମହର୍ଷି, ଯୋଗୀନ୍ଦ୍ର, ମୁନୀନ୍ଦ୍ର, ସିଦ୍ଧ ଓ ଗନ୍ଧର୍ବ ନୁହନ୍ତି, ବରଂ ସ୍ୱୟଂ ବ୍ରହ୍ମା ଓ ବିଷ୍ଣୁ ମଧ୍ୟ ମହାଦେବଙ୍କର ଉପାସନା କରିଥାଆନ୍ତି । ଭଗବାନ ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କର ତ ଶିବ ହେଉଛନ୍ତି ପରମ ଆରାଧ୍ୟ ।

ଏହି କାରଣରୁ କେବଳ ଭାରତରେ ନୁହେଁ, ସମଗ୍ର ବିଶ୍ୱରେ ମଧ୍ୟ ନ୍ୟୂନାଧିକରୂପେ ଶିବୋପାସନାର ପ୍ରଚାର-ପ୍ରସାର ହୋଇଛି । ତଥାପି ଲୋକକଲ୍ୟାଣକାରୀ ଶିବଙ୍କର ଆରାଧ୍ୟସ୍ୱରୂପ, ମହତ୍ତ୍ୱ ଓ ଉପାସନା ସହିତ ସର୍ବସାଧାରଣଙ୍କୁ ବିଶେଷରୂପେ ଅବଗତ କରାଇବା ଉଦ୍ଦେଶ୍ୟରେ ସଂସ୍କୃତ ଶିବପୁରାଣର ସଂକ୍ଷିପ୍ତ ହିନ୍ଦୀ ରୂପାନ୍ତର କରି ତାହାକୁ ଗୀତାପ୍ରେସ୍ ଦ୍ୱାରା ୧୯୬୨ ମସିହାରେ 'କଲ୍ୟାଣ' ପତ୍ରିକାର ୩୬ ତମ ବର୍ଷର ବିଶେଷାଙ୍କ ରୂପରେ 'ସଂକ୍ଷିପ୍ତ ଶିବପୁରାଣାଙ୍କ' ନାମରେ ପ୍ରକାଶିତ କରାଯାଇଥିଲା ଏବଂ ତାହା 'କଲ୍ୟାଣ'ପ୍ରେମୀ ପାଠକ ଓ ଶ୍ରଦ୍ଧାଳୁ ସର୍ବସାଧାରଣଙ୍କ ଦ୍ୱାରା ଅତ୍ୟଧିକ ଆଦୃତ ହୋଇଥିଲା । ସେହି ଲୋକପ୍ରିୟତାକୁ ଦୃଷ୍ଟିପଥରେ ରଖି ପରବର୍ତ୍ତୀ କାଳରେ ତାହାକୁ ଗ୍ରନ୍ଥର ରୂପ ଦିଆଗଲା ଏବଂ ଅଦ୍ୟାବଧି ତାହାର ଅନେକ ପୁନର୍ମୁଦ୍ରଣ ମଧ୍ୟ ହୋଇସାରିଲାଣି ।

କେବଳ ହିନ୍ଦୀରେ ନୁହେଁ, ଏକାଧିକ ଭାରତୀୟ ଭାଷାରେ ମଧ୍ୟ ଏହି 'ସଂକ୍ଷିପ୍ତ ଶିବପୁରାଣ' ପ୍ରକାଶିତ ହୋଇସାରିଛି । ପରମ ଦୟାଳୁ ଭୂତଭାବନ ଶ୍ରୀଚନ୍ଦ୍ରମୌଳି ମହାଦେବଙ୍କ ବିଶେଷ ଅନୁକମ୍ପାରୁ ଏବେ ତାହାର ଓଡ଼ିଆ ଭାଷାନ୍ତରଣ ପ୍ରକାଶିତ କରାଯାଉଛି, ଯାହାକୁ ଉତ୍କଳୀୟ ଭାଷାରେ ରୂପାନ୍ତରିତ କରିଛନ୍ତି ଶ୍ରୀ ନିରଞ୍ଜନ ପଣ୍ଡା । ଏହି ପୁରାଣରେ ଶିବତତ୍ତ୍ୱର ବିଶଦ ଚର୍ଚ୍ଚା, ଶିବଙ୍କର ଅନେକ ଅବତାର, ଲୀଳା, ଲିଙ୍ଗୋପାସନା ଓ ପୂଜନ-ବିଧି, ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଆଖ୍ୟାନ ତଥା ମାହାତ୍ମ୍ୟ, ଶିବରାତ୍ରିବ୍ରତ ମହିମା, ରୁଦ୍ରାକ୍ଷଧାରଣର ମହିମା ଇତ୍ୟାଦି ବର୍ଣ୍ଣିତ ହେବା ସଙ୍ଗେ ସଙ୍ଗେ ଭକ୍ତଙ୍କ ପ୍ରତି ଶିବଙ୍କର ଅପାର ଅନୁଗ୍ରହ ଉପରେ ଆଧାରିତ ଅନେକ ରୋଚକ, ଜ୍ଞାନପ୍ରଦ ଓ ଶିକ୍ଷଣୀୟ ଆଖ୍ୟାନର ସୁନ୍ଦର ସମାବେଶ ହୋଇଛି । ଆଶା, ଉତ୍କଳୀୟ ଶ୍ରଦ୍ଧାଳୁ ଆସ୍ତିକ ଜନତା ତଥା ଜିଜ୍ଞାସୁ ପାଠକଗଣ ଉକ୍ତ ଦୁର୍ଲଭ ଓ ଉପାଦେୟ ଗ୍ରନ୍ଥର ଅନୁଶୀଳନ କରି ସେମାନଙ୍କ ଆତ୍ମୋଦ୍ଧାରର ପଥ ପ୍ରଶସ୍ତ କରିବେ ।

—ପ୍ରକାଶକ

॥ ଶ୍ରୀହରିଃ ॥

# ବିଷୟ ସୂଚୀ

## * ରୁଦ୍ରସଂହିତା, ଦ୍ୱିତୀୟ (ସତୀ) ଖଣ୍ଡ *

## * ରୁଦ୍ରସଂହିତା, ତୃତୀୟ (ପାର୍ବତୀ) ଖଣ୍ଡ *

## * ରୁଦ୍ରସଂହିତା, ଚତୁର୍ଥ (କୁମାର) ଖଣ୍ଡ *

## * ରୁଦ୍ରସଂହିତା, ପଞ୍ଚମ (ଯୁଦ୍ଧ) ଖଣ୍ଡ *

## * ଶତରୁଦ୍ରସଂହିତା *

| ବିଷୟ | ପୃଷ୍ଠାଙ୍କ |
|---|---|



## ✱ କୋଟିରୁଦ୍ରସଂହିତା ✱

## * ଉମାସଂହିତା *



## * କୈଳାସସଂହିତା *

# ଚିତ୍ର ସୂଚୀ

## (ରେଖାଚିତ୍ର ବିବରଣୀ)

ବିଷୟ ପୃଷ୍ଠାଙ୍କ

॥ ଶ୍ରୀଗଣେଶାୟ ନମଃ ॥

# ଶ୍ରୀଶିବପୁରାଣ ମାହାତ୍ମ୍ୟ

ଭବାବ୍ଧିମଗ୍ନଂ ଦୀନଂ ମାଂ ସମୁଦ୍ଧର ଭବାର୍ଣ୍ଣବାତ୍ । କର୍ମଗ୍ରାହଗୃହୀତାଙ୍ଗଂ ଦାସୋଽହଂ ତବ ଶଙ୍କର ॥

## ଶୌନକଙ୍କର ସାଧନବିଷୟକ ପ୍ରଶ୍ନ ଏବଂ ଉତ୍ତରରୂପେ ସୂତମୁନିଙ୍କ ମୁଖରୁ ଶିବପୁରାଣର ଉତ୍କୃଷ୍ଟ ମହିମା ବର୍ଣ୍ଣନା

ଶ୍ରୀଶୌନକ ପଚ୍ଚରିଲେ—ହେ ମହାଜ୍ଞାନୀ ସୂତମୁନି ! ଆପଣ ତ ସମସ୍ତ ସିଦ୍ଧାନ୍ତର ଜ୍ଞାତା । ପ୍ରଭୋ ! ପୁରାଣମାନଙ୍କ କଥାରୁ ସାରତତ୍ତ୍ୱ ଉଦ୍ଧାର କରି ମୋ ଆଗରେ ବିଶେଷରୂପେ ବର୍ଣ୍ଣନା କରନ୍ତୁ । ମୋତେ କୁହନ୍ତୁ ଯେ ସଦାଚ୍ଚର, ଭଗବଦ୍‌ଭକ୍ତି ଓ ବିବେକ କିପରି ବୃଦ୍ଧି ହୁଏ? ସାଧୁପୁରୁଷ କିପରି ସେମାନଙ୍କ କାମ-କ୍ରୋଧାଦି ମାନସିକ ବିକାରକୁ ନିବାରଣ କରିଥାନ୍ତି? ଏ କଳିକାଳରେ ଜୀବମାନେ ପ୍ରାୟ ଆସୁର ସ୍ୱଭାବର ହୋଇଗଲେଣି, ସେମାନଙ୍କୁ ବିଶୁଦ୍ଧ (ଦୈବୀ-ସମ୍ପଦରେ ସମ୍ପନ୍ନ) କରିବାକୁ ସର୍ବଶ୍ରେଷ୍ଠ ଉପାୟ



କ'ଣ? ଆପଣ ମୋତେ ଏପରି ଗୋଟିଏ ଶାଶ୍ୱତ ସାଧନ କହନ୍ତୁ, ଯାହା ସମସ୍ତ କଲ୍ୟାଣକାରୀ ପନ୍ଥା ମଧ୍ୟରେ ବି ସବୁଠୁ ଉତ୍କୃଷ୍ଟ ଓ ପରମ ମଙ୍ଗଳକାରୀ ହୋଇଥିବ ଏବଂ ସମସ୍ତ ପବିତ୍ରକାରକ ଉପାୟ ମଧ୍ୟରେ ବି ସର୍ବୋତ୍ତମ ହୋଇଥିବ । ତାତ ! ସେହି ସାଧନ ଏପରି ହୋଇଥିବା ଉଚିତ, ଯାହା ଅନୁଷ୍ଠାନ କଲେ ଅନ୍ତଃକରଣ ଅବିଳମ୍ବେ ବିଶୁଦ୍ଧ ହୋଇଯିବ ଏବଂ ବିଶୁଦ୍ଧଚିତ୍ତ ବ୍ୟକ୍ତିକୁ ସଦାକାଳ ପାଇଁ ଶିବଙ୍କ ପ୍ରାପ୍ତି ହୋଇଯିବ ।

ସୂତ କହୁଛନ୍ତି—ମୁନିଶ୍ରେଷ୍ଠ ଶୌନକ ! ତୁମେ ଧନ୍ୟ; କାରଣ ତୁମ ହୃଦୟରେ ପୁରାଣ କଥା ଶୁଣିବାକୁ ବିଶେଷ ପ୍ରେମ ଓ ଲାଳସା ରହିଛି । ଏଣୁ ମୁଁ ଶୁଦ୍ଧବୁଦ୍ଧିରେ ବିଚ୍ଚର କରି ତୁମ ସମକ୍ଷରେ ପରମୋତ୍ତମ ଶାସ୍ତ୍ରର ବ୍ୟାଖ୍ୟାନ କରୁଛି । ବତ୍ସ ! ତାହା ସମସ୍ତ ଶାସ୍ତ୍ରୋକ୍ତ ସିଦ୍ଧାନ୍ତରେ ପରିପୂର୍ଣ୍ଣ, ଭକ୍ତି ଇତ୍ୟାଦିର ବୃଦ୍ଧିକାରକ ଏବଂ ଭଗବାନ ଶିବଙ୍କୁ ସନ୍ତୁଷ୍ଟ କରିଥାଏ । ତାହା କର୍ଣ୍ଣ ନିମନ୍ତେ ଅମୃତତୁଲ୍ୟ ତଥା ଦିବ୍ୟ; ତୁମେ ତାହା ଶ୍ରବଣ କର । ମୁନେ ! ସେହି ପରମ ଉତ୍ତମ ଶାସ୍ତ୍ର ହେଲା—ଶିବପୁରାଣ । ଏହାକୁ ପୂର୍ବକାଳରେ ଭଗବାନ ଶିବ ହିଁ ପ୍ରକାଶ କରିଥିଲେ । ଏହା କାଳରୂପୀ ସର୍ପର ଘୋର ତ୍ରାସକୁ ବିନାଶ କରିଥାଏ । ମୁନି ସନତ୍‌କୁମାରଙ୍କ ଉପଦେଶକ୍ରମେ ଗୁରୁଦେବ ବ୍ୟାସ ବଡ଼ ଆଦରରେ ଏହି ପୁରାଣକୁ

ସଂକ୍ଷେପରେ ପ୍ରତିପାଦନ କରିଛନ୍ତି । କଳିଯୁଗରେ ଜନ୍ମ ନେଉଥିବା ମନୁଷ୍ୟଙ୍କର ପରମ ହିତ ସାଧନ କରିବା ହିଁ ଏହି ପୁରାଣ ପ୍ରଣୟନର ଉଦ୍ଦେଶ୍ୟ ।

ଉକ୍ତ ଶିବପୁରାଣ ପରମ ଉତ୍ତମ ଶାସ୍ତ୍ର ଅଟେ । ଏହାକୁ ଭୂତଳରେ ଭଗବାନ ଶିବଙ୍କର ବାଙ୍ମୟ ସ୍ୱରୂପ ବୋଲି ବୁଝିବା ଉଚିତ ଏବଂ ଏହା ସବୁ ପ୍ରକାରେ ସେବନୀୟ । ଏହାର ପଠନ ଓ ଶ୍ରବଣ ସର୍ବସାଧନସ୍ୱରୂପ । ଏହା ଦ୍ୱାରା ମନୁଷ୍ୟ ଶିବଭକ୍ତି ଲାଭ କରିବା ସଙ୍ଗେ ସଙ୍ଗେ ଶ୍ରେଷ୍ଠତମ ସ୍ଥିତିରେ ପହଞ୍ଚି ଶିବପଦକୁ ପ୍ରାପ୍ତ ହୁଏ । ତେଣୁ ସମସ୍ତ ପ୍ରକାର ପ୍ରଯତ୍ନ କରି ମନୁଷ୍ୟ ଏହାକୁ ପଢ଼ିବାକୁ ଇଚ୍ଛା କରିଥାନ୍ତି ଅଥବା ଏହାର ଅଧ୍ୟୟନକୁ ଅଭୀଷ୍ଟ ସାଧନ ବୋଲି ସ୍ୱୀକାର କରିଥାନ୍ତି । କେବଳ ପ୍ରେମପୂର୍ବକ ଶ୍ରବଣ କଲେ ମଧ୍ୟ ଏହା ସମସ୍ତ ମନୋବାଞ୍ଛିତ ଫଳ ପ୍ରଦାନ କରିଥାଏ । ଭଗବାନ ଶିବଙ୍କର ଏ ପୁରାଣକୁ ଶ୍ରବଣ କରି ମନୁଷ୍ୟ ସମସ୍ତ ପାପରୁ ମୁକ୍ତ ହୋଇଯାଏ ଏବଂ ଜୀବନରେ ନାନା ପ୍ରକାର ଉତ୍କୃଷ୍ଟ ଭୋଗମାନ ଉପଭୋଗ କରି ଶେଷରେ ଶିବଲୋକକୁ ଯାଇଥାଏ ।

ସାତଟି ସଂହିତାରେ ବିଭକ୍ତ ଏହି ଶିବପୁରାଣ ନାମକ ଗ୍ରନ୍ଥରେ ଚବିଶ ହଜାର ଶ୍ଳୋକ ରହିଛି । ମନୁଷ୍ୟ ଭକ୍ତି, ଜ୍ଞାନ ଓ ବୈରାଗ୍ୟରେ ସମ୍ପନ୍ନ ହୋଇ ଏହାକୁ ଆଦରପୂର୍ବକ ଶ୍ରବଣ କରିବା ଉଚିତ । ଉକ୍ତ ସପ୍ତସଂହିତାଯୁକ୍ତ ଦିବ୍ୟ ଶିବପୁରାଣ ପରବ୍ରହ୍ମ ପରମାତ୍ମାଙ୍କ ପରି ବିରାଜମାନ ଏବଂ ଏହା ସବୁଠୁ ଉତ୍କୃଷ୍ଟ ଗତି ପ୍ରଦାନ କରିଥାଏ ।

ଯେ ନିରନ୍ତର ଅନୁସନ୍ଧାନପୂର୍ବକ ଏ ଶିବପୁରାଣକୁ ବ୍ୟାଖ୍ୟା କରେ ଅଥବା ନିତ୍ୟ ପ୍ରେମପୂର୍ବକ ପାଠ କରେ, ସେ ଯେ ନିଶ୍ଚିତରୂପେ ପୁଣ୍ୟାତ୍ମା, ଏଥିରେ ସନ୍ଦେହ ନାହିଁ । ଯେଉଁ ସୁଜ୍ଞାନୀ ମନୁଷ୍ୟ ଅନ୍ତକାଳରେ ଭକ୍ତିପୂର୍ବକ ଏହି ପୁରାଣକୁ ଶ୍ରବଣ କରେ, ତା' ଉପରେ ପ୍ରଭୁ ମହେଶ୍ୱର ଅତ୍ୟନ୍ତ ପ୍ରସନ୍ନ ହୋଇ ତାକୁ ଆପଣା ପଦ (ଧାମ) ପ୍ରଦାନ କରନ୍ତି । ଯେ ପ୍ରତିଦିନ ଆଦରରେ ଏହି ପୁରାଣକୁ ପୂଜା କରେ, ସେ ଏ ସଂସାରରେ ସମସ୍ତ ଭୋଗ ଉପଭୋଗ କରି ଅନ୍ତକାଳରେ ଭଗବାନ ଶିବଙ୍କ ପଦକୁ ପ୍ରାପ୍ତ ହୁଏ । ଯେ ପ୍ରତିଦିନ ନିରଳସ ହୋଇ ଶିବପୁରାଣକୁ ପଟ୍ଟବସ୍ତ୍ର ଇତ୍ୟାଦିରେ ଗୁଡ଼ାଇ ଯତ୍ନରେ ରଖି ଏହାର ସମ୍ମାନ କରେ, ସେ ସଦା ସୁଖୀ ରହେ । ଶିବପୁରାଣ ନିର୍ମଳ ଓ ଶିବଙ୍କର ସର୍ବସ୍ୱ । ଯେ ଇହଲୋକ ଓ ପରଲୋକରେ ସୁଖ ଚାହେଁ, ତା' ପକ୍ଷେ ଏହାକୁ ଆଦରପୂର୍ବକ ସେବନ କରିବା ଉଚିତ । ଏହି ନିର୍ମଳ ଓ ଉତ୍ତମ ପୁରାଣ ଧର୍ମ, ଅର୍ଥ, କାମ ଓ ମୋକ୍ଷରୂପୀ ଚାରିପୁରୁଷାର୍ଥ ପ୍ରଦାନ କରିଥାଏ । ତେଣୁ ସର୍ବଦା ଏହାକୁ ପ୍ରେମପୂର୍ବକ ଶ୍ରବଣ ଓ ପଠନ କରିବା ଉଚିତ ।

(ଅଧ୍ୟାୟ ୧)



## ଶିବପୁରାଣ ଶ୍ରବଣ ଫଳରେ ଆଚାରଭ୍ରଷ୍ଟ ବିପ୍ର ଦେବରାଜଙ୍କୁ ଶିବଲୋକ ପ୍ରାପ୍ତି; ଏବଂ ଚଞ୍ଚୁଳାର ପାପ ପ୍ରତି ଭୟ ଓ ସଂସାରରୁ ବୈରାଗ୍ୟ

ଶ୍ରୀଶୌନକ କହିଲେ—ମହାଭାଗ ସୂତ ! ଆପଣ ଧନ୍ୟ । ଆପଣ ପରମାର୍ଥତତ୍ତ୍ୱର ଜ୍ଞାତା । ଆପଣ କୃପା କରି ଆମ୍ଭମାନଙ୍କୁ ବହୁତ ଅଦ୍ଭୁତ ଏବଂ ଦିବ୍ୟ କଥା କହିଲେ । ଭୂତଳରେ ଏପରି କଥାର ସମକକ୍ଷ ହେବାଭଳି କଲ୍ୟାଣର ସର୍ବଶ୍ରେଷ୍ଠ ସାଧନ ଆଉ କିଛି ନାହିଁ—ଏହା ଆମେ ଆଜି ଆପଣଙ୍କ କୃପାରୁ ବୁଝିପାରିଲୁ । ହେ ସୂତ ମହାଭାଗ ! କଳିଯୁଗରେ ଏହି ପୁରାଣ ଶ୍ରବଣ ଦ୍ୱାରା କେଉଁ

କେଉଁ ପାପୀ ଶୁଦ୍ଧ ହୋଇଛନ୍ତି? ସେମାନଙ୍କ ବିଷୟରେ କହି ଏ ଜଗତକୁ କୃତାର୍ଥ କରନ୍ତୁ ।

ସୂତ କହିଲେ–ମୁନେ ! ଯେଉଁ ମନୁଷ୍ୟ ପାପୀ, ଦୁରାଗ୍ରହୀ, ଖଳ ଓ କାମକ୍ରୋଧରେ ବୁଡ଼ି ରହିଥାନ୍ତି, ସେମାନେ ଏ ପୁରାଣ ଶ୍ରବଣ-ପଠନ କରି ଅବଶ୍ୟ ଶୁଦ୍ଧ ହୋଇଯାଆନ୍ତି । ଏ ବିଷୟରେ ଅଭିଜ୍ଞ ମୁନିଜନ ଗୋଟିଏ ପ୍ରାଚୀନ ଇତିହାସର ଉଦାହରଣ ଦେଇଥାନ୍ତି, ସେହି କଥା ଶୁଣିଲେ ସମସ୍ତ ପାପ ନଷ୍ଟ ହୋଇଯାଏ ।

ପୂର୍ବକାଳର କଥା । କିରାତନଗରରେ ଗୋଟିଏ ମୂଢ଼ ବ୍ରାହ୍ମଣ ରହୁଥିଲା । ସେ ଜ୍ଞାନରେ ଅତ୍ୟନ୍ତ ଦୁର୍ବଳ, ଦରିଦ୍ର, ରସବିକ୍ରୟକାରୀ ଓ ବୈଦିକ ଧର୍ମରୁ ବିମୁଖ ଥିଲା । ସେ ସ୍ନାନ-ସନ୍ଧ୍ୟାଦି କର୍ମ କରୁ ନ ଥିଲା ଏବଂ ବୈଶ୍ୟବୃତ୍ତିରେ ତତ୍ପର ଥିଲା । ତା'ର ନାମ ଥିଲା ଦେବରାଜ । ସେ ତା' ଉପରେ ବିଶ୍ୱାସ କରୁଥିବା ଲୋକଙ୍କ ପ୍ରତି ବିଶ୍ୱାସଘାତ କରୁଥିଲା ଓ ସେମାନଙ୍କୁ ଠକୁଥିଲା । ସେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ତଥା ଅନ୍ୟମାନଙ୍କୁ ମଧ୍ୟ ଅନେକ ପ୍ରକାର ବାହାନାରେ ମାରି ସେମାନଙ୍କ ଧନ ହରି ନେଉଥିଲା । ହେଲେ ସେହି ପାପୀର ତିଳେମାତ୍ର ଧନ କଦାପି ଧର୍ମକାର୍ଯ୍ୟରେ ଲାଗି ନ ଥିଲା । ସେ ବେଶ୍ୟାଗାମୀ ଓ ସବୁପ୍ରକାରେ ଆଚାରଭ୍ରଷ୍ଟ ଥିଲା ।

ଦୈବଯୋଗକୁ ଦିନେ ସେ ଭ୍ରମଣ କରୁ କରୁ ପ୍ରତିଷ୍ଠାନପୁରୀ (ଝୁସୀ, ପ୍ରୟାଗ)ରେ ପହଞ୍ଚିଲା । ସେଠାରେ ସେ ଗୋଟିଏ ଶିବାଳୟ ଦେଖିଲା । ସେଠାରେ ଅନେକ ସାଧୁ-ମହାତ୍ମା ଏକତ୍ରିତ ହୋଇଥିଲେ । ଦେବରାଜ ସେହି ଶିବାଳୟରେ ରହିଲା । କିନ୍ତୁ ତାକୁ ସେଦିନ ଜ୍ୱର ହୋଇଗଲା । ଜ୍ୱର ହେତୁ ତାକୁ ବହୁତ କଷ୍ଟ ଅନୁଭବ ହେଲା । ଜଣେ ବ୍ରାହ୍ମଣ ସେଠାରେ ଶିବପୁରାଣ କଥା ଶୁଣାଉ ଥିଲେ । ଜ୍ୱରରେ ପୀଡ଼ିତ ଦେବରାଜ ବ୍ରାହ୍ମଣଙ୍କ ମୁଖାରବିନ୍ଦରୁ ନିଃସୃତ ଶିବପୁରାଣର କଥାକୁ ସେହିଠାରେ ରହି ନିରନ୍ତର ଶୁଣିଲା । ମାସେ ପରେ ଜ୍ୱରରେ ଅତ୍ୟନ୍ତ ପୀଡ଼ିତ ହେବା କାରଣରୁ ସେ ମରିଗଲା । ଯମରାଜଙ୍କ ଦୂତ ଆସିଲେ ଏବଂ ତାକୁ ପାଶରେ ବାନ୍ଧି ବଳପୂର୍ବକ ଯମପୁରୀକୁ ନେଇଗଲେ । ଇତି ମଧ୍ୟରେ ଶିବଲୋକରୁ ଭଗବାନ ଶିବଙ୍କ ପାର୍ଷଦଗଣ ଆସିଗଲେ । ସେମାନଙ୍କର ଗୌର ଅଙ୍ଗ କର୍ପୂର ପରି ଉଜ୍ଜ୍ୱଳ ଥିଲା, ହାତରେ ତ୍ରିଶୂଳ ଥିଲା ଓ ସମଗ୍ର ଅଙ୍ଗ ଭସ୍ମରେ ଉଦ୍ଭାସିତ ହେଉଥିଲା । ରୁଦ୍ରାକ୍ଷର ମାଳାମାନ ସେମାନଙ୍କ ଶରୀରର ଶୋଭାବର୍ଦ୍ଧନ କରୁଥିଲା । ସେମାନେ ସମସ୍ତେ କ୍ରୋଧିତ ହୋଇ ଯମପୁରୀରେ ଆସି ପହଞ୍ଚିଗଲେ ଏବଂ ଯମଦୂତଙ୍କୁ ମାରଧର କରି ଓ ବାରମ୍ବାର ଧମକାଇ ଦେବରାଜକୁ ସେମାନଙ୍କ ହାତରୁ ଛଡ଼ାଇନେଲେ । ଶେଷରେ ଗୋଟିଏ ଅତ୍ୟଦ୍ଭୁତ



ବିମାନରେ ବସାଇ ତାକୁ କୈଳାସ ନେଇଯିବାକୁ ଉଦ୍ୟତ ହେଲେ । ଏ ଘଟଣାରେ ଯମପୁରୀରେ

ସର୍ବତ୍ର କୋଳାହଳ ବ୍ୟାପିଗଲା । କୋଳାହଳ ଶୁଣି ସ୍ୱୟଂ ଧର୍ମରାଜ ନିଜ ଭବନରୁ ବାହାରକୁ ଆସିଲେ । ସାକ୍ଷାତ୍ ରୁଦ୍ରଦେବଙ୍କ ପରି ଦିଶୁଥିବା ସେହି ଚାରିଜଣ ଶିବଦୂତଙ୍କୁ ଦେଖି ଧର୍ମଜ୍ଞ ଧର୍ମରାଜ ସେମାନଙ୍କୁ ବିଧିପୂର୍ବକ ପୂଜନ କଲେ ଏବଂ ଆପଣା ଜ୍ଞାନଦୃଷ୍ଟି ବଳରେ ସମସ୍ତ ବୃତ୍ତାନ୍ତ ଜାଣିଗଲେ; ମାତ୍ର ଭୟରେ ଶିବଙ୍କର ସେହି ମହାତ୍ମା ଦୂତମାନଙ୍କୁ କୌଣସି କଥା ପଚାରିଲେ ନାହିଁ, ବରଂ ସେମାନଙ୍କୁ ପୂଜା ଓ ପ୍ରାର୍ଥନା କଲେ । ତତ୍ପଶ୍ଚାତ୍ ଶିବଦୂତମାନେ କୈଳାସ ଫେରିଗଲେ ଏବଂ ସେଠାରେ ପହଞ୍ଚି ସେହି ବ୍ରାହ୍ମଣକୁ ଶିବଙ୍କ ହାତରେ ସମର୍ପିଦେଲେ ।

ଶୌନକ କହିଲେ–ମହାଭାଗ ସୂତ ! ଆପଣ ସର୍ବଜ୍ଞ । ମହାମତେ ! ଆପଣଙ୍କ କୃପାପ୍ରସାଦରୁ ମୁଁ ଅତ୍ୟନ୍ତ କୃତାର୍ଥ ହେଲି, ବାରମ୍ବାର କୃତାର୍ଥ ହେଲି । ଏହି ଇତିହାସକୁ ଶୁଣି ମୋର ମନ ପରମ ଆନନ୍ଦରେ ନିମଗ୍ନ ହୋଇଯାଉଛି । ତେଣୁ ଏବେ ଶିବଙ୍କ ସମ୍ବନ୍ଧୀୟ ଅନ୍ୟ କଥା ବି କହନ୍ତୁ, ଯାହା ଶିବଙ୍କ ପ୍ରତି ପ୍ରେମ ବୃଦ୍ଧି କରିବ ।

ଶ୍ରୀସୂତ କହିଲେ–ଶୌନକ ! ଶୁଣ, ମୁଁ ତୁମ ସମ୍ମୁଖରେ ଗୋପନୀୟ କଥାବସ୍ତୁ ମଧ୍ୟ ବର୍ଣ୍ଣନା କରିବି; କାରଣ ତୁମେ ଶିବଭକ୍ତଙ୍କ ମଧ୍ୟରେ ଅଗ୍ରଗଣ୍ୟ ତଥା ବେଦବେତ୍ତାଙ୍କ ମଧ୍ୟରେ ଶ୍ରେଷ୍ଠ । ସମୁଦ୍ର ନିକଟବର୍ତ୍ତୀ ପ୍ରଦେଶରେ ବାଷ୍କଳ ନାମରେ ଗୋଟିଏ ଗ୍ରାମ ଅଛି । ସେଠାରେ ବୈଦିକ ଧର୍ମରୁ ବିମୁଖ ମହାପାପୀ ଦ୍ୱିଜମାନେ ନିବାସ କରନ୍ତି । ସେମାନେ ସମସ୍ତେ ଦୁଷ୍ଟ, ସେମାନଙ୍କ ମନ ଦୂଷିତ ବିଷୟ-ଭୋଗରେ ହିଁ ନିମଗ୍ନ ରହେ । ସେମାନେ ଦେବତା ଉପରେ ବିଶ୍ୱାସ କରନ୍ତି ନାହିଁ କି ଭାଗ୍ୟ ଉପରେ ବିଶ୍ୱାସ କରନ୍ତି ନାହିଁ । ସେମାନେ କୃଷିକାର୍ଯ୍ୟ କରନ୍ତି ଓ ନାନା ପ୍ରକାରର ଅସ୍ତ୍ରଶସ୍ତ୍ର ରଖନ୍ତି । ସେମାନଙ୍କର ବୃତ୍ତି କୁଟିଳ; ସେମାନେ ବ୍ୟଭିଚାରୀ, ଖଳ ଓ ପଶୁବୁଦ୍ଧି । ଜ୍ଞାନ, ବୈରାଗ୍ୟ ଓ ସଦ୍ଧର୍ମ ସେବନ ଯେ ମନୁଷ୍ୟ ପାଇଁ ପରମ ପୁରୁଷାର୍ଥ–ଏ କଥାକୁ ସେମାନେ ଆଦୌ ଜାଣନ୍ତି ନାହିଁ । (ଯେଉଁଠିକାର ଦ୍ୱିଜ ଏପରି, ସେଠାକାର ଅନ୍ୟ ବର୍ଣ୍ଣଙ୍କ ବିଷୟରେ କ'ଣ ବା କହିବା?) ଅନ୍ୟ ବର୍ଣ୍ଣର ଲୋକେ ମଧ୍ୟ ଏମାନଙ୍କ ପରି କୁତ୍ସିତ ବିଚାରର, ସ୍ୱଧର୍ମବିମୁଖ ଓ ଖଳ ଅଟନ୍ତି । ସେମାନେ ସର୍ବଦା କୁକର୍ମରେ ରତ ରହନ୍ତି ଓ ନିତ୍ୟ ବିଷୟଭୋଗରେ ହିଁ ବୁଡ଼ି ରହନ୍ତି? ସେଠାକାର ସମସ୍ତ ନାରୀ ମଧ୍ୟ କୁଟିଳ ସ୍ୱଭାବର, ସ୍ୱେଚ୍ଛାଚାରିଣୀ, ପାପାସକ୍ତ, କୁତ୍ସିତ ବିଚାରର ଓ ବ୍ୟଭିଚାରିଣୀ । ସେମାନଙ୍କ ଠାରେ ସଦ୍‌ବ୍ୟବହାର ଓ ସଦାଚାର ଟିକିଏ ବି ନ ଥାଏ । ମୋଟ ଉପରେ କହିଲେ ସେଠାରେ କେବଳ ଦୁଷ୍ଟଙ୍କର ହିଁ ନିବାସ ।

ସେହି ବାଷ୍କଳ ନାମକ ଗ୍ରାମରେ ଏକଦା ବିନ୍ଦୁଗ ନାମଧାରୀ ଗୋଟିଏ ଅଧମ ବ୍ରାହ୍ମଣ ରହୁଥିଲା । ସେ ଦୁରାତ୍ମା ଓ ମହାପାପୀ ଥିଲା । ତା' ସ୍ତ୍ରୀ ସୁନ୍ଦରୀ ହୋଇଥିଲେ ସୁଦ୍ଧା ବିନ୍ଦୁଗ ସଦା କୁମାର୍ଗରେ ହିଁ ରତ ରହୁଥିଲା । ତା' ସ୍ତ୍ରୀର ନାମ ଥିଲା ଚଞ୍ଚୁଳା । ସେ ସର୍ବଦା ଉତ୍ତମ ଧର୍ମ ପାଳନ କରୁଥିଲା, ତଥାପି ତାକୁ ଛାଡ଼ି ଦୁଷ୍ଟ ବିନ୍ଦୁଗ ବେଶ୍ୟାଗାମୀ ହୋଇଯାଇଥିଲା । ଏହିରୂପେ କୁମାର୍ଗରେ ତା'ର ବହୁକାଳ ବିତିଗଲା । ତା'ର ସ୍ତ୍ରୀ ଚଞ୍ଚୁଳା କାମବ୍ୟଥାରେ ପୀଡ଼ିତ ଥିଲେ ମଧ୍ୟ ସ୍ୱଧର୍ମନାଶ ଭୟରେ କ୍ଳେଶ ସହି ସହି ରହିଲା ଓ ବହୁକାଳ ପର୍ଯ୍ୟନ୍ତ ଧର୍ମଭ୍ରଷ୍ଟ ହେଲା ନାହିଁ । ପରନ୍ତୁ ଦୁରାଚାରୀ ସ୍ୱାମୀର ଆଚରଣରେ ପ୍ରଭାବିତ ହୋଇ କ୍ରମେ କ୍ରମେ ସେ ମଧ୍ୟ ଦୁରାଚାରିଣୀ ହୋଇଗଲା ।

ଏହିରୂପେ ଉକ୍ତ ମୂର୍ଖ ପତିପତ୍ନୀ ଦୁହେଁ ଦୁରାଚାରରେ ଲିପ୍ତ ହୋଇ ବହୁକାଳ ବିତାଇ

ଦେଲେ । ତା'ପରେ ଶୂଦ୍ରଜାତିୟା ବେଶ୍ୟାର ଉପପତି ହୋଇଥିବା ସେହି ଦୁଷ୍ଟ ବ୍ରାହ୍ମଣ ବିନ୍ଦୁଗ ଯଥାସମୟରେ ମୃତ୍ୟୁମୁଖରେ ପଡ଼ି ନରକକୁ ଗଲା । ଦୀର୍ଘକାଳ ପର୍ଯ୍ୟନ୍ତ ନରକରେ ଦୁଃଖ ଭୋଗିବା ପରେ ମୂଢ଼ବୁଦ୍ଧି ପାପିଷ୍ଠ ବିନ୍ଦୁଗ ବିନ୍ଧ୍ୟପର୍ବତରେ ଭୟଙ୍କର ପିଶାଚ ହେଲା । ତେଣେ ଦୁରାଗ୍ରହୀ ବିନ୍ଦୁଗ ମରିଯିବାରୁ ତା'ର ପତ୍ନୀ ମୂଢ଼ହୃଦୟା ଚଞ୍ଚୁଳା ବହୁକାଳ ପର୍ଯ୍ୟନ୍ତ ପୁତ୍ରଙ୍କ ସହିତ ନିଜ ଘରେ ରହିଲା ।

ଦିନେ ଦୈବଯୋଗରୁ କୌଣସି ପୁଣ୍ୟ ପର୍ବ ସମୟରେ ଚଞ୍ଚୁଳା ତା'ର ଭାଇବନ୍ଧୁଙ୍କ ସଙ୍ଗେ ଗୋକର୍ଣ୍ଣ କ୍ଷେତ୍ରକୁ ଗଲା । ତୀର୍ଥଯାତ୍ରୀଙ୍କ ପରି ସେ ମଧ୍ୟ କୌଣସି ତୀର୍ଥ ଜଳରେ ସ୍ନାନ କଲା । ତା'ପରେ ସେ ସାଧାରଣଭାବରେ ମେଳା ଆଦି ଦେଖିବାକୁ ବନ୍ଧୁଜନଙ୍କ ସଙ୍ଗେ ଏଣେ ତେଣେ ବୁଲାବୁଲି କଲା । ଏମିତି ବୁଲୁବୁଲୁ କୌଣସି ଦେବ ମନ୍ଦିରକୁ ଗଲା ଏବଂ ଜଣେ ଦୈବଜ୍ଞ ବ୍ରାହ୍ମଣଙ୍କ ମୁଖରୁ ଶିବଙ୍କର ପରମ ପବିତ୍ର ଏବଂ ମଙ୍ଗଳକାରିଣୀ ଉତ୍ତମ ପୌରାଣିକ କଥା ଶୁଣିଲା । ପ୍ରସଙ୍ଗକ୍ରମେ କଥାବାଚକ ବ୍ରାହ୍ମଣ କହିଲେ– "ଯେଉଁ ନାରୀମାନେ ପରପୁରୁଷ ସଙ୍ଗେ ବ୍ୟଭିଚାର କରନ୍ତି, ସେମାନେ ମରିବା ପରେ ଯମଲୋକକୁ ଯାଆନ୍ତି । ସେଠାରେ ଯମରାଜଙ୍କ ଦୂତ ସେମାନଙ୍କ ଯୋନିରେ ତପ୍ତ ଲୌହର ପରିଘ ପ୍ରବେଶ କରାଇ ଦିଅନ୍ତି ।" ପୁରାଣବକ୍ତା ବ୍ରାହ୍ମଣଙ୍କ ମୁଖରୁ ଏପରି ବୈରାଗ୍ୟବୃଦ୍ଧିକାରୀ ପ୍ରସଙ୍ଗ ଶୁଣି ଚଞ୍ଚୁଳା ଭୟରେ ବ୍ୟାକୁଳ ହୋଇ କମ୍ପିବାକୁ ଲାଗିଲା । କଥା ସମାପ୍ତ ହେବାପରେ ଯେତେବେଳେ ସମସ୍ତ ଶ୍ରୋତା ଚାଲିଗଲେ, ଚଞ୍ଚୁଳା ଏକାନ୍ତରେ କଥାବାଚକ ପଣ୍ଡିତଙ୍କୁ କହିଲା–

ଚଞ୍ଚୁଳା କହିଲା–ବ୍ରହ୍ମନ୍ ! ମୁଁ ମୋର ଧର୍ମକୁ ଜାଣି ନ ଥିଲି । ତେଣୁ ଅଜ୍ଞାନରେ ମୋ ଦ୍ୱାରା ବହୁତ ବଡ଼ ଦୁରାଚାର ହୋଇଯାଇଛି । ଗୋସେଇଁ ! ମୋ ଉପରେ ଅନୁପମ କୃପା କରି ମୋତେ ଉଦ୍ଧାର କରନ୍ତୁ । ଆଜି ଆପଣଙ୍କ ବୈରାଗ୍ୟପୂର୍ଣ୍ଣ ପ୍ରବଚନ ଶୁଣି ମୋତେ ବହୁତ ଡର ଲାଗୁଛି । ମୁଁ ଭୟରେ କମ୍ପୁଛି ଏବଂ ମୋର ଏ ସଂସାର ପ୍ରତି ବୈରାଗ୍ୟ ହୋଇଗଲାଣି । ମୋ ପରି ମୂଢ଼ା ପାପିନୀକୁ ଧିକ୍କାର । ମୁଁ ସର୍ବଥା ନିନ୍ଦାର ଯୋଗ୍ୟ ।



ମୁଁ କୁତ୍ସିତ ବିଷୟରେ ଛନ୍ଦି ହୋଇ ନିଜ ଧର୍ମରୁ ବିମୁଖ ହୋଇଯାଇଛି । ହାୟ ! ମୋର କିଭଳି ଘୋର କଷ୍ଟଦାୟକ ଦୁର୍ଗତି ହେବ, କିଏ ଜାଣେ ! ସେତେବେଳେ କିଏ ମୋ ପରି କୁମାର୍ଗଗାମିନୀ ପାପିନୀକୁ ରକ୍ଷା କରିବ? ମୃତ୍ୟୁକାଳରେ ଭୟଙ୍କର ଯମଦୂତଙ୍କୁ ମୁଁ କିପରି ଚାହିଁ ପାରିବି? ସେମାନେ ବଳପୂର୍ବକ ମୋ ଗଳାରେ ରସି ବାନ୍ଧିଲା ବେଳେ ମୁଁ କେମିତି ଧୈର୍ଯ୍ୟ ଧାରଣ କରିବି? ନରକରେ ମୋର ଦେହକୁ ଟିକି ଟିକି କଲା ବେଳେ ମୁଁ ସେହି ଭୟଙ୍କର ଯାତନାକୁ କେମିତି ସହିବି? ହାୟ ! ମୁଁ ତ ମରିଗଲି । ମୋ ହୃଦୟ ଫାଟି

ଯାଉଛି । ମୁଁ ସବୁ ପ୍ରକାରେ ପାପରେ ବୁଡ଼ିଗଲି । ବ୍ରହ୍ମନ୍ ! ଆପଣ ହିଁ ମୋର ଗୁରୁ, ଆପଣ ହିଁ ମୋର ପିତାମାତା । ମୁଁ ଆପଣଙ୍କ ଶରଣକୁ ଆସିଛି; ମୋ ପରି ଅବଳାକୁ ଉଦ୍ଧାର କରନ୍ତୁ, ଉଦ୍ଧାର କରନ୍ତୁ ।

ସୂତ କହୁଛନ୍ତି–ଶୌନକ ! ଚଞ୍ଚୁଳା ଏପରି ଦୁଃଖ ଓ ବୈରାଗ୍ୟରେ ଅଭିଭୂତ ହୋଇ ବ୍ରାହ୍ମଣଙ୍କ ପାଦ ତଳେ ଲୋଟି ପଡ଼ିଲା । ସେତେବେଳେ ବୁଦ୍ଧିମାନ୍ ବ୍ରାହ୍ମଣ କୃପାପୂର୍ବକ ତାକୁ ଉଠାଇଲେ ଓ ଏହିପରି କହିଲେ– (ଅଧ୍ୟାୟ ୨-୩)

★★★

## ଆତ୍ମୋଦ୍ଧାର ନିମନ୍ତେ ଶିବଭକ୍ତ ବ୍ରାହ୍ମଣଙ୍କୁ ଚଞ୍ଚୁଳାର ପ୍ରାର୍ଥନା ଏବଂ ବ୍ରାହ୍ମଣଙ୍କ ମୁଖରୁ ଶିବପୁରାଣ ଶ୍ରବଣ ଫଳରେ ସେ ମୃତ୍ୟୁ ପରେ ଶିବଲୋକକୁ ଯାଇ ପାର୍ବତୀଙ୍କ ସଖୀ ହୋଇ ସୁଖୀ ହେବା ପ୍ରସଙ୍ଗ

ବ୍ରାହ୍ମଣ କହିଲେ–ହେ ଦ୍ୱିଜପତ୍ନୀ ! ବଡ଼ ସୌଭାଗ୍ୟର କଥା ଯେ ଭଗବାନ ଶିବଙ୍କ କୃପାରୁ ଶିବପୁରାଣର ବୈରାଗ୍ୟପୂର୍ଣ୍ଣ କଥା ଶୁଣି ସମୟ ଥାଉ ଥାଉ ତୁମେ ଚେତିଗଲ । ତୁମେ ଭୟ କର ନାହିଁ । ଭଗବାନ ଶିବଙ୍କ ଶରଣ ଯାଅ । ଶିବଙ୍କ କୃପାରେ ସମସ୍ତ ପାପ ଅବିଳମ୍ବେ ନଷ୍ଟ ହୋଇଯାଏ । ମୁଁ ଶିବଙ୍କର କୀର୍ତ୍ତିମୟୀ ପ୍ରସଙ୍ଗରେ ପରିପୂର୍ଣ୍ଣ ଏଭଳି ପରମ ବସ୍ତୁର ବର୍ଣ୍ଣନା କରିବି, ଯାହା ତୁମକୁ ସଦାସୁଖଦାୟକ ଉତ୍ତମ ଗତି ପ୍ରଦାନ କରିବ । ଶିବଙ୍କ କଥା ଶୁଣିବାରୁ ହିଁ ତୁମର ବୁଦ୍ଧି ଏପରି ପଶ୍ଚାତ୍ତାପରେ ଯୁକ୍ତ ଓ ଶୁଦ୍ଧ ହୋଇପାରିଛି । ପୁଣି ତୁମର ବିଷୟ ପ୍ରତି ବୈରାଗ୍ୟ ମଧ୍ୟ ଆସିଯାଇଛି । ପଶ୍ଚାତ୍ତାପ ହିଁ ପାପ କରିଥିବା ବ୍ୟକ୍ତି ପାଇଁ ସବୁଠାରୁ ବଡ଼ ପ୍ରାୟଶ୍ଚିତ୍ତ । ସତ୍‌ପୁରୁଷମାନେ ସମସ୍ତଙ୍କ ପାଇଁ ପଶ୍ଚାତ୍ତାପକୁ ହିଁ ପାପର ଶୋଧକ ବୋଲି କହିଛନ୍ତି । ପଶ୍ଚାତ୍ତାପ ଦ୍ୱାରା ହିଁ ପାପର ଶୁଦ୍ଧି ହୋଇଥାଏ । ଯେ ପଶ୍ଚାତ୍ତାପ କରେ, ସେ ହିଁ ବାସ୍ତବରେ ପାପର ପ୍ରାୟଶ୍ଚିତ୍ତ କରେ । କାରଣ ସାଧୁଜନ ସକଳ ପାପର ଶୋଧନ ପାଇଁ ଯେଉଁ ଯେଉଁ ସବୁ ପ୍ରାୟଶ୍ଚିତ୍ତର ଉପଦେଶ ଦେଇଛନ୍ତି, ସେଗୁଡ଼ିକ ପଶ୍ଚାତ୍ତାପ ଦ୍ୱାରା ହିଁ ସମ୍ପନ୍ନ ହୋଇଥାଏ ।* ଯେଉଁ ବ୍ୟକ୍ତି କେବଳ ବିଧିପୂର୍ବକ ପ୍ରାୟଶ୍ଚିତ୍ତ କରି ନିର୍ଭୟ ହୋଇଯାଏ, ଅଥଚ ଆପଣା କୁକର୍ମ ପାଇଁ ପଶ୍ଚାତ୍ତାପ ବା ଅନୁତାପ କରେ ନାହିଁ, ସେ ପ୍ରାୟ ଉତ୍ତମ ଗତି ପାଇପାରେ ନାହିଁ । ମାତ୍ର ନିଜ କୁକୃତ୍ୟ ପାଇଁ ହାର୍ଦ୍ଦିକ ପଶ୍ଚାତ୍ତାପ କରିଥିବା ବ୍ୟକ୍ତି ନିଶ୍ଚିତରୂପେ ଉତ୍ତମ ଗତିର ଭାଗୀ ହୋଇଥାଏ; ଏଥିରେ ସଂଶୟ ନାହିଁ । ଶିବପୁରାଣ ଶୁଣିବା ଦ୍ୱାରା ଯେଉଁପରି ଚିତ୍ତଶୁଦ୍ଧି ହୋଇଥାଏ, ସେପରି ଅନ୍ୟ କୌଣସି ଉପାୟରେ ହୋଇପାରେ ନାହିଁ । ଦର୍ପଣକୁ ସଫା କରିଦେଲେ ତାହା ଯେପରି ନିର୍ମଳ ହୋଇଯାଏ, ଠିକ୍ ସେହିପରି ଶିବପୁରାଣ କଥାରେ ଚିତ୍ତ ଅତ୍ୟନ୍ତ ଶୁଦ୍ଧ ହୋଇଥାଏ–ଏଥିରେ ସଂଶୟ ନାହିଁ । ମନୁଷ୍ୟର ଶୁଦ୍ଧଚିତ୍ତରେ ହିଁ ଜଗଦମ୍ବା ପାର୍ବତୀଙ୍କ ସମେତ ଭଗବାନ ଶିବ ବିରାଜମାନ ରହନ୍ତି । ଶିବପୁରାଣ ଶ୍ରବଣ ଦ୍ୱାରା ବିଶୁଦ୍ଧ ହୋଇଥିବା ବ୍ୟକ୍ତି

* ପଶ୍ଚାତ୍ତାପଃ ପାପକୃତାଂ ପାପାନାଂ ନିଷ୍କୃତିଃ ପରା । ସର୍ବେଷାଂ ବର୍ଣ୍ଣିତଂ ସଦ୍ଭିଃ ସର୍ବପାପବିଶୋଧନମ୍ ॥
ପଶ୍ଚାତ୍ତାପେନୈବ ଶୁଦ୍ଧିଃ ପ୍ରାୟଶ୍ଚିତ୍ତଂ କରୋତି ସଃ । ଯଥୋପଦିଷ୍ଟଂ ସଦ୍ଭିର୍ହି ସର୍ବପାପବିଶୋଧନମ୍ ॥
(ଶିବପୁରାଣ ମାହାତ୍ମ୍ୟ, ଅ. ୩ ଶ୍ଲୋକ ୫-୬)

ଶ୍ରୀସାମ୍ବସଦାଶିବଙ୍କର ପରମ ପଦକୁ ପ୍ରାପ୍ତ ହୋଇଥାଏ । ଏଭଳି ପୁରାଣକଥାରୂପୀ ସାଧନ ସମସ୍ତଙ୍କ ପାଇଁ କଲ୍ୟାଣର ବୀଜ । ଏଣୁ ଯଥୋଚିତ (ଶାସ୍ତ୍ରୋକ୍ତ) ମାର୍ଗରେ ଏହାର ଆରାଧନା ଅଥବା ସେବନ କରିବା ଉଚିତ । ଏହା ଭବବନ୍ଧନରୂପୀ ରୋଗକୁ ନଷ୍ଟ କରିଥାଏ । ଶିବଙ୍କ ପ୍ରସଙ୍ଗ ଶୁଣି ତାହାକୁ ହୃଦୟରେ ମନନ ଓ ନିଦିଧ୍ୟାସନ କରିବା ଉଚିତ । ଏହାଦ୍ୱାରା ପୂର୍ଣ୍ଣରୂପେ ଚିତ୍ତଶୁଦ୍ଧି ହୋଇଯାଏ । ଚିତ୍ତଶୁଦ୍ଧି ହେଲେ ମହେଶ୍ୱରଙ୍କ ଭକ୍ତି ଆପଣା ଦୁଇ ପୁତ୍ର (ଜ୍ଞାନ ଓ ବୈରାଗ୍ୟ) ସହିତ ନିଶ୍ଚୟ ପ୍ରକଟ ହୋଇଥାଏ । ତା'ପରେ ମହେଶ୍ୱରଙ୍କ ଅନୁଗ୍ରହରୁ ନିଶ୍ଚିତରୂପେ ଦିବ୍ୟ ମୁକ୍ତି ପ୍ରାପ୍ତ ହୋଇଥାଏ । ଯେ ମୁକ୍ତିରୁ ବଞ୍ଚିତ, ତାକୁ ପଶୁ ବୋଲି ବୁଝିବା ଉଚିତ; କାରଣ ତା'ର ଚିତ୍ତ ମାୟା-ବନ୍ଧନରେ ଆସକ୍ତ । ସେ ସଂସାର-ବନ୍ଧନରୁ ମୁକ୍ତ ହୋଇପାରେ ନାହିଁ, ଏହା ଧ୍ରୁବ ସତ୍ୟ ।

ତେଣୁ ହେ ବ୍ରାହ୍ମଣୀ ! ତୁମେ ବିଷୟରୁ ମନକୁ ଅପସାରିତ କରିନିଅ ଏବଂ ଭକ୍ତିଭାବରେ ଭଗବାନ ଶିବଙ୍କର ଏହି ପରମ ପାବନ କଥା ଶ୍ରବଣ କର । ପରମାତ୍ମା ଶିବଙ୍କ ଚରିତ ଶୁଣିଲେ ତୁମ ଚିତ୍ତ ଶୁଦ୍ଧ ହେବ ଏବଂ ଏହାଦ୍ୱାରା ତୁମକୁ ମୋକ୍ଷପ୍ରାପ୍ତି ହୋଇଯିବ । ଯେ ନିର୍ମଳ ଚିତ୍ତରେ ଭଗବାନ ଶିବଙ୍କ ଚରଣାରବିନ୍ଦର ଚିନ୍ତନ କରେ, ତାହାର ଗୋଟିଏ ଜନ୍ମରେ ହିଁ ମୁକ୍ତି ହୋଇଯାଏ । ଏହା ମୁଁ ତୁମକୁ ସତ୍ୟ କରି କହୁଛି ।

ସୂତ କହୁଛନ୍ତି—ହେ ଶୌନକ ! ଏତିକି କହି ସେହି ଶ୍ରେଷ୍ଠ ଶିବଭକ୍ତ ବ୍ରାହ୍ମଣ ଚୁପ୍ ହୋଇଗଲେ । ତାଙ୍କ ହୃଦୟ କରୁଣାର୍ଦ୍ର ହୋଇ ଯାଇଥିଲା । ତେଣୁ ସେହି ଶୁଦ୍ଧଚିତ୍ତ ମହାତ୍ମା ଶିବଙ୍କ ଧ୍ୟାନରେ ମଗ୍ନ ହୋଇଗଲେ । ଏଣେ ବିନ୍ଦୁଗର ପତ୍ନୀ ଚଞ୍ଚୁଳା ମନରେ ଆନନ୍ଦ ଖେଳିଗଲା । ବ୍ରାହ୍ମଣଙ୍କ ଉପଦେଶ ଶୁଣି ତା' ନେତ୍ରରେ ଆନନ୍ଦର ଅଶ୍ରୁ ଝରି ଆସିଲା । ଚଞ୍ଚୁଳା ସହର୍ଷ ବ୍ରାହ୍ମଣଙ୍କ ପାଦ ତଳେ ଲୋଟିପଡ଼ିଲା ଏବଂ ହାତ ଯୋଡ଼ି କହିଲା—"ମୁଁ କୃତାର୍ଥ ହୋଇଗଲି ।" ଚଞ୍ଚୁଳାର ଚିତ୍ତ ବୈରାଗ୍ୟରେ ପୂରି ଉଠିଥିଲା । ସେ ଆପଣା ପାପ ହେତୁ ଆତଙ୍କିତ ହୋଇ ଯାଇଥିଲା; ତେଣୁ ସେ ହାତ ଯୋଡ଼ି ସେହି ମହାନ୍ ଶିବଭକ୍ତ ବ୍ରାହ୍ମଣଙ୍କୁ ଗଦ୍‌ଗଦ ବାଣୀରେ କହିଲା—

ଚଞ୍ଚୁଳା କହିଲା—ହେ ଶିବଭକ୍ତଙ୍କ ମଧ୍ୟରେ ଶ୍ରେଷ୍ଠ ! ହେ ଗୋସେଇଁ ! ବ୍ରହ୍ମନ୍ ! ଆପଣ ଧନ୍ୟ ଅଟନ୍ତି । ଆପଣ ପରମାର୍ଥଦର୍ଶୀ, ସଦା ପରୋପକାର-ପରାୟଣ ଏବଂ ଶ୍ରେଷ୍ଠ ସାଧୁପୁରୁଷଙ୍କ ମଧ୍ୟରେ ପ୍ରଶଂସାର ଯୋଗ୍ୟ ଅଟନ୍ତି । ସାଧୋ ! ମୁଁ ନରକସମୁଦ୍ରରେ ପଡ଼ିବାକୁ ଯାଉଛି, ମୋତେ ଉଦ୍ଧାର କରନ୍ତୁ । ପୌରାଣିକ ଅର୍ଥତତ୍ତ୍ୱରେ ସମ୍ପନ୍ନ ଯେଉଁ ସୁନ୍ଦର ଶିବପୁରାଣ ସମ୍ବନ୍ଧୀୟ କଥାକୁ ଶୁଣି ମୋ ମନରେ ସମସ୍ତ ବିଷୟ ପ୍ରତି ବୈରାଗ୍ୟ ଉତ୍ପନ୍ନ ହୋଇଗଲା, ସେହି ପୁରାଣ ଶୁଣିବାକୁ ଏବେ ମୋ ମନରେ ଅତ୍ୟନ୍ତ ଶ୍ରଦ୍ଧା ଉପୁଜିଛି ।

ସୂତ କହୁଛନ୍ତି—ଚଞ୍ଚୁଳା ହାତ ଯୋଡ଼ି ଏପରି କହିଲା ଏବଂ ବ୍ରାହ୍ମଣଙ୍କ ଅନୁଗ୍ରହ ଲାଭ କରି ଶିବପୁରାଣ ଶୁଣିବା ଇଚ୍ଛାରେ ତାଙ୍କ ସେବାରେ ତତ୍ପର ରହିଲା । ତା'ପରେ ସେହି ଶିବଭକ୍ତ ତଥା ଶୁଦ୍ଧବୁଦ୍ଧି ବ୍ରାହ୍ମଣ ଚଞ୍ଚୁଳାକୁ ଶିବପୁରାଣ କଥା ଶୁଣାଇଲେ । ଏହିରୂପେ ଚଞ୍ଚୁଳା ଗୋକର୍ଣ୍ଣ ନାମକ ମହାକ୍ଷେତ୍ରରେ ବ୍ରାହ୍ମଣଙ୍କ ଠାରୁ ଶିବପୁରାଣର ଉତ୍ତମ କଥା ଶ୍ରବଣ କଲା । ସେହି କଥା ଥିଲା ଭକ୍ତି, ଜ୍ଞାନ ଓ ବୈରାଗ୍ୟର ବୃଦ୍ଧିକାରକ ତଥା ମୁକ୍ତିପ୍ରଦାୟକ । ତାହା ଶ୍ରବଣ କରି ବ୍ରାହ୍ମଣୀ ଅତ୍ୟନ୍ତ କୃତାର୍ଥ ହୋଇଗଲା । ତା'ର ଚିତ୍ତ ଅତିଶୀଘ୍ର ବିଶୁଦ୍ଧ ହୋଇଗଲା । ଶିବଙ୍କ ଅନୁଗ୍ରହରୁ ତା' ଚିତ୍ତରେ ଶିବଙ୍କ ସଗୁଣସ୍ୱରୂପର ଚିନ୍ତନ

ହେବାକୁ ଲାଗିଲା । ଏପରିଭାବରେ ସେ ଶିବଙ୍କ ଠାରେ ନିମଗ୍ନ ହୋଇ ଶିବଙ୍କ ସଚ୍ଚିଦାନନ୍ଦମୟ ସ୍ୱରୂପକୁ ବାରମ୍ବାର ଚିନ୍ତନ କଲା ଏବଂ ଯଥାସମୟରେ ଭକ୍ତି, ଜ୍ଞାନ ଓ ବୈରାଗ୍ୟରେ ସମ୍ପନ୍ନ ହୋଇ ଅକ୍ଳେଶରେ ଦେହତ୍ୟାଗ କରିଦେଲା । ଇତିମଧ୍ୟରେ ତ୍ରିପୁରାରି ଶିବଙ୍କ ଦ୍ୱାରା ପ୍ରେଷିତ ଗୋଟିଏ ଦିବ୍ୟ ବିମାନ ଦ୍ରୁତ ଗତିରେ ଆସି ପହଞ୍ଚିଲା । ତାହା ବିଭିନ୍ନ ଶୋଭାରେ ସମ୍ପନ୍ନ ଥିଲା ଏବଂ ସେଥିରେ ଶିବଗଣ ମଧ୍ୟ ଆସିଥିଲେ । ଚଞ୍ଚୁଳା ସେହି ବିମାନରେ ଆରୂଢ଼ ହେଲା ଏବଂ ଶିବଙ୍କର ଶ୍ରେଷ୍ଠ ପାର୍ଷଦମାନେ ତାକୁ ଅବିଳମ୍ବେ ଶିବପୁରୀରେ ପହଞ୍ଚାଇଦେଲେ । ତା'ର ସମସ୍ତ ଦୁଷ୍କୃତ ଧୋଇ ଯାଇଥିଲା । ସେ ଦିବ୍ୟରୂପଧାରିଣୀ ଦିବ୍ୟାଙ୍ଗନା ହୋଇଗଲା । ତା'ର ଦିବ୍ୟ ଅବୟବ ଅପୂର୍ବ ଶୋଭାରେ ମଣ୍ଡିତ ଥିଲା । ମସ୍ତକରେ ଥିଲା ଅର୍ଦ୍ଧଚନ୍ଦ୍ରର ମୁକୁଟ । ଗୌରାଙ୍ଗୀ ଚଞ୍ଚୁଳା ଦେବୀଙ୍କ ପରି ଶୋଭାମୟ ଦିବ୍ୟ ଆଭୂଷଣରେ ବିଭୂଷିତ ଥିଲା । ଶିବପୁରୀରେ ପହଞ୍ଚି ସେ ସନାତନ ଦେବତା ତ୍ରିନେତ୍ରଧାରୀ ମହାଦେବଙ୍କ ଦର୍ଶନ ପାଇଲା । ସେତେବେଳେ ସମସ୍ତ ପ୍ରମୁଖ ଦେବତା ଶିବଙ୍କ ସେବାରେ ଉପସ୍ଥିତ ଥିଲେ । ଗଣେଶ, ଭୃଙ୍ଗୀ, ନନ୍ଦୀଶ୍ୱର ଓ ବୀରଭଦ୍ରେଶ୍ୱର ପ୍ରଭୃତି ଭକ୍ତିଭାବରେ ତାଙ୍କର ସେବା କରୁଥିଲେ । ତାଙ୍କର ଅଙ୍ଗକାନ୍ତି କୋଟିସୂର୍ଯ୍ୟ ତୁଲ୍ୟ ଭାସ୍ୱର ଥିଲା । କଣ୍ଠରେ ଶୋଭାପାଉଥିଲା ନୀଳବର୍ଣ୍ଣ । ତାଙ୍କର ଥିଲା ପାଞ୍ଚଟି ମୁଖ ଓ ପ୍ରତ୍ୟେକରେ ଥିଲା ତିନୋଟି ଲେଖାଏଁ ନେତ୍ର । ମସ୍ତକରେ ଅର୍ଦ୍ଧଚନ୍ଦ୍ର ମୁକୁଟ ସ୍ଥାନରେ ଶୋଭା ପାଉଥିଲା । ଚଞ୍ଚୁଳା ଶିବଙ୍କ ବାମଭାଗରେ ବିଦ୍ୟୁତ୍ ଆଭାଯୁକ୍ତ ଗୌରୀ ଦେବୀଙ୍କୁ ବସିଥିବାର ଦେଖିବାକୁ ପାଇଲା । ଗୌରୀପତି ମହାଦେବଙ୍କ କାନ୍ତି କର୍ପୂର ତୁଲ୍ୟ ଗୌର ଥିଲା । ତାଙ୍କର ଶରୀର ଶ୍ୱେତ ଭସ୍ମରେ ବିଭୂଷିତ ଥିଲା । ଏହିପରି ପରମ ଉଜ୍ଜ୍ୱଳ ଭଗବାନ ଶଙ୍କରଙ୍କ ଦର୍ଶନ ପାଇ ବ୍ରାହ୍ମଣୀ ଚଞ୍ଚୁଳା ବହୁତ ପ୍ରସନ୍ନ ହେଲା । ଅତ୍ୟନ୍ତ ଉତ୍ସୁକତାର ସହିତ ସେ ଯାଇ ପରମ ପ୍ରୀତିପୂର୍ବକ ଶିବଙ୍କୁ ବାରମ୍ବାର ପ୍ରଣାମ କଲା ଏବଂ କର ଯୋଡ଼ି ପ୍ରେମ, ଆନନ୍ଦ ଓ ସନ୍ତୋଷରେ ବିନୀତଭାବରେ ଠିଆ ହୋଇଗଲା ।



ତା' ନେତ୍ରରୁ ଆନନ୍ଦାଶ୍ରୁର ଅବିରଳ ଧାରା ବହିଯାଉଥିଲା ଏବଂ ସମଗ୍ର ଶରୀର ରୋମାଞ୍ଚିତ ହୋଇଯାଇଥିଲା । ଭଗବତୀ ପାର୍ବତୀ ଓ ଭଗବାନ ଶଙ୍କର ତାକୁ ଅତ୍ୟନ୍ତ କରୁଣାପୂର୍ବକ ନିଜ ପାଖକୁ ଡାକିଲେ ଏବଂ ସୌମ୍ୟ ଦୃଷ୍ଟିରେ ତା' ଆଡ଼କୁ ଚାହିଁଲେ । ପାର୍ବତୀ ସେହି ଦିବ୍ୟ-ରୂପଧାରିଣୀ ବିନ୍ଦୁଗପ୍ରିୟା ଚଞ୍ଚୁଳାକୁ ସ୍ନେହରେ ନିଜର ସଖୀ କରି ରଖିଲେ । ଚଞ୍ଚୁଳା ପରମାନନ୍ଦଘନ ଜ୍ୟୋତିଃ-ସ୍ୱରୂପ ସନାତନ ଧାମରେ ଅବିଚଳ ନିବାସ ପାଇ ଦିବ୍ୟ ଓ ଅକ୍ଷୟ ସୁଖ ଅନୁଭବ କଲା ।

(ଅଧ୍ୟାୟ ୪)

❀❀❀

# ଚଞ୍ଚୁଳାର ପ୍ରଯତ୍ନ କ୍ରମେ ପାର୍ବତୀଙ୍କ ଆଜ୍ଞାରେ ଗନ୍ଧର୍ବରାଜ ତୁମ୍ବୁରୁଙ୍କର ବିନ୍ଧ୍ୟପର୍ବତ ଗମନ, ସେଠାରେ ତାଙ୍କ ମୁଖରୁ ଶିବପୁରାଣ କଥା ଶ୍ରବଣ ଫଳରେ ଚଞ୍ଚୁଳାର ସ୍ୱାମୀ ବିନ୍ଦୁଗର ପିଶାଚଯୋନିରୁ ଉଦ୍ଧାର ଏବଂ ସେହି ଦମ୍ପତିଙ୍କର ଶିବଧାମରେ ସୁଖରେ ସହାବସ୍ଥାନ

ସୂତ କହିଲେ–ହେ ଶୌନକ ! ଦିନେ ପରମାନନ୍ଦରେ ନିମଗ୍ନ ଚଞ୍ଚୁଳା ଉମାଦେବୀଙ୍କ ପାଖକୁ ଯାଇ ପ୍ରଣାମ କଲା ଓ ଦୁଇ କର ଯୋଡ଼ି ସ୍ତୁତି କଲା ।

ଚଞ୍ଚୁଳା କହିଲା–ହେ ଗିରିରାଜନନ୍ଦିନୀ ! ସ୍କନ୍ଦମାତା ଉମେ ! ମନୁଷ୍ୟମାନେ ସଦା ଆପଣଙ୍କ ସେବା କରିଥାନ୍ତି । ହେ ସର୍ବସୁଖକାରିଣୀ ଶିବପ୍ରିୟେ ! ଆପଣ ବ୍ରହ୍ମସ୍ୱରୂପିଣୀ ଅଟନ୍ତି । ବିଷ୍ଣୁ ଓ ବ୍ରହ୍ମାଦି ଦେବତାଙ୍କ ଦ୍ୱାରା ସେବ୍ୟ ଅଟନ୍ତି । ଆପଣ ସଗୁଣା ଓ ନିର୍ଗୁଣା ତଥା ଆପଣ ହିଁ ସୂକ୍ଷ୍ମା ସଚ୍ଚିଦାନନ୍ଦରୂପିଣୀ ଆଦ୍ୟା ପ୍ରକୃତି । ଆପଣ ହିଁ ସଂସାରର ସୃଷ୍ଟି, ପାଳନ ଓ ସଂହାରକାରିଣୀ । ତିନିଗୁଣର ଆଶ୍ରୟ ମଧ୍ୟ ଆପଣ । ଆପଣ ହିଁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ଆବାସ ସ୍ଥାନ ତଥା ସେମାନଙ୍କ ଉତ୍ତମ ପ୍ରତିଷ୍ଠାକାରିଣୀ ପରାଶକ୍ତି ।

ସୂତ କହୁଛନ୍ତି–ଶୌନକ ! ସଦ୍‌ଗତି ପ୍ରାପ୍ତ ହୋଇଥିବା ଚଞ୍ଚୁଳା ଏହିରୂପେ ମହେଶ୍ୱରପତ୍ନୀ ଉମାଙ୍କୁ ସ୍ତୁତି କରିସାରି ମସ୍ତକ ଅବନତ କରି ଛିଡ଼ା ହୋଇଗଲା । ତା' ନେତ୍ରପ୍ରାନ୍ତରୁ ପ୍ରେମର ଅଶ୍ରୁ ବହି ଆସିଥିଲା । ଏହା ଦେଖି କରୁଣାମୟୀ ଶିବପ୍ରିୟା ଭକ୍ତବତ୍ସଳା ପାର୍ବତୀଦେବୀ ଚଞ୍ଚୁଳାକୁ ସମ୍ବୋଧିତ କରି ଅତି ସ୍ନେହରେ ଏହି ପ୍ରକାର କହିଲେ–

ପାର୍ବତୀ କହିଲେ–ସଖୀ ଚଞ୍ଚୁଳେ ! ହେ ସୁନ୍ଦରୀ ! ତୁମେ କରିଥିବା ଏହି ସ୍ତୁତିରେ ମୁଁ ବହୁତ ପ୍ରସନ୍ନ । କୁହ, ତୁମେ କ'ଣ ବର ମାଗିବାକୁ ଚାହୁଁଛ? ତୁମ ପାଇଁ ମୋ ନିକଟରେ କିଛି ଅଦେୟ ନାହିଁ ।

ଚଞ୍ଚୁଳା କହିଲା–ନିଷ୍ପାପ ଗିରିରାଜକୁମାରୀ ! ମୋର ସ୍ୱାମୀ ବିନ୍ଦୁଗ ଏବେ କେଉଁଠି? ତାଙ୍କର କେଉଁ ଗତି ହେଲା? ମୁଁ ଏ ବିଷୟରେ କିଛି ବି ଜାଣେନା । କଲ୍ୟାଣମୟୀ ଦୀନବତ୍ସଳେ ! ମୁଁ ମୋର ପତିଦେବଙ୍କ ସଙ୍ଗେ ଯେଉଁ ପ୍ରକାରେ ମିଳିତ ହୋଇପାରିବି, ସେପରି କିଛି ଉପାୟ କରନ୍ତୁ । ହେ ମହେଶ୍ୱରୀ ! ହେ ମହାଦେବୀ ! ମୋ ସ୍ୱାମୀ ଗୋଟିଏ ଶୂଦ୍ରଜାତିୟା ବେଶ୍ୟା ପ୍ରତି ଆସକ୍ତ ହୋଇଯାଇଥିଲେ ଏବଂ ପାପରେ ହିଁ ବୁଡ଼ି ରହିଥିଲେ । ମୋ ମୃତ୍ୟୁ ପୂର୍ବରୁ ହିଁ ତାଙ୍କର ମୃତ୍ୟୁ ହୋଇଯାଇଥିଲା । ମୁଁ ଜାଣେନା ତାଙ୍କର କି ଗତି ହେଲା?

ଗିରିଜା କହିଲେ–ମାଆରେ ! ତୋର ସ୍ୱାମୀ ବିନ୍ଦୁଗ ବଡ଼ ପାପୀ ଥିଲା । ତା'ର ଅନ୍ତଃକରଣ ଅତ୍ୟନ୍ତ ଦୂଷିତ ଥିଲା । ତୋର ସେହି ବେଶ୍ୟାସଙ୍ଗକାରୀ ମହାମୂଢ଼ ସ୍ୱାମୀ ମରିବା ପରେ ଅଗଣିତ ବର୍ଷ ପର୍ଯ୍ୟନ୍ତ ନରକରେ ନାନା ପ୍ରକାର ଦୁଃଖ ଭୋଗ କରିସାରି ଅବଶିଷ୍ଟ ପାପର ଫଳ ଭୋଗିବାକୁ ବିନ୍ଧ୍ୟପର୍ବତରେ ପିଶାଚ ହୋଇଯାଇଛି । ଏବେ ସେ ପିଶାଚ ନାନା ପ୍ରକାର କ୍ଳେଶ ସହନ କରୁଛି । ସେ ଦୁଷ୍ଟ ବାୟୁ ପାନ କରି ରହୁଛି ଏବଂ ସର୍ବଦା ନାନା ପ୍ରକାର କଷ୍ଟ ଭୋଗୁଛି ।

ସୂତ କହୁଛନ୍ତି–ଶୌନକ ! ସୁବ୍ରତା ଚଞ୍ଚୁଳା ଗୌରୀଦେବୀଙ୍କ ମୁଖରୁ ସ୍ୱାମୀଙ୍କ ଦାରୁଣ ଯାତନା କଥା ଶୁଣି ଅତ୍ୟନ୍ତ ଦୁଃଖିତ ହେଲା । ତା'ପରେ ସେ ମନକୁ ସ୍ଥିର କରି ବ୍ୟଥିତ ହୃଦୟରେ ମହେଶ୍ୱରୀଙ୍କୁ ପ୍ରଣାମ କରି ପୁନଃ ପଚାରିଲା–

ଚଞ୍ଚୁଳା କହିଲା–ହେ ମହେଶ୍ୱରୀ ! ହେ ମହାଦେବୀ ! ମୋ ଉପରେ କୃପା କରନ୍ତୁ ଏବଂ ମୋର ସେହି ଦୂଷିତ କର୍ମକାରୀ ଦୁଷ୍ଟ ସ୍ୱାମୀଙ୍କୁ ଏଥର ଉଦ୍ଧାର କରିଦିଅନ୍ତୁ । ହେ ଦେବୀ ! ମୋର କୁତ୍ସିତବୁଦ୍ଧି ପାପାତ୍ମା ସ୍ୱାମୀଙ୍କୁ କେଉଁ ଉପାୟରେ ଉତ୍ତମ ଗତି ପ୍ରାପ୍ତ ହେବ, ତାହା ଶୀଘ୍ର କହନ୍ତୁ । ଆପଣଙ୍କୁ ମୁଁ ପୁଣି ନମସ୍କାର କରୁଛି ।

ପାର୍ବତୀ କହିଲେ–ତୋ ସ୍ୱାମୀ ଯଦି ଶିବପୁରାଣର ପୁଣ୍ୟମୟୀ ଉତ୍ତମ କଥାକୁ ଶୁଣିବ, ତେବେ ସେ ସମସ୍ତ ଦୁର୍ଗତିକୁ ପାର ହୋଇ ଉତ୍ତମ ଗତିର ଭାଗୀ ହେବ ।

ଗୌରୀଦେବୀଙ୍କର ଏଭଳି ଅମୃତତୁଲ୍ୟ ମଧୁର ବାଣୀକୁ ଆଦରରେ ଶୁଣି ଚଞ୍ଚୁଳା ହାତ ଯୋଡ଼ି ମୁଣ୍ଡ ନୁଆଁଇ ତାଙ୍କୁ ବାରମ୍ବାର ପ୍ରଣାମ କଲା ଓ ନିଜ ସ୍ୱାମୀଙ୍କର ସମସ୍ତ ପାପର ପ୍ରକ୍ଷାଳନ ପାଇଁ ଏବଂ ତାଙ୍କର ସଦ୍‌ଗତି ପାଇଁ ପାର୍ବତୀଦେବୀଙ୍କୁ ପ୍ରାର୍ଥନା କରି କହିଲା–"ମୋ ସ୍ୱାମୀଙ୍କୁ ଶିବପୁରାଣ ଶୁଣାଇବାର ବ୍ୟବସ୍ଥା ହେବା ଉଚିତ ।" ବ୍ରାହ୍ମଣୀ ବାରମ୍ବାର ଏପରି ପ୍ରାର୍ଥନା କରିବାରୁ ଶିବପ୍ରିୟା ଗୌରୀଦେବୀଙ୍କ ମନରେ ଦୟା ଆସିଲା । ଭକ୍ତବତ୍ସଳା ମହେଶ୍ୱରୀ ଗିରିରାଜକୁମାରୀ ଶିବଙ୍କ ଉତ୍ତମକୀର୍ତ୍ତିଗାନରେ ପ୍ରବୀଣ ଗନ୍ଧର୍ବରାଜ ତୁମ୍ବୁରୁଙ୍କୁ ଡାକି ତାଙ୍କୁ ଆନନ୍ଦରେ କହିଲେ–"ତୁମ୍ବୁରୋ ! ତୁମର ଭଗବାନ ଶିବଙ୍କ ପ୍ରତି ପ୍ରୀତି ରହିଛି । ତୁମେ ମୋ ମନର କଥାକୁ ଜାଣି ମୋର ଅଭୀଷ୍ଟ କାର୍ଯ୍ୟକୁ ସଫଳ କରିଥାଅ । ଏଣୁ ତୁମକୁ ଗୋଟିଏ କଥା କହୁଛି । ତୁମର କଲ୍ୟାଣ ହେଉ । ତୁମେ ମୋର ଏ ସଖୀ ସଙ୍ଗରେ ଶୀଘ୍ର ବିନ୍ଧ୍ୟପର୍ବତକୁ ଯାଅ । ସେଠାରେ ଗୋଟିଏ ଅତ୍ୟନ୍ତ ଭୟଙ୍କର ପିଶାଚ ରହୁଛି । ତା'ର ବୃତ୍ତାନ୍ତ ତୁମେ ପ୍ରଥମରୁ ଜାଣିରଖ । ମୁଁ ତୁମକୁ ପ୍ରସନ୍ନତାପୂର୍ବକ ସବୁ କିଛି କହିଦେଉଛି । ପୂର୍ବଜନ୍ମରେ ସେହି ପିଶାଚ ବିନ୍ଦୁଗ ନାମକ ବ୍ରାହ୍ମଣ ଥିଲା, କିନ୍ତୁ ସେ ବେଶ୍ୟାଗାମୀ ହୋଇଗଲା । ସେ ଦୁଷ୍ଟ ସ୍ନାନ-ସନ୍ଧ୍ୟା ଇତ୍ୟାଦି ନିତ୍ୟକର୍ମ ଛାଡ଼ି ଅପବିତ୍ର ଅବସ୍ଥାରେ ରହିଲା । କ୍ରୋଧ ହେତୁ ତା'ର ବୁଦ୍ଧି ମୂଢ଼ତାର ଆବରଣରେ ଆଚ୍ଛାଦିତ ହୋଇ ଯାଇଥିଲା, ତେଣୁ ସେ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟର ଜ୍ଞାନ ହରାଇ ବସିଥିଲା । ଅଭକ୍ଷ୍ୟଭକ୍ଷଣ, ସଜ୍ଜନଙ୍କ ପ୍ରତି ଦ୍ରୋହ ଓ ଦାନରୂପେ ଦୂଷିତ ବସ୍ତୁ ଗ୍ରହଣ କରିବା–ଏସବୁ ଥିଲା ତା'ପାଇଁ ସ୍ୱାଭାବିକ କର୍ମ । ସେ ଅସ୍ତ୍ରଶସ୍ତ୍ର ଧରି ହିଂସା କର୍ମ କରୁଥିଲା, ବାମ ହାତରେ ଖାଉଥିଲା,



ଦୀନଜନଙ୍କୁ କଷ୍ଟ ଦେଉଥିଲା, କ୍ରୂରତାପୂର୍ବକ ପରଘରେ ନିଆଁ ଲଗାଇ ଦେଉଥିଲା, ଚଣ୍ଡାଳଙ୍କୁ ପ୍ରେମ କରୁଥିଲା ଏବଂ ପ୍ରତିଦିନ ବେଶ୍ୟାର ସମ୍ପର୍କରେ ରହୁଥିଲା । ସେ ବହୁତ ଦୁଷ୍ଟ ଥିଲା । ସେ ପାପୀ ନିଜ ପତ୍ନୀକୁ ପରିତ୍ୟାଗ କରି ଦୁଷ୍ଟଙ୍କ ସଙ୍ଗରେ ରହିବାକୁ ସୁଖ ମଣୁଥିଲା । ସେ ମୃତ୍ୟୁ ପର୍ଯ୍ୟନ୍ତ ଦୁରାଗ୍ରହରେ ହିଁ ଲିପ୍ତ ରହିଥିଲା । ମୃତ୍ୟୁ ପରେ ସେ ପାପୀଙ୍କର କର୍ମଫଳଭୋଗର ସ୍ଥାନ

ଯମପୁରୀକୁ ଗଲା ଏବଂ ସେଠାରେ ଅନେକ ପ୍ରକାର ନରକ ଯାତନା ଭୋଗ କରିସାରି ଏବେ ବିନ୍ଧ୍ୟପର୍ବତରେ ପିଶାଚ ହୋଇଛି । ସେଠାରେ ସେ ଦୁଷ୍ଟ ପିଶାଚ ନିଜ ପାପର ଫଳ ଭୋଗ କରୁଛି । ତୁମେ ତା' ସମ୍ମୁଖରେ ଯତ୍ନପୂର୍ବକ ଶିବପୁରାଣର ଦିବ୍ୟ କଥା ପ୍ରବଚନ କର । ତାହା ପରମ ପୁଣ୍ୟକର ଓ ସମସ୍ତ ପାପନାଶକାରୀ । ଶିବପୁରାଣ କଥା ଶ୍ରବଣ କରିବା ସବୁଠାରୁ ଉତ୍କୃଷ୍ଟ ପୁଣ୍ୟକର୍ମ । ଏହାଦ୍ୱାରା ତା'ର ହୃଦୟ ଶୀଘ୍ର ପାପମୁକ୍ତ ହୋଇଯିବ ଏବଂ ସେ ପ୍ରେତଯୋନିରୁ ମୁକ୍ତି ପାଇଯିବ । ପିଶାଚ ବିନ୍ଦୁଗ ଏହି ଦୁର୍ଗତିରୁ ମୁକ୍ତ ହୋଇଗଲେ ତାକୁ ମୋ ଆଜ୍ଞାରେ ବିମାନରେ ବସାଇ ତୁମେ ଭଗବାନ ଶିବଙ୍କ ସମୀପକୁ ନେଇ ଆସିବ ।''

ସୂତ କହୁଛନ୍ତି–ଶୌନକ ! ମହେଶ୍ୱରୀ ଉମାଙ୍କ ଆଦେଶ ପାଇ ଗନ୍ଧର୍ବରାଜ ତୁମ୍ବୁରୁ ମନେ ମନେ ବହୁତ ଖୁସୀ ହେଲେ । ସେ ନିଜ ଭାଗ୍ୟକୁ ପ୍ରଶଂସା କଲେ । ତା'ପରେ ପିଶାଚର ସତୀସାଧ୍ୱୀ ପତ୍ନୀ ଚଞ୍ଚୁଳା ସହିତ ବିମାନରେ ବସି ନାରଦଙ୍କ ପ୍ରିୟ ମିତ୍ର ତୁମ୍ବୁରୁ ଦ୍ରୁତଗତିରେ ବିନ୍ଧ୍ୟାଚଳକୁ ଗଲେ । ସେଠାରେ ସେ ଉକ୍ତ ପିଶାଚକୁ ଦେଖିବାକୁ ପାଇଲେ । ସେ ଅତି ବିଶାଳକାୟ ଥିଲା । ତା'ର ଥୋଡ଼ି ଥିଲା ବଡ଼ ଆକାରର । ସେ କେବେ ହସୁଥିଲା ତ କେବେ କାନ୍ଦୁଥିଲା; ପୁଣି କେବେ ଡିଆଁକୁଦା କରୁଥିଲା । ତା'ର ଆକୃତି ଥିଲା ଅତି ବିକରାଳ । ଭଗବାନ ଶିବଙ୍କ ଉତ୍ତମ କୀର୍ତ୍ତି ଗାୟନକାରୀ ମହାବଳୀ ତୁମ୍ବୁରୁ ସେହି ଭୟଙ୍କର ପିଶାଚକୁ ପାଶରେ ବାନ୍ଧି ପକାଇଲେ । ତା'ପରେ ତୁମ୍ବୁରୁ ଶିବପୁରାଣ କଥା ଆରମ୍ଭ କରିବାକୁ ସ୍ଥିର କରି ମହୋତ୍ସବ ଉପଯୋଗୀ ସ୍ଥାନ ଓ ମଣ୍ଡପ ନିର୍ମାଣ କଲେ । ଇତି ମଧ୍ୟରେ ସମଗ୍ର ଜଗତରେ ଦ୍ରୁତ ଗତିରେ ପ୍ରଶ୍ମରିତ ହୋଇଗଲା ଯେ ପାର୍ବତୀଙ୍କ ଆଜ୍ଞାରେ ଶିବପୁରାଣ କଥା ଶୁଣାଇ ଗୋଟିଏ ପିଶାଚର ଉଦ୍ଧାର କରିବା ଉଦ୍ଦେଶ୍ୟରେ ତୁମ୍ବୁରୁ ବିନ୍ଧ୍ୟପର୍ବତକୁ ଯାଇଛନ୍ତି । ଏହାପରେ ପୁରାଣ କଥା ଶୁଣିବା ଲୋଭରେ ଅନେକ ଦେବର୍ଷି ମଧ୍ୟ ସେଠାରେ ପହଞ୍ଚିଲେ । ଆଦରପୂର୍ବକ ଶିବପୁରାଣ ଶୁଣିବାକୁ ଆସିଥିବା ଲୋକଙ୍କର ସେହି ଅଦ୍ଭୁତ ଓ କଲ୍ୟାଣକାରୀ ସମାଗମରେ ବିନ୍ଧ୍ୟପର୍ବତ ପୂରି ଉଠିଲା । ତୁମ୍ବୁରୁ ପିଶାଚକୁ ବାନ୍ଧି ପକାଇ ଗୋଟିଏ ଆସନରେ ବସାଇଲେ ଏବଂ ନିଜେ ବୀଣାଟିଏ ହାତରେ ଧରି ଗୌରୀପତିଙ୍କ କଥା ବର୍ଣ୍ଣନ ଆରମ୍ଭ କରିଦେଲେ । ପ୍ରଥମ ଅର୍ଥାତ୍ ବିଦ୍ୟେଶ୍ୱରସଂହିତା ଠାରୁ ଆରମ୍ଭ କରି ସପ୍ତମ ବାୟୁସଂହିତା ପର୍ଯ୍ୟନ୍ତ



ମାହାତ୍ମ୍ୟ ସହିତ ଶିବପୁରାଣର କଥା ସେ ସ୍ପଷ୍ଟରୂପେ ବର୍ଣ୍ଣନା କଲେ । ସାତଟି ସଂହିତାରେ ବିଭକ୍ତ ଶିବପୁରାଣକୁ ସାଦର ଶ୍ରବଣ କରି ସମସ୍ତ ଶ୍ରୋତା ପୂର୍ଣ୍ଣତଃ କୃତାର୍ଥ ହୋଇଗଲେ । ପରମ ପୁଣ୍ୟମୟ ଶିବପୁରାଣ ଶୁଣିବା ପରେ ପିଶାଚ ତା'ର ପୈଶାଚିକ ଦେହ ପରିତ୍ୟାଗ କରି ଖୁବ୍ ଶୀଘ୍ର

ଦିବ୍ୟ ଶରୀର ଧାରଣ କଲା । ସେତେବେଳେ ତା'ର ଅଙ୍ଗକାନ୍ତି ଗୌରବର୍ଣ୍ଣ ହୋଇଗଲା । ତା' ଶରୀରରେ ଶୋଭା ପାଉଥିଲା ଶ୍ୱେତବସ୍ତ୍ର ଏବଂ ସବୁ ପ୍ରକାର ପୁରୁଷୋଚିତ ଆଭୂଷଣରେ ତା'ର ଅଙ୍ଗ ଉଦ୍ଭାସିତ ହେଉଥିଲା । ସେ ତ୍ରିନେତ୍ରଧାରୀ ଚନ୍ଦ୍ରଶେଖରରୂପ ହୋଇଗଲା । ଏପରି ଦିବ୍ୟ-ଦେହଧାରୀ ହୋଇ ଶ୍ରୀମାନ୍ ବିନ୍ଦୁଗ ତା'ର ପ୍ରାଣବଲ୍ଲଭା ଚଞ୍ଚୁଳା ସହିତ ମିଶି ପାର୍ବତୀବଲ୍ଲଭ ଶିବଙ୍କର ଗୁଣଗାନ କରିବାକୁ ଲାଗିଲା । ଦେବର୍ଷିଗଣ ତା' ସ୍ତ୍ରୀକୁ ଦିବ୍ୟରୂପରେ ସୁଶୋଭିତ ଦେଖି ଅତ୍ୟନ୍ତ ବିସ୍ମିତ ହେଲେ । ସେମାନଙ୍କ ଚିତ୍ତ ପରମାନନ୍ଦରେ ମଗ୍ନ ହୋଇଗଲା । ଭଗବାନ ମହେଶ୍ୱରଙ୍କର ଏଭଳି ଅଦ୍ଭୁତ ଚରିତ୍ର ଶୁଣିବା ପରେ ସମସ୍ତ ଶ୍ରୋତା ପରମ କୃତାର୍ଥ ହୋଇ ପ୍ରେମରେ ଶିବଙ୍କର ଯଶୋଗାନ କରି କରି ନିଜ ନିଜ ଧାମକୁ ଗ୍ଭଲିଗଲେ । ଦିବ୍ୟରୂପଧାରୀ ଶ୍ରୀମାନ୍ ବିନ୍ଦୁଗ ମଧ୍ୟ ତା'ର ପ୍ରିୟତମା ସହିତ ସୁନ୍ଦର ବିମାନରେ ସୁଖରେ ଆରୂଢ଼ ହୋଇ ଆକାଶରେ ଅତ୍ୟନ୍ତ ଶୋଭା ପାଇଲା ।

ତା'ପରେ ମହେଶ୍ୱରଙ୍କ ସୁନ୍ଦର ଓ ମନୋହର ଗୁଣମାନ ଗାନ କରି କରି ସେ ତା'ର ପ୍ରିୟତମା ଓ ତୁମ୍ବୁରୁଙ୍କ ସହିତ ଯାଇ ଅବିଳମ୍ବେ ଶିବଙ୍କ ଧାମରେ ପହଞ୍ଚିଗଲା । ସେଠାରେ ମହେଶ୍ୱର ଓ ପାର୍ବତୀଦେବୀ ପ୍ରସନ୍ନ ମନରେ ବିନ୍ଦୁଗକୁ ଆଦର କଲେ ଏବଂ ତାକୁ ଆପଣା ପାର୍ଷଦ କରିଦେଲେ । ତା'ର ପତ୍ନୀ ଚଞ୍ଚୁଳା ପାର୍ବତୀଙ୍କ ସଖୀ ହୋଇ ରହିଲା । ଶିବଙ୍କର ଘନୀଭୂତ ଜ୍ୟୋତିଃସ୍ୱରୂପ ପରମାନନ୍ଦମୟ ସନାତନଧାମରେ ଅବିଚଳ ନିବାସ ପାଇ ବିପ୍ରଦମ୍ପତି ପରମ ସୁଖ ଲାଭ କଲେ । (ଅଧ୍ୟାୟ ୫)

★★★

## ଶିବପୁରାଣ ଶ୍ରବଣର ବିଧି ଓ ଶ୍ରୋତାଙ୍କ ପାଇଁ ପାଳନୀୟ ନିୟମ

ଶୌନକ କହୁଛନ୍ତି—ମହାପ୍ରାଜ୍ଞ ବ୍ୟାସଶିଷ୍ୟ ସୂତ ! ଆପଣଙ୍କୁ ନମସ୍କାର । ଆପଣ ଧନ୍ୟ ଓ ଶିବଭକ୍ତଙ୍କ ମଧ୍ୟରେ ଶ୍ରେଷ୍ଠ । ଆପଣଙ୍କ ମହାନ୍ ଗୁଣଗ୍ରାମ ବର୍ଣ୍ଣନା କରିବାର ଯୋଗ୍ୟ । ଏବେ ଆପଣ ଶିବପୁରାଣ ଶ୍ରବଣର ବିଧି ବିଷୟରେ କହନ୍ତୁ, ଯାହାଫଳରେ ସମସ୍ତ ଶ୍ରୋତାଙ୍କୁ ଉତ୍ତମ ଫଳ ପ୍ରାପ୍ତ ହୋଇପାରିବ ।

ସୂତ କହିଲେ—ହେ ମୁନି ଶୌନକ ! ଏବେ ମୁଁ ତୁମକୁ ପୂର୍ଣ୍ଣ ଫଳ ପ୍ରାପ୍ତି ନିମନ୍ତେ ଶିବପୁରାଣ ଶ୍ରବଣର ବିଧି କହୁଛି । ଯଜମାନ ପ୍ରଥମେ କୌଣସି ଜ୍ୟୋତିଷୀଙ୍କୁ ଡାକି ଦାନ ଓ ମାନରେ ସନ୍ତୁଷ୍ଟ କରିବେ ଏବଂ ନିଜର ସହଯୋଗୀ ବନ୍ଧୁବର୍ଗଙ୍କ ମେଳରେ ନିର୍ବିଘ୍ନରେ କଥା ସମାପ୍ତି ନିମନ୍ତେ ବିଶୁଦ୍ଧ ମୁହୂର୍ତ୍ତ ସ୍ଥିର କରାଇବେ । ତା'ପରେ ନାନା ସ୍ଥାନରେ ଏହି ସନ୍ଦେଶ ପ୍ରଗ୍ଭର କରିଦେବେ ଯେ "ଆମର ଅମୁକ ସ୍ଥାନରେ ଶିବପୁରାଣ ଶ୍ରବଣର ଆୟୋଜନ ହେଉଛି । ଦୟା କରି ସମସ୍ତ କଲ୍ୟାଣେଚ୍ଛୁ ଲୋକେ ତାହା ଶ୍ରବଣ କରିବାକୁ ସେଠାରେ ଉପସ୍ଥିତ ହୁଅନ୍ତୁ ।" ଅନେକ ଲୋକ ଭଗବାନ ଶ୍ରୀହରିଙ୍କ ଚରିତ ଶ୍ରବଣରୁ ବହୁତ ଦୂରରେ ଅଛନ୍ତି । କେତେକ ସ୍ତ୍ରୀ, ଶୂଦ୍ରାଦି ଶିବଙ୍କ କଥାକୀର୍ତ୍ତନରୁ ବଞ୍ଚିତ ଅଛନ୍ତି । ସେ ସମସ୍ତଙ୍କୁ ଯେପରି ସୂଚନା ମିଳି ପାରିବ, ସେପରି ବ୍ୟବସ୍ଥା କରିବେ । ଦୂର-ଦୂରାନ୍ତରେ ଯେଉଁ ଶିବଭକ୍ତମାନେ ଥିବେ ଅଥବା ଶିବକଥା ଶ୍ରବଣ-କୀର୍ତ୍ତନ ପ୍ରତି ଯେଉଁମାନେ ଉତ୍ସୁକ ଥିବେ, ସେମାନଙ୍କୁ ଆଦରପୂର୍ବକ ଡାକିବା ଉଚିତ ଏବଂ ସମାଗତ ଲୋକମାନଙ୍କୁ ସବୁ ଦୃଷ୍ଟିରୁ ଆଦର-




भगवान् शिव ध्यानस्थ

**Lord Siva in Meditation Posture**




श्रीशिव-पार्वती

Śiva and Pārvatī




तपस्विनी सतीके सामने शिवका प्राकट्य

Śiva Manifests before Penancing Satī




पार्वतीकी काली त्वचाके आवरणसे कौशिकीका प्राकट्य

Kausiki Emanates from Black Hides of Pārvati

ସତ୍କାର କରିବା ଉଚିତ । ଶିବମନ୍ଦିରରେ, ତୀର୍ଥରେ, ବନପ୍ରାନ୍ତରେ ଅଥବା ଘରେ ଶିବପୁରାଣ କଥା ଶୁଣିବା ପାଇଁ ଉତ୍ତମ ସ୍ଥାନ ନିର୍ମାଣ କରିବା ଉଚିତ । ଉଚ୍ଚସ୍ଥାନରେ କଥାମଣ୍ଡପ ନିର୍ମାଣ କରି ତାହାକୁ କଦଳୀ ସ୍ତମ୍ଭରେ ସୁଶୋଭିତ କରିବେ । ତାହାକୁ ଚତୁର୍ଦ୍ଦିଗରୁ ଫୁଲ, ଫଳ ଓ ଗ୍ରନ୍ଥୁଆ ଆଦିରେ ଅଳଂକୃତ କରି ଓ ଧ୍ୱଜା-ପତାକା ଇତ୍ୟାଦିରେ ସଜାଇ ସୁନ୍ଦର ତଥା ଶୋଭମାନ କରିଦେବେ । ଭଗବାନ ଶିବଙ୍କ ପ୍ରତି ଉତ୍ତମ ଭକ୍ତି ହେବା ଅତ୍ୟନ୍ତ ବାଞ୍ଛନୀୟ; କାରଣ ଭକ୍ତି ହିଁ ସମସ୍ତ ପ୍ରକାର ଆନନ୍ଦବିଧାନ କରେ । ପରମାତ୍ମା ଶିବଙ୍କ ପାଇଁ ଦିବ୍ୟ ଆସନଟିଏ ରଖିବେ ଏବଂ କଥାବାଚକଙ୍କ ପାଇଁ ମଧ୍ୟ ଏପରି ଗୋଟିଏ ଉତ୍ତମ ଆସନ ପ୍ରସ୍ତୁତ କରିବେ, ଯାହା ତାଙ୍କ ପାଇଁ ସୁଖକର ହେବ । ମୁନେ ! ନିୟମପୂର୍ବକ କଥା ଶ୍ରବଣକାରୀ ଶ୍ରୋତାଙ୍କ ପାଇଁ ମଧ୍ୟ ସୁନ୍ଦର ସ୍ଥାନର ବ୍ୟବସ୍ଥା କରିବା ଆବଶ୍ୟକ । ଅନ୍ୟ ଶ୍ରୋତାଙ୍କ ପାଇଁ ସାଧାରଣ ସ୍ଥାନ ରଖିବେ । ଯାହାଙ୍କ ମୁଖନିଃସୃତ ବାଣୀ ଦେହଧାରୀଙ୍କ ପାଇଁ କାମଧେନୁ ପରି ଅଭୀଷ୍ଟ ଫଳଦାୟୀ ହୋଇଥାଏ, ସେପରି ପୁରାଣବେତ୍ତା ବିଦ୍ୱାନ୍ ବକ୍ତାଙ୍କ ପ୍ରତି କଦାପି ତୁଚ୍ଛବୁଦ୍ଧି କରିବା ଉଚିତ ନୁହେଁ । ସଂସାରରେ ଜନ୍ମ ତଥା ଗୁଣ ଆଧାରରେ ଅନେକ ଗୁରୁ ମିଳି ପାରିବେ, କିନ୍ତୁ ସେମାନଙ୍କ ମଧ୍ୟରେ ପୁରାଣର ଜ୍ଞାତା ବିଦ୍ୱାନ୍ ହିଁ ପରମ ଗୁରୁରୂପେ ଗଣ୍ୟ ହୁଅନ୍ତି । ପୁରାଣବେତ୍ତା ବକ୍ତା ପବିତ୍ର, ଦକ୍ଷ, ଶାନ୍ତ, ଈର୍ଷ୍ୟାଦୋଷରୁ ମୁକ୍ତ, ସାଧୁ ଓ ଦୟାଳୁ ହୋଇଥିବା ଆବଶ୍ୟକ । ଏପରି ପ୍ରବଚନକୁଶଳ ବିଦ୍ୱାନ୍ ହିଁ ଏହି ପୁଣ୍ୟମୟୀ କଥା ପ୍ରବଚନ କରିବେ । ସୂର୍ଯ୍ୟୋଦୟରୁ ଆରମ୍ଭ କରି ସାଢ଼େତିନି ପ୍ରହର ପର୍ଯ୍ୟନ୍ତ ଶିବପୁରାଣ କଥା ଉତ୍ତମ ରୀତିରେ କହିବା ଉଚିତ । ମଧ୍ୟାହ୍ନକାଳରେ ଦୁଇଘଡ଼ି ବିରାମ ଦେବେ, ଯାହା ଫଳରେ ଲୋକେ ମଳମୂତ୍ର ବିସର୍ଜନ ନିମନ୍ତେ ଅବସର ପାଇପାରିବେ ।

ବ୍ୟାଖ୍ୟାନ ଆରମ୍ଭର ଦିନକ ପୂର୍ବରୁ ବ୍ରତ ଗ୍ରହଣ କରିବା ନିମନ୍ତେ ବକ୍ତା କ୍ଷୌରକର୍ମ ସମ୍ପନ୍ନ କରିଦେବେ । କଥା ଯେତେ ଦିନ ଚାଲିବ, ସେପର୍ଯ୍ୟନ୍ତ ପ୍ରାତଃକାଳରେ ସଂକ୍ଷେପରେ ନିତ୍ୟକର୍ମ ସମ୍ପନ୍ନ କରିବା ଉଚିତ । ବକ୍ତାଙ୍କ ପାଖରେ ସହାୟକରୂପେ ଆଉ ଜଣେ ସେହିପରି ବକ୍ତା ମଧ୍ୟ ରହିବା ବାଞ୍ଛନୀୟ । ସେ ମଧ୍ୟ ସମସ୍ତ ପ୍ରକାର ସଂଶୟ ନିବୃତ୍ତି ନିମନ୍ତେ ଓ ଲୋକଙ୍କୁ ବୁଝାଇବା ନିମନ୍ତେ ଯୋଗ୍ୟ ହୋଇଥିବା ଉଚିତ । ପୁରାଣକଥାରେ ଯେପରି କୌଣସି ବିଘ୍ନ ନ ଆସିବ, ସେଥିପାଇଁ ଗଣେଶଙ୍କୁ ପୂଜା କରିବେ । କଥାର ସ୍ୱାମୀ ଶିବଙ୍କୁ ଏବଂ ବିଶେଷ କରି ଶିବପୁରାଣ ଗ୍ରନ୍ଥକୁ ଭକ୍ତିଭାବରେ ପୂଜା କରିବେ । ତା'ପରେ ସୁଧୀ ଶ୍ରୋତା କାୟିକ ଓ ମାନସିକଭାବେ ଶୁଦ୍ଧ ଓ ପ୍ରସନ୍ନଚିତ୍ତ ହୋଇ ଆଦରରେ ଶିବପୁରାଣ କଥା ଶୁଣିବେ । ଯେଉଁ ବକ୍ତା ଓ ଶ୍ରୋତା ଅନେକ ପ୍ରକାର କର୍ମରେ ବିଭ୍ରାନ୍ତ ଥିବେ, କାମାଦି ଷଡ଼୍‌ବିକାରରେ ଗ୍ରସ୍ତ ହୋଇଥିବେ, ସ୍ତ୍ରୀ ପ୍ରତି ଆସକ୍ତ ହୋଇଥିବେ ଏବଂ ପାଷଣ୍ଡତାପୂର୍ଣ୍ଣ କଥା କହୁଥିବେ, ସେମାନେ ପୁଣ୍ୟର ଭାଗୀ ହୁଅନ୍ତି ନାହିଁ । ଯେଉଁମାନେ ଲୌକିକ ଚିନ୍ତା ତଥା ଧନ, ଗୃହ, ପୁତ୍ରାଦି ଚିନ୍ତା ଛାଡ଼ି କଥାରେ ମନ ଦିଅନ୍ତି, ସେଭଳି ଶୁଦ୍ଧବୁଦ୍ଧି ଲୋକଙ୍କୁ ଉତ୍ତମ ଫଳ ମିଳିଥାଏ । ଯେଉଁ ଶ୍ରୋତାମାନେ ଶ୍ରଦ୍ଧା ଓ ଭକ୍ତିରେ ଯୁକ୍ତ ହୋଇଥାନ୍ତି, ଅନ୍ୟ କର୍ମରେ ମନ ଦିଅନ୍ତି ନାହିଁ, ମୌନ, ପବିତ୍ର ଓ ଉଦ୍‌ବେଗଶୂନ୍ୟ ହୋଇଥାନ୍ତି, ସେମାନେ ହିଁ ପୁଣ୍ୟର ଭାଗୀ ହୋଇଥାନ୍ତି ।

ସୂତ କହୁଛନ୍ତି—ଶୌନକ ! ଏବେ ଶିବପୁରାଣ

ଶ୍ରବଣର ବ୍ରତ ଗ୍ରହଣ କରିଥିବା ବ୍ୟକ୍ତି ପାଇଁ ଯେଉଁ ସବୁ ନିୟମ ରହିଛି, ତାହା ଭକ୍ତିପୂର୍ବକ ଶୁଣ । ନିୟମପୂର୍ବକ ଏହି ଶ୍ରେଷ୍ଠ କଥାକୁ ଶ୍ରବଣ କଲେ ନିର୍ବିଘ୍ନରେ ଉତ୍ତମ ଫଳ ପ୍ରାପ୍ତ ହୋଇଥାଏ । ଯେଉଁମାନେ ଦୀକ୍ଷା ନେଇ ନାହାନ୍ତି, ସେମାନେ କଥା ଶ୍ରବଣର ଅଧିକାରୀ ନୁହନ୍ତି । ତେଣୁ ମୁନେ ! କଥା ଶ୍ରବଣ କରିବାକୁ ଚାହୁଁଥିବା ଲୋକେ ପ୍ରଥମେ ବକ୍ତାଙ୍କ ଠାରୁ ଦୀକ୍ଷା ଗ୍ରହଣ କରିବା ଉଚିତ । ଯେଉଁମାନେ ନିୟମପୂର୍ବକ କଥା ଶୁଣିବେ, ସେମାନଙ୍କ ପକ୍ଷେ ବ୍ରହ୍ମଚର୍ଯ୍ୟ ନିୟମରେ ରହିବା, ଭୂମି ଉପରେ ଶୋଇବା, ପତ୍ରରେ ଖାଇବା ଓ ପ୍ରତିଦିନ କଥା ସମାପ୍ତି ପରେ ହିଁ ଅନ୍ନ ଗ୍ରହଣ କରିବା ଆବଶ୍ୟକ । ଯାହାର ସାମର୍ଥ୍ୟ ଥିବ, ସେ ପୁରାଣ ଶେଷ ପର୍ଯ୍ୟନ୍ତ ଉପବାସ କରି ଶୁଦ୍ଧତାପୂର୍ବକ ଭକ୍ତିଭାବରେ ଏହି ଉତ୍ତମ ଶିବପୁରାଣ ଶ୍ରବଣ କରିବ । କଥାଶ୍ରବଣର ବ୍ରତ ଗ୍ରହଣ କରିଥିବା ବ୍ୟକ୍ତି ଦିନରେ ଥରେମାତ୍ର ହବିଷ୍ୟାନ୍ନ ଗ୍ରହଣ କରିବ । ଯେଉଁ ପ୍ରକାରେ କଥାଶ୍ରବଣର ନିୟମ ନିର୍ବିଘ୍ନରେ ପୂର୍ଣ୍ଣ ହୋଇ ପାରିବ, ସେହିପରି କରିବା ଉଚିତ । ଗରିଷ୍ଠ ଅନ୍ନ, ଡାଲି, ପୋଡ଼ା ଖାଦ୍ୟ, ଶିମ୍ବ, ମସୁର, ଭାବଦୂଷିତ ତଥା ବାସି ଅନ୍ନ ଭକ୍ଷଣ କରି କଦାପି କଥା ଶ୍ରବଣ କରିବା ଉଚିତ ନୁହେଁ । କଥା ଶ୍ରବଣ ପାଇଁ ବ୍ରତ ଗ୍ରହଣ କରିଥିବା ଶ୍ରୋତା ପିଆଜ, ରସୁଣ, ହେଙ୍ଗୁ, ଗାଜର, ମାଦକଦ୍ରବ୍ୟ ଓ ଆମିଷ ଶ୍ରେଣୀଭୁକ୍ତ ଖାଦ୍ୟ ବର୍ଜନ କରିବେ । ସେ କାମ-କ୍ରୋଧାଦି ଷଡ଼ବିକାର, ବ୍ରାହ୍ମଣନିନ୍ଦା ତଥା ପତିବ୍ରତା ଓ ସାଧୁସନ୍ଥଙ୍କ ନିନ୍ଦାକୁ ବର୍ଜନ କରିବେ । ସେ ପ୍ରତିଦିନ ସତ୍ୟ, ଶୌଚ, ଦୟା, ମୌନ, ସରଳତା, ବିନୟ ଓ ହାର୍ଦ୍ଦିକ ଉଦାରତା ଇତ୍ୟାଦି ଗୁଣକୁ ଆଦରି ନେବେ । ଶ୍ରୋତା ନିଷ୍କାମ ହୋଇଥାନ୍ତୁ ବା ସକାମ ହୋଇଥାନ୍ତୁ, ସେ ନିୟମପୂର୍ବକ କଥା ଶୁଣିବେ । ସକାମ ବ୍ୟକ୍ତି ନିଜ ଅଭୀଷ୍ଟ କାମନା ଅନୁରୂପ ଫଳ ପାଏ ଏବଂ ନିଷ୍କାମ ମନୁଷ୍ୟ ମୋକ୍ଷ ଲାଭ କରେ । ଦରିଦ୍ର, କ୍ଷୟରୋଗୀ, ପାପୀ, ଭାଗ୍ୟହୀନ ଓ ନିଃସନ୍ତାନ ଲୋକେ ମଧ୍ୟ ଏଇ ଉତ୍ତମ କଥାକୁ ଶୁଣିବା ଉଚିତ । ଯେଉଁ ନାରୀମାନେ କାକବନ୍ଧ୍ୟା ଇତ୍ୟାଦି ସାତଟି ଦୋଷରେ ଯୁକ୍ତ ଏବଂ ଯାହାଙ୍କର ଗର୍ଭସ୍ରାବ ହୋଇଯାଏ, ସେମାନେ ମଧ୍ୟ ଶିବପୁରାଣର କଥା ଶୁଣିବା ଉଚିତ । ମୁନେ ! ସ୍ତ୍ରୀ ବା ପୁରୁଷ ସମସ୍ତେ ଯତ୍ନପୂର୍ବକ ବିଧିବିଧାନରେ ଶିବପୁରାଣ କଥା ଶୁଣିବା ଉଚିତ ।

ମହର୍ଷେ ! ଏହି ପ୍ରକାରେ ଶିବପୁରାଣ କଥା ପଠନ ଓ ଶ୍ରବଣ ସମ୍ବନ୍ଧୀୟ ଯଜ୍ଞୋତ୍ସବ ସମାପ୍ତ ହୋଇଯିବା ପରେ ଶ୍ରୋତାମାନେ ଭକ୍ତିପୂର୍ବକ ଯତ୍ନର ସହିତ ଶିବପୂଜା ପରି ପୁରାଣଗ୍ରନ୍ଥକୁ ମଧ୍ୟ ପୂଜା କରିବା ଉଚିତ । ତା'ପରେ ବିଧିପୂର୍ବକ ବକ୍ତାଙ୍କୁ ମଧ୍ୟ ପୂଜା କରିବା ଆବଶ୍ୟକ । ପୁରାଣଗ୍ରନ୍ଥକୁ ନୂତନ ଓ ସୁନ୍ଦର ବସ୍ତ୍ରରେ ଆଚ୍ଛାଦିତ କରିବେ ଓ ତାହାକୁ ବାନ୍ଧିବା ପାଇଁ ସେଥିରେ ମଜବୁତ୍ ଡୋରୀ ଲଗାଇବେ । ଏହାପରେ ତାହାକୁ ବିଧିବତ୍ ପୂଜା କରିବେ । ମୁନିଶ୍ରେଷ୍ଠ ! ଏହିରୂପେ ମହାନ୍ ଉତ୍ସବ ସହିତ ଗ୍ରନ୍ଥକୁ ଓ ବକ୍ତାଙ୍କୁ ବିଧିବତ୍ ପୂଜା କରିବା ପରେ ବକ୍ତାଙ୍କ ସହାୟତା ପାଇଁ ଉପସ୍ଥିତ ପଣ୍ଡିତଙ୍କୁ ମଧ୍ୟ ସେହିପରି ଧନାଦି ଦ୍ୱାରା ବକ୍ତାଙ୍କ ଠାରୁ କିଛି କମ୍ ସତ୍କାର କରିବେ । ସେଠାକୁ ଆସିଥିବା ବ୍ରାହ୍ମଣଙ୍କୁ ଅନ୍ନ-ଧନ ଇତ୍ୟାଦି ଦାନ କରିବେ । ଏହାଛଡ଼ା ଗୀତ, ବାଦ୍ୟ, ନୃତ୍ୟ ଇତ୍ୟାଦିର ଆୟୋଜନ ସହିତ ମହାନ୍ ଉତ୍ସବ କରିବେ । ମୁନେ ! ଯଦି ଶ୍ରୋତା ଅନାସକ୍ତ ହୋଇଥାନ୍ତି, ତେବେ କଥା ସମାପ୍ତି ଦିନ ବିଶେଷତଃ ଶ୍ରୀରାମଙ୍କ ପ୍ରତି ଶିବ କହିଥିବା ଗୀତା (ପଦ୍ମପୁରାଣୋକ୍ତ ଶିବଗୀତା) ପାଠ କରିବା ଉଚିତ ।

ଯଦି ଶ୍ରୋତା ଗୃହସ୍ଥ ହୋଇଥାନ୍ତି, ତେବେ ସେହି ଶ୍ରବଣକର୍ମର ଶାନ୍ତି ନିମନ୍ତେ ଶୁଦ୍ଧ ହବିଷ୍ୟରେ ହୋମ କରିବା ଉଚିତ। ମୁନେ! ଏ ପୁରାଣ ଗାୟତ୍ରୀମୟ ଅଟେ। ଏଣୁ ରୁଦ୍ରସଂହିତାର ପ୍ରତ୍ୟେକ ଶ୍ଳୋକରେ ଆହୁତି ଦେବା ବିଧେୟ ଅଥବା ଗାୟତ୍ରୀ ମନ୍ତ୍ରରେ ଆହୁତି ଦେବା ଆବଶ୍ୟକ; ଏହା ସମ୍ଭବ ନ ହେଲେ ଶିବଙ୍କ ପଞ୍ଚାକ୍ଷର ମୂଳମନ୍ତ୍ରରେ ହୋମ କରିବା ଉଚିତ। ହୋମ କରିବାର ସାମର୍ଥ୍ୟ ନ ଥିଲେ, ଯଥାଶକ୍ତି ହବନୀୟ ହବିଷ୍ୟ ଦ୍ରବ୍ୟ ବ୍ରାହ୍ମଣଙ୍କୁ ଦାନ କରିଦେବେ। ନ୍ୟୂନାତିରିକ୍ତତାରୂପୀ ଦୋଷର ଶାନ୍ତି ପାଇଁ ଭକ୍ତିପୂର୍ବକ ଶିବସହସ୍ରନାମ ପାଠ ଅଥବା ଶ୍ରବଣ କରିବେ। ଏହାଦ୍ୱାରା ଯେ ସବୁକିଛି ସଫଳ ହୁଏ, ଏଥିରେ ସଂଶୟ ନାହିଁ; କାରଣ ତ୍ରିଲୋକରେ ଏହାଠାରୁ ବଳି କିଛି ନାହିଁ। କଥାଶ୍ରବଣସମ୍ବନ୍ଧୀୟ ବ୍ରତର ପୂର୍ଣ୍ଣତା ନିମନ୍ତେ ଏଗାର ଜଣ ବ୍ରାହ୍ମଣଙ୍କୁ ମଧୁମିଶ୍ରିତ ଖିରି ଭୋଜନ କରାଇବେ ଏବଂ ସେମାନଙ୍କୁ ଦକ୍ଷିଣା ଦେବେ।

ମୁନେ! ସମ୍ବଳ ଥିଲେ ତିନି ତୋଳା ସୁନାରେ ଗୋଟିଏ ସୁନ୍ଦର ସିଂହାସନ ନିର୍ମାଣ କରି ତା' ଉପରେ ଉତ୍ତମ ଅକ୍ଷରରେ ଲିଖିତ ଶିବପୁରାଣପୋଥିକୁ ବିଧିପୂର୍ବକ ସ୍ଥାପିତ କରିବେ। ତାହାକୁ ଆବାହନ ଇତ୍ୟାଦି ବିବିଧ ଉପଗ୍ରରରେ ପୂଜା କରି ଦକ୍ଷିଣା ଅର୍ପଣ କରିବେ। ତା'ପରେ ଜିତେନ୍ଦ୍ରିୟ ଆଗ୍ଚାର୍ଯ୍ୟଙ୍କୁ ବସ୍ତ୍ର, ଆଭୂଷଣ ଓ ଗନ୍ଧ ଇତ୍ୟାଦିରେ ପୂଜା କରି ଦକ୍ଷିଣା ସହିତ ସେହି ପୋଥି ବା ଗ୍ରନ୍ଥ ତାଙ୍କୁ ସମର୍ପି ଦେବେ। ଏହି ପ୍ରକାରେ ସୁଧୀ ଶ୍ରୋତା ଶିବଙ୍କ ସନ୍ତୋଷ ନିମନ୍ତେ ପୁରାଣ ଦାନ କରିବା ଉଚିତ। ଶୌନକ! ପୁରାଣ ଦାନ କଲେ ତାହାର ପ୍ରଭାବରେ ମନୁଷ୍ୟ ଭଗବାନ ଶିବଙ୍କ ଅନୁଗ୍ରହ ଲାଭ କରି ଭବବନ୍ଧନରୁ ମୁକ୍ତ ହୋଇଯାଏ। ଉପରୋକ୍ତ ବିଧିବିଧାନ ପାଳନ କଲେ ଶ୍ରୀସମ୍ପନ୍ନ ଶିବପୁରାଣ ସମସ୍ତ ଫଳପ୍ରଦାତା ଓ ଭୋଗ-ମୋକ୍ଷର ପ୍ରଦାତା ହୋଇଥାଏ।

ମୁନେ! ମୁଁ ତୁମକୁ ସମସ୍ତ ଅଭୀଷ୍ଟ ଫଳପ୍ରଦାତା ଶିବପୁରାଣମାହାତ୍ମ୍ୟ ଶୁଣାଇଦେଲି। ଏବେ ତୁମେ ଆଉ କ'ଣ ଶୁଣିବାକୁ ଗ୍ୱହୁଁଛ? ଶ୍ରୀମାନ୍ ଶିବପୁରାଣ ସମସ୍ତ ପୁରାଣ ମଧ୍ୟରେ ମସ୍ତକର ତିଳକରୂପେ ଗଣ୍ୟ ହୁଏ। ଏହା ଶିବଙ୍କର ଅତ୍ୟନ୍ତ ପ୍ରିୟ, ରମଣୀୟ ଓ ଭବରୋଗ ନିବାରଣକାରୀ। ଯେଉଁମାନେ ସର୍ବଦା ଶିବଙ୍କୁ ଧ୍ୟାନ କରନ୍ତି, ଯାହାଙ୍କ ବାଣୀ ଶିବଙ୍କ ଗୁଣର ସ୍ତୁତି କରେ ଓ ଯାହାଙ୍କ କର୍ଣ୍ଣ ତାଙ୍କ ଚରିତ ଶ୍ରବଣ କରେ, ଏ ଜୀବଜଗତରେ ସେଇମାନଙ୍କ ଜନ୍ମ ହିଁ ସଫଳ। ସେମାନେ ନିଶ୍ଚିତରୂପେ ସଂସାରସାଗରରୁ ପାର ହୋଇଯାଆନ୍ତି।* ସମସ୍ତ ପ୍ରକାର ଗୁଣବିଭେଦ ଯେଉଁ ପ୍ରଭୁଙ୍କ ସଚ୍ଚିଦାନନ୍ଦମୟ ରୂପକୁ ସ୍ପର୍ଶ କରିନାହାନ୍ତି, ଯେ ନିଜ ମହିମାରେ ଜଗତର ବାହାରେ ଓ ଭିତରେ ଭାସମାନ ତଥା ଯେ ମନର ବାହ୍ୟ ତଥା ଆଭ୍ୟନ୍ତରରେ ବାଣୀ ଓ ମନୋବୃତ୍ତିରୂପରେ ପ୍ରକାଶିତ ହୁଅନ୍ତି, ସେହି ଅନନ୍ତ ଆନନ୍ଦଘନରୂପୀ ପରମ ଶିବଙ୍କ ଠାରେ ମୁଁ ଶରଣ ପଶୁଛି। (ଅଧ୍ୟାୟ ୬-୭)

★★★



* ତେ ଜନ୍ମଜାତଃ ଖଲୁ ଜୀବଲୋକେ ଯେ ବୈ ସଦା ଧ୍ୟାୟନ୍ତି ବିଶ୍ୱନାଥମ୍।
ବାଣୀ ଗୁଣାନ୍ ସ୍ତୌତି କଥାଂ ଶୃଣୋତି ଶ୍ରୋତ୍ରଦ୍ୱୟଂ ତେ ଭବମୁତ୍ତରନ୍ତି॥

॥ ଓଁ ନମଃ ଶିବାୟ ॥



ଭଗବାନ ପଞ୍ଚାନନ

ଧ୍ୟାୟେନ୍ନିତ୍ୟଂ ମହେଶଂ ରଜତଗିରିନିଭଂ ଚାରୁଚନ୍ଦ୍ରାବତଂସଂ
ରତ୍ନାକଳ୍ପୋଜ୍ଜ୍ୱଳାଙ୍ଗଂ ପରଶୁମୃଗବରାଭୀତିହସ୍ତଂ ପ୍ରସନ୍ନମ୍ ।
ପଦ୍ମାସୀନଂ ସମନ୍ତାତ୍ ସ୍ତୁତମମରଗଣୈର୍ବ୍ୟାଘ୍ରକୃତ୍ତିଂ ବସାନଂ
ବିଶ୍ୱାଦ୍ୟଂ ବିଶ୍ୱବନ୍ଦ୍ୟଂ ନିଖିଳଭୟହରଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରମ୍ ॥

॥ ଶ୍ରୀପୁରାଣପୁରୁଷୋତ୍ତମାୟ ନମଃ ॥

॥ ଶ୍ରୀଚନ୍ଦ୍ରମୌଳିମହାଦେବାୟ ନମଃ ॥

# ଶ୍ରୀଶିବମହାପୁରାଣ

## ବିଦ୍ୟେଶ୍ୱରସଂହିତା

### ପ୍ରୟାଗରେ ସୂତଙ୍କୁ ଅବିଳମ୍ବେ ପାପନାଶ କରୁଥିବା ସାଧନ ବିଷୟରେ ମୁନିମାନଙ୍କର ପ୍ରଶ୍ନ

ଆଦ୍ୟନ୍ତମଙ୍ଗଳମଜାତସମାନଭାବ-

ମାର୍ଯ୍ୟଂ ତମୀଶମଜରାମରମାତ୍ମଦେବମ୍ ।

ପଞ୍ଚାନନଂ ପ୍ରବଳପଞ୍ଚବିନୋଦଶୀଳଂ

ସମ୍ଭାବୟେ ମନସି ଶଙ୍କରମମ୍ବିକେଶମ୍ ॥

ଯେ ଆଦି ଓ ଅନ୍ତରେ (ତଥା ମଧ୍ୟରେ) ନିତ୍ୟ ମଙ୍ଗଳମୟ, ଯାହାଙ୍କ ସମାନତା ଅଥବା ତୁଳନା କେଉଁଠି ନାହିଁ, ଯେ ଆତ୍ମାର ସ୍ୱରୂପକୁ ପ୍ରକାଶିତ କରୁଥିବା ଦେବତା (ପରମାତ୍ମା), ଯାହାଙ୍କର ପାଞ୍ଚଟି ମୁଖ ଅଛି ଏବଂ ଯେ ଅନାୟାସରେ ଜଗତର ସୃଷ୍ଟି, ପାଳନ, ସଂହାର, ଅନୁଗ୍ରହ ଓ ତିରୋଭାବରୂପୀ ପାଞ୍ଚଟି ପ୍ରବଳ କର୍ମ କରିଥାନ୍ତି, ସେହି ସର୍ବଶ୍ରେଷ୍ଠ ଅଜର ଅମର ଈଶ୍ୱର ଅମ୍ବିକାପତି ଶିବଙ୍କୁ ମୁଁ ମନ ମଧ୍ୟରେ ଚିନ୍ତନ କରୁଛି ।

ବ୍ୟାସ କହୁଛନ୍ତି—ଧର୍ମର ମହାନ୍ କ୍ଷେତ୍ର, ଗଙ୍ଗା-ଯମୁନାର ସଂଗମ ସ୍ଥଳ ତଥା ବ୍ରହ୍ମଲୋକର ମାର୍ଗସ୍ୱରୂପ ପରମ ପୁଣ୍ୟମୟ ପ୍ରୟାଗରେ ସତ୍ୟବ୍ରତରେ ତତ୍ପର ରହୁଥିବା ମହାତେଜସ୍ୱୀ ମହାଭାଗ ମହାତ୍ମା ମୁନିମାନେ ଗୋଟିଏ ବିଶାଳ ଜ୍ଞାନଯଜ୍ଞର ଆୟୋଜନ କଲେ । ସେହି ଜ୍ଞାନଯଜ୍ଞର ସମାଚାର ଶୁଣି ପୌରାଣିକଶିରୋମଣି ବ୍ୟାସଶିଷ୍ୟ ମହାମୁନି ସୂତ ସେଠାରେ ମୁନିମାନଙ୍କୁ ଦର୍ଶନ କରିବାକୁ ଆସିଲେ । ସୂତଙ୍କୁ ଆସୁଥିବାର ଦେଖି ମୁନିଗଣ ହର୍ଷରେ ଉତ୍ଫୁଲ୍ଲିତ ହୋଇ ଉଠିଲେ ଏବଂ ଅତ୍ୟନ୍ତ ପ୍ରସନ୍ନଚିତ୍ତରେ ତାଙ୍କୁ ବିଧିପୂର୍ବକ ସ୍ୱାଗତସତ୍କାର କଲେ । ତା'ପରେ ସେହି ପ୍ରସନ୍ନ ମହାତ୍ମାମାନେ ତାଙ୍କୁ ବିଧିବତ୍ ସ୍ତୁତି କରି ବିନୟପୂର୍ବକ ହାତ ଯୋଡ଼ି ଏହିପରି କହିଲେ—

''ହେ ସର୍ବଜ୍ଞ ବିଦ୍ୱାନ୍ ରୋମହର୍ଷଣ ! ଆପଣ ବଡ଼ ଭାଗ୍ୟବାନ୍; ଏଣୁ ଆପଣ ସାକ୍ଷାତ୍ ବ୍ୟାସଙ୍କ ମୁଖରୁ ନିଜ ପ୍ରସନ୍ନତା ନିମନ୍ତେ ସମସ୍ତ ପୁରାଣବିଦ୍ୟା ପ୍ରାପ୍ତ କରିଛନ୍ତି । ଏଣୁ ସମୁଦ୍ର ଯେପରି ବଡ଼ ବଡ଼ ମହାନ୍ ରତ୍ନର ଆଗାର, ଆପଣ ସେହିପରି ଆଶ୍ଚର୍ଯ୍ୟସ୍ୱରୂପ ପୁରାଣକଥାର ଭଣ୍ଡାର । ତ୍ରିଲୋକରେ ଭୂତ, ବର୍ତ୍ତମାନ ଓ ଭବିଷ୍ୟତ ତଥା ଆଉ ଯାହା କିଛି ଅଛି, ତାହା ଆପଣଙ୍କୁ ଅଜ୍ଞାତ ନାହିଁ । ଆପଣ ଆମର ବହୁତ ବଡ଼ ସୌଭାଗ୍ୟରୁ ଏହି ଯଜ୍ଞରେ ଦର୍ଶନ ଦେବା ନିମନ୍ତେ ଏଠାକୁ ଆସିଛନ୍ତି ଏବଂ ଏହି ବାହାନାରେ ଆମର କଲ୍ୟାଣ କରିବାକୁ ଚାହାନ୍ତି; କାରଣ ଆପଣଙ୍କ ଆଗମନ କଦାପି ବ୍ୟର୍ଥ ଯାଏ ନାହିଁ । ଆମେ ପୂର୍ବରୁ ମଧ୍ୟ ଆପଣଙ୍କ ଠାରୁ ଶୁଭାଶୁଭ ତତ୍ତ୍ୱର ପୂର୍ଣ୍ଣ ବର୍ଣ୍ଣନା ଶୁଣିଛୁ; କିନ୍ତୁ ତଦ୍ଦ୍ୱାରା ତୃପ୍ତି ମିଳି ନାହିଁ, ଆହୁରି ଶୁଣିବାକୁ ବାରମ୍ବାର ଇଚ୍ଛା ହେଉଛି ।

ସୁବୁଦ୍ଧି ସୂତ ମହାଭାଗ ! ଏବେ ଆମେ

ଗୋଟିଏ କଥା ଶୁଣିବାକୁ ଚାହୁଁଛୁ । ଯଦି ଆପଣଙ୍କର ଆମ ପ୍ରତି ଅନୁଗ୍ରହ ଅଛି, ତେବେ ଗୋପନୀୟ ହୋଇଥିଲେ ମଧ୍ୟ ଆପଣ ସେହି ବିଷୟ ବର୍ଣ୍ଣନା କରନ୍ତୁ । ଘୋର କଳିଯୁଗ ଆସିଲେ ମନୁଷ୍ୟ ପୁଣ୍ୟକର୍ମରୁ ଦୂରେଇ ରହିବେ, ଦୁରାଚାରରେ ଲିପ୍ତ ହୋଇଯିବେ, ସତ୍ୟଭାଷଣରୁ ବିମୁଖ ହୋଇଯିବେ, ଅନ୍ୟର ନିନ୍ଦାରେ ରତ ରହିବେ ଏବଂ ପରଧନ ହରିନେବାକୁ ଇଚ୍ଛା କରିବେ । ସେମାନଙ୍କ ମନ ପରନାରୀ ପ୍ରତି ଆସକ୍ତ ରହିବ ଏବଂ ସେମାନେ ଅନ୍ୟମାନଙ୍କ ପ୍ରତି ହିଂସା କରିବେ । ନିଜ ଶରୀରକୁ ହିଁ ଆତ୍ମା ମଣିବେ । ସେମାନେ ମୂଢ଼, ନାସ୍ତିକ ଓ ପଶୁବୁଦ୍ଧି ହେବେ ଏବଂ ପିତାମାତାଙ୍କ ପ୍ରତି ଦ୍ୱେଷ କରିବେ । ବ୍ରାହ୍ମଣ ଲୋଭରୂପୀ କୁମ୍ଭୀରର ଗ୍ରାସ ହୋଇଯିବେ । ସେମାନେ ବେଦ ବିକି ପେଟ ପୋଷିବେ, ଧନ ଉପାର୍ଜନ ନିମନ୍ତେ ବିଦ୍ୟା ଅଭ୍ୟାସ କରିବେ ଏବଂ ମଦରେ ମୋହିତ ହୋଇ ରହିବେ । ସେମାନେ ନିଜ ଜାତିର କର୍ମ ଛାଡ଼ିଦେବେ, ପ୍ରାୟ ଅନ୍ୟମାନଙ୍କୁ ଠକିବେ, ତ୍ରିକାଳ ସନ୍ଧ୍ୟା-ଉପାସନାରୁ ଦୂରରେ ରହିବେ ଏବଂ ବ୍ରହ୍ମଜ୍ଞାନବିରହିତ ହେବେ । ସମସ୍ତ କ୍ଷତ୍ରିୟ ମଧ୍ୟ ସ୍ୱଧର୍ମ ତ୍ୟାଗ କରିବେ । ସେମାନେ କୁସଙ୍ଗୀ, ପାପୀ ଓ ବ୍ୟଭିଚାରୀ ହେବେ । ସେମାନଙ୍କ ଠାରେ ଶୌର୍ଯ୍ୟ ରହିବ ନାହିଁ । ସେମାନେ କୁତ୍ସିତ ଚୌର୍ଯ୍ୟକର୍ମରେ ଜୀବିକା ଅର୍ଜନ କରିବେ, ଶୂଦ୍ର ପରି ବ୍ୟବହାର କରିବେ ଓ ସେମାନଙ୍କ ଚିତ୍ତ କାମର କିଙ୍କର ହୋଇ ରହିବ । ବୈଶ୍ୟ ସଂସ୍କାର-ଭ୍ରଷ୍ଟ, ସ୍ୱଧର୍ମତ୍ୟାଗୀ, କୁମାର୍ଗଗାମୀ, ଧନୋପାର୍ଜନ-ପରାୟଣ ହେବେ ଏବଂ ମାପତଉଲରେ ନିଜର କୁତ୍ସିତ ବୃତ୍ତିର ପରିଚୟ ଦେବେ । ଶୂଦ୍ରମାନେ ବ୍ରାହ୍ମଣଙ୍କ ଆଚାର ପ୍ରଦର୍ଶନରେ ତତ୍ପର ହେବେ, ସେମାନଙ୍କ ଆକୃତି ଉଜ୍ଜ୍ୱଳ ହେବ ଅର୍ଥାତ୍ ସେମାନେ ଆପଣା କର୍ମ-ଧର୍ମ ଛାଡ଼ି ଉଜ୍ଜ୍ୱଳ ବେଶଭୂଷାରେ ବିଭୂଷିତ ହୋଇ ବୃଥାରେ ଭ୍ରମଣ କରିବେ । ସେମାନେ ସ୍ୱଭାବତଃ ସ୍ୱଧର୍ମ ପରିତ୍ୟାଗୀ ହେବେ । ସେମାନଙ୍କ ବିଚାର ଧର୍ମର ପ୍ରତିକୂଳ ହେବ । ସେମାନେ କୁଟିଳ ଓ ଦ୍ୱିଜନିନ୍ଦୁକ ହେବେ । ଯଦି ଧନୀ ହେବେ, ତେବେ କୁକର୍ମରେ ରତ ରହିବେ; ବିଦ୍ୱାନ୍ ହେଲେ ବାଦ-ବିବାଦ କରିବେ; ନିଜକୁ କୁଳୀନ ମଣି ଚାରିବର୍ଣ୍ଣ ସହିତ ବୈବାହିକ ସମ୍ବନ୍ଧ ସ୍ଥାପିତ କରିବେ ଏବଂ ସମସ୍ତ ବର୍ଣ୍ଣକୁ ନିଜ ସମ୍ପର୍କରେ ଭ୍ରଷ୍ଟ କରିଦେବେ । ସେମାନେ ନିଜ ଅଧିକାର ସୀମାର ବାହାରକୁ ଯାଇ ଦ୍ୱିଜୋଚିତ ସତ୍‌କର୍ମର ଅନୁଷ୍ଠାନ କରିବେ । କଳିଯୁଗର ନାରୀମାନେ ପ୍ରାୟ ସଦାଚାରରୁ ଭ୍ରଷ୍ଟ ହେବେ ଓ ସ୍ୱାମୀକୁ ଅପମାନିତ କରିବେ । ଶାଶୁ-ଶ୍ୱଶୁରଙ୍କ ପ୍ରତି ଦ୍ରୋହ କରିବେ । କାହାକୁ ଭୟ କରିବେ ନାହିଁ । ମଳିନ ଭୋଜନ କରିବେ । କୁତ୍ସିତ ହାବଭାବରେ ତତ୍ପର ହେବେ । ସେମାନଙ୍କର ଶାଳୀନତା ଓ ସ୍ୱଭାବ ବହୁତ ଖରାପ ହେବ । ସେମାନେ ନିଜ ସ୍ୱାମୀସେବାରୁ ବିମୁଖ ରହିବେ । ମହାତ୍ମା ସୂତ ! ଭ୍ରଷ୍ଟବୁଦ୍ଧି ଓ ସ୍ୱଧର୍ମ-ପରିତ୍ୟାଗୀ ଲୋକଙ୍କୁ ଇହଲୋକ ଓ ପରଲୋକରେ ଉତ୍ତମ ଗତି କିପରି ମିଳି ପାରିବ—ଏହି ଚିନ୍ତାରେ ଆମର ମନ ସର୍ବଦା ବ୍ୟାକୁଳ ରହୁଛି । ପରୋପକାର ସମାନ ଅନ୍ୟ କୌଣସି ଧର୍ମ ନାହିଁ । ତେଣୁ କରୁଣା କରି ଏଭଳି ଗୋଟିଏ ଛୋଟିଆ ଉପାୟ କୁହନ୍ତୁ, ଯଦ୍ୱାରା ସମସ୍ତ ପାପର ଅବିଳମ୍ବେ ବିନାଶ ଘଟିବ; କାରଣ ଆପଣ ସମସ୍ତ ସିଦ୍ଧାନ୍ତର ଜ୍ଞାତା ।

ବ୍ୟାସ କହୁଛନ୍ତି—ସେହି ଭାବିତାତ୍ମା ମୁନିଗଣଙ୍କ ମୁଖରୁ ଏଭଳି କଥା ଶୁଣି ସୂତ ମନେ ମନେ ଶିବଙ୍କୁ ସ୍ମରଣ କରି ସେମାନଙ୍କୁ ଏହିପରି କହିଲେ—

(ଅଧ୍ୟାୟ ୧)

★★★

# ଶିବପୁରାଣର ପରିଚୟ

ସୂତ କହୁଛନ୍ତି–ହେ ସାଧୁ ମହାତ୍ମାଗଣ ! ଆପଣମାନେ ବହୁତ ଉତ୍ତମ କଥା ପଚାରିଛନ୍ତି । ଆପଣଙ୍କର ଏ ପ୍ରଶ୍ନ ତ୍ରିଲୋକର ହିତସାଧନ କରିବ । ଆପଣମାନଙ୍କ ସ୍ନେହ ହେତୁ ମୁଁ ଗୁରୁଦେବ ବ୍ୟାସଙ୍କୁ ସ୍ମରଣ କରି ଏହି ବିଷୟରେ ବର୍ଣ୍ଣନା କରିବି । ଆପଣମାନେ ଆଦରରେ ଶ୍ରବଣ କରନ୍ତୁ । ସବୁଠାରୁ ଉତ୍ତମ ହେଉଛି ଶିବପୁରାଣ । ଏହା ବେଦାନ୍ତର ସାରସର୍ବସ୍ୱ ଏବଂ ଏହା ବକ୍ତା ଓ ଶ୍ରୋତାଙ୍କୁ ସମସ୍ତ ପାପରାଶିରୁ ଉଦ୍ଧାର କରିଥାଏ । କେବଳ ଏତିକି ନୁହେଁ, ଏହା ପରଲୋକରେ ପରମାର୍ଥ ମଧ୍ୟ ପ୍ରଦାନ କରିଥାଏ ଏବଂ କଳିର କଳ୍ମଷରାଶିକୁ ବିନାଶ କରିଥାଏ । ଏଥିରେ ଭଗବାନ ଶିବଙ୍କର ଉତ୍ତମ ଯଶ ବର୍ଣ୍ଣିତ ହୋଇଛି । ହେ ବ୍ରାହ୍ମଣବୃନ୍ଦ ! ଏହା ଧର୍ମ, ଅର୍ଥ, କାମ ଓ ମୋକ୍ଷ–ଏ ଚାରିଟି ପୁରୁଷାର୍ଥ ପ୍ରଦାନ କରିଥାଏ । ଏହି ପୁରାଣ ସଦା ନିଜ ପ୍ରଭାବ ଦୃଷ୍ଟିରୁ ବୃଦ୍ଧି ପ୍ରାପ୍ତ ହେଉଛି । ବିପ୍ରବୃନ୍ଦ ! ଏହି ସର୍ବୋତ୍ତମ ଶିବପୁରାଣର ଅଧ୍ୟୟନ ମାତ୍ରକେ କଳିଯୁଗର ପାପାସକ୍ତ ଜୀବ ଶ୍ରେଷ୍ଠତମ ଗତିକୁ ପ୍ରାପ୍ତ ହେବେ । ଯେପର୍ଯ୍ୟନ୍ତ ଶିବପୁରାଣ ଉଦିତ ନ ହୋଇଛି, କଳିଯୁଗର ବଡ଼ ବଡ଼ ଉତ୍ପାତ ସେପର୍ଯ୍ୟନ୍ତ ଜଗତରେ ନିର୍ଭୟ ହୋଇ ବିଚରଣ କରୁଥିବେ । ଏହାକୁ ବେଦତୁଲ୍ୟ ଧରାଯାଇଛି । ଏହି ବେଦକଳ୍ପ ପୁରାଣକୁ ସର୍ବପ୍ରଥମେ ଭଗବାନ ଶିବ ହିଁ ପ୍ରଣୟନ କରିଥିଲେ । ବିଦ୍ୟେଶ୍ୱରସଂହିତା, ରୁଦ୍ରସଂହିତା, ବିନାୟକସଂହିତା, ଉମାସଂହିତା, ମାତୃସଂହିତା, ଏକାଦଶରୁଦ୍ରସଂହିତା, କୈଳାସସଂହିତା, ଶତରୁଦ୍ରସଂହିତା, କୋଟିରୁଦ୍ରସଂହିତା, ସହସ୍ରକୋଟିରୁଦ୍ରସଂହିତା, ବାୟବୀୟସଂହିତା ଓ ଧର୍ମସଂହିତା–ଏହିରୂପେ ବାରଟି ଭାଗରେ ଉକ୍ତ ପୁରାଣଟି ବିଭକ୍ତ । ଏହି ବାରଟି ସଂହିତାକୁ ଅତ୍ୟନ୍ତ ପୁଣ୍ୟମୟୀ ଧରାଯାଇଛି । ହେ ବ୍ରାହ୍ମଣବୃନ୍ଦ ! ଏବେ ମୁଁ ସେଗୁଡ଼ିକର ଶ୍ଳୋକସଂଖ୍ୟା କହୁଛି, ଆପଣମାନେ ଆଦରପୂର୍ବକ ଶୁଣନ୍ତୁ । ବିଦ୍ୟେଶ୍ୱରସଂହିତାରେ ଦଶହଜାର ଶ୍ଳୋକ ଅଛି । ରୁଦ୍ରସଂହିତା, ବିନାୟକସଂହିତା, ଉମାସଂହିତା ଓ ମାତୃସଂହିତା–ପ୍ରତ୍ୟେକରେ ଆଠ ହଜାରେ ଲେଖାଏଁ ଶ୍ଳୋକ ଅଛି । ବ୍ରାହ୍ମଣଗଣ ! ଏକାଦଶରୁଦ୍ରସଂହିତାରେ ତେର ହଜାର, କୈଳାସସଂହିତାରେ ଛଅ ହଜାର, ଶତରୁଦ୍ରସଂହିତାରେ ତିନି ହଜାର, କୋଟିରୁଦ୍ରସଂହିତାରେ ନଅ ହଜାର, ସହସ୍ରକୋଟିରୁଦ୍ରସଂହିତାରେ ଏଗାର ହଜାର, ବାୟବୀୟସଂହିତାରେ ଚାରି ହଜାର ଓ ଧର୍ମସଂହିତାରେ ବାର ହଜାର ଶ୍ଳୋକ ରହିଛି । ଏହିରୂପେ ମୂଳ ଶିବପୁରାଣର ମୋଟ ଶ୍ଳୋକସଂଖ୍ୟା ହେଲା ଏକଲକ୍ଷ । ମାତ୍ର ବ୍ୟାସଦେବ ତାହାକୁ ଚବିଶ ହଜାର ଶ୍ଳୋକରେ ସଂକ୍ଷିପ୍ତ କରିଦେଇଛନ୍ତି । ପୁରାଣମାନଙ୍କ କ୍ରମସଂଖ୍ୟା ଦୃଷ୍ଟିରୁ ଉକ୍ତ ଶିବପୁରାଣର ସ୍ଥାନ ହେଉଛି ଚତୁର୍ଥ । ଏଥିରେ ସାତଟି ସଂହିତା ଅଛି ।

ପୂର୍ବକାଳରେ ଭଗବାନ ଶିବ ଶହେକୋଟି ଶ୍ଳୋକରେ ଗୋଟିଏ ପୁରାଣଗ୍ରନ୍ଥ ରଚିଥିଲେ । ସୃଷ୍ଟିର ଆରମ୍ଭରେ ରଚିତ ସେହି ପୁରାଣସାହିତ୍ୟ ଅତ୍ୟନ୍ତ ବିସ୍ତୃତ ଥିଲା । ଦ୍ୱାପରାଦି ଯୁଗରେ ଦ୍ୱୈପାୟନ (ବ୍ୟାସ) ଆଦି ମହର୍ଷିମାନେ ଯେବେ ପୁରାଣକୁ ଅଠର ଭାଗରେ ବିଭକ୍ତ କରିଦେଲେ, ସେତେବେଳେ ସମସ୍ତ ପୁରାଣର ସଂକ୍ଷିପ୍ତ ରୂପ କେବଳ ଚାରିଲକ୍ଷ ଶ୍ଳୋକରେ ସୀମିତ ହୋଇଗଲା । ସେତେବେଳେ ସେ ଶିବପୁରାଣକୁ ଚବିଶ ହଜାର ଶ୍ଳୋକରେ ପ୍ରତିପାଦିତ କଲେ । ଏହା ହିଁ ଉକ୍ତ ପୁରାଣର ଶ୍ଳୋକସଂଖ୍ୟା । ଏହି ବେଦତୁଲ୍ୟ ପୁରାଣ ସାତଟି ସଂହିତାରେ ବିଭକ୍ତ । ଏହାର ପ୍ରଥମ ସଂହିତାର ନାମ ବିଦ୍ୟେଶ୍ୱରସଂହିତା,

ଦ୍ୱିତୀୟଟି ରୁଦ୍ରସଂହିତା, ତୃତୀୟଟି ଶତରୁଦ୍ରସଂହିତା, ଚତୁର୍ଥଟି କୋଟିରୁଦ୍ରସଂହିତା, ପଞ୍ଚମଟି ଉମାସଂହିତା, ଷଷ୍ଠର ନାମ କୈଳାସସଂହିତା ଓ ସପ୍ତମର ନାମ ହେଲା ବାୟବୀୟସଂହିତା । ଏହିରୂପେ ସାତ ସଂହିତାରେ ଯୁକ୍ତ ଉକ୍ତ ଦିବ୍ୟ ଶିବପୁରାଣ ବେଦତୁଲ୍ୟ ପ୍ରାମାଣିକ ତଥା ସବୁଠାରୁ ଉତ୍କୃଷ୍ଟ ଗତି ପ୍ରଦାନ କରିଥାଏ । ଉକ୍ତ ନିର୍ମଳ ଶିବପୁରାଣ ଭଗବାନ ଶିବଙ୍କ ଦ୍ୱାରା ହିଁ ପ୍ରତିପାଦିତ । ଏହାକୁ ଶୈବଶିରୋମଣି ଭଗବାନ ବ୍ୟାସ ସଂକ୍ଷେପରେ ସଂକଳିତ କରିଛନ୍ତି । ଏହା ସମସ୍ତ ଜୀବସମୁଦାୟ ପାଇଁ ଉପକାରୀ, ତ୍ରିବିଧ ତାପ ନାଶକାରୀ, ଅତୁଳନୀୟ ଏବଂ ସତ୍‌ପୁରୁଷଙ୍କ ନିମନ୍ତେ କଲ୍ୟାଣପ୍ରଦ । ଏଥିରେ ବେଦାନ୍ତ-ବିଜ୍ଞାନମୟ, ପ୍ରଧାନ ତଥା ନିଷ୍କପଟ (ନିଷ୍କାମ) ଧର୍ମର ପ୍ରତିପାଦନ ହୋଇଛି । ଏହି ପୁରାଣ ଈର୍ଷ୍ୟାଶୂନ୍ୟ ବିଦ୍ୱାନ୍‌ଙ୍କ ନିମନ୍ତେ ଜାଣିବାର ବିଷୟ । ଏଥିରେ ଶ୍ରେଷ୍ଠ ମନ୍ତ୍ରସମୂହ ସଂକଳିତ ହୋଇଛି ତଥା ତ୍ରିବର୍ଗ (ଧର୍ମ, ଅର୍ଥ ଓ କାମ) ପ୍ରାପ୍ତିର ସାଧନ ବର୍ଣ୍ଣିତ ହୋଇଛି । ଶିବପୁରାଣ ସମସ୍ତ ପୁରାଣ ମଧ୍ୟରେ ଶ୍ରେଷ୍ଠ । ବେଦ-ବେଦାନ୍ତରେ ବେଦ୍ୟରୂପରେ ବିଳସିତ ପରମ ବସ୍ତୁ ପରମାତ୍ମାଙ୍କ ବିଷୟ ହିଁ ଏଥିରେ ଗାନ କରାଯାଇଛି । ଯେ ଅତି ଆଦରରେ ଏହାକୁ ପଢ଼େ ଓ ଶୁଣେ, ସେ ଭଗବାନ ଶିବଙ୍କର ପ୍ରିୟ ହୋଇ ପରମ ଗତି ଲାଭ କରେ ।

(ଅଧ୍ୟାୟ ୨)



## ସାଧ୍ୟ-ସାଧନ ଇତ୍ୟାଦିର ବିଗ୍ଭର ଏବଂ ଶ୍ରବଣ, କୀର୍ତ୍ତନ ଓ ମନନର ଶ୍ରେଷ୍ଠତା ପ୍ରତିପାଦନ

ବ୍ୟାସ କହୁଛନ୍ତି—ସୂତଙ୍କ ବଚନ ଶୁଣି ମହର୍ଷିମାନେ କହିଲେ—''ଏବେ ଆପଣ ଆମକୁ ବେଦାନ୍ତସାରସର୍ବସ୍ୱ ଅଦ୍ଭୁତ ଶିବପୁରାଣର କଥା କହନ୍ତୁ ।''

ସୂତ କହୁଛନ୍ତି—ଆପଣ ସମସ୍ତେ ରୋଗ-ଶୋକରହିତ କଲ୍ୟାଣମୟ ଶିବଙ୍କୁ ସ୍ମରଣ କରି ବେଦର ସାରତତ୍ତ୍ୱରୁ ପ୍ରକଟ ହୋଇଥିବା ଏହି ପୁରାଣପ୍ରବର ଶିବପୁରାଣର କଥା ଶୁଣନ୍ତୁ । ଶିବପୁରାଣରେ ଭକ୍ତି, ଜ୍ଞାନ ଓ ବୈରାଗ୍ୟ ବିଷୟରେ ପ୍ରୀତିପୂର୍ବକ ଗାନ କରାଯାଇଛି ଏବଂ ଏଥିରେ ବେଦାନ୍ତବେଦ୍ୟ ସଦ୍‌ବସ୍ତୁର ବିଶେଷରୂପେ ପ୍ରତିପାଦନ ହୋଇଛି । ଚଳିତ କଳ୍ପରେ ଯେବେ ସୃଷ୍ଟିକର୍ମ ଆରମ୍ଭ ହୋଇଥିଲା, ସେତେବେଳେ ଛଅ କୁଳର ମହର୍ଷି ପରସ୍ପର ମଧ୍ୟରେ ବାଦବିବାଦ କରି କହିଲେ—''ଅମୁକ ବସ୍ତୁ ସବୁଠୁ ଶ୍ରେଷ୍ଠ ଓ ଅମୁକ ବସ୍ତୁ ଶ୍ରେଷ୍ଠ ନୁହେଁ ।'' ସେମାନଙ୍କର ଏହି ବିବାଦ ବହୁତ ବଢ଼ିଗଲା । ଶେଷରେ ସେମାନେ ନିଜ ସନ୍ଦେହର ସମାଧାନ ପାଇଁ ସୃଷ୍ଟିକର୍ତ୍ତା ଅବିନାଶୀ ବ୍ରହ୍ମାଙ୍କ ନିକଟକୁ ଗଲେ ଏବଂ କର ଯୋଡ଼ି ବିନୟପୂର୍ବକ କହିଲେ—''ପ୍ରଭୋ ! ଆପଣ ସମଗ୍ର ଜଗତକୁ ଧାରଣ-ପୋଷଣ କରନ୍ତି ଓ ସମସ୍ତ କାରଣର ମଧ୍ୟ କାରଣ ଅଟନ୍ତି । ଆମେ ଜାଣିବାକୁ ଗ୍ଭହୁଁଛୁ ଯେ ସମସ୍ତ ତତ୍ତ୍ୱର ଊର୍ଦ୍ଧ୍ୱରେ ଯେଉଁ ପରାତ୍ପର ପୁରାଣପୁରୁଷ ଅଛନ୍ତି, ସେ କିଏ?''

ବ୍ରହ୍ମା କହିଲେ—ଯେଉଁଠାରୁ ମନ ସମେତ ବାଣୀ ତାଙ୍କୁ ପାଇ ନ ପାରି ଫେରି ଆସେ ତଥା ଯାହାଙ୍କ ଠାରୁ ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଇନ୍ଦ୍ରଙ୍କ ସମେତ ସମଗ୍ର ଜଗତ ଭୂତ ଓ ଇନ୍ଦ୍ରିୟଗଣଙ୍କ ସହ ପ୍ରଥମେ ପ୍ରକଟ ହୋଇଛି, ସେହି ଦେବତା ହେଉଛନ୍ତି ମହାଦେବ । ସେ ସର୍ବଜ୍ଞ ଏବଂ ସମସ୍ତ ଜଗତର

ସ୍ୱାମୀ । ସେ ହିଁ ସବୁଠାରୁ ଉତ୍କୃଷ୍ଟ । ଭକ୍ତିବଳରେ ହିଁ ତାଙ୍କର ସାକ୍ଷାତ୍କାର ହୋଇଥାଏ । ଅନ୍ୟ କୌଣସି ଉପାୟରେ କେଉଁଠି ତାଙ୍କର ଦର୍ଶନ ମିଳେ ନାହିଁ । ରୁଦ୍ର, ହରି, ହର ତଥା ଅନ୍ୟାନ୍ୟ ଦେବେଶ୍ୱର ସଦା ଉତ୍ତମ ଭକ୍ତିଭାବରେ ତାଙ୍କର ଦର୍ଶନ ପାଇବାକୁ ଲାଳାୟିତ ରହନ୍ତି । ଭଗବାନ ଶିବଙ୍କ ପ୍ରତି ଭକ୍ତି ହେଲେ ମନୁଷ୍ୟ ସଂସାରବନ୍ଧନରୁ ମୁକ୍ତ ହୋଇଯାଏ । ଦେବତାଙ୍କ କୃପାପ୍ରସାଦରେ ହିଁ ତାଙ୍କ ପ୍ରତି ଭକ୍ତି ହୁଏ ଏବଂ ଭକ୍ତିବଳରେ ହିଁ ଦେବତାଙ୍କ କୃପାପ୍ରସାଦ ପ୍ରାପ୍ତ ହୁଏ । ଯେପରି ମଞ୍ଜିରୁ ଗଛ ଏବଂ ଗଛରୁ ମଞ୍ଜି ହୁଏ, ଏହା ଠିକ୍ ସେହିପରି । ଏଣୁ ତୁମେସବୁ ବ୍ରହ୍ମର୍ଷି ଶିବଙ୍କ କୃପାପ୍ରସାଦ ଲାଭ କରିବାକୁ ପୃଥିବୀପୃଷ୍ଠକୁ ଯାଇ ସେଠାରେ ଗୋଟିଏ ସହସ୍ରବର୍ଷବ୍ୟାପୀ ବିଶାଳ ଯଜ୍ଞର ଆୟୋଜନ କର । ଯଜ୍ଞର ସ୍ୱାମୀ ଭଗବାନ ଶିବଙ୍କ କୃପାରୁ ବେଦୋକ୍ତ ବିଦ୍ୟାର ସାରଭୂତ ସାଧ୍ୟ-ସାଧନର ଜ୍ଞାନ ହୋଇଥାଏ ।

ଶିବପଦପ୍ରାପ୍ତି ହିଁ ସାଧ୍ୟ; ଶିବଙ୍କ ସେବା ହିଁ ସାଧନ ତଥା ତାଙ୍କରି ପ୍ରସାଦରୁ ଯେଉଁ ବ୍ୟକ୍ତି ନିତ୍ୟ-ନୈମିତ୍ତିକ ଇତ୍ୟାଦି ଫଳରୁ ନିଃସ୍ପୃହ ହୋଇଯାଏ, ସେ ହିଁ ସାଧକ । ବେଦୋକ୍ତ କର୍ମର ଅନୁଷ୍ଠାନ କରି ତାହାର ମହାନ୍ ଫଳକୁ ଶିବଙ୍କ ଚରଣରେ ସମର୍ପିତ କରିଦେବା ହିଁ ପରମେଶ୍ୱର ପ୍ରାପ୍ତି । ତାହା ହିଁ ସାଲୋକ୍ୟାଦି କ୍ରମରେ ପ୍ରାପ୍ତ ହେଉଥିବା ମୁକ୍ତି । ଭକ୍ତି ଅନୁସାରେ ହିଁ ସମସ୍ତଙ୍କୁ ଉତ୍କୃଷ୍ଟ ଫଳପ୍ରାପ୍ତି ହୁଏ । ସେହି ଭକ୍ତିର ଅନେକ ପ୍ରକାର ସାଧନ ରହିଛି, ତାହାକୁ ସାକ୍ଷାତ୍ ମହେଶ୍ୱର ହିଁ ପ୍ରତିପାଦନ କରିଛନ୍ତି । ସେଥିମଧ୍ୟରୁ ମୁଁ ସାରଭୂତ ସାଧନକୁ ସଂକ୍ଷିପ୍ତ କରି କହୁଛି । କର୍ଣ୍ଣ ଦ୍ୱାରା ଭଗବାନଙ୍କ ନାମ, ଗୁଣ ଓ ଲୀଳାର ଶ୍ରବଣ, ବାଣୀ ଦ୍ୱାରା ସେଗୁଡ଼ିକର କୀର୍ତ୍ତନ ଏବଂ ମନ ଦ୍ୱାରା ସେଗୁଡ଼ିକର ମନନ—ଏ ତିନୋଟିକୁ ମହାନ୍ ସାଧନ କୁହାଯାଇଛି* । ତାତ୍ପର୍ଯ୍ୟ ହେଲା— ମହେଶ୍ୱରଙ୍କ ଗାଥା ହିଁ ଶ୍ରବଣ, କୀର୍ତ୍ତନ ଓ ମନନ କରିବାର ଯୋଗ୍ୟ—ଏହି ଶ୍ରୁତିବାକ୍ୟ ଆମ ସମସ୍ତଙ୍କ ପାଇଁ ପ୍ରମାଣ ଅଟେ । ଯଦି ଆପଣମାନେ ସମସ୍ତ ମନୋରଥ ସିଦ୍ଧି ଚାହୁଁଛନ୍ତି, ତେବେ ଏହି ସାଧନ ଦ୍ୱାରା ପରମ ସାଧ୍ୟକୁ ପ୍ରାପ୍ତ ହୁଅନ୍ତୁ । ଲୋକେ ପ୍ରତ୍ୟକ୍ଷ ବସ୍ତୁକୁ ଆଖିରେ ଦେଖି ସେଥିରେ ପ୍ରବୃତ୍ତ ହୁଅନ୍ତି । ମାତ୍ର ଯେଉଁ ବସ୍ତୁକୁ କଦାପି ପ୍ରତ୍ୟକ୍ଷ ଦେଖାଯାଇ ନ ଥାଏ, ତାହାକୁ ଶ୍ରବଣେନ୍ଦ୍ରିୟ ଦ୍ୱାରା ଶୁଣି ବା ଜାଣି ମନୁଷ୍ୟ ତାହାକୁ ପାଇବାକୁ ଚେଷ୍ଟା କରେ । ତେଣୁ ପ୍ରଥମ ସାଧନ ହେଲା ଶ୍ରବଣ । ଶ୍ରବଣ ଦ୍ୱାରା ଗୁରୁମୁଖରୁ ତତ୍ତ୍ୱକୁ ଶୁଣି ଶ୍ରେଷ୍ଠବୁଦ୍ଧି ବିଦ୍ୱାନ୍ ମନୁଷ୍ୟ ଅନ୍ୟ ସାଧନ-କୀର୍ତ୍ତନ ଓ ମନନକୁ ସିଦ୍ଧ କରିବା ଉଚିତ । କ୍ରମଶଃ ମନନ ପର୍ଯ୍ୟନ୍ତ ଏହି ସାଧନକୁ ଭଲଭାବରେ ସାଧିତ କରିବାପରେ ତଦ୍ଦ୍ୱାରା ସାଲୋକ୍ୟାଦି କ୍ରମରେ ଭଗବାନ ଶିବଙ୍କ ସଂଯୋଗ ପ୍ରାପ୍ତ ହୁଏ । ପ୍ରଥମେ ସମସ୍ତ ଅଙ୍ଗର ରୋଗ ନଷ୍ଟ ହୋଇଯାଏ, ତା'ପରେ ସମସ୍ତ ପ୍ରକାର ଲୌକିକ ଆନନ୍ଦ ମଧ୍ୟ ବିଲୀନ ହୋଇଯାଏ ।

ଭଗବାନ ଶିବଙ୍କ ପୂଜା, ତାଙ୍କର ନାମଜପ, ତାଙ୍କର ଗୁଣ, ରୂପ, ବିଳାସ ଓ ନାମ ବିଷୟରେ ଯୁକ୍ତିପରାୟଣ ଚିତ୍ତଦ୍ୱାରା ଯେଉଁ ନିରନ୍ତର ପରିଶୋଧନ ବା ଚିନ୍ତନ ହୁଏ, ତାହାକୁ ମନନ କୁହାଯାଏ । ତାହା ମହେଶ୍ୱରଙ୍କ କୃପାଦୃଷ୍ଟି ଦ୍ୱାରା ଉପଲବ୍ଧ ହୁଏ । ତାହାକୁ ସମସ୍ତ ଶ୍ରେଷ୍ଠ ସାଧନ ମଧ୍ୟରେ ପ୍ରଧାନ କୁହାଯାଇଛି ।

ସୂତ କହୁଛନ୍ତି—ମୁନୀଶ୍ୱରଗଣ! ଏହି ସାଧନର

* ଶ୍ରୋତ୍ରେଣ ଶ୍ରବଣଂ ତସ୍ୟ ବଚସା କୀର୍ତ୍ତନଂ ତଥା । ମନସା ମନନଂ ତସ୍ୟ ମହାସାଧନମୁଚ୍ୟତେ ॥
(ଶି. ପୁ. ବିଦ୍ୟେ. ୩ । ୨୧-୨୨)

ମାହାତ୍ମ୍ୟ ବର୍ଣ୍ଣନା ପ୍ରସଙ୍ଗରେ ମୁଁ ଆପଣମାନଙ୍କ ଆଗରେ ଗୋଟିଏ ପ୍ରାଚୀନ ବୃତ୍ତାନ୍ତ କହିବି, ତାହା ଧ୍ୟାନ ଦେଇ ଶୁଣନ୍ତୁ । ପୂର୍ବକାଳର କଥା; ପରାଶର ମୁନିଙ୍କ ପୁତ୍ର ମୋର ଗୁରୁ ବ୍ୟାସଦେବ ସରସ୍ୱତୀ ନଦୀର ସୁନ୍ଦର ତଟରେ ତପସ୍ୟା କରୁଥିଲେ । ଦିନେ ଅକସ୍ମାତ୍ ଭଗବାନ୍ ସନତ୍କୁମାର ସୂର୍ଯ୍ୟତୁଲ୍ୟ ତେଜସ୍ୱୀ ବିମାନରେ ଆସି ସେଠାରେ ପହଞ୍ଚିଗଲେ । ସେ ମୋ ଗୁରୁଙ୍କୁ ସେଠାରେ ଦେଖିଲେ । ସେ ଧ୍ୟାନରେ ମଗ୍ନ ଥିଲେ । ଧ୍ୟାନ ଭାଙ୍ଗିବା ପରେ ସେ ବ୍ରହ୍ମପୁତ୍ର ସନତ୍କୁମାରଙ୍କୁ ନିଜ ସମ୍ମୁଖରେ ଦେଖିବାକୁ ପାଇଲେ । ତାଙ୍କୁ ଦେଖି ସେ ଧଡ଼ପଡ଼ ହୋଇ ଉଠି ତାଙ୍କ ଚରଣରେ ପ୍ରଣାମ କଲେ ଏବଂ ତାଙ୍କୁ ଅର୍ଘ୍ୟ ପ୍ରଦାନ କଲେ । ପୁଣି ଦେବତାଙ୍କ ଯୋଗ୍ୟ ଆସନ ଅର୍ପଣ କଲେ । ଏହାପରେ ସନତ୍କୁମାର



ପ୍ରସନ୍ନ ହୋଇ ବିନୀତଭାବରେ ଦଣ୍ଡାୟମାନ ବ୍ୟାସଙ୍କୁ ଗମ୍ଭୀର ବାଣୀରେ କହିଲେ—

"ମୁନେ ! ତୁମେ ସତ୍ୟର ଚିନ୍ତନ କର । ସେହି ସତ୍ୟ ହେଉଛନ୍ତି ଭଗବାନ ଶିବ । ସେ ତୁମ ସାକ୍ଷାତ୍କାରର ବିଷୟ ହେବେ । ଭଗବାନ ଶିବଙ୍କ ଚରିତ୍ରର ଶ୍ରବଣ, କୀର୍ତ୍ତନ ଓ ମନନକୁ ମହତ୍ତର ସାଧନ ବୋଲି କୁହାଯାଇଛି । ଏ ତିନୋଟି ବେଦସମ୍ମତ । ପୂର୍ବକାଳରେ ମୁଁ ଅନ୍ୟାନ୍ୟ ସାଧନର ଭ୍ରମରେ ପଡ଼ି ବୁଲୁ ବୁଲୁ ଯାଇ ମନ୍ଦରାଚଳରେ ପହଞ୍ଚିଲି ଏବଂ ସେଠାରେ ତପସ୍ୟା କଲି । ତା'ପରେ ମହେଶ୍ୱର ଶିବଙ୍କ ଆଜ୍ଞାରେ ଭଗବାନ ନନ୍ଦିକେଶ୍ୱର ସେଠାକୁ ଆସିଲେ । ତାଙ୍କର ମୋ ପ୍ରତି ବହୁତ ଦୟା ଆସିଲା । ସମସ୍ତଙ୍କ ସାକ୍ଷୀ ତଥା ଶିବଗଣଙ୍କ ସ୍ୱାମୀ ନନ୍ଦିକେଶ୍ୱର ମୋତେ ସ୍ନେହରେ ମୁକ୍ତିର ଉତ୍ତମ ସାଧନ ଉପଦେଶ ଦେବାକୁ ଯାଇ କହିଲେ— ଭଗବାନ ଶଙ୍କରଙ୍କ କଥା ଶ୍ରବଣ, କୀର୍ତ୍ତନ ଓ ମନନ ହେଉଛି ବେଦସମ୍ମତ ସାଧନ ଏବଂ ମୁକ୍ତିର ସାକ୍ଷାତ୍ କାରଣ; ଏକଥା ସ୍ୱୟଂ ଭଗବାନ ଶିବ ମୋତେ କହିଛନ୍ତି । ତେଣୁ ବ୍ରହ୍ମନ୍ ! ତୁମେ ଶ୍ରବଣାଦି ତିନୋଟି ସାଧନ ଅନୁଷ୍ଠାନ କର ।" ବ୍ୟାସଦେବଙ୍କୁ ବାରମ୍ବାର ଏପରି କହି ଅନୁଗାମୀଙ୍କ ସମେତ ବ୍ରହ୍ମପୁତ୍ର ସନତ୍କୁମାର ପରମ ସୁନ୍ଦର ବ୍ରହ୍ମଧାମକୁ ବାହୁଡ଼ିଗଲେ । ପୂର୍ବକାଳର ଏହି ବୃତ୍ତାନ୍ତ ମୁଁ ସଂକ୍ଷେପରେ ତୁମ ଆଗରେ ବର୍ଣ୍ଣନା କରିଦେଲି ।

ଋଷିମାନେ କହିଲେ—ହେ ସୂତ ମହାଭାଗ ! ଶ୍ରବଣାଦି ତିନୋଟି ସାଧନକୁ ଆପଣ ମୁକ୍ତିର ଉପାୟ ବୋଲି କହିଲେ । କିନ୍ତୁ ଯେ ଏ ତିନୋଟି ସାଧନ କରିବାରେ ଅସମର୍ଥ ହୋଇଥିବ, ସେ କେଉଁ ଉପାୟ ଅବଲମ୍ବନ କରି ମୁକ୍ତ ହେବ? କେଉଁ ସାଧନଭୂତ କର୍ମ ଦ୍ୱାରା ବିନା ପ୍ରଯତ୍ନରେ ଅନାୟାସରେ ମୋକ୍ଷ ମିଳିପାରିବ?

(ଅଧ୍ୟାୟ ୩-୪)

⁂⁂⁂

# ଭଗବାନ ଶିବଙ୍କ ଲିଙ୍ଗପୂଜା ତଥା ସାକାର ବିଗ୍ରହ-ପୂଜାର ରହସ୍ୟ ଓ ମହତ୍ତ୍ୱ

ସୂତ କହୁଛନ୍ତି—ଶୌନକ ! ଯେ ଶ୍ରବଣ, କୀର୍ତ୍ତନ ଓ ମନନ କରିବାକୁ ଅସମର୍ଥ, ସେ ଭଗବାନ ଶଙ୍କରଙ୍କର ଲିଙ୍ଗ ଏବଂ ମୂର୍ତ୍ତି ସ୍ଥାପନାପୂର୍ବକ ନିତ୍ୟ ପୂଜା କରି ସଂସାରସାଗରରୁ ପାର ହୋଇ ଯାଇପାରେ । ଏପରି ଲୋକ ନିଶ୍ଚଳଚିତ୍ତରେ ନିଜ ଶକ୍ତି ଅନୁସାରେ ଧନରାଶି ନେଇ ତାହାକୁ ଶିବଲିଙ୍ଗ ଅଥବା ଶିବମୂର୍ତ୍ତିର ସେବାରେ ଅର୍ପିତ କରିଦେବା ଉଚିତ । ଏହା ସହିତ ନିରନ୍ତର ସେହି ଲିଙ୍ଗ ଓ ମୂର୍ତ୍ତିକୁ ପୂଜା ବି କରିବା ଉଚିତ । ତାଙ୍କ ପାଇଁ ଭକ୍ତିଭାବରେ ମଣ୍ଡପ, ଗୋପୁର, ତୀର୍ଥ, ମଠ ଓ କ୍ଷେତ୍ର ସ୍ଥାପନା କରିବା ତଥା ଉତ୍ସବର ଆୟୋଜନ କରିବା ଆବଶ୍ୟକ । ପ୍ରଭୁଙ୍କୁ ବସ୍ତ୍ର, ଗନ୍ଧ, ପୁଷ୍ପ, ଧୂପ, ଦୀପ ତଥା ମାଲପୁଆ ଓ ଶାକ ଆଦି ବ୍ୟଞ୍ଜନ ସହ ନାନା ପ୍ରକାର ଭକ୍ଷ୍ୟଦ୍ରବ୍ୟ ବା ଅନ୍ନ ନୈବେଦ୍ୟ ରୂପରେ ଅର୍ପିତ କରିବେ । ଛତ୍ର, ଧ୍ୱଜା, ବ୍ୟଜନ, ଚ୍ମମର ଓ ଅନ୍ୟାନ୍ୟ ଅଙ୍ଗ ସହିତ ରାଜୋପଚ୍ମର ପରି ସମସ୍ତ ଦ୍ରବ୍ୟ ଶିବଲିଙ୍ଗ ଓ ଶିବମୂର୍ତ୍ତିଙ୍କୁ ଅର୍ପିତ କରିବେ । ପୁଣି ପ୍ରଦକ୍ଷିଣା, ନମସ୍କାର ଓ ଯଥାଶକ୍ତି ଜପ କରିବେ । ଆବାହନ ଠାରୁ ବିସର୍ଜନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଭକ୍ତିଭାବରେ କରିବେ । ଶବଲିଙ୍ଗ ବା ଶିବମୂର୍ତ୍ତିରେ ଶିବଙ୍କୁ ପୂଜା କରୁଥିବା ବ୍ୟକ୍ତି ଶ୍ରବଣାଦି ସାଧନ ଅନୁଷ୍ଠାନ ନ କଲେ ମଧ୍ୟ ଶିବଙ୍କ ପ୍ରସନ୍ନତା ଦ୍ୱାରା ସିଦ୍ଧି ପ୍ରାପ୍ତ କରେ । ପୂର୍ବରୁ ମଧ୍ୟ ଅନେକ ମହାତ୍ମା କେବଳ ଶିବଲିଙ୍ଗ ଓ ଶିବମୂର୍ତ୍ତି ପୂଜା କରି ଭବବନ୍ଧନରୁ ମୁକ୍ତ ହୋଇ ଯାଇଛନ୍ତି ।

ଋଷିମାନେ ପଚ୍ମରିଲେ—ମୂର୍ତ୍ତିରେ ହିଁ ସର୍ବତ୍ର ଦେବତାଙ୍କ ପୂଜା ହୋଇଥାଏ (ଲିଙ୍ଗରେ ନୁହେଁ), ମାତ୍ର ଶିବଙ୍କ ପୂଜା ସର୍ବତ୍ର ମୂର୍ତ୍ତିରେ ଓ ଲିଙ୍ଗରେ କାହିଁକି ହୁଏ?

ସୂତ କହିଲେ—ମୁନୀଶ୍ୱରଗଣ ! ତୁମମାନଙ୍କର ଏ ପ୍ରଶ୍ନ ଅତି ପବିତ୍ର ଓ ଅତ୍ୟନ୍ତ ଅଦ୍ଭୁତ । ଏ ବିଷୟରେ ମହାଦେବ ହିଁ ବକ୍ତା ହୋଇପାରନ୍ତି । ଅନ୍ୟ କେହି ଏହାର ପ୍ରତିପାଦନ କରି ପାରିବ ନାହିଁ । ଏହି ପ୍ରଶ୍ନର ସମାଧାନ ପାଇଁ ଭଗବାନ ଶିବ ଯାହା କିଛି କହିଛନ୍ତି ଏବଂ ତାହାକୁ ମୁଁ ଗୁରୁମୁଖରୁ ଯେପରି ଶୁଣିଛି, ସେହିପରି କ୍ରମଶଃ ବର୍ଣ୍ଣନା କରିବି । ଏକମାତ୍ର ଭଗବାନ ଶିବ ହିଁ ବ୍ରହ୍ମରୂପ ହୋଇଥିବାରୁ 'ନିଷ୍କଳ' (ନିରାକାର) ବୋଲି କଥିତ ହୁଅନ୍ତି । ପୁଣି ରୂପବାନ୍ ହୋଇଥିବାରୁ ସେ 'ସକଳ' ବୋଲି ମଧ୍ୟ କଥିତ ହୁଅନ୍ତି । ତେଣୁ ସେ ସକଳ ଓ ନିଷ୍କଳ ଉଭୟ ଅଟନ୍ତି । ସେ ନିଷ୍କଳ ବା ନିରାକାର ହୋଇଥିବାରୁ ତାଙ୍କ ପୂଜାର ଆଧାରଭୂତ ଲିଙ୍ଗ ମଧ୍ୟ ନିରାକାର ହିଁ ହେଲା । ଅର୍ଥାତ୍ ଶିବଲିଙ୍ଗ ଶିବଙ୍କର ନିରାକାର ସ୍ୱରୂପର ପ୍ରତୀକ । ପୁନଶ୍ଚ ଶିବ ସକଳ ବା ସାକାର ହୋଇଥିବାରୁ ତାଙ୍କ ପୂଜାର ଆଧାରଭୂତ ବିଗ୍ରହ ସାକାର ହେଲା । ଅର୍ଥାତ୍ ଶିବଙ୍କର ସାକାର ବିଗ୍ରହ ତାଙ୍କ ସାକାର ସ୍ୱରୂପର ପ୍ରତୀକ । ସକଳ ଓ ଅକଳ (ସମସ୍ତ ଅଙ୍ଗ-ଆକାର ସହିତ ସାକାର ଏବଂ ଅଙ୍ଗ ଓ ଆକାର ବିରହିତ ନିରାକାର) ରୂପ ହୋଇଥିବାରୁ ସେ 'ବ୍ରହ୍ମ' ଶବ୍ଦରେ ଅଭିହିତ ପରମାତ୍ମା ହିଁ ଅଟନ୍ତି । ଏହି କାରଣରୁ ସମସ୍ତେ ଲିଙ୍ଗ (ନିରାକାର) ଓ ମୂର୍ତ୍ତି (ସାକାର) ଉଭୟରେ ହିଁ ସଦା ଭଗବାନ ଶିବଙ୍କୁ ପୂଜା କରିଥାନ୍ତି । ଶିବଙ୍କ ଭିନ୍ନ ଅନ୍ୟ ସବୁ ଦେବତା ସାକ୍ଷାତ୍ ବ୍ରହ୍ମ ନୁହନ୍ତି । ତେଣୁ ସେମାନଙ୍କର କେଉଁଠି ବି ନିରାକାର ଲିଙ୍ଗ ଉପଲବ୍ଧ ନୁହେଁ ।

ପୂର୍ବକାଳରେ ବ୍ରହ୍ମାଙ୍କର ବୁଦ୍ଧିମାନ୍ ପୁତ୍ର ମୁନି ସନତ୍‌କୁମାର ମନ୍ଦରାଚଳରେ ନନ୍ଦିକେଶ୍ୱରଙ୍କୁ ଏହି ପ୍ରକାର ପ୍ରଶ୍ନ କରିଥିଲେ ।

ସନତ୍‌କୁମାର କହିଲେ—**ଭଗବନ୍ !** ଶିବଙ୍କ ଠାରୁ ଭିନ୍ନ ଯେଉଁ ସବୁ ଦେବତା ଅଛନ୍ତି, ସେମାନଙ୍କ ପୂଜା ପାଇଁ ପ୍ରାୟ ମୂର୍ତ୍ତି ହିଁ ଅଧିକ ସଂଖ୍ୟାରେ ଦେଖାଯାଏ ଓ ଶୁଣାଯାଏ । କେବଳ ଭଗବାନ ଶିବଙ୍କ ପୂଜାରେ ହିଁ ଲିଙ୍ଗ ଓ ମୂର୍ତ୍ତି ଉଭୟର ଉପଯୋଗ ହୋଇଥାଏ । ତେଣୁ କଲ୍ୟାଣମୟ ନନ୍ଦିକେଶ୍ୱର ! ଏ ବିଷୟରେ ଯାହା ତାତ୍ତ୍ୱିକ ରହସ୍ୟ ରହିଛି, ତାହା ମୋତେ କହନ୍ତୁ, ଯାହା ଫଳରେ ଭଲଭାବରେ ବୁଝି ପାରିବି ।

ନନ୍ଦିକେଶ୍ୱର କହିଲେ—**ନିଷ୍ପାପ ବ୍ରହ୍ମକୁମାର !** ଆମ ଭଳି ଲୋକେ ଆପଣଙ୍କର ଏଭଳି ପ୍ରଶ୍ନର ଉତ୍ତର ଦେଇ ପାରିବେ ନାହିଁ; କାରଣ ଏହା ଅତି ଗୋପନୀୟ ବିଷୟ ଏବଂ ଲିଙ୍ଗ ସାକ୍ଷାତ୍ ବ୍ରହ୍ମର ପ୍ରତୀକ । ତଥାପି ଆପଣ ଶିବଭକ୍ତ ହୋଇଥିବାରୁ ଏ ବିଷୟରେ ଭଗବାନ ଶିବ ଯାହା କିଛି କହିଛନ୍ତି, ତାହା ମୁଁ ଆପଣଙ୍କ ସମକ୍ଷରେ କହୁଛି । ଭଗବାନ ଶିବ ବ୍ରହ୍ମସ୍ୱରୂପ ଓ ନିଷ୍କଳ (ନିରାକାର); ତେଣୁ ତାଙ୍କ ପୂଜାରେ ନିଷ୍କଳ ଲିଙ୍ଗର ଉପଯୋଗ ହୋଇଥାଏ । ଏହା ହିଁ ସମସ୍ତ ବେଦର ମତ ।

ସନତ୍‌କୁମାର କହିଲେ—**ମହାଭାଗ !** ଆପଣ ଭଗବାନ ଶିବ ଓ ଅନ୍ୟ ଦେବତାଙ୍କ ପୂଜନ ସମ୍ବନ୍ଧରେ ଲିଙ୍ଗପୂଜା ଓ ମୂର୍ତ୍ତିପୂଜାର ଯେଉଁ ରହସ୍ୟ ବିଭାଗପୂର୍ବକ କହିଲେ, ତାହା ଯଥାର୍ଥ । ସେଥିପାଇଁ ମୁଁ ଏବେ ଲିଙ୍ଗ ଓ ମୂର୍ତ୍ତି ଆଦିର ଉତ୍ପତ୍ତିର ବୃତ୍ତାନ୍ତ ଶୁଣିବାକୁ ଚାହୁଁଛି । ଲିଙ୍ଗର ପ୍ରାକଟ୍ୟ ରହସ୍ୟ ବିଷୟରେ ମୋତେ କୁହନ୍ତୁ ।

ଏହାର ଉତ୍ତରରେ ନନ୍ଦିକେଶ୍ୱର ମହାଦେବଙ୍କ ନିଷ୍କଳ ସ୍ୱରୂପ ଲିଙ୍ଗର ଆବିର୍ଭାବ ପ୍ରସଙ୍ଗ ବର୍ଣ୍ଣନା ଆରମ୍ଭ କଲେ । ସେ ବ୍ରହ୍ମା ଓ ବିଷ୍ଣୁଙ୍କ ବିବାଦ, ଦେବତାଙ୍କର ବ୍ୟାକୁଳତା ଓ ଚିନ୍ତା, ଦେବତାଙ୍କର ଦିବ୍ୟ କୈଳାସଶିଖର ଗମନ, ସେମାନଙ୍କ ଦ୍ୱାରା ଚନ୍ଦ୍ରଶେଖର ମହାଦେବଙ୍କ ସ୍ତବନ, ଦେବତାଙ୍କ ଦ୍ୱାରା ପ୍ରେରିତ ମହାଦେବଙ୍କର ବ୍ରହ୍ମା ଓ ବିଷ୍ଣୁଙ୍କ ବିବାଦସ୍ଥଳକୁ ଆଗମନ ତଥା ଉଭୟଙ୍କ ମଧ୍ୟରେ ନିଷ୍କଳ ଆଦି-ଅନ୍ତରହିତ ବିରାଟ ଅଗ୍ନିସ୍ତମ୍ଭ ରୂପରେ ତାଙ୍କର ଆବିର୍ଭାବ ଇତ୍ୟାଦି ପ୍ରସଙ୍ଗ କହିଲେ । ତା'ପରେ ବ୍ରହ୍ମା ଓ ବିଷ୍ଣୁଙ୍କ ଦ୍ୱାରା ସେହି ଜ୍ୟୋତିର୍ମୟ ସ୍ତମ୍ଭର ଉଚ୍ଚତା ଓ ଗଭୀରତା ଜାଣିବାର ପ୍ରଚେଷ୍ଟା ଏବଂ ସାକ୍ଷାତ୍ ମହେଶ୍ୱର ପ୍ରକଟ ହୋଇ କେତକୀ ପୁଷ୍ପକୁ ଦେଇଥିବା ଶାପ ଓ ବରଦାନ ପ୍ରସଙ୍ଗ ମଧ୍ୟ ନନ୍ଦିକେଶ୍ୱର ବର୍ଣ୍ଣନା କଲେ । (ଅଧ୍ୟାୟ ୫—୭)

❋❋❋

## ବ୍ରହ୍ମା ଓ ବିଷ୍ଣୁଙ୍କ ସମକ୍ଷରେ ମହେଶ୍ୱରଙ୍କର ନିଜ ନିଷ୍କଳ ଓ ସକଳ ସ୍ୱରୂପର ପରିଚୟ ପ୍ରଦାନ ଏବଂ ଲିଙ୍ଗପୂଜନର ମହତ୍ତ୍ୱ ପ୍ରତିପାଦନ

ନନ୍ଦିକେଶ୍ୱର କହିଲେ—ତଦନନ୍ତର (ଅଗ୍ନିସ୍ତମ୍ଭର ଉଚ୍ଚତା ଓ ଗଭୀରତା ଜାଣିବାକୁ ବିଫଳ ହେବା ପରେ) ବ୍ରହ୍ମା ଓ ବିଷ୍ଣୁ ଦୁହେଁ ଶିବଙ୍କୁ ପ୍ରଣାମ କରି କର ଯୋଡ଼ି ତାଙ୍କର ଡାହାଣ ଓ ବାମ ଭାଗରେ ନୀରବରେ ଛିଡ଼ା ହୋଇଗଲେ । ତା'ପରେ ସେମାନେ ସେଠାରେ ସାକ୍ଷାତ୍ ପ୍ରକଟିତ ପୂଜନୀୟ ମହାଦେବଙ୍କୁ ଶ୍ରେଷ୍ଠ ଆସନରେ ବିରାଜମାନ କରାଇ ପବିତ୍ର ପୁରୁଷ-ବସ୍ତୁ ଦ୍ୱାରା ତାଙ୍କୁ ପୂଜା କଲେ । ଦୀର୍ଘକାଳ ପର୍ଯ୍ୟନ୍ତ ଅବିକୃତ ଭାବରେ ସୁସ୍ଥିର ହୋଇ ରହିପାରୁଥିବା ବସ୍ତୁକୁ 'ପୁରୁଷ-ବସ୍ତୁ' କହନ୍ତି ଏବଂ

ଅଳ୍ପକାଳ ସ୍ଥାୟୀ କ୍ଷଣଭଙ୍ଗୁର ବସ୍ତୁମାନ 'ପ୍ରାକୃତ-ବସ୍ତୁ' ନାମରେ ପରିଚିତ। ବସ୍ତୁର ଏହି ଦ୍ୱିବିଧ ଭେଦକୁ ଜାଣିବା ଉଚିତ। (କେଉଁ ପୁରୁଷ-ବସ୍ତୁରେ ସେମାନେ ଶିବଙ୍କୁ ପୂଜା କଲେ, ତାହା ଏଠାରେ କୁହାଯାଉଛି—) ହାର, ନୂପୁର, କେୟୂର, କିରୀଟ, ମଣିମୟ କୁଣ୍ଡଳ, ଯଜ୍ଞୋପବୀତ, ଉତ୍ତରୀୟ ବସ୍ତ୍ର, ପୁଷ୍ପମାଳା, ପଟ୍ଟବସ୍ତ୍ର, ହାର, ମୁଦ୍ରିକା, ପୁଷ୍ପ, ତାମ୍ବୂଳ, କର୍ପୂର, ଚନ୍ଦନ ତଥା ଅଗୁରୁର ଅନୁଲେପ, ଧୂପ, ଦୀପ, ଶ୍ୱେତଛତ୍ର, ବ୍ୟଜନ, ଧ୍ୱଜା, ଚାମର ଓ ଅନ୍ୟାନ୍ୟ ଦିବ୍ୟ ଉପହାରଦ୍ୱାରା ତଥା ଯେଉଁ ବୈଭବ ମନ ଓ ବାଣୀରୁ ଅତୀତ ଥିଲା, ଯାହା କେବଳ ପଶୁପତି (ପରମାତ୍ମା)ଙ୍କର ହିଁ ଯୋଗ୍ୟ ଥିଲା ଏବଂ ଯେଉଁସବୁ ବସ୍ତୁକୁ ପଶୁ (ବଦ୍ଧ ଜୀବ) କଦାପି ପାଇ ପାରି ନ ଥାନ୍ତି, ସେଥିରେ ସେ ଦୁହେଁ ତାଙ୍କର ସ୍ୱାମୀ ମହେଶ୍ୱରଙ୍କୁ ପୂଜନ କଲେ। ସର୍ବପ୍ରଥମେ ସେଠାରେ ବ୍ରହ୍ମା ଓ ବିଷ୍ଣୁ ଭଗବାନ ଶିବଙ୍କୁ ପୂଜା କଲେ। ତେଣୁ ଏଥିରେ ପ୍ରସନ୍ନ ହୋଇ ଶିବ ଭକ୍ତିପୂର୍ବକ ବିନମ୍ରଭାବରେ ସେଠାରେ ଦଣ୍ଡାୟମାନ ହୋଇଥିବା ସେହି ଦେବତା ଦୁହିଙ୍କୁ ମନ୍ଦ ମନ୍ଦ ହସି କହିଲେ—

ମହେଶ୍ୱର କହିଲେ—ପୁତ୍ରମାନେ ! ଆଜି ଦିନଟି ଅତି ମହାନ୍। ଆଜି ତୁମେମାନେ ମୋର ଯେଉଁ ପୂଜା କଲ, ତଦ୍ୱାରା ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରସନ୍ନ। ଏହି କାରଣରୁ ଏ ଦିନଟି ପରମ ପବିତ୍ର ଓ ମହାନ୍ ହେବ। ଆଜିର ତିଥି 'ଶିବରାତ୍ରି' ନାମରେ ବିଖ୍ୟାତ ହୋଇ ମୋ ପାଇଁ ପରମ ପ୍ରିୟ ହେବ। ଏହି ଦିନ ଯେ ମୋର ଲିଙ୍ଗ (ନିଷ୍କଳ ବା ଅଙ୍ଗ-ଆକୃତିରହିତ ନିରାକାର ସ୍ୱରୂପର ପ୍ରତୀକ) ଓ ମୂର୍ତ୍ତି (ସକଳ ବା ସାକାରରୂପର ପ୍ରତୀକ ବିଗ୍ରହ)ର ପୂଜା କରିବ, ସେ ଜଗତର ସୃଷ୍ଟି ଓ ପାଳନ ଆଦି କାର୍ଯ୍ୟ ମଧ୍ୟ କରି ପାରିବ। ଯେ ଶିବରାତ୍ରି ଦିନ ଅହୋରାତ୍ର ନିରାହାର ଏବଂ ଜିତେନ୍ଦ୍ରିୟ ରହି ନିଜ ସାମର୍ଥ୍ୟ ଅନୁସାରେ ନିଷ୍କପଟଭାବରେ ମୋର ଯଥୋଚିତ ପୂଜା କରିବ, ତାହାକୁ ଯେଉଁ ଫଳ ମିଳିବ, ଶୁଣ। ବର୍ଷେ ପର୍ଯ୍ୟନ୍ତ ନିରନ୍ତର ମୋତେ ପୂଜା କଲେ ଯେଉଁ ଫଳ ମିଳେ, ତାହା କେବଳ ଶିବରାତ୍ରି ଦିନ ମୋତେ ପୂଜା କରି ମନୁଷ୍ୟ ତତ୍କାଳ ପାଇପାରେ। ଯେପରି ପୂର୍ଣ୍ଣଚନ୍ଦ୍ର ଉଦୟ ହେବା ବେଳେ ସମୁଦ୍ର ବୃଦ୍ଧି ପାଇଥାଏ, ସେହିପରି ଶିବରାତ୍ରି ତିଥି ମୋର ଧର୍ମ ବୃଦ୍ଧିର ସମୟ ଅଟେ। ଏହି ତିଥିରେ ମୋର ସ୍ଥାପନା ଆଦି ସମ୍ବନ୍ଧୀୟ ମଙ୍ଗଳମୟ ଉତ୍ସବ ହେବା ଉଚିତ। ପ୍ରଥମେ ମୁଁ ଯେବେ ଜ୍ୟୋତିର୍ମୟ ସ୍ତମ୍ଭରୂପରେ ପ୍ରକଟ ହୋଇଥିଲି, ତାହା ଥିଲା ମାର୍ଗଶିର ମାସର ଆର୍ଦ୍ରା ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା ବା ପ୍ରତିପଦ। ମାର୍ଗଶିର ମାସରେ ଆର୍ଦ୍ରା ନକ୍ଷତ୍ର ପଡ଼ିଲେ ଯେଉଁ ମନୁଷ୍ୟ ପାର୍ବତୀଙ୍କ ସମେତ ମୋତେ ଦର୍ଶନ କରେ ଅଥବା ମୋ ମୂର୍ତ୍ତି ବା ଲିଙ୍ଗର ଦର୍ଶନ କରେ, ସେ ମୋ ପାଇଁ କାର୍ତ୍ତିକେୟ ଠାରୁ ବି ଅଧିକ ପ୍ରିୟ। ସେହି ଶୁଭ ଦିନରେ ମୋର ଦର୍ଶନମାତ୍ରେ ପୂର୍ଣ୍ଣ ଫଳ ପ୍ରାପ୍ତ ହୁଏ। ଯଦି ଦର୍ଶନ ସହିତ ମୋର ପୂଜା କରାଯାଏ, ତେବେ ତାହାର ଏତେ ଫଳ ହୁଏ ଯେ ତାହା ମୁଖରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ।

ମୁଁ ଲିଙ୍ଗରୂପରେ ପ୍ରକଟ ହୋଇ ବହୁତ ବଡ଼ ହୋଇଯାଇଥିଲି। ତେଣୁ ଏହି ଭୂଭାଗ 'ଲିଙ୍ଗସ୍ଥାନ' ନାମରେ ପ୍ରସିଦ୍ଧ ହେଲା। ଜଗତର ଲୋକେ ଏହାକୁ ଯେପରି ଦର୍ଶନ ଓ ପୂଜନ କରିପାରିବେ, ସେହି ଦୃଷ୍ଟିରୁ ଏ ଅନାଦି ଓ ଅନନ୍ତ ଜ୍ୟୋତିଃସ୍ତମ୍ଭ ଅଥବା ଜ୍ୟୋତିର୍ମୟ ଲିଙ୍ଗ ଅତ୍ୟନ୍ତ ଛୋଟ ହୋଇଯିବ। ଏହି ଲିଙ୍ଗ ସବୁ ପ୍ରକାର ଭୋଗ ସୁଲଭ କରାଇବାର ତଥା ଭୋଗ

ଓ ମୋକ୍ଷର ଏକମାତ୍ର ସାଧନ ଅଟେ । ଏହାକୁ ଦର୍ଶନ, ସ୍ପର୍ଶ ଓ ଧ୍ୟାନ କଲେ ପ୍ରାଣୀଙ୍କର ଜନ୍ମ-ମୃତ୍ୟୁର କଷ୍ଟ ବିନଷ୍ଟ ହୋଇଯିବ । ଅଗ୍ନିର ପାହାଡ଼ ପରି ଏ ଯେଉଁ ଶିବଲିଙ୍ଗ ଏଠାରେ ପ୍ରକଟ ହୋଇଛି, ଏହି କାରଣରୁ ଏହି ସ୍ଥାନ 'ଅରୁଣାଚଳ' ନାମରେ ପ୍ରସିଦ୍ଧ ହେବ । ଏଠାରେ ଅନେକ ପ୍ରକାର ବଡ଼ ବଡ଼ ତୀର୍ଥ ପ୍ରକଟ ହେବ । ଏ ସ୍ଥାନରେ ନିବାସ କଲେ ବା ମୃତ୍ୟୁବରଣ କଲେ ଜୀବଙ୍କର ମୋକ୍ଷ ମଧ୍ୟ ହୋଇଯିବ ।

ମୋର ଦୁଇଟି ରୂପ ରହିଛି—'ସକଳ' ଓ 'ନିଷ୍କଳ' । ଅନ୍ୟ କାହାରି ଏପରି ରୂପ ନାହିଁ । ପ୍ରଥମେ ମୁଁ ସ୍ତମ୍ଭରୂପରେ ପ୍ରକଟ ହେଲି, ତା'ପରେ ନିଜର ସାକ୍ଷାତ୍ ସ୍ୱରୂପରେ ପ୍ରକଟ ହେଲି । 'ବ୍ରହ୍ମଭାବ' ମୋର 'ନିଷ୍କଳ' ରୂପ ଏବଂ 'ମହେଶ୍ୱରଭାବ' ମୋର 'ସକଳ' ରୂପ । ଏ ଦୁଇଟିଯାକ ମୋରି ସିଦ୍ଧ ରୂପ । ମୁଁ ହିଁ ପରବ୍ରହ୍ମ ପରମାତ୍ମା । ସକଳ (କଳାଯୁକ୍ତ) ଓ ଅକଳ (ନିଷ୍କଳ) ମୋର ହିଁ ସ୍ୱରୂପ । ବ୍ରହ୍ମରୂପ ହେବା ହେତୁ ମୁଁ ଈଶ୍ୱର ମଧ୍ୟ ଅଟେ । ଜୀବଙ୍କ ଉପରେ ଅନୁଗ୍ରହାଦି କରିବା ମୋର କାର୍ଯ୍ୟ । ହେ ବ୍ରହ୍ମା! ହେ କେଶବ ! ମୁଁ ସବୁଠାରୁ ବୃହତ୍ ଓ ଜଗତର ବୃଦ୍ଧିକାରକ ହୋଇଥିବା ହେତୁ 'ବ୍ରହ୍ମ' ପଦବାଚ୍ୟ ହୁଏ । ସର୍ବତ୍ର ସମଭାବରେ ସ୍ଥିତ ଓ ବ୍ୟାପକ ହୋଇଥିବା କାରଣରୁ ମୁଁ ହିଁ ସମସ୍ତଙ୍କର ଆତ୍ମା । ସର୍ଗଠାରୁ ଆରମ୍ଭ କରି ଅନୁଗ୍ରହ ପର୍ଯ୍ୟନ୍ତ (ଆତ୍ମା ବା ଈଶ୍ୱରଙ୍କ ଠାରୁ ଭିନ୍ନ) ଜଗତ ସମ୍ବନ୍ଧୀୟ ଯେଉଁ ପାଞ୍ଚଟି କୃତ୍ୟ ରହିଛି, ତାହା ସଦା ମୋର କୃତ୍ୟ, ମୋ ଛଡ଼ା ଆଉ କାହାର ନୁହେଁ; କାରଣ ମୁଁ ହିଁ ସମସ୍ତଙ୍କର ଈଶ୍ୱର । ମୋର ବ୍ରହ୍ମରୂପତାର ବୋଧ କରାଇବା ପାଇଁ ପ୍ରଥମେ 'ନିଷ୍କଳ' ଲିଙ୍ଗ ପ୍ରକଟ ହୋଇଥିଲା । ତା'ପରେ ଅଜ୍ଞାତ ଈଶ୍ୱରଙ୍କ ସାକ୍ଷାତ୍କାର କରାଇବା ନିମିତ୍ତ ମୁଁ ସାକ୍ଷାତ୍ ଜଗଦୀଶ୍ୱର 'ସକଳ' ରୂପରେ ଅବିଳମ୍ବେ ପ୍ରକଟ ହୋଇଗଲି । ତେଣୁ ମୋଠାରେ ଯେଉଁ ଈଶତ୍ୱ ଅଛି, ତାହାକୁ ହିଁ ମୋର ସକଳ ରୂପ ବୋଲି ବୁଝିବା ଉଚିତ ଏବଂ ଏହି ନିଷ୍କଳ ସ୍ତମ୍ଭ ମୋର ବ୍ରହ୍ମସ୍ୱରୂପର ବୋଧ କରାଇଥାଏ । ଏହା ମୋର ଲିଙ୍ଗ (ଚିହ୍ନ) ଅଟେ । ତୁମେ ଦୁହେଁ ଏଠାରେ ରହି ପ୍ରତିଦିନ ଏହାକୁ ପୂଜା କର । ଏହା ମୋର ସ୍ୱରୂପ ଏବଂ ଏହା ମୋର ସାମୀପ୍ୟ ପ୍ରାପ୍ତି କରାଇଥାଏ । ଲିଙ୍ଗ ଓ ଲିଙ୍ଗୀ ମଧ୍ୟରେ ନିତ୍ୟ ଅଭେଦ ରହିଥିବା କାରଣରୁ ମୋର ଏହି ଲିଙ୍ଗକୁ ମହତ୍ ପୁରୁଷମାନେ ମଧ୍ୟ ପୂଜା କରିବା ଉଚିତ । ମୋର ଗୋଟିଏ ଲିଙ୍ଗ ସ୍ଥାପନା କରିବାର ଫଳସ୍ୱରୂପ ଉପାସକକୁ ମୋର ସମାନତା ପ୍ରାପ୍ତ ହୋଇଯାଏ । ଯଦି ଗୋଟିଏ ପରେ ଆଉ ଗୋଟିଏ ଶିବଲିଙ୍ଗ ସ୍ଥାପନା କରିଦିଆଯାଏ, ତେବେ ତ ଉପାସକକୁ ମୋ ସହିତ ଏକତ୍ୱ (ସାଯୁଜ୍ୟ ମୋକ୍ଷ) ପ୍ରାପ୍ତ ହୋଇଯାଏ । ପ୍ରଧାନତଃ ଶିବଲିଙ୍ଗ ହିଁ ସ୍ଥାପନା କରିବା ଉଚିତ । ମୂର୍ତ୍ତିସ୍ଥାପନା ତା'ଠାରୁ ଗୌଣ ଅଟେ । ଯଦି ଶିବଲିଙ୍ଗ ନାହିଁ, ତେବେ ଚତୁର୍ଦ୍ଦିଗ ମୂର୍ତ୍ତିମୟ ହୋଇଥିଲେ ମଧ୍ୟ ସେ ସ୍ଥାନ କ୍ଷେତ୍ର ବୋଲାଏ ନାହିଁ । (ଅଧ୍ୟାୟ ୯)

***

# ପଞ୍ଚକୃତ୍ୟର ପ୍ରତିପାଦନ, ପ୍ରଣବ ଓ ପଞ୍ଚାକ୍ଷରମନ୍ତ୍ରର ମହତ୍ତ୍ୱ, ବ୍ରହ୍ମା ଓ ବିଷ୍ଣୁଙ୍କ ଦ୍ୱାରା ଭଗବାନ ଶିବଙ୍କ ସ୍ତୁତି ଏବଂ ଶିବଙ୍କର ସେଠାରୁ ଅନ୍ତର୍ଦ୍ଧାନ

ବ୍ରହ୍ମା ଓ ବିଷ୍ଣୁ ପଚ୍ଚାରିଲେ–ପ୍ରଭୋ ! ସୃଷ୍ଟି ଆଦି ପାଞ୍ଚ କୃତ୍ୟର ଲକ୍ଷଣ କ'ଣ, ଆମକୁ ତାହା କହନ୍ତୁ ।

ଭଗବାନ ଶିବ କହିଲେ–ମୋର କର୍ତ୍ତବ୍ୟକୁ ବୁଝିବା ଅତ୍ୟନ୍ତ ଗହନ, ତଥାପି ମୁଁ କୃପା କରି ତୁମକୁ ସେହି ବିଷୟରେ କହୁଛି । ହେ ବ୍ରହ୍ମା! ହେ ଅଚ୍ୟୁତ! 'ସୃଷ୍ଟି', 'ପାଳନ', 'ସଂହାର', 'ତିରୋଭାବ' ଓ 'ଅନୁଗ୍ରହ'–ଏ ପାଞ୍ଚଟି ହେଉଛି ମୋର ଜଗତ ସମ୍ବନ୍ଧୀୟ କାର୍ଯ୍ୟ, ଯାହାକି ନିତ୍ୟସିଦ୍ଧ । ସୃଷ୍ଟିରଚନାର ଆରମ୍ଭକୁ ସର୍ଗ ବା 'ସୃଷ୍ଟି' କହନ୍ତି । ମୋ ଦ୍ୱାରା ପାଳିତ ହୋଇ ସୃଷ୍ଟି ସୁସ୍ଥିର ରହିବା ହେଉଛି ତାହାର 'ସ୍ଥିତି' । ତାହାର ବିନାଶ ହିଁ 'ସଂହାର' । ପ୍ରାଣମାନଙ୍କର ଉତ୍କ୍ରମଣକୁ 'ତିରୋଭାବ' କହନ୍ତି । ଏଗୁଡ଼ିକରୁ ମୁକ୍ତି ପାଇବା ହିଁ ମୋର 'ଅନୁଗ୍ରହ' । ଏହା ହେଲା ମୋର ପାଞ୍ଚ ପ୍ରକାର କୃତ୍ୟ । ସୃଷ୍ଟି ଆଦି ଚାରିଟି କୃତ୍ୟ ସଂସାରକୁ ବିସ୍ତାର କରିଥାଏ । ପଞ୍ଚମ କୃତ୍ୟ ଅନୁଗ୍ରହ ମୋକ୍ଷର ହେତୁ ଅଟେ । ତାହା ସଦା ମୋଠାରେ ହିଁ ଅଚଳଭାବରେ ସ୍ଥିର ରହିଥାଏ । ମୋର ଭକ୍ତଗଣ ଏହି ପାଞ୍ଚଟି କୃତ୍ୟକୁ ପାଞ୍ଚ ଭୂତରେ ଦେଖନ୍ତି । ସୃଷ୍ଟି ଭୂତଳରେ, ସ୍ଥିତି ଜଳରେ, ସଂହାର ଅଗ୍ନିରେ, ତିରୋଭାବ ବାୟୁରେ ଓ ଅନୁଗ୍ରହ ଆକାଶରେ ସ୍ଥିତ ଅଟେ । ପୃଥିବୀରୁ ସମସ୍ତଙ୍କର ସୃଷ୍ଟି ହୋଇଥାଏ । ଜଳଦ୍ୱାରା ସମସ୍ତଙ୍କର ବୃଦ୍ଧି ଏବଂ ଜୀବନରକ୍ଷା ହୋଇଥାଏ । ଅଗ୍ନି ସମସ୍ତଙ୍କୁ ଜଳାଇଥାଏ । ବାୟୁ ସମସ୍ତଙ୍କୁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଇ ଯାଇଥାଏ ଏବଂ ଆକାଶ ସମସ୍ତଙ୍କୁ ଅନୁଗୃହୀତ କରିଥାଏ । ବିଦ୍ୱାନ୍ ଲୋକେ ଏସବୁ ବିଷୟକୁ ଏହିରୂପେ ଜାଣିବା ଉଚିତ । ଉପରୋକ୍ତ ପାଞ୍ଚଟି କୃତ୍ୟର ଭାର ବହନ କରିବା ନିମନ୍ତେ ମୋର ପାଞ୍ଚଟି ମୁଖ ରହିଛି । ଚାରିଦିଗରେ ଚାରିଟି ମୁଖ ଏବଂ ମଝିରେ ପଞ୍ଚମ ମୁଖ । ପୁତ୍ରମାନେ ! ତୁମେ ଦୁହେଁ ତପସ୍ୟା ଦ୍ୱାରା ମୋତେ ପ୍ରସନ୍ନ କରି ମୋ ପରି ପରମେଶ୍ୱର ଠାରୁ ସୃଷ୍ଟି ଓ ସ୍ଥିତି ନାମକ ଦୁଇଟି କୃତ୍ୟ ପ୍ରାପ୍ତ ହେଲ । ଏ ଦୁଇଟି ତୁମର ବହୁତ ପ୍ରିୟ । ଠିକ୍ ଏହିପରି ମୋର ବିଭୂତିସ୍ୱରୂପ 'ରୁଦ୍ର' ଓ 'ମହେଶ୍ୱର' ମୋର ଅନ୍ୟ ଦୁଇଟି ଉତ୍ତମ କୃତ୍ୟ ସଂହାର ଓ ତିରୋଭାବ ପ୍ରାପ୍ତ ହେଲେ । ପରନ୍ତୁ ଅନୁଗ୍ରହ ନାମକ କୃତ୍ୟ ଅନ୍ୟ କେହି ପାଇ ନ ପାରେ । ରୁଦ୍ର ଓ ମହେଶ୍ୱର ନିଜ ନିଜ କର୍ମକୁ ଭୁଲି ନାହାନ୍ତି । ତେଣୁ ମୁଁ ସେମାନଙ୍କ ପାଇଁ ନିଜର ସମାନତା ପ୍ରଦାନ କରିଛି । ସେମାନେ ରୂପ, ବେଶ, କୃତ୍ୟ, ବାହନ, ଆସନ ଓ ଆୟୁଧ ଇତ୍ୟାଦିରେ ମୋ ସମାନ ଅଟନ୍ତି । ମୁଁ ପୂର୍ବକାଳରେ ନିଜ ସ୍ୱରୂପଭୂତ ମନ୍ତ୍ର ଉପଦେଶ ଦେଇଥିଲି, ଯାହାକି ଓଁକାର ନାମରେ ପ୍ରସିଦ୍ଧ । ତାହା ପରମ ମଙ୍ଗଳକାରୀ ମନ୍ତ୍ର । ସର୍ବପ୍ରଥମେ ମୋ ମୁଖରୁ ଓଁକାର (ଓଁ) ପ୍ରକଟ ହୋଇଥିଲା, ଯାହାକି ମୋ ସ୍ୱରୂପର ବୋଧ କରାଇଥାଏ । ଓଁକାର ହେଉଛି ବାଚକ ଓ ମୁଁ ହେଉଛି ବାଚ୍ୟ । ଏହି ମନ୍ତ୍ର ମୋର ସ୍ୱରୂପ । ପ୍ରତିଦିନ ଓଁକାରକୁ ନିରନ୍ତର ସ୍ମରଣ କଲେ ମୋର ସ୍ମରଣ ହୋଇଯାଏ ।

ମୋର ଉତ୍ତରବର୍ତ୍ତୀ ମୁଖରୁ ଅକାର, ପଶ୍ଚିମ ମୁଖରୁ ଉକାର, ଦକ୍ଷିଣ ମୁଖରୁ ମକାର, ପୂର୍ବବର୍ତ୍ତୀ ମୁଖରୁ ବିନ୍ଦୁ ଓ ମଧ୍ୟବର୍ତ୍ତୀ ମୁଖରୁ ନାଦ ପ୍ରକଟ ହୋଇଥିଲା । ଏହି ପ୍ରକାରେ ପାଞ୍ଚ ଅବୟବଯୁକ୍ତ ଓଁକାରର ବିସ୍ତାର ହେଲା । ଏ ସମସ୍ତ ଅବୟବରେ ଏକୀଭୂତ ହୋଇ ସେହି ପ୍ରଣବ 'ଓଁ' ନାମକ

ଏକାକ୍ଷରରେ ପରିଣତ ହୋଇଗଲା । ନାମରୂପାତ୍ମକ ସମଗ୍ର ଜଗତ ତଥା ବେଦରୁ ଉତ୍ପନ୍ନ ସ୍ତ୍ରୀ-ପୁରୁଷବର୍ଗରୂପୀ ଦୁଇଟି କୁଳ ଏହି ପ୍ରଣବ ମନ୍ତ୍ରରେ ବ୍ୟାପ୍ତ ଅଟେ। ଏହି ମନ୍ତ୍ର ଉଭୟ ଶିବ ଓ ଶକ୍ତିଙ୍କର ବୋଧକ । ଏଇଥିରୁ ପଞ୍ଚାକ୍ଷର ମନ୍ତ୍ରର ଉତ୍ପତ୍ତି ହୋଇଛି, ଯାହାକି ମୋର ସକଳ ରୂପର ବୋଧକ । ତାହା ଅକାରାଦି କ୍ରମରେ ଓ ନକାରାଦି କ୍ରମରେ କ୍ରମଶଃ ପ୍ରକାଶକୁ ଆସିଛି ('ଓଁ ନମଃ ଶିବାୟ' ଏହା ପଞ୍ଚାକ୍ଷରମନ୍ତ୍ର ଅଟେ) । ପଞ୍ଚାକ୍ଷରମନ୍ତ୍ରରୁ ମାତୃକା ବର୍ଣ୍ଣ ପ୍ରକଟ ହୋଇଛନ୍ତି, ଯାହାକି ପାଞ୍ଚଭେଦଯୁକ୍ତ ।* ତହିଁରୁ ଶିରୋମନ୍ତ୍ରସହିତ ତ୍ରିପଦା ଗାୟତ୍ରୀ ପ୍ରକଟ ହୋଇଛି । ପୁଣି ସେହି ଗାୟତ୍ରୀରୁ ସମସ୍ତ ବେଦ ପ୍ରକଟ ହୋଇଛନ୍ତି । ବେଦରୁ କୋଟି କୋଟି ମନ୍ତ୍ର ବାହାରିଛନ୍ତି । ସେହି ସବୁ ମନ୍ତ୍ର ଦ୍ୱାରା ଭିନ୍ନ ଭିନ୍ନ କାର୍ଯ୍ୟ ସିଦ୍ଧ ହୋଇଥାଏ । ମାତ୍ର ପ୍ରଣବ ଓ ପଞ୍ଚାକ୍ଷର ଦ୍ୱାରା ସମସ୍ତ ମନୋରଥ ସିଦ୍ଧ ହୋଇଯାଏ; ଭୋଗ ଓ ମୋକ୍ଷ ଉଭୟ ସିଦ୍ଧ ହୋଇଯାଏ । ମୋର ସକଳ ସ୍ୱରୂପ ସହ ସମ୍ବନ୍ଧିତ ସମସ୍ତ ମନ୍ତ୍ରରାଜ ସାକ୍ଷାତ୍ ଭୋଗ ପ୍ରଦାୟକ ଓ ଶୁଭକାରକ (ମୋକ୍ଷପ୍ରଦ) ଅଟନ୍ତି ।

ନନ୍ଦିକେଶ୍ୱର କହୁଛନ୍ତି—ଏହାପରେ ଜଗଦମ୍ବା ପାର୍ବତୀଙ୍କ ସହିତ ବିରାଜମାନ ଗୁରୁବର ମହାଦେବ ଉତ୍ତରାଭିମୁଖ ହୋଇ ବସିଥିବା ବ୍ରହ୍ମା ଓ ବିଷ୍ଣୁଙ୍କୁ ବସ୍ତ୍ରରେ ଘୋଡ଼ାଇ ପକାଇ ସେମାନଙ୍କ ମସ୍ତକ ଉପରେ ଆପଣା କରକମଳ ରଖି ଅନୁଚ୍ଚ ସ୍ୱରରେ ଉତ୍ତମ ମନ୍ତ୍ର ଉପଦେଶ ଦେଲେ । ଯନ୍ତ୍ରତନ୍ତ୍ରରେ କଥିତ ବିଧି ଅନୁସାରେ ତିନି ଥର ମନ୍ତ୍ର ଉଚ୍ଚାରଣ କରି ଭଗବାନ ଶିବ ସେହି ଦୁଇ ଶିଷ୍ୟଙ୍କୁ ମନ୍ତ୍ର ଦୀକ୍ଷା ଦେଲେ । ତା'ପରେ ସେହି ଶିଷ୍ୟ ଦୁହେଁ ଗୁରୁଦକ୍ଷିଣା ରୂପରେ ନିଜକୁ ସମର୍ପିତ କରିଦେଲେ ଏବଂ କର ଯୋଡ଼ି ତାଙ୍କ ସମୀପରେ ଛିଡ଼ା ହୋଇ ସେହି ଦେବେଶ୍ୱର ଜଗଦ୍‌ଗୁରୁଙ୍କୁ ସ୍ତୁତି କଲେ ।

ବ୍ରହ୍ମା ଓ ବିଷ୍ଣୁ କହିଲେ—ପ୍ରଭୋ ! ଆପଣ ନିଷ୍କଳରୂପ ଅଟନ୍ତି । ଆପଣଙ୍କୁ ନମସ୍କାର । ଆପଣ ନିଷ୍କଳ ତେଜରେ ପ୍ରକାଶିତ ହୁଅନ୍ତି । ଆପଣଙ୍କୁ ନମସ୍କାର । ଆପଣ ସମସ୍ତଙ୍କର ସ୍ୱାମୀ । ଆପଣଙ୍କୁ ନମସ୍କାର । ଆପଣଙ୍କ ପରି ସର୍ବାତ୍ମାଙ୍କୁ ନମସ୍କାର ଅଥବା ଆପଣଙ୍କ ପରି ସକଳସ୍ୱରୂପ ମହେଶ୍ୱରଙ୍କୁ ନମସ୍କାର । ଆପଣ ପ୍ରଣବର ବାଚ୍ୟାର୍ଥ ଅଟନ୍ତି । ଆପଣଙ୍କୁ ନମସ୍କାର । ଆପଣ ପ୍ରଣବଲିଙ୍ଗ ଅଟନ୍ତି । ଆପଣଙ୍କୁ ନମସ୍କାର । ସୃଷ୍ଟି, ପାଳନ, ସଂହାର, ତିରୋଭାବ ଓ ଅନୁଗ୍ରହ କରୁଥିବା ଆପଣଙ୍କୁ ନମସ୍କାର । ଆପଣ ପଞ୍ଚାନନ । ଆପଣଙ୍କ ପରି ପରମେଶ୍ୱରଙ୍କୁ ନମସ୍କାର । ପଞ୍ଚବ୍ରହ୍ମସ୍ୱରୂପ ପଞ୍ଚକୃତ୍ୟକାରୀଙ୍କୁ ନମସ୍କାର । ଆପଣ ସବୁରି ଆତ୍ମା ଅଟନ୍ତି, ବ୍ରହ୍ମ ଅଟନ୍ତି । ଆପଣଙ୍କ ଗୁଣ ଓ ଶକ୍ତି ଅନନ୍ତ; ଆପଣଙ୍କୁ ନମସ୍କାର । ଆପଣ ସକଳ ଓ ନିଷ୍କଳ ଉଭୟ ଅଟନ୍ତି । ଆପଣ ସଦ୍‌ଗୁରୁ ଓ ଶମ୍ଭୁ ଅଟନ୍ତି । ଆପଣଙ୍କୁ ନମସ୍କାର ।୬

ମହେଶ୍ୱର କହିଲେ—'ଆର୍ଦ୍ରା' ନକ୍ଷତ୍ରଯୁକ୍ତ ଚତୁର୍ଦ୍ଦଶୀକୁ ପ୍ରଣବ ଜପ କଲେ ତାହା ଅକ୍ଷୟ

* ଅ ଇ ଉ ଋ ଌ —ଏ ପାଞ୍ଚଟି ମୂଳଭୂତ ସ୍ୱର ଅଟେ ତଥା ବ୍ୟଞ୍ଜନ ମଧ୍ୟ ପାଞ୍ଚଟି ଲେଖାଏଁ ବର୍ଣ୍ଣରେ ଯୁକ୍ତ ହୋଇ ପାଞ୍ଚବର୍ଗରେ ବିଭକ୍ତ ।

୬ ନମୋ ନିଷ୍କଳରୂପାୟ ନମୋ ନିଷ୍କଳତେଜସେ । ନମଃ ସକଳନାଥାୟ ନମସ୍ତେ ସକଳାତ୍ମନେ ॥
ନମଃ ପ୍ରଣବବାଚ୍ୟାୟ ନମଃ ପ୍ରଣବଲିଙ୍ଗିନେ । ନମଃ ସୃଷ୍ଟ୍ୟାଦିକର୍ତ୍ରେ ଚ ନମଃ ପଞ୍ଚମୁଖାୟ ତେ ॥
ପଞ୍ଚବ୍ରହ୍ମସ୍ୱରୂପାୟ ପଞ୍ଚକୃତ୍ୟାୟ ତେ ନମଃ । ଆତ୍ମନେ ବ୍ରହ୍ମଣେ ତୁଭ୍ୟମନନ୍ତଗୁଣଶକ୍ତୟେ ॥
ସକଳାକଳରୂପାୟ ଶମ୍ଭବେ ଗୁରବେ ନମଃ । (ଶି. ପୁ. ବିଦ୍ୟେ. ସଂ. ୧୦। ୨୮–୩୦½)

ଫଳ ପ୍ରଦାନ କରେ । ସୂର୍ଯ୍ୟ-ସଂକ୍ରାନ୍ତିରେ ଯୁକ୍ତ ମହା-ଆର୍ଦ୍ରା ନକ୍ଷତ୍ରରେ ଥରେ କରାଯାଇଥିବା ପ୍ରଣବଜପ କୋଟିଗୁଣ ଜପର ଫଳ ପ୍ରଦାନ କରେ । 'ମୃଗଶିରା' ନକ୍ଷତ୍ରର ଅନ୍ତିମଭାଗ ତଥା 'ପୁନର୍ବସୁ'ର ଆଦ୍ୟଭାଗ ପୂଜା, ହୋମ ଓ ତର୍ପଣ ଇତ୍ୟାଦି ପାଇଁ ସଦା ଆର୍ଦ୍ରା ସମାନ ହୋଇଥାଏ ବୋଲି ବୁଝିବା ଉଚିତ । ମୋର ଓ ମୋ ଲିଙ୍ଗର ଦର୍ଶନ ପ୍ରଭାତକାଳରେ ଅର୍ଥାତ୍ ପ୍ରାତଃ ଓ ସଙ୍ଗବ (ମଧ୍ୟାହ୍ନର ପୂର୍ବ) କାଳରେ କରିବା ଉଚିତ । ମୋର ଦର୍ଶନ-ପୂଜନ ପାଇଁ ଚତୁର୍ଦ୍ଦଶୀ ତିଥିକୁ ନିଶୀଥବ୍ୟାପିନୀ ଅଥବା ପ୍ରଦୋଷବ୍ୟାପିନୀ ଦେଖି ଗ୍ରହଣ କରିବା ଉଚିତ; କାରଣ ପରବର୍ତ୍ତୀ ତିଥିରେ ସଂଯୁକ୍ତ ଚତୁର୍ଦ୍ଦଶୀ ପ୍ରଶଂସନୀୟ ଧରାଯାଏ । ପୂଜା ପାଇଁ ମୋର ମୂର୍ତ୍ତି ତଥା ଲିଙ୍ଗ ଉଭୟ ସମାନ, ତଥାପି ମୂର୍ତ୍ତି ଅପେକ୍ଷା ଲିଙ୍ଗର ସ୍ଥାନ ଉଚ୍ଚତର । ତେଣୁ ମୁମୁକ୍ଷୁ ବ୍ୟକ୍ତିଙ୍କ ପକ୍ଷେ ଲିଙ୍ଗକୁ ମୂର୍ତ୍ତିଠାରୁ ଅଧିକ ଶ୍ରେଷ୍ଠ ମଣି ପୂଜା କରିବା ଉଚିତ । ଲିଙ୍ଗକୁ ଓଁକାରମନ୍ତ୍ରରେ ଓ ମୂର୍ତ୍ତିକୁ ପଞ୍ଚାକ୍ଷର ମନ୍ତ୍ରରେ ପୂଜା କରିବା ଉଚିତ । ଶିବଲିଙ୍ଗ ସ୍ୱୟଂ ସ୍ଥାପନ କରି ଅଥବା ଅନ୍ୟଦ୍ୱାରା ସ୍ଥାପନ କରାଇ ଉତ୍ତମ ଦ୍ରବ୍ୟମୟ ଉପଗ୍ରରରେ ପୂଜା କରିବା ଉଚିତ । ଏହାଫଳରେ ମୋର ପଦ ପ୍ରାପ୍ତି କରିବା ସୁଲଭ ହୋଇଯାଏ ।

ଏହି ପ୍ରକାରେ ସେହି ଶିଷ୍ୟ ଦୁହିଙ୍କୁ ଉପଦେଶ ଦେଇ ଭଗବାନ ଶିବ ସେହିଠାରେ ଅନ୍ତର୍ହିତ ହୋଇଗଲେ । (ଅଧ୍ୟାୟ ୧୦)



## ଶିବଲିଙ୍ଗର ସ୍ଥାପନା, ତାହାର ଲକ୍ଷଣ ଓ ପୂଜାବିଧି ତଥା ଶିବପଦ ପ୍ରାପ୍ତି କରାଉଥିବା ସତ୍‌କର୍ମର ବିବେଚନ

ଋଷିମାନେ ପଚ୍ଚାରିଲେ–ସୂତ ମହାଭାଗ ! ଶିବଲିଙ୍ଗର ସ୍ଥାପନା କିପରି କରିବା ଉଚିତ? ତାହାର ଲକ୍ଷଣ କ'ଣ? ତଥା ତାହାରେ ପୂଜା କେଉଁପରି, କେଉଁ ଦେଶ ବା କାଳରେ କରିବା ଉଚିତ ଏବଂ କେଉଁ ଦ୍ରବ୍ୟଦ୍ୱାରା ତାହା ନିର୍ମାଣ କରିବା ଉଚିତ?

ସୂତ କହିଲେ–ମହର୍ଷିଗଣ ! ମୁଁ ତୁମମାନଙ୍କ ଆଗରେ ଏହି ବିଷୟରେ ବର୍ଣ୍ଣନା କରୁଛି । ମନ ଦେଇ ଶୁଣ ଓ ବୁଝ । ଅନୁକୂଳ ଓ ଶୁଭ ସମୟ ଦେଖି କୌଣସି ପବିତ୍ର ତୀର୍ଥ ବା ନଦୀ ଆଦିର ତଟରେ ନିଜ ରୁଚି ଅନୁସାରେ ଏପରି ସ୍ଥାନରେ ଶିବଲିଙ୍ଗ ସ୍ଥାପନା କରିବା ଉଚିତ, ଯେଉଁଠି ନିତ୍ୟ ପୂଜନ କରିବା ସମ୍ଭବପର ହେଉଥିବ । ପାର୍ଥିବ ଦ୍ରବ୍ୟରେ, ଜଳମୟ ଦ୍ରବ୍ୟରେ ଅଥବା ତୈଜସ ପଦାର୍ଥରେ ନିଜ ରୁଚି ଅନୁସାରେ କଳ୍ପୋକ୍ତ ଲକ୍ଷଣଯୁକ୍ତ ଶିବଲିଙ୍ଗ ନିର୍ମାଣ କରି ତାହାକୁ ପୂଜା କଲେ ଉପାସକକୁ ସେହି ପୂଜନର ପୂର୍ଣ୍ଣ ଫଳ ପ୍ରାପ୍ତ ହୁଏ । ଯଦି ସମସ୍ତ ଶୁଭଲକ୍ଷଣଯୁକ୍ତ ଶିବଲିଙ୍ଗକୁ ପୂଜା କରାଯାଏ, ତେବେ ତାହା ଅବିଳମ୍ବେ ଫଳ ପ୍ରଦାନ କରିଥାଏ । ଯଦି ଚଳପ୍ରତିଷ୍ଠା କରିବାକୁ ଥିବ, ତେବେ ଛୋଟ ଶିବଲିଙ୍ଗ ଅଥବା ବିଗ୍ରହ ଶ୍ରେଷ୍ଠ । ଉତ୍ତମ ଲକ୍ଷଣଯୁକ୍ତ ଶିବଲିଙ୍ଗକୁ ପୀଠ ସହିତ ସ୍ଥାପନ କରିବା ଉଚିତ । ଶିବଲିଙ୍ଗର ପୀଠ ମଣ୍ଡଳାକାର (ଗୋଲ), ଚ୍ଚରିକୋଣିଆ, ତ୍ରିକୋଣାକାର ଅଥବା ଖଟର ଗୋଡ଼ ପରି ଉପର ଓ ତଳ ମୋଟା ଏବଂ ମଧ୍ୟଭାଗ ପତଳା ହେବା ଉଚିତ । ଏପରି ଲିଙ୍ଗପୀଠ ମହାନ୍ ଫଳଦାୟକ ହୋଇଥାଏ । ପ୍ରଥମେ ମାଟି, ପଥର ଇତ୍ୟାଦିରେ ଅଥବା ଲୋହାଦିରେ ଶିବଲିଙ୍ଗ ନିର୍ମାଣ କରିବା ଉଚିତ । ଯେଉଁ ଦ୍ରବ୍ୟରେ ଶିବଲିଙ୍ଗ ନିର୍ମାଣ ହେବ, ସେଇଥିରେ ତାହାର ପୀଠ ମଧ୍ୟ ନିର୍ମିତ ହେବା ଉଚିତ । ଏହା ହିଁ ସ୍ଥାବର (ଅଚଳପ୍ରତିଷ୍ଠା) ଶିବଲିଙ୍ଗ ବିଷୟରେ

ମୁଖ୍ୟ କଥା । ଚର (ଚଳପ୍ରତିଷ୍ଠା) ଶିବଲିଙ୍ଗରେ ମଧ୍ୟ ଲିଙ୍ଗ ଓ ପୀଠର ଉପାଦାନ ସମାନ ହେବା ଉଚିତ, କିନ୍ତୁ ବାଣଲିଙ୍ଗ ପାଇଁ ଏପରି ନିୟମ ନାହିଁ । ଲିଙ୍ଗର ଲମ୍ବ ନିର୍ମାଣକାରୀ ବା ସ୍ଥାପନାକାରୀ ଯଜମାନ ହାତରେ ଦ୍ୱାଦଶଅଙ୍ଗୁଳି ପରିମିତ ହେବା ଆବଶ୍ୟକ । ଏପରି ଶିବଲିଙ୍ଗକୁ ଉତ୍ତମ କୁହାଯାଏ । ଏହାଠାରୁ କମ୍ ଲମ୍ବର ହେଲେ ଫଳରେ ନ୍ୟୂନତା ଆସିଥାଏ, ଅଧିକ ହେଲେ କୌଣସି ଦୋଷ ନାହିଁ । ଚରଲିଙ୍ଗରେ ମଧ୍ୟ ସେହିପରି କିଛି ନିୟମ ରହିଛି । ତାହାର ଲମ୍ବ ଅତିକମ୍‌ରେ କର୍ତ୍ତାର ଏକ-ଅଙ୍ଗୁଳି ପରିମିତ ହେବା ଉଚିତ । ଏହାଠାରୁ ଛୋଟ ଲିଙ୍ଗ ଅଳ୍ପ ଫଳ ଦେଇଥାଏ, କିନ୍ତୁ ଏହାଠାରୁ ଅଧିକ ହେଲେ କିଛି ଦୋଷ ନାହିଁ । ଯଜମାନ ପ୍ରଥମେ ଶିଳ୍ପଶାସ୍ତ୍ର ଅନୁସାରେ ଗୋଟିଏ ବିମାନ ବା ଦେବାଳୟ ନିର୍ମାଣ କରାଇବେ, ଯାହାକି ଦେବଗଣଙ୍କ ମୂର୍ତ୍ତିରେ ଅଳଂକୃତ ହୋଇଥିବ । ତାହାର ଗର୍ଭଗୃହ ଅତ୍ୟନ୍ତ ସୁନ୍ଦର, ସୁଦୃଢ଼ ଓ ଦର୍ପଣ ପରି ସ୍ୱଚ୍ଛ ହୋଇଥିବ । ତାହାକୁ ନଅ ପ୍ରକାର ରତ୍ନରେ ବିଭୂଷିତ କରାଯାଇଥିବ । ତା'ର ପୂର୍ବ ଓ ପଶ୍ଚିମଦିଗରେ ଦୁଇଟି ମୁଖ୍ୟଦ୍ୱାର ଥିବ । ଯେଉଁଠି ଶିବଲିଙ୍ଗ ସ୍ଥାପନ କରାଯିବ, ସେଠାକାର ଗର୍ତ୍ତରେ ନୀଳମଣି, ଲାଲ୍ ରତ୍ନ, ବୈଦୂର୍ଯ୍ୟ, ଶ୍ୟାମ, ମର୍କତ, ମୋତି, ପ୍ରବାଳ, ଗୋମେଦ ଓ ହୀରା—ଏହି ନଅଟି ରତ୍ନ ତଥା ଅନ୍ୟାନ୍ୟ ମହତ୍ତ୍ୱପୂର୍ଣ୍ଣ ଦ୍ରବ୍ୟ ବୈଦିକ ମନ୍ତ୍ର ଉଚ୍ଚାରଣପୂର୍ବକ ପୋତିବେ । ସଦ୍ୟୋଜାତ ଆଦି ପାଞ୍ଚଟି ବୈଦିକ ମନ୍ତ୍ର ଦ୍ୱାରା* ଶିବଲିଙ୍ଗକୁ ପାଞ୍ଚଟି ସ୍ଥାନରେ ପୂଜା କରି ଅଗ୍ନିରେ ହବିଷ୍ୟ ଆହୁତି ଦେବେ ଓ ସପରିବାର ମୋତେ ପୂଜା କରି ଗୁରୁସ୍ୱରୂପ ଆଚାର୍ଯ୍ୟଙ୍କୁ ଧନରେ ତଥା ଭାଇବନ୍ଧୁଙ୍କୁ ସେମାନଙ୍କ ଅଭିଳଷିତ ବସ୍ତୁରେ ସନ୍ତୁଷ୍ଟ କରିବେ । ଭିକ୍ଷୁକମାନଙ୍କୁ ଜଡ଼ (ସୁବର୍ଣ୍ଣ, ଗୃହ ଓ ଭୂସମ୍ପତ୍ତି) ତଥା ଚେତନ (ଧେନୁ ଇତ୍ୟାଦି) ବୈଭବ ପ୍ରଦାନ କରିବେ ।

ସ୍ଥାବର-ଜଙ୍ଗମ ସମସ୍ତ ଜୀବଙ୍କୁ ଯତ୍ନପୂର୍ବକ ସନ୍ତୁଷ୍ଟ କରି ଗୋଟିଏ ଗର୍ତ୍ତରେ ସୁବର୍ଣ୍ଣ ଓ ନବରତ୍ନ ପକାଇ ସଦ୍ୟୋଜାତାଦି ବୈଦିକ ମନ୍ତ୍ର ଉଚ୍ଚାରଣପୂର୍ବକ ପରମ କଲ୍ୟାଣକାରୀ ମହାଦେବଙ୍କୁ ଧ୍ୟାନ କରିବେ । ତା'ପରେ ନାଦଘୋଷଯୁକ୍ତ ମହାମନ୍ତ୍ର ଓଁକାର (ଓଁ) ଉଚ୍ଚାରଣପୂର୍ବକ ଉକ୍ତ ଗର୍ତ୍ତରେ ଶିବଲିଙ୍ଗ ସ୍ଥାପନ କରି ତାହାକୁ ପୀଠ ସହ ସଂଯୁକ୍ତ କରିବେ । ଏହିରୂପେ ପୀଠଯୁକ୍ତ ଲିଙ୍ଗ ସ୍ଥାପନ କରି ତାହାକୁ ସ୍ଥାୟୀଲେପ ଦ୍ୱାରା ଯୋଡ଼ି ସ୍ଥିର କରିଦେବେ । ଏହିପରି ସେଠାରେ ପରମ ସୁନ୍ଦର ମୂର୍ତ୍ତି ମଧ୍ୟ ସ୍ଥାପନ କରିବା ଉଚିତ । ସାରାଂଶ ଏହି ଯେ ଭୂମିସଂସ୍କାର ଇତ୍ୟାଦିର ସମସ୍ତ ବିଧିକୁ ଲିଙ୍ଗପ୍ରତିଷ୍ଠା ନିମନ୍ତେ ଯେପରି କରିବାକୁ ନିର୍ଦ୍ଦେଶ ରହିଛି, ସେହିପରି ମୂର୍ତ୍ତି ପ୍ରତିଷ୍ଠା ନିମନ୍ତେ ମଧ୍ୟ କରିବେ । ଅନ୍ତର କେବଳ ଏତିକି ଯେ ଲିଙ୍ଗ ପ୍ରତିଷ୍ଠା ନିମନ୍ତେ ପ୍ରଣବମନ୍ତ୍ର ଉଚ୍ଚାରଣ କରିବାର ବିଧାନ ରହିଥିବା ବେଳେ ମୂର୍ତ୍ତିପ୍ରତିଷ୍ଠା ନିମନ୍ତେ ପଞ୍ଚାକ୍ଷର ମନ୍ତ୍ର ଉଚ୍ଚାରଣ କରିବାର ବିଧାନ ରହିଛି । ଯେଉଁଠି ଲିଙ୍ଗପ୍ରତିଷ୍ଠା

---

* ଓଁ ସଦ୍ୟୋଜାତଂ ପ୍ରପଦ୍ୟାମି ସଦ୍ୟୋଜାତାୟ ବୈ ନମୋ ନମଃ । ଭବେ ଭବେନାତିଭବେ ଭବସ୍ୱ ମାଂ ଭବୋଦ୍‌ଭବାୟ ନମଃ ॥

ଓଁ ବାମଦେବାୟ ନମୋ ଜ୍ୟେଷ୍ଠାୟ ନମଃ ଶ୍ରେଷ୍ଠାୟ ନମୋ ରୁଦ୍ରାୟ ନମଃ କାଳାୟ ନମଃ କଳବିକରଣାୟ ନମୋ ବଳବିକରଣାୟ ନମୋ ବଳାୟ ନମୋ ବଳପ୍ରମଥନାୟ ନମଃ ସର୍ବଭୂତଦମନାୟ ନମୋ ମନୋନ୍ମଥାୟ ନମଃ ।

ଓଁ ଅଘୋରେଭ୍ୟୋଽଥ ଘୋରେଭ୍ୟୋ ଘୋରଘୋରତରେଭ୍ୟଃ ସର୍ବେଭ୍ୟଃ ସର୍ବଶର୍ବେଭ୍ୟୋ ନମସ୍ତେଽସ୍ତୁ ରୁଦ୍ରରୂପେଭ୍ୟଃ ॥

ଓଁ ତତ୍ପୁରୁଷାୟ ବିଦ୍ମହେ ମହାଦେବାୟ ଧୀମହି ତନ୍ନୋ ରୁଦ୍ରଃ ପ୍ରଚୋଦୟାତ୍ ।

ଓଁ ଈଶାନଃ ସର୍ବବିଦ୍ୟାନାଂ ଈଶ୍ୱରଃ ସର୍ବଭୂତାନାଂ ବ୍ରହ୍ମାଧିପତିର୍ବ୍ରହ୍ମଣୋଽଧିପତିର୍ବ୍ରହ୍ମା ଶିବୋ ମେଽସ୍ତୁ ସଦା ଶିବୋମ୍ ॥

ହୋଇଛି, ସେଠାରେ ମଧ୍ୟ ଉତ୍ସବ ସମୟରେ ବାହାରକୁ ଶୋଭାଯାତ୍ରାରେ ବାହାରିବା ପାଇଁ ମୂର୍ତ୍ତି ରଖିବା ଆବଶ୍ୟକ । ମୂର୍ତ୍ତି ବାହାରୁ ମଧ୍ୟ ନିଆଯାଇପାରେ, କିନ୍ତୁ ତାହାକୁ ଗୁରୁଜନଙ୍କ ଠାରୁ ଗ୍ରହଣ କରିବେ । ବାହାରୁ କେବଳ ସେହି ମୂର୍ତ୍ତି ନେବା ଉପଯୁକ୍ତ, ଯେଉଁ ମୂର୍ତ୍ତି ସାଧୁପୁରୁଷଙ୍କ ଦ୍ୱାରା ପୂଜିତ ହେଉଥିବେ । ଏହିରୂପେ ଲିଙ୍ଗରେ ଓ ମୂର୍ତ୍ତିରେ କରାଯାଉଥିବା ଶିବପୂଜା ଶିବପଦ ପ୍ରଦାନ କରିଥାଏ । ସ୍ଥାବର ଓ ଜଙ୍ଗମ ଭେଦରେ ଲିଙ୍ଗ ମଧ୍ୟ ଦୁଇ ପ୍ରକାରର । ବୃକ୍ଷ, ଲତା ଇତ୍ୟାଦିକୁ ସ୍ଥାବର ଲିଙ୍ଗ କହନ୍ତି ଏବଂ କୃମି-କୀଟ ଆଦିଙ୍କୁ ଜଙ୍ଗମ ଲିଙ୍ଗ କହନ୍ତି । ସ୍ଥାବର ଲିଙ୍ଗକୁ ଜଳାଦି ଦେଇ ସେବା କରିବା ଉଚିତ ଏବଂ ଜଙ୍ଗମ ଲିଙ୍ଗକୁ ଆହାର ଓ ଜଳାଦି ଦେଇ ତୃପ୍ତ କରିବା ଉଚିତ । ସେହି ସ୍ଥାବର ଓ ଜଙ୍ଗମ ଜୀବଙ୍କୁ ସୁଖ ଦେବାରେ ଅନୁରକ୍ତ ହେବା ମଧ୍ୟ ଭଗବାନ ଶିବଙ୍କର ପୂଜନ ବୋଲି ବିଦ୍ୱାନ୍‌ମାନେ ଗ୍ରହଣ କରିଛନ୍ତି । (ପ୍ରକୃତରେ ଚରାଚର ଜୀବଙ୍କୁ ହିଁ ଭଗବାନ ଶିବଙ୍କର ପ୍ରତୀକ ମାନି ସମସ୍ତଙ୍କୁ ପୂଜା କରିବା ଆବଶ୍ୟକ ।)

ଉପରୋକ୍ତ ପ୍ରକାରେ ମହାଲିଙ୍ଗ ସ୍ଥାପନା କରି ବିବିଧ ଉପଚାର ଦ୍ୱାରା ପୂଜା କରିବେ । ନିଜ ଶକ୍ତି ଅନୁସାରେ ନିତ୍ୟ ପୂଜା କରିବା ଉଚିତ ଏବଂ ଦେବାଳୟ ନିକଟରେ ଧ୍ୱଜାରୋପଣ ଇତ୍ୟାଦି କରିବା ଉଚିତ । ଶିବଲିଙ୍ଗ ସାକ୍ଷାତ୍ ଶିବଙ୍କ ପଦ ପ୍ରଦାନ କରିଥାଏ । ଅଥବା ଚରଲିଙ୍ଗକୁ ଷୋଡ଼ଶ ଉପଚାର ଦ୍ୱାରା ଯଥୋଚିତ ରୀତିରେ କ୍ରମଶଃ ପୂଜା କଲେ ତାହା ମଧ୍ୟ ଶିବପଦ ପ୍ରଦାନ କରିଥାଏ । ଆବାହନ, ଆସନ, ଅର୍ଘ୍ୟ, ପାଦ୍ୟ, ପାଦ୍ୟାଙ୍ଗ ଆଚମନ, ଅଭ୍ୟଙ୍ଗସ୍ନାନ, ବସ୍ତ୍ର ଓ ଉପବୀତ, ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ, ତାମ୍ବୂଳ ଅର୍ପଣ, ନୀରାଜନ, ନମସ୍କାର ଓ ବିସର୍ଜନ— ଏହା ହେଲା ଷୋଡ଼ଶ ଉପଚାର । ଅଥବା ଅର୍ଘ୍ୟଠାରୁ ଆରମ୍ଭ କରି ନୈବେଦ୍ୟ ପର୍ଯ୍ୟନ୍ତ ବିଧିବତ୍ ପୂଜା କରିବେ । ଅଭିଷେକ ନୈବେଦ୍ୟ, ନମସ୍କାର ଓ ତର୍ପଣ—ଏଗୁଡ଼ିକୁ ଯଥାଶକ୍ତି ନିତ୍ୟ କରିବେ । ଏପରି ଶିବପୂଜନ ଶିବପଦ ପ୍ରାପ୍ତି କରାଇଥାଏ । ଅଥବା କୌଣସି ମନୁଷ୍ୟ ଦ୍ୱାରା ସ୍ଥାପିତ ଶିବଲିଙ୍ଗ, ଋଷିଙ୍କ ଦ୍ୱାରା ସ୍ଥାପିତ ଶିବଲିଙ୍ଗ, ଦେବତାଙ୍କ ଦ୍ୱାରା ସ୍ଥାପିତ ଶିବଲିଙ୍ଗ, ଆପେ ଆପେ ପ୍ରକଟ ହୋଇଥିବା ସ୍ୱୟମ୍ଭୂଲିଙ୍ଗ ଏବଂ ନିଜ ଦ୍ୱାରା ସ୍ଥାପିତ ନୂତନ ଶିବଲିଙ୍ଗକୁ ମଧ୍ୟ ଉପଚାର ସମର୍ପଣପୂର୍ବକ ଯଥାସମ୍ଭବ ପୂଜା କଲେ ବା ପୂଜନସାମଗ୍ରୀ ପ୍ରଦାନ କଲେ ମନୁଷ୍ୟ ଉପରୋକ୍ତ ଫଳ ପାଇଥାଏ । କ୍ରମଶଃ ପରିକ୍ରମା ଓ ନମସ୍କାର କଲେ ମଧ୍ୟ ଶିବଲିଙ୍ଗ ଶିବପଦ ପ୍ରଦାନ କରାଇଥାଏ । ଯଦି ନିୟମପୂର୍ବକ ଶିବଲିଙ୍ଗର ଦର୍ଶନ କରାଯାଏ, ତାହା ମଧ୍ୟ କଲ୍ୟାଣକାରୀ ହୋଇଥାଏ । ମାଟିରେ, ଅଟାରେ, ଗାଈ ଗୋବରରେ, ଫୁଲରେ, କନିଅର ଫୁଲରେ, ଗୁଡ଼ରେ, ଲହୁଣିରେ, ଭସ୍ମ ଅଥବା ଅନ୍ନରେ ମଧ୍ୟ ନିଜ ରୁଚି ଅନୁସାରେ ଶିବଲିଙ୍ଗ ନିର୍ମାଣ କରି ତଦନୁସାରେ ତାହାର ପୂଜା କରିପାରିବେ ଅଥବା ପ୍ରତିଦିନ ଦଶହଜାର ପ୍ରଣବମନ୍ତ୍ର ଜପ କରିବେ ଅଥବା ଉଭୟ ସନ୍ଧ୍ୟାରେ ହଜାରେ ଲେଖାଏଁ ପ୍ରଣବ ଜପ କରିବେ । ଏହି କ୍ରମ ମଧ୍ୟ ଶିବପଦ ପ୍ରାପ୍ତି କରାଇଥାଏ ବୋଲି ଜାଣିବା ଉଚିତ ।

ଜପକାଳରେ ମକାରାନ୍ତ ପ୍ରଣବ ଉଚ୍ଚାରଣ ମନକୁ ଶୁଦ୍ଧ କରିଥାଏ । ସମାଧିରେ ମାନସିକ ଜପର ବିଧାନ ରହିଛି, ଅନ୍ୟ ସବୁ ସମୟରେ ଉପାଂଶୁ* ଜପ କରିବା ଉଚିତ । ନାଦ ଓ ବିନ୍ଦୁରେ ଯୁକ୍ତ ଓଁକାର ଉଚ୍ଚାରଣକୁ ବିଦ୍ୱାନ୍ ପୁରୁଷ

* ମନ୍ତ୍ରାକ୍ଷରଗୁଡ଼ିକୁ ଅନ୍ୟ କେହି ଶୁଣି ନ ପାରିବା ଭଳି ଧୀର ଭାବରେ ଜପିବାକୁ ଉପାଂଶୁ ଜପ କହନ୍ତି ।

'ସମାନପ୍ରଣବ' କହିଥାନ୍ତି । ଯଦି ପ୍ରତିଦିନ ଆଦରପୂର୍ବକ ଦଶହଜାର ପଞ୍ଚାକ୍ଷର ମନ୍ତ୍ର ଜପ କରାଯାଏ ଅଥବା ଉଭୟ ସନ୍ଧ୍ୟାରେ ହଜାରେ ଲେଖାଏଁ ଜପ କରାଯାଏ, ତେବେ ତାହାକୁ ଶିବପଦ ପ୍ରାପ୍ତିକାରକ ବୋଲି ବୁଝିବା ଉଚିତ । ବ୍ରାହ୍ମଣଙ୍କ ପାଇଁ ଆରମ୍ଭରେ ପ୍ରଣବ ଯୁକ୍ତ କରି ପଞ୍ଚାକ୍ଷର ମନ୍ତ୍ର ଜପିବା ଉତ୍ତମ । କଳସ ଦ୍ୱାରା କରାଯାଇଥିବା ସ୍ନାନ, ମନ୍ତ୍ରଦୀକ୍ଷା, ମାତୃକାନ୍ୟାସ, ସତ୍ୟପୂତ (ଯାହାଙ୍କ ଅନ୍ତଃକରଣ ସତ୍ୟ ବଳରେ ପବିତ୍ର) ବ୍ରାହ୍ମଣ ତଥା ଜ୍ଞାନୀ ଗୁରୁ—ଏ ସମସ୍ତ ଉତ୍ତମ ବୋଲି ଧରାଯାଇଛି । ଦ୍ୱିଜଙ୍କ ପାଇଁ 'ନମଃ ଶିବାୟ' ଉଚ୍ଚାରଣ କରିବାର ବିଧାନ ରହିଛି । ଦ୍ୱିଜେତରଙ୍କ ପାଇଁ ଶେଷରେ 'ନମଃ' ଯୋଡ଼ିବାର ବିଧି ଅଛି ଅର୍ଥାତ୍ ସେମାନେ 'ଶିବାୟ ନମଃ' ଉଚ୍ଚାରଣ କରିବେ । ନାରୀମାନଙ୍କ ପାଇଁ କେଉଁଠି କେଉଁଠି ବିଧିପୂର୍ବକ ନମୋଽନ୍ତ ଉଚ୍ଚାରଣ କରିବାର ବିଧାନ ଅଛି, ଅର୍ଥାତ୍ ସେମାନେ ମଧ୍ୟ 'ଶିବାୟ ନମଃ' ଜପିବେ । କେତେକ ଋଷି ବ୍ରାହ୍ମଣୀଙ୍କ ପାଇଁ 'ନମଃ' ପୂର୍ବକ 'ଶିବାୟ' ଜପିବାକୁ ଅନୁମତି ଦିଅନ୍ତି ଅର୍ଥାତ୍ ସେମାନେ 'ନମଃ ଶିବାୟ' ଜପିବେ । ପଞ୍ଚାକ୍ଷରମନ୍ତ୍ରକୁ ପାଞ୍ଚ କୋଟି ଜପି ମନୁଷ୍ୟ ଭଗବାନ ସଦାଶିବଙ୍କ ସମାନ ହୋଇଯାଏ । ଏକକୋଟି, ଦୁଇକୋଟି, ତିନିକୋଟି ବା ଚ୍ଚାରିକୋଟି ଜପ କଲେ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ, ରୁଦ୍ର ଓ ମହେଶ୍ୱରଙ୍କ ପଦ ପ୍ରାପ୍ତ ହୋଇଥାଏ । ଅଥବା ମନ୍ତ୍ରରେ ଯେତିକି ଅକ୍ଷର ରହିଛି, ସେଗୁଡ଼ିକୁ ପୃଥକ୍ ପୃଥକ୍ କରି ଲକ୍ଷେ ଲେଖାଏଁ ଜପିବେ ଅଥବା ସମସ୍ତ ଅକ୍ଷରକୁ ଏକାଠି କଲେ ଯେତିକି ଅକ୍ଷର ହେବ, ସେତିକି ଲକ୍ଷ ଜପିବେ । ଏପରି ଜପ ଶିବପଦ ପ୍ରାପ୍ତିକାରକ ବୋଲି ବୁଝିବା ଉଚିତ । ଯଦି ହଜାରେ ଦିନ ଭିତରେ ପ୍ରତିଦିନ ହଜାରେ ଲେଖାଏଁ ଜପ କ୍ରମରେ ଦଶଲକ୍ଷ ପଞ୍ଚାକ୍ଷର ମନ୍ତ୍ର ଜପ ପୂର୍ଣ୍ଣ ହୋଇଯାଏ ଏବଂ ପ୍ରତିଦିନ ବ୍ରାହ୍ମଣଙ୍କୁ ଭୋଜନ ଦିଆଯାଏ, ତେବେ ସେହି ମନ୍ତ୍ରଦ୍ୱାରା ଅଭୀଷ୍ଟ କାର୍ଯ୍ୟ ସିଦ୍ଧ ହେବାକୁ ଲାଗେ ।

ବ୍ରାହ୍ମଣ ପ୍ରତିଦିନ ସକାଳୁ ଏକହଜାର ଆଠ ଥର ଗାୟତ୍ରୀ ଜପିବା ଉଚିତ । ଏପରି କଲେ କ୍ରମଶଃ ଶିବପଦ ପ୍ରାପ୍ତି ହୋଇଥାଏ । ବେଦମନ୍ତ୍ର ଓ ବୈଦିକ ସୂକ୍ତ ମଧ୍ୟ ନିୟମପୂର୍ବକ ଜପ କରିବା ଉଚିତ । ବେଦମାନଙ୍କର ପାରାୟଣ ମଧ୍ୟ ଶିବପଦ ପ୍ରାପ୍ତି କରାଇଥାଏ ବୋଲି ବୁଝିବା ଉଚିତ । ଅନ୍ୟାନ୍ୟ ମନ୍ତ୍ରକୁ ମଧ୍ୟ ଯେତିକି ଅକ୍ଷର ସେଥିରେ ଥାଏ, ସେତିକି ଲକ୍ଷ ଜପ କରିବା ଉଚିତ । ଏପରି ଯେ ଯଥାଶକ୍ତି ଜପ କରେ, ସେ କ୍ରମଶଃ ଶିବପଦ (ମୋକ୍ଷ) ପ୍ରାପ୍ତି କରିଥାଏ । ନିଜ ରୁଚି ଅନୁସାରେ କୌଣସି ମନ୍ତ୍ରକୁ ଆଦରି ନେଇ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତିଦିନ ଜପ କରିବା ଉଚିତ ଅଥବା 'ଓଁ' କୁ ପ୍ରତିଦିନ ଏକହଜାର ସଂଖ୍ୟାରେ ଜପିବା ଉଚିତ । ଏପରି କଲେ ଭଗବାନ ଶିବଙ୍କ ଆଜ୍ଞାରେ ସମସ୍ତ ମନୋରଥ ପୂର୍ଣ୍ଣ ହୋଇଥାଏ ।

ଯେଉଁ ବ୍ୟକ୍ତି ଶିବଙ୍କ ପାଇଁ ଫୁଲବଗିଚ୍ଚା ଇତ୍ୟାଦି ତିଆରି କରେ ଏବଂ ଶିବଙ୍କ ସେବାକାର୍ଯ୍ୟରୂପେ ମନ୍ଦିରରେ ଝାଡୁ ଦେବା ବା ପରିଷ୍କାର କରିବାର ବ୍ୟବସ୍ଥା କରେ, ସେ ଏହି ପୁଣ୍ୟକର୍ମରୁ ଶିବପଦ ପ୍ରାପ୍ତି କରିଥାଏ । ଶିବଙ୍କର କାଶୀ ଆଦି କ୍ଷେତ୍ରରେ ଭକ୍ତିପୂର୍ବକ ନିତ୍ୟ ନିବାସ କରିବା ଉଚିତ । ଏହା ଜଡ଼ ଚେତନ ସମସ୍ତଙ୍କୁ ଭୋଗ ଓ ମୋକ୍ଷ ପ୍ରଦାନ କରେ । ତେଣୁ ବିଦ୍ୱାନ୍ ବ୍ୟକ୍ତି ଶିବଙ୍କ କ୍ଷେତ୍ରରେ ଆମରଣ ନିବାସ କରିବା ଉଚିତ । ପୁଣ୍ୟକ୍ଷେତ୍ରରେ ସ୍ଥିତ କୂପ, ପୁଷ୍କରିଣୀ, ଜଳାଶୟ ଇତ୍ୟାଦିକୁ ଶିବଗଙ୍ଗା ବୋଲି ବୁଝିବା ଉଚିତ । ଏହା ଶିବଙ୍କର ବଚନ । ସେଠାରେ ସ୍ନାନ, ଦାନ ଓ ଜପ କରି ମନୁଷ୍ୟ ଶିବଙ୍କୁ

ପାଇଥାଏ । ତେଣୁ ମୃତ୍ୟୁପର୍ଯ୍ୟନ୍ତ ଶିବଙ୍କ କ୍ଷେତ୍ରର ଆଶ୍ରୟ ନେଇ ରହିବା ଉଚିତ । ଯେ ଶିବକ୍ଷେତ୍ରରେ ନିଜର କୌଣସି ମୃତ ସମ୍ପର୍କୀୟଙ୍କର ଦାହ, ଦଶାହ, ମାସିକ ଶ୍ରାଦ୍ଧ, ସପିଣ୍ଡୀକରଣ ବା ବାର୍ଷିକ ଶ୍ରାଦ୍ଧ କରେ ଅଥବା କେବେ ଶିବକ୍ଷେତ୍ରରେ ନିଜ ପିତୃପୁରୁଷଙ୍କୁ ପିଣ୍ଡଦାନ କରେ, ସେ ତତ୍‌କ୍ଷଣାତ୍ ସବୁ ପାପରୁ ମୁକ୍ତ ହୋଇଯାଏ ଏବଂ ଶେଷରେ ଶିବପଦ ପ୍ରାପ୍ତ ହୁଏ । ଅଥବା ଶିବକ୍ଷେତ୍ରରେ ସାତ, ପାଞ୍ଚ, ତିନି ବା ଏକ ରାତି ନିବାସ କଲେ ମଧ୍ୟ ମନୁଷ୍ୟକୁ କ୍ରମଶଃ ଶିବପଦ ପ୍ରାପ୍ତି ହୋଇଯାଏ ।

ଜଗତରେ ନିଜ ନିଜ ବର୍ଣ୍ଣ ଅନୁରୂପ ସଦାଚାର ପାଳନ କଲେ ମଧ୍ୟ ମନୁଷ୍ୟ ଶିବପଦ ଲାଭ କରେ । ସେ ବର୍ଣ୍ଣାନୁକୂଳ ଆଚରଣ ଦ୍ୱାରା ତଥା ଭକ୍ତିଭାବ ଦ୍ୱାରା ନିଜ ସତ୍କର୍ମର ଅତିଶୟ ଫଳ ପ୍ରାପ୍ତ ହୁଏ । କାମନାପୂର୍ବକ କରାଯାଇଥିବା କର୍ମର ଅଭୀଷ୍ଟ ଫଳକୁ ସେ ଖୁବ୍ ଶୀଘ୍ର ପ୍ରାପ୍ତ ହୁଏ । ନିଷ୍କାମଭାବରେ କରାଯାଇଥିବା ସମସ୍ତ କର୍ମ ତ ସାକ୍ଷାତ୍ ଶିବପଦ ପ୍ରଦାନ କରିଥାଏ ।

ଦିନର ତିନିଟି ବିଭାଗ ଅଛି । ପ୍ରାତଃ, ମଧ୍ୟାହ୍ନ ଓ ସାୟାହ୍ନ । ଏ ତିନି କାଳରେ କ୍ରମଶଃ ଗୋଟିଏ ଗୋଟିଏ ପ୍ରକାର କର୍ମ ସମ୍ପାଦନ କରାଯାଏ । ପ୍ରାତଃକାଳ ଶାସ୍ତ୍ରବିହିତ ନିତ୍ୟକର୍ମ ଅନୁଷ୍ଠାନ ପାଇଁ, ମଧ୍ୟାହ୍ନକାଳ ସକାମ କର୍ମ ପାଇଁ ଏବଂ ସାୟଂକାଳ ଶାନ୍ତିକର୍ମ ପାଇଁ ଉପଯୁକ୍ତ ବୋଲି ଜାଣିବା ଉଚିତ । ଏହିପରି ରାତ୍ରିର ମଧ୍ୟ ସମୟ ବିଭାଜନ ରହିଛି । ରାତିର ଚାରିପ୍ରହରରୁ ମଧ୍ୟବର୍ତ୍ତୀ ଦୁଇଟି ପ୍ରହରକୁ ନିଶୀଥ କାଳ କୁହାଯାଏ । ବିଶେଷତଃ ସେହି କାଳରେ କରାଯାଇଥିବା ଶିବଙ୍କ ପୂଜା ଅଭୀଷ୍ଟ ଫଳଦାୟକ ହୋଇଥାଏ । ଏହା ଜାଣି ଯେଉଁ ବ୍ୟକ୍ତି କର୍ମ କରେ ସେ ଯଥୋକ୍ତ ଫଳଭାଗୀ ହୋଇଥାଏ । ବିଶେଷତଃ କଳିଯୁଗରେ କର୍ମଦ୍ୱାରା ହିଁ ଫଳସିଦ୍ଧି ହୋଇଥାଏ । ନିଜ ନିଜ ଅଧିକାରାନୁସାରେ ଉପରୋକ୍ତ କୌଣସି କର୍ମ ଦ୍ୱାରା ଶିବାରାଧନା କରୁଥିବା ବ୍ୟକ୍ତି ଯଦି ସଦାଚାରୀ ହୋଇଥାଏ ଓ ପାପକୁ ଭୟ କରୁଥାଏ, ତେବେ ସେ ସେହିସବୁ କର୍ମର ପୂର୍ଣ୍ଣ ଫଳ ନିଶ୍ଚୟ ଲାଭ କରେ ।

ଋଷିମାନେ କହିଲେ—ସୂତ ମହାଭାଗ ! କେଉଁ କେଉଁ ପୁଣ୍ୟକ୍ଷେତ୍ରର ଆଶ୍ରୟ ନେଇ ସମସ୍ତ ନରନାରୀ ଶିବପଦ ପ୍ରାପ୍ତ ହୋଇ ପାରିବେ, ତାହା ଆମକୁ ସଂକ୍ଷେପରେ କୁହନ୍ତୁ ।

(ଅଧ୍ୟାୟ ୧୧)



## ମୋକ୍ଷଦାୟକ ପୁଣ୍ୟକ୍ଷେତ୍ରମାନଙ୍କର ବର୍ଣ୍ଣନା, କାଳବିଶେଷରେ ବିଭିନ୍ନ ନଦୀମାନଙ୍କ ଜଳରେ ସ୍ନାନ କରିବାର ଉତ୍ତମ ଫଳ ତଥା ତୀର୍ଥକ୍ଷେତ୍ରରେ ପାପରୁ ଦୂରେଇ ରହିବାକୁ ଚେତାବନୀ

ସୂତ କହୁଛନ୍ତି—ହେ ବିଦ୍ୱାନ୍ ଏବଂ ବୁଦ୍ଧିମାନ୍ ମହର୍ଷିଗଣ ! ମୋକ୍ଷଦାୟକ ଶିବକ୍ଷେତ୍ରର ବର୍ଣ୍ଣନା ଶୁଣ । ଏହା ପରେ ମୁଁ ଲୋକରକ୍ଷଣ ପାଇଁ ଶିବସମ୍ବନ୍ଧୀୟ ଆଗମ ବିଷୟରେ ବର୍ଣ୍ଣନା କରିବି । ପର୍ବତ, ବନ ଓ କାନନ ସମେତ ଏହି ପୃଥିବୀର ବିସ୍ତାର ହେଉଛି ପଚାଶ କୋଟି ଯୋଜନ । ଭଗବାନ ଶିବଙ୍କ ଆଜ୍ଞାରେ ପୃଥିବୀ ସମସ୍ତ ଜଗତକୁ ଧାରଣ କରିଛି । ଭଗବାନ ଶିବ ଭୂତଳରେ ବିଭିନ୍ନ ସ୍ଥାନରେ ସେଠାକାର ନିବାସୀଙ୍କୁ କୃପାପୂର୍ବକ ମୋକ୍ଷ ଦେବା ପାଇଁ ଶିବକ୍ଷେତ୍ର ସୃଷ୍ଟି କରିଛନ୍ତି । କେତେକ କ୍ଷେତ୍ରକୁ ଦେବତା ଓ ଋଷିମାନେ ଆପଣା ବାସସ୍ଥାନ କରି ଅନୁଗୃହୀତ

କରିଛନ୍ତି । ସେଥିପାଇଁ ସେହି ସ୍ଥାନରେ ତୀର୍ଥତ୍ୱ ପ୍ରକଟ ହୋଇଯାଇଛି । ଆଉ କେତେକ କ୍ଷେତ୍ର ଜଗତର ରକ୍ଷଣ ପାଇଁ ସ୍ୱୟଂ ଆପେ ଆପେ ଉଦ୍ଭୁତ ହୋଇଛନ୍ତି । ତୀର୍ଥ ଓ କ୍ଷେତ୍ରକୁ ଗଲେ ମନୁଷ୍ୟ ସେଠାରେ ସ୍ନାନ, ଦାନ ଓ ଜପ ଇତ୍ୟାଦି କରିବା ଉଚିତ; ଅନ୍ୟଥା ସେ ରୋଗ, ଦରିଦ୍ରତା ଓ ମୂକତ୍ୱ ଆଦି ଦୋଷରେ ଭାଗୀ ହୋଇଥାଏ । ଯେଉଁ ମନୁଷ୍ୟ ଭାରତବର୍ଷ ଭିତରେ ମୃତ୍ୟୁବରଣ କରେ, ସେ ତା'ର ପୁଣ୍ୟ ବଳରେ ବ୍ରହ୍ମଲୋକରେ ବାସ କରି ପୁଣ୍ୟକ୍ଷୟ ହେବା ପରେ ପୁନଃ ମନୁଷ୍ୟଜନ୍ମ ପାଏ । (କିନ୍ତୁ ପାପୀ ମନୁଷ୍ୟ ପାପ କରି ଦୁର୍ଗତିରେ ପଡ଼େ ।) ବ୍ରାହ୍ମଣଗଣ ! ପୁଣ୍ୟକ୍ଷେତ୍ରରେ ପାପ କର୍ମ କଲେ ପାପ ଆହୁରି ଦୃଢ଼ ହୋଇଥାଏ । ତେଣୁ ପୁଣ୍ୟକ୍ଷେତ୍ରରେ ବାସ କଲାବେଳେ ସୂକ୍ଷ୍ମାତିସୂକ୍ଷ୍ମ ଅଥବା ସାମାନ୍ୟ ବି ପାପ ନ କରିବା ଉଚିତ ।*

ସିନ୍ଧୁ ଓ ଶତଦ୍ରୁ (ସତଲଜ) ନଦୀର ତଟରେ ବହୁତ ପୁଣ୍ୟକ୍ଷେତ୍ର ଅଛି । ସରସ୍ୱତୀ ନଦୀ ପରମ ପବିତ୍ର ଓ ଷାଠିଏ ମୁଖଯୁକ୍ତ ଅର୍ଥାତ୍ ତାହାର ଷାଠିଏ ଧାରା ଅଛି । ବିଦ୍ୱାନ୍ ଲୋକେ ସେହି ଧାରାମାନଙ୍କ ତଟରେ ନିବାସ କଲେ ସେମାନେ କ୍ରମଶଃ ବ୍ରହ୍ମପଦକୁ ପ୍ରାପ୍ତ ହୁଅନ୍ତି । ହିମାଳୟରୁ ବାହାରିଥିବା ପୁଣ୍ୟସଲୀଳା ଗଙ୍ଗା ଶହେ ମୁଖଯୁକ୍ତ । ତାହାର ତଟରେ କାଶୀ ପ୍ରୟାଗ ଆଦି ଅନେକ ପୁଣ୍ୟକ୍ଷେତ୍ର ଅଛି । ମକରରାଶିକୁ ସୂର୍ଯ୍ୟ ଗଲେ ସେଠାକାର ଗଙ୍ଗାତଟବର୍ତ୍ତୀ ଭୂମି ଆହୁରି ଅଧିକ ପ୍ରଶସ୍ତ ଓ ପୁଣ୍ୟଦାୟକ ହୋଇଯାଏ । ଶୋଣଭଦ୍ର ନଦର ଦଶଟି ଧାରା ଅଛି । ବୃହସ୍ପତି ମକରରାଶିକୁ ଆସିଲେ ତାହା ଅତ୍ୟନ୍ତ ପବିତ୍ର ଓ ଅଭୀଷ୍ଟ ଫଳଦାୟୀ ହୋଇଥାଏ । ସେତେବେଳେ ସେଠାରେ ସ୍ନାନ ଓ ଉପବାସ କଲେ ବିନାୟକପଦ ପ୍ରାପ୍ତି ହୁଏ । ପୁଣ୍ୟସଲୀଳା ମହାନଦୀ ନର୍ମଦାର ଚବିଶଟି ମୁଖ (ସ୍ରୋତ) ରହିଛି । ସେଥିରେ ସ୍ନାନ ବା ତାହାର ତଟରେ ନିବାସ କଲେ ମନୁଷ୍ୟକୁ ବୈଷ୍ଣବପଦ ପ୍ରାପ୍ତି ହୁଏ । ତମସାର ବାରଟି ତଥା ରେବାର ଦଶଟି ମୁଖ ଅଛି । ପରମ ପୁଣ୍ୟମୟୀ ଗୋଦାବରୀର ଏକୋଇଶଟି ମୁଖ ଅଛି । ତାହା ବ୍ରହ୍ମହତ୍ୟା ଓ ଗୋହତ୍ୟା ପାପକୁ ମଧ୍ୟ ନାଶ କରିଥାଏ ଏବଂ ରୁଦ୍ରଲୋକ ପ୍ରଦାନ କରାଇଥାଏ । କୃଷ୍ଣବେଣୀ ନଦୀର ଜଳ ଅତି ପବିତ୍ର । ତାହା ସମସ୍ତ ପାପକୁ ଧୋଇ ଦେଇଥାଏ । ତାହାର ଅଠରଟି ମୁଖ ଅଛି ବୋଲି କୁହାଯାଇଛି । ତାହା ବିଷ୍ଣୁଲୋକ ପ୍ରଦାନ କରାଇଥାଏ । ତୁଙ୍ଗଭଦ୍ରାର ଦଶଟି ମୁଖ ଅଛି । ତାହା ବ୍ରହ୍ମଲୋକ ପ୍ରଦାୟକ । ପୁଣ୍ୟସଲୀଳା ସୁବର୍ଣ୍ଣ-ମୁଖରୀର ନଅଟି ମୁଖ ଅଛି ବୋଲି କୁହାଯାଏ । ବ୍ରହ୍ମଲୋକରୁ ଫେରନ୍ତା ପ୍ରାଣୀ ତାହାରି କୂଳରେ ଜନ୍ମଲାଭ କରିଥାନ୍ତି । ସରସ୍ୱତୀ ନଦୀ, ପମ୍ପା ସରୋବର, କନ୍ୟାକୁମାରୀ ଅନ୍ତରୀପ ଓ ଶୁଭକାରକ ଶ୍ୱେତ ନଦୀ—ଏସବୁ ପୁଣ୍ୟକ୍ଷେତ୍ର ଅଟନ୍ତି । ଏମାନଙ୍କ ତଟରେ ନିବାସ କଲେ ଇନ୍ଦ୍ରଲୋକ ପ୍ରାପ୍ତ ହୁଏ । ସହ୍ୟ ପର୍ବତରୁ ବାହାରିଥିବା ମହାନଦୀ କାବେରୀ ପରମ ପୁଣ୍ୟମୟୀ । ତାହାର ସତାଇଶଟି ମୁଖ ଥିବା କୁହାଯାଏ । ତାହା ସମସ୍ତ ଅଭୀଷ୍ଟ ବସ୍ତୁ ପ୍ରଦାନକାରିଣୀ । ତାହାର ତଟ ସ୍ୱର୍ଗଲୋକ ପ୍ରଦାୟକ ତଥା ବ୍ରହ୍ମା ଓ ବିଷ୍ଣୁଙ୍କ ପଦ ପ୍ରଦାୟକ । କାବେରୀର ଯେଉଁ ତଟ ଶୈବକ୍ଷେତ୍ରର ଅନ୍ତର୍ଗତ, ତାହା ଅଭୀଷ୍ଟ ଫଳ ଦେବା ସହିତ ଶିବଲୋକ ପ୍ରଦାନ କରାଇଥାଏ ।

ସୂର୍ଯ୍ୟ ଓ ବୃହସ୍ପତି ମେଷରାଶିକୁ ଆସିଥିବା ସମୟରେ ନୈମିଷାରଣ୍ୟ ତଥା ବଦରିକାଶ୍ରମରେ ସ୍ନାନ କଲେ ସେହି ସ୍ନାନ-ପୂଜନ ଆଦି ବ୍ରହ୍ମଲୋକ

* କ୍ଷେତ୍ରେ ପାପସ୍ୟ କରଣଂ ଦୃଢଂ ଭବତି ଭୂସୁରାଃ । ପୁଣ୍ୟକ୍ଷେତ୍ରେ ନିବାସେ ହି ପାପମଣ୍ୱପି ନାଚରେତ୍ ॥
(ଶି. ପୁ. ବି. ସଂ ୧୨ । ୭)

ପ୍ରଦାୟକ ହୁଏ ବୋଲି ଜାଣ । ସିଂହ ଓ କର୍କଟ ରାଶିକୁ ସୂର୍ଯ୍ୟ ଆସିଯିବା ପରେ ସିନ୍ଧୁ ନଦୀରେ କରାଯାଇଥିବା ସ୍ନାନ ଓ କେଦାର ତୀର୍ଥର ଜଳପାନ ଜ୍ଞାନଦାୟକ ବୋଲି ଧରାଯାଇଥାଏ । ବୃହସ୍ପତି ସିଂହ ରାଶିରେ ଥିଲା ବେଳେ ସିଂହସଂକ୍ରାନ୍ତିଯୁକ୍ତ ଭାଦ୍ରମାସରେ ଯଦି ଗୋଦାବରୀରେ ସ୍ନାନ କରାଯାଏ, ତେବେ ତାହା ଶିବଲୋକ ପ୍ରାପ୍ତି କରାଇଥାଏ । ଏହା ପୂର୍ବକାଳରେ ସ୍ୱୟଂ ଭଗବାନ ଶିବ କହିଥିଲେ । ସୂର୍ଯ୍ୟ ଓ ବୃହସ୍ପତି (ରବି ଓ ଗୁରୁ) କନ୍ୟା ରାଶିରେ ଥିବାବେଳେ ଯମୁନା ଓ ଶୋଣଭଦ୍ରରେ ସ୍ନାନ କରିବା ଉଚିତ । ସେହି ସ୍ନାନ ଧର୍ମରାଜଙ୍କ ଓ ଗଣେଶଙ୍କ ଲୋକରେ ମହାନ୍ ଭୋଗ ପ୍ରଦାନ କରାଇଥାଏ—ଏହା ମହର୍ଷିମାନଙ୍କର ଧାରଣା । ସୂର୍ଯ୍ୟ ଓ ବୃହସ୍ପତି ତୁଳାରାଶିରେ ଥିବାବେଳେ କାବେରୀରେ ସ୍ନାନ କଲେ ସେହି ସ୍ନାନ ବିଷ୍ଣୁଙ୍କ ବଚନର ମହିମାରେ ସମସ୍ତ ଅଭୀଷ୍ଟ ବସ୍ତୁ ପ୍ରଦାନ କରିଥାଏ ବୋଲି କଥିତ ଅଛି । ସୂର୍ଯ୍ୟ ଓ ବୃହସ୍ପତି ବିଛା ରାଶିରେ ଥିବାବେଳେ ମାର୍ଗଶିର ମାସରେ ନର୍ମଦାରେ ସ୍ନାନ କଲେ ବିଷ୍ଣୁଲୋକ ପ୍ରାପ୍ତି ହୋଇଥାଏ । ରବି ଓ ଗୁରୁ ଧନୁରାଶିରେ ସ୍ଥିତ ହେଲାବେଳେ ସୁବର୍ଣ୍ଣମୁଖରୀ ନଦୀରେ ସ୍ନାନ କଲେ ତାହା ଶିବଲୋକ ପ୍ରଦାନକାରୀ ହୋଇଥାଏ ବୋଲି ବ୍ରହ୍ମା କହିଛନ୍ତି । ସୂର୍ଯ୍ୟ ଓ ବୃହସ୍ପତି ମକର ରାଶିରେ ଥିବା ବେଳେ ମାଘ ମାସରେ ଗଙ୍ଗାରେ ସ୍ନାନ କରିବା ଉଚିତ । ବ୍ରହ୍ମାଙ୍କ ବଚନାନୁସାରେ ସେହି ସ୍ନାନ ଶିବଲୋକ ପ୍ରାପ୍ତି କରାଇଥାଏ । ଶିବଲୋକ ପରେ ବ୍ରହ୍ମା ଓ ବିଷ୍ଣୁଙ୍କ ସ୍ଥାନରେ ସୁଖ ଭୋଗ କରି ଶେଷରେ ବ୍ୟକ୍ତିକୁ ଜ୍ଞାନପ୍ରାପ୍ତି ହୋଇଥାଏ । ମାଘ ମାସରେ ତଥା ସୂର୍ଯ୍ୟ କୁମ୍ଭରାଶିରେ ଥିଲା ବେଳେ ଫାଲ୍‌ଗୁନ ମାସରେ ଗଙ୍ଗାତଟରେ କରାଯାଇଥିବା ଶ୍ରାଦ୍ଧ, ପିଣ୍ଡଦାନ ଅଥବା ତିଳୋଦକ ଦାନ ପିତାଙ୍କ ଓ ଅଜାଙ୍କ କୁଳର ଅନେକ ପିଢ଼ିକୁ ତାରି ଦିଏ । ସୂର୍ଯ୍ୟ ଓ ବୃହସ୍ପତି ମୀନ ରାଶିରେ ଥିଲା ବେଳେ କୃଷ୍ଣବେଣୀ ନଦୀରେ କରାଯାଇଥିବା ସ୍ନାନକୁ ଋଷିମାନେ ପ୍ରଶଂସା କରିଛନ୍ତି । ଉପରୋକ୍ତ ମାସମାନଙ୍କରେ ଯଥୋକ୍ତ ତୀର୍ଥମାନଙ୍କରେ କରାଯାଇଥିବା ସ୍ନାନ ଇନ୍ଦ୍ରପଦ ପ୍ରାପ୍ତି କରାଇଥାଏ । ବିଦ୍ୱାନ୍ ପୁରୁଷ ଗଙ୍ଗା ଅଥବା କାବେରୀ ନଦୀର ଆଶ୍ରୟ ନେଇ ତୀର୍ଥବାସ କରିବା ଉଚିତ । ଏପରି କଲେ ତତ୍କାଳ ଘଟିତ ହୋଇଥିବା ପାପ ନିଶ୍ଚୟ ନଷ୍ଟ ହୋଇଯାଏ ।

ଅନେକ କ୍ଷେତ୍ର ରୁଦ୍ରଲୋକ ପ୍ରଦାନ କରାଇଥାନ୍ତି । ତାମ୍ରପର୍ଣ୍ଣୀ ଓ ବେଗବତୀ ନଦୀ ବ୍ରହ୍ମଲୋକପ୍ରାପ୍ତିରୂପୀ ଫଳ ପ୍ରଦାନ କରନ୍ତି । ଏ ଦୁହିଙ୍କ ତଟରେ ଅନେକ ସ୍ୱର୍ଗଦାୟକ କ୍ଷେତ୍ର ଅଛି । ଏ ଦୁହିଙ୍କ ମଧ୍ୟଭାଗରେ ବହୁତ ପୁଣ୍ୟପ୍ରଦ କ୍ଷେତ୍ର ରହିଛି । ସେଠାରେ ନିବାସକାରୀ ବିଦ୍ୱାନ୍ ବ୍ୟକ୍ତି ଯଥୋକ୍ତ ଫଳର ଭାଗୀ ହୋଇଥାଏ । ସଦାଗ୍ରହ, ଉତ୍ତମ ବୃତ୍ତି ତଥା ସଦ୍‌ଭାବନା ସହିତ ମନରେ ଦୟାଭାବ ରଖି ବିଦ୍ୱାନ୍ ବ୍ୟକ୍ତି ତୀର୍ଥରେ ନିବାସ କରିବା ଉଚିତ, ନଚେତ୍ ତୀର୍ଥବାସର ଫଳ ମିଳେ ନାହିଁ । ପୁଣ୍ୟକ୍ଷେତ୍ରରେ କରାଯାଇଥିବା ଛୋଟିଆ ପୁଣ୍ୟ ମଧ୍ୟ ଅନେକ ପ୍ରକାରେ ବୃଦ୍ଧିପ୍ରାପ୍ତ ହୋଇଥାଏ ଏବଂ ସେଠାରେ କରାଯାଇଥିବା ଛୋଟିଆ ପାପ ମଧ୍ୟ ବହୁତ ବଡ଼ ହୋଇଯାଇଥାଏ । ଯଦି କେହି ପୁଣ୍ୟକ୍ଷେତ୍ରରେ ରହି ଜୀବନ ବିତାଇବାକୁ ଇଚ୍ଛା କରେ, ତେବେ ସେହି ପୁଣ୍ୟ-ସଂକଳ୍ପମାତ୍ରକେ ହିଁ ତା'ର ପୂର୍ବର ସମସ୍ତ ପାପ ନଷ୍ଟ ହୋଇଯିବ; କାରଣ ପୁଣ୍ୟକୁ ଐଶ୍ୱର୍ଯ୍ୟଦାୟକ କୁହାଯାଇଛି । ବ୍ରାହ୍ମଣଗଣ ! ତୀର୍ଥବାସନାଜନିତ ପୁଣ୍ୟ କାୟିକ, ବାଚିକ ଓ ମାନସିକ ସମସ୍ତ ପାପକୁ ନଷ୍ଟ କରିଦିଏ । ତୀର୍ଥରେ କରାଯାଇଥିବା ମାନସିକ ପାପ ବଜ୍ରଲେପ ହୋଇଯାଏ । ତାହା ଅନେକ କଳ୍ପ

ପର୍ଯ୍ୟନ୍ତ ପିଛା ଛାଡ଼େ ନାହିଁ ।* ସେପରି ପାପ କେବଳ ଧ୍ୟାନ ଦ୍ୱାରା ନଷ୍ଟ ହୋଇଥାଏ, ଅନ୍ୟ କୌଣସି ଉପାୟରେ ନୁହେଁ । ବାଚିକ ପାପ ଜପ ଦ୍ୱାରା ଓ କାୟିକ ପାପ ଶରୀରକୁ ଶୁଖାଇବା ପରି କଠୋର ତପସ୍ୟା ଦ୍ୱାରା ନଷ୍ଟ ହୋଇଥାଏ । ତେଣୁ ସୁଖ ଚାହୁଁଥିବା ବ୍ୟକ୍ତି ଦେବତାଙ୍କୁ ପୂଜା କରିବା ଓ ବ୍ରାହ୍ମଣଙ୍କୁ ଦାନ ଦେବା ସହିତ ପାପରୁ ଦୂରେଇ ରହି ତୀର୍ଥବାସ କରିବା ଉଚିତ । (ଅଧ୍ୟାୟ ୧୨)

★★★

## ସଦାଚାର, ଶୌଚାଚାର, ସ୍ନାନ, ଭସ୍ମଧାରଣ, ସଂଧ୍ୟାବନ୍ଦନ, ପ୍ରଣବ-ଜପ, ଗାୟତ୍ରୀ-ଜପ, ଦାନ, ନ୍ୟାୟ୍ୟ ଉପାୟରେ ଧନ ଉପାର୍ଜନ ଏବଂ ଅଗ୍ନିହୋତ୍ରାଦିର ବିଧି ଓ ମହିମା

ଋଷିମାନେ କହିଲେ—ସୂତ ମହାଭାଗ ! ଆପଣ ଆମକୁ ଆଗ ସଦାଚାର ବିଷୟରେ କୁହନ୍ତୁ, ଯଦ୍ଦ୍ୱାରା ବିଦ୍ୱାନ୍ ପୁରୁଷ ପୁଣ୍ୟଲୋକ ଉପରେ ଆଧିପତ୍ୟ ଲାଭ କରେ । ସ୍ୱର୍ଗ-ପ୍ରଦାୟକ ଧର୍ମମୟ ଆଚାର ଓ ନରକରେ ଯନ୍ତ୍ରଣା-ପ୍ରଦାୟକ ଅଧର୍ମମୟ ଆଚାର ବିଷୟରେ ମଧ୍ୟ ବର୍ଣ୍ଣନା କରନ୍ତୁ ।

ସୂତ କହିଲେ—ସଦାଚାର ପାଳନ କରୁଥିବା ବିଦ୍ୱାନ୍ ବ୍ରାହ୍ମଣ ହିଁ ପ୍ରକୃତରେ 'ବ୍ରାହ୍ମଣ' ନାମ ଧାରଣ କରିବାର ଅଧିକାରୀ । ଯେ କେବଳ ବେଦୋକ୍ତ ଆଚାର ପାଳନ କରିଥାଏ ଓ ବେଦ ଅଭ୍ୟାସ କରିଥାଏ, ସେପରି ବ୍ରାହ୍ମଣଙ୍କର 'ବିପ୍ର' ସଂଜ୍ଞା ହୁଏ । ସଦାଚାର, ବେଦାଚାର ଓ ବିଦ୍ୟା ଏଥିମଧ୍ୟରୁ କୌଣସି ଗୋଟିଏ ଗୋଟିଏ ଗୁଣରେ ଯୁକ୍ତ ହୋଇଥିଲେ ତାଙ୍କୁ 'ଦ୍ୱିଜ' କହନ୍ତି । ଯାହାଠାରେ ସ୍ୱଳ୍ପମାତ୍ରାରେ ହିଁ ଆଚାରପାଳନ ପରିଲକ୍ଷିତ ହୁଏ, ଯେ ବେଦାଧ୍ୟୟନ ଖବ୍ କମ୍ କରିଥାଏ ଏବଂ ଯେ ରାଜାଙ୍କର ସେବକ (ପୁରୋହିତ, ମନ୍ତ୍ରୀ ଆଦି ହୋଇଥାଏ), ତାକୁ 'କ୍ଷତ୍ରିୟ ବ୍ରାହ୍ମଣ' କୁହଯାଏ । ଯେଉଁ ବ୍ରାହ୍ମଣ କୃଷି ଓ ବାଣିଜ୍ୟ କରେ ଏବଂ କିଛି କିଛି ବ୍ରାହ୍ମଣୋଚିତ ଆଚାର ବି ପାଳନ କରେ, ସେ ହେଲା 'ବୈଶ୍ୟ ବ୍ରାହ୍ମଣ' । ଯେଉଁ ବ୍ରାହ୍ମଣ ନିଜେ ଜମି ହଳ କରେ, ତାକୁ 'ଶୂଦ୍ର ବ୍ରାହ୍ମଣ' କୁହାଯାଏ । ଯେ ଅନ୍ୟର ଦୋଷଦର୍ଶୀ ଓ ପରଦ୍ରୋହୀ, ତାକୁ 'ଚଣ୍ଡାଳ ଦ୍ୱିଜ' କହନ୍ତି । ଏହିପରି କ୍ଷତ୍ରିୟମାନଙ୍କ ମଧ୍ୟରେ ବି ଯେ ପୃଥିବୀ ପାଳନ କରେ, ସେ 'ରାଜା' ଅଟେ । ଅନ୍ୟମାନେ ରାଜତ୍ୱହୀନ କ୍ଷତ୍ରିୟ ବୋଲି ଧରାଯାଆନ୍ତି । ବୈଶ୍ୟମାନଙ୍କ ମଧ୍ୟରେ ବି ଯେ ଧାନ୍ୟାଦି ବସ୍ତୁର କ୍ରୟ-ବିକ୍ରୟ କରେ, ସେ 'ବୈଶ୍ୟ' ପଦବାଚ୍ୟ । ଅନ୍ୟମାନଙ୍କୁ 'ବଣିକ୍' କୁହାଯାଏ । ଯେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କ ସେବାରେ ରତ ରହେ, ସେ ହିଁ ବାସ୍ତବରେ 'ଶୂଦ୍ର' ପଦବାଚ୍ୟ । ଯେଉଁ ଶୂଦ୍ର ହଳ କରେ, ତାହାକୁ 'ବୃଷଳ' ବୋଲି ବୁଝିବା ଉଚିତ । ସେବା, ଶିଳ୍ପ ଓ କର୍ଷଣ ଛଡ଼ା ଅନ୍ୟ ବୃତ୍ତିର ଆଶ୍ରୟ ନେଇଥିବା ଶୂଦ୍ର 'ଦସ୍ୟୁ' ପଦବାଚ୍ୟ । ଏ ସମସ୍ତ ବର୍ଣ୍ଣର ମନୁଷ୍ୟ ବ୍ରାହ୍ମ ମୁହୂର୍ତ୍ତରୁ ଉଠି ପୂର୍ବାଭିମୁଖ ହୋଇ ସର୍ବପ୍ରଥମେ ଦେବଗଣଙ୍କୁ, ଧର୍ମକୁ, ଅର୍ଥକୁ ଓ ଅର୍ଥପ୍ରାପ୍ତି ନିମନ୍ତେ ସହିବାକୁ ପଡୁଥିବା କ୍ଲେଶକୁ ଏବଂ ଆୟ ଓ ବ୍ୟୟକୁ ମଧ୍ୟ ଚିନ୍ତା କରିବା ଉଚିତ ।

---

* ପୁଣ୍ୟକ୍ଷେତ୍ରେ କୃତଂ ପୁଣ୍ୟଂ ବହୁଧା ଋଦ୍ଧିମୃଚ୍ଛତି । ପୁଣ୍ୟକ୍ଷେତ୍ରେ କୃତଂ ପାପଂ ମହଦଣ୍ୱପି ଜାୟତେ ॥
ତତ୍କାଳଂ ଜୀବନାର୍ଥଂ ଚେଦ୍ ପୁଣ୍ୟେନ କ୍ଷୟମେଷ୍ୟତି । ପୁଣ୍ୟମୈଶ୍ୱର୍ଯ୍ୟଦଂ ପ୍ରାହୁଃ କାୟିକଂ ବାଚିକଂ ତଥା ॥
ମାନସଂ ଚ ତଥା ପାପଂ ତାଦୃଶଂ ନାଶୟେଦ୍ ଦ୍ୱିଜାଃ । ମାନସଂ ବଜ୍ରଲେପଂ ତୁ କଳ୍ପକଳ୍ପାନୁଗଂ ତଥା ॥
(ଶିବପୁରାଣ, ବିଦ୍ୟେଶ୍ୱର ସଂ. ୧୩ । ୩୬–୩୮)

ରାତିର ଅନ୍ତିମ ପ୍ରହରକୁ ଉଷାକାଳ ଧରାଯାଇଛି । ସେହି ଅନ୍ତିମ ପ୍ରହରର ମଧ୍ୟଭାଗକୁ ସନ୍ଧିକାଳ କହନ୍ତି । ଉକ୍ତ ସନ୍ଧିକାଳରେ ଦ୍ୱିଜମାନେ ମଳମୂତ୍ର ତ୍ୟାଗ କରିବା ଉଚିତ । ଘରଠାରୁ ଦୂରକୁ ଯାଇ ଉପରୁ ଉପରୁ ଶରୀରକୁ ଢାଙ୍କି ରଖି ଦିନରେ ଉତ୍ତରାଭିମୁଖ ହୋଇ ବସି ମଳମୂତ୍ର ତ୍ୟାଗ କରିବା ଉଚିତ । ଯଦି ଉତ୍ତରାଭିମୁଖ ହୋଇ ବସିବାରେ କିଛି ଅସୁବିଧା ଥିବ, ତେବେ ଅନ୍ୟ ଦିଗକୁ ମୁଖ କରି ବସିବେ । ଜଳ, ଅଗ୍ନି, ବ୍ରାହ୍ମଣାଦି ତଥା ଦେବତାଙ୍କ ସମ୍ମୁଖରେ ବସିବେ ନାହିଁ । ମଳତ୍ୟାଗ କରି ଉଠିବା ପରେ ଆଉ ସେହି ମଳକୁ ଗ୍ରହିଁବେ ନାହିଁ । ତା'ପରେ ଜଳାଶୟରୁ ଅଣାଯାଇଥିବା ପାଣିରେ ମଳଦ୍ୱାର ଧୋଇବେ ଅଥବା ଦେବତା, ପିତୃପୁରୁଷ ଓ ଋଷିଙ୍କ ତୀର୍ଥରେ ନ ଓହ୍ଲାଇ ବାହାରୁ ଯେଉଁ ଜଳ ମିଳିଥାଏ, ସେହି ଜଳରେ ପବିତ୍ର ହେବେ । ଲିଙ୍ଗରେ କାଙ୍କଡ଼ ଫଳ ପରିମାଣର ମାଟି ଲଗାଇ ଧୋଇବେ, ମାତ୍ର ମଳଦ୍ୱାରରେ ଲଗାଇବା ପାଇଁ ପୋଷେ ମାଟି ଆବଶ୍ୟକ ହୋଇଥାଏ । ଲିଙ୍ଗ ଓ ମଳଦ୍ୱାର ଶୁଦ୍ଧି ପରେ ସେଠାରୁ ଉଠି ଅନ୍ୟତ୍ର ଯିବେ ଏବଂ ହାତ ଗୋଡ଼ ଧୋଇ ଆଠ ଥର କୁଳି କରିବେ । କୌଣସି ବୃକ୍ଷର ପତ୍ରରେ ଅଥବା ତାହାର କାଠିରେ ଜଳାଶୟ ବାହାରେ ଦାନ୍ତ ଘଷିବେ । ସେତେବେଳେ ତର୍ଜନୀ ଆଙ୍ଗୁଳି ପ୍ରୟୋଗ କରିବେ ନାହିଁ । ଏହା ହେଲା ଦନ୍ତଶୁଦ୍ଧିର ବିଧାନ । ତା'ପରେ ଜଳ-ସମ୍ବନ୍ଧିତ ଦେବତାମାନଙ୍କୁ ନମସ୍କାର କରି ମନ୍ତ୍ରପାଠପୂର୍ବକ ଜଳାଶୟରେ ସ୍ନାନ କରିବେ । ଯଦି ବେକେ ବା ଅଣ୍ଟାଏ ପାଣିରେ ଛିଡ଼ା ହେବାର ସାମର୍ଥ୍ୟ ନ ଥିବ, ତେବେ ଆଣ୍ଠୁଏ ପାଣିରେ ଛିଡ଼ା ହୋଇ ନିଜ ଉପରେ ଜଳ ସିଞ୍ଚି ମନ୍ତ୍ରୋଚ୍ଚାରଣପୂର୍ବକ ସ୍ନାନ କାର୍ଯ୍ୟ ସମ୍ପନ୍ନ କରିବା ଉଚିତ । ବିଦ୍ୱାନ୍ ଲୋକେ ସେଠାରେ ତୀର୍ଥଜଳରେ ଦେବତା ଆଦିଙ୍କ ସ୍ନାନାଙ୍ଗ ତର୍ପଣ ମଧ୍ୟ କରିବା ଉଚିତ ।

ଏହାପରେ ଧୌତବସ୍ତ୍ରକୁ ପାଞ୍ଚ କଚ୍ଛା କରି ପିନ୍ଧିବେ ଏବଂ କୌଣସି ଉତ୍ତରୀୟ ମଧ୍ୟ ଧାରଣ କରିବେ; କାରଣ ସନ୍ଧ୍ୟା-ବନ୍ଦନ ଆଦି କର୍ମରେ ଉତ୍ତରୀୟର ଉପଯୋଗିତା ରହିଛି । ନଦୀ ଆଦି ତୀର୍ଥରେ ସ୍ନାନ କଲା ପରେ ପାଲଟା ବସ୍ତ୍ରକୁ ସେଠାରେ ଧୋଇବେ ନାହିଁ । ସ୍ନାନ ପରେ ବିଦ୍ୱାନ୍ ଲୋକେ ଓଦା ବସ୍ତ୍ରକୁ ପୋଖରୀ, କୂଅ ଅଥବା ନିକଟସ୍ଥ ଘରକୁ ନେଇଯାଇ ସେଠାରେ କାଠ ବା ପଥର ଉପରେ ଜଳରେ ବା ସ୍ଥଳଭାଗରେ ଭଲଭାବରେ ଧୋଇ ଚିପୁଡ଼ିଦେବେ । ଦ୍ୱିଜବୃନ୍ଦ! ବସ୍ତ୍ରକୁ ଚିପୁଡ଼ିବା ବେଳେ ଯେଉଁ ପାଣି ଗଳେ, ତାହା ଏକ ଶ୍ରେଣୀର ପିତୃଙ୍କୁ ତୃପ୍ତି ପ୍ରଦାନ କରିଥାଏ । ଏହାପରେ ଜାବାଳି ଉପନିଷଦରେ କୁହାଯାଇଥିବା 'ଅଗ୍ନିରିତି..' ମନ୍ତ୍ର ପଢ଼ି ଭସ୍ମ ନେଇ ତ୍ରିପୁଣ୍ଡ୍ର ଲଗାଇବେ ।*

---

* ଜାବାଳି ଉପନିଷଦ୍‌ରେ ଭସ୍ମଧାରଣର ଏହିପରି ବିଧି ପ୍ରଦତ୍ତ ଅଛି–

'ଓଁ ଅଗ୍ନିରିତି ଭସ୍ମ ବାୟୁରିତି ଭସ୍ମ ବ୍ୟୋମେତି ଭସ୍ମ ଜଳମିତି ଭସ୍ମ ସ୍ଥଳମିତି ଭସ୍ମ' ଏହି ମନ୍ତ୍ରରେ ଭସ୍ମକୁ ଅଭିମନ୍ତ୍ରିତ କରିବେ ।

'ମା ନସ୍ତୋକେ ତନୟେ ମା ନ ଆୟୁଷି ମା ନୋ ଗୋଷୁ ମା ନୋ ଅଶ୍ୱେଷୁ ରୀରିଷଃ । ମା ନୋ ବୀରାନ୍ ରୁଦ୍ର ଭାମିନୋ ବଧୀର୍ହବିଷ୍ମନ୍ତଃ ସଦମିତ୍ତ୍ୱା ହବାମହେ ॥'

ଏହି ମନ୍ତ୍ରରେ ଉଠାଇ ଜଳରେ ମଳିବେ, ତା'ପରେ –

'ତ୍ର୍ୟାୟୁଷଂ ଜମଦଗ୍ନେଃ କଶ୍ୟପସ୍ୟ ତ୍ର୍ୟାୟୁଷମ୍ । ଯଦ୍‌ଦେବେଷୁ ତ୍ର୍ୟାୟୁଷଂ ତନ୍ନୋଽସ୍ତୁ ତ୍ର୍ୟାୟୁଷମ୍ ॥'

ଇତ୍ୟାଦି ମନ୍ତ୍ରରେ ମସ୍ତକ, ଲଲାଟ, ବକ୍ଷଃସ୍ଥଳ ଓ କାନ୍ଧ ଉପରେ ତ୍ରିପୁଣ୍ଡ୍ର ଧାରଣ କରିବେ ।

'ତ୍ର୍ୟାୟୁଷଂ ଜମଦଗ୍ନେଃ କଶ୍ୟପସ୍ୟ ତ୍ର୍ୟାୟୁଷମ୍ । ଯଦ୍‌ଦେବେଷୁ ତ୍ର୍ୟାୟୁଷଂ ତନ୍ନୋଽସ୍ତୁ ତ୍ର୍ୟାୟୁଷମ୍ ॥'

ଏହି ବିଧି ପାଳନ ନ କଲେ, ଯଦି ଏହାପୂର୍ବରୁ ଜଳରେ ଭସ୍ମ ପଡ଼ିଯାଏ, ତେବେ ତାହା ପକାଇଥିବା ବ୍ୟକ୍ତି ନରକକୁ ଯାଏ । 'ଆପୋ ହି ଷ୍ଠା...' ଇତ୍ୟାଦି ମନ୍ତ୍ର ପଢ଼ି ପାପଶାନ୍ତି ପାଇଁ ମସ୍ତକ ଉପରେ ଜଳ ଛିଞ୍ଚିବେ ତଥା 'ଯସ୍ୟ କ୍ଷୟାୟ' ମନ୍ତ୍ର ପଢ଼ି ପାଦ ଉପରେ ଜଳ ପକାଇବେ । ଏହାକୁ ସନ୍ଧିପ୍ରୋକ୍ଷଣ କହନ୍ତି । 'ଆପୋ ହି ଷ୍ଠା...' ଇତ୍ୟାଦି ମନ୍ତ୍ରରେ ତିନିଟି ଋକ୍ ଅଛି ଏବଂ ପ୍ରତ୍ୟେକ ଋକ୍‌ରେ ଗାୟତ୍ରୀ ଛନ୍ଦର ତିନିଟି ଲେଖାଏଁ ଚରଣ ଅଛି । ଏଥିମଧ୍ୟରୁ ପ୍ରଥମ ଋକ୍‌ର ତିନିଟି ଚରଣକୁ ପଢ଼ି କ୍ରମଶଃ ପାଦ, ମସ୍ତକ ଓ ହୃଦୟରେ ଜଳ ଛିଞ୍ଚିବେ; ଦ୍ୱିତୀୟ ଋକ୍‌ର ତିନିଟି ଚରଣକୁ ପଢ଼ି କ୍ରମଶଃ ମସ୍ତକ, ହୃଦୟ ଓ ପାଦରେ ଜଳ ଛିଞ୍ଚିବେ ଏବଂ ତୃତୀୟ ଋକ୍‌ର ତିନିଟି ଚରଣକୁ ପଢ଼ି କ୍ରମଶଃ ହୃଦୟ, ପାଦ ଓ ମସ୍ତକକୁ ଜଳରେ ପ୍ରୋକ୍ଷଣ କରିବେ । ଏହାକୁ ବିଦ୍ୱାନ୍ ପୁରୁଷ 'ମନ୍ତ୍ରସ୍ନାନ' କହନ୍ତି । କୌଣସି ଅପବିତ୍ର ବସ୍ତୁର ସ୍ପର୍ଶ ହୋଇଗଲେ, ଦେହ ଭଲ ନ ଥିଲେ, ରାଜା ଓ ରାଷ୍ଟ୍ର ଉପରେ ଭୟ ଉପସ୍ଥିତ ହୋଇଥିଲେ ତଥା ଯାତ୍ରାକାଳରେ ଜଳର ଅଭାବ ଥିଲେ— ଏପରି ବିବଶତା ସ୍ଥିତିରେ ମନ୍ତ୍ରସ୍ନାନ କରିବା ଉଚିତ । ପ୍ରାତଃକାଳରେ 'ସୂର୍ଯ୍ୟଶ୍ଚ ମା ମନ୍ୟୁଶ୍ଚ' ଇତ୍ୟାଦି ସୂର୍ଯ୍ୟାନୁବାକ ପଢ଼ି ଏବଂ ସାୟଂକାଳରେ 'ଅଗ୍ନିଶ୍ଚ ମା ମନ୍ୟୁଶ୍ଚ' ଇତ୍ୟାଦି ଅଗ୍ନିସମ୍ବନ୍ଧିତ ଅନୁବାକ ପଢ଼ି ଜଳରେ ଆଚମନ କରି ତା'ପରେ ଜଳରେ ନିଜ ଅଙ୍ଗମାନଙ୍କୁ ପ୍ରୋକ୍ଷଣ କରିବେ । ମଧ୍ୟାହ୍ନକାଳରେ ମଧ୍ୟ 'ଆପ ପୁନନ୍ତୁ' ମନ୍ତ୍ରରେ ଆଚମନ କରି ପୂର୍ବବତ୍ ପ୍ରୋକ୍ଷଣ ବା ମାର୍ଜନ କରିବା ଉଚିତ ।

ପ୍ରାତଃକାଳୀନ ସଂଧ୍ୟୋପାସନାରେ ଗାୟତ୍ରୀ ମନ୍ତ୍ର ଜପି ହାତ ଉପରକୁ ଉଠାଇ ତିନିଥର ସୂର୍ଯ୍ୟଦେବଙ୍କୁ ଅର୍ଘ୍ୟ ଦେବା ବିଧେୟ । ବ୍ରାହ୍ମଣଗଣ ! ମଧ୍ୟାହ୍ନକାଳରେ ଗାୟତ୍ରୀମନ୍ତ୍ର ଉଚ୍ଚାରଣପୂର୍ବକ ସୂର୍ଯ୍ୟଙ୍କୁ ଥରେମାତ୍ର ଅର୍ଘ୍ୟ ଦେବା ଉଚିତ । ସାୟଂକାଳରେ ପଶ୍ଚିମମୁଖୀ ହୋଇ ବସି ଭୂମି ଉପରେ ହିଁ ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେବା ଉଚିତ (ଉପରକୁ ଉଠାଇ ଦେବା ଅନୁଚିତ) । ପ୍ରାତଃକାଳ ଓ ମଧ୍ୟାହ୍ନରେ ଅଞ୍ଜଳିରେ ଅର୍ଘ୍ୟ ନେଇ ଆଙ୍ଗୁଳି ଆଡ଼କୁ ଗଡ଼ାଇ ସୂର୍ଯ୍ୟଦେବଙ୍କୁ ଅର୍ଘ୍ୟ ଦେବା ଆବଶ୍ୟକ । ଅଙ୍ଗୁଳିମାନଙ୍କ ଛିଦ୍ର ଦେଇ ଅସ୍ତଗାମୀ ସୂର୍ଯ୍ୟଙ୍କୁ ଦେଖିବେ ଏବଂ ତାଙ୍କ ପାଇଁ ସ୍ୱୟଂ ଆତ୍ମପ୍ରଦକ୍ଷିଣା କରି ଶୁଦ୍ଧ ଆଚମନ କରିବେ । ସାୟଂକାଳରେ ସୂର୍ଯ୍ୟାସ୍ତର ଦୁଇଘଡ଼ି ପୂର୍ବରୁ କରାଯାଇଥିବା ସନ୍ଧ୍ୟା ନିଷ୍ଫଳ ହୋଇଥାଏ; କାରଣ ତାହା ସାୟଂସନ୍ଧ୍ୟାର ସମୟ ନୁହେଁ । ଶାସ୍ତ୍ରର ଆଜ୍ଞା ଯେ ଉପଯୁକ୍ତ ସମୟରେ ହିଁ ସନ୍ଧ୍ୟା କରିବା ଉଚିତ । ଯଦି ସନ୍ଧ୍ୟୋପାସନା ବିନା ପୂରା ଦିନଟି ବିତିଗଲା, ତେବେ ପ୍ରତ୍ୟେକ ସମୟ ପାଇଁ କ୍ରମାନୁସାରେ ପ୍ରାୟଶ୍ଚିତ୍ତ କରିବା ଉଚିତ । ଯଦି ଗୋଟିଏ ଦିନ ବିତିଥାଏ, ତେବେ ପ୍ରତ୍ୟେକ ସନ୍ଧ୍ୟାକାଳ ପାଇଁ ନିତ୍ୟ ନିୟମ ଅତିରିକ୍ତ ଆହୁରି ଶହେ ଥର ଗାୟତ୍ରୀ ଜପିବା ଉଚିତ । ଯଦି ଦଶଦିନରୁ ଅଧିକ ନିତ୍ୟକର୍ମ ଲୁପ୍ତ ହୋଇଯାଏ, ତେବେ ପ୍ରାୟଶ୍ଚିତ୍ତରୂପେ ଲକ୍ଷେ ଗାୟତ୍ରୀ ଜପ କରିବା ଉଚିତ । ଯଦି ମାସେ ନିତ୍ୟକର୍ମ ନ କରାଯାଇଥାଏ, ତେବେ ପୁନଃ ଆପଣା ଉପନୟନ ସଂସ୍କାର କରାଇବା ଉଚିତ ।

ଅର୍ଥସିଦ୍ଧି ନିମନ୍ତେ ଈଶ, ଗୌରୀ, କାର୍ତ୍ତିକେୟ,

---

ତଥା—

'ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍ । ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍ ॥'

—ଏହି ଦୁଇଟି ମନ୍ତ୍ରକୁ ତିନି ତିନି ଥର ପଢ଼ି ତିନିଟି ରେଖା ଟାଣିବେ ।

ବିଷ୍ଣୁ, ବ୍ରହ୍ମା, ଚନ୍ଦ୍ର ଓ ଯମଙ୍କୁ ତଥା ଅନ୍ୟାନ୍ୟ ଦେବତାଙ୍କୁ ମଧ୍ୟ ଶୁଦ୍ଧ ଜଳରେ ତର୍ପଣ କରିବେ । ତା'ପରେ ତର୍ପଣ କର୍ମକୁ ବ୍ରହ୍ମାର୍ପଣ କରି ଶୁଦ୍ଧ ଆଚମନ କରିବେ । ତୀର୍ଥର ଦକ୍ଷିଣ ଦିଗସ୍ଥ ପ୍ରଶସ୍ତ ମଠରେ, ମନ୍ତ୍ରାଳୟରେ, ଦେବାଳୟରେ, ଘରେ ଅଥବା ଅନ୍ୟ କୌଣସି ନିୟତ ସ୍ଥାନରେ ବିଦ୍ୱାନ୍ ବ୍ୟକ୍ତି ସ୍ଥିରଭାବରେ ଆସନରେ ବସି ବୁଦ୍ଧିକୁ ସ୍ଥିର କରି ଏବଂ ସମସ୍ତ ଦେବତାଙ୍କୁ ପ୍ରଣାମ କରି ପ୍ରଥମେ ପ୍ରଣବ ଜପିବେ ଏବଂ ପରେ ଗାୟତ୍ରୀମନ୍ତ୍ର ଆବୃତ୍ତି କରିବେ । ପ୍ରଣବର 'ଅ', 'ଉ' ଓ 'ମ୍'– ଏହି ତିନି ଅକ୍ଷରରୁ ଜୀବ ଓ ବ୍ରହ୍ମର ଏକତା ପ୍ରତିପାଦିତ ହୋଇଥାଏ । ଏହି କଥାକୁ ବୁଝି ପ୍ରଣବ (ଓଁ) ଜପ କରିବା ଉଚିତ । ଜପକାଳରେ ଏହି ଭାବନା କରିବା ଉଚିତ ଯେ "ଆମେ ତ୍ରିଲୋକର ସୃଜନକାରୀ ବ୍ରହ୍ମା, ପାଳନକାରୀ ବିଷ୍ଣୁ ଓ ସଂହାରକାରୀ ରୁଦ୍ରଙ୍କର–ଯେ କି ସ୍ୱୟଂପ୍ରକାଶ ଓ ଚିନ୍ମୟ, ତାଙ୍କରି ଉପାସନା କରୁଛୁ । ଏହି ବ୍ରହ୍ମସ୍ୱରୂପ ଓଁକାର ଆମର କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟଙ୍କର ବୃତ୍ତିମାନଙ୍କୁ, ମନର ବୃତ୍ତିମାନଙ୍କୁ ଓ ବୁଦ୍ଧିର ବୃତ୍ତିମାନଙ୍କୁ ସଦା ଭୋଗ ଓ ମୋକ୍ଷ ପ୍ରଦାନକାରୀ ଧର୍ମ ଓ ଜ୍ଞାନ ଆଡ଼କୁ ପ୍ରେରିତ କରୁ ।" ପ୍ରଣବର ଏହି ଅର୍ଥକୁ ବୁଦ୍ଧି ଦ୍ୱାରା ଚିନ୍ତନ କରି କରି ଜପୁଥିବା ବ୍ୟକ୍ତି ନିଶ୍ଚିତରୂପେ ବ୍ରହ୍ମଙ୍କୁ ପ୍ରାପ୍ତ ହୋଇଥାଏ । ଅର୍ଥାନୁସନ୍ଧାନ ବିନା ମଧ୍ୟ ପ୍ରଣବ ଜପ କରିବା ଉଚିତ । ଏହାଦ୍ୱାରା ବ୍ରାହ୍ମଣତ୍ୱର ପୂର୍ଣ୍ଣତା ହୋଇଥାଏ । ବ୍ରାହ୍ମଣତ୍ୱର ପୂର୍ଣ୍ଣତା ପାଇଁ ଶ୍ରେଷ୍ଠ ବ୍ରାହ୍ମଣ ପକ୍ଷେ ପ୍ରତିଦିନ ପ୍ରାତଃକାଳରେ ହଜାରେ ଥର ଗାୟତ୍ରୀ ମନ୍ତ୍ର ଜପିବା ଉଚିତ । ମଧ୍ୟାହ୍ନକାଳରେ ଶହେ ଥର ଓ ସାୟଂକାଳରେ ଅଠେଇଶ ଥର ଜପିବାର ବିଧି ରହିଛି । ଅନ୍ୟ ବର୍ଣ୍ଣର ଲୋକେ ଅର୍ଥାତ୍ କ୍ଷତ୍ରିୟ ଓ ବୈଶ୍ୟ ତ୍ରିସନ୍ଧ୍ୟାରେ ଯଥାଶକ୍ତି ଗାୟତ୍ରୀ ଜପିବା ଉଚିତ ।

ଶରୀର ଭିତରେ ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ଆଜ୍ଞା ଓ ସହସ୍ରାର–ଏପରି ଛଅଟି ଚକ୍ର ରହିଛି । ଏ ଛଅଟି ସ୍ଥାନରେ ଯଥାକ୍ରମେ ବିଦ୍ୟେଶ୍ୱର, ବ୍ରହ୍ମା, ବିଷ୍ଣୁ, ଈଶ, ଜୀବାତ୍ମା ଓ ପରମେଶ୍ୱର ସ୍ଥିତ ଅଟନ୍ତି । ଏ ସମସ୍ତଙ୍କ ଠାରେ ବ୍ରହ୍ମବୁଦ୍ଧି କରି ଏମାନଙ୍କୁ ଅଭିନ୍ନ ବୋଲି ଭାବିବେ ଏବଂ 'ସେହି ବ୍ରହ୍ମ ହିଁ ମୁଁ' ଏପରି ଭାବନା କରି ପ୍ରତ୍ୟେକ ଶ୍ୱାସରେ 'ସୋଽହଂ' ଜପିବେ । ଉପରୋକ୍ତ ବିଦ୍ୟେଶ୍ୱର ପ୍ରଭୃତିଙ୍କୁ ବ୍ରହ୍ମରନ୍ଧ୍ର ଆଦିରେ ତଥା ଶରୀର ବାହାରେ ମଧ୍ୟ ଭାବନା କରିବେ । ପ୍ରକୃତିର ବିକାରଭୂତ ମହତ୍ତତ୍ତ୍ୱଠାରୁ ଆରମ୍ଭ କରି ପଞ୍ଚଭୂତ ପର୍ଯ୍ୟନ୍ତ ସମସ୍ତ ତତ୍ତ୍ୱରେ ନିର୍ମିତ ଏ ଯେଉଁ ଶରୀର ଅଛି, ଏପରି ସହସ୍ର ଶରୀରକୁ ଗୋଟିଏ ଲେଖାଏଁ ଅଜପା ଗାୟତ୍ରୀ ଜପରେ ଗୋଟି ଗୋଟି କରି ଅତିକ୍ରମଣ କରି ଜୀବକୁ ଧୀରେ ଧୀରେ ପରମାତ୍ମା ସଙ୍ଗେ ଯୁକ୍ତ କରିବେ । ଏହା ହେଲା ଜପର ତତ୍ତ୍ୱ । ଶହେ ଅଥବା ଅଠେଇଶ ମନ୍ତ୍ର ଜପରେ ସେତିକି ସଂଖ୍ୟକ ଶରୀରକୁ ଅତିକ୍ରମଣ କରାଯାଇଥାଏ । ଏହିରୂପେ ଯେଉଁ ଜପ କରାଯାଏ, ତାହାକୁ ଆଦିକ୍ରମରେ ବାସ୍ତବିକ ଜପ ବୋଲି ବୁଝିବା ଉଚିତ । ସହସ୍ରବାର କରାଯାଇଥିବା ଜପ ବ୍ରହ୍ମଲୋକ ପ୍ରଦାନ କରିଥାଏ । ଶହେବାର କରାଯାଇଥିବା ଜପ ଇନ୍ଦ୍ରପଦପ୍ରାପ୍ତି କରାଇଥାଏ । ବ୍ରାହ୍ମଣେତର ବ୍ୟକ୍ତି ଆତ୍ମରକ୍ଷା ନିମନ୍ତେ ଯେଉଁ ସ୍ୱଳ୍ପମାତ୍ରାରେ ଜପ କରେ, ତଦ୍ୱାରା ସେ ବ୍ରାହ୍ମଣକୁଳରେ ଜନ୍ମ ନିଏ । ପ୍ରତିଦିନ ସୂର୍ଯ୍ୟୋପସ୍ଥାନ କରି ଉପର୍ଯ୍ୟୁକ୍ତ ରୂପରେ ଜପ ଅନୁଷ୍ଠାନ କରିବା ଉଚିତ । ବାରଲକ୍ଷ ଗାୟତ୍ରୀ ଜପିଥିବା ମନୁଷ୍ୟ ପୂର୍ଣ୍ଣରୂପେ ବ୍ରାହ୍ମଣ ପଦବାଚ୍ୟ । ଯେଉଁ ବ୍ରାହ୍ମଣ ଏକଲକ୍ଷ ଗାୟତ୍ରୀ ବି ଜପି ନ ଥାଏ, ତାକୁ ବୈଦିକ କାର୍ଯ୍ୟରେ ଲଗାଇବା ଉଚିତ ନୁହେଁ । ସତୁରୀ ବର୍ଷ ବୟସ

ପର୍ଯ୍ୟନ୍ତ ନିୟମପାଳନପୂର୍ବକ କାର୍ଯ୍ୟ କରିବା ଉଚିତ । ଏହାପରେ ଗୃହତ୍ୟାଗ କରି ସଂନ୍ୟାସ ଗ୍ରହଣ କରିବା ଉଚିତ । ପରିବ୍ରାଜକ ବା ସଂନ୍ୟାସୀ ନିତ୍ୟ ପ୍ରାତଃକାଳରେ ବାରହଜାର ପ୍ରଣବ ଜପ କରିବା ଉଚିତ । ଦିନେ ବି ଯଦି ଏ ନିୟମ ଉଲ୍ଲଙ୍ଘନ ହୋଇଯାଏ, ତେବେ ପରଦିନ ଆହୁରି ସେତିକି ମନ୍ତ୍ର ଅଧିକ ଜପିବା ଉଚିତ ଏବଂ ସଦା ଏହିପ୍ରକାର ଜପକୁ ଗ୍ଭଲୁ ରଖିବାକୁ ପ୍ରଯତ୍ନ କରିବା ଉଚିତ । ଯଦି କ୍ରମଶଃ ମାସେ ଉଲ୍ଲଙ୍ଘନ ହୋଇଗଲା, ତେବେ ଦେଢ଼ଲକ୍ଷ ଜପ କରି ତାହାର ପ୍ରାୟଶ୍ଚିତ୍ତ କରିବା ଉଚିତ । ଏହାଠାରୁ ଅଧିକ କାଳ ନିୟମର ଉଲ୍ଲଙ୍ଘନ ହେଲେ ପୁନଃ ଆରମ୍ଭରୁ ଗୁରୁଙ୍କ ଠାରୁ ନିୟମ ଗ୍ରହଣ କରିବା ବିଧେୟ । ଏପରି କଲେ ଦୋଷ ଶାନ୍ତି ହୁଏ, ଅନ୍ୟଥା ସେ ରୌରବ ନରକରେ ପଡ଼େ । ସକାମଭାବନାଯୁକ୍ତ ଗୃହସ୍ଥ ବ୍ରାହ୍ମଣ ପକ୍ଷେ ଧର୍ମ ଓ ଅର୍ଥ ପାଇଁ ଯତ୍ନ କରିବା ଆବଶ୍ୟକ । ମୁମୁକ୍ଷୁ ବ୍ରାହ୍ମଣ ତ ସର୍ବଦା ଜ୍ଞାନ ହିଁ ଅଭ୍ୟାସ କରିବା ଉଚିତ । ଧର୍ମ ଦ୍ୱାରା ହିଁ ଅର୍ଥପ୍ରାପ୍ତି ହୋଇଥାଏ ଏବଂ ଅର୍ଥ ଦ୍ୱାରା ହିଁ ଭୋଗ ସୁଲଭ ହୋଇଥାଏ । ତା'ପରେ ସେହି ଭୋଗ ଦ୍ୱାରା ହିଁ ବୈରାଗ୍ୟ ହେବାର ସମ୍ଭାବନା ଥାଏ । ଧର୍ମପୂର୍ବକ ଉପାର୍ଜିତ ଧନ ଦ୍ୱାରା ଯେଉଁ ଭୋଗ ପ୍ରାପ୍ତି ହୋଇଥାଏ, ସେଥିରୁ ଦିନେ ନା ଦିନେ ବୈରାଗ୍ୟ ଅବଶ୍ୟ ଉଦୟ ହୋଇଥାଏ । ଅପରପକ୍ଷେ ଅଧର୍ମମାର୍ଗରେ ଉପାର୍ଜିତ ଧନ ଦ୍ୱାରା ଯେଉଁ ଭୋଗପ୍ରାପ୍ତି ହୁଏ, ତଦ୍ଦ୍ୱାରା ଭୋଗମାନଙ୍କ ପ୍ରତି ଆସକ୍ତି ଉତ୍ପନ୍ନ ହୋଇଥାଏ । ମନୁଷ୍ୟ ଧର୍ମରୁ ଧନ ପାଇଥାଏ, ତପସ୍ୟା ଦ୍ୱାରା ତାକୁ ଦିବ୍ୟ ରୂପ ପ୍ରାପ୍ତ ହୋଇଥାଏ । କମନା ତ୍ୟାଗ କରିଥିବା ବ୍ୟକ୍ତିର ଅନ୍ତଃକରଣ ଶୁଦ୍ଧ ହୋଇଥାଏ ଏବଂ ଅନ୍ତଃକରଣ ଶୁଦ୍ଧ ହେଲେ ହିଁ ନିଃସନ୍ଦେହରେ ଜ୍ଞାନ ଉଦିତ ହୋଇଥାଏ ।

ସତ୍ୟଯୁଗ ଇତ୍ୟାଦିରେ ତପକୁ ହିଁ ଅଧିକ ପ୍ରଶସ୍ତ ବୋଲି କୁହାଯାଇଛି, କିନ୍ତୁ କଳିଯୁଗରେ ଦ୍ରବ୍ୟସାଧ୍ୟ ଧର୍ମ (ଦାନ ଇତ୍ୟାଦି) ପ୍ରଶଂସନୀୟ ହୋଇଥାଏ । ସତ୍ୟଯୁଗରେ ଧ୍ୟାନ କଲେ, ତ୍ରେତାରେ ତପସ୍ୟା କଲେ ଏବଂ ଦ୍ୱାପରରେ ଯଜ୍ଞ କଲେ ଜ୍ଞାନସିଦ୍ଧି ହୁଏ; କିନ୍ତୁ କଳିଯୁଗରେ ପ୍ରତିମା (ଭଗବଦ୍ ବିଗ୍ରହ) ପୂଜାରେ ଜ୍ଞାନଲାଭ ହୋଇଥାଏ । ଅଧର୍ମ ହିଂସାରୂପ ଅଟେ ଏବଂ ଧର୍ମ ସୁଖରୂପ ଅଟେ । ଅଧର୍ମରୁ ମନୁଷ୍ୟ ଦୁଃଖ ପାଏ ଏବଂ ଧର୍ମରୁ ସେ ସୁଖ ଓ ଅଭ୍ୟୁଦୟର ଭାଗୀ ହୁଏ । ଦୁରାଗ୍ରହରୁ ଦୁଃଖ ପାଏ ଏବଂ ସଦାଗ୍ରହରୁ ସୁଖ ପାଏ । ତେଣୁ ଭୋଗ ଓ ମୋକ୍ଷର ସିଦ୍ଧି ନିମନ୍ତେ ଧର୍ମ ଅର୍ଜନ କରିବା ଉଚିତ । ଯେଉଁ କୁଟୁମ୍ବୀ ବ୍ରାହ୍ମଣର ଘରେ ଅତିକମ୍‌ରେ ଗ୍ଭରିଜଣ ଲୋକ ଅଛନ୍ତି, ତାଙ୍କୁ ଯେ ଶହେବର୍ଷ ପର୍ଯ୍ୟନ୍ତ ଜୀବିକା (ଜୀବନ-ନିର୍ବାହର ସାମଗ୍ରୀ) ପ୍ରଦାନ କରେ, ତା' ପାଇଁ ସେହି ଦାନ ବ୍ରହ୍ମଲୋକ ପ୍ରଦାୟକ ହୋଇଥାଏ । ହଜାରେ ଗ୍ଭନ୍ଦ୍ରାୟଣ ବ୍ରତ ଅନୁଷ୍ଠାନ କଲେ ତାହା ବ୍ରହ୍ମଲୋକ ପ୍ରଦାୟକ ହୋଇଥାଏ । ଯେଉଁ କ୍ଷତ୍ରିୟ ହଜାରେ କୁଟୁମ୍ବକୁ ଜୀବିକା ଓ ଆବାସ ଦେଇଥାଏ, ତାହାର ସେହି କର୍ମ ଇନ୍ଦ୍ରଲୋକ ପ୍ରଦାୟକ ହୁଏ । ଦଶହଜାର କୁଟୁମ୍ବଙ୍କୁ ଆଶ୍ରୟ ଦେଲେ ତାହା ବ୍ରହ୍ମଲୋକ ପ୍ରଦାନ କରାଏ । ଦାତା ଯେଉଁ ଦେବତାଙ୍କୁ ସମ୍ମୁଖରେ ରଖି ଦାନ କରେ ଅର୍ଥାତ୍ ଦାନ ଦ୍ୱାରା ସେ ଯେଉଁ ଦେବତାଙ୍କୁ ପ୍ରସନ୍ନ କରିବାକୁ ଗ୍ଭହେଁ, ସେହି ଦେବତାଙ୍କ ଲୋକ ତାକୁ ପ୍ରାପ୍ତ ହୁଏ—ଏକଥା ବେଦବେତ୍ତା ଲୋକେ ଭଲଭାବରେ ଜାଣନ୍ତି । ଧନହୀନ ବ୍ୟକ୍ତି ସଦା ତପସ୍ୟା ହିଁ ଉପାର୍ଜନ କରିବା ଉଚିତ; କାରଣ ତପସ୍ୟା ଓ ତୀର୍ଥସେବନ ଦ୍ୱାରା ମନୁଷ୍ୟ ଅକ୍ଷୟ ସୁଖ ଉପଭୋଗ କରେ ।

ଏବେ ମୁଁ ନ୍ୟାୟ ଉପାୟରେ ଧନ ଉପାର୍ଜନର ବିଧି କହୁଛି । ବ୍ରାହ୍ମଣ ପକ୍ଷେ ସଦା ସାବଧାନ

ହୋଇ ବିଶୁଦ୍ଧ ପ୍ରତିଗ୍ରହ (ଦାନ ଗ୍ରହଣ) ଓ ଯାଜନ (ଯଜ୍ଞ କରାଇବା) ଇତ୍ୟାଦି ଦ୍ୱାରା ଧନ ଉପାର୍ଜନ କରିବା ଉଚିତ। ସେ ଏଥିନିମନ୍ତେ ଦୈନ୍ୟର ଆଶ୍ରୟ ନେବା ଉଚିତ ନୁହେଁ କି ଅତ୍ୟନ୍ତ କ୍ଳେଶଦାୟକ କର୍ମ ମଧ୍ୟ କରିବା ଉଚିତ ନୁହେଁ। କ୍ଷତ୍ରିୟ ବାହୁବଳରେ ଏବଂ ବୈଶ୍ୟ କୃଷି ଓ ଗୋରକ୍ଷା ଦ୍ୱାରା ଧନ ଉପାର୍ଜନ କରିବା ଉଚିତ। ନ୍ୟାୟୋଚିତ ମାର୍ଗରେ ଉପାର୍ଜିତ ଧନ ଦାନ କଲେ ଦାତାର ଜ୍ଞାନସିଦ୍ଧି ହୁଏ। ଜ୍ଞାନସିଦ୍ଧି ଦ୍ୱାରା ଗୁରୁକୃପା ବା ମୋକ୍ଷସିଦ୍ଧି ସୁଲଭ ହୁଏ। ମୋକ୍ଷ ଦ୍ୱାରା ସ୍ୱରୂପର ସିଦ୍ଧି (ବ୍ରହ୍ମସ୍ୱରୂପରେ ସ୍ଥିତି) ହୁଏ। ଯଦ୍ଦ୍ୱାରା ମୁକ୍ତ ପୁରୁଷ ପରମାନନ୍ଦ ଅନୁଭବ କରେ। ଗୃହସ୍ଥ ପୁରୁଷ ଧନଧାନ୍ୟାଦି ସବୁ ପ୍ରକାର ବସ୍ତୁ ଦାନ କରିବା ଉଚିତ। ସେ ତୃଷାନିବୃତ୍ତି ନିମନ୍ତେ ଜଳ ଓ କ୍ଷୁଧାରୂପୀ ରୋଗର ଶାନ୍ତି ନିମନ୍ତେ ଅନ୍ନ ଦାନ କରିବା ଉଚିତ। ଜମି, ଧାନ, କଞ୍ଚା ଚାଉଳ ତଥା ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ ଓ ଚୋଷ୍ୟ—ଏ ଚାରିପ୍ରକାର ସିଦ୍ଧ ଅନ୍ନ ମଧ୍ୟ ଦାନ କରିବା ଉଚିତ। ଯାହାର ଅନ୍ନ ଖାଇ ମନୁଷ୍ୟ ଭଗବତ୍ କଥାଶ୍ରବଣ ଆଦି ସଦ୍ଧର୍ମ ପାଳନ କରେ, ସେ ଏପରି କରୁଥିବା ପର୍ଯ୍ୟନ୍ତ ତା'ର ସେହି ପୁଣ୍ୟର ଫଳରୁ ଅଧା ନିଶ୍ଚିତରୂପେ ଅନ୍ନଦାତାକୁ ମିଳିଥାଏ। ଦାନଗ୍ରହୀତା ଦାନରେ ମିଳିଥିବା ବସ୍ତୁକୁ ଦାନ କରି ଓ ତପସ୍ୟା କରି ନିଜର ପ୍ରତିଗ୍ରହଜନିତ ପାପକୁ ଧୋଇ ଦେବା ଉଚିତ। ନଚେତ୍ ତାକୁ ରୌରବ ନରକରେ ପଡ଼ିବାକୁ ହୁଏ। ନିଜର ଧନକୁ ତିନି ଭାଗ କରି ସେଥିରୁ ଗୋଟିଏ ଭାଗ ଧର୍ମ ପାଇଁ, ଦ୍ୱିତୀୟ ଭାଗ ବୃଦ୍ଧି ପାଇଁ ଓ ତୃତୀୟ ଭାଗ ନିଜର ଉପଭୋଗ ପାଇଁ ବ୍ୟୟ କରିବେ। ନିତ୍ୟ, ନୈମିତ୍ତିକ ଓ କାମ୍ୟ—ଏ ତିନି ପ୍ରକାର କର୍ମ ଧର୍ମ ପାଇଁ ରଖିଥିବା ଧନରେ କରିବେ। ବୃଦ୍ଧି ପାଇଁ ରଖିଥିବା ଧନକୁ ସାଧକ ଏପରି ବ୍ୟାପାରରେ ଉପଯୋଗ କରିବା ଆବଶ୍ୟକ, ଯଦ୍ଦ୍ୱାରା ତାଙ୍କର ଧନ ବୃଦ୍ଧି ପାଇବ। ସେ ଉପଭୋଗ ପାଇଁ ରଖିଥିବା ଧନ ଦ୍ୱାରା ହିତକାରକ, ପରିମିତ ଓ ପବିତ୍ର ଭୋଗ ଉପଭୋଗ କରିପାରିବେ। କୃଷିରୁ ଉପାର୍ଜିତ ଧନର ଏକ-ଦଶମାଂଶକୁ ଦାନ କରିଦେବା ଉଚିତ। ଏହା ଦ୍ୱାରା ପାପଶୁଦ୍ଧି ହୋଇଥାଏ। ଅବଶିଷ୍ଟ ଧନକୁ ଧର୍ମ, ବୃଦ୍ଧି ଓ ଉପଭୋଗରେ ଉପଯୋଗ କରିବେ। ଏପରି ନ କଲେ ସେ ରୌରବ ନରକରେ ପଡ଼ିବେ ଅଥବା ଏଭଳି ଧନର ବୃଦ୍ଧି ପାପପୂର୍ଣ୍ଣ ହୋଇଯାଏ ଅଥବା ତାଙ୍କର କୃଷି ବରବାଦ ହୋଇଯାଏ। ବୃଦ୍ଧି ନିମନ୍ତେ କରାଯାଉଥିବା ବ୍ୟାପାରରୁ ଯେଉଁ ଧନ ଲାଭ ହୁଏ, ତାହାର ଏକ-ଷଷ୍ଠାଂଶ ଦାନର ଯୋଗ୍ୟ। ବୁଦ୍ଧିମାନ୍ ବ୍ୟକ୍ତି ଏତିକି ଦାନ ଅବଶ୍ୟ କରିବା ଉଚିତ।

ବିଦ୍ୱାନ୍ ବ୍ୟକ୍ତି ପକ୍ଷେ ଅନ୍ୟର ଦୋଷ ବଖାଣିବା ଅନୁଚିତ। ବ୍ରାହ୍ମଣଗଣ! ଦୋଷବଶାତ୍ ଅନ୍ୟର ଛିଦ୍ରକୁ ଶୁଣିଥିଲେ ବା ଦେଖିଥିଲେ ତାହାକୁ ପ୍ରକାଶ କରିବା ଅନୁଚିତ। ସେ ଏପରି କଥା ନ କହିବା ଉଚିତ, ଯାହା ଅନ୍ୟ ପ୍ରାଣୀଙ୍କ ହୃଦୟରେ ରୋଷ ଉତ୍ପନ୍ନ କରିବ। ସେ ଐଶ୍ୱର୍ଯ୍ୟର ସିଦ୍ଧି ନିମନ୍ତେ ଉଭୟ ସନ୍ଧ୍ୟାରେ ଅଗ୍ନିହୋତ୍ର କର୍ମ ଅବଶ୍ୟ କରିବେ। ଯେ ଉଭୟ ସନ୍ଧ୍ୟାରେ ଅଗ୍ନିହୋତ୍ର କରିବାକୁ ଅସମର୍ଥ, ସେ ଗୋଟିଏ ଥର ସୂର୍ଯ୍ୟ ଓ ଅଗ୍ନିଙ୍କୁ ବିଧିପୂର୍ବକ ଆହୁତି ଦେଇ ସନ୍ତୁଷ୍ଟ କରିବେ। ଚାଉଳ, ଧାନ, ଘିଅ, ଫଳ, କନ୍ଦ ଓ ହବିଷ୍ୟ—ଏସବୁ ଦ୍ରବ୍ୟରେ ବିଧିପୂର୍ବକ ସ୍ଥାଳୀପାକ ପ୍ରସ୍ତୁତ କରିବେ ଏବଂ ଯଥୋଚିତ ରୀତିରେ ସୂର୍ଯ୍ୟ ଓ ଅଗ୍ନିଙ୍କୁ ଅର୍ପିତ କରିବେ। ଯଦି ହବିଷ୍ୟର ଅଭାବ ଥାଏ, ତେବେ କେବଳ ପ୍ରଧାନ ହୋମ କରିଦେବେ। ସଦା ସୁରକ୍ଷିତ ରହୁଥିବା ଅଗ୍ନିକୁ ବିଦ୍ୱାନ୍‌ମାନେ ଅଜସ୍ର ସଂଜ୍ଞା

ଦେଇଛନ୍ତି । ଏହା କରି ନ ପାରିଲେ ସନ୍ଧ୍ୟାକାଳରେ କେବଳ ଜପ ବା କେବଳ ସୂର୍ଯ୍ୟବନ୍ଦନା କରିଦେବେ । ଆତ୍ମଜ୍ଞାନ ପ୍ରାପ୍ତି ଗ୍ରହୁଁଥିବା ବ୍ୟକ୍ତି ତଥା ଧନାର୍ଥୀ ବ୍ୟକ୍ତି ମଧ୍ୟ ଏହି ପ୍ରକାରେ ବିଧିବତ୍ ଉପାସନା କରିବା ଉଚିତ । ଯେଉଁମାନେ ସଦା ବ୍ରହ୍ମଯଜ୍ଞରେ ତତ୍ପର ରହନ୍ତି, ଦେବତାଙ୍କ ପୂଜାରେ ଲାଗି ରହନ୍ତି, ନିତ୍ୟ ଅଗ୍ନିପୂଜା ଓ ଗୁରୁପୂଜାରେ ଅନୁରକ୍ତ ରହନ୍ତି ତଥା ବ୍ରାହ୍ମଣଙ୍କୁ ତୃପ୍ତ କରିଥାନ୍ତି, ସେମାନେ ସ୍ୱର୍ଗଲୋକର ଭାଗୀ ହୁଅନ୍ତି । (ଅଧ୍ୟାୟ ୧୩)

★★★

## ଅଗ୍ନିଯଜ୍ଞ, ଦେବଯଜ୍ଞ ଓ ବ୍ରହ୍ମଯଜ୍ଞ ଇତ୍ୟାଦିର ବର୍ଣ୍ଣନା, ଭଗବାନ ଶିବଙ୍କ ଦ୍ୱାରା ସପ୍ତବାର ନିର୍ଦ୍ଧାରଣ ଓ ସେହି ଦିନମାନଙ୍କରେ ଦେବାରାଧନା କରିବାର ବିଭିନ୍ନ ପ୍ରକାର ଫଳ

ଋଷିଗଣ କହିଲେ–ପ୍ରଭୋ ! ଅଗ୍ନିଯଜ୍ଞ, ଦେବଯଜ୍ଞ, ବ୍ରହ୍ମଯଜ୍ଞ, ଗୁରୁପୂଜା ଓ ବ୍ରହ୍ମତୃପ୍ତି ବିଷୟରେ ଆମ ଆଗରେ କ୍ରମାନ୍ୱୟରେ ବର୍ଣ୍ଣନା କରନ୍ତୁ ।

ସୂତ କହିଲେ–ମହର୍ଷିଗଣ ! ଗୃହସ୍ଥ ବ୍ୟକ୍ତି ଅଗ୍ନିରେ ସାୟଂକାଳ ଓ ପ୍ରାତଃକାଳରେ ଯେଉଁ ଚାଉଳ ଇତ୍ୟାଦି ଦ୍ରବ୍ୟ ଆହୁତି ଦିଅନ୍ତି, ତାହାକୁ ଅଗ୍ନିଯଜ୍ଞ କହନ୍ତି । ଯେଉଁ ବ୍ରହ୍ମଚାରୀମାନେ ବ୍ରହ୍ମଚର୍ଯ୍ୟ ଆଶ୍ରମରେ ଅଛନ୍ତି, ସେମାନଙ୍କ ପାଇଁ ସମିଧ ଆଧାନ ହିଁ ଅଗ୍ନିଯଜ୍ଞ । ସେମାନେ ସମିଧ ହିଁ ଅଗ୍ନିରେ ହୋମ କରିବା ଉଚିତ । ବ୍ରାହ୍ମଣଗଣ ! ବ୍ରହ୍ମଚର୍ଯ୍ୟ ଅଶ୍ରମରେ ରହୁଥିବା ଦ୍ୱିଜ ପକ୍ଷେ ବିବାହ ନ ହେବା ପର୍ଯ୍ୟନ୍ତ ଏବଂ ଔପାସନାଗ୍ନି ପ୍ରତିଷ୍ଠା ନ କରିଥିବା ପର୍ଯ୍ୟନ୍ତ ଅଗ୍ନିରେ ସମିଧ ଆହୁତି ଦେବା ଓ ବ୍ରତ ଇତ୍ୟାଦି ପାଳନ କରିବା ତଥା ବିଶେଷ ଯଜନ ଆଦି କରିବା କର୍ତ୍ତବ୍ୟ (ଏହା ହିଁ ତା ପାଇଁ ଅଗ୍ନିଯଜ୍ଞ) । ଦ୍ୱିଜଗଣ ! ଯେଉଁ ବାନପ୍ରସ୍ଥ ଓ ସନ୍ନ୍ୟାସ ଆଶ୍ରମର ବ୍ୟକ୍ତି ବାହ୍ୟ ଅଗ୍ନିକୁ ବିସର୍ଜିତ କରି ନିଜ ଆତ୍ମାରେ ହିଁ ଅଗ୍ନିକୁ ଆରୋପିତ କରିନେଇଛି, ତା' ପାଇଁ ବିହିତ ସମୟରେ ହିତକର, ପରିମିତ ଓ ପବିତ୍ର ଅନ୍ନ ଭୋଜନ କରିବା ହିଁ ଏହି ହବନ ବା ଅଗ୍ନିଯଜ୍ଞ । ବ୍ରାହ୍ମଣଗଣ ! ସାୟଂକାଳରେ ଅଗ୍ନିଙ୍କ ପାଇଁ ଦିଆଯାଇଥିବା ଆହୁତି ସମ୍ପତ୍ତି ପ୍ରଦାନ କରିଥାଏ ଏବଂ ପ୍ରାତଃକାଳରେ ସୂର୍ଯ୍ୟଙ୍କୁ ଦିଆଯାଇଥିବା ଆହୁତି ଆୟୁ ବୃଦ୍ଧି କରିଥାଏ । ଏକଥା ଭଲଭାବରେ ବୁଝିଯିବା ଉଚିତ । ଦିନରେ ଅଗ୍ନିଦେବ ସୂର୍ଯ୍ୟଙ୍କ ଠାରେ ପ୍ରବିଷ୍ଟ ହୋଇଯାଆନ୍ତି । ତେଣୁ ପ୍ରାତଃକାଳ ସୂର୍ଯ୍ୟଙ୍କୁ ଦିଆଯାଇଥିବା ଆହୁତି ମଧ୍ୟ ଅଗ୍ନିଯଜ୍ଞର ଅନ୍ତର୍ଗତ । ଏହା ଗଲା ଅଗ୍ନିଯଜ୍ଞର ପ୍ରସଙ୍ଗ ।

ଇନ୍ଦ୍ରାଦି ଦେବତାଙ୍କ ଉଦ୍ଦେଶ୍ୟରେ ଅଗ୍ନିରେ ଯେଉଁ ଆହୁତି ଦିଆଯାଏ, ତାହାକୁ ଦେବଯଜ୍ଞ କୁହାଯାଏ । ସ୍ଥାଳୀପାକ ଇତ୍ୟାଦି ଯଜ୍ଞ ମଧ୍ୟ ଦେବଯଜ୍ଞ; ଲୌକିକ ଅଗ୍ନିରେ ପ୍ରତିଷ୍ଠିତ ଯେଉଁ ଚୂଡ଼ାକରଣ ଇତ୍ୟାଦି ସଂସ୍କାରସମ୍ବନ୍ଧୀୟ ନୈମିତ୍ତିକ ହବନ କର୍ମ ହୁଏ, ସେଗୁଡ଼ିକୁ ମଧ୍ୟ ଦେବଯଜ୍ଞର ଅନ୍ତର୍ଗତ ବୋଲି ବୁଝିବା ଉଚିତ । ଏବେ ବ୍ରହ୍ମଯଜ୍ଞର ବର୍ଣ୍ଣନା ଶୁଣ । ଦ୍ୱିଜମାନେ ଦେବତାଙ୍କ ତୃପ୍ତି ନିମନ୍ତେ ନିରନ୍ତର ବ୍ରହ୍ମଯଜ୍ଞ କରିବା ଉଚିତ । ନିତିଦିନ ବେଦମାନ ଅଧ୍ୟୟନ କରିବା ବା ସ୍ୱାଧ୍ୟାୟ କରିବାକୁ ହିଁ ବ୍ରହ୍ମଯଜ୍ଞ କୁହାଯାଏ । ସକାଳେ ନିତ୍ୟକର୍ମ ପରେ ସାୟଂକାଳ ପର୍ଯ୍ୟନ୍ତ ବ୍ରହ୍ମଯଜ୍ଞ କରାଯାଇ ପାରେ । ଏହାପରେ ରାତିରେ ଏହା କରିବାର ବିଧାନ ନାହିଁ ।

ଅଗ୍ନି ବିନା ଦେବଯଜ୍ଞ କିପରି ସମ୍ପନ୍ନ ହୁଏ, ତାହା ତୁମେମାନେ ଶ୍ରଦ୍ଧାପୂର୍ବକ ଶୁଣ । ସୃଷ୍ଟି ଆରମ୍ଭରେ ସର୍ବଜ୍ଞ, ଦୟାଳୁ ଓ ସର୍ବସମର୍ଥ ମହାଦେବ ସମଗ୍ର ଭୁବନର ଉପକାର ନିମନ୍ତେ ବାରମାନଙ୍କର କଳ୍ପନା କରିଥିଲେ । ସେ ହିଁ ସଂସାରର ରୋଗ ଦୂର କରିବା ନିମନ୍ତେ ବୈଦ୍ୟ ଅଟନ୍ତି । ସେ ହିଁ ସବୁରି ଜ୍ଞାତା ଓ ସମସ୍ତ ଔଷଧର ଔଷଧ । ସେହି ପ୍ରଭୁ ପ୍ରଥମେ ନିଜ ପାଇଁ ବାର କଳ୍ପନା କଲେ, ଯାହାକି ଆରୋଗ୍ୟ ପ୍ରଦାନ କରେ । ତା'ପରେ ସେ ତାଙ୍କ ମାୟାଶକ୍ତିଙ୍କର ବାର ସୃଷ୍ଟି କଲେ, ଯାହାକି ସମ୍ପତ୍ତି ପ୍ରଦାନ କରେ । ଜନ୍ମକାଳରେ ଦୁର୍ଗତିଗ୍ରସ୍ତ ବାଳକର ରକ୍ଷା ନିମନ୍ତେ ସେ କୁମାରଙ୍କ ବାର କଳ୍ପନା କଲେ । ତା'ପରେ ସର୍ବସମର୍ଥ ମହାଦେବ ଆଳସ୍ୟ ଓ ପାପର ନିବୃତ୍ତି ତଥା ସମସ୍ତ ଭୁବନର ହିତ ଉଦ୍ଦେଶ୍ୟରେ ଲୋକରକ୍ଷକ ବିଷ୍ଣୁଙ୍କ ବାର ସୃଷ୍ଟି କଲେ । ଏହା ପରେ ସମସ୍ତଙ୍କର ସ୍ୱାମୀ ଶିବ ପୁଷ୍ଟି ଓ ରକ୍ଷା ନିମନ୍ତେ ଆୟୁ-ନିର୍ଦ୍ଧାରଣକାରୀ ତ୍ରିଲୋକସ୍ରଷ୍ଟା ପରମେଷ୍ଠୀ ବ୍ରହ୍ମାଙ୍କର ଆୟୁଷ୍କାରକ ବାର ସୃଷ୍ଟି କଲେ, ଯାହା ଦ୍ୱାରା ସମଗ୍ର ଜଗତର ଆୟୁଷ୍ୟ ସିଦ୍ଧ ହୋଇପାରେ । ଏହାପରେ ତ୍ରିଲୋକର ବୃଦ୍ଧି ପାଇଁ ପ୍ରଥମେ ପୁଣ୍ୟ ଓ ପାପର ରଚନା ହୋଇଯିବାରୁ ସେପରି କାର୍ଯ୍ୟ କରୁଥିବା ଲୋକଙ୍କୁ ଶୁଭାଶୁଭ ଫଳ ଦେବା ପାଇଁ ମହାଦେବ ଇନ୍ଦ୍ର ଓ ଯମଙ୍କ ବାରମାନ ସୃଷ୍ଟି କଲେ । ଏ ଦୁଇ ବାର ଯଥାକ୍ରମେ ଭୋଗ ପ୍ରଦାନ କରେ ଓ ଲୋକଙ୍କର ମୃତ୍ୟୁଭୟ ନିବାରଣ କରେ । ଏହାପରେ ଭଗବାନ ଶିବ ସୂର୍ଯ୍ୟାଦି ସାତ ଗ୍ରହଙ୍କୁ, ଯେଉଁମାନେ କି ତାଙ୍କର ସ୍ୱରୂପଭୂତ ଓ ପ୍ରାଣୀମାନଙ୍କ ପାଇଁ ସୁଖ-ଦୁଃଖର ସୂଚକ, ଉପରୋକ୍ତ ସାତଟି ବାରର ସ୍ୱାମୀରୂପେ ନିର୍ଦ୍ଧାରିତ କଲେ । ସେ ସମସ୍ତେ ଗ୍ରହ-ନକ୍ଷତ୍ରଙ୍କର ଜ୍ୟୋତିର୍ମୟ ମଣ୍ଡଳରେ ପ୍ରତିଷ୍ଠିତ । ଶିବଙ୍କ ବାର ବା ଦିନର ସ୍ୱାମୀ ସୂର୍ଯ୍ୟ । ଶକ୍ତିଙ୍କ ଦିନର ସ୍ୱାମୀ ସୋମ । କୁମାରଙ୍କ ଦିନର ଅଧିପତି ମଙ୍ଗଳ । ବିଷ୍ଣୁଙ୍କ ବାରର ସ୍ୱାମୀ ବୁଧ । ବ୍ରହ୍ମାଙ୍କ ବାରର ଅଧିପତି ବୃହସ୍ପତି । ଇନ୍ଦ୍ରଙ୍କ ବାରର ସ୍ୱାମୀ ଶୁକ୍ର ଓ ଯମଙ୍କ ବାରର ସ୍ୱାମୀ ଶନୈଶ୍ଚର । ପ୍ରତ୍ୟେକ ଦେବତା ନିଜ ନିଜ ବାରରେ କରାଯାଉଥିବା ପୂଜାରେ ନିଜ ବିଧାନ ଅନୁରୂପ ଫଳ ଦେଇଥାନ୍ତି ।

ସୂର୍ଯ୍ୟ ଆରୋଗ୍ୟ ଓ ଚନ୍ଦ୍ରମା ସମ୍ପତ୍ତିର ଦାତା ଅଟନ୍ତି । ମଙ୍ଗଳ ବ୍ୟାଧି ନିବାରଣ କରିଥାନ୍ତି । ବୁଧ ପୁଷ୍ଟି ପ୍ରଦାନ କରିଥାନ୍ତି । ବୃହସ୍ପତି ଆୟୁ ବୃଦ୍ଧି କରିଥାନ୍ତି । ଶୁକ୍ର ଭୋଗ ଦେଇଥାନ୍ତି ଓ ଶନୈଶ୍ଚର ମୃତ୍ୟୁ ନିବାରଣ କରିଥାନ୍ତି । ଏ ସାତବାରରେ ଯେଉଁ ଫଳମାନ ମିଳେ, ତାହା କ୍ରମାନ୍ୱୟରେ ସେହିସବୁ ଦେବତାଙ୍କ ପ୍ରୀତିରୁ ପ୍ରାପ୍ତ ହୁଏ । ପ୍ରକୃତରେ ଅନ୍ୟ ଦେବତାମାନେ ଯେଉଁ ଫଳ ଦିଅନ୍ତି, ତାହାର ମଧ୍ୟ ଦାତା ଶିବ ଅଟନ୍ତି । ଦେବତାଙ୍କ ପ୍ରସନ୍ନତା ନିମନ୍ତେ ପୂଜାର ପାଞ୍ଚ ପ୍ରକାର ପଦ୍ଧତି କୁହାଯାଇଛି । ସେହିସବୁ ଦେବତାଙ୍କ ମନ୍ତ୍ରକୁ ଜପ କରିବା ହେଲା ପ୍ରଥମ ପ୍ରକାର । ଦ୍ୱିତୀୟଟି ହେଲା ସେମାନଙ୍କ ପାଇଁ ହୋମ କରିବା, ତୃତୀୟଟି ହେଲା ଦାନ କରିବା, ଚତୁର୍ଥଟି ହେଲା ତପସ୍ୟା କରିବା ଏବଂ ପଞ୍ଚମଟି ହେଲା କୌଣସି ବେଦିରେ, ପ୍ରତିମାରେ, ଅଗ୍ନିରେ ଅଥବା ବ୍ରାହ୍ମଣଙ୍କ ଶରୀରରେ ଆରାଧ୍ୟ ଦେବତାଙ୍କ ଭାବନା କରି ଷୋଡ଼ଶ ଉପଚାରରେ ପୂଜା ବା ଆରାଧନା କରିବା ।

ଏଥିମଧ୍ୟରୁ ପୂଜାର ଉତ୍ତରୋତ୍ତର ଆଧାର ହିଁ ଶ୍ରେଷ୍ଠତର । ପୂର୍ବବର୍ତ୍ତୀର ଅଭାବରେ ପରବର୍ତ୍ତୀ ଆଧାରକୁ ଅବଲମ୍ବନ କରିବା ଉଚିତ । ନେତ୍ରରୋଗ, ମସ୍ତକରୋଗ ଓ କୁଷ୍ଠରୋଗର ଶାନ୍ତି ପାଇଁ ଭଗବାନ ସୂର୍ଯ୍ୟଙ୍କୁ ପୂଜା କରି ବ୍ରାହ୍ମଣଙ୍କୁ ଭୋଜନ କରାଇବା ଉଚିତ । ତା'ପରେ ଗୋଟିଏ ଦିନ, ଗୋଟିଏ ମାସ, ଗୋଟିଏ ବର୍ଷ ଅଥବା ନିରବଚ୍ଛିନ୍ନ ତିନିବର୍ଷ ପର୍ଯ୍ୟନ୍ତ ଏହି ଉପାୟ କରିବା ଉଚିତ । ଏହାଦ୍ୱାରା ଯଦି ପ୍ରବଳ ପ୍ରାରବ୍ଧ ନିର୍ମାଣ ହୋଇଯାଏ, ତେବେ ରୋଗ ଓ ଜରା ଇତ୍ୟାଦି ନଷ୍ଟ ହୋଇଯାଏ ।

ଇଷ୍ଟଦେବଙ୍କ ନାମମନ୍ତ୍ର ଜପ ଇତ୍ୟାଦି ସାଧନା ବାର ପ୍ରଭୃତି ଅନୁସାରେ ଫଳ ଦେଇଥାଏ । ରବିବାର ଦିନ ସୂର୍ଯ୍ୟଦେବଙ୍କ ପାଇଁ, ଅନ୍ୟ ଦେବତାଙ୍କ ପାଇଁ ଏବଂ ବ୍ରାହ୍ମଣଙ୍କ ପାଇଁ ବିଶିଷ୍ଟ ବସ୍ତୁ ଅର୍ପିତ କରିବେ । ଏହି ସାଧନ ବିଶିଷ୍ଟ ଫଳ ଦେଇଥାଏ ଏବଂ ଏହାଦ୍ୱାରା ବିଶେଷରୂପେ ପାପ ଶାନ୍ତି ହୋଇଥାଏ । ସୋମବାର ଦିନ ବିଦ୍ୱାନ୍ ପୁରୁଷ ସମ୍ପତ୍ତି ପ୍ରାପ୍ତି ପାଇଁ ଲକ୍ଷ୍ମୀ ଆଦିଙ୍କୁ ପୂଜା କରିବେ ତଥା ବ୍ରାହ୍ମଣଙ୍କୁ ସପତ୍ନୀକ ଘୃତପକ୍ୱ ଅନ୍ନ ଭୋଜନ କରାଇବେ । ମଙ୍ଗଳବାର ଦିନ ରୋଗଶାନ୍ତି ନିମନ୍ତେ କାଳୀ ପ୍ରଭୃତିଙ୍କୁ ପୂଜା କରିବେ ଏବଂ ବିରି, ମୁଗ ଓ ହରଡ଼ ଡାଲି ସହିତ ବ୍ରାହ୍ମଣଙ୍କୁ ଅନ୍ନ ଭୋଜନ କରାଇବେ । ବୁଧବାର ଦିନ ବିଦ୍ୱାନ୍ ପୁରୁଷ ଦଧିଯୁକ୍ତ ଅନ୍ନରେ ଭଗବାନ ବିଷ୍ଣୁଙ୍କୁ ପୂଜା କରିବେ । ଏପରି କଲେ ସର୍ବଦା ପୁତ୍ର, ମିତ୍ର ଓ କଳତ୍ରଙ୍କର ପୁଷ୍ଟିସାଧନ ହୋଇଥାଏ । ଦୀର୍ଘାୟୁ ହେବାକୁ ଚାହୁଁଥିବା ବ୍ୟକ୍ତି ଗୁରୁବାର ଦିନ ଦେବତାଙ୍କ ପୁଷ୍ଟି ନିମନ୍ତେ ବସ୍ତ୍ର, ଉପବୀତ ଓ ଘୃତମିଶ୍ରିତ ଖିରିରେ ଯଜନ-ପୂଜନ କରିବେ । ଭୋଗପ୍ରାପ୍ତି ନିମନ୍ତେ ଶୁକ୍ରବାର ଦିନ ଏକାଗ୍ରଚିତ୍ତରେ ଦେବତାଙ୍କୁ ପୂଜା କରିବେ ଓ ବ୍ରାହ୍ମଣଙ୍କୁ ଷଡ୍‌ରସଯୁକ୍ତ ଭୋଜନରେ ତୃପ୍ତ କରିବେ । ଏହିପରି ସ୍ତ୍ରୀମାନଙ୍କ ପ୍ରସନ୍ନତା ପାଇଁ ସୁନ୍ଦର ବସ୍ତ୍ର ଆଦି ଦାନ କରିବେ । ଶନୈଶ୍ଚର ଅପମୃତ୍ୟୁ ନିବାରଣ କରିଥାନ୍ତି । ସେଦିନ ବୁଦ୍ଧିମାନ୍ ବ୍ୟକ୍ତି ରୁଦ୍ର ପ୍ରଭୃତିଙ୍କୁ ପୂଜା କରିବା ଉଚିତ । ତିଳ ହୋମରେ ଓ ଦାନରେ ଦେବତାଙ୍କୁ ସନ୍ତୁଷ୍ଟ କରି ବ୍ରାହ୍ମଣଙ୍କୁ ତିଳମିଶ୍ରିତ ଅନ୍ନ ଭୋଜନ କରାଇବେ । ଯେ ଏହିରୂପେ ଦେବତାଙ୍କୁ ପୂଜା କରିବ, ସେ ଆରୋଗ୍ୟାଦି ଫଳର ଭାଗୀ ହେବ ।

ଦେବତାଙ୍କ ନିତ୍ୟ-ପୂଜନ, ବିଶେଷ-ପୂଜନ, ସ୍ନାନ, ଦାନ, ଜପ, ହୋମ ତଥା ବ୍ରାହ୍ମଣ-ତର୍ପଣ ଇତ୍ୟାଦି କଲେ ଏବଂ ରବି ଇତ୍ୟାଦି ବାରରେ ବିଶେଷ ତିଥି ଓ ନକ୍ଷତ୍ର ପଡ଼ିଥିବାବେଳେ ବିଭିନ୍ନ ଦେବତାଙ୍କୁ ପୂଜା କଲେ ସର୍ବଜ୍ଞ ଜଗଦୀଶ୍ୱର ଶିବ ହିଁ ସେହି ଦେବତାଙ୍କ ରୂପରେ ପୂଜିତ ହୋଇ ସମସ୍ତଙ୍କୁ ଆରୋଗ୍ୟାଦି ଫଳ ପ୍ରଦାନ କରିଥାନ୍ତି । ଦେଶ, କାଳ, ପାତ୍ର, ଦ୍ରବ୍ୟ, ଶ୍ରଦ୍ଧା ଓ ଲୋକରୀତି ଅନୁସାରେ ସେଗୁଡ଼ିକର ତାରତମ୍ୟକୁ ଦୃଷ୍ଟିରେ ରଖି ଆରାଧନା କରୁଥିବା ଲୋକଙ୍କୁ ମହାଦେବ ଆରୋଗ୍ୟାଦି ଫଳ ଦିଅନ୍ତି । ଶୁଭ (ମାଙ୍ଗଳିକ) କର୍ମର ଆରମ୍ଭରେ, ଅଶୁଭ (ଅନ୍ତ୍ୟେଷ୍ଟି ଆଦି) କର୍ମର ଶେଷରେ ତଥା ଜନ୍ମନକ୍ଷତ୍ର ଇତ୍ୟାଦିରେ ଗୃହସ୍ଥ ବ୍ୟକ୍ତି ନିଜ ଘରେ ଆରୋଗ୍ୟାଦି ସମୃଦ୍ଧି ପାଇଁ ସୂର୍ଯ୍ୟାଦି ଗ୍ରହଙ୍କୁ ପୂଜା କରିବା ଆବଶ୍ୟକ । ଏଥିରୁ ସିଦ୍ଧ ହୁଏ ଯେ ଦେବତାଙ୍କ ଯଜନ ସମସ୍ତ ଅଭୀଷ୍ଟ ପ୍ରଦାତା ଅଟେ ।

ବ୍ରାହ୍ମଣଙ୍କର ଦେବଯଜନ କର୍ମ ବୈଦିକ ମନ୍ତ୍ର ସହିତ ହେବା ବିଧେୟ । (ଏଠାରେ ବ୍ରାହ୍ମଣ ଶବ୍ଦ କ୍ଷତ୍ରିୟ ଓ ବୈଶ୍ୟଙ୍କର ମଧ୍ୟ ଉପଲକ୍ଷଣ ।) ଶୂଦ୍ରାଦିଙ୍କର ଦେବଯଜ୍ଞ ତାନ୍ତ୍ରିକ ବିଧିରେ ହେବା ଉଚିତ । ଶୁଭ ଫଳ ଚାହୁଁଥିବା ମନୁଷ୍ୟ ସପ୍ତାହର ସାତଦିନଯାକ ନିଜ ଶକ୍ତି ଅନୁସାରେ ହିଁ ସଦା ଦେବପୂଜନ କରିବା ଉଚିତ । ନିର୍ଦ୍ଧନ ବ୍ୟକ୍ତି ତପସ୍ୟା (ବ୍ରତାଦିର କଷ୍ଟ ସହନ କରିବା) ଦ୍ୱାରା ଓ ଧନୀ ଧନ ଦ୍ୱାରା ଦେବତାଙ୍କ ଆରାଧନା କରିବା ଉଚିତ । ସେଭଳି ଲୋକ ବାରମ୍ବାର ଶ୍ରଦ୍ଧାପୂର୍ବକ ଏପରି ଧର୍ମ ଅନୁଷ୍ଠାନ କରେ ଏବଂ ବାରମ୍ବାର ପୁଣ୍ୟଲୋକରେ ନାନା ପ୍ରକାର ଫଳଭୋଗ କରି ପୁନଃ ପୃଥିବୀପୃଷ୍ଠରେ ଜନ୍ମ ଗ୍ରହଣ କରେ । ଧନବାନ୍ ଲୋକ ସଦା ଭୋଗ ଲାଭ ପାଇଁ ମାର୍ଗରେ ବୃକ୍ଷାଦି ରୋପଣ କରି ଲୋକଙ୍କ ପାଇଁ ଛାୟାର ବ୍ୟବସ୍ଥା କରିବେ, ଜଳାଶୟ (କୂଅ, ପୋଖରୀ) ନିର୍ମାଣ କରିବେ, ବେଦଶାସ୍ତ୍ର ପ୍ରତିଷ୍ଠା ଉଦ୍ଦେଶ୍ୟରେ ପାଠଶାଳା ନିର୍ମାଣ କରିବେ ତଥା ଅନ୍ୟାନ୍ୟ ଉପାୟରେ ମଧ୍ୟ ଧର୍ମସଂଗ୍ରହ କରିବେ । ଧନୀମାନେ ସର୍ବଦା ଏହିପରି କର୍ମ କରିବା

ଆବଶ୍ୟକ । ସମୟାନୁସାରେ ପୁଣ୍ୟକର୍ମର ପରିପାକରେ ଅନ୍ତଃକରଣ ଶୁଦ୍ଧ ହୋଇଗଲେ ଜ୍ଞାନସିଦ୍ଧି ହୁଏ । ଦ୍ୱିଜଗଣ ! ଯେ ଏ ଅଧ୍ୟାୟକୁ ଶୁଣେ, ପଢ଼େ ଅଥବା ଶୁଣିବାର ବ୍ୟବସ୍ଥା କରେ, ସେ ଦେବଯଜ୍ଞର ଫଳ ଲାଭ କରେ ।

(ଅଧ୍ୟାୟ ୧୪)

★★★

## ଦେଶ, କାଳ, ପାତ୍ର ଓ ଦାନ ଆଦିର ବିଗ୍ରର

ଋଷିଗଣ କହିଲେ–ସମସ୍ତ ପଦାର୍ଥର ଜ୍ଞାତାଙ୍କ ମଧ୍ୟରେ ଶ୍ରେଷ୍ଠ ସୂତ ! ଏବେ ଆପଣ କ୍ରମାନୁସାରେ ଦେଶ, କାଳ ଇତ୍ୟାଦିର ବର୍ଣ୍ଣନା କରନ୍ତୁ ।

ସୂତ କହିଲେ– ମହର୍ଷିଗଣ ! ଦେବଯଜ୍ଞ ଇତ୍ୟାଦି କର୍ମରେ ନିଜର ପବିତ୍ର ଗୃହ ସମଫଳ ପ୍ରଦାନ କରିଥାଏ ଅର୍ଥାତ୍ ନିଜ ଘରେ କରାଯାଉଥିବା ଦେବଯଜ୍ଞ ଇତ୍ୟାଦି ଶାସ୍ତ୍ରରେ କୁହାଯାଇଥିବା ମାତ୍ରା ଅନୁସାରେ ହିଁ ଫଳ ପ୍ରଦାନ କରିଥାଏ । ଘର ଅପେକ୍ଷା ଗୋଶାଳା ଦଶଗୁଣ ଅଧିକ ଫଳ ଦେଇଥାଏ । ଜଳାଶୟର କୂଳ ତାହାଠାରୁ ଦଶଗୁଣ ଅଧିକ ମହତ୍ତ୍ୱପୂର୍ଣ୍ଣ । ଯେଉଁଠି ବେଲ, ତୁଳସୀ ଓ ଅଶ୍ୱତ୍ଥ ବୃକ୍ଷ ଥାଏ, ସେ ସ୍ଥାନଟି ଜଳାଶୟ ଅପେକ୍ଷା ଦଶଗୁଣ ଅଧିକ ଫଳଦାୟୀ । ଦେବାଳୟକୁ ତା'ଠାରୁ ଦଶଗୁଣ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ବୁଝିବା ଉଚିତ । ଦେବାଳୟ ଠାରୁ ଦଶଗୁଣ ମହତ୍ତ୍ୱପୂର୍ଣ୍ଣ ତୀର୍ଥଭୂମିର ସାନ୍ନିଧ୍ୟ । ତା'ଠାରୁ ଦଶଗୁଣ ଶ୍ରେଷ୍ଠ ନଦୀକୂଳ । ତା'ଠାରୁ ଦଶଗୁଣ ଶ୍ରେଷ୍ଠ ତୀର୍ଥନଦୀର ତଟ ଏବଂ ତା'ଠାରୁ ଦଶଗୁଣ ଶ୍ରେଷ୍ଠ ସପ୍ତଗଙ୍ଗା ନାମକ ନଦୀମାନଙ୍କ ତୀର୍ଥ । ଗଙ୍ଗା, ଗୋଦାବରୀ, କାବେରୀ, ତାମ୍ରପର୍ଣ୍ଣୀ, ସିନ୍ଧୁ, ସରଯୂ ଓ ନର୍ମଦା– ଏ ସାତଟି ନଦୀଙ୍କୁ ସପ୍ତଗଙ୍ଗା କୁହାଯାଏ । ସମୁଦ୍ର ତଟବର୍ତ୍ତୀ ସ୍ଥାନ ଏହାଠାରୁ ମଧ୍ୟ ଦଶଗୁଣ ପବିତ୍ର । ପର୍ବତର ଶିଖର ପ୍ରଦେଶ ସମୁଦ୍ରତଟଠାରୁ ମଧ୍ୟ ଦଶଗୁଣ ପାବନ ଅଟେ । ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ହେଲା ସେହି ସ୍ଥାନ, ଯେଉଁଠି ମନ ଲାଗିଯାଏ ।

ଏପର୍ଯ୍ୟନ୍ତ ଦେଶର ବର୍ଣ୍ଣନା ହେଲା । ଏଥର କାଳର ପ୍ରଭେଦ ବିଷୟରେ କୁହାଯାଉଛି । ସତ୍ୟଯୁଗରେ ଯଜ୍ଞ, ଦାନ ଆଦି କର୍ମ ପୂର୍ଣ୍ଣ ଫଳ ପ୍ରଦାନ କରିଥାଏ ବୋଲି ବୁଝିବାକୁ ହେବ । ତ୍ରେତାଯୁଗରେ ତାହାର ତିନିଚତୁର୍ଥାଂଶ ଫଳ ମିଳିଥାଏ । ଦ୍ୱାପରରେ ସର୍ବଦା ଅଧା ଫଳ ହିଁ ମିଳିଥାଏ । କଳିଯୁଗରେ ଏକଚତୁର୍ଥାଂଶ ଫଳ ପ୍ରାପ୍ତି ହୁଏ ବୋଲି ଜାଣିବା ଉଚିତ ଏବଂ କଳିଯୁଗ ଅଧା ବିତିଯିବା ପରେ ସେହି ଏକଚତୁର୍ଥାଂଶ ଫଳରୁ ମଧ୍ୟ ଏକଚତୁର୍ଥାଂଶ କମିଯାଏ । ଯାହାର ଅନ୍ତଃକରଣ ଶୁଦ୍ଧ, ତାକୁ ଶୁଦ୍ଧ ଓ ପବିତ୍ର ଦିବସ ସମଫଳ ପ୍ରଦାନ କରିଥାଏ ।

ବିଦ୍ୱାନ୍ ବ୍ରାହ୍ମଣଗଣ ! ସୂର୍ଯ୍ୟ-ସଂକ୍ରାନ୍ତି ଦିନ କରାଯାଇଥିବା ସତ୍କର୍ମ ପୂର୍ବୋକ୍ତ ଶୁଦ୍ଧ ଦିବସର ଦଶଗୁଣ ଫଳ ଦେଇଥାଏ । ତା'ଠାରୁ ଦଶଗୁଣ ମହତ୍ତ୍ୱ ସେହି କର୍ମର, ଯାହା 'ବିଷୁବ'* ନାମକ ଯୋଗରେ କରାଯାଇଥାଏ । ଦକ୍ଷିଣାୟନ ଆରମ୍ଭ ହେବା ଦିନ ଅର୍ଥାତ୍ କର୍କଟ ସଂକ୍ରାନ୍ତି ଦିନ କରାଯାଇଥିବା ପୁଣ୍ୟକର୍ମର ମହତ୍ତ୍ୱ ବିଷୁବଠାରୁ ମଧ୍ୟ ଦଶଗୁଣ ଅଧିକ ବୋଲି ଧରାଯାଏ । ତା'ଠାରୁ ମଧ୍ୟ ଦଶଗୁଣ ଅଧିକ ମକର ସଂକ୍ରାନ୍ତିରେ, ତହିଁରୁ ଦଶଗୁଣ ଅଧିକ ଚନ୍ଦ୍ରଗ୍ରହଣରେ କୃତ

* ଜ୍ୟୋତିଷ ଅନୁସାରେ ସୂର୍ଯ୍ୟ ବିଷୁବ ରେଖାରେ ପହଞ୍ଚିଲେ ଦିନ ଓ ରାତି ସମାନ ଦୈର୍ଘ୍ୟବିଶିଷ୍ଟ ହୋଇଥାଏ । ଏପରି କାଳ ବର୍ଷରେ ଦୁଇଥର ଆସେ । ଥରେ ଚୈତ୍ରମାସର ନବମୀ ତିଥି ବା ଇଂରାଜୀ ୨୧ ମାର୍ଚ୍ଚକୁ ଏବଂ ଆଉ ଥରେ ସୌର ଆଶ୍ୱିନର ନବମୀ ତିଥି ବା ଇଂରାଜୀ ୨୨ ସେପ୍ଟେମ୍ବରକୁ ।

ପୁଣ୍ୟକର୍ମର ମହତ୍ତ୍ୱ । ସୂର୍ଯ୍ୟୋପରାଗର ସମୟ ସବୁଠାରୁ ଅଧିକ ଉତ୍ତମ । ସେତେବେଳେ କରାଯାଇଥିବା ପୁଣ୍ୟକର୍ମର ଫଳ ଚନ୍ଦ୍ରଗ୍ରହଣଠାରୁ ଅଧିକ ଓ ପୂର୍ଣ୍ଣମାତ୍ରାରେ ମିଳିଥାଏ । ଏକଥା ବିଜ୍ଞଲୋକେ ଜାଣନ୍ତି । ଜଗତରୂପୀ ସୂର୍ଯ୍ୟଙ୍କର ରାହୁରୂପୀ ବିଷ ସହ ସଂଯୋଗ ହୋଇଥାଏ, ତେଣୁ ସୂର୍ଯ୍ୟଗ୍ରହଣର ସମୟ ରୋଗ ପ୍ରଦାନ କରିଥାଏ । ତେଣୁ ଉକ୍ତ ବିଷର ଶମନ ନିମନ୍ତେ ସେହି ସମୟରେ ସ୍ନାନ, ଦାନ ଓ ଜପ କରିବା ଉଚିତ । ସେହି କାଳ ବିଷଶାନ୍ତି ନିମନ୍ତେ ଉପଯୋଗୀ ହୋଇଥିବା କାରଣରୁ ପୁଣ୍ୟପ୍ରଦ ବୋଲି ଧରାଯାଇଛି । ଜନ୍ମନକ୍ଷତ୍ର ଦିବସ ଓ ବ୍ରତର ସମାପନ ଦିବସ ସୂର୍ଯ୍ୟଗ୍ରହଣ ଦିନ ପରି ପୁଣ୍ୟପ୍ରଦ ବୋଲି ଧରାଯାଇଛି । ମାତ୍ର ମହାପୁରୁଷଙ୍କ ସାନ୍ନିଧ୍ୟ କାଳକୁ କୋଟିସୂର୍ଯ୍ୟଗ୍ରହଣ ସମାନ ପାବନ ବୋଲି ଜ୍ଞାନୀଜନ ଜାଣନ୍ତି ଓ ମାନନ୍ତି ।

ତପୋନିଷ୍ଠ ଯୋଗୀ ଓ ଜ୍ଞାନନିଷ୍ଠ ଯତି— ଏମାନେ ପୂଜାର ପାତ୍ର; କାରଣ ଏମାନେ ପାପନାଶରେ କାରଣ ହୁଅନ୍ତି । ଚବିଶଲକ୍ଷ ଗାୟତ୍ରୀ ଜପ କରିସାରିଥିବା ବ୍ରାହ୍ମଣ ମଧ୍ୟ ପୂଜାର ପାତ୍ର । ସେ ସମସ୍ତ ଫଳ ଓ ଭୋଗ ଦେବାକୁ ସମର୍ଥ । ଯେ ପତନରୁ ତ୍ରାଣ କରେ ଅର୍ଥାତ୍ ନରକରେ ପଡ଼ିବାରୁ ରକ୍ଷା କରେ, ତା' ପାଇଁ ଶାସ୍ତ୍ରରେ 'ପାତ୍ର' ଶବ୍ଦର ପ୍ରୟୋଗ ହୋଇଛି । ଦାତାକୁ ପାତକରୁ ତ୍ରାଣ କରିବା କାରଣରୁ ସେ 'ପାତ୍ର'* ବୋଲାଏ । ଗାୟତ୍ରୀ ତାହାକୁ ଗାନ କରୁଥିବା ବ୍ୟକ୍ତିକୁ ତ୍ରାଣ କରେ, ତେଣୁ ତାହାର ନାମ 'ଗାୟତ୍ରୀ' । ଯେପରି ଜଗତରେ ଧନହୀନ ବ୍ୟକ୍ତି କାହାକୁ ଧନ ଦେଇ ପାରେ ନାହିଁ, ଧନବାନ୍ ହିଁ ଧନ ଦେଇପାରେ, ଠିକ୍ ସେହିପରି ଯେ ନିଜେ ଶୁଦ୍ଧ ପବିତ୍ରାତ୍ମା, ସେ ହିଁ ଅନ୍ୟ ମନୁଷ୍ୟକୁ ତ୍ରାଣ ବା ଉଦ୍ଧାର କରିପାରେ । ଯେ ଗାୟତ୍ରୀ ଜପ କରି ଶୁଦ୍ଧ ହୋଇସାରିଛି, ସେ ହିଁ ଶୁଦ୍ଧ ବ୍ରାହ୍ମଣ ବୋଲାଏ । ତେଣୁ ଦାନ, ଜପ, ହୋମ ଓ ପୂଜାଦି ସମସ୍ତ କର୍ମ ପାଇଁ ସେ ହିଁ ଶୁଦ୍ଧ ପାତ୍ର ଅଟେ । ଏପରି ବ୍ରାହ୍ମଣ ହିଁ ଦାନର ପାତ୍ର ତଥା ତ୍ରାଣ କରିବାରେ ସକ୍ଷମ ।

ସ୍ତ୍ରୀ ହେଉ ବା ପୁରୁଷ ହେଉ, ଯଦି ସେ ଭୋକିଲା, ତେବେ ସେ ଅନ୍ନଦାନ ପାଇବାର ପାତ୍ର । ଯାହାର ଯେଉଁ ବସ୍ତୁ ପାଇଁ ଇଚ୍ଛା ଅଛି, ସେ ନ ମାଗୁଣୁ ତାହାକୁ ସେହି ବସ୍ତୁ ଦେଇଦେଲେ ଦାତାକୁ ଉକ୍ତ ଦାନର ପୂର୍ଣ୍ଣ ଫଳ ମିଳିଯାଏ—ଏହା ମହର୍ଷିମାନଙ୍କର ବିଶ୍ୱାସ । ଯାହା ମାଗିବା ପରେ ଦିଆଯାଏ, ସେଭଳି ଦାନର ଫଳ ଅଧା ହୋଇଯାଏ । ନିଜ ସେବକକୁ ଦିଆଯାଉଥିବା ଦାନ ଏକଚତୁର୍ଥାଂଶ ଫଳ ଦେଇଥାଏ । ବିପ୍ରଗଣ ! ଯେ କେବଳ ଜାତି ଦୃଷ୍ଟିରୁ ବ୍ରାହ୍ମଣ ଏବଂ ଦୀନତାପୂର୍ଣ୍ଣ ବୃତ୍ତିରେ ଜୀବନ ବିତାଏ, ତାକୁ ଦିଆଯାଇଥିବା ଧନଦାନ ଦାତାକୁ ଭୂତଳରେ ଦଶବର୍ଷ ପର୍ଯ୍ୟନ୍ତ ଭୋଗ ପ୍ରଦାନ କରିଥାଏ । ସେହି ଦାନ ଯଦି ବେଦବେତ୍ତା ବ୍ରାହ୍ମଣକୁ ଦିଆଯାଏ, ତାହା ସ୍ୱର୍ଗଲୋକରେ ଦେବତାଙ୍କ ବର୍ଷ ଅନୁସାରେ ଦଶବର୍ଷ ଦିବ୍ୟ ଭୋଗ ପ୍ରଦାନ କରେ । ଶିଳ ଓ ଉଞ୍ଛ ବୃତ୍ତିରେ¥

* ପତନାତ୍ ତ୍ରାୟତ ଇତି ପାତ୍ରଂ ଶାସ୍ତ୍ରେ ପ୍ରଯୁଜ୍ୟତେ । ଦାତୃଶ୍ଚ ପାତକାତ୍ ତ୍ରାଣାତ୍ ପାତ୍ରମିତ୍ୟଭିଧୀୟତେ ॥
(ଶି. ପୁ. ବିଦ୍ୟେ. ୧୫।୧୫)

¥ କୋଷକାର କହନ୍ତି—
'ଉଞ୍ଛଃ କଣଶ ଆଦାନଂ କଣିଶାଦ୍ୟର୍ଜନଂ ଶିଳମ୍ ।' ଅର୍ଥାତ୍ ବିଲରୁ ଧାନ୍ୟାଦି କାଟି ନିଆଯିବା ପରେ ବା ବଜାର ଉଠିଯିବା ପରେ ସେଠାରେ ଯେଉଁ ଶସ୍ୟ ପଡ଼ିଥାଏ, ତାହାକୁ ଖୁଣ୍ଟି ଖୁଣ୍ଟି ଗୋଟାଇ ଆଣି ତଦ୍ଦ୍ୱାରା ଜୀବିକା ଚଳାଇବା 'ଉଞ୍ଛବୃତ୍ତି' ଅଟେ ତଥା ବିଲରୁ ଫସଲ କାଟି ନିଆଯିବା ପରେ ସେଠାରେ ପଡ଼ିଥିବା ଧାନ୍ୟାଦିର ଶିଁସା ବା କେଣ୍ଡା ସାଉଁଟିବାକୁ 'ଶିଳ' କୁହାଯାଉଥିବାରୁ ଏହାଦ୍ୱାରା ଜୀବିକା ଚଳାଇବା 'ଶିଳବୃତ୍ତି' ଅଟେ ।

ଅଣାଯାଇଥିବା ଓ ଗୁରୁଦକ୍ଷିଣାରୂପେ ପ୍ରାପ୍ତ ଅନ୍ନ ବା ଧନ ଶୁଦ୍ଧ ଦ୍ରବ୍ୟରେ ପରିଗଣିତ ହୁଏ । ସେହି ସବୁ ଦାନ ଦାତାକୁ ପୂର୍ଣ୍ଣ ଫଳ ଦେଇଥାଏ । କ୍ଷତ୍ରିୟଙ୍କର ଶୌର୍ଯ୍ୟ ଦ୍ୱାରା ଉପାର୍ଜିତ ଧନ, ବୈଶ୍ୟଙ୍କର ବାଣିଜ୍ୟରୁ ଆସିଥିବା ଧନ ଓ ଶୂଦ୍ରଙ୍କର ସେବାବୃତ୍ତିରେ ପ୍ରାପ୍ତ ଧନ ମଧ୍ୟ ଉତ୍ତମ ଦ୍ରବ୍ୟରୂପେ ପରିଗଣିତ ହୁଏ । ଧର୍ମ ଇଚ୍ଛା କରୁଥିବା ସ୍ତ୍ରୀକୁ ଯେଉଁ ଧନ ପିତା ଓ ସ୍ୱାମୀଠାରୁ ମିଳିଥାଏ, ତା' ନିମନ୍ତେ ସେହି ଧନ ଉତ୍ତମ ଦ୍ରବ୍ୟ ଅଟେ ।

ଗୋ ଆଦି ବାରଟି ବସ୍ତୁକୁ ଯଥାକ୍ରମେ ଚୈତ୍ର ଆଦି ବାରଟି ମାସରେ ଦାନ କରିବା ଉଚିତ । ଗୋ, ଭୂମି, ତିଳ, ସୁବର୍ଣ୍ଣ, ଘୃତ, ବସ୍ତ୍ର, ଧାନ୍ୟ, ଗୁଡ଼, ରୌପ୍ୟ, ଲବଣ, କୁଷ୍ମାଣ୍ଡ ଓ କନ୍ୟା—ଏହି ବାରଟି ହେଉଛି ସେହି ଦାନଯୋଗ୍ୟ ବସ୍ତୁ । ଏଥିମଧ୍ୟରୁ ଗୋଦାନରେ କାୟିକ, ବାଚିକ ଓ ମାନସିକ ପାପର ନିବାରଣ ଏବଂ କାୟିକ ଆଦି ପୁଣ୍ୟକର୍ମର ପୁଷ୍ଟି ହୁଏ । ବ୍ରାହ୍ମଣଗଣ ! ଭୂମିଦାନ ଇହଲୋକ ଓ ପରଲୋକରେ ପ୍ରତିଷ୍ଠା (ଆଶ୍ରୟ) ପ୍ରଦାନ କରିଥାଏ । ତିଳଦାନ ବଳବର୍ଦ୍ଧକ ଓ ମୃତ୍ୟୁନିବାରକ ହୋଇଥାଏ । ସୁବର୍ଣ୍ଣଦାନ ଜଠରାଗ୍ନିକୁ ଉଦ୍ଦୀପ୍ତ କରାଏ ଏବଂ ବୀର୍ଯ୍ୟଦାୟକ ହୋଇଥାଏ । ଘୃତଦାନ ପୁଷ୍ଟିକାରକ ଏବଂ ବସ୍ତ୍ରଦାନ ଆୟୁବର୍ଦ୍ଧକ ଅଟେ । ଧାନ୍ୟଦାନ ଅନ୍ନ-ଧନର ସମୃଦ୍ଧିରେ କାରଣ ହୋଇଥାଏ । ଗୁଡ଼ଦାନ ମଧୁର ଭୋଜନ ପ୍ରାପ୍ତି କରାଇଥାଏ । ରୁପାଦାନରେ ବୀର୍ଯ୍ୟବୃଦ୍ଧି ହୋଇଥାଏ । ଲବଣଦାନରେ ଷଡ଼ରସ ଭୋଜନ ପ୍ରାପ୍ତି ହୋଇଥାଏ । ସବୁ ପ୍ରକାର ଦାନ ସକଳ ସମୃଦ୍ଧିର ସିଦ୍ଧିରେ ହେତୁ ହୋଇଥାଏ । ବିଜ୍ଞଲୋକେ କୁଷ୍ମାଣ୍ଡ-ଦାନକୁ ପୁଷ୍ଟିଦାୟକ ବୋଲି କହିଥାନ୍ତି । କନ୍ୟାଦାନ ଆଜୀବନ ଭୋଗ ପ୍ରଦାୟକ ହୋଇଥାଏ । ବ୍ରାହ୍ମଣଗଣ ! ତାହା ଇହଲୋକ ଓ ପରଲୋକରେ ମଧ୍ୟ ସମସ୍ତ ଭୋଗ ପ୍ରଦାନ କରିଥାଏ ।

ବିଦ୍ୱାନ୍ ବ୍ୟକ୍ତି ପକ୍ଷେ ଏଭଳି ଜିନିଷ ସଦା ଦାନ କରିବା ଉଚିତ, ଯାହା ଶ୍ରବଣେନ୍ଦ୍ରିୟ ଇତ୍ୟାଦିକୁ ତୃପ୍ତି ପ୍ରଦାନ କରିଥାଏ । ଶ୍ରୋତ୍ରାଦି ଦଶ ଇନ୍ଦ୍ରିୟର ଯେଉଁ ଶବ୍ଦାଦି ଦଶଟି ବିଷୟ ରହିଛି, ତତ୍‌ସମ୍ବନ୍ଧିତ ବସ୍ତୁ ଦାନ କଲେ ତାହା ଭୋଗ୍ୟବସ୍ତୁ ପ୍ରାପ୍ତିରେ କାରଣ ହୋଇଥାଏ ଏବଂ ଦିଗ ପ୍ରଭୃତି ଇନ୍ଦ୍ରିୟାଧିଷ୍ଠାତୃ ଦେବତାଙ୍କୁ* ସନ୍ତୁଷ୍ଟ କରିଥାଏ । ବେଦ ଓ ଶାସ୍ତ୍ରକୁ ଗୁରୁମୁଖରୁ ଗ୍ରହଣ କରି ଗୁରୁଙ୍କ ଉପଦେଶ କ୍ରମେ ଅଥବା ସ୍ୱୟଂ ନିଜେ ବୋଧପ୍ରାପ୍ତି କରିବା ପରେ ବୁଦ୍ଧି ଯେଉଁ ନିର୍ଣ୍ଣୟ କରେ ଯେ 'କର୍ମର ଫଳ ଅବଶ୍ୟ ମିଳେ', ତାହାକୁ ଉଚ୍ଚକୋଟିର ଆସ୍ତିକତା କହନ୍ତି । ଭାଇ-ବନ୍ଧୁ ଅଥବା ରାଜାଙ୍କ ଭୟରେ ଯେଉଁ ଆସ୍ତିକବୁଦ୍ଧି ବା ଶ୍ରଦ୍ଧା ହୁଏ, ତାହା କନିଷ୍ଠ ଶ୍ରେଣୀର ଆସ୍ତିକତା ଅଟେ । ଯେ ସର୍ବଥା ଦରିଦ୍ର ଓ ସବୁଦୃଷ୍ଟିରୁ ଅଭାବଗ୍ରସ୍ତ, ସେ ବାଣୀ ଅଥବା କର୍ମ (ଶରୀର) ଦ୍ୱାରା ଯଜନ କରିବା ଉଚିତ । ମନ୍ତ୍ର, ସ୍ତୋତ୍ର ଓ ଜପ ଇତ୍ୟାଦିକୁ ବାଣୀ ଦ୍ୱାରା କରାଯାଉଥିବା ଯଜନ ବୋଲି ବୁଝିବା ଉଚିତ ତଥା ତୀର୍ଥଯାତ୍ରା ଓ ବ୍ରତାଦିକୁ ବିଦ୍ୱାନ୍‌ଲୋକେ ଶାରୀରିକ ଯଜନ ବୋଲି ମାନିଥାନ୍ତି । ଯେକୌଣସି ଉପାୟରେ ହେଲେ ବି ଯଦି ଦେବାର୍ପଣ ବୁଦ୍ଧିରେ ଅଳ୍ପ-ବହୁତ ଯାହା କିଛି ଦିଆଯାଏ ବା ଯାହା କିଛି କର୍ମ କରାଯାଏ, ସେହି ଦାନ ବା ସତ୍କର୍ମ ଭୋଗପ୍ରାପ୍ତି କରାଇଥାଏ । ତପସ୍ୟା ଓ ଦାନ—ଏ ଦୁଇଟି କର୍ମ ମନୁଷ୍ୟ ସର୍ବଦା କରୁଥିବା ଉଚିତ । ଏଭଳି ଗୃହ ଦାନ କରିବା ଉଚିତ, ଯାହା ବର୍ଣ୍ଣ (ସାଜସଜ୍ଜା ଓ ପରିଷ୍କାର-ପରିଚ୍ଛନ୍ନତା) ଏବଂ

* ଶ୍ରବଣେନ୍ଦ୍ରିୟର ଦେବତା ହେଲେ ଦିଗ, ନେତ୍ରର ସୂର୍ଯ୍ୟ, ନାସିକାର ଅଶ୍ୱିନୀକୁମାର, ରସନେନ୍ଦ୍ରିୟର ବରୁଣ, ତ୍ୱଗିନ୍ଦ୍ରିୟର ବାୟୁ, ବାଗିନ୍ଦ୍ରିୟର ଅଗ୍ନି, ଲିଙ୍ଗର ପ୍ରଜାପତି, ମଳଦ୍ୱାରର ମିତ୍ର, ହସ୍ତର ଇନ୍ଦ୍ର ଓ ପାଦର ଦେବତା ହେଲେ ବିଷ୍ଣୁ ।

ଗୁଣରେ (ସୁଖ-ସୁବିଧାରେ) ସୁଶୋଭିତ ହୋଇଥିବ । ବୁଦ୍ଧିମାନ୍ ବ୍ୟକ୍ତି ଦେବତାଙ୍କ ତୃପ୍ତି ପାଇଁ ଯାହା କିଛି ଦିଅନ୍ତି, ତାହା ପ୍ରଚୁର ମାତ୍ରାରେ ସବୁ ପ୍ରକାର ଭୋଗ ପ୍ରଦାନ କରାଇଥାଏ । ଏଭଳି ଦାନ ଫଳରେ ବିଦ୍ୱାନ୍ ବ୍ୟକ୍ତି ଇହଲୋକ ଓ ପରଲୋକରେ ଉତ୍ତମ ଜନ୍ମ ଓ ସଦା ସୁଲଭ ହେଉଥିବା ଭୋଗ ପ୍ରାପ୍ତି କରିଥାନ୍ତି । ଈଶ୍ୱରାର୍ପଣ-ବୁଦ୍ଧିରେ ଯଜ୍ଞ-ଦାନ ଇତ୍ୟାଦି କର୍ମ କରି ମନୁଷ୍ୟ ମୋକ୍ଷଫଳର ଭାଗୀ ହୋଇଥାଏ ।

(ଅଧ୍ୟାୟ ୧୫)

★★★

## ମୃତ୍ତିକା ଇତ୍ୟାଦିରେ ନିର୍ମିତ ଦେବପ୍ରତିମାଙ୍କ ପୂଜାବିଧି ଓ ନୈବେଦ୍ୟ ସମ୍ବନ୍ଧୀୟ ବିଚାର, ପୂଜାର ଉପଚାର ଅନୁସାରେ ଭିନ୍ନ ଭିନ୍ନ ଫଳ, ବିଶେଷ ମାସ, ବାର, ତିଥି ଓ ନକ୍ଷତ୍ର ଯୋଗରେ ପୂଜନର ବିଶେଷ ଫଳ ଏବଂ ଲିଙ୍ଗର ବୈଜ୍ଞାନିକ ସ୍ୱରୂପ ବିବେଚନ

ଋଷିମାନେ କହିଲେ—ସାଧୁଶିରୋମଣେ ! ଏବେ ଆପଣ ପାର୍ଥିବ ପ୍ରତିମାଙ୍କ ପୂଜାର ବିଧାନ କୁହନ୍ତୁ, ଯଦ୍ଦ୍ୱାରା ସମସ୍ତ ଅଭୀଷ୍ଟ ବସ୍ତୁ ପ୍ରାପ୍ତ ହୁଏ ।

ସୂତ କହିଲେ—ମହର୍ଷିଗଣ ! ତୁମେମାନେ ବହୁତ ଉତ୍ତମ କଥା ପଚାରିଲ । ପାର୍ଥିବ ପ୍ରତିମା ପୂଜନ ସଦା ସମସ୍ତ ମନୋରଥ ପୂରଣ କରିଥାଏ ଏବଂ ତତ୍କାଳ ଦୁଃଖ ନିବାରଣ କରିଥାଏ । ମୁଁ ସେହି ବିଷୟରେ ବର୍ଣ୍ଣନା କରୁଛି, ତୁମେମାନେ ମନ ଦେଇ ଶୁଣ । ମୃତ୍ତିକା ଇତ୍ୟାଦିରେ ନିର୍ମିତ ଦେବପ୍ରତିମାଙ୍କର ପୂଜା ଭୂତଳରେ ଅଭୀଷ୍ଟଦାୟକ ବୋଲି ଧରାଯାଇଛି । ଏଥିରେ ପୁରୁଷ ଓ ନାରୀ ଉଭୟଙ୍କର ଅଧିକାର ରହିଛି । ବ୍ୟକ୍ତି ପ୍ରଥମେ ନଦୀ, ପୁଷ୍କରିଣୀ ଅଥବା କୂଅରେ ପ୍ରବେଶ କରି ପାଣି ଭିତରୁ ମାଟି ଆଣିବେ । ତା'ପରେ ଗନ୍ଧ-ଚୂର୍ଣ୍ଣ ଦ୍ୱାରା ତାହାକୁ ଶୋଧନ କରିବେ ଏବଂ ଶୁଦ୍ଧମଣ୍ଡପରେ ରଖି ତାହାକୁ ଭଲଭାବରେ ଗୁଣ୍ଡ କରିବେ ଓ ଚକଟିବେ । ଏହାପରେ ସେଥିରେ ପ୍ରତିମା ଗଢ଼ିବେ ଏବଂ ଦୁଗ୍ଧରେ ତାହାକୁ ସଂସ୍କାର କରିବେ । ପ୍ରତିମାର ଅଙ୍ଗପ୍ରତ୍ୟଙ୍ଗ ସ୍ପଷ୍ଟରୂପେ ବିକଶିତ ହୋଇଥିବା ସଙ୍ଗେ ସଙ୍ଗେ ତାହା ନାନା ପ୍ରକାର ଅସ୍ତ୍ରଶସ୍ତ୍ରରେ ସମ୍ପନ୍ନ ହୋଇଥିବା ଆବଶ୍ୟକ । ପ୍ରତିମାକୁ ପଦ୍ମାସନ ଉପରେ ସ୍ଥାପିତ କରି ଆଦରପୂର୍ବକ ପୂଜା କରିବେ । ଗଣେଶ, ସୂର୍ଯ୍ୟ, ବିଷ୍ଣୁ, ଦୁର୍ଗା ଓ ଶିବଙ୍କ ପ୍ରତିମାକୁ, ଶିବଙ୍କୁ ଏବଂ ଶିବଲିଙ୍ଗକୁ ଦ୍ୱିଜ ପୂଜା କରିବା ଉଚିତ । ଷୋଡଶୋପଚାର-ପୂଜନଜନିତ ଫଳ ପାଇବା ପାଇଁ ଷୋହଳ ପ୍ରକାର ଉପଚାରରେ ପୂଜା କରିବା ଉଚିତ । ପୁଷ୍ପରେ ପ୍ରୋକ୍ଷଣ ଓ ମନ୍ତ୍ରପାଠପୂର୍ବକ ଅଭିଷେକ କରିବେ । ଶାଳିଧାନ ଚାଉଳରେ ନୈବେଦ୍ୟ ପ୍ରସ୍ତୁତ କରିବେ । ସମସ୍ତ ନୈବେଦ୍ୟ ଏକ କୁଡବ ବା ପାଏ ପରିମାଣର ହେବା ଉଚିତ । ଘରେ ପାର୍ଥିବ ପୂଜନ ପାଇଁ ପାଏ ପରିମାଣର ଏବଂ ବାହାରେ କୌଣସି ବ୍ୟକ୍ତିବିଶେଷ ଦ୍ୱାରା ସ୍ଥାପିତ ଶିବଲିଙ୍ଗ ପୂଜନ ପାଇଁ ଏକ ପ୍ରସ୍ଥ (ସେରେ) ନୈବେଦ୍ୟ ପ୍ରସ୍ତୁତ କରିବା ଉଚିତ । ଦେବତାଙ୍କ ଦ୍ୱାରା ସ୍ଥାପିତ ଶିବଲିଙ୍ଗ ପାଇଁ ତିନି ସେର ନୈବେଦ୍ୟ ଅର୍ପିତ କରିବା ଉଚିତ ଏବଂ ସ୍ୱୟଂ ପ୍ରକଟ ହୋଇଥିବା ଶିବଲିଙ୍ଗ ପାଇଁ ପାଞ୍ଚ ସେର ଆବଶ୍ୟକ । ଏପରି କଲେ ପୂର୍ଣ୍ଣ ଫଳ ମିଳିଥାଏ । ଏପରି ସହସ୍ରବାର ପୂଜା କଲେ ଦ୍ୱିଜ ସତ୍ୟଲୋକ ପ୍ରାପ୍ତ ହୋଇଥାଏ ।

ବାର ଅଙ୍ଗୁଳି ଚଉଡ଼ା, ଏହାର ଦୁଇଗୁଣରୁ ଏକ ଅଙ୍ଗୁଳି ଅଧିକ ଅର୍ଥାତ୍ ପଚିଶ ଅଙ୍ଗୁଳି ଲମ୍ବା ତଥା ପନ୍ଦର ଅଙ୍ଗୁଳି ଉଚ୍ଚତାର ଲୌହ ବା କାଷ୍ଠ ପାତ୍ରକୁ ବିଦ୍ୱାନ୍‌ଲୋକେ 'ଶିବ' କହନ୍ତି । ତାହାର ଏକଅଷ୍ଟମାଂଶ ଭାଗକୁ ପ୍ରସ୍ଥ କୁହାଯାଏ, ଯାହା ଗ୍ରରି ପାଆ ସଙ୍ଗେ ସମାନ । ମନୁଷ୍ୟଙ୍କ ଦ୍ୱାରା ସ୍ଥାପିତ ଶିବଲିଙ୍ଗ ପାଇଁ ଦଶ ପ୍ରସ୍ଥ, ଋଷିଙ୍କ ଦ୍ୱାରା ସ୍ଥାପିତ ଲିଙ୍ଗ ପାଇଁ ଶହେ ପ୍ରସ୍ଥ ଏବଂ ସ୍ୱୟମ୍ଭୂ ଶିବଲିଙ୍ଗ ପାଇଁ ହଜାରେ ପ୍ରସ୍ଥ ନୈବେଦ୍ୟ ନିବେଦନ କରାଯିବା ଉଚିତ ଏବଂ ଜଳ, ତୈଳ ଇତ୍ୟାଦିର ତଥା ଗନ୍ଧଦ୍ରବ୍ୟର ମଧ୍ୟ ଯଥାଯୋଗ୍ୟ ମାତ୍ରା ରଖାଗଲେ ତାହାକୁ ସେହି ଶିବଲିଙ୍ଗର ମହାପୂଜା ବୋଲି କୁହାଯାଏ ।

ଦେବତାଙ୍କ ଅଭିଷେକ କଲେ ଆତ୍ମଶୁଦ୍ଧି ହୁଏ ଓ ଗନ୍ଧ ଅର୍ପଣ କଲେ ପୁଣ୍ୟଲାଭ ହୁଏ । ନୈବେଦ୍ୟ ଅର୍ପଣ କଲେ ଆୟୁବୃଦ୍ଧି ହୁଏ ତଥା ତୃପ୍ତି ହୁଏ । ଧୂପ ନିବେଦନ କଲେ ଧନପ୍ରାପ୍ତି ହୁଏ । ଦୀପ ଦେଖାଇଲେ ଜ୍ଞାନ ଉଦୟ ହୁଏ ଏବଂ ତାମ୍ବୂଳ ସମର୍ପଣ କଲେ ଭୋଗପ୍ରାପ୍ତି ହୁଏ । ଏଣୁ ସ୍ନାନାଦି ଛଅଟି ଉପଗ୍ରର ଯତ୍ନରେ ଅର୍ପଣ କରିବା ଉଚିତ । ନମସ୍କାର ଓ ଜପ—ଏ ଦୁଇଟି ସମସ୍ତ ଅଭୀଷ୍ଟ ଫଳ ପ୍ରଦାନ କରିଥାଏ । ତେଣୁ ଭୋଗ ଓ ମୋକ୍ଷ ଗ୍ରହୁଁଥିବା ଲୋକ ପୂଜା ଶେଷରେ ସଦା ଜପ ଓ ନମସ୍କାର କରିବା ଉଚିତ । ମନୁଷ୍ୟ ପ୍ରଥମେ ମନରେ ପୂଜା କରି ତା'ପରେ ସେହି ଉପଗ୍ରରମାନଙ୍କରେ ପୂଜା କରିବା ଉଚିତ । ଦେବତାଙ୍କ ପୂଜାରେ ସେହି ଦେବତାମାନଙ୍କ ଧାମ ପ୍ରାପ୍ତ ହୋଇଥାଏ ଏବଂ ସେମାନଙ୍କର ଗୌଣ ଲୋକରେ ମଧ୍ୟ ଯଥେଷ୍ଟ ଭୋଗ୍ୟବସ୍ତୁ ଉପଲବ୍ଧ ହୋଇଥାଏ ।

ଦ୍ୱିଜଗଣ ! ଏବେ ମୁଁ ଦେବପୂଜାରୁ ପ୍ରାପ୍ତ ହେଉଥିବା ବିଶେଷ ଫଳ ବର୍ଣ୍ଣନା କରୁଛି, ତୁମେମାନେ ଶ୍ରଦ୍ଧାରେ ଶୁଣ । ବିଘ୍ନରାଜ ଗଣେଶଙ୍କୁ ପୂଜା କଲେ ଭୂଲୋକରେ ଉତ୍ତମ ଅଭୀଷ୍ଟ ବସ୍ତୁ ପ୍ରାପ୍ତ ହୁଏ । ଶୁକ୍ରବାର ଦିନ, ଶ୍ରାବଣ ଓ ଭଦ୍ରବମାସର ଶୁକ୍ଳପକ୍ଷ ଚତୁର୍ଥୀ ଦିନ ଏବଂ ପୌଷମାସରେ ଶତଭିଷା ନକ୍ଷତ୍ର ପଡ଼ିବା ଦିନ ବିଧିପୂର୍ବକ ଗଣେଶଙ୍କୁ ପୂଜା କରିବା ଉଚିତ । ଶହେ ବା ହଜାରେ ଦିନରେ ଶହେ ବା ହଜାର ଥର ପୂଜା କରିବା ଉଚିତ । ଦେବତା ଓ ଅଗ୍ନିଙ୍କ ପ୍ରତି ଶ୍ରଦ୍ଧା ରଖି କରାଯାଉଥିବା ନିତ୍ୟପୂଜନ ମନୁଷ୍ୟଙ୍କୁ ପୁତ୍ର ଓ ଅଭୀଷ୍ଟ ବସ୍ତୁ ପ୍ରଦାନ କରିଥାଏ । ତାହା ସମସ୍ତ ପାପକୁ ଶମନ କରେ ତଥା ଭିନ୍ନ ଭିନ୍ନ ଦୁଷ୍କର୍ମମାନ ବିନାଶ କରେ । ବିଭିନ୍ନ ବାରରେ କରାଯାଇଥିବା ଶିବ ପ୍ରଭୃତିଙ୍କ ପୂଜା ଆତ୍ମଶୁଦ୍ଧିକାରକ ବୋଲି ଜାଣିବା ଉଚିତ । ବାର ବା ଦିନ ତିଥି, ନକ୍ଷତ୍ର ଓ ଯୋଗର ଆଧାର ଅଟେ, ସମସ୍ତ କାମନା ପୂରଣକାରୀ ଅଟେ । ସେଥିରେ କ୍ଷୟ ଓ ବୃଦ୍ଧି ହୁଏ ନାହିଁ । ତେଣୁ ତାହାକୁ ପୂର୍ଣ୍ଣ ବ୍ରହ୍ମସ୍ୱରୂପ ବୋଲି ଧରିବା ଉଚିତ । ସୂର୍ଯ୍ୟୋଦୟ ଠାରୁ ଆଗାମୀ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଗୋଟିଏ ବାର ବୋଲି ଧରାଯାଏ । ତାହା ବ୍ରାହ୍ମଣ ପ୍ରଭୃତି ସମସ୍ତ ବର୍ଣ୍ଣ ନିମନ୍ତେ କର୍ମର ଆଧାର । ବିହିତ ତିଥିର ପୂର୍ବଭାଗରେ କରାଯାଇଥିବା ଦେବପୂଜା ମନୁଷ୍ୟଙ୍କୁ ପୂର୍ଣ୍ଣ ଭୋଗ ପ୍ରଦାନ କରିଥାଏ ।

ଯଦି ମଧ୍ୟାହ୍ନ ପରେ ତିଥି ଆରମ୍ଭ ହୁଏ, ତେବେ ରାତ୍ରିଯୁକ୍ତ ତିଥିର ପୂର୍ବଭାଗ ପିତୃପୁରୁଷଙ୍କ ଶ୍ରାଦ୍ଧାଦି କର୍ମ ପାଇଁ ଉତ୍ତମ । ଏପରି ତିଥିର ପରଭାଗ ହିଁ ଦିନରେ ଯୁକ୍ତ ହୋଇଥାଏ, ତେଣୁ ତାହା ଦେବକର୍ମ ପାଇଁ ପ୍ରଶସ୍ତ ଧରାଯାଇଛି । ଯଦି ମଧ୍ୟାହ୍ନକାଳ ପର୍ଯ୍ୟନ୍ତ ତିଥି ରହେ, ତେବେ ଉଦୟବ୍ୟାପିନୀ ତିଥିକୁ ହିଁ ଦେବକାର୍ଯ୍ୟ ପାଇଁ ଗ୍ରହଣ କରିବା ଉଚିତ । ଏପରି ଶୁଭ ତିଥି ଓ

ନକ୍ଷତ୍ର ଇତ୍ୟାଦି ଦେବକାର୍ଯ୍ୟରେ ଗ୍ରାହ୍ୟ ହୋଇଥାଏ । ବାର ଇତ୍ୟାଦି ବିଷୟକୁ ବିଗ୍ରହକୁ ନେଇ ପୂଜା ଓ ଜପ ଇତ୍ୟାଦି କରିବା ଉଚିତ । ବେଦମାନଙ୍କରେ ପୂଜା ଶବ୍ଦର ଅର୍ଥ ଏହିପରି ଯୋଜନ କରାଯାଇଛି— 'ପୂର୍ଜାୟତେ ଅନେନ ଇତି ପୂଜା' । ଏହା ପୂଜା ଶବ୍ଦର ବ୍ୟୁତ୍ପତ୍ତି ଅଟେ । 'ପୂଃ'ର ଅର୍ଥ ଭୋଗ ଓ ଫଳର ସିଦ୍ଧି; ଏହା ଯେଉଁ କର୍ମରେ ସମ୍ପନ୍ନ ହୁଏ, ତାହାର ନାମ ପୂଜା । ମନୋବାଞ୍ଛିତ ବସ୍ତୁ ଓ ଜ୍ଞାନ—ଏ ଦୁଇଟି ହେଉଛି ଅଭୀଷ୍ଟ ପଦାର୍ଥ । ସକାମ ଭାବଯୁକ୍ତ ବ୍ୟକ୍ତିର ଅଭୀଷ୍ଟ ହୋଇଥାଏ ଭୋଗ ଏବଂ ନିଷ୍କାମଭାବଯୁକ୍ତ ବ୍ୟକ୍ତିର ଅଭୀଷ୍ଟ ହୋଇଥାଏ ଅର୍ଥ ଅର୍ଥାତ୍ ପାରମାର୍ଥିକ ଜ୍ଞାନ । ଏ ଦୁଇଟିଯାକ ହେଉଛି ପୂଜା ଶବ୍ଦର ଅର୍ଥ; ତେଣୁ ଏହି ଅର୍ଥର ଯୋଜନା କରିବାରେ ହିଁ ପୂଜା ଶବ୍ଦର ସାର୍ଥକତା ନିହିତ । ଲୋକ ଓ ବେଦରେ ପୂଜା ଶବ୍ଦର ଏହି ଅର୍ଥ ପ୍ରସିଦ୍ଧ । ନିତ୍ୟ ଓ ନୈମିତ୍ତିକ କର୍ମ କାଳାନ୍ତରରେ ଫଳ ପ୍ରଦାନ କରିଥାଏ; କିନ୍ତୁ କାମ୍ୟ କର୍ମକୁ ଯଦି ଭଲଭାବରେ ଅନୁଷ୍ଠାନ କରାଯାଏ, ତେବେ ତାହା ତତ୍କାଳ ଫଳଦାୟକ ହୋଇଥାଏ । ଗୋଟିଏ ପକ୍ଷ, ଗୋଟିଏ ମାସ ଓ ଗୋଟିଏ ବର୍ଷ ପର୍ଯ୍ୟନ୍ତ ପ୍ରତିଦିନ ନିରବଚ୍ଛିନ୍ନଭାବେ ପୂଜା କଲେ ସେହି ସବୁ କର୍ମର ଫଳ ପ୍ରାପ୍ତି ହୁଏ ଏବଂ ତଦ୍ଦ୍ୱାରା ପାପ ମଧ୍ୟ କ୍ରମଶଃ କ୍ଷୟ ହୋଇଥାଏ ।

ପ୍ରତ୍ୟେକ ମାସର କୃଷ୍ଣପକ୍ଷର ଚତୁର୍ଥୀ ତିଥିକୁ ଯଦି ମହାଗଣପତି ପୂଜା କରାଯାଏ, ତେବେ ତାହା ଗୋଟିଏ ପକ୍ଷର ପାପ ନାଶ କରିଥାଏ ଏବଂ ଗୋଟିଏ ପକ୍ଷ ପର୍ଯ୍ୟନ୍ତ ଉତ୍ତମ ଭୋଗ ପ୍ରଦାନ କରିଥାଏ । ଚୈତ୍ରମାସର ଚତୁର୍ଥୀରେ ପୂଜା କଲେ ଏହା ମାସେ ପର୍ଯ୍ୟନ୍ତ କରାଯାଇଥିବା ପୂଜାର ଫଳ ପ୍ରଦାନ କରିଥାଏ ଏବଂ ସୂର୍ଯ୍ୟ ସିଂହରାଶିରେ ଥିବା ବେଳେ ଭଦ୍ରବମାସର ଚତୁର୍ଥୀରେ କରାଯାଇଥିବା ଗଣପତି ପୂଜା ବର୍ଷେ ପର୍ଯ୍ୟନ୍ତ ମନୋବାଞ୍ଛିତ ଫଳ ପ୍ରଦାନ କରିଥାଏ ବୋଲି ବୁଝିବା ଉଚିତ । ଶ୍ରାବଣମାସର ରବିବାର ଦିନ, ହସ୍ତା ନକ୍ଷତ୍ରଯୁକ୍ତ ସପ୍ତମୀ ଦିନ ଏବଂ ମାଘ ଶୁକ୍ଳ ସପ୍ତମୀ ଦିନ ଭଗବାନ ସୂର୍ଯ୍ୟଙ୍କୁ ପୂଜା କରିବା ଉଚିତ । ଜ୍ୟେଷ୍ଠ ତଥା ଭାଦ୍ରବ ମାସର ବୁଧବାର ଦିନ, ଶ୍ରବଣା ନକ୍ଷତ୍ରଯୁକ୍ତ ଦ୍ୱାଦଶୀ ତିଥିରେ ଏବଂ କେବଳ ଦ୍ୱାଦଶୀ ଦିନ ମଧ୍ୟ କରାଯାଇଥିବା ଭଗବାନ ବିଷ୍ଣୁଙ୍କ ପୂଜା ଅଭୀଷ୍ଟ ସମ୍ପତ୍ତି ପ୍ରଦାନ କରିଥାଏ ବୋଲି ଧରାଯାଇଛି । ଶ୍ରାବଣମାସରେ କରାଯାଉଥିବା ଶ୍ରୀହରିଙ୍କ ପୂଜା ଅଭୀଷ୍ଟ ମନୋରଥ ଓ ଆରୋଗ୍ୟ ପ୍ରଦାନ କରିଥାଏ । ଅଙ୍ଗ ଓ ଉପକରଣ ସହିତ ପୂର୍ବୋକ୍ତ ଧେନୁ ପ୍ରଭୃତି ବାରଟି ଜିନିଷ ଦାନ କଲେ ଯେଉଁ ଫଳ ମିଳେ, ତାହା କେବଳ ଦ୍ୱାଦଶୀ ତିଥିରେ ବିଷ୍ଣୁଙ୍କୁ ଆରାଧନା ଦ୍ୱାରା ତୃପ୍ତ କରି ମନୁଷ୍ୟ ପ୍ରାପ୍ତି କରିଥାଏ । ଯେ ଦ୍ୱାଦଶୀରେ ବିଷ୍ଣୁଙ୍କ ବାରଟି ନାମରେ ବାରଜଣ ବ୍ରାହ୍ମଣଙ୍କୁ ଷୋଡ଼ଶ ଉପଗ୍ରରରେ ପୂଜା କରେ, ସେ ବିଷ୍ଣୁଙ୍କ ପ୍ରସନ୍ନତା ଲାଭ କରିଥାଏ । ଏହାଛଡ଼ା ସମସ୍ତ ଦେବତାଙ୍କର ଭିନ୍ନ ଭିନ୍ନ ବାରଟି ନାମରେ ବାରଜଣ ବ୍ରାହ୍ମଣଙ୍କୁ ପୂଜା କଲେ ତାହା ସେହି ସବୁ ଦେବତାଙ୍କୁ ପ୍ରସନ୍ନ କରାଇଥାଏ ।

ଐଶ୍ୱର୍ଯ୍ୟ ଗ୍ରହୁଁଥିବା ବ୍ୟକ୍ତି କର୍କଟ ସଂକ୍ରାନ୍ତିଯୁକ୍ତ ଶ୍ରାବଣ ମାସର ନବମୀ ତିଥିକୁ ମୃଗଶିରା ନକ୍ଷତ୍ର ଯୋଗରେ ଅମ୍ବିକାଙ୍କୁ ପୂଜା କରିବା ଉଚିତ । ସେଦିନ ପୂଜା କଲେ ଦେବୀ ସମସ୍ତ ମନୋବାଞ୍ଛିତ ଭୋଗ୍ୟ ବସ୍ତୁ ଓ ଫଳ ପ୍ରଦାନ କରନ୍ତି । ଆଶ୍ୱିନମାସ ଶୁକ୍ଳପକ୍ଷର ନବମୀ ତିଥି ସମସ୍ତ ଅଭୀଷ୍ଟ ପ୍ରଦାୟକ ଅଟେ । ସେହି ମାସର କୃଷ୍ଣପକ୍ଷର ଚତୁର୍ଦ୍ଦଶୀ ଯଦି ରବିବାର ଦିନ ପଡ଼େ, ତେବେ ସେହି ଦିନର ମହତ୍ତ୍ୱ ଆହୁରି ବଢ଼ିଯାଏ । ତା' ସହିତ ଯଦି ଆର୍ଦ୍ରା ଓ ମହାର୍ଦ୍ରା (ସୂର୍ଯ୍ୟସଂକ୍ରାନ୍ତିଯୁକ୍ତ ଆର୍ଦ୍ରା) ଯୋଗ

ପଡ଼େ, ତେବେ ସେହି ଅବସରରେ କରାଯାଇଥିବା ଶିବପୂଜାର ବିଶେଷ ମହତ୍ତ୍ୱ ରହିଛି । ମାଘମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀରେ କରାଯାଇଥିବା ଶିବପୂଜା ସମସ୍ତ ଅଭୀଷ୍ଟ ଫଳ ପ୍ରଦାନ କରିଥାଏ । ତାହା ମନୁଷ୍ୟର ଆୟୁ ବଢ଼ାଇଥାଏ, ମୃତ୍ୟୁ-କଷ୍ଟକୁ ଦୂର କରିଥାଏ ଏବଂ ସମସ୍ତ ସିଦ୍ଧି ପ୍ରଦାନ କରିଥାଏ । ଜ୍ୟେଷ୍ଠମାସର ଚତୁର୍ଦ୍ଦଶୀ ଦିନ ଯଦି ମହାର୍ଦ୍ରା ଯୋଗ ପଡ଼େ, ଅଥବା ମାର୍ଗଶିରମାସରେ କୌଣସି ତିଥିରେ ଯଦି ଆର୍ଦ୍ରା ନକ୍ଷତ୍ର ପଡ଼େ, ତେବେ ସେହି ଅବସରରେ ଯେଉଁ ବ୍ୟକ୍ତି ବିଭିନ୍ନ ବସ୍ତୁରେ ନିର୍ମିତ ମୂର୍ତ୍ତିରେ ଶିବଙ୍କୁ ଷୋଡ଼ଶ ଉପଚାରରେ ପୂଜା କରେ, ସେହି ପୁଣ୍ୟାତ୍ମାର ପାଦଦର୍ଶନ କରିବା ଉଚିତ । ଭଗବାନ ଶିବଙ୍କ ପୂଜା ମନୁଷ୍ୟଙ୍କୁ ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ ବୋଲି ଜାଣିବା ଉଚିତ । କାର୍ତ୍ତିକମାସର ପ୍ରତ୍ୟେକ ବାର ଓ ତିଥିରେ ମହାଦେବଙ୍କ ପୂଜାର ବିଶେଷ ମହତ୍ତ୍ୱ ରହିଛି । କାର୍ତ୍ତିକମାସରେ ବିଦ୍ୱାନ୍ ବ୍ୟକ୍ତି ଦାନ, ତପ, ହୋମ, ଜପ ଓ ନିୟମ ଇତ୍ୟାଦି ଦ୍ୱାରା ସମସ୍ତ ଦେବତାଙ୍କୁ ଷୋଡ଼ଶୋପଚାରରେ ପୂଜା କରିବା ଉଚିତ । ସେହି ପୂଜନରେ ଦେବପ୍ରତିମା, ବ୍ରାହ୍ମଣ ତଥା ମନ୍ତ୍ରର ଉପଯୋଗ ଆବଶ୍ୟକ । ବ୍ରାହ୍ମଣଙ୍କୁ ଭୋଜନ କରାଇଲେ ମଧ୍ୟ ସେହି ପୂଜନ-କର୍ମ ସମ୍ପନ୍ନ ହୋଇଯାଏ । ପୂଜକ କାମନା ତ୍ୟାଗ କରି ପୀଡ଼ାରହିତ (ଶାନ୍ତ) ହୋଇ ଦେବାରାଧନାରେ ତତ୍ପର ରହିବା ଉଚିତ ।

କାର୍ତ୍ତିକମାସରେ ଦେବତାଙ୍କ ଯଜନ-ପୂଜନ ସମସ୍ତ ଭୋଗ ପ୍ରଦାନ କରିଥାଏ, ବ୍ୟାଧି ହରଣ କରିଥାଏ ଏବଂ ଭୂତ ଓ ଗ୍ରହଙ୍କୁ ବିନାଶ କରିଥାଏ । କାର୍ତ୍ତିକମାସର ରବିବାରମାନଙ୍କରେ ସୂର୍ଯ୍ୟଙ୍କୁ ପୂଜା କଲେ ଏବଂ ତୈଳ ଓ ସୂତାବସ୍ତ୍ର ଦାନ କଲେ ମନୁଷ୍ୟର କୁଷ୍ଠ ଆଦି ରୋଗ ନଷ୍ଟ ହୋଇଥାଏ । ହରିଦ୍ରା, ଗୋଲମରିଚ, ବସ୍ତ୍ର ଓ କ୍ଷୀର ଇତ୍ୟାଦି ଦାନ କଲେ ଏବଂ ବ୍ରାହ୍ମଣଙ୍କୁ ପ୍ରତିଷ୍ଠା କଲେ କ୍ଷୟ ରୋଗ ନାଶ ହୁଏ । ଦୀପ ଓ ସୋରିଷ ଦାନ କଲେ ଅପସ୍ମାର ରୋଗ ଶାନ୍ତ ହୁଏ । କୃତ୍ତିକା ନକ୍ଷତ୍ରଯୁକ୍ତ ସୋମବାର ଦିନ କରାଯାଇଥିବା ଶିବପୂଜା ମହାଦାରିଦ୍ର୍ୟ ଦୂର କରେ ଓ ସମସ୍ତ ସମ୍ପତ୍ତି ପ୍ରଦାନ କରେ । ଘରର ଆବଶ୍ୟକ ସାମଗ୍ରୀ ସହିତ ଗୃହ ଓ କ୍ଷେତ୍ର ଇତ୍ୟାଦି ଦାନ କଲେ ମଧ୍ୟ ଉକ୍ତ ଫଳ ପ୍ରାପ୍ତ ହୋଇଥାଏ । କୃତ୍ତିକାଯୁକ୍ତ ମଙ୍ଗଳବାର ଦିନ ସ୍କନ୍ଦଙ୍କୁ ପୂଜା କଲେ ଏବଂ ଦୀପ, ଘଣ୍ଟି ଇତ୍ୟାଦି ଦାନ କଲେ ମନୁଷ୍ୟ ଶୀଘ୍ର ବାକ୍‌ସିଦ୍ଧି ପ୍ରାପ୍ତ ହୋଇଥାଏ । ତା' ମୁଖରୁ ବାହାରିଥିବା ପ୍ରତ୍ୟେକ କଥା ସତ୍ୟ ବା ଫଳିତ ହୁଏ । କୃତ୍ତିକାଯୁକ୍ତ ବୁଧବାର ଦିନ ବିଷ୍ଣୁଙ୍କ ପୂଜା ତଥା ଦଧିଅନ୍ନ ଦାନ ମନୁଷ୍ୟକୁ ଉତ୍ତମ ସନ୍ତାନ ପ୍ରଦାନ କରିଥାଏ । କୃତ୍ତିକାଯୁକ୍ତ ଗୁରୁବାର ଦିନ ଧନ ଦ୍ୱାରା ବ୍ରହ୍ମାଙ୍କର ପୂଜା ତଥା ମହୁ, ସୁନା ଓ ଘିଅ ଦାନ କଲେ ମନୁଷ୍ୟର ଭୋଗ ଓ ବୈଭବ ବୃଦ୍ଧି ହୋଇଥାଏ । କୃତ୍ତିକାଯୁକ୍ତ ଶୁକ୍ରବାର ଦିନ ଗଜାନନଙ୍କୁ* ପୂଜା କଲେ ତଥା ଗନ୍ଧ, ପୁଷ୍ପ ଓ ଅନ୍ନ ଦାନ କଲେ ମାନବଙ୍କର ଭୋଗ୍ୟ ପଦାର୍ଥ ବୃଦ୍ଧି ହୋଇଥାଏ । ସେଦିନ ସୁନା, ରୁପା ଇତ୍ୟାଦି ଦାନ କଲେ ବନ୍ଧ୍ୟା ମଧ୍ୟ ଉତ୍ତମ ପୁତ୍ରର ଜନନୀ ହୁଏ । କୃତ୍ତିକାଯୁକ୍ତ ଶନିବାର ଦିନ ଦିକ୍‌ପାଳଙ୍କ ବନ୍ଦନା, ଦିଗ୍‌ଗଜ, ନାଗ ଓ ସେତୁପାଳଙ୍କ ପୂଜନ, ତ୍ରିନେତ୍ରଧାରୀ ରୁଦ୍ର, ପାପହାରୀ ବିଷ୍ଣୁ ତଥା ଜ୍ଞାନଦାତା ବ୍ରହ୍ମାଙ୍କ ଆରାଧନା ଏବଂ ଧନ୍ୱନ୍ତରି ତଥା ଅଶ୍ୱିନୀକୁମାରଦ୍ୱୟଙ୍କ ପୂଜା ରୋଗ, ଅପମୃତ୍ୟୁ ଓ ଅକାଳମୃତ୍ୟୁ ନିବାରଣ କରିଥାଏ ଏବଂ

* ଏ କ୍ଷେତ୍ରରେ ମୂଳ ସଂସ୍କୃତ ପାଠରେ 'ଗଜକୋମେଡ' ଶବ୍ଦ ରହିଛି, ଯାହାକୁ ପୂର୍ବବର୍ତ୍ତୀ ବ୍ୟାଖ୍ୟାକାରମାନେ 'ଗଣେଶ' ଅର୍ଥ କରିଛନ୍ତି । ସମ୍ଭବତଃ 'କୋମେଡ' ଶବ୍ଦର ପ୍ରୟୋଗ ଏଠାରେ ମସ୍ତକ ବା ମୁଖ ଅର୍ଥରେ ହୋଇଛି?

ତାତ୍କାଳିକ ବ୍ୟାଧି ଶାନ୍ତ କରିଥାଏ । ଲୁଣ, ଲୁହା, ତେଲ, ବିରି ଇତ୍ୟାଦି; ତ୍ରିକଟୁ (ଶୁଣ୍ଠି, ପିପ୍ପଳି ଓ ଗୋଲମରିଚ), ଫଳ, ଗନ୍ଧ ଓ ଜଳ ପ୍ରଭୃତି; ଘୃତ ଇତ୍ୟାଦି ଦ୍ରବ ପଦାର୍ଥ ଏବଂ ସୁବର୍ଣ୍ଣ, ମୋତି ଇତ୍ୟାଦି କଠୋର ବସ୍ତୁ ଦାନ କଲେ ସ୍ୱର୍ଗଲୋକ ପ୍ରାପ୍ତି ହୋଇଥାଏ । ଏଥିମଧ୍ୟରୁ ଲୁଣ ଇତ୍ୟାଦିର ପରିମାଣ ଅତିକମ୍‌ରେ ଗୋଟିଏ ପ୍ରସ୍ଥ (ସେର) ହେବା ଉଚିତ ଓ ସୁବର୍ଣ୍ଣ ଇତ୍ୟାଦିର ପରିମାଣ ଅତିକମ୍‌ରେ ଗୋଟିଏ ପଳ ।

ଧନୁ-ସଂକ୍ରାନ୍ତି ପଡୁଥିବା ପୌଷମାସରେ ଉଷାକାଳରେ ଶିବ ପ୍ରମୁଖ ସମସ୍ତ ଦେବତାଙ୍କୁ ପୂଜା କଲେ କ୍ରମଶଃ ସମସ୍ତ ସିଦ୍ଧି ପ୍ରାପ୍ତ ହୋଇଥାଏ । ଏହି ପୂଜନରେ ଶାଲ୍ୟନ୍ନ ବା ଶାରଦ ଗ୍ୱଉଳରେ ପ୍ରସ୍ତୁତ ନୈବେଦ୍ୟ ଉତ୍ତମ ବୋଲି ଧରାଯାଏ । ପୌଷମାସରେ ନାନା ପ୍ରକାର ଅନ୍ନରେ ପ୍ରସ୍ତୁତ ନୈବେଦ୍ୟ ବିଶେଷ ମହତ୍ତ୍ୱପୂର୍ଣ୍ଣ । ମାର୍ଗଶିରମାସରେ ଅନ୍ନଦାନ କରୁଥିବା ମନୁଷ୍ୟର ସମସ୍ତ ପାପ ନଷ୍ଟ ହୋଇଯାଏ । ସେ ଅଭୀଷ୍ଟ ସିଦ୍ଧି, ଆରୋଗ୍ୟ, ଧର୍ମ, ବେଦର ସମ୍ୟକ୍ ଜ୍ଞାନ, ଉତ୍ତମ ଅନୁଷ୍ଠାନର ଫଳ, ଇହଲୋକ ଓ ପରଲୋକରେ ପ୍ରଚୁର ଭୋଗ ଲାଭ କରି ଶେଷରେ ସନାତନ ଯୋଗ (ମୋକ୍ଷ) ତଥା ବେଦାନ୍ତଜ୍ଞାନର ସିଦ୍ଧି ପ୍ରାପ୍ତ ହୋଇଥାଏ । ଯେ ଭୋଗପ୍ରାପ୍ତି ଗ୍ୱହେଁ, ସେ ମାର୍ଗଶିରମାସରେ ଅନ୍ତତଃ ତିନି ଦିନ ଉଷାକାଳରେ ନିଶ୍ଚିତରୂପେ ଦେବତାଙ୍କୁ ପୂଜା କରିବା ଉଚିତ । ପୌଷମାସଟିକୁ ବିନା ପୂଜାରେ ବିତାଇବା ଉଚିତ ନୁହେଁ । ଉଷାକାଳରୁ ଆରମ୍ଭ କରି ସଙ୍ଗବକାଳ ପର୍ଯ୍ୟନ୍ତ କରାଯାଉଥିବା ପୂଜାର ବିଶେଷ ମହତ୍ତ୍ୱ ରହିଛି । ସମ୍ପୂର୍ଣ୍ଣ ପୌଷମାସଟି ଜିତେନ୍ଦ୍ରିୟ ହୋଇ ଓ ଉପବାସ କରି ଦ୍ୱିଜ ପ୍ରାତଃକାଳରୁ ମଧ୍ୟାହ୍ନକାଳ ପର୍ଯ୍ୟନ୍ତ ବେଦମାତା ଗାୟତ୍ରୀଙ୍କୁ ଜପିବା ଉଚିତ । ତା'ପରେ ରାତ୍ରିରେ ଶୟନ ପର୍ଯ୍ୟନ୍ତ ପଞ୍ଚାକ୍ଷର ଇତ୍ୟାଦି ମନ୍ତ୍ର ଜପିବା ଉଚିତ । ଏପରି କରୁଥିବା ବ୍ରାହ୍ମଣ ଜ୍ଞାନ ଲାଭ କରି ଦେହାନ୍ତ ପରେ ମୋକ୍ଷ ପ୍ରାପ୍ତି କରେ । ଦ୍ୱିଜେତର ନର-ନାରୀମାନେ ତ୍ରିକାଳ ସ୍ନାନ କରି ପଞ୍ଚାକ୍ଷରମନ୍ତ୍ର ନିରନ୍ତର ଜପିଲେ ବିଶୁଦ୍ଧ ଜ୍ଞାନ ଲାଭ କରିଥାନ୍ତି । ସର୍ବଦା ଇଷ୍ଟମନ୍ତ୍ର ଜପ କଲେ ବଡ଼ ବଡ଼ ପାପ ମଧ୍ୟ ନଷ୍ଟ ହୋଇଯାଏ ।

ସମସ୍ତ ଚରାଚର ଜଗତ ହେଉଛି ବିନ୍ଦୁ-ନାଦସ୍ୱରୂପ । ବିନ୍ଦୁ ହେଉଛି ଶକ୍ତି ଓ ନାଦ ହେଉଛି ଶିବ । ଏହିରୂପେ ଏ ସମଗ୍ର ଜଗତ ହେଉଛି ଶିବ ଓ ଶକ୍ତିଙ୍କର ସ୍ୱରୂପ । ନାଦ ବିନ୍ଦୁର ଏବଂ ବିନ୍ଦୁ ଏ ଜଗତର ଆଧାର । ବିନ୍ଦୁ ଓ ନାଦ (ଶକ୍ତି ଓ ଶିବ) ସମସ୍ତ ଜଗତର ଆଧାରରୂପରେ ସ୍ଥିତ । ବିନ୍ଦୁ ଓ ନାଦରେ ଯୁକ୍ତ ସବୁ କିଛି ଶିବରୂପ ଅଟେ; କାରଣ ସେ ହିଁ ସବୁରି ଆଧାର । ଆଧାରରେ ହିଁ ଆଧେୟର ସମାବେଶ ଅଥବା ଲୟ ହୋଇଥାଏ । ଏହା ହିଁ ସକଳୀକରଣ । ସକଳୀକରଣ ସ୍ଥିତିରେ ହିଁ ସୃଷ୍ଟିକାଳରେ ଜଗତର ଆବିର୍ଭାବ ହୁଏ, ଏଥିରେ ସଂଶୟ ନାହିଁ । ଶିବଲିଙ୍ଗ ହେଉଛି ବିନ୍ଦୁ-ନାଦସ୍ୱରୂପ । ତେଣୁ ତାହାକୁ ଜଗତର କାରଣ ବୋଲି କୁହାଯାଏ । ବିନ୍ଦୁ ହେଉଛି ଦେବୀ ଓ ନାଦ ହେଉଛି ଶିବ । ଏ ଦୁହିଁଙ୍କର ସଂଯୁକ୍ତ ରୂପ ହିଁ ଶିବଲିଙ୍ଗ । ତେଣୁ ଜନ୍ମସଙ୍କଟରୁ ମୁକ୍ତି ପାଇବାକୁ ଶିବଲିଙ୍ଗର ପୂଜା କରିବା ଉଚିତ । ବିନ୍ଦୁରୂପା ଦେବୀ ଉମା ମାତା ଅଟନ୍ତି ଓ ନାଦସ୍ୱରୂପ ଭଗବାନ ଶିବ ପିତା ଅଟନ୍ତି । ଏହି ମାତାପିତା ପୂଜିତ ହେଲେ ପରମାନନ୍ଦ ଲାଭ ହୋଇଥାଏ । ତେଣୁ ପରମାନନ୍ଦ ଲାଭ କରିବା ପାଇଁ ଶିବଲିଙ୍ଗକୁ ବିଶେଷରୂପେ ପୂଜା କରିବା ଉଚିତ । ଦେବୀ ଉମା ଜଗତର ମାତା ଓ ଭଗବାନ ଶିବ ଜଗତର ପିତା । ଯେଉଁ ପୁତ୍ର

ତାଙ୍କର ସେବା କରେ, ତା' ଉପରେ ମାତାପିତାଙ୍କ କୃପା ନିତ୍ୟ ଅଧିକାଧିକ ବୃଦ୍ଧି ପାଇଥାଏ ।* ସେମାନେ ପୂଜକ ଉପରେ କୃପା କରି ତାକୁ ନିଜର ଆନ୍ତରିକ ଐଶ୍ୱର୍ଯ୍ୟ ପ୍ରଦାନ କରନ୍ତି । ତେଣୁ ମୁନୀଶ୍ୱର ! ଆନ୍ତରିକ ଆନନ୍ଦ ପ୍ରାପ୍ତି ପାଇଁ ଶିବଲିଙ୍ଗକୁ ମାତାପିତାଙ୍କ ସ୍ୱରୂପ ମଣି ପୂଜା କରିବା ଉଚିତ । ଭର୍ଗ (ଶିବ) ପୁରୁଷରୂପ ଅଟନ୍ତି ଏବଂ ଭର୍ଗା (ଶିବା ଅଥବା ଶକ୍ତି) ପ୍ରକୃତି ନାମରେ ପ୍ରସିଦ୍ଧ । ଅବ୍ୟକ୍ତ ଆନ୍ତରିକ ଅଧିଷ୍ଠାନରୂପ ଗର୍ଭକୁ ପୁରୁଷ କହନ୍ତି ଓ ସୁବ୍ୟକ୍ତ ଆନ୍ତରିକ ଅଧିଷ୍ଠାନଭୂତ ଗର୍ଭକୁ ପ୍ରକୃତି କହନ୍ତି । ପୁରୁଷ ଆଦିଗର୍ଭ ଅଟନ୍ତି, ସେ ପ୍ରକୃତିରୂପ ଗର୍ଭରେ ଯୁକ୍ତ ହୋଇଥିବାରୁ ଗର୍ଭବାନ୍ ଅଟନ୍ତି; କାରଣ ସେ ହିଁ ପ୍ରକୃତିର ଜନକ । ପ୍ରକୃତିରେ ପୁରୁଷର ଯେଉଁ ସଂଯୋଗ ହୁଏ, ତାହା ହିଁ ପୁରୁଷଠାରୁ ତାହାର ପ୍ରଥମ ଜନ୍ମ ବୋଲି କୁହାଯାଏ । ଅବ୍ୟକ୍ତ ପ୍ରକୃତିରୁ ମହତତ୍ତ୍ୱାଦି କ୍ରମରେ ଜଗତ ବ୍ୟକ୍ତ ହେବାକୁ ପ୍ରକୃତିର ଦ୍ୱିତୀୟ ଜନ୍ମ କୁହାଯାଏ । ଜୀବ ପୁରୁଷଠାରୁ ବାରମ୍ବାର ଜନ୍ମ ଓ ମୃତ୍ୟୁକୁ ପ୍ରାପ୍ତ ହୁଏ । ମାୟା ଦ୍ୱାରା ଅନ୍ୟ ରୂପରେ ପ୍ରକଟ ହେବା ହିଁ ତାହାର ଅନ୍ୟ ଜନ୍ମ । ଜୀବର ଶରୀର ଜନ୍ମକାଳରୁ ହିଁ ଜୀର୍ଣ୍ଣ (ଷଡ୍‌ବିକାରଯୁକ୍ତ) ହେବା ଆରମ୍ଭ ହୋଇଯାଏ, ସେଥିପାଇଁ ତାକୁ 'ଜୀବ' ସଂଜ୍ଞା ଦିଆଯାଇଛି । ଯେ ଜନ୍ମ ନିଏ ଓ ବିବିଧ ପାଶ ଦ୍ୱାରା ବନ୍ଧନରେ ପଡ଼େ, ତା'ର ନାମ ଜୀବ । ଜନ୍ମ ଓ ବନ୍ଧନ 'ଜୀବ' ଶବ୍ଦର ଅର୍ଥ । ତେଣୁ ଜନ୍ମ-ମୃତ୍ୟୁରୂପୀ ବନ୍ଧନର ନିବୃତ୍ତି ପାଇଁ ଜନ୍ମର ଅଧିଷ୍ଠାନଭୂତ ମାତୃପିତୃସ୍ୱରୂପ ଶିବଲିଙ୍ଗକୁ ପୂଜା କରିବା ଉଚିତ ।

ଗାଈର କ୍ଷୀର, ଗାଈକ୍ଷୀରର ଦହି ଓ ଗୋଘୃତ ଏ ତିନୋଟିକୁ ଏବଂ ଶର୍କରା ଓ ମଧୁକୁ ପୂଜା ପାଇଁ ପୃଥକ୍ ପୃଥକ୍ ରଖିବେ ଏବଂ ଏସବୁକୁ ମିଶାଇ ପଞ୍ଚାମୃତ ମଧ୍ୟ ପ୍ରସ୍ତୁତ କରିବେ । (ଏଥିରେ ଶିବଲିଙ୍ଗର ଅଭିଷେକ କରିବେ,) ତା'ପରେ ଗୋଦୁଗ୍ଧ ଓ ଅନ୍ନର ମିଶ୍ରଣରେ ନୈବେଦ୍ୟ ପ୍ରସ୍ତୁତ କରି ପ୍ରଣବ ମନ୍ତ୍ର ଉଚ୍ଚାରଣପୂର୍ବକ ତାହାକୁ ଭଗବାନ ଶିବଙ୍କୁ ଅର୍ପିତ କରିବେ । ସମ୍ପୂର୍ଣ୍ଣ ପ୍ରଣବକୁ ଧ୍ୱନିଲିଙ୍ଗ କହନ୍ତି । ସ୍ୱୟମ୍ଭୂଲିଙ୍ଗ ନାଦସ୍ୱରୂପ ହୋଇଥିବା କାରଣରୁ ତାହାକୁ ନାଦଲିଙ୍ଗ କୁହାଯାଏ । ଯନ୍ତ୍ର ବିନ୍ଦୁସ୍ୱରୂପ ହୋଇଥିବା କାରଣରୁ ତାହା ବିନ୍ଦୁଲିଙ୍ଗରୂପେ ବିଖ୍ୟାତ । ସେଥିରେ ଅଚଳରୂପରେ ପ୍ରତିଷ୍ଠିତ ହେଉଥିବା ଶିବଲିଙ୍ଗ ମକାର ସ୍ୱରୂପ, ତେଣୁ ତାହାକୁ ମକାରଲିଙ୍ଗ କୁହାଯାଏ । ଯେଉଁ ଚରଲିଙ୍ଗକୁ ଶୋଭାଯାତ୍ରାରେ ବାହାର କରାଯାଏ, ତାହା ଉକାର ସ୍ୱରୂପ ହୋଇଥିବାରୁ ଉକାରଲିଙ୍ଗ ନାମରେ ଅଭିହିତ ହୁଏ । ପୂଜାର ଦୀକ୍ଷା ଦେଉଥିବା ଗୁରୁ ବା ଆଚାର୍ଯ୍ୟ ଅକାରର ପ୍ରତୀକ ହୋଇଥିବାରୁ ତାହାଙ୍କୁ ଅକାରଲିଙ୍ଗ ବୋଲି ଧରାଯାଇଛି । ଏହିପରି ଅକାର, ଉକାର, ମକାର, ବିନ୍ଦୁ, ନାଦ ଓ ଧ୍ୱନି ରୂପରେ ଲିଙ୍ଗର ଛଅଟି ପ୍ରଭେଦ ହୁଏ । ଉକ୍ତ ଛଅ ପ୍ରକାର ଲିଙ୍ଗକୁ ନିତ୍ୟ ପୂଜା କଲେ ସାଧକ ଯେ ଜୀବନ୍ମୁକ୍ତ ହୋଇଯାଏ, ଏଥିରେ ସନ୍ଦେହ ନାହିଁ ।

(ଅଧ୍ୟାୟ ୧୬)



* ........................................................ । ମାତା ଦେବୀ ବିନ୍ଦୁରୂପା ନାଦରୂପଃ ଶିବଃ ପିତା ॥
ପୂଜିତାଭ୍ୟାଂ ପିତୃଭ୍ୟାଂ ତୁ ପରମାନନ୍ଦ ଏବ ହି । ପରମାନନ୍ଦଲାଭାର୍ଥଂ ଶିବଲିଙ୍ଗଂ ପ୍ରପୂଜୟେତ୍ ॥
ସା ଦେବୀ ଜଗତାଂ ମାତା ସ ଶିବୋ ଜଗତଃ ପିତା । ପିତ୍ରୋଃ ଶୁଶ୍ରୂଷକେ ନିତ୍ୟଂ କୃପାଧିକ୍ୟଂ ହି ବର୍ଧତେ ॥
(ଶିବପୁ. ବି. ସଂ. ୧୬ । ୯୧–୯୩)

# ଷଡ୍‌ଲିଙ୍ଗସ୍ୱରୂପ ପ୍ରଣବର ମାହାତ୍ମ୍ୟ, ତାହାର ସୂକ୍ଷ୍ମରୂପ (ଓଁକାର) ଓ ସ୍ଥୂଳରୂପ (ପଞ୍ଚାକ୍ଷର ମନ୍ତ୍ର)ର ବିବେଚନା, ତାହାର ଜପବିଧି ଏବଂ ମହିମା; କାର୍ଯ୍ୟବ୍ରହ୍ମଲୋକଠାରୁ କାରଣରୁଦ୍ରଲୋକ ପର୍ଯ୍ୟନ୍ତ ବିବେଚନା ଏବଂ କାଳାତୀତ ଓ ପଞ୍ଚାବରଣବିଶିଷ୍ଟ ଶିବଲୋକର ଅନିର୍ବଚନୀୟ ବୈଭବର ନିରୂପଣ ତଥା ଶିବଭକ୍ତଙ୍କ ସତ୍କାରର ମହତ୍ତ୍ୱ

ଋଷିମାନେ କହିଲେ—ପ୍ରଭୋ ! ମହାମୁନେ ! ଆପଣ ଆମ ଆଗରେ ଯଥାକ୍ରମେ ଷଡ୍‌ଲିଙ୍ଗସ୍ୱରୂପ ପ୍ରଣବର ମାହାତ୍ମ୍ୟ ତଥା ଶିବଭକ୍ତଙ୍କ ପୂଜନର ପ୍ରକାର ସମ୍ପର୍କରେ କୁହନ୍ତୁ ।

ସୂତ କହିଲେ—ମହର୍ଷିଗଣ ! ଆପଣମାନେ ତପସ୍ୟାର ନିଧି, ତେଣୁ ବହୁତ ସୁନ୍ଦର ପ୍ରସଙ୍ଗ ଉପସ୍ଥାପିତ କଲେ । କିନ୍ତୁ ଏହାର ଯଥାଯଥ ଉତ୍ତର ମହାଦେବ ହିଁ ଜାଣନ୍ତି, ଅନ୍ୟ କେହି ଜାଣେ ନାହିଁ । ତଥାପି ଭଗବାନ ଶିବଙ୍କ କୃପାରୁ ମୁଁ ଏ ବିଷୟକୁ ବର୍ଣ୍ଣନା କରିବି । ସେ ମୋର ଓ ଆପଣମାନଙ୍କର ରକ୍ଷାର ଭାର ବାରମ୍ବାର ସ୍ୱୟଂ ଗ୍ରହଣ କରନ୍ତୁ ।

ପ୍ରକୃତିରୁ ଉତ୍ପନ୍ନ ସଂସାରରୂପୀ ମହାସାଗରର ନାମ ହେଉଛି 'ପ୍ର' । ପ୍ରଣବ ହିଁ ଏଥିରୁ ପାର କରିବା ନିମନ୍ତେ ଅନ୍ୟତମ (ନବ) ନାବ ଅଟେ । ତେଣୁ ଓଁକାରକୁ ପ୍ରଣବ ସଂଜ୍ଞା ଦିଆଯାଇଛି । ଉକ୍ତ ଓଁକାର ହିଁ ତାହାକୁ ଜପ କରୁଥିବା ସାଧକଙ୍କୁ କହିଥାଏ—''ପ୍ର—ପ୍ରପଞ୍ଚ, ନ—ନୁହେଁ, ବଃ—ତୁମମାନଙ୍କ ପାଇଁ ।'' ଏହି ଦୃଷ୍ଟିରୁ ଉକ୍ତ ଭାବକୁ ଗ୍ରହଣ କରି ଜ୍ଞାନୀ ବ୍ୟକ୍ତି 'ଓମ୍'କୁ 'ପ୍ରଣବ' ରୂପେ ସ୍ୱୀକାର କରିଛନ୍ତି । ଏହାର ଅନ୍ୟ ଗୋଟିଏ ଭାବ ହେଲା, ''ପ୍ର—ପ୍ରକର୍ଷେଣ, ନ—ନୟେତ୍, ବଃ—ଯୁଷ୍ମାନ୍ ମୋକ୍ଷମ୍ ଇତି ବା ପ୍ରଣବଃ । ଅର୍ଥାତ୍ ଏହା ତୁମପରି ଉପାସକଙ୍କୁ ବଳପୂର୍ବକ ମୋକ୍ଷ ନିକଟରେ ପହଞ୍ଚାଇ ଦେବ ।'' ଏହି ଅଭିପ୍ରାୟରେ ମଧ୍ୟ ଏହାକୁ ଋଷିମୁନି 'ପ୍ରଣବ' କହିଥାନ୍ତି । ପ୍ରଣବ ନିଜେ ତାହାକୁ ଜପ କରୁଥିବା ଯୋଗୀମାନଙ୍କର ତଥା ସେହି ମନ୍ତ୍ରକୁ ପୂଜା କରୁଥିବା ଉପାସକମାନଙ୍କର ସମସ୍ତ କର୍ମକୁ ନାଶ କରି ଦିବ୍ୟ ନୂତନ ଜ୍ଞାନ ପ୍ରଦାନ କରିଥାଏ; ଏଥିପାଇଁ ମଧ୍ୟ ତାହାର ନାମ ପ୍ରଣବ* ହୋଇଛି । ମାୟାରହିତ ମହେଶ୍ୱରଙ୍କୁ ହିଁ ନବ ଅର୍ଥାତ୍ ନୂତନ କହନ୍ତି । ସେହି ପରମାତ୍ମା ପ୍ରକୃଷ୍ଟ ରୂପରେ ନବ ଅର୍ଥାତ୍ ଶୁଦ୍ଧସ୍ୱରୂପ ଅଟନ୍ତି, ତେଣୁ 'ପ୍ରଣବ' ନାମରେ ଅଭିହିତ ହୁଅନ୍ତି । ପ୍ରଣବ ସାଧକକୁ ନବ ବା ନବୀନ (ଶିବସ୍ୱରୂପ) କରିଦିଏ । ଏଥିପାଇଁ ମଧ୍ୟ ବିଦ୍ୱାନ୍ ତାହାକୁ ପ୍ରଣବ ନାମରେ ଜାଣନ୍ତି । ଅଥବା ପ୍ରକୃଷ୍ଟରୂପରେ ନବ ବା ଦିବ୍ୟ ପରମାତ୍ମଜ୍ଞାନ ପ୍ରକଟ କରୁଥିବାରୁ ତାହା ପ୍ରଣବ ଅଟେ ।

ପ୍ରଣବର ଦୁଇଟି ଭେଦ ରହିଛି—ସ୍ଥୂଳ ଓ ସୂକ୍ଷ୍ମ । ଗୋଟିଏ ହେଲା ଅକ୍ଷର ରୂପ 'ଓମ୍', ଏହାକୁ ସୂକ୍ଷ୍ମପ୍ରଣବ ବୋଲି ବୁଝିବା ଉଚିତ । ଅନ୍ୟଟି ହେଲା ପଞ୍ଚାକ୍ଷରମନ୍ତ୍ର 'ନମଃ ଶିବାୟ', ଏହାକୁ ସ୍ଥୂଳପ୍ରଣବ ବୋଲି ବୁଝିବା ଉଚିତ । ଯେଉଁଥିରେ ପାଞ୍ଚଟି ଅକ୍ଷର ବ୍ୟକ୍ତ ନାହିଁ, ତାହା ସୂକ୍ଷ୍ମ ଓ ଯେଉଁଥିରେ ପାଞ୍ଚଟି ଅକ୍ଷର ସୁସ୍ପଷ୍ଟରୂପରେ ବ୍ୟକ୍ତ, ତାହା ସ୍ଥୂଳ । ଜୀବନ୍ମୁକ୍ତ ପୁରୁଷଙ୍କ ନିମନ୍ତେ ସୂକ୍ଷ୍ମପ୍ରଣବ ଜପିବାର ବିଧାନ ଅଛି । ତାହା ହିଁ

* ପ୍ର (କର୍ମକ୍ଷୟପୂର୍ବକ) ନବ (ନୂତନ ଜ୍ଞାନ ପ୍ରଦାତା) ।

ତାଙ୍କ ପାଇଁ ସମସ୍ତ ସାଧନାର ସାର । (ଯଦ୍ୟପି ଜୀବନ୍ମୁକ୍ତଙ୍କ ପାଇଁ କୌଣସି ସାଧନାର ଆବଶ୍ୟକତା ନାହିଁ, କାରଣ ସେ ସିଦ୍ଧରୂପ ଅଟନ୍ତି, ତଥାପି ଅନ୍ୟମାନଙ୍କ ଦୃଷ୍ଟିରେ ଯେପର୍ଯ୍ୟନ୍ତ ତାଙ୍କ ଶରୀରର ସତ୍ତା ରହିଛି, ଯେପର୍ଯ୍ୟନ୍ତ ତାଙ୍କ ଦ୍ୱାରା ପ୍ରଣବଜପ ରୂପୀ ସହଜ ସାଧନା ସ୍ୱତଃ ହେଉଥାଏ ।) ସେ ନିଜ ଦେହର ବିଳୟ ପର୍ଯ୍ୟନ୍ତ ସୂକ୍ଷ୍ମପ୍ରଣବର ଜପ ଏବଂ ତାହାର ଅର୍ଥଭୂତ ପରମାତ୍ମତତ୍ତ୍ୱର ଅନୁସନ୍ଧାନ କରୁଥାନ୍ତି । ଶରୀର ନଷ୍ଟ ହୋଇଗଲେ ସେ ନିଶ୍ଚିତରୂପେ ପୂର୍ଣ୍ଣ ବ୍ରହ୍ମସ୍ୱରୂପ ଶିବଙ୍କୁ ପ୍ରାପ୍ତ ହୋଇଯାଆନ୍ତି । ଯେ ଅର୍ଥର ଅନୁସନ୍ଧାନ ନ କରି କେବଳ ମନ୍ତ୍ର ଜପ କରୁଥାନ୍ତି, ତାଙ୍କୁ ମଧ୍ୟ ନିଶ୍ଚିତରୂପେ ଯୋଗପ୍ରାପ୍ତି ହୋଇଥାଏ । ଯେ ଛତିଶ କୋଟି ମନ୍ତ୍ର ଜପ କରିଛନ୍ତି, ତାଙ୍କୁ ନିଶ୍ଚିତରୂପେ ଯୋଗପ୍ରାପ୍ତି ହୁଏ । ସୂକ୍ଷ୍ମପ୍ରଣବ ହିଁ ହ୍ରସ୍ୱ ଓ ଦୀର୍ଘ ଭେଦରେ ଦୁଇ ପ୍ରକାର ବୋଲି ଜାଣିବା ଉଚିତ । ଯେଉଁ ପ୍ରଣବ ଅକାର, ଉକାର, ମକାର, ବିନ୍ଦୁ, ନାଦ, ଶବ୍ଦ, କାଳ ଓ କଳାରେ ଯୁକ୍ତ, ତାହାକୁ 'ଦୀର୍ଘପ୍ରଣବ' କହନ୍ତି । ତାହା ଯୋଗୀମାନଙ୍କ ହୃଦୟରେ ସ୍ଥିତ । ମକାର ପର୍ଯ୍ୟନ୍ତ ଯେଉଁ ଓମ୍ ରହିଛି, ତାହା ଅ ଉ ମ୍ —ଏହି ତିନି ତତ୍ତ୍ୱରେ ଯୁକ୍ତ । ଏହାକୁ 'ହ୍ରସ୍ୱପ୍ରଣବ' କହନ୍ତି । 'ଅ' ଶିବ, 'ଉ' ଶକ୍ତି ଏବଂ ମକାର ହେଉଛି ଏ ଦୁଇଟିର ଏକତା । ତାହାକୁ ତ୍ରିତତ୍ତ୍ୱରୂପ ବୋଲି ଭାବି ଜପିବା ଉଚିତ । ଯେ ନିଜର ସମସ୍ତ ପାପକୁ କ୍ଷୟ କରିବାକୁ ଚାହାନ୍ତି, ତାଙ୍କ ପକ୍ଷେ ହ୍ରସ୍ୱପ୍ରଣବ ଜପ କରିବା ଅତ୍ୟନ୍ତ ଆବଶ୍ୟକ ।

ପୃଥ୍ୱୀ, ଜଳ, ତେଜ, ବାୟୁ ଓ ଆକାଶ—ଏ ପାଞ୍ଚଭୂତ ତଥା ଏମାନଙ୍କର ଶବ୍ଦ-ସ୍ପର୍ଶାଦି ପାଞ୍ଚଟି ବିଷୟ—ଏହି ଦଶଟି ମନୁଷ୍ୟର କାମନାର ବିଷୟ । ଏଗୁଡ଼ିକୁ ପାଇବା ଆଶାରେ ଯେଉଁ ଦଶ ପ୍ରକାର ବ୍ୟକ୍ତି କର୍ମରେ ସଂଲଗ୍ନ ହୁଅନ୍ତି, ସେମାନେ ପ୍ରବୃତ୍ତ (ଅଥବା ପ୍ରବୃତ୍ତିମାର୍ଗୀ) ଅଟନ୍ତି ଏବଂ ଯେଉଁମାନେ ନିଷ୍କାମଭାବରେ ଶାସ୍ତ୍ରବିହିତ କର୍ମ ଅନୁଷ୍ଠାନ କରନ୍ତି, ସେମାନେ ନିବୃତ୍ତ (ଅଥବା ନିବୃତ୍ତିମାର୍ଗୀ) ବୋଲି କଥିତ ହୁଅନ୍ତି । ପ୍ରବୃତ୍ତ ବ୍ୟକ୍ତି ହ୍ରସ୍ୱପ୍ରଣବ ଏବଂ ନିବୃତ୍ତ ବ୍ୟକ୍ତି ଦୀର୍ଘପ୍ରଣବ ଜପିବା ଉଚିତ । ବ୍ୟାହୃତି ତଥା ଅନ୍ୟ ମନ୍ତ୍ରର ଆରମ୍ଭରେ ଇଚ୍ଛାନୁସାରେ ଶବ୍ଦ ଓ କଳା ସମନ୍ୱିତ ପ୍ରଣବ ଉଚ୍ଚାରଣ କରିବା ଉଚିତ । ବେଦର ଆରମ୍ଭରେ ଓ ଉଭୟ ସନ୍ଧ୍ୟାକାଳର ଉପାସନା ସମୟରେ ମଧ୍ୟ ଓଁକାର ଉଚ୍ଚାରଣ କରିବା ଆବଶ୍ୟକ ।

ନଅ କୋଟି ପ୍ରଣବ ଜପିଲେ ମନୁଷ୍ୟ ପବିତ୍ର ହୋଇଯାଏ । ଆଉ ନଅ କୋଟି ଜପିଲେ ସେ ପୃଥିବୀତତ୍ତ୍ୱ ଉପରେ ବିଜୟ ଲାଭ କରେ । ତା'ପରେ ଆଉ ନଅ କୋଟି ଜପିଲେ ସେ ଜଳତତ୍ତ୍ୱକୁ ଜିଣି ଯାଏ । ଆଉ ନଅ କୋଟି ଜପିଲେ ସେ ଅଗ୍ନିତତ୍ତ୍ୱ ଉପରେ ବିଜୟୀ ହୁଏ । ପୁନଃ ଆଉ ନଅ କୋଟି ଜପିଲେ ସେ ବାୟୁତତ୍ତ୍ୱ ଉପରେ ବିଜୟ ଲାଭ କରେ । ଆଉ ନଅ କୋଟି ଜପିଲେ ଆକାଶକୁ ନିଜ ଅଧିକାରଭୁକ୍ତ କରିନିଏ । ଏହିପରି ନଅ କୋଟି ଲେଖାଏଁ ଜପ କରି କରି ସେ ଯଥାକ୍ରମେ ଗନ୍ଧ, ରସ, ରୂପ, ସ୍ପର୍ଶ ଓ ଶବ୍ଦ ଉପରେ ବିଜୟୀ ହୁଏ । ଏହାପରେ ଆହୁରି ନଅ କୋଟି ଜପିଲେ ସେ ଅହଂକାରକୁ ମଧ୍ୟ ଜିଣିଯାଏ । ଏହିପରି ଶହେଆଠ କୋଟି ପ୍ରଣବ ଜପ କରି ଉତ୍କୃଷ୍ଟ ବୋଧପ୍ରାପ୍ତ ହୋଇଥିବା ବ୍ୟକ୍ତି ଶୁଦ୍ଧଯୋଗ ପ୍ରାପ୍ତି କରିଥାଏ । ଶୁଦ୍ଧଯୋଗରେ ଯୁକ୍ତ ହୋଇ ସେ ନିଃସନ୍ଦେହରେ ଜୀବନ୍ମୁକ୍ତ ହୋଇଯାଏ । ସଦା ପ୍ରଣବଜପ ଓ ପ୍ରଣବରୂପୀ ଶିବଙ୍କୁ ଧ୍ୟାନ କରି କରି ସମାଧିରେ ଅବସ୍ଥିତ ହୋଇଥିବା ମହାଯୋଗୀ ସାକ୍ଷାତ୍ ଶିବ ହିଁ ଅଟନ୍ତି, ଏଥିରେ ସଂଶୟ ନାହିଁ । ପ୍ରଥମେ ନିଜ ଶରୀରରେ ପ୍ରଣବର ଋଷି, ଛନ୍ଦ ଓ ଦେବତା

ପ୍ରଭୃତିଙ୍କୁ ନ୍ୟାସ କରି ତା'ପରେ ଜପ ଆରମ୍ଭ କରିବା ଉଚିତ । ଅକାରାଦି ମାତୃକା ବର୍ଣ୍ଣରେ ଯୁକ୍ତ ପ୍ରଣବକୁ ନିଜ ଅଙ୍ଗମାନଙ୍କରେ ନ୍ୟାସ କରି ମନୁଷ୍ୟ ଋଷି ହୋଇଯାଏ । ମନ୍ତ୍ରମାନଙ୍କର ଦଶବିଧ* ସଂସ୍କାର, ମାତୃକାନ୍ୟାସ ଓ ଷଡ଼ଧ୍ୱଶୋଧନ✤ ଇତ୍ୟାଦି ସହିତ ସମସ୍ତ ନ୍ୟାସର ଫଳ ତାହାକୁ ପ୍ରାପ୍ତ ହୁଏ । ଯେଉଁ ଲୋକଙ୍କର ଭାବ ପ୍ରବୃତ୍ତି ଓ ନିବୃତ୍ତି ମିଶ୍ରିତ, ସେମାନଙ୍କ ପାଇଁ ସ୍ଥୂଳପ୍ରଣବ ଜପ ହିଁ ଅଭୀଷ୍ଟ ଫଳପ୍ରଦ ହୋଇଥାଏ ।

କ୍ରିୟା, ତପ ଓ ଜପର ସଂଯୋଗରେ ଶିବଯୋଗୀ ତିନି ଭାଗରେ ବିଭକ୍ତ । ସେମାନେ ଯଥାକ୍ରମେ କ୍ରିୟାଯୋଗୀ, ତପଯୋଗୀ ଓ ଜପଯୋଗୀ ନାମରେ ଅଭିହିତ ହୋଇଥାନ୍ତି । ଯେ ଧନ ଇତ୍ୟାଦି ବୈଭବ ଦ୍ୱାରା ପୂଜାସାମଗ୍ରୀ ସଂଗ୍ରହ କରି ଓ ହସ୍ତାଦି ଅଙ୍ଗ ଦ୍ୱାରା ନମସ୍କାରାଦି କ୍ରିୟା କରି ଇଷ୍ଟଦେବଙ୍କ ପୂଜାରେ ସଂଲଗ୍ନ ରହେ, ତାହାକୁ 'କ୍ରିୟାଯୋଗୀ' କୁହାଯାଏ । ପୂଜାରେ ସଂଲଗ୍ନ ରହି ଯେ ପରିମିତ ଭୋଜନ କରେ, ବାହ୍ୟ ଇନ୍ଦ୍ରିୟମାନଙ୍କୁ ବଶରେ ରଖିଥାଏ ଓ ମନକୁ ମଧ୍ୟ

* ମନ୍ତ୍ରର ଦଶଟି ସଂସ୍କାର ହେଲା—ଜନନ, ଦୀପନ, ବୋଧନ, ତାଡ଼ନ, ଅଭିଷେଚନ, ବିମଳୀକରଣ, ଜୀବନ, ତର୍ପଣ, ଗୋପନ ଓ ଆପ୍ୟାୟନ । ଏଗୁଡ଼ିକର ବିଧି ନିମ୍ନରେ ଦିଆଗଲା—

ଭୋଜପତ୍ର ଉପରେ ଗୋରଚନା, କୁଙ୍କୁମ, ଚନ୍ଦନାଦିରେ ଆତ୍ମାଭିମୁଖୀ ତ୍ରିକୋଣ ଆଙ୍କିବେ, ତା'ପରେ ତିନି କୋଣରେ ଛଅଟି ଲେଖାଏଁ ସମାନ ରେଖା ଟାଣିବେ । ଏପରି କଲେ ୪୯ ଟି ତ୍ରିକୋଣ କୋଷ୍ଠ ହେବ । ସେଗୁଡ଼ିକରେ ଐଶାନ୍ୟକୋଣରୁ ମାତୃକା ବର୍ଣ୍ଣ ଲେଖି ଦେବତାଙ୍କୁ ଆବାହନ ଓ ପୂଜା କରି ମନ୍ତ୍ରର ଗୋଟିଏ ଗୋଟିଏ ବର୍ଣ୍ଣ ଉଚ୍ଚାରଣ କରି ଭିନ୍ନ ପତ୍ର ଉପରେ ଲେଖିବେ । ଏପରି କଲେ 'ଜନନ' ନାମକ ପ୍ରଥମ ସଂସ୍କାର ହେବ ।

ହଂସମନ୍ତ୍ରକୁ ସମ୍ପୁଟ କଲେ ଏକ ହଜାର ଜପ ଦ୍ୱାରା ମନ୍ତ୍ରର ଦ୍ୱିତୀୟ ସଂସ୍କାର 'ଦୀପନ' ହୁଏ । ଯଥା—ହଂସ ରାମାୟ ନମଃ ସୋଽହମ୍ ।

ହୂଁ-ବୀଜ-ସମ୍ପୁଟିତ ମନ୍ତ୍ରକୁ ପାଞ୍ଚ ହଜାର ଜପ କଲେ 'ବୋଧନ' ନାମକ ତୃତୀୟ ସଂସ୍କାର ହୁଏ । ଯଥା—ହୂଁ ରାମାୟ ନମଃ ହୂଁ ।

ଫଟ୍-ସମ୍ପୁଟିତ ମନ୍ତ୍ରକୁ ଏକ ହଜାର ଜପ କଲେ 'ତାଡ଼ନ' ନାମକ ଚତୁର୍ଥ ସଂସ୍କାର ହୁଏ । ଯଥା—ଫଟ୍ ରାମାୟ ନମଃ ଫଟ୍ ।

ଭୂର୍ଜପତ୍ର ଉପରେ ଲେଖି 'ରୋଂ ହଂସଃ ଓଁ' ଏହି ମନ୍ତ୍ରରେ ଜଳକୁ ଅଭିମନ୍ତ୍ରିତ କରି ସେହି ଜଳରେ ଅଶ୍ୱତ୍ଥପତ୍ରାଦି ଦ୍ୱାରା ମନ୍ତ୍ରକୁ ଅଭିଷେକ କରିବେ । ଏପରି କଲେ 'ଅଭିଷେକ' ନାମକ ପଞ୍ଚମ ସଂସ୍କାର ହୁଏ ।

'ଓଁ ତ୍ରୋଂ ବଷଟ୍' ଏହି ବର୍ଣ୍ଣଗୁଡ଼ିକରେ ସମ୍ପୁଟିତ ମନ୍ତ୍ରକୁ ଏକ ହଜାର ଜପ କଲେ 'ବିମଳୀକରଣ' ନାମକ ଷଷ୍ଠ ସଂସ୍କାର ହୁଏ । ଯଥା—ଓଁ ତ୍ରୋଂ ବଷଟ୍ ରାମାୟ ନମଃ ବଷଟ୍ ତ୍ରୋଂ ଓଁ ।

ସ୍ୱଧା-ବଷଟ୍-ସମ୍ପୁଟିତ ମୂଳମନ୍ତ୍ରକୁ ଏକ ହଜାର ଜପ କଲେ 'ଜୀବନ' ନାମକ ସପ୍ତମ ସଂସ୍କାର ହୁଏ । ଯଥା—ସ୍ୱଧା ବଷଟ୍ ରାମାୟ ନମଃ ବଷଟ୍ ସ୍ୱଧା ।

ଦୁଗ୍ଧ, ଜଳ ଓ ଘୃତ ଦ୍ୱାରା ମୂଳମନ୍ତ୍ରରେ ଶହେ ଥର ତର୍ପଣ କରିବା ହିଁ 'ତର୍ପଣ' ନାମକ ସଂସ୍କାର ।

ହ୍ରୀଂ-ବୀଜ-ସମ୍ପୁଟିତ ଏକ ହଜାର ଜପ କଲେ 'ଗୋପନ' ନାମକ ନବମ ସଂସ୍କାର ହୁଏ । ଯଥା—ହ୍ରୀଂ ରାମାୟ ନମଃ ହ୍ରୀଂ ।

ହ୍ରୌଂ-ବୀଜ-ସମ୍ପୁଟିତ ଏକ ହଜାର ଜପ କଲେ 'ଆପ୍ୟାୟନ' ନାମକ ଦଶମ ସଂସ୍କାର ହୁଏ । ଯଥା—ହ୍ରୌଂ ରାମାୟ ନମଃ ହ୍ରୌଂ ।

ଏପରି ସଂସ୍କାର କରାଯାଇଥିବା ମନ୍ତ୍ର ଶୀଘ୍ର ସିଦ୍ଧିପ୍ରଦ ହୋଇଥାଏ ।

✤ ଷଡ଼ଧ୍ୱଶୋଧନ କାର୍ଯ୍ୟ ହୌତ୍ରୀ ଦୀକ୍ଷାର ଅନ୍ତର୍ଗତ । ସେଥିରେ ପ୍ରଥମେ କୁଣ୍ଡରେ ବା ବେଦିରେ ଅଗ୍ନିସ୍ଥାପନ ହୁଏ । ସେଠାରେ ଷଡ଼ଧ୍ୱାର ଶୋଧନ କରି ହୋମରେ ହିଁ ଦୀକ୍ଷା ସମ୍ପନ୍ନ ହୁଏ । ବିସ୍ତାରଭୟରେ ଅଧିକ ବିବରଣ ଏଠାରେ ଦିଆ ଯାଇ ନାହିଁ ।

ବଶରେ ରଖି ପରଦ୍ରୋହ ଇତ୍ୟାଦିରୁ ଦୂରେଇ ରହିଥାଏ, ତାହାକୁ 'ତପୋଯୋଗୀ' କୁହାଯାଏ । ଏ ସମସ୍ତ ସଦ୍‌ଗୁଣରେ ଯୁକ୍ତ ହୋଇ ଯେ ସଦା ଶୁଦ୍ଧଭାବରେ ରହେ ଏବଂ କାମାଦି ସମସ୍ତ ଦୋଷରୁ ମୁକ୍ତ ହୋଇ ଶାନ୍ତଚିତ୍ତରେ ନିରନ୍ତର ଜପ କରୁଥାଏ, ତାହାକୁ ମହାତ୍ମା ଲୋକେ 'ଜପଯୋଗୀ' ବୋଲି କହିଥାନ୍ତି । ଯେଉଁ ଲୋକ ଷୋହଳ ପ୍ରକାର ଉପଗ୍ରରରେ ଶିବଯୋଗୀ ମହାତ୍ମାଙ୍କୁ ପୂଜା କରେ, ସେ ଶୁଦ୍ଧ ହୋଇ ସାଲୋକ୍ୟାଦି କ୍ରମରେ ଉତ୍ତରୋତ୍ତର ଉତ୍କୃଷ୍ଟ ମୁକ୍ତିକୁ ପ୍ରାପ୍ତ ହୁଏ ।

ଦ୍ୱିଜଗଣ ! ଏବେ ମୁଁ ଜପଯୋଗର ବର୍ଣ୍ଣନା କରୁଛି । ତୁମେମାନେ ମନଯୋଗପୂର୍ବକ ଶୁଣ । ତପସ୍ୱୀ ପାଇଁ ଜପ କରିବାକୁ ଉପଦେଶ ଦିଆଯାଇଛି; କାରଣ ସେ ଜପ କରି କରି ନିଜକୁ ସମ୍ପୂର୍ଣ୍ଣ ଶୁଦ୍ଧ (ନିଷ୍ପାପ) କରିଦିଏ । ବ୍ରାହ୍ମଣଗଣ ! ପ୍ରଥମେ 'ନମଃ' ପଦ ଓ ପରେ 'ଶିବ' ଶବ୍ଦରେ ଚତୁର୍ଥୀ ବିଭକ୍ତି କଲେ ପଞ୍ଚତତ୍ତ୍ୱାତ୍ମକ 'ନମଃ ଶିବାୟ' ମନ୍ତ୍ର ହୁଏ । ଏହାକୁ 'ଶିବ-ପଞ୍ଚାକ୍ଷର' କହନ୍ତି । ଏହା ସ୍ଥୂଳ ପ୍ରଣବରୂପ ଅଟେ । ପଞ୍ଚାକ୍ଷର ଜପଦ୍ୱାରା ମନୁଷ୍ୟ ସମସ୍ତ ସିଦ୍ଧି ପ୍ରାପ୍ତି କରିଥାଏ । ପଞ୍ଚାକ୍ଷରମନ୍ତ୍ରର ଆରମ୍ଭରେ ସର୍ବଦା ଓଁକାର ସଂଯୋଗ କରି ଜପିବା ଉଚିତ । ଦ୍ୱିଜଗଣ ! ଗୁରୁଙ୍କ ମୁଖରୁ ପଞ୍ଚାକ୍ଷରମନ୍ତ୍ରର ଉପଦେଶ ପାଇ ସୁଖରେ ରହି ହେଉଥିବା ଭଳି ଉତ୍ତମ ସ୍ଥାନରେ ମାସର ପୂର୍ବପକ୍ଷ (ଶୁକ୍ଳ)ରେ ପ୍ରତିପଦରୁ ଆରମ୍ଭ କରି କୃଷ୍ଣ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ନିରନ୍ତର ଜପ କରିବା ଉଚିତ । ମାଘ ଓ ଭାଦ୍ରବ ମାସର ବିଶେଷ ମହିମା ରହିଛି । ଏ ସମୟକୁ ସବୁଠାରୁ ଉତ୍ତମୋତ୍ତମ ବୋଲି ଧରାଯାଇଛି । ସାଧକ ପ୍ରତିଦିନ ଥରେ ପରିମିତ ଭୋଜନ କରିବ, ମୌନ ରହିବ, ଇନ୍ଦ୍ରିୟଙ୍କୁ ବଶରେ ରଖିବ, ନିଜ ସ୍ୱାମୀ ଓ ପିତାମାତାଙ୍କ ସେବା କରିବ । ଏହି ନିୟମରେ ରହି ଜପୁଥିବା ବ୍ୟକ୍ତି ଏକସହସ୍ର ଜପରେ ଶୁଦ୍ଧ ହୋଇଯାଏ, ଅନ୍ୟଥା ସେ ଋଣୀ ହୋଇଥାଏ । ଭଗବାନ ଶିବଙ୍କୁ ନିରନ୍ତର ଚିନ୍ତନ କରି କରି ପଞ୍ଚାକ୍ଷରମନ୍ତ୍ରକୁ ପାଞ୍ଚ ଲକ୍ଷ ଜପିବା ଉଚିତ । ଜପ ସମୟରେ ଏହିପରି ଧ୍ୟାନ କରିବା ଉଚିତ ଯେ କଲ୍ୟାଣ ପ୍ରଦାତା ଭଗବାନ ଶିବ ପଦ୍ମାସନରେ ବିରାଜମାନ ଅଛନ୍ତି । ତାଙ୍କର ମସ୍ତକ ଗଙ୍ଗା ଓ ଚନ୍ଦ୍ରମାର କଳାରେ ସୁଶୋଭିତ । ତାଙ୍କ ବାମ ଜାନୁରେ ଆଦିଶକ୍ତି ଭଗବତୀ ଉମା ବସିଛନ୍ତି । ସେଠାରେ ବଡ଼ ବଡ଼ ଶିବଗଣ ଦଣ୍ଡାୟମାନ ହୋଇ ଶିବଙ୍କ ଶୋଭା ବଢ଼ାଉ ଅଛନ୍ତି । ମହାଦେବଙ୍କ ଚାରିଟି ହାତରେ ମୃଗମୁଦ୍ରା, ଟଙ୍କ, ବର ଓ ଅଭୟମୁଦ୍ରା ଶୋଭା ପାଉଛି । ଏପରି ସଦା ସମସ୍ତଙ୍କ ଉପରେ ଅନୁଗ୍ରହକାରୀ ଭଗବାନ ସଦାଶିବଙ୍କୁ ବାରମ୍ବାର ସ୍ମରଣ କରି ହୃଦୟ କିଂବା ସୂର୍ଯ୍ୟମଣ୍ଡଳରେ ପ୍ରଥମେ ମାନସିକ ପୂଜା କରି ତା'ପରେ ପୂର୍ବାଭିମୁଖୀ ହୋଇ ପୂର୍ବୋକ୍ତ ପଞ୍ଚାକ୍ଷରୀ ବିଦ୍ୟାକୁ ଜପିବେ । ଯେତେ ଦିନ ପର୍ଯ୍ୟନ୍ତ ଜପ ଚାଲିବ, ସେହି କାଳ ମଧ୍ୟରେ ସାଧକ ସଦା ଶୁଦ୍ଧ କର୍ମ କରିବେ (ଦୁଷ୍କର୍ମରୁ ଦୂରେଇ ରହିବେ) । ଜପ ସମାପ୍ତି ଦିନ ଅର୍ଥାତ୍ କୃଷ୍ଣପକ୍ଷ ଚତୁର୍ଦ୍ଦଶୀକୁ ସକାଳୁ ନିତ୍ୟକର୍ମ ସାରି ଶୁଦ୍ଧ ଓ ସୁନ୍ଦର ସ୍ଥାନରେ ଶୌଚ ଓ ସନ୍ତୋଷାଦି ନିୟମରେ ଯୁକ୍ତ ହୋଇ ଶୁଦ୍ଧ ହୃଦୟରେ ବାରହଜାର ପଞ୍ଚାକ୍ଷରମନ୍ତ୍ର ଜପିବେ । ତା'ପରେ ପାଞ୍ଚଜଣ ଶ୍ରେଷ୍ଠ ତଥା ଶିବଭକ୍ତ ବ୍ରାହ୍ମଣଙ୍କୁ ସପତ୍ନୀକ ବରଣ କରିବେ । ଏହାଛଡ଼ା ଜଣେ ଶ୍ରେଷ୍ଠ ଆଚାର୍ଯ୍ୟ ପ୍ରବରଙ୍କୁ ମଧ୍ୟ ବରଣ କରିବେ ଏବଂ ତାଙ୍କୁ ସାମ୍ବସଦାଶିବଙ୍କ ସ୍ୱରୂପ ବୋଲି ବୁଝିବେ । ଈଶାନ, ତତ୍ପୁରୁଷ, ଅଘୋର, ବାମଦେବ ଓ ସଦ୍ୟୋଜାତ—ଏହି ପାଞ୍ଚଜଣଙ୍କର ପ୍ରତୀକ ସ୍ୱରୂପ ପାଞ୍ଚଜଣ ଶ୍ରେଷ୍ଠ ଓ ଶିବଭକ୍ତ ବ୍ରାହ୍ମଣଙ୍କୁ ବରଣ କରିବା ପରେ ପୂଜାସାମଗ୍ରୀ ସଂଗ୍ରହ କରି ଭଗବାନ ଶିବଙ୍କ ପୂଜା ଆରମ୍ଭ କରିବେ । ବିଧିପୂର୍ବକ ଶିବପୂଜା ସମ୍ପନ୍ନ କରି ହୋମ ଆରମ୍ଭ କରିବେ ।

ନିଜ ଗୃହ୍ୟସୂତ୍ର ଅନୁସାରେ ସୁଖାନ୍ତ କର୍ମ କରି ଅର୍ଥାତ୍ ପରିସମୂହନ, ଉପଲେପନ, ଉଲ୍ଲେଖନ, ମୃଦ୍-ଉଦ୍ଧରଣ ଓ ଅଭ୍ୟୁକ୍ଷଣ—ଏ ପାଞ୍ଚ ପ୍ରକାର ଭୂ-ସଂସ୍କାର କରିବା ପରେ ବେଦି ଉପରେ ସ୍ୱାଭିମୁଖ ଅଗ୍ନିକୁ ସ୍ଥାପିତ କରି କୁଶକଣ୍ଡିକା ପରେ ପ୍ରଜ୍ୱଳିତ ଅଗ୍ନିରେ ଆଜ୍ୟଭାଗାନ୍ତ ଆହୁତି ଦେଇ ଏହି ହୋମ କାର୍ଯ୍ୟ ଆରମ୍ଭ କରିବେ। କପିଳା ଗାଈର ଘିଅରେ ଏଗାର, ଶହେ-ଏକ ବା ହଜାରେ-ଏକ ଆହୁତି ବିଦ୍ୱାନ୍ ବ୍ୟକ୍ତି ନିଜେ ଦେବେ ଅଥବା ଶିବଭକ୍ତ ବ୍ରାହ୍ମଣଙ୍କ ଦ୍ୱାରା ଏକଶହ-ଆଠ ଆହୁତି ଦେବେ। ହୋମ ସରିବା ପରେ ଗୁରୁଙ୍କୁ ଦକ୍ଷିଣାସ୍ୱରୂପ ଗୋଟିଏ ଗାଈ ଓ ବଳଦ ଦେବା ଉଚିତ। ଈଶାନ ପ୍ରଭୃତିଙ୍କ ପ୍ରତୀକରୂପେ ଯେଉଁ ପାଞ୍ଚଜଣ ବ୍ରାହ୍ମଣଙ୍କୁ ବରଣ କରାଯାଇଥିବ, ସେମାନଙ୍କୁ ଈଶାନ ପ୍ରଭୃତିଙ୍କ ସ୍ୱରୂପ ବୋଲି ବୁଝିବେ ଏବଂ ଆଚାର୍ଯ୍ୟଙ୍କୁ ସାମ୍ବ-ସଦାଶିବଙ୍କ ସ୍ୱରୂପ ବୋଲି ବୁଝିବେ। ଏହି ଭାବନାରେ ସେମାନଙ୍କ ପାଦ ଧୋଇଦେଇ ପାଦୋଦକ ନିଜ ମୁଣ୍ଡ ଉପରେ ଛିଞ୍ଚିବେ। ଏପରି କଲେ ସାଧକକୁ ଅଗଣିତ ତୀର୍ଥରେ ସଦ୍ୟ ସ୍ନାନ କରିବାର ଫଳ ମିଳିଯାଏ। ସେହି ବ୍ରାହ୍ମଣମାନଙ୍କୁ ଭକ୍ତିପୂର୍ବକ ଦଶାଂଶ ଅନ୍ନ ଦାନ କରିବା ଉଚିତ। ଗୁରୁପତ୍ନୀଙ୍କୁ ପରାଶକ୍ତି ମଣି ତାଙ୍କୁ ମଧ୍ୟ ପୂଜା କରିବା ଉଚିତ। ଐଶାନ୍ୟାଦି କ୍ରମରେ ସେହି ବ୍ରାହ୍ମଣଙ୍କୁ ଉତ୍ତମ ଅନ୍ନରେ ପୂଜା କରି ନିଜ ବୈଭବ-ବିସ୍ତାର ଅନୁସାରେ ରୁଦ୍ରାକ୍ଷ, ବସ୍ତ୍ର, ବରା ଓ ପିଠା ଇତ୍ୟାଦି ଅର୍ପିତ କରିବେ। ତା'ପରେ ଦିକ୍‌ପାଳାଦିଙ୍କୁ ବଳି ଅର୍ପଣ କରି ବ୍ରାହ୍ମଣଙ୍କୁ ଭୂରି ଭୋଜନ କରାଇବେ। ଏହାପରେ ଦେବେଶ୍ୱର ଶିବଙ୍କୁ ପ୍ରାର୍ଥନା କରି ଜପ ସମାପ୍ତ କରିବେ। ଏହିରୂପେ ପୁରଶ୍ଚରଣ କରି ମନୁଷ୍ୟ ସେହି ମନ୍ତ୍ରକୁ ସିଦ୍ଧ କରିପାରେ। ଏହାପରେ ପୁନଃ ପାଞ୍ଚଲକ୍ଷ ଜପିଲେ ସମସ୍ତ ପାପ ନଷ୍ଟ ହୋଇଯାଏ। ତା'ପରେ ଯଦି ପୁନଃ ପାଞ୍ଚଲକ୍ଷ ଜପ କରାଯାଏ, ତେବେ ଅତଳଲୋକ ଠାରୁ ସତ୍ୟଲୋକ ପର୍ଯ୍ୟନ୍ତ ଚଉଦ ଭୁବନ ଉପରେ ଯଥାକ୍ରମେ ସେ ଅଧିକାର ଲାଭ କରିପାରେ।

ଯଦି ଅନୁଷ୍ଠାନ ପୂର୍ଣ୍ଣାଙ୍ଗ ହେବା ପୂର୍ବରୁ ସାଧକର ମୃତ୍ୟୁ ହୋଇଯାଏ, ତେବେ ସେ ପରଲୋକରେ ଉତ୍ତମ ଭୋଗ ଉପଭୋଗ କରିବା ପରେ ପୁନଃ ପୃଥିବୀପୃଷ୍ଠରେ ଜନ୍ମ ଗ୍ରହଣ କରି ପଞ୍ଚାକ୍ଷରମନ୍ତ୍ର ଜପ ଅନୁଷ୍ଠାନ କରେ। ସମସ୍ତ ଲୋକର ଐଶ୍ୱର୍ଯ୍ୟ ପାଇବା ପରେ ମନ୍ତ୍ର ସିଦ୍ଧ କରିଥିବା ମନୁଷ୍ୟ ଯଦି ପୁନଃ ପାଞ୍ଚଲକ୍ଷ ଜପ କରେ, ତେବେ ତାକୁ ବ୍ରହ୍ମାଙ୍କ ସାମୀପ୍ୟ ପ୍ରାପ୍ତ ହୋଇଥାଏ। ଆହୁରି ପାଞ୍ଚଲକ୍ଷ ଜପିଲେ ସାରୂପ୍ୟ ନାମକ ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇଥାଏ। ଶହେଲକ୍ଷ ଜପିଲେ ସେ ସାକ୍ଷାତ୍ ବ୍ରହ୍ମାଙ୍କ ସମାନ ହୋଇଯାଏ। ଏପରି କାର୍ଯ୍ୟବ୍ରହ୍ମ (ହିରଣ୍ୟଗର୍ଭ)ଙ୍କ ସାଯୁଜ୍ୟ ଲାଭ କରି ସେ ବ୍ରହ୍ମାଙ୍କ ପ୍ରଳୟ ପର୍ଯ୍ୟନ୍ତ ସେହି ଲୋକରେ ଯଥେଷ୍ଟ ଭୋଗ ଉପଭୋଗ କରିଥାଏ। ଏହାପରେ ପରବର୍ତ୍ତୀ କଳ୍ପ ଆରମ୍ଭ ହେଲେ ସେ ବ୍ରହ୍ମାଙ୍କ ପୁତ୍ର ହୁଏ। ସେତେବେଳେ ସେ ପୁନଃ ତପସ୍ୟା କରି ଦିବ୍ୟ ତେଜରେ ଉଦ୍ଭାସିତ ହୋଇ କ୍ରମଶଃ ମୁକ୍ତ ହୋଇଯାଏ। ପୃଥିବୀ ଆଦି କାର୍ଯ୍ୟସ୍ୱରୂପ ଭୂତମାନଙ୍କ ଦ୍ୱାରା ପାତାଳଠାରୁ ସତ୍ୟଲୋକ ପର୍ଯ୍ୟନ୍ତ ବ୍ରହ୍ମାଙ୍କର ଚଉଦ ଭୁବନ ନିର୍ମିତ ହୋଇଛି। ସତ୍ୟଲୋକର ଉପରେ କ୍ଷମାଲୋକ ପର୍ଯ୍ୟନ୍ତ ଯେଉଁ ଚଉଦ ଭୁବନ ଅଛି, ସେସବୁ ଭଗବାନ ବିଷ୍ଣୁଙ୍କର ଲୋକ। କ୍ଷମାଲୋକର ଉପରେ ଶୁଚିଲୋକ ପର୍ଯ୍ୟନ୍ତ ଆହୁରି ଅଠାଇଶ ଭୁବନ ରହିଛି। ଶୁଚିଲୋକର ଅନ୍ତର୍ଗତ କୈଳାସରେ ପ୍ରାଣୀଙ୍କର ସଂହାରକ ରୁଦ୍ର ବିରାଜମାନ ଅଛନ୍ତି। ଶୁଚିଲୋକ ଠାରୁ ଉପରକୁ ଅହିଂସାଦି ଲୋକ ପର୍ଯ୍ୟନ୍ତ ଛପନ ଭୁବନ ରହିଛି। ଅହିଂସାଦି ଲୋକର ଆଶ୍ରୟରେ ଯେଉଁ ଜ୍ଞାନକୈଳାସ ନାମକ ନଗର ଶୋଭା ପାଉଛି, ସେଥିରେ କାର୍ଯ୍ୟଭୂତ ମହେଶ୍ୱର ସମସ୍ତଙ୍କୁ ଅଦୃଶ୍ୟ କରି ଅଧିଷ୍ଠିତ

ରହିଥାନ୍ତି । ଅହିଂସାଦି ଲୋକର ଶେଷରେ କାଳଚକ୍ରର ଅବସ୍ଥିତି । ଏପର୍ଯ୍ୟନ୍ତ ମହେଶ୍ୱରଙ୍କ ବିରାଟ ସ୍ୱରୂପର ବର୍ଣ୍ଣନା କରାଗଲା । ଏହି ପର୍ଯ୍ୟନ୍ତ ଭୁବନମାନଙ୍କର ତିରୋଧାନ ଅଥବା ଲୟ ହୋଇଥାଏ । ତାହାର ତଳକୁ କର୍ମର ଭୋଗ ହୋଇଥାଏ ଏବଂ ତାହାର ଉପରକୁ ଜ୍ଞାନର ଭୋଗ ହୋଇଥାଏ । ତାହାର ତଳକୁ କର୍ମମାୟା ଅଛି ଏବଂ ଉପରକୁ ଜ୍ଞାନମାୟା ଅଛି ।

(ଏବେ ମୁଁ କର୍ମମାୟା ଓ ଜ୍ଞାନମାୟାର ତାତ୍ପର୍ଯ୍ୟ ସ୍ପଷ୍ଟ କରୁଛି—) 'ମା' ଅର୍ଥ ଲକ୍ଷ୍ମୀ । ଏହାଦ୍ୱାରା କର୍ମଭୋଗ ଯାତ ବା ପ୍ରାପ୍ତ ହୁଏ । ତେଣୁ ତାହାକୁ ମାୟା ବା କର୍ମମାୟା କୁହାଯାଏ । ଏହିପରି 'ମା' ଅର୍ଥାତ୍ ଲକ୍ଷ୍ମୀଠାରୁ ଜ୍ଞାନଭୋଗ ଯାତ ଅର୍ଥାତ୍ ପ୍ରାପ୍ତ ହୁଏ । ଏଣୁ ତାହାକୁ ମାୟା ବା ଜ୍ଞାନମାୟା କୁହାଯାଏ । ଉପର୍ଯ୍ୟୁକ୍ତ ସୀମାର ତଳକୁ ନଶ୍ୱର ଭୋଗ ଏବଂ ଉପରକୁ ନିତ୍ୟ ଭୋଗ ପ୍ରାପ୍ତ ହୋଇଥାଏ । ତାହାଠାରୁ ତଳକୁ ହିଁ ତିରୋଧାନ ଅଥବା ଲୟର ସ୍ଥାନ, ଉପରକୁ ନୁହେଁ । ସେଠାରୁ ତଳକୁ କର୍ମମୟ ପାଶ ଦ୍ୱାରା ବନ୍ଧନ ହୁଏ, ତାହାର ଉପରକୁ ବନ୍ଧନ ନାହିଁ । ତାହାର ତଳେ ହିଁ ଜୀବ ସକାମ କର୍ମର ଅନୁସରଣ କରି ବିଭିନ୍ନ ଲୋକରେ ଓ ନାନା ଯୋନିରେ ଘୂରିଥାନ୍ତି । ତାହାର ଉପର ଲୋକମାନଙ୍କରେ ନିଷ୍କାମ କର୍ମର ହିଁ ଭୋଗ ହୋଇଥାଏ । ବିନ୍ଦୁପୂଜାରେ ତତ୍ପର ରହୁଥିବା ଉପାସକ ତାହାର ତଳ ଲୋକମାନଙ୍କରେ ହିଁ ଭ୍ରମିଥାନ୍ତି । ତାହାର ଉପରକୁ କେବଳ ନିଷ୍କାମଭାବରେ ଶିବଲିଙ୍ଗ ପୂଜା କରୁଥିବା ଉପାସକ ଯାଇଥାନ୍ତି । ଯେଉଁମାନେ କେବଳ ଶିବଙ୍କ ଉପାସନାରେ ତତ୍ପର ରହନ୍ତି, ସେମାନେ ତା'ଠାରୁ ଉପର ଲୋକମାନଙ୍କୁ ଯାଇଥାନ୍ତି । ତାହାର ତଳକୁ ଜୀବକୋଟି ଓ ଉପରକୁ ଈଶ୍ୱରକୋଟି ରହିଛି । ତାହାର ତଳେ ସଂସାରୀ ଜୀବ ଓ ଉପରେ ମୁକ୍ତ ପୁରୁଷ ରହନ୍ତି । ତଳେ କର୍ମଲୋକ ଓ ଉପରେ ଜ୍ଞାନଲୋକ । ଉପରେ ମଦ ଅହଂକାରର ବିନାଶକ ନମ୍ରତା ରହିଛି, ସେଠାରେ ଜନ୍ମଜନିତ ତିରୋଧାନ ନାହିଁ । ତିରୋଧାନର ନିବାରଣ ନ କରି ସେଠାରେ କେହି ପ୍ରବେଶ କରିବା ସମ୍ଭବ ନୁହେଁ । ତିରୋଧାନର ନିବାରଣ କଲେ ହିଁ ସେଠାରେ ଜ୍ଞାନ ଶବ୍ଦର ଅର୍ଥ ପ୍ରକାଶିତ ହୁଏ । ଆଧିଭୌତିକ ପୂଜା କରୁଥିବା ଲୋକେ ତାହାର ତଳ ଲୋକମାନଙ୍କରେ ହିଁ ଆବର୍ତ୍ତିତ ହୋଇଥାନ୍ତି । ଆଧ୍ୟାତ୍ମିକ ଉପାସକ ତାହାର ଉପରକୁ ଯାଇଥାନ୍ତି ।

ଯେଉଁମାନେ ସତ୍ୟ, ଅହିଂସାଦି ଧର୍ମରେ ଯୁକ୍ତ ହୋଇ ଶିବପୂଜନରେ ତତ୍ପର ରହିଥାନ୍ତି, ସେମାନେ କାଳଚକ୍ରକୁ ପାର ହୋଇଯାଆନ୍ତି । କାଳଚକ୍ରେଶ୍ୱରଙ୍କ ସୀମା ପର୍ଯ୍ୟନ୍ତ ଯେଉଁ ବିରାଟ ମହେଶ୍ୱରଲୋକ ରହିଛି, ତାହାର ଉପରେ ବୃଷଭ ଆକୃତିରେ ଧର୍ମ ରହିଥାନ୍ତି । ସେ ବ୍ରହ୍ମଚର୍ଯ୍ୟର ମୂର୍ତ୍ତିମାନ୍ ରୂପ । ତାଙ୍କର ସତ୍ୟ, ଶୌଚ, ଅହିଂସା ଓ ଦୟା ନାମକ ଚାରିଟି ପାଦ ରହିଛି । ସେ ସାକ୍ଷାତ୍ ଶିବଲୋକର ଦ୍ୱାରଦେଶରେ ଛିଡ଼ା ହୋଇଥାନ୍ତି । କ୍ଷମା ତାଙ୍କର ଶିଙ୍ଗ ଓ ଶମ ହେଉଛି କାନ । ସେ ବେଦଧ୍ୱନିରୂପୀ ଶବ୍ଦରେ ବିଭୂଷିତ । ଆସ୍ତିକତା ତାଙ୍କର ଦୁଇଟି ନେତ୍ର, ବିଶ୍ୱାସ ହିଁ ତାଙ୍କର ଶ୍ରେଷ୍ଠ ବୁଦ୍ଧି ଓ ମନ । କ୍ରିୟା ଆଦି ଧର୍ମରୂପୀ ବୃଷଭ ବାସ୍ତବରେ କାରଣ ଆଦିରେ ସ୍ଥିତ ଅଟନ୍ତି ବୋଲି ବୁଝିବା ଉଚିତ । ସେହି କ୍ରିୟାରୂପୀ ବୃଷଭାକାର ଧର୍ମ ଉପରେ କାଳାତୀତ ଶିବ ଆରୂଢ଼ ହୋଇଥାନ୍ତି । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ଆୟୁକୁ ଦିନ କହନ୍ତି । ଯେଉଁଠି ଧର୍ମରୂପୀ ବୃଷଭର ସ୍ଥିତି, ସେଠାରୁ ଉପରକୁ ଦିନ ନାହିଁ କି ରାତି ନାହିଁ । ସେଠାରେ ଜନ୍ମ-ମରଣ ଇତ୍ୟାଦି ମଧ୍ୟ ନାହିଁ । ଆହୁରି ମଧ୍ୟ ସେଠାରେ କାରଣସ୍ୱରୂପ ବ୍ରହ୍ମାଙ୍କର କାରଣ ସତ୍ୟଲୋକ ପର୍ଯ୍ୟନ୍ତ ଚଉଦ ଭୁବନ ଅବସ୍ଥିତ, ତାହା ପାଞ୍ଚଭୌତିକ ଗନ୍ଧ ଇତ୍ୟାଦିରୁ ଊର୍ଦ୍ଧ୍ୱରେ । ସେହି

ଭୁବନଗୁଡ଼ିକର ସ୍ଥିତି ସନାତନ। ସୂକ୍ଷ୍ମ ଗନ୍ଧ ହିଁ ସେଗୁଡ଼ିକର ସ୍ୱରୂପ। ସେଗୁଡ଼ିକର ଉପରକୁ ପୁଣି କାରଣରୂପୀ ରୁଦ୍ରଙ୍କର ଅଠେଇଶ ଲୋକର ଅବସ୍ଥିତି ବୋଲି ଧରାଯାଇଛି। ତାହାର ଉପରକୁ ରହିଛି କାରଣେଶ ଶିବଙ୍କର ଛପନ ଲୋକ। ତାହାର ପରେ ଶିବସମ୍ମତ ବ୍ରହ୍ମଚର୍ଯ୍ୟଲୋକ ଓ ସେଇଠାରେ ପାଞ୍ଚ ଆବରଣଯୁକ୍ତ ଜ୍ଞାନମୟ କୈଳାସ ଅବସ୍ଥିତ, ଯେଉଁଠି ପାଞ୍ଚଟି ମଣ୍ଡଳ, ପାଞ୍ଚଟି ବ୍ରହ୍ମକଳା ଓ ଆଦିଶକ୍ତିରେ ସଂଯୁକ୍ତ ଆଦିଲିଙ୍ଗ ପ୍ରତିଷ୍ଠିତ। ତାହାକୁ ପରମାତ୍ମା ଶିବଙ୍କର ଶିବାଳୟ କୁହାଯାଇଛି। ସେଠାରେ ପରାଶକ୍ତିଯୁକ୍ତ ପରମେଶ୍ୱର ଶିବ ନିବାସ କରନ୍ତି। ସେ ସୃଷ୍ଟି, ପାଳନ, ସଂହାର, ତିରୋଭାବ ଓ ଅନୁଗ୍ରହ—ଏ ପାଞ୍ଚଟି କୃତ୍ୟରେ ପ୍ରବୀଣ। ତାଙ୍କର ଶ୍ରୀବିଗ୍ରହ ସଚ୍ଚିଦାନନ୍ଦସ୍ୱରୂପ। ସେ ସଦା ଧ୍ୟାନରୂପୀ ଧର୍ମରେ ସ୍ଥିତ ରହନ୍ତି ଏବଂ ସଦା ସମସ୍ତଙ୍କ ଉପରେ ଅନୁଗ୍ରହ କରନ୍ତି। ସେ ସ୍ୱାତ୍ମାରାମ ଅଟନ୍ତି ଓ ସମାଧିରୂପୀ ଆସନରେ ଆସୀନ ହୋଇ ନିତ୍ୟ ବିରାଜିତ ହୋଇଥାନ୍ତି। କର୍ମ ଓ ଧ୍ୟାନ ଇତ୍ୟାଦି ଅନୁଷ୍ଠାନ କରି କ୍ରମଶଃ ସାଧନପଥରେ ଅଗ୍ରସର ହେଲେ ତାହାଙ୍କ ଦର୍ଶନ ମିଳିଥାଏ। ନିତ୍ୟ-ନୈମିତ୍ତିକାଦି କର୍ମ ଦ୍ୱାରା ଦେବତାମାନଙ୍କୁ ଯଜନ କଲେ ଭଗବାନ ଶିବଙ୍କ ସମାରାଧନ-କର୍ମରେ ମନ ଲାଗିଥାଏ। କ୍ରିୟା ଇତ୍ୟାଦି ଯେତେ ଶିବ ସମ୍ବନ୍ଧୀୟ କର୍ମ ରହିଛି, ତଦ୍ୱାରା ଶିବଜ୍ଞାନ ସିଦ୍ଧ କରିବା ଉଚିତ। ଯେଉଁମାନେ ଶିବତତ୍ତ୍ୱର ସାକ୍ଷାତ୍କାର କରିସାରିଛନ୍ତି କିଂବା ଯାହାଙ୍କ ଉପରେ ଶିବଙ୍କର କୃପାଦୃଷ୍ଟି ପଡ଼ି ସାରିଛି, ସେସମସ୍ତେ ଯେ ମୁକ୍ତ ହୋଇଯାଇଛନ୍ତି, ଏଥିରେ ସଂଶୟ ନାହିଁ। ଆତ୍ମସ୍ୱରୂପରେ ଯେଉଁ ସ୍ଥିତି ହୁଏ, ତାହା ହିଁ ମୁକ୍ତି। ଏକମାତ୍ର ନିଜ ଆତ୍ମାରେ ରମଣ ବା ଆନନ୍ଦ ଅନୁଭବ କରିବା ହିଁ ମୁକ୍ତିର ସ୍ୱରୂପ। ଯେ କ୍ରିୟା, ତପ, ଜପ, ଜ୍ଞାନ ଓ ଧ୍ୟାନରୂପୀ ଧର୍ମରେ ଉତ୍ତମରୂପେ ସ୍ଥିତ, ସେ ଶିବଙ୍କ ସାକ୍ଷାତ୍କାର କରି ସ୍ୱାତ୍ମାରାମସ୍ୱରୂପ ମୋକ୍ଷକୁ ମଧ୍ୟ ପ୍ରାପ୍ତ କରିଥାଏ। ସୂର୍ଯ୍ୟଦେବ ଯେପରି ନିଜ କିରଣ ଦ୍ୱାରା ଅଶୁଦ୍ଧିକୁ ଦୂର କରିଦିଅନ୍ତି, ଠିକ୍ ସେହିପରି କୃପା କରିବାରେ କୁଶଳ ଭଗବାନ ଶିବ ନିଜ ଭକ୍ତର ଅଜ୍ଞାନକୁ ନଷ୍ଟ କରିଦିଅନ୍ତି। ଅଜ୍ଞାନ ନିବୃତ୍ତ ହୋଇଯିବା ପରେ ଶିବଜ୍ଞାନ ସ୍ୱତଃ ପ୍ରକଟ ହୋଇଯାଏ। ଶିବଜ୍ଞାନ ଦ୍ୱାରା ନିଜର ବିଶୁଦ୍ଧ ସ୍ୱରୂପ ଆତ୍ମାରାମତ୍ୱ ପ୍ରାପ୍ତ ହୁଏ ଏବଂ ଆତ୍ମାରାମତ୍ୱର ସମ୍ୟକ୍ ସିଦ୍ଧି ହେଲା ପରେ ମନୁଷ୍ୟ କୃତକୃତ୍ୟ ହୋଇଯାଏ।

ଉପରେ ଯାହା କିଛି କୁହାଗଲା, ତାହା ପ୍ରଥମେ ମୋତେ ଗୁରୁପରମ୍ପରାକ୍ରମେ ପ୍ରାପ୍ତ ହୋଇଥିଲା। ତା'ପରେ ମୁଁ ପୁନଃ ନନ୍ଦୀଶ୍ୱରଙ୍କ ମୁଖରୁ ଏହି ବିଷୟ ଶୁଣିଥିଲି। ନନ୍ଦିସ୍ଥାନର ଊର୍ଦ୍ଧ୍ୱରେ ଯେଉଁସବୁ ସ୍ୱସଂବେଦ୍ୟ ଶିବବୈଭବ ରହିଛି, ତାହାର ଅନୁଭବ କେବଳ ଭଗବାନ ଶିବ ହିଁ କରିଥାନ୍ତି। ସାକ୍ଷାତ୍ ଶିବଲୋକର ବୈଭବର ଜ୍ଞାନ କେବଳ ଶିବକୃପାରୁ ହିଁ ହୋଇପାରେ, ଅନ୍ୟଥା ତାହା ସମ୍ଭବ ନୁହେଁ—ଏହା ଆସ୍ତିକ ଲୋକଙ୍କର କଥନ।

ସାଧକ ପାଞ୍ଚଲକ୍ଷ ଜପ କରିବା ପରେ ଶିବଙ୍କ ପ୍ରସନ୍ନତା ପାଇଁ ମହାଭିଷେକ ଏବଂ ନୈବେଦ୍ୟ ନିବେଦନ କରି ଶିବଭକ୍ତଙ୍କୁ ପୂଜା କରିବା ଉଚିତ। ଭକ୍ତଙ୍କୁ ପୂଜା କଲେ ଶିବ ବହୁତ ପ୍ରସନ୍ନ ହୁଅନ୍ତି। ଶିବ ଓ ତାଙ୍କ ଭକ୍ତଙ୍କ ମଧ୍ୟରେ କୌଣସି ଅନ୍ତର ନାହିଁ। ଭକ୍ତ ସାକ୍ଷାତ୍ ଶିବସ୍ୱରୂପ ଅଟନ୍ତି। ଶିବସ୍ୱରୂପ ମନ୍ତ୍ରକୁ ଧାରଣ କରି ସେ ଶିବ ହୋଇଯାଇଥାନ୍ତି। ଶିବଭକ୍ତଙ୍କ ଶରୀର ଶିବରୂପ ଅଟେ। ତେଣୁ ତାହାଙ୍କ ସେବାରେ ତତ୍ପର ରହିବା ଉଚିତ। ଯେଉଁମାନେ ଶିବଙ୍କର ଭକ୍ତ, ସେମାନେ ଲୋକ ଓ ବେଦର ସମସ୍ତ କ୍ରିୟାକୁ ଜାଣନ୍ତି। ଯେ ଯେତେ ଅଧିକ ଶିବମନ୍ତ୍ର ଜପିଥାଏ, ତାହାର ଶରୀରକୁ ସେତିକି ଅଧିକ ଶିବଙ୍କ ସାମୀପ୍ୟ ପ୍ରାପ୍ତ ହୁଏ, ଏଥିରେ କିଛି ସଂଶୟ ନାହିଁ। ଶିବଭକ୍ତା

ନାରୀ ପାର୍ବତୀଦେବୀଙ୍କର ସ୍ୱରୂପ । ସେ ଯେତେ ଅଧିକ ମନ୍ତ୍ର ଜପେ, ତାହାକୁ ସେତିକି ଅଧିକ ଦେବୀଙ୍କ ସାନ୍ନିଧ୍ୟ ପ୍ରାପ୍ତ ହୋଇଚାଲେ । ସାଧକ ସ୍ୱୟଂ ଶିବସ୍ୱରୂପ ହୋଇ ପରାଶକ୍ତିର ପୂଜନ କରିବା ଉଚିତ । ଶକ୍ତି, ମୂର୍ତ୍ତି ତଥା ଲିଙ୍ଗର ଚିତ୍ର ଆଙ୍କି ଅଥବା ମୃତ୍ତିକା ଇତ୍ୟାଦିରେ ଏମାନଙ୍କର ଆକୃତି ନିର୍ମାଣ କରି ପ୍ରାଣପ୍ରତିଷ୍ଠାପୂର୍ବକ ନିଷ୍କପଟ ଭାବରେ ପୂଜା କରିବା ଆବଶ୍ୟକ । ଶିବଲିଙ୍ଗଙ୍କୁ ଶିବ ଓ ନିଜକୁ ଶକ୍ତିରୂପ ବୁଝି, ଶକ୍ତିଲିଙ୍ଗଙ୍କୁ ଦେବୀ ଓ ନିଜକୁ ଶିବରୂପ ମଣି, ଶିବଲିଙ୍ଗଙ୍କୁ ନାଦରୂପ ଓ ଶକ୍ତିକୁ ବିନ୍ଦୁରୂପ ମଣି ପରସ୍ପର ସଙ୍ଗେ ଯୋଡ଼ି ହୋଇଥିବା ଶକ୍ତିଲିଙ୍ଗ ଓ ଶିବଲିଙ୍ଗ ପ୍ରତି ଉପପ୍ରଧାନ ଓ ପ୍ରଧାନ ଭାବନା ରଖି ଯେଉଁ ବ୍ୟକ୍ତି ଶିବ ଓ ଶକ୍ତିଙ୍କୁ ପୂଜା କରେ, ସେ ମୂଳରୂପର ଭାବନା କରିବା ହେତୁ ଶିବରୂପ ହିଁ ଅଟେ । ଶିବଭକ୍ତ ଶିବମନ୍ତ୍ରରୂପ ହୋଇଥିବା କାରଣରୁ ଶିବଙ୍କର ହିଁ ସ୍ୱରୂପ । ଯେ ଷୋଡ଼ଶ ଉପଚାରରେ ତାଙ୍କୁ ପୂଜା କରେ, ତାକୁ ତା'ର ମନୋବାଞ୍ଛିତ ଫଳ ପ୍ରାପ୍ତ ହୁଏ । ଯେଉଁ ଶିବଲିଙ୍ଗୋପାସକ ଶିବଭକ୍ତଙ୍କ ସେବା ଇତ୍ୟାଦି କରି ତାଙ୍କୁ ଆନନ୍ଦ ପ୍ରଦାନ କରେ, ସେହି ବିଦ୍ୱାନ୍ ଉପରେ ଭଗବାନ ଶିବ ବହୁତ ପ୍ରସନ୍ନ ହୁଅନ୍ତି । ପାଞ୍ଚଜଣ, ଦଶଜଣ ଅଥବା ଶହେଜଣ ଶିବଭକ୍ତଙ୍କୁ ସପତ୍ନୀକ ଆମନ୍ତ୍ରିତ କରି ଭୋଜନାଦି ଦ୍ୱାରା ସେମାନଙ୍କୁ ସମାଦର କରିବା ଉଚିତ । ଧନରେ, ଦେହରେ ଓ ମନ୍ତ୍ରରେ ଶିବଭାବନା କରି ସେମାନଙ୍କୁ ଶିବ ଓ ଶକ୍ତିଙ୍କ ସ୍ୱରୂପ ବୁଝି ଅନାବିଳ ଭାବରେ ପୂଜା କରିବା ଉଚିତ । ଏପରି କରୁଥିବା ବ୍ୟକ୍ତି ଏ ଭୂତଳରେ ଆଉ ଜନ୍ମଗ୍ରହଣ କରେ ନାହିଁ । (ଅଧ୍ୟାୟ ୧୭)



## ବନ୍ଧନ ଓ ମୋକ୍ଷର ବିଚାର, ଶିବପୂଜାର ଉପଦେଶ, ଲିଙ୍ଗ ଇତ୍ୟାଦିରେ ଶିବପୂଜନର ବିଧାନ, ଭସ୍ମର ସ୍ୱରୂପ ନିରୂପଣ ଓ ମହତ୍ତ୍ୱ, ଶିବ ଓ ଗୁରୁ ଶବ୍ଦର ବ୍ୟୁତ୍ପତ୍ତି ତଥା ଶିବଙ୍କ ଭସ୍ମଧାରଣର ରହସ୍ୟ

ଋଷି କହିଲେ–ହେ ସର୍ବଜ୍ଞଶ୍ରେଷ୍ଠ ସୂତ ! ବନ୍ଧନ ଓ ମୋକ୍ଷର ସ୍ୱରୂପ କ'ଣ, ତାହା ଆମକୁ କୁହନ୍ତୁ ।

ସୂତ କହିଲେ–ମହର୍ଷିଗଣ ! ମୁଁ ବନ୍ଧନ ଓ ମୋକ୍ଷର ସ୍ୱରୂପ ତଥା ମୋକ୍ଷର ଉପାୟ ବିଷୟରେ ବର୍ଣ୍ଣନା କରୁଛି, ଆଦରପୂର୍ବକ ଶୁଣ । ଯେଉଁ ଜୀବ ପ୍ରକୃତ୍ୟାଦି ଆଠ ପ୍ରକାର ବନ୍ଧନରେ ବାନ୍ଧି ହୋଇ ରହିଥାଏ, ସେ ବଦ୍ଧ ବୋଲାଏ ଏବଂ ଯେ ଏ ଅଷ୍ଟବନ୍ଧନରୁ ମୁକ୍ତ, ସେ ମୁକ୍ତ ବୋଲାଏ । ପ୍ରକୃତି ପ୍ରଭୃତିଙ୍କୁ ବଶରେ ରଖିବା ହେଉଛି ମୋକ୍ଷ । ବନ୍ଧନ ଆଗନ୍ତୁକ ଓ ମୋକ୍ଷ ହେଉଛି ସ୍ୱତଃସିଦ୍ଧ । ବଦ୍ଧ ଜୀବ ବନ୍ଧନରୁ ମୁକ୍ତ ହୋଇଗଲେ ତାହାକୁ ମୁକ୍ତ ଜୀବ କୁହାଯାଏ । ପ୍ରକୃତି, ବୁଦ୍ଧି (ମହତ୍ତତ୍ତ୍ୱ), ତ୍ରିଗୁଣାତ୍ମକ ଅହଂକାର ଓ ପାଞ୍ଚ ତନ୍ମାତ୍ର–ଏଗୁଡ଼ିକୁ ଜ୍ଞାନୀ ପୁରୁଷ ପ୍ରକୃତ୍ୟାଦ୍ୟଷ୍ଟକ ବୋଲି କହିଥାନ୍ତି । ଏହି ଆଠ ତତ୍ତ୍ୱର ସମୂହରୁ ଦେହର ଉତ୍ପତ୍ତି ହୋଇଛି । ଦେହରୁ କର୍ମ ଉତ୍ପନ୍ନ ହୁଏ ଓ ପୁଣି ସେଥିରୁ ନୂତନ ଦେହର ଉତ୍ପତ୍ତି ହୁଏ । ଏହିରୂପେ ବାରମ୍ବାର ଜନ୍ମ ଓ କର୍ମ ହେଉଥାଏ । ଶରୀର ସ୍ଥୂଳ, ସୂକ୍ଷ୍ମ ଓ କାରଣ ଭେଦରେ ତିନି ପ୍ରକାରର । କୁହାଯାଇଛି ଯେ, ସ୍ଥୂଳଶରୀର (ଜାଗ୍ରତ ଅବସ୍ଥାରେ) ବ୍ୟାପାର (କର୍ମ) କରାଇଥାଏ, ସୂକ୍ଷ୍ମଶରୀର (ଜାଗ୍ରତ ଓ ସ୍ୱପ୍ନ ଅବସ୍ଥାରେ) ଇନ୍ଦ୍ରିୟ ଭୋଗ ପ୍ରଦାନ କରିଥାଏ ଏବଂ କାରଣଶରୀର (ସୁଷୁପ୍ତାବସ୍ଥାରେ) ଆତ୍ମାନନ୍ଦର ଅନୁଭୂତି କରାଇଥାଏ । ଜୀବକୁ ତାହାର ପ୍ରାରବ୍ଧକର୍ମ ଅନୁସାରେ ସୁଖ ଓ ଦୁଃଖ ମିଳେ । ସେ ଆପଣା ପୁଣ୍ୟକର୍ମର ଫଳସ୍ୱରୂପ

ସୁଖ ଓ ପାପକର୍ମର ଫଳସ୍ୱରୂପ ଦୁଃଖ ଭୋଗ କରେ । କର୍ମପାଶରେ ଆବଦ୍ଧ ଜୀବକୁ ତା'ର ତ୍ରିବିଧ ଶରୀରରେ ହେଉଥିବା ଶୁଭାଶୁଭ କର୍ମ ହେତୁ ସର୍ବଦା ଚକ୍ର ପରି ବାରମ୍ବାର ଘୂରିବାକୁ ପଡ଼ିଥାଏ । ଏହି ଚକ୍ରାକାର ଭ୍ରମଣର ନିବୃତ୍ତି ପାଇଁ ଚକ୍ରକର୍ତ୍ତାଙ୍କ ସ୍ତବନ ଓ ଆରାଧନ କରିବା ଆବଶ୍ୟକ । ପ୍ରକୃତି ଆଦି ଯେଉଁ ଆଠ ପ୍ରକାର ପାଶ ରହିଛି, ତାହାର ସମୂହ ହିଁ ମହାଚକ୍ର ଏବଂ ଯେ ପ୍ରକୃତିର ଅତୀତ, ସେ ହେଉଛନ୍ତି ପରମାତ୍ମା ଶିବ । ଭଗବାନ ମହେଶ୍ୱର ହିଁ ପ୍ରକୃତି ଆଦି ମହାଚକ୍ରର କର୍ତ୍ତା; କାରଣ ସେ ପ୍ରକୃତିରୁ ଉର୍ଦ୍ଧ୍ୱରେ । ଯେପରି ବକାୟନ ନାମକ ବୃକ୍ଷର ମଳା ପାଣିକୁ ପିଇଥାଏ ଏବଂ ବାନ୍ତି କରିଥାଏ, ସେହିପରି ଶିବ ପ୍ରକୃତି ଆଦିକୁ ନିଜ ବଶରେ ରଖି ସମସ୍ତଙ୍କ ଉପରେ ଶାସନ କରିଥାନ୍ତି । ସେ ସମସ୍ତଙ୍କୁ ବଶରେ ରଖିଥିବାରୁ ତାଙ୍କୁ ଶିବ କୁହାଯାଏ । ଶିବ ହିଁ ସର୍ବଜ୍ଞ, ପରିପୂର୍ଣ୍ଣ ଓ ନିଃସ୍ପୃହ । ସର୍ବଜ୍ଞତା, ତୃପ୍ତି, ଅନାଦି ବୋଧ, ସ୍ୱତନ୍ତ୍ରତା, ନିତ୍ୟ ଅତୁଲ୍ୟ ଶକ୍ତିରେ ସଂଯୁକ୍ତ ରହିବା ଓ ନିଜ ଭିତରେ ଅନନ୍ତ ଶକ୍ତିକୁ ଧାରଣ କରିବା—ମହେଶ୍ୱରଙ୍କର ଏହି ଛଅ ପ୍ରକାର ମାନସିକ ଐଶ୍ୱର୍ଯ୍ୟକୁ କେବଳ ବେଦ ଜାଣନ୍ତି । ତେଣୁ ଶିବଙ୍କ ଅନୁଗ୍ରହରୁ ହିଁ ପ୍ରକୃତି ଆଦି ଆଠ ତତ୍ତ୍ୱକୁ ବଶ କରାଯାଇ ପାରେ । ଭଗବାନ ଶିବଙ୍କ କୃପାପ୍ରସାଦ ଲାଭ କରିବା ନିମନ୍ତେ ହିଁ ତାଙ୍କୁ ପୂଜା କରିବା ଆବଶ୍ୟକ ।

ଯଦି କହିବା ଯେ ଶିବ ତ ପରିପୂର୍ଣ୍ଣ, ନିଃସ୍ପୃହ, ତାଙ୍କର ପୂଜା ପୁଣି କିପରି ସମ୍ଭବ? ଏହାର ଉତ୍ତର ହେଲା—ଭଗବାନ ଶିବଙ୍କ ଉଦ୍ଦେଶ୍ୟରେ ତାଙ୍କରି ପ୍ରସନ୍ନତା ପାଇଁ କରାଯାଇଥିବା ସତ୍କର୍ମ ହିଁ ତାଙ୍କ କୃପାପ୍ରସାଦ ପ୍ରାପ୍ତି କରାଇଥାଏ । ଶିବଲିଙ୍ଗରେ, ଶିବ-ପ୍ରତିମାରେ ତଥା ଶିବଭକ୍ତଙ୍କ ଠାରେ ଶିବଙ୍କ ଭାବନା କରି ତାଙ୍କ ପ୍ରସନ୍ନତା ପାଇଁ ପୂଜା କରିବା ଆବଶ୍ୟକ । ସେହି ପୂଜା ଶରୀର, ମନ, ବାଣୀ ଓ ଧନରେ ମଧ୍ୟ କରାଯାଇ ପାରେ । ସେହି ପୂଜାରେ ମହେଶ୍ୱର ଶିବ, ଯେ କି ପ୍ରକୃତିରୁ ପର ଅଟନ୍ତି, ପୂଜକ ଉପରେ ବିଶେଷ କୃପା କରନ୍ତି ଓ ତାଙ୍କର ସେହି କୃପାପ୍ରସାଦ ସତ୍ୟ ହୋଇଥାଏ । ଶିବଙ୍କ କୃପାରୁ କର୍ମାଦି ସମସ୍ତ ବନ୍ଧନ ପୂଜକର ବଶବର୍ତ୍ତୀ ହୋଇଯାଏ । କର୍ମଠାରୁ ଆରମ୍ଭ କରି ପ୍ରକୃତି ପର୍ଯ୍ୟନ୍ତ ସବୁକିଛି ଯେତେବେଳେ ଜୀବର ବଶବର୍ତ୍ତୀ ହୋଇଯାଏ, ସେତେବେଳେ ଜୀବ ମୁକ୍ତ ବୋଲାଏ ଏବଂ ସେ ସ୍ୱାତ୍ମାରାମରୂପରେ ବିରାଜମାନ ହୁଏ । ପରମେଶ୍ୱର ଶିବଙ୍କ କୃପାରୁ ଯେବେ କର୍ମଜନିତ ଶରୀର ନିଜର ବଶବର୍ତ୍ତୀ ହୋଇଯାଏ, ସେତେବେଳେ ଶିବଙ୍କ ଲୋକରେ ନିବାସର ସୌଭାଗ୍ୟ ପ୍ରାପ୍ତ ହୁଏ । ଏହାକୁ କହନ୍ତି ସାଲୋକ୍ୟ ମୁକ୍ତି । ଯେବେ ତନ୍ମାତ୍ରମାନେ ବଶବର୍ତ୍ତୀ ହୋଇଯାଆନ୍ତି, ସେତେବେଳେ ଜୀବ ଶିବପାର୍ବତୀଙ୍କ ସାମୀପ୍ୟ ପ୍ରାପ୍ତ ହୁଏ । ଏହାକୁ ସାମୀପ୍ୟ ମୁକ୍ତି କହନ୍ତି । ତାହାର ଆୟୁଧ, କ୍ରିୟା ଇତ୍ୟାଦି ସବୁକିଛି ଭଗବାନ ଶିବଙ୍କ ପରି ହୋଇଯାଏ । ଭଗବାନଙ୍କ ମହାପ୍ରସାଦ ପ୍ରାପ୍ତ ହେବାପରେ ବୁଦ୍ଧି ମଧ୍ୟ ବଶକୁ ଆସିଯାଏ । ବୁଦ୍ଧି ପ୍ରକୃତିର କାର୍ଯ୍ୟ । ସେ ବଶକୁ ଆସିଗଲେ ସାର୍ଷ୍ଟିମୁକ୍ତି ହୁଏ । ପୁନଃ ଭଗବାନଙ୍କର ମହାନ୍ ଅନୁଗ୍ରହ ପ୍ରାପ୍ତ ହେଲେ ପ୍ରକୃତି ବଶରେ ରହିବ, ସେତେବେଳେ ଭଗବାନ ଶିବଙ୍କର ମାନସିକ ଐଶ୍ୱର୍ଯ୍ୟ ଅନାୟାସରେ ପ୍ରାପ୍ତ ହୋଇଯିବ । ସର୍ବଜ୍ଞତା ଓ ତୃପ୍ତି ଆଦି ଶିବଙ୍କର ଐଶ୍ୱର୍ଯ୍ୟମାନ ଲାଭ କରି ମୁକ୍ତ ପୁରୁଷ ନିଜ ଆତ୍ମାରେ ହିଁ ବିରାଜମାନ ହୋଇଯିବ । ବେଦ ଓ ଶାସ୍ତ୍ରରେ ବିଶ୍ୱାସ ରଖୁଥିବା ବିଦ୍ୱାନ୍‌ମାନେ ଏହାକୁ ସାଯୁଜ୍ୟମୁକ୍ତି କହନ୍ତି । ଏହି ପ୍ରକାରେ ଲିଙ୍ଗ ଆଦିରେ ଶିବଙ୍କୁ ପୂଜା କଲେ କ୍ରମଶଃ ମୁକ୍ତି ସ୍ୱତଃ ପ୍ରାପ୍ତ ହୋଇଯାଏ । ଏଣୁ ଶିବଙ୍କ କୃପା ଲାଭ

କରିବା ପାଇଁ ତତ୍‌ସମ୍ବନ୍ଧୀୟ କ୍ରିୟା ଇତ୍ୟାଦି ଦ୍ୱାରା ତାଙ୍କୁ ପୂଜା କରିବା ଉଚିତ । ଶିବକ୍ରିୟା, ଶିବତପ, ଶିବମନ୍ତ୍ର ଜପ, ଶିବଜ୍ଞାନ ଓ ଶିବଧ୍ୟାନ ନିମନ୍ତେ ସଦା ଉତ୍ତରୋତ୍ତର ଅଭ୍ୟାସ ବୃଦ୍ଧି କରିବା ଉଚିତ । ପ୍ରତିଦିନ ନିଦରୁ ଉଠିବା ଠାରୁ ଆରମ୍ଭ କରି ରାତିରେ ଶୋଇବା ପର୍ଯ୍ୟନ୍ତ ଏବଂ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମସ୍ତ ସମୟ ଭଗବାନ ଶିବଙ୍କ ଚିନ୍ତନରେ ହିଁ ବିତାଇବା ଉଚିତ । ସଦ୍ୟୋଜାତାଦି ମନ୍ତ୍ର ଓ ନାନା ପ୍ରକାର ପୁଷ୍ପରେ ଯେ ଶିବଙ୍କୁ ପୂଜା କରେ, ସେ ଶିବଙ୍କୁ ପ୍ରାପ୍ତ ହେବ ।

ଋଷି କହିଲେ—ହେ ଉତ୍ତମବ୍ରତ ପାଳନକାରୀ ସୂତ ! ଲିଙ୍ଗ ଆଦିରେ ଶିବଙ୍କୁ ପୂଜା କରିବାର କ'ଣ ସବୁ ବିଧାନ ଅଛି, ତାହା ଆମକୁ କହନ୍ତୁ ।

ସୂତ କହିଲେ—ଦ୍ୱିଜଗଣ ! ମୁଁ ଲିଙ୍ଗମାନଙ୍କର କ୍ରମ ଯଥାବତ୍ ବର୍ଣ୍ଣନା କରୁଛି, ମନ ଦେଇ ଶୁଣ । ପ୍ରଣବ ହିଁ ସମସ୍ତ ଅଭୀଷ୍ଟ ଫଳ ପ୍ରଦାନକାରୀ ପ୍ରଥମ ଲିଙ୍ଗ । ତାହାକୁ ସୂକ୍ଷ୍ମ ପ୍ରଣବରୂପ ବୋଲି ବୁଝ । ସୂକ୍ଷ୍ମଲିଙ୍ଗ ନିଷ୍କଳ ଓ ସ୍ଥୂଳଲିଙ୍ଗ ସକଳ ହୋଇଥାଏ । ପଞ୍ଚାକ୍ଷର ମନ୍ତ୍ରକୁ ହିଁ ସ୍ଥୂଳଲିଙ୍ଗ କହନ୍ତି । ଉଭୟ ପ୍ରକାର ଲିଙ୍ଗର ପୂଜନ ତପରୂପେ ଗଣ୍ୟ । ଉଭୟ ପ୍ରକାର ଲିଙ୍ଗ ସାକ୍ଷାତ୍ ମୋକ୍ଷ ପ୍ରଦାନ କରିଥାଏ । ପୌରୁଷ-ଲିଙ୍ଗ ଓ ପ୍ରକୃତି-ଲିଙ୍ଗ ରୂପରେ ଅନେକ ପ୍ରକାର ଲିଙ୍ଗ ଅଛି । ସେ ବିଷୟରେ ଭଗବାନ ଶିବ ହିଁ ବିସ୍ତାରପୂର୍ବକ କହି ପାରନ୍ତି, ଅନ୍ୟ କେହି ତାହା ଜାଣେ ନାହିଁ । ପୃଥିବୀର ବିକାରଭୂତ ଯେତେସବୁ ଲିଙ୍ଗ ବିଷୟରେ ମୋର ଜ୍ଞାନ ଅଛି, ତାହା ମୁଁ ତୁମକୁ କହୁଛି । ସେଥିମଧ୍ୟରେ ସ୍ୱୟମ୍ଭୂ-ଲିଙ୍ଗ ସର୍ବପ୍ରଥମ । ଦ୍ୱିତୀୟ ହେଲା ବିନ୍ଦୁଲିଙ୍ଗ, ତୃତୀୟ ହେଲା ପ୍ରତିଷ୍ଠାଲିଙ୍ଗ, ଚତୁର୍ଥ ହେଲା ଚରଲିଙ୍ଗ ଓ ପଞ୍ଚମ ହେଲା ଗୁରୁଲିଙ୍ଗ । ଦେବର୍ଷିମାନଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ସେମାନଙ୍କ ନିକଟରେ ପ୍ରକଟ ହେବା ନିମନ୍ତେ ପୃଥିବୀ ଅନ୍ତର୍ଗତ ବୀଜରୂପେ ବ୍ୟାପ୍ତ ହୋଇଥିବା ଭଗବାନ ଶିବ ବୃକ୍ଷାଙ୍କୁର ପରି ଭୂମିକୁ ଭେଦ କରି ନାଦଲିଙ୍ଗ ରୂପରେ ବ୍ୟକ୍ତ ହୋଇଯାଆନ୍ତି । ସ୍ୱତଃ ବ୍ୟକ୍ତ ହୋଇଥିବା ଶିବ ହିଁ ସ୍ୱୟଂ ଆପେ ଆପେ ପ୍ରକଟ ହୋଇଥିବା କାରଣରୁ ସ୍ୱୟମ୍ଭୂ-ଲିଙ୍ଗ ନାମ ପାଇଥାନ୍ତି । ଜ୍ଞାନୀଜନ ତାଙ୍କୁ ସ୍ୱୟମ୍ଭୂ-ଲିଙ୍ଗ ନାମରେ ଜାଣନ୍ତି । ସ୍ୱୟମ୍ଭୂ-ଲିଙ୍ଗଙ୍କ ପୂଜା ଦ୍ୱାରା ଉପାସକର ଜ୍ଞାନ ଆପେ ଆପେ ବୃଦ୍ଧି ପାଇଥାଏ । ସୁନା, ରୁପା ଆଦି ଧାତୁପତ୍ରରେ, ଭୂମି ଉପରେ ଅଥବା ବେଦି ଉପରେ ସ୍ୱହସ୍ତ-ଲିଖିତ ଶୁଦ୍ଧ ପ୍ରଣବ ମନ୍ତ୍ରରୂପୀ ଲିଙ୍ଗରେ ତଥା ଯନ୍ତ୍ରଲିଙ୍ଗ ଆଲେଖ କରି ସେଥିରେ ଭଗବାନ ଶିବଙ୍କୁ ପ୍ରତିଷ୍ଠା ଓ ଆବାହନ କରିବା ଉଚିତ । ଏପରି ବିନ୍ଦୁନାଦମୟ ଲିଙ୍ଗ ସ୍ଥାବର ଓ ଜଙ୍ଗମ ଭେଦରେ ଦୁଇ ପ୍ରକାରର ହୋଇଥାଏ । ଏଥିରେ ଶିବଙ୍କ ଦର୍ଶନ ଭାବନାମୟ ବୋଲି ନିଃସନ୍ଦେହରେ କୁହାଯାଇପାରେ । ଯାହାର ବିଶ୍ୱାସ ଥାଏ ଯେ ଶିବ ଅମୁକ ସ୍ଥାନରେ ପ୍ରକଟ ହେବେ, ତା'ପାଇଁ ସେଇଠି ପ୍ରକଟ ହୋଇ ସେ ଅଭୀଷ୍ଟ ଫଳ ପ୍ରଦାନ କରିଥାନ୍ତି । ସ୍ୱହସ୍ତ-ଲିଖିତ ଯନ୍ତ୍ରରେ ଅଥବା ଅକୃତ୍ରିମ ସ୍ଥାବର ଆଦିରେ ଭଗବାନ ଶିବଙ୍କୁ ଆବାହନ କରି ଷୋଡ଼ଶ ଉପଚାରରେ ତାଙ୍କୁ ପୂଜା କରିବା ଉଚିତ । ଏଭଳି କଲେ ସାଧକ ନିଜେ ଐଶ୍ୱର୍ଯ୍ୟ ଲାଭ କରିଥାଏ ଏବଂ ଏହି ସାଧନାର ଅଭ୍ୟାସରେ ତାହାକୁ ଜ୍ଞାନ ମଧ୍ୟ ପ୍ରାପ୍ତ ହୋଇଥାଏ । ଦେବତା ଓ ଋଷିମାନେ ଆତ୍ମସିଦ୍ଧି ନିମନ୍ତେ ବୈଦିକ ମନ୍ତ୍ର ଉଚ୍ଚାରଣପୂର୍ବକ ଶୁଦ୍ଧ ମଣ୍ଡଳରେ ଶୁଦ୍ଧଭାବନା ଦ୍ୱାରା ଯେଉଁ ଉତ୍ତମ ଶିବଲିଙ୍ଗ ସ୍ୱହସ୍ତରେ ସ୍ଥାପନା କରିଛନ୍ତି, ତାହାକୁ ପୌରୁଷ ଲିଙ୍ଗ କହନ୍ତି ଏବଂ ତାହା ହିଁ ପ୍ରତିଷ୍ଠିତ ଲିଙ୍ଗ ନାମରେ ଅଭିହିତ । ସେହି ଲିଙ୍ଗକୁ ପୂଜା କଲେ ସଦା ପୌରୁଷ ଐଶ୍ୱର୍ଯ୍ୟ ପ୍ରାପ୍ତି ହୁଏ । ଶ୍ରେଷ୍ଠ ବ୍ରାହ୍ମଣ ଓ ମହାଧନୀ ରାଜା କୌଣସି କାରିଗର ଦ୍ୱାରା ଶିବଲିଙ୍ଗ ନିର୍ମାଣ କରାଇ ମନ୍ତ୍ରପୂର୍ବକ ସ୍ଥାପନା କଲେ ସେହି ସ୍ଥାପିତ

ଲିଙ୍ଗ ପ୍ରତିଷ୍ଠିତ ଲିଙ୍ଗ ନାମରେ ଅଭିହିତ ହୁଏ। କିନ୍ତୁ ତାହା ପ୍ରାକୃତ-ଲିଙ୍ଗ ଅଟେ। ସେଥିପାଇଁ ତାହା ପ୍ରାକୃତ ଭୋଗ ଓ ଐଶ୍ୱର୍ଯ୍ୟ ହିଁ ପ୍ରଦାନ କରିଥାଏ। ଯେ ଶକ୍ତିଶାଳୀ ଓ ନିତ୍ୟ, ତାହାକୁ ହିଁ ପୌରୁଷ କହନ୍ତି ଏବଂ ଦୁର୍ବଳ ଓ ଅନିତ୍ୟକୁ ପ୍ରାକୃତ କହନ୍ତି।

ଲିଙ୍ଗ, ନାଭି, ଜିହ୍ୱା, ନାସାଗ୍ର ଓ ଶିଖା କ୍ରମରେ କଟି, ହୃଦୟ ଓ ମସ୍ତକ ତିନୋଟି ସ୍ଥାନରେ ଯେଉଁ ଲିଙ୍ଗର ଭାବନା କରାଯାଏ, ସେହି ଆଧ୍ୟାତ୍ମିକ ଲିଙ୍ଗକୁ ହିଁ ଚରଲିଙ୍ଗ କହନ୍ତି। ପର୍ବତକୁ ପୌରୁଷ-ଲିଙ୍ଗ କୁହାଯାଏ ଏବଂ ଭୂତଳକୁ ବିଦ୍ୱାନ୍‌ମାନେ ପ୍ରାକୃତଲିଙ୍ଗ ବୋଲି ଧରିଥାନ୍ତି। ବୃକ୍ଷାଦିକୁ ପୌରୁଷଲିଙ୍ଗ ଏବଂ ଗୁଳ୍ମାଦିକୁ ପ୍ରାକୃତଲିଙ୍ଗ ବୋଲି ଜାଣିବା ଉଚିତ। ଷାଠି ଧାନକୁ ପ୍ରାକୃତଲିଙ୍ଗ ଏବଂ ଶାଳି ଧାନ ଓ ଗହମକୁ ପୌରୁଷଲିଙ୍ଗ ବୋଲି ବୁଝିବାକୁ ହେବ। ଅଣିମାଦି ଅଷ୍ଟସିଦ୍ଧି ପ୍ରଦାନକାରୀ ଐଶ୍ୱର୍ଯ୍ୟକୁ ପୌରୁଷ ଐଶ୍ୱର୍ଯ୍ୟ ବୁଝିବା ଉଚିତ। ସୁନ୍ଦରୀ ସ୍ତ୍ରୀ ତଥା ଧନାଦି ବିଷୟକୁ ଆସ୍ତିକ ଲୋକେ ପ୍ରାକୃତ ଐଶ୍ୱର୍ଯ୍ୟ କହିଥାନ୍ତି। ଚରଲିଙ୍ଗରେ ସର୍ବପ୍ରଥମେ ରସଲିଙ୍ଗର ବର୍ଣ୍ଣନା କରାଯାଏ। ରସଲିଙ୍ଗ ବ୍ରାହ୍ମଣଙ୍କୁ ସେମାନଙ୍କର ସମସ୍ତ ଅଭୀଷ୍ଟ ପ୍ରଦାନ କରିଥାଏ। ଶୁଭକାରକ ବାଣଲିଙ୍ଗ କ୍ଷତ୍ରିୟଙ୍କୁ ମହାନ୍ ରାଜ୍ୟ ପ୍ରଦାନ କରିଥାଏ। ସୁବର୍ଣ୍ଣଲିଙ୍ଗ ବୈଶ୍ୟଙ୍କୁ ମହାଧନପତି ପଦ ପ୍ରଦାନ କରିଥାଏ। ସୁନ୍ଦର ଶିବଲିଙ୍ଗ ଶୂଦ୍ରଙ୍କୁ ମହାଶୁଦ୍ଧି ପ୍ରଦାନ କରିଥାଏ। ସ୍ଫଟିକମୟ ଲିଙ୍ଗ ତଥା ବାଣଲିଙ୍ଗ ସମସ୍ତଙ୍କୁ ସେମାନଙ୍କର ସମସ୍ତ କାମନା ଅନୁରୂପ ଫଳ ପ୍ରଦାନ କରିଥାଏ। ନିଜର ନ ଥିଲେ ବି ଅନ୍ୟର ସ୍ଫଟିକ ବା ବାଣଲିଙ୍ଗ ମଧ୍ୟ ପୂଜା ପାଇଁ ନିଷିଦ୍ଧ ନୁହେଁ। ନାରୀଙ୍କ ପାଇଁ ବିଶେଷତଃ ସଧବାମାନଙ୍କ ପାଇଁ ପାର୍ଥିବଲିଙ୍ଗର ବିଧାନ ରହିଛି। ମାତ୍ର ବିରକ୍ତ ଓ ବିଧବାଙ୍କ ପାଇଁ ରସଲିଙ୍ଗ ପୂଜାକୁ ହିଁ ଶ୍ରେଷ୍ଠ କୁହାଯାଇଛି। ହେ ଉତ୍ତମବ୍ରତ ପାଳନକାରୀ ମହର୍ଷିଗଣ! ବାଲ୍ୟାବସ୍ଥାରେ, ଯୌବନରେ ଓ ବୃଦ୍ଧାବସ୍ଥାରେ ମଧ୍ୟ ଶୁଦ୍ଧ ସ୍ଫଟିକମୟ ଶିବଲିଙ୍ଗ ପୂଜନ ନାରୀଙ୍କୁ ସମସ୍ତ ଭୋଗ ପ୍ରଦାନ କରିଥାଏ। ଗୃହାସକ୍ତ ନାରୀଙ୍କ ପାଇଁ ପୀଠପୂଜା ଭୂତଳରେ ସମସ୍ତ ଅଭୀଷ୍ଟ ପ୍ରଦାନକାରୀ।

ପ୍ରବୃତ୍ତିମାର୍ଗରେ ଗ୍ଲୁଥିବା ବ୍ୟକ୍ତି ସୁପାତ୍ର ଗୁରୁଙ୍କ ସହଯୋଗରେ ହିଁ ସମସ୍ତ ପୂଜାକର୍ମ ସମ୍ପନ୍ନ କରିବା ଉଚିତ। ଇଷ୍ଟଦେବଙ୍କ ଅଭିଷେକ କରିବା ପରେ ଶାରଦ ଗ୍ରଉଳରେ ପ୍ରସ୍ତୁତ ଖିରି ଇତ୍ୟାଦି ପକ୍ୱାନ୍ନ ନୈବେଦ୍ୟରୂପେ ଅର୍ପଣ କରିବେ। ପୂଜା ଶେଷରେ ଶିବଲିଙ୍ଗକୁ ଫରୁଆରେ ସ୍ଥାପିତ କରି ଘରେ ଅଲଗା ରଖିଦେବେ। ଯେଉଁମାନେ ନିବୃତ୍ତିମାର୍ଗୀ, ସେମାନଙ୍କ ପାଇଁ ହାତ ଉପରେ ହିଁ ଶିବଲିଙ୍ଗ ପୂଜାର ବିଧାନ ରହିଛି। ସେମାନେ ଭିକ୍ଷାଦିରେ ପ୍ରାପ୍ତ ଭୋଜନକୁ ନୈବେଦ୍ୟରୂପେ ନିବେଦିତ କରିବା ଉଚିତ। ନିବୃତ୍ତ ପୁରୁଷଙ୍କ ପାଇଁ ସୂକ୍ଷ୍ମଲିଙ୍ଗ ହିଁ ଶ୍ରେଷ୍ଠ। ସେମାନେ ବିଭୂତି ଦ୍ୱାରା ପୂଜା କରିବେ ଏବଂ ବିଭୂତିକୁ ହିଁ ନୈବେଦ୍ୟରୂପେ ମଧ୍ୟ ନିବେଦନ କରିବେ। ପୂଜା କରିସାରି ସେହି ଲିଙ୍ଗକୁ ସଦା ମସ୍ତକରେ ଧାରଣ କରିବେ।

ବିଭୂତି ତିନି ପ୍ରକାରର; ଯଥା—ଲୋକାଗ୍ନି-ଜନିତ, ବେଦାଗ୍ନିଜନିତ ଓ ଶିବାଗ୍ନିଜନିତ। ଲୋକାଗ୍ନିଜନିତ ବା ଲୌକିକ ଭସ୍ମକୁ ଦ୍ରବ୍ୟଶୁଦ୍ଧି ପାଇଁ ଆଣି ରଖିବେ। ମାଟି, କାଠ ବା ଲୁହାର ପାତ୍ର ଏବଂ ଧାନ୍ୟ, ତିଳାଦି ଦ୍ରବ୍ୟ, ବସ୍ତ୍ରାଦି ଓ ପର୍ଯ୍ୟୁଷିତ ଦ୍ରବ୍ୟମାନ ଭସ୍ମ ଦ୍ୱାରା ଶୁଦ୍ଧ ହୁଏ। କୁକୁର ପ୍ରଭୃତିଙ୍କ ଦ୍ୱାରା ଦୂଷିତ ହୋଇଥିବା ପାତ୍ର ମଧ୍ୟ ଭସ୍ମ ଦ୍ୱାରା ଶୁଦ୍ଧ ହୁଏ। ବସ୍ତୁବିଶେଷର ଶୁଦ୍ଧି ପାଇଁ ଯଥାଯୋଗ୍ୟ ସଜଳ ଅଥବା ନିର୍ଜଳ ଭସ୍ମ ଉପଯୋଗ କରିବା ଉଚିତ। ବେଦାଗ୍ନିଜନିତ ଭସ୍ମକୁ ସେହିସବୁ ବୈଦିକ କର୍ମର ଶେଷରେ ଧାରଣ

କରିବା ଉଚିତ । ମନ୍ତ୍ର ଓ କ୍ରିୟାଜନିତ ହୋମକର୍ମ ଅଗ୍ନିରେ ଭସ୍ମରୂପ ଧାରଣ କରେ । ସେହି ଭସ୍ମକୁ ଧାରଣ କଲେ ପୂର୍ବୋକ୍ତ କର୍ମ ଆତ୍ମାରେ ଆରୋପିତ ହୋଇଯାଏ । ଅଘୋର* ମୂର୍ତ୍ତିଧାରୀ ଶିବଙ୍କ ମନ୍ତ୍ରକୁ ପଢ଼ି ବେଲ କାଠକୁ ଜଳାଇବେ । ସେହି ମନ୍ତ୍ରରେ ଅଭିମନ୍ତ୍ରିତ ଅଗ୍ନିକୁ ଶିବାଗ୍ନି କୁହାଯାଏ । ଶିବାଗ୍ନିରେ ପୋଡ଼ା ହୋଇଥିବା କାଠର ଭସ୍ମ ଶିବାଗ୍ନିଜନିତ ଭସ୍ମ ଅଟେ । କପିଳା ଗାଈର ଗୋବର ବା ପ୍ରତ୍ୟେକ ଗାଈର ଗୋବରକୁ ତଥା ଶମୀ, ଅଶ୍ୱତ୍ଥ, ପଳାଶ, ବର, ସୁନାରି ଓ ବେଲ କାଠକୁ ଶିବାଗ୍ନିରେ ପୋଡ଼ିଲେ ଯେଉଁ ଶୁଦ୍ଧ ଭସ୍ମ ହୁଏ, ତାହା ଶିବାଗ୍ନିଜନିତ ଅଟେ ଅଥବା କୁଶାଗ୍ନିରେ ଶିବମନ୍ତ୍ର ଉଚ୍ଚାରଣପୂର୍ବକ କାଠକୁ ଜଳାଇବେ ଏବଂ ସେହି ଭସ୍ମକୁ କନା ଦ୍ୱାରା ଭଲଭାବରେ ଚଲାଇ ନୂଆ ମାଠିଆରେ ପୂରାଇ ରଖିବେ । ତାହାକୁ ଆବଶ୍ୟକ ସମୟରେ ନିଜର କାନ୍ତି ବା ଶୋଭାବୃଦ୍ଧି ପାଇଁ ଧାରଣ କରିବେ । ଏପରି କରୁଥିବା ବ୍ୟକ୍ତି ସମ୍ମାନିତ ଓ ପୂଜିତ ହୁଏ । ପୂର୍ବକାଳରେ ଭଗବାନ ଶିବ ଭସ୍ମ ଶବ୍ଦର ଏହି ଅର୍ଥ ପ୍ରକାଶ କରିଥିଲେ । ରାଜା ଯେପରି ନିଜ ରାଜ୍ୟରେ ସାରଭୂତ କର ଗ୍ରହଣ କରିଥାଏ, ମନୁଷ୍ୟ ଯେପରି ଶସ୍ୟାଦିକୁ ଜଳାଇ (ରନ୍ଧନ କରି) ତାହାର ସାର ଗ୍ରହଣ କରିଥାଏ ଏବଂ ଜଠରାନଳ ଯେପରି ନାନା ପ୍ରକାର ଭକ୍ଷ୍ୟ, ଭୋଜ୍ୟ ଆଦି ପଦାର୍ଥକୁ ଅଧିକମାତ୍ରାରେ ଗ୍ରହଣ କରି ଜଳାଇ ଥାଏ ଏବଂ ଜଳାଇବା ପରେ ତାହାର ସାରତର ବସ୍ତୁ ଗ୍ରହଣ କରି ତଦ୍ଦ୍ୱାରା ଶରୀରକୁ ପୋଷଣ କରିଥାଏ, ଠିକ୍ ସେହିପରି ପ୍ରପଞ୍ଚକର୍ତ୍ତା ପରମେଶ୍ୱର ଶିବ ମଧ୍ୟ ନିଜ ମଧ୍ୟରେ ଆଧେୟରୂପେ ବିଦ୍ୟମାନ ପ୍ରପଞ୍ଚକୁ ଜଳାଇ ଭସ୍ମରୂପେ ତାହାର ସାରତତ୍ତ୍ୱକୁ ଗ୍ରହଣ କରିଛନ୍ତି । ପ୍ରପଞ୍ଚକୁ ଦଗ୍ଧ କରି ଶିବ ତାହାର ଭସ୍ମକୁ ନିଜ ଶରୀରରେ ବୋଳିଛନ୍ତି । ପାଉଁଶ ଓ ବିଭୂତି ବୋଳି ହେବା ବାହାନାରେ ସେ ଜଗତର ସାରକୁ ଗ୍ରହଣ କରିଛନ୍ତି । ନିଜ ପାଇଁ ରତ୍ନସ୍ୱରୂପ ଭସ୍ମକୁ ସେ ନିଜ ଶରୀରରେ ଏହିପରି ସ୍ଥାପିତ କରିଛନ୍ତି— ଆକାଶର ସାରତତ୍ତ୍ୱରୁ କେଶ, ବାୟୁର ସାରତତ୍ତ୍ୱରୁ ମୁଖ, ଅଗ୍ନିର ସାରତତ୍ତ୍ୱରୁ ହୃଦୟ, ଜଳର ସାରତତ୍ତ୍ୱରୁ କଟିଭାଗ ଓ ପୃଥିବୀର ସାରତତ୍ତ୍ୱରୁ ଆଣ୍ଠୁକୁ ଧାରଣ କରିଛନ୍ତି । ଏହିପରି ତାଙ୍କର ସମସ୍ତ ଅଙ୍ଗ ବିଭିନ୍ନ ବସ୍ତୁର ସାରରୂପ ଅଟେ । ମହେଶ୍ୱର ତାଙ୍କ ଲଲାଟରେ ତିଳକରୂପେ ଯେଉଁ ତ୍ରିପୁଣ୍ଡ୍ର ଧାରଣ କରିଛନ୍ତି, ତାହା ବ୍ରହ୍ମା, ବିଷ୍ଣୁ ଓ ରୁଦ୍ରଙ୍କର ସାରତତ୍ତ୍ୱ । ସେ ଏସବୁ ବସ୍ତୁକୁ ଜଗତର ଅଭ୍ୟୁଦୟର ହେତୁ ବୋଲି ମାନନ୍ତି । ପ୍ରଭୁ ଶିବ ହିଁ ପ୍ରପଞ୍ଚର ସାର-ସର୍ବସ୍ୱକୁ ନିଜର ବଶରେ ରଖିଛନ୍ତି; ତେଣୁ ତାଙ୍କୁ ନିଜର ବଶ କରିବାକୁ ଆଉ କେହି ସମର୍ଥ ନୁହେଁ । ଯେପରି ସମସ୍ତ ଜୀବଙ୍କର ହିଂସକ ଜୀବ ହିଁ ସିଂହ ବୋଲାଇଥାଏ ଏବଂ ସେହି ସିଂହର ହିଂସା କରିବାକୁ ଆଉ କୌଣସି ଜନ୍ତୁ ସମର୍ଥ ନୁହେଁ, ଠିକ୍ ସେହିପରି ଶିବ ଅଟନ୍ତି ।

'ଶ'କାରର ଅର୍ଥ ନିତ୍ୟସୁଖ ଓ ଆନନ୍ଦ, 'ଇ'କାରର ଅର୍ଥ ପୁରୁଷ ଓ 'ବ'କାରର ଅର୍ଥ ଅମୃତସ୍ୱରୂପା ଶକ୍ତି । ଏସବୁର ସମ୍ମିଳିତ ରୂପ ହିଁ 'ଶିବ' । ଏଣୁ ଏହି ରୂପରେ ଭଗବାନ ଶିବଙ୍କୁ ଆପଣା ଆତ୍ମା ମାନି ତାଙ୍କୁ ପୂଜା କରିବା ଉଚିତ । ତେଣୁ ପ୍ରଥମେ ନିଜ ଅଙ୍ଗରେ ଭସ୍ମ ବୋଳିବେ । ତା'ପରେ ଲଲାଟରେ ଉତ୍ତମ ତ୍ରିପୁଣ୍ଡ୍ର ଧାରଣ କରିବେ । ପୂଜା କାଳରେ ସଜଳ ଭସ୍ମ ଓ ଦ୍ରବ୍ୟଶୁଦ୍ଧି ନିମନ୍ତେ ନିର୍ଜଳ ଭସ୍ମର ପ୍ରୟୋଗ ହୋଇଥାଏ । ଗୁଣାତୀତ ପରମ ଶିବ ରାଜସ ଆଦି ସବିକାର ଗୁଣର ଅବରୋଧ କରନ୍ତି—ତାହାକୁ ଦୂର କରନ୍ତି । ସେଥିପାଇଁ ସେ ସମସ୍ତଙ୍କର ଗୁରୁରୂପରେ ଅବସ୍ଥିତ ଅଟନ୍ତି । ଗୁରୁ ବିଶ୍ୱାସୀ ଶିଷ୍ୟଙ୍କ ତିନିଗୁଣକୁ ପ୍ରଥମେ ଦୂର କରି ତା'ପରେ

* ଅଘୋର ମନ୍ତ୍ର ପୃଷ୍ଠାଙ୍କ ୫୦ ର ଟିପ୍ପଣୀରେ ଦିଆଯାଇଛି ।

ତାଙ୍କୁ ଶିବତତ୍ତ୍ୱ ବୋଧ କରାନ୍ତି, ତେଣୁ ସେ ଗୁରୁ ବୋଲାନ୍ତି । ଗୁରୁଙ୍କ ପୂଜା ପରମାତ୍ମା ଶିବଙ୍କର ହିଁ ପୂଜା ଅଟେ । ଗୁରୁଙ୍କ ଉପଯୋଗରୁ ବଳିଥିବା ସମସ୍ତ ପଦାର୍ଥ ଆତ୍ମଶୁଦ୍ଧି କରିଥାଏ । ଗୁରୁଙ୍କ ଆଜ୍ଞା ବିନା ଉପଯୋଗ କରାଯାଉଥିବା ଦ୍ରବ୍ୟ ଚୋରି କରି ଆଣି ଉପଯୋଗ କରୁଥିବା ବସ୍ତୁ ସଦୃଶ । ଯଦି ଗୁରୁଙ୍କ ଠାରୁ ଆହୁରି ବିଶେଷ ଜ୍ଞାନବାନ୍ ବ୍ୟକ୍ତି ମିଳିଯାଆନ୍ତି, ତେବେ ତାଙ୍କୁ ମଧ୍ୟ ଯତ୍ନପୂର୍ବକ ଗୁରୁ କରିନେବା ଉଚିତ । ଅଜ୍ଞାନରୂପୀ ବନ୍ଧନରୁ ମୁକ୍ତ ହେବା ହିଁ ଜୀବ ନିମନ୍ତେ ସାଧ୍ୟ ପୁରୁଷାର୍ଥ । ତେଣୁ ଯେ ବିଶେଷ ଜ୍ଞାନବାନ୍, ସେ ହିଁ ଜୀବକୁ ସେହି ବନ୍ଧନରୁ ମୁକ୍ତ କରିପାରେ ।

ଜନ୍ମ-ମରଣରୂପୀ ଦ୍ୱନ୍ଦ୍ୱକୁ ଭଗବାନ ଶିବଙ୍କ ମାୟା ହିଁ ଅର୍ପଣ କରିଛି । ଯେ ଏ ଦୁଇଟିକୁ ଶିବଙ୍କ ମାୟା ନିକଟରେ ହିଁ ପ୍ରତ୍ୟର୍ପିତ କରିଦିଏ, ସେ ଶରୀରର ବନ୍ଧନରେ ପଡ଼େ ନାହିଁ । ଶରୀର ଥିବା ପର୍ଯ୍ୟନ୍ତ ଯେ କ୍ରିୟାର ଅଧୀନ ରହେ, ସେ ହିଁ ବଦ୍ଧ ଜୀବ ବୋଲାଏ । ସ୍ଥୂଳ, ସୂକ୍ଷ୍ମ ଓ କାରଣ ଶରୀରକୁ ବଶ କରିନେବା ପରେ ଜୀବର ମୋକ୍ଷ ହୋଇଯାଏ, ଏହା ଜ୍ଞାନୀପୁରୁଷଙ୍କର କଥନ । ମାୟାଚକ୍ରର ନିର୍ମାତା ଭଗବାନ ଶିବ ହିଁ ପରମ କାରଣ ଅଟନ୍ତି । ସେ ନିଜ ମାୟା ଦ୍ୱାରା ପ୍ରଦତ୍ତ ଦ୍ୱନ୍ଦ୍ୱକୁ ନିଜେ ହିଁ ପରିମାର୍ଜିତ କରିଦିଅନ୍ତି । ତେଣୁ ଶିବଙ୍କ ଦ୍ୱାରା କଳ୍ପିତ ଦ୍ୱନ୍ଦ୍ୱ ତାଙ୍କୁ ହିଁ ସମର୍ପିତ କରିଦେବା ଉଚିତ । ଯେ ଶିବଙ୍କ ପୂଜାରେ ତତ୍ପର ଥାଆନ୍ତି, ସେ ମୌନ ରହିବେ, ସତ୍ୟ ଇତ୍ୟାଦି ଗୁଣରେ ସଂଯୁକ୍ତ ରହିବେ ଏବଂ କ୍ରିୟା, ଜପ, ତପ, ଜ୍ଞାନ ଓ ଧ୍ୟାନ ମଧ୍ୟରୁ ଗୋଟିଏ ଗୋଟିଏ ଅନୁଷ୍ଠାନ କରୁଥିବେ । ଐଶ୍ୱର୍ଯ୍ୟ, ଦିବ୍ୟଶରୀରପ୍ରାପ୍ତି, ଜ୍ଞାନର ଉଦୟ, ଅଜ୍ଞାନ ନିବାରଣ ଓ ଭଗବାନ ଶିବଙ୍କ ସାମୀପ୍ୟ ଲାଭ—ଏସବୁ କ୍ରମଶଃ କ୍ରିୟା ଇତ୍ୟାଦିର ଫଳ । ନିଷ୍କାମ କର୍ମ କରିବା ଦ୍ୱାରା ଅଜ୍ଞାନର ନିବାରଣ ହେଲେ ଶିବଭକ୍ତ ତାହାର ଯଥୋକ୍ତ ଫଳ ପାଇଥାଏ । ଶିବଭକ୍ତ ଦେଶ, କାଳ, ଶରୀର ଓ ଧନ ଅନୁସାରେ ଯଥାଯୋଗ୍ୟ କ୍ରିୟା ଆଦିର ଅନୁଷ୍ଠାନ କରିବେ । ନ୍ୟାୟୋପାର୍ଜିତ ଉତ୍ତମ ଧନରେ ନିର୍ବାହ କରି ବିଦ୍ୱାନ୍ ପୁରୁଷ ଶିବଙ୍କ ସ୍ଥାନରେ ନିବାସ କରିବେ । ଜୀବହିଂସାରହିତ ଓ ଅତ୍ୟନ୍ତ କ୍ଳେଶଶୂନ୍ୟ ଜୀବନ ବିତାଇ ପଞ୍ଚାକ୍ଷରମନ୍ତ୍ର-ଜପରେ ଅଭିମନ୍ତ୍ରିତ ଅନ୍ନ ଓ ଜଳକୁ ସୁଖସ୍ୱରୂପ ଧରାଯାଇଛି । ଅଥବା କୁହାଯାଏ ଯେ ଦରିଦ୍ର ବ୍ୟକ୍ତି ପାଇଁ ଭିକ୍ଷାରେ ପ୍ରାପ୍ତ ଅନ୍ନ ଜ୍ଞାନପ୍ରଦାୟକ ହୋଇଥାଏ । ଶିବଭକ୍ତକୁ ଭିକ୍ଷାନ୍ନ ପ୍ରାପ୍ତ ହେଲେ ତାହା ଶିବଭକ୍ତି ବୃଦ୍ଧି କରିଥାଏ । ଶିବଯୋଗୀମାନେ ଭିକ୍ଷାନ୍ନକୁ ଶମ୍ଭୁସତ୍ର କହନ୍ତି । ଯେକୌଣସି ଉପାୟରେ ଓ ଯେଉଁଠୁ ବି ଶୁଦ୍ଧ ଅନ୍ନ ମିଳିଲେ ତାହା ଭକ୍ଷଣ କରି ସଦା ମୌନଭାବରେ ରହିବେ ଏବଂ ନିଜ ସାଧନ ରହସ୍ୟକୁ ପ୍ରକଟ କରିବେ ନାହିଁ । ଭକ୍ତଙ୍କ ସମକ୍ଷରେ ହିଁ ଶିବଙ୍କ ମାହାତ୍ମ୍ୟକୁ ପ୍ରକାଶିତ କରିବେ । ଶିବମନ୍ତ୍ରର ରହସ୍ୟକୁ ଭଗବାନ ଶିବ ହିଁ ଜାଣନ୍ତି, ଅନ୍ୟ କେହି ଜାଣେ ନାହିଁ ।

(ଅଧ୍ୟାୟ ୧୮)



# ପାର୍ଥିବଲିଙ୍ଗ ନିର୍ମାଣର ରୀତି ତଥା ବେଦମନ୍ତ୍ର ଦ୍ୱାରା ଲିଙ୍ଗପୂଜାର ବିସ୍ତୃତ ଓ ସଂକ୍ଷିପ୍ତ ବର୍ଣ୍ଣନା

ଏହାପରେ ପାର୍ଥିବଲିଙ୍ଗର ଶ୍ରେଷ୍ଠତା ତଥା ମହିମା ବର୍ଣ୍ଣନା କରି ସୂତ କହୁଛନ୍ତି—**ମହର୍ଷିଗଣ !** ଏବେ ମୁଁ ବୈଦିକ କର୍ମ ପ୍ରତି ଶ୍ରଦ୍ଧା-ଭକ୍ତି ରଖୁଥିବା ଲୋକଙ୍କ ପାଇଁ ବେଦୋକ୍ତ ମାର୍ଗରେ

ହିଁ ପାର୍ଥିବପୂଜା ପଦ୍ଧତିର ବର୍ଣ୍ଣନା କରିବି । ଏହି ପୂଜା ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ସେମାନେ ଆହ୍ନିକସୂତ୍ରରେ ନିର୍ଦ୍ଦେଶିତ ବିଧି ଅନୁସାରେ ବିଧିପୂର୍ବକ ସ୍ନାନ ଓ ସନ୍ଧ୍ୟୋପାସନା ସାରି ପ୍ରଥମେ ବ୍ରହ୍ମଯଜ୍ଞ କରିବେ । ତା'ପରେ ଦେବତା, ଋଷି, ସନକାଦି ମନୁଷ୍ୟ ଓ ପିତୃଗଣଙ୍କ ପାଇଁ ତର୍ପଣ କରିବେ । ନିଜ ରୁଚି ଅନୁସାରେ ସମସ୍ତ ନିତ୍ୟକର୍ମକୁ ପୂର୍ଣ୍ଣ କରି ଶିବସ୍ମରଣପୂର୍ବକ ଭସ୍ମ ତଥା ରୁଦ୍ରାକ୍ଷ ଧାରଣ କରିବେ । ଏହାପରେ ସକଳ ମନୋବାଞ୍ଛିତ ଫଳପ୍ରାପ୍ତି ନିମନ୍ତେ ଉଚ୍ଚତର ଭକ୍ତିରେ ଉତ୍ତମ ପାର୍ଥିବ ଲିଙ୍ଗକୁ ବେଦୋକ୍ତ ବିଧିରେ ପୂଜା କରିବେ । ନଦୀ ବା ପୋଖରୀ କୂଳରେ, ପର୍ବତ ଉପରେ, ବନରେ, ଶିବାଳୟରେ ଅଥବା ଅନ୍ୟ କୌଣସି ପବିତ୍ର ସ୍ଥାନରେ ପାର୍ଥିବଲିଙ୍ଗ ପୂଜା କରିବାର ବିଧାନ ରହିଛି । ବ୍ରାହ୍ମଣଗଣ ! ଶୁଦ୍ଧ ସ୍ଥାନରୁ ମାଟି ଆଣି ତହିଁରେ ଯତ୍ନପୂର୍ବକ ଶିବଲିଙ୍ଗ ନିର୍ମାଣ କରିବେ । ବ୍ରାହ୍ମଣଙ୍କ ପାଇଁ ଶ୍ୱେତ, କ୍ଷତ୍ରିୟଙ୍କ ପାଇଁ ଲାଲ, ବୈଶ୍ୟଙ୍କ ପାଇଁ ହଳଦିଆ ଓ ଶୂଦ୍ରଙ୍କ ପାଇଁ କଳା ରଙ୍ଗର ମାଟିରେ ଶିବଲିଙ୍ଗ ନିର୍ମାଣର ବିଧାନ ରହିଛି । ଏହା ନ ହୋଇ ପାରିଲେ ଯେଉଁଠି ଯେଉଁ ମାଟି ମିଳିବ, ସେଥିରେ ଶିବଲିଙ୍ଗ ତିଆରି କରିବେ ।

ଶିବଲିଙ୍ଗ ନିର୍ମାଣ ପାଇଁ ଯତ୍ନରେ ମାଟି ଆଣି ସେହି ଶୁଭ ମୃତ୍ତିକାକୁ ପବିତ୍ର ସ୍ଥାନରେ ରଖିବେ । ତାହାକୁ ଶୁଦ୍ଧ କରି ପାଣି ମିଶାଇ ଚକଟି ପିଣ୍ଡ ତିଆରି କରିବେ ଏବଂ ବେଦୋକ୍ତ ବିଧିରେ ଧୀରେ ଧୀରେ ସୁନ୍ଦର ପାର୍ଥିବଲିଙ୍ଗ ନିର୍ମାଣ କରିବେ । ଏହାପରେ ଭୋଗ ଓ ମୋକ୍ଷରୂପୀ ଫଳ ପ୍ରାପ୍ତି ନିମନ୍ତେ ଭକ୍ତିପୂର୍ବକ ତାହାକୁ ପୂଜା କରିବେ । ତାହାକୁ ପୂଜା କରିବାର ବିଧି ମୁଁ କହୁଛି, ଶୁଣ । 'ଓଁ ନମଃ ଶିବାୟ' ଏହି ମନ୍ତ୍ର ଉଚ୍ଚାରଣ କରି କରି ସମସ୍ତ ପୂଜସାମଗ୍ରୀକୁ ପ୍ରୋକ୍ଷଣ କରିବେ ଅର୍ଥାତ୍ ତା'ଉପରେ ଜଳ ସିଞ୍ଚିବେ । ଏହାପରେ 'ଭୂରସି..[୧]' ମନ୍ତ୍ରରେ କ୍ଷେତ୍ରସିଦ୍ଧି କରିବେ, ତା'ପରେ 'ଆପୋଽସ୍ମାନ୍..[୨]' ମନ୍ତ୍ରରେ ଜଳସଂସ୍କାର କରିବେ । ଏହାପରେ 'ନମସ୍ତେ ରୁଦ୍ର..[୩]' ମନ୍ତ୍ରରେ ସ୍ଫାଟିକାବନ୍ଧ (ସ୍ଫଟିକ ଶିଳାର ଘେରା) ତିଆରି କରିବାକୁ କୁହାଯାଇଛି । 'ନମଃ ଶମ୍ଭବାୟ..[୪]' ମନ୍ତ୍ରରେ କ୍ଷେତ୍ରଶୁଦ୍ଧି ଓ ପଞ୍ଚାମୃତର ପ୍ରୋକ୍ଷଣ କରିବେ । ଶିବଭକ୍ତ 'ନମଃ' ପୂର୍ବକ 'ନୀଳଗ୍ରୀବାୟ..[୫]' ମନ୍ତ୍ରରେ ଶିବଲିଙ୍ଗକୁ ଉତ୍ତମରୂପେ ପ୍ରତିଷ୍ଠା କରିବେ । ଏହାପରେ ବୈଦିକ ରୀତିରେ ପୂଜନ କରୁଥିବା ଉପାସକ ଭକ୍ତିପୂର୍ବକ 'ଏତତ୍ତେ ରୁଦ୍ରାବସଂ..[୬]' ମନ୍ତ୍ରରେ ରମଣୀୟ ଆସନ ପ୍ରଦାନ

---

୧. ସମ୍ପୂର୍ଣ୍ଣ ମନ୍ତ୍ରଟି ହେଲା–ଭୂରସି ଭୂମିରସ୍ୟଦିତିରସି ବିଶ୍ୱଧାୟା ବିଶ୍ୱସ୍ୟ ଭୁବନସ୍ୟ ଧର୍ତ୍ତୀ । ପୃଥିବୀଂ ଯଚ୍ଛ ପୃଥିବୀଂ ଦୃଂହ ପୃଥିବୀଂ ମା ହିଂସୀଃ । (ଯଜୁ. ୧୩ । ୧୮)

୨. ଆପୋ ଅସ୍ମାନ୍ ମାତରଃ ଶୁନ୍ଧୟନ୍ତୁ ଘୃତେନ ନୋ ଘୃତପ୍ୱଃ ପୁନନ୍ତୁ । ବିଶ୍ୱଂରିପ୍ରଂ ପ୍ରବହନ୍ତି ଦେବୀରୁଦିଦାଭ୍ୟଃ ଶୁଚିରା ପୂତ ଏମି । ଦୀକ୍ଷାତପସୋସ୍ତନୂରସି ତାଂ ତ୍ୱା ଶିବାଂଶଗ୍ମାଂ ପରି ଦଧେ ଭଦ୍ରଂ ବର୍ଣ୍ଣଂ ପୁଷ୍ୟନ୍ । (ଯଜୁଃ. ୪ ।୨)

୩. ନମସ୍ତେ ରୁଦ୍ର ମନ୍ୟବ ଉତୋ ତ ଇଷବେ ନମଃ ବାହୁଭ୍ୟାମୁତ ତେ ନମଃ । (ଯଜୁଃ. ୧୬ ।୧)

୪. ନମଃ ଶମ୍ଭବାୟ ଚ ମୟୋଭବାୟ ଚ ନମଃ ଶଙ୍କରାୟ ଚ ମୟସ୍କରାୟ ଚ ନମଃ ଶିବାୟ ଚ ଶିବତରାୟ ଚ । (ଯଜୁ. ୧୬ । ୪୧)

୫. ନମୋଽସ୍ତୁ ନୀଳଗ୍ରୀବାୟ ସହସ୍ରାକ୍ଷାୟ ମୀଢୁଷେ । ଅଥୋ ଯେ ଅସ୍ୟ ସତ୍ୱାନୋଽହଂ ତେଭ୍ୟୋଽକରଂ ନମଃ । (ଯଜୁ. ୧୬ । ୮)

୬. ଏତତ୍ତେ ରୁଦ୍ରାବସଂ ତେନ ପରୋ ମୂଜବତୋଽତୀହି । ଅବତତଧନ୍ୱା ପିନାକାବସଃ କୃତ୍ତିବାସା ଅହିଂସନ୍ନଃ ଶିବୋଽତୀହି । (ଯଜୁ. ୩ । ୬୧)

**କରିବେ ।** 'ମା ନୋ ମହାନ୍ତମ୍..[୭]' **ମନ୍ତ୍ରରେ ଆବାହନ କରିବେ,** 'ଯା ତେ ରୁଦ୍ର..[୮]' **ମନ୍ତ୍ରରେ ଭଗବାନ ଶିବଙ୍କୁ ଆସନରେ ସମାସୀନ କରାଇବେ ।** 'ଯାମିଷୁଂ..[୯]' **ମନ୍ତ୍ରରେ ଶିବଙ୍କ ଅଙ୍ଗରେ ନ୍ୟାସ କରିବେ ।** 'ଅଧ୍ୟବୋଚତ୍..[୧୦]' **ମନ୍ତ୍ରରେ ପ୍ରେମପୂର୍ବକ ଅଧିବାସନ କରିବେ ।** 'ଅସୌ ଯସ୍ତାମ୍ରୋ..[୧୧]' **ମନ୍ତ୍ରରେ ଶିବଲିଙ୍ଗରେ ଇଷ୍ଟଦେବତା ଶିବଙ୍କୁ ନ୍ୟାସ କରିବେ ।** 'ଅସୌ ଯୋଽବସର୍ପତି..[୧୨]' **ମନ୍ତ୍ରରେ ଉପସର୍ପଣ (ଦେବତାଙ୍କ ସମୀପ ଗମନ) କରିବେ । ଏହାପରେ** 'ନମୋଽସ୍ତୁ ନୀଲଗ୍ରୀବାୟ..[୧୩]' **ମନ୍ତ୍ରରେ ଇଷ୍ଟଦେବଙ୍କୁ ପାଦ୍ୟ ସମର୍ପିତ କରିବେ ।** 'ରୁଦ୍ରଗାୟତ୍ରୀ..[୧୪]'**ରେ ଅର୍ଘ୍ୟ ଦେବେ ।** 'ତ୍ର୍ୟମ୍ବକଂ..[୧୫]' **ମନ୍ତ୍ରରେ ଆଚମନ କରାଇବେ ।** 'ପୟଃ ପୃଥିବ୍ୟାଂ..[୧୬]' **ମନ୍ତ୍ରରେ ଦୁଗ୍ଧସ୍ନାନ,** 'ଦଧିକ୍ରାବ୍‌ଣୋ..[୧୭]' **ମନ୍ତ୍ରରେ ଦଧିସ୍ନାନ ଏବଂ** 'ଘୃତଂ ଘୃତପାବା..[୧୮]' **ମନ୍ତ୍ରରେ ଘୃତସ୍ନାନ କରାଇବେ ।** 'ମଧୁ ବାତା..[୧୯]', ମଧୁ ନକ୍ତଂ..[୨୦]', 'ମଧୁମାନ୍ନୋ..[୨୧]' **ଏହି ତିନୋଟି ଋଗ୍ ଦ୍ୱାରା ମଧୁସ୍ନାନ ଓ ଶର୍କରାସ୍ନାନ* କରାଇବେ ।**

---

୭. ମା ନୋ ମହାନ୍ତମୁତ ମା ନୋ ଅର୍ଭକଂ ମା ନ ଉକ୍ଷନ୍ତମୁତ ମା ନ ଉକ୍ଷିତମ୍ । ମା ନୋ ବଧୀଃ ପିତରଂ ମୋତ ମାତରଂ ମା ନଃ ପ୍ରିୟାସ୍ତନ୍ୱୋ ରୁଦ୍ର ରୀରିଷଃ । (ଯଜୁ. ୧୬ । ୧୫)

୮. ଯା ତେ ରୁଦ୍ର ଶିବା ତନୂରଘୋରାଽପାପକାଶିନୀ । ଯା ନସ୍ତନ୍ୱା ଶନ୍ତମୟା ଗିରିଶନ୍ତାଭି ଚାକଶୀହି । (ଯଜୁ. ୧୬ । ୨)

୯. ଯାମିଷୁଂ ଗିରିଶନ୍ତ ହସ୍ତେ ବିଭର୍ଷ୍ୟସ୍ତବେ । ଶିବାଂ ଗିରିତ୍ର ତାଂ କୁରୁ ମା ହିଂସୀଃ ପୁରୁଷଂ ଜଗତ୍ । (ଯଜୁ. ୧୬ । ୩)

୧୦. ଅଧ୍ୟବୋଚଦଧିବକ୍ତା ପ୍ରଥମୋ ଦୈବ୍ୟୋ ଭିଷକ୍ । ଅହୀଂଶ୍ଚ ସର୍ବାଞ୍ଜମ୍ଭୟନ୍ତ୍ସର୍ବାଶ୍ଚ ଯାତୁଧାନ୍ୟୋଽଧରାଚୀଃ ପରା ସୁବ । (ଯଜୁ. ୧୬ । ୫)

୧୧. ଅସୌ ଯସ୍ତାମ୍ରୋ ଅରୁଣ ଉତ ବଭ୍ରୁଃ ସୁମଙ୍ଗଳଃ । ଯେ ଚୈନଂ ରୁଦ୍ରା ଅଭିତୋ ଦିକ୍ଷୁ ଶ୍ରିତାଃ ସହସ୍ରଶୋଽବୈଷାଂ ହେଡ ଈମହେ । (ଯଜୁ. ୧୬ । ୬)

୧୨. ଅସୌ ଯୋଽବସର୍ପତି ନୀଲଗ୍ରୀବୋ ବିଲୋହିତଃ । ଉତୈନଂ ଗୋପା ଅଦୃଶ୍ରନ୍ନଦୃଶ୍ରନ୍ନୁଦହାର୍ଯଃ ସ ଦୃଷ୍ଟୋ ମୃଡୟାତି ନଃ । (ଯଜୁ. ୧୬ । ୭)

୧୩. ଏ ମନ୍ତ୍ର ପୂର୍ବେ ଦିଆ ଯାଇଛି ।

୧୪. ତତ୍ପୁରୁଷାୟ ବିଦ୍ମହେ ମହାଦେବାୟ ଧୀମହି ତନ୍ନୋ ରୁଦ୍ରଃ ପ୍ରଚୋଦୟାତ୍ ।

୧୫. ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍ । ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍ । ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପତିବେଦନମ୍ । ଉର୍ବାରୁକମିବ ବନ୍ଧନାଦିତୋ ମୁକ୍ଷୀୟ ମାମୁତଃ । (ଯଜୁ. ୩ । ୬୦)

୧୬. ପୟଃ ପୃଥିବ୍ୟାଂ ପୟ ଓଷଧୀଷୁ ପୟୋ ଦିବ୍ୟନ୍ତରିକ୍ଷେ ପୟୋ ଧାଃ । ପୟସ୍ୱତୀଃ ପ୍ରଦିଶଃ ସନ୍ତୁ ମହ୍ୟମ୍ । (ଯଜୁ. ୧୮ । ୩୬)

୧୭. ଦଧିକ୍ରାବ୍‌ଣୋ ଅକାରିଷଂ ଜିଷ୍ଣୋରଶ୍ୱସ୍ୟ ବାଜିନଃ । ସୁରଭି ନୋ ମୁଖା କରତ୍ପ୍ରଣଆୟୂଂଷି ତାରିଷତ୍ । (ଯଜୁ. ୨୩ । ୩୨)

୧୮. ଘୃତଂ ଘୃତପାବାନଃ ପିବତ ବସାଂ ବସାପାବାନଃ ପିବତାନ୍ତରିକ୍ଷସ୍ୟ ହବିରସି ସ୍ୱାହା । ଦିଶଃ ପ୍ରଦିଶ ଆଦିଶୋ ବିଦିଶ ଉଦ୍ଦିଶୋ ଦିଗ୍‌ଭ୍ୟଃ ସ୍ୱାହା । (ଯଜୁ. ୬ ।୧୯)

୧୯. ମଧୁ ବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ । ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ । (ଯଜୁ. ୧୩ ।୨୭)

୨୦. ମଧୁ ନକ୍ତମୁତୋଷସୋ ମଧୁମତ୍ ପାର୍ଥିବଂ ରଜଃ । ମଧୁ ଦ୍ୟୌରସ୍ତୁ ନଃ ପିତା । (ଯଜୁ. ୧୩ । ୨୮)

୨୧. ମଧୁମାନ୍ନୋ ବନସ୍ପତିର୍ମଧୁମାଂ ଅସ୍ତୁ ସୂର୍ଯ୍ୟଃ । ମାଧ୍ୱୀର୍ଗାବୋ ଭବନ୍ତୁ ନଃ । (ଯଜୁ. ୧୩ । ୨୯)

* ଅନେକ ବିଦ୍ୱାନ୍ 'ମଧୁ ବାତା...' ଇତ୍ୟାଦି ତିନିଟି ଋଗ୍‌ର ଉପଯୋଗ କେବଳ ମଧୁସ୍ନାନରେ କରିଥାନ୍ତି ଏବଂ ଶର୍କରାସ୍ନାନ କରାଇବା ସମୟରେ ନିମ୍ନ ମନ୍ତ୍ର ବୋଲନ୍ତି–

ଅପାଂ ସମୁଦ୍ରୟସଂ ସୂର୍ଯ୍ୟେ ସନ୍ତଂ ସମାହିତମ୍ । ଅପାଯଂ ରସସ୍ୟ ଯୋ ରସସ୍ତଂ ବୋ ଗୃହ୍ଣାମ୍ୟୁତ୍ତମମୁପଯାମଗୃହୀତୋଽସୀନ୍ଦ୍ରାୟ ତ୍ୱାଂ ଜୁଷ୍ଟଂ ଗୃହ୍ଣାମ୍ୟେଷ ତେ ଯୋନିରିନ୍ଦ୍ରାୟ ତ୍ୱା ଜୁଷ୍ଟତମମ୍ । (ଯଜୁ. ୯ । ୩)

ଏହି ଦୁଗ୍ଧାଦି ପାଞ୍ଚଟି ଦ୍ରବ୍ୟକୁ ପଞ୍ଚାମୃତ କହନ୍ତି । ଅଥବା ପାଦ୍ୟ ସମର୍ପଣ ପାଇଁ କୁହାଯାଇଥିବା 'ନମୋଽସ୍ତୁ ନୀଳଗ୍ରୀବାୟ...' ଇତ୍ୟାଦି ମନ୍ତ୍ରରେ ପଞ୍ଚାମୃତ ସ୍ନାନ କରାଇବେ । ତା'ପରେ 'ମା ନସ୍ତୋକେ...[22]' ମନ୍ତ୍ରରେ ପ୍ରେମପୂର୍ବକ ଭଗବାନ ଶିବଙ୍କୁ କଟିବନ୍ଧ (କଟିସୂତ୍ର) ଅର୍ପଣ କରିବେ । 'ନମୋ ଧୃଷ୍ଣବେ...[23]' ମନ୍ତ୍ର ଉଚ୍ଚାରଣ କରି ଆରାଧ୍ୟ ଦେବତାଙ୍କୁ ଉତ୍ତରୀୟ ଧାରଣ କରାଇବେ । 'ଯା ତେ ହେତି...[24]' ଇତ୍ୟାଦି ଚାରିଟି ଋକ୍ ପଢ଼ି ବେଦଜ୍ଞ ଭକ୍ତ ପ୍ରେମରେ ବିଧିପୂର୍ବକ ଶିବଙ୍କ ପାଇଁ ବସ୍ତ୍ର (ଏବଂ ଉପବୀତ) ସମର୍ପିତ କରିବେ । ଏହାପରେ 'ନମଃ ଶ୍ୱଭ୍ୟଃ...[25]' ଇତ୍ୟାଦି ମନ୍ତ୍ର ପଢ଼ି ଶୁଦ୍ଧବୁଦ୍ଧି ଭକ୍ତ ଭଗବାନଙ୍କୁ ପ୍ରେମପୂର୍ବକ ଗନ୍ଧ (ସୁଗନ୍ଧିତ ଚନ୍ଦନ ଓ କୁଙ୍କୁମ) ଅର୍ପଣ କରିବ । 'ନମସ୍ତକ୍ଷଭ୍ୟୋ...[26]' ମନ୍ତ୍ରରେ ଅକ୍ଷତ ଅର୍ପଣ କରିବେ । 'ନମଃ ପାର୍ଯ୍ୟାୟ...[27]' ମନ୍ତ୍ରରେ ଫୁଲ ଅର୍ପଣ କରିବେ । 'ନମଃ ପର୍ଣ୍ଣାୟ...[28]' ମନ୍ତ୍ରରେ ବିଲ୍ୱପତ୍ର ସମର୍ପଣ କରିବେ । 'ନମଃ କପର୍ଦ୍ଦିନେ ଚ...[29]' ମନ୍ତ୍ରରେ ବିଧିପୂର୍ବକ ଧୂପ ଦେବେ । 'ନମ ଆଶବେ...[30]' ଋଗ୍ଦ୍ୱାରା ଶାସ୍ତ୍ରୋକ୍ତ ବିଧି ଅନୁସାରେ ଦୀପ ନିବେଦିତ କରିବେ । ତା'ପରେ (ହାତ ଧୋଇ) 'ନମୋ ଜ୍ୟେଷ୍ଠାୟ...[31]' ମନ୍ତ୍ରରେ ଉତ୍ତମ ନୈବେଦ୍ୟ ଅର୍ପିତ କରିବେ । ଏହାପରେ ପୂର୍ବୋକ୍ତ ତ୍ର୍ୟମ୍ବକ-ମନ୍ତ୍ରରେ ଆଚମନ ଦେବେ ।

୨୨. ମା ନସ୍ତୋକେ ତନୟେ ମା ନ ଆୟୁଷି ମା ନୋ ଗୋଷୁ ମା ନୋ ଅଶ୍ୱେଷୁ ରୀରିଷଃ । ମା ନୋ ବୀରାନ୍ ରୁଦ୍ର ଭାମିନୋ ବଧୀର୍ହବିଷ୍ମନ୍ତଃ ସଦମିତ୍ ତ୍ୱା ହବାମହେ । (ଯଜୁ. ୧୬ । ୧୬)

୨୩. ନମୋ ଧୃଷ୍ଣବେ ଚ ପ୍ରମୃଶାୟ ଚ ନମୋ ନିଷଙ୍ଗିଣେ ଚେଷୁଧିମତେ ଚ ନମସ୍ତୀକ୍ଷ୍ଣେଷବେ ଚାୟୁଧିନେ ଚ ନମଃ ସ୍ୱାୟୁଧାୟ ଚ ସୁଧନ୍ୱନେ ଚ । (ଯଜୁ. ୧୬ । ୩୬)

୨୪. ଯା ତେ ହେତିର୍ମୀଢୁଷ୍ଟମ ହସ୍ତେ ବଭୂବ ତେ ଧନୁଃ । ତୟାସ୍ମାନ୍‌ବିଶ୍ୱତସ୍ତ୍ୱମୟକ୍ଷ୍ମୟା ପରି ଭୁଜ (୧୧) । ପରି ତେ ଧନ୍ୱନୋ ହେତିରସ୍ମାନ୍ ବୃଣକ୍ତୁ ବିଶ୍ୱତଃ । ଅଥୋ ଯ ଇଷୁଧିସ୍ତବାରେ ଅସ୍ମନ୍ନି ଧେହି ତମ୍ (୧୨) । ଅବତତ୍ୟ ଧନୁଷ୍ଟ୍ୱଂ ସହସ୍ରାକ୍ଷ ଶତେଷୁଧେ । ନିଶୀର୍ଯ୍ୟ ଶଲ୍ୟାନାଂ ମୁଖା ଶିବୋ ନଃ ସୁମନା ଭବ (୧୩) । ନମସ୍ତ ଆୟୁଧାୟାନାତତାୟ ଧୃଷ୍ଣବେ । ଉଭାଭ୍ୟାମୁତ ତେ ନମୋ ବାହୁଭ୍ୟାଂ ତବ ଧନ୍ୱନେ (୧୪) । (ଯଜୁ.୧୬)

୨୫. ନମଃ ଶ୍ୱଭ୍ୟଃ ଶ୍ୱପତିଭ୍ୟଶ୍ଚ ବୋ ନମୋ ନମୋ ଭବାୟ ଚ ରୁଦ୍ରାୟ ଚ ନମଃ ଶର୍ବାୟ ଚ ପଶୁପତୟେ ଚ ନମୋ ନୀଲଗ୍ରୀବାୟ ଚ ଶିତିକଣ୍ଠାୟ ଚ । (ଯଜୁ. ୧୬ ।୨୮)

୨୬. ନମସ୍ତକ୍ଷଭ୍ୟୋ ରଥକାରେଭ୍ୟଶ୍ଚ ବୋ ନମୋ ନମଃ କୁଲାଲେଭ୍ୟଃ କର୍ମାରେଭ୍ୟଶ୍ଚ ବୋ ନମୋ ନମୋ ନିଷାଦେଭ୍ୟଃ ପୁଞ୍ଜିଷ୍ଟେଭ୍ୟଶ୍ଚ ବୋ ନମୋ ନମଃ ଶ୍ୱନିଭ୍ୟୋ ମୃଗୟୁଭ୍ୟଶ୍ଚ ବୋ ନମଃ । (ଯଜୁ. ୧୬ ।୨୭)

୨୭. ନମଃ ପାର୍ଯ୍ୟାୟ ଚାବାର୍ଯ୍ୟାୟ ଚ ନମଃ ପ୍ରତରଣାୟ ଚୋତ୍ତରଣାୟ ଚ ନମସ୍ତୀର୍ଥ୍ୟାୟ ଚ କୂଲ୍ୟାୟ ଚ ନମଃ ଶଷ୍ପ୍ୟାୟ ଚ ଫେନ୍ୟାୟ ଚ । (ଯଜୁ. ୧୬ । ୪୨)

୨୮. ନମଃ ପର୍ଣ୍ଣାୟ ଚ ପର୍ଣ୍ଣଶଦାୟ ଚ ନମ ଉଦ୍‌ଗୁରମାଣାୟ ଚାଭିଘ୍ନତେ ଚ ନମ ଆଖିଦତେ ଚ ପ୍ରଖିଦତେ ଚ ନମ ଇଷୁକୃଦ୍‌ଭ୍ୟୋ ଧନୁଷ୍କୃଦ୍‌ଭ୍ୟଶ୍ଚ ବୋ ନମୋ ନମୋ ବଃ କିରିକେଭ୍ୟୋ ଦେବାନା ହୃଦୟେଭ୍ୟୋ ନମୋ ବିଚିନ୍ୱତ୍‌କେଭ୍ୟୋ ନମୋ ନମ ଆନିର୍ହତେଭ୍ୟଃ । (ଯଜୁ. ୧୬ ।୪୬)

୨୯. ନମଃ କପର୍ଦ୍ଦିନେ ଚ ବ୍ୟୁପ୍ତକେଶାୟ ଚ ନମଃ ସହସ୍ରାକ୍ଷାୟ ଚ ଶତଧନ୍ୱନେ ଚ ନମୋ ଗିରିଶୟାୟ ଚ ଶିପିବିଷ୍ଟାୟ ଚ ନମୋ ମୀଢୁଷ୍ଟମାୟ ଚେଷୁମତେ ଚ । (ଯଜୁ. ୧୬ । ୨୯)

୩୦. ନମ ଆଶବେ ଚାଜିରାୟ ଚ ନମଃ ଶୀଘ୍ର୍ୟାୟ ଚ ଶୀଭ୍ୟାୟ ଚ ନମ ଉର୍ମ୍ୟାୟ ଚାବସ୍ୱନ୍ୟାୟ ଚ ନମୋ ନାଦେୟାୟ ଚ ଦ୍ୱୀପ୍ୟାୟ ଚ । (ଯଜୁ. ୧୬ । ୩୧)

୩୧. ନମୋ ଜ୍ୟେଷ୍ଠାୟ ଚ କନିଷ୍ଠାୟ ଚ ନମଃ ପୂର୍ବଜାୟ ଚାପରଜାୟ ଚ ନମୋ ମଧ୍ୟମାୟ ଚାପଗଲ୍‌ଭାୟ ଚ ନମୋ ଜଘନ୍ୟାୟ ଚ ବୁଧ୍ନ୍ୟାୟ ଚ । (ଯଜୁ. ୧୬ । ୩୨)

'ଇମା ରୁଦ୍ରାୟ...[୩୨]' ଋଗ୍‌ରେ ଫଳ ସମର୍ପଣ କରିବେ । ତା'ପରେ 'ନମୋ ବ୍ରଜ୍ୟାୟ...[୩୩]' ମନ୍ତ୍ରରେ ଶିବଙ୍କୁ ନିଜର ସବୁକିଛି ସମର୍ପିତ କରିଦେବେ । ଏହାପରେ 'ମା ନୋ ମହାନ୍ତମ୍...' ତଥା 'ମା ନସ୍ତୋକେ... ଏହି ଦୁଇଟି ପୂର୍ବୋକ୍ତ ମନ୍ତ୍ରରେ କେବଳ ଅକ୍ଷତ ଦ୍ୱାରା ଏକାଦଶ ରୁଦ୍ରଙ୍କୁ ପୂଜା କରିବେ । ତା'ପରେ ତିନୋଟି ଋଗ୍ ରୂପରେ ପଠିତ 'ହିରଣ୍ୟଗର୍ଭଃ...[୩୪]' ମନ୍ତ୍ରରେ ଦକ୍ଷିଣା ଅର୍ପଣ କରିବେ* । 'ଦେବସ୍ୟ ତ୍ୱା...[୩୫]' ମନ୍ତ୍ରରେ ବିଦ୍ୱାନ୍ ପୁରୁଷ ଆରାଧ୍ୟ ଦେବଙ୍କର ଅଭିଷେକ କରିବେ । ଦୀପ ନିମନ୍ତେ ନିର୍ଦ୍ଦେଶିତ 'ନମ ଆଶବେ..' ଇତ୍ୟାଦି ମନ୍ତ୍ରରେ ଶିବଙ୍କୁ ନୀରାଜନା (ଆଳତି) କରିବେ । ଏହାପରେ 'ଇମା ରୁଦ୍ରାୟ...' ଇତ୍ୟାଦି ତିନୋଟି ଋଗ୍‌ରେ ଭକ୍ତିପୂର୍ବକ ଭଗବାନ ରୁଦ୍ରଦେବଙ୍କୁ ପୁଷ୍ପାଞ୍ଜଳି ଅର୍ପଣ କରିବେ । 'ମା ନୋ ମହାନ୍ତମ୍...' ମନ୍ତ୍ରରେ ବିଜ୍ଞ ଉପାସକ ପୂଜନୀୟ ଦେବତାଙ୍କୁ ପରିକ୍ରମା କରିବେ । ଏହାପରେ ସୁବୁଦ୍ଧି ଉପାସକ 'ମା ନସ୍ତୋକେ...' ମନ୍ତ୍ରରେ ଭଗବାନଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରିବେ । 'ଏଷ ତେ...[୩୬]' ମନ୍ତ୍ରରେ ଶିବମୁଦ୍ରା ପ୍ରଦର୍ଶନ କରିବେ । 'ଯତୋ ଯତଃ...[୩୭]' ମନ୍ତ୍ରରେ ଅଭୟମୁଦ୍ରା, 'ତ୍ର୍ୟମ୍ବକଂ...' ମନ୍ତ୍ରରେ ଜ୍ଞାନମୁଦ୍ରା ଓ 'ନମଃ ସେନା...[୩୮]' ଇତ୍ୟାଦି ମନ୍ତ୍ରରେ ମହାମୁଦ୍ରା ପ୍ରଦର୍ଶିତ କରିବେ । 'ନମୋ ଗୋଭ୍ୟ...[୩୯]' ଋଗ୍‌ଦ୍ୱାରା ଧେନୁମୁଦ୍ରା ଦେଖାଇବେ । ଏହିରୂପେ ପାଞ୍ଚ ମୁଦ୍ରା ପ୍ରଦର୍ଶନ କରି ଶିବସମ୍ବନ୍ଧୀୟ ମନ୍ତ୍ର ଜପ କରିବେ ଅଥବା ବେଦଜ୍ଞ ପୁରୁଷ 'ଶତରୁଦ୍ରିୟ...[୪୦]' ମନ୍ତ୍ର ଆବୃତ୍ତି କରିବେ । ତା'ପରେ ବେଦଜ୍ଞ ପୁରୁଷ ପଞ୍ଚାଙ୍ଗ ପାଠ କରିବେ । ଏହାପରେ

---

୩୨. ଇମା ରୁଦ୍ରାୟ ତବସେ କପର୍ଦିନେ କ୍ଷୟଦ୍ୱୀରାୟ ପ୍ରଭରାମହେ ମତୀଃ । ଯଥା ଶମସଦ୍ ଦ୍ୱିପଦେ ଚତୁଷ୍ପଦେ ବିଶ୍ୱଂ ପୁଷ୍ଟଂ ଗ୍ରାମେ ଅସ୍ମିନ୍ନନାତୁରମ୍ । (ଯଜୁ. ୧୬ । ୪୮)

୩୩. ନମୋ ବ୍ରଜ୍ୟାୟ ଚ ଗୋଷ୍ଠ୍ୟାୟ ଚ ନମସ୍ତଲ୍ପ୍ୟାୟ ଚ ଗେହ୍ୟାୟ ଚ ନମୋ ହୃଦୟାୟ ଚ ନିବେଷ୍ୟାୟ ଚ ନମଃ କାଟ୍ୟାୟ ଚ ଗହ୍ୱରେଷ୍ଠାୟ ଚ । (ଯଜୁ. ୧୬ ।୪୪)

୩୪. ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପତିରେକ ଆସୀତ୍ । ସ ଦାଧାର ପୃଥିବୀଂ ଦ୍ୟାମୁତେମାଂ କସ୍ମୈ ଦେବାୟ ହବିଷା ବିଧେମ ।

* ଏ ମନ୍ତ୍ର ଯଜୁର୍ବେଦ ଅନ୍ତର୍ଗତ ତିନୋଟି ସ୍ଥାନରେ ପଠିତ ତଥା ତିନୋଟି ମନ୍ତ୍ରରୂପରେ ପରିଗଣିତ । ଯଥା–ଯଜୁ. ୧୩ । ୪; ୨୩ । ୧; ଏବଂ ୨୫ । ୧୦ ରେ ।

୩୫. ଦେବସ୍ୟ ତ୍ୱା ସବିତୁଃ ପ୍ରସବେଽଶ୍ୱି ନୋର୍ବାହୁଭ୍ୟାଂ ପୂଷ୍ଣୋ ହସ୍ତାଭ୍ୟାମ୍ । ଅଶ୍ୱିନୋର୍ଭୈଷଜ୍ୟେନ ତେଜସେ ବ୍ରହ୍ମବର୍ଚସାୟାଭି ଷିଞ୍ଚାମି ସରସ୍ୱତ୍ୟୈ ଭୈଷଜ୍ୟେନ ବୀର୍ଯ୍ୟାୟାଆଦ୍ୟାୟାଭି ଷିଞ୍ଚାମୀନ୍ଦ୍ରସ୍ୟେନ୍ଦ୍ରିୟେଣ ବଲାୟ ଶ୍ରିୟୈ ଯଶସେଽଭିଷିଞ୍ଚାମି । (ଯଜୁ. ୨୦ । ୩)

୩୬. ଏଷ ତେ ରୁଦ୍ର ଭାଗଃ ସହ ସ୍ୱସ୍ରାମ୍ବିକୟା ତଂ ଜୁଷସ୍ୱ ସ୍ୱାହା । ଏଷ ତେ ରୁଦ୍ର ଭାଗ ଆଖୁସ୍ତେ ପଶୁଃ ॥ (ଯଜୁ. ୩ ।୫୭)

୩୭. ଯତୋ ଯତଃ ସମୀହସେ ତତୋ ନୋ ଅଭୟଂ କୁରୁ । ଶଂ ନଃ କୁରୁ ପ୍ରଜାଭ୍ୟୋଽଭୟଂ ନଃ ପଶୁଭ୍ୟଃ ॥ (ଯଜୁ. ୩୬ ।୨୩)

୩୮. ନମଃ ସେନାଭ୍ୟଃ ସେନାନିଭ୍ୟଶ୍ଚ ବୋ ନମୋ ନମୋ ରଥିଭ୍ୟୋ ଅରଥେଭ୍ୟଶ୍ଚ ବୋ ନମୋ ନମଃ । କ୍ଷତ୍ତୃଭ୍ୟଃ ସଂଗ୍ରହୀତୃଭ୍ୟଶ୍ଚ ବୋ ନମୋ ନମୋ ମହଦ୍‌ଭ୍ୟୋ ଅର୍ଭକେଭ୍ୟଶ୍ଚ ବୋ ନମଃ । (ଯଜୁ. ୧୬ ।୨୬)

୩୯. ନମୋ ଗୋଭ୍ୟଃ ଶ୍ରୀମତୀଭ୍ୟଃ ସୌରଭେୟୀଭ୍ୟ ଏବ ଚ । ନମୋ ବ୍ରହ୍ମସୁତାଭ୍ୟଶ୍ଚ ପବିତ୍ରାଭ୍ୟୋ ନମୋ ନମଃ ॥ (ଗୋମତୀବିଦ୍ୟା)

୪୦. ଏହା ଯଜୁର୍ବେଦର ସେହି ଅଂଶ, ଯେଉଁଥିରେ ରୁଦ୍ରଙ୍କର ଶହେ ବା ତତୋଽଧିକ ନାମ ରହିଛି ଏବଂ ସେଗୁଡ଼ିକ ଦ୍ୱାରା ରୁଦ୍ରଦେବଙ୍କୁ ସ୍ତୁତି କରାଯାଇଛି । (ଦ୍ରଷ୍ଟବ୍ୟ ଯଜୁ. ଅଧ୍ୟାୟ ୧୬)

'ଦେବା ଗାତୁ...[୪୧]' ଇତ୍ୟାଦି ମନ୍ତ୍ରରେ ଭଗବାନ ଶିବଙ୍କୁ ବିସର୍ଜିତ କରିଦେବେ। ଏହା ହେଲା ଶିବପୂଜାର ବିସ୍ତାରିତ ବୈଦିକ ବିଧି।

ମହର୍ଷିଗଣ! ଏବେ ସଂକ୍ଷେପରେ ମଧ୍ୟ ପାର୍ଥିବପୂଜନର ବୈଦିକ ବିଧି ବର୍ଣ୍ଣନା କରୁଛି ଶୁଣ। 'ସଦ୍ୟୋଜାତଂ...[୪୨]' ଋଗ୍‌ରେ ପାର୍ଥିବଲିଙ୍ଗ ନିର୍ମାଣ କରିବାକୁ ମାଟି ଆଣିବେ। 'ବାମଦେବାୟ...[୪୩]' ଇତ୍ୟାଦି ପଢ଼ି ସେଥିରେ ପାଣି ମିଶାଇବେ। (ମାଟିରେ ପାଣି ମିଶି କାଦୁଅ ଭଲଭାବେ ପ୍ରସ୍ତୁତ ହୋଇଗଲେ) 'ଅଘୋର...[୪୪]' ମନ୍ତ୍ରରେ ଲିଙ୍ଗ ନିର୍ମାଣ କରିବେ। ଏହାପରେ 'ତତ୍‌ପୁରୁଷାୟ...[୪୫]' ମନ୍ତ୍ରରେ ବିଧିବତ୍ ସେଥିରେ ଶିବଙ୍କୁ ଆବାହନ କରିବେ। ଏହାପରେ 'ଈଶାନ...[୪୬]' ମନ୍ତ୍ରରେ ଶିବଙ୍କୁ ବେଦିରେ ସ୍ଥାପିତ କରିବେ। ଏହାଛଡ଼ା ଅନ୍ୟ ସବୁ ବିଧାନକୁ ମଧ୍ୟ ଶୁଦ୍ଧବୁଦ୍ଧି ଉପାସକ ସଂକ୍ଷେପରେ ସମ୍ପନ୍ନ କରିବେ। ଏହାପରେ ବିଦ୍ୱାନ୍ ପୁରୁଷ ପଞ୍ଚାକ୍ଷର ମନ୍ତ୍ରରେ ଅଥବା ଗୁରୁପ୍ରଦତ୍ତ ଅନ୍ୟ କୌଣସି ଶିବମନ୍ତ୍ରରେ ଷୋଡ଼ଶ ଉପଚାରରେ ବିଧିପୂର୍ବକ ପୂଜା କରିବେ ଅଥବା–

ଭବାୟ ଭବନାଶାୟ ମହାଦେବାୟ ଧୀମହି।
ଉଗ୍ରାୟ ଉଗ୍ରନାଶାୟ ଶର୍ବାୟ ଶଶିମୌଳିନେ ॥
(୨୦।୪୩)

–ଏହି ମନ୍ତ୍ରରେ ବିଦ୍ୱାନ୍ ଉପାସକ ଭଗବାନ ଶିବଙ୍କୁ ପୂଜା କରିବେ। ସେ ଭ୍ରମ ଛାଡ଼ି ଉତ୍ତମ ଭକ୍ତିରେ ଶିବଙ୍କୁ ଆରାଧନା କରିବେ; କାରଣ ମହାପ୍ରଭୁ ଶିବ ଭକ୍ତି ଥିଲେ ହିଁ ମନୋବାଞ୍ଛିତ ଫଳ ଦିଅନ୍ତି।

ବ୍ରାହ୍ମଣବୃନ୍ଦ! ଏଠାରେ ବୈଦିକ ବିଧିରେ ପୂଜନର ଯେଉଁ କ୍ରମ କୁହାଗଲା, ଏହାକୁ ପୂର୍ଣ୍ଣରୂପେ ଆଦର କରୁଥିଲେ ମଧ୍ୟ ମୁଁ ପୂଜାର ଆଉ ଗୋଟିଏ ବିଧି କହୁଛି, ଯାହାକି ଉତ୍ତମ ହେବା ସଙ୍ଗେ ସଙ୍ଗେ ସର୍ବସାଧାରଣଙ୍କ ପାଇଁ ଉପଯୋଗୀ। ମୁନିଗଣ! ପାର୍ଥିବଲିଙ୍ଗ ପୂଜା ଶିବଙ୍କ ନାମରେ ହୁଏ। ସେହି ପୂଜା ସମସ୍ତ ଅଭୀଷ୍ଟ ଫଳ ପ୍ରଦାତା। ମୁଁ ତାହା ବର୍ଣ୍ଣନା କରୁଛି, ଶୁଣ। ହର, ମହେଶ୍ୱର, ଶମ୍ଭୁ, ଶୂଳପାଣି, ପିନାକଧୃକ୍, ଶିବ, ପଶୁପତି ଓ ମହାଦେବ–ଏ ଆଠଟି ହେଲା ଶିବଙ୍କର ନାମ। ଏଥିମଧ୍ୟରୁ ପ୍ରଥମ ନାମ ଉଚ୍ଚାରଣ କରି ଅର୍ଥାତ୍ 'ଓଁ ହରାୟ ନମଃ' କହି ପାର୍ଥିବଲିଙ୍ଗ ନିର୍ମାଣ ପାଇଁ ମାଟି ଆଣିବେ। ଦ୍ୱିତୀୟ ନାମ ଅର୍ଥାତ୍ 'ଓଁ ମହେଶ୍ୱରାୟ ନମଃ' କହି ଲିଙ୍ଗ ନିର୍ମାଣ କରିବେ। ତା'ପରେ 'ଓଁ ଶମ୍ଭବେ ନମଃ' କହି ସେହି ପାର୍ଥିବଲିଙ୍ଗକୁ ପ୍ରତିଷ୍ଠା କରିବେ। 'ଓଁ ଶୂଳପାଣୟେ ନମଃ' ଉଚ୍ଚାରଣ କରି ପାର୍ଥିବଲିଙ୍ଗରେ ଶିବଙ୍କୁ ଆବାହନ କରିବେ। 'ଓଁ ପିନାକଧୃଷେ ନମଃ' ଉଚ୍ଚାରଣ କରି ଶିବଲିଙ୍ଗକୁ ସ୍ନାନ କରାଇବେ। 'ଓଁ ଶିବାୟ ନମଃ' କହି ତାହାକୁ ପୂଜା କରିବେ। 'ଓଁ ପଶୁପତୟେ ନମଃ' କହି କ୍ଷମାପ୍ରାର୍ଥନା କରିବେ। ଶେଷରେ 'ଓଁ ମହାଦେବାୟ ନମଃ' କହି

---

୪୧. ଦେବା ଗାତୁବିଦୋ ଗାତୁଂ ବିତ୍ତ୍ୱା ଗାତୁମିତ। ମନସସ୍ପତ ଇମଂ ଦେବ ଯଜ୍ଞଂ ସ୍ୱାହା ବାତେ ଧାଃ ॥ (ଯଜୁ. ୮।୨୧)

୪୨. ସଦ୍ୟୋଜାତଂ ପ୍ରପଦ୍ୟାମି ସଦ୍ୟୋଜାତାୟ ବୈ ନମୋ ନମଃ। ଭବେ ଭବେନାତିଭବେ ଭବସ୍ୱ ମାଂ ଭବୋଦ୍ଭବାୟ ନମଃ ॥

୪୩. ଓଁ ବାମଦେବାୟ ନମୋ ଜ୍ୟେଷ୍ଠାୟ ନମଃ ଶ୍ରେଷ୍ଠାୟ ନମୋ ରୁଦ୍ରାୟ ନମଃ କାଳାୟ ନମଃ କଲବିକରଣାୟ ନମୋ ବଲବିକରଣାୟ ନମୋ ବଲାୟ ନମୋ ବଲପ୍ରମଥନାୟ ନମଃ ସର୍ବଭୂତଦମନାୟ ନମୋ ମନୋନ୍ମଥାୟ ନମଃ।

୪୪. ଓଁ ଅଘୋରେଭ୍ୟୋଽଥ ଘୋରେଭ୍ୟୋ ଘୋରଘୋରତରେଭ୍ୟଃ ସର୍ବେଭ୍ୟଃ ସର୍ବଶର୍ବେଭ୍ୟୋ ନମସ୍ତେଽସ୍ତୁ ରୁଦ୍ରରୂପେଭ୍ୟଃ ॥

୪୫. ଓଁ ତତ୍ପୁରୁଷାୟ ବିଦ୍ମହେ ମହାଦେବାୟ ଧୀମହି ତନ୍ନୋ ରୁଦ୍ରଃ ପ୍ରଚୋଦୟାତ୍।

୪୬. ଓଁ ଈଶାନଃ ସର୍ବବିଦ୍ୟାନାମୀଶ୍ୱରଃ ସର୍ବଭୂତାନାଂ ବ୍ରହ୍ମାଧିପତିର୍ବ୍ରହ୍ମଣୋଽଧିପତିର୍ବ୍ରହ୍ମା ଶିବୋ ମେଽସ୍ତୁ ସଦା ଶିବୋମ୍ ॥

ଆରାଧ୍ୟଦେବଙ୍କୁ ବିସର୍ଜନ କରିଦେବେ । ପ୍ରତ୍ୟେକ ନାମକୁ ଚତୁର୍ଥୀ ବିଭକ୍ତି କରି, ଆରମ୍ଭରେ 'ଓଁକାର ଏବଂ ଶେଷରେ 'ନମଃ' ଶବ୍ଦ ଯୋଡ଼ି ଆନନ୍ଦରେ ଓ ଭକ୍ତିଭାବରେ ପୂଜାସମ୍ବନ୍ଧୀୟ ସମସ୍ତ କାର୍ଯ୍ୟ କରିବା ଉଚିତ ।*

ଷଡ଼କ୍ଷର ମନ୍ତ୍ରରେ ଅଙ୍ଗନ୍ୟାସ ଓ କରନ୍ୟାସର ବିଧି ଭଲଭାବରେ ସମ୍ପନ୍ନ କରିସାରି ନିମ୍ନମତେ ଧ୍ୟାନ କରିବେ । ଯେ କୈଳାସ ପର୍ବତ ଉପରେ ଗୋଟିଏ ସୁନ୍ଦର ସିଂହାସନର ମଧ୍ୟଭାଗରେ ବିରାଜମାନ, ଯାହାଙ୍କ ବାମଭାଗରେ ଭଗବତୀ ଉମା ଯୋଡ଼ି ହୋଇ ବସିଛନ୍ତି, ସନକ-ସନନ୍ଦନ ପ୍ରଭୃତି ଭକ୍ତଜନ ଯାହାଙ୍କର ପୂଜା କରୁଛନ୍ତି ଏବଂ ଯେ ଭକ୍ତଙ୍କର ଦୁଃଖରୂପୀ ଦାବାନଳକୁ ଶାନ୍ତ କରିବାରେ ଅପ୍ରମେୟ ଶକ୍ତିଶାଳୀ ଈଶ୍ୱର, ସେହି ବିଶ୍ୱବିଭୂଷଣ ଭଗବାନ ଶିବଙ୍କୁ ଚିନ୍ତନ କରିବା ଉଚିତ । ଭଗବାନ ମହେଶ୍ୱରଙ୍କୁ ପ୍ରତିଦିନ ଏପରି ଧ୍ୟାନ କରିବେ—ତାଙ୍କର ଅଙ୍ଗକାନ୍ତି ରୌପ୍ୟପର୍ବତ ପରି ଗୌର । ସେ ମନୋହର ଚନ୍ଦ୍ରକୁ ମସ୍ତକରେ ମୁକୁଟ ପରି ଧାରଣ କରିଛନ୍ତି । ରତ୍ନର ଆଭୂଷଣ ଧାରଣ କରିଥିବାରୁ ତାଙ୍କ ଶ୍ରୀଅଙ୍ଗ ଆହୁରି ଉଦ୍ଭାସିତ ହେଉଛି । ତାଙ୍କର ଚାରିଟି ହାତରେ ପରଶୁ, ମୃଗମୁଦ୍ରା, ବର ଓ ଅଭୟମୁଦ୍ରା ସୁଶୋଭିତ । ସେ ପ୍ରସନ୍ନ ଦିଶୁଛନ୍ତି ଓ ପଦ୍ମର ଆସନରେ ଆସୀନ ଅଛନ୍ତି ଓ ଦେବତାମାନେ ଚତୁର୍ଦିଗରେ ବିଦ୍ୟମାନ ହୋଇ ତାଙ୍କୁ ସ୍ତୁତି କରୁଛନ୍ତି । ସେ ବସ୍ତ୍ରରୂପେ ବ୍ୟାଘ୍ରଚର୍ମ ଧାରଣ କରିଛନ୍ତି । ସେ ବିଶ୍ୱର ଆଦି ତଥା ବୀଜ (କାରଣ) ଏବଂ ସମସ୍ତଙ୍କର ଭୟ ହରଣକାରୀ ଅଟନ୍ତି । ତାଙ୍କର ପାଞ୍ଚମୁଖ ଓ ପ୍ରତ୍ୟେକ ମୁଖରେ ତିନୋଟି ଲେଖାଏଁ ନେତ୍ର ରହିଛି ।卐

ଏହିପରି ଧ୍ୟାନ କରି ତଥା ଉତ୍ତମରୂପେ ପାର୍ଥିବଲିଙ୍ଗଙ୍କୁ ପୂଜା କରି ଗୁରୁପ୍ରଦତ୍ତ ପଞ୍ଚାକ୍ଷର ମନ୍ତ୍ରକୁ ବିଧିପୂର୍ବକ ଜପ କରିବେ । ବିପ୍ରବୃନ୍ଦ! ବିଦ୍ୱାନ୍ ପୁରୁଷ ସେହି ଦେବେଶ୍ୱର ଶିବଙ୍କୁ ପ୍ରଣାମ କରି ନାନା ପ୍ରକାର ସ୍ତୁତିଦ୍ୱାରା ତାଙ୍କୁ ସ୍ତବନ

---

* ହରୋ ମହେଶ୍ୱରଃ ଶମ୍ଭୁଃ ଶୂଳପାଣିଃ ପିନାକଧୃକ୍ । ଶିବଃ ପଶୁପତିଶ୍ଚୈବ ମହାଦେବ ଇତି କ୍ରମାତ୍ ॥
ମୃଦାହରଣସଂଘଟ୍ଟପ୍ରତିଷ୍ଠାହ୍ୱାନମେବ ଚ । ସ୍ନପନଂ ପୂଜନଂ ଚୈବ କ୍ଷମସ୍ୱେତି ବିସର୍ଜନମ୍ ॥
ଓଁକାରାଦିଚତୁର୍ଥ୍ୟନ୍ତୈର୍ନମୋଽନ୍ତୈର୍ନାମଭିଃ କ୍ରମାତ୍ । କର୍ତ୍ତବ୍ୟାଶ୍ଚ କ୍ରିୟାଃ ସର୍ବା ଭକ୍ତ୍ୟା ପରମୟା ମୁଦା ॥
(ଶି. ପୁ. ବି. ୨୦।୪୭–୪୯)

卐 ଅଙ୍ଗନ୍ୟାସ ଓ କରନ୍ୟାସର ପ୍ରୟୋଗକୁ ଏହିପରି ବୁଝିବା ଉଚିତ । ଓଁ ଓଁ ଅଙ୍ଗୁଷ୍ଠାଭ୍ୟାଂ ନମଃ ୧ । ଓଁ ନଂ ତର୍ଜନୀଭ୍ୟାଂ ନମଃ ୨ । ଓଁ ମଂ ମଧ୍ୟମାଭ୍ୟାଂ ନମଃ ୩ । ଓଁ ଶିଂ ଅନାମିକାଭ୍ୟାଂ ନମଃ ୪ । ଓଁ ବାଂ କନିଷ୍ଠିକାଭ୍ୟାଂ ନମଃ ୫ । ଓଁ ଯଂ କରତଳକରପୃଷ୍ଠାଭ୍ୟାଂ ନମଃ ୬ । ଇତି କରନ୍ୟାସଃ । ଓଁ ଓଁ ହୃଦୟାୟ ନମଃ ୧ । ଓଁ ନଂ ଶିରସେ ସ୍ୱାହା ୨ । ଓଁ ମଂ ଶିଖାୟୈ ବଷଟ୍ ୩ । ଓଁ ଶିଂ କବଚାୟ ହୁମ୍ ୪ । ଓଁ ବାଂ ନେତ୍ରତ୍ରୟାୟ ବୌଷଟ୍ ୫ । ଓଁ ଯଂ ଅସ୍ତ୍ରାୟ ଫଟ୍ ୬ । ଇତିହୃଦୟାଦିଷଡଙ୍ଗନ୍ୟାସଃ । ଏଠାରେ କରନ୍ୟାସ ଓ ହୃଦୟାଦିଷଡଙ୍ଗନ୍ୟାସର ଛଅଟି ଲେଖାଏଁ ବାକ୍ୟ ଦିଆଯାଇଛି । ଏଥିମଧ୍ୟରେ କରନ୍ୟାସର ପ୍ରଥମ ବାକ୍ୟକୁ ପଢ଼ି ଉଭୟ ହାତର ତର୍ଜନୀ ଅଙ୍ଗୁଳିଦ୍ୱାରା ଅଙ୍ଗୁଷ୍ଠକୁ ସ୍ପର୍ଶ କରିବେ । ଅବଶିଷ୍ଟ ବାକ୍ୟମାନ ପଢ଼ି ଅଙ୍ଗୁଷ୍ଠଦ୍ୱାରା ତର୍ଜନୀ ଆଦି ଅଙ୍ଗୁଳିମାନଙ୍କୁ ସ୍ପର୍ଶ କରିବେ । ଏହି ପ୍ରକାରେ ଅଙ୍ଗନ୍ୟାସରେ ମଧ୍ୟ ଡାହାଣ ହାତରେ ହୃଦୟାଦି ଅଙ୍ଗକୁ ସ୍ପର୍ଶ କରିବାର ବିଧି ରହିଛି । କେବଳ କବଚନ୍ୟାସରେ ଡାହାଣ ହାତରେ ବାମ ବାହୁ ଏବଂ ବାମ ହାତରେ ଡାହାଣ ବାହୁକୁ ସ୍ପର୍ଶ କରିବାକୁ ହୁଏ । 'ଅସ୍ତ୍ରାୟ ଫଟ୍' ଏହି ଅନ୍ତିମ ବାକ୍ୟକୁ ପଢ଼ି ଡାହାଣ ହାତକୁ ମୁଣ୍ଡ ଉପରେ ବୁଲାଇ ଆଣି ବାଆଁ ହାତର ପାପୁଲି ଉପରେ ତାଳି ବଜାଇବେ । ଧ୍ୟାନ ସମ୍ବନ୍ଧୀୟ ଶ୍ଳୋକର ଭାବ ତ ଉପରେ ଦିଆଯାଇଛି, ତେଣୁ ଏଠାରେ ଶ୍ଳୋକ ଦିଆଗଲା–

କୈଳାସପୀଠାସନମଧ୍ୟସଂସ୍ଥଂ ଭକ୍ତୈଃ ସନନ୍ଦାଦିଭିରର୍ଚ୍ୟମାନମ୍ । ଭକ୍ତାର୍ତ୍ତିଦାବାନଳହାପ୍ରମେୟଂ ଧ୍ୟାୟେଦୁମାଲିଙ୍ଗିତବିଶ୍ୱଭୂଷଣମ୍ ॥
ଧ୍ୟାୟେନ୍ନିତ୍ୟଂ ମହେଶଂ ରଜତଗିରିନିଭଂ ଚାରୁଚନ୍ଦ୍ରାବତଂସଂ ରତ୍ନାକଲ୍ପୋଜ୍ଜ୍ୱଳାଙ୍ଗଂ ପରଶୁମୃଗବରାଭୀତିହସ୍ତଂ ପ୍ରସନ୍ନମ୍ ।
ପଦ୍ମାସୀନଂ ସମନ୍ତାତ୍ ସ୍ତୁତମମରଗଣୈର୍ବ୍ୟାଘ୍ରକୃତ୍ତିଂ ବସାନମ୍ ବିଶ୍ୱାଦ୍ୟଂ ବିଶ୍ୱବୀଜଂ ନିଖିଳଭୟହରଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରମ୍ ॥
(ଶି. ପୁ. ବି. ୨୦।୫୧-୫୨)

କରିବେ ତଥା ଶତରୁଦ୍ରିୟ (ଯଜୁ. ୧୬ଶ ଅଧ୍ୟାୟର ମନ୍ତ୍ର) ପାଠ କରିବେ । ତା'ପରେ ଅଞ୍ଜଳିରେ ଅକ୍ଷତ ଓ ଫୁଲ ଧରି ପରମ ଭକ୍ତିରେ ନିମ୍ନଲିଖିତ ମନ୍ତ୍ର ପଢ଼ି ପ୍ରେମ ଓ ପ୍ରସନ୍ନତା ସହିତ ଭଗବାନ ଶିବଙ୍କୁ ଏହିପରି ପ୍ରାର୍ଥନା କରିବେ—

"ସବୁରି ସୁଖଦାତା କୃପାନିଧାନ ଭୂତନାଥ ଶିବ ! ମୁଁ ଆପଣଙ୍କର । ଆପଣଙ୍କ ଗୁଣମାନଙ୍କ ଉପରେ ହିଁ ମୋର ପ୍ରାଣ ଅବଲମ୍ବିତ ଅଥବା ଆପଣଙ୍କ ଗୁଣ ହିଁ ମୋର ପ୍ରାଣ—ମୋର ଜୀବନସର୍ବସ୍ୱ । ମୋର ଚିତ୍ତ ସଦା ଆପଣଙ୍କ ଚିନ୍ତନରେ ଲାଗିରହିଛି । ଏହା ଜାଣି ମୋ ଉପରେ ପ୍ରସନ୍ନ ହୁଅନ୍ତୁ । କୃପା କରନ୍ତୁ । ଶଙ୍କର ! ମୁଁ ଅଜ୍ଞାନରେ ଅଥବା ଜାଣିଶୁଣି ଯଦି କେବେ ଆପଣଙ୍କ ଜପ ଓ ପୂଜନ ଇତ୍ୟାଦି କରିଥିବି, ତେବେ ଆପଣଙ୍କ କୃପାରୁ ତାହା ସଫଳ ହେଉ । ଗୌରୀନାଥ ! ମୁଁ ତ ମହାପାପୀ ଓ ପତିତ; ଏବଂ ଆପଣ ପତିତପାବନ । ଏକଥା ବିଗ୍ଭରକୁ ନେଇ ଯାହା ଇଚ୍ଛା, ତାହା କରନ୍ତୁ । ମହାଦେବ ! ସଦାଶିବ ! ବେଦ, ପୁରାଣ, ନାନା ପ୍ରକାର ଶାସ୍ତ୍ରୀୟ ସିଦ୍ଧାନ୍ତ ଓ ବିଭିନ୍ନ ମହର୍ଷିମାନେ ମଧ୍ୟ ଏପର୍ଯ୍ୟନ୍ତ ଆପଣଙ୍କୁ ପୂର୍ଣ୍ଣରୂପେ ଜାଣନ୍ତି ନାହିଁ । ପୁଣି ମୁଁ ବା କିପରି ଜାଣି ପାରିବି? ମହେଶ୍ୱର ! ମୁଁ ଯେଉଁପରି ହୋଇଥିଲେ ବି ଆପଣଙ୍କର, ଆପଣଙ୍କ ଆଶ୍ରିତ; ତେଣୁ ଆପଣଙ୍କ ଦ୍ୱାରା ରକ୍ଷିତ ହେବାର ଯୋଗ୍ୟ । ପରମେଶ୍ୱର ! ମୋ ଉପରେ ପ୍ରସନ୍ନ ହୁଅନ୍ତୁ ।"* ମୁନେ ! ଏପରି ପ୍ରାର୍ଥନା କରି ହାତରେ ଧରିଥିବା ଅକ୍ଷତ ଓ ପୁଷ୍ପକୁ ଶିବଙ୍କ ଉପରେ ପକାଇ ଶମ୍ଭୁଙ୍କୁ ଭକ୍ତିଭାବରେ ବିଧିପୂର୍ବକ ସାଷ୍ଟାଙ୍ଗ ପ୍ରଣାମ କରିବେ । ତା'ପରେ ସୁଧୀ ଉପାସକ ଶାସ୍ତ୍ରୋକ୍ତ ବିଧିରେ ଇଷ୍ଟଦେବଙ୍କୁ ପରିକ୍ରମା କରିବେ ଏବଂ ଶ୍ରଦ୍ଧାପୂର୍ବକ ସ୍ତୁତି ପଢ଼ି ଦେବେଶ୍ୱରଙ୍କୁ ସ୍ତୁତି କରିବେ । ଏହାପରେ ଗଳା-ନାଦ କରି (ଗଳାରୁ ଅବ୍ୟକ୍ତ ଶବ୍ଦ ବାହାର କରି) ପବିତ୍ର ଓ ବିନୀତଚିତ୍ତ ସାଧକ ଭଗବାନଙ୍କୁ ପ୍ରଣାମ କରିବେ । ଏହାପରେ ଆଦରପୂର୍ବକ ବିଜ୍ଞପ୍ତି କରିସାରି ବିସର୍ଜନ କରିବେ । ମୁନିଗଣ ! ଏହିରୂପେ ବିଧିପୂର୍ବକ ପାର୍ଥିବପୂଜା କଥା ବର୍ଣ୍ଣନା କଲି । ଏହା ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ ଓ ଭଗବାନ ଶିବଙ୍କ ପ୍ରତି ଭକ୍ତିଭାବ ବଢ଼ାଇଥାଏ ।

(ଅଧ୍ୟାୟ ୧୯-୨୦)



## ପାର୍ଥିବପୂଜାର ମହିମା, ଶିବନୈବେଦ୍ୟଭକ୍ଷଣ ବିଷୟରେ ନିର୍ଣ୍ଣୟ ଓ ବିଲ୍ୱବୃକ୍ଷ ମାହାତ୍ମ୍ୟ

(ଏହାପରେ ଋଷିମାନଙ୍କ ପ୍ରଶ୍ନ ଅନୁସାରେ କେଉଁ କାମନାର ପୂରଣ ପାଇଁ କେତେ ପାର୍ଥିବଲିଙ୍ଗ ପୂଜା କରିବା ଉଚିତ, ସେ ବିଷୟରେ ବର୍ଣ୍ଣନା କରିବା ପରେ—)

ସୂତ କହିଲେ—ମହର୍ଷିଗଣ ! ପାର୍ଥିବଲିଙ୍ଗ ପୂଜା କୋଟି କୋଟି ଯଜ୍ଞର ଫଳ ପ୍ରଦାନ କରିଥାଏ ।

* ତାବକସ୍ତ୍ୱଦ୍‌ଗୁଣପ୍ରାଣସ୍ତ୍ୱଚ୍ଚିତୋଽହଂ ସଦା ମୃଡ । କୃପାନିଧେ ଇତି ଜ୍ଞାତ୍ୱା ଭୂତନାଥ ପ୍ରସୀଦ ମେ ॥
ଅଜ୍ଞାନାଦ୍ ଯଦି ବା ଜ୍ଞାନାଜ୍ଜପପୂଜାଦିକଂ ମୟା । କୃତଂ ତଦସ୍ତୁ ସଫଳଂ କୃପୟା ତବ ଶଙ୍କର ॥
ଅହଂ ପାପୀ ମହାନଦ୍ୟ ପାବନଶ୍ଚ ଭବାନ୍ମହାନ୍ । ଇତି ବିଜ୍ଞାୟ ଗୌରୀଶ ଯଦିଚ୍ଛସି ତଥା କୁରୁ ॥
ବେଦୈଃ ପୁରାଣୈଃ ସିଦ୍ଧାନ୍ତୈର୍ଋଷିଭିର୍ବିବିଧୈରପି । ନ ଜ୍ଞାତୋଽସି ମହାଦେବ କୁତୋଽହଂ ତ୍ୱାଂ ସଦାଶିବ ॥
ଯଥା ତଥା ତ୍ୱଦୀୟୋଽସ୍ମି ସର୍ବଭାବୈର୍ମହେଶ୍ୱର । ରକ୍ଷଣୀୟସ୍ତ୍ୱୟାହଂ ବୈ ପ୍ରସୀଦ ପରମେଶ୍ୱର ॥
(ଶି. ପୁ. ବି. ୨୦ । ୫୬–୬୦)

କଳିଯୁଗରେ ଲୋକମାନଙ୍କ ପାଇଁ ଶିବଲିଙ୍ଗପୂଜନ ପରି ଶ୍ରେଷ୍ଠ ସାଧନ ଆଉ କିଛି ଦେଖାଯାଏ ନାହିଁ—ଏହା ଶାସ୍ତ୍ରନିର୍ଣ୍ଣିତ ସିଦ୍ଧାନ୍ତ । ଶିବଲିଙ୍ଗ ଭୋଗ ଓ ମୋକ୍ଷ ପ୍ରଦାୟକ । ଲିଙ୍ଗ ତିନି ପ୍ରକାରର—ଉତ୍ତମ, ମଧ୍ୟମ ଓ ଅଧମ । ଯେଉଁ ଲିଙ୍ଗ ଚାରିଅଙ୍ଗୁଳି ଉଚ୍ଚ ଏବଂ ଦେଖିବାକୁ ସୁନ୍ଦର ତଥା ବେଦିଯୁକ୍ତ, ତାହାକୁ ଶାସ୍ତ୍ରଜ୍ଞ ମହର୍ଷିମାନେ 'ଉତ୍ତମ' ଲିଙ୍ଗ କହନ୍ତି । ତହିଁରୁ ଅଧା 'ମଧ୍ୟମ' ଓ ତହିଁରୁ ବି ଅଧା 'ଅଧମ' ବୋଲି କୁହାଯାଇଛି । ଏହି ତିନି ପ୍ରକାର ଶିବଲିଙ୍ଗ ମଧ୍ୟରେ ପରବର୍ତ୍ତୀଠାରୁ ପୂର୍ବବର୍ତ୍ତୀ ଶ୍ରେଷ୍ଠ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଅଥବା ବିଲୋମ ସଂକର—ଯେ କେହି ବି ନିଜ ଅଧିକାର ଅନୁସାରେ ବୈଦିକ ଅଥବା ତାନ୍ତ୍ରିକ ମନ୍ତ୍ରରେ ସଦା ଆଦରପୂର୍ବକ ଶିବଲିଙ୍ଗର ପୂଜା କରିପାରିବେ । ବ୍ରାହ୍ମଣଗଣ ! ମହର୍ଷିଗଣ ! ଅଧିକ ବା କ'ଣ କହିବି, ଶିବଲିଙ୍ଗକୁ ପୂଜା କରିବାରେ ନାରୀମାନଙ୍କର ତଥା ଅନ୍ୟ ସବୁ ଲୋକଙ୍କର ମଧ୍ୟ ଅଧିକାର ରହିଛି ।* ଦ୍ୱିଜମାନଙ୍କ ପାଇଁ ବୈଦିକ ପଦ୍ଧତିରେ ହିଁ ଶିବଲିଙ୍ଗ ପୂଜା କରିବା ଶ୍ରେଷ୍ଠ; ମାତ୍ର ଅନ୍ୟମାନଙ୍କ ପାଇଁ ବୈଦିକ ମାର୍ଗରେ ପୂଜା କରିବାକୁ ସମ୍ମତି ନାହିଁ । ବେଦଜ୍ଞ ଦ୍ୱିଜମାନେ ବୈଦିକ ମାର୍ଗରେ ହିଁ ପୂଜା କରିବେ, ଅନ୍ୟ ମାର୍ଗରେ ନୁହେଁ—ଏହା ଭଗବାନ ଶିବଙ୍କର କଥନ । ଦଧୀଚି ଓ ଗୌତମ ଆଦିଙ୍କ ଶାପରେ ଯେଉଁ ଦ୍ୱିଜମାନଙ୍କର ଚିତ୍ତ ଦଗ୍ଧ ହୋଇଯାଇଛି, ସେମାନଙ୍କର ବୈଦିକ କର୍ମରେ ଶ୍ରଦ୍ଧା ହୁଏ ନାହିଁ । ଯେଉଁ ଲୋକ ବେଦ ଓ ସ୍ମୃତିମାନଙ୍କରେ ବର୍ଣ୍ଣିତ ସତ୍କର୍ମର ଅବହେଳନା କରି ଅନ୍ୟ କର୍ମ କରିଥାଏ, ତାହାର ମନୋରଥ କଦାପି ପୂରଣ ହୁଏ ନାହିଁ ।⁂

ଏପରି ବିଧିପୂର୍ବକ ଶିବଙ୍କୁ ନୈବେଦ୍ୟାନ୍ତ ପୂଜା କରି ତାଙ୍କର ତ୍ରିଭୁବନମୟୀ ଅଷ୍ଟମୂର୍ତ୍ତିଙ୍କୁ ମଧ୍ୟ ସେଇଠି ପୂଜା କରିବେ । ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ, ସୂର୍ଯ୍ୟ, ଚନ୍ଦ୍ର ଓ ଯଜମାନ—ଏମାନେ ହେଲେ ଭଗବାନ ଶିବଙ୍କର ଆଠ ମୂର୍ତ୍ତି । ଏ ମୂର୍ତ୍ତିମାନଙ୍କ ସଙ୍ଗେ ଶର୍ବ, ଭବ, ରୁଦ୍ର, ଉଗ୍ର, ଭୀମ, ଈଶ୍ୱର, ମହାଦେବ ଓ ପଶୁପତି—ଏହି ନାମଧାରୀ ଶିବଙ୍କୁ ମଧ୍ୟ ଅର୍ଚ୍ଚନା କରିବେ । ତା'ପରେ ଚନ୍ଦନ, ଅକ୍ଷତ ଓ ବେଲପତ୍ର ନେଇ ସେଠାରେ ଈଶାନ ଆଦିଙ୍କ କ୍ରମରେ ଶିବଙ୍କ ପରିବାରକୁ ଉତ୍ତମ ଭକ୍ତିରେ ପୂଜା କରିବେ । ଈଶାନ, ନନ୍ଦୀ, ଚଣ୍ଡ, ମହାକାଳ, ଭୃଙ୍ଗୀ, ବୃଷ, ସ୍କନ୍ଦ, କପର୍ଦୀଶ୍ୱର, ସୋମ ଓ ଶୁକ୍ର—ଏ ଦଶଜଣ ହେଲେ ଶିବଙ୍କ ପରିବାର । ଏମାନଙ୍କୁ ଯଥାକ୍ରମେ ଐଶାନ୍ୟାଦି ଦଶ ଦିଗରେ ପୂଜା କରିବେ । ତା'ପରେ ଶିବଙ୍କ ସମକ୍ଷରେ ବୀରଭଦ୍ରଙ୍କୁ ଓ ପଛରେ କୀର୍ତ୍ତିମୁଖଙ୍କୁ ପୂଜା କରି ବିଧିପୂର୍ବକ ଏକାଦଶ ରୁଦ୍ରଙ୍କୁ ପୂଜା କରିବେ । ଏହାପରେ ପଞ୍ଚାକ୍ଷରମନ୍ତ୍ର ଜପ କରି ଶତରୁଦ୍ରିୟ ସ୍ତୋତ୍ର, ନାନା ପ୍ରକାର ସ୍ତୁତି ତଥା ଶିବପଞ୍ଚାଙ୍ଗ ପାଠ କରିବେ । ଏହାପରେ ପରିକ୍ରମା ଓ ନମସ୍କାର କରି ଶିବଲିଙ୍ଗକୁ ବିସର୍ଜନ କରିଦେବେ । ମୁଁ ଶିବପୂଜନର ସମସ୍ତ ବିଧି ଆଦରପୂର୍ବକ ବର୍ଣ୍ଣନା କରିଦେଲି । ରାତ୍ରିରେ ଦେବକାର୍ଯ୍ୟ ସଦା ଉତ୍ତରାଭିମୁଖ ହୋଇ କରିବା ଉଚିତ । ଶିବପୂଜନ ମଧ୍ୟ ପବିତ୍ରଭାବରେ ସଦା ଉତ୍ତରାଭିମୁଖ ହୋଇ କରିବା ଉଚିତ । ଯେଉଁଠି ଶିବଲିଙ୍ଗ ସ୍ଥାପିତ ହୋଇଥିବ, ତାହାର ପୂର୍ବଦିଗର ଆଶ୍ରୟ ନେଇ ବସିବା ବା ଛିଡ଼ା ହେବା ଉଚିତ ନୁହେଁ; କାରଣ ସେହି ଦିଗ ଶିବଙ୍କର ସମ୍ମୁଖ ଅଟେ ।

---

* ବ୍ରାହ୍ମଣଃ କ୍ଷତ୍ରିୟୋ ବୈଶ୍ୟଃ ଶୂଦ୍ରୋ ବା ପ୍ରତିଲୋମଜଃ । ପୂଜୟେତ୍ ସତତଂ ଲିଙ୍ଗଂ ତତ୍ତନ୍ମନ୍ତ୍ରେଣ ସାଦରମ୍ ॥
କିଂ ବହୂକ୍ତେନ ମୁନୟଃ ସ୍ତ୍ରୀଣାମପି ତଥାନ୍ୟତଃ । ଅଧିକାରୋଽସ୍ତି ସର୍ବେଷାଂ ଶିବଲିଙ୍ଗାର୍ଚ୍ଚନେ ଦ୍ୱିଜାଃ ॥
(ଶି. ପୁ. ବି. ୨୧ । ୩୯-୪୦)

⁂ ଯୋ ବୈଦିକମନାବୃତ୍ୟ କର୍ମ ସ୍ମାର୍ତ୍ତମଥାପି ବା । ଅନ୍ୟତ୍ ସମାଚରେନ୍ମର୍ତ୍ତ୍ୟୋ ନ ସଙ୍କଳ୍ପଫଳଂ ଲଭେତ୍ ॥
(ଶି. ପୁ. ବି. ୨୧ । ୪୪)

(ଇଷ୍ଟଦେବଙ୍କ ସମ୍ମୁଖଭାଗକୁ ରୋକି ଠିଆ ହେବା ଅନୁଚିତ ।) ଶିବଲିଙ୍ଗର ଉତ୍ତରକୁ ମଧ୍ୟ ନ ବସିବା ଉଚିତ; କାରଣ ସେ ଦିଗରେ ଶିବଙ୍କର ବାମାଙ୍ଗ ରହେ, ସେ ଦିଗରେ ଶକ୍ତିସ୍ୱରୂପା ଦେବୀ ଉମା ବିରାଜିତା ହୋଇଥାନ୍ତି । ପୂଜକ ଶିବଲିଙ୍ଗର ପଶ୍ଚିମଦିଗରେ ମଧ୍ୟ ନ ବସିବା ଉଚିତ; କାରଣ ତାହା ଆରାଧ୍ୟଦେବଙ୍କର ପୃଷ୍ଠଭାଗ (ପିଠିପଟରୁ ପୂଜା କରିବା ଅନୁଚିତ) । ଏଣୁ ଅବଶିଷ୍ଟ ଦକ୍ଷିଣଦିଗ ହିଁ ଗ୍ରାହ୍ୟ ଦିଗ । ତାତ୍ପର୍ଯ୍ୟ ହେଲା ଶିବଲିଙ୍ଗର ଦକ୍ଷିଣଦିଗରେ ଉତ୍ତରାଭିମୁଖୀ ହୋଇ ବସି ପୂଜା କରିବେ । ବିଦ୍ୱାନ୍ ବ୍ୟକ୍ତି ଭସ୍ମର ତ୍ରିପୁଣ୍ଡ୍ର ଲଗାଇ, ରୁଦ୍ରାକ୍ଷମାଳା ପିନ୍ଧି ଓ ବିଲ୍ୱପତ୍ର ସଂଗ୍ରହ କରି ଶିବଙ୍କର ପୂଜା କରିବା ଉଚିତ; ଏଗୁଡ଼ିକ ବିନା କରିବେ ନାହିଁ । ମୁନିବରବୃନ୍ଦ ! ଶିବପୂଜନ ଆରମ୍ଭ କରିବା ବେଳେ ଭସ୍ମ ନ ମିଳିଲେ ମାଟିରେ ବି ଲଲାଟରେ ତ୍ରିପୁଣ୍ଡ୍ର କାଟିବା ଉଚିତ ।

ଋଷିମାନେ କହିଲେ—ମୁନେ ! ଆମେ ପୂର୍ବରୁ ଶୁଣିଛୁ ଯେ ଶିବଙ୍କ ନୈବେଦ୍ୟ ଗ୍ରହଣ କରିବା ଅନୁଚିତ । ଏ ବିଷୟରେ ଶାସ୍ତ୍ରର ନିର୍ଣ୍ଣୟ କ'ଣ, ତାହା କୁହନ୍ତୁ । ଏହାଛଡ଼ା ବିଲ୍ୱ-ମାହାତ୍ମ୍ୟ ମଧ୍ୟ ପ୍ରକାଶିତ କରନ୍ତୁ ।

ସୂତ କହିଲେ—ମୁନିଗଣ ! ଆପଣମାନେ ଶିବଙ୍କ ସମ୍ବନ୍ଧିତ ବ୍ରତ ପାଳନ କରିଥାନ୍ତି । ତେଣୁ ଆପଣମାନଙ୍କୁ ଶତ ଶତ ଧନ୍ୟବାଦ । ମୁଁ ପ୍ରସନ୍ନତାପୂର୍ବକ ସବୁ କିଛି କହୁଛି, ସାବଧାନ ହୋଇ ଶୁଣନ୍ତୁ । ଯେ ଶିବଙ୍କ ଭକ୍ତ, ବାହ୍ୟ ଓ ଅଭ୍ୟନ୍ତରରେ ପବିତ୍ର, ଉତ୍ତମ ବ୍ରତପାଳନକାରୀ ତଥା ଦୃଢ଼ନିଶ୍ଚୟୀ, ସେ ଶିବନୈବେଦ୍ୟ ଅବଶ୍ୟ ଭକ୍ଷଣ କରିବା ଉଚିତ । ଶିବନିର୍ମାଲ୍ୟ ଯେ ଅଗ୍ରାହ୍ୟ, ଏ ଧାରଣା ମନରୁ ବାହାର କରିଦିଅନ୍ତୁ । ଶିବଙ୍କ ନୈବେଦ୍ୟକୁ ଦେଖିଦେବା ମାତ୍ରେ ସମସ୍ତ ପାପ ଦୂରକୁ ପଳାଇଯାଆନ୍ତି, ତାହାକୁ ପାଇବା ପରେ ତ କୋଟି କୋଟି ପୁଣ୍ୟ ନିଜ ଭିତରକୁ ଚାଲି ଆସେ । ଶିବନୈବେଦ୍ୟ ପ୍ରାପ୍ତ ହେବାମାତ୍ରେ ମୁଣ୍ଡ ନୁଆଁଇ ପ୍ରସନ୍ନମନରେ ତାହାକୁ ଗ୍ରହଣ କରିବେ ଏବଂ ଶିବସ୍ମରଣପୂର୍ବକ ଭକ୍ଷଣ କରିବେ । ପ୍ରାପ୍ତ ହେଉଥିବା ଶିବନୈବେଦ୍ୟକୁ ପରେ ଗ୍ରହଣ କରିବି ବୋଲି କହି ଯେ ତାହାକୁ ପାଇବାରେ ବିଳମ୍ବ କରେ, ସେ ନିଶ୍ଚୟ ପାପଭାଗୀ ହୁଏ । ଶିବଙ୍କ ଦୀକ୍ଷା ଗ୍ରହଣ କରିଥିବା ଶିବଭକ୍ତ ପାଇଁ ଶିବନୈବେଦ୍ୟ ଅବଶ୍ୟ ଭକ୍ଷଣୀୟ ବୋଲି କୁହାଯାଇଛି । ଶିବଦୀକ୍ଷାପ୍ରାପ୍ତ ସମସ୍ତ ଭକ୍ତଙ୍କ ପାଇଁ ଶିବଲିଙ୍ଗଙ୍କ ନୈବେଦ୍ୟ ଶୁଭ ଓ 'ମହାପ୍ରସାଦ' ଅଟେ; ତେଣୁ ତାହା ଅବଶ୍ୟ ଭକ୍ଷଣୀୟ । ମାତ୍ର ଯେଉଁମାନେ ଅନ୍ୟ ଦେବତାଙ୍କ ଦୀକ୍ଷା ନେଇଛନ୍ତି ଏବଂ ଶିବଭକ୍ତିରେ ମଧ୍ୟ ମନୋନିବେଶ କରିଛନ୍ତି, ସେମାନଙ୍କ ବିଷୟରେ କ'ଣ ନିର୍ଣ୍ଣୟ, ତାହା ଆଦରରେ ଶୁଣନ୍ତୁ । ବ୍ରାହ୍ମଣଗଣ ! ଯେଉଁଠୁ ଶାଳଗ୍ରାମ ଉତ୍ପନ୍ନ ହୁଅନ୍ତି, ସେଠାରୁ ଉତ୍ପନ୍ନ ଲିଙ୍ଗରେ, ରସଲିଙ୍ଗ (ପାରଦଲିଙ୍ଗ)ରେ, ପାଷାଣ, ରଜତ ତଥା ସୁବର୍ଣ୍ଣଲିଙ୍ଗରେ, ଦେବତା ଓ ସିଦ୍ଧଙ୍କ ଦ୍ୱାରା ପ୍ରତିଷ୍ଠିତ ଲିଙ୍ଗରେ, କେଶରନିର୍ମିତ ଲିଙ୍ଗରେ, ସ୍ଫଟିକ ଲିଙ୍ଗରେ, ରତ୍ନନିର୍ମିତ ଲିଙ୍ଗରେ ଏବଂ ସମସ୍ତ ଜ୍ୟୋତିର୍ଲିଙ୍ଗରେ ବିରାଜିତ ଭଗବାନ ଶିବଙ୍କ ନୈବେଦ୍ୟ ଭକ୍ଷଣ କରିବା ଚାନ୍ଦ୍ରାୟଣବ୍ରତ ସମାନ ପୁଣ୍ୟଜନକ । ବ୍ରହ୍ମହତ୍ୟାକାରୀ ମଧ୍ୟ ଯଦି ପବିତ୍ର ହୋଇ ଶିବନିର୍ମାଲ୍ୟ ଭକ୍ଷଣ କରି ତାହାକୁ ମସ୍ତକରେ ଧାରଣ କରେ, ତାହାର ସମସ୍ତ ପାପ ଶୀଘ୍ର ନଷ୍ଟ ହୋଇଯାଏ । ମାତ୍ର ଯେଉଁଠି ଚଣ୍ଡଙ୍କର ଅଧିକାର ଅଛି, ସେଠାକାର ଶିବନିର୍ମାଲ୍ୟକୁ ସାଧାରଣ ମନୁଷ୍ୟ ଖାଇବା ଅନୁଚିତ । ଯେଉଁଠି ଚଣ୍ଡଙ୍କର ଅଧିକାର ନାହିଁ, ସେଠାକାର ଶିବନିର୍ମାଲ୍ୟକୁ ସମସ୍ତେ ଭକ୍ତିପୂର୍ବକ ପାଇବା ଉଚିତ । ବାଣଲିଙ୍ଗ (ନର୍ମଦେଶ୍ୱର), ଲୋହନିର୍ମିତ (ସ୍ୱର୍ଣ୍ଣାଦି ଧାତୁମୟ) ଲିଙ୍ଗ, ସିଦ୍ଧଲିଙ୍ଗ (ଯେଉଁ ଲିଙ୍ଗର ଉପାସନା କରି କେହି ସିଦ୍ଧି ପାଇଛି ଅଥବା ସିଦ୍ଧଙ୍କ ଦ୍ୱାରା ସ୍ଥାପିତ

ଲିଙ୍ଗ), ସ୍ୱୟମ୍ଭୂଲିଙ୍ଗ—ଏ ସମସ୍ତ ଲିଙ୍ଗ ନିକଟରେ ତଥା ଶିବପ୍ରତିମା ନିକଟରେ ଚଣ୍ଡଙ୍କର ଅଧିକାର ନାହିଁ। ଯେଉଁ ଲୋକ ଶିବଲିଙ୍ଗକୁ ବିଧିପୂର୍ବକ ସ୍ନାନ କରାଇ ତାହାର ଜଳକୁ ତିନି ଥର ଆଚମନ କରେ, ତାହାର କାୟିକ, ବାଚିକ ଓ ମାନସିକ ପାପ ଶୀଘ୍ର ନଷ୍ଟ ହୋଇଯାଏ। ଶିବଙ୍କର ଯେଉଁ ନୈବେଦ୍ୟ, ପତ୍ର, ପୁଷ୍ପ, ଫଳ ଓ ଜଳ ଅଗ୍ରାହ୍ୟ, ସେସବୁ ମଧ୍ୟ ଶାଳଗ୍ରାମଶିଳା ସ୍ପର୍ଶରେ ପବିତ୍ର ବା ଗ୍ରହଣୀୟ ହୋଇଯାଏ। ମୁନୀଶ୍ୱରବୃନ୍ଦ ! ଶିବଲିଙ୍ଗ ଉପରେ ଅର୍ପିତ ହୋଇଥିବା ଦ୍ରବ୍ୟ ଅଗ୍ରାହ୍ୟ। ଯେଉଁ ଦ୍ରବ୍ୟରେ ଲିଙ୍ଗସ୍ପର୍ଶ ହୋଇ ନାହିଁ ଅର୍ଥାତ୍ ଯାହାକୁ ପୃଥକ୍ ରଖି ଶିବଙ୍କୁ ନିବେଦିତ କରାଯାଏ, ଲିଙ୍ଗ ଉପରେ ଚଢ଼ା ଯାଏ ନାହିଁ, ତାହାକୁ ଅତ୍ୟନ୍ତ ପବିତ୍ର ବୋଲି ବୁଝିବା ଉଚିତ। ଏହା ହେଲା ନୈବେଦ୍ୟ ବିଷୟରେ ଶାସ୍ତ୍ରର ନିର୍ଣ୍ଣୟ।

ଏବେ ଆଦରପୂର୍ବକ ବିଲ୍ୱ-ମାହାତ୍ମ୍ୟ ଶୁଣନ୍ତୁ। ବିଲ୍ୱବୃକ୍ଷ ମହାଦେବଙ୍କର ହିଁ ରୂପ। ଦେବତାମାନେ ମଧ୍ୟ ଏହାକୁ ସ୍ତୁତି କରିଛନ୍ତି। ତେବେ କ'ଣ ଏହାର ମହିମା ଏତେ ସହଜରେ ବୁଝି ହୋଇଯିବ ! ତ୍ରିଲୋକରେ ଯେତେ ସବୁ ପୁଣ୍ୟତୀର୍ଥର ପ୍ରସିଦ୍ଧି ରହିଛି, ସେ ସମସ୍ତ ତୀର୍ଥ ବିଲ୍ୱବୃକ୍ଷର ମୂଳଭାଗରେ ନିବାସ କରନ୍ତି। ଯେଉଁ ପୁଣ୍ୟାତ୍ମା ମନୁଷ୍ୟ ବିଲ୍ୱବୃକ୍ଷର ମୂଳରେ ଲିଙ୍ଗସ୍ୱରୂପ ଅବିନାଶୀ ମହାଦେବଙ୍କୁ ପୂଜା କରେ, ସେ ନିଶ୍ଚୟ ଶିବପଦ ପ୍ରାପ୍ତ ହୁଏ। ଯେ ବିଲ୍ୱବୃକ୍ଷର ମୂଳ ନିକଟରେ ନିଜ ମସ୍ତକ ଉପରେ ଜଳ ଢାଳେ, ସେ ସମସ୍ତ ତୀର୍ଥରେ ସ୍ନାନ କରିବାର ଫଳ ପାଏ ଏବଂ ସେ ଏହି ଭୂତଳରେ ପାବନ ବୋଲି ଧରାଯାଏ। ବେଲଗଛ ମୂଳର ଉତ୍ତମ ମଳାକୁ ଜଳପୂର୍ଣ୍ଣ ଦେଖି ମହାଦେବ ପରିତୁଷ୍ଟ ହୋଇଥାନ୍ତି। ଯେଉଁ ମନୁଷ୍ୟ ଗନ୍ଧ, ପୁଷ୍ପ ଇତ୍ୟାଦିରେ ବିଲ୍ୱର ମୂଳଭାଗକୁ ପୂଜା କରେ, ସେ ଶିବଲୋକ ପ୍ରାପ୍ତ ହୁଏ ଓ ଇହଲୋକରେ ମଧ୍ୟ ତା'ର ସୁଖ-ସନ୍ତତି ବୃଦ୍ଧି ପାଏ। ଯେ ବେଲଗଛ ମୂଳରେ ଆଦରରେ ଦୀପାବଳୀ ଜଳାଏ, ସେ ତତ୍ତ୍ୱଜ୍ଞାନସମ୍ପନ୍ନ ହୋଇ ଭଗବାନ ମହେଶ୍ୱରଙ୍କ ଠାରେ ଲୀନ ହୋଇଯାଏ। ଯେ ବେଲଗଛର ଶାଖାକୁ ଧରି ତାହାର ନୂଆ ନୂଆ ପତ୍ର ତୋଳେ ଓ ସେଥିରେ ସେହି ବୃକ୍ଷକୁ ପୂଜା କରେ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ। ଯେଉଁ ବ୍ୟକ୍ତି ବେଲଗଛ ସମୀପରେ ଜଣେମାତ୍ର ଶିବାନୁରାଗୀ ଭକ୍ତକୁ ବି ଭକ୍ତିପୂର୍ବକ ଭୋଜନ କରାଏ, ତାକୁ କୋଟିଗୁଣ ପୁଣ୍ୟ ପ୍ରାପ୍ତ ହୁଏ। ଯେ ବେଲଗଛ ମୂଳରେ ଶିବଭକ୍ତକୁ ଖିରି ଓ ଘୃତ ମିଶ୍ରିତ ଅନ୍ନ ପ୍ରଦାନ କରେ, ସେ କଦାପି ଦରିଦ୍ର ହୁଏ ନାହିଁ।

ବ୍ରାହ୍ମଣଗଣ ! ମୁଁ ସାଙ୍ଗୋପାଙ୍ଗ ଶିବଲିଙ୍ଗ-ପୂଜନ ବିଷୟରେ ବର୍ଣ୍ଣନା କରିଦେଲି। ଏହା ପ୍ରବୃତ୍ତିମାର୍ଗୀ ଓ ନିବୃତ୍ତିମାର୍ଗୀ ପୂଜକଙ୍କ ଭେଦରେ ଦୁଇ ପ୍ରକାରର। ପ୍ରବୃତ୍ତିମାର୍ଗୀ ଲୋକଙ୍କ ପାଇଁ ପୀଠପୂଜା ମର୍ତ୍ତ୍ୟଲୋକରେ ସମସ୍ତ ଅଭୀଷ୍ଟ ବସ୍ତୁ ପ୍ରଦାନ କରିଥାଏ। ପ୍ରବୃତ୍ତିମାର୍ଗୀ ବ୍ୟକ୍ତି ସୁପାତ୍ର ଗୁରୁ ପ୍ରଭୃତିଙ୍କ ଦ୍ୱାରା ହିଁ ସମସ୍ତ ପୂଜା ସମ୍ପନ୍ନ କରିବେ ଏବଂ ଅଭିଷେକ ଶେଷରେ ଶାରଦ ଚାଉଳରେ ପ୍ରସ୍ତୁତ ନୈବେଦ୍ୟ ନିବେଦନ କରିବେ। ପୂଜା ଶେଷରେ ଶିବଲିଙ୍ଗକୁ ଶୁଦ୍ଧ ଫରୁଆରେ ବିରାଜମାନ କରାଇ ଘରେ ପୃଥକ୍ କରି ରଖିଦେବେ। ନିବୃତ୍ତିମାର୍ଗୀ ଉପାସକଙ୍କ ପାଇଁ ହାତ ଉପରେ ହିଁ ଶିବଲିଙ୍ଗପୂଜାର ବିଧାନ ଅଛି। ସେମାନେ ଭିକ୍ଷାଦିରୁ ପ୍ରାପ୍ତ ଆହାରକୁ ହିଁ ନୈବେଦ୍ୟରୂପେ ନିବେଦିତ କରିବା ଉଚିତ। ନିବୃତ୍ତିମାର୍ଗୀଙ୍କ ପାଇଁ ସୂକ୍ଷ୍ମ ଲିଙ୍ଗ ହିଁ ଶ୍ରେଷ୍ଠ। ସେମାନେ ବିଭୂତିରେ ପୂଜା କରି ବିଭୂତିକୁ ହିଁ ନୈବେଦ୍ୟରୂପେ ନିବେଦିତ କରିବେ। ପୂଜା ସାରି ସେହି ବିଭୂତିସ୍ୱରୂପ ଲିଙ୍ଗକୁ ସଦା ମସ୍ତକରେ ଧାରଣ କରିବେ। (ଅଧ୍ୟାୟ ୨୧-୨୨)

★★★

# ଶିବନାମ ଜପ ଓ ଭସ୍ମଧାରଣର ମହିମା ଏବଂ ତ୍ରିପୁଣ୍ଡ୍ରର ଦେବତା, ସ୍ଥାନ ଇତ୍ୟାଦିର ବର୍ଣ୍ଣନା

ଋଷିମାନେ କହିଲେ—ମହାଭାଗ ବ୍ୟାସଶିଷ୍ୟ ସୂତ ! ଆପଣଙ୍କୁ ନମସ୍କାର । ଏବେ ଆପଣ ସେହି ପରମ ଉତ୍ତମ ଭସ୍ମର ମାହାତ୍ମ୍ୟ ବର୍ଣ୍ଣନା କରନ୍ତୁ । ଭସ୍ମମାହାତ୍ମ୍ୟ, ରୁଦ୍ରାକ୍ଷମାହାତ୍ମ୍ୟ ଓ ଉତ୍ତମ ନାମମାହାତ୍ମ୍ୟ—ଏ ତିନୋଟି ବିଷୟରେ ପରମ ପ୍ରସନ୍ନତାପୂର୍ବକ ପ୍ରତିପାଦନ କରି ଆମ ହୃଦୟକୁ ଆନନ୍ଦିତ କରନ୍ତୁ ।

ସୂତ କହିଲେ—ମହର୍ଷିଗଣ ! ତୁମେମାନେ ଅତି ଉତ୍ତମ କଥା ପଚ୍ଚାରିଛ । ଏହା ସମଗ୍ର ବିଶ୍ୱ ପାଇଁ ହିତକାରକ ବିଷୟ । ଯେଉଁ ଲୋକ ଶିବଙ୍କ ଉପାସନା କରନ୍ତି, ସେମାନେ ଧନ୍ୟ, କୃତାର୍ଥ; ସେମାନଙ୍କର ଦେହଧାରଣ ସାର୍ଥକ ହେବା ସଙ୍ଗେ ସଙ୍ଗେ ସେମାନଙ୍କ ସମଗ୍ର କୁଳର ଉଦ୍ଧାର ହୋଇଗଲା । ଯେଉଁମାନଙ୍କ ମୁଖରେ ଭଗବାନ ଶିବଙ୍କ ନାମ ନିବାସ କରେ ଅର୍ଥାତ୍ ଯେଉଁମାନେ ଆପଣା ମୁଖରେ ସଦାଶିବ ଓ ଶିବ ଇତ୍ୟାଦି ନାମ ଉଚ୍ଚାରଣ କରୁଥାନ୍ତି, ଖଇରକାଠର ଜଳନ୍ତା ଅଙ୍ଗାରକୁ ଛୁଇଁବାକୁ କେହି ସାହସ ନ କରିବା ପରି ପାପ ସେମାନଙ୍କୁ କଦାପି ସ୍ପର୍ଶ କରିପାରେ ନାହିଁ । "ହେ ପ୍ରଭୁ ଶିବ ! ଆପଣଙ୍କୁ ନମସ୍କାର ।" (ଶ୍ରୀଶିବାୟ ନମସ୍ତୁଭ୍ୟମ୍) ଏପରି ଧ୍ୱନି ମୁଖରୁ ବାହାରିବା ମାତ୍ରେ ସେହି ମୁଖ ସର୍ବପାପ-ବିଧ୍ୱଂସକ ପାବନ ତୀର୍ଥ ହୋଇଯାଏ । ଯେଉଁ ମନୁଷ୍ୟ ପ୍ରସନ୍ନତାପୂର୍ବକ ସେହି ମୁଖର ଦର୍ଶନ କରେ, ତାହାକୁ ନିଶ୍ଚୟ ତୀର୍ଥସେବନର ଫଳ ପ୍ରାପ୍ତ ହୁଏ । ବ୍ରାହ୍ମଣଗଣ ! ଶିବଙ୍କ ନାମ, ବିଭୂତି (ଭସ୍ମ) ତଥା ରୁଦ୍ରାକ୍ଷ—ଏ ତିନୋଟି ତ୍ରିବେଣୀ ପରି ପରମ ପୁଣ୍ୟପ୍ରଦ । ଯେଉଁଠି ଏ ତିନୋଟି ଶୁଭ ବସ୍ତୁ ସର୍ବଦା ରହନ୍ତି, ସେହି ସ୍ଥାନକୁ ଦର୍ଶନ କରିବା ମାତ୍ରେ ମନୁଷ୍ୟକୁ ତ୍ରିବେଣୀସ୍ନାନର ଫଳ ମିଳିଯାଏ । ଶିବଙ୍କ ନାମ 'ଗଙ୍ଗା' ଅଟେ, ବିଭୂତି 'ଯମୁନା' ଅଟେ ଏବଂ ରୁଦ୍ରାକ୍ଷକୁ 'ସରସ୍ୱତୀ' କୁହାଯାଇଛି । ଏ ତିନୋଟିରେ ସଂଯୁକ୍ତ ତ୍ରିବେଣୀ ସମସ୍ତ ପାପ ନାଶ କରିଥାଏ । ହେ ଶ୍ରେଷ୍ଠ ବ୍ରାହ୍ମଣଗଣ ! ଏମାନଙ୍କର ମହିମାକୁ ସଦସଦ୍‌ବିଲକ୍ଷଣ ଭଗବାନ ମହେଶ୍ୱରଙ୍କ ବିନା ଅନ୍ୟ କିଏ ଅବା ଭଲଭାବେ ଜାଣିଛି! ଏ ବ୍ରହ୍ମାଣ୍ଡରେ ଯାହା କିଛି ଅଛି, ତାହାକୁ ତ କେବଳ ମହେଶ୍ୱର ହିଁ ଜାଣନ୍ତି ।

ବିପ୍ରଗଣ ! ମୁଁ ମୋର ଶ୍ରଦ୍ଧା ଓ ଭକ୍ତି ଅନୁସାରେ ସଂକ୍ଷେପରେ ଭଗବନ୍ନାମର ମହିମା କିଛିଟା ବର୍ଣ୍ଣନା କରୁଛି, ପ୍ରେମପୂର୍ବକ ଶ୍ରବଣ କର । ଏହି ନାମ-ମାହାତ୍ମ୍ୟ ସମସ୍ତ ପାପ ହରଣ କରିନେବାର ସର୍ବୋତ୍ତମ ସାଧନ । 'ଶିବ'—ଏହି ନାମରୂପୀ ଦାବାନଳରେ ମହାପାତକରୂପୀ ପର୍ବତ ଅନାୟାସରେ ଭସ୍ମ ହୋଇଯାଏ—ଏହା ସତ୍ୟ, ସତ୍ୟ । ଏଥିରେ ସଂଶୟ ନାହିଁ । ଶୌନକ ! ଯେତେସବୁ ପାପମୂଳକ ଦୁଃଖ ଅଛି, ସେସବୁ ଏକମାତ୍ର ଶିବନାମ (ଭଗବନ୍ନାମ) ଦ୍ୱାରା ନଷ୍ଟ ହୋଇଯାଏ । ଅନ୍ୟ ଉପାୟରେ ଯତ୍ନ କଲେ ମଧ୍ୟ ପୂର୍ଣ୍ଣରୂପେ ନଷ୍ଟ ହୋଇପାରେ ନାହିଁ । ଯେଉଁ ଲୋକ ଏ ଭୂତଳରେ ସର୍ବଦା ଶିବଙ୍କ ନାମ ଜପରେ ସଂଲଗ୍ନ ରହିଛି, ସେ ହିଁ ବେଦର ଜ୍ଞାତା; ସେ ପୁଣ୍ୟାତ୍ମା, ସେ ଧନ୍ୟବାଦର ପାତ୍ର ଓ ସେ ବିଦ୍ୱାନ୍‌ରୂପେ ଗଣ୍ୟ । ମୁନେ ! ଯାହାଙ୍କର ଶିବନାମ ଜପରେ ବିଶ୍ୱାସ ରହିଛି, ତାଙ୍କ ଦ୍ୱାରା ଆଚରିତ ନାନା ପ୍ରକାର ଧର୍ମ ଅବିଳମ୍ବେ ଫଳ ଦେବାକୁ ଉତ୍ସୁକ ହୋଇଉଠନ୍ତି । ମହର୍ଷେ ! ଭଗବାନ ଶିବଙ୍କ ନାମରେ ଯେତେ ପାପ ନଷ୍ଟ ହୁଅନ୍ତି, ସେତିକି

ପାପ ମନୁଷ୍ୟ ଧରାପୃଷ୍ଠରେ କରି ବି ପାରନ୍ତି ନାହିଁ ।* ଯେଉଁମାନେ ଶିବନାମରୂପୀ ନୌକାରେ ଆରୂଢ଼ ହୋଇ ସଂସାରରୂପୀ ସାଗରକୁ ପାର ହୁଅନ୍ତି, ସେମାନଙ୍କର ଜନ୍ମମରଣରୂପୀ ସଂସାରର ମୂଳଭୂତ ସମସ୍ତ ପାପ ନିଶ୍ଚୟ ନଷ୍ଟ ହୋଇଯାଆନ୍ତି । ମହାମୁନେ ! ସଂସାରର ମୂଳଭୂତ ପାତକରୂପୀ ପାଦପମାନ ଶିବନାମରୂପୀ କୁଠାର ଦ୍ୱାରା ନିଶ୍ଚୟ ଛେଦନ ହୋଇଯାଏ । ଯେଉଁମାନେ ପାପରୂପୀ ଦାବାନଳରେ ପୀଡ଼ିତ, ସେମାନେ ଶିବନାମରୂପୀ ଅମୃତ ପାନ କରିବା ଉଚିତ । ପାପ-ଦାବାନଳରେ ଦଗ୍ଧ ହେଉଥିବା ଲୋକଙ୍କୁ ଶିବନାମାମୃତ ବିନା ଶାନ୍ତି ମିଳିପାରେ ନାହିଁ । ଯେଉଁମାନେ ଶିବନାମରୂପୀ ସୁଧାବୃଷ୍ଟିରେ ସ୍ନାନ କରନ୍ତି, ସେମାନେ ସଂସାରରୂପୀ ଦାବାନଳ ମଧ୍ୟରେ ଛିଡ଼ା ହୋଇ ମଧ୍ୟ କଦାପି ଶୋକଗ୍ରସ୍ତ ହୁଅନ୍ତି ନାହିଁ । ଯେଉଁ ମହାତ୍ମାଙ୍କ ମନରେ ଶିବନାମ ପ୍ରତି ପ୍ରବଳ ଭକ୍ତି ରହିଛି, ସେପରି ଲୋକଙ୍କର ସହସା ଓ ସର୍ବଥା ମୁକ୍ତି ହୋଇଯାଏ ।ꝟ ହେ ମୁନୀଶ୍ୱର ! ଯେ ଅନେକ ଜନ୍ମରୁ ତପସ୍ୟା କରିଛି, ତାହାରି ଶିବନାମ ପ୍ରତି ଭକ୍ତି ହୁଏ, ଯାହାକି ସମସ୍ତ ପାପ ବିନାଶକ ।

ମୋ ମତରେ, ଯାହାର ମନରେ ମହାପ୍ରଭୁ ଶିବଙ୍କ ନାମ ପ୍ରତି ଅଖଣ୍ଡ ଅସାଧାରଣ ଭକ୍ତି ଉଦିତ ହୋଇଛି, ତା' ପାଇଁ ମୋକ୍ଷ ସୁଲଭ । ଯେ ଅନେକ ପାପ କରି ମଧ୍ୟ ଶିବଙ୍କ ନାମଜପରେ ଆଦରପୂର୍ବକ ସଂଲଗ୍ନ ରହିଛି, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ, ଏଥିରେ ସଂଶୟ ନାହିଁ। ଯେପରି ଦାବାନଳରେ ଦଗ୍ଧ ହୋଇ ବୃକ୍ଷସବୁ ଭସ୍ମ ହୋଇଯାଆନ୍ତି, ସେହିପରି ଶିବନାମରୂପୀ ଦାବାନଳରେ ଦଗ୍ଧ ହୋଇ ପୂର୍ବର ସମସ୍ତ ପାପ ଭସ୍ମ ହୋଇଯାଏ । ହେ ଶୌନକ ! ଯାହାର ଅଙ୍ଗ ନିତ୍ୟ ଭସ୍ମଲେପନରେ ପବିତ୍ର ହୋଇଯାଇଛି ଏବଂ ଯେ ଶିବନାମ-ଜପକୁ ଆଦର କରୁଛି, ସେ ଘୋର ସଂସାରସାଗରରୁ ତରିଯାଏ । ସମସ୍ତ ବେଦ ଅବଲୋକନ କରି ପୂର୍ବବର୍ତ୍ତୀ ମହର୍ଷିମାନେ ଏହା ନିର୍ଣ୍ଣୟ କରିଛନ୍ତି ଯେ ଭଗବାନ ଶିବଙ୍କ ନାମର ଜପ ସଂସାର-ସାଗରକୁ ପାରି ହେବା ନିମନ୍ତେ ସର୍ବୋତ୍ତମ ଉପାୟ । ହେ ମୁନିବର ! ଅଧିକ କହିବାରେ ବା କି ଲାଭ, ମୁଁ ଶିବନାମର ସର୍ବପାପହାରୀ ମାହାତ୍ମ୍ୟକୁ ଗୋଟିଏ ଶ୍ଳୋକରେ ବର୍ଣ୍ଣନା କରୁଛି । ଭଗବାନ ଶିବଙ୍କର ଗୋଟିଏ ନାମରେ ମଧ୍ୟ ଯେତିକି ପାପହରଣର ଶକ୍ତି ରହିଛି, ସେତିକି ପାପ ମନୁଷ୍ୟ କଦାପି କରି ପାରିବ ନାହିଁ ।✦ ମୁନେ ! ପୂର୍ବକାଳରେ ମହାପାପୀ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଶିବନାମ ପ୍ରଭାବରେ ହିଁ

* ଭବନ୍ତି ବିବିଧା ଧର୍ମାସ୍ତେଷାଂ ସଦ୍ୟଃ ଫଲୋନ୍ମୁଖାଃ । ଯେଷାଂ ଭବତି ବିଶ୍ୱାସଃ ଶିବନାମଜପେ ମୁନେ ॥
ପାତକାନି ବିନଶ୍ୟନ୍ତି ଯାବନ୍ତି ଶିବନାମତଃ । ଭୁବି ତାବନ୍ତି ପାପାନି କ୍ରିୟନ୍ତେ ନ ନରୈର୍ମୁନେ ॥
(ଶି. ପୁ. ବି. ୨୩ । ୨୬-୨୭)

ꝟ ଶିବନାମତରୀଂ ପ୍ରାପ୍ୟ ସଂସାରାବ୍ଧିଂ ତରନ୍ତି ତେ । ସଂସାରମୂଳପାପାନି ତାନି ନଶ୍ୟନ୍ତ୍ୟସଂଶୟମ୍ ॥
ସଂସାରମୂଳଭୂତାନାଂ ପାତକାନାଂ ମହାମୁନେ । ଶିବନାମକୁଠାରେଣ ବିନାଶୋ ଜାୟତେ ଧ୍ରୁବମ୍ ॥
ଶିବନାମାମୃତଂ ପେୟଂ ପାପାଦାବାନଲାର୍ଦିତୈଃ । ପାପଦାବାଗ୍ନିତପ୍ତାନାଂ ଶାନ୍ତିସ୍ତେନ ବିନା ନ ହି ॥
ଶିବେତି ନାମପୀୟୂଷବର୍ଷାଧାରାପରିପ୍ଲୁତାଃ । ସଂସାରଦବମଧ୍ୟେଽପି ନ ଶୋଚନ୍ତି କଦାଚନ ॥
ଶିବନାମ୍ନି ମହଦ୍ଭକ୍ତିର୍ଜାତା ଯେଷାଂ ମହାତ୍ମନାମ୍ । ତଦ୍‌ବିଧାନାଂ ତୁ ସହସା ମୁକ୍ତିର୍ଭବତି ସର୍ବଥା ॥
(ଶି. ପୁ. ବି. ୨୩ ।୨୯-୩୩)

✦ ପାପାନାଂ ହରଣେ ଶମ୍ଭୋର୍ନାମ୍ନଃ ଶକ୍ତିର୍ହି ଯାବତୀ । ଶକ୍ନୋତି ପାତକଂ ତାବତ୍ କର୍ତ୍ତୁଂ ନାପି ନରଃ କ୍ୱଚିତ୍ ॥
(ଶି. ପୁ. ବି. ୨୩ । ୪୨)

ପରମ ଗତି ପ୍ରାପ୍ତ ହୋଇଥିଲା । ଠିକ୍ ଏହିପରି ଜଣେ ବ୍ରାହ୍ମଣୀ ଯୁବତୀ ଅନେକ ପାପ କରିଥିଲେ ମଧ୍ୟ ଶିବଭକ୍ତି ପ୍ରଭାବରୁ ଉତ୍ତମ ଗତି ଲାଭ କଲା । ଦ୍ୱିଜଗଣ ! ଏହିରୂପେ ମୁଁ ତୁମମାନଙ୍କ ଆଗରେ ଭଗବନ୍ନାମର ଉତ୍ତମ ମାହାତ୍ମ୍ୟ ବର୍ଣ୍ଣନା କରିଦେଲି । ଏଥର ଭସ୍ମର ମାହାତ୍ମ୍ୟ ଶୁଣ, ଯାହାକି ସମସ୍ତ ପାବନ ବସ୍ତୁମାନଙ୍କୁ ମଧ୍ୟ ପାବନ କରିଥାଏ ।–

ମହର୍ଷିଗଣ ! ଭସ୍ମ ସକଳ ପ୍ରକାରେ ମଙ୍ଗଳ ପ୍ରଦାୟକ ଓ ଉତ୍ତମ ଅଟେ । ଏହା ଦୁଇ ପ୍ରକାରର । ସେହି ପ୍ରଭେଦକୁ ମୁଁ ବର୍ଣ୍ଣନା କରୁଛି, ସାବଧାନ ହୋଇ ଶୁଣ । ଗୋଟିଏ ପ୍ରକାର ଭସ୍ମକୁ 'ମହାଭସ୍ମ' କୁହାଯାଏ ଏବଂ ଅନ୍ୟଟିକୁ 'ସ୍ୱଳ୍ପଭସ୍ମ' କୁହାଯାଏ । ମହାଭସ୍ମର ମଧ୍ୟ ଅନେକ ପ୍ରଭେଦ ଅଛି । ତାହାକୁ ତିନି ଭାଗରେ ବିଭକ୍ତ କରାଯାଇଛି–ଶ୍ରୌତ, ସ୍ମାର୍ତ୍ତ ଓ ଲୌକିକ । ସ୍ୱଳ୍ପଭସ୍ମର ମଧ୍ୟ ଅନେକ ପ୍ରଭେଦ ରହିଛି । ଶ୍ରୌତ ଓ ସ୍ମାର୍ତ୍ତ ଭସ୍ମ କେବଳ ଦ୍ୱିଜଙ୍କ ପାଇଁ ଉପଯୋଗୀ ବୋଲି କୁହାଯାଇଛି । ଲୌକିକ ଭସ୍ମ ଅନ୍ୟ ସମସ୍ତଙ୍କ ଉପଯୋଗରେ ଆସିପାରିବ । ଶ୍ରେଷ୍ଠ ମହର୍ଷିମାନେ କହିଛନ୍ତି ଯେ ଦ୍ୱିଜମାନେ ବୈଦିକମନ୍ତ୍ର ଉଚ୍ଚାରଣ କରି ଭସ୍ମ ଧାରଣ କରିବା ଉଚିତ । ଅନ୍ୟ ଲୋକମାନଙ୍କ ପାଇଁ ବିନା ମନ୍ତ୍ରରେ ଧାରଣ କରିବାର ବିଧାନ ରହିଛି । ଗୋବର ପୋଡ଼ିଲା ପରେ ଯେଉଁ ଭସ୍ମ ହୁଏ, ତାହା ଆଗ୍ନେୟ ଭସ୍ମ । ମହାମୁନେ ! ତାହା ମଧ୍ୟ ତ୍ରିପୁଣ୍ଡ୍ର ପାଇଁ ଉପଯୋଗୀ ବୋଲି କୁହାଯାଇଛି । ଅଗ୍ନିହୋତ୍ରରୁ ଉତ୍ପନ୍ନ ଭସ୍ମକୁ ମଧ୍ୟ ମନୀଷୀମାନେ ସଂଗ୍ରହ କରିବା ଉଚିତ । ଅନ୍ୟ ଯଜ୍ଞରୁ ଉତ୍ପନ୍ନ ଭସ୍ମ ମଧ୍ୟ ତ୍ରିପୁଣ୍ଡ୍ର ଧାରଣ କାର୍ଯ୍ୟରେ ଲାଗିପାରିବ । ଜାବାଲୋପନିଷଦରେ କଥିତ 'ଅଗ୍ନିଃ' ଇତ୍ୟାଦି ସାତଟି ମନ୍ତ୍ରରେ ଜଳମିଶ୍ରିତ ଭସ୍ମକୁ ଧୂଳନ ଅର୍ଥାତ୍ ବିଭିନ୍ନ ଅଙ୍ଗରେ ମର୍ଦ୍ଦନ ବା ଲେପନ କରିବା ଉଚିତ । ମହର୍ଷି ଜାବଲି ସମସ୍ତ ବର୍ଣ୍ଣ ଓ ଆଶ୍ରମ ପାଇଁ ମନ୍ତ୍ର ପଢ଼ି ଓ ବିନା ମନ୍ତ୍ରରେ ବି ଆଦରପୂର୍ବକ ଭସ୍ମର ତ୍ରିପୁଣ୍ଡ୍ର ଲଗାଇବାର ଆବଶ୍ୟକତା ପ୍ରତିପାଦନ କରିଛନ୍ତି । ସମସ୍ତ ଅଙ୍ଗରେ ସଜଳ ଭସ୍ମ ଲଗାଇବା ଅଥବା ବିଭିନ୍ନ ଅଙ୍ଗରେ ତିର୍ଯ୍ୟକ୍ ତ୍ରିପୁଣ୍ଡ୍ର ଲଗାଇବା–ଏ କାର୍ଯ୍ୟକୁ ମୋକ୍ଷାର୍ଥୀ ଭୁଲ୍‌ରେ ବି ଛାଡ଼ିବା ଉଚିତ ନୁହେଁ, ଏହା ଶ୍ରୁତିର ଆଦେଶ । ଭଗବାନ ଶିବ ଓ ବିଷ୍ଣୁ ମଧ୍ୟ ତିର୍ଯ୍ୟକ୍ ତ୍ରିପୁଣ୍ଡ୍ର ଧାରଣ କରିଛନ୍ତି । ଅନ୍ୟ ଦେବୀଗଣଙ୍କ ସମେତ ଭଗବତୀ ଉମା ଓ ଲକ୍ଷ୍ମୀଦେବୀ ମଧ୍ୟ ଏହାର ପ୍ରଶଂସା କରିଛନ୍ତି । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ବର୍ଣ୍ଣସଂକର ତଥା ଜାତିଭ୍ରଷ୍ଟ ଲୋକେ ମଧ୍ୟ ଉଦ୍ଧୂଳନ ଏବଂ ତ୍ରିପୁଣ୍ଡ୍ର ରୂପରେ ଭସ୍ମ ଧାରଣ କରିଛନ୍ତି ।

ଏହାପରେ ଭସ୍ମଧାରଣ ତଥା ତ୍ରିପୁଣ୍ଡ୍ରର ମହିମା ଓ ବିଧି କହିସାରି ସୂତ ପୁନଃ କହିଲେ–**ମହର୍ଷିଗଣ !** ମୁଁ ସଂକ୍ଷେପରେ ତ୍ରିପୁଣ୍ଡ୍ର ମାହାତ୍ମ୍ୟ କହିଦେଲି । ଏହା ସମସ୍ତ ପ୍ରାଣୀଙ୍କ ନିମନ୍ତେ ଗୋପନୀୟ ରହସ୍ୟ । ତେଣୁ ତୁମେ ମଧ୍ୟ ଏହାକୁ ଗୁପ୍ତ ରଖିବା ଉଚିତ । ମୁନିଗଣ ! ଲଲାଟ ଆଦି ସମସ୍ତ ନିର୍ଦ୍ଦିଷ୍ଟ ସ୍ଥାନରେ ଭସ୍ମର ଯେଉଁ ତିନୋଟି ତିର୍ଯ୍ୟକ୍ ରେଖା ଅଙ୍କିତ ହୁଏ, ତାହାକୁ ବିଦ୍ୱାନ୍‌ମାନେ ତ୍ରିପୁଣ୍ଡ୍ର କହନ୍ତି । ଭ୍ରୂଦ୍ୱୟର ମଧ୍ୟଭାଗରୁ ଆରମ୍ଭ କରି ଭ୍ରୂର ଶେଷଭାଗ ପର୍ଯ୍ୟନ୍ତ ଯେତିକି ଦୈର୍ଘ୍ୟ ହୁଏ, ସେହି ପ୍ରମାଣର ତ୍ରିପୁଣ୍ଡ୍ର ଲଲାଟରେ ଧାରଣ କରିବା ଉଚିତ । ମଧ୍ୟମା ଓ ଅନାମିକା ଅଙ୍ଗୁଳିଦ୍ୱାରା ଦୁଇଟି ରେଖା ଟାଣି ମଝିରେ ଅଙ୍ଗୁଷ୍ଠଦ୍ୱାରା ପ୍ରତିଲୋମଭାବରେ ଟଣା ଯାଇଥିବା ରେଖା ତ୍ରିପୁଣ୍ଡ୍ର ବୋଲି କଥିତ ହୁଏ ଅଥବା ହାତର ମଝି ତିନିଟି ଅଙ୍ଗୁଳିରେ ଭସ୍ମ ନେଇ ଯତ୍ନପୂର୍ବକ ଭକ୍ତିଭାବରେ ଲଲାଟରେ ତ୍ରିପୁଣ୍ଡ୍ର ଧାରଣ କରିବେ । ତ୍ରିପୁଣ୍ଡ୍ର ଅତ୍ୟନ୍ତ ଉତ୍ତମ ତଥା ଭୋଗ ଓ ମୋକ୍ଷ ପ୍ରଦାୟକ । ତ୍ରିପୁଣ୍ଡ୍ରର ତିନୋଟି ରେଖାମଧ୍ୟରୁ ପ୍ରତ୍ୟେକର ନଅଟି ଲେଖାଏଁ ଦେବତା ଅଛନ୍ତି, ଯେଉଁମାନେ ସମସ୍ତ ଅଙ୍ଗରେ ସ୍ଥିତ । ମୁଁ

ସେମାନଙ୍କର ପରିଚୟ ଦେଉଛି । ସାବଧାନ ହୋଇ ଶୁଣ । ମୁନିବରବୃନ୍ଦ ! ପ୍ରଣବର ପ୍ରଥମ ଅକ୍ଷର ଅକାର, ଗାର୍ହପତ୍ୟ ଅଗ୍ନି, ପୃଥିବୀ, ଧର୍ମ, ରଜୋଗୁଣ, ଋଗ୍‌ବେଦ, କ୍ରିୟାଶକ୍ତି, ପ୍ରାତଃସବନ ଓ ମହାଦେବ—ଏମାନେ ହେଲେ ତ୍ରିପୁଣ୍ଡ୍ରର ପ୍ରଥମ ରେଖାର ନଅ ଜଣ ଦେବତା । ଏକଥା ଶିବଦୀକ୍ଷାପରାୟଣ ବ୍ୟକ୍ତି ଭଲଭାବରେ ବୁଝିବା ଉଚିତ । ପ୍ରଣବର ଦ୍ୱିତୀୟ ଅକ୍ଷର ଉକାର, ଦକ୍ଷିଣାଗ୍ନି, ଆକାଶ, ସତ୍ତ୍ୱଗୁଣ, ଯଜୁର୍ବେଦ, ମଧ୍ୟନ୍ଦିନସବନ, ଇଚ୍ଛାଶକ୍ତି, ଅନ୍ତରାତ୍ମା ଓ ମହେଶ୍ୱର—ଏମାନେ ହେଲେ ଦ୍ୱିତୀୟ ରେଖାର ନଅ ଜଣ ଦେବତା । ପ୍ରଣବର ତୃତୀୟ ଅକ୍ଷର ମକାର, ଆହବନୀୟ ଅଗ୍ନି, ପରମାତ୍ମା, ତମୋଗୁଣ, ଦ୍ୟୁଲୋକ, ଜ୍ଞାନଶକ୍ତି, ସାମବେଦ, ତୃତୀୟ ସବନ ଓ ଶିବ—ଏମାନେ ହେଲେ ତୃତୀୟ ରେଖାର ନଅ ଜଣ ଦେବତା । ଏହିରୂପେ ସ୍ଥାନଦେବତାଙ୍କୁ ଉତ୍ତମ ଭକ୍ତିରେ ନିତ୍ୟ ନମସ୍କାର କରି ସ୍ନାନାଦିରେ ଶୁଦ୍ଧ ହୋଇଥିବା ବ୍ୟକ୍ତି ଯଦି ତ୍ରିପୁଣ୍ଡ୍ର ଧାରଣ କରେ, ସେ ଭୋଗ ଓ ମୋକ୍ଷ ଲାଭ କରେ । ମୁନୀଶ୍ୱରଗଣ ! ଏମାନଙ୍କୁ ସମଗ୍ର ଅଙ୍ଗର ସ୍ଥାନଦେବତା ବୋଲାଯାଏ । ଏବେ ଏମାନଙ୍କର ସମ୍ବନ୍ଧିତ ସ୍ଥାନ ବିଷୟରେ କହୁଛି, ଭକ୍ତିପୂର୍ବକ ଶୁଣ । ବତିଶ, ଷୋହଳ, ଆଠ ଅଥବା ପାଞ୍ଚ ସ୍ଥାନରେ ତ୍ରିପୁଣ୍ଡ୍ରକୁ ନ୍ୟାସ କରିବେ । ମସ୍ତକ, ଲଲାଟ, ଉଭୟ କାନ, ଉଭୟ ନେତ୍ର, ଉଭୟ ନାସାଛିଦ୍ର, ମୁଖ, କଣ୍ଠ, ଉଭୟ ହାତ, ଉଭୟ କହୁଣି, ଉଭୟ କଚଟି, ହୃଦୟ, ଉଭୟ ପାର୍ଶ୍ୱଭାଗ, ନାଭି, ଉଭୟ ଅଣ୍ଡକୋଷ, ଉଭୟ ଉରୁ, ଉଭୟ ଗୁଳ୍ଫ, ଉଭୟ ଆଣ୍ଠୁ, ଉଭୟ ଭଣ୍ଡା ଓ ଉଭୟ ପାଦ—ଏଗୁଡ଼ିକ ହେଲା ବତିଶଟି ଉତ୍ତମ ସ୍ଥାନ । ଏଗୁଡ଼ିକରେ ଯଥାକ୍ରମେ ଅଗ୍ନି, ଜଳ, ପୃଥିବୀ, ବାୟୁ, ଦଶ ଦିକ୍‌ପ୍ରଦେଶ, ଦଶ ଦିକ୍‌ପାଳ, ତଥା ଅଷ୍ଟବସୁଙ୍କର ନିବାସ ସ୍ଥାନ । ଧର, ଧ୍ରୁବ, ସୋମ, ଆପ, ଅନିଳ, ଅନଳ, ପ୍ରତ୍ୟୁଷ ଓ ପ୍ରଭାତ—ଏମାନେ ହେଲେ ଅଷ୍ଟବସୁ । ଏମାନଙ୍କ ନାମ ଉଚ୍ଚାରଣ କରି ଏମାନଙ୍କ ସ୍ଥାନରେ ବିଦ୍ୱାନ୍ ପୁରୁଷ ତ୍ରିପୁଣ୍ଡ୍ର ଧାରଣ କରିବେ ।

ଅଥବା ଏକାଗ୍ରଚିତ୍ତରେ କେବଳ ଷୋହଳଟି ସ୍ଥାନରେ ତ୍ରିପୁଣ୍ଡ୍ର ଧାରଣ କରିବେ । ମସ୍ତକ, ଲଲାଟ, କଣ୍ଠ, ଦୁଇ କାନ୍ଧ, ଦୁଇ ଭୁଜ, ଦୁଇ କହୁଣି, ଦୁଇ କଚଟି, ହୃଦୟ, ନାଭି, ଦୁଇ ପିଞ୍ଜରା ତଥା ପୃଷ୍ଠଭାଗରେ ତ୍ରିପୁଣ୍ଡ୍ର ଲଗାଇ ସେଠାରେ ଅଶ୍ୱିନୀକୁମାରଦ୍ୱୟଙ୍କୁ, ଶିବ, ଶକ୍ତି, ରୁଦ୍ର, ଈଶ ତଥା ନାରଦଙ୍କୁ ଏବଂ ବାମା ଆଦି ନଅ ଶକ୍ତିଙ୍କୁ ପୂଜା କରିବେ । ଏ ସମସ୍ତେ ମିଶି ଷୋହଳ ଦେବତା ହୁଅନ୍ତି । ଅଶ୍ୱିନୀକୁମାର ଦୁଇଜଣ ଅଟନ୍ତି । ନାସତ୍ୟ ଓ ଦସ୍ର ଅଥବା ମସ୍ତକ, କେଶ, ଦୁଇ କାନ, ମୁଖ, ଦୁଇ ଭୁଜ, ହୃଦୟ, ନାଭି, ଦୁଇ ଉରୁ, ଦୁଇ ଜାନୁ, ଦୁଇ ପାଦ ଓ ପୃଷ୍ଠଭାଗ—ଏ ଷୋହଳଟି ସ୍ଥାନରେ ଷୋହଳ ତ୍ରିପୁଣ୍ଡ୍ରର ନ୍ୟାସ କରିବେ । ମସ୍ତକରେ ଶିବ, କେଶରେ ଚନ୍ଦ୍ର, ଦୁଇ କାନରେ ରୁଦ୍ର ଓ ବ୍ରହ୍ମା, ମୁଖରେ ବିଘ୍ନରାଜ ଗଣେଶ, ଦୁଇ ଭୁଜରେ ବିଷ୍ଣୁ ଓ ଲକ୍ଷ୍ମୀ, ହୃଦୟରେ ଶମ୍ଭୁ, ନାଭିରେ ପ୍ରଜାପତି, ଦୁଇ ଉରୁରେ ନାଗ ଓ ନାଗକନ୍ୟାଗଣ, ଦୁଇ ଆଣ୍ଠୁରେ ଋଷିକନ୍ୟାଗଣ, ଦୁଇ ପାଦରେ ସମୁଦ୍ର ତଥା ବିଶାଳ ପୃଷ୍ଠଭାଗରେ ସମସ୍ତ ତୀର୍ଥ ଦେବତାରୂପରେ ବିଦ୍ୟମାନ ଅଛନ୍ତି । ଏହିରୂପେ ଷୋହଳ ସ୍ଥାନର ପରିଚୟ ଦିଆଗଲା । ଏବେ ଆଠଟି ସ୍ଥାନ ବିଷୟରେ ଶୁଣ । ଗୁହ୍ୟସ୍ଥାନ, ଲଲାଟ, ପରମ ଉତ୍ତମ କର୍ଣ୍ଣଯୁଗଳ, ଦୁଇ କାନ୍ଧ, ହୃଦୟ ଓ ନାଭି—ଏଗୁଡ଼ିକ ହେଲା ଆଠଟି ସ୍ଥାନ । ଏଥିରେ ବ୍ରହ୍ମା ଓ ସପ୍ତର୍ଷି—ଏହି ଆଠ ଜଣ ଦେବତା ବିରାଜମାନ ରହନ୍ତି । ମୁନୀଶ୍ୱରଗଣ ! ଭସ୍ମର ସ୍ଥାନକୁ ଜାଣିଥିବା ବିଦ୍ୱାନ୍‌ମାନେ ଏହିରୂପେ ଆଠସ୍ଥାନର ପରିଚୟ ଦେଇଛନ୍ତି ଅଥବା ମସ୍ତକ, ଦୁଇ ଭୁଜ, ହୃଦୟ ଓ ନାଭି—ଏହି ପାଞ୍ଚଟି ସ୍ଥାନକୁ

ଭସ୍ମବେତ୍ତା ବ୍ୟକ୍ତିମାନେ ଭସ୍ମଧାରଣର ଯୋଗ୍ୟ ବୋଲି କହିଛନ୍ତି । ଯଥାସମ୍ଭବ ଦେଶ, କାଳ ଇତ୍ୟାଦିର ଅପେକ୍ଷା ରଖି ଉଦ୍ଧୂଳନ (ଭସ୍ମ)କୁ ଅଭିମନ୍ତ୍ରିତ କରିବା ଓ ଜଳରେ ମିଶାଇବା ଆଦି କାର୍ଯ୍ୟ କରିବେ । ଯଦି ଉଦ୍ଧୂଳନରେ ମଧ୍ୟ ଅସମର୍ଥ ହୁଅନ୍ତି, ତେବେ ତ୍ରିପୁଣ୍ଡ୍ର ଇତ୍ୟାଦି ଲଗାଇବେ । ତ୍ରିନେତ୍ରଧାରୀ, ତ୍ରିଗୁଣର ଆଧାର ତ୍ରିଦେବଙ୍କ ଜନକ ଭଗବାନ ଶିବଙ୍କୁ ସ୍ମରଣ କରି 'ନମଃ ଶିବାୟ' କହି ଲଲାଟରେ ତ୍ରିପୁଣ୍ଡ୍ର ଲଗାଇବେ । 'ଈଶାଭ୍ୟାଂ ନମଃ' କହି ଦୁଇ ପାର୍ଶ୍ୱଭାଗରେ ତ୍ରିପୁଣ୍ଡ୍ର ଧାରଣ କରିବେ । 'ବୀଜାଭ୍ୟାଂ ନମଃ' କରି ଦୁଇ କଚଟିରେ ଭସ୍ମ ଲଗାଇବେ । 'ପିତୃଭ୍ୟାଂ ନମଃ' କହି ନିମ୍ନ ଅଙ୍ଗରେ, 'ଉମେଶାଭ୍ୟାଂ ନମଃ' କହି ଉପର ଅଙ୍ଗରେ ଏବଂ 'ଭୀମାୟ ନମଃ' କହି ପିଠିରେ ଓ ମୁଣ୍ଡର ପଛଭାଗରେ ତ୍ରିପୁଣ୍ଡ୍ର ଲଗାଇବା ଉଚିତ । (ଅଧ୍ୟାୟ ୨୩-୨୪)

★★★

## ରୁଦ୍ରାକ୍ଷଧାରଣର ମହିମା ଓ ତାହାର ବିବିଧ ଭେଦ ନିରୂପଣ

ସୂତ କହୁଛନ୍ତି–ମହାପ୍ରାଜ୍ଞ ! ମହାମତେ ! ଶିବରୂପ ଶୌନକ ! ଏବେ ମୁଁ ସଂକ୍ଷେପରେ ରୁଦ୍ରାକ୍ଷର ମାହାତ୍ମ୍ୟ କହୁଛି, ଶୁଣ । ରୁଦ୍ରାକ୍ଷ ଶିବଙ୍କର ବହୁତ ପ୍ରିୟ । ଏହାକୁ ପରମ ପାବନ ବୋଲି ବୁଝିବା ଉଚିତ । ରୁଦ୍ରାକ୍ଷର ଦର୍ଶନ ଓ ସ୍ପର୍ଶରେ ତଥା ରୁଦ୍ରାକ୍ଷମାଳାରେ ଜପ ଦ୍ୱାରା ସମସ୍ତ ପାପ ଅପହରଣ ହୋଇଥାଏ । ମୁନେ ! ପୂର୍ବକାଳରେ ପରମାତ୍ମା ଶିବ ସମସ୍ତ ଭୁବନର ଉପକାର ପାଇଁ ଦେବୀ ପାର୍ବତୀଙ୍କ ସମ୍ମୁଖରେ ରୁଦ୍ରାକ୍ଷର ମହିମା ବର୍ଣ୍ଣନା କରିଥିଲେ ।

ଭଗବାନ ଶିବ କହିଲେ–ହେ ମହେଶ୍ୱରୀ ! ହେ ଶିବେ ! ତୁମ ପ୍ରତି ପ୍ରେମ ହେତୁ ଭକ୍ତଙ୍କ ହିତ କାମନାରେ ମୁଁ ରୁଦ୍ରାକ୍ଷର ମହିମା ବର୍ଣ୍ଣନା କରୁଛି, ଶୁଣ । ପୂର୍ବକାଳର କଥା । ମୁଁ ମନକୁ ସଂଯମରେ ରଖି ହଜାର ହଜାର ଦିବ୍ୟବର୍ଷ ପର୍ଯ୍ୟନ୍ତ ଘୋର ତପସ୍ୟାରେ ସଂଲଗ୍ନ ଥିଲି । ଦିନେ ସହସା ମୋର ମନ କ୍ଷୁବ୍ଧ ହୋଇଉଠିଲା । ହେ ପରମେଶ୍ୱରୀ ! ମୁଁ ସମଗ୍ର ବିଶ୍ୱର ଉପକାରୀ ସ୍ୱତନ୍ତ୍ର ପରମେଶ୍ୱର ଅଟେ । ତେଣୁ ସେତେବେଳେ ମୁଁ ଲୀଳାରେ ମୋର ଆଖି ଖୋଲିଲି । ଆଖି ଖୋଲିବା ମାତ୍ରେ ମୋର ମନୋହର ନେତ୍ରପୁଟରୁ କେତେ ବିନ୍ଦୁ ଜଳ ଝରିପଡ଼ିଲା । ସେହି ଅଶ୍ରୁବିନ୍ଦୁରୁ ସେଠାରେ ଅନେକ ରୁଦ୍ରାକ୍ଷ ନାମକ ବୃକ୍ଷ ଉତ୍ପନ୍ନ ହୋଇଗଲା । ଭକ୍ତଙ୍କ ଉପରେ ଅନୁଗ୍ରହ କରିବା ପାଇଁ ଉକ୍ତ ଅଶ୍ରୁବିନ୍ଦୁ ସ୍ଥାବରଭାବକୁ ପ୍ରାପ୍ତ ହୋଇଗଲା । ସେହି ରୁଦ୍ରାକ୍ଷ ମୁଁ ବିଷ୍ଣୁଭକ୍ତଙ୍କୁ ଓ ଚ୍ରିବର୍ଣ୍ଣର ଲୋକଙ୍କୁ ବାଣ୍ଟିଦେଲି । ଭୂତଳରେ ମୋର ପ୍ରିୟ ରୁଦ୍ରାକ୍ଷକୁ ମୁଁ ଗୌଡ଼ଦେଶରେ ଉତ୍ପନ୍ନ କଲି । ମଥୁରା, ଅଯୋଧ୍ୟା, ଲଙ୍କା, ମଳୟାଚଳ, ସହ୍ୟଗିରି, କାଶୀ ତଥା ଅନ୍ୟ ସ୍ଥାନରେ ମଧ୍ୟ ଅନେକ ବୃକ୍ଷ ଅଙ୍କୁରିତ କଲି । ସେହି ଉତ୍ତମ ରୁଦ୍ରାକ୍ଷ ଅସହ୍ୟ ପାପସମୂହର ଭେଦନକାରୀ ତଥା ଶ୍ରୁତିମାନଙ୍କର ମଧ୍ୟ ପ୍ରେରକ । ମୋ ଆଜ୍ଞାରେ ସେଗୁଡ଼ିକ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଜାତି ଭେଦରେ ପୃଥିବୀରେ ଉତ୍ପନ୍ନ ହେଲା । ରୁଦ୍ରାକ୍ଷ ଜାତିର ଆଉ ଗୋଟିଏ ବୃକ୍ଷ ଶୁଭାକ୍ଷ ମଧ୍ୟ ଅଛି । ଉପରୋକ୍ତ ବ୍ରାହ୍ମଣାଦି ଭେଦର ରୁଦ୍ରାକ୍ଷଗୁଡ଼ିକର ବର୍ଣ୍ଣ ଯଥାକ୍ରମେ ଶ୍ୱେତ, ରକ୍ତ, ପୀତ ଓ କୃଷ୍ଣ । ମନୁଷ୍ୟ ନିଜ ନିଜ ବର୍ଣ୍ଣ ଅନୁସାରେ ହିଁ ନିଜ ଜାତିର ରୁଦ୍ରାକ୍ଷ ଧାରଣ କରିବା ଉଚିତ । ଭୋଗ ଓ ମୋକ୍ଷ ଚ୍ହୁଁଥିବା ଚ୍ରିବର୍ଣ୍ଣର ଲୋକେ ବିଶେଷତଃ ଶିବଭକ୍ତମାନେ ଶିବପାର୍ବତୀଙ୍କ ପ୍ରସନ୍ନତା ନିମନ୍ତେ ରୁଦ୍ରାକ୍ଷ ଫଳ ଅବଶ୍ୟ ଧାରଣ କରିବା ଉଚିତ । ଅଁଳା ଆକାରର

ରୁଦ୍ରାକ୍ଷକୁ ଶ୍ରେଷ୍ଠ ବୋଲି କୁହାଯାଇଛି । ଯାହା କୋଳି ଆକାରର, ତାହାକୁ ମଧ୍ୟମ ଶ୍ରେଣୀର ଧରାଯାଇଛି । ଯାହା ଚଣା ପରି, ତାହାକୁ ନିମ୍ନ ଶ୍ରେଣୀ ମଧ୍ୟରେ ଗଣନା କରାଯାଏ । ଏବେ ଏହାର ଉତ୍ତମତାକୁ ପରୀକ୍ଷା କରିବା ପାଇଁ ଆଉ ଗୋଟିଏ ପ୍ରକ୍ରିୟା କହୁଛି । ଏହା କହିବାର ଉଦ୍ଦେଶ୍ୟ ଭକ୍ତଙ୍କର ହିତକାମନା । ହେ ପାର୍ବତୀ ! ତୁମେ ପ୍ରେମପୂର୍ବକ ଏ ବିଷୟକୁ ଶୁଣ ।

ହେ ମହେଶ୍ୱରୀ ! ଯେଉଁ ରୁଦ୍ରାକ୍ଷ କୋଳି ଆକାରର, ତାହା ଏତେ ଛୋଟ ହେଲେ ମଧ୍ୟ ଜଗତରେ ଉତ୍ତମ ଫଳ ପ୍ରଦାନ କରିଥାଏ ତଥା ସୁଖସୌଭାଗ୍ୟ ବୃଦ୍ଧି କରିଥାଏ । ଯେଉଁ ରୁଦ୍ରାକ୍ଷ ଅଁଳା ପରି, ତାହା ସମସ୍ତ ଅରିଷ୍ଟ ବିନାଶ କରିଥାଏ । ଯାହା ଗୁଞ୍ଜାଫଳ ପରି ଅତି ଛୋଟ, ତାହା ସମସ୍ତ ମନୋରଥର ଫଳ ପ୍ରଦାନ କରିଥାଏ । ରୁଦ୍ରାକ୍ଷ ଯେତେ ଅଧିକ ଛୋଟ ହୋଇଥାଏ, ତାହା ସେତେ ଅଧିକ ଫଳଦାୟକ ହୋଇଥାଏ । ବଡ଼ ରୁଦ୍ରାକ୍ଷଠାରୁ ଛୋଟ ରୁଦ୍ରାକ୍ଷକୁ ବିଦ୍ୱାନ୍‌ମାନେ ଦଶଗୁଣ ଅଧିକ ଫଳପ୍ରଦ ବୋଲି କହିଛନ୍ତି । ପାପନାଶ କରିବା ନିମନ୍ତେ ରୁଦ୍ରାକ୍ଷଧାରଣକୁ ଆବଶ୍ୟକ ବୋଲି କୁହାଯାଇଛି । ତାହା ନିଶ୍ଚୟ ସମସ୍ତ ଅଭୀଷ୍ଟ ମନୋରଥ ସିଦ୍ଧ କରିଥାଏ । ତେଣୁ ତାହାକୁ ଅବଶ୍ୟ ଧାରଣ କରିବା ଉଚିତ । ହେ ପରମେଶ୍ୱରୀ ! ଜଗତରେ ମଙ୍ଗଳମୟ ରୁଦ୍ରାକ୍ଷ ଯେପରି ଫଳଦାୟକ, ଆଉ କୌଣସି ମାଳା ସେପରି ଫଳଦାୟକ ଦେଖାଯାଏ ନାହିଁ । ହେ ଦେବୀ ! ସମାନ ଆକାର ପ୍ରକାରର, ଚିକ୍କଣ, ମଜବୁତ୍, ସ୍ଥୂଳ, କଣ୍ଟକଯୁକ୍ତ (କଣ୍ଟାପରି ଆବୁଡ଼ା-ଖାବୁଡ଼ା) ଓ ସୁନ୍ଦର ରୁଦ୍ରାକ୍ଷ ମନୋବାଞ୍ଛା ପୂରଣକାରୀ ଏବଂ ସର୍ବଦୈବ ଭୋଗ ଓ ମୋକ୍ଷ ପ୍ରଦାତା । ଯାହାକୁ କୀଟ ଦୂଷିତ କରିଦେଇଥାନ୍ତି, ଯାହା ଭାଙ୍ଗିତୁଟି ଯାଇଥାଏ, ଯେଉଁଥିରେ ଆବୁଡ଼ା-ଖାବୁଡ଼ା ଦାନା ନ ଥାଏ, ଯାହା ବ୍ରଣଯୁକ୍ତ ଏବଂ ଯାହା ପୂର୍ଣ୍ଣରୂପେ ଗୋଲ ନୁହେଁ—ଏପରି ପାଞ୍ଚପ୍ରକାର ରୁଦ୍ରାକ୍ଷକୁ ବର୍ଜନ କରିବା ଉଚିତ । ଯେଉଁ ରୁଦ୍ରାକ୍ଷରେ ଆପେ ଆପେ ସୂତା ପୂରାଇବାର ଛିଦ୍ର ହୋଇଯାଇଥାଏ, ତାହା ଉତ୍ତମ ଅଟେ । ଯେଉଁଥିରେ ମନୁଷ୍ୟର ପ୍ରଯତ୍ନରେ ଛିଦ୍ର କରାଯାଏ, ତାହା ମଧ୍ୟମ ଶ୍ରେଣୀର । ରୁଦ୍ରାକ୍ଷ ଧାରଣ କଲେ ବଡ଼ ବଡ଼ ପାତକ ନାଶ ହୁଏ । ଏ ଜଗତରେ ଏଗାରଶହ ରୁଦ୍ରାକ୍ଷ ଧାରଣକାରୀ ବ୍ୟକ୍ତି ଯେଉଁ ଫଳ ଲାଭ କରେ, ତାହାକୁ ଶହ ଶହ ବର୍ଷରେ ମଧ୍ୟ ବର୍ଣ୍ଣନା କରିହେବ ନାହିଁ । ଭକ୍ତିମାନ୍ ବ୍ୟକ୍ତି ସାଢ଼େ ପାଞ୍ଚଶହ ରୁଦ୍ରାକ୍ଷରେ ସୁନ୍ଦର ମୁକୁଟ ତିଆରି କରି ମସ୍ତକରେ ଧାରଣ କରିବା ଉଚିତ । ତିନିଶହ ଷାଠିଏ ଲେଖାଏଁ ଦାନା ହିସାବରେ ତିନୋଟି ହାର ତିଆରି କରି ଭକ୍ତିପରାୟଣ ବ୍ୟକ୍ତି ଯଜ୍ଞୋପବୀତରୂପେ ଯଥାସ୍ଥାନରେ ଧାରଣ କରିବା ଉଚିତ ।

ଏହାପରେ କେଉଁ ଅଙ୍ଗରେ କେତେ ରୁଦ୍ରାକ୍ଷ ଧାରଣ କରିବା ଉଚିତ, ତାହା କହିସାରି ସୂତ କହୁଛନ୍ତି—ମହର୍ଷିଗଣ ! ମସ୍ତକରେ ଈଶାନମନ୍ତ୍ରରେ, କାନରେ ତତ୍ପୁରୁଷମନ୍ତ୍ରରେ ତଥା ଗଳା ଓ ହୃଦୟରେ ଅଘୋରମନ୍ତ୍ରରେ ରୁଦ୍ରାକ୍ଷ ଧାରଣ କରିବା ଉଚିତ । ବିଦ୍ୱାନ୍ ପୁରୁଷ ଅଘୋର-ବୀଜମନ୍ତ୍ରରେ ଉଭୟ ହାତରେ ରୁଦ୍ରାକ୍ଷ ଧାରଣ କରିବେ । ଉଦରରେ ବାମଦେବମନ୍ତ୍ରରେ ପନ୍ଦର ରୁଦ୍ରାକ୍ଷଯୁକ୍ତ ମାଳା ଧାରଣ କରିବେ ଅଥବା ଅଙ୍ଗସହିତ ପ୍ରଣବକୁ ପାଞ୍ଚବାର ଜପି ରୁଦ୍ରାକ୍ଷର ତିନୋଟି, ପାଞ୍ଚଟି ବା ସାତଟି ମାଳା ଧାରଣ କରିବେ ଅଥବା ମୂଳମନ୍ତ୍ର (ନମଃ ଶିବାୟ) ଉଚ୍ଚାରଣ କରି ସମସ୍ତ ରୁଦ୍ରାକ୍ଷ ଧାରଣ କରିବେ । ରୁଦ୍ରାକ୍ଷଧାରୀ ପୁରୁଷ ଆପଣା ଖାଦ୍ୟପେୟରେ ମଦ୍ୟ, ମାଂସ, ରସୁଣ, ପିଆଜ, ସଜନା ଇତ୍ୟାଦି ବର୍ଜନ କରିବା ଉଚିତ ।

ଗିରିରାଜନନ୍ଦିନୀ ଉମେ ! ଶ୍ୱେତ ରୁଦ୍ରାକ୍ଷ କେବଳ ବ୍ରାହ୍ମଣ ଧାରଣ କରିବା ଉଚିତ। ଗାଢ଼ଲାଲ୍ ବର୍ଣ୍ଣର ରୁଦ୍ରାକ୍ଷ କ୍ଷତ୍ରିୟ ପାଇଁ ହିତକର ବୋଲି କୁହାଯାଇଛି । ବୈଶ୍ୟ ପ୍ରତିଦିନ ବାରମ୍ବାର ହଳଦିଆ ରୁଦ୍ରାକ୍ଷ ଧାରଣ କରିବା ଆବଶ୍ୟକ ଏବଂ ଶୂଦ୍ର କଳାରଙ୍ଗର ରୁଦ୍ରାକ୍ଷ ଧାରଣ କରିବା ଆବଶ୍ୟକ— ଏହା ବେଦୋକ୍ତ ମାର୍ଗ। ବ୍ରହ୍ମଚାରୀ, ବାନପ୍ରସ୍ଥ, ଗୃହସ୍ଥ ଓ ସଂନ୍ୟାସୀ—ସମସ୍ତେ ନିୟମପୂର୍ବକ ରୁଦ୍ରାକ୍ଷ ଧାରଣ କରିବା ଉଚିତ। ବହୁତ ବଡ଼ ପୁଣ୍ୟ ଥିଲେ ହିଁ ଏହାକୁ ଧାରଣ କରିବାର ସୌଭାଗ୍ୟ ମିଳିଥାଏ। ଉମେ! ପ୍ରଥମେ ଅଁଳା ପରି ବଡ଼ ଏବଂ ପରେ ଛୋଟ ରୁଦ୍ରାକ୍ଷ ଧାରଣ କରିବା ଉଚିତ। ରୁଗ୍ଣ, ପୋକରା, ଦାନାଦାର ହୋଇ ନ ଥିବା ଅଥବା ଛିଦ୍ର ନ ଥିବା ରୁଦ୍ରାକ୍ଷକୁ ମଙ୍ଗଳାକାଂକ୍ଷୀ ଲୋକେ ଧାରଣ କରିବା ଉଚିତ ନୁହେଁ। ରୁଦ୍ରାକ୍ଷ ମୋର ମଙ୍ଗଳମୟୀ ଲିଙ୍ଗବିଗ୍ରହ ଅଟେ। ତାହା ଚଣା ପରି ଛୋଟ ଛୋଟ ମଧ୍ୟ ହୋଇଥାଏ। ସୂକ୍ଷ୍ମ ରୁଦ୍ରାକ୍ଷ ସଦା ପ୍ରଶସ୍ତ ଅଟେ। ସମସ୍ତ ଆଶ୍ରମ ଓ ବର୍ଣ୍ଣର ଲୋକେ, ନାରୀ ଓ ଶୂଦ୍ରମାନେ ମଧ୍ୟ ଶିବଙ୍କ ଆଜ୍ଞାନୁସାରେ ସଦୈବ ରୁଦ୍ରାକ୍ଷ ଧାରଣ କରିବା ଉଚିତ।* ଯତିମାନଙ୍କ ପାଇଁ ପ୍ରଣବ ଉଚ୍ଚାରଣପୂର୍ବକ ରୁଦ୍ରାକ୍ଷ ଧାରଣର ବିଧାନ ଅଛି। ଯାହାର ଲଲାଟରେ ତ୍ରିପୁଣ୍ଡ୍ର ଥିବ ଏବଂ ସର୍ବାଙ୍ଗ ରୁଦ୍ରାକ୍ଷରେ ବିଭୂଷିତ ହୋଇଥିବ ଓ ଯେ ମୃତ୍ୟୁଞ୍ଜୟ ମନ୍ତ୍ର ଜପ କରୁଥିବ, ସେପରି ବ୍ୟକ୍ତିକୁ ଦର୍ଶନ କଲେ ସାକ୍ଷାତ୍ ଶିବଙ୍କ ଦର୍ଶନର ଫଳ ମିଳିଥାଏ।

ହେ ପାର୍ବତୀ ! ରୁଦ୍ରାକ୍ଷ ଅନେକ ପ୍ରକାରର । ତାହାର ପ୍ରଭେଦ ମୁଁ ବର୍ଣ୍ଣନା କରୁଛି । ଏହା ଭୋଗ ଓ ମୋକ୍ଷରୂପୀ ଫଳ ପ୍ରଦାନ କରିଥାଏ। ତୁମେ ଭକ୍ତିର ସହ ରୁଦ୍ରାକ୍ଷର ପରିଚୟ ଶୁଣ । ଏକମୁଖୀ ରୁଦ୍ରାକ୍ଷ ସାକ୍ଷାତ୍ ଶିବଙ୍କର ସ୍ୱରୂପ । ତାହା ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ଯେଉଁଠି ରୁଦ୍ରାକ୍ଷର ପୂଜା ହୁଏ, ଲକ୍ଷ୍ମୀ ସେ ସ୍ଥାନ ଛାଡ଼ି ଯାଆନ୍ତି ନାହିଁ; ସେଠାକାର ସମସ୍ତ ଉପଦ୍ରବ ନଷ୍ଟ ହୋଇଯାଏ ଏବଂ ସେଠାରେ ରହୁଥିବା ଲୋକଙ୍କର ସମସ୍ତ କାମନା ପୂର୍ଣ୍ଣ ହୁଏ । ଦ୍ୱିମୁଖୀ ରୁଦ୍ରାକ୍ଷକୁ ଦେବେଶ୍ୱର କୁହାଯାଏ। ତାହା ସମସ୍ତ ମନୋବାଞ୍ଛିତ ଫଳ ପ୍ରଦାନ କରେ। ତ୍ରିମୁଖୀ ରୁଦ୍ରାକ୍ଷ ସଦା ସାକ୍ଷାତ୍ ସାଧନାର ଫଳଦାୟକ, ତାହାର ପ୍ରଭାବରେ ସମସ୍ତ ବିଦ୍ୟା ପ୍ରତିଷ୍ଠିତ ହୋଇଥାଏ। ଚତୁର୍ମୁଖୀ ରୁଦ୍ରାକ୍ଷ ସାକ୍ଷାତ୍ ବ୍ରହ୍ମାଙ୍କର ସ୍ୱରୂପ । ତାହା ଦର୍ଶନ ଓ ସ୍ପର୍ଶ ମାତ୍ରକେ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏ ଚାରିପ୍ରକାର ପୁରୁଷାର୍ଥ ପ୍ରଦାନ କରେ । ପଞ୍ଚମୁଖୀ ରୁଦ୍ରାକ୍ଷ ସାକ୍ଷାତ୍ କାଳାଗ୍ନିରୁଦ୍ରରୂପ ଅଟେ । ତାହା ସବୁକିଛି କରିବାକୁ ସମର୍ଥ, ସମସ୍ତଙ୍କ ପାଇଁ ମୁକ୍ତିଦାତା ତଥା ମନୋବାଞ୍ଛିତ ଫଳ ପ୍ରଦାନକାରୀ । ପଞ୍ଚମୁଖୀ ରୁଦ୍ରାକ୍ଷ ସମସ୍ତ ପାପ ଦୂର କରିଥାଏ । ଷଡ଼୍‌ମୁଖୀ ରୁଦ୍ରାକ୍ଷ କାର୍ତ୍ତିକେୟଙ୍କ ସ୍ୱରୂପ । ଯଦି ଡାହାଣ ବାହୁରେ ତାହାକୁ ଧାରଣ କରାଯାଏ, ତେବେ ଧାରଣକାରୀ ଯେ ବ୍ରହ୍ମହତ୍ୟା ଆଦି ପାପରୁ ମୁକ୍ତ ହୋଇଯାଏ, ଏଥିରେ ସଂଶୟ ନାହିଁ। ହେ ମହେଶ୍ୱରୀ! ସପ୍ତମୁଖୀ ରୁଦ୍ରାକ୍ଷ ଅନଙ୍ଗସ୍ୱରୂପ ଓ ଅନଙ୍ଗ ନାମରେ ପ୍ରସିଦ୍ଧ ଅଟେ। ହେ ଦେବେଶୀ ! ତାହାକୁ ଧାରଣ କଲେ ଦରିଦ୍ର ମଧ୍ୟ ଐଶ୍ୱର୍ଯ୍ୟଶାଳୀ ହୋଇଯାଏ । ଅଷ୍ଟମୁଖୀ ରୁଦ୍ରାକ୍ଷ ଅଷ୍ଟମୂର୍ତ୍ତି ଭୈରବରୂପ ଅଟେ; ତାହାକୁ ଧାରଣ କଲେ ମନୁଷ୍ୟ ପୂର୍ଣ୍ଣାୟୁ ହୁଏ ଓ ମୃତ୍ୟୁ ପରେ ଶୂଳଧାରୀ ଶଙ୍କର ହୁଏ । ନବମୁଖୀ ରୁଦ୍ରାକ୍ଷକୁ ଭୈରବ ତଥା କପିଳମୁନିଙ୍କର ପ୍ରତୀକ ବୋଲି ଧରାଯାଏ ଅଥବା ନଅ ମୁଖଧାରିଣୀ ମହେଶ୍ୱରୀ ଦୁର୍ଗା ତାହାର

* ସର୍ବାଶ୍ରମାଣାଂ ବର୍ଣ୍ଣାନାଂ ସ୍ତ୍ରୀଶୂଦ୍ରାଣାଂ ଶିବାଜ୍ଞୟା । ଧାର୍ଯ୍ୟାଃ ସଦୈବ ରୁଦ୍ରାକ୍ଷା ................ ॥
(ଶି. ପୁ. ବି. ୨୫।୪୭)

ଅଧିଷ୍ଠାତ୍ରୀରୂପେ ବିବେଚିତ ହୁଅନ୍ତି । ଯେଉଁ ଭକ୍ତିପରାୟଣ ମନୁଷ୍ୟ ନିଜ ବାମହସ୍ତରେ ନବମୁଖୀ ରୁଦ୍ରାକ୍ଷ ଧାରଣ କରେ, ସେ ନିଶ୍ଚୟ ମୋ ପରି ସର୍ବେଶ୍ୱର ହୋଇଯାଏ–ଏଥିରେ ସଂଶୟ ନାହିଁ । ହେ ମହେଶ୍ୱରୀ ! ଦଶମୁଖୀ ରୁଦ୍ରାକ୍ଷ ସାକ୍ଷାତ୍ ଭଗବାନ ବିଷ୍ଣୁଙ୍କ ସ୍ୱରୂପ । ତାହାକୁ ଧାରଣ କଲେ ମନୁଷ୍ୟର ସମସ୍ତ କାମନା ପୂର୍ଣ୍ଣ ହୁଏ । ଏକାଦଶମୁଖୀ ରୁଦ୍ରାକ୍ଷ ରୁଦ୍ରଙ୍କ ରୂପ ଅଟେ । ତାହାକୁ ଧାରଣ କଲେ ମନୁଷ୍ୟ ସର୍ବତ୍ର ବିଜୟୀ ହୁଏ । ଦ୍ୱାଦଶମୁଖବିଶିଷ୍ଟ ରୁଦ୍ରାକ୍ଷକୁ କଟିପ୍ରଦେଶରେ ଧାରଣ କରିବା ଉଚିତ । ତାହାକୁ ଧାରଣ କଲେ ସତେଯେପରି ମସ୍ତକ ଉପରେ ଦ୍ୱାଦଶ ଆଦିତ୍ୟ ବିରାଜମାନ ହୋଇଯାଆନ୍ତି । ତ୍ରୟୋଦଶମୁଖୀ ରୁଦ୍ରାକ୍ଷ ବିଶ୍ୱେଦେବଙ୍କର ସ୍ୱରୂପ । ତାହାକୁ ଧାରଣ କଲେ ମନୁଷ୍ୟ ସମସ୍ତ ଅଭୀଷ୍ଟ ଫଳ ତଥା ସୌଭାଗ୍ୟ ଓ ମଙ୍ଗଳ ଲାଭ କରେ । ଚତୁର୍ଦ୍ଦଶମୁଖଯୁକ୍ତ ରୁଦ୍ରାକ୍ଷ ପରମ ଶିବରୂପ ଅଟେ । ତାହାକୁ ଭକ୍ତିପୂର୍ବକ ମସ୍ତକରେ ଧାରଣ କଲେ ସମସ୍ତ ପାପ ନଷ୍ଟ ହୋଇଥାଏ ।

ହେ ଗିରିରାଜକୁମାରୀ ! ମୁଁ ମୁଖ ଭେଦରେ ରୁଦ୍ରାକ୍ଷର ଚଉଦ ପ୍ରକାର ପ୍ରଭେଦ କଥା କହିଲି । ଏବେ ତୁମେ ଯଥାକ୍ରମେ ସେହିସବୁ ରୁଦ୍ରାକ୍ଷକୁ ଧାରଣ କରିବାର ମନ୍ତ୍ର ପ୍ରସନ୍ନତାପୂର୍ବକ ଶୁଣ । ୧- ଓଁ ହ୍ରୀଂ ନମଃ, ୨- ଓଁ ନମଃ, ୩- ଓଁ କ୍ଲୀଂ ନମଃ, ୪- ଓଁ ହ୍ରୀଂ ନମଃ, ୫- ଓଁ ହ୍ରୀଂ ନମଃ, ୬- ଓଁ ହ୍ରୀଂ ହୁଂ ନମଃ, ୭- ଓଁ ହୁଂ ନମଃ, ୮- ଓଁ ହୁଂ ନମଃ, ୯- ଓଁ ହ୍ରୀଂ ହୁଂ ନମଃ, ୧୦- ଓଁ ହ୍ରୀଂ ନମଃ, ୧୧- ଓଁ ହ୍ରୀଂ ହୁଂ ନମଃ, ୧୨- ଓଁ କ୍ରୌଂ କ୍ଷୌଂ ରୌଂ ନମଃ, ୧୩- ଓଁ ହ୍ରୀଂ ନମଃ, ୧୪- ଓଁ ନମଃ । ଏ ଚଉଦଟି ମନ୍ତ୍ରରେ ଯଥାକ୍ରମେ ଏକମୁଖୀ ଠାରୁ ଚଉଦମୁଖୀ ପର୍ଯ୍ୟନ୍ତ ରୁଦ୍ରାକ୍ଷକୁ ଧାରଣ କରିବାର ବିଧାନ ଅଛି । ସାଧକ ନିଦ୍ରା ଓ ଆଳସ୍ୟ ବର୍ଜନ କରି, ଶ୍ରଦ୍ଧାଭକ୍ତିସମ୍ପନ୍ନ ହୋଇ, ସମସ୍ତ ମନୋରଥ ସିଦ୍ଧି ପାଇଁ ଉକ୍ତ ମନ୍ତ୍ରମାନ ପଢ଼ି ସେହିସବୁ ରୁଦ୍ରାକ୍ଷକୁ ଧାରଣ କରିବା ଉଚିତ । ରୁଦ୍ରାକ୍ଷମାଳା ଧାରଣ କରିଥିବା ମନୁଷ୍ୟକୁ ଦେଖିବାମାତ୍ରେ ଭୂତ, ପ୍ରେତ, ପିଶାଚ, ଡାକିନୀ, ଶାକିନୀ ତଥା ଅନ୍ୟାନ୍ୟ ଦ୍ରୋହୀ ରାକ୍ଷସ ପ୍ରଭୃତି ଦୂରକୁ ପଳାୟନ କରନ୍ତି । ଯଦି କୃତ୍ରିମ ଅଭିଚାର ଇତ୍ୟାଦି ପ୍ରୟୋଗ କରାଯାଇଥାଏ, ସେଗୁଡ଼ିକ ମଧ୍ୟ ରୁଦ୍ରାକ୍ଷଧାରୀକୁ ଦେଖି ସଶଙ୍କିତ ହୋଇ ଦୂରକୁ ପଳାଇଯାଆନ୍ତି । ହେ ପାର୍ବତୀ ! ରୁଦ୍ରାକ୍ଷମାଳାଧାରୀ ବ୍ୟକ୍ତିକୁ ଦେଖି ସ୍ୱୟଂ ମୁଁ ଶିବ, ଭଗବାନ ବିଷ୍ଣୁ, ଦେବୀ ଦୁର୍ଗା, ଗଣେଶ, ସୂର୍ଯ୍ୟ ଓ ଅନ୍ୟ ଦେବତାମାନେ ମଧ୍ୟ ପ୍ରସନ୍ନ ହୋଇଥାନ୍ତି । ହେ ମହେଶ୍ୱରୀ ! ରୁଦ୍ରାକ୍ଷର ଏପରି ମହିମା ଜାଣି ଧର୍ମବୃଦ୍ଧି ନିମନ୍ତେ ଭକ୍ତିପୂର୍ବକ ପୂର୍ବୋକ୍ତ ମନ୍ତ୍ର ପଢ଼ି ବିଧିବତ୍ ତାହାକୁ ଧାରଣ କରିବା ଉଚିତ ।

ମୁନୀଶ୍ୱରଗଣ ! ଭଗବାନ ଶିବ ଦେବୀ ପାର୍ବତୀଙ୍କୁ ଯାହା କିଛି କହିଥିଲେ, ମୁଁ ସେସବୁ ତୁମ ପ୍ରଶ୍ନାନୁସାରେ କହିଦେଲି । ମୁଁ ତୁମମାନଙ୍କ ସମକ୍ଷରେ ଏହିରୂପେ ବିଦ୍ୟେଶ୍ୱରସଂହିତା ବର୍ଣ୍ଣନା କରିଦେଲି । ଏହି ସଂହିତା ସମସ୍ତ ସିଦ୍ଧି ପ୍ରଦାନ କରିଥାଏ ତଥା ଭଗବାନ ଶିବଙ୍କ ଆଜ୍ଞାରେ ମୋକ୍ଷ ପ୍ରଦାନ କରିଥାଏ । (ଅଧ୍ୟାୟ ୨୫)



## ॥ ବିଦ୍ୟେଶ୍ୱରସଂହିତା ସମ୍ପୂର୍ଣ୍ଣ ॥



# ରୁଦ୍ରସଂହିତା, ପ୍ରଥମ (ସୃଷ୍ଟି) ଖଣ୍ଡ

## ଋଷିଗଣଙ୍କ ପ୍ରଶ୍ନର ଉତ୍ତରରେ ସୂତମୁନିଙ୍କ ଦ୍ୱାରା ନାରଦ ଓ ବ୍ରହ୍ମାଙ୍କ ସଂବାଦର ଅବତାରଣା, ନାରଦଙ୍କ ମୋହ ପ୍ରସଙ୍ଗ, କାମବିଜୟ ଗର୍ବରେ ଉନ୍ମତ୍ତ ନାରଦ ଶିବ, ବ୍ରହ୍ମା ଓ ବିଷ୍ଣୁଙ୍କ ନିକଟକୁ ଯାଇ ସ୍ୱମୁଖରେ ନିଜ ତପସ୍ୟାର ପ୍ରଭାବ ଜଣାଇବା ପ୍ରସଙ୍ଗ

ବିଶ୍ୱୋଦ୍ଭବସ୍ଥିତିଲୟାଦିଷୁ ହେତୁମେକଂ
ଗୌରୀପତିଂ ବିଦିତତତ୍ତ୍ୱମନନ୍ତକୀର୍ତ୍ତିମ୍ ।
ମାୟାଶ୍ରୟଂ ବିଗତମାୟମଚିନ୍ତ୍ୟରୂପଂ
ବୋଧସ୍ୱରୂପମମଲଂ ହି ଶିବଂ ନମାମି ।।

**ଯେଉଁ ଭଗବାନ ଶିବ ବିଶ୍ୱର ସୃଷ୍ଟି, ସ୍ଥିତି ଓ ଲୟର ଏକମାତ୍ର କାରଣ, ଯେ ଗିରିରାଜକୁମାରୀ ଉମାଙ୍କର ସ୍ୱାମୀ ଓ ତତ୍ତ୍ୱଜ୍ଞ, ଯାହାଙ୍କର କୀର୍ତ୍ତି ଅନନ୍ତ, ଯେ ମାୟାର ଆଶ୍ରୟ ହୋଇ ମଧ୍ୟ ତା'ଠାରୁ ଅତ୍ୟନ୍ତ ଦୂରରେ ତଥା ଯାହାଙ୍କର ସ୍ୱରୂପ ଅଚିନ୍ତ୍ୟ, ସେହି ବିମଳ ବୋଧସ୍ୱରୂପ ଭଗବାନ ଶିବଙ୍କୁ ମୁଁ ପ୍ରଣାମ କରୁଛି ।**

ବନ୍ଦେ ଶିବଂ ତଂ ପ୍ରକୃତେରନାଦିଂ
ପ୍ରଶାନ୍ତମେକଂ ପୁରୁଷୋତ୍ତମଂ ହି ।
ସ୍ୱମାୟୟା କୃତ୍ସ୍ନମିଦଂ ହି ସୃଷ୍ଟ୍ୱା
ନଭୋବଦନ୍ତର୍ବହିରାସ୍ଥିତୋ ଯଃ ।।

**ମୁଁ ସ୍ୱଭାବତଃ ସେହି ଅନାଦି ଶାନ୍ତସ୍ୱରୂପ ଏକମାତ୍ର ପୁରୁଷୋତ୍ତମ ଶିବଙ୍କୁ ବନ୍ଦନା କରୁଛି, ଯେ ତାଙ୍କ ମାୟା ଦ୍ୱାରା ଏ ସମଗ୍ର ବିଶ୍ୱକୁ ସୃଷ୍ଟି କରି ଆକାଶ ପରି ତାହାର ବାହ୍ୟ ଓ ଅଭ୍ୟନ୍ତରରେ ବିଦ୍ୟମାନ ଅଛନ୍ତି ।**

ବନ୍ଦେଽନ୍ତରସ୍ଥଂ ନିଜଗୂଢ଼ରୂପଂ
ଶିବଂ ସ୍ୱତଃସ୍ରଷ୍ଟୁମିଦଂ ବିଚଷ୍ଟେ ।
ଜଗନ୍ତି ନିତ୍ୟଂ ପରିତୋ ଭ୍ରମନ୍ତି
ଯତ୍ସନ୍ନିଧୌ ଚୁମ୍ବକଲୋହବତ୍ତମ୍ ।।

**ଚୁମ୍ବକ ଦ୍ୱାରା ଆକୃଷ୍ଟ ହୋଇ ଲୌହ ତାହାର ସାନ୍ନିଧ୍ୟରେ ରହିଲା ପରି ସମଗ୍ର ଜଗତ ସର୍ବଦା ଯାହାଙ୍କର ଚତୁର୍ଦ୍ଦିଗରେ ଭ୍ରମଣ କରୁଛି, ଯେ ନିଜେ ହିଁ ଏହି ପ୍ରପଞ୍ଚ (ଜଗତ)କୁ ରଚନା କରିବାର ବିଧି ଜଣାଇ ଦେଇଥିଲେ, ଯେ ସମସ୍ତଙ୍କ ଭିତରେ ଅନ୍ତର୍ଯାମୀ ରୂପରେ ବିରାଜମାନ ତଥା ଯାହାଙ୍କର ସ୍ୱରୂପ ଅତ୍ୟନ୍ତ ଗୂଢ଼, ସେହି ଭଗବାନ ଶିବଙ୍କୁ ମୁଁ ସାଦର ବନ୍ଦନା କରୁଛି ।**

ବ୍ୟାସଦେବ କହୁଛନ୍ତି—**ଜଗତର ପିତା ଭଗବାନ ଶିବ ଜଗନ୍ମାତା କଲ୍ୟାଣମୟୀ ପାର୍ବତୀ ତଥା ତାଙ୍କର ପୁତ୍ର ଶ୍ରୀଗଣେଶଙ୍କୁ ନମସ୍କାର କରି ମୁଁ ଏହି ପୁରାଣ ବର୍ଣ୍ଣନା କରୁଛି । ଏକଦା ନୈମିଷାରଣ୍ୟରେ ନିବାସ କରୁଥିବା ଶୌନକାଦି ଋଷିଗଣ ଅତ୍ୟନ୍ତ ଭକ୍ତିଭାବରେ ସୂତମୁନିଙ୍କୁ ଏହିରୂପେ ପ୍ରଶ୍ନ କଲେ—**

ଋଷିଗଣ କହିଲେ—**ହେ ମହାଭାଗ ସୂତ !**

ବିଦ୍ୟେଶ୍ୱରସଂହିତାର ସାଧ୍ୟସାଧନ ଖଣ୍ଡ ନାମକ ଅତି ଶୁଭଙ୍କର କଥା ଆମେ ଶ୍ରବଣ କଲୁ । ତାହାର ଆଦ୍ୟଭାଗ ଅତ୍ୟନ୍ତ ରମଣୀୟ ଏବଂ ତାହା ଶିବଭକ୍ତଙ୍କ ଉପରେ ଶିବଙ୍କର ବାତ୍ସଲ୍ୟ ସ୍ନେହ ବୃଷ୍ଟି କରିଥାଏ । ହେ ବିଦ୍ୱାନ୍ ! ଏଥର ଆପଣ ଭଗବାନ ଶିବଙ୍କର ପରମୋତ୍ତମ ସ୍ୱରୂପ ବିଷୟରେ ବର୍ଣ୍ଣନା କରନ୍ତୁ । ଏହାଛଡ଼ା ଶିବ ଓ ପାର୍ବତୀଙ୍କ ଦିବ୍ୟ ଚରିତ ମଧ୍ୟ ପୂର୍ଣ୍ଣରୂପେ ବର୍ଣ୍ଣନା କରନ୍ତୁ । ଆମର ପ୍ରଶ୍ନ ଯେ ନିର୍ଗୁଣ ମହେଶ୍ୱର ଜଗତରେ ସଗୁଣ ରୂପ କିପରି ଧାରଣ କରନ୍ତି? ଆମେ ଚିନ୍ତନ-ମନନ କରି ମଧ୍ୟ ଶିବଙ୍କ ତତ୍ତ୍ୱକୁ ବୁଝିପାରୁ ନାହୁଁ । ସୃଷ୍ଟିର ପୂର୍ବରୁ ଶିବ କିପରିଭାବରେ ତାଙ୍କ ସ୍ୱରୂପରେ ସ୍ଥିତ ରହିଥାନ୍ତି? ପୁଣି ସୃଷ୍ଟିର ମଧ୍ୟକାଳରେ କିପରିଭାବରେ ନାନା କ୍ରୀଡ଼ା କରିବା ସହ ସମ୍ୟକ୍‌ରୂପେ ବ୍ୟବହାର କରିଥାନ୍ତି ଏବଂ ସୃଷ୍ଟିକଳ୍ପର ଅନ୍ତ ହୋଇଯିବା ପରେ ସେ କେଉଁ ରୂପରେ ରହିଥାନ୍ତି? ଲୋକକଲ୍ୟାଣକାରୀ ଶଙ୍କର କିଭଳି ପ୍ରସନ୍ନ ହୋଇଥାନ୍ତି? ଏବଂ ପ୍ରସନ୍ନ ହୋଇ ସେ ତାଙ୍କର ଭକ୍ତଙ୍କୁ ଓ ଅନ୍ୟମାନଙ୍କୁ କେଉଁ ପ୍ରକାର ଉତ୍ତମ ଫଳ ପ୍ରଦାନ କରିଥାନ୍ତି? ଏସବୁ କଥା ଆମକୁ କହନ୍ତୁ । ଆମ୍ଭେ ଶୁଣିଛୁ ଯେ ଶିବ ଶୀଘ୍ର ପ୍ରସନ୍ନ ହୋଇଯାଆନ୍ତି । ସେ ଅତ୍ୟନ୍ତ ଦୟାଳୁ । ସେ ତାଙ୍କ ଭକ୍ତଙ୍କର କଷ୍ଟ ଦେଖି ସହି ପାରନ୍ତି ନାହିଁ । ବ୍ରହ୍ମା, ବିଷ୍ଣୁ ଓ ମହେଶ—ଏ ତିନି ଦେବତା ଶିବଙ୍କ ଅଙ୍ଗରୁ ହିଁ ଉତ୍ପନ୍ନ ହୋଇଛନ୍ତି । ସେମାନଙ୍କ ପ୍ରାକଟ୍ୟର କଥା ଓ ସେମାନଙ୍କର ବିଶେଷ ଚରିତ ମଧ୍ୟ ବର୍ଣ୍ଣନା କରନ୍ତୁ । ପ୍ରଭୁ ! ଉମାଙ୍କ ଆବିର୍ଭାବ ଓ ବିବାହ କଥା ମଧ୍ୟ କୁହନ୍ତୁ । ବିଶେଷତଃ ତାଙ୍କର ଗାର୍ହସ୍ଥ୍ୟଧର୍ମ ଓ ଅନ୍ୟାନ୍ୟ ଲୀଳା ବିଷୟରେ ମଧ୍ୟ କହନ୍ତୁ । ହେ ସୂତ ! ଆମ ପ୍ରଶ୍ନର ଉତ୍ତର ଦେବା ସହ ଅନ୍ୟାନ୍ୟ ବିଷୟ ମଧ୍ୟ କହନ୍ତୁ ।

ସୂତମୁନି କହିଲେ—ହେ ମୁନୀଶ୍ୱରଗଣ ! ଆପଣମାନେ ଅତି ଉତ୍ତମ କଥା ପଚ୍ଚାରିଛନ୍ତି । ଭଗବାନ ସଦାଶିବଙ୍କ ଚରିତ ପ୍ରତି ଆପଣମାନଙ୍କର ଆତ୍ୟନ୍ତିକ ନିଷ୍ଠା ରହିଛି, ତେଣୁ ଆପଣମାନେ ଧନ୍ୟବାଦର ପାତ୍ର । ହେ ବ୍ରାହ୍ମଣବୃନ୍ଦ ! ଭଗବାନ ଶିବଙ୍କର ଗୁଣାନୁବାଦ ସାତ୍ତ୍ୱିକ, ରାଜସ ଓ ତାମସ ସମସ୍ତ ପ୍ରକୃତିର ଲୋକଙ୍କୁ ସଦା ଆନନ୍ଦ ପ୍ରଦାନ କରିଥାଏ । ପଶୁହିଂସାରତ କଂସେଇ ବ୍ୟତୀତ ଏପରି ଆଉ କିଏ ଅଛି, ଯାହାକୁ ସେହି ଗୁଣାନୁବାଦ ଭଲ ନ ଲାଗିବ? ଯେଉଁ ମହାତ୍ମାଙ୍କ ମନରେ କୌଣସି ପ୍ରକାର ତୃଷ୍ଣା ନାହିଁ, ସେମାନେ ମଧ୍ୟ ଭଗବାନ ଶିବଙ୍କ ଗୁଣଗାନ କରିଥାନ୍ତି; କାରଣ ତାଙ୍କ ଗୁଣାବଳୀ ଭବରୋଗ ନିମନ୍ତେ ଔଷଧସ୍ୱରୂପ ଏବଂ ମନ ଓ କର୍ଣ୍ଣ ନିମନ୍ତେ ପ୍ରିୟ, ପୁଣି ତାହା ସମସ୍ତ ମନୋରଥ ବି ପୂର୍ଣ୍ଣ କରିଥାଏ ।* ହେ ବ୍ରାହ୍ମଣବୃନ୍ଦ ! ଆପଣମାନଙ୍କ ପ୍ରଶ୍ନାନୁସାରେ ମୁଁ ଯଥାମତି ଶିବଲୀଳା ବର୍ଣ୍ଣନା କରୁଛି, ଆଦରପୂର୍ବକ ଶ୍ରବଣ କରନ୍ତୁ । ଆପଣମାନଙ୍କ ପରି ଥରେ ଦେବର୍ଷି ନାରଦ ମଧ୍ୟ ଶିବରୂପୀ ଭଗବାନ ବିଷ୍ଣୁଙ୍କ ଦ୍ୱାରା ପ୍ରେରିତ ହୋଇ ତାଙ୍କ ପିତାଙ୍କୁ ପଚ୍ଚାରିଥିଲେ । ପୁତ୍ର ନାରଦଙ୍କ ପ୍ରଶ୍ନ ଶୁଣି ଶିବଭକ୍ତ ବ୍ରହ୍ମାଙ୍କ ଚିତ୍ତ ପ୍ରସନ୍ନ ହୋଇଗଲା । ସେ ସେହି ମୁନିଶିରୋମଣିଙ୍କୁ ହର୍ଷିତ କରିବା ନିମନ୍ତେ ପ୍ରେମପୂର୍ଣ୍ଣ ଚିତ୍ତରେ ଭଗବାନ ଶିବଙ୍କର ଯଶୋଗାଥା ଗାନ କରିଥିଲେ ।

---

* ଶମ୍ଭୋର୍ଗୁଣାନୁବାଦାତ୍ କୋ ବିରଜ୍ୟେତ ପୁମାନ୍ ଦ୍ୱିଜାଃ । ବିନା ପଶୁଘ୍ନଂ ତ୍ରିବିଧଜନାନନ୍ଦକରାତ୍ ସଦା ॥
ଗୀୟମାନୋ ବିତୃଷ୍ଣୈଶ୍ଚ ଭବରୋଗୌଷଧୋଽପି ହି । ମନଃଶ୍ରୋତ୍ରାଦିରାମଶ୍ଚ ଯତଃ ସର୍ବାର୍ଥଦଃ ସ ବୈ ॥
(ଶି. ପୁ. ରୁଦ୍ର. ସୃ. ୧ । ୨୩-୨୪)

ଏକଦା ବ୍ରହ୍ମାଙ୍କ ପୁତ୍ର ମୁନିଶିରୋମଣି ବିପ୍ରବର ନାରଦ ବିନୀତଚିତ୍ତରେ ତପସ୍ୟାରେ ମନୋନିବେଶ କଲେ । ହିମାଳୟରେ ଗୋଟିଏ ରମଣୀୟ ଶୋଭାସମ୍ପନ୍ନ ଗୁମ୍ଫା ଥିଲା । ତାହାର ସନ୍ନିକଟରେ ଦେବନଦୀ ଗଙ୍ଗା ତୀବ୍ର ଗତିରେ ପ୍ରବାହିତ ହେଉଥିଲା । ସେଠାରେ ନାନା ଶୋଭାରେ ସୁଶୋଭିତ ଗୋଟିଏ ଦିବ୍ୟ ଆଶ୍ରମ ଥିଲା । ଦିବ୍ୟଦର୍ଶୀ ନାରଦ ତପସ୍ୟା କରିବା ନିମନ୍ତେ ସେହି ଆଶ୍ରମକୁ ଗଲେ । ଉକ୍ତ ଗୁମ୍ଫାକୁ ଦେଖି ପ୍ରସନ୍ନ ହୋଇ ସେ ସୁଦୀର୍ଘକାଳ ପର୍ଯ୍ୟନ୍ତ ସେଠାରେ ତପସ୍ୟାରତ ରହିଲେ । ତାଙ୍କର ଅନ୍ତଃକରଣ ଶୁଦ୍ଧ ଥିଲା, ସେ ଅଚଳଭାବରେ ଆସନରେ ବସି ପ୍ରାଣାୟାମପୂର୍ବକ ମୌନ ହୋଇ ସମାଧିସ୍ଥ ହୋଇଗଲେ ।



ବ୍ରାହ୍ମଣବୃନ୍ଦ! ତାହା ଥିଲା 'ଅହଂ ବ୍ରହ୍ମାସ୍ମି' (ମୁଁ ବ୍ରହ୍ମ)—ଏହି ବିଜ୍ଞାନ ପ୍ରକଟ ହେବା ଭଳି ସମାଧି । ମୁନିବର ନାରଦ ଏପରି ତପସ୍ୟା କରୁଥିବା କଥା ଜାଣି ଦେବରାଜ ଇନ୍ଦ୍ର ଭୟଭୀତ ହୋଇଗଲେ । ସେ ମାନସିକ ସଂତାପରେ ବିହ୍ୱଳ ହୋଇଉଠିଲେ । 'ଏ ନାରଦ ମୁନି ମୋର ରାଜ୍ୟ ଛଡ଼ାଇ ନେବେ'—ଏହି ଭୟରେ ସେ ତାଙ୍କ ତପସ୍ୟାରେ ବିଘ୍ନ ସୃଷ୍ଟି କରିବାକୁ ମନସ୍ଥ କଲେ । ସେ ମନେ ମନେ କାମଦେବଙ୍କୁ ସ୍ମରଣ କଲେ । ସ୍ମରଣମାତ୍ରକେ କାମଦେବ ସେଠାରେ ଉପସ୍ଥିତ ହୋଇଗଲେ । ମହେନ୍ଦ୍ର ତାଙ୍କୁ ନାରଦଙ୍କ ତପସ୍ୟାରେ ବିଘ୍ନ ସୃଷ୍ଟି କରିବାକୁ ଆଦେଶ ଦେଲେ । ଆଜ୍ଞା ପାଇବାମାତ୍ରେ କାମଦେବ ବସନ୍ତଋତୁକୁ ସଙ୍ଗରେ ନେଇ ବଡ଼ ଗର୍ବ ସହକାରେ ନାରଦଙ୍କ ତପଃସ୍ଥଳୀକୁ ଯାଇ ଆପଣା ପ୍ରଚେଷ୍ଟା ଆରମ୍ଭ କରିଦେଲେ । ସେ ତାଙ୍କର କଳାକୌଶଳ ପ୍ରୟୋଗ କଲେ । ବସନ୍ତ ମଧ୍ୟ ମଦମତ୍ତ ହୋଇ ତାହାର ପ୍ରଭାବ ପ୍ରକଟ କଲା । ହେ ମୁନିବର ! କାମଦେବ ଓ ବସନ୍ତ ସେମାନଙ୍କର ଯଥାସାଧ୍ୟ ଶକ୍ତି ପ୍ରୟୋଗ କରିବା ସତ୍ତ୍ୱେ ନାରଦଙ୍କ ଚିତ୍ତରେ ଟିକିଏ ବି ବିକାର ସୃଷ୍ଟି ହେଲା ନାହିଁ । ମହାଦେବଙ୍କ ଅନୁଗ୍ରହରୁ ସେ ଅବିଚଳିତ ରହିଲେ ଏବଂ ଏ ଦୁହିଙ୍କର ଗର୍ବ ଖର୍ବ ହୋଇଗଲା ।

ହେ ଋଷିଗଣ ! ଏଭଳି ହେବାରେ ଯାହା କାରଣ ଥିଲା, ସେ ବିଷୟରେ ଶୁଣନ୍ତୁ । ମହାଦେବଙ୍କ କୃପାରୁ ହିଁ ନାରଦଙ୍କ ଉପରେ କାମଦେବଙ୍କର କୌଣସି ପ୍ରଭାବ ପଡ଼ିଲା ନାହିଁ । ପୂର୍ବେ ସେହି ଆଶ୍ରମରେ କାମନାଶନ ମହାଦେବ ଉତ୍ତମ ତପସ୍ୟା କରିଥିଲେ ଏବଂ ମୁନିମାନଙ୍କର ତପଭଙ୍ଗ କରୁଥିବା କାମଦେବଙ୍କୁ ଭସ୍ମ କରିଦେଇଥିଲେ । ସେତେବେଳେ ରତିଦେବୀ ତାଙ୍କ ସ୍ୱାମୀ କାମଦେବଙ୍କୁ ପୁନଃ ଜୀବିତ କରିଦେବାକୁ ଦେବଗଣଙ୍କୁ ପ୍ରାର୍ଥନା କରିଥିଲେ । ପୁଣି ଦେବଗଣ ମଧ୍ୟ ଲୋକକଲ୍ୟାଣକାରୀ ମହାଦେବଙ୍କୁ ଏହି କଥା ଯାଚନା କରିଥିଲେ । ସେମାନଙ୍କ କଥା ଶୁଣି

ମହାଦେବ କହିଥିଲେ, ''ହେ ଦେବଗଣ ! କିଛି କାଳ ଅତିକ୍ରାନ୍ତ ହେବା ପରେ କାମଦେବ ପୁନଃ ଜୀବିତ ହୋଇଯିବେ, କିନ୍ତୁ ଏଠାରେ ତାଙ୍କର ପ୍ରଭାବ ସଫଳ ହେବ ନାହିଁ। ଏଠାରେ ଠିଆ ହେଲେ ଚତୁର୍ଦ୍ଦିଗରେ ଯେତେ ଦୂର ପର୍ଯ୍ୟନ୍ତ ସ୍ଥାନ ଦୃଷ୍ଟିଗୋଚର ହେଉଛି, ସେପର୍ଯ୍ୟନ୍ତ କାମଦେବଙ୍କର ଶର ନିରର୍ଥକ ହୋଇଯିବ–ଏଥିରେ ସଂଶୟ ନାହିଁ।'' ଭଗବାନ ଶିବଙ୍କର ଏହି ବାକ୍ୟ ହେତୁ ନାରଦଙ୍କ ପ୍ରତି ପ୍ରଯୁକ୍ତ କାମଦେବଙ୍କର ସମସ୍ତ ଉପାୟ ବିଫଳ ହୋଇଗଲା। ସେ ବସନ୍ତ ସହିତ ଇନ୍ଦ୍ରଙ୍କ ନିକଟକୁ ଫେରିଯାଇ ନିଜର ସମସ୍ତ ପ୍ରଚେଷ୍ଟା ଓ ନାରଦଙ୍କର ପ୍ରଭାବ (ମହିମା) କଥା ଶୁଣାଇଲେ ଏବଂ ଇନ୍ଦ୍ରଙ୍କ ଆଜ୍ଞା ପାଇ ନିଜ ସ୍ଥାନକୁ ଲେଉଟିଗଲେ। ଦେବରାଜ ଇନ୍ଦ୍ର ଆଶ୍ଚର୍ଯ୍ୟରେ ଚକିତ ହୋଇଗଲେ। ସେ ନାରଦଙ୍କର ଭୂରି ଭୂରି ପ୍ରଶଂସା କଲେ। ମାତ୍ର ଶିବମାୟାରେ ମୋହିତ ହୋଇଥିବାରୁ ସେ ପୂର୍ବବୃତ୍ତାନ୍ତକୁ ସ୍ମରଣ କରିପାରିଲେ ନାହିଁ। ବାସ୍ତବରେ ଶମ୍ଭୁଙ୍କ ମାୟାକୁ ଜାଣି ପାରିବା ଜଗତର ସବୁ ପ୍ରାଣୀଙ୍କ ପକ୍ଷେ ସହଜ କଥା ନୁହେଁ। କେବଳ ଶିବଚରଣରେ ନିଜକୁ ସମର୍ପିତ କରିଥିବା ଭକ୍ତଙ୍କ ଛଡ଼ା ଜଗତର ସମସ୍ତ ପ୍ରାଣୀ ତାଙ୍କ ମାୟାରେ ମୋହିତ ହୋଇ ଯାଆନ୍ତି।* ମହାଦେବଙ୍କ କୃପାରୁ ନାରଦ ସେଠାରେ ଦୀର୍ଘକାଳ ପର୍ଯ୍ୟନ୍ତ ତପସ୍ୟାରେ ମଗ୍ନ ରହିଲେ। ତାଙ୍କର ତପସ୍ୟା ପୂର୍ଣ୍ଣ ହେବା ପରେ ସେ ସେଠାରୁ ଚାଲିଆସିଲେ। ମାତ୍ର 'କାମଦେବଙ୍କ ଉପରେ ମୁଁ ବିଜୟୀ ହେଲି'–ଏଭଳି ଭାବି ମୁନୀଶ୍ୱରଙ୍କ ମନରେ ବୃଥା ଗର୍ବ ଉଦିତ ହୋଇଗଲା। ଶିବମାୟାରେ ମୋହିତ ହୋଇ ସେ ଯଥାର୍ଥ ରହସ୍ୟକୁ ଜାଣିପାରିଲେ ନାହିଁ। (ସେ ବୁଝିପାରିଲେ ନାହିଁ ଯେ ଶିବଙ୍କ ପ୍ରଭାବ ହିଁ କାମଦେବଙ୍କ ପରାଜୟର କାରଣ)। ସେହି ମାୟାରେ ମୋହିତ ହୋଇ ମୁନିଶିରୋମଣି ନାରଦ ଅବିଲମ୍ବେ ନିଜର କାମବିଜୟ ବୃତ୍ତାନ୍ତ ଶୁଣାଇବାକୁ କୈଳାସ ପର୍ବତରେ ପହଞ୍ଚିଗଲେ। ସେତେବେଳେ ସେ ବିଜୟ ମଦରେ ଉନ୍ମତ୍ତ ହୋଇଯାଇଥିଲେ। ସେଠାରେ ପହଞ୍ଚି ସେ ରୁଦ୍ରଦେବଙ୍କୁ ନମସ୍କାର କଲେ ଏବଂ ଗର୍ବ ସହକାରେ ନିଜକୁ ବଡ଼ ମହାତ୍ମା ଭାବି ନିଜ ପ୍ରଭାବ ବଳରେ ହିଁ ସେ କାମଦେବଙ୍କ ଉପରେ ବିଜୟୀ ହୋଇଛନ୍ତି ବୋଲି ପ୍ରତିପାଦିତ କଲେ।

ସେହି ସବୁ ବୃତ୍ତାନ୍ତ ଶୁଣି ଭକ୍ତବତ୍ସଳ ଶିବ କାମବିଜୟର ଯଥାର୍ଥ ରହସ୍ୟକୁ ବୁଝି ପାରୁ ନ ଥିବା ତଥା ମାୟା-ବିମୋହିତ ହୋଇ ବିବେକ ହରାଇଥିବା ଆପଣା ଭକ୍ତ ନାରଦଙ୍କୁ ବୁଝାଇ କହିଲେ–

ରୁଦ୍ର କହିଲେ–**ବତ୍ସ ନାରଦ ! ତୁମେ ବଡ଼ ବିଦ୍ୱାନ୍ ଓ ଧନ୍ୟବାଦର ପାତ୍ର। ହେଲେ ମୋର ଗୋଟିଏ କଥା ମନ ଦେଇ ଶୁଣ। ଏଣିକି ଏ କଥା ଆଉ କେଉଁଠି କାହାକୁ ବି କହିବ ନାହିଁ। ବିଶେଷ କରି ଭଗବାନ ବିଷ୍ଣୁଙ୍କ ଆଗରେ କଦାପି ଏ ଚର୍ଚ୍ଚା କରିବ ନାହିଁ। ତୁମେ ମୋ ଆଗରେ ଯେଉଁ ବୃତ୍ତାନ୍ତ ଶୁଣାଇଲ, କେହି ପଚାରିଲେ ମଧ୍ୟ ତାକୁ ଏ କଥା କହିବ ନାହିଁ। ଏସବୁ ଋଦ୍ଧି-ସିଦ୍ଧି କଥା ଗୁପ୍ତ ରଖାଯାଏ, ଏହାକୁ କେଉଁଠି ପ୍ରକଟ କରିବା ଅନୁଚିତ। ତୁମେ ମୋର ଅତ୍ୟନ୍ତ ପ୍ରିୟ, ପୁଣି ତୁମେ ଭଗବାନ ବିଷ୍ଣୁଙ୍କର ଭକ୍ତ ଏବଂ ତାଙ୍କ ଭକ୍ତ ହୋଇ ମଧ୍ୟ ମୋର ଅନୁଗାମୀ। ତେଣୁ ତୁମକୁ ମୁଁ ଜୋର୍ ଦେଇ ଏ ଶିକ୍ଷା ଦେଉଛି ଏବଂ ଆଉ କେଉଁଠି ପ୍ରକାଶ**

* ଦୁର୍ଜ୍ଞେୟା ଶାମ୍ଭବୀ ମାୟା ସର୍ବେଷାଂ ପ୍ରାଣିନାମିହ। ଭକ୍ତଂ ବିନାର୍ପିତାତ୍ମାନଂ ତୟା ସମ୍ମୋହ୍ୟତେ ଜଗତ୍॥ (ଶି. ପୁ. ରୁଦ୍ର. ସୃ. ୨।୨୫)

ନ କରିବାକୁ ଆଦେଶ ଦେଉଛି ।

ଏହିରୂପେ ବହୁତ ବୁଝାଇ ସଂସାରର ସୃଜନକାରୀ ଭଗବାନ ରୁଦ୍ର ମୁନିବର ନାରଦଙ୍କୁ ଏହି ପ୍ରସଙ୍ଗ ଗୁପ୍ତ ରଖିବାକୁ ଶିକ୍ଷା ଦେଲେ । ମାତ୍ର ନାରଦ ତ ଶିବମାୟାରେ ମୋହିତ ଥିଲେ, ତେଣୁ ସେ ମନେ ମନେ ସେହି ଶିକ୍ଷାକୁ ନିଜ ପାଇଁ ହିତକର ମଣିଲେ ନାହିଁ । ତା'ପରେ ମୁନିଶିରୋମଣି ନାରଦ ବ୍ରହ୍ମଲୋକକୁ ଗଲେ । ସେଠାରେ ବ୍ରହ୍ମାଙ୍କୁ ପ୍ରଣାମ କରି କହିଲେ—''ପିତୃଦେବ ! ମୁଁ ମୋ ତପୋବଳରେ କାମଦେବଙ୍କୁ ଜିଣିଗଲି ।'' ନାରଦଙ୍କ କଥା ଶୁଣି ବ୍ରହ୍ମା ଶିବଙ୍କ ଚରଣାରବିନ୍ଦକୁ ଚିନ୍ତନ କଲେ ଏବଂ ସମସ୍ତ କାରଣ ଜାଣିସାରି ଆପଣା ପୁତ୍ରକୁ ଏସବୁ କଥା ଅନ୍ୟତ୍ର ପ୍ରକାଶ କରିବାକୁ ମନା କଲେ । କିନ୍ତୁ ନାରଦ ଶିବମାୟାରେ ମୋହିତ ଥିବାରୁ ତାଙ୍କ ଚିତ୍ତରେ କାମବିଜୟର ମଦ ଅଙ୍କୁରିତ ହୋଇଯାଇଥିଲା ଏବଂ ତାଙ୍କ ବୁଦ୍ଧି ଭ୍ରଷ୍ଟ ହୋଇଯାଇଥିଲା ସେଥିପାଇଁ ସେ ସେହି ବୃତ୍ତାନ୍ତ ଭଗବାନ ବିଷ୍ଣୁଙ୍କ ସମ୍ମୁଖରେ କହିବାକୁ ସେଠାରୁ ଖୁବ୍ ଶୀଘ୍ର ବିଷ୍ଣୁଲୋକ ଅଭିମୁଖେ ଯାତ୍ରା କଲେ । ନାରଦଙ୍କୁ ଆସୁଥିବା ଦେଖି ଭଗବାନ ବିଷ୍ଣୁ ଅତି ଶୀଘ୍ର ଆଦରରେ ଉଠିଆସି ତାଙ୍କୁ ଆଲିଙ୍ଗନ କଲେ ଏବଂ ଆସନରେ ବସାଇଲେ । ଯଦିଓ ନାରଦଙ୍କ ଆଗମନର ବୃତ୍ତାନ୍ତ ତାଙ୍କୁ ପୂର୍ବରୁ ଜଣାଥିଲା, ତଥାପି ଶ୍ରୀହରି ମହାଦେବଙ୍କର ଚରଣାରବିନ୍ଦକୁ ଚିନ୍ତନ କରି ପଚ୍ଚାରିଲେ—

ଭଗବାନ ବିଷ୍ଣୁ କହିଲେ—**ବତ୍ସ !** ଏବେ କେଉଁଠୁ ଆସୁଛ? କେଉଁ ଅଭିପ୍ରାୟରେ ଏଠାକୁ ଆଗମନ ହେଲା? ହେ ମୁନିବର! ତୁମେ ଧନ୍ୟ। ତୁମର ଶୁଭାଗମନରେ ମୁଁ ପବିତ୍ର ହୋଇଗଲି ।

ଭଗବାନ ବିଷ୍ଣୁଙ୍କ ବାକ୍ୟ ଶୁଣି ଗର୍ବରେ ଉନ୍ମତ୍ତ ନାରଦମୁନି ମଦମୋହିତ ହୋଇ ନିଜର ସମସ୍ତ ବୃତ୍ତାନ୍ତ ଅତି ଅଭିମାନର ସହ ବର୍ଣ୍ଣନା



କରିଗଲେ । ନାରଦମୁନିଙ୍କ ଅହଙ୍କାରଯୁକ୍ତ ବାକ୍ୟ ଶୁଣି ଭଗବାନ ବିଷ୍ଣୁ ତାଙ୍କର କାମବିଜୟର ଯଥାର୍ଥ କାରଣକୁ ପୂର୍ଣ୍ଣରୂପେ ଜାଣିଗଲେ ।

ଏହାପରେ ଭଗବାନ ବିଷ୍ଣୁ କହିଲେ— ମୁନିଶ୍ରେଷ୍ଠ ! ତୁମେ ଧନ୍ୟ । ତୁମେ ତ ତପସ୍ୟାର ଭଣ୍ଡାର । ତୁମର ହୃଦୟ ମଧ୍ୟ ଅତି ଉଦାର । ହେ ମୁନି ! ଯାହା ହୃଦୟରେ ଭକ୍ତି, ଜ୍ଞାନ ଓ ବୈରାଗ୍ୟ ନ ଥାଏ, ତା' ମନରେ ସମସ୍ତ ଦୁଃଖର କାରଣ ହେଉଥିବା କାମ, ମୋହ ଆଦି ବିକାର ଖୁବ୍ ଶୀଘ୍ର ଉତ୍ପନ୍ନ ହୋଇଯାଆନ୍ତି । ତୁମେ ତ ନୈଷ୍ଠିକ ବ୍ରହ୍ମଚ୍ଚାରୀ ଓ ଜ୍ଞାନ-ବୈରାଗ୍ୟସମ୍ପନ୍ନ, ପୁଣି ତୁମ ଠାରେ କାମବିକାର ଅବା କେମିତି ଆସିପାରିବ ! ତୁମେ ତ ଜନ୍ମରୁ ହିଁ ନିର୍ବିକାର ଓ ତୁମର ବୁଦ୍ଧି ଶୁଦ୍ଧ ।

ଶ୍ରୀହରିଙ୍କ ମୁଖରୁ ଏସବୁ କଥା ଶ୍ରବଣ କରି ନାରଦମୁନି ଜୋରରେ ହସି ଉଠିଲେ ଏବଂ

ମନେ ମନେ ଭଗବାନଙ୍କୁ ପ୍ରଣାମ କରି କହିଲେ–

ନାରଦ କହିଲେ–"ସ୍ୱାମିନ୍ ! ମୋ ଉପରେ ଯେଣୁ ଆପଣଙ୍କର କୃପା, ସେଠି ବିଚରା କାମଦେବ କ'ଣ ବା ପ୍ରଭାବ ଦେଖାଇପାରିବ !" ଏଭଳି କହିବା ପରେ ଭଗବାନଙ୍କ ଚରଣରେ ମସ୍ତକ ଅବନତ କରି ସ୍ୱଚ୍ଛନ୍ଦ ବିଚରଣକାରୀ ନାରଦମୁନି ସେଠାରୁ ଚାଲିଗଲେ ।

(ଅଧ୍ୟାୟ ୧-୨)

✯✯✯

## ମାୟାନିର୍ମିତ ନଗରରେ ଶୀଳନିଧିଙ୍କ କନ୍ୟା ପ୍ରତି ନାରଦଙ୍କ ମୋହ, ବିଷ୍ଣୁଙ୍କୁ ତାଙ୍କ ରୂପ ପ୍ରଦାନ କରିବାକୁ ନାରଦଙ୍କ ପ୍ରାର୍ଥନା, ନାରଦଙ୍କୁ ବିଷ୍ଣୁଙ୍କ ସୁନ୍ଦର ରୂପ ସହିତ ବାନର ମୁଖ ପ୍ରାପ୍ତି, କନ୍ୟା ବିଷ୍ଣୁଙ୍କୁ ବରଣ କରିବାରୁ ନାରଦଙ୍କ ନୈରାଶ୍ୟ ଏବଂ ଶିବଗଣଙ୍କୁ କ୍ରୁଦ୍ଧ ନାରଦଙ୍କ ଅଭିଶାପ

ସୂତମୁନି କହିଲେ–ମହର୍ଷିଗଣ ! ନାରଦମୁନି ବିଷ୍ଣୁଙ୍କ ନିକଟରୁ ଚାଲିଯିବା ପରେ ଭଗବାନ ଶିବଙ୍କ ଇଚ୍ଛାରେ ମାୟାବିଶାରଦ ଶ୍ରୀହରି ଅବିଳମ୍ବେ ତାଙ୍କର ମାୟା ପ୍ରକଟ କରିଦେଲେ । ସେ ମୁନିଙ୍କ ଯିବା ବାଟରେ ଗୋଟିଏ ବିଶାଳ ନଗର ସୃଷ୍ଟି କରିଦେଲେ, ଯାହା କି ଶହେ ଯୋଜନ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସେହି ଅଦ୍ଭୁତ ନଗରଟି ଅତି ମନୋହର ଥିଲା । ଭଗବାନ ତାହାକୁ ବୈକୁଣ୍ଠଠାରୁ ମଧ୍ୟ ଅଧିକ ରମଣୀୟ କରି ରଚିଥିଲେ । ନାନା ପ୍ରକାର ବସ୍ତୁ ସେହି ନଗରର ଶୋଭାବର୍ଦ୍ଧନ କରୁଥିଲା । ସେଠାରେ ନରନାରୀଙ୍କ ନିମନ୍ତେ ଅନେକ ବିହାରସ୍ଥଳ ଥିଲା । ନଗରରେ ଚାରିବର୍ଣ୍ଣର ଲୋକେ ନିବାସ କରୁଥିଲେ । ସେଠାରେ ଶୀଳନିଧି ନାମକ ଜଣେ ଐଶ୍ୱର୍ଯ୍ୟଶାଳୀ ରାଜା ରାଜୁତି କରୁଥିଲେ । ସେ ତାଙ୍କ କନ୍ୟାର ସ୍ୱୟଂବର ନିମନ୍ତେ ପ୍ରସ୍ତୁତି କରୁଥିଲେ । ସେଥିପାଇଁ ସେ ଗୋଟିଏ ଉତ୍ସବର ଆୟୋଜନ କରିଥିଲେ । ତାଙ୍କ କନ୍ୟା ସଙ୍ଗେ ବିବାହ କରିବା ମାନସରେ ଦିଗଦିଗନ୍ତରୁ ଅନେକ ରାଜକୁମାର ନାନା ପ୍ରକାର ବେଶଭୂଷା ଓ ଶୋଭାରେ ମଣ୍ଡିତ ହୋଇ ସେଠାରେ ପଦାର୍ପଣ କରିଥିଲେ । ନଗରଟି ରାଜକୁମାରଙ୍କ ଉପସ୍ଥିତିରେ ଆହୁରି ଶୋଭମାନ ହେଉଥିଲା । ଏଭଳି ସୁନ୍ଦର ନଗରକୁ ଦେଖି ନାରଦ ମୋହିତ ହୋଇଗଲେ । ସେ ରାଜା ଶୀଳନିଧିଙ୍କ ଦ୍ୱାରକୁ ଗଲେ । ମୁନିଶିରୋମଣିଙ୍କୁ ଦେଖି ମହାରାଜ ଶୀଳନିଧି ତାଙ୍କୁ ପାଛୋଟି ନେଇ ଶ୍ରେଷ୍ଠ ରତ୍ନମଣ୍ଡିତ ସିଂହାସନରେ ବସାଇ ପୂଜା କଲେ । ତତ୍ପଶ୍ଚାତ୍ ତାଙ୍କର ଶ୍ରୀମତୀ ନାମ୍ନୀ ଯେଉଁ କନ୍ୟାର ସ୍ୱୟଂବର ହେବାର ଥିଲା, ତାକୁ ଡାକି ନାରଦଙ୍କ ଚରଣରେ ପ୍ରଣାମ କରିବାକୁ କହିଲେ । ସେହି କନ୍ୟାକୁ ଦେଖି ନାରଦ ଚକିତ ହୋଇଗଲେ । ସେ କହିଲେ, "ହେ ରାଜନ୍ ! ଏହି ଦେବକନ୍ୟା-ତୁଲ୍ୟ ଅନୁପମ ସୁନ୍ଦରୀ କନ୍ୟାଟି କିଏ? ରାଜା କରପତ୍ର ଯୋଡ଼ି କହିଲେ, "ଏ ମୋର କନ୍ୟା । ଏହାର ନାମ ଶ୍ରୀମତୀ । ଏ ବିବାହଯୋଗ୍ୟା ହୋଇଗଲାଣି; ଏଣୁ ସ୍ୱୟଂବର ସଭାରେ ନିଜର ବର ଚୟନ କରିବ । ଏହାଠାରେ ସବୁ ପ୍ରକାର ଶୁଭ ଲକ୍ଷଣ ରହିଛି । ମହର୍ଷେ ! ଆପଣ ଏହାର ଭାଗ୍ୟ ବିଷୟରେ କିଛି ଆଲୋକପାତ କରନ୍ତୁ ।"

ରାଜା ଏପରି ପଚାରିବାରୁ ନାରଦମୁନି କାମଭାବନାରେ ବିହ୍ୱଳ ହୋଇ ସେହି କନ୍ୟାକୁ ପାଇବା ଇଚ୍ଛାରେ ରାଜାଙ୍କୁ ସମ୍ବୋଧିତ କରି

କହିଲେ "ହେ ଭୂପାଳ ! ଏ କନ୍ୟା ସମସ୍ତ ଶୁଭଲକ୍ଷଣସମ୍ପନ୍ନା ଓ ପରମ ସୌଭାଗ୍ୟଶାଳିନୀ । ଏ ଆପଣା ମହାନ୍ ଭାଗ୍ୟ କାରଣରୁ ଧନ୍ୟା ଏବଂ ସାକ୍ଷାତ୍ ଲକ୍ଷ୍ମୀଙ୍କ ପରି ସମସ୍ତ ଗୁଣର ଆଗାର ଅଟେ । ଏହାର ବର ନିଶ୍ଚୟ ଭଗବାନ୍ ଶିବଙ୍କ ପରି ବୈଭବଶାଳୀ, ସର୍ବେଶ୍ୱର, ଅପରାଜେୟ



ବୀର, କାମବିଜୟୀ ତଥା ସମସ୍ତ ଦେବତାଙ୍କ ଠାରୁ ଶ୍ରେଷ୍ଠ ହେବ ।"

ଏତିକି କହି ସ୍ୱଚ୍ଛନ୍ଦ ବିଚରଣକାରୀ ନାରଦ ରାଜାଙ୍କ ଠାରୁ ବିଦାୟ ନେଇ ଗ୍ଲଲିଗଲେ । ସେ କିନ୍ତୁ କାମର ବଶୀଭୂତ ହୋଇଯାଇଥିଲେ । ଶିବଙ୍କ ମାୟା ତାଙ୍କୁ ପ୍ରବଳ ମୋହରେ ପକାଇ ଦେଇଥିଲା । ସେ ମନେ ମନେ ଭାବିବାକୁ ଲାଗିଲେ—"କଅଣ କଲେ ମୁଁ ଏ ରାଜକୁମାରୀକୁ ପାଇପାରିବି? ସ୍ୱୟଂବରକୁ ଆଗତ ସମସ୍ତ ରାଜାଙ୍କୁ ଛାଡ଼ି ସେ ମୋତେ କେମିତି ବରଣ କରିବ? ଗୋଟିଏ ଉପାୟ ଅଛି । ନାରୀମାନଙ୍କୁ ସୌନ୍ଦର୍ଯ୍ୟ ଅଧିକ ପ୍ରିୟ ହୋଇଥାଏ । ତେଣୁ ମୋଠାରେ ସୌନ୍ଦର୍ଯ୍ୟ ଦେଖିଲେ ସେ ନିଶ୍ଚିତରୂପେ ପ୍ରସନ୍ନତାପୂର୍ବକ ମୋର ଯେ ଅଧୀନ ହୋଇଯିବ, ଏଥିରେ ସନ୍ଦେହ ନାହିଁ ।"

ଏହା ଚିନ୍ତା କରି କାମବିହ୍ୱଳ ମୁନୀଶ୍ୱର ନାରଦ ଭଗବାନ ବିଷ୍ଣୁଙ୍କ ରୂପ ଲାଭ କରିବା ମାନସରେ ଅବିଳମ୍ବେ ଯାଇ ବିଷ୍ଣୁଲୋକରେ ପହଞ୍ଚିଲେ । ସେ ଭଗବାନ ବିଷ୍ଣୁଙ୍କୁ ପ୍ରଣାମ କରି କହିଲେ, "ଭଗବନ୍ ! ମୁଁ ଏକାନ୍ତରେ ଆପଣଙ୍କୁ ମୋର ସମସ୍ତ ବୃତ୍ତାନ୍ତ କହିବି ।" ଭଗବାନ୍ 'ତଥାସ୍ତୁ' କହି ଏକାନ୍ତକୁ ଯାଇ ମୁନିଙ୍କୁ ପଗ୍ଲରିଲେ, ଏଥର କ'ଣ କହିବାକୁ ଗ୍ଲହୁଁଛ, କୁହ ।"

ନାରଦ କହିଲେ—ଭଗବନ୍ ! ଆପଣଙ୍କ ଭକ୍ତ ରାଜା ଶୀଳନିଧି ସର୍ବଦା ଧର୍ମପାଳନରେ ତତ୍ପର ରହନ୍ତି । ତାଙ୍କର ଗୋଟିଏ ଅତ୍ୟନ୍ତ ସୁନ୍ଦରୀ ବିଶାଳଲୋଚନା କନ୍ୟା ଅଛି । ତା'ର ନାମ ଶ୍ରୀମତୀ । ସେ ବିଶ୍ୱମୋହିନୀରୂପେ ବିଖ୍ୟାତ ଏବଂ ତିନିଲୋକରେ ସେ ସବୁଠୁ ଅଧିକ ସୁନ୍ଦରୀ । ପ୍ରଭୁ ! ଆଜି ମୁଁ ଯଥାଶୀଘ୍ର ସେହି କନ୍ୟା ସହ ବିବାହ କରିବାକୁ ଗ୍ଲହେଁ । ରାଜା ଶୀଳନିଧି ତାଙ୍କ କନ୍ୟାର ଇଚ୍ଛା ଅନୁସାରେ ସ୍ୱୟଂବର ସଭାର ଆୟୋଜନ କରିଛନ୍ତି । ସେଥିପାଇଁ ଚତୁର୍ଦ୍ଦିଗରୁ ହଜାର ହଜାର ସଂଖ୍ୟାରେ ରାଜକୁମାର ଆସିଛନ୍ତି । ପ୍ରଭୁ ! ମୁଁ ଆପଣଙ୍କର ପ୍ରିୟ ସେବକ । ତେଣୁ ଦୟା କରି ମୋତେ ଆପଣଙ୍କର ରୂପ ପ୍ରଦାନ କରନ୍ତୁ; ସେହି ରୂପରେ ମୋହିତ ହୋଇ ରାଜକୁମାରୀ ନିଶ୍ଚିତରୂପେ ମୋତେ ବରଣ କରିବ ।

ସୂତ କହିଲେ—ମହର୍ଷିଗଣ ! ନାରଦଙ୍କ କଥା ଶୁଣି ଭଗବାନ ମଧୁସୂଦନ ହସିଦେଲେ ଏବଂ ଭଗବାନ ଶିବଙ୍କ ପ୍ରଭାବକୁ ଅନୁଭବ କରି ଦୟାଳୁ ପ୍ରଭୁ ନିମ୍ନ ପ୍ରକାରେ କହିଲେ—

ଭଗବାନ ବିଷ୍ଣୁ କହିଲେ—ମୁନେ ! ତୁମେ

ତୁମର ଅଭୀଷ୍ଟ ସ୍ଥାନକୁ ଯାଅ । ଜଣେ ଶ୍ରେଷ୍ଠ ବୈଦ୍ୟ ଯେପରି ଅତ୍ୟନ୍ତ ପୀଡ଼ାଗ୍ରସ୍ତ ରୋଗୀର ହିତ କରିଥାଏ, ମୁଁ ସେହିପରି ତୁମର ହିତ ସାଧନ କରିବି; କାରଣ ତୁମେ ମୋର ଅତ୍ୟନ୍ତ ପ୍ରିୟ ।

ଏତିକି କହି ଭଗବାନ ବିଷ୍ଣୁ ନାରଦଙ୍କ ସମସ୍ତ ଅଙ୍ଗକୁ ନିଜ ଅଙ୍ଗ ପରି ସୁନ୍ଦର କରିଦେଲେ, କିନ୍ତୁ ତାଙ୍କ ମୁଖଟିକୁ ବାନରମୁଖ ପରି କରିଦେଲେ । ଏହାପରେ ସେ ଅନ୍ତର୍ହିତ ହୋଇଗଲେ । ଭଗବାନଙ୍କ ଠାରୁ ପୂର୍ବୋକ୍ତ କଥା ଶୁଣି ଏବଂ ତାଙ୍କର ମନୋହର ରୂପ ପ୍ରାପ୍ତ ହୋଇ ନାରଦ ଅତ୍ୟନ୍ତ ହର୍ଷିତ ହେଲେ । ସେ ନିଜକୁ କୃତକୃତ୍ୟ ମନେ କଲେ । ଭଗବାନ ଏଥିରେ କି ପ୍ରଚେଷ୍ଟା କଲେ, ତାହା ସେ ବୁଝି ପାରିଲେ ନାହିଁ । ଏହାପରେ ନାରଦ ଅବିଳମ୍ବେ ଯାଇ ରାଜକୁମାରମାନେ ବସିଥିବା ସ୍ୱୟଂବର ସଭାରେ ପହଞ୍ଚିଲେ । ବିପ୍ରଗଣ ! ରାଜକୁମାରମାନଙ୍କ ଦ୍ୱାରା ପରିପୂର୍ଣ୍ଣ ସେହି ସଭା ଦ୍ୱିତୀୟ ଇନ୍ଦ୍ରସଭା ପରି ଶୋଭା ପାଉଥିଲା । ନାରଦ ଯାଇ ରାଜସଭାରେ ବସିଗଲେ ଏବଂ ପ୍ରସନ୍ନ ମନରେ ବାରମ୍ବାର ଏହି କଥା ଭାବୁଥିଲେ, "ମୁଁ ଭଗବାନ ବିଷ୍ଣୁଙ୍କ ପରି ରୂପ ପାଇଛି । ତେଣୁ ରାଜକୁମାରୀ ନିଶ୍ଚିତରୂପେ ମୋତେ ବରଣ କରିବ ।" ତାଙ୍କୁ ଏ କଥା ଜଣା ନ ଥିଲା ଯେ ମୁଖଟି ତାଙ୍କର କେଡ଼େ ଅସୁନ୍ଦର । ସଭାରେ ବସିଥିବା ଅନ୍ୟ ସମସ୍ତଙ୍କୁ ମୁନି ତାଙ୍କ ପ୍ରକୃତ ରୂପରେ ଦୃଶ୍ୟମାନ ହେଉଥିଲେ । ରାଜକୁମାର ପ୍ରଭୃତି କେହି ହେଲେ ତାଙ୍କର ରୂପପରିବର୍ତ୍ତନର ରହସ୍ୟକୁ ଜାଣି ପାରିଲେ ନାହିଁ । ସେଠାରେ ନାରଦଙ୍କ ସୁରକ୍ଷା ପାଇଁ ଆସିଥିବା ଭଗବାନ ରୁଦ୍ରଙ୍କର ଦୁଇଜଣ ପାର୍ଷଦ ଛଦ୍ମରୂପେ ବ୍ରାହ୍ମଣବେଶ ଧାରଣ କରି ବସିଥିଲେ । କେବଳ ସେଇ ଦୁଇଜଣ ନାରଦଙ୍କ ରୂପପରିବର୍ତ୍ତନର ରହସ୍ୟକୁ ଜାଣିଥିଲେ । ମୁନିଙ୍କୁ କାମ-ଆବେଶରେ ବିମୋହିତ ଦେଖି ସେ ଦୁହେଁ ତାଙ୍କ ନିକଟକୁ ଗଲେ ଏବଂ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେବା ଛଳରେ ମୁନିଙ୍କର ପରିହାସ କଲେ । ମାତ୍ର ମୁନି ତ କାମ-ବିମୋହିତ ହୋଇଯାଇଥିଲେ, ତେଣୁ ସେ ସେମାନଙ୍କ ଯଥାର୍ଥ କଥାକୁ ଶୁଣି ମଧ୍ୟ ନ ଶୁଣିବା ପରି ରହିଲେ ଏବଂ ଶ୍ରୀମତୀକୁ ପାଇବା ଇଚ୍ଛାରେ ତା'ର ଆଗମନକୁ ପ୍ରତୀକ୍ଷା କଲେ ।

ଇତିମଧ୍ୟରେ ରାଜକୁମାରୀ ଶ୍ରୀମତୀ ନାରୀମାନଙ୍କ ଗହଣରେ ଅନ୍ତଃପୁରରୁ ବାହାରି ସ୍ୱୟଂବର ସଭାରେ ପଦାର୍ପଣ କଲା । ସେ



ହାତରେ ସୁବର୍ଣ୍ଣର ଏକ ସୁନ୍ଦର ବରଣମାଳା ଧରିଥିଲା । ସେହି ରୂପବତୀ ଶୁଭଲକ୍ଷଣା ରାଜକନ୍ୟା ସ୍ୱୟଂବର ସଭାର ମଧ୍ୟଭାଗରେ ଲକ୍ଷ୍ମୀଙ୍କ ପରି ଶୋଭା ପାଉଥିଲା ।

ରାଜକନ୍ୟା ଶ୍ରୀମତୀ ଇଚ୍ଛାନୁରୂପ ବର ଅନ୍ୱେଷଣରେ ମାଳାଟିଏ ହାତରେ ଧରି ସମଗ୍ର ସଭାରେ ଭ୍ରମଣ କରିବାକୁ ଲାଗିଲା । ନାରଦଙ୍କର

ବିଷ୍ଣୁଙ୍କ ତୁଲ୍ୟ ଶରୀର ଓ ମର୍କଟ ତୁଲ୍ୟ ମୁଖମଣ୍ଡଳ ଦେଖି ସେ କୁପିତ ହୋଇଗଲା ଏବଂ ସେଠାରୁ ମୁହଁ ବୁଲାଇ ପ୍ରସନ୍ନ ମନରେ ଅନ୍ୟତ୍ର ଚ୍ଚଲିଗଲା । କିନ୍ତୁ ସ୍ୱୟଂବର ସଭାରେ ନିଜର ମନୋବାଞ୍ଛିତ ବର ଦେଖିବାକୁ ନ ପାଇ ସେ ଭୟଭୀତ ହୋଇଗଲା ଓ ନୀରବରେ ସଭାମଧ୍ୟରେ ଠିଆ ହୋଇଗଲା । ସେ କାହାକୁ ହେଲେ ବରଣମାଳା ପିନ୍ଧାଇଲା ନାହିଁ । ଇତିମଧ୍ୟରେ ରାଜାଙ୍କ ପରି ବେଶଭୂଷାରେ ଆସି ଭଗବାନ ବିଷ୍ଣୁ ସେଠାରେ ଉପସ୍ଥିତ ହୋଇଗଲେ । ତାଙ୍କୁ ଅନ୍ୟ କେହି ଦେଖି ପାରିଲେ ନାହିଁ, କେବଳ ରାଜକନ୍ୟା ତାଙ୍କୁ ଦେଖି ପାରିଲା । ତାଙ୍କ ଉପରେ ଦୃଷ୍ଟି ପଡ଼ିବାମାତ୍ରେ ରାଜକୁମାରୀର ମୁଖମଣ୍ଡଳ ହର୍ଷରେ ଉଲ୍ଲସିତ ହୋଇଉଠିଲା । ସେ ଅବିଳମ୍ବେ ତାଙ୍କୁ ବରଣମାଳା ପିନ୍ଧାଇଦେଲା । ରାଜା ରୂପଧାରୀ ଭଗବାନ ବିଷ୍ଣୁ ରାଜକୁମାରୀକୁ ନେଇ ସେଠାରୁ ଅଦୃଶ୍ୟ ହୋଇଗଲେ । ସେ ତାଙ୍କ ଧାମକୁ ଚ୍ଚଲିଗଲେ । ସଭାରେ ବସିଥିବା ରାଜକୁମାରମାନେ ନିରାଶ ହୋଇଗଲେ । ନାରଦମୁନି କାମବେଦନାରେ ଅତ୍ୟନ୍ତ ଆକୁଳ ହୋଇ ଉଠିଲେ । ତାଙ୍କର ସ୍ଥିତି ଦେଖି ବିପ୍ରରୂପଧାରୀ ଜ୍ଞାନବିଶାରଦ ରୁଦ୍ରଗଣ ଦୁହେଁ କହିଲେ–

ରୁଦ୍ରଗଣ କହିଲେ–**ହେ ନାରଦ! ହେ ମୁନେ!** ତୁମେ ବୃଥାରେ କାମମୋହିତ ହେଉଛ ଆଉ ସୌନ୍ଦର୍ଯ୍ୟ ବଳରେ ରାଜକୁମାରୀକୁ ପାଇବାକୁ ଚ୍ଚହୁଁଛ । ନିଜର ବାନରତୁଲ୍ୟ ଘୃଣିତ ମୁଖମଣ୍ଡଳକୁ ତ ଥରେ ଦେଖ !

ସୂତ କହୁଛନ୍ତି–**ମହର୍ଷିଗଣ !** ରୁଦ୍ରଗଣଙ୍କ କଥା ଶୁଣି ନାରଦଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ଶିବମାୟା-ବିମୋହିତ ନାରଦ ଦର୍ପଣରେ ଆପଣା ମୁଖ ଦେଖିଲେ । ନିଜର ବାନର ତୁଲ୍ୟ ମୁଖ ଦେଖିଦେବାମାତ୍ରେ ସେ ହଠାତ୍ କ୍ରୋଧରେ କମ୍ପିଉଠିଲେ ଏବଂ ମାୟାମୋହିତ ହୋଇଥିବାରୁ ରୁଦ୍ରଗଣ ଦୁହିଙ୍କୁ ଅଭିଶାପ ଦେଇ କହିଲେ,



"ଆରେ ଦୁଷ୍ଟ ! ତୁମେ ଦୁହେଁ ମୋ ପରି ବ୍ରାହ୍ମଣର ଉପହାସ କରିଛ । ତେଣୁ ତୁମେ ବ୍ରାହ୍ମଣବୀର୍ଯ୍ୟରେ ଜନ୍ମି ରାକ୍ଷସ ହେବ । ବ୍ରାହ୍ମଣସନ୍ତାନ ହୋଇ ମଧ୍ୟ ତୁମର ଆକୃତି ରାକ୍ଷସ ପରି ହେବ ।" ଏଭଳି ଅଭିଶାପ ବାକ୍ୟ ଶୁଣି ମଧ୍ୟ ସେ ଦୁହେଁ ମୁନିଙ୍କୁ ମାୟାମୋହିତ ଜାଣି କିଛି ଉତ୍ତର ଦେଲେ ନାହିଁ । ସେ ଦୁହେଁ ସମସ୍ତ ଘଟଣାରେ ଶିବଙ୍କ ଇଚ୍ଛା ଥିବା ଅନୁଭବ କରୁଥିଲେ । ତେଣୁ ଉଦାସୀନ ଭାବରେ ନିଜ ସ୍ଥାନକୁ ଚ୍ଚଲିଗଲେ ଏବଂ ଶିବଙ୍କୁ ସ୍ତୁତି କରିବାକୁ ଲାଗିଲେ ।

(ଅଧ୍ୟାୟ ୩)

★★★

# ଭଗବାନ ବିଷ୍ଣୁଙ୍କୁ ନାରଦଙ୍କ ଭର୍ତ୍ସନା ଓ ଅଭିଶାପ ଏବଂ ମାୟାପରଦା ହଟିଯିବା ପରେ ଅନୁତାପ, ଭଗବାନଙ୍କ ପାଦତଳେ ପଡ଼ି ଆତ୍ମଶୁଦ୍ଧିର ଉପାୟ ପଚାରିବାରୁ ବିଷ୍ଣୁଙ୍କର ତାଙ୍କୁ ସାନ୍ତ୍ୱନା ଏବଂ ଶିବଙ୍କ ମାହାତ୍ମ୍ୟ ଜାଣିବା ନିମନ୍ତେ ବ୍ରହ୍ମାଙ୍କ ନିକଟକୁ ପ୍ରେଷଣ ଓ ଶିବଙ୍କୁ ଭଜିବା ନିମନ୍ତେ ଉପଦେଶ

ସୂତ କହୁଛନ୍ତି–ମହର୍ଷିଗଣ ! ମାୟାମୋହିତ ନାରଦମୁନି ଶିବଗଣ ଦୁହିଙ୍କୁ ଶାପ ଦେବା ପରେ ମଧ୍ୟ ଶିବ-ଇଚ୍ଛାରେ ମୋହନିଦ୍ରାରୁ ଜାଗ୍ରତ ହୋଇପାରିଲେ ନାହିଁ । ଭଗବାନ ବିଷ୍ଣୁଙ୍କ କପଟକୁ ମନେ ପକାଇ ସେ ଦୁଃସହ କ୍ରୋଧରେ ତମତମ ହୋଇ ବିଷ୍ଣୁଲୋକରେ ପହଞ୍ଚିଗଲେ । ତାଙ୍କର ଜ୍ଞାନ ଭ୍ରଷ୍ଟ ହୋଇଯାଇଥିଲା । ତେଣୁ ସେ ପ୍ରଜ୍ୱଳିତ ଅଗ୍ନି ପରି କ୍ରୋଧିତ ହୋଇ ଦୁର୍ବଚନ ପ୍ରୟୋଗପୂର୍ବକ ତାଙ୍କୁ ବ୍ୟଙ୍ଗ କରିବାକୁ ଲାଗିଲେ ।

ନାରଦ କହିଲେ–ହରେ ! ତୁମେ ବଡ଼ ଦୁଷ୍ଟ ଓ କପଟୀ । ସମଗ୍ର ବିଶ୍ୱକୁ ମୋହଜାଲରେ ପକାଇ ରଖିଛ । ଅନ୍ୟର ଉତ୍ସାହ ଓ ଉତ୍କର୍ଷ ତୁମେ ସହିପାରନା । ତୁମେ ବଡ଼ ମାୟାବୀ, ତୁମର ମନ ଅତି ମଳିନ । ପୂର୍ବକାଳରେ ତୁମେ ମୋହିନୀରୂପ ଧାରଣ କରି କପଟ କରିଥିଲ । ତୁମେ ଅସୁରଙ୍କୁ ବାରୁଣୀ ମଦ ପିଆଇଲ, ସେମାନଙ୍କୁ ଅମୃତପାନରୁ ବଞ୍ଚିତ କଲ । ତୁମେ ଛଳ-କପଟରେ ହିଁ ଅନୁରାଗ ରଖିଥାଅ । ଯଦି ମହେଶ୍ୱର ରୁଦ୍ର ଦୟା କରି ବିଷ ନ ପିଇଥାନ୍ତେ, ତେବେ ସେଇଦିନ ତୁମର ସବୁ ମାୟା ସରିଯାଇଥାନ୍ତା । କପଟପୂର୍ଣ୍ଣ ଗତିବିଧି ତୁମକୁ ଅଧିକ ପସନ୍ଦ । ତୁମର ସ୍ୱଭାବ ଖରାପ, ତଥାପି ଭଗବାନ ଶିବ ତୁମକୁ ସ୍ୱତନ୍ତ୍ର କରିଦେଲେ । ହେଲେ ତୁମର ଏହି କପଟପୂର୍ଣ୍ଣ ଗତିରୀତିକୁ ଦେଖି ସେ ଏବେ ଅନୁତାପ କରୁଥିବେ । ନିଜ ବାଣୀରୂପୀ ବେଦର ପ୍ରାମାଣିକତା ସ୍ଥାପିତ କରିଥିବା ମହାଦେବ ବ୍ରାହ୍ମଣଙ୍କୁ ସର୍ବୋପରି ଶ୍ରେଷ୍ଠ କରିଛନ୍ତି । ଅତଏବ ହରେ ! ମୁଁ (ବ୍ରାହ୍ମଣ) ତୁମକୁ ଏମିତି ଶିକ୍ଷା ଦେବି ଯେ ଆଉ ଦିନେ ଯେମିତି ଏଭଳି କର୍ମ କରିବାକୁ ସାହସ କରିବ ନାହିଁ । ଏପର୍ଯ୍ୟନ୍ତ ତୁମେ କୌଣସି ଶକ୍ତିଶାଳୀ ବା ତେଜସ୍ୱୀ ପୁରୁଷ ହାବୁଡ଼ରେ ପଡ଼ି ନାହଁ; ସେଥିଲାଗି ତୁମେ ଏତେ ନିର୍ଭୟ ହୋଇଯାଇଛ । କିନ୍ତୁ ହେ ବିଷ୍ଣୁ ! ଆଜି ତୁମକୁ ତୁମ କର୍ମର ଯଥାର୍ଥ ଫଳ ମିଳିଯିବ ।

ଭଗବାନ ବିଷ୍ଣୁଙ୍କୁ ଏଭଳି କହି ମାୟା-ମୋହିତ ମୁନି ନିଜ ବ୍ରହ୍ମତେଜ ପ୍ରଦର୍ଶନ କରିବା ସହ କ୍ରୋଧରେ ଶାପ ଦେବାକୁ ଯାଇ କହିଲେ– "ବିଷ୍ଣୁ ! ତୁମେ ସ୍ତ୍ରୀ ପାଇଁ ମୋତେ ବ୍ୟାକୁଳ କରିଛ । ସମସ୍ତଙ୍କୁ ତୁମେ ଏହିପରି ମୋହରେ ପକାଉଛ । ଏ କପଟପୂର୍ଣ୍ଣ କାର୍ଯ୍ୟ କରିବାବେଳେ ତୁମେ ମୋତେ ଯେଉଁ ସ୍ୱରୂପରେ ସଂଯୁକ୍ତ କରିଥିଲ, ସେହି ସ୍ୱରୂପରେ ତୁମେ ମନୁଷ୍ୟ ହୋଇଯାଅ ଏବଂ ସ୍ତ୍ରୀବିୟୋଗରେ ଦୁଃଖ ଭୋଗ କର । ତୁମେ ଯେଉଁ ବାନରଙ୍କ ପରି ମୁଖ ମୋତେ ଦେଇଥିଲ, ସେଇମାନେ ହିଁ ତୁମର ସହାୟକ ହେବେ । ତୁମେ ଅନ୍ୟମାନଙ୍କୁ (ସ୍ତ୍ରୀବିଚ୍ଛେଦର) ଦୁଃଖ ଦେଇଥାଅ, ଏଣୁ ନିଜେ ମଧ୍ୟ ସ୍ତ୍ରୀବିଚ୍ଛେଦର ଦୁଃଖ ଭୋଗ କର । ଅଜ୍ଞାନମୋହିତ ମନୁଷ୍ୟଙ୍କ ପରି ତୁମର ସ୍ଥିତି ହେଉ ।"

ଅଜ୍ଞାନମୋହିତ ନାରଦ ମୋହବଶତଃ

ଭଗବାନ ଶ୍ରୀହରିଙ୍କୁ ଏହିପରି ଅଭିଶାପ ଦେଲେ ଏବଂ ଶ୍ରୀହରି ଶମ୍ଭୁଙ୍କ ମାୟାକୁ ପ୍ରଶଂସା କରି ତାହାକୁ ଅଙ୍ଗୀକାର କରିନେଲେ । ତା'ପରେ ମହାଲୀଳା ରଚୟିତା ଶମ୍ଭୁ ଆପଣା ବିଶ୍ୱମୋହିନୀ ମାୟାକୁ, ଯଦ୍ଦ୍ୱାରା ନାରଦ ମୋହିତ ହୋଇଥିଲେ, ଅପସାରିତ କରିନେଲେ । ମାୟା ଅପସାରିତ ହେବାମାତ୍ରେ ନାରଦଙ୍କ ବୁଦ୍ଧି ପୂର୍ବବତ୍ ଶୁଦ୍ଧ ହୋଇଗଲା । ତାଙ୍କର ଜ୍ଞାନ ଫେରିଆସିଲା ଓ ବ୍ୟାକୁଳତା ମଧ୍ୟ ଉଭେଇଗଲା । ତାଙ୍କ ମନରେ ଅତ୍ୟନ୍ତ ବିସ୍ମୟ ଜାତ ହେଲା । ସେ ପ୍ରବଳ ପଶ୍ଚାତ୍ତାପ କରିବା ସହିତ ନିଜକୁ ବାରମ୍ବାର ଧିକ୍କାରିଲେ । ଜ୍ଞାନୀଙ୍କୁ ମହାମୋହରେ ପକାଇ ଦେଉଥିବା ଶମ୍ଭୁଙ୍କ ମାୟାକୁ ବି ପ୍ରଶଂସା କଲେ । ଯେତେବେଳେ ଜାଣିଲେ ଯେ, ସେ ମାୟାରେ ମୋହିତ ଓ ଭ୍ରମିତ ହୋଇଥିବାରୁ ଏଭଳି ଘଟିଗଲା, ସେତେବେଳେ ବୈଷ୍ଣବ-ଶିରୋମଣି ନାରଦ ଭଗବାନ ବିଷ୍ଣୁଙ୍କ ଚରଣରେ ଲୋଟିପଡ଼ିଲେ । ଭଗବାନ ତାଙ୍କୁ ଆଦରରେ ତଳୁ ଉଠାଇଲେ । ନାରଦଙ୍କର ଦୁର୍ବୁଦ୍ଧି ସେତେବେଳେ ନଷ୍ଟ ହୋଇଯାଇଥିଲା, ତେଣୁ ସେ କହିଲେ, "ପ୍ରଭୁ ! ମାୟାଜନିତ ମୋହ ହେତୁ ମୋ ବୁଦ୍ଧି ଭ୍ରଷ୍ଟ ହୋଇଯାଇଥିଲା । ସେଥିପାଇଁ ଆପଣଙ୍କୁ ଅନେକ ଦୁର୍ବଚନ କହିଦେଲି; ଆପଣଙ୍କୁ ଅଭିଶାପ ମଧ୍ୟ ଦେଲି । ପ୍ରଭୁ ! ଆପଣ ସେହି ଅଭିଶାପକୁ ମିଥ୍ୟା ବା ନିଷ୍ଫଳ କରିଦିଅନ୍ତୁ । ହାୟ ! ମୁଁ ବହୁତ ବଡ଼ ପାପ କରିଦେଲି । ମୁଁ ନିଶ୍ଚୟ ନରକରେ ପଡ଼ିବି । ହରେ ! ମୁଁ ଆପଣଙ୍କର ଦାସ । ତେଣୁ ମୋତେ କୁହନ୍ତୁ, ମୁଁ କି ଉପାୟ କରିବି, କ'ଣ ପ୍ରାୟଶ୍ଚିତ୍ତ କରିବି, ଯାହା ଫଳରେ ମୋ ପାପ ନଷ୍ଟ ହୋଇଯିବ ଓ ମୁଁ ନରକରେ ପଡ଼ିବି ନାହିଁ ।" ଏହା କହି ଶୁଦ୍ଧବୁଦ୍ଧି ମୁନିବର ନାରଦ ପୁଣି ଥରେ ପ୍ରଭୁଙ୍କ ଚରଣତଳେ ପଡ଼ିଗଲେ । ସେତେବେଳେ ସେ ଖୁବ୍ ପଶ୍ଚାତ୍ତାପ କରୁଥିଲେ । ଭଗବାନ ତାଙ୍କୁ ତଳୁ ଉଠାଇ ମଧୁର ବାଣୀରେ କହିଲେ—

ଭଗବାନ ବିଷ୍ଣୁ କହିଲେ—**ବତ୍ସ ! ଦୁଃଖ କର** ନାହିଁ । ତୁମେ ମୋର ଯେ ଶ୍ରେଷ୍ଠ ଭକ୍ତ, ଏଥିରେ ସଂଶୟ ନାହିଁ । ମୁଁ ତୁମକୁ ଗୋଟିଏ କଥା କହୁଛି,



ଶୁଣ । ଏହାଦ୍ୱାରା ନିଶ୍ଚୟ ତୁମର ହିତ ହେବ ଏବଂ ତୁମେ ନରକରେ ପଡ଼ିବ ନାହିଁ । ଭଗବାନ ଶିବ ତୁମର କଲ୍ୟାଣ କରିବେ । ତୁମେ ମଦରେ ମୋହିତ ହୋଇ ଶିବଙ୍କ କଥାକୁ ଯେଉଁ ମାନି ନ ଥିଲ, ତାଙ୍କ କଥାର ଅବହେଳନା କରିଥିଲ, ସେହି ଅପରାଧର ଫଳ ଶିବ ତୁମକୁ ପ୍ରଦାନ କଲେ; କାରଣ ସେ କର୍ମଫଳ ପ୍ରଦାତା । ତୁମେ ମନରେ ସୁନିଶ୍ଚିତ ହୋଇଯାଅ ଯେ ଭଗବାନ ଶିବଙ୍କ ଇଚ୍ଛାରୁ ହିଁ ଏପରି ହେଲା । ସବୁରି ସ୍ୱାମୀ ପରମେଶ୍ୱର ଶିବ ହିଁ ଗର୍ବକୁ ମର୍ଦ୍ଦନ କରନ୍ତି । ସେ ହିଁ ପରବ୍ରହ୍ମ ପରମାତ୍ମା । ସଚ୍ଚିଦାନନ୍ଦରୂପରେ ସେ ହିଁ ବୋଧଗମ୍ୟ ହୁଅନ୍ତି । ସେ ନିର୍ଗୁଣ ଓ

ନିରାକାର । ସେ ସତ୍ତ୍ୱ, ରଜ ଓ ତମ ନାମକ ତ୍ରିଗୁଣରୁ ଅତୀତ । ସେ ହିଁ ତାଙ୍କର ମାୟାବଳରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ରୂପରେ ପ୍ରକଟ ହୁଅନ୍ତି । ସେ ନିର୍ଗୁଣ ଓ ସଗୁଣ ମଧ୍ୟ । ନିର୍ଗୁଣ ଅବସ୍ଥାରେ ତାଙ୍କରି ନାମ ଶିବ । ସେ ହିଁ ପରମାତ୍ମା, ମହେଶ୍ୱର, ପରବ୍ରହ୍ମ, ଅବିନାଶୀ, ଅନନ୍ତ ଓ ମହାଦେବ ଆଦି ନାମରେ କଥିତ ହୁଅନ୍ତି । ତାଙ୍କରି ସେବା କରି ବ୍ରହ୍ମା ଜଗତର ସ୍ରଷ୍ଟା ହୋଇଛନ୍ତି ଓ ମୁଁ ତ୍ରିଲୋକର ପାଳନକର୍ତ୍ତା ହୋଇପାରିଛି । ସେ ସ୍ୱୟଂ ରୁଦ୍ରରୂପରେ ସମସ୍ତଙ୍କର ସଂହାର କରନ୍ତି । ସେ ଶିବରୂପରେ ସମସ୍ତଙ୍କର ସାକ୍ଷୀ, ମାୟାଠାରୁ ଭିନ୍ନ ଓ ନିର୍ଗୁଣ । ସ୍ୱତନ୍ତ୍ର ହୋଇଥିବାରୁ ସେ ନିଜ ଇଚ୍ଛାରେ ବିଚରଣ କରନ୍ତି । ତାଙ୍କର ବିହାର ଅର୍ଥାତ୍ ଆଚାର-ବ୍ୟବହାର ଉତ୍ତମ ଓ ସେ ଭକ୍ତମାନଙ୍କ ଉପରେ ଦୟା କରନ୍ତି । ମୁନେ ! ମୁଁ ତୁମକୁ ଗୋଟିଏ ସୁନ୍ଦର ଉପାୟ କହୁଛି, ଯାହାକି ସୁଖଦ, ସମସ୍ତ ପାପନାଶକାରୀ ଏବଂ ସଦା ଭୋଗ ଓ ମୋକ୍ଷ ପ୍ରଦାନକାରୀ । ତାହା ହେଲା, ତୁମେ ସମସ୍ତ ସଂଶୟ ତ୍ୟାଗ କରି ଭଗବାନ ଶଙ୍କରଙ୍କ ସୁଯଶ ଗାନ କର ଏବଂ ସଦା ଅନନ୍ୟଭାବରେ ଶିବଶତନାମସ୍ତୋତ୍ର ପାଠ କର । ମୁନେ ! ତୁମେ ନିରନ୍ତର ତାଙ୍କରି ଉପାସନା ଓ ଭଜନ କର; ତାଙ୍କରି ଯଶୋଗାଥା ଗାନ ଓ ଶ୍ରବଣ କର ଏବଂ ପ୍ରତିଦିନ ତାଙ୍କରି ପୂଜା-ଅର୍ଚ୍ଚନା କର । ନାରଦ ! ଯେ କାୟମନୋବାକ୍ୟରେ ଶିବଙ୍କର ଉପାସନା କରନ୍ତି, ତାଙ୍କୁ ପଣ୍ଡିତ ବା ଜ୍ଞାନୀ ବୋଲି ଜାଣିବା ଉଚିତ । ସେ ଜୀବନ୍ମୁକ୍ତ ବୋଲାନ୍ତି । 'ଶିବ'-ନାମରୂପୀ ଦାବାନଳରେ ଅସଂଖ୍ୟ ବଡ଼ ବଡ଼ ପାହାଡ଼ତୁଲ୍ୟ ପାତକରାଶି ଭସ୍ମସାତ୍ ହୋଇଯାଏ । ଏହା ସତ୍ୟ, ସତ୍ୟ । ଏଥିରେ ସଂଶୟ ନାହିଁ ।* ଭଗବାନ ଶଙ୍କରଙ୍କ ନାମରୂପୀ ନୌକାର ଆଶ୍ରୟ ନେଇଥିବା ବ୍ୟକ୍ତି ସଂସାରସାଗରରୁ ଉଦ୍ଧାର ପାଇଯାଏ । ସଂସାରଚକ୍ରର ମୂଳଭୂତ ପାତକରୂପୀ ବୃକ୍ଷ ଶିବନାମରୂପୀ କୁଠାର ଦ୍ୱାରା ଅବଶ୍ୟ ବିନଷ୍ଟ ହୋଇଥାଏ ।ψ

ଯେଉଁମାନେ ପାପରୂପୀ ଦାବାନଳରେ ପୀଡ଼ିତ, ସେମାନଙ୍କୁ ଶିବନାମରୂପୀ ଅମୃତ ପିଆଇବା ଉଚିତ । ପାପାଗ୍ନିରେ ଦଗ୍ଧ ହେଉଥିବା ପାପୀମାନଙ୍କୁ ଏହା ବିନା ଶାନ୍ତି ମିଳି ପାରିବ ନାହିଁ । ସମସ୍ତ ବେଦ ଅବଲୋକନ କରି ପୂର୍ବକାଳର ବିଦ୍ୱାନ୍‌ମାନେ ନିର୍ଣ୍ଣୟ କରିଛନ୍ତି ଯେ ଭଗବାନ ଶିବଙ୍କ ପୂଜା ହିଁ ଉତ୍କୃଷ୍ଟ ସାଧନା ତଥା ଜନ୍ମମରଣରୂପୀ ବନ୍ଧନନାଶର ଉପାୟ । ଆଜିଠାରୁ ଯତ୍ନପୂର୍ବକ ସାବଧାନ ହୋଇ ବିଧିବିଧାନ ସହିତ ଭକ୍ତିଭାବରେ ନିତ୍ୟ-ନିରନ୍ତର ଜଗଦମ୍ବା ପାର୍ବତୀଙ୍କ ସମେତ ସଦାଶିବଙ୍କୁ ଭଜ । ନିତ୍ୟ ଶିବଙ୍କ କଥା ଶ୍ରବଣ ଓ କଥନ କର ତଥା ଯତ୍ନସହକାରେ ବାରମ୍ବାର ଶିବଭକ୍ତଙ୍କୁ ପୂଜା କର । ମୁନିଶ୍ରେଷ୍ଠ ! ହୃଦୟ ମଧ୍ୟରେ ଭଗବାନ ଶିବଙ୍କ ଉଜ୍ଜ୍ୱଳ ଚରଣାରବିନ୍ଦକୁ ସ୍ଥାପନା କରି ପ୍ରଥମେ ଶୈବ ତୀର୍ଥରେ ବିଚରଣ କର । ଏହିପରି ପରମାତ୍ମା ଶିବଙ୍କର ଅନୁପମ ମାହାତ୍ମ୍ୟ ଅନୁଭବ କରି କରି ଶେଷରେ ଆନନ୍ଦବନ (କାଶୀ) ଯାତ୍ରା କର ।

* ଶିବେତିନାମଦାବାଗ୍ନେର୍ମହାପାତକପର୍ବତାଃ । ଭସ୍ମୀଭବନ୍ତ୍ୟନାୟାସାତ୍ ସତ୍ୟଂ ସତ୍ୟଂ ନ ସଂଶୟଃ ॥
(ଶି. ପୁ. ରୁଦ୍ର. ସୃ. ୪ । ୪୫)

ψ ଶିବନାମତରୀଂ ପ୍ରାପ୍ୟ ସଂସାରାବ୍ଧିଂ ତରନ୍ତି ତେ । ସଂସାରମୂଳପାପାନି ତେଷାଂ ନଶ୍ୟନ୍ତ୍ୟସଂଶୟମ୍ ॥
ସଂସାରମୂଳଭୂତାନାଂ ପାତକାନାଂ ମହାମୁନେ । ଶିବନାମକୁଠାରେଣ ବିନାଶୋ ଜାୟତେ ଧ୍ରୁବମ୍ ॥
(ଶି. ପୁ. ରୁଦ୍ର. ସୃ. ୪ । ୫୧-୫୨)

ଉକ୍ତ ସ୍ଥାନଟି ଶିବଙ୍କର ଅତ୍ୟନ୍ତ ପ୍ରିୟ । ସେଠାରେ ଭକ୍ତିପୂର୍ବକ ବିଶ୍ୱନାଥଙ୍କୁ ଦର୍ଶନ-ପୂଜନ କର । ବିଶେଷ କରି ତାଙ୍କୁ ସ୍ତୁତି-ବନ୍ଦନା କଲେ ତୁମେ ନିର୍ବିକଳ୍ପ (ସଂଶୟଶୂନ୍ୟ) ହୋଇଯିବ । ନାରଦ ! ଏହାପରେ ତୁମେ ମୋ ଆଜ୍ଞାରେ ଭକ୍ତିପୂର୍ବକ ତୁମର ମନୋରଥ ସିଦ୍ଧି ନିମନ୍ତେ ନିଶ୍ଚୟ ବ୍ରହ୍ମଲୋକକୁ ଯିବା ଉଚିତ । ସେଠାରେ ତୁମ ପିତା ବ୍ରହ୍ମାଙ୍କୁ ବିଶେଷରୂପେ ସ୍ତୁତି-ବନ୍ଦନା କରି ପ୍ରସନ୍ନ ମନରେ ବାରମ୍ବାର ଶିବମହିମା ବିଷୟରେ ପ୍ରଶ୍ନ ପଚାରିବା ଉଚିତ । ବ୍ରହ୍ମା ଶିବଭକ୍ତଙ୍କ ମଧ୍ୟରେ ଅଗ୍ରଣୀ । ସେ ପ୍ରସନ୍ନଚିତ୍ତରେ ଶିବଙ୍କ ମାହାତ୍ମ୍ୟ ଓ ଶତନାମସ୍ତୋତ୍ର ଶୁଣାଇବେ । ମୁନେ ! ଆଜିଠାରୁ ତୁମେ ଶିବାରାଧନାରେ ତତ୍ପର ଶିବଭକ୍ତ ହୋଇଯାଅ ଓ ବିଶେଷରୂପେ ମୋକ୍ଷର ଭାଗୀ ହୁଅ । ଭଗବାନ ଶିବ ତୁମର କଲ୍ୟାଣ କରିବେ । ଏହିରୂପେ ଭଗବାନ ବିଷ୍ଣୁ ପ୍ରସନ୍ନ ଚିତ୍ତରେ ନାରଦଙ୍କୁ ପ୍ରେମପୂର୍ବକ ଉପଦେଶ ଦେବା ପରେ ଶିବଙ୍କୁ ସ୍ମରଣ, ବନ୍ଦନ ଓ ସ୍ତବନ କରି ସେଠାରୁ ଅନ୍ତର୍ହିତ ହୋଇଗଲେ ।

(ଅଧ୍ୟାୟ ୪)



## ଶିବତୀର୍ଥରେ ନାରଦଙ୍କ ଭ୍ରମଣ, ଶିବଗଣଙ୍କୁ ଶାପୋଦ୍ଧାରର ଉପାୟ ନିର୍ଦ୍ଦେଶ ଏବଂ ବ୍ରହ୍ମଲୋକରେ ପହଞ୍ଚି ବ୍ରହ୍ମାଙ୍କୁ ଶିବତତ୍ତ୍ୱ ବିଷୟରେ ପ୍ରଶ୍ନ

ସୂତ କହୁଛନ୍ତି–ମହର୍ଷିଗଣ ! ଶ୍ରୀହରି ଅନ୍ତର୍ହିତ ହୋଇଯିବା ପରେ ନାରଦ ଭକ୍ତିପୂର୍ବକ ଶିବଲିଙ୍ଗ ଦର୍ଶନ କରି କରି ପୃଥିବୀରେ ବିଚରଣ କଲେ । ବ୍ରାହ୍ମଣଗଣ ! ଭୂମଣ୍ଡଳରେ ବିଚରଣ କରି କରି ସେ ଭୋଗ ଓ ମୋକ୍ଷ ପ୍ରଦାୟକ ଅନେକ ଶିବଲିଙ୍ଗ ଦର୍ଶନ କଲେ । ଦିବ୍ୟଦର୍ଶୀ ନାରଦ ଭୂଲୋକର ତୀର୍ଥରେ ବିଚରଣ କରୁଛନ୍ତି ଓ ତାଙ୍କର ଚିତ୍ତ ଶୁଦ୍ଧ ହୋଇଯାଇଛି–ଏକଥା ଜାଣି ପୂର୍ବୋକ୍ତ ଦୁଇଜଣ ଶିବଗଣ ତାଙ୍କ ନିକଟକୁ ଆସିଲେ । ସେମାନେ ଶାପରୁ ମୁକ୍ତ ହେବା ଇଚ୍ଛାରେ ସେଠାକୁ ଆସିଥିଲେ । ସେ ଦୁହେଁ ମୁନିଙ୍କର ପାଦ ଧରି ପକାଇଲେ ଏବଂ ନତମସ୍ତକ ହୋଇ ପ୍ରଣାମ କରିବା ପରେ ଏହିପରି କହିଲେ–

ଶିବଗଣ କହିଲେ–ବ୍ରହ୍ମନ୍ ! ଆମେ ଦୁହେଁ ଶିବଙ୍କର ଗଣ । ମୁନେ ! ଆମେ ଆପଣଙ୍କ ଠାରେ ଅପରାଧୀ । ରାଜକୁମାରୀ ଶ୍ରୀମତୀର ସ୍ୱୟଂବରରେ ଆପଣଙ୍କ ଚିତ୍ତ ମାୟାରେ ମୋହିତ ଥିଲା । ସେତେବେଳେ ପରମେଶ୍ୱରଙ୍କ ପ୍ରେରଣାରେ ଆପଣ ଆମକୁ ଶାପ ଦେଇଥିଲେ । ସେତେବେଳେ ନୀରବ ରହିବାଟା ହିଁ ଜୀବନରକ୍ଷାର ଉପାୟ ବୋଲି ବୁଝି ଆମେ କିଛି କହିଲୁ ନାହିଁ । ଏଥିରେ କାହାରି ଦୋଷ ନାହିଁ । ଆମ କର୍ମର ଫଳ ହିଁ ଆମକୁ ମିଳିଲା । ପ୍ରଭୋ ! ଏବେ ଆପଣ ପ୍ରସନ୍ନ ହୁଅନ୍ତୁ ଓ ଆମ ଉପରେ ଅନୁଗ୍ରହ କରନ୍ତୁ ।

ନାରଦ କହିଲେ–ଆପଣ ଦୁହେଁ ଶିବଙ୍କର ଗଣ ଓ ସାଧୁଜନଙ୍କ ପକ୍ଷେ ପରମ ସମ୍ମାନନୀୟ । ତେଣୁ ମୋର ମୋହରହିତ ଓ ସୁଖଦାୟକ ଯଥାର୍ଥ କଥା ଶୁଣନ୍ତୁ । ସେତେବେଳେ ମୋର ବୁଦ୍ଧି ନିଶ୍ଚିତରୂପେ ଭ୍ରଷ୍ଟ ଓ ମୋହର ବଶୀଭୂତ ହୋଇଯାଇଥିଲା । ସେଥିପାଇଁ ମୁଁ ଆପଣଙ୍କୁ ଶାପ ଦେଇଦେଲି । ମୁଁ ଯାହା କହିଦେଇଛି, ତାହା ତ ଅନ୍ୟଥା ହୋଇପାରିବ ନାହିଁ, ତଥାପି ମୋର ଗୋଟିଏ କଥା ଶୁଣନ୍ତୁ । ମୁଁ ଆପଣମାନଙ୍କ ପାଇଁ ଶାପୋଦ୍ଧାରର ଉପାୟ କହୁଛି । ଆପଣ ମୋର

ଅପରାଧକୁ କ୍ଷମା କରିଦିଅନ୍ତୁ। ମୁନିବର ବିଶ୍ରବାଙ୍କ ଔରସରୁ ଜନ୍ମଲାଭ କରି ଆପଣ ଦୁହେଁ ରାକ୍ଷସରାଜରୂପେ (ରାବଣ ଓ କୁମ୍ଭକର୍ଣ୍ଣ ନାମରେ) ଦଶଦିଗରେ ପ୍ରସିଦ୍ଧି ଲାଭ କରିବେ ଏବଂ ଅତ୍ୟନ୍ତ ବଳବାନ୍, ବୈଭବସମ୍ପନ୍ନ ଓ ପରମ ପ୍ରତାପୀ ହେବେ। ସମସ୍ତ ବ୍ରହ୍ମାଣ୍ଡର ରାଜା ହୋଇ ଶିବଭକ୍ତ ଓ ଜିତେନ୍ଦ୍ରିୟ ହେବେ ଏବଂ ଶିବଙ୍କର ହିଁ ଅନ୍ୟତମ ରୂପ ବିଷ୍ଣୁଙ୍କ ହସ୍ତରେ ମୃତ୍ୟୁବରଣ କରି ପୁନଃ ନିଜ ପଦରେ ପ୍ରତିଷ୍ଠିତ ହୋଇଯିବେ।

ସୂତ କହୁଛନ୍ତି—ମହର୍ଷିଗଣ! ମହାତ୍ମା ନାରଦଙ୍କ ଠାରୁ ଏ କଥା ଶୁଣି ଶିବଗଣ ଦୁହେଁ ଆନନ୍ଦ ମନରେ ସ୍ୱସ୍ଥାନକୁ ଚାଲିଗଲେ। ନାରଦ ମଧ୍ୟ ଅତ୍ୟନ୍ତ ଆନନ୍ଦିତ ହୋଇ ଶିବଙ୍କର ଧ୍ୟାନ ତଥା ଶିବତୀର୍ଥମାନଙ୍କର ଦର୍ଶନ କରି କରି ପୃଥିବୀରେ ବିଚରଣ କଲେ। ଶେଷରେ ସେ ଶିବଙ୍କର ପ୍ରିୟ ତଥା ସର୍ବୋପରି ବିଦ୍ୟମାନ କାଶୀ ଧାମରେ ପହଞ୍ଚିଲେ, ଯାହା ସ୍ୱୟଂ ଶିବସ୍ୱରୂପ ଓ ଶିବଙ୍କୁ ସୁଖପ୍ରଦାନକାରୀ। ସେ କାଶୀପୁରୀକୁ ଦେଖି କୃତାର୍ଥ ଅନୁଭବ କଲେ ଓ କାଶୀନାଥଙ୍କୁ ଦର୍ଶନ କରି ପରମ ପ୍ରେମ ଓ ପରମାନନ୍ଦରେ ତାଙ୍କୁ ପୂଜା କଲେ। ଏହା କରି ସେ ନିଜକୁ ଧନ୍ୟ ମଣିଲେ ଏବଂ ପ୍ରେମବିହ୍ୱଳ ହୋଇ ସେହି କ୍ଷେତ୍ରକୁ ନମନ କରିସାରି ତାହାର ବର୍ଣ୍ଣନ ଓ ସ୍ମରଣ କରି କରି ବ୍ରହ୍ମଲୋକକୁ ଗଲେ। ନିରନ୍ତର ଶିବଙ୍କ ସ୍ମରଣ କରିବାରୁ ତାଙ୍କର ବୁଦ୍ଧି ଶୁଦ୍ଧ ହୋଇଯାଇଥିଲା। ସେଠାରେ ପହଞ୍ଚି ଶିବତତ୍ତ୍ୱ ସମ୍ବନ୍ଧରେ ବିଶେଷ ଜ୍ଞାନ ଲାଭ କରିବା ଇଚ୍ଛାରେ ବ୍ରହ୍ମାଙ୍କୁ ଭକ୍ତିପୂର୍ବକ ନମସ୍କାର କଲେ ଓ ନାନା ପ୍ରକାର ସ୍ତୋତ୍ରଦ୍ୱାରା ସ୍ତୁତି କରି ତାଙ୍କୁ ଶିବତତ୍ତ୍ୱ ବିଷୟରେ ପ୍ରଶ୍ନ କଲେ। ସେତେବେଳେ ନାରଦଙ୍କ ହୃଦୟ ଭକ୍ତିଭାବରେ ପରିପୂର୍ଣ୍ଣ ଥିଲା।

ନାରଦ କହିଲେ—ବ୍ରହ୍ମନ୍! ହେ ପରବ୍ରହ୍ମ ପରମାତ୍ମାଙ୍କ ସ୍ୱରୂପର ଜ୍ଞାତା ପିତାମହ! ଜଗତ୍‌ପ୍ରଭୋ! ଆପଣଙ୍କ କୃପାପ୍ରସାଦରୁ ମୁଁ ବିଷ୍ଣୁଙ୍କ ଉତ୍ତମ ମାହାତ୍ମ୍ୟକୁ ପୂର୍ଣ୍ଣରୂପେ ଜାଣିପାରିଲି। ଭକ୍ତିମାର୍ଗ, ଜ୍ଞାନମାର୍ଗ, ଅତ୍ୟନ୍ତ ଦୁଷ୍କର ତପୋମାର୍ଗ, ଦାନମାର୍ଗ ତଥା ତୀର୍ଥମାର୍ଗର ବର୍ଣ୍ଣନା ମଧ୍ୟ ଶୁଣିଲି। ମାତ୍ର ଶିବତତ୍ତ୍ୱର ଜ୍ଞାନ ଏପର୍ଯ୍ୟନ୍ତ ମୋତେ ପ୍ରାପ୍ତ ହୋଇ ପାରି ନାହିଁ। ମୁଁ ଭଗବାନ ଶଙ୍କରଙ୍କ ପୂଜାବିଧି ମଧ୍ୟ ଜାଣି ନାହିଁ। ଏଣୁ ହେ ପ୍ରଭୁ! ଆପଣ କ୍ରମଶଃ ଏ ବିଷୟକୁ ତଥା ଭଗବାନ ଶିବଙ୍କ ବିବିଧ ଚରିତ, ତାଙ୍କର ସ୍ୱରୂପତତ୍ତ୍ୱ, ପ୍ରାକଟ୍ୟ, ବିବାହ, ଗାର୍ହସ୍ଥ୍ୟ ଧର୍ମ ପ୍ରଭୃତି କଥା ମୋତେ କହନ୍ତୁ। ନିଷ୍ପାପ ପିତାମହ! ଏତଦ୍ ବ୍ୟତୀତ ଆଉ ଯାହା କିଛି ଆବଶ୍ୟକ ତଥ୍ୟ ଅଛି, ସେସବୁ ମଧ୍ୟ ବର୍ଣ୍ଣନା କରନ୍ତୁ। ପ୍ରଜାନାଥ! ଶିବ ଓ ଶିବାଙ୍କ ଆବିର୍ଭାବ ଏବଂ ବିବାହ ପ୍ରସଙ୍ଗ



ବିଶେଷରୂପେ କହନ୍ତୁ। କାର୍ତ୍ତିକେୟଙ୍କ ଜନ୍ମବୃତ୍ତାନ୍ତ ମଧ୍ୟ କହନ୍ତୁ। ପ୍ରଭୋ! ପୂର୍ବରୁ ବହୁତ ଲୋକଙ୍କ

ଠାରୁ ମୁଁ ଅବଶ୍ୟ ଏକଥା ଶୁଣିଛି, କିନ୍ତୁ ତୃପ୍ତ ହୋଇପାରି ନାହିଁ । ତେଣୁ ଆପଣଙ୍କ ଶରଣକୁ ଆସିଛି । ମୋ ଉପରେ କୃପା କରନ୍ତୁ ।

ନିଜ ପୁତ୍ର ନାରଦଙ୍କ ଠାରୁ ଏଭଳି କଥା ଶୁଣି ଲୋକପିତାମହ ବ୍ରହ୍ମା ଏହି ପ୍ରକାର କହିଲେ—

(ଅଧ୍ୟାୟ ୫)

☆☆☆

## ମହାପ୍ରଳୟକାଳରେ କେବଳ ସଦ୍‌ବ୍ରହ୍ମ ସତ୍ତାର ପ୍ରତିପାଦନ, ସେହି ନିର୍ଗୁଣ-ନିରାକାର ବ୍ରହ୍ମରୁ ଈଶ୍ୱରମୂର୍ତ୍ତିର (ସଦାଶିବଙ୍କ) ପ୍ରାକଟ୍ୟ, ସଦାଶିବଙ୍କ ଠାରୁ ତାଙ୍କ ସ୍ୱରୂପଭୂତା ଶକ୍ତି (ଅମ୍ବିକା)ଙ୍କ ପ୍ରାକଟ୍ୟ, ପୁଣି ସେ ଦୁହିଙ୍କ ଦ୍ୱାରା ଉତ୍ତମ କ୍ଷେତ୍ର (କାଶୀ)ର ଉଦ୍ଭବ, ଶିବଙ୍କ ବାମାଙ୍ଗରୁ ପରମ ପୁରୁଷ (ବିଷ୍ଣୁ)ଙ୍କ ଆବିର୍ଭାବ ତଥା ତାଙ୍କ ଠାରୁ ପ୍ରାକୃତ ତତ୍ତ୍ୱମାନଙ୍କର ଉତ୍ପତ୍ତି

ବ୍ରହ୍ମା କହିଲେ—ବ୍ରହ୍ମନ୍! ଦେବଶ୍ରେଷ୍ଠ! ତୁମେ ସର୍ବଦା ସମଗ୍ର ଜଗତର ଉପକାରରେ ରତ ରହିଥାଅ । ଲୋକଙ୍କ ହିତକାମନାରେ ବହୁତ ଭଲ ପ୍ରଶ୍ନ ପଚାରିଲ । ମୁଁ ସେହି ଅନାମୟ ଶିବତତ୍ତ୍ୱ ତୁମ ଆଗରେ ବର୍ଣ୍ଣନା କରିବି, ଯାହା ଶ୍ରବଣ କଲେ ଲୋକଙ୍କର ସମସ୍ତ ପାପ ନଷ୍ଟ ହୋଇଯାଏ । ଶିବତତ୍ତ୍ୱର ସ୍ୱରୂପ ଅତି ଉତ୍କୃଷ୍ଟ ଓ ଅଦ୍ଭୁତ । ଯେତେବେଳେ ସମଗ୍ର ଚରାଚର ଜଗତ ନଷ୍ଟ ହୋଇଯାଇଥିଲା, ସେତେବେଳେ କେବଳ ଅନ୍ଧକାର ସର୍ବତ୍ର ବ୍ୟାପି ରହିଥିଲା; ସୂର୍ଯ୍ୟ ନ ଥିଲା କି ଚନ୍ଦ୍ର ନ ଥିଲା କି ଅନ୍ୟ ଗ୍ରହ-ନକ୍ଷତ୍ରଙ୍କର ମଧ୍ୟ କିଛି ସତ୍ତା ନ ଥିଲା । ନା ଥିଲା ଦିନ, ନା ଥିଲା ରାତି; ପୃଥିବୀ, ଅଗ୍ନି, ବାୟୁ, ଜଳ କାହାରି ବି ସତ୍ତା ନ ଥିଲା; ପ୍ରଧାନ ତତ୍ତ୍ୱ (ଅବ୍ୟାକୃତ ପ୍ରକୃତି) ରହିତ ଶୂନ୍ୟମାତ୍ର ଶେଷ ଥିଲା, ଅନ୍ୟ କୌଣସି ତେଜର ଉପଲବ୍ଧି ହେଉ ନ ଥିଲା; ଅଦୃଷ୍ଟ ଆଦିର ମଧ୍ୟ ଅସ୍ତିତ୍ୱ ନ ଥିଲା; ଶବ୍ଦ ଓ ସ୍ପର୍ଶ ନ ଥିଲା କି ଗନ୍ଧ ଓ ରୂପର ମଧ୍ୟ ଅଭିବ୍ୟକ୍ତି ନ ଥିଲା; ରସର ମଧ୍ୟ ଅଭାବ ଥିଲା; ଦିଗର ମଧ୍ୟ ଅନୁଭବ ହେଉ ନ ଥିଲା । ଚାରିଆଡ଼େ କେବଳ ନିରନ୍ତର ସୂଚୀଭେଦ୍ୟ ଘୋର ଅନ୍ଧକାର ପରିବ୍ୟାପ୍ତ ଥିଲା । ସେତେବେଳେ 'ତତ୍ସଦ୍‌ବ୍ରହ୍ମ' ଏହି ଶ୍ରୁତିବାକ୍ୟରେ ଯେଉଁ 'ସତ୍' ଶୁଣାଯାଏ, କେବଳ ତାହା ହିଁ ଶେଷ ଥିଲା । ଯେତେବେଳେ 'ଏହା', 'ତାହା', 'ଏପରି', 'ଯାହା' ଇତ୍ୟାଦି ରୂପରେ ନିର୍ଦ୍ଦେଶିତ ହେଉଥିବା ଭାବାଭାବବାଚକ ଜଗତ୍ ନ ଥିଲା, ସେତେବେଳେ ଏକମାତ୍ର 'ସତ୍' ହିଁ ଶେଷ ଥିଲା, ଯାହାକୁ ଯୋଗୀଜନ ନିଜ ହୃଦୟାକାଶ ଭିତରେ ନିରନ୍ତର ଦେଖିଥାନ୍ତି । ସେହି ସତ୍‌ତତ୍ତ୍ୱ ମନର ବିଷୟ ନୁହେଁ । ବାଣୀର ମଧ୍ୟ ସେଠାରେ ପ୍ରବେଶ ନାହିଁ । ତାହା ନାମ-ରୂପ-ରଙ୍ଗଶୂନ୍ୟ । ତାହା ନା ସ୍ଥୂଳ ନା ସୂକ୍ଷ୍ମ, ନା ହ୍ରସ୍ୱ ନା ଦୀର୍ଘ, ନା ଲଘୁ ନା ଗୁରୁ । ସେଥିରେ ନା ବୃଦ୍ଧି ହୁଏ ନା ହ୍ରାସ । ଶ୍ରୁତି ମଧ୍ୟ ତା' ବିଷୟରେ ଚକିତ ହୋଇ 'ଅସ୍ତି' ଏତିକିମାତ୍ର କହିଥାନ୍ତି । ଅର୍ଥାତ୍ ତା'ର ସତ୍ତାମାତ୍ର ହିଁ ନିରୂପଣ କରିପାରିଥାନ୍ତି । ତା' ବିଷୟରେ କିଛି ବିଶେଷ ବିବରଣ ଦେବାକୁ ଅସମର୍ଥ ହୋଇଯାଆନ୍ତି । ତାହା ସତ୍ୟ, ଜ୍ଞାନସ୍ୱରୂପ, ଅନନ୍ତ, ପରମାନନ୍ଦମୟ, ପରମ ଜ୍ୟୋତିଃସ୍ୱରୂପ,

ଅପ୍ରମେୟ, ଆଧାରରହିତ, ନିର୍ବିକାର, ନିରାକାର, ନିର୍ଗୁଣ, ଯୋଗିଗମ୍ୟ, ସର୍ବବ୍ୟାପୀ, ସବୁରି ଏକମାତ୍ର କାରଣ, ନିର୍ବିକଳ୍ପ, ନିରାରମ୍ଭ, ମାୟାଶୂନ୍ୟ, ଉପଦ୍ରବରହିତ, ଅଦ୍ୱିତୀୟ, ଅନାଦି, ଅନନ୍ତ, ସଂକୋଚ-ବିକାଶରହିତ ତଥା ଚିନ୍ମୟ ଅଟେ ।

ଯେଉଁ ପରବ୍ରହ୍ମ ବିଷୟରେ ଜ୍ଞାନ ଓ ଅଜ୍ଞାନପୂର୍ଣ୍ଣ ଉକ୍ତିଦ୍ୱାରା ଏପରି (ଉପରୋକ୍ତ ପ୍ରକାରେ) ବିକଳ୍ପ କରାଯାଏ, ତାହା କିଛିକାଳ ପରେ ସୃଷ୍ଟି ସମୟ ଆସିବାରୁ ଦ୍ୱିତୀୟ ହେବାର ଇଚ୍ଛା ପ୍ରକାଶ କଲା । ତା' ଭିତରେ ଏକରୁ ଅନେକ ହେବାର ସଂକଳ୍ପ ଉଦିତ ହେଲା । ସେତେବେଳେ ସେହି ନିରାକାର ପରମାତ୍ମା ନିଜର ଲୀଳାଶକ୍ତିରେ ନିଜ ପାଇଁ ମୂର୍ତ୍ତି (ଆକାର)ର କଳ୍ପନା କଲା । ସେହି ମୂର୍ତ୍ତି ଥିଲା ସମସ୍ତ ଐଶ୍ୱର୍ଯ୍ୟଗୁଣରେ ସମ୍ପନ୍ନ, ସର୍ବଜ୍ଞାନମୟ ଶୁଭସ୍ୱରୂପ, ସର୍ବବ୍ୟାପୀ, ସର୍ବରୂପ, ସର୍ବଦର୍ଶୀ, ସର୍ବକାରୀ, ସମସ୍ତଙ୍କର ଏକମାତ୍ର ବନ୍ଦନୀୟ, ସର୍ବାଦ୍ୟ, ସର୍ବପ୍ରଦାୟକ ଓ ସମସ୍ତ ସଂସ୍କୃତିର କେନ୍ଦ୍ର । ଏପରି ଶୁଦ୍ଧରୂପୀ ଈଶ୍ୱରମୂର୍ତ୍ତିର କଳ୍ପନା କରି ସେହି ଅଦ୍ୱିତୀୟ, ଅନାଦି, ଅନନ୍ତ, ସର୍ବପ୍ରକାଶକ, ଚିନ୍ମୟ, ସର୍ବବ୍ୟାପୀ ଓ ଅବିନାଶୀ ପରବ୍ରହ୍ମ ଅନ୍ତର୍ହିତ ହୋଇଗଲା । ମୂର୍ତ୍ତିରହିତ ପରବ୍ରହ୍ମର ମୂର୍ତ୍ତି (ଚିନ୍ମୟ ଆକାର) ହିଁ ଭଗବାନ ସଦାଶିବ । ଅର୍ବାଚୀନ ଓ ପ୍ରାଚୀନ ବିଦ୍ୱାନ ତାଙ୍କୁ ହିଁ ଈଶ୍ୱର କହିଥାନ୍ତି । ସେତେବେଳେ ଏକାକୀ ସ୍ୱେଚ୍ଛାନୁସାରେ ବିହାର କରୁଥିବା ସେହି ସଦାଶିବ ନିଜ ବିଗ୍ରହରୁ ତାଙ୍କ ସ୍ୱରୂପଭୂତା ଶକ୍ତିଙ୍କୁ ସୃଷ୍ଟି କଲେ, ଯେ କି କଦାପି ତାଙ୍କ ଠାରୁ ଭିନ୍ନ ହୁଅନ୍ତି ନାହିଁ । ସେହି ପରାଶକ୍ତିଙ୍କୁ ପ୍ରଧାନ, ପ୍ରକୃତି, ଗୁଣବତୀ, ମାୟା, ବୁଦ୍ଧିତତ୍ତ୍ୱର ଜନନୀ ଓ ବିକାରରହିତ କୁହାଯାଇଛି । ସେହି ଶକ୍ତି ହେଉଛନ୍ତି ଅମ୍ବିକା । ତାଙ୍କୁ ପ୍ରକୃତି, ସର୍ବେଶ୍ୱରୀ, ତ୍ରିଦେବ-ଜନନୀ, ନିତ୍ୟା ଓ ମୂଳକାରଣ ମଧ୍ୟ କୁହାଯାଏ । ସଦାଶିବଙ୍କ ଠାରୁ ପ୍ରକଟିତା ସେହି ଶକ୍ତିଙ୍କର ଆଠଟି ଭୁଜ ରହିଛି । ସେହି ଶୁଭଲକ୍ଷଣା ଦେବୀଙ୍କ ମୁଖର ଶୋଭା ବିଚିତ୍ର । ସେ ଏକାକୀ ହିଁ ନିଜ ମୁଖମଣ୍ଡଳରେ ସଦା ସହସ୍ର ଚନ୍ଦ୍ରର କାନ୍ତି



ଧାରଣ କରିଥାନ୍ତି । ନାନା ପ୍ରକାର ଆଭୂଷଣ ତାଙ୍କ ଶ୍ରୀଅଙ୍ଗର ଶୋଭା ବର୍ଦ୍ଧନ କରନ୍ତି । ସେ ନାନା ପ୍ରକାର ଗତିସମ୍ପନ୍ନା ଓ ନାନା ଅସ୍ତ୍ର-ଶସ୍ତ୍ରରେ ସୁଶୋଭିତା । ତାଙ୍କର ନେତ୍ର ପ୍ରସ୍ଫୁଟିତ ପଦ୍ମତୁଲ୍ୟ, ତେଜ ଅଚିନ୍ତ୍ୟ । ସେ ହେଉଛନ୍ତି ସବୁରି ଯୋନି (ଉତ୍ପତ୍ତିସ୍ଥାନ) ଓ ସଦା ଉଦ୍ୟମଶୀଳା । ଏକାକିନୀ ହୋଇ ମଧ୍ୟ ସେହି ମାୟା ସଂଯୋଗବଶତଃ ଅନେକ ହୋଇଯାଆନ୍ତି ।

ସଦାଶିବଙ୍କୁ ହିଁ ପରମପୁରୁଷ, ଈଶ୍ୱର, ଶିବ, ଶମ୍ଭୁ ଓ ମହେଶ୍ୱର କୁହାଯାଏ । ସେ ତାଙ୍କ ମସ୍ତକ ଉପରେ ଆକାଶଗଙ୍ଗାକୁ ଧାରଣ କରିଥାନ୍ତି । ତାଙ୍କ ଭାଲଦେଶରେ ଚନ୍ଦ୍ର ଶୋଭାପାଏ । ତାଙ୍କର ଅଛି ପାଞ୍ଚ ମୁଖ ଓ ପ୍ରତ୍ୟେକ ମୁଖରେ ତିନୋଟି

ଲେଖାଏଁ ନେତ୍ର । ତାଙ୍କର ଚିତ୍ତ ସଦା ପ୍ରସନ୍ନ ରହିଥାଏ । ସେ ଦଶଭୁଜଯୁକ୍ତ ଓ ତ୍ରିଶୂଳଧାରୀ । ତାଙ୍କ ଅଙ୍ଗର ପ୍ରଭା କର୍ପୂରତୁଲ୍ୟ ଗୌର । ସେ ତାଙ୍କ ସର୍ବାଙ୍ଗରେ ଭସ୍ମ ବୋଳି ହୋଇଥାନ୍ତି । ସେହି କାଳରୂପୀ ବ୍ରହ୍ମ ଏକଦା ଶକ୍ତିଙ୍କ ସହିତ 'ଶିବଲୋକ' ନାମରେ ଗୋଟିଏ ଉତ୍ତମ କ୍ଷେତ୍ର ନିର୍ମାଣ କରିଥିଲେ, ଯାହାକୁ 'କାଶୀ' କହନ୍ତି । ତାହା ପରମ ନିର୍ବାଣ ବା ମୋକ୍ଷର ଧାମ ଏବଂ ସବୁରି ଉପରେ ବିରାଜମାନ । ସେହି ପ୍ରିୟା-ପ୍ରିୟତମରୂପୀ ଶକ୍ତି ଓ ଶିବ, ଯେ କି ପରମାନନ୍ଦ-ସ୍ୱରୂପ, ଉକ୍ତ ମନୋରମ କ୍ଷେତ୍ରରେ ନିତ୍ୟ ନିବାସ କରିଥାନ୍ତି । କାଶୀପୁରୀ ପରମାନନ୍ଦରୂପିଣୀ ଅଟେ । ମୁନେ ! ଶିବ ଓ ଶିବା ପ୍ରଳୟକାଳରେ ମଧ୍ୟ ଉକ୍ତ କ୍ଷେତ୍ରକୁ ନିଜ ସାନ୍ନିଧ୍ୟରୁ ମୁକ୍ତ କରି ନ ଥାନ୍ତି । ସେଥିପାଇଁ ବିଦ୍ୱାନ୍‌ମାନେ ତାହାକୁ 'ଅବିମୁକ୍ତ କ୍ଷେତ୍ର' ମଧ୍ୟ କହିଥାନ୍ତି । କାଶୀ କ୍ଷେତ୍ର ଆନନ୍ଦର ହେତୁ । ସେଥିପାଇଁ ପିନାକଧାରୀ ଶିବ ପ୍ରଥମେ ତାହାର ନାମ 'ଆନନ୍ଦବନ' ରଖିଥିଲେ । ପରବର୍ତ୍ତୀ କାଳରେ ତାହା 'ଅବିମୁକ୍ତ କ୍ଷେତ୍ର' ନାମରେ ପ୍ରସିଦ୍ଧ ହେଲା ।

ଦେବର୍ଷେ ! ଏକଦା ସେହି ଆନନ୍ଦବନରେ ରମଣ କରୁ କରୁ ଶିବ ଓ ଶିବାଙ୍କ ମନରେ ଏଭଳି ଇଚ୍ଛା ଜାଗ୍ରତ ହେଲା—"କୌଣସି ଅନ୍ୟ ଏକ ପୁରୁଷକୁ ସୃଷ୍ଟି କରିବା ଉଚିତ, ଯାହା ଉପରେ ସୃଷ୍ଟିସଂଗ୍ଚାଳନର ସବୁ ଭାର ଦେଇ ଆମେ ଦୁହେଁ କେବଳ କାଶୀରେ ରହି ଇଚ୍ଛାନୁସାରେ ବିଚରଣ କରିବା ଓ ନିର୍ବାଣ ଧାରଣ କରିବା । ସେ ଆମ ଅନୁଗ୍ରହରେ ସଦା ସମସ୍ତଙ୍କୁ ସୃଷ୍ଟି କରିବ, ପାଳନ କରିବ ଓ ଶେଷରେ ସମସ୍ତଙ୍କର ସଂହାର ମଧ୍ୟ କରିବ । ଚିତ୍ତ ହେଉଛି ସମୁଦ୍ର ପରି । ପୁଣି ଏଥିରେ ଉତ୍ତାଳ ତରଙ୍ଗମାନ ଉଠି ଏହାକୁ ଚଞ୍ଚଳ କରୁଛି । ଏଥିରେ ସତ୍ତ୍ୱଗୁଣରୂପୀ ରତ୍ନ ଓ ତମୋଗୁଣରୂପୀ କୁମ୍ଭୀର ଓ ରଜୋଗୁଣରୂପୀ ପ୍ରବାଳ ପୂର୍ଣ୍ଣ ହୋଇ ରହିଛି । ଏଭଳି ବିଶାଳ ଚିତ୍ତ-ସମୁଦ୍ରକୁ ସଂକୁଚିତ କରି ଆମେ ଦୁହେଁ ସେହି ପୁରୁଷର ପ୍ରସାଦରେ ଆନନ୍ଦକାନନରେ ସୁଖପୂର୍ବକ ନିବାସ କରିବା । ଏହି ଆନନ୍ଦବନ ହେଉଛି ସେହି ସ୍ଥାନ, ଯେଉଁଠି ଆମର ମନୋବୃତ୍ତି ସବୁଆଡୁ ସଂକୁଚିତ ହୋଇ ଏଇଥିରେ ଲାଗିରହିଛି । ଏହାର ବହିଃସ୍ଥ ଜଗତ ଚିନ୍ତାରେ ଆତୁର ପ୍ରତୀତ ହେଉଛି ।" ଏଭଳି ନିର୍ଣ୍ଣୟ କରି ଶକ୍ତିଙ୍କ ସହିତ ସର୍ବବ୍ୟାପୀ ପରମେଶ୍ୱର ଶିବ ନିଜ ବାମଭାଗର ଦଶମ ଅଙ୍ଗରେ ଅମୃତ ବୋଳି ଦେଲେ । ସେଥିରୁ ଏକ ପୁରୁଷ ଉତ୍ପନ୍ନ ହେଲା, ଯେ କି ତ୍ରିଲୋକରେ ସବୁଠାରୁ ସୁନ୍ଦର ଥିଲା । ସେ ଶାନ୍ତ ଥିଲା, ତା'ଠାରେ ସତ୍ତ୍ୱଗୁଣର ଆଧିକ୍ୟ ଥିଲା ତଥା ସେ ଗମ୍ଭୀରତାର ଅଗାଧ ସାଗର ଓ କ୍ଷମାଗୁଣରେ



ଯୁକ୍ତ ଥିଲା । ମୁନେ ! ତା' ନିମନ୍ତେ ଖୋଜିଲେ ମଧ୍ୟ କୌଣସି ଉପମା ମିଳୁ ନ ଥିଲା । ତା'ର

କାନ୍ତି ଥିଲା ନୀଳମଣି ତୁଲ୍ୟ ଶ୍ୟାମଳ । ଅଙ୍ଗ-ଅଙ୍ଗରେ ଥିଲା ଦିବ୍ୟ ଶୋଭା ଓ ନେତ୍ର ଥିଲା ଉନ୍ମୀଳିତ ପଦ୍ମତୁଲ୍ୟ । ଶ୍ରୀଅଙ୍ଗରେ ଶୋଭା ପାଉଥିଲା ପାଟ ପୀତାମ୍ବର । ସେହି ଅପରାଜେୟ ବୀର ପୁରୁଷ ବଳିଷ୍ଠ ଭୁଜଦଣ୍ଡରେ ଶୋଭିତ ଥିଲା । ସେ ପରମେଶ୍ୱର ଶିବଙ୍କୁ ପ୍ରଣାମ କରି କହିଲା—''ସ୍ୱାମିନ୍ ! ମୋର ନାମ ରଖନ୍ତୁ ଓ କାର୍ଯ୍ୟ ମଧ୍ୟ ନିର୍ଦ୍ଧାରିତ କରନ୍ତୁ ।'' ତା' କଥା ଶୁଣି ଶିବ ସ୍ମିତହାସପୂର୍ବକ ମେଘଗମ୍ଭୀର ଶବ୍ଦରେ କହିଲେ—

ଶିବ କହିଲେ—**ବତ୍ସ !** ବ୍ୟାପକ ହୋଇଥିବାରୁ ତୁମର ନାମ 'ବିଷ୍ଣୁ' ହେବ । ଏହା ବ୍ୟତୀତ ଆହୁରି ବହୁତ ନାମ ହେବ, ଯାହା କି ଭକ୍ତଙ୍କ ପାଇଁ ସୁଖଦାୟୀ ହେବ । ତୁମେ ସୁସ୍ଥିର ଭାବରେ ଉତ୍ତମ ତପସ୍ୟା କର; କାରଣ ତାହା ହିଁ ସମସ୍ତ କାର୍ଯ୍ୟର ସାଧନ ।

ଏପରି କହି ଶିବ ଶ୍ୱାସମାର୍ଗରେ ଶ୍ରୀବିଷ୍ଣୁଙ୍କୁ ବେଦର ଜ୍ଞାନ ପ୍ରଦାନ କଲେ । ତା'ପରେ ନିଜ ମହିମାରୁ କଦାପି ଚ୍ୟୁତ ନ ହେଉଥିବା ଶ୍ରୀହରି ଭଗବାନ ଶିବଙ୍କୁ ପ୍ରଣାମ କରି ଘୋର ତପସ୍ୟା କଲେ ଏବଂ ପରମେଶ୍ୱର ଶିବ ଓ ଶକ୍ତି ପାର୍ଷଦଗଣଙ୍କ ସହିତ ସେଠାରୁ ଅଦୃଶ୍ୟ ହୋଇଗଲେ । ଭଗବାନ ବିଷ୍ଣୁ ଦୀର୍ଘକାଳ ପର୍ଯ୍ୟନ୍ତ ସେଠାରେ କଠୋର ତପସ୍ୟାରେ ଲୀନ ରହିଲେ । ତପସ୍ୟାର ପରିଶ୍ରମରେ ବିଷ୍ଣୁଙ୍କ ଶରୀରରୁ ନାନା ପ୍ରକାର ଜଳଧାରା ନିର୍ଗତ ହୋଇ ସମଗ୍ର ଆକାଶରେ ବ୍ୟାପ୍ତ ହୋଇଗଲା । ଏସବୁ ଶିବଙ୍କ ମାୟାରୁ ଘଟିଲା । ମହାମୁନେ ! ସେହି ବ୍ରହ୍ମରୂପୀ ଜଳ ହିଁ ସ୍ପର୍ଶମାତ୍ରକେ ସର୍ବପାପହାରୀ ବୋଲି ସିଦ୍ଧ ହେଲା । ସେତିକିବେଳେ ତପସ୍ୟା ହେତୁ କ୍ଳାନ୍ତ ହୋଇପଡ଼ିଥିବା ବିଷ୍ଣୁ ସ୍ୱୟଂ ସେହି ଜଳରେ ଶୟନ କଲେ । ସେ ଦୀର୍ଘକାଳ ପର୍ଯ୍ୟନ୍ତ ସେଥିରେ ଆନନ୍ଦରେ ରହିଲେ । ନାର ବା ଜଳରେ ଶୟନ କରିବାରୁ ତାଙ୍କର ନାମ 'ନାରାୟଣ' ହେଲା । ସେତେବେଳେ ସେହି ପରମ ପୁରୁଷ ନାରାୟଣଙ୍କ ଛଡ଼ା ଅନ୍ୟ କିଛି ପ୍ରାକୃତ ବସ୍ତୁ ନ ଥିଲା । ତା'ପରେ ପରମାତ୍ମା ନାରାୟଣ ଦେବଙ୍କ ଠାରୁ ଯଥାସମୟରେ ସମସ୍ତ ତତ୍ତ୍ୱ ପ୍ରକଟ ହେଲା । ମହାମତେ ! ବିଦ୍ୱନ୍ ! ମୁଁ ସେହି ତତ୍ତ୍ୱମାନଙ୍କ ଉତ୍ପତ୍ତିର ପ୍ରକାର କହୁଛି, ଶୁଣ । ପ୍ରକୃତିରୁ ମହତ୍ତତ୍ତ୍ୱ ପ୍ରକଟ ହେଲା ଓ ମହତ୍ତତ୍ତ୍ୱରୁ ତ୍ରିଗୁଣ । ପୁଣି ଗୁଣମାନଙ୍କ ଭେଦରୁ ତ୍ରିବିଧ ଅହଂକାର ଉତ୍ପନ୍ନ ହେଲା । ଅହଂକାରରୁ ପଞ୍ଚତନ୍ମାତ୍ର ଓ ତହିଁରୁ ପଞ୍ଚଭୂତ ସୃଷ୍ଟି ହେଲେ । ସେତିକିବେଳେ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ମଧ୍ୟ ସୃଷ୍ଟି ହେଲେ । ମୁନିବର ! ଏହିରୂପେ ମୁଁ ତୁମକୁ ତତ୍ତ୍ୱର ସଂଖ୍ୟା କହିଲି । ଏଥିମଧ୍ୟରୁ କେବଳ ପୁରୁଷକୁ ଛାଡ଼ି ଅନ୍ୟ ସବୁ ତତ୍ତ୍ୱ ପ୍ରକୃତିରୁ ସୃଷ୍ଟ ହେଲେ, ତେଣୁ ସମସ୍ତ ତତ୍ତ୍ୱ ଜଡ଼ ଶ୍ରେଣୀର ଅନ୍ତର୍ଭୁକ୍ତ । ତତ୍ତ୍ୱମାନଙ୍କର ସଂଖ୍ୟା ଚବିଶ । ସେତେବେଳେ ଏକାକାର ହୋଇଥିବା ସେହି ଚବିଶ ତତ୍ତ୍ୱକୁ ଗ୍ରହଣ କରି ପରମ ପୁରୁଷ ନାରାୟଣ ଭଗବାନ ଶିବଙ୍କ ଇଚ୍ଛାରେ ବ୍ରହ୍ମରୂପ ଜଳରେ ଶୋଇଗଲେ । (ଅଧ୍ୟାୟ ୬)



# ଭଗବାନ ବିଷ୍ଣୁଙ୍କ ନାଭିରୁ ପଦ୍ମର ଉତ୍ପତ୍ତି, ଶିବେଚ୍ଛାରେ ତହିଁରୁ ବ୍ରହ୍ମାଙ୍କ ଆବିର୍ଭାବ, ବ୍ରହ୍ମାଙ୍କର ତପସ୍ୟା, ଶ୍ରୀହରିଙ୍କ ଦର୍ଶନ ଲାଭ, ବିବାଦଗ୍ରସ୍ତ ବ୍ରହ୍ମା ଓ ବିଷ୍ଣୁଙ୍କ ମଧ୍ୟରେ ଅଗ୍ନିସ୍ତମ୍ଭର ପ୍ରାକଟ୍ୟ ଏବଂ ଅଗ୍ନିସ୍ତମ୍ଭର ଆଦି-ଅନ୍ତ ନ ପାଇ ଦୁହେଁ ତାହାକୁ ପ୍ରଣାମ କରିବା ପ୍ରସଙ୍ଗ

ବ୍ରହ୍ମା କହୁଛନ୍ତି—ଦେବର୍ଷେ ! ନାରାୟଣ ଜଳରେ ଶୟନ କରୁଥିବା ବେଳେ ଭଗବାନ ଶିବଙ୍କ ଇଚ୍ଛାରୁ ତାଙ୍କ ନାଭିରୁ ଏକ ବିଶାଳକାୟ ପଦ୍ମର ଉଦ୍ଭବ ହେଲା । ସେଥିରେ ଅସଂଖ୍ୟ ନାଳଦଣ୍ଡ ଥିଲା । ତାହାର କାନ୍ତି କନିଅର ପୁଷ୍ପପରି ହଳଦିଆ ଥିଲା, ପୁଣି ତାହାର ଦୈର୍ଘ୍ୟ ଓ ଉଚ୍ଚତା ଥିଲା ଅନନ୍ତ ଯୋଜନ । ଉକ୍ତ ପଦ୍ମ କୋଟିଏ ସୂର୍ଯ୍ୟଙ୍କ ପରି ଜାଜ୍ୱଲ୍ୟମାନ ହେଉଥିଲା । ତାହା ସୁନ୍ଦର ହେବା ସଙ୍ଗେ ସଙ୍ଗେ ସମସ୍ତ ତତ୍ତ୍ୱରେ ଯୁକ୍ତ, ଅତ୍ୟନ୍ତ ଅଦ୍ଭୁତ, ପରମ ରମଣୀୟ, ଦର୍ଶନୀୟ ତଥା ସର୍ବୋତ୍ତମ ଥିଲା । ଏହାପରେ କଲ୍ୟାଣକାରୀ ପରମେଶ୍ୱର ସାମ୍ବ ସଦାଶିବ ପୂର୍ବବତ୍ ପ୍ରଯତ୍ନ କରି ମୋତେ ତାଙ୍କ ଦକ୍ଷିଣ ଅଙ୍ଗରୁ ଉତ୍ପନ୍ନ କଲେ । ମୁନେ! ପୁଣି ସେହି ମହେଶ୍ୱର ଅବିଳମ୍ବେ ମୋତେ ତାଙ୍କ ମାୟାରେ ମୋହିତ କରି ନାରାୟଣଦେବଙ୍କ ନାଭିକମଳରେ ପକାଇଦେଲେ ଏବଂ ଲୀଳାପୂର୍ବକ ସେଥିରୁ ମୋତେ ପ୍ରକଟ କଲେ । ଏହିରୂପେ ଉକ୍ତ ପଦ୍ମରୁ ମୁଁ ହିରଣ୍ୟଗର୍ଭ ହିଁ ପୁତ୍ରରୂପେ ଜନ୍ମ ହେଲି । ମୋର ଚାରି ମୁଖ ହେଲା ଓ ଶରୀରର କାନ୍ତି ଲାଲ୍ ହେଲା । ମୋର ମସ୍ତକ ତ୍ରିପୁଣ୍ଡ୍ର ରେଖାରେ ଅଙ୍କିତ ଥିଲା । ହେ ତାତ ! ଶିବଙ୍କ ମାୟାରେ ମୋହିତ ହୋଇଥିବାରୁ ମୋର ଜ୍ଞାନଶକ୍ତି ଏତେ ଦୁର୍ବଳ ଥିଲା ଯେ ମୁଁ ସେହି ପଦ୍ମ ଛଡ଼ା ଅନ୍ୟ କାହାକୁ ମୋ ଦେହର ଜନକ ବା ପିତା ବୋଲି ଜାଣି ନ ଥିଲି । ମୁଁ କିଏ, କେଉଁଠୁ ଆସିଲି, ମୋର କାର୍ଯ୍ୟ କ'ଣ, ମୁଁ କାହାର ପୁତ୍ର ହୋଇ ଉତ୍ପନ୍ନ ହେଲି ଓ କିଏ ମୋତେ ସୃଷ୍ଟି କଲା— ଏହି ପ୍ରକାର ସଂଶୟରେ ଘାଣ୍ଟି ହେଉ ହେଉ ମୋ ମନରେ ବିଚାର ଉଦୟ ହେଲା ଯେ—"ମୁଁ କାହିଁକି ମୋହରେ ପଡ଼ିଛି? ଯିଏ ମୋତେ ସୃଷ୍ଟି କରିଛି, ତାକୁ ଖୋଜିବା ତ ବହୁତ ସହଜ । ଏ ପଦ୍ମର ଯେଉଁ ପତ୍ରଯୁକ୍ତ ନାଳ ଅଛି, ତାହାର ଉଦ୍‌ଗମ ସ୍ଥାନ ତ ଜଳର ଭିତରକୁ ଯାଇଛି । ମୋର ସ୍ରଷ୍ଟା ନିଶ୍ଚୟ ସେଇଠି ଥିବ ।"

ଏପରି ନିର୍ଣ୍ଣୟ କରି ମୁଁ ପଦ୍ମରୁ ତଳକୁ ଓହ୍ଲାଇଲି । ମୁନେ ! ମୁଁ ସେହି ପଦ୍ମର ପ୍ରତ୍ୟେକ ନାଳ ଭିତରେ ପ୍ରବେଶ କଲି ଏବଂ ଶହ ଶହ ବର୍ଷ ସେଥିମଧ୍ୟରେ ଭ୍ରମଣ କଲି, କିନ୍ତୁ କେଉଁଠି ହେଲେ ପଦ୍ମର ଉଦ୍‌ଗମ ସ୍ଥାନ ପାଇଲି ନାହିଁ । ତା'ପରେ ମୁଁ ପୁନଃ ସଂଶୟରେ ପଡ଼ି ସେହି ପଦ୍ମର ଉପରକୁ ଯିବାକୁ ଉତ୍ସୁକ ହେଲି ଓ ପଦ୍ମନାଳ ମାର୍ଗ ଦେଇ ତା' ଉପରକୁ ଚଢ଼ିଲି । ଏଭଳିଭାବରେ ବହୁତ ଉପରକୁ ଯିବା ସତ୍ତ୍ୱେ ମୁଁ ପଦ୍ମକୋଷର ସନ୍ଧାନ ପାଇଲି ନାହିଁ । ମୁଁ ଆହୁରି ଅଧିକ ମୋହିତ ହୋଇଗଲି । ମୁନେ ! ସେତିକିବେଳେ ମୋର ମୋହକୁ ଦୂର କରିବା ପାଇଁ ଶିବଙ୍କ ଇଚ୍ଛାରେ ପରମ ମଙ୍ଗଳମୟୀ ଶୂନ୍ୟବାଣୀ ହେଲା । ମୋତେ ଶୁଭିଲା, 'ତପ' (ତପସ୍ୟା କର) । ଏଭଳି ଶୂନ୍ୟବାଣୀକୁ ଶୁଣି ମୁଁ ମୋର ଜନ୍ମଦାତା ପିତାଙ୍କ ଦର୍ଶନ ଇଚ୍ଛାରେ ପୁନଃ ସେଠାରେ ବାରବର୍ଷ ପର୍ଯ୍ୟନ୍ତ ଘୋର

ତପସ୍ୟା କଲି । ମୋ ଉପରେ ଅନୁଗ୍ରହ କରିବାକୁ ସୁନ୍ଦର ନେତ୍ରରେ ସୁଶୋଭିତ ଚତୁର୍ଭୁଜଧାରୀ ବିଷ୍ଣୁ ସେଠାରେ ପ୍ରକଟ ହୋଇଗଲେ । ସେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରିଥିଲେ । ତାଙ୍କର ସମଗ୍ର ଅଙ୍ଗ ସଜଳ ଜଳଧରତୁଲ୍ୟ ଶ୍ୟାମଳ କାନ୍ତିରେ ଶୋଭିତ ହେଉଥିଲା । ସେ ସୁନ୍ଦର ପାଟ ପୀତାମ୍ବର ପିନ୍ଧିଥିଲେ । ତାଙ୍କର ମସ୍ତକ ଆଦି ଅଙ୍ଗରେ ମୁକୁଟ ପ୍ରଭୃତି ଶୋଭା ପାଉଥିଲା । ତାଙ୍କ ମୁଖାରବିନ୍ଦ ପ୍ରସନ୍ନତାରେ ଉତ୍‌ଫୁଲ୍ଲିତ ଥିଲା । ମୁଁ ତାଙ୍କ ଶୋଭାରେ ମୋହିତ ହୋଇଗଲି । ସେ ମୋତେ କୋଟି କାମଦେବଙ୍କ ପରି ମନୋହର ଜଣାପଡ଼ିଲେ । ତାଙ୍କର ଏଭଳି ଅତିଶୟ ସୁନ୍ଦର ରୂପ ଦେଖି ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସେ ଶ୍ୟାମଳ ଓ ସ୍ୱର୍ଣ୍ଣିମ ଆଭାରେ ଉଦ୍ଭାସିତ ହେଉଥିଲେ । ଏଭଳି ସ୍ୱରୂପରେ ସଦସଦ୍‌ସ୍ୱରୂପ, ସର୍ବାତ୍ମା, ଚତୁର୍ଭୁଜଧାରୀ, ମହାବାହୁ ନାରାୟଣଦେବ ମୋ ପାଖରେ ଉପସ୍ଥିତ ଥିବା ଦେଖି ମୋତେ ସେତେବେଳେ ଅତ୍ୟନ୍ତ ହର୍ଷ ଅନୁଭବ ହେଲା ।

ତା'ପରେ ନାରାୟଣଙ୍କ ସହ ମୋର ବାର୍ତ୍ତାଳାପ ହେଲା । ଶିବଙ୍କ ଇଚ୍ଛାରେ ଆମ ଦୁହିଙ୍କ ଭିତରେ କିଛି ବିବାଦ ଆରମ୍ଭ ହୋଇଗଲା । ଇତିମଧ୍ୟରେ ଆମ ଦୁହିଙ୍କ ମଧ୍ୟରେ ଗୋଟିଏ ବିରାଟ ଅଗ୍ନିସ୍ତମ୍ଭ (ଜ୍ୟୋତିର୍ମୟଲିଙ୍ଗ) ପ୍ରକଟ ହୋଇଗଲା । ମୁଁ ଏବଂ ବିଷ୍ଣୁ ଯଥାକ୍ରମେ ସେହି ଅଗ୍ନିସ୍ତମ୍ଭର ଉପରକୁ ଓ ତଳକୁ ଯାଇ ତାହାର ଆଦି-ଅନ୍ତ ଖୋଜିବାକୁ ଚେଷ୍ଟା କଲୁ । ମାତ୍ର ଆଦି-ଅନ୍ତ ପାଇଲୁ ନାହିଁ । ଶେଷରେ କ୍ଳାନ୍ତ ହୋଇ ମୁଁ ଉପରୁ ତଳକୁ ଫେରିଆସିଲି ଏବଂ ବିଷ୍ଣୁ ତଳୁ ଉପରକୁ ଫେରିଆସିଲେ । ଦୁହେଁ ଭେଟ ହେଲୁ । ଦୁହେଁ ଶିବଙ୍କ ମାୟାରେ ମୋହିତ ଥିଲୁ । ମୋ ସହିତ ଶ୍ରୀହରି ମଧ୍ୟ ଆଗପଟରୁ, ପଛପଟରୁ ଓ କଡ଼ରୁ ପରମେଶ୍ୱର ଶିବଙ୍କୁ ପ୍ରଣାମ କଲେ । ତା'ପରେ ସେ ଭାବିଲେ—ଏ କି ବସ୍ତୁ? ଏହାର ସ୍ୱରୂପର ନିରୂପଣ କରାଯାଇ ପାରିବ ନାହିଁ; କାରଣ ଏହାର ନା କିଛି ନାମ ଅଛି, ନା କର୍ମ ଅଛି । ଲିଙ୍ଗରହିତ ତତ୍ତ୍ୱ ହିଁ ଏଠାରେ ଲିଙ୍ଗଭାବକୁ ପ୍ରାପ୍ତ ହୋଇଛି । ଧ୍ୟାନମାର୍ଗରେ ମଧ୍ୟ ଏହାର ସ୍ୱରୂପକୁ ଜାଣିହେବ ନାହିଁ । ଏହା ପରେ ମୁଁ ଏବଂ ଶ୍ରୀହରି ନିଜ ନିଜ ଚିତ୍ତକୁ ଶାନ୍ତ କରି ସେହି ଅଗ୍ନିସ୍ତମ୍ଭକୁ ପ୍ରଣାମ କଲୁ ।



ଆମେ କହିଲୁ—ମହାପ୍ରଭୋ ! ଆମେ ଆପଣଙ୍କ ସ୍ୱରୂପକୁ ଜାଣୁନା । ଆପଣ ଯେ କେହି ହୋଇଥାନ୍ତୁ ନା କାହିଁକି, ଆପଣଙ୍କୁ ଆମର ନମସ୍କାର । ମହେଶାନ ! ଆପଣ ଶୀଘ୍ର ଆପଣଙ୍କ ଯଥାର୍ଥ ସ୍ୱରୂପର ଦର୍ଶନ କରାନ୍ତୁ ।

ମୁନିଶ୍ରେଷ୍ଠ ! ଅହଂକାରରେ ଆବିଷ୍ଟ ଆମେ ଦୁହେଁ ଏହିପରି ନମସ୍କାର କରିବାକୁ ଲାଗିଲୁ ଓ ଏଭଳି କରୁ କରୁ ଆମର ଶହେ ବର୍ଷ ବିତିଗଲା ।

(ଅଧ୍ୟାୟ ୭)

⁂

# ବ୍ରହ୍ମା ଓ ବିଷ୍ଣୁଙ୍କୁ ଭଗବାନ ଶିବଙ୍କର ଶବ୍ଦମୟ ତନୁର ଦର୍ଶନ

ବ୍ରହ୍ମା କହୁଛନ୍ତି—ମୁନିବର ନାରଦ ! ଏହିରୂପେ ଆମେ ଦୁଇ ଦେବତା ଗର୍ବଶୂନ୍ୟ ହୋଇ ନିରନ୍ତର ପ୍ରଣାମ କଲୁ । ଆମ ମନରେ ଏକମାତ୍ର ସେହି ଜ୍ୟୋତିର୍ଲିଙ୍ଗ ରୂପରେ ପ୍ରକଟିତ ପରମେଶ୍ୱରଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରିବାର ଅଭିଳାଷ ରହିଥିଲା । ଭଗବାନ ଶଙ୍କର ଦୀନଜନଙ୍କର ପ୍ରତିପାଳକ, ଅହଂକାରୀଙ୍କ ଗର୍ବ ଚୂର୍ଣ୍ଣକାରୀ ଓ ଅବିନାଶୀ ପ୍ରଭୁ । ସେ ଆମ ଦୁହିଙ୍କ ଉପରେ ଦୟା କଲେ । ସେତେବେଳେ ସେହି ସୁରଶ୍ରେଷ୍ଠଙ୍କ ଠାରୁ 'ଓମ୍ ଓମ୍' ଏପରି ଶବ୍ଦରୂପୀ ନାଦ ପ୍ରକଟ ହେଲା, ଯାହାକି ସ୍ପଷ୍ଟରୂପେ ଶୁଭୁଥିଲା । ସେହି ନାଦ ପ୍ଲୁତ ସ୍ୱରରେ ଅଭିବ୍ୟକ୍ତ ହୋଇଥିଲା । ଉଚ୍ଚ ଧ୍ୱନିରେ ପ୍ରକଟ ହୋଇଥିବା ସେହି ଶବ୍ଦ ବିଷୟରେ 'ଏହା କଣ' ବୋଲି ଭାବି ଭଗବାନ ବିଷ୍ଣୁ ମୋ ସଙ୍ଗରେ ସନ୍ତୁଷ୍ଟ ଚିତ୍ତରେ ଠିଆ ହୋଇ ରହିଲେ । ସେ ନିର୍ବୈର ଥିଲେ । ସେ ଲିଙ୍ଗର ଦକ୍ଷିଣଭାଗରେ ସନାତନ ଆଦିବର୍ଣ୍ଣ ଅକାରର ଦର୍ଶନ କଲେ । ଉତ୍ତରଭାଗରେ ଉକାରର, ମଧ୍ୟଭାଗରେ ମକାରର ଓ ଶେଷରେ 'ଓମ୍' ଏହି ନାଦର ସାକ୍ଷାତ୍ ଦର୍ଶନ ଓ ଅନୁଭବ କଲେ । ଦକ୍ଷିଣଭାଗରେ ପ୍ରକଟିତ ଆଦିବର୍ଣ୍ଣ ଅକାରକୁ ସୂର୍ଯ୍ୟମଣ୍ଡଳ ସଦୃଶ ଦେଦୀପ୍ୟମାନ ଦେଖି ସେ ଉତ୍ତରଭାଗକୁ ଦୃଷ୍ଟିପାତ କଲାରୁ ସେଠାରେ ଉକାର ବର୍ଣ୍ଣ ଅଗ୍ନିତୁଲ୍ୟ ଦୀପ୍ତିମାନ ଦେଖାଗଲା । ମୁନିଶ୍ରେଷ୍ଠ ! ଏହାପରେ ସେ ମଧ୍ୟଭାଗରେ ମକାରକୁ ଚନ୍ଦ୍ରମଣ୍ଡଳତୁଲ୍ୟ ଦୀପ୍ତିମନ୍ତ ଦେଖିଲେ । ତତ୍ପଶ୍ଚାତ୍ ତା'ର ଉପର ଭାଗକୁ ଦୃଷ୍ଟି ଦେବାରୁ ଶୁଦ୍ଧସ୍ଫଟିକମଣିତୁଲ୍ୟ ନିର୍ମଳପ୍ରଭାଯୁକ୍ତ, ତୁରୀୟାତୀତ, ଅମଳ, ନିଷ୍କଳ, ନିରୁପଦ୍ରବ, ନିର୍ଦ୍ୱନ୍ଦ୍ୱ, ଅଦ୍ୱିତୀୟ, ଶୂନ୍ୟମୟ, ବାହ୍ୟ-ଆଭ୍ୟନ୍ତରଭେଦରହିତ, ବାହ୍ୟାଭ୍ୟନ୍ତରଭେଦଯୁକ୍ତ, ଜଗତର ଭିତର ଓ ବାହାରେ ବିଦ୍ୟମାନ, ଆଦି-ମଧ୍ୟ-ଅନ୍ତରହିତ, ଆନନ୍ଦର ଆଦିକାରଣ ତଥା ସବୁରି ପରମ ଆଶ୍ରୟ, ସତ୍ୟ, ଆନନ୍ଦ ଓ ଅମୃତସ୍ୱରୂପ ପରବ୍ରହ୍ମର ସାକ୍ଷାତ୍କାର କଲେ ।

ସେତିକିବେଳେ ଶ୍ରୀହରି ଭାବିଲେ ଯେ ଏଠାରେ ଏ ଅଗ୍ନିସ୍ତମ୍ଭ କେଉଁଠୁ ସୃଷ୍ଟି ହେଲା? ଆମେ ଦୁହେଁ ପୁଣି ଥରେ ପରୀକ୍ଷା କରି ଦେଖିବା । ମୁଁ ଏହି ଅନୁପମ ଅନଳସ୍ତମ୍ଭର ତଳ ଆଡ଼କୁ ଯିବି । ଏଭଳି ଚିନ୍ତା କରି ଶ୍ରୀହରି ଉଭୟ ବେଦ ଓ ଶବ୍ଦ ଆବେଶରେ ଯୁକ୍ତ ବିଶ୍ୱାତ୍ମା ଶିବଙ୍କୁ ଚିନ୍ତନ କଲେ । ସେତିକିବେଳେ ସେଠାରେ ଜଣେ ଋଷି ଆବିର୍ଭୂତ ହେଲେ । ସେ ଥିଲେ ଋଷିମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତାଙ୍କରି ଠାରୁ ପରମେଶ୍ୱର ବିଷ୍ଣୁ ଜାଣିଲେ ଯେ ସାକ୍ଷାତ୍ ପରବ୍ରହ୍ମସ୍ୱରୂପ ମହାଦେବ ହିଁ ସେଠାରେ ଶବ୍ଦବ୍ରହ୍ମମୟ ତନୁଧାରୀ ପରମଲିଙ୍ଗ ରୂପରେ ପ୍ରକଟ ହୋଇଛନ୍ତି । ସେ ଚିନ୍ତାରହିତ (ଅଥବା ଅଚିନ୍ତ୍ୟ) ରୁଦ୍ର । ମନ ସମେତ ବାଣୀ ଯାହାଙ୍କ ପାଖରେ ପହଞ୍ଚି ନ ପାରି ଫେରି ଆସନ୍ତି, ସେହି ପରବ୍ରହ୍ମ ପରମାତ୍ମା ଶିବଙ୍କ ବାଚକ ହେଉଛି ଏକାକ୍ଷର (ପ୍ରଣବ), ସେ ଏହାର ବାଚ୍ୟାର୍ଥରୂପ । ସେହି ପରମ କାରଣ, ଋତ, ସତ୍ୟ, ଆନନ୍ଦ ଏବଂ ଅମୃତସ୍ୱରୂପ ପରାତ୍ପର ପରବ୍ରହ୍ମ ହେଉଛନ୍ତି ଏକାକ୍ଷରର ବାଚ୍ୟ । ପ୍ରଣବର ଗୋଟିଏ ଅକ୍ଷର 'ଅ'କାର ଜଗତର ବୀଜଭୂତ ଅଣ୍ଡଜନ୍ମା ଭଗବାନ ବ୍ରହ୍ମାଙ୍କ ବୋଧକ । ତାହାର ଦ୍ୱିତୀୟ ଅକ୍ଷର 'ଉ'କାର ପରମ କାରାଣରୂପ ଶ୍ରୀହରିଙ୍କ ବୋଧକ ଏବଂ ତୃତୀୟ ଅକ୍ଷର 'ମ'କାର ଭଗବାନ ନୀଳଲୋହିତ ଶିବଙ୍କ ବୋଧକ । ଅକାର ସୃଷ୍ଟିକର୍ତ୍ତା, ଉକାର ମୋହରେ ପକାଏ ଓ ମକାର ନିତ୍ୟ ଅନୁଗ୍ରହ କରିଥାଏ । ମକାରବୋଧ୍ୟ ସର୍ବବ୍ୟାପୀ ଶିବ ବୀଜୀ (ବୀଜମାତ୍ରର ସ୍ୱାମୀ) ଏବଂ ଅକାରସଂଜ୍ଞକ ମୁଁ ବ୍ରହ୍ମା ହେଉଛି ବୀଜ । ଉକାର ନାମଧାରୀ ଶ୍ରୀହରି

ଯୋନି ଅଟନ୍ତି । ପ୍ରଧାନ ଓ ପୁରୁଷଙ୍କର ମଧ୍ୟ ଯେଉଁ ମହେଶ୍ୱର ଈଶ୍ୱର ଅଟନ୍ତି, ସେ ବୀଜୀ, ବୀଜ ଓ ଯୋନି ମଧ୍ୟ ଅଟନ୍ତି । ତାଙ୍କୁ 'ନାଦ' କୁହାଯାଏ । (ତାଙ୍କରି ଭିତରେ ସବୁ ସମାବିଷ୍ଟ ଅଟେ ।) ବୀଜୀ ନିଜ ଇଚ୍ଛାରେ ତାଙ୍କ ବୀଜକୁ ଅନେକ ରୂପରେ ବିଭକ୍ତ କରି ସ୍ଥିତ ଅଟନ୍ତି । ଏହି ବୀଜୀ ଭଗବାନ ମହେଶ୍ୱରଙ୍କ ଲିଙ୍ଗରୁ ଅକାରରୂପ ବୀଜ ପ୍ରକଟ ହେଲା, ଯାହାକି ଉକାରରୂପ ଯୋନିରେ ସ୍ଥାପିତ ହୋଇ ସର୍ବଦିଗରେ ବୃଦ୍ଧି ପାଇଲା । ତାହା ସୁବର୍ଣ୍ଣମୟ ଅଣ୍ଡରୂପରେ ହିଁ ଲକ୍ଷଣୀୟ ଥିଲା । ତାହାର ଅନ୍ୟ କିଛି ବିଶେଷ ଲକ୍ଷଣ ଲକ୍ଷିତ ହେଉ ନ ଥିଲା । ଉକ୍ତ ଦିବ୍ୟ ଅଣ୍ଡ ଅନେକ ବର୍ଷ ଜଳରେ ରହିଲା । ହଜାର ବର୍ଷ ପରେ ତାହା ଦୁଇ ଫାଳ ହୋଇଗଲା । ଜଳରେ ଥିବା ସେହି ଅଣ୍ଡ ଅଜନ୍ମା ବ୍ରହ୍ମାଙ୍କର ଉତ୍ପତ୍ତି ସ୍ଥାନ ଥିଲା ଓ ସାକ୍ଷାତ୍ ମହେଶ୍ୱରଙ୍କ ଆଘାତରେ ହିଁ ଫାଟି ଦୁଇ ଫାଳ ହୋଇଯାଇଥିଲା । ସେହି ଅବସ୍ଥାରେ ତାହାର ଉପରିଭାଗର ସୁବର୍ଣ୍ଣମୟ କପାଳ (ଫାଳ) ଅତ୍ୟନ୍ତ ଶୋଭା ପାଇଲା ଏବଂ ତାହା ହେଲା ଦ୍ୟୁଲୋକ । ତଳ ଫାଳଟି ହେଉଛି ଏହି ପଞ୍ଚଲକ୍ଷଣଯୁକ୍ତ ପୃଥିବୀ । ସେହି ଅଣ୍ଡରୁ ବ୍ରହ୍ମା ଉତ୍ପନ୍ନ ହେଲେ, ତାଙ୍କର ସଂଜ୍ଞା ହେଉଛି 'କ' । ସେ ସମସ୍ତ ଲୋକର ସ୍ରଷ୍ଟା । ଏହିପ୍ରକାରେ ଭଗବାନ ମହେଶ୍ୱର ହିଁ 'ଅ', 'ଉ' ଓ 'ମ୍' ଏଭଳି ତ୍ରିବିଧ ରୂପରେ ବର୍ଣ୍ଣିତ । ଏହି ଅଭିପ୍ରାୟରେ ପୂର୍ବୋକ୍ତ ଜ୍ୟୋତିର୍ଲିଙ୍ଗସ୍ୱରୂପ ସଦାଶିବ 'ଓଁ' 'ଓଁ' ଉଚ୍ଚାରଣ କଲେ—ଏହା ଯଜୁର୍ବେଦର ଶ୍ରେଷ୍ଠ ମନ୍ତ୍ରଗଣ କହନ୍ତି । ଯଜୁର୍ବେଦର ଶ୍ରେଷ୍ଠ ମନ୍ତ୍ରମାନଙ୍କର ଏହି କଥନ ଶୁଣି ଋଗ୍ ଓ ସାମମନ୍ତ୍ରମାନେ ମଧ୍ୟ ଆମକୁ ଆଦରପୂର୍ବକ କହିଲେ, ''ହେ ହରେ ! ହେ ବ୍ରହ୍ମନ୍ ! ଏହି କଥା ଯଥାର୍ଥ ।'' ଏହିରୂପେ ଦେବେଶ୍ୱର ଶିବଙ୍କୁ ଜାଣି ଶ୍ରୀହରି ଶକ୍ତିସମ୍ଭୂତ ମନ୍ତ୍ରମାନଙ୍କ ଦ୍ୱାରା ଉତ୍ତମ ଓ ମହାନ୍ ଅଭ୍ୟୁଦୟରେ ଶୋଭିତ ମହେଶ୍ୱରଙ୍କୁ ସ୍ତୁତି କଲେ । ଇତିମଧ୍ୟରେ ମୁଁ ଓ ବିଶ୍ୱପାଳକ ବିଷ୍ଣୁ ଆହୁରି ଏକ ଅଦ୍ଭୁତ ଓ ସୁନ୍ଦର ରୂପ ଦେଖିଲୁ । ମୁନେ ! ସେହି ରୂପ ପଞ୍ଚମୁଖଯୁକ୍ତ ଓ ଦଶଭୁଜଧାରୀ ଥିଲା । ତାଙ୍କର କାନ୍ତି ଥିଲା କର୍ପୂର ପରି ଧବଳ । ସେ ନାନା ପ୍ରକାର ଛଟାରେ ଶୋଭମାନ୍ ଓ ନାନା ଆଭୂଷଣରେ ବିଭୂଷିତ ଥିଲେ । ଏତାଦୃଶ ପରମ ଉଦାର ମହାପରାକ୍ରମୀ ଓ ମହାପୁରୁଷଙ୍କ ଲକ୍ଷଣରେ ସମ୍ପନ୍ନ ଅତ୍ୟନ୍ତ ଉତ୍କୃଷ୍ଟ ରୂପକୁ ଦର୍ଶନ କରି ଆମେ ଦୁହେଁ କୃତାର୍ଥ ହୋଇଗଲୁ । ଏହାପରେ ପରମେଶ୍ୱର ମହେଶ୍ୱର ପ୍ରସନ୍ନ ହୋଇ ଆପଣା ଦିବ୍ୟ ଶବ୍ଦମୟ ରୂପ ପ୍ରକଟ କରି ସ୍ମିତହାସପୂର୍ବକ ଠିଆ ହୋଇଗଲେ । ଅକାର ତାଙ୍କର ମସ୍ତକ ଓ ଆକାର ଲଲାଟ । ଇକାର ଓ ଈକାର ଯଥାକ୍ରମେ ତାଙ୍କର ଦକ୍ଷିଣ ଓ ବାମ ନେତ୍ର । ଉକାରକୁ ତାଙ୍କର ଡାହାଣ କାନ ଓ ଊକାରକୁ ବାଆଁ କାନ କୁହାଯାଏ । ଋକାର ଓ ୠକାର ଯଥାକ୍ରମେ ତାଙ୍କର ଦକ୍ଷିଣ ଓ ବାମ କପୋଳ । ଌ (ଲୃ) ଓ ୡ (ଦୀର୍ଘ ଲୃ) ତାଙ୍କ ନାକର ଦୁଇଟି ଛିଦ୍ର । ଏକାର ଓ ଐକାର ଯଥାକ୍ରମେ ଉପର ଓଷ୍ଠ ଓ ତଳ ଅଧର । ଓକାର ଓ ଔକାର କ୍ରମଶଃ ତାଙ୍କର ଉପର ଓ ତଳର ଦୁଇ ଦନ୍ତପଙ୍କ୍ତି । ଅଂ ଓ ଅଃ ସେହି ଦେବାଧିଦେବ ଶୂଳଧାରୀ ଶିବଙ୍କର ଦୁଇ ତାଳୁ । 'କ' ବର୍ଗର ପାଞ୍ଚଟି ଅକ୍ଷର ତାଙ୍କର ଦକ୍ଷିଣପାର୍ଶ୍ୱର ପାଞ୍ଚଟି ହାତ, 'ଚ' ବର୍ଗର ପାଞ୍ଚଟି ଅକ୍ଷର ବାମପାର୍ଶ୍ୱର ପାଞ୍ଚଟି ହାତ । 'ଟ' ଓ 'ତ' ବର୍ଗର ପାଞ୍ଚ ପାଞ୍ଚଟି ଅକ୍ଷର ତାଙ୍କର ପାଦ । ପକାର ପେଟ, ଫକାର ଦକ୍ଷିଣପାର୍ଶ୍ୱ ଓ ବକାର ବାମପାର୍ଶ୍ୱ । ଭକାରକୁ କାନ୍ଧ କୁହାଯାଏ । ମକାର ତାଙ୍କର ହୃଦୟ, 'ଯ' ରୁ 'ସ' ପର୍ଯ୍ୟନ୍ତ ସାତଟି ଅକ୍ଷର ସର୍ବବ୍ୟାପୀ ଶିବଙ୍କର ଶବ୍ଦମୟ

ଶରୀରର ସପ୍ତଧାତୁ । ହକାର ତାଙ୍କର ନାଭି ଓ କ୍ଷକାରକୁ ତାଙ୍କର ମେଢ୍ର (ମୂତ୍ରେନ୍ଦ୍ରିୟ) କୁହାଯାଏ । ଏହିରୂପେ ନିର୍ଗୁଣ ଓ ଗୁଣସ୍ୱରୂପ ପରମାତ୍ମାଙ୍କ ଶବ୍ଦମୟ ରୂପକୁ ଭଗବତୀ ଉମାଙ୍କ ସହିତ ଦେଖି ମୁଁ ଓ ଶ୍ରୀହରି ଉଭୟେ କୃତାର୍ଥ ହୋଇଗଲୁ । ଶବ୍ଦବ୍ରହ୍ମମୟ-ତନୁଧାରୀ ମହେଶ୍ୱର ଶିବଙ୍କ ଦର୍ଶନ ପାଇ ଆମେ ଦୁହେଁ ତାଙ୍କୁ ପ୍ରଣାମ କଲୁ । ଶ୍ରୀହରି ପୁନଃ ଉପର ଆଡ଼କୁ ଚାହିଁଲେ । ସେତେବେଳେ ତାଙ୍କୁ ପାଞ୍ଚକଳାଯୁକ୍ତ ଓଁକାରଜନିତ ମନ୍ତ୍ରର ସାକ୍ଷାତ୍କାର ହେଲା । ତା'ପରେ ମହାଦେବଙ୍କର 'ଓଁ ତତ୍ତ୍ୱମସି' ଏହି ମହାବାକ୍ୟ ଦୃଷ୍ଟିଗୋଚର ହେଲା, ଯାହାକି ପରମ ଉତ୍ତମ ମନ୍ତ୍ରରୂପ ତଥା ଶୁଦ୍ଧ ସ୍ଫଟିକତୁଲ୍ୟ ନିର୍ମଳ ଅଟେ । ତା'ପରେ ସମସ୍ତ ଧର୍ମ ଓ ଅର୍ଥର ସାଧକ ତଥା ବୁଦ୍ଧିସ୍ୱରୂପ ଗାୟତ୍ରୀ ନାମକ ଦ୍ୱିତୀୟ ମହାନ୍ ମନ୍ତ୍ର ଲକ୍ଷିତ ହେଲା, ଯାହା ଚବିଶ ଅକ୍ଷରବିଶିଷ୍ଟ ଓ ଚତୁର୍ବର୍ଗ ଫଳଦାତା । ତା'ପରେ ମୃତ୍ୟୁଞ୍ଜୟ ମନ୍ତ୍ର ଓ ତା'ପରେ ପଞ୍ଚାକ୍ଷର ମନ୍ତ୍ର ତଥା ଦକ୍ଷିଣାମୂର୍ତ୍ତିସଂଜ୍ଞକ ଚିନ୍ତାମଣି ମନ୍ତ୍ରର ସାକ୍ଷାତ୍କାର ହେଲା । ଏହରୂପେ ପାଞ୍ଚଟି ମନ୍ତ୍ର ଉପଲବ୍ଧି କରି ଭଗବାନ ଶ୍ରୀହରି ସେଗୁଡ଼ିକୁ ଜପିବାକୁ ଲାଗିଲେ ।

ତା'ପରେ ଋକ୍, ଯଜୁଃ ଓ ସାମ ଯାହାଙ୍କର ରୂପ, ଯେ ଈଶଙ୍କ ମଧ୍ୟରେ ଶ୍ରେଷ୍ଠ ଈଶାନ, ଯେ ପୁରାତନ ପୁରୁଷ, ଯାହାଙ୍କ ହୃଦୟ ଅଘୋର ଅର୍ଥାତ୍ ସୌମ୍ୟ, ଯିଏ ହୃଦୟକୁ ପ୍ରିୟ ଲାଗୁଥିବା ସର୍ବଗୁହ୍ୟ ସଦାଶିବ, ଯାହାଙ୍କ ଚରଣ ପରମ ସୁନ୍ଦର, ଯେ ମହାନ୍ ଦେବତା ଓ ମହାନ୍ ସର୍ପରାଜକୁ ଆଭୂଷଣରୂପେ ଧାରଣ କରନ୍ତି, ଯାହାଙ୍କର ସର୍ବତ୍ର ପାଦ ଓ ନେତ୍ର ରହିଛି, ଯେ ମୋର ଅଧିପତି, କଲ୍ୟାଣକାରୀ ତଥା ସୃଷ୍ଟି, ପାଳନ ଓ ସଂହାରକାରୀ, ସେହି ବରଦାୟକ ସାମ୍ବସଦାଶିବଙ୍କୁ ମୋ ସହିତ ବିଷ୍ଣୁ ପ୍ରିୟ ବଚନ ଦ୍ୱାରା ସନ୍ତୁଷ୍ଟ ଚିତ୍ତରେ ସ୍ତବନ କଲେ ।

(ଅଧ୍ୟାୟ ୮)



## ଉମାଙ୍କ ସହ ଭଗବାନ ଶିବଙ୍କ ପ୍ରାକଟ୍ୟ, ତାଙ୍କ ସ୍ୱମୁଖରୁ ନିଜ ସ୍ୱରୂପର ବିବେଚନ ଏବଂ ବ୍ରହ୍ମାଦି ତ୍ରିଦେବଙ୍କ ଏକତା ପ୍ରତିପାଦନ

ବ୍ରହ୍ମା କହିଲେ—ନାରଦ ! ବିଷ୍ଣୁଙ୍କ ମୁଖରୁ ଏଭଳି ସ୍ତୁତି ଶୁଣି କରୁଣାନିଧି ମହେଶ୍ୱର ଅତି ପ୍ରସନ୍ନ ହେଲେ ଏବଂ ଉମାଦେବୀଙ୍କ ସହିତ ସେଠାରେ ଆବିର୍ଭୂତ ହେଲେ । ସେତେବେଳେ ତାଙ୍କର ପାଞ୍ଚଟି ମୁଖ ଓ ପ୍ରତ୍ୟେକ ମୁଖରେ ତିନୋଟି ଲେଖାଏଁ ନେତ୍ର ଶୋଭା ପାଉଥିଲା । ଭାଲଦେଶରେ ମୁକୁଟ ପରି ଶୋଭା ପାଉଥିଲା ଚନ୍ଦ୍ର । ଜଟାଜୂଟ-ମଣ୍ଡିତ, ଗୌରବର୍ଣ୍ଣ, ବିଶାଳନେତ୍ରଧାରୀ ଶିବ ଆପଣା ଅଙ୍ଗରେ ବିଭୂତି ବୋଳି ହୋଇଥିଲେ । ତାଙ୍କର ଥିଲା ଦଶଭୁଜ ଓ କଣ୍ଠରେ ନୀଳବର୍ଣ୍ଣର ଚିହ୍ନ । ତାଙ୍କର ଶ୍ରୀଅଙ୍ଗ ସମସ୍ତ ଆଭୂଷଣରେ ଭୂଷିତ ଥିଲା । ଭାଲପଟରେ ଭସ୍ମର ତ୍ରିପୁଣ୍ଡ୍ର ଶୋଭା ପାଉଥିଲା । ଏଭଳି ରୂପରେ ମହାଦେବଙ୍କୁ ଭଗବତୀ ଉମାଙ୍କ ସହ ଦେଖି ମୁଁ ଏବଂ ଭଗବାନ ବିଷ୍ଣୁ ପୁନଃ ପ୍ରିୟବାକ୍ୟରେ ତାଙ୍କୁ ସ୍ତୁତି କଲୁ । ପାପହାରୀ କରୁଣାକର ଭଗବାନ ଶିବ ପ୍ରସନ୍ନଚିତ୍ତରେ ଶ୍ରୀବିଷ୍ଣୁଙ୍କୁ ଶ୍ୱାସଦ୍ୱାରା ବେଦ ଉପଦେଶ ଦେଲେ । ମୁନେ ! ତା'ପରେ ଶ୍ରୀହରିଙ୍କୁ ଗୁହ୍ୟ ଜ୍ଞାନ ପ୍ରଦାନ କଲେ । ପୁଣି ମୋ ଉପରେ କୃପା କରି ମୋତେ ମଧ୍ୟ ସେହି ଜ୍ଞାନ ପ୍ରଦାନ କଲେ । ବେଦଜ୍ଞାନ ଲାଭରେ କୃତାର୍ଥ ହୋଇ ମୋ ସହିତ ଭଗବାନ ବିଷ୍ଣୁ ମଧ୍ୟ କର ଯୋଡ଼ି ମହେଶ୍ୱରଙ୍କୁ ନମସ୍କାର କରି ପୁନଃ ତାଙ୍କଠାରୁ ପୂଜନ ବିଧି ଓ ସଦୁପଦେଶ ପ୍ରାପ୍ତ କରିବାକୁ ପ୍ରାର୍ଥନା କଲେ ।

ବ୍ରହ୍ମା କହୁଛନ୍ତି—ମୁନେ ! ଶ୍ରୀହରିଙ୍କ ପ୍ରାର୍ଥନା ଶୁଣି କୃପାନିଧାନ ଭଗବାନ ଶିବ ପ୍ରୀତିପୂର୍ବକ ନିମ୍ନ ପ୍ରକାରେ କହିଲେ ।

ଶ୍ରୀଶିବ କହିଲେ—ହେ ଶ୍ରେଷ୍ଠ ଦେବଗଣ ! ମୁଁ ତୁମ ଦୁହିଙ୍କ ଭକ୍ତିରେ ଅତ୍ୟନ୍ତ ପ୍ରସନ୍ନ । ତୁମେମାନେ ମୋ ଆଡ଼କୁ ଦେଖ । ଏବେ ତୁମମାନଙ୍କୁ ମୋର ଯେଉଁପରି ସ୍ୱରୂପ ଦୃଶ୍ୟ ହେଉଛି, ତାହାକୁ ହିଁ ପ୍ରଯତ୍ନପୂର୍ବକ ପୂଜନ ଚିନ୍ତନ କରିବା ଉଚିତ । ତୁମେ ଦୁହେଁ ମହାବଳୀ ଏବଂ ମୋର ସ୍ୱରୂପଭୂତା ପ୍ରକୃତିରୁ ପ୍ରକଟ ହୋଇଛ । ମୋର ଡାହାଣ ଓ ବାମ ଅଙ୍ଗରୁ ତୁମ ଦୁହିଙ୍କର ଆବିର୍ଭାବ ହୋଇଛି । ଏ ଲୋକପିତାମହ ବ୍ରହ୍ମା ମୋର ଦକ୍ଷିଣପାର୍ଶ୍ୱରୁ ଏବଂ ତୁମେ ବିଷ୍ଣୁ ମୋର ବାମପାର୍ଶ୍ୱରୁ ଉତ୍ପନ୍ନ ହୋଇଛ । ମୁଁ ତୁମ ଦୁହିଙ୍କ ଉପରେ ଅତି ପ୍ରସନ୍ନ । ତେଣୁ ତୁମକୁ ମନୋବାଞ୍ଛିତ ବର ଦେଉଛି । ମୋ ଆଜ୍ଞାରେ ତୁମର ମୋ ପ୍ରତି ସୁଦୃଢ ଭକ୍ତି ହେଉ । ବ୍ରହ୍ମନ୍ ! ତୁମେ ମୋ ଆଜ୍ଞା ପାଳନ କରିବା ସହିତ ଜଗତକୁ ସୃଷ୍ଟି କର । ବତ୍ସ ବିଷ୍ଣୁ ! ତୁମେ ଏ ଚରାଚର ଜଗତର ପାଳନ କର ।

ଆମକୁ ଏପରି କହି ଭଗବାନ ଶଙ୍କର ଆମକୁ ପୂଜାର ଉତ୍ତମ ବିଧି ପ୍ରଦାନ କଲେ, ଯେଉଁ ବିଧିରେ ପୂଜିତ ହୋଇ ସେ ପୂଜକକୁ ଅନେକ ପ୍ରକାର ଫଳ ପ୍ରଦାନ କରନ୍ତି । ଶମ୍ଭୁଙ୍କର ଉପରୋକ୍ତ କଥା ଶୁଣି ମୁଁ ଓ ବିଷ୍ଣୁ କର ଯୋଡ଼ି ପ୍ରଣାମ କରି କହିଲୁ—

ଭଗବାନ ବିଷ୍ଣୁ କହିଲେ—ପ୍ରଭୋ ! ଯଦି ଆମ ଉପରେ ଆପଣଙ୍କ ହୃଦୟରେ ପ୍ରୀତି ଉତ୍ପନ୍ନ ହୋଇଛି, ଆଉ ଯଦି ଆମକୁ ବର ଦେବାକୁ ଆବଶ୍ୟକ ମଣୁଛନ୍ତି, ତେବେ ଏହି ବର ଦିଅନ୍ତୁ ଯେ ଆମ ଦୁହିଙ୍କର ଆପଣଙ୍କ ପ୍ରତି ସଦା ଅବିଚଳ ଅନନ୍ୟ ଭକ୍ତି ରହୁ ।

ବ୍ରହ୍ମା କହିଲେ—ମୁନେ ! ଶ୍ରୀହରିଙ୍କ କଥା ଶୁଣି ହର ପୁନଃ ସେଠାରେ ନତମସ୍ତକ ହୋଇ କର ଯୋଡ଼ି ଦଣ୍ଡାୟମାନ ହୋଇଥିବା ନାରାୟଣଙ୍କୁ କହିଲେ—

ଶ୍ରୀମହେଶ୍ୱର କହିଲେ—ମୁଁ ସୃଷ୍ଟି, ପାଳନ ଓ ସଂହାରର କର୍ତ୍ତା, ସଗୁଣ, ନିର୍ଗୁଣ ତଥା ସଚ୍ଚିଦାନନ୍ଦ-ସ୍ୱରୂପ ନିର୍ବିକାର ପରବ୍ରହ୍ମ ପରମାତ୍ମା । ବିଷ୍ଣୋ ! ସୃଷ୍ଟି, ରକ୍ଷା ଓ ପ୍ରଳୟରୂପୀ ଗୁଣ ଅଥବା କାର୍ଯ୍ୟ ଭେଦରେ ମୁଁ ହିଁ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ନାମ ଧାରଣ କରି ତିନି ସ୍ୱରୂପରେ ବିଭକ୍ତ ହୋଇଛି । ହରେ ! ବାସ୍ତବରେ ମୁଁ ସଦା ନିଷ୍କଳ । ତୁମେ ଓ ବ୍ରହ୍ମା ମୋର ଅବତାର ନିମିତ୍ତ ଯେଉଁ ସ୍ତୁତିପୂର୍ବକ ପ୍ରାର୍ଥନା କଲ, ତାହାକୁ ନିଶ୍ଚୟ ସତ୍ୟରେ ପରିଣତ କରିବି; କାରଣ ମୁଁ ଭକ୍ତବତ୍ସଳ । ବ୍ରହ୍ମନ୍ ! ମୋର ଠିକ୍ ଏହିପରି ପରମୋତ୍କୃଷ୍ଟ ରୂପ ତୁମ ଶରୀରରୁ ଏ ଲୋକରେ ପ୍ରକଟ ହେବ, ଯାହାର ନାମ ହେବ 'ରୁଦ୍ର' । ମୋର ଅଂଶରୁ ଉତ୍ପନ୍ନ ରୁଦ୍ରଙ୍କର ସାମର୍ଥ୍ୟ ମୋ ଠାରୁ କିଛି କମ୍ ହେବ ନାହିଁ । ମୁଁ ଯାହା, ସେହି ରୁଦ୍ର ମଧ୍ୟ ତାହା । ଆମ ଦୁହିଙ୍କ ପୂଜାର ବିଧିବିଧାନରେ ମଧ୍ୟ କିଛି ଅନ୍ତର ରହିବ ନାହିଁ । କୌଣସି ଜ୍ୟୋତିର ଜଳାଦି ସହିତ ସଂପର୍କ ହେଲେ ମଧ୍ୟ ଯେପରି ତାହାକୁ ସ୍ପର୍ଶଦୋଷ ଲାଗେ ନାହିଁ, ସେହିପରି ମାଦୃଶ ନିର୍ଗୁଣ ପରମାତ୍ମାକୁ କାହାରି ସଂଯୋଗରୁ ବନ୍ଧନ ପ୍ରାପ୍ତ ହୁଏ ନାହିଁ । ଏହା ମୋର ଶିବରୂପ । ଯେବେ ରୁଦ୍ର ପ୍ରକଟ ହେବେ, ସେ ମଧ୍ୟ ଶିବଙ୍କ ତୁଲ୍ୟ ହେବେ । ମହାମୁନେ ! ରୁଦ୍ର ଓ ଶିବଙ୍କ ମଧ୍ୟରେ ଭେଦବୁଦ୍ଧି କରିବା ଅନୁଚିତ । ବସ୍ତୁତଃ ସେହି ଗୋଟିଏ ରୂପ ହିଁ ଜଗତରେ ବ୍ୟବହାର ନିର୍ବାହ ନିମିତ୍ତ ଦୁଇ ରୂପରେ ବିଭକ୍ତ ହୋଇଛି । ମୋ ବିଗ୍ରହରେ ସମଗ୍ର ଦୃଶ୍ୟମାତ୍ର ଶିବରୂପ ଅଟେ ।

ମୁଁ, ତୁମେ, ବ୍ରହ୍ମା ତଥା ପ୍ରକଟ ହେବାକୁ ଯାଉଥିବା ଏ ରୁଦ୍ର ସମସ୍ତେ ଏକ ଅଟନ୍ତି । ଏମାନଙ୍କ

ମଧ୍ୟରେ ଭେଦ ନାହିଁ । ଭେଦ ମାନିଲେ ନିଶ୍ଚୟ ବନ୍ଧନ ହେବ । ତଥାପି ମୋର ଶିବରୂପ ହିଁ ସନାତନ । ଏହାକୁ ସର୍ବଦା ସବୁ ରୂପର ମୂଳ କୁହାଯାଏ । ଏହା ସତ୍ୟ, ଜ୍ଞାନ ଓ ଅନନ୍ତ ବ୍ରହ୍ମ ।* ଏହା ଜାଣି ସର୍ବଦା ମନରେ ମୋର ଯଥାର୍ଥ ସ୍ୱରୂପକୁ ଦର୍ଶନ କରିବା ଉଚିତ । ବ୍ରହ୍ମନ୍ ! ଶୁଣ, ମୁଁ ତୁମକୁ ଗୋଟିଏ ଗୋପନୀୟ କଥା କହୁଛି । ମୁଁ ସ୍ୱୟଂ ବ୍ରହ୍ମାଙ୍କ ଭ୍ରୂକୁଟିରୁ ପ୍ରକଟ ହେବି । ଗୁଣାନୁସାରେ ମଧ୍ୟ ମୋର ପ୍ରାକଟ୍ୟ ହୁଏ ବୋଲି କୁହାଯାଏ; ଯଥା—ଲୋକ କହିଥାନ୍ତି ଯେ 'ହର ହେଉଛନ୍ତି ତାମସ ପ୍ରକୃତିର' । ବାସ୍ତବରେ ସେହି ରୂପରେ ଅହଂକାରର ବର୍ଣ୍ଣନା ହୋଇଛି । ସେହି ଅହଂକାରକୁ କେବଳ ତାମସ ନୁହେଁ, ବରଂ ବୈକାରିକ (ସାତ୍ତ୍ୱିକ) ବୋଲି ମଧ୍ୟ ବୁଝିବା ଉଚିତ (କାରଣ ସାତ୍ତ୍ୱିକ ଦେବଗଣ ବୈକାରିକ ଅହଂକାରରୁ ସୃଷ୍ଟ) । ଏହି ତାମସ ଓ ସାତ୍ତ୍ୱିକ ଆଦି ଭେଦ କେବଳ ନାମକୁ ମାତ୍ର, ଏହାର ବାସ୍ତବିକ ସତ୍ତା ନାହିଁ । ବାସ୍ତବରେ 'ହର'ଙ୍କୁ ତାମସ କୁହାଯାଇ ପାରିବ ନାହିଁ । ବ୍ରହ୍ମନ୍ ! ଏହି କାରଣରୁ ତୁମେ ଗୋଟିଏ କାମ କର । ତୁମେ ଏ ସୃଷ୍ଟିର ନିର୍ମାତା ହୁଅ, ବିଷ୍ଣୁ ଏହାର ପାଳନକାରୀ ହୁଅନ୍ତୁ ଏବଂ ମୋ ଅଂଶରୁ ଯେଉଁ ରୁଦ୍ର ପ୍ରକଟ ହେବେ, ସେ ଏହାର ପ୍ରଳୟକର୍ତ୍ତା ହେବେ । 'ଉମା' ନାମରେ ବିଖ୍ୟାତ ସ୍ୱୟଂ ପରମେଶ୍ୱରୀ ପ୍ରକୃତି-ଦେବୀଙ୍କର ଶକ୍ତିଭୂତା ବାଗ୍‌ଦେବୀ ବ୍ରହ୍ମାଙ୍କର ସେବା କରିବେ । ପୁଣି ପ୍ରକୃତିଦେବୀଙ୍କ ଠାରୁ ଯେଉଁ ଦ୍ୱିତୀୟ ଶକ୍ତି ପ୍ରକଟ ହେବେ, ସେ ଲକ୍ଷ୍ମୀରୂପେ ଭଗବାନ ବିଷ୍ଣୁଙ୍କ ଆଶ୍ରୟ ନେବେ । ତା'ପରେ କାଳୀ ନାମରେ ଯେଉଁ ତୃତୀୟ ଶକ୍ତି ପ୍ରକଟ ହେବେ, ସେ ନିଶ୍ଚୟ ମୋର ଅଂଶଭୂତ ରୁଦ୍ରଦେବଙ୍କୁ ପ୍ରାପ୍ତ ହେବେ । ସେ କାର୍ଯ୍ୟସିଦ୍ଧି ନିମନ୍ତେ ସେଠାରେ ଜ୍ୟୋତିରୂପରେ ପ୍ରକଟ ହେବେ । ଏହିରୂପେ ମୁଁ ଦେବୀଙ୍କ ଶୁଭସ୍ୱରୂପା ପରାଶକ୍ତିମାନଙ୍କର ପରିଚୟ ଦେଲି । ସେମାନଙ୍କର କାର୍ଯ୍ୟ ହେଲା ଯଥାକ୍ରମେ ସୃଷ୍ଟି, ପାଳନ ଓ ସଂହାରର ସଂପାଦନ । ସୁରଶ୍ରେଷ୍ଠ ! ଏ ସମସ୍ତେ ମୋର ପ୍ରିୟା ପ୍ରକୃତିଦେବୀଙ୍କ ଅଂଶଭୂତା । ହରେ ! ତୁମେ ଲକ୍ଷ୍ମୀଙ୍କ ସାହାଯ୍ୟ ନେଇ କାର୍ଯ୍ୟ କର । ବ୍ରହ୍ମନ୍ ! ତୁମେ ପ୍ରକୃତିର ଅଂଶଭୂତା ବାଗ୍‌ଦେବୀଙ୍କୁ ନେଇ ମୋ ଆଜ୍ଞାନୁସାରେ ମନଯୋଗପୂର୍ବକ ସୃଷ୍ଟିକାର୍ଯ୍ୟର ସଂଚାଳନ କରିବା ଉଚିତ ଏବଂ ମୁଁ ମୋର ପ୍ରିୟାର ଅଂଶଭୂତା ପରାତ୍ପର କାଳୀଙ୍କ ଆଶ୍ରୟ ନେଇ ରୁଦ୍ରରୂପରେ ପ୍ରଳୟ ସଂବନ୍ଧୀୟ ଉତ୍ତମ କାର୍ଯ୍ୟ କରିବି । ନାନା ଆଶ୍ରମ ଓ କାର୍ଯ୍ୟ ଭେଦରେ ବିଭକ୍ତ ଏବଂ ନାନା ବର୍ଣ୍ଣରେ ପରିପୂର୍ଣ୍ଣ ଏହି ଜଗତର ସୃଜନ, ପାଳନ ଇତ୍ୟାଦି କରି ତୁମେ ସମସ୍ତେ ସୁଖ ଲାଭ କରିବ । ହରେ ! ତୁମେ ଜ୍ଞାନ ଓ ବିଜ୍ଞାନରେ ସମ୍ପନ୍ନ ତଥା ସମଗ୍ର ଜଗତର ହିତୈଷୀ ହେବ । ତେଣୁ ମୋ ଆଜ୍ଞାରେ ଜଗତରେ ସମସ୍ତଙ୍କର ମୁକ୍ତିଦାତା ହୁଅ । ମୋର ଦର୍ଶନ ପାଇବା ଦ୍ୱାରା ଯେଉଁ ଫଳ ମିଳେ, ତାହା ତୁମ ଦର୍ଶନରୁ ମଧ୍ୟ ମିଳିବ । ମୋର ଏ କଥା ସତ୍ୟ, ସତ୍ୟ—ଏଥିରେ ସଂଶୟର ଅବକାଶ ନାହିଁ । ମୋ ହୃଦୟରେ ବିଷ୍ଣୁ ଓ ବିଷ୍ଣୁଙ୍କ ହୃଦୟରେ ମୁଁ । ଯେ ଆମ ଦୁହିଙ୍କ ଭିତରେ ଅନ୍ତର ଦେଖେ ନାହିଁ, ସେ ମୋର ମନ ଅର୍ଥାତ୍ ବିଶେଷ ପ୍ରିୟ ।ᵠ ଶ୍ରୀହରି ମୋର ବାମ ଅଙ୍ଗରୁ ଓ ବ୍ରହ୍ମା ଡାହାଣ ଅଙ୍ଗରୁ ପ୍ରକଟ ହେଲେ ଏବଂ ମହାପ୍ରଳୟକାରୀ ବିଶ୍ୱାତ୍ମା ରୁଦ୍ର ମୋ ହୃଦୟରୁ ପ୍ରକଟ ହେବେ । ବିଷ୍ଣୋ ! ମୁଁ ହିଁ ସୃଷ୍ଟି, ପାଳନ ଓ ସଂହାର କରୁଥିବା ତ୍ରିବିଧ ଗୁଣଦ୍ୱାରା ବ୍ରହ୍ମା, ବିଷ୍ଣୁ

* ମୂଳୀଭୂତଂ ସଦୋକ୍ତଂ ଚ ସତ୍ୟଜ୍ଞାନମନନ୍ତକମ୍ । (ଶି. ପୁ. ରୁଦ୍ର. ସୃ. ୯ । ୪୦)

ᵠ ମମୈବ ହୃଦୟେ ବିଷ୍ଣୁର୍ବିଷ୍ଣୋଶ୍ଚ ହୃଦୟେ ହ୍ୟହମ୍ ॥ ଉଭୟୋରନ୍ତରଂ ଯୋ ବୈ ନ ଜାନାତି ମନୋ ମମ । (ଶି. ପୁ. ରୁଦ୍ର. ସୃ. ୯ । ୫୫-୫୬)

ଓ ରୁଦ୍ର ନାମରେ ପ୍ରସିଦ୍ଧ ହୋଇ ପୃଥକ୍ ପୃଥକ୍ ତ୍ରିବିଧ ରୂପ ଧାରଣ କରିଥାଏ । ସାକ୍ଷାତ୍ ଶିବ ଏ ଗୁଣମାନଙ୍କର ଊର୍ଦ୍ଧ୍ୱରେ । ସେ ପ୍ରକୃତି ଓ ପୁରୁଷଠାରୁ ମଧ୍ୟ ଊର୍ଦ୍ଧ୍ୱରେ ଅର୍ଥାତ୍ ସେ ଅଦ୍ୱିତୀୟ, ନିତ୍ୟ, ଅନନ୍ତ, ପୂର୍ଣ୍ଣ ଓ ନିରଞ୍ଜନ ପରବ୍ରହ୍ମ ପରମାତ୍ମା ଅଟନ୍ତି । ତ୍ରିଲୋକର ପାଳନକର୍ତ୍ତା ଶ୍ରୀହରି ଭିତରେ ତମୋଗୁଣ ଓ ବାହାରେ ସତ୍ତ୍ୱଗୁଣ ଧାରଣ କରନ୍ତି, ତ୍ରିଲୋକର ସଂହାରକର୍ତ୍ତା ରୁଦ୍ରଦେବ ଭିତରେ ସତ୍ତ୍ୱଗୁଣ ଓ ବାହାରେ ତମୋଗୁଣ ଧାରଣ କରନ୍ତି ତଥା ତ୍ରିଭୁବନର ସୃଷ୍ଟିକର୍ତ୍ତା ବ୍ରହ୍ମା ବାହାରେ ଓ ଭିତରେ ରଜୋଗୁଣଧାରୀ । ଏହିରୂପେ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର—ଏ ତିନିଙ୍କ ଠାରେ ଗୁଣ ରହିଛି, କିନ୍ତୁ ଶିବ ଗୁଣାତୀତ ଧରା ଯାଆନ୍ତି । ବିଷ୍ଣୋ ! ତୁମେ ମୋ ଆଜ୍ଞାରେ ଏ ସୃଷ୍ଟିକର୍ତ୍ତା ପିତାମହଙ୍କୁ ପ୍ରସନ୍ନତାପୂର୍ବକ ପାଳନ କର । ଏପରି କଲେ ତୁମେ ତ୍ରିଲୋକରେ ପୂଜନୀୟ ହେବ । (ଅଧ୍ୟାୟ ୯)

❋❋❋

## ଶ୍ରୀହରିଙ୍କୁ ସୃଷ୍ଟିରକ୍ଷାର ଭାର ତଥା ଭୁକ୍ତି ଓ ମୁକ୍ତି ପ୍ରଦାନର ଅଧିକାର ଦେଇ ଭଗବାନ ଶିବଙ୍କର ଅନ୍ତର୍ଦ୍ଧାନ ହେବା ପ୍ରସଙ୍ଗ

ପରମେଶ୍ୱର ଶିବ କହିଲେ—ହେ ଉତ୍ତମ ବ୍ରତ ପାଳନକାରୀ ହରି ! ବିଷ୍ଣୋ ! ଏବେ ମୋର ଦ୍ୱିତୀୟ ଆଜ୍ଞା ଶୁଣ । ଏହା ପାଳନ କଲେ ତୁମେ ସଦା ସକଳ ଭୁବନରେ ମାନନୀୟ ଓ ପୂଜନୀୟ ହୋଇ ରହିବ । ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ଏ ଜଗତରେ ଯେତେବେଳେ କୌଣସି ଦୁଃଖ ବା ସଂକଟ ଉପସ୍ଥିତ ହେବ, ତୁମେ ସେହି ସବୁ ଦୁଃଖକୁ ନଷ୍ଟ କରିବାକୁ ସଦା ତତ୍ପର ରହିବ । ତୁମର ସମସ୍ତ ଦୁଃସହ କାର୍ଯ୍ୟରେ ମୁଁ ତୁମକୁ ସାହାଯ୍ୟ କରିବି । ତୁମର ଯେଉଁ ସବୁ ଦୁର୍ଜୟ ଓ ଅତ୍ୟନ୍ତ ଉତ୍କଟ ଶତ୍ରୁ ଉତ୍ପନ୍ନ ହେବେ, ସେମାନଙ୍କୁ ମୁଁ ମାରି ପକାଇବି । ହରେ ! ତୁମେ ନାନା ପ୍ରକାର ଅବତାର ଧାରଣ କରି ଜଗତରେ କୀର୍ତ୍ତି ବିସ୍ତାର କର ଏବଂ ସମସ୍ତଙ୍କ ଉଦ୍ଧାର ନିମନ୍ତେ ତତ୍ପର ରୁହ । ତୁମେ ରୁଦ୍ରଙ୍କର ଧ୍ୟେୟ ଓ ରୁଦ୍ର ତୁମର ଧ୍ୟେୟ । ରୁଦ୍ର ଓ ତୁମ ମଧ୍ୟରେ କିଛି ହେଲେ ଅନ୍ତର ନାହିଁ ।* ଯେଉଁ ଲୋକ ରୁଦ୍ରଙ୍କ ଭକ୍ତ ହୋଇ ତୁମର ନିନ୍ଦା କରିବ, ତାହାର ସମସ୍ତ ପୁଣ୍ୟ ଅବିଳମ୍ବେ ଭସ୍ମ ହୋଇଯିବ । ହେ ପୁରୁଷୋତ୍ତମ ବିଷ୍ଣୁ ! ତୁମ ପ୍ରତି ଦ୍ୱେଷ କରିବା ହେତୁ ମୋ ଆଜ୍ଞାରେ ସେ ନରକରେ ପଡ଼ିବ । ଏକଥା ସତ୍ୟ, ସତ୍ୟ; ଏଥରେ ସଂଶୟ ନାହିଁ ।❦ ତୁମେ ଏ ଜଗତରେ ମନୁଷ୍ୟଙ୍କ ପାଇଁ ବିଶେଷତଃ ଭୋଗ ଓ ମୋକ୍ଷ ପ୍ରଦାତା, ଭକ୍ତଗଣଙ୍କ ଧ୍ୟେୟ ତଥା ପୂଜ୍ୟ ହୋଇ ପ୍ରାଣୀମାନଙ୍କ ପ୍ରତି ନିଗ୍ରହ ଓ ଅନୁଗ୍ରହ କର ।

ଏଭଳି କହି ଭଗବାନ ଶିବ ମୋର ହାତ ଧରିପକାଇଲେ ଓ ମୋତେ ଶ୍ରୀବିଷ୍ଣୁଙ୍କ ହାତରେ ସମର୍ପି ଦେଇ ତାଙ୍କୁ କହିଲେ, "ତୁମେ ସଂକଟବେଳେ ଏହାଙ୍କୁ ସହାୟତା କରୁଥିବ । ସମସ୍ତଙ୍କର ଅଧ୍ୟକ୍ଷ ହୋଇ ସମସ୍ତଙ୍କୁ ଭୋଗ ଓ

---

* ରୁଦ୍ରଧ୍ୟେୟୋ ଭବାଂଶ୍ଚୈବ ଭବଦ୍ଧ୍ୟେୟୋ ହରସ୍ତଥା । ଯୁବୟୋରନ୍ତରଂ ନୈବ ତବ ରୁଦ୍ରସ୍ୟ କିଂଚନ ॥ (ଶି. ପୁ. ରୁଦ୍ର. ସୃ. ୧୦ । ୬)

❦ ରୁଦ୍ରଭକ୍ତୋ ନରୋ ଯସ୍ତୁ ତବ ନିନ୍ଦାଂ କରିଷ୍ୟତି । ତସ୍ୟ ପୁଣ୍ୟଂ ଚ ନିଖିଳଂ ଦ୍ରୁତଂ ଭସ୍ମ ଭବିଷ୍ୟତି ॥ ନରକେ ପତନଂ ତସ୍ୟ ତ୍ୱଦ୍‌ଦ୍ୱେଷାଦ୍ ପୁରୁଷୋତ୍ତମ । ମଦାଜ୍ଞୟା ଭବେଦ୍ ବିଷ୍ଣୋ ସତ୍ୟଂ ସତ୍ୟଂ ନ ସଂଶୟଃ ॥ (ଶି. ପୁ. ରୁ. ସୃ. ଖ. ୧୦ । ୮-୯)

ମୋକ୍ଷ ପ୍ରଦାନ କରିବ ଏବଂ ସର୍ବଦା ସମସ୍ତ କାମନାର ସାଧକ ଓ ସର୍ବଶ୍ରେଷ୍ଠ ହୋଇରହିବ ।



ଯେ ତୁମର ଶରଣକୁ ଆସିଲା, ଜାଣ ଯେ ସେ ନିଶ୍ଚେ ମୋ ଶରଣକୁ ଆସିଗଲା । ଯେ ତୁମ ଓ ମୋ ଭିତରେ ଅନ୍ତର ଦେଖେ, ସେ ଅବଶ୍ୟ ନରକରେ ପଡ଼େ ।*

ବ୍ରହ୍ମା କହୁଛନ୍ତି—ଦେବର୍ଷେ ! ଭଗବାନ ଶଙ୍କରଙ୍କ ଠାରୁ ଏକଥା ଶୁଣି ମୋ ସହ ଭଗବାନ ବିଷ୍ଣୁ ସମସ୍ତଙ୍କ ବଶକାରୀ ବିଶ୍ୱନାଥଙ୍କୁ ପ୍ରଣାମ କରି ମନ୍ଦସ୍ୱରରେ କହିଲେ—

ଶ୍ରୀବିଷ୍ଣୁ କହିଲେ—ହେ କରୁଣାସିନ୍ଧୁ ! ଜଗନ୍ନାଥ ଶଙ୍କର ! ମୋ କଥା ଟିକେ ଶୁଣନ୍ତୁ । ମୁଁ ଆପଣଙ୍କ ଆଜ୍ଞାର ଅଧୀନରେ ରହି ସବୁ କିଛି କରିବି । ସ୍ୱାମିନ୍ ! ଯିଏ ମୋର ଭକ୍ତ ହୋଇ ଆପଣଙ୍କର ନିନ୍ଦା କରିବ, ତାକୁ ଆପଣ ନିଶ୍ଚୟ ନରକବାସ ପ୍ରଦାନ କରିବେ । ନାଥ ! ଯେ ଆପଣଙ୍କ ଭକ୍ତ, ସେ ମୋର ଅତ୍ୟନ୍ତ ପ୍ରିୟ । ଏକଥା ଯିଏ ଜାଣେ, ତା'ପାଇଁ ମୋକ୍ଷ ଦୁର୍ଲଭ ନୁହେଁ ।卐

ଶ୍ରୀହରିଙ୍କ ଉକ୍ତି ଶୁଣି ଦୁଃଖହାରୀ ହର ତାଙ୍କ କଥାର ଅନୁମୋଦନ କଲେ ଏବଂ ନାନା ପ୍ରକାର ଧର୍ମୋପଦେଶ ଦେଇ ଆମ ଦୁହିଙ୍କ ହିତ ଦୃଷ୍ଟିରୁ ଆମକୁ ଅନେକ ପ୍ରକାର ବର ଦେଲେ । ଏହାପରେ ଭକ୍ତବତ୍ସଳ ଭଗବାନ ଶମ୍ଭୁ କୃପାଦୃଷ୍ଟିରେ ଆମ ଆଡ଼କୁ ଚାହିଁ ସେହିକ୍ଷଣି ଅନ୍ତର୍ଦ୍ଧାନ ହୋଇଗଲେ । ସେହିଦିନଠାରୁ ଇହଲୋକରେ ଲିଙ୍ଗପୂଜା ବିଧାନ ପ୍ରଚଳିତ ହେଲା । ଲିଙ୍ଗରେ ପ୍ରତିଷ୍ଠିତ ଭଗବାନ ଶିବ ଭୋଗ ଓ ମୋକ୍ଷ ପ୍ରଦାତା ଅଟନ୍ତି । ଶିବଲିଙ୍ଗର ବେଦି ବା ସଂଲଗ୍ନ ବେଷ୍ଟନୀ ହେଉଛି ମହାଦେବୀଙ୍କର ସ୍ୱରୂପ ଓ ଲିଙ୍ଗ ସାକ୍ଷାତ୍ ମହେଶ୍ୱରଙ୍କ ସ୍ୱରୂପ । ଲୟର ଅଧିଷ୍ଠାନ ହୋଇଥିବାରୁ ଭଗବାନ ଶିବଙ୍କୁ ଲିଙ୍ଗ କୁହାଯାଇଛି; କାରଣ ତାଙ୍କରି ମଧ୍ୟରେ ନିଖିଳ ଜଗତର ଲୟ ହୁଏ । ମହାମୁନେ ! ଯେ ଶିବଲିଙ୍ଗ ସମୀପରେ କିଛି ଶୁଭକାର୍ଯ୍ୟ କରେ, ତା'ର ପୁଣ୍ୟଫଳର ବର୍ଣ୍ଣନା କରିବାର ଶକ୍ତି ମୋର ନାହିଁ ।

(ଅଧ୍ୟାୟ ୧୦)

★★★

* ତ୍ୱାଂ ଯଃ ସମାଶ୍ରିତୋ ନୂନଂ ମାମେବ ସଃ ସମାଶ୍ରିତଃ । ଅନ୍ତରଂ ଯଶ୍ଚ ଜାନାତି ନିରୟେ ପତତି ଧ୍ରୁବମ୍ ॥
(ଶି. ପୁ. ରୁ. ସୃ. ଖ. ୧୦।୧୪)

卐 ମମ ଭକ୍ତଶ୍ଚ ଯଃ ସ୍ୱାମିଂସ୍ତବ ନିନ୍ଦାଂ କରିଷ୍ୟତି । ତସ୍ୟ ବୈ ନିରୟେ ବାସଂ ପ୍ରଯଚ୍ଛ ନିୟତଂ ଧ୍ରୁବମ୍ ॥
ତ୍ୱଦ୍ଭକ୍ତୋ ଯୋ ଭବେତ୍ ସ୍ୱାମିନ୍ମମ ପ୍ରିୟତରୋ ହି ସଃ । ଏବଂ ବୈ ଯୋ ବିଜାନାତି ତସ୍ୟ ମୁକ୍ତିର୍ନ ଦୁର୍ଲଭା ॥
(ଶି. ପୁ. ରୁ. ସୃ. ଖ. ୧୦।୩୦-୩୧)

# ଶିବପୂଜନର ବିଧି ଓ ତାହାର ଫଳ

ଋଷିମାନେ କହିଲେ—ବ୍ୟାସଶିଷ୍ୟ ମହାଭାଗ ସୂତ ! ଆପଣଙ୍କୁ ନମସ୍କାର । ଆଜି ଆପଣ ଭଗବାନ ଶିବଙ୍କର ବଡ଼ ଅଦ୍ଭୁତ ଓ ପରମ ପାବନ କଥା ଶୁଣାଇଲେ । ଦୟାନିଧେ ! ବ୍ରହ୍ମା ଓ ନାରଦଙ୍କ ସଂବାଦ ଅନୁସାରେ ଆପଣ ଆମକୁ ଶିବପୂଜନର ସେହି ବିଧି କହନ୍ତୁ, ଯଦ୍ଦ୍ୱାରା ଶିବ ସନ୍ତୁଷ୍ଟ ହୁଅନ୍ତି । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ସମସ୍ତେ ଶିବଙ୍କୁ ପୂଜା କରନ୍ତି । ସେହି ପୂଜା କିପରି କରିବା ଉଚିତ? ଏ ସମ୍ପର୍କରେ ଆପଣ ବ୍ୟାସଦେବଙ୍କ ମୁଖରୁ ଯାହା ସବୁ ଶୁଣିଛନ୍ତି, ତାହା ଆମକୁ କୁହନ୍ତୁ ।

ମହର୍ଷିଗଣଙ୍କ ଠାରୁ ଏପରି କଲ୍ୟାଣପ୍ରଦ ଓ ଶ୍ରୁତିସମ୍ମତ ପ୍ରଶ୍ନ ଶୁଣି ସୂତ ଆନନ୍ଦରେ କହିଲେ—

ସୂତ କହିଲେ—ମୁନୀଶ୍ୱରଗଣ ! ଆପଣମାନେ ବହୁତ ଉତ୍ତମ ପ୍ରଶ୍ନ ପଚ୍ଚାରିଛନ୍ତି । ହେଲେ ଏହା ଅତି ରହସ୍ୟମୟ କଥା । ମୁଁ ଏ ବିଷୟରେ ଯାହା ଶୁଣିଛି, ନିଜ ମତି ଅନୁସାରେ ସେଥିରୁ କିଛି କହୁଛି । ଆପଣମାନେ ଯେଉଁ କଥା ପଚ୍ଚାରିଲେ, ତାହା ହିଁ ପୂର୍ବକାଳରେ ବ୍ୟାସଦେବ ସନତ୍କୁମାରଙ୍କୁ ପଚ୍ଚାରିଥିଲେ । ପୁଣି ତାହା ଉପମନ୍ୟୁ ମଧ୍ୟ ଶୁଣିଥିଲେ । ବ୍ୟାସଦେବ ଶିବପୂଜନ ଆଦି ଯେଉଁ ସବୁ ବିଷୟ ଶୁଣିଥିଲେ, ତାହାକୁ ସେ ଲୋକହିତ କାମନାରେ ମୋତେ ପଢ଼ାଇଥିଲେ । ସେହି ବିଷୟକୁ ଭଗବାନ ଶ୍ରୀକୃଷ୍ଣ ମହାତ୍ମା ଉପମନ୍ୟୁଙ୍କ ଠାରୁ ଶୁଣିଥିଲେ । ପୂର୍ବକାଳରେ ବ୍ରହ୍ମା ନାରଦଙ୍କୁ ଏ ବିଷୟରେ ଯାହା କିଛି କହିଥିଲେ, ସେହି କଥା ମୁଁ ଏବେ କହିବି ।

ବ୍ରହ୍ମା କହିଥିଲେ—ନାରଦ ! ମୁଁ ସଂକ୍ଷେପରେ ଲିଙ୍ଗପୂଜନ ବିଧି କହୁଛି, ଶୁଣ । ପୂର୍ବରୁ ଭଗବାନ ଶଙ୍କରଙ୍କର ଯେଉଁ ସୁଖମୟ, ନିର୍ମଳ ଏବଂ ସନାତନ ରୂପ କଥା କୁହାଯାଇଛି, ତାହାକୁ ଉତ୍ତମ ଭକ୍ତିରେ ପୂଜା କଲେ ସମସ୍ତ ମନୋବାଞ୍ଛିତ ଫଳ ପ୍ରାପ୍ତି ହେବ । ଦରିଦ୍ରତା, ରୋଗ, ଦୁଃଖ ତଥା ଶତ୍ରୁଜନିତ ପୀଡ଼ା—ଏ ଚ୍ଚାରିପ୍ରକାର ପାପ (କଷ୍ଟ) ସେହି ପର୍ଯ୍ୟନ୍ତ ରହିଥାନ୍ତି, ଯେପର୍ଯ୍ୟନ୍ତ ମନୁଷ୍ୟ ଶିବପୂଜନ କରି ନ ଥାଏ । ଶିବଙ୍କୁ ପୂଜା କରିବା ମାତ୍ରେ ସମସ୍ତ ଦୁଃଖ ବିଲୀନ ହୋଇଯାଏ ଓ ସବୁ ପ୍ରକାର ସୁଖ ପ୍ରାପ୍ତ ହୁଏ । ତା'ପରେ ଯଥାସମୟରେ ଉପାସକର ମୁକ୍ତି ମଧ୍ୟ ହୋଇଯାଏ । ଯେଉଁ ମାନବ ମୁଖ୍ୟତଃ ସନ୍ତାନସୁଖ କମନା କରେ, ତା'ପକ୍ଷେ ମହାଦେବଙ୍କ ପୂଜା ହିଁ ସମସ୍ତ କାର୍ଯ୍ୟ ଓ ମନୋରଥ ସିଦ୍ଧିର ସାଧନ। ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ମଧ୍ୟ ସମସ୍ତ କାମନା ତଥା ପ୍ରୟୋଜନର ସିଦ୍ଧି ନିମନ୍ତେ ବିଧିପୂର୍ବକ ଭଗବାନ ଶଙ୍କରଙ୍କୁ ପୂଜା କରିବା ଉଚିତ । ପ୍ରଭାତରେ ବ୍ରାହ୍ମମୁହୂର୍ତ୍ତରୁ ଉଠି ଗୁରୁ ତଥା ଶିବଙ୍କୁ ସ୍ମରଣ କରିବା ପରେ ତୀର୍ଥଚିନ୍ତନ ଓ ଭଗବାନ ବିଷ୍ଣୁଙ୍କୁ ଧ୍ୟାନ କରିବେ । ତା'ପରେ ମୋତେ, ଦେବଗଣଙ୍କୁ ଓ ମୁନି ପ୍ରଭୃତିଙ୍କୁ ମଧ୍ୟ ସ୍ମରଣ-ଚିନ୍ତନ କରି ସ୍ତୋତ୍ରପାଠପୂର୍ବକ ଶିବଙ୍କ ନାମ ଉଚ୍ଚାରିବେ । ତା'ପରେ ଶଯ୍ୟାତ୍ୟାଗ କରି ନିବାସସ୍ଥାନରୁ ଦକ୍ଷିଣ ଦିଗକୁ ଯାଇ ମଳତ୍ୟାଗ କରିବେ । ମୁନେ ! ଏକାନ୍ତରେ ମଳୋତ୍ସର୍ଗ କରିବା ଉଚିତ । ମଳୋତ୍ସର୍ଗ ପରେ ଶୁଦ୍ଧ ହେବାର ଯେଉଁ ବିଧି ମୁଁ ଶୁଣିଛି, ତାହା ଆଜି କହୁଛି; ଏକାଗ୍ର ଚିତ୍ତରେ ଶୁଣ ।

ବ୍ରାହ୍ମଣ ମଳଦ୍ୱାରକୁ ପାଞ୍ଚ ଥର ମାଟିର ଲେପ ଲଗାଇ ଧୋଇବେ । କ୍ଷତ୍ରିୟ ଚ୍ଚାରି ଥର, ବୈଶ୍ୟ ତିନି ଥର, ଓ ଶୂଦ୍ର ଦୁଇ ଥର ଏପରି କରିବେ । ଲିଙ୍ଗରେ ମଧ୍ୟ ଯତ୍ନପୂର୍ବକ ଥରେ ମାଟି ଲଗାଇବା ଉଚିତ । ତା'ପରେ ବାମ ହାତକୁ ଦଶ ଥର ଓ ଦୁଇ ହାତକୁ ସାତ ଥର ମାଟି

ଲଗାଇ ଧୋଇବେ। ତାତ ! ପ୍ରତ୍ୟେକ ପାଦରେ ତିନି ଥର ଲେଖାଏଁ ମାଟି ଲଗାଇବେ। ତା'ପରେ ଦୁଇ ହାତରେ ମଧ୍ୟ ମାଟି ଲଗାଇ ଧୋଇବେ। ନାରୀମାନେ ଶୂଦ୍ରଙ୍କ ପରି ଭଲଭାବରେ ମାଟି ଲଗାଇବା ଉଚିତ। ହାତଗୋଡ଼ ଧୋଇସାରି ପୂର୍ବବତ୍ ଶୁଦ୍ଧ ମାଟି ନେଇ ତଦ୍ଦ୍ୱାରା ଦାନ୍ତ ସଫା କରିବେ। ତା'ପରେ ମନୁଷ୍ୟ ନିଜ ବର୍ଣ୍ଣ ଅନୁସାରେ ଦାନ୍ତକାଠିରେ ଦାନ୍ତ ଘଷିବେ। ବ୍ରାହ୍ମଣ ବାର ଅଙ୍ଗୁଳିର, କ୍ଷତ୍ରିୟ ଏଗାର ଅଙ୍ଗୁଳିର, ବୈଶ୍ୟ ଦଶ ଅଙ୍ଗୁଳିର ଓ ଶୂଦ୍ର ନଅ ଅଙ୍ଗୁଳିର ଦାନ୍ତକାଠିରେ ଦାନ୍ତ ଘଷିବେ। ଏହା ହେଲା ଦାନ୍ତକାଠିର ମାପ। ମନୁସ୍ମୃତି ଅନୁସାରେ କାଳଦୋଷ ବିଗ୍ରହକୁ ନେଇ ଦାନ୍ତ ଘଷିବେ ଅଥବା ବର୍ଜନ କରିବେ। ତାତ ! ଷଷ୍ଠୀ, ପ୍ରତିପଦ, ଅମାବାସ୍ୟା, ନବମୀ, ବ୍ରତ ଦିବସ, ସୂର୍ଯ୍ୟାସ୍ତ ସମୟ, ରବିବାର ତଥା ଶ୍ରାଦ୍ଧ ଦିବସରେ ଦନ୍ତଧାବନ ନିଷେଧ। ଏସବୁ କାଳରେ ଦାନ୍ତ ଘଷିବା ଉଚିତ ନୁହେଁ। ଦାନ୍ତ ଘଷିବା ପରେ ତୀର୍ଥ (ଜଳାଶୟ)କୁ ଯାଇ ବିଧିପୂର୍ବକ ସ୍ନାନ କରିବେ, ବିଶେଷ ଦେଶ ବା କାଳରେ ମନ୍ତ୍ରୋଚ୍ଚାରଣପୂର୍ବକ ସ୍ନାନ କରିବା ଉଚିତ। ସ୍ନାନ ପରେ ପ୍ରଥମେ ଆଚମନ କରି ଧୌତବସ୍ତ୍ର ପରିଧାନ କରିବେ। ତା'ପରେ ସୁନ୍ଦର ଓ ଏକାନ୍ତ ସ୍ଥାନରେ ବସି ସଂଧ୍ୟାବିଧି ସଂପାଦନ କରିବେ। ସଂଧ୍ୟା କରିବା ପରେ ପୂଜାକାର୍ଯ୍ୟ ଆରମ୍ଭ କରିବେ।

ମନକୁ ସୁସ୍ଥିର କରି ପୂଜାଗୃହରେ ପ୍ରବେଶ କରିବେ। ପୂଜାସାମଗ୍ରୀ ସଜାଇ ରଖି ସୁନ୍ଦର ଆସନରେ ବସିବେ। ପ୍ରଥମେ ନ୍ୟାସ ଇତ୍ୟାଦି କରି କ୍ରମ ଅନୁସାରେ ମହାଦେବଙ୍କୁ ପୂଜା କରିବେ। ଶିବପୂଜନ ପୂର୍ବରୁ ଗଣେଶ, ଦ୍ୱାରପାଳ ଓ ଦିକ୍‌ପାଳମାନଙ୍କୁ ଭଲଭାବରେ ପୂଜା କରିବେ। ତା'ପରେ ଦେବତାଙ୍କ ପାଇଁ ପୀଠସ୍ଥାନର କଳ୍ପନା କରିବେ; ଅଥବା ପୂଜାଦ୍ରବ୍ୟ ନିକଟରେ ବସି ଅଷ୍ଟଦଳପଦ୍ମ ତିଆରି କରି ତା'ଉପରେ ଭଗବାନ ଶିବଙ୍କୁ ଆସୀନ କରାଇବେ। ତା'ପରେ ତିନି ଥର ଆଚମନ କରି ଓ ଉଭୟ ହାତକୁ ଧୋଇ ତିନି ଥର ପ୍ରାଣାୟାମ କରିବେ। ମଧ୍ୟମ ପ୍ରାଣାୟାମ ଅର୍ଥାତ୍ କୁମ୍ଭକ ବେଳେ ତ୍ରିନେତ୍ରଧାରୀ ଭଗବାନ ଶିବଙ୍କୁ ଏହିରୂପେ ଧ୍ୟାନ କରିବେ। ତାଙ୍କର ପାଞ୍ଚଟି ମୁଖ, ଦଶଟି ଭୁଜ ଓ ଶୁଦ୍ଧସ୍ଫଟିକ ପରି ଉଜ୍ଜ୍ୱଳ କାନ୍ତି। ସବୁପ୍ରକାର ଆଭୂଷଣ ତାଙ୍କ ଶ୍ରୀଅଙ୍ଗର ଶୋଭାବର୍ଦ୍ଧନ କରୁଛନ୍ତି। ସେ ବ୍ୟାଘ୍ରଚର୍ମର ଉତ୍ତରୀୟ ଧାରଣ କରିଛନ୍ତି। ଏପରି ଧ୍ୟାନ କରି ଭାବନା କରନ୍ତୁ ଯେ—ମୋତେ ଏହାଙ୍କ ପରି ରୂପ ପ୍ରାପ୍ତ ହୋଇଯାଉ। ଏଭଳି ଭାବନା କରି ମନୁଷ୍ୟ ଚିରକାଳ ପାଇଁ ନିଜ ପାପକୁ ଭସ୍ମ କରିଦେବା ଉଚିତ। ଏହିରୂପେ ଭାବନାଦ୍ୱାରା ଶିବଙ୍କ ଶରୀର ଧାରଣ କରି ସେହି ପରମେଶ୍ୱରଙ୍କୁ ପୂଜା କରିବେ। ଶରୀର ଶୁଦ୍ଧି କରିବା ପରେ ମୂଳମନ୍ତ୍ରକୁ କ୍ରମଶଃ ନ୍ୟାସ କରିବେ ଅଥବା ସର୍ବତ୍ର ପ୍ରଣବରେ ହିଁ ଷଡଙ୍ଗନ୍ୟାସ କରିବେ। 'ଓଁ ଅଦ୍ୟେତ୍ୟାଦି...' ରୂପରେ ସଂକଳ୍ପ-ବାକ୍ୟ ପ୍ରୟୋଗ କରି ତା'ପରେ ପୂଜା ଆରମ୍ଭ କରିବେ। ପାଦ୍ୟ, ଅର୍ଘ୍ୟ ଓ ଆଚମନ ନିମନ୍ତେ ପାତ୍ର ରଖିଥିବେ। ବୁଦ୍ଧିମାନ୍ ବ୍ୟକ୍ତି ବିଧିପୂର୍ବକ ଭିନ୍ନ ଭିନ୍ନ ପ୍ରକାରର ନଅଟି କଳଶ ସ୍ଥାପିତ କରିବେ। ସେଗୁଡ଼ିକୁ କୁଶରେ ଘୋଡ଼ାଇ ରଖିବେ ଏବଂ କୁଶରେ ଜଳ ସିଞ୍ଚି ପ୍ରୋକ୍ଷଣ କରିବେ। ତା'ପରେ ସେହି ପାତ୍ରଗୁଡ଼ିକରେ ଶୀତଳ ଜଳ ପୂରାଇବେ। ତା'ପରେ ପ୍ରଣବମନ୍ତ୍ର ଉଚ୍ଚାରଣ କରି ସେଗୁଡ଼ିକରେ ନିମ୍ନଲିଖିତ ଦ୍ରବ୍ୟ ପକାଇବେ। ବେଣାଚେର ଓ ଚନ୍ଦନକୁ ପାଦ୍ୟପାତ୍ରରେ ଏବଂ ଜାଇଫୁଲ, କଙ୍କୋଳ, କର୍ପୂର, ବଟଚେର ତଥା ତମାଳ—ଏ ସମସ୍ତ ଦ୍ରବ୍ୟର ଚୂର୍ଣ୍ଣକୁ ଆଚମନୀ ପାତ୍ରରେ ପକାଇବେ। ଅଳେଇଚ ଓ ଚନ୍ଦନକୁ

ସବୁ ପାତ୍ରରେ ପକାଇବେ । ଦେବାଧିଦେବ ମହାଦେବଙ୍କ ପାର୍ଶ୍ୱଭାଗରେ ନନ୍ଦୀଶ୍ୱରଙ୍କୁ ପୂଜା କରିବେ । ଗନ୍ଧ, ଧୂପ ଓ ଦୀପ ଦ୍ୱାରା ଶିବଙ୍କୁ ପୂଜା କରିବେ । ତା'ପରେ ଲିଙ୍ଗଶୁଦ୍ଧି କରି ଆନନ୍ଦରେ ମନ୍ତ୍ର ପୂର୍ବରୁ ପ୍ରଣବ (ଓଁ) ଓ ଶେଷରେ 'ନମଃ' ଲଗାଇ ତଦ୍ଦ୍ୱାରା ଇଷ୍ଟଦେବଙ୍କ ପାଇଁ ଯଥୋଚିତ ଆସନର କଳ୍ପନା କରିବେ । ତା'ପରେ ପ୍ରଣବଦ୍ୱାରା ପଦ୍ମାସନର କଳ୍ପନା କରି ଭାବିବେ ଯେ ଏହି ପଦ୍ମର ପୂର୍ବଦଳ ସାକ୍ଷାତ୍ ଅଣିମା ନାମକ ଐଶ୍ୱର୍ଯ୍ୟରୂପ ତଥା ଅବିନାଶୀ । ଦକ୍ଷିଣଦଳ ଲଘିମା, ପଶ୍ଚିମଦଳ ମହିମା, ଉତ୍ତରଦଳ ପ୍ରାପ୍ତି, ଅଗ୍ନିକୋଣର ଦଳ ପ୍ରାକାମ୍ୟ, ନୈର୍ଋତ୍ୟକୋଣର ଦଳ ଈଶିତ୍ୱ, ବାୟବ୍ୟକୋଣର ଦଳ ବଶିତ୍ୱ, ଐଶାନ୍ୟକୋଣର ଦଳ ସର୍ବଜ୍ଞତ୍ୱ ଅଟେ । ସେହି ପଦ୍ମର କର୍ଣ୍ଣିକାକୁ ସୋମ କୁହାଯାଏ । ସୋମ ତଳକୁ ସୂର୍ଯ୍ୟ, ସୂର୍ଯ୍ୟଙ୍କ ତଳକୁ ଅଗ୍ନି ଓ ଅଗ୍ନି ତଳକୁ ଧର୍ମ ଆଦିଙ୍କର ସ୍ଥାନ । କ୍ରମଶଃ ଏଭଳି ଭାବନା କରି ତା'ପରେ ଚାରିଦିଗରେ ଅବ୍ୟକ୍ତ, ମହତ୍ତତ୍ତ୍ୱ, ଅହଂକାର ଓ ଏଗୁଡ଼ିକର ବିକାରମାନଙ୍କର କଳ୍ପନା କରିବେ । ସୋମର ଶେଷରେ ସତ୍ତ୍ୱ, ରଜ ଓ ତମଗୁଣର କଳ୍ପନା କରିବେ । ଏହାପରେ 'ସଦ୍ୟୋଜାତଂ ପ୍ରପଦ୍ୟାମି' ଇତ୍ୟାଦି ମନ୍ତ୍ରରେ ପରମେଶ୍ୱର ଶିବଙ୍କୁ ଆବାହନ କରି 'ଓଁ ବାମଦେବାୟ ନମଃ' ଇତ୍ୟାଦି ବାମଦେବ ମନ୍ତ୍ରରେ ଆସନରେ ବିରାଜମାନ କରାଇବେ । ତା'ପରେ 'ଓଁ ତତ୍ପୁରୁଷାୟ ବିଦ୍ମହେ' ଇତ୍ୟାଦି ରୁଦ୍ରଗାୟତ୍ରୀ ମନ୍ତ୍ରରେ ଇଷ୍ଟଦେବଙ୍କ ସାନ୍ନିଧ୍ୟ ପ୍ରାପ୍ତ କରି ତାଙ୍କୁ 'ଅଘୋରେଭ୍ୟୋଽଥ' ଇତ୍ୟାଦି ଅଘୋର ମନ୍ତ୍ରରେ ସେଠାରେ ନିରୁଦ୍ଧ କରିବେ । ତା'ପରେ 'ଈଶାନଃ ସର୍ବବିଦ୍ୟାନାମ୍' ଇତ୍ୟାଦି ମନ୍ତ୍ରରେ ଆରାଧ୍ୟ ଦେବଙ୍କୁ ପୂଜା କରିବେ ।

ପାଦ୍ୟ ଓ ଆଚମନୀୟ ଅର୍ପିତ କରି ଅର୍ଘ୍ୟ ଦେବେ । ତା'ପରେ ଗନ୍ଧ ଓ ଚନ୍ଦନ ମିଶ୍ରିତ ଜଳରେ ବିଧିବତ୍ ରୁଦ୍ରଦେବଙ୍କୁ ସ୍ନାନ କରାଇବେ । ତା'ପରେ ପଞ୍ଚଗବ୍ୟ ପ୍ରସ୍ତୁତି ବିଧିରେ ପାଞ୍ଚଟି ଗବ୍ୟପଦର୍ଥକୁ ଏକତ୍ର କରି ତଦ୍ଦ୍ୱାରା ଭଗବାନଙ୍କୁ ସ୍ନାନ କରାଇବେ । ତା'ପରେ ପୃଥକ୍ ପୃଥକ୍ ଦୁଧ, ଦହି, ମଧୁ, ଆଖୁରସ (ଶର୍କରା) ଓ ଘୃତଦ୍ୱାରା ସ୍ନାନ କରାଇ ସମସ୍ତ ଅଭୀଷ୍ଟ ପ୍ରଦାତା ଓ ହିତକାରୀ ପୂଜନୀୟ ମହାଦେବଙ୍କୁ ପ୍ରଣବ ଉଚ୍ଚାରଣପୂର୍ବକ ପବିତ୍ର ଦ୍ରବ୍ୟଦ୍ୱାରା ଅଭିଷେକ କରିବେ । ପବିତ୍ର ଜଳପାତ୍ରରେ ମନ୍ତ୍ରୋଚ୍ଚାରଣପୂର୍ବକ ଜଳ ପୂରାଇବେ । ତା' ପୂର୍ବରୁ ସାଧକ ଶ୍ୱେତବସ୍ତ୍ରରେ ସେହି ଜଳକୁ ଯଥୋଚିତ ରୀତିରେ ଛାଣିଥିବେ । ଇଷ୍ଟଦେବଙ୍କୁ ଚନ୍ଦନ ନ ଦେବା ପର୍ଯ୍ୟନ୍ତ ସେହି ଜଳକୁ ଦୂରକୁ ହଟାଇବେ ନାହିଁ । ସେତେବେଳେ ସୁନ୍ଦର ଅକ୍ଷତରେ ପ୍ରସନ୍ନତାପୂର୍ବକ ଶିବଙ୍କର ପୂଜା କରିବେ । ତାଙ୍କ ଉପରେ କୁଶ, ଅପମାର୍ଗ, କର୍ପୂର, ଜାଇଫୁଲ, ଚମ୍ପା, ଗୋଲାପ, ଶ୍ୱେତକନିଅର, ମଲ୍ଲିକା, ପଦ୍ମ ଓ କଇଁ ଆଦି ବିଭିନ୍ନ ଅପୂର୍ବ ପୁଷ୍ପ ଓ ଚନ୍ଦନ ଇତ୍ୟାଦି ଅର୍ପଣ କରି ପୂଜା କରିବେ । ପରମେଶ୍ୱର ଶିବଙ୍କ ଉପରେ ଜଳଧାରା ଯେପରି ନିରନ୍ତର ପଡ଼ିବ, ତା'ର ବ୍ୟବସ୍ଥା କରିବେ । ବିଭିନ୍ନ ପାତ୍ରରେ ଜଳପୂର୍ଣ୍ଣ କରି ତଦ୍ଦ୍ୱାରା ମହେଶ୍ୱରଙ୍କୁ ସ୍ନାନ କରାଇବେ । ଏଭଳି ମନ୍ତ୍ରୋଚ୍ଚାରଣପୂର୍ବକ ପୂଜା କଲେ ତାହା ସବୁ ପ୍ରକାର ଫଳ ପ୍ରଦାନ କରିଥାଏ ।

ବତ୍ସ ! ଏବେ ମୁଁ ତୁମକୁ ସମସ୍ତ ମନୋବାଞ୍ଛିତ କାମନାର ସିଦ୍ଧି ପାଇଁ ଉକ୍ତ ପୂଜାସଂବନ୍ଧୀୟ ମନ୍ତ୍ରକୁ ମଧ୍ୟ ସଂକ୍ଷେପରେ କହୁଛି; ସାବଧାନ ହୋଇ ଶୁଣ । ପାବମାନମନ୍ତ୍ରରେ, 'ବାଙ୍ମେ' ଇତ୍ୟାଦି ମନ୍ତ୍ରରେ, ସୁନ୍ଦର ଓ ଶୁଭ ପୁରୁଷସୂକ୍ତରେ, ଶ୍ରୀସୂକ୍ତରେ, ସୁନ୍ଦର ଅଥର୍ବଶୀର୍ଷ ମନ୍ତ୍ରରେ, 'ଆ ନୋ ଭଦ୍ରା...' ଇତ୍ୟାଦି ଶାନ୍ତିମନ୍ତ୍ରରେ, ଶାନ୍ତିସମ୍ବନ୍ଧୀୟ

ଅନ୍ୟ ମନ୍ତ୍ରରେ, ଭାରୁଣ୍ଡମନ୍ତ୍ର ଓ ଅରୁଣମନ୍ତ୍ରରେ, ଅର୍ଥାଭୀଷ୍ଟସାମ ତଥା ଦେବବ୍ରତସାମ ଦ୍ୱାରା, 'ଅଭି ତ୍ୱା...' ଇତ୍ୟାଦି ରଥନ୍ତରସାମ ଦ୍ୱାରା, ପୁରୁଷ-ସୂକ୍ତରେ, ମୃତ୍ୟୁଞ୍ଜୟମନ୍ତ୍ରରେ ତଥା ପଞ୍ଚାକ୍ଷରମନ୍ତ୍ରରେ ପୂଜା କରିବେ। ହଜାରେ ଅଥବା ଶହେଏକ ଜଳଧାରା ଦେବାର ବ୍ୟବସ୍ଥା କରିବେ। ଏସବୁ ବେଦମାର୍ଗରେ ଅଥବା ନାମମନ୍ତ୍ରରେ କରିବା ଉଚିତ। ତା'ପରେ ଭଗବାନ ଶଙ୍କରଙ୍କ ଉପରେ ଚନ୍ଦନ ଓ ଫୁଲ ଅର୍ପଣ କରିବେ। ପ୍ରଣବଦ୍ୱାରା ମୁଖବାସ (ତାମ୍ବୂଳ) ଇତ୍ୟାଦି ଅର୍ପଣ କରିବେ। ଏହାପରେ ସେହି ସ୍ଫଟିକମଣିତୁଲ୍ୟ ନିର୍ମଳ, ନିଷ୍କଳ, ଅବିନାଶୀ, ସର୍ବଲୋକକାରଣ, ସର୍ବଲୋକମୟ ପରମଦେବ ମହାଦେବଙ୍କୁ—ଯେ କି ବ୍ରହ୍ମା, ରୁଦ୍ର, ଇନ୍ଦ୍ର ଓ ବିଷ୍ଣୁ ଆଦି ଦେବତାଙ୍କର ମଧ୍ୟ ଅଗୋଚର; ବେଦଜ୍ଞ ବିଦ୍ୱାନ୍ ଯାହାଙ୍କୁ ବେଦାନ୍ତରେ ମନ-ବାଣୀର ଅଗୋଚର କହିଛନ୍ତି, ଯେ ଆଦି-ମଧ୍ୟ-ଅନ୍ତରହିତ ତଥା ସମସ୍ତ ରୋଗୀଙ୍କର ଔଷଧସ୍ୱରୂପ, ଯାହାଙ୍କର ଶିବତତ୍ତ୍ୱ ନାମରେ ଖ୍ୟାତି ରହିଛି ଓ ଯେ ଶିବଲିଙ୍ଗରୂପରେ ପ୍ରତିଷ୍ଠିତ, ତାଙ୍କୁ ଶିବଲିଙ୍ଗର ମସ୍ତକ ଉପରେ ପ୍ରଣବମନ୍ତ୍ରରେ ହିଁ ପୂଜା କରିବେ। ଧୂପ, ଦୀପ, ନୈବେଦ୍ୟ, ସୁନ୍ଦର ତାମ୍ବୂଳ ଓ ସୁରମ୍ୟ ଆଳତି ଦ୍ୱାରା ଯଥୋକ୍ତ ବିଧିରେ ପୂଜା କରି ସ୍ତୋତ୍ର ତଥା ଅନ୍ୟାନ୍ୟ ମନ୍ତ୍ର ପଢ଼ି ତାଙ୍କୁ ନମସ୍କାର କରିବେ। ତା'ପରେ ଅର୍ଘ୍ୟ ଦେଇ ପୁଷ୍ପାଞ୍ଜଳି ଦେବେ ଓ ସାଷ୍ଟାଙ୍ଗ ପ୍ରଣାମ କରି ଶିବଙ୍କୁ ଆରାଧନା କରିବେ। ତା'ପରେ ହାତରେ ପୁଷ୍ପ ନେଇ ଦୁଇ କର ଯୋଡ଼ି ନିମ୍ନ ମନ୍ତ୍ରରେ ସର୍ବେଶ୍ୱର ଶଙ୍କରଙ୍କୁ ପୁନଃ ପ୍ରାର୍ଥନା କରିବେ—

ଅଜ୍ଞାନାଦ୍ ଯଦି ବା ଜ୍ଞାନାଜ୍ଜପପୂଜାଦିକଂ ମୟା।
କୃତଂ ତଦସ୍ତୁ ସଫଳଂ କୃପୟା ତବ ଶଙ୍କର॥

"ହେ କଲ୍ୟାଣକାରୀ ଶିବ ! ମୁଁ ଅଜ୍ଞାତରେ ବା ଜାଣିଶୁଣି ଯାହା ବି ଜପ-ପୂଜା ଇତ୍ୟାଦି ସତ୍କର୍ମ କରିଥିବି, ସେସବୁ ଆପଣଙ୍କ କୃପାରୁ ସଫଳ ହେଉ।"

ଏହିପରି ପଢ଼ି ଭଗବାନ ଶିବଙ୍କ ଉପରେ ପ୍ରସନ୍ନତାପୂର୍ବକ ଫୁଲ ପକାଇବେ। ସ୍ୱସ୍ତିବାଚନ[୧] କରି ନାନା ପ୍ରକାର ଆଶୀଃ[୨] ପ୍ରାର୍ଥନା କରିବେ। ତା'ପରେ ଶିବଙ୍କ ଉପରେ ମାର୍ଜନ[୩] କରିବେ। ମାର୍ଜନ ପରେ ନମସ୍କାର କରି ଅପରାଧ ପାଇଁ କ୍ଷମା[୪] ପ୍ରାର୍ଥନା କରିବା ସହ ପୁନରାଗମନ ପାଇଁ ବିସର୍ଜନ[୫] କରିବା ଉଚିତ। ଏହାପରେ 'ଅଦ୍ୟା'[୬] ଠାରୁ ଆରମ୍ଭ ହେଉଥିବା ମନ୍ତ୍ର ଉଚ୍ଚାରଣ କରି

୧ "ଓଁ ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ ସ୍ୱସ୍ତି ନଃ ପୂଷା ବିଶ୍ୱବେଦାଃ। ସ୍ୱସ୍ତି ନସ୍ତାର୍କ୍ଷ୍ୟୋ ଅରିଷ୍ଟନେମିଃ ସ୍ୱସ୍ତି ନୋ ବୃହସ୍ପତିର୍ଦଧାତୁ॥" ଇତ୍ୟାଦି ସ୍ୱସ୍ତିବାଚନସମ୍ବନ୍ଧୀୟ ମନ୍ତ୍ର ଅଟେ।

୨ "କାଳେ ବର୍ଷତୁ ପର୍ଜନ୍ୟଃ ପୃଥିବୀ ଶସ୍ୟଶାଳିନୀ। ଦେଶୋଽୟଂ କ୍ଷୋଭରହିତୋ ବ୍ରାହ୍ମଣାଃ ସନ୍ତୁ ନିର୍ଭୟାଃ॥ ସର୍ବେ ଚ ସୁଖିନଃ ସନ୍ତୁ ସର୍ବେ ସନ୍ତୁ ନିରାମୟାଃ। ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍॥" ଇତ୍ୟାଦି ଆଶୀଃପ୍ରାର୍ଥନା ଅଟେ।

୩ "ଓଁ ଆପୋ ହି ଷ୍ଠାମୟୋଭୁବଃ" (ଯଜୁ. ୧୧।୫୦—୫୨) ଇତ୍ୟାଦି ତିନୋଟି ମନ୍ତ୍ରକୁ ମାର୍ଜନ ମନ୍ତ୍ର ବୋଲି କୁହାଯାଇଛି। ଏହାକୁ ପଢ଼ି ଇଷ୍ଟଦେବଙ୍କ ଉପରେ ଜଳ ସିଞ୍ଚିବାକୁ 'ମାର୍ଜନ' କୁହାଯାଏ।

୪ "ଅପରାଧସହସ୍ରାଣି କ୍ରିୟନ୍ତେଽହର୍ନିଶଂ ମୟା। ତାନି ସର୍ବାଣି ମେ ଦେବ କ୍ଷମସ୍ୱ ପରମେଶ୍ୱର॥" ଇତ୍ୟାଦି କ୍ଷମାପ୍ରାର୍ଥନା ସମ୍ବନ୍ଧୀୟ ଶ୍ଳୋକ ଅଟେ।

୫ "ଯାନ୍ତୁ ଦେବଗଣାଃ ସର୍ବେ ପୂଜାମାଦାୟ ମାମକୀମ୍। ଅଭୀଷ୍ଟଫଳଦାନାୟ ପୁନରାଗମନାୟ ଚ॥" ଇତ୍ୟାଦି ବିସର୍ଜନସମ୍ବନ୍ଧୀୟ ଶ୍ଳୋକ ଅଟେ।

୬ "ଓଁ ଅଦ୍ୟା ଦେବା ଉଦିତା ସୂର୍ଯ୍ୟସ୍ୟ ନିରଂହସ ପିପୃତା ନିରବଦ୍ୟାତ୍। ତନ୍ନୋ ମିତ୍ରୋ ବରୁଣୋ ମାମହନ୍ତାମଦିତିଃ ସିନ୍ଧୁଃ ପୃଥିବୀ ଉତ ଦ୍ୟୌଃ।" (ଯଜୁ. ୩୩।୪୨)

ନମସ୍କାର କରିବେ। ତା'ପରେ ଭାବବିଭୋର ହୋଇ ଏହିରୂପେ ପ୍ରାର୍ଥନା କରିବେ–

ଶିବେ ଭକ୍ତିଃ ଶିବେ ଭକ୍ତିଃ ଶିବେ ଭକ୍ତିର୍ଭବେ ଭବେ।
ଅନ୍ୟଥା ଶରଣଂ ନାସ୍ତି ତ୍ୱମେବ ଶରଣଂ ମମ॥

"ପ୍ରତ୍ୟେକ ଜନ୍ମରେ ମୋର ଶିବଙ୍କ ଠାରେ ଭକ୍ତି ହେଉ, ଶିବଙ୍କ ଠାରେ ଭକ୍ତି ହେଉ, ଶିବଙ୍କ ଠାରେ ଭକ୍ତି ହେଉ। ଶିବଙ୍କ ବିନା ଅନ୍ୟ କେହି ମୋର ଶରଣଦାତା ନାହିଁ। ମହାଦେବ ! ଆପଣ ହିଁ ମୋର ଶରଣଦାତା।"

ଏହି ପ୍ରକାରେ ପ୍ରାର୍ଥନା କରି ସିଦ୍ଧିଦାତା ଦେବେଶ୍ୱର ଶିବଙ୍କୁ ପରାଭକ୍ତିରେ ପୂଜା କରିବେ। ବିଶେଷତଃ ଗଳନାଦ ଦ୍ୱାରା ଶିବଙ୍କୁ ସନ୍ତୁଷ୍ଟ କରିବେ। ତା'ପରେ ସପରିବାର ନମସ୍କାର କରି ଅନୁପମ ପ୍ରସନ୍ନତା ଅନୁଭବ କରିବା ସହ ସମସ୍ତ ଲୌକିକ କାର୍ଯ୍ୟ ସୁଖରେ ସମ୍ପାଦନ କରିବେ।

ଯେ ଏହିପରି ଶିବପରାୟଣ ହୋଇ ପ୍ରତିଦିନ ପୂଜା କରିବେ, ତାଙ୍କୁ ପ୍ରତି ପଦକ୍ଷେପରେ ସବୁ କାର୍ଯ୍ୟରେ ସିଦ୍ଧି ମିଳିବ। ସେ ଉତ୍ତମ ବକ୍ତା ହେବେ ଏବଂ ତାଙ୍କୁ ନିଶ୍ଚୟ ମନୋବାଞ୍ଛିତ ଫଳ ପ୍ରାପ୍ତ ହେବ। ରୋଗ, ଦୁଃଖ, ଉଦ୍‌ବେଗ, କୁଟିଳତା, ବିଷ ଆଦି ରୂପରେ ଯେଉଁ ସବୁ କଷ୍ଟ ଆସେ, ତାହାକୁ କଲ୍ୟାଣକାରୀ ଶିବ ନିଶ୍ଚୟ ନଷ୍ଟ କରିଦିଅନ୍ତି। ଏପରି ଉପାସକର କଲ୍ୟାଣ ହୁଏ। ଶୁକ୍ଳପକ୍ଷରେ ଚନ୍ଦ୍ର ବୃଦ୍ଧି ପାଇଲା ପରି ଭଗବାନ ଶଙ୍କରଙ୍କ ପୂଜାଫଳରେ ତା'ଠାରେ ଅବଶ୍ୟ ସଦ୍‌ଗୁଣର ବୃଦ୍ଧି ହୁଏ। ମୁନିଶ୍ରେଷ୍ଠ ନାରଦ ! ଏହିରୂପେ ମୁଁ ଶିବପୂଜାର ବିଧାନ କହିଦେଲି। ଏବେ ତୁମେ ଆଉ କ'ଣ ଶୁଣିବାକୁ ଚାହୁଁଛ? ତୁମର ଆଉ କି ପ୍ରଶ୍ନ ଅଛି?

(ଅଧ୍ୟାୟ ୧୧)

***

## ଭଗବାନ ଶିବଙ୍କ ଶ୍ରେଷ୍ଠତା ତଥା ତାଙ୍କ ପୂଜାର ଅନିବାର୍ଯ୍ୟତା ପ୍ରତିପାଦନ

ନାରଦ କହିଲେ–ବ୍ରହ୍ମନ୍ ! ପ୍ରଜାପତେ ! ଆପଣ ଧନ୍ୟ। କାରଣ ଆପଣଙ୍କ ବୁଦ୍ଧି ଶିବଙ୍କ ଠାରେ ନିବିଷ୍ଟ ରହିଛି। ବିଧାତା ! ଆପଣ ପୁନର୍ବାର ଏହି ବିଷୟକୁ ବିସ୍ତାରପୂର୍ବକ କୁହନ୍ତୁ।

ବ୍ରହ୍ମା କହିଲେ–ବତ୍ସ ! ଥରକର କଥା। ମୁଁ ଋଷିଗଣ ଓ ଦେବଗଣଙ୍କୁ ଚାରିଆଡୁ ଡାକି ସେମାନଙ୍କୁ ନେଇ କ୍ଷୀରସାଗର ତଟକୁ ଗଲି, ଯେଉଁଠି ସମସ୍ତଙ୍କ ହିତସାଧନ କରୁଥିବା ଭଗବାନ ବିଷ୍ଣୁ ନିବାସ କରନ୍ତି। ସେଠାରେ ଦେବତାମାନେ ପଚାରିବାରୁ ଭଗବାନ ବିଷ୍ଣୁ ସମସ୍ତଙ୍କ ପାଇଁ ଶିବପୂଜନର ଶ୍ରେଷ୍ଠତା ପ୍ରତିପାଦିତ କରିବାକୁ ଯାଇ କହିଲେ–"ଗୋଟିଏ ମୁହୂର୍ତ୍ତ ବା କ୍ଷଣ ମଧ୍ୟ ଯଦି ଶିବପୂଜନ ନ କରାଯାଏ, ତେବେ ତାହା ଘୋର କ୍ଷତି, ଘୋର ଛିଦ୍ର; ତାହା ହିଁ ଅନ୍ଧତ୍ୱ ଓ ମୂର୍ଖତା। ଯିଏ ଭଗବାନ ଶିବଙ୍କ ଭକ୍ତିରେ ତତ୍ପର, ଯିଏ ମନରେ ତାଙ୍କୁ ପ୍ରଣାମ ଓ ଚିନ୍ତନ କରେ, ସେ କଦାପି ଦୁଃଖଭାଗୀ ହୁଏ ନାହିଁ।* ଯେଉଁ ସୌଭାଗ୍ୟଶାଳୀ ଲୋକେ ମନୋହର ଭବନ, ସୁନ୍ଦର ଆଭୂଷଣରେ ବିଭୂଷିତ ସ୍ତ୍ରୀ, ମନୋନୁକୂଳ ଧନ, ପୁତ୍ରପୌତ୍ର, ନିରୋଗତା, ସୁନ୍ଦର ଶରୀର, ଅଲୌକିକ ପ୍ରତିଷ୍ଠା, ସ୍ୱର୍ଗୀୟ ସୁଖ ଓ ଶେଷରେ ମୋକ୍ଷରୂପୀ ଫଳ ଅଥବା ଶିବଭକ୍ତି ଚାହାନ୍ତି, ସେମାନେ ପୂର୍ବଜନ୍ମର ମହାନ୍ ପୁଣ୍ୟ ପ୍ରତାପରେ ଭଗବାନ ସଦାଶିବଙ୍କ

* ଭବଭକ୍ତିପରା ଯେ ଚ ଭବପ୍ରଣତଚେତସଃ। ଭବସଂସ୍ମରଣା ଯେ ଚ ନ ତେ ଦୁଃଖସ୍ୟ ଭାଜନାଃ॥
(ଶି. ପୁ. ରୁ. ସୃ. ଖ. ୧୨।୨୧)

рмкрнВрмЬрм╛рм░рнНрмЪрнНрмЪрмирм╛рм░рнЗ рмкрнНрм░рммрнГрмдрнНрмд рм╣рнБрмЕрмирнНрмдрм┐ред рмпрнЗ рмирм┐рмдрнНрнЯ рмнрмХрнНрмдрм┐рмкрм░рм╛рнЯрмг рм╣рнЛрмЗ рм╢рм┐рммрм▓рм┐рмЩрнНрмЧ рмкрнВрмЬрм╛ рмХрм░рнЗ,



рмдрм╛рмХрнБ рм╕рмХрм│ рм╕рм┐рмжрнНрмзрм┐ рмкрнНрм░рм╛рмкрнНрмд рм╣рнБрмП рмУ рм╕рнЗ рмкрм╛рмкрм░рнЗ рм▓рм┐рмкрнНрмд рм╣рнБрмП рмирм╛рм╣рм┐рмБред

рмнрмЧрммрм╛рми рмПрм╣рм┐рмнрм│рм┐ рмЙрмкрмжрнЗрм╢ рмжрнЗрммрм╛рм░рнБ рмжрнЗрммрмдрм╛рморм╛рмирнЗ рм╢рнНрм░рнАрм╣рм░рм┐рмЩрнНрмХрнБ рмкрнНрм░рмгрм╛рмо рмХрм░рм┐ рмормирнБрм╖рнНрнЯрмЩрнНрмХрм░ рм╕рморм╕рнНрмд рмХрм╛рмормирм╛рмкрнВрм░рмг рмирм┐рмормирнНрмдрнЗ рмдрм╛рмЩрнНрмХрнБ рм╢рм┐рммрм▓рм┐рмЩрнНрмЧ рморм╛рмЧрм┐рм▓рнЗред рморнБрмирм┐рм╢рнНрм░рнЗрм╖рнНрма ! рм╕рнЗрм╣рм┐ рмкрнНрм░рм╛рм░рнНрмермирм╛рмХрнБ рм╢рнБрмгрм┐ рмЬрнАрммрмЩрнНрмХ рмЙрмжрнНрмзрм╛рм░рм░рнЗ рмдрмдрнНрмкрм░ рм░рм╣рнБрмернНрм╡рм╛ рмнрмЧрммрм╛рми рммрм┐рм╖рнНрмгрнБ рммрм┐рм╢рнНрн▒рмХрм░рнНрморм╛рмЩрнНрмХрнБ рмбрм╛рмХрм┐ рмХрм╣рм┐рм▓рнЗтАФтАШрммрм┐рм╢рнНрн▒рмХрм░рнНрмормирнН ! рмдрнБрморнЗ рморнЛ рмЖрмЬрнНрмЮрм╛рм░рнЗ рмжрнЗрммрмЧрмгрмЩрнНрмХрнБ рм╕рнБрмирнНрмжрм░ рм╢рм┐рммрм▓рм┐рмЩрнНрмЧ рмирм┐рм░рнНрморм╛рмг рмХрм░рм┐ рмкрнНрм░рмжрм╛рми рмХрм░ред рмдрнЗрмгрнБ рммрм┐рм╢рнНрн▒рмХрм░рнНрморм╛ рморнЛрм░ рмУ рм╢рнНрм░рнАрм╣рм░рм┐рмЩрнНрмХрм░ рмЖрмЬрнНрмЮрм╛рмирнБрм╕рм╛рм░рнЗ рмжрнЗрммрмЧрмгрмЩрнНрмХрнБ рм╕рнЗрморм╛рмирмЩрнНрмХ рмЕрмзрм┐рмХрм╛рм░ рмЕрмирнБрм╕рм╛рм░рнЗ рм╢рм┐рммрм▓рм┐рмЩрнНрмЧ рмирм┐рм░рнНрморм╛рмг рмХрм░рм┐ рмкрнНрм░рмжрм╛рми рмХрм▓рнЗред

рморнБрмирм┐рм╢рнНрм░рнЗрм╖рнНрма рмирм╛рм░рмж ! рмХрнЗрмЙрмБ рмжрнЗрммрмдрм╛рмЩрнНрмХрнБ рмХрнЗрмЙрмБ рм╢рм┐рммрм▓рм┐рмЩрнНрмЧ рмкрнНрм░рм╛рмкрнНрмд рм╣рнЗрм▓рм╛, рмдрм╛рм╣рм╛ рморнБрмБ рмХрм╣рнБрмЫрм┐, рм╢рнБрмгред рмЗрмирнНрмжрнНрм░ рмкрмжрнНрморм░рм╛рмЧрмормгрм┐рм░рнЗ рмирм┐рм░рнНрморм┐рмд рм╢рм┐рммрм▓рм┐рмЩрнНрмЧ рмУ рмХрнБрммрнЗрм░ рм╕рнБрммрм░рнНрмгрнНрмг рм▓рм┐рмЩрнНрмЧ рмкрнВрмЬрм╛ рмХрм░рмирнНрмдрм┐ред рмзрм░рнНрмо рмкрнАрмдрмормгрм┐рморнЯ (рмкрнЛрмЦрм░рм╛рмЬ) рм▓рм┐рмЩрнНрмЧ рмдрмернЗрм╛ рммрм░рнБрмг рм╢рнНрнЯрм╛рморммрм░рнНрмгрнНрмг рм▓рм┐рмЩрнНрмЧ рмкрнВрмЬрм╛ рмХрм░рмирнНрмдрм┐ред рмнрмЧрммрм╛рми рммрм┐рм╖рнНрмгрнБ рмЗрмирнНрмжрнНрм░рмирнАрм│рмормгрм┐рм░ рмдрмернЗрм╛ рммрнНрм░рм╣рнНрморм╛ рм╕рнБрммрм░рнНрмгрнНрмгрм░ рм▓рм┐рмЩрнНрмЧ рмкрнВрмЬрм╛ рмХрм░рмирнНрмдрм┐ред рморнБрмирнЗ ! рммрм┐рм╢рнНрн▒рнЗрмжрнЗрммрмЧрмг рм░рнБрмкрм╛рм░ рм╢рм┐рммрм▓рм┐рмЩрнНрмЧ, рммрм╕рнБрмЧрмг рмкрм┐рмдрнНрмдрм│ рм▓рм┐рмЩрнНрмЧ рмдрмернЗрм╛ рмЕрм╢рнНрн▒рм┐рмирнАрмХрнБрморм╛рм░рмжрнНрн▒рнЯ рмкрм╛рм░рнНрмермм╛рмм▓рм┐рмЩрнНрмЧ рмкрнВрмЬрм╛ рмХрм░рмирнНрмдрм┐ред рм▓рмХрнНрм╖рнНрморнАрмжрнЗрммрнА рм╕рнНрмлрмЯрм┐рмХрмормгрм┐рм░ рм▓рм┐рмЩрнНрмЧ, рм░рм╛рмЬрм╛ рм╕рнЛрмо рморнБрмХрнНрмдрм╛рм░ рм▓рм┐рмЩрнНрмЧ рмдрмернЗрм╛ рмЕрмЧрнНрмирм┐рмжрнЗрмм рммрмЬрнНрм░ (рм╣рнАрм░рм╛) рм▓рм┐рмЩрнНрмЧ рмкрнВрмЬрм╛ рмХрм░рмирнНрмдрм┐ред рм╢рнНрм░рнЗрм╖рнНрма рммрнНрм░рм╛рм╣рнНрмормг рмУ рм╕рнЗрморм╛рмирмЩрнНрмХ рм╕рнНрмдрнНрм░рнАрморм╛рмирнЗ рморнГрмдрнНрмдрм┐рмХрм╛ рмирм┐рм░рнНрморм┐рмд рм╢рм┐рммрм▓рм┐рмЩрнНрмЧ, рморнЯрм╛рм╕рнБрм░ рмЪрмирнНрмжрмирмирм┐рм░рнНрморм┐рмд рм▓рм┐рмЩрнНрмЧ рмУ рмирм╛рмЧрмЧрмг рмкрнНрм░рммрм╛рм│ рм▓рм┐рмЩрнНрмЧрмХрнБ рмЖрмжрм░рмкрнВрм░рнНрммрмХ рмкрнВрмЬрм╛ рмХрм░рмирнНрмдрм┐ред рмжрнЗрммрнА рм▓рммрмгрмирм┐рм░рнНрморм┐рмд рм▓рм┐рмЩрнНрмЧ, рмпрнЛрмЧрнАрмЬрми рмнрм╕рнНрморм▓рм┐рмЩрнНрмЧ, рмпрмХрнНрм╖рмЧрмг рмжрмзрм┐рмирм┐рм░рнНрморм┐рмд рм▓рм┐рмЩрнНрмЧ, рмЫрм╛рнЯрм╛рмжрнЗрммрнА рмЧрнБрмбрм│рмЪрнВрмирм╛рм░рнЗ рмирм┐рм░рнНрморм┐рмд рмкрм┐рм╖рнНрмЯрмХ рм▓рм┐рмЩрнНрмЧ рмУ рммрнНрм░рм╣рнНрморм╛рмгрнА рм░рмдрнНрмирморнЯ рм╢рм┐рммрм▓рм┐рмЩрнНрмЧ рмкрнВрмЬрм╛ рмХрм░рм┐рмерм╛рмирнНрмдрм┐ред рммрм╛рмгрм╛рм╕рнБрм░ рмкрм╛рм░рмж рммрм╛ рмкрм╛рм░рнНрмермм╛рмм▓рм┐рмЩрнНрмЧрмХрнБ рмкрнВрмЬрм╛ рмХрм░рм┐рмерм╛рмирнНрмдрм┐ред рмЕрмирнНрнЯрморм╛рмирнЗ рмормзрнНрнЯ рмПрм╣рм┐рмкрм░рм┐ рмХрм░рм┐рмерм╛рмирнНрмдрм┐ред рмПрмнрм│рм┐ рм╢рм┐рммрм▓рм┐рмЩрнНрмЧрморм╛рми рммрм┐рм╢рнНрн▒рмХрм░рнНрморм╛ рмирм┐рм░рнНрморм╛рмг рмХрм░рм┐ рм╕рнЗрморм╛рмирмЩрнНрмХрнБ рмжрнЗрмЗрмернНрм╡рм╛рм░рнБ рм╕рнЗрм╣рм┐ рмжрнЗрммрмдрм╛ рмУ рмЛрм╖рм┐рморм╛рмирнЗ рм╕рнЗрм╣рм┐рм╕рммрнБ рм▓рм┐рмЩрнНрмЧрмХрнБ рмкрнВрмЬрм╛ рмХрм░рм┐рмерм╛рмирнНрмдрм┐ред

рмнрмЧрммрм╛рми рммрм┐рм╖рнНрмгрнБ рмПрм╣рм┐рм░рнВрмкрнЗ рмжрнЗрммрмдрм╛рмЩрнНрмХ рм╣рм┐рмд рмХрм╛рмормирм╛рм░рнЗ рм╢рм┐рммрм▓рм┐рмЩрнНрмЧ рмжрнЗрмЗ рм╕рнЗрморм╛рмирмЩрнНрмХрнБ рмдрмернЗрм╛ рморнЛрмдрнЗ рмкрм┐рмирм╛рмХрмкрм╛рмгрм┐ рморм╣рм╛рмжрнЗрммрмЩрнНрмХ рмкрнВрмЬрмирм░ рммрм┐рмзрм┐ рмормзрнНрнЯ рмХрм╣рм┐рм▓рнЗред рмкрнВрмЬрм╛рммрм┐рмзрм┐ рм╕рморнНрммрмирнНрмзрнАрнЯ рмЕрмирнЗрмХ рмХрмернЗрм╛ рм╢рнБрмгрм┐ рморнБрмБ рммрнНрм░рм╣рнНрморм╛ рмкрнНрм░рм╕рмирнНрми рмЪрм┐рмдрнНрмдрм░рнЗ рморнЛрм░ рм╕рнНрн▒рмзрм╛рмормХрнБ рммрм╛рм╣рнБрмбрм╝рм┐рмЧрм▓рм┐ред рморнБрмирнЗ ! рм╕рнЗрмарм╛рм░рнЗ рмкрм╣рмЮрнНрмЪрм┐ рморнБрмБ рм╕рморм╕рнНрмд рмжрнЗрммрмдрм╛ рмУ рмЛрм╖рм┐рмЧрмгрмЩрнНрмХрнБ рм╕рмХрм│ рмЕрмнрнАрм╖рнНрмЯ рмкрнНрм░рмжрм╛рнЯрмХ рм╢рм┐рммрмкрнВрмЬрм╛рм░ рмЙрмдрнНрмдрмо рммрм┐рмзрм┐ рмХрм╣рм┐рм▓рм┐ред

рм╕рнЗрмдрнЗрммрнЗрм│рнЗ рморнБрмБ рмХрм╣рм┐рм▓рм┐тАФрм╣рнЗ рмжрнЗрммрмЧрмг рмУ рмЛрм╖рм┐рмЧрмг ! рмдрнБрморнЗрморм╛рмирнЗ рм╢рнНрм░рмжрнНрмзрм╛рм░рнЗ рм╢рнБрмгред рморнБрмБ

ପ୍ରସନ୍ନତାପୂର୍ବକ ଶିବପୂଜନର ବିଧି ବର୍ଣ୍ଣନା କରୁଛି, ଯାହା ଭୋଗ ଓ ମୋକ୍ଷ ପ୍ରଦାନକାରୀ । ହେ ଦେବଗଣ ଓ ଋଷିଗଣ ! ସମସ୍ତ ପ୍ରାଣୀଙ୍କ ମଧ୍ୟରେ ମନୁଷ୍ୟ ଜନ୍ମ ଅତି ଦୁର୍ଲଭ । ସେଥିରେ ପୁଣି ଉତ୍ତମ କୁଳରେ ଜନ୍ମ ମିଳିବା ଆହୁରି ଦୁର୍ଲଭ । ତହିଁରେ ବି ଆଗ୍ରହବାନ୍ ବ୍ରାହ୍ମଣଙ୍କ ଘରେ ଜନ୍ମ ମିଳିବା ଉତ୍ତମ ପୁଣ୍ୟବଳରେ ହିଁ ସମ୍ଭବ । ଯଦି ଏଭଳି ଜନ୍ମ ମିଳିଯାଏ, ତେବେ ଭଗବାନ ଶିବଙ୍କ ସନ୍ତୋଷ ନିମନ୍ତେ ଏପରି କର୍ମ ଅନୁଷ୍ଠାନ କରିବା ଉଚିତ, ଯାହା ନିଜ ବର୍ଣ୍ଣ ଓ ଆଶ୍ରମ ନିମନ୍ତେ ଶାସ୍ତ୍ରଦ୍ୱାରା ପ୍ରତିପାଦିତ ହୋଇଥିବ । ଯେଉଁ ଜାତି ପାଇଁ ଯାହା ନିର୍ଦ୍ଦେଶ ରହିଛି, ତାହାକୁ ଉଲ୍ଲଙ୍ଘନ ନ କରିବା ଉଚିତ । ଯେତିକି ସମ୍ପତ୍ତି ବା ସାମର୍ଥ୍ୟ ଅଛି, ସେହି ଅନୁସାରେ ହିଁ ଦାନ କରିବା ବିଧେୟ । ସହସ୍ର କର୍ମମୟ ଯଜ୍ଞଠାରୁ ତପୋଯଜ୍ଞ ଶ୍ରେଷ୍ଠ । ସହସ୍ର ତପୋଯଜ୍ଞଠାରୁ ଜପଯଜ୍ଞର ମହତ୍ତ୍ୱ ଅଧିକ । ଧ୍ୟାନଯଜ୍ଞରୁ ବଳି ଆଉ କିଛି ନାହିଁ । ଧ୍ୟାନ ଜ୍ଞାନର ସାଧନ; କାରଣ ଯୋଗୀ ଧ୍ୟାନଦ୍ୱାରା ନିଜର ଇଷ୍ଟଦେବ ଶିବଙ୍କର ସାକ୍ଷାତ୍କାର କରିଥାଏ ।* ଧ୍ୟାନଯଜ୍ଞ-ପରାୟଣ ଉପାସକ ନିମନ୍ତେ ଭଗବାନ ଶିବ ସଦା ତା'ର ସନ୍ନିହିତ ଅଟନ୍ତି । ବିଜ୍ଞାନସମ୍ପନ୍ନ ଲୋକଙ୍କର ଶୁଦ୍ଧି ପାଇଁ କୌଣସି ପ୍ରାୟଶ୍ଚିତ୍ତ ଆଦିର ପ୍ରୟୋଜନ ନାହିଁ ।

ମନୁଷ୍ୟକୁ ଯେପର୍ଯ୍ୟନ୍ତ ଜ୍ଞାନପ୍ରାପ୍ତି ନ ହୋଇଛି, ସେପର୍ଯ୍ୟନ୍ତ ସେ ବିଶ୍ୱାସଯୋଗ୍ୟ ହେବା ପାଇଁ କର୍ମଦ୍ୱାରା ହିଁ ଭଗବାନ ଶିବଙ୍କୁ ଆରାଧନା କରିବା ଉଚିତ । ଏକମାତ୍ର ପରମାତ୍ମା ହିଁ ଅନେକ ରୂପରେ ବିଭକ୍ତ ହୋଇଥିବା ପରି ଜଗତ ଲୋକଙ୍କୁ ଲାଗେ । ଏକମାତ୍ର ସୂର୍ଯ୍ୟ ଗୋଟିଏ ସ୍ଥାନରେ ରହି ମଧ୍ୟ ଜଳାଶୟ ଆଦି ବିଭିନ୍ନ ବସ୍ତୁରେ ଅନେକ ପରି ଦୃଶ୍ୟ ହୁଅନ୍ତି । ହେ ଦେବଗଣ ! ସଂସାରରେ ଯେତେ ସବୁ ସତ୍ ବା ଅସତ୍ ବସ୍ତୁ ଦେଖିବାକୁ ଓ ଶୁଣିବାକୁ ମିଳେ, ସେ ସମସ୍ତଙ୍କୁ ପରବ୍ରହ୍ମ ଶିବରୂପ ହିଁ ବୁଝ । ତତ୍ତ୍ୱଜ୍ଞାନ ନ ହେବା ପର୍ଯ୍ୟନ୍ତ ପ୍ରତିମା ପୂଜା ଆବଶ୍ୟକ । ଜ୍ଞାନପ୍ରାପ୍ତି ନ ହେଉଣୁ ଯେ ପ୍ରତିମାପୂଜାର ଅବହେଳନା କରେ, ତା'ର ପତନ ସୁନିଶ୍ଚିତ । ତେଣୁ ହେ ବ୍ରାହ୍ମଣଗଣ ! ନିଜ ଜାତି ପାଇଁ ଯେଉଁ କର୍ମ ନିର୍ଦ୍ଦେଶିତ ହୋଇଛି, ତାହାକୁ ଯତ୍ନପୂର୍ବକ ପାଳନ କରିବା ଉଚିତ । ଯେଉଁ ଆରାଧ୍ୟ ଦେବଙ୍କ ପ୍ରତି ଯେତିକି ଭକ୍ତି ରହିଛି, ତାଙ୍କୁ ତଦନୁରୂପ ପୂଜା ନିଶ୍ଚିତରୂପେ କରିବା ଉଚିତ; କାରଣ ପୂଜା ଓ ଦାନ ବିନା ପାତକ ଦୂର ହେବ ନାହିଁ ।❁ ମଳିଆ ବସ୍ତ୍ର ଯେପରି ରଙ୍ଗ ଧରେ ନାହିଁ, ସଫା ବସ୍ତ୍ର ହିଁ ରଙ୍ଗ ଧରେ, ଠିକ୍ ସେହିପରି ଦେବପୂଜନ ଦ୍ୱାରା ତ୍ରିବିଧ ଶରୀର ଭଲଭାବେ ନିର୍ମଳ ହୋଇଯିବା ପରେ ହିଁ ସେଥିରେ ଜ୍ଞାନରୂପୀ ରଙ୍ଗ ଧରେ ଓ ସେଥିରେ ବିଜ୍ଞାନ ପ୍ରକଟ ହୁଏ । ବିଜ୍ଞାନ ପ୍ରକଟ ହେଲେ ଭେଦଭାବ ନିବୃତ୍ତ ହୋଇଯାଏ । ଭେଦ ପୂର୍ଣ୍ଣରୂପେ ନିବୃତ୍ତ ହୋଇଗଲେ ଦ୍ୱନ୍ଦ୍ୱ ଦୂର ହୋଇଯାଏ ଏବଂ ଦ୍ୱନ୍ଦ୍ୱରହିତ ବ୍ୟକ୍ତି ଶିବରୂପ ହୋଇଯାଏ ।

ମନୁଷ୍ୟ ଗୃହସ୍ଥ ଆଶ୍ରମରେ ଥିବା ପର୍ଯ୍ୟନ୍ତ ସେ ପଞ୍ଚଦେବତାଙ୍କୁ ଓ ସେମାନଙ୍କ ମଧ୍ୟରେ

* ଧ୍ୟାନଯଜ୍ଞାତ୍ପରଂ ନାସ୍ତି ଧ୍ୟାନଂ ଜ୍ଞାନସ୍ୟ ସାଧନମ୍ । ଯତଃ ସମରସଂ ସ୍ୱେଷ୍ଟଂ ଯୋଗୀ ଧ୍ୟାନେନ ପଶ୍ୟତି ॥
(ଶି. ପୁ. ରୁ. ସୃ. ଖ. ୧୨ ।୪୬)

❁ ଯତ୍ର ଯତ୍ର ଯଥାଭକ୍ତିଃ କର୍ତ୍ତବ୍ୟଂ ପୂଜନାଦିକମ୍ । ବିନା ପୂଜନଦାନାଦି ପାତକଂ ନ ଚ ଦୂରତଃ ॥
(ଶି. ପୁ. ରୁ. ସୃ. ଖ. ୧୨ ।୬୯)

ଶ୍ରେଷ୍ଠ ଭଗବାନ ଶଙ୍କରଙ୍କ ପ୍ରତିମାକୁ ଅତିଶୟ ପ୍ରେମ ସହିତ ପୂଜା କରିବା ଉଚିତ। ଅଥବା ସମସ୍ତଙ୍କର ମୂଳ ଯେଉଁ ଶିବ ଅଟନ୍ତି, ତାଙ୍କରି ପୂଜା ହିଁ ସବୁଠାରୁ ଶ୍ରେଷ୍ଠ; କାରଣ ମୂଳରେ ପାଣି ଢାଳିଲେ ଶାଖାସ୍ଥାନୀୟ ସମସ୍ତ ଦେବତା ଆପେ ଆପେ ତୃପ୍ତ ହୋଇଯାଆନ୍ତି। ଏଣୁ ଯେ ସମସ୍ତ ମନୋବାଞ୍ଛିତ ଫଳ ପାଇବାକୁ ଚାହେଁ, ସେ ନିଜ ଅଭୀଷ୍ଟର ସିଦ୍ଧି ପାଇଁ ସକଳ ପ୍ରାଣୀଙ୍କ ହିତରେ ତତ୍ପର ରହି ଲୋକ-କଲ୍ୟାଣକାରୀ ଭଗବାନ ଶଙ୍କରଙ୍କୁ ପୂଜା କରିବା ଉଚିତ।

(ଅଧ୍ୟାୟ ୧୨)



## ଶିବପୂଜନର ସର୍ବୋତ୍ତମ ବିଧିର ବର୍ଣ୍ଣନା

ବ୍ରହ୍ମା କହୁଛନ୍ତି—ଏବେ ମୁଁ ପୂଜାର ସର୍ବୋତ୍ତମ ବିଧି କହୁଛି। ଏହା ସମସ୍ତ ଅଭୀଷ୍ଟ ଓ ସୁଖ ପ୍ରଦାନ କରିଥାଏ। ହେ ଦେବଗଣ ଓ ଋଷିଗଣ ! ତୁମେମାନେ ମନ ଦେଇ ଶୁଣ। ଉପାସକ ବ୍ରାହ୍ମମୁହୂର୍ତ୍ତରୁ ଉଠି ଶିବପାର୍ବତୀଙ୍କୁ ସ୍ମରଣ କରି ହାତ ଯୋଡ଼ି ନତମସ୍ତକ ହୋଇ ଭକ୍ତିପୂର୍ବକ ପ୍ରାର୍ଥନା କରିବେ—"ହେ ଦେବେଶ୍ୱର ! ଉଠନ୍ତୁ, ଉଠନ୍ତୁ। ମୋ ହୃଦୟମନ୍ଦିରରେ ଶୟନ କରୁଥିବା ହେ ଦେବତା ! ଉଠନ୍ତୁ। ଉମାକାନ୍ତ ! ଉଠନ୍ତୁ ଓ ବ୍ରହ୍ମାଣ୍ଡର ମଙ୍ଗଳ କରନ୍ତୁ। ମୁଁ ଧର୍ମକୁ ଜାଣୁଛି, କିନ୍ତୁ ସେଥିରେ ମୋର ପ୍ରବୃତ୍ତି ହେଉ ନାହିଁ। ମୁଁ ଅଧର୍ମକୁ ଜାଣୁଛି, କିନ୍ତୁ ସେଥିରୁ ନିବୃତ୍ତ ହୋଇପାରୁ ନାହିଁ। ମହାଦେବ ! ଆପଣ ମୋ ହୃଦୟରେ ରହି ଯେପରି ପ୍ରେରଣା ଦେଉଛନ୍ତି, ସେହିପରି ମୁଁ କରୁଛି।"* ଏହିରୂପେ ଭକ୍ତିପୂର୍ବକ କହି ଓ ଗୁରୁଦେବଙ୍କ ଚରଣପାଦୁକାକୁ ସ୍ମରଣ କରି ଗ୍ରାମ ବାହାରେ ଦକ୍ଷିଣ ଦିଗକୁ ଯାଇ ମଳମୂତ୍ର ତ୍ୟାଗ କରିବା ଉଚିତ। ମଳତ୍ୟାଗ ପରେ ମାଟି ଓ ପାଣିରେ ଶରୀରକୁ ଶୁଦ୍ଧି କରିବା ପରେ ଦୁଇ ହାତ ଓ ଦୁଇ ପାଦକୁ ଧୋଇ ଦାନ୍ତ ଘଷିବେ। ସୂର୍ଯ୍ୟୋଦୟ ହେବା ପୂର୍ବରୁ ଦାନ୍ତ ଘଷି ଷୋହଳ ଥର କୁଳି କରିବେ। ହେ ଦେବଗଣ ଓ ଋଷିଗଣ ! ଷଷ୍ଠୀ, ପ୍ରତିପଦ, ଅମାବାସ୍ୟା ଓ ନବମୀ ତିଥିରେ ତଥା ରବିବାର ଦିନ ଶିବଭକ୍ତ ପକ୍ଷେ ଦାନ୍ତକାଠି ବର୍ଜନୀୟ। ଅବସର ଅନୁସାରେ ନଦୀ ଇତ୍ୟାଦିରେ ଅଥବା ଘରେ ଭଲଭାବେ ସ୍ନାନ କରିବା ଉଚିତ। ମନୁଷ୍ୟ ଦେଶକାଳର ବିରୁଦ୍ଧମତେ ସ୍ନାନ କରିବା ଉଚିତ ନୁହେଁ। ରବିବାର, ଶ୍ରାଦ୍ଧ, ସଂକ୍ରାନ୍ତି, ଗ୍ରହଣ, ମହାଦାନ, ତୀର୍ଥ ଓ ଉପବାସ-ଦିବସ ଅଥବା ଅଶୌଚ ପଡ଼ିଲେ ଗରମ ପାଣିରେ ସ୍ନାନ କରିବା ଅନୁଚିତ। ଶିବଭକ୍ତ ମନୁଷ୍ୟ ତୀର୍ଥ ଆଦିରେ ପ୍ରବାହର ସମ୍ମୁଖ ହୋଇ ସ୍ନାନ କରିବା ଅନୁଚିତ। ତେଲ ଲଗାଇ ଗାଧୋଇବାକୁ ଚାହିଁଲେ, ବିହିତ ଓ ନିଷିଦ୍ଧ କଥା ବିଚାର କରି ତୈଳାଭ୍ୟଙ୍ଗ କରିବା ବିଧେୟ। ଯେ ପ୍ରତିଦିନ ନିୟମପୂର୍ବକ ତେଲ ଲଗାଏ, ତା' ପାଇଁ ଯେକୌଣସି ଦିନ ବି ତେଲ ଲଗାଇବା ଦୂଷିତ ଧରାଯିବ ନାହିଁ। ଅଥବା ଅତର ଆଦିରେ ସୁଗନ୍ଧିତ ତେଲ ଲଗାଇଲେ ବି ତାହା ଦୂଷିତ ନୁହେଁ। ସୋରିଷ ତେଲ କେବଳ ଗ୍ରହଣ ଛଡ଼ା ଅନ୍ୟ ଦିନମାନଙ୍କରେ ଦୂଷିତ ଧରାଯାଏ ନାହିଁ। ଏହିରୂପେ ଦେଶକାଳ

---

* ଜାନାମି ଧର୍ମଂ ନ ଚ ମେ ପ୍ରବୃତ୍ତିର୍ଜାନାମ୍ୟଧର୍ମଂ ନ ଚ ମେ ନିବୃତ୍ତିଃ।
ତ୍ୱୟା ମହାଦେବ ହୃଦି ସ୍ଥିତେନ ଯଥା ନିଯୁକ୍ତୋଽସ୍ମି ତଥା କରୋମି॥ (ଶି. ପୁ. ରୁ. ସୃ. ଖ. ୧୩।୪)

କଥା ବିଗ୍ରହ କରି ବିଧିପୂର୍ବକ ସ୍ନାନ କରିବେ। ସ୍ନାନବେଳେ ଉତ୍ତର ବା ପୂର୍ବକୁ ମୁଖ କରିବେ।

ଉଚ୍ଛିଷ୍ଟ ବସ୍ତ୍ର କଦାପି ପିନ୍ଧିବେ ନାହିଁ। ଶୁଦ୍ଧବସ୍ତ୍ର ପିନ୍ଧି ଇଷ୍ଟଦେବଙ୍କୁ ସ୍ମରଣପୂର୍ବକ ସ୍ନାନ କରିବେ। ଯେଉଁ ବସ୍ତ୍ରକୁ ଆଉ କେହି ପିନ୍ଧିଥିବେ ବା ଯାହା ଅନ୍ୟର ବସ୍ତ୍ର ଏବଂ ଯାହାକୁ ରାତିରେ ପିନ୍ଧିଥିବେ, ତାହା ଉଚ୍ଛିଷ୍ଟ ବସ୍ତ୍ର ଅଟେ। ତାହାକୁ ଧୋଇବା ପରେ ହିଁ ପୁନଃ ପିନ୍ଧି ସ୍ନାନ କରାଯାଇପାରେ। ସ୍ନାନ ପରେ ଦେବତା, ଋଷି ତଥା ପିତୃପୁରୁଷଙ୍କୁ ତୃପ୍ତି ପ୍ରଦାନ କରୁଥିବା ସ୍ନାନାଙ୍ଗ ତର୍ପଣ କରିବା ଉଚିତ। ତା'ପରେ ଧୌତବସ୍ତ୍ର ପିନ୍ଧିବେ ଓ ଆଚମନ କରିବେ। ଦ୍ୱିଜୋତ୍ତମ ! ତା'ପରେ ଗୋମୟରେ ଲିପା ହୋଇ ପବିତ୍ର ହୋଇଥିବା ସ୍ଥାନରେ ସୁନ୍ଦର ଆସନ ବିଛାଇବେ। ସେହି ଆସନ ବିଶୁଦ୍ଧ କାଠରେ ନିର୍ମିତ, ପ୍ରଶସ୍ତ ତଥା ଚିତ୍ରମୟ ହୋଇଥିବା ଉଚିତ। ଏଭଳି ଆସନ ସମସ୍ତ ଅଭୀଷ୍ଟ ଫଳ ପ୍ରଦାନ କରିଥାଏ। ତା'ଉପରେ ଯଥାଯୋଗ୍ୟ ମୃଗଚର୍ମ ଆଦି ପକାଇବେ। ଶୁଦ୍ଧବୁଦ୍ଧି ପୁରୁଷ ସେହି ଆସନରେ ବସି ଭସ୍ମର ତ୍ରିପୁଣ୍ଡ୍ର ଲଗାଇବେ। ତ୍ରିପୁଣ୍ଡ୍ରରେ ଜପ, ତପ ଓ ଦାନ ସଫଳ ହୋଇଥାଏ। ଭସ୍ମ ଅଭାବରେ ଜଳର ତ୍ରିପୁଣ୍ଡ୍ର କରାଯାଇପାରେ। ଏପରି ତ୍ରିପୁଣ୍ଡ୍ର କରି ସେ ରୁଦ୍ରାକ୍ଷ ଧାରଣ କରିବେ ଓ ନିଜ ନିତ୍ୟକର୍ମ ସମ୍ପାଦନ କରିବା ପରେ ଶିବାରାଧନା କରିବେ। ତା'ପରେ ମନ୍ତ୍ରୋଚ୍ଚାରଣ-ପୂର୍ବକ ତ୍ରିବାର ଆଚମନ କରିବେ। ଶିବପୂଜା ପାଇଁ ଅନ୍ନ ଓ ଜଳ ରଖିବେ। ଅନ୍ୟ ଯାହା କିଛି ଆବଶ୍ୟକ, ସେସବୁ ମଧ୍ୟ ଯୋଗାଡ଼ କରି ପାଖରେ ରଖିବେ। ପୂଜାସାମଗ୍ରୀ ଯୋଗାଡ଼ ହୋଇଯିବା ପରେ ଧୈର୍ଯ୍ୟପୂର୍ବକ ସ୍ଥିରଭାବରେ ବସିବେ। ଜଳ, ଗନ୍ଧ ଓ ଅକ୍ଷତଯୁକ୍ତ ଅର୍ଘ୍ୟପାତ୍ର ଡାହାଣ ପଟକୁ ରଖିବେ। ଏହାଦ୍ୱାରା ଉପଚାର ସିଦ୍ଧ ହୋଇଥାଏ। ଏହାପରେ ଗୁରୁଙ୍କୁ ସ୍ମରଣ କରି ତାଙ୍କ ଆଜ୍ଞା ନେଇ ବିଧିବତ୍ ସକାମ ସଂକଳ୍ପ କରି ପରାଭକ୍ତିପୂର୍ବକ ଶିବଙ୍କୁ ତାଙ୍କ ପରିବାର ସହିତ ପୂଜା କରିବେ। ଗୋଟିଏ ମୁଦ୍ରା ଦେଖାଇ ସିନ୍ଦୂର ଆଦି ଉପଚାର ଦ୍ୱାରା ସିଦ୍ଧିବୁଦ୍ଧିଙ୍କ ସହିତ ବିଘ୍ନବିନାଶକ ଗଣେଶଙ୍କୁ ପୂଜା କରିବେ। ଲକ୍ଷ ଓ ଲାଭ ସଂଯୁକ୍ତ ଗଣେଶଙ୍କୁ ପୂଜା କରି ତାଙ୍କ ନାମର ଆରମ୍ଭରେ ପ୍ରଣବ ତଥା ଶେଷରେ ନମଃ ଯୋଡ଼ି ନାମକୁ ଚତୁର୍ଥୀ ବିଭକ୍ତି କରି ନମସ୍କାର କରିବେ। (ଯଥା—ଓଁ ଗଣପତୟେ ନମଃ ଅଥବା ଓଁ ଲକ୍ଷଲାଭଯୁତାୟ ସିଦ୍ଧିବୁଦ୍ଧିସହିତାୟ ଗଣପତୟେ ନମଃ)। ତା'ପରେ କ୍ଷମା ପ୍ରାର୍ଥନା କରି ପୁନଃ ଭ୍ରାତା କାର୍ତ୍ତିକେୟଙ୍କ ସହିତ ଗଣେଶଙ୍କୁ ପରାଭକ୍ତିରେ ପୂଜା କରି ତାଙ୍କୁ ବାରମ୍ବାର ନମସ୍କାର କରିବେ। ତା'ପରେ ନିତ୍ୟ ଦ୍ୱାରଦେଶରେ ବିରାଜମାନ ଦ୍ୱାରପାଳଙ୍କୁ ପୂଜା କରି ସତୀସାଧ୍ୱୀ ଗିରିରାଜନନ୍ଦିନୀ ଉମାଙ୍କୁ ପୂଜା କରିବେ। ଚନ୍ଦନ, କୁଙ୍କୁମ, ଧୂପ, ଦୀପ ପ୍ରଭୃତି ନାନା ଉପଚାର ସହିତ ବିଭିନ୍ନ ନୈବେଦ୍ୟ ଅର୍ପଣ କରି ଶିବାଙ୍କୁ ପୂଜା କରି ନମସ୍କାର କରିସାରିବା ପରେ ସାଧକ ଶିବଙ୍କ ନିକଟକୁ ଯିବେ। ଯଥାସମ୍ଭବ ନିଜ ଘରେ ମାଟି, ସୁନା, ରୁପା, ଧାତୁ ବା ପାରଦ ଆଦିର ଶିବ ପ୍ରତିମା ନିର୍ମାଣ କରି ତାହାକୁ ନମସ୍କାର କରି ଭକ୍ତିପରାୟଣ ହୋଇ ପୂଜା କିରବେ। ଶିବଙ୍କ ପୂଜା ସମ୍ପନ୍ନ ହୋଇଗଲେ ସମସ୍ତ ଦେବତା ପୂଜିତ ହୋଇଯାଆନ୍ତି।

ମୃତ୍ତିକାର ଶିବଲିଙ୍ଗ ତିଆରି କରି ବିଧିପୂର୍ବକ ତାଙ୍କର ଉପାସନା କରିବେ। ଘରଲୋକେ ମଧ୍ୟ ସ୍ଥାପନା ସମ୍ବନ୍ଧୀୟ ସବୁ ନିୟମକୁ ପାଳନ କରିବେ। ଭୂତଶୁଦ୍ଧି ଓ ମାତୃକାନ୍ୟାସ କରି ଶିବଲିଙ୍ଗର ପ୍ରାଣପ୍ରତିଷ୍ଠା କରିବେ। ଶିବାଳୟରେ ଦିକ୍‌ପାଳଙ୍କୁ ସ୍ଥାପନ କରି ପୂଜା କରିବେ। ଘରେ ସର୍ବଦା

ମୂଳମନ୍ତ୍ର ପ୍ରୟୋଗ କରି ଶିବପୂଜା କରିବେ। ସେଠାରେ ଦ୍ୱାରପାଳପୂଜା ନିୟମର ବାଧ୍ୟତା ନାହିଁ। ଶିବଙ୍କ ସମୀପରେ ନିଜ ପାଇଁ ଆସନର ବ୍ୟବସ୍ଥା କରିବେ। ସେତେବେଳେ ଉତ୍ତରାଭିମୁଖୀ ହୋଇ ବସି ଆଚମନ କରିବେ, ତା'ପରେ କର ଯୋଡ଼ି ପ୍ରଣାମ କରିବା ପରେ ପ୍ରାଣାୟାମ କରିବେ। ପ୍ରାଣାୟାମକାଳରେ ମନୁଷ୍ୟ ମୂଳମନ୍ତ୍ର ଦଶବାର ଆବୃତ୍ତି କରିବା ଉଚିତ। ହାତରେ ପାଞ୍ଚମୁଦ୍ରା ପ୍ରଦର୍ଶନ କରିବେ। ଏହା ପୂଜାର ଆବଶ୍ୟକ ଅଙ୍ଗ। ମୁଦ୍ରା ପ୍ରଦର୍ଶନ କରି ପୂଜାବିଧିର ଅନୁସରଣ କରିବେ। ତା'ପରେ ଦୀପ ନିବେଦନ କରି ଗୁରୁଙ୍କୁ ପ୍ରଣାମପୂର୍ବକ ପଦ୍ମାସନ ବା ଭଦ୍ରାସନରେ ବସି ଅଥବା ଉତ୍ତାନାସନ ବା ପର୍ଯ୍ୟଙ୍କାସନରେ ସୁଖପୂର୍ବକ ବସି ପୂଜନର ପ୍ରୟୋଗ କରିବେ। ତା'ପରେ ଅର୍ଘ୍ୟପାତ୍ରରେ ଉତ୍ତମ ଶିବଲିଙ୍ଗର ପ୍ରକ୍ଷାଳନ କରିବେ। ମନକୁ ଭଗବାନ ଶିବଙ୍କ ଠାରୁ ଅନ୍ୟତ୍ର ନ ନେଇ ପୂଜାସାମଗ୍ରୀକୁ ନିଜ ପାଖରେ ରଖି ନିମ୍ନାଙ୍କିତ ମନ୍ତ୍ରସମୂହଦ୍ୱାରା ମହାଦେବଙ୍କୁ ଆବାହନ କରିବେ।

### ଆବାହନ

କୈଳାସଶିଖରସ୍ଥଂ ଚ ପାର୍ବତୀପତିମୁତ୍ତମମ୍॥ ୪୭॥
ଯଥୋକ୍ତରୂପିଣଂ ଶମ୍ଭୁଂ ନିର୍ଗୁଣଂ ଗୁଣରୂପିଣମ୍।
ପଞ୍ଚବକ୍ତ୍ରଂ ଦଶଭୁଜଂ ତ୍ରିନେତ୍ରଂ ବୃଷଭଧ୍ୱଜମ୍॥ ୪୮॥
କର୍ପୂରଗୌରଂ ଦିବ୍ୟାଙ୍ଗଂ ଚନ୍ଦ୍ରମୌଳିଂ କପର୍ଦିନମ୍।
ବ୍ୟାଘ୍ରଚର୍ମୋତ୍ତରୀୟଂ ଚ ଗଜଚର୍ମାମ୍ବରଂ ଶୁଭମ୍॥ ୪୯॥
ବାସୁକ୍ୟାଦିପରୀତାଙ୍ଗଂ ପିନାକାଦ୍ୟାୟୁଧାନ୍ୱିତମ୍।
ସିଦ୍ଧୟୋଽଷ୍ଟୌ ଚ ଯସ୍ୟାଗ୍ରେ ନୃତ୍ୟନ୍ତୀହ ନିରନ୍ତରମ୍॥ ୫୦॥
ଜୟଜୟେତି ଶବ୍ଦୈଶ୍ଚ ସେବିତଂ ଭକ୍ତପୁଞ୍ଜକୈଃ।
ତେଜସା ଦୁଃସହେନୈବ ଦୁର୍ଲକ୍ଷ୍ୟଂ ଦେବସେବିତମ୍॥ ୫୧॥
ଶରଣ୍ୟଂ ସର୍ବସତ୍ତ୍ୱାନାଂ ପ୍ରସନ୍ନମୁଖପଙ୍କଜମ୍।
ବେଦୈଃ ଶାସ୍ତ୍ରୈର୍ଯଥାଗୀତଂ ବିଷ୍ଣୁବ୍ରହ୍ମନୁତଂ ସଦା॥ ୫୨॥
ଭକ୍ତବତ୍ସଲମାନନ୍ଦଂ ଶିବମାବାହୟାମ୍ୟହମ୍।
(ଅଧ୍ୟାୟ ୧୩)

"ଯେଉଁ ଶିବ କୈଳାସ ଶିଖରରେ ନିବାସ କରନ୍ତି, ପାର୍ବତୀଙ୍କ ପତି ଅଟନ୍ତି, ସମସ୍ତ ଦେବଙ୍କ ମଧ୍ୟରେ ଉତ୍ତମ, ଯାହାଙ୍କ ସ୍ୱରୂପକୁ ଶାସ୍ତ୍ରରେ ଯଥାବତ୍ ବର୍ଣ୍ଣନା କରାଯାଇଛି, ଯେ ନିର୍ଗୁଣ ହୋଇ ମଧ୍ୟ ଗୁଣରୂପ ଅଟନ୍ତି, ଯାହାଙ୍କର ପାଞ୍ଚ ମୁଖ, ଦଶ ଭୁଜ ଓ ପ୍ରତ୍ୟେକ ମୁଖରେ ତିନିଟି ଲେଖାଏଁ ନେତ୍ର ରହିଛି, ଯାହାଙ୍କ ଧ୍ୱଜା ଉପରେ ବୃଷଭ ଚିହ୍ନ ଅଙ୍କିତ ଏବଂ ଅଙ୍ଗକାନ୍ତି କର୍ପୂରତୁଲ୍ୟ ଗୌର, ଯେ ଦିବ୍ୟରୂପଧାରୀ, ଚନ୍ଦ୍ରମାରୂପୀ ମୁକୁଟରେ ଶୋଭିତ ତଥା ମସ୍ତକରେ ଜଟାଜୂଟ ଧାରଣ କରିଛନ୍ତି, ହାତୀର ଚର୍ମ ପିନ୍ଧିଛନ୍ତି ଓ ବ୍ୟାଘ୍ର ଚର୍ମକୁ ଉତ୍ତରୀୟ କରିଛନ୍ତି, ଯାହାଙ୍କ ସ୍ୱରୂପ ଶୁଭ, ଯାହାଙ୍କ ଅଙ୍ଗରେ ବାସୁକୀ ଆଦି ନାଗ ଗୁଡ଼େଇ ହୋଇ ରହିଛନ୍ତି, ଯେ ପିନାକ ଆଦି ଆୟୁଧ ଧାରଣ କରିଛନ୍ତି, ଯାହାଙ୍କ ସମ୍ମୁଖରେ ଅଷ୍ଟସିଦ୍ଧି ନିରନ୍ତର ନୃତ୍ୟ କରୁଥାନ୍ତି, ଭକ୍ତସମୁଦାୟ ଜୟନାଦ କରି କରି ଯାହାଙ୍କ ସେବାରେ ମଗ୍ନ



ଥାଆନ୍ତି, ଦୁଃସହ ତେଜ କାରଣରୁ ଯେ ଦୁର୍ନିରୀକ୍ଷ୍ୟ, ଯେ ଦେବଗଣଙ୍କ ଦ୍ୱାରା ସେବିତ, ସମସ୍ତ ପ୍ରାଣୀଙ୍କର ଶରଣଦାତା, ଯାହାଙ୍କ ମୁଖ ପ୍ରସନ୍ନ, ବେଦ ଓ ଶାସ୍ତ୍ର ଯାହାଙ୍କ ମହିମା ଗାନ କରିଛନ୍ତି, ବିଷ୍ଣୁ ଓ ବ୍ରହ୍ମା ସଦା ଯାହାଙ୍କୁ ସ୍ତୁତି କରନ୍ତି, ସେହି ପରମାନନ୍ଦସ୍ୱରୂପ, ଭକ୍ତବତ୍ସଳ ଶିବଙ୍କୁ ମୁଁ ଆବାହନ କରୁଛି ।''

ଏହିପରି ଉଚ୍ଚାରଣପୂର୍ବକ ପାର୍ବତୀଙ୍କ ସହ ଶିବଙ୍କୁ ଧ୍ୟାନ କରି ତାଙ୍କୁ ଆସନ ଦେବେ । ଚତୁର୍ଥ୍ୟନ୍ତ ପଦରେ କ୍ରମଶଃ ସବୁକିଛି ଅର୍ପଣ କରିବେ । (ଯଥା—ସାମ୍ବାୟ ସଦାଶିବାୟ ନମଃ ଆସନଂ ସମର୍ପୟାମି' ଇତ୍ୟାଦି) । ଆସନ ପରେ ଭଗବାନ ଶଙ୍କରଙ୍କୁ ପାଦ୍ୟ ଓ ଅର୍ଘ୍ୟ ଦେବେ । ତା'ପରେ ପରମାତ୍ମା ଶମ୍ଭୁଙ୍କୁ ଆଚମନ କରାଇ ପଞ୍ଚାମୃତ ଦ୍ୱାରା ପ୍ରସନ୍ନତାପୂର୍ବକ ସ୍ନାନ କରାଇବେ । ବେଦମନ୍ତ୍ର ଅଥବା ସମନ୍ତ୍ରକ ଚତୁର୍ଥ୍ୟନ୍ତ ନାମପଦ ଉଚ୍ଚାରଣ କରି ଭକ୍ତିପୂର୍ବକ ଯଥାଯୋଗ୍ୟ ସମସ୍ତ ଦ୍ରବ୍ୟ ଶିବଙ୍କୁ ଅର୍ପଣ କରିବେ । ତା'ପରେ ଶିବଙ୍କୁ ଜଳଧାରାରେ ସ୍ନାନ କରାଇବେ । ସ୍ନାନପରେ ସୁଗନ୍ଧିତ ଚନ୍ଦନ ଓ ଅନ୍ୟାନ୍ୟ ଦ୍ରବ୍ୟ ଯତ୍ନପୂର୍ବକ ଲେପ କରିବେ । ସୁଗନ୍ଧିତ ଜଳ ଢାଳି ଅଭିଷେକ କରିବେ । ବେଦମନ୍ତ୍ର, ଷଡ଼ଙ୍ଗ ଅଥବା ଶିବଙ୍କ ଏକାଦଶ ନାମଦ୍ୱାରା ଯଥାବକାଶ ଜଳଧାରା ଅର୍ପଣ କରି ବସ୍ତ୍ରରେ ଶିବଲିଙ୍ଗଙ୍କୁ ପୋଛିଦେବେ । ତା'ପରେ ଆଚମନ ପାଇଁ ଜଳ ଦେବେ ଓ ବସ୍ତ୍ର ଅର୍ପିତ କରିବେ । ନାନା ମନ୍ତ୍ରରେ ଶିବଙ୍କୁ ତିଳ, ଯବ, ଗହମ, ମୁଗ ଓ ବିରି ଅର୍ପିତ କରିବେ । ତା'ପରେ ପଞ୍ଚାନନଙ୍କୁ ପୁଷ୍ପ ଅର୍ପଣ କରିବେ । ପ୍ରତ୍ୟେକ ମୁଖରେ ଧ୍ୟାନ ଅନୁସାରେ ପଦ୍ମ, ଶତପତ୍ର, ଶଙ୍ଖପୁଷ୍ପ, କୁଶପୁଷ୍ପ, ଧତୁରା, ଅର୍କ, ଦ୍ରୋଣପୁଷ୍ପ, ତୁଳସୀଦଳ ଓ ବିଲ୍ୱପତ୍ର ଅର୍ପଣ କରି ପରାଭକ୍ତିରେ ଭକ୍ତବତ୍ସଳ ଭଗବାନଙ୍କର ବିଶେଷପୂଜା କରିବେ । କିଛି ନ ମିଳିଲେ କେବଳ ବେଲପତ୍ରରେ ହିଁ ଶିବଙ୍କ ପୂଜା ସଫଳ ହୋଇଯାଏ । ତା'ପରେ ସୁଗନ୍ଧିତ ଚୂର୍ଣ୍ଣ ତଥା ସୁବାସିତ ଉତ୍ତମ ତୈଳ ବା ଅତର ଇତ୍ୟାଦି ସହର୍ଷ ଅର୍ପଣ କରିବେ । ତା'ପରେ ପ୍ରସନ୍ନତାପୂର୍ବକ ଗୁଗୁଳ ଓ ଅଗୁରୁ ଆଦିର ଧୂପ ଦେବେ । ଘିଅ ଦୀପ ଜଳାଇବେ । ଏହାପରେ ନିମ୍ନୋକ୍ତ ମନ୍ତ୍ରରେ ଭକ୍ତିପୂର୍ବକ ପୁନଃ ଅର୍ଘ୍ୟ ଦେବେ ଓ ବସ୍ତ୍ରଦ୍ୱାରା ତାଙ୍କର ମୁଖ ମାର୍ଜନ କରିବେ ।

### ଅର୍ଘ୍ୟ ମନ୍ତ୍ର

ରୂପଂ ଦେହି ଯଶୋ ଦେହି ଭୋଗଂ ଦେହି ଚ ଶଙ୍କର ।
ଭୁକ୍ତିମୁକ୍ତିଫଳଂ ଦେହି ଗୃହୀତ୍ୱାର୍ଘ୍ୟଂ ନମୋଽସ୍ତୁ ତେ ॥

''ପ୍ରଭୁ ! ଶଙ୍କର ! ଆପଣଙ୍କୁ ନମସ୍କାର । ଏହି ଅର୍ଘ୍ୟକୁ ଗ୍ରହଣ କରି ମୋତେ ରୂପ ଦିଅନ୍ତୁ, ଯଶ ଦିଅନ୍ତୁ, ଭୋଗ ଦିଅନ୍ତୁ ଏବଂ ଭୁକ୍ତି ଓ ମୁକ୍ତିରୂପୀ ଫଳ ଦିଅନ୍ତୁ ।''

ଏହାପରେ ଶିବଙ୍କୁ ନାନା ପ୍ରକାର ଉତ୍ତମ ନୈବେଦ୍ୟ ଅର୍ପଣ କରିବା ଆବଶ୍ୟକ । ନୈବେଦ୍ୟ ପରେ ପ୍ରୀତିପୂର୍ବକ ଆଚମନ କରାନ୍ତୁ । ତା'ପରେ ସାଙ୍ଗୋପାଙ୍ଗ ତାମ୍ବୂଳ ଅର୍ପଣ କରନ୍ତୁ । ତା'ପରେ ପାଞ୍ଚଟି ବତି ଜଳାଇ ଆଳତି କରନ୍ତୁ । ଆଳତି ବୁଲାଇବାବେଳେ ପାଦ ନିକଟରେ ଚାରି ଥର, ନାଭି ସମ୍ମୁଖରେ ଦୁଇ ଥର, ମୁଖ ସମ୍ମୁଖରେ ଥରେ ଓ ସର୍ବାଙ୍ଗରେ ସାତ ଥର ବୁଲାଇବେ । ତା'ପରେ ନାନା ପ୍ରକାର ସ୍ତୋତ୍ରଦ୍ୱାରା ପ୍ରେମପୂର୍ବକ ବୃଷଭଧ୍ୱଜଙ୍କୁ ସ୍ତୁତି କରିବେ । ତା'ପରେ ଧୀରେ ଧୀରେ ଶିବଙ୍କୁ ପରିକ୍ରମା କରିବେ । ପରିକ୍ରମା ପରେ ଭକ୍ତ ସାଷ୍ଟାଙ୍ଗ ପ୍ରଣାମ କରିବେ ଓ ନିମ୍ନୋକ୍ତ ମନ୍ତ୍ରରେ ଭକ୍ତିପୂର୍ବକ ପୁଷ୍ପାଞ୍ଜଳି ଦେବେ ।

### ପୁଷ୍ପାଞ୍ଜଳି ମନ୍ତ୍ର

ଅଜ୍ଞାନାଦ୍ ଯଦି ବା ଜ୍ଞାନାଦ୍ ଯଦ୍ ଯତ୍ ପୂଜାଦିକଂ ମୟା ।
କୃତଂ ତଦସ୍ତୁ ସଫଳଂ କୃପୟା ତବ ଶଙ୍କର ॥

ତାବକସ୍ତ୍ୱଦ୍‌ଗତପ୍ରାଣସ୍ତ୍ୱଚ୍ଚିତ୍ତୋଽହଂ ସଦା ମୃଡ ।
ଇତି ବିଜ୍ଞାୟ ଗୌରୀଶ ଭୂତନାଥ ପ୍ରସୀଦ ମେ ॥
ଭୂମୌ ସ୍ଖଳିତପାଦାନାଂ ଭୂମିରେବାବଲମ୍ବନମ୍ ।
ତ୍ୱୟି ଜାତାପରାଧାନାଂ ତ୍ୱମେବ ଶରଣଂ ପ୍ରଭୋ ॥
(ଅଧ୍ୟାୟ ୧୩)

"ଶଙ୍କର ! ମୁଁ ଅଜ୍ଞାନରେ ବା ଜାଣିଶୁଣି ଯେଉଁ ପୂଜା ଇତ୍ୟାଦି କରିଛି, ତାହା ଆପଣଙ୍କ କୃପାରୁ ସଫଳ ହେଉ । ହେ ମୃଡ ! ମୁଁ ଆପଣଙ୍କର, ମୋର ପ୍ରାଣ ଆପଣଙ୍କ ଠାରେ ନିବିଷ୍ଟ, ମୋର ଚିତ୍ତ ଆପଣଙ୍କୁ ହିଁ ଚିନ୍ତନ କରୁଛି—ଏଭଳି ବୁଝି ହେ ଗୌରୀପତି ! ହେ ଭୂତନାଥ ! ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ପ୍ରଭୋ ! ଭୂମି ଉପରେ ଯାହାର ପାଦ ଟଳମଳ ହୁଏ, ତାହା ପାଇଁ ସେହି ଭୂମି ହିଁ ଆଶ୍ରୟ ହୁଏ । ଠିକ୍ ସେହିପରି ଯେଉଁମାନେ ଆପଣଙ୍କ ପ୍ରତି ଅପରାଧ କରିଛନ୍ତି, ସେମାନଙ୍କ ପାଇଁ ଆପଣ ହିଁ ତ ଶରଣଦାତା ।"

ଏଭଳି ନାନା ପ୍ରକାରେ ପ୍ରାର୍ଥନା କରି ଉତ୍ତମ ବିଧିରେ ପୁଷ୍ପାଞ୍ଜଳି ଦେଇ ପୁନଃ ପ୍ରଭୁଙ୍କୁ ନମସ୍କାର କରିବେ । ତା'ପରେ ନିମ୍ନ ମନ୍ତ୍ରରେ ବିସର୍ଜନ କରିବେ ।

### ବିସର୍ଜନ

ସ୍ୱସ୍ଥାନଂ ଗଚ୍ଛ ଦେବେଶ ପରିବାରଯୁତଃ ପ୍ରଭୋ ।
ପୂଜାକାଳେ ପୁନର୍ନାଥ ତ୍ୱୟାଽଽଗନ୍ତବ୍ୟମାଦରାତ୍ ॥

"ଦେବେଶ୍ୱର ! ପ୍ରଭୋ ! ଏବେ ଆପଣ ପରିବାର ସହିତ ସ୍ୱସ୍ଥାନକୁ ଗମନ କରନ୍ତୁ । ନାଥ ! ଯେବେ ପୂଜାର ସମୟ ହେବ ପୁନଃ ଏଠାରେ ପଦାର୍ପଣ କରିବେ ।"

ଉପାସକ ଏହିପରି ଭକ୍ତବତ୍ସଳ ଶିବଙ୍କୁ ବାରମ୍ବାର ପ୍ରାର୍ଥନା କରି ତାଙ୍କୁ ବିସର୍ଜନ କରିବେ ଓ ସେହି ଜଳକୁ ନିଜ ବକ୍ଷରେ ବୋଳିବେ ତଥା ମସ୍ତକରେ ଛିଞ୍ଚିବେ ।

ଋଷିଗଣ ! ମୁଁ ଶିବପୂଜନର ସମସ୍ତ ବିଧି କହିଦେଲି । ଏହା ଭୋଗ ଓ ମୋକ୍ଷ ପ୍ରଦାନ କରେ । ଏଣିକି ଆଉ କ'ଣ ଶୁଣିବାକୁ ଚାହୁଁଛ?
(ଅଧ୍ୟାୟ ୧୩)

★★★

## ବିଭିନ୍ନ ପୁଷ୍ପ, ଅନ୍ନ ତଥା ଜଳାଦି ଧାରାରେ ଶିବପୂଜନର ମାହାତ୍ମ୍ୟ

ବ୍ରହ୍ମା କହିଲେ—ନାରଦ ! ଯେ ଲକ୍ଷ୍ମୀପ୍ରାପ୍ତି ଚାହାନ୍ତି, ସେ ପଦ୍ମ, ବିଲ୍ୱପତ୍ର, ଶତପତ୍ର ଓ ଶଙ୍ଖପୁଷ୍ପରେ ଭଗବାନ ଶିବଙ୍କୁ ପୂଜା କରିବେ । ବ୍ରହ୍ମନ୍ ! ଯଦି ଏକଲକ୍ଷ ସଂଖ୍ୟାରେ ଏହି ପୁଷ୍ପମାନଙ୍କ ଦ୍ୱାରା ଶିବଙ୍କ ପୂଜା ସମ୍ପନ୍ନ ହୋଇଯାଏ, ତେବେ ନିଃସନ୍ଦେହରେ ସମସ୍ତ ପାପ ନଷ୍ଟ ହୋଇଯାଏ ଓ ଲକ୍ଷ୍ମୀପ୍ରାପ୍ତି ହୋଇଯାଏ । କୋଡ଼ିଏ ପଦ୍ମର ସମୂହକୁ ଏକ ପ୍ରସ୍ଥ ବୋଲି କୁହାଯାଏ । ଏକ ସହସ୍ର ବିଲ୍ୱପତ୍ରକୁ ଅର୍ଦ୍ଧପ୍ରସ୍ଥ କୁହାଯାଏ । ଏକ ସହସ୍ର ଶତପତ୍ରକୁ ମଧ୍ୟ ଅଧା ପ୍ରସ୍ଥ ବୋଲି ପରିଭାଷିତ କରାଯାଇଛି । ଷୋହଳ ପଳରେ ଏକ ପ୍ରସ୍ଥ ହୁଏ ଓ ଦଶ ଟଙ୍କାରେ ଏକ ପଳ ହୁଏ । ଏହି ମାନରେ ପତ୍ର, ପୁଷ୍ପ ଆଦିକୁ ଓଜନ କରିବା ଉଚିତ । ପୂର୍ବୋକ୍ତ ସଂଖ୍ୟକ ପୁଷ୍ପରେ ଶିବଙ୍କ ପୂଜା ସମ୍ପନ୍ନ କରି ସକାମ ପୁରୁଷ ନିଜର ସମସ୍ତ ଅଭୀଷ୍ଟ ଲାଭ କରିଥାଏ । ଉପାସକ ମନରେ କୌଣସି କାମନା ନ ଥିଲେ ସେ ପୂର୍ବୋକ୍ତ ପୂଜନଦ୍ୱାରା ଶିବସ୍ୱରୂପ ହୋଇଯାଏ ।

ମୃତ୍ୟୁଞ୍ଜୟ ମନ୍ତ୍ରକୁ ପାଞ୍ଚଲକ୍ଷ ସଂଖ୍ୟାରେ ଜପିଲେ ଶିବ ପ୍ରତ୍ୟକ୍ଷ ଦର୍ଶନ ଦିଅନ୍ତି । ପ୍ରଥମ ଲକ୍ଷେ ଜପରେ ଶରୀର ଶୁଦ୍ଧି ହୁଏ, ଦ୍ୱିତୀୟ ଲକ୍ଷରେ ପୂର୍ବଜନ୍ମର କଥା ସ୍ମରଣ ହୁଏ, ତୃତୀୟ ଲକ୍ଷ ପୂର୍ଣ୍ଣ ହେଲେ ସମସ୍ତ କାମ୍ୟ ବସ୍ତୁ ପ୍ରାପ୍ତ

ହୋଇଥାଏ । ଚତୁର୍ଥ ଲକ୍ଷ ଜପ ପୂର୍ଣ୍ଣ ହେଲେ ସ୍ୱପ୍ନରେ ଶିବ ଦର୍ଶନ ଦିଅନ୍ତି ଏବଂ ପଞ୍ଚମ ଲକ୍ଷ ପୂର୍ଣ୍ଣ ହେବାମାତ୍ରେ ଭଗବାନ ଶିବ ଉପାସକ ସମ୍ମୁଖରେ ଅବିଳମ୍ବେ ପ୍ରକଟ ହୋଇଯାଆନ୍ତି । ଏହି ମନ୍ତ୍ରକୁ ଦଶଲକ୍ଷ ସଂଖ୍ୟାରେ ଜପିଲେ ସମସ୍ତ ଫଳ ମିଳିଥାଏ । ଯେଉଁ ବ୍ୟକ୍ତି ମୋକ୍ଷ ଅଭିଳାଷୀ, ସେ (ଏକଲକ୍ଷ) ଦର୍ଭରେ ଶିବପୂଜନ କରିବା ଉଚିତ । ମୁନିଶ୍ରେଷ୍ଠ ! ସର୍ବତ୍ର ଏକଲକ୍ଷ ସଂଖ୍ୟା ହିଁ ବୁଝିବା ଉଚିତ । ଆୟୁ ଇଚ୍ଛା କରୁଥିବା ବ୍ୟକ୍ତି ଏକଲକ୍ଷ ଦୂବରେ ପୂଜା କରିବେ । ପୁତ୍ର ଅଭିଳାଷୀ ଏକଲକ୍ଷ ଦୁଦୁରା ଫୁଲରେ ପୂଜା କରିବେ । ଲାଲ ଡେମ୍ଫ ଥିବା ଦୁଦୁରା ଫୁଲ ପୂଜାରେ ଶୁଭଦାୟକ । ଏକଲକ୍ଷ ଅଗସ୍ତ୍ୟ ଫୁଲରେ ପୂଜା କରୁଥିବା ବ୍ୟକ୍ତିକୁ ମହାନ୍ ଯଶ ପ୍ରାପ୍ତ ହୁଏ । ଯଦି ତୁଳସୀଦଳରେ ଶିବଙ୍କୁ ପୂଜା କରାଯାଏ, ତେବେ ଉପାସକକୁ ଭୋଗ ଓ ମୋକ୍ଷ ଉଭୟ ସୁଲଭ ହୋଇଥାଏ । ଲକ୍ଷେ ଲାଲ ଓ ଧଳା ଅରଖ, ଅପମାର୍ଗ ଓ ଶ୍ୱେତପଦ୍ମ ଫୁଲରେ ପୂଜା କଲେ ମଧ୍ୟ ସେହି ଫଳ (ଭୋଗ ଓ ମୋକ୍ଷ) ମିଳିଥାଏ । ଏକଲକ୍ଷ ଜପା (ମନ୍ଦାର) ଫୁଲରେ ପୂଜା କଲେ ଶତ୍ରୁର ମୃତ୍ୟୁ ହୋଇଥାଏ । ଏକଲକ୍ଷ କରବୀର ଫୁଲରେ ପୂଜା କଲେ ରୋଗର ଉଚ୍ଚାଟନ ହୋଇଥାଏ । ବଧୂଲୀ ଫୁଲରେ ପୂଜା କଲେ ଆଭୂଷଣ ପ୍ରାପ୍ତି ହୋଇଥାଏ । ଜାଇଫୁଲରେ ଶିବପୂଜା କଲେ ମନୁଷ୍ୟ ନିଃସନ୍ଦେହରେ ବାହନ ପ୍ରାପ୍ତି କରିଥାଏ । ଅତସୀ ଫୁଲରେ ମହାଦେବଙ୍କୁ ପୂଜା କରୁଥିବା ବ୍ୟକ୍ତି ଭଗବାନ ବିଷ୍ଣୁଙ୍କର ପ୍ରିୟ ହୋଇଥାଏ । ଶମୀପତ୍ରରେ ପୂଜା କରି ମନୁଷ୍ୟ ମୋକ୍ଷ ଲାଭ କରିଥାଏ । ମଲ୍ଲିକା ଫୁଲ ଅର୍ପଣ କଲେ ଭଗବାନ ଶିବ ଅତ୍ୟନ୍ତ ଶୁଭଲକ୍ଷଣା ପତ୍ନୀ ପ୍ରଦାନ କରିଥାନ୍ତି । ଯୁଈ ଫୁଲରେ ପୂଜା କଲେ ଘରେ କଦାପି ଅନ୍ନର ଅଭାବ ରହେ ନାହିଁ । କନିଅର ଫୁଲରେ ପୂଜା କଲେ ପ୍ରଚୁର ବସ୍ତ୍ର ପ୍ରାପ୍ତି ହୁଏ । ଶେଫାଳି ଫୁଲରେ ଶିବଙ୍କୁ ପୂଜା କଲେ ମନ ନିର୍ମଳ ହୁଏ । ଏକଲକ୍ଷ ବିଲ୍ୱପତ୍ର ଅର୍ପଣ କଲେ ମନୁଷ୍ୟ ତା'ର ସମସ୍ତ କାମ୍ୟ ବସ୍ତୁ ଲାଭ କରିଥାଏ । ଶିଙ୍ଗଡ଼ାହାର ଫୁଲରେ ପୂଜା କଲେ ସୁଖସମ୍ପତ୍ତି ବୃଦ୍ଧି ହୁଏ । ଋତୁ ଅନୁସାରେ ପ୍ରାପ୍ତ ହେଉଥିବା ପୁଷ୍ପରେ ଯଦି ଶିବଙ୍କୁ ପୂଜା କରାଯାଏ, ସେ ନିଶ୍ଚିତରୂପେ ମୋକ୍ଷ ପ୍ରଦାନ କରିଥାନ୍ତି । ରାଇ ଫୁଲ ଶତ୍ରୁଙ୍କ ପାଇଁ ମୃତ୍ୟୁପ୍ରଦ ହୋଇଥାଏ । ପ୍ରତ୍ୟେକ ଫୁଲକୁ ଏକଲକ୍ଷ ସଂଖ୍ୟାରେ ଶିବଙ୍କୁ ଅର୍ପଣ କଲେ ଭଗବାନ ଶିବ ପ୍ରଚୁର ଫଳ ପ୍ରଦାନ କରନ୍ତି । ଚମ୍ପା ଓ କେତକୀକୁ ଛାଡ଼ି ଅନ୍ୟ ସମସ୍ତ ଫୁଲ ଶିବଙ୍କୁ ଦିଆ ଯାଇପାରେ ।

ବିପ୍ରବର ! ମହାଦେବଙ୍କ ଉପରେ ଗ୍ରଉଳ ଅର୍ପଣ କଲେ ମନୁଷ୍ୟର ଲକ୍ଷ୍ମୀବୃଦ୍ଧି ହୁଏ; କିନ୍ତୁ ଗ୍ରଉଳ ଅଖଣ୍ଡ ହୋଇଥିବା ଉଚିତ ଓ ଭକ୍ତି ଭାବରେ ଅର୍ପଣ କରିବା ଉଚିତ । ରୁଦ୍ରପ୍ରଧାନ ମନ୍ତ୍ରରେ ପୂଜା କରି ଶିବଙ୍କ ଉପରେ ଅତି ସୁନ୍ଦର ବସ୍ତ୍ର ଥୋଇବା ଆବଶ୍ୟକ; ବସ୍ତ୍ର ଉପରେ ଗ୍ରଉଳ ରଖି ଅର୍ପଣ କରିବା ଆହୁରି ଉତ୍ତମ । ଶିବଙ୍କୁ ଗନ୍ଧ, ପୁଷ୍ପ ଆଦି ସହିତ ଗୋଟିଏ ଶ୍ରୀଫଳ ଅର୍ପଣ କରି ଧୂପ, ଦୀପ ନିବେଦନ କଲେ ପୂଜାର ପୂର୍ଣ୍ଣ ଫଳ ମିଳିଥାଏ । ସେଠାରେ ଶିବଙ୍କ ସମ୍ମୁଖରେ ବାରଜଣ ବ୍ରାହ୍ମଣଙ୍କୁ ଭୋଜନ କରାଇବା ଉଚିତ । ଏହାଦ୍ୱାରା ମନ୍ତ୍ରପୂର୍ବକ ସାଙ୍ଗୋପାଙ୍ଗ ଲକ୍ଷେ ପୂଜା ସମ୍ପନ୍ନ ହୋଇଯାଏ । ଯେଉଁଠି ଶହେ ମନ୍ତ୍ର ଜପିବାର ବିଧାନ ରହିଛି, ସେଠାରେ ଏକଶହ ଆଠ ଜପିବା ଉଚିତ । ତିଳରେ ଶିବଙ୍କୁ ଏକଲକ୍ଷ ଆହୁତି ଦେଲେ ଅଥବା ଲକ୍ଷେ ତିଳରେ ଶିବଙ୍କୁ ପୂଜା କଲେ ଅନେକ ପାପ ନାଶ ହୋଇଥାଏ । ଯବ ଦ୍ୱାରା ଶିବପୂଜା କଲେ ସ୍ୱର୍ଗୀୟ ସୁଖ ବୃଦ୍ଧି

ପାଇଥାଏ, ଏହା ଋଷିମାନଙ୍କର ମତ । ଗହମରେ ତିଆରି ମିଷ୍ଟ ପକ୍ୱାନ୍ନରେ ଶିବଙ୍କୁ ପୂଜା କରିବା ବହୁତ ଉତ୍ତମ ବୋଲି ଧରାଯାଏ । ଏଥିରେ ଲକ୍ଷେ ଥର ପୂଜା କଲେ ସନ୍ତାନ ବୃଦ୍ଧି ହୁଏ । ମୁଗ ଦ୍ୱାରା ଶିବଙ୍କୁ ପୂଜା କଲେ ଶିବ ସୁଖ ପ୍ରଦାନ କରିଥାନ୍ତି । ପ୍ରିୟଙ୍ଗୁ ଦ୍ୱାରା ସର୍ବାଧ୍ୟକ୍ଷ ପରମାତ୍ମା ଶିବଙ୍କୁ ପୂଜା କଲେ ଉପାସକର ଧର୍ମ, ଅର୍ଥ ଓ କାମର ଅଭିବୃଦ୍ଧି ହୁଏ ଏବଂ ସେହି ପୂଜା ସମସ୍ତ ସୁଖ ପ୍ରଦାନ କରିଥାଏ । ହରଡପତ୍ରରେ ବେଶ କରି ଶିବଙ୍କୁ ପୂଜା କରିବା ଉଚିତ । ଏଭଳି ପୂଜା ନାନା ପ୍ରକାର ସୁଖ ଓ ସମସ୍ତ ଅଭୀଷ୍ଟ ଫଳ ପ୍ରଦାନ କରିଥାଏ । ମୁନିଶ୍ରେଷ୍ଠ ! ଏଥର ଫୁଲମାନଙ୍କର ଲକ୍ଷସଂଖ୍ୟାର ପରିମାପ କହୁଛି । ଆନନ୍ଦରେ ଶୁଣ । ସୂକ୍ଷ୍ମମାନ ଦର୍ଶାଇଥିବା ବ୍ୟାସଦେବ ଏକ ପ୍ରସ୍ଥ ଶଙ୍ଖପୁଷ୍ପକୁ ଏକଲକ୍ଷ ବୋଲି କହିଛନ୍ତି । ଏଗାର ପ୍ରସ୍ଥ ଜାଇଫୁଲକୁ ଏକଲକ୍ଷ ଫୁଲର ମାନ ବୋଲି କୁହାଯାଇଛି । ଯୁଈର ମାନ ମଧ୍ୟ ସେତିକି । ଏକଲକ୍ଷ ରାଇଫୁଲର ମାନ ତାହାର ଅଧା ଅର୍ଥାତ୍ ସାଢେପାଞ୍ଚ ପ୍ରସ୍ଥ । ଉପାସକ ନିଷ୍କାମ ହୋଇ ମୋକ୍ଷ ନିମନ୍ତେ ଭଗବାନ ଶିବଙ୍କୁ ପୂଜା କରିବା ଉଚିତ ।

ଭକ୍ତିଭାବରେ ବିଧିପୂର୍ବକ ଶିବଙ୍କୁ ପୂଜା କରିବା ପରେ ଜଳଧାରା ଅର୍ପଣ କରିବା ଉଚିତ । ବ୍ୟକ୍ତି ଜ୍ୱରରେ ପ୍ରଳାପ କରୁଥିଲେ ତାହାର ଶମନ ପାଇଁ ଜଳଧାରା ଅର୍ପଣ କରିବା ଶୁଭକାରକ । ଶତରୁଦ୍ରିୟ ମନ୍ତ୍ରରେ, ଏଗାର ଥର ରୁଦ୍ରୀପାଠରେ, ରୁଦ୍ରମନ୍ତ୍ର ଜପରେ, ପୁରୁଷସୂକ୍ତରେ, ଷଡ଼ରଗ୍ଵଯୁକ୍ତ ରୁଦ୍ରସୂକ୍ତରେ, ମହାମୃତ୍ୟୁଞ୍ଜୟ ମନ୍ତ୍ରରେ, ଗାୟତ୍ରୀ ମନ୍ତ୍ରରେ ଅଥବା ଶିବଙ୍କ ଶାସ୍ତ୍ରୋକ୍ତ ନାମମନ୍ତ୍ରଗୁଡ଼ିକର ଆଦ୍ୟରେ ପ୍ରଣବ (ଓଁ) ଏବଂ ଶେଷରେ 'ନମଃ' ଯୋଗ କରି ତଦ୍ଦ୍ୱାରା ଜଳଧାରା ଇତ୍ୟାଦି ଅର୍ପଣ କରିବା ଉଚିତ । ସୁଖ ଓ ସନ୍ତାନ ବୃଦ୍ଧି ପାଇଁ ଜଳଧାରାରେ ପୂଜା କରିବା ଉତ୍ତମ । ଉତ୍ତମ ଭସ୍ମ ଧାରଣ କରି ଉପାସକକୁ ପ୍ରେମପୂର୍ବକ ନାନା ପ୍ରକାର ଶୁଭ ଏବଂ ଦିବ୍ୟ ଦ୍ରବ୍ୟ ଦ୍ୱାରା ଶିବଙ୍କୁ ପୂଜା କରିବା ଉଚିତ ଏବଂ ତାଙ୍କ ସହସ୍ରନାମ ମନ୍ତ୍ରରେ ଶିବଙ୍କ ଉପରେ ଘୃତଧାରା ଅର୍ପଣ କରିବା ଉଚିତ । ଏଭଳି କଲେ ନିଶ୍ଚିତରୂପେ ବଂଶବିସ୍ତାର ହୁଏ । ଏହିରୂପେ ଯଦି ଦଶହଜାର ମନ୍ତ୍ରରେ ଶିବଙ୍କୁ ପୂଜା କରାଯାଏ, ତେବେ ପ୍ରମେହ ରୋଗ ଶାନ୍ତ ହୁଏ ଓ ଉପାସକକୁ ମନୋବାଞ୍ଛିତ ଫଳ ପ୍ରାପ୍ତି ହୁଏ । ଯଦି କେହି ନପୁଂସକ ହୋଇଯାଇଥାଏ, ସେ ଘୃତ ଦ୍ୱାରା ଶିବଙ୍କୁ ଭଲଭାବରେ ପୂଜା କରି ବ୍ରାହ୍ମଣଙ୍କୁ ଭୋଜନ କରାଇବା ଉଚିତ । ଏହାଛଡ଼ା ତା' ପାଇଁ ମୁନୀଶ୍ୱରମାନେ ପ୍ରାଜାପତ୍ୟ ବ୍ରତର ମଧ୍ୟ ବିଧାନ କରିଛନ୍ତି । ଯଦି ବୁଦ୍ଧି ଜଡ଼ ହୋଇଯାଏ, ଏପରି ଅବସ୍ଥାରେ ପୂଜକ କେବଳ ଶର୍କରାମିଶ୍ରିତ ଦୁଗ୍ଧଧାରା ଅର୍ପଣ କରିବା ଉଚିତ । ଏଭଳି କଲେ ସେ ବୃହସ୍ପତି ତୁଲ୍ୟ ବୁଦ୍ଧି ପ୍ରାପ୍ତ ହୁଏ । ଦଶହଜାର ମନ୍ତ୍ରଜପ ପୂର୍ଣ୍ଣ ନ ହେବା ପର୍ଯ୍ୟନ୍ତ ପୂର୍ବୋକ୍ତ ଦୁଗ୍ଧଧାରା ଗୁଲୁ ରଖିବା ବିଧେୟ । ମନରେ ଅକାରଣେ ଉଚ୍ଚାଟନ ହେଲେ, ମନ ଉଦାସୀନ ହୋଇଗଲେ, କେଉଁଠି କିଛି ଭଲ ନ ଲାଗିଲେ, ଦୁଃଖ ବଢ଼ିଗଲେ ଓ ଘରେ ସର୍ବଦା କଳହ ଲାଗି ରହିଲେ ପୂର୍ବୋକ୍ତ ରୂପରେ ଦୁଗ୍ଧଧାରା ଅର୍ପଣ କଲେ ସମସ୍ତ ଦୁଃଖ ନଷ୍ଟ ହୋଇଯାଏ । ସୁବାସିତ ତୈଳରେ ଶିବଙ୍କୁ ପୂଜା କଲେ ଭୋଗ ବୃଦ୍ଧି ପାଏ । ମଧୁରେ ଶିବପୂଜା କଲେ ରାଜଯକ୍ଷ୍ମା ଦୂର ହୁଏ । ଆଖୁରସ ଧାରା ଅର୍ପଣ କଲେ ସବୁପ୍ରକାର ଆନନ୍ଦ ମିଳେ । ଗଙ୍ଗାଜଳ ଧାରାରେ ଭୋଗ ଓ ମୋକ୍ଷ ଉଭୟ ପ୍ରାପ୍ତ ହୁଏ । ଏଠି ଯେଉଁ ଯେଉଁ ଧାରା କଥା

କୁହାଗଲା, ଏ ସମସ୍ତ ମୃତ୍ୟୁଞ୍ଜୟମନ୍ତ୍ରରେ ଅର୍ପଣ କରିବା ଆବଶ୍ୟକ; ଏଥିସହିତ ସେହି ମନ୍ତ୍ରକୁ ବିଧିପୂର୍ବକ ଦଶହଜାର ବାର ଜପିବା ଉଚିତ ଏବଂ ଶେଷରେ ଏଗାରଜଣ ବ୍ରାହ୍ମଣଙ୍କୁ ଭୋଜନ କରାଇବା ଉଚିତ ।

(ଅଧ୍ୟାୟ ୧୪)

✯✯✯

## ସୃଷ୍ଟି-ବର୍ଣ୍ଣନ

ତଦନନ୍ତର ନାରଦଙ୍କ ପ୍ରଶ୍ନର ଉତ୍ତରରେ ବ୍ରହ୍ମା କହିଲେ—ମୁନେ ! ମୋତେ ପୂର୍ବୋକ୍ତ ଆଦେଶ ଦେଇ ଭଗବାନ ଶିବ ଅନ୍ତର୍ହିତ ହୋଇଯିବା ପରେ ମୁଁ ତାଙ୍କ ଆଜ୍ଞା ପାଳନ କରିବା ନିମନ୍ତେ ଧ୍ୟାନମଗ୍ନ ହୋଇ ମୋର କର୍ତ୍ତବ୍ୟ ଉପରେ ବିଗ୍ଚର କଲି । ଭଗବାନ ଶଙ୍କରଙ୍କୁ ନମସ୍କାର କରି ଏବଂ ଶ୍ରୀହରିଙ୍କ ଠାରୁ ଜ୍ଞାନପ୍ରାପ୍ତ ହୋଇ ମୁଁ ପରମାନନ୍ଦରେ ସୃଷ୍ଟିସର୍ଜନା କରିବାକୁ ନିର୍ଣ୍ଣୟ କଲି । ବତ୍ସ ! ଭଗବାନ ବିଷ୍ଣୁ ମଧ୍ୟ ସେଠାରେ ସଦାଶିବଙ୍କୁ ପ୍ରଣାମ କରି ଏବଂ ମୋତେ ଆବଶ୍ୟକ ଉପଦେଶ ଦେଇ ଅଦୃଶ୍ୟ ହୋଇଗଲେ । ସେ ଭଗବାନ ଶିବଙ୍କ କୃପାପ୍ରାପ୍ତ ହୋଇ, ବ୍ରହ୍ମାଣ୍ଡର ବାହାରକୁ ଯାଇ ବୈକୁଣ୍ଠଧାମରେ ପହଞ୍ଚିଲେ ଏବଂ ସର୍ବଦା ସେଇଠି ନିବାସ କଲେ । ମୁଁ ସୃଷ୍ଟି ଇଚ୍ଛାରେ ଭଗବାନ ଶିବ ଓ ବିଷ୍ଣୁଙ୍କୁ ସ୍ମରଣ କରି ପ୍ରଥମେ ପୂର୍ବରୁ ସୃଷ୍ଟ ଜଳରେ ଅଞ୍ଜଳି ବୁଡ଼ାଇ ଉପରକୁ ଫୋପାଡ଼ିଦେଲି । ଏହାଦ୍ୱାରା ସେଥିରୁ ଗୋଟିଏ ଅଣ୍ଡ ଉତ୍ପନ୍ନ ହେଲା, ଯାହାକି ଚବିଶତତ୍ତ୍ୱର ସମାହାର । ବିପ୍ରବର ! ସେହି ବିରାଟ ଆକାଶଯୁକ୍ତ ଅଣ୍ଡ ଜଡ଼ ଥିଲା । ସେଥିରେ ଚେତନତା ନ ଥିବା ଦେଖି ମୋ ମନରେ ସଂଶୟ ହେଲା, ତେଣୁ ମୁଁ ଅତ୍ୟନ୍ତ କଠୋର ତପସ୍ୟା କଲି । ବାରବର୍ଷ ପର୍ଯ୍ୟନ୍ତ ଭଗବାନ ବିଷ୍ଣୁଙ୍କ ଚିନ୍ତନରେ ନିମଗ୍ନ ରହିଲି । ତାତ ! ସେହି କାଳାବଧି ପୂର୍ଣ୍ଣ ହେବାପରେ ଭଗବାନ ଶ୍ରୀହରି ସ୍ୱୟଂ ପ୍ରକଟ ହେଲେ ଏବଂ ଅତି ସ୍ନେହରେ ମୋ ଦେହରେ ହାତ ବୁଲାଇ ପ୍ରସନ୍ନଚିତ୍ତରେ ଏହିପରି କହିଲେ ।

ଶ୍ରୀବିଷ୍ଣୁ କହିଲେ—ବ୍ରହ୍ମନ୍ ! ତୁମେ ବର ମାଗ । ମୁଁ ତୁମ ଉପରେ ପ୍ରସନ୍ନ । ତୁମ ପାଇଁ ମୋ ପାଖରେ କିଛି ବି ଅଦେୟ ନାହିଁ । ଭଗବାନ ଶିବଙ୍କ କୃପାରୁ ମୁଁ ସବୁକିଛି ଦେବାକୁ ସମର୍ଥ ।

ବ୍ରହ୍ମା କହିଲେ (ମୁଁ କହିଲି)—ମହାଭାଗ ! ଆପଣ ମୋ ଉପରେ କୃପା କରି ଉଚିତ କାର୍ଯ୍ୟ କରିଛନ୍ତି; କାରଣ ଭଗବାନ ଶିବ ମୋତେ ଆପଣଙ୍କ ହାତରେ ହିଁ ସମର୍ପି ଯାଇଛନ୍ତି । ବିଷ୍ଣୋ ! ଆପଣଙ୍କୁ ନମସ୍କାର । ଆଜି ମୁଁ ଆପଣଙ୍କୁ ଯାହା କିଛି ମାଗୁଛି, ତାହା ପ୍ରଦାନ କରନ୍ତୁ । ପ୍ରଭୋ ! ଏହି ବିରାଟରୂପ ଚବିଶ ତତ୍ତ୍ୱରେ ଗଠିତ । ଏହି ଅଣ୍ଡ କୌଣସି ପ୍ରକାରେ ଚୈତନ୍ୟ ପ୍ରାପ୍ତ ହେଉ ନାହିଁ, ଜଡ଼ ପରି ଦିଶୁଛି । ହରେ ! ଏବେ ଭଗବାନ ଶିବଙ୍କ କୃପାରୁ ଆପଣ ଏଠାରେ ପ୍ରକଟ ହୋଇଛନ୍ତି । ଏଣୁ ଶିବଙ୍କ ସୃଷ୍ଟିଶକ୍ତି ବା ବିଭୂତି ଦ୍ୱାରା ପ୍ରାପ୍ତ ଏହି ଅଣ୍ଡରେ ଚେତନତା ଆଣନ୍ତୁ ।

ମୁଁ ଏପରି କହିବାରୁ ଶିବଙ୍କ ଆଜ୍ଞାରେ ତତ୍ପର ରହୁଥିବା ବିଷ୍ଣୁ ଅନନ୍ତରୂପର ଆଶ୍ରୟ ନେଇ ସେହି ଅଣ୍ଡରେ ପ୍ରବେଶ କଲେ । ସେତେବେଳେ ସେହି ପରମପୁରୁଷଙ୍କର ସହସ୍ର ମସ୍ତକ, ସହସ୍ର ନେତ୍ର ଓ ସହସ୍ର ପାଦ ଥିଲା । ସେ ଭୂମିକୁ ସର୍ବତୋଭାବେ ଆବୃତ କରି ସେହି ଅଣ୍ଡରେ ବ୍ୟାପ୍ତ ହୋଇଗଲେ । ମୋ ସ୍ତୁତିର ଫଳସ୍ୱରୂପ ସେ ଅଣ୍ଡରେ ପ୍ରବେଶ କରିବାରୁ ଉକ୍ତ ଚବିଶ ତତ୍ତ୍ୱର ବିକାରରୂପୀ ଅଣ୍ଡ ଚେତନା

ପ୍ରାପ୍ତ ହେଲା । ପାତାଳଠାରୁ ଆରମ୍ଭ କରି ସତ୍ୟଲୋକପର୍ଯ୍ୟନ୍ତ ବ୍ୟାପ୍ତ ସେହି ଅଣ୍ଡରୂପରେ ସାକ୍ଷାତ୍ ଶ୍ରୀହରି ହିଁ ବିରାଜମାନ ହେଲେ । ବିରାଟ୍ ଅଣ୍ଡରେ ବ୍ୟାପ୍ତ ହୋଇଥିବାରୁ ସେ ପ୍ରଭୁ 'ବୈରାଜ ପୁରୁଷ' ବୋଲାଇଲେ । ପଞ୍ଚାନନ ମହାଦେବ କେବଳ ନିଜର ଅବସ୍ଥାନ ପାଇଁ ସୁରମ୍ୟ କୈଳାସ ନଗର ନିର୍ମାଣ କଲେ, ଯାହା ସକଳ ଭୁବନର ଉପରେ ସୁଶୋଭିତ ହୁଏ । ଦେବର୍ଷେ ! ସମଗ୍ର ବ୍ରହ୍ମାଣ୍ଡର ବିନାଶ ହୋଇଗଲେ ମଧ୍ୟ ବୈକୁଣ୍ଠ ଓ କୈଳାସ—ଏ ଦୁଇଟି ଧାମ କଦାପି ନଷ୍ଟ ହୁଏ ନାହିଁ । ମୁନିବର ! ମୁଁ ସତ୍ୟଲୋକର ଆଶ୍ରୟରେ ରହିଥାଏ । ତାତ ! ମହାଦେବଙ୍କ ଆଜ୍ଞାରେ ହିଁ ମୋ ଠାରେ ସୃଷ୍ଟିରଚନାର ଇଚ୍ଛା ଉତ୍ପନ୍ନ ହୋଇଛି । ପୁତ୍ର ! ମୁଁ ସୃଷ୍ଟି କରିବାକୁ ଚିନ୍ତନ କରିବାବେଳେ ପ୍ରଥମେ ମୋ ଅଜ୍ଞାତରେ ମୋଠାରୁ ପାପପୂର୍ଣ୍ଣ ତମୋଗୁଣୀ ସୃଷ୍ଟିର ଆବିର୍ଭାବ ହେଲା, ଯାହାକୁ ଅବିଦ୍ୟାପଞ୍ଚକ କହନ୍ତି । ଏହାପରେ ପ୍ରସନ୍ନଚିତ୍ତ ହୋଇ ଶମ୍ଭୁଙ୍କ ଆଜ୍ଞାରେ ମୁଁ ପୁନଃ ଅନାସକ୍ତଭାବରେ ସୃଷ୍ଟି ନିମନ୍ତେ ଚିନ୍ତନ କଲି । ସେତେବେଳେ ମୋ'ଦ୍ୱାରା ସ୍ଥାବରସଂଜ୍ଞକ ବୃକ୍ଷାଦି ସୃଷ୍ଟି ହେଲେ, ଯାହାକୁ ମୁଖ୍ୟ ସର୍ଗ କହନ୍ତି । (ଏହା ପ୍ରଥମ ସର୍ଗ ।) ତାହାକୁ ଦେଖି ଓ ତାହା ମୋ ପାଇଁ ପୁରୁଷାର୍ଥର ସାଧକ ନ ହେବା ଅନୁଭବ କରିବାରୁ ମୋ'ଠାରୁ ଦ୍ୱିତୀୟ ସର୍ଗ ଉତ୍ପନ୍ନ ହେଲା, ଯାହାକି ଦୁଃଖରେ ପୂର୍ଣ୍ଣ । ତାହାର ନାମ ତାର୍ଯ୍ୟକ୍ସ୍ରୋତା ।* ସେହି ସର୍ଗ ମଧ୍ୟ ପୁରୁଷାର୍ଥର ସାଧକ ନ ଥିଲା । ତାହାକୁ ପୁରୁଷାର୍ଥ ସାଧନହୀନ ବୋଲି ଜାଣି ମୁଁ ପୁଣି ସୃଷ୍ଟି ପାଇଁ ଚିନ୍ତନ କଲି । ସେଥର ଖୁବ୍ ଶୀଘ୍ର ତୃତୀୟ ସାତ୍ତ୍ୱିକ ସର୍ଗ ଉତ୍ପନ୍ନ ହେଲା, ଯାହାକୁ 'ଊର୍ଦ୍ଧ୍ୱସ୍ରୋତା' କହନ୍ତି । ଏହା ଦେବସର୍ଗ ନାମରେ ବିଖ୍ୟାତ ହେଲା । ଦେବସର୍ଗ ସତ୍ୟବାଦୀ ଓ ଅତ୍ୟନ୍ତ ସୁଖଦାୟକ ଅଟେ । ତାହାକୁ ମଧ୍ୟ ପୁରୁଷାର୍ଥ ସାଧନ ପ୍ରତି ରୁଚିଶୂନ୍ୟ ଓ ଅଧିକାରହୀନ ଜାଣି ମୁଁ ଅନ୍ୟ ସର୍ଗ ସୃଷ୍ଟି ପାଇଁ ମୋ ସ୍ୱାମୀ ଶିବଙ୍କୁ ଚିନ୍ତନ କରିବା ଆରମ୍ଭ କଲି । ସେତେବେଳେ ଭଗବାନ ଶିବଙ୍କ ଆଜ୍ଞାରେ ଏକ ରଜୋଗୁଣୀ ସର୍ଗ ଉତ୍ପନ୍ନ ହେଲା, ତାହାକୁ ଅର୍ବାକ୍ସ୍ରୋତା କହନ୍ତି । ଏହି ସର୍ଗର ପ୍ରାଣୀ ମନୁଷ୍ୟ ଅଟନ୍ତି । ସେମାନେ ପୁରୁଷାର୍ଥ ସାଧନର ଉଚ୍ଚ ଅଧିକାରୀ । ତା'ପରେ ମହାଦେବଙ୍କ ଆଜ୍ଞାରେ ଭୂତାଦିଙ୍କ ସୃଷ୍ଟି ହେଲା । ଏହିରୂପେ ମୁଁ ପାଞ୍ଚ ପ୍ରକାର ବୈକୃତ ସୃଷ୍ଟିର ବର୍ଣ୍ଣନା କରିଦେଲି । ଏହା ବ୍ୟତୀତ ତିନୋଟି ପ୍ରାକୃତ ସୃଷ୍ଟି ମଧ୍ୟ କଥିତ ହୋଇଛି, ଯାହାକି ସ୍ୱୟଂ ମୋ ସାନ୍ନିଧ୍ୟରେ ପ୍ରକୃତିରୁ ପ୍ରକଟ ହୋଇଛି । ଏଥିମଧ୍ୟରେ ପ୍ରଥମଟି ମହତ୍ତ୍ୱ ସର୍ଗ, ଦ୍ୱିତୀୟଟି ସୂକ୍ଷ୍ମଭୂତ ଅର୍ଥାତ୍ ତନ୍ମାତ୍ର ସର୍ଗ ଓ ତୃତୀୟଟି ବୈକାରିକ ସର୍ଗ । ଏ ତିନୋଟି ହେଲା ପ୍ରାକୃତ ସର୍ଗ । ପ୍ରାକୃତ ସର୍ଗ ଓ ବୈକୃତ ସର୍ଗକୁ ମିଶାଇଲେ ଆଠପ୍ରକାର ସର୍ଗ ହୁଏ । ଏହା ବ୍ୟତୀତ ଆଉ ଏକ ସର୍ଗ ଅଛି, ଯାହାକୁ କୌମାର ସର୍ଗ କୁହାଯାଏ । ତାହା ପ୍ରାକୃତ ଓ ବୈକୃତ ମଧ୍ୟ । ଏସବୁର ଗୌଣଭେଦକୁ ମୁଁ ବର୍ଣ୍ଣନା କରିପାରିବି ନାହିଁ; କାରଣ ତାହାର ଉପଯୋଗ ଅତି କମ୍ ।

ଏବେ ଦ୍ୱିଜାତ୍ମକ ସର୍ଗର ପ୍ରତିପାଦନ କରୁଛି । ଏହାର ଅନ୍ୟ ନାମ କୌମାର ସର୍ଗ, ଯେଉଁଥିରେ ସନକ-ସନନ୍ଦନ ପ୍ରଭୃତି କୁମାରମାନଙ୍କର ସୃଷ୍ଟି ମହତ୍ତ୍ୱପୂର୍ଣ୍ଣ । ସନକାଦି ହେଉଛନ୍ତି ମୋର ଚାରିଜଣ ମାନସ ପୁତ୍ର, ସେମାନେ ମୋରି ସମକକ୍ଷ

* ପଶୁ ପକ୍ଷୀ ଇତ୍ୟାଦି ତାର୍ଯ୍ୟକ୍ସ୍ରୋତା ଅଟନ୍ତି । ବାୟୁ ପରି ତେରେଛା ଚାଲୁଥିବାରୁ ଏଗୁଡ଼ିକୁ ତିର୍ଯ୍ୟକ୍ ଅଥବା ତିର୍ଯ୍ୟକ୍ସ୍ରୋତା' କୁହାଯାଇଛି ।

ଅଟନ୍ତି । ସେମାନେ ମହାବୈରାଗ୍ୟସମ୍ପନ୍ନ ତଥା ଉତ୍ତମବ୍ରତଧାରୀ । ସେମାନଙ୍କ ମନ ସର୍ବଦା ଭଗବାନ ଶିବଙ୍କ ଚିନ୍ତନରେ ଲାଗି ରହିଥାଏ । ସେମାନେ ସଂସାର ପ୍ରତି ବିମୁଖ ଏବଂ ଜ୍ଞାନୀ । ମୋର ଆଦେଶ ସତ୍ତ୍ୱେ ସେମାନେ ସୃଷ୍ଟିକାର୍ଯ୍ୟରେ ମନ ଲଗାଇଲେ ନାହିଁ । ମୁନିଶ୍ରେଷ୍ଠ ନାରଦ ! ସନକାଦି କୁମାରଙ୍କର ନକାରାତ୍ମକ ଉତ୍ତରକୁ ଶୁଣି ମୁଁ ଭୟଙ୍କର କ୍ରୋଧ ପ୍ରକଟ କଲି । ସେତେବେଳେ ମୋ ଉପରେ ମୋହ ଆଚ୍ଛାଦିତ ହୋଇଗଲା । ମୁଁ ମନେ ମନେ ଭଗବାନ ବିଷ୍ଣୁଙ୍କୁ ସ୍ମରଣ କଲି । ସେ ଶୀଘ୍ର ଉପସ୍ଥିତ ହୋଇ ମୋତେ କହିଲେ—"ତୁମେ ଭଗବାନ ଶିବଙ୍କ ପ୍ରସନ୍ନତା ନିମନ୍ତେ ତପସ୍ୟା କର ।" ମୁନିଶ୍ରେଷ୍ଠ ! ଶ୍ରୀହରିଙ୍କ ଶିକ୍ଷା ପାଇ ମୁଁ ଘୋର ଓ ଉତ୍କୃଷ୍ଟ ତପସ୍ୟା କଲି । ସୃଷ୍ଟି ପାଇଁ ତପସ୍ୟା କରିବା ବେଳେ ମୋର ଉଭୟ ଭ୍ରୂଲତା ଓ ନାସିକାର ମଧ୍ୟଭାଗ, ଯାହାକି ଶିବଙ୍କର ଅବିମୁକ୍ତ ନାମକ ସ୍ଥାନ, ସେଥିରୁ ମହେଶ୍ୱରଙ୍କର ତିନି ମୂର୍ତ୍ତି ମଧ୍ୟରେ ଅନ୍ୟତମ ପୂର୍ଣ୍ଣାଂଶ, ସର୍ବେଶ୍ୱର ଓ ଦୟାସାଗର



ଭଗବାନ ଶିବ ହିଁ ଅର୍ଦ୍ଧନାରୀଶ୍ୱର ରୂପରେ ଆବିର୍ଭୂତ ହେଲେ ।

ଜନ୍ମରହିତ, ତେଜର ଭଣ୍ଡାର, ସର୍ବଜ୍ଞ, ସର୍ବସ୍ରଷ୍ଟା ତଥା ନୀଳଲୋହିତ ନାମଧାରୀ ସାକ୍ଷାତ୍ ଉମାବଲ୍ଲଭ ଶିବଙ୍କୁ ସମ୍ମୁଖରେ ଦେଖି ତାଙ୍କୁ ଅତ୍ୟନ୍ତ ଭକ୍ତିର ସହ ଅବନତ ମସ୍ତକରେ ସ୍ତୁତି କରି ମୁଁ ପରମାନନ୍ଦ ଲାଭ କଲି । ମୁଁ ସେହି ଦେବଦେବେଶ୍ୱରଙ୍କୁ କହିଲି, "ପ୍ରଭୋ ! ଆପଣ ଭିନ୍ନ ଭିନ୍ନ ପ୍ରକାର ଜୀବଙ୍କୁ ସୃଷ୍ଟି କରନ୍ତୁ ।" ମୋ କଥା ଶୁଣି ଦେବାଧିଦେବ ମହେଶ୍ୱର ରୁଦ୍ର ନିଜ ସମାନ ଅନେକ ରୁଦ୍ରଗଣଙ୍କୁ ସୃଷ୍ଟି କଲେ । ମୁଁ ମୋର ସ୍ୱାମୀ ମହେଶ୍ୱରଙ୍କୁ ପୁଣି କହିଲି—



"ଦେବ ! ଆପଣ ଏଭଳି ଜୀବଙ୍କୁ ସୃଷ୍ଟି କରନ୍ତୁ, ଯେଉଁମାନେ ଜନ୍ମମୃତ୍ୟୁ ଭୟରେ ସଂଯୁକ୍ତ ହୋଇଥିବେ ।" ମୋ କଥା ଶୁଣି କରୁଣାସାଗର ମହାଦେବ ହସିଦେଲେ ଓ ମୋତେ କହିଲେ—

ମହାଦେବ କହିଲେ—ହେ ବିଧାତା ! ମୁଁ ଜନ୍ମମୃତ୍ୟୁ ଭୟରେ ସଂଯୁକ୍ତ ଅଶୋଭନ ଜୀବଙ୍କୁ

ସୃଷ୍ଟି କରିବି ନାହିଁ; କାରଣ ସେମାନେ କର୍ମର ଅଧୀନ ହୋଇ ଦୁଃଖସାଗରରେ ବୁଡ଼ି ରହିବେ। ମୁଁ ତ ଦୁଃଖସାଗରରେ ବୁଡ଼ିଥିବା ଜୀବଙ୍କୁ ଉଦ୍ଧାର କରିବି, ଗୁରୁଙ୍କ ରୂପ ଧାରଣ କରି ଉତ୍ତମ ଜ୍ଞାନ ପ୍ରଦାନ କରି ସେମାନଙ୍କୁ ସଂସାର-ସାଗରରୁ ପାର କରିବି। ପ୍ରଜାପତେ! ଦୁଃଖରେ ବୁଡୁଥିବା ଜୀବଙ୍କୁ ତୁମେ ସୃଷ୍ଟି କର। ମୋ ଆଜ୍ଞାରେ ଏ କାର୍ଯ୍ୟରେ ପ୍ରବୃତ୍ତ ହେଉଥିବାରୁ ତୁମକୁ ମାୟା ବାନ୍ଧି ପାରିବ ନାହିଁ।

ମୋତେ ଏପରି କହି ଶ୍ରୀମାନ୍ ନୀଳଲୋହିତ ମହାଦେବ ମୋ ନେତ୍ର ସମ୍ମୁଖରୁ ତତ୍‌କ୍ଷଣାତ୍ ଅନ୍ତର୍ହିତ ହୋଇଗଲେ। (ଅଧ୍ୟାୟ ୧୫)

★★★

## ମନୁ ଓ ଶତରୂପାଙ୍କ ଠାରୁ ତଥା ଋଷିଗଣ ଓ ଦକ୍ଷକନ୍ୟାମାନଙ୍କ ଠାରୁ ଉତ୍ପନ୍ନ ସନ୍ତାନଙ୍କର ବର୍ଣ୍ଣନା ଏବଂ ସତୀ ଓ ଶିବଙ୍କ ମହତ୍ତ୍ୱ ପ୍ରତିପାଦନ

ବ୍ରହ୍ମା କହୁଛନ୍ତି—ହେ ନାରଦ! ତା'ପରେ ମୁଁ ଶବ୍ଦତନ୍ମାତ୍ର ଆଦି ସୂକ୍ଷ୍ମଭୂତମାନଙ୍କୁ ନିଜେ ପଞ୍ଚୀକୃତ କରି ଅର୍ଥାତ୍ ସେଗୁଡ଼ିକୁ ପରସ୍ପର ସହିତ ସମ୍ମିଶ୍ରିତ କରି ସେଥିରୁ ସ୍ଥୂଳ ଆକାଶ, ବାୟୁ, ଅଗ୍ନି, ଜଳ ଓ ପୃଥିବୀ ସୃଷ୍ଟି କଲି। ପୁଣି ମୁଁ ପର୍ବତ, ସମୁଦ୍ର ଓ ବୃକ୍ଷ ଇତ୍ୟାଦିଙ୍କୁ ସୃଷ୍ଟି କଲି। କଳାଠାରୁ ଆରମ୍ଭ କରି ଯୁଗ ପର୍ଯ୍ୟନ୍ତ ସମସ୍ତ କାଳବିଭାଗ ସୃଷ୍ଟି କଲି। ମୁନେ! ମୁଁ ଆହୁରି ଅନେକ ପ୍ରକାର ଉତ୍ପତ୍ତି-ବିନାଶଶୀଳ ବସ୍ତୁ ସୃଷ୍ଟି କଲି, ହେଲେ ତଦ୍ୱାରା ମୋତେ ସନ୍ତୋଷ ମିଳିଲା ନାହିଁ। ସେତେବେଳେ ପାର୍ବତୀଙ୍କ ସମେତ ଶିବଙ୍କୁ ଧ୍ୟାନ କରି ମୁଁ ସାଧନପରାୟଣ ପୁରୁଷଙ୍କୁ ସୃଷ୍ଟି କଲି। ମୋର ନେତ୍ରଦ୍ୱୟରୁ ମରୀଚିଙ୍କୁ, ହୃଦୟରୁ ଭୃଗୁଙ୍କୁ, ମସ୍ତକରୁ ଅଙ୍ଗିରାଙ୍କୁ, ବ୍ୟାନ-ବାୟୁରୁ ମୁନିଶ୍ରେଷ୍ଠ ପୁଲହଙ୍କୁ, ଉଦାନବାୟୁରୁ ପୁଲସ୍ତ୍ୟଙ୍କୁ, ସମାନବାୟୁରୁ ବଶିଷ୍ଠଙ୍କୁ, ଅପାନରୁ କ୍ରତୁଙ୍କୁ, କର୍ଣ୍ଣଦ୍ୱୟରୁ ଅତ୍ରିଙ୍କୁ, ପ୍ରାଣମାନଙ୍କରୁ ଦକ୍ଷଙ୍କୁ, କୋଳରୁ ତୁମକୁ, ଛାୟାରୁ କର୍ଦ୍ଦମ ମୁନିଙ୍କୁ ତଥା ସଙ୍କଳ୍ପରୁ ସମସ୍ତ ସାଧନର ସାଧନ ଧର୍ମଙ୍କୁ ଉତ୍ପନ୍ନ କଲି। ମୁନିଶ୍ରେଷ୍ଠ! ଏଭଳି ଉତ୍ତମ ସାଧକମାନଙ୍କୁ ଉତ୍ପନ୍ନ କରି ମହାଦେବଙ୍କ କୃପାରୁ ମୁଁ ନିଜକୁ କୃତାର୍ଥ ମଣିଲି। ତାତ! ତା'ପରେ ସଙ୍କଳ୍ପରୁ ଉତ୍ପନ୍ନ ଧର୍ମ ମୋ ଆଜ୍ଞାରେ ମାନବରୂପ ଧାରଣ କରି ସାଧକମାନଙ୍କ ପ୍ରେରଣାରେ ସାଧନାରେ ଲାଗିଗଲେ। ଏହାପରେ ମୁଁ ମୋର ବିଭିନ୍ନ ଅଙ୍ଗରୁ ଦେବତା, ଅସୁର ଆଦିଙ୍କ ରୂପରେ ଅସଂଖ୍ୟ ପୁତ୍ରଙ୍କୁ ସୃଷ୍ଟି କରି ସେମାନଙ୍କୁ ଭିନ୍ନ ଭିନ୍ନ ଶରୀର ପ୍ରଦାନ କଲି। ମୁନେ! ତା'ପରେ ଅନ୍ତର୍ଯ୍ୟାମୀ ଭଗବାନ ଶଙ୍କରଙ୍କ ପ୍ରେରଣାରେ ମୁଁ ମୋ ଶରୀରକୁ ଦୁଇଭାଗରେ



ବିଭକ୍ତ କରି ଦ୍ୱିବିଧରୂପ ହୋଇଗଲି । ନାରଦ ! ଅଧା ଶରୀରରୁ ମୁଁ ସ୍ତ୍ରୀ ହୋଇଗଲି ଓ ଅନ୍ୟ ଅଧକରୁ ପୁରୁଷ । ଉକ୍ତ ପୁରୁଷ ସେହି ସ୍ତ୍ରୀ ଗର୍ଭରୁ ସର୍ବସାଧନସମର୍ଥ ଉତ୍ତମ ଯୁଗଳଙ୍କୁ ଉତ୍ପନ୍ନ କଲା । ସେହି ଯୁଗଳ ମଧ୍ୟରୁ ଯିଏ ପୁରୁଷ ଥିଲା, ସେ ସ୍ୱାୟମ୍ଭୁବ ମନୁ ନାମରେ ପ୍ରସିଦ୍ଧ ହେଲା । ସାୟମ୍ଭୁବ ମନୁ ଉଚ୍ଚକୋଟିର ସାଧକ ହେଲେ । ଯେଉଁ ସ୍ତ୍ରୀଶରୀର ଉତ୍ପନ୍ନ ହେଲା, ସେ ଶତରୂପା ନାମରେ ପ୍ରସିଦ୍ଧ ହେଲା ଏବଂ ସେ ଯୋଗିନୀ ଏବଂ ତପସ୍ୱିନୀ ହେଲା । ତାତ ! ମନୁ ବୈବାହିକ ବିଧିରେ ପରମ ସୁନ୍ଦରୀ ଶତରୂପାର ପାଣିଗ୍ରହଣ କଲେ ଓ ତା'ଠାରୁ ମୈଥୁନଜନିତ ସୃଷ୍ଟି ଉତ୍ପନ୍ନ କରିବାକୁ ଲାଗିଲେ । ସେ ଶତରୂପା ଠାରୁ ପ୍ରିୟବ୍ରତ ଓ ଉତ୍ତାନପାଦ ନାମକ ଦୁଇଟି ପୁତ୍ର ଓ ତିନୋଟି କନ୍ୟା ଉତ୍ପନ୍ନ କଲେ । କନ୍ୟାମାନଙ୍କର ନାମ ହେଲା—ଆକୂତି, ଦେବହୂତି ଓ ପ୍ରସୂତି । ମନୁ ଆକୂତିର ବିବାହ ପ୍ରଜାପତି ରୁଚିଙ୍କ ସଙ୍ଗେ କଲେ । ମଝିଆଣୀ ଝିଅ ଦେବହୂତିର ବିବାହ କର୍ଦ୍ଦମଙ୍କ ସଙ୍ଗେ ଏବଂ ଉତ୍ତାନପାଦଙ୍କ ସବାସାନ ଭଉଣୀ ପ୍ରସୂତିର ପ୍ରଜାପତି ଦକ୍ଷଙ୍କ ସଙ୍ଗେ ବିବାହ କଲେ । ସେମାନଙ୍କ ସନ୍ତାନ ପରମ୍ପରାରେ ସମଗ୍ର ଚରାଚର ଜଗତ ପରିବ୍ୟାପ୍ତ ହୋଇଗଲା ।

ରୁଚିଙ୍କ ଔରସରେ ଆକୂତି ଗର୍ଭରୁ ଯଜ୍ଞ ଓ ଦକ୍ଷିଣା ନାମକ ସ୍ତ୍ରୀ-ପୁରୁଷଙ୍କ ଯୁଗଳ ଉତ୍ପନ୍ନ ହେଲା । ଦକ୍ଷିଣା ଗର୍ଭରୁ ଯଜ୍ଞଙ୍କର ବାରଟି ପୁତ୍ର ହେଲେ । ମୁନେ ! କର୍ଦ୍ଦମଙ୍କ ଔରସରେ ଦେବହୂତିଙ୍କ ଗର୍ଭରୁ ବହୁତ କନ୍ୟା ଜନ୍ମିଲେ । ଦକ୍ଷଙ୍କର ପ୍ରସୂତିଠାରୁ ଚବିଶ କନ୍ୟା ହେଲେ । ଦକ୍ଷ ସେମାନଙ୍କ ମଧ୍ୟରୁ ଶ୍ରଦ୍ଧା ଆଦି ତେରଟି କନ୍ୟାଙ୍କର ବିବାହ ଧର୍ମଙ୍କ ସହିତ କରିଦେଲେ । ମୁନୀଶ୍ୱର ! ଧର୍ମଙ୍କ ପତ୍ନୀଙ୍କର ନାମ ହେଲା—ଶ୍ରଦ୍ଧା, ଲକ୍ଷ୍ମୀ, ଧୃତି, ତୁଷ୍ଟି, ପୁଷ୍ଟି, ମେଧା, କ୍ରିୟା, ବୁଦ୍ଧି, ଲଜ୍ଜା, ବସୁ, ଶାନ୍ତି, ସିଦ୍ଧି ଓ କୀର୍ତ୍ତି । ଏମାନଙ୍କ ଠାରୁ ଛୋଟ ଆଉ ଯେଉଁ ଏଗାର ଭଉଣୀ ଥିଲେ, ସେହି ସୁଲୋଚନା କନ୍ୟାମାନଙ୍କ ନାମ ହେଲା—ଖ୍ୟାତି, ସତୀ, ସମ୍ଭୂତି, ସ୍ମୃତି, ପ୍ରୀତି, କ୍ଷମା, ସଂନତି, ଅନସୂୟା, ଉର୍ଜା, ସ୍ୱାହା ଓ ସ୍ୱଧା । ଯଥାକ୍ରମେ ଭୃଗୁ, ଶିବ, ମରୀଚି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ଅତ୍ରି, ବଶିଷ୍ଠ, ଅଗ୍ନି ଓ ପିତୃଗଣ ଏମାନଙ୍କର ପାଣିଗ୍ରହଣ କଲେ । ଭୃଗୁ ଆଦି ମୁନି ସାଧକ । ଏମାନଙ୍କ ସନ୍ତାନରେ ଚରାଚର ସମେତ ସମଗ୍ର ତ୍ରିଲୋକ ପୂରି ଉଠିଲା ।

ଏହି ପ୍ରକାରେ ଅମ୍ବିକାପତି ମହାଦେବଙ୍କ ଆଜ୍ଞାରେ ନିଜ ନିଜ ପୂର୍ବକର୍ମ ଅନୁସାରେ ଅନେକ ପ୍ରାଣୀ ଅସଂଖ୍ୟ ଶ୍ରେଷ୍ଠ ଦ୍ୱିଜମାନଙ୍କ ରୂପରେ ଉତ୍ପନ୍ନ ହେଲେ । କଳ୍ପଭେଦରେ ଦକ୍ଷଙ୍କର ଷାଠିଏ କନ୍ୟା ଥିଲେ ବୋଲି କୁହାଯାଏ । ସେମାନଙ୍କ ମଧ୍ୟରୁ ଦକ୍ଷ ଦଶ କନ୍ୟାଙ୍କର ବିବାହ ଧର୍ମଙ୍କ ସଙ୍ଗେ କଲେ, ସତେଇଶ କନ୍ୟାଙ୍କର ବିବାହ ଚନ୍ଦ୍ରଙ୍କ ସଙ୍ଗେ କଲେ ଓ ତେରଟି କନ୍ୟା କଶ୍ୟପଙ୍କୁ ଦେଲେ । ନାରଦ ! ସେ ଚାରିଟି କନ୍ୟା ତାର୍କ୍ଷ୍ୟ (ଅରିଷ୍ଟନେମି)ଙ୍କୁ ଏବଂ ଦୁଇଟି ଲେଖାଏଁ କନ୍ୟା ଭୃଗୁ, ଅଙ୍ଗିରା ଓ କୃଶାଶ୍ୱଙ୍କୁ ବିଭା ଦେଲେ । ସେହି କନ୍ୟାଙ୍କ ଠାରୁ ସେମାନଙ୍କ ପତିଙ୍କ ଔରସରୁ ବହୁସଂଖ୍ୟକ ଚର ଓ ଅଚର ପ୍ରାଣୀ ସୃଷ୍ଟି ହେଲେ । ମୁନିଶ୍ରେଷ୍ଠ ! ଦକ୍ଷ ମହାତ୍ମା କଶ୍ୟପଙ୍କୁ ଯେଉଁ ତେରଟି କନ୍ୟା ବିଧିପୂର୍ବକ ଦାନ କରିଥିଲେ, ସେମାନଙ୍କ ସନ୍ତାନରେ ତ୍ରିଭୁବନ ପୂରିଅଛି । ଏପରି କୌଣସି ସ୍ଥାବର କି ଜଙ୍ଗମ ସୃଷ୍ଟି ନାହିଁ, ଯାହା କଶ୍ୟପଙ୍କ ସନ୍ତାନ ପରମ୍ପରାର ଅନ୍ତର୍ଗତ ହୋଇ ନ ଥିବ । ଦେବତା, ଋଷି, ଦୈତ୍ୟ, ବୃକ୍ଷ, ପକ୍ଷୀ, ପର୍ବତ, ତୃଣ-ଲତା ଆଦି ସମସ୍ତେ କଶ୍ୟପଙ୍କ ପତ୍ନୀଙ୍କ ଠାରୁ ଉତ୍ପନ୍ନ ।

ଏହିରୂପେ ଦକ୍ଷକନ୍ୟାଙ୍କ ସନ୍ତାନ ପରମ୍ପରାରେ ସମଗ୍ର ଜଗତ ବ୍ୟାପ୍ତ ହୋଇଗଲା । ପାତାଳଠାରୁ ସତ୍ୟଲୋକ ପର୍ଯ୍ୟନ୍ତ ସମସ୍ତ ବ୍ରହ୍ମାଣ୍ଡ ନିଶ୍ଚିତରୂପେ ସେମାନଙ୍କ ସନ୍ତାନରେ ସର୍ବଦା ପୂର୍ଣ୍ଣ ହୋଇ ରହିଥାଏ ।

ଏହିରୂପେ ଶିବଙ୍କ ଆଜ୍ଞାରେ ବ୍ରହ୍ମା ଭଲଭାବରେ ସୃଷ୍ଟି କଲେ । ପୂର୍ବକାଳରେ ସର୍ବବ୍ୟାପୀ ଶମ୍ଭୁ ଯେଉଁ ସତୀଙ୍କୁ ତପସ୍ୟା ପାଇଁ ପ୍ରକଟ କରିଥିଲେ ଏବଂ ରୁଦ୍ରରୂପରେ ତ୍ରିଶୂଳ ଉପରେ ରଖି ଯାହାଙ୍କୁ ସର୍ବଦା ରକ୍ଷା କରିଥିଲେ, ସେହି ସତୀଦେବୀ ଲୋକହିତ କାର୍ଯ୍ୟ ସମ୍ପାଦନ କରିବା ନିମିତ୍ତ ଦକ୍ଷଙ୍କ ଠାରୁ ଉତ୍ପନ୍ନ ହୋଇଥିଲେ । ସେ ଭକ୍ତଙ୍କ ଉଦ୍ଧାର ପାଇଁ ଅନେକ ଲୀଳା କରିଥିଲେ । ଏହି ପ୍ରକାରେ ଦେବୀ ଶିବା ହିଁ ସତୀ ହୋଇ ଭଗବାନ ଶଙ୍କରଙ୍କୁ ବିବାହ କଲେ; କିନ୍ତୁ ପିତାଙ୍କ ଯଜ୍ଞରେ ସ୍ୱାମୀଙ୍କ ଅପମାନ ଦେଖି ସେ ଦେହତ୍ୟାଗ କରିଦେଲେ ଓ ପୁନଃ ଦେହ ଧାରଣ କଲେ ନାହିଁ । ସେ ନିଜ ପରମପଦ ପ୍ରାପ୍ତ ହୋଇଗଲେ । ପରେ ଦେବତାଙ୍କ ପ୍ରାର୍ଥନାକ୍ରମେ ସେହି ଶିବା ହିଁ ପାର୍ବତୀରୂପରେ ଆବିର୍ଭୂତା ହେଲେ ଓ ଘୋର ତପସ୍ୟା କରି ପୁନଃ ଶିବଙ୍କ ସଙ୍ଗେ ମିଳିତ ହେଲେ । ମୁନୀଶ୍ୱର ! ଏ ଜଗତରେ ତାଙ୍କର ଅନେକ ନାମ ବିଖ୍ୟାତ ହୋଇଛି । ତାଙ୍କର କାଳିକା, ଚଣ୍ଡିକା, ଭଦ୍ରା, ଚାମୁଣ୍ଡା, ବିଜୟା, ଜୟା, ଜୟନ୍ତୀ, ଭଦ୍ରକାଳୀ, ଦୁର୍ଗା, ଭଗବତୀ, କାମାକ୍ଷା, କାମଦା, ଅମ୍ବା, ମୃଡାନୀ ଓ ସର୍ବମଙ୍ଗଳା ଆଦି ଅନେକ ନାମ ଅଛି, ଯାହାକି ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ଏ ସମସ୍ତ ନାମ ତାଙ୍କର ଗୁଣ ଓ କର୍ମ ଅନୁସାରେ ହୋଇଛି ।

ମୁନିଶ୍ରେଷ୍ଠ ନାରଦ ! ମୁଁ ତୁମ ଆଗରେ ସୃଷ୍ଟିକ୍ରମ ବର୍ଣ୍ଣନା କଲି । ବ୍ରହ୍ମାଣ୍ଡର ଏ ସମସ୍ତ ବିଭାଗ ଶିବଙ୍କ ଆଜ୍ଞାରେ ମୋ ଦ୍ୱାରା ସୃଷ୍ଟ । ଭଗବାନ ଶିବଙ୍କୁ ପରବ୍ରହ୍ମ ପରମାତ୍ମା କୁହାଯାଇଛି । ମୁଁ, ବିଷ୍ଣୁ ଓ ରୁଦ୍ର—ଏ ତିନି ଦେବତା ଗୁଣଭେଦରେ ତାଙ୍କରି ରୂପ ବୋଲି ଜଗତରେ ବିଖ୍ୟାତ । ସେ ମନୋରମ ଶିବଲୋକରେ ଶିବାଙ୍କ ସହ ବିହାର କରନ୍ତି । ଭଗବାନ ଶିବ ସ୍ୱତନ୍ତ୍ର ପରମାତ୍ମା ଅଟନ୍ତି । ସେ ହିଁ ନିର୍ଗୁଣ ଓ ସଗୁଣ ଅଟନ୍ତି ।

(ଅଧ୍ୟାୟ ୧୬)



## ଶିବଙ୍କ କୃପାରୁ ଯଜ୍ଞଦତ୍ତଙ୍କ ପୁତ୍ରକୁ କୁବେରପଦ ପ୍ରାପ୍ତି ଏବଂ ତାହାର ଭଗବାନ ଶିବଙ୍କ ସହ ମୈତ୍ରୀ

ସୂତ କହୁଛନ୍ତି—ମୁନୀଶ୍ୱରଗଣ ! ବ୍ରହ୍ମାଙ୍କ କଥା ଶୁଣି ନାରଦ ବିନୟପୂର୍ବକ ତାଙ୍କୁ ପ୍ରଣାମ କଲେ ଏବଂ ପୁନଃ ପଚ୍ଚରିଲେ—"ଭଗବନ୍ ! ଭକ୍ତବତ୍ସଳ ଭଗବାନ କୈଳାସ ପର୍ବତକୁ କେବେ ଗଲେ ଓ ମହାତ୍ମା କୁବେରଙ୍କ ସଙ୍ଗେ ତାଙ୍କର ମୈତ୍ରୀ କେବେ ହେଲା? ପରିପୂର୍ଣ୍ଣ ମଙ୍ଗଳବିଗ୍ରହ ମହାଦେବ ସେଠାରେ କ'ଣ କଲେ? ଏସବୁ କଥା କୁହନ୍ତୁ; କାରଣ ଏକଥା ଶୁଣିବାକୁ ମୋ ମନରେ କୁତୂହଳ ଜାତ ହେଉଛି ।"

ବ୍ରହ୍ମା କହିଲେ—ନାରଦ ! ଶୁଣ । ମୁଁ ଏବେ ଭଗବାନ ଚନ୍ଦ୍ରମୌଳିଙ୍କ ଚରିତ୍ର ବର୍ଣ୍ଣନା କରୁଛି । ସେ କୈଳାସ କିପରି ଗଲେ ଓ କୁବେରଙ୍କ ସଙ୍ଗେ ତାଙ୍କର ମୈତ୍ରୀ କିପରି ହେଲା, ସେହି ବିଷୟ କହୁଛି । କାମ୍ପିଲ୍ୟ ନଗରରେ ଯଜ୍ଞଦତ୍ତ ନାମରେ ଜଣେ ପ୍ରସିଦ୍ଧ ବ୍ରାହ୍ମଣ ରହୁଥିଲେ । ସେ ବଡ଼ ସଦାଚାରୀ ଥିଲେ । ତାଙ୍କର ଗୋଟିଏ ପୁତ୍ର

ଥିଲା; ତା'ର ନାମ ଥିଲା ଗୁଣନିଧି । ସେ ଅତ୍ୟନ୍ତ ଦୁରାଚ୍ଚାରୀ ଓ ଜୁଆଖୋର ହୋଇଯାଇଥିଲା । ପିତା ତାକୁ ପରିତ୍ୟାଗ କରିଦେଲେ । ସେ ଘରୁ ବାହାରି ଯାଇ କେତେ ଦିନ ପର୍ଯ୍ୟନ୍ତ ଭୋକ ଉପାସରେ ବାହାରେ ବୁଲିଲା । ଦିନେ ସେ ନୈବେଦ୍ୟ ଚ୍ଚୋରି କରିବା ପାଇଁ ଗୋଟିଏ ଶିବମନ୍ଦିରରେ ପଶିଲା । ସେଠାରେ ସେ ନିଜ ଉତ୍ତରୀୟ ବସ୍ତ୍ରକୁ ବତୀ ପରି ଜଳାଇ ଆଲୋକ କରିଦେଲା । ସତେଯେପରି ଏହା ହିଁ ଥିଲା ତା'ପକ୍ଷେ ଶିବଙ୍କ ପାଇଁ ଦୀପଦାନ । ତା'ପରେ ସେ ଚ୍ଚୋରି କାର୍ଯ୍ୟ



ହେତୁ ଧରାପଡ଼ିଲା ଓ ତାକୁ ପ୍ରାଣଦଣ୍ଡ ମିଳିଲା । ତା'ର କୁକର୍ମ ପାଇଁ ତାକୁ ଯମଦୂତମାନେ ବାନ୍ଧି ନେବାକୁ ଉଦ୍ୟତ ହେଲେ । ଇତିମଧ୍ୟରେ ଭଗବାନ ଶଙ୍କରଙ୍କର ପାର୍ଷଦମାନେ ଆସି ପହଞ୍ଚିଗଲେ ଏବଂ ତାକୁ ଯମଦୂତଙ୍କ ବନ୍ଧନରୁ ମୁକ୍ତ କଲେ । ଶିବଗଣଙ୍କ ସାନ୍ନିଧ୍ୟରୁ ତା'ର ହୃଦୟ ଶୁଦ୍ଧ ହୋଇଯାଇଥିଲା । ତେଣୁ ସେ ସେମାନଙ୍କ ସହିତ ଅବିଳମ୍ବେ ଶିବଲୋକକୁ ଗମନ କଲା । ସେଠାରେ ସମସ୍ତ ଦିବ୍ୟ ଭୋଗମାନ ଉପଭୋଗ କରି ତଥା ଉମାମହେଶ୍ୱରଙ୍କ ସେବା କରି କାଳାନ୍ତରରେ ସେ କଳିଙ୍ଗରାଜ ଅରିନ୍ଦମଙ୍କ ପୁତ୍ର ହେଲା । ସେଠାରେ ତା'ର ନାମ ହେଲା ଦମ । ଦମ ନିରନ୍ତର ଭଗବାନ ଶିବଙ୍କ ସେବାରେ ମଗ୍ନ ରହୁଥିଲା । ବାଳୁତ ଅବସ୍ଥା ହୋଇଥିଲେ ମଧ୍ୟ ସେ ଅନ୍ୟ ପିଲାମାନଙ୍କ ସଙ୍ଗେ ଶିବଙ୍କୁ ଭଜୁଥିଲା । ସେ କ୍ରମେ କ୍ରମେ ଯୁବାବସ୍ଥାକୁ ପ୍ରାପ୍ତ ହେଲା ଏବଂ ପିତାଙ୍କ ପରଲୋକଗମନ ପରେ ରାଜସିଂହାସନରେ ବସିଲା । ରାଜା ହୋଇ ସେ ଅତି ପ୍ରସନ୍ନ ମନରେ ଚ୍ଚାରିଆଡ଼େ ଶିବଧର୍ମର ପ୍ରଚ୍ଚାର କଲା ।

ଭୂପାଳ ଦମଙ୍କୁ ଦମନ କରିବା ଅନ୍ୟମାନଙ୍କ ପକ୍ଷେ କଠିନ ଥିଲା । ବ୍ରହ୍ମନ୍ ! ରାଜା ଦମ ଶିବାଳୟମାନଙ୍କରେ ଦୀପଦାନ କରିବା ବ୍ୟତୀତ ଅନ୍ୟ କିଛି ଧର୍ମ ଜାଣି ନ ଥିଲେ । ସେ ଆପଣା ରାଜ୍ୟର ସମସ୍ତ ଗ୍ରାମାଧ୍ୟକ୍ଷମାନଙ୍କୁ ଡାକି ଆଜ୍ଞା



ଦେଲେ ଯେ—"ଶିବମନ୍ଦିରରେ ଦୀପଦାନ କରିବା ସମସ୍ତଙ୍କ ପାଇଁ ଅନିବାର୍ଯ୍ୟ ହେବ। ଯେଉଁ ଗ୍ରାମାଧ୍ୟକ୍ଷଙ୍କ ଗାଆଁରେ ଯେତେ ଶିବମନ୍ଦିର ଥିବ, ସବୁଠାରେ ନିର୍ବିଘ୍ନରରେ ସର୍ବଦା ଦୀପ ଜଳିବା ଆବଶ୍ୟକ।" ଆଜୀବନ ଏହି ଧର୍ମ ପାଳନ କରିବାରୁ ରାଜା ଦମଙ୍କର ବିପୁଳ ଧନସମ୍ପତ୍ତି ହୋଇଗଲା। ସମୟକ୍ରମେ ସେ କାଳର କବଳିତ ହୋଇଗଲେ। ଦୀପଦାନ ବାସନା ହେତୁ ସେ ଶିବାଳୟମାନଙ୍କରେ ବହୁତ ଦୀପ ଜଳାଇଥିଲେ ଓ ତାହାର ଫଳସ୍ୱରୂପ ଜନ୍ମାନ୍ତରରେ ସେ ରତ୍ନମୟ ଦୀପଗୁଡ଼ିକର ପ୍ରଭାର ଆଶ୍ରୟ ହୋଇ ଅଳକାପୁରୀର ସ୍ୱାମୀ ହେଲେ। ଏହିରୂପେ ଭଗବାନ ଶିବଙ୍କ ପାଇଁ କରିଥିବା ସାମାନ୍ୟ ପୂଜା ବା ଆରାଧନା ସମୟାନୁସାରେ ମହାନ୍ ଫଳ ଦେଇଥାଏ। ଏକଥା ଜାଣି ଉତ୍ତମ ସୁଖ ଇଚ୍ଛା କରୁଥିବା ଲୋକମାନେ ଶିବଙ୍କ ଆରାଧନା କରିବା ଉଚିତ। ଦୀକ୍ଷିତ(ଯଜ୍ଞଦତ୍ତ)ର ପୁତ୍ର ସର୍ବଦା ନାନା ପ୍ରକାର ଅଧର୍ମରେ ବୁଡ଼ି ରହୁଥିଲା ଏବଂ ଦୈବଯୋଗକୁ ଧନ ଚୋରି କରିବା ଇଚ୍ଛାରେ ଶିବାଳୟରେ ପ୍ରବେଶ କରିଥିଲା; ପୁଣି ନିଜ ସ୍ୱାର୍ଥରେ ହିଁ ଆପଣା ବସ୍ତ୍ରକୁ ବତି ପରି ଜାଳି ଶିବଲିଙ୍ଗ ନିକଟସ୍ଥ ଅନ୍ଧକାର ଦୂର କରିଥିଲା। ତଥାପି ଏହି ସତ୍କର୍ମର ଫଳସ୍ୱରୂପ ସେ କଳିଙ୍ଗଦେଶର ରାଜା ହେଲା ଓ ଧର୍ମରେ ତା'ର ଅନୁରାଗ ହୋଇଗଲା। ପୁଣି ଦୀପ ପ୍ରଜ୍ୱଳନର ବାସନା ଉଦୟ ହେବା ଫଳରେ ସେ ଶିବାଳୟମାନଙ୍କରେ ଦୀପ ଜଳାଇବାର ବ୍ୟବସ୍ଥା କରି ଦିଗପାଳପଦ ପ୍ରାପ୍ତ ହେଲା। ଦେଖିଲ ତ ମୁନୀଶ୍ୱର ନାରଦ! କାହିଁ ତା'ର ସେହି କର୍ମ, ଆଉ କାହିଁ ଏତେ ବଡ଼ ପଦବୀ, ଯାହାକି ସେ ମାନବଧର୍ମା ପ୍ରାଣୀ ଏବେ ସେଠାରେ ଭୋଗ କରୁଛି। ବତ୍ସ! ଏହା ତ ଗଲା ଶିବଙ୍କର ତା' ପ୍ରତି ଅନୁଗ୍ରହର କଥା; ଏବେ ତା'ର କିପରି ଶିବଙ୍କ ସଙ୍ଗେ ମିତ୍ରତା ହେଲା, ତାହା ଶୁଣ।

ନାରଦ! ପ୍ରଥମ ପାଦ୍ମକଳ୍ପର କଥା। ମୋର ମାନସପୁତ୍ର ପୁଲସ୍ତ୍ୟଙ୍କ ଠାରୁ ବିଶ୍ରବାଙ୍କ ଜନ୍ମ ହେଲା ଏବଂ ବିଶ୍ରବାଙ୍କ ପୁତ୍ର ବୈଶ୍ରବଣ (କୁବେର) ହେଲେ। ସେ ପୂର୍ବକାଳରେ ଅତ୍ୟନ୍ତ ଉଗ୍ର ତପସ୍ୟା ଦ୍ୱାରା ତ୍ରିନେତ୍ରଧାରୀ ମହାଦେବଙ୍କୁ ଆରାଧନା କରି ବିଶ୍ୱକର୍ମାଙ୍କ ନିର୍ମିତ ଅଳକାପୁରୀକୁ ଉପଭୋଗ କଲେ। ସେହି କଳ୍ପ ବିତିଯାଇ ମେଘବାହନ କଳ୍ପ ଆରମ୍ଭ ହେବାରୁ ଦୀପଦାନ କରିଥିବା ସେହି ଯଜ୍ଞଦତ୍ତଙ୍କ ପୁତ୍ର ଅର୍ଥାତ୍ କୁବେର ଅତ୍ୟନ୍ତ ଦୁଃସହ ତପସ୍ୟା କଲେ। କେବଳ ଦୀପଦାନ ଫଳରେ ପ୍ରାପ୍ତ ଶିବଭକ୍ତିର ପ୍ରଭାବକୁ ଜାଣି ସେ ଶିବଙ୍କ ଚିତ୍‌ପ୍ରକାଶିକା କାଶୀପୁରୀକୁ ଗଲେ ଏବଂ ନିଜ ଚିତ୍ତରୂପୀ ରତ୍ନପ୍ରଦୀପରେ ଏକାଦଶ ରୁଦ୍ରଙ୍କୁ ଉଦ୍‌ବୋଧିତ କରି ଅନନ୍ୟଭକ୍ତି ଓ ସ୍ନେହରେ ତନ୍ମୟ ହୋଇ ତଥା ଶିବଙ୍କ ଧ୍ୟାନରେ ନିମଗ୍ନ ହୋଇ ନିଶ୍ଚଳଭାବରେ ବସିଗଲେ। ସେ ଏଭଳି ଶିବଲିଙ୍ଗ ସ୍ଥାପିତ କଲେ, ଯାହା ଶିବଙ୍କ ସହ ଐକ୍ୟସ୍ଥାପନର ପାତ୍ର, ତପରୂପୀ ଅଗ୍ନିରେ ବର୍ଦ୍ଧିତ, କାମକ୍ରୋଧାଦି ମହାବିଘ୍ନରୂପୀ ପତଙ୍ଗଙ୍କ ଆଘାତରୁ ମୁକ୍ତ, ପ୍ରାଣନିରୋଧରୂପୀ ବାୟୁଶୂନ୍ୟ ସ୍ଥାନରେ ନିଶ୍ଚଳଭାବରେ ପ୍ରକାଶିତ, ନିର୍ମଳ ଦୃଷ୍ଟିହେତୁ ସ୍ୱରୂପଠାରୁ ମଧ୍ୟ ଅଧିକ ନିର୍ମଳ ଯାହା ସଦ୍‌ଭାବରୂପୀ ପୁଷ୍ପଦ୍ୱାରା ପୂଜିତ ଅଟେ। ଏତାଦୃଶ ଶିବଲିଙ୍ଗ ପ୍ରତିଷ୍ଠା କରି ସେ ଏଭଳି ତପସ୍ୟାରେ ଲୀନ ହୋଇଗଲେ ଯେ ତାଙ୍କ ଦେହରେ କେବଳ ଅସ୍ଥିଚର୍ମମାତ୍ର ଅବଶେଷ ରହିଗଲା। ସେ ଦଶହଜାର ବର୍ଷପର୍ଯ୍ୟନ୍ତ ଏପରି ତପସ୍ୟା କଲେ। ଏହା ଫଳରେ ଭଗବାନ ବିଶ୍ୱନାଥ ବିଶାଳାକ୍ଷୀ ପାର୍ବତୀଦେବୀଙ୍କୁ ସଙ୍ଗରେ ଘେନି ତାଙ୍କୁ ଦର୍ଶନ

ଦେଲେ । ପ୍ରଭୁ ପ୍ରସନ୍ନଚିତ୍ତରେ ଅଳକାପତିଙ୍କ ଆଡ଼କୁ ଗ୍ଚହିଁଲେ । କୁବେର ଶିବଲିଙ୍ଗରେ ମନକୁ ଏକାଗ୍ର କରି କାଷ୍ଠ ପ୍ରତିମା ପରି ସ୍ଥିରଭାବରେ ବସିଥିଲେ । ଭଗବାନ ଶିବ ତାଙ୍କୁ କହିଲେ, ''ଅଳକାପତେ ! ମୁଁ ତୁମକୁ ବର ଦେବାକୁ ଉଦ୍ୟତ । ତୁମେ ତୁମର ମନୋରଥ ପ୍ରକାଶ କର ।''

ଏକଥା ଶୁଣି ତପୀବର କୁବେର ଆଖି ଖୋଲିବା ମାତ୍ରେ ଦେଖିଲେ ଯେ ତାଙ୍କ ସମ୍ମୁଖରେ ଉମାବଲ୍ଲଭ ଭଗବାନ ନୀଳକଣ୍ଠ ଉଭା ହୋଇଛନ୍ତି । ସେ ଉଦୟକାଳୀନ ସହସ୍ର ସୂର୍ଯ୍ୟ ପରି ତେଜସ୍ୱୀ ଦିଶୁଥାନ୍ତି ଏବଂ ତାଙ୍କ ମସ୍ତକରେ ଚନ୍ଦ୍ରମା ଜ୍ୟୋତ୍ସ୍ନା ବିଚ୍ଛୁରିତ କରୁଥାଏ । ଭଗବାନଙ୍କ ଜ୍ୟୋତି ପ୍ରଭାବରେ ତାଙ୍କ ଆଖି ଝଲସି ଉଠିଲା । ତାଙ୍କ ତେଜ ପ୍ରତିହତ ହୋଇଗଲା ଓ ସେ ନେତ୍ର ବନ୍ଦ କରି ମନୋରଥର ଅତୀତ ସେହି ଦେବେଶ୍ୱରଙ୍କୁ କହିଲେ, ''ପ୍ରଭୁ ! ମୋର ନେତ୍ରକୁ ଏଭଳି ଶକ୍ତି ଦିଅନ୍ତୁ, ଯଦ୍ଦ୍ୱାରା ମୁଁ ଆପଣଙ୍କ ଚରଣାରବିନ୍ଦର ଦର୍ଶନ ପାଇପାରିବି । ସ୍ୱାମିନ୍ ! ଆପଣଙ୍କର ପ୍ରତ୍ୟକ୍ଷ ଦର୍ଶନ ମିଳିବାଟା ମୋ ପାଇଁ ସବୁଠାରୁ ବଡ଼ ବର । ଈଶ ! ଅନ୍ୟ କୌଣସି ବରରେ ମୋର ଅବା କି ପ୍ରୟୋଜନ । ହେ ଚନ୍ଦ୍ରଶେଖର ! ଆପଣଙ୍କୁ ମୋର ନମସ୍କାର ।''

କୁବେରଙ୍କ କଥା ଶୁଣି ଦେବାଧିଦେବ ଉମାପତି ନିଜ କରକମଳ ସ୍ପର୍ଶରେ ତାଙ୍କୁ ଦର୍ଶନ କରିବାର ଶକ୍ତି ପ୍ରଦାନ କଲେ । ଦୃଷ୍ଟିଶକ୍ତି ମିଳିଯିବାରୁ ଯଜ୍ଞଦତ୍ତଙ୍କର ସେହି ପୁତ୍ର କୁବେର ବିସ୍ଫାରିତ ନେତ୍ରରେ ପ୍ରଥମେ ଉମାଙ୍କ ଆଡ଼କୁ ଗ୍ଚହିଁଲେ । ସେ ମନେ ମନେ ଭାବିଲେ, ''ଭଗବାନ ଶଙ୍କରଙ୍କ ସମୀପରେ ଏ ସର୍ବାଙ୍ଗସୁନ୍ଦରୀ ଜଣକ କିଏ? ଏ କି ତପ କରିଥିଲେ ଯେ ତାହା ମୋ ତପଠାରୁ ବି ବଳିଗଲା ! ଏ ରୂପ, ଏ ପ୍ରେମ, ଏ ସୌଭାଗ୍ୟ ଆଉ ଏ ଅସୀମ ଶୋଭା—ସବୁ କିଛି ତ ଅଦ୍ଭୁତ !'' ସେହି ବ୍ରାହ୍ମଣକୁମାର ବାରମ୍ବାର ଏହିପରି କହିବାକୁ ଲାଗିଲେ । ବାରମ୍ବାର ଏଭଳି କହି ସେ ଯେତେବେଳେ କ୍ରୂର ଦୃଷ୍ଟିରେ ତାଙ୍କ ଆଡ଼କୁ ଗ୍ଚହିଁଲେ, ବାମାଙ୍କ ଅବଲୋକନ ହେତୁ ତାଙ୍କର ବାମ ନେତ୍ର ଫୁଟିଗଲା । ତା'ପରେ ଦେବୀ ପାର୍ବତୀ ମହାଦେବଙ୍କୁ କହିଲେ, ''ପ୍ରଭୋ ! ଏ ଦୁଷ୍ଟ ତପସ୍ୱୀ ବାରମ୍ବାର ମୋ ଆଡ଼କୁ ଗ୍ଚହିଁ କ'ଣ ଏଭିଳି ସବୁ ଗପୁଛି? ଆପଣ ମୋ ତପସ୍ୟାର ତେଜକୁ ପ୍ରକଟ କରନ୍ତୁ ।'' ଦେବୀଙ୍କ କଥା ଶୁଣି ପ୍ରଭୁ ହସି ହସି କହିଲେ, ''ଉମେ ! ଏ ତୁମର ପୁତ୍ର । ଏ ତୁମକୁ କ୍ରୂର ଦୃଷ୍ଟିରେ ଦେଖୁ ନାହିଁ, ବରଂ ଏ ତୁମର ତପଃସମ୍ପତ୍ତିର ବର୍ଣ୍ଣନା କରୁଛି ।'' ଦେବୀଙ୍କୁ ଏଭଳି ବୁଝାଇ ଭଗବାନ ଶିବ ପୁନଃ ସେହି ବ୍ରାହ୍ମଣକୁମାରଙ୍କୁ କହିଲେ, ''ବତ୍ସ ! ମୁଁ ତୁମ ତପସ୍ୟାରେ ସନ୍ତୁଷ୍ଟ ହୋଇ ତୁମକୁ ବର ଦେଉଛି ଯେ ତୁମେ ସମସ୍ତ ନିଧିର ସ୍ୱାମୀ ଓ ଗୁହ୍ୟକଗଣଙ୍କ ରାଜା ହୁଅ । ହେ ସୁବ୍ରତ ! ଯକ୍ଷ, କିନ୍ନର ଓ ରାଜାଙ୍କର ମଧ୍ୟ ରାଜା ହୋଇ ପୁଣ୍ୟଜନଙ୍କ ପାଳକ ଓ ସମସ୍ତଙ୍କର ଧନଦାତା ହୁଅ । ମୋ ସହ ତୁମର ସର୍ବଦା ମୈତ୍ରୀ ରହିବ ଏବଂ ମୁଁ ନିତ୍ୟ ତୁମ ନିକଟରେ ନିବାସ କରିବି । ମିତ୍ର ! ପ୍ରୀତିବର୍ଦ୍ଧନ ନିମନ୍ତେ ମୁଁ ଅଳକା ନିକଟରେ ହିଁ ରହିବି । ଆସ, ଏ ଉମାଦେବୀଙ୍କ ଚରଣରେ ସାଷ୍ଟାଙ୍ଗ ପ୍ରଣାମ କର; କାରଣ ଏ ତୁମର ମାତା । ମହାଭକ୍ତ ଯଜ୍ଞଦତ୍ତକୁମାର ! ତୁମେ ଅତ୍ୟନ୍ତ ପ୍ରସନ୍ନ ଚିତ୍ତରେ ଏହାଙ୍କ ଚରଣରେ ପଡ଼ିଯାଅ ।''

ବ୍ରହ୍ମା କହୁଛନ୍ତି—ନାରଦ ! ଏହିରୂପେ ବର ଦେଇ ଭଗବାନ ଶିବ ପୁନଃ ପାର୍ବତୀଙ୍କୁ କହିଲେ, ''ହେ ଦେବେଶ୍ୱରୀ ! ଏହା ଉପରେ କୃପା କର ।

ହେ ତପସ୍ୱିନୀ ! ଏ ତୁମର ପୁତ୍ର ।'' ଶିବଙ୍କ କଥା ଶୁଣି ଜଗଦମ୍ବା ପାର୍ବତୀ ପ୍ରସନ୍ନଚିତ୍ତରେ ଯଜ୍ଞଦତ୍ତକୁମାରଙ୍କୁ କହିଲେ—''ବତ୍ସ ! ଭଗବାନ ଶିବଙ୍କ ଠାରେ ତୁମର ସଦା ନିର୍ମଳ ଭକ୍ତି ରହୁ । ତୁମର ବାମ ନେତ୍ର ଫୁଟି ଯାଇଛି । ତେଣୁ ତୁମର ଏକମାତ୍ର ପିଙ୍ଗଳ ନେତ୍ର ରହିବ । ମହାଦେବ ଯେଉଁ ବର ଦେଇଛନ୍ତି, ସେ ସମସ୍ତ ତୁମକୁ ଯଥାବତ୍ ପ୍ରାପ୍ତ ହେବ । ପୁତ୍ର ! ମୋ ରୂପ ପ୍ରତି ଈର୍ଷ୍ୟା କରିଥିବା ହେତୁ ତୁମେ କୁବେର ନାମରେ ପ୍ରସିଦ୍ଧ ହେବ ।'' ହେ ନାରଦ ! କୁବେରଙ୍କୁ ବର ଦେଇ ମହେଶ୍ୱର ଉମାଙ୍କ ସହିତ ନିଜ ବିଶ୍ୱେଶ୍ୱରଧାମକୁ ଗ୍ଭଲିଗଲେ । ଏହିରୂପେ କୁବେର ଭଗବାନ ଶିବଙ୍କ ମୈତ୍ରୀ ଲାଭ କଲେ ଓ ଅଳକାପୁରୀ ପାଖରେ ଯେଉଁ କୈଳାସ ପର୍ବତ ଅଛି, ତାହା ଭଗବାନଙ୍କର ନିବାସ ହୋଇଗଲା ।

(ଅଧ୍ୟାୟ ୧୭–୧୯)



## ଶିବଙ୍କର କୈଳାସ ଗମନ ଏବଂ ସୃଷ୍ଟିଖଣ୍ଡର ଉପସଂହାର

ବ୍ରହ୍ମା କହୁଛନ୍ତି—ହେ ନାରଦ ! କୁବେରଙ୍କ ତପୋବଳରେ ଭଗବାନ ଶିବଙ୍କର ଯେପରି କୈଳାସ ପର୍ବତକୁ ଆଗମନ ହେଲା, ସେ ପ୍ରସଙ୍ଗ ଶୁଣ । କୁବେରଙ୍କ ବରଦାତା ବିଶ୍ୱେଶ୍ୱର ଶିବ କୁବେରଙ୍କୁ ନିଧିପତି ହେବାର ବର ଦେଇ ନିଜ ସ୍ଥାନକୁ ଗ୍ଭଲିଯିବା ପରେ ମନେ ମନେ ଏହିପରି ଭାବିଲେ, ''ଯେଉଁ ରୁଦ୍ର ବ୍ରହ୍ମାଙ୍କ ଲଲାଟରୁ ପ୍ରକଟିତ ହୋଇଛନ୍ତି ଓ ସଂହାର କାର୍ଯ୍ୟ ସମ୍ପାଦନ କରୁଛନ୍ତି, ସେ ତ ମୋର ଅନ୍ୟତମ ସ୍ୱରୂପ । ତେଣୁ ସେହି ରୂପରେ ମୁଁ ଗୁହ୍ୟକଙ୍କ ନିବାସ ସ୍ଥାନ କୈଳାସ ପର୍ବତକୁ ଯିବି । ସେହି ରୂପରେ ମୁଁ କୁବେରଙ୍କ ମିତ୍ର ହୋଇ ସେଠାରେ ବିଳାସପୂର୍ବକ ରହିବି ଓ ମହାନ୍ ତପସ୍ୟା କରିବି ।''

ଶିବଙ୍କର ଏହି ଇଚ୍ଛାକୁ ଚିନ୍ତନ କରି ରୁଦ୍ରଦେବ କୈଳାସ ଯିବାକୁ ଉତ୍ସୁକ ହୋଇ ଡମ୍ବରୁ ବଜାଇଲେ । ଡମ୍ବରୁର ଉତ୍ସାହବର୍ଦ୍ଧନକାରୀ ଧ୍ୱନି ତ୍ରିଲୋକରେ ବ୍ୟାପ୍ତ ହୋଇଗଲା । ସେହି ଗମ୍ଭୀର ଓ ବିଚିତ୍ର ଧ୍ୱନି ଆହ୍ୱାନକାରୀ ଥିଲା ଅର୍ଥାତ୍ ଶୁଣୁଥିବା ବ୍ୟକ୍ତିକୁ ନିଜ ପାଖକୁ ଡାକୁଥିଲା । ତାହା ଶୁଣି ମୁଁ, ଭଗବାନ ବିଷ୍ଣୁ ତଥା ଅନ୍ୟ ସମସ୍ତ ଦେବଗଣ, ଋଷିଗଣ, ମୂର୍ତ୍ତିମାନ୍ ଆଗମ, ନିଗମ ଓ ସିଦ୍ଧଗଣ ଆସି ସେଠାରେ ଉପସ୍ଥିତ ହୋଇଗଲେ । ଦେବତା ଓ ଅସୁର ସମସ୍ତେ ଅତି ଉତ୍ସାହରେ ପହଞ୍ଚିଲେ । ଭଗବାନ ଶିବଙ୍କର ସମସ୍ତ ପାର୍ଷଦ ତଥା ସର୍ବଲୋକବନ୍ଦିତ ମହାଭାଗ ଗଣପାଳ—ଯେ ଯେଉଁଠି ଥିଲେ, ସମସ୍ତେ ଆସିଲେ ।

(ଏତିକି କହିବା ପରେ ବ୍ରହ୍ମା ସେହି ଅବସରରେ ଉପସ୍ଥିତ ହୋଇଥିବା ଗଣପାଳଙ୍କ ନାମ ସହିତ ସେମାନଙ୍କର ବିସ୍ତୃତ ପରିଚୟ ଦେଲେ । ତା'ପରେ କହିଲେ—) କୈଳାସ ଯିବାକୁ ଉତ୍ସୁକ ହୋଇ ସେଠାରେ ଅସଂଖ୍ୟ ବଳଶାଳୀ ଗଣପାଳ ଉପସ୍ଥିତ ହେଲେ । ସେମାନେ ସମସ୍ତେ ସହସ୍ର ଭୁଜରେ ଯୁକ୍ତ ଥିଲେ ଓ ମସ୍ତକରେ ଜଟାମୁକୁଟ ଥିଲା । ସମସ୍ତେ ଥିଲେ ଚନ୍ଦ୍ରଚୂଡ଼, ନୀଳକଣ୍ଠ ଓ ତ୍ରିଲୋଚନ; ପୁଣି ସମସ୍ତେ ହାର, କୁଣ୍ଡଳ, କେୟୂର ତଥା ମୁକୁଟ ଆଦିରେ ଅଳଂକୃତ ଥିଲେ । ସେମାନେ ମୋ ପରି, ଶ୍ରୀବିଷ୍ଣୁଙ୍କ ପରି ଓ ଇନ୍ଦ୍ରଙ୍କ ପରି ତେଜସ୍ୱୀ ଜଣାପଡୁଥିଲେ । ସେମାନେ ଅଣିମା ଆଦି ଅଷ୍ଟସିଦ୍ଧିରେ ଯୁକ୍ତ ଥିଲେ, ପୁଣି କୋଟିସୂର୍ଯ୍ୟ ପରି ଉଦ୍ଭାସିତ ହେଉଥିଲେ । ସେତିକିବେଳେ ଭଗବାନ ଶିବ ବିଶ୍ୱକର୍ମାଙ୍କୁ ସେହି ପର୍ବତ ଉପରେ ନିଜ ପାଇଁ

ଏବଂ ଅନ୍ୟାନ୍ୟ ଭକ୍ତଙ୍କ ପାଇଁ ଯଥାଯୋଗ୍ୟ ଆବାସ ନିର୍ମାଣ କରିବାକୁ ଆଦେଶ ଦେଲେ ।

ମୁନେ ! ବିଶ୍ୱକର୍ମା ଭଗବାନ ଶିବଙ୍କ ଆଜ୍ଞାରେ ସେହି ପର୍ବତ ଉପରେ ଖୁବ୍ ଶୀଘ୍ର ନାନା ପ୍ରକାର ଗୃହ ନିର୍ମାଣ କରିଦେଲେ । ତା'ପରେ ଶ୍ରୀହରିଙ୍କ ପ୍ରାର୍ଥନାକ୍ରମେ କୁବେରଙ୍କ ପ୍ରତି ଅନୁଗ୍ରହ କରି ଭଗବାନ ଶିବ ଆନନ୍ଦରେ କୈଳାସ ଗମନ କଲେ । ଉତ୍ତମ ମୁହୂର୍ତ୍ତରେ ସ୍ୱସ୍ଥାନରେ ପ୍ରବେଶ କରି ଭକ୍ତବତ୍ସଳ ପରମେଶ୍ୱର ଶିବ ସମସ୍ତଙ୍କୁ ପ୍ରେମ ପ୍ରଦାନ କରି ସନାଥ କରିଦେଲେ । ଏହାପରେ ବିଷ୍ଣୁ ପ୍ରମୁଖ ସମସ୍ତ ଦେବଗଣ, ମୁନିଗଣ ଓ ସିଦ୍ଧଗଣ ଆନନ୍ଦରେ ଶିବଙ୍କର ଅଭିଷେକ କଲେ । ହସ୍ତରେ ନାନା ପ୍ରକାର ଉପହାର ଧରି ସମସ୍ତେ ଜଣ ଜଣ କରି ତାଙ୍କୁ ପୂଜା କଲେ ଏବଂ ଅତି ଉତ୍ସାହରେ ତାଙ୍କର ଆଳତି କଲେ । ମୁନେ ! ସେତେବେଳେ ଆକାଶରୁ ପୁଷ୍ପବୃଷ୍ଟି ହେଲା, ତାହା ମଙ୍ଗଳସୂଚକ ଥିଲା । ସର୍ବତ୍ର ଜୟନାଦ ଓ ନମସ୍କାର ଶବ୍ଦ ଗୁଞ୍ଜିତ ହୋଇ ଉଠିଲା । ପ୍ରବଳ ଉତ୍ସାହ ସମସ୍ତଙ୍କ ସୁଖକୁ ବୃଦ୍ଧି କରୁଥିଲା । ଭଗବାନ ଶିବ ସିଂହାସନରେ ବିରାଜମାନ ହୋଇ ବିଷ୍ଣୁ ଆଦି ସକଳ ଦେବତାଙ୍କ ଦ୍ୱାରା କୃତ ଯଥୋଚିତ ସେବା-ଅର୍ଚ୍ଚନା ଗ୍ରହଣ କରି ସୁଶୋଭିତ ହେଉଥିଲେ । ଦେବତା ପ୍ରଭୃତି ସାର୍ଥକ ଓ ପ୍ରିୟ ବଚନରେ ଲୋକ-କଲ୍ୟାଣକାରୀ ଶିବଙ୍କର ପୃଥକ୍ ପୃଥକ୍ ସ୍ତବନ କଲେ । ସର୍ବେଶ୍ୱର ପ୍ରଭୁ ପ୍ରସନ୍ନ ଚିତ୍ତରେ ସେହି ସ୍ତବନ ଶୁଣି ସେମାନଙ୍କୁ ମନୋବାଞ୍ଛିତ ବର ଓ ଅଭୀଷ୍ଟ ବସ୍ତୁ ପ୍ରଦାନ କଲେ । ମୁନେ ! ତଦନନ୍ତର ଆମେ ସକଳ ଦେବତା, ଭଗବାନ ବିଷ୍ଣୁ ଏବଂ ସମସ୍ତ ମୁନିଗଣ ମନୋବାଞ୍ଛିତ ଫଳ ପାଇ ଆନନ୍ଦ ମନରେ ଶିବାଜ୍ଞାରେ ନିଜ ନିଜ ଧାମକୁ ଫେରିଗଲୁ । କୁବେର ମଧ୍ୟ ଶିବାଜ୍ଞା ପାଇ ନିଜ ସ୍ଥାନକୁ ଗ୍ଲିଗଲେ । ତା'ପରେ ସର୍ବତନ୍ତ୍ରସ୍ୱତନ୍ତ୍ର ଭଗବାନ ଶମ୍ଭୁ ଯୋଗ ଓ ଧ୍ୟାନରେ ମନୋନିବେଶ କରି ପର୍ବତପ୍ରବର କୈଳାସରେ ରହିବାକୁ ଲାଗିଲେ । କିଛି କାଳ ପତ୍ନୀ ବିନା ବିତାଇ ପରେ ପରମେଶ୍ୱର ଶିବ ଦକ୍ଷକନ୍ୟା ସତୀଙ୍କୁ ପତ୍ନୀରୂପରେ ପ୍ରାପ୍ତ ହେଲେ । ଦେବର୍ଷେ ! ତା'ପରେ ମହେଶ୍ୱର ଲୋକାଗ୍ରହପରାୟଣ ହୋଇ ଦକ୍ଷକୁମାରୀ ସତୀଙ୍କ ସଙ୍ଗେ ସୁଖରେ ବିହାର କଲେ । ମୁନୀଶ୍ୱର ! ମୁଁ ତୁମକୁ ରୁଦ୍ରଙ୍କ ଅବତାର ବିଷୟରେ କହିଦେଲି । ଏଥିସହିତ ତାଙ୍କର କୈଳାସ ଆଗମନ ଓ କୁବେରଙ୍କ ସଙ୍ଗେ ମୈତ୍ରୀ ହେବା ପ୍ରସଙ୍ଗ ମଧ୍ୟ ବର୍ଣ୍ଣନା କଲି । କୈଳାସ ପର୍ବତରେ ହୋଇଥିବା ତାଙ୍କର ଜ୍ଞାନବର୍ଦ୍ଧିନୀ ଲୀଳା ବିଷୟରେ ମଧ୍ୟ ଚର୍ଚ୍ଚା କଲି । ଏହା ଇହଲୋକ ଓ ପରଲୋକରେ ସଦା ଅଭୀଷ୍ଟ ଫଳ ପ୍ରଦାନକାରୀ । ଯେ ଏକାଗ୍ରଚିତ୍ତ ହୋଇ ଏହି ପ୍ରସଙ୍ଗ ପଠନ-ଶ୍ରବଣ କରେ ସେ ଇହଲୋକରେ ଭୋଗ ଓ ପରଲୋକରେ ମୋକ୍ଷ ଲାଭ କରେ ।

(ଅଧ୍ୟାୟ ୨୦)

❀❀❀

## ॥ ରୁଦ୍ରସଂହିତାର ସୃଷ୍ଟିଖଣ୍ଡ ସମ୍ପୂର୍ଣ୍ଣ ॥



# ରୁଦ୍ରସଂହିତା, ଦ୍ୱିତୀୟ (ସତୀ) ଖଣ୍ଡ

## ନାରଦଙ୍କ ପ୍ରଶ୍ନ ଏବଂ ଉତ୍ତରରୂପେ ବ୍ରହ୍ମାଙ୍କ ମୁଖରୁ ଶିବ ଓ ସତୀଙ୍କ ଚରିତ ପ୍ରାରମ୍ଭ, ସଦାଶିବଙ୍କ ଠାରୁ ତ୍ରିଦେବଙ୍କ ଉତ୍ପତ୍ତି ତଥା ବ୍ରହ୍ମାଙ୍କ ଠାରୁ ଦେବତାଦିଙ୍କ ସୃଷ୍ଟି ପରେ ଗୋଟିଏ ନାରୀ ଓ ଗୋଟିଏ ପୁରୁଷର ପ୍ରାକଟ୍ୟ ପ୍ରସଙ୍ଗ

ନାରଦ କହିଲେ—ମହାଭାଗ ! ମହାପ୍ରଭୋ ! ହେ ବିଧାତା ! ଆପଣଙ୍କ ମୁଖାରବିନ୍ଦରୁ ମଙ୍ଗଳକର ଶମ୍ଭୁଚରିତ ଯେତେ ଶୁଣିଲେ ବି ମୋ ମନ ସନ୍ତୁଷ୍ଟ ହେଉ ନାହିଁ । ତେଣୁ ଭଗବାନ ଶିବଙ୍କର ସମସ୍ତ ଶୁଭ ଚରିତ ମୋତେ କୁହନ୍ତୁ । ସମସ୍ତ ବିଶ୍ୱର ସ୍ରଷ୍ଟା ବ୍ରହ୍ମଦେବ ! ମୁଁ ସତୀଙ୍କ କୀର୍ତ୍ତି ସହ ସଂଯୁକ୍ତ ଶିବଙ୍କ ଦିବ୍ୟ ଚରିତ୍ର ଶୁଣିବାକୁ ଚାହୁଁଛି । ଶୋଭାଶାଳିନୀ ସତୀ କିଭଳି ଦକ୍ଷପତ୍ନୀଙ୍କ ଗର୍ଭରୁ



ଉତ୍ପନ୍ନ ହେଲେ? ମହାଦେବ ବିବାହ କରିବାର ନିଷ୍ପତ୍ତି କିପରି ନେଲେ? ପୂର୍ବକାଳରେ ଦକ୍ଷଙ୍କ ପ୍ରତି ରୋଷ କରି ସତୀ କିଭଳି ଆପଣା ଦେହତ୍ୟାଗ କଲେ? ସେ ଚେତନାକାଶକୁ ପ୍ରାପ୍ତ ହୋଇ ପୁନଃ କେମିତି ହିମାଳୟଙ୍କ କନ୍ୟା ହେଲେ? ପାର୍ବତୀ କେଉଁ ପ୍ରକାର ଉଗ୍ର ତପସ୍ୟା କଲେ ଏବଂ କିପରି ତାଙ୍କର ବିବାହ ହେଲା? କନ୍ଦର୍ପନାଶନ ଭଗବାନ ଶିବଙ୍କ ଅର୍ଦ୍ଧାଙ୍ଗରେ ସେ କିପରି ସ୍ଥାନ ପାଇଲେ? ମହାମତେ ! ଏ ସମସ୍ତ ବୃତ୍ତାନ୍ତକୁ ଆପଣ ବିସ୍ତାର କରି କୁହନ୍ତୁ । ଆପଣଙ୍କ ପରି ଏ ସଂଶୟର ନିବାରଣକାରୀ ଅନ୍ୟ କେହି ନାହିଁ କି ହେବ ନାହିଁ ।

ବ୍ରହ୍ମା କହିଲେ—ମୁନିବର ! ଦେବୀ ସତୀ ଓ ଭଗବାନ ଶଙ୍କରଙ୍କର ଶୁଭ ଯଶ ପରମ ପାବନ, ଦିବ୍ୟ ତଥା ପରମ ଗୋପନୀୟ । ତୁମେ ମୋଠାରୁ ତାହା ଶ୍ରବଣ କର । ପୂର୍ବକାଳରେ ଭଗବାନ ଶିବ ନିର୍ଗୁଣ, ନିର୍ବିକଳ୍ପ, ନିରାକାର, ଶକ୍ତିରହିତ, ଚିନ୍ମୟ ତଥା ସତ୍ ଓ ଅସତ୍‌ର ଉର୍ଦ୍ଧ୍ୱରେ ପ୍ରତିଷ୍ଠିତ ଥିଲେ । ସେ ହିଁ ସଗୁଣ ଓ ଶକ୍ତିମାନ୍ ହୋଇ ବିଶିଷ୍ଟ ରୂପ ଧାରଣ କଲେ । ତାଙ୍କ ସହ ଭଗବତୀ ଉମା ବିରାଜମାନ ଥିଲେ । ବିପ୍ରବର ! ଶିବ ଦିବ୍ୟ ଆକୃତିରେ ସୁଶୋଭିତ ହେଉଥିଲେ । ତାଙ୍କ ମନରେ କୌଣସି ବିକାର ନ ଥିଲା । ସେ ଆପଣା ପରାତ୍ପର ସ୍ୱରୂପରେ ପ୍ରତିଷ୍ଠିତ ଥିଲେ । ମୁନିଶ୍ରେଷ୍ଠ ! ତାଙ୍କ ବାମ ଅଙ୍ଗରୁ ଭଗବାନ ବିଷ୍ଣୁ, ଦକ୍ଷିଣ ଅଙ୍ଗରୁ ବ୍ରହ୍ମା (ମୁଁ) ଓ ମଧ୍ୟ ଅଙ୍ଗ

ବା ହୃଦୟରୁ ରୁଦ୍ରଦେବ ପ୍ରକଟ ହେଲେ । ମୁଁ ସୃଷ୍ଟିକର୍ତ୍ତା ହେଲି, ଭଗବାନ ବିଷ୍ଣୁ ଜଗତର ପାଳନକର୍ତ୍ତା ହେଲେ ଓ ସ୍ୱୟଂ ରୁଦ୍ର ସଂହାର କାର୍ଯ୍ୟ ସମ୍ଭାଳିଲେ । ଏହିରୂପେ ଭଗବାନ ସଦାଶିବ ସ୍ୱୟଂ ତିନିରୂପ ଧାରଣ କଲେ । ତାଙ୍କରି ଆରାଧନା କରି ମୁଁ ଲୋକପିତାମହ ବ୍ରହ୍ମା ହୋଇ ଦେବତା, ଅସୁର ଓ ମନୁଷ୍ୟାଦି ସମସ୍ତ ଜୀବଙ୍କୁ ସୃଷ୍ଟି କଲି । ଦକ୍ଷାଦି ପ୍ରଜାପତି ଓ ଶ୍ରେଷ୍ଠ ଦେବଗଣଙ୍କୁ ସୃଷ୍ଟି କରି ମୁଁ ଆନନ୍ଦ ଅନୁଭବ କଲି ଏବଂ ନିଜକୁ ବହୁତ ଶ୍ରେଷ୍ଠ ମଣିଲି । ମୁନେ ! ମରୀଚି, ଅତ୍ରି, ପୁଲହ, ପୁଲସ୍ତ୍ୟ, ଅଙ୍ଗିରା, କ୍ରତୁ, ବଶିଷ୍ଠ, ନାରଦ, ଦକ୍ଷ ଓ ଭୃଗୁ —ଏହି ମହାନ୍ ପ୍ରଭାବଶାଳୀ ମାନସପୁତ୍ରଙ୍କୁ ଉତ୍ପନ୍ନ କରିବା ପରେ ମୋ ହୃଦୟରୁ ଏକ ଅତ୍ୟନ୍ତ ମନୋହାରିଣୀ ରୂପବତୀ ସୁନ୍ଦରୀ ନାରୀ ଉତ୍ପନ୍ନ ହେଲା; ତା'ର ନାମ ହେଲା 'ସନ୍ଧ୍ୟା' । ସେ ଦିନବେଳା କ୍ଷୀଣ ହୋଇଯାଉଥିଲା



ଏବଂ ସାୟଂକାଳରେ ତା'ର ରୂପ-ସୌନ୍ଦର୍ଯ୍ୟ ଉଦ୍ଭାସିତ ହୋଇ ଉଠୁଥିଲା; କାରଣ ସେ ଥିଲା ମୂର୍ତ୍ତିମତୀ ସାୟଂ-ସଂଧ୍ୟା ଏବଂ ସେ ନିରନ୍ତର କୌଣସି ମନ୍ତ୍ର ଜପ କରୁଥିଲା । ସେହି ସୁନ୍ଦର ଭ୍ରୂଲତାସମ୍ପନ୍ନା ନାରୀ ଥିଲା ସୌନ୍ଦର୍ଯ୍ୟର ଚରମସୀମା ଓ ମୁନିମନମୋହିନୀ ।

ଇତ୍ୟବସରରେ ମୋ ମନରୁ ଗୋଟିଏ ମନୋହର ପୁରୁଷ ମଧ୍ୟ ପ୍ରକଟ ହେଲା । ସେ ଥିଲା ଅତି ଅଦ୍ଭୁତ । ତା'ର ଶରୀରର ମଧ୍ୟଭାଗ (କଟିପ୍ରଦେଶ) ଥିଲା ପତଳା, ଦନ୍ତପଙ୍କ୍ତି ଥିଲା ଅତି ସୁନ୍ଦର ଏବଂ ନେତ୍ର ଥିଲା ପଦ୍ମ ପରି ଶୋଭନୀୟ । ତା'ର ଅଙ୍ଗରୁ ମଦମତ୍ତ ହସ୍ତୀର ଗନ୍ଧ ପ୍ରସରିତ ହେଉଥିଲା । ତା' ଅଙ୍ଗରେ ଲେପିତ କେଶରର ସୁଗନ୍ଧ ନାସିକାକୁ ତୃପ୍ତି ପ୍ରଦାନ କରୁଥିଲା । ଏତାଦୃଶ ପୁରୁଷକୁ ଦେଖି ମୋର ଦକ୍ଷାଦି ପୁତ୍ରମାନେ ଅତ୍ୟନ୍ତ ଉତ୍ସୁକ ହୋଇଉଠିଲେ । ସେମାନଙ୍କ ମନରେ ବିସ୍ମୟ ଜାତ ହେଲା । ସେହି ପୁରୁଷ ମୋତେ ଜଗତର ସ୍ରଷ୍ଟା ବୋଲି ଜାଣି ବିନୟରେ ନତମସ୍ତକ ହୋଇ ପ୍ରଣାମ କରି କହିଲା—

ସେହି ପୁରୁଷ କହିଲା—ବ୍ରହ୍ମନ୍ ! ମୁଁ କେଉଁ କାର୍ଯ୍ୟ ସାଧିତ କରିବି? ମୋ ପାଇଁ ଯେଉଁ କାର୍ଯ୍ୟ ଯୋଗ୍ୟ ତହିଁରେ ମୋତେ ନିଯୁକ୍ତ କରନ୍ତୁ । ହେ ବିଧାତା ! ଏବେ ଆପଣ ହିଁ ସବୁଠୁ ଅଧିକ ମାନନୀୟ ଓ ଯୋଗ୍ୟପୁରୁଷ । ଏହି ଜଗତ ଆପଣଙ୍କ ଦ୍ୱାରା ହିଁ ଶୋଭିତ ହେଉଛି ।

ବ୍ରହ୍ମା କହିଲେ—ଭଦ୍ରପୁରୁଷ ! ତୁମେ ତୁମର ଏହି ସ୍ୱରୂପରେ ପୁଷ୍ପନିର୍ମିତ ପଞ୍ଚଶର ଦ୍ୱାରା ସ୍ତ୍ରୀ ଓ ପୁରୁଷଙ୍କୁ ମୋହିତ କରି ସୃଷ୍ଟିର ସନାତନ କାର୍ଯ୍ୟ ସମ୍ଭାଳ । ତ୍ରିଭୁବନରେ ଦେବତାଦି କୌଣସି ଜୀବ ତୁମର ତିରସ୍କାର କରିବାକୁ ସମର୍ଥ ହେବେ ନାହିଁ । ତୁମେ ଗୁପ୍ତରୂପେ ପ୍ରାଣୀଙ୍କ ହୃଦୟରେ ପ୍ରବେଶ କରି ସର୍ବଦା ସୁଖର କାରଣ ହୋଇ ସୃଷ୍ଟିର ସନାତନ କାର୍ଯ୍ୟ ଚାଲୁ ରଖ । ପ୍ରାଣୀଙ୍କର ମନ ହିଁ

ଅନାୟାସରେ ତୁମ ପୁଷ୍ପଶରର ଲକ୍ଷ୍ୟ ହୋଇଯିବ ଓ ତୁମେ ନିରନ୍ତର ସେମାନଙ୍କୁ ମଦମତ୍ତ କରି ରଖିବ । ଏହି କାର୍ଯ୍ୟଭାର ମୁଁ ତୁମକୁ ଅର୍ପଣ କଲି । ଏହି କାର୍ଯ୍ୟ ସୃଷ୍ଟିର ପ୍ରବର୍ତ୍ତକ ହେବ; ଏବଂ ତୁମର ଯଥାର୍ଥ ନାମ କ'ଣ ହେବ, ତାହା ମୋର ଏ ପୁତ୍ରମାନେ କହିବେ ।

ହେ ସୁରଶ୍ରେଷ୍ଠ ! ଏପରି କହିବା ପରେ ନିଜ ପୁତ୍ରଙ୍କ ମୁଖ ଆଡ଼କୁ ଦୃଷ୍ଟିପାତ କରି ମୁଁ କ୍ଷଣକ ପାଇଁ ମୋର ପଦ୍ମ-ଆସନ ଉପରେ ନୀରବରେ ବସିଗଲି । (ଅଧ୍ୟାୟ ୧-୨)

★★★

## କାମଦେବଙ୍କ ନାମ ନିର୍ଦ୍ଧାରଣ ଓ ରତିଙ୍କ ସହ ତାଙ୍କର ବିବାହ, କୁମାରୀ ସନ୍ଧ୍ୟାର ଚରିତ ଏବଂ ବଶିଷ୍ଠମୁନିଙ୍କ ଦ୍ୱାରା ଚନ୍ଦ୍ରଭାଗ ପର୍ବତ ଉପରେ ସନ୍ଧ୍ୟାକୁ ତପସ୍ୟାର ବିଧିନିର୍ଦ୍ଦେଶ

ବ୍ରହ୍ମା କହୁଛନ୍ତି—ମୁନେ ! ତା'ପରେ ମୋର ଅଭିପ୍ରାୟକୁ ଜାଣୁଥିବା ମରୀଚି ପ୍ରଭୃତି ପୁତ୍ରମାନେ ସେହି ପୁରୁଷର ଉଚିତ ନାମ ରଖିଲେ । ଦକ୍ଷାଦି ପ୍ରଜାପତି ତାହାର ମୁଖକୁ ଦେଖିବାମାତ୍ରେ ତାହାର ଚରିତ୍ର ବିଷୟରେ ମଧ୍ୟ ସମସ୍ତ ବୃତ୍ତାନ୍ତ ଜାଣିପାରି ତାକୁ ତାହାର ରହିବା ସ୍ଥାନ ଓ ପତ୍ନୀ ପ୍ରଦାନ କଲେ । ମୋର ପୁତ୍ର ମରୀଚି ଆଦି ଋଷିମାନେ ତାହାର ନାମ ସ୍ଥିର କରି ତାକୁ ଏହି ଯୁକ୍ତିଯୁକ୍ତ କଥା କହିଲେ—

ଋଷିମାନେ କହିଲେ—ତୁମେ ଜନ୍ମ ନେବାମାତ୍ରେ ଆମର ମନକୁ ମନ୍ଥି ଦେଇଛ, ତେଣୁ ଜଗତରେ ତୁମେ 'ମନ୍ମଥ' ନାମରେ ବିଖ୍ୟାତ ହେବ । ମନୋଭବ ! ତ୍ରିଲୋକରେ ତୁମେ ଇଚ୍ଛାନୁସାରେ ରୂପ ଧାରଣ କରିବାରେ ସକ୍ଷମ ହୁଅ । ତୁମ ପରି ସୁନ୍ଦର କେହି ନାହିଁ, ଏଣୁ କାମରୂପ ହୋଇଥିବାରୁ ତୁମେ 'କାମ' ନାମରେ ମଧ୍ୟ ବିଖ୍ୟାତ ହୁଅ । ଲୋକଙ୍କୁ ମଦମତ୍ତ କରି ଦେଉଥିବାରୁ ତୁମର ଅନ୍ୟ ଏକ ନାମ 'ମଦନ' ମଧ୍ୟ ହେବ । ତୁମେ ବଡ଼ ଦର୍ପରେ ଉତ୍ପନ୍ନ ହୋଇଛ, ତେଣୁ ତୁମେ 'ଦର୍ପକ' ବୋଲାଇବ ଏବଂ ସଦର୍ପ ହେବା କାରଣରୁ ଜଗତରେ 'କନ୍ଦର୍ପ' ନାମରେ ତୁମର ଖ୍ୟାତି ହେବ । ସମସ୍ତ ଦେବତାଙ୍କର ସମ୍ମିଳିତ ବଳ ପରାକ୍ରମ ମଧ୍ୟ ତୁମ ଆଗରେ ହାର ମାନିବ । ତେଣୁ ସବୁସ୍ଥାନରେ ତୁମର ଅଧିକାର ହେବ ଏବଂ ତୁମେ ସର୍ବବ୍ୟାପୀ ହେବ । ଆଦିପ୍ରଜାପତି ଦକ୍ଷ ସ୍ୱୟଂ ତୁମକୁ ତୁମ ଇଚ୍ଛା ଅନୁରୂପ ପତ୍ନୀ ପ୍ରଦାନ



କରିବେ । ସେହି ପତ୍ନୀ ତୁମର କାମିନୀ ହେବ (ତୁମକୁ ବହୁତ ପ୍ରେମ କରିବ) ।

ବ୍ରହ୍ମା କହିଲେ—ମୁନେ ! ତା'ପରେ ମୁଁ ସେଠାରୁ ଅଦୃଶ୍ୟ ହୋଇଗଲି । ଏହାପରେ ଦକ୍ଷ

ମୋ କଥାକୁ ସ୍ମରଣ କରି କନ୍ଦର୍ପଙ୍କୁ କହିଲେ– ''କାମଦେବ ! ମୋ ଦେହରୁ ଉତ୍ପନ୍ନ ଏ କନ୍ୟା ରୂପ ଓ ଗୁଣରେ ଅତି ସୁନ୍ଦର । ଏହାକୁ ତୁମେ ପତ୍ନୀରୂପେ ଗ୍ରହଣ କର । ଗୁଣଦୃଷ୍ଟିରୁ ଏ ତୁମ ପାଇଁ ସର୍ବଥା ଯୋଗ୍ୟା । ମହାତେଜସ୍ୱୀ ମନୋଭବ ! ଏ ସର୍ବଦା ତୁମର ସଙ୍ଗିନୀ ହେବ, ତୁମ ରୁଚି ଅନୁସାରେ ଚଳିବ ଏବଂ ଧର୍ମଦୃଷ୍ଟିରୁ ସଦା ତୁମର ଅଧୀନ ହୋଇ ରହିବ ।''

ଏଭଳି କହି ଦକ୍ଷ ତାଙ୍କ ସ୍ୱେଦରୁ ଉତ୍ପନ୍ନ ହୋଇଥିବା ସେହି କନ୍ୟାକୁ 'ରତି' ନାମ ଦେଇ ନିଜ ଆଗରେ ବସାଇଲେ ଏବଂ କାମଦେବଙ୍କ ହସ୍ତରେ ତାକୁ ସମର୍ପି ଦେଲେ । ନାରଦ ! ଦକ୍ଷଙ୍କ କନ୍ୟା ରତି ଅତି ରମଣୀୟା ଓ ମୁନିଙ୍କର ମନକୁ ମଧ୍ୟ ମୋହି ନେବାକୁ ସକ୍ଷମ ଥିଲା । ତା' ସଙ୍ଗେ



ବିବାହ କରି କାମଦେବଙ୍କୁ ମଧ୍ୟ ଆନନ୍ଦ ଲାଭ ହେଲା । ସୁନ୍ଦରୀ ରତିକୁ ଦେଖି ଓ ତା' ହାବଭାବରେ ଅନୁରଞ୍ଜିତ ହୋଇ କାମଦେବ ମୋହିତ ହୋଇଗଲେ । ତାତ ! ସେତେବେଳେ ବହୁତ ବଡ଼ ଆନନ୍ଦଦାୟକ ଉତ୍ସବ ପାଳନ କରାଗଲା । ପ୍ରଜାପତି ଦକ୍ଷ ଏହି ଭାବନାରେ ବହୁତ ପ୍ରସନ୍ନ ଥିଲେ ଯେ ତାଙ୍କ କନ୍ୟା ବିବାହ କରି ସୁଖୀ ହେଲା । କାମଦେବଙ୍କୁ ମଧ୍ୟ ସୁଖ ମିଳିଲା । ତାଙ୍କର ସମସ୍ତ ଦୁଃଖ ଦୂର ହୋଇଗଲା । ଦକ୍ଷକନ୍ୟା ରତି ମଧ୍ୟ କାମଦେବଙ୍କୁ ପାଇ ପ୍ରମୁଦିତ ହେଲା । ସନ୍ଧ୍ୟାକାଳରେ ମନୋହାରିଣୀ ବିଦ୍ୟୁନ୍ମାଳା ସଙ୍ଗେ ମେଘ ଶୋଭା ପାଇଲା ପରି ରତି ସଙ୍ଗରେ ପ୍ରିୟଭାଷୀ କାମଦେବ ଅତ୍ୟନ୍ତ ଶୋଭା ପାଇଲେ । ଯୋଗୀଜନ ଯେପରି ଆପଣା ଯୋଗବିଦ୍ୟାକୁ ହୃଦୟରେ ଧାରଣ କରନ୍ତି, ରତିପତି କାମଦେବ ସେହିପରି ରତି ପ୍ରତି ଅତ୍ୟନ୍ତ ଅନୁରକ୍ତ ହୋଇ ତାକୁ ନିଜ ହୃଦୟ-ସିଂହାସନରେ ବସାଇଲେ । ଚନ୍ଦ୍ରବଦନା ରତି ମଧ୍ୟ ଏଭଳି ଶ୍ରେଷ୍ଠ ସ୍ୱାମୀଙ୍କୁ ପାଇବାରୁ ଶ୍ରୀହରିଙ୍କୁ ପାଇ ପୂର୍ଣ୍ଣଚନ୍ଦ୍ରାନନା ଲକ୍ଷ୍ମୀ ଶୋଭା ପାଇବା ପରି ସୁଶୋଭିତା ହେଲା ।

ସୂତ କହୁଛନ୍ତି–ବ୍ରହ୍ମାଙ୍କ ମୁଖରୁ ଏ ପ୍ରସଙ୍ଗ ଶୁଣି ମୁନିବର ନାରଦ ମନେ ମନେ ଅତି ପ୍ରସନ୍ନ ହେଲେ ଏବଂ ଭଗବାନ ଶଙ୍କରଙ୍କୁ ସ୍ମରଣ କରି ହର୍ଷପୂର୍ବକ କହିଲେ, ''ମହାଭାଗ ! ବିଷ୍ଣୁଶିଷ୍ୟ ! ମହାମତେ ! ବିଧାତଃ ! ଆପଣ ଭଗବାନ ଚନ୍ଦ୍ରମୌଳିଙ୍କର ବହୁତ ଅଦ୍ଭୁତ ଲୀଳା ବର୍ଣ୍ଣନା କଲେ । ଏବେ ମୁଁ ଜାଣିବାକୁ ଚାହୁଁଛି ଯେ ବିବାହ ପରେ ଯେତେବେଳେ କାମଦେବ ଆନନ୍ଦରେ ନିଜ ଗୃହକୁ ଚାଲିଗଲେ, ଦକ୍ଷ ମଧ୍ୟ ଆପଣା ଗୃହକୁ ଫେରିଗଲେ ଏବଂ ଆପଣଙ୍କ ମାନସ-ପୁତ୍ରମାନେ ମଧ୍ୟ ନିଜ ନିଜ ସ୍ଥାନକୁ ଚାଲିଗଲେ, ସେତେବେଳେ ପିତୃଗଣଙ୍କ ଉତ୍ପନ୍ନକାରିଣୀ ସନ୍ଧ୍ୟା କେଉଁଠାକୁ ଗଲା? ସେ କ'ଣ କଲା ଓ କାହା ସଙ୍ଗେ ତା'ର ବିବାହ ହେଲା? ସଂଧ୍ୟାର ଏହି ଚରିତ ମୋତେ ବିଶେଷରୂପେ କହନ୍ତୁ ।''

ବ୍ରହ୍ମା କହିଲେ–ମୁନେ ! ସନ୍ଧ୍ୟାର ଚରିତ ଶୁଣ । ସେହି ଚରିତ ଶୁଣି ସମସ୍ତ କାମିନୀ ସତୀ-ସାଧ୍ୱୀ ହୋଇପାରିବେ । ସନ୍ଧ୍ୟା ପ୍ରଥମେ ମୋର ମାନସକନ୍ୟା ଥିଲା, ସେ ତପସ୍ୟା ଦ୍ୱାରା ଦେହତ୍ୟାଗ କରି ପରେ ମେଧାତିଥିଙ୍କର ବୁଦ୍ଧିମତୀ କନ୍ୟା ଅରୁନ୍ଧତୀ ନାମରେ ବିଖ୍ୟାତ ହେଲା । ଉତ୍ତମ ବ୍ରତ ପାଳନ କରି ସେ ବ୍ରହ୍ମା, ବିଷ୍ଣୁ ଓ ମହେଶଙ୍କ ପ୍ରେରଣାରେ ଶ୍ରେଷ୍ଠବ୍ରତଧାରୀ ମହାତ୍ମା ବଶିଷ୍ଠଙ୍କୁ ସ୍ୱାମୀରୂପେ ବରଣ କଲା । ସେହି ସୌମ୍ୟରୂପା ଦେବୀ ସମସ୍ତଙ୍କର ବନ୍ଦନୀୟା ଓ ପୂଜନୀୟା ହୋଇ ଶ୍ରେଷ୍ଠ ପତିବ୍ରତାରୂପେ ବିଖ୍ୟାତ ହେଲା ।

ନାରଦ ପଚ୍ଚାରିଲେ–ସନ୍ଧ୍ୟା କିପରି, କେଉଁଠି ଓ କେଉଁଥିପାଇଁ ତପସ୍ୟା କଲା? କେଉଁପରି ଦେହତ୍ୟାଗ କରି ସେ ମେଧାତିଥିଙ୍କର କନ୍ୟା ହେଲା? ବ୍ରହ୍ମା, ବିଷ୍ଣୁ ଓ ମହେଶଙ୍କ କଥନ ଅନୁସାରେ ସେ କେଉଁ ପ୍ରକାରେ ଶ୍ରେଷ୍ଠବ୍ରତଧାରୀ ବଶିଷ୍ଠଙ୍କୁ ସ୍ୱାମୀରୂପେ ବରଣ କଲା? ପିତାମହ ! ଏସବୁ ମୁଁ ବିସ୍ତୃତରୂପେ ଶୁଣିବାକୁ ଚାହେଁ । ଅରୁନ୍ଧତୀଙ୍କର ଏହି କୁତୂହଳପୂର୍ଣ୍ଣ ଚରିତକୁ ଆପଣ ଯଥାର୍ଥ ରୀତିରେ ବର୍ଣ୍ଣନା କରନ୍ତୁ ।

ବ୍ରହ୍ମା କହିଲେ–ମୁନେ ! ସାଧ୍ୱୀ ସଂଧ୍ୟା ମନରେ ଥରେ କାମଭାବ ଆସିଯାଇଥିଲା, ସେଥିପାଇଁ ସେ ସଂକଳ୍ପ କଲା–"ମୁଁ ବୈଦିକମାର୍ଗ ଅନୁସାରେ ଅଗ୍ନିରେ ଏ ଦେହକୁ ବିସର୍ଜିତ କରିଦେବି । କୌଣସି ଦେହଧାରୀ ଭୂତଳକୁ ଆସିବାମାତ୍ରେ ଯେପରି କାମଭାବରେ ଯୁକ୍ତ ନ ହେବ, ସେଥିପାଇଁ ମୁଁ ତପସ୍ୟା କରି ମର୍ଯ୍ୟାଦା ସ୍ଥାପିତ କରିବି । (ତରୁଣାବସ୍ଥା ପୂର୍ବରୁ କାହାଠାରେ ଯେପରି କାମର ପ୍ରଭାବ ପଡ଼ିବ ନାହିଁ, ସେଥିନିମନ୍ତେ ସୀମା ନିର୍ଦ୍ଧାରିତ କରିବି) । ଏହାପରେ ପ୍ରାଣତ୍ୟାଗ କରିଦେବି ।"

ମନେ ମନେ ଏଭଳି ନିର୍ଣ୍ଣୟ କରି ସନ୍ଧ୍ୟା ଚନ୍ଦ୍ରଭାଗ ନାମକ ଶ୍ରେଷ୍ଠ ପର୍ବତ ଉପରକୁ ଗଲା, ଯାହାକି ଚନ୍ଦ୍ରଭାଗା ନଦୀର ଉଦ୍‌ଗମ ସ୍ଥଳ । ତପସ୍ୟାରେ ଦୃଢ଼ବ୍ରତୀ ହୋଇ ସନ୍ଧ୍ୟା ପର୍ବତ ଉପରକୁ ଯାଇଥିବା କଥା ଜାଣି ମୁଁ ମୋର ବେଦ-ବେଦାଙ୍ଗପାରଙ୍ଗମ ବିଦ୍ୱାନ୍, ସର୍ବଜ୍ଞ, ଜିତାତ୍ମା ଓ ଜ୍ଞାନଯୋଗୀ ପୁତ୍ର ବଶିଷ୍ଠଙ୍କୁ କହିଲି, "ପୁତ୍ର ! ମନସ୍ୱିନୀ ସନ୍ଧ୍ୟା ତପସ୍ୟା ଅଭିଳାଷରେ ଚନ୍ଦ୍ରଭାଗ ନାମକ ପର୍ବତକୁ ଯାଇଛି । ତୁମେ ଯାଇ ତାକୁ ବିଧିପୂର୍ବକ ଦୀକ୍ଷା ଦିଅ । ବତ୍ସ ! ସେ ତପସ୍ୟାର ଭାବ ଓ ବିଧି ଜାଣି ନାହିଁ । ତୁମ ଉପଦେଶ ଦ୍ୱାରା ଯେପରି ସେ ଅଭୀଷ୍ଟକୁ ପ୍ରାପ୍ତ ହୋଇପାରିବ, ସେଭଳି ପ୍ରଯତ୍ନ କର ।"

ନାରଦ ! ମୁଁ ଦୟାପୂର୍ବକ ବଶିଷ୍ଠଙ୍କୁ ଏପରି ଆଜ୍ଞା ଦେବାରୁ ମୋ ଆଜ୍ଞା ଶିରୋଧାର୍ଯ୍ୟ କରି ସେ ଜଣେ ତେଜସ୍ୱୀ ବ୍ରହ୍ମଚାରୀ ବେଶରେ ସନ୍ଧ୍ୟା ନିକଟକୁ ଗଲେ । ଚନ୍ଦ୍ରଭାଗ ପର୍ବତ ଉପରେ ଏକ ସରୋବର ଅଛି, ଯାହା ଜଳାଶୟୋଚିତ ଗୁଣରେ ମାନସରୋବର ତୁଲ୍ୟ ଶୋଭାପାଏ । ବଶିଷ୍ଠ ସେହି ସରୋବରକୁ ଦେଖିଲେ ଏବଂ ତା' ତଟରେ ବସିଥିବା ସନ୍ଧ୍ୟାକୁ ମଧ୍ୟ ଦେଖିବାକୁ ପାଇଲେ । ବିପୁଳ ପଦ୍ମରାଶିରେ ଉଦ୍ଭାସିତ ହେଉଥିବା ସରୋବର କୂଳରେ ସନ୍ଧ୍ୟା ବସି ପ୍ରଦୋଷକାଳରେ ନକ୍ଷତ୍ରମୟ ଆକାଶରେ ଚନ୍ଦ୍ରମା ଉଦିତ ହେବା ପରି ଶୋଭା ପାଉଥିଲା । ସୁନ୍ଦର ଭାବଯୁକ୍ତା ସନ୍ଧ୍ୟାକୁ ସେଠାରେ ବସିଥିବା ଦେଖି ମୁନି କୌତୂହଳବଶତଃ ସେହି ବୃହଲ୍ଲୋହିତ ନାମକ ସରୋବରକୁ ଭଲଭାବରେ ଚାହିଁଲେ । ପ୍ରାକାରଭୂତ ପର୍ବତଶିଖରରୁ ଦକ୍ଷିଣାଭିମୁଖୀ ହୋଇ ସମୁଦ୍ର ଆଡ଼କୁ ପ୍ରବାହିତ ହେଉଥିବା ଚନ୍ଦ୍ରଭାଗା ନଦୀକୁ ମଧ୍ୟ ଦର୍ଶନ କଲେ । ଗଙ୍ଗା ହିମାଳୟରୁ ବାହାରି ସମୁଦ୍ର ଅଭିମୁଖେ ଗତି କରୁଥିବା ପରି

ସେହି ନଦୀଟି ଚନ୍ଦ୍ରଭାଗ ପର୍ବତର ପଶ୍ଚିମ ଶିଖରକୁ ଭେଦ କରି ସମୁଦ୍ର ଅଭିମୁଖେ ପ୍ରବାହିତ ହେଉଥିଲା । ବୃହଲ୍ଲୋହିତ ସରୋବର କୂଳରେ ବସିଥିବା ସନ୍ଧ୍ୟାକୁ ଦେଖି ବଶିଷ୍ଠ ସାଦରେ ପଚାରିଲେ—

ବଶିଷ୍ଠ କହିଲେ—**ଭଦ୍ରେ ! ତୁମେ ଏ ନିର୍ଜନ ପର୍ବତ ଉପରକୁ କାହିଁକି ଆସିଛ? ତୁମେ କାହାର ଝିଅ ଆଉ ଏଠି କ'ଣ କରିବାକୁ ଭାବୁଛ? ମୁଁ ଏକଥା ଜାଣିବାକୁ ଉତ୍ସୁକ । ଯଦି ଏଥିରେ କିଛି ଗୋପନୀୟ କଥା ନ ଥାଏ, ତେବେ ମୋ ଆଗରେ ପ୍ରକାଶ କର ।**



ମହାତ୍ମା ବଶିଷ୍ଠଙ୍କ କଥା ଶୁଣି ସନ୍ଧ୍ୟା ତାଙ୍କ ଆଡ଼କୁ ଚାହିଁଲା । ବଶିଷ୍ଠ ନିଜ ତେଜରେ ପ୍ରଜ୍ୱଳିତ ଅଗ୍ନି ତୁଲ୍ୟ ଉଦ୍ଭାସିତ ହେଉଥିଲେ । ତାଙ୍କୁ ଦେଖି ଲାଗୁଥିଲା ସତେ ଯେପରି ସାକ୍ଷାତ୍ ବ୍ରହ୍ମଚର୍ଯ୍ୟ ହିଁ ମୂର୍ତ୍ତିମନ୍ତ ହୋଇ ପ୍ରକଟିତ ହୋଇଛି । ତାଙ୍କ ମସ୍ତକରେ ଜଟାଜୂଟ ଶୋଭା ପାଉଥିଲା । ସନ୍ଧ୍ୟା ସେହି ତପୋଧନଙ୍କୁ ସାଦର ପ୍ରଣାମ କରି କହିଲା—

ସନ୍ଧ୍ୟା କହିଲା—**ବ୍ରହ୍ମନ୍ ! ମୁଁ ବ୍ରହ୍ମାଙ୍କର କନ୍ୟା । ମୋର ନାମ ସନ୍ଧ୍ୟା । ମୁଁ ତପସ୍ୟା କରିବାକୁ ଏହି ନିର୍ଜନ ପର୍ବତକୁ ଆସିଛି । ଯଦି ମୋତେ ଉପଦେଶ ଦେବାକୁ ଆପଣ ଉଚିତ ମନେ କରୁଛନ୍ତି, ତେବେ ମୋତେ ତପସ୍ୟାର ବିଧି କହିଦିଅନ୍ତୁ । ମୁଁ ଏହା ହିଁ କରିବାକୁ ଚାହୁଁଛି । ଅନ୍ୟ କିଛି ଗୋପନୀୟ କଥା ନାହିଁ । ମୁଁ ତପସ୍ୟାର ଭାବକୁ ଓ ତାହାର ନିୟମକୁ ନ ଜାଣି ଏଠାକୁ ଚାଲି ଆସିଛି । ଏଣୁ ଚିନ୍ତାରେ ଶୁଖି ଶୁଖି ଯାଉଛି ଏବଂ ମୋ ହୃଦୟ ଥରୁଛି ।**

ସନ୍ଧ୍ୟାର କଥା ଶୁଣି ଶ୍ରେଷ୍ଠ ବ୍ରହ୍ମବିଦ୍ ବଶିଷ୍ଠ ତାକୁ ଆଉ କିଛି ପଚାରିଲେ ନାହିଁ; କାରଣ ସେ ସବୁ କଥା ଜାଣିଥିଲେ । ସନ୍ଧ୍ୟା ମନେ ମନେ ତପସ୍ୟା ପାଇଁ ନିର୍ଣ୍ଣୟ କରି ସାରିଥିଲା ଓ ସେଥିପାଇଁ ଉଦ୍ୟମ ମଧ୍ୟ କରୁଥିଲା । ସେତିକିବେଳେ ବଶିଷ୍ଠ ମନ ମଧ୍ୟରେ ଭକ୍ତବତ୍ସଳ ଶଙ୍କରଙ୍କୁ ସ୍ମରଣ କରି ଏହି ପ୍ରକାରେ କହିଲେ—

ବଶିଷ୍ଠ କହିଲେ—**ଶୁଭାନନେ ! ଭଗବାନ ଶମ୍ଭୁ ହେଉଛନ୍ତି ସବୁଠୁ ମହାନ୍ ଓ ଉତ୍କୃଷ୍ଟ ତେଜଃସ୍ୱରୂପ; ସେ ସବୁଠୁ ଉତ୍ତମ ଓ ମହାନ୍ ତପଃସ୍ୱରୂପ ଏବଂ ସେ ହିଁ ସମସ୍ତଙ୍କର ପରମାରାଧ୍ୟ ପରମାତ୍ମା । ତେଣୁ ତୁମେ ତାଙ୍କୁ ହିଁ ହୃଦୟରେ ଧାରଣ କର । ସେ ହିଁ ଧର୍ମ, ଅର୍ଥ, କାମ ଓ ମୋକ୍ଷର ଆଦିକାରଣ । ତୁମେ ସେହି ତ୍ରୈଲୋକ୍ୟର ଆଦିସ୍ରଷ୍ଟା, ଅଦ୍ୱିତୀୟ ପୁରୁଷୋତ୍ତମ ଶିବଙ୍କୁ ଭଜ । ମୁଁ ଯେଉଁ ମନ୍ତ୍ର କହିବି, ତା'ଦ୍ୱାରା ଦେବେଶ୍ୱର ଶମ୍ଭୁଙ୍କୁ ଆରାଧନା କର । ଏପରି କଲେ ତୁମକୁ ସବୁକିଛି ମିଳିଯିବ, ଏଥିରେ ସଂଶୟ କର ନାହିଁ । 'ଓଁ ନମଃ ଶଙ୍କରାୟ ଓଁ' ଏହି ମନ୍ତ୍ରକୁ ନିରନ୍ତର ଜପି ଜପି ମୌନ ତପସ୍ୟା ଆରମ୍ଭ କର । ଆଉ ମୁଁ ଯେଉଁ ନିୟମ କହୁଛି, ତାହା ମଧ୍ୟ ଶୁଣ । ତୁମକୁ ମୌନ ରହି ସ୍ନାନ କରିବାକୁ ହେବ ଏବଂ**

ମୌନାବଲମ୍ବନପୂର୍ବକ ହିଁ ମହାଦେବଙ୍କୁ ପୂଜା କରିବାକୁ ହେବ। ପ୍ରଥମ ଦୁଇ ଷଷ୍ଠକାଳରେ ତୁମେ କେବଳ ଜଳ ପର୍ଣ୍ଣରୂପେ ଆହାର କରିପାରିବ। ତୃତୀୟ ଥର ଷଷ୍ଠକାଳ ଆସିଲେ ଉପବାସ କରିବ। ଏହିରୂପେ ତପସ୍ୟା ଶେଷ ପର୍ଯ୍ୟନ୍ତ କେବଳ ଷଷ୍ଠକାଳିକ କ୍ରିୟାରୂପେ ଜଳାହାର ଓ ଉପବାସ କ୍ରିୟା ଚ୍ଛାଲୁ ରଖିବ। ହେ ଦେବୀ! ଏଭଳି ମୌନ ତପସ୍ୟା ବ୍ରହ୍ମଚର୍ଯ୍ୟ ତୁଲ୍ୟ ଫଳ ଦେଇଥାଏ ତଥା ସମସ୍ତ ମନୋରଥ ପୂର୍ଣ୍ଣ କରିଥାଏ। ଏହା ସତ୍ୟ, ସତ୍ୟ। ଏଥିରେ ସଂଶୟ ନାହିଁ। ଚିତ୍ତରେ ଏଭଳି ଶୁଭ ଉଦ୍ଦେଶ୍ୟ ନେଇ ନିଜ ଇଚ୍ଛାନୁସାରେ ଶଙ୍କରଙ୍କୁ ଚିନ୍ତନ କର; ସେ ପ୍ରସନ୍ନ ହୋଇ ତୁମକୁ ନିଶ୍ଚୟ ଅଭୀଷ୍ଟ ଫଳ ପ୍ରଦାନ କରିବେ।

ଏହିରୂପେ ସନ୍ଧ୍ୟାକୁ ତପସ୍ୟାର ବିଧି ବୁଝାଇ କହି ମୁନିବର ବଶିଷ୍ଠ ଯଥୋଚିତରୂପେ ତା'ଠାରୁ ବିଦାୟ ନେଇ ସେଇଠି ଅନ୍ତର୍ଦ୍ଧାନ ହୋଇଗଲେ।

(ଅଧ୍ୟାୟ ୩—୫)

***

## ସନ୍ଧ୍ୟାର ତପସ୍ୟା ଓ ଶିବଙ୍କୁ ସ୍ତୁତି, ଶିବଙ୍କ ଠାରୁ ସନ୍ଧ୍ୟାକୁ ଅଭୀଷ୍ଟ ବର ଲାଭ ଏବଂ ତାକୁ ମେଧାତିଥିଙ୍କ ଯଜ୍ଞସ୍ଥଳକୁ ଯିବା ପାଇଁ ଶିବଙ୍କ ଉପଦେଶ

ବ୍ରହ୍ମା କହୁଛନ୍ତି—ସୁପୁତ୍ର! ମହାପ୍ରାଜ୍ଞ ନାରଦ! ତପସ୍ୟାର ନିୟମ ଉପଦେଶ ଦେଇସାରି ବଶିଷ୍ଠ ତାଙ୍କ ଗୃହକୁ ଚ୍ଛାଲିଯିବା ପରେ ତପସ୍ୟାର ବିଧାନକୁ ବୁଝି ସନ୍ଧ୍ୟା ମନେ ମନେ ବହୁତ ଖୁସୀ ହେଲା। ତା'ପରେ ସେ ତପସ୍ୱିନୀ ବେଶ ଧାରଣ କରି ବୃହଲ୍ଲୋହିତ ସରୋବର ତଟରେ ତପସ୍ୟା ଆରମ୍ଭ କରିଦେଲା। ବଶିଷ୍ଠ ଯେଉଁ ମନ୍ତ୍ର ଜପି ସାଧନା କରିବାକୁ କହିଥିଲେ, ତଦ୍ୱାରା ସେ ଭକ୍ତିଭାବରେ ଶିବଙ୍କୁ ଆରାଧନା କଲା। ଶିବଙ୍କ ଠାରେ ଚିତ୍ତନିବେଶ କରି ଏକାଗ୍ର ଭାବରେ ଘୋର ତପସ୍ୟା କଲା। ଏପରି ତପସ୍ୟା କରୁ କରୁ ଚ୍ଛାରିଯୁଗ ବିତିଗଲା। ଶେଷରେ ଭଗବାନ ଶିବ ତା' ତପସ୍ୟାରେ ସନ୍ତୁଷ୍ଟ ହେଲେ ଏବଂ ତାକୁ ଅନ୍ତର ଭିତରେ, ବାହାରେ ଓ ଆକାଶରେ ନିଜ ସ୍ୱରୂପରେ ଦର୍ଶନ ଦେଇସାରି ଯେଉଁ ସ୍ୱରୂପକୁ ସେ ଚିନ୍ତନ କରୁଥିଲା, ସେହି ରୂପରେ ତା' ନେତ୍ର ସମ୍ମୁଖରେ ପ୍ରକଟ ହୋଇଗଲେ। ନିଜ ଚିନ୍ତନୀୟ ପ୍ରଭୁଙ୍କୁ ସମ୍ମୁଖରେ ଦେଖି ସେ ଆନନ୍ଦରେ ବିଭୋର ହୋଇଗଲା। ଭଗବାନଙ୍କ ମୁଖାରବିନ୍ଦ ଅତି ପ୍ରସନ୍ନ ଦିଶୁଥିଲା। ତାଙ୍କ ସ୍ୱରୂପରୁ ଶାନ୍ତିର ବୃଷ୍ଟି ହେଉଥିଲା। ସନ୍ଧ୍ୟା ସହସା ଭୟଭୀତ ହୋଇ ଭାବିବାକୁ ଲାଗିଲା ଯେ—ମୁଁ ଭଗବାନ ହରଙ୍କୁ କ'ଣ କହିବି? କେଉଁ ପ୍ରକାରେ ସ୍ତୁତି କରିବି? ଏହି ଚିନ୍ତାରେ ପଡ଼ି ସେ ଆପଣା ନେତ୍ର ବନ୍ଦ କରିଦେଲା। ନେତ୍ର ବନ୍ଦ କରିଦେବାରୁ ଭଗବାନ ଶିବ ତା'ର ହୃଦୟରେ ପ୍ରବେଶ କରି ତାକୁ ଦିବ୍ୟଜ୍ଞାନ, ଦିବ୍ୟବାଣୀ ଓ ଦିବ୍ୟଦୃଷ୍ଟି ପ୍ରଦାନ କଲେ। ଦିବ୍ୟଜ୍ଞାନ, ଦିବ୍ୟଦୃଷ୍ଟି ଓ ଦିବ୍ୟବାଣୀ ପ୍ରାପ୍ତ ହୋଇଯିବାରୁ ସେ ଦୁର୍ଜ୍ଞେୟ ଜଗଦୀଶ୍ୱର ଶିବଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରି ସ୍ତୁତି କରିବାକୁ ଲାଗିଲା।

ସନ୍ଧ୍ୟା କହିଲା—ଯେ ନିରାକାର ଓ ପରମ ଜ୍ଞାନଗମ୍ୟ, ଯେ ସ୍ଥୂଳ ନୁହନ୍ତି କି ସୂକ୍ଷ୍ମ ନୁହନ୍ତି କି ଉଚ୍ଚ ନୁହନ୍ତି, ଯାହାଙ୍କ ସ୍ୱରୂପକୁ ଯୋଗୀଜନ ନିଜ ହୃଦୟ ମଧ୍ୟରେ ଚିନ୍ତନ କରନ୍ତି, ସେହି ଲୋକସ୍ରଷ୍ଟା ଭଗବାନ ଶିବଙ୍କୁ ମୁଁ ପ୍ରଣାମ କରୁଛି। ଯାହାଙ୍କୁ

ଶର୍ବ କହନ୍ତି, ଯେ ଶାନ୍ତ, ନିର୍ମଳ, ନିର୍ବିକାର, ଜ୍ଞାନଗମ୍ୟ, ସ୍ୱ-ପ୍ରକାଶରେ ପ୍ରକାଶିତ, ବିକାରଶୂନ୍ୟ ଓ ଆକାଶମାର୍ଗ ପରି ନିର୍ଗୁଣ-ନିରାକାର ତଥା



ଯାହାଙ୍କ ରୂପ ଅଜ୍ଞାନ ଅନ୍ଧକାରମାର୍ଗରୁ ଊର୍ଦ୍ଧ୍ୱରେ, ସେହି ନିତ୍ୟପ୍ରସନ୍ନ ଭଗବାନ ଶଙ୍କରଙ୍କୁ ମୁଁ ପ୍ରଣାମ କରୁଛି । ଯାହାଙ୍କ ରୂପ ଅଦ୍ୱିତୀୟ, ଶୁଦ୍ଧ, ମାୟାରହିତ, ପ୍ରକାଶମାନ, ସଚ୍ଚିଦାନନ୍ଦମୟ, ସହଜ, ନିର୍ବିକାର, ନିତ୍ୟାନନ୍ଦମୟ, ସତ୍ୟ, ଐଶ୍ୱର୍ଯ୍ୟଯୁକ୍ତ, ପ୍ରସନ୍ନ, ତଥା ଲକ୍ଷ୍ମୀ ପ୍ରଦାନକାରୀ, ସେହି ଭଗବାନ ଶିବଙ୍କୁ ମୁଁ ନମସ୍କାର କରୁଛି । ଯାହାଙ୍କ ରୂପକୁ ଜ୍ଞାନ ଦ୍ୱାରା ହିଁ ଭାବନା କରାଯାଇପାରେ, ଯିଏ ଏ ଜଗତରୁ ସର୍ବଥା ଭିନ୍ନ, ସତ୍ତ୍ୱପ୍ରଧାନ, ଧ୍ୟାନଯୋଗ୍ୟ, ଆତ୍ମସ୍ୱରୂପ, ସାରଭୂତ, ସମସ୍ତଙ୍କ ଉଦ୍ଧାରକାରୀ, ପବିତ୍ର ବସ୍ତୁ ମଧ୍ୟରେ ପରମ ପବିତ୍ର, ସେପରି ମହେଶ୍ୱରଙ୍କୁ ମୋର ନମସ୍କାର । ପ୍ରଭୋ ! ଆପଣଙ୍କ ସ୍ୱରୂପ ଶୁଦ୍ଧ, ମନୋହର, ରତ୍ନମୟ ଆଭୂଷଣରେ ବିଭୂଷିତ ତଥା ସ୍ୱଚ୍ଛ କର୍ପୂରସମ ଗୌରବର୍ଣ୍ଣ; ଆପଣ ନିଜ ହସ୍ତରେ ବର, ଅଭୟ, ଶୂଳ ଓ ମୁଣ୍ଡ ଧାରଣ କରିଛନ୍ତି; ଏପରି ଦିବ୍ୟ, ଚିନ୍ମୟ, ସଗୁଣ, ସାକାର ବିଗ୍ରହରେ ସୁଶୋଭିତ ଯୋଗଗୁରୁ ଭଗବାନ ଶିବଙ୍କୁ ନମସ୍କାର । ଆକାଶ, ପୃଥିବୀ, ଦିଗ, ଜଳ, ତେଜ ଓ କାଳ ଯାହାଙ୍କର ରୂପ, ସେହି ମହେଶ୍ୱରଙ୍କୁ ମୋର ନମସ୍କାର ।*

ପ୍ରଧାନ (ପ୍ରକୃତି) ଓ ପୁରୁଷ ଯାହାଙ୍କର ଶରୀରରୂପେ ପ୍ରକଟ ହୁଅନ୍ତି ଅର୍ଥାତ୍ ସେ ଦୁହେଁ ଯାହାଙ୍କ ଶରୀର, ସେଥିପାଇଁ ଯାହାଙ୍କ ଯଥାର୍ଥ ରୂପ

* ସନ୍ଧ୍ୟୋବାଚ–

ନିରାକାରଂ ଜ୍ଞାନଗମ୍ୟଂ ପରଂ ଯନ୍ନୈବ ସ୍ଥୂଳଂ ନାପି ସୂକ୍ଷ୍ମଂ ନ ଗ୍ରେଚ୍ୟମ୍ ।
ଅନ୍ତଶ୍ଚିନ୍ତ୍ୟଂ ଯୋଗିଭିସ୍ତସ୍ୟ ରୂପଂ ତସ୍ମୈ ତୁଭ୍ୟଂ ଲୋକକର୍ତ୍ରେ ନମୋଽସ୍ତୁ ॥
ଶର୍ବଂ ଶାନ୍ତଂ ନିର୍ମଳଂ ନିର୍ବିକାରଂ ଜ୍ଞାନଗମ୍ୟଂ ସ୍ୱପ୍ରକାଶେଽବିକାରମ୍ ।
ଖାଧ୍ୱପ୍ରଖ୍ୟଂ ଧ୍ୱାନ୍ତମାର୍ଗାଦ୍ପରସ୍ତାଦ୍ ରୂପଂ ଯସ୍ୟ ତ୍ୱାଂ ନମାମି ପ୍ରସନ୍ନମ୍ ॥
ଏକଂ ଶୁଦ୍ଧଂ ଦୀପ୍ୟମାନଂ ବିନାଜାଂ ଚିଦାନନ୍ଦଂ ସହଜଂ ଗ୍ୱବିକାରି ।
ନିତ୍ୟାନନ୍ଦଂ ସତ୍ୟଭୂତିପ୍ରସନ୍ନଂ ଯସ୍ୟ ଶ୍ରୀଦଂ ରୂପମସ୍ମୈ ନମସ୍ତେ ॥
ବିଦ୍ୟାକାରୋଦ୍ଭାବନୀୟଂ ପ୍ରଭିନ୍ନଂ ସତ୍ତ୍ୱଚ୍ଛନ୍ଦଂ ଧ୍ୟେୟମାତ୍ମସ୍ୱରୂପମ୍ ।
ସାରଂ ପାରଂ ପାବନାନାଂ ପବିତ୍ରଂ ତସ୍ମୈ ରୂପଂ ଯସ୍ୟ ଚୈବଂ ନମସ୍ତେ ॥
ଯତ୍ତ୍ୱାକାରଂ ଶୁଦ୍ଧରୂପଂ ମନୋଜ୍ଞଂ ରତ୍ନାକଳ୍ପଂ ସ୍ୱଚ୍ଛକର୍ପୂରଗୌରମ୍ ।
ଇଷ୍ଟାଭୀତୀ ଶୂଳମୁଣ୍ଡେ ଦଧାନଂ ହସ୍ତୈର୍ନମୋ ଯୋଗଯୁକ୍ତାୟ ତୁଭ୍ୟମ୍ ॥
ଗଗନଂ ଭୂର୍ଦିଶଶ୍ଚୈବ ସଲିଳଂ ଜ୍ୟୋତିରେବ ଚ । ପୁନଃ କାଳଶ୍ଚ ରୂପାଣି ଯସ୍ୟ ତୁଭ୍ୟଂ ନମୋଽସ୍ତୁ ତେ ॥
(ଶି. ପୁ. ରୁ. ସଂ. ସ. ଖ. ୬ । ୧୨–୧୭)

ଅବ୍ୟକ୍ତ (ବୁଦ୍ଧି ଆଦିରୁ ପର), ସେହି ଭଗବାନ ଶଙ୍କରଙ୍କୁ ବାରଂବାର ନମସ୍କାର । ଯେ ବ୍ରହ୍ମା ହୋଇ ଜଗତକୁ ସୃଷ୍ଟି କରନ୍ତି, ବିଷ୍ଣୁ ହୋଇ ପାଳନ କରନ୍ତି ଓ ରୁଦ୍ର ହୋଇ ସଂହାର କରନ୍ତି, ସେହି ସଦାଶିବ ପରମାତ୍ମାଙ୍କୁ ମୋର ବାରମ୍ବାର ନମସ୍କାର । ଯେ କାରଣର ମଧ୍ୟ କାରଣ, ଦିବ୍ୟ ଅମୃତରୂପୀ ଜ୍ଞାନ ତଥା ଅଣିମା ଆଦି ଐଶ୍ୱର୍ଯ୍ୟର ପ୍ରଦାତା, ସମସ୍ତ ଲୋକାତୀତ ବୈଭବ ପ୍ରଦାୟକ, ସ୍ୱୟଂପ୍ରକାଶସ୍ୱରୂପ ଓ ପ୍ରକୃତିଠାରୁ ମଧ୍ୟ ଅତୀତ, ସେହି ପରମେଶ୍ୱର ଶିବଙ୍କୁ ମୋର ନମସ୍କାର, ନମସ୍କାର । ଏ ଜଗତକୁ ଯାହାଙ୍କ ଠାରୁ ଭିନ୍ନ ବୋଲି କୁହାଯାଇ ପାରେ ନାହିଁ, ଯାହାଙ୍କ ଚରଣରୁ ପୃଥିବୀ ତଥା ଅନ୍ୟାନ୍ୟ ଅଙ୍ଗରୁ ଦିଗବିଦିଗ, ସୂର୍ଯ୍ୟ, ଚନ୍ଦ୍ର, କାମଦେବ ଓ ଅନ୍ୟ ଦେବତା ପ୍ରକଟ ହୋଇଛନ୍ତି ଏବଂ ଯାହାଙ୍କ ନାଭିରୁ ଅନ୍ତରୀକ୍ଷ ଉତ୍ପନ୍ନ ହୋଇଛି, ସେହି ଶମ୍ଭୁଙ୍କୁ ମୋର ନମସ୍କାର । ହେ ପ୍ରଭୁ ! ଆପଣ ହିଁ ସବୁଠାରୁ ଉତ୍କୃଷ୍ଟ ପରମାତ୍ମା, ଆପଣ ହିଁ ନାନା ପ୍ରକାର ବିଦ୍ୟା, ଆପଣ ହିଁ ହର (ସଂହାରକର୍ତ୍ତା), ଆପଣ ହିଁ ସଦ୍‌ବ୍ରହ୍ମ, ପରବ୍ରହ୍ମ ଏବଂ ଜ୍ଞାନପରାୟଣ ଅଟନ୍ତି । ଯାହାଙ୍କର ଆଦି ନାହିଁ କି ମଧ୍ୟ ନାହିଁ କି ଅନ୍ତ ନାହିଁ, ଯାହାଙ୍କ ଠାରୁ ସାରା ଜଗତ ଉତ୍ପନ୍ନ ହୋଇଛି ତଥା ଯେ ମନ ଓ ବାଣୀର ବିଷୟ ନୁହନ୍ତି, ସେପରି ମହାଦେବଙ୍କୁ ମୁଁ ଅବା କି ସ୍ତୁତି କରିପାରିବି?*

ବ୍ରହ୍ମାଦି ଦେବତା ତଥା ତପୋନିଷ୍ଠ ମୁନି ମଧ୍ୟ ଯେଉଁ ପରମେଶ୍ୱରଙ୍କ ରୂପର ବର୍ଣ୍ଣନା କରିପାରନ୍ତି ନାହିଁ, ତାଙ୍କ ବର୍ଣ୍ଣନ ଓ ସ୍ତବନ ମୁଁ ଅବା କ'ଣ କରିପାରିବି? ପ୍ରଭୋ ! ଆପଣ ନିର୍ଗୁଣ ଅଟନ୍ତି, ମୁଁ ମୂଢ଼ା ନାରୀ ଆପଣଙ୍କ ଗୁଣମାନଙ୍କୁ କିପରି ଜାଣି ପାରିବି? ଆପଣଙ୍କ ରୂପକୁ ତ ସମସ୍ତ ଦେବତା ଓ ଅସୁର ମଧ୍ୟ ଜାଣି ପାରନ୍ତି ନାହିଁ । ହେ ମହେଶ୍ୱର ! ଆପଣଙ୍କୁ ନମସ୍କାର । ତପୋମୟ ! ଆପଣଙ୍କୁ ନମସ୍କାର । ଦେବେଶ୍ୱର ଶମ୍ଭୁ ! ମୋ ଉପରେ ପ୍ରସନ୍ନ ହୁଅନ୍ତୁ । ଆପଣଙ୍କୁ ବାରମ୍ବାର ନମସ୍କାର ।ᯘ

ବ୍ରହ୍ମା କହୁଛନ୍ତି—ନାରଦ ! ସନ୍ଧ୍ୟାର ଏହି ସ୍ତୁତିପୂର୍ଣ୍ଣ ବାଣୀ ଶୁଣି ଭଗବାନ ଶଙ୍କର ଅତି ପ୍ରସନ୍ନ ହେଲେ । ବଳ୍କଳ ଓ ମୃଗଚର୍ମ ପରିହିତା ତଥା ଜଟାଜୂଟରେ ବିମଣ୍ଡିତା ସଂଧ୍ୟାର ପଦ୍ମତୁଲ୍ୟ

---

* ପ୍ରଧାନପୁରୁଷୌ ଯସ୍ୟ କାୟତ୍ୱେନ ବିନିର୍ଗତୌ । ତସ୍ମାଦବ୍ୟକ୍ତରୂପାୟ ଶଙ୍କରାୟ ନମୋ ନମଃ ॥
ଯୋ ବ୍ରହ୍ମା କୁରୁତେ ସୃଷ୍ଟିଂ ଯୋ ବିଷ୍ଣୁଃ କୁରୁତେ ସ୍ଥିତିମ୍ । ସଂହରିଷ୍ୟତି ଯୋ ରୁଦ୍ରସ୍ତସ୍ମୈ ତୁଭ୍ୟଂ ନମୋ ନମଃ ॥
ନମୋ ନମଃ କାରଣକାରଣାୟ ଦିବ୍ୟାମୃତଜ୍ଞାନବିଭୂତିଦାୟ ।
ସମସ୍ତଲୋକାନ୍ତରଭୂତିଦାୟ ପ୍ରକାଶରୂପାୟ ପରାତ୍ପରାୟ ॥
ଯସ୍ୟାପରଂ ନୋ ଜଗଦୁଚ୍ୟତେ ପଦାତ୍ କ୍ଷିତିର୍ଦିଶଃ ସୂର୍ଯ୍ୟ ଇନ୍ଦୁର୍ମନୋଜଃ ।
ବହିର୍ମୁଖା ନାଭିତଶ୍ଚାନ୍ତରିକ୍ଷଂ ତସ୍ମୈ ତୁଭ୍ୟଂ ଶମ୍ଭବେ ମେ ନମୋଽସ୍ତୁ ॥
ତ୍ୱଂ ପରଃ ପରମାତ୍ମା ଚ ତ୍ୱଂ ବିଦ୍ୟା ବିବିଧା ହରଃ । ସଦ୍‌ବ୍ରହ୍ମ ଚ ପରଂ ବ୍ରହ୍ମ ବିଚାରଣପରାୟଣଃ ॥
ଯସ୍ୟ ନାଦିର୍ନ ମଧ୍ୟଂ ଚ ନାନ୍ତମସ୍ତି ଜଗଦ୍ ଯତଃ । କଥଂ ସ୍ତୋଷ୍ୟାମି ତଂ ଦେବମବାଙ୍ମନସଗୋଚରମ୍ ॥
(ଶି. ପୁ. ରୁ. ସଂ. ସ. ଖ. ୬ । ୧୮–୨୩)

ᯘ ଯସ୍ୟ ବ୍ରହ୍ମାଦୟୋ ଦେବା ମୁନୟଶ୍ଚ ତପୋଧନାଃ । ନ ବିପ୍ରୁଣ୍ୱନ୍ତି ରୂପାଣି ବର୍ଣ୍ଣନୀୟଃ କଥଂ ସ ମେ ॥
ସ୍ତ୍ରିୟା ମୟା ତେ କିଂ ଜ୍ଞେୟା ନିର୍ଗୁଣସ୍ୟ ଗୁଣାଃ ପ୍ରଭୋ । ନୈବ ଜାନନ୍ତି ଯଦ୍‌ରୂପଂ ସେନ୍ଦ୍ରା ଅପି ସୁରାସୁରାଃ ॥
ନମସ୍ତୁଭ୍ୟଂ ମହେଶାନ ନମସ୍ତୁଭ୍ୟଂ ତପୋମୟ । ପ୍ରସୀଦ ଶମ୍ଭୋ ଦେବେଶ ଭୂୟୋ ଭୂୟୋ ନମୋଽସ୍ତୁ ତେ ॥
(ଶି. ପୁ. ରୁ. ସଂ. ସ. ଖ. ୬ । ୨୪–୨୬)

ମୁଖ ଝାଉଳି ପଡ଼ିଥିବା ଦେଖି ଭଗବାନ ହର ଅତ୍ୟନ୍ତ ଦ୍ରବିତ ହୋଇ ନିମ୍ନ ପ୍ରକାରେ କହିଲେ–

ମହେଶ୍ୱର କହିଲେ–ଭଦ୍ରେ ! ମୁଁ ତୁମର ଏହି ଉତ୍ତମ ତପସ୍ୟାରେ ଅତୀବ ପ୍ରସନ୍ନ । ହେ ଶୁଦ୍ଧବୁଦ୍ଧି ଦେବୀ ! ତୁମ ସ୍ତବରେ ମୋତେ ସନ୍ତୋଷ ପ୍ରାପ୍ତ ହେଲା । ଏଣୁ ନିଜ ମନୋବାଞ୍ଛିତ ବର ମାଗ । ତୁମର ଯାହା ଆବଶ୍ୟକ ଓ ତୁମ ମନରେ ଯେଉଁ କାମନା ଅଛି, ତାହା ମୁଁ ଅବଶ୍ୟ ପୂର୍ଣ୍ଣ କରିବି । ତୁମର କଲ୍ୟାଣ ହେଉ । ମୁଁ ତୁମ ବ୍ରତ-ନିୟମରେ ଅତ୍ୟନ୍ତ ପ୍ରସନ୍ନ ।

ପ୍ରସନ୍ନଚିତ୍ତ ମହେଶ୍ୱରଙ୍କର ଏଭଳି ଉକ୍ତି ଶୁଣି ସନ୍ଧ୍ୟା ଅତ୍ୟନ୍ତ ହର୍ଷିତ ହୋଇ ବାରମ୍ବାର ପ୍ରଣାମ କରି କହିଲା–"ହେ ମହେଶ୍ୱର ! ଯଦି ଆପଣ ମୋ ପ୍ରତି ପ୍ରସନ୍ନ ହୋଇ ବର ଦେବାକୁ ଚାହୁଁଛନ୍ତି, ମୁଁ ଯଦି ବର ପାଇବାର ଯୋଗ୍ୟ, ଯଦି ମୁଁ ପାପମୁକ୍ତ ହୋଇଯାଇଛି, ତଥା ହେ ଦେବ ! ଯଦି ଆପଣ ମୋ ତପସ୍ୟାରେ ପ୍ରସନ୍ନ, ତେବେ ପ୍ରଥମେ ମୋର ଏ ମନୋରଥ ପୂରଣ କରନ୍ତୁ । ଦେବେଶ୍ୱର ! ଏ ଆକାଶ ଓ ପୃଥିବୀର ଯେକୌଣସି ସ୍ଥାନରେ ଯେତେ ସବୁ ପ୍ରାଣୀ ଅଛନ୍ତି, କେହି ବି ଜନ୍ମ ହେବାମାତ୍ରେ କାମଭାବନାରେ ଯୁକ୍ତ ନ ହୁଅନ୍ତୁ । ହେ ପ୍ରଭୁ ! ମୋର ସକାମ ଦୃଷ୍ଟି କେଉଁଠି ନ ପଡ଼ୁ । ମୋର ଯିଏ ସ୍ୱାମୀ ହେବେ, ସେ ମୋର ଅତ୍ୟନ୍ତ ସୁହୃଦ ହୁଅନ୍ତୁ । ମୋ ସ୍ୱାମୀଙ୍କ ଛଡ଼ା ଅନ୍ୟ ଯିଏ ମୋତେ କାମଭାବରେ ଦେଖିବ, ତାହାର ପୁରୁଷତ୍ୱ ନଷ୍ଟ ହୋଇଯାଉ, ସେ ତତ୍‌କ୍ଷଣାତ୍ ନପୁଂସକ ହୋଇଯାଉ ।"

ନିଷ୍ପାପ ସନ୍ଧ୍ୟାର ଏଭଳି କଥାରେ ପ୍ରସନ୍ନ ହୋଇ ଭକ୍ତବତ୍ସଳ ଶିବ କହିଲେ–ହେ ଦେବୀ ! ସଂଧ୍ୟେ ! ଶୁଣ । ତୁମେ ଯେଉଁ ଯେଉଁ ବର ମାଗିଲ, ତୁମ ତପସ୍ୟାରେ ପ୍ରୀତ ହୋଇ ମୁଁ ତାହା ପ୍ରଦାନ କଲି । ପ୍ରାଣୀଙ୍କ ଜୀବନରେ ମୁଖ୍ୟତଃ ଚାରିଟି ଅବସ୍ଥା ଆସେ । ପ୍ରଥମଟି ଶୈଶବାବସ୍ଥା, ଦ୍ୱିତୀୟଟି କୌମାରାବସ୍ଥା, ତୃତୀୟଟି ଯୌବନାବସ୍ଥା ଓ ଚତୁର୍ଥରେ ବୃଦ୍ଧାବସ୍ଥା । ଏଥିମଧ୍ୟରୁ ତୃତୀୟ ଅବସ୍ଥା ପ୍ରାପ୍ତ ହେଲେ ଦେହଧାରୀ ଜୀବ କାମଭାବରେ ଯୁକ୍ତ ହେବେ । କେଉଁଠି କେଉଁଠି ଦ୍ୱିତୀୟ ଅବସ୍ଥାର ଅନ୍ତିମ ଭାଗରେ ପ୍ରାଣୀ କାମଭାବରେ ଯୁକ୍ତ ହେବେ । ତୁମ ତପସ୍ୟା ପ୍ରଭାବରେ ମୁଁ ଜଗତରେ କାମଭାବ ଉଦୟର ଏହି ମର୍ଯ୍ୟାଦା ସ୍ଥାପିତ କରିଦେଲି, ଯଦ୍ଦ୍ୱାରା ଜନ୍ମ ହେବାମାତ୍ରେ ଦେହଧାରୀ ଜୀବ କାମାସକ୍ତ ହୋଇଯିବେ ନାହିଁ । ତୁମେ ମଧ୍ୟ ଇହଲୋକରେ ଦିବ୍ୟ ସତୀତ୍ୱ ପ୍ରାପ୍ତ ହେବ, ଯାହା କି ଅନ୍ୟ କୌଣସି ସ୍ତ୍ରୀ ପକ୍ଷେ ସମ୍ଭବ ନୁହେଁ । ପାଣିଗ୍ରହଣ କରିଥିବା ସ୍ୱାମୀ ବ୍ୟତୀତ ଅନ୍ୟ ଯେଉଁ ପୁରୁଷ ତୁମକୁ କାମଭାବରେ ଦେଖିବ, ସେ ତତ୍‌କ୍ଷଣାତ୍ ନପୁଂସକ ହୋଇ ଦୁର୍ବଳତାକୁ ପ୍ରାପ୍ତ ହେବ । ଜଣେ ମହାନ୍ ତପସ୍ୱୀ ତଥା ଦିବ୍ୟରୂପସମ୍ପନ୍ନ ମହାଭାଗ ମହର୍ଷି ହିଁ ତୁମର ସ୍ୱାମୀ ହେବେ ଏବଂ ସେ ତୁମ ସଙ୍ଗେ ସାତ କଳ୍ପ ପର୍ଯ୍ୟନ୍ତ ଜୀବିତ ରହିବେ । ତୁମକୁ ସମସ୍ତ ଅଭୀଷ୍ଟ ବର ମୁଁ ପ୍ରଦାନ କଲି । ଏବେ ମୁଁ ଆଉ ଗୋଟିଏ କଥା କହୁଛି, ଯାହା ତୁମର ପୂର୍ବଜନ୍ମ ସହ ସଂଶ୍ଳିଷ୍ଟ । ତୁମେ ଅଗ୍ନିରେ ଦେହତ୍ୟାଗ କରିବାକୁ ପୂର୍ବରୁ ପ୍ରତିଜ୍ଞା କରିଛ । ସେହି ପ୍ରତିଜ୍ଞାକୁ ପୂର୍ଣ୍ଣ କରିବାକୁ ମୁଁ ତୁମକୁ ଗୋଟିଏ ଉପାୟ କହୁଛି । ତାହା ନିଶ୍ଚିତରୂପେ କର । ମୁନିବର ମେଧାତିଥି ଗୋଟିଏ ଯଜ୍ଞ କରୁଛନ୍ତି, ତାହା ବାରବର୍ଷ ପର୍ଯ୍ୟନ୍ତ ଚାଲିବ । ସେଠାରେ ଅଗ୍ନି ପ୍ରଚଣ୍ଡରୂପେ ପ୍ରଜ୍ୱଳିତ ହେଉଛି । ତୁମେ ଅବିଳମ୍ବେ ଯାଇ ତୁମର ଦେହକୁ ସେଥିରେ ଉତ୍ସର୍ଗ କରିଦିଅ । ଏହି ପାର୍ବତ୍ୟ ଉପତ୍ୟକାରେ ଚନ୍ଦ୍ରଭାଗା ନଦୀତଟସ୍ଥିତ ତାପସାଶ୍ରମରେ ମୁନିବର ମେଧାତିଥି

ସେହି ମହାଯଜ୍ଞ ଅନୁଷ୍ଠାନ କରୁଛନ୍ତି । ତୁମେ ସ୍ୱଚ୍ଛନ୍ଦରେ ସେଠାକୁ ଯାଅ । ମୁନି ତୁମକୁ ଦେଖି ପାରିବେ ନାହିଁ । ମୋ କୃପାରୁ ତୁମେ ମୁନିଙ୍କର ଯଜ୍ଞାଗ୍ନିରୁ ପ୍ରକଟିତା କନ୍ୟା ହୋଇଯିବ । ତୁମ ମନରେ ଯାହାକୁ ସ୍ୱାମୀରୂପେ ପାଇବାକୁ ଇଚ୍ଛା ଥିବ, ତାହାକୁ ହୃଦୟରେ ଧାରଣ କରି ଓ ଚିନ୍ତନ କରି କରି ସେହି ଯଜ୍ଞରେ ତୁମ ଶରୀରକୁ ଆହୁତି ଦେଇଦିଅ । ସନ୍ଧ୍ୟେ ! ତୁମେ ଏହି ପର୍ବତ ଉପରେ ଚାରିଯୁଗ ହେଲା କଠୋର ତପସ୍ୟା କରୁଛ । ଚଳିତ ଚତୁର୍ଯୁଗୀର ସତ୍ୟଯୁଗ ବିତିଯିବା ପରେ ତ୍ରେତାର ପ୍ରଥମ ଭାଗରେ ପ୍ରଜାପତି ଦକ୍ଷଙ୍କର ଅନେକ କନ୍ୟା ହୋଇଥିଲେ । ସେ ସେହି ସୁଶୀଳା କନ୍ୟାମାନଙ୍କର ଯଥାଯୋଗ୍ୟ ବରଙ୍କ ସଙ୍ଗେ ବିବାହ କରିଦେଇଥିଲେ । ସେମାନଙ୍କ ମଧ୍ୟରୁ ସତେଇଶଟି କନ୍ୟାଙ୍କର ବିବାହ ସେ ଚନ୍ଦ୍ରଙ୍କ ସହିତ କରିଥିଲେ । ଚନ୍ଦ୍ର ଅନ୍ୟ ପତ୍ନୀଙ୍କୁ ଉପେକ୍ଷା କରି କେବଳ ରୋହିଣୀଙ୍କୁ ପ୍ରେମ କଲେ । ଏହି କାରଣରୁ ଦକ୍ଷ କ୍ରୋଧିତ ହୋଇ ଚନ୍ଦ୍ରଙ୍କୁ ଶାପ ଦେବାରୁ ସମସ୍ତ ଦେବତା ତୁମ ପାଖକୁ ଆସିଲେ । ପରନ୍ତୁ ତୁମ ମନ ମୋଠାରେ ଲୀନ ଥିଲା, ତେଣୁ ତୁମେ ବ୍ରହ୍ମାଦିଙ୍କ ସଙ୍ଗେ ଆଗତ ଦେବତାଙ୍କ ଆଡ଼କୁ ଦୃଷ୍ଟିପାତ ମଧ୍ୟ କଲ ନାହିଁ । ସେତେବେଳେ ବ୍ରହ୍ମା ଆକାଶ ଆଡ଼କୁ ଚାହିଁ ଏବଂ ଚନ୍ଦ୍ରଙ୍କୁ ଶାପମୁକ୍ତ କରି ପୁନଃ ତାଙ୍କ ସ୍ୱରୂପ ପ୍ରାପ୍ତ କରାଇବା ଉଦ୍ଦେଶ୍ୟରେ ଏକ ନଦୀ ସୃଷ୍ଟି କରିଥିଲେ । ତାହା ଚନ୍ଦ୍ରଭାଗା ନାମରେ ବିଖ୍ୟାତ ହୋଇଛି । ଚନ୍ଦ୍ରଭାଗାର ଉତ୍ପତ୍ତି କାଳରେ ମହର୍ଷି ମେଧାତିଥି ସେଠାରେ ଉପସ୍ଥିତ ଥିଲେ । ତପସ୍ୟାରେ ତାଙ୍କର ସମକକ୍ଷ ହେବା ଭଳି ଆଉ କେହି ନ ଥିଲେ, ନାହାନ୍ତି କି ହେବେ ନାହିଁ । ସେହି ମହର୍ଷି ହିଁ ଅତ୍ୟନ୍ତ ବିଧି-ବିଧାନପୂର୍ବକ ଦୀର୍ଘକାଳ ପର୍ଯ୍ୟନ୍ତ ଜ୍ୟୋତିଷ୍ଟୋମ ନାମକ ଏକ ମହାଯଜ୍ଞ ଆରମ୍ଭ କରିଛନ୍ତି । ସେଥିରେ ଅଗ୍ନିଦେବ ପୂର୍ଣ୍ଣରୂପେ ପ୍ରଜ୍ୱଳିତ ହେଉଛନ୍ତି । ସେହି ଅଗ୍ନିରେ ତୁମେ ନିଜ ଶରୀରକୁ ଆହୁତି ଦେଇ ପରମ ପବିତ୍ର ହୋଇଯାଅ । ଏହା କଲେ ତୁମର ପୂର୍ବପ୍ରତିଜ୍ଞା ପୂର୍ଣ୍ଣ ହୋଇଯିବ ।

ଏହିରୂପେ ସନ୍ଧ୍ୟାକୁ ତା'ର ହିତ ନିମନ୍ତେ ଉପଦେଶ ଦେଇ ଦେବେଶ୍ୱର ଭଗବାନ ଶିବ ସେଠାରୁ ଅନ୍ତର୍ହିତ ହୋଇଗଲେ । (ଅଧ୍ୟାୟ ୬)

★★★

## ସନ୍ଧ୍ୟାର ଆତ୍ମାହୁତି, ଅରୁନ୍ଧତୀରୂପେ ପୁନଃ ଅବତରଣ ଓ ମୁନିବର ବଶିଷ୍ଠଙ୍କ ସଙ୍ଗେ ବିବାହ; ରୁଦ୍ରଙ୍କ ବିବାହ ନିମନ୍ତେ ବ୍ରହ୍ମାଙ୍କ ପ୍ରଯତ୍ନ ଓ ଚିନ୍ତା ଏବଂ ବିଷ୍ଣୁଙ୍କ ଠାରୁ ଶିବାଙ୍କ ଆରାଧନାର ଉପଦେଶ ପାଇ ବ୍ରହ୍ମାଙ୍କର ଚିନ୍ତାମୁକ୍ତି

ବ୍ରହ୍ମା କହୁଛନ୍ତି—ନାରଦ ! ବର ଦେଇସାରି ଭଗବାନ ଶଙ୍କର ଅନ୍ତର୍ହିତ ହୋଇଯିବା ପରେ ସନ୍ଧ୍ୟା ମେଧାତିଥିଙ୍କ ଯଜ୍ଞସ୍ଥଳକୁ ଗଲା । ଶିବଙ୍କ କୃପାରୁ ତାକୁ ସେଠାରେ କେହି ଦେଖି ପାରିଲେ ନାହିଁ । ମହାମୁନେ ! ପୂର୍ବକାଳରେ ମହର୍ଷି ବଶିଷ୍ଠ ମୋ ଆଜ୍ଞାରେ ତେଜସ୍ୱୀ ବ୍ରହ୍ମଚାରୀ ବେଶ ଧାରଣ କରି ସଂଧ୍ୟାକୁ ତପସ୍ୟା କରିବାର ଉପଯୋଗୀ ନିୟମ ଉପଦେଶ ଦେଇଥିଲେ । ତେଣୁ ସେ ସେହି ତେଜସ୍ୱୀ ବ୍ରହ୍ମଚାରୀଙ୍କୁ ହିଁ ସ୍ମରଣ କଲା । ସଂଧ୍ୟା ସେହି ଉପଦେଷ୍ଟା ବ୍ରହ୍ମଚାରୀ ବ୍ରାହ୍ମଣ ବଶିଷ୍ଠଙ୍କୁ ସ୍ୱାମୀରୂପରେ ପାଇବାର ଇଚ୍ଛା ରଖି ପ୍ରଜ୍ୱଳିତ ଅଗ୍ନି ପାଖକୁ ଗଲା । ଶିବଙ୍କ କୃପାରୁ ମୁନିମାନେ ତାକୁ ଦେଖି ପାରିଲେ ନାହିଁ । ସେ ସହର୍ଷ ଯଜ୍ଞାଗ୍ନିରେ ପ୍ରବିଷ୍ଟ ହୋଇଗଲା । ତା'ର

ଶରୀର ପୁରୋଡାଶ (ଯଜ୍ଞଭାଗ) ପରି ଅବିଳମ୍ବେ ଦଗ୍ଧ ହୋଇଗଲା ଏବଂ ସେହି ପୁରୋଡାଶର ଅଲକ୍ଷିତ ଗନ୍ଧ ଚତୁର୍ଦ୍ଦିଗରେ ବ୍ୟାପ୍ତ ହୋଇଗଲା । ଭଗବାନ ଶଙ୍କରଙ୍କ ଆଜ୍ଞାରେ ଅଗ୍ନିଦେବ ତା'ର ସୁବର୍ଣ୍ଣତୁଲ୍ୟ ଶରୀରକୁ ଜଳାଇ ଶୁଦ୍ଧ କରି ପୁନଃ ସୂର୍ଯ୍ୟମଣ୍ଡଳରେ ପହଞ୍ଚାଇ ଦେଲେ । ତା'ପରେ ସୂର୍ଯ୍ୟ ପିତୃପୁରୁଷ ଓ ଦେବତାଙ୍କ ତୃପ୍ତି ନିମନ୍ତେ ତାହାକୁ ଦୁଇଭାଗରେ ବିଭକ୍ତ କରି ନିଜ ରଥରେ ସ୍ଥାପିତ କରିଦେଲେ ।

ମୁନୀଶ୍ୱର ! ତା'ର ଶରୀରର ଊର୍ଦ୍ଧ୍ୱଭାଗ ପ୍ରାତଃସନ୍ଧ୍ୟା ହେଲା, ଯାହାକି ରାତି ଓ ଦିନର ମଝିରେ ବା ସନ୍ଧିକାଳରେ ପଡୁଥିବା ଆଦିସନ୍ଧ୍ୟା ଏବଂ ତା'ର ଅଧଃଭାଗ ସାୟଂସନ୍ଧ୍ୟା ହେଲା, ଯାହାକି ଦିନ ଓ ରାତିର ସନ୍ଧିକାଳରେ ପଡୁଥିବା ଅନ୍ତିମ ସଂଧ୍ୟା । ସାୟଂସନ୍ଧ୍ୟା ସର୍ବଦା ପିତୃପୁରୁଷଙ୍କୁ ପ୍ରସନ୍ନତା ପ୍ରଦାନ କରିଥାଏ । ସୂର୍ଯ୍ୟୋଦୟ ପୂର୍ବରୁ ସିନ୍ଦୂରା ଫାଟିବା ବେଳେ ପ୍ରାତଃସନ୍ଧ୍ୟା ପ୍ରକଟ ହୁଏ । ଏହା ଦେବଗଣଙ୍କୁ ପ୍ରସନ୍ନ କରିଥାଏ । ସୂର୍ଯ୍ୟ ରକ୍ତବର୍ଣ୍ଣ ଧରି ଅସ୍ତଗାମୀ ହେଉଥିବାବେଳେ ସାୟଂସନ୍ଧ୍ୟା ପ୍ରକଟ ହୁଏ, ଯାହାକି ପିତୃଗଣଙ୍କ ପାଇଁ ସୁଖଦାୟୀ । ପରମ ଦୟାଳୁ ଭଗବାନ ଶିବ ତା'ର ମନ ସମେତ ପ୍ରାଣକୁ ଦିବ୍ୟଶରୀରରେ ସଂଯୁକ୍ତ କରି ତାକୁ ଦେହଧାରୀ କରିଦେଲେ । ମୁନିଙ୍କ ଯଜ୍ଞ ସମାପ୍ତି ସମୟରେ ସେ ଅଗ୍ନିର ଜ୍ୱାଳାରୁ ପ୍ରକଟିତ ହୋଇ ତପ୍ତକାଞ୍ଚନ ପରି କାନ୍ତି ଧାରଣ କରି ମହର୍ଷି ମେଧାତିଥିଙ୍କୁ କନ୍ୟାରୂପେ ପ୍ରାପ୍ତ ହେଲା । ମୁନି ଅତ୍ୟନ୍ତ ହର୍ଷିତ ହୋଇ ତାହାକୁ କନ୍ୟାରୂପେ ଗ୍ରହଣ କଲେ । ସେ ତାକୁ ସ୍ନାନ କରାଇ ଯଜ୍ଞ ନିମନ୍ତେ ନିଜ କୋଳରେ ବସାଇଲେ । ସେ ଏବଂ ତାଙ୍କର ଶିଷ୍ୟମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ମୁନି ତାହାର ନାମ ରଖିଲେ 'ଅରୁନ୍ଧତୀ' । ଅରୁନ୍ଧତୀ କୌଣସି କାରଣରୁ ଧର୍ମର ଅବରୋଧ କରୁ ନ ଥିଲା, ଏହି ଗୁଣ ହେତୁ ସେ ସ୍ୱୟଂ ଏହି ତ୍ରିଭୁବନ ବିଖ୍ୟାତ ନାମ ପାଇଲା । ଦେବର୍ଷେ ! ଯଜ୍ଞସମାପ୍ତିରେ କୃତକୃତ୍ୟ



ହୋଇଥିବା ମୁନି ମେଧାତିଥି କନ୍ୟା ଲାଭ କରିଥିବାରୁ ବହୁତ ପ୍ରସନ୍ନ ଥିଲେ ଏବଂ ନିଜ ଶିଷ୍ୟଗଣଙ୍କ ଗହଣରେ ଆଶ୍ରମରେ ରହି ସଦା ତା'ର ଲାଳନ ପାଳନ କରୁଥିଲେ । ଅରୁନ୍ଧତୀ ଚନ୍ଦ୍ରଭାଗା ତଟରେ ତପୋବନ ମଧ୍ୟରେ ମୁନିବର ମେଧାତିଥିଙ୍କ ଆଶ୍ରମରେ ଧୀରେ ଧୀରେ ବଡ଼ ହେଲା । ସେ ବିବାହଯୋଗ୍ୟା ହୋଇଯିବାରୁ ମୁଁ, ବିଷ୍ଣୁ ଓ ମହେଶ୍ୱର ମିଶି ମୋ ପୁତ୍ର ବଶିଷ୍ଠଙ୍କ ସଙ୍ଗେ ତା'ର ବିବାହ କରାଇଦେଲୁ । ବିବାହରେ ଆମ ତିନିଜଣଙ୍କ ହସ୍ତରୁ ନିର୍ଗତ ଜଳଧାରାରୁ ଶିପ୍ରା ଆଦି ସାତଟି ପରମ ପବିତ୍ର ନଦୀଙ୍କର ଉତ୍ପତ୍ତି ହେଲା ।

ମୁନିବର ! ମେଧାତିଥିଙ୍କ କନ୍ୟା ମହାସାଧ୍ୱୀ ଅରୁନ୍ଧତୀ ସମସ୍ତ ପତିବ୍ରତାଙ୍କ ଭିତରେ ଶ୍ରେଷ୍ଠ ଥିଲେ । ସେ ବଶିଷ୍ଠଙ୍କୁ ପ୍ରିୟତମ ସ୍ୱାମୀରୂପେ ପାଇ ବିଶେଷରୂପେ ଶୋଭାନ୍ୱିତା ହେଲେ । ସେ ଶକ୍ତି ଆଦି ଶୁଭଲକ୍ଷଣଯୁକ୍ତ ଶ୍ରେଷ୍ଠ ପୁତ୍ରମାନଙ୍କୁ ଜନ୍ମ ଦେଲେ । ମୁନିଶିରୋମଣେ! ମୁଁ ତୁମ ଆଗରେ

ସଂଧ୍ୟାର ପବିତ୍ର ଚରିତ୍ର ବର୍ଣ୍ଣନା କରିଦେଲି । ଏହା ପରମ ପାବନ ଓ ଦିବ୍ୟ । ଯେଉଁ ନାରୀ ବା ଶୁଭବ୍ରତଧାରୀ ପୁରୁଷ ଏହି ପ୍ରସଙ୍ଗ ଶ୍ରବଣ କରେ, ତା'ର ସମସ୍ତ ମନୋବାଞ୍ଛା ପୂରଣ ହୋଇଥାଏ; ଏଥିରେ ସଂଶୟର ଅବକାଶ ନାହିଁ ।

ପ୍ରଜାପତି ବ୍ରହ୍ମାଙ୍କ ଠାରୁ ଏକଥା ଶୁଣି ନାରଦଙ୍କ ମନ ପ୍ରସନ୍ନ ହୋଇଗଲା । ସେ କହିଲେ—

ନାରଦ କହିଲେ—ବ୍ରହ୍ମନ୍ ! ଆପଣ ଅରୁନ୍ଧତୀଙ୍କର ଓ ତାଙ୍କ ପୂର୍ବଜନ୍ମରୂପେ ସନ୍ଧ୍ୟାର ଯେଉଁ ଚରିତ୍ର ଶୁଣାଇଲେ, ତାହା ଅତ୍ୟନ୍ତ ଉତ୍ତମ ଓ ଦିବ୍ୟ । ଏହା ଶିବଭକ୍ତି ବୃଦ୍ଧି କରିଥାଏ । ହେ ଧର୍ମଜ୍ଞ ! ଏଥର ଆପଣ ଭଗବାନ ଶିବଙ୍କର ପରମ ପବିତ୍ର, ପାପବିନାଶକ, ଉତ୍ତମ ଓ ମଙ୍ଗଳପ୍ରଦ ଚରିତ୍ର ବର୍ଣ୍ଣନା କରନ୍ତୁ । କାମଦେବ ରତିଙ୍କ ସଙ୍ଗେ ବିବାହ କରି ସହର୍ଷ ଚ୍ଲିଯିବା ପରେ ଦକ୍ଷାଦି ପ୍ରଜାପତି ତଥା ଅନ୍ୟ ମୁନିମାନେ ମଧ୍ୟ ନିଜ ନିଜ ସ୍ଥାନକୁ ଫେରିଗଲେ, ପୁଣି ସନ୍ଧ୍ୟା ମଧ୍ୟ ତପସ୍ୟା କରିବା ପାଇଁ ଚ୍ଲିଗଲା । ତା'ପରେ ସେଠାରେ କ'ଣ ହେଲା?

ବ୍ରହ୍ମା କହିଲେ—ବିପ୍ରବର ନାରଦ ! ତୁମେ ଧନ୍ୟ, ତୁମେ ଭଗବାନ ଶିବଙ୍କର ସେବକ; ତେଣୁ ଏବେ ଶିବଲୀଳା ସମ୍ବନ୍ଧିତ ସେହି ଶୁଭ ଚରିତ୍ର ଶ୍ରବଣ କର । ବତ୍ସ ! ପୂର୍ବକାଳରେ ମୁଁ ଯେତେବେଳେ ଥରେ ମୋହରେ ପଡ଼ିଯାଇଥିଲି ଏବଂ ଭଗବାନ ଶିବ ମୋର ଉପହାସ କରିଥିଲେ, ସେତେବେଳେ ମୋ ମନରେ ବହୁତ କ୍ଷୋଭ ସୃଷ୍ଟି ହୋଇଥିଲା । ବସ୍ତୁତଃ ଶିବଙ୍କ ମାୟା ହିଁ ମୋତେ ମୋହି ନେଇଥିଲା, ସେଥିପାଇଁ ମୁଁ ଶିବଙ୍କ ପ୍ରତି ଈର୍ଷା କରିଥିଲି । ତାହା କିପରି ହୋଇଥିଲା ଏବେ କହୁଛି, ଶୁଣ । ଥରେ ଦକ୍ଷାଦି ପୁତ୍ର ଯେଉଁଠି ଉପସ୍ଥିତ ଥିଲେ, ମୁଁ ସେଠାକୁ ଗଲି । ସେଠାରେ ରତି ସହିତ କାମଦେବ ମଧ୍ୟ ଥିଲେ । ନାରଦ ! ମୁଁ ଅତି ଆନନ୍ଦରେ ଦକ୍ଷ ଓ ଅନ୍ୟ ପୁତ୍ରଙ୍କୁ ସମ୍ବୋଧିତ କରି ବାର୍ତ୍ତାଳାପ ଆରମ୍ଭ କଲି । ବାର୍ତ୍ତାଳାପ ସମୟରେ ମୁଁ ଶିବଙ୍କ ମାୟାରେ ପୂର୍ଣ୍ଣରୂପେ ମୋହିତ ଥିଲି । ତେଣୁ ମୁଁ କହିଲି, "ପୁତ୍ରଗଣ ! ତୁମେ ଏଭଳି ପ୍ରଯତ୍ନ କର, ଯାହାଫଳରେ ମହାଦେବ କୌଣସି କମନୀୟ-କାନ୍ତିଯୁକ୍ତା ରମଣୀର ପାଣିଗ୍ରହଣ କରିବେ ।" ତା'ପରେ ମୁଁ ଭଗବାନ ଶିବଙ୍କୁ ମୋହିତ କରିବାର ଭାର ରତି ଓ କାମଦେବ ଉପରେ ଅର୍ପଣ କଲି । କାମଦେବ ମୋ ଆଜ୍ଞା ମାନି କହିଲେ, "ପ୍ରଭୋ ! ସୁନ୍ଦରୀ ନାରୀ ହିଁ ମୋର ଅସ୍ତ୍ର । ତେଣୁ ଶିବଙ୍କୁ ମୋହିତ କରିବା ପାଇଁ ଜଣେ ନାରୀକୁ ସୃଷ୍ଟି କରନ୍ତୁ ।" ଏହା ଶୁଣି ମୁଁ ଚିନ୍ତାରେ ଦୀର୍ଘନିଃଶ୍ୱାସ ମାରିଲି । ମୋର ସେହି ନିଃଶ୍ୱାସରୁ ରାଶି ରାଶି ପୁଷ୍ପରେ ବିଭୂଷିତ ବସନ୍ତର ଆବିର୍ଭାବ ହେଲା । ବସନ୍ତ ଓ ମଳୟାନିଳ—ଏ ଦୁହେଁ ମଦନର ସହାୟକ ହେଲେ । ଏମାନଙ୍କୁ ସଙ୍ଗରେ ନେଇ କାମଦେବ ବାମଦେବଙ୍କୁ ମୋହିତ କରିବାର ବାରଂବାର ପ୍ରଚେଷ୍ଟା କଲେ; ହେଲେ ତାଙ୍କୁ ସଫଳତା ମିଳିଲା ନାହିଁ । ସେ ନିରାଶ ହୋଇ ଫେରିଆସିଲାରୁ ମୋତେ ଦୁଃଖ ଲାଗିଲା । ସେତେବେଳେ ମୋର ଯେଉଁ ନିଃଶ୍ୱାସ ବାୟୁ ବହିଲା, ସେଥିରୁ ମାରଗଣ ଉତ୍ପନ୍ନ ହେଲେ । ସେମାନଙ୍କୁ ମଦନଙ୍କର ସହାୟତା କରିବାକୁ ଆଦେଶ ଦେଇ ମୁଁ ପୁନଃ ସେମାନଙ୍କୁ ଶିବଙ୍କ ପାଖକୁ ପଠାଇଦେଲି । ମାତ୍ର ଯେତେ ଚେଷ୍ଟା କଲେ ସୁଦ୍ଧା ସେମାନେ ମଧ୍ୟ ଭଗବାନ ଶିବଙ୍କୁ ମୋହରେ ପକାଇ ପାରିଲେ ନାହିଁ । କାମ ସପରିବାର ଫେରିଆସିଲେ ଏବଂ ମୋତେ ପ୍ରଣାମ କରି ସ୍ୱସ୍ଥାନକୁ ଫେରିଗଲେ ।

ସେ ଚ୍ଲିଯିବା ପରେ ମୁଁ ମନେ ମନେ ଭାବିଲି—କ'ଣ କଲେ ଆତ୍ମସଂଯମୀ, ଯୋଗ-ପରାୟଣ ତଥା ନିର୍ବିକାର ଭଗବାନ ଶଙ୍କର ବିବାହ କରି କାହାକୁ ସହଧର୍ମିଣୀରୂପେ ଗ୍ରହଣ

କରିବେ? ଏଭଳି ଭାବୁ ଭାବୁ ମୁଁ ଭକ୍ତିଭାବରେ ଶ୍ରୀହରିଙ୍କୁ ସ୍ମରଣ କଲି, ଯେ କି ସାକ୍ଷାତ୍ ଶିବସ୍ୱରୂପ ତଥା ମୋ ଶରୀରର ଜନ୍ମଦାତା । ମୁଁ ଦୈନ୍ୟଭାବରେ ଶୁଭ ସ୍ତୋତ୍ର ଦ୍ୱାରା ତାଙ୍କୁ ସ୍ତୁତି କଲି । ସ୍ତୁତି ଶୁଣି ଭଗବାନ ଖୁବ୍ ଶୀଘ୍ର ମୋ ସମ୍ମୁଖରେ ପ୍ରକଟ ହୋଇଗଲେ । ସେ ଆପଣା ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରିଥିଲେ । ତାଙ୍କ ନେତ୍ର ପ୍ରଫୁଲ୍ଲିତ ପଦ୍ମତୁଲ୍ୟ ସୁନ୍ଦର ଥିଲା । ତାଙ୍କର ଶ୍ୟାମ ଶରୀର ଉପରେ ପୀତବସ୍ତ୍ର ଅତ୍ୟନ୍ତ ମନୋହର ଦିଶୁଥିଲା । ଭଗବାନ ଶ୍ରୀହରି ଭକ୍ତପ୍ରିୟ ଅଟନ୍ତି । ଏଭଳି ଉତ୍ତମ ଶରଣଦାତା ଶ୍ରୀହରିଙ୍କୁ ଦେଖି ମୋ ନେତ୍ରରୁ ପ୍ରେମାଶ୍ରୁଧାରା ବହିବାକୁ ଲାଗିଲା ଏବଂ ମୁଁ ଗଦ୍‌ଗଦ କଣ୍ଠରେ ତାଙ୍କୁ ସ୍ତୁତି କରିବାକୁ ଲାଗିଲି । ମୋର ସ୍ତୁତି ଶୁଣି ଭକ୍ତଦୁଃଖହାରୀ ଭଗବାନ ବିଷ୍ଣୁ ବହୁତ ପ୍ରସନ୍ନ ହେଲେ । ମୋତେ ଶରଣାଗତ ଜାଣି ସେ କହିଲେ "ହେ ମହାପ୍ରାଜ୍ଞ ବିଧାତା ! ଲୋକସ୍ରଷ୍ଟା ବ୍ରହ୍ମନ୍ ! ତୁମେ ଧନ୍ୟ । କୁହ, ଆଜି କେଉଁ କାରଣରୁ ମୋତେ ସ୍ମରଣ କଲ ? ଆଉ କେଉଁ ଉଦ୍ଦେଶ୍ୟରେ ଏଭଳି ସ୍ତୁତି କରିଚାଲିଛ? ତୁମ ଉପରେ କ'ଣ ଏଭଳି ଦୁଃଖ ପଡ଼ିଗଲା, ମୋତେ କୁହ । ମୁଁ ତୁମର ସବୁ ଦୁଃଖ ଦୂର କରିଦେବି । ଏ ବିଷୟରେ ମନରେ ସନ୍ଦେହ ନ ରଖ ।

ଏହାପରେ ବ୍ରହ୍ମା ସବୁ କଥା ଶୁଣାଇ କହିଲେ, "କେଶବ ! ଯଦି ଭଗବାନ ଶିବ କୌଣସି ପ୍ରକାରେ ଦାରପରିଗ୍ରହ ବା ବିବାହ କରନ୍ତେ, ତେବେ ମୁଁ ଖୁସୀ ହୁଅନ୍ତି ଓ ମୋ ମନର ସବୁ ଦୁଃଖ ଦୂର ହୋଇଯାଆନ୍ତା । ଏହି ଉଦ୍ଦେଶ୍ୟରେ ମୁଁ ଆପଣଙ୍କ ଶରଣକୁ ଆସିଛି ।"

ମୋ କଥା ଶୁଣି ଭଗବାନ ହସିଦେଲେ ଏବଂ ମୋତେ ଆନନ୍ଦିତ କରିବାକୁ କହିଲେ– ବିଧାତା ! ତୁମେ ମୋ କଥା ଶୁଣ । ଏହା ତୁମର ଭ୍ରମ ନିବାରଣ କରିବ । ମୋ ବଚନ ହିଁ ବେଦ ଓ ଶାସ୍ତ୍ର ଆଦିର ବାସ୍ତବିକ ସିଦ୍ଧାନ୍ତ । ଶିବ ହିଁ ସମସ୍ତଙ୍କର କର୍ତ୍ତା, ଭର୍ତ୍ତା ଓ ସଂହର୍ତ୍ତା । ସେ ହିଁ ପରାତ୍ପର ପ୍ରଭୁ । ସେ ପରବ୍ରହ୍ମ, ପରେଶ, ନିର୍ଗୁଣ, ନିତ୍ୟ, ଅନିର୍ଦ୍ଦେଶ୍ୟ, ନିର୍ବିକାର, ଅଦ୍ୱିତୀୟ, ଅଚ୍ୟୁତ, ଅନନ୍ତ, ସବୁରି ସଂହାରକ, ସ୍ୱାମୀ, ସର୍ବବ୍ୟାପୀ ପରମାତ୍ମା ତଥା ପରମେଶ୍ୱର । ସେ ହିଁ ସୃଜନକାରୀ, ପାଳନକାରୀ ଓ ସଂହାରକାରୀ; ସେ ତ୍ରିଗୁଣର ଆଶ୍ରୟ, ବ୍ୟାପକ, ବ୍ରହ୍ମା, ବିଷ୍ଣୁ ଓ ମହେଶ ନାମରେ ପ୍ରସିଦ୍ଧ; ପୁଣି ରଜୋଗୁଣ, ସତ୍ତ୍ୱଗୁଣ ଓ ତମୋଗୁଣରୁ ଅତୀତ । ମାୟାରେ ହିଁ ସେ ଭେଦଯୁକ୍ତ ପ୍ରତୀତ ହୋଇଥାନ୍ତି; ସେ ନିରୀହ, ମାୟାରହିତ, ମାୟାର ସ୍ୱାମୀ ବା ପ୍ରେରକ, ଚତୁର, ସଗୁଣ, ସ୍ୱତନ୍ତ୍ର, ଆତ୍ମାନନ୍ଦସ୍ୱରୂପ, ନିର୍ବିକଳ୍ପ, ଆତ୍ମାରାମ, ନିର୍ଦ୍ୱନ୍ଦ୍ୱ, ଭକ୍ତାଧୀନ, ସୁନ୍ଦର ତନୁଧାରୀ, ଯୋଗୀ, ନିତ୍ୟ ଯୋଗପରାୟଣ, ଯୋଗମାର୍ଗଦର୍ଶକ, ଗର୍ବହାରୀ, ଲୋକେଶ୍ୱର ଓ ସଦା ଦୀନବତ୍ସଳ ଅଟନ୍ତି । ତୁମେ ସେହି ସର୍ବାତ୍ମନା ଶମ୍ଭୁଙ୍କ ଶରଣକୁ ଯାଅ ଏବଂ ତାଙ୍କୁ ଭଜ । ସେ ସନ୍ତୁଷ୍ଟ ହୋଇ ତୁମର କଲ୍ୟାଣ କରିବେ । ବ୍ରହ୍ମନ୍ ! ଯଦି ତୁମ ମନରେ ଏ ବିଚାର ଅଛି ଯେ ଶିବ ପାଣିଗ୍ରହଣ କରନ୍ତୁ, ତେବେ ଶିବଙ୍କୁ ସ୍ମରଣ କରିବା ସହ ଶିବାଙ୍କୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ ଉତ୍ତମ ତପସ୍ୟା କର । ହୃଦୟରେ ଏହି ମନୋରଥକୁ ଧାରଣ କରି ଦେବୀ ଶିବାଙ୍କୁ ଧ୍ୟାନ କର । ଦେବେଶ୍ୱରୀ ପ୍ରସନ୍ନ ହୋଇଗଲେ ସବୁ କାର୍ଯ୍ୟ ହୋଇଯିବ । ଯଦି ଶିବା ସଗୁଣରୂପରେ ଅବତାର ଗ୍ରହଣ କରି ଜଗତରେ କାହାରି କନ୍ୟା ହୋଇ ମାନବଶରୀର ଗ୍ରହଣ କରିବେ, ତେବେ ସେ ନିଶ୍ଚିତରୂପେ ମହାଦେବଙ୍କ ପତ୍ନୀ ହେବେ । ବ୍ରହ୍ମନ୍ ! ତୁମେ ଦକ୍ଷଙ୍କୁ ଆଜ୍ଞା ଦିଅ–ସେ ଭଗବାନ ଶିବଙ୍କ ପାଇଁ ପତ୍ନୀ ଉତ୍ପାଦନ କରିବା ଉଦ୍ଦେଶ୍ୟରେ ସ୍ୱତଃ

ଭକ୍ତିଭାବରେ ପ୍ରଯତ୍ନ କରିବା ସହ ତପସ୍ୟା କରନ୍ତୁ । ତାତ ! ଶିବା ଓ ଶିବ ଉଭୟଙ୍କୁ ତୁମେ ଭକ୍ତର ଅଧୀନ ବୋଲି ଜାଣ । ସେମାନେ ନିର୍ଗୁଣ ପରବ୍ରହ୍ମସ୍ୱରୂପ ହୋଇ ମଧ୍ୟ ସ୍ୱେଚ୍ଛାରେ ସଗୁଣ ହୋଇଯାଆନ୍ତି ।

ବିଧେ ! ଶିବଙ୍କ ଇଚ୍ଛାରେ ପ୍ରକଟ ହୋଇ ଆମେ ଦୁହେଁ ଯେବେ ତାଙ୍କୁ ପ୍ରାର୍ଥନା କରିଥିଲେ, ସେତେବେଳେ ସେ ଯେଉଁ କଥା କହିଥିଲେ, ତାହା ମନେ ପକାଅ । ବ୍ରହ୍ମନ୍ ! ନିଜ ଶକ୍ତିରେ ସୁନ୍ଦର ଲୀଳା ବିହାର କରୁଥିବା ନିର୍ଗୁଣ ଶିବ ସ୍ୱେଚ୍ଛାରେ ସଗୁଣ ହୋଇ ମୋତେ ଓ ତୁମକୁ ସୃଷ୍ଟିକାର୍ଯ୍ୟ କରିବାକୁ ଆଦେଶ ଦେଇଥିଲେ । ଉମାଙ୍କ ସଙ୍ଗରେ ବିଦ୍ୟମାନ ସେହି ପ୍ରଭୁ ମୋ ଉପରେ ସୃଷ୍ଟିର ପାଳନ ଦାୟିତ୍ୱ ନ୍ୟସ୍ତ କଲେ । ନାନା ଲୀଳାବିଶାରଦ ଦୟାଳୁ ପ୍ରଭୁ ହସି ହସି ଆକାଶ ଆଡ଼କୁ ଚାହିଁ ସ୍ନେହରେ କହିଲେ, "ବିଷ୍ଣୋ ! ମୋର ଉତ୍କୃଷ୍ଟ ରୂପ ଏହି ବିଧାତାଙ୍କ ଅଙ୍ଗରୁ ଜଗତରେ ପ୍ରକଟ ହେବ, ଯାହାଙ୍କ ନାମ ହେବ ରୁଦ୍ର । ରୁଦ୍ରଙ୍କ ରୂପ ମୋରି ପରି ହେବ । ସେ ମୋର ପୂର୍ଣ୍ଣରୂପ ହେବେ । ତୁମେ ଦୁହେଁ ତାଙ୍କୁ ପୂଜା କରିବା ଉଚିତ । ସେ ତୁମ ଦୁହିଙ୍କ ମନୋରଥ ପୂର୍ଣ୍ଣ କରିବେ । ସେ ଜଗତର ପ୍ରଳୟ କରିବେ । ସେ ସମସ୍ତ ଗୁଣର ଦ୍ରଷ୍ଟା, ନିର୍ବିଶେଷ ଓ ଉତ୍ତମ ଯୋଗର ପାଳକ ହେବେ । ଯଦ୍ୟପି ତୁମେ ତ୍ରିଦେବ ମୋର ହିଁ ସ୍ୱରୂପ, ତଥାପି ବିଶେଷତଃ ରୁଦ୍ର ହିଁ ମୋର ପୂର୍ଣ୍ଣରୂପ ହେବେ । ପୁତ୍ରଗଣ ! ଦେବୀ ଉମାଙ୍କର ମଧ୍ୟ ତିନି ରୂପ ହେବ । ଗୋଟିଏ ରୂପର ନାମ ହେବ ଲକ୍ଷ୍ମୀ, ସେ ଶ୍ରୀହରିଙ୍କ ପତ୍ନୀ ହେବେ । ଦ୍ୱିତୀୟ ରୂପ ବ୍ରହ୍ମାଙ୍କ ପତ୍ନୀ ସରସ୍ୱତୀ ହେବ ଓ ତୃତୀୟ ରୂପ ସତୀ ନାମରେ ପ୍ରସିଦ୍ଧ ହେବ । ସତୀ ହେବେ ଉମାଙ୍କର ପୂର୍ଣ୍ଣରୂପ । ସେ ହିଁ ଭାବୀ ରୁଦ୍ରଙ୍କର ପତ୍ନୀ ହେବେ ।"

ଭଗବାନ ମହେଶ୍ୱର କୃପାପୂର୍ବକ ଆମକୁ ଏତିକି କହିଦେଇ ଅନ୍ତର୍ହିତ ହୋଇଗଲେ ଓ ଆମେ ଦୁହେଁ ଆନନ୍ଦରେ ନିଜ ନିଜ କାର୍ଯ୍ୟ ଚଳାଇଲେ । ବ୍ରହ୍ମନ୍ ! ସମୟକ୍ରମେ ଆମେ ଦୁହେଁ ସପତ୍ନୀକ ହୋଇଗଲେ ଓ ସାକ୍ଷାତ୍ ଭଗବାନ ଶଙ୍କର ରୁଦ୍ର ନାମରେ ଅବତୀର୍ଣ୍ଣ ହେଲେ । ସେ ଏବେ କୈଳାସ ପର୍ବତ ଉପରେ ନିବାସ କରୁଛନ୍ତି । ପ୍ରଜେଶ୍ୱର ! ଏବେ ଶିବା ମଧ୍ୟ ସତୀ ନାମରେ ଅବତୀର୍ଣ୍ଣ ହେବେ । ତେଣୁ ତୁମେ ତାଙ୍କର ଜନ୍ମ ପାଇଁ ପ୍ରଯତ୍ନ କରିବା ଉଚିତ ।

ଭଗବାନ ବିଷ୍ଣୁ ପରମ ଅନୁଗ୍ରହପୂର୍ବକ ମୋତେ ଏତିକି କହି ଅନ୍ତର୍ହିତ ହୋଇଗଲେ । ତାଙ୍କ କଥା ଶୁଣି ମୋତେ ବହୁତ ଆନନ୍ଦ ଲାଭ ହେଲା । (ଅଧ୍ୟାୟ ୭–୧୦)



## ଦକ୍ଷଙ୍କ ତପସ୍ୟା ଓ ଦେବୀ ଶିବାଙ୍କ ଠାରୁ ବରପ୍ରାପ୍ତି

ନାରଦ ପଚାରିଲେ–ପୂଜ୍ୟ ପିତୃଦେବ ! ନିଜ ବ୍ରତରେ ଅଟଳ ରହୁଥିବା ଦକ୍ଷ ତପସ୍ୟା କରି ଦେବୀଙ୍କ ଠାରୁ କେଉଁ ବର ପାଇଲେ ଏବଂ ଦେବୀ କେଉଁ ପ୍ରକାରେ ଦକ୍ଷଙ୍କ କନ୍ୟା ହେଲେ?

ବ୍ରହ୍ମା କହିଲେ–ନାରଦ ! ତୁମେ ଧନ୍ୟ । ଏ ସମସ୍ତ ମୁନିଙ୍କ ଗହଣରେ ତୁମେ ଭକ୍ତିପୂର୍ବକ ଏହି ପ୍ରସଙ୍ଗକୁ ଶୁଣ । ମୋ ଆଜ୍ଞାରେ ମହାପ୍ରଜାପତି ଦକ୍ଷ କ୍ଷୀରସାଗରର ଉତ୍ତର ତଟକୁ ଯାଇ ଜଗଦମ୍ବାଙ୍କୁ ପୁତ୍ରୀରୂପେ ପ୍ରାପ୍ତ କରିବା ଓ ଦର୍ଶନ କରିବା ମାନସରେ ତାଙ୍କୁ ହୃଦୟ ମନ୍ଦିରରେ ବିରାଜମାନ କରାଇ ତପସ୍ୟା ଆରମ୍ଭ କଲେ । ଦକ୍ଷ ସଂଯତମନା ହୋଇ, ଦୃଢ଼ତାପୂର୍ବକ କଠୋର

ବ୍ରତ ପାଳନ କରି ଓ ଶୌଚ ସନ୍ତୋଷାଦି ନିୟମ ଧାରଣ କରି ତିନିହଜାର ବର୍ଷ ପର୍ଯ୍ୟନ୍ତ ତପସ୍ୟା କଲେ । ସେ କେବେ ଜଳ ପିଇ ତ କେବେ ବାୟୁ ଭକ୍ଷଣ କରି ତ ଆଉ କେବେ ସମ୍ପୂର୍ଣ୍ଣ ଉପବାସ ରହି ତପସ୍ୟା କରୁଥିଲେ । କେବେ କେବେ ଭୋଜନ ନାମରେ କେବଳ ଶୁଖିଲା ପତ୍ର ଗ୍ରେବାଇ ରହିଯାଉଥିଲେ ।

ମୁନିବର ନାରଦ ! ଏଭଳି ଯମ-ନିୟମାଦି ପାଳନ ସହିତ ତପସ୍ୟାରେ ନିମଗ୍ନ ରହିଥିବା ଦକ୍ଷଙ୍କୁ ଦେବୀ ଶିବା ପ୍ରତ୍ୟକ୍ଷ ଦର୍ଶନ ଦେଲେ । ଜଗନ୍ମୟୀ ଜଗଦମ୍ବାଙ୍କର ପ୍ରତ୍ୟକ୍ଷ ଦର୍ଶନ ପାଇ ଦକ୍ଷ ନିଜକୁ କୃତକୃତ୍ୟ ମଣିଲେ । କାଳିକାଦେବୀ ସିଂହ ଉପରେ ଆରୂଢ଼ା ଥିଲେ । ତାଙ୍କର ଅଙ୍ଗକାନ୍ତି ଥିଲା ଶ୍ୟାମଳ, ମୁଖ ଥିଲା ମନୋହର । ସେ ତାଙ୍କ ଚତୁର୍ଭୁଜରେ ବରଦ, ଅଭୟ, ନୀଳପଦ୍ମ ଓ ଖଡ୍ଗ ଧାରଣ କରିଥିଲେ । ତାଙ୍କର ବିଗ୍ରହ ଥିଲା ଅତ୍ୟନ୍ତ ମନୋହାରିଣୀ ଓ ନେତ୍ର ଥିଲା ଅରୁଣାଭ । ଉନ୍ମୁକ୍ତ କେଶ ତାଙ୍କର ଶୋଭାବର୍ଦ୍ଧନ କରୁଥିଲା । ଦିବ୍ୟ ଶୋଭାମୟୀ ଦେବୀ ଜଗନ୍ମାତାଙ୍କୁ ଉତ୍ତମରୂପେ ପ୍ରଣାମ କରି ଦକ୍ଷ ସୁନ୍ଦର ବଚନାବଳି ଦ୍ୱାରା ସ୍ତୁତି କଲେ ।

ଦକ୍ଷ କହିଲେ—ଜଗଦମ୍ବେ ! ମହାମାୟେ ! ଜଗଦୀଶେ ! ହେ ମହେଶ୍ୱରୀ ! ଆପଣଙ୍କୁ ନମସ୍କାର । ଆପଣ କୃପା କରି ମୋତେ ଦର୍ଶନ ଦେଲେ, ହେ ଭଗବତୀ ! ହେ ଆଦ୍ୟା ଶକ୍ତି ! ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ହେ ଶିବରୂପିଣୀ! ପ୍ରସନ୍ନ ହୁଅନ୍ତୁ । ହେ ଭକ୍ତବରଦାୟିନୀ ! ପ୍ରସନ୍ନ ହୁଅନ୍ତୁ । ଜଗନ୍ମାତ ! ଆପଣଙ୍କୁ ମୋର ନମସ୍କାର ।*

ବ୍ରହ୍ମା କହୁଛନ୍ତି—ମୁନେ ! ସଂଯତଚିତ୍ତ ଦକ୍ଷ ଏଭଳି ସ୍ତୁତି କରିବାରୁ ମହେଶ୍ୱରୀ ଶିବା ଆପେ



ଆପେ ଦକ୍ଷଙ୍କ ଅଭିପ୍ରାୟକୁ ଜାଣିଗଲେ । ତଥାପି କହିଲେ, "ହେ ଦକ୍ଷ ! ତୁମର ଉତ୍ତମ ଭକ୍ତିରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ । ଏଥର ତୁମ ମନୋବାଞ୍ଛିତ ବର ମାଗ । ତୁମ ପାଇଁ ମୋ ନିକଟରେ କିଛି ବି ଅଦେୟ ନାହିଁ ।"

ଜଗଦମ୍ବାଙ୍କ ବାକ୍ୟ ଶୁଣି ପ୍ରଜାପତି ଦକ୍ଷ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ବାରମ୍ବାର ପ୍ରଣାମ କରି କହିଲେ—

ଦକ୍ଷ କହିଲେ—ଜଗଦମ୍ବେ ! ମହାମାୟେ ! ଯଦି ଆପଣ ବର ଦେବାକୁ ଇଚ୍ଛୁକ, ତେବେ ମୋ କଥା ଶୁଣନ୍ତୁ ଓ ପ୍ରସନ୍ନତାପୂର୍ବକ ମୋ ଇଚ୍ଛା ପୂରଣ କରନ୍ତୁ । ମୋ ପ୍ରଭୁ ଶିବ 'ରୁଦ୍ର' ନାମ ଧାରଣ କରି ବ୍ରହ୍ମାଙ୍କର ପୁତ୍ରରୂପରେ ଅବତୀର୍ଣ୍ଣ ହୋଇଛନ୍ତି । ସେ ପରମାତ୍ମା ଶିବଙ୍କର ପୂର୍ଣ୍ଣାବତାର ଅଟନ୍ତି । ମାତ୍ର ଆପଣଙ୍କର କୌଣସି ଅବତାର ହୋଇ ନାହିଁ । ତେବେ ତାଙ୍କର ପତ୍ନୀ କିଏ

* ପ୍ରସୀଦ ଭଗବତ୍ୟାଦ୍ୟେ ପ୍ରସୀଦ ଶିବରୂପିଣି । ପ୍ରସୀଦ ଭକ୍ତବରଦେ ଜଗନ୍ମାୟେ ନମୋଽସ୍ତୁ ତେ ॥
(ଶି. ପୁ. ରୁ. ସଂ. ସ. ଖ. ୧୨।୧୪)

ହେବ? ଏଣୁ ହେ ଶିବେ! ଆପଣ ଭୂପୃଷ୍ଠରେ ଅବତୀର୍ଣ୍ଣ ହୋଇ ସେହି ମହେଶ୍ୱରଙ୍କୁ ନିଜ ରୂପଲାବଣ୍ୟରେ ମୋହିତ କରନ୍ତୁ। ହେ ଦେବୀ! ଆପଣଙ୍କ ବିନା ଅନ୍ୟ କୌଣସି ନାରୀ ରୁଦ୍ରଦେବଙ୍କୁ ମୋହିତ କରି ପାରିବ ନାହିଁ। ଏଣୁ ଆପଣ ମୋର ପୁତ୍ରୀରୂପେ ଅବତରିତ ହୋଇ ମହାଦେବଙ୍କର ପତ୍ନୀ ହୁଅନ୍ତୁ। ଏଭଳି ଲୀଳା କରି ଆପଣ ହରମୋହିନୀ ନାମକୁ ସାର୍ଥକ କରନ୍ତୁ। ହେ ଦେବୀ! ଏତିକି ମୋର ମାଗୁଣି। ଏହା କେବଳ ମୋର ସ୍ୱାର୍ଥର କଥା ବୋଲି ଭାବନ୍ତୁ ନାହିଁ, ଏଥିରେ ସମଗ୍ର ଜଗତର ମଧ୍ୟ ହିତ ନିହିତ। ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ମଧ୍ୟରୁ ବ୍ରହ୍ମାଙ୍କ ପ୍ରେରଣାରେ ମୁଁ ଏଠାକୁ ଆସିଛି।

ପ୍ରଜାପତି ଦକ୍ଷଙ୍କ ବଚନ ଶୁଣି ଜଗଦମ୍ବିକା ହସିଦେଲେ ଏବଂ ମନେ ମନେ ଭଗବାନ ଶିବଙ୍କୁ ସ୍ମରଣ କରି କହିଲେ–

ଦେବୀ କହିଲେ–ବତ୍ସ ଦକ୍ଷ! ପ୍ରଜାପତେ! ମୋର ଉତ୍ତମ କଥା ଶୁଣ। ମୁଁ ସତ୍ୟ କହୁଛି। ତୁମ ଭକ୍ତିରେ ଅତ୍ୟନ୍ତ ପ୍ରସନ୍ନ ହୋଇ ମୁଁ ତୁମର ସମସ୍ତ ମନୋବାଞ୍ଛିତ ବସ୍ତୁ ଦେବାକୁ ପ୍ରସ୍ତୁତ। ଯଦ୍ୟପି ମୁଁ ମହେଶ୍ୱରୀ, ତଥାପି ତୁମ ଭକ୍ତିର ବଶବର୍ତ୍ତୀ ହୋଇ ତୁମ ପତ୍ନୀ ଗର୍ଭରୁ କନ୍ୟାରୂପେ ଅବତୀର୍ଣ୍ଣ ହେବି। ଏଥିରେ ସଂଶୟ କର ନାହିଁ। ହେ ଅନଘ! ମୁଁ ଅତ୍ୟନ୍ତ ଦୁଃସହ ତପସ୍ୟା କରି ଏଭଳି ପ୍ରଯତ୍ନ କରିବି, ଯଦ୍ଦ୍ୱାରା ମହାଦେବଙ୍କ ଠାରୁ ବରପ୍ରାପ୍ତି କରି ତାଙ୍କରି ପତ୍ନୀ ହେବି। ଏହା ଛଡ଼ା ଅନ୍ୟ କୌଣସି ଉପାୟରେ କାର୍ଯ୍ୟସିଦ୍ଧି ହେବ ନାହିଁ; କାରଣ ଭଗବାନ ସଦାଶିବ ସର୍ବଥା ନିର୍ବିକାର। ସେ ବ୍ରହ୍ମା ଓ ବିଷ୍ଣୁଙ୍କର ମଧ୍ୟ ସେବ୍ୟ ତଥା ନିତ୍ୟ ପରିପୂର୍ଣ୍ଣ। ମୁଁ ତାଙ୍କର ନିତ୍ୟଦାସୀ ଓ ପ୍ରିୟା। ପ୍ରତ୍ୟେକ ଜନ୍ମରେ ସେହି ନାନାରୂପଧାରୀ ଶମ୍ଭୁ ହିଁ ମୋର ସ୍ୱାମୀ ହୁଅନ୍ତି। ଭଗବାନ ସଦାଶିବ ସ୍ୱୟଂ ନିଜ ପ୍ରଦତ୍ତ ବର ପ୍ରଭାବରେ ବ୍ରହ୍ମାଙ୍କ ଭ୍ରୂକୁଟିରୁ ରୁଦ୍ରରୂପରେ ଅବତୀର୍ଣ୍ଣ ହୋଇଛନ୍ତି। ମୁଁ ମଧ୍ୟ ତାଙ୍କରି ବରଦାନ ଫଳରେ ତାଙ୍କରି ଆଜ୍ଞାରେ ଏଠାରେ ଅବତୀର୍ଣ୍ଣ ହେବି। ତାତ! ଏଥର ତୁମେ ତୁମ ଘରକୁ ଯାଅ। ଏହି କାର୍ଯ୍ୟରେ ଯିଏ ମୋର ଦୂତୀ ବା ସହାୟିକା ହେବ, ତାକୁ ମୁଁ ଜାଣି ସାରିଛି। ଖୁବ୍ ଶୀଘ୍ର ମୁଁ ତୁମର କନ୍ୟାରୂପେ ଜାତ ହୋଇ ମହାଦେବଙ୍କ ପତ୍ନୀ ହେବି।

ଦକ୍ଷଙ୍କୁ ଏଭଳି କହି ଏବଂ ମନେ ମନେ ଶିବଙ୍କର ଆଜ୍ଞା ପାଇ ଦେବୀ ଶିବା ଶିବଙ୍କ ଚରଣାରବିନ୍ଦକୁ ଚିନ୍ତନ କରି ପୁଣି କହିଲେ, "ପ୍ରଜାପତେ! ମୋର କିନ୍ତୁ ଗୋଟିଏ ପଣ ଅଛି, ତାହା ତୁମେ ମନେ ରଖିବା ଉଚିତ। ମୁଁ ତାହା କହିଦେଉଛି। ତାହାକୁ ତୁମେ ସତ୍ୟ ବୋଲି ବୁଝ, ମିଥ୍ୟା ନ ଭାବ। ଯଦି କେବେ ମୋ ପ୍ରତି ତୁମର ଆଦରଭାବ ହ୍ରାସ ପାଇବ, ସେତେବେଳେ ମୁଁ ସେ ଦେହକୁ ପରିତ୍ୟାଗ କରିଦେବି ଓ ମୋର ନିତ୍ୟସ୍ୱରୂପରେ ଲୀନ ହୋଇଯିବି ଅଥବା ଅନ୍ୟ ଦେହ ଧାରଣ କରିବି। ମୋର ଏ ବଚନ ସତ୍ୟ। ପ୍ରଜାପତେ! ପ୍ରତ୍ୟେକ ସର୍ଗ ବା କଳ୍ପ ପାଇଁ ତୁମକୁ ଏ ବର ଦିଆଗଲା। ମୁଁ ତୁମର କନ୍ୟା ହୋଇ ଭଗବାନ୍ ଶିବଙ୍କର ପତ୍ନୀ ହେବି।"

ମୁଖ୍ୟ ପ୍ରଜାପତି ଦକ୍ଷଙ୍କୁ ଏତିକି କହି ମହେଶ୍ୱରୀ ଶିବା ତତ୍କ୍ଷଣାତ୍ ସେଠାରୁ ଅନ୍ତର୍ହିତ ହୋଇଗଲେ। ଦୁର୍ଗା ଅନ୍ତର୍ହିତ ହୋଇଯିବା ପରେ ଦକ୍ଷ ମଧ୍ୟ ନିଜ ଆଶ୍ରମକୁ ଫେରିଗଲେ ଏବଂ ଦେବୀ ଶିବା ତାଙ୍କ କନ୍ୟା ହେବେ ବୋଲି ଭାବି ମନେ ମନେ ବହୁତ ଆନନ୍ଦିତ ହେଲେ।

(ଅଧ୍ୟାୟ୧୧-୧୨)

★★★

# ବ୍ରହ୍ମାଙ୍କ ଆଦେଶରେ ଦକ୍ଷଙ୍କ ଦ୍ୱାରା ମୈଥୁନୀ ସୃଷ୍ଟି ଆରମ୍ଭ, ଦକ୍ଷଙ୍କ ପୁତ୍ର ହର୍ଯ୍ୟଶ୍ୱ ଓ ଶବଳାଶ୍ୱଙ୍କୁ ନିବୃତ୍ତି ମାର୍ଗରେ ପ୍ରେରିତ କରୁଥିବା ନାରଦଙ୍କୁ ଦକ୍ଷଙ୍କ ଅଭିଶାପ

ବ୍ରହ୍ମା କହୁଛନ୍ତି–ନାରଦ! ପ୍ରଜାପତି ଦକ୍ଷ ଆପଣା ଆଶ୍ରମକୁ ଯାଇ ମୋ ଆଜ୍ଞାରେ ଆନନ୍ଦ ମନରେ ନାନା ପ୍ରକାର ମାନସିକ ସୃଷ୍ଟି କଲେ। କିନ୍ତୁ ସେହି ସୃଷ୍ଟି ବୃଦ୍ଧି ନ ହେବା ଦେଖି ସେ ମୋତେ କହିଲେ–

ଦକ୍ଷ କହିଲେ–ବ୍ରହ୍ମନ୍! ତାତ! ପ୍ରଜାନାଥ! ପ୍ରଜା ବୃଦ୍ଧି ପାଉ ନାହାନ୍ତି। ପ୍ରଭୁ! ମୁଁ ଯେତିକି ଜୀବଙ୍କୁ ସୃଷ୍ଟି କରିଛି, ସେମାନେ ସେତିକି ହୋଇ ରହିଛନ୍ତି। ପ୍ରଜାନାଥ! ମୁଁ କ'ଣ କରିବି? ଯେଉଁ ଉପାୟରେ ଜୀବ ଆପେ ଆପେ ବଢ଼ିବେ, ମୋତେ ତାହା କହନ୍ତୁ। ନିଃସନ୍ଦେହରେ ମୁଁ ସେହି ଉପାୟରେ ପ୍ରଜାଙ୍କୁ ସୃଷ୍ଟି କରିବି।

ବ୍ରହ୍ମା କହିଲେ (ମୁଁ କହିଲି)–ବତ୍ସ! ପ୍ରଜାପତି ଦକ୍ଷ! ମୋ କଥା ଶୁଣ ଓ ତଦନୁସାରେ କାର୍ଯ୍ୟ କର। ସୁରଶ୍ରେଷ୍ଠ! ଭଗବାନ ଶିବ ତୁମର କଲ୍ୟାଣ କରିବେ। ପ୍ରଜେଶ! ପ୍ରଜାପତି ପଞ୍ଚଜନ (ବୀରଣ)ଙ୍କର ପରମା ସୁନ୍ଦରୀ କନ୍ୟା ଅସିକ୍ନୀକୁ ତୁମେ ପତ୍ନୀରୂପେ ଗ୍ରହଣ କର ଏବଂ ମୈଥୁନ-ଧର୍ମର ଆଶ୍ରୟରେ ତୁମେ ଏହି ପ୍ରଜାସର୍ଗକୁ ବଢ଼ାଅ। ଅସିକ୍ନୀ ପରି କାମିନୀ ଗର୍ଭରୁ ତୁମେ ବହୁତ ସନ୍ତାନ ଉତ୍ପନ୍ନ କରି ପାରିବ।

ତା'ପରେ ମୈଥୁନ-ଧର୍ମ ଦ୍ୱାରା ପ୍ରଜା-ଉତ୍ପତ୍ତି କରିବା ଉଦ୍ଦେଶ୍ୟରେ ପ୍ରଜାପତି ଦକ୍ଷ ମୋ ଆଜ୍ଞାନୁସାରେ ବୀରଣ ପ୍ରଜାପତିଙ୍କ କନ୍ୟା ସଙ୍ଗେ ବିବାହ କଲେ। ସେହି ବୀରିଣୀ ଗର୍ଭରୁ ପ୍ରଜାପତି ଦକ୍ଷ ଦଶହଜାର ପୁତ୍ର ଉତ୍ପନ୍ନ କଲେ। ସେମାନଙ୍କ ନାମ ହେଲା ହର୍ଯ୍ୟଶ୍ୱ। ମୁନେ! ସେମାନେ ସମସ୍ତେ ଏକା ପ୍ରକାର ଧର୍ମ ଆଚରଣ କରୁଥିଲେ। ସେମାନେ ପିତୃଭକ୍ତିରେ ତତ୍ପର ରହି ବୈଦିକ ମାର୍ଗରେ ହିଁ ଗ୍ଲୁଥିଲେ। ଏକଦା ପିତା ସେମାନଙ୍କୁ ପ୍ରଜା ସୃଷ୍ଟି କରିବାକୁ ଆଦେଶ ଦେଲେ। ତାତ! ତା'ପରଠାରୁ ଦାକ୍ଷାୟଣ ନାମଧାରୀ ସେହି ପୁତ୍ରମାନେ ପ୍ରଜାସୃଷ୍ଟି ଉଦ୍ଦେଶ୍ୟରେ ତପସ୍ୟା କରିବା ନିମନ୍ତେ ପଶ୍ଚିମଦିଗ ଅଭିମୁଖେ ବାହାରିଗଲେ। ସେଠାରେ ନର-ନାରାୟଣ ସରୋବର ନାମରେ ଗୋଟିଏ ପାବନ ତୀର୍ଥ ଅଛି, ଯାହାକି ସିନ୍ଧୁନଦ ଓ ସମୁଦ୍ରର ସଙ୍ଗମ ସ୍ଥଳ। ଉକ୍ତ ତୀର୍ଥଜଳର ସ୍ପର୍ଶମାତ୍ରେ ସେମାନଙ୍କ ଅନ୍ତଃକରଣ ଶୁଦ୍ଧ ଓ ଜ୍ଞାନଦୀପ୍ତ ହୋଇଗଲା। ଅଭ୍ୟନ୍ତର ମଳ ନଷ୍ଟ ହୋଇଯିବାରୁ ସେମାନେ ପରମହଂସ-ଧର୍ମରେ ସ୍ଥିତ ହୋଇଗଲେ। ଦକ୍ଷଙ୍କ ସମସ୍ତ ପୁତ୍ର ପିତୃଆଜ୍ଞାରେ ଆବଦ୍ଧ ଥିଲେ। ତେଣୁ ସେମାନେ ମନକୁ ସୁସ୍ଥିର କରି ପ୍ରଜାବୃଦ୍ଧି ଅଭିପ୍ରାୟରେ ସେଠାରେ ତପସ୍ୟା ଆରମ୍ଭ କରିଦେଲେ। ସେମାନେ ସତ୍‌ପୁରୁଷଙ୍କ ମଧ୍ୟରେ ଅଗ୍ରଣୀ ଥିଲେ।

ନାରଦ! ତୁମକୁ ଯେତେବେଳେ ଏକଥା ଜଣା ପଡ଼ିଲା ଯେ ହର୍ଯ୍ୟଶ୍ୱଗଣ ସୃଷ୍ଟି ନିମନ୍ତେ ତପସ୍ୟା କରୁଛନ୍ତି, ତୁମେ ଭଗବାନ ଲକ୍ଷ୍ମୀପତିଙ୍କ ହାର୍ଦ୍ଦିକ ଅଭିପ୍ରାୟକୁ ଜାଣିପାରି ସ୍ୱୟଂ ସେଠାକୁ ଯାଇ ଆଦରପୂର୍ବକ କହିଲ–"ହେ ଦକ୍ଷପୁତ୍ରଗଣ! ତୁମେମାନେ ପୃଥିବୀର ଅନ୍ତ ନ ଦେଖି ସୃଷ୍ଟିସର୍ଜନା କରିବାକୁ କେମିତି ଉଦ୍ୟତ ହେଲ?"

ବ୍ରହ୍ମା କହୁଛନ୍ତି–ନାରଦ! ହର୍ଯ୍ୟଶ୍ୱମାନେ ନିରଳସ ଥିଲେ ଓ ଜନ୍ମକାଳରୁ ହିଁ ବଡ଼ ବୁଦ୍ଧିମାନ୍ ଥିଲେ। ସେମାନେ ତୁମର ଉପର୍ଯ୍ୟୁକ୍ତ କଥନ ଶୁଣି ତା'ଉପରେ ବିଚାର କଲେ। ସେମାନେ ଭାବିଲେ,

"ଯେଉଁ ପୁତ୍ର ପିତାଙ୍କର ଉତ୍ତମଶାସ୍ତ୍ରରୂପୀ ନିବୃତ୍ତିମୂଳକ ଆଦେଶକୁ ବୁଝିପାରେ ନାହିଁ, କେବଳ ରଜ ଆଦି ଗୁଣ ଉପରେ ବିଶ୍ୱାସ କରେ, ସେଭଳି ପୁତ୍ର ସୃଷ୍ଟି-ନିର୍ମାଣ କାର୍ଯ୍ୟ କିପରି ବା ଆରମ୍ଭ କରିପାରିବ?" ଏହା ନିର୍ଣ୍ଣୟ କରି ସେହି ଶୁଦ୍ଧବୁଦ୍ଧି ଓ ଏକଚିତ୍ତ ଦକ୍ଷକୁମାରମାନେ ନାରଦଙ୍କୁ ପ୍ରଣାମ ଓ ପରିକ୍ରମା କରିବା ପରେ ଏଭଳି ଅପୁନରାବର୍ତ୍ତୀ ପଥରେ ବାହାରିଗଲେ, ଯେଉଁଠାରୁ କେହି ଫେରିଆସେ ନାହିଁ। ନାରଦ! ତୁମେ ହେଉଛ ଭଗବାନ ଶଙ୍କରଙ୍କ ମନ। ମୁନେ! ତୁମେ ସମସ୍ତ ଭୁବନରେ ଏକାକୀ ବିଚରଣ କରୁଥାଅ। ତୁମ ମନରେ କିଛି ବିକାର ନ ଥାଏ; କାରଣ ତୁମେ ସଦା ମହେଶ୍ୱରଙ୍କ ମନୋବୃତ୍ତି ଅନୁସାରେ ହିଁ କାର୍ଯ୍ୟ କରିଥାଅ। ବହୁକାଳ ବିତିଯିବା ପରେ ମୋ ପୁତ୍ର ଦକ୍ଷଙ୍କୁ ଜଣା ପଡ଼ିଲା ଯେ ତାଙ୍କ ପୁଅମାନେ ନାରଦଙ୍କ ଶିକ୍ଷାରେ ନଷ୍ଟ ହୋଇଗଲେ (ତାଙ୍କ ଆୟତ୍ତର ବାହାରକୁ ଚ୍ଳାଲିଗଲେ)। ତାଙ୍କ ମନରେ ବହୁତ ଦୁଃଖ ହେଲା। ସେ ବାରମ୍ବାର କହିବାକୁ ଲାଗିଲେ, ଉତ୍ତମ ସନ୍ତାନଙ୍କର ପିତା ହେବା ଶୋକର ହିଁ କାରଣ (କାହିଁକି ନା, ଉତ୍ତମ ପୁତ୍ରଙ୍କୁ ହରାଇଲେ ପିତାକୁ ବହୁତ କଷ୍ଟ ହୁଏ)। ଶିବଙ୍କ ମାୟାରେ ମୋହିତ ହୋଇଥିବାରୁ ଦକ୍ଷଙ୍କୁ ପୁତ୍ରବିୟୋଗରେ ବହୁତ ଦୁଃଖ ହେଲା। ସେତେବେଳେ ମୁଁ ଆସି ମୋ ପୁତ୍ର ଦକ୍ଷଙ୍କୁ ବହୁତ ବୁଝାଇଲି ଓ ସାନ୍ତ୍ୱନା ଦେଲି। ଦୈବ ବିଧାନ ପ୍ରବଳ ବୋଲି କହି ତାଙ୍କ ମନକୁ ଶାନ୍ତ କରାଇଲି। ମୋ' ଠାରୁ ସାନ୍ତ୍ୱନା ପାଇବା ପରେ ଦକ୍ଷ ପଞ୍ଚଜନକନ୍ୟା ଅସିକ୍ନୀ ଗର୍ଭରୁ ଶବଳାଶ୍ୱ ନାମକ ଆହୁରି ଏକହଜାର ପୁତ୍ର ଉତ୍ପନ୍ନ କଲେ। ପିତାଙ୍କ ଆଦେଶରେ ଏମାନେ ମଧ୍ୟ ପ୍ରଜାସୃଷ୍ଟି ନିମନ୍ତେ ଦୃଢ଼ପ୍ରତିଜ୍ଞ ହୋଇ ବଡ଼ଭାଇମାନେ ଯେଉଁ ସ୍ଥାନକୁ ଯାଇଥିଲେ, ସେହି ସ୍ଥାନକୁ ଗଲେ। ନାରାୟଣ ସରୋବରର ଜଳର ସ୍ପର୍ଶ ପାଇବା ମାତ୍ରେ ଶବଳାଶ୍ୱମାନଙ୍କର ସମସ୍ତ ପାପ ନଷ୍ଟ ହୋଇଗଲା ଓ ଅନ୍ତଃକରଣ ଶୁଦ୍ଧ ହୋଇଗଲା। ସେମାନେ ବ୍ରହ୍ମ (ପ୍ରଣବ) ଜପ କରି କରି ସେଠାରେ କଠିନ ତପସ୍ୟା ଆରମ୍ଭ କରିଦେଲେ। ସେମାନେ ପ୍ରଜାସୃଷ୍ଟି ନିମନ୍ତେ ଉଦ୍ୟମରତ ବୋଲି ଜାଣି ତୁମେ ପୁଣି ଥରେ ପୂର୍ବବତ୍ ଈଶ୍ୱରୀୟ ଗତିକୁ ଅନୁସରଣ କରି ସେମାନଙ୍କ ପାଖକୁ ଗଲ ଏବଂ ପୂର୍ବ ଭାଇମାନଙ୍କୁ (ହର୍ଯ୍ୟଶ୍ୱଙ୍କୁ) କହିଥିବା କଥା କହିଲ। ମୁନେ! ତୁମର ଦର୍ଶନ ଅମୋଘ, ଏଣୁ ତୁମେ ଏ ଭାଇମାନଙ୍କୁ (ଶବଳାଶ୍ୱଙ୍କୁ) ମଧ୍ୟ ସେଇ ମାର୍ଗ ଦେଖାଇଲ। ଫଳରେ ଏମାନେ ମଧ୍ୟ ବଡ଼ ଭାଇମାନଙ୍କର ପଥ ଅନୁସରଣ କରି ଊର୍ଦ୍ଧ୍ୱଗତିକୁ ପ୍ରାପ୍ତ ହେଲେ। ସେତେବେଳେ ପ୍ରଜାପତି ଦକ୍ଷଙ୍କୁ ଅନେକ ଉତ୍ପାତ ଦେଖାଗଲା। ତାହା ଦେଖି ମୋ ପୁତ୍ର ଦକ୍ଷଙ୍କୁ ବିସ୍ମୟ ଲାଗିଲା ଓ ସେ ମନେ ମନେ ଦୁଃଖୀ ହେଲେ। ତୁମର କାର୍ଯ୍ୟକଳାପ ଦ୍ୱାରା ପୁନଃ ତାଙ୍କର ପୁତ୍ରମାନେ ଲକ୍ଷ୍ୟଭ୍ରଷ୍ଟ ହୋଇଯାଇଥିବା କଥା ଜାଣି ତାଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା। ସେ ପୁତ୍ରଶୋକରେ ମୂର୍ଚ୍ଛିତ ହୋଇ ଅତ୍ୟନ୍ତ କଷ୍ଟ ବୋଧ କଲେ। ସେ ତୁମ ଉପରେ ବହୁତ କ୍ରୋଧିତ ହେଲେ ଓ ମନେ ମନେ କହିଲେ, "ଏ ନାରଦଟା ବହୁତ ବଡ଼ ଦୁଷ୍ଟ।" ଦୈବବଶତଃ ସେତିକିବେଳେ ତୁମେ ଦକ୍ଷଙ୍କ ପ୍ରତି ଅନୁଗ୍ରହ କରିବାକୁ ସେଠାରେ ଆସି ପହଞ୍ଚିଗଲ। ତୁମକୁ ଦେଖିବାମାତ୍ରେ ଶୋକ ଓ କ୍ରୋଧରେ ଦକ୍ଷଙ୍କ ଓଠ ପ୍ରକମ୍ପିତ ହେଲା। ତୁମକୁ ସମ୍ମୁଖରେ ପାଇ ସେ ତୁମକୁ ମନଇଚ୍ଛା ବହୁତ ଧିକ୍କାରିଲେ ଓ ନିନ୍ଦା କଲେ।

ଦକ୍ଷ କହିଲେ—"ରେ ନୀଚ! ତୁମେ ଏ କ'ଣ କରିଦେଲ? ତୁମେ ମିଛଟାରେ ସାଧୁଙ୍କ ବେଶ ଧରିଛ। ଏହି ବେଶ ଦ୍ୱାରା ଛଳ କରି ତୁମେ

ମୋର ସରଳମତି ପୁତ୍ରମାନଙ୍କୁ ଯେଉଁ ଭିକାରିଙ୍କ ମାର୍ଗ ଦେଖାଇଦେଲ, ଏଇଟା ଭଲ କାମ କଲ ନାହିଁ । ତୁମେ ଜଣେ ନିର୍ଦ୍ଦୟୀ ଓ ଶଠ । ସେଥିପାଇଁ ତୁମେ ମୋ ପିଲାମାନଙ୍କୁ ମାର୍ଗଚ୍ୟୁତ କରାଇ ସେମାନଙ୍କ ଇହଲୋକ ଓ ପରଲୋକ ନଷ୍ଟ କରିଦେଲ । ସେମାନେ ଏବେ ଋଷିଋଣ, ଦେବଋଣ ଓ ପିତୃଋଣରୁ* ମୁକ୍ତ ହୋଇ ନ ଥିଲେ । ଯେଉଁ



ବ୍ୟକ୍ତି ଏ ତିନିଋଣ ନ ଶୁଝି ମାତାପିତାଙ୍କୁ ଛାଡ଼ି ମୋକ୍ଷ ଇଚ୍ଛାରେ ଗୃହ ପରିତ୍ୟାଗ କରେ ବା ସନ୍ନ୍ୟାସୀ ହୋଇଯାଏ, ସେ ଅଧୋଗତି ପ୍ରାପ୍ତ ହୁଏ । ତୁମେ ବଡ଼ ନିର୍ଦ୍ଦୟ ଓ ନିର୍ଲଜ୍ଜ । ମୋ ପିଲାମାନଙ୍କ ବୁଦ୍ଧିକୁ ଭ୍ରମିତ କରିଛ ଏବଂ ଏହା କରି ନିଜର ସୁଯଶ ମଧ୍ୟ ନଷ୍ଟ କରିଛ । ହେ ମୂଢ଼ମତି ! ତୁମେ ବୃଥାରେ ଭଗବାନ ବିଷ୍ଣୁଙ୍କ ପାର୍ଷଦଙ୍କ ମେଳରେ ଭ୍ରମୁଛ । ଅଧମାଧମ ! ତୁମେ ବାରମ୍ବାର ମୋର ଅମଙ୍ଗଳ କରିଛ । ତେଣୁ ଯାଅ, ଆଜିଠାରୁ ତ୍ରିଭୁବନରେ ତୁମର ପାଦ କେଉଁଠି ହେଲେ ସ୍ଥିର ହୋଇ ରହିବ ନାହିଁ । କେଉଁଠି ତୁମକୁ ରହିବା ପାଇଁ ଏକ ସ୍ଥିର ଠିକଣା ମିଳିବ ନାହିଁ ।”

ନାରଦ ! ଯଦ୍ୟପି ତୁମେ ସାଧୁପୁରୁଷଙ୍କ ଦ୍ୱାରା ସମ୍ମାନିତ, ତଥାପି ସେତେବେଳେ ଦକ୍ଷ ଶୋକର ଆବେଶରେ ତୁମକୁ ଅଭିଶାପ ଦେଇଦେଲେ । ସେ ଈଶ୍ୱରଙ୍କ ଇଚ୍ଛାକୁ ବୁଝି ପାରିଲେ ନାହିଁ । ଶିବଙ୍କ ମାୟା ତାଙ୍କୁ ବିମୋହିତ କରିଦେଇଥିଲା । ମୁନେ ! ତୁମେ ସେହି ଅଭିଶାପକୁ ନୀରବରେ ଅଙ୍ଗୀକାର କରିନେଲ । ତୁମ ମନରେ କିଛି ବିକାର ଆସିଲା ନାହିଁ । ଏହା ହିଁ ବ୍ରହ୍ମଭାବ । ଈଶ୍ୱରକୋଟିର ମହାତ୍ମା ସ୍ୱୟଂ ଶାପକୁ ଟାଳିବାରେ ସମର୍ଥ ହୋଇଥିଲେ ବି ସେ ତାହାକୁ ସହି ଯାଇଥାନ୍ତି । (ଅଧ୍ୟାୟ ୧୩)

✰✰✰

## ଦକ୍ଷଙ୍କ ଷାଠିଏ କନ୍ୟାଙ୍କ ବିବାହ, ଦକ୍ଷଙ୍କ ଗୃହରେ ବୀରିଣୀଙ୍କ ଗର୍ଭରୁ ଦେବୀ ଶିବାଙ୍କ ଆବିର୍ଭାବ, ଦେବୀଙ୍କୁ ଦକ୍ଷଙ୍କ ସ୍ତୁତି ଏବଂ ସତୀଙ୍କ ସଦ୍‌ଗୁଣ ଓ କ୍ରୀଡ଼ାରେ ମାତାପିତାଙ୍କ ଆନନ୍ଦ

ବ୍ରହ୍ମା କହୁଛନ୍ତି—ଦେବର୍ଷେ ! ଏତିକି ବେଳେ ଦକ୍ଷଙ୍କର ଏଭଳି ବ୍ୟବହାର କଥା ଜାଣି ମୁଁ ମଧ୍ୟ ସେଠାରେ ଉପସ୍ଥିତ ହେଲି ଏବଂ ପୂର୍ବବତ୍ ତାଙ୍କୁ ଶାନ୍ତ କରିବା ନିମନ୍ତେ ସାନ୍ତ୍ୱନା ଦେଲି । ତୁମର

* ବ୍ରହ୍ମଚର୍ଯ୍ୟପାଳନପୂର୍ବକ ବେଦ-ଶାସ୍ତ୍ର ସ୍ୱାଧ୍ୟାୟ ଦ୍ୱାରା ଋଷିଋଣ, ଯଜ୍ଞ ଓ ପୂଜା ଇତ୍ୟାଦି ଦ୍ୱାରା ଦେବଋଣ ଏବଂ ପୁତ୍ର ଉତ୍ପାଦନ ଦ୍ୱାରା ପିତୃଋଣର ନିବାରଣ ହୁଏ ।

ପ୍ରସନ୍ନତା ବୃଦ୍ଧି କରିବା ସହ ଦକ୍ଷଙ୍କ ସଙ୍ଗେ ତୁମର ସୁନ୍ଦର ସ୍ନେହପୂର୍ଣ୍ଣ ସମ୍ବନ୍ଧ ସ୍ଥାପିତ କରିଦେଲି । ତୁମେ ମୋର ପୁଅ, ପୁଣି ମୁନିଗଣଙ୍କ ମଧ୍ୟରେ ଅଗ୍ରଣୀ ଓ ସକଳ ଦେବତାଙ୍କର ମଧ୍ୟ ପ୍ରିୟ । ତେଣୁ ତୁମକୁ ସ୍ନେହରେ ଆଶ୍ୱାସନା ଦେଇ ମୁଁ ଫେରିଗଲି । ତା'ପରେ ପ୍ରଜାପତି ଦକ୍ଷ ମୋର ଅନୁନୟ ଅନୁସାରେ ନିଜ ପତ୍ନୀଗର୍ଭରୁ ଷାଠିଏଟି ସୁନ୍ଦରୀ କନ୍ୟା ଉତ୍ପନ୍ନ କଲେ ଏବଂ ନିରଳସ ହୋଇ ଧର୍ମ ପ୍ରଭୃତିଙ୍କ ସଙ୍ଗେ ସେମାନଙ୍କର ବିବାହ କରାଇଲେ । ମୁନୀଶ୍ୱର ! ମୁଁ ଏବେ ସେହି ପ୍ରସଙ୍ଗକୁ ଅତି ଆଦରରେ ବର୍ଣ୍ଣନା କରୁଛି, ଶୁଣ । ଦକ୍ଷ ବିଧିପୂର୍ବକ ତାଙ୍କର ଦଶଟି କନ୍ୟାଙ୍କ ବିବାହ ଧର୍ମଙ୍କ ସହିତ କଲେ, ତେରଟି କନ୍ୟାଙ୍କର କଶ୍ୟପ ମୁନିଙ୍କ ସଙ୍ଗେ ଏବଂ ସତେଇଶ କନ୍ୟାଙ୍କର ଚନ୍ଦ୍ରଙ୍କ ସଙ୍ଗେ ବିବାହ କଲେ । ଭୃତ (ବା ବ୍ରହ୍ମପୁତ୍ର), ଅଙ୍ଗିରା ଓ କୃଶାଶ୍ୱଙ୍କୁ ସେ ଦୁଇଟି ଲେଖାଏଁ କନ୍ୟା ଦେଲେ ଏବଂ ଅବଶିଷ୍ଟ ଚାରିଟି କନ୍ୟାଙ୍କ ବିବାହ ତାର୍କ୍ଷ୍ୟ (ବା ଅରିଷ୍ଟନେମି)ଙ୍କ ସଙ୍ଗେ ହେଲା । ଏମାନଙ୍କର ସନ୍ତାନ ପରମ୍ପରାରେ ତ୍ରିଲୋକ ପୂରି ଉଠିଛି । ଏଣୁ ବିସ୍ତାର ଭୟରେ ସେସବୁର ବର୍ଣ୍ଣନା କରୁ ନାହିଁ । କେତେକ ଲୋକ ଶିବା ବା ସତୀଙ୍କୁ ଦକ୍ଷଙ୍କ ଜ୍ୟେଷ୍ଠା କନ୍ୟା କହନ୍ତି ତ ଆଉ କେତେକ ତାଙ୍କୁ ମଝିଆଣୀ ଏବଂ ଆଉ କେତେକ ତାଙ୍କୁ ସବୁଠୁ ସାନ କହନ୍ତି । କଳ୍ପଭେଦରେ ଏ ସମସ୍ତ ମତ ସତ୍ୟ । ପୁତ୍ର ଓ କନ୍ୟାଙ୍କ ଜନ୍ମ ପରେ ଦକ୍ଷ ସପତ୍ନୀକ ମନେ ମନେ ଜଗଦମ୍ବାଙ୍କୁ ଧ୍ୟାନ କଲେ ଏବଂ ଗଦ୍‌ଗଦ ବାଣୀରେ ପ୍ରେମପୂରିତ ହୃଦୟରେ ତାଙ୍କୁ ସ୍ତୁତି କଲେ । ବାରମ୍ବାର କରପତ୍ର ଯୋଡ଼ି ମଥାବନତ କରି ନମସ୍କାର କଲେ । ଦେବୀ ସନ୍ତୁଷ୍ଟ ହୋଇ ନିଜ ପ୍ରତିଜ୍ଞାର ପୂର୍ଣ୍ଣତା ନିମିତ୍ତ ବୀରିଣୀଙ୍କ ଗର୍ଭରୁ ଅବତାର ନେବାକୁ ବିଚାର କଲେ । ଏଭଳି ଭାବି ସେ ଦକ୍ଷଙ୍କ ହୃଦୟରେ ନିବାସ କଲେ । ହେ ମୁନିବର ! ସେତେବେଳେ ଦକ୍ଷଙ୍କ ଶୋଭା ବହୁତ ବଢ଼ିଗଲା । ତା'ପରେ ଉତ୍ତମ ମୁହୂର୍ତ୍ତରେ ଦକ୍ଷ ପ୍ରସନ୍ନତାପୂର୍ବକ ତାଙ୍କ ପତ୍ନୀଙ୍କର ଗର୍ଭାଧାନ କରିଦେଲେ । ଦୟାମୟୀ ଶିବା ଏଥର ଦକ୍ଷପତ୍ନୀଙ୍କ ଚିତ୍ତରେ ନିବାସ କଲେ । ତାଙ୍କଠାରେ ଗର୍ଭଧାରଣର ଲକ୍ଷଣ ପ୍ରକାଶିତ ହେଲା । ତାତ ! ସେତେବେଳେ ବୀରିଣୀଙ୍କ ଶୋଭା ଆହୁରି ବୃଦ୍ଧି ପାଇଲା ଏବଂ ତାଙ୍କ ଚିତ୍ତରେ ଅଧିକ ହର୍ଷ ଦେଖାଦେଲା । ଭଗବତୀ ଶିବାଙ୍କ ନିବାସ ହେତୁ ବୀରିଣୀ ମହାମଙ୍ଗଳକାରିଣୀ ହୋଇଗଲେ । ଦକ୍ଷ ତାଙ୍କର କୁଳ-ସମ୍ପ୍ରଦାୟ, ବେଦଜ୍ଞାନ ଓ ହାର୍ଦ୍ଦିକ ଉତ୍ସାହ ଅନୁସାରେ ପ୍ରସନ୍ନତାପୂର୍ବକ ପୁଂସବନାଦି ସଂସ୍କାର କ୍ରିୟା ସମ୍ପନ୍ନ କଲେ । ସେତେବେଳେ ମହାନ୍ ଉତ୍ସବ ହେଲା । ପ୍ରଜାପତି ବ୍ରାହ୍ମଣମାନଙ୍କୁ ସେମାନଙ୍କ ଇଚ୍ଛାନୁସାରେ ଧନ ଦାନ କଲେ ।

ବୀରିଣୀଙ୍କ ଗର୍ଭରେ ଦେବୀ ନିବାସ କରିବା କଥା ଜାଣି ଭଗବାନ ବିଷ୍ଣୁ ତଥା ଦେବଗଣ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇଉଠିଲେ । ସେମାନେ ସେଠାକୁ ଯାଇ ଜଗଦମ୍ବାଙ୍କୁ ସ୍ତୁତି କଲେ ଓ ସମଗ୍ର ଜଗତର ମଙ୍ଗଳକାରିଣୀ ଶିବାଙ୍କୁ ବାରମ୍ବାର ପ୍ରଣାମ କଲେ । ଦେବଗଣ ପ୍ରସନ୍ନଚିତ୍ତରେ ଦକ୍ଷ ପ୍ରଜାପତି ତଥା ବୀରିଣୀଙ୍କର ଭୂରି ଭୂରି ପ୍ରଶଂସା କରି ନିଜ ନିଜ ସ୍ଥାନକୁ ଫେରିଗଲେ । ନାରଦ ! ନଅ ମାସ ବିତିଗଲା । ତା'ପରେ ଲୌକିକ ଗତିର ଅନୁସରଣ କରି ଦଶମ ମାସ ପୂର୍ଣ୍ଣ ହେବାବେଳକୁ ଚନ୍ଦ୍ର ଆଦି ଗ୍ରହ ତଥା ତାରାଙ୍କ ଅନୁକୂଳତାଯୁକ୍ତ ସୁଖଦ ମୁହୂର୍ତ୍ତରେ ଦେବୀ ଶିବା ମାତାଙ୍କ ଗର୍ଭରୁ ଅବତାର ଗ୍ରହଣ କଲେ । ସେ ଅବତରିତ ହେବାମାତ୍ରେ ପ୍ରଜାପତି ଦକ୍ଷ ଅତ୍ୟନ୍ତ ପ୍ରସନ୍ନ ହେଲେ । ଦେବୀଙ୍କର ଦେଦୀପ୍ୟମାନ ତେଜ ଦେଖି ତାଙ୍କର ବିଶ୍ୱାସ

ହୋଇଗଲା । ଯେ ସାକ୍ଷାତ୍ ଶିବାଦେବୀ ହିଁ ତାଙ୍କର କନ୍ୟାରୂପେ ପ୍ରକଟ ହୋଇଛନ୍ତି । ସେତେବେଳେ ଆକାଶରୁ ପୁଷ୍ପବୃଷ୍ଟି ହେଲା । ମେଘମାନେ ଜଳବୃଷ୍ଟି କଲେ । ମୁନୀଶ୍ୱର ! ସତୀ ଜନ୍ମଗ୍ରହଣ କରିବା ମାତ୍ରେ ସମସ୍ତ ଦିଗବିଦିଗରେ ଶାନ୍ତି ବିସ୍ତାରିତ ହୋଇଗଲା । ଦେବଗଣ ଆକାଶରେ ଥାଇ ମାଙ୍ଗଳିକ ବାଦ୍ୟନାଦ କଲେ । ଅଗ୍ନିଶାଳାରେ ନିର୍ବାପିତ ଅଗ୍ନି ସହସା ଜଳି ଉଠିଲା ଏବଂ ସବୁ କିଛି ପରମ ମଙ୍ଗଳମୟ ହୋଇଗଲା । ବୀରିଣୀଙ୍କ ଗର୍ଭରୁ ସାକ୍ଷାତ୍ ଜଗଦମ୍ବା ଆବିର୍ଭୂତା ହୋଇଥିବା ଦେଖି ଦକ୍ଷ କର ଯୋଡ଼ି ପ୍ରଣାମ କଲେ ଓ ଭକ୍ତିଭାବରେ ସ୍ତୁତି କଲେ ।

ବୁଦ୍ଧିମାନ୍ ଦକ୍ଷ ସ୍ତୁତି କରିବାରୁ ଜଗନ୍ମାତା ଦକ୍ଷଙ୍କୁ ନିମ୍ନ ପ୍ରକାରେ କହିଲେ; କିନ୍ତୁ ତାହାକୁ ମାତା ବୀରିଣୀ ଶୁଣି ପାରିଲେ ନାହିଁ ।

ଦେବୀ କହିଲେ—ପ୍ରଜାପତେ ! ପୂର୍ବରୁ ତୁମେ ମୋତେ କନ୍ୟାରୂପେ ପ୍ରାପ୍ତି କରିବା ପାଇଁ ମୋର ଆରାଧନା କରିଥିଲ, ତୁମର ମନୋରଥ ଆଜି



ପୂରଣ ହେଲା । ଏଣିକି ତୁମେ ସେହି ତପସ୍ୟାର ଫଳ ଗ୍ରହଣ କର ।

ଏତିକି କହି ଦେବୀ ନିଜ ମାୟାବଳରେ ଶିଶୁରୂପ ଧାରଣ କଲେ ଓ ଶିଶୁସୁଲଭ ଭାବ ପ୍ରକାଶ କରି ରୋଦନ ଆରମ୍ଭ କରିଦେଲେ । ଶିଶୁକନ୍ୟାର ରୋଦନ ଶୁଣି ଅନ୍ତଃପୁରର ନାରୀମାନେ ଓ ଦାସୀମାନେ ଆନନ୍ଦରେ ଦୌଡ଼ି ଆସିଲେ । ଅସିକ୍ନୀଙ୍କ କନ୍ୟାର ଅଲୌକିକ ରୂପ ଦେଖି ସେମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ନଗରବାସୀ ଜୟଧ୍ୱନି କଲେ । ଗୀତ ଓ ବାଦ୍ୟନାଦ ସହିତ ବହୁତ ବଡ଼ ଉତ୍ସବ ହେଲା । କନ୍ୟାର ମନୋହର ମୁଖମଣ୍ଡଳ ଦେଖି ସମସ୍ତଙ୍କୁ ଆନନ୍ଦ ଲାଭ ହେଲା । ଦକ୍ଷ ବିଧିପୂର୍ବକ ବୈଦିକ ତଥା କୁଳୋଚିତ ଆଗ୍ରରମାନ ଅନୁଷ୍ଠାନ କଲେ । ବ୍ରାହ୍ମଣଙ୍କୁ ଦାନ ଦେଲେ ଏବଂ ଅନ୍ୟମାନଙ୍କୁ ମଧ୍ୟ ଧନ ବିତରଣ କଲେ । ସ୍ରବିଆଡ଼େ ଯଥୋଚିତ ନୃତ୍ୟଗୀତ ହେବାକୁ ଲାଗିଲା । ନାନା ପ୍ରକାର ମଙ୍ଗଳକୃତ୍ୟ ସହିତ ବାଦ୍ୟମାନ ବାଜିଲା । ଦକ୍ଷ ସମସ୍ତ ସଦ୍‌ଗୁଣ ଲକ୍ଷଣରେ ପ୍ରଶଂସିତ ସେହି କନ୍ୟାର ନାମ ରଖିଲେ 'ଉମା' । ପରବର୍ତ୍ତୀ କାଳରେ ଜଗତରେ ଲୋକମାନେ ଆହୁରି ଅନେକ ନାମ ଦେଲେ; ସେହି ସବୁ ନାମ ଅତ୍ୟନ୍ତ ମଙ୍ଗଳଦାୟକ ଏବଂ ସକଳ ଦୁଃଖ ହରଣକାରୀ । ମାତା ବୀରିଣୀ ଓ ମହାତ୍ମା ଦକ୍ଷ ତାଙ୍କ କନ୍ୟାକୁ ଅତି ସ୍ନେହରେ ପାଳନ କଲେ ଏବଂ ସେ ଚନ୍ଦ୍ରକଳା ପରି ବଢ଼ିବାକୁ ଲାଗିଲେ । ଦ୍ୱିଜଶ୍ରେଷ୍ଠ ! ଶୁକ୍ଳପକ୍ଷର ଚନ୍ଦ୍ରମାରେ ଯେପରି ସମସ୍ତ ମନୋହାରିଣୀ କଳା କ୍ରମେ କ୍ରମେ ପ୍ରବିଷ୍ଟ ହୋଇଥ୍ରଲେ, ଠିକ୍ ସେହିପରି ବାଲ୍ୟାବସ୍ଥାରୁ ହିଁ ଉମାଙ୍କ ଠାରେ ସମସ୍ତ ଉତ୍ତମୋତ୍ତମ ଗୁଣ ପ୍ରବେଶ କରିବାକୁ ଲାଗିଲା । ଦକ୍ଷକନ୍ୟା ସତୀ ତାଙ୍କ ସଖୀମାନଙ୍କ

ଗହଣରେ ବସି ଯେତେବେଳେ ନିଜ ଭାବରେ ନିମଗ୍ନ ହୋଇଯାଉଥିଲେ, ସେତେବେଳେ ସେ ବାରମ୍ବାର ଭଗବାନ ଶିବଙ୍କ ଚିତ୍ର ଆଙ୍କୁଥିଲେ । ମଙ୍ଗଳମୟୀ ସତୀ ଯେତେବେଳେ ବାଲସୁଲଭ କଣ୍ଠରେ ସୁନ୍ଦର ଗୀତ ଗାଉଥିଲେ, ସେତେବେଳେ ସ୍ଥାଣୁ, ହର ଓ ରୁଦ୍ର ନାମ ଉଚ୍ଚାରଣ କରି ସ୍ମରହର ଶିବଙ୍କୁ ହିଁ ସ୍ମରଣ କରୁଥିଲେ ।

(ଅଧ୍ୟାୟ ୧୪)



## ସତୀଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଦେବତାମାନଙ୍କର କୈଳାସ ପ୍ରତ୍ୟାବର୍ତ୍ତନ ଓ ଶିବଙ୍କୁ ସ୍ତୁତି

ବ୍ରହ୍ମା କହୁଛନ୍ତି–ନାରଦ ! ଦିନେ ମୁଁ ତୁମ ସଙ୍ଗରେ ଯାଇ ପିତାଙ୍କ ପାଖରେ ଛିଡ଼ା ହୋଇଥିବା ସତୀଙ୍କୁ ଦେଖିଲି । ସେ ତିନିଲୋକର ସୌନ୍ଦର୍ଯ୍ୟସାରଭୂତା ଥିଲେ । ତାଙ୍କ ପିତା ମୋତେ ନମସ୍କାର କରି ତୁମର ମଧ୍ୟ ସତ୍କାର କଲେ । ଏହା ଦେଖି ଲୋକ-ଲୀଳା (ଜଗତର ମର୍ଯ୍ୟାଦା) ରକ୍ଷା କରି ସତୀ ମୋତେ ଓ ତୁମକୁ ପ୍ରଣାମ କଲେ । ନାରଦ ! ତା'ପରେ ସତୀଙ୍କ ଆଡ଼କୁ ଗ୍ରହିଁ ଆମେ ଦୁହେଁ ଦକ୍ଷ ଦେଇଥିବା ଆସନରେ ବସିଗଲେ । ତା'ପରେ ମୁଁ ସେହି ବିନୟଶୀଳା ବାଳିକାକୁ କହିଲି, "ଯେଉଁ ସର୍ବଜ୍ଞ ଜଗଦୀଶ୍ୱର ମହାଦେବ କେବଳ ତୁମକୁ ଗ୍ରହାନ୍ତି ଏବଂ ତୁମ ମନରେ ମଧ୍ୟ ଏକମାତ୍ର ଯାହାଙ୍କ ପ୍ରତି କାମନା ରହିଛି, ତାହାଙ୍କୁ ତୁମେ ସ୍ୱାମୀରୂପେ ପ୍ରାପ୍ତ କର । ଶୁଭେ ! ଯେ ତୁମ ବ୍ୟତୀତ ଆଉ କାହାରିକୁ ସ୍ତ୍ରୀରୂପେ ଗ୍ରହଣ କରି ନାହାନ୍ତି, କି କରନ୍ତି ନାହିଁ କି କରିବେ ନାହିଁ, ସେହି ଶିବ ହିଁ ତୁମର ସ୍ୱାମୀ ହୁଅନ୍ତୁ । ସେ କେବଳ ତୁମ ପାଇଁ ଯୋଗ୍ୟ ।"

ନାରଦ ! ସତୀଙ୍କୁ ଏପରି କହି ମୁଁ ଦକ୍ଷଙ୍କ ଗୃହରେ ବହୁତ ସମୟ ରହିଲି । ତା'ପରେ ତାଙ୍କ ଠାରୁ ବିଦାୟ ନେଇ ଆମେ ଦୁହେଁ ନିଜ ନିଜ ସ୍ଥାନକୁ ଫେରିଗଲେ । ମୋ କଥା ଶୁଣି ଦକ୍ଷ ବହୁତ ଖୁସୀ ହେଲେ । ତାଙ୍କର ସମସ୍ତ ମାନସିକ ଚିନ୍ତା ଦୂର ହୋଇଗଲା ଏବଂ ସେ ଝିଅକୁ ପରମେଶ୍ୱରୀ ମନେ କରି କୋଳକୁ ଉଠାଇ ନେଲେ । ଏହିପରି ସ୍ୱେଚ୍ଛାରେ ମାନବଶରୀର ଧାରଣପୂର୍ବକ କୌମାରୋଚିତ ଲୀଳାବିହାର କରୁ କରୁ ଭକ୍ତବତ୍ସଳା ସତୀଦେବୀ ବଡ଼ ହୋଇଗଲେ । ବାଲ୍ୟାବସ୍ଥା ପାର କରି କିଞ୍ଚିତ୍ ଯୁବାବସ୍ଥାକୁ ପ୍ରାପ୍ତ ହେବାରୁ ସତୀ ଅତ୍ୟନ୍ତ ତେଜ ଓ ଶୋଭାରେ ସମ୍ପନ୍ନ ତଥା ସର୍ବାଙ୍ଗସୁନ୍ଦର ହୋଇଗଲେ । ଏହା ଲକ୍ଷ୍ୟ କରି ଦକ୍ଷଙ୍କ ମନରେ ଚିନ୍ତା ହେଲା ଯେ ମହାଦେବଙ୍କ ସଙ୍ଗେ ଏହାର ବିବାହ କିପରି କରିବି? ସ୍ୱୟଂ ସତୀଙ୍କ ମନରେ ମଧ୍ୟ ମହାଦେବଙ୍କୁ ପାଇବାର ନିତ୍ୟ ଅଭିଳାଷ ରହିଥିଲା । ପରମ ବୁଦ୍ଧିମତୀ ସତୀରୂପିଣୀ ସ୍ୱୟଂ ପରମେଶ୍ୱରୀ ଶିବା ପିତାଙ୍କ ମନୋଭାବକୁ ବୁଝିପାରିଲେ । ତେଣୁ ସେ ମାଆଙ୍କ ନିକଟକୁ ଯାଇ ଭଗବାନ ଶିବଙ୍କ ପ୍ରସନ୍ନତା ନିମିତ୍ତ ତପସ୍ୟା କରିବାକୁ ଅନୁମତି ମାଗିଲେ । ମାଆଙ୍କ ଆଜ୍ଞା ମିଳିଗଲା । ତେଣୁ ଦୃଢ଼ବ୍ରତା ସତୀ ମହେଶ୍ୱରଙ୍କୁ ବରରୂପେ ପାଇବାର ସଂକଳ୍ପରେ ଘରେ ହିଁ ତାଙ୍କ ଆରାଧନା ଆରମ୍ଭ କରିଦେଲେ ।

ଆଶ୍ୱିନ ମାସରେ ନନ୍ଦା (ପ୍ରତିପଦା, ଷଷ୍ଠୀ ଓ ଏକାଦଶୀ) ତିଥିମାନଙ୍କରେ ସତୀ ଭକ୍ତିପୂର୍ବକ ଗୁଡ଼, ଭାତ ଓ ଲୁଣ ଅର୍ପଣ କରି ଭଗବାନ ଶିବଙ୍କୁ ପୂଜା କଲେ ଏବଂ ତାଙ୍କୁ ନମସ୍କାର କରି ଉକ୍ତ ନିୟମରେ ସେ ମାସଟି ବିତାଇଦେଲେ । କାର୍ତ୍ତିକ ମାସର ଚତୁର୍ଦ୍ଦଶୀ ଦିନ ମାଲପୁଆ ଓ

ଝିରିରେ ଶିବଙ୍କୁ ଆରାଧନା କରି ତାଙ୍କୁ ନିରନ୍ତର ଚିନ୍ତନ କଲେ । ମାର୍ଗଶିର ମାସର କୃଷ୍ଣପକ୍ଷ ଅଷ୍ଟମୀ ତିଥିରେ ତିଳ, ଯବ ଓ ଗୁଉଳରେ ଶିବଙ୍କୁ ପୂଜା କରି ଜ୍ୟୋତିର୍ମୟ ଦୀପ ଦେଖାଇ ବା ଆଳତି କରି ସତୀ ଦିନ କାଟିଲେ । ପୌଷ ମାସର ଶୁକ୍ଳପକ୍ଷ ସପ୍ତମୀରେ ରାତ୍ରି-ଜାଗରଣ କରି ଓ ପ୍ରାତଃକାଳରେ ଖେଚଡ଼ି ନୈବେଦ୍ୟ ଅର୍ପଣ କରି ଶିବଙ୍କୁ ପୂଜା କଲେ । ମାଘପୂର୍ଣ୍ଣିମା ଦିନ ରାତ୍ରି-ଜାଗରଣ କରି ପ୍ରଭାତରେ ନଦୀରେ ସ୍ନାନ କରୁଥିଲେ ଓ ଓଦା ବସ୍ତ୍ରରେ ନଦୀତଟରେ ବସିରହି ଶିବଙ୍କୁ ଆରାଧନା କରୁଥିଲେ । ଫାଲ୍‌ଗୁନ ମାସର କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥିରେ ରାତ୍ରି-ଜାଗରଣ କରି ରାତିର ଗ୍ରିପ୍ରହରରେ ଶିବଙ୍କର ବିଶେଷ ପୂଜା କରୁଥିଲେ ଓ ନଟଙ୍କ ଦ୍ୱାରା ନାଟକ ମଞ୍ଚନ କରାଉଥିଲେ । ଚୈତ୍ର ମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ତିଥିରେ ଦିନରାତି ଶିବଙ୍କୁ ସ୍ମରଣ କରି କରି ସମୟ ବିତାଉଥିଲେ ଏବଂ ପଳାଶ ଫୁଲ ଓ ଦୟଣାରେ ଶିବଙ୍କୁ ପୂଜା କରୁଥିଲେ । ବୈଶାଖ ଶୁକ୍ଳ ତୃତୀୟା ଦିନ ସତୀ ତିଳ ଆହାର କରି ରହିଲେ ଏବଂ ନୂଆ ଯଅର ଭାତ ରାନ୍ଧି ସେଥିରେ ରୁଦ୍ରଦେବଙ୍କୁ ପୂଜା କରି ସେହି ମାସଟି ବିତାଇଲେ । ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ନିରାହାର ରହି ରାତିରେ ସୁନ୍ଦର ବସ୍ତ୍ର ଓ ଭେଜିବାଇଗଣ ଫୁଲରେ ଶିବଙ୍କୁ ପୂଜା କରୁଥିଲେ । ଏହିରୂପେ ସେ ମାସଟି ବିତିଲା । ସତୀ ଆଷାଢ଼ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ କଳା ବସ୍ତ୍ର ଓ ଭେଜିବାଇଗଣ ଫୁଲରେ ରୁଦ୍ରଙ୍କୁ ପୂଜା କଲେ । ଶ୍ରାବଣ ମାସର ଶୁକ୍ଳପକ୍ଷ ଅଷ୍ଟମୀ ଓ ଚତୁର୍ଦ୍ଦଶୀକୁ ସେ ଯଜ୍ଞୋପବୀତ, ବସ୍ତ୍ର ତଥା କୁଶବଟୁରେ ଶିବଙ୍କୁ ପୂଜା କଲେ । ଭାଦ୍ରବ ମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନ ନାନା ପ୍ରକାର ଫୁଲ ଓ ଫଳରେ ଶିବଙ୍କୁ ପୂଜା କରି ଚତୁର୍ଦ୍ଦଶୀକୁ କେବଳ ଜଳାହାର କରି ରହିଲେ । ସେ ନାନା ପ୍ରକାର ଫୁଲ ଓ ଫଳରେ ତଥା ଚଳିତ ଋତୁରେ ଉତ୍ପନ୍ନ ହେଉଥିବା ଶସ୍ୟ ଦ୍ୱାରା ଶିବଙ୍କୁ ପୂଜା କରୁଥିଲେ ଏବଂ ପୂରା ମାସ ଅତି ପରିମିତ ଆହାର କରି କେବଳ ଜପରେ ମନୋନିବେଶ କରୁଥିଲେ । ସବୁ ମାସରେ ପୂରା ଦିନ ସତୀ ଶିବଙ୍କ ଆରାଧନାରେ ସଂଲଗ୍ନ ରହୁଥିଲେ । ନିଜ ଇଚ୍ଛାରେ ମାନବରୂପ ଧାରଣ କରିଥିବା ଦେବୀ ସତୀ ଦୃଢ଼ଭାବରେ ବ୍ରତ ପାଳନ କରୁଥିଲେ । ଏହିରୂପେ ନନ୍ଦାବ୍ରତକୁ ପୂର୍ଣ୍ଣରୂପେ ପାଳନ କରି ଭଗବାନ ଶିବଙ୍କ ଅନନ୍ୟ ଭକ୍ତା ସତୀ ଏକାଗ୍ରଚିତ୍ତରେ ଶିବଙ୍କୁ ଧ୍ୟାନ କରିବା ସହ ନିଶ୍ଚଳଭାବରେ ସେହି ଧ୍ୟାନରେ ତନ୍ମୟ ହୋଇଗଲେ ।

ମୁନେ ! ଇତ୍ୟବସରରେ ଦେବଗଣ ଓ ଋଷିଗଣ ମୋତେ ଓ ଭଗବାନ ବିଷ୍ଣୁଙ୍କୁ ଅଗ୍ରଗାମୀ କରାଇ ସତୀଙ୍କ ତପସ୍ୟା ଦେଖିବାକୁ ଗଲେ । ସେଠାରେ ପହଞ୍ଚି ଆମେ ସବୁ ଦେଖିଲୁ ଯେ ସତୀ ମୂର୍ତ୍ତିମତୀ ଦ୍ୱିତୀୟ ସିଦ୍ଧି ପରି ଦିଶୁଛନ୍ତି । ସେ ଶିବଙ୍କ ଧ୍ୟାନରେ ମଗ୍ନ ହୋଇ ସିଦ୍ଧାବସ୍ଥାରେ ପହଞ୍ଚି ଯାଇଛନ୍ତି । ସମସ୍ତ ଦେବତା ସହର୍ଷ କର ଯୋଡ଼ି ସତୀଙ୍କୁ ନମସ୍କାର କଲେ, ମୁନିମାନେ ମଧ୍ୟ ମସ୍ତକ ଅବନତ କଲେ ଏବଂ ଶ୍ରୀହରି ପ୍ରଭୃତିଙ୍କ ମନରେ ସ୍ନେହ ଜାଗି ଉଠିଲା । ବିଷ୍ଣୁ ପ୍ରମୁଖ ସମସ୍ତ ଦେବତା ଓ ମୁନିଗଣ ଆଶ୍ଚର୍ଯ୍ୟାନ୍ୱିତ ହୋଇ ସତୀଙ୍କର ଭୂରି ଭୂରି ପ୍ରଶଂସା କଲେ । ସେମାନେ ଦେବୀଙ୍କୁ ପ୍ରଣାମ କରି ଅବିଳମ୍ବେ ଗିରିରାଜ କୈଳାସକୁ ଗଲେ, ଯାହା ଶିବଙ୍କର ଅତିଶୟ ପ୍ରିୟ ସ୍ଥାନ । ସାବିତ୍ରୀଙ୍କ ସହ ମୁଁ ଗଲି; ଲକ୍ଷ୍ମୀଙ୍କ ସହିତ ବାସୁଦେବ ମଧ୍ୟ ପ୍ରସନ୍ନତାପୂର୍ବକ ମହାଦେବଙ୍କ ନିକଟକୁ ଗଲେ । ସେଠାରେ ପହଞ୍ଚି ଭଗବାନ ଶିବଙ୍କୁ ଦେଖିବାମାତ୍ରେ ସମସ୍ତ ଦେବତା

ପ୍ରଣାମ କରି ବିନୀତଭାବରେ ନାନା ପ୍ରକାର ସ୍ତୋତ୍ର ଦ୍ୱାରା ତାଙ୍କୁ ସ୍ତୁତି କଲେ । ଶେଷରେ କହିଲେ–



ପ୍ରଭୋ ! ଆପଣଙ୍କର ସତ୍ତ୍ୱ, ରଜ ଓ ତମ ନାମରେ ଯେଉଁ ତିନି ଶକ୍ତି ଅଛି, ତାହାର ରାଗ ଆଦି ବେଗ ଅତି ଅସହ୍ୟ । ବେଦତ୍ରୟୀ ଅଥବା ଲୋକତ୍ରୟୀ ଆପଣଙ୍କ ସ୍ୱରୂପ । ଆପଣ ଶରଣାଗତଙ୍କର ପାଳକ । ଆପଣଙ୍କ ଶକ୍ତି ଅସୀମ । ଆପଣଙ୍କୁ ନମସ୍କାର । ଦୁର୍ଗାପତେ ! ଯାହାଙ୍କ ଇନ୍ଦ୍ରିୟଗଣ ଦୁଷ୍ଟ ବା ଅସଂଯତ, ସେମାନଙ୍କ ପକ୍ଷେ ଆପଣଙ୍କୁ ପାଇବାର କୌଣସି ମାର୍ଗ ସୁଲଭ ନୁହେଁ । ଆପଣ ଭକ୍ତଙ୍କର ଉଦ୍ଧାର ନିମନ୍ତେ ସଦା ତତ୍ପର ରହନ୍ତି, ଆପଣଙ୍କ ତେଜ ଗୁପ୍ତ, ଆପଣଙ୍କୁ ନମସ୍କାର । ଆପଣଙ୍କ ମାୟାଶକ୍ତିରୂପା ଅହଂବୁଦ୍ଧିରେ ଆତ୍ମାର ସ୍ୱରୂପ ଆବୃତ । ଏଣୁ ଏ ମୂଢ଼ ଜୀବ ନିଜ ସ୍ୱରୂପକୁ ଜାଣିପାରୁ ନାହିଁ । ଆପଣଙ୍କ ମହିମାକୁ ପାର ପାଇବା ଅତ୍ୟନ୍ତ ଦୁଷ୍କର । ଆମେ ଆପଣଙ୍କ ସମ୍ମୁଖରେ ମଥା ଅବନତ କରୁଛୁ ।

ବ୍ରହ୍ମା କହୁଛନ୍ତି–ନାରଦ ! ଏପରି ବିଷ୍ଣୁ ଆଦି ସମସ୍ତ ଦେବତା ସ୍ତୁତି କରିବା ପରେ ଭକ୍ତିଭାବରେ ମସ୍ତକ ଅବନତ କରି ମହାପ୍ରଭୁ ଶିବଙ୍କ ଆଗରେ ନୀରବରେ ଛିଡ଼ା ହୋଇଗଲେ ।

(ଅଧ୍ୟାୟ ୧୫)

★★★

## ସତୀଙ୍କ ସଙ୍ଗେ ବିବାହ କରିବା ନିମନ୍ତେ ରୁଦ୍ରଦେବଙ୍କୁ ବ୍ରହ୍ମାଙ୍କ ଅନୁରୋଧ, ଏଥିରେ ବିଷ୍ଣୁଙ୍କର ଅନୁମୋଦନ ଓ ରୁଦ୍ରଙ୍କର ସ୍ୱୀକୃତି

ବ୍ରହ୍ମା କହୁଛନ୍ତି–ବିଷ୍ଣୁ ପ୍ରମୁଖ ଦେବତାଙ୍କ ଦ୍ୱାରା କରାଯାଇଥିବା ସ୍ତୁତି ଶୁଣି ସମସ୍ତଙ୍କ ହେତୁଭୂତ ଭଗବାନ ଶଙ୍କର ପ୍ରସନ୍ନ ହେଲେ ଓ ଉଚ୍ଚସ୍ୱରରେ ହସିବାକୁ ଲାଗିଲେ । ମୋତେ ଓ ବିଷ୍ଣୁଙ୍କୁ ସପତ୍ନୀକ ଆସିଥିବା ଦେଖି ଆମମାନଙ୍କ ସହ ଯଥୋଚିତ ବାର୍ତ୍ତାଳାପ କଲେ ଏବଂ ଆମ ଆଗମନର କାରଣ ପଚାରିଲେ ।

ରୁଦ୍ର କହିଲେ–ହେ ହରି ! ହେ ବିଧାତା ! ହେ ଦେବଗଣ ଓ ମହର୍ଷିଗଣ ! ତୁମମାନଙ୍କର ଏଠାକୁ ଆଗମନର କାରଣ କ'ଣ? ନିର୍ଭୟ ହୋଇ ତାହା ପ୍ରକାଶ କର । ମୋ'ଠାରେ କେଉଁ କାର୍ଯ୍ୟ ଅଛି? ତାହା ମୁଁ ଶୁଣିବାକୁ ଚାହେଁ; କାରଣ ତୁମମାନଙ୍କ ସ୍ତୁତିରେ ମୁଁ ପ୍ରସନ୍ନ ।

ମୁନେ ! ମହାଦେବ ଏଭଳି ପଚାରିବାରୁ ଭଗବାନ ବିଷ୍ଣୁଙ୍କ ଆଜ୍ଞାରେ ମୁଁ ବାର୍ତ୍ତାଳାପ ଆରମ୍ଭ କଲି ।

ମୁଁ କହିଲି–ଦେବଦେବ ! ମହାଦେବ ! କରୁଣାସାଗର ! ପ୍ରଭୋ ! ଆମେ ଦୁହେଁ ଏ

ଦେବତା ଓ ଋଷିମାନଙ୍କୁ ସଙ୍ଗରେ ଧରି ଯେଉଁ ଉଦ୍ଦେଶ୍ୟରେ ଏଠାକୁ ଆସିଛୁ, ତାହା ଶୁଣନ୍ତୁ । ବୃଷଭଧ୍ୱଜ ! ବିଶେଷତଃ ଆପଣଙ୍କ ନିମନ୍ତେ ହିଁ ଆମର ଏଠାକୁ ଆଗମନ ହୋଇଛି; କାରଣ ଆମେ ତିନିହେଁ ସହାର୍ଥୀ ଅର୍ଥାତ୍ ସୃଷ୍ଟିଚକ୍ରର ସଂଗ୍ରଳନରୂପୀ ପ୍ରୟୋଜନର ସିଦ୍ଧି ନିମନ୍ତେ ପରସ୍ପରର ସହାୟକ । ଏଣୁ ସହାର୍ଥୀ ପରସ୍ପରକୁ ସହଯୋଗ କରିବା ଉଚିତ, ଅନ୍ୟଥା ଏ ଜଗତ ତିଷ୍ଠି ପାରିବ ନାହିଁ । ମହେଶ୍ୱର ! କେତେକ ଏଭଳି ଅସୁର ଉତ୍ପନ୍ନ ହେବେ, ଯେଉଁମାନେ ମୋ ହାତରେ ମରିବେ । କେତେକ ଭଗବାନ ବିଷ୍ଣୁଙ୍କ ହାତରେ ମରିବେ ଏବଂ ଆଉ କେତେକ ଆପଣଙ୍କ ହାତରେ ମରିବେ । ମହାପ୍ରଭୁ ! କେତେକ ଅସୁର କେବଳ ଆପଣଙ୍କ ବୀର୍ଯ୍ୟରୁ ଉତ୍ପନ୍ନ ପୁତ୍ର ହାତରେ ହିଁ ମରିବେ । କେତେକ ଏଭଳି ଅସୁର ମଧ୍ୟ ଜନ୍ମିବେ, ଯେଉଁମାନେ ମାୟା ହାତରେ ନିହତ ହେବେ । ଆପଣଙ୍କ କୃପାରୁ ହିଁ ଦେବତାମାନଙ୍କୁ ସର୍ବଦା ଉତ୍ତମ ସୁଖ ପ୍ରାପ୍ତ ହେବ । ଭୟଙ୍କର ଅସୁରଙ୍କୁ ବିନାଶ କରି ଆପଣ ଜଗତକୁ ସଦା ସୁଖ ଓ ଅଭୟ ପ୍ରଦାନ କରିବେ ଅଥବା ଏହା ମଧ୍ୟ ହୋଇପାରେ ଯେ ଆପଣଙ୍କ ହାତରେ କୌଣସି ଅସୁର ମରିବେ ନାହିଁ; କାରଣ ଆପଣ ସଦା ଯୋଗଯୁକ୍ତ ରହିବାରୁ ରାଗଦ୍ୱେଷଶୂନ୍ୟ ଅଟନ୍ତି ଏବଂ ସର୍ବଦା ଦୟା କରିଥାନ୍ତି । ଈଶ ! ଯଦି ସେହି ଅସୁରମାନେ ଆପଣଙ୍କ ଦୟାରେ ଅନୁଗୃହୀତ ହେଉଥିବେ, ତେବେ ସୃଷ୍ଟି ଓ ପାଳନ କାର୍ଯ୍ୟ କିପରି ସମ୍ପାଦିତ ହେବ? ଏଣୁ ହେ ବୃଷଭଧ୍ୱଜ ! ଆପଣଙ୍କ ପକ୍ଷେ ସର୍ବଦା ସୃଷ୍ଟ୍ୟାଦିର ଉପଯୁକ୍ତ କାର୍ଯ୍ୟ କରିବା ପାଇଁ ଉଦ୍ୟତ ରହିବା ଉଚିତ । ଯଦି ସୃଷ୍ଟି, ପାଳନ ଓ ସଂହାରରୂପୀ କର୍ମ କରିବାର ନାହିଁ, ତେବେ ଆମେ ମାୟାରେ ଯେଉଁ ଭିନ୍ନ ଭିନ୍ନ ରୂପ ଧାରଣ କରିଛେ, ସେସବୁର କୌଣସି ଔଚିତ୍ୟ ରହିବ ନାହିଁ । ବାସ୍ତବରେ ଆମେ ତିନିହେଁ ଏକ, କେବଳ କାର୍ଯ୍ୟଭେଦରେ ଭିନ୍ନ ଭିନ୍ନ ଦେହ ଧାରଣ କରିଅଛେ । ଯଦି କାର୍ଯ୍ୟଭେଦ ସିଦ୍ଧ ନ ହୁଏ, ତେବେ ରୂପଭେଦର କୌଣସି ପ୍ରୟୋଜନ ନାହିଁ । ପ୍ରଭୋ ! ଏକମାତ୍ର ପରମାତ୍ମା ମହେଶ୍ୱର ହିଁ ତିନି ରୂପରେ ଅଭିବ୍ୟକ୍ତ ହୋଇଛନ୍ତି । ଏହି ରୂପଭେଦରେ ତାଙ୍କର ମାୟା ହିଁ କାରଣ । ବାସ୍ତବରେ ପ୍ରଭୁ ସ୍ୱତନ୍ତ୍ର । ସେ ଲୀଳା ଉଦ୍ଦେଶ୍ୟରେ ହିଁ ସୃଷ୍ଟ୍ୟାଦି କାର୍ଯ୍ୟ କରନ୍ତି । ଭଗବାନ ଶ୍ରୀହରି ତାଙ୍କ ବାମ ଅଙ୍ଗରୁ ପ୍ରକଟ ହୋଇଛନ୍ତି, ମୁଁ ବ୍ରହ୍ମା ତାଙ୍କ ଡାହାଣ ଅଙ୍ଗରୁ ଏବଂ ଆପଣ ରୁଦ୍ରଦେବ ସେହି ସଦାଶିବଙ୍କ ହୃଦୟରୁ ଆବିର୍ଭୂତ ହୋଇଛନ୍ତି । ଏଣୁ ଆପଣ ହିଁ ଶିବଙ୍କର ପୂର୍ଣ୍ଣ ରୂପ । ପ୍ରଭୋ ! ଏଭଳି ଅଭିନ୍ନ ରୂପ ହୋଇ ମଧ୍ୟ ଆମେ ତିନି ରୂପରେ ପ୍ରକଟ ହୋଇଛେ । ସନାତନ ଦେବ ! ଆମେ ତ୍ରିଦେବ ସେହି ସଦାଶିବ ଓ ଶିବାଙ୍କର ପୁତ୍ର, ଏହି ଯଥାର୍ଥ ତତ୍ତ୍ୱକୁ ଆପଣ ହୃଦୟଙ୍ଗମ କରନ୍ତୁ । ପ୍ରଭୁ ! ମୁଁ ଓ ବିଷ୍ଣୁ ଆପଣଙ୍କ ଆଦେଶରେ ପ୍ରସନ୍ନତାପୂର୍ବକ ଜଗତର ସୃଷ୍ଟି ଓ ପାଳନ କାର୍ଯ୍ୟ କରୁଛୁ ଏବଂ କାର୍ଯ୍ୟକାରଣବଶତଃ ସପତ୍ନୀକ ହୋଇସାରିଛୁ । ଏଣୁ ଆପଣ ମଧ୍ୟ ବିବାହିତ ହୋଇ ବିଶ୍ୱହିତ ପାଇଁ ଏବଂ ଦେବତାଙ୍କୁ ସୁଖ ଦେବା ପାଇଁ ଏକ ପରମ ସୁନ୍ଦରୀ ରମଣୀକୁ ଆପଣା ପତ୍ନୀରୂପେ ଗ୍ରହଣ କରନ୍ତୁ । ମହେଶ୍ୱର ! ଆହୁରି ଗୋଟିଏ କଥା । ମୋର ପୂର୍ବର କଥା ମନେ ପଡ଼ିଗଲା । ପୂର୍ବକାଳରେ ଆପଣ ଶିବରୂପରେ ଯେଉଁ କଥା ମୋ ସମ୍ମୁଖରେ କହିଥିଲେ, ତାହା ମୁଁ ଶୁଣାଉଛି । ଆପଣ କହିଥିଲେ "ବ୍ରହ୍ମନ୍ ! ମୋର ଏହିଭଳି ଉତ୍ତମ ରୂପ ତୁମର ଅଙ୍ଗବିଶେଷ ଲଲାଟରୁ ପ୍ରକଟ ହେବ, ଯିଏ ଜଗତରେ 'ରୁଦ୍ର' ନାମରେ ବିଖ୍ୟାତ

ହେବ। ତୁମେ ବ୍ରହ୍ମା ସୃଷ୍ଟିକର୍ତ୍ତା ହେଲ, ବିଷ୍ଣୁ ପାଳନକର୍ତ୍ତା ହେଲେ ଆଉ ମୁଁ ସଗୁଣ ରୂପ ଧାରଣ କରି ସଂହାରକର୍ତ୍ତା ହେବି। ଗୋଟିଏ ନାରୀକୁ ବିବାହ କରି ଜଗତର ଉତ୍ତମ କାର୍ଯ୍ୟକୁ ସିଦ୍ଧ କରିବି।'' ଆପଣ ନିଜର ସେହି ଉକ୍ତିକୁ ମନେ ପକାଇ ଉକ୍ତ ପୂର୍ବପ୍ରତିଜ୍ଞାକୁ ପୂର୍ଣ୍ଣ କରନ୍ତୁ। ସ୍ୱାମିନ୍! ଆପଣଙ୍କର ଆଦେଶ ଯେ ମୁଁ ସୃଷ୍ଟି କରିବି, ବିଷ୍ଣୁ ପାଳନ କରିବେ ଓ ଆପଣ ସଂହାରକର୍ତ୍ତାରୂପେ ପ୍ରକଟ ହେବେ। ଏବେ ଆପଣ ସଂହାରକର୍ତ୍ତାରୂପେ ପ୍ରକଟ ହୋଇଛନ୍ତି। ଆପଣଙ୍କ ବିନା ଆମେ ଦୁହେଁ ନିଜ ନିଜ କାର୍ଯ୍ୟ କରିବାକୁ ଅସମର୍ଥ। ଏଣୁ ଆପଣ ଏଭଳି ଏକ କାମିନୀକୁ ଗ୍ରହଣ କରନ୍ତୁ, ଯିଏ ଲୋକହିତ କାର୍ଯ୍ୟରେ ତତ୍ପର ରହିବ। ଶମ୍ଭୋ! ଲକ୍ଷ୍ମୀ ଯେପରି ଭଗବାନ ବିଷ୍ଣୁଙ୍କର ଏବଂ ସାବିତ୍ରୀ ଯେପରି ମୋର ସହଧର୍ମିଣୀ, ସେହିପରି ଆପଣ ମଧ୍ୟ ଜଣେ ଜୀବନସହଚରୀ ପ୍ରାଣବଲ୍ଲଭାକୁ ଗ୍ରହଣ କରନ୍ତୁ।

ମୋ କଥା ଶୁଣିବାକ୍ଷଣି ଲୋକେଶ୍ୱର ମହାଦେବଙ୍କ ମୁଖମଣ୍ଡଳରେ ସ୍ମିତହାସ ଖେଳିଗଲା। ସେ ଶ୍ରୀହରିଙ୍କ ସମ୍ମୁଖରେ ମୋତେ ଏହି ପ୍ରକାର କହିଲେ।

ଈଶ୍ୱର କହିଲେ—ବ୍ରହ୍ମନ୍! ହରେ! ତୁମେ ଦୁହେଁ ମୋର ସର୍ବଦା ଅତ୍ୟନ୍ତ ପ୍ରିୟ। ତୁମ ଦୁହିଙ୍କୁ ଦେଖି ମୋତେ ବହୁତ ଆନନ୍ଦ ଲାଭ ହେଲା। ତୁମେମାନେ ସବୁ ଦେବତାଙ୍କ ଠାରୁ ଶ୍ରେଷ୍ଠ ଓ ତ୍ରିଲୋକର ସ୍ୱାମୀ। ଲୋକହିତ କାର୍ଯ୍ୟରେ ମନ ଲଗାଇଥିବାରୁ ତୁମମାନଙ୍କ ବଚନ ମୋ ଦୃଷ୍ଟିରେ ଅତ୍ୟନ୍ତ ଗୌରବପୂର୍ଣ୍ଣ। କିନ୍ତୁ ସୁରଶ୍ରେଷ୍ଠ! ମୋ ପକ୍ଷେ ବିବାହ କରିବା ଉଚିତ ହେବ ନାହିଁ; କାରଣ ମୁଁ ତପସ୍ୟାରେ ସଂଲଗ୍ନ ରହି ସର୍ବଦା ସଂସାର ପ୍ରତି ଅନାସକ୍ତ ରହୁଛି ଏବଂ ଯୋଗୀରୂପରେ ମୋର ପ୍ରସିଦ୍ଧି ରହିଛି। ଯେ ନିବୃତ୍ତିର ସୁନ୍ଦର ମାର୍ଗରେ ସ୍ଥିତ, ନିଜ ଆତ୍ମାରେ ହିଁ ରମଣ କରେ, ଯେ ନିରଞ୍ଜନ (ମାୟାରୁ ନିର୍ଲିପ୍ତ), ଦିଗମ୍ବର, ଜ୍ଞାନୀ, ଆତ୍ମଦର୍ଶୀ, କାମନାଶୂନ୍ୟ ଓ ନିର୍ବିକାର, ଯେ ଭୋଗରୁ ଦୂରରେ ରହେ, ପୁଣି ସଦା ଅପବିତ୍ର ଓ ଅମଙ୍ଗଳ ବେଶଧାରୀ, କହିଲ ଭଲା ତା'ର ସଂସାରରେ କାମିନୀଠାରେ କି ପ୍ରୟୋଜନ?* ମୋତେ ତ ସର୍ବଦା କେବଳ ଯୋଗରେ ସଂଲଗ୍ନ ରହିବାରେ ହିଁ ଆନନ୍ଦ ମିଳେ। ଜ୍ଞାନହୀନ ବ୍ୟକ୍ତି ହିଁ ଯୋଗକୁ ଛାଡ଼ି ଭୋଗକୁ ଅଧିକ ମହତ୍ତ୍ୱ ଦିଏ। ବିବାହ କରିବା ଅନ୍ୟର ବନ୍ଧନରେ ବାନ୍ଧି ହେବା ସଙ୍ଗେ ସମାନ। ଏହାକୁ ବହୁତ ବଡ଼ ବନ୍ଧନ ବୋଲି ବୁଝିବା ଉଚିତ। ଏଣୁ ମୁଁ ସତ୍ୟ ସତ୍ୟ କହୁଛି, ବିବାହ ପାଇଁ ମୋ ମନରେ ଟିକିଏ ବି ଅଭିରୁଚି ନାହିଁ। ଆତ୍ମା ହିଁ ନିଜର ଉତ୍ତମ ଅର୍ଥ ବା ସ୍ୱାର୍ଥ। ଉତ୍ତମରୂପେ ଆତ୍ମଚିନ୍ତନ କରିବାରୁ ମୋର ଲୌକିକ ସ୍ୱାର୍ଥରେ ପ୍ରବୃତ୍ତି ହେଉ ନାହିଁ। ତଥାପି ଜଗତର ହିତ ନିମନ୍ତେ ତୁମେ ଯାହା କହିଲ, ତାହା ମୁଁ କରିବି। ତୁମର କଥାକୁ ଗରିଷ୍ଠ ମଣି ଅଥବା ମୋର ନିଜ କଥନକୁ ପୂର୍ଣ୍ଣ କରିବାକୁ ମୁଁ ଅବଶ୍ୟ ବିବାହ କରିବି; କାରଣ ମୁଁ ସର୍ବଦା ଭକ୍ତଙ୍କ ବଶରେ ରହିଥାଏ। କିନ୍ତୁ ମୁଁ ଯେଉଁପରି ନାରୀକୁ ପ୍ରିୟା ପତ୍ନୀରୂପେ ଗ୍ରହଣ କରିବି ଓ ଯେଉଁ ସର୍ତ୍ତରେ ଗ୍ରହଣ କରିବି, ତାହା ଶୁଣ। ହରେ! ବ୍ରହ୍ମନ୍!

---

* ଯୋ ନିବୃତ୍ତିସୁମାର୍ଗସ୍ଥଃ ସ୍ୱାତ୍ମାରାମୋ ନିରଞ୍ଜନଃ। ଅବଧୂତତନୁର୍ଜ୍ଞାନୀ ସ୍ୱଦ୍ରଷ୍ଟା କାମବର୍ଜିତଃ॥
ଅବିକାରୀ ହ୍ୟଭୋଗୀ ଚ ସଦା ଶୁଚିରମଙ୍ଗଳଃ। ତସ୍ୟ ପ୍ରୟୋଜନଂ ଲୋକେ କାମିନ୍ୟା କିଂ ବଦାଧୁନା॥
(ଶି. ପୁ. ରୁ. ସଂ. ସ. ଖ. ୧୫।୩୧-୩୨)

ମୁଁ ଯାହା କିଛି କହୁଛି, ତାହା ସର୍ବଥା ଉଚିତ । ଯେଉଁ ନାରୀ ମୋ ତେଜକୁ ବିଭାଗପୂର୍ବକ ଗ୍ରହଣ କରି ପାରିବ, ଯେ ଯୋଗିନୀ ହୋଇଥିବ ଓ ଇଚ୍ଛାନୁସାରେ ଶରୀର ଧାରଣ କରି ପାରୁଥିବ, ତାହାରି ପ୍ରସ୍ତାବ ତୁମେ ରଖ । ଯେତେବେଳେ ମୁଁ ଯୋଗରେ ତତ୍ପର ରହିବି, ତାକୁ ମଧ୍ୟ ଯୋଗିନୀ ହୋଇ ରହିବାକୁ ପଡ଼ିବ; ଆଉ ଯେବେ ମୁଁ କାମାସକ୍ତ ହୋଇଯିବି, ସେତେବେଳେ ତାକୁ ମଧ୍ୟ କାମିନୀରୂପରେ ମୋ ସଙ୍ଗରେ ରହିବାକୁ ହେବ । ବେଦବେତ୍ତା ବିଦ୍ୱାନ୍ ଯାହାଙ୍କୁ ଅବିନାଶୀ କହନ୍ତି, ସେହି ଜ୍ୟୋତିଃସ୍ୱରୂପ ସନାତନ ଶିବଙ୍କୁ ମୁଁ ସର୍ବଦା ଚିନ୍ତନ କରୁଛି ଏବଂ କରିବି ମଧ୍ୟ । ବ୍ରହ୍ମନ୍ ! ଯେବେ ମୁଁ ସଦାଶିବଙ୍କ ଚିନ୍ତନରେ ସଂଲଗ୍ନ ନ ଥିବି, ସେତେବେଳେ ହିଁ ସେହି ଭାମିନୀ ସଙ୍ଗେ ସମାଗମ କରି ପାରିବି । ଯେ ମୋ ଶିବଚିନ୍ତନରେ ବିଘ୍ନ ସୃଷ୍ଟିକାରିଣୀ ହେବ, ସେ ଜୀବିତ ରହି ପାରିବ ନାହିଁ । ତୁମେ, ବିଷ୍ଣୁ ଓ ମୁଁ ଆମେ ତିନିହେଁ ବ୍ରହ୍ମସ୍ୱରୂପ ଶିବଙ୍କର ଅଂଶଭୂତ ଅଟୁ । ଏଣୁ ମହାଭାଗଗଣ ! ତାଙ୍କୁ ଚିନ୍ତନ କରିବା ମୋ ପାଇଁ ନିଶ୍ଚୟ ସମୁଚିତ କାର୍ଯ୍ୟ । କମଳାସନ ! ତାଙ୍କ ଚିନ୍ତନ ପାଇଁ ମୁଁ ବିନା ବିବାହରେ ମଧ୍ୟ ରହି ପାରିବି; କିନ୍ତୁ ତାଙ୍କ ଚିନ୍ତନ ଛାଡ଼ି ବିବାହ କରିପାରିବି ନାହିଁ । ତେଣୁ ତୁମେ ମୋତେ ଏପରି ପତ୍ନୀ ପ୍ରଦାନ କର, ଯେ ମୋର କର୍ମର ଅନୁକୂଳ ହୋଇ ଚଳି ପାରିବ । ବ୍ରହ୍ମନ୍ ! ସେଥିରେ ବି ମୋର ଆଉ ଗୋଟିଏ ସର୍ତ୍ତ ଅଛି, ତାହା ଶୁଣ । ସେହି ସ୍ତ୍ରୀର ଯଦି ମୋ ଉପରେ ବା ମୋ କଥା ଉପରେ ଅବିଶ୍ୱାସ ହେବ, ମୁଁ ତାକୁ ପରିତ୍ୟାଗ କରିଦେବି ।

ମହାଦେବଙ୍କ କଥା ଶୁଣି ମୁଁ ଓ ଶ୍ରୀହରି ମନ୍ଦ ମନ୍ଦ ହସିବା ସହିତ ମନେ ମନେ ପ୍ରସନ୍ନତା ଅନୁଭବ କଲୁ । ତା'ପରେ ମୁଁ ବିନମ୍ର ହୋଇ କହିଲି, ''ନାଥ ! ମହେଶ୍ୱର ! ପ୍ରଭୋ ! ଆପଣ ଯେଉଁପରି ପତ୍ନୀ ଗ୍ରହୁଁଛନ୍ତି, ମୁଁ ସେହିଭଳି ପତ୍ନୀ ବିଷୟରେ ଆପଣଙ୍କୁ କହୁଛି । ସାକ୍ଷାତ୍ ସଦାଶିବଙ୍କ ଧର୍ମପତ୍ନୀ ଉମା ହିଁ ଜଗତର କାର୍ଯ୍ୟ ସିଦ୍ଧ କରିବାକୁ ଭିନ୍ନ ଭିନ୍ନ ରୂପରେ ପ୍ରକଟ ହୋଇଛନ୍ତି । ପ୍ରଭୋ ! ସରସ୍ୱତୀ ଓ ଲକ୍ଷ୍ମୀ ରୂପ ଧାରଣ କରି ସେ ପ୍ରଥମରୁ ଆସି ସାରିଛନ୍ତି । ଏମାନଙ୍କ ମଧ୍ୟରୁ ଲକ୍ଷ୍ମୀ ତ ଶ୍ରୀବିଷ୍ଣୁଙ୍କ ପ୍ରାଣବଲ୍ଲଭା ହୋଇଛନ୍ତି ଏବଂ ସରସ୍ୱତୀ ମୋର ହୋଇଛନ୍ତି । ଏବେ ସେ ତୃତୀୟ ରୂପ ଧାରଣ କରି ପ୍ରକଟ ହୋଇଛନ୍ତି । ପ୍ରଭୋ ! ଲୋକହିତ ଇଚ୍ଛାରେ ଦେବୀ ଶିବା ଦକ୍ଷପୁତ୍ରୀ ରୂପରେ ଅବତୀର୍ଣ୍ଣ ହୋଇଛନ୍ତି । ତାଙ୍କ ନାମ 'ସତୀ' । ସେହି ସତୀ ହିଁ ଆପଣଙ୍କ ପାଇଁ ହିତକାରିଣୀ ଭାର୍ଯ୍ୟା ହୋଇପାରିବେ । ଦେବେଶ ! ମହାତେଜସ୍ୱିନୀ ସତୀ ଏବେ ଆପଣଙ୍କୁ ସ୍ୱାମୀରୂପେ ପାଇବା ପାଇଁ ଦୃଢ଼ତାପୂର୍ବକ କଠୋର ବ୍ରତ ପାଳନ କରି ତପସ୍ୟା କରୁଛନ୍ତି । ମହେଶ୍ୱର ! କୃପା କରି ତାଙ୍କୁ ବର ଦେବା ପାଇଁ ଯାଆନ୍ତୁ; ଏବଂ ଆନନ୍ଦମନରେ ତାଙ୍କୁ ତପସ୍ୟାର ଅନୁରୂପ ବର ଦେଇ ତାଙ୍କ ସଙ୍ଗେ ବିବାହ କରନ୍ତୁ । ଶଙ୍କର! ଭଗବାନ ବିଷ୍ଣୁଙ୍କର, ମୋର ଏବଂ ଏ ସମସ୍ତ ଦେବତାଙ୍କର ଏହା ହିଁ ଇଚ୍ଛା । ଆପଣ ନିଜ ଶୁଭଦୃଷ୍ଟିରେ ଆମ୍ଭମାନଙ୍କ ଇଚ୍ଛାକୁ ପୂର୍ଣ୍ଣ କରନ୍ତୁ, ଯଦ୍ଦ୍ୱାରା ଆମେ ଆଦରପୂର୍ବକ ଏହି ଉତ୍ସବ ଦେଖିପାରିବୁ । ଏଭଳି ହେଲେ ତ୍ରିଲୋକରେ ସୁଖବିସ୍ତାରକାରୀ ପରମ ମଙ୍ଗଳ ହେବ ଓ ନିଶ୍ଚିତରୂପେ ସମସ୍ତଙ୍କର ସକଳ ଚିନ୍ତା ମେଣ୍ଟିଯିବ ।

ମୋ କଥା ସରିବାମାତ୍ରେ ମଧୁସୂଦନ ଅଚ୍ୟୁତ ସାକ୍ଷାତ୍ ଲୀଳାବିଗ୍ରହଧାରୀ ଭକ୍ତବତ୍ସଳ ମହେଶ୍ୱରଙ୍କ ସମ୍ମୁଖରେ ହିଁ ମୋ କଥାକୁ ସମର୍ଥନ କଲେ ।

ତା'ପରେ ଭକ୍ତବତ୍ସଳ ଭଗବାନ ଶିବ ହସି ହସି 'ତଥାସ୍ତୁ' କହିଲେ । ତାଙ୍କ କଥା ଶୁଣି ଆମେ ଦୁହେଁ ତାଙ୍କ ଠାରୁ ବିଦାୟ ନେଇ ଆମର ପତ୍ନୀ ତଥା ଦେବଗଣ ଓ ଋଷିଗଣଙ୍କ ସହିତ ଆନନ୍ଦରେ ନିଜ ନିଜ ସ୍ଥାନକୁ ବାହୁଡ଼ିଗଲୁ ।

(ଅଧ୍ୟାୟ ୧୬)

***

# ସତୀଙ୍କୁ ବରପ୍ରାପ୍ତି ଏବଂ ଶିବଙ୍କ ଆଜ୍ଞାରେ ବିବାହ ପ୍ରସ୍ତାବ ନେଇ ବ୍ରହ୍ମାଙ୍କର ଦକ୍ଷଗୃହ ଅଭିମୁଖେ ଯାତ୍ରା

ବ୍ରହ୍ମା କହୁଛନ୍ତି—ମୁନେ ! ତେଣେ ସତୀ ଆଶ୍ୱିନ ମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ଉପବାସ କରି ଭକ୍ତିଭାବରେ ସର୍ବେଶ୍ୱର ଶିବଙ୍କୁ ପୂଜା କଲେ । ନନ୍ଦାବ୍ରତ ପୂର୍ଣ୍ଣ ହେବାପରେ ନବମୀ ତିଥି ଦିନ ସତୀ ଧ୍ୟାନମଗ୍ନ ଥିବାବେଳେ ଭଗବାନ ଶିବ ପ୍ରତ୍ୟକ୍ଷ ଦର୍ଶନ ଦେଲେ । ତାଙ୍କ ରୂପ ଥିଲା ସର୍ବାଙ୍ଗସୁନ୍ଦର ଓ ଗୌର । ତାଙ୍କର ପାଞ୍ଚଟି ମୁଖ ଥିଲା ଓ ପ୍ରତ୍ୟେକ ମୁଖରେ ତିନୋଟି ଲେଖାଏଁ ନେତ୍ର ଥିଲା । ଭାଲଦେଶରେ ଚନ୍ଦ୍ରମା ଶୋଭା ପାଉଥିଲା । କଣ୍ଠରେ ନୀଳଚିହ୍ନ ଦୃଷ୍ଟିଗୋଚର ହେଉଥିଲା । ଚିତ୍ତ ପ୍ରସନ୍ନ ଥିଲା । ତାଙ୍କର ଥିଲା ଚତୁର୍ଭୁଜ ଏବଂ ସେଥିରେ ଶୋଭା ପାଉଥିଲା ତ୍ରିଶୂଳ, ବ୍ରହ୍ମକପାଳ, ବର ଓ ଅଭୟ ମୁଦ୍ରା । ଭସ୍ମମୟ ଅଙ୍ଗରାଗରେ ସମଗ୍ର ଶରୀର ଉଦ୍ଭାସିତ ହେଉଥିଲା । ମସ୍ତକରେ ଗଙ୍ଗା ଶୋଭା ବର୍ଦ୍ଧନ କରୁଥିଲା । ତାଙ୍କର ସର୍ବାଙ୍ଗ ଅତ୍ୟନ୍ତ ମନୋହର ଓ ଲାବଣ୍ୟମୟ ଥିଲା । ମୁଖ କୋଟିଚନ୍ଦ୍ର ସମ ଉଜ୍ଜ୍ୱଳ ଓ ଆହ୍ଲାଦକର ଥିଲା । ତାଙ୍କ ଅଙ୍ଗକାନ୍ତି କୋଟିକାମଦେବଙ୍କୁ ତିରସ୍କୃତ କରୁଥିଲା ଓ ଅବୟବ ନାରୀମାନଙ୍କ ପାଇଁ ସର୍ବଥା ପ୍ରିୟ ଥିଲା । ଏଭଳି ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟଭରା ଅଙ୍ଗକାନ୍ତିରେ ମହେଶଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରି ସତୀ ତାଙ୍କର ଚରଣ ବନ୍ଦନା କଲେ । ସେତେବେଳେ ସତୀଙ୍କ ମୁଖମଣ୍ଡଳ ଲଜ୍ଜାରେ ଅବନତ ହୋଇଗଲା । ତପସ୍ୟାପୁଞ୍ଜର ଫଳ-ପ୍ରଦାତା ମହାଦେବ ତାଙ୍କୁ ପାଇବାକୁ କଠୋର ବ୍ରତ କରୁଥିବା ସତୀଙ୍କୁ ପତ୍ନୀରୂପେ ସ୍ୱୀକାର କରିବାକୁ ଇଚ୍ଛା କରୁଥିଲେ ସୁଦ୍ଧା ଏହିପରି କହିଲେ—

ମହାଦେବ କହିଲେ—ହେ ଉତ୍ତମବ୍ରତଧାରିଣୀ ଦକ୍ଷନନ୍ଦିନୀ ! ମୁଁ ତୁମ ବ୍ରତାଚରଣରେ ଅତ୍ୟନ୍ତ ପ୍ରସନ୍ନ । ଏଣୁ ବର ମାଗ । ତୁମର ଯାହା ଅଭୀଷ୍ଟ, ମୁଁ ତାହା ଦେବାକୁ ପ୍ରସ୍ତୁତ ।

ବ୍ରହ୍ମା କହୁଛନ୍ତି—ମୁନେ ! ଜଗଦୀଶ୍ୱର ମହାଦେବ ଯଦିଓ ସତୀଙ୍କ ମନୋଭାବକୁ ଜାଣିଥିଲେ, ତଥାପି ତାଙ୍କ ମୁଖରୁ ଶୁଣିବାକୁ 'ବର ମାଗ' ବୋଲି କହିଲେ । ମାତ୍ର ସତୀ ଲଜ୍ଜାରେ ଝାଉଁଳି ପଡ଼ିଥିଲେ, ତେଣୁ ସେ ନିଜ ମନର କଥା ସ୍ପଷ୍ଟରୂପେ କହିପାରିଲେ ନାହିଁ । ତାଙ୍କର ଅଭୀଷ୍ଟ ଲଜ୍ଜାରେ ଆଚ୍ଛାଦିତ ଥିଲା । ପ୍ରାଣବଲ୍ଲଭ ଶିବଙ୍କ ପ୍ରିୟବଚନ ଶୁଣି ସତୀ ପ୍ରେମମଗ୍ନ ହୋଇଗଲେ । ଏ କଥାକୁ ଜାଣିପାରି ଭକ୍ତବତ୍ସଳ ଶିବ ଅତି ପ୍ରସନ୍ନ ହେଲେ ଏବଂ ବାରମ୍ବାର ସେହି କଥାକୁ ଦୋହରାଇଲେ 'ବର ମାଗ', 'ବର ମାଗ' । ସତ୍ପୁରୁଷଙ୍କ ଆଶ୍ରୟ ଓ ସମସ୍ତଙ୍କର ଅନ୍ତର୍ଯ୍ୟାମୀ ପ୍ରଭୁ ସତୀଙ୍କ ଭକ୍ତିର ବଶୀଭୂତ ହୋଇଯାଇଥିଲେ । ଏଥର ସତୀ ଲଜ୍ଜା ତ୍ୟାଗ କରି କହିଲେ—''ହେ ବରଦାତା ପ୍ରଭୁ ! ମୋତେ ମୋର ଇଚ୍ଛା ଅନୁରୂପ ଏଭଳି ବର ଦିଅନ୍ତୁ, ଯାହା କଦାପି ଟଳିବ ନାହିଁ । ଭକ୍ତବତ୍ସଳ ଭଗବାନ ଦେଖିଲେ ସତୀ ଆପଣା କଥାକୁ

ପୂର୍ଣ୍ଣରୂପେ ପ୍ରକାଶ କରି ପାରୁ ନାହାନ୍ତି; ତେଣୁ ସେ ସ୍ୱୟଂ ତାଙ୍କୁ କହିଲେ—''ହେ ଦେବୀ! ତୁମେ ମୋର ଭାର୍ଯ୍ୟା ହୋଇଯାଅ।'' ସତୀ ନିଜ ଅଭୀଷ୍ଟ ଫଳକୁ ବ୍ୟକ୍ତ କରୁଥିବା ଶିବଙ୍କର ବାକ୍ୟ ଶୁଣି ଆନନ୍ଦମଗ୍ନ ହୋଇ ନୀରବରେ ଛିଡ଼ା ହୋଇ ରହିଲେ; କାରଣ ସେ ମନୋବାଞ୍ଛିତ ଫଳ ପାଇ ସାରିଥିଲେ। ତା'ପରେ ଦକ୍ଷକନ୍ୟା ପ୍ରସନ୍ନ ବଦନରେ ମସ୍ତକ ଅବନତ କରି ଶିବଙ୍କୁ ବାରମ୍ବାର କହିଲେ—

ସତୀ କହିଲେ—ଦେବାଧିଦେବ ମହାଦେବ ! ପ୍ରଭୋ ! ଜଗତ୍‌ପତେ ! ଆପଣ ମୋ ପିତାଙ୍କୁ କହି ବୈବାହିକ ବିଧିରେ ମୋର ପାଣିଗ୍ରହଣ କରନ୍ତୁ।

ବ୍ରହ୍ମା କହୁଛନ୍ତି—ନାରଦ ! ସତୀଙ୍କ କଥା ଶୁଣି ଭକ୍ତବତ୍ସଳ ମହେଶ୍ୱର ପ୍ରେମମୟ ଦୃଷ୍ଟିରେ ତାଙ୍କ ଆଡ଼କୁ ଚାହିଁ କହିଲେ—''ପ୍ରିୟେ! ଏହା ହିଁ ହେବ।'' ତା'ପରେ ଦକ୍ଷକନ୍ୟା ସତୀ ଶିବଙ୍କୁ ପ୍ରଣାମ କରି ଭକ୍ତିପୂର୍ବକ ବିଦାୟ ମାଗିଲେ ଏବଂ ଆଜ୍ଞା ପାଇବା ପରେ ମୋହ ଓ ଆନନ୍ଦରେ ମଗ୍ନ ହୋଇ ମାଆଙ୍କ ପାଖକୁ ଲେଉଟିଗଲେ। ଏଣେ ହିମାଳୟରେ ନିଜ ଆଶ୍ରମରେ ପହଞ୍ଚି ଭଗବାନ ଶିବ ମଧ୍ୟ ଦକ୍ଷକନ୍ୟା ସତୀଙ୍କ ବିୟୋଗରେ ବ୍ୟଥିତ ହୋଇ ତାଙ୍କରି ଚିନ୍ତନ କରିବାକୁ ଲାଗିଲେ। ଦେବର୍ଷେ ! ପୁଣି ମନକୁ ଏକାଗ୍ର କରିବା ପରେ ଲୌକିକଗତିର ଅନୁସରଣରେ ସେ ମନେ ମନେ ମୋତେ ସ୍ମରଣ କଲେ। ତ୍ରିଶୂଳଧାରୀ ମହେଶ୍ୱର ମୋତେ ସ୍ମରଣ କରୁଛନ୍ତି ବୋଲି ଜାଣି ମୁଁ ତୁରନ୍ତ ଯାଇ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲି। ତାତ ! ମୁଁ ସରସ୍ୱତୀଙ୍କୁ ସାଥିରେ ନେଇ ହିମାଳୟ ଶିଖରରେ ଯେଉଁଠି ସେ ସତୀଙ୍କ ବିରହ ଅନୁଭବ କରୁଥିଲେ ସେଠାରେ ପହଞ୍ଚିଲି। ଦେବର୍ଷେ ! ମୋତେ ସରସ୍ୱତୀଙ୍କ ସହିତ ଦେଖି ସତୀଙ୍କ ପ୍ରେମପାଶରେ ଆବଦ୍ଧ ଶିବ ଉତ୍ସୁକ ହୋଇ କହିଲେ—

ଶମ୍ଭୁ କହିଲେ—ବ୍ରହ୍ମନ୍ ! ମୁଁ ଯେବେଠାରୁ ବିବାହ କାର୍ଯ୍ୟରେ ସ୍ୱାର୍ଥବୁଦ୍ଧି କଲି, ସେତିକି ବେଳୁ ମୋତେ ସେହି ସ୍ୱାର୍ଥରେ ସ୍ୱତ୍ୱ ଥିବା ପରି ଅନୁଭବ ହେଉଛି। ଦକ୍ଷକନ୍ୟା ସତୀ ବଡ଼ ଭକ୍ତିରେ ମୋ ଆରାଧନା କରିଛି। ତା'ର ନନ୍ଦାବ୍ରତ ପ୍ରଭାବରେ ମୁଁ ତାକୁ ଅଭୀଷ୍ଟ ବର ଦେବାକୁ ଘୋଷଣା କରିଛି। ବ୍ରହ୍ମନ୍ ! ସେ ମୋତେ ସ୍ୱାମୀରୂପେ ପାଇବାକୁ ବର ମାଗିଲା। ତା' କଥା ଶୁଣି ମୁଁ ମଧ୍ୟ ପ୍ରସନ୍ନ ଚିତ୍ତରେ କହିଦେଲି—ଠିକ୍ ଅଛି ତୁମେ ମୋର ପତ୍ନୀ ହୋଇଯାଅ। ତା'ପରେ ଦାକ୍ଷାୟଣୀ ମୋତେ କହିଦେଲା। ''ଜଗତ୍‌ପତେ! ଆପଣ ମୋ ପିତାଙ୍କୁ ସୂଚିତ କରି ବୈବାହିକ ବିଧିରେ ମୋତେ ଗ୍ରହଣ କରନ୍ତୁ।'' ବ୍ରହ୍ମନ୍ ! ତା' ଭକ୍ତିରେ ସନ୍ତୁଷ୍ଟ ହୋଇଥିବାରୁ ମୁଁ ତା'ର ଅନୁରୋଧ ସ୍ୱୀକାର କଲି। ସତୀ ତା' ମାଆ ପାଖକୁ ଚାଲିଗଲା ଓ ମୁଁ ଏଠାକୁ ଚାଲିଆସିଲି। ଏଣୁ ଏବେ ତୁମେ ମୋ ଆଜ୍ଞାରେ ଦକ୍ଷଙ୍କ ପାଖକୁ ଯାଅ ଏବଂ ଏଭଳି ପ୍ରଯତ୍ନ କର, ଯଦ୍ଦ୍ୱାରା ଦକ୍ଷ ଶୀଘ୍ର ମୋତେ କନ୍ୟାଦାନ କରିଦେବେ।

ଭକ୍ତବତ୍ସଳ ବିଶ୍ୱନାଥ ଏଭଳି ଆଜ୍ଞା ଦେବାରୁ ମୁଁ କୃତକୃତ୍ୟ ଓ ପ୍ରସନ୍ନ ହୋଇ ତାଙ୍କୁ କହିଲି—

ମୁଁ କହିଲି—ଭଗବନ୍ ! ଶମ୍ଭୋ ! ଆପଣ ଯାହା କିଛି କହିଲେ, ଆମ୍ଭେମାନେ ପ୍ରଥମରୁ ହିଁ ସେ କଥାକୁ ଭଲଭାବରେ ବିଚାର କରି କାର୍ଯ୍ୟ ସୁନିଶ୍ଚିତ କରିସାରିଛୁ। ବୃଷଭଧ୍ୱଜ ! ଏଥିରେ ମୁଖ୍ୟତଃ ଦେବଗଣଙ୍କର ଓ ମୋର ମଧ୍ୟ ସ୍ୱାର୍ଥ ରହିଛି। ଦକ୍ଷ ତ ଖୁସୀରେ ଆପଣଙ୍କୁ ତାଙ୍କର କନ୍ୟା ପ୍ରଦାନ କରିବେ, ତଥାପି ଆପଣଙ୍କ ଆଜ୍ଞାରେ ମୁଁ ମଧ୍ୟ ତାଙ୍କୁ ଆପଣଙ୍କ ସନ୍ଦେଶ କହିଦେବି। ସର୍ବେଶ୍ୱର ମହାଦେବଙ୍କୁ ଏଭଳି କହି ମୁଁ ଅତ୍ୟନ୍ତ ବେଗଗାମୀ ରଥରେ ବସି

ଦକ୍ଷଙ୍କ ଗୃହରେ ପହଞ୍ଚିଲି ।

ନାରଦ ପଗ୍ଚରିଲେ—ହେ ବକ୍ତାଶ୍ରେଷ୍ଠ ! ବିଧାତା ! ମୋତେ କୁହନ୍ତୁ ଯେ ସତୀ ଘରକୁ ଫେରିଲା ପରେ ଦକ୍ଷ ତାଙ୍କ ପାଇଁ କ'ଣ କଲେ?

ବ୍ରହ୍ମା କହିଲେ—ତପସ୍ୟା ଦ୍ୱାରା ମନୋବାଞ୍ଛିତ ବର ପାଇ ସତୀ ଘରକୁ ଫେରି ପ୍ରଥମେ ମାତାପିତାଙ୍କୁ ପ୍ରଣାମ କଲେ । ସେ ତାଙ୍କ ସଖୀ ଦ୍ୱାରା ମାତାପିତାଙ୍କୁ ତପସ୍ୟା ସମ୍ବନ୍ଧୀୟ ସମସ୍ତ ସମାଗ୍ଚର ଜଣାଇଦେଲେ । ସଖୀ ଏହା ମଧ୍ୟ କହିଦେଲା ଯେ ସତୀଙ୍କୁ ମହେଶ୍ୱର ବର ଦେଇଛନ୍ତି ଏବଂ ସେ ସତୀର ଭକ୍ତିରେ ଅତ୍ୟନ୍ତ ସନ୍ତୁଷ୍ଟ । ସଖୀ ମୁଖରୁ ସମସ୍ତ ବୃତ୍ତାନ୍ତ ଶୁଣି ପିତାମାତାଙ୍କୁ ବହୁତ ସୁଖ ମିଳିଲା । ସେମାନେ ଆନନ୍ଦରେ ଉତ୍ସବ ପାଳନ କଲେ । ଉଦାରଚେତା ଦକ୍ଷ ଓ



ମହାମନସ୍ୱିନୀ ବୀରିଣୀ ବ୍ରାହ୍ମଣମାନଙ୍କୁ ସେମାନଙ୍କ ଇଚ୍ଛାନୁସାରେ ନାନା ଦ୍ରବ୍ୟ ଦାନ କଲେ; ଅନ୍ଧ ତଥା ଦୀନଦରିଦ୍ରଙ୍କ ମଧ୍ୟରେ ଧନ ବିତରଣ କଲେ । ବୀରିଣୀ ଖୁସୀରେ ଝିଅକୁ କୋଳକୁ ଟାଣିନେଇ ସ୍ନେହରେ ତାଙ୍କ ମସ୍ତକ ଶୁଙ୍ଘିଲେ ଓ ଆନନ୍ଦମଗ୍ନ ହୋଇ ବାରମ୍ବାର ତାଙ୍କୁ ପ୍ରଶଂସା କଲେ । ଏହି ଘଟଣାର କିଛି କାଳ ପରେ ଧର୍ମଜ୍ଞ ଦକ୍ଷ ଚିନ୍ତା କଲେ ଯେ—''ମୁଁ ମୋ ଝିଅର ବିବାହ ଶିବଙ୍କ ସହିତ କେମିତି କରିବି? ମହାଦେବ ପ୍ରସନ୍ନ ହୋଇ ଆସିଥିଲେ, ହେଲେ ସେ ତ ଗ୍ଚଲିଗଲେ । ଏବେ ମୋ ଝିଅ ପାଇଁ କ'ଣ ସେ ପୁଣି ଆସିବେ? ଏତେ ଶୀଘ୍ର କାହାକୁ ଶିବଙ୍କ ନିକଟକୁ ପଠାଇବା ମଧ୍ୟ ଠିକ୍ ହେବ ନାହିଁ; କାରଣ ଏପରି ନିବେଦନ କରିବା ସତ୍ତ୍ୱେ ସେ ଯଦି ମନା କରିଦିଅନ୍ତି, ତେବେ ମୋର ଅନୁରୋଧ ନିଷ୍ଫଳ ହୋଇଯିବ ।''

ପ୍ରଜାପତି ଦକ୍ଷ ଏପରି ଚିନ୍ତାରେ ପଡ଼ିଥିବା ବେଳେ ତାଙ୍କ ସମ୍ମୁଖରେ ମୁଁ ସରସ୍ୱତୀଙ୍କ ସହ ସହସା ଉପସ୍ଥିତ ହୋଇଗଲି । ମୁଁ ତାଙ୍କ ପିତା, ତେଣୁ ମୋତେ ଦେଖିବା ମାତ୍ରେ ଦକ୍ଷ ପ୍ରଣାମ କରି ବିନୀତଭାବରେ ଛିଡ଼ା ହୋଇଗଲେ । ସେ ମୋତେ ଉପଯୁକ୍ତ ଆସନ ଦେଲେ ଓ ମୋ ଆଗମନର କାରଣ ପଗ୍ଚରିଲେ । ମୁଁ ସବୁକଥା ଜଣାଇ ସାରି କହିଲି—''ପ୍ରଜାପତେ ! ଭଗବାନ ଶଙ୍କର ତୁମ କନ୍ୟାକୁ ପାଇବା ଉଦ୍ଦେଶ୍ୟରେ ମୋତେ ତୁମ ପାଖକୁ ପଠାଇଛନ୍ତି; ଏଣୁ ଏ ବିଷୟରେ ଯାହା ସବୁ ଶ୍ରେଷ୍ଠ କୃତ୍ୟ ରହିଛି, ତାହା ସମ୍ପାଦନ କର । ସତୀ ଯେପରି ନାନା ପ୍ରକାର ଭାବ ତଥା ସାତ୍ତ୍ୱିକ ବ୍ରତ ଦ୍ୱାରା ଭଗବାନ ଶିବଙ୍କୁ ଆରାଧନା କରିଛି, ସେହିପରି ଶିବ ମଧ୍ୟ ସତୀଙ୍କୁ ଆରାଧନା କରୁଛନ୍ତି । ଏଣୁ ଦକ୍ଷ ! ଶିବଙ୍କ ପାଇଁ ସଂକଳ୍ପିତ ଏବଂ ତାଙ୍କରି ପାଇଁ ଉତ୍ପନ୍ନ ହୋଇଥିବା ଏହି କନ୍ୟାକୁ ତୁମେ ଅବିଳମ୍ୱେ ତାଙ୍କ ସେବାରେ ଅର୍ପଣ କରିଦିଅ । ଏହାଦ୍ୱାରା ତୁମେ କୃତକୃତ୍ୟ ହୋଇଯିବ । ମୁଁ ନାରଦଙ୍କ

ସଙ୍ଗରେ ଯାଇ ତାଙ୍କୁ ତୁମ ଘରକୁ ଡାକି ଆଣିବି । ତୁମେ ତାଙ୍କରି ପାଇଁ ଉତ୍ପନ୍ନ ଏହି କନ୍ୟାକୁ ତାଙ୍କ ହସ୍ତରେ ଅର୍ପଣ କରିଦେବ ।''

ବ୍ରହ୍ମା କହୁଛନ୍ତି–ନାରଦ ! ମୋ କଥା ଶୁଣି ମୋ ପୁତ୍ର ଦକ୍ଷଙ୍କ ମନ ଆନନ୍ଦରେ ପୂରି ଉଠିଲା । ସେ କହିଲେ–''ପିତୃଦେବ! ଏହା ହିଁ ହେବ ।'' ମୁନେ ! ମୁଁ ହର୍ଷିତ ହୋଇ ସେଠାରୁ ସିଧା ଲୋକକଲ୍ୟାଣରେ ତତ୍ପର ମହାଦେବଙ୍କ ପାଖକୁ ଯିବାକୁ ବାହାରିଲି । ସେ ଅତ୍ୟନ୍ତ ଉତ୍ସୁକତାର ସହ ମୋତେ ପ୍ରତୀକ୍ଷା କରୁଥିଲେ । ନାରଦ ! ମୁଁ ପ୍ରସ୍ଥାନ କରିବାରୁ ଦକ୍ଷ ଏବଂ ତାଙ୍କର ପତ୍ନୀ ଓ କନ୍ୟା ସମସ୍ତେ ପୂର୍ଣ୍ଣକାମ ହୋଇ ଆନନ୍ଦରେ ଏଭଳି ମଗ୍ନ ହୋଇଗଲେ, ସତେ ଯେପରି ଅମୃତ ପାନ କରି ତୃପ୍ତ ହୋଇଯାଇଛନ୍ତି ।

(ଅଧ୍ୟାୟ ୧୭)

☆☆☆

## ବ୍ରହ୍ମାଙ୍କ ମୁଖରୁ ଦକ୍ଷଙ୍କ ଅନୁମତି ଶୁଣି ଦେବତା ଓ ମୁନିଙ୍କୁ ସଙ୍ଗରେ ନେଇ ଶିବଙ୍କର ବିବାହ-ଯାତ୍ରା, ଦକ୍ଷଙ୍କର ସମସ୍ତଙ୍କୁ ସତ୍କାର ଏବଂ ସତୀଙ୍କ ସଙ୍ଗେ ଶିବଙ୍କ ବିବାହ

ବ୍ରହ୍ମା କହୁଛନ୍ତି–ନାରଦ ! ଏହାପରେ ମୁଁ ହିମାଳୟର କୈଳାସ ଶିଖରରେ ରହୁଥିବା ପରମେଶ୍ୱର ମହାଦେବଙ୍କୁ ଡାକି ଆଣିବା ପାଇଁ ପ୍ରସନ୍ନତାପୂର୍ବକ ତାଙ୍କ ପାଖକୁ ଗଲି ଓ ତାଙ୍କୁ କହିଲି–ବୃଷଭଧ୍ୱଜ ! ସତୀଙ୍କ ପାଇଁ ମୋ ପୁତ୍ର ଦକ୍ଷ ଯେଉଁ କଥା କହିଛନ୍ତି, ତାହା ଶୁଣନ୍ତୁ ଏବଂ ଯେଉଁ କାର୍ଯ୍ୟକୁ ସେ ଅସାଧ୍ୟ ମଣୁଥିଲେ, ତାହା ମଧ୍ୟ ସରଳ ହୋଇଗଲା ବୋଲି ଜାଣନ୍ତୁ । ଦକ୍ଷ କହିଛନ୍ତି–''ମୁଁ ମୋ କନ୍ୟାକୁ ଭଗବାନ ଶିବଙ୍କ ହସ୍ତରେ ହିଁ ଅର୍ପଣ କରିବି; କାରଣ ତାଙ୍କରି ପାଇଁ ଏ ଉତ୍ପନ୍ନ ହୋଇଛି । ଶିବଙ୍କ ସଙ୍ଗେ ସତୀର ବିବାହ ହେଉ, ଏ ଅଭୀଷ୍ଟ ତ ମୋର ପ୍ରଥମରୁ ଥିଲା; ପୁଣି ଆପଣ କହିବାରୁ ଏହାର ମହତ୍ତ୍ୱ ଆହୁରି ବଢ଼ିଯାଇଛି । ମୋ କନ୍ୟା ସ୍ୱୟଂ ଏହି ଉଦ୍ଦେଶ୍ୟରେ ଭଗବାନ ଶିବଙ୍କୁ ଆରାଧନା କରିଛି ଓ ଏବେ ଭଗବାନ ଶିବ ମଧ୍ୟ ମୋ ଠାରୁ ଏ ସମ୍ବନ୍ଧରେ ଜାଣିବାକୁ ଗ୍ରହିଁଲେଣି । ଏଣୁ ମୁଁ ନିଶ୍ଚୟ ଶିବଙ୍କୁ କନ୍ୟା ପ୍ରଦାନ କରିବି । ବିଧାତା ! ଭଗବାନ ଶଙ୍କର ଶୁଭ ଲଗ୍ନ ଓ ଶୁଭ ମୁହୂର୍ତ୍ତ ଦେଖି ଏଠାକୁ ଆସନ୍ତୁ । ମୁଁ ତାଙ୍କୁ ଭିକ୍ଷାରୂପେ ମୋର କନ୍ୟା ପ୍ରଦାନ କରିବି ।'' ବୃଷଭଧ୍ୱଜ ! ଦକ୍ଷ ମୋତେ ଏଭଳି କହିଛନ୍ତି । ଏଣୁ ଆପଣ ଶୁଭମୁହୂର୍ତ୍ତରେ ତାଙ୍କ ଗୃହରେ ପଦାର୍ପଣ କରନ୍ତୁ ଓ ସତୀକୁ ନେଇଆସନ୍ତୁ ।

ମୁନେ ! ମୋ କଥା ଶୁଣି ଭକ୍ତବତ୍ସଳ ରୁଦ୍ର ଲୌକିକ ଗତି ଅନୁସରଣ କରି ହସି ହସି କହିଲେ–''ଜଗତର ସ୍ରଷ୍ଟା ବ୍ରହ୍ମା ! ମୁଁ ତୁମକୁ ଓ ନାରଦଙ୍କୁ ସଙ୍ଗରେ ଧରି ଦକ୍ଷଙ୍କ ଗୃହକୁ ଯିବି । ଏଣୁ ନାରଦଙ୍କୁ ସ୍ମରଣ କର । ତୁମର ମରୀଚି ଆଦି ମାନସପୁତ୍ରଙ୍କୁ ମଧ୍ୟ ଡକାଅ । ବିଧେ ! ମୁଁ ସେମାନଙ୍କ ସହିତ ଦକ୍ଷଙ୍କ ନିବାସକୁ ଯିବି । ମୋର ପାର୍ଷଦଗଣ ମଧ୍ୟ ମୋ ସଙ୍ଗେ ଯିବେ ।''

ନାରଦ ! ଲୋକାଗ୍ରର ନିର୍ବାହ ଦୃଷ୍ଟିରୁ ଭଗବାନ ଶିବ ଏଭଳି ଆଜ୍ଞା ଦେବାରୁ ମୁଁ ତୁମକୁ ଓ ମରୀଚି ଆଦିଙ୍କୁ ସ୍ମରଣ କଲି । ମୁଁ ସ୍ମରଣ କରିବା ମାତ୍ରେ ତୁମେମାନେ ଆଦର ସହକାରେ ଆସି ପହଞ୍ଚିଗଲ । ତୁମେମାନେ ହର୍ଷରେ ପ୍ରଫୁଲ୍ଲିତ ଥିଲ । ଶିବ ସ୍ମରଣ କରିବାରୁ

ଶିବଭକ୍ତସମ୍ରାଟ ସ୍ୱୟଂ ବିଷ୍ଣୁ ମଧ୍ୟ ତାଙ୍କର ସୈନିକଗଣ ତଥା ପତ୍ନୀ କମଳାଦେବୀଙ୍କୁ ସଙ୍ଗରେ ଧରି ଗରୁଡ଼ପୃଷ୍ଠରେ ଆରୋହଣ କରି ଅବିଳମ୍ବେ ଆସି ପହଞ୍ଚିଗଲେ । ଚୈତ୍ରମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥି ରବିବାର ଦିନ ପୂର୍ବାଫାଲ୍‌ଗୁନୀ ନକ୍ଷତ୍ରରେ ମୁଁ, ବିଷ୍ଣୁ ଓ ସମସ୍ତ ଦେବତା ମହେଶ୍ୱରଙ୍କୁ ସଙ୍ଗରେ ଧରି ବିବାହ ନିମନ୍ତେ ଯାତ୍ରା କଲୁ । ଦେବଗଣ ଓ ଋଷିଗଣଙ୍କ ଗହଣରେ ଯାତ୍ରା କଲାବେଳେ ଭଗବାନ ଶିବ ଅତ୍ୟନ୍ତ ଶୋଭା ପାଉଥିଲେ । ରାସ୍ତାରେ ଦେବଗଣ, ମୁନିଗଣ ତଥା ପ୍ରମଥଗଣ ବହୁତ ହର୍ଷ-ଉଲ୍ଲାସରେ ଉତ୍ସବ କରୁଥିଲେ । ଶିବଙ୍କ ଇଚ୍ଛାରେ ବୃଷଭ, ବ୍ୟାଘ୍ର, ସର୍ପ, ଜଟା ଓ ଚନ୍ଦ୍ରକଳା ଆଦି ସମସ୍ତେ ମହାଦେବଙ୍କ ପାଇଁ ଯଥାଯୋଗ୍ୟ ଆଭୂଷଣ ହୋଇଥିଲେ । ସେ ଦ୍ରୁତଗାମୀ ବୃଷଭ ନନ୍ଦିକେଶ୍ୱର



ଉପରେ ଆରୂଢ଼ ହୋଇ କ୍ଷଣକ ମଧ୍ୟରେ ପ୍ରସନ୍ନତାପୂର୍ବକ ଦକ୍ଷଙ୍କ ଗୃହରେ ପହଞ୍ଚିଗଲେ । ସେଠାରେ ପ୍ରଜାପତି ଦକ୍ଷ ବିନୀତଭାବରେ ସମସ୍ତ ଆତ୍ମୀୟ-ସ୍ୱଜନଙ୍କ ସହିତ ଆସି ଶିବଙ୍କୁ ସ୍ୱାଗତ କଲେ । ସେତେବେଳେ ତାଙ୍କର ସର୍ବାଙ୍ଗରେ ହର୍ଷୋଲ୍ଲାସର ପୁଲକାବଳୀ ଛାଇଯାଇଥିଲା । ସ୍ୱୟଂ ଦକ୍ଷ ତାଙ୍କ ଦ୍ୱାରଦେଶରେ ଉପସ୍ଥିତ ସମସ୍ତ ଦେବଗଣଙ୍କୁ ସତ୍କାର କଲେ । ସେମାନେ ସୁରଶ୍ରେଷ୍ଠ ଶିବଙ୍କୁ ବସାଇ ତାଙ୍କ ପାର୍ଶ୍ୱଭାଗରେ ଋଷିଗଣଙ୍କ ସଙ୍ଗରେ କ୍ରମାନ୍ୱୟରେ ବସିଗଲେ । ଦକ୍ଷ ଦେବତା ଓ ମୁନିଗଣଙ୍କୁ ପରିକ୍ରମା କଲେ ଓ ଶିବଙ୍କୁ ଘର ଭିତରକୁ ପାଛୋଟି ନେଲେ । ଦକ୍ଷଙ୍କ ମନର ପ୍ରସନ୍ନତା କଥା କହିଲେ ନ ସରେ । ସେ ସର୍ବେଶ୍ୱର ଶିବଙ୍କୁ ଉତ୍ତମ ଆସନ ଦେଇ ସ୍ୱୟଂ ବିଧିପୂର୍ବକ ତାଙ୍କୁ ପୂଜା କଲେ । ତା'ପରେ ଶ୍ରୀବିଷ୍ଣୁଙ୍କୁ, ମୋତେ, ବ୍ରାହ୍ମଣଙ୍କୁ, ଦେବତାଙ୍କୁ ଓ ସମସ୍ତ ଶିବଗଣଙ୍କୁ ମଧ୍ୟ ଯଥୋଚିତ ବିଧିରେ ଭକ୍ତିଭାବରେ ପୂଜା କଲେ । ଏପରି ସମସ୍ତ ପୂଜନୀୟଙ୍କର ଆଦର-ସତ୍କାର କରିସାରି ଦକ୍ଷ ମୋର ମାନସପୁତ୍ର ମରୀଚି ଆଦି ମୁନିଙ୍କ ଠାରୁ ଆବଶ୍ୟକ ପରାମର୍ଶ ନେଲେ । ତା'ପରେ ମୋ ଚରଣରେ ପ୍ରଣାମ କରି ମୋତେ କହିଲେ, "ପ୍ରଭୋ! ଆପଣ ହିଁ ବୈବାହିକ କାର୍ଯ୍ୟ କରାନ୍ତୁ ।"

ମୁଁ ଅତି ଆନନ୍ଦରେ ସେଥିରେ ସମ୍ମତ ହୋଇ ସମସ୍ତ କାର୍ଯ୍ୟ ସମ୍ପାଦନ କଲି । ଗ୍ରହବଳଯୁକ୍ତ ଶୁଭଲଗ୍ନ ଓ ଶୁଭମୁହୂର୍ତ୍ତରେ ଦକ୍ଷ ତାଙ୍କ କନ୍ୟାର ହସ୍ତକୁ ଶିବଙ୍କ ହସ୍ତରେ ସମର୍ପିଦେଲେ । ଭଗବାନ ବୃଷଭଧ୍ୱଜ ସହର୍ଷ ତାଙ୍କର ପାଣିଗ୍ରହଣ କଲେ । ତା'ପରେ ମୁଁ, ଶ୍ରୀହରି, ତୁମେ ଓ ଅନ୍ୟାନ୍ୟ ମୁନିଗଣ, ଦେବଗଣ ଓ ପ୍ରମଥଗଣ—ଆମେ ସମସ୍ତେ ଶିବଙ୍କୁ ପ୍ରଣାମ କଲୁ, ସ୍ତୁତିରେ ତାଙ୍କୁ ସନ୍ତୁଷ୍ଟ କଲୁ । ନାଚଗାନ ସହିତ ମହାନ୍ ଉତ୍ସବ ହେଲା । ସମସ୍ତଙ୍କୁ ଆନନ୍ଦ ଲାଭ ହେଲା । ଶିବଙ୍କୁ କନ୍ୟାଦାନ କରି ମୋ ପୁତ୍ର କୃତାର୍ଥ ଅନୁଭବ କଲେ । ଶିବ ଓ ଶିବା ପ୍ରସନ୍ନ ହେଲେ ଏବଂ ସମଗ୍ର ସଂସାର ମଙ୍ଗଳର ନିକେତନ ହୋଇଗଲା ।

(ଅଧ୍ୟାୟ ୧୮)

❀❀❀

# ସତୀ ଓ ଶିବଙ୍କର ଅଗ୍ନି-ପରିକ୍ରମା, ଶ୍ରୀହରିଙ୍କ ମୁଖରୁ ଶିବତତ୍ତ୍ୱର ବର୍ଣ୍ଣନ, ବ୍ରହ୍ମାଙ୍କ ଅନୁରୋଧ କ୍ରମେ ବେଦି ଉପରେ ଅନ୍ୟତମ ରୂପରେ ଶିବଙ୍କର ନିତ୍ୟ ଅବସ୍ଥାନ ଏବଂ ଶିବ ଓ ସତୀଙ୍କର କୈଳାସ ଯାତ୍ରା

ବ୍ରହ୍ମା କହୁଛନ୍ତି–ନାରଦ ! କନ୍ୟାଦାନ କରିସାରି ଦକ୍ଷ ଶିବଙ୍କୁ ନାନା ପ୍ରକାର ବସ୍ତୁ ଯୌତୁକରୂପେ ପ୍ରଦାନ କଲେ । ଏସବୁ କରି ସେ ବହୁତ ଖୁସୀ ହେଲେ । ସେ ବ୍ରାହ୍ମଣଙ୍କୁ ମଧ୍ୟ ଧନାଦି ବସ୍ତୁ ବିତରଣ କଲେ । ତା'ପରେ ଲକ୍ଷ୍ମୀନାରାୟଣ ଶମ୍ଭୁଙ୍କ ପାଖରେ ହାତ ଯୋଡ଼ି ଠିଆ ହୋଇ କହିଲେ, ''ଦେବଦେବ ମହାଦେବ ! ଦୟାସାଗର ! ପ୍ରଭୋ ! ତାତ ! ଆପଣ ସମଗ୍ର ଜଗତର ପିତା ଓ ସତୀଦେବୀ ସମସ୍ତଙ୍କର ମାତା । ଆପଣ ଦୁହେଁ ସତ୍‌ପୁରୁଷଙ୍କର କଲ୍ୟାଣ ତଥା ଦୁଷ୍ଟଙ୍କର ଦମନ ପାଇଁ ସର୍ବଦା ଲୀଳାପୂର୍ବକ ଅବତାର ଗ୍ରହଣ କରିଥାନ୍ତି–ଏହା ସନାତନ ଶ୍ରୁତିର କଥନ । ଆପଣ ଚିକ୍କଣ ନୀଳାଞ୍ଜନବର୍ଣ୍ଣା ସତୀଙ୍କ ସଙ୍ଗରେ ଯେପରି ଶୋଭା ପାଉଛନ୍ତି, ମୁଁ ଠିକ୍ ବିପରୀତ ଭାବରେ ଲକ୍ଷ୍ମୀଙ୍କ ସହିତ ରହି ଶୋଭା ପାଉଛି । ଅର୍ଥାତ୍ ସତୀ ନୀଳବର୍ଣ୍ଣା ଓ ଆପଣ ଗୌରବର୍ଣ୍ଣ, ଅପରପକ୍ଷେ ମୁଁ ନୀଳବର୍ଣ୍ଣ ଓ ଲକ୍ଷ୍ମୀ ଗୌରବର୍ଣ୍ଣା ।''

ନାରଦ ! ମୁଁ ଦେବୀ ସତୀଙ୍କ ପାଖକୁ ଯାଇ ଗୃହ୍ୟସୂତ୍ରୋକ୍ତ ବିଧିରେ ବିସ୍ତାରପୂର୍ବକ ସମସ୍ତ ଅଗ୍ନିକାର୍ଯ୍ୟ କରାଇଲି । ମୋତେ ଆଚାର୍ଯ୍ୟ ଓ ବ୍ରାହ୍ମଣ ମଣି ମୋ ଆଜ୍ଞାରେ ଶିବା ଓ ଶିବ ସହର୍ଷ ବିଧିପୂର୍ବକ ଅଗ୍ନି ପରିକ୍ରମା କଲେ । ସେତେବେଳେ ସେଠାରେ ବଡ଼ ଅଦ୍ଭୁତ ଉତ୍ସବ ପାଳନ କରାଗଲା । ନୃତ୍ୟ, ଗୀତ ଓ ବାଦ୍ୟନାଦ ସହିତ ହେଉଥିବା ସେହି ଉତ୍ସବ ଅତି ସୁଖଦ ଜଣାପଡୁଥିଲା ।

ଏହାପରେ ଭଗବାନ ବିଷ୍ଣୁ କହିଲେ– ସଦାଶିବ ! ମୁଁ ଆପଣଙ୍କ ଆଜ୍ଞାରେ ଏଠାରେ ଶିବତତ୍ତ୍ୱ ବିଷୟରେ ବର୍ଣ୍ଣନା କରୁଛି । ସମସ୍ତ ଦେବତା ଓ ମୁନିଗଣ ଏକାଗ୍ରଚିତ୍ତ ହୋଇ ଶ୍ରବଣ କରନ୍ତୁ । ଭଗବନ୍ ! ଆପଣ ପ୍ରଧାନ ଓ ଅପ୍ରଧାନ (ପ୍ରକୃତି ଓ ତହିଁରୁ ଅତୀତ) ଅଟନ୍ତି । ଆପଣଙ୍କର ଅନେକ ଭାଗ ରହିଛି, ତଥାପି ଆପଣ ଭାଗରହିତ ଅଟନ୍ତି । ଆପଣ ଜ୍ୟୋତିର୍ମୟସ୍ୱରୂପ ପରମେଶ୍ୱର ଏବଂ ଆମେ ତିନି ଦେବତା ଆପଣଙ୍କର ଅଂଶ । ଆପଣ କିଏ, ମୁଁ କିଏ ଆଉ ଏ ବ୍ରହ୍ମା କିଏ? ଆମେ ତିନିହେଁ ଆପଣଙ୍କର ହିଁ ଅଂଶ ହୋଇ ମଧ୍ୟ ସୃଷ୍ଟି, ପାଳନ ଓ ସଂହାର କରିବା ହେତୁ ପରସ୍ପରଠାରୁ ଭିନ୍ନ ପ୍ରତୀତ ହୋଇଥାଉ । ଆପଣ ନିଜ ସ୍ୱରୂପକୁ ଚିନ୍ତନ କରନ୍ତୁ । ଆପଣ ସ୍ୱୟଂ ଲୀଳାପୂର୍ବକ ଶରୀର ଧାରଣ କରିଛନ୍ତି । ଆପଣ ନିର୍ଗୁଣ ବ୍ରହ୍ମରୂପରେ ଏକ ଅଟନ୍ତି । ପୁଣି ଆପଣ ହିଁ ସଗୁଣ ବ୍ରହ୍ମ ଏବଂ ଆମେ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ଆପଣଙ୍କର ଅଂଶ । ଯେପରି ଏକମାତ୍ର ଶରୀରର ଭିନ୍ନ ଭିନ୍ନ ଅବୟବ ହିଁ ମସ୍ତକ, ଗ୍ରୀବା ଆଦି ନାମ ଧାରଣ କରିଥାନ୍ତି, ତଥାପି ସେହି ଶରୀରଠାରୁ ସେସବୁ ଭିନ୍ନ ନୁହଁନ୍ତି; ଠିକ୍ ସେହିପରି ଆମେ ତିନିହେଁ ଆପଣଙ୍କର ହିଁ ଅଙ୍ଗ । ଯେଉଁ ନିର୍ବିଶେଷ ବ୍ରହ୍ମ ଜ୍ୟୋତିର୍ମୟ, ଆକାଶ ପରି ସର୍ବବ୍ୟାପୀ ଓ ନିର୍ଲେପ, ସ୍ୱୟଂ ନିଜେ ହିଁ ନିଜର ଧାମ, ପୁରାଣ, କୂଟସ୍ଥ, ଅବ୍ୟକ୍ତ, ଅନନ୍ତ, ନିତ୍ୟ ଓ ଦୀର୍ଘ ଆଦି ବିଶେଷଣରୁ ରହିତ, ଆପଣ ଶିବ ହିଁ ହେଉଛନ୍ତି ସେହି ବ୍ରହ୍ମ, ତେଣୁ ଆପଣ ହିଁ ସବୁକିଛି ।

ବ୍ରହ୍ମା କହୁଛନ୍ତି–ମୁନୀଶ୍ୱର ! ଭଗବାନ ବିଷ୍ଣୁଙ୍କ

କଥା ଶୁଣି ମହାଦେବ ଅତ୍ୟନ୍ତ ପ୍ରସନ୍ନ ହେଲେ । ତା'ପରେ ସେହି ବିବାହ-ଯଜ୍ଞର ସ୍ୱାମୀ (ଯଜମାନ) ସ୍ୱୟଂ ପରମେଶ୍ୱର ମହେଶ୍ୱର ଲୌକିକ ଗତି ଅନୁସରଣ କରି ମୋତେ କହିଲେ—

ଶିବ କହିଲେ—ବ୍ରହ୍ମନ୍ ! ଆପଣ ସମସ୍ତ ବୈବାହିକ କାର୍ଯ୍ୟ ସୁନ୍ଦରଭାବରେ ସମ୍ପନ୍ନ କରିଦେଲେ । ମୁଁ ବହୁତ ଖୁସୀ । ଆପଣ ମୋର ଆଗ୍ରର୍ଯ୍ୟ । କୁହନ୍ତୁ ଆପଣଙ୍କୁ କ'ଣ ଦକ୍ଷିଣା ଦେବି? ସୁରଶ୍ରେଷ୍ଠ ! ଆପଣ ଦକ୍ଷିଣା ମାଗନ୍ତୁ । ମହାଭାଗ ! ତାହା ଦୁର୍ଲଭ ହୋଇଥିଲେ ମଧ୍ୟ ମାଗନ୍ତୁ । ଆପଣଙ୍କ ପାଇଁ ମୋ ପାଖରେ କିଛି ଅଦେୟ ନାହିଁ ।

ମୁନେ ! ମହାଦେବଙ୍କ ବାକ୍ୟ ଶୁଣି ମୁଁ କର ଯୋଡ଼ି ବିନୀତଭାବରେ ତାଙ୍କୁ ବାରମ୍ବାର ପ୍ରଣାମ କରି କହିଲି—''ଦେବେଶ ! ଯଦି ଆପଣ ପ୍ରସନ୍ନ, ହେ ମହେଶ୍ୱର ! ଯଦି ମୁଁ ବର ପାଇବାକୁ ଯୋଗ୍ୟ, ତେବେ ମୁଁ ଯାହା ଗ୍ରହୁଁଛି, ତାହା ପୂର୍ଣ୍ଣ କରନ୍ତୁ । ମହାଦେବ ! ଆପଣ ଏହି ରୂପରେ ଏହି ବେଦିରେ ସର୍ବଦା ବିଦ୍ୟମାନ ରହନ୍ତୁ, ଯାହାଫଳରେ ଆପଣଙ୍କ ଦର୍ଶନରେ ମନୁଷ୍ୟଙ୍କର ପାପ ଧୋଇଯିବ । ଚନ୍ଦ୍ରଶେଖର ! ଆପଣଙ୍କ ସାନ୍ନିଧ୍ୟ ମିଳିଗଲେ ମୁଁ ଏହି ବେଦି ନିକଟରେ ଆଶ୍ରମ ତୋଳି ତପସ୍ୟା କରିବି—ଏହା ମୋର ଅଭିଳାଷ । ଚୈତ୍ର ଶୁକ୍ଳ ତ୍ରୟୋଦଶୀ ପୂର୍ବାଫାଲ୍‌ଗୁନୀ ନକ୍ଷତ୍ରରେ ରବିବାର ଦିନ ଏହି ଭୂମିରେ ଯେଉଁ ମନୁଷ୍ୟ ଆପଣଙ୍କୁ ଭକ୍ତିଭାବରେ ଦର୍ଶନ କରିବ, ତା'ର ସମସ୍ତ ପାପ ତତ୍‌କ୍ଷଣାତ୍ ନଷ୍ଟ ହୋଇଯାଉ, ତା'ର ପୁଣ୍ୟ ବୃଦ୍ଧି ହେଉ ଓ ସମସ୍ତ ରୋଗ ନଷ୍ଟ ହେଉ । ଯେଉଁ ନାରୀ ଦୁର୍ଭଗା, ବନ୍ଧ୍ୟା, କାଣୀ ଅଥବା ରୂପହୀନା ହୋଇଥିବ, ସେ ମଧ୍ୟ ଆପଣଙ୍କ ଦର୍ଶନମାତ୍ରକେ ନିର୍ଦୋଷ ହୋଇଯାଉ ।''

ମୋ କଥା ଶିବଙ୍କୁ ତୃପ୍ତି ପ୍ରଦାନ କରୁଥିଲା । ତାହା ଶୁଣି ସେ ପ୍ରସନ୍ନ ଚିତ୍ତରେ କହିଲେ—''ବିଧାତା ! ତାହା ହିଁ ହେବ । ମୁଁ ତୁମ କହିବା ଅନୁସାରେ ସମଗ୍ର ଜଗତର ହିତ ନିମନ୍ତେ ମୋ ପତ୍ନୀ ସତୀ ସହିତ ଏହି ବେଦିରେ ସୁସ୍ଥିର ଭାବରେ ବିଦ୍ୟମାନ ରହିବି ।''

ଏହା କହି ଭଗବାନ ଶିବ ସପତ୍ନୀକ ତାଙ୍କ ଅଂଶରୂପିଣୀ ମୂର୍ତ୍ତି ପ୍ରକଟ କରି ବେଦିର ମଧ୍ୟଭାଗରେ ବିରାଜମାନ ହେଲେ । ତା'ପରେ ସ୍ୱଜନସ୍ନେହୀ ପରମେଶ୍ୱର ଶିବ ଦକ୍ଷଙ୍କ ଠାରୁ ବିଦାୟ ନେଇ ପତ୍ନୀ ସତୀଙ୍କ ସହ କୈଳାସ ଫେରିଯିବାକୁ ଉଦ୍ୟତ ହେଲେ । ଦକ୍ଷ ବିନୟରେ ମସ୍ତକ ଅବନତ କରି ଭଗବାନ ବୃଷଭଧ୍ୱଜଙ୍କୁ ପ୍ରୀତିପୂର୍ଣ୍ଣଚିତ୍ତରେ ସ୍ତୁତି କଲେ । ତା'ପରେ ବିଷ୍ଣୁ ଆଦି ସମସ୍ତ ଦେବତା, ମୁନି ଓ ଶିବଗଣ ନମସ୍କାରପୂର୍ବକ ନାନା ପ୍ରକାରେ ସ୍ତୁତି କରି ଅତି ଆନନ୍ଦରେ ଜୟନାଦ କଲେ । ଏହାପରେ ଦକ୍ଷଙ୍କ ଆଜ୍ଞାରେ ଭଗବାନ ଶିବ ପ୍ରସନ୍ନତାପୂର୍ବକ ସତୀଙ୍କୁ ବୃଷଭ ଉପରେ ବସାଇ ନିଜେ ମଧ୍ୟ ତା'ଉପରେ



ଆରୂଢ଼ ହୋଇ ହିମାଳୟ ଅଭିମୁଖେ ଅଗ୍ରସର ହେଲେ । କର୍ପୂରଗୌର ଶିବଙ୍କ ନିକଟରେ ସୁଦନ୍ତୀ ଓ ସୁହାସିନୀ ଶ୍ୟାମବର୍ଣ୍ଣା ସତୀ ଚନ୍ଦ୍ରମାରେ

ନୀଳରେଖା ତୁଲ୍ୟ ଶୋଭା ପାଉଥିଲେ । ସେତେବେଳେ ସେହି ନବଦମ୍ପତିଙ୍କ ଶୋଭା ଦେଖି ବିଷ୍ଣୁ ଆଦି ସମସ୍ତ ଦେବତା, ମରୀଚି ଆଦି ମହର୍ଷି ଓ ଅନ୍ୟାନ୍ୟ ଲୋକେ ଆଚମ୍ବିତ ଓ ସ୍ତମ୍ଭୀଭୂତ ହୋଇଗଲେ । ଦକ୍ଷ ମଧ୍ୟ ମୋହିତ ହୋଇଗଲେ । କେହି ବାଜା ବଜାଇବାକୁ ଲାଗିଲା ତ ଆଉ କେହି ମଧୁର ସ୍ୱରରେ ଗୀତ ଗାଇଲା । କେତେକ ଲୋକ ଆନନ୍ଦରେ ଶିବଙ୍କ କଲ୍ୟାଣମୟ ଉଜ୍ଜ୍ୱଳ ଯଶ ଗାନ କରି ତାଙ୍କ ପଛେ ପଛେ ଗ୍ଭଲିଲେ । ଭଗବାନ ଶିବ ଆଧା ରାସ୍ତାରୁ ଦକ୍ଷଙ୍କୁ ଫେରାଇ ଦେଲେ ଏବଂ ନିଜେ ସେମାନଙ୍କ ପ୍ରେମରେ ଭାବିତ ହୋଇ ପ୍ରମଥଗଣଙ୍କ ସହିତ ଯାଇ ନିଜ ଧାମରେ ପହଞ୍ଚିଲେ । ଶିବ ଯଦ୍ୟପି ବିଷ୍ଣୁ ଆଦି ଦେବତାଙ୍କୁ ମଧ୍ୟ ବିଦା କରିଥିଲେ, ତଥାପି ସେମାନେ ଭକ୍ତି ଓ ପ୍ରସନ୍ନତାରେ ପୁନଃ ତାଙ୍କ ସଙ୍ଗରେ ଯାଇଥିଲେ । ଦେବତା ଓ ପ୍ରମଥଗଣଙ୍କ ଗହଣରେ ପତ୍ନୀ ସତୀଙ୍କୁ ସଙ୍ଗରେ ଧରି ପ୍ରଭୁ ହିମାଳୟ ପର୍ବତରେ ସୁଶୋଭିତ ନିଜ କୈଳାସ ଧାମରେ ପହଞ୍ଚିବା ପରେ ଦେବତା, ମୁନି ଓ ଅନ୍ୟ ସମସ୍ତଙ୍କୁ ବହୁତ ଆଦର ସମ୍ମାନ ସହିତ ଆନନ୍ଦ ମନରେ ବିଦାୟ ଦେଲେ । ଶମ୍ଭୁଙ୍କ ଆଜ୍ଞା ପାଇ ବିଷ୍ଣୁ ପ୍ରମୁଖ ଦେବଗଣ ଓ ମୁନିଗଣ ନମସ୍କାର ଓ ସ୍ତୁତି କରି ସହର୍ଷବଦନରେ ନିଜ ନିଜ ସ୍ଥାନକୁ ଫେରିଗଲେ । ସଦାଶିବଙ୍କ ଚିନ୍ତନକାରୀ ଭଗବାନ ଶିବ ମଧ୍ୟ ଅତ୍ୟନ୍ତ ଆନନ୍ଦିତ ହୋଇ ହିମାଳୟ ଶିଖରରେ ନିଜ ପତ୍ନୀ ଦକ୍ଷକନ୍ୟା ସତୀଙ୍କ ସହିତ ବିହାର କରିବାକୁ ଲାଗିଲେ ।

ସୂତ କହୁଛନ୍ତି–ମୁନିଗଣ ! ପୂର୍ବକାଳରେ ସ୍ୱାୟମ୍ଭୁବ ମନ୍ୱନ୍ତରରେ ଭଗବାନ ଶିବ ଓ ସତୀଙ୍କର ଯେଉଁ ପରି ବିବାହ ହୋଇଥିଲା, ସେ ସମସ୍ତ ପ୍ରସଙ୍ଗ ମୁଁ ତୁମକୁ କହିଦେଲି । ଯେଉଁ ବ୍ୟକ୍ତି ବିବାହ କାଳରେ, ଯଜ୍ଞ ଅଥବା କୌଣସି ଶୁଭକାର୍ଯ୍ୟ ଆରମ୍ଭରେ ଶିବଙ୍କୁ ପୂଜା କରି ଶାନ୍ତଚିତ୍ତରେ ଏହି କଥା ଶୁଣେ, ତାହାର ସମସ୍ତ କାର୍ଯ୍ୟ ଓ ବୈବାହିକ ଆୟୋଜନ ନିର୍ବିଘ୍ନରେ ସମ୍ପନ୍ନ ହୁଏ । ଏହି ଶୁଭ ଉପାଖ୍ୟାନକୁ ଶ୍ରଦ୍ଧାରେ ଶୁଣିଲେ ବିବାହିତା କନ୍ୟା ସୁଖ-ସୌଭାଗ୍ୟ, ସୁଶୀଳତା ଓ ସଦାଗ୍ଭର ଆଦି ସଦ୍‌ଗୁଣରେ ସମ୍ପନ୍ନା ହୋଇ ସାଧ୍ୱୀ ତଥା ପୁତ୍ରବତୀ ହୁଏ ।

(ଅଧ୍ୟାୟ ୧୯-୨୦)



## ସତୀଙ୍କ ପ୍ରଶ୍ନ ଏବଂ ଉତ୍ତରରୂପେ ଶିବଙ୍କ ମୁଖରୁ ଜ୍ଞାନ ଓ ନବଧା ଭକ୍ତିର ସ୍ୱରୂପ ବର୍ଣ୍ଣନା

କୈଳାସ ଓ ହିମାଳୟ ପର୍ବତରେ ଶିବ ଓ ସତୀଙ୍କର ବିବିଧ ପ୍ରକାର ବିହାର ବିଷୟ ବିସ୍ତାରପୂର୍ବକ ବର୍ଣ୍ଣନା କରିସାରି ବ୍ରହ୍ମା କହିଲେ– ମୁନେ ! ଦିନକର କଥା । ଦେବୀ ସତୀ ଏକାନ୍ତରେ ଶିବଙ୍କୁ ଭେଟି ତାଙ୍କୁ ଆଦରପୂର୍ବକ ପ୍ରଣାମ କଲେ ଓ କର ଯୋଡ଼ି ଛିଡ଼ା ହୋଇଗଲେ । ପ୍ରଭୁ ଅତ୍ୟନ୍ତ ପ୍ରସନ୍ନ ଥିବା ଜାଣି ଦକ୍ଷକୁମାରୀ ସତୀ ଭକ୍ତିଭାବରେ କର ଯୋଡ଼ି କହିଲେ–

ସତୀ କହିଲେ–ଦେବଦେବ ମହାଦେବ ! କରୁଣାସାଗର ! ପ୍ରଭୋ ! ଦୀନୋଦ୍ଧାରପରାୟଣ ! ମହାଯୋଗୀ ! ମୋ ଉପରେ କୃପା କରନ୍ତୁ । ଆପଣ ପରମପୁରୁଷ । ସମସ୍ତଙ୍କ ସ୍ୱାମୀ । ରଜୋଗୁଣ, ସତ୍ତ୍ୱଗୁଣ ଓ ତମୋଗୁଣରୁ ଊର୍ଦ୍ଧ୍ୱରେ । ଆପଣ ନିର୍ଗୁଣ ଓ ସଗୁଣ । ଆପଣ ସମସ୍ତଙ୍କ ସାକ୍ଷୀ, ନିର୍ବିକାର ଓ ମହାପ୍ରଭୁ । ହର ! ମୁଁ ଆପଣଙ୍କ କାମିନୀ, ପ୍ରିୟା ଓ ଆପଣଙ୍କ ସଙ୍ଗେ

ବିହାରକାରିଣୀ ହୋଇ ଧନ୍ୟ ହୋଇଗଲି । ସ୍ୱାମିନ୍! ଆପଣ ଭକ୍ତବତ୍ସଳତାରେ ପ୍ରେରିତ ହୋଇ ମୋର ସ୍ୱାମୀ ହୋଇଛନ୍ତି । ନାଥ! ମୁଁ ବହୁତ ବର୍ଷ ପର୍ଯ୍ୟନ୍ତ ଆପଣଙ୍କ ସଙ୍ଗେ ବିହାର କଲି । ମହେଶାନ! ଏଥିପାଇଁ ମୁଁ ବହୁତ ସନ୍ତୁଷ୍ଟ । ଏବେ ମୋ ମନ ସେ ଦିଗରୁ ଅପସରି ଗଲାଣି । ଦେବେଶ୍ୱର! ହର! ଏବେ ମୁଁ ସେହି ପରମତତ୍ତ୍ୱର ଜ୍ଞାନ ପ୍ରାପ୍ତି କରିବାକୁ ଚାହୁଁଛି, ଯାହା ନିରତିଶୟ ସୁଖ ପ୍ରଦାନ କରିଥାଏ ଏବଂ ଯାହାଦ୍ୱାରା ଜୀବ ସଂସାର-ଦୁଃଖରୁ ଅନାୟାସରେ ଉଦ୍ଧାର ପାଇଯାଏ । ନାଥ! ଯେଉଁ କର୍ମ ଅନୁଷ୍ଠାନ କରି ବିଷୟୀ ଜୀବ ମଧ୍ୟ ପରମ ପଦକୁ ପାଇ ସଂସାରବନ୍ଧନରୁ ମୁକ୍ତ ରହିବ, ତାହା ମୋତେ କୃପା କରି କୁହନ୍ତୁ ।

ବ୍ରହ୍ମା କହୁଛନ୍ତି—ମୁନେ! ଆଦିଶକ୍ତି ମହେଶ୍ୱରୀ ସତୀ କେବଳ ଜୀବଙ୍କ ଉଦ୍ଧାର ନିମନ୍ତେ ଭକ୍ତିଭାବରେ ଏଭଳି ପ୍ରଶ୍ନ କରିବାରୁ ସ୍ୱେଚ୍ଛାରେ ଶରୀର ଧାରଣ କରିଥିବା ତଥା ଯୋଗ ଦ୍ୱାରା ଭୋଗରୁ ବିରକ୍ତ ହୋଇଥିବା ଶିବ ଅତ୍ୟନ୍ତ ପ୍ରସନ୍ନ ହୋଇ ଏହି ପ୍ରକାରେ ତାଙ୍କ ପ୍ରଶ୍ନର ଉତ୍ତର ଦେଲେ ।

ଶିବ କହିଲେ—ହେ ଦେବୀ! ହେ ଦକ୍ଷନନ୍ଦିନୀ! ଶୁଣ । ମୁଁ ସେହି ପରମତତ୍ତ୍ୱର ବର୍ଣ୍ଣନା କରୁଛି, ଯାହାଦ୍ୱାରା ବାସନାବଦ୍ଧ ଜୀବ ଅବିଳମ୍ବେ ମୁକ୍ତ ହୋଇପାରେ । ହେ ପରମେଶ୍ୱରୀ! ତୁମେ ବିଜ୍ଞାନକୁ ପରମତତ୍ତ୍ୱ ବୋଲି ଜାଣ । ଯେଉଁ ଜ୍ଞାନ ଉଦୟ ହେବା ପରେ 'ମୁଁ ବ୍ରହ୍ମ ଅଟେ' ଏଭଳି ଦୃଢ଼ନିଶ୍ଚୟ ହୋଇଯାଏ ଓ ବ୍ରହ୍ମ ବିନା ଅନ୍ୟ କୌଣସି କଥା ସ୍ମରଣ ରହେ ନାହିଁ, ତାହାକୁ ବିଜ୍ଞାନ କହନ୍ତି । ବିଜ୍ଞାନୀ ପୁରୁଷର ବୁଦ୍ଧି ସର୍ବଥା ଶୁଦ୍ଧ ହୋଇଯାଏ । ପ୍ରିୟେ! ସେଭଳି ବିଜ୍ଞାନ ଦୁର୍ଲଭ । ଇହଲୋକରେ ତାହାର ଜ୍ଞାତା ଅତ୍ୟନ୍ତ ବିରଳ । ବିଜ୍ଞାନ ହେଉଛି ମୋର ସ୍ୱରୂପ, ସାକ୍ଷାତ୍ ପରାତ୍ପର ବ୍ରହ୍ମ । ସେହି ବିଜ୍ଞାନର ମାତା ହେଉଛି ମୋ ପ୍ରତି ଭକ୍ତି, ଯାହା କି ଭୋଗ ଓ ମୋକ୍ଷରୂପୀ ଫଳ ପ୍ରଦାନ କରିଥାଏ ଏବଂ ତାହା ମୋ କୃପାରୁ ହିଁ ସୁଲଭ ହୋଇଥାଏ । ଭକ୍ତି ନଅ ପ୍ରକାରର । ହେ ସତୀ! ଭକ୍ତି ଓ ଜ୍ଞାନ ଉଭୟ ମଧ୍ୟରେ କୌଣସି ଅନ୍ତର ନାହିଁ । ଭକ୍ତ ଓ ଜ୍ଞାନୀ ଉଭୟଙ୍କୁ ସର୍ବଦା ସୁଖ ପ୍ରାପ୍ତ ହୋଇଥାଏ । ଯେ ଭକ୍ତିର ବିରୋଧୀ, ତାକୁ ଜ୍ଞାନ ପ୍ରାପ୍ତ ହୋଇ ନ ଥାଏ । ହେ ଦେବୀ! ମୁଁ ସଦା ଭକ୍ତର ଅଧୀନରେ ଥାଏ ଓ ଭକ୍ତିପ୍ରଭାବରେ ଜାତିହୀନ ନୀଚ ମନୁଷ୍ୟଙ୍କ ଘରକୁ ମଧ୍ୟ ଚାଲିଯାଇଥାଏ । ଏଥିରେ ସଂଶୟ ନାହିଁ ।* ହେ ସତୀ! ସେହି ଭକ୍ତି ଦୁଇ ପ୍ରକାରର—ସଗୁଣା ଓ ନିର୍ଗୁଣା । ବୈଧୀ (ଶାସ୍ତ୍ରବିଧିରେ ପ୍ରେରିତ) ଓ ସ୍ୱାଭାବିକୀ (ହୃଦୟର ସହଜ ଅନୁରାଗରେ ପ୍ରେରିତ) ଭକ୍ତି ଶ୍ରେଷ୍ଠ ଅଟେ । ଏହାଠାରୁ ଭିନ୍ନ ଯେଉଁ କାମନାମୂଳକ ଭକ୍ତି ଅଛି, ତାହା ନିମ୍ନକୋଟିର ଧରାଯାଏ । ପୂର୍ବୋକ୍ତ ସଗୁଣା ଓ ନିର୍ଗୁଣା ଉଭୟ ପ୍ରକାର ଭକ୍ତି ନୈଷ୍ଠିକୀ ଓ ଅନୈଷ୍ଠିକୀ ଭେଦରେ ଦୁଇ ଦୁଇ ଭାଗରେ ବିଭକ୍ତ । ବିଦ୍ୱାନ୍ ଲୋକେ ତାହାକୁ ବିହିତା ଓ ଅବିହିତା ଇତ୍ୟାଦି ଅନେକ ଭେଦ କରିଦେଇଥାନ୍ତି । ଏହି ଦ୍ୱିବିଧା ଭକ୍ତିର ଆହୁରି ଅନେକ ପ୍ରକାର ପ୍ରଭେଦ ଥିବାରୁ ଏହାର ତତ୍ତ୍ୱକୁ ଅନ୍ୟତ୍ର ବର୍ଣ୍ଣନା କରାଯାଇଛି । ପ୍ରିୟେ! ମୁନିମାନେ ସଗୁଣା ଓ ନିର୍ଗୁଣା ଭକ୍ତିର ନଅଟି ଅଙ୍ଗ ନିର୍ଦ୍ଦେଶ କରିଛନ୍ତି । ହେ ଦକ୍ଷନନ୍ଦିନୀ! ମୁଁ ସେହି ନଅଟି ଅଙ୍ଗର

* ଭକ୍ତୌ ଜ୍ଞାନେ ନ ଭେଦୋ ହି ତତ୍କର୍ତ୍ତୁଃ ସର୍ବଦା ସୁଖମ୍ । ବିଜ୍ଞାନଂ ନ ଭବତ୍ୟେବ ସତି ଭକ୍ତିବିରୋଧିନଃ ॥
ଭକ୍ତାଧୀନଃ ସଦାହଂ ବୈ ତତ୍ପ୍ରଭାବାଦ୍ ଗୃହେଷ୍ୱପି । ନୀଚାନାଂ ଜାତିହୀନାନାଂ ଯାମି ଦେବି ନ ସଂଶୟଃ ॥
(ଶି. ପୁ. ରୁ. ସଂ. ସ. ଖ. ୨୩ । ୧୬-୧୭)

ବର୍ଣ୍ଣନା କରୁଛି । ଶ୍ରଦ୍ଧାରେ ଶୁଣ । ହେ ଦେବୀ ! ଶ୍ରବଣ, କୀର୍ତ୍ତନ, ସ୍ମରଣ, ସେବନ, ଦାସ୍ୟ, ଅର୍ଚ୍ଚନ, ସଦା ମୋର ବନ୍ଦନ, ସଖ୍ୟ ଓ ଆତ୍ମସମର୍ପଣ । ଏଗୁଡ଼ିକୁ ବିଦ୍ୱାନ୍‌ମାନେ ଭକ୍ତିର ନଅଟି ଅଙ୍ଗ ବୋଲି ସ୍ୱୀକାର କରିଛନ୍ତି ।* ଶିବେ ! ଭକ୍ତିର ଉପାଙ୍ଗ ମଧ୍ୟ ଅନେକ ।

ହେ ଦେବୀ ! ତୁମେ ମନ ଦେଇ ମୋ ଭକ୍ତିର ପୂର୍ବୋକ୍ତ ନଅଟି ଅଙ୍ଗର ପୃଥକ୍ ପୃଥକ୍ ଲକ୍ଷଣ ଶୁଣ । ଏହା ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ବ୍ୟକ୍ତି ଯଦି ସ୍ଥିର ଆସନରେ ବସି କାୟ-ମନୋବାକ୍ୟରେ ମୋ କଥା-କୀର୍ତ୍ତନକୁ ନିତ୍ୟ ସମ୍ମାନ ଦେଇ ପ୍ରସନ୍ନ ମନରେ କର୍ଣ୍ଣପୁଟରେ ତାହାର ଅମୃତୋପମ ରସ ପାନ କରେ, ତେବେ ତାହାର ସେହି ସାଧନକୁ 'ଶ୍ରବଣ' କହନ୍ତି । ହୃଦୟାକାଶରେ ମୋର ଦିବ୍ୟ ଜନ୍ମ-କର୍ମର ଚିନ୍ତନ କରି ପ୍ରେମରେ ବାଣୀ ଦ୍ୱାରା ଉଚ୍ଚସ୍ୱରରେ ତାହାକୁ ଉଚ୍ଚାରଣ କରିବା ହେଲା 'କୀର୍ତ୍ତନ' । ହେ ଦେବୀ ! ମୋତେ ନିତ୍ୟ ମହେଶ୍ୱର ତଥା ସଦା ଓ ସର୍ବତ୍ର ବ୍ୟାପକ ବୋଲି ଜାଣି ସଂସାରରେ ନିରନ୍ତର ନିର୍ଭୟ ରହିବାର ନାମ 'ସ୍ମରଣ' । ଅରୁଣୋଦୟ ଠାରୁ ଆରମ୍ଭ କରି ସବୁବେଳେ ସେବ୍ୟର ଅନୁକୂଳତା ପ୍ରତି ଦୃଷ୍ଟି ରଖି ହୃଦୟ ଓ ଇନ୍ଦ୍ରିୟ ଦ୍ୱାରା ଯେଉଁ ନିରନ୍ତର ସେବା କରାଯାଏ, ତାହା 'ସେବନ' ନାମକ ଭକ୍ତି । ନିଜକୁ ପ୍ରଭୁଙ୍କର କିଙ୍କର ବୋଲି ବୁଝି ହୃଦୟାମୃତ ଭୋଗଦ୍ୱାରା ସ୍ୱାମୀଙ୍କର ସଦା ପ୍ରିୟ କାର୍ଯ୍ୟ କରିବା 'ଦାସ୍ୟ' ଭକ୍ତି ନାମରେ କଥିତ । ନିଜର ଧନ-ବୈଭବ ଅନୁସାରେ ଶାସ୍ତ୍ରୀୟ ବିଧିରେ ମୋତେ ସଦା ପାଦ୍ୟାଦି ଷୋଡଶୋପଚାର ଅର୍ପଣ କରିବା ହେଉଛି 'ଅର୍ଚ୍ଚନ' ଭକ୍ତି । ମନରେ ଧ୍ୟାନ ଏବଂ ବାଣୀରେ ବନ୍ଦନାତ୍ମକ ମନ୍ତ୍ର ଉଚ୍ଚାରଣପୂର୍ବକ ଭୂମିରେ ଆଠ ଅଙ୍ଗ ସଂଲଗ୍ନ କରି ଇଷ୍ଟଦେବଙ୍କୁ ନମସ୍କାର କରିବା ହେଉଛି 'ବନ୍ଦନ' ଭକ୍ତି । ଈଶ୍ୱର ମଙ୍ଗଳ ବା ଅମଙ୍ଗଳ ଯାହା କିଛି କଲେ ବି ସେସବୁ ମୋର ମଙ୍ଗଳ ପାଇଁ ଉଦ୍ଦିଷ୍ଟ— ଏଭଳି ଦୃଢ଼ବିଶ୍ୱାସ ରଖିବା ହେଉଛି 'ସଖ୍ୟ' ଭକ୍ତିର ଲକ୍ଷଣ ।✤ ନିଜର ବୋଲାଉଥିବା ଦେହାଦି ସକଳ ବସ୍ତୁକୁ ଭଗବାନଙ୍କ ପ୍ରସନ୍ନତା ନିମିତ୍ତ ତାଙ୍କୁ ସମର୍ପି ଦେଇ ନିଜ ନିର୍ବାହ ପାଇଁ କିଛି ମଧ୍ୟ ସଞ୍ଚିତ ନ ରଖିବା ଅଥବା ନିର୍ବାହ ଚିନ୍ତା ନ କରିବା ହେଉଛି 'ଆତ୍ମସମର୍ପଣ' ଭକ୍ତି । ଏହା ହେଲା ମୋ ଭକ୍ତିର ନଅଟି ଅଙ୍ଗ । ଏ ସମସ୍ତ ସାଧନ ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ଏଥିରୁ ଜ୍ଞାନ ମଧ୍ୟ ପ୍ରକଟିତ ହୁଏ ଏବଂ ଏସବୁ ସାଧନ ମୋର ଅତ୍ୟନ୍ତ ପ୍ରିୟ । ମୋ ଭକ୍ତିର ଅନେକ ଉପାଙ୍ଗ ମଧ୍ୟ ଅଛି, ଯଥା—ବିଲ୍ୱବୃକ୍ଷ ଆଦିର ସେବା କରିବା ଇତ୍ୟାଦି । ଏଗୁଡ଼ିକୁ ବିଚାର କରି ବୁଝିବା ଉଚିତ ।

ପ୍ରିୟେ ! ମୋର ସାଙ୍ଗୋପାଙ୍ଗ ଭକ୍ତି ସବୁଠୁ ଉତ୍ତମ । ଏହା ଜ୍ଞାନବିଜ୍ଞାନର ଜନନୀ ଏବଂ ମୁକ୍ତି ଏହାର ଦାସୀ । ଏହା ସବୁ ସାଧନାର ଊର୍ଦ୍ଧ୍ୱରେ ବିରାଜମାନ । ଏହାଦ୍ୱାରା ସମସ୍ତ କର୍ମର ଫଳ ମିଳିଯାଏ । ଏଭଳି ଭକ୍ତି ସଦା ତୁମରି ପରି ମୋତେ ପ୍ରିୟ ଲାଗେ । ଯାହା ଚିତ୍ତରେ ଏଭଳି

---

* ଶ୍ରବଣଂ କୀର୍ତ୍ତନଂ ଚୈବ ସ୍ମରଣଂ ସେବନଂ ତଥା । ଦାସ୍ୟଂ ତଥାର୍ଚ୍ଚନଂ ଦେବି ବନ୍ଦନଂ ମମ ସର୍ବଦା ॥
ସଖ୍ୟମାତ୍ମାର୍ପଣଂ ଚେତି ନବାଙ୍ଗାନି ବିଦୁର୍ବୁଧାଃ । ........................................................... ॥
(ଶି. ପୁ. ରୁ. ସଂ. ସ. ଖ. ୨୩ । ୨୨-୨୩)

✤ ମଙ୍ଗଳାମଙ୍ଗଳଂ ଯଦ୍ ଯଦ୍ କରୋତୀତୀଶ୍ୱରୋ ହି ମେ । ସର୍ବଂ ତନ୍ମଙ୍ଗଳାୟେତି ବିଶ୍ୱାସଃ ସଖ୍ୟଲକ୍ଷଣମ୍ ॥
(ଶି. ପୁ. ରୁ. ସଂ. ସ. ଖ. ୨୩ । ୩୨)

ଭକ୍ତି ସଦା ନିବାସ କରେ, ସେ ମୋର ଅତ୍ୟନ୍ତ ପ୍ରିୟ। ହେ ଦେବେଶ୍ୱରୀ! ତିନିଲୋକରେ ଓ ଚ୍ଚାରିଯୁଗରେ ଭକ୍ତି ସମାନ ଅନ୍ୟ କିଛି ସୁଖଦାୟକ ମାର୍ଗ ନାହିଁ। କଳିଯୁଗରେ ତ ଏହା ବିଶେଷ ସୁଖଦ ଓ ସୁବିଧାଜନକ।* ହେ ଦେବୀ! କଳିଯୁଗରେ ଜ୍ଞାନ ଓ ବୈରାଗ୍ୟର ପ୍ରାୟ କେହି ଗ୍ରାହକ ନ ଥାନ୍ତି, ତେଣୁ ସେ ଦୁହେଁ ବୃଦ୍ଧ, ଉତ୍ସାହଶୂନ୍ୟ ଓ ଜର୍ଜର ହୋଇଗଲେଣି; ମାତ୍ର ଭକ୍ତି କଳିଯୁଗରେ ଓ ଅନ୍ୟ ଯୁଗରେ ମଧ୍ୟ ପ୍ରତ୍ୟକ୍ଷ ଫଳ ଦେଇଥାଏ। ଭକ୍ତି ପ୍ରଭାବରେ ମୁଁ ସଦା ତାହାର ବଶରେ ରହିଥାଏ, ଏଥିରେ ସଂଶୟ ନାହିଁ। ଜଗତରେ ଯେ ଭକ୍ତିମାନ୍, ମୁଁ ସର୍ବଦା ତାକୁ ସହାୟତା କରିଥାଏ, ତା'ର ସମସ୍ତ ବିଘ୍ନକୁ ଦୂର କରିଥାଏ। ଯେଉଁ ବ୍ୟକ୍ତି ସେହି ଭକ୍ତର ଶତ୍ରୁ ହୁଏ, ସେ ଯେ ମୋ ଦ୍ୱାରା ଦଣ୍ଡନୀୟ ହୋଇଥାଏ, ଏଥିରେ ସଂଶୟ ନାହିଁ।ꣷ ହେ ଦେବୀ! ମୁଁ ମୋ ଭକ୍ତଙ୍କର ରକ୍ଷକ। ଭକ୍ତର ରକ୍ଷା ନିମିତ୍ତ ମୁଁ କୁପିତ ହୋଇ ମୋ ନେତ୍ରଜନିତ ଅଗ୍ନିରେ କାଳକୁ ମଧ୍ୟ ଦଗ୍ଧ କରିଦେଇଥିଲି। ପ୍ରିୟେ! ଭକ୍ତ ପାଇଁ ପୂର୍ବକାଳରେ ମୁଁ ସୂର୍ଯ୍ୟଙ୍କ ଉପରେ ଅତ୍ୟନ୍ତ କ୍ରୁଦ୍ଧ ହୋଇଯାଇଥିଲି ଏବଂ ତ୍ରିଶୂଳ ଉଠାଇ ତାଙ୍କୁ ମାରିବାକୁ ଗୋଡ଼ାଇଥିଲି। ହେ ଦେବୀ! ଭକ୍ତ ପାଇଁ ମୁଁ ସେନାସହିତ ରାବଣକୁ କ୍ରୋଧରେ ପରିତ୍ୟାଗ କରିଥିଲି ଏବଂ ତା'ର କୌଣସି ପ୍ରକାରେ ପକ୍ଷ ନେଇ ନ ଥିଲି। ହେ ସତୀ! ହେ ଦେବେଶ୍ୱରୀ! ଅଧିକ କେତେ ବା କହିବି, ମୁଁ ସଦା ଭକ୍ତର ଅଧୀନରେ ରହିଥାଏ ଓ ଭକ୍ତି କରୁଥିବା ବ୍ୟକ୍ତିର ବଶବର୍ତ୍ତୀ ହୋଇଯାଏ।

ବ୍ରହ୍ମା କହୁଛନ୍ତି–ନାରଦ! ଭକ୍ତିର ଏପରି ମହତ୍ତ୍ୱ ଶୁଣି ଦକ୍ଷକନ୍ୟା ସତୀ ବହୁତ ଆନନ୍ଦିତ ହେଲେ। ସେ ପ୍ରସନ୍ନତା ବ୍ୟକ୍ତ କରି ମନେ ମନେ ଶିବଙ୍କୁ ପ୍ରଣାମ କଲେ। ମୁନେ! ସତୀ ଦେବୀ ପୁନଃ ଭକ୍ତିକାଣ୍ଡବିଷୟକ ଶାସ୍ତ୍ର ସମ୍ବନ୍ଧରେ ଭକ୍ତିପୂର୍ବକ ପଚ୍ଚାରିଲେ। କେଉଁ କେଉଁ ଶାସ୍ତ୍ର ଜଗତରେ ସୁଖଦାୟକ ଓ ଜୀବଙ୍କ ଉଦ୍ଧାର ସମ୍ବନ୍ଧୀୟ ସାଧନର ପ୍ରତିପାଦକ, ତାହା ସେ ଜିଜ୍ଞାସା କଲେ? ସେ ଯନ୍ତ୍ର, ମନ୍ତ୍ର, ଶାସ୍ତ୍ର, ତାହାର ମାହାତ୍ମ୍ୟ ଓ ଅନ୍ୟାନ୍ୟ ଜୀବୋଦ୍ଧାରକ ଧର୍ମମୟ ସାଧନ ବିଷୟରେ ବିଶେଷରୂପେ ଜାଣିବାକୁ ଇଚ୍ଛା ବ୍ୟକ୍ତ କଲେ। ସତୀଙ୍କ ପ୍ରଶ୍ନ ଶୁଣି ଶିବ ବହୁତ ଆନନ୍ଦିତ ହେଲେ। ସେ ଜୀବମାନଙ୍କ ଉଦ୍ଧାର ପାଇଁ ସମସ୍ତ ଶାସ୍ତ୍ର ବିଷୟରେ ସହର୍ଷ ବର୍ଣ୍ଣନା କଲେ। ମହେଶ୍ୱର ପାଞ୍ଚ ଅଙ୍ଗ ସହିତ ତନ୍ତ୍ରଶାସ୍ତ୍ର, ଯନ୍ତ୍ରଶାସ୍ତ୍ର ଓ ଭିନ୍ନ ଭିନ୍ନ ଦେବେଶ୍ୱରଙ୍କ ମହିମା ବର୍ଣ୍ଣନା କଲେ। ମୁନୀଶ୍ୱର! ଇତିହାସର ଆଖ୍ୟାନ ସହିତ ସେହି ସବୁ ଦେବତାଙ୍କ ଭକ୍ତଙ୍କ ମହିମା, ବର୍ଣ୍ଣାଶ୍ରମଧର୍ମ ତଥା ରାଜଧର୍ମର ମଧ୍ୟ ନିରୂପଣ କଲେ। ପୁତ୍ରଧର୍ମ ଓ ନାରୀଧର୍ମର ମହିମା, ଅବିନାଶୀ ବର୍ଣ୍ଣାଶ୍ରମଧର୍ମ ଓ ଜୀବଙ୍କ ନିମନ୍ତେ ସୁଖଦ ବୈଦ୍ୟକଶାସ୍ତ୍ର ତଥା ଜ୍ୟୋତିଷଶାସ୍ତ୍ର ବିଷୟରେ ମଧ୍ୟ ବର୍ଣ୍ଣନା କଲେ। ମହେଶ୍ୱର କୃପା କରି ଉତ୍ତମ ସାମୁଦ୍ରିକ ଶାସ୍ତ୍ର ଓ ଅନ୍ୟାନ୍ୟ ଅନେକ ଶାସ୍ତ୍ର ବିଷୟରେ ତତ୍ତ୍ୱତଃ ବର୍ଣ୍ଣନା କଲେ। ଏହିରୂପେ ଲୋକୋପକାର ନିମନ୍ତେ ସାକ୍ଷାତ୍

---

* ତ୍ରୈଲୋକ୍ୟେ ଭକ୍ତିସଦୃଶଃ ପନ୍ଥା ନାସ୍ତି ସୁଖାବହଃ। ଚତୁର୍ଯୁଗେଷୁ ଦେବେଶି କଲୌ ତୁ ସୁବିଶେଷତଃ॥
(ଶି. ପୁ. ରୁ. ସଂ. ସ. ଖ. ୨୩।୩୮)

ꣷ ଯୋ ଭକ୍ତିମାନ୍ ପୁମାଁଲ୍ଲୋକେ ସଦାହଂ ତତ୍‌ସହାୟକୃତ୍। ବିଘ୍ନହର୍ତ୍ତା ରିପୁସ୍ତସ୍ୟ ଦଣ୍ଡ୍ୟୋ ନାତ୍ର ଚ ସଂଶୟଃ॥
(ଶି. ପୁ. ରୁ. ସଂ. ସ. ଖ. ୨୩।୪୧)

ପରବ୍ରହ୍ମସ୍ୱରୂପ ସଦ୍‌ଗୁଣ-ବିଗ୍ରହଧାରୀ ତ୍ରିଲୋକ-ସୁଖଦାୟକ ସର୍ବଜ୍ଞ ଶିବ ଓ ସତୀ ହିମାଳୟର କୈଳାସଶିଖରରେ ଓ ଅନ୍ୟାନ୍ୟ ସ୍ଥାନରେ ନାନା ଲୀଳା କରୁଥିଲେ । (ଅଧ୍ୟାୟ ୨୧-୨୩)

***

# ଦଣ୍ଡକାରଣ୍ୟରେ ଶିବ ଶ୍ରୀରାମଙ୍କ ଉଦ୍ଦେଶ୍ୟରେ ମସ୍ତକ ଅବନତ କରିବା ଦେଖି ସତୀଙ୍କର ମୋହ ଏବଂ ଶିବଙ୍କ ଆଜ୍ଞାରେ ସତୀଙ୍କର ଶ୍ରୀରାମଙ୍କୁ ପରୀକ୍ଷା

ନାରଦ କହୁଛନ୍ତି—ବ୍ରହ୍ମନ୍ ! ବିଧେ ! ପ୍ରଜାନାଥ ! ମହାପ୍ରାଜ୍ଞ ! ଦୟାନିଧେ ! ଆପଣ ଭଗବାନ ଶଙ୍କରଙ୍କର ଓ ଦେବୀ ସତୀଙ୍କର ମଙ୍ଗଳକାରୀ ସୁଯଶ ବର୍ଣ୍ଣନା କଲେ । ଏବେ ପୁନଃ ଆନନ୍ଦମନରେ ତାଙ୍କର ଉତ୍ତମ ଚରିତ ବର୍ଣ୍ଣନା କରନ୍ତୁ । ସେହି ଶିବଦମ୍ପତି ସେଠାରେ ରହି କେଉଁ ଚରିତ୍ର କଲେ?

ବ୍ରହ୍ମା କହିଲେ—ମୁନେ ! ତୁମେ ଏବେ ସତୀ ଓ ଶିବଙ୍କ ଚରିତ୍ର ପ୍ରେମପୂର୍ଣ୍ଣଚିତ୍ତରେ ଶ୍ରବଣ କର । ସେହି ଦମ୍ପତି ସେଠାରେ ଲୌକିକ ଗତିର ଅନୁସରଣ କରି ନିତ୍ୟ-ନିରନ୍ତର କ୍ରୀଡ଼ା କରୁଥିଲେ । ତା'ପରେ ମହାଦେବୀ ସତୀଙ୍କୁ ବିୟୋଗଦୁଃଖ ପ୍ରାପ୍ତ ହେଲା, ଏହା କେତେକ ଶ୍ରେଷ୍ଠ ବୁଦ୍ଧିମାନ୍ ବିଦ୍ୱାନଙ୍କର ମତ । ପରନ୍ତୁ ମୁନେ ! ବସ୍ତୁତଃ ସେ ଦୁହିଙ୍କର ବିୟୋଗ କ'ଣ ସମ୍ଭବ? ସେ ଦୁହେଁ ତ ବାଣୀ ଓ ତାହାର ଅର୍ଥ ପରି ଜଣେ ଅନ୍ୟ ଜଣକ ଠାରୁ ସର୍ବଥା ଅଭିନ୍ନ । ସେ ଦୁହେଁ ଶକ୍ତି ଓ ଶକ୍ତିମାନ୍ ତଥା ଚିତ୍‌ସ୍ୱରୂପ ଅଟନ୍ତି । ତଥାପି ସେମାନଙ୍କ ମନରେ ଲୀଳାବିଷୟକ ରୁଚି ଥିବାରୁ ଏପରି ସଂଘଟିତ ହେବା ସ୍ୱାଭାବିକ । ସତୀ ଓ ଶିବ ଯଦ୍ୟପି ଈଶ୍ୱର, ତଥାପି ଲୌକିକ ରୀତିର ଅନୁକରଣ କରି ସେ ଯେଉଁ ଯେଉଁ ଲୀଳା କରନ୍ତି, ସେସବୁ ସମୀଚୀନ । ଦକ୍ଷକନ୍ୟା ସତୀ ଯେତେବେଳେ ଦେଖିଲେ ଯେ ସ୍ୱାମୀ ତାଙ୍କୁ ତ୍ୟାଗ କରିଦେଇଛନ୍ତି, ସେତେବେଳେ ସେ ନିଜ ପିତା ଦକ୍ଷଙ୍କ ଯଜ୍ଞସ୍ଥଳକୁ ଗଲେ ଏବଂ ସେଠାରେ ଭଗବାନ ଶଙ୍କରଙ୍କର ଅନାଦର ଦେଖି ନିଜ ଦେହକୁ ପରିତ୍ୟାଗ କଲେ । ସେହି ସତୀ ହିଁ ପୁନଃ ପାର୍ବତୀ ନାମରେ ଅବତୀର୍ଣ୍ଣ ହେଲେ ଓ ଘୋର ତପସ୍ୟା କରି ଶିବଙ୍କୁ ପୁନଃ ସ୍ୱାମୀରୂପରେ ପ୍ରାପ୍ତ ହେଲେ ।

ସୂତ କହିଲେ—ମହର୍ଷିଗଣ ! ବ୍ରହ୍ମାଙ୍କ କଥା ଶୁଣି ନାରଦ ବିଧାତାଙ୍କୁ ଶିବା ଓ ଶିବଙ୍କ ମହାନ୍ ଯଶ ବିଷୟରେ ଏହିପରି ପଗ୍ଚରିଲେ—

ନାରଦ କହିଲେ—ମହାଭାଗ ବିଷ୍ଣୁଶିଷ୍ୟ ! ବିଧାତା ! ଆପଣ ମୋତେ ଶିବା ଓ ଶିବଙ୍କ ଭାବ ଓ ଆଗ୍ରହ ସମ୍ବନ୍ଧିତ ଚରିତ ଶୁଣାନ୍ତୁ । ତାତ ! ଭଗବାନ ଶିବ ତାଙ୍କ ପ୍ରାଣପ୍ରିୟା ଧର୍ମପତ୍ନୀ ସତୀଙ୍କୁ କାହିଁକି ତ୍ୟାଗ କଲେ? ଏ ଘଟଣା ମୋତେ ବିଚିତ୍ର ପରି ଲାଗୁଛି । ତେଣୁ ଏକଥା ଆପଣ ମୋତେ ଅବଶ୍ୟ କହନ୍ତୁ । ଅଜ ! ଆପଣଙ୍କ ପୁତ୍ର ଦକ୍ଷଙ୍କ ଗୃହରେ ଭଗବାନ ଶିବଙ୍କର ଅନାଦର କିପରି ହେଲା? ପିତାଙ୍କ ଯଜ୍ଞୋତ୍ସବକୁ ଯାଇ ସତୀ କିପରି ଦେହତ୍ୟାଗ କଲେ? ତା'ପରେ ସେଠାରେ କ'ଣ ହେଲା? ଭଗବାନ ମହେଶ୍ୱର କ'ଣ କଲେ? ସେସବୁ କଥା ମୋତେ କହନ୍ତୁ । ଏକଥା ଶୁଣିବାକୁ ମୋ ମନରେ ବହୁତ ଶ୍ରଦ୍ଧା ରହିଛି ।

ବ୍ରହ୍ମା କହିଲେ—ମୋ ଶ୍ରେଷ୍ଠ ପୁତ୍ର ନାରଦ! ମହାପ୍ରାଜ୍ଞ! ତୁମେ ମହର୍ଷିମାନଙ୍କ ମେଳରେ

ପ୍ରେମପୂର୍ବିକ ଏ ଚରିତ ଶ୍ରବଣ କର । ବିଷ୍ଣୁ ଆଦି ଦେବତାଙ୍କ ଦ୍ୱାରା ସେବିତ ପରବ୍ରହ୍ମ ମହେଶ୍ୱରଙ୍କୁ ନମସ୍କାର କରି ମୁଁ ତାଙ୍କର ମହାନ୍ ଅଦ୍ଭୁତ ଚରିତ୍ର ବର୍ଣ୍ଣନା ଆରମ୍ଭ କରୁଛି । ମୁନେ ! ଏ ସମସ୍ତ ଶିବଙ୍କର ଲୀଳା । ପ୍ରଭୁ ଅନେକ ପ୍ରକାର ଲୀଳା କରିଥାନ୍ତି । ସେ ସ୍ୱତନ୍ତ୍ର ଓ ନିର୍ବିକାର । ଦେବୀ ସତୀ ମଧ୍ୟ ସେହିପରି ଅଟନ୍ତି । ଅନ୍ୟଥା ସେପରି କର୍ମ କରିବାରେ କିଏ ଅବା ସମର୍ଥ ହୋଇପାରିବ? ପରମେଶ୍ୱର ଶିବ ହିଁ ପରବ୍ରହ୍ମ ପରମାତ୍ମା ।

ଏକଦା ତ୍ରିଲୋକ ଭ୍ରମଣକାରୀ ଲୀଳାବିଶାରଦ ଭଗବାନ ରୁଦ୍ର ସତୀଙ୍କ ସହିତ ବୃଷଭାରୂଢ଼ ହୋଇ ଧରାପୃଷ୍ଠରେ ବିଚରଣ କରୁଥିଲେ । ବୁଲୁ ବୁଲୁ ସେ ଦଣ୍ଡକାରଣ୍ୟରେ ପହଞ୍ଚିଲେ । ସେଠାରେ ସେ ଲକ୍ଷ୍ମଣଙ୍କ ସହିତ ଶ୍ରୀରାମଙ୍କୁ ଦେଖିବାକୁ ପାଇଲେ । ସେତେବେଳେ ଶ୍ରୀରାମ ରାବଣ ଦ୍ୱାରା ଅପହୃତା ତାଙ୍କ ପ୍ରିୟା ପତ୍ନୀ ସୀତାଙ୍କୁ ଖୋଜୁଥିଲେ ଏବଂ 'ହା ସୀତେ ! ହା ସୀତେ' ବୋଲି ଉଚ୍ଚସ୍ୱରରେ ଡାକି ଡାକି ଏଣେ ତେଣେ ବୁଲୁଥିଲେ ଏବଂ ବାରମ୍ବାର କାନ୍ଦୁଥିଲେ । ତାଙ୍କ ମନ ବିରହ-ଆବେଶରେ ଆଚ୍ଛାଦିତ ଥିଲା । ସୂର୍ଯ୍ୟବଂଶୋଦ୍ଭବ, ବୀର, ଦଶରଥନନ୍ଦନ, ଭରତାଗ୍ରଜ ଶ୍ରୀରାମ ଆନନ୍ଦରହିତ ହୋଇ ଲକ୍ଷ୍ମଣଙ୍କ ସହିତ ବନରେ ବୁଲୁଥିଲେ । ତାଙ୍କ କାନ୍ତି ମଳିନ ପଡ଼ିଯାଇଥିଲା । ସେତେବେଳେ ଉଦାରଚେତା ପୂର୍ଣ୍ଣକାମ ଭଗବାନ ଶଙ୍କର ଅତି ପ୍ରସନ୍ନତାର ସହ ତାଙ୍କୁ ପ୍ରଣାମ କଲେ ଓ ଜୟଧ୍ୱନି କରି ଅନ୍ୟ ଦିଗରେ ଚାଲିଗଲେ । ଭକ୍ତବତ୍ସଳ ଶଙ୍କର ସେହି ବନରେ ନିଜକୁ ପ୍ରକାଶିତ କଲେ ନାହିଁ । ଶିବଙ୍କର ଏହି ମୋହିନୀ ଲୀଳାକୁ ଦେଖି ସତୀଙ୍କୁ ବହୁତ ବିସ୍ମୟ ହେଲା । ସେ ଶିବଙ୍କ ମାୟାରେ ମୋହିତ ହୋଇ ତାଙ୍କୁ କହିଲେ—

ସତୀ କହିଲେ—ଦେବଦେବ ! ସର୍ବେଶ ! ପରବ୍ରହ୍ମ ! ପରମେଶ୍ୱର ! ବ୍ରହ୍ମା, ବିଷ୍ଣୁ ଆଦି ସମସ୍ତ ଦେବତା ସର୍ବଦା ଆପଣଙ୍କର ସେବା କରନ୍ତି । ଆପଣ ହିଁ ସମସ୍ତଙ୍କ ପାଇଁ ପ୍ରଣମ୍ୟ । ତେଣୁ ସମସ୍ତେ ଆପଣଙ୍କ ସେବା ଓ ଧ୍ୟାନ କରିବା କଥାଟି ସମୀଚୀନ । ଆପଣ ହିଁ ବେଦାନ୍ତ-ଶାସ୍ତ୍ର ଦ୍ୱାରା ଜ୍ଞେୟ ନିର୍ବିକାର ପରମପ୍ରଭୁ । ସ୍ୱାମୀ ! ଏ ଦୁହେଁ କିଏ? ଏମାନଙ୍କ ଆକୃତିରୁ ଜଣା ପଡୁଛି ଯେ, ଏମାନେ ବିରହବ୍ୟଥାରେ ବ୍ୟାକୁଳ । ଏ ଧନୁର୍ଦ୍ଧର ବୀର ଦୁହେଁ ବନରେ ବିଚରଣ କରି ଦୁଃଖଭାଗୀ ହେଉଛନ୍ତି । ଏମାନଙ୍କ ମଧ୍ୟରେ ଯେ ବଡ଼, ତାଙ୍କ ଅଙ୍ଗକାନ୍ତି ନୀଳକମଳ ପରି ଶ୍ୟାମଳ । ତାଙ୍କୁ ଦେଖି ଆପଣ କାହିଁକି ଆନନ୍ଦବିଭୋର ହୋଇ ଉଠିଥିଲେ? ଆପଣଙ୍କ ଚିତ୍ତ କାହିଁକି ଅତ୍ୟନ୍ତ ପ୍ରସନ୍ନ ହୋଇଯାଇଥିଲା? ଆପଣ ସେତେବେଳେ ଭକ୍ତ ପରି ବିନମ୍ର କାହିଁକି ହୋଇ ଯାଇଥିଲେ? ସ୍ୱାମିନ୍ ! କଲ୍ୟାଣକାରୀ ଶିବ ! ଆପଣ ମୋ ସଂଶୟକୁ ଶୁଣନ୍ତୁ । ପ୍ରଭୋ ! ସେବ୍ୟ ସ୍ୱାମୀ ନିଜ ସେବକକୁ ପ୍ରଣାମ କରିବାଟା ତ ମୋତେ ଉଚିତ ମନେ ହେଉ ନାହିଁ!

ବ୍ରହ୍ମା କହୁଛନ୍ତି—ନାରଦ ! କଲ୍ୟାଣମୟୀ ପରମେଶ୍ୱରୀ ଆଦ୍ୟାଶକ୍ତି ସତୀଦେବୀ ଶିବଙ୍କ ମାୟାର ବଶୀଭୂତ ହୋଇ ଏପରି ପ୍ରଶ୍ନ ପଚାରିବାରୁ ଲୀଳାବିଶାରଦ ପରମେଶ୍ୱର ଶିବ ହସି ହସି ତାଙ୍କୁ ନିମ୍ନୋକ୍ତ ଉତ୍ତର ଦେଲେ—

ପରମେଶ୍ୱର କହିଲେ—ହେ ଦେବୀ ! ଶୁଣ । ମୁଁ ପ୍ରସନ୍ନମନା ହୋଇ ଯଥାର୍ଥ କଥାଟି କହୁଛି । ଏଥିରେ ଆଦୌ ଛଳ ନାହିଁ । ବରଦାନ ପ୍ରଭାବରେ ମୁଁ ଏହାଙ୍କୁ ପ୍ରଣାମ କଲି । ପ୍ରିୟେ ! ଏ ଦୁଇଭାଇ ବୀରଙ୍କ ଦ୍ୱାରା ସମ୍ମାନିତ । ଏମାନଙ୍କ ନାମ ହେଲା ଶ୍ରୀରାମ ଓ ଲକ୍ଷ୍ମଣ । ଏମାନଙ୍କ ପ୍ରାକଟ୍ୟ

ହୋଇଛି ସୂର୍ଯ୍ୟବଂଶରେ । ଏ ଦୁହେଁ ରାଜା ଦଶରଥଙ୍କର ବିଦ୍ୱାନ୍ ପୁତ୍ର । ଏ ଦୁଇଭାଇଙ୍କ ମଧ୍ୟରୁ ଯିଏ ଗୋରା, ସେ ସାକ୍ଷାତ୍ ଶେଷଦେବଙ୍କର ଅଂଶ । ତାଙ୍କ ନାମ ଲକ୍ଷ୍ମଣ । ତାଙ୍କ ବଡ଼ଭାଇଙ୍କ ନାମ ଶ୍ରୀରାମ । ଭଗବାନ ବିଷ୍ଣୁ ହିଁ ନିଜର ପୂର୍ଣ୍ଣ ଅଂଶ ଘେନି ଏହାଙ୍କ ରୂପରେ ଅବତରିତ ହୋଇଛନ୍ତି । ଉପଦ୍ରବ ତ ଏହାଙ୍କ ଠାରୁ ବହୁ ଦୂରରେ ରହେ । ଏମାନେ ସାଧୁଜନଙ୍କର ରକ୍ଷା ଓ ଆମମାନଙ୍କ କଲ୍ୟାଣ ପାଇଁ ଏ ପୃଥିବୀପୃଷ୍ଠରେ ଅବତୀର୍ଣ୍ଣ ହୋଇଛନ୍ତି ।

ଏଭଳି କହି ସୃଷ୍ଟିକର୍ତ୍ତା ଭଗବାନ ଶମ୍ଭୁ ଚୁପ୍ ହୋଇଗଲେ । ଶିବଙ୍କ କଥା ଶୁଣି ସତୀଙ୍କୁ ବିଶ୍ୱାସ ହେଲା ନାହିଁ । କାହିଁକି ବା ହୁଅନ୍ତା? ଭଗବାନ ଶିବଙ୍କ ମାୟାଟି ! ସେହି ମାୟା ଅତି ପ୍ରବଳ; ସମଗ୍ର ତ୍ରୈଲୋକ୍ୟକୁ ବି ମୋହରେ ପକାଇ ଦେଇ ପାରେ । ସତୀଙ୍କର ତାଙ୍କ କଥାରେ ବିଶ୍ୱାସ ହେଉ ନାହିଁ ବୋଲି ଜାଣିପାରି ଲୀଳାବିଶାରଦ ଶମ୍ଭୁ କହିଲେ—

ଶିବ କହିଲେ—ହେ ଦେବୀ ! ମୋ କଥା ଶୁଣ । ଯଦି ତୁମର ମୋ କଥାରେ ବିଶ୍ୱାସ ହେଉନି, ତେବେ ତୁମେ ନିଜେ ଯାଇ ତୁମ ବୁଦ୍ଧି ଅନୁସାରେ ପରୀକ୍ଷା କରି ଦେଖିପାର । ପ୍ରିୟା ସତୀ ! ଯାହା କଲେ ତୁମର ମୋହ ବା ଭ୍ରମ ଦୂର ହେବ, ତାହା କରି ଦେଖ । ସେପର୍ଯ୍ୟନ୍ତ ମୁଁ ଏହି ବରଗଛ ମୂଳରେ ଛିଡ଼ା ହୋଇଛି ।

ବ୍ରହ୍ମା କହୁଛନ୍ତି—ନାରଦ ! ଭଗବାନ ଶିବଙ୍କ ଆଜ୍ଞାରେ ଦେବୀ ସତୀ ସେଠାକୁ ଗଲେ । ସେ ମନେ ମନେ ଭାବିଲେ, "ମୁଁ ବନଚାରୀ ରାମଙ୍କର ପରୀକ୍ଷା କେମିତି ନେବି? ହଁ, ମୁଁ ସୀତାଙ୍କ ରୂପ ଧାରଣ କଲେ ଭଲ ହେବ । ଯଦି ରାମ ସାକ୍ଷାତ୍ ବିଷ୍ଣୁ ହୋଇଥିବେ, ତେବେ ତ ସବୁ କିଛି ଜାଣି ପାରିବେ, ଅନ୍ୟଥା ମୋତେ ଚିହ୍ନି ପାରିବେ ନାହିଁ ।" ଏଭଳି ଚିନ୍ତା କରି ସତୀ ସୀତାଙ୍କ ରୂପ ଧାରଣ କରି ପରୀକ୍ଷା ନେବାକୁ ଶ୍ରୀରାମଙ୍କ ସମୀପକୁ ଚାଲିଗଲେ । ବାସ୍ତବରେ ସେ ନିଜେ ମୋହରେ ପଡ଼ିଥିଲେ । ସତୀଙ୍କୁ ସୀତାଙ୍କ ରୂପରେ ନିଜ ଆଡ଼କୁ ଆସୁଥିବା ଦେଖି ଶିବନାମଜପ-ନିରତ ରଘୁକୁଳନନ୍ଦନ ଶ୍ରୀରାମ ସବୁ କିଛି ଜାଣିଗଲେ ଏବଂ ସ୍ମିତହାସପୂର୍ବକ ତାଙ୍କୁ ନମସ୍କାର କରି ଏହିପରି କହିଲେ—

ଶ୍ରୀରାମ ପଚାରିଲେ—ସତୀଦେବୀ ! ଆପଣଙ୍କୁ ନମସ୍କାର । ଭଗବାନ ଶମ୍ଭୁ କୁଆଡ଼େ ଗଲେ? ଆପଣ ତାଙ୍କ ବିନା ଏକାକିନୀ ଏ ବନରେ କ'ଣ କରୁଛନ୍ତି? ହେ ଦେବୀ ! ଆପଣ ନିଜ ରୂପ ତ୍ୟାଗ କରି ଏ ନୂଆ ରୂପ କାହିଁକି ଧାରଣ କରିଛନ୍ତି? ମୋ ଉପରେ ଦୟା କରି ଏହାର କାରଣ କହିବେ କି?

ଶ୍ରୀରାମଚନ୍ଦ୍ରଙ୍କ କଥା ଶୁଣି ସତୀ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେ ଶିବଙ୍କ କଥାକୁ ମନେ ପକାଇ ଓ ଯଥାର୍ଥ କଥାକୁ ବୁଝିପାରି ବହୁତ ଲଜ୍ଜିତ ହେଲେ । ଶ୍ରୀରାମଙ୍କୁ ସାକ୍ଷାତ୍ ବିଷ୍ଣୁ ବୋଲି ଜାଣି ସେ ନିଜ ପ୍ରକୃତ ରୂପରେ ପ୍ରକଟ ହୋଇଗଲେ ଏବଂ ମନେ ମନେ ଶିବଙ୍କ ଚରଣାରବିନ୍ଦକୁ ଚିନ୍ତନ କରି ପ୍ରସନ୍ନଚିତ୍ତରେ କହିଲେ, "ହେ ରଘୁନନ୍ଦନ ! ସ୍ୱତନ୍ତ୍ର ପରମେଶ୍ୱର ଭଗବାନ ଶିବ ମୋତେ ସଙ୍ଗରେ ଧରି ସପାର୍ଷଦ ପୃଥିବୀପୃଷ୍ଠରେ ଭ୍ରମଣ କରୁ କରୁ ଏ ବନରେ ଆସି ପହଞ୍ଚିଥିଲେ । ଏଠାରେ ଲକ୍ଷ୍ମଣ ଓ ତୁମେ ସୀତାଙ୍କୁ ଖୋଜୁଥିବାର ଦେଖିଲେ । ସେତେବେଳେ ସୀତାଙ୍କ ପାଇଁ ତୁମ ମନରେ ବହୁତ କ୍ଳେଶ ଥିଲା ଓ ତୁମେ ବିରହଶୋକରେ ପୀଡ଼ିତ ଥିଲ । ସେହି ଅବସ୍ଥାରେ ସେ ତୁମକୁ ପ୍ରଣାମ କରି ଚାଲିଗଲେ । ସେ ଏବେ ସେଠି ବଟବୃକ୍ଷ ତଳେ ଠିଆ ହୋଇଛନ୍ତି । ଭଗବାନ ଶିବ ଅତି ଆନନ୍ଦମଗ୍ନ ହୋଇ ତୁମ ବୈଷ୍ଣବରୂପର

ଉତ୍କୃଷ୍ଟ ମହିମା ଗାନ କରୁଥିଲେ । ଯଦ୍ୟପି ସେ ତୁମକୁ ଚତୁର୍ଭୁଜ ବିଷ୍ଣୁ ରୂପରେ ଦେଖି ନାହାନ୍ତି, ତଥାପି ତୁମକୁ ଦର୍ଶନ କରିବା ମାତ୍ରେ ସେ ଆନନ୍ଦବିଭୋର ହୋଇଗଲେ । ତୁମ ନିର୍ମଳ ରୂପକୁ ଦେଖି ତାଙ୍କୁ ବଡ଼ ଆନନ୍ଦ ମିଳିଲା । ଏ ବିଷୟରେ ମୁଁ ପଚାରିବାରୁ ଶମ୍ଭୁ ଯାହା କହିଲେ, ତାହା ଶୁଣି ମୋ ମନରେ ଭ୍ରମ ଉତ୍ପନ୍ନ ହୋଇଗଲା । ଏଣୁ ହେ ରାଘବେନ୍ଦ୍ର ! ମୁଁ ତାଙ୍କ ଆଜ୍ଞା ନେଇ ତୁମକୁ ପରୀକ୍ଷା କଲି । ଶ୍ରୀରାମ ! ଏବେ ମୋତେ ଜଣାପଡ଼ିଗଲା ଯେ ତୁମେ ହିଁ ସାକ୍ଷାତ୍ ବିଷ୍ଣୁ । ତୁମର ସମସ୍ତ ପ୍ରଭୁତ୍ୱ ମୁଁ ସ୍ୱୟଂ ନିଜ ଆଖିରେ ଦେଖିଲି । ମୋର ସଂଶୟ ଦୂର ହୋଇଗଲା । ତଥାପି ମୋ କଥା ଶୁଣ । ମୋ ଆଗରେ ତୁମେ ସତ ସତ କୁହ ଯେ ତୁମେ ଭଗବାନ ଶିବଙ୍କର ମଧ୍ୟ ବନ୍ଦନୀୟ କିପରି ହୋଇଗଲ? ମୋ ମନରେ ଏହି ଗୋଟିଏ ସନ୍ଦେହ ରହିଯାଇଛି । ଏହାକୁ ଶୀଘ୍ର ନିବାରଣ କରିଦେଲେ ମୋତେ ଶାନ୍ତି ମିଳିବ ।''

ସତୀଙ୍କ କଥା ଶୁଣି ଶ୍ରୀରାମଙ୍କ ନେତ୍ର ପଦ୍ମ ପରି ପ୍ରଫୁଲ୍ଲିତ ହୋଇଗଲା । ସେ ମନେ ମନେ ତାଙ୍କ ପ୍ରଭୁ ଶିବଙ୍କୁ ସ୍ମରଣ କଲେ । ତାଙ୍କ ହୃଦୟରେ ପ୍ରେମର ପ୍ଲାବନ ଆସିଗଲା । ମୁନେ ! ଆଜ୍ଞା ନ ଥିବାରୁ ସେ ସତୀଙ୍କ ସଙ୍ଗରେ ଶିବଙ୍କ ନିକଟକୁ ଗଲେ ନାହିଁ; କିନ୍ତୁ ମନେ ମନେ ତାଙ୍କର ମହିମା ସ୍ମରଣ କରି ସତୀଙ୍କୁ ଏହିପରି କହିଲେ– (ଅଧ୍ୟାୟ ୨୪)



## ଗୋଲୋକଧାମରେ ଶିବଙ୍କ ଦ୍ୱାରା ବିଷ୍ଣୁଙ୍କର ଗୋପେଶ ପଦରେ ଅଭିଷେକ, ଶ୍ରୀରାମ ନିଜ ପ୍ରତି ପ୍ରଣାମର ରହସ୍ୟ ବ୍ୟକ୍ତ କରିବାରୁ ସତୀଙ୍କର ସନ୍ଦେହ ମୋଚନ ଏବଂ ଶିବ ସତୀଙ୍କୁ ମାନସିକରୂପେ ତ୍ୟାଗ କରିବା ପ୍ରସଙ୍ଗ

ଶ୍ରୀରାମ କହିଲେ–ହେ ଦେବୀ ! ପ୍ରାଚୀନ କାଳରେ ଥରେ ପରମସ୍ରଷ୍ଟା ଭଗବାନ ଶମ୍ଭୁ ତାଙ୍କର ପରାତ୍ପର ଧାମରେ ବିଶ୍ୱକର୍ମାଙ୍କୁ ଡାକି ତାଙ୍କ ଦ୍ୱାରା ନିଜ ଗୋଶାଳାରେ ଏକ ରମଣୀୟ ଭବନ ନିର୍ମାଣ କରାଇଥିଲେ । ତାହା ଆକାରରେ ବହୁତ ବିସ୍ତୃତ ଥିଲା । ସେଥିରେ ସେ ଗୋଟିଏ ଶ୍ରେଷ୍ଠ ସିଂହାସନ ମଧ୍ୟ ନିର୍ମାଣ କରାଇଥିଲେ । ତା' ଉପରେ ଶିବ ଗୋଟିଏ ଦିବ୍ୟ, ଅଦ୍ଭୁତ ଓ ପରମୋତ୍ତମ ଛତ୍ର ତିଆରି କରାଇଥିଲେ । ତା'ପରେ ସେ ଇନ୍ଦ୍ରାଦି ଦେବତା, ସିଦ୍ଧ, ଗନ୍ଧର୍ବ, ନାଗ ଓ ସମସ୍ତ ଉପଦେବତାଙ୍କୁ ସେଠାକୁ ଡକାଇଲେ । ସମସ୍ତ ବେଦଗଣଙ୍କୁ, ଆଗମଙ୍କୁ, ପୁତ୍ରଗଣଙ୍କ ସହ ବ୍ରହ୍ମାଙ୍କୁ, ମୁନିଗଣଙ୍କୁ ଏବଂ ଅପ୍ସରା ସହିତ ସମସ୍ତ ଦେବୀମାନଙ୍କୁ ଆମନ୍ତ୍ରିତ କଲେ । ସେମାନେ ସମସ୍ତେ ଅନେକ ଉପହାର ବସ୍ତୁ ନେଇ ଆସିଥିଲେ । ଏମାନଙ୍କ ଛଡ଼ା ଦେବତା, ଋଷି, ସିଦ୍ଧ ଓ ନାଗମାନଙ୍କର ଷୋହଳ ଷୋହଳ କନ୍ୟାଙ୍କୁ ମଧ୍ୟ ଡକାଇଥିଲେ, ସେମାନେ ହାତରେ ନାନା ପ୍ରକାର ମାଙ୍ଗଳିକ ବସ୍ତୁ ଘେନି ଆସିଥିଲେ । ମୁନେ ! ବୀଣା, ମୃଦଙ୍ଗ ପ୍ରଭୃତି ନାନା ପ୍ରକାର ବାଦ୍ୟନାଦ ତଥା ସୁନ୍ଦର ସୁନ୍ଦର ଗୀତ ଦ୍ୱାରା ପ୍ରଭୁ ମହାନ୍ ଉତ୍ସବ କରାଇଲେ । ସମସ୍ତ ପ୍ରକାର ଓଷଧି ତଥା ରାଜ୍ୟାଭିଷେକ ଦ୍ରବ୍ୟ ସଂଗ୍ରହ କରାଯାଇଥିଲା, ତୀର୍ଥଜଳପୂର୍ଣ୍ଣ କଳସ ମଧ୍ୟ ଅଣାଯାଇଥିଲା । ଆହୁରି ମଧ୍ୟ ଅନେକ ସାମଗ୍ରୀ ଭଗବାନ ଶିବ ତାଙ୍କ ପାର୍ଷଦଙ୍କ ଦ୍ୱାରା ମଗାଇ ବେଦମନ୍ତ୍ରାଦିର ଉଦ୍‌ଘୋଷପୂର୍ବକ ସେହି ଉତ୍ସବ କରାଇଥିଲେ ।

ହେ ଦେବୀ ! ଭଗବାନ ବିଷ୍ଣୁଙ୍କ ଅତ୍ୟୁତ୍ତମ ଭକ୍ତିରେ ମହେଶ୍ୱର ସଦା ପ୍ରସନ୍ନ ରହୁଥିଲେ । ସେଥିପାଇଁ ସେ ପ୍ରୀତିପୂର୍ଣ୍ଣ ହୃଦୟରେ ଶ୍ରୀହରିଙ୍କୁ ବୈକୁଣ୍ଠରୁ ଆମନ୍ତ୍ରିତ କଲେ ଏବଂ ଶୁଭ ମୁହୂର୍ତ୍ତରେ ଶ୍ରୀହରିଙ୍କୁ ସେହି ସିଂହାସନରେ ବିରାଜମାନ କରାଇ ମହାଦେବ ସ୍ୱୟଂ ତାଙ୍କୁ ଆନନ୍ଦରେ ସବୁପ୍ରକାର ଆଭୂଷଣରେ ମଣ୍ଡିତ କଲେ । ତାଙ୍କ ମସ୍ତକରେ ମନୋହର ମୁକୁଟ ବନ୍ଧାଗଲା, ତାଙ୍କ ଦ୍ୱାରା ମଙ୍ଗଳ କୌତୁକ କରାଗଲା । ଏସବୁ ହେଲା ପରେ ମହେଶ୍ୱର ସ୍ୱୟଂ ବ୍ରହ୍ମାଣ୍ଡମଣ୍ଡପରେ ଶ୍ରୀହରିଙ୍କର ଅଭିଷେକ କଲେ ଓ ତାଙ୍କୁ ନିଜର ସେହି ସମସ୍ତ ଐଶ୍ୱର୍ଯ୍ୟ ପ୍ରଦାନ କଲେ, ଯାହା ଅନ୍ୟ କାହାରି ପାଖରେ ନ ଥିଲା । ତା'ପରେ ସ୍ୱତନ୍ତ୍ର ଈଶ୍ୱର ଭକ୍ତବତ୍ସଳ ଶମ୍ଭୁ ଶ୍ରୀହରିଙ୍କୁ ସ୍ତୁତି କଲେ ଓ ନିଜ ପରାଧୀନତା ବା ଭକ୍ତପରବଶତାକୁ ସର୍ବତ୍ର ପ୍ରସିଦ୍ଧ କରିବାକୁ ଯାଇ ବ୍ରହ୍ମାଙ୍କୁ ଏହିପରି କହିଲେ—

ମହେଶ୍ୱର କହିଲେ—ଲୋକେଶ ! ଆଜିଠାରୁ ମୋ ଆଜ୍ଞାନୁସାରେ ଏହି ବିଷ୍ଣୁ ହରି ସ୍ୱୟଂ ମୋର ବନ୍ଦନୀୟ ହୋଇଗଲେ । ଏ କଥାକୁ ସମସ୍ତେ ଶୁଣନ୍ତୁ । ତାତ ! ତୁମେ ସମସ୍ତ ଦେବତା ପ୍ରଭୃତିଙ୍କ ସହିତ ଏ ଶ୍ରୀହରିଙ୍କୁ ପ୍ରଣାମ କର ଓ ବେଦମାନେ ମୋ ଆଜ୍ଞାରେ ମୋରି ପରି ଏହାଙ୍କ ବିଷୟରେ ମଧ୍ୟ ବର୍ଣ୍ଣନା କରନ୍ତୁ ।

ଶ୍ରୀରାମଚନ୍ଦ୍ର କହୁଛନ୍ତି—ହେ ଦେବୀ! ଭଗବାନ ବିଷ୍ଣୁଙ୍କ ଶିବଭକ୍ତି ଦେଖି ଭକ୍ତବତ୍ସଳ ରୁଦ୍ରଦେବ ପ୍ରସନ୍ନଚିତ୍ତରେ ଉପରୋକ୍ତ କଥା କହି ସ୍ୱୟଂ ଶ୍ରୀଗରୁଡ଼ଧ୍ୱଜ ବିଷ୍ଣୁଙ୍କୁ ପ୍ରଣାମ କଲେ । ତା'ପରେ ବ୍ରହ୍ମାଦି ଦେବଗଣ, ମୁନିଗଣ ଓ ସିଦ୍ଧଗଣ ପ୍ରଭୃତି ଶ୍ରୀହରିଙ୍କୁ ବନ୍ଦନା କଲେ । ଏହାପରେ ମହେଶ୍ୱର ଅତ୍ୟନ୍ତ ପ୍ରସନ୍ନ ହୋଇ ଦେବଗଣଙ୍କ ସମକ୍ଷରେ ଶ୍ରୀହରିଙ୍କୁ ବଡ଼ ବଡ଼ ବର ପ୍ରଦାନ କଲେ ।

ମହେଶ କହିଲେ—ହରେ ! ତୁମେ ମୋ ଆଜ୍ଞାରେ ସମସ୍ତ ଭୁବନର କର୍ତ୍ତା, ପାଳକ ଓ ସଂହାରକ ହୁଅ; ଧର୍ମ, ଅର୍ଥ ଓ କାମର ପ୍ରଦାତା ଏବଂ ଅନ୍ୟାୟକାରୀ ଦୁଷ୍ଟଙ୍କର ଦଣ୍ଡବିଧାନକାରୀ ହୁଅ । ତୁମେ ମହାନ୍ ବଳ-ପରାକ୍ରମସମ୍ପନ୍ନ, ଜଗତ୍‌ପୂଜ୍ୟ ଜଗଦୀଶ୍ୱର ହୁଅ । ସମରାଙ୍ଗଣରେ ତୁମକୁ କେହି ହେଲେ ଜିଣି ପାରିବେ ନାହିଁ । ମୋଠାରୁ ମଧ୍ୟ ତୁମେ କଦାପି ପରାଜିତ ହେବ ନାହିଁ । ତୁମେ ମୁଁ ଦେଉଥିବା ଏ ତିନି ପ୍ରକାର ଶକ୍ତି ଗ୍ରହଣ କର । ଗୋଟିଏ ହେଲା ଇଚ୍ଛା-ସିଦ୍ଧି ଶକ୍ତି, ଦ୍ୱିତୀୟଟି ନାନା ପ୍ରକାର ଲୀଳା ପ୍ରକଟ କରିବା ଶକ୍ତି, ତୃତୀୟଟି ତ୍ରିଲୋକରେ ନିତ୍ୟ ସ୍ୱତନ୍ତ୍ରତା । ହରେ ! ଯେଉଁମାନେ ତୁମ ପ୍ରତି ଦ୍ୱେଷ କରିବେ, ସେମାନେ ନିଶ୍ଚୟ ମୋଦ୍ୱାରା ଦଣ୍ଡନୀୟ ହେବେ । ବିଷ୍ଣୋ ! ମୁଁ ତୁମ ଭକ୍ତଙ୍କୁ ଉତ୍ତମ ମୋକ୍ଷ ପ୍ରଦାନ କରିବି । ତୁମେ ଏ ମାୟାକୁ ମଧ୍ୟ ଗ୍ରହଣ କର, ଯାହାର ନିବାରଣ କରିବା ଦେବତା ପ୍ରଭୃତିଙ୍କ ପାଇଁ କଠିନ ହେବ ତଥା ଯେଉଁଥିରେ ମୋହିତ ହୋଇ ଏ ବିଶ୍ୱ ଜଡ଼ବତ୍ ହୋଇଯିବ । ହରେ ! ତୁମେ ମୋର ବାମ ବାହୁ ହୁଅ ଓ ବିଧାତା ଡାହାଣ ବାହୁ ହୁଅନ୍ତୁ । ତୁମେ ଏ ବିଧାତାଙ୍କର ମଧ୍ୟ ଉତ୍ପାଦକ ଓ ପାଳକ ହେବ । ମୋର ହୃଦୟରୂପ ରୁଦ୍ର ମୁଁ ହିଁ ଅଟେ, ଏଥିରେ ସଂଶୟ ନାହିଁ । ସେହି ରୁଦ୍ର ତୁମର ଓ ବ୍ରହ୍ମା ଆଦି ଦେବତାଙ୍କର ମଧ୍ୟ ନିଶ୍ଚୟ ପୂଜ୍ୟ । ତୁମେ ଏଠାରେ ରହି ବିଶେଷରୂପେ ସମଗ୍ର ଜଗତକୁ ପାଳନ କର । ନାନା ପ୍ରକାର ଲୀଳାମୟ ଅବତାର ଦ୍ୱାରା ସଦା ସମସ୍ତଙ୍କୁ ରକ୍ଷା କରୁଥାଅ । ମୋର ଚିନ୍ମୟଧାମରେ ତୁମର ଏହି ପରମ ବୈଭବଶାଳୀ ଓ ଅତ୍ୟନ୍ତ ଉଜ୍ଜ୍ୱଳ ସ୍ଥାନ ହିଁ ଗୋଲୋକ ନାମରେ ବିଖ୍ୟାତ ହେବ । ହରେ ! ଭୂତଳରେ ତୁମର ଯେତେ ଅବତାର ହେବେ, ସେମାନେ ସମସ୍ତଙ୍କର ରକ୍ଷକ ଓ ମୋର ଭକ୍ତ

ହେବେ । ମୁଁ ସେମାନଙ୍କୁ ଅବଶ୍ୟ ଦର୍ଶନ କରିବି । ସେମାନେ ମୋ ବରରେ ସଦା ପ୍ରସନ୍ନ ରହିବେ ।

ଶ୍ରୀରାମଚନ୍ଦ୍ର କହୁଛନ୍ତି–ହେ ଦେବୀ ! ଏହିରୂପେ ଶ୍ରୀହରିଙ୍କୁ ଆପଣା ଅଖଣ୍ଡ ଐଶ୍ୱର୍ଯ୍ୟ ସମର୍ପି ଦେଇ ଉମାବଲ୍ଲଭ ଭଗବାନ ହର ସ୍ୱୟଂ କୈଳାସ ପର୍ବତ ଉପରେ ରହି ନିଜ ପାର୍ଷଦଗଣଙ୍କ ସହିତ ସ୍ୱଚ୍ଛନ୍ଦରେ କ୍ରୀଡ଼ା କରୁଛନ୍ତି । ସେହିଦିନ ଠାରୁ ଭଗବାନ ଲକ୍ଷ୍ମୀପତି ସେଠାକୁ ଆସିଲେ ଏବଂ ଗୋପ ବେଶ ଧାରଣ କରି ଗୋପ-ଗୋପୀ ତଥା ଗୋବଂଶର ଅଧିପତି ହୋଇ ଅତ୍ୟନ୍ତ ପ୍ରସନ୍ନତାର ସହିତ ସେଠାରେ (ଗୋଲୋକରେ) ରହିଲେ । ଶ୍ରୀବିଷ୍ଣୁ ପ୍ରସନ୍ନଚିତ୍ତରେ ସମଗ୍ର ଜଗତର ରକ୍ଷା କଲେ । ସେ ଶିବଙ୍କ ଆଜ୍ଞାରେ ନାନା ପ୍ରକାର ଅବତାର ଗ୍ରହଣ କରି ଜଗତର ପାଳନ କରନ୍ତି । ଏବେ ସେହି ଶ୍ରୀହରି ହିଁ ଭଗବାନ ଶଙ୍କରଙ୍କ ଆଜ୍ଞାରେ ଆମ ଚାରିଭାଇଙ୍କ ରୂପରେ ଅବତୀର୍ଣ୍ଣ ହୋଇଛନ୍ତି । ସେମାନଙ୍କ ଭିତରେ ମୁଁ ରାମ ହେଉଛି ବଡ଼ । ମୋ ତଳେ ଭରତ, ତା' ତଳକୁ ଲକ୍ଷ୍ମଣ ଏବଂ ଚତୁର୍ଥ ଭାଇ ଶତ୍ରୁଘ୍ନ । ହେ ଦେବୀ ! ମୁଁ ପିତାଙ୍କ ଆଜ୍ଞାରେ ସୀତା ଓ ଲକ୍ଷ୍ମଣଙ୍କ ସହିତ ବନକୁ ଆସିଥିଲି । ଏଠାରେ କୌଣସି ନିଶାଚର ମୋ ପତ୍ନୀ ସୀତାକୁ ହରଣ କରିନେଇଛି ଏବଂ ମୁଁ ବିରହୀ ହୋଇ ସାନଭାଇ ସହିତ ଏ ବନରେ ମୋ ପ୍ରିୟାର ଅନ୍ୱେଷଣ କରୁଛି । ଏବେ ଯେହେତୁ ଆପଣଙ୍କର ଦର୍ଶନ ମିଳିଗଲାଣି, ଏଣିକି ସବୁ କିଛି କୁଶଳ-ମଙ୍ଗଳ ହେବ । ମାତା ସତୀ ! ଆପଣଙ୍କ କୃପାରୁ ଏହା ହେବାରେ କିଛି ସନ୍ଦେହ ନାହିଁ । ହେ ଦେବୀ ! ଆପଣଙ୍କ ଦର୍ଶନ ହିଁ ମୋ ପାଇଁ ସୀତାଙ୍କୁ ପାଇବାରେ ବରସ୍ୱରୂପ ହେବ । ଆପଣଙ୍କ ଅନୁଗ୍ରହରୁ ସେହି ଦୁଃଖଦାୟୀ ପାପୀ ରାକ୍ଷସକୁ ମାରି ମୁଁ ନିଶ୍ଚୟ ସୀତାକୁ ପାଇ ପାରିବି । ଆଜି ମୋର ପରମ ସୌଭାଗ୍ୟ, ଆପଣ ତୁହେଁ ମୋ ଉପରେ କୃପା କଲେ । ଯାହା ପ୍ରତି ଆପଣ ତୁହେଁ ଦୟାଳୁ ହେବେ, ସେ ପରମ ଧନ୍ୟ ଓ ଶ୍ରେଷ୍ଠ ।

ଏଭଳି ଅନେକ କଥା କହି ରଘୁକୁଳମଣି ଶ୍ରୀରାମ କଲ୍ୟାଣମୟୀ ସତୀଦେବୀଙ୍କୁ ପ୍ରଣାମ କଲେ ଏବଂ ତାଙ୍କ ଆଜ୍ଞା ନେଇ ପୂର୍ବବତ୍ ବନରେ ବିଚରଣ କରିବାକୁ ଲାଗିଲେ । ପବିତ୍ରହୃଦୟ ଶ୍ରୀରାମଙ୍କ କଥା ଶୁଣି ସତୀ ମନେ ମନେ ଶିବଭକ୍ତିପରାୟଣ ରଘୁନାଥଙ୍କୁ ପ୍ରଶଂସା କରି ଅତି ପ୍ରସନ୍ନ ହେଲେ । ମାତ୍ର ତାଙ୍କ ମନରେ ନିଜ କୃତ୍ୟ ପାଇଁ ବହୁତ ଶୋକ ମଧ୍ୟ ହେଲା । ତାଙ୍କ ଅଙ୍ଗକାନ୍ତି ମଉଳିଗଲା । ସେ ଦୁଃଖିତ ମନରେ ଶିବଙ୍କ ପାଖକୁ ଫେରିଗଲେ । ମାର୍ଗରେ ଯାଉଥିବା ବେଳେ ଦେବୀ ସତୀ ବାରମ୍ବାର ଅନୁତାପରେ ଭାବୁଥାନ୍ତି–ମୁଁ ଭଗବାନ ଶିବଙ୍କ କଥା ମାନିଲି ନାହିଁ ଓ ଶ୍ରୀରାମଙ୍କ ପ୍ରତି କୁତ୍ସିତ ବୁଦ୍ଧି କଲି । ଏବେ ସ୍ୱାମୀଙ୍କ ପାଖକୁ ଯାଇ ତାଙ୍କୁ କି ଉତ୍ତର ଦେବି? ଏଭଳି ଭାବି ତାଙ୍କ ମନରେ ଘୋର ଅନୁତାପ ହେଲା । ଶିବଙ୍କ ସମୀପକୁ ଯାଇ ସତୀ ତାଙ୍କୁ ମନେ ମନେ ପ୍ରଣାମ କଲେ । ତାଙ୍କ ମୁଖମଣ୍ଡଳରେ ବିଷାଦର ଛାୟା ଖେଳି ଯାଇଥିଲା । ସେ ଶୋକରେ ବ୍ୟାକୁଳ ଓ ନିସ୍ତେଜ ଦିଶୁଥିଲେ । ସତୀଙ୍କୁ ଦୁଃଖିତ ଦେଖି ଭଗବାନ ହର ତାଙ୍କୁ କୁଶଳ ବାର୍ତ୍ତା ପଚାରି ପ୍ରେମପୂର୍ବକ କହିଲେ–"ତୁମେ କେଉଁ ଉପାୟରେ ପରୀକ୍ଷା ନେଲ?" ତାଙ୍କ କଥା ଶୁଣି ସତୀ ମଥା ଅବନତ କରି ତାଙ୍କ ନିକଟରେ ନୀରବରେ ଠିଆ ହୋଇରହିଲେ । ତାଙ୍କ ମନ ଶୋକ ଓ ବିଷାଦରେ ନିମଗ୍ନ ଥିଲା । ଭଗବାନ ମହେଶ୍ୱର ଧ୍ୟାନରେ ସତୀଙ୍କର ସମସ୍ତ କୃତ୍ୟ ବିଷୟରେ ଜାଣିଗଲେ ଓ ତାଙ୍କୁ ମନେ ମନେ ତ୍ୟାଗ କରିଦେଲେ ।

ବେଦଧର୍ମର ପ୍ରତିପାଳକ ମହେଶ୍ୱର ତାଙ୍କର ପୂର୍ବ ପ୍ରତିଜ୍ଞାକୁ ଭଙ୍ଗ କଲେ ନାହିଁ । ସତୀଙ୍କୁ ମନରୁ ତ୍ୟାଗ କରି ସେ ତାଙ୍କର ନିବାସ କୈଳାସକୁ ଗ୍ଭଲିଗଲେ । ମାର୍ଗରେ ମହେଶ୍ୱର ଓ ସତୀଙ୍କୁ ଶୁଭିଲା ଭଳି ଶୂନ୍ୟବାଣୀ ହେଲା–"ହେ ପରମେଶ୍ୱର ! ତୁମେ ଧନ୍ୟ ଆଉ ତୁମର ପ୍ରତିଜ୍ଞା ମଧ୍ୟ ଧନ୍ୟ । ତ୍ରିଲୋକରେ ତୁମ ପରି ମହାଯୋଗୀ ଓ ମହାପ୍ରଭୁ ଆଉ କେହି ହେବ ନାହିଁ ।"

ସେହି ଆକାଶବାଣୀକୁ ଶୁଣି ଦେବୀ ସତୀଙ୍କ କାନ୍ତି ଆହୁରି ମ୍ଳାନ ହୋଇଗଲା । ସେ ଶିବଙ୍କୁ ପଗ୍ଭରିଲେ "ସ୍ୱାମୀ ! ମୋ ପରମେଶ୍ୱର ! ଆପଣ କ'ଣ ପ୍ରତିଜ୍ଞା କରିଥିଲେ?" ସତୀଙ୍କ ପ୍ରଶ୍ନ ଶୁଣି ମଧ୍ୟ ତାଙ୍କର ହିତ ଦୃଷ୍ଟିରୁ, ବିବାହ ପୂର୍ବରୁ ସେ ଭଗବାନ ବିଷ୍ଣୁଙ୍କ ସମ୍ମୁଖରେ କରିଥିବା ପ୍ରତିଜ୍ଞା କଥା କହିଲେ ନାହିଁ । ମୁନେ ! ସେତେବେଳେ ସତୀ ତାଙ୍କର ପ୍ରାଣବଲ୍ଲଭ ଶିବଙ୍କୁ ଧ୍ୟାନ କରି ସେହି ସମସ୍ତ କାରଣ ଜାଣିଗଲେ, ଯେଉଁ କାରଣରୁ ତାଙ୍କ ପ୍ରିୟତମ ତାଙ୍କୁ ତ୍ୟାଗ କରିଦେଇଥିଲେ । ଶମ୍ଭୁ ତାଙ୍କୁ ତ୍ୟାଗ କରିଦେଇଛନ୍ତି ବୋଲି ଜାଣି ଦକ୍ଷକନ୍ୟା ସତୀ ଅତ୍ୟନ୍ତ ଶୋକାକୁଳ ହୋଇଗଲେ ଓ ବାରମ୍ବାର ଅଶ୍ରୁ ଝରାଇ କାନ୍ଦିବାକୁ ଲାଗିଲେ । ସତୀଙ୍କ ମନୋଭାବକୁ ଜାଣି ଶିବ ତାଙ୍କ ପାଇଁ ଯେଉଁ ପ୍ରତିଜ୍ଞା କରିଥିଲେ, ତାହାକୁ ଗୁପ୍ତ ରଖିଲେ ଏବଂ ଅନ୍ୟାନ୍ୟ ବିଭିନ୍ନ ପ୍ରକାର ଚର୍ଚ୍ଚା କଲେ । ନାନା ପ୍ରକାର କଥା କହି କହି ସେ ସତୀଙ୍କ ସଙ୍ଗରେ ଯାଇ କୈଳାସରେ ପହଞ୍ଚିଲେ ଓ ଶ୍ରେଷ୍ଠ ଆସନରେ ବସି ଚିତ୍ତବୃତ୍ତି-ନିରୋଧପୂର୍ବକ ସମାଧିସ୍ଥ ହୋଇ ନିଜ ସ୍ୱରୂପର ଧ୍ୟାନରେ ନିମଗ୍ନ ହୋଇଗଲେ । ସତୀ ଅତ୍ୟନ୍ତ ବିଷାଦଗ୍ରସ୍ତ ମନରେ ସେହିଠାରେ ରହିଲେ । ମୁନେ ! ଶିବା ଓ ଶିବଙ୍କର ସେହି ଚରିତକୁ କେହି ଜାଣି ନ ଥିଲେ । ମହାମୁନେ ! ସ୍ୱେଚ୍ଛାରେ ଶରୀର ଧାରଣ କରି ଲୋକଲୀଳାର ଅନୁସରଣ କରୁଥିବା ସେ ଦୁହିଙ୍କୁ ସେଠାରେ ରହୁ ରହୁ ବହୁତ ବର୍ଷ ବିତିଗଲା । ସମୟକ୍ରମେ ଲୀଳାପ୍ରବୀଣ ମହାଦେବଙ୍କର ଧ୍ୟାନ ଭାଙ୍ଗିଲା । ଏହା ଜାଣି ସତୀ ତାଙ୍କ ପାଖକୁ ଆସିଲେ ଏବଂ ବ୍ୟଥିତ ହୃଦୟରେ ଶିବଙ୍କ ଚରଣରେ ପ୍ରଣାମ କଲେ । ଉଦାରଚେତା ପ୍ରଭୁ ତାଙ୍କୁ ନିଜ ସମ୍ମୁଖରେ ବସିବାକୁ ଆସନ ଦେଲେ



ଏବଂ ଅତି ସ୍ନେହରେ ବହୁତ ପ୍ରକାର ମନୋରମ କଥା କହିଲେ । ସେ ଏଭଳି ଲୀଳା କରି ସତୀଙ୍କ ଶୋକକୁ ଅବିଳମ୍ବେ ଦୂର କରିଦେଲେ । ସତୀ ପୂର୍ବବତ୍ ସୁଖୀ ହୋଇଗଲେ । ଏହା ସତ୍ତ୍ୱେ ଶିବ ତାଙ୍କର ପ୍ରତିଜ୍ଞା ଭାଙ୍ଗିଲେ ନାହିଁ । ତାତ ! ପରମେଶ୍ୱର ଶିବଙ୍କ ବିଷୟରେ ଏହା କିଛି ଆଶ୍ଚର୍ଯ୍ୟର କଥା ନୁହେଁ । ମୁନେ ! ମୁନିମାନେ ଶିବ ଓ ଶିବାଙ୍କ ବିଷୟରେ ଏହି କଥା କହିଥାନ୍ତି । କେତେକ ଲୋକ ସେ ଦୁହିଙ୍କ ଭିତରେ ବିୟୋଗ ହୋଇଥିଲା ବୋଲି କହିଥାନ୍ତି । ମାତ୍ର ସେ ଦୁହିଙ୍କ ଭିତରେ ବିୟୋଗ କ'ଣ ସମ୍ଭବ? ଶିବା ଓ ଶିବଙ୍କ

ଚରିତ୍ରକୁ ଯଥାର୍ଥ ରୂପରେ ଜାଣିବାକୁ କିଏ ଅବା ସମର୍ଥ ହୋଇପାରିବ ! ସେ ଦୁହେଁ ନିଜ ଇଚ୍ଛାରେ କ୍ରୀଡ଼ା କରନ୍ତି ଓ ନାନା ପ୍ରକାର ଲୀଳା କରନ୍ତି । ବାଣୀ ଓ ତାହାର ଅର୍ଥ ପରି ସତୀ ଓ ଶିବ ପରସ୍ପର ସଙ୍ଗେ ନିତ୍ୟ ସଂଯୁକ୍ତ ଅଟନ୍ତି । ସେମାନଙ୍କ ଭିତରେ ବିୟୋଗ ଅସମ୍ଭବ । ସେମାନଙ୍କର ସ୍ୱେଚ୍ଛାରେ ହିଁ ଲୀଳା-ବିୟୋଗ ହୋଇପାରେ ।*

(ଅଧ୍ୟାୟ ୨୫)



## ପ୍ରୟାଗରେ ସମସ୍ତ ମହାତ୍ମା ମୁନିଗଣଙ୍କ ଦ୍ୱାରା ଅନୁଷ୍ଠିତ ଯଜ୍ଞରେ ଦକ୍ଷଙ୍କର ଶିବଙ୍କୁ ତିରସ୍କାର ଓ ଅଭିଶାପ, ନନ୍ଦୀଙ୍କର ବ୍ରାହ୍ମଣକୁଳକୁ ଅଭିଶାପ ଏବଂ ନନ୍ଦୀଙ୍କୁ ଶିବ ଶାନ୍ତ କରିବା ପ୍ରସଙ୍ଗ

ବ୍ରହ୍ମା କହୁଛନ୍ତି—ନାରଦ ! ପୂର୍ବକାଳରେ ସମସ୍ତ ମହାତ୍ମା ମୁନି ପ୍ରୟାଗରେ ଏକତ୍ର ହୋଇଥିଲେ । ସେଠାରେ ସମ୍ମିଳିତ ସେହି ମହାତ୍ମାମାନେ ବିଧିବିଧାନରେ ଗୋଟିଏ ବହୁତ ବଡ଼ ଯଜ୍ଞ କଲେ । ସେହି ଯଜ୍ଞରେ ସନକାଦି ସିଦ୍ଧଗଣ, ଦେବର୍ଷି, ପ୍ରଜାପତି, ଦେବତା ଓ ତତ୍ତ୍ୱଦର୍ଶୀ ଜ୍ଞାନୀମାନେ ଯୋଗ ଦେଇଥିଲେ । ମୁଁ ମଧ୍ୟ ମୂର୍ତ୍ତିମାନ ମହାତେଜସ୍ୱୀ ନିଗମ ଓ ଆଗମମାନଙ୍କ ସହିତ ସପରିବାର ସେଠାକୁ ଯାଇଥିଲି । ଅନେକ ପ୍ରକାର ବିଚିତ୍ର ସମାଜ ସେହି ଉତ୍ସବରେ ଏକତ୍ର ହୋଇଥିଲେ । ନାନା ଶାସ୍ତ୍ର ସମ୍ବନ୍ଧରେ ସେଠାରେ ଜ୍ଞାନଚର୍ଚ୍ଚା ଓ ବାଦ-ବିବାଦ ହେଉଥିଲା । ମୁନେ ! ସେହି ଅବସରରେ ସତୀ ଏବଂ ପାର୍ଷଦଙ୍କ ସହିତ ତ୍ରିଲୋକହିତକାରୀ ସୃଷ୍ଟିକର୍ତ୍ତା ତଥା ସମସ୍ତଙ୍କର ସ୍ୱାମୀ ରୁଦ୍ର ସେଠାରେ ପହଞ୍ଚିଲେ । ଶିବଙ୍କ ଆଗମନ ଦେଖି ସକଳ ଦେବତା, ସିଦ୍ଧ, ମୁନି ଓ ମୁଁ—ଆମେ ସମସ୍ତେ ଭକ୍ତିଭାବରେ ତାଙ୍କୁ ପ୍ରଣାମ କଲୁ ଓ ସ୍ତୁତି କଲୁ । ତା'ପରେ ଶିବଙ୍କ ଆଜ୍ଞା ପାଇ ସମସ୍ତେ ନିଜ ନିଜ ସ୍ଥାନରେ ବସିଗଲୁ । ଭଗବାନଙ୍କ ଦର୍ଶନ ପାଇ ସମସ୍ତେ ସନ୍ତୁଷ୍ଟ ଥିଲେ ଓ ନିଜ ଭାଗ୍ୟର ପ୍ରଶଂସା କରୁଥିଲେ । ଇତିମଧ୍ୟରେ ପ୍ରଜାପତିଙ୍କ ସ୍ୱାମୀ ଦକ୍ଷ ଅକସ୍ମାତ୍ ଭ୍ରମଣ କରୁ କରୁ ପ୍ରସନ୍ନତାପୂର୍ବକ ସେଠାରେ ପହଞ୍ଚିଗଲେ । ସେ ବଡ଼ ତେଜସ୍ୱୀ ଥିଲେ । ସେ ମୋତେ ପ୍ରଣାମ କରିସାରି ମୋ ଆଜ୍ଞାରେ ନିଜ ଆସନରେ ବସିଲେ । ଦକ୍ଷଙ୍କୁ ସେତେବେଳେ ସମସ୍ତ ବ୍ରହ୍ମାଣ୍ଡର ଅଧିପତି କରାଯାଇଥିଲା, ତେଣୁ ସେ ସମସ୍ତଙ୍କ ପାଇଁ ସମ୍ମାନନୀୟ ଥିଲେ । ମାତ୍ର ଏହି ଗୌରବପୂର୍ଣ୍ଣ ପଦବୀ ପାଇଁ ତାଙ୍କ ମନରେ ଖୁବ୍ ଅହଂକାର ଆସିଯାଇଥିଲା; କାରଣ ସେ ତତ୍ତ୍ୱଜ୍ଞାନଶୂନ୍ୟ ଥିଲେ । ସେତେବେଳେ ସମସ୍ତ ଦେବର୍ଷି ନତମସ୍ତକ ହୋଇ ସ୍ତୁତି ଓ ପ୍ରଣାମ ଦ୍ୱାରା ତେଜସ୍ୱୀ ଦକ୍ଷଙ୍କୁ ସମ୍ମାନିତ କଲେ । ମାତ୍ର ନାନା-ଲୀଳାବିହାର-ପରାୟଣ, ସବୁରି ସ୍ୱାମୀ, ସ୍ୱତନ୍ତ୍ର ପରମେଶ୍ୱର ମହେଶ୍ୱର ଦକ୍ଷଙ୍କ ଆଗରେ ମଥା ଅବନତ କଲେ ନାହିଁ । ସେ ନିଜ ଆସନରେ ବସି ରହିଲେ (ଛିଡ଼ା ହୋଇ ଦକ୍ଷଙ୍କୁ ସ୍ୱାଗତ କଲେ ନାହିଁ) । ମହାଦେବଙ୍କୁ ମସ୍ତକ ଅବନତ ନ କରିବା ଦେଖି ମୋ ପୁତ୍ର ପ୍ରଜାପତି ଦକ୍ଷ ମନେ ମନେ ଅପ୍ରସନ୍ନ ହୋଇଗଲେ । ତାଙ୍କର ରୁଦ୍ରଙ୍କ ଉପରେ ଅକସ୍ମାତ୍ କ୍ରୋଧ ଆସିଗଲା । ସେ ଜ୍ଞାନଶୂନ୍ୟ ତଥା ଭୀଷଣ ଅହଂକାରୀ ହୋଇଥିବାରୁ ମହାପ୍ରଭୁ ରୁଦ୍ରଙ୍କୁ କ୍ରୂର ଦୃଷ୍ଟିରେ ଚାହିଁ

* ବାଗର୍ଥାବିବ ସମ୍ପୃକ୍ତୌ ସଦା ଖଲୁ ସତୀଶିବୌ । ତୟୋର୍ବିୟୋଗୋଽସମ୍ଭାବ୍ୟଃ ସମ୍ଭେବେଦିଚ୍ଛୟା ତୟୋଃ ॥

(ଶି. ପୁ. ରୁ. ସଂ. ସ. ଖ. ୨୫ । ୬୯)

ସମସ୍ତେ ଶୁଣି ପାରିଲା ଭଳି ଉଚ୍ଚସ୍ୱରରେ କହିଲେ—

ଦକ୍ଷ କହିଲେ—ଏ ସମସ୍ତ ଦେବତା, ଅସୁର, ଶ୍ରେଷ୍ଠ ବ୍ରାହ୍ମଣ ଓ ଋଷିଗଣ ମୋ ଆଗରେ ବିଶେଷରୂପେ ମସ୍ତକ ଅବନତ କରନ୍ତି । ମାତ୍ର ସେଠି ପ୍ରେତ-ପିଶାଚଗଣଙ୍କ ମେଳରେ ଯେଉଁ ଲୋକଟା ମହାମନସ୍ୱୀ ହୋଇ ବସିରହିଛି, ସେ ଦୁଷ୍ଟ-ମନୁଷ୍ୟଙ୍କ ପରି କାହିଁକି ମୋତେ ପ୍ରଣାମ କରୁ ନାହିଁ? ସେହି ଶ୍ମଶାନବାସୀ ନିର୍ଲଜ୍ଜ ମୋତେ ଏବେ ଯେଉଁ ପ୍ରଣାମ କଲା ନାହିଁ, ତା'ର କାରଣ କ'ଣ? ତାହାର ବେଦୋକ୍ତ କର୍ମ ଲୁପ୍ତ ହୋଇଗଲାଣି । ସେ ଭୂତ ଓ ପିଶାଚଗଣଙ୍କ ଦ୍ୱାରା ସେବିତ ହୋଇ ଉନ୍ମତ୍ତଙ୍କ ପରି ବୁଲେ, ଶାସ୍ତ୍ରୀୟ ବିଧିର ଅବହେଳନା କରି ନୀତିମାର୍ଗିକୁ ସଦା କଳଙ୍କିତ କରେ । ତା' ସଙ୍ଗରେ ରହୁଥିବା ଓ ତା'ର ଅନୁସରଣ କରୁଥିବା ଲୋକେ ପାଷଣ୍ଡ, ଦୁଷ୍ଟ, ପାପାଚାରୀ, ଉଦ୍ଦଣ୍ଡ ଓ ବ୍ରାହ୍ମଣନିନ୍ଦୁକ । ସେ ନିଜେ ବି ସ୍ତ୍ରୀ-ପରାୟଣ ଓ ରତିକର୍ମରେ ହିଁ ଦକ୍ଷ । ତେଣୁ ମୁଁ ତାକୁ ଶାପ ଦେବାକୁ ଯାଉଛି । ସେ ରୁଦ୍ର ଚାରିବର୍ଣ୍ଣରୁ ପୃଥକ୍ ଓ କୁରୂପ ଅଟେ । ତାକୁ ଯଜ୍ଞରୁ ବହିଷ୍କୃତ କରାଯାଉ । ସେ ଶ୍ମଶାନବାସୀ, ପୁଣି କୁଳ ଓ ଜନ୍ମ ଦୃଷ୍ଟିରୁ ହୀନ; ତେଣୁ ଦେବତାଙ୍କ ସଙ୍ଗେ ତାକୁ ଯଜ୍ଞରେ ଭାଗ ନ ଦିଆଯାଉ ।

ବ୍ରହ୍ମା କହୁଛନ୍ତି—ନାରଦ ! ଦକ୍ଷଙ୍କ କଥା ଶୁଣି ଭୃଗୁ ଆଦି ଅନେକ ମହର୍ଷି ରୁଦ୍ରଦେବଙ୍କୁ ଦୁଷ୍ଟ ମଣି ଦେବତାଙ୍କ ସହିତ ମିଶି ତାଙ୍କୁ ନିନ୍ଦା କରିବାକୁ ଲାଗିଲେ । କିନ୍ତୁ ଦକ୍ଷଙ୍କ କଥାରେ ନନ୍ଦୀ ଭୀଷଣ ରାଗିଗଲେ । ତାଙ୍କ ନେତ୍ର ଚଞ୍ଚଳ ହୋଇଉଠିଲା । ସେ ଦକ୍ଷଙ୍କୁ ଶାପ ଦେବାକୁ ଭାବି ତୁରନ୍ତ ଏହିପରି କହିଲେ—

ନନ୍ଦୀଶ୍ୱର କହିଲେ—ଆରେ ମହାମୂଢ଼ ! ଦୁଷ୍ଟବୁଦ୍ଧି ଶଠ ଦକ୍ଷ ! ତୁ ମୋ ସ୍ୱାମୀ ମହେଶ୍ୱରଙ୍କୁ ଯଜ୍ଞରୁ ବହିଷ୍କୃତ କାହିଁକି କରିଦେଲୁ? ଯେଉଁ ଶିବଙ୍କୁ ସ୍ମରଣ କରିବା ମାତ୍ରେ ଯଜ୍ଞ ସଫଳ ହୁଏ ଓ ତୀର୍ଥ ବି ପବିତ୍ର ହୋଇଯାଏ, ତାଙ୍କୁ ତୁ ଶାପ ଦେଇଦେଲୁ କେମିତି? ରେ ଦୁର୍ବୁଦ୍ଧି ଦକ୍ଷ ! ତୁ ବ୍ରାହ୍ମଣଜାତିର ଚପଳତାରେ ପ୍ରେରିତ ହୋଇ ରୁଦ୍ରଦେବଙ୍କୁ ଅକାରଣେ ଶାପ ଦେଲୁ । ମହାପ୍ରଭୁ ରୁଦ୍ର ସର୍ବଥା ନିର୍ଦୋଷ, ତଥାପି ତୁ ବୃଥାରେ ତାଙ୍କୁ ଉପହାସ କଲୁ । ବ୍ରାହ୍ମଣାଧମ ! ଯେ ଏ ଜଗତକୁ ସୃଷ୍ଟି କରିଛନ୍ତି, ଯେ ଏହାର ପାଳନ କରନ୍ତି ଓ ପୁଣି ଶେଷରେ ଯେ ଏହାର ସଂହାର କରିବେ, ସେହି ମହେଶ୍ୱରଙ୍କୁ ତୁ ଅଭିଶାପ ଦେଇଦେଲୁ କିପରି ?

ନନ୍ଦୀ ଏଭଳି ଗାଳିଦେବାରୁ ପ୍ରଜାପତି ଦକ୍ଷ କ୍ରୋଧରେ ନିଆଁବାଣ ହୋଇଗଲେ । ତେଣୁ ସେ ପୁଣି ଶାପ ଦେଇ କହିଲେ—"ଆରେ ରୁଦ୍ରଗଣ ! ତୁମେମାନେ ବେଦରୁ ବହିଷ୍କୃତ ହୋଇଯାଅ । ବୈଦିକ ମାର୍ଗରୁ ଭ୍ରଷ୍ଟ ଓ ମହର୍ଷିଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ପାଖଣ୍ଡବାଦରେ ରତ ରୁହ ଓ ଶିଷ୍ଟାଚାରରୁ ଦୂରେଇ ରୁହ । ମୁଣ୍ଡରେ ଜଟା ରଖି ଓ ଦେହରେ ଭସ୍ମ ବୋଳି ହୋଇ, ହାଡ଼ର ମାଳା ପିନ୍ଧି, ମଦ୍ୟପାନରେ ଆସକ୍ତ ହୁଅ ।"

ଦକ୍ଷ ଶିବଙ୍କ ପାର୍ଷଦଙ୍କୁ ଏପରି ଶାପ ଦେବାରୁ ତାହା ଶୁଣି ଶିବଙ୍କ ପ୍ରିୟ ଭକ୍ତ ନନ୍ଦୀ ଅତ୍ୟନ୍ତ କ୍ରୋଧିତ ହୋଇଗଲେ । ଶିଳାଦପୁତ୍ର ନନ୍ଦୀ ଶିବଙ୍କର ପ୍ରିୟ ପାର୍ଷଦ ଓ ତେଜସ୍ୱୀ । ସେ ଗର୍ବୋନ୍ମତ୍ତ ମହାଦୁଷ୍ଟ ଦକ୍ଷଙ୍କୁ ଅବିଳମ୍ବେ ଏହି ଉତ୍ତର ଦେଲେ—

ନନ୍ଦୀଶ୍ୱର କହିଲେ—ରେ ଶଠ ! ଦୁର୍ବୁଦ୍ଧି ଦକ୍ଷ ! ତୋର ଶିବଙ୍କ ତତ୍ତ୍ୱ ବିଷୟରେ ଆଦୌ ଜ୍ଞାନ ନାହିଁ । ତେଣୁ ତୁ ଶିବଙ୍କ ପାର୍ଷଦଙ୍କୁ ବୃଥା ଶାପ ଦେଲୁ । ଅହଂକାରୀ ଦକ୍ଷ ! ଯେଉଁ ଭୃଗୁ ପ୍ରଭୃତି ବ୍ରାହ୍ମଣଙ୍କ ହୃଦୟରେ ଦୁଷ୍ଟତା ପୂରି ରହିଛି, ସେମାନେ ମଧ୍ୟ ବ୍ରାହ୍ମଣତ୍ୱର ଅଭିମାନରେ ମହାପ୍ରଭୁ ମହେଶ୍ୱରଙ୍କୁ ଉପହାସ କଲେ । ତେଣୁ ଏଠାରେ

ତୋ ପରି ଯେତେ ରୁଦ୍ରବିମୁଖ ଦୁଷ୍ଟ ବ୍ରାହ୍ମଣ ବିଦ୍ୟମାନ ଅଛନ୍ତି, ସେମାନଙ୍କୁ ମୁଁ ରୁଦ୍ରତେଜ ପ୍ରଭାବରେ ହିଁ ଶାପ ଦେଉଛି । ତୋ ପରି ବ୍ରାହ୍ମଣ କର୍ମଫଳର ପ୍ରଶଂସକ ବେଦବାଦରେ ଛନ୍ଦି ହୋଇ ରହି ତତ୍ତ୍ୱଜ୍ଞାନଶୂନ୍ୟ ହୋଇଯାଆନ୍ତୁ । ସେମାନେ ଭୋଗରେ ତନ୍ମୟ ହୋଇ ସ୍ୱର୍ଗକୁ ହିଁ ସବୁଠାରୁ ବଡ଼ ପୁରୁଷାର୍ଥ ମଣି ସ୍ୱର୍ଗଠାରୁ ବଳି ଆଉ କିଛି ନାହିଁ ବୋଲି କହିବେ ଏବଂ କ୍ରୋଧ, ଲୋଭ ଓ ମଦରେ ଯୁକ୍ତ ହେବା ସହିତ ନିର୍ଲଜ୍ଜ ଭିକ୍ଷୁକ ହୋଇ ରହିବେ । କେତେକ ବ୍ରାହ୍ମଣ ବେଦମାର୍ଗକୁ ସମ୍ମୁଖରେ ରଖି ଶୂଦ୍ରମାନଙ୍କର ଯଜ୍ଞ କରାଇବେ ଓ ଦରିଦ୍ର ହେବେ । ସେମାନେ ସର୍ବଦା ଦାନ ନେବେ ଏବଂ ଦୂଷିତ ଦାନ ଗ୍ରହଣ କରିବା ହେତୁ ସମସ୍ତେ ନରକଗାମୀ ହେବେ । ଦକ୍ଷ ! ସେମାନଙ୍କ ମଧ୍ୟରୁ



କେତେକ ବ୍ରାହ୍ମଣ ବ୍ରହ୍ମରାକ୍ଷସ ମଧ୍ୟ ହେବେ । ଏ ଯେଉଁ ଦୁଷ୍ଟବୁଦ୍ଧି ପ୍ରଜାପତି ଦକ୍ଷ ପରମେଶ୍ୱର ଶିବଙ୍କୁ ସାଧାରଣ ଦେବତା ଭାବି ତାଙ୍କ ପ୍ରତି ଦ୍ରୋହ କରୁଛି, ସେ ତତ୍ତ୍ୱଜ୍ଞାନରୁ ବିମୁଖ ହୋଇଯାଉ । ସେ ବିଷୟସୁଖ ଇଚ୍ଛାରେ କାମନାରୂପୀ କପଟମୟ ଗୃହସ୍ଥାଶ୍ରମ-ଧର୍ମରେ ଆସକ୍ତ ରହି କର୍ମକାଣ୍ଡର ଓ କର୍ମଫଳର ପ୍ରଶଂସା କରୁଥିବା ସନାତନ ବେଦବାଦର ବିସ୍ତାର କରୁଥାଉ । ଏହାର ଆନନ୍ଦଦାୟୀ ମୁଖ ନଷ୍ଟ ହୋଇଯାଉ । ଏ ଆତ୍ମଜ୍ଞାନଙ୍କୁ ଭୁଲି ପଶୁ ପରି ହୋଇଯାଉ ଏବଂ କର୍ମଭ୍ରଷ୍ଟ ହୋଇ ଶୀଘ୍ର ବୋଦା ମୁଖ ପାଉ ।

ଏହିରୂପେ କ୍ରୁଦ୍ଧ ନନ୍ଦୀ ବ୍ରାହ୍ମଣଙ୍କୁ ଏବଂ ଦକ୍ଷ ମହାଦେବଙ୍କୁ ଶାପ ଦେବାରୁ ସେଠାରେ ହାହାକାର ଖେଳିଗଲା । ନାରଦ ! ମୁଁ ବେଦମାନଙ୍କର ପ୍ରତିପାଦକ ହୋଇଥିବାରୁ ଶିବତତ୍ତ୍ୱକୁ ଜାଣେ । ତେଣୁ ଦକ୍ଷଙ୍କ ଶାପ ଶୁଣି ମୁଁ ବାରମ୍ବାର ତାଙ୍କୁ ଓ ଭୃଗୁ ପ୍ରଭୃତିଙ୍କୁ ନିନ୍ଦା କଲି । ସଦାଶିବ ମହାଦେବ ମଧ୍ୟ ନନ୍ଦୀଙ୍କ କଥା ଶୁଣି ହସିଲା ଭଳି ମଧୁର ବାଣୀରେ ନନ୍ଦୀଙ୍କୁ ବୁଝାଇଲେ ।

ସଦାଶିବ କହିଲେ—ହେ ନନ୍ଦୀ! ମୋ କଥା ଶୁଣ । ତୁମେ ତ ଜ୍ଞାନୀ, ତୁମେ କ୍ରୋଧ କରିବା ଉଚିତ ନୁହେଁ । ତୁମେ ଭୁଲ୍‌ରେ ଏହା ବୁଝିଲ ଯେ ସେ ମୋତେ ଶାପ ଦେଇଦେଲେ । ତେଣୁ ତୁମେ ବୃଥାରେ ବ୍ରାହ୍ମଣକୁଳକୁ ଶାପ ଦେଇଦେଲ । ବାସ୍ତବରେ ମୋତେ କାହାରି ଶାପ ଛୁଇଁ ପାରିବ ନାହିଁ; ତେଣୁ ତୁମେ ଉତ୍ତେଜିତ ହେବା ଦରକାର ନାହିଁ । ବେଦ ମନ୍ତ୍ରାକ୍ଷରମୟ ଓ ସୂକ୍ତମୟ ଅଟନ୍ତି । ତାଙ୍କର ପ୍ରତ୍ୟେକ ସୂକ୍ତରେ ସମସ୍ତ ଦେହଧାରୀଙ୍କର ଆତ୍ମା (ପରମାତ୍ମା) ପ୍ରତିଷ୍ଠିତ । ତେଣୁ ସେହି ମନ୍ତ୍ରର ଜ୍ଞାତା ନିତ୍ୟ ଆତ୍ମବେତ୍ତା ଅଟନ୍ତି । ତେଣୁ ତୁମେ ରୋଷରେ ତାଙ୍କୁ ଶାପ ନ ଦିଅ । କାହା ବୁଦ୍ଧି ଯେତେ ଦୂଷିତ ହେଲେ ବି ସେ କେବେ ବେଦଙ୍କୁ ଶାପ ଦେଇ ପାରିବ ନାହିଁ । ଏବେ ମୋତେ କିଛି ଶାପ ମିଳି ନାହିଁ, ଏକଥାକୁ ତୁମେ ସ୍ଥିର ଚିତ୍ତରେ ବୁଝିବାକୁ ଚେଷ୍ଟା କର । ମହାମତେ ! ତୁମେ ସନକାଦି ସିଦ୍ଧଙ୍କୁ

ମଧ୍ୟ ତତ୍ତ୍ୱଜ୍ଞାନ ଦେଇପାର; ତେଣୁ ଶାନ୍ତ ହୋଇଯାଅ । ମୁଁ ହିଁ ଯଜ୍ଞ, ମୁଁ ହିଁ ଯଜ୍ଞକର୍ମ ଏବଂ ଯଜ୍ଞର ଅଙ୍ଗଭୂତ ସମସ୍ତ ଉପକରଣ ମଧ୍ୟ ମୁଁ ।



ଯଜ୍ଞର ଆତ୍ମା ମୁଁ, ଯଜ୍ଞପରାୟଣ ଯଜମାନ ମଧ୍ୟ ମୁଁ ଏବଂ ଯଜ୍ଞରୁ ବହିଷ୍କୃତ ମଧ୍ୟ ମୁଁ । ଏ କିଏ, ତୁମେ କିଏ ଆଉ ଏମାନେ ସବୁ କିଏ? ବାସ୍ତବରେ ସବୁରି ରୂପରେ ମୁଁ ହିଁ ବିଦ୍ୟମାନ । ନିଜ ବୁଦ୍ଧିରେ ଏ କଥାକୁ ବିଚାର କର । ତୁମେ ବ୍ରାହ୍ମଣମାନଙ୍କୁ ଆଯଥା ଶାପ ଦେଇଦେଲ । ମହାମତେ ! ନନ୍ଦିନ୍! ତୁମେ ତତ୍ତ୍ୱଜ୍ଞାନ ଦ୍ୱାରା ପ୍ରପଞ୍ଚ-ରଚନାକୁ ପରିହାର କରି ଆତ୍ମନିଷ୍ଠ ହୁଅ ଓ କ୍ରୋଧାଦି ବର୍ଜନ କର ।

ବ୍ରହ୍ମା କହୁଛନ୍ତି—ନାରଦ ! ଭଗବାନ ଶମ୍ଭୁ ଏପରି ବୁଝାଇବାରୁ ନନ୍ଦିକେଶ୍ୱର ବିବେକ-ପରାୟଣ ହୋଇ କ୍ରୋଧଶୂନ୍ୟ ଓ ଶାନ୍ତ ହେଲେ । ଭଗବାନ ଶିବ ମଧ୍ୟ ତାଙ୍କର ପ୍ରାଣପ୍ରିୟ ପାର୍ଷଦ ନନ୍ଦୀଙ୍କୁ ଶୀଘ୍ର ତତ୍ତ୍ୱବୋଧ କରାଇ ପ୍ରମଥଗଣଙ୍କ ସହିତ ସେଠାରୁ ଆନନ୍ଦ ମନରେ ପ୍ରସ୍ଥାନ କଲେ । ଏଣେ କ୍ରୋଧାବେଶରେ ଦକ୍ଷ ମଧ୍ୟ ବ୍ରାହ୍ମଣମାନଙ୍କ ସହିତ ସ୍ୱସ୍ଥାନକୁ ଫେରିଗଲେ । ମାତ୍ର ତାଙ୍କ ଚିତ୍ତ ଶିବଦ୍ରୋହରେ ଅଶାନ୍ତ ଥିଲା । ରୁଦ୍ରଙ୍କୁ ଶାପ ଦେବା ଘଟଣାକୁ ସ୍ମରଣ କରି ସେ ଅତ୍ୟନ୍ତ କ୍ରୋଧାବେଶରେ ଥିଲେ । ତାଙ୍କ ବୁଦ୍ଧିକୁ ମୂଢ଼ତା ଆଚ୍ଛାଦିତ କରିଦେଇଥିଲା । ସେ ଶିବଙ୍କ ପ୍ରତି ଶ୍ରଦ୍ଧା ତ୍ୟାଗ କରି ଶିବପୂଜକଙ୍କୁ ନିନ୍ଦା କରିବାକୁ ଲାଗିଲେ । ବତ୍ସ ନାରଦ! ଦକ୍ଷ ପରମାତ୍ମା ଶମ୍ଭୁଙ୍କ ସହିତ ଯେପରି ଦୁର୍ବ୍ୟବହାର ପ୍ରଦର୍ଶନ କରିଥିଲେ, ତାହା ତ ମୁଁ ତୁମକୁ କହିଦେଲି । ଏବେ ତାଙ୍କ ବୁଦ୍ଧି କିପରି ଦୁଷ୍ଟତାର ପରାକାଷ୍ଠାରେ ପହଞ୍ଚିଗଲା, ତାହା କହୁଛି, ଶୁଣ ।

(ଅଧ୍ୟାୟ ୨୬)

***

## ଦକ୍ଷଙ୍କ ଦ୍ୱାରା ମହାଯଜ୍ଞର ଆୟୋଜନ, ଯଜ୍ଞକୁ ବ୍ରହ୍ମା, ବିଷ୍ଣୁ, ଦେବଗଣ ଓ ଋଷିଗଣଙ୍କ ଆଗମନ, ଦକ୍ଷଙ୍କ ଦ୍ୱାରା ସମସ୍ତଙ୍କର ସତ୍କାର, ଯଜ୍ଞାରମ୍ଭ, ଶିବଙ୍କୁ ଡାକିବାକୁ ଦଧୀଚିଙ୍କ ଅନୁରୋଧ, କିନ୍ତୁ ଦକ୍ଷ ବିରୋଧ କରିବାରୁ ସେଠାରୁ ଶିବଭକ୍ତଙ୍କର ପ୍ରସ୍ଥାନ

ବ୍ରହ୍ମା କହୁଛନ୍ତି—ନାରଦ ! ଏକଦା ଦକ୍ଷ ବହୁତ ବଡ଼ ଯଜ୍ଞ ଆରମ୍ଭ କଲେ । ଯଜ୍ଞର ଦୀକ୍ଷା ନେଇ ସେ ସମସ୍ତ ଦେବର୍ଷି, ମହର୍ଷି ଓ ଦେବତାମାନଙ୍କୁ ନିମନ୍ତ୍ରଣ ଦେଲେ । ସେମାନେ ସମସ୍ତେ ଯଜ୍ଞକୁ ଆସିଲେ । ଅଗସ୍ତ୍ୟ, କଶ୍ୟପ, ଅତ୍ରି, ବାମଦେବ, ଭୃଗୁ, ଦଧୀଚି, ଭଗବାନ ବ୍ୟାସ, ଭରଦ୍ୱାଜ,

ଗୌତମ, ପୈଲ, ପରାଶର, ଗର୍ଗ, ଭାର୍ଗବ, କକୁଷ, ସିତ, ସୁମନ୍ତୁ, ତ୍ରିକ, କଂକ ଓ ବୈଶମ୍ପାୟନ ତଥା ଏମାନଙ୍କ ବ୍ୟତୀତ ଅନ୍ୟାନ୍ୟ ବହୁତ ମୁନିଋଷି ନିଜ ନିଜ ସ୍ତ୍ରୀପୁତ୍ରଙ୍କୁ ସଙ୍ଗରେ ନେଇ ମୋ ପୁତ୍ର ଦକ୍ଷଙ୍କ ଯଜ୍ଞରେ ସହର୍ଷ ସମ୍ମିଳିତ ହୋଇଥିଲେ । ଆହୁରି ମଧ୍ୟ ସମସ୍ତ ଦେବତା, ଉପଦେବତା ଓ ଅଭ୍ୟୁଦୟଶାଳୀ ଲୋକପାଳ ନିଜ ନିଜ ସୈନ୍ୟଶକ୍ତି ସହ ସେଠାକୁ ଆସିଥିଲେ । ଦକ୍ଷ ମୋତେ ଦଳ-ବଳ ସହିତ ସତ୍ୟଲୋକରୁ ଆସିବା ପାଇଁ ପ୍ରାର୍ଥନା କରିଥିଲେ । ବିଭିନ୍ନ ପ୍ରକାରେ ସାଦର ପ୍ରାର୍ଥନା କରି ବୈକୁଣ୍ଠଲୋକରୁ ବିଷ୍ଣୁଙ୍କୁ ମଧ୍ୟ ଡକାଯାଇଥିଲା । ଶିବଦ୍ରୋହୀ ଦୁରାତ୍ମା ଦକ୍ଷ ସମସ୍ତଙ୍କୁ ବହୁତ ସ୍ୱାଗତ-ସତ୍କାର କଲେ । ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ଅତ୍ୟନ୍ତ ଦୀପ୍ତିମାନ୍, ବିଶାଳ ଓ ବହୁମୂଲ୍ୟ ଦିବ୍ୟ ଭବନରେ ଅତିଥିମାନଙ୍କ ରହଣି ପାଇଁ ବ୍ୟବସ୍ଥା କଲେ । ସମସ୍ତେ ସମ୍ମାନିତ ହୋଇ ଉକ୍ତ ଭବନରେ ଯଥାଯୋଗ୍ୟ ସ୍ଥାନ ପାଇଥିଲେ । ଦକ୍ଷଙ୍କର ସେହି ଯଜ୍ଞ କନଖଲ ନାମକ ତୀର୍ଥସ୍ଥାନରେ ଆୟୋଜିତ ହୋଇଥିଲା ଏବଂ ସେଥିରେ ସେ ଭୃଗୁ ଆଦି ତପୋଧନଙ୍କୁ ଋତ୍ୱିଜ କରିଥିଲେ । ସମସ୍ତ ମରୁଦ୍‌ଗଣଙ୍କ ସହିତ ସ୍ୱୟଂ ଭଗବାନ ବିଷ୍ଣୁ ତାହାର ଅଧିଷ୍ଠାତା ଥିଲେ । ମୁଁ ବେଦତ୍ରୟୀର ବିଧି ନିର୍ଦ୍ଦେଶକ ବ୍ରହ୍ମା ହୋଇଥିଲି । ସମସ୍ତ ଦିଗପାଳ ସପରିବାର ନିଜ ନିଜ ଆୟୁଧ ଧାରଣ କରି ଦ୍ୱାରପାଳ ଓ ରକ୍ଷକ ହୋଇଥିଲେ ଏବଂ ସେଠାରେ କୌତୂହଳ ସୃଷ୍ଟି କରୁଥିଲେ । ସ୍ୱୟଂ ଯଜ୍ଞଦେବ ସୁନ୍ଦର ରୂପ ଧାରଣ କରି ଦକ୍ଷଙ୍କ ଯଜ୍ଞମଣ୍ଡପରେ ଉପସ୍ଥିତ ହୋଇଥିଲେ । ମହାମୁନିଙ୍କ ମଧ୍ୟରେ ଅଗ୍ରଗଣ୍ୟ ମହର୍ଷିମାନେ ସ୍ୱୟଂ ବେଦଧାରଣକାରୀ ହୋଇଥିଲେ । ଅଗ୍ନି ମଧ୍ୟ ସେହି ଯଜ୍ଞମହୋତ୍ସବରେ ଶୀଘ୍ର ହବିଷ୍ୟ ଗ୍ରହଣ କରିବାକୁ ନିଜର ସହସ୍ର ରୂପ ପ୍ରକଟ କରିଥିଲେ । ସେଠାରେ ଅଠାଶୀ ହଜାର ଋତ୍ୱିଜ ଏକାବେଳେ ଆହୁତି ଦେଉଥିଲେ । ଚୌଷଠି ହଜାର ଦେବର୍ଷି ଉଦ୍‌ଗାତା ଥିଲେ । ଅଧ୍ୱର୍ଯ୍ୟୁ ଓ ହୋତାଙ୍କର ସଂଖ୍ୟା ମଧ୍ୟ ସେତିକି ଲେଖାଏଁ ଥିଲା । ନାରଦାଦି ଦେବର୍ଷି ଓ ସପ୍ତର୍ଷି ପୃଥକ୍ ପୃଥକ୍ ଗାଥା ଗାନ କରୁଥିଲେ । ଦକ୍ଷ ସେହି ମହାଯଜ୍ଞରେ ଗନ୍ଧର୍ବ, ବିଦ୍ୟାଧର, ସିଦ୍ଧ, ଦ୍ୱାଦଶ ଆଦିତ୍ୟ, ସେମାନଙ୍କ ଗଣ, ସମସ୍ତ ଯକ୍ଷ ଓ ନାଗଲୋକରେ ବିଚରଣକାରୀ ସମସ୍ତ ନାଗଙ୍କୁ ମଧ୍ୟ ବହୁସଂଖ୍ୟାରେ ବରଣ କରିଥିଲେ । ବ୍ରହ୍ମର୍ଷି, ରାଜର୍ଷି ଓ ଦେବର୍ଷିଙ୍କ ସମୁଦାୟ ତଥା ବହୁସଂଖ୍ୟକ ନରେଶ ମଧ୍ୟ ସେଥିରେ ଆମନ୍ତ୍ରିତ ଥିଲେ । ସେମାନେ ସେମାନଙ୍କ ମିତ୍ର, ପାତ୍ରମନ୍ତ୍ରୀ ଓ ସେନା ସହିତ ଆସିଥିଲେ । ଯଜମାନ ଦକ୍ଷ ସେହି ଯଜ୍ଞରେ ବସୁ ଆଦି ସମସ୍ତ ଗଣମାନଙ୍କୁ ମଧ୍ୟ ବରଣ କରିଥିଲେ । କୌତୁକ ଓ ମଙ୍ଗଳାଗ୍ର କରି ଦକ୍ଷ ଯେତେବେଳେ ଦୀକ୍ଷା ଗ୍ରହଣ କଲେ ଏବଂ ଯେତେବେଳେ ତାଙ୍କ ପାଇଁ ବାରମ୍ବାର ସ୍ୱସ୍ତିବାଚନ କରାଗଲା, ସେତେବେଳେ ସେ ତାଙ୍କ ପତ୍ନୀ ସହିତ ବିରାଜମାନ ହୋଇ ଖୁବ୍ ଶୋଭା ପାଇଲେ ।

ଏତେସବୁ କରିଥିଲେ ମଧ୍ୟ ଦୁରାତ୍ମା ଦକ୍ଷ ସେହି ଯଜ୍ଞରେ ଭଗବାନ ଶମ୍ଭୁଙ୍କୁ ଆମନ୍ତ୍ରିତ କରି ନ ଥିଲେ । ତାଙ୍କ ଦୃଷ୍ଟିରେ କପାଳଧାରୀ ହୋଇଥିବାରୁ ଶିବ ଯଜ୍ଞରେ ଭାଗ ପାଇବାର ଯୋଗ୍ୟ ନ ଥିଲେ । ସତୀ ଯଦିଓ ପ୍ରଜାପତି ଦକ୍ଷଙ୍କର କନ୍ୟା ଥିଲେ, ତଥାପି କପାଳୀଙ୍କର ପତ୍ନୀ ହୋଇଥିବାରୁ ଦୋଷଦର୍ଶୀ ଦକ୍ଷ ତାଙ୍କୁ ମଧ୍ୟ ଡାକି ନ ଥିଲେ । ଦକ୍ଷଙ୍କ ଯଜ୍ଞ ଆରମ୍ଭ ହେବାମାତ୍ରେ ଋତ୍ୱିଜମାନେ ନିଜ ନିଜ କାର୍ଯ୍ୟରେ ଲାଗି ପଡ଼ିଲେ । ମାତ୍ର ସେତିକିବେଳେ ଭଗବାନ ଶଙ୍କର ସେଠାରେ ଉପସ୍ଥିତ ନ ଥିବା ଦେଖି ଶିବଭକ୍ତ ଦଧୀଚିଙ୍କ ଚିତ୍ତ ଅତ୍ୟନ୍ତ ଉଦ୍‌ବିଗ୍ନ

ହୋଇଉଠିଲା । ସେ କହିଲେ–

ଦଧୀଚି କହିଲେ–ପ୍ରମୁଖ ଦେବଗଣ ! ମହର୍ଷିଗଣ ! ଆପଣମାନେ ସମସ୍ତେ ମୋ କଥା ମନଯୋଗପୂର୍ବକ ଶୁଣନ୍ତୁ । ଏ ଯଜ୍ଞ-ମହୋତ୍ସବରେ ଭଗବାନ ଶଙ୍କର ଆସି ନାହାନ୍ତି କାହିଁକି? ଏହାର କାରଣ କ'ଣ ହୋଇପାରେ? ଯଦ୍ୟପି ଏଠାକୁ ବଡ଼ ବଡ଼ ଦେବେଶ୍ୱର, ମୁନି ଓ ଲୋକପାଳ ଆସିଛନ୍ତି, ତଥାପି ମହାତ୍ମା ପିନାକପାଣିଙ୍କ ବିନା ଏ ଯଜ୍ଞ ଅଧିକ ଶୋଭା ଦେଉ ନାହିଁ । ବଡ଼ ବଡ଼ ବିଦ୍ୱାନ୍ କହନ୍ତି ଯେ ମଙ୍ଗଳମୟ ଶିବଙ୍କ କୃପାଦୃଷ୍ଟିରେ ହିଁ ସମସ୍ତ ମଙ୍ଗଳ କାର୍ଯ୍ୟ ସମ୍ପନ୍ନ ହୁଏ । ଯେଉଁ ପୁରାଣପୁରୁଷ ବୃଷଭଧ୍ୱଜ ପରମେଶ୍ୱର ନୀଳକଣ୍ଠଙ୍କର ଏପରି ପ୍ରଭାବ, ସେ ଏଠାରେ କାହିଁକି ଦେଖାଯାଉ ନାହାନ୍ତି? ଦକ୍ଷ ! ଯାହାଙ୍କ ସମ୍ପର୍କରେ ଆସି ଅଥବା ଯେ ସ୍ୱୀକାର କରିନେଲେ ଅମଙ୍ଗଳ ମଧ୍ୟ ମଙ୍ଗଳ ହୋଇଯାଏ ତଥା ଯିଏ ତାଙ୍କ ପଞ୍ଚଦଶ ନେତ୍ରରେ ଗ୍ରହିଁଦେବା ମାତ୍ରେ ବଡ଼ ବଡ଼ ନଗର ଅବିଳମ୍ବେ ଭସ୍ମ ହୋଇଯାଏ, ଏ ଯଜ୍ଞରେ ତାଙ୍କର ଉପସ୍ଥିତି ନିତାନ୍ତ ବାଞ୍ଛନୀୟ । ତେଣୁ ତୁମେ ସ୍ୱୟଂ ଅତିଶୀଘ୍ର ପରମେଶ୍ୱର ଶିବଙ୍କୁ ଏଠାକୁ ଡାକି ଆଣିବା ଉଚିତ । ଅଥବା ବ୍ରହ୍ମା, ବିଷ୍ଣୁ, ଦେବରାଜ ଇନ୍ଦ୍ର, ଲୋକପାଳଗଣ, ବ୍ରାହ୍ମଣ ଓ ସିଦ୍ଧଗଣଙ୍କ ସହାୟତାରେ ଯେକୌଣସି ପ୍ରକାରେ ପ୍ରଯତ୍ନ କରି ଯଜ୍ଞର ପୂର୍ଣ୍ଣତା ପାଇଁ ଭଗବାନ ଶିବଙ୍କୁ ଡାକି ଆଣିବା ଉଚିତ । ଆପଣମାନେ ସମସ୍ତେ ଶିବଙ୍କ ପାଖକୁ ଯାଆନ୍ତୁ ଏବଂ ଦକ୍ଷନନ୍ଦିନୀ ସତୀଙ୍କ ସହିତ ଭଗବାନ ଶମ୍ଭୁଙ୍କୁ ଏଠାକୁ ନେଇ ଆସନ୍ତୁ । ଦେବେଶ୍ୱରଗଣ ! ଜଗଦମ୍ବାଙ୍କ ସହିତ ପରମାତ୍ମା ଶିବ ଏଠାକୁ ଆସିଗଲେ ଏଠି ସବୁ କିଛି ପବିତ୍ର ହୋଇଯିବ; କାରଣ ତାଙ୍କୁ ସ୍ମରଣ କରିବା ମାତ୍ରେ ଏବଂ ତାଙ୍କ ନାମ ଉଚ୍ଚାରିବା ମାତ୍ରେ ସମସ୍ତ କାର୍ଯ୍ୟ ପୁଣ୍ୟମୟ ହୋଇଯାଏ । ତେଣୁ ସମସ୍ତ ପ୍ରକାର ପ୍ରଯତ୍ନ କରି ଭଗବାନ ବୃଷଭଧ୍ୱଜଙ୍କୁ ଏଠାକୁ ଘେନି ଆସିବା ଉଚିତ । ସେ ଏଠାରେ ପଦାର୍ପଣ କରିବାମାତ୍ରେ ଏହି ଯଜ୍ଞ ପବିତ୍ର ହୋଇଯିବ, ଅନ୍ୟଥା ଏହା ପୂର୍ଣ୍ଣ ହୋଇପାରିବ ନାହିଁ; ମୁଁ ସତ୍ୟ କହୁଛି ।

ଦଧୀଚିଙ୍କ କଥା ଶୁଣି ଦୁଷ୍ଟବୁଦ୍ଧି ମୂଢ଼ ଦକ୍ଷ ହସିଲା ପରି ରୋଷପୂର୍ବକ କହିଲେ–"ଭଗବାନ ବିଷ୍ଣୁ ସମସ୍ତ ଦେବତାଙ୍କ ମୂଳ, ତାଙ୍କଠାରେ ସନାତନ ଧର୍ମ ପ୍ରତିଷ୍ଠିତ । ଯଦି ମୁଁ ତାଙ୍କୁ ଏଠାକୁ ସାଦର ଡାକି ଆଣିଛି, ତେବେ ପୁଣି ଆଉ କେଉଁ ଅପୂର୍ଣ୍ଣତା ରହିଗଲା? ଯେଉଁ ବିଷ୍ଣୁଙ୍କ ଠାରେ ବେଦ, ଯଜ୍ଞ ଓ ସମସ୍ତ ପ୍ରକାର କର୍ମ ପ୍ରତିଷ୍ଠିତ, ସେ ତ ଏଠାରେ ଉପସ୍ଥିତ । ପୁଣି ସତ୍ୟଲୋକରୁ ଲୋକପିତାମହ ବ୍ରହ୍ମା ମଧ୍ୟ ବେଦ, ଉପନିଷଦ ଓ ବିବିଧ ଆଗମ ସହିତ ଏଠାକୁ ଆସିଛନ୍ତି । ଦେବଗଣଙ୍କ ସହିତ ସ୍ୱୟଂ ଦେବରାଜ ଇନ୍ଦ୍ରଙ୍କର ଶୁଭାଗମନ ହୋଇଛି ଏବଂ ଆପଣଙ୍କ ପରି ନିଷ୍ପାପ ମହର୍ଷି ମଧ୍ୟ ଆସିଛନ୍ତି । ଯେଉଁ ସବୁ ମହର୍ଷି ଯଜ୍ଞରେ ସମ୍ମିଳିତ ହେବାକୁ ଯୋଗ୍ୟ, ଶାନ୍ତ ଓ ସୁପାତ୍ର, ବେଦ-ବେଦାର୍ଥର ଜ୍ଞାତା ତଥା ଦୃଢ଼ବ୍ରତୀ, ସେ ସମସ୍ତେ ଏବଂ ଆପଣ ନିଜେ ମଧ୍ୟ ଏଠାରେ ପଦାର୍ପଣ କରିଛନ୍ତି, ପୁଣି ସେ ରୁଦ୍ରଙ୍କ ଠାରେ ଆମର କି ପ୍ରୟୋଜନ? ବିପ୍ରବର ! ମୁଁ କେବଳ ବ୍ରହ୍ମାଙ୍କ କହିବା ଅନୁସାରେ ହିଁ ମୋର କନ୍ୟାକୁ ରୁଦ୍ରଙ୍କ ସଙ୍ଗେ ବିବାହ ଦେଇଥିଲି । ହେଲେ ମୁଁ ଜାଣେ ଯେ ରୁଦ୍ର କୁଳୀନ ନୁହନ୍ତି । ତାଙ୍କର ମାଆ ନାହିଁ କି ବାପ ନାହିଁ । ସେ ଭୂତ, ପ୍ରେତ ଓ ପିଶାଚଙ୍କର ସ୍ୱାମୀ । ସେ ଏକୁଟିଆ ରହନ୍ତି, ତାଙ୍କୁ ଅତିକ୍ରମଣ କରିବା ଅନ୍ୟମାନଙ୍କ ପକ୍ଷେ ଅତ୍ୟନ୍ତ କଠିନ । ସେ ଆତ୍ମପ୍ରଶଂସକ, ମୂଢ଼, ଜଡ଼, ମୌନୀ ଓ ଈର୍ଷାଳୁ । ସେ ଏହି ଯଜ୍ଞ କର୍ମରେ ନିମନ୍ତ୍ରିତ

ହେବାର ଯୋଗ୍ୟ ନୁହନ୍ତି । ଏହି କାରଣରୁ ମୁଁ ତାଙ୍କୁ ଡାକିଲି ନାହିଁ । ଏଣୁ ହେ ଦଧୀଚି ! ଆପଣ ଆଉ କେବେ ଏଭଳି କହିବେ ନାହିଁ । ମୋର ଅନୁରୋଧ ଯେ ଆପଣ ସମସ୍ତେ ମିଳିମିଶି ମୋର ଏ ଯଜ୍ଞକୁ ସଫଳ କରନ୍ତୁ ।

ଦକ୍ଷଙ୍କ କଥା ଶୁଣି ଦଧୀଚି ସମସ୍ତ ଦେବତା ଓ ଋଷିଙ୍କୁ ଶୁଣିଲା ପରି ନିମ୍ନ ସାରଗର୍ଭିତ ବାଣୀ କହିଲେ—

ଦଧୀଚି କହିଲେ—ଦକ୍ଷ ! ଭଗବାନ ଶିବଙ୍କ ବିନା ଏ ମହାନ୍ ଯଜ୍ଞ ଅଯଜ୍ଞ ହୋଇଗଲା । ଏହା ଆଉ ଯଜ୍ଞ ବୋଲାଇବା ଯୋଗ୍ୟ ରହିଲା ନାହିଁ । ବିଶେଷତଃ ଏ ଯଜ୍ଞରେ ତୁମର ବିନାଶ ହୋଇଯିବ ।

ଏତିକି କହି ଦଧୀଚି ଦକ୍ଷଙ୍କ ଯଜ୍ଞଶାଳାରୁ ଏକାକୀ ବାହାରି ନିଜ ଆଶ୍ରମକୁ ପଳାଇଲେ । ତା'ପରେ ଯେତେ ମୁଖ୍ୟ ମୁଖ୍ୟ ଶିବଭକ୍ତ ତଥା ଶିବଙ୍କ ମତାବଲମ୍ବୀ ସେଠାରେ ଥିଲେ, ସେମାନେ ମଧ୍ୟ ଦକ୍ଷଙ୍କୁ ସେଇଭଳି ଶାପ ଦେଇ ଅବିଳମ୍ବେ ସେଠାରୁ ବାହାରି ନିଜ ନିଜ ଆଶ୍ରମକୁ ଚାଲିଗଲେ । ଦଧୀଚି ଓ ଅନ୍ୟ ଋଷିଗଣ ଯଜ୍ଞମଣ୍ଡପରୁ ଚାଲିଯିବାରୁ ଦୁଷ୍ଟବୁଦ୍ଧି ଶିବଦ୍ରୋହୀ ଦକ୍ଷ ସେହି ମୁନିମାନଙ୍କର ଉପହାସ କରି କହିଲେ—

ଦକ୍ଷ କହିଲେ—ଏ ଦଧୀଚି ନାମକୁ ମାତ୍ର ବ୍ରାହ୍ମଣ ଥିଲେ, ଶିବ ତାଙ୍କୁ ପ୍ରିୟ ଥିଲେ, ତେଣୁ ସେ ଚାଲିଗଲେ । ତାଙ୍କରି ପରି ଆଉ କିଛି ଲୋକ ମଧ୍ୟ ମୋ ଯଜ୍ଞଶାଳାରୁ ଚାଲିଗଲେ । ବହୁତ ଭଲ ହେଲା । ମୁଁ ସର୍ବଦା ଏହା ହିଁ ଚାହେଁ । ଦେବେଶ ! ହେ ଦେବଗଣ ଓ ଋଷିଗଣ ! ମୁଁ ସତ କହୁଛି, ଯେଉଁମାନଙ୍କର ବିଚାର ଶକ୍ତି ନଷ୍ଟ ହୋଇସାରିଛି, ଯେଉଁମାନେ ମନ୍ଦବୁଦ୍ଧି ଓ ମିଥ୍ୟାବାଦରେ ସଂଲଗ୍ନ, ସେଭଳି ବେଦବହିଷ୍କୃତ ଦୁରାଚାରୀ ଲୋକଙ୍କୁ ଯଜ୍ଞକର୍ମରୁ ବହିଷ୍କୃତ କରିଦେବା ହିଁ ଶ୍ରେୟସ୍କର । ବିଷ୍ଣୁଙ୍କ ସମେତ ଆପଣ ସବୁ ଦେବତା ଓ ବ୍ରାହ୍ମଣ ବେଦବାଦୀ । ତେଣୁ ଆପଣମାନେ ମୋର ଏ ଯଜ୍ଞକୁ ସଫଳ କରନ୍ତୁ ।

ବ୍ରହ୍ମା କହୁଛନ୍ତି—ଦକ୍ଷଙ୍କ କଥା ଶୁଣି ଶିବମାୟାରେ ମୋହିତ ସମସ୍ତ ଦେବର୍ଷି ସେହି ଯଜ୍ଞରେ ଦେବତାମାନଙ୍କୁ ପୂଜା କରି ଆହୁତି ଦେବାକୁ ଲାଗିଲେ । ମୁନୀଶ୍ୱର ନାରଦ ! ଏହିରୂପେ ସେହି ଯଜ୍ଞକୁ ଯେଉଁ ଶାପ ମିଳିଲା, ତାହା ମୁଁ କହିଦେଲି । ଏଥର ଯଜ୍ଞବିଧ୍ୱଂସର ଘଟଣା କହୁଛି, ମନ ଦେଇ ଶୁଣ । (ଅଧ୍ୟାୟ ୨୭)

✯✯✯

## ଦକ୍ଷଯଜ୍ଞର ସମାଚାର ପାଇ ସେଠାକୁ ଯିବାକୁ ସତୀଙ୍କର ଶିବଙ୍କୁ ଅନୁରୋଧ ଏବଂ ମହାଦେବଙ୍କ ଠାରୁ ଦକ୍ଷଙ୍କ ଶିବଦ୍ରୋହ ବିଷୟ ଜାଣିବା ପରେ ମଧ୍ୟ ତାଙ୍କ ଆଜ୍ଞା ନେଇ ଶିବଗଣଙ୍କ ସହ ଯଜ୍ଞସ୍ଥଳ ଅଭିମୁଖେ ଗମନ

ବ୍ରହ୍ମା କହୁଛନ୍ତି—ନାରଦ ! ଯେତେବେଳେ ଦେବର୍ଷିଗଣ ଅତି ହର୍ଷ ଓ ଉଲ୍ଲାସରେ ଦକ୍ଷଯଜ୍ଞକୁ ଯାଉଥିଲେ, ସେତେବେଳେ ଦକ୍ଷକନ୍ୟା ଦେବୀ ସତୀ ଗନ୍ଧମାଦନ ପର୍ବତ ଉପରେ ଚାନ୍ଦୁଆରେ ସଜ୍ଜିତ ଧାରାଗୃହରେ ସଖୀମାନଙ୍କ ଗହଣରେ ନାନା କ୍ରୀଡ଼ାରେ ମଗ୍ନ ଥିଲେ । ଆନନ୍ଦରେ କ୍ରୀଡ଼ା କରୁଥିବା ବେଳେ ସେ ଦେଖିଲେ ଯେ ରୋହିଣୀଙ୍କୁ ସାଥିରେ ନେଇ ଚନ୍ଦ୍ର କେଉଁଠାକୁ ଯାଉଛନ୍ତି । ତାହା ଦେଖି ସେ ତାଙ୍କର ହିତକାରିଣୀ ପ୍ରାଣପ୍ରିୟା ଶ୍ରେଷ୍ଠ ସଖୀ ବିଜୟାକୁ କହିଲେ—"ବିଜୟା ! ଶୀଘ୍ର ଯାଇ ପଚାରି ବୁଝିଲୁ ଏ ଚନ୍ଦ୍ରଦେବ ରୋହିଣୀ ସଙ୍ଗରେ କୁଆଡ଼େ ଯାଉଛନ୍ତି?"

ସତୀଙ୍କ ଆଜ୍ଞା ପାଇ ବିଜୟା ଅବିଳମ୍ବେ ତାଙ୍କ ପାଖକୁ ଯାଇ ପଚ୍ଚାରିଲା। "ଚନ୍ଦ୍ରଦେବ! ଆପଣ କୁଆଡ଼େ ଯାଉଛନ୍ତି?" ବିଜୟାର ପ୍ରଶ୍ନ ଶୁଣି ଚନ୍ଦ୍ରଦେବ ତାଙ୍କ ଯାତ୍ରାର ଉଦ୍ଦେଶ୍ୟ ଆଦରରେ କହିଦେଲେ। ଦକ୍ଷଙ୍କ ଗୃହରେ ହେଉଥିବା ଯଜ୍ଞୋତ୍ସବ ଆଦିର ସମସ୍ତ ବୃତ୍ତାନ୍ତ ସେ ବର୍ଣ୍ଣନା କଲେ। ତାହା ଶୁଣି ସଖୀ ଅତ୍ୟନ୍ତ ହର୍ଷରେ ଦୌଡ଼ି ଆସି ଚନ୍ଦ୍ରଦେବ କହିଥିବା ସମସ୍ତ ସମାଚ୍ଚାର କହିଦେଲା। ସେ କଥା ଶୁଣି କାଳିକା ସତୀଙ୍କୁ ବଡ଼ ଆଚମ୍ବିତ ଲାଗିଲା। ତାଙ୍କୁ ଏ ଉତ୍ସବର ସୂଚନା ନ ମିଳିବାର କାରଣ କ'ଣ, ତାହା ସେ ଯେତେ ବୁଝିବାକୁ ଚେଷ୍ଟା କଲେ ସୁଦ୍ଧା ଜାଣି ପାରିଲେ ନାହିଁ। ତେଣୁ ସେ ପାର୍ଷଦଙ୍କ ଗହଣରେ ବିରାଜମାନ ଭଗବାନ ଶଙ୍କରଙ୍କ ପାଖକୁ ଯାଇ ଏ କଥା ପଚ୍ଚାରିଲେ।

ସତୀ କହିଲେ—ପ୍ରଭୋ! ମୁଁ ଶୁଣିଲି ଯେ ମୋ ବାପା କୁଆଡ଼େ ବହୁତ ବଡ଼ ଯଜ୍ଞର ଆୟୋଜନ କରିଛନ୍ତି! ସେଠି ବହୁତ ବଡ଼ ଉତ୍ସବ ହେବ। ସେଠାରେ ସକଳ ଦେବର୍ଷି ଏକତ୍ରିତ ହୋଇଛନ୍ତି। ହେ ଦେବଦେବେଶ୍ୱର! ମୋ ପିତାଙ୍କ ଦ୍ୱାରା ଆୟୋଜିତ ସେହି ଯଜ୍ଞକୁ ଯିବାକୁ ଆପଣଙ୍କର ଇଚ୍ଛା ହେଉନି କାହିଁକି? ଏ ବିଷୟରେ ଯାହା କିଛି ରହସ୍ୟ ଅଛି, ମୋତେ ଖୋଲି କହନ୍ତୁ। ମହାଦେବ! ସୁହୃଦ ସହିତ ଭେଟ ଓ ସାକ୍ଷାତ କରିବା ଅନ୍ୟ ସୁହୃଦର ଧର୍ମ। ଏଭଳି ମିଳନ ପ୍ରେମ ଓ ସୌହାର୍ଦ୍ଦ୍ୟକୁ ବଢ଼ାଇଥାଏ। ଏଣୁ ପ୍ରଭୋ! ସ୍ୱାମୀ! ଆପଣ ମୋ ପ୍ରାର୍ଥନା ମାନି ଆଜି ହିଁ ବାପାଙ୍କ ଯଜ୍ଞଶାଳାକୁ ଚ୍ଚାଲନ୍ତୁ।

ଯଦ୍ୟପି ମହେଶ୍ୱରଙ୍କ ହୃଦୟ ପୂର୍ବରୁ ଦକ୍ଷଙ୍କ ବାଗ୍‌ବାଣରେ ବିଦ୍ଧ ହୋଇଥିଲା, ତଥାପି ସତୀଙ୍କ କଥା ଶୁଣି ମହେଶ୍ୱର ମଧୁର ବାଣୀରେ କହିଲେ, "ହେ ଦେବୀ! ତୁମ ପିତା ଦକ୍ଷ ମୋ ପ୍ରତି ଅତ୍ୟନ୍ତ ଦ୍ରୋହ କରୁଛନ୍ତି। ଯେଉଁ ପ୍ରମୁଖ ଦେବତା ଓ ଋଷିମାନେ ଅଭିମାନୀ, ମୂଢ଼ ଓ ଜ୍ଞାନଶୂନ୍ୟ ହୋଇଯାଇଛନ୍ତି, କେବଳ ସେଇମାନେ ସେହି ଯଜ୍ଞକୁ ଯାଇଛନ୍ତି। ବିନା ନିମନ୍ତ୍ରଣରେ ଅନ୍ୟର ଘରକୁ ଗଲେ ଅନାଦର ମିଳେ। ସେଭଳି ଅନାଦର ମୃତ୍ୟୁଠାରୁ ବଳି କଷ୍ଟଦାୟକ। ତେଣୁ ପ୍ରିୟେ! ଆମକୁ ଡକା ଯାଇ ନ ଥିବାରୁ ମୁଁ ଆଉ ତୁମେ ସେଠାକୁ ଯିବା ଉଚିତ ନୁହେଁ। ଏହା ମୁଁ ସତ୍ୟ କହୁଛି।

ମହାତ୍ମା ମହେଶ୍ୱର ଏଭଳି କହିବାରୁ ସତୀ ରୋଷ ବ୍ୟକ୍ତ କରି କହିଲେ—ଶମ୍ଭୋ! ଆପଣ ସମସ୍ତଙ୍କର ଈଶ୍ୱର। ଆପଣ ଗଲେ ହିଁ ଯଜ୍ଞ ସଫଳ ହୁଏ, ହେଲେ ଆଶ୍ଚର୍ଯ୍ୟର କଥା ଯେ, ମୋ ଦୁଷ୍ଟ ପିତା ଆପଣଙ୍କୁ ଆମନ୍ତ୍ରିତ କରି ନାହାନ୍ତି! ପ୍ରଭୋ! ସେ ଦୁରାତ୍ମାଙ୍କର ଅଭିପ୍ରାୟ କ'ଣ, ମୁଁ ତାହା ଜାଣିବାକୁ ଚ୍ଚାହେଁ। ତା'ଛଡ଼ା ସେଠାକୁ ଆସିଥିବା ସମସ୍ତ ଦୁରାତ୍ମା ଦେବର୍ଷିମାନଙ୍କର ମନୋଭାବକୁ ମଧ୍ୟ ଜାଣିବାକୁ ଚ୍ଚାହେଁ। ଏଣୁ ପ୍ରଭୋ! ମୁଁ ଆଜି ହିଁ ପିତାଙ୍କ ଯଜ୍ଞକୁ ଯାଉଛି। ନାଥ! ମହେଶ୍ୱର! ଆପଣ ମୋତେ ସେଠାକୁ ଯିବାକୁ ଅନୁମତି ଦିଅନ୍ତୁ।

ଦେବୀ ସତୀ ଏଭଳି କହିବାରୁ ସର୍ବଜ୍ଞ ସର୍ବଦ୍ରଷ୍ଟା ସୃଷ୍ଟିକର୍ତ୍ତା ଓ କଲ୍ୟାଣସ୍ୱରୂପ ସାକ୍ଷାତ୍ ରୁଦ୍ର ତାଙ୍କୁ କହିଲେ—

ଶିବ କହିଲେ—ସୁବ୍ରତେ! ଯଦି ତୁମର ପିତାଙ୍କ ଯଜ୍ଞକୁ ଯିବାକୁ ଏତେ ପ୍ରବଳ ରୁଚି ରହିଛି, ତେବେ ମୋ ଆଜ୍ଞାରେ ଶୀଘ୍ର ଯାଅ। ନନ୍ଦି ବୃଷଭ ସୁସଜ୍ଜିତ ହୋଇ ରହିଛି। ତୁମେ ଜଣେ ମହାରାଣୀ ଅନୁରୂପ ରାଜୋପଚ୍ଚାର ସହିତ ନନ୍ଦି ଉପରେ ଆରୋହଣ କରି ପ୍ରମଥଗଣଙ୍କ ସଙ୍ଗରେ ଯାତ୍ରା କର। ପ୍ରିୟେ! ଏ ବୃଷଭ ଉପରେ ଆରୂଢ଼ ହୁଅ।

ରୁଦ୍ର ଏପରି ଆଦେଶ ଦେବାରୁ ନାନା

ପ୍ରକାର ସୁନ୍ଦର ଆଭୂଷଣରେ ବିଭୂଷିତା ସତୀ ଦେବୀ ସମସ୍ତ ସାଧନରେ ଯୁକ୍ତ ହୋଇ ପିତାଙ୍କ



ଗୃହ ଅଭିମୁଖେ ବାହାରିଲେ । ପରମାତ୍ମା ଶିବ ତାଙ୍କୁ ସୁନ୍ଦର ବସ୍ତ୍ର, ଆଭୂଷଣ ଏବଂ ପରମୋଜ୍ଜ୍ୱଳ ଛତ୍ର, ଚ୍ାମର ଆଦି ମହାରାଜୋଚିତ ଉପଚ୍ାର ଦେଲେ । ଶିବଙ୍କ ଆଜ୍ଞାରେ ଷାଠିଏ ହଜାର ରୁଦ୍ରଗଣ ଅତ୍ୟନ୍ତ ଆନନ୍ଦ ଓ ଉତ୍ସାହରେ କୌତୂହଳପୂର୍ବକ ସତୀଙ୍କ ସଙ୍ଗରେ ଚ୍ାଲିଲେ । ସେ ଯାତ୍ରା କରୁଥିବା ବେଳେ ମହାନ୍ ଉତ୍ସବ ହେଉଥିଲା । ମହାଦେବଙ୍କ ଗଣମାନେ ଶିବପ୍ରିୟା ସତୀଙ୍କ ପାଇଁ ବହୁତ ବଡ଼ ଉତ୍ସବର ଆୟୋଜନ କଲେ । ସେମାନେ ସମସ୍ତେ କୌତୂହଳପୂର୍ଣ୍ଣ କାର୍ଯ୍ୟ କରୁଥିଲେ ଓ ସତୀ ଓ ଶିବଙ୍କର ଯଶୋଗାନ କରୁଥିଲେ । ଶିବଙ୍କର ପ୍ରିୟ ବୀର ପ୍ରମଥଗଣ ପ୍ରସନ୍ନମନରେ ନାଚି-କୁଦି ଚ୍ାଲିଥାନ୍ତି । ଜଗଦମ୍ବାଙ୍କ ଯାତ୍ରା ଅତି ସୁନ୍ଦର ଓ ଶୋଭନୀୟ ହୋଇଥାଏ । ସେତେବେଳେ ଆନନ୍ଦରେ ଯେଉଁ ଜୟଧ୍ୱନି ହେଉଥିଲା, ସେଥିରେ ତ୍ରିଭୁବନ କମ୍ପି ଉଠୁଥିଲା ।

(ଅଧ୍ୟାୟ ୨୮)

★★★

## ଯଜ୍ଞଶାଳାରେ ଶିବଙ୍କ ଭାଗ ଦେଖିବାକୁ ନ ପାଇ ସତୀଙ୍କର ରୋଷ, ଦକ୍ଷଙ୍କ ମୁଖରୁ ଶିବନିନ୍ଦା ଶୁଣି ଦକ୍ଷଙ୍କୁ ଓ ଦେବଗଣଙ୍କୁ ସତୀଙ୍କର ଧିକ୍କାର ଏବଂ ନିଜ ପ୍ରାଣତ୍ୟାଗର ନିର୍ଣ୍ଣୟ

ବ୍ରହ୍ମା କହୁଛନ୍ତି—ନାରଦ ! ଯେଉଁଠାରେ ମହାନ୍ ଜ୍ୟୋତିର୍ମୟ ଯଜ୍ଞ ହେଉଥିଲା, ଦକ୍ଷକନ୍ୟା ସତୀ ସେହି ସ୍ଥାନକୁ ଗଲେ । ସେଠାରେ ଦେବତା, ଅସୁର, ମୁନୀନ୍ଦ୍ର ପ୍ରଭୃତିଙ୍କ ଦ୍ୱାରା କୌତୂହଳପୂର୍ଣ୍ଣ କାର୍ଯ୍ୟ ହେଉଥିଲା । ସତୀ ଦେଖିଲେ ଯେ ତାଙ୍କ ପିତାଙ୍କ ଭବନ ନାନା ପ୍ରକାର ଆଶ୍ଚର୍ଯ୍ୟଜନକ ବସ୍ତୁରେ ସମୃଦ୍ଧ, ଉତ୍ତମ ପ୍ରଭାରେ ପରିପୂର୍ଣ୍ଣ, ମନୋହର ତଥା ଦେବତା ଓ ଋଷିଙ୍କ ସମୂହରେ ଭରପୂର । ଦେବୀ ସତୀ ଭବନର ଦ୍ୱାରଦେଶକୁ ଯାଇ ଠିଆ ହେଲେ ଏବଂ ନିଜ ବାହନରୁ ଓହ୍ଲାଇ ଏକୁଟିଆ ଦ୍ରୁତଗତିରେ ଯଜ୍ଞଶାଳା ଭିତରକୁ ପଶିଗଲେ । ସତୀ ଆସିଥିବା ଦେଖି ତାଙ୍କ ମାଆ ଅସିକ୍ନୀ (ବୀରିଣୀ) ଓ ତାଙ୍କ ଭଉଣୀମାନେ ଯଦ୍ୟପି ତାଙ୍କର ଯଥୋଚିତ ସତ୍କାର କଲେ, ହେଲେ ପିତା ଦକ୍ଷ ତାଙ୍କୁ ଦେଖି ମଧ୍ୟ କୌଣସି ପ୍ରକାର ଆଦର କଲେ ନାହିଁ । ଦକ୍ଷଙ୍କ ଭୟରେ ଅନ୍ୟ ଲୋକେ ମଧ୍ୟ ତାଙ୍କ ପ୍ରତି ଆଦର ଭାବ ଦେଖାଇ ପାରିଲେ ନାହିଁ । ସେମାନେ ଶିବମାୟାରେ ମୋହିତ ଥିଲେ । ସମସ୍ତଙ୍କ ଦ୍ୱାରା ଏପରି ଅନାଦୃତ ଓ ତିରସ୍କୃତ ହେବାରୁ ସତୀଙ୍କୁ ବଡ଼ ବିସ୍ମୟ

ଲାଗିଲା; ତଥାପି ସେ ତାଙ୍କ ମାତା ଓ ପିତାଙ୍କ ଚରଣରେ ପ୍ରଣାମ କଲେ । ସତୀ ସେହି ଯଜ୍ଞରେ ବିଷ୍ଣୁ ଆଦି ଦେବତାଙ୍କର ଯଜ୍ଞଭାଗ ଦେଖିବାକୁ ପାଇଲେ, କେବଳ ଶମ୍ଭୁଙ୍କ ଯଜ୍ଞଭାଗ କେଉଁଠି ଦେଖିବାକୁ ପାଇଲେ ନାହିଁ । ଏଣୁ ସେ ଦୁଃସହ କ୍ରୋଧରେ କମ୍ପି ଉଠିଲେ । ସେ ଅପମାନିତ ହୋଇ ମଧ୍ୟ ଭୀଷଣ କ୍ରୋଧପୂର୍ଣ୍ଣ ଦୃଷ୍ଟିରେ ସମସ୍ତଙ୍କୁ ଚାହିଁବା ପରେ ଦକ୍ଷଙ୍କୁ ଭସ୍ମ କରିଦେଲା ଭଳି କୋପଯୁକ୍ତ ବଚନ କହିଲେ—

ସତୀ କହିଲେ—ପ୍ରଜାପତେ ! ଆପଣ ପରମ ମଙ୍ଗଳକାରୀ ଶିବଙ୍କୁ ଏ ଯଜ୍ଞରେ କାହିଁକି ଆମନ୍ତ୍ରିତ କଲେ ନାହିଁ? ଯାହାଙ୍କ ଦ୍ୱାରା ଏ ସମଗ୍ର ଜଗତ ପବିତ୍ର ହୁଏ, ଯେ ସ୍ୱୟଂ ଯଜ୍ଞସ୍ୱରୂପ, ଯଜ୍ଞବେତ୍ତାଙ୍କ ମଧ୍ୟରେ ଶ୍ରେଷ୍ଠ, ଯଜ୍ଞର ଅଙ୍ଗ, ଯଜ୍ଞର ଦକ୍ଷିଣା ଓ ଯଜ୍ଞକର୍ତ୍ତା ଯଜମାନ, ସେଭଳି ଭଗବାନ ଶିବଙ୍କ ବିନା ଏ ଯଜ୍ଞ କିପରି ପୂର୍ଣ୍ଣାଙ୍ଗ ହୋଇପାରିବ ଭଲା? ଯାହାଙ୍କୁ ସ୍ମରଣ କରିବା ମାତ୍ରେ ସବୁ କିଛି ପବିତ୍ର ହୋଇଯାଏ, ତାଙ୍କ ବିନା କରାଯାଉଥିବା ଏ ଯଜ୍ଞ ଅପବିତ୍ର ହୋଇଯିବ । ଦ୍ରବ୍ୟ, ମନ୍ତ୍ର, ହବ୍ୟ, କବ୍ୟ ଇତ୍ୟାଦି ଯାହାଙ୍କର ସ୍ୱରୂପ, ତାଙ୍କ ବିନା ଏ ଯଜ୍ଞକୁ କିପରି ଆରମ୍ଭ କରାଗଲା? କ'ଣ ଆପଣ ଭଗବାନ ଶିବଙ୍କୁ ସାଧାରଣ ଦେବତା ମନେକରି ତାଙ୍କୁ ଅନାଦର କରିଛନ୍ତି? ଆଜି ଆପଣଙ୍କ ବୁଦ୍ଧି ଭ୍ରଷ୍ଟ ହୋଇଯାଇଛି । ଏଇଥିପାଇଁ ଆପଣ ପିତା ହୋଇ ମଧ୍ୟ ମୋତେ ଅଧମ ଜଣା ପଡୁଛନ୍ତି । ଆଶ୍ଚର୍ଯ୍ୟର କଥା ଯେ ଏ ବିଷ୍ଣୁ ଏବଂ ବ୍ରହ୍ମାଦି ଦେବତା ତଥା ମୁନି ମଧ୍ୟ ସେମାନଙ୍କ ପ୍ରଭୁ ଶିବଙ୍କ ଆଗମନ ବିନା ଏ ଯଜ୍ଞରେ କିପରି ଆସି ଯୋଗ ଦେଲେ?

ଏପରି କହିବା ପରେ ଶିବସ୍ୱରୂପିଣୀ ପରମେଶ୍ୱରୀ ସତୀ ବିଷ୍ଣୁ, ବ୍ରହ୍ମା, ଇନ୍ଦ୍ର ପ୍ରଭୃତି ସମସ୍ତ ଦେବତା ତଥା ଋଷିଗଣଙ୍କୁ ବହୁତ କଠୋର ଶବ୍ଦରେ ଗାଳି ଦେଲେ ।

ବ୍ରହ୍ମା କହୁଛନ୍ତି—ନାରଦ ! ଏହି ପ୍ରକାରେ ଜଗଦମ୍ବା ସତୀ ଅତ୍ୟନ୍ତ କ୍ରୋଧରେ ଓ ବ୍ୟଥିତ ହୃଦୟରେ ନାନା ପ୍ରକାର କଥା କହିଲେ । ସେଠାରେ ଉପସ୍ଥିତ ବିଷ୍ଣୁ ପ୍ରଭୃତି ଦେବତା ଓ ମୁନିଗଣ ସତୀଙ୍କ କଥା ଶୁଣି ନୀରବ ରହିଲେ । କିନ୍ତୁ ଦକ୍ଷ ନିଜ ଝିଅର ଏପରି କଥା ଶୁଣି ସତୀଙ୍କ ଆଡ଼କୁ କ୍ରୂର ଦୃଷ୍ଟିରେ ଚାହିଁଲେ ଓ ଏହିପରି କହିଲେ—

ଦକ୍ଷ କହିଲେ—ଭଦ୍ରେ ! ତୁ ଅଧିକ କହିଲେ କ'ଣ ହେବ? ଏବେ ତୋର ଏଠାରେ କିଛି କାର୍ଯ୍ୟ ନାହିଁ । ତୁ ରହ କି ଯାଆ, ତୋ ଇଚ୍ଛା ଉପରେ ନିର୍ଭର । ତୁ ଏଠାକୁ ଆସିଥିଲୁ କାହିଁକି? ବିଦ୍ୱାନମାନେ ଜାଣନ୍ତି ଯେ ତୋ ସ୍ୱାମୀ ଶିବ ଅମଙ୍ଗଳସ୍ୱରୂପ । ସେ କୁଳୀନ ବି ନୁହନ୍ତି । ସେ ବେଦରୁ ବହିଷ୍କୃତ ଏବଂ ଭୂତ, ପ୍ରେତ ତଥା ପିଶାଚଙ୍କ ସ୍ୱାମୀ । ସେ ଅତ୍ୟନ୍ତ କୁତ୍ସିତ ବେଶ ଧାରଣ କରିଥାନ୍ତି । ସେଥିପାଇଁ ରୁଦ୍ରଙ୍କୁ ଏ ଯଜ୍ଞକୁ ଡକାଯାଇ ନାହିଁ । ମୁଁ ରୁଦ୍ରଙ୍କୁ ଭଲଭାବେ ଜାଣେ । ତେଣୁ ଜାଣିଶୁଣି ମୁଁ ଦେବତା ଓ ଋଷିଙ୍କ ସଭାକୁ ତାଙ୍କୁ ଆମନ୍ତ୍ରିତ କରି ନାହିଁ । ରୁଦ୍ରଙ୍କୁ ଶାସ୍ତ୍ରର ଅର୍ଥ ମଧ୍ୟ ଜଣା ନାହିଁ । ସେ ଉଦ୍ଦଣ୍ଡ ଓ ଦୁରାତ୍ମା । ମୁଁ ମୂଢ଼ ପାପୀ କେବଳ ବ୍ରହ୍ମାଙ୍କ କହିବା ଅନୁସାରେ ତାଙ୍କ ସହିତ ତୋର ବିବାହ କରିଦେଇଥିଲି । ଏଣୁ ହେ ଶୁଚିସ୍ମିତେ ! ତୁ କ୍ରୋଧ ଛାଡ଼ି ଶାନ୍ତ ହୋଇଯାଆ । ଏ ଯଜ୍ଞକୁ ତୁ ଆସିଯାଇଛୁ ଯଦି ସ୍ୱୟଂ ତୁ ତୋର ଭାଗ ବା ଯଉତୁକ ଗ୍ରହଣ କର ।

ଦକ୍ଷଙ୍କ କଥା ଶୁଣି ତାଙ୍କର ତ୍ରିଭୁବନପୂଜିତା କନ୍ୟା ସତୀ ନିଜର ଶିବନିନ୍ଦୁକ ପିତାଙ୍କ ଆଡ଼କୁ କ୍ରୁଦ୍ଧ ଦୃଷ୍ଟିରେ ଚାହିଁଲେ; ସେତେବେଳେ ତାଙ୍କର କ୍ରୋଧ ଆହୁରି ବଢ଼ିଗଲା । ସେ ମନେ ମନେ ଭାବିଲେ "ଏବେ ମୁଁ କେଉଁ ମୁହଁରେ ଶିବଙ୍କ

ନିକଟକୁ ଯିବି। ଯଦି ସ୍ୱାମୀଙ୍କ ଦର୍ଶନ ଇଚ୍ଛାରେ ତାଙ୍କ ପାଖକୁ ଯିବି ଆଉ ସେ ଏଠାକାର ସମାଗ୍ର ପଗ୍ରିଦେବେ, ସେତେବେଳେ ମୁଁ କି ଉତ୍ତର ଦେବି?'' ଏହା ଭାବି ତ୍ରିଲୋକଜନନୀ ସତୀ କ୍ରୋଧାବେଶରେ ବାରମ୍ବାର ଦୀର୍ଘଶ୍ୱାସ ମାରି ତାଙ୍କର ଦୁଷ୍ଟମତି ପିତାଙ୍କୁ କହିଲେ—

ସତୀ କହିଲେ—ଯେ ମହାଦେବଙ୍କ ନିନ୍ଦା କରେ ଅଥବା ଯେ ତାଙ୍କର ନିନ୍ଦା ହେଉଥିବାବେଳେ ତାହା ଶୁଣୁଥାଏ, ଉଭୟେ ସୂର୍ଯ୍ୟଚନ୍ଦ୍ର ଆତଯାତ ହେଉଥିବା ଯାଏ ନରକରେ ପଡ଼ିରହନ୍ତି।* ଏଣୁ ମୁଁ ଏ ଦେହ ଆଉ ରଖିବି ନାହିଁ। ମୁଁ ଜଳନ୍ତା ନିଆଁରେ ପ୍ରବେଶ କରିଯିବି। ମୋ ସ୍ୱାମୀଙ୍କର ଅନାଦର ଶୁଣିବା ସତ୍ତ୍ୱେ ମୋତେ ଆଉ ଏ ପ୍ରାଣ ରଖିବାରେ କି ପ୍ରୟୋଜନ? ଯଦି କେହି ସମର୍ଥ ହୋଇଥାଏ, ସେ ଯଥାସାମର୍ଥ୍ୟ ପ୍ରୟାସ କରି ଶିବନିନ୍ଦୁକର ଜିଭକୁ ବଳପୂର୍ବକ କାଟିଦେବା ଉଚିତ। ତା'ହେଲେ ଯାଇ ସେ ଶିବନିନ୍ଦାଶ୍ରବଣରୂପୀ ପାପରୁ ମୁକ୍ତ ହୋଇପାରିବ। ଯଦି ସେ ଏଭଳି କିଛି କରିବାକୁ ଅସମର୍ଥ ହୋଇଥାଏ, ତେବେ ସେଠାରୁ କାନ ବନ୍ଦ କରି ଉଠି ଗ୍ଲିଯିବା ହିଁ ବୁଦ୍ଧିମତ୍ତା ହେବ। ଏହାଦ୍ୱାରା ସେ ଦୋଷଭାଗୀ ହେବ ନାହିଁ। ଏହା ଶ୍ରେଷ୍ଠ ବିଦ୍ୱାନ୍‌ଙ୍କ ମତ।

ଏପରି ଧର୍ମନୀତି କହିବା ପରେ ସତୀଙ୍କୁ ସେଠାକୁ ଆସିଥିବାରୁ ବହୁତ ଅନୁତାପ ହେଲା। ସେ ବ୍ୟଥିତ ହୃଦୟରେ ଭଗବାନ ଶିବଙ୍କ କଥାକୁ ସ୍ମରଣ କଲେ। ତା'ପରେ ସେ ଅତ୍ୟନ୍ତ କୁପିତ ହୋଇ ଦକ୍ଷଙ୍କୁ, ବିଷ୍ଣୁ ପ୍ରମୁଖ ଦେବଗଣଙ୍କୁ ଓ ମୁନିଗଣଙ୍କୁ ନିର୍ଭୟରେ କହିଲେ—

ସତୀ କହିଲେ—ତାତ! ତୁମେ ଭଗବାନ ଶଙ୍କରଙ୍କ ନିନ୍ଦୁକ। ଏଥିପାଇଁ ତୁମକୁ ବହୁତ ପଶ୍ଚାତ୍ତାପ କରିବାକୁ ପଡ଼ିବ। ଏଠାରେ ଘୋର ଦୁଃଖ ଭୋଗି ଶେଷରେ ତୁମକୁ ଯାତନା ବି ଭୋଗିବାକୁ ପଡ଼ିବ। ଯାହାଙ୍କର ଏଠାରେ କେହି ପ୍ରିୟ ନାହିଁ କି ଅପ୍ରିୟ ନାହିଁ, ସେଭଳି ପରମାତ୍ମା ଶିବଙ୍କର ପ୍ରତିକୂଳ କେବଳ ତୁମ ଛଡ଼ା ଆଉ କିଏ ହୋଇପାରିବ ଭଲା? ଯେଉଁମାନେ ଦୁଷ୍ଟ, ସେମାନେ ଯଦି ସର୍ବଦା ଈର୍ଷ୍ୟାରେ ମହାପୁରୁଷଙ୍କ ନିନ୍ଦା କରନ୍ତି, ତାହା କିଛି ଆଶ୍ଚର୍ଯ୍ୟର କଥା ନୁହେଁ। କିନ୍ତୁ ଯେଉଁମାନେ ମହାତ୍ମାଙ୍କ ଚରଣରଜରେ ନିଜ ଅଜ୍ଞାନାନ୍ଧକାରକୁ ଦୂର କରିସାରିଛନ୍ତି, ସେମାନେ ଯଦି ମହାପୁରୁଷଙ୍କୁ ନିନ୍ଦା କରନ୍ତି, ତାହା ସେମାନଙ୍କୁ ଶୋଭା ଦିଏ ନାହିଁ। ଆଶ୍ଚର୍ଯ୍ୟର କଥା ଯେ, ଯେଉଁ ପ୍ରଭୁଙ୍କର ଦୁଇଅକ୍ଷରଯୁକ୍ତ 'ଶିବ' ନାମ କେବେ କଥା-ପ୍ରସଙ୍ଗରେ ଥରେ ମନୁଷ୍ୟ ମୁଖରୁ ବାହାରିଗଲେ ତାହା ତା'ର ସମସ୍ତ ପାପରାଶିକୁ ଭସ୍ମ କରିଦିଏ, ସେପରି ପବିତ୍ରକୀର୍ତ୍ତି ନିର୍ମଳ ଶିବଙ୍କ ପ୍ରତି ତୁମେ ଦ୍ୱେଷ କରୁଛ? ବାସ୍ତବରେ ତୁମେ ହିଁ ଅଶିବ (ଅମଙ୍ଗଳ) ରୂପ। ମହାପୁରୁଷଙ୍କ ମନରୂପୀ ମଧୁକର ବ୍ରହ୍ମାନନ୍ଦମୟ ରସପାନ କରିବା ଇଚ୍ଛାରେ ଯାହାଙ୍କ ସର୍ବାର୍ଥଦାୟକ ଚରଣକମଳର ନିରନ୍ତର ସେବନ କରନ୍ତି, ତାଙ୍କ ପ୍ରତି ତୁମେ ମୂର୍ଖତାବଶତଃ ଦ୍ରୋହ କରୁଛ? ଯାହାଙ୍କୁ ତୁମେ ନାମକୁ ମାତ୍ର ଶିବ ଓ କାମରେ ଅଶିବ ବୋଲି କହୁଛ, ତାଙ୍କୁ କ'ଣ ତୁମ ଛଡ଼ା ଆଉ କେହି ସେଭଳି ବୋଲି ଜାଣନ୍ତି ନାହିଁ? ବ୍ରହ୍ମାଦି ଦେବତା, ସନକାଦି ମୁନି ତଥା ଅନ୍ୟ ଜ୍ଞାନୀମାନେ କ'ଣ ତାଙ୍କ ସ୍ୱରୂପକୁ ବୁଝି ନାହାନ୍ତି? ଉଦାରବୁଦ୍ଧି ଭଗବାନ ଶିବ ଜଟା ମୁକୁଳା କରି, କପାଳ ଧାରଣ କରି, ଶ୍ମଶାନରେ ଭୂତଙ୍କ ସହିତ ପ୍ରସନ୍ନତାପୂର୍ବକ ରହନ୍ତି ତଥା ଭସ୍ମ

* ଯୋ ନିନ୍ଦତି ମହାଦେବଂ ନିନ୍ଦ୍ୟମାନଂ ଶୃଣୋତି ବା। ତାବୁଭୌ ନରକଂ ଯାତୋ ଯାବଚ୍ଚନ୍ଦ୍ରଦିବାକରୌ॥
(ଶି. ପୁ. ରୁ. ସଂ. ସ. ଖ. ୨୯।୩୮)

ଓ ନରମୁଣ୍ଡମାଳା ଧାରଣ କରନ୍ତି—ଏକଥାକୁ ଜାଣି ସୁଦ୍ଧା ମୁନି ଓ ଦେବତା ତାଙ୍କ ଚରଣରୁ ଖସିପଡ଼ିଥିବା ନିର୍ମାଲ୍ୟକୁ ମସ୍ତକରେ ଧାରଣ କରନ୍ତି କାହିଁକି? ପ୍ରକୃତ କାରଣ ହେଲା ଶିବ ସାକ୍ଷାତ୍ ପରମେଶ୍ୱର । ପ୍ରବୃତ୍ତି (ଯାଗ-ଯଜ୍ଞାଦି) ଓ ନିବୃତ୍ତି (ଶମ-ଦମ ଆଦି)—ଦୁଇ ପ୍ରକାର କର୍ମ ରହିଛି । ମନୀଷୀଗଣ ତାହା ବିଗ୍ୱର କରିବା ଉଚିତ । ବେଦରେ ବିବେଚନା କରି ତାହାର ରାଗୀ ଓ ବିରାଗୀ ନାମରେ ଦୁଇ ପ୍ରକାର ଭିନ୍ନ ଭିନ୍ନ ଅଧିକାରୀ ନିର୍ଦ୍ଧାରିତ କରାଯାଇଛି । ପରସ୍ପର ବିରୋଧୀ ହୋଇଥିବାରୁ ଉପରୋକ୍ତ ଦୁଇପ୍ରକାର କର୍ମକୁ ଏକାବେଳକେ ଜଣେ କର୍ତ୍ତାଦ୍ୱାରା ଆଚରଣ କରିବା ସମ୍ଭବପର ନୁହେଁ । ଭଗବାନ ଶଙ୍କର ତ ପରବ୍ରହ୍ମ ପରମାତ୍ମା, ତାଙ୍କ ଠାରେ ଏ ଉଭୟ ପ୍ରକାର କର୍ମର ଆଦୌ ପ୍ରବେଶ ନାହିଁ । ତାଙ୍କୁ କୌଣସି କର୍ମ ପ୍ରାପ୍ତ ହୁଏ ନାହିଁ । ତାଙ୍କୁ କୌଣସି ପ୍ରକାର କର୍ମ କରିବାର ଆବଶ୍ୟକତା ନାହିଁ । ବାପା ! ଆମ ଐଶ୍ୱର୍ଯ୍ୟ ଅବ୍ୟକ୍ତ । ତାହାର କୌଣସି ଲକ୍ଷଣ ବ୍ୟକ୍ତ ନୁହେଁ, ସର୍ବଦା ଆତ୍ମଜ୍ଞାନୀ ପୁରୁଷ ହିଁ ତାହାକୁ ସେବନ କରିଥାନ୍ତି । ତୁମ ପାଖରେ ସେଭଳି ଐଶ୍ୱର୍ଯ୍ୟ ନାହିଁ । ଯଜ୍ଞଶାଳାରେ ରହି ସେଠାକାର ଅନ୍ନରେ ତୃପ୍ତ ହେଉଥିବା କର୍ମପ୍ରବଣ ଲୋକଙ୍କୁ ଯେଉଁ ଭୋଗ ପ୍ରାପ୍ତ ହୋଇଥାଏ, ତାହାଠାରୁ ଆମର ସେହି ଐଶ୍ୱର୍ଯ୍ୟ ବହୁ ଊର୍ଦ୍ଧ୍ୱରେ । ଯେ ମହାପୁରୁଷଙ୍କୁ ନିନ୍ଦା କରେ, ଯେ ଦୁଷ୍ଟ, ତା'ର ଜନ୍ମକୁ ଧିକ୍କାର । ବିଦ୍ୱାନ୍ ପୁରୁଷ ସର୍ବପ୍ରକାର ପ୍ରଯତ୍ନ କରି ତା'ଠାରୁ ସମ୍ବନ୍ଧ ତୁଟାଇ ଦେବା ଉଚିତ । ଯେତେବେଳେ ଭଗବାନ ଶିବ ମୋତେ ତୁମ ସହ ସମ୍ବନ୍ଧଯୁକ୍ତ 'ଦାକ୍ଷାୟଣୀ' ନାମ ଧରି ଡାକିବେ, ସେତେବେଳେ ମୋ ମନ ନିଶ୍ଚୟ ମର୍ମାହତ ହେବ । ଏଣୁ ତୁମଠାରୁ ଉତ୍ପନ୍ନ ମୋର ଏ ଶବତୁଲ୍ୟ ଶରୀରକୁ ମୁଁ ଆଉ ରଖିବି ନାହିଁ । ଏ ଦେହକୁ ତ୍ୟାଗ କଲେ ଯାଇ ମୁଁ ସୁଖୀ ହେବି । ହେ ଦେବଗଣ ଓ ମୁନିଗଣ ! ତୁମେମାନେ ମୋ କଥା ଶୁଣ । ତୁମମାନଙ୍କ ହୃଦୟରେ ଦୁଷ୍ଟତା ଆସିଯାଇଛି । ତୁମମାନଙ୍କର ଏଭଳି କର୍ମ ସର୍ବଥା ଅନୁଚିତ । ତୁମେ ସବୁ ମୂଢ଼; କାରଣ ଶିବନିନ୍ଦା ଓ କଳହ ତୁମମାନଙ୍କର ପ୍ରିୟ । ତେଣୁ ଭଗବାନ ହରଙ୍କ ଠାରୁ ତୁମମାନଙ୍କୁ ଏହି କୁକର୍ମର ସବୁଯାକ ଫଳ ନିଶ୍ଚୟ ମିଳିବ ।

ବ୍ରହ୍ମା କହୁଛନ୍ତି—ନାରଦ ! ଯଜ୍ଞସ୍ଥଳରେ ଦକ୍ଷ ଓ ଦେବଗଣଙ୍କୁ ଏପରି କହି ସତୀଦେବୀ ଚୁପ୍ ହୋଇଗଲେ ଏବଂ ମନେ ମନେ ନିଜ ପ୍ରାଣବଲ୍ଲଭ ଶମ୍ଭୁଙ୍କୁ ସ୍ମରଣ କଲେ । (ଅଧ୍ୟାୟ ୨୯)



## ଯୋଗାଗ୍ନିରେ ସତୀଙ୍କର ଆତ୍ମାହୁତି, ଦର୍ଶକମାନଙ୍କର ହାହାକାର, ଶିବପାର୍ଷଦମାନଙ୍କର ପ୍ରାଣତ୍ୟାଗ, ଅବଶିଷ୍ଟ ପାର୍ଷଦମାନଙ୍କର ଦକ୍ଷଙ୍କ ଉପରେ ଆକ୍ରମଣ ତଥା ଋଭୁଗଣଙ୍କ ଦ୍ୱାରା ବିତାଡ଼ିତ ହୋଇ ପଳାୟନ ଏବଂ ଦେବଗଣଙ୍କ ଚିନ୍ତା

ବ୍ରହ୍ମା କହୁଛନ୍ତି—ନାରଦ ! ସତୀଦେବୀ ମୌନଭାବରେ ନିଜ ସ୍ୱାମୀଙ୍କୁ ସ୍ମରଣ କରି ଶାନ୍ତଚିତ୍ତରେ ଯାଇ ସହସା ଉତ୍ତରଦିଗରେ ଭୂମି ଉପରେ ବସିଗଲେ । ସେ ବିଧିପୂର୍ବକ ଜଳରେ ଆଚମନ କରି ବସ୍ତ୍ରରେ ନିଜକୁ ଘୋଡ଼ାଇ ପକାଇଲେ ଓ ପବିତ୍ର ଭାବରେ ଆଖି ବୁଜି ସ୍ୱାମୀଙ୍କୁ ଚିନ୍ତନ କରି କରି ଯୋଗମାର୍ଗରେ ସ୍ଥିତ ହୋଇଗଲେ । ସେ ସୁସ୍ଥିର ଆସନରେ ବସି

ପ୍ରାଣାୟାମ ଦ୍ୱାରା ପ୍ରାଣ ଓ ଅପାନକୁ ଏକତ୍ର କରି ନାଭିଚକ୍ରରେ ସ୍ଥିର କଲେ । ତା'ପରେ ଉଦାନବାୟୁକୁ ବଳପୂର୍ବକ ନାଭିଚକ୍ରରୁ ଉପରକୁ ଉଠାଇ ବୁଦ୍ଧି ସହିତ ହୃଦୟରେ ସ୍ଥାପିତ କଲେ । ତା'ପରେ ଶିବଙ୍କ ପ୍ରାଣବଲ୍ଲଭା ଅନିନ୍ଦିତା ସତୀ ସେହି ହୃଦୟସ୍ଥିତ ବାୟୁକୁ କଣ୍ଠମାର୍ଗରୁ ଭ୍ରୂକୁଟିଦ୍ୱୟର ମଧ୍ୟଭାଗକୁ ନେଇଗଲେ । ଦକ୍ଷଙ୍କ ଉପରେ କୁପିତା ସତୀ ସହସା ଦେହତ୍ୟାଗ କରିବା ଇଚ୍ଛାରେ ନିଜର ସମସ୍ତ ଅଙ୍ଗରେ ଯୋଗମାର୍ଗ ଅନୁସାରେ ବାୟୁ ଓ ଅଗ୍ନିକୁ ଧାରଣ କଲେ । ତା'ପରେ ସେ ପତିଦେବଙ୍କ ଚରଣାରବିନ୍ଦକୁ ଚିନ୍ତନ କରି ଅନ୍ୟ ସମସ୍ତ ବସ୍ତୁର ଧ୍ୟାନ ଭୁଲିଗଲେ । ତାଙ୍କ ଚିତ୍ତ ଯୋଗମାର୍ଗରେ ସ୍ଥିତ ହୋଇଯାଇଥିଲା । ସେଥିପାଇଁ ତାଙ୍କୁ ସ୍ୱାମୀଙ୍କ ଚରଣ ବିନା ଅନ୍ୟ କିଛି ଦେଖାଗଲା ନାହିଁ । ମୁନିଶ୍ରେଷ୍ଠ ! ସତୀଙ୍କ ନିଷ୍ପାପ ଶରୀର ଅବିଳମ୍ବେ ଢଳି ପଡ଼ିଲା ଏବଂ ତାଙ୍କ ଇଚ୍ଛାନୁସାରେ ଯୋଗାଗ୍ନିରେ ଜଳି ତତ୍କ୍ଷଣାତ୍ ଭସ୍ମ ହୋଇଗଲା । ସେଠାକୁ ଆଗତ ସମସ୍ତ ଦେବତା ପ୍ରଭୃତି ଏ ଘଟଣା ଦେଖି ଉଚ୍ଚସ୍ୱରରେ ହାହାକାର କରିବାକୁ ଲାଗିଲେ । ସେମାନଙ୍କର ସେହି ଘୋର, ଅଦ୍ଭୁତ, ବିଚିତ୍ର ତଥା ଭୟଙ୍କର ହାହାକାର ଶବ୍ଦ ଆକାଶ ଓ ପୃଥିବୀରେ ଚତୁର୍ଦ୍ଦିଗରେ ବିସ୍ତାରିତ ହୋଇଗଲା । ଲୋକେ କହୁଥିଲେ—''ହାୟ ! ମହାନ୍ ଦେବତା ଭଗବାନ ଶିବଙ୍କର ପରମ ପ୍ରେୟସୀ ସତୀଦେବୀ କେଉଁ ଦୁଷ୍ଟର ଦୁର୍ବ୍ୟବହାରରେ କୁପିତ ହୋଇ ଏଭଳି ପ୍ରାଣତ୍ୟାଗ କରିଦେଲେ । ଅହୋ ! ବ୍ରହ୍ମାଙ୍କ ପୁତ୍ର ଦକ୍ଷଙ୍କର କେଡ଼େ ଦୁଷ୍ଟତା ଦେଖ । ସମଗ୍ର ଚରାଚର ଜଗତ ଯାହାଙ୍କର ସନ୍ତାନ, ତାଙ୍କରି କନ୍ୟା ହେଉଛନ୍ତି ଏ ମନସ୍ୱିନୀ ସତୀଦେବୀ । ଏ ତ ସର୍ବଥା ମାନ ପାଇବାର ଯୋଗ୍ୟା ଥିଲେ, ଏ ପୁଣି ପିତାଙ୍କ ଦ୍ୱାରା ଏତେ ନିରାଦୃତା ହେଲେ ଯେ ଏହାଙ୍କୁ ପ୍ରାଣତ୍ୟାଗ କରିବାକୁ ପଡ଼ିଲା ! ଭଗବାନ ବୃଷଭଧ୍ୱଜଙ୍କ ପ୍ରିୟା ସତୀ ସଦା ସମସ୍ତ ମହାପୁରୁଷଙ୍କ ଦ୍ୱାରା ନିରନ୍ତର ସମ୍ମାନ ପାଇବାର ଅଧିକାରିଣୀ ଥିଲେ । ବାସ୍ତବରେ ଦକ୍ଷଙ୍କର ହୃଦୟ ବଡ଼ ଅସହିଷ୍ଣୁ । ପ୍ରଜାପତି ଦକ୍ଷ ବ୍ରାହ୍ମଣଦ୍ରୋହୀ । ଏଣୁ ତାଙ୍କୁ ସମଗ୍ର ସଂସାରରେ ଅପଯଶ ପ୍ରାପ୍ତ ହେବ । ତାଙ୍କରି କନ୍ୟା ପୁଣି ତାଙ୍କରି ଅପରାଧ କାରଣରୁ ପ୍ରାଣତ୍ୟାଗ କରିବାକୁ ଉଦ୍ୟତ ହେଲା, ତଥାପି ସେ ମହାନରକଭୋଗୀ ଶିବଦ୍ରୋହୀ ତାଙ୍କୁ ଅଟକାଇଲେ ନାହିଁ !

ଲୋକେ ଏପରି କହୁ କହୁ ଶିବଙ୍କ ପାର୍ଷଦମାନେ ସତୀଙ୍କର ଏତାଦୃଶ ଅଦ୍ଭୁତ ପ୍ରାଣତ୍ୟାଗ ଦେଖି ଅବିଳମ୍ବେ ଅସ୍ତ୍ରଶସ୍ତ୍ର ଧରି ଦକ୍ଷଙ୍କୁ ମାରିବାକୁ ପ୍ରସ୍ତୁତ ହେଲେ । ଯଜ୍ଞମଣ୍ଡପର ଦ୍ୱାରଦେଶରେ ଦଣ୍ଡାୟମାନ ଥିବା ଶିବଙ୍କର ଷାଠିଏ ହଜାର ଅତ୍ୟନ୍ତ ବଳବାନ୍ ଯୂଥପତି ବୀର ପାର୍ଷଦମାନେ କ୍ରୋଧରେ ପ୍ରକମ୍ପିତ ହେଲେ ଏବଂ ନିଜକୁ ଧିକ୍କାର କରିବା ସହ ବାରମ୍ବାର ଉଚ୍ଚସ୍ୱରରେ ହାହାକାର କରିବାକୁ ଲାଗିଲେ । ଦେବର୍ଷେ ! କେତେକ ପାର୍ଷଦ ତ ଶୋକରେ ଏତେ ମର୍ମାହତ ହେଲେ ଯେ ନିଜର ହିଁ ତୀକ୍ଷ୍ଣ ଓ ପ୍ରାଣନାଶକ ଶସ୍ତ୍ରଦ୍ୱାରା ନିଜ ମୁଖ ଓ ମସ୍ତକରେ ଆଘାତ କରିବାକୁ ଲାଗିଲେ । କୋଡ଼ିଏ ହଜାର ପାର୍ଷଦ ଏହି ଉପାୟରେ ଦକ୍ଷକନ୍ୟା ସତୀଙ୍କ ସହିତ ନଷ୍ଟ ହୋଇଗଲେ । ତାହା ଏକ ଅଦ୍ଭୁତ ଘଟଣା ଥିଲା । ଅବଶିଷ୍ଟ ପ୍ରମଥଗଣ କ୍ରୋଧିତ ହୋଇ, ଅସ୍ତ୍ରଶସ୍ତ୍ର ଧରି ଦକ୍ଷଙ୍କୁ ମାରିବା ପାଇଁ ଉଦ୍ୟତ ହେଲେ । ମୁନେ ! ଆକ୍ରମଣକାରୀ ପାର୍ଷଦଙ୍କ ବେଗ ଦେଖି ଭଗବାନ ଭୃଗୁ ଯଜ୍ଞରେ ବିଘ୍ନସୃଷ୍ଟିକାରୀଙ୍କ ବିନାଶ ନିମନ୍ତେ ପ୍ରଯୁକ୍ତ ହେଉଥିବା 'ଅପହତା ଅସୁରାଃ ରକ୍ଷାଂସି ବେଦିଷଦଃ' ଏହି ଯଜୁର୍ମନ୍ତ୍ରରେ ଦକ୍ଷିଣାଗ୍ନିରେ ଆହୁତି ଦେଲେ । ଭୃଗୁ ଆହୁତି ଦେବାମାତ୍ରେ ଯଜ୍ଞକୁଣ୍ଡରୁ ଋଭୁ

ନାମକ ହଜାର ହଜାର ଦେବତା ପ୍ରକଟ ହୋଇଗଲେ । ସେମାନେ ଅତ୍ୟନ୍ତ ବଳଶାଳୀ ବୀର ଥିଲେ । ମୁନୀଶ୍ୱର ! ସେମାନଙ୍କ ହାତରେ ଜଳନ୍ତା କାଠ ଥିଲା । ସେମାନଙ୍କ ସଙ୍ଗେ



ପ୍ରମଥଗଣଙ୍କର ଭୀଷଣ ଓ ରୋମହର୍ଷଣକାରୀ ଯୁଦ୍ଧ ହେଲା । ବ୍ରହ୍ମତେଜସମ୍ପନ୍ନ ମହାବୀର ଋଭୁଗଣ ଏଭଳି ମାଡ଼ ମାରିଲେ ଯେ ପ୍ରମଥଗଣ ଅଧିକ କିଛି କରି ନ ପାରି ପଳାୟନ କଲେ । ଏଭଳିଭାବରେ ସେହି ଦେବତାମାନେ ଶିବଗଣଙ୍କୁ ବିତାଡ଼ିତ କରିଦେଲେ । ଏପରି ଅଦ୍ଭୁତ ଘଟଣା ଭଗବାନ ଶିବଙ୍କ ମହାଶକ୍ତିମତୀ ଇଚ୍ଛାରେ ହିଁ ଘଟିଥିଲା । ଏହା ଦେଖି ଋଷିଗଣ, ଇନ୍ଦ୍ରାଦି ଦେବତା, ମରୁଦ୍‌ଗଣ, ବିଶ୍ୱେଦେବ, ଅଶ୍ୱିନୀକୁମାର ଓ ଲୋକପାଳମାନେ ନୀରବ ରହିଲେ । କେତେକ ଆସି ବିଷ୍ଣୁଙ୍କୁ ଏ ବିଘ୍ନ ଟାଳିବା ପାଇଁ ପ୍ରାର୍ଥନା କଲେ । ସେମାନେ ଉଦ୍‌ବିଗ୍ନ ହୋଇ ବାରମ୍ବାର ବିଘ୍ନ ନିବାରଣ ପାଇଁ ପରସ୍ପର ମଧ୍ୟରେ ବିଚାରବିମର୍ଶ କଲେ । ପ୍ରମଥଗଣଙ୍କ ନାଶର ଭାବୀ ପରିଣାମ ଉପରେ ବିଚାର କରି ବୁଦ୍ଧିମାନ୍ ବିଷ୍ଣୁ ପ୍ରଭୃତି ଦେବତା ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇଉଠିଲେ । ମୁନେ ! ଏହିରୂପେ ଦୁରାତ୍ମା ଶିବଦ୍ରୋହୀ ବ୍ରହ୍ମବନ୍ଧୁ ଦକ୍ଷଙ୍କ ଯଜ୍ଞରେ ସେତେବେଳେ ବହୁତ ବଡ଼ ବିଘ୍ନ ଉପସ୍ଥିତ ହୋଇଗଲା । (ଅଧ୍ୟାୟ ୩୦)

★★★

## ଦକ୍ଷଙ୍କୁ ଆକାଶବାଣୀର ଭର୍ତ୍ସନା, ତାଙ୍କ ବିନାଶର ସୂଚନା ଏବଂ ଦେବଗଣଙ୍କୁ ଯଜ୍ଞମଣ୍ଡପ ଛାଡ଼ି ପଳାୟନ କରିବାକୁ ପ୍ରେରଣା

ବ୍ରହ୍ମା କହୁଛନ୍ତି—ମୁନୀଶ୍ୱର ! ଇତିମଧ୍ୟରେ ସେଠାରେ ଦକ୍ଷ ଓ ଦେବତା ଆଦି ଶୁଣିପାରିଲା ଭଳି ଆକାଶବାଣୀ ହେଲା । ସେହି ବାଣୀ ଏହିପରି ଯଥାର୍ଥ ବାଣୀ କହିଲା—"ରେ ରେ ଦୁରାଚାରୀ ଦକ୍ଷ ! ରେ ଦମ୍ଭାଚରଣପରାୟଣ ମହାମୂଢ଼ ! ତୁ ଏ କି ଅନର୍ଥକାରୀ କର୍ମ କରିଦେଲୁ ! ରେ ମୂର୍ଖ ! ଶ୍ରେଷ୍ଠ ଶିବଭକ୍ତ ଦଧୀଚିଙ୍କ ବଚନକୁ ମଧ୍ୟ ତୁ ପ୍ରାମାଣିକ ମାନିଲୁ ନାହିଁ । ତାହା ପ୍ରକୃତରେ ତୋ ପାଇଁ ସବୁ ଦୃଷ୍ଟିରୁ ଆନନ୍ଦଦାୟକ ଓ ମଙ୍ଗଳକାରୀ ଥିଲା । ସେ ବ୍ରାହ୍ମଣଦେବ ତୋତେ ଦୁଃସହ ଶାପ ଦେଇ ତୋ ଯଜ୍ଞଶାଳାରୁ ବାହାରିଗଲେ, ତଥାପି ତୁ ମୂଢ଼ କିଛି ବି ବିଚାର କରିପାରିଲୁ ନାହିଁ । ତା'ପରେ ତୋ ଘରକୁ ମଙ୍ଗଳମୟୀ ସତୀଦେବୀ ସ୍ୱୟଂ ଆପେ ଆପେ ଆସିଲେ, ସେ ପୁଣି ତୋର ଝିଅ ଥିଲେ, ତଥାପି ତୁ ତାଙ୍କୁ ବିଶେଷ ଆଦର ଦେଲୁ ନାହିଁ । ଏଭଳି

କାହିଁକି ହେଲା? ରେ ଜ୍ଞାନଦୁର୍ବଳ ! ତୁ ସତୀ ଓ ମହାଦେବଙ୍କୁ ପୂଜା କଲୁ ନାହିଁ କାହିଁକି? 'ମୁଁ ବ୍ରହ୍ମାଙ୍କର ପୁତ୍ର' ଏଇଆ ଭାବି ତୋ ମନ ସବୁବେଳେ ବୃଥା ଗର୍ବରେ ଫୁଲି ରହୁଛି । ସେଇଥିପାଇଁ ତୋ ଉପରେ ମୋହ ଆଚ୍ଛାଦିତ ହୋଇଯାଇଛି । ସତୀଦେବୀ ସତ୍ପୁରୁଷଙ୍କର ଆରାଧ୍ୟା, ସେ ସମସ୍ତ ପୁଣ୍ୟର ଫଳଦାତ୍ରୀ, ତ୍ରିଲୋକର ମାତା, କଲ୍ୟାଣସ୍ୱରୂପା ଓ ଭଗବାନ ଶଙ୍କରଙ୍କ ଅର୍ଦ୍ଧାଙ୍ଗିନୀ । ସେ ପୂଜିତ ହେଲେ ସଦା ସମସ୍ତ ସୌଭାଗ୍ୟ ପ୍ରଦାନ କରିଥାନ୍ତି । ସେ ହିଁ ମହେଶ୍ୱରଙ୍କ ଶକ୍ତି ଓ ଭକ୍ତଜନଙ୍କ ପାଇଁ ମଙ୍ଗଳଦୟିନୀ । ସେ ପୂଜିତ ହେଲେ ସଦା ଜଗତର ଭୟ ଦୂର କରିଥାନ୍ତି, ମନୋବାଞ୍ଛିତ ଫଳ ଦେଇଥାନ୍ତି ଏବଂ ସମସ୍ତ ଉପଦ୍ରବକୁ ନଷ୍ଟ କରିଥାନ୍ତି । ସେଇ ସତୀ ହିଁ ସଦା ପୂଜିତ ହେଲେ କୀର୍ତ୍ତି ଓ ସମ୍ପତ୍ତି ପ୍ରଦାନ କରିଥାନ୍ତି । ସେ ହିଁ ପରାଶକ୍ତି ତଥା ଭୋଗ ଓ ମୋକ୍ଷଦାୟିନୀ ପରମେଶ୍ୱରୀ । ସେ ହିଁ ଜଗତର ଜନ୍ମଦାତ୍ରୀ ମାତା, ଜଗତର ରକ୍ଷାକାରିଣୀ, ଅନାଦି ଶକ୍ତି ଓ ପ୍ରଳୟକାଳରେ ଜଗତର ସଂହାରକାରିଣୀ । ସେଇ ଜଗନ୍ମାତା ସତୀ ହିଁ ଭଗବାନ ବିଷ୍ଣୁଙ୍କ ମାତାରୂପରେ ସୁଶୋଭିତା ହୁଅନ୍ତି ଏବଂ ସେ ବ୍ରହ୍ମା, ଇନ୍ଦ୍ର, ଚନ୍ଦ୍ର, ଅଗ୍ନି ଓ ସୂର୍ଯ୍ୟଦେବ ପ୍ରଭୃତିଙ୍କର ଜନନୀ ବୋଲି କଥିତ ହୁଅନ୍ତି । ସତୀଦେବୀ ହିଁ ତପ, ଧର୍ମ ଓ ଦାନ ଆଦିର ଫଳଦାତ୍ରୀ । ସେ ହିଁ ଶମ୍ଭୁଶକ୍ତି ମହାଦେବୀ ତଥା ଦୁଷ୍ଟମାନଙ୍କର ବଧକାରିଣୀ ପରାତ୍ପର ଶକ୍ତି । ଏଭଳି ମହିମାମୟୀ ସତୀଦେବୀ ଯେଉଁ ମହାଦେବଙ୍କର ଧର୍ମପତ୍ନୀ, ସେପରି ପ୍ରଭୁଙ୍କୁ ପୁଣି ତୁ ଯଜ୍ଞରେ ଭାଗ ଦେଲୁ ନାହିଁ ! ଆରେ, ତୁ କେଡ଼େ ମୂଢ଼ ଓ କୁମତି !

"ଭଗବାନ ଶିବ ହିଁ ସମସ୍ତଙ୍କର ସ୍ୱାମୀ ଓ ପରାତ୍ପର ପରମେଶ୍ୱର । ସେ ସମସ୍ତ ଦେବତାଙ୍କର ସମ୍ୟକ୍ ସେବ୍ୟ ଓ ସମସ୍ତଙ୍କର କଲ୍ୟାଣକାରୀ । ତାଙ୍କରି ଦର୍ଶନ ଇଚ୍ଛାରେ ସିଦ୍ଧପୁରୁଷ ତପସ୍ୟା କରନ୍ତି ଓ ତାଙ୍କରି ସାକ୍ଷାତ୍କାର ପାଇବାର ଅଭିଳାଷ ରଖି ଯୋଗୀଜନ ଯୋଗସାଧନାରେ ପ୍ରବୃତ୍ତ ହୁଅନ୍ତି । ଶିବଙ୍କ ଦର୍ଶନପ୍ରାପ୍ତିକୁ ଅନନ୍ତ ଧନ-ଧାନ୍ୟ ଓ ଯାଗଯଜ୍ଞର ମହାନ୍ ଫଳ ବୋଲି କୁହାଯାଇଛି । ଶିବ ହିଁ ଜଗତର ଧାରଣପୋଷଣକାରୀ । ସେ ସମସ୍ତ ବିଦ୍ୟାର ପତି, ସବୁ କିଛି କରିବାକୁ ସମର୍ଥ । ସେ ଆଦିବିଦ୍ୟାର ଶ୍ରେଷ୍ଠ ସ୍ୱାମୀ ଓ ସମସ୍ତ ମଙ୍ଗଳର ମଙ୍ଗଳ । ଦୁଷ୍ଟ ଦକ୍ଷ ! ତୁ ତାଙ୍କ ଶକ୍ତିକୁ ଆଜି ସତ୍କାର କଲୁ ନାହିଁ ! ତେଣୁ ଜାଣିରଖ ତୋର ଏ ଯଜ୍ଞ ବିନଷ୍ଟ ହୋଇଯିବ । ପୂଜନୀୟ ବ୍ୟକ୍ତିଙ୍କର ପୂଜା ନ କଲେ ଅମଙ୍ଗଳ ହେବା ସ୍ୱାଭାବିକ । ତୁ ପରମ ପୂଜ୍ୟା ଶିବସ୍ୱରୂପା ସତୀଙ୍କୁ ପୂଜା କଲୁ ନାହିଁ । ଶେଷନାଗ ଆପଣା ସହସ୍ର ମସ୍ତକରେ ପ୍ରତିଦିନ ପ୍ରସନ୍ନତାପୂର୍ବକ ଯେଉଁ ଶିବଙ୍କ ଚରଣରଜ ଲଗାନ୍ତି, ତାଙ୍କରି ଶକ୍ତି ଥିଲେ ସତୀଦେବୀ । ଯାହାଙ୍କ ଚରଣକମଳକୁ ନିରନ୍ତର ଧ୍ୟାନ ଓ ସାଦର ପୂଜନ କରି ବ୍ରହ୍ମା ବ୍ରହ୍ମତ୍ୱକୁ ପ୍ରାପ୍ତ ହୋଇଛନ୍ତି, ତାଙ୍କରି ପ୍ରିୟତମା ପତ୍ନୀ ଥିଲେ ସତୀଦେବୀ । ଯାହାଙ୍କ ଚରଣକମଳକୁ ନିରନ୍ତର ଧ୍ୟାନ ଓ ସାଦର ପୂଜନ କରି ଇନ୍ଦ୍ରାଦି ଲୋକପାଳ ନିଜ ନିଜ ପଦ ପ୍ରାପ୍ତ ହୋଇଛନ୍ତି, ସେହି ଭଗବାନ ଶିବ ହିଁ ସମଗ୍ର ଜଗତର ପିତା ଏବଂ ଶକ୍ତିସ୍ୱରୂପା ସତୀଦେବୀ ଜଗତର ମାତା ବୋଲି କଥିତ ହୁଅନ୍ତି । ମୂଢ଼ ଦକ୍ଷ ! ତୁ ସେହି ପିତାମାତାଙ୍କର ସତ୍କାର କଲୁ ନାହିଁ, ତା'ହେଲେ ତୋର କଲ୍ୟାଣ କେମିତି ହେବ?

"ରେ ଦକ୍ଷ ! ଜାଣ ଯେ ତୋ ଉପରେ ଦୁର୍ଭାଗ୍ୟର ଆକ୍ରମଣ ହୋଇଗଲା ଓ ବିପତ୍ତି ଅଜାଡ଼ି ହୋଇପଡ଼ିଲା; କାରଣ ତୁ ଭବାନୀ ଓ ଭବଙ୍କୁ ଭକ୍ତିଭାବରେ ଆରାଧନା କଲୁ ନାହିଁ । 'କଲ୍ୟାଣକାରୀ ଶମ୍ଭୁଙ୍କର ପୂଜା ନ କରି ମଧ୍ୟ ମୁଁ

କଲ୍ୟାଣର ଭାଗୀ ହୋଇପାରିବି'—ତୋର ଏହି ଗର୍ବ ବୃଥା । ଆଜି ତୋର ଏ ଗର୍ବ ଭାଙ୍ଗିଯିବ । ଏ ଦେବତାଙ୍କ ମଧ୍ୟରେ ଏମିତି କିଏ ଅଛି, ଯେ ସର୍ବେଶ୍ୱର ଶିବଙ୍କ ଠାରୁ ବିମୁଖ ହୋଇ ତୋର ସହାୟତା କରିପାରିବ? ମୋତେ ତ କେହି ଜଣେ ବି ଦେଖା ଯାଉନି । ଯଦି କୌଣସି ଦେବତା ତୋର ସହାୟତା କରିବେ, ସେ ଜଳନ୍ତା ନିଆଁରେ ପତଙ୍ଗ ପଡ଼ିଲା ପରି ନଷ୍ଟ ହୋଇଯିବେ । ଆଜି ତୋର ମୁହଁ ପୋଡ଼ିଯାଉ, ତୋର ଯଜ୍ଞ ନଷ୍ଟ ହୋଇଯାଉ; ଆଉ ଯେତେ ସବୁ ତୋର ସହାୟକ ଅଛନ୍ତି, ସେମାନେ ମଧ୍ୟ ଶୀଘ୍ର ପୋଡ଼ି ହୋଇ ମରନ୍ତୁ । ଏ ଦୁରାତ୍ମା ଦକ୍ଷର ଯେତେ ଦେବତା ସହାୟକ ଅଛନ୍ତି, ସେମାନଙ୍କ ପାଇଁ ଆଜି ଶପଥ । ସେମାନେ ଏହି ଅମଙ୍ଗଳରେ ତୋର ସହାୟତା ନ କରି ସେଥିରୁ ବିରତ ହୋଇଯାଆନ୍ତୁ । ସମସ୍ତ ଦେବତା ଆଜି ଏହି ଯଜ୍ଞମଣ୍ଡପରୁ ବାହାରି ନିଜ ନିଜ ସ୍ଥାନକୁ ଚାଲିଯାଆନ୍ତୁ, ଅନ୍ୟଥା ସମସ୍ତଙ୍କର ସର୍ବତୋଭାବେ ବିନାଶ ଘଟିବ । ଅନ୍ୟ ସମସ୍ତ ମୁନି ଓ ନାଗ ପ୍ରଭୃତି ମଧ୍ୟ ଏହି ଯଜ୍ଞରୁ ବାହାରି ଯାଆନ୍ତୁ, ଅନ୍ୟଥା ଆଜି ସମସ୍ତେ ବିନାଶପ୍ରାପ୍ତ ହେବେ । ଶ୍ରୀହରେ! ବିଧାତଃ! ଆପଣମାନେ ମଧ୍ୟ ଏ ଯଜ୍ଞମଣ୍ଡପରୁ ଶୀଘ୍ର ବାହାରି ଯାଆନ୍ତୁ ।''

ବ୍ରହ୍ମା କହୁଛନ୍ତି—ନାରଦ ! ଯଜ୍ଞଶାଳାରେ ବସିଥିବା ସମସ୍ତଙ୍କୁ ଏଭଳି ଶୁଣାଇବା ପରେ ସମସ୍ତଙ୍କର ମଙ୍ଗଳକାରୀ ସେହି ଆକାଶବାଣୀ ମୌନ ହୋଇଗଲା । ।

(ଅଧ୍ୟାୟ ୩୧)



## ଶିବଗଣଙ୍କ ମୁଖରୁ ଓ ନାରଦଙ୍କ ଠାରୁ ସତୀଙ୍କ ଦଗ୍ଧ ହେବାର ସମାଚାର ପାଇ ଶିବଙ୍କର ଦକ୍ଷଙ୍କ ପ୍ରତି କୋପ ଏବଂ ଆପଣା ଜଟାରୁ ବୀରଭଦ୍ର ଓ ମହାକାଳୀଙ୍କୁ ପ୍ରକଟ କରି ସେମାନଙ୍କୁ ଯଜ୍ଞବିଧ୍ୱଂସ କରିବାକୁ ଓ ବିରୋଧକାରୀଙ୍କୁ ପୋଡ଼ିଦେବାକୁ ଆଜ୍ଞା ପ୍ରଦାନ

ବ୍ରହ୍ମା କହୁଛନ୍ତି—ନାରଦ ! ଉକ୍ତ ଆକାଶବାଣୀ ଶୁଣି ଦେବତା ପ୍ରଭୃତି ସମସ୍ତେ ଭୟଭୀତ ଓ ବିସ୍ମିତ ହୋଇଗଲେ । ସେମାନଙ୍କ ମୁଖରୁ ବଚନ ସ୍ଫୁରିଲା ନାହିଁ । ଯିଏ ଯେଉଁଠି ବସିଥିଲା ବା ଛିଡ଼ା ହୋଇଥିଲା, ସେଇଠି ସ୍ତମ୍ଭୀଭୂତ ହୋଇ ରହିଗଲା । ଭୃଗୁଙ୍କ ମନ୍ତ୍ର ପ୍ରୟୋଗ ପରେ ପଳାୟନ କରିଥିବା ଯେଉଁ ଶିବଗଣ ଜୀବିତ ରହିଯାଇଥିଲେ, ସେମାନେ ଶିବଙ୍କ ଠାରେ ଶରଣ ଗଲେ । ସେମାନେ ଅମିତ ତେଜସ୍ୱୀ ଭଗବାନ ରୁଦ୍ରଙ୍କୁ ସାଦର ପ୍ରଣାମ କରି ଯଜ୍ଞସ୍ଥଳରେ ଘଟିଥିବା ସମସ୍ତ ଘଟଣା ବର୍ଣ୍ଣନା କଲେ ।

ଶିବଗଣ କହିଲେ—ମହେଶ୍ୱର ! ଦକ୍ଷ ବଡ଼ ଦୁରାତ୍ମା ଓ ଅହଂକାରୀ । ଦେବୀ ସତୀ ସେଠାକୁ ଯାଇଥିବାରୁ ସେ ସତୀଙ୍କୁ ଅପମାନିତ କଲା ଓ ଦେବତାମାନେ ମଧ୍ୟ ତାଙ୍କୁ ଆଦର କଲେ ନାହିଁ । ଦୁଷ୍ଟ ଦକ୍ଷ ଅତ୍ୟଧିକ ଗର୍ବ ହେତୁ ଯଜ୍ଞରେ ଆପଣଙ୍କ ପାଇଁ ଭାଗ ରଖିଲା ନାହିଁ । ଅନ୍ୟ ଦେବତାଙ୍କୁ ସେମାନଙ୍କ ଭାଗ ଦେଲା, ଅଥଚ ଆପଣଙ୍କ ପ୍ରତି ଉଚ୍ଚସ୍ୱରରେ ଦୁର୍ବଚନ ପ୍ରୟୋଗ କଲା । ଯଜ୍ଞରେ ଆପଣଙ୍କ ଭାଗ ନ ଦେଖି ସତୀଦେବୀ କୁପିତ ହୋଇଉଠିଲେ ଏବଂ ପିତାଙ୍କୁ ବାରମ୍ବାର ନିନ୍ଦା କରି ନିଜ ଶରୀରକୁ ଯୋଗାଗ୍ନିରେ ଜଳାଇ ଅବିଳମ୍ବେ ଭସ୍ମ କରିଦେଲେ । ତାହା ଦେଖି ଆମର ଦଶହଜାରରୁ ଅଧିକ ପାର୍ଷଦ

ଲଜ୍ଜାରେ ନିଜ ଅଙ୍ଗକୁ ନିଜ ଶସ୍ତ୍ରରେ ହାଣି ସେଠାରେ ପ୍ରାଣତ୍ୟାଗ କରିଦେଲେ । ଆମେ ଯେତିକି ରହିଲୁ, ସମସ୍ତେ ଦକ୍ଷଙ୍କ ଉପରେ କୁପିତ ହୋଇ ଓ ସେମାନଙ୍କୁ ଭୟ ଦେଖାଇ ଅବିଳମ୍ବେ ତାଙ୍କ ଯଜ୍ଞକୁ ନଷ୍ଟ କରିବାକୁ ଉଦ୍ୟମ କଲୁ । ହେଲେ ଆମ ବିପକ୍ଷରେ ଭୃଗୁ ବାହାରି ମନ୍ତ୍ର ପ୍ରଭାବରେ ଆମକୁ ପରାଭୂତ କରିଦେଲେ । ଆମେ ତାଙ୍କ ମନ୍ତ୍ରବଳର ସମ୍ମୁଖୀନ ହୋଇ ପାରିଲୁ ନାହିଁ । ପ୍ରଭୋ ! ବିଶ୍ୱମ୍ଭର ! ଆମେ ସବୁ ପରାଭୂତ ହୋଇ ଆପଣଙ୍କ ଶରଣକୁ ଆସିଛୁ । ଦୟାଳୁ ! ଆମକୁ ସେହି ଭୟରୁ ରକ୍ଷା କରି ନିର୍ଭୟ କରନ୍ତୁ । ମହାପ୍ରଭୋ ! ଯଜ୍ଞରେ ଦକ୍ଷାଦି ସମସ୍ତ ଦୁଷ୍ଟଲୋକେ ଅହଂକାର ହେତୁ ଆପଣଙ୍କର ବହୁତ ଅପମାନ କରିଛନ୍ତି । କଲ୍ୟାଣକାରୀ ଶିବ ! ଆମେ ଆମର, ସତୀଦେବୀଙ୍କର ଓ ମୂଢ଼ବୁଦ୍ଧି ଦକ୍ଷାଦିଙ୍କର ସମସ୍ତ ବୃତ୍ତାନ୍ତ କହିଦେଲୁ । ଏଣିକି ଆପଣଙ୍କର ଯାହା ଇଚ୍ଛା, ତାହା କରନ୍ତୁ ।

ବ୍ରହ୍ମା କହୁଛନ୍ତି–ନାରଦ ! ନିଜ ପାର୍ଷଦଙ୍କ ଠାରୁ ଏଭଳି କଥା ଶୁଣି ଭଗବାନ ଶିବ ସେଠାକାର ସମସ୍ତ ଘଟଣା ଜାଣିବାକୁ ତୁମକୁ ସ୍ମରଣ କଲେ । ଦେବର୍ଷେ ! ତୁମେ ତ ଦିବ୍ୟଦ୍ରଷ୍ଟା । ପ୍ରଭୁ ସ୍ମରଣ କଲାରୁ ତୁମେ ତୁରନ୍ତ ଆସି ସେଠାରେ ପହଞ୍ଚିଗଲ ଏବଂ ଶିବଙ୍କୁ ଭକ୍ତିପୂର୍ବକ ପ୍ରଣାମ କରି ଛିଡ଼ା ହୋଇଗଲ । ପରମେଶ୍ୱର ଶିବ ତୁମକୁ ପ୍ରଶଂସା କରି ତୁମକୁ ଦକ୍ଷଯଜ୍ଞକୁ ଯାଇଥିବା ସତୀଙ୍କ ସମାଚାର ଓ ସେଠାକାର ଅନ୍ୟାନ୍ୟ ଘଟଣା ବିଷୟରେ ପଚାରିଲେ । ତାତ ! ଶମ୍ଭୁ ପଚାରିବାରୁ ଶିବଙ୍କ ଠାରେ ଚିତ୍ତ ନିବେଶ କରି ତୁମେ ଅବିଳମ୍ବେ ଦକ୍ଷଯଜ୍ଞରେ ଘଟିଥିବା ସମସ୍ତ ବୃତ୍ତାନ୍ତ ଶୁଣାଇଦେଲ । ମୁନେ ! ତୁମ ମୁଖରୁ ସବୁ କଥା ଶୁଣି ମହାରୌଦ୍ରପରାକ୍ରମୀ ଭଗବାନ ସର୍ବେଶ୍ୱର ଭୀଷଣ କ୍ରୋଧ ପ୍ରକାଶ କଲେ । ଲୋକସଂହାରକାରୀ ରୁଦ୍ର ନିଜ ମୁଣ୍ଡରୁ ଗୋଟିଏ ଜଟା ଉପାଡ଼ି ତାହାକୁ ରୋଷରେ ପର୍ବତ ଉପରେ ପିଟିଦେଲେ । ତାହା ଦୁଇଖଣ୍ଡ ହୋଇଗଲା ଓ ସେଥିରୁ ମହାପ୍ରଳୟ ହେବା ପରି ଘୋର ଶବ୍ଦ ସୃଷ୍ଟି ହେଲା । ଦେବର୍ଷେ ! ସେହି ଜଟାର ପୂର୍ବଭାଗରୁ ମହାଭୟଙ୍କର ରୂପରେ ମହାବଳୀ ବୀରଭଦ୍ର ପ୍ରକଟ ହେଲେ । ସେ ସମସ୍ତ ଶିବଗଣଙ୍କର ନେତୃତ୍ୱ କଲେ । ସେ ଭୂମଣ୍ଡଳକୁ ବ୍ୟାପ୍ତ କରି ଓ ତହିଁରୁ ମଧ୍ୟ ଦଶଅଙ୍ଗୁଳ ବୃହତ୍ କାୟା ବିସ୍ତାର କରି ଠିଆ ହୋଇଗଲେ । ସେ ପ୍ରଳୟାନଳ ପରି ଦିଶୁଥିଲେ । ଏତେ ବଡ଼ ସୁଉଚ୍ଚ ଶରୀର ସାଙ୍ଗକୁ ତାଙ୍କର ଥିଲା ଏକହଜାର ହାତ । ସେହି ସର୍ବସମର୍ଥ ମହାରୁଦ୍ରଙ୍କ କ୍ରୋଧରେ ବାହାରୁଥିବା ନିଃଶ୍ୱାସ ବାୟୁରୁ ଶହେ ପ୍ରକାର ଜ୍ୱର ଓ ତେର ପ୍ରକାର



ସନ୍ନିପାତ ରୋଗ ଉତ୍ପନ୍ନ ହୋଇଗଲେ । ନାରଦ ! ରୁଦ୍ରଙ୍କ ଜଟାର ଅପର ଅର୍ଦ୍ଧକରୁ ମହାକାଳୀ

ଉତ୍ପନ୍ନ ହୋଇଗଲେ । ସେ ଅତି ଭୟଙ୍କର ଦିଶୁଥିଲେ । ସେ କୋଟି କୋଟି ଭୂତଗଣଙ୍କ ଦ୍ୱାରା ପରିବେଷ୍ଟିତ ଥିଲେ । ଯେଉଁ ସବୁ ଜ୍ୱର ଉତ୍ପନ୍ନ ହୋଇଥିଲେ, ସେମାନେ ସମସ୍ତେ ଶରୀରଧାରୀ, କ୍ରୂର ଓ ଭୟଙ୍କର ଥିଲେ । ସେମାନେ ନିଜ ତେଜବଳରେ ଦାହ ଉତ୍ପନ୍ନ କରିବା ପରି ପ୍ରତୀତ ହେଉଥିଲେ । ବୀରଭଦ୍ର କଥାବାର୍ତ୍ତା କରିବାରେ ଅତି ପ୍ରବୀଣ ଥିଲେ । ସେ ଦୁଇ କର ଯୋଡ଼ି ପରମେଶ୍ୱର ଶିବଙ୍କୁ ପ୍ରଣାମ କରି କହିଲେ—

ବୀରଭଦ୍ର କହିଲେ—ମହାରୁଦ୍ର ! ସୋମ, ସୂର୍ଯ୍ୟ ଓ ଅଗ୍ନିକୁ ତ୍ରିନେତ୍ରରୂପେ ଧାରଣ କରିଥିବା ପ୍ରଭୁ ! ମୋତେ କ'ଣ କରିବାକୁ ହେବ, ଶୀଘ୍ର ଆଜ୍ଞା ଦିଅନ୍ତୁ । ଈଶାନ ! କହିବେ ଯଦି ମୁଁ ଅର୍ଦ୍ଧକ୍ଷଣ ମଧ୍ୟରେ ସମଗ୍ର ସମୁଦ୍ରକୁ ଶୁଖାଇଦେବି ଅଥବା ସେତିକି ସମୟରେ ସମସ୍ତ ପର୍ବତକୁ ଚୂର୍ଣ୍ଣବିଚୂର୍ଣ୍ଣ କରିଦେବି । ହର ! ମୁଁ କ୍ଷଣକ ମଧ୍ୟରେ ବ୍ରହ୍ମାଣ୍ଡକୁ ଭସ୍ମ କରିଦେବି, ସମସ୍ତ ଦେବତା ଓ ମୁନୀଶ୍ୱରଙ୍କୁ ପୋଡ଼ି ପାଉଁଶ କରିଦେବି । ହେ ଶଙ୍କର ! ହେ ଈଶାନ ! ଆଜ୍ଞା ଦେଲେ ମୁଁ ସମଗ୍ର ଜଗତକୁ ଓଲଟପାଲଟ କରିଦେବି, ଅଥବା ସମସ୍ତ ପ୍ରାଣୀଙ୍କୁ ବିନାଶ କରିଦେବି? ମହେଶ୍ୱର ! ଆପଣଙ୍କ କୃପାରୁ, ଏଭଳି କୌଣସି କାର୍ଯ୍ୟ ନାହିଁ, ଯାହା ମୁଁ କରି ନ ପାରିବି । ପରାକ୍ରମରେ ମୋର ସମକକ୍ଷ ହେବା ଭଳି ବୀର କେହି ପୂର୍ବରୁ ନ ଥିଲେ କି ଭବିଷ୍ୟତରେ କେହି ହେବେ ନାହିଁ । ମହେଶ ! ଆପଣ କୁଟାଖଣ୍ଡିଏ ପଠାଇଦେଲେ ବି କ୍ଷଣକ ଭିତରେ ସେ ଅନାୟାସରେ ବହୁତ ବଡ଼ ବଡ଼ କାର୍ଯ୍ୟକୁ ମଧ୍ୟ ସିଦ୍ଧ କରିପାରିବ । ଶମ୍ଭୋ ! ଯଦ୍ୟପି ଆପଣଙ୍କ ଲୀଳାମାତ୍ରକେ ସମସ୍ତ କାର୍ଯ୍ୟ ସିଦ୍ଧ ହୋଇଯାଇପାରେ, ତଥାପି ମୋତେ ପଠାଇବାଟା ଆପଣଙ୍କ ଅନୁଗ୍ରହ ହିଁ ହେବ । ଶମ୍ଭୋ ! ଶଙ୍କର ! ମୋ'ଠାରେ ଯେଉଁ ଶକ୍ତି ଅଛି, ତାହା ଆପଣଙ୍କ କୃପାଲବ୍ଧ । ଆପଣଙ୍କ କୃପା ବିନା କାହାରିଠାରେ କୌଣସି ଶକ୍ତିର କଳ୍ପନା କରାଯାଇ ନ ପାରେ । ବାସ୍ତବରେ ଆପଣଙ୍କ ଆଜ୍ଞା ବିନା କେହି କୁଟାଖଣ୍ଡିକୁ ମଧ୍ୟ ହଲାଇ ପାରିବ ନାହିଁ । ମହାଦେବ ! ହର ! ମୁଁ ଆପଣଙ୍କ ଚରଣରେ ବାରମ୍ବାର ପ୍ରଣାମ କରୁଛି । ଆପଣଙ୍କ ଅଭୀଷ୍ଟ କାର୍ଯ୍ୟରେ ମୋତେ ଶୀଘ୍ର ପଠାନ୍ତୁ । ଶମ୍ଭୋ ! ମୋର ଡାହାଣ ଅଙ୍ଗ ବାରମ୍ବାର ସ୍ଫୁରିତ ହେଉଛି । ଏଥିରୁ ସୂଚିତ ହେଉଛି ମୋର ନିଶ୍ଚୟ ବିଜୟ ହେବ । ତେଣୁ ପ୍ରଭୋ ! ମୋତେ ଆଦେଶ ଦିଅନ୍ତୁ । ଆଜି ମୋତେ ଅଭୂତପୂର୍ବ ହର୍ଷ ଓ ଅଦମ୍ୟ ଉତ୍ସାହ ଅନୁଭୂତ ହେଉଛି ଏବଂ ମୋର ଚିତ୍ତ ଆପଣଙ୍କ ଚରଣକମଳରେ ଲାଗିରହିଛି । ଏଣୁ ପ୍ରତି ପଦକ୍ଷେପରେ ମୋତେ ଶୁଭ ପରିଣାମ ପ୍ରାପ୍ତ ହେବ । ଶମ୍ଭୋ ! ଆପଣ ଶୁଭର ଆଧାର । ଯାହାର ଆପଣଙ୍କ ଠାରେ ସୁଦୃଢ଼ ଭକ୍ତି ରହିଛି, ତା'ର ସର୍ବଦା ବିଜୟ ହୋଇଥାଏ ଏବଂ ତା'ର ଦିନକୁ ଦିନ ଶୁଭ ବଢ଼ି ଚାଲିଥାଏ ।

ବ୍ରହ୍ମା କହୁଛନ୍ତି—ନାରଦ ! ବୀରଭଦ୍ରଙ୍କ କଥା ଶୁଣି ସର୍ବମଙ୍ଗଳାଙ୍କ ସ୍ୱାମୀ ଭଗବାନ ଶିବ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ 'ବୀରଭଦ୍ର ! ତୁମର ଜୟ ହେଉ' ଏଭଳି ଆଶୀର୍ବାଦ ଦେଇ କହିଲେ—

ମହେଶ୍ୱର କହିଲେ—ମୋର ଶ୍ରେଷ୍ଠ ପାର୍ଷଦ ବୀରଭଦ୍ର ! ବ୍ରହ୍ମାଙ୍କ ପୁତ୍ର ଦକ୍ଷ ବଡ଼ ଦୁଷ୍ଟ । ସେ ମୂର୍ଖ ଅତି ଅହଂକାରୀ ହୋଇଯାଇଛି । ଏଣୁ ସେ ଆଜିକାଲି ମୋ ପ୍ରତି ଅତ୍ୟଧିକ ବିଦ୍ୱେଷ ରଖୁଛି । ସେ ଏବେ ଗୋଟିଏ ବିରାଟ ଯଜ୍ଞ କରୁଛି । ତୁମେ ସେହି ଯଜ୍ଞକୁ ସାଙ୍ଗୋପାଙ୍ଗ ଭସ୍ମସାତ୍ କରି ଶୀଘ୍ର

ମୋ ପାଖକୁ ଫେରିଆସ । ଯଦି ଦେବତା, ଗନ୍ଧର୍ବ, ଯକ୍ଷ ଅଥବା ଅନ୍ୟ କେହି ତୁମର ପଥରୋଧ କରନ୍ତି, ତେବେ ସେମାନଙ୍କୁ ମଧ୍ୟ ଆଜି ହିଁ ତୁରନ୍ତ ଭସ୍ମ କରିଦେବ । ଦଧୀଚି ମୋ ନାମରେ ଦେଇଥିବା ଶପଥ (ରାଣ)କୁ ଉଲ୍ଲଂଘନ କରି ଯେଉଁ ଦେବତା ପ୍ରଭୃତି ସେଠାରେ ରହିଛନ୍ତି, ସେମାନଙ୍କୁ ଅବଶ୍ୟ ପୋଡ଼ି ଭସ୍ମ କରିଦେବ । ଯେଉଁମାନେ ମୋ ଶପଥକୁ ଉଲ୍ଲଂଘନ କରି ଗର୍ବରେ ସେଠାରେ ରହିଛନ୍ତି, ସେ ସମସ୍ତେ ମୋର ଦ୍ରୋହୀ । ତେଣୁ ସେମାନଙ୍କୁ ଅଗ୍ନିମୟୀ ମାୟାରେ ପୋଡ଼ି ପକାଅ । ଦକ୍ଷଙ୍କ ଯଜ୍ଞଶାଳାରେ ଯେଉଁମାନେ ନିଜ ନିଜ ପତ୍ନୀମାନଙ୍କ ସହିତ ଓ ନାନା ଉପକରଣ ସହିତ ବସିଥିବେ, ସେମାନଙ୍କୁ ମଧ୍ୟ ଜାଳିପୋଡ଼ି ଭସ୍ମ କରିଦେଇ ଶୀଘ୍ର ମୋ ପାଖକୁ ଫେରି ଆସିବ । ତୁମେ ସେଠାକୁ ଯିବା ପରେ ଯଦି ବିଶ୍ୱେଦେବ ପ୍ରଭୃତି ତୁମ ସମ୍ମୁଖକୁ ଆସି ତୁମକୁ ସାଦର ସ୍ତୁତି କରନ୍ତି, ତେବେ ମଧ୍ୟ ସେମାନଙ୍କୁ ଅବିଳମ୍ବେ ଅଗ୍ନିର ଜ୍ୱାଳାରେ ଦଗ୍ଧ ନ କରି ଛାଡ଼ିବ ନାହିଁ । ବୀର ! ସେଠାରେ ଦକ୍ଷାଦିଙ୍କୁ ସେମାନଙ୍କ ପତ୍ନୀ ଓ ବନ୍ଧୁବାନ୍ଧବଙ୍କ ସମେତ ପୋଡ଼ି (କଳସରେ ଥିବା) ଜଳକୁ ଲୀଳାପୂର୍ବକ ପିଇଯିବ ।

ବ୍ରହ୍ମା କହୁଛନ୍ତି—ନାରଦ ! ଯେ ବୈଦିକ ମର୍ଯ୍ୟାଦାର ପାଳକ, କାଳର ମଧ୍ୟ କାଳ ତଥା ସମସ୍ତଙ୍କ ଈଶ୍ୱର, ସେ ରୋଷକଷାୟିତ ନେତ୍ରରେ ମହାବୀର ବୀରଭଦ୍ରଙ୍କୁ ଏଭଳି ଆଜ୍ଞା ଦେଇ ଚୁପ୍ ହୋଇଗଲେ ।

(ଅଧ୍ୟାୟ ୩୨)



## ପ୍ରମଥଗଣଙ୍କ ସହିତ ବୀରଭଦ୍ର ଓ ମହାକାଳୀଙ୍କର ଦକ୍ଷଯଜ୍ଞ ବିଧ୍ୱଂସ ନିମନ୍ତେ ଗମନ ଏବଂ ଅପଶକୁନ ଓ ଉତ୍ପାତସୂଚକ ଲକ୍ଷଣ ଦେଖି ଦକ୍ଷ ଓ ଦେବଗଣଙ୍କର ଭୟାକୁଳ ସ୍ଥିତି

ବ୍ରହ୍ମା କହୁଛନ୍ତି—ହେ ନାରଦ ! ମହେଶ୍ୱରଙ୍କ କଥାକୁ ଆଦରରେ ଶୁଣି ବୀରଭଦ୍ର ଅତି ପ୍ରସନ୍ନ ହେଲେ । ସେ ମହେଶ୍ୱରଙ୍କୁ ପ୍ରଣାମ କଲେ । ତା'ପରେ ସେ ଦେବାଧିଦେବ ଶୂଳଧାରୀ ଶିବଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଅବିଳମ୍ବେ ଦକ୍ଷଙ୍କ ଯଜ୍ଞମଣ୍ଡପ ଅଭିମୁଖେ ଯାତ୍ରା କଲେ । (ସେ ଏକାକୀ ସମର୍ଥ ଥିଲେ ସୁଦ୍ଧା) ଭଗବାନ ଶିବ କେବଳ ଶୋଭା ନିମନ୍ତେ ତାଙ୍କ ସଙ୍ଗରେ କୋଟି କୋଟି ମହାବୀର ଗଣଙ୍କୁ ପଠାଇ ଦେଲେ । ସେମାନେ ପ୍ରଳୟାଗ୍ନି ପରି ତେଜସ୍ୱୀ ଥିଲେ । ସେହି କୌତୂହଳକାରୀ ପ୍ରମଥଗଣଙ୍କ ମଧ୍ୟରୁ କେତେକ ବୀରଭଦ୍ରଙ୍କ ଆଗରେ ଓ କେତେକ ପଛରେ ଚାଲୁଥିଲେ । ଶିବ ହେଉଛନ୍ତି କାଳର ମଧ୍ୟ କାଳ । ତାଙ୍କର ଯେଉଁ ଲକ୍ଷ ଲକ୍ଷ ପାର୍ଷଦ ବୀରଭଦ୍ରଙ୍କ ସହିତ ଥିଲେ, ସେମାନଙ୍କର ରୂପ ମଧ୍ୟ ରୁଦ୍ରଙ୍କ ପରି ଥିଲା । ମହାତ୍ମା ବୀରଭଦ୍ର ସେମାନଙ୍କ ସହିତ ଶିବଙ୍କ ପରି ବେଶଭୂଷା ଧାରଣ କରି ରଥରେ ବିରାଜମାନ ଥିଲେ । ତାଙ୍କର ଏକହଜାର ଭୁଜ ଥିଲା । ଦେହରେ ଗୁଡ଼ାଇ ହୋଇଥିଲେ ନାଗରାଜ । ବୀରଭଦ୍ର ଅତ୍ୟନ୍ତ ପରାକ୍ରମୀ ଓ ଭୟଙ୍କର ଦିଶୁଥିଲେ । ତାଙ୍କର ରଥ ଥିଲା ବିଶାଳ । ରଥକୁ ଟାଣିବା ପାଇଁ ଦଶହଜାର ସିଂହ ଯୋଚ୍ଚା ଯାଇଥିଲେ । ଏହାଛଡ଼ା ଅନେକ ସିଂହ, ଶାର୍ଦ୍ଦୂଳ, ମଗର, ମତ୍ସ୍ୟ ଓ ହଜାର ହଜାର ହାତୀ ସେହି ରଥର ପାର୍ଶ୍ୱଭାଗକୁ ରକ୍ଷା କରୁଥିଲେ । କାଳୀ,

କାତ୍ୟାୟନୀ, ଈଶାନୀ, ଚାମୁଣ୍ଡା, ମୁଣ୍ଡମର୍ଦ୍ଦିନୀ, ଭଦ୍ରକାଳୀ, ଭଦ୍ରା, ତ୍ୱରିତା ଓ ବୈଷ୍ଣବୀ—ଏ ନବଦୁର୍ଗାଙ୍କ ସହିତ ସମସ୍ତ ଭୂତଗଣଙ୍କୁ ସଙ୍ଗରେ ନେଇ ସ୍ୱୟଂ ମହାକାଳୀ ଦକ୍ଷଙ୍କୁ ବିନାଶ କରିବାକୁ ବାହାରିଥାନ୍ତି । ଡାକିନୀ, ଶାକିନୀ, ଭୂତ, ପ୍ରମଥ, ଗୁହ୍ୟକ, କୂଷ୍ମାଣ୍ଡ, ପର୍ପଟ, ଚଟକ, ବ୍ରହ୍ମରାକ୍ଷସ, ଭୈରବ, କ୍ଷେତ୍ରପାଳ ପ୍ରଭୃତି ସମସ୍ତ ବୀର ଶିବଙ୍କ ଆଜ୍ଞା ପାଳନ ଓ ଦକ୍ଷଯଜ୍ଞର ବିନାଶ ପାଇଁ ସେମାନଙ୍କ ସହିତ ବାହାରିଥାନ୍ତି । ଏହାଛଡ଼ା ଚୌଷଠି ଗଣଙ୍କ ସହିତ ଯୋଗିନୀମଣ୍ଡଳୀ ମଧ୍ୟ କୁପିତ ହୋଇ ଦକ୍ଷଯଜ୍ଞର ବିନାଶ ପାଇଁ ସେଥିରେ ଯୋଗ ଦେଲେ । ଏହିରୂପେ କୋଟି କୋଟି ଗଣ ଏବଂ ବିଭିନ୍ନ ଗଣାଧୀଶ ବୀରଭଦ୍ରଙ୍କ ସଙ୍ଗରେ ଚାଲିଲେ । ସେତେବେଳେ ଗମ୍ଭୀର ଧ୍ୱନି କରି ଭେରୀମାନ ବାଜି ଉଠିଲା । ଶଙ୍ଖ ଓ ଶିଙ୍ଗାସମୂହର ଭିନ୍ନ ଭିନ୍ନ ପ୍ରକାର ଶବ୍ଦ ହେଲା । ମହାମୁନେ ! ବୀରଭଦ୍ର ସଦଳବଳ ଯାତ୍ରାରମ୍ଭ କଲାବେଳେ ଅନେକ ପ୍ରକାର ଶୁଭଶକୁନ ଦୃଶ୍ୟ ହେଲା ।

ଏହିରୂପେ ପ୍ରମଥଗଣଙ୍କ ସହିତ ବୀରଭଦ୍ର ଯାତ୍ରାରମ୍ଭ କରିବାମାତ୍ରେ ତେଣେ ଦକ୍ଷ ଓ ଦେବତାମାନଙ୍କୁ ଅନେକ ପ୍ରକାର ଅପଶକୁନ ଦେଖାଦେଲା । ବିଭିନ୍ନ ଉତ୍ପାତ ସୃଷ୍ଟି ହୋଇ ଯଜ୍ଞବିଧ୍ୱଂସର ସଂକେତ ଦେଲା । ଦକ୍ଷଙ୍କର ବାମ ନେତ୍ର, ବାମ ବାହୁ ଓ ବାମ ଜଙ୍ଘ ସ୍ଫୁରିତ ହେଲା । ତାତ ! ବାମ ଅଙ୍ଗ ଫିଙ୍ଗିକିବା ଅତ୍ୟନ୍ତ ଅଶୁଭ ଏବଂ ଏହା ନାନା ପ୍ରକାର କଷ୍ଟର ସୂଚନା ଦେଉଥିଲା । ସେତିକିବେଳେ ଦକ୍ଷଙ୍କ ଯଜ୍ଞଶାଳାର ଭୂମି ଦୋହଲି ଉଠିଲା । ଦକ୍ଷଙ୍କୁ ଦିନବେଳା ଓ ମଧ୍ୟାହ୍ନ ସମୟରେ ତାରା ଦେଖାଗଲେ । ଦିଗବିଦିଗ ମଳିନ ଦିଶିଲା । ସୂର୍ଯ୍ୟମଣ୍ଡଳ ଚିତ୍ରିତ ପରି ଦିଶିଲା ଓ ସେଥିରେ ହଜାର ହଜାର ଚକ୍ରାକାର ରେଖା ଦିଶିବାରୁ ତାହା ଭୟଙ୍କର ପରି ପ୍ରତୀୟମାନ ହେଲା । ଅକସ୍ମାତ୍ ବଜ୍ରପାତ ହେଲା ଓ ଅଗ୍ନିପିଣ୍ଡ ପରି ଉଜ୍ଜ୍ୱଳ ଉଲ୍‌କାମାନେ ଆକାଶରୁ ଖସି ପଡ଼ିଲେ ଏବଂ ଆହୁରି ଅନେକ ପ୍ରକାର ଭୟାନକ ଅଶୁଭଲକ୍ଷଣ ଦେଖା ଦେଲା ।

ଇତିମଧ୍ୟରେ ଆକାଶବାଣୀ ହେଲା ଏବଂ ତାହା ଦେବତାମାନଙ୍କୁ ବିଶେଷତଃ ଦକ୍ଷଙ୍କୁ ନିଜର ମନ୍ତବ୍ୟ ଶୁଣାଇଦେଲା ।

ଆକାଶବାଣୀ କହିଲା—ରେ ଦକ୍ଷ ! ଆଜି ତୋ ଜନ୍ମକୁ ଧିକ୍କାର । ତୁ ମହାମୂଢ଼ ଓ ପାପାତ୍ମା । ଭଗବାନ ହରଙ୍କ ପାଇଁ ତୋତେ ଆଜି ବହୁତ କଷ୍ଟ ଭୋଗିବାକୁ ପଡ଼ିବ । ତାହାକୁ ଟାଳି ହେବ ନାହିଁ । ଏଠି ତୋର ହାହାକାର ମଧ୍ୟ ଶୁଭିବ ନାହିଁ । ଯେଉଁ ମୂଢ଼ ଦେବଗଣ ତୋର ଏ ଯଜ୍ଞରେ ଉପସ୍ଥିତ ହୋଇଛନ୍ତି, ସେମାନଙ୍କୁ ମଧ୍ୟ ନିଶ୍ଚୟ ଘୋର ଦୁଃଖ ଭୋଗିବାକୁ ପଡ଼ିବ ।

ବ୍ରହ୍ମା କହୁଛନ୍ତି—ମୁନେ ! ଆକାଶବାଣୀ ଶୁଣି ଓ ପୂର୍ବୋକ୍ତ ଅଶୁଭ ଲକ୍ଷଣ ସବୁ ଦେଖି ଦକ୍ଷ ତଥା ଦେବତା ପ୍ରଭୃତି ଭୟଭୀତ ହୋଇଗଲେ । ଦକ୍ଷ ମନେ ମନେ ଅତ୍ୟନ୍ତ ବ୍ୟାକୁଳ ହୋଇ ଭୟରେ ଥରିବାକୁ ଲାଗିଲେ ଏବଂ ଲକ୍ଷ୍ମୀପତି ବିଷ୍ଣୁଙ୍କ ଶରଣ ଗଲେ । ସେ ଭୟରେ ଅସ୍ଥିର ହୋଇ ସ୍ୱଜନବତ୍ସଳ ଦେବାଧିଦେବ ଭଗବାନ ବିଷ୍ଣୁଙ୍କୁ ପ୍ରଣାମ ଓ ସ୍ତୁତି କରି ଏହିପରି କହିଲେ—

(ଅଧ୍ୟାୟ ୩୩-୩୪)

★★★

# ଯଜ୍ଞ ରକ୍ଷା କରିବା ପାଇଁ ବିଷ୍ଣୁଙ୍କୁ ଦକ୍ଷଙ୍କ ପ୍ରାର୍ଥନା, କିନ୍ତୁ ଶିବଦ୍ରୋହଜନିତ ସଂକଟକୁ ଟାଳିବାରେ ବିଷ୍ଣୁ ନିଜ ଅକ୍ଷମତା ଦର୍ଶାଇ ଦକ୍ଷଙ୍କୁ ବୁଝାଇବା ଏବଂ ସେନାସମେତ ବୀରଭଦ୍ରଙ୍କର ଆଗମନ

ଦକ୍ଷ କହିଲେ—ଦେବଦେବ ! ବିଷ୍ଣୋ ! ଦୀନବନ୍ଧୋ ! କୃପାନିଧେ ! ଆପଣ ମୋତେ ଓ ମୋ ଯଜ୍ଞକୁ ରକ୍ଷା କରନ୍ତୁ । ପ୍ରଭୋ ! ଆପଣ ହିଁ ଯଜ୍ଞର ରକ୍ଷକ, ଯଜ୍ଞ ହିଁ ଆପଣଙ୍କ କର୍ମ ଓ ଆପଣ ଯଜ୍ଞସ୍ୱରୂପ । ଏଣୁ ଏଭଳି କୃପା କରନ୍ତୁ, ଯଦ୍ଵାରା ଯଜ୍ଞ ବିନଷ୍ଟ ନ ହେବ ।

ବ୍ରହ୍ମା କହୁଛନ୍ତି—ମୁନୀଶ୍ୱର ! ଏଭଳି ଅନେକ ପ୍ରକାରେ ସାଦର ଅନୁରୋଧ କରି ଦକ୍ଷ ଶ୍ରୀହରିଙ୍କ ଚରଣରେ ଲୋଟି ପଡ଼ିଲେ । ତାଙ୍କ ଚିତ୍ତ ଭୟରେ ବ୍ୟାକୁଳ ହେଉଥିଲା । ସେତେବେଳେ ଅସ୍ଥିରଚିତ୍ତ



ଦକ୍ଷଙ୍କୁ ଉଠାଇ ଏବଂ ତାଙ୍କର କଥା ଶୁଣି ବିଷ୍ଣୁ ଶିବଙ୍କୁ ସ୍ମରଣ କଲେ । ନିଜ ପ୍ରଭୁ ତଥା ପରମ ଐଶ୍ୱର୍ଯ୍ୟସମ୍ପନ୍ନ ପରମେଶ୍ୱର ଶିବଙ୍କୁ ସ୍ମରଣ କରି ଶିବତତ୍ତ୍ୱର ଜ୍ଞାତା ଶ୍ରୀହରି ଦକ୍ଷଙ୍କୁ ବୁଝାଇଲେ ।

ଶ୍ରୀହରି କହିଲେ—ଦକ୍ଷ ! ମୁଁ ତୁମକୁ ଗୋଟିଏ ତାତ୍ତ୍ୱିକ କଥା କହୁଛି । ତୁମେ ମୋ କଥାକୁ ଧ୍ୟାନ ଦେଇ ଶୁଣ । ଏହା ତୁମ ପାଇଁ ହିତକର ତଥା ମହାମନ୍ତ୍ର ପରି ସୁଖଦାୟକ ହେବ । ଦକ୍ଷ ! ତୁମ ପାଖରେ ତତ୍ତ୍ୱଜ୍ଞାନର ଅଭାବ ରହିଛି । ସେଥିପାଇଁ ତୁମେ ସମସ୍ତଙ୍କ ଅଧିପତି ପରମାତ୍ମା ଶିବଙ୍କର ଅବହେଳନା କଲ । ଈଶ୍ୱରଙ୍କ ଅବହେଳନାରେ ସମସ୍ତ କାର୍ଯ୍ୟ ନିଷ୍ଫଳ ହୋଇଯାଏ । କେବଳ ସେତିକି ନୁହେଁ, ପ୍ରତି ପଦକ୍ଷେପରେ ବିପତ୍ତି ମଧ୍ୟ ଆସେ । ଯେଉଁଠି ଅପୂଜ୍ୟ ଜନଙ୍କର ପୂଜା ହୁଏ ଓ ପୂଜ୍ୟଜନଙ୍କ ପୂଜା କରାଯାଏ ନାହିଁ, ସେଠାରେ ଦାରିଦ୍ର୍ୟ, ମୃତ୍ୟୁ ଓ ଭୟ—ଏ ତିନୋଟି ସଂକଟ ଅବଶ୍ୟ ଆସେ ।* ତେଣୁ ସବୁ ପ୍ରକାର ପ୍ରଯତ୍ନ କରି ତୁମେ ବୃଷଭଧ୍ୱଜଙ୍କୁ ସମ୍ମାନ କରିବା ଉଚିତ । ମହେଶ୍ୱରଙ୍କ ଅପମାନ ହେତୁ ଆଜି ଏହି ଭୀଷଣ ଭୟ ଉପସ୍ଥିତ ହୋଇଛି । ଆମ୍ଭେମାନେ ପ୍ରଭୁ ହୋଇ ମଧ୍ୟ ତୁମ ଦୁର୍ନୀତି କାରଣରୁ ଉପସ୍ଥିତ ହୋଇଥିବା ଏହି ସଂକଟକୁ ଟାଳିବାରେ ଅସମର୍ଥ । ମୁଁ ତୁମକୁ ସତ କଥା କହୁଛି ।

ବ୍ରହ୍ମା କହୁଛନ୍ତି—ନାରଦ ! ଭଗବାନ ବିଷ୍ଣୁଙ୍କ କଥା ଶୁଣି ଦକ୍ଷ ଚିନ୍ତାରେ ବୁଡ଼ିଗଲେ । ତାଙ୍କ

* ଈଶ୍ୱରାବଜ୍ଞୟା ସର୍ବଂ କାର୍ଯ୍ୟଂ ଭବତି ସର୍ବଥା । ବିଫଳଂ କେବଳଂ ନୈବ ବିପତ୍ତିଶ୍ଚ ପଦେ ପଦେ ॥
ଅପୂଜ୍ୟା ଯତ୍ର ପୂଜ୍ୟନ୍ତେ ପୂଜନୀୟୋ ନ ପୂଜ୍ୟତେ । ତ୍ରୀଣି ତତ୍ର ଭବିଷ୍ୟନ୍ତି ଦାରିଦ୍ର୍ୟଂ ମରଣଂ ଭୟମ୍ ॥
(ଶି. ପୁ. ରୁ. ସଂ. ସ. ଖ. ୩୫ । ୮-୯)

ମୁଖମଣ୍ଡଳ ମଳିନ ହୋଇଗଲା । ସେ ନୀରବରେ ସେଠାରେ ଛିଡ଼ା ହୋଇ ରହିଲେ । ଏତିକି ବେଳେ ରୁଦ୍ରଙ୍କ ଦ୍ୱାରା ପ୍ରେରିତ ଗଣନାୟକ ବୀରଭଦ୍ର ନିଜ ସେନାଙ୍କ ସହିତ ଯଜ୍ଞସ୍ଥଳରେ ପହଞ୍ଚିଗଲେ । ସେମାନେ ସମସ୍ତେ ଅତ୍ୟନ୍ତ ବଳବାନ୍ ବୀର, ନିର୍ଭୟ ଓ ରୁଦ୍ରଙ୍କ ପରି ପରାକ୍ରମୀ ଥିଲେ । ଶିବଙ୍କ ଆଜ୍ଞାରେ ଆସିଥିବା ସେହି ଅଗଣିତ ରୁଦ୍ର-ସୈନିକମାନେ ଉଚ୍ଚସ୍ୱରରେ ସିଂହନାଦ କଲେ । ସେମାନଙ୍କର ଭୀଷଣ ମହାନାଦରେ ତ୍ରିଲୋକ କମ୍ପି ଉଠିଲା । ଆକାଶ ଧୂଳିରେ ଆଚ୍ଛାଦିତ ହୋଇଗଲା ଦିଗବିଦିଗରେ ଅନ୍ଧକାର ଘୋଟିଗଲା । ପର୍ବତ, ବନ ଓ କାନନ ସମେତ ସପ୍ତଦ୍ୱୀପବତୀ ପୃଥିବୀ ଭୟରେ ଅତ୍ୟନ୍ତ ବ୍ୟଥିତ ହୋଇ କମ୍ପମାନ ହେଲା । ସମୁଦ୍ରରେ ଭୟଙ୍କର ଜୁଆର ଉଠିଲା । ସେମାନେ ସମଗ୍ର ଭୁବନକୁ ବିନାଶ କରିବାରେ ସମର୍ଥ ଥିଲେ । ଏଭଳି ସେନାକୁ ଦେଖି ଦେବଗଣ ଚକିତ ହୋଇଗଲେ । ସେମାନଙ୍କ ଉଦ୍ୟୋଗକୁ ଦେଖି ଦକ୍ଷ ରକ୍ତବାନ୍ତି କରି ପକାଇଲେ । ସେ ନିଜ ସ୍ତ୍ରୀକୁ ସାଥିରେ ଧରି ଦଣ୍ଡ ପରି ଭଗବାନ ବିଷ୍ଣୁଙ୍କ ପାଦତଳେ ପଡ଼ିଗଲେ ଏବଂ କହିଲେ—

ଦକ୍ଷ କହିଲେ—ବିଷ୍ଣୋ ! ମହାପ୍ରଭୋ ! ଆପଣଙ୍କ ବଳରେ ମୁଁ ଏହି ମହାନ୍ ଯଜ୍ଞ ଆରମ୍ଭ କରିଥିଲି । ସତ୍‌କର୍ମର ସିଦ୍ଧି ପାଇଁ ଆପଣ ହିଁ ପ୍ରମାଣ ଅଟନ୍ତି । ବିଷ୍ଣୋ ! ଆପଣ କର୍ମର ସାକ୍ଷୀ ଓ ଯଜ୍ଞମାନଙ୍କର ପ୍ରତିପାଳକ ଅଟନ୍ତି । ମହାପ୍ରଭୋ ! ଆପଣ ବେଦୋକ୍ତ ଧର୍ମ ଓ ବ୍ରହ୍ମାଙ୍କର ରକ୍ଷକ । ଏଣୁ ପ୍ରଭୋ ! ଆପଣ ମୋର ଏ ଯଜ୍ଞକୁ ରକ୍ଷା କରିବା ଉଚିତ; କାରଣ ଆପଣ ସମସ୍ତଙ୍କର ପ୍ରଭୁ ।

ବ୍ରହ୍ମା କହୁଛନ୍ତି—ଶିବତତ୍ତ୍ୱବିମୁଖ ଦକ୍ଷଙ୍କର ଏଭଳି ଦୈନ୍ୟ ବାଣୀ ଶୁଣି ଭଗବାନ ବିଷ୍ଣୁ ତାଙ୍କୁ ବୁଝାଇବା ପାଇଁ ଏହିପରି କହିଲେ—

ଶ୍ରୀବିଷ୍ଣୁ କହିଲେ—ଦକ୍ଷ ! ଏହା ନିଃସନ୍ଦେହ ଯେ ମୋ ପକ୍ଷେ ତୁମ ଯଜ୍ଞକୁ ରକ୍ଷା କରିବା ଉଚିତ । କାରଣ ଧର୍ମପ୍ରତିପାଳନ ବିଷୟରେ ମୋର ଯେଉଁ ପ୍ରତିଜ୍ଞା ରହିଛି, ତାହା ସର୍ବତ୍ର ବିଖ୍ୟାତ । କିନ୍ତୁ ଦକ୍ଷ ! ମୁଁ ଯାହା କିଛି କହୁଛି, ଶୁଣ । ଏବେ ତୁମେ କ୍ରୂରତାପୂର୍ଣ୍ଣ ବୁଦ୍ଧିକୁ ପରିତ୍ୟାଗ କର । ଦେବତାଙ୍କ କ୍ଷେତ୍ର ନୈମିଷାରଣ୍ୟରେ ଯାହା କିଛି ଘଟିତ ହୋଇଥିଲା, ତାହା ତୁମର ମନେ ନାହିଁ କି? କ'ଣ ତୁମେ ତୁମର କୁବୁଦ୍ଧି କାରଣରୁ ତାହା ଭୁଲିଗଲ? ଏଠି କିଏ ବା ତୁମକୁ ଶିବଙ୍କ କ୍ରୋଧରୁ ରକ୍ଷା କରିବାକୁ ସମର୍ଥ ହେବ? ଦକ୍ଷ ! ତୁମକୁ ରକ୍ଷା କରିବା କାହାର ବା ଅଭିମତ ନୁହେଁ? କିନ୍ତୁ ଯେ ତୁମକୁ ରକ୍ଷା କରିବାକୁ ଉଦ୍ୟତ ହେବ, ସେ ନିଜ ଦୁର୍ବୁଦ୍ଧିର ହିଁ ପରିଚୟ ଦେବ । ଦୁର୍ମତେ ! କର୍ମ କ'ଣ ଓ ଅକର୍ମ କ'ଣ, ତାହା ତୁମେ ବୁଝିପାରୁ ନାହଁ । କେବଳ କର୍ମ କଦାପି କିଛି କରିବାକୁ ସମର୍ଥ ହୋଇ ପାରେ ନାହିଁ । ଯାହା ସାହାଯ୍ୟରେ କର୍ମରେ କିଛି କରିବାର ସାମର୍ଥ୍ୟ ଆସେ, ତାକୁ ତୁମେ ସ୍ୱକର୍ମ ବୋଲି ବୁଝ । ଭଗବାନ ଶିବଙ୍କ ବ୍ୟତୀତ ଅନ୍ୟ କେହି କର୍ମକୁ କଲ୍ୟାଣକାରୀ ଶକ୍ତି ଦେବାରେ ସମର୍ଥ ନୁହେଁ । ଯେ ଶାନ୍ତଭାବରେ ଈଶ୍ୱରଙ୍କ ଠାରେ ମନ ଲଗାଇ ତାଙ୍କରି କର୍ମ ଭକ୍ତିପୂର୍ବକ କରେ, ତାହାକୁ ହିଁ ଭଗବାନ ଶିବ ତତ୍କାଳ ସେହି କର୍ମର ଫଳ ଦେଇଥାନ୍ତି । ଯେଉଁମାନେ କେବଳ ଜ୍ଞାନର ଆଶ୍ରୟ ନେଇ ଅନୀଶ୍ୱରବାଦୀ ହୋଇଯାଆନ୍ତି ବା ଈଶ୍ୱରଙ୍କୁ ମାନନ୍ତି ନାହିଁ, ସେମାନେ ଶହେକୋଟି କଳ୍ପ ପର୍ଯ୍ୟନ୍ତ ନରକରେ ପଡ଼ିରହନ୍ତି ।* ତା'ପରେ ସେମାନେ କର୍ମପାଶରେ ବାନ୍ଧି ହୋଇ ପ୍ରତ୍ୟେକ

* କେବଳଂ ଜ୍ଞାନମାଶ୍ରିତ୍ୟ ନିରୀଶ୍ୱରପରା ନରାଃ । ନିରୟଂ ତେ ଚ ଗଚ୍ଛନ୍ତି କଳ୍ପକୋଟିଶତାନି ଚ ॥
(ଶି. ପୁ. ରୁ. ସଂ. ସ. ଖ. ୩୫ । ୩୧)

ଜନ୍ମରେ ନରକ ଯାତନା ଭୋଗନ୍ତି; କାରଣ ସେମାନେ କେବଳ ସକାମ କର୍ମର ହିଁ ଆଶ୍ରୟ ନେଇଥାନ୍ତି ।

ଏ ଯେଉଁ ଶତ୍ରୁଦମନ ବୀରଭଦ୍ର ଯଜ୍ଞଶାଳାର ପ୍ରାଙ୍ଗଣରେ ପହଞ୍ଚିଗଲେଣି, ସେ ଭଗବାନ ଶିବଙ୍କ କ୍ରୋଧାଗ୍ନିରୁ ପ୍ରକଟ ହୋଇଛନ୍ତି । ବର୍ତ୍ତମାନ ସମସ୍ତ ରୁଦ୍ରଗଣଙ୍କର ସେ ହିଁ ନାୟକ । ସେ ଆମ୍ଭମାନଙ୍କର ବିନାଶ ପାଇଁ ଯେ ଏଠାକୁ ଆସିଛନ୍ତି, ଏଥିରେ ତିଳେମାତ୍ର ସଂଶୟ ନାହିଁ । କୌଣସି କାର୍ଯ୍ୟ ଏହାଙ୍କ ପାଇଁ ଅଶକ୍ୟ ନୁହେଁ । ଯାହା ଜଣାପଡୁଛି, ଏ ମହାସାମର୍ଥ୍ୟବାନ୍ ବୀରଭଦ୍ର ସମସ୍ତ ଦେବତାଙ୍କୁ ପୋଡ଼ି ନ ପକାଇବା ପର୍ଯ୍ୟନ୍ତ ଶାନ୍ତ ହେବେ ନାହିଁ । ମୁଁ ଭ୍ରମବଶତଃ ମହାଦେବଙ୍କ ଶପଥର ଉଲ୍ଲଙ୍ଘନ କରି ଏଠାରେ ଯେଉଁ ଉପସ୍ଥିତ ରହିଛି, ତାହାର ପରିଣାମସ୍ୱରୂପ ତୁମ ସଙ୍ଗରେ ମୋତେ ମଧ୍ୟ କଷ୍ଟ ସହିବାକୁ ପଡ଼ିବ ।

ଭଗବାନ ବିଷ୍ଣୁ ଏଭଳି କହୁ କହୁ ବୀରଭଦ୍ରଙ୍କ ସହିତ ଶିବଗଣଙ୍କର ସେନା-ସମୁଦ୍ର ମାଡ଼ି ଆସିଲା । ଦେବତା ପ୍ରଭୃତି ଏସବୁ ଦେଖୁଥିଲେ ।

(ଅଧ୍ୟାୟ ୩୫)

★★★

## ଦେବଗଣଙ୍କର ପଳାୟନ, ଇନ୍ଦ୍ରାଦିଙ୍କ ପ୍ରଶ୍ନର ଉତ୍ତରରେ ବୃହସ୍ପତି ରୁଦ୍ରଦେବଙ୍କୁ ଅଜେୟ ବୋଲି କହିବା, ବୀରଭଦ୍ରଙ୍କର ଦେବତାଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ, ବିଷ୍ଣୁ ଓ ବୀରଭଦ୍ରଙ୍କ ମଧ୍ୟରେ ବିତର୍କ ଓ ସଂଗ୍ରାମ, ବିଷ୍ଣୁ ପ୍ରଭୃତି ନିଜ ନିଜ ଲୋକକୁ ପ୍ରସ୍ଥାନ କରିବା ପରେ ଦକ୍ଷଙ୍କୁ ଓ ତାଙ୍କ ଯଜ୍ଞକୁ ବିନାଶ କରି ବୀରଭଦ୍ରଙ୍କର କୈଳାସ ପ୍ରତ୍ୟାବର୍ତ୍ତନ

ବ୍ରହ୍ମା କହୁଛନ୍ତି—ହେ ନାରଦ ! ଇତିମଧ୍ୟରେ ଦେବତାଙ୍କ ସହିତ ବୀରଭଦ୍ରଙ୍କର ଘୋର ସଂଗ୍ରାମ ଆରମ୍ଭ ହୋଇଗଲା । ସେଥିରେ ସମସ୍ତ ଦେବତା ପରାଜିତ ହୋଇ ପୃଷ୍ଠଭଙ୍ଗ ଦେଲେ । ସେମାନେ ସାଥୀ ସହଚରଙ୍କୁ ନ ଗ୍ରହି ସିଧା ସ୍ୱର୍ଗକୁ ପଳାୟନ କଲେ । ସେହି ଭୟଙ୍କର ସଂଗ୍ରାମରେ କେବଳ ମହାବଳୀ ଇନ୍ଦ୍ରାଦି ଲୋକପାଳ ହିଁ ଧୈର୍ଯ୍ୟ ଧାରଣ କରି ରହିପାରିଲେ । ଏହାପରେ ଇନ୍ଦ୍ରାଦି ଦେବତା ଏକତ୍ର ହୋଇ ରଣାଙ୍ଗନରେ ବୃହସ୍ପତିଙ୍କୁ ବିନୀତଭାବରେ ନମସ୍କାର କରି ପଗ୍ଚରିଲେ ।

ଲୋକପାଳମାନେ କହିଲେ—ଗୁରୁଦେବ ବୃହସ୍ପତେ ! ତାତ ! ମହାପ୍ରାଜ୍ଞ ! ଦୟାନିଧେ ! ଶୀଘ୍ର କୁହନ୍ତୁ ଯେ ଆମର ବିଜୟ କେମିତି ହେବ?

ତାଙ୍କ କଥା ଶୁଣି ବୃହସ୍ପତି ଶମ୍ଭୁଙ୍କୁ ସ୍ମରଣ କଲେ ଏବଂ ଜ୍ଞାନଦୁର୍ବଳ ମହେନ୍ଦ୍ରଙ୍କୁ କହିଲେ ।

ବୃହସ୍ପତି କହିଲେ—ଇନ୍ଦ୍ର ! ଭଗବାନ ବିଷ୍ଣୁ ପ୍ରଥମରୁ ଯାହା କହିଥିଲେ, ତାହା ହିଁ ଏବେ ଘଟିତ ହେଲା । ମୁଁ ତାହାକୁ ହିଁ ସ୍ପଷ୍ଟ କରୁଛି; ସାବଧାନ ହୋଇ ଶୁଣ । ସମସ୍ତ କର୍ମର ଫଳପ୍ରଦାତା ଈଶ୍ୱର ପ୍ରକୃତରେ କର୍ତ୍ତା ଉପରେ ଆଶ୍ରିତ ଅର୍ଥାତ୍ କର୍ମ କରିବା ବ୍ୟକ୍ତିକୁ ହିଁ ସେ କର୍ମ ଅନୁରୂପ ଫଳ ଦିଅନ୍ତି । ଯେ କର୍ମ କରେ ନାହିଁ, ତାକୁ ଫଳ ଦେବାରେ ସେ ଅସମର୍ଥ । (ଏଣୁ ଯେ ଈଶ୍ୱରଙ୍କୁ ଜାଣି ତାଙ୍କରି ଆଶ୍ରୟ ନେଇ ସତ୍କର୍ମ କରେ, ତାକୁ ହିଁ ସେହି କର୍ମର ଫଳ ମିଳେ, ଈଶ୍ୱରଦ୍ରୋହୀକୁ ନୁହେଁ ।) ପ୍ରାଚୀନ ବିଦ୍ୱାନ୍‌ଙ୍କ ମତ ଯେ ସେହି ଈଶ୍ୱରଙ୍କୁ ଜାଣିବାକୁ ମନ୍ତ୍ର, ଓଷଧି, ଆଭିଚାରିକ କର୍ମ, ଲୌକିକ ପୁରୁଷ, କର୍ମ, ବେଦ, ପୂର୍ବମୀମାଂସା, ଉତ୍ତରମୀମାଂସା କି ନାନା ବେଦଯୁକ୍ତ ଅନ୍ୟାନ୍ୟ ଶାସ୍ତ୍ର କେହି ବି ସମର୍ଥ ନୁହନ୍ତି । ଅନନ୍ୟ ଭକ୍ତକୁ

ଛାଡ଼ିଦେଲେ ଅନ୍ୟ କେହି ସମସ୍ତ ବେଦକୁ ଦଶହଜାର ବାର ସ୍ୱାଧ୍ୟାୟ କରି ମଧ୍ୟ ମହେଶ୍ୱରଙ୍କୁ ପୂର୍ଣ୍ଣରୂପେ ଜାଣିପାରିବେ ନାହିଁ, ଏହା ମହାଶ୍ରୁତିଙ୍କର କଥନ । ଅବଶ୍ୟ ଶିବଙ୍କ ଅନୁଗ୍ରହରୁ ସର୍ବଥା ଶାନ୍ତ, ନିର୍ବିକାର ଓ ଉତ୍ତମ ଦୃଷ୍ଟି ଦ୍ୱାରା ସଦାଶିବଙ୍କ ତତ୍ତ୍ୱର ସାକ୍ଷାତ୍କାର (ଜ୍ଞାନ) ହୋଇପାରେ । ସୁରେଶ୍ୱର ! କ'ଣ କର୍ତ୍ତବ୍ୟ, କ'ଣ ଅକର୍ତ୍ତବ୍ୟ–ଏହା ବିବେଚନା କରିବା ମୋର ଅଭୀଷ୍ଟ ହୋଇଥିଲେ ମଧ୍ୟ ମୁଁ କେବଳ ସଫଳତାର ସାରତତ୍ତ୍ୱ ପ୍ରତିପାଦନ କରିବି । ତୁମେ ନିଜ ହିତଦୃଷ୍ଟିରୁ ତାହାକୁ ମନ ଦେଇ ଶୁଣ । ତୁମେ ଆଜି ଲୋକପାଳମାନଙ୍କ ସହ ଆସି ଅଜ୍ଞାନୀ ପରି ଦକ୍ଷଯଜ୍ଞରେ ଯୋଗଦେଲ । ତୁମେ ହିଁ କୁହ, ଏଠି ତୁମେ କି ପରାକ୍ରମ ଦେଖାଇବ? ସ୍ୱୟଂ ଭଗବାନ ରୁଦ୍ର ଯେଉଁ ପରମ କ୍ରୋଧୀ ରୁଦ୍ରଗଣଙ୍କର ସହାୟକ, ସେମାନେ ଆଜି ଏଠାରେ ବିଘ୍ନ ସୃଷ୍ଟି କରିବାକୁ ଆସିଛନ୍ତି; ତେଣୁ ସେମାନେ ସେମାନଙ୍କ କାମ ନିଶ୍ଚୟ ପୂର୍ଣ୍ଣ କରିବେ, ଏଥିରେ ସଂଶୟ ନାହିଁ । ମୁଁ ସତ୍ୟ କହୁଛି ଯେ ଏ ଯଜ୍ଞର ବିଘ୍ନକୁ ନିବାରଣ କରିବା ପାଇଁ ତୁମମାନଙ୍କ ମଧ୍ୟରୁ କାହାରି ପାଖରେ କୌଣସି ଉପାୟ ନାହିଁ ।

ବୃହସ୍ପତିଙ୍କ କଥା ଶୁଣି ଇନ୍ଦ୍ରାଦି ସମସ୍ତ ଲୋକପାଳମାନେ ଘୋର ଚିନ୍ତାରେ ପଡ଼ିଗଲେ । ଏତିକିବେଳେ ମହାବଳଶାଳୀ ରୁଦ୍ରଗଣଙ୍କ ଦ୍ୱାରା ବେଷ୍ଟିତ ବୀରଭଦ୍ର ମନେ ମନେ ଶିବଙ୍କୁ ସ୍ମରଣ କରି ଇନ୍ଦ୍ରାଦି ଲୋକପାଳଙ୍କୁ ଖୁବ୍ ଭର୍ତ୍ସନା କଲେ ଓ ତା'ପରେ ସେ କ୍ରୋଧରେ ସମସ୍ତ ଦେବଗଣଙ୍କୁ ତୀକ୍ଷ୍ଣ ଶରରେ ଆହତ କରିଦେଲେ । ଶରାଘାତରେ ଆହତ ହୋଇ ଇନ୍ଦ୍ରାଦି ସମସ୍ତ ସୁରେଶ୍ୱର ଦଶଦିଗକୁ ପଳାୟନ କଲେ । ସେମାନେ ପଳାଇଯିବାରୁ ବୀରଭଦ୍ର ନିଜ ଗଣଙ୍କ ସହିତ ଯଜ୍ଞଶାଳା ନିକଟରେ ପହଞ୍ଚିଲେ । ସେତେବେଳେ ସେଠାରେ ବିଦ୍ୟମାନ ଋଷିଗଣ ଅତ୍ୟନ୍ତ ଭୟଭୀତ ହୋଇ ଅବିଳମ୍ବେ ଭଗବାନ ଶ୍ରୀହରିଙ୍କୁ ନିଜର ରକ୍ଷା ପାଇଁ ନତମସ୍ତକ ହୋଇ ପ୍ରାର୍ଥନା କରି କହିଲେ–"ଦେବଦେବ ! ରମାନାଥ ! ସର୍ବେଶ୍ୱର ! ମହାପ୍ରଭୋ ! ଆପଣ ଦକ୍ଷଯଜ୍ଞକୁ ରକ୍ଷା କରନ୍ତୁ । ଆପଣ ହିଁ ଯଜ୍ଞ, ଏଥିରେ ସଂଶୟ ନାହିଁ । ଯଜ୍ଞ ଆପଣଙ୍କ କର୍ମ, ରୂପ ଓ ଅଙ୍ଗ । ଆପଣ ଯଜ୍ଞର ରକ୍ଷକ । ଏଣୁ ଦକ୍ଷଯଜ୍ଞକୁ ରକ୍ଷା କରନ୍ତୁ । ଆପଣଙ୍କ ବିନା ଅନ୍ୟ କେହି ଏହାର ରକ୍ଷକ ନାହିଁ ।"

ବ୍ରହ୍ମା କହୁଛନ୍ତି–ନାରଦ ! ଋଷିଗଣଙ୍କ କଥା ଶୁଣି ଭଗବାନ ବିଷ୍ଣୁ ମୋତେ ସଙ୍ଗରେ ଧରି ବୀରଭଦ୍ରଙ୍କ ସହିତ ଯୁଦ୍ଧ କରିବାକୁ ବାହାରିଲେ । ବିଷ୍ଣୁଙ୍କୁ ଯୁଦ୍ଧ ନିମନ୍ତେ ଉଦ୍ୟତ ଦେଖି ପ୍ରମଥଗଣ ପରିବେଷ୍ଟିତ ଶତ୍ରୁଦମନ ବୀରଭଦ୍ର ଅତି କଠୋର ଶବ୍ଦରେ ଭଗବାନ ବିଷ୍ଣୁଙ୍କୁ ଗାଳିଦେଲେ । ନାରଦ ! ବୀରଭଦ୍ରଙ୍କ କଥା ଶୁଣି ବୁଦ୍ଧିମାନ୍ ଦେବେଶ୍ୱର ବିଷ୍ଣୁ ପ୍ରସନ୍ନତାପୂର୍ବକ ହସି ହସି କହିଲେ–

ଶ୍ରୀବିଷ୍ଣୁ କହିଲେ–ବୀରଭଦ୍ର ! ଆଜି ମୁଁ ତୁମ ଆଗରେ ଯାହା କିଛି କହୁଛି, ତାହା ଶୁଣ । ମୁଁ ଭଗବାନ ଶଙ୍କରଙ୍କ ସେବକ, ତୁମେ ମୋତେ ରୁଦ୍ରବିମୁଖ ବୋଲି କୁହ ନାହିଁ । ଦକ୍ଷ ଅଜ୍ଞାନୀ । ତାହାର କର୍ମକାଣ୍ଡରେ ହିଁ ନିଷ୍ଠା ରହିଛି । ସେ ମୂଢ଼ତାବଶତଃ ମୋତେ ବାରମ୍ବାର ଯଜ୍ଞକୁ ଆସିବାକୁ ପ୍ରାର୍ଥନା କଲା । ମୁଁ ତ ଭକ୍ତର ଅଧୀନ, ତେଣୁ ଆସିବାକୁ ବାଧ୍ୟ ହେଲି । ଭଗବାନ ଶିବ ମଧ୍ୟ ଭକ୍ତର ଅଧୀନ ଅଟନ୍ତି । ତାତ ! ଦକ୍ଷ ମୋର ଭକ୍ତ । ସେଥିପାଇଁ ମୋତେ ଏଠାକୁ ଆସିବାକୁ ପଡ଼ିଲା । ତୁମେ ରୁଦ୍ରଙ୍କ କ୍ରୋଧରୁ ଉତ୍ପନ୍ନ ବୀର, ତୁମେ ରୁଦ୍ରଙ୍କ ତେଜସ୍ୱରୂପ ଓ ଉତ୍ତମ ପ୍ରତାପର ଆଶ୍ରୟ । ମୋର ପ୍ରତିଜ୍ଞା ଶୁଣ । ମୁଁ ତୁମକୁ ଏହିଠାରୁ ଅଟକାଉଛି, ତୁମେ ମୋତେ ଜିଣିବାକୁ ଚେଷ୍ଟା କର । ପରିଣାମ ଯାହା ହେବାର ଥିବ

ହେବ, ହେଲେ ମୁଁ ମୋର କର୍ତ୍ତବ୍ୟ ଅବଶ୍ୟ କରିବି ।''

ବ୍ରହ୍ମା କହୁଛନ୍ତି–ନାରଦ ! ଭଗବାନ ବିଷ୍ଣୁ ଏଭଳି କହିବାରୁ ମହାବାହୁ ବୀରଭଦ୍ର ହସି ହସି କହିଲେ–''ଆପଣ ମୋ ପ୍ରଭୁଙ୍କ ପ୍ରିୟ ଭକ୍ତ, ଏକଥା ଜାଣି ମୋତେ ଭଲ ଲାଗିଲା ।'' ଏତିକି କହି ବୀରଭଦ୍ର ହସିଦେଲେ ଓ ବିନୟରେ ନତମସ୍ତକ ହୋଇ ଅତି ପ୍ରସନ୍ନତାର ସହିତ ବିଷ୍ଣୁଙ୍କୁ କହିଲେ–

ବୀରଭଦ୍ର କହିଲେ–ମହାପ୍ରଭୋ ! ମୁଁ ଆପଣଙ୍କ ଭାବର ପରୀକ୍ଷା ପାଇଁ ଏଭଳି କଟୁ ଶବ୍ଦ କହିଥିଲି । ଏବେ ଯଥାର୍ଥ କଥା କହୁଛି, ସାବଧାନ ହୋଇ ଶୁଣନ୍ତୁ । ହରେ ! ଯେପରି ଶିବ, ସେହିପରି ଆପଣ । ଯେପରି ଆପଣ, ସେହିପରି ଶିବ । ଏହା ବେଦଗଣ କହନ୍ତି ଏବଂ ବେଦଗଣଙ୍କର ଏ କଥନ ଶିବଙ୍କର ହିଁ ଆଜ୍ଞା ଅନୁରୂପ ।* ରମାନାଥ ! ଭଗବାନ ଶିବଙ୍କ ଆଜ୍ଞା ଅନୁସାରେ ଆମେ ସବୁ ତାଙ୍କର ସେବକ; ତଥାପି ମୁଁ ଯେଉଁ କଥା କହିଛି, ତାହା ବାଦ-ବିବାଦ ଅବସରର ଅନୁରୂପ । ଆପଣ ମୋ କଟୁ କଥାକୁ ଆଦରଭାବରେ ପରିବର୍ତ୍ତିତ କରି ଗ୍ରହଣ କରନ୍ତୁ ।

ବ୍ରହ୍ମା କହୁଛନ୍ତି–ବୀରଭଦ୍ରଙ୍କ କଥା ଶୁଣି ଭଗବାନ ଶ୍ରୀହରି ହସିଦେଲେ ଓ ତାଙ୍କ ପାଇଁ ହିତକର କଥା କହିଲେ ।

ଶ୍ରୀବିଷ୍ଣୁ କହିଲେ–ମହାବୀର ! ତୁମେ ମୋ ସହିତ ନିଃସଂକୋଚରେ ଯୁଦ୍ଧ କର । ତୁମ ଅସ୍ତ୍ରରେ ମୋ ଶରୀର ଭର୍ତ୍ତି ହୋଇଯିବା ପରେ ଯାଇ ମୁଁ ମୋ ଆଶ୍ରମକୁ ଫେରିବି ।

ବ୍ରହ୍ମା କହୁଛନ୍ତି–ଏଭଳି କହି ଭଗବାନ ବିଷ୍ଣୁ ଚୁପ୍ ହୋଇଗଲେ ଏବଂ ଯୁଦ୍ଧ ପାଇଁ କଟିବଦ୍ଧ ହୋଇ ଛିଡ଼ା ହୋଇଗଲେ । ମହାବଳୀ ବୀରଭଦ୍ର ମଧ୍ୟ ସଦଳବଳ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ ।

ନାରଦ ! ତା'ପରେ ଭଗବାନ ବିଷ୍ଣୁଙ୍କ ସଙ୍ଗେ ବୀରଭଦ୍ରଙ୍କର ଘୋର ସଂଗ୍ରାମ ହେଲା । ଶେଷରେ ବୀରଭଦ୍ର ଭଗବାନ ବିଷ୍ଣୁଙ୍କ ଚକ୍ରକୁ ସ୍ତମ୍ଭିତ କରିଦେଲେ ଓ ଶାର୍ଙ୍ଗଧନୁକୁ ତିନି ଖଣ୍ଡ କରିଦେଲେ । ତା'ପରେ ମୁଁ ଓ ସରସ୍ୱତୀ କହିବାରୁ ଭଗବାନ ବିଷ୍ଣୁ ବୀରଭଦ୍ରଙ୍କୁ ମହାତେଜସମ୍ପନ୍ନ ଜାଣି ତାଙ୍କ ଆଗରୁ ଅନ୍ତର୍ହିତ ହେବାକୁ ଭାବିଲେ । ଅନ୍ୟ ଦେବତାମାନେ ମଧ୍ୟ ଜାଣିଗଲେ ଯେ ସତୀଙ୍କ ପ୍ରତି ଯାହା କିଛି ଅନ୍ୟାୟ ହେଲା, ଏହା ତାହାରି ପରିଣାମ । ଅନ୍ୟ କାହାରି ପକ୍ଷେ ଏ ସଙ୍କଟକୁ ସମ୍ମୁଖୀନ ହେବା ଅତ୍ୟନ୍ତ ଦୁଷ୍କର । ଏକଥା ଅନୁଭବ କରି ସେମାନେ ନିଜ ନିଜ ସେବକଙ୍କ ସହିତ ସ୍ୱତନ୍ତ୍ର ସର୍ବେଶ୍ୱର ଶିବଙ୍କୁ ସ୍ମରଣ କରି ନିଜ ନିଜ ଧାମକୁ ବାହୁଡ଼ିଗଲେ । ମୁଁ ମଧ୍ୟ ପୁତ୍ରର ଦୁଃଖରେ ଅତ୍ୟନ୍ତ ଦୁଃଖିତ ଓ ଆତୁର ହୋଇ କି ବୁଦ୍ଧି କରିବି, କିଛି ଭାବି ପାରିଲି ନାହିଁ । ମୁଁ ଓ ବିଷ୍ଣୁ ଚାଲିଯିବା ପରେ ମୁନିସମେତ ଯଜ୍ଞର ଆଧାର ହୋଇଥିବା ସମସ୍ତ ଦେବତା ଶିବଗଣଙ୍କ ଠାରୁ ପରାଜିତ ହୋଇ ପଳାୟନ କଲେ । ଏପରି ଉପଦ୍ରବକୁ ଦେଖି ଓ ସେହି ମହାଯଜ୍ଞର ବିଧ୍ୱଂସ ସନ୍ନିକଟ ବୋଲି ଜାଣିପାରି ସ୍ୱୟଂ ଯଜ୍ଞ ମଧ୍ୟ ଅତ୍ୟନ୍ତ ଭୟଭୀତ ହୋଇ ମୃଗରୂପ ଧାରଣ କରି ସେଠାରୁ ପଳାୟନ କଲା । ମୃଗରୂପରେ ଆକାଶ ଆଡ଼କୁ ପଳାୟନ କରୁଥିବା ଯଜ୍ଞକୁ ଦେଖି ବୀରଭଦ୍ର ତାହାକୁ ଧରି ପକାଇ ତାହାର ମସ୍ତକ କାଟିଦେଲେ । ତା'ପରେ ସେ ମୁନି ଓ ଦେବତାମାନଙ୍କ ଅଙ୍ଗଭଙ୍ଗ କରିଦେଲେ ଏବଂ ଅନେକଙ୍କୁ ମାରିପକାଇଲେ । ପ୍ରତାପୀ ମଣିଭଦ୍ର ଭୃଗୁଙ୍କୁ ଟେକି କଚାଡ଼ିଦେଲେ

* ଯଥା ଶିବସ୍ତଥା ତ୍ୱଂ ହି ଯଥା ତ୍ୱଂ ଚ ତଥା ଶିବଃ । ଇତି ବେଦା ବର୍ଣ୍ଣୟନ୍ତି ଶିବଶାସନତୋ ହରେଃ ॥
(ଶି. ପୁ. ରୁ. ସଂ. ସ. ଖ. ୩୬ । ୬୬)

ଏବଂ ତାଙ୍କ ଛାତିକୁ ପାଦରେ ଗ୍ରପି ଧରି ଅବିଳମ୍ବେ ତାଙ୍କର ଦାଢ଼ି ଓ ନିଶକୁ ଉପାଡ଼ି ପକାଇଲେ । ଚଣ୍ଡ ତତ୍‌କ୍ଷଣାତ୍ ପୂଷାଙ୍କର ଦାନ୍ତ ସବୁ ଉପାଡ଼ି ପକାଇଲେ; କାରଣ ପୂର୍ବେ ଯେତେବେଳେ ଦକ୍ଷ ମହାଦେବଙ୍କୁ ଗାଳି ଦେଉଥିଲେ, ସେତେବେଳେ ପୂଷା ଦାନ୍ତ ଦେଖାଇ ହସୁଥିଲେ । ନନ୍ଦୀ କ୍ରୋଧରେ ଭଗଙ୍କୁ ତଳେ କଗ୍ରଡ଼ି ଦେଲେ ଓ ତାଙ୍କର ଦୁଇ ଆଖି ତାଡ଼ି ପକାଇଲେ; କାରଣ ଦକ୍ଷ ଶିବଙ୍କୁ ଶାପ ଦେବାବେଳେ ଭଗ ଆଖିଠାରରେ ଦକ୍ଷଙ୍କ କାର୍ଯ୍ୟର ଅନୁମୋଦନ କରୁଥିଲେ । ରୁଦ୍ରଗଣଙ୍କ ନାୟକମାନେ ସ୍ୱଧା, ସ୍ୱାହା ଓ ଦକ୍ଷିଣା ପ୍ରଭୃତି ଦେବୀମାନଙ୍କର ମଧ୍ୟ ଅତ୍ୟନ୍ତ ଦୁର୍ଦ୍ଦଶା କରିଦେଲେ । ସେଠାରେ ଅନ୍ୟ ଯେତେ ମନ୍ତ୍ର-ତନ୍ତ୍ର ପ୍ରଭୃତି ଥିଲେ, ସେମାନଙ୍କର ମଧ୍ୟ ବହୁତ ତିରସ୍କାର ହେଲା । ବ୍ରହ୍ମାଙ୍କ ପୁତ୍ର ଦକ୍ଷ ଭୟରେ ଅନ୍ତର୍ବେଦି ଭିତରେ ଲୁଚିଗଲେ । ବୀରଭଦ୍ର ତାଙ୍କୁ ଖୋଜି ବଳପୂର୍ବକ ଧରି ଟାଣି ଆଣିଲେ । ତା'ପରେ ତାଙ୍କର ଦୁଇ ଗାଲକୁ ଧରି ତାଙ୍କ ମସ୍ତକ ଉପରେ ତରବାରିରେ ପ୍ରହାର କଲେ । ମାତ୍ର ଯୋଗ ପ୍ରଭାବରେ ଦକ୍ଷଙ୍କ ମୁଣ୍ଡ ଅଭେଦ୍ୟ ହୋଇ ଯାଇଥିଲା; ତେଣୁ ତାହା କଟିଲା ନାହିଁ । ଯେତେବେଳେ ଗଣନାୟକ ବୀରଭଦ୍ରଙ୍କୁ ଜଣାପଡ଼ିଲା ଯେ, କୌଣସି ଅସ୍ତ୍ର-ଶସ୍ତ୍ରରେ ତାଙ୍କ ମସ୍ତକ ଭେଦନ କରିବା ଅସମ୍ଭବ, ସେତେବେଳେ ସେ ସେହି ଶିବଦ୍ରୋହୀ ଦୁଷ୍ଟ ଦକ୍ଷଙ୍କ ଛାତିକୁ ଗୋଡ଼ରେ ଗ୍ରପିରଖି ଦୁଇହାତରେ ତାଙ୍କ ମୁଣ୍ଡକୁ ଧରି ମୋଡ଼ି ଛିଣ୍ଡାଇଦେଲେ ଏବଂ ତାହାକୁ ଅଗ୍ନିକୁଣ୍ଡରେ ପକାଇଦେଲେ । ଏହାପରେ ସୂର୍ଯ୍ୟ ଘୋର ଅନ୍ଧକାରର ବକ୍ଷ ଚିରି ଉଦିତ ହେବା ପରି, ବୀରଭଦ୍ର ଦକ୍ଷ ଓ ତାଙ୍କର ଯଜ୍ଞକୁ ବିଧ୍ୱଂସ କରିବାରେ କୃତକାର୍ଯ୍ୟ ହୋଇ ଅବିଳମ୍ବେ ସେଠାରୁ କୈଳାସ ଅଭିମୁଖେ ପ୍ରସ୍ଥାନ କଲେ । ବୀରଭଦ୍ର ସବୁକାର୍ଯ୍ୟ ପୂର୍ଣ୍ଣ କରି ଫେରିଆସିଥିବା ଦେଖି ପରମେଶ୍ୱର ଶିବ ମନେ ମନେ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ସେ ବୀରଭଦ୍ରଙ୍କୁ ବୀର ପ୍ରମଥଗଣଙ୍କର ଅଧ୍ୟକ୍ଷ କରିଦେଲେ ।

(ଅଧ୍ୟାୟ ୩୬-୩୭)



## ବିଷ୍ଣୁଙ୍କ ପରାଜୟରେ ଦଧୀଚି ମୁନିଙ୍କ ଶାପକୁ କାରଣ ବୋଲି ଦର୍ଶାଇବାକୁ ଯାଇ ଦଧୀଚି ଓ କ୍ଷୁବଙ୍କ ବିବାଦର ଇତିହାସ ବର୍ଣ୍ଣନା, ମୃତ୍ୟୁଞ୍ଜୟ ମନ୍ତ୍ର ଅନୁଷ୍ଠାନଦ୍ୱାରା ଦଧୀଚିଙ୍କୁ ଅବଧ୍ୟତା ପ୍ରାପ୍ତି ଏବଂ ଦଧୀଚିଙ୍କୁ ପରାଜିତ କରିବାକୁ ପ୍ରଯତ୍ନ କରିବେ ବୋଲି କ୍ଷୁବଙ୍କୁ ଶ୍ରୀହରିଙ୍କ ଆଶ୍ୱାସନା

ସୂତ କହୁଛନ୍ତି—ମହର୍ଷିଗଣ ! ଅମିତ ବୁଦ୍ଧିମାନ୍ ବ୍ରହ୍ମାଙ୍କ ମୁଖରୁ ଏ କଥା ଶୁଣି ଦ୍ୱିଜଶ୍ରେଷ୍ଠ ନାରଦ ବିସ୍ମୟରେ ପଡ଼ିଗଲେ । ସେ ପ୍ରସନ୍ନତାପୂର୍ବକ ପ୍ରଶ୍ନ କଲେ ।

ନାରଦ ପଗ୍ରରିଲେ—ପିତୃଦେବ ! ଭଗବାନ ବିଷ୍ଣୁ ଶିବଙ୍କୁ ଛାଡ଼ି ଅନ୍ୟ ଦେବତାଙ୍କ ସହିତ ଦକ୍ଷଯଜ୍ଞକୁ କାହିଁକି ଗଲେ, ଯାହା ଫଳରେ ତାଙ୍କର ଏଭଳି ତିରସ୍କାର ହେଲା? ସେ କ'ଣ ପ୍ରଳୟକାରୀ ଶିବଙ୍କର ପରାକ୍ରମକୁ ଜାଣି ନ ଥିଲେ? ପୁଣି ସେ ଅଜ୍ଞାନୀ ବ୍ୟକ୍ତି ପରି ରୁଦ୍ରଗଣଙ୍କ ସଙ୍ଗେ କାହିଁକି ଯୁଦ୍ଧ କଲେ? କରୁଣାନିଧେ! ମୋ ମନରେ ଏହା ବହୁତ ବଡ଼ ସଂଶୟ ସୃଷ୍ଟି କରିଛି । କୃପା କରି ମୋର ସଂଶୟ ଦୂର କରନ୍ତୁ । ପ୍ରଭୋ ! ମନରେ ଉତ୍ସାହ ଭରି ଦେଉଥିବା ଏହି ଶିବଚରିତ ମୋତେ ଆହୁରି କହନ୍ତୁ ।

ବ୍ରହ୍ମା କହୁଛନ୍ତି—ନାରଦ ! ପୂର୍ବକାଳରେ ରାଜା

କ୍ଷୁବଙ୍କ ସହାୟତା କରିଥିବା ଶ୍ରୀହରିଙ୍କୁ ଦଧୀଚି ମୁନି ଶାପ ଦେଇଥିଲେ, ଯାହାଫଳରେ ସେ ଏ କଥାକୁ ଭୁଲିଗଲେ ଏବଂ ଅନ୍ୟ ଦେବତାଙ୍କୁ ସଙ୍ଗରେ ନେଇ ଦକ୍ଷଙ୍କ ଯଜ୍ଞରେ ପହଞ୍ଚିଗଲେ । ଦଧୀଚି କାହିଁକି ଶାପ ଦେଇଥିଲେ, ତାହା ଶୁଣ । ପ୍ରାଚୀନକାଳରେ କ୍ଷୁବ ନାମରେ ଜଣେ ମହାତେଜସ୍ୱୀ ରାଜା ଥିଲେ । ସେ ମହାପ୍ରଭାବଶାଳୀ ମୁନୀଶ୍ୱର ଦଧୀଚିଙ୍କ ମିତ୍ର ଥିଲେ । ଦୀର୍ଘକାଳ ତପସ୍ୟା ପ୍ରସଙ୍ଗକୁ ନେଇ କ୍ଷୁବ ଓ ଦଧୀଚିଙ୍କ ମଧ୍ୟରେ ବିବାଦ ଆରମ୍ଭ ହୋଇଗଲା ଏବଂ ତାହା ତ୍ରିଲୋକରେ ଘୋର ଅନର୍ଥକାରୀରୂପେ ବିଖ୍ୟାତ ହେଲା । ସେହି ବିବାଦରେ ବେଦର ଜ୍ଞାତା ଶିବଭକ୍ତ ଦଧୀଚି କହିଲେ ଯେ ଶୂଦ୍ର, ବୈଶ୍ୟ ଓ କ୍ଷତ୍ରିୟ ଏହି ତିନିବର୍ଣ୍ଣ ଠାରୁ ବ୍ରାହ୍ମଣ ହିଁ ନିଶ୍ଚିତରୂପେ ଶ୍ରେଷ୍ଠ । କିନ୍ତୁ ଧନ-ବୈଭବ ମଦରେ ମୋହିତ ରାଜା କ୍ଷୁବ ଦଧୀଚିଙ୍କ କଥାର ପ୍ରତିବାଦ କଲେ ।

କ୍ଷୁବ କହିଲେ–ରାଜା ହିଁ ଇନ୍ଦ୍ରାଦି ଅଷ୍ଟ-ଲୋକପାଳଙ୍କ ସ୍ୱରୂପକୁ ଧାରଣ କରିଥାଏ । ସେ ସମସ୍ତ ବର୍ଣ୍ଣ ଓ ଆଶ୍ରମର ପାଳକ ଓ ପ୍ରଭୁ । ତେଣୁ ରାଜା ହିଁ ସର୍ବଶ୍ରେଷ୍ଠ । ରାଜାଙ୍କ ଶ୍ରେଷ୍ଠତାକୁ ପ୍ରତିପାଦିତ କରି ଶ୍ରୁତି କହନ୍ତି ଯେ ରାଜା ସର୍ବଦେବମୟ । ମୁନେ ! ଶ୍ରୁତିର ଏହି କଥନାନୁସାରେ ମୁଁ ହେଉଛି ସବୁଠାରୁ ବଡ଼ ଦେବତା । ଏହି ବିବେଚନରୁ ବ୍ରାହ୍ମଣ ଅପେକ୍ଷା ରାଜା ହିଁ ଶ୍ରେଷ୍ଠ ବୋଲି ସିଦ୍ଧ ହେଉଛି । ଚ୍ୟବନନନ୍ଦନ ! ଆପଣ ଏ ବିଷୟରେ ବିଗ୍ୱର କରନ୍ତୁ ଆଉ ମୋର ନିରାଦର ନ କରନ୍ତୁ; କାରଣ ମୁଁ ସର୍ବଥା ଆପଣଙ୍କର ପୂଜନୀୟ ।

ରାଜା କ୍ଷୁବଙ୍କର ଏ ମତ ଶ୍ରୁତି ଓ ସ୍ମୃତିର ସମ୍ପୂର୍ଣ୍ଣ ବିରୁଦ୍ଧ ଥିଲା । ଏ କଥା ଶୁଣି ଭୃଗୁକୁଳଭୂଷଣ ମୁନିବର ଦଧୀଚିଙ୍କ ମନରେ ବହୁତ କ୍ରୋଧ ଆସିଲା । ମୁନେ ! ମହାତେଜସ୍ୱୀ ଦଧୀଚି ଆପଣା ଗୌରବ କଥା ବିଗ୍ୱର କରି କ୍ରୋଧରେ ନିଜ ବାମହାତରେ କ୍ଷୁବଙ୍କ ମୁଣ୍ଡରେ ଗୋଟିଏ ମୁଥ ମାରିଦେଲେ । ମୁଥ ଖାଇବାପରେ ବ୍ରହ୍ମାଣ୍ଡର ଅଧିପତି କୁତ୍ସିତବୁଦ୍ଧି କ୍ଷୁବ ଅତ୍ୟନ୍ତ କ୍ରୋଧରେ ଗର୍ଜନ କରି ବଜ୍ରରେ ଦଧୀଚିଙ୍କୁ ହାଣି ପକାଇଲେ । ବଜ୍ରାଘାତରେ ଆହତ ହୋଇ ଭୃଗୁବଂଶୀ ଦଧୀଚି ଭୂମି ଉପରେ ଟଳି ପଡ଼ିଲେ । ସେ ପଡୁ ପଡୁ ଶୁକ୍ରାଗ୍ୱର୍ଯ୍ୟଙ୍କୁ ସ୍ମରଣ କଲେ । ଯୋଗୀ ଶୁକ୍ରାଗ୍ୱର୍ଯ୍ୟ ଆସି ଦଧୀଚିଙ୍କ କଟା ଶରୀରକୁ ପୁନଃ ଯୋଡ଼ିଦେଲେ । ତାଙ୍କ ଶରୀରକୁ ପୂର୍ବବତ୍ ଯୋଡ଼ିଦେବା ପରେ ଶିବଭକ୍ତଶିରୋମଣି ତଥା ମୃତ୍ୟୁଞ୍ଜୟବିଦ୍ୟାର ପ୍ରବର୍ତ୍ତକ ଶୁକ୍ରାଗ୍ୱର୍ଯ୍ୟ ତାଙ୍କୁ କହିଲେ–

ଶୁକ୍ର କହିଲେ–ବତ୍ସ ଦଧୀଚି ! ମୁଁ ସର୍ବେଶ୍ୱର ଭଗବାନ ଶିବଙ୍କୁ ପୂଜା କରି ତୁମକୁ ଶ୍ରୁତିପ୍ରତିପାଦିତ ମହାମୃତ୍ୟୁଞ୍ଜୟ ନାମକ ଶ୍ରେଷ୍ଠ ମନ୍ତ୍ର ପ୍ରଦାନ କରୁଛି ।

'ତ୍ର୍ୟମ୍ବକଂ ଯଜାମହେ' ଅର୍ଥାତ୍ ଆମ୍ଭେ ଭଗବାନ ତ୍ର୍ୟମ୍ବକଙ୍କ ଯଜନ (ଆରାଧନ) କରୁଛୁ । ତ୍ର୍ୟମ୍ବକର ଅର୍ଥ–ତ୍ରିଲୋକର ପିତା ପ୍ରଭାବଶାଳୀ ଶିବ । ସେ ସୂର୍ଯ୍ୟ, ସୋମ ଓ ଅଗ୍ନି–ଏ ତିନି ମଣ୍ଡଳର ପିତା । ସତ୍ତ୍ୱ, ରଜ ଓ ତମ–ଏ ତିନି ଗୁଣର ମହେଶ୍ୱର । ଆତ୍ମତତ୍ତ୍ୱ, ବିଦ୍ୟାତତ୍ତ୍ୱ ଓ ଶିବତତ୍ତ୍ୱ–ଏ ତିନି ତତ୍ତ୍ୱର; ଆହବନୀୟ, ଗାର୍ହପତ୍ୟ ଓ ଦକ୍ଷିଣାଗ୍ନି–ଏ ତିନି ଅଗ୍ନିଙ୍କର; ସର୍ବତ୍ର ଉପଲବ୍ଧ ହେଉଥିବା ପୃଥିବୀ, ଜଳ ଓ ତେଜ–ଏ ତିନିଟି ମୂର୍ତ୍ତ ଭୂତଙ୍କର (ଅଥବା ସାତ୍ତ୍ୱିକାଦି ଭେଦରେ ତ୍ରିବିଧ ଭୂତଙ୍କର); ତ୍ରିଦିବ (ସ୍ୱର୍ଗ)ର; ତ୍ରିଭୁଜର ଏବଂ ବ୍ରହ୍ମା, ବିଷ୍ଣୁ ଓ ଶିବ–ଏ ତିନି ଦେବତାଙ୍କର ମହାନ୍ ଈଶ୍ୱର ମହାଦେବ ହିଁ ଅଟନ୍ତି । (ଏହା ଗଲା ମନ୍ତ୍ରର ପ୍ରଥମ ଚରଣର ବ୍ୟାଖ୍ୟା) । ମନ୍ତ୍ରର ଦ୍ୱିତୀୟ ଚରଣ ହେଲା–'ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍' ଅର୍ଥାତ୍ ଫୁଲରେ ସୁଗନ୍ଧ ବିଦ୍ୟମାନ ରହିଥିବା

ପରି ଭଗବାନ ଶିବ ସମସ୍ତ ଭୂତଙ୍କ ଠାରେ, ତ୍ରିଗୁଣରେ, ସମସ୍ତ କୃତ୍ୟରେ, ଇନ୍ଦ୍ରିୟମାନଙ୍କରେ, ଅନ୍ୟାନ୍ୟ ଦେବମାନଙ୍କରେ ଓ ଗଣମାନଙ୍କରେ ସେମାନଙ୍କ ପ୍ରକାଶକ ସାରଭୂତ ଆତ୍ମାରୂପରେ ବ୍ୟାପ୍ତ ଅଟନ୍ତି । ଏଣୁ ସେ ସୁଗନ୍ଧଯୁକ୍ତ ଏବଂ ସମସ୍ତ ଦେବତାଙ୍କର ଈଶ୍ୱର ଅଟନ୍ତି । (ଏହା ଗଲା 'ସୁଗନ୍ଧିମ୍' ପଦର ବ୍ୟାଖ୍ୟା, ଏଥର 'ପୁଷ୍ଟିବର୍ଦ୍ଧନମ୍'ର ବ୍ୟାଖ୍ୟା କରିବା—) ହେ ଉତ୍ତମ ବ୍ରତ ପାଳନକାରୀ ଦ୍ୱିଜବର ! ହେ ମହାମୁନି ! ସେହି ଅନ୍ତର୍ଯ୍ୟାମୀ ପୁରୁଷ ଶିବଙ୍କ ଠାରୁ ପ୍ରକୃତିର ପୋଷଣ ହୁଏ—ମହତ୍ତତ୍ତ୍ୱଠାରୁ ଆରମ୍ଭ କରି ବିଶେଷ ପର୍ଯ୍ୟନ୍ତ ସମସ୍ତ ବିକଳ୍ପର ପୁଷ୍ଟି ହୁଏ ତଥା ବିଷ୍ଣୁଙ୍କର, ପିତାମହଙ୍କର, ମୁନିଗଣଙ୍କର ଓ ଇନ୍ଦ୍ରିୟସମେତ ଦେବତାଙ୍କର ମଧ୍ୟ ପୋଷଣ ହୁଏ, ସେଥିପାଇଁ ସେ 'ପୁଷ୍ଟିବର୍ଦ୍ଧନ' ଅଟନ୍ତି । (ଏଥର ମନ୍ତ୍ରର ତୃତୀୟ ଓ ଚତୁର୍ଥ ଚରଣର ବ୍ୟାଖ୍ୟା କରିବା ।) ସେହି ଦୁଇ ଚରଣର ସ୍ୱରୂପ ଏହିପରି—ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋ-ର୍ମୁକ୍ଷୀୟମାମୃତାତ୍ ଅର୍ଥାତ୍ 'ପ୍ରଭୋ ! ଫୁଟିକାକୁଡ଼ି ପାଚିଗଲା ପରେ ଲତାବନ୍ଧନରୁ ଯେମିତି ପୃଥକ୍ ହୋଇଯାଏ, ମୁଁ ସେହିପରି ମୃତ୍ୟୁରୂପୀ ବନ୍ଧନରୁ ମୁକ୍ତ ହୋଇଯାଏଁ, ଅମୃତପଦ (ମୋକ୍ଷ)ରୁ ପୃଥକ୍ ନ ହୁଏ ।' ସେହି ରୁଦ୍ରଦେବ ଅମୃତସ୍ୱରୂପ ଅଟନ୍ତି; ଯେ ପୁଣ୍ୟକର୍ମ, ତପସ୍ୟା, ସ୍ୱାଧ୍ୟାୟ, ଯୋଗ ଅଥବା ଧ୍ୟାନ ଦ୍ୱାରା ତାଙ୍କୁ ଆରାଧନା କରେ, ତାକୁ ନବଜୀବନ ଲାଭ ହୁଏ । ଏହି ସତ୍ୟର ପ୍ରଭାବରେ ଭଗବାନ ଶିବ ସ୍ୱୟଂ ତାଙ୍କ ଭକ୍ତଙ୍କୁ ମୃତ୍ୟୁର ସୂକ୍ଷ୍ମ ବନ୍ଧନରୁ ମୁକ୍ତ କରିଦିଅନ୍ତି; କାରଣ ସେ ହିଁ ବନ୍ଧନ ଓ ମୋକ୍ଷର ଦାତା । ଫୁଟିକାକୁଡ଼ି ଲତା ଯେପରି ତା'ର ଫଳକୁ ନିଜେ ହିଁ ଆପଣା ବନ୍ଧନରେ ବାନ୍ଧି ରଖିଥାଏ, କିନ୍ତୁ ଫଳ ପାଚିଗଲେ ନିଜେ ହିଁ ତାହାକୁ ବନ୍ଧନରୁ ମୁକ୍ତ କରିଦିଏ, ଠିକ୍ ସେହିପରି ଭଗବାନ ଶିବ ତାଙ୍କ ଭକ୍ତଙ୍କୁ ମୁକ୍ତ କରିଦିଅନ୍ତି ।"

ଏହା ହେଲା ମୃତସଂଜୀବନୀ ମନ୍ତ୍ର; ଏହା ମୋ ମତରେ ସର୍ବୋତ୍ତମ । ତୁମେ ପ୍ରେମସହକାରେ ନିୟମରେ ଭଗବାନ ଶିବଙ୍କୁ ସ୍ମରଣ କରି କରି ଏହି ମନ୍ତ୍ରକୁ ଜପ କର । ଜପ ଓ ହୋମ ପରେ ଏଇଥିରେ ଅଭିମନ୍ତ୍ରିତ ଜଳକୁ ଦିନରାତି ପାନ କର ଏବଂ ଶିବବିଗ୍ରହ ସମୀପରେ ବସି ତାଙ୍କରି ଧ୍ୟାନ କର । ଏହାଦ୍ୱାରା କେଉଁଠି ବି ମୃତ୍ୟୁଭୟ ରହିବ ନାହିଁ । ନ୍ୟାସ ଆଦି ସବୁ କାର୍ଯ୍ୟ କରି ବିଧିବତ୍ ଭଗବାନ ଶିବଙ୍କୁ ପୂଜା କର । ଏଭଳି କରି ଶାନ୍ତଚିତ୍ତରେ ଭକ୍ତବତ୍ସଳ ଶିବଙ୍କର ଧ୍ୟାନ କରିବା ଉଚିତ । ମୁଁ ଭଗବାନ ଶିବଙ୍କ ଧ୍ୟାନ ଶିଖାଉଛି । ଏହି ପ୍ରଣାଳୀରେ ତାଙ୍କୁ ଚିନ୍ତନ କରି ମନ୍ତ୍ର ଜପିବା ଉଚିତ । ଏପରି ନିରନ୍ତର ଜପ କରି ବୁଦ୍ଧିମାନ୍ ବ୍ୟକ୍ତି ଭଗବାନ ଶିବଙ୍କ ପ୍ରଭାବରୁ ସେହି ମନ୍ତ୍ରକୁ ସିଦ୍ଧ କରିନିଏ ।

### ମୃତ୍ୟୁଞ୍ଜୟଙ୍କ ଧ୍ୟାନ

ହସ୍ତାମ୍ଭୋଜଯୁଗସ୍ଥକୁମ୍ଭଯୁଗଳାଦୁଦ୍ଧୃତ୍ୟ ତୋୟଂ ଶିରଃ
ସିଞ୍ଚନ୍ତଂ କରୟୋର୍ଯୁଗେନ ଦଧତଂ ସ୍ୱାଙ୍କେ ସକୁମ୍ଭୌ କରୌ ।
ଅକ୍ଷସ୍ରଙ୍ମୃଗହସ୍ତମମ୍ବୁଜଗତଂ ମୂର୍ଧସ୍ଥଚନ୍ଦ୍ରସ୍ରବତ୍
ପୀୟୂଷାର୍ଦ୍ରତନୁଂ ଭଜେ ସଗିରିଜଂ ତ୍ର୍ୟକ୍ଷଂ ଚ ମୃତ୍ୟୁଞ୍ଜୟମ୍ ॥

ଯେ ଆପଣା କରକମଳଦ୍ୱୟରେ ଧରିଥିବା ଦୁଇଟି କଳଶରୁ ଜଳ କାଢ଼ି ଉପରିସ୍ଥ ଦୁଇ ହାତରେ ନିଜ ମସ୍ତକରେ ଢାଳୁଥାନ୍ତି । ଅନ୍ୟ ଦୁଇଟି ହାତରେ ଦୁଇଟି ମାଠିଆ ନିଜ କୋଳରେ ଧରିଥାନ୍ତି ଏବଂ ଅବଶିଷ୍ଟ ଦୁଇଟି ହାତରେ ରୁଦ୍ରାକ୍ଷ ଓ ମୃଗମୁଦ୍ରା ଧାରଣ କରିଥାନ୍ତି, ଯେ ପଦ୍ମର ଆସନରେ ବିରାଜମାନ, ଯାହାଙ୍କ ଶରୀର ମସ୍ତକସ୍ଥିତ ଚନ୍ଦ୍ରମାରୁ ବର୍ଷୁଥିବା ଅମୃତରେ ଆର୍ଦ୍ର ହୋଇରହିଛି ତଥା ଯେ ତ୍ରିନେତ୍ରଧାରୀ, ଗିରିରାଜନନ୍ଦିନୀ ଉମାଙ୍କ ସହିତ ବିରାଜମାନ,

ସେହି ମୃତ୍ୟୁଞ୍ଜୟ ଭଗବାନଙ୍କୁ ମୁଁ ଭଜୁଛି (ଚିନ୍ତନ କରୁଛି) ।

ବ୍ରହ୍ମା କହୁଛନ୍ତି—ତାତ ! ମୁନିଶ୍ରେଷ୍ଠ ଦଧୀଚିଙ୍କୁ ଏଭଳି ଉପଦେଶ ଦେଇସାରି ଶୁକ୍ରାଚାର୍ଯ୍ୟ ମହାଦେବ ଶଙ୍କରଙ୍କୁ ସ୍ମରଣ କରି କରି ନିଜ ସ୍ଥାନକୁ ଲେଉଟି ଗଲେ । ତାଙ୍କ କଥା ଶୁଣି ମହାମୁନି ଦଧୀଚି ଅତି ପ୍ରେମପୂର୍ଣ୍ଣ ଚିତ୍ତରେ ଶିବଙ୍କୁ ସ୍ମରଣ କରି କରି ତପସ୍ୟା କରିବାକୁ ବନକୁ ଚାଲିଗଲେ । ସେଠାକୁ ଯାଇ ସେ ବିଧିପୂର୍ବକ ମହାମୃତ୍ୟୁଞ୍ଜୟ ମନ୍ତ୍ର ଜପ ଓ ପ୍ରେମପୂର୍ବକ ଭଗବାନ ଶିବଙ୍କ ଚିନ୍ତନ କରିବା ସହିତ ତପସ୍ୟା ଆରମ୍ଭ କରିଦେଲେ । ଦୀର୍ଘକାଳ ପର୍ଯ୍ୟନ୍ତ ସେହି ମନ୍ତ୍ରର ଜପ ଓ ତପସ୍ୟା ଦ୍ୱାରା ଶଙ୍କରଙ୍କୁ ଆରାଧନା କରି ଦଧୀଚି ମହାମୃତ୍ୟୁଞ୍ଜୟ ଶିବଙ୍କୁ ସନ୍ତୁଷ୍ଟ କରିଦେଲେ । ମହାମୁନେ ! ମନ୍ତ୍ରଜପରେ ପ୍ରସନ୍ନ ହୋଇ ତଥା ଦଧୀଚିଙ୍କ ପ୍ରେମର ବଶବର୍ତ୍ତୀ ହୋଇ ଭକ୍ତବତ୍ସଳ ଶିବ ତାଙ୍କ ସମ୍ମୁଖରେ ପ୍ରକଟ ହେଲେ । ନିଜ ପ୍ରଭୁଙ୍କୁ ସମ୍ମୁଖରେ ସାକ୍ଷାତ୍ ଦର୍ଶନ କରି ଦଧୀଚିଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ବିଧିପୂର୍ବକ ପ୍ରଣାମ କରି ଦୁଇ କର ଯୋଡ଼ି ଭକ୍ତିଭାବରେ ଶିବଙ୍କୁ ସ୍ତୁତି କଲେ । ମୁନେ ! ମୁନିଙ୍କ ପ୍ରେମରେ ପ୍ରସନ୍ନ ଭଗବାନ ଶିବ ଚ୍ୟବନକୁମାର ଦଧୀଚିଙ୍କୁ କହିଲେ— "ତୁମେ ବର ମାଗ" । ଶିବଙ୍କ ବଚନ ଶୁଣି ଭକ୍ତଶିରୋମଣି ଦଧୀଚି ନତମସ୍ତକ ହୋଇ କର ଯୋଡ଼ି କହିଲେ—

ଦଧୀଚି କହିଲେ—ଦେବଦେବ ମହାଦେବ ! ମୋତେ ତିନୋଟି ବର ଦିଅନ୍ତୁ । ମୋ ହାଡ଼ ବଜ୍ର ହୋଇଯାଉ । କେହି ମୋତେ ବଧ କରି ନ ପାରୁ ଏବଂ ମୋ ଠାରେ କଦାପି ଦୀନତା ନ ଆସୁ ।

ଦଧୀଚିଙ୍କ ବଚନ ଶୁଣି ପରମେଶ୍ୱର ଶିବ 'ତଥାସ୍ତୁ' କହିଲେ । ଶିବଙ୍କ ଠାରୁ ତିନୋଟି ବର ଲାଭ କରି ବେଦମାର୍ଗରେ ପ୍ରତିଷ୍ଠିତ ମହାମୁନି ଦଧୀଚି ଆନନ୍ଦମଗ୍ନ ହୋଇଗଲେ ଏବଂ ଖୁବ୍ ଶୀଘ୍ର ରାଜା କ୍ଷୁବଙ୍କ ପାଖକୁ ଗଲେ । ମହାଦେବଙ୍କ ଠାରୁ



ପ୍ରାପ୍ତ ଅବଧ୍ୟତା, ବଜ୍ରମୟ ଅସ୍ଥି ଓ ଅଦୈନ୍ୟ ବଳରେ ବଳୀୟାନ୍ ହୋଇ ଦଧୀଚି ରାଜେନ୍ଦ୍ର କ୍ଷୁବଙ୍କ ମୁଣ୍ଡରେ ଲାତ ମାରିଲେ । ଏହାପରେ ରାଜା କ୍ଷୁବ ମଧ୍ୟ କ୍ରୋଧରେ ଦଧୀଚିଙ୍କ ଉପରେ ବଜ୍ରରେ ପ୍ରହାର କଲେ; କାରଣ ସେ ଭଗବାନ ବିଷ୍ଣୁଙ୍କ ଗୌରବରେ ଅଧିକ ଗର୍ବିତ ହୋଇ ଯାଇଥିଲେ । ମାତ୍ର କ୍ଷୁବଙ୍କ ବଜ୍ରପ୍ରହାର ଶିବଙ୍କ ବର ପ୍ରଭାବରେ ମହାତ୍ମା ଦଧୀଚିଙ୍କୁ ମାରି ପାରିଲା ନାହିଁ । ଏ ଘଟଣା ଅତ୍ୟନ୍ତ ବିସ୍ମୟକର ଥିଲା । ମୁନୀଶ୍ୱର ଦଧୀଚିଙ୍କ ଅବଧ୍ୟତା, ଅଦୀନତା ଓ ବଜ୍ରଠାରୁ ମଧ୍ୟ ଅଧିକ ତେଜ ଦେଖି ବ୍ରହ୍ମକୁମାର କ୍ଷୁବ ଚକିତ ହୋଇଗଲେ । ସେ ଅବିଳମ୍ବେ ବନକୁ ଯାଇ ଇନ୍ଦ୍ରଙ୍କ ସାନଭାଇ ମୁକୁନ୍ଦଙ୍କ ଆରାଧନା ଆରମ୍ଭ କଲେ; କାରଣ ଶରଣାଗତପାଳକ ନରେଶ ମୃତ୍ୟୁଞ୍ଜୟସେବକ ଦଧୀଚିଙ୍କ ଠାରୁ ପରାଜିତ

ହୋଇଯାଇଥିଲେ । ରାଜା କ୍ଷୁବଙ୍କ ପୂଜାରେ ଗରୁଡ଼ଧ୍ୱଜ ଭଗବାନ ମଧୁସୂଦନ ସନ୍ତୁଷ୍ଟ ହୋଇ ତାଙ୍କୁ ଦିବ୍ୟଦୃଷ୍ଟି ପ୍ରଦାନ କଲେ । ଦିବ୍ୟଦୃଷ୍ଟିରେ ସେ ଜନାର୍ଦନଙ୍କୁ ଦର୍ଶନ କରି ପ୍ରଣାମ କଲେ ଏବଂ ପ୍ରିୟ ବଚନରେ ତାଙ୍କୁ ସ୍ତୁତି କଲେ । ଏପରିଭାବରେ କ୍ଷୁବ ଦେବେଶ୍ୱର ଆଦିଙ୍କ ଦ୍ୱାରା ପ୍ରଶଂସିତ ଅଜେୟ ଈଶ୍ୱର ନାରାୟଣଙ୍କୁ ଭକ୍ତିଭାବରେ ପୂଜନ ଓ ସ୍ତୁତି କରିସାରି ତାଙ୍କ ଚରଣରେ ମଥା ରଖି ପ୍ରଣାମ କରିବା ପରେ ନିଜ ଅଭିପ୍ରାୟ ସୂଚିତ କଲେ ।

ରାଜା କହିଲେ–ଭଗବନ୍ ! ଦଧୀଚି ନାମରେ ଜଣେ ପ୍ରସିଦ୍ଧ ଧର୍ମଜ୍ଞ ବ୍ରାହ୍ମଣ ଅଛନ୍ତି । ତାଙ୍କ ହୃଦୟରେ ବିନୟଭାବ ମଧ୍ୟ ରହିଛି । ସେ ପ୍ରଥମେ ମୋର ମିତ୍ର ଥିଲେ । ଆଜିକାଲି ସେ ନିର୍ବିକାର ମୃତ୍ୟୁଞ୍ଜୟ ମହାଦେବଙ୍କୁ ଆରାଧନା କରି ତାଙ୍କ କୃପା ପ୍ରଭାବରୁ ଅସ୍ତ୍ରଶସ୍ତ୍ର ଦ୍ୱାରା ଅବଧ୍ୟ ହୋଇ ଯାଇଛନ୍ତି । ଦିନେ ମହାତପସ୍ୱୀ ଦଧୀଚି ପୂର୍ଣ୍ଣସଭାରେ ମୋତେ ଅବହେଳନା କରି ତାଙ୍କ ବାମପାଦରେ ମୋ ମୁଣ୍ଡକୁ ଖୁବ୍ ଜୋରରେ ଲାତ ମାରିଲେ ଏବଂ ଅତି ଗର୍ବରେ କହିଲେ– 'ମୁଁ କାହାକୁ ଡରେ ନାହିଁ ।' ହରେ ! ସେ ମୃତ୍ୟୁଞ୍ଜୟଙ୍କ ଠାରୁ ବର ପାଇ ଗର୍ବରେ ଅତ୍ୟନ୍ତ ଉନ୍ମତ୍ତ ହୋଇଯାଇଛନ୍ତି ।

ବ୍ରହ୍ମା କହୁଛନ୍ତି–ନାରଦ ! ମହାତ୍ମା ଦଧୀଚିଙ୍କ ଅବଧ୍ୟତାର ସମାଗ୍ରର ପାଇ ଶ୍ରୀହରି ମହାଦେବଙ୍କ ଅତୁଳିତ ପ୍ରଭାବକୁ ସ୍ମରଣ କଲେ । ତା'ପରେ ସେ ବ୍ରହ୍ମପୁତ୍ର ରାଜା କ୍ଷୁବଙ୍କୁ କହିଲେ–"ରାଜେନ୍ଦ୍ର ! ବ୍ରାହ୍ମଣଙ୍କୁ କେଉଁଠି ଟିକିଏ ବି ଭୟ ନାହିଁ । ଭୂପତେ ! ବିଶେଷ କରି ରୁଦ୍ରଭକ୍ତଙ୍କ ପାଇଁ ତ ଭୟ ବୋଲି କିଛି ନାହିଁ । ଯଦି ମୁଁ ତୁମ ପକ୍ଷ ନେଇ କିଛି କରେ, ତେବେ ବ୍ରାହ୍ମଣ ଦଧୀଚିଙ୍କୁ ଦୁଃଖ ହେବ ଏବଂ ମୋ ପରି ଦେବତା ପାଇଁ ମଧ୍ୟ ସେ ଶାପର କାରଣ ହୋଇଯିବେ । ରାଜେନ୍ଦ୍ର ! ଦଧୀଚିଙ୍କ ଶାପ ହେତୁ ଦକ୍ଷଙ୍କ ଯଜ୍ଞରେ ସୁରେଶ୍ୱର ଶିବଙ୍କ ଠାରୁ ମୋର ପରାଜୟ ହେବ ଓ ପରେ ମୋର ଉତ୍ଥାନ ମଧ୍ୟ ହେବ । ମହାରାଜ ! ଏହି କାରଣରୁ ମୁଁ ତୁମ ପକ୍ଷରେ ରହି କିଛି କରିବାକୁ ଗ୍ରହୁଁ ନାହିଁ; ତଥାପି ମୁଁ ତୁମ ପାଇଁ ଦଧୀଚିଙ୍କୁ ଜିତିବାର କିଛି ପ୍ରଯତ୍ନ ଅବଶ୍ୟ କରିବି ।"

ଭଗବାନ ବିଷ୍ଣୁଙ୍କ ଠାରୁ ଏକଥା ଶୁଣି କ୍ଷୁବ କହିଲେ–"ଠିକ୍ ଅଛି, ସେହିପରି କରନ୍ତୁ ।" ଏହା କହି ସେ ସେହି କାର୍ଯ୍ୟ ପାଇଁ ମନେ ମନେ ଉତ୍ସୁକ ହୋଇ ଆନନ୍ଦମନରେ ସେଠାରେ ରହିଲେ ।

(ଅଧ୍ୟାୟ ୩୮)



## ଭଗବାନ ବିଷ୍ଣୁ ତଥା ଦେବତାଙ୍କ ଦ୍ୱାରା ଅପରାଜିତ ଦଧୀଚିଙ୍କର ସେମାନଙ୍କ ପ୍ରତି ଶାପ ଓ କ୍ଷୁବଙ୍କ ପ୍ରତି ଅନୁଗ୍ରହ

ବ୍ରହ୍ମା କହୁଛନ୍ତି–ନାରଦ ! ଭକ୍ତବତ୍ସଳ ବିଷ୍ଣୁ ରାଜା କ୍ଷୁବଙ୍କର ହିତ କରିବା ପାଇଁ ବ୍ରାହ୍ମଣରୂପ ଧାରଣ କରି ଦଧୀଚିଙ୍କ ଆଶ୍ରମକୁ ଗଲେ । ସେଠାରେ ଜଗଦ୍‌ଗୁରୁ ଶ୍ରୀହରି ଶିବଭକ୍ତଶିରୋମଣି ବ୍ରହ୍ମର୍ଷି ଦଧୀଚିଙ୍କୁ ପ୍ରଣାମ କରି କ୍ଷୁବଙ୍କ କାର୍ଯ୍ୟସିଦ୍ଧି ନିମନ୍ତେ ଉଦ୍ୟତ ହୋଇ ଏହିପରି କହିଲେ–

ଶ୍ରୀବିଷ୍ଣୁ କହିଲେ–ଭଗବାନ ଶିବଙ୍କ ଆରାଧନାରେ ତତ୍ପର ହେ ଅବିନାଶୀ ବ୍ରହ୍ମର୍ଷି ! ମୁଁ ତୁମକୁ ଗୋଟିଏ ବର ମାଗୁଛି । ମୋତେ ତାହା ପ୍ରଦାନ କରନ୍ତୁ ।

କ୍ଷୁବଙ୍କ କାର୍ଯ୍ୟସିଦ୍ଧି ଇଚ୍ଛାରେ ଦେବାଧିଦେବ ଶ୍ରୀହରି ଏପରି ଯାଚନା କରିବାରୁ ଶୈବଶିରୋମଣି

ଦଧୀଚି ଅବିଳମ୍ବେ ତାଙ୍କୁ ଏହିପରି କହିଲେ—

ଦଧୀଚି କହିଲେ—ବ୍ରହ୍ମନ୍ ! ଆପଣ କ'ଣ ଚାହାନ୍ତି, ତାହା ମୋତେ ଜଣା ପଡ଼ିସାରିଲାଣି । ଆପଣ କ୍ଷୁବର କାର୍ଯ୍ୟ ସାଧିତ କରିବାକୁ ସାକ୍ଷାତ୍ ଶ୍ରୀହରି ହିଁ ବ୍ରାହ୍ମଣବେଶରେ ମୋ ପାଖକୁ ଆସିଛନ୍ତି । ଆପଣ ଯେ ମାୟାବୀ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । କିନ୍ତୁ ଦେବେଶ ! ଜନାର୍ଦ୍ଦନ ! ମୋତେ ଭଗବାନ ଶିବଙ୍କ କୃପାରୁ ଭୂତ, ଭବିଷ୍ୟ ଓ ବର୍ତ୍ତମାନର ଜ୍ଞାନ ହୋଇଯାଏ । ସୁବ୍ରତ ! ମୁଁ ଆପଣଙ୍କୁ ଜାଣେ । ଆପଣ ପାପହାରୀ ଶ୍ରୀହରି ବିଷ୍ଣୁ । ଏଣୁ ଏ ବ୍ରାହ୍ମଣବେଶ ଛାଡ଼ନ୍ତୁ । ଦୁଷ୍ଟବୁଦ୍ଧି କ୍ଷୁବ ଆପଣଙ୍କୁ ଆରାଧନା କରିଛି । (ସେଥିପାଇଁ ଆପଣ ଏଠାକୁ ଆସିଛନ୍ତି) ଭଗବନ୍ ! ହରେ ! ଆପଣଙ୍କ ଭକ୍ତବତ୍ସଳତାକୁ ମଧ୍ୟ ମୁଁ ଜାଣେ । ତେଣୁ ଏ ଛଳ ଛାଡ଼ି ନିଜର ପ୍ରକୃତ ରୂପ ଗ୍ରହଣ କରନ୍ତୁ ଆଉ ଭଗବାନ ଶିବଙ୍କ ସ୍ମରଣରେ ମନ ଲଗାନ୍ତୁ । ମୁଁ ତାଙ୍କରି ଆରାଧନାରେ ମନ ଲଗାଇଛି । ଏଭଳି ସ୍ଥିତିରେ ମଧ୍ୟ ଯଦି ମୋଠାରୁ କାହାରିକୁ କିଛି ଭୟର ଆଶଙ୍କା ରହିଛି, ତେବେ ଆପଣ ସତ୍ୟର ଶପଥ କରି ତାହା କୁହନ୍ତୁ । ମୋ ମନ ଶିବଙ୍କ ସ୍ମରଣରେ ନିମଗ୍ନ ରହିଛି । ମୁଁ କଦାପି ଅସତ୍ୟ କହେ ନାହିଁ । ଏ ସଂସାରରେ କୌଣସି ଦେବତା ବା ଦୈତ୍ୟ ପ୍ରତି ମୋର ଭୟ ନାହିଁ ।

ଶ୍ରୀବିଷ୍ଣୁ କହିଲେ—ହେ ଉତ୍ତମ ବ୍ରତ ପାଳନକାରୀ ଦଧୀଚି ! ତୁମର ଭୟ ସର୍ବଥା ନଷ୍ଟ ହୋଇଯାଇଛି; କାରଣ ତୁମେ ଶିବଙ୍କ ଆରାଧନାରେ ତତ୍ପର । ଏଣୁ ତୁମେ ସର୍ବଜ୍ଞ ହୋଇଯାଇଛ । ହେଲେ ମୋ କହିବା ଅନୁସାରେ ତୁମେ ଥରେ ଯାଇ କ୍ଷୁବଙ୍କୁ ଏତିକି କହିଦିଅ ଯେ 'ରାଜେନ୍ଦ୍ର ! ମୁଁ ତୁମକୁ ଡରେ ।'

ଭଗବାନ ବିଷ୍ଣୁଙ୍କ କଥା ଶୁଣି ମଧ୍ୟ ଶୈବଶିରୋମଣି ମହାମୁନି ଦଧୀଚି ନିର୍ଭୟରେ ହସି ହସି କହିଲେ—

ଦଧୀଚି କହିଲେ—ମୁଁ ଦେବାଧିଦେବ ପିନାକପାଣି ଭଗବାନ ଶମ୍ଭୁଙ୍କ ପ୍ରସାଦରୁ କେଉଁଠି, କାହାରିକୁ ତିଳେମାତ୍ର ବି ଡରେ ନାହିଁ । ମୁଁ ସଦା ନିର୍ଭୟ ରହୁଛି ।

ଏହାପରେ ଶ୍ରୀହରି ମୁନିଙ୍କୁ ପରାଭୂତ କରିବାକୁ ଚେଷ୍ଟା କଲେ । ଦେବତାମାନେ ମଧ୍ୟ ତାଙ୍କରି ପକ୍ଷ ନେଲେ; କିନ୍ତୁ ସେମାନଙ୍କର ସମସ୍ତ ଅସ୍ତ୍ରଶସ୍ତ୍ର ନିଷ୍ଫଳ ହୋଇଗଲା । ଏହାପରେ ଭଗବାନ ବିଷ୍ଣୁ ଅଗଣିତ ଗଣଙ୍କୁ ସୃଷ୍ଟି କଲେ । ମାତ୍ର ମହର୍ଷି ସେମାନଙ୍କୁ ମଧ୍ୟ ଭସ୍ମ କରିଦେଲେ । ତା'ପରେ ଭଗବାନ ଆପଣା ଅନନ୍ତ ବିଶ୍ୱରୂପ ପ୍ରକଟ କଲେ । ଏସବୁ ଦେଖି ଚ୍ୟବନକୁମାର ଜଗଦୀଶ୍ୱର ବିଷ୍ଣୁଙ୍କୁ କହିଲେ—

ଦଧୀଚି କହିଲେ—ମହାବାହୋ ! ମାୟା ଛାଡ଼ିଦିଅନ୍ତୁ । ବିଚାର କଲେ ଏହା ପ୍ରତିଭାସ ମାତ୍ର ପ୍ରତୀତ ହେଉଛି । ମାଧବ ! ମୁଁ ମଧ୍ୟ ସହସ୍ର ସହସ୍ର ଦୁର୍ବିଜ୍ଞେୟ ବସ୍ତୁକୁ ଜାଣି ସାରିଲିଣି । ଆପଣ ମୋଠାରେ ନିଜ ସହିତ ସମସ୍ତ ଜଗତକୁ ଦେଖନ୍ତୁ । ନିରଳସ ହୋଇ ମୋ ଭିତରେ ଆପଣ ନିଜ ସହିତ ବ୍ରହ୍ମା ଓ ରୁଦ୍ରଙ୍କୁ ମଧ୍ୟ ଦର୍ଶନ କରନ୍ତୁ । ମୁଁ ଆପଣଙ୍କୁ ଦିବ୍ୟ ଦୃଷ୍ଟି ଦେଉଛି ।

ଏହା କହି ଶିବତେଜସମ୍ପନ୍ନ ଚ୍ୟବନକୁମାର ନିଜ ଦେହରେ ସମଗ୍ର ବ୍ରହ୍ମାଣ୍ଡର ଦର୍ଶନ କରାଇଲେ । ତା'ପରେ ଭଗବାନ ବିଷ୍ଣୁ ପୁନଃ ତାଙ୍କ ଉପରେ କୋପ କରିବାକୁ ଚାହିଁଲେ । ଇତିମଧ୍ୟରେ ମୋ ସହିତ ରାଜା କ୍ଷୁବ ଆସି ସେଠାରେ ପହଞ୍ଚିଲେ । ମୁଁ ନିଶ୍ଚେଷ୍ଟ ଦଣ୍ଡାୟମାନ ଭଗବାନ ପଦ୍ମନାଭଙ୍କୁ ତଥା ଦେବଗଣଙ୍କୁ କ୍ରୋଧ ନ କରିବାକୁ କହିଲି । ମୋ କଥା ମାନି ସେମାନେ ସଂଗ୍ରାମରୁ ଓହରିଗଲେ । ଶ୍ରୀହରି ମୁନିଙ୍କ ପାଖକୁ

ଗଲେ ଓ ତାଙ୍କୁ ପ୍ରଣାମ କଲେ । ତା'ପରେ କ୍ଷୁବ ଅତ୍ୟନ୍ତ ଦୈନ୍ୟଭାବରେ ମୁନୀଶ୍ୱର ଦଧୀଚିଙ୍କ ପାଖକୁ ଗଲେ ଓ ତାଙ୍କୁ ପ୍ରଣାମ କରି ପ୍ରାର୍ଥନା କଲେ ।

କ୍ଷୁବ କହିଲେ—ମୁନିଶ୍ରେଷ୍ଠ ! ଶିବଭକ୍ତ-ଶିରୋମଣେ ! ମୋ ଉପରେ ପ୍ରସନ୍ନ ହୁଅନ୍ତୁ । ପରମେଶ୍ୱର ! ଆପଣ ଦୁର୍ଜନଙ୍କ ଦୃଷ୍ଟିପଥର ଅଗୋଚର ଅଟନ୍ତି । ମୋ ପ୍ରତି କୃପା କରନ୍ତୁ ।

ବ୍ରହ୍ମା କହୁଛନ୍ତି—ନାରଦ ! ରାଜା କ୍ଷୁବଙ୍କ କଥା ଶୁଣି ତପୋନିଧି ଦଧୀଚି ତାଙ୍କ ଉପରେ ଅନୁଗ୍ରହ କଲେ । ତା'ପରେ ବିଷ୍ଣୁ ପ୍ରଭୃତିଙ୍କ ଆଡ଼କୁ ଚାହିଁ ସେ ବହୁତ କ୍ରୋଧ ପ୍ରକାଶ କଲେ ଓ ମନେ ମନେ ଶିବଙ୍କୁ ସ୍ମରଣ କରି ବିଷ୍ଣୁ ତଥା ଅନ୍ୟ ଦେବତାଙ୍କୁ ଶାପ ଦେଲେ ।

ଦଧୀଚି କହିଲେ—ଦେବରାଜ ଇନ୍ଦ୍ରସମେତ ସକଳ ଦେବଗଣ ଓ ମୁନୀଶ୍ୱରଗଣ ! ତୁମେମାନେ ରୁଦ୍ରଙ୍କ କ୍ରୋଧାଗ୍ନିରେ ବିଷ୍ଣୁ ତଥା ନିଜ ନିଜ ଗଣସମେତ ପରାଜିତ ଓ ଧ୍ୱସ୍ତ ହୋଇଯାଅ ।

ଦେବତାଙ୍କୁ ଏହିପରି ଶାପ ଦେଇସାରି କ୍ଷୁବଙ୍କ ଆଡ଼କୁ ଚାହିଁ ସେହି ଦ୍ୱିଜଶ୍ରେଷ୍ଠ ତଥା ଦେବଗଣ ଓ ନୃପଗଣଙ୍କ ପୂଜନୀୟ ଦଧୀଚି କହିଲେ—"ରାଜେନ୍ଦ୍ର ! ବ୍ରାହ୍ମଣ ହିଁ ବଳୀ ଓ ପ୍ରଭାବଶାଳୀ ଅଟନ୍ତି ।" ବ୍ରାହ୍ମଣ ଦଧୀଚି ଏପରି ସ୍ପଷ୍ଟରୂପେ କହି ନିଜ ଆଶ୍ରମ ଭିତରକୁ ଚାଲିଗଲେ । ଦଧୀଚିଙ୍କୁ ନମସ୍କାର କରି କ୍ଷୁବ ମଧ୍ୟ ସ୍ୱଗୃହକୁ ଫେରିଗଲେ । ଭଗବାନ ବିଷ୍ଣୁ ମଧ୍ୟ ଦେବଗଣଙ୍କ ସଙ୍ଗରେ ଆପଣା ଧାମ ବୈକୁଣ୍ଠକୁ ଫେରିଗଲେ । ସେହି ସ୍ଥାନ ସ୍ଥାନେଶ୍ୱର ନାମକ ତୀର୍ଥରୂପେ ବିଖ୍ୟାତ ହେଲା । ସ୍ଥାନେଶ୍ୱର ଯାତ୍ରା କରି ମନୁଷ୍ୟ ଶିବଙ୍କ ସାଯୁଜ୍ୟ ଲାଭ କରିଥାଏ । ତାତ ! ମୁଁ ତୁମକୁ ସଂକ୍ଷେପରେ କ୍ଷୁବ ଓ ଦଧୀଚିଙ୍କ ବିବାଦ କଥା କହିଦେଲି ଏବଂ ଶିବଙ୍କୁ ଛାଡ଼ି କେବଳ ବ୍ରହ୍ମା ଓ ବିଷ୍ଣୁଙ୍କୁ ଯେଉଁ କାରଣରୁ ଶାପ ମିଳିଲା, ସେହି ପ୍ରସଙ୍ଗ ମଧ୍ୟ ବର୍ଣ୍ଣନା କଲି । ଯେ କ୍ଷୁବ ଓ ଦଧୀଚିଙ୍କ ବିବାଦ ପ୍ରସଙ୍ଗକୁ ନିତ୍ୟ ପାଠ କରେ, ସେ ଅପମୃତ୍ୟୁକୁ ଜିଣିଯାଏ ଓ ଦେହତ୍ୟାଗ କରିବା ପରେ ବ୍ରହ୍ମଲୋକକୁ ଯାଏ । ଯେ ଏହାକୁ ପାଠ କରି ରଣଭୂମିରେ ପ୍ରବେଶ କରେ, ତା'ର କଦାପି ମୃତ୍ୟୁଭୟ ରହେ ନାହିଁ । ସେ ନିଶ୍ଚୟ ବିଜୟୀ ହୁଏ । (ଅଧ୍ୟାୟ ୩୯)



## ବ୍ରହ୍ମା ଦେବଗଣଙ୍କ ଗହଣରେ ବିଷ୍ଣୁଲୋକକୁ ଯାଇ ବିଷ୍ଣୁଙ୍କୁ ନିଜର ଦୁଃଖ ନିବେଦନ କରିବାରୁ ଶିବଙ୍କ ନିକଟରେ କ୍ଷମା ମାଗିବାକୁ ବିଷ୍ଣୁଙ୍କର ପରାମର୍ଶ ଏବଂ ସେମାନଙ୍କ ସଙ୍ଗରେ ବିଷ୍ଣୁଙ୍କର ମଧ୍ୟ କୈଳାସ ଗମନ ତଥା ଶିବଙ୍କ ସଙ୍ଗେ ସାକ୍ଷାତ

ନାରଦ କହୁଛନ୍ତି—ବିଧାତଃ ! ମହାପ୍ରାଜ୍ଞ ! ଆପଣ ଶିବତତ୍ତ୍ୱର ସାକ୍ଷାତ୍କାର କରାଇବାକୁ ସମର୍ଥ । ଆପଣ ବହୁତ ଅଦ୍ଭୁତ ଓ ରମଣୀୟ ଶିବଲୀଳା ଶୁଣାଇଲେ । ହେ ତାତ ! ବୀର ବୀରଭଦ୍ର ଦକ୍ଷଙ୍କର ଯଜ୍ଞ ବିଧ୍ୱଂସ କରି କୈଳାସ ଫେରିଗଲା ପରେ ଆଉ କ'ଣ ହେଲା? ମୋତେ ସେ ବିଷୟରେ କୁହନ୍ତୁ ।

ବ୍ରହ୍ମା କହିଲେ—ନାରଦ ! ରୁଦ୍ରଦେବଙ୍କ ସୈନିକ ଯେଉଁ ସବୁ ଦେବତା ଓ ମୁନିଗଣଙ୍କର ଅଙ୍ଗଭଙ୍ଗ କରିଦେଇ ପରାଜିତ କରିଦେଇଥିଲେ, ସେମାନେ ମୋ ଲୋକକୁ ଆସିଲେ । ମୋତେ ନମସ୍କାର କରି ବାରମ୍ବାର ସ୍ତୁତି କଲେ । ତା'ପରେ

ସେମାନଙ୍କର ପ୍ରବଳ କ୍ଳେଶ କଥା ପୂର୍ଣ୍ଣରୂପେ ବଖାଣିଲେ । ତାହା ଶୁଣି ମୁଁ ପୁତ୍ରଶୋକରେ ଦୁଃଖିତ ହୋଇଗଲି ଏବଂ ବ୍ୟଗ୍ର ଓ ବ୍ୟଥିତ ଚିତ୍ତରେ ଚିନ୍ତା କରିବାକୁ ଲାଗିଲି । ତା'ପରେ ମୁଁ ଭକ୍ତିଭାବରେ ବିଷ୍ଣୁଙ୍କୁ ସ୍ମରଣ କଲି । ଏହାଦ୍ୱାରା ମୋତେ ସମୟୋଚିତ ଜ୍ଞାନ ପ୍ରାପ୍ତ ହେଲା । ତା'ପରେ ଦେବତା ଓ ମୁନିଗଣଙ୍କୁ ସଙ୍ଗରେ ନେଇ ବିଷ୍ଣୁଲୋକକୁ ଗଲି । ସେଠାରେ ଭଗବାନ ବିଷ୍ଣୁଙ୍କୁ ନମସ୍କାର କରି ଓ ନାନା ପ୍ରକାର ସ୍ତୁତି କରି ମୁଁ ସମସ୍ତ ଦୁଃଖ ନିବେଦନ କଲି । ମୁଁ କହିଲି—"ପ୍ରଭୋ ! ଯେଉଁ ଉପାୟରେ ସେହି ଯଜ୍ଞ ପୂର୍ଣ୍ଣ ହେବ, ଯଜମାନ ଜୀବିତ ହେବ ଏବଂ ସମସ୍ତ ଦେବତା ଓ ମୁନିଗଣ ସୁଖୀ ହେବେ, ସେପରି ଉପାୟ କରନ୍ତୁ । ଦେବଦେବ ! ରମାନାଥ ! ଦେବସୁଖଦାୟକ ବିଷ୍ଣୋ ! ଆମେ ଦେବତା ଓ ମୁନିଗଣ ଆପଣଙ୍କ ଶରଣକୁ ଆସିଛୁ ।"

ମୋ କଥା ଶୁଣି ଲକ୍ଷ୍ମୀପତି ବିଷ୍ଣୁ, ଯାହାଙ୍କ ଚିତ୍ତ ସଦା ଶିବଙ୍କ ଠାରେ ଲାଗି ରହିଥାଏ ଓ ଯାହାଙ୍କ ହୃଦୟରେ କଦାପି ଦୀନତା ଆସେ ନାହିଁ, ସେ ଶିବଙ୍କୁ ସ୍ମରଣ କରି କହିଲେ—

ଶ୍ରୀବିଷ୍ଣୁ କହିଲେ—ଦେବଗଣ ! ପରମ ସମର୍ଥ ତେଜସ୍ୱୀ ପୁରୁଷଙ୍କ ଦ୍ୱାରା କୌଣସି ଅପରାଧ ହୋଇଗଲେ ମଧ୍ୟ ପ୍ରତିବଦଳରେ ଅପରାଧ କରୁଥିବା ଲୋକର ସେହି ଅପରାଧ ମଙ୍ଗଳକାରୀ ହୋଇ ନ ପାରେ । ବିଧାତଃ ! ସମସ୍ତ ଦେବତା ପରମେଶ୍ୱର ଶିବଙ୍କ ଠାରେ ଅପରାଧୀ; କାରଣ ସେମାନେ ଭଗବାନ ଶମ୍ଭୁଙ୍କୁ ଯଜ୍ଞରେ ଭାଗ ଦେଲେ ନାହିଁ । ଏବେ ତୁମେମାନେ ନିର୍ମଳ ହୃଦୟରେ ଶୀଘ୍ର ସନ୍ତୁଷ୍ଟ ହେଉଥିବା ଆଶୁତୋଷଙ୍କ ପାଦ ଧରି ତାଙ୍କୁ ପ୍ରସନ୍ନ କର । ତାଙ୍କୁ କ୍ଷମା ମାଗ । ଯେ କୁପିତ ହେଲେ ସାରା ସଂସାର ନଷ୍ଟ ହୋଇଯାଏ ଏବଂ ଯାହାଙ୍କ ଶାସନରେ ଲୋକପାଳଙ୍କ ସମେତ ଯଜ୍ଞର ଜୀବନ ଅବିଳମ୍ବେ ପରିସମାପ୍ତି ଘଟେ, ସେ ବର୍ତ୍ତମାନ ତାଙ୍କର ପ୍ରାଣବଲ୍ଲଭା ସତୀଙ୍କ ବିୟୋଗରେ କାଳ କାଟୁଛନ୍ତି । ଦୁଷ୍ଟ ଓ ଦୁରାତ୍ମା ଦକ୍ଷ ଦୁର୍ବଚନରୂପୀ ଶରରେ ତାଙ୍କୁ ପ୍ରଥମରୁ ଆହତ ବି କରିଥିଲା, ତେଣୁ ତୁମେମାନେ ଶୀଘ୍ର ଯାଇ ତାଙ୍କୁ ନିଜ ନିଜ ଅପରାଧ ପାଇଁ କ୍ଷମା ମାଗ । ବିଧାତଃ ! ତାଙ୍କୁ ଶାନ୍ତ କରିବାର ଏହା ହିଁ ସବୁଠୁ ଉତ୍ତମ ଉପାୟ । ମୁଁ ଭାବୁଛି, ଏଭଳି କଲେ ଭଗବାନ ଶଙ୍କରଙ୍କୁ ସନ୍ତୋଷ ମିଳିବ । ମୁଁ ସତ କଥା କହୁଛି । ବ୍ରହ୍ମନ୍ ! ମୁଁ ମଧ୍ୟ ତୁମମାନଙ୍କ ସହିତ ଶିବଙ୍କ ନିବାସସ୍ଥାନକୁ ଯିବି ଓ ତାଙ୍କୁ କ୍ଷମା ମାଗିବି ।

ଦେବତା ପ୍ରଭୃତିଙ୍କ ସହିତ ମୋତେ ଏହି ପ୍ରକାର ଆଦେଶ ଦେଇ ଶ୍ରୀହରି ଆମ ସମସ୍ତଙ୍କୁ ସଙ୍ଗରେ ଧରି କୈଳାସ ଯିବାକୁ ଚିନ୍ତା କଲେ । ତା'ପରେ ଦେବତା, ମୁନି ଓ ପ୍ରଜାପତିଙ୍କର ସ୍ୱରୂପଭୂତ ଶ୍ରୀହରି ସମସ୍ତଙ୍କୁ ସଙ୍ଗରେ ଘେନି ବୈକୁଣ୍ଠରୁ ଶିବଙ୍କ ଶୁଭନିବାସ କୈଳାସ ଅଭିମୁଖେ ଯାତ୍ରା କଲେ । କୈଳାସ ଶିବଙ୍କର ଅତ୍ୟନ୍ତ ପ୍ରିୟ ସ୍ଥାନ । ମନୁଷ୍ୟଙ୍କ ଠାରୁ ଭିନ୍ନ କିଂନର, ଅପ୍ସରା ଓ ଯୋଗସିଦ୍ଧ ମହାତ୍ମା ମଧ୍ୟ ସେହି ସ୍ଥାନର ସେବନ କରିଥାନ୍ତି । ସେହି ପର୍ବତ ବହୁତ ଉଚ୍ଚ । ତାହାର ନିକଟରେ ରୁଦ୍ରଦେବଙ୍କ ମିତ୍ର କୁବେରଙ୍କ ଅଳକା ନାମକ ମହାଦିବ୍ୟ ଏବଂ ରମଣୀୟ ପୁରୀ ରହିଛି; ତାହାକୁ ଦେବତାମାନେ ଦେଖିବାକୁ ପାଇଲେ । ଅଳକାପୁରୀ ନିକଟରେ ଥିବା ସୌଗନ୍ଧିକ ବନକୁ ମଧ୍ୟ ସେମାନେ ଦେଖିଲେ । ତାହା ନାନା ପ୍ରକାର ବୃକ୍ଷରେ ସୁଶ୍ୟାମଳ ଓ ଦିବ୍ୟ ଥିଲା । ତା' ଭିତରେ ସର୍ବତ୍ର ସୁଗନ୍ଧ ବିସ୍ତାର କରୁଥିବା ସୌଗନ୍ଧିକ ନାମକ ପଦ୍ମ ବହୁସଂଖ୍ୟାରେ ବିକଶିତ ହୋଇଥିଲା । ତାହାର ବାହ୍ୟଭାଗରେ ଦର୍ଶନମାତ୍ରେ ପ୍ରାଣୀଙ୍କ ପାପ ହରଣ କରୁଥିବା ନନ୍ଦା ଓ

ଅଳକନନ୍ଦା ନାମକ ଦୁଇଟି ପରମ ପାବନୀ ଓ ଦିବ୍ୟ ସରିତା ପ୍ରବାହିତ ହେଉଥିଲା । କୁବେରଙ୍କ ଅଳକାପୁରୀ ଓ ସୌଗନ୍ଧିକ ବନକୁ ପାର କରି ଆଗକୁ ଯିବାରୁ ଦେବତାଙ୍କୁ କିଛି ଦୂରରେ ଗୋଟିଏ ବଟବୃକ୍ଷ ଦିଶିଲା । ତାହା ଚତୁର୍ଦ୍ଦିଗରେ ଆପଣା ଅବିଚଳ ଛାୟା ବିସ୍ତାର କରିଥିଲା । ତାହା ଥିଲା ଶହେ ଯୋଜନ ଉଚ୍ଚ ଓ ତା'ର ଶାଖାମାନ ପଞ୍ଚସ୍ତରୀ ଯୋଜନ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତା' ଉପରେ କୌଣସି ପକ୍ଷୀର ନୀଡ଼ ନ ଥିଲା । ଗ୍ରୀଷ୍ମର ଉତ୍ତାପ ତା' ନିକଟକୁ ଆସିବାର କୌଣସି ଅବକାଶ ନ ଥିଲା । ବଡ଼ ବଡ଼ ପୁଣ୍ୟାତ୍ମାଙ୍କୁ ହିଁ ତାହାର ଦର୍ଶନ ମିଳିବା ସମ୍ଭବ । ତାହା ପରମ ପାବନ ଓ ଅତ୍ୟନ୍ତ ରମଣୀୟ । ସେହି ଦିବ୍ୟ ବୃକ୍ଷ ସମୀପସ୍ଥ ଭୂମି ଥିଲା ଭଗବାନ ଶମ୍ଭୁଙ୍କ ଯୋଗସ୍ଥଳ । ତାହା ଥିଲା ଯୋଗୀମାନଙ୍କ ସେବ୍ୟ ଓ ପରମ ଉତ୍ତମ । ବିଷ୍ଣୁ ପ୍ରଭୃତି ସମସ୍ତ ଦେବତା ମୁମୁକ୍ଷୁଜନଙ୍କର ଆଶ୍ରୟଭୂତ ସେହି ମହାଯୋଗମୟ ବଟବୃକ୍ଷ ତଳେ ଭଗବାନ ଶଙ୍କରଙ୍କୁ ବିରାଜମାନ ଦେଖିଲେ । ମୋର ଶିବଭକ୍ତିପରାୟଣ, ଶାନ୍ତ ତଥା ମହାସିଦ୍ଧ ସନକାଦି ପୁତ୍ରମାନେ ଅତି ପ୍ରସନ୍ନ ମନରେ ତାଙ୍କ ସେବାରେ ଉପସ୍ଥିତ ଥିଲେ । ଭଗବାନ ଶିବଙ୍କ ଶ୍ରୀବିଗ୍ରହ ପରମ ଶାନ୍ତ ଜଣା ପଡୁଥିଲା । ତାଙ୍କ ସଖା କୁବେର ହେଉଛନ୍ତି ଗୁହ୍ୟକ ଓ ରାକ୍ଷସଙ୍କର ସ୍ୱାମୀ; ସେ ନିଜ ସେବକଗଣ ତଥା କୁଟୁମ୍ବଜନଙ୍କୁ ସଙ୍ଗରେ ଘେନି ସଦା ତାଙ୍କ ସେବାରେ ତତ୍ପର ରହିଥାନ୍ତି । ପରମେଶ୍ୱର ଶିବ ସେତେବେଳେ ତପସ୍ୱୀଜନଙ୍କୁ ପରମ ପ୍ରିୟ ଲାଗିଲା ଭଳି ସୁନ୍ଦର ବେଶ ଧାରଣ କରିଥିଲେ । ଭସ୍ମାଦିର ଲେପ ତାଙ୍କ ଅଙ୍ଗର ଶୋଭା ବର୍ଦ୍ଧନ କରୁଥିଲା । ଭଗବାନ ଶିବ ତାଙ୍କର ବତ୍ସଳ ସ୍ୱଭାବ ହେତୁ ସମଗ୍ର ସଂସାରର ସୁହୃଦ ଅଟନ୍ତି । ନାରଦ ! ସେଦିନ ସେ କୁଶାଶନ ଉପରେ ବସିଥିଲେ ଏବଂ ତୁମ ପ୍ରଶ୍ନର ଉତ୍ତରରେ ଜ୍ଞାନୋପଦେଶ ଦେଉଥିଲେ; ତାହାକୁ ଅନ୍ୟାନ୍ୟ ସଜ୍ଜନ ମଧ୍ୟ ଶୁଣୁଥିଲେ । ସେ ବାମ ପାଦକୁ ଡାହାଣ ଜଙ୍ଘ ଉପରେ ରଖି ଓ ବାମ ହାତକୁ ବାମ ଆଣ୍ଠୁ ଉପରେ ରଖି ଓ କଚଟିରେ ରୁଦ୍ରାକ୍ଷମାଳା ଧାରଣ କରି ତର୍କ ମୁଦ୍ରାରେ* ବସିଥିଲେ ।

ମହାଦେବଙ୍କୁ ଏଭଳି ରୂପରେ ଦର୍ଶନ କରି ବିଷ୍ଣୁ ପ୍ରମୁଖ ଦେବଗଣ କର ଯୋଡ଼ି ଅବନତ ମସ୍ତକରେ ତାଙ୍କ ଚରଣରେ ପ୍ରଣିପାତ କଲେ । ମୋ ସହ ବିଷ୍ଣୁ ଆସିଥିବା ଦେଖି ସତ୍ପୁରୁଷଙ୍କ ଆଶ୍ରୟଦାତା ରୁଦ୍ର ଉଠି ଠିଆ ହୋଇଗଲେ ଏବଂ ସେ ମଧ୍ୟ ମୁଣ୍ଡ ନୁଆଇଁ ତାଙ୍କୁ ପ୍ରଣାମ କଲେ । ବିଷ୍ଣୁ ପ୍ରମୁଖ ଦେବଗଣ ପ୍ରଣାମ କରି ସାରିବା ପରେ ସେ ମୋତେ ମଧ୍ୟ ନମସ୍କାର କଲେ । ଜଗତର ପରମ ଗତିସ୍ୱରୂପ ଭଗବାନ ବିଷ୍ଣୁ ଯେପରି ପ୍ରଜାପତି କଶ୍ୟପଙ୍କୁ ପ୍ରଣାମ କରନ୍ତି, ତାଙ୍କର ପ୍ରଣାମ କରିବାଟା ଠିକ୍ ସେହିପରି ଥିଲା । ତା'ପରେ ଦେବତା, ସିଦ୍ଧ, ଗଣାଧୀଶ ଓ ମହର୍ଷିଙ୍କ ଦ୍ୱାରା ନମସ୍କୃତ ତଥା ସ୍ୱୟଂ ନମସ୍କାର କରୁଥିବା ଭଗବାନ ଶିବଙ୍କ ସଙ୍ଗେ ଶ୍ରୀହରି ଆଦରପୂର୍ବକ ବାର୍ତ୍ତାଳାପ କଲେ । (ଅଧ୍ୟାୟ ୪୦)



* ତର୍ଜନୀକୁ ବୃଦ୍ଧାଙ୍ଗୁଳି ସହ ଯୋଡ଼ି ଏବଂ ଅନ୍ୟ ଅଙ୍ଗୁଳିଗୁଡ଼ିକୁ ପରସ୍ପର ସହିତ ମିଶାଇ ପ୍ରସାରିତ କଲେ ଯେଉଁ ବନ୍ଧ ହୁଏ, ତାହାକୁ 'ତର୍କମୁଦ୍ରା' କହନ୍ତି । ଏହାକୁ ଜ୍ଞାନମୁଦ୍ରା ମଧ୍ୟ କହନ୍ତି ।

# ଦେବଗଣଙ୍କର ଶିବଙ୍କୁ ସ୍ତୁତି, ଦେବତାଦିଙ୍କ ଅଙ୍ଗ ସୁସ୍ଥ ହେବାକୁ ଓ ଦକ୍ଷ ଜୀବିତ ହେବାକୁ ଶିବଙ୍କର ବରଦାନ ଏବଂ ଶ୍ରୀହରି ପ୍ରଭୃତିଙ୍କ ସଙ୍ଗେ ଯଜ୍ଞମଣ୍ଡପକୁ ଆସି ଦକ୍ଷଙ୍କୁ ଜୀବନଦାନ; ଦକ୍ଷ ଓ ବିଷ୍ଣୁ ପ୍ରଭୃତିଙ୍କ ଦ୍ୱାରା ଶିବଙ୍କ ସ୍ତୁତି

ଦେବତାମାନେ ଅତ୍ୟନ୍ତ ବିନୟରେ ଶିବଙ୍କୁ ସ୍ତୁତି କରିସାରି ଶେଷରେ କହିଲେ—ଆପଣ ପର (ଉତ୍କୃଷ୍ଟ), ପରମେଶ୍ୱର, ପରାତ୍ପର ତଥା ପରାତ୍ପରତର ଅଟନ୍ତି । ଆପଣଙ୍କ ପରି ସର୍ବବ୍ୟାପୀ ବିଶ୍ୱମୂର୍ତ୍ତି ମହେଶ୍ୱରଙ୍କୁ ଆମର ନମସ୍କାର । ଆପଣ ବିଷ୍ଣୁକଳତ୍ର, ବିଷ୍ଣୁକ୍ଷେତ୍ର, ଭାନୁ, ଭୈରବ, ଶରଣାଗତବତ୍ସଳ, ତ୍ର୍ୟମ୍ବକ ଓ ବିହରଣଶୀଳ ଅଟନ୍ତି । ଆପଣ ମୃତ୍ୟୁଞ୍ଜୟ । ଶୋକ ମଧ୍ୟ ଆପଣଙ୍କର ହିଁ ରୂପ । ଆପଣ ତ୍ରିଗୁଣ ଓ ଗୁଣାତ୍ମା । ଚନ୍ଦ୍ର, ସୂର୍ଯ୍ୟ ଓ ଅଗ୍ନି ଆପଣଙ୍କ ନେତ୍ର । ଆପଣ ସମସ୍ତଙ୍କର କାରଣ ତଥା ଧର୍ମମର୍ଯ୍ୟାଦାସ୍ୱରୂପ ଅଟନ୍ତି । ଆପଣଙ୍କୁ ନମସ୍କାର । ଆପଣ ନିଜ ତେଜରେ ସମଗ୍ର ଜଗତକୁ ବ୍ୟାପ୍ତ କରିଅଛନ୍ତି । ଆପଣ ନିର୍ବିକାର, ତେଜୋବନ୍ତ, ଚିଦାନନ୍ଦସ୍ୱରୂପ, ପରବ୍ରହ୍ମ ପରମାତ୍ମା । ମହେଶ୍ୱର ! ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର, ଚନ୍ଦ୍ର ପ୍ରଭୃତି ସମସ୍ତ ଦେବତା ତଥା ମୁନି ଆପଣଙ୍କ ଠାରୁ ଉତ୍ପନ୍ନ ହୋଇଛନ୍ତି । ଆପଣ ନିଜ ଶରୀରକୁ ଆଠଭାଗରେ ବିଭକ୍ତ କରି ସମଗ୍ର ସଂସାରକୁ ପୋଷଣ କରୁଥିବାରୁ ଅଷ୍ଟମୂର୍ତ୍ତି ନାମରେ କଥିତ ହୁଅନ୍ତି । ଆପଣ ହିଁ ସମସ୍ତଙ୍କର ଆଦିକାରଣ କରୁଣାମୟ ଈଶ୍ୱର । ଆପଣଙ୍କ ଭୟରେ ବାୟୁ ପ୍ରବାହିତ ହୁଏ, ଆପଣଙ୍କ ଭୟରେ ଅଗ୍ନି ପ୍ରଜ୍ୱଳିତ ହୁଏ, ଆପଣଙ୍କ ଭୟରେ ସୂର୍ଯ୍ୟ ଉତ୍ତାପ ଦିଏ ଏବଂ ଆପଣଙ୍କ ଭୟରେ ମୃତ୍ୟୁ ସବୁଆଡ଼କୁ ଧାବମାନ ହେଉଥାଏ । ଦୟାସିନ୍ଧୋ ! ମହେଶାନ ! ପରମେଶ୍ୱର ! ପ୍ରସନ୍ନ ହୁଅନ୍ତୁ । ଆମେ ସବୁ ନଷ୍ଟ ଓ ଚେତନାହୀନ ହୋଇଯାଇଛୁ । ଏଣୁ ସର୍ବଦା ଆମକୁ ରକ୍ଷା କରନ୍ତୁ, ରକ୍ଷା କରନ୍ତୁ । ନାଥ ! କରୁଣାସିନ୍ଧୋ ! ଶମ୍ଭୋ ! ଆଜି ପର୍ଯ୍ୟନ୍ତ ଆପଣ ଯେମିତି ଆମକୁ ନାନା ପ୍ରକାର ବିପତ୍ତିରୁ ରକ୍ଷା କରି ଆସିଛନ୍ତି, ସେହିପରି ଆଜି ମଧ୍ୟ ରକ୍ଷା କରନ୍ତୁ । ନାଥ ! ଦୁର୍ଗେଶ ! ଆପଣ କୃପା କରି ଶୀଘ୍ର ଏ ଅପୂର୍ଣ୍ଣ ଯଜ୍ଞକୁ ପୂର୍ଣ୍ଣ କରନ୍ତୁ । ଦକ୍ଷଙ୍କୁ ଉଦ୍ଧାର କରନ୍ତୁ । ଭଗଙ୍କୁ ନେତ୍ର ମିଳିଯାଉ, ଯଜମାନ ଦକ୍ଷ ଜୀବିତ ହୋଇଯାଆନ୍ତୁ, ପୂଷାଙ୍କ ଦାନ୍ତ ଉଠିଯାଉ ଏବଂ ଭୃଗୁଙ୍କ ଦାଢ଼ି-ନିଶ ପୂର୍ବବତ୍ ହୋଇଯାଉ । ଶଙ୍କର ! ଆୟୁଧ ଓ ପଥର ଆଘାତରେ ଯେଉଁ ଦେବତାମାନଙ୍କର ଅଙ୍ଗଭଙ୍ଗ ହୋଇଯାଇଛି, ସେମାନଙ୍କ ଉପରେ ଆପଣ ଅନୁଗ୍ରହ କରନ୍ତୁ, ଯାହାଫଳରେ ସେମାନେ ପୂର୍ଣ୍ଣତଃ ସୁସ୍ଥ ହୋଇଯିବେ । ପ୍ରଭୋ ! ଯଜ୍ଞକର୍ମ ସରିଲେ ଯାହା କିଛି ଅବଶେଷ ରହିବ, ସେଥିରେ ଆପଣଙ୍କର ପୂର୍ଣ୍ଣ ଭାଗ ବା ଅଧିକାର ରହିବ । (ସେଥିରେ ଆଉ କେହି ହସ୍ତକ୍ଷେପ କରିବେ ନାହିଁ) ରୁଦ୍ରଦେବ ! ଆପଣଙ୍କ ଭାଗରେ ହିଁ ଯଜ୍ଞ ପୂର୍ଣ୍ଣ ହେବ, ଅନ୍ୟଥା ନୁହେଁ ।

ଏଭଳି କହି ମୁଁ ଏବଂ ସମସ୍ତ ଦେବତା ଅପରାଧ ନିମନ୍ତେ କ୍ଷମା ଯାଚନା କରି ଭୂମି ଉପରେ ଦଣ୍ଡପରି ଲମ୍ବ ହୋଇ ପଡ଼ିଗଲୁ ।

ବ୍ରହ୍ମା କହୁଛନ୍ତି—ନାରଦ ! ମୁଁ ବ୍ରହ୍ମା, ଲୋକପାଳ, ପ୍ରଜାପତି ତଥା ମୁନିଗଣ ସମେତ ଶ୍ରୀପତି—ଆମେ ସମସ୍ତେ ଅନୁନୟ ବିନୟ କରିବାରୁ ପରମେଶ୍ୱର ଶିବ ପ୍ରସନ୍ନ ହୋଇଗଲେ । ଦେବତାମାନଙ୍କ ଉପରେ ଅନୁଗ୍ରହ କରି କରୁଣାନିଧି

ପରମେଶ୍ୱର ହସି ହସି ଦେବତାଙ୍କୁ ଆଶ୍ୱାସନା ଦେଇ କହିଲେ—

ଶ୍ରୀମହାଦେବ କହିଲେ—ସୁରଶ୍ରେଷ୍ଠ ବ୍ରହ୍ମା ଓ ବିଷ୍ଣୁଦେବ ! ଆପଣ ଦୁହେଁ ସାବଧାନ ହୋଇ ମୋ କଥା ଶୁଣନ୍ତୁ । ମୁଁ ସତ୍ୟ କହୁଛି । ତାତ ! ଆପଣ ଦୁହିଁଙ୍କ କଥାକୁ ମୁଁ ସଦା ମାନି ଆସିଛି । ଦକ୍ଷଙ୍କ ଯଜ୍ଞକୁ ମୁଁ ନଷ୍ଟ କରି ନାହିଁ । ଦକ୍ଷ ସ୍ୱୟଂ ଏଥିପାଇଁ ଦାୟୀ । ସେ ଅନ୍ୟ ପ୍ରତି ଦ୍ୱେଷ କରନ୍ତି । ଅନ୍ୟ ପ୍ରତି ଯେଉଁପରି ବ୍ୟବହାର କରାଯାଏ, ତାହା ନିଜଠାରେ ହିଁ ଫଳିତ ହୁଏ । ତେଣୁ ଅନ୍ୟକୁ କଷ୍ଟ ହେବାପରି କର୍ମ କଦାପି କରିବା ଉଚିତ ନୁହେଁ ।* ଦକ୍ଷଙ୍କ ମୁଣ୍ଡ ଜଳିଯାଇଛି, ତେଣୁ ତାଙ୍କ ମୁଣ୍ଡ ସ୍ଥାନରେ ବୋଦାର ମୁଣ୍ଡ ଯୋଡ଼ି ଦିଆଯାଉ । ଭଗ ଦେବତା ମିତ୍ରଙ୍କ ଆଖିରେ ନିଜର ଯଜ୍ଞଭାଗକୁ ଦେଖନ୍ତୁ । ପୂଷାଙ୍କର ଦାନ୍ତ ଭାଙ୍ଗିଯାଇଛି, ତେଣୁ ସେ ଯଜମାନର ଦାନ୍ତ ଦ୍ୱାରା ଚୂର୍ଣ୍ଣ ହୋଇଥିବା ଯଜ୍ଞାନ୍ନ ଭକ୍ଷଣ କରିବେ । ମୁଁ ସତ କଥା କହୁଛି । ମୋର ବିରୋଧ କରିଥିବା ଭୃଗୁଙ୍କ ଦାଢ଼ି ସ୍ଥାନରେ ବୋଦାର ଦାଢ଼ି ଲଗାଇ ଦିଆଯାଉ । ମୋତେ ଯଜ୍ଞର ଅବଶିଷ୍ଟ ବସ୍ତୁରେ ଭାଗ ଦେଇଥିବା ଅନ୍ୟସବୁ ଦେବତାଙ୍କର ମଧ୍ୟ ସମସ୍ତ ଅଙ୍ଗ ପୂର୍ବପରି ଭଲ ହୋଇଯାଉ । ଅଧ୍ୱର୍ଯ୍ୟୁ ଆଦି ଯେଉଁ ସବୁ ଯାଜ୍ଞିକମାନଙ୍କର ହାତ ଭାଙ୍ଗିଯାଇଛି, ସେମାନେ ଅଶ୍ୱିନୀକୁମାରଙ୍କ ହାତରେ ଓ ଯେଉଁମାନଙ୍କର ହାତ ନଷ୍ଟ ହୋଇଯାଇଛି, ସେମାନେ ପୂଷାଙ୍କ ହାତ ଦ୍ୱାରା ଆପଣା କାର୍ଯ୍ୟ ଚଳାନ୍ତୁ । ମୁଁ ଏସବୁ ଆପଣମାନଙ୍କୁ ପ୍ରେମବଶତଃ କହିଦେଲି ।

ବ୍ରହ୍ମା କହୁଛନ୍ତି—ନାରଦ ! ଏତିକି କହି ବେଦାନୁସରଣକାରୀ ସୁରସମ୍ରାଟ୍ ଚରାଚରପତି ଦୟାଳୁ ପରମେଶ୍ୱର ମହାଦେବ ଚୁପ୍ ହୋଇଗଲେ । ଶିବଙ୍କ ବଚନ ଶୁଣି ବିଷ୍ଣୁଙ୍କ ସମେତ ଆମେସବୁ ଦେବତା ସନ୍ତୋଷ ଚିତ୍ତରେ ସାଧୁବାଦ ଦେଲୁ । ତା'ପରେ ବିଷ୍ଣୁ, ମୁଁ ଓ ଦେବର୍ଷି ଆମେ ସମସ୍ତେ ଭଗବାନ ଶମ୍ଭୁଙ୍କୁ ଆମନ୍ତ୍ରିତ କରି ତାଙ୍କୁ ସଙ୍ଗରେ ନେଇ ସହର୍ଷ ପୁନଃ ଦକ୍ଷଙ୍କ ଯଜ୍ଞଶାଳାକୁ ଗଲୁ । ଏହି ପ୍ରକାରେ ଆମ୍ଭମାନଙ୍କ ପ୍ରାର୍ଥନାକ୍ରମେ ଶମ୍ଭୁ କନଖଲ ସ୍ଥିତ ପ୍ରଜାପତି ଦକ୍ଷଙ୍କ ଯଜ୍ଞଶାଳାରେ ପଦର୍ପଣ କଲେ । ସେଠାରେ ପହଞ୍ଚି ବୀରଭଦ୍ରଙ୍କ ଦ୍ୱାରା ଯେଉଁ ଯଜ୍ଞବିଧ୍ୱଂସ ହୋଇଥିଲା, ବିଶେଷତଃ ଦେବତା ଓ ଋଷିଗଣଙ୍କର ଯେଉଁ ସ୍ଥିତି ହୋଇଥିଲା, ତାହା ସେ ଦେଖିଲେ । ସ୍ୱାହା, ସ୍ୱଧା, ପୂଷା, ତୁଷ୍ଟି, ଧୃତି, ସରସ୍ୱତୀ, ଋଷିଗଣ, ପିତୃଗଣ, ଅଗ୍ନି ଓ ଅନ୍ୟାନ୍ୟ ବହୁତ ଯକ୍ଷ, ଗନ୍ଧର୍ବ ଓ ରାକ୍ଷସ ସେଠାରେ ପଡ଼ିଥିଲେ । ସେମାନଙ୍କ ମଧ୍ୟରୁ କେତେକଙ୍କର ଅଙ୍ଗ ଭାଙ୍ଗି ଯାଇଥିଲା, କେତେକଙ୍କର କେଶ ଉପୁଡ଼ି ଯାଇଥିଲା, ଆଉ କେତେକ ସେହି ରଣାଙ୍ଗନରେ ପ୍ରାଣ ହରାଇଥିଲେ । ଯଜ୍ଞର ଏଭଳି ଦୁରବସ୍ଥା ଦେଖି ଭଗବାନ ଶିବ ନିଜ ଗଣନାୟକ ମହାପରାକ୍ରମୀ ବୀରଭଦ୍ରଙ୍କୁ ଡାକି ହସି ହସି କହିଲେ, "ମହାବାହୁ ବୀରଭଦ୍ର ! ତୁମେ ଏସବୁ କେମିତି କ'ଣ କଲ? ତାତ ! ତୁମେ ତ ଏତେ କମ୍ ସମୟରେ ଋଷି ଓ ଦେବତାଙ୍କୁ ବହୁତ ବଡ଼ ଦଣ୍ଡ ଦେଲ । ବତ୍ସ ! ଯେଉଁ ଦକ୍ଷ ଏହି ଦ୍ରୋହପୂର୍ଣ୍ଣ କାର୍ଯ୍ୟ କରିଥିଲେ, ଏ ଅଦ୍ଭୁତ ଯଜ୍ଞର ଆୟୋଜନ କରିଥିଲେ ଓ ଯାହାଙ୍କୁ ଏ ଫଳ ମିଳିଲା, ତାଙ୍କୁ ଶୀଘ୍ର ଏଠାକୁ ଆଣ ।"

ଭଗବାନ ଶିବ ଏଭଳି କହିବାରୁ ବୀରଭଦ୍ର ଅତି ବ୍ୟଗ୍ରତାର ସହ ଦକ୍ଷଙ୍କ ଗଣ୍ଡିକୁ ଆଣି ତାଙ୍କ

* ପରଂ ଦ୍ୱେଷ୍ଟି ପରେଷାଂ ଯଦାତ୍ମନସ୍ତଦ୍ଭବିଷ୍ୟତି । ପରେଷାଂ କ୍ଲେଦନଂ କର୍ମ ନ କାର୍ଯ୍ୟଂ ତତ୍କଦାଚନ ॥
(ଶି. ପୁ. ରୁ. ସଂ. ସ. ଖ. ୪୨ । ୫-୬)

ସମ୍ମୁଖରେ ରଖିଦେଲେ । ଦକ୍ଷଙ୍କ ଶରୀରକୁ ମସ୍ତକବିହୀନ ଦେଖି ଲୋକକଲ୍ୟାଣକାରୀ ଶିବ ହସି ହସି ସମ୍ମୁଖରେ ଉପସ୍ଥିତ ବୀରଭଦ୍ରଙ୍କୁ



କହିଲେ—"ଦକ୍ଷଙ୍କ ମସ୍ତକ କାହିଁ?" ପ୍ରଭାବଶାଳୀ ବୀରଭଦ୍ର କହିଲେ—"ପ୍ରଭୋ ! ଶଙ୍କର ! ମୁଁ ତ ସେତେବେଳେ ଦକ୍ଷଙ୍କ ମସ୍ତକକୁ ଅଗ୍ନିକୁଣ୍ଡରେ ସ୍ୱାହା କରିଦେଇଥିଲି ।" ବୀରଭଦ୍ରଙ୍କ କଥା ଶୁଣି ଶିବ ପୁନଃ ଦେବତାମାନଙ୍କୁ ପୂର୍ବପରି ଆଜ୍ଞା ଦେଲେ । ଭଗବାନ ଭବ ସେତେବେଳେ ଯାହା କିଛି କହିଲେ, ସେହି ଅନୁସାରେ ମୁଁ ସବୁ ପୂର୍ଣ୍ଣ କରିବାରୁ ଶ୍ରୀହରି ପ୍ରମୁଖ ସମସ୍ତ ଦେବତା ଭୃଗୁ ପ୍ରଭୃତିଙ୍କୁ ସୁସ୍ଥ କରିଦେଲେ । ତା'ପରେ ଶମ୍ଭୁଙ୍କ ଆଦେଶରେ ପ୍ରଜାପତିଙ୍କ ଗଣ୍ଡି ସହିତ ଯଜ୍ଞପଶୁ ବୋଦାର ମୁଣ୍ଡ ଆଣି ଯୋଡ଼ି ଦିଆଗଲା । ମୁଣ୍ଡ ଯୋଡ଼ି ଦିଆଯିବା ପରେ ଶମ୍ଭୁଙ୍କ ଶୁଭ ଦୃଷ୍ଟି ପଡ଼ିବାରୁ ପ୍ରଜାପତିଙ୍କ ଶରୀରରେ ପ୍ରାଣ ସଞ୍ଚାର ହୋଇଗଲା ଏବଂ ସେ ନିଦରୁ ଉଠିବା ପରି ଉଠି ଠିଆ ହୋଇଗଲେ । ଉଠିବାମାତ୍ରେ ସେ ନିଜ ସମ୍ମୁଖରେ କରୁଣାନିଧି ଭଗବାନ ଶିବଙ୍କୁ ଦେଖିବାକୁ ପାଇଲେ । ତାଙ୍କୁ ଦେଖିବାମାତ୍ରେ ଦକ୍ଷଙ୍କ ହୃଦୟରେ ପ୍ରେମ ଉଚ୍ଛୁଳି ଆସିଲା । ସେହି ପ୍ରେମ ହିଁ ତାଙ୍କ ଅନ୍ତଃକରଣକୁ ଧୋଇ ନିର୍ମଳ ଓ ପ୍ରସନ୍ନ କରିଦେଲା । ପୂର୍ବରୁ ଦ୍ୱେଷ ହେତୁ ତାଙ୍କ ଅନ୍ତଃକରଣ ମଳିନ ହୋଇଯାଇଥିଲା; ମାତ୍ର ଏବେ ଶିବଙ୍କ ଦର୍ଶନମାତ୍ରେ ଶରତ୍‌ଋତୁର ଚନ୍ଦ୍ରମା ପରି ନିର୍ମଳ ହୋଇଗଲା । ତାଙ୍କ ମନରେ ଶିବଙ୍କୁ ସ୍ତୁତି କରିବାକୁ ବିଚାର ଉଦିତ ହେଲା । ମାତ୍ର ଅତ୍ୟଧିକ ଅନୁରାଗ ହେତୁ ଓ ନିଜ କନ୍ୟା କଥା ମନେ ପଡ଼ିଯିବାରୁ ତୁରନ୍ତ ତାହା କରିପାରିଲେ ନାହିଁ । କିଛି କ୍ଷଣ ପରେ ମନ ଟିକିଏ ସ୍ଥିର ହେବାରୁ ଦକ୍ଷ ଲଜ୍ଜିତ ହୋଇ ଲୋକଶଙ୍କର (ଜଗତର ମଙ୍ଗଳକାରୀ) ଶିବଙ୍କୁ ପ୍ରଣାମ କଲେ ଓ ତାଙ୍କର ସ୍ତୁତି ଆରମ୍ଭ କଲେ । ସେ ଶିବଙ୍କ ମହିମା ଗାନ କରି ବାରମ୍ବାର ତାଙ୍କୁ ପ୍ରଣାମ କରି ଶେଷରେ କହିଲେ—

"ପରମେଶ୍ୱର ! ଆପଣ ବ୍ରହ୍ମା ହୋଇ ସର୍ବପ୍ରଥମେ ଆତ୍ମତତ୍ତ୍ୱର ଜ୍ଞାନ ଲାଭ କରିବା ପାଇଁ ନିଜ ମୁଖରୁ ବିଦ୍ୟା, ତପ ଓ ବ୍ରତ ଧାରଣକାରୀ ବ୍ରାହ୍ମଣଙ୍କୁ ଉତ୍ପନ୍ନ କରିଥିଲେ । ଗୋପାଳ ବାଡ଼ି ଧରି ତା'ର ଗୋରୁମାନଙ୍କୁ ରକ୍ଷା କରିବା ପରି ଆପଣ ମର୍ଯ୍ୟାଦାବନ୍ତ ପରମେଶ୍ୱର ହିଁ ଦଣ୍ଡ ଧାରଣ କରି ସାଧୁ ଓ ବ୍ରାହ୍ମଣଙ୍କୁ ସମସ୍ତ ବିପତ୍ତିରୁ ରକ୍ଷା କରନ୍ତି । ମୁଁ ଦୁର୍ବଚନରୂପୀ ଶରରେ ଆପଣଙ୍କ ହୃଦୟକୁ ବିଦ୍ଧ କରିଥିଲି, ତଥାପି ଆପଣ ମୋ ପ୍ରତି ଅନୁଗ୍ରହ କରିବାକୁ ଏଠାକୁ ଆସିଲେ । ଏଥର ମୋରି ପରି ଏ ସମସ୍ତ ଦୀନ ଦେବତାଙ୍କ ଉପରେ ମଧ୍ୟ କୃପା କରନ୍ତୁ । ଭକ୍ତବତ୍ସଳ ! ଦୀନବନ୍ଧୋ ! ଶମ୍ଭୋ ! ଆପଣଙ୍କୁ ପ୍ରସନ୍ନ କରିବାକୁ ମୋ ଭିତରେ କୌଣସି ଗୁଣ

ନାହିଁ । ଆପଣ ଷଡ଼ବିଧ ଐଶ୍ୱର୍ଯ୍ୟସମ୍ପନ୍ନ ପରାତ୍ପର ପରମାତ୍ମା । ଏଣୁ ଆପଣ ନିଜ ବହୁମୂଲ୍ୟ ଉଦାରତାପୂର୍ଣ୍ଣ ବ୍ୟବହାର ଦ୍ୱାରା ମୋ ଉପରେ ସନ୍ତୁଷ୍ଟ ହୁଅନ୍ତୁ ।'

ବ୍ରହ୍ମା କହୁଛନ୍ତି–ନାରଦ ! ପ୍ରଜାପତି ଦକ୍ଷ ବିନୀତଭାବରେ ଲୋକ-କଲ୍ୟାଣକାରୀ ମହାପ୍ରଭୁ ମହେଶ୍ୱରଙ୍କୁ ସ୍ତୁତି କରିସାରି ଚୁପ୍ ହୋଇଗଲେ । ତା'ପରେ ବିଷ୍ଣୁ ଯୋଡ଼ହସ୍ତପୂର୍ବକ ଭଗବାନ ବୃଷଭଧ୍ୱଜଙ୍କୁ ପ୍ରଣାମ କରି ପ୍ରସନ୍ନତାପୂର୍ଣ୍ଣ ହୃଦୟରେ ଓ ଗଦ୍‌ଗଦ ବାଣୀରେ ସ୍ତୁତି କଲେ ।

ତା'ପରେ ମୁଁ କହିଲି–ଦେବଦେବ ମହାଦେବ ! କରୁଣସାଗର ! ପ୍ରଭୋ ! ଆପଣ ସ୍ୱତନ୍ତ୍ର ପରମାତ୍ମା, ଅଦ୍ୱିତୀୟ ଓ ଅବିନାଶୀ ପରମେଶ୍ୱର । ଦେବ ! ଈଶ୍ୱର ! ଆପଣ ମୋ ପୁତ୍ର ଉପରେ ଅନୁଗ୍ରହ କଲେ । ଏବେ ଆଉ ଅପମାନ ଆଡ଼କୁ ଆଦୌ ଧ୍ୟାନ ନ ଦେଇ ଦକ୍ଷକୁ ଉଦ୍ଧାର କରନ୍ତୁ । ଦେବେଶ୍ୱର ! ଆପଣ ତ ଜ୍ଞାନୀ । ପୁଣି ଆପଣ ମୋତେ କର୍ତ୍ତବ୍ୟ ଆଡ଼କୁ ପ୍ରେରିତ କରିଥାନ୍ତି ଓ ଅକର୍ତ୍ତବ୍ୟରୁ ନିବୃତ୍ତ କରିଥାନ୍ତି । ଏଣୁ ପ୍ରସନ୍ନ ହୁଅନ୍ତୁ ଓ ସମସ୍ତ ଶାପକୁ ଦୂର କରନ୍ତୁ ।

ମହାମୁନେ ! ମୁଁ ପରମ ମହେଶ୍ୱରଙ୍କୁ ଏହିପରି ସ୍ତୁତି କରିବା ପରେ ଯୋଡ଼ହସ୍ତପୂର୍ବକ ମସ୍ତକ ଅବନତ କରି ଠିଆ ହୋଇଗଲି । ତା'ପରେ ଇନ୍ଦ୍ରାଦି ଦେବତା ଓ ଲୋକପାଳ ଶିବଙ୍କୁ ସ୍ତୁତି କଲେ ସେତେବେଳେ ଶିବଙ୍କ ମୁଖାରବିନ୍ଦ ପ୍ରସନ୍ନତାରେ ଉଲ୍ଲସିତ ହୋଇ ଉଠିଲା । ଏହା ପରେ ସମସ୍ତ ଦେବତା, ସିଦ୍ଧଗଣ, ଋଷିଗଣ ଓ ପ୍ରଜାପତିଗଣ ପ୍ରସନ୍ନଚିତ୍ତରେ ଶିବଙ୍କୁ ସହର୍ଷ ସ୍ତୁତି କଲେ । ସେମାନଙ୍କ ଅତିରିକ୍ତ ଉପଦେବତା, ନାଗ, ସଦସ୍ୟ ତଥା ବ୍ରାହ୍ମଣମାନେ ପୃଥକ୍ ପୃଥକ୍ ସ୍ତୁତି କଲେ । (ଅଧ୍ୟାୟ ୪୧-୪୨)

★★★

## ଶିବଙ୍କର ଦକ୍ଷଙ୍କ ସମ୍ମୁଖରେ ନିଜର ଭକ୍ତବତ୍ସଳତା, ଜ୍ଞାନୀଭକ୍ତର ଶ୍ରେଷ୍ଠତା ଓ ତ୍ରିଦେବଙ୍କର ଅଭିନ୍ନତା ପ୍ରତିପାଦନ, ଦକ୍ଷଯଜ୍ଞ ସମାପନ, ସମସ୍ତ ଦେବାଦିଙ୍କର ସ୍ୱସ୍ଥାନ ପ୍ରତ୍ୟାବର୍ତ୍ତନ, ସତୀଖଣ୍ଡର ଉପସଂହାର ଓ ମାହାତ୍ମ୍ୟ

ବ୍ରହ୍ମା କହୁଛନ୍ତି–ନାରଦ ! ବିଷ୍ଣୁ, ମୁଁ, ଦେବଗଣ ଓ ଋଷିମାନେ ଏପରି ସ୍ତୁତି କରିବାରୁ ମହାଦେବ ବହୁତ ପ୍ରସନ୍ନ ହେଲେ । ତା'ପରେ ଶମ୍ଭୁ ସମସ୍ତ ଋଷି ଦେବତା ପ୍ରଭୃତିଙ୍କୁ କୃପାଦୃଷ୍ଟିରେ ଚାହିଁ ଆମ୍ଭମାନଙ୍କର ସମସ୍ୟା ସମାଧାନ କରି ଦକ୍ଷଙ୍କୁ ଏହି କଥା କହିଲେ–

ମହାଦେବ କହିଲେ–ପ୍ରଜାପତି ଦକ୍ଷ ! ମୁଁ ଯାହା କିଛି କହୁଛି, ଶୁଣ । ମୁଁ ତୁମ ଉପରେ ପ୍ରସନ୍ନ । ଯଦ୍ୟପି ମୁଁ ସମସ୍ତଙ୍କର ଈଶ୍ୱର ଓ ସ୍ୱତନ୍ତ୍ର, ତଥାପି ସର୍ବଦା ଭକ୍ତଙ୍କ ଅଧୀନରେ ରହିଥାଏ । ଚାରିପ୍ରକାର ପୁଣ୍ୟାତ୍ମା ଲୋକ ମୋତେ ଭଜିଥାନ୍ତି । ପ୍ରଜାପତେ ! ସେମାନେ କ୍ରମାନ୍ୱୟରେ ଉତ୍ତରୋତ୍ତର ଶ୍ରେଷ୍ଠ ଅଟନ୍ତି । ପ୍ରଥମ ହେଲା ଆର୍ତ୍ତ, ଦ୍ୱିତୀୟ ଜିଜ୍ଞାସୁ, ତୃତୀୟ ଅର୍ଥାର୍ଥୀ ଓ ଚତୁର୍ଥ ଜ୍ଞାନୀ । ପ୍ରଥମ ତିନିପ୍ରକାର ଭକ୍ତ ସାଧାରଣ ଶ୍ରେଣୀର । କିନ୍ତୁ ଚତୁର୍ଥ ପ୍ରକାର ଭକ୍ତର ବିଶେଷ ମହତ୍ତ୍ୱ ରହିଛି । ସେହି ସବୁ ଭକ୍ତଙ୍କ ମଧ୍ୟରେ ଚତୁର୍ଥ ବା ଜ୍ଞାନୀ ଭକ୍ତ ମୋର ବିଶେଷ ପ୍ରିୟ । ସେ ମୋର ସ୍ୱରୂପ ବୋଲି କୁହାଯାଇଛି । ତା'ଠାରୁ ବଳି ମୋର କେହି ପ୍ରିୟ ନାହିଁ, ଏହା

ମୁଁ ସତ୍ୟ ସତ୍ୟ କହୁଛି।* ମୁଁ ଆତ୍ମଜ୍ଞ ଅଟେ। ବେଦବେଦାନ୍ତର ପାରଙ୍ଗମ ବିଦ୍ୱାନ୍ ଜ୍ଞାନଦ୍ୱାରା ମୋତେ ଜାଣିପାରନ୍ତି। ଯାହାଙ୍କର ବୁଦ୍ଧି ଅଳ୍ପ, ସେଇମାନେ ହିଁ ବିନା ଜ୍ଞାନରେ ମୋତେ ପାଇବାକୁ ପ୍ରଯତ୍ନ କରିଥାନ୍ତି। କର୍ମର ଅଧୀନ ମୂଢ଼ ମାନବ ମୋତେ ବେଦ, ଯଜ୍ଞ, ଦାନ ଓ ତପସ୍ୟା ଦ୍ୱାରା ମଧ୍ୟ କଦାପି ପାଇ ପାରିବେ ନାହିଁ।

ତେଣୁ ଦକ୍ଷ ! ଆଜିଠାରୁ ତୁମେ ବୁଦ୍ଧିଦ୍ୱାରା ମୋତେ ଜାଣି ସମାହିତଚିତ୍ତରେ ଜ୍ଞାନର ଆଶ୍ରୟ ନେଇ କର୍ମ କର। ପ୍ରଜାପତେ ! ତୁମେ ଉତ୍ତମ ବୁଦ୍ଧି ଦ୍ୱାରା ମୋର ଅନ୍ୟ କଥାଟି ମଧ୍ୟ ଶୁଣ। ମୋର ସଗୁଣ ସ୍ୱରୂପ ବିଷୟକ ଏକଥାଟି ଧର୍ମଦୃଷ୍ଟିରୁ ଗୋପନୀୟ ହୋଇଥିଲେ ମଧ୍ୟ ମୁଁ ତୁମ ଆଗରେ ପ୍ରକାଶ କରୁଛି। ଜଗତର ପରମ କାରଣରୂପୀ ବ୍ରହ୍ମା ମୁଁ ହିଁ ଅଟେ ଏବଂ ବିଷ୍ଣୁ ମଧ୍ୟ ମୁଁ ହିଁ ଅଟେ। ମୁଁ ସମସ୍ତଙ୍କର ଆତ୍ମା ଈଶ୍ୱର ଓ ସାକ୍ଷୀ। ମୁଁ ସ୍ୱୟଂପ୍ରକାଶ ଓ ନିର୍ବିଶେଷ। ମୁନେ ! ନିଜର ତ୍ରିଗୁଣାତ୍ମିକା ମାୟାକୁ ଅଙ୍ଗୀକାର କରି ମୁଁ ହିଁ ଜଗତର ସୃଷ୍ଟି, ପାଳନ ଓ ସଂହାର କରିବା ସହିତ ସେହି କ୍ରିୟାର ଅନୁରୂପ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ନାମ ଧାରଣ କରିଥାଏ। ମୋ ପରି ଅଦ୍ୱିତୀୟ (ଭେଦରହିତ) କେବଳ (ବିଶୁଦ୍ଧ) ପରବ୍ରହ୍ମ ପରମାତ୍ମାଙ୍କ ଠାରେ ଅଜ୍ଞାନୀ ବ୍ୟକ୍ତି ହିଁ ବ୍ରହ୍ମ, ଈଶ୍ୱର ଓ ଅନ୍ୟ ସମସ୍ତ ଜୀବଙ୍କୁ ଭିନ୍ନ ଭିନ୍ନ ରୂପରେ ଦେଖିଥାଏ। ମନୁଷ୍ୟ ତା'ର ମୁଣ୍ଡ, ହାତ ଆଦି ଅଙ୍ଗରେ 'ଏ ମୋଠାରୁ ଭିନ୍ନ'—ଏପରି ପରକୀୟ ବୁଦ୍ଧି କରି ନ ଥାଏ; ଠିକ୍ ସେହିପରି ମୋ ଭକ୍ତ କୌଣସି ପ୍ରାଣୀକୁ ମୋଠାରୁ ଭିନ୍ନ ବୋଲି ଭାବି ନ ଥାଏ। ଦକ୍ଷ ! ମୁଁ, ବ୍ରହ୍ମା ଓ ବିଷ୍ଣୁ ତିନିହେଁ ସ୍ୱରୂପତଃ ଏକ ଅଟୁ ଏବଂ ଆମେ ହିଁ ସମସ୍ତ ଜୀବରୂପ—ଏଭଳି ବୁଝି ଯେ ଆମ ତିନିଙ୍କ ମଧ୍ୟରେ ଭେଦବୁଦ୍ଧି କରେ ନାହିଁ, ସେ ହିଁ ଶାନ୍ତି ପ୍ରାପ୍ତ ହୁଏ। ଯେଉଁ ନରାଧମ ଏହି ତ୍ରିଦେବଙ୍କ ମଧ୍ୟରେ ଭେଦବୁଦ୍ଧି ରଖେ, ସେ ନିଶ୍ଚୟ ଚନ୍ଦ୍ର-ତାରା ବିଦ୍ୟମାନ ଥିବା ପର୍ଯ୍ୟନ୍ତ ନରକରେ ନିବାସ କରେ।ᕝ ଦକ୍ଷ ! ଯଦି କେହି ବିଷ୍ଣୁଭକ୍ତ ହୋଇ ମୋର ନିନ୍ଦା କରିବ ଏବଂ ମୋ ଭକ୍ତ ହୋଇ ବିଷ୍ଣୁଙ୍କୁ ନିନ୍ଦା କରିବ, ତେବେ ପୂର୍ବରୁ ତୁମକୁ ଦିଆ ଯାଇଥିବା ଶାପ ସେ ଦୁହିଙ୍କ ଉପରେ ପଡ଼ିବ ଏବଂ ତାକୁ ତତ୍ତ୍ୱଜ୍ଞାନ ପ୍ରାପ୍ତି ହୋଇପାରିବ ନାହିଁ‡।

ବ୍ରହ୍ମା କହୁଛନ୍ତି—ମୁନେ ! ଭଗବାନ ମହେଶ୍ୱରଙ୍କର ଏ ସୁଖଦାୟକ କଥାକୁ ଶୁଣି ଦେବତା, ମୁନି ପ୍ରଭୃତି ସମସ୍ତେ ବହୁତ ଆନନ୍ଦିତ ହେଲେ। ଦକ୍ଷ ଆପଣା କୁଟୁମ୍ବସମେତ ପ୍ରସନ୍ନତାର

---

* ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନଃ ସଦା। ଉତ୍ତରୋତ୍ତରତଃ ଶ୍ରେଷ୍ଠାସ୍ତେଷାଂ ଦକ୍ଷ ପଜାପତେ॥
ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚୈବ ଚତୁର୍ଥକଃ। ପୂର୍ବେ ତ୍ରୟଶ୍ଚ ସାମାନ୍ୟାଶ୍ଚତୁର୍ଥୋ ହି ବିଶିଷ୍ୟତେ॥
ତତ୍ର ଜ୍ଞାନୀ ପ୍ରିୟତରୋ ମମ ରୂପଂ ଚ ସ ସ୍ମୃତଃ। ତସ୍ମାଦ୍ ପ୍ରିୟତରୋ ନାନ୍ୟଃ ସତ୍ୟଂ ସତ୍ୟଂ ବଦାମ୍ୟହମ୍॥
(ଶି. ପୁ. ରୁ. ସଂ. ସ. ଖ. ୪୩। ୪—୬)

ᕝ ସର୍ବଭୂତାତ୍ମନାମେକଭାବାନାଂ ଯୋ ନ ପଶ୍ୟତି। ତ୍ରିସୁରାଣାଂ ଭିଦାଂ ଦକ୍ଷ ସ ଶାନ୍ତିମଧିଗଚ୍ଛତି॥
ଯଃ କରୋତି ତ୍ରିଦେବେଷୁ ଭେଦବୁଦ୍ଧିଂ ନରାଧମଃ। ନରକେ ସ ବସେନ୍ନୂନଂ ଯାବଦାଚନ୍ଦ୍ରତାରକମ୍॥
(ଶି. ପୁ. ରୁ. ସଂ. ସ. ଖ. ୪୩। ୧୬-୧୭)

‡ ହରିଭକ୍ତୋ ହି ମାଂ ନିନ୍ଦେତ୍ତଥା ଶୈବୋ ଭବେଦ୍ ଯଦି। ତୟୋଃ ଶାପା ଭବେୟୁସ୍ତେ ତତ୍ତ୍ୱପ୍ରାପ୍ତିର୍ଭବେନ୍ନହି॥
(ଶି. ପୁ. ରୁ. ସଂ. ସ. ଖ. ୪୩। ୨୧)

ସହ ଶିବଭକ୍ତିରେ ତତ୍ପର ହୋଇଗଲେ । ଦେବଗଣାଦି ମଧ୍ୟ ଶିବଙ୍କୁ ହିଁ ସର୍ବେଶ୍ୱର ଜାଣି ଶିବଙ୍କ ଭଜନରେ ମନ ଲଗାଇଲେ । ଯେଉଁମାନେ ଯେପରି ସ୍ତୁତି କରିଥିଲେ, ଶମ୍ଭୁ ସନ୍ତୁଷ୍ଟ ହୋଇ ସେମାନଙ୍କୁ ତଦନୁରୂପ ବର ପ୍ରଦାନ କଲେ । ମୁନେ ! ତା'ପରେ ଶିବଙ୍କ ଆଜ୍ଞା ପାଇ ଶିବଭକ୍ତ ଦକ୍ଷ ପ୍ରସନ୍ନ ମନରେ ଶିବଙ୍କ ଅନୁଗ୍ରହରେ ଆପଣା ଯଜ୍ଞ ପୂର୍ଣ୍ଣ କଲେ । ସେ ଦେବତାଙ୍କୁ ସେମାନଙ୍କର ଯଜ୍ଞଭାଗ ଦେବା ସଙ୍ଗେ ସଙ୍ଗେ ଶିବଙ୍କୁ ମଧ୍ୟ ତାଙ୍କର ଯଜ୍ଞଭାଗ ପୂର୍ଣ୍ଣରୂପେ ପ୍ରଦାନ କଲେ । ପୁଣି ସେ ବ୍ରାହ୍ମଣଙ୍କୁ ଦାନ ଦେଲେ । ଏହିରୂପେ ତାଙ୍କୁ ଶିବଙ୍କର ଅନୁଗ୍ରହ ପ୍ରାପ୍ତ ହେଲା । ନାରଦ ! ତୁମ ଆଗରେ ମୁଁ ଶିବଙ୍କର ସେହି ମହାନ୍ କର୍ମ ବିଷୟରେ ବିଧିପୂର୍ବକ ବର୍ଣ୍ଣନା କଲି । ପ୍ରଜାପତି ଦକ୍ଷ ଋତ୍ୱିଜଙ୍କ ସହଯୋଗରେ ଯଜ୍ଞକର୍ମକୁ ବିଧିବତ୍ ସମାପ୍ତ କଲେ । ହେ ମୁନୀଶ୍ୱର ! ଏହିରୂପେ ପରବ୍ରହ୍ମସ୍ୱରୂପ ଶଙ୍କରଙ୍କ ପ୍ରସାଦରେ ଦକ୍ଷଯଜ୍ଞ ପୂର୍ଣ୍ଣ ହେଲା । ସମସ୍ତ ଦେବତା ଓ ଋଷି ସନ୍ତୁଷ୍ଟ ହୋଇ ଭଗବାନ ଶିବଙ୍କ ଯଶୋଗାନ କରି କରି ସ୍ୱସ୍ଥାନକୁ ଗ୍ଲଲିଗଲେ । ଅନ୍ୟମାନେ ମଧ୍ୟ ସେଠାରୁ ସୁଖରେ ବିଦାୟ ନେଲେ । ମୁଁ ଓ ବିଷ୍ଣୁ ମଧ୍ୟ ଅତ୍ୟନ୍ତ ପ୍ରସନ୍ନ ହୋଇ ଭଗବାନ ଶିବଙ୍କ ମଙ୍ଗଳଦାୟକ ସୁଯଶକୁ ନିରନ୍ତର ଗାନ କରି କରି ଆନନ୍ଦରେ ନିଜ ନିଜ ଧାମକୁ ଗ୍ଲଲିଗଲୁ । ସତ୍ପୁରୁଷଙ୍କ ଆଶ୍ରୟ ମହାଦେବ ମଧ୍ୟ ଦକ୍ଷଙ୍କ ଠାରୁ ସମ୍ମାନିତ ହୋଇ ପ୍ରସନ୍ନ ମନରେ ଶିବଗଣଙ୍କ ସହିତ ନିଜ ନିବାସସ୍ଥାନ କୈଳାସ ପର୍ବତକୁ ଫେରିଗଲେ । କୈଳାସକୁ ଆସି ଶମ୍ଭୁ ତାଙ୍କ ପ୍ରିୟା ସତୀଙ୍କୁ ସ୍ମରଣ କଲେ ଓ ମୁଖ୍ୟ ମୁଖ୍ୟ ଗଣଙ୍କ ଆଗରେ ତାଙ୍କ କଥା କହିଲେ ।

ଏହିରୂପେ ଦକ୍ଷକନ୍ୟା ସତୀ ଯଜ୍ଞରେ ଦେହତ୍ୟାଗ କରି ପରବର୍ତ୍ତୀ କାଳରେ ହିମାଳୟଙ୍କ ପତ୍ନୀ ମେନାଙ୍କ ଗର୍ଭରୁ ଉତ୍ପନ୍ନ ହେଲେ, ଏକଥା ସର୍ବତ୍ର ପ୍ରସିଦ୍ଧ । ସେ ସେଠାରେ ତପସ୍ୟା କରି ଭଗବାନ ଶିବଙ୍କୁ ସ୍ୱାମୀରୂପରେ ବରଣ କଲେ । ସେ ଶିବଙ୍କ ବାମଭାଗରେ ସ୍ଥାନ ପାଇ ଅଦ୍ଭୁତ ଲୀଳାମାନ କଲେ । ହେ ନାରଦ ! ମୁଁ ସତୀଙ୍କ ପରମ ଅଦ୍ଭୁତ ଦିବ୍ୟ ଚରିତ ତୁମ ଆଗରେ ବର୍ଣ୍ଣନା କରିଦେଲି । ଏହି ଚରିତ ଭୋଗ ଓ ମୋକ୍ଷ ପ୍ରଦାନ କରେ ଏବଂ ସମସ୍ତ କାମନା ପୂର୍ଣ୍ଣ କରେ । ଉକ୍ତ ଉପାଖ୍ୟାନ ପାପହାରୀ ଓ ପରମ ପବିତ୍ର । ଏହା ସ୍ୱର୍ଗ, ଯଶ, ଆୟୁ ଓ ପୁତ୍ର-ପୌତ୍ର ପ୍ରଦାନ କରିଥାଏ । ତାତ ! ଯେଉଁ ଭକ୍ତିମାନ୍ ବ୍ୟକ୍ତି ଭକ୍ତିଭାବରେ ଲୋକମାନଙ୍କୁ ଏ ପ୍ରସଙ୍ଗ ଶୁଣାଏ, ସେ ଇହଲୋକରେ ସମସ୍ତ କର୍ମର ଫଳ ପାଇ ପରଲୋକରେ ପରମଗତି ଲାଭ କରେ ।

(ଅଧ୍ୟାୟ ୪୩)

★★★

## ॥ ରୁଦ୍ରସଂହିତାର ସତୀଖଣ୍ଡ ସମ୍ପୂର୍ଣ୍ଣ ॥



# ରୁଦ୍ରସଂହିତା, ତୃତୀୟ (ପାର୍ବତୀ) ଖଣ୍ଡ

## ହିମାଳୟଙ୍କର ସ୍ଥାବର ଓ ଜଙ୍ଗମ ଦ୍ୱିବିଧ ରୂପ ତଥା ଦିବ୍ୟତାର ବର୍ଣ୍ଣନା, ମେନାଙ୍କ ସଙ୍ଗେ ତାଙ୍କ ବିବାହ ଏବଂ ମେନା ପ୍ରଭୃତିଙ୍କୁ ପୂର୍ବଜନ୍ମରେ ସନକାଦିଙ୍କ ଠାରୁ ପ୍ରାପ୍ତ ହୋଇଥିବା ଶାପ ଓ ବରଦାନ ପ୍ରସଙ୍ଗ

ନାରଦ ପଚ୍ଚାରିଲେ–ବ୍ରହ୍ମନ୍ ! ପିତାଙ୍କ ଯଜ୍ଞରେ ଦେହତ୍ୟାଗ କରିଦେଇ ଦକ୍ଷକନ୍ୟା ଜଗଦମ୍ବା ସତୀଦେବୀ କେଉଁ ପ୍ରକାରେ ଗିରିରାଜ ହିମାଳୟଙ୍କ କନ୍ୟା ହେଲେ? କିପରି ଉଗ୍ରତପସ୍ୟା କରି ସେ ମହେଶ୍ୱରଙ୍କୁ ପୁନଃ ପତିରୂପେ ଲାଭ କଲେ? ମୋର ଏ ପ୍ରଶ୍ନ ଉପରେ ଭଲଭାବରେ ବିଚ୍ଚାର କରି ଏ ବିଷୟରେ ଆଲୋକପାତ କରନ୍ତୁ ।

ବ୍ରହ୍ମା କହିଲେ–ହେ ମୁନି ! ନାରଦ ! ତୁମେ ପ୍ରଥମେ ପାର୍ବତୀଙ୍କ ମାଆଙ୍କ ଜନ୍ମ, ବିବାହ ଓ ଅନ୍ୟାନ୍ୟ ଭକ୍ତିବର୍ଦ୍ଧକ ପାବନ ଚରିତ୍ର ଶୁଣ । ମୁନିବର ! ଉତ୍ତରଦିଗରେ ହିମାଳୟ ବା ହିମବାନ ନାମରେ ଗୋଟିଏ ଶ୍ରେଷ୍ଠ ପର୍ବତ ଅଛି । ତାହା ମହାତେଜସ୍ୱୀ ଓ ସମୃଦ୍ଧିଶାଳୀ । ତାହାର ଦୁଇଟି ରୂପ ପ୍ରସିଦ୍ଧ । ଗୋଟିଏ ସ୍ଥାବର ରୂପ ଓ ଅନ୍ୟଟି ଜଙ୍ଗମ ରୂପ । ମୁଁ ସଂକ୍ଷେପରେ ତାହାର ସ୍ଥାବର ରୂପର ବର୍ଣ୍ଣନା କରୁଛି । ସେହି ରମଣୀୟ ପର୍ବତ ନାନା ପ୍ରକାର ରତ୍ନମାନଙ୍କର ଭଣ୍ଡାର ଏବଂ ତାହା ପୂର୍ବ ଓ ପଶ୍ଚିମ ସମୁଦ୍ର ଭିତରେ ପ୍ରବେଶ କରି ଏଭଳି ଦଣ୍ଡାୟମାନ ହୋଇଛି, ସତେ ଯେପରି ଭୂମଣ୍ଡଳକୁ ମାପିବାର ଏକ ମାନଦଣ୍ଡ । ନାନା ପ୍ରକାର ସଘନ ବୃକ୍ଷମାନଙ୍କରେ ଓ ଅନେକ ଶିଖରରେ ମଣ୍ଡିତ ହୋଇଥିବାରୁ ତାହାର ଶୋଭା ଅତ୍ୟନ୍ତ ରମଣୀୟ । ସିଂହ, ବ୍ୟାଘ୍ର ଇତ୍ୟାଦି ପଶୁ ସଦା ସୁଖପୂର୍ବକ ସେଥିରେ ବାସ କରନ୍ତି । ହିମ ବା ବରଫରେ ଭରପୂର ରହୁଥିବାରୁ ତାହା ଅତ୍ୟନ୍ତ ଉଗ୍ର ଜଣାପଡ଼େ । ନାନା ପ୍ରକାରର ଆଶ୍ଚର୍ଯ୍ୟଜନକ ଦୃଶ୍ୟରେ ତାହାର ଶୋଭା ବଡ଼ ବିଚିତ୍ର ହୋଇଥାଏ । ଦେବତା, ଋଷି, ସିଦ୍ଧ ଓ ମୁନିମାନେ ସେହି ପର୍ବତର ଆଶ୍ରୟ ନେଇଥାନ୍ତି । ଭଗବାନ ଶିବଙ୍କର ତାହା ଅତି ପ୍ରିୟ ତପଃସ୍ଥଳୀ । ତାହା ସ୍ୱରୂପତଃ ଅତ୍ୟନ୍ତ ପବିତ୍ର ଓ ମହାତ୍ମାଙ୍କୁ ମଧ୍ୟ ପବିତ୍ର କରିଥାଏ । ତାହା ଅତି ଶୀଘ୍ର ତପସ୍ୟାର ସିଦ୍ଧି ପ୍ରଦାନ କରିଥାଏ, ପୁଣି ତାହା ନାନା ଧାତୁର ଖଣି ଓ ଶୁଭପ୍ରଦ । ଉକ୍ତ ପର୍ବତ ଦିବ୍ୟ ଶରୀର ଧାରଣ କରି ସର୍ବାଙ୍ଗ-ସୁନ୍ଦର ରମଣୀୟ ରୂପରେ ମଧ୍ୟ ବିଦ୍ୟମାନ । ଭଗବାନ ବିଷ୍ଣୁଙ୍କ ଅବିକୃତ ଅଂଶ ହୋଇଥିବାରୁ ଶୈଳରାଜ ହିମବାନ ସାଧୁସନ୍ଥଙ୍କର ଅଧିକ ପ୍ରିୟ ।

ଏକଦା ଗିରିବର ହିମବାନ ଆପଣା କୁଳ-ପରମ୍ପରାର ରକ୍ଷା ଓ ଧର୍ମର ବୃଦ୍ଧି ପାଇଁ ଦେବତା ତଥା ପିତୃଗଣଙ୍କ ହିତ ଉଦ୍ଦେଶ୍ୟରେ ବିବାହ କରିବାକୁ ଚ୍ଚାହିଁଲେ । ମୁନୀଶ୍ୱର ! ସେତେବେଳେ ସମସ୍ତ ଦେବତା ଆପଣା ସ୍ୱାର୍ଥ କଥା ବିଚ୍ଚାର କରି ଦିବ୍ୟ ପିତୃଗଣଙ୍କ ନିକଟକୁ ଆସି କହିଲେ–

ଦେବତାମାନେ କହିଲେ–ହେ ପିତୃଗଣ ! ଆପଣମାନେ ପ୍ରସନ୍ନଚିତ୍ତରେ ଆମ କଥା ଶୁଣନ୍ତୁ ଏବଂ ଦେବତାଙ୍କର କାର୍ଯ୍ୟ ସିଦ୍ଧ କରିବା ଯଦି ଆପଣମାନଙ୍କର ଅଭୀଷ୍ଟ, ତେବେ ଶୀଘ୍ର ତଦନୁରୂପ ଉଦ୍ୟମ କରନ୍ତୁ । ଆପଣଙ୍କ ଜ୍ୟେଷ୍ଠା କନ୍ୟା ମେନା ମଙ୍ଗଳରୂପିଣୀ । ତାହାର ବିବାହ

ଆନନ୍ଦମନରେ ହିମବାନ ପର୍ବତ ସଙ୍ଗେ କରିଦିଅନ୍ତୁ । ଏହା କଲେ ଆପଣମାନଙ୍କର ମଙ୍ଗଳ ହେବ ଏବଂ ଦେବତାଙ୍କର ମଧ୍ୟ ସମୟେ ସମୟେ ଦୁଃଖ ନିବାରଣ ହେବ । ଦେବଗଣଙ୍କ କଥା ଶୁଣି ପିତୃଗଣ ପରସ୍ପର ମଧ୍ୟରେ ବିଗ୍ରରବିମର୍ଶ କରି ସ୍ୱୀକୃତି ଦେଇଦେଲେ ଏବଂ ସେମାନଙ୍କ କନ୍ୟା ମେନାକୁ ବିଧିପୂର୍ବକ ହିମବାନଙ୍କ ହସ୍ତରେ ସମର୍ପିଦେଲେ । ବିବାହର ମଙ୍ଗଳମୟୀ ବେଳାରେ ବହୁତ ବଡ଼ ଉତ୍ସବ ହେଲା । ମୁନୀଶ୍ୱର ନାରଦ ! ମେନାର ହିମବାନଙ୍କ ସହିତ ଶୁଭବିବାହର ପ୍ରସଙ୍ଗ ମୁଁ ବର୍ଣ୍ଣନା କରିଦେଲି । ଏବେ ଆଉ କ'ଣ ଶୁଣିବାକୁ ଗ୍ରହୁଁଛ?

ନାରଦ ପଗ୍ରରିଲେ–ହେ ବିଧାତା! ଏବେ ମୋତେ ମେନାର ଜନ୍ମ-ବୃତ୍ତାନ୍ତ କହନ୍ତୁ । ତାହାକୁ କେଉଁ ଶାପ ମିଳିଥିଲା, ସେ କଥା କହି ମୋର ସନ୍ଦେହ ନିବାରଣ କରନ୍ତୁ ।

ବ୍ରହ୍ମା କହୁଛନ୍ତି–ମୁନେ ! ମୁଁ ପୂର୍ବରୁ ମୋର ଦକ୍ଷ ନାମକ ଯେଉଁ ପୁତ୍ର ବିଷୟରେ ଚର୍ଚ୍ଚା କରିଥିଲି, ତାଙ୍କର ଷାଠିଏ କନ୍ୟା ଥିଲେ ଏବଂ ସେମାନେ ସୃଷ୍ଟି-ଉତ୍ପତ୍ତିରେ କାରଣ ହୋଇଥିଲେ । ନାରଦ ! ଦକ୍ଷ ସେମାନଙ୍କ ବିବାହ କଶ୍ୟପାଦି ଶ୍ରେଷ୍ଠ ମୁନିଗଣଙ୍କ ସହିତ କରିଥିଲେ ବୋଲି ତୁମେ ଜାଣିଛ । ଏଥର ଆଗାମୀ ବିଷୟ ଶୁଣ । ସେହି କନ୍ୟାମାନଙ୍କ ମଧ୍ୟରେ ଜଣକ ନାମ ଥିଲା ସ୍ୱଧା । ତାହାର ପିତୃଗଣଙ୍କ ସହିତ ବିବାହ ହୋଇଥିଲା । ସ୍ୱଧାର ତିନିଟି କନ୍ୟା ଥିଲେ, ସେମାନେ ଥିଲେ ସୌଭାଗ୍ୟଶାଳିନୀ ତଥା ଧର୍ମର ମୂର୍ତ୍ତି । ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠା କନ୍ୟାର ନାମ ଥିଲା 'ମେନା', ମଝିଆଣୀର ନାମ ଥିଲା 'ଧନ୍ୟା' ଓ ସବୁଠୁ ସାନ ଝିଅ ଥିଲା 'କଳାବତୀ' । ଏମାନେ ସମସ୍ତେ ପିତୃଗଣଙ୍କ ମାନସ କନ୍ୟା ଥିଲେ ଅର୍ଥାତ୍ ପିତୃଗଣଙ୍କ ମନରୁ ଉତ୍ପନ୍ନ ହୋଇଥିଲେ । ଏମାନେ ମାତାଙ୍କ ଗର୍ଭରୁ ଜନ୍ମ ନେଇ ନ ଥିଲେ । ଏହି ଅଯୋନିଜା କନ୍ୟାମାନେ ଲୋକବ୍ୟବହାର ଦୃଷ୍ଟିରୁ ସ୍ୱଧାଙ୍କ କନ୍ୟାରୂପେ ବିଦିତ ହେଇଥିଲେ । ଏମାନଙ୍କ ସୁନ୍ଦର ନାମକୁ କୀର୍ତ୍ତନ କରି ମନୁଷ୍ୟ ସମସ୍ତ ଅଭୀଷ୍ଟ ଫଳ ଲାଭ କରିଥାଏ । ଏମାନେ ଜଗତର ବନ୍ଦନୀୟା ଲୋକମାତା ଅଟନ୍ତି ଏବଂ ଉତ୍ତମ ଅଭ୍ୟୁଦୟରେ ସୁଶୋଭିତ ରହିଥାନ୍ତି । ଏମାନେ ଯୋଗିନୀ ଓ ଜ୍ଞାନନିଧି ଅଟନ୍ତି ତଥା ତ୍ରିଲୋକରେ ସର୍ବତ୍ର ବିଚରଣ କରି ପାରନ୍ତି । ହେ ମୁନୀଶ୍ୱର ! ଥରେ ଏ ତିନି ଭଉଣୀ ଭଗବାନ ବିଷ୍ଣୁଙ୍କୁ ଦର୍ଶନ କରିବା ନିମନ୍ତେ ତାଙ୍କ ନିବାସସ୍ଥାନ ଶ୍ୱେତଦ୍ୱୀପ ଗଲେ । ଭଗବାନଙ୍କୁ ପ୍ରଣାମ କରି ଓ ଭକ୍ତିପୂର୍ବକ ସ୍ତୁତି କରି ତାଙ୍କ ଆଜ୍ଞାରେ ସେହିଠାରେ ରହିଗଲେ । ସେତେବେଳେ ସେଠାରେ ସନ୍ଥମହାତ୍ମାଙ୍କର ବହୁତ ବଡ଼ ସମାଗମ ହୋଇଥିଲା ।।

ହେ ମୁନି! ସେତେବେଳେ ମୋର ପୁତ୍ର ସନକାଦି ସିଦ୍ଧଗଣ ମଧ୍ୟ ସେଠାରେ ପହଞ୍ଚିଲେ ଏବଂ ଶ୍ରୀହରିଙ୍କୁ ସ୍ତୁତି ଓ ବନ୍ଦନା କରି ତାଙ୍କ ଆଜ୍ଞାରେ ଆସନ ଗ୍ରହଣ କଲେ । ସନକାଦି ମୁନି ଦେବଗଣଙ୍କର ଆଦିପୁରୁଷ ଓ ଅଖିଳ ଭୁବନରେ ବନ୍ଦନୀୟ । ସେମାନେ ସେଠାରେ ଉପସ୍ଥିତ ହୋଇଥିବା ଦେଖି ଶ୍ୱେତଦୀପର ନିବାସୀମାନେ ଆସି ସେମାନଙ୍କୁ ପ୍ରଣାମ କରି ସେଠାରେ ଛିଡ଼ା ହୋଇଗଲେ । ମାତ୍ର ଏ ତିନି ଭଉଣୀ ସନକାଦିଙ୍କୁ ଦେଖି ମଧ୍ୟ ଛିଡ଼ା ହେଲେ ନାହିଁ । ଏହା ଫଳରେ ସନତ୍କୁମାର ସେମାନଙ୍କୁ (ମର୍ଯ୍ୟାଦା ରକ୍ଷା ଦୃଷ୍ଟିରୁ) ଅଭିଶାପ ଦେଇ କହିଲେ– ''ତୁମେମାନେ ଏହି ଗର୍ବ ହେତୁ ମାନବୀ ହୋଇ ଜନ୍ମ ହୁଅ ।'' ତା'ପରେ କନ୍ୟାମାନେ ପ୍ରାର୍ଥନା କରିବାରୁ ସେ ପ୍ରସନ୍ନ ହୋଇ କହିଲେ–

ସନତ୍କୁମାର କହିଲେ–ହେ ପିତୃଗଣଙ୍କ

କନ୍ୟାମାନେ ! ତୁମେମାନେ ପ୍ରସନ୍ନଚିତ୍ତ ହୋଇ ମୋ କଥା ଶୁଣ । ଏହା ତୁମ ପାଇଁ ଶୋକନାଶକାରୀ ଓ ସୁଖପ୍ରଦ ହେବ । ତୁମମାନଙ୍କ ମଧ୍ୟରେ ଯେ ବଡ଼, ସେ ଭଗବାନ ବିଷ୍ଣୁଙ୍କ ଅଂଶଭୂତ ହିମାଳୟ ଗିରିଙ୍କ ପତ୍ନୀ ହେବ । ତା'ଠାରୁ ଯେଉଁ କନ୍ୟା ଜାତ ହେବ, ସେ 'ପାର୍ବତୀ' ନାମରେ ବିଖ୍ୟାତ ହେବ । ପିତୃଗଣଙ୍କ ଦ୍ୱିତୀୟ କନ୍ୟା ଯୋଗିନୀ 'ଧନ୍ୟା' ରାଜା ଜନକଙ୍କ ପତ୍ନୀ ହେବ । ତା'ର କନ୍ୟାରୂପରେ ମହାଲକ୍ଷ୍ମୀ ଅବତୀର୍ଣ୍ଣ ହେବେ, ଯାହାଙ୍କ ନାମ ହେବ 'ସୀତା' । ପିତୃଗଣଙ୍କ ସବାସାନ ଝିଅ 'କଳାବତୀ' ଦ୍ୱାପରର ଅନ୍ତିମ ଭାଗରେ ବୃଷଭାନୁ ବୈଶ୍ୟର ପତ୍ନୀ ହେବ ଏବଂ ତାହାର ଅଲିଅଳୀ କନ୍ୟା 'ରାଧା' ନାମରେ ପ୍ରସିଦ୍ଧ ହେବ । ଯୋଗିନୀ ମେନକା (ମେନା) ପାର୍ବତୀଙ୍କ ବରଦାନରୁ ନିଜ ସ୍ୱାମୀଙ୍କ ସହ ସେହି ଶରୀରରେ କୈଳାସ ନାମକ ପରମପଦକୁ ପ୍ରାପ୍ତ ହେବ । ଧନ୍ୟା ଜନକକୁଳରେ ଉତ୍ପନ୍ନ ଜୀବନ୍ମୁକ୍ତ ମହାଯୋଗୀ ରାଜା ସୀରଧ୍ୱଜଙ୍କୁ ବିବାହ କରିବ ଏବଂ ତା'ଠାରୁ ଉତ୍ପନ୍ନ ଲକ୍ଷ୍ମୀସ୍ୱରୂପା ସୀତାଙ୍କ ପ୍ରଭାବରେ ବୈକୁଣ୍ଠଧାମକୁ ଯିବ । ବୃଷଭାନୁଙ୍କ ସଙ୍ଗେ ବୈବାହିକ ମଙ୍ଗଳକୃତ୍ୟ ସମ୍ପନ୍ନ ହେବା ହେତୁ ଜୀବନ୍ମୁକ୍ତ ଯୋଗିନୀ କଳାବତୀ ମଧ୍ୟ ନିଜ କନ୍ୟା ରାଧା ସହିତ ନିଶ୍ଚିତ ଗୋଲୋକଧାମକୁ ଯିବ । ବିପତ୍ତିରେ ନ ପଡ଼ିଲେ କ'ଣ କାହାରି ମହିମା ପ୍ରକାଶିତ ହୁଏ? ଉତ୍ତମ କର୍ମ କରୁଥିବା ପୁଣ୍ୟାତ୍ମା ବ୍ୟକ୍ତିର ବିପତ୍ତି ଟଳିଯିବା ପରେ ତାକୁ ଦୁର୍ଲଭ ସୁଖ ମିଳିଥାଏ । ଏବେ ତୁମେମାନେ ପ୍ରସନ୍ନ ମନରେ ଅନ୍ୟ ଗୋଟିଏ କଥା ବି ଶୁଣ । ଏହା ସୁଖ ପ୍ରଦାନ କରିବ । ମେନାଙ୍କ ପୁତ୍ରୀ ଜଗଦମ୍ବା ପାର୍ବତୀ ଅତ୍ୟନ୍ତ ଦୁଃସହ ତପ କରି ଭଗବାନ ଶିବଙ୍କ ପ୍ରିୟା ପତ୍ନୀ ହେବେ । ଧନ୍ୟାଙ୍କ ପୁତ୍ରୀ ଭଗବାନ ଶ୍ରୀରାମଙ୍କ ପତ୍ନୀ ହେବେ ଏବଂ ଲୋକାଗ୍ରହର ଆଶ୍ରୟ ନେଇ ଶ୍ରୀରାମଙ୍କ ସଙ୍ଗେ ବିହାର କରିବେ । ସାକ୍ଷାତ୍ ଗୋଲୋକ-ଧାମରେ ନିବାସକାରିଣୀ ରାଧା ହିଁ କଳାବତୀଙ୍କ ପୁତ୍ରୀ ହେବେ । ସେ ଗୁପ୍ତ ପ୍ରଣୟସୂତ୍ରରେ ବାନ୍ଧି ହୋଇ ଶ୍ରୀକୃଷ୍ଣଙ୍କ ପ୍ରିୟତମା ହେବେ ।

ବ୍ରହ୍ମା କହୁଛନ୍ତି—ନାରଦ ! ଏହିରୂପେ ସନତ୍କୁମାର ଶାପ ଛଳରେ ଦୁର୍ଲଭ ବର ପ୍ରଦାନ କଲେ ଏବଂ ସମସ୍ତଙ୍କ ଦ୍ୱାରା ପ୍ରଶଂସିତ ହୋଇ ଭାଇମାନଙ୍କ ସହିତ ସେଠାରୁ ଅନ୍ତର୍ହିତ ହୋଇଗଲେ । ତାତ ! ପିତୃଗଣଙ୍କର ସେହି ତିନି ମାନସ କନ୍ୟା ଏହି ପ୍ରକାରେ ଶାପମୁକ୍ତିର ବର ପାଇ ପ୍ରସନ୍ନଚିତ୍ତରେ ଅବିଳମ୍ବେ ନିଜ ସ୍ଥାନକୁ ଫେରିଗଲେ । (ଅଧ୍ୟାୟ ୧-୨)



## ଦେବଗଣଙ୍କର ହିମାଳୟଙ୍କ ନିକଟକୁ ଗମନ ଏବଂ ତାଙ୍କ ଦ୍ୱାରା ସତ୍କୃତ ହେବା ପରେ ତାଙ୍କୁ ଉମାଙ୍କ ଆରାଧନାର ବିଧି ଶିକ୍ଷା ଦେଇ ସେମାନେ ନିଜେ ମଧ୍ୟ ଏକ ସୁନ୍ଦର ସ୍ଥାନକୁ ଯାଇ ଦେବୀଙ୍କୁ ସ୍ତୁତି କରିବା ପ୍ରସଙ୍ଗ

ନାରଦ କହିଲେ—ମହାମତେ ! ଆପଣ ମେନାଙ୍କ ପୂର୍ବଜନ୍ମ ବିଷୟରେ ଅତି ଶୁଭ ଓ ଅଦ୍ଭୁତ କଥା କହିଲେ । ତାଙ୍କ ବିବାହ ପ୍ରସଙ୍ଗ ମଧ୍ୟ ମୁଁ ଶୁଣିଲି । ଏଥର ଆଗାମୀ ଚରିତ ବର୍ଣ୍ଣନା କରନ୍ତୁ ।

ବ୍ରହ୍ମା କହୁଛନ୍ତି—ନାରଦ ! ମେନା ସଙ୍ଗେ ବିବାହ କରି ହିମବାନ ନିଜ ଗୃହକୁ ଫେରିବାରୁ ତ୍ରିଲୋକରେ ବହୁତ ବଡ଼ ଉତ୍ସବ ପାଳନ ହେଲା । ହିମବାନ ମଧ୍ୟ ଅତ୍ୟନ୍ତ ପ୍ରସନ୍ନ ମନରେ ମେନା ସହିତ ନିଜର ସୁଖପ୍ରଦ ସଦନରେ ନିବାସ

କଲେ । ମୁନେ ! ଇତ୍ୟବସରରେ ବିଷ୍ଣୁ ପ୍ରମୁଖ ଦେବଗଣ ଓ ମହାତ୍ମା ମୁନିଗଣ ଗିରିରାଜଙ୍କ ପାଖକୁ ଗଲେ । ସେମାନଙ୍କୁ ଦେଖି ହିମବାନ ପ୍ରଶଂସାପୂର୍ବକ ସେମାନଙ୍କୁ ପ୍ରଣାମ କଲେ ଏବଂ ନିଜ ଭାଗ୍ୟକୁ ପ୍ରଶଂସା କରି ଭକ୍ତିଭାବରେ ସମସ୍ତଙ୍କୁ ଆଦର-ସତ୍କାର କଲେ । ପୁଣି ସେ ହାତ ଯୋଡ଼ି ନତମସ୍ତକ ହୋଇ ସେମାନଙ୍କୁ ପ୍ରେମପୂର୍ଣ୍ଣ-ଚିତ୍ତରେ ସ୍ତୁତି କରିବାକୁ ଉଦ୍ୟତ ହେଲେ । ଶୈଳରାଜଙ୍କ ଶରୀର ପୁଲକିତ ହୋଇ ଉଠିଲା, ତାଙ୍କ ନେତ୍ରରୁ ଆନନ୍ଦାଶ୍ରୁ ଝରିବାକୁ ଲାଗିଲା । ମୁନେ ! ହିମବାନ ଅତ୍ୟନ୍ତ ଆନନ୍ଦରେ ପ୍ରଣାମ କରି ବିନୀତଭାବରେ ଠିଆ ହୋଇ ବିଷ୍ଣୁ ପ୍ରଭୃତି ଦେବତାଙ୍କୁ କହିଲେ–

ହିମାଚଳ କହିଲେ–ଆଜି ମୋର ଜନ୍ମ ସଫଳ ହୋଇଗଲା, ମୋର ବହୁତ ବଡ଼ ତପସ୍ୟା ଫଳୀଭୂତ ହେଲା, ମୋର ଜ୍ଞାନ ଓ ସମସ୍ତ କ୍ରିୟା ମଧ୍ୟ ସଫଳ ହୋଇଗଲା । ଆଜି ମୁଁ ଧନ୍ୟ ହୋଇଗଲି । ଆପଣମାନଙ୍କ ପରି ବଡ଼ ବଡ଼ ଦେବତା ଏକତ୍ର ହୋଇ ପଦାର୍ପଣ କରିଥିବାରୁ ମୋର ସମଗ୍ର ଭୂମି ମଧ୍ୟ ଧନ୍ୟ ହୋଇଗଲା । ମୋର କୁଳ, ସ୍ତ୍ରୀ ଓ ସବୁକିଛି ଯେ ଧନ୍ୟ ହୋଇଗଲେ, ଏଥିରେ ସଂଶୟ ନାହିଁ । ମୋତେ ଆପଣଙ୍କ ସେବକ ମନେ କରି ଆନନ୍ଦ ମନରେ ଯଥୋଚିତ କାର୍ଯ୍ୟ ପାଇଁ ଆଦେଶ ପ୍ରଦାନ କରନ୍ତୁ । ହିମଗିରିଙ୍କ ବାକ୍ୟ ଶୁଣି ଦେବତାମାନେ ଖୁସୀ ହେଲେ ଏବଂ ନିଜ କାର୍ଯ୍ୟ ସଫଳ ହେବା ପରି ଅନୁଭବ କରି ତାଙ୍କୁ କହିଲେ–

ଦେବଗଣ କହିଲେ–ମହାପ୍ରାଜ୍ଞ ହିମାଚଳ ! ଆମର ହିତକର ବଚନ ଶୁଣ । ଆମେମାନେ ଯେଉଁ କାର୍ଯ୍ୟ ପାଇଁ ଏଠାକୁ ଆସିଛୁ, ତାହା କହୁଛୁ ଶୁଣ । ଗିରିରାଜ ! ପୂର୍ବରୁ ଯେଉଁ ଜଗଦମ୍ବା ଉମା ଦକ୍ଷକନ୍ୟା ସତୀଙ୍କ ରୂପରେ ଆବିର୍ଭୂତା ହୋଇଥିଲେ ଏବଂ ରୁଦ୍ରପତ୍ନୀ ହୋଇ ସୁଦୀର୍ଘ କାଳ ପର୍ଯ୍ୟନ୍ତ ଏ ଭୂମଣ୍ଡଳରେ କ୍ରୀଡ଼ା କଲେ, ସେ ନିଜ ପିତାଙ୍କ ଦ୍ୱାରା ଅନାଦୃତା ହେବାରୁ ନିଜ ପ୍ରତିଜ୍ଞାକୁ ସ୍ମରଣ କରି ଯଜ୍ଞରେ ଦେହତ୍ୟାଗ କରି ପରମଧାମକୁ ଚାଲିଗଲେ । ହିମଗିରି ! ଏ କଥା ସର୍ବତ୍ର ବିଖ୍ୟାତ ଓ ତୁମେ ମଧ୍ୟ ଏହା ଜାଣ । ସେହି ସତୀ ଯଦି ପୁନଃ ତୁମ ଗୃହରେ ପ୍ରକଟ ହୁଅନ୍ତେ, ଦେବଗଣ ବହୁତ ଉପକୃତ ହୁଅନ୍ତେ ।

ବ୍ରହ୍ମା କହୁଛନ୍ତି–ଗିରିରାଜ ହିମାଳୟ ବିଷ୍ଣୁ ପ୍ରଭୃତି ଦେବଗଣଙ୍କ କଥା ଶୁଣି ମନେ ମନେ ପ୍ରସନ୍ନ ହେଲେ ଏବଂ ଆଦରରେ ମସ୍ତକ ଅବନତ କରି କହିଲେ–''ପ୍ରଭୋ ! ଏଭଳି ହୋଇ ପାରିଲେ ତ ବହୁତ ବଡ଼ ସୌଭାଗ୍ୟର କଥା ।'' ତା'ପରେ ଦେବତାମାନେ ତାଙ୍କୁ ଅତି ଆଦରରେ ଉମାଙ୍କୁ ପ୍ରସନ୍ନ କରିବାର ବିଧି ଶିଖାଇବା ପରେ ସେମାନେ ନିଜେ ମଧ୍ୟ ସଦାଶିବଙ୍କ ପତ୍ନୀ ଉମାଙ୍କ ଶରଣକୁ ଗଲେ । ଏକ ସୁନ୍ଦର ସ୍ଥାନରେ ଏକତ୍ର ହୋଇ ଦେବଗଣ ଜଗଦମ୍ବାଙ୍କୁ ସ୍ମରଣ କଲେ ଏବଂ ବାରମ୍ବାର ପ୍ରଣାମ କରି ସେମାନେ ସେଠାରେ ଶ୍ରଦ୍ଧାପୂର୍ବକ ତାଙ୍କୁ ସ୍ତୁତି କଲେ ।

ଦେବତା କହିଲେ–ହେ ଶିବଲୋକବାସିନୀ ଦେବୀ ! ଉମେ ! ଜଗଦମ୍ବେ ! ସଦାଶିବପ୍ରିୟେ ! ଦୁର୍ଗେ ! ହେ ମହେଶ୍ୱରୀ ! ଆମେ ଆପଣଙ୍କୁ ନମସ୍କାର କରୁଛୁ । ଆପଣ ପବିତ୍ର ଶାନ୍ତସ୍ୱରୂପ ଶ୍ରୀଶକ୍ତି ଅଟନ୍ତି, ପରମ ପାବନ ପୁଷ୍ଟି ଅଟନ୍ତି । ଅବ୍ୟକ୍ତ ପ୍ରକୃତି ଓ ମହତତ୍ତ୍ୱ ଆପଣଙ୍କର ହିଁ ରୂପ । ଆମେ ଭକ୍ତିପୂର୍ବକ ଆପଣଙ୍କୁ ନମସ୍କାର କରୁଛୁ । ଆପଣ କଲ୍ୟାଣମୟୀ ଶିବା ଅଟନ୍ତି । ଆପଣଙ୍କ ବରଦ ହସ୍ତ କଲ୍ୟାଣକାରୀ । ଆପଣ ଶୁଦ୍ଧ, ସ୍ଥୂଳ, ସୂକ୍ଷ୍ମ ଓ ସମସ୍ତଙ୍କର ପରମ ଆଶ୍ରୟ । ଆପଣ ଅନ୍ତର୍ବିଦ୍ୟା ଓ ସୁବିଦ୍ୟାରେ ଅତ୍ୟନ୍ତ ପ୍ରସନ୍ନ ରହନ୍ତି । ଆପଣଙ୍କୁ ଆମେ ନମସ୍କାର କରୁଛୁ । ଆପଣ ହିଁ ଶ୍ରଦ୍ଧା, ଧୃତି, ଶ୍ରୀ ଏବଂ ସର୍ବବ୍ୟାପିନୀ ।

ଆପଣ ସୂର୍ଯ୍ୟଙ୍କ କିରଣ ଓ ଆପଣ ହିଁ ସମସ୍ତ ପ୍ରପଞ୍ଚକୁ ପ୍ରକାଶିତ କରନ୍ତି । ଆପଣ ବ୍ରହ୍ମାଣ୍ଡରୂପୀ ଶରୀରରେ ଓ ଜଗତର ଜୀବଙ୍କ ଠାରେ ରହି ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ତୃଣ ପର୍ଯ୍ୟନ୍ତ ସମସ୍ତଙ୍କୁ ପୁଷ୍ଟି ଯୋଗାଉଥିବା ଆଦିଦେବୀ ଅଟନ୍ତି । ଆପଣଙ୍କୁ ଆମେ ପ୍ରଣାମ କରୁଛୁ । ଆପଣ ହିଁ ବେଦମାତା ଗାୟତ୍ରୀ, ଆପଣ ହିଁ ସାବିତ୍ରୀ ଓ ଆପଣ ହିଁ ସରସ୍ୱତୀ । ଆପଣ ହିଁ ସମଗ୍ର ଜଗତ ନିମନ୍ତେ ବାର୍ତ୍ତା ନାମକ ବୃତ୍ତି, ପୁଣି ଆପଣ ହିଁ ଧର୍ମସ୍ୱରୂପା ବେଦତ୍ରୟୀ । ଆପଣ ସକଳ ଭୂତଙ୍କ ଠାରେ ନିଦ୍ରା ରୂପରେ ରହିଥାନ୍ତି । ସେମାନଙ୍କର କ୍ଷୁଧା ଓ ତୃପ୍ତି ମଧ୍ୟ ଆପଣ । ଆପଣ ହିଁ ତୃଷ୍ଣା, କାନ୍ତି, ଛବି, ତୁଷ୍ଟି ଓ ସଦା ସମସ୍ତ ପ୍ରକାର ଆନନ୍ଦର ଦାତ୍ରୀ । ଆପଣ ହିଁ ପୁଣ୍ୟକାରୀଙ୍କ ଗୃହରେ ଲକ୍ଷ୍ମୀରୂପେ ଏବଂ ପାପୀଙ୍କ ଗୃହରେ ସଦା ଜ୍ୟେଷ୍ଠା (ଲକ୍ଷ୍ମୀଙ୍କ ବଡ଼ ଭଉଣୀ ଦରିଦ୍ରତା) ରୂପେ ନିବାସ କରନ୍ତି । ଆପଣ ହିଁ ସମ୍ପୂର୍ଣ୍ଣ ଜଗତର ଶାନ୍ତି । ଆପଣ ହିଁ ଧାରଣକାରିଣୀ ଧାତ୍ରୀ ଏବଂ ପ୍ରାଣମାନଙ୍କ ପୋଷଣକାରିଣୀ ଶକ୍ତି । ଆପଣ ପଞ୍ଚଭୂତଙ୍କ ସାରତତ୍ତ୍ୱପ୍ରକାଶକାରିଣୀ ତତ୍ତ୍ୱସ୍ୱରୂପା । ଆପଣ ହିଁ ନୀତିଜ୍ଞଙ୍କର ନୀତି ତଥା ବ୍ୟବସାୟରୂପିଣୀ । ଆପଣ ହିଁ ସାମବେଦର ଗତି । ଆପଣ ହିଁ ଗ୍ରନ୍ଥି । ଆପଣ ହିଁ ଯଜୁର୍ମନ୍ତ୍ରର ଆହୁତି, ଋଗ୍‌ବେଦର ମାତ୍ରା ତଥା ଅଥର୍ବବେଦର ପରମ ଗତି । ହେ ଉମାଦେବୀ! ଆପଣ ପ୍ରାଣୀଙ୍କ ନାସା, କର୍ଣ୍ଣ, ନେତ୍ର, ମୁଖ, ଭୁଜ, ବକ୍ଷ ଓ ହୃଦୟରେ ଧୃତିରୂପରେ ରହି ସର୍ବଦା ସେମାନଙ୍କ ପାଇଁ ସୁଖ ବିସ୍ତାର କରନ୍ତି, ନିଦ୍ରାରୂପରେ ଜଗତଲୋକଙ୍କୁ ଅତ୍ୟନ୍ତ ସୁଭଗ ପ୍ରତୀତ ହୁଅନ୍ତି । ଏଣୁ ଜଗତର ସ୍ଥିତି ଓ ପାଳନ ପାଇଁ ଆମ ପ୍ରତି ପ୍ରସନ୍ନ ହୁଅନ୍ତୁ ।

ଏହିରୂପେ ଜଗଜ୍ଜନନୀ ସତୀ-ସାଧ୍ୱୀ ମହେଶ୍ୱରୀ ଉମାଙ୍କୁ ସ୍ତୁତି କରିସାରି ନିଜ ହୃଦୟରେ ବିଶୁଦ୍ଧ ପ୍ରେମ ଉଦୟ ହେବା ଉଦ୍ଦେଶ୍ୟରେ ଦେବଗଣ ତାଙ୍କ ଦର୍ଶନେଚ୍ଛାରେ ସେଠାରେ ଦଣ୍ଡାୟମାନ ରହିଲେ । (ଅଧ୍ୟାୟ ୩)



## ଉମାଦେବୀ ଦିବ୍ୟରୂପରେ ଦେବଗଣଙ୍କୁ ଦର୍ଶନ ଦେବାରୁ ଦେବଗଣଙ୍କ ନିବେଦନ ଏବଂ ଦେବୀ ଅବତାର ଗ୍ରହଣ କରିବାକୁ ସମ୍ମତ ହେବାରୁ ଦେବଗଣଙ୍କ ଆଶ୍ୱସ୍ତି

ବ୍ରହ୍ମା କହୁଛନ୍ତି—ନାରଦ ! ଦେବଗଣ ଏଭଳି ସ୍ତୁତି କରିବାରୁ ଦୁର୍ଗତିନାଶିନୀ କ୍ଳେଶହାରିଣୀ ଦେବୀ ଦୁର୍ଗା ସେମାନଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ । ସେ ପରମ ଅଦ୍ଭୁତ ଦିବ୍ୟ ରଥରେ ବିରାଜମାନ ଥିଲେ । ସେହି ରଥରେ ଘୁଙ୍ଗୁର ଲାଗିଥିଲା ଏବଂ କୋମଳ ଆସନ ବିଛା ହୋଇଥିଲା । ଦେବୀଙ୍କ ଶ୍ରୀଅଙ୍ଗ ପରମ ମନୋହର ତଥା କୋଟିସୂର୍ଯ୍ୟ ସମ ଉଦ୍ଭାସିତ ହେଉଥିଲା । ତାଙ୍କ ଚତୁର୍ଦ୍ଦିଗରେ ମଧ୍ୟ ତେଜୋରାଶି ବିଚ୍ଛୁରିତ ହେଉଥିଲା । ତାଙ୍କ ରୂପଛଟା ଥିଲା ଅତୁଳନୀୟ । ସଦାଶିବଙ୍କ ବିଳାସିନୀ ସେହି ମହାମାୟାଙ୍କ ତୁଳନା ଆଉ କାହା ସଙ୍ଗେ କରିବା କ'ଣ ସମ୍ଭବପର? ସେହି ଶିବଲୋକ-ନିବାସିନୀ ଦେବୀ ତ୍ରିବିଧ ଚିନ୍ମୟଗୁଣରେ ଯୁକ୍ତ ଥିଲେ । ପ୍ରାକୃତ ଗୁଣର ଅଭାବ ହେତୁ ତାଙ୍କୁ ନିର୍ଗୁଣା କୁହାଯାଏ । ସେ ନିତ୍ୟରୂପା । ଦୁଷ୍ଟଙ୍କ ଉପରେ ପ୍ରଚଣ୍ଡ କୋପ କରୁଥିବାରୁ ତାଙ୍କୁ ଚଣ୍ଡୀ କୁହାଯାଏ ସତ, କିନ୍ତୁ ସ୍ୱରୂପତଃ ସେ ଶିବା (କଲ୍ୟାଣମୟୀ) ଅଟନ୍ତି । ସେ ସକଳ କଷ୍ଟନାଶିନୀ ଓ ସମଗ୍ର ଜଗତର ମାତା । ସେ ହିଁ ପ୍ରଳୟକାଳରେ ମହାନିଦ୍ରା ହୋଇ

ସମସ୍ତଙ୍କୁ ନିଜ କୋଳରେ ଶୁଆଇ ଦେଇଥାନ୍ତି ଏବଂ ସମସ୍ତ ସଜ୍ଜନ ବା ଭକ୍ତଙ୍କୁ ସଂସାର-



ସାଗରରୁ ଉଦ୍ଧାର କରିଥାନ୍ତି । ଦେବୀ ଶିବାଙ୍କ ତେଜର ଆଧିକ୍ୟ କାରଣରୁ ଦେବଗଣ ତାଙ୍କୁ ଭଲଭାବେ ଦେଖିପାରିଲେ ନାହିଁ । ତେଣୁ ତାଙ୍କୁ ସ୍ପଷ୍ଟରୂପେ ଦର୍ଶନ କରିବା ଅଭିଳାଷରେ ଦେବଗଣ ପୁନଃ ତାଙ୍କୁ ସ୍ତୁତି କଲେ । ଦେବୀଙ୍କ କୃପାରୁ ବିଷ୍ଣୁ ପ୍ରମୁଖ ସମସ୍ତ ଦର୍ଶନାଭିଳାଷୀ ଦେବଗଣ ତାଙ୍କୁ ସ୍ପଷ୍ଟରୂପେ ଦର୍ଶନ କରି ପାରିଲେ ।

ଏହାପରେ ଦେବଗଣ କହିଲେ—ହେ ମହାଦେବୀ ! ଅମ୍ବିକେ ! ଆମେ ସର୍ବଦା ଆପଣଙ୍କର ଦାସ । ଆପଣ ପ୍ରସନ୍ନତାପୂର୍ବକ ଆମ ଗୁହାରି ଶୁଣନ୍ତୁ । ପୂର୍ବେ ଆପଣ ଦକ୍ଷଙ୍କ କନ୍ୟାରୂପେ ଅବତୀର୍ଣ୍ଣ ହୋଇ ଜଗତରେ ରୁଦ୍ରଦେବଙ୍କର ବଲ୍ଲଭା ହୋଇଥିଲେ । ସେତେବେଳେ ଆପଣ ବ୍ରହ୍ମାଦି ଦେବଗଣଙ୍କର ଦୁଃଖ ଦୂର କରିଥିଲେ । ତା'ପରେ ପିତାଙ୍କ ଠାରୁ ଅନାଦର ପାଇ ନିଜ ପ୍ରତିଜ୍ଞାନୁସାରେ ଦେହତ୍ୟାଗ କରି ନିଜ ଧାମକୁ ବାହୁଡ଼ିଗଲେ । ଏହାଦ୍ୱାରା ଭଗବାନ ହରଙ୍କୁ ବହୁତ ଦୁଃଖ ହେଲା । ହେ ମହେଶ୍ୱରୀ ! ଆପଣ ଚାଲିଆସିବାରୁ ଦେବଗଣଙ୍କ କାର୍ଯ୍ୟ ମଧ୍ୟ ପୂର୍ଣ୍ଣ ହୋଇ ପାରିଲା ନାହିଁ । ତେଣୁ ଆମେ ସବୁ ଦେବଗଣ ଓ ମୁନିଗଣ ବ୍ୟାକୁଳ ହୋଇ ଆପଣଙ୍କ ଶରଣକୁ ଆସିଛୁ । ହେ ମହେଶାନୀ ! ଆପଣ ଦେବଗଣଙ୍କ ମନୋରଥ ପୂର୍ଣ୍ଣ କରନ୍ତୁ, ଯାହାଫଳରେ ସନତ୍‌କୁମାରଙ୍କ ବଚନ ସଫଳ ହେବ । ଆପଣ ଧରାପୃଷ୍ଠରେ ପୁନଃ ଅବତାର ଗ୍ରହଣ କରି ରୁଦ୍ରଦେବଙ୍କର ପତ୍ନୀ ହୁଅନ୍ତୁ ଓ ଯଥାଯୋଗ୍ୟ ଲୀଳା କରନ୍ତୁ, ଯାହାଫଳରେ ଦେବତାଙ୍କୁ ସୁଖ ମିଳିବ । ଏହାଦ୍ୱାରା କୈଳାସବାସୀ ରୁଦ୍ରଦେବଙ୍କୁ ମଧ୍ୟ ସୁଖ ମିଳିବ । ଯେମିତି ସମସ୍ତେ ସୁଖୀ ହେବେ ଓ ସମସ୍ତଙ୍କ ଦୁଃଖ ନଷ୍ଟ ହୋଇଯିବ, ସେପରି କୃପା କରନ୍ତୁ ।

ବ୍ରହ୍ମା କହୁଛନ୍ତି—ନାରଦ ! ଏଭଳି କହି ବିଷ୍ଣୁ ଆଦି ସମସ୍ତ ଦେବତା ପ୍ରେମମଗ୍ନ ହୋଇଗଲେ ଏବଂ ଭକ୍ତିଭାବରେ ବିନମ୍ର ହୋଇ ନୀରବରେ ଛିଡ଼ା ହୋଇରହିଲେ । ଦେବତାଙ୍କର ସ୍ତୁତି ଶୁଣି ଶିବାଦେବୀ ବହୁତ ଖୁସୀ ହେଲେ । ପରିଣାମ ଉପରେ ବିଚାର କରି ଭକ୍ତବତ୍ସଳା ଦୟାମୟୀ ଉମାଦେବୀ ଆପଣା ପ୍ରଭୁ ଶିବଙ୍କୁ ସ୍ମରଣ କରିବା ପରେ ବିଷ୍ଣୁ ପ୍ରମୁଖ ଦେବଗଣଙ୍କୁ ସମ୍ବୋଧନ କରି କହିଲେ—

ଉମା କହିଲେ—ହେ ହରେ ! ହେ ବ୍ରହ୍ମା! ହେ ଦେବଗଣ ଓ ମୁନିଗଣ ! ତୁମେମାନେ ସବୁ ମନରୁ ବ୍ୟଥା ଦୂର କର ଓ ମୋ କଥା ଶୁଣ । ମୁଁ ତୁମମାନଙ୍କ ଉପରେ ଅତ୍ୟନ୍ତ ପ୍ରସନ୍ନ । ସମସ୍ତେ ନିଜ ନିଜ ସ୍ଥାନକୁ ଯାଅ ଓ ଖୁସୀ ମନରେ ରୁହ । ମୁଁ ମେନାଙ୍କ କନ୍ୟାରୂପରେ ଅବତରିତ ହୋଇ ତାଙ୍କୁ ସୁଖ ପ୍ରଦାନ କରିବି ଏବଂ ରୁଦ୍ରଦେବଙ୍କ ପତ୍ନୀ ହେବି । ଏହା ମୋର ଅତ୍ୟନ୍ତ ଗୁପ୍ତ ମତ । ଭଗବାନ ଶିବଙ୍କ ଲୀଳା ଅଦ୍ଭୁତ । ସେ ଜ୍ଞାନୀମାନଙ୍କୁ ମଧ୍ୟ ମୋହରେ

ପକାଇ ଦେଇପାରନ୍ତି । ଦେବଗଣ ! ଯେବେଠାରୁ ମୁଁ ଦକ୍ଷଯଜ୍ଞରେ ସ୍ୱାମୀଙ୍କ ଅପମାନ ଘଟଣାରେ ମର୍ମାହତ ହୋଇ ଦକ୍ଷଙ୍କ ଠାରୁ ଉତ୍ପନ୍ନ ଦେହକୁ ପରିତ୍ୟାଗ କଲି, ସେବେଠାରୁ ମୋ ସ୍ୱାମୀ କାଳାଗ୍ନି ରୁଦ୍ରଦେବ ମୋରି ଚିନ୍ତାରେ ନିମଗ୍ନ ହୋଇ ଦିଗମ୍ବର ହୋଇଯାଇଛନ୍ତି । ତାଙ୍କ ମନରେ ଏକଥା ବାରମ୍ବାର ଉଠୁଛି ଯେ "ଧର୍ମଜ୍ଞା ସତୀ ମୋ ରୋଷ ଦେଖି ପିତାଙ୍କ ଯଜ୍ଞକୁ ଗଲା, ହେଲେ ସେଠାରେ ମୋର ଅନାଦର ଦେଖି ଏବଂ ମୋ ପ୍ରତି ପ୍ରେମାଧିକ୍ୟ କାରଣରୁ ତାହା ସହି ନ ପାରି ନିଜ ଦେହତ୍ୟାଗ କରିଦେଲା ।" ଏଭଳି ଭାବି ସେ ଘରଦ୍ୱାର ଛାଡ଼ି ଅଲୌକିକ ବେଶ ଧାରଣ କରି ଯୋଗୀ ହୋଇଯାଇଛନ୍ତି । ମୋର ସ୍ୱରୂପଭୂତା ସତୀଙ୍କ ବିୟୋଗକୁ ସେ ସହ୍ୟ କରିପାରିଲେ ନାହିଁ । ଦେବଗଣ ! ଭଗବାନ ରୁଦ୍ରଙ୍କର ମଧ୍ୟ ଇଚ୍ଛା ଯେ ଭୂପୃଷ୍ଠରେ ହିମାଚଳ ଘରେ ମୋର ଅବତରଣ ହେଉ; କାରଣ ସେ ପୁନଃ ମୋର ପାଣିଗ୍ରହଣ କରିବାକୁ ଅଭିଳାଷୀ । ତେଣୁ ମୁଁ ରୁଦ୍ରଦେବଙ୍କ ସନ୍ତୋଷ ନିମନ୍ତେ ଅବତାର ନେବି ଏବଂ ଲୌକିକ ଗତି ଅନୁସରଣ କରି ହିମାଳୟଙ୍କ ପତ୍ନୀ ମେନାଙ୍କର କନ୍ୟା ହେବି ।

ବ୍ରହ୍ମା କହୁଛନ୍ତି—ନାରଦ ! ଏଭଳି କହିବା ପରେ ଜଗଦମ୍ବା ଶିବା ସେମାନଙ୍କ ସମ୍ମୁଖରୁ ଅଦୃଶ୍ୟ ହୋଇ ନିଜ ଲୋକକୁ ଚାଲିଗଲେ । ତା'ପରେ ବିଷ୍ଣୁ ପ୍ରଭୃତି ଦେବଗଣ ଓ ମୁନିଗଣ ହର୍ଷିତ ହୋଇ ସେହି ଦିଗକୁ ପ୍ରଣାମ କରି ନିଜ ନିଜ ଧାମକୁ ଫେରିଗଲେ । (ଅଧ୍ୟାୟ ୪)

***

## ଶିବାଦେବୀ ମେନାଙ୍କୁ ପ୍ରତ୍ୟକ୍ଷ ଦର୍ଶନ ଦେଇ ତାଙ୍କୁ ଅଭୀଷ୍ଟ ବରଦାନରେ ସନ୍ତୁଷ୍ଟ କରିବା ଏବଂ ମେନାଙ୍କ ଠାରୁ ମୈନାକର ଜନ୍ମ ପ୍ରସଙ୍ଗ

ନାରଦ ପଚାରିଲେ—ପିତା ! ଦୁର୍ଗାଦେବୀ ଅନ୍ତର୍ଦ୍ଧାନ ହୋଇଯିବା ପରେ ଓ ଦେବଗଣ ନିଜ ନିଜ ଧାମକୁ ଫେରିଯିବା ପରେ କ'ଣ ହେଲା ?

ବ୍ରହ୍ମା କହିଲେ—ବିପ୍ରବର ନାରଦ ! ବିଷ୍ଣୁ ପ୍ରଭୃତି ଦେବତା ହିମାଳୟ ଓ ମେନାଙ୍କୁ ଦେବୀଙ୍କ ଆରାଧନା କରିବାକୁ ଉପଦେଶ ଦେଇ ଚାଲିଯିବା ପରେ ଗିରିରାଜ ହିମାଚଳ ଓ ମେନା ଘୋର ତପସ୍ୟା କଲେ । ସେ ଦୁହେଁ ଦିନରାତି ଭକ୍ତିଯୁକ୍ତ ଚିତ୍ତରେ ଶିବ ଓ ଶିବାଙ୍କୁ ଚିନ୍ତନ-ଆରାଧନା କଲେ । ହିମବାନଙ୍କ ପତ୍ନୀ ମେନା ଅତି ପ୍ରସନ୍ନ ମନରେ ଶିବ ଓ ଶିବାଙ୍କୁ ପୂଜା କଲେ । ବ୍ରାହ୍ମଣଙ୍କୁ ଦାନ ଦେଲେ । ସନ୍ତାନ କାମନାରେ ମେନା ଚୈତ୍ରମାସଠାରୁ ଆରମ୍ଭ କରି ସତେଇଶ ବର୍ଷ ପର୍ଯ୍ୟନ୍ତ ପ୍ରତିଦିନ ଶିବ ଓ ଶିବାଙ୍କୁ ପୂଜା ଆରାଧନା କଲେ । ସେ ଅଷ୍ଟମୀ ଦିନ ଉପବାସ କରି ନବମୀ ଦିନ ଲଡ୍ଡୁ, ପିଠା, ଖିରି ଓ ଗନ୍ଧ-ପୁଷ୍ପ ଆଦି ଉପହାର ଅର୍ପଣ କରୁଥିଲେ । ଗଙ୍ଗାକୂଳରେ ଓଷଧିପ୍ରସ୍ଥରେ ଉମାଙ୍କର ମୃଣ୍ମୟୀ ପ୍ରତିମା ତିଆରି କରି ନାନାପ୍ରକାର ଦ୍ରବ୍ୟ ଅର୍ପଣ କରି ତାଙ୍କୁ ପୂଜା କରୁଥିଲେ । ମେନା ଦେବୀ କେବେ ନିରାହାର ରହୁଥିଲେ ତ କେବେ ବ୍ରତର ନିୟମ ପାଳନ କରୁଥିଲେ; କେବେ ଜଳ ପିଇ ତ କେବେ କେବଳ ବାୟୁ ଆହାର କରି ରହିଯାଉଥିଲେ । ବିଶୁଦ୍ଧ ତେଜରେ ଦୀପ୍ତିମତୀ ମେନା ଏହିପରି ଶିବାଙ୍କ ଠାରେ ଚିତ୍ତ ନିବେଶ କରି ସତେଇଶ ବର୍ଷ କଟାଇଦେଲେ । ସତେଇଶ ବର୍ଷ ପରେ ଜଗନ୍ମୟୀ ଶଙ୍କରକାମିନୀ ଜଗଦମ୍ବା ମେନାଙ୍କ ଭକ୍ତିରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ଅନୁଗ୍ରହ କରିବାକୁ ତାଙ୍କ ସମ୍ମୁଖରେ

ପ୍ରକଟ ହେଲେ । ତେଜୋମଣ୍ଡଳରେ ପରିବେଷ୍ଟିତା ଓ ଦିବ୍ୟ ଅବୟବରେ ସଂଯୁକ୍ତା ଉମାଦେବୀ ମେନାଙ୍କୁ ପ୍ରତ୍ୟକ୍ଷ ଦର୍ଶନ ଦେଇ ସହାସ୍ୟ ବଦନରେ କହିଲେ—

ଦେବୀ କହିଲେ—ଗିରିରାଜ ହିମାଳୟଙ୍କ ରାଣୀ ମହାସାଧ୍ୱୀ ମେନା ! ମୁଁ ତୁମ ତପସ୍ୟାରେ ଅତ୍ୟନ୍ତ ପ୍ରସନ୍ନ । ତୁମ ମନରେ ଯାହା ଅଭିଳାଷ ଅଛି, ପ୍ରକାଶ କର । ମେନା ! ତୁମେ ତପସ୍ୟା, ବ୍ରତ, ଓ ସମାଧିରେ ଯାହାସବୁ ପ୍ରାର୍ଥନା କରିଛ, ମୁଁ ତୁମକୁ ସେସବୁ ଅବଶ୍ୟ ପ୍ରଦାନ କରିବି । ମେନା ନିଜ ସମ୍ମୁଖରେ ପ୍ରକଟିତା କାଳିକାଦେବୀଙ୍କୁ ଦେଖି ପ୍ରଣାମ କଲେ ଏବଂ ଏହିପରି କହିଲେ—

ମେନା କହିଲେ—ଏବେ ତ ଆପଣଙ୍କର ପ୍ରତ୍ୟକ୍ଷ ଦର୍ଶନ ମିଳିଛି । ତେଣୁ ମୁଁ ପ୍ରଥମେ ଆପଣଙ୍କୁ ସ୍ତୁତି କରିବାକୁ ଚାହେଁ । କାଳିକେ ! ଏଥିନିମିତ୍ତ ଆପଣ ପ୍ରସନ୍ନ ହୁଅନ୍ତୁ ।

ବ୍ରହ୍ମା କହୁଛନ୍ତି—ନାରଦ ! ମେନା ଏପରି କହିବାରୁ ସର୍ବମୋହିନୀ କାଳିକାଦେବୀ ଅତ୍ୟନ୍ତ ଖୁସୀ ମନରେ ମେନାଙ୍କୁ ଦୁଇବାହୁରେ କୋଳକୁ ଟାଣିନେଇ ଗାଢ଼ ଆଲିଙ୍ଗନ କଲେ । ଏହାଫଳରେ ମେନାଙ୍କୁ ମହାଜ୍ଞାନ ପ୍ରାପ୍ତ ହୋଇଗଲା । ତା'ପରେ ମେନା ପ୍ରିୟ ବାଣୀରେ ନିଜ ସମ୍ମୁଖରେ ଉଭା ହୋଇଥିବା କାଳିକାଦେବୀଙ୍କୁ ସ୍ତୁତି କରିବା ଆରମ୍ଭ କଲେ ।

ମେନା କହିଲେ—ଜଗତର ଧାତ୍ରୀ, ମହାମାୟା, ଚଣ୍ଡିକା, ଲୋକଧାରିଣୀ ଓ ସକଳ ମନୋବାଞ୍ଛା ପୂର୍ଣ୍ଣକାରିଣୀ ମହାଦେବୀଙ୍କୁ ମୁଁ ପ୍ରଣାମ କରୁଛି । ନିତ୍ୟ ଆନନ୍ଦ ପ୍ରଦାନକାରିଣୀ ମାୟା, ଯୋଗନିଦ୍ରା-ସ୍ୱରୂପା, ଜଗଜ୍ଜନନୀ, ପଦ୍ମମାଳିନୀ, ନିତ୍ୟସିଦ୍ଧା ଉମାଦେବୀଙ୍କୁ ମୁଁ ପ୍ରଣାମ କରୁଛି । ଯେଉଁ ଦେବୀ ସମସ୍ତଙ୍କର ମାତାମହୀ, ନିତ୍ୟାନନ୍ଦମୟୀ, ଭକ୍ତଜନଙ୍କ ଶୋକନାଶିନୀ, ନାରୀମାନଙ୍କର ଓ ପ୍ରାଣୀମାନଙ୍କର ବୁଦ୍ଧିରୂପିଣୀ, ତାଙ୍କୁ ମୁଁ ପ୍ରଣାମ କରୁଛି । ହେ ଦେବୀ ! ଆପଣ ଯତିମାନଙ୍କ ଅଜ୍ଞାନମୟ ବନ୍ଧନ



ନାଶର ହେତୁଭୂତା ବ୍ରହ୍ମବିଦ୍ୟା । ତେବେ ପୁଣି ମୋ'ପରି ନାରୀ ଅବା ଆପଣଙ୍କ ପ୍ରଭାବକୁ କ'ଣ ବର୍ଣ୍ଣନା କରିପାରିବ ! ଅଥର୍ବବେଦର ହିଂସା (ମାରଣ ଆଦି ପ୍ରୟୋଗ) ହେଉଛନ୍ତି ଆପଣ । ହେ ଦେବୀ ! ଆପଣ ମୋର ଅଭୀଷ୍ଟ ଫଳ ପ୍ରଦାନ କରନ୍ତୁ । ଭାବହୀନ (ଅଣାକାର) ଓ ଅଦୃଶ୍ୟ ନିତ୍ୟାନିତ୍ୟ ତନ୍ମାତ୍ରମାନଙ୍କ ସହିତ ଆପଣ ହିଁ ପଞ୍ଚଭୂତସମୁଦାୟର ସଂଯୋଗ ଘଟାଇଥାନ୍ତି । ଆପଣ ହିଁ ଶାଶ୍ୱତ ଶକ୍ତି । ଆପଣଙ୍କ ସ୍ୱରୂପ ନିତ୍ୟ ଅଟେ । ଆପଣ ସମୟେ ସମୟେ ଯୋଗଯୁକ୍ତା ଓ ସମର୍ଥା ନାରୀଙ୍କ ରୂପରେ ପ୍ରକଟ ହୁଅନ୍ତି । ଆପଣ ହିଁ ଜଗତର ଯୋନି ଓ ଆଧାରଶକ୍ତି । ଆପଣ ହିଁ ପ୍ରାକୃତ ତତ୍ତ୍ୱର ଉର୍ଦ୍ଧ୍ୱରେ ନିତ୍ୟା ପ୍ରକୃତି ନାମରେ କଥିତ ହୁଅନ୍ତି । ଯେଉଁ ନିତ୍ୟା ବିଦ୍ୟା ଦ୍ୱାରା ବ୍ରହ୍ମର ସ୍ୱରୂପକୁ ଆୟତ୍ତ କରାଯାଇ ପାରେ, ଆପଣ ହିଁ ସେହି ବିଦ୍ୟା । ମାତା ! ଆଜି ମୋ ଉପରେ ପ୍ରସନ୍ନ ହୁଅନ୍ତୁ । ଆପଣ ହିଁ ଅଗ୍ନିରେ ବିଦ୍ୟମାନ ଦାହିକା

ଶକ୍ତି ଓ ସୂର୍ଯ୍ୟକିରଣର ପ୍ରକାଶିକା ଶକ୍ତି । ଚନ୍ଦ୍ରମାରେ ଥିବା ଆହ୍ଲାଦିକା ଶକ୍ତି ମଧ୍ୟ ଆପଣ । ଆପଣଙ୍କୁ ମୁଁ ସ୍ତବନ ଓ ବନ୍ଦନ କରୁଛି । ଆପଣ ସ୍ତ୍ରୀଲୋକଙ୍କର ବହୁତ ପ୍ରିୟ । ଊର୍ଦ୍ଧ୍ୱରେତା ବ୍ରହ୍ମଚାରୀମାନଙ୍କର ଧ୍ୟେୟଭୂତା ନିତ୍ୟା ବ୍ରହ୍ମଶକ୍ତି ମଧ୍ୟ ଆପଣ । ସମଗ୍ର ଜଗତର ବାଞ୍ଛା ଓ ଶ୍ରୀହରିଙ୍କର ମାୟା ମଧ୍ୟ ଆପଣ । ଆପଣ ହିଁ ଇଚ୍ଛାନୁସାରେ ରୂପ ଧାରଣ କରି ସୃଷ୍ଟି, ପାଳନ ଓ ସଂହାରକାରିଣୀ ହୋଇ ସେହି ସବୁ କାର୍ଯ୍ୟକୁ ସମ୍ପାଦନ କରନ୍ତି ତଥା ବ୍ରହ୍ମା, ବିଷ୍ଣୁ ଏବଂ ରୁଦ୍ରଙ୍କ ଶରୀରର ମଧ୍ୟ ହେତୁଭୂତା ଅଟନ୍ତି । ହେ ଦେବୀ ! ମୋ ଉପରେ ପ୍ରସନ୍ନ ହୁଅନ୍ତୁ । ଆପଣଙ୍କୁ ମୋର ପୁନଃ ନମସ୍କାର ।

ବ୍ରହ୍ମା କହୁଛନ୍ତି–ନାରଦ ! ମେନାଙ୍କ ମୁଖରୁ ଏପରି ସ୍ତୁତି ଶୁଣି କାଳିକା ପୁନଃ କହିଲେ– "ହିମାଚଳପ୍ରିୟେ ! ତୁମେ ତୁମର ମନୋବାଞ୍ଛିତ ବର ମାଗ । ତୁମେ ମୋ ପାଇଁ ପ୍ରାଣ ପରି ପ୍ରିୟ । ତୁମର ଯାହା ଇଚ୍ଛା, ମାଗ; ମୁଁ ନିଶ୍ଚୟ ଦେବି । ତୁମ ପାଇଁ ମୋ ପକ୍ଷେ କିଛି ଅଦେୟ ନାହିଁ ।" ମହେଶ୍ୱରୀ ଉମାଙ୍କର ଅମୃତତୁଲ୍ୟ ମଧୁର ବାଣୀ ଶୁଣି ହିମଗିରିକାମିନୀ ମେନା ଅତ୍ୟନ୍ତ ସନ୍ତୋଷ ଲାଭ କଲେ । ସେ କହିଲେ–"ହେ ଶିବେ ! ଆପଣଙ୍କର ଜୟ ହେଉ । ଜୟ ହେଉ ! ହେ ମହେଶ୍ୱରୀ ! ଜଗଦମ୍ବିକେ ! ଯଦି ମୁଁ ବର ପାଇବାର ଯୋଗ୍ୟ, ତେବେ ମୁଁ ଏହି ଶ୍ରେଷ୍ଠ ବର ମାଗୁଛି । ଜଗଦମ୍ବେ ! ପ୍ରଥମେ ମୋର ଶହେ ପୁତ୍ର ହୁଅନ୍ତୁ ଏବଂ ସେମାନେ ଦୀର୍ଘାୟୁ ହେବା ସହ ବଳପରାକ୍ରମରେ ତଥା ଋଦ୍ଧି-ସିଦ୍ଧିରେ ସମ୍ପନ୍ନ ହୁଅନ୍ତୁ । ସେହି ପୁତ୍ରମାନଙ୍କ ପରେ ମୋର ଗୋଟିଏ ରୂପ-ଗୁଣସମ୍ପନ୍ନା କନ୍ୟା ହେଉ । ସେ ଉଭୟକୁଳ ପାଇଁ ଆନନ୍ଦଦାୟିନୀ ହେଉ ଓ ତ୍ରିଲୋକରେ ପୂଜିତା ହେଉ । ଜଗଦମ୍ବିକେ ! ଶିବେ ! ଆପଣ ହିଁ ଦେବତାଙ୍କ କାର୍ଯ୍ୟସିଦ୍ଧି କରିବା ନିମନ୍ତେ ମୋ' କନ୍ୟାରୂପେ ଅବତରିତ ହୋଇ ରୁଦ୍ରଦେବଙ୍କ ପତ୍ନୀ ହୁଅନ୍ତୁ ଏବଂ ତଦନୁରୂପ ଲୀଳା କରନ୍ତୁ ।"

ବ୍ରହ୍ମା କହୁଛନ୍ତି–ନାରଦ ! ମେନକାଙ୍କ କଥା ଶୁଣି ପ୍ରସନ୍ନହୃଦୟା ଦେବୀ ଉମା ତାଙ୍କ ମନୋରଥ ପୂର୍ଣ୍ଣ କରିବା ପାଇଁ ସ୍ମିତହାସପୂର୍ବକ କହିଲେ–

ଦେବୀ କହିଲେ–ପ୍ରଥମେ ତୁମର ଶହେ ବଳବାନ୍ ପୁତ୍ର ହେବେ । ସେମାନଙ୍କ ମଧ୍ୟରୁ ଯେ ପ୍ରଥମେ ଜନ୍ମିବ, ସେ ସବୁଠାରୁ ଅଧିକ ବଳବାନ୍ ଓ ପ୍ରଧାନ ହେବ । ତୁମ ଭକ୍ତିରେ ସନ୍ତୁଷ୍ଟ ହୋଇ ମୁଁ ତୁମଠାରୁ କନ୍ୟାରୂପରେ ଅବତୀର୍ଣ୍ଣ ହେବି ଏବଂ ସମସ୍ତ ଦେବତାଙ୍କ ଦ୍ୱାରା ସେବିତ ହୋଇ ସେମାନଙ୍କର କାର୍ଯ୍ୟ ସାଧିତ କରିବି ।

ଏତିକି କହି ଜଗଦ୍ଧାତ୍ରୀ ପରମେଶ୍ୱରୀ କାଳିକା ମେନକାଙ୍କ ନେତ୍ର ସମ୍ମୁଖରୁ ଅଦୃଶ୍ୟ ହୋଇଗଲେ । ତାତ ! ମହେଶ୍ୱରୀଙ୍କ ଠାରୁ ଅଭୀଷ୍ଟ ବର ପାଇ ମେନକାଙ୍କ ହୃଦୟ ଅପାର ହର୍ଷରେ ପୂରି ଉଠିଲା । ତାଙ୍କର ତପସ୍ୟାଜନିତ ସମସ୍ତ କ୍ଳେଶ ନଷ୍ଟ ହୋଇଗଲା । ମୁନେ ! ତା'ପରେ କାଳକ୍ରମେ ମେନାଙ୍କର ଗର୍ଭ ରହିଲା ଓ ତାହା ବଢ଼ିବାକୁ ଲାଗିଲା । ଯଥାସମୟରେ ତାଙ୍କ ଠାରୁ ଗୋଟିଏ ସୁନ୍ଦର ପୁତ୍ର ଜାତ ହେଲା, ତାହାର ନାମ ହେଲା ମୈନାକ । ସେ ସମୁଦ୍ର ସହିତ ଉତ୍ତମ ମୈତ୍ରୀ ସ୍ଥାପନ କଲା । ସେହି ଅଦ୍ଭୁତ ପର୍ବତ ନାଗବଧୂମାନଙ୍କର ଉପଭୋଗର ସ୍ଥଳ ହୋଇଛି । ତାହାର ସମସ୍ତ ଅଙ୍ଗ ଶ୍ରେଷ୍ଠ । ହିମାଳୟଙ୍କ ଶହେ ପୁତ୍ରଙ୍କ ମଧ୍ୟରେ ସେ ସବୁଠୁ ଶ୍ରେଷ୍ଠ ଓ ସର୍ବାଧିକ ବଳପରାକ୍ରମସମ୍ପନ୍ନ । ତାଙ୍କ ଠାରୁ ଉତ୍ପନ୍ନ ତଥା ତାଙ୍କ ପରେ ଉତ୍ପନ୍ନ ସମସ୍ତ ପର୍ବତଙ୍କ ମଧ୍ୟରେ ଏକମାତ୍ର ମୈନାକ ପର୍ବତ ହିଁ ପର୍ବତରାଜ ପଦରେ ପ୍ରତିଷ୍ଠିତ । (ଅଧ୍ୟାୟ ୫)

***

# ହିମବାନଙ୍କ ହୃଦୟରେ ତଥା ମେନାଙ୍କ ଗର୍ଭରେ ଦେବୀ ଉମାଙ୍କ ବାସ, ଦେବଗଣଙ୍କ ଦ୍ୱାରା ଗର୍ଭସ୍ଥ ଦେବୀଙ୍କୁ ସ୍ତୁତି, ଦେବୀଙ୍କର ଦିବ୍ୟରୂପରେ ଆବିର୍ଭାବ, ମେନାଙ୍କ ସହ କଥାବାର୍ତ୍ତା ତଥା ଦେବୀଙ୍କର ନବଜାତ ଶିଶୁ ରୂପରେ ପରିବର୍ତ୍ତିତ ହେବା ପ୍ରସଙ୍ଗ

ବ୍ରହ୍ମା କହୁଛନ୍ତି–ନାରଦ ! ତା'ପରେ ମେନା ଓ ହିମାଳୟ ଆଦରପୂର୍ବକ ଦେବକାର୍ଯ୍ୟ ସାଧନ ଉଦ୍ଦେଶ୍ୟରେ କନ୍ୟା ଲାଭ କରିବା ପାଇଁ ଜଗନ୍ମାତା ଭଗବତୀ ଉମାଙ୍କୁ ଚିନ୍ତନ କରିବାକୁ ଲାଗିଲେ । ସମସ୍ତ ଅଭୀଷ୍ଟ ପ୍ରଦାନକାରିଣୀ ମହେଶ୍ୱରୀ ଉମା ନିଜର ପୂର୍ଣ୍ଣଅଂଶ ସହିତ ଗିରିରାଜ ହିମବାନଙ୍କ ଚିତ୍ତରେ ପ୍ରବିଷ୍ଟ ହେଲେ । ଯାହାଫଳରେ ତାଙ୍କ ଶରୀରରେ ଅପୂର୍ବ ଓ ସୁନ୍ଦର ପ୍ରଭା ବିକଶିତ ହେଲା । ମହାମନା ହିମାଳୟ ପ୍ରସନ୍ନତାରେ ଓ ବିଶେଷ ଶୋଭାରେ ଦୀପ୍ତିମନ୍ତ ଦିଶିଲେ ଏବଂ ଅଦ୍ଭୁତ ତେଜୋରାଶିସମ୍ପନ୍ନ ଅଗ୍ନି ପରି ଅଜେୟ ମନେ ହେଲେ । ସେ ସୁମଙ୍ଗଳ ବେଳାରେ ମେନାଙ୍କ ଉଦରରେ ଶିବାଙ୍କର ସେହି ପରିପୂର୍ଣ୍ଣ ଅଂଶକୁ ଆଧାନ କରିଦେଲେ । ଗିରିରାଜଙ୍କ ପତ୍ନୀ ମେନା ଏହିରୂପେ ହିମବାନଙ୍କ ହୃଦୟରେ ବିରାଜମାନ କରୁଣାମୟୀ ଦେବୀଙ୍କ କୃପାରୁ ତାଙ୍କୁ ଗର୍ଭରେ ଧାରଣ କଲେ । ସମସ୍ତ ଜଗତର ନିବାସଭୂତା ଦେବୀ ଗର୍ଭକୁ ଆସିବାରୁ ହିମବାନପ୍ରିୟା ମେନା ତେଜୋମଣ୍ଡଳ ମଧ୍ୟଭାଗରେ ସ୍ଥିତ ହୋଇ ଅଧିକ ଶୋଭା ପାଇଲେ । ହିମବାନ ନିଜ ପ୍ରିୟା ଶୁଭାଙ୍ଗୀ ମେନାଙ୍କୁ ଏଭଳି ଶୋଭାସମ୍ପନ୍ନ ଦେଖି ବହୁତ ପ୍ରସନ୍ନତା ଅନୁଭବ କଲେ । ଜଗଦମ୍ବା ଗର୍ଭକୁ ଆସିଥିବାରୁ ମେନା ମହାନ୍ ତେଜସମ୍ପନ୍ନ ହୋଇଯାଇଥିଲେ । ମୁନେ ! ସେହି ଅବସରରେ ବିଷ୍ଣୁ ପ୍ରଭୃତି ଦେବଗଣ ଓ ମୁନିଗଣ ସେଠାକୁ ଆସି ଗର୍ଭସ୍ଥ ଦେବୀଙ୍କୁ ସ୍ତୁତି କଲେ ଓ ତା'ପରେ ମହେଶ୍ୱରଙ୍କୁ ନାନା ପ୍ରକାରେ ସ୍ତୁତି କରି ଆନନ୍ଦରେ ନିଜ ନିଜ ଧାମକୁ ଫେରିଗଲେ । ନଅ ମାସ ବିତି ଦଶମ ମାସ ପୂର୍ଣ୍ଣ ହେବାକୁ ବସିଲା । ଗର୍ଭସ୍ଥ ସମୟ ପୂର୍ଣ୍ଣ ହେବାରୁ ଜଗଦମ୍ବା କାଳିକା ସାଧାରଣ ଶିଶୁ ପରି ଭୂମିଷ୍ଠ ହେଲେ । ସେତେବେଳେ ଆଦ୍ୟାଶକ୍ତି ସତୀ-ସାଧ୍ୱୀ ଶିବା ପ୍ରଥମେ ମେନାଙ୍କ ସମ୍ମୁଖରେ ଆପଣା ଦିବ୍ୟ ସ୍ୱରୂପରେ ପ୍ରକଟ ହେଲେ । ବସନ୍ତ ଋତୁର ଚୈତ୍ରମାସ ନବମୀ ତିଥି ମୃଗଶିରା ନକ୍ଷତ୍ରରେ ଅର୍ଦ୍ଧରାତ୍ର ସମୟରେ ଚନ୍ଦ୍ରମଣ୍ଡଳରୁ ଆକାଶଗଙ୍ଗାର ଆବିର୍ଭାବ ହେବା ପରି ମେନକାଙ୍କ ଉଦରରୁ ଦେବୀ ଶିବା ନିଜ ସ୍ୱରୂପରେ ଆବିର୍ଭୂତା ହେଲେ । ସେତେବେଳେ ସମଗ୍ର ସଂସାରରେ ପ୍ରସନ୍ନତା ଖେଳିଗଲା । ସୁନ୍ଦର ଓ ସୁଗନ୍ଧିତ ଅନୁକୂଳ ବାୟୁ ମୃଦୁ ମୃଦୁ ପ୍ରବାହିତ ହେଲା । ଜଳବୃଷ୍ଟି ସହିତ ପୁଷ୍ପବୃଷ୍ଟି ହେବାକୁ ଲାଗିଲା । ବିଷ୍ଣୁ ଆଦି ସମସ୍ତ ଦେବତା ସୁଖୀ ହୋଇ ସେଠାକୁ ଆସି ପ୍ରସନ୍ନ ମନରେ ଜଗଦମ୍ବାଙ୍କୁ ଦର୍ଶନ କଲେ ଏବଂ ଶିବଲୋକନିବାସିନୀ ଦିବ୍ୟରୂପା ମହାମାୟା ଶିବକାମିନୀ ମଙ୍ଗଳମୟୀ କାଳିକାମାତାଙ୍କୁ ସ୍ତବନ କଲେ ।

ହେ ନାରଦ ! ଦେବତାମାନେ ସ୍ତୁତି କରି ଚାଲିଯିବା ପରେ ମେନା ନୀଳକମଳଦଳତୁଲ୍ୟ ଶ୍ୟାମକାନ୍ତି ଘେନି ପ୍ରକଟିତା ଦେବୀଙ୍କୁ ଦେଖି ଅତିଶୟ ଆନନ୍ଦ ଅନୁଭବ କଲେ । ଦେବୀଙ୍କ ଦିବ୍ୟରୂପକୁ ଦର୍ଶନ କରି ଗିରିପ୍ରିୟା ମେନାଙ୍କୁ ଜ୍ଞାନଲାଭ ହେଲା । ସେ ତାଙ୍କୁ ପରମେଶ୍ୱରୀ ମଣି ଅତ୍ୟନ୍ତ ହର୍ଷିତା ଓ ଉଲ୍ଲସିତା ହୋଇ ସନ୍ତୋଷ ମନରେ କହିଲେ ।

ମେନା କହିଲେ–ଜଗଦମ୍ବେ ! ଆପଣ ବହୁତ ବଡ଼ କୃପା କରି ମୋ ସମ୍ମୁଖରେ ଆଜି ପ୍ରକଟ ହେଲେ । ଅମ୍ବିକେ ! ଆପଣଙ୍କ ଶୋଭା ଅନୁପମ । ଶିବେ ! ଆପଣ ସମସ୍ତ ଶକ୍ତିଙ୍କ ମଧ୍ୟରେ ଆଦ୍ୟାଶକ୍ତି ତଥା ତ୍ରିଲୋକର ଜନନୀ । ଆପଣ ସର୍ବଦା ଭଗବାନ ଶିବଙ୍କର ପ୍ରିୟା ଓ ସମସ୍ତ ଦେବତାଙ୍କ ଦ୍ୱାରା ପ୍ରଶଂସିତା ପରାଶକ୍ତି । ହେ ମହେଶ୍ୱରୀ ! ଆପଣ କୃପା କରି ଏହି ରୂପରେ ହିଁ ମୋ ଧ୍ୟାନପଥରେ ସ୍ଥିତ ହୋଇଯାଆନ୍ତୁ । ଏହାଛଡ଼ା ମୋ କନ୍ୟା ପରି ପ୍ରତ୍ୟକ୍ଷ ଦର୍ଶନୀୟ ରୂପ ଧାରଣ କରନ୍ତୁ ।

ବ୍ରହ୍ମା କହୁଛନ୍ତି–ନାରଦ ! ପର୍ବତପତ୍ନୀ ମେନାଙ୍କର ଏହି କଥା ଶୁଣି ଶିବାଦେବୀ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ଗିରିପ୍ରିୟାଙ୍କୁ ଏହିପରି କହିଲେ–

ଦେବୀ କହିଲେ–ହେ ମେନା ! ତୁମେ ତତ୍ପରତାପୂର୍ବକ ମୋର ବହୁତ ସେବା କରିଛ । ସେତେବେଳେ ତୁମ ଭକ୍ତିରେ ପ୍ରସନ୍ନ ହୋଇ ମୁଁ ବର ଦେବା ପାଇଁ ତୁମ ନିକଟକୁ ଆସିଥିଲି । ମୁଁ ବର ମାଗିବାକୁ କହିବାରୁ ତୁମେ ଯେଉଁ ବର ମାଗିଥିଲ, ତାହା ଏହିପରି ଥିଲା । ତୁମେ କହିଲ–'ହେ ମହାଦେବୀ ! ଆପଣ ମୋର କନ୍ୟା ହୁଅନ୍ତୁ ଏବଂ ଦେବତାଙ୍କର ହିତ ସାଧନ କରନ୍ତୁ । ସେତେବେଳେ ମୁଁ 'ତଥାସ୍ତୁ' କହି ତୁମକୁ ସାଦର ସେହି ବର ଦେଇ ସ୍ୱଧାମକୁ ବାହୁଡ଼ି ଯାଇଥିଲି । ହେ ଗିରିକାମିନୀ ! ସେହି ବର ଅନୁସାରେ ଏବେ ମୁଁ ତୁମର କନ୍ୟା ହୋଇଛି । ଆଜି ମୁଁ ତୁମକୁ ଯେଉଁ ଦିବ୍ୟ ରୂପରେ ଦର୍ଶନ ଦେଲି, ତାହାର ଉଦ୍ଦେଶ୍ୟ କେବଳ ଏତିକି ଯେ ତୁମକୁ ମୋ ସ୍ୱରୂପର ସ୍ମରଣ ହୋଇଯାଉ । ଅନ୍ୟଥା ମନୁଷ୍ୟରୂପରେ ପରିବର୍ତ୍ତିତ ହେବା ପରେ ତୁମେ ମୋ ବିଷୟରେ ଅପରିଚିତ ରହିଯାଇଥାନ୍ତ । ଏବେ ତୁମେ ଦୁହେଁ ମୋ ପ୍ରତି କନ୍ୟାଭାବ ରଖି ଅଥବା ମୋତେ ଦିବ୍ୟଭାବରେ ଚିନ୍ତନ କରି ସ୍ନେହରେ ପାଳନ କର । ଏହାଫଳରେ ତୁମ ଦୁହିଙ୍କୁ ଉତ୍ତମ ଗତି ପ୍ରାପ୍ତ ହେବ । ମୁଁ ପୃଥିବୀପୃଷ୍ଠରେ ଅଦ୍ଭୁତ ଲୀଳା କରି ଦେବତାଙ୍କ କାର୍ଯ୍ୟ ସାଧିତ କରିବି । ମୁଁ ଭଗବାନ ଶମ୍ଭୁଙ୍କ ପତ୍ନୀ ହେବି ଏବଂ ସଜ୍ଜନଙ୍କୁ ସଂକଟରୁ ଉଦ୍ଧାର କରିବି ।

ଏତିକି କହି ଜଗନ୍ମାତା ଶିବା ନୀରବ ହୋଇଗଲେ ଏବଂ ମାତା ମେନାଙ୍କ ନେତ୍ର ସମ୍ମୁଖରେ ତତ୍କ୍ଷଣାତ୍ ନବଜାତ ଶିଶୁରୂପରେ ପରିବର୍ତ୍ତିତ ହୋଇଗଲେ । (ଅଧ୍ୟାୟ ୬)



## ପାର୍ବତୀଙ୍କ ନାମକରଣ ଓ ବିଦ୍ୟାଧ୍ୟୟନ, ହିମବାନଙ୍କ ଗୃହରେ ନାରଦଙ୍କ ପଦାର୍ପଣ, ପାର୍ବତୀଙ୍କ ହସ୍ତରେଖା ଦେଖି ଭବିଷ୍ୟତ ନିରୂପଣ, ଚିନ୍ତିତ ହିମବାନଙ୍କୁ ଆଶ୍ୱାସନା ଦେଇ ପାର୍ବତୀଙ୍କ ବିବାହ ଶିବଙ୍କ ସହିତ କରିବାକୁ ପରାମର୍ଶ ଓ ତାଙ୍କ ସନ୍ଦେହ ନିବାରଣ

ବ୍ରହ୍ମା କହୁଛନ୍ତି–ନାରଦ ! ଶିବାଦେବୀ ମେନାଙ୍କ ସମ୍ମୁଖରେ ମହାତେଜସ୍ୱିନୀ କନ୍ୟାରୂପରେ ପରିବର୍ତ୍ତିତ ହୋଇ ଲୌକିକ ରୀତି ଅନୁସରଣରେ କାନ୍ଦିବାକୁ ଲାଗିଲେ । ତାଙ୍କର ମନୋହର ରୋଦନ ଶୁଣି ସମସ୍ତ ନାରୀ ହର୍ଷରେ ଉତ୍ଫୁଲ୍ଲିତ ହୋଇଉଠିଲେ ଓ ଅତି ଆନନ୍ଦରେ କୌତୂହଳୀ

ହୋଇ ସେଠାକୁ ଦୌଡ଼ି ଆସିଲେ । ନୀଳପଦ୍ମତୁଲ୍ୟ ଶ୍ୟାମ ଆଭାଯୁକ୍ତା ସେହି ତେଜସ୍ୱିନୀ ଓ ମନୋରମା କନ୍ୟାକୁ ଦେଖି ଗିରିରାଜ ହିମାଳୟ ଅତିଶୟ ଆନନ୍ଦରେ ନିମଗ୍ନ ହୋଇଗଲେ । ତା'ପରେ ସେ ସୁନ୍ଦର ମୁହୂର୍ତ୍ତରେ ମୁନିମାନଙ୍କ ଗହଣରେ ସେହି କନ୍ୟାର 'କାଳୀ' ପ୍ରଭୃତି ସୁଖଦାୟକ ନାମ ରଖିଲେ । ବର୍ଷାଋତୁରେ ଗଙ୍ଗାର ସ୍ରୋତ ଏବଂ ଶରତଋତୁର ଶୁକ୍ଳପକ୍ଷରେ ଚନ୍ଦ୍ରକିରଣ ବୃଦ୍ଧି ପାଇବା ପରି ଦେବୀ ଶିବା ଗିରିରାଜଙ୍କ ଭବନରେ ବଢ଼ିବାକୁ ଲାଗିଲେ । ସୁଶୀଳତା ଆଦି ଗୁଣରେ ସଂଯୁକ୍ତା ତଥା ବନ୍ଧୁଜନଙ୍କର ସ୍ନେହଭାଜନା ସେହି କନ୍ୟାକୁ କୁଟୁମ୍ବଲୋକେ ନିଜ କୁଳ ଅନୁସାରେ 'ପାର୍ବତୀ' ନାମରେ ଡାକିଲେ । ମୁନେ ! ପରବର୍ତ୍ତୀ କାଳରେ ମେନାଙ୍କର ଏହି ସୁମୁଖୀ କନ୍ୟା 'ଉମା' ନାମରେ ଜଗତରେ ବିଖ୍ୟାତ ହୋଇଥିଲେ; କାରଣ ମାତା ମେନା କାଳିକାଙ୍କୁ 'ଉ ମା' (ଆଲୋ ! ତପସ୍ୟା ନ କର) କହି ତପ କରିବାକୁ ମନା କରିଥିଲେ । ନାରଦ ! ବିଦ୍ୟା ଅଧ୍ୟୟନ ସମୟ ହେବାରୁ ଶିବାଦେବୀ ଏକାଗ୍ର ଚିତ୍ତରେ ଉତ୍ତମ ଗୁରୁଙ୍କ ଠାରୁ ଆନନ୍ଦରେ ବିଦ୍ୟା ଅଧ୍ୟୟନ କଲେ । ଯେପରି ଶରତ୍‌କାଳରେ ହଂସଦଳ ଆପେ ଆପେ ଗଙ୍ଗାତଟରେ ପହଞ୍ଚି ଯାଆନ୍ତି ଏବଂ ଯେପରି ରାତ୍ରିକାଳରେ ମହୌଷଧିମାନଙ୍କୁ ସେମାନଙ୍କର ଔଜ୍ଜ୍ୱଲ୍ୟ ଆପେ ଆପେ ମିଳିଯାଏ, ଠିକ୍ ସେହିପରି ଉମାଙ୍କୁ ପୂର୍ବଜନ୍ମର ସମସ୍ତ ବିଦ୍ୟା ଆପେ ଆପେ ପ୍ରାପ୍ତ ହୋଇଗଲା । ମୁନେ ! ମୁଁ ଶିବାଙ୍କର କିଛି ଶୈଶବକାଳୀନ ଲୀଳା ବର୍ଣ୍ଣନା କଲି । ଏବେ ଅନ୍ୟ ଏକ ଲୀଳା ବର୍ଣ୍ଣନା କରୁଛି, ଶୁଣ ।

ମୁନେ! ଥରେ ତୁମେ ଭଗବାନ ଶିବଙ୍କ ପ୍ରେରଣାରେ ପ୍ରସନ୍ନମନରେ ହିମାଚଳଙ୍କ ଗୃହକୁ ଯାଇଥିଲ । ତୁମେ ତ ଶିବତତ୍ତ୍ୱର ଜ୍ଞାତା ଏବଂ ଶିବଙ୍କ ଲୀଳାର ମର୍ମଜ୍ଞଙ୍କ ମଧ୍ୟରେ ଅଗ୍ରଣୀ । ନାରଦ ! ଗିରିରାଜ ହିମାଳୟ ତୁମର ଆଗମନ ଦେଖି ତୁମକୁ ପ୍ରଣାମ ଓ ପୂଜା କଲେ ଏବଂ ନିଜ କନ୍ୟାକୁ ମଧ୍ୟ ଡକାଇ ପ୍ରଣାମ କରାଇଲେ । ମୁନୀଶ୍ୱର ! ତା'ପରେ ସେ ସ୍ୱୟଂ ତୁମକୁ ପୁନଃ ନମସ୍କାର କରି ନିଜ ସୌଭାଗ୍ୟର ପ୍ରଶଂସା କଲେ । ସେ ନତମସ୍ତକ ହୋଇ କର ଯୋଡ଼ି ତୁମକୁ କହିଲେ—

ହିମାଳୟ କହିଲେ—ହେ ନାରଦମୁନି ! ପ୍ରଭୋ ! ଆପଣ ବ୍ରହ୍ମାଙ୍କ ପୁତ୍ରଙ୍କ ମଧ୍ୟରେ ଉତ୍ତମ ଜ୍ଞାନବାନ୍ । ଆପଣ ସର୍ବଜ୍ଞ ଓ ଅନ୍ୟମାନଙ୍କ ଉପରେ କରୁଣା କରି ସେମାନଙ୍କ ଉପକାରରେ ସଂଲଗ୍ନ ଥାଆନ୍ତି । ମୋ କନ୍ୟାର ଜନ୍ମକୁଣ୍ଡଳୀରେ ଯାହା କିଛି ଗୁଣ-ଦୋଷ ଅଛି, ତାହା ମୋ ଆଗରେ ପ୍ରକାଶ କରନ୍ତୁ । ମୋର ଅଲିଅଳୀ କନ୍ୟା କାହାର ସୌଭାଗ୍ୟବତୀ ପ୍ରିୟତମା ପତ୍ନୀ ହେବ?

ବ୍ରହ୍ମା କହୁଛନ୍ତି—ମୁନିଶ୍ରେଷ୍ଠ ! ତୁମେ କଥାବାର୍ତ୍ତାରେ ଯେତିକି କୁଶଳ, ସେତିକି କୌତୁକୀ ମଧ୍ୟ । ଗିରିରାଜ ଏପରି କହିବାରୁ ତୁମେ କାଳିକାଙ୍କର ହାତ ଦେଖିଲ ଓ ତାଙ୍କ ଅଙ୍ଗ-ପ୍ରତ୍ୟଙ୍ଗ ଉପରେ ବିଶେଷରୂପେ ଦୃଷ୍ଟିପାତ କରି ହିମାଚଳଙ୍କୁ ଏହିପରି କହିଲ—

ନାରଦ କହିଲେ—ହେ ଶୈଳରାଜ ଓ ମେନା ! ଆପଣଙ୍କର ଏ ଝିଅ ଶଶିକଳା ପରି ବଢ଼ିଛି । ସମସ୍ତ ଶୁଭ ଲକ୍ଷଣ ଏହାର ଅଙ୍ଗର ଶୋଭା ବଢ଼ାଉଛନ୍ତି । ଏ ଏହାର ସ୍ୱାମୀ ପାଇଁ ଅତ୍ୟନ୍ତ ସୁଖଦାୟିନୀ ହେବ ଓ ମାତାପିତାଙ୍କ କୀର୍ତ୍ତି ବଢ଼ାଇବ । ଜଗତର ନାରୀଙ୍କ ମଧ୍ୟରେ ଏ ପରମ ସାଧ୍ୱୀ ଓ ସ୍ୱଜନଙ୍କ ପାଇଁ ପରମ ଆନନ୍ଦଦାୟିନୀ ହେବ । ଗିରିରାଜ ! ତୁମ ଝିଅ ହାତରେ ସବୁ ପ୍ରକାର ଉତ୍ତମ ଲକ୍ଷଣ ବିଦ୍ୟମାନ । କେବଳ ଗୋଟିଏ ଅଦ୍‌ଭୁତ ରେଖା ଅଛି । ତାହାର

ଯଥାର୍ଥ ଫଳ କହୁଛି, ଶୁଣ । ଯେ ଏହାର ସ୍ୱାମୀ ହେବ, ସେ ଯୋଗୀ, ଉଲଗ୍ନ, ନିର୍ଗୁଣ ଓ ନିଷ୍କାମ



ହୋଇଥିବ । ତା'ର ମାଆ ନ ଥିବେ କି ବାପ ନ ଥିବେ । ତା'ର ମାନସମ୍ମାନକୁ ପରବାୟ ନ ଥିବ ଏବଂ ସେ ସର୍ବଦା ଅମଙ୍ଗଳ ବେଶରେ ରହୁଥିବ ।

ବ୍ରହ୍ମା କହୁଛନ୍ତି—ନାରଦ ! ତୁମ ମୁଖରୁ ଏଭଳି କଥା ଶୁଣି ହିମାଚଳ ଓ ମେନା ଦୁଃଖରେ ଝାଉଁଳି ପଡ଼ିଲେ; ମାତ୍ର ଜଗଦମ୍ବା ଶିବା ତାଙ୍କ ଭାବୀ ସ୍ୱାମୀଙ୍କ ଲକ୍ଷଣରୁ ତାଙ୍କୁ ଶିବ ବୋଲି ଜାଣି ମନେ ମନେ ଖୁସୀ ହେଲେ । 'ନାରଦଙ୍କ କଥା କେବେ ମିଥ୍ୟା ହୋଇ ନ ପାରେ' ଏହା ଭାବି ଶିବା ଭଗବାନ ଶିବଙ୍କ ଚରଣଯୁଗଳ ପ୍ରତି ହୃଦୟର ସହ ସ୍ନେହ କରିବାକୁ ଲାଗିଲେ । କିନ୍ତୁ ହିମବାନ ମନେ ମନେ ଦୁଃଖୀ ହୋଇ ତୁମକୁ କହିଲେ— "ମୁନେ ! ଝିଅର ହସ୍ତରେଖାର ଫଳ ଶୁଣି ମୋ ମନରେ ବହୁତ ଦୁଃଖ ହେଉଛି । ଏଭଳି କୁଫଳରୁ ରକ୍ଷା ପାଇବା ପାଇଁ ମୁଁ କି ଉପାୟ କରିବି ?"

ନାରଦ ! ତୁମେ ତ ବଡ଼ କଉତୁକିଆ ଆଉ କଥାବାର୍ତ୍ତାରେ ମଧ୍ୟ ବଡ଼ କୁଶଳ । ହିମବାନଙ୍କ କଥା ଶୁଣି ତୁମେ ମଙ୍ଗଳକାରୀ ବାକ୍ୟ ଦ୍ୱାରା ତାଙ୍କ ଉତ୍ସାହ ବଢ଼ାଇବାକୁ ଯାଇ ଏହି କଥା କହିଲ—

ନାରଦ କହିଲେ—ଗିରିରାଜ! ତୁମେ ସ୍ନେହପୂର୍ଣ୍ଣ ହୃଦୟରେ ମୋର ସତ୍ୟ ବଚନ ଶୁଣ । ମୋ କଥା କେବେ ମିଥ୍ୟା ହେବ ନାହିଁ । ହାତର ରେଖା ବିଧାତାଙ୍କ ଲେଖନ । ତାହା କଦାପି ଅନ୍ୟଥା ହେବ ନାହିଁ । ତେଣୁ ହେ ଶୈଳେଶ୍ୱର ! ଏ କନ୍ୟାକୁ ନିଶ୍ଚୟ ଏହିପରି ବର ମିଳିବ, ଏଥିରେ ସନ୍ଦେହ ନାହିଁ । ମାତ୍ର ରେଖାର କୁଫଳରୁ ରକ୍ଷା ପାଇବା ପାଇଁ ଗୋଟିଏ ଉପାୟ ଅଛି । ସେହି ଉପାୟ କଲେ ତୁମକୁ ସୁଖ ମିଳିବ । ମୁଁ ଯେଉଁପରି ବର ନିରୂପଣ କରିଛି, ସେପରି ବର ହେଉଛନ୍ତି ଭଗବାନ ଶଙ୍କର । ସେ ସର୍ବସମର୍ଥ ଏବଂ ଲୀଳା ନିମନ୍ତେ ସେ ଅନେକ ରୂପ ଧାରଣ କରିଥାନ୍ତି । ତାଙ୍କ ଠାରେ ସମସ୍ତ କୁଲକ୍ଷଣ ସଦ୍‌ଗୁଣ ପରି ହୋଇଯିବ । ସମର୍ଥ ପୁରୁଷଙ୍କ ଠାରେ କୌଣସି ଦୋଷ ଥିଲେ ମଧ୍ୟ ତାହା ତାଙ୍କୁ ଦୁଃଖ ଦିଏ ନାହିଁ । ଅସମର୍ଥ ପାଇଁ ହିଁ ତାହା ଦୁଃଖଦାୟକ ହୋଇଥାଏ । ଏ ବିଷୟରେ ସୂର୍ଯ୍ୟ, ଅଗ୍ନି ଓ ଗଙ୍ଗାଙ୍କ ଦୃଷ୍ଟାନ୍ତକୁ ସମ୍ମୁଖରେ ରଖି ବିଗ୍ରର କରିବା ଉଚିତ । ଏଣୁ ତୁମେ ବିବେକପୂର୍ବକ ତୁମର କନ୍ୟା ଶିବାଙ୍କୁ ଶିବଙ୍କ ହାତରେ ସମର୍ପି ଦିଅ । ଭଗବାନ ଶିବ ହେଉଛନ୍ତି ସମସ୍ତଙ୍କର ଈଶ୍ୱର, ସେବ୍ୟ, ନିର୍ବିକାର, ସାମର୍ଥ୍ୟବାନ୍ ଓ ଅବିନାଶୀ । ସେ ଖୁବ୍ ଶୀଘ୍ର ପ୍ରସନ୍ନ ହୋଇଯାଆନ୍ତି । ତେଣୁ ସେ ନିଃସନ୍ଦେହରେ ଶିବାକୁ ଗ୍ରହଣ କରିବେ । ବିଶେଷତଃ ସେ ତପସ୍ୟା ଦ୍ୱାରା ବଶୀଭୂତ ହୋଇଯାଆନ୍ତି । ଯଦି ଶିବା ତପ କରେ, ତେବେ ସବୁକିଛି ଠିକ୍ ହୋଇଯିବ । ସର୍ବେଶ୍ୱର ଶିବ ସବୁ ଦୃଷ୍ଟିରୁ ସମର୍ଥ । ସେ

ଇନ୍ଦ୍ରଙ୍କ ବଜ୍ରକୁ ବି ବିନାଶ କରିପାରନ୍ତି । ବ୍ରହ୍ମା ମଧ୍ୟ ତାଙ୍କ ଅଧୀନରେ ଥାଆନ୍ତି । ପୁଣି ସେ ସୁଖଦାତା ଅଟନ୍ତି । ପାର୍ବତୀ ଭଗବାନ ଶଙ୍କରଙ୍କ ପ୍ରିୟା ପତ୍ନୀ ହେବ । ସେ ସଦା ରୁଦ୍ରଙ୍କ ଅନୁକୂଳ ହୋଇ ରହିବ; କାରଣ ସେ ମହାସାଧ୍ୱୀ, ଉତ୍ତମ ବ୍ରତ ପାଳନକାରିଣୀ ତଥା ମାତାପିତାଙ୍କ ସୁଖ ବର୍ଦ୍ଧନକାରିଣୀ । ସେ ତପସ୍ୟା କରି ଶିବଙ୍କ ମନକୁ ଆକୃଷ୍ଟ କରିନେବ ଏବଂ ଶିବ ମଧ୍ୟ ପାର୍ବତୀ ବିନା ଆଉ କାହାକୁ ବିଭା ହେବେ ନାହିଁ । ଏ ଦୁହିଙ୍କର ପ୍ରେମ ପରସ୍ପରର ଅନୁରୂପ ହେବ । ଏପରି ଉଚ୍ଚକୋଟିର ପ୍ରେମ ନା ଆଉ କାହାରି ଥିଲା, ନା ଅଛି, ନା ଭବିଷ୍ୟତରେ ହେବ । ଗିରିଶ୍ରେଷ୍ଠ ! ଏମାନଙ୍କୁ ଦେବତାଙ୍କ କାର୍ଯ୍ୟ ସିଦ୍ଧ କରିବାର ଅଛି । ଦେବତାମାନଙ୍କର ଯେଉଁ ସବୁ କାର୍ଯ୍ୟ ନଷ୍ଟପ୍ରାୟ ହୋଇଯାଇଛି, ଏ ଦୁହିଙ୍କ ଦ୍ୱାରା ସେସବୁର ପୁନରୁଦ୍ଧାର ହେବ । ଅଦ୍ରିରାଜ ! ଆପଣଙ୍କ କନ୍ୟାକୁ ପାଇ ଭଗବାନ ହର ଅର୍ଦ୍ଧନାରୀଶ୍ୱର ହେବେ । ଏ ଦୁହିଙ୍କର ପୁନଃ ସହର୍ଷ ମିଳନ ହେବ । ତୁମର ଏ କନ୍ୟା ଆପଣା ତପ ପ୍ରଭାବରେ ସର୍ବେଶ୍ୱର ମହେଶ୍ୱରଙ୍କୁ ସନ୍ତୁଷ୍ଟ କରି ତାଙ୍କ ଶରୀରର ଅଧାଭାଗ ଉପରେ ନିଜର ଅଧିକାର ସାବ୍ୟସ୍ତ କରିବ ଓ ତାଙ୍କର ଅର୍ଦ୍ଧାଙ୍ଗୀ ହୋଇଯିବ । ଗିରିଶ୍ରେଷ୍ଠ ! ତୁମ ପକ୍ଷେ ଏ କନ୍ୟାକୁ ଶିବଙ୍କ ଛଡ଼ା ଅନ୍ୟ କାହାକୁ ଦେବା ଉଚିତ ନୁହେଁ । ଏହା ଦେବତାଙ୍କର ଗୁପ୍ତରହସ୍ୟ, ଏ କଥା କେଉଁଠି ପ୍ରକାଶିତ କରିବା ଉଚିତ ନୁହେଁ ।

ହିମାଳୟ କହିଲେ—ଜ୍ଞାନୀମୁନି ନାରଦ ! ମୁଁ ଆପଣଙ୍କୁ ଗୋଟିଏ କଥା କହୁଛି, ଶୁଣନ୍ତୁ ଆଉ ଆନନ୍ଦ ଅନୁଭବ କରନ୍ତୁ । ମୁଁ ଶୁଣିଛି ଯେ ମହାଦେବ ସବୁପ୍ରକାର ଆସକ୍ତି ତ୍ୟାଗ କରି ଓ ମନକୁ ସଂଯମରେ ରଖି ନିତ୍ୟ ତପସ୍ୟା କରନ୍ତି । ସେ ଦେବତାଙ୍କର ମଧ୍ୟ ଦୃଷ୍ଟିଗୋଚର ହୁଅନ୍ତି ନାହିଁ । ଦେବର୍ଷେ ! ଏପରି ଧ୍ୟାନମାର୍ଗରେ ସ୍ଥିତ ଭଗବାନ ଶମ୍ଭୁ କ'ଣ ତାଙ୍କ ମନକୁ ପରବ୍ରହ୍ମରୁ ହଟାଇବେ? ସେ କ'ଣ ଧ୍ୟାନ ଛାଡ଼ି ବିବାହ କରିବାକୁ ଉଦ୍ୟତ ହେବେ? ମୋ ମନରେ ଏ ବିଷୟରେ ବହୁତ ସନ୍ଦେହ । ଯେଉଁ ପରବ୍ରହ୍ମ ଦୀପଶିଖା ତୁଲ୍ୟ ଦୀପ୍ତିମାନ, ଅବିନାଶୀ, ପ୍ରକୃତିରୁ ଅତୀତ, ନିର୍ବିକାର, ନିର୍ଗୁଣ, ସଗୁଣ, ନିର୍ବିଶେଷ ଓ ନିରୀହ, ତାହା ମହାଦେବଙ୍କର ସଦାଶିବ ନାମକ ସ୍ୱରୂପ । ତେଣୁ ସେ ସର୍ବଦା ତାହାରି ସାକ୍ଷାତ୍କାର କରୁଥାନ୍ତି; ସେ କୌଣସି ଅନାତ୍ମ ବସ୍ତୁ ପ୍ରତି ଦୃଷ୍ଟିପାତ କରନ୍ତି ନାହିଁ । ମୁନେ ! ଏଠାକୁ ଆସୁଥିବା କିଂନରଙ୍କ ମୁଖରୁ ନିତ୍ୟ ଏପରି କଥା ଶୁଣିବାକୁ ମିଳିଥାଏ । ଏସବୁ କଥା କ'ଣ ମିଥ୍ୟା? ବିଶେଷତଃ ଆଉ ଗୋଟିଏ କଥା ବି ଶୁଣିବାକୁ ମିଳିଥାଏ ଯେ ଭଗବାନ ହର ପୂର୍ବକାଳରେ ସତୀଙ୍କ ସମକ୍ଷରେ ପ୍ରତିଜ୍ଞା କରି କହିଥିଲେ ଯେ "ଦକ୍ଷକୁମାରୀ ସତୀ ! ମୁଁ ତୁମ ବିନା ଅନ୍ୟ କାହାକୁ ପତ୍ନୀରୂପେ ବରଣ ବା ଗ୍ରହଣ କରିବି ନାହିଁ । ଏହା ମୁଁ ତୁମକୁ ସତ୍ୟ କରି କହୁଛି ।" ଯେହେତୁ ସେ ସତୀଙ୍କ ସମକ୍ଷରେ ଏଭଳି ସତ୍ୟ ପ୍ରତିଜ୍ଞା କରିଛନ୍ତି, ଏବେ ସତୀ ମରିଯିବା ପରେ ପୁଣି ଦ୍ୱିତୀୟ ସ୍ତ୍ରୀ କିପରି ଗ୍ରହଣ କରିବେ?

ଏହା ଶୁଣି ତୁମେ କହିଲ (ନାରଦ କହିଲେ)—ମହାମତେ ! ଗିରିରାଜ ! ଏ ବିଷୟରେ ତୁମକୁ ଚିନ୍ତା କରିବାର ଆବଶ୍ୟକତା ନାହିଁ । ତୁମର ଏ କନ୍ୟା ହିଁ ପୂର୍ବକାଳରେ ଦକ୍ଷକନ୍ୟା ସତୀ ଥିଲା । ସେତେବେଳେ ଏହାରି ସର୍ବମଙ୍ଗଳଦାୟକ ନାମ ଥିଲା ସତୀ । ଏ ଦକ୍ଷକନ୍ୟା ହୋଇ ରୁଦ୍ରଙ୍କର ପ୍ରିୟତମା ପତ୍ନୀ ହୋଇଥିଲା । ପିତାଙ୍କ ଯଜ୍ଞରେ ସତୀ ଅନାଦୃତା ହୋଇ ଏବଂ ଭଗବାନ ଶଙ୍କରଙ୍କ ଅପମାନ ଦେଖି କ୍ରୋଧରେ ଦେହତ୍ୟାଗ କରିଦେଇଥିଲେ । ସେହି ସତୀ ହିଁ ତୁମ ଘରେ

ପୁନଃ ଉତ୍ପନ୍ନ ହୋଇଛନ୍ତି । ତୁମ କନ୍ୟା ହେଉଛି ସାକ୍ଷାତ୍ ଜଗଦମ୍ବା ଶିବା । ଏ ପାର୍ବତୀ ନିଶ୍ଚୟ ଭଗବାନ ହରଙ୍କର ପତ୍ନୀ ହେବ ।

ନାରଦ ! ତୁମେ ଏହିରୂପେ ପାର୍ବତୀଙ୍କ ପୂର୍ବଜନ୍ମ ଓ ପ୍ରୀତିବର୍ଦ୍ଧନକାରୀ ପୂର୍ବଚରିତ ବିସ୍ତାରପୂର୍ବକ ହିମବାନଙ୍କୁ ବୁଝାଇଲ । କାଳୀଙ୍କ ପୂର୍ବଚରିତକୁ ତୁମ ମୁଖରୁ ଶୁଣି ହିମବାନ ଏବଂ ତାଙ୍କର ପତ୍ନୀ ଓ ପୁତ୍ର ସମସ୍ତେ ଚିନ୍ତାମୁକ୍ତ ହୋଇଗଲେ । କାଳୀ ତୁମ ମୁଖରୁ ନିଜର ପୂର୍ବଜନ୍ମ-ଚରିତ ଶୁଣି ଲଜ୍ଜାରେ ଅଧୋମୁଖୀ ହୋଇଗଲେ ଏବଂ ତାଙ୍କ ମୁଖମଣ୍ଡଳରେ ସ୍ମିତହାସ ଖେଳିଗଲା । ପାର୍ବତୀଙ୍କ ଚରିତକୁ ଶୁଣିବା ପରେ ଗିରିରାଜ ହିମାଳୟ ଝିଅର ମସ୍ତକରେ ହାତ ବୁଲାଇ ଏବଂ ବାରମ୍ବାର ସ୍ନେହରେ ଚୁମ୍ବନ ଦେଇ ଝିଅକୁ ନିଜ ଆସନ ପାଖରେ ନେଇ ବସାଇଲେ ।

ନାରଦ ! ଏହାପରେ ତୁମେ ସ୍ୱର୍ଗଲୋକକୁ ଚାଲିଗଲ ଏବଂ ଗିରିରାଜ ହିମବାନ ମଧ୍ୟ ମନେ ମନେ ଆନନ୍ଦିତ ହୋଇ ନିଜର ସର୍ବସମ୍ପତ୍ତିଶାଳୀ ଗୃହ ଭିତରକୁ ଚାଲିଗଲେ ।

(ଅଧ୍ୟାୟ ୭-୮)

***

## ମେନା ଓ ହିମାଳୟଙ୍କର ବିଚାର-ବିମର୍ଶ, ପାର୍ବତୀ ଓ ହିମବାନଙ୍କ ସ୍ୱପ୍ନ ଏବଂ ଭଗବାନ ଶିବଙ୍କ ଠାରୁ 'ମଙ୍ଗଳ' ଗ୍ରହର ଉତ୍ପତ୍ତି ପ୍ରସଙ୍ଗ

ବ୍ରହ୍ମା କହୁଛନ୍ତି—ନାରଦ ! ତୁମେ ସ୍ୱର୍ଗଲୋକକୁ ଚାଲିଯିବା ପରେ କିଛି କାଳ ବିତିଗଲା । ଦିନେ ମେନା ହିମବାନଙ୍କ ନିକଟକୁ ଯାଇ ତାଙ୍କୁ ପ୍ରଣାମ କଲେ ଏବଂ ତାଙ୍କ ନିକଟରେ ଦଣ୍ଡାୟମାନ ହୋଇ ବିନୟପୂର୍ବକ ଏହିପରି କହିଲେ—

ମେନା କହିଲେ—ପ୍ରାଣନାଥ ! ସେଦିନ ନାରଦମୁନି ଯାହା କହିଗଲେ, ନାରୀ ସ୍ୱଭାବ ହେତୁ ମୁଁ ତାହାକୁ ବୁଝି ପାରୁ ନାହିଁ । ମୋର ତ ଏତିକି ପ୍ରାର୍ଥନା ଯେ ଆପଣ ମୋ ଝିଅର ବିବାହ ଆଉ କେଉଁଠି ଗୋଟିଏ ସୁନ୍ଦର ବର ଦେଖି କରିଦିଅନ୍ତୁ । ଏଭଳି ବିବାହ ସୁଖକର ହେବ । ଗିରିଜାର ବର ଶୁଭଲକ୍ଷଣସମ୍ପନ୍ନ ଓ କୁଳୀନ ହେବା ଉଚିତ । ମୋ ଝିଅ ମୋତେ ପ୍ରାଣଠାରୁ ବଳି ପ୍ରିୟ । ସେ ଉତ୍ତମ ବର ପାଇ ଯେମିତି ସୁଖୀ ରହିବ, ସେଭଳି ଉପାୟ କରନ୍ତୁ । ଆପଣଙ୍କୁ ମୋର ନମସ୍କାର ।

ଏତିକି କହି ମେନା ନିଜ ସ୍ୱାମୀଙ୍କ ପାଦତଳେ ଲୋଟି ପଡ଼ିଲେ । ସେତେବେଳେ ତାଙ୍କ ନେତ୍ରରୁ ଅଶ୍ରୁଧାରା ବହୁଥିଲା । ପ୍ରାଜ୍ଞ-ଶିରୋମଣି ହିମବାନ ତାଙ୍କୁ ତଳୁ ଉଠାଇଲେ ଏବଂ ବୁଝାଇବାକୁ ଚେଷ୍ଟା କଲେ ।

ହିମାଳୟ କହିଲେ—ଦେବୀ ମେନା ! ମୁଁ



ଗୋଟିଏ ଯଥାର୍ଥ ଓ ତତ୍ତ୍ୱର କଥା କହୁଛି । ମନରୁ ଭ୍ରମ ଦୂର କର । ମୁନିଙ୍କ ବାକ୍ୟ କଦାପି ଅସତ୍ୟ ହୋଇ ନ ପାରେ । ଯଦି ଝିଅ ଉପରେ ତୁମର ଏତେ ସ୍ନେହ, ତାକୁ ସାଦର ଏହି ଶିକ୍ଷା ଦିଅ ଯେ ସେ ଭକ୍ତିପୂର୍ବକ ସୁସ୍ଥିର ଚିତ୍ତରେ ଭଗବାନ ଶଙ୍କରଙ୍କ ପାଇଁ ତପ କରୁ । ମେନା ! ଯଦି ଭଗବାନ ପ୍ରସନ୍ନ ହୋଇ କାଳୀର ପାଣିଗ୍ରହଣ କରନ୍ତି, ତେବେ ସବୁକିଛି ଶୁଭ ହେବ । ନାରଦ କହିଥିବା ଅମଙ୍ଗଳ ବା ଅଶୁଭ ନଷ୍ଟ ହୋଇଯିବ । ଶିବଙ୍କ ପାଖରେ ସବୁ ଅମଙ୍ଗଳ ମଙ୍ଗଳ ପାଲଟି ଯାଏ । ତେଣୁ ତୁମେ ଝିଅକୁ ଶିବଙ୍କୁ ପାଇବା ପାଇଁ ତପ କରିବାକୁ ଶୀଘ୍ର ଶିକ୍ଷା ଦିଅ ।

ବ୍ରହ୍ମା କହୁଛନ୍ତି–ନାରଦ ! ହିମବାନଙ୍କ କଥା ଶୁଣି ମେନା ବହୁତ ଖୁସୀ ହେଲେ । ସେ ତପସ୍ୟାରେ ଝିଅର ରୁଚି ବଢ଼ାଇବା ପାଇଁ ଓ ଝିଅକୁ ଉପଦେଶ ଦେବା ପାଇଁ ତା'ପାଖକୁ ଗଲେ । ମାତ୍ର ଝିଅର ସୁକୁମାର ଅଙ୍ଗ ଉପରେ ଦୃଷ୍ଟି ପଡ଼ିବା ମାତ୍ରେ ତାଙ୍କ ମନରେ ଅସହ୍ୟ ବ୍ୟଥା ହେଲା । ତାଙ୍କ ନେତ୍ରଦ୍ୱୟରୁ ଅଶ୍ରୁ ଝରି ଆସିଲା । ତାଙ୍କ ଠାରେ ଆଉ ଉପଦେଶ ଦେବାର ଶକ୍ତି ରହିଲା ନାହିଁ । ମାତାଙ୍କ ଉଦ୍ଦେଶ୍ୟକୁ ପାର୍ବତୀ ଅବିଳମ୍ବେ ବୁଝିଗଲେ । ପରମେଶ୍ୱରୀ ସର୍ବଜ୍ଞା କାଳିକା ମାଆଙ୍କୁ ଆଶ୍ୱାସନା ଦେଇ କହିଲେ–

ପାର୍ବତୀ କହିଲେ–ମାଆ ! ତୁମେ ତ ବୁଝିବାଲୋକ । ମୋ କଥା ଶୁଣ । ଆଜି ବ୍ରାହ୍ମମୁହୂର୍ତ୍ତରେ ମୁଁ ଗୋଟିଏ ସ୍ୱପ୍ନ ଦେଖିଛି, ତାହା କହୁଛି ଶୁଣ । ସ୍ୱପ୍ନରେ ଜଣେ ଦୟାଳୁ ଓ ତପସ୍ୱୀ ବ୍ରାହ୍ମଣ ଆନନ୍ଦମନରେ ମୋତେ ଶିବଙ୍କୁ ପ୍ରସନ୍ନ କରିବାକୁ ଉପଦେଶ ଦେଲେ ।

ନାରଦ ! ଏ କଥା ଶୁଣି ମେନା ଅବିଳମ୍ବେ ସ୍ୱାମୀଙ୍କୁ ଡାକିଲେ ଏବଂ ଝିଅ ଦେଖିଥିବା ସ୍ୱପ୍ନ କଥା କହିଲେ । ମେନାଙ୍କ ମୁଖରୁ ଝିଅର ସ୍ୱପ୍ନ ବୃତ୍ତାନ୍ତ ଶୁଣି ଗିରିରାଜ ହିମାଳୟ ବହୁତ ଖୁସୀ ହେଲେ ଏବଂ ପତ୍ନୀଙ୍କୁ ବୁଝାଇ କହିଲେ–

ଗିରିରାଜ କହିଲେ–ପ୍ରିୟେ ! କାଲି ରାତିରେ ମୁଁ ମଧ୍ୟ ଏହି ପ୍ରସଙ୍ଗରେ ଗୋଟିଏ ସ୍ୱପ୍ନ ଦେଖିଛି । ସ୍ୱପ୍ନରେ ଜଣେ ବହୁତ ବଡ଼ ତପସ୍ୱୀଙ୍କୁ ମୁଁ ଦେଖିଲି । ପାର୍ବତୀ-ବରର ଯେଉଁପରି ଲକ୍ଷଣ ସବୁ ନାରଦ କହିଥିଲେ, ସେହି ସମସ୍ତ ଲକ୍ଷଣ ତାଙ୍କ ଦେହରେ ଥିଲା । ସେ ଆନନ୍ଦମନରେ ମୋ ନଗର ନିକଟକୁ ତପସ୍ୟା କରିବାକୁ ଆସିଲେ । ତାଙ୍କୁ ଦେଖି ମୁଁ ବହୁତ ଖୁସୀ ହେଲି ଏବଂ ପାର୍ବତୀକୁ ନେଇ ତାଙ୍କ ପାଖକୁ ଗଲି । ସେତେବେଳେ ମୁଁ ଜାଣିଲି ଯେ, ଯେଉଁ ଶମ୍ଭୁଙ୍କ କଥା ନାରଦ କହିଥିଲେ, ସେ ଥିଲେ ସେହି ଶମ୍ଭୁ । ତେଣୁ ମୁଁ ସେହି ତପସ୍ୱୀଙ୍କ ସେବା କରିବା ନିମନ୍ତେ ମୋ ଝିଅକୁ ଶିକ୍ଷା ଦେଇ ତାଙ୍କୁ ମୋ ଝିଅର ସେବା ଗ୍ରହଣ କରିବାକୁ ନିବେଦନ କଲି । ମାତ୍ର ସେ ମୋ କଥା ମାନିଲେ ନାହିଁ । ଏତିକିରେ ସେଠି ସାଂଖ୍ୟ ଓ ବେଦାନ୍ତ ଆଧାରରେ ବହୁତ ବଡ଼ ବାଦ-ବିବାଦ ଚାଲିଲା । ତା'ପରେ ଯାଇ ସେ ଅନୁମତି ଦେଲେ ଏବଂ ମୋ ଝିଅ ସେଠି ରହିଲା । ପାର୍ବତୀ ନିଜ ହୃଦୟ ମଧ୍ୟରେ ତାଙ୍କୁ ପାଇବାର କାମନା ରଖି ଭକ୍ତିପୂର୍ବକ ତାଙ୍କ ସେବା କଲା । ହେ ସୁମୁଖୀ ! ଏହିପରି ସ୍ୱପ୍ନ ମୁଁ ଦେଖିଲି । ଏଣୁ ପ୍ରିୟେ ! ମୋ ବିଚାରରେ ସ୍ୱପ୍ନର ଫଳ ଜାଣିବା ପାଇଁ କିଛି ସମୟ ଅପେକ୍ଷା କରିବା ଉଚିତ ।

ବ୍ରହ୍ମା କହୁଛନ୍ତି–ମୁନୀଶ୍ୱର ନାରଦ ! ଏତିକି କହି ଗିରିରାଜ ହିମବାନ ଓ ମେନା ଶୁଦ୍ଧ ହୃଦୟରେ ସେହି ସ୍ୱପ୍ନର ଫଳ ଅପେକ୍ଷାରେ ରହିଲେ ।

ଦେବର୍ଷେ ! ଶିବଭକ୍ତଶିରୋମଣେ ! ପ୍ରଭୁ ଶିବଙ୍କର ଯଶ ପରମ ପାବନ, ମଙ୍ଗଳକାରୀ, ଭକ୍ତିବର୍ଦ୍ଧକ ଓ ଉତ୍ତମ । ତୁମେ ତାହାକୁ ଆଦରରେ ଶୁଣ । ଦକ୍ଷଯଜ୍ଞରୁ ନିଜ ନିବାସସ୍ଥାନ କୈଳାସକୁ

ଫେରିବା ପରେ ଶମ୍ଭୁ ନିଜ ପ୍ରାଣପ୍ରିୟାର ବିରହରେ ତାଙ୍କୁ ଚିନ୍ତନ କରୁଥିଲେ । ନିଜ ପାର୍ଷଦଙ୍କୁ ଡାକି ସତୀଙ୍କ ପାଇଁ ଶୋକ କରି ତାଙ୍କର ପ୍ରେମବର୍ଦ୍ଧକ ଗୁଣମାନ ଅତ୍ୟନ୍ତ ପ୍ରେମପୂର୍ଣ୍ଣ ଚିତ୍ତରେ ବର୍ଣ୍ଣନା କରୁଥିଲେ । ସଂସାରର ରୀତି ଅନୁକରଣ କରି ସେ ଏହିପରି ଲୀଳା କରିଥିଲେ । ତା'ପରେ ସେ ଗୃହସ୍ଥାଶ୍ରମର ରୀତିନୀତିକୁ ପରିତ୍ୟାଗ କରି ଦିଗମ୍ବର ହୋଇଗଲେ ଏବଂ ଲୀଳାକୁଶଳ ପ୍ରଭୁ ବିରହ ଅବସ୍ଥା ପ୍ରଦର୍ଶନ କରି ସମଗ୍ର ଭୁବନରେ ଉନ୍ମତ୍ତ ପରି ଭ୍ରମଣ କରିବାକୁ ଲାଗିଲେ । ସତୀଙ୍କ ବିରହଦୁଃଖରେ ଦୁଃଖିତ ହୋଇ ଏବଂ କେଉଁଠି ବି ତାଙ୍କ ଦର୍ଶନ ନ ପାଇ ଭକ୍ତକଲ୍ୟାଣକାରୀ ଶଙ୍କର ପୁନଃ କୈଳାସଗିରିକୁ ଫେରି ଆସିଲେ ଏବଂ ମନକୁ ବଳପୂର୍ବକ ଏକାଗ୍ର କରି ସମାଧିସ୍ଥ ହୋଇଗଲେ; କାରଣ ସମାଧିରେ ସମସ୍ତ ଦୁଃଖ ନଷ୍ଟ ହୋଇଥାଏ । ସମାଧିରେ ସେ ନିଜ ଅବିନାଶୀ ଆତ୍ମସ୍ୱରୂପର ଦର୍ଶନରେ ନିମଗ୍ନ ରହିଲେ । ପ୍ରଭୁ ତ ସ୍ୱୟଂ ମାୟାର ଅଧିପତି ନିର୍ବିକାର ପରବ୍ରହ୍ମ ଅଟନ୍ତି, ତଥାପି ସେ ତ୍ରିଗୁଣରହିତ ହୋଇ ବହୁକାଳ ପର୍ଯ୍ୟନ୍ତ ସୁସ୍ଥିରଭାବରେ ସମାଧିସ୍ଥ ହୋଇଗଲେ । ଏହିରୂପେ ଅସଂଖ୍ୟ ବର୍ଷ ବିତିଗଲା । ତାଙ୍କର ସମାଧି ଭାଙ୍ଗିଲା । ତା'ପରେ ଯାହା ଘଟିଲା, ମୁଁ କହୁଛି ଶୁଣ । ଶିବଙ୍କ ଲଲାଟରୁ ସେତେବେଳେ ଶ୍ରମଜନିତ ସ୍ୱେଦବିନ୍ଦୁଟିଏ ବାହାରି ଭୂମି ଉପରେ ପଡ଼ିଲା ଏବଂ ତାହା ଅବିଳମ୍ବେ ଗୋଟିଏ ଶିଶୁରୂପ ଧାରଣ କଲା । ମୁନେ ! ସେହି ଶିଶୁର ଚାରିଟି ଭୁଜ ଥିଲା, ଶରୀରର କାନ୍ତି ଥିଲା ଲାଲ୍, ରୂପ ଥିଲା ଅତ୍ୟନ୍ତ ମନୋହର । ଦିବ୍ୟ ଦ୍ୟୁତିରେ ଦୀପ୍ତିମନ୍ତ ସେହି ଶିଶୁର ତେଜ ଅତ୍ୟନ୍ତ ଦୁଃସହ ହୋଇଥିଲେ ମଧ୍ୟ ସେ ଲୋକାଚାରପରାୟଣ ଶିବଙ୍କ ଆଗରେ ସାଧାରଣ ଶିଶୁ ପରି କାନ୍ଦିବାକୁ ଲାଗିଲା । ସେତିକିବେଳେ ପୃଥିବୀ ଶିବଙ୍କ ଭୟରେ ଜଣେ ସୁନ୍ଦରୀ ନାରୀ ରୂପ ଧାରଣ କରି ତାଙ୍କ ସମ୍ମୁଖରେ ପ୍ରକଟ ହେଲେ ଏବଂ ସେହି ଶିଶୁକୁ କୋଳକୁ ଉଠାଇ ନେଇ ତାକୁ କ୍ଷୀର ପିଆଇଲେ । ସେ ତାକୁ ନିଜ ଶିଶୁ ପରି ମଣି, ଚୁମ୍ବନ ଦେଇ ହସି ହସି ଖେଳାଇବାକୁ ଲାଗିଲେ । ପରମେଶ୍ୱର ଶିବଙ୍କ ହିତସାଧନକାରିଣୀ ପୃଥିବୀଦେବୀ ହୃଦୟର ବିଶୁଦ୍ଧଭାବରେ ତା'ର ମାଆ ହୋଇଗଲେ ।

ସଂସାରର ସ୍ରଷ୍ଟା ପରମ କୌତୁକୀ ଅନ୍ତର୍ଯ୍ୟାମୀ ପ୍ରଭୁ ଏଭଳି ଚରିତ୍ର ଦେଖି ହସିଦେଲେ ଏବଂ ପୃଥିବୀଦେବୀଙ୍କୁ ଚିହ୍ନିପାରି ତାଙ୍କୁ କହିଲେ—"ହେ ଧରଣୀ ! ତୁମେ ଧନ୍ୟ ! ମୋର ଏହି ପୁତ୍ରକୁ ସ୍ନେହରେ ଲାଳନପାଳନ କର । ଏ ଶ୍ରେଷ୍ଠ ଶିଶୁ ମୋ ପରି ମହାତେଜସ୍ୱୀ ଶମ୍ଭୁଙ୍କ ଶ୍ରମବିନ୍ଦୁରୁ ତୁମ କୋଳରେ ଉତ୍ପନ୍ନ ହୋଇଛି । ବସୁଧେ ! ଏ ପ୍ରିୟକାରୀ ବାଳକ ମୋ ସ୍ୱେଦବିନ୍ଦୁରୁ ଉତ୍ପନ୍ନ ହୋଇଥିଲେ ସୁଦ୍ଧା ତୁମର ପୁତ୍ର ରୂପରେ ଏହାର ଖ୍ୟାତି ହେବ । ଏ ତ୍ରିବିଧ ତାପରୁ ମୁକ୍ତ ରହିବ । ଏ ଅତ୍ୟନ୍ତ ଗୁଣବାନ୍ ଓ ଭୂମିପ୍ରଦାତା ହେବ । ଏ ମୋତେ ମଧ୍ୟ ସୁଖ ଦେବ । ତୁମେ ଏହାକୁ ନିଜ ରୁଚି ଅନୁସାରେ ଗ୍ରହଣ କର ।

ବ୍ରହ୍ମା କହୁଛନ୍ତି—ହେ ନାରଦ ! ଏତିକି କହି ଭଗବାନ ଚୁପ୍ ହୋଇଗଲେ । ତାଙ୍କ ହୃଦୟରୁ ବିରହର ପ୍ରଭାବ କିଛି ମାତ୍ରାରେ ହ୍ରାସ ପାଇଲା । ପ୍ରକୃତରେ ବିରହ କିଛି ନ ଥିଲା; ତାହା ଥିଲା କେବଳ ଜଗତର ରୀତି । ସେ ତ ସାଧୁଜନଙ୍କ ପ୍ରିୟ ନିର୍ବିକାର ପରମାତ୍ମା ଅଟନ୍ତି । ଶିବଙ୍କର ଉପରୋକ୍ତ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ଭୂଦେବୀ ପୁତ୍ରକୁ ନେଇ ନିଜ ସ୍ଥାନକୁ ଚାଲିଗଲେ । ତାଙ୍କୁ ଅତ୍ୟନ୍ତ ଆନନ୍ଦ ଲାଭ ହେଲା । ସେହି ଶିଶୁ 'ଭୌମ' ନାମରେ ପ୍ରସିଦ୍ଧ ହେଲା ଏବଂ ଯୁବକ ହେବାପରେ ସେ କାଶୀ ଚାଲିଗଲା । ସେଠାରେ ସେ ଦୀର୍ଘକାଳ ପର୍ଯ୍ୟନ୍ତ ଭଗବାନ ଶଙ୍କରଙ୍କ

ସେବା କଲା । ବିଶ୍ୱନାଥଙ୍କ କୃପାରୁ ସେହି ଭୂମିପୁତ୍ର ଗ୍ରହପଦ ଲାଭ କରି ଶୁକ୍ରଲୋକର ଊର୍ଦ୍ଧ୍ୱରେ ଥିବା ଦିବ୍ୟଲୋକକୁ ଚାଲିଗଲା ।

(ଅଧ୍ୟାୟ ୯-୧୦)

★★★

## ଗଙ୍ଗାବତରଣ ତୀର୍ଥକୁ ତପସ୍ୟା ନିମନ୍ତେ ଶିବଙ୍କ ଆଗମନ, ହିମବାନଙ୍କ ଦ୍ୱାରା ତାଙ୍କର ସ୍ୱାଗତ, ପୂଜନ ଓ ସ୍ତବନ ଏବଂ ଶିବଙ୍କ ଆଜ୍ଞାନୁସାରେ ସେଠାକୁ ଅନ୍ୟମାନଙ୍କ ପ୍ରବେଶ ନିଷେଧ କରିବାକୁ ହିମବାନଙ୍କର ବନ୍ଦୋବସ୍ତ

ବ୍ରହ୍ମା କହୁଛନ୍ତି—ନାରଦ ! ହିମବାନଙ୍କ କନ୍ୟା ଲୋକପୂଜିତା ଶକ୍ତିସ୍ୱରୂପା ପାର୍ବତୀ ହିମାଳୟଙ୍କ ଗୃହରେ ବଢ଼ିବାକୁ ଲାଗିଲେ । ତାଙ୍କୁ ଯେତେବେଳେ ଆଠ ବର୍ଷ ବୟସ ହୋଇଗଲା, ସେତେବେଳେ ସତୀଙ୍କ ବିରହରେ କାତର ହେଉଥିବା ଶମ୍ଭୁଙ୍କୁ ପାର୍ବତୀଙ୍କ ଜନ୍ମର ସମାଚାର ମିଳିଲା । ନାରଦ ! ସେହି ଅଦ୍ଭୁତ ବାଳିକା ପାର୍ବତୀଙ୍କୁ ହୃଦୟରେ ସ୍ଥାନ ଦେଇ ଶମ୍ଭୁ ମନେ ମନେ ଆନନ୍ଦ ଅନୁଭବ କଲେ । ଇତିମଧ୍ୟରେ ଲୌକିକ ରୀତି ଅନୁସାରେ ଶମ୍ଭୁ ମନକୁ ଏକାଗ୍ର କରିବା ନିମନ୍ତେ ତପସ୍ୟା କରିବାକୁ ମନସ୍ଥ କଲେ । ନନ୍ଦୀ ପ୍ରମୁଖ କେତେକ ଶାନ୍ତ ପାର୍ଷଦଙ୍କୁ ସଙ୍ଗରେ ନେଇ ହିମାଳୟର ଉତ୍ତମ ଶିଖରସ୍ଥ ଗଙ୍ଗାବତାର* ନାମକ ତୀର୍ଥକୁ ଗଲେ । ସେଠାରେ ପୂର୍ବକାଳରେ ପରମ ପାବନୀ ଗଙ୍ଗା ବ୍ରହ୍ମଧାମରୁ ଚ୍ୟୁତ ହୋଇ ସମସ୍ତ ପାପରାଶି ବିନାଶ କରିବା ନିମନ୍ତେ ଭୂପୃଷ୍ଠରେ ଅବତୀର୍ଣ୍ଣ ହୋଇଥିଲେ । ଜିତେନ୍ଦ୍ରିୟ ହର ସେଠାରେ ରହି ତପସ୍ୟା ଆରମ୍ଭ କଲେ । ସେ ନିରଳସ ହୋଇ ଚେତନ, ଜ୍ଞାନସ୍ୱରୂପ, ନିତ୍ୟ, ଜ୍ୟୋତିର୍ମୟ, ନିରାମୟ, ଜଗନ୍ମୟ, ଚିଦାନନ୍ଦସ୍ୱରୂପ, ଅଦ୍ୱୈତ ତଥା ଆଶ୍ରୟରହିତ ନିଜ ଆତ୍ମଭୂତ ପରମାତ୍ମାଙ୍କୁ ଏକାଗ୍ରଚିତ୍ତରେ ଚିନ୍ତନ କରିବାକୁ ଲାଗିଲେ । ସେ ଧ୍ୟାନପରାୟଣ ହୋଇଯିବାରୁ ନନ୍ଦୀ-ଭୃଙ୍ଗୀ ଆଦି କେତେକ ଅନ୍ୟ ପାର୍ଷଦ ମଧ୍ୟ ଧ୍ୟାନରେ ତତ୍ପର ହେଲେ । ସେତେବେଳେ ଅଳ୍ପ କେତେକ ପ୍ରମଥଗଣ ପରମାତ୍ମା ଶମ୍ଭୁଙ୍କ ସେବାରେ ଥିଲେ । କେତେକ ସେଠାରେ ଦ୍ୱାରପାଳ ହୋଇଥିଲେ । ସେ ସମସ୍ତେ ମୌନ ରହୁଥିଲେ ଏବଂ ଗୋଟିଏ ହେଲେ ଶବ୍ଦ ମୁହଁରୁ ବାହାର କରୁ ନ ଥିଲେ ।

ଇତିମଧ୍ୟରେ ସେହି ଓଷଧିବହୁଳ ଶିଖରକୁ ଶମ୍ଭୁଙ୍କ ଶୁଭାଗମନ ହେବାର ସମାଚାର ପାଇ ଗିରିରାଜ ହିମବାନ ତାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ଭାବନାରେ ସେଠାକୁ ଆସିଲେ । ସେ ସେବକଙ୍କ ଗହଣରେ ଆସି ଭଗବାନ ରୁଦ୍ରଙ୍କୁ ପ୍ରଣାମ କଲେ, ତାଙ୍କୁ ପୂଜା କଲେ ଏବଂ ହାତ ଯୋଡ଼ି ସୁନ୍ଦର ଭାବରେ ସ୍ତୁତି କଲେ । ତା'ପରେ ହିମାଳୟ କହିଲେ—''ପ୍ରଭୋ ! ମୋର ପରମ ସୌଭାଗ୍ୟ ଯେ ଆପଣ ଏଠାକୁ ଆସିଲେ । ଆଜି ଆପଣ ମୋତେ ସନାଥ କରିଦେଲେ । ମହାତ୍ମାଗଣ ଯଥାର୍ଥରେ ଆପଣଙ୍କୁ ଦୀନବତ୍ସଳ ନାମରେ ବର୍ଣ୍ଣନା କରିଛନ୍ତି । ଆଜି ମୋ ଜନ୍ମ ଓ ଜୀବନ ସଫଳ ହୋଇଗଲା । ମହେଶ୍ୱର ! ଆପଣ ମୋତେ ଆପଣଙ୍କର ଦାସ ବୋଲି ବୁଝି ସେବା ନିମନ୍ତେ ଆଜ୍ଞା ଦିଅନ୍ତୁ । ମୁଁ ସହର୍ଷ ଅନନ୍ୟ ଚିତ୍ତରେ ଆପଣଙ୍କ ସେବା କରିବି ।''

ବ୍ରହ୍ମା କହୁଛନ୍ତି—ନାରଦ ! ଗିରିରାଜଙ୍କ ବାକ୍ୟ ଶୁଣି ମହେଶ୍ୱର କିଞ୍ଚିତ୍ ଆଖି ଖୋଲିଲେ ଏବଂ ସେବକ ସମେତ ହିମବାନଙ୍କୁ ସେଠାରେ ଉପସ୍ଥିତ

* ଗଙ୍ଗୋତ୍ତରୀ ।

ହୋଇଥିବା ଦେଖି ଧ୍ୟାନସ୍ଥ ଜଗଦୀଶ୍ୱର ବୃଷଭଧ୍ୱଜ ସ୍ମିତହାସପୂର୍ବକ କହିଲେ–

ମହେଶ୍ୱର କହିଲେ–ଶୈଳରାଜ ! ମୁଁ ତୁମ ଶିଖରକୁ ଏକାନ୍ତରେ ତପସ୍ୟା କରିବାକୁ ଆସିଛି । ତୁମେ ଏଭଳି ବ୍ୟବସ୍ଥା କର, ଯେପରି କେହି ବି ମୋ ନିକଟକୁ ଆସି ପାରିବ ନାହିଁ । ତୁମେ ମହାତ୍ମା, ତପସ୍ୟାର ଧାମ; ପୁଣି ତୁମେ ମୁନି, ଦେବତା, ରାକ୍ଷସ ଓ ମହାତ୍ମାମାନଙ୍କୁ ସଦା ଆଶ୍ରୟ ଦେଇଥାଅ । ଦ୍ୱିଜ ପ୍ରଭୃତି ତୁମ ଉପରେ ସଦା ନିବାସ କରିଥାନ୍ତି । ତୁମେ ଗଙ୍ଗାଦ୍ୱାରା ଅଭିଷିକ୍ତ ହୋଇ ପବିତ୍ର ହୋଇଯାଇଛ । ପୁଣି ତୁମେ ପରୋପକାରୀ ଓ ସକଳ ସାମର୍ଥ୍ୟବାନ୍ ପର୍ବତଙ୍କ ମଧ୍ୟରେ ରାଜା । ଗିରିରାଜ ! ମୁଁ ଏଠି ଗଙ୍ଗାବତରଣ ସ୍ଥଳରେ ତୁମ ଆଶ୍ରୟରେ ରହି ଆତ୍ମସଂଯମପୂର୍ବକ ଆନନ୍ଦରେ ତପସ୍ୟା କରିବି । ଶୈଳରାଜ ! ଯେଉଁ ଉପାୟରେ ମୋ ତପସ୍ୟା ନିର୍ବିଘ୍ନରେ ସମ୍ପନ୍ନ ହେବ, ସେହିପରି ବ୍ୟବସ୍ଥା କର । ପର୍ବତପ୍ରବର ! ଏହା ହିଁ ହେବ ମୋ ପାଇଁ ସବୁଠୁ ବଡ଼ ସେବା । ତୁମେ ତୁମ ଗୃହକୁ ଯାଅ; ଆଉ ମୁଁ ଯାହା କହିଲି, ଆନନ୍ଦିତ ମନରେ ସେହି ବ୍ୟବସ୍ଥା କର ।

ବ୍ରହ୍ମା କହୁଛନ୍ତି–ନାରଦ ! ଏଭଳି କହି ସୃଷ୍ଟିକର୍ତ୍ତା ଜଗଦୀଶ୍ୱର ଶମ୍ଭୁ ଚୁପ୍ ହୋଇଗଲେ । ଗିରିରାଜ ସେତେବେଳେ ଶମ୍ଭୁଙ୍କୁ କହିଲେ, "ଜଗନ୍ନାଥ ! ପରମେଶ୍ୱର ! ଆଜି ମୁଁ ଯେଉଁ ମୋ ପ୍ରଦେଶରେ ଆପଣଙ୍କୁ ସ୍ୱାଗତପୂର୍ବକ ପୂଜା କରିପାରିଲି, ଏଇଟା ମୋ ପାଇଁ ପରମ ସୌଭାଗ୍ୟର କଥା । ତେଣୁ ଆଉ ଆପଣଙ୍କୁ କି ପ୍ରାର୍ଥନା କରିବି? ମହେଶ୍ୱର ! କେତେ ବଡ଼ ବଡ଼ ଦେବତା ନାନା ପ୍ରକାର ପ୍ରଯତ୍ନ ଓ ତପସ୍ୟା ବଳରେ ମଧ୍ୟ ଆପଣଙ୍କୁ ପାଇ ପାରନ୍ତି ନାହିଁ; କିନ୍ତୁ ଆପଣ ଆଜି ସ୍ୱୟଂ ମୋ ପୃଷ୍ଠଭାଗରେ ତପସ୍ୟା ପାଇଁ ଉପସ୍ଥିତ ହୋଇଛନ୍ତି । ତେବେ ମୋ ଠାରୁ ବଳି ସୌଭାଗ୍ୟବାନ୍ ଓ ପୁଣ୍ୟାତ୍ମା ଆଉ କିଏ ଅଛି? ପରମେଶ୍ୱର ! ଆଜି ମୁଁ



ନିଜକୁ ଦେବରାଜ ଇନ୍ଦ୍ରଙ୍କ ଠାରୁ ବି ଅଧିକ ଭାଗ୍ୟବାନ୍ ମଣୁଛି । ଆପଣ ସେବକଙ୍କ ସମେତ ଏଠାକୁ ଆସି ମୋତେ ଅନୁଗୃହୀତ କରିଛନ୍ତି । ଦେବେଶ ! ଆପଣ ସ୍ୱତନ୍ତ୍ର । ଏଠାରେ ନିର୍ବିଘ୍ନରେ ତପସ୍ୟା କରନ୍ତୁ । ମୁଁ ଆପଣଙ୍କର ଦାସ । ମୁଁ ସର୍ବଦା ଆପଣଙ୍କ ଆଜ୍ଞାନୁସାରେ ସେବା କରିବି ।"

ବ୍ରହ୍ମା କହୁଛନ୍ତି–ନାରଦ ! ଏପରି କହି ହିମାଳୟ ସେଠାରୁ ନିଜ ଗୃହକୁ ଫେରିଗଲେ । ସେ ତାଙ୍କର ପ୍ରିୟା ମେନାଙ୍କୁ ଅତି ଆଦରରେ ଏ ସମସ୍ତ ବୃତ୍ତାନ୍ତ କହିଲେ । ତା'ପରେ ଶୈଳରାଜ ତାଙ୍କ ସଙ୍ଗରେ ଯାଉଥିବା ପରିଜନ ଓ ସେବକମାନଙ୍କୁ ଡକାଇ ସେମାନଙ୍କୁ ବୁଝାଇ ଏହିପରି କହିଲେ–

ହିମାଳୟ କହିଲେ–ଆଜିଠାରୁ ମୋ ଆଜ୍ଞା ମାନି ମୋ ପୃଷ୍ଠରେ ଅବସ୍ଥିତ ଗଙ୍ଗାବତରଣ ନାମକ ସ୍ଥାନକୁ କେହି ଯିବ ନାହିଁ । ମୁଁ ସତ୍ୟ

କହୁଛି । ଯଦି କେହି ସେଠାକୁ ଯିବ, ସେହି ମହାଦୁଷ୍ଟକୁ ମୁଁ କଠୋର ଦଣ୍ଡ ଦେବି । ମୁନେ ! ଏପରି ନିଜର ସମସ୍ତ ଗଣଙ୍କୁ ଶୀଘ୍ର ନିୟନ୍ତ୍ରିତ କରି ହିମବାନ ବିଘ୍ନନିବାରଣ ପାଇଁ ଯାହା ସବୁ ସୁନ୍ଦର ବ୍ୟବସ୍ଥା କଲେ, ତାହା କହୁଛି ଶୁଣ ।

(ଅଧ୍ୟାୟ ୧୧)

***

## ଶିବଙ୍କ ସେବାରେ ପାର୍ବତୀଙ୍କୁ ଛାଡ଼ିବା ନିମନ୍ତେ ହିମବାନଙ୍କର ଶିବଙ୍କୁ ଅନୁମତି ଭିକ୍ଷା ଏବଂ କାରଣ ବୁଝାଇବା ସହ ତାଙ୍କ ପ୍ରସ୍ତାବକୁ ଶିବଙ୍କର ପ୍ରତ୍ୟାଖ୍ୟାନ

ବ୍ରହ୍ମା କହୁଛନ୍ତି–ନାରଦ ! ତା'ପରେ ହିମବାନ ଭଲ ଭଲ ଫୁଲ ଓ ଫଳ ଘେନି ପାର୍ବତୀଙ୍କୁ ସଙ୍ଗରେ ଧରି ସହର୍ଷ ଭଗବାନ ହରଙ୍କ ସମୀପକୁ ଗଲେ । ସେଠାରେ ପହଞ୍ଚି ସେ ଧ୍ୟାନପରାୟଣ ତ୍ରୈଲୋକ୍ୟନାଥ ଶିବଙ୍କୁ ପ୍ରଣାମ କଲେ ଏବଂ ନିଜ ଅଦ୍ଭୁତ କନ୍ୟା କାଳୀକୁ ସହର୍ଷ ତାଙ୍କ ସେବାରେ ସମର୍ପିଦେଲେ । ଫୁଲ-ଫଳ ପ୍ରଭୃତି ସମସ୍ତ ସାମଗ୍ରୀ ତାଙ୍କ ଆଗରେ ରଖିଦେଇ ଶୈଳରାଜ ଶମ୍ଭୁଙ୍କୁ କହିଲେ–"ପ୍ରଭୁ ଚନ୍ଦ୍ରଶେଖର ! ମୋ କନ୍ୟା ଆପଣଙ୍କ ସେବା କରିବାକୁ ଉତ୍ସୁକ । ତେଣୁ ଆପଣଙ୍କ ଆରାଧନା ଇଚ୍ଛାରେ ମୁଁ ତାକୁ ସଙ୍ଗରେ ନେଇ ଆସିଛି । ଏ ତା'ର ଦୁଇ ଜଣ ସଖୀଙ୍କ ସହିତ ଆପଣଙ୍କ ସେବାରେ ରହିବ । ନାଥ ! ଯଦି ଆପଣଙ୍କର ମୋ ଉପରେ ଅନୁଗ୍ରହ ଅଛି, ତେବେ ଏହି କନ୍ୟାକୁ ସେବା ପାଇଁ ଆଜ୍ଞା ଦିଅନ୍ତୁ ।

ତା'ପରେ ଭଗବାନ ଶିବ ସେହି ପରମ ମନୋହର କାମରୂପିଣୀ କନ୍ୟାକୁ ଦେଖି ନେତ୍ର ବନ୍ଦ କରିଦେଲେ ଏବଂ ନିଜ ତ୍ରିଗୁଣାତୀତ ଅବିନାଶୀ ପରମତତ୍ତ୍ୱମୟ ଉତ୍ତମ ରୂପକୁ ଧ୍ୟାନ କରିବା ଆରମ୍ଭ କରିଦେଲେ । ଉତ୍ତମ ଆସନରେ ବିରାଜମାନ ସର୍ବେଶ୍ୱର ତଥା ସର୍ବବ୍ୟାପୀ ଜଟାଜୂଟଧାରୀ ବେଦାନ୍ତବେଦ୍ୟ ଚନ୍ଦ୍ରକଳାବିଭୂଷଣ ଶମ୍ଭୁ ନେତ୍ର ବନ୍ଦ କରି ତପସ୍ୟାରେ ଲୀନ ହେବାକୁ ଯାଉଥିବା ଦେଖି ହିମବାନ ମସ୍ତକ ଅବନତ କରି ପୁନଃ ତାଙ୍କ ଚରଣରେ ପ୍ରଣାମ କଲେ । ଯଦ୍ୟପି ତାଙ୍କ ହୃଦୟରେ ଦୀନତା ନ ଥିଲା, ତଥାପି ସେତେବେଳେ ସେ ସଂଶୟରେ ଥିଲେ ଯେ ଭଗବାନ ତାଙ୍କ ପ୍ରାର୍ଥନାକୁ ସ୍ୱୀକାର କରିବେ କି ନାହିଁ କିଏ କହିବ । ସେ ଉତ୍ତମ ଶବ୍ଦରେ ଜଗତର ଏକମାତ୍ର ବନ୍ଧୁ ଭଗବାନ ଶିବଙ୍କୁ ଏହିପରି କହିଲେ–

ହିମାଚଳ କହିଲେ–"ହେ ଦେବଦେବ ! ମହାଦେବ ! କରୁଣାକର ! ମୁଁ ଆପଣଙ୍କ ଶରଣକୁ ଆସିଛି । ଆଖି ଖୋଲି ମୋ ଆଡ଼କୁ ଟିକିଏ ଚାହାନ୍ତୁ । ଶିବ ! ଶର୍ବ ! ମହେଶାନ ! ଜଗତର ଆନନ୍ଦଦାତା ମହାଦେବ ! ଆପଣ ସମସ୍ତ ବିପତ୍ତିକୁ ନାଶ କରିଥାନ୍ତି । ମୁଁ ଆପଣଙ୍କୁ ପ୍ରଣାମ କରୁଛି । ସ୍ୱାମିନ୍ ! ମୁଁ ମୋ କନ୍ୟାକୁ ସାଥିରେ ଧରି ପ୍ରତିଦିନ ଆପଣଙ୍କ ଦର୍ଶନ ପାଇଁ ଆସିବି । ଏଥିପାଇଁ ଆଜ୍ଞା ଦିଅନ୍ତୁ ।

ତାଙ୍କ କଥା ଶୁଣି ଦେବଦେବ ମହେଶ୍ୱର ଧ୍ୟାନ ଭାଙ୍ଗି ଆଖି ଖୋଲିଲେ ଏବଂ ମନେ ମନେ କିଛି ବିଚାର କରି କହିଲେ–

ମହେଶ୍ୱର କହିଲେ–ଗିରିରାଜ ! ତୁମେ ତୁମ କନ୍ୟାକୁ ଘରେ ଛାଡ଼ି ମୋ ଦର୍ଶନ ପାଇଁ ଏଠାକୁ ଆସିପାର । ଅନ୍ୟଥା ମୋ ଦର୍ଶନ ମିଳି ପାରିବ ନାହିଁ ।

ମହେଶ୍ୱରଙ୍କ କଥା ଶୁଣି ଶିବାଙ୍କ ପିତା ହିମବାନ ମୁଣ୍ଡ ନୁଆଁଇ କହିଲେ—''ପ୍ରଭୋ! କେଉଁ କାରଣରୁ ମୁଁ ମୋ ଝିଅକୁ ସାଙ୍ଗରେ ଆଣି ଆପଣଙ୍କ



ଦର୍ଶନକୁ ଆସି ପାରିବି ନାହିଁ? କ'ଣ ଏ ଆପଣଙ୍କ ସେବା ପାଇଁ ଯୋଗ୍ୟା ନୁହେଁ? ତେବେ ଏହାକୁ ନ ଆଣିବାର କାରଣ କ'ଣ ମୁଁ ବୁଝି ପାରୁ ନାହିଁ।''

ଏ କଥା ଶୁଣି ଭଗବାନ ବୃଷଭଧ୍ୱଜ ହସିବାକୁ ଲାଗିଲେ। ବିଶେଷତଃ ଦୁଷ୍ଟ ଯୋଗୀମାନଙ୍କୁ ଲୋକାଗ୍ରର ଶିଖାଇବାକୁ ଯାଇ ହିମାଳୟଙ୍କୁ କହିଲେ—''ଶୈଳରାଜ! ତୁମର ଏ କନ୍ୟା ସୁନ୍ଦରୀ, ସୁମଧ୍ୟମା, ତନ୍ୱଙ୍ଗୀ, ଚନ୍ଦ୍ରମୁଖୀ ଓ ଶୁଭଲକ୍ଷଣା। ତେଣୁ ଏହାକୁ ମୋ ସମୀପକୁ ଆଣିବା ଉଚିତ ନୁହେଁ। ଏଇଥିପାଇଁ ମୁଁ ତୁମକୁ ବାରମ୍ବାର ମନା କରୁଛି। ବେଦଜ୍ଞ ବିଦ୍ୱାନ୍ ନାରୀକୁ ମାୟାରୂପିଣୀ ବୋଲି କହିଛନ୍ତି। ବିଶେଷତଃ ଯୁବତୀ ନାରୀ ତ ତପସ୍ୱୀଜନଙ୍କ ତପସ୍ୟା ନିମନ୍ତେ ଘୋର ବିଘ୍ନ। ଗିରିଶ୍ରେଷ୍ଠ! ମୁଁ ତପସ୍ୱୀ, ଯୋଗୀ ଓ ସର୍ବଦା ମାୟାରୁ ନିର୍ଲିପ୍ତ ରହିଥାଏ। ମୋର ଯୁବତୀ ନାରୀଠାରେ କି ପ୍ରୟୋଜନ? ହେ ତପସ୍ୱୀଙ୍କ ଶ୍ରେଷ୍ଠ ଆଶ୍ରୟ ହିମାଳୟ! ଏହି ଦୃଷ୍ଟିରୁ ଆଉ କେବେ ଏ କଥା ଉଠାଇବା ଉଚିତ ନୁହେଁ; କାରଣ ତୁମେ ବି ବେଦଧର୍ମରେ ପ୍ରବୀଣ, ଜ୍ଞାନୀଙ୍କ ମଧ୍ୟରେ ଶ୍ରେଷ୍ଠ ଓ ବିଦ୍ୱାନ୍। ହେ ଅଚଳରାଜ! ସ୍ତ୍ରୀଲୋକଙ୍କ ସାନ୍ନିଧ୍ୟରୁ ମନରେ ଖୁବ୍ ଶୀଘ୍ର ବିଷୟବାସନା ଉତ୍ପନ୍ନ ହୋଇଯାଏ, ଯଦ୍ଦ୍ୱାରା ବୈରାଗ୍ୟ ନଷ୍ଟ ହୋଇଯାଏ; ବୈରାଗ୍ୟ ନ ରହିଲେ ବ୍ୟକ୍ତି ଉତ୍ତମ ତପସ୍ୟାରୁ ବି ଭ୍ରଷ୍ଟ ହୋଇଯାଏ। ତେଣୁ ତପସ୍ୱୀ ପକ୍ଷେ ସ୍ତ୍ରୀଲୋକଙ୍କ ସଙ୍ଗତି ବର୍ଜନୀୟ; କାରଣ ସ୍ତ୍ରୀ ମହାବିଷୟବାସନାର ମୂଳ ଓ ଜ୍ଞାନବୈରାଗ୍ୟର ବିନାଶକାରିଣୀ।*

ବ୍ରହ୍ମା କହୁଛନ୍ତି—ନାରଦ! ଏପରି ଅନେକ ପ୍ରକାରେ ବୁଝାଇ ମହାଯୋଗିଶିରୋମଣି ମହେଶ୍ୱର ଚୁପ୍ ହୋଇଗଲେ। ଦେବର୍ଷେ! ଶମ୍ଭୁଙ୍କ ଠାରୁ ଏଭିଳି ନିରାମୟ, ନିଃସ୍ପୃହ ଓ ନିଷ୍ଠୁର ବଚନ ଶୁଣି କାଳୀଙ୍କ ପିତା ହିମବାନ ଚକିତ ତଥା କିଞ୍ଚିତ୍ ବ୍ୟାକୁଳ ପରି ହୋଇ ନୀରବ ରହିଲେ। ତପସ୍ୱୀ ଶିବଙ୍କ କଥା ଶୁଣି ଓ ଗିରିରାଜ ହିମବାନଙ୍କୁ ଚକିତ ହୋଇଯାଇଥିବା ଅନୁଭବ କରି ଭବାନୀ ପାର୍ବତୀ ସେତିକିବେଳେ ଶିବଙ୍କୁ ପ୍ରଣାମ କରି କିଛି ବିଶଦ ବଚନ କହିଲେ। (ଅଧ୍ୟାୟ ୧୨)

★★★

* ଭବତ୍ୟଚଳ ତତ୍ସଙ୍ଗାଦ୍ ବିଷୟୋତ୍ପତ୍ତିରାଶୁ ବୈ। ବିନଶ୍ୟତି ଚ ବୈରାଗ୍ୟଂ ତତୋ ଭ୍ରଶ୍ୟତି ସତ୍ତପଃ॥
ଅତସ୍ତପସ୍ୱିନା ଶୈଳ ନ କାର୍ଯ୍ୟା ସ୍ତ୍ରୀଷୁ ସଙ୍ଗତିଃ। ମହାବିଷୟମୂଳଂ ସା ଜ୍ଞାନବୈରାଗ୍ୟନାଶିନୀ॥
(ଶି. ପୁ. ରୁ. ସଂ. ପା. ଖ. ୧୨।୩୧-୩୨)

# ପାର୍ବତୀ ଓ ଶିବଙ୍କର ଦାର୍ଶନିକ ସଂବାଦ, ଶିବଙ୍କ ମୁଖରୁ ପାର୍ବତୀଙ୍କୁ ସେବା କରିବାର ଅନୁମତି ଏବଂ ମହେଶ୍ୱରଙ୍କ ନିତ୍ୟ ସେବାରେ ପାର୍ବତୀଙ୍କର ତତ୍‌ପରତା

ଭବାନୀ କହିଲେ—ଯୋଗିନ୍‌ ! ଆପଣ ତପସ୍ୱୀ ହୋଇ ଗିରିରାଜଙ୍କୁ ଏସବୁ କ'ଣ କହିଦେଲେ? ପ୍ରଭୋ ! ଆପଣ ତ ଜ୍ଞାନବିଶାରଦ, ତଥାପି ଆପଣଙ୍କ କଥାର ଉତ୍ତର ମୋଠାରୁ ଶୁଣନ୍ତୁ । ଶମ୍ଭୋ ! ଆପଣ ତପଃଶକ୍ତିସମ୍ପନ୍ନ ହୋଇଥିବାରୁ ହିଁ ବହୁତ ବଡ଼ ତପ କରୁଛନ୍ତି । ସେହି ଶକ୍ତି ହେତୁ ଆପଣଙ୍କ ପରି ମହାତ୍ମାଙ୍କର ତପ କରିବାକୁ ଇଚ୍ଛା ହୋଇଛି । ସମସ୍ତ ପ୍ରକାର କର୍ମ କରିବାରେ ଯେଉଁ ଶକ୍ତି କାରଣ ହୁଏ, ତାହାକୁ ହିଁ ପ୍ରକୃତି ବୋଲି ଜାଣିବା ଉଚିତ । ପ୍ରକୃତିଦ୍ୱାରା ହିଁ ସବୁରି ସୃଷ୍ଟି, ପାଳନ ଓ ସଂହାର ହେଉଛି । ଭଗବନ୍‌ ! ଆପଣ କିଏ ଆଉ ସୂକ୍ଷ୍ମ ପ୍ରକୃତି କିଏ? ଏକଥା ବିଗ୍ରହ କରନ୍ତୁ । ପ୍ରକୃତି ବିନା ଲିଙ୍ଗରୂପୀ ମହେଶ୍ୱରଙ୍କ କଳ୍ପନା ସମ୍ଭବ କି? ଆପଣ ପ୍ରାଣୀମାନଙ୍କ ପକ୍ଷେ ଯେଉଁ ଅର୍ଚ୍ଚନୀୟ, ବନ୍ଦନୀୟ ଓ ଚିନ୍ତନୀୟ ହୋଇଛନ୍ତି, ତାହା ପ୍ରକୃତି କାରଣରୁ ହୋଇଛନ୍ତି । ଏକଥାକୁ ବିଗ୍ରହକୁ ନେଇ ତା'ପରେ ଆପଣଙ୍କର ଯାହା କହିବାର ଅଛି କୁହନ୍ତୁ ।

ବ୍ରହ୍ମା କହୁଛନ୍ତି—ନାରଦ ! ପାର୍ବତୀଙ୍କର ଏ ତର୍କ ଶୁଣି ମହତୀ-ଲୀଳାପରାୟଣ ଶିବ ହସି ହସି ପ୍ରସନ୍ନ ଚିତ୍ତରେ କହିଲେ—

ମହେଶ୍ୱର କହିଲେ—ମୁଁ ଉତ୍କୃଷ୍ଟ ତପସ୍ୟା ଦ୍ୱାରା ହିଁ ପ୍ରକୃତିକୁ ନାଶ କରେ ଓ ତତ୍ତ୍ୱତଃ ପ୍ରକୃତିରହିତ ଶମ୍ଭୁ ରୂପରେ ସ୍ଥିତ ହୁଏ । ଏଣୁ ସତ୍‌ପୁରୁଷଙ୍କ ପକ୍ଷେ କଦାପି ପ୍ରକୃତିର ସଂଗ୍ରହ କରିବା ଉଚିତ ନୁହେଁ । ସେମାନେ ଲୋକାଗ୍ରହରୁ ଦୂରରେ ଓ ନିର୍ବିକାର ରହିବା ଉଚିତ ।

ନାରଦ ! ଶମ୍ଭୁ ଲୌକିକ ବ୍ୟବହାର ଅନୁସାରେ ଏଭଳି କଥା କହିବାରୁ କାଳୀ ମନେ ମନେ ହସି ମଧୁର ବାଣୀରେ କହିଲେ—

କାଳୀ କହିଲେ—କଲ୍ୟାଣକାରୀ ପ୍ରଭୋ ! ଯୋଗିନ୍‌ ! ଆପଣ ଯେଉଁ ବାଣୀ କହିଲେ, ସେହି ବାଣୀ କ'ଣ ପ୍ରକୃତି ନୁହେଁ? ତେବେ ଆପଣ ସେଥିରୁ ଅତୀତ କାହିଁକି ହୋଇଗଲେ ନାହିଁ? (କାହିଁକି ପ୍ରକୃତିର ସାହାଯ୍ୟ ନେଇ କଥା କହିଲେ?) ଏସବୁ କଥାକୁ ବିଗ୍ରହକୁ ନେଇ ତାତ୍ତ୍ୱିକ ଦୃଷ୍ଟିରୁ ଯାହା ଯଥାର୍ଥ, ତାହା କହିବା ଉଚିତ । ଏସବୁ ସର୍ବଦା ପ୍ରକୃତି ସହିତ ଜଡ଼ିତ । ଏଣୁ ଆପଣଙ୍କ ପକ୍ଷେ କିଛି କହିବା ଉଚିତ ନୁହେଁ କି କିଛି କରିବା ଉଚିତ ନୁହେଁ; କାରଣ କହିବା, କରିବା ଇତ୍ୟାଦି ସମସ୍ତ ବ୍ୟବହାର ପ୍ରାକୃତ । ଆପଣ ନିଜ ବୁଦ୍ଧିରେ ଏସବୁକୁ ବୁଝନ୍ତୁ । ଆପଣ ଯାହା କିଛି ଶୁଣୁଛନ୍ତି, ଖାଉଛନ୍ତି, ଦେଖୁଛନ୍ତି ଓ କରୁଛନ୍ତି, ସେ ସମସ୍ତ ପ୍ରକୃତିର କାର୍ଯ୍ୟ । ମିଥ୍ୟା ବାଦ-ବିବାଦ କରିବା ବୃଥା । ପ୍ରଭୋ ! ଶମ୍ଭୋ ! ଯଦି ଆପଣ ପ୍ରକୃତିରୁ ପର ଅଟନ୍ତି, ତେବେ ଏ ହିମବାନ ପର୍ବତ ଉପରେ ଆପଣ ତପସ୍ୟା କିପରି କରୁଛନ୍ତି? ହର ! ପ୍ରକୃତି ତ ଆପଣଙ୍କୁ ଗିଳି ପକାଇଛି ! ତେଣୁ ଆପଣ ନିଜ ସ୍ୱରୂପକୁ ଜାଣି ନାହାନ୍ତି । ଈଶ ! ଯଦି ଆପଣ ନିଜ ସ୍ୱରୂପକୁ ଜାଣନ୍ତି, ତେବେ କାହିଁକି ପୁଣି ତପ କରୁଛନ୍ତି? ଯୋଗିନ୍‌ ! ମୋତେ ଆପଣଙ୍କ ସହିତ ବାଦ-ବିବାଦ କରିବାର କି ପ୍ରୟୋଜନ? ପ୍ରତ୍ୟକ୍ଷ ପ୍ରମାଣ ମିଳିଗଲା ପରେ ବିଦ୍ୱାନ୍‌ ଲୋକ ଅନୁମାନ ପ୍ରମାଣକୁ ମାନନ୍ତି ନାହିଁ । ଯାହା କିଛି ପ୍ରାଣୀମାନଙ୍କ ଇନ୍ଦ୍ରିୟର ବିଷୟ, ସେସବୁକୁ ଜ୍ଞାନୀମାନେ

ବୁଦ୍ଧିରେ ବିଗ୍ଚର କରି ପ୍ରାକୃତ ବୋଲି ବୁଝିବା ଉଚିତ। ଯୋଗୀଶ୍ୱର! ଅଧିକ କହିବାରେ କି ପ୍ରୟୋଜନ! ମୋର ଉତ୍ତମ କଥାଟି ଶୁଣନ୍ତୁ। ମୁଁ ପ୍ରକୃତି ଆଉ ଆପଣ ପୁରୁଷ। ଏହା ସତ୍ୟ ଓ ନିଃସନ୍ଦେହରେ ସତ୍ୟ। ମୋ ଅନୁଗ୍ରହରୁ ହିଁ ଆପଣ ସଗୁଣ ଓ ସାକାର ହୁଅନ୍ତି। ମୋ ବିନା ଆପଣ ନିରୀହ, କିଛି କରିବାକୁ ଅକ୍ଷମ। ଆପଣ ଜିତେନ୍ଦ୍ରିୟ ହୋଇ ମଧ୍ୟ ପ୍ରକୃତିର ଅଧୀନ ହୋଇ ସଦା ନାନା ପ୍ରକାର କର୍ମ କରିଥାନ୍ତି। ତେବେ ପୁଣି ନିର୍ବିକାର କେମିତି ହେଲେ? ଆଉ ମୋ ସହ ଲିପ୍ତ କିପରି ନୁହଁନ୍ତି? ଶଙ୍କର! ଯଦି ଆପଣ ପ୍ରକୃତିରୁ ପର ଏବଂ ଆପଣଙ୍କର ଏ କଥନ ସତ୍ୟ, ତେବେ ଆପଣ ମୋ ସମୀପରେ ରହିଲେ ମଧ୍ୟ କିଛି ଡରିବାର ନାହିଁ।

ବ୍ରହ୍ମା କହୁଛନ୍ତି–ପାର୍ବତୀଙ୍କର ଏଭଳି ସାଂଖ୍ୟଶାସ୍ତ୍ରସମ୍ମତ ବାକ୍ୟ ଶୁଣି ଭଗବାନ ଶିବ ବେଦାନ୍ତ ମତାନୁସାରେ ତାଙ୍କୁ ଏହିପରି କହିଲେ–

ଶ୍ରୀଶିବ କହିଲେ–ହେ ସୁଭାଷିନୀ ଗିରିଜେ! ଯଦି ତୁମେ ସାଂଖ୍ୟମତକୁ ଧାରଣ କରି ଏଭଳି କଥା କହୁଛ, ତେବେ ପ୍ରତିଦିନ ମୋର ସେବା କର; କିନ୍ତୁ ସେହି ସେବା ଶାସ୍ତ୍ରନିଷିଦ୍ଧ ହେବା ଉଚିତ ନୁହେଁ।

ଗିରିଜାଙ୍କୁ ଏପରି କହି ଭକ୍ତଙ୍କ ଉପରେ ଅନୁଗ୍ରହ କରୁଥିବା ଓ ସେମାନଙ୍କ ମନୋରଞ୍ଜନ କରୁଥିବା ଭଗବାନ ଶିବ ହିମବାନଙ୍କୁ କହିଲେ–

ଶିବ କହିଲେ–ଗିରିରାଜ! ମୁଁ ତୁମର ଏହି ପରମ ରମଣୀୟ ଶିଖରରେ ଉତ୍ତମ ତପସ୍ୟା ଓ ନିଜାନନ୍ଦମୟ ପରମାର୍ଥସ୍ୱରୂପର ଚିନ୍ତନ କରି କରି ବିଚରଣ କରିବି। ପର୍ବତରାଜ! ମୋତେ ଏଠି ତପସ୍ୟା କରିବାର ଅନୁମତି ଦିଅ। ତୁମ ଅନୁମତି ବିନା ତପସ୍ୟା କରାଯାଇ ପାରିବ ନାହିଁ।

ଦେବାଧିଦେବ ଶୂଳଧାରୀ ଶିବଙ୍କ କଥନ ଶୁଣି ହିମବାନ ଶିବଙ୍କୁ ପ୍ରଣାମ କରି କହିଲେ– "ମହାଦେବ! ଦେବ, ଦାନବ ଓ ମାନବ ସମେତ ସମଗ୍ର ଜଗତ ଆପଣଙ୍କର। ମୁଁ ତୁଚ୍ଛ ପ୍ରାଣୀ ଆପଣଙ୍କୁ କ'ଣ ବା କହିବି?"

ବ୍ରହ୍ମା କହୁଛନ୍ତି–ନାରଦ! ଗିରିରାଜ ହିମବାନ ଏପରି କହିବାରୁ ଲୋକକଲ୍ୟାଣକାରୀ ମହାଦେବ ହସିଦେଲେ ଏବଂ ଆଦରପୂର୍ବକ ତାଙ୍କୁ କହିଲେ, "ଏବେ ତୁମେ ଯାଅ।" ଶିବଙ୍କ ଆଜ୍ଞା ପାଇ ହିମବାନ ନିଜ ଗୃହକୁ ଫେରିଗଲେ। ସେ ପ୍ରତିଦିନ ଗିରିଜାଙ୍କ ସହିତ ତାଙ୍କୁ ଦର୍ଶନ କରିବାକୁ ଆସୁଥିଲେ। କାଳୀ ପିତାଙ୍କ ବିନା ମଧ୍ୟ ଦୁଇଜଣ ସଖୀଙ୍କ ସହ ନିତ୍ୟ ଶିବଙ୍କ ପାଖକୁ ଆସୁଥିଲେ ଏବଂ ଭକ୍ତିପୂର୍ବକ ତାଙ୍କର ସେବା କରୁଥିଲେ। ନନ୍ଦୀଶ୍ୱର ପ୍ରଭୃତି କୌଣସି ଗଣ ମଧ୍ୟ ତାଙ୍କୁ ରୋକୁ ନ ଥିଲେ। ତାତ! ମହେଶ୍ୱରଙ୍କ ଆଦେଶରେ ହିଁ ଏପରି କରାଯାଉଥିଲା। ପ୍ରତ୍ୟେକ ଗଣ ପବିତ୍ରତାପୂର୍ବକ ରହି ତାଙ୍କ ଆଜ୍ଞା ପାଳନ କରୁଥିଲେ। ତତ୍ତ୍ୱଦୃଷ୍ଟିରୁ ବିଗ୍ଚର କଲେ ଯେଉଁ ଶିବ ଓ ଶିବା ପରସ୍ପର ଅଭିନ୍ନ ଅଟନ୍ତି, ସେ ଦୁହେଁ ସାଂଖ୍ୟ ଓ ବେଦାନ୍ତ ମତରେ ସ୍ଥିତ ହୋଇ କରିଥିବା ଲୋକକଲ୍ୟାଣକାରୀ ସଂବାଦ ଅତ୍ୟନ୍ତ ସୁଖକାରୀ ଅଟେ। ସେହି ସଂବାଦ ମୁଁ କହିଦେଲି। ଇନ୍ଦ୍ରିୟାତୀତ ଭଗବାନ ଶିବ ଗିରିରାଜଙ୍କ କଥା ମାନି ତାଙ୍କ କନ୍ୟାକୁ ନିଜ ପାଖରେ ସେବାର ଅବସର ଦେବାକୁ ସ୍ୱୀକାର କରିନେଲେ।

କାଳୀ ତାଙ୍କର ଦୁଇଜଣ ସଖୀଙ୍କ ସଙ୍ଗରେ ଆସି ପ୍ରତିଦିନ ଚନ୍ଦ୍ରଶେଖର ମହାଦେବଙ୍କ ସେବାରେ ଉପସ୍ଥିତ ହେଉଥିଲେ। ସେ ଭଗବାନଙ୍କ ଚରଣ ଧୋଇ ସେହି ଚରଣାମୃତ ପାନ କରୁଥିଲେ। ଅଗ୍ନିରେ ଗରମ କରି ଶୁଦ୍ଧ କରାଯାଇଥିବା (ଅଥବା ଗରମ ଜଳରେ ଧୁଆ ଯାଇଥିବା) ବସ୍ତ୍ରରେ ତାଙ୍କ ଦେହକୁ ପୋଛି ମାର୍ଜନ କରୁଥିଲେ। ତା'ପରେ

ଷୋଡ଼ଶ ଉପଗ୍ରରରେ ବିଧିବତ୍ ହରଙ୍କୁ ପୂଜା କରି ବାରମ୍ବାର ତାଙ୍କ ଚରଣରେ ପ୍ରଣାମ କରିବା ପରେ ପ୍ରତିଦିନ ପିତାଙ୍କ ଗୃହକୁ ଫେରି ଯାଉଥିଲେ । ମୁନିବର ! ଏପରିଭାବରେ ଧ୍ୟାନପରାୟଣ ଶିବଙ୍କ ସେବାରେ ଶିବାଙ୍କର ଅନେକ ଦିନ ବିତିଗଲା । ତଥାପି ସେ ଇନ୍ଦ୍ରିୟଗଣଙ୍କୁ ସଂଯମରେ ରଖି ପୂର୍ବବତ୍ ସେବା କରିବାରେ କୌଣସି ଊଣା କଲେ ନାହିଁ । ପାର୍ବତୀ ଏପରି ତତ୍ପର ହୋଇ ନିତିଦିନ ସେବା କରୁଥିବା ଦେଖି ମହାଦେବଙ୍କ ହୃଦୟ ଦୟାରେ ଦ୍ରବିତ ହୋଇଗଲା । ସେ ଭାବିଲେ, "ଏ କାଳୀ ଯେତେବେଳେ ତପଶ୍ଚର୍ଯ୍ୟାବ୍ରତ କରିବ ଏବଂ ଏହାଠାରେ ଗର୍ବର ବୀଜ ମଧ୍ୟ ରହିବ ନାହିଁ, ସେତେବେଳେ ଯାଇ ମୁଁ ଏହାର ପାଣିଗ୍ରହଣ କରିବି ।"

ଏଭଳି ଭାବି ଲୀଳାପ୍ରବୀଣ ମହାଯୋଗୀଶ୍ୱର ଭଗବାନ ଭୂତନାଥ ତତ୍‌କ୍ଷଣାତ୍ ଧ୍ୟାନମଗ୍ନ ହୋଇଗଲେ । ମୁନେ ! ପରମାତ୍ମା ଶିବ ଧ୍ୟାନରେ ମଗ୍ନ ହୋଇଯିବାରୁ ତାଙ୍କ ମନରେ ଅନ୍ୟ କିଛି ଚିନ୍ତା ରହିଲା ନାହିଁ । କାଳୀ ପ୍ରତିଦିନ ମହାତ୍ମା ଶିବଙ୍କର ରୂପକୁ ନିରନ୍ତର ଚିନ୍ତନ କରି କରି ଉତ୍ତମ ଭକ୍ତିରେ ତାଙ୍କ ସେବାରେ ତତ୍ପର ରହିଲେ । ଧ୍ୟାନପରାୟଣ ହର ତାଙ୍କ ପାଖରେ ଶୁଦ୍ଧ ଭାବରେ ରହି ସେବା କରୁଥିବା କାଳୀଙ୍କୁ ନିତ୍ୟ ଦେଖୁଥିଲେ, ତଥାପି ପୂର୍ବ ଚିନ୍ତାକୁ ଭୁଲି ତାଙ୍କୁ ଦେଖି ମଧ୍ୟ କିଛି ଦେଖୁ ନ ଥିଲେ ।

ଇତିମଧ୍ୟରେ ଇନ୍ଦ୍ରାଦି ଦେବତା ତଥା ମୁନିମାନେ ବ୍ରହ୍ମାଙ୍କ ଆଜ୍ଞାରେ କାମଦେବଙ୍କୁ ଆଦରପୂର୍ବକ ସେଠାକୁ ପଠାଇଲେ । ସେମାନେ କାଳୀଙ୍କର ରୁଦ୍ରଙ୍କ ସହିତ କାମଭାବରେ ସଂଯୋଗ ସ୍ଥାପିତ କରାଇବାକୁ ଚାହୁଁଥିଲେ । ଏପରି କରିବାରେ ସେମାନଙ୍କର ଏକ ଉଦ୍ଦେଶ୍ୟ ଥିଲା । (ସେମାନେ ଶିବଙ୍କ ଠାରୁ ଏକ ଅତ୍ୟନ୍ତ ବଳବାନ୍ ପୁତ୍ରର ଉତ୍ପତ୍ତି ଚାହୁଁଥିଲେ ।) କାରଣ ସେମାନେ ମହାପରାକ୍ରମୀ ତାରକାସୁର ଦ୍ୱାରା ପ୍ରପୀଡ଼ିତ ଥିଲେ । କାମଦେବ ସେଠାରେ ପହଞ୍ଚି ତାଙ୍କର ସବୁ ପ୍ରକାର କୌଶଳ ପ୍ରୟୋଗ କଲେ । ମାତ୍ର ମହାଦେବଙ୍କ ମନରେ ତିଳେମାତ୍ର କ୍ଷୋଭ ଉତ୍ପନ୍ନ ହେଲା ନାହିଁ; ବରଂ ସେ କାମଦେବଙ୍କୁ ପୋଡ଼ି ଭସ୍ମ କରିଦେଲେ । ମୁନେ ! ତା'ପରେ ସତୀ ପାର୍ବତୀଙ୍କର ମଧ୍ୟ ଗର୍ବ ବା ଅଭିମାନ ନଷ୍ଟ ହୋଇଗଲା ଏବଂ ସେ ତୁମ ଆଜ୍ଞାରେ କଠୋର ତପସ୍ୟା କରି ଶିବଙ୍କୁ ସ୍ୱାମୀ ରୂପରେ ଲାଭ କଲେ । ଏହାପରେ ଶିବ ଓ ପାର୍ବତୀ ଅତ୍ୟନ୍ତ ପ୍ରେମ ଓ ପ୍ରସନ୍ନତାରେ କାଳାତିପାତ କଲେ । ସେ ଦୁହେଁ ପରୋପକାରରେ ତତ୍ପର ରହି ଦେବଗଣଙ୍କର ମହାନ୍ କାର୍ଯ୍ୟକୁ ସିଦ୍ଧ କଲେ । (ଅଧ୍ୟାୟ ୧୩)

★★★

## ତାରକାସୁର ଦ୍ୱାରା ପ୍ରପୀଡ଼ିତ ଦେବଗଣଙ୍କର ବ୍ରହ୍ମାଙ୍କ ସମକ୍ଷରେ ଆପଣା ବ୍ୟଥା ବର୍ଣ୍ଣନ, ପାର୍ବତୀଙ୍କ ସଙ୍ଗେ ଶିବଙ୍କର ବିବାହ ପାଇଁ ଉଦ୍ୟମ କରିବାକୁ ଦେବଗଣଙ୍କୁ ବ୍ରହ୍ମାଙ୍କ ଆଦେଶ, ବ୍ରହ୍ମା ବୁଝାଇବା ପରେ ତାରକାସୁରର ସ୍ୱର୍ଗ ପରିତ୍ୟାଗ ଏବଂ ସେଠାରେ ରହି ଲକ୍ଷ୍ୟସିଦ୍ଧି ନିମନ୍ତେ ଦେବଗଣଙ୍କ ପ୍ରଯତ୍ନ

ସୂତ କହୁଛନ୍ତି–ତା'ପରେ ନାରଦଙ୍କ ପ୍ରଶ୍ନର ଉତ୍ତରରେ ବ୍ରହ୍ମା ପାର୍ବତୀଙ୍କ ବିବାହର ବିସ୍ତୃତ ବର୍ଣ୍ଣନା କରିବା ସହିତ ତାରକାସୁରର ଉତ୍ପତ୍ତି, ତା'ର ଉଗ୍ର ତପସ୍ୟା, ମନୋବାଞ୍ଛିତ ବରପ୍ରାପ୍ତି

ଏବଂ ସମସ୍ତଙ୍କୁ ଜିଣି ଇନ୍ଦ୍ରପଦରେ ପ୍ରତିଷ୍ଠିତ ହେବାର ପ୍ରସଙ୍ଗ ଶୁଣାଇଲେ ।

ତା'ପରେ ବ୍ରହ୍ମା କହିଲେ–ତାରକାସୁର ତ୍ରିଲୋକକୁ ନିଜ ଅଧିକାରକୁ ଆଣି ଯେବେ ନିଜେ ଇନ୍ଦ୍ର ହୋଇଗଲା, ସେତେବେଳେ ତା' ସମକକ୍ଷ ହେବା ଭଳି ଅନ୍ୟ କେହି ଶାସକ ରହିଲା ନାହିଁ । ସେ ଜିତେନ୍ଦ୍ରିୟ ଅସୁର ତ୍ରିଭୁବନର ଏକମାତ୍ର ସ୍ୱାମୀ ହୋଇ ଅଦ୍ଭୁତ ଢଙ୍ଗରେ ରାଜ୍ୟ ସଂଚାଳନ କଲା ଏବଂ ସକଳ ଦେବତାଙ୍କୁ ତଡ଼ି ଦେଇ ସେମାନଙ୍କ ସ୍ଥାନରେ ଦୈତ୍ୟଗଣଙ୍କୁ ସ୍ଥାପିତ କରିଦେଲା । ସେ ବିଦ୍ୟାଧର ଆଦି ଦେବଜନ୍ମାମାନଙ୍କୁ ନିଜ କାର୍ଯ୍ୟରେ ଲଗାଇଲା । ମୁନେ ! ତାରକାସୁର ଦ୍ୱାରା ପ୍ରପୀଡ଼ିତ ଇନ୍ଦ୍ରାଦି ସକଳ ଦେବତା ଅତ୍ୟନ୍ତ ବ୍ୟାକୁଳ ହୋଇ ମୋଠାରେ ଶରଣ ପଶିଲେ । ସେମାନେ ମୋତେ ପ୍ରଣାମ କରି ଅତ୍ୟନ୍ତ ଭକ୍ତିସହକାରେ ସ୍ତୁତି କରିବା ପରେ ସେମାନଙ୍କର ଦାରୁଣ ଦୁଃଖ ବର୍ଣ୍ଣନା କରି କହିଲେ–"ପ୍ରଭୋ ! ଆପଣ ହିଁ ଆମର ଗତି, ଆପଣ ହିଁ ଆମର କର୍ତ୍ତବ୍ୟ ବୋଧକାରୀ ଏବଂ ଆପଣ ହିଁ ଆମର ଧାତା ଓ ଉଦ୍ଧାରକ । ଆମେ ସମସ୍ତ ଦେବତା ତାରକାସୁର ନାମକ ଅଗ୍ନିରେ ଦଗ୍ଧୀଭୂତ ହୋଇ ଅତ୍ୟନ୍ତ ବ୍ୟାକୁଳ ହେଉଛୁ । ସନ୍ନିପାତ ରୋଗରେ ଶକ୍ତିଶାଳୀ ଔଷଧ ମଧ୍ୟ ଯେପରି ବିଫଳ ହୋଇଯାଏ, ସେହିପରି ସେ ଅସୁର ଆମର ସମସ୍ତ କ୍ରୂର ଉପାୟକୁ ଶକ୍ତିହୀନ କରିଦେଇଛି । କେବଳ ଭଗବାନ ବିଷ୍ଣୁଙ୍କର ସୁଦର୍ଶନ ଚକ୍ର ଉପରେ ହିଁ ଆମର ବିଜୟ ଆଶା ଅବଲମ୍ବିତ ଥିଲା, ମାତ୍ର ତାହା ମଧ୍ୟ ତା' କଣ୍ଠଦେଶରେ କୁଣ୍ଠିତ ହୋଇଗଲା । ଚକ୍ର ତା' ଗଳାରେ ବାଜି ମଧ୍ୟ ତାକୁ କାଟି ପାରିଲା ନାହିଁ; ଚକ୍ର ତା' ବେକରେ ପଡ଼ି ଏପରି ଦିଶୁଥିଲା, ସତେ ଯେପରି ସେହି ଅସୁରକୁ ଫୁଲମାଳା ପିନ୍ଧାଯାଇଛି ।"

ମୁନେ ! ଦେବତାଙ୍କ କଥା ଶୁଣି ମୁଁ ସେମାନଙ୍କୁ କହିଲି–"ଦେବଗଣ ! ମୋରି ବରଦାନରେ ହିଁ ତାରକାସୁର ଏତେ ଆଗକୁ ଚାଲିଯାଇଛି । ତେଣୁ ମୋ ହାତରେ ତା'ର ବଧ ହେବା ଉଚିତ ହେବ ନାହିଁ । ଯାହାଦ୍ୱାରା କେହି ପାଳିତପୋଷିତ ହୋଇ ବଡ଼ ହୋଇଥାଏ, ତା'ଦ୍ୱାରା ତା'ର ବଧ ହେବା ଅନୁଚିତ କାର୍ଯ୍ୟ । ବିଷବୃକ୍ଷକୁ ମଧ୍ୟ ଯଦି କେହି ପାଣି ଦେଇ ବଡ଼ କରିଥାଏ, ତେବେ ସେହି ବୃକ୍ଷକୁ ସେ ନିଜେ କାଟିବାଟା ଅନୁଚିତ କାର୍ଯ୍ୟ ଧରାଯାଏ । ତୁମମାନଙ୍କର କାର୍ଯ୍ୟ କରିବାକୁ ଯୋଗ୍ୟ ହେଉଛନ୍ତି ଭଗବାନ ଶଙ୍କର । କିନ୍ତୁ ତୁମେମାନେ କହିଲେ ମଧ୍ୟ ସେ ସ୍ୱୟଂ ସେହି ଅସୁରକୁ ସାମନା କରିପାରିବେ ନାହିଁ । ତାରକ ଦୈତ୍ୟ ନିଜେ ହିଁ ନିଜ ପାପହେତୁ ନଷ୍ଟ ହୋଇଯିବ । ମୁଁ ଯେଉଁ ଉପଦେଶ ଦେଉଛି, ତୁମେ ତଦନୁସାରେ କାର୍ଯ୍ୟ କର । ମୋ ବର ପ୍ରଭାବ ଏଭଳି ଯେ ମୁଁ ତାକୁ ବଧ କରି ପାରିବି ନାହିଁ କି ବିଷ୍ଣୁ ମଧ୍ୟ ପାରିବେ ନାହିଁ କି ଶିବ ମଧ୍ୟ ପାରିବେ ନାହିଁ । ଅନ୍ୟ କେହି ବ୍ୟକ୍ତି ଅଥବା ସମସ୍ତ ଦେବତା ଏକତ୍ର ହୋଇ ମଧ୍ୟ ତାକୁ ମାରି ପାରିବେ ନାହିଁ । ଏହା ମୁଁ ସତ୍ୟ କରି କହୁଛି । ଦେବଗଣ ! ଯଦି ଶିବଙ୍କ ବୀର୍ଯ୍ୟରୁ କୌଣସି ପୁତ୍ର ଉତ୍ପନ୍ନ ହେବ, ସେ ହିଁ ତାରକାସୁରକୁ ବଧ କରି ପାରିବ, ଅନ୍ୟ କେହି ପାରିବ ନାହିଁ । ସୁରଗଣ ! ଏଣୁ ମୁଁ ଯେଉଁ ଉପାୟ କହୁଛି, ତାହା କର । ମହାଦେବଙ୍କ କୃପାରୁ ତାହା ନିଶ୍ଚୟ ସଫଳ ହେବ । ପୂର୍ବକାଳରେ ଯେଉଁ ଦକ୍ଷକନ୍ୟା ଯଜ୍ଞରେ ଦେହତ୍ୟାଗ କରିଦେଇଥିଲେ, ସେ ଏବେ ହିମାଳୟଙ୍କ ପତ୍ନୀ ମେନକାଙ୍କ ଗର୍ଭରୁ ଉତ୍ପନ୍ନ ହୋଇଛନ୍ତି । ଏ କଥା ତୁମମାନଙ୍କୁ ଜଣା । ମହାଦେବ ନିଶ୍ଚୟ ସେହି କନ୍ୟାର ପାଣିଗ୍ରହଣ କରିବେ; ତଥାପି ତୁମମାନଙ୍କୁ ମଧ୍ୟ ଏଥିପାଇଁ ପ୍ରଯତ୍ନ କରିବାକୁ ପଡ଼ିବ । ତୁମେ ଏଭଳି ଉଦ୍ୟମ କର, ଯେପରି ମେନକାକୁମାରୀ ପାର୍ବତୀଙ୍କ ଠାରେ

ଭଗବାନ ଶଙ୍କର ବୀର୍ଯ୍ୟ ଆଧାନ କରିପାରିବେ । ଭଗବାନ ଶଙ୍କର ଊର୍ଦ୍ଧ୍ୱରେତା ଅଟନ୍ତି, ତାଙ୍କ ବୀର୍ଯ୍ୟକୁ ପ୍ରସ୍ଖଳିତ କରିବାକୁ କେବଳ ପାର୍ବତୀ ହିଁ ସମର୍ଥ । ଅନ୍ୟ କୌଣସି ଅବଳା ନିଜ ଶକ୍ତିରେ ଏପରି କରିପାରିବ ନାହିଁ । ଗିରିରାଜଙ୍କ କନ୍ୟା ପାର୍ବତୀ ଏବେ ଯୁବାବସ୍ଥାରେ ପଦାର୍ପଣ କରି ସାରିଲେଣି ଏବଂ ସେ ହିମାଳୟରେ ତପସ୍ୟାରତ ମହାଦେବଙ୍କର ପ୍ରତିଦିନ ସେବା କରୁଛନ୍ତି । ପିତା ହିମବାନଙ୍କ ଆଦେଶ ଅନୁସାରେ ଶିବା ତାଙ୍କର ଦୁଇଜଣ ସଖୀଙ୍କ ସହିତ ଧ୍ୟାନପରାୟଣ ପରମେଶ୍ୱର ଶିବଙ୍କର ସାଗ୍ରହ ସେବା କରୁଛନ୍ତି । ତ୍ରୈଲୋକ୍ୟ-ସୁନ୍ଦରୀ ପାର୍ବତୀ ପ୍ରତିଦିନ ଶିବଙ୍କ ସମ୍ମୁଖରେ ରହି ତାଙ୍କର ସେବା କରୁଥିଲେ ସୁଦ୍ଧା ମହେଶ୍ୱର ଧ୍ୟାନଭଙ୍ଗ କରି ପାର୍ବତୀଙ୍କ ଆଡ଼କୁ ଚ୍ଛହିଁବାକୁ ମଧ୍ୟ ଇଚ୍ଛା କରୁ ନାହାନ୍ତି । ଦେବଗଣ ! ଚନ୍ଦ୍ରଶେଖର ଶିବ ଯେଉଁ ପ୍ରକାରେ ତାଙ୍କୁ ନିଜର ଭାର୍ଯ୍ୟା କରିବାକୁ ଇଚ୍ଛା କରିବେ, ତୁମେମାନେ ଅତିଶୀଘ୍ର ସେହିପରି ଚେଷ୍ଟା କର । ମୁଁ ଦୈତ୍ୟ ତାରକାସୁର ପାଖକୁ ଯାଇ ତାକୁ ଦୁରାଗ୍ରହରୁ ନିବୃତ୍ତ କରିବାକୁ ଚେଷ୍ଟା କରିବି । ତେଣୁ ଏବେ ତୁମେମାନେ ସ୍ୱସ୍ଥାନକୁ ଫେରିଯାଅ ।

ନାରଦ ! ଦେବତାଙ୍କୁ ଏପରି କହି ମୁଁ ଖୁବ୍ ଶୀଘ୍ର ତାରକାସୁରକୁ ଭେଟିଲି ଏବଂ ସ୍ନେହରେ ତାକୁ ନିକଟକୁ ଡାକି ଏହିପରି କହିଲି—

''ତାରକ ! ଏ ସ୍ୱର୍ଗ ଆମ ତେଜର ସାରତତ୍ତ୍ୱ, ହେଲେ ତୁମେ ଏଠାରେ ରାଜ୍ୟଶାସନ କରୁଛ । ଯାହା କିଛି ପାଇବା ପାଇଁ ତୁମେ ତପସ୍ୟା କରିଥିଲ, ତା'ଠାରୁ ଅଧିକ ଲୋଭ କରୁଛ । ମୁଁ ତୁମକୁ ଏତେ ଅଧିକ ବର ଦେଇ ନ ଥିଲି । ସ୍ୱର୍ଗର ରାଜ୍ୟ ମୁଁ ତୁମକୁ କଦାପି ଦେଇ ନ ଥିଲି । ଏଣୁ ତୁମେ ସ୍ୱର୍ଗ ଛାଡ଼ି ପୃଥିବୀରେ ରାଜୁତି କର । ଅସୁରଶ୍ରେଷ୍ଠ ! ଦେବତାଙ୍କ ଯୋଗ୍ୟ ଯାହା କିଛି ଅଛି, ସେସବୁ ତୁମକୁ ଯେ ସେଠାରେ ସୁଲଭ ହୋଇଯିବ, ଏଥିରେ ତିଳେମାତ୍ର ସନ୍ଦେହ କର ନାହିଁ ।''

ତାରକାସୁରକୁ ଏପରି ବୁଝାଇବା ପରେ ମୁଁ ଶିବ ଓ ଶିବାଙ୍କୁ ସ୍ମରଣ କରି ସେଠାରୁ ଅଦୃଶ୍ୟ ହୋଇଗଲି । ତାରକାସୁର ମଧ୍ୟ ସ୍ୱର୍ଗ ଛାଡ଼ି ପୃଥିବୀପୃଷ୍ଠକୁ ଚ୍ଛଲିଆସିଲା ଏବଂ ଶୋଣିତପୁରରେ ରହି ରାଜୁତି କଲା । ତା'ପରେ ଦେବଗଣ ମଧ୍ୟ ମୋ କଥା ଶୁଣି ମୋତେ ପ୍ରଣାମ କରି ଆନନ୍ଦରେ ଇନ୍ଦ୍ରଙ୍କ ସଙ୍ଗେ ଇନ୍ଦ୍ରଲୋକକୁ ଫେରିଗଲେ । ସେଠାକୁ ଯାଇ ଦେବଗଣ ପରସ୍ପର ମଧ୍ୟରେ ବିଚ୍ଛରବିମର୍ଶ କରି ଇନ୍ଦ୍ରଙ୍କୁ କହିଲେ—''ଭଗବନ୍ ! ଶିବଙ୍କର ଯେପରି ଶିବାଙ୍କ ପ୍ରତି କାମବିଷୟକ ରୁଚି ଉତ୍ପନ୍ନ ହେବ, ସେପରି ଉପାୟ କରନ୍ତୁ ।

ଦେବଗଣ ଏହିପରି ଦେବରାଜ ଇନ୍ଦ୍ରଙ୍କୁ ସମସ୍ତ ବୃତ୍ତାନ୍ତ ନିବେଦନ କରି ନିଜ ନିଜ ସ୍ଥାନକୁ ଚ୍ଛଲିଗଲେ । (ଅଧ୍ୟାୟ ୧୪–୧୬)

***

## ଇନ୍ଦ୍ର ଓ କାମଦେବଙ୍କ ମଧ୍ୟରେ ବାର୍ତ୍ତାଳାପ ଏବଂ ଇନ୍ଦ୍ରଙ୍କ ନିର୍ଦ୍ଦେଶାନୁସାରେ ଶିବଙ୍କୁ ମୋହିତ କରିବା ଉଦ୍ଦେଶ୍ୟରେ କାମଦେବଙ୍କର ଶିବଙ୍କ ନିକଟକୁ ଗମନ

ବ୍ରହ୍ମା କହୁଛନ୍ତି—ନାରଦ ! ଦେବଗଣ ଚ୍ଛଲିଯିବା ପରେ ଦୁରାତ୍ମା ତାରକାସୁର ଦ୍ୱାରା ପୀଡ଼ିତ ଇନ୍ଦ୍ର କାମଦେବଙ୍କୁ ସ୍ମରଣ କଲେ । କାମଦେବ ତୁରନ୍ତ ସେଠାରେ ପହଞ୍ଚିଗଲେ । ଇନ୍ଦ୍ର ମିତ୍ରତା ଧର୍ମ ସ୍ମରଣ କରାଇ କାମଦେବଙ୍କୁ କହିଲେ—''ମିତ୍ର ! କାଳବଶାତ୍ ମୋ ଉପରେ ବହୁତ ବଡ଼ ଅସାଧ୍ୟ

ବିପତ୍ତି ପଡ଼ିଛି । ତାହାକୁ ତୁମ ବିନା ଆଉ କେହି ଦୂର କରିପାରିବ ନାହିଁ । ଦାତାର ପରୀକ୍ଷା ଦୁର୍ଭିକ୍ଷରେ, ବୀରର ପରୀକ୍ଷା ରଣଭୂମିରେ, ମିତ୍ରର ପରୀକ୍ଷା ବିପତ୍ତିକାଳରେ ଏବଂ ସ୍ତ୍ରୀମାନଙ୍କ କୁଳର ପରୀକ୍ଷା ସ୍ୱାମୀ ଅସମର୍ଥ ହେବା ସ୍ଥିତିରେ ହୋଇଥାଏ । ତାତ ! ସଙ୍କଟ ପଡ଼ିଲେ ବିନୟର ପରୀକ୍ଷା ହୋଇଥାଏ ଏବଂ ପରୋକ୍ଷରେ ହିଁ ସତ୍ୟ ଓ ଉତ୍ତମ ସ୍ନେହର ପରୀକ୍ଷା ହୋଇଥାଏ । ଏହା ମୋର ସତ୍ୟ ବଚନ ।* ମିତ୍ରବର ! ଏବେ ମୋ ଉପରେ ଯେଉଁ ବିପତ୍ତି ଆସିଛି, ତାହା ଆଉ କାହାଦ୍ୱାରା ନିବାରଣ ହୋଇପାରିବ ନାହିଁ । ତେଣୁ ଆଜି ତୁମର ପରୀକ୍ଷା ହୋଇଯିବ । ଏ କାର୍ଯ୍ୟ ଯେ କେବଳ ମୋର ଏବଂ କେବଳ ମୋତେ ଯେ ସୁଖ ଦେବ, ସେକଥା ନୁହେଁ । ଏହା



ନିଶ୍ଚିତରୂପେ ସମସ୍ତ ଦେବତା ପ୍ରଭୃତିଙ୍କ କାର୍ଯ୍ୟ ।"

ଇନ୍ଦ୍ରଙ୍କ କଥା ଶୁଣି କାମଦେବ ସ୍ମିତହାସ କରି ପ୍ରେମପୂର୍ଣ୍ଣ ଚିତ୍ତରେ ଗମ୍ଭୀର ବାଣୀରେ କହିଲେ ।

କାମ କହିଲେ—ଦେବରାଜ ! ଆପଣ ଏଭଳି କଥା କାହିଁକି କହୁଛନ୍ତି? ମୁଁ ଆପଣଙ୍କୁ ଉତ୍ତର ଦେଉ ନାହିଁ (କେବଳ ନିବେଦନ ମାତ୍ର କରୁଛି) । ଜଗତରେ କେଉଁ ମିତ୍ର ପ୍ରକୃତରେ ଉପକାରୀ ଆଉ କେଉଁ ମିତ୍ର ଲୋକ-ଦେଖାଣିଆ, ତାହା କେବଳ କଥାରୁ ନୁହେଁ, ପରୀକ୍ଷାରୁ ହିଁ ଧରାପଡ଼ିଥାଏ । ଯେ ସଂକଟ ସମୟରେ କେବଳ ଭାଷଣ ଦିଏ, ସେ କାମ କ'ଣ ବା କରିବ? ତଥାପି ମହାରାଜ ! ମୁଁ ଯାହା କିଛି କହୁଛି, ଶୁଣନ୍ତୁ । ମିତ୍ର ! ଯେ ଆପଣଙ୍କ ଇନ୍ଦ୍ରପଦକୁ ଛଡ଼ାଇ ନେବାକୁ କଠୋର ତପସ୍ୟା କରୁଛି, ଆପଣଙ୍କର ସେ ଶତ୍ରୁ; ମୁଁ ତାହାକୁ ତପସ୍ୟାରୁ ଚ୍ୟୁତ କରିଦେବି । ଯେଉଁ କାମ ଯାହାଦ୍ୱାରା ପୂର୍ଣ୍ଣ ହେବା ସମ୍ଭବ, ବୁଦ୍ଧିମାନ୍ ବ୍ୟକ୍ତି ତାହାକୁ ହିଁ ସେହି କାର୍ଯ୍ୟରେ ଲଗାଇବା ଉଚିତ । ମୋ ପକ୍ଷେ ଯେଉଁ କାର୍ଯ୍ୟ ହେବା ସମ୍ଭବ, ତାହାର ଦାୟିତ୍ୱ ମୋ ଉପରେ ଛାଡ଼ିଦିଅନ୍ତୁ ।

ବ୍ରହ୍ମା କହୁଛନ୍ତି—କାମଦେବଙ୍କ କଥା ଶୁଣି ଇନ୍ଦ୍ରଦେବ ବହୁତ ପ୍ରସନ୍ନ ହେଲେ । ସେ କାମିନୀଙ୍କର ସୁଖଦାତା କାମଦେବଙ୍କୁ ପ୍ରଣାମ କରି ତାଙ୍କୁ ଏହିପରି କହିଲେ—

ଇନ୍ଦ୍ର କହିଲେ—ତାତ ! ମନୋଭବ ! ମୁଁ ଯେଉଁ କାର୍ଯ୍ୟ ପୂର୍ଣ୍ଣ କରିବାର ଉଦ୍ଦେଶ୍ୟ ମନରେ ରଖିଛି, ତାହାକୁ କେବଳ ତୁମେ ହିଁ ସାଧିତ କରିପାରିବ । ଅନ୍ୟ କାହାଦ୍ୱାରା ସେହି କାର୍ଯ୍ୟ ହେବା ସମ୍ଭବ ନୁହେଁ । ମିତ୍ରବର ! ଯେଉଁ କାର୍ଯ୍ୟ ପାଇଁ ମୋତେ ତୁମର ସହଯୋଗ ଲୋଡ଼ା, ମୁଁ

* ଦାତୁଃ ପରୀକ୍ଷା ଦୁର୍ଭିକ୍ଷେ ରଣେ ଶୂରସ୍ୟ ଜାୟତେ । ଆପଦ୍‌କାଲେ ତୁ ମିତ୍ରସ୍ୟାଶକ୍ତୌ ସ୍ତ୍ରୀଣାଂ କୁଳସ୍ୟ ହି ॥
ବିନତେଃ ସଂକଟେ ପ୍ରାପ୍ତେଽବିତଥସ୍ୟ ପରୋକ୍ଷତଃ । ସୁସ୍ନେହସ୍ୟ ତଥା ତାତ ନାନ୍ୟଥା ସତ୍ୟମୀରିତମ୍ ॥
(ଶି. ପୁ. ରୁ. ସଂ. ପା. ଖ. ୧୭ । ୧୨-୧୩)

ତାହା ଯଥାର୍ଥରୂପେ କହୁଛି, ଶୁଣ । ତାରକ ନାମକ ଯେଉଁ ପ୍ରସିଦ୍ଧ ଦୈତ୍ୟ ବ୍ରହ୍ମାଙ୍କ ବରରେ ଅଜେୟ ହୋଇଯାଇଛି, ସେ ସମସ୍ତଙ୍କୁ ଦୁଃଖ ଦେଉଛି । ସେ ସମଗ୍ର ସଂସାରକୁ ଉତ୍ପୀଡ଼ିତ କରି ରଖିଛି; ପୁଣି ବାରଂବାର ଧର୍ମ ନାଶ କରୁଛି । ତା' ଯୋଗୁଁ ସମସ୍ତ ଦେବତା ଓ ଋଷି ଦୁଃଖରେ କାଳାତିପାତ କରୁଛନ୍ତି । ସମସ୍ତ ଦେବତା ଏକାଠି ହୋଇ ତା' ସଙ୍ଗେ ଯୁଦ୍ଧ କରିଥିଲେ, ହେଲେ ତା' ଆଗରେ ସମସ୍ତଙ୍କ ଅସ୍ତ୍ରଶସ୍ତ୍ର ବିଫଳ ହୋଇଗଲା । ଜଳର ସ୍ୱାମୀ ବରୁଣଙ୍କର ପାଶ ଛିଡ଼ିଗଲା । ବିଷ୍ଣୁଙ୍କର ସୁଦର୍ଶନ ଚକ୍ର ସେଠାରେ ସଫଳ ହେଲା ନାହିଁ । ବିଷ୍ଣୁ ତା' କଣ୍ଠଦେଶକୁ ଚକ୍ର ପେଷିଲେ, ଅଥଚ ତାହା ସେଠାକୁ ଯାଇ କୁଣ୍ଠିତ ହୋଇଗଲା । ବ୍ରହ୍ମା ସେହି ଦୁରାତ୍ମା ଦୈତ୍ୟର ମୃତ୍ୟୁ କେବଳ ମହାଯୋଗୀଶ୍ୱର ଭଗବାନ ଶମ୍ଭୁଙ୍କ ବୀର୍ଯ୍ୟରୁ ଉତ୍ପନ୍ନ ପୁତ୍ର ହାତରେ ହେବ ବୋଲି ନିର୍ଦ୍ଧାରିତ କରିଛନ୍ତି । ଏ କାର୍ଯ୍ୟ ତୁମକୁ ଠିକ୍‌ଭାବେ ସମ୍ପନ୍ନ କରିବାକୁ ହେବ । ଏହା ହୋଇଗଲେ ଆମ ଦେବତାମାନଙ୍କୁ ବହୁତ ସୁଖ ମିଳିବ । ଭଗବାନ ଶମ୍ଭୁ ଗିରିରାଜ ହିମାଳୟ ଉପରେ ତପସ୍ୟାରତ । ସେ ଆମର ପ୍ରଭୁ; ସେ କାମର ବଶ ନୁହନ୍ତି, ପୁଣି ସେ ସ୍ୱତନ୍ତ୍ର ପରମେଶ୍ୱର । ମୁଁ ଶୁଣିଛି ଯେ ଗିରିରାଜନନ୍ଦିନୀ ପାର୍ବତୀ ପିତାଙ୍କ ଆଜ୍ଞାରେ ନିଜର ଦୁଇଜଣ ସଖୀଙ୍କ ସହିତ ତାଙ୍କ ସମୀପରେ ରହି ତାଙ୍କ ସେବା କରୁଛନ୍ତି । ସେ ମହାଦେବଙ୍କୁ ସ୍ୱାମୀ ରୂପରେ ପାଇବାକୁ ଏ ପ୍ରଯତ୍ନ କରୁଛନ୍ତି । ମାତ୍ର ଭଗବାନ ଶିବ ଆପଣା ମନକୁ ସଂଯମ-ନିୟମରେ ବଶ କରି ରଖିଛନ୍ତି । କନ୍ଦର୍ପ! ଯେଉଁ ପ୍ରକାରେ ତାଙ୍କ ଚିତ୍ତ ପାର୍ବତୀଙ୍କ ପ୍ରତି ଅତ୍ୟନ୍ତ ଆକୃଷ୍ଟ ହୋଇଯିବ, ତୁମକୁ ସେଭଳି ପ୍ରଯତ୍ନ କରିବାକୁ ହେବ । ଏହି କାର୍ଯ୍ୟ କରିଦେଲେ ତୁମେ କୃତାର୍ଥ ହୋଇଯିବ ଏବଂ ମୋର ମଧ୍ୟ ସମସ୍ତ ଦୁଃଖ ନଷ୍ଟ ହୋଇଯିବ । କେବଳ ଏତିକି ନୁହେଁ, ଜଗତରେ ତୁମର ମଧ୍ୟ ସ୍ଥାୟୀ ପ୍ରଭାବ ବିସ୍ତାର ହୋଇଯିବ ।

ବ୍ରହ୍ମା କହୁଛନ୍ତି—ନାରଦ! ଇନ୍ଦ୍ରଙ୍କ ବାକ୍ୟ ଶୁଣି କାମଦେବଙ୍କ ମୁଖାରବିନ୍ଦ ପ୍ରସନ୍ନତାରେ ଉଲ୍ଲସିତ ହୋଇଉଠିଲା । ସେ ଦେବରାଜ ଇନ୍ଦ୍ରଙ୍କୁ ପ୍ରେମପୂର୍ବିକ କହିଲେ—''ମୁଁ ଏ କାର୍ଯ୍ୟ ଅବଶ୍ୟ ସାଧିତ କରିବି, ଏଥିରେ ସଂଶୟ ନାହିଁ ।'' ଏହିରୂପେ ଶିବମାୟାରେ ମୋହିତ କାମଦେବ ସେହି କାର୍ଯ୍ୟ କରିବାକୁ ସ୍ୱୀକୃତି ଦେଇଦେଲେ ଏବଂ ଶୀଘ୍ର ସେହି କାର୍ଯ୍ୟଭାର ଗ୍ରହଣ କଲେ । ସେ ଆପଣା ସ୍ତ୍ରୀ ରତିକୁ ଓ ବସନ୍ତକୁ ସଙ୍ଗରେ ନେଇ ଅତି ଉତ୍ସାହର ସହ ସେହି ସ୍ଥାନକୁ ବାହାରିଲେ, ଯେଉଁଠି ସାକ୍ଷାତ୍ ଯୋଗୀଶ୍ୱର ଶିବ ଉତ୍ତମ ତପସ୍ୟା କରୁଥିଲେ । (ଅଧ୍ୟାୟ ୧୭)



## ରୁଦ୍ରଙ୍କ ନେତ୍ରଜନିତ ଅଗ୍ନିରେ କାମଦେବଙ୍କ ଦହନ, ରତିଙ୍କ ବିଳାପ, ଦେବଗଣ ପ୍ରାର୍ଥନା କରିବାରୁ କାମଦେବ ପ୍ରଦ୍ୟୁମ୍ନ ରୂପେ ନୂତନ ଦେହ ପାଇବେ ବୋଲି ଶିବଙ୍କ ବରଦାନ ଏବଂ ରତିଙ୍କର ଶମ୍ବର-ନଗରକୁ ଗମନ

ବ୍ରହ୍ମା କହୁଛନ୍ତି—ମୁନେ ! କାମଦେବ ତାଙ୍କର ସାଥୀ ବସନ୍ତ ପ୍ରଭୃତିଙ୍କୁ ସଙ୍ଗରେ ଧରି ସେଠାରେ ପହଞ୍ଚିଲେ । ସେ ଶିବଙ୍କ ଉପରକୁ ନିଜର ଶର ମାରିଦେଲେ । ତା'ଫଳରେ ଶିବଙ୍କ ମନରେ ପାର୍ବତୀଙ୍କ ପ୍ରତି ଆକର୍ଷଣ ସୃଷ୍ଟି ହେଲା ଏବଂ ତାଙ୍କର ଧୈର୍ଯ୍ୟଚ୍ୟୁତି ହେବାକୁ ଲାଗିଲା । ଶମ୍ଭୁ ନିଜ ଧୈର୍ଯ୍ୟ ହ୍ରାସ ପାଉଥିବା ଲକ୍ଷ୍ୟ କରି ବିସ୍ମିତ ହେଲେ ଏବଂ ମନେ ମନେ ଏହିପରି ଭାବିଲେ—

ଶିବ କହିଲେ–ମୁଁ ତ ଉତ୍ତମ ତପସ୍ୟା କରୁଥିଲି, ସେଥିରେ ବିଘ୍ନ କିପରି ଉପସ୍ଥିତ ହେଲା? କେଉଁ କୁକର୍ମୀ ଏଠି ମୋ ଚିତ୍ତରେ ବିକାର ଉତ୍ପନ୍ନ କରିଦେଲ।?

ଏହିଭଳି ଚିନ୍ତନ କରୁ କରୁ ସତ୍‌ପୁରୁଷଙ୍କ ଆଶ୍ରୟଦାତା ମହାଯୋଗୀ ପରମେଶ୍ୱର ଶିବ ସନ୍ଦେହରେ ଚାରିଆଡ଼କୁ ଆଖି ବୁଲାଇଲେ । ଏତିକିବେଳେ ବାମପଟରେ ତୀର ସନ୍ଧାନ କରି ଛିଡ଼ା ହୋଇଥିବା ମଦନ ଉପରେ ତାଙ୍କ ଦୃଷ୍ଟି ପଡ଼ିଗଲା । ସେ ମୂଢ଼ ନିଜ ଶକ୍ତିର ଅହଂକାରରେ ପୁନଃ ଶର ମାରିବାକୁ ଚାହୁଁଥିଲା । ନାରଦ ! ତା' ଉପରେ ଦୃଷ୍ଟି ପଡୁ ପଡୁ ଗିରୀଶଙ୍କୁ କ୍ରୋଧ ଆସିଗଲା । ମୁନେ ! ତେଣେ ଆକାଶରେ ଧନୁଶର ଧରି ଠିଆ ହୋଇଥିବା କନ୍ଦର୍ପ ଭଗବାନ ଶିବଙ୍କ ଉପରକୁ ତା'ର ଅମୋଘ ଅସ୍ତ୍ର ଛାଡ଼ିଦେଲା । ତାହାକୁ ନିବାରଣ କରିବା ଯଦିଓ ଅତ୍ୟନ୍ତ କଠିନ ଥିଲା, ତଥାପି ପରମାତ୍ମା ଶିବଙ୍କ ଉପରେ ତାହା ବ୍ୟର୍ଥ ହୋଇଗଲା; କୁପିତ ପରମେଶ୍ୱରଙ୍କ ପାଖରେ ପହଞ୍ଚି ତାହା ଶାନ୍ତ ହୋଇଗଲା । ଶିବଙ୍କ ଉପରେ ଅସ୍ତ୍ର କାମ ନ କରିବା ଦେଖି ମନ୍ମଥ ଭୟଭୀତ ହୋଇଗଲା । ମୃତ୍ୟୁଞ୍ଜୟଙ୍କୁ ସମ୍ମୁଖରେ ଦେଖି ସେ ଥରିବାକୁ ଲାଗିଲା ଏବଂ ବ୍ୟାକୁଳ ହୋଇ ଇନ୍ଦ୍ରାଦି ଦେବତାଙ୍କୁ ସ୍ମରଣ କଲା । ମୁନିଶ୍ରେଷ୍ଠ ! କାମଦେବ ସ୍ମରଣ କରିବାରୁ ଇନ୍ଦ୍ରାଦି ଦେବତା ସେଠାରେ ଆସି ପହଞ୍ଚିଲେ ଏବଂ ଶମ୍ଭୁଙ୍କୁ ପ୍ରଣାମ କରି ସ୍ତୁତି କରିବାକୁ ଲାଗିଲେ ।

ଦେବଗଣ ସ୍ତୁତି କରୁ କରୁ କୁପିତ ମହାଦେବଙ୍କ ଲଲାଟର ମଧ୍ୟଭାଗରେ ସ୍ଥିତ ତୃତୀୟ ନେତ୍ରରୁ ଭୀଷଣ ଅଗ୍ନିଜ୍ୱାଳା ବାହାରିଲା । ତାହାର ପ୍ରଭା ପ୍ରଳୟାଗ୍ନି ପରି ଜଣାପଡୁଥିଲା । ତାହା ଅଗ୍ନିକ ଆକାଶକୁ ଉଠିଯାଇ ଚାରିଆଡ଼େ ଘୂରି ଘୂରି ଭୂମି ଉପରେ ଖସିପଡ଼ିଲା । "ସାଧୋ ! ଭଗବନ୍ ! କ୍ଷମା କରନ୍ତୁ, କ୍ଷମା କରନ୍ତୁ" ଏପରି ଧ୍ୱନି ଦେବତାଙ୍କ ମୁଖରୁ ବାହାରୁ ବାହାରୁ ସେହି ପ୍ରଳୟଙ୍କର ଅଗ୍ନି କାମଦେବଙ୍କୁ ପୋଡ଼ି ଭସ୍ମ କରିଦେଲା । ବୀର କାମଦେବ ଭସ୍ମ ହୋଇଯିବା ଦେଖି ଦେବତାଙ୍କୁ ବହୁତ ଦୁଃଖ ଲାଗିଲା । ସେମାନେ ବ୍ୟାକୁଳ ହୋଇ "ହାୟ ! ଏ କ'ଣ ହେଲା?" ଏପରି କହି ଉଚ୍ଚସ୍ୱରରେ ଚିତ୍କାର କରି କାନ୍ଦିବାକୁ ଲାଗିଲେ ।



ସେତିକିବେଳେ ପାର୍ବତୀ ମଧ୍ୟ ପାଗଳୀ ପରି ହୋଇଗଲେ ଏବଂ ତାଙ୍କ ଶରୀର ଶ୍ୱେତା ପଡ଼ିଗଲା, ସତେ ଯେପରି ରକ୍ତ ନାହିଁ । ସେ ଚକିତ ହୋଇଗଲେ । ସେ ସଖୀମାନଙ୍କୁ ନେଇ ନିଜ ଭବନକୁ ପଳାଇଗଲେ । କାମଦେବ ଭସ୍ମ ହୋଇଯିବାରୁ ରତି ସେଠାରେ କ୍ଷଣକ ପାଇଁ ଅଚେତ ହୋଇ ତଳେ ପଡ଼ିଗଲେ, ସତେ ଯେପରି ପତିଙ୍କ ମୃତ୍ୟୁଜନିତ ଦୁଃଖରେ ସେ ମଧ୍ୟ ମରିଯାଇଛନ୍ତି । କିଛି ସମୟ ପରେ ଚେତନା ଫେରିବାରୁ ସେ ବ୍ୟାକୁଳ ହୋଇ ନାନା ପ୍ରକାରେ ପ୍ରଳାପ କରି କାନ୍ଦିବାକୁ ଲାଗିଲେ ।

ରତି କହିଲେ–ହାୟ ! ମୁଁ କ'ଣ କରିବି? କେଉଁଠିକି ଯିବି? ଦେବତାମାନେ ଏ କ'ଣ କରିଦେଲେ? ମୋ ଉଦ୍ଦଣ୍ଡ ସ୍ୱାମୀଙ୍କୁ ଡାକି ତାଙ୍କୁ ମୃତ୍ୟୁମୁଖକୁ ଠେଲିଦେଲେ । ହାୟ ! ହା ନାଥ !

ସ୍ୱାମୀ ! ସ୍ମର ! ପ୍ରାଣପ୍ରିୟ ! ହେ ମୋର ସୁଖଦାତା ପ୍ରିୟତମ ! ହେ ପ୍ରାଣନାଥ ! ଏ କ'ଣ ହୋଇଗଲା?

ବ୍ରହ୍ମା କହୁଛନ୍ତି—ନାରଦ ! ରତି ଏପରି କାନ୍ଦି-ବୋବାଇ ଓ ହାତଗୋଡ଼ କଚାଡ଼ି, ମୁଣ୍ଡକୋଡ଼ି ଅନେକ ପ୍ରକାରେ ବିଳାପ-ପ୍ରଳାପ କଲେ । ତାଙ୍କର ବିଳାପ ଶୁଣି ସେଠାରେ ଥିବା ସମସ୍ତ ବନବାସୀ ଜଙ୍ଗମ ପ୍ରାଣୀ ଓ ବୃକ୍ଷଲତା ଆଦି ସ୍ଥାବର ପ୍ରାଣୀ ବହୁତ ଦୁଃଖିତ ହେଲେ । ଇତି ମଧ୍ୟରେ ଇନ୍ଦ୍ରାଦି ଦେବତା ମହାଦେବଙ୍କୁ ସ୍ମରଣ କରିବା ପରେ ରତିଙ୍କୁ ଆଶ୍ୱାସନା ଦେଇ କହିଲେ—

ଦେବଗଣ କହିଲେ—ତୁମେ କାମଙ୍କ ଶରୀରର ଭସ୍ମ ଟିକିଏ ଆଣି ସାଇତି ରଖ ଏବଂ ଭୟ ତ୍ୟାଗ କର । ଆମ ସମସ୍ତଙ୍କର ସ୍ୱାମୀ ମହାଦେବ କାମଦେବଙ୍କୁ ପୁନଃ ଜୀବିତ କରିଦେବେ; ଏବଂ ତୁମେ ପୁଣି ତୁମ ପ୍ରିୟତମଙ୍କୁ ଫେରି ପାଇବ । କେହି କାହାକୁ ସୁଖ ଦେଇ ପାରେ ନାହିଁ କି ଦୁଃଖ ଦେଇ ପାରେ ନାହିଁ । ସମସ୍ତେ ନିଜ ନିଜ କର୍ମର ଫଳ ଭୋଗିଥାନ୍ତି । ତୁମେ ଦେବତାଙ୍କୁ ଦୋଷ ଦେଇ ବୃଥାରେ ଶୋକ କରୁଛ ।

ଏହିରୂପେ ରତିକୁ ଆଶ୍ୱାସନା ଦେଇ ସମସ୍ତ ଦେବତା ଭଗବାନ ଶିବଙ୍କ ପାଖକୁ ଆସିଲେ ଏବଂ ତାଙ୍କୁ ଭକ୍ତିଭାବରେ ପ୍ରସନ୍ନ କରି କହିଲେ—

ଦେବଗଣ କହିଲେ—ପ୍ରଭୋ! ଶରଣାଗତ-ବତ୍ସଳ ମହେଶ୍ୱର ! ଆପଣ କୃପା କରି ଆମ ଗୁହାରି ଶୁଣନ୍ତୁ । ଆପଣ କାମଦେବଙ୍କ କର୍ତ୍ତୃତ୍ୱ ଉପରେ ପ୍ରସନ୍ନତାପୂର୍ବକ ଭଲଭାବେ ବିଚାର କରନ୍ତୁ । ମହେଶ୍ୱର ! କାମଦେବ ଯେଉଁ କାର୍ଯ୍ୟ କଲେ, ସେଥିରେ ତାଙ୍କର କୌଣସି ବ୍ୟକ୍ତିଗତ ସ୍ୱାର୍ଥ ନ ଥିଲା । ଦୁଷ୍ଟ ତାରକାସୁର ଦ୍ୱାରା ପୀଡ଼ିତ ଆମେସବୁ ଦେବତା ମିଶି ତାଙ୍କ ଦ୍ୱାରା ଏ କାର୍ଯ୍ୟ କରାଇଥିଲୁ । ନାଥ ! ଶଙ୍କର ! ଏହାକୁ ଆପଣ ଅନ୍ୟଥା ନ ବୁଝନ୍ତୁ । ହେ ସର୍ବସ୍ୱଦାନୀ ମହାଦେବ ! ଗିରୀଶ ! ସତୀ-ସାଧ୍ୱୀ ରତି ଏକାକିନୀ ଓ ଅତ୍ୟନ୍ତ ଦୁଃଖିନୀ ହୋଇ ବିଳାପ କରୁଛନ୍ତି । ଆପଣ ତାଙ୍କୁ ସାନ୍ତ୍ୱନା ପ୍ରଦାନ କରନ୍ତୁ । ପ୍ରଭୋ ! ଯଦି ଆପଣ କ୍ରୋଧରେ କାମଦେବଙ୍କୁ ଏମିତି ମାରିଦେଲେ, ତେବେ ତ ଆମେ ବୁଝିବୁ ଯେ ଆପଣ ଦେବଗଣଙ୍କ ସମେତ ସମସ୍ତ ପ୍ରାଣୀଙ୍କୁ ଏବେ ସଂହାର କରିଦେବାକୁ ଚାହୁଁଛନ୍ତି । ରତିଙ୍କ ଦୁଃଖ ଦେଖି ଦେବଗଣ ନଷ୍ଟପ୍ରାୟ ହୋଇଗଲେଣି । ଏଣୁ ଆପଣ ରତିଙ୍କ ଦୁଃଖ ଦୂର କରିଦେବା ଉଚିତ ।

ବ୍ରହ୍ମା କହୁଛନ୍ତି—ନାରଦ ! ଦେବଗଣଙ୍କ କଥା ଶୁଣି ମହାଦେବ ପ୍ରସନ୍ନ ହୋଇ ଏହିପରି କହିଲେ—

ଶିବ କହିଲେ—ଦେବଗଣ ଓ ଋଷିଗଣ ! ତୁମେମାନେ ଆଦରପୂର୍ବକ ମୋ କଥା ଶୁଣ । ମୋ କ୍ରୋଧରେ ଯାହା କିଛି ହୋଇଯାଇଛି, ତାହା ଅନ୍ୟଥା ହୋଇପାରିବ ନାହିଁ । ରୁକ୍ମିଣୀପତି ଶ୍ରୀକୃଷ୍ଣଙ୍କର ପୃଥିବୀପୃଷ୍ଠରେ ଅବତାର ନ ହେବା ପର୍ଯ୍ୟନ୍ତ ରତିଙ୍କ ଶକ୍ତିଶାଳୀ ସ୍ୱାମୀ କାମଦେବ ଅନଙ୍ଗ (ଦେହରହିତ) ହୋଇ ରହିବେ । ଯେତେବେଳେ ଶ୍ରୀକୃଷ୍ଣ ଦ୍ୱାରକାରେ ରହି ପୁତ୍ର ଉତ୍ପନ୍ନ କରିବେ, ସେତେବେଳେ ସେ ରୁକ୍ମିଣୀଙ୍କ ଗର୍ଭରୁ କାମଦେବଙ୍କୁ ଜନ୍ମ ଦେବେ । ସେତେବେଳେ କାମଦେବଙ୍କ ନାମ ହେବ 'ପ୍ରଦ୍ୟୁମ୍ନ' । ସେହି ପୁତ୍ର ଜନ୍ମ ହେବା ମାତ୍ରେ ତାକୁ ଶମ୍ବରାସୁର ଅପହରଣ କରିନେବ । ଦାନବ ଶମ୍ବର ସେହି ଶିଶୁକୁ ନେଇ ସମୁଦ୍ରରେ ପକାଇଦେବ । ତା'ପରେ ସେ ମୂର୍ଖ ତାହାକୁ ମୃତ ମନେ କରି ନିଜ ନଗରକୁ ଫେରିଯିବ । ରତେ ! ସେହି ସମୟ ଆସିବା ପର୍ଯ୍ୟନ୍ତ ତୁମେ ଶମ୍ବରାସୁର ନଗରରେ ସୁଖରେ ନିବାସ କର । ସେହିଠାରେ ତୁମକୁ ତୁମ ସ୍ୱାମୀ ପ୍ରଦ୍ୟୁମ୍ନରୂପେ ପ୍ରାପ୍ତ ହେବ । ସେଠାରେ ସେ ତୁମ ସହିତ ମିଶି ଶମ୍ବରକୁ ଯୁଦ୍ଧରେ ବଧ କରିବ ଏବଂ ସୁଖୀ ହେବ । ହେ ଦେବଗଣ ! ପ୍ରଦ୍ୟୁମ୍ନ ନାମଧାରୀ

କାମଦେବ ତା'ର କାମିନୀ ରତିକୁ ଘେନି ପୁନଃ ନିଜ ନଗରକୁ ଫେରି ଆସିବ ଏବଂ ଆସିବା ବେଳେ ଶମ୍ବରାସୁରର ଧନ ମଧ୍ୟ ନେଇ ଆସିବ। ମୋର ଏ କଥନ ସମ୍ପୂର୍ଣ୍ଣ ସତ୍ୟ ହେବ।

ବ୍ରହ୍ମା କହୁଛନ୍ତି–ନାରଦ! ଭଗବାନ ଶିବଙ୍କ କଥା ଶୁଣି ଦେବଗଣଙ୍କ ଚିତ୍ତରେ କିଛିଟା ଉଲ୍ଲାସ ଦେଖାଗଲା। ସେମାନେ କର ଯୋଡ଼ି ପ୍ରଣାମ କରି ବିନୀତଭାବରେ କହିଲେ–

ଦେବତାମାନେ କହିଲେ–ଦେବଦେବ! ମହାଦେବ! କରୁଣାସାଗର! ପ୍ରଭୋ! ଆପଣ କାମଦେବଙ୍କୁ ଶୀଘ୍ର ଜୀବନଦାନ ଦିଅନ୍ତୁ ତଥା ରତିଙ୍କର ପ୍ରାଣ ରକ୍ଷା କରନ୍ତୁ।

ଦେବତାଙ୍କ ବଚନ ଶୁଣି ସମସ୍ତଙ୍କ ସ୍ୱାମୀ କରୁଣାସାଗର ପରମେଶ୍ୱର ଶିବ ପ୍ରସନ୍ନ ହୋଇ ପୁଣି କହିଲେ–''ଦେବଗଣ! ମୁଁ ବହୁତ ପ୍ରସନ୍ନ। ମୁଁ କାମକୁ ସମସ୍ତଙ୍କ ହୃଦୟରେ ଜୀବିତ କରିଦେବି। ସେ ସଦା ମୋର ଗଣ ହୋଇ ବିହାର କରିବ। ଏଥର ତୁମେମାନେ ସ୍ୱସ୍ଥାନକୁ ଫେରିଯାଅ। ମୁଁ ନିଶ୍ଚୟ ତୁମ ଦୁଃଖ ବିନାଶ କରିବି।''

ଏତିକି କହି ରୁଦ୍ରଦେବ ସ୍ତୁତି କରୁଥିବା ସେହି ଦେବତାମାନଙ୍କ ସମ୍ମୁଖରୁ ଅନ୍ତର୍ହିତ ହୋଇଗଲେ। ଦେବଗଣଙ୍କ ବିସ୍ମୟ ଦୂର ହୋଇଗଲା ଏବଂ ସେମାନେ ଖୁସୀ ହେଲେ। ସେମାନେ ରୁଦ୍ରଦେବଙ୍କ କଥାରେ ଭରସା କରିବା ସହିତ ରତିଙ୍କୁ ଶିବଙ୍କ ବଚନ ଶୁଣାଇ ଆଶ୍ୱାସନା ଦେଲେ ଏବଂ ତା'ପରେ ନିଜ ନିଜ ସ୍ଥାନକୁ ଗ୍ଲଲିଗଲେ। ମୁନୀଶ୍ୱର! କାମପତ୍ନୀ ରତି ଶିବଙ୍କ କହିବା ଅନୁସାରେ ଶମ୍ବରନଗରକୁ ଗ୍ଲଲିଗଲା ଏବଂ ରୁଦ୍ରଦେବ ଯେଉଁ ସମୟ କଥା କହିଥିଲେ, ସେହି ସମୟର ପ୍ରତୀକ୍ଷାରେ ରହିଲା। (ଅଧ୍ୟାୟ ୧୮-୧୯)

***

## ବ୍ରହ୍ମା ଶିବଙ୍କ କ୍ରୋଧାନଳକୁ ବଡ଼ବା ସଂଜ୍ଞା ଦେଇ ତାହାକୁ ସମୁଦ୍ରରେ ସ୍ଥାପିତ କରିବାରୁ ସଂସାରର ଭୟନାଶ, ଶିବଙ୍କ ବିରହରେ ପାର୍ବତୀଙ୍କ ଶୋକ ଏବଂ ତାଙ୍କୁ ତପସ୍ୟା କରିବାକୁ ନାରଦଙ୍କର ଉପଦେଶ ଓ ପଞ୍ଚାକ୍ଷର ମନ୍ତ୍ର ପ୍ରଦାନ

ବ୍ରହ୍ମା କହୁଛନ୍ତି–ନାରଦ! ଭଗବାନଙ୍କ ତୃତୀୟ ନେତ୍ରରୁ ପ୍ରକଟିତ ଅଗ୍ନି କାମଦେବଙ୍କୁ ଜାଳି ଭସ୍ମ କରିଦେବା ପରେ ବିନା କାରଣରେ ଗ୍ଲରିଆଡ଼େ ବ୍ୟାପିବାକୁ ଲାଗିଲା। ଏହା ଦେଖି ତ୍ରିଲୋକର ଚରାଚର ପ୍ରାଣୀ ହାହାକାର କଲେ। ବସ୍ସ! ସମସ୍ତ ଦେବତା ଓ ଋଷି ତୁରନ୍ତ ମୋ ଶରଣକୁ ଆସିଲେ। ସେମାନେ ଅତ୍ୟନ୍ତ ବ୍ୟାକୁଳ ହୋଇ କର ଯୋଡ଼ି ଅବନତ ମସ୍ତକରେ ମୋତେ ପ୍ରଣାମ କଲେ ଏବଂ ମୋତେ ସ୍ତୁତି କରି ସେମାନଙ୍କ ଦୁଃଖ ନିବେଦନ କଲେ। ତାହା ଶୁଣି ମୁଁ ଶିବଙ୍କୁ ସ୍ମରଣ କରି ଓ ଦୁଃଖର କାରଣ ଉପରେ ଭଲଭାବେ ବିଗ୍ଲର କରି ତ୍ରିଲୋକର ରକ୍ଷା ପାଇଁ ବିନୀତଭାବରେ ଯାଇ ସେଠାରେ ପହଞ୍ଚିଲି। ଦେଖିଲି, ସେହି ଅଗ୍ନି ଜ୍ୱାଳାମାଳାରେ ଅତ୍ୟନ୍ତ ଉଦ୍ଦୀପ୍ତ ହୋଇ ସତେ ଯେପରି ସମଗ୍ର ଜଗତକୁ ଜାଳିଦେବାକୁ ଉଦ୍ୟତ ହେଉଛି। ତେଣୁ ମୁଁ ଶିବଙ୍କ କୃପାରୁ ପ୍ରାପ୍ତ ଉତ୍ତମ ତେଜଦ୍ୱାରା ତାହାକୁ ତୁରନ୍ତ ସ୍ତମ୍ଭିତ କରିଦେଲି। ମୁନେ! ତ୍ରିଭୁବନକୁ ଭସ୍ମ କରିବାକୁ ଯାଉଥିବା ସେହି କ୍ରୋଧମୟ ଅଗ୍ନିକୁ ମୁଁ ଏପରି ଏକ ଘୋଡ଼ାରେ ପରିଣତ କରିଦେଲି, ଯାହାର ମୁଖରୁ ଅଗ୍ନିର ସୌମ୍ୟ ଜ୍ୱାଳା ବାହାରୁଥିଲା। ଭଗବାନଙ୍କ ଇଚ୍ଛାରେ

ସେହି ବାଡ଼ବ (ଘୋଡ଼ା) ଶରୀରଧାରୀ ଅଗ୍ନିକୁ ନେଇ ମୁଁ ଲୋକହିତ ନିମନ୍ତେ ସମୁଦ୍ରତଟକୁ ଗଲି । ହେ ମୁନି! ମୋତେ ଦେଖି ସମୁଦ୍ର ଦିବ୍ୟପୁରୁଷ ରୂପ ଧାରଣ କରି ଯୋଡ଼ହସ୍ତପୂର୍ବକ ମୋ ପାଖକୁ ଆସିଲା । ସେ ମୋତେ ତ୍ରିଲୋକର ପିତାମହ ବୁଝି ବିଧିବତ୍ ପୂଜା ଓ ସ୍ତୁତି-ବନ୍ଦନା କରି ପ୍ରସନ୍ନତାପୂର୍ବକ କହିଲା–

ସାଗର କହିଲା–ସର୍ବେଶ୍ୱର ବ୍ରହ୍ମନ୍ ! ଆପଣ କେଉଁ ଉଦ୍ଦେଶ୍ୟରେ ଏଠାକୁ ଆସିଛନ୍ତି? ମୋତେ ନିଜ ସେବକ ମଣି ଅଭିପ୍ରାୟ କହିବା ହୁଅନ୍ତୁ ।

ସାଗରର କଥା ଶୁଣି ମୁଁ ଭଗବାନ ଶିବଙ୍କୁ ସ୍ମରଣ କରି ଲୋକହିତଭାବନାରେ ପ୍ରସନ୍ନତାପୂର୍ବକ କହିଲି–"ବତ୍ସ ସମୁଦ୍ର ! ତୁମେ ବଡ଼ ବୁଦ୍ଧିମାନ୍ ଓ ସମଗ୍ର ଜଗତର ହିତକାରୀ । ମୁଁ ଶିବଙ୍କ ଇଚ୍ଛାରେ ପ୍ରେରିତ ହୋଇ ହାର୍ଦ୍ଦିକ ପ୍ରୀତିରେ ତୁମକୁ ଗୋଟିଏ କଥା କହୁଛି । ଏ ହେଉଛି ଭଗବାନ ମହେଶ୍ୱରଙ୍କ କ୍ରୋଧ, ଯେ କି ମହାନ୍ ଅଶ୍ୱରୂପରେ



ଏଠାରେ ଉପସ୍ଥିତ । ଏ କାମଦେବଙ୍କୁ ଭସ୍ମ କରିବା ପରେ ସମଗ୍ର ଜଗତକୁ ଭସ୍ମ କରିବାକୁ ଉଦ୍ୟତ ହେଉଥିଲା । ଏହା ଦେଖି ପୀଡ଼ିତ ଦେବତାମାନେ ମୋତେ ପ୍ରାର୍ଥନା କଲେ । ମୁଁ ଶିବେଚ୍ଛାରେ ସେଠାକୁ ଗଲି ଏବଂ ସେହି ଅଗ୍ନିକୁ ସ୍ତମ୍ଭିତ କରିଦେଲି । ସେହି ଅଗ୍ନି ଘୋଡ଼ାରୂପ ଧାରଣ କଲାରୁ ତାହାକୁ ନେଇ ଏଠାକୁ ଆସିଛି । ଜଳାଧାର ! ମୁଁ ଜଗତ ପ୍ରତି ଦୟା କରି ତୁମକୁ ଆଦେଶ ଦେଉଛି ଯେ ଘୋଡ଼ାରୂପ ଧାରଣ କରି ମୁଖରୁ ଜ୍ୱାଳା ଉଦ୍‌ଗୀରଣ କରୁଥିବା ମହେଶ୍ୱରଙ୍କର ଏହି କ୍ରୋଧକୁ ତୁମେ ପ୍ରଳୟକାଳ ପର୍ଯ୍ୟନ୍ତ ଧାରଣ କର । ସରିତ୍‌ପତେ ! ଯେବେ ମୁଁ ଆସି ଏଠାରେ ବାସ କରିବି, ସେତେବେଳେ ତୁମେ ଶଙ୍କରଙ୍କର ଏହି ଅଦ୍ଭୁତ କ୍ରୋଧକୁ ଛାଡ଼ିଦେବ । ତୁମର ଜଳ ହିଁ ଏହାର ପ୍ରତିଦିନର ଭୋଜନ ହେବ । ତୁମେ ଏହାକୁ ଯତ୍ନରେ ନିଜ ଉପରିଭାଗରେ ହିଁ ଧାରଣ କର, ଯେପରି ଏ ତୁମର ଅନନ୍ତ ଜଳରାଶିର ଭିତରକୁ ଗ୍ଳଲି ନ ଯାଏ ।"

ବ୍ରହ୍ମା କହୁଛନ୍ତି–ନାରଦ ! ମୁଁ ଏପରି କହିବାରୁ ସମୁଦ୍ର ରୁଦ୍ରଙ୍କ କ୍ରୋଧାଗ୍ନିରୂପୀ ବଡ଼ବାନଳକୁ ଧାରଣ କରିବାକୁ ସ୍ୱୀକାର କଲା, ଯାହାକି ଅନ୍ୟଦ୍ୱାରା ଅସମ୍ଭବ ଥିଲା । ଏହାପରେ ବଡ଼ବାନଳ ସମୁଦ୍ରରେ ପ୍ରବିଷ୍ଟ ହୋଇଗଲା ଏବଂ ଜ୍ୱାଳାମାଳାରେ ପ୍ରଦୀପ୍ତ ହୋଇ ସାଗରର ଜଳରାଶିକୁ ଦହନ କରିବାକୁ ଲାଗିଲା । ମୁନେ ! ମୁଁ ସନ୍ତୋଷ ମନରେ ମୋ ଧାମକୁ ଫେରିଆସିଲି ଏବଂ ଦିବ୍ୟ ରୂପଧାରୀ ସମୁଦ୍ର ମୋତେ ପ୍ରଣାମ କରି ଅଦୃଶ୍ୟ ହୋଇଗଲା । ମହାମୁନେ ! ରୁଦ୍ରଙ୍କ ଅଗ୍ନିଜ୍ୱାଳାରୁ ତ୍ରାହି ପାଇ ସମଗ୍ର ଜଗତ ସୁସ୍ଥ ହେଲା ଏବଂ ଦେବତା ଓ ଋଷିମାନେ ସୁଖୀ ହେଲେ ।

ନାରଦ କହିଲେ–ଦୟାନିଧେ ! ମଦନଦହନ ପରେ ଗିରିଜାଦେବୀ କ'ଣ କଲେ? ସେ ତାଙ୍କର ଦୁଇ ସଖୀଙ୍କ ସହିତ କେଉଁଠାକୁ ଗଲେ? ଏସବୁ କଥା ମୋତେ କହନ୍ତୁ ।

ବ୍ରହ୍ମା କହିଲେ—ଭଗବାନ ଶଙ୍କରଙ୍କ ନେତ୍ରରୁ ଉତ୍ପନ୍ନ ଅଗ୍ନି କାମଦେବଙ୍କୁ ଦଗ୍ଧ କଲାବେଳେ ଘୋର ଶବ୍ଦ ହେଲା, ଯଦ୍ଦ୍ୱାରା ସମଗ୍ର ଆକାଶ କମ୍ପିଉଠିଲା । ଏପରି ଭୀଷଣ ଶବ୍ଦ ସହ କାମଦେବ ଭସ୍ମ ହେବା ଦେଖି ପାର୍ବତୀ ଭୟଭୀତ ଓ ବ୍ୟାକୁଳ ହୋଇ ତାଙ୍କର ଦୁଇ ସଖୀଙ୍କ ସହିତ ନିଜ ଘରକୁ ପଳାଇଗଲେ । ସେହି ଶବ୍ଦ ଶୁଣି ସପରିବାର ହିମବାନ ମଧ୍ୟ ବଡ଼ ବିସ୍ମୟରେ ପଡ଼ିଗଲେ ଏବଂ ସେଠାକୁ ଯାଇଥିବା ତାଙ୍କ ଝିଅ ବିଷୟରେ ଚିନ୍ତା କରି ତାଙ୍କ ମନରେ ବହୁତ କ୍ଲେଶ ହେଲା । ଇତିମଧ୍ୟରେ ଦୂରରୁ ପାର୍ବତୀ ଆସୁଥିବାର ଦେଖାଗଲେ । ସେ ଶମ୍ଭୁଙ୍କ ବିରହରେ କାନ୍ଦୁଥିଲେ । ଝିଅକୁ ଅତ୍ୟନ୍ତ ବିହ୍ୱଳ ଅବସ୍ଥାରେ ଦେଖି ଗିରିବର ହିମବାନ ବହୁତ ଦୁଃଖ ଅନୁଭବ କଲେ ଏବଂ ଶୀଘ୍ର ଶୀଘ୍ର ଯାଇ ତାଙ୍କ ନିକଟରେ ପହଞ୍ଚିଲେ । ନିଜ ହାତରେ ତାଙ୍କର ଲୁହ ପୋଛି ଦେଇ କହିଲେ—''ଶିବେ ! ଭୟ କରନା, କାନ୍ଦନା ।'' ଏହା କହି ଅଚଳେଶ୍ୱର ହିମବାନ ଅତ୍ୟନ୍ତ ବିହ୍ୱଳ ହୋଇ ପାର୍ବତୀଙ୍କୁ କୋଳକୁ ଟାଣିନେଲେ ଏବଂ ସାନ୍ତ୍ୱନା ଦେଇ ନିଜ ଘରକୁ ନେଇଗଲେ ।

କାମଦେବଙ୍କୁ ଭସ୍ମ କରି ଶିବ ଅଦୃଶ୍ୟ ହୋଇଯାଇଥିଲେ । ତେଣୁ ତାଙ୍କ ବିରହରେ ପାର୍ବତୀ ବ୍ୟାକୁଳ ହୋଇ ଉଠିଥିଲେ । ତାଙ୍କୁ କେଉଁଠି ହେଲେ ସୁଖ-ଶାନ୍ତି ମିଳୁ ନ ଥିଲା । ଘରକୁ ଯାଇ ମାଆଙ୍କ ସଙ୍ଗେ ଭେଟିବା ପରେ ସେ ନିଜର ନୂଆ ଜନ୍ମ ହେବା ପରି ଅନୁଭବ କଲେ । ସେ ନିଜ ରୂପକୁ ନିନ୍ଦା କରି କହିଲେ—''ହାୟ ! ମୁଁ ତ ମରିଗଲି ।'' ସଖୀମାନେ ବୁଝାଇବା ସତ୍ତ୍ୱେ ଗିରିଜା କିଛି ବୁଝିପାରୁ ନ ଥିଲେ । ସେ ଶୋଇବା-ଉଠିବା, ଖାଇବା-ପିଇବା, ଗ୍ୱଲିବା-ବୁଲିବା ଏବଂ ସଖୀଙ୍କ ଗହଣରେ ଛିଡ଼ା ହୋଇଥିବା ସମୟରେ ମଧ୍ୟ ତିଳେମାତ୍ର ସୁଖ ଅନୁଭବ କରି ପାରୁ ନ ଥିଲେ । ''ମୋର ରୂପକୁ ଓ ଜନ୍ମକର୍ମକୁ ଧିକ୍କାର'' ଏପରି କହିବା ସହ ସେ ସବୁବେଳେ ମହାଦେବଙ୍କ ପ୍ରତ୍ୟେକ କାର୍ଯ୍ୟକଳାପ କଥା ଚିନ୍ତା କରୁଥିଲେ । ଏହିରୂପେ ପାର୍ବତୀ ଭଗବାନ ଶିବଙ୍କ ବିରହରେ ମନେ ମନେ ଅତ୍ୟନ୍ତ କ୍ଲେଶ ଅନୁଭବ କରୁଥିଲେ ଏବଂ ତିଳେମାତ୍ର କେଉଁଠି ସୁଖ ପାଉ ନ ଥିଲେ । ସେ ସବୁବେଳେ 'ଶିବ-ଶିବ' ଜପୁଥିଲେ । ବାହ୍ୟ ଦୃଷ୍ଟିରେ ସେ ପିତାଙ୍କ ଗୃହରେ ଥିଲେ ସୁଦ୍ଧା ମନରେ ସେ ପିନାକପାଣି ଭଗବାନ ଶିବଙ୍କ ସମୀପରେ ଉପସ୍ଥିତ ରହୁଥିଲେ । ବତ୍ସ ! ଶିବା ଶୋକର ପ୍ରାବଲ୍ୟରେ ଅନେକ ଥର ମୂର୍ଚ୍ଛିତ ହୋଇଯାଉଥିଲେ । ଶୈଳରାଜ ହିମବାନ, ତାଙ୍କ ପତ୍ନୀ ମେନକା ଓ ତାଙ୍କର ଉଦାରଚେତା ପୁତ୍ରମାନେ ମଧ୍ୟ ପାର୍ବତୀଙ୍କୁ ସାନ୍ତ୍ୱନା ଦେଉଥିଲେ । ତଥାପି ସେ ମହାଦେବଙ୍କୁ ଭୁଲିପାରୁ ନ ଥିଲେ ।

ବୁଦ୍ଧିମାନ ଦେବର୍ଷେ ! ଦିନେ ତୁମେ ସ୍ୱେଚ୍ଛାରେ ଭ୍ରମଣ କରୁ କରୁ ଇନ୍ଦ୍ରଙ୍କ ପ୍ରେରଣାରେ ଯାଇ ହିମାଳୟରେ ପହଞ୍ଚିଲ । ହିମବାନ ତୁମର ସ୍ୱାଗତ ସତ୍କାର କଲେ, କୁଶଳ ସମାଗ୍ୱର ପଗ୍ୱରିଲେ ଏବଂ ବସିବାକୁ ଆସନ ଦେଲେ । ତୁମେ ଆସନ ଗ୍ରହଣ କରିବା ପରେ ଶୈଳରାଜ ନିଜ କନ୍ୟାର ଚରିତ୍ର ଆରମ୍ଭରୁ ବର୍ଣ୍ଣନା କରିବାକୁ ଲାଗିଲେ । ପାର୍ବତୀ କିପରି ମହାଦେବଙ୍କ ସେବା ଆରମ୍ଭ କଲେ ଏବଂ କିପରି କାମଦେବଙ୍କ ଦହନ ହେଲା— ଏ ସମସ୍ତ ବିଷୟ ମଧ୍ୟ ବର୍ଣ୍ଣନା କଲେ । ମୁନେ ! ଏସବୁ ଶୁଣି ତୁମେ ଗିରିରାଜଙ୍କୁ କହିଲ—''ଶୈଳେଶ୍ୱର ! ତୁମେ ଭଗବାନ ଶିବଙ୍କୁ ଭଜ ।'' ଏତିକି କହି ତୁମେ ତାଙ୍କଠାରୁ ବିଦାୟ ନେଇ ସେଠାରୁ ଉଠିଲ ଏବଂ ମନେ ମନେ ଶିବଙ୍କୁ ସ୍ମରଣ କରି ଏକାନ୍ତରେ କାଳୀଙ୍କ ପାଖକୁ ଗଲ । ନାରଦ! ତୁମେ ହେଉଛ ଲୋକୋପକାରୀ, ଜ୍ଞାନୀ ଓ ଶିବଙ୍କର ପ୍ରିୟ ଭକ୍ତ; ତେଣୁ ସମସ୍ତ ଜ୍ଞାନବାନଙ୍କ ମଧ୍ୟରେ ଶ୍ରେଷ୍ଠ । ତୁମେ

କାଳୀଙ୍କୁ ଆଦରରେ ସମ୍ବୋଧିତ କରି ତାଙ୍କରି ହିତରେ ଏହି ସତ୍ୟ ବଚନ କହିଲ ।

ନାରଦ କହିଲେ (ତୁମେ କହିଲ)–କାଳିକେ ! ତୁମେ ମୋ କଥା ଶୁଣ । ମୁଁ ଦୟାବଶତଃ ସତ କଥାଟି କହୁଛି । ମୋ କଥା ତୁମ ପାଇଁ ସର୍ବଥା ହିତକର, ନିର୍ଦୋଷ ଓ ଅଭୀଷ୍ଟ ଫଳ ପ୍ରଦାନକାରୀ ହେବ । ତୁମେ ଏଠାରେ ମହାଦେବଙ୍କର ସେବା ଅବଶ୍ୟ କରିଥିଲ, ହେଲେ ତୁମେ ବିନା ତପସ୍ୟାରେ ଗର୍ବଯୁକ୍ତ ହୋଇ ତାହା କରିଥିଲ । ଦୀନଦୟାଳୁ ପ୍ରଭୁ ତୁମ ଗର୍ବକୁ ନଷ୍ଟ କରିଦେଲେ । ଶିବେ ! ତୁମ ସ୍ୱାମୀ ମହେଶ୍ୱର ଅନାସକ୍ତ ଓ ମହାଯୋଗୀ । ସେ କେବଳ କାମଦେବଙ୍କୁ ଭସ୍ମ କରି ତୁମକୁ ଯେଉଁ ସକୁଶଳ ଛାଡ଼ିଦେଲେ, ତାହାର କାରଣ ଏହି ଯେ ସେ ଭକ୍ତବତ୍ସଳ । ତେଣୁ ତୁମେ ଉତ୍ତମ ତପସ୍ୟାରେ ସଂଲଗ୍ନ ହୋଇ ଦୀର୍ଘକାଳ ପର୍ଯ୍ୟନ୍ତ ମହେଶ୍ୱରଙ୍କୁ ଆରାଧନା କର । ତପସ୍ୟା ଦ୍ୱାରା ତୁମର ସଂସ୍କାର ହୋଇଯିବା ପରେ ରୁଦ୍ରଦେବ ତୁମକୁ ଆପଣା ସହଧର୍ମିଣୀ କରିନେବେ ଏବଂ ତୁମେ ମଧ୍ୟ କଦାପି ସେହି କଲ୍ୟାଣକାରୀ ଶମ୍ଭୁଙ୍କୁ ପରିତ୍ୟାଗ କରିବ ନାହିଁ । ହେ ଦେବୀ! ତୁମେ ହଠପୂର୍ବକ ଶିବଙ୍କୁ ଆପଣାର କରିବାକୁ ଯତ୍ନ କର । ଶିବଙ୍କ ଛଡ଼ା ଅନ୍ୟ କାହାକୁ ପତିରୂପେ ସ୍ୱୀକାର କରିବ ନାହିଁ ।

ବ୍ରହ୍ମା କହୁଛନ୍ତି–ମୁନେ ! ତୁମ କଥା ଶୁଣି ଗିରିରାଜକୁମାରୀ କାଳୀ କିଛି ଉଲ୍ଲସିତ ହୋଇ ତୁମକୁ ହାତ ଯୋଡ଼ି ପ୍ରସନ୍ନତାପୂର୍ବକ କହିଲେ–

ଶିବା କହିଲେ–ପ୍ରଭୋ ! ଆପଣ ସର୍ବଜ୍ଞ ଓ ଜଗତର ଉପକାରୀ । ମୁନେ! ମୋତେ ରୁଦ୍ରଦେବଙ୍କ ଆରାଧନା ପାଇଁ କୌଣସି ମନ୍ତ୍ର ପ୍ରଦାନ କରନ୍ତୁ ।

ବ୍ରହ୍ମା କହୁଛନ୍ତି–ନାରଦ ! ପାର୍ବତୀଙ୍କ ବଚନ ଶୁଣି ତୁମେ ତାଙ୍କୁ ବିଧିପୂର୍ବକ ପଞ୍ଚାକ୍ଷର ଶିବମନ୍ତ୍ର (ନମଃ ଶିବାୟ) ଉପଦେଶ ଦେଲ । ଏହାଛଡ଼ା ସେହି ମନ୍ତ୍ରରାଜ ପ୍ରତି ଶ୍ରଦ୍ଧା ଉତ୍ପନ୍ନ କରିବାକୁ ତୁମେ ତାହାର ସବୁଠୁ ଅଧିକ ପ୍ରଭାବ ମଧ୍ୟ ପ୍ରତିପାଦିତ କଲ ।

ନାରଦ କହିଲେ (ତୁମେ କହିଲ)–ହେ ଦେବୀ! ଏ ମନ୍ତ୍ରର ପରମ ଅଦ୍ଭୁତ ପ୍ରଭାବ ଶୁଣ । ଏହାକୁ ଶୁଣିବାମାତ୍ରେ ଭଗବାନ ଶଙ୍କର ପ୍ରସନ୍ନ ହୋଇଯାଆନ୍ତି । ଏ ମନ୍ତ୍ର ସକଳ ମନ୍ତ୍ରମାନଙ୍କ ଭିତରେ ରାଜା ଏବଂ ମନୋବାଞ୍ଛିତ ଫଳ ପ୍ରଦାନକାରୀ । ଏହା ଶିବଙ୍କର ବହୁତ ପ୍ରିୟ ଏବଂ ସାଧକକୁ ଭୋଗ ଓ ମୋକ୍ଷ ଦେବାକୁ ସମର୍ଥ । ହେ ସୌଭାଗ୍ୟଶାଳିନୀ ! ଏ ମନ୍ତ୍ରକୁ ବିଧିପୂର୍ବକ ଜପିଲେ ଭଗବାନ ଶିବ ତୁମଦ୍ୱାରା ଆରାଧିତ ହୋଇ ନିଶ୍ଚିତରୂପେ ଖୁବ୍ ଶୀଘ୍ର ତୁମ ନେତ୍ର ସମ୍ମୁଖରେ ପ୍ରକଟ ହୋଇଯିବେ । ଶିବେ ! ତୁମେ ଶୌଚ-ସନ୍ତୋଷାଦି ନିୟମରେ ତତ୍ପର ରହି ଶିବଙ୍କ ସ୍ୱରୂପ ଚିନ୍ତନପୂର୍ବକ ପଞ୍ଚାକ୍ଷର ମନ୍ତ୍ର ଜପ କର । ଏଥିରେ ତୁମ ଆରାଧ୍ୟ ଶିବ ଶୀଘ୍ର ସନ୍ତୁଷ୍ଟ ହେବେ । ହେ ସାଧ୍ୱୀ! ଏହିରୂପେ ତପସ୍ୟା କର । ତପସ୍ୟାରେ ହିଁ ମହେଶ୍ୱର ବଶ ହୋଇପାରିବେ । ତପସ୍ୟାରେ ହିଁ ସମସ୍ତଙ୍କୁ ମନୋବାଞ୍ଛିତ ଫଳ ପ୍ରାପ୍ତି ହୋଇଥାଏ, ଅନ୍ୟ କୌଣସି ପ୍ରକାରେ ନୁହେଁ ।

ବ୍ରହ୍ମା କହୁଛନ୍ତି–ନାରଦ ! ତୁମେ ଦେବତାଙ୍କ ହିତରେ ତତ୍ପର ରହିଥାଅ, ପୁଣି ତୁମେ ଭଗବାନ ଶିବଙ୍କର ପ୍ରିୟ ଭକ୍ତ ଏବଂ ଇଚ୍ଛାନୁସାରେ ବିଚରଣ କରିଥାଅ । ତୁମେ କାଳୀଙ୍କୁ ଏପରି କହି ସ୍ୱର୍ଗଲୋକକୁ ଫେରିଗଲ । ତୁମ କଥା ଶୁଣି ପାର୍ବତୀ ବହୁତ ଆନନ୍ଦିତ ହେଲେ । ତାଙ୍କୁ ପରମୋତ୍ତମ ପଞ୍ଚାକ୍ଷର ମନ୍ତ୍ର ପ୍ରାପ୍ତ ହୋଇଗଲା ।

(ଅଧ୍ୟାୟ ୨୦-୨୧)

❋❋❋

# ଶିବଙ୍କ ଆରାଧନା ନିମନ୍ତେ ପାର୍ବତୀଙ୍କର ଦୁଷ୍କର ତପସ୍ୟା

ବ୍ରହ୍ମା କହୁଛନ୍ତି—ଦେବର୍ଷେ ! ତୁମେ ଚାଲିଯିବା ପରେ ପାର୍ବତୀ ମହାଦେବଙ୍କୁ ତପସ୍ୟାଦ୍ୱାରା ସାଧ୍ୟ ବୋଲି ମଣିଲେ ଏବଂ ପ୍ରସନ୍ନଚିତ୍ତରେ ତପସ୍ୟା ନିମନ୍ତେ ମନରେ ଦୃଢ଼ନିର୍ଣ୍ଣୟ କଲେ । ସେ ତାଙ୍କ ସଖୀ ଜୟା ଓ ବିଜୟାଙ୍କ ମାଧ୍ୟମରେ ପିତା ହିମାଳୟ ଓ ମାତା ମେନାଙ୍କ ଠାରୁ ଆଜ୍ଞା ମାଗିଲେ । ପିତା ଅନୁମତି ଦେଇଦେଲେ, କିନ୍ତୁ ମାତା ସ୍ନେହବଶତଃ ତାଙ୍କୁ ଅନେକ ପ୍ରକାରେ ବୁଝାଇଲେ ଏବଂ ଘରୁ ଦୂରକୁ ଯାଇ ବନରେ ତପ କରିବାକୁ ମନା କଲେ । ମେନା ତାଙ୍କୁ ମନା କରି କହିଲେ 'ଉ', 'ମା' (ବାହାରକୁ ଯାଆନା) । ତାଙ୍କରି କଥନ ଅନୁସାରେ ତାଙ୍କର ଗୋଟିଏ ନାମ ହେଲା 'ଉମା' । ମୁନେ ! ଶୈଳରାଜଙ୍କ ପ୍ରିୟା ମେନା ମନା କରିବାରୁ ଶିବା ଯେତେବେଳେ ଦୁଃଖୀ ହେଲେ, ସେତେବେଳେ ସେ ନିଜ ବିଚାର ବଦଳାଇଦେଲେ ଏବଂ ପାର୍ବତୀଙ୍କୁ ତପସ୍ୟା ପାଇଁ ଅନୁମତି ଦେଇଦେଲେ । ମୁନିବର ! ମାତାଙ୍କ ଆଜ୍ଞା ପାଇ ସୁବ୍ରତା ପାର୍ବତୀ ଭଗବାନ ଶିବଙ୍କୁ ସ୍ମରଣ କରି ମନେ ମନେ ସୁଖୀ ହେଲେ । ପିତାମାତାଙ୍କୁ ଆନନ୍ଦରେ ପ୍ରଣାମ କରିବା ପରେ ଶିବଙ୍କୁ ସ୍ମରଣ କରି ସେ ନିଜର ଦୁଇ ଜଣ ସଖୀଙ୍କ ସଙ୍ଗରେ ତପସ୍ୟା କରିବାକୁ ବାହାରିଲେ । ଅନେକ ପ୍ରକାର ପ୍ରିୟ ବସ୍ତ୍ର ପରିତ୍ୟାଗ କରି ପାର୍ବତୀ କଟିପ୍ରଦେଶରେ ସୁନ୍ଦର ମୁଞ୍ଜର ମେଖଳା ଓ ବଳ୍କଳ ପରିଧାନ କଲେ । ହାର ପରିତ୍ୟାଗ କରି ଉତ୍ତମ ମୃଗଚର୍ମକୁ ହୃଦୟରେ ଧାରଣ କଲେ । ତା'ପରେ ସେ ତପସ୍ୟା ନିମନ୍ତେ ଗଙ୍ଗାବତରଣ (ଗଙ୍ଗୋତ୍ତରୀ) ତୀର୍ଥ ଅଭିମୁଖେ ଯାତ୍ରା କଲେ ।

ଯେଉଁଠି ଧ୍ୟାନସ୍ଥ ଶିବ କାମଦେବଙ୍କୁ ଭସ୍ମ କରିଦେଇଥିଲେ, ହିମାଳୟର ସେହି ଶିଖର ଗଙ୍ଗାବତରଣ ନାମରେ ପ୍ରସିଦ୍ଧ । ସେଠାରେ ପରମୋତ୍ତମ ଶୃଙ୍ଗିତୀର୍ଥରେ ପାର୍ବତୀ ତପସ୍ୟା ଆରମ୍ଭ କଲେ । ଗୌରୀ ତପସ୍ୟା କରିବାରୁ ତାହାର ନାମ ହୋଇଗଲା 'ଗୌରୀଶିଖର' । ମୁନେ ! ଶିବା ନିଜ ତପର ପରୀକ୍ଷା ପାଇଁ ସେଠାରେ ଅନେକ ସୁନ୍ଦର ସୁନ୍ଦର ଫଳଦାୟକ ଓ ପବିତ୍ର ବୃକ୍ଷ ଲଗାଇଲେ । ସୁନ୍ଦରୀ ପାର୍ବତୀ ସେଠାରେ ପ୍ରଥମେ ଭୂମିକୁ ଶୁଦ୍ଧ କରି ଗୋଟିଏ ବେଦି ନିର୍ମାଣ କଲେ । ତା'ପରେ ସେ ଏଭଳି ତପସ୍ୟା କଲେ ଯେ ତାହା ମୁନିଜନଙ୍କ ପକ୍ଷେ ମଧ୍ୟ ଦୁଷ୍କର ଥିଲା । ସେ ମନ ସମେତ ଇନ୍ଦ୍ରିୟଙ୍କୁ ବଶ କରି ସେହି ବେଦି ଉପରେ ବସି ଉଚ୍ଚକୋଟିର ତପସ୍ୟା କଲେ । ଗ୍ରୀଷ୍ମଋତୁରେ ଦିନରାତି ନିଜ ଚତୁଷ୍ପାର୍ଶ୍ୱରେ ନିଆଁ ଜଳାଇ ନିଜେ ମଝିରେ ବସୁଥିଲେ ଏବଂ ନିରନ୍ତର ପଞ୍ଚାକ୍ଷର ମନ୍ତ୍ର ଜପୁଥିଲେ । ବର୍ଷାଋତୁରେ ବେଦି ଉପରେ ଅଥବା କୌଣସି ପଥର ଚଟାଣ ଉପରେ ସୁସ୍ଥିର ଆସନରେ ବସି ନିରନ୍ତର ବର୍ଷାପାଣିରେ ଭିଜି ଭିଜି ତପସ୍ୟା କରୁଥିଲେ । ଶୀତକାଳରେ ନିରାହାର ରହି ସର୍ବଦା ଥଣ୍ଡା ଜଳ ଭିତରେ ଠିଆ ହୋଇ ଅଥବା ସାରା ରାତି ବରଫ ଚଟାଣରେ ବସି ରହି ଶିବଙ୍କୁ ଭଜୁଥିଲେ । ଏପରି ତପସ୍ୟା ସହିତ ପଞ୍ଚାକ୍ଷର ମନ୍ତ୍ର ଜପରେ ସଂଲଗ୍ନ ହୋଇ ଶିବା ସମସ୍ତ ମନୋବାଞ୍ଛିତ ଫଳ ପ୍ରଦାତା ଶିବଙ୍କୁ ଧ୍ୟାନ କରୁଥିଲେ । ପ୍ରତିଦିନ ଅବକାଶ ମିଳିଲା ବେଳେ ସେ ସଖୀମାନଙ୍କୁ ସଙ୍ଗରେ ନେଇ ନିଜେ ଲଗାଇଥିବା ବୃକ୍ଷଗୁଡ଼ିକ ମୂଳରେ ପ୍ରସନ୍ନତାପୂର୍ବକ ପାଣି ଦେଉଥିଲେ ଏବଂ ସେଠାକୁ ଆଗତ ଅତିଥିମାନଙ୍କର ଆତିଥ୍ୟ ଓ ସତ୍କାର ମଧ୍ୟ କରୁଥିଲେ ।

ବିଶୁଦ୍ଧମତି ପାର୍ବତୀ ପ୍ରଚଣ୍ଡ ଝଡ଼, ଶୀତ,

ବର୍ଷା ଓ ଦୁଃସହ ଖରା ସହନ କରୁଥିଲେ । ତାଙ୍କ ଉପରକୁ ଅନେକ କଷ୍ଟ ଆସିଲା, ହେଲେ ସେ ସେଗୁଡ଼ିକୁ ଭ୍ରୂକ୍ଷେପ କଲେ ନାହିଁ । ମୁନେ ! ସେ କେବଳ ଅଟଳଭାବରେ ଶିବଙ୍କ ଠାରେ ମନ ଲଗାଇଥିଲେ । ପ୍ରଥମ ବର୍ଷ ସେ ଫଳାହାର କରି ରହିଲେ, ଦ୍ୱିତୀୟ ବର୍ଷଟି ସେ ପତ୍ର ଖ୍ରେବାଇ ବିତାଇ ଦେଲେ । ଏହିପରି ତପସ୍ୟା କରୁ କରୁ ଅନେକ ବର୍ଷ ବିତିଗଲା । ତା'ପରେ ହୈମବତୀ ଶିବାଦେବୀ ପର୍ଣ୍ଣ ବା ପତ୍ର ଖାଇବା ମଧ୍ୟ ପରିତ୍ୟାଗ କରିଦେଲେ । ଏହି କାରଣରୁ ଦେବତାମାନେ ତାଙ୍କର ନାମ ରଖିଲେ 'ଅପର୍ଣ୍ଣା' । ଏହାପରେ ପାର୍ବତୀ ଭଗବାନ ଶିବଙ୍କୁ ସ୍ମରଣ କରିବା ସହିତ ଗୋଟିଏ ପାଦରେ ଛିଡ଼ା ହୋଇ ପଞ୍ଚାକ୍ଷର ମନ୍ତ୍ର ଜପ କରି କରି ଅତ୍ୟନ୍ତ କଠୋର ତପସ୍ୟା କଲେ । ତାଙ୍କ ଅଙ୍ଗରେ ଥିଲା ବସ୍ତ୍ର ଓ ବଲ୍କଳ । ମସ୍ତକରେ ଥିଲା ଜଟାର ଗୁଚ୍ଛ । ଏହିରୂପେ ଶିବଚିନ୍ତନରେ ନିମଗ୍ନା ପାର୍ବତୀ ତପସ୍ୟାରେ ମୁନିମାନଙ୍କୁ ମଧ୍ୟ ବଳିଗଲେ । ପାର୍ବତୀ ତପୋବନରେ ଏପରି ତପସ୍ୟା କରୁ କରୁ ତିନି ହଜାର ବର୍ଷ ବିତିଗଲା ।

ତା'ପରେ ଯେଉଁଠି ମହାଦେବ ଷାଠିଏ ହଜାର ବର୍ଷ ତପସ୍ୟା କରିଥିଲେ, ସେଠାରେ କ୍ଷଣକ ପାଇଁ ରହି ପାର୍ବତୀ ଭାବିଲେ, ମହାଦେବ କ'ଣ ଜାଣିନାହାନ୍ତି ଯେ ମୁଁ ତାଙ୍କ ପାଇଁ ନିୟମ ପାଳନରେ ତତ୍ପର ରହି ତପସ୍ୟା କରୁଛି ବୋଲି? ତା'ହେଲେ ଏତେ ଦିନ ତପସ୍ୟା କରିବା ସତ୍ତ୍ୱେ କେଉଁ କାରଣରୁ ସେ ଏ ଦାସୀ ପାଖକୁ ଆସୁ ନାହାନ୍ତି? ଜଗତରେ, ବେଦରେ ଓ ମୁନିଗଣଙ୍କ ଦ୍ୱାରା ସର୍ବଦା ଗିରୀଶଙ୍କ ମହିମା ଗାନ କରାଯାଇଛି । ସମସ୍ତେ ଏହି କଥା କହିଥାନ୍ତି ଯେ ଭଗବାନ ଶଙ୍କର ହେଉଛନ୍ତି ସର୍ବଜ୍ଞ, ସର୍ବାତ୍ମା, ସର୍ବଦର୍ଶୀ, ସମସ୍ତ ଐଶ୍ୱର୍ଯ୍ୟର ଦାତା, ଦିବ୍ୟ ଶକ୍ତିସମ୍ପନ୍ନ, ସମସ୍ତଙ୍କ ମନୋଭାବର ଜ୍ଞାତା, ଭକ୍ତଙ୍କ ଅଭୀଷ୍ଟଦାତା ଏବଂ ସଦା ସମସ୍ତଙ୍କ କ୍ଳେଶହାରୀ । ଯଦି ମୁଁ ସମସ୍ତ କାମନା ପରିତ୍ୟାଗ କରି କେବଳ ଭଗବାନ ବୃଷଭଧ୍ୱଜଙ୍କ ପ୍ରତି ଅନୁରକ୍ତ ହୋଇଥିବି, ତେବେ ସେହି କଲ୍ୟାଣକାରୀ ଶିବ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ଯଦି ମୁଁ ନାରଦତନ୍ତ୍ରୋକ୍ତ ଶିବପଞ୍ଚାକ୍ଷର ମନ୍ତ୍ରକୁ ସଦା ଉତ୍ତମ ଭକ୍ତିଭାବରେ ବିଧିପୂର୍ବକ ଜପ କରିଥିବି, ତେବେ ଭଗବାନ ଶଙ୍କର ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ଯଦି ମୁଁ ସର୍ବେଶ୍ୱର ଶିବଙ୍କ ଭକ୍ତିରେ ଯୁକ୍ତ ଏବଂ ନିର୍ବିକାର ହୋଇଥିବି, ତେବେ ସେ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।

ଏହିପରି ଚିନ୍ତନ କରି ଜଟାବଲ୍କଳଧାରିଣୀ ନିର୍ବିକାର ପାର୍ବତୀ ମୁଖ ତଳକୁ କରି ସୁଦୀର୍ଘକାଳ ପର୍ଯ୍ୟନ୍ତ ତପସ୍ୟାରେ ନିମଗ୍ନ ରହିଲେ । ସେ



ଏଭଳି କଠୋର ତପସ୍ୟା କଲେ, ଯାହା ମୁନିମାନଙ୍କ ପକ୍ଷରେ ମଧ୍ୟ ଦୁଷ୍କର ଥିଲା । ତାଙ୍କ ତପସ୍ୟା କଥା

ଭାବି ଅନ୍ୟମାନଙ୍କୁ ବଡ଼ ବିସ୍ମୟ ହେଉଥିଲା । ମହର୍ଷେ ! ପାର୍ବତୀଙ୍କ ତପସ୍ୟାର ଯେଉଁ ଅନ୍ୟ ପ୍ରଭାବ ପଡ଼ିଥିଲା, ତାହା ବି ଶୁଣ । ଜଗଦମ୍ବା ପାର୍ବତୀଙ୍କର ସେହି ମହାନ୍ ତପ ପରମ ଆଶ୍ଚର୍ଯ୍ୟଜନକ ଥିଲା । ଯେଉଁ ପ୍ରାଣୀମାନେ ସ୍ୱଭାବଦୃଷ୍ଟିରୁ ପରସ୍ପରର ବିରୋଧୀ ଥିଲେ, ସେମାନେ ତାଙ୍କ ଆଶ୍ରମ ନିକଟରେ ପହଞ୍ଚିବା ମାତ୍ରେ ତପସ୍ୟା ପ୍ରଭାବରେ ବିରୋଧରହିତ ହୋଇଯାଉଥିଲେ । ରାଗାଦି ଦୋଷରେ ସଂଯୁକ୍ତ ସିଂହ ଓ ଗାଈ ପ୍ରଭୃତି ପଶୁମାନେ ମଧ୍ୟ ପାର୍ବତୀଙ୍କ ତପସ୍ୟା ପ୍ରଭାବରେ ସେଠାରେ ପରସ୍ପରକୁ ବାଧା ଦେଉ ନ ଥିଲେ । ମୁନିଶ୍ରେଷ୍ଠ ! ଏହା ବ୍ୟତୀତ ମୂଷା-ବିଲେଇ ପ୍ରଭୃତି ଯେଉଁ ପ୍ରାଣୀମାନେ ସ୍ୱଭାବତଃ ପରସ୍ପରର ବୈରୀ, ସେମାନେ ସେହି ଆଶ୍ରମରେ କଦାପି ସେଭଳି ଶତ୍ରୁତା ଭାବ ରଖୁ ନ ଥିଲେ । ସେଠାକାର ସମସ୍ତ ବୃକ୍ଷରେ ସର୍ବଦା ଫଳ ଲଦି ହୋଇ ରହୁଥିଲା । ନାନା ପ୍ରକାରର ତୃଣ ଓ ବିଚିତ୍ର ବିଚିତ୍ର ପୁଷ୍ପ ସେହି ବନର ଶୋଭା ବଢ଼ାଉ ଥିଲେ । ସେଠାକାର ସମଗ୍ର ବନପ୍ରାନ୍ତ କୈଳାସ ପରି ହୋଇଗଲା ଏବଂ ପାର୍ବତୀଙ୍କ ତପସ୍ୟାର ସିଦ୍ଧି ସାକାରରୂପ ଧାରଣ କଲା ।

(ଅଧ୍ୟାୟ ୨୨)



## ପାର୍ବତୀଙ୍କର ତପସ୍ୟାବିଷୟକ ଦୃଢ଼ତା, ଅତ୍ୟଧିକ ଉଗ୍ରତପସ୍ୟା, ତପସ୍ୟା ପ୍ରଭାବରେ ତ୍ରୈଲୋକ୍ୟ ସଂତପ୍ତ ହେବାରୁ ଶିବଙ୍କ ନିକଟକୁ ଦେବଗଣଙ୍କ ସହ ବ୍ରହ୍ମା ଓ ବିଷ୍ଣୁଙ୍କ ଗମନ

ବ୍ରହ୍ମା କହୁଛନ୍ତି—ମୁନୀଶ୍ୱର ! ଶିବଙ୍କୁ ପାଇବା ଉଦ୍ଦେଶ୍ୟରେ ଏ ପ୍ରକାର ତପସ୍ୟା କରୁ କରୁ ପାର୍ବତୀଙ୍କର ବହୁତ ବର୍ଷ ବିତିଗଲା, ତଥାପି ଭଗବାନ ପ୍ରକଟ ହେଲେ ନାହିଁ । ତେଣୁ ହିମାଳୟ, ମେନା, ମେରୁ ଓ ମନ୍ଦରାଚଳ ପ୍ରଭୃତି ଆସି ପାର୍ବତୀଙ୍କୁ ବୁଝାଇଲେ ଏବଂ ଶିବଙ୍କୁ ପାଇବା ଅତ୍ୟନ୍ତ ଦୁଷ୍କର ବୋଲି କହି ତାଙ୍କୁ ତପସ୍ୟା ଛାଡ଼ି ଘରକୁ ଫେରିଯିବାକୁ ଅନୁରୋଧ କଲେ ।

ସେମାନଙ୍କ କଥା ଶୁଣି ପାର୍ବତୀ କହିଲେ— ବାପା ! ମାଆ ! ମୋର ସମସ୍ତ ପ୍ରିୟ ବାନ୍ଧବ ! ମୁଁ ପ୍ରଥମରୁ ଯେଉଁ କଥା କହିଥିଲି, ତାହା କ'ଣ ସମସ୍ତେ ଭୁଲିଗଲେଣି? ଏବେ ବି ମୁଁ ସେହି ପ୍ରତିଜ୍ଞାରେ ଅଟଳ ରହିଛି । ଶୁଣନ୍ତୁ, ଯେଉଁ ମହାଦେବ କାମଦେବଙ୍କୁ ଜାଳିପୋଡ଼ି ଭସ୍ମ କରିଦେଲେ, ସେ ଯଦ୍ୟପି ଅନାସକ୍ତ, ତଥାପି ସେ ଭକ୍ତବତ୍ସଳ; ମୁଁ ମୋ ତପସ୍ୟାବଳରେ ତାଙ୍କୁ ଅବଶ୍ୟ ସନ୍ତୁଷ୍ଟ କରିବି । ଆପଣମାନେ ଖୁସୀରେ ନିଜ ନିଜ ଘରକୁ ଫେରିଯାଆନ୍ତୁ । ମହାଦେବ ନିଶ୍ଚୟ ସନ୍ତୁଷ୍ଟ ହେବେ, ଏଥିରେ ବିପରୀତ ଭାବନା କରନ୍ତୁ ନାହିଁ । ଯେ କାମଦେବଙ୍କୁ ଭସ୍ମ କରିଛନ୍ତି ଏବଂ ଯେ ଏ ପର୍ବତର ବନକୁ ବି ଜାଳିପୋଡ଼ି ଭସ୍ମ କରିଦେଇଛନ୍ତି, ତାହାଙ୍କୁ ମୁଁ କେବଳ ତପସ୍ୟାବଳରେ ଏଠାକୁ ଡାକିବି । ହେ ମହାଭାଗଗଣ ! ଆପଣମାନେ ଜାଣି ରଖନ୍ତୁ ଯେ ମହାନ୍ ତପସ୍ୟାବଳରେ ହିଁ ସଦାଶିବଙ୍କ ସେବା ସୁଲଭ ହୋଇପାରେ । ଏହା ମୁଁ ଆପଣମାନଙ୍କୁ ସତ୍ୟ ସତ୍ୟ କରି କହୁଛି ।

ସୁମଧୁରଭାଷିଣୀ ପାର୍ବତୀ ମାତା ମେନକା, ଭାଇ ମୈନାକ, ପିତା ହିମାଳୟ ଓ ମନ୍ଦରାଚଳ ପ୍ରଭୃତିଙ୍କୁ ଏତିକି କହି ମୌନ ହୋଇଗଲେ । ଶିବାଙ୍କ କଥା ଶୁଣି ସୁମେରୁ ପ୍ରଭୃତି ଚତୁର ପର୍ବତମାନେ ଅତ୍ୟନ୍ତ ବିସ୍ମିତ ହେଲେ ଏବଂ

ଗିରିଜାଙ୍କୁ ବାରମ୍ବାର ପ୍ରଶଂସା କରି ସ୍ୱସ୍ଥାନକୁ ଫେରିଗଲେ । ସେମାନେ ଚ୍ଛଲିଯିବା ପରେ ସଖୀଗଣଙ୍କ ଦ୍ୱାରା ପରିବେଷ୍ଟିତା ପାର୍ବତୀ ମନରେ ଦୃଢ଼ନିର୍ଣ୍ଣୟ କରି ପୂର୍ବାପେକ୍ଷା ଆହୁରି ଅଧିକ ଉଗ୍ରତପସ୍ୟା କଲେ । ମୁନିବର ! ତାଙ୍କର ଘୋର ତପସ୍ୟା ହେତୁ ଦେବତା, ଅସୁର, ମନୁଷ୍ୟ ଓ ଚରାଚର ପ୍ରାଣୀଙ୍କ ସମେତ ସମଗ୍ର ତ୍ରିଭୁବନ ସଂତପ୍ତ ହୋଇଉଠିଲା । ଦେବତା, ଅସୁର, ଯକ୍ଷ, କିନ୍ନର, ଚ୍ଛରଣ, ସିଦ୍ଧ, ସାଧ୍ୟ, ମୁନି, ବିଦ୍ୟାଧର, ବଡ଼ ବଡ଼ ନାଗ, ପ୍ରଜାପତି, ଗୁହ୍ୟକ ଓ ଅନ୍ୟମାନେ ଭୀଷଣ କଷ୍ଟରେ ପଡ଼ିଗଲେ । ମାତ୍ର ଏହାର କାରଣ କ'ଣ, ତାହା ସେମାନେ ବୁଝି ପାରିଲେ ନାହିଁ । ତେଣୁ ଇନ୍ଦ୍ରାଦି ଦେବତା ଏକତ୍ରିତ ହୋଇ ବୃହସ୍ପତିଙ୍କ ପରାମର୍ଶକ୍ରମେ ଅତ୍ୟନ୍ତ ଆତୁର ଭାବରେ ମୋର ଶରଣ ନିମନ୍ତେ ସୁମେରୁ ପର୍ବତକୁ ଆସିଲେ । ସେତେବେଳେ ସେମାନଙ୍କ ଅଙ୍ଗ ପ୍ରତ୍ୟଙ୍ଗ ସଂତପ୍ତ ହେଉଥିଲା । ସେମାନେ କାନ୍ତିହୀନ ଓ ବ୍ୟାକୁଳ ଥିଲେ । ସେମାନେ ଆସି ମୋତେ ପ୍ରଣାମ ଓ ସ୍ତୁତି କରି ଏକସଙ୍ଗରେ ମୋତେ ପଚ୍ଛରିଲେ—"ପ୍ରଭୋ ! ସମଗ୍ର ଜଗତ ଏପରି ସଂତପ୍ତ ହେବାର କାରଣ କଣ?"

ସେମାନଙ୍କ ପ୍ରଶ୍ନ ଶୁଣିବା ପରେ ମୁଁ ମନେ ମନେ ଶିବଙ୍କୁ ସ୍ମରଣ କରି ସମସ୍ତ ବୃତ୍ତାନ୍ତ ଜାଣିଗଲି । ବିଶ୍ୱରେ ଉତ୍ପନ୍ନ ହୋଇଥିବା ଦାହର କାରଣ ଗିରିଜାଙ୍କ ତପସ୍ୟା ବୋଲି ଜାଣିପାରି ମୁଁ ସେମାନଙ୍କୁ ସଙ୍ଗରେ ଘେନି କ୍ଷୀରସାଗରକୁ ଗଲି । ସେଠାକୁ ଯାଇ ଭଗବାନ ବିଷ୍ଣୁଙ୍କୁ ସମସ୍ତ ବୃତ୍ତାନ୍ତ କହିବା ମୋର ଉଦ୍ଦେଶ୍ୟ ଥିଲା । ସେଠାରେ ପହଞ୍ଚି ଦେଖିଲି ଯେ ଭଗବାନ ଶ୍ରୀହରି ସୁଖଦ ଆସନରେ ବିରାଜମାନ ଅଛନ୍ତି । ଦେବତାଙ୍କ ସହ ମୁଁ କର ଯୋଡ଼ି ସ୍ତୁତି କରି ପ୍ରଣାମପୂର୍ବକ କହିଲି—"ମହାବିଷ୍ଣୋ ! ପାର୍ବତୀଙ୍କ ଅତ୍ୟନ୍ତ ଉଗ୍ର ତପସ୍ୟାରେ ସଂତପ୍ତ ହୋଇ ଆମେ ସବୁ ଦେବତା ଆପଣଙ୍କ ଶରଣକୁ ଆସିଛୁ । ଆମକୁ ରକ୍ଷା କରନ୍ତୁ, ରକ୍ଷା କରନ୍ତୁ ।" ଆମ କଥା ଶୁଣି ଶେଷଶାୟୀ ଲକ୍ଷ୍ମୀପତି ଆମ୍ଭମାନଙ୍କୁ କହିଲେ—

ଶ୍ରୀବିଷ୍ଣୁ କହିଲେ—ଦେବଗଣ ! ମୁଁ ପାର୍ବତୀଙ୍କ ତପସ୍ୟାର ସମସ୍ତ କାରଣ ଜାଣିଗଲି । ତେଣୁ ଚ୍ଛଲ, ତୁମମାନଙ୍କ ସହିତ ମୁଁ ମଧ୍ୟ ପରମେଶ୍ୱର ଶିବଙ୍କ ନିକଟକୁ ଯିବି । ଆମେ ସମସ୍ତେ ତାଙ୍କୁ ପ୍ରାର୍ଥନା କରିବା ଯେ ସେ ଗିରିଜାଙ୍କୁ ବିବାହ କରି ନିଜ ସଙ୍ଗରେ ନେଇ ଆସନ୍ତୁ । ଦେବଗଣ ! ଚ୍ଛଲ, ସମଗ୍ର ସଂସାରର କଲ୍ୟାଣ ନିମନ୍ତେ ଶିବାଙ୍କର ପାଣିଗ୍ରହଣ କରିବାକୁ ଭଗବାନ ଶିବଙ୍କୁ ଅନୁରୋଧ କରିବା । ଆମକୁ ଏଭଳି ପ୍ରଯତ୍ନ କରିବାକୁ ହେବ, ଯଦ୍ଦ୍ୱାରା ଦେବାଧିଦେବ ପିନାକପାଣି ଶିବ ଶିବାଙ୍କୁ ବର ଦେବାକୁ ତାଙ୍କ ଆଶ୍ରମକୁ ଯିବେ । ଏବେ ଚ୍ଛଲ, ପରମ ମଙ୍ଗଳମୟ ପ୍ରଭୁ ରୁଦ୍ର ଯେଉଁଠି ଉଗ୍ର ତପସ୍ୟା କରୁଛନ୍ତି, ସେଠାକୁ ଯିବା ।

ଭଗବାନ ବିଷ୍ଣୁଙ୍କ କଥା ଶୁଣି ଦେବଗଣ ହଠୀ, କ୍ରୋଧୀ ଓ ଭସ୍ମ କରିଦେବାକୁ ତତ୍ପର ରହୁଥିବା ପ୍ରଳୟକାରୀ ଶିବଙ୍କ ନିକଟକୁ ଯିବାକୁ ଭୟ କଲେ ଏବଂ କହିଲେ—

ଦେବଗଣ କହିଲେ—ଭଗବନ୍ ! ଯେଉଁ ରୁଦ୍ର ମହାଭୟଙ୍କର, ଯାହାଙ୍କ ନେତ୍ର କାଳାଗ୍ନି ତୁଲ୍ୟ ଦୀପ୍ତିମାନ ଓ ଭୟାନକ, ଯେ କ୍ରୋଧର ମୂର୍ତ୍ତି, ଆମେ ତାଙ୍କ ପାଖକୁ ଯାଇ ପାରିବୁ ନାହିଁ; କାରଣ ପ୍ରଥମରୁ ତ ସେ କୁପିତ ହୋଇ କାମଦେବଙ୍କୁ ଭସ୍ମ କରିଦେଇଛନ୍ତି, କାଳେ ଆମକୁ ଯଦି ଭସ୍ମ କରିଦେବେ !

ମୁନେ ! ଇନ୍ଦ୍ରାଦି ଦେବତାଙ୍କ ଭୟ ଦେଖି ଲକ୍ଷ୍ମୀପତି ଶ୍ରୀହରି ସେମାନଙ୍କୁ ସାନ୍ତ୍ୱନା ଦେଲେ ଏବଂ କହିଲେ—

ଶ୍ରୀହରି କହିଲେ—ହେ ଦେବଗଣ ! ତୁମେ ସମସ୍ତେ ଆଦରରେ ମୋ କଥା ଶୁଣ । ଭଗବାନ ଶିବ ସମସ୍ତ ଦେବତାଙ୍କର ସ୍ୱାମୀ ଏବଂ ସେମାନଙ୍କର ଭୟନାଶକ । ସେ ତୁମମାନଙ୍କୁ ଭସ୍ମ କରିଦେବେ ନାହିଁ । ତୁମେମାନେ ବହୁତ ଚତୁର । ତେଣୁ ଶମ୍ଭୁଙ୍କୁ କଲ୍ୟାଣକାରୀ ବୋଲି ବୁଝି ମୋ ସହିତ ସେହି ସର୍ବୋତ୍ତମ ପ୍ରଭୁ ମହାଦେବଙ୍କ ଶରଣକୁ ଯିବା ଉଚିତ । ଭଗବାନ ଶିବ ପୁରାଣପୁରୁଷ, ସର୍ବେଶ୍ୱର, ବରଣୀୟ, ପରାତ୍ପର, ତପସ୍ୱୀ ଓ ପରମାତ୍ମସ୍ୱରୂପ ଅଟନ୍ତି । ତେଣୁ ଆମେ ତାଙ୍କ ଶରଣକୁ ନିଶ୍ଚିତରୂପେ ଯିବା ଉଚିତ ।

ପ୍ରଭାବଶାଳୀ ବିଷ୍ଣୁ ଏଭଳି କହିବାରୁ ଦେବଗଣ ପିନାକପାଣି ଶିବଙ୍କ ଦର୍ଶନ ନିମନ୍ତେ ବାହାରିଲେ । ମାର୍ଗରେ ପ୍ରଥମେ ପାର୍ବତୀଙ୍କ ଆଶ୍ରମ ପଡ଼ିଲା । ତେଣୁ କୌତୂହଳବଶତଃ ସେମାନେ ଗିରିଜାଙ୍କ ତପସ୍ୟା ଦେଖିବାକୁ ତାଙ୍କ ଆଶ୍ରମକୁ ଗଲେ । ପାର୍ବତୀଙ୍କର ମହାନ୍ ତପକୁ ଓ ତେଜକୁ ଦେଖି ସକଳ ଦେବତା ତାଙ୍କ ତେଜରେ ହତପ୍ରଭ ହୋଇଗଲେ । ସେମାନେ ସେହି ତପସ୍ୟାରତା ତେଜୋମୟୀ ଜଗଦମ୍ବାଙ୍କୁ ନମସ୍କାର କଲେ ଏବଂ ସାକ୍ଷାତ୍ ସିଦ୍ଧିସ୍ୱରୂପା ଶିବାଦେବୀଙ୍କ ତପସ୍ୟାର ଭୂରି ଭୂରି ପ୍ରଶଂସା କରି କରି ଯାଇ ଶିବଙ୍କ ତପୋସ୍ଥଳୀ ନିକଟରେ ପହଞ୍ଚିଲେ । ମୁନେ ! ସେଠାରେ ପହଞ୍ଚି ଦେବଗଣ ସର୍ବପ୍ରଥମେ ତୁମକୁ ତାଙ୍କ ପାଖକୁ ପଠାଇଲେ ଏବଂ ସେମାନେ ମଦନଦହନକାରୀ ଶିବଙ୍କ ଠାରୁ ଦୂରରେ ଠିଆ ହୋଇ ରହିଲେ । ସେହିଠାରୁ ସେମାନେ ଲକ୍ଷ୍ୟ କରୁଥାନ୍ତି ଯେ ଶିବ କୁପିତ କି ପ୍ରସନ୍ନ ଅଛନ୍ତି ! ନାରଦ ! ତୁମେ ତ ସଦା ନିର୍ଭୟ ରହିଥାଅ, ପୁଣି ତୁମେ ଶିବଙ୍କର ଭକ୍ତ; ତେଣୁ ତୁମେ ଶିବଙ୍କ ନିକଟକୁ ଯାଇ ତାଙ୍କୁ ପ୍ରସନ୍ନ ଥିବାର ଦେଖି ଫେରିଆସିଲ ଏବଂ ବିଷ୍ଣୁ ପ୍ରଭୃତି ଦେବଗଣଙ୍କୁ ସାଙ୍ଗରେ ନେଇ ପୁଣି ଶିବଙ୍କ ନିକଟକୁ ଗଲ । ସେଠାରେ ପହଞ୍ଚି ବିଷ୍ଣୁ ଆଦି ଦେବତା ଦେଖିଲେ ଯେ ଭକ୍ତବତ୍ସଳ ଭଗବାନ ଶିବ ସୁଖପୂର୍ବକ ପ୍ରସନ୍ନ ମୁଦ୍ରାରେ ବସିଛନ୍ତି । ସେତେବେଳେ ଶମ୍ଭୁ ତାଙ୍କ ପାର୍ଷଦଗଣଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ତପସ୍ୱୀରୂପରେ ଯୋଗାସନରେ ଆସୀନ ଥିଲେ । ପରମେଶ୍ୱର ଶିବଙ୍କୁ ଦର୍ଶନ କରି ଆମେ ସମସ୍ତ ଦେବତା, ସିଦ୍ଧଗଣ ଓ ମୁନୀଶ୍ୱରମାନେ ତାଙ୍କୁ ପ୍ରଣାମ କରି ବେଦ ଓ ଉପନିଷଦର ସୂକ୍ତଦ୍ୱାରା ତାଙ୍କୁ ସ୍ତୁତି କଲୁ । (ଅଧ୍ୟାୟ ୨୩)

***

## ପାର୍ବତୀଙ୍କ ପାଣିଗ୍ରହଣ କରିବାକୁ ଦେବଗଣଙ୍କର ଶିବଙ୍କୁ ଅନୁରୋଧ, ବିବାହର ଦୋଷ ଦର୍ଶାଇ ଶିବଙ୍କର ଅସ୍ୱୀକୃତି ଏବଂ ସେମାନେ ପୁନଃ ପ୍ରାର୍ଥନା କରିବାରୁ ସମ୍ମତି ପ୍ରଦାନ

ବ୍ରହ୍ମା କହୁଛନ୍ତି—ନାରଦ ! ଦେବଗଣ ସେଠାରେ ପହଞ୍ଚି ଭଗବାନ ରୁଦ୍ରଙ୍କୁ ପ୍ରଣାମ କରି ତାଙ୍କୁ ସ୍ତୁତି କଲେ । ତା'ପରେ ନନ୍ଦୀକେଶ୍ୱର ଶିବଙ୍କ ଆଗରେ ତାଙ୍କର ଦୀନବନ୍ଧୁତା ଓ ଭକ୍ତବତ୍ସଳତାର ପ୍ରଶଂସା କରି କହିଲେ, ''ପ୍ରଭୋ ! ଦେବତା ଓ ମୁନି ସଂକଟରେ ପଡ଼ି ଆପଣଙ୍କ ଶରଣକୁ ଆସିଛନ୍ତି । ହେ ସର୍ବେଶ୍ୱର ! ସେମାନଙ୍କୁ ଉଦ୍ଧାର କରନ୍ତୁ ।''

ଦୟାଳୁ ନନ୍ଦୀ ଏହିରୂପେ ସୂଚିତ କରିବାରୁ ଭଗବାନ ଶମ୍ଭୁ ଧୀରେ ଧୀରେ ଆଖି ଖୋଲି ଧ୍ୟାନରୁ ଉପରତ ହେଲେ । ପରମ ଜ୍ଞାନୀ ପରମାତ୍ମା ସର୍ବେଶ୍ୱର ସମାଧିରୁ ଉଠି ଦେବଗଣଙ୍କୁ କହିଲେ—

ଶମ୍ଭୁ କହିଲେ–ହେ ବିଷ୍ଣୁ, ବ୍ରହ୍ମା ପ୍ରଭୃତି ଦେବେଶ୍ୱର ! ତୁମେ ସମସ୍ତେ ମୋ ପାଖକୁ କାହିଁକି ଆସିଛ? ଏଠାକୁ ତୁମମାନଙ୍କ ଆଗମନର କାରଣ କ'ଣ, ମୋତେ ଅବିଳମ୍ବେ କୁହ ।

ଭଗବାନ ଶଙ୍କରଙ୍କ ମୁଖରୁ ଏ କଥା ଶୁଣି ଦେବଗଣ ପ୍ରସନ୍ନ ହେଲେ ଏବଂ କାରଣ ପ୍ରକାଶ କରିବାକୁ ସମସ୍ତେ ବିଷ୍ଣୁଙ୍କ ମୁଖକୁ ଚାହିଁଲେ । ଏହାପରେ ଶିବଙ୍କର ପରମ ଭକ୍ତ ଓ ଦେବଗଣଙ୍କ ହିତକାରୀ ବିଷ୍ଣୁ ମୁଁ କହିଥିବା ଦେବଗଣଙ୍କ ମହତ୍ତର କାର୍ଯ୍ୟ ବିଷୟରେ ତାଙ୍କୁ ଅବଗତ କରାଇଲେ । ସେ କହିଲେ–"ହେ ଶମ୍ଭୁ ! ତାରକାସୁର ଦେବତାଙ୍କୁ ଘୋର କଷ୍ଟ ଦେଉଛି । ସେହି କଥା କହିବାକୁ ସକଳ ଦେବତା ଏଠାକୁ ଆସିଛନ୍ତି । ଭଗବନ୍ ! ଆପଣଙ୍କ ଔରସ ପୁତ୍ର ହିଁ ତାରକାସୁରକୁ ମାରିପାରିବ, ଅନ୍ୟଥା କୌଣସି ପ୍ରକାରେ ତା'ର ବଧ ସମ୍ଭବ ନୁହେଁ । ମୋର କଥନ ସର୍ବଥା ସତ୍ୟ । ହେ ମହାଦେବ ! ଏ କଥାକୁ ବିଚାର କରି ଆପଣ କୃପା କରନ୍ତୁ । ଆପଣଙ୍କୁ ନମସ୍କାର । ସ୍ୱାମିନ୍ ! ତାରକାସୁର ହେତୁ ଉପସ୍ଥିତ ହୋଇଥିବା ଏହି କଷ୍ଟରୁ ଆପଣ ଦେବଗଣଙ୍କୁ ଉଦ୍ଧାର କରନ୍ତୁ । ଦେବ ! ଶମ୍ଭୁ ! ଆପଣ ଦକ୍ଷିଣ ହସ୍ତରେ ଗିରିଜାଙ୍କର ପାଣିଗ୍ରହଣ କରନ୍ତୁ । ଗିରିରାଜ ହିମବାନଙ୍କ ଦ୍ୱାରା ପ୍ରଦତ୍ତ ମହାନୁଭାବା ପାର୍ବତୀଙ୍କୁ ପାଣିଗ୍ରହଣ ଦ୍ୱାରା ହିଁ ଅନୁଗୃହୀତ କରନ୍ତୁ ।"

ବିଷ୍ଣୁଙ୍କ ମୁଖରୁ ଏହା ଶୁଣି ଯୋଗପରାୟଣ ଭଗବାନ ଶିବ ସେ ସମସ୍ତଙ୍କୁ ଉତ୍ତମ ଗତି ଦର୍ଶନ କରାଇବାକୁ ଯାଇ କହିଲେ–"ଦେବଗଣ ! ମୁଁ ସର୍ବାଙ୍ଗ ସୁନ୍ଦରୀ ଗିରିଜାଦେବୀଙ୍କୁ ଗ୍ରହଣ କରିବା ମାତ୍ରେ ସମସ୍ତ ସୁରେଶ୍ୱର ତଥା ଋଷି-ମୁନି କାମମୋହିତ ହୋଇଯିବେ । ତେବେ ତ ପରମାର୍ଥ ପଥରେ ଚାଲିବାକୁ ଆଉ ସମର୍ଥ ହେବେ ନାହିଁ । ଦୁର୍ଗା ତ ପାଣିଗ୍ରହଣମାତ୍ରକେ କାମଦେବକୁ ଜୀବିତ କରିଦେବେ । ବିଷ୍ଣୋ ! ମୁଁ କାମଦେବକୁ ଭସ୍ମ କରି ଦେବତାଙ୍କର ବହୁତ ବଡ଼ କାର୍ଯ୍ୟ ସାଧିତ କରିଛି । ଏଣୁ ଆଜିଠାରୁ ସମସ୍ତେ ମୋ ସଙ୍ଗରେ ସୁନିଶ୍ଚିତରୂପେ ନିଷ୍କାମ ହୋଇ ରହିବା ଉଚିତ ହେବ । ଯେପରି ମୁଁ ରହିଛି, ତୁମେମାନେ ମଧ୍ୟ ମୋରି ପରି ପୃଥକ୍ ପୃଥକ୍ ରହିଲେ କୌଣସି ବିଶେଷ ପ୍ରଯତ୍ନ ବିନା ମଧ୍ୟ ଅତ୍ୟନ୍ତ ଦୁଷ୍କର ଓ ଉତ୍ତମ ତପସ୍ୟା କରିପାରିବ । ଏବେ ମଦନ ନାହିଁ, ତେଣୁ ତୁମେ ସକଳ ଦେବତା ସମାଧି ଦ୍ୱାରା ପରମାନନ୍ଦ ଅନୁଭବ କରିବା ସହ ନିର୍ବିକାର ହୋଇଯାଅ; କାରଣ କାମ ହିଁ ନରକପ୍ରାପ୍ତିର ରାସ୍ତା । କାମରୁ କ୍ରୋଧ ଆସିଥାଏ, କ୍ରୋଧରୁ ମୋହ ଆଉ ମୋହରୁ ତପସ୍ୟା ନଷ୍ଟ ହୋଇଥାଏ । ତେଣୁ ତୁମ ପରି ଶ୍ରେଷ୍ଠ ଦେବତାମାନଙ୍କ ପକ୍ଷେ କାମ ଓ କ୍ରୋଧ ପରିତ୍ୟାଗ କରିଦେବା ଉଚିତ । ମୋର କଥାକୁ ଅନ୍ୟଥା ବୁଝ ନାହିଁ ।*

ବ୍ରହ୍ମା କହୁଛନ୍ତି–ନାରଦ ! ବୃଷଭଧ୍ୱଜ ମହାଦେବ ଏପରି କହି ବ୍ରହ୍ମା, ବିଷ୍ଣୁ, ଦେବଗଣ ଓ ମୁନିଗଣଙ୍କୁ ନିଷ୍କାମଧର୍ମର ଉପଦେଶ ଦେଲେ । ତା'ପରେ ପାର୍ଷଦଗଣଙ୍କ ଦ୍ୱାରା ପରିବେଷ୍ଟିତ ଭଗବାନ ଶମ୍ଭୁ ମୌନାବଲମ୍ବନପୂର୍ବକ ପୁନଃ ଧ୍ୟାନସ୍ଥ ହୋଇଗଲେ । ସେ ମନ ମଧ୍ୟରେ ଆତ୍ମସ୍ୱରୂପ, ନିରଞ୍ଜନ, ନିରାଭାସ, ନିର୍ବିକାର, ନିରାମୟ, ପରାତ୍ପର, ନିତ୍ୟ, ମମତାରହିତ, ନିରବଗ୍ରହ, ଶବ୍ଦାତୀତ, ନିର୍ଗୁଣ, ଜ୍ଞାନଗମ୍ୟ ଓ ପ୍ରକୃତିରୁ ଅତୀତ ପରମାତ୍ମାଙ୍କୁ ଚିନ୍ତନ କରିବାକୁ

---

* କାମୋ ହି ନରକାୟୈବ ତସ୍ମାତ୍ କ୍ରୋଧୋଽଭିଜାୟତେ । କ୍ରୋଧାଦ୍ଭବତି ସମ୍ମୋହୋ ମୋହାଚ୍ଚ ଭ୍ରଂଶତେ ତପଃ ॥
କାମକ୍ରୋଧୌ ପରିତ୍ୟାଜ୍ୟୌ ଭବଦ୍ଭିଃ ସୁରସତ୍ତମୈଃ । ସର୍ବୈରେବ ଚ ମନ୍ତବ୍ୟଂ ମଦ୍ବାକ୍ୟଂ ନାନ୍ୟଥା କ୍ୱଚିତ୍ ॥
(ଶି. ପୁ. ରୁ. ସଂ. ପା. ଖ. ୨୪ । ୨୭-୨୮)

ଲାଗିଲେ । ଜଗତର ସ୍ରଷ୍ଟା ଶିବ ଧ୍ୟାନସ୍ଥ ହେବା ମାତ୍ରେ ପରମାନନ୍ଦରେ ନିମଗ୍ନ ହୋଇଗଲେ । ଶ୍ରୀହରି ଏବଂ ଇନ୍ଦ୍ରାଦି ଦେବତା ଶିବଙ୍କୁ ଧ୍ୟାନମଗ୍ନ ଦେଖି ନନ୍ଦୀଙ୍କର ସମ୍ମତି ନେଲେ । ନନ୍ଦୀ ପୁନଃ ଦୀନଭାବରେ ସ୍ତୁତି କରିବାକୁ ପରାମର୍ଶ ଦେଲେ । ତାଙ୍କ ସମ୍ମତି ଅନୁସାରେ ଦେବଗଣ ସ୍ତୁତି କରିବାକୁ ଲାଗିଲେ । ସେମାନେ କହିଲେ—''ଦେବଦେବ ! ମହାଦେବ ! କରୁଣାସାଗର ପ୍ରଭୋ ! ଆମେ ଆପଣଙ୍କ ଶରଣକୁ ଆସିଛୁ । ଆପଣ ଆମକୁ ମହାକ୍ଳେଶରୁ ଉଦ୍ଧାର କରନ୍ତୁ ।''

ବ୍ରହ୍ମା କହୁଛନ୍ତି—ନାରଦ ! ଦେବଗଣ ଏପରି ଦୀନତାପୂର୍ଣ୍ଣ ଉକ୍ତିରେ ଭଗବାନ ଶଙ୍କରଙ୍କୁ ସ୍ତୁତି କଲେ । ତା'ପରେ ସମସ୍ତେ ବ୍ୟାକୁଳଚିତ୍ତ ହୋଇ ଉଚ୍ଚସ୍ୱରରେ ରୋଦନ କଲେ । ମୁଁ, ଭଗବାନ ବିଷ୍ଣୁ ଓ ଦେବଗଣ ଭକ୍ତିଭାବରେ ଶମ୍ଭୁଙ୍କୁ ସ୍ମରଣ କରି ଅତ୍ୟନ୍ତ ଦୈନ୍ୟ ବଚନରେ ଆମ ଅଭିପ୍ରାୟ ବ୍ୟକ୍ତ କଲୁ ।

ମୁଁ, ବିଷ୍ଣୁ ଓ ଦେବଗଣ ଦୈନ୍ୟଭାବରେ ସ୍ତୁତି କରିବାରୁ ଭଗବାନ ମହେଶ୍ୱର ଆପଣା ଭକ୍ତବତ୍ସଳତା ଗୁଣ ହେତୁ ଧ୍ୟାନରୁ ବିରତ ହେଲେ । ତାଙ୍କ ମନ ପ୍ରସନ୍ନ ଥିଲା । ଭକ୍ତବତ୍ସଳ ଶିବ ଶ୍ରୀହରି ପ୍ରଭୃତିଙ୍କୁ କରୁଣାଦୃଷ୍ଟିରେ ଚାହିଁ ସେମାନଙ୍କୁ ଆନନ୍ଦିତ କରିବାକୁ ଯାଇ କହିଲେ—''ବିଷ୍ଣୋ ! ବ୍ରହ୍ମନ୍ ! ଇନ୍ଦ୍ରାଦି ଦେଗଗଣ ! ତୁମେମାନେ ସମସ୍ତେ ଏକାଠି ହୋଇ ଏଠାକୁ କାହିଁକି ଆସିଛ? ମୋ ସମ୍ମୁଖରେ ସତ ସତ କୁହ ।''

ଶ୍ରୀହରି କହିଲେ—ମହେଶ୍ୱର ! ଆପଣ ସର୍ବଜ୍ଞ, ସମସ୍ତଙ୍କର ଅନ୍ତର୍ଯ୍ୟାମୀ ଈଶ୍ୱର । କ'ଣ ଆପଣ ଆମ ମନର କଥା ଜାଣନ୍ତି ନାହିଁ? ନିଶ୍ଚିତରୂପେ ଜାଣନ୍ତି । ତଥାପି ଆପଣଙ୍କ ଆଜ୍ଞା ହେତୁ ମୁଁ କହୁଛି । ସୁଖଦାତା ! ଆମେ ସମସ୍ତ ଦେବଗଣ ତାରକାସୁର ଦ୍ୱାରା ପ୍ରତାଡ଼ିତ ଓ ଦୁଃଖସଂତପ୍ତ । ସେଇଥିପାଇଁ ଦେବତାମାନେ ଆପଣଙ୍କୁ ପ୍ରସନ୍ନ କରିଛନ୍ତି । ଆପଣଙ୍କ ପାଇଁ ସେମାନେ ଗିରିରାଜ ହିମାଳୟଙ୍କ ଠାରୁ ଗିରିଜାଙ୍କୁ ଉତ୍ପନ୍ନ କରାଇଛନ୍ତି । ଶିବାଙ୍କ ଗର୍ଭରୁ ଯେଉଁ ପୁତ୍ର ଉତ୍ପନ୍ନ ହେବ, ତାହାରି ଦ୍ୱାରା ତାରକାସୁରର ମୃତ୍ୟୁ ହେବ, ଅନ୍ୟ କୌଣସି ଉପାୟରେ ସେ ମରିବ ନାହିଁ । ବ୍ରହ୍ମା ତାକୁ ଏହି ବର ଦେଇଥିବାରୁ ଅନ୍ୟଦ୍ୱାରା ତା'ର ମୃତ୍ୟୁ ହେଉ ନାହିଁ । ତେଣୁ ସେ ନିର୍ଭୟ ହୋଇ ସମଗ୍ର ସଂସାରକୁ କଷ୍ଟ ଦେଉଛି । ଏଣେ ନାରଦଙ୍କ ଆଜ୍ଞାରେ ପାର୍ବତୀ କଠୋର ତପସ୍ୟା କରୁଛନ୍ତି । ତାଙ୍କ ତେଜ ସଚରାଚର ସମଗ୍ର ଜଗତରେ ବ୍ୟାପିଯାଇଛି । ଏଣୁ ହେ ପରମେଶ୍ୱର ! ଆପଣ ଶିବାଙ୍କୁ ବର ଦେବାକୁ ଯାଆନ୍ତୁ । ସ୍ୱାମିନ୍ ! ଦେବତାଙ୍କ ଦୁଃଖ ଦୂର କରିବା ସଙ୍ଗେ ସଙ୍ଗେ ଆମ୍ଭମାନଙ୍କୁ ସୁଖ ପ୍ରଦାନ କରନ୍ତୁ । ଶଙ୍କର ! ମୋର ଓ ଦେବଗଣଙ୍କର ହୃଦୟରେ ଆପଣଙ୍କ ବିବାହ ଦେଖିବାକୁ ପ୍ରବଳ ଉତ୍ସାହ । ତେଣୁ ଆପଣ ଯଥୋଚିତ ରୀତିରେ ବିବାହ କରନ୍ତୁ । ପରାତ୍ପର ପରମେଶ୍ୱର ! ଆପଣ ରତିକୁ ଯେଉଁ ବର ଦେଇଥିଲେ, ତାହା ପୂରଣ କରିବାର ସମୟ ଆସିଗଲାଣି, ତେଣୁ ନିଜ ପ୍ରତିଜ୍ଞାକୁ ଶୀଘ୍ର ସଫଳ କରନ୍ତୁ ।

ବ୍ରହ୍ମା କହୁଛନ୍ତି—ନାରଦ ! ଏହା କହିବା ପରେ ତାଙ୍କୁ ପ୍ରଣାମ କରି ବିଷ୍ଣୁ ଆଦି ଦେବତା ଓ ମହର୍ଷି ନାନାପ୍ରକାର ସ୍ତୋତ୍ର ଦ୍ୱାରା ପୁନଃ ତାଙ୍କୁ ସ୍ତୁତି କଲେ ଏବଂ ତା'ପରେ ସମସ୍ତେ ତାଙ୍କ ସମ୍ମୁଖରେ ଛିଡ଼ା ହୋଇଗଲେ । ଭକ୍ତାଧୀନ ପ୍ରଭୁ ଶିବ ତ ବେଦମର୍ଯ୍ୟାଦାର ରକ୍ଷକ । ସେ ଦେବଗଣଙ୍କ କଥା ଶୁଣି ହସି ହସି କହିଲେ—''ହେ ହରେ ! ହେ ବିଧାତା ! ହେ ଦେବଗଣ ! ତୁମେମାନେ ମନଦେଇ ଶୁଣ । ମୁଁ ଯଥୋଚିତ ବିବେକପୂର୍ଣ୍ଣ କଥା କହୁଛି । ବିବାହ କରିବା ମନୁଷ୍ୟ ପକ୍ଷେ

ଉଚିତ କାର୍ଯ୍ୟ ନୁହେଁ; କାରଣ ବିବାହ ଗୋଟିଏ ବହୁତ ବଡ଼ ସୁଦୃଢ଼ ବନ୍ଧନ । ଜଗତରେ ବହୁତ ପ୍ରକାର କୁସଙ୍ଗ ଅଛି, କିନ୍ତୁ ସ୍ତ୍ରୀର ସଙ୍ଗ ସେଗୁଡ଼ିକ ମଧ୍ୟରେ ସବୁଠୁ ବଳି । ମନୁଷ୍ୟ ସମସ୍ତ ବନ୍ଧନରୁ ମୁକୁଳି ପାରେ, କିନ୍ତୁ ସ୍ତ୍ରୀପୁତ୍ରାଦିଙ୍କ ବନ୍ଧନରୁ ମୁକୁଳି ପାରେ ନାହିଁ । ଲୁହା ଓ କାଠରେ ନିର୍ମିତ ବେଡ଼ିରେ ଦୃଢ଼ଭାବେ ବନ୍ଧା ହୋଇଥିବା ମନୁଷ୍ୟ ଦିନେ ନା ଦିନେ ସେଥିରୁ ମୁକ୍ତି ପାଇଯାଏ, କିନ୍ତୁ ସ୍ତ୍ରୀ-ପୁତ୍ରାଦି ବନ୍ଧନରେ ଆବଦ୍ଧ ମନୁଷ୍ୟ କଦାପି ସେଥିରୁ ମୁକ୍ତ ହୋଇପାରେ ନାହିଁ । ଘୋର ବନ୍ଧନରେ ପକାଉଥିବା ବିଷୟ-ବାସନା ସର୍ବଦା ବଢ଼ି ବଢ଼ି ଚାଲିଥାଏ । ଯାହାର ମନ ବିଷୟର ବଶୀଭୂତ ହୋଇଗଲା, ତା' ପାଇଁ ମୋକ୍ଷ ସ୍ୱପ୍ନରେ ମଧ୍ୟ ଦୁର୍ଲଭ । ବିଦ୍ୱାନ୍ ପୁରୁଷ ଯଦି ସୁଖ ଚାହେଁ, ସେ ବିଷୟକୁ ବିଧିପୂର୍ବକ ତ୍ୟାଗ କରିଦେବା ଉଚିତ । ବିଷୟକୁ ବିଷ ତୁଲ୍ୟ କୁହାଯାଇଛି, ଏହାଦ୍ୱାରା ମନୁଷ୍ୟ ମରଣ ମୁଖରେ ପଡ଼େ । ବିଷୟୀ ସଙ୍ଗେ କଥାବାର୍ତ୍ତା ହେବାମାତ୍ରେ ମନୁଷ୍ୟ କ୍ଷଣକ ମଧ୍ୟରେ ପତିତ ହୋଇଯାଏ । ଆଚାର୍ଯ୍ୟମାନେ ବିଷୟକୁ ମିଶ୍ରିମିଶ୍ରିତ ବାରୁଣୀ (ମଦିରା) ବୋଲି କହିଛନ୍ତି ।* ଯଦ୍ୟପି ମୁଁ ଏ କଥାକୁ ଜାଣେ ଏବଂ ମୋର ଯଦ୍ୟପି ବିଷୟର ସମସ୍ତ ଦୋଷ ସମ୍ବନ୍ଧରେ ଯଥେଷ୍ଟ ଜ୍ଞାନ ରହିଛି, ତଥାପି ମୁଁ ତୁମମାନଙ୍କ ପ୍ରାର୍ଥନାକୁ ସଫଳ କରିବି; କାରଣ ମୁଁ ଭକ୍ତଙ୍କର ଅଧୀନ ଏବଂ ଭକ୍ତବତ୍ସଳତା ହେତୁ ଉଚିତ-ଅନୁଚିତ ସମସ୍ତ କାର୍ଯ୍ୟ ମୁଁ କରିଥାଏ । ଏଥିପାଇଁ ତ୍ରିଲୋକରେ 'ଅଯଥୋଚିତକର୍ତ୍ତା' ନାମରେ ମୋର ପ୍ରସିଦ୍ଧି ରହିଛି । ଭକ୍ତଙ୍କ ପାଇଁ ମୁଁ ଅନେକ ଥର ଅନେକ ପ୍ରକାର ପ୍ରଯତ୍ନ କରିଛି ଓ କଷ୍ଟ ସହନ କରିଛି । ଗୃହପତି ହୋଇ ବିଶ୍ୱାନର ମୁନିଙ୍କ ଦୁଃଖ ଦୂର କରିଛି । ହରେ ! ବିଧେ ! ଅଧିକ କହିବାରେ କିଛି ପ୍ରୟୋଜନ ନାହିଁ । ମୋର ଯାହା ପ୍ରତିଜ୍ଞା, ତାହା ତ ତୁମେମାନେ ଭଲଭାବରେ ଜାଣିଛ । ମୁଁ ସତ୍ୟ କହୁଛି, ଯେଉଁ ଯେଉଁ ସମୟରେ ଭକ୍ତଙ୍କ ଉପରେ କୌଣସି ବିପତ୍ତି ପଡ଼େ, ସବୁ ସମୟରେ ମୁଁ ଅବିଲମ୍ବେ ସେମାନଙ୍କର ସମସ୍ତ କଷ୍ଟକୁ ହରଣ କରିଥାଏ । ତାରକାସୁର ପାଇଁ ତୁମମାନଙ୍କୁ ଯେଉଁ କଷ୍ଟ ହୋଇଛି, ତାହା ମୁଁ ଜାଣେ ଏବଂ ଏକଥା ମଧ୍ୟ ସତ ସତ କହିଦେଉଛି ଯେ ମୁଁ ତାହା ନିଶ୍ଚୟ ହରଣ କରିବି । ଯଦ୍ୟପି ମୋ ମନରେ ବିବାହ କରିବାକୁ କୌଣସି ପ୍ରକାର ରୁଚି ନାହିଁ, ତଥାପି ମୁଁ ପୁତ୍ରୋତ୍ପାଦନ ପାଇଁ ଗିରିଜା ସଙ୍ଗେ ବିବାହ କରିବି । ତୁମେ ସବୁ ଦେବତା ଏବେ ନିର୍ଭୟ ହୋଇ ନିଜ ନିଜ ସ୍ଥାନକୁ ଯାଅ । ମୁଁ ତୁମର କାର୍ଯ୍ୟ ନିଶ୍ଚୟ ସଫଳ କରିବି । ଏବେ ଆଉ ଏ ବିଷୟରେ କୌଣସି ବିଚାର ଆଲୋଚନା କରିବାର ଆବଶ୍ୟକତା ନାହିଁ ।

ବ୍ରହ୍ମା କହୁଛନ୍ତି—ନାରଦ ! ଏଭଳି କହି ଭଗବାନ ଶିବ ମୌନାବଲମ୍ବନପୂର୍ବକ ସମାଧିରେ ସ୍ଥିତ ହୋଇଗଲେ ଏବଂ ବିଷ୍ଣୁ ପ୍ରଭୃତି ଦେବଗଣ ନିଜ ନିଜ ଧାମକୁ ବାହୁଡ଼ି ଗଲେ ।

(ଅଧ୍ୟାୟ ୨୪)



* କୁସଙ୍ଗା ବହବୋ ଲୋକେ ସ୍ତ୍ରୀସଙ୍ଗସ୍ତତ୍ର ଚାଧିକଃ । ଉଦ୍ଧରେତ୍ସକଲୈର୍ବନ୍ଧୈର୍ନ ସ୍ତ୍ରୀସଙ୍ଗାତ୍ ପ୍ରମୁଚ୍ୟତେ ॥
ଲୋହଦାରୁମୟୈଃ ପାଶୈର୍ଦୃଢଂ ବଦ୍ଧୋଽପି ମୁଚ୍ୟତେ । ସ୍ତ୍ର୍ୟାଦିପାଶସୁସମ୍ବଦ୍ଧୋ ମୁଚ୍ୟତେ ନ କଦାଚନ ॥
ବର୍ଦ୍ଧନ୍ତେ ବିଷୟାଃ ଶଶ୍ୱନ୍ମହାବନ୍ଧନକାରିଣଃ । ବିଷୟାକ୍ରାନ୍ତମନସଃ ସ୍ୱପ୍ନେ ମୋକ୍ଷୋଽପି ଦୁର୍ଲଭଃ ॥
ସୁଖମିଚ୍ଛତି ଚେତ୍ ପ୍ରାଜ୍ଞୋ ବିଧିବଦ୍ ବିଷୟାଂସ୍ତ୍ୟଜେତ୍ । ବିଷବଦ୍ ବିଷୟାନାହୁର୍ବିଷୟୈର୍ୟୈର୍ନିହନ୍ୟତେ ॥
ଜନୋ ବିଷୟିଣା ସାକଂ ବାର୍ତ୍ତାତଃ ପତତି କ୍ଷଣାତ୍ । ବିଷୟଂ ପ୍ରାହୁରାଚାର୍ଯ୍ୟାଃ ସିତାଲିପ୍ତେନ୍ଦ୍ରବାରୁଣୀମ୍ ॥
(ଶି. ପୁ. ରୁ. ସଂ. ପା. ଖ. ୨୪ । ୬୧–୬୫)

# ଶିବଙ୍କ ଆଜ୍ଞାରେ ପାର୍ବତୀଙ୍କ ଆଶ୍ରମକୁ ସପ୍ତର୍ଷିଗଣଙ୍କ ଆଗମନ ଓ ସେମାନଙ୍କ ଦ୍ୱାରା ପାର୍ବତୀଙ୍କ ଶିବାନୁରାଗର ପରୀକ୍ଷା ଏବଂ ଶିବଙ୍କୁ ପାର୍ବତୀଙ୍କ ବୃତ୍ତାନ୍ତ ଶୁଣାଇବା ପରେ ସେମାନଙ୍କର ସ୍ୱର୍ଗ ପ୍ରତ୍ୟାବର୍ତ୍ତନ

ବ୍ରହ୍ମା କହୁଛନ୍ତି–ଦେବଗଣ ନିଜ ନିଜ ଆଶ୍ରମକୁ ଚ୍ଯଲିଯିବା ପରେ ପାର୍ବତୀଙ୍କ ତପସ୍ୟାର ପରୀକ୍ଷା ନେବା ପାଇଁ ଭଗବାନ ଶିବ ସମାଧିସ୍ଥ ହୋଇଗଲେ । ସେ ସ୍ୱୟଂ ନିଜର ପରାତ୍ପର, ସ୍ୱଚ୍ଛ, ମାୟାରହିତ ଓ ନିରୁପଦ୍ରବ ସ୍ୱରୂପକୁ ଚିନ୍ତନ କରିବାକୁ ଲାଗିଲେ; କାରଣ ସ୍ୱୟଂ ମହେଶ୍ୱର ହିଁ ସେହି ଧ୍ୟେୟରୂପରେ ବିରାଜମାନ । ତାଙ୍କ ଗତି ବିଷୟରେ କେହି ବି ଜାଣି ନ ଥାନ୍ତି । ସେହି ପ୍ରଭୁ ବୃଷଭଧ୍ୱଜ ହିଁ ସବୁରି ସ୍ରଷ୍ଟା ପରମେଶ୍ୱର ।

ବତ୍ସ ନାରଦ! ସେତେବେଳେ ପାର୍ବତୀ ବହୁତ କଠୋର ତପସ୍ୟା କରୁଥିଲେ । ତାଙ୍କ ତପସ୍ୟା କଥା ଜାଣି ସ୍ୱୟଂ ରୁଦ୍ରଦେବ ମଧ୍ୟ ବିସ୍ମିତ ହୋଇଗଲେ । ଭକ୍ତାଧୀନ ହୋଇଥିବା ହେତୁ ସେ ସମାଧିରୁ ବିଚଳିତ ହୋଇଗଲେ । ତା'ପରେ ଜଗତର ସ୍ରଷ୍ଟା ହର ବଶିଷ୍ଠ ଆଦି ସପ୍ତର୍ଷିଙ୍କୁ ସ୍ମରଣ କଲେ । ସ୍ମରଣମାତ୍ରେ ସେମାନେ ଉପସ୍ଥିତ ହୋଇଗଲେ । ସେମାନଙ୍କ ମୁଖମଣ୍ଡଳରେ ପ୍ରସନ୍ନତା ଥିଲା ଏବଂ ଶିବଙ୍କ ସେବାରେ ଉପସ୍ଥିତ ହୋଇଥିବା ହେତୁ ସେମାନେ ନିଜ ଭାଗ୍ୟକୁ ଭୂରି ଭୂରି ପ୍ରଶଂସା କରୁଥିଲେ । ସେମାନଙ୍କୁ ଦେଖି ଶିବଙ୍କ ନେତ୍ର ପ୍ରସନ୍ନତାରେ ପଦ୍ମ ପରି ପ୍ରଫୁଲ୍ଲିତ ହୋଇଉଠିଲା । ସେ ହସି ହସି କହିଲେ, "ହେ ସପ୍ତର୍ଷିଗଣ ! ତୁମେମାନେ ମୋର ହିତକାରୀ ଏବଂ ସର୍ବଜ୍ଞ । ତେଣୁ ମୋ କଥା ଶୁଣ । ଗିରିରାଜକୁମାରୀ ଦେବେଶ୍ୱରୀ ପାର୍ବତୀ ଏବେ ସୁସ୍ଥିରଚିତ୍ତରେ ଗୌରୀଶିଖର ନାମକ ପର୍ବତରେ ତପସ୍ୟା କରୁଛନ୍ତି । ମୋତେ ସ୍ୱାମୀରୂପରେ ଲାଭ କରିବା ତାଙ୍କ ତପସ୍ୟାର ଏକମାତ୍ର ଉଦ୍ଦେଶ୍ୟ । ଦ୍ୱିଜଗଣ ! ଏବେ କେବଳ ସଖୀମାନେ ତାଙ୍କ ସେବାରେ ଅଛନ୍ତି । ମୋ ଛଡ଼ା ଅନ୍ୟ ସମସ୍ତ କାମନା ପରିତ୍ୟାଗ କରି ସେ ଏକମାତ୍ର ସେହି ନିର୍ଣ୍ଣୟରେ ଅଟଳ ଅଛନ୍ତି । ମୁନିଗଣ ! ମୋ ଆଜ୍ଞାରେ ତୁମେମାନେ ସେଠାକୁ ଯାଅ ଏବଂ ପ୍ରେମପୂର୍ଣ୍ଣ ହୃଦୟରେ ତାଙ୍କ ଦୃଢ଼ତାର ପରୀକ୍ଷା ନିଅ । ସେଠି ତୁମେମାନେ ଛଳଯୁକ୍ତ କଥା କହିବ । ହେ ମହର୍ଷିଗଣ ! ମୋ ଆଜ୍ଞାରେ ନିଃସନ୍ଦେହରେ ଏଭଳି କରିବ ।"

ଭଗବାନଙ୍କ ଠାରୁ ଏଭଳି ଆଜ୍ଞା ପାଇବା ପରେ ସପ୍ତର୍ଷିଗଣ ଯାଇ ଦୀପ୍ତିମତୀ ଜଗନ୍ମାତା ପାର୍ବତୀଙ୍କ ନିକଟରେ ପହଞ୍ଚିଲେ । ସେଠାରେ ସେମାନେ ଶିବାଙ୍କୁ ତପସ୍ୟାର ମୂର୍ତ୍ତିମତୀ ସିଦ୍ଧି ପରି ଦେଖିବାକୁ ପାଇଲେ । ତାଙ୍କର ତେଜ ଅଦ୍ଭୁତ ଥିଲା । ସପ୍ତର୍ଷିଗଣ ତାଙ୍କୁ ମନେ ମନେ ପ୍ରଣାମ କଲେ ଏବଂ ପାର୍ବତୀଙ୍କ ଦ୍ୱାରା ପୂଜିତ ହେବା ପରେ ସେମାନେ ନତମସ୍ତକ ହୋଇ ଏହିପରି କହିଲେ–

ଋଷିଗଣ କହିଲେ–ହେ ଦେବୀ ! ଗିରିଜେ ! ଆମ କଥା ଟିକିଏ ଶୁଣ । ଆମେ ଜାଣିବାକୁ ଚ୍ଯହୁଁଛୁ ଯେ ତୁମେ କେଉଁ ଉଦ୍ଦେଶ୍ୟରେ ତପସ୍ୟା କରୁଛ? ତପସ୍ୟାଦ୍ୱାରା କେଉଁ ଦେବତାଙ୍କୁ ଓ କେଉଁ ଫଳକୁ ପାଇବାକୁ ଚ୍ଯହୁଁଛ?

ବ୍ରାହ୍ମଣମାନଙ୍କ ପ୍ରଶ୍ନ ଶୁଣି ଦେବୀ ସେମାନଙ୍କ ଆଗରେ ଅତ୍ୟନ୍ତ ଗୋପନୀୟ ହୋଇଥିଲେ ମଧ୍ୟ ସତ କଥାଟି କହିଦେଲେ ।

ପାର୍ବତୀ କହିଲେ–ହେ ମୁନୀଶ୍ୱରଗଣ ! ଆପଣମାନେ ପ୍ରସନ୍ନ ଚିତ୍ତରେ ମୋ କଥାଟି

ଶୁଣନ୍ତୁ । ମୁଁ ମୋ ନିଜ ବୁଦ୍ଧିରେ ଯାହା ସ୍ଥିର କରିଛି, ସେ କଥା ଆପଣମାନଙ୍କ ସମ୍ମୁଖରେ ରଖୁଛି । ଆପଣମାନେ କାଳେ ମୋର ଅସମ୍ଭବ ପରି ଲାଗୁଥିବା କଥାକୁ ଶୁଣି ଉପହାସ କରିବେ, ସେଥିପାଇଁ କହିବାକୁ ସଂକୋଚ ଲାଗୁଛି; ତଥାପି କହୁଛି । କ'ଣ କରିବି, ମୋର ହଠୀ ମନଟା ଅତି ଦୃଢ଼ଭାବରେ ଏହି ଉତ୍କୃଷ୍ଟ ଅନୁଷ୍ଠାନରେ ନିମଗ୍ନ ରହିଛି ଏବଂ ଏହାକୁ ସେ ଛାଡ଼ିପାରୁ ନାହିଁ । ସେ ପାଣି ଉପରେ ବହୁତ ବଡ଼ କାନ୍ଥ ଗଢ଼ିବାକୁ ଗ୍ୱହୁଁଛି । ଦେବର୍ଷିଙ୍କ ଉପଦେଶ ଶୁଣିବା ପରେ ଭଗବାନ ରୁଦ୍ରଙ୍କୁ ସ୍ୱାମୀ ରୂପରେ ପାଇବାର ଅଭିଳାଷକୁ ମନରେ ଅଟଳ କରି ମୁଁ ଏହି କଠୋର ତପସ୍ୟା କରୁଛି । ମୋ ମନରୂପୀ ପକ୍ଷୀ ବିନା ଡେଣାରେ ବି ଜିଦି କରି ଆକାଶରେ ଉଡୁଛି । ମୋ ସ୍ୱାମୀ କରୁଣାନିଧାନ ଭଗବାନ ଶଙ୍କର ହିଁ ସେହି ଆଶାକୁ ପୂର୍ଣ୍ଣ କରିପାରିବେ ।

ପାର୍ବତୀଙ୍କ ମୁଖରୁ ଏଭଳି ବାକ୍ୟ ଶୁଣି ମୁନିମାନେ ହସି ଉଠିଲେ ଏବଂ ଗିରିଜାଙ୍କୁ ସମ୍ମାନ କରିବା ସହିତ ପ୍ରେମପୂର୍ଣ୍ଣଚିତ୍ତରେ ଏହିପରି ଛଳନାପୂର୍ଣ୍ଣ ମିଥ୍ୟା ବଚନ କହିଲେ—

ଋଷିମାନେ କହିଲେ—ହେ ଗିରିରାଜନନ୍ଦିନୀ ! ଦେବର୍ଷି ନାରଦ ବୃଥାରେ ନିଜକୁ ପଣ୍ଡିତ ବୋଲି ଭାବନ୍ତି । ତାଙ୍କ ମନରେ କ୍ରୂରତା ପୂରି ରହିଛି । ତୁମେ ଏତେ ବୁଦ୍ଧିମତୀ ହୋଇ ମଧ୍ୟ ତାଙ୍କ ଚରିତ୍ରକୁ କେମିତି ଜାଣି ପାରିଲନି ! ନାରଦ ଛଳକପଟରେ ପ୍ରବୀଣ । ସେ ଅନ୍ୟର ଚିତ୍ତକୁ ମୋହରେ ପକାଇ ଭ୍ରମିତ କରିଦିଅନ୍ତି । ତାଙ୍କ କଥା ଶୁଣିଲେ ସବୁବେଳେ କ୍ଷତି ହିଁ ହୋଇଥାଏ । ବ୍ରହ୍ମାଙ୍କ ପୁତ୍ର ଦକ୍ଷଙ୍କର ପ୍ରଥମେ ଯେଉଁ ପୁତ୍ରମାନେ ହୋଇଥିଲେ, ସେମାନଙ୍କୁ ନାରଦ ହିଁ ଛଳନାପୂର୍ଣ୍ଣ ଉପଦେଶ ଦେଇଥିଲେ ଏବଂ ତାହାର ପରିଣାମରେ ସେମାନେ ଆଉ ପିତାଙ୍କ ପାଖକୁ ଫେରିଲେ ନାହିଁ । ଠିକ୍ ଏହି ସ୍ଥିତି ଦକ୍ଷଙ୍କ ପରବର୍ତ୍ତୀ ପୁତ୍ରଙ୍କର ମଧ୍ୟ ହେଲା । ସେମାନେ ମଧ୍ୟ ନାରଦଙ୍କ କଥାରେ ଭିକାରି ପାଲଟିଗଲେ ।



ବିଦ୍ୟାଧର ଚିତ୍ରକେତୁଙ୍କୁ ସେ ଏମିତି ଉପଦେଶ ଦେଲେ ଯେ ତାଙ୍କର ଘର ଉଜୁଡ଼ିଗଲା । ପ୍ରହ୍ଲାଦକୁ ନିଜର ଚେଲା କରି ସେ ହିରଣ୍ୟକଶିପୁ ଦ୍ୱାରା ତାକୁ ବହୁତ ଉତ୍ପୀଡ଼ନ ଦେଲେ । ସେ ସବୁବେଳେ ଅନ୍ୟର ବୁଦ୍ଧିରେ ଭେଦ ଉତ୍ପନ୍ନ କରିଦିଅନ୍ତି । ନାରଦ ଯାହାକୁ ଶ୍ରୁତିମଧୁର ମିଠା ମିଠା କଥା କହିଦିଅନ୍ତି, ସେ ଘରଦ୍ୱାର ଛାଡ଼ି ଭିକ ମାଗିବାକୁ ବାହାରିପଡ଼େ । ନାରଦଙ୍କ ଶରୀରଟା ସିନା ଉଜ୍ଜ୍ୱଳ, କିନ୍ତୁ ମନ ଭାରି ମଳିନ । ଆମର ତାଙ୍କ ସଙ୍ଗେ ମିଳାମିଶା ଥିବାରୁ ଆମେ ତାଙ୍କୁ ଭଲଭାବେ ଜାଣୁ । କିନ୍ତୁ ତୁମେ ତ ବଡ଼ ବଡ଼ ବିଦ୍ୱାନଙ୍କ ଦ୍ୱାରା ସମ୍ମାନିତ ହୋଇଥାଅ, ପୁଣି ତୁମେ କେମିତି ତାଙ୍କ ଉପଦେଶରେ ବୃଥାରେ ଭ୍ରମିତ ହୋଇଗଲ ଆଉ ଆଜି ଏଠିକି ଆସି ଏତେ ବଡ଼ ତପସ୍ୟା କରୁଛ?

ଝିଅ ! ତୁମେ ଯେଉଁ ରୁଦ୍ରଙ୍କ ପାଇଁ ଏତେ

ବଡ଼ ତପସ୍ୟା କରୁଛ, ସେ ସର୍ବଦା ଉଦାସୀନ ଓ ନିର୍ବିକାର ରହନ୍ତି; ସେ କାମର ଶତ୍ରୁ ଅଟନ୍ତି । ଏଥିରେ ତିଳେମାତ୍ର ସଂଶୟ ନାହିଁ । ସେ ଅମଙ୍ଗଳପୂର୍ଣ୍ଣ ବେଶଭୂଷା ଧାରଣ କରିଥାନ୍ତି; ପୁଣି ଲଜ୍ଜାକୁ ତ ସେ ତିଳାଞ୍ଜଳି ଦେଇ ଦେଇଛନ୍ତି ବୋଲି ଜାଣ । ତାଙ୍କର କେଉଁଠି ନା ଘର ଅଛି ନା ଦ୍ୱାର । ସେ କେଉଁ କୁଳରେ ଜନ୍ମିଛନ୍ତି, ତାହା ମଧ୍ୟ କାହାକୁ ଜଣା ନାହିଁ । କୁତ୍ସିତ ବେଶ ଧାରଣ କରି ସେ ଭୂତ-ପ୍ରେତଙ୍କ ସଙ୍ଗରେ ରହୁଥାନ୍ତି ଏବଂ ତ୍ରିଶୂଳଟା ଧରି ଲଙ୍ଗଳା ହୋଇ ବୁଲୁଥାନ୍ତି । ଧୂର୍ତ୍ତ ନାରଦ ହିଁ ମାୟାରେ ତୁମର ଜ୍ଞାନକୁ ନଷ୍ଟ କରି ତର୍କରେ ତୁମକୁ ମୋହିତ କରିଦେଲେ ଏବଂ ଆଜି ତୁମଦ୍ୱାରା ଏତେ ବଡ଼ ତପସ୍ୟା କରାଇଲେ । ହେ ଦେବେଶ୍ୱରୀ ! ହେ ଗିରିରାଜନନ୍ଦିନୀ ! ତୁମେ ନିଜେ ବିଚାର କର ଯେ ଏଭଳି ବରକୁ ପାଇଗଲେ ବି ତୁମକୁ କେଉଁ ସୁଖ ଅବା ମିଳିବ? ପୂର୍ବେ ରୁଦ୍ର ଭଲଭାବରେ ଚିନ୍ତା କରି ସାଧ୍ୱୀ ସତୀଙ୍କୁ ବିବାହ କଲେ । କିନ୍ତୁ ସେ ଏତେ ମୂଢ଼ ଯେ ଅଳ୍ପ କେଇଟା ଦିନ ବି ସ୍ତ୍ରୀ ସଙ୍ଗରେ ରହି ପାରିଲେ ନାହିଁ । ବିଚାରୀ ସତୀଙ୍କ ଉପରେ ଦୋଷାରୋପ କରି ତାଙ୍କୁ ପରିତ୍ୟାଗ କରିଦେଲେ ଏବଂ ନିଜେ ସ୍ୱତନ୍ତ୍ର ହୋଇଯାଇ ନିଜ ନିଷ୍କଳ ଓ ଶୋକରହିତ ସ୍ୱରୂପକୁ ଧ୍ୟାନ କରି ସେଇଥିରେ ଆନନ୍ଦ ମଣିଲେ । ହେ ଦେବୀ ! ଯିଏ ସଦା ଏକୁଟିଆ ରହିବାରେ ଅଭ୍ୟସ୍ତ, ଶାନ୍ତ, ସଙ୍ଗରହିତ ଓ ଅଦ୍ୱିତୀୟ, ତାଙ୍କ ସଙ୍ଗରେ କେଉଁ ସ୍ତ୍ରୀ କିପରି ଅବା ଜୀବନନିର୍ବାହ କରିପାରିବ? ଏବେ ବି ସମୟ ଅଛି, ତୁମେ ଆମ କଥା ମାନି ଘରକୁ ଫେରିଯାଅ ଏବଂ ଏ ଦୁର୍ବୁଦ୍ଧି ଛାଡ଼ିଦିଅ । ମହାଭାଗେ ! ଏଇଥିରେ ହିଁ ତୁମର ହିତ ନିହିତ । ତୁମର ବର ହେବାକୁ ଯୋଗ୍ୟ ଭଗବାନ ବିଷ୍ଣୁ; କାରଣ ସେ ହେଉଛନ୍ତି ସମସ୍ତ ସଦ୍‌ଗୁଣର ଭଣ୍ଡାର । ସେ ବୈକୁଣ୍ଠରେ ରହନ୍ତି, ପୁଣି ସେ ଲକ୍ଷ୍ମୀଙ୍କର ସ୍ୱାମୀ ଏବଂ ନାନା ପ୍ରକାର କ୍ରୀଡ଼ା କରିବାରେ କୁଶଳ । ଆମେ ତାଙ୍କ ସଙ୍ଗେ ତୁମର ବିବାହ କରାଇଦେବୁ; ଏଭଳି ବିବାହ ତୁମ ପାଇଁ ସୁଖଦାୟକ ହେବ । ହେ ପାର୍ବତୀ ! ସୁଖ ପାଇବାକୁ ଚାହୁଁଛ ଯଦି ତୁମେ ରୁଦ୍ରଙ୍କ ସଙ୍ଗେ ବିବାହ କରିବାକୁ ଯେଉଁ ହଠ କରିଛ, ତାହା ଛାଡ଼ିଦିଅ ।

ବ୍ରହ୍ମା କହୁଛନ୍ତି—ନାରଦ ! ସେମାନଙ୍କ କଥା ଶୁଣି ଜଗଦମ୍ବା ହସିଦେଲେ । ସେ ସେହି ଜ୍ଞାନବିଶାରଦ ମୁନିଗଣଙ୍କୁ କହିଲେ—

ପାର୍ବତୀ କହିଲେ—ହେ ମୁନୀଶ୍ୱରଗଣ ! ଆପଣମାନେ ଆପଣଙ୍କ ଦୃଷ୍ଟିକୋଣରୁ ଠିକ୍ କଥା କହିଛନ୍ତି । କିନ୍ତୁ ହେ ଦ୍ୱିଜଗଣ ! ମୋର ହଠ ଯିବ ନାହିଁ । ମୋ ଦେହ ପର୍ବତରୁ ଉତ୍ପନ୍ନ ହୋଇଛି, ତେଣୁ ମୋ'ଠାରେ କଠୋରତା ରହିବା ସ୍ୱାଭାବିକ । ଆପଣମାନେ ନିଜ ବୁଦ୍ଧି ଅନୁସାରେ ବିଚାର କରି ମୋତେ ତପସ୍ୟାରୁ ବିରତ କରିବାକୁ ଚେଷ୍ଟା ନ କରନ୍ତୁ । ଦେବର୍ଷିଙ୍କ ବାକ୍ୟ ମୋ ପାଇଁ ପରମ ହିତକର । ଏଣୁ ମୁଁ ତାଙ୍କ କଥାକୁ କେବେ ଏଡ଼ାଇ ପାରିବି ନାହିଁ । ବେଦଜ୍ଞ ଲୋକେ ମଧ୍ୟ ସ୍ୱୀକାର କରିଥାନ୍ତି ଯେ ଗୁରୁଙ୍କ ବଚନ ହିତକର ହୋଇଥାଏ । 'ଗୁରୁଙ୍କ ବଚନ ସତ୍ୟ' ଏପରି ଯାହାଙ୍କର ଦୃଢ଼ ବିଶ୍ୱାସ ରହିଛି, ତାଙ୍କୁ ଇହଲୋକ ଓ ପରଲୋକରେ ପରମ ସୁଖ ମିଳିଥାଏ । ତାଙ୍କୁ କଦାପି ଦୁଃଖ ଭୋଗିବାକୁ ପଡ଼ି ନ ଥାଏ । ତେଣୁ ହେ ଦ୍ୱିଜଗଣ ! ଗୁରୁଙ୍କ ବଚନକୁ କଦାପି କୌଣସି ପ୍ରକାରେ ତ୍ୟାଗ କରିବା ଉଚିତ ନୁହେଁ । ମୋ ଘର ପରିବାର ବସୁ ବା ଉଜୁଡ଼ି ଯାଉ, ମୋତେ ତ ଏଇ ହଠ ହିଁ ସର୍ବଦା ସୁଖ ଦେବ । ମୁନିଗଣ ! ଆପଣମାନେ ଯେଉଁ କଥା ବର୍ଣ୍ଣନା କଲେ, ମୁଁ ସେସବୁ କଥନକୁ ଭିନ୍ନ ଅର୍ଥରେ ବୁଝୁଛି । ତାହା ମୁଁ ସଂକ୍ଷେପରେ କହୁଛି । ଆପଣମାନେ କହିଲେ— ବିଷ୍ଣୁ ସଦ୍‌ଗୁଣର ଧାମ

ତଥା ଲୀଳାବିହାରୀ, ପୁଣି ଆପଣ ସଦାଶିବଙ୍କୁ ନିର୍ଗୁଣ ବି କହିଲେ । ମୋ ବିଗ୍ରହରେ ଏଭିଳି ହେବାର କାରଣ ହେଲା—ଭଗବାନ ଶିବ ସାକ୍ଷାତ୍ ପରବ୍ରହ୍ମ, ତେଣୁ ସେ ନିର୍ବିକାର । ସେ କେବଳ ଭକ୍ତଙ୍କ ପାଇଁ ଶରୀର ଧାରଣ କରନ୍ତି, ତଥାପି ସେ ଲୌକିକ ପ୍ରଭୁତାକୁ ପ୍ରଦର୍ଶନ କରିବାକୁ ଚାହାନ୍ତି ନାହିଁ । ତେଣୁ ପରମହଂସଙ୍କୁ ଯେଉଁ ଗତି ପ୍ରିୟ, ସେହି ଗତିକୁ ସେ ଧାରଣ କରିଥାନ୍ତି । ଶମ୍ଭୁ ପରମାନନ୍ଦମୟ ଅଟନ୍ତି, ତେଣୁ ସେ ଅବଧୂତ ବେଶରେ ରହନ୍ତି । ମାୟାଲିପ୍ତ ଜୀବମାନଙ୍କର ହିଁ ଭୂଷଣାଦି ପ୍ରତି ରୁଚି ରହିଥାଏ, ବ୍ରହ୍ମର ନ ଥାଏ । ମୋ ପ୍ରଭୁ ଗୁଣାତୀତ, ଅଜନ୍ମା, ମାୟାରହିତ, ଅଲକ୍ଷ୍ୟଗତି ଓ ବିରାଟ୍ ଅଟନ୍ତି । ଦ୍ୱିଜଗଣ ! ଭଗବାନ ଶମ୍ଭୁ କୌଣସି ଜାତି ବା ଧର୍ମ-ବିଶେଷକୁ ଦେଖି କାହା ପ୍ରତି ଅନୁଗ୍ରହ କରନ୍ତି ନାହିଁ । ମୁଁ ଗୁରୁଙ୍କ କୃପାରୁ ଶିବଙ୍କୁ ଭଲଭାବେ ଜାଣେ । ବ୍ରହ୍ମର୍ଷିଗଣ ! ଯଦି ଶିବ ମୋ ସଙ୍ଗେ ବିବାହ ନ କରିବେ, ତେବେ ମୁଁ ଚିରକାଳ ପାଇଁ କୁମାରୀ ହୋଇ ରହିବି ପଛେ, ଅନ୍ୟ କାହାକୁ ବିବାହ କରିବି ନାହିଁ । ଏହା ମୁଁ ସତ୍ୟ ସତ୍ୟ କହୁଛି । ସୂର୍ଯ୍ୟ ହୁଏତ ପଶ୍ଚିମରେ ଉଦୟ ହୋଇପାରନ୍ତି, ମେରୁପର୍ବତ ହୁଏତ ଆପଣା ସ୍ଥାନରୁ ବିଚଳିତ ହୋଇପାରେ, ଅଗ୍ନି ହୁଏତ ଶୀତଳ ହୋଇପାରେ ଏବଂ ପଦ୍ମ ହୁଏତ ପର୍ବତଶିଖରରେ ଫୁଟିପାରେ, ହେଲେ ମୋର ଜିଦ୍ ଟଳିବ ନାହିଁ । ଏହା ମୁଁ ସତ୍ୟ କରି କହୁଛି ।

ବ୍ରହ୍ମା କହୁଛନ୍ତି—ନାରଦ ! ଏତିକି କହିବା ପରେ ମୁନିମାନଙ୍କୁ ପ୍ରଣାମ କରି ଗିରିରାଜନନ୍ଦିନୀ ପାର୍ବତୀ ନିର୍ବିକାର ଚିତ୍ତରେ ମୌନ ହୋଇ ଶିବଙ୍କୁ ସ୍ମରଣ କରିବାକୁ ଲାଗିଲେ । ଗିରିଜାଙ୍କର ଏଭଳି ଶିବନିଷ୍ଠା ଦେଖି ସପ୍ତର୍ଷିମାନେ ପାର୍ବତୀଙ୍କର ଜୟଘୋଷ କଲେ ଏବଂ ପାର୍ବତୀଙ୍କୁ ଆଶୀର୍ବାଦ ଦେଲେ । ମୁନେ ! ଗିରିଜାଦେବୀଙ୍କୁ ପରୀକ୍ଷା କରିସାରି ସପ୍ତର୍ଷି ତାଙ୍କୁ ପ୍ରଣାମ କରି ପ୍ରସନ୍ନଚିତ୍ତରେ ଅବିଳମ୍ବେ ଶିବଙ୍କ ନିକଟକୁ ଫେରିଗଲେ । ସେଠାରେ ପହଞ୍ଚି ସେମାନେ ଅବନତମସ୍ତକରେ ସମସ୍ତ ବୃତ୍ତାନ୍ତ ଶୁଣାଇ ଶିବଙ୍କ ଆଜ୍ଞାରେ ସ୍ୱର୍ଗଲୋକକୁ ବାହୁଡ଼ିଗଲେ । (ଅଧ୍ୟାୟ ୨୫)

★★★

## ଶିବ ଜଟାଧାରୀ ତପସ୍ୱୀ ବ୍ରାହ୍ମଣବେଶରେ ପାର୍ବତୀଙ୍କ ଆଶ୍ରମକୁ ଯାଇ ତାଙ୍କୁ ତପସ୍ୟାର କାରଣ ପଚ୍ଚରିବାରୁ ପାର୍ବତୀ ନିଜ ସଖୀ ବିଜୟା ଦ୍ୱାରା ତାଙ୍କୁ ସବୁ କଥା ଅବଗତ କରାଇବା ପ୍ରସଙ୍ଗ

ବ୍ରହ୍ମା କହୁଛନ୍ତି—ନାରଦ ! ସପ୍ତର୍ଷିମାନେ ଫେରିଯିବା ପରେ ଲୀଳାଧାରୀ ଭଗବାନ ଶିବ ନିଜେ ଦେବୀଙ୍କ ପରୀକ୍ଷା ନେବାକୁ ଭାବିଲେ । ପ୍ରକୃତରେ ସେ ମନେ ମନେ ପାର୍ବତୀଙ୍କ ପ୍ରତି ବହୁତ ସନ୍ତୁଷ୍ଟ ଥିଲେ । ପରୀକ୍ଷା ବାହାନାରେ ପାର୍ବତୀଙ୍କୁ ଦେଖିବାକୁ ବୃଦ୍ଧ ଜଟାଧାରୀ ତପସ୍ୱୀ ରୂପ ଧାରଣ କରି ଭଗବାନ ଶମ୍ଭୁ ସେଠାକୁ ଗଲେ । ବୃଦ୍ଧ ତପସ୍ୱୀବେଶରେ ଦଣ୍ଡ ଓ ଛତ୍ର ଧାରଣ କରିଥିଲେ ମଧ୍ୟ ତାଙ୍କର ତେଜ ଝଟକୁ ଥିଲା । ଆଶ୍ରମରେ ପହଞ୍ଚି ସେ ଦେଖିଲେ ଯେ ଶିବା ସଖୀମାନଙ୍କ ମେଳରେ ବେଦି ଉପରେ ବସି ଚନ୍ଦ୍ରମାର ବିଶୁଦ୍ଧ କଳା ପରି ପ୍ରତୀୟମାନ ହେଉଛନ୍ତି । ବ୍ରହ୍ମଚାରୀ ରୂପ ଧାରଣ କରିଥିବା ଭକ୍ତବତ୍ସଳ ଶମ୍ଭୁ ପାର୍ବତୀଙ୍କୁ ଦେଖି ପ୍ରୀତିପୂର୍ବକ ତାଙ୍କ ସମୀପକୁ ଗଲେ । ଏପରି ଅଦ୍ଭୁତ ତେଜସ୍ୱୀ ବ୍ରାହ୍ମଣଦେବତା ସେଠାକୁ ଆସିଥିବା ଦେଖି ଶିବା

ସମସ୍ତ ପୂଜାସାମଗ୍ରୀ ଦ୍ୱାରା ତାଙ୍କୁ ପୂଜା କଲେ । ବ୍ରାହ୍ମଣଙ୍କର ସତ୍କାର ଓ ପୂଜା ସରିବା ପରେ ପାର୍ବତୀ ଅତି ପ୍ରସନ୍ନତା ଓ ପ୍ରେମର ସହିତ ତାଙ୍କୁ ଆଦରପୂର୍ବକ କୁଶଳ ସମାଚାର ପଚାରିଲେ ।

ପାର୍ବତୀ କହିଲେ–ବ୍ରହ୍ମଚାରୀ ବେଶରେ ଆପଣ କିଏ ଓ କେଉଁଠୁ ଆସିଛନ୍ତି? ହେ ବିପ୍ରବର ! ହେ ବେଦବେତ୍ତା ! ଆପଣ ନିଜ ତେଜରେ ଏ ବନକୁ ଉଦ୍ଭାସିତ କରୁଛନ୍ତି । ତେଣୁ ଆପଣଙ୍କ ପରିଚୟ ଦେଇ ମୋ ଜିଜ୍ଞାସାର ନିବାରଣ କରନ୍ତୁ ।

ବ୍ରାହ୍ମଣ କହିଲେ–ମୁଁ ଜଣେ ସ୍ୱଚ୍ଛନ୍ଦ ବିଚରଣ କରୁଥିବା ବୃଦ୍ଧ ବ୍ରାହ୍ମଣ । ମୁଁ ପବିତ୍ରବୁଦ୍ଧି, ତପସ୍ୱୀ, ପରୋପକାରୀ ଓ ଅନ୍ୟର ସୁଖରେ ରତ ରହିଥାଏ । କିନ୍ତୁ ତୁମେ କିଏ? କାହାର କନ୍ୟା? ଆଉ ଏ ନିର୍ଜନ ବନସ୍ତରେ କାହିଁକି ଏପରି କଠୋର ତପସ୍ୟା କରୁଛ, ଯାହା ପଞ୍ଚାରେ ଛିଡ଼ା ହୋଇ ତପସ୍ୟା କରୁଥିବା ମୁନିଙ୍କ ପକ୍ଷେ ମଧ୍ୟ କଷ୍ଟକର? ତୁମେ ବାଳିକା ନୁହଁ କି ବୃଦ୍ଧା ନୁହଁ, ତୁମେ ସୁନ୍ଦରୀ ତରୁଣୀ ପରି ଜଣାପଡୁଛ । ତା'ହେଲେ ସ୍ୱାମୀ ବିନା ଏକୁଟିଆ ଏ ବନକୁ ଆସି ଏତେ କଠୋର ତପସ୍ୟା କାହିଁକି କରୁଛ? ଭଦ୍ରେ ! ତୁମେ କ'ଣ କୌଣସି ତପସ୍ୱୀର ସହଚାରିଣୀ? ହେ ଦେବୀ! କ'ଣ ସେହି ତପସ୍ୱୀ ତୁମର ପାଳନ-ପୋଷଣ କରୁ ନାହିଁ? ସେ କ'ଣ ତୁମକୁ ଛାଡ଼ି ଅନ୍ୟତ୍ର ଚାଲିଯାଇଛି? ତୁମେ କେଉଁ କୁଳରେ ଜନ୍ମିଛ? ଆଉ ତୁମ ପିତାଙ୍କ ନାମ ଓ ତୁମ ନାମ କ'ଣ? ତୁମେ ତ ମହାସୌଭାଗ୍ୟରୂପା ଜଣାପଡୁଛ । ତୁମର ତପସ୍ୟା ପ୍ରତି ଅନୁରାଗ ବୃଥା ଅଟେ । ତୁମେ କ'ଣ ବେଦମାତା ଗାୟତ୍ରୀ, ନା ଲକ୍ଷ୍ମୀ, ନା ସୌନ୍ଦର୍ଯ୍ୟମୟୀ ସରସ୍ୱତୀ? ଏ ତିନିଙ୍କ ମଧ୍ୟରୁ ତୁମେ କିଏ? ମୁଁ ଅନୁମାନରୁ କିଛି ସ୍ଥିର କରିପାରୁ ନାହିଁ ।

ପାର୍ବତୀ କହିଲେ–ବିପ୍ରବର ! ମୁଁ ବେଦମାତା ଗାୟତ୍ରୀ ନୁହେଁ, କି ଲକ୍ଷ୍ମୀ ନୁହେଁ, କି ସରସ୍ୱତୀ ନୁହେଁ । ମୁଁ ହିମାଳୟଙ୍କ କନ୍ୟା ଓ ମୋର ବର୍ତ୍ତମାନର ନାମ ହେଲା ପାର୍ବତୀ । ପୂର୍ବଜନ୍ମରେ ମୁଁ ପ୍ରଜାପତି ଦକ୍ଷଙ୍କ କନ୍ୟା ଥିଲି । ସେତେବେଳେ ମୋ ନାମ ଥିଲା ସତୀ । ଦିନେ ମୋ ପିତା ମୋ ସ୍ୱାମୀ ଶିବଙ୍କୁ ନିନ୍ଦା କରିଥିଲେ, ଯାହାଫଳରେ ମୁଁ କୁପିତା ହୋଇ ଯୋଗାଗ୍ନିରେ ଦେହତ୍ୟାଗ କରିଦେଇଥିଲି । ଏ ଜନ୍ମରେ ମଧ୍ୟ ଭଗବାନ ଶିବ ମୋତେ ମିଳିଯାଇଥିଲେ, କିନ୍ତୁ ଦୈବବଶତଃ ସେ କନ୍ଦର୍ପକୁ ଭସ୍ମ କରି ମୋତେ ମଧ୍ୟ ଛାଡ଼ି ଚାଲିଗଲେ । ବ୍ରହ୍ମନ୍ ! ଶିବ ଚାଲିଯିବା ପରେ ମୁଁ ବିରହତାପରେ ଉଦ୍‌ବିଗ୍ନ ହୋଇଗଲି ଏବଂ ତପସ୍ୟା ପାଇଁ ଅଟଳ ନିର୍ଣ୍ଣୟ କରି ପିତୃଗୃହରୁ ଏଠାକୁ ଗଙ୍ଗାତଟକୁ ଚାଲିଆସିଛି । ଏଠାରେ ଦୀର୍ଘକାଳ ପର୍ଯ୍ୟନ୍ତ ତପସ୍ୟା କରି ମଧ୍ୟ ମୁଁ ମୋ ପ୍ରାଣବଲ୍ଲଭଙ୍କୁ ପାଇପାରିଲି ନାହିଁ । ତେଣୁ ଅଗ୍ନିରେ ପ୍ରବେଶ କରିବାକୁ ଚାହୁଁଥିଲି । ଇତିମଧ୍ୟରେ ଆପଣ ଆସିଯିବାରୁ ମୁଁ କିଛି କ୍ଷଣ ପାଇଁ ଅଟକି ଯାଇଛି । ଆପଣ ଯାଆନ୍ତୁ । ମୁଁ ଏବେ ଅଗ୍ନିରେ ପ୍ରବେଶ କରିବି; କାରଣ ଭଗବାନ ଶିବ ମୋତେ ଅଙ୍ଗୀକାର କଲେ ନାହିଁ । କିନ୍ତୁ ଯେତେ ଥର ମୁଁ ଯେଉଁଠି ଯେଉଁଠି ଜନ୍ମ ନେବି, ସବୁଠି କେବଳ ଶିବଙ୍କୁ ହିଁ ସ୍ୱାମୀରୂପରେ ବରଣ କରିବି ।

ବ୍ରହ୍ମା କହୁଛନ୍ତି–ନାରଦ ! ଏତିକି କହି ପାର୍ବତୀ ସେହି ବ୍ରାହ୍ମଣଙ୍କ ସମ୍ମୁଖରେ ହିଁ ସେ ବାରମ୍ବାର ମନା କରିବା ସତ୍ତ୍ୱେ ଅଗ୍ନିରେ ପ୍ରବେଶ କରିଗଲେ । ମାତ୍ର ଅଗ୍ନିରେ ପ୍ରବେଶ କରିବାମାତ୍ରେ ପାର୍ବତୀଙ୍କ ତପ ପ୍ରଭାବରୁ ଅଗ୍ନି ଚନ୍ଦନ ପରି ଶୀତଳ ହୋଇଗଲା । ଅଗ୍ନି ଭିତରେ କ୍ଷଣେ ବିତାଇବା ପରେ ସେ ଦ୍ୟୁଲୋକକୁ ଯିବା ପାଇଁ ଉର୍ଦ୍ଧ୍ୱକୁ ଉଠିଲେ; ଏତିକିବେଳେ ବ୍ରାହ୍ମଣରୂପଧାରୀ ଶିବ

ସହସା ହସି ହସି କହିଲେ, ''ଭଦ୍ରେ! ତୁମର କି ଅଦ୍ଭୁତ ତପ, ମୁଁ ବୁଝି ପାରୁ ନାହିଁ। ଅଗ୍ନି ତୁମ ଶରୀରକୁ ଜାଳି ପାରୁ ନାହିଁ, ଏହା ତ ତପସ୍ୟାର ସଫଳତାର ସୂଚକ; ହେଲେ ଏପର୍ଯ୍ୟନ୍ତ ତୁମର ମନୋରଥ ବି ପୂର୍ଣ୍ଣ ହେଲା ନାହିଁ, ଯାହାକି ବିଫଳତାର ପ୍ରତୀକ ପରି ମଧ୍ୟ ମନେ ହେଉଛି। ତେଣୁ ହେ ଦେବୀ! ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରୁଥିବା ମୋ ପରି ଶ୍ରେଷ୍ଠ ବ୍ରାହ୍ମଣ ସମ୍ମୁଖରେ ତୁମେ ତୁମର ଅଭୀଷ୍ଟ ମନୋରଥକୁ ଗୁପ୍ତ ନ ରଖି ସତ ସତ କୁହ।''



ବ୍ରହ୍ମା କହୁଛନ୍ତି—ନାରଦ! ବ୍ରାହ୍ମଣ ଏପରି ପଗ୍ଋରିବାରୁ ସୁବ୍ରତା ଅମ୍ବିକା ତାଙ୍କ ସଖୀକୁ ଉତ୍ତର ଦେବାକୁ ପ୍ରେରିତ କଲେ। ପାର୍ବତୀଙ୍କ ସଙ୍କେତ ପାଇ ତାଙ୍କର ବିଜୟା ନାମ୍ନୀ ପ୍ରାଣପ୍ରିୟ ସଖୀ ସେହି ଜଟାଧାରୀଙ୍କୁ କହିଲା—

ସଖୀ କହିଲା—ସାଧୋ! ଆପଣଙ୍କ ଆଗରେ ପାର୍ବତୀଙ୍କ ଉତ୍ତମ ଚରିତ୍ର ତଥା ତାଙ୍କ ତପସ୍ୟାର ସମସ୍ତ କାରଣ ମୁଁ ବର୍ଣ୍ଣନା କରୁଛି। ଆପଣ ଶୁଣିବାକୁ ଗ୍ଋହୁଁଛନ୍ତି ଯଦି ଶୁଣନ୍ତୁ। ମୋ ସଖୀ ହିମାଚଳଙ୍କ କନ୍ୟା। ଏ କାଳୀ ଓ ପାର୍ବତୀ ନାମରେ ବିଖ୍ୟାତ ଏବଂ ମାତା ମେନକାଙ୍କ ଝିଅ। ଏପର୍ଯ୍ୟନ୍ତ କେହି ଏହା ସଙ୍ଗେ ବିବାହ କରି ନାହିଁ। ଏ ଭଗବାନ ଶିବଙ୍କ ଛଡ଼ା ଆଉ କାହାକୁ ବରଣ କରିବାକୁ ଗ୍ଋହେଁ ନାହିଁ। ତାଙ୍କରି ପାଇଁ ତିନି ହଜାର ବର୍ଷରୁ ତପସ୍ୟା କରୁଛି। ଭଗବାନ ଶିବଙ୍କୁ ସ୍ୱାମୀରୂପେ ପାଇବା ପାଇଁ ମୋ ସଖୀ ଏଭଳି ତପସ୍ୟା ଆରମ୍ଭ କରିଛି। ବିପ୍ରବର! ଏଥିରେ ଯାହା କାରଣ ମୁଁ ତାହା କହୁଛି, ଶୁଣନ୍ତୁ। ଏ ପର୍ବତରାଜକୁମାରୀ ବ୍ରହ୍ମା, ବିଷ୍ଣୁ ଓ ଇନ୍ଦ୍ରାଦି ଦେବତାଙ୍କୁ ନ ବରି କେବଳ ପିନାକପାଣି ଶଙ୍କରଙ୍କୁ ହିଁ ପତିରୂପେ ବରଣ କରିବାକୁ ଗ୍ଋହେଁ ଏବଂ ନାରଦଙ୍କ ଆଦେଶରେ ଏ କଠୋର ତପସ୍ୟା କରୁଛି। ଦ୍ୱିଜଶ୍ରେଷ୍ଠ! ଆପଣ ଯାହା କିଛି ପଗ୍ଋରିଥିଲେ, ତାହାର ଉତ୍ତରରୂପେ ମୁଁ ମୋ ସଖୀର ମନୋରଥ ପ୍ରକାଶ କରିଦେଲି। ଏବେ ଆଉ କ'ଣ ଶୁଣିବାକୁ ଗ୍ଋହୁଁଛନ୍ତି?

ବ୍ରହ୍ମା କହୁଛନ୍ତି—ନାରଦ! ବିଜୟା ମୁଖରୁ ଯଥାର୍ଥ ଉତ୍ତର ଶୁଣି ଜଟାଧାରୀ ତପସ୍ୱୀ ରୁଦ୍ର ହସି ହସି କହିଲେ—''ତୁମେ ଯାହା କିଛି କହିଲ, ତାହା ମୋତେ ପରିହାସ ପରି ଲାଗୁଛି। ଯଦି ଏସବୁ କଥା ସତ, ତେବେ ପାର୍ବତୀଦେବୀ ସ୍ୱୟଂ ନିଜ ମୁଖରେ ପ୍ରକାଶ କରନ୍ତୁ।'' ଜଟାଧାରୀ ବ୍ରାହ୍ମଣ ଏପରି କହିବାରୁ ପାର୍ବତୀଦେବୀ ନିଜେ କହିବା ଆରମ୍ଭ କଲେ। (ଅଧ୍ୟାୟ ୨୬)

⁂

# ପାର୍ବତୀଙ୍କ ସମ୍ମୁଖରେ ଜଟାଧାରୀ ତପସ୍ୱୀ ବ୍ରାହ୍ମଣଙ୍କର ଶିବନିନ୍ଦା ଏବଂ ଶିବଙ୍କ କଥା ଭୁଲିଯିବାକୁ ପରାମର୍ଶ

ପାର୍ବତୀ କହିଲେ–ଜଟାଧାରୀ ବିପ୍ରବର ! ମୋର ସମସ୍ତ ବୃତ୍ତାନ୍ତ ଶୁଣନ୍ତୁ । ମୋ ସଖୀ ଯାହା କିଛି କହିଲା, ତାହା ଅକ୍ଷରେ ଅକ୍ଷରେ ସତ୍ୟ; ସେଥିରେ ଅସତ୍ୟ ବୋଲି କିଛି ନାହିଁ । ମୁଁ ମଧ୍ୟ ମନ, ବାଣୀ ଓ କ୍ରିୟା ଦ୍ୱାରା ସତ୍ୟ କହୁଛି, ଅସତ୍ୟ ନୁହେଁ । ମୁଁ ସାକ୍ଷାତ୍ ଭଗବାନ ଶଙ୍କରଙ୍କୁ ହିଁ ମନ ମଧ୍ୟରେ ସ୍ୱାମୀରୂପେ ବରଣ କରିଛି । ଯଦ୍ୟପି ମୋ ପାଇଁ ସେ ଦୁର୍ଲଭ ବୋଲି ମୁଁ ଜାଣୁଛି, ତଥାପି ମନର ଉତ୍କଣ୍ଠା ହେତୁ ବିବଶ ହୋଇ ତପସ୍ୟା କରୁଛି ।

ବ୍ରାହ୍ମଣଙ୍କୁ ଏତିକି କହି ପାର୍ବତୀଦେବୀ ମୌନ ରହିଲେ । ତାଙ୍କ କଥା ଶୁଣି ବ୍ରାହ୍ମଣ କହିଲେ–

ବ୍ରାହ୍ମଣ କହିଲେ–ଏପର୍ଯ୍ୟନ୍ତ ମୋ ମନରେ ପ୍ରବଳ ଜିଜ୍ଞାସା ଥିଲା ଯେ ଦେବୀ ଏଭଳି କେଉଁ ଦୁର୍ଲଭ ବସ୍ତୁ ପାଇବାକୁ ଚାହୁଁଛନ୍ତି, ଯେଉଁଥିପାଇଁ ଏତେ ବଡ଼ ତପସ୍ୟା କରୁଛନ୍ତି? କିନ୍ତୁ ଏବେ ସାକ୍ଷାତ୍ ତୁମ ମୁଖାରବିନ୍ଦରୁ ସେହି ଅଭୀଷ୍ଟ ବସ୍ତୁ ବିଷୟରେ ଜାଣିଗଲି । ଏଣିକି ଆଉ ମୋର ଏଠାରେ ରହିବାର କିଛି ପ୍ରୟୋଜନ ନାହିଁ, ମୁଁ ଯାଉଛି । ତୁମର ଯେପରି ଇଚ୍ଛା, ସେପରି କର । ଯଦି ତୁମେ ମୋତେ ନ କହିଥାନ୍ତ, ମିତ୍ରତା ନିଷ୍ଫଳ ହୋଇଥାନ୍ତା । ତୁମର ଯେପରି କାର୍ଯ୍ୟ, ସେହିପରି ଫଳ ମିଳିବ । ଯଦି ଏଇଥିରେ ତୁମକୁ ସୁଖ ମିଳିବ, ତେବେ ମୋର କିଛି କହିବାର ନାହିଁ ।

ଏଭଳି କହି ବ୍ରାହ୍ମଣ ସେଠାରୁ ଯିବାକୁ ଉଦ୍ୟତ ହେବାମାତ୍ରେ ପାର୍ବତୀଦେବୀ ପ୍ରଣାମ କରି ତାଙ୍କୁ କହିଲେ–

ପାର୍ବତୀ କହିଲେ–ବିପ୍ରବର ! ଆପଣ କାହିଁକି ଚାଲିଯାଉଛନ୍ତି? ଟିକିଏ ରହନ୍ତୁ, ଆଉ ମୋର ହିତ ପାଇଁ କିଛି କହନ୍ତୁ ।

ପାର୍ବତୀ ଏପରି କହିବାରୁ ଦଣ୍ଡଧାରୀ ବ୍ରାହ୍ମଣଦେବତା ଅଟକି ଗଲେ ଏବଂ କହିଲେ– "ହେ ଦେବୀ ! ଯଦି ମୋ କଥା ଶୁଣିବାକୁ ଇଚ୍ଛା ଅଛି, ଆଉ ମୋତେ ଭକ୍ତିଭାବରେ ଅଟକାଉଛ, ତା'ହେଲେ ମୁଁ ତୁମ ଆଗରେ କିଛି ତାତ୍ତ୍ୱିକ କଥା କହିବି, ଯାହା ଶୁଣି ତୁମକୁ ହିତାହିତ ଜ୍ଞାନ ହୋଇଯିବ । ଗୁରୁକୃପାରୁ ମୁଁ ମହାଦେବଙ୍କୁ ଭଲଭାବେ ଜାଣେ । ତଥାପି ଯାହା ଯଥାର୍ଥ କଥା, ତାହା କହିଦେଉଛି; ତୁମେ ମନ ଦେଇ ଶୁଣ । ବୃଷଭଧ୍ୱଜ ଶିବ ସମଗ୍ର ଶରୀରରେ ଭସ୍ମ ବୋଳି ହୋଇଥାନ୍ତି, ମୁଣ୍ଡରେ ଜଟାଜୂଟ ବାନ୍ଧିଥାନ୍ତି, ଧୋତି ସ୍ଥାନରେ ବ୍ୟାଘ୍ରଚର୍ମ ପିନ୍ଧିଥାନ୍ତି, ଉତ୍ତରୀୟରୂପେ ହାତୀର ଚର୍ମ ଘୋଡ଼ାଇ ହୁଅନ୍ତି । ତାଙ୍କ ହାତରେ ଥାଏ ଭିକ୍ଷାପାତ୍ରରୂପେ ଖପୁରି । ପଲ ପଲ ସାପ ତାଙ୍କ ଦେହସାରା ଗୁଡ଼ାଇ ହୋଇଥାନ୍ତି । ସେ ବିଷ ଖାଇ ପୁଷ୍ଟ ହୁଅନ୍ତି, ପୁଣି ସେ ଅଭକ୍ଷ୍ୟଭକ୍ଷୀ, ତାଙ୍କ ନେତ୍ର ବହୁତ ଅସୁନ୍ଦର ଓ ଦେଖିବାକୁ ଭୟାବହ । ତାଙ୍କ ଜନ୍ମ କେଉଁଠି, କାହାଠାରୁ ଓ କେବେ ହୋଇଛି, ସେକଥା ଆଜି ପର୍ଯ୍ୟନ୍ତ କେହି ଜାଣେ ନାହିଁ । ଘରସଂସାର କଥାରୁ ସେ ସର୍ବଦା ଉଦାସୀନ ରହିଥାନ୍ତି, ଉଲଗ୍ନ ହୋଇ ବୁଲୁଥାନ୍ତି, ପୁଣି ଭୂତପ୍ରେତଙ୍କୁ ସବୁବେଳେ ସାଙ୍ଗରେ ରଖିଥାନ୍ତି । ତାଙ୍କର ଗୋଟିଏ ଦୁଇଟି ନୁହେଁ, ଦଶଟା ହାତ । ହେ ଦେବୀ! ମୁଁ ବୁଝି ପାରୁନି ଯେ କେଉଁ ଗୁଣ ଦେଖି ତୁମେ ତାଙ୍କୁ ସ୍ୱାମୀରୂପେ ବରଣ କରିବାକୁ ଚାହୁଁଛ? ତୁମର ଜ୍ଞାନ କୁଆଡ଼େ ଚାଲିଗଲା? ଦକ୍ଷ ତାଙ୍କ ଯଜ୍ଞରେ ନିଜର କନ୍ୟା ସତୀଙ୍କୁ ମଧ୍ୟ ନିମନ୍ତ୍ରଣ ନ କରିବା ପଛରେ କେବଳ ଏହି କାରଣ ଥିଲା ଯେ ସେ କପାଳଧାରୀ ଭିକ୍ଷୁକର ପତ୍ନୀ ଥିଲେ । କେବଳ ସେତିକି

ନୁହେଁ, ସେ ତାଙ୍କ ଯଜ୍ଞରେ ସମସ୍ତ ଦେବତାଙ୍କୁ ଭାଗ ଦେବାକୁ ନିମନ୍ତ୍ରିତ କଲେ; କିନ୍ତୁ ଶମ୍ଭୁଙ୍କୁ ଡାକିଲେ ନାହିଁ। ସତୀ ସେହି ଅପମାନ ହେତୁ ଭୀଷଣ କ୍ରୋଧରେ ବ୍ୟାକୁଳ ହୋଇଉଠିଲେ। ସେ ନିଜର ପ୍ରିୟ ପ୍ରାଣକୁ ପରିତ୍ୟାଗ କରି ଶିବଙ୍କ ଠାରୁ ଦୂରକୁ ଗ୍ଭଲି ଗଲେ।

''ତୁମେ ତ ନାରୀଙ୍କ ମଧ୍ୟରେ ରତ୍ନ, ତୁମର ପିତା ପର୍ବତମାନଙ୍କର ରାଜା; ତେବେ ତୁମେ ପୁଣି କାହିଁକି ତାଙ୍କୁ ସ୍ୱାମୀରୂପେ ପାଇବାକୁ ଏତେ ବଡ଼ ଉଗ୍ର ତପସ୍ୟା କରୁଛ? କାହିଁକି ସ୍ୱର୍ଣ୍ଣମୁଦ୍ରା ଦେଇ ତା' ବଦଳରେ ସେତିକି ବଡ଼ କାଚ କିଣିବାକୁ ଗ୍ଭହୁଁଛ? କାହିଁକି ଉଜ୍ଜ୍ୱଳ ଚନ୍ଦନ ଛାଡ଼ି ନିଜ ଅଙ୍ଗରେ ପଙ୍କ ବୋଳି ହେବାକୁ ଗ୍ଭହୁଁଛ? କାହିଁକି ସୂର୍ଯ୍ୟଙ୍କ ତେଜକୁ ହତାଦର କରି ଜୁଳୁଜୁଳିଆ ପୋକର ଆଲୋକ ପାଇବାକୁ ଗ୍ଭହୁଁଛ? କାହିଁକି ସୂକ୍ଷ୍ମ ବସ୍ତ୍ର ଛାଡ଼ି ଚମଡ଼ାରେ ଦେହକୁ ଆବୃତ କରିବାକୁ ଇଚ୍ଛା କରୁଛ? ଘରେ ରହିବା ଛାଡ଼ି କାହିଁକି ବନରେ ବୁଲିବାକୁ ଗ୍ଭହୁଁଛ? ହେ ଦେବେଶ୍ୱରୀ ! ଯଦି ତୁମେ ଇନ୍ଦ୍ରାଦି ଲୋକପାଳଙ୍କୁ ଛାଡ଼ି ଶିବଙ୍କ ପ୍ରତି ଅନୁରକ୍ତ ହୋଇଛ, ଏହାର ସିଧା ଅର୍ଥ ହେଲା ତୁମେ ରତ୍ନଭଣ୍ଡାରକୁ ତ୍ୟାଗ କରି ଲୁହା ପାଇବାକୁ ଇଚ୍ଛା କରୁଛ। ଜଗତରେ ଏଭଳି କଥାକୁ କେହି ଭଲ କହନ୍ତି ନାହିଁ। ଶିବଙ୍କ ସଙ୍ଗେ ତୁମର ସମ୍ବନ୍ଧ ହେବାଟା ମୋତେ ତ ପରସ୍ପରର ବିରୁଦ୍ଧ ପରି ଲାଗୁଛି। କାହିଁ ତୁମର ପଦ୍ମପରି ପ୍ରଫୁଲ୍ଲ ନୟନ ଆଉ କାହିଁ ରୁଦ୍ରଙ୍କର ତିନିଟା ଅସୁନ୍ଦର ଆଖି। ତୁମେ ଚନ୍ଦ୍ରାନନା* ଆଉ ଶିବଙ୍କର ମୁଖ ପାଞ୍ଚଟା। ତୁମ ମସ୍ତକରେ ଦିବ୍ୟ ବେଣୀ ସର୍ପିଣୀ ପରି ଶୋଭା ପାଉଥିବାବେଳେ ଶିବଙ୍କ ମୁଣ୍ଡରେ ଥାଏ ଗୋଛାଏ ଜଟାଜୂଟ। ତୁମ ଅଙ୍ଗରେ ଚନ୍ଦନର ଅଙ୍ଗରାଗ ଲେପିତ ଥିବାବେଳେ ଶିବଙ୍କ ଶରୀରରେ ଥାଏ ଚିତାଭସ୍ମ। କାହିଁ ତୁମର ସୁକୋମଳ ଶାଢ଼ୀ ଆଉ କାହିଁ ଶିବ ବ୍ୟବହାର କରୁଥିବା ହାତୀର ଚର୍ମ। ତୁମ ଅଙ୍ଗରେ ଦିବ୍ୟ ଆଭୂଷଣ ଥିବାବେଳେ ତାଙ୍କର ସର୍ବାଙ୍ଗରେ ଗୁଡ଼େଇ ହୋଇଥାନ୍ତି ପଲ ପଲ ସାପ। ତୁମ ସେବା ପାଇଁ ଦେବଗଣ ଆତୁର ରହୁଥିବା ବେଳେ ସେ ଭୂତପ୍ରେତଙ୍କ ପ୍ରଦତ୍ତ ବଳିକୁ ହିଁ ପସନ୍ଦ କରିଥାନ୍ତି। କାହିଁ ମୃଦଙ୍ଗର ମଧୁର ଧ୍ୱନି ଆଉ କାହିଁ ଡମ୍ବରୁର ଡିମିଡିମି ଶବ୍ଦ। କାହିଁ ଭେରୀସମୂହର ଧ୍ୱନି ଆଉ କାହିଁ ଅଶୁଭ ଶିଙ୍ଗାନାଦ। କେଉଁଠି ଢକ୍କା ବାଦ୍ୟର ଶବ୍ଦ ଆଉ କେଉଁଠି ଅଶୁଭ ଗଳନାଦ। ତୁମର ଏ ଉତ୍ତମ ରୂପ କଦାପି ଶିବଙ୍କ ଯୋଗ୍ୟ ନୁହେଁ। ଯଦି ତାଙ୍କ ପାଖରେ ଧନ ଥାଆନ୍ତା, ସେ କାହିଁକି ଦିଗମ୍ବର (ଲଙ୍ଗଳା) ହୋଇ ରହୁଥାନ୍ତେ? ବାହନ କହିଲେ ତାଙ୍କ ପାଖରେ ଅଛି ଗୋଟିଏ ବୁଢ଼ା ଷଣ୍ଢ; ଆଉ କିଛି ତାଙ୍କ ପାଖରେ ନାହିଁ। କନ୍ୟା ପାଇଁ ବରଠାରେ ଯେଉଁ ସବୁ ଗୁଣ ଖୋଜାଯାଏ ଏବଂ ଯାହା ନାରୀମାନଙ୍କୁ ସୁଖ ଦେଇଥାଏ, ସେଥିରୁ ଗୋଟିଏ ବି ଗୁଣ ସେହି ବିକୃତନୟନ ରୁଦ୍ରଙ୍କ ପାଖରେ ନାହିଁ। ପରମ ସୁନ୍ଦର କାମଦେବକୁ ମଧ୍ୟ ସେ ଭସ୍ମ କରିଦେଲେ। ତା'ଛଡ଼ା ତୁମ ପ୍ରତି ତାଙ୍କର ଅନାଦରକୁ ତ ତୁମେ ନିଜେ ବି ଦେଖିଲ ଯେ ସେ ତୁମକୁ ଛାଡ଼ି ଅନ୍ୟତ୍ର ଗ୍ଭଲିଗଲେ। ତାଙ୍କ ଜାତିର କିଛି ଠିକଣା ନାହିଁ କି ବିଦ୍ୟା ଓ ଜ୍ଞାନର ମଧ୍ୟ କିଛି ଠିକଣା ନାହିଁ। ପିଶାଚ ହିଁ ତାଙ୍କର

* ଅଙ୍କମାନଙ୍କ ସଂଜ୍ଞାରେ ଚନ୍ଦ୍ରକୁ ଏକ (୧) ସଂଖ୍ୟାର ବୋଧକ ବୋଲି ଧରାଯାଏ। ଏକମୁଖବିଶିଷ୍ଟ ପୁରୁଷ ବା ସ୍ତ୍ରୀ ସୁନ୍ଦର ବୋଲି ଧରାଯାଆନ୍ତି, ଏକାଧିକ ମୁଖ ଥିବା ଲୋକଙ୍କୁ ସୁନ୍ଦର କୁହାଯାଏ ନାହିଁ। ଏହି ନିୟମ ଅନୁସାରେ ଏକମୁଖ ଓ ପଞ୍ଚମୁଖର ତୁଳନା କରାଯାଇଛି। 'ଚନ୍ଦ୍ରମୁଖୀ' ଶବ୍ଦର ଅନ୍ୟ ଏକ ଭାବ ହେଲା—ତୁମର ମୁଖ ଚନ୍ଦ୍ରସମାନ ମନୋହର, ଅଥଚ ପଞ୍ଚାନନ ସିଂହ ପରି ଭୟଙ୍କର।

ସହାୟକ, ଆଉ ବିଷ ତ ତାଙ୍କ କଣ୍ଠରେ ହିଁ ରହିଛି । ସେ ସର୍ବଦା ଏକାନ୍ତପ୍ରିୟ ଓ ବିଶେଷରୂପେ ଅନାସକ୍ତ । ଏଣୁ ତୁମେ ହରଙ୍କ ସଙ୍ଗେ ମନକୁ ଯୋଡ଼ିବା ଉଚିତ ନୁହେଁ । ତୁମ କଣ୍ଠରେ ସୁନ୍ଦର ହାର ଥିବା ବେଳେ ତାଙ୍କ କଣ୍ଠରେ ଥାଏ ନରମୁଣ୍ଡମାଳା । ହେ ଦେବୀ ! ତୁମର ଓ ହରଙ୍କର ରୂପ ପ୍ରଭୃତି ସବୁ କିଛି ଲକ୍ଷଣ ପରସ୍ପରର ବିରୁଦ୍ଧ । ତେଣୁ ମୋତେ ଏ ସମ୍ବନ୍ଧ ବିଲକୁଲ ପସନ୍ଦ ହେଉ ନାହିଁ । ତଥାପି ତୁମର ଯେପରି ଇଚ୍ଛା ସେପରି କର । ଜଗତରେ ଯେତେ ସବୁ ଅସତ୍ ବସ୍ତୁ ଅଛି, ସବୁଯାକ ତୁମେ ହିଁ ପସନ୍ଦ କରିଛ । ତେଣୁ ମୁଁ କହୁଛି ଯେ ତୁମେ ତାଙ୍କ ଠାରୁ ମନକୁ ହଟାଇନିଅ । ନଚେତ୍ ତୁମର ଯାହା ଇଚ୍ଛା କର, ମୋର କିଛି କହିବାର ନାହିଁ ।''

ବ୍ରହ୍ମା କହୁଛନ୍ତି—ନାରଦ ! ଏକଥା ଶୁଣି ପାର୍ବତୀ ସେହି ଶିବନିନ୍ଦୁକ ବ୍ରାହ୍ମଣଙ୍କ ଉପରେ କୁପିତ ହୋଇ ଉଠିଲେ ଏବଂ ଏହିପରି କହିଲେ—

(ଅଧ୍ୟାୟ ୨୭)

***

## ପାର୍ବତୀ ପରମେଶ୍ୱର ଶିବଙ୍କ ମହିମା ପ୍ରତିପାଦନ କରିବା ପରେ ଜଟାଧାରୀ ବ୍ରାହ୍ମଣଙ୍କ ଉପରେ ରୁଷ୍ଟ ହୋଇ ସଖୀଦ୍ୱାରା ତାଙ୍କୁ ଅଧିକ କିଛି କହିବାକୁ ବାରଣ କରିବା, ଭଗବାନ ଶିବ ନିଜର ପ୍ରକୃତ ରୂପରେ ଦର୍ଶନ ଦେଇ ତାଙ୍କୁ ସଙ୍ଗରେ ଯିବାକୁ କହିବା

ପାର୍ବତୀ କହିଲେ—ଓହୋ ! ଏପର୍ଯ୍ୟନ୍ତ ମୁଁ ଭାବୁଥିଲି କେହି ଜଣେ ମହାତ୍ମା ଆସିଛନ୍ତି, ହେଲେ ଏବେ ସବୁ କଥା ସ୍ପଷ୍ଟ ହୋଇଗଲା । ଆପଣଙ୍କ ଭେଦ ଖୋଲିଗଲା । ମୁଁ କ'ଣ କହିବି କି କ'ଣ କରିବି, କିଛି ଭାବି ପାରୁନି । କାରଣ ଆପଣ ବ୍ରାହ୍ମଣ, ଅବଧ୍ୟ । ହେ ବ୍ରାହ୍ମଣଦେବ ! ଆପଣ ଯାହା କିଛି କହିଲେ, ସେ ସମସ୍ତ କଥା ମୋତେ ଜଣା । ଆଉ ମୋ ଜାଣିବାରେ ସେସବୁ ମିଥ୍ୟା, ସେଥିରେ କିଛି ବି ସତ୍ୟତା ନାହିଁ । ଆପଣ କହିଥିଲେ ଯେ ଆପଣ ଶିବଙ୍କୁ ଜାଣନ୍ତି । ଯଦି ପ୍ରକୃତରେ ଜାଣିଥାନ୍ତେ, ଏଭଳି ଅଯୌକ୍ତିକ ଓ ବୁଦ୍ଧିହୀନ କଥା କହି ନ ଥାନ୍ତେ । ହଁ, ଏକଥା ସତ୍ୟ ଯେ ମହେଶ୍ୱର କେବେ କେବେ ନିଜ ଲୀଳାଶକ୍ତିରେ ପ୍ରେରିତ ହୋଇ ତଥାକଥିତ ଅଦ୍ଭୁତ ବେଶ ଧାରଣ କରିଥାନ୍ତି; କିନ୍ତୁ ବାସ୍ତବରେ ସେ ପରବ୍ରହ୍ମ ପରମାତ୍ମା । ସେ ନିଜ ଇଚ୍ଛାରେ ହିଁ ଶରୀର ଧାରଣ କରିଥାନ୍ତି । ଆପଣ ବ୍ରହ୍ମଚାରୀ ବେଶରେ ମୋତେ ଠକିବାକୁ ଉଦ୍ୟତ ହୋଇ ଏଠାକୁ ଆସିଛନ୍ତି ଏବଂ ଅନୁଚିତ ଓ ଅସଂଗତ ତର୍କର ସାହାଯ୍ୟ ନେଇ ଛଳ-କପଟଯୁକ୍ତ କଥା କହୁଛନ୍ତି । ମୁଁ ଭଗବାନ ଶିବଙ୍କ ସ୍ୱରୂପକୁ ଭଲଭାବେ ଜାଣେ; ଏଣୁ ମୁଁ ଯଥାଯୋଗ୍ୟ ବିଗ୍ରହ କରି ତାଙ୍କ ତତ୍ତ୍ୱକୁ ବର୍ଣ୍ଣନା କରୁଛି । ବାସ୍ତବରେ ଶିବ ନିର୍ଗୁଣ ବ୍ରହ୍ମ ଅଟନ୍ତି, ବିଶେଷ ଉଦ୍ଦେଶ୍ୟରେ ସେ ସଗୁଣ ହୋଇଛନ୍ତି । ଯେ ନିର୍ଗୁଣ ଓ ସମସ୍ତ ଗୁଣ ଯାହାଙ୍କ ସ୍ୱରୂପଭୂତ ଅଟେ, ତାଙ୍କର ପୁଣି ଜାତିର ପ୍ରଶ୍ନ ଉଠୁଛି କେଉଁଠୁ? ସଦାଶିବ ହେଉଛନ୍ତି ସମସ୍ତ ବିଦ୍ୟାର ଆଧାର, ପୁଣି ସେଭଳି ପୂର୍ଣ୍ଣ ପରମାତ୍ମାଙ୍କର କୌଣସି ବିଦ୍ୟାରେ କି ପ୍ରୟୋଜନ? ପୂର୍ବକାଳରେ କଳ୍ପ ପ୍ରାରମ୍ଭରେ ଭଗବାନ ଶମ୍ଭୁ ବିଷ୍ଣୁଙ୍କୁ ଉଚ୍ଛ୍ୱାସମାତ୍ରକେ ସମସ୍ତ ବେଦ ପ୍ରଦାନ କରିଥିଲେ । ତେଣୁ ତାଙ୍କ ସମାନ ପ୍ରଭୁ ଆଉ କିଏ ହୋଇପାରେ? ଯେ ସମସ୍ତଙ୍କର ଆଦିକାରଣ ତାଙ୍କର ବୟସ ଅଥବା ଆୟୁର

ମାପ-ଗଣନା ହେବା କ'ଣ ସମ୍ଭବ? ପ୍ରକୃତି ତାଙ୍କରି ଠାରୁ ଉତ୍ପନ୍ନ ହୋଇଛି । ତେବେ ତାଙ୍କ ଶକ୍ତିର ଆଉ କ'ଣ ବା କାରଣ ହୋଇପାରିବ ଭଲା? ଯେଉଁମାନେ ସର୍ବଦା ପ୍ରେମପୂର୍ବକ ଶକ୍ତିଙ୍କ ସ୍ୱାମୀ ଭଗବାନ ଶଙ୍କରଙ୍କୁ ଭଜନ୍ତି, ସେମାନଙ୍କୁ ସେ କ୍ରିୟାଶକ୍ତି, ଇଚ୍ଛାଶକ୍ତି ଓ ମନ୍ତ୍ରଶକ୍ତି—ଏ ତିନୋଟି ଅକ୍ଷୟ ଶକ୍ତି ପ୍ରଦାନ କରନ୍ତି । ଭଗବାନ ଶିବଙ୍କୁ ଭଜି ଜୀବ ମୃତ୍ୟୁକୁ ଜିଣିଯାଏ ଏବଂ ନିର୍ଭୟ ହୋଇଯାଏ । ଏଥିପାଇଁ ତ୍ରିଲୋକରେ ସେ ମୃତ୍ୟୁଞ୍ଜୟ ନାମରେ ପ୍ରସିଦ୍ଧ ଅଟନ୍ତି । ତାଙ୍କରି ଅନୁଗ୍ରହରୁ ବିଷ୍ଣୁ ବିଷ୍ଣୁତ୍ୱକୁ, ବ୍ରହ୍ମା ବ୍ରହ୍ମତ୍ୱକୁ ଆଉ ଦେବତା ଦେବତ୍ୱକୁ ପ୍ରାପ୍ତ ହୋଇଛନ୍ତି । ଶିବଙ୍କ ପକ୍ଷ ନେଇ ଅଧିକ କହିବାରେ ବା କି ପ୍ରୟୋଜନ, ସେ ତ ସ୍ୱୟଂ ମହାପ୍ରଭୁ ଅଟନ୍ତି । କଲ୍ୟାଣକାରୀ ଶିବଙ୍କ ସେବାରେ ଏଠାରେ କେଉଁ ମନୋରଥ ବା ପୂର୍ଣ୍ଣ ନ ହେବ? ସେହି ମହାଦେବଙ୍କ ନିକଟରେ କେଉଁ ବସ୍ତୁ ବା ଅଭାବ ଅଛି ଯେ ସେ ସ୍ୱୟଂ ମୋତେ ପାଇବାକୁ ଇଚ୍ଛା କରିବେ ! ମନୁଷ୍ୟ ଯଦି ଶିବଙ୍କ ସେବା ନ କରେ, ସେ ସାତଜନ୍ମ ପର୍ଯ୍ୟନ୍ତ ଦରିଦ୍ର ହୁଏ, ଅପରପକ୍ଷେ ତାଙ୍କ ସେବା କଲେ ସେବକକୁ ଜଗତରେ ଅକ୍ଷୟ ଲକ୍ଷ୍ମୀ ପ୍ରାପ୍ତ ହୁଏ । ଯେଉଁ ଭଗବାନଙ୍କ ସମ୍ମୁଖରେ ଅଷ୍ଟସିଦ୍ଧି ମଥା ଅବନତ କରି ତାଙ୍କୁ ସନ୍ତୁଷ୍ଟ କରିବା ଅଭିପ୍ରାୟରେ ନିତ୍ୟ ନୃତ୍ୟ କରିଥାନ୍ତି, ତାଙ୍କ ପାଇଁ କେଉଁ ହିତକର ବସ୍ତୁ ଅବା ଦୁର୍ଲଭ ହୋଇପାରେ ! ଯଦ୍ୟପି ଏ ଜଗତରେ ତଥାକଥିତ ମାଙ୍ଗଳିକ ବସ୍ତୁମାନ ଶିବଙ୍କ ଉପଯୋଗରେ ନ ଥାନ୍ତି ଅର୍ଥାତ୍ ସେ ମଙ୍ଗଳ ବେଶଭୂଷା ଧାରଣ କରି ନ ଥାନ୍ତି, ତଥାପି ତାଙ୍କୁ ସ୍ମରଣ କରିବାମାତ୍ରେ ବ୍ୟକ୍ତିର ମଙ୍ଗଳ ହୋଇଥାଏ । ଯାହାଙ୍କୁ ପୂଜା କଲେ ଉପାସକର ସମସ୍ତ କାମନା ପୂରଣ ହୋଇଥାଏ, ସଦା ନିର୍ବିକାର ରହୁଥିବା ସେହି ପରମାତ୍ମା ଶିବଙ୍କ ଠାରେ ବିକାର କେଉଁଠୁ ଆସିବ? ଯଦି କୌଣସି ବ୍ୟକ୍ତିର ମୁଖରେ ନିରନ୍ତର ମଙ୍ଗଳମୟ 'ଶିବ' ନାମ ନିବାସ କରେ, ତେବେ ତା'କୁ ମଧ୍ୟ ଦର୍ଶନ କରି ଅନ୍ୟମାନେ ପବିତ୍ର ହୋଇଯାଆନ୍ତି । ଆପଣ କହିଲେ ଯେ ସେ ଚିତାଭସ୍ମ ବୋଲି ହୁଅନ୍ତି । ଯଦି ତାଙ୍କ ଦେହରେ ଲେପିତ ହୋଇଥିବା ଭସ୍ମ ଅପବିତ୍ର, ତେବେ ତାଙ୍କ ଦେହରୁ ଝଡ଼ି ପଡ଼ିଥିବା ଭସ୍ମକୁ ଦେବତାମାନେ ସଦା ନିଜ ମସ୍ତକରେ କାହିଁକି ଧାରଣ କରନ୍ତେ? (ସୁତରାଂ ଶିବଙ୍କ ଅଙ୍ଗସ୍ପର୍ଶରେ ଅପବିତ୍ର ବସ୍ତୁ ମଧ୍ୟ ପବିତ୍ର ହୋଇଯାଏ ।) ଯେଉଁ ମହାଦେବ ସଗୁଣ ହୋଇ ତ୍ରିଲୋକର କର୍ତ୍ତା, ଭର୍ତ୍ତା ଓ ହର୍ତ୍ତା ହୁଅନ୍ତି ଏବଂ ନିର୍ଗୁଣରୂପରେ ଶିବ ବୋଲି କଥିତ ହୁଅନ୍ତି, ସେ ବୁଦ୍ଧିଦ୍ୱାରା କିପରି ବୋଧଗମ୍ୟ ହୋଇପାରନ୍ତେ ଭଲା? ପରବ୍ରହ୍ମ ପରମାତ୍ମା ଶିବଙ୍କର ଯେଉଁ ନିର୍ଗୁଣ ରୂପ ଅଛି, ତାହାକୁ ଆପଣଙ୍କ ପରି ବହିର୍ମୁଖ ଲୋକେ କଦାପି ଜାଣି ପାରିବେ ନାହିଁ । ଯେଉଁମାନେ ଦୁରାଗ୍ରହୀ ଓ ପାପୀ, ସେମାନେ ଦେବତାଙ୍କ ଦ୍ୱାରା ବହିଷ୍କୃତ ହୋଇଥାଆନ୍ତି । ଏପରି ଲୋକେ ନିର୍ଗୁଣ ଶିବଙ୍କ ତତ୍ତ୍ୱକୁ ଜାଣନ୍ତି ନାହିଁ । ଯେଉଁ ଲୋକ ଶିବଙ୍କ ତତ୍ତ୍ୱକୁ ନ ଜାଣି ତାଙ୍କୁ ନିନ୍ଦା କରେ, ତା'ର ପୂର୍ବସଞ୍ଚିତ ସମସ୍ତ ପୁଣ୍ୟ ଭସ୍ମ ହୋଇଯାଏ । ଆପଣ ଏଠି ଅମିତ ତେଜସ୍ୱୀ ମହାଦେବଙ୍କୁ ଯେଉଁ ନିନ୍ଦା କଲେ ଏବଂ ମୁଁ ଆପଣଙ୍କୁ ଯେଉଁ ପୂଜା କଲି, ତାହା ଦ୍ୱାରା ମୋତେ ପାପରେ ଭାଗୀ ହେବାକୁ ପଡ଼ିଲା । ଶିବଦ୍ରୋହୀକୁ ଦେଖିଲେ ବସ୍ତ୍ରସହିତ ସ୍ନାନ କରିବା ଉଚିତ ଓ ପ୍ରାୟଶ୍ଚିତ୍ତ କରିବା ଉଚିତ ।

ଏତିକି କହି ପାର୍ବତୀ ସେହି ବ୍ରାହ୍ମଣଙ୍କ ଉପରେ ଅଧିକ ରୁଷ୍ଟ ହୋଇ କହିଲେ—ଆରେ ଦୁଷ୍ଟ ! ତୁ କହିଥିଲୁ 'ମୁଁ ଶିବଙ୍କୁ ଜାଣେ', କିନ୍ତୁ

ତୁ କଦାପି ସନାତନ ଶିବଙ୍କୁ ଜାଣି ନାହୁଁ । ଶିବଙ୍କୁ ତୁ ଯେପରି କହୁଛୁ, ସେ ସେପରି ହୋଇଥିଲେ ବି ଏବଂ ସେପରି ବହୁସଂଖ୍ୟକ ରୂପଧାରୀ ହୋଇଥିଲେ ବି ସାଧୁଜନଙ୍କର ପ୍ରିୟତମ ନିତ୍ୟ ନିର୍ବିକାର ସେହି ଭଗବାନ ଶିବ ହିଁ ମୋର ଅଭୀଷ୍ଟତମ ଦେବତା । ବ୍ରହ୍ମା ଓ ବିଷ୍ଣୁ ମଧ୍ୟ କଦାପି ତାଙ୍କ ସମାନ ହୋଇପାରିବେ ନାହିଁ । ତେବେ ଅନ୍ୟ ଦେବତାଙ୍କ ପ୍ରଶ୍ନ ଉଠୁଛି କେଉଁଠୁ? ସେମାନେ ତ ସର୍ବଦା କାଳର ଅଧୀନ । ମୁଁ ଶୁଦ୍ଧବୁଦ୍ଧିରେ ତତ୍ତ୍ୱତଃ ଏପରି ବିଚ୍ଛର କରି ଶିବଙ୍କ ପାଇଁ ବନକୁ ଆସି ଏତେ ବଡ଼ ତପସ୍ୟା କରୁଛି । ସେ ହେଉଛନ୍ତି ପରମେଶ୍ୱର, ସର୍ବେଶ ଓ ଭକ୍ତବତ୍ସଳ । ସେହି ଦୀନଦୟାଳୁ ମହାଦେବଙ୍କୁ ପାଇବା ହିଁ ମୋର ଇଚ୍ଛା ।

ବ୍ରହ୍ମା କହୁଛନ୍ତି—ନାରଦ ! ଏତିକି କହି ଗିରିଜା ଚୁପ୍ ହୋଇଗଲେ ଏବଂ ନିର୍ବିକାର ଚିତ୍ତରେ ଶିବଙ୍କୁ ଧ୍ୟାନ କରିବାକୁ ଲାଗିଲେ । ଦେବୀଙ୍କ କଥା ଶୁଣି ବ୍ରାହ୍ମଣ ଆଉ କିଛି କହିବାକୁ ଉଦ୍ୟତ ହେବାମାତ୍ରେ ଶିବନିନ୍ଦା ନ ଶୁଣିବାକୁ ନିର୍ଣ୍ଣୟ କରି ପାର୍ବତୀ ନିଜ ସଖୀ ବିଜୟାକୁ ଏହିପରି କହିଲେ—

ପାର୍ବତୀ କହିଲେ—ସଖୀ ଲୋ ! ଏ ଅଧମ ବ୍ରାହ୍ମଣକୁ ଆଉ କିଛି କହିବାକୁ ଦିଅନା । ଏ ଆହୁରି କିଛି କହିବାକୁ ଚ୍ଛହୁଁଛି । ଏ କେବଳ ଶିବଙ୍କ ନିନ୍ଦା କରିବ । ଯେ ଶିବନିନ୍ଦା କରେ, କେବଳ ତାକୁ ଯେ ପାପ ଲାଗେ, ତା' ନୁହେଁ; ଶୁଣିବା ଲୋକ ମଧ୍ୟ ସେହି ପାପରେ ଭାଗୀ ହୁଏ ।* ଶିବନିନ୍ଦୁକକୁ ସର୍ବଥା ବଧ କରିଦେବା ହିଁ ଶିବୋପାସକ ପକ୍ଷେ ଉଚିତ କର୍ତ୍ତବ୍ୟ । ଶିବନିନ୍ଦୁକ ଯଦି ବ୍ରାହ୍ମଣ ହୋଇଥାଏ, ତେବେ ତାକୁ ପରିତ୍ୟାଗ କରିବା ଉଚିତ ଏବଂ ନିଜେ ନିନ୍ଦା ହେଉଥିବା ସ୍ଥାନ ଛାଡ଼ି ଦୂରକୁ ଚ୍ଛଲିଯିବା ଉଚିତ । ଏ ଦୁଷ୍ଟ ବ୍ରାହ୍ମଣ ଏବେ ପୁନଃ ଶିବନିନ୍ଦା କରିବ; ବ୍ରାହ୍ମଣ ହୋଇଥିବା ହେତୁ ଏ ବଧର ଯୋଗ୍ୟ ନୁହେଁ, ତେଣୁ ଏହାକୁ ପରିତ୍ୟାଗ କରିବା ହିଁ ଉଚିତ ହେବ । କୌଣସି ପ୍ରକାରେ ବି ଏହାର ମୁହଁ ଚ୍ଛହିଁବା ଉଚିତ ନୁହେଁ । ଏ ସ୍ଥାନକୁ ଛାଡ଼ି ଚ୍ଛଲ ଆମେ ଆଉ କେଉଁ ସ୍ଥାନକୁ ପଳାଇଯିବା, ଯାହା ଫଳରେ ଏ ଅଜ୍ଞାନୀ ସହିତ ଆଉ କଥା ହେବାର ଅବସର ମିଳିବ ନାହିଁ ।

ବ୍ରହ୍ମା କହୁଛନ୍ତି—ନାରଦ ! ଏଭଳି କହି ଉମା ଅନ୍ୟତ୍ର ଚ୍ଛଲିଯିବାକୁ ପାଦ ଉଠାଇଛନ୍ତି କି ନାହିଁ, ହଠାତ୍ ଭଗବାନ ଶିବ ସାକ୍ଷାତ୍ ନିଜ ପ୍ରକୃତ ସ୍ୱରୂପରେ ଆବିର୍ଭୂତ ହୋଇ ପାର୍ବତୀଙ୍କ ହାତ ଧରି ପକାଇଲେ । ଶିବଙ୍କର ଯେଉଁ ରୂପକୁ ପାର୍ବତୀ ଧ୍ୟାନ କରୁଥିଲେ, ଠିକ୍ ସେହି ରୂପରେ ଶିବ ତାଙ୍କୁ ଦର୍ଶନ ଦେଲେ । ପାର୍ବତୀ ଲଜ୍ଜାରେ ମୁଣ୍ଡ ତଳକୁ କରିଦେଲେ ।

ଭଗବାନ ଶିବ ତାଙ୍କୁ କହିଲେ—ପ୍ରିୟେ ! ମୋତେ ଛାଡ଼ି କୁଆଡ଼େ ଯିବ? ଆଉ ମୁଁ କଦାପି ତୁମକୁ ତ୍ୟାଗ କରିବି ନାହିଁ । ମୁଁ ତୁମ ଉପରେ ପ୍ରସନ୍ନ । ବର ମାଗ । ମୋ ପକ୍ଷେ ତୁମ ପାଇଁ କିଛି ଅଦେୟ ନାହିଁ । ଗିରିଜେ ! ଆଜିଠାରୁ ମୁଁ ତୁମ ତପସ୍ୟାର ମୂଲ୍ୟରେ ବିକି ହୋଇଗଲି; ତୁମର ଦାସ ହୋଇଗଲି । ତୁମର ସୌନ୍ଦର୍ଯ୍ୟ ମୋତେ ମୋହିତ କରିନେଇଛି । ତୁମ ବିନା ମୋତେ କ୍ଷଣକ ମଧ୍ୟ ଯୁଗ ପରି ଲାଗୁଛି । ଲଜ୍ଜା ଛାଡ଼ । ତୁମେ ତ ଚିରକାଳରୁ ମୋର ପତ୍ନୀ । ହେ ମହେଶ୍ୱରୀ ! ମୁଁ ଯାହା କିଛି କହିଲି, ତା' ଉପରେ ଉତ୍ତମ ବୁଦ୍ଧିରେ ବିଚ୍ଛର କର । ସୁସ୍ଥିର ଚିତ୍ତସମ୍ପନ୍ନା ପାର୍ବତୀ ! ମୁଁ ନାନା ପ୍ରକାରେ

---

* ନ କେବଲଂ ଭବେତ୍ ପାପଂ ନିନ୍ଦାକର୍ତ୍ତୁଃ ଶିବସ୍ୟ ହି । ଯୋ ବୈ ଶୃଣୋତି ତନ୍ନିନ୍ଦାଂ ପାପଭାକ୍ ସ ଭବେଦିହ ॥
(ଶି. ପୁ. ରୁ. ସଂ. ପା. ଖ. ୨୮ । ୩୭)

ତୁମର ବାରମ୍ବାର ପରୀକ୍ଷା ନେଲି । ଲୋକଲୀଳା ଅନୁସରଣ କରି ମୁଁ ଯାହା କିଛି କଲି, ମୋତେ ସ୍ୱଜନ ଜାଣି ସେହି ଅପରାଧ କ୍ଷମା କରିଦିଅ । ଶିବେ ! ତ୍ରିଲୋକରେ ତୁମ ପରି ଅନୁରାଗିଣୀ ମୋତେ ଆଉ କେହି ଦେଖାଯାଉନି । ମୁଁ ତୁମର ପୂରା ଅଧୀନ ହୋଇଯାଇଛି । ତୁମର ଇଚ୍ଛା ପୂର୍ଣ୍ଣ ହେଉ । ପ୍ରିୟେ ! ମୋ ପାଖକୁ ଆସ । ତୁମେ ମୋର ପତ୍ନୀ ଓ ମୁଁ ତୁମର ବର । ତୁମକୁ ସଙ୍ଗରେ ଧରି ମୁଁ ଖୁବ୍ ଶୀଘ୍ର ମୋର ସ୍ଥାନ କୈଳାସ ଅଭିମୁଖେ ଗମନ କରିବାକୁ ଚାହେଁ ।

ବ୍ରହ୍ମା କହୁଛନ୍ତି—ଦେବାଧିଦେବ ମହାଦେବ ଏପରି କହିବାରୁ ପାର୍ବତୀ ଆନନ୍ଦମଗ୍ନ ହୋଇଗଲେ । ତାଙ୍କର ତପସ୍ୟାଜନିତ ସମସ୍ତ କଷ୍ଟ ଦୂର ହୋଇଗଲା । ମୁନିଶ୍ରେଷ୍ଠ ! ସତୀ-ସାଧ୍ୱୀ ପାର୍ବତୀଙ୍କର ସମସ୍ତ କ୍ଳାନ୍ତି ମେଣ୍ଟିଗଲା; କାରଣ ପରିଶ୍ରମର ଫଳ ପାଇଯିବା ପରେ ପ୍ରାଣୀର ପୂର୍ବର ସମସ୍ତ ଶ୍ରମ ଅପନୋଦନ ହୋଇଯାଏ ।

(ଅଧ୍ୟାୟ ୨୮)



## ଶିବ-ପାର୍ବତୀଙ୍କର କଥୋପକଥନ ଏବଂ ପାର୍ବତୀଙ୍କ ଅନୁରୋଧକୁ ଶିବଙ୍କର ସ୍ୱୀକୃତି

ବ୍ରହ୍ମା କହୁଛନ୍ତି—ନାରଦ ! ପରମାତ୍ମା ହରଙ୍କ କଥା ଶୁଣି ଓ ତାଙ୍କର ଆନନ୍ଦଦାୟୀ ରୂପ ଦର୍ଶନ କରି ପାର୍ବତୀ ଅପାର ହର୍ଷରେ ବିଭୋର ହୋଇଗଲେ । ତାଙ୍କ ମୁଖମଣ୍ଡଳ ପ୍ରସନ୍ନତାରେ ଉଲ୍ଲସିତ ହୋଇଉଠିଲା । ସେ ପରମ ସୁଖ ଅନୁଭବ କଲେ । ଏହାପରେ ସେ ନିକଟରେ ଛିଡ଼ା ହୋଇଥିବା ପ୍ରଭୁ ଶିବଙ୍କୁ କହିଲେ—

ପାର୍ବତୀ କହିଲେ—ଦେବେଶ୍ୱର ! ଆପଣ ମୋର ସ୍ୱାମୀ । ପ୍ରଭୋ ! ପୂର୍ବକାଳରେ ଆପଣ ଯାହା ପାଇଁ ସହର୍ଷ ଦକ୍ଷଯଜ୍ଞକୁ ବିଧ୍ୱଂସ କରିଥିଲେ, ତାକୁ କାହିଁକି ଭୁଲି ଯାଇଥିଲେ? ଆପଣ ବି ସେଇ ଅଛନ୍ତି ଆଉ ମୁଁ ବି ସେଇ ଅଛି । ଦେବେଶ୍ୱର ! ଏବେ ମୁଁ ତାରକାସୁର ଦ୍ୱାରା ସଂତପ୍ତ ଦେବତାଙ୍କ କାର୍ଯ୍ୟସିଦ୍ଧି ପାଇଁ ରାଣୀ ମେନାଙ୍କ ଗର୍ଭରୁ ଉତ୍ପନ୍ନ ହୋଇଛି । ଦେବେଶ ! ଯଦି ଆପଣ ପ୍ରସନ୍ନ ଏବଂ ଯଦି ମୋ ଉପରେ କୃପା କରିଛନ୍ତି, ତେବେ ମୋର ସ୍ୱାମୀ ହୋଇଯାଆନ୍ତୁ । ଈଶାନ ! ପ୍ରଭୋ ! ମୋତେ ଏବେ ପିତୃଗୃହକୁ ଯିବାକୁ ଆଜ୍ଞା ଦିଅନ୍ତୁ । ଏଣିକି ଆପଣ ନିଜ ବିବାହରୂପୀ ପରମୋତ୍ତମ ବିଶୁଦ୍ଧ ଯଶକୁ ସର୍ବତ୍ର ବିଖ୍ୟାତ କରନ୍ତୁ । ନାଥ ! ପ୍ରଭୋ ! ଆପଣ ତ ଲୀଳା କରିବାରେ କୁଶଳ । ଏଣୁ ମୋ ପିତା ହିମବାନଙ୍କ ପାଖକୁ ଯାଇ ତାଙ୍କୁ ମୋର ହାତ ମାଗନ୍ତୁ (ମୋର ପାଣିଗ୍ରହଣ କରିବାକୁ କନ୍ୟାଭିକ୍ଷା କରନ୍ତୁ) । ଜଗତରେ ମୋ ପିତାଙ୍କ ଯଶ ବିସ୍ତାର କରିବାକୁ ଆପଣଙ୍କ ପକ୍ଷେ ଏହିପରି କରିବା ଉଚିତ ହେବ । ଏହିରୂପେ ଆପଣ ମୋର ଗୃହସ୍ଥାଶ୍ରମକୁ ସଫଳ କରନ୍ତୁ । ଆପଣ ପ୍ରସନ୍ନତାପୂର୍ବକ ଋଷିମାନଙ୍କ ଦ୍ୱାରା ମୋ ପିତାଙ୍କୁ ସବୁ କଥା କହିଲେ ସେ ତାଙ୍କ ଭାଇ ବନ୍ଧୁଙ୍କ ସହିତ ନିଶ୍ଚୟ ଆପଣଙ୍କ ଆଜ୍ଞା ପାଳନ କରିବେ । ପୂର୍ବେ ମୁଁ ଯେତେବେଳେ ପ୍ରଜାପତି ଦକ୍ଷଙ୍କ କନ୍ୟା ଥିଲି ଆଉ ମୋର ପିତା ଆପଣଙ୍କ ହାତରେ ମୋ ହାତ ସମର୍ପିଦେଲେ, ସେତେବେଳେ ଆପଣ ଶାସ୍ତ୍ରୋକ୍ତ ବିଧିରେ ବିବାହ କାର୍ଯ୍ୟ ସମ୍ପନ୍ନ କଲେ ନାହିଁ । ମୋ ପିତା ଗ୍ରହପୂଜା କଲେ ନାହିଁ । ସେହି ବିବାହରେ ଗ୍ରହପୂଜନବିଷୟକ ବହୁତ ବଡ଼ ତ୍ରୁଟି ରହିଗଲା । ଏଣୁ ହେ ମହାଦେବ ! ପ୍ରଭୋ !

ଏଥର ଦେବତାଙ୍କ କାର୍ଯ୍ୟସିଦ୍ଧି ନିମିତ୍ତ ଶାସ୍ତ୍ରୋକ୍ତ ବିଧିରେ ବିବାହକାର୍ଯ୍ୟ ସମ୍ପାଦନ କରନ୍ତୁ । ବିବାହର ଯେଉଁ ରୀତି ରହିଛି, ତାହା ନିଶ୍ଚିତରୂପେ ପାଳନ କରିବା ଉଚିତ । ମୋ ପିତା ହିମବାନଙ୍କୁ ଏକଥା ଭଲଭାବେ ଅନୁଭବ ହୋଇଯିବା ଉଚିତ ଯେ ତାଙ୍କ କନ୍ୟା ଶୁଭକାରକ ତପସ୍ୟା କରିଛି ।

ପାର୍ବତୀଙ୍କ କଥା ଶୁଣି ସଦାଶିବ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ହସି ହସି ପ୍ରୀତିପୂର୍ବକ କହିଲେ—

ଶିବ କହିଲେ—ହେ ମହେଶ୍ୱରୀ ! ମୋ କଥା ଶୁଣ । ଏହା ମଙ୍ଗଳକାରକ, ନିର୍ଦୋଷ ଓ ଯଥାର୍ଥ । ମୋ କହିବା ଅନୁସାରେ କର । ବରାନନେ ! ବ୍ରହ୍ମା ପ୍ରଭୃତି ଯେତେ ପ୍ରାଣୀ ଅଛନ୍ତି, ସମସ୍ତେ ଅନିତ୍ୟ । ଏ ସମସ୍ତ ଦୃଶ୍ୟବର୍ଗକୁ ନଶ୍ୱର ବୋଲି ବୁଝ । ମୁଁ ନିର୍ଗୁଣ ପରମାତ୍ମା ହିଁ ଗୁଣଯୁକ୍ତ ହୋଇ ଏକରୁ ଅନେକ ହୋଇଛି । ମୁଁ ନିଜ ପ୍ରକାଶରେ ପ୍ରକାଶିତ ହେଉଥିବା ପରମାତ୍ମା ହିଁ ଗୁଣଯୁକ୍ତ ହୋଇ ଅନ୍ୟର ପ୍ରକାଶରେ ପ୍ରକାଶିତ ହେବା ପରି ହୋଇଯାଇଛି । ହେ ବରବର୍ଣ୍ଣିନୀ! ମୁଁ ସ୍ୱତନ୍ତ୍ର, ମାତ୍ର ତୁମେ ମୋତେ ପରତନ୍ତ୍ର କରିଦେଲ । ସମସ୍ତ କାର୍ଯ୍ୟ କରୁଥିବା ପ୍ରକୃତି ଓ ମହାମାୟା ତୁମେ ଅଟ । ଏ ସମସ୍ତ ଜଗତ ମାୟାମୟ । ମୁଁ ସର୍ବାତ୍ମା ପରମାତ୍ମା ନିଜ ଉତ୍ତମ ବୁଦ୍ଧିରେ ଏହାକୁ ଧାରଣମାତ୍ର କରି ରଖିଛି । ସର୍ବତ୍ର ପରମାତ୍ମଭାବ ରଖୁଥିବା ସର୍ବାତ୍ମା ପୁଣ୍ୟବାନମାନେ ଏହାକୁ ନିଜ ଭିତରେ ପୁଷ୍ଟ କରିଛନ୍ତି ଏବଂ ଏହା ତିନିଗୁଣରେ ଆବେଷ୍ଟିତ । ହେ ଦେବୀ ! ହେ ବରବର୍ଣ୍ଣିନୀ! ମୁଖ୍ୟ ଗ୍ରହ କିଏ? ଋତୁସମୂହ କିଏ? ଅଥବା ଅନ୍ୟାନ୍ୟ ଉପଗ୍ରହ ସବୁ କିଏ? ଏବେ ତୁମେ ଶିବଙ୍କ ପାଇଁ କେଉଁ କାର୍ଯ୍ୟର ବିଧାନ କଲ? ଗୁଣ ଓ କାର୍ଯ୍ୟର ଭେଦରେ ଆମେ ଦୁହେଁ ଏ ଜଗତରେ ଭକ୍ତବତ୍ସଳତା ହେତୁ ଅବତାର ଗ୍ରହଣ କରିଛେ । ତୁମେ ରଜଃସତ୍ତ୍ୱତମୋମୟୀ (ତ୍ରିଗୁଣାତ୍ମିକା) ସୂକ୍ଷ୍ମ ପ୍ରକୃତି ଅଟ ଏବଂ ସଦା ବ୍ୟାପାରକୁଶଳା ସଗୁଣା ଓ ନିର୍ଗୁଣା ମଧ୍ୟ ଅଟ । ସୁମଧ୍ୟମେ ! ମୁଁ ସମସ୍ତ ଭୂତଙ୍କର ଆତ୍ମା, ନିର୍ବିକାର ଓ ନିରୀହ ଅଟେ । ଭକ୍ତଙ୍କ ଇଚ୍ଛାରେ ମୁଁ ଶରୀର ଧାରଣ କରିଛି । ଶୈଳଜେ ! ମୁଁ ତୁମ ପିତାଙ୍କ ପାଖକୁ ଯାଇ ପାରିବି ନାହିଁ କି ଭିକ୍ଷୁକ ପରି ହୋଇ କୌଣସି ପ୍ରକାରେ ଯାଚନା କରି ପାରିବି ନାହିଁ । ହେ ଗିରିରାଜନନ୍ଦିନୀ! ମହାନ୍ ଗୁଣରେ ଗୌରବଶାଳୀ ମହାତ୍ମା ମଧ୍ୟ ନିଜ ମୁଖରେ 'ଦିଅ' ବୋଲି କହିଲେ ଲଘୁତାକୁ ପ୍ରାପ୍ତ ହୁଅନ୍ତି । ଏକଥା ହୃଦୟଙ୍ଗମ କରିବା ପରେ ତୁମର କ'ଣ ଅଭିମତ? ତଥାପି ଭଦ୍ରେ ! ତୁମ ଆଜ୍ଞାରେ ମୋତେ ସବୁ କିଛି କରିବାକୁ ହେବ । ଏଣୁ ତୁମର ଯାହା ଇଚ୍ଛା, ସେପରି କର ।

ମହାଦେବ ଏପରି କହିବା ପରେ ମଧ୍ୟ ସତୀ-ସାଧ୍ୱୀ କମଳନୟନା ମହାଦେବୀ ଶିବା ଭଗବାନ ଶିବଙ୍କୁ ବାରମ୍ବାର ଭକ୍ତିଭାବରେ ପ୍ରଣାମ କରି କହିଲେ—

ପାର୍ବତୀ କହିଲେ—ନାଥ ! ଆପଣ ଆତ୍ମା ଆଉ ମୁଁ ପ୍ରକୃତି । ଏ ବିଷୟରେ ବିଗ୍ରହ କରିବାର କୌଣସି କଥା ନାହିଁ । ଆମେ ଦୁହେଁ ସ୍ୱତନ୍ତ୍ର ଓ ନିର୍ଗୁଣ ହୋଇ ମଧ୍ୟ ଭକ୍ତଙ୍କର ଅଧୀନ ହେବା କାରଣରୁ ସଗୁଣ ହୋଇଥାଉ । ଶମ୍ଭୋ ! ପ୍ରଭୋ ! ଆପଣଙ୍କୁ ପ୍ରଯତ୍ନପୂର୍ବକ ମୋ ପ୍ରାର୍ଥନା ଅନୁସାରେ କାର୍ଯ୍ୟ କରିବା ଉଚିତ । ଆପଣ ମୋ ପିତା ହିମବାନଙ୍କୁ ମୋର ହସ୍ତ ମାଗନ୍ତୁ ଏବଂ ତାଙ୍କୁ ଦାତା ହେବାର (କନ୍ୟାଦାନ କରିବାର) ସୌଭାଗ୍ୟ ପ୍ରଦାନ କରନ୍ତୁ । ମହେଶ୍ୱର ! ମୁଁ ସଦା ଆପଣଙ୍କର ଭକ୍ତା, ତେଣୁ ମୋ ପ୍ରତି କୃପା କରନ୍ତୁ । ନାଥ ! ମୁଁ ସଦା ଜନ୍ମଜନ୍ମରୁ ଆପଣଙ୍କର ପତ୍ନୀ ହୋଇଆସିଛି । ଆପଣ ପରବ୍ରହ୍ମ ପରମାତ୍ମା, ନିର୍ଗୁଣ, ପ୍ରକୃତିର ଊର୍ଦ୍ଧ୍ୱରେ, ନିର୍ବିକାର, ନିରୀହ ଓ ସ୍ୱତନ୍ତ୍ର ପରମେଶ୍ୱର;

ତଥାପି ଭକ୍ତଙ୍କ ଉଦ୍ଧାର ନିମନ୍ତେ ସଗୁଣରୂପ ମଧ୍ୟ ଧାରଣ କରନ୍ତି, ସ୍ୱାତ୍ମାରାମ ହୋଇ ମଧ୍ୟ ଲୀଳାବିହାରୀ ହୋଇଯାଆନ୍ତି; କାରଣ ଆପଣ ନାନା ପ୍ରକାର ଲୀଳା କରିବାରେ କୁଶଳ। ମହାଦେବ ! ମହେଶ୍ୱର ! ମୁଁ ସବୁପ୍ରକାରେ ଆପଣଙ୍କୁ ଜାଣେ। ସର୍ବଜ୍ଞ ! ଅଧିକ କହିବାରେ କିଛି ଲାଭ ନାହିଁ, କେବଳ ଏତିକି ମୋ ଉପରେ ଦୟା କରନ୍ତୁ। ହେ ନାଥ ! ମହାନ୍ ଅଦ୍ଭୁତ ଲୀଳା କରି ଜଗତରେ ନିଜ ସୁଯଶ ବିସ୍ତାର କରନ୍ତୁ, ଯାହାକୁ ଗାନ କରି ମନୁଷ୍ୟ ସଂସାରସାଗରରୁ ପାର ହୋଇଯିବେ।

ବ୍ରହ୍ମା କହୁଛନ୍ତି—ନାରଦ ! ଏତିକି କହିବା ପରେ ଗିରିଜା ମହେଶ୍ୱରଙ୍କୁ ବାରମ୍ବାର କର ଯୋଡ଼ି ପ୍ରଣାମ କଲେ ଏବଂ ନତମସ୍ତକ ହୋଇ ନୀରବରେ ଠିଆ ହୋଇ ରହିଲେ। ମହେଶ୍ୱର ଲୋକଲୀଳା ଅନୁସରଣ କରି ତାଙ୍କ କଥା ମାନିନେଲେ। ସେ ମନ୍ଦ ମନ୍ଦ ହସି ପାର୍ବତୀ ଯାହା କହିଥିଲେ, ତାହାକୁ ପ୍ରସନ୍ନତାପୂର୍ବକ ପାଳନ କରିବାକୁ ଉଦ୍ୟତ ହେଲେ। ତା'ପରେ ସେ ସହର୍ଷ ସେଠାରୁ ଅନ୍ତର୍ହିତ ହୋଇ କୈଳାସକୁ ଫେରିଗଲେ। ସେତେବେଳେ କାଳୀଙ୍କ ଆଡ଼କୁ ତାଙ୍କ ଚିତ୍ତ ଆକୃଷ୍ଟ ହୋଇଯାଇଥିଲା। କୈଳାସ ଯାଇ ପରମାନନ୍ଦରେ ନିମଗ୍ନ ମହେଶ୍ୱର ନନ୍ଦୀ ପ୍ରଭୃତି ଗଣଙ୍କୁ ସମସ୍ତ ବୃତ୍ତାନ୍ତ କହିଲେ। ଭୈରବାଦି ସମସ୍ତ ଗଣ ମଧ୍ୟ ଏ କଥା ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ସମସ୍ତେ ମହାନ୍ ଉତ୍ସବ କଲେ। ନାରଦ ! ସେତେବେଳେ ସେଠାରେ ସବୁକିଛି ଅତ୍ୟନ୍ତ ମଙ୍ଗଳକର ହେଲା। ସମସ୍ତଙ୍କର ଦୁଃଖ ନାଶ ହୋଇଗଲା ଏବଂ ରୁଦ୍ରଦେବ ମଧ୍ୟ ପ୍ରମୁଦିତ ହେଲେ। (ଅଧ୍ୟାୟ ୨୯)



## ପାର୍ବତୀଙ୍କ ପିତ୍ରାଳୟରେ ମହାଦେବଙ୍କ ସତ୍କାର, ମହାଦେବଙ୍କ ନଟଲୀଳା, ମେନା ପ୍ରଭୃତିଙ୍କୁ କନ୍ୟାଦାନ ମାଗିବା ସତ୍ତ୍ୱେ ମାତାପିତାଙ୍କ ଅସ୍ୱୀକୃତି ଓ ଶିବଙ୍କର ସେଠାରୁ ଅନ୍ତର୍ଦ୍ଧାନ

ବ୍ରହ୍ମା କହୁଛନ୍ତି—ନାରଦ ! ଭଗବାନ ଶଙ୍କର ସ୍ୱସ୍ଥାନକୁ ଫେରିଯିବା ପରେ ପାର୍ବତୀ ମଧ୍ୟ ନିଜ ରୂପକୁ ସାର୍ଥକ କରି ମହାଦେବଙ୍କ ନାମ ଉଚ୍ଚାରଣପୂର୍ବକ ସଖୀମାନଙ୍କ ସହିତ ପିତୃଗୃହ ଅଭିମୁଖେ ଯାତ୍ରା କଲେ। ପାର୍ବତୀଙ୍କ ଆଗମନ କଥା ଶୁଣି ମେନା ଓ ହିମାଚଳ ଦିବ୍ୟ ରଥରେ ଆରୂଢ଼ ହୋଇ ସହର୍ଷ ତାଙ୍କୁ ପାଛୋଟି ଆଣିବା ପାଇଁ ଆଗେଇ ଚାଲିଲେ। ପୁରୋହିତ, ପୁରଜନ, ଅନେକ ସଖୀ ଓ ଅନ୍ୟାନ୍ୟ ସମ୍ପର୍କୀୟ ଲୋକେ ମଧ୍ୟ ତାଙ୍କ ସଙ୍ଗରେ ଗଲେ। ପାର୍ବତୀଙ୍କର ମୈନାକ ପ୍ରଭୃତି ଭାଇମାନେ ମଧ୍ୟ ଆନନ୍ଦରେ ଜୟଧ୍ୱନି କରି କରି ତାଙ୍କୁ ପାଛୋଟି ଆଣିବାକୁ ଗଲେ।

ଇତିମଧ୍ୟରେ ପାର୍ବତୀ ତାଙ୍କ ନଗର ସମୀପରେ ପହଞ୍ଚି ଯାଇଥିଲେ। ନଗରରେ ପ୍ରବେଶ କରୁ କରୁ ସେ ମାତାପିତାଙ୍କୁ ଦେଖିବାକୁ ପାଇଲେ। ସେମାନେ ଆନନ୍ଦରେ ବିହ୍ୱଳ ହୋଇ ତାଙ୍କ ଆଡ଼କୁ ଦୌଡ଼ି ଆସୁଥିଲେ। ସେମାନଙ୍କୁ ଦେଖି କାଳୀ ଓ ତାଙ୍କର ସଖୀଗଣ ସହର୍ଷ ଆସି ପ୍ରଣାମ କଲେ। ମାତାପିତା କନ୍ୟାକୁ ଆନନ୍ଦରେ କୋଳାଗ୍ରତ କରି ସ୍ନେହରେ ଆଶୀର୍ବାଦ ଦେଲେ ଏବଂ ଭାବାବିଷ୍ଟ ହୋଇ ସ୍ନେହାଶ୍ରୁରେ ତାଙ୍କ ମସ୍ତକ ସିଞ୍ଚନ କଲେ। ତା'ପରେ ଘରର ଅନ୍ୟ ନାରୀମାନେ ଓ ଭାଉଜମାନେ ମଧ୍ୟ ଆନନ୍ଦାଧିକ୍ୟରେ ଆଲିଙ୍ଗନ କରି କହିଲେ, "ହେ ଦେବୀ! ତୁମେ ଏଭଳି

ଉତ୍ତମ କାର୍ଯ୍ୟକୁ ସିଦ୍ଧ କରି ଆମ କୁଳକୁ ଉଦ୍ଧାର କରିଦେଲ । ତୁମର ସଦାଚରଣ ହେତୁ ଆମେ ସବୁ ପବିତ୍ର ହୋଇଗଲୁ ।''—ଏଭଳି କହି ସମସ୍ତେ ସହର୍ଷ ପାର୍ବତୀଙ୍କର ଭୂରି ଭୂରି ପ୍ରଶଂସା କରି ତାଙ୍କୁ ପ୍ରଣାମ କଲେ । ଲୋକମାନେ ଫୁଲ ଓ ଚନ୍ଦନରେ ଶିବାଙ୍କୁ ଆନନ୍ଦରେ ପୂଜା କଲେ । ଆକାଶରେ ସ୍ଥିତ ବିମାନାରୂଢ଼ ଦେବତାମାନେ ପାର୍ବତୀଙ୍କୁ ନମସ୍କାର କରି ତାଙ୍କ ଉପରେ ପୁଷ୍ପବୃଷ୍ଟି କରିବା ସହ ସ୍ତୁତି କଲେ । ସେତିକିବେଳେ ବ୍ରାହ୍ମଣ ପ୍ରଭୃତି ଆନନ୍ଦରେ ଦେବୀଙ୍କୁ ଗୋଟିଏ ସୁନ୍ଦର ରଥରେ ବସାଇ ନଗରକୁ ନେଇଗଲେ । ତା'ପରେ ଅନେକ ବ୍ରାହ୍ମଣ, ସଖୀ ଓ ଅନ୍ୟ ନାରୀମାନେ ଶିବାଙ୍କୁ ସସମ୍ମାନ ଘର ଭିତରକୁ ପାଛୋଟି ନେଲେ । ନାରୀମାନେ ନାନା ପ୍ରକାର ବସ୍ତୁ ଶିବାଙ୍କୁ ସମର୍ପଣ କଲେ ଏବଂ ବ୍ରାହ୍ମଣମାନେ ଆଶୀର୍ବାଦ ଦେଲେ । ମୁନୀଶ୍ୱର ! ପିତା ହିମବାନ ଓ ମାତା ମେନକାଙ୍କୁ ବହୁତ ଆନନ୍ଦ ମିଳିଲା । ସେମାନେ ନିଜର ଗୃହସ୍ଥାଶ୍ରମକୁ ସଫଳ ମଣିଲେ ଏବଂ ଭାବିଲେ ଯେ କୁପୁତ୍ର ଅପେକ୍ଷା ସୁପୁତ୍ରୀ ହିଁ ଶ୍ରେଷ୍ଠ । ଗିରିରାଜ ବ୍ରାହ୍ମଣମାନଙ୍କୁ ଓ ଭାଟମାନଙ୍କୁ ଧନ ଦେଲେ ଏବଂ ବ୍ରାହ୍ମଣଙ୍କ ଦ୍ୱାରା ମଙ୍ଗଳପାଠ କରାଇଲେ । ଏହାପରେ ପାର୍ବତୀଙ୍କ ସହିତ ପିତା-ମାତା, ଭାଇ-ଭାଉଜ ସମସ୍ତେ ଆନନ୍ଦରେ ଅଗଣାରେ ବସିଲେ ।

କିଛି ସମୟ ପରେ ହିମବାନ ପ୍ରସନ୍ନ ମନରେ ସମସ୍ତଙ୍କର ଆଦର ସତ୍କାର କରି ଗଙ୍ଗାସ୍ନାନ ନିମନ୍ତେ ବାହାରିଲେ । ଇତି ମଧ୍ୟରେ ଲୀଳାପ୍ରବୀଣ ଶମ୍ଭୁ ସୁନ୍ଦର ନଟ ବେଶ ଧାରଣ କରି ମେନକାଙ୍କ ପାଖକୁ ଗଲେ । ସେ ଲାଲ ବସ୍ତ୍ର ପିନ୍ଧିଥିଲେ; ବାମ ହାତରେ ଗୋଟିଏ ଶିଙ୍ଗା ଓ ଡାହାଣ ହାତରେ ଡମ୍ବରୁ ଧରିଥିଲେ ଏବଂ ପିଠିରେ ପକାଇଥିଲେ ଗୋଟିଏ କନ୍ଥା । ସେ ନାଚଗାନରେ ନିଜ ନିପୁଣତାର ପରିଚୟ ଦେଉଥିଲେ । ସୁନ୍ଦର ନଟ ବେଶଧାରୀ ରୁଦ୍ର ପ୍ରାଙ୍ଗଣରେ ବସିଥିବା ମେନକା ଓ ଅନ୍ୟାନ୍ୟ ନାରୀମାନଙ୍କ ସମ୍ମୁଖରେ ସୁନ୍ଦରଭାବେ ନୃତ୍ୟ କଲେ ଏବଂ ଶିଙ୍ଗା ଓ ଡମ୍ବରୁ ବଜାଇ ନାନା ପ୍ରକାର ମନୋହର ଗୀତ ଗାଇଲେ । ନାନା ପ୍ରକାର ଲୀଳା କଲେ । ନଟରାଜଙ୍କର ସେହି ଲୀଳା ଦେଖିବାକୁ ନଗରର ସ୍ତ୍ରୀ, ପୁରୁଷ, ବାଳକ, ବୃଦ୍ଧ ସମସ୍ତେ ରୁଣ୍ଡ ହୋଇଗଲେ । ମୁନେ ! ନଟରାଜଙ୍କର ନୃତ୍ୟଗୀତରେ ସମସ୍ତେ ମୁଗ୍ଧ ହୋଇଗଲେ । ମେନା ମଧ୍ୟ ମୋହିତ ହୋଇଗଲେ । ତେଣେ ପାର୍ବତୀ ମଧ୍ୟ ନିଜ ହୃଦୟ ମଧ୍ୟରେ ସାକ୍ଷାତ୍ ଭଗବାନ ଶିବଙ୍କୁ ଦର୍ଶନ କଲେ । ସେ ତ୍ରିଶୂଳ ଆଦି ଚିହ୍ନ ଧାରଣ କରି ବହୁତ ସୁନ୍ଦର ଦିଶୁଥିଲେ । ତାଙ୍କର ସମଗ୍ର ଅଙ୍ଗ ଭସ୍ମବିଭୂଷିତ ଥିଲା । ସେ ହାଡ଼ର ମାଳା ପିନ୍ଧିଥିଲେ । ତାଙ୍କର ମୁଖମଣ୍ଡଳ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନିରୂପୀ ତ୍ରିନେତ୍ରରେ ଉଦ୍ଭାସିତ ଥିଲା । ସେ



ନାଗକୁ ଯଜ୍ଞୋପବୀତରୂପେ ଧାରଣ କରିଥିଲେ । ତାଙ୍କର ସେହି ସୁରମ୍ୟ ରୂପକୁ ଦେଖି ଦୁର୍ଗା ପ୍ରେମାବେଶରେ ମୂର୍ଚ୍ଛିତ ହୋଇଗଲେ । ସେ ହୃଦୟ

ମଧ୍ୟରେ ଗୌରବର୍ଣ୍ଣ ଦୀନବନ୍ଧୁ ମହେଶ୍ୱରଙ୍କୁ ଦର୍ଶନ କଲେ । ପ୍ରଭୁ ପାର୍ବତୀଙ୍କୁ କହୁଥିଲେ 'ବର ମାଗ' । ହୃଦୟ ମଧ୍ୟରେ ବିରାଜିତ ମହାଦେବଙ୍କୁ ଏହି ରୂପରେ ଦେଖି ପାର୍ବତୀ ତାଙ୍କୁ ପ୍ରଣାମ କଲେ ଏବଂ ମନେ ମନେ ବର ମାଗିଲେ ଯେ 'ଆପଣ ମୋର ସ୍ୱାମୀ ହୋଇଯାଆନ୍ତୁ' । ପ୍ରୀତିଯୁକ୍ତ ହୃଦୟରେ ଶିବାଙ୍କୁ ତାଙ୍କର ଅଭୀଷ୍ଟ ବର ଦେଇ ସେ ପୁନଃ ତାଙ୍କ ହୃଦୟରୁ ଅନ୍ତର୍ହିତ ହୋଇଗଲେ ଏବଂ ସେଠାରେ ପୂର୍ବପରି ନଟ ହୋଇ ନୃତ୍ୟ କରିବାକୁ ଲାଗିଲେ ।

ସେତିକିବେଳେ ମେନା ସୁବର୍ଣ୍ଣ ଥାଳିରେ ଅନେକ ପ୍ରକାର ରତ୍ନ ଘେନି ତାଙ୍କୁ ଦେବାକୁ ଆସିଲେ । ତାଙ୍କର ଐଶ୍ୱର୍ଯ୍ୟ ଦେଖି ଭଗବାନ ମନେ ମନେ ବହୁତ ପ୍ରସନ୍ନ ହେଲେ; ମାତ୍ର ସେ ସେହି ରତ୍ନମାନ ଗ୍ରହଣ କଲେ ନାହିଁ । ସେ ଭିକ୍ଷାରୂପେ ତାଙ୍କ କନ୍ୟା ଶିବାକୁ ହିଁ ମାଗିଲେ ଏବଂ କୌତୁକବଶତଃ ପୁଣି ନୃତ୍ୟଗୀତ କରିବାକୁ ଉଦ୍ୟତ ହେଲେ । ମେନା ଭିକ୍ଷୁକ ନଟର କଥା ଶୁଣି ରାଗିଯାଇ ଗାଳିଦେଲେ ଏବଂ ତାକୁ ସେଠାରୁ ବାହାର କରିଦେବାକୁ ଚାହିଁଲେ । ଇତିମଧ୍ୟରେ ଗିରିରାଜ ଗଙ୍ଗାସ୍ନାନ ସାରି ଫେରିଲେ । ସେ ନିଜ ପ୍ରାଙ୍ଗଣରେ ନରାକାର ଭିକ୍ଷୁକକୁ ଛିଡ଼ା ହୋଇଥିବାର ଦେଖିଲେ । ମେନାଙ୍କ ମୁଖରୁ ସମସ୍ତ ବୃତ୍ତାନ୍ତ ଶୁଣି ସେ ମଧ୍ୟ ବହୁତ ଅପ୍ରସନ୍ନ ହେଲେ । ସେ ସେହି ନଟକୁ ବାହାର କରିଦେବା ପାଇଁ ନିଜ ସେବକମାନଙ୍କୁ ଆଜ୍ଞା ଦେଲେ । ମୁନିଶ୍ରେଷ୍ଠ ! ନଟରାଜ ଶିବ ବିଶାଳକାୟ ଅଗ୍ନିସ୍ତମ୍ଭ ପରି ଜାଜ୍ୱଲ୍ୟମାନ ହେଉଥିଲେ । ତାଙ୍କୁ ଛୁଇଁବା ମଧ୍ୟ କଷ୍ଟକର ଥିଲା । ସେଥିପାଇଁ ତାଙ୍କୁ ବାହାର କରିବାକୁ କେହି ବି ସମର୍ଥ ହେଲେ ନାହିଁ । ତାତ ! ତା'ପରେ ନାନା ଲୀଳାପ୍ରବୀଣ ଭିକ୍ଷୁକ-ଶିରୋମଣି ଶିବ ଶୈଳରାଜଙ୍କୁ ନିଜର ଅନନ୍ତ ପ୍ରଭାବ ଦେଖାଇବା ଆରମ୍ଭ କଲେ । ହିମବାନ ଦେଖୁ ଦେଖୁ ଭିକ୍ଷୁ ଅଗ୍ରନକ ଭଗବାନ ବିଷ୍ଣୁଙ୍କ ରୂପ ଧାରଣ କରିନେଲା । ସେହି ବିଷ୍ଣୁଙ୍କ ମସ୍ତକରେ କିରୀଟ, କାନରେ କୁଣ୍ଡଳ ଓ ଦେହରେ ପୀତବସନ ଶୋଭା ପାଉଥିଲା । ତାଙ୍କର ଥିଲା ଚାରିଟି ଭୁଜ । ହିମବାନ ପୂଜାବେଳେ ଗଦାଧାରୀ ଶ୍ରୀହରିଙ୍କୁ ଯେଉଁ ପୁଷ୍ପାଦି ଅର୍ପଣ କରିଥିଲେ, ସେସବୁ ତାଙ୍କ ଶରୀର ଓ ମସ୍ତକରେ ଥିଲା । ତା'ପରେ ସେ ଭିକ୍ଷୁକକୁ ଜଗତ୍‌ସ୍ରଷ୍ଟା ଚତୁର୍ମୁଖ ବ୍ରହ୍ମାଙ୍କ ରୂପରେ ଦେଖିଲେ । ବ୍ରହ୍ମାଙ୍କ ଦେହର ବର୍ଣ୍ଣ ଥିଲା ଲାଲ୍ ଓ ସେ ବୈଦିକ ସୂକ୍ତ ପାଠ କରୁଥିଲେ । କିଛି କ୍ଷଣ ପରେ ଶୈଳରାଜଙ୍କୁ ନଟରାଜ ଜଗତର ନେତ୍ର ସୂର୍ଯ୍ୟଙ୍କ ରୂପରେ ଦୃଶ୍ୟମାନ ହେଲେ । ତାତ ! ତା'ପରେ ସେ ଅତ୍ୟନ୍ତ ଅଦ୍ଭୁତ ରୁଦ୍ର ରୂପରେ ଦୃଶ୍ୟମାନ ହେଲେ । ତାଙ୍କ ସଙ୍ଗରେ ଦେବୀ ପାର୍ବତୀ ମଧ୍ୟ ଥିଲେ । ରୁଦ୍ର ଅତ୍ୟନ୍ତ ତେଜସମ୍ପନ୍ନ ଥିଲେ ଏବଂ ମନ୍ଦ ମନ୍ଦ ହସୁଥିଲେ । ତା'ପରେ ସେ କେବଳ ତେଜୋମୟ ରୂପରେ ଦୃଷ୍ଟିଗୋଚର ହେଲେ । ତାଙ୍କର ସେହି ସ୍ୱରୂପ ନିରାକାର, ନିରଞ୍ଜନ, ଉପାଧିଶୂନ୍ୟ, ନିରୀହ ଓ ଅତ୍ୟନ୍ତ ଅଦ୍ଭୁତ ଥିଲା । ଏହିପରି ହିମବାନ ତାଙ୍କର ଅନେକ ରୂପ ଦେଖିଲେ । ଏସବୁ ଦେଖି ସେ ବିସ୍ମିତ ହେବା ସଙ୍ଗେ ସଙ୍ଗେ ପରମାନନ୍ଦରେ ନିମଗ୍ନ ହୋଇଗଲେ । ତଦନନ୍ତର ସୁନ୍ଦର ଲୀଳା-ରଚୟିତା ସେହି ଭିକ୍ଷୁଶିରୋମଣି ହିମବାନ ଓ ମେନାଙ୍କୁ ଭିକ୍ଷା ରୂପରେ ଦୁର୍ଗାଙ୍କୁ ହିଁ ମାଗିଲେ । ଅନ୍ୟ କୌଣସି ବସ୍ତୁ ସେ ଗ୍ରହଣ କଲେ ନାହିଁ । ମାତ୍ର ଶିବମାୟାରେ ମୋହିତ ହୋଇଥିବାରୁ ଶୈଳରାଜ ତାଙ୍କ ପ୍ରାର୍ଥନା ସ୍ୱୀକାର କଲେ ନାହିଁ । ତେଣୁ ଭିକ୍ଷୁ ଅନ୍ୟ କୌଣସି ବସ୍ତୁ ଗ୍ରହଣ ନ କରି ସେଠାରୁ ଅନ୍ତର୍ହିତ ହୋଇଗଲେ । ସେତେବେଳେ ଯାଇ ମେନା ଓ ଶୈଳରାଜଙ୍କୁ ସୁଜ୍ଞାନ ହେଲା ।

ସେ ଦୁହେଁ ଭାବିଲେ—"ଓହୋ ! ଭଗବାନ ଶିବ ହିଁ ଆମକୁ ତାଙ୍କ ମାୟାରେ ଛଳି ସ୍ୱସ୍ଥାନକୁ ଫେରିଗଲେ ।" ଏଭଳି ଜ୍ଞାନୋଦୟ ହେବାରୁ ସେ ଦୁହିଁଙ୍କର ଶିବଙ୍କ ପ୍ରତି ମୋକ୍ଷଦାୟିନୀ, ଦିବ୍ୟ ଓ ସର୍ବାନନ୍ଦପ୍ରଦାୟିନୀ ପରାଭକ୍ତି ହୋଇଗଲା ।

(ଅଧ୍ୟାୟ ୩୦)

***

# ଦେବଗଣଙ୍କ ଅନୁରୋଧରେ ବୈଷ୍ଣବ ବ୍ରାହ୍ମଣ ବେଶରେ ଶିବଙ୍କର ହିମବାନଙ୍କ ଗୃହକୁ ଆଗମନ ଓ ଶିବନିନ୍ଦା କରି ପାର୍ବତୀଙ୍କ ବିବାହ ତାଙ୍କ ସହିତ ନ କରିବାକୁ ପରାମର୍ଶ

ବ୍ରହ୍ମା କହୁଛନ୍ତି—ନାରଦ ! ମେନା ଓ ହିମବାନଙ୍କର ଭଗବାନ ଶିବଙ୍କ ପ୍ରତି ଉଚ୍ଚକୋଟିର ଅନ୍ୟନ୍ୟଭକ୍ତି ଦେଖି ଇନ୍ଦ୍ରାଦି ସମସ୍ତ ଦେବତା ପରସ୍ପର ମଧ୍ୟରେ ବିଗ୍ରରବିମର୍ଶ କରିବାକୁ ଲାଗିଲେ । ତା'ପରେ ମୁଖ୍ୟ ମୁଖ୍ୟ ଦେବତାମାନେ ଗୁରୁ ବୃହସ୍ପତି ଓ ବ୍ରହ୍ମାଙ୍କ ସମ୍ମତି ଅନୁସାରେ ଶିବଙ୍କ ପାଖକୁ ଯାଇ ତାଙ୍କୁ ପ୍ରଣାମ କଲେ ଓ ହାତ ଯୋଡ଼ି ସ୍ତୁତି କରି କହିଲେ—

ଦେବତାମାନେ କହିଲେ—ଦେବଦେବ ! ମହାଦେବ ! କରୁଣାକର ! ଶଙ୍କର ! ଆମେ ଆପଣଙ୍କ ଶରଣକୁ ଆସିଛୁ । କୃପା କରନ୍ତୁ । ଆମେ ଆପଣଙ୍କୁ ନମସ୍କାର କରୁଛୁ । ସ୍ୱାମିନ୍ ! ଆପଣ ଭକ୍ତବତ୍ସଳ ହୋଇଥିବା ହେତୁ ସଦା ଭକ୍ତଙ୍କର କାର୍ଯ୍ୟ ସିଦ୍ଧ କରିଥାନ୍ତି । ଆପଣ ଦୀନଜନଙ୍କର ଉଦ୍ଧାରକାରୀ, ଦୟାସିନ୍ଧୁ ଏବଂ ଭକ୍ତଙ୍କର ବିପତ୍ତିନାଶକାରୀ ।

ମହେଶ୍ୱରଙ୍କୁ ଏଭଳି ସ୍ତୁତି କରିସାରି ଇନ୍ଦ୍ର ସମେତ ସମସ୍ତ ଦେବତା ମେନା ଓ ହିମବାନଙ୍କ ଅନନ୍ୟ ଶିବଭକ୍ତି ବିଷୟରେ ସମସ୍ତ କଥା ଆଦରପୂର୍ବକ କହିଲେ । ଦେବତାଙ୍କ କଥା ଶୁଣି ମହେଶ୍ୱର ସେମାନଙ୍କ ପ୍ରାର୍ଥନା ସ୍ୱୀକାର କଲେ ଏବଂ ସହାସ୍ୟ ବଦନରେ ସେମାନଙ୍କୁ ଆଶ୍ୱାସନା ଦେଇ ବିଦା କଲେ । ସେମାନେ ନିଜ କାର୍ଯ୍ୟ ସିଦ୍ଧ ହେଲା ବୋଲି ଭାବି ସଦାଶିବଙ୍କୁ ପ୍ରଶଂସା କରି କରି ଆନନ୍ଦରେ ନିଜ ନିଜ ସ୍ଥାନକୁ ଫେରିଗଲେ । ତା'ପରେ ଭକ୍ତବତ୍ସଳ ମାୟାପତି ମହେଶ୍ୱର ନିର୍ବିକାର ଚିତ୍ତରେ ଶୈଳରାଜଙ୍କ ଭବନକୁ ଗଲେ । ଗିରିରାଜ ହିମାଳୟ ସଭାଭବନରେ ବନ୍ଧୁବର୍ଗଙ୍କ ଗହଣରେ ପାର୍ବତୀଙ୍କ ସହିତ ବସିଥିବା ବେଳେ ସଦାଶିବ ସେଠାରେ ପଦାର୍ପଣ କଲେ । ସେ ହାତରେ ଦଣ୍ଡ ଓ ଛତ୍ର, ଶରୀରରେ ଦିବ୍ୟ ବସ୍ତ୍ର, ଲଲାଟରେ ଉଜ୍ଜ୍ୱଳ ତିଳକ, ଗୋଟିଏ ହାତରେ ସ୍ଫଟିକମାଳା ଓ ଗଳାରେ ଶାଳଗ୍ରାମ ଧାରଣ କରି ଭକ୍ତିପୂର୍ବକ ହରିନାମ ଜପୁଥିଲେ । ଦେଖିବାକୁ ସାଧୁବେଶଧାରୀ ବ୍ରାହ୍ମଣ ଜଣା ପଡୁଥିଲେ । ତାଙ୍କୁ ଦେଖି ହିମବାନ ସପରିବାର ଛିଡ଼ା ହୋଇଗଲେ । ସେ ସେହି ଅଭୂତପୂର୍ବ ଅତିଥିଦେବଙ୍କୁ ଦଣ୍ଡପରି ଭୂମିରେ ଶୋଇ ସାଷ୍ଟାଙ୍ଗ ପ୍ରଣାମ କଲେ । ପାର୍ବତୀ ବ୍ରାହ୍ମଣବେଶଧାରୀ ପ୍ରାଣେଶ୍ୱର ଶିବଙ୍କୁ ଚିହ୍ନିଗଲେ । ତେଣୁ ସେ ମଧ୍ୟ ତାଙ୍କୁ ମସ୍ତକ ଅବନତ କରି ପ୍ରଣାମ କରିବା ସହିତ ମନେ ମନେ ଅତ୍ୟନ୍ତ ଆନନ୍ଦରେ ସ୍ତୁତି କଲେ । ବ୍ରାହ୍ମଣବେଶଧାରୀ ଶିବ ସମସ୍ତଙ୍କୁ ପ୍ରେମପୂର୍ବକ ଆଶୀର୍ବାଦ ଦେଲେ । କିନ୍ତୁ ଶିବାଙ୍କୁ ସବୁଠୁ ଅଧିକ ମନୋବାଞ୍ଛିତ ଶୁଭାଶୀର୍ବାଦ ପ୍ରଦାନ କଲେ । ଶୈଳରାଜ ହିମବାନ ଅତି ଆଦରରେ ତାଙ୍କୁ ମଧୁପର୍କ ଆଦି ପୂଜାସାମଗ୍ରୀ ଅର୍ପଣ କଲେ ଓ ବ୍ରାହ୍ମଣ ଆନନ୍ଦରେ ତାହା ଗ୍ରହଣ କଲେ । ତା'ପରେ

ଗିରିବର ହିମାଚଳ ତାଙ୍କୁ କୁଶଳବାର୍ତ୍ତା ପଗ୍ଚରିଲେ । ମୁନେ ! ଉତ୍ତମ ରୀତିରେ ବିଧିବତ୍ ପୂଜା କରିବା ପରେ ଶୈଳରାଜ ପଗ୍ଚରିଲେ—"ଆପଣ କିଏ?" ତାଙ୍କ ପ୍ରଶ୍ନର ଉତ୍ତରରେ ବିପ୍ରବର ଆଦରପୂର୍ବକ ଏହିପରି କହିଲେ—



ବିପ୍ରବର କହିଲେ—ଗିରିଶ୍ରେଷ୍ଠ ! ମୁଁ ଜଣେ ସୁବୁଦ୍ଧି ବୈଷ୍ଣବ ବ୍ରାହ୍ମଣ । ମୁଁ ଜ୍ୟୋତିଷୀ ବୃତ୍ତି ଅବଲମ୍ବନ କରି ଭୂତଳରେ ଭ୍ରମଣ କରୁଥାଏ । ମୋର ଗତି ମନ ପରି ତୀବ୍ର । ମୋର ସର୍ବତ୍ର ଅବାଧ ଗତି ରହିଛି ଏବଂ ଗୁରୁପ୍ରଦତ୍ତ ଶକ୍ତି ଦ୍ୱାରା ମୁଁ ସର୍ବଜ୍ଞ, ପରୋପକାରୀ, ଶୁଦ୍ଧାତ୍ମା, ଦୟାସିନ୍ଧୁ ଓ ବିକାରରହିତ ହୋଇପାରିଛି । ମୋତେ ଜ୍ଞାତ ହେଲା ଯେ ତୁମେ କାଳେ ତୁମର ଏହି ଲକ୍ଷ୍ମୀତୁଲ୍ୟ ସୁନ୍ଦର ରୂପବତୀ କନ୍ୟାକୁ ଜଣେ ନିରାଶ୍ରୟ, ଅସଙ୍ଗ, କୁରୂପ ଓ ଗୁଣହୀନ ବର ଅର୍ଥାତ୍ ରୁଦ୍ରଦେବଙ୍କ ହସ୍ତରେ ସମର୍ପିବାକୁ ଯାଉଛ ! ରୁଦ୍ରଦେବ ତ ଶ୍ମଶାନରେ ବାସ କରନ୍ତି, ଶରୀରରେ ସର୍ପ ଗୁଡ଼ାଇ ହୋଇଥାନ୍ତି ଏବଂ ଯୋଗସାଧନା କରୁଥାନ୍ତି । ତାଙ୍କ ପାଖରେ ପିନ୍ଧିବା ପାଇଁ ବସ୍ତ୍ର ଖଣ୍ଡିଏ ବି ନାହିଁ; ତେଣୁ ସେ ଲଙ୍ଗଳା ପରି ବୁଲୁଥାନ୍ତି । ଆଭୂଷଣ ସ୍ଥାନରେ ସର୍ପଗୁଡ଼ାଏ ଗୁଡ଼େଇ ହୋଇଥାନ୍ତି । ତାଙ୍କ କୁଳମୂଳର ନାମ ବି ଆଜିପର୍ଯ୍ୟନ୍ତ କେହି ଜାଣି ନାହାନ୍ତି । ସେ କୁପାତ୍ର ଓ କୁଶୀଳ । ସେ ସ୍ୱଭାବତଃ ବିହାରରୁ ଦୂରେଇ ରହନ୍ତି । ସମଗ୍ର ଶରୀରରେ ଭସ୍ମ ବୋଳି ହୁଅନ୍ତି । ପୁଣି ସେ କ୍ରୋଧୀ ଓ ଅବିବେକୀ । ତାଙ୍କର ବୟସ କେତେ, ତାହା ବି କାହାକୁ ଜଣା ନାହିଁ । ତାଙ୍କ ମୁଣ୍ଡରେ ଅତ୍ୟନ୍ତ କୁତ୍ସିତ ଜଟାଭାର ରହିଥାଏ । ସେ ଭଲମନ୍ଦ ନ ବିଗ୍ଚରି ସମସ୍ତଙ୍କୁ ଆଶ୍ରୟ ଦିଅନ୍ତି । ସେ ଭ୍ରମଣଶୀଳ, ନାଗହାରଧାରୀ, ଭିକ୍ଷୁକ, କୁମାର୍ଗି-ପରାୟଣ ଓ ହଠପୂର୍ବକ ବୈଦିକମାର୍ଗର ପରିତ୍ୟାଗୀ । ଏପରି ଅଯୋଗ୍ୟ ବରକୁ ପୁଣି ତୁମେ ଝିଅ ଦେବାକୁ ଗ୍ଚହୁଁଛ? ଅଚଳରାଜ ! ତୁମର ଏ ବିଗ୍ଚର ମଙ୍ଗଳଦାୟକ ନୁହେଁ । ତୁମେ ନାରାୟଣକୁଳରେ ଉତ୍ପନ୍ନ ଓ ଜ୍ଞାନୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ମୋ କଥାର ମର୍ମକୁ ବୁଝ । ତୁମେ ଯେଉଁ ପାତ୍ରକୁ ବାଛିଛ, ସେ ପାର୍ବତୀର ଯୋଗ୍ୟ ବର ଆଦୌ ନୁହେଁ । ଶୈଳରାଜ! ତୁମେ ହିଁ ବିଗ୍ଚର କର । ତା'ର କୌଣସି ଭାଇ-ବନ୍ଧୁ ବି ନାହାନ୍ତି । ତୁମେ ତ ବଡ଼ ବଡ଼ ରତ୍ନର ଖଣି, କିନ୍ତୁ ତାଙ୍କ ଘରେ କାଣି କଉଡ଼ିଟିଏ ମଧ୍ୟ ନାହିଁ । ଗିରିରାଜ ! ତୁମେ ତୁମ ଭାଇବନ୍ଧୁଙ୍କୁ, ମେନାଦେବୀଙ୍କୁ, ପୁତ୍ରମାନଙ୍କୁ ଓ ପଣ୍ଡିତଙ୍କୁ ପଗ୍ଚରି ବୁଝ । କିନ୍ତୁ ପାର୍ବତୀକୁ ପଗ୍ଚରିବ ନାହିଁ; କାରଣ ତା'ଠାରେ ଶିବଙ୍କ ଗୁଣଦୋଷକୁ ବୁଝିବାର ଶକ୍ତି ନାହିଁ ।

ବ୍ରହ୍ମା କହୁଛନ୍ତି—ନାରଦ ! ଏଭଳି କହି ବ୍ରାହ୍ମଣ ବେଶଧାରୀ ନାନା ଲୀଳାପରାୟଣ ଶିବ ଶୀଘ୍ର ଭୋଜନାଦି କରିସାରି ସେଠାରୁ ବିଦାୟ ନେଲେ ।

(ଅଧ୍ୟାୟ ୩୧)

★★★

# କୋପଭବନରେ ମେନାଙ୍କ ପ୍ରବେଶ, ଶିବଙ୍କ ପ୍ରେରଣାରେ ହିମବାନଙ୍କ ନିକଟକୁ ସପ୍ତର୍ଷିଙ୍କ ଆଗମନ, ହିମବାନଙ୍କ ଗୃହରେ ସେମାନଙ୍କର ସତ୍କାର; ମେନା ଓ ହିମବାନଙ୍କୁ ବୁଝାଇସୁଝାଇ ପାର୍ବତୀଙ୍କ ବିବାହ ଶିବଙ୍କ ସଙ୍ଗେ କରିବାକୁ ସପ୍ତର୍ଷି, ଅରୁନ୍ଧତୀ ଓ ମହର୍ଷି ବଶିଷ୍ଠଙ୍କର ପ୍ରେରଣା

ବ୍ରହ୍ମା କହୁଛନ୍ତି– ମେନାଙ୍କ ଉପରେ ବ୍ରାହ୍ମଣରୂପଧାରୀ ଶିବଙ୍କ କଥାର ବହୁତ ପ୍ରଭାବ ପଡ଼ିଲା । ସେ ଦୁଃଖିତ ହୋଇ ସ୍ୱାମୀଙ୍କୁ କହିଲେ– ଗିରିରାଜ ! ଏ ବୈଷ୍ଣବ ବ୍ରାହ୍ମଣ ଶିବଙ୍କର ଯେଉଁ ଅବଗୁଣ ବର୍ଣ୍ଣନା କଲେ, ତାହା ଶୁଣିବା ପରେ ମୋ ମନ ବହୁତ ଦୁଃଖୀ ହୋଇଯାଇଛି । ଶୈଳେଶ୍ୱର ! ରୁଦ୍ରଙ୍କ ରୂପ, ସ୍ୱଭାବ ଓ ନାମ ସବୁ କିଛି କୁତ୍ସିତ । ମୁଁ ମୋ ସୁଲକ୍ଷଣା କନ୍ୟା ତାଙ୍କୁ କଦାପି ଦେବି ନାହିଁ । ଆପଣ ଯଦି ମୋ କଥା ନ ମାନିବେ, ମୁଁ ନିଶ୍ଚୟ ମରିଯିବି; ନଚେତ୍ ଏହିକ୍ଷଣି ଏ ଘର ଛାଡ଼ି ଚାଲିଯିବି, ନଚେତ୍ ବିଷ ଖାଇଦେବି; ତା' ନ ହେଲେ ପାର୍ବତୀ ବେକରେ ଫାଶି ଲଗାଇଦେଇ ମୁଁ ଗହନ ବନସ୍ତକୁ ଚାଲିଯିବି ଅଥବା ତାକୁ ମହାସାଗରରେ ବୁଡ଼ାଇଦେବି; କିନ୍ତୁ କୌଣସିମତେ ମୋ ଝିଅକୁ ରୁଦ୍ରଙ୍କ ହାତରେ ଦେବି ନାହିଁ । ଏଭଳି କହି ମେନା ତୁରନ୍ତ କୋପଭବନକୁ ଚାଲିଗଲେ ଓ ବେକର ହାରକୁ ଓହ୍ଲାଇ ଫୋପାଡ଼ି ଦେଇ କାନ୍ଦି କାନ୍ଦି ତଳେ ଲୋଟିଗଲେ ।

ଏଣେ ଭଗବାନ ଶିବଙ୍କୁ ଏ ଘଟଣା ଜଣାପଡ଼ିଗଲା । ସେ ଅରୁନ୍ଧତୀଙ୍କ ସହିତ ସପ୍ତର୍ଷିମାନଙ୍କୁ ଡକାଇଲେ ଏବଂ ସେମାନଙ୍କୁ ମେନାଙ୍କ ପାଖକୁ ପଠାଇ ତାଙ୍କୁ ବୁଝାଇବାକୁ ଆଜ୍ଞା ଦେଲେ । ଆଦେଶ ପାଇ ସେମାନେ ଶିବଙ୍କୁ ନମସ୍କାର କରି ଆକାଶମାର୍ଗରେ ହିମବାନଙ୍କ ନଗରୀ ଅଭିମୁଖେ ଯାତ୍ରା କଲେ । ହିମବାନଙ୍କ ଦିବ୍ୟ ପୁରୀକୁ ଦେଖି ସପ୍ତର୍ଷିଙ୍କୁ ବଡ଼ ବିସ୍ମୟ ହେଲା । ସେମାନେ ତାଙ୍କ ନଗରୀକୁ ପ୍ରଶଂସା କରି କରି ସମସ୍ତ ଐଶ୍ୱର୍ଯ୍ୟରେ ପୂର୍ଣ୍ଣ ହିମବାନଙ୍କ ଭବନ ନିକଟରେ ପହଞ୍ଚିଲେ । ହିମବାନ ମଧ୍ୟ ଆକାଶପଥରେ ସେହି ସୂର୍ଯ୍ୟତୁଲ୍ୟ ତେଜସ୍ୱୀ ସପ୍ତର୍ଷିଙ୍କୁ ଦୂରରୁ ଦେଖି ଆଶ୍ଚର୍ଯ୍ୟରେ ପଡ଼ିଗଲେ । ସେ କହିଲେ–"ଏ ସୂର୍ଯ୍ୟତୁଲ୍ୟ ସପ୍ତର୍ଷି ତ ମୋ ପାଖକୁ ଆସୁଛନ୍ତି । ମୋ ପକ୍ଷେ ଏମାନଙ୍କ ପୂଜା କରିବା ଉଚିତ । ଆମଭଳି ଗୃହସ୍ଥ ଧନ୍ୟ, ଯେଉଁମାନଙ୍କ ଘରେ ଏଭଳି ମହାତ୍ମା ପଦାର୍ପଣ କରନ୍ତି ।"

ବ୍ରହ୍ମା କହୁଛନ୍ତି–ଏତିକିବେଳେ ମୁନିମାନେ ଆକାଶରୁ ତଳକୁ ଓହ୍ଲାଇ ପୃଥିବୀପୃଷ୍ଠରେ ପଦାର୍ପଣ କଲେ । ସେମାନଙ୍କୁ ସମ୍ମୁଖରେ ଦେଖି ହିମବାନ ଆଦରରେ ଆଗକୁ ଯାଇ କରପତ୍ର ଯୋଡ଼ି ଅବନତ ମସ୍ତକରେ ପ୍ରଣାମ କରିବା ପରେ ସେମାନଙ୍କୁ ଅତ୍ୟନ୍ତ ସମ୍ମାନର ସହ ପୂଜା କଲେ ଏବଂ କହିଲେ – "ମୋର ଗୃହସ୍ଥାଶ୍ରମ ଧନ୍ୟ ହୋଇଗଲା ।" ଏପରି କହି ସେ ସେମାନଙ୍କୁ ଭକ୍ତିପୂର୍ବକ ଆସନ ପ୍ରଦାନ କଲେ । ସେମାନେ ବସିଯିବାପରେ ସେମାନଙ୍କ ଆଜ୍ଞା ପାଇ ନିଜେ ହିମବାନ ମଧ୍ୟ ବସିଲେ ଏବଂ ସେହି ଜ୍ୟୋତିର୍ମୟ ମହର୍ଷିମାନଙ୍କୁ କହିଲେ–

ହିମବାନ କହିଲେ–ଆଜି ମୁଁ ଧନ୍ୟ ହୋଇଗଲି, କୃତକୃତ୍ୟ ହୋଇଗଲି । ମୋ ଜୀବନ ସଫଳ ହୋଇଗଲା । ଆପଣଙ୍କ ପରି ବିଷ୍ଣୁରୂପୀ ମହାତ୍ମା ମୋ ଗୃହରେ ପଦାର୍ପଣ କରିଥିବାରୁ ମୁଁ ଜଗତରେ ଅନେକ ତୀର୍ଥ ପରି ଦର୍ଶନୀୟ ହୋଇଗଲି ।

ଆପଣମାନେ ତ ପୂର୍ଣ୍ଣକାମ । ମୋ ପରି ଦୀନଠାରେ ଆପଣଙ୍କର କି କାର୍ଯ୍ୟ ଥାଇପାରେ । ତଥାପି ଯଦି ମୋ ପରି ସେବକର ଯୋଗ୍ୟ ସେବା କିଛି ଥାଏ, ତେବେ କୃପା କରି ପ୍ରକାଶ କରନ୍ତୁ । ତାହା ପୂର୍ଣ୍ଣ କରି ମୋ ଜନ୍ମ ଓ ଜୀବନ ସଫଳ ହୋଇଯିବ ।

ଋଷିମାନେ କହିଲେ—**ଶୈଳରାଜ ! ଭଗବାନ ଶିବଙ୍କୁ ଜଗତର ପିତା କୁହାଯାଏ ଏବଂ ଶିବା ଜଗନ୍ମାତା ନାମରେ ପ୍ରସିଦ୍ଧ । ଏଣୁ ତୁମେ ନିଃସନ୍ଦେହରେ ମହାତ୍ମା ଶିବଙ୍କୁ ତୁମର କନ୍ୟା ଅର୍ପଣ କରିଦେବା ଉଚିତ । ହିମାଳୟ ! ଏପରି କଲେ ତୁମର ଜନ୍ମ ସଫଳ ହୋଇଯିବ ଏବଂ ତୁମେ ଜଗଦ୍‌ଗୁରୁଙ୍କର ମଧ୍ୟ ଗୁରୁ ହୋଇଯିବ । ଏଥିରେ ସଂଶୟ ନାହିଁ ।**

ମୁନୀଶ୍ୱର ! ସପ୍ତର୍ଷିମାନଙ୍କ କଥା ଶୁଣି ହିମାଳୟ କର ଯୋଡ଼ି ସେମାନଙ୍କୁ ପ୍ରଣାମ କରି କହିଲେ—

ହିମାଳୟ କହିଲେ—**ମହାଭାଗ ! ଆପଣମାନେ ଯେଉଁ କଥା କହିଲେ, ତାହାକୁ ମୁଁ ଶିବ-ଇଚ୍ଛାରୁ ପ୍ରଥମରୁ ମାନି ନେଇଥିଲି । କିନ୍ତୁ ପ୍ରଭୋ ! ଯେବେଠାରୁ ଜଣେ ବୈଷ୍ଣବଧର୍ମୀ ବ୍ରାହ୍ମଣ ଆସି ଶିବଙ୍କ ବିଷୟରେ ଅନେକ ପ୍ରକାର ବିପରୀତ କଥା କହିଗଲେଣି, ସେତିକିବେଳୁ ଶିବାର ମାଆ ଜ୍ଞାନଭ୍ରଷ୍ଟା ହୋଇଯାଇଛନ୍ତି । ସେ ତାଙ୍କ ଝିଅର ବିବାହ କଦାପି ସେହି ଯୋଗୀ ରୁଦ୍ରଙ୍କ ସହ ନ କରିବାକୁ ଜିଦି ଧରି ବସିଛନ୍ତି । ବ୍ରାହ୍ମଣଗଣ ! ସେ ଅତ୍ୟନ୍ତ ଜିଦିରେ ମଇଳା ବସ୍ତ୍ର ପିନ୍ଧି କୋପଭବନକୁ ଚାଲିଯାଇଛନ୍ତି ଏବଂ ଯେତେ ବୁଝାଇଲେ ମଧ୍ୟ ବୁଝୁ ନାହାନ୍ତି । ମୁଁ ମଧ୍ୟ ସେହି ବୈଷ୍ଣବ ବ୍ରାହ୍ମଣଙ୍କ କଥା ଶୁଣି ଜ୍ଞାନଭ୍ରଷ୍ଟ ହୋଇଯାଇଛି । ଆପଣଙ୍କୁ ସତ କହୁଛି, ଭିକ୍ଷୁକ-ରୂପଧାରୀ ମହେଶ୍ୱରଙ୍କୁ ଝିଅ ଦେବାକୁ ଏବେ ଆଉ ମୋର ଇଚ୍ଛା ନାହିଁ ।**

ବ୍ରହ୍ମା କହୁଛନ୍ତି—**ନାରଦ ! ମୁନିଗଣଙ୍କ ମଧ୍ୟରେ ବିରାଜମାନ ଶୈଳରାଜ ହିମବାନ ଶିବଙ୍କ ମାୟାରେ ମୋହିତ ହୋଇଯାଇଥିଲେ, ତେଣୁ ଉପରୋକ୍ତ ବଚନ କହିସାରି ନୀରବ ହୋଇଗଲେ । ତା'ପରେ ସପ୍ତର୍ଷିମାନେ ଶିବଙ୍କ ମାୟାକୁ ପ୍ରଶଂସା କରି ଅରୁନ୍ଧତୀଙ୍କୁ ମେନାଙ୍କ ପାଖକୁ ପଠାଇଲେ । ସ୍ୱାମୀଙ୍କ ଆଜ୍ଞାରେ ଜ୍ଞାନଦାୟିନୀ ଅରୁନ୍ଧତୀ ଅବିଳମ୍ବେ ମେନା ଓ ପାର୍ବତୀ ଯେଉଁଠି ଥିଲେ, ସେ ସ୍ଥାନକୁ ଗଲେ । ସେ ଦେଖିଲେ, ମେନା ଶୋକରେ ବ୍ୟାକୁଳ ହୋଇ ଭୂମିରେ ଲୋଟୁଛନ୍ତି । ଏହା ଦେଖି ସାଧ୍ୱୀ ଅରୁନ୍ଧତୀ ଅତି ସାବଧାନତାର ସହ ମଧୁରବାଣୀରେ ଏହି ହିତକର କଥା କହିଲେ—**

ଅରୁନ୍ଧତୀ କହିଲେ—**ସାଧ୍ୱୀ ରାଣୀ ମେନକେ ! ଉଠ । ମୁଁ ଅରୁନ୍ଧତୀ ତୁମ ଘରକୁ ଆସିଛି, ଦୟାଳୁ ସପ୍ତର୍ଷି ମଧ୍ୟ ଆସିଛନ୍ତି । ଅରୁନ୍ଧତୀଙ୍କ ଶବ୍ଦ ଶୁଣି ମେନା ତୁରନ୍ତ ଉଠି ପଡ଼ିଲେ ଏବଂ ଲକ୍ଷ୍ମୀତୁଲ୍ୟ ତେଜସ୍ୱିନୀ ପତିବ୍ରତା ଅରୁନ୍ଧତୀଙ୍କୁ ପ୍ରଣାମ କରିବା ପରେ ନତମସ୍ତକ ହୋଇ କହିଲେ—**

ମେନା କହିଲେ—**ଅହୋ ! ଆମେ କେଡ଼େ ପୁଣ୍ୟବାନ୍ ଜୀବ! ଆଜି କେଉଁ ପୁଣ୍ୟର ଫଳ ଉଦୟ ହେଲା ଯେ ଆମ ଘରେ ଜଗତ୍‌ସ୍ରଷ୍ଟା ବ୍ରହ୍ମାଙ୍କ ପୁତ୍ରବଧୂ ତଥା ମହର୍ଷି ବଶିଷ୍ଠଙ୍କ ପତ୍ନୀ ପଦାର୍ପଣ କରିଛନ୍ତି । ହେ ଦେବୀ! ଆପଣ କେଉଁ ଅଭିପ୍ରାୟରେ ଆସିଛନ୍ତି, ମୋତେ କୁହନ୍ତୁ । ମୁଁ ଓ ମୋ କନ୍ୟା ଆପଣଙ୍କ ଦାସୀ ପରି । ଆମ ଉପରେ କୃପା କରନ୍ତୁ ।**

ମେନା ଏପରି କହିବାରୁ ସାଧ୍ୱୀ ଅରୁନ୍ଧତୀ ତାଙ୍କୁ ବହୁତ ପ୍ରକାରେ ବୁଝାଇଲେ ଏବଂ ତାଙ୍କୁ ସାଙ୍ଗରେ ଧରି ସପ୍ତର୍ଷିମାନେ ଯେଉଁଠି ବସିଥିଲେ, ସେଠାକୁ ଗଲେ । ସପ୍ତର୍ଷିମାନେ କଥାବାର୍ତ୍ତା କରିବାରେ ବଡ଼ କୁଶଳ ଥିଲେ । ସେମାନେ ଶିବଙ୍କୁ ସ୍ମରଣ କରି ଶୈଳରାଜଙ୍କୁ ବୁଝାଇଲେ ।

ଋଷିମାନେ କହିଲେ–ଶୈଳେନ୍ଦ୍ର ! ଆମର ଶୁଭକାରକ ବଚନ ଶୁଣ । ତୁମେ ତୁମ ପାର୍ବତୀର ବିବାହ ଶିବଙ୍କ ସହିତ କରିଦିଅ ଏବଂ ସଂହାରକାରୀ ରୁଦ୍ରଙ୍କର ଶ୍ୱଶୁର ହେବାର ଯଶ ପାଅ । ଶମ୍ଭୁ ସର୍ବେଶ୍ୱର ଅଟନ୍ତି । ସେ କାହାରିକୁ ଯାଚନା କରନ୍ତି ନାହିଁ । ସ୍ୱୟଂ ବ୍ରହ୍ମା ତାରକାସୁରର ବିନାଶ ଉଦ୍ଦେଶ୍ୟରେ ଗୋଟିଏ ବୀର ପୁତ୍ର ଉତ୍ପନ୍ନ କରିବା ପାଇଁ ଶିବଙ୍କୁ ବିବାହ କରିବାକୁ ପ୍ରାର୍ଥନା କରିଛନ୍ତି । ଶିବ ତ ଯୋଗୀଙ୍କ ମଧ୍ୟରେ ଶ୍ରେଷ୍ଠ । ସେ ବିବାହ ନିମନ୍ତେ ଉତ୍ସୁକ ନୁହନ୍ତି । କେବଳ ବ୍ରହ୍ମାଙ୍କ ପ୍ରାର୍ଥନାକ୍ରମେ ସେ ତୁମ ଝିଅର ପାଣିଗ୍ରହଣ କରିବେ । ତୁମ ଝିଅ ଯେତେବେଳେ ତପସ୍ୟା କରିଥିଲା, ସେତେବେଳେ ସେ ତାକୁ ବିବାହ କରିବାକୁ ପ୍ରତିଶ୍ରୁତି ଦେଇଥିଲେ । ଏହି ଦୁଇଟି କାରଣରୁ ଯୋଗୀରାଜ ଶିବ ବିବାହ କରିବେ ।

ଋଷିମାନଙ୍କ କଥା ଶୁଣି ହିମାଳୟ ହସି ଉଠିଲେ ଏବଂ କିଞ୍ଚିତ୍ ଭୟଭୀତ ହୋଇ ବିନୟପୂର୍ବକ କହିଲେ–

ହିମାଳୟ କହିଲେ–ମୁଁ ଶିବଙ୍କ ପାଖରେ କୌଣସି ରାଜୋଚିତ ସାମଗ୍ରୀ ଦେଖୁନି । ତାଙ୍କର ଘର ନାହିଁ କି କିଛି ଐଶ୍ୱର୍ଯ୍ୟ ନାହିଁ କି କୌଣସି ସ୍ୱଜନ ବା ବନ୍ଧୁବାନ୍ଧବ ନାହାନ୍ତି । ଏଭଳି ନିତାନ୍ତ ନିର୍ଲିପ୍ତ ଯୋଗୀକୁ ମୁଁ ମୋର ଝିଅ ଦେବାକୁ ଚାହୁଁ ନାହିଁ । ଆପଣମାନେ ବେଦବିଧାତା ବ୍ରହ୍ମାଙ୍କର ପୁତ୍ର, ତେଣୁ ଆପଣଙ୍କର ନିର୍ଣ୍ଣୟ କ'ଣ କହନ୍ତୁ । ଯେଉଁ ପିତା କାମ, ମୋହ, ଭୟ ଅଥବା ଲୋଭରେ ନିଜ କନ୍ୟାକୁ କୌଣସି ଅଯୋଗ୍ୟ ବର ହାତରେ ସମର୍ପି ଦିଏ, ସେ ମୃତ୍ୟୁ ପରେ ନରକକୁ ଯାଏ ।* ତେଣୁ ମୁଁ ସ୍ୱେଚ୍ଛାରେ ଭଗବାନ ଶୂଳପାଣିଙ୍କୁ ଝିଅ ଦେଇପାରିବି ନାହିଁ । ଏଣୁ ମହର୍ଷିଗଣ ! ଯାହା ଉଚିତ ବିଧାନ ହେବ, ଆପଣମାନେ ତାହା କରନ୍ତୁ ।

ମୁନୀଶ୍ୱର ନାରଦ ! ହିମାଳୟଙ୍କ ବଚନ ଶୁଣି ବାକ୍‌ପଟୁ ବଶିଷ୍ଠ ତାଙ୍କୁ କହିଲେ ।

ବଶିଷ୍ଠ କହିଲେ–ଶୈଳେଶ୍ୱର ! ମୋ କଥା ଶୁଣ । ଏହି ପ୍ରସ୍ତାବ ତୁମ ପାଇଁ ହିତକର, ଧର୍ମର ଅନୁକୂଳ, ସତ୍ୟ ତଥା ଇହଲୋକ ଓ ପରଲୋକରେ ସୁଖଦାୟକ ହେବ । ଶୈଳରାଜ ! ଜଗତରେ ଓ ବେଦରେ ତିନି ପ୍ରକାର ମତ ଉପଲବ୍ଧ । ଶାସ୍ତ୍ରଜ୍ଞ ଲୋକ ନିଜ ନିର୍ମଳ ଜ୍ଞାନଦୃଷ୍ଟିରେ ସବୁ ପ୍ରକାର ମତକୁ ଜାଣେ । ଗୋଟିଏ ମତ ତ ତତ୍କାଳ ଶୁଣିବାକୁ ପ୍ରିୟ ଲାଗେ, ମାତ୍ର ପରେ ଅହିତକର ଓ ଅସତ୍ୟ ସିଦ୍ଧ ହୁଏ । ଏଭଳି ବଚନ ତ ଚତୁର ଶତ୍ରୁ ହିଁ କହିଥାଏ । ଏହାଦ୍ୱାରା କଦାପି ହିତ ହୁଏ ନାହିଁ । ଦ୍ୱିତୀୟଟି ଆରମ୍ଭରେ ଭଲ ଲାଗେ ନାହିଁ, ତାହାକୁ ଶୁଣି ଅପ୍ରସନ୍ନତା ହୁଏ; ମାତ୍ର ପରିଣାମରେ ତାହା ସୁଖଦାୟୀ ହୋଇଥାଏ । ଦୟାଳୁ ଧର୍ମଶୀଳ ବନ୍ଧୁ ହିଁ ଏଭଳି ବଚନ କହି କର୍ତ୍ତବ୍ୟର ବୋଧ କରାଇଥାଏ । ତୃତୀୟ ଶ୍ରେଣୀର ବଚନ ଶୁଣିବାକୁ ଅମୃତ ପରି ମଧୁର ଲାଗିବା ସଙ୍ଗେ ସଙ୍ଗେ ସଦାକାଳ ପାଇଁ ସୁଖଦାୟକ ମଧ୍ୟ ହୋଇଥାଏ । ସତ୍ୟ ହିଁ ତାହାର ସାର ହୋଇଥାଏ । ତେଣୁ ତାହା ହିଁ ପ୍ରକୃତରେ ହିତକାରକ ବଚନ । ଏପରି ବଚନ ହିଁ ସବୁଠୁ ଶ୍ରେଷ୍ଠ ଓ ସମସ୍ତଙ୍କର ଅଭୀଷ୍ଟ । ଶୈଳରାଜ ! ନୀତିଶାସ୍ତ୍ରରେ ଏଭଳି ତିନି ପ୍ରକାର ବଚନ ରହିଛି । ଏ ତିନୋଟି ମଧ୍ୟରୁ ତୁମର କେଉଁ ପ୍ରକାର ବଚନ ଅଭୀଷ୍ଟ, କୁହ । ମୁଁ ତୁମକୁ ସେହିପରି କହିବି । ଭଗବାନ ଶଙ୍କର ସମସ୍ତ ଦେବତାଙ୍କର ସ୍ୱାମୀ । ତାଙ୍କ ପାଖରେ ବାହ୍ୟ ସମ୍ପତ୍ତି ନାହିଁ, ଏହାର କାରଣ ତାଙ୍କ ଚିତ୍ତ ଏକମାତ୍ର

* ବରାୟାନନୁରୂପାୟ ପିତା କନ୍ୟାଂ ଦଦାତି ଚେତ୍ । କାମାନ୍‌ମୋହାଦ୍‌ଭୟାଲ୍ଲୋଭାତ୍ ସ ନଷ୍ଟୋ ନରକଂ ବ୍ରଜେତ୍ ॥
(ଶି. ପୁ. ରୁ. ସଂ. ପା. ଖ. ୩୩।୨୬)

ଜ୍ଞାନର ମହାସାଗରରେ ନିମଗ୍ନ ରହିଥାଏ । ଯେ ଜ୍ଞାନାନନ୍ଦସ୍ୱରୂପ ଓ ସମସ୍ତଙ୍କର ଈଶ୍ୱର, ତାଙ୍କର ଲୌକିକ ବାହ୍ୟ ବସ୍ତୁମାନଙ୍କ ପାଇଁ କାହିଁକି ଇଚ୍ଛା ହେବ? ଗୃହସ୍ଥଲୋକ ରାଜ୍ୟ ଓ ସମ୍ପତ୍ତିରେ ସୁଶୋଭିତ ବରକୁ ହିଁ କନ୍ୟା ଦେବାକୁ ଚାହିଁଥାଏ; କାରଣ କୌଣସି ଦୀନଦୁଃଖୀକୁ କନ୍ୟାଦାନ କଲେ ପିତା କନ୍ୟାଘାତୀ ହୁଏ, ତାକୁ କନ୍ୟାବଧର ପାପ ଲାଗେ ।* ମାତ୍ର ଭଗବାନ ଶଙ୍କର ଦୁଃଖୀ ବୋଲି କେହି ଜାଣିଛି କି? କୁବେର ଯାହାଙ୍କର କିଙ୍କର, ଯେ ନିଜର ଭ୍ରୂଭଙ୍ଗୀମାତ୍ରକେ ସଂସାରର ସୃଷ୍ଟି ଓ ସଂହାର କରିବାକୁ ସମର୍ଥ, ଯାହାଙ୍କୁ ଗୁଣାତୀତ, ପରମାତ୍ମା ଓ ପ୍ରକୃତିରୁ ପର ପରମେଶ୍ୱର କୁହାଯାଏ, ଯାହାଙ୍କର ସୃଷ୍ଟି, ପାଳନ ଓ ସଂହାର କରୁଥିବା ତ୍ରିବିଧ ମୂର୍ତ୍ତି ହିଁ ବ୍ରହ୍ମା, ବିଷ୍ଣୁ ଓ ହର ନାମ ଧାରଣ କରନ୍ତି, ତାଙ୍କୁ କିଏ ଅବା ନିର୍ଦ୍ଧନ ବା ଦୁଃଖୀ କହି ପାରିବ ଭଲା? ବ୍ରହ୍ମଲୋକନିବାସୀ ବ୍ରହ୍ମା, କ୍ଷୀରସାଗରନିବାସୀ ବିଷ୍ଣୁ ଓ କୈଳାସବାସୀ ହର—ଏ ସମସ୍ତେ ଶିବଙ୍କର ହିଁ ବିଭୂତି । ଶିବଙ୍କ ଠାରୁ ପ୍ରକଟ ହୋଇଥିବା ପ୍ରକୃତି ମଧ୍ୟ ନିଜ ଅଂଶଦ୍ୱାରା ତିନିପ୍ରକାର ମୂର୍ତ୍ତିକୁ ଧାରଣ କରିଥାଏ । ଜଗତରେ ଲୀଳାଶକ୍ତିରେ ପ୍ରେରିତ ହୋଇ ସେ ନିଜ କଳାରୁ ବହୁତ ରୂପ ଧାରଣ କରିଥାଏ । ସମସ୍ତ ବାଙ୍ମୟୀର ଅଧିଷ୍ଠାତ୍ରୀ ଦେବୀ ବାଣୀ ମଧ୍ୟ ତାଙ୍କ ମୁଖରୁ ପ୍ରକଟ ହୋଇଛନ୍ତି ଏବଂ ସର୍ବସମ୍ପତ୍‌ସ୍ୱରୂପିଣୀ ଲକ୍ଷ୍ମୀ ତାଙ୍କ ବକ୍ଷଃସ୍ଥଳରୁ ଆବିର୍ଭୂତ ହୋଇଛନ୍ତି ଏବଂ ଶିବା ଦେବତାମାନଙ୍କର ପୁଞ୍ଜୀଭୂତ ତେଜରୁ ନିଜକୁ ପ୍ରକଟ କରି ସମସ୍ତ ଦାନବଙ୍କୁ ବଧ କରି ଦେବତାଙ୍କୁ ସ୍ୱର୍ଗଲକ୍ଷ୍ମୀ ପ୍ରଦାନ କରନ୍ତି ।

ଏହି ଦେବୀ ଶିବା ହିଁ କଳ୍ପାନ୍ତରରେ ଦକ୍ଷପତ୍ନୀଙ୍କ ଉଦରରୁ ଜନ୍ମ ନେଇ ସତୀ ନାମରେ ପ୍ରସିଦ୍ଧ ହେଲେ ଏବଂ ହରଙ୍କୁ ସ୍ୱାମୀରୂପେ ବରଣ କଲେ । ଦକ୍ଷ ସ୍ୱୟଂ ଭଗବାନ ଶିବଙ୍କୁ ତାଙ୍କ କନ୍ୟା ପ୍ରଦାନ କରିଥିଲେ । ସତୀ ସ୍ୱାମୀଙ୍କ ନିନ୍ଦା ଶୁଣି ଯୋଗବଳରେ ଦେହତ୍ୟାଗ କରିଦେଇଥିଲେ । ସେହି କଲ୍ୟାଣମୟୀ ସତୀ ହିଁ ଏବେ ତୁମ ଔରସରେ ମେନାଙ୍କ ଗର୍ଭରୁ ପ୍ରକଟ ହୋଇଛନ୍ତି । ସେ ପ୍ରତ୍ୟେକ ଜନ୍ମରେ ଶିବଙ୍କର ପତ୍ନୀ ହୁଅନ୍ତି । ପ୍ରତ୍ୟେକ କଳ୍ପରେ ବୁଦ୍ଧିରୂପା ଦୁର୍ଗା ଜ୍ଞାନୀମାନଙ୍କର ଶ୍ରେଷ୍ଠ ମାତା ହୁଅନ୍ତି । ସେ ସର୍ବଦା ସିଦ୍ଧା, ସିଦ୍ଧିଦାୟିନୀ ଓ ସିଦ୍ଧିରୂପିଣୀ ଅଟନ୍ତି । ସ୍ୱୟଂ ଭଗବାନ ହର ଚିତାଭସ୍ମ ରୂପରେ ସତୀଙ୍କ ଅସ୍ଥିଚୂର୍ଣ୍ଣକୁ ହିଁ ପ୍ରେମରେ ନିଜ ଅଙ୍ଗରେ ଧାରଣ କରନ୍ତି । ତେଣୁ ହେ ଗିରିରାଜ ! ତୁମେ ସ୍ୱେଚ୍ଛାରେ ତୁମ ମଙ୍ଗଳମୟୀ କନ୍ୟାକୁ ଭଗବାନ ହରଙ୍କ ହାତରେ ସମର୍ପିଦିଅ । ତୁମେ ଯଦି ନ ଦେବ, ସେ ସ୍ୱୟଂ ପ୍ରିୟତମଙ୍କ ନିକଟକୁ ଚାଲିଯିବେ । ଦେବେଶ୍ୱର ଶିବ ତୁମ କନ୍ୟାର ଅସଂଖ୍ୟ କ୍ଲେଶ ଦେଖି ବ୍ରାହ୍ମଣବେଶରେ ତାହାର ତପଃସ୍ଥଳୀକୁ ଯାଇଥିଲେ ଏବଂ ତାକୁ ବିବାହ କରିବାର ପ୍ରତିଶ୍ରୁତିରେ ଆଶ୍ୱସ୍ତ କରିବା ସହ ବର ଦେଇ ସ୍ୱସ୍ଥାନକୁ ଫେରି ଯାଇଥିଲେ । ହେ ହିମବାନ ! ପାର୍ବତୀଙ୍କ ପ୍ରାର୍ଥନା ଅନୁସାରେ ହିଁ ଶମ୍ଭୁ ତୁମ ପାଖକୁ ଆସି ବିବାହ ପାଇଁ କନ୍ୟା ଯାଚନା କରିଥିଲେ ଏବଂ ତୁମେ ଦୁହେଁ ଶିବଭକ୍ତିରେ ମନ ଲଗାଇ ସେହି ଯାଚନାକୁ ଅଙ୍ଗୀକାର ବି କରିଥିଲ । ଗିରୀଶ୍ୱର ! ଏବେ ପୁଣି କେଉଁ କାରଣରୁ ତୁମର ବୁଦ୍ଧି ବିପରୀତ ହୋଇଗଲା? ଭଗବାନ ଶିବ ଦେବତାଙ୍କ ପ୍ରାର୍ଥନାରେ ପ୍ରଭାବିତ ହୋଇ ଏବେ ଆମ ସମସ୍ତ ଋଷିଙ୍କୁ ଓ ଅରୁନ୍ଧତୀଙ୍କୁ

* ଗୃହୀ ଦଦାତି ସ୍ୱସୁତାଂ ରାଜ୍ୟସମ୍ପତ୍ତିଶାଳିନେ । କନ୍ୟକାଂ ଦୁଃଖିନେ ଦତ୍ତ୍ୱା କନ୍ୟାଘାତୀ ଭବେତ୍ ପିତା ॥
(ଶି. ପୁ. ରୁ. ସଂ. ପା. ଖ. ୩୩ । ୩୬)

ତୁମ ପାଖକୁ ପଠାଇଛନ୍ତି । ଆମେ ତୁମକୁ ଏହି ଶିକ୍ଷା ଦେଉଛୁ ଯେ ତୁମେ ପାର୍ବତୀଙ୍କୁ ରୁଦ୍ରଙ୍କ ହାତରେ ସମର୍ପି ଦିଅ । ଏଭଳି କଲେ ତୁମକୁ ମହାନ୍ ଆନନ୍ଦ ମିଳିବ । ଶୈଳେନ୍ଦ୍ର ! ଯଦି ତୁମେ ସ୍ୱେଚ୍ଛାରେ ଶିବାଙ୍କୁ ଶିବଙ୍କ ହାତରେ ନ ଦେବ, ତେବେ ମଧ୍ୟ ଭବିତବ୍ୟତା ବଳରେ ଏ ଦୁହିଙ୍କର ନିଶ୍ଚୟ ବିବାହ ହୋଇଯିବ । ବତ୍ସ ! ଭଗବାନ ଶିବ ତପସ୍ୟାରତ ପାର୍ବତୀଙ୍କୁ ଏହି ବର ଦେଇଛନ୍ତି । ଈଶ୍ୱରଙ୍କ ପ୍ରତିଜ୍ଞା କଦାପି ବୃଥା ହେବ ନାହିଁ । ହେ ଗିରିରାଜ ! ଈଶ୍ୱରଙ୍କ ଅଧୀନରେ ଥିବା ସାଧୁଜନଙ୍କର ପ୍ରତିଜ୍ଞାକୁ ମଧ୍ୟ ସଂସାରରେ କେହି ଟାଳି ପାରେ ନାହିଁ, ପୁଣି ସାକ୍ଷାତ୍ ଈଶ୍ୱରଙ୍କ ପ୍ରତିଜ୍ଞା କ'ଣ ନିଷ୍ଫଳ ହୋଇଯାଇ ପାରିବ !

(ଅଧ୍ୟାୟ ୩୨-୩୩)

✯✯✯

## ସପ୍ତର୍ଷିଗଣଙ୍କ ସାନ୍ତ୍ୱନା ଓ ମେରୁ ପ୍ରଭୃତିଙ୍କ ପ୍ରେରଣାରେ ଶିବଙ୍କ ସଙ୍ଗେ ପାର୍ବତୀଙ୍କ ବିବାହ କରିବାକୁ ପିତାମାତାଙ୍କ ସମ୍ମତି ଏବଂ ଶିବଙ୍କ ନିକଟରେ ଏ ସମାଗ୍ର୍ର ପହଞ୍ଚାଇ ସପ୍ତର୍ଷିମାନଙ୍କର ସ୍ୱସ୍ଥାନ ପ୍ରତ୍ୟାବର୍ତ୍ତନ

ବ୍ରହ୍ମା କହୁଛନ୍ତି—ହେ ନାରଦ ! ତା'ପରେ ବଶିଷ୍ଠ ପ୍ରାଚୀନକାଳର ରାଜା ଅନରଣ୍ୟଙ୍କ ଦୃଷ୍ଟାନ୍ତ ଦେଇ ବୁଝାଇଲେ । ଅନରଣ୍ୟ କିପରି ତାଙ୍କ କନ୍ୟା ପଦ୍ମାର ବିବାହ ପିପ୍ପଳାଦଙ୍କ ସଙ୍ଗେ କଲେ, କିପରି ଧର୍ମଙ୍କ ବରଦାନରେ ପିପ୍ପଳାଦଙ୍କୁ ତରୁଣ ଅବସ୍ଥା, ରୂପ, ଗୁଣ, ଚିରଯୌବନ, କୁବେର ଓ ଇନ୍ଦ୍ରଙ୍କ ଠାରୁ ବଳି ଧନ-ଐଶ୍ୱର୍ଯ୍ୟ, ଭକ୍ତି, ସିଦ୍ଧି ଓ ସମତା ପ୍ରାପ୍ତ ହେଲା ଏବଂ ପଦ୍ମାକୁ କିପରି ସ୍ଥିର ଯୌବନ, ସୌଭାଗ୍ୟ, ସମ୍ପତ୍ତି ଓ ଭର୍ତ୍ତାଦ୍ୱାରା ଦଶଟି ପରମ ଗୁଣବାନ୍ ପୁତ୍ର ଲାଭ ହେଲା, ତାହା ଶୁଣାଇ କହିଲେ—"ଶୈଳେନ୍ଦ୍ର ! ତୁମେ ମୋ କଥନର ସାରତତ୍ତ୍ୱକୁ ବୁଝି ନିଜ କନ୍ୟା ପାର୍ବତୀର ହାତ ମହାଦେବଙ୍କ ହାତରେ ସମର୍ପି ଦିଅ ଏବଂ ମେନାଙ୍କର ଓ ତୁମର ମନରେ ଯେଉଁ ରୋଷ ଅଛି, ତାହାକୁ ତ୍ୟାଗ କର । ଆଜିଠାରୁ ଗୋଟିଏ ସପ୍ତାହ ପରେ ଅତ୍ୟନ୍ତ ଦୁର୍ଲଭ ଶୁଭ ମୁହୂର୍ତ୍ତ ପଡ଼ିବ । ସେତେବେଳେ ଚନ୍ଦ୍ର ଲଗ୍ନର ସ୍ୱାମୀ ହୋଇ ଆପଣା ପୁତ୍ର ବୁଧ ସଙ୍ଗରେ ଏକ ଲଗ୍ନରେ ସ୍ଥିତ ରହିବେ । ତାଙ୍କର ରୋହିଣୀ ନକ୍ଷତ୍ର ସହିତ ସଂଯୋଗ ହେବ । ଚନ୍ଦ୍ରଶୁଦ୍ଧି ଓ ତାରାଶୁଦ୍ଧି ଥିବ । ମାର୍ଗଶିର ମାସର ସକଳ-ଦୋଷରହିତ



ସୋମବାର ଦିନ ଯେତେବେଳେ ଲଗ୍ନ ଉପରେ ସମସ୍ତ ଶୁଭଗ୍ରହଙ୍କ ଦୃଷ୍ଟି ଥିବ, ପାପଗ୍ରହଙ୍କ ଦୃଷ୍ଟି ନ ଥିବ ଏବଂ ବୃହସ୍ପତି ଏପରି ଶୁଭସ୍ଥାନରେ ଥିବେ,

ଯେଉଁଠି ସେ ଉତ୍ତମ ସନ୍ତାନ ଓ ସ୍ୱାମୀର ସୌଭାଗ୍ୟ ଦେବାକୁ ସମର୍ଥ ହେବେ, ସେଭଳି ମୁହୂର୍ତ୍ତରେ ତୁମେ ତୁମର କନ୍ୟା ମୂଳପ୍ରକୃତି ଈଶ୍ୱରୀ ଜଗଦମ୍ବା ପାର୍ବତୀଙ୍କୁ ଜଗତ୍‌ପିତା ଭଗବାନ ଶିବଙ୍କ ହାତରେ ଅର୍ପଣ କରି କୃତାର୍ଥ ହୋଇଯାଅ ।

ଏହା କହି ଜ୍ଞାନୀଶିରୋମଣି ମୁନିବର ବଶିଷ୍ଠ ନାନା ଲୀଳା ବିଶାରଦ ଶିବଙ୍କୁ ସ୍ମରଣ କରି ଚୁପ୍ ହୋଇଗଲେ । ବଶିଷ୍ଠଙ୍କ କଥା ଶୁଣି ପତ୍ନୀ ଓ ସେବକଙ୍କ ସହିତ ଗିରିରାଜ ହିମାଳୟ ବହୁତ ବିସ୍ମିତ ହେଲେ । ସେ ଅନ୍ୟ ସବୁ ପର୍ବତଙ୍କୁ କହିଲେ—

ହିମାଳୟ କହିଲେ—ହେ ଗିରିରାଜ ମେରୁ, ସହ୍ୟ, ଗନ୍ଧମାଦନ, ମନ୍ଦରାଚଳ, ମୈନାକ ଓ ବିନ୍ଧ୍ୟାଚଳ ପ୍ରଭୃତି ପର୍ବତେଶ୍ୱର ! ଆପଣମାନେ ମୋ କଥା ଶୁଣନ୍ତୁ । ମୁନି ବଶିଷ୍ଠ ତ ଏପରି କହୁଛନ୍ତି । ଏବେ ମୋତେ କ'ଣ କରିବାକୁ ହେବ, ସେ ବିଷୟରେ ମନ ମଧ୍ୟରେ ବିଗ୍ବର କରି ଯଥୋଚିତ ପରାମର୍ଶ ଦିଅନ୍ତୁ ।

ହିମାଚଳଙ୍କ କଥା ଶୁଣି ସୁମେରୁ ଆଦି ପର୍ବତ ସ୍ଥିରଚିତ୍ତରେ ନିର୍ଣ୍ଣୟ କରି ତାଙ୍କୁ କହିଲେ—

ପର୍ବତମାନେ କହିଲେ—ମହାଭାଗ ! ଏବେ ବିଗ୍ବର କରି କି ଲାଭ? ଋଷିମାନେ ଯେପରି କହୁଛନ୍ତି, ସେହି ଅନୁସାରେ ହିଁ କାର୍ଯ୍ୟ କରିବା ଉଚିତ । ବାସ୍ତବରେ ଏ କନ୍ୟା ଦେବତାଙ୍କ କାର୍ଯ୍ୟ ସିଦ୍ଧ କରିବାକୁ ଜନ୍ମ ହୋଇଛି । ଏ ଶିବଙ୍କ ପାଇଁ ହିଁ ଅବତାର ନେଇଛି । ତେଣୁ ଏହାକୁ ଶିବଙ୍କୁ ହିଁ ଦିଆଯିବା ଉଚିତ । ଯଦି ଏ ରୁଦ୍ରଦେବଙ୍କୁ ଆରାଧନା କରିଛି ଏବଂ ରୁଦ୍ର ଆସି ଏହା ସହିତ କଥାବାର୍ତ୍ତା କରିଛନ୍ତି, ତେବେ ତାଙ୍କରି ସହିତ ଏହାର ବିବାହ ହେବା ଉଚିତ ।

ବ୍ରହ୍ମା କହୁଛନ୍ତି—ନାରଦ ! ମେରୁ ପ୍ରଭୃତି ପର୍ବତଙ୍କର ମତ ଶୁଣି ହିମାଚଳ ବହୁତ ପ୍ରସନ୍ନ ହେଲେ ଏବଂ ଗିରିଜା ମଧ୍ୟ ମନେ ମନେ ଖୁସୀ ହେଲେ । ଅରୁନ୍ଧତୀ ମଧ୍ୟ ଅନେକ କାରଣ ଦର୍ଶାଇ, ନାନା ପ୍ରକାର କଥା ଶୁଣାଇ ଓ ବିବିଧ ପ୍ରକାର ଇତିହାସ ବର୍ଣ୍ଣନା କରି ମେନାଦେବୀଙ୍କୁ ବୁଝାଇଲେ । ମେନାଦେବୀ ତାଙ୍କ କଥାକୁ ବୁଝିଗଲେ ଏବଂ ଆନନ୍ଦରେ ସେ ମୁନିଗଣଙ୍କୁ, ଅରୁନ୍ଧତୀଙ୍କୁ ଓ ହିମାଚଳଙ୍କୁ ଭୋଜନ କରାଇ ନିଜେ ଭୋଜନ କଲେ । ତା'ପରେ ଗିରିଶ୍ରେଷ୍ଠ ଜ୍ଞାନୀ ହିମାଳୟ ସେହି ମୁନିମାନଙ୍କର ଭଲଭାବେ ସେବା କଲେ । ତାଙ୍କ ମନ ପ୍ରସନ୍ନ ହେଲା ଓ ସମସ୍ତ ଭ୍ରମ ଦୂର ହୋଇଗଲା । ହିମାଳୟ ହାତ ଯୋଡ଼ି ପ୍ରସନ୍ନ ଚିତ୍ତରେ ମହର୍ଷିମାନଙ୍କୁ କହିଲେ—

ହିମାଳୟ କହିଲେ—ମହାଭାଗ ସପ୍ତର୍ଷିଗଣ ! ଆପଣମାନେ ମୋ କଥା ଶୁଣନ୍ତୁ । ମୋର ସମସ୍ତ ସନ୍ଦେହ ଦୂର ହୋଇଗଲା । ମୁଁ ଶିବ-ପାର୍ବତୀଙ୍କ ଚରିତ୍ର ଶୁଣିଲି; ଏଣିକି ମୋର ଶରୀର, ମୋ ପତ୍ନୀ ମେନା, ମୋ ପୁତ୍ର ଓ କନ୍ୟା, ଋଦ୍ଧି-ସିଦ୍ଧି ତଥା ଅନ୍ୟ ସମସ୍ତ ବସ୍ତୁ ଭଗବାନ ଶିବଙ୍କର ହିଁ ହୋଇଗଲା । ଏସବୁ ଅନ୍ୟ କାହାରି ନୁହେଁ ।

ବ୍ରହ୍ମା କହୁଛନ୍ତି—ନାରଦ ! ଏପରି କହି ହିମାଳୟ ନିଜ କନ୍ୟା ଆଡ଼କୁ ଆଦର ଦୃଷ୍ଟିରେ ଗ୍ବହିଁଲେ ଏବଂ ତାଙ୍କୁ ବସ୍ତ୍ରାଭୂଷଣରେ ବିଭୂଷିତ କରାଇ ଋଷିମାନଙ୍କ କୋଳରେ ବସାଇଲେ । ତା'ପରେ ଶୈଳରାଜ ପୁନଃ ଋଷିମାନଙ୍କୁ ପ୍ରସନ୍ନ ମନରେ କହିଲେ—''ଏ ହେଉଛି ଭଗବାନ ରୁଦ୍ରଙ୍କର ଭାଗ । ଏହାକୁ ମୁଁ ତାଙ୍କୁ ହିଁ ପ୍ରଦାନ କରିବି, ଏହା ମୁଁ ନିର୍ଣ୍ଣୟ କରିସାରିଛି ।''

ଋଷିମାନେ କହିଲେ—ଗିରିରାଜ ! ଭଗବାନ ଶଙ୍କର ତୁମ ଆଗରେ ଭିକ୍ଷୁକ ବା ଯାଚକ ହେଲେ, ତୁମେ ସ୍ୱୟଂ ଦାତା ହେଲ ଆଉ ପାର୍ବତୀ ଭିକ୍ଷା ହେଲା । ଏହାଠାରୁ ଉତ୍ତମ କଥା ଆଉ କ'ଣ ଅଛି? ହିମାଚଳ ! ସମସ୍ତ ଶିଖର

ମଧ୍ୟରେ ଯେପରି ତୁମ ଶିଖର ଶ୍ରେଷ୍ଠ, ସେହିପରି ତୁମେ ନିଜେ ମଧ୍ୟ ସମସ୍ତ ପର୍ବତଙ୍କର ଅଧିପତି ହୋଇଥିବାରୁ ଶ୍ରେଷ୍ଠ ଓ ଧନ୍ୟ ।

ବ୍ରହ୍ମା କହୁଛନ୍ତି—ନାରଦ ! ଏଭଳି କହି ନିର୍ମଳଚିତ୍ତ ମୁନିଗଣ ଗିରିରାଜକୁମାରୀ ପାର୍ବତୀଙ୍କୁ କରସ୍ପର୍ଶଦ୍ୱାରା ଆଶୀର୍ବାଦ ଦେଇ କହିଲେ, "ଶିବେ ! ତୁମେ ଭଗବାନ ଶିବଙ୍କ ପାଇଁ ସୁଖଦାୟିନୀ ହୁଅ । ତୁମର କଲ୍ୟାଣ ହେଉ । ଚନ୍ଦ୍ର ଯେପରି ଶୁକ୍ଳପକ୍ଷରେ ବୃଦ୍ଧିପାଏ, ତୁମର ଗୁଣମାନ ସେହିପରି ବୃଦ୍ଧି ପାଉ ।" ଏପରି କହି ମୁନିଗଣ ଗିରିରାଜଙ୍କୁ ସହର୍ଷ ଫୁଲଫଳ ପ୍ରଦାନ କରି ବିବାହ ସ୍ଥିର ହୋଇଗଲା ବୋଲି ଦୃଢ଼ ବିଶ୍ୱାସ କଲେ । ପରମ ସତୀ ସୁମୁଖୀ ଅରୁନ୍ଧତୀ ଆନନ୍ଦରେ ଶିବଙ୍କର ନାନା ଗୁଣ ବଖାଣ କରି ମେନାଙ୍କୁ ମୋହିତ କରିଦେଲେ । ତା'ପରେ ଗିରିରାଜ ହିମବାନ ପରମ ଉତ୍ତମ ମାଙ୍ଗଳିକ ଲୋକାଗ୍ର ଅନୁସାରେ ହଳଦୀ ଓ କୁଙ୍କୁମରେ ନିଜ ଦାଢ଼ିନିଶ ମାର୍ଜନ କଲେ । ତା'ପରେ ଚତୁର୍ଥ ଦିନ ଉତ୍ତମ ଲଗ୍ନ ନିର୍ଣ୍ଣୟ କରି ଓ ପରସ୍ପରକୁ ସନ୍ତୋଷ ପ୍ରଦାନ କରି ସପ୍ତର୍ଷିମାନେ ଶିବଙ୍କ ପାଖକୁ ଫେରିଗଲେ । ସେଠରେ ପହଞ୍ଚି ପରମେଶ୍ୱର ଶିବଙ୍କୁ ନମସ୍କାର କଲେ ଏବଂ ବିବିଧ ସୂକ୍ତିରେ ସ୍ତବନ କରିବା ପରେ ଶିବଙ୍କୁ କହିଲେ—

ଋଷିଗଣ କହିଲେ—**ଦେବଦେବ ! ମହାଦେବ !** ପରମେଶ୍ୱର ! ମହାପ୍ରଭୋ ! ଆପଣ ଖୁସୀ ମନରେ ଆମ କଥା ଶୁଣନ୍ତୁ । ଆପଣଙ୍କର ସେବକରୂପେ ଆମ୍ଭେମାନେ ଯେଉଁ କାର୍ଯ୍ୟ କରିଛୁ, ତାହା ଅବଗତ ହୁଅନ୍ତୁ । ମହେଶ୍ୱର ! ଆମେ ସୁନ୍ଦରଭାବରେ ନାନା ପ୍ରକାର କଥା କହି ଓ ଇତିହାସ ବୃତ୍ତାନ୍ତ ଶୁଣାଇ ଗିରିରାଜ ଓ ମେନାଙ୍କୁ ବୁଝାଇ ରାଜି କରାଇନେଲୁ । ଏଥର ଆଉ କିଛି ସନ୍ଦେହ ନାହିଁ । ଆପଣ ନିଜ ପାର୍ଷଦଗଣ ତଥା ଦେବଗଣଙ୍କ ସହିତ ତାଙ୍କ ଘରକୁ ବିବାହ ନିମନ୍ତେ ଯାଆନ୍ତୁ । ପ୍ରଭୋ ! ଏଣିକି ଆଉ ବିଳମ୍ବ ନ କରି ହିମାଚଳଙ୍କ ଗୃହକୁ ଯାଇ ବେଦୋକ୍ତ ରୀତିରେ ପାର୍ବତୀଙ୍କର ପାଣିଗ୍ରହଣ କରନ୍ତୁ । ସପ୍ତର୍ଷିଙ୍କ କଥା ଶୁଣି ଲୋକାଗ୍ରପରାୟଣ ମହେଶ୍ୱର ପ୍ରସନ୍ନଚିତ୍ତରେ ହସି ହସି କହିଲେ—

ମହେଶ୍ୱର କହିଲେ—**ମହାଭାଗ ସପ୍ତର୍ଷିଗଣ !** ବିବାହ ମୁଁ କେବେ ଦେଖିନି କି ସେ ବିଷୟରେ ଶୁଣିନି । ତୁମେମାନେ ପୂର୍ବରୁ ଯେପରି ଦେଖିଥିବ, ତଦନୁସାରେ ବିବାହର ବିଶେଷ ବିଧି ବିଷୟରେ ବର୍ଣ୍ଣନା କର ।

ମହେଶ୍ୱରଙ୍କ ଲୌକିକ ଶୁଭବଚନକୁ ଶୁଣି ଋଷିମାନେ ହସି ହସି ଦେବାଧିଦେବ ସଦାଶିବଙ୍କୁ କହିଲେ—

ଋଷିମାନେ କହିଲେ—**ପ୍ରଭୋ !** ଆପଣ ବିଶେଷ କରି ଭଗବାନ ବିଷ୍ଣୁଙ୍କୁ ତାଙ୍କ ପାର୍ଷଦଙ୍କ ସହିତ ଶୀଘ୍ର ଡକାଇ ଆଣନ୍ତୁ । ତା'ପରେ ପୁତ୍ରଗଣଙ୍କ ସହିତ ବ୍ରହ୍ମାଙ୍କୁ, ଦେବରାଜ ଇନ୍ଦ୍ରଙ୍କୁ ସମସ୍ତ ଋଷିଙ୍କୁ, ଯକ୍ଷ, ଗନ୍ଧର୍ବ, କିଂନର, ସିଦ୍ଧ, ବିଦ୍ୟାଧର ଓ ଅପ୍‌ସରାଙ୍କୁ ସହର୍ଷ ଆମନ୍ତ୍ରିତ କରନ୍ତୁ । ଅନ୍ୟମାନଙ୍କୁ ମଧ୍ୟ ଆଦରରେ ଡକାନ୍ତୁ । ସେମାନେ ମିଳିମିଶି ଆପଣଙ୍କ କାର୍ଯ୍ୟ ସାଧିତ କରିଦେବେ, ଏଥିରେ ସଂଶୟ ନାହିଁ ।

ବ୍ରହ୍ମା କହୁଛନ୍ତି—ନାରଦ ! ଏଭଳି କହି ସପ୍ତର୍ଷିମାନେ ଶିବଙ୍କ ଠାରୁ ବିଦାୟ ନେଲେ ଏବଂ ଶିବଙ୍କ ସ୍ଥିତି ବିଷୟରେ ବର୍ଣ୍ଣନା କରି କରି ନିଜ ଧାମକୁ ଫେରିଗଲେ ।

(ଅଧ୍ୟାୟ ୩୪—୩୬)

***

# ଶିବଙ୍କ ପାଖକୁ ଲଗ୍ନପତ୍ରିକା ପ୍ରେଷଣ କରିବା ପରେ ହିମବାନଙ୍କ ଦ୍ୱାରା ବିବାହ ନିମନ୍ତେ ଆବଶ୍ୟକ ସାମଗ୍ରୀ ସଂଗ୍ରହ, ମଙ୍ଗଳାଚାର ଆରମ୍ଭ, ତାଙ୍କ ନିମନ୍ତ୍ରଣ ପାଇ ପର୍ବତ ଓ ନଦୀମାନଙ୍କର ଦିବ୍ୟରୂପରେ ଆଗମନ, ନଗରସଜ୍ଜା ଓ ବିଶ୍ୱକର୍ମାଙ୍କ ଦ୍ୱାରା ଦିବ୍ୟ ଯଜ୍ଞମଣ୍ଡପ ତଥା ଦେବତାଙ୍କ ନିବାସ ନିମନ୍ତେ ଦିବ୍ୟଲୋକ ନିର୍ମାଣ

ନାରଦ ପଚାରିଲେ–ତାତ ! ମହାପ୍ରାଜ୍ଞ ! ପ୍ରଭୋ ! ଆପଣ ଦୟା କରି କୁହନ୍ତୁ ଯେ ସପ୍ତର୍ଷିମାନେ ଚାଲିଯିବା ପରେ ହିମାଳୟ କ'ଣ କଲେ?

ବ୍ରହ୍ମା କହୁଛନ୍ତି–ମୁନୀଶ୍ୱର ! ଅରୁନ୍ଧତୀ ଓ ସପ୍ତର୍ଷି ଚାଲିଯିବା ପରେ ହିମବାନ ଯାହା ସବୁ କଲେ, ସେ କଥା ମୁଁ କହୁଛି । ସପ୍ତର୍ଷି ଚାଲିଯିବା ପରେ ଗିରିରାଜ ହିମବାନ ତାଙ୍କର ମେରୁ ପ୍ରମୁଖ ଭାଇବନ୍ଧୁ ଓ ପୁତ୍ରମାନଙ୍କୁ ଡକାଇ ଆନନ୍ଦ ଅନୁଭବ କଲେ । ତା'ପରେ ସେ ଋଷିମାନଙ୍କ ଆଜ୍ଞାନୁସାରେ ପ୍ରସନ୍ନଚିତ୍ତରେ ନିଜ ପୁରୋହିତ ଗର୍ଗଙ୍କ ଦ୍ୱାରା ଲଗ୍ନପତ୍ରିକା ଲେଖାଇଲେ ଏବଂ ତାହାକୁ ଭଗବାନ ଶିବଙ୍କ ପାଖକୁ ପଠାଇଲେ । ପର୍ବତରାଜଙ୍କର ଅନେକ ଆତ୍ମୀୟ ସ୍ୱଜନ ଆନନ୍ଦରେ ନାନା ପ୍ରକାର ସାମଗ୍ରୀ ସହ କୈଳାସରେ ପହଞ୍ଚିଲେ । ଭଗବାନ ଶିବଙ୍କ ପାଖରେ ପହଞ୍ଚି ସେମାନେ ତାଙ୍କୁ ତିଳକ କଲେ ଓ ଲଗ୍ନପତ୍ରିକା ତାଙ୍କ ହାତରେ ଦେଲେ । ଭଗବାନ ସେମାନଙ୍କର ବିଶେଷରୂପେ ଯଥାଯୋଗ୍ୟ ସତ୍କାର କଲେ । ତା'ପରେ ସମସ୍ତେ ପ୍ରସନ୍ନଚିତ୍ତରେ ଶୈଳରାଜଙ୍କ ପାଖକୁ ଫେରିଆସିଲେ । ମହେଶ୍ୱରଙ୍କ ଦ୍ୱାରା ବିଶେଷଭାବେ ସମ୍ମାନିତ ହୋଇ ଆନନ୍ଦମନରେ ଫେରୁଥିବା ଲୋକଙ୍କୁ ଦେଖି ହିମବାନଙ୍କ ହୃଦୟରେ ଅତ୍ୟନ୍ତ ହର୍ଷ ହେଲା । ତା'ପରେ ଶୈଳରାଜ ନାନା ସ୍ଥାନରେ ରହୁଥିବା ନିଜର ବନ୍ଧୁଜନଙ୍କୁ ସହର୍ଷ ନିମନ୍ତ୍ରଣ ପଠାଇଲେ, ଯାହା ସମସ୍ତଙ୍କ ପାଇଁ ସୁଖକର ଥିଲା । ସେ ଅତି ଆଦର ଓ ଉତ୍ସାହରେ ଉତ୍ତମ ଅନ୍ନ ଓ ନାନା ପ୍ରକାର ବିବାହୋଚିତ ସାମଗ୍ରୀ ସଂଗ୍ରହ କଲେ । ସେ ଚାଉଳ, ଗୁଡ଼, ଶର୍କରା, ଅଟା, କ୍ଷୀର, ଦହି, ଘିଅ, ମିଠାଇ, ଲୁଣିଆ ଜିନିଷ, ଲହୁଣି, ନାନା ପ୍ରକାର ମିଷ୍ଟାନ୍ନ ଓ ସ୍ୱାଦିଷ୍ଟ ବ୍ୟଞ୍ଜନ ଏତେ ପରିମାଣରେ ସଂଗ୍ରହ କଲେ ଯେ ଶୁଖିଲା ଦ୍ରବ୍ୟ ସବୁ ଏକାଠି ରଖାଯିବାରୁ ପାହାଡ଼ ପରି ଦେଖାଗଲା ଆଉ ତରଳ ପଦାର୍ଥ ଅନେକ ପୁଷ୍କରିଣୀ ପରି ହୋଇଗଲା । ଶିବଙ୍କ ପାର୍ଷଦ ତଥା ଦେବତାଙ୍କ ପାଇଁ ନାନା ପ୍ରକାର ହିତକର ସାମଗ୍ରୀ, ବହୁମୂଲ୍ୟ ବସ୍ତ୍ର, ଶୁଦ୍ଧ ସୁବର୍ଣ୍ଣ, ରଜତ ଓ ନାନା ପ୍ରକାର ମଣିମୁକ୍ତା ଇତ୍ୟାଦି ଉପଯୋଗୀ ବସ୍ତୁ ସଂଗ୍ରହ କରି ଗିରିରାଜ ମାଙ୍ଗଳିକ ଦିବସରେ ମଙ୍ଗଳକୃତ୍ୟ ଆରମ୍ଭ କଲେ । ନାରୀମାନେ ପାର୍ବତୀଙ୍କୁ ସଂସ୍କାର କରାଇଲେ । ବିଭିନ୍ନ ଆଭୂଷଣରେ ବିମଣ୍ଡିତା ସେହି ସୁନ୍ଦରୀ ନାରୀମାନେ ହର୍ଷରେ ଉତ୍‌ଫୁଲ୍ଲ ହୋଇ ମଙ୍ଗଳକାର୍ଯ୍ୟ ସମ୍ପାଦନ କଲେ । ନଗରର ବ୍ରାହ୍ମଣୀମାନେ ଆନନ୍ଦରେ ଲୋକାଚାର ଅନୁସାରେ ନାନା କୃତ୍ୟ କଲେ । ବିଭିନ୍ନ ପ୍ରକାର ଉତ୍ସବ ହେଲା । ହର୍ଷପୂରିତ ହୃଦୟରେ ମଙ୍ଗଳାଚାର ସମ୍ପାଦନ କରି ହିମାଳୟ ମଧ୍ୟ ବହୁତ ପ୍ରସନ୍ନ ହେଲେ ଏବଂ ନିମନ୍ତ୍ରିତ ବନ୍ଧୁଜନଙ୍କ ଆଗମନକୁ ଉତ୍ସୁକ ହୋଇ ପ୍ରତୀକ୍ଷା କଲେ ।

ଇତିମଧ୍ୟରେ ତାଙ୍କର ନିମନ୍ତ୍ରିତ ବନ୍ଧୁବାନ୍ଧବ ଆସିବାକୁ ଲାଗିଲେ । ଦେବତାଙ୍କ ନିବାସଭୂତ

ଗିରିରାଜ ସୁମେରୁ ଦିବ୍ୟ ରୂପ ଧାରଣ କରି ନାନା ପ୍ରକାର ମଣି ତଥା ରତ୍ନର ଉପହାର ଘେନି ସ୍ତ୍ରୀ-ପୁତ୍ରାଦିଙ୍କ ସହିତ ଆସି ହିମାଳୟଙ୍କ ଗୃହରେ ପହଞ୍ଚିଲେ । ମନ୍ଦରାଚଳ, ଅସ୍ତାଚଳ, ଉଦୟାଚଳ, ମଳୟ, ଦର୍ଦ୍ଦୁର, ନିଷଧ, ଗନ୍ଧମାଦନ, କରବୀର, ମହେନ୍ଦ୍ର, ପାରିଯାତ୍ର, କ୍ରୌଞ୍ଚ, ପୁରୁଷୋତ୍ତମ ଶୈଳ, ନୀଳ, ତ୍ରିକୂଟ, ଚିତ୍ରକୂଟ, ଭେଙ୍କଟ, ଶ୍ରୀଶୈଳ, ଗୋକାମୁଖ, ନାରଦ, ବିନ୍ଧ୍ୟ, କାଳଞ୍ଜର, କୈଳାସ ଓ ଅନ୍ୟାନ୍ୟ ପର୍ବତ ଦିବ୍ୟ ରୂପ ଧାରଣ କରି ନିଜ ନିଜ ସ୍ତ୍ରୀ-ପୁତ୍ରଙ୍କୁ ସାଙ୍ଗରେ ଧରି ଅନେକ ଉପହାର ସାମଗ୍ରୀ ସହିତ ଉପସ୍ଥିତ ହେଲେ । ଅନ୍ୟସବୁ ଦ୍ୱୀପରେ ଓ ଏ ଦ୍ୱୀପରେ ଆଉ ଯେତେସବୁ ପର୍ବତ ଅଛନ୍ତି, ସେମାନେ ମଧ୍ୟ ହିମାଳୟଙ୍କ ଗୃହକୁ ଆସିଲେ । ଶିବା ଓ ଶିବଙ୍କ ବିବାହ କଥା ଜାଣି ସମସ୍ତେ ଖୁସୀରେ ପଦାର୍ପଣ କଲେ । ଶୋଣଭଦ୍ର ପ୍ରଭୃତି ନଦ ଓ ସମସ୍ତ ନଦୀ ଦିବ୍ୟ ନର-ନାରୀଙ୍କ ରୂପରେ ନାନା ଅଳଂକାରରେ ସୁସଜ୍ଜିତ ହୋଇ ଶିବପାର୍ବତୀଙ୍କ ବିବାହ ଦେଖିବାକୁ ଆସିଲେ । ଗୋଦାବରୀ, ଯମୁନା, ସରସ୍ୱତୀ, ବେଣୀ, ଗଙ୍ଗା, ନର୍ମଦା ଓ ଅନ୍ୟାନ୍ୟ ସରିତାମାନେ ମଧ୍ୟ ସହର୍ଷ ହିମବାନଙ୍କ ଗୃହକୁ ଆସିଲେ । ସେମାନଙ୍କ ଆଗମନରେ ହିମାଳୟଙ୍କ ଦିବ୍ୟ ପୁରୀ ଗ୍ୱରିଆଡ଼ୁ ଭରପୂର ଦିଶିଲା । ତାହା ସବୁ ଦୃଷ୍ଟିରୁ ଶୋଭାସମ୍ପନ୍ନ ହୋଇଗଲା । ସେଠାରେ ନାନା ପ୍ରକାର ଉତ୍ସବ ହେଲା ଏବଂ ଅସଂଖ୍ୟ ଧ୍ୱଜା-ପତାକା ଉଡ଼ିଲା । ତୋରଣମାନଙ୍କରେ ତାହା ଆହୁରି ଶୋଭମାନ ଦିଶିଲା । ସବୁଆଡ଼େ ଚାନ୍ଦୁଆ ଟଙ୍ଗା ଯାଇଥିବାରୁ ସୂର୍ଯ୍ୟ ଦିଶିଲେ ନାହିଁ । ନୀଳ, ହଳଦିଆ ପ୍ରଭୃତି ନାନା ରଙ୍ଗର ଆଲୋକରେ ସେହି ପୁରୀର ଶୋଭା ବହୁଗୁଣିତ ହେଉଥିଲା । ହିମାଳୟ ଆନନ୍ଦିତ ହୋଇ ସେଠାକୁ ଆଗତ ସମସ୍ତ ସ୍ତ୍ରୀ-ପୁରୁଷଙ୍କର ସ୍ୱାଗତ-ସତ୍କାର କଲେ ଏବଂ ସମସ୍ତଙ୍କୁ ଯଥାଯୋଗ୍ୟ ସୁନ୍ଦର ସୁନ୍ଦର ସ୍ଥାନରେ ରଖାଇଲେ । ଅନେକ ପ୍ରକାର ସାମଗ୍ରୀରେ ସେମାନଙ୍କୁ ସନ୍ତୁଷ୍ଟ କଲେ ।

ମୁନିଶ୍ରେଷ୍ଠ ! ତା'ପରେ ଶୈଳରାଜ ହିମବାନ ପ୍ରସନ୍ନଚିତ୍ତରେ ମହାନ୍ ଆନନ୍ଦ-ଉତ୍ସବରେ ପରିପୂର୍ଣ୍ଣ ସେହି ନଗରକୁ ସୁନ୍ଦରଭାବରେ ସଜାଇବାକୁ ବ୍ୟବସ୍ଥା କଲେ । ରାସ୍ତାକୁ ଝାଡ଼ୁ ଆଦିରେ ପରିଷ୍କାର କରାଇ ଜଳାଦି ସିଞ୍ଚାଇଲେ । ବହୁମୂଲ୍ୟ ଉପକରଣରେ ସୁସଜ୍ଜିତ ଓ ଶୋଭାମୟ କରାଇଲେ । ପ୍ରତ୍ୟେକ ଘରର ଦ୍ୱାରଦେଶରେ କଦଳୀଗଛ ଇତ୍ୟାଦି ମାଙ୍ଗଳିକ ବୃକ୍ଷ ପୋତି ସେଗୁଡ଼ିକୁ ମାଙ୍ଗଳିକ ଦ୍ରବ୍ୟରେ ସଜାଗଲା । ଅଗଣାକୁ କଦଳୀବୃକ୍ଷରେ ସଜାଗଲା । ରେଶମୀ ଡୋରରେ ଆମ୍ରପଲ୍ଲବର ମାଳା ତିଆରି କରି ସେଗୁଡ଼ିକୁ ଖୁଣ୍ଟରେ ଗୁଡ଼ାଗଲା । ପେଣ୍ଡା ପେଣ୍ଡା ମାଳତୀ ଫୁଲର ମାଳା ଟଙ୍ଗାଗଲା । ସୁନ୍ଦର ସୁନ୍ଦର ତୋରଣରେ ତାଙ୍କର ଗୃହ ପ୍ରାଙ୍ଗଣ ଅତ୍ୟନ୍ତ ଉଜ୍ଜ୍ୱଳ ଓ ମନୋହର ଦିଶିଲା । ଗ୍ୱରିଆଡ଼େ ମାଙ୍ଗଳିକ ଶୁଭ ଦ୍ରବ୍ୟ ରଖାଯାଇଥିବାରୁ ତାଙ୍କ ପ୍ରାଙ୍ଗଣର ଶୋଭା ଆହୁରି ବଢ଼ି ଯାଇଥିଲା । ଏତାଦୃଶ ଉତ୍ସବମୁଖର କାଳରେ ଗିରିରାଜ ହିମବାନ ପ୍ରଭାବଶାଳୀ ଗର୍ଗମୁନିଙ୍କ ଅଧ୍ୟକ୍ଷତାରେ ନିଜ କନ୍ୟା ପାଇଁ ସମସ୍ତ ମଙ୍ଗଳକୃତ୍ୟ ଉତ୍ତମ ରୀତିରେ ସମ୍ପନ୍ନ କରାଇଲେ । ସେ ବିଶ୍ୱକର୍ମାକୁ ଆଦରପୂର୍ବକ ଡାକି ତାଙ୍କ ଦ୍ୱାରା ଗୋଟିଏ ସୁବିସ୍ତୃତ ବିଶାଳ ମଣ୍ଡପ ତିଆରି କରାଇଲେ । ବେଦି ପ୍ରଭୃତିର ସମାବେଶରେ ସେହି ମଣ୍ଡପଟି ଅତ୍ୟନ୍ତ ମନୋହର ଦିଶୁଥିଲା । ଦେବର୍ଷେ ! ସେହି ମଣ୍ଡପ ଅନେକ ଯୋଜନ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତାହା ନାନା ଶୁଭଲକ୍ଷଣରେ ଯୁକ୍ତ ଓ ନାନା ଆଶ୍ଚର୍ଯ୍ୟରେ ପରିପୂର୍ଣ୍ଣ ଥିଲା । ସେଠାରେ ସାଜସଜ୍ଜା ପାଇଁ

ସ୍ଥାବର ଓ ଜଙ୍ଗମ ସମସ୍ତ ପ୍ରକାର ବସ୍ତୁ କୃତ୍ରିମରୂପେ ନିର୍ମିତ ହୋଇଥିଲା, କିନ୍ତୁ ସେଗୁଡ଼ିକ ପ୍ରାକୃତିକ ପରି ମନେ ହେଉଥିଲା। ତଦ୍ଦ୍ୱାରା ମଣ୍ଡପର ମନୋହରତା ଆହୁରି ବଢ଼ିଯାଇଥିଲା। ସେଠାରେ ଗ୍ରିଆଡ଼େ ଏଭଳି ଅଦ୍ଭୁତ ବସ୍ତୁମାନ ଥିଲା, ଯାହା ସେହି ମଣ୍ଡପର ସର୍ବସ୍ୱ ପରି ମନେ ହେଉଥିଲା। ନାନା ପ୍ରକାର ଦୁର୍ଲଭ ବସ୍ତୁର ଚମତ୍କାରିତା ସେଠାରେ ଦେଖିବାକୁ ମିଳୁଥିଲା। ସେଠାରେ ସ୍ଥାବରକୁ ଜଙ୍ଗମ ଓ ଜଙ୍ଗମକୁ ସ୍ଥାବର ପରାଜିତ କରୁଥିଲେ ଅର୍ଥାତ୍ ସେସବୁ ପରସ୍ପରଠାରୁ ବଳି ଶୋଭାମୟ ଓ ଚମତ୍କାରପୂର୍ଣ୍ଣ ଦୃଶ୍ୟମାନ ହେଉଥିଲେ। ଯଜ୍ଞମଣ୍ଡପର ସ୍ଥଳଭୂମି ଜଳକୁ ବି ନିନ୍ଦା କରୁଥିଲା ଅର୍ଥାତ୍ ବହୁତ ଚତୁର ବ୍ୟକ୍ତି ମଧ୍ୟ ଜାଣିପାରୁ ନ ଥିଲେ ଯେ ଏଠାରେ କେଉଁଠି ଜଳ ଓ କେଉଁଠି ସ୍ଥଳ। କୃତ୍ରିମରୂପେ କେଉଁଠି ସିଂହ ତିଆରି ହୋଇଥିଲା ତ କେଉଁଠି ସାରସଙ୍କ ପଙ୍‌କ୍ତି; କେଉଁଠି କୃତ୍ରିମ ମୟୂର ଚିତ୍ତକୁ ଆକର୍ଷିତ କରୁଥିଲେ ତ କେଉଁଠି ନାରୀମାନେ ପୁରୁଷଙ୍କ ସହିତ ମିଶି ନୃତ୍ୟ କରୁଥିଲେ। ସେସବୁ କୃତ୍ରିମ ଥିଲେ ସୁଦ୍ଧା ଜୀବନ୍ତ ପରି ଭାବଭଙ୍ଗୀ ଓ ଗ୍ରହାଣିରେ ଲୋକଙ୍କ ମନକୁ ମୋହି ନେଉଥିଲେ। ସେହିପରି ଦ୍ୱାରପାଳ ମଧ୍ୟ ସଜୀବ ପରି ତିଆରି ହୋଇଥିଲେ। ସେମାନେ ହାତରେ ଧନୁ ଟାଣି ଧରିଥିଲେ।

ଦ୍ୱାରଦେଶରେ ନିର୍ମିତ ଲକ୍ଷ୍ମୀଙ୍କ ପ୍ରତିମା ଥିଲା ଅତ୍ୟନ୍ତ ଅଦ୍ଭୁତ। ତାହା ସମସ୍ତ ଶୁଭଲକ୍ଷଣରେ ଯୁକ୍ତ ଥିଲା। ପ୍ରତିମାକୁ ଦେଖିଲେ ଜଣା ପଡୁଥିଲା, ସତେ ଯେପରି କ୍ଷୀରସାଗରରୁ ସାକ୍ଷାତ୍ ଲକ୍ଷ୍ମୀ ବାହାରି ଆସିଛନ୍ତି। ମଣ୍ଡପରେ ସଜା ଯାଇଥିବା କୃତ୍ରିମ ହାତୀଗୁଡ଼ିକ ବାସ୍ତବ ହାତୀ ପରି ଜଣା ପଡୁଥିଲେ। ଅଶ୍ୱ ଓ ଗଜ ସହିତ ଅଶ୍ୱାରୋହୀ ଓ ଗଜାରୋହୀ ମଧ୍ୟ ନିର୍ମିତ ହୋଇଥିଲେ। ସ୍ଥାନେ ସ୍ଥାନେ ରଥୀ ଓ ରଥ ମଧ୍ୟ ନିର୍ମିତ ହୋଇଥିଲା, ଯାହାକୁ ସେହି ଅଶ୍ୱମାନେ ଟାଣୁଥିଲେ। ତାହାକୁ ଦେଖି ଲୋକେ ଆଶ୍ଚର୍ଯ୍ୟରେ ପଡ଼ି ଯାଉଥିଲେ। ଏହାଛଡ଼ା ଅନ୍ୟାନ୍ୟ ବାହନ ମଧ୍ୟ ନିର୍ମିତ ହୋଇଥିଲା। ସୈନ୍ୟବାହିନୀରେ ପଦାତିକ ସିପାହୀମାନେ ମଧ୍ୟ ଠିଆ ହୋଇଥିଲେ। ମୁନେ! ବିଶ୍ୱକର୍ମା ପ୍ରସନ୍ନ ଚିତ୍ତରେ ଦେବତା ଓ ମୁନିମାନଙ୍କୁ ମଧ୍ୟ ମୋହି ନେଲା ଭଳି ନାନା ପ୍ରକାର ଆଶ୍ଚର୍ଯ୍ୟଜନକ କଳାକୌଶଳ ପ୍ରୟୋଗ କରିଥିଲେ। ମଣ୍ଡପର ସବୁଠୁ ବଡ଼ ଫାଟକ ନିକଟରେ ଠିଆ ହୋଇଥିବା ନନ୍ଦୀର ମୂର୍ତ୍ତି ଶୁଦ୍ଧ ସ୍ଫଟିକମଣି ପରି ଉଜ୍ଜ୍ୱଳ କାନ୍ତିରେ ଉଦ୍ଭାସିତ ହେଉଥିଲା। ଭଗବାନ ଶିବଙ୍କ ବାହନ ନନ୍ଦୀର ଯେପରି ଆକୃତି, ତାହା ଠିକ୍ ସେହିପରି ଥିଲା। ନନ୍ଦୀ ଉପରେ ରତ୍ନବିଭୂଷିତ ମହାଦିବ୍ୟ ପୁଷ୍ପକ ବିମାନ ଶୋଭା ପାଉଥିଲା, ଯାହାକି ପଲ୍ଲବ ଓ ଶ୍ୱେତଗ୍ରମରଦ୍ୱାରା ସୁସଜ୍ଜିତ ଥିଲା। ତାହାର ବାମପାର୍ଶ୍ୱରେ ଦୁଇଟି ସୁନ୍ଦର ସୁନ୍ଦର ହାତୀ ନିର୍ମିତ ହୋଇଥିଲେ। ସେ ଦୁହିଙ୍କ ରଙ୍ଗ ଥିଲା ବିଶୁଦ୍ଧ କେଶର ପରି। ସେହି ହାତୀଙ୍କର ଥିଲା ଗ୍ରିଟି ଲେଖାଏଁ ଦାନ୍ତ ଏବଂ ସେମାନେ ଷାଠିଏ ବର୍ଷର ହାତୀ ପରି ଦିଶୁଥିଲେ। ସେ ଦୁହେଁ ପରସ୍ପରକୁ ସ୍ନେହ କରୁଥିବା ପରି ମନେ ହେଉଥିଲେ। ଏହାଛଡ଼ା ଗ୍ରମର ଓ ଦିବ୍ୟ ଆଭୂଷଣରେ ମଣ୍ଡିତ ଦୁଇଟି ଦିବ୍ୟ ଅଶ୍ୱ ମଧ୍ୟ ବିଶ୍ୱକର୍ମା ନିର୍ମାଣ କରିଥିଲେ। ଅଶ୍ୱ ଦୁଇଟି ଥିଲେ ସୂର୍ଯ୍ୟ ପରି ଅତ୍ୟନ୍ତ ତେଜସ୍ୱୀ। ସେଠାରେ ଉତ୍ତମ ରତ୍ନରେ ବିଭୂଷିତ କବଚଧାରୀ ଲୋକପାଳ ଓ ସମସ୍ତ ଦେବତାଙ୍କ ମୂର୍ତ୍ତି ମଧ୍ୟ ବିଶ୍ୱକର୍ମା ନିର୍ମାଣ କରିଥିଲେ। ସେମାନେ ଅସଲି ଲୋକପାଳ ଓ ଦେବତାଙ୍କ ପରି ଦିଶୁଥିଲେ। ଏହାଛଡ଼ା ଭୃଗୁ ପ୍ରମୁଖ ସମସ୍ତ ତପୋଧନ ଋଷି ଓ ଅନ୍ୟାନ୍ୟ

ଉପଦେବତା ତଥା ସିଦ୍ଧଗଣଙ୍କ ମୂର୍ତ୍ତି ମଧ୍ୟ ସେ ନିର୍ମାଣ କରିଥିଲେ ।

ଗରୁଡ଼ ଆଦି ପାର୍ଷଦଙ୍କ ଦ୍ୱାରା ପରିବେଷ୍ଟିତ ବିଷ୍ଣୁଙ୍କର ବିଗ୍ରହ ମଧ୍ୟ ବିଶ୍ୱକର୍ମା ସେଠାରେ ନିର୍ମାଣ କରିଥିଲେ; ତାହା ସାକ୍ଷାତ୍ ଶ୍ରୀହରିଙ୍କ ପରି ଦିଶୁଥିଲା । ନାରଦ ! ଏହିପରି ମୋର (ବ୍ରହ୍ମାଙ୍କର) ମଧ୍ୟ ପ୍ରତିମା ସେଠାରେ ନିର୍ମିତ ହୋଇଥିଲା, ଯାହାକି ଠିକ୍ ମୋରି ଭଳି ବୈଦିକ ସୂକ୍ତ ପାଠ କରୁଥିବା ପରି ଦିଶୁଥିଲା ଏବଂ ସେହି ପ୍ରତିମା ମୋ ପୁତ୍ରଗଣ, ବେଦଗଣ ଓ ସିଦ୍ଧଗଣଙ୍କ ଦ୍ୱାରା ପରିବେଷ୍ଟିତ ଥିଲା । ଐରାବତ ଉପରେ ବସିଥିବା ଦେବରାଜ ଇନ୍ଦ୍ର ମଧ୍ୟ ସଦଳବଳ ସେଠାରେ ନିର୍ମିତ ହୋଇଥିଲେ । ସେ ଚନ୍ଦ୍ର ପରି ଉଜ୍ଜ୍ୱଳ ଦିଶୁଥିଲେ । ଦେବର୍ଷେ ! ଅଧିକ କେତେ ବା କହିବି, ହିମାଚଳଙ୍କ ପ୍ରେରଣାରେ ବିଶ୍ୱକର୍ମା ସେଠାରେ ଖୁବ୍ ଶୀଘ୍ର ସମଗ୍ର ଦେବସମାଜର କୃତ୍ରିମ ବିଗ୍ରହମାନ ନିର୍ମାଣ କରି ଦେଇଥିଲେ । ଏହିପରି ଥିଲା ସେଠାକାର ଦିବ୍ୟ ମଣ୍ଡପ । ଉକ୍ତ ମଣ୍ଡପ ଥିଲା ଅନେକ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ, ମହାନ୍ ଏବଂ ଦେବତାଙ୍କୁ ମଧ୍ୟ ମୋହିତ କରିଦେବାକୁ ସକ୍ଷମ ।

ତା'ପରେ ଗିରିରାଜ ହିମବାନଙ୍କ ଆଜ୍ଞାରେ ପରମ ବୁଦ୍ଧିମାନ୍ ବିଶ୍ୱକର୍ମା ଦେବତା ପ୍ରଭୃତିଙ୍କ ନିବାସ ପାଇଁ ଯତ୍ନପୂର୍ବକ କୃତ୍ରିମ ଭୁବନମାନ ମଧ୍ୟ ନିର୍ମାଣ କରିଦେଇଥିଲେ । ସେହି ଭୁବନରେ ସେ ଦେବତାମାନଙ୍କ ପାଇଁ ଅତ୍ୟନ୍ତ ତେଜସ୍ୱୀ, ପରମ ଅଦ୍ଭୁତ ଓ ସୁଖଦାୟକ ବଡ଼ ବଡ଼ ମଞ୍ଚ ମଧ୍ୟ ତିଆରି କରିଦେଲେ । ମୋର ନିବାସ ପାଇଁ ସେ କ୍ଷଣକ ଭିତରେ ଅଦ୍ଭୁତ ଓ ଦେଦୀପ୍ୟମାନ ସତ୍ୟଲୋକ ନିର୍ମାଣ କରିଦେଲେ । ଭଗବାନ ବିଷ୍ଣୁଙ୍କ ପାଇଁ ସେ କ୍ଷଣକ ଭିତରେ ଯେଉଁ ଦିବ୍ୟ ବୈକୁଣ୍ଠଧାମ ନିର୍ମାଣ କରିଦେଲେ, ତାହା ପରମୋଜ୍ଜ୍ୱଳ ଓ ନାନା ପ୍ରକାର ଆଶ୍ଚର୍ଯ୍ୟରେ ପରିପୂର୍ଣ୍ଣ ଥିଲା । ଦେବରାଜ ଇନ୍ଦ୍ରଙ୍କ ପାଇଁ ମଧ୍ୟ ଦିବ୍ୟ, ଅଦ୍ଭୁତ, ଉତ୍ତମ ଓ ସକଳ ଐଶ୍ୱର୍ଯ୍ୟସମ୍ପନ୍ନ ଭବନ ନିର୍ମାଣ କରିଦେଲେ । ଅନ୍ୟ ସବୁ ଲୋକପାଳଙ୍କ ପାଇଁ ସେ ଆନନ୍ଦରେ ଅତି ସୁନ୍ଦର ସୁନ୍ଦର ଦିବ୍ୟ, ଅଦ୍ଭୁତ ଭବନ ତିଆରି କରିଦେଲେ । ତା'ପରେ ଦେବଗଣଙ୍କ ପାଇଁ ସେ ବିଚିତ୍ର ଗୃହ ନିର୍ମାଣ କରିଦେଲେ । ପରମ ବୁଦ୍ଧିମାନ୍ ବିଶ୍ୱକର୍ମାଙ୍କୁ ଭଗବାନ ଶିବଙ୍କ ଠାରୁ ବର ମିଳିଥିଲା, ତେଣୁ ସେ ଶିବଙ୍କ ସନ୍ତୋଷ ନିମନ୍ତେ କ୍ଷଣକ ମଧ୍ୟରେ ଏ ସମସ୍ତ ବସ୍ତୁ ରଚନା କରିଦେଲେ । ତା'ପରେ ଭଗବାନ ଶିବଙ୍କ ପାଇଁ ମଧ୍ୟ ସେ ଅତ୍ୟନ୍ତ ଶୋଭାମୟ ଭବନ ନିର୍ମାଣ କଲେ, ଯେଉଁଥିରେ ଶୈବ-ସଙ୍କେତମାନ ଥିଲା । ତାହା ଶିବଲୋକର ଦିବ୍ୟ ଭବନ ପରି ଅନୁପମ ଥିଲା । ଶ୍ରେଷ୍ଠ ଦେବତାମାନେ ତାହାର ଭୂରି ଭୂରି ପ୍ରଶଂସା କଲେ । ତାହା ପରମ ଉଜ୍ଜ୍ୱଳ, ମହାନ୍ ପ୍ରଭାପୁଞ୍ଜରେ ଉଦ୍ଭାସିତ, ଉତ୍ତମ ଓ ଅଦ୍ଭୁତ ଥିଲା । ବିଶ୍ୱକର୍ମା ଭଗବାନ୍ ଶିବଙ୍କ ପ୍ରସନ୍ନତା ନିମନ୍ତେ ସେଠାରେ ଏପରି ଅଦ୍ଭୁତ କଳାକୌଶଳ ଦେଖାଇଥିଲେ, ଯାହା ପରମ ଉଜ୍ଜ୍ୱଳ ହେବା ସଙ୍ଗେ ସଙ୍ଗେ ସ୍ୱୟଂ ମହାଦେବଙ୍କୁ ମଧ୍ୟ ଆଶ୍ଚର୍ଯ୍ୟାନ୍ୱିତ କରିଦେବା ପରି ଥିଲା । ଏହିରୂପେ ନାନା ପ୍ରକାର ଲୌକିକ ବ୍ୟବହାର କରି ହିମାଚଳ ଅତି ଆନନ୍ଦରେ ଭଗବାନ ଶମ୍ଭୁଙ୍କ ଶୁଭାଗମନର ପ୍ରତୀକ୍ଷାରେ ରହିଲେ । ଦେବର୍ଷେ ! ହିମାଳୟଙ୍କର ଏ ସମସ୍ତ ବୃତ୍ତାନ୍ତ ମୁଁ ତୁମକୁ କହିଦେଲି । ଏବେ ଆଉ କ'ଣ ଶୁଣିବାକୁ ଚାହୁଁଛ? (ଅଧ୍ୟାୟ ୩୭-୩୮)

✱✱✱

# ନାରଦଙ୍କ ଦ୍ୱାରା ଭଗବାନ ଶିବଙ୍କ ନିମନ୍ତ୍ରଣ ପାଇ ସକଳ ଦେବଗଣଙ୍କ ଆଗମନ ଏବଂ ମଙ୍ଗଳାଗ୍ର ଓ ଗ୍ରହପୂଜନ ଆଦି ପରେ ଶିବଙ୍କର କୈଳାସରୁ ଯାତ୍ରାରମ୍ଭ

ନାରଦ କହିଲେ–**ବିଷ୍ଣୁଶିଷ୍ୟ ମହାପ୍ରାଜ୍ଞ ବିଧାତଃ! ଆପଣଙ୍କୁ ନମସ୍କାର। କୃପାନିଧେ! ଆପଣଙ୍କ ମୁଖରୁ ଏହି ଅଦ୍ଭୁତ ଚରିତ ଶୁଣିବାକୁ ମିଳିଲା। ଏବେ ମୁଁ ଭଗବାନ ଚନ୍ଦ୍ରମୌଳିଙ୍କ ପରମ ମଙ୍ଗଳମୟ ତଥା ସମସ୍ତ ପାପବିନାଶକ ବୈବାହିକ ଚରିତ ଶୁଣିବାକୁ ଚାହୁଁଛି। ମଙ୍ଗଳପତ୍ରିକା ପାଇବା ପରେ ମହାଦେବ କ'ଣ କଲେ? ପରମାତ୍ମା ଶିବଙ୍କର ସେହି ଦିବ୍ୟ ଚରିତ ବିଷୟରେ କହନ୍ତୁ।**

ବ୍ରହ୍ମା କହୁଛନ୍ତି–**ପୁତ୍ର! ତୁମେ ବଡ଼ ବୁଦ୍ଧିମାନ୍! ଭଗବାନ ଶିବଙ୍କର ଉତ୍ତମ ଯଶଗାଥା ଏବେ ଶ୍ରବଣ କର। ମଙ୍ଗଳପତ୍ରିକା ପାଇବା ପରେ ଶିବ ଯାହା ସବୁ କଲେ, ତାହା କହୁଛି। ଶିବ ମଙ୍ଗଳପତ୍ରିକାକୁ ପ୍ରସନ୍ନଚିତ୍ତରେ ହାତରେ ଧରି ହୃଦୟରେ ହର୍ଷ ଅନୁଭବ କରି ହସିବାକୁ ଲାଗିଲେ। ତା'ପରେ ତାହାକୁ ପଢ଼ି ସ୍ୱୀକାର କଲେ ଏବଂ ପତ୍ରବାହକକୁ ସମ୍ମାନିତ କଲେ। ହିମାଚଳଙ୍କ ପକ୍ଷରୁ ଆସିଥିବା ଲୋକମାନଙ୍କୁ ଖୁବ୍ ଆଦର-ସମ୍ମାନ ଦେଇ ବିଦା କଲେ। ତା'ପରେ ମୁନିମାନଙ୍କୁ କହିଲେ–''ଆପଣମାନେ ମୋର ଶୁଭକାର୍ଯ୍ୟକୁ ଉତ୍ତମରୂପେ ସମ୍ପାଦନ କଲେ। ଏବେ ମୁଁ ବିବାହକୁ ସ୍ୱୀକାର କରିନେଲି, ଏଣୁ ଆପଣମାନେ ମୋ ବିବାହରେ ନିଶ୍ଚୟ ଆସିବେ।''**

**ଭଗବାନଙ୍କ କଥା ଶୁଣି ଋଷିମାନେ ବହୁତ ଖୁସୀ ହେଲେ ଏବଂ ତାଙ୍କୁ ପ୍ରଣାମ ଓ ପରିକ୍ରମା କରିବା ପରେ ନିଜ ପରମ ସୌଭାଗ୍ୟର ପ୍ରଶଂସା କରି କରି ଆପଣା ଧାମକୁ ଫେରିଗଲେ। ତା'ପରେ ମହାଲୀଳାନାୟକ ଦେବେଶ୍ୱର ଶମ୍ଭୁ ଲୋକାଗ୍ର ରୀତି ଅନୁସରଣ କରି ପ୍ରଥମେ ତୁମକୁ ସ୍ମରଣ କଲେ। ତୁମେ ଏହାକୁ ନିଜର ସୌଭାଗ୍ୟ ମଣି ଅତ୍ୟନ୍ତ ପ୍ରସନ୍ନ ଚିତ୍ତରେ ସେଠାରେ ଉପସ୍ଥିତ ହେଲ ଓ ଅବନତ ମସ୍ତକରେ ପ୍ରଣାମ କରି ବିନୀତଭାବରେ ଛିଡ଼ା ହୋଇରହିଲ।**

ଭଗବାନ ଶିବ କହିଲେ–**ନାରଦ! ତୁମ ଉପଦେଶରେ ଦେବୀ ପାର୍ବତୀ ବହୁତ ବଡ଼ ତପସ୍ୟା କଲେ ଓ ସେଥିରେ ସନ୍ତୁଷ୍ଟ ହୋଇ ମୁଁ ତାଙ୍କର ସ୍ୱାମୀ ହେବି ବୋଲି ତାଙ୍କୁ ବର ଦେଇଛି। ପାର୍ବତୀଙ୍କ ଭକ୍ତି ଦେଖି ମୁଁ ତାଙ୍କର ବଶ ହୋଇଯାଇଛି। ଏଣୁ ମୁଁ ନିଶ୍ଚୟ ତାଙ୍କୁ ବିବାହ କରିବି। ସପ୍ତର୍ଷିମାନେ ଲଗ୍ନଶୋଧନ କରିଦେଇଛନ୍ତି। ଆଜିଠାରୁ ସପ୍ତମ ଦିବସରେ ମୋର ବିବାହ ହେବ। ଏହି ଅବସରରେ ଲୌକିକ ରୀତି ନିର୍ବାହ କରି ମୁଁ ବୈବାହିକ ମହୋତ୍ସବ କରିବି। ମୁନେ! ତୁମେ ବିଷ୍ଣୁ ପ୍ରଭୃତି ସମସ୍ତ ଦେବତାଙ୍କୁ, ମୁନିଗଣଙ୍କୁ, ସିଦ୍ଧଗଣଙ୍କୁ ତଥା ଅନ୍ୟମାନଙ୍କୁ ମଧ୍ୟ ମୋ ପକ୍ଷରୁ ନିମନ୍ତ୍ରଣ ଦେଇଦିଅ। ସମସ୍ତେ ମୋ ଆଜ୍ଞାର ଗୁରୁତ୍ୱକୁ ବୁଝି ପ୍ରସନ୍ନଚିତ୍ତରେ ଉତ୍ସାହ ସହିତ ସଜବାଜ ହୋଇ ସ୍ତ୍ରୀ-ପୁତ୍ରଙ୍କ ସହିତ ଏଠାକୁ ଆସନ୍ତୁ।**

ବ୍ରହ୍ମା କହୁଛନ୍ତି–**ମୁନେ! ମହାଦେବଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ତୁମେ ଶୀଘ୍ର ସବୁଆଡ଼କୁ ଯାଇ ସେମାନଙ୍କୁ ନିମନ୍ତ୍ରଣ ଦେଲ। ତତ୍ପଶ୍ଚାତ୍ ଶମ୍ଭୁଙ୍କ ପାଖକୁ ଆସି ତାଙ୍କ ଆଜ୍ଞାନୁସାରେ ତୁମେ ସେଠାରେ ରହିଗଲ। ଭଗବାନ ଶିବ ମଧ୍ୟ ତାଙ୍କ ଗଣଙ୍କ ସହିତ ଉତ୍କଣ୍ଠାପୂର୍ବକ ଆମନ୍ତ୍ରିତ ଦେବତାମାନଙ୍କ ଆଗମନର ପ୍ରତୀକ୍ଷା କଲେ।**

ତାଙ୍କର ସମସ୍ତ ଗଣ ଗ୍ଭରିଆଡ଼େ ନୃତ୍ୟଗୀତର ଆୟୋଜନ ସହିତ ବହୁତ ବଡ଼ ଆନନ୍ଦ-ଉତ୍ସବ କଲେ । ଇତିମଧ୍ୟରେ ଭଗବାନ ବିଷ୍ଣୁ ସୁନ୍ଦର ବେଶ ଧାରଣ କରି ପତ୍ନୀଙ୍କ ସଙ୍ଗେ ସଦଳବଳ ଉପସ୍ଥିତ ହେଲେ ଏବଂ ଭକ୍ତିଭାବରେ ଶିବଙ୍କୁ ପ୍ରଣାମ କରି ତାଙ୍କ ଆଜ୍ଞାରେ ଉତ୍ତମ ସ୍ଥାନରେ ନିବାସ କଲେ । ମୁଁ ମଧ୍ୟ ମୋ ଗଣଙ୍କ ସହିତ କୈଳାସ ଆସିଲି ଏବଂ ଭଗବାନ ଶମ୍ଭୁଙ୍କୁ ପ୍ରଣାମ କରି ମୋର ସେବକମାନଙ୍କ ସହିତ ଆନନ୍ଦରେ ସେଠାରେ ରହିଲି । ତା'ପରେ ଇନ୍ଦ୍ରାଦି ଲୋକପାଳମାନେ ସପତ୍ନୀକ ସଜବାଜ ହୋଇ ନାନା ଉପଯୋଗୀ ସାମଗ୍ରୀ ସହିତ ଉପସ୍ଥିତ ହେଲେ । ସେମାନେ ସମସ୍ତେ ଆନନ୍ଦରେ ଉଲ୍ଲସିତ ଥିଲେ । ତା'ପରେ ନିମନ୍ତ୍ରିତ ମୁନିଗଣ, ନାଗଗଣ, ସିଦ୍ଧଗଣ, ଉପଦେବତା ଓ ଅନ୍ୟମାନେ ମଧ୍ୟ ଆନନ୍ଦ-ଉତ୍ସବ କରି କରି ସେଠାରେ ଆସି ପହଞ୍ଚିଲେ । ମହେଶ୍ୱର ସେଠାକୁ ଆଗତ ସମସ୍ତ ଦେବତା ଆଦିଙ୍କୁ ସହର୍ଷ ପୃଥକ୍ ପୃଥକ୍ ସ୍ୱାଗତ ଓ ସତ୍କାର କଲେ । କୈଳାସ ପର୍ବତ ଉତ୍ସବମୁଖର ହୋଇଗଲା । ଇତ୍ୟବସରରେ ଦେବାଙ୍ଗନାମାନେ ନୃତ୍ୟଗୀତ କଲେ । ଭଗବାନ ଶମ୍ଭୁଙ୍କ ବୈବାହିକ ଯାତ୍ରା ସମ୍ପନ୍ନ କରାଇବାକୁ ଆସିଥିବା ବିଷ୍ଣୁ ପ୍ରମୁଖ ଦେବତାମାନେ ଯଥାସ୍ଥାନରେ ନିବାସ କଲେ ଏବଂ ଶିବଙ୍କ ଆଜ୍ଞା ପାଇ ସେମାନଙ୍କୁ ଦିଆ ଯାଇଥିବା ଦାୟିତ୍ୱକୁ ନିଜ କାର୍ଯ୍ୟ ମନେ କରି ସୁଗ୍ଭରୁରୂପେ ସମ୍ପନ୍ନ କରିବାକୁ ଲାଗିଲେ ଏବଂ ଏହାକୁ ହିଁ ଶିବଙ୍କର ସେବା ବୋଲି ମଣିଲେ । ସପ୍ତମାତୃକା ଅତି ଆନନ୍ଦରେ ଶିବଙ୍କୁ ଯଥାଯୋଗ୍ୟ ଆଭୂଷଣ ପିନ୍ଧାଇଲେ । ମୁନିଶ୍ରେଷ୍ଠ ! ପରମେଶ୍ୱର ଶିବଙ୍କର ଯାହା ସ୍ୱାଭାବିକ ବେଶ ଥିଲା, ତାହା ହିଁ ତାଙ୍କ ଇଚ୍ଛାରେ ତାଙ୍କର ଆଭୂଷଣ ସାମଗ୍ରୀ ହୋଇଗଲା । ଚନ୍ଦ୍ରମା ସ୍ୱୟଂ ତାଙ୍କର ମୁକୁଟ ସ୍ଥାନରେ ବିରାଜିତ ହେଲେ । ତାଙ୍କର ସୁନ୍ଦର ତୃତୀୟ ନେତ୍ର ହିଁ ହେଲା ତିଳକ । ମୁନେ ! କାନର ଆଭୂଷଣ ରୂପେ ଯେଉଁ ଦୁଇଟି ସର୍ପ ଥାଆନ୍ତି, ସେ ଦୁହେଁ ନାନା ପ୍ରକାର ରତ୍ନଖଚିତ ଦୁଇଟି କୁଣ୍ଡଳ ହୋଇଗଲେ । ଅନ୍ୟାନ୍ୟ ଅଙ୍ଗରେ ଥିବା ସର୍ପମାନେ ସେହିସବୁ ଅଙ୍ଗରେ ନାନା ପ୍ରକାରର ଅତ୍ୟନ୍ତ ରମଣୀୟ ରତ୍ନମୟ ଆଭୂଷଣ ହୋଇଗଲେ । ତାଙ୍କ ଶରୀରରେ ଯେଉଁ ଭସ୍ମ ଲାଗିଥିଲା, ତାହା ହୋଇଗଲା ଚନ୍ଦନ ଆଦି ଅଙ୍ଗରାଗ । ଗଜଚର୍ମ ଆଦି ପରିଧାନ ହୋଇଗଲା ସୁନ୍ଦର ଦିବ୍ୟ ଦୁକୂଳ ।

ତାଙ୍କର ରୂପ ଏତେ ସୁନ୍ଦର ହୋଇଗଲା ଯେ ତାହା ବର୍ଣ୍ଣନା କରିବା ଦୁଃସାଧ୍ୟ । ସେ ତ ସାକ୍ଷାତ୍ ଈଶ୍ୱର, ତେଣୁ ସେ ସମସ୍ତ ଐଶ୍ୱର୍ଯ୍ୟରେ ଭୂଷିତ ହୋଇଗଲେ । ତା'ପରେ ଦେବତା, ଯକ୍ଷ, ନାଗ, ଦାନବ, ପକ୍ଷୀ, ଅପ୍ସରା ଓ ମହର୍ଷିଗଣ ଆନନ୍ଦ-ଉତ୍ସବରେ ଉଲ୍ଲସିତ ହୋଇ ଭଗବାନ ଶିବଙ୍କ ସମୀପକୁ ଗଲେ ଏବଂ କହିଲେ—"ମହାଦେବ ! ମହେଶ୍ୱର ! ଆପଣ ଏଥର ମହାଦେବୀଙ୍କ ସଙ୍ଗେ ବିବାହ କରିବାକୁ ଆମ ସଙ୍ଗରେ ଗ୍ଭଲନ୍ତୁ । ଆମ ଉପରେ କୃପା କରନ୍ତୁ ।" ଏହାପରେ ଭଗବାନ ବିଷ୍ଣୁ ଶିବଙ୍କୁ ପ୍ରଣାମ କରି ଉପରୋକ୍ତ ପ୍ରସ୍ତାବର ଅନୁରୂପ କଥା କହିଲେ ।

ଭଗବାନ ବିଷ୍ଣୁ କହିଲେ—**ଶରଣାଗତବତ୍ସଳ !** ଦେବଦେବ ମହାଦେବ ! ପ୍ରଭୋ ! ଆପଣ ଭକ୍ତଜନଙ୍କ କାର୍ଯ୍ୟ ସିଦ୍ଧ କରିଥାନ୍ତି; ତେଣୁ ମୋର ଗୋଟିଏ ନିବେଦନ ଶୁଣନ୍ତୁ । କଲ୍ୟାଣକାରୀ ଶମ୍ଭୁ ! ଆପଣ ଗୃହ୍ୟସୂତ୍ରରେ କଥିତ ବିଧି ଅନୁସାରେ ଗିରିରାଜକୁମାରୀ ପାର୍ବତୀଙ୍କ ସଙ୍ଗେ ବିବାହକାର୍ଯ୍ୟ ସମ୍ପନ୍ନ କରନ୍ତୁ । ହର ! ଆପଣ ବିବାହବିଧି ସମ୍ପନ୍ନ କଲେ ତାହା ଜଗତରେ ବିଖ୍ୟାତ ହୋଇଯିବ । ତେଣୁ ନାଥ ! ଆପଣ କୁଳଧର୍ମ ଅନୁସାରେ

ପ୍ରେମପୂର୍ବକ ମଣ୍ଡପସ୍ଥାପନ ଓ ନାନ୍ଦୀମୁଖ ଶ୍ରାଦ୍ଧ କରି ଜଗତରେ ନିଜର ଯଶ ବିସ୍ତାର କରନ୍ତୁ।

ବ୍ରହ୍ମା କହୁଛନ୍ତି—ନାରଦ! ଭଗବାନ ବିଷ୍ଣୁ ଏପରି କହିବାରୁ ଲୋକାଗ୍ରରପରାୟଣ ପରମେଶ୍ୱର ଶମ୍ଭୁ ବିଧିପୂର୍ବକ ସମସ୍ତ କାର୍ଯ୍ୟ କଲେ। ସେ ମୋତେ ହିଁ ସମସ୍ତ ଆଭ୍ୟୁଦୟିକ କାର୍ଯ୍ୟ କରାଇବାର ଭାର ଦେଇଥିଲେ। ତେଣୁ ମୁନିଗଣଙ୍କୁ ସାଥିରେ ନେଇ ମୁଁ ସହର୍ଷ ସେସବୁ କାର୍ଯ୍ୟ ସମ୍ପନ୍ନ କଲି। ମହାମୁନେ! ସେତେବେଳେ କଶ୍ୟପ, ଅତ୍ରି, ବସିଷ୍ଠ, ଗୌତମ, ଭାଗୁରି, ଗୁରୁ, କଣ୍ୱ, ବୃହସ୍ପତି, ଶକ୍ତି, ଜମଦଗ୍ନି, ପରାଶର, ମାର୍କଣ୍ଡେୟ, ଶିଳାପାକ, ଅରୁଣପାଳ, ଅକୃତଶ୍ରମ, ଅଗସ୍ତ୍ୟ, ଚ୍ୟବନ, ଗର୍ଗ, ଶିଳାଦ, ଦଧୀଚି, ଉପମନ୍ୟୁ, ଭରଦ୍ୱାଜ, ଅକୃତବ୍ରଣ, ପିପ୍ପଳାଦ, କୁଶିକ, କୌତ୍ସ, ଶିଷ୍ୟଗଣଙ୍କ ସମେତ ବ୍ୟାସ ତଥା ସେଠାକୁ ଆସିଥିବା ଅନ୍ୟାନ୍ୟ ଋଷିମାନେ ମୋ ପରାମର୍ଶରେ ବିଧିପୂର୍ବକ ସେଠାରେ ଆଭ୍ୟୁଦୟିକ କର୍ମ କଲେ। ସେମାନେ ବେଦରେ ପାରଙ୍ଗମ ଥିଲେ। ତେଣୁ ବେଦୋକ୍ତ ବିଧିରେ ବୈବାହିକ ମଙ୍ଗଳାଚାର କରି ଋଗ୍‌ବେଦ, ଯଜୁର୍ବେଦ ଓ ସାମବେଦର ବିବିଧ ଉତ୍ତମ ସୂକ୍ତଦ୍ୱାରା ମହେଶ୍ୱରଙ୍କୁ ରକ୍ଷା କଲେ। ସେମାନେ ଆହୁରି ଅନେକ ପ୍ରକାର ମଙ୍ଗଳକାର୍ଯ୍ୟ କରାଇଲେ। ମୋର ଓ ଶମ୍ଭୁଙ୍କର ପ୍ରେରଣାରେ ସେମାନେ ବିଘ୍ନଶାନ୍ତି ନିମନ୍ତେ ପ୍ରୀତିପୂର୍ବକ ଗ୍ରହମାନଙ୍କୁ ଓ ମଣ୍ଡଳଦେବତାଙ୍କୁ ପୂଜା କଲେ। ସମସ୍ତ ପ୍ରକାର ଲୌକିକ ଓ ବୈଦିକ କର୍ମ ଯଥୋଚିତ ରୀତିରେ ସମ୍ପାଦିତ ହୋଇଯିବାରୁ ଭଗବାନ ଶିବ ସନ୍ତୋଷ ଲାଭ କଲେ ଏବଂ ପ୍ରସନ୍ନତାପୂର୍ବକ ବ୍ରାହ୍ମଣମାନଙ୍କୁ ପ୍ରଣାମ କଲେ। ତା'ପରେ ସର୍ବେଶ୍ୱର ମହାଦେବ ଦେବତା ଓ ବ୍ରାହ୍ମଣଙ୍କୁ ଅଗ୍ରଗାମୀ କରାଇ ନିଜେ ଗିରିରାଜ କୈଳାସରୁ ସହର୍ଷ ପ୍ରସ୍ଥାନ କଲେ। ନାନା ଲୀଳାକୁଶଳ ଭଗବାନ ଶମ୍ଭୁ ଦେବତା ଓ ବ୍ରାହ୍ମଣଙ୍କ ସହିତ କୈଳାସର ବାହାରକୁ ଯାଇ ଅଟକିଗଲେ। ସେତିକିବେଳେ ମହେଶ୍ୱରଙ୍କ ସନ୍ତୋଷ ନିମନ୍ତେ ଦେବତା ପ୍ରଭୃତି ମିଳିମିଶି ବାଦ୍ୟନାଦ ଓ ନୃତ୍ୟଗୀତ ସହିତ ବହୁତ ବଡ଼ ଆନନ୍ଦ-ଉତ୍ସବ କଲେ। (ଅଧ୍ୟାୟ ୩୯)



## ବରଯାତ୍ରୀଙ୍କ ସହିତ ଶିବଙ୍କର ହିମାଳୟ ଅଭିମୁଖେ ଯାତ୍ରା

ବ୍ରହ୍ମା କହିଲେ—ମୁନେ! ଏହାପରେ ଭଗବାନ ଶମ୍ଭୁ ନନ୍ଦୀ ପ୍ରଭୃତି ଗଣଙ୍କୁ ଡାକି ସେମାନଙ୍କୁ ହିମାଚଳପୁରୀ ଯିବାକୁ ଆଜ୍ଞା ଦେଇ କହିଲେ—"ତୁମେ ଅଳ୍ପ କିଛି ଗଣଙ୍କୁ ଏଠାରେ ଛାଡ଼ି ବାକି ସମସ୍ତେ ମୋ ସଙ୍ଗେ ଆନନ୍ଦ-ଉତ୍ସାହର ସହ ଗିରିରାଜ ହିମବାନଙ୍କ ନଗରକୁ ଚାଲ।" ଭଗବାନଙ୍କ ଆଜ୍ଞା ପାଇବା ମାତ୍ରେ ଗଣେଶ୍ୱର ଶଙ୍ଖକର୍ଣ୍ଣ, କେକରାକ୍ଷ, ବିକୃତ, ବିଶାଖ, ପାରିଜାତ, ବିକୃତାନନ, ଦୁନ୍ଦୁଭ, କପାଳ, ସଂଦାରକ, କନ୍ଦୁକ, କୁଣ୍ଡକ, ବିଷ୍ଟମ୍ଭ, ପିପ୍ପଳ, ସନାଦକ, ଆବେଶନ, କୁଣ୍ଡ, ପର୍ବତକ, ଚନ୍ଦ୍ରତାପନ, କାଳ, କାଳକ, ମହାକାଳ, ଅଗ୍ନିକ, ଅଗ୍ନିମୁଖ, ଆଦିତ୍ୟମୂର୍ଦ୍ଧା, ଧନାବହ, ସନ୍ନାହ, କୁମୁଦ, ଅମୋଘ, କୋକିଳ, ସୁମନ୍ତ୍ର, କାକପାଦୋଦର, ସନ୍ତାନକ, ମଧୁପିଙ୍ଗ, କୋକିଳ, ପୂର୍ଣ୍ଣଭଦ୍ର, ନୀଳ, ଚତୁର୍ବକ୍ତ୍ର, କରଣ, ଅହିରୋମକ, ଯଜ୍ଞାକ୍ଷ, ଶତମନ୍ୟୁ, ମେଘମନ୍ୟୁ, କାଷ୍ଠାଙ୍ଗୁଷ୍ଠ, ବିରୂପାକ୍ଷ, ସୁକେଶ, ବୃଷଭ, ସନାତନ, ତାଳକେତୁ, ଷଣ୍ମୁଖ, ଚୈତ୍ର, ସ୍ୱୟଂପ୍ରଭୁ, ଲକୁଳୀଶ, ଲୋକାନ୍ତକ, ଦୀପ୍ତାତ୍ମା, ଦୈତ୍ୟାନ୍ତକ, ଭୃଙ୍ଗିରିଟି, ଦେବଦେବପ୍ରିୟ, ଅଶନି, ଭାନୁକ, ପ୍ରମଥ, ବୀରଭଦ୍ର

ପ୍ରଭୃତି ସେମାନଙ୍କର କୋଟି କୋଟି ଗଣ ଓ ଭୂତଙ୍କୁ ସାଥିରେ ଧରି ବାହାରିଲେ । ନନ୍ଦୀ ଆଦି ଗଣରାଜ ଅସଂଖ୍ୟ ଗଣଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ତଥା କ୍ଷେତ୍ରପାଳ ଓ ଭୈରବ ମଧ୍ୟ କୋଟି କୋଟି ଗଣଙ୍କୁ ନେଇ ଆନନ୍ଦ-ଉଲ୍ଲାସରେ ଉତ୍ସାହର ସହ ଚାଲିଲେ । ସେମାନଙ୍କର ହଜାରେ ଲେଖାଏଁ ବାହୁ ଥିଲା, ମୁଣ୍ଡରେ ଜଟାମୁକୁଟ ଥିଲା, ମସ୍ତକରେ ଚନ୍ଦ୍ର ଓ ଗଳାରେ ନୀଳ ଚିହ୍ନ ଥିଲା । ସମସ୍ତେ ତ୍ରିନେତ୍ରଧାରୀ ଥିଲେ, ରୁଦ୍ରାକ୍ଷର ଆଭୂଷଣ ପିନ୍ଧିଥିଲେ, ଉତ୍ତମ ଭସ୍ମ ଧାରଣ କରିଥିଲେ ଏବଂ ହାର, କୁଣ୍ଡଳ, କେୟୂର ଓ ମୁକୁଟ ଆଦିରେ ଅଳଂକୃତ ଥିଲେ । ଏହିରୂପେ ଦେବତା ତଥା ଅନ୍ୟାନ୍ୟ ଗଣଙ୍କୁ ସଙ୍ଗରେ ଧରି ଭଗବାନ ଶଙ୍କର ନିଜ ବିବାହ ନିମନ୍ତେ ହିମବାନଙ୍କ ନଗର ଅଭିମୁଖେ ଯାତ୍ରା କଲେ । ଶତ୍ରୁଙ୍କୁ ଭୟଭୀତ କରିଦେଉଥିବା ଚଣ୍ଡୀଦେବୀ ରୁଦ୍ରଦେବଙ୍କ ଭଉଣୀ ସାଜି ଖୁବ୍ ଆନନ୍ଦ-ଉତ୍ସବ କରି କରି ପ୍ରସନ୍ନ ଚିତ୍ତରେ ସେଠାରେ ଆସି ପହଞ୍ଚିଲେ । ସେ ସର୍ପମାନଙ୍କୁ ଆଭୂଷଣରୂପେ ପିନ୍ଧିଥିଲେ । ସେ ପ୍ରେତ ଉପରେ ଆରୂଢ଼ ହୋଇ ମୁଣ୍ଡରେ ଗୋଟିଏ ସୁନାକଳସ ମୁଣ୍ଡାଇଥିଲେ । କଳସଟି ଅତ୍ୟନ୍ତ ଦୀପ୍ତିମାନ୍ ଥିଲା ।

ମୁନେ ! ସେଠାରେ କୋଟି କୋଟି ବିକରାଳ ରୂପଧାରୀ ଦିବ୍ୟ ଭୂତଗଣ ଶୋଭା ପାଉଥିଲେ । ସେମାନଙ୍କର ରୂପ-ରଙ୍ଗ ଅନେକ ପ୍ରକାର ଥିଲା । ଡମରୁର ଡିମିଡିମି ଘୋଷରେ, ଭେରୀମାନଙ୍କର ଭୀଷଣ ନାଦରେ ଓ ଶଙ୍ଖଗୁଡ଼ିକର ଗମ୍ଭୀର ଧ୍ୱନିରେ ଖୁବ୍ କୋଳାହଳ ହେଉଥିଲା । ତାହା ଜଗତର ମଙ୍ଗଳ କରିବା ସହିତ ଅମଙ୍ଗଳ ଖଣ୍ଡନ କରୁଥିଲା । ଦେବଗଣ ଶିବଗଣଙ୍କ ପଛେ ପଛେ ଚାଲୁଥିଲେ ଏବଂ ଉତ୍ସୁକତାରେ ବରଯାତ୍ରୀଙ୍କର ଅନୁସରଣ କରୁଥିଲେ । ସିଦ୍ଧ ଓ ଲୋକପାଳମାନେ ଦେବତାଙ୍କ ସଙ୍ଗରେ ଥିଲେ । ଦେବମଣ୍ଡଳୀର ମଧ୍ୟଭାଗରେ ଗରୁଡ଼ପୃଷ୍ଠରେ ବିରାଜମାନ ଥିଲେ ଲକ୍ଷ୍ମୀପତି ବିଷ୍ଣୁ । ମୁନେ ! ବିଷ୍ଣୁଙ୍କ ମସ୍ତକ ଉପରେ ମହାନ୍ ଛତ୍ର ଶୋଭା ପାଉଥିଲା । ତାଙ୍କ ଦୁଇପାର୍ଶ୍ୱରେ ଚାମର ପକାଯାଉଥିଲା । ସେ ତାଙ୍କ ପାର୍ଷଦଙ୍କ ଦ୍ୱାରା ପରିବେଷ୍ଟିତ ଥିଲେ । ତାଙ୍କର ଶୋଭାଶାଳୀ ପାର୍ଷଦମାନେ ତାଙ୍କୁ ନିଜ ରୁଚି ଅନୁସାରେ ଆଭୂଷଣ ପ୍ରଭୃତିରେ ମଣ୍ଡିତ କରିଥିଲେ । ସେହିପରି ମୁଁ ମଧ୍ୟ ମୂର୍ତ୍ତିମାନ୍ ବେଦ, ପୁରାଣ, ଆଗମ, ସନକାଦି ସିଦ୍ଧଗଣ, ପ୍ରଜାପତି, ମୋର ପୁତ୍ରଗଣ ତଥା ଅନ୍ୟାନ୍ୟ ପରିଜନଙ୍କ ମେଳରେ ଶୋଭାମଣ୍ଡିତ ହୋଇ ଯାତ୍ରା କରୁଥିଲି ଏବଂ ଶିବଙ୍କ ସେବାରେ ତତ୍ପର ଥିଲି । ଦେବରାଜ ଇନ୍ଦ୍ର ମଧ୍ୟ ନାନା ପ୍ରକାର ଅଳଂକାରରେ ବିଭୂଷିତ ହୋଇ ଏବଂ ଐରାବତ ହସ୍ତୀ ପୃଷ୍ଠରେ ଆରୂଢ଼ ହୋଇ ତାଙ୍କ ସୈନ୍ୟଙ୍କ ଗହଣରେ ଶୋଭା ପାଉଥିଲେ । ବରଯାତ୍ରୀଙ୍କ ସଙ୍ଗରେ ଅନେକ ଋଷିମୁନି ମଧ୍ୟ ଆପଣା ତେଜରେ ସୁଶୋଭିତ ହେଉଥିଲେ । ସେମାନେ ଶିବଙ୍କ ବିବାହ ଦେଖିବାକୁ ଅତ୍ୟନ୍ତ ଉତ୍କଣ୍ଠିତ ଥିଲେ । ଶାକିନୀ, ଯାତୁଧାନ, ବେତାଳ, ବ୍ରହ୍ମରାକ୍ଷସ, ଭୂତ, ପ୍ରେତ, ପିଶାଚ, ପ୍ରମଥାଦି ଗଣ; ତୁମ୍ବୁରୁ, ନାରଦ, ହାହା, ହୂହୂ ଆଦି ଶ୍ରେଷ୍ଠ ଗନ୍ଧର୍ବ ଓ କିନ୍ନର ମଧ୍ୟ ସହର୍ଷ ବାଦ୍ୟନାଦ କରି କରି ଚାଲୁଥିଲେ । ସମସ୍ତ ଜଗନ୍ମାତା, ଦେବକନ୍ୟା, ଗାୟତ୍ରୀ, ସାବିତ୍ରୀ, ଲକ୍ଷ୍ମୀ ଓ ଅନ୍ୟାନ୍ୟ ଦେବାଙ୍ଗନା ତଥା ଦେବପତ୍ନୀମାନେ—ଯେଉଁମାନେ ଜଗତର ମାତା ଅଟନ୍ତି, ସେମାନେ ସମସ୍ତେ ଶିବଙ୍କର ବିବାହ ହେଉଥିବା ଜାଣି ବଡ଼ ଆନନ୍ଦରେ ସେଥିରେ ସମ୍ମିଳିତ ହୋଇଥିଲେ । ବୃଷଭ ଭଗବାନ ଶିବଙ୍କ ବାହନ । ବେଦ, ଶାସ୍ତ୍ର, ସିଦ୍ଧ ଓ ମହର୍ଷି ତାହାଙ୍କୁ ସାକ୍ଷାତ୍ ଧର୍ମର ସ୍ୱରୂପ ବୋଲି କହିଥାନ୍ତି । ତାଙ୍କ ଅଙ୍ଗକାନ୍ତି ଶୁଦ୍ଧ ସ୍ଫଟିକ ପରି ଉଜ୍ଜ୍ୱଳ ଓ ସେ ସର୍ବାଙ୍ଗସୁନ୍ଦର । ଧର୍ମବତ୍ସଳ ମହାଦେବ ସେହି

ବୃଷଭ ଉପରେ ଆରୂଢ଼ ହୋଇ ସମସ୍ତଙ୍କ ମେଳରେ ଯାତ୍ରା କରି ଅତ୍ୟନ୍ତ ସୁଶୋଭିତ ହେଉଥିଲେ । ଦେବର୍ଷିଙ୍କ ସମୁଦାୟ ତାଙ୍କ ସେବାରେ ଉପସ୍ଥିତ ଥିଲେ । ନାନା ପ୍ରକାରେ ଅଳଂକୃତ ମହେଶ୍ୱର ଏହିରୂପେ ଦେବତା ଓ ମହର୍ଷିଙ୍କ ଗହଣରେ ଶିବାଙ୍କ ପାଣିଗ୍ରହଣ କରିବା ପାଇଁ ହିମାଳୟଙ୍କ ଭବନକୁ ଯିବାବେଳେ ଅତ୍ୟନ୍ତ ସୁଶୋଭିତ ହେଉଥିଲେ । ନାରଦ ! ମୁଁ ଶିବଙ୍କ ଚରିତ୍ର କହିବା କ୍ରମରେ ତାଙ୍କ ବରଯାତ୍ରାକାଳୀନ ଉତ୍ସବମୟ ପରିବେଶର ବିବରଣ ଦେଲି । ଏବେ ହିମାଳୟଙ୍କ ନଗରରେ ଯେଉଁ ସୁନ୍ଦର ଲୀଳାମାନ ହେଲା, ତାହା ଶୁଣ ।

(ଅଧ୍ୟାୟ ୪୦)



## ଶିବଙ୍କ ବରଯାତ୍ରୀଙ୍କୁ ହିମବାନଙ୍କର ସ୍ୱାଗତ, ସମସ୍ତଙ୍କର ଅଭିନନ୍ଦନ ଓ ବନ୍ଦନ, ମେନା ନାରଦଙ୍କୁ ଡକାଇ ତାଙ୍କ ଠାରୁ ସମସ୍ତଙ୍କର ପରିଚୟ ନେବା ଏବଂ ଶିବଙ୍କୁ ଓ ତାଙ୍କ ଗଣଙ୍କୁ ଦେଖି ଭୟରେ ମୂର୍ଚ୍ଛିତ ହେବା

ବ୍ରହ୍ମା କହୁଛନ୍ତି—ଏହାପରେ ମହାଦେବଙ୍କ ଆଜ୍ଞା ନେଇ ଭଗବାନ ବିଷ୍ଣୁ ନାରଦଙ୍କୁ ହିମବାନଙ୍କ ଘରକୁ ପଠାଇଲେ । ନାରଦ ସେଠାକାର ଅଦ୍ଭୁତ ସାଜସଜ୍ଜା ଦେଖି ଚକିତ ହୋଇଗଲେ । ବିଶ୍ୱକର୍ମା ବିଷ୍ଣୁ, ବ୍ରହ୍ମା ପ୍ରଭୃତି ସକଳ ଦେବତାଙ୍କର ଏବଂ ନାରଦାଦି ଋଷିଙ୍କର ଯେଉଁ ସବୁ ଚେତନ ପରି ପ୍ରତୀତ ହେଉଥିବା ମୂର୍ତ୍ତି ତିଆରି କରାଇଥିଲେ, ସେଗୁଡ଼ିକୁ ଦେଖି ନାରଦ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ହିମାଳୟ ନାରଦଙ୍କର ସ୍ୱାଗତ-ସତ୍କାର କଲେ । ତା'ପରେ ବରଯାତ୍ରୀଙ୍କୁ ପାଛୋଟି ଆଣିବା ପାଇଁ ମୈନାକ ପ୍ରଭୃତି ପର୍ବତଙ୍କୁ ଦେବର୍ଷିଙ୍କ ସଙ୍ଗରେ ପଠାଇଲେ । କିଛି ସମୟ ପରେ ବିଷ୍ଣୁ ପ୍ରଭୃତି ଦେବତା ଏବଂ ଭଗବାନ ଶିବ ନିଜ ନିଜ ଗଣଙ୍କ ସହିତ ହିମାଳୟଙ୍କ ନଗର ସମୀପରେ ପହଞ୍ଚିଲେ ।

ଗିରିରାଜ ହିମବାନ ଯେତେବେଳେ ଜାଣିବାକୁ ପାଇଲେ ଯେ ସର୍ବବ୍ୟାପୀ ଶଙ୍କର ନଗର ନିକଟରେ ପହଞ୍ଚିଗଲେଣି, ତାଙ୍କ ଆନନ୍ଦର ଠିକଣା ରହିଲା ନାହିଁ । ସେ ଅନେକ ପ୍ରକାର ସାମଗ୍ରୀ ସହିତ ଅନେକ ପର୍ବତ ଓ ବ୍ରାହ୍ମଣମାନଙ୍କୁ ମହାଦେବଙ୍କ ସଙ୍ଗେ ବାର୍ତ୍ତାଳାପ କରିବା ନିମନ୍ତେ ପଠାଇଲେ । ନିଜେ ମଧ୍ୟ ଭକ୍ତିର ସହ ନିଜ ପ୍ରାଣପ୍ରିୟ ମହେଶ୍ୱରଙ୍କ ଦର୍ଶନ ନିମନ୍ତେ ଅଗ୍ରସର ହେଲେ । ସେତେବେଳେ ତାଙ୍କ ହୃଦୟ ପ୍ରେମାଧିକ୍ୟ ହେତୁ ଉଲ୍ଲସିତ ହେଉଥିଲା ଏବଂ ସେ ନିଜ ସୌଭାଗ୍ୟର ପ୍ରଶଂସା କରୁଥିଲେ । ସେଠାରେ ଦେବଗଣଙ୍କ ସେନାକୁ ଦେଖି ତାଙ୍କୁ ବହୁତ ଆଶ୍ଚର୍ଯ୍ୟ ଲାଗିଲା ଏବଂ ସେ ନିଜକୁ ଧନ୍ୟ ମଣି ସେମାନଙ୍କ ସମ୍ମୁଖକୁ ଗଲେ । ଦେବତା ଓ ପର୍ବତ ପରସ୍ପର ସହିତ ଭୋଟାଭେଟି ହୋଇ ପ୍ରସନ୍ନ ହେଲେ ଏବଂ ସମସ୍ତେ ନିଜକୁ କୃତକୃତ୍ୟ ମଣିଲେ । ମହାଦେବଙ୍କୁ ସମ୍ମୁଖରେ ଦେଖି ହିମାଳୟ ତାଙ୍କୁ ପ୍ରଣାମ କଲେ ଏବଂ ସମସ୍ତ ପର୍ବତ ଓ ବ୍ରାହ୍ମଣମାନେ ସଦାଶିବଙ୍କ ବନ୍ଦନା କଲେ । ପ୍ରଭୁ ବୃଷଭ ଉପରେ ବିରାଜମାନ ଥିଲେ । ତାଙ୍କ ମୁଖ ପ୍ରସନ୍ନ ଥିଲା । ସେ ନାନା ପ୍ରକାର ଆଭୂଷଣରେ ମଣ୍ଡିତ ଥିଲେ ଓ ନିଜ ଦିବ୍ୟ ଅଙ୍ଗର ଲାବଣ୍ୟରେ ଚତୁର୍ଦ୍ଦିଗକୁ ଉଦ୍ଭାସିତ କରୁଥିଲେ । ତାଙ୍କର ଶ୍ରୀଅଙ୍ଗ ଅତ୍ୟନ୍ତ ସୂକ୍ଷ୍ମ ଓ ସୁନ୍ଦର ନୂତନ ପାଟବସ୍ତ୍ରରେ ଆଚ୍ଛାଦିତ ଥିଲା । ମସ୍ତକରେ ରତ୍ନଜଟିତ ମୁକୁଟ ଅତ୍ୟନ୍ତ ମନୋହର ଦିଶୁଥିଲା । ସେ ନିଜର ପବିତ୍ର ପ୍ରଭା ବିକଶିତ କରିବା ସହିତ ମୃଦୁ ମୃଦୁ

ହସୁଥିଲେ । ତାଙ୍କର ପ୍ରତ୍ୟେକ ଅଙ୍ଗରେ ସର୍ପର ଭୂଷଣମାନ ଥିଲା ଏବଂ ତାଙ୍କର ଅଙ୍ଗକାନ୍ତି ଅତ୍ୟନ୍ତ ଅଦ୍ଭୁତ ଥିଲା । ସୁରେଶ୍ୱରଗଣ ହାତରେ ଚାମର ଧରି ଦିବ୍ୟକାନ୍ତିସମ୍ପନ୍ନ ମହେଶ୍ୱରଙ୍କ ସେବା କରୁଥିଲେ । ତାଙ୍କ ବାମପାର୍ଶ୍ୱରେ ଭଗବାନ ବିଷ୍ଣୁ ଓ ଦକ୍ଷିଣପାର୍ଶ୍ୱରେ ମୁଁ ଥିଲି । ପଛରେ ଥିଲେ ଦେବରାଜ ଇନ୍ଦ୍ର । ଅନ୍ୟ ଦେବତାମାନେ ପଛରେ ଓ କଡ଼ରେ ଥିଲେ । ଦେବତା ପ୍ରଭୃତି ଲୋକକଲ୍ୟାଣକାରୀ ଶଙ୍କରଙ୍କୁ ସ୍ତୁତି କରି କରି ଚାଲିଥିଲେ । ଶିବ ସ୍ୱେଚ୍ଛାରେ ହିଁ ଦିବ୍ୟ ଶରୀର ଧାରଣ କରିଥିଲେ । ବାସ୍ତବରେ ସେ ତ ସାକ୍ଷାତ୍ ପରବ୍ରହ୍ମ ପରମାତ୍ମା, ସମସ୍ତଙ୍କର ଈଶ୍ୱର, ଉପାସକଙ୍କର ମନୋବାଞ୍ଛିତ ଫଳପ୍ରଦାତା, କଲ୍ୟାଣମୟ ଗୁଣରେ ଯୁକ୍ତ, ପ୍ରାକୃତ ଗୁଣରହିତ, ଭକ୍ତାଧୀନ, କରୁଣାକର, ପ୍ରକୃତି ଓ ପୁରୁଷଠାରୁ ଊର୍ଦ୍ଧ୍ୱରେ ତଥା ସଚ୍ଚିଦାନନ୍ଦସ୍ୱରୂପ ଅଟନ୍ତି । ହିମବାନ ତାଙ୍କୁ ଦର୍ଶନ କରିବା ପରେ ତାଙ୍କ ବାମପାର୍ଶ୍ୱରେ ନାନା ଆଭୂଷଣରେ ମଣ୍ଡିତ ଓ ଗରୁଡ଼ପୃଷ୍ଠରେ ଆରୂଢ଼ ଅଚ୍ୟୁତଙ୍କୁ ମଧ୍ୟ ଦର୍ଶନ କଲେ । ମୁନେ ! ଶିବଙ୍କ ଦକ୍ଷିଣପାର୍ଶ୍ୱରେ ମୋତେ ସେ ଚତୁର୍ମୁଖରେ ଶୋଭମାନ, ମହାଶୋଭାଶାଳୀ ଓ ସପରିବାର ବିରାଜମାନ ଥିବା ଦେଖିଲେ । ଆମେ ଦୁଇ ଦେବେଶ୍ୱର ଭଗବାନ ଶିବଙ୍କର ସଦା ଅତ୍ୟନ୍ତ ପ୍ରିୟ । ଆମକୁ ଦେଖି ଗିରିରାଜ ସପରିବାର ଆଦରପୂର୍ବକ ପ୍ରଣାମ କଲେ । ଏହାଛଡ଼ା ଶିବଙ୍କ ପଛରେ ଓ କଡ଼ରେ ବିଦ୍ୟମାନ ଥିବା ଦୀପ୍ତିମାନ୍ ଦେବତା ପ୍ରଭୃତିଙ୍କୁ ଦେଖି ଗିରିରାଜ ସମସ୍ତଙ୍କ ସମ୍ମୁଖରେ ମସ୍ତକ ଅବନତ କଲେ । ତା'ପରେ ଶିବଙ୍କ ଆଜ୍ଞାରେ ହିମବାନ ଆଗେ ଆଗେ ନିଜ ନଗର ଆଡ଼କୁ ଅଗ୍ରସର ହେଲେ । ତାଙ୍କ ପଛେ ପଛେ ମହାଦେବ, ଭଗବାନ ବିଷ୍ଣୁ ଓ ସ୍ୱୟମ୍ଭୂ ବ୍ରହ୍ମା, ମୁନିଗଣ ଓ ଦେବଗଣ ମଧ୍ୟ ଶୀଘ୍ର ଶୀଘ୍ର ଚାଲିଲେ । ମୁନେ ! ସେତେବେଳେ ମେନାଙ୍କ ମନରେ ଶିବଙ୍କୁ ଦର୍ଶନ କରିବାକୁ ପ୍ରବଳ ଇଚ୍ଛା ହେଲା । ତେଣୁ ସେ ତୁମକୁ ଡାକିଲେ । ଶିବଙ୍କ ଦ୍ୱାରା ପ୍ରେରିତ ହୋଇ ତାଙ୍କ ହାର୍ଦ୍ଦିକ ଅଭିପ୍ରାୟ ପୂର୍ଣ୍ଣ କରିବାକୁ ତୁମେ ସେଠାକୁ ଗଲ ।

ମେନା ତୁମକୁ ପ୍ରଣାମ କରି କହିଲେ–ମୁନେ ! ମୁଁ ପ୍ରଥମେ ଗିରିଜାର ବରକୁ ଦେଖିବାକୁ ଚାହୁଁଛି । ଶିବଙ୍କ ରୂପ କିପରି, ଯାହାଙ୍କ ପାଇଁ ମୋ ଝିଅ ଏତେ ବଡ଼ ତପସ୍ୟା କରିଥିଲା?

ତାତ ! ସେତେବେଳେ ଭଗବାନ ଶିବ ମଧ୍ୟ ମେନାଙ୍କ ହୃଦୟର ଅହଂକାରକୁ ଜାଣି ପାରି କିଛି ଅଦ୍ଭୁତ ଲୀଳା କରିବାକୁ ଯାଇ ବିଷ୍ଣୁଙ୍କୁ ଓ ମୋତେ କହିଲେ–

ଶିବ କହିଲେ–ତାତ ! ଆପଣ ଦୁହେଁ ମୋ ଆଜ୍ଞାରେ ପୃଥକ୍ ପୃଥକ୍ ହୋଇ ଦେବଗଣଙ୍କ ସହିତ ପ୍ରଥମେ ଗିରିରାଜଙ୍କ ନିବାସ ପର୍ଯ୍ୟନ୍ତ ଚାଲିଯାଆନ୍ତୁ । ମୁଁ ପଛେ ପଛେ ଯାଉଛି ।

ଏକଥା ଶୁଣି ଶ୍ରୀହରି ଦେବତାମାନଙ୍କୁ ଡାକି ସେହିପରି କରିବାକୁ କହିଦେଲେ । ଶିବଚିନ୍ତନ-ପରାୟଣ ସକଳ ଦେବତା ଖୁବ୍ ଶୀଘ୍ର ସେହିପରି ବ୍ୟବସ୍ଥା କରି ଉତ୍ସୁକତାପୂର୍ବକ ପୃଥକ୍ ପୃଥକ୍ ଚାଲିଲେ । ମୁନେ ! ମେନା ନିଜ ପ୍ରାସାଦର ସବୁଠାରୁ ଉପର ଭବନରେ ତୁମ ସହିତ ଛିଡ଼ା ହୋଇଥିଲେ । ସେତିକିବେଳେ ଭଗବାନ ବିଶ୍ୱେଶ୍ୱର ନିଜକୁ ଏପରି ବେଶଭୂଷାରେ ପ୍ରଦର୍ଶିତ କଲେ, ଯଦ୍ଦ୍ୱାରା ମେନାଙ୍କ ହୃଦୟକୁ ଗଭୀର ଆଘାତ ଲାଗିବ । ବରଯାତ୍ରୀଙ୍କ ଶୋଭାଯାତ୍ରାରେ ସର୍ବପ୍ରଥମେ ସୁନ୍ଦର ବେଶଭୂଷାରେ ମଣ୍ଡିତ ବସୁ, ଗନ୍ଧର୍ବ ପ୍ରଭୃତି ଖୁବ୍ ଆଡ଼ମ୍ବର ସହକାରେ ବିବିଧ ବାହନରେ ଚଢ଼ି ନାନା ବାଦ୍ୟନାଦ ସହିତ ପତାକା ପ୍ରଭୃତି ଉଡ଼ାଇ ଉଡ଼ାଇ ଆସିଲେ । ତା'ପରେ ମଣିଗ୍ରୀବାଦି ଯକ୍ଷ, ତା'ପରେ କ୍ରମାନ୍ୱୟରେ ଯମରାଜ, ନିର୍ଋତି, ବରୁଣ,

ବାୟୁ, କୁବେର, ଈଶାନ, ଦେବରାଜ ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ, ଭୃଗୁ ଆଦି ମୁନୀଶ୍ୱର ତଥା ବ୍ରହ୍ମା ଆସିଲେ । ସମସ୍ତେ ଉତ୍ତରୋତ୍ତର ଜଣେ ଅନ୍ୟଠାରୁ ବିଶେଷ ସୁନ୍ଦର ଶୋଭାମୟ ରୂପ-ଗୁଣରେ ସମ୍ପନ୍ନ ଥିଲେ । ଏଥିମଧ୍ୟରୁ ପ୍ରତ୍ୟେକ ଦଳର ସ୍ୱାମୀଙ୍କୁ ଦେଖି ମେନା ପଚାରୁଥିଲେ "କ'ଣ ଏଇ ହେଉଛନ୍ତି ଶିବ?" ନାରଦ କହନ୍ତି—"ନା-ନା, ଏ ତ ଶିବଙ୍କ ସେବକ ।" ମେନା ଏହା ଶୁଣି ହର୍ଷିତ ହୁଅନ୍ତି ଏବଂ ମନେ ମନେ କହନ୍ତି, ଶିବଙ୍କ ସେବକମାନେ ଯଦି ଏତେ ସୁନ୍ଦର, ତେବେ ଏମାନଙ୍କ ସ୍ୱାମୀ ଶିବ କେତେ ସୁନ୍ଦର ହୋଇ ନ ଥିବେ !

ଇତିମଧ୍ୟରେ ବିଷ୍ଣୁ ସେଠାରେ ଉପସ୍ଥିତ ହେଲେ । ସେ ଅତ୍ୟନ୍ତ ଶୋଭାସମ୍ପନ୍ନ, ଶ୍ରୀମାନ୍, ନବଜଳଧର ପରି ଶ୍ୟାମଳ ଓ ଚତୁର୍ଭୁଜଧାରୀ ଥିଲେ । ତାଙ୍କ ଲାବଣ୍ୟ କୋଟି କନ୍ଦର୍ପଙ୍କୁ ମଧ୍ୟ ଲଜ୍ଜିତ କରୁଥିଲା । ସେ ପୀତାମ୍ବର ଧାରଣ କରି ନିଜ ସହଜ ପ୍ରଭାରେ ଉଦ୍‌ଭାସିତ ହେଉଥିଲେ । ତାଙ୍କର ସୁନ୍ଦର ନେତ୍ର ପ୍ରଫୁଲ୍ଲିତ ପଦ୍ମର ଶୋଭାକୁ ନିନ୍ଦା କରୁଥିଲା । ତାଙ୍କ ଆକୃତିରୁ ଶାନ୍ତିର ବୃଷ୍ଟି ହେଉଥିଲା । ପକ୍ଷୀରାଜ ଗରୁଡ଼ ଥିଲେ ତାଙ୍କର ବାହନ । ଶଙ୍ଖଚକ୍ରାଦି ଲକ୍ଷଣରେ ସଂଯୁକ୍ତ, ମୁକୁଟାଦିରେ ବିଭୂଷିତ, ବକ୍ଷଃସ୍ଥଳରେ ଶ୍ରୀବତ୍ସ ଚିହ୍ନ ଧାରଣ କରି ଲକ୍ଷ୍ମୀପତି ବିଷ୍ଣୁ ନିଜ ଅପ୍ରମେୟ ପ୍ରଭାପୁଞ୍ଜରେ ଶୋଭିତ ହେଉଥିଲେ । ତାଙ୍କୁ ଦେଖିବାମାତ୍ରେ ମେନାଙ୍କ ନେତ୍ର ଚକିତ ହୋଇଗଲା । ସେ ଅପୂର୍ବ ହର୍ଷରେ କହି ଉଠିଲେ—"ଏ ନିଶ୍ଚୟ ମୋ ଶିବାର ବର ସାକ୍ଷାତ୍ ଭଗବାନ ଶିବ ହୋଇଥିବେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।"

ମୁନେ ! ତୁମେ ତ ଲୀଳା କରିବାରେ ବଡ଼ ଧୁରନ୍ଧର । ତୁମେ ମେନାଙ୍କ କଥା ଶୁଣି କହିଲ—"ନା-ନା ଦେବୀ ! ଏ ପାର୍ବତୀଙ୍କ ବର ନୁହନ୍ତି, ଏ ତ କେଶବ । ଏ ହେଉଛନ୍ତି ଭଗବାନ ଶିବଙ୍କ ସମସ୍ତ କାର୍ଯ୍ୟର ଅଧିକାରୀ; ଏ ଶିବଙ୍କର ଅତି ପ୍ରିୟ । ପାର୍ବତୀଙ୍କ ବର ଶିବ ତ ଏହାଙ୍କ ଠାରୁ ଆହୁରି ଅଧିକ ଶ୍ରେଷ୍ଠ । ତାଙ୍କ ଶୋଭାର ବର୍ଣ୍ଣନା ମୁଁ ଆଦୌ କରି ପାରିବି ନାହିଁ । ସେ ତ ସମଗ୍ର ବ୍ରହ୍ମାଣ୍ଡର ଅଧିପତି, ସର୍ବେଶ୍ୱର ଓ ସ୍ୱୟଂପ୍ରକାଶ ପରମାତ୍ମା ଅଟନ୍ତି ।

ବ୍ରହ୍ମା କହୁଛନ୍ତି—ନାରଦ ! ତୁମ କଥା ଶୁଣି ମେନା ତାଙ୍କ ଶୁଭଲକ୍ଷଣା କନ୍ୟା ଉମାଙ୍କୁ ଅତ୍ୟନ୍ତ ଧନ-ବୈଭବସମ୍ପନ୍ନ, ସୌଭାଗ୍ୟବତୀ ଓ ତିନିକୁଳ ପାଇଁ ସୁଖଦାୟିନୀ ମନେ କଲେ । ସେ ପ୍ରସନ୍ନ ବଦନରେ ପ୍ରୀତିଯୁକ୍ତ ହୃଦୟରେ ନିଜର ସର୍ବାଧିକ ସୌଭାଗ୍ୟକୁ ବାରମ୍ବାର ପ୍ରଶଂସା କରି କରି କହିଲେ—

ମେନା କହିଲେ—ପାର୍ବତୀକୁ ଜନ୍ମ ଦେଇଥିବାରୁ ମୁଁ ଆଜି ଧନ୍ୟ ହୋଇଗଲି । ଏ ଗିରିବର ମଧ୍ୟ ଧନ୍ୟ । ମୋର ସବୁ କିଛି ପରମ ଧନ୍ୟ ହୋଇଗଲା । ଯେଉଁସବୁ ପରମ ତେଜସ୍ୱୀ ଦେବତାଙ୍କୁ ମୁଁ ଦର୍ଶନ କଲି, ସେମାନଙ୍କର ମଧ୍ୟ ଯିଏ ସ୍ୱାମୀ, ସେ ମୋ କନ୍ୟାର ସ୍ୱାମୀ ହେବେ— ଏହାଠାରୁ ବଳି ସୌଭାଗ୍ୟର କଥା ଆଉ କ'ଣ ଥାଇ ପାରେ? ଭଗବାନ ଶିବଙ୍କୁ ସ୍ୱାମୀରୂପରେ ପାଇଥିବା ହେତୁ ପାର୍ବତୀର ସୌଭାଗ୍ୟକୁ ଶହେ ବର୍ଷରେ ମଧ୍ୟ ବର୍ଣ୍ଣନା କରାଯାଇ ପାରିବ ନାହିଁ ।

ବ୍ରହ୍ମା କହୁଛନ୍ତି—ନାରଦ ! ମେନା ପ୍ରସନ୍ନତାର ସହ ପ୍ରେମପୂର୍ଣ୍ଣ ଚିତ୍ତରେ ଏହିପରି କହୁ କହୁ ଅଦ୍ଭୁତ ଲୀଳା କରିବାରେ ନିପୁଣ ଭଗବାନ ରୁଦ୍ର ସାମନାକୁ ଆସିଗଲେ । ତାତ ! ତାଙ୍କର ସମସ୍ତ ଗଣ ଥିଲେ ଅଦ୍ଭୁତ । ସେମାନେ ମେନାଙ୍କ ଅହଂକାରକୁ ଚୂର୍ଣ୍ଣବିଚୂର୍ଣ୍ଣ କରିଦେବା ଭଳି ଥିଲେ । ଭଗବାନ ଶିବ ନିଜକୁ ମାୟାରୁ ନିର୍ଲିପ୍ତ ଓ ନିର୍ବିକାର ପ୍ରଦର୍ଶିତ କରି ସେଠାକୁ ଆସିଲେ । ମୁନେ ! ସେ ଆସିଯିବାରୁ ତୁମେ ମେନାଙ୍କୁ

ଶିବାଙ୍କ ବର ଦେଖାଇବାକୁ ଯାଇ କହିଲ—"ହେ ସୁନ୍ଦରୀ ! ଏବେ ଦେଖ, ଯାହାଙ୍କୁ ପାଇବା ପାଇଁ ଶିବା ବନରେ ଏତେ ବଡ଼ ତପସ୍ୟା କରିଥିଲେ, ଏ ହେଉଛନ୍ତି ସାକ୍ଷାତ୍ ସେହି ଶଙ୍କର ।"

ତୁମେ ଏତିକି କହିବାମାତ୍ରେ ମେନା ଅତି ପ୍ରସନ୍ନ ଚିତ୍ତରେ ମହେଶ୍ୱରଙ୍କୁ ଦେଖିବାକୁ ଚେଷ୍ଟା କଲେ । ପ୍ରଭୁ ସ୍ୱୟଂ ତ ଅଦ୍ଭୁତ ଥିଲେ, ତାଙ୍କର ଅନୁଚର ମଧ୍ୟ ବଡ଼ ଅଦ୍ଭୁତ ଅଦ୍ଭୁତ ଥିଲେ । ଇତିମଧ୍ୟରେ ରୁଦ୍ରଦେବଙ୍କ ପରମ ଅଦ୍ଭୁତ ସେନା ମଧ୍ୟ ସମ୍ମୁଖକୁ ଆସିଗଲା, ଯାହା ଥିଲା ଭୂତପ୍ରେତ ଓ ନାନା ପ୍ରକାର ଗଣ ପ୍ରଭୃତିଙ୍କର ବିଶାଳ ସମାବେଶ । ସେମାନଙ୍କ ମଧ୍ୟରେ କେତେକ ଘୂର୍ଣ୍ଣିଝଡ଼ର ରୂପ ଧରିଥିଲେ ତ କେତେକ ମୁଖରୁ ପତାକାର ମର୍ମର-ଧ୍ୱନି ବାହାର କରୁଥିଲେ । କାହାର ମୁହଁ ବଙ୍କା ଥିଲା ତ କେହି ଥିଲା ଅତ୍ୟନ୍ତ କୁରୂପ । କେତେକ ଅତ୍ୟନ୍ତ ବିକରାଳ ଦିଶୁଥିଲେ ତ କେତେକଙ୍କର ମୁହଁ ସାରା ଦାଢ଼ିନିଶ ଉଠିଥିଲା । କେହି ଛୋଟା ଥିଲା ତ କେହି ଅନ୍ଧ । କେହି ଦଣ୍ଡ ଓ ପାଶ ଧରି ଥିଲା ତ କାହା ହାତରେ ଥିଲା ମୁଦ୍‌ଗର । କେତେକ ଗଣ ନିଜ ବାହନକୁ ଓଲଟା ଚଳାଉ ଥିଲେ । କେତେକ ଶିଙ୍ଗା, ଡମ୍ବରୁ ଓ ଗୋମୁଖ ବଜାଉ ଥିଲେ । କେତେକଙ୍କର ଆଦୌ ମୁଖ ନ ଥିଲା ତ କେତେକଙ୍କର ମୁଖ ପିଠି ପଟକୁ ଥିଲା, ପୁଣି କେତେକଙ୍କର ଅନେକ ମୁଖ ଥିଲା । କେତେକଙ୍କର ହାତ ବିଲକୁଲ ନ ଥିଲା ତ କେତେକଙ୍କର ହାତ ଥିଲା ଓଲଟା, ପୁଣି କେତେକଙ୍କର ଅନେକ ହାତ ଥିଲା । କେତେକଙ୍କର ନେତ୍ର ନ ଥିଲା ତ କେତେକଙ୍କର ବହୁତ ନେତ୍ର ଥିଲା । କାହାର କାହାର ମୁଣ୍ଡ ନ ଥିଲା, କାହାର ମୁଣ୍ଡ ଥିଲା କଦାକାର । କାହାର କାନ ନ ଥିଲା ତ କାହାର ଥିଲା ଅନେକ କାନ । ଏହିପରି ସମସ୍ତ ଗଣ ନାନା ପ୍ରକାର ବିଚିତ୍ର ବେଶଭୂଷା ଧାରଣ କରିଥିଲେ । ତାତ ! ସେହି ବିକୃତ ଆକାରର ଗଣମାନେ ବଡ଼ ବଡ଼ ବୀର ଓ ଭୟଙ୍କର ଥିଲେ । ସେମାନଙ୍କର ସଂଖ୍ୟା ଥିଲା ଅଗଣିତ । ମୁନେ ! ତୁମେ ଅଙ୍ଗୁଳି ଦ୍ୱାରା ରୁଦ୍ରଗଣଙ୍କ ଆଡ଼କୁ ସଂକେତ କରି ମେନାଙ୍କୁ କହିଲ—"ବରାନନେ ! ତୁମେ ପ୍ରଥମେ ଭଗବାନ ହରଙ୍କ ସେବକଙ୍କୁ ଦେଖ, ତା'ପରେ ତାଙ୍କୁ ଦର୍ଶନ କରିବ ।" ମାତ୍ର ଏଭଳି ଅସଂଖ୍ୟ ଭୂତପ୍ରେତ ଆଦି ଗଣଙ୍କୁ ଦେଖିବାମାତ୍ରେ ମେନା ଭୟରେ ବ୍ୟାକୁଳ ହୋଇଉଠିଲେ । ସେଇମାନଙ୍କ ଗହଣରେ ହିଁ ଶିବ ଥିଲେ, ଯେ କି ନିର୍ଗୁଣ ହୋଇ ମଧ୍ୟ ପରମ ଗୁଣବାନ ଅଟନ୍ତି । ସେ ବୃଷଭ ଉପରେ ଆରୂଢ଼ ଥିଲେ । ତାଙ୍କର ଥିଲା ପାଞ୍ଚଟି ମୁଖ ଓ ପ୍ରତ୍ୟେକ ମୁଖରେ ଥିଲା ତିନୋଟି ଲେଖାଏଁ ନେତ୍ର । ତାଙ୍କର ସମସ୍ତ ଅଙ୍ଗରେ ବିଭୂତି ବୋଳା ହୋଇଥିଲା, ଯାହା କି ତାଙ୍କ ପାଇଁ ଭୂଷଣ ଥିଲା । ମସ୍ତକରେ ଜଟାଜୁଟ ଓ ଚନ୍ଦ୍ରମା ଥିଲା ମୁକୁଟ ପରି । ହାତ ଥିଲା ଦଶଟି, ସେଥିମଧ୍ୟରୁ ଗୋଟିକରେ ଥିଲା କପାଳ । ଶରୀରରେ ଥିଲା ବ୍ୟାଘ୍ରଚର୍ମର ଉତ୍ତରୀୟ । ତାଙ୍କ ହାତରେ ଥିଲା ପିନାକ ଏବଂ ତ୍ରିଶୂଳ । ଆଖି ଥିଲା ଭୟାନକ, ଆକୃତି ଥିଲା ବିକରାଳ ଏବଂ ହାତୀର ଚର୍ମ ଥିଲା ତାଙ୍କର ବସ୍ତ୍ର । ଏସବୁ ଦେଖି ଶିବାଙ୍କ ମାତା ବହୁତ ଡରିଗଲେ ଏବଂ ସେ ଚକିତ ଓ ବ୍ୟାକୁଳ ହୋଇ ଥରିବାକୁ ଲାଗିଲେ । ତାଙ୍କ ବୁଦ୍ଧି କିଛି କାମ କଲା ନାହିଁ । ସେହି ଅବସ୍ଥାରେ ତୁମେ ଅଙ୍ଗୁଳି ସଙ୍କେତରେ ଦେଖାଇ ଦେଇ କହିଲ—"ଏ ହେଉଛନ୍ତି ଭଗବାନ ଶିବ ।" ତୁମ କଥା ଶୁଣି ସତୀ ମେନା ଦୁଃଖରେ ଭାଙ୍ଗି ପଡ଼ିଲେ । "ଏ କି ବିକୃତ ଦୃଶ୍ୟ! ମୁଁ ତ ଦୁରାଗ୍ରହରେ ପଡ଼ି ଠକିଗଲି ।" ଏତିକି କହୁ କହୁ ଗିରିରାଜପ୍ରିୟା ମେନା ସହସା ମୂର୍ଚ୍ଛିତ ହୋଇଗଲେ

ଏବଂ କୋମଳ ଲତାଟିଏ ଝଡ଼ବତାସରେ ଛିଣ୍ଡି ତଳକୁ ଖସି ପଡ଼ିଲା ପରି ଭୂମି ଉପରେ ଢଳି ପଡ଼ିଲେ । ତା'ପରେ ସଖୀମାନେ ନାନା ପ୍ରକାର ଉପାୟରେ ତାଙ୍କର ସମୁଚିତ ସେବା କରିବାରୁ ସେ ଧୀରେ ଧୀରେ ଚେତା ଫେରି ପାଇଲେ ।

(ଅଧ୍ୟାୟ ୪୧–୪୩)

★★★

## ମେନାଙ୍କ ବିଳାପ, ଶିବଙ୍କ ସଙ୍ଗେ ପାର୍ବତୀଙ୍କ ବିବାହ ନ କରିବାକୁ ମେନାଙ୍କ ଜିଦି, ଦେବଗଣ ଓ ବିଷ୍ଣୁ ତାଙ୍କୁ ବୁଝାଇବା ଏବଂ ଶିବ ସୁନ୍ଦର ରୂପ ଧାରଣ କଲେ ଯାଇ ତାଙ୍କୁ କନ୍ୟା ଦେବେ ବୋଲି ମେନାଙ୍କ ସର୍ତ୍ତ

ବ୍ରହ୍ମା କହୁଛନ୍ତି–ନାରଦ ! ହିମାଚଳପ୍ରିୟା ମେନା ଚେତା ଫେରି ପାଇଲା ପରେ ଅତ୍ୟନ୍ତ ବିକ୍ଷୁବ୍ଧ ହୋଇ ବିଳାପ କଲେ ଏବଂ ସମସ୍ତଙ୍କୁ ତିରସ୍କାର କରିବାକୁ ଲାଗିଲେ । ପ୍ରଥମେ ସେ ନିଜ ପୁତ୍ରମାନଙ୍କୁ ନିନ୍ଦା କଲେ, ତା'ପରେ ସେ ତୁମକୁ ଓ ନିଜ ଝିଅକୁ ମଧ୍ୟ ବହୁତ ଦୁର୍ବଚନ କହିଲେ ।

ମେନା କହିଲେ–ମୁନେ ! ପ୍ରଥମେ ତୁମେ କହିଥିଲ 'ଶିବା ଶିବଙ୍କୁ ବରଣ କରିବ', ତା'ପରେ ମୋ ସ୍ୱାମୀଙ୍କୁ ପ୍ରେରିତ କରି ତାଙ୍କୁ ପୂଜା-ଆରାଧନାରେ ଲଗାଇଲ । କିନ୍ତୁ ତାହାର ଯଥାର୍ଥ ଫଳ କ'ଣ ହେଲା? କ'ଣ ଏଇ ବିପରୀତ ଓ ଅନର୍ଥକାରୀ ଫଳ ମିଳିବାର ଥିଲା? ଦୁର୍ବୁଦ୍ଧି ଦେବର୍ଷେ ! ତୁମେ ମୋ ପରି ଅଧମ ନାରୀକୁ ସବୁପ୍ରକାରେ ଠକିଦେଲ । ମୋ ଝିଅ ଏଭଳି ତପସ୍ୟା କଲା, ଯାହା ମୁନିଙ୍କ ପକ୍ଷେ ମଧ୍ୟ ଦୁଷ୍କର; କିନ୍ତୁ ଶେଷରେ ତା' ତପସ୍ୟାର କ'ଣ ଏହି ଫଳ ମିଳିବାର ଥିଲା, ଯାହା ଦେଖଣାହାରୀକୁ ବି ଦୁଃଖୀ କରିଦେଉଛି? ହାୟ ! ମୁଁ ଏବେ କ'ଣ କରିବି? କେଉଁଠିକି ଯିବି? କିଏ ମୋର ଦୁଃଖ ଦୂର କରିବ? ମୋର କୁଳ ନଷ୍ଟ ହୋଇଗଲା, ମୋ ଜୀବନ ବି ନଷ୍ଟ ହୋଇଗଲା । କୁଆଡ଼େ ଗଲେ ସେହି ଦିବ୍ୟ ଋଷିମାନେ? ସାମନାରେ ପାଇଲେ ତାଙ୍କ ଦାଢ଼ି-ନିଶ ଉପାଡ଼ି ପକାନ୍ତି । ବସିଷ୍ଠଙ୍କର ସେହି ତପସ୍ୱିନୀ ପତ୍ନୀ ବି ବହୁତ ବଡ଼ ଧୂର୍ତ୍ତ । ସେ ସ୍ୱୟଂ ଏହି ବିବାହ ପାଇଁ ଆଗୁଆ ହୋଇ ଆସିଥିଲା । କୋଉ ଅପରାଧ ପାଇଁ ଆଜି ମୋର ସବୁକିଛି ନଷ୍ଟଭ୍ରଷ୍ଟ ହୋଇଗଲା, ମୁଁ କିଛି ଜାଣିପାରୁ ନାହିଁ ।

ଏଭଳି କହି ମେନା ନିଜ ଝିଅକୁ ଗ୍ରହିଁ ବହୁତ ଝିଙ୍ଗାସିଲେ । ସେ କହିଲେ–''ଆଲୋ ଦୁଷ୍ଟା ! ତୁ ଏ କି କର୍ମ କରିଦେଲୁ ଯେ ଏହା ମୋ'ପାଇଁ ଏତେ ବଡ଼ ଦୁଃଖର କାରଣ ହୋଇଗଲା? ତୁ ନିଜେ ହିଁ ଏଥିପାଇଁ ଦାୟୀ । ତୁ ତ ସୁନା ଦେଇ କାଚ କିଣିଲୁ ! ଚନ୍ଦନ ଛାଡ଼ି ଦେହରେ ପଙ୍କ ବୋଳି ହେଲୁ ! ହାୟ ! ହାୟ ! ତୁ ହଂସକୁ ଉଡ଼ାଇ ଦେଇ ପିଞ୍ଜରାରେ କୁଆ ପାଳିଲୁ ! ଗଙ୍ଗାଜଳକୁ ଢାଳିଦେଇ କୂଅ ପାଣି ପିଇଲୁ ! ସୂର୍ଯ୍ୟଙ୍କୁ ଅନାଦର କରି ତୁ ଜୁଳୁଜୁଳିଆ ପୋକଠାରୁ ଆଲୋକ ଆଶା କଲୁ ! ଚାଉଳ ଛାଡ଼ି କୁଣ୍ଡା ଖାଇଲୁ ! ଘିଅକୁ ଫୋପାଡ଼ି ଦେଇ ମହମ ତେଲକୁ ଆଦରରେ ପିଇଲୁ ! ସିଂହକୁ ଛାଡ଼ି ଶୃଗାଳର ଶରଣ ନେଲୁ ! ବ୍ରହ୍ମବିଦ୍ୟାକୁ ଛାଡ଼ି କୁତ୍ସିତ ଗାଥା ଶ୍ରବଣ କଲୁ ! ତୁ ଘରେ ରଖାଯାଇଥିବା ଯଜ୍ଞର ମଙ୍ଗଳମୟୀ ବିଭୂତିକୁ ଫିଙ୍ଗିଦେଇ ଚିତାର ଅମଙ୍ଗଳମୟ ପାଉଁଶକୁ ନିଜ କାନିରେ ବାନ୍ଧିଲୁ ! ହାୟ ! ତୁ ନିଜ କୁବୁଦ୍ଧି ହେତୁ ହିଁ ବଡ଼ ବଡ଼ ଦେବତା ଓ ବିଷ୍ଣୁ ପ୍ରଭୃତି ପରମେଶ୍ୱରଙ୍କୁ ଛାଡ଼ି ଶିବଙ୍କୁ ପାଇବାକୁ ଏଭଳି ତପସ୍ୟା କଲୁ । ତୋତେ ଧିକ୍କାର । ତୋ ବୁଦ୍ଧିକୁ,

ତୋ ରୂପକୁ ଓ ତୋ ଚରିତ୍ରକୁ ବାରମ୍ବାର ଧିକ୍କାର । ତୋତେ ତପସ୍ୟା କରିବାକୁ ଉପଦେଶ ଦେଇଥିବା ନାରଦଙ୍କୁ ଓ ତୋତେ ସହାୟତା କରିଥିବା ସଖୀ



ଦୁହିଙ୍କୁ ବି ଧିକ୍କାର । ତୋତେ ଜନ୍ମ ଦେଇଥିବା ଆମେ ମାତା-ପିତା ଦୁହିଙ୍କୁ ବି ଧିକ୍କାର । ହେ ନାରଦ ! ତୁମ ବୁଦ୍ଧିକୁ ଧିକ୍କାର । ତୁମର ସେହି ସୁବୁଦ୍ଧିଦାତା ସପ୍ତର୍ଷିଙ୍କୁ ବି ଧିକ୍କାର । ତୁମ କୁଳକୁ ବି ଧିକ୍କାର । ତୁମ କ୍ରିୟା ଓ ଦକ୍ଷତାକୁ ବି ଧିକ୍କାର । ତୁମେ ଯାହା କିଛି କଲ, ସେସବୁକୁ ବି ଧିକ୍କାର । ତୁମେ ଆଜି ମୋ ଘରକୁ ପୋଡ଼ି ନଷ୍ଟ କରିଦେଲ । ମୋର ତ ଜାଣ ମରଣ ହୋଇଗଲା । ଏ ପର୍ବତରାଜ ଆଜି ମୋ ପାଖକୁ ନ ଆସନ୍ତୁ । ସପ୍ତର୍ଷିମାନେ ମୋତେ ମୁହଁ ନ ଦେଖାନ୍ତୁ । ଏମାନେ ସମସ୍ତେ ମିଳିମିଶି ଏ କ'ଣ କରିଦେଲେ? ମୋ କୁଳକୁ ତ ନଷ୍ଟଭ୍ରଷ୍ଟ କରିଦେଲେ । ହାୟ ! ମୁଁ କାହିଁକି ବାଞ୍ଝ ହୋଇ ନ ଗଲି? ମୋର ଗର୍ଭ କାହିଁକି ନଷ୍ଟ ହୋଇ ନ ଗଲା? ମୋ ଝିଅ ଯଦି ଜନ୍ମ ହେଲା, ସେ ଜନ୍ମ ହେଉ ହେଉ ମରି ନ ଗଲା କାହିଁକି? ରାକ୍ଷସାଦି ଏହାକୁ ଉଠାଇ ନେଇ ଖାଇ ନ ଗଲେ କାହିଁକି? ଲୋ ପାର୍ବତୀ ! ମନ ହେଉଛି, ଆଜି ତୋ ମୁଣ୍ଡଟାକୁ ହାଣି ପକାନ୍ତି, କିନ୍ତୁ ତୋ କଟା ଦେହଟାକୁ କରିବି କ'ଣ? ହାୟ ! ମନ କହୁଛି, ତୋତେ ଛାଡ଼ି କେଉଁଠିକି ଗ୍ଲିଯାଆନ୍ତି । ମୋର ତ ଜୀବନ ବର୍ବାଦ ହୋଇଗଲା ।''

ବ୍ରହ୍ମା କହୁଛନ୍ତି–ନାରଦ ! ଏଭଳି କହୁ କହୁ ମେନା ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ଶୋକ ଓ ରୋଷରେ ବ୍ୟାକୁଳ ହୋଇ ଯାଇଥିବାରୁ ସେ ସ୍ୱାମୀଙ୍କ ପାଖକୁ ଗଲେ ନାହିଁ । ଦେବର୍ଷେ ! ସେତେବେଳେ ଦେବତାମାନେ ଜଣ ଜଣ କରି ତାଙ୍କ ପାଖକୁ ଆସିଲେ । ସର୍ବପ୍ରଥମେ ମୁଁ ପହଞ୍ଚିଲି । ମୁନିଶ୍ରେଷ୍ଠ ! ମୋତେ ଦେଖି ତୁମେ ସ୍ୱୟଂ ମେନାଙ୍କୁ କହିଲ–

ନାରଦ କହିଲେ–ପତିବ୍ରତେ ! ତୁମକୁ ଜଣା ନାହିଁ ଯେ ପ୍ରକୃତରେ ଶିବଙ୍କ ସ୍ୱରୂପ କେଡ଼େ ସୁନ୍ଦର ! ସେ ତ ଲୀଳାରେ ଏପରି ରୂପ ଧାରଣ କରିଛନ୍ତି । ଏହା ତାଙ୍କର ଯଥାର୍ଥ ରୂପ ନୁହେଁ । ଏଣୁ କ୍ରୋଧ ପରିତ୍ୟାଗ କରି ଶାନ୍ତ ହୁଅ । ଜିଦି ଛାଡ଼ି ବିବାହ କାର୍ଯ୍ୟ ସମ୍ପନ୍ନ କର ଓ ତୁମ ଶିବାଙ୍କ ହାତ ଶିବଙ୍କ ହାତରେ ରଖିଦିଅ । ତୁମ କଥା ଶୁଣି ମେନା ତୁମକୁ କହିଲେ–''ଯାଅ, ଯାଅ । ଏଠୁ ଦୂରକୁ ହଟିଯାଅ । ତୁମେ ଅତ୍ୟନ୍ତ ଦୁଷ୍ଟ ଓ ଅଧମଙ୍କ ଶିରୋମଣି ।'' ମେନା ଏପରି କହିବାରୁ ମୋ ସହିତ ଇନ୍ଦ୍ରାଦି ଦେବତା ଓ ଦିକ୍‌ପାଳମାନେ ଜଣ ଜଣ କରି ଆସି କହିଲେ–''ପିତୃଗଣଙ୍କ କନ୍ୟା ମେନେ ! ତୁମେ ଆମ କଥାକୁ ମନ ଦେଇ ଶୁଣ । ଶିବ ନିଶ୍ଚିତରୂପେ ସବୁଠୁ ଶ୍ରେଷ୍ଠ ଦେବତା ଓ ସମସ୍ତଙ୍କ ପାଇଁ ପରମ ସୁଖଦାୟକ । ତୁମ କନ୍ୟାର ଉତ୍ତମ ତପସ୍ୟାକୁ ଦେଖି ସେହି ଭକ୍ତବତ୍ସଳ ପ୍ରଭୁ କୃପା କରି ତାକୁ ଦର୍ଶନ ଦେବା ସହିତ ଶ୍ରେଷ୍ଠ ବର ପ୍ରଦାନ କରିଥିଲେ ।''

ସେମାନଙ୍କ କଥା ଶୁଣି ମେନା ବିଳାପ କରି କରି କହିଲେ, ''ଶିବଙ୍କ ରୂପ ବଡ଼ ଭୟଙ୍କର, ମୁଁ ମୋ ଝିଅ ତାଙ୍କୁ ଦେବି ନାହିଁ । ଆପଣ ସବୁ ଦେବତା ମିଳିମିଶି ପ୍ରପଞ୍ଚ ରଚି କାହିଁକି ମୋ ଝିଅର ରୂପକୁ ବ୍ୟର୍ଥ କରିଦେବାକୁ ଜିଦି ଧରିଛନ୍ତି?'' ମୁନୀଶ୍ୱର ! ମେନାଙ୍କ କଥା ଶୁଣି ବସିଷ୍ଠ ଆଦି ସପ୍ତର୍ଷି ସେଠାକୁ ଆସି କହିଲେ– ''ହେ ପିତୃଗଣଙ୍କ କନ୍ୟା ଓ ଗିରିରାଜଙ୍କ ରାଣୀ ମେନେ ! ଆମେ ତୁମର କାର୍ଯ୍ୟ ସାର୍ଥକ କରିବାକୁ ଏଠାକୁ ଆସିଛୁ । ଯେଉଁ କାର୍ଯ୍ୟ ତୁମ ପାଇଁ ସମ୍ପୂର୍ଣ୍ଣ କରଣୀୟ ଓ ଉପଯୋଗୀ, ତୁମ ଜିଦି କାରଣରୁ ଆମେ କ'ଣ ତାହାକୁ ବିପରୀତ ମାନି ନେଇ ପାରିବୁ? ଭଗବାନ ଶଙ୍କରଙ୍କ ଦର୍ଶନ ପାଇବା ସବୁଠୁ ବଡ଼ ଲାଭ । ସେ ଆଜି ଦାନାର୍ଥୀ ହୋଇ ସ୍ୱୟଂ ତୁମ ଦ୍ୱାରକୁ ଆସିଛନ୍ତି ।''

ସେମାନେ ଏପରି କହିବାରୁ ଜ୍ଞାନଦୁର୍ବଳା ମେନା ସେମାନଙ୍କ କଥାକୁ ମିଥ୍ୟା ସାବ୍ୟସ୍ତ କଲେ ଏବଂ ରୁଷ୍ଟ ହୋଇ କହିଲେ–''ମୁଁ ମୋ ଝିଅକୁ ଶସ୍ତ୍ରାଦିରେ କାଟି ଟିକିଟିକି କରିଦେବି ପଛେ, ତୁମର ସେହି ଶଙ୍କରଙ୍କ ହାତରେ ତାକୁ ଟେକିଦେଇ ପାରିବି ନାହିଁ । ତୁମେ ସବୁ ଏଠୁ ପଳାଇ ଯାଅ । କେହି ମୋ ପାଖକୁ ଆସିବା ଦରକାର ନାହିଁ ।''

ଏପରି କହି ସେ ଅତ୍ୟନ୍ତ ବିହ୍ୱଳ ହୋଇ ବିଳାପ କରିବାକୁ ଲାଗିଲେ । ମୁନେ ! ଏ ଘଟଣା ଦେଖି ସେଠାରେ ହାହାକାର ଖେଳିଗଲା । ସେତିକିବେଳେ ହିମାଳୟ ଅତ୍ୟନ୍ତ ବ୍ୟାକୁଳ ହୋଇ ସେଠାକୁ ଆସିଲେ ଓ ମେନାଙ୍କୁ ବୁଝାଇବାକୁ ଯାଇ ପ୍ରେମପୂର୍ବକ କିଛି ତତ୍ତ୍ୱପୂର୍ଣ୍ଣ କଥା କହିଲେ ।

ହିମାଳୟ କହିଲେ–ପ୍ରିୟେ ! ମୋ କଥା ଶୁଣ । ତୁମେ ଏତେ ବ୍ୟାକୁଳ କାହିଁକି ହେଉଛ? ଦେଖୁଛ ତ କେତେ ବଡ଼ ବଡ଼ ମହାତ୍ମା ତୁମ ଘରକୁ ଆସିଛନ୍ତି ! ତୁମେ ଏମାନଙ୍କୁ ନିନ୍ଦା କାହିଁକି କରୁଛ? ଭଗବାନ ଶଙ୍କରଙ୍କୁ ବି ତୁମେ ଜାଣିଛ, କିନ୍ତୁ ନାନାରୂପଧାରୀ ଶମ୍ଭୁଙ୍କ ବିକଟ ରୂପକୁ ଦେଖି ତୁମେ ଡରିଯାଇଛ । ମୁଁ ତାଙ୍କୁ ଭଲଭାବରେ ଜାଣେ । ସେ ହିଁ ସମସ୍ତଙ୍କର ପ୍ରତିପାଳକ, ପୂଜନୀୟଙ୍କର ମଧ୍ୟ ପୂଜନୀୟ ଏବଂ ଅନୁଗ୍ରହ-ନିଗ୍ରହକାରୀ । ନିଷ୍ପାପ ପ୍ରାଣପ୍ରିୟେ ! ହଠ ନ କର, ମାନସିକ ସନ୍ତାପ ଛାଡ଼ । ସୁବ୍ରତେ ! ଶୀଘ୍ର ଉଠ ଓ ସମସ୍ତ କାର୍ଯ୍ୟ ସମ୍ପାଦନ କର । ପ୍ରଥମ ଥର ବିକଟରୂପଧାରୀ ଶମ୍ଭୁ ମୋ ଦ୍ୱାରକୁ ଆସି ଯେଉଁ ନାନା ପ୍ରକାର ଲୀଳା କରିଥିଲେ, ମୁଁ ଆଜି ତୁମକୁ ସେ କଥା ମନେ ପକାଇଦେଉଛି । ତାଙ୍କର ସେହି ପରମ ମାହାତ୍ମ୍ୟକୁ ଦେଖି ଓ ବୁଝି ସେତେବେଳେ ତ ତୁମେ ଓ ମୁଁ ତାଙ୍କୁ କନ୍ୟାଦାନ କରିବାକୁ ସ୍ୱୀକାର କରିଥିଲେ । ତେଣୁ ପ୍ରିୟେ ! ଆମର ସେହି କଥାକୁ ପ୍ରମାଣ ମନେ କରି ସାର୍ଥକ କର ।



ତାଙ୍କ କଥା ଶୁଣି ମେନା କହିଲେ–ସ୍ୱାମୀ ! ମୋ କଥା ଶୁଣନ୍ତୁ ଆଉ ସେହି ଅନୁସାରେ କାର୍ଯ୍ୟ କରନ୍ତୁ । ଆପଣ ଝିଅର ବେକରେ ଦଉଡ଼ି ବାନ୍ଧି

ତାକୁ ବିନା ଦ୍ୱିଧାରେ ପର୍ବତରୁ ତଳକୁ ଠେଲି ଦିଅନ୍ତୁ । କିନ୍ତୁ ମୁଁ କୌଣସି ପ୍ରକାରେ ତାକୁ ଶିବଙ୍କ ହାତରେ ଦେବି ନାହିଁ । ନଚେତ୍ ହେ ନାଥ ! ଆପଣଙ୍କର ଏ ଝିଅକୁ ନେଇଯାଇ ନିର୍ଦ୍ଦୟତାପୂର୍ବକ ସମୁଦ୍ରରେ ବୁଡ଼ାଇଦିଅନ୍ତୁ । ଗିରିରାଜ ! ଏହା କଲେ ବରଂ ଆପଣ ସୁଖୀ ହୋଇପାରିବେ । କିନ୍ତୁ ବିକଟରୂପଧାରୀ ରୁଦ୍ରଙ୍କୁ ଯଦି ଝିଅ ଦେବେ, ଜାଣି ରଖନ୍ତୁ ଯେ ମୁଁ ନିଶ୍ଚୟ ପ୍ରାଣତ୍ୟାଗ କରିଦେବି ।

ମେନା ହଠପୂର୍ବକ ଏପରି କହିବାରୁ ପାର୍ବତୀ ସ୍ୱୟଂ ଆସି ସୁନ୍ଦର ଢଙ୍ଗରେ ବୁଝାଇଲେ । ସେ କହିଲେ—"ମାଆ ! ତୁମ ବୁଦ୍ଧି ତ ଅତି ଶୁଭକାରକ, କିନ୍ତୁ ଏବେ ଏତେ ବିପରୀତ କେମିତି ହୋଇଗଲା? ଧର୍ମପାଳନକାରିଣୀ ହୋଇ ମଧ୍ୟ ତୁମେ ଧର୍ମକୁ କେମିତି ଛାଡୁଛ? ରୁଦ୍ରଦେବ ତ ସମସ୍ତଙ୍କ ଉତ୍ପତ୍ତିର କାରଣଭୂତ ସାକ୍ଷାତ୍ ଈଶ୍ୱର, ତାଙ୍କ ଠାରୁ ବଡ଼ ଆଉ କିଏ ଅଛି? ସମସ୍ତ ଶ୍ରୁତିରେ ବର୍ଣ୍ଣିତ ଅଛି ଯେ ଭଗବାନ ଶମ୍ଭୁ ସୁନ୍ଦର ରୂପଧାରୀ ଓ ସୁଖପ୍ରଦାନକାରୀ ଅଟନ୍ତି । କଲ୍ୟାଣକାରୀ ମହେଶ୍ୱର ସମସ୍ତ ଦେବତାଙ୍କର ସ୍ୱାମୀ ଓ ସ୍ୱୟଂପ୍ରକାଶ । ତାଙ୍କର ନାମ ଓ ରୂପ ଅନେକ । ମାଆ ! ବ୍ରହ୍ମା, ବିଷ୍ଣୁ ପ୍ରଭୃତି ବଡ଼ ବଡ଼ ଦେବତା ମଧ୍ୟ ତାଙ୍କର ସେବା କରିଥାନ୍ତି । ସେ ହେଉଛନ୍ତି ସମସ୍ତଙ୍କର ଅଧିଷ୍ଠାନ, କର୍ତ୍ତା, ହର୍ତ୍ତା ଓ ସ୍ୱାମୀ । ବିକାର ତାଙ୍କ ପାଖରେ ପ୍ରବେଶ କରିପାରେ ନାହିଁ । ସେ ହେଉଛନ୍ତି ତ୍ରିଦେବଙ୍କର ସ୍ୱାମୀ, ଅବିନାଶୀ ଓ ସନାତନ । ତାଙ୍କରି ପାଇଁ ସମସ୍ତ ଦେବତା ଆଜି କିଙ୍କର ପରି ହୋଇ ତୁମ ଦ୍ୱାରକୁ ଆସିଛନ୍ତି ଓ ଉତ୍ସବ କରୁଛନ୍ତି । ଏହାଠାରୁ ବଳି ସୁଖର କଥା ଆଉ କ'ଣ ହୋଇପାରେ? ଏଣୁ ଶୀଘ୍ର ଉଠ ଆଉ ନିଜ ଜୀବନକୁ ସଫଳ କର । ମୋତେ ଶିବଙ୍କ ହାତରେ ଅର୍ପଣ କରିଦେଇ ନିଜ ଗୃହସ୍ଥାଶ୍ରମକୁ ସାର୍ଥକ କର । ମାଆ ! ମୋତେ ପରମେଶ୍ୱର ଶିବଙ୍କ ସେବାରେ ସମର୍ପି ଦିଅ । ମୁଁ ସ୍ୱୟଂ ତୁମକୁ ଏ କଥା କହୁଛି । ତୁମେ ମୋର ଏତିକି ମାଗୁଣିକୁ ମାନିନିଅ । ଯଦି ତୁମେ ମୋତେ ତାଙ୍କ ହାତରେ ନ ଦେବ, ମୁଁ ଅନ୍ୟ କୌଣସି ବରକୁ ବରଣ କରିବି ନାହିଁ । କାରଣ ଯାହା ସିଂହର ଭାଗ, ତାକୁ ଅନ୍ୟକୁ ଠକୁଥିବା ଶିଆଳ ବା କେମିତି ପାଇବ? ମାଆ ! ମୁଁ ମନ, ବାଣୀ ଓ କ୍ରିୟା ଦ୍ୱାରା ସ୍ୱୟଂ ହରଙ୍କୁ ବରଣ କରିଛି । ହଁ, ହରଙ୍କୁ ହିଁ ବରଣ କରିଛି । ଏବେ ତୁମର ଯାହା ଇଚ୍ଛା କର ।"

ବ୍ରହ୍ମା କହୁଛନ୍ତି—ନାରଦ ! ପାର୍ବତୀଙ୍କ କଥା ଶୁଣି ଶୈଳେଶ୍ୱରପ୍ରିୟା ମେନା ଅତ୍ୟନ୍ତ ଉତ୍ତେଜିତ ହୋଇଗଲେ ଏବଂ ପାର୍ବତୀଙ୍କୁ କଟୁ ଶବ୍ଦରେ ଗାଳିଦେଇ ନିଜେ କାନ୍ଦିବାକୁ ଲାଗିଲେ । ତା'ପରେ ସ୍ୱୟଂ ମୁଁ ବୁଝାଇଲି, ସନକାଦି ସିଦ୍ଧମାନେ ମଧ୍ୟ ମେନାଙ୍କୁ ବହୁତ ବୁଝାଇଲେ; ପରନ୍ତୁ ସେ କାହାରି କଥା ନ ମାନି ସମସ୍ତଙ୍କୁ ଗାଳିଦେଲେ । ଇତିମଧ୍ୟରେ ତାଙ୍କର ଅଟଳ ଜିଦି କଥା ଶୁଣି ଶିବପ୍ରିୟ ଭଗବାନ ବିଷ୍ଣୁ ମଧ୍ୟ ଅବିଳମ୍ବେ ସେଠାରେ ପହଞ୍ଚିଲେ ଓ ଏହିପରି କହିଲେ—

ଶ୍ରୀବିଷ୍ଣୁ କହିଲେ—ହେ ଦେବୀ ! ତୁମେ ପିତୃଗଣଙ୍କ ମାନସୀ କନ୍ୟା ଏବଂ ସେମାନଙ୍କର ଅତି ଅଲିଅଳୀ ମଧ୍ୟ; ପୁଣି ତୁମେ ଗିରିରାଜ ହିମାଳୟଙ୍କର ଗୁଣବତୀ ପତ୍ନୀ । ଏ ଦୃଷ୍ଟିରୁ ଦେଖିଲେ, ସାକ୍ଷାତ୍ ବ୍ରହ୍ମାଙ୍କର ଉତ୍ତମ କୁଳ ସହ ତୁମର ସମ୍ବନ୍ଧ ରହିଛି । ଏପରି ଲୋକେ ଜଗତରେ ତୁମର ସହାୟକ ମଧ୍ୟ । ତୁମେ ଧନ୍ୟ । ମୁଁ ତୁମକୁ କ'ଣ ବା କହିବି? ତୁମେ ତ ଧର୍ମର ଆଧାରଭୂତା, ତେବେ ପୁଣି ତୁମେ ଧର୍ମକୁ ତ୍ୟାଗ କରୁଛ କିପରି? ତୁମେ ଭଲଭାବରେ ଥରେ ଚିନ୍ତା କରି ତ ଦେଖ ! ସମସ୍ତ ଦେବତା, ଋଷି, ବ୍ରହ୍ମା ଓ ମୁଁ— ଆମେ ସମସ୍ତେ କ'ଣ ବିପରୀତ କଥା କହୁଛୁ? ତୁମେ ଶିବଙ୍କୁ ଜାଣି ନାହଁ । ସେ ନିର୍ଗୁଣ ଓ ସଗୁଣ

ଉଭୟ ଅଟନ୍ତି । ସେ ହିଁ କୁରୂପ, ସେ ହିଁ ସୁରୂପ । ସେ ସମସ୍ତଙ୍କର ସେବ୍ୟ ଓ ସାଧୁ-ସଜ୍ଜନଙ୍କର ଆଶ୍ରୟ । ସେ ହିଁ ମୂଳପ୍ରକୃତିରୂପା ଦେବୀ ଈଶ୍ୱରୀଙ୍କୁ ସୃଷ୍ଟି କଲେ ଏବଂ ତାଙ୍କ କଡ଼ରେ ପୁରୁଷୋତ୍ତମଙ୍କୁ ସୃଷ୍ଟି କରି ବସାଇଲେ । ସେହି ଦୁହିଙ୍କ ଠାରୁ ସଗୁଣରୂପରେ ମୋର ତଥା ବ୍ରହ୍ମାଙ୍କର ଉତ୍ପତ୍ତି ହେଲା । ତା'ପରେ ଜଗତର ହିତ ନିମନ୍ତେ ସେ ସ୍ୱୟଂ ମଧ୍ୟ ରୁଦ୍ରରୂପରେ ପ୍ରକଟ ହେଲେ । ତା'ପରେ ବେଦଗଣ, ଦେବଗଣ ଓ ସ୍ଥାବର-ଜଙ୍ଗମ ରୂପରେ ଦୃଶ୍ୟ ହେଉଥିବା ସମଗ୍ର ଜଗତ ମଧ୍ୟ ଭଗବାନ ଶିବଙ୍କ ଠାରୁ ଉତ୍ପନ୍ନ ହେଲା । ତାଙ୍କ ରୂପକୁ ଯଥାର୍ଥରୂପେ କେହି ଆଜି ପର୍ଯ୍ୟନ୍ତ ବର୍ଣ୍ଣନା କରି ପାରି ନାହିଁ । କିଏ ବା ତାଙ୍କ ରୂପକୁ ଜାଣିପାରିବ? ମୁଁ ଏବଂ ବ୍ରହ୍ମା ମଧ୍ୟ ଯାହାଙ୍କ ଅନ୍ତ ପାଇ ନାହୁଁ, ତାଙ୍କ ଅନ୍ତ ଆଉ କିଏ ବା ପାଇ ପାରିବ ! ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି କୀଟ ପର୍ଯ୍ୟନ୍ତ ଯାହା କିଛି ଜଗତରୂପେ ଦେଖା ଯାଉଛି, ଜାଣ ଯେ ସବୁକିଛି ହେଉଛି ଶିବଙ୍କ ରୂପ । ଏ ବିଷୟରେ ଅନ୍ୟଥା ବିଗ୍ୱର କରିବା ଉଚିତ ନୁହେଁ । ସେ ହିଁ ନିଜ ଲୀଳାରେ ଏଭଳି ରୂପରେ ଅବତୀର୍ଣ୍ଣ ହୋଇଛନ୍ତି ଏବଂ ଶିବାଙ୍କ ତପ ପ୍ରଭାବରେ ତୁମ ଦ୍ୱାରକୁ ଆସିଛନ୍ତି । ଏଣୁ ହେ ହିମାଚଳପ୍ରିୟେ ! ତୁମେ ଦୁଃଖ ଛାଡ଼, ଆଉ ଶିବଙ୍କୁ ଭଜ । ଏଥିରୁ ତୁମକୁ ଆନନ୍ଦ ମିଳିବ ଓ ତୁମର କ୍ଳେଶ ନଷ୍ଟ ହୋଇଯିବ ।

ବ୍ରହ୍ମା କହୁଛନ୍ତି—ନାରଦ ! ଶ୍ରୀବିଷ୍ଣୁ ଏପରି ବୁଝାଇବାରୁ ମେନାଙ୍କ ମନ କିଛିଟା ଶାନ୍ତ ହେଲା । ମାତ୍ର ଶିବଙ୍କୁ କନ୍ୟା ନ ଦେବାର ଜିଦି ସେ ଛାଡ଼ିଲେ ନାହିଁ । ଶିବଙ୍କ ମାୟାରେ ମୋହିତ ହେବା କାରଣରୁ ସେ ଏପରି ଦୁରାଗ୍ରହୀ ହୋଇଯାଇଥିଲେ । ଅବଶ୍ୟ ସେତେବେଳେ ମେନା ଶିବଙ୍କ ମହତ୍ତ୍ୱକୁ ସ୍ୱୀକାର କଲେ ଏବଂ ତାଙ୍କର କିଞ୍ଚିତ୍ ଜ୍ଞାନ ଉଦୟ ହେଲା । ତେଣୁ ସେ ଶ୍ରୀହରିଙ୍କୁ କହିଲେ—''ଯଦି ଭଗବାନ ଶିବ ସୁନ୍ଦର ଶରୀର ଧାରଣ କରିବେ, ତେବେ ମୁଁ ମୋ ଝିଅ ତାଙ୍କୁ ଦେଇପାରେ । ଅନ୍ୟଥା କୋଟି ଉପାୟ କଲେ ମଧ୍ୟ ମୁଁ ଦେବି ନାହିଁ । ଏଇଟା ମୋର ଅଟଳ ସିଦ୍ଧାନ୍ତ ।''

ଏତିକି କହି ଦୃଢ଼ବ୍ରତା ମେନା ଶିବେଚ୍ଛାରେ ପ୍ରେରିତ ହୋଇ ଚୁପ୍ ହୋଇଗଲେ । ଧନ୍ୟ କହିବା ଶିବମାୟାକୁ, ସେହି ମାୟା ତ ସମସ୍ତଙ୍କୁ ମୋହରେ ପକାଇଦେଇ ପାରେ !

(ଅଧ୍ୟାୟ ୪୪)



# ଭଗବାନ ଶିବଙ୍କର ଆପଣା ପରମ ସୁନ୍ଦର ରୂପ ପ୍ରକଟନ, ମେନାଙ୍କ ପ୍ରସନ୍ନତା ଓ କ୍ଷମାପ୍ରାର୍ଥନା ଏବଂ ପୁରବାସିନୀ ନାରୀମାନେ ଶିବଙ୍କ ରୂପ ଦର୍ଶନ କରି ନିଜର ଜନ୍ମ ଓ ଜୀବନକୁ ସଫଳ ମଣିବା ପ୍ରସଙ୍ଗ

ବ୍ରହ୍ମା କହୁଛନ୍ତି—ନାରଦ ! ଏତିକିବେଳେ ଭଗବାନ ବିଷ୍ଣୁଙ୍କ ଦ୍ୱାରା ପ୍ରେରିତ ହୋଇ ତୁମେ ଅବିଳମ୍ବେ ଭଗବାନ ଶିବଙ୍କୁ ଅନୁକୂଳ ରୂପ ଧାରଣ କରାଇବାକୁ ଶିବଙ୍କ ନିକଟକୁ ଗଲ । ସେଠାକୁ ଯାଇ ଦେବତାଙ୍କ କାର୍ଯ୍ୟ ସିଦ୍ଧ କରିବା ଇଚ୍ଛାରେ ନାନା ପ୍ରକାର ସ୍ତୋତ୍ରରେ ରୁଦ୍ରଙ୍କୁ ସନ୍ତୁଷ୍ଟ କଲ । ତୁମ କଥା ଶୁଣି ଶମ୍ଭୁ ପ୍ରସନ୍ନତାପୂର୍ବକ ଅତ୍ୟନ୍ତ ଅଦ୍ଭୁତ, ଉତ୍ତମ ଓ ଦିବ୍ୟ ରୂପ ଧାରଣ କଲେ । ସେ ଏପରି କରି ନିଜ ଦୟାଳୁ ସ୍ୱଭାବର ପରିଚୟ ଦେଲେ । ମୁନେ ! ଭଗବାନ ଶମ୍ଭୁଙ୍କର ସେହି ସ୍ୱରୂପ କାମଦେବଙ୍କ ଠାରୁ ମଧ୍ୟ ଅଧିକ ସୁନ୍ଦର ଓ ଲାବଣ୍ୟର ପରମ ଆଶ୍ରୟ ଥିଲା ।

ତାହା ଦର୍ଶନ କରି ତୁମେ ବହୁତ ଖୁସୀ ହେଲ; ତା'ପରେ ତୁମେ ପୁଣି ମେନାଙ୍କ ପାଖକୁ ଗଲ ।

ମେନାଙ୍କ ପାଖରେ ପହଞ୍ଚି ତୁମେ କହିଲ– ବିଶାଳନୟନା ମେନେ ! ଏବେ ତୁମେ ଭଗବାନ ଶିବଙ୍କ ସର୍ବୋତ୍ତମ ରୂପ ଦର୍ଶନ କର । ଏଭଳି ରୂପ ପ୍ରକଟ କରି କରୁଣାମୟ ଶିବ ତୁମ ଉପରେ ବହୁତ ବଡ଼ କୃପା କରିଛନ୍ତି ।

ତୁମ କଥା ଶୁଣି ଶୈଳରାଜଙ୍କ ପତ୍ନୀ ମେନା ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେ ଶିବଙ୍କର ଯେଉଁ ପରମାନନ୍ଦଦାୟକ ରୂପର ଦର୍ଶନ କଲେ, ତାହା ଥିଲା କୋଟିସୂର୍ଯ୍ୟ ତୁଲ୍ୟ ତେଜସ୍ୱୀ, ସର୍ବାଙ୍ଗସୁନ୍ଦର, ମନୋହର ବସ୍ତ୍ର ତଥା ନାନା ଆଭୂଷଣରେ ମଣ୍ଡିତ । ଶିବ ଅତ୍ୟନ୍ତ ପ୍ରସନ୍ନ, ସୁନ୍ଦର ହାସ୍ୟରେ ସୁଶୋଭିତ, ଲାବଣ୍ୟମୟ, ମନୋହର, ଗୌରବର୍ଣ୍ଣ, ଦ୍ୟୁତିମାନ୍ ତଥା ଚନ୍ଦ୍ରକଳାରେ ଅଳଂକୃତ ଥିଲେ । ବିଷ୍ଣୁ ଆଦି ସମସ୍ତ ଦେବତା ସହର୍ଷ ତାଙ୍କର



ସେବା କରୁଥିଲେ । ସୂର୍ଯ୍ୟଦେବ ଛତ୍ର ଧରିଥିଲେ । ଚନ୍ଦ୍ରଦେବ ମସ୍ତକର ମୁକୁଟ ହୋଇ ତାଙ୍କର ଶୋଭା ବଢ଼ାଉଥିଲେ । ଏହି ସବୁ ବିଭୂତିରେ ସମ୍ପନ୍ନ ହୋଇ ଶିବ ଅତ୍ୟନ୍ତ ମନୋରମ ଦିଶୁଥିଲେ । ତାଙ୍କର ବାହନ ମଧ୍ୟ ଅନେକ ପ୍ରକାର ଅଳଂକାରରେ ବିଭୂଷିତ ଥିଲା । ତାହାର ମହାଶୋଭାର ବର୍ଣ୍ଣନା କରିବା ଅସମ୍ଭବ । ଗଙ୍ଗା ଓ ଯମୁନା ଶିବଙ୍କ ପାଇଁ ଚାମର ସେବା କରୁଥିଲେ ଏବଂ ଅଷ୍ଟସିଦ୍ଧି ତାଙ୍କ ଆଗରେ ନାଚୁଥିଲେ । ଭଗବାନ ବିଷ୍ଣୁ ଓ ଇନ୍ଦ୍ରାଦି ଦେବତା ନିଜ ନିଜକୁ ସୁନ୍ଦରଭାବରେ ବିଭୂଷିତ କରି କୈଳାସବାସୀ ଶିବଙ୍କ ସଙ୍ଗରେ ଚାଲୁଥିଲେ । ଶିବଙ୍କର ନାନାରୂପଧାରୀ ଗଣମାନେ ସୁସଜ୍ଜିତ ଓ ଅତ୍ୟନ୍ତ ଆନନ୍ଦିତ ହୋଇ ଶିବଙ୍କ ଆଗେ ଆଗେ ଚାଲୁଥିଲେ । ସିଦ୍ଧଗଣ, ମୁନିଗଣ, ଉପଦେବତା ତଥା ଅନ୍ୟମାନେ ପରମ ସୁଖ ଅନୁଭବ କରିବା ସହିତ ପ୍ରସନ୍ନ ମନରେ ଶିବଙ୍କ ସହିତ ଯାତ୍ରା କରୁଥିଲେ । ଦେବତା ପ୍ରଭୃତି ବିବାହ ଦେଖିବାକୁ ଉତ୍କଣ୍ଠିତ ହୋଇ ଅତ୍ୟନ୍ତ ସଜବାଜ ହୋଇ ସପତ୍ନୀକ ପରବ୍ରହ୍ମ ଶିବଙ୍କ ଯଶୋଗାନ କରି କରି ଯାଉଥିଲେ । ବିଶ୍ୱାବସୁ ଆଦି ଗନ୍ଧର୍ବମାନେ ଅପ୍ସରାଗଣଙ୍କ ସହିତ ଶିବଙ୍କର ମହିମା ଗାନ କରି କରି ତାଙ୍କ ଆଗେ ଆଗେ ଚାଲୁଥିଲେ । ମୁନିଶ୍ରେଷ୍ଠ ! ଏହିପରି ନାନାବିଧ ଉତ୍ସବମୟ ପରିବେଶରେ ମହେଶ୍ୱର ଶୈଳରାଜଙ୍କ ଦ୍ୱାରଦେଶରେ ପହଞ୍ଚିଲେ । ସେତେବେଳେ ଶିବ ଯେଉଁ ପରି ଶୋଭା ପାଉଥିଲେ, ତାହା ବର୍ଣ୍ଣନା କରିବାକୁ କିଏ ବା ସମର୍ଥ ହେବ? ତାଙ୍କର ଏଭଳି ଅନୁପମ ରୂପକୁ ଦେଖି ମେନା କ୍ଷଣକ ପାଇଁ ସ୍ତମ୍ଭୀଭୂତ ହୋଇଗଲେ । ତା'ପରେ ସେ ଅତି ପ୍ରସନ୍ନଚିତ୍ତରେ କହିଲେ, "ହେ ମହେଶ୍ୱର ! ମୋ କନ୍ୟା ଧନ୍ୟ, ଯେ କି ଏତେ ବଡ଼ ତପସ୍ୟା କଲା; ଆଉ ସେହି ତପସ୍ୟାର ପ୍ରଭାବରେ ଆପଣ ମୋ ଗୃହରେ ପଦାର୍ପଣ କଲେ । ହେ

ଶିବାପତି ! ପ୍ରଥମେ ମୁଁ ଆପଣଙ୍କୁ ଯେଉଁ ଅକ୍ଷମ୍ୟ ନିନ୍ଦା କରିଛି, ତାହାକୁ କ୍ଷମା କରିଦିଅନ୍ତୁ । ମୋ ଉପରେ ପ୍ରସନ୍ନ ହୁଅନ୍ତୁ ।''

ବ୍ରହ୍ମା କହୁଛନ୍ତି—ନାରଦ ! ଶୈଳପ୍ରିୟା ମେନା ଏପରି କହି ଚନ୍ଦ୍ରମୌଳିଙ୍କୁ ସ୍ତୁତି କରିବା ସହ କର ଯୋଡ଼ି ପ୍ରଣାମ କଲେ ଏବଂ ନିଜକୁ ଲଜ୍ଜିତ ଅନୁଭବ କଲେ । ଇତିମଧ୍ୟରେ ଅନେକ ସଂଖ୍ୟାରେ ପୁରବାସିନୀ ନାରୀ ଭଗବାନ ଶିବଙ୍କ ଦର୍ଶନ ଲାଳସାରେ ସମସ୍ତ କାମଧନ୍ଦା ଛାଡ଼ି ଅସ୍ତବ୍ୟସ୍ତ ହୋଇ ସେଠାକୁ ଦୌଡ଼ି ଆସିଲେ । ଶିବଙ୍କର ମନୋହର ରୂପ ଦେଖି ସେମାନେ ମୋହିତ ହୋଇଗଲେ । ସେହି ପ୍ରେମମୟୀ ନାରୀମାନେ ମହେଶ୍ୱରଙ୍କ ଅନୁପମ ରୂପ ଦର୍ଶନରେ ହର୍ଷିତ ହୋଇ ତାଙ୍କ ରୂପକୁ ମନ-ମନ୍ଦିରରେ ବିରାଜମାନ କରାଇ ଏହିପରି କହିଲେ—

ହିମାଚଳ ପୁରବାସିନୀମାନେ କହିଲେ—ଅହୋ ! ଆମ୍ଭମାନଙ୍କ ନେତ୍ର ଆଜି ସଫଳ ହୋଇଗଲା । ଯେଉଁମାନେ ଏହି ଦିବ୍ୟ ରୂପକୁ ଦର୍ଶନ କଲେ, ନିଶ୍ଚୟ ସେମାନଙ୍କ ଜନ୍ମ ସାର୍ଥକ ହୋଇଗଲା । ଯେ ଆଜି ସମସ୍ତ ପାପନାଶକାରୀ ସାକ୍ଷାତ୍ ଶିବଙ୍କୁ ଦର୍ଶନ କଲା, ତା'ର ଜନ୍ମ ଓ ସମସ୍ତ କ୍ରିୟା ସଫଳ ହୋଇଗଲା । ପାର୍ବତୀ ଶିବଙ୍କ ପାଇଁ ଯେଉଁ ତପ କରିଛି, ତଦ୍ଦ୍ୱାରା ସେ ସମସ୍ତ ମନୋରଥ ସିଦ୍ଧ କରିନେଲା । ଶିବଙ୍କୁ ସ୍ୱାମୀରୂପେ ପାଇ ଶିବା ଧନ୍ୟ ଓ କୃତକୃତ୍ୟ ହୋଇଗଲା । ଯଦି ବିଧାତା ଶିବା ଓ ଶିବଙ୍କୁ ପରସ୍ପର ସହିତ ମିଳାଇ ନ ଥାନ୍ତେ, ତେବେ ତାଙ୍କର ସମସ୍ତ ପରିଶ୍ରମ ବୃଥା ହୋଇ ଯାଇଥାନ୍ତା । ଏଭଳି ଉତ୍ତମ ଯୋଡ଼ିଙ୍କୁ ମିଳାଇ ବ୍ରହ୍ମା ବହୁତ ଭଲ କାର୍ଯ୍ୟ କରିଛନ୍ତି । ଏହାଦ୍ୱାରା ସମସ୍ତଙ୍କର ସବୁ କାର୍ଯ୍ୟ ସାର୍ଥକ ହୋଇଗଲା । ତପସ୍ୟା ବିନା ଶମ୍ଭୁଙ୍କ ଦର୍ଶନ ଦୁର୍ଲଭ । ଭଗବାନ ଶଙ୍କରଙ୍କ ଦର୍ଶନମାତ୍ରକେ ସବୁଲୋକ କୃତାର୍ଥ ହୋଇଗଲେ । ଯେଉଁ ପୁରୁଷମାନେ ସର୍ବେଶ୍ୱର ଗିରିଜାପତି ଶଙ୍କରଙ୍କର ଦର୍ଶନ ପାଇଲେ, ସେମାନେ ଶ୍ରେଷ୍ଠ ଓ ଆମେ ସବୁ ନାରୀ ମଧ୍ୟ ଧନ୍ୟ ।

ବ୍ରହ୍ମା କହୁଛନ୍ତି—ନାରଦ ! ନାରୀମାନେ ଏପରି କହି ଚନ୍ଦନ ଓ ଅକ୍ଷତରେ ଶିବଙ୍କୁ ପୂଜା କଲେ ଓ ଅତ୍ୟନ୍ତ ଆଦର-ସମ୍ମାନରେ ତାଙ୍କ ଉପରେ ଖଇ ବର୍ଷା କଲେ । ସେମାନେ ଉତ୍ସୁକତାର ସହ ମେନାଙ୍କ ସଙ୍ଗରେ ଛିଡ଼ା ହୋଇରହିଲେ ଏବଂ ମେନା ଓ ହିମବାନଙ୍କ ଭାଗ୍ୟକୁ ଭୂରି ଭୂରି ପ୍ରଶଂସା କଲେ । ମୁନେ ! ନାରୀମାନଙ୍କ ମୁଖରୁ ଏପରି ଶୁଭବାର୍ତ୍ତା ଶୁଣି ବିଷ୍ଣୁ ପ୍ରଭୃତି ଦେବଗଣ ଓ ଭଗବାନ ଶିବ ଅତ୍ୟନ୍ତ ହର୍ଷିତ ହେଲେ ।

(ଅଧ୍ୟାୟ ୪୫)



# ଦ୍ୱାରଦେଶରେ ଶିବଙ୍କୁ ମେନାଙ୍କର ବନ୍ଦାପନା ଓ ଶିବଙ୍କ ରୂପଦର୍ଶନରେ ମେନାଙ୍କୁ ସୁଖାନୁଭୂତି, ଅନ୍ୟାନ୍ୟ ଯୁବତୀଙ୍କ ମୁଖରୁ ବରର ପ୍ରଶଂସା, ଅମ୍ବିକାପୂଜନ ଉଦ୍ଦେଶ୍ୟରେ ଅନ୍ତଃପୁରରୁ ପାର୍ବତୀଙ୍କର ବହିରାଗମନ ଏବଂ ପାର୍ବତୀଙ୍କ ରୂପଦର୍ଶନରେ ଦେବଗଣ ତଥା ଭଗବାନ ଶିବଙ୍କୁ ପ୍ରସନ୍ନତା ଲାଭ

ବ୍ରହ୍ମା କହୁଛନ୍ତି—ନାରଦ ! ତା'ପରେ ଭଗବାନ ଶିବ ପ୍ରସନ୍ନଚିତ୍ତରେ ନିଜର ଗଣ, ଦେବଗଣ ଓ ଅନ୍ୟମାନଙ୍କ ସହିତ କୌତୂହଳବଶତଃ ଗିରିରାଜ ହିମବାନଙ୍କ ଭବନକୁ ଗଲେ । ହିମବାନଙ୍କ ପତ୍ନୀ

ମେନା ମଧ୍ୟ ନାରୀମାନଙ୍କ ଗହଣରେ ଘର ଭିତରକୁ ଗଲେ ଏବଂ ଶମ୍ଭୁଙ୍କୁ ବନ୍ଦେଇବା ନିମନ୍ତେ ଦୀପରେ ସଜ୍ଜିତ ବନ୍ଦାଣ ଥାଳି ଧରି ସମସ୍ତ ଋଷିପତ୍ନୀ ତଥା ଅନ୍ୟ ନାରୀମାନଙ୍କ ସଙ୍ଗେ ଆଦରରେ ଦ୍ୱାରଦେଶକୁ ଆସିଲେ । ସେଠାକୁ ଆସି ମେନା ଅତି ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଦେବଗଣଙ୍କ ସେବିତ ଗିରିଜାପତି ମହେଶ୍ୱରଙ୍କୁ ଚାହିଁଲେ । ଶିବଙ୍କ ଅଙ୍ଗକାନ୍ତି ମନୋହର ଚମ୍ପା ପରି ଉଜ୍ଜ୍ୱଳ ଥିଲା । ତାଙ୍କର ଗୋଟିଏ ମୁଖ ଓ ତିନିଟି ନେତ୍ର ଥିଲା । ତାଙ୍କ ପ୍ରସନ୍ନ ମୁଖାରବିନ୍ଦରେ ଖେଳିଯାଉଥିଲା ମନ୍ଦ ମନ୍ଦ ସ୍ମିତହାସ । ସେ ରତ୍ନ ଓ ସୁବର୍ଣ୍ଣ ପ୍ରଭୃତିରେ ବିଭୂଷିତ ଥିଲେ । ଗଳାରେ ମାଳତୀମାଳା ପିନ୍ଧିଥିଲେ । ମନୋରମ ମୁକୁଟ ଧାରଣ କରିଥିବାରୁ ତାଙ୍କର ମୁଖମଣ୍ଡଳ ଉଜ୍ଜ୍ୱଳ ପ୍ରଭାରେ ଉଦ୍ଭାସିତ ହେଉଥିଲା । କଣ୍ଠରେ ଶୋଭା ପାଉଥିଲା ହାର ପ୍ରଭୃତି ମନୋହର ଆଭରଣ । ସୁନ୍ଦର ସୁନ୍ଦର କଡ଼ା ଓ ବାଜୁବନ୍ଧ ତାଙ୍କ ଭୁଜଦଣ୍ଡକୁ ବିଭୂଷିତ କରୁଥିଲେ । ଅଗ୍ନି ତୁଲ୍ୟ ନିର୍ମଳ ଓ ଅତ୍ୟନ୍ତ ସୂକ୍ଷ୍ମ, ମନୋହର, ଅନୁପମ ତଥା ବହୁମୂଲ୍ୟ ବସ୍ତ୍ରଯୁଗଳ ତାଙ୍କ ଶରୀରରେ ଶୋଭା ପାଉଥିଲା । ଚନ୍ଦନ, ଅଗୁରୁ, କସ୍ତୂରୀ ଓ ମନୋହର କୁଙ୍କୁମାଦି ଅଙ୍ଗରାଗରେ ତାଙ୍କ କଳେବର ବିଭୂଷିତ ଥିଲା । ସେ ହାତରେ ଧରିଥିଲେ ରତ୍ନମୟ ଦର୍ପଣ ଓ ତାଙ୍କର ଦୁଇ ନେତ୍ର କଜ୍ଜଳରେ ସୁଶୋଭିତ ହେଉଥିଲା । ସେ ନିଜ ପ୍ରଭାରେ ସମସ୍ତଙ୍କୁ ଝଲସାଇ ଦେଉଥାନ୍ତି ଏବଂ ପରମ ମନୋହର ଦିଶୁଥାନ୍ତି । ତାଙ୍କର ତନୁ ଅତ୍ୟନ୍ତ ତରୁଣ, ପରମ ସୁନ୍ଦର ଓ ଆଭୂଷଣରେ ମଣ୍ଡିତ ହୋଇଥାଏ । ସେ କାମିନୀଙ୍କ ପାଇଁ ଅତ୍ୟନ୍ତ କମନୀୟ ମନେ ହେଉଥାନ୍ତି । ତାଙ୍କ ମୁଦ୍ରାରେ ଟିକିଏ ବି ବ୍ୟଗ୍ରତା ପରିଲକ୍ଷିତ ହେଉ ନ ଥାଏ । ତାଙ୍କ ମୁଖମଣ୍ଡଳ କୋଟି ଚନ୍ଦ୍ରମାକୁ ଜିଣିଲା ପରି ଆହ୍ଲାଦକର ଥିଲା ଆଉ ରୂପଛଟା ଥିଲା କୋଟି କାମଦେବଙ୍କ ଠାରୁ ଅଧିକ ମନୋହର । ସେ ଥିଲେ ସର୍ବାଙ୍ଗସୁନ୍ଦର । ଏଭଳି ଉତ୍କୃଷ୍ଟ ରୂପସମ୍ପନ୍ନ ଭଗବାନ ଶିବଙ୍କୁ ଜାମାତା ରୂପରେ ଦେଖି ମେନାଙ୍କର ସମସ୍ତ ଶୋକ ଦୂର ହୋଇଗଲା । ସେ ପରମାନନ୍ଦସିନ୍ଧୁରେ ନିମଗ୍ନ ହୋଇଗଲେ ଓ ନିଜ ଭାଗ୍ୟକୁ, ଗିରିଜାଙ୍କୁ, ଗିରିରାଜ ହିମବାନଙ୍କୁ ଓ ସମଗ୍ର କୁଳକୁ ଭୂରି ଭୂରି ପ୍ରଶଂସା କଲେ । ସେ ନିଜକୁ କୃତାର୍ଥ ମଣୁଥାନ୍ତି ଓ ବାରମ୍ବାର ହର୍ଷିତ ହେଉଥାନ୍ତି । ସତୀ ମେନାଙ୍କ ମୁଖ ସେତେବେଳେ ପ୍ରସନ୍ନତାରେ ପ୍ରଫୁଲ୍ଲିତ ହୋଇ ଉଠିଥିଲା । ସେ ନିଜ ଜାମାତାଙ୍କ ଶୋଭାକୁ ସାନନ୍ଦ ଅବଲୋକନ କରି ତାଙ୍କୁ ବନ୍ଦେଇବାକୁ ଲାଗିଲେ । ଗିରିଜାଙ୍କ କଥାକୁ ବାରମ୍ବାର ସ୍ମରଣ କରି ମେନାଙ୍କୁ ଅତି ଆଶ୍ଚର୍ଯ୍ୟ ଲାଗୁଥିଲା । ସେ ହର୍ଷୋତ୍‌ଫୁଲ୍ଲ ମୁଖାରବିନ୍ଦରେ ମନେ ମନେ ଭାବୁଥାନ୍ତି—''ପାର୍ବତୀ ମୋତେ ଯେପରି କହିଥିଲା, ତାହାଠାରୁ ତ ଅଧିକ ସୌନ୍ଦର୍ଯ୍ୟ ମୁଁ ଏ ପରମେଶ୍ୱର ଶିବଙ୍କ ଅଙ୍ଗରେ ଦେଖୁଛି । ଏବେ ତ ମହେଶ୍ୱରଙ୍କ ମନୋହର ରୂପଲାବଣ୍ୟ ଅବର୍ଣ୍ଣନୀୟ ।'' ଏଭଳି ଚିନ୍ତା କରି ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଘର ଭିତରକୁ ଗଲେ ।

ଯୁବତୀମାନେ ବରର ମନୋହର ରୂପ ଦେଖି ଭୂରି ଭୂରି ପ୍ରଶଂସା କଲେ । ସେମାନେ କହିଲେ—''ଗିରିରାଜନନ୍ଦିନୀ ଅତ୍ୟନ୍ତ ଧନ୍ୟ ।'' କେତେକ କନ୍ୟା କହିଲେ—''ଏ ପାର୍ବତୀ ତ ସାକ୍ଷାତ୍ ଭଗବତୀ ଦୁର୍ଗା ଅଟନ୍ତି ।'' ଆଉ କେତେକ ମହାରାଣୀ ମେନାଙ୍କୁ କହିଲେ—''ଆମେ ତ କେବେ ବି ଏଭଳି ବର ଦେଖିନୁ, କେବେ ଧ୍ୟାନରେ ମଧ୍ୟ ଏଭଳି ବରକୁ ଅବଲୋକନ କରିନୁ । ଏହାଙ୍କୁ ପାଇ ଗିରିଜା ଧନ୍ୟ ହୋଇଗଲେ ।'' ଭଗବାନ ଶଙ୍କରଙ୍କର ଏଭଳି ରୂପ ଦେଖି ସମସ୍ତ ଦେବତା ହର୍ଷରେ ପ୍ରଫୁଲ୍ଲିତ ହୋଇ ଉଠିଥାନ୍ତି ।

ଶ୍ରେଷ୍ଠ ଗନ୍ଧର୍ବମାନେ ତାଙ୍କର ଯଶ ଗାନ କରୁଥାନ୍ତି ଓ ଅପ୍ସରାମାନେ ନୃତ୍ୟ କରୁଥାନ୍ତି । ବାଦକମାନେ ମଧୁର ଧ୍ୱନିରେ ଅନେକ ପ୍ରକାର କଳା ପ୍ରଦର୍ଶନ କରି କରି ଆଦରରେ ନାନା ପ୍ରକାର ବାଦ୍ୟ ବଜାଉଥାନ୍ତି । ଇତିମଧ୍ୟରେ ହିମାଚଳ ଆନନ୍ଦରେ ଦ୍ୱାରୋଚିତ ମଙ୍ଗଳାଗ୍ର୍ର ଆରମ୍ଭ କଲେ । ମେନା ଏଭଳି ପରମ ଉତ୍ସବମୟ ବାତାବରଣରେ ନାରୀମାନଙ୍କ ସଙ୍ଗେ ଆସି ବରକୁ ଆଳତି ଓ ବନ୍ଦାପନା କଲେ ଏବଂ ଆନନ୍ଦମନରେ ଘରକୁ ଫେରିଗଲେ । ଏହାପରେ ଭଗବାନ ଶିବ ନିଜ ଗଣ ଓ ଦେବତାଙ୍କ ସହିତ ତାଙ୍କ ରହଣି ପାଇଁ ସ୍ଥିରୀକୃତ ହୋଇଥିବା ଘରକୁ ଗଲେ ।

ଇତିମଧ୍ୟରେ ଗିରିରାଜଙ୍କ ଅନ୍ତଃପୁରର ନାରୀମାନେ ଦୁର୍ଗାଙ୍କୁ ସାଙ୍ଗରେ ଘେନି କୁଳଦେବୀଙ୍କ ପୂଜା ପାଇଁ ବାହାରିଲେ । ସେଠାରେ ଦେବତାମାନେ ଅପଲକ ନୟନରେ ସହର୍ଷ ପାର୍ବତୀଙ୍କୁ ଦର୍ଶନ କଲେ । ଦେବୀଙ୍କ ଅଙ୍ଗକାନ୍ତି ନୀଳାଞ୍ଜନ ସଦୃଶ ଥିଲା । ତାଙ୍କର ସର୍ବାଙ୍ଗ ଥିଲା ଅତ୍ୟନ୍ତ ମନୋହର । ସେ ଭଗବାନ ତ୍ରିଲୋଚନଙ୍କୁ ତେରେଛା ଚାହାଣିରେ ଚାହୁଁଥିଲେ, ଅନ୍ୟ କୌଣସି ପୁରୁଷ ଉପରକୁ ତାଙ୍କର ଦୃଷ୍ଟି ନ ଥିଲା । ତାଙ୍କର ପ୍ରସନ୍ନ ମୁଖମଣ୍ଡଳ ସ୍ମିତହାସରେ ସୁଶୋଭିତ ଥିଲା । ସେ କଟାକ୍ଷପୂର୍ଣ୍ଣ ଦୃଷ୍ଟିରେ ଚାହିଁଲା ବେଳେ ଅତ୍ୟନ୍ତ ମନୋହାରିଣୀ ଦିଶୁଥିଲେ । ତାଙ୍କର ବେଣୀ ଥିଲା ଅତ୍ୟନ୍ତ ସୁନ୍ଦର । କପୋଳ ଉପରେ ଚିତ୍ରିତ ପତ୍ରବଲ୍ଲୀ ତାଙ୍କର ଶୋଭା ବଢ଼ାଉଥିଲା । ଲଲାଟରେ କସ୍ତୁରୀ ସହିତ ସିନ୍ଦୂରବିନ୍ଦୁ ଶୋଭାୟମାନ ହେଉଥିଲା । ବକ୍ଷଃସ୍ଥଳରେ ଝୁଲୁଥିବା ଉତ୍ତମ ରତ୍ନର ହାରଗୁଡ଼ିକରୁ ଦିବ୍ୟ ଦୀପ୍ତି ବିଚ୍ଛୁରିତ ହେଉଥିଲା । ରତ୍ନର କେୟୂର, ବଳୟ ଓ କଙ୍କଣରେ ତାଙ୍କର ଭୁଜଯୁଗଳ ଅଳଂକୃତ ଥିଲା । ରତ୍ନଖଚିତ କୁଣ୍ଡଳର ଆଭାରେ ତାଙ୍କର ମନୋହର କପୋଳ ଝଟକୁଥିଲା । ମଣି ଓ ରତ୍ନର ପ୍ରଭାକୁ ନିନ୍ଦା କରୁଥିବା ଶୁଭ୍ର ଦନ୍ତପଂକ୍ତି ମୁଖର ଶୋଭାବର୍ଦ୍ଧନ କରୁଥିଲା । ମଧୁପୂରିତ ଅଧର ଓ ଓଷ୍ଠ ଥିଲା ବିମ୍ବଫଳ ସଦୃଶ ଲାଲ୍ । ଉଭୟ ଚରଣରେ ଶୋଭା ପାଉଥିଲା ରତ୍ନାଭ ଅଳତା । ସେ ଗୋଟିଏ ହାତରେ ଧରିଥିଲେ ଦର୍ପଣ ଓ ଅନ୍ୟ ହାତରେ କ୍ରୀଡ଼ାପଦ୍ମ । ତାଙ୍କ ଅଙ୍ଗରେ ଲେପିତ ହୋଇଥିଲା ଚନ୍ଦନ, ଅଗୁରୁ, କସ୍ତୁରୀ ଓ କୁଙ୍କୁମର ଅଙ୍ଗରାଗ । ପାଦରେ ନୂପୁର ରୁଣୁଝୁଣୁ ବାଜୁଥିଲା । ତଳିପା ରକ୍ତିମ ଆଭାରେ ଶୋଭମାନ ଥିଲା । ଦେବତା ପ୍ରଭୃତି ଜଗତର ଆଦିକାରଣସ୍ୱରୂପା ଜଗଜ୍ଜନନୀ ପାର୍ବତୀଙ୍କୁ ଦେଖି ଭକ୍ତିଭାବରେ ମସ୍ତକ ଅବନତ କରି ମେନାଙ୍କ ସହିତ ତାଙ୍କୁ ପ୍ରଣାମ କଲେ । ତ୍ରିଲୋଚନ ମଧ୍ୟ ପ୍ରସନ୍ନତାପୂର୍ବକ ବାଙ୍କ ଚାହାଣିରେ ତାଙ୍କୁ ଚାହିଁଲେ ଏବଂ ତାଙ୍କ ଠାରେ ସତୀଙ୍କ ଆକୃତି ଦେଖି ବିରହ-ବେଦନା ଭୁଲିଗଲେ । ଶିବାଙ୍କ ଉପରେ ଏକଲୟରେ ଦୃଷ୍ଟି ପକାଇ ଶିବ ସେତେବେଳେ ସବୁ କିଛି ଭୁଲିଗଲେ । ହର୍ଷ ଓ ପ୍ରସନ୍ନତା ହେତୁ ତାଙ୍କ ସର୍ବାଙ୍ଗ ପୁଲକିତ ହୋଇଉଠିଲା ।

ଏଣେ କାଳୀ ଅନ୍ତଃପୁରରୁ ବାହାରକୁ ଯାଇ ଅମ୍ବିକାଦେବୀଙ୍କ ପୂଜା ସାରିବା ପରେ ବ୍ରାହ୍ମଣପତ୍ନୀଙ୍କ ସଙ୍ଗରେ ପୁନଃ ନିଜ ପିତାଙ୍କ ରମଣୀୟ ଭବନକୁ ଫେରିଆସିଲେ । ଭଗବାନ ଶଙ୍କର ମଧ୍ୟ ହିମାଚଳ ବ୍ୟବସ୍ଥା କରିଥିବା ନିୟତ ସ୍ଥାନକୁ ଚାଲିଗଲେ; ତାଙ୍କ ସଙ୍ଗରେ ଆମେ ସବୁ ଦେବଗଣ ଥିଲୁ ଏବଂ ବିଷ୍ଣୁ ମଧ୍ୟ ଥିଲେ । ସେଠାରେ ସମସ୍ତେ ଗିରିରାଜଙ୍କର ନାନା ପ୍ରକାର ସୁନ୍ଦର ସମୃଦ୍ଧିରେ ସମ୍ମାନିତ ହୋଇ ସୁଖରେ ବାସ କରିବା ସଙ୍ଗେ ସଙ୍ଗେ ଶିବଙ୍କ ସେବାରେ ଅଭିରତ ରହିଲେ ।

(ଅଧ୍ୟାୟ ୪୬)

★★★

# ବରପକ୍ଷର ଆଭୂଷଣରେ ବିମଣ୍ଡିତା ଶିବାଙ୍କ ଆଳତି, କନ୍ୟାଦାନ ସମୟ ହେବାରୁ ହିମାଳୟଙ୍କ ଗୃହ-ଅଗଣାକୁ ବର ସଙ୍ଗରେ ଦେବଗଣଙ୍କ ଆଗମନ ତଥା ବର ଓ କନ୍ୟାଙ୍କର ପାରସ୍ପରିକ ପୂଜନ

ବ୍ରହ୍ମା କହୁଛନ୍ତି—ନାରଦ ! ତା'ପରେ ଗିରିଶ୍ରେଷ୍ଠ ହିମବାନ ପ୍ରସନ୍ନତା ଓ ଉତ୍ସାହର ସହ ବେଦମନ୍ତ୍ର ଉଚ୍ଚାରଣପୂର୍ବକ ଦୁର୍ଗା ଓ ଶିବଙ୍କୁ ଉପସ୍ନାନ କରାଇଲେ । ତା'ପରେ ଗିରିରାଜଙ୍କ ପ୍ରାର୍ଥନାକ୍ରମେ ବିଷ୍ଣୁ ଆଦି ଦେବତା ଓ ମୁନିଗଣ କୌତୂହଳବଶତଃ ତାଙ୍କ ଗୃହମଧ୍ୟକୁ ଗଲେ । ସେଠାରେ ସେମାନେ ଯଥାର୍ଥ ରୀତିରେ ବୈଦିକ ଓ ଲୌକିକ ଆଗ୍ରହ ପାଳନ କରି ଭଗବାନ ଶିବଙ୍କ ପ୍ରଦତ୍ତ ଆଭୂଷଣରେ ଦେବୀ ଶିବାଙ୍କୁ ଅଳଂକୃତ କଲେ । ସଖୀମାନେ ଓ ବ୍ରାହ୍ମଣପତ୍ନୀମାନେ ପ୍ରଥମେ ପାର୍ବତୀଙ୍କୁ ସ୍ନାନ କରାଇଲେ, ତା'ପରେ ସବୁ ପ୍ରକାର ବସ୍ତ୍ରାଭୂଷଣ ଦ୍ୱାରା ତାଙ୍କୁ ଅଳଂକୃତ କରି ବନ୍ଦାଇଲେ । ତ୍ରିଲୋକର ଜନନୀ ମହାଶୈଳପୁତ୍ରୀ ସୁନ୍ଦରୀ ଶିବା ଦିବ୍ୟ ବସ୍ତ୍ରାଭୂଷଣରେ ସୁସଜ୍ଜିତ ହୋଇ ମନ ମଧ୍ୟରେ ଭଗବାନ ଶିବଙ୍କୁ ଧ୍ୟାନ କରି ସେଠାରେ ବସିଲେ । ସେତେବେଳେ ତାଙ୍କର ଶୋଭା ଅନୁପମ ଥିଲା । ସେହି ଅବସରରେ ଉଭୟପକ୍ଷରେ ପରମ ଆନନ୍ଦମୟ ମହାନ୍ ଉତ୍ସବ ହେଲା । ବ୍ରାହ୍ମଣମାନଙ୍କୁ ଶାସ୍ତ୍ରୋକ୍ତ ରୀତିରେ ନାନା ପ୍ରକାର ଦାନ ଦିଆଗଲା । ଅନ୍ୟଲୋକଙ୍କୁ ମଧ୍ୟ ନାନା ପ୍ରକାର ଦ୍ରବ୍ୟ ବଣ୍ଟାଗଲା । ବିଶେଷ ଉତ୍ସବ ସହିତ ଗୀତ ଓ ବାଦ୍ୟ ଇତ୍ୟାଦି ଦ୍ୱାରା ଲୋକମାନଙ୍କର ମନୋରଞ୍ଜନ କରାଗଲା । ତା'ପରେ ମୁଁ ବ୍ରହ୍ମା, ଭଗବାନ ବିଷ୍ଣୁ, ଇନ୍ଦ୍ରାଦି ଦେବତା ଓ ମୁନିମାନେ ପ୍ରସନ୍ନତାପୂର୍ବକ ଉତ୍ସବ କଲୁ ଏବଂ ଭକ୍ତିଭାବରେ ଶିବାଙ୍କୁ ପ୍ରଣାମ କରିବା ପରେ ଶିବଙ୍କ ଚରଣାରବିନ୍ଦକୁ ଚିନ୍ତନ କରି ନିଜ ନିଜ ସ୍ଥାନକୁ ଫେରିଗଲୁ ।

ଏହାପରେ କନ୍ୟାଦାନ ସମୟ ଆସିଲାରୁ ଗର୍ଗାଗ୍ରର୍ଯ୍ୟ ଶିବଙ୍କୁ ଓ ବରଯାତ୍ରୀଙ୍କୁ ଡାକିବାକୁ ହିମାଚଳଙ୍କୁ ନିର୍ଦ୍ଦେଶ ଦେଲେ । ଏତିକିବେଳେ ଗହଗହ ନାଦରେ ବାଜା ବାଜିଲା । ହିମାଚଳଙ୍କ ମନ୍ତ୍ରୀମାନେ ଯାଇ ବର ଓ ବରଯାତ୍ରୀମାନଙ୍କୁ ଶୀଘ୍ର ଉପସ୍ଥିତ ହେବାକୁ ପ୍ରାର୍ଥନା କରି କହିଲେ— "ପାଣିଗ୍ରହଣର ସମୟ ହୋଇଗଲାଣି । ତେଣୁ ଆପଣମାନେ ଶୀଘ୍ର ମଣ୍ଡପରେ ଉପସ୍ଥିତ ହୁଅନ୍ତୁ ।" ତା'ପରେ ଭଗବାନ ଶିବଙ୍କୁ ସୁନ୍ଦର ବସ୍ତ୍ରାଭୂଷଣରେ ସୁସଜ୍ଜିତ କରି ଓ ବୃଷଭପୃଷ୍ଠରେ ଆରୂଢ଼ କରାଇ ଜୟକାର କରି କରି ସମସ୍ତେ ଚାଲିଲେ । ଶିବ ଆଗରେ ଥିଲେ, ତାଙ୍କ ପଛରେ ବାଜା ବଜାଇ ଓ କୌତୁକ କରି କରି ବରଯାତ୍ରୀମାନେ ହିମାଳୟଙ୍କ ଗୃହକୁ ଗଲେ । ହିମାଳୟଙ୍କ ପକ୍ଷର ବ୍ରାହ୍ମଣମାନେ ଓ ଶ୍ରେଷ୍ଠ ପର୍ବତମାନେ କୌତୂହଳବଶତଃ ଶମ୍ଭୁଙ୍କ ଆଗେ ଆଗେ ଚାଲୁଥିଲେ । ଭଗବାନଙ୍କ ମସ୍ତକ ଉପରେ ବହୁତ ବଡ଼ ଛତ୍ର ଧରାଯାଇଥିଲା । ଚତୁର୍ଦ୍ଦିଗରୁ ତାଙ୍କ ଉପରେ ଚାମର ଢଳାଯାଉଥିଲା । ମହେଶ୍ୱର ଚାନ୍ଦୁଆର ତଳେ ତଳେ ଚାଲୁଥିଲେ । ମୁଁ, ବିଷ୍ଣୁ, ଇନ୍ଦ୍ର ଓ ଲୋକପାଳମାନେ—ଆମେ ସମସ୍ତେ ଆଗରେ ରହି ତାଙ୍କର ଶୋଭାବର୍ଦ୍ଧନ କରୁଥିଲୁ । ସେତେବେଳେ ଶଙ୍ଖ, ଭେରୀ, ପଟହ, ଆନକ ଓ ଗୋମୁଖ ଇତ୍ୟାଦି ବାଦ୍ୟ ବାଜୁଥାଏ । ଏ ସମସ୍ତ ସାଜସାମଗ୍ରୀ ସହିତ ଜଗତର ଏକମାତ୍ର ଈଶ୍ୱର ଦୀନବନ୍ଧୁ ଶମ୍ଭୁ ପରମେଶ୍ୱରୋଚିତ ତେଜରେ ସମ୍ପନ୍ନ ହୋଇ ଯାତ୍ରା କରୁଥିଲେ । ଦେବେଶ୍ୱରଗଣ ତାଙ୍କ ସେବାରେ ଉପସ୍ଥିତ ରହି ଅତ୍ୟନ୍ତ ହର୍ଷ ଓ ଉଲ୍ଲାସରେ ତାଙ୍କ ଉପରେ ପୁଷ୍ପବୃଷ୍ଟି କରୁଥିଲେ । ଏହିପରି ପୂଜିତ ହୋଇ ଓ ଅନେକାନେକ ସ୍ତୁତି

ଦ୍ୱାରା ପ୍ରଶଂସିତ ହୋଇ ପରମେଶ୍ୱର ଶିବ ଯଜ୍ଞମଣ୍ଡପରେ ପ୍ରବେଶ କଲେ । ଶ୍ରେଷ୍ଠ ପର୍ବତମାନେ ଶିବଙ୍କୁ ବୃଷଭପୃଷ୍ଠରୁ ଓହ୍ଲାଇଦେଲେ ଏବଂ ହର୍ଷୋଲ୍ଲାସ ଓ ଆଦରରେ ଘର ଭିତରକୁ ନେଇଗଲେ । ହିମାଳୟ ମଧ୍ୟ ଗୃହାଗତ ଦେବଗଣଙ୍କ ସମେତ ପରମେଶ୍ୱରଙ୍କୁ ବିଧିପୂର୍ବକ ଭକ୍ତିଭାବରେ ପ୍ରଣାମ କରି ତାଙ୍କର ଆଳତି କଲେ । ତା'ପରେ ନିଜ ଭାଗ୍ୟର ପ୍ରଶଂସା କରିବା ସହିତ ସେ ସକଳ ଦେବତା ଓ ମୁନିଗଣଙ୍କୁ ମଧ୍ୟ ପ୍ରଣାମ କରି ସେମାନଙ୍କୁ ସମାଦର କଲେ । ସେ ଭଗବାନ ବିଷ୍ଣୁଙ୍କ ସମେତ ମହେଶ୍ୱରଙ୍କୁ ତଥା ମୁଖ୍ୟ ମୁଖ୍ୟ ଦେବତାଙ୍କୁ ପାଦ୍ୟ ଓ ଅର୍ଘ୍ୟ ଦେଇ ନିଜ ଭବନ ଭିତରକୁ ନେଇଗଲେ ଏବଂ ଅଗଣାରେ ରତ୍ନମୟ ସିଂହାସନରେ ମୋତେ, ବିଷ୍ଣୁଙ୍କୁ ଓ ମହେଶ୍ୱରଙ୍କୁ ତଥା ଅନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କୁ ବସାଇଲେ । ସେତେବେଳେ ମେନା ନିଜ ସଖୀ, ବ୍ରାହ୍ମଣପତ୍ନୀ ତଥା ଅନ୍ୟ ପୁରନ୍ଧ୍ରୀମାନଙ୍କ ସହିତ ଆସି ଆନନ୍ଦରେ ଆଳତି କଲେ । କର୍ମକାଣ୍ଡର ଜ୍ଞାତା ପୁରୋହିତ ମହାତ୍ମା ଶଙ୍କରଙ୍କ ପାଇଁ ମଧୁପର୍କପୂଜନ ଆଦି ଯାହା ଯାହା ଆବଶ୍ୟକ କୃତ୍ୟ କରିବାର ଥିଲା, ସେସବୁ ସହର୍ଷ ସମ୍ପନ୍ନ କଲେ । ତା'ପରେ ମୁଁ କହିବାରୁ ପୁରୋହିତ ପ୍ରସ୍ତାବ ଅନୁରୂପ ମଙ୍ଗଳମୟ କାର୍ଯ୍ୟ ଆରମ୍ଭ କଲେ ।

ଏହାପରେ ହିମାଳୟ ମହାଦେବଙ୍କୁ ଅନ୍ତର୍ବେଦୀକୁ ନେଇଗଲେ । ସେଠାରେ ସମସ୍ତ ଆଭୂଷଣରେ ବିମଣ୍ଡିତା ତାଙ୍କର କୃଶାଙ୍ଗୀ କନ୍ୟା ପାର୍ବତୀ ବେଦି ଉପରେ ବିରାଜିତା ଥିଲେ । ଶିବଙ୍କ ସହିତ ମୁଁ ଓ ବିଷ୍ଣୁ ମଧ୍ୟ ଯାଇଥିଲୁ । ବୃହସ୍ପତି ପ୍ରମୁଖ ବିଦ୍ୱାନମାନେ ଅତି ଉତ୍ସାହରେ କନ୍ୟାଦାନର ଉପଯୁକ୍ତ ଲଗ୍ନକୁ ପ୍ରତୀକ୍ଷା କରୁଥିଲେ । ଗର୍ଗ ପୁଣ୍ୟାହବାଚନ କରି ପାର୍ବତୀଙ୍କ ଅଞ୍ଜଳିରେ ଚାଉଳ ପୂର୍ଣ୍ଣ କଲେ ଏବଂ ଶିବଙ୍କ ଉପରେ ଅକ୍ଷତ ପକାଇଲେ । ପରମ ଉଦାର ସୁମୁଖୀ ପାର୍ବତୀ ଦହି, ଅକ୍ଷତ, କୁଶ ଓ ଜଳରେ ସେଠି ରୁଦ୍ରଦେବଙ୍କୁ ପୂଜନ କଲେ । ଯେଉଁ ଶିବଙ୍କ ପାଇଁ ଶିବା ଏତେ ବଡ଼ ତପସ୍ୟା କରିଥିଲେ, ତାଙ୍କୁ ଅତି ପ୍ରେମରେ ଚାହିଁଲା ବେଳେ ଶିବା ଅତ୍ୟନ୍ତ ମନୋହାରିଣୀ ଦିଶୁଥାନ୍ତି । ତା'ପରେ ଗର୍ଗାଦି ମୁନି ଓ ମୁଁ କହିବାରୁ ଶମ୍ଭୁ ଲୋକାଚାର ଅନୁସାରେ ଶିବାଙ୍କୁ ପୂଜନ କଲେ । ଏହି ପ୍ରକାରେ ପରସ୍ପରକୁ ପୂଜନ କରି ଉଭୟେ ପାର୍ବତୀ ଓ ପରମେଶ୍ୱର ସେଠାରେ ସୁଶୋଭିତ ହେଉଥିଲେ । ତ୍ରିଭୁବନର ଶୋଭାରେ ବିମଣ୍ଡିତ ହୋଇ ପରସ୍ପରକୁ ଚାହୁଁଥିବା ସେହି ଦମ୍ପତିଙ୍କୁ ଲକ୍ଷ୍ମୀ ପ୍ରଭୃତି ଦେବୀମାନେ ବିଶେଷରୂପେ ଆଳତି କଲେ ।

(ଅଧ୍ୟାୟ ୪୭)

⁂

## ଶିବ-ପାର୍ବତୀଙ୍କ ବିବାହ ଆରମ୍ଭ, ଶିବଙ୍କ ଗୋତ୍ର ସମ୍ବନ୍ଧରେ ହିମାଳୟଙ୍କ ପ୍ରଶ୍ନ ଓ ନାରଦଙ୍କ ଉତ୍ତର, କନ୍ୟାଦାନ କରିସାରି ହିମାଳୟଙ୍କ ଦ୍ୱାରା ଯୌତୁକ ପ୍ରଦାନ ଏବଂ ଶିବାଙ୍କ ଅଭିଷେକ

ବ୍ରହ୍ମା କହୁଛନ୍ତି—ନାରଦ ! ଏତିକିବେଳେ ଗର୍ଗାଚାର୍ଯ୍ୟଙ୍କ ଦ୍ୱାରା ପ୍ରେରିତ ହୋଇ ମେନା ଓ ହିମବାନ କନ୍ୟାଦାନ କାର୍ଯ୍ୟ ଆରମ୍ଭ କଲେ । ସେତେବେଳେ ବସ୍ତ୍ରାଭୂଷଣରେ ସୁସଜ୍ଜିତା ମହାଭାଗା ମେନା ସୁବର୍ଣ୍ଣ କଳଶ ଧରି ସ୍ୱାମୀଙ୍କ ଡାହାଣ ପଟରେ ବସିଲେ । ତା'ପରେ ପୁରୋହିତ ଓ ଶୈଳରାଜ ସହର୍ଷ ପାଦ୍ୟାଦି ଦେଇ ବର-ପୂଜନ କଲେ ଏବଂ ବସ୍ତ୍ର, ଚନ୍ଦନ ଓ ଆଭୂଷଣରେ ବରଙ୍କୁ

ବରଣ କଲେ । ତା'ପରେ ହିମାଳୟ ବ୍ରାହ୍ମଣଙ୍କୁ କହିଲେ—''କନ୍ୟାଦାନର ଉପଯୁକ୍ତ ମୁହୂର୍ତ୍ତ ଆସିଗଲାଣି; ଏଣୁ ଆପଣମାନେ ତିଥି ପ୍ରଭୃତି ଉଚ୍ଚାରଣ କରି କନ୍ୟାଦାନ ସଂକଳ୍ପବାକ୍ୟ ପଢ଼ନ୍ତୁ ।'' କାଳ ବିଷୟରେ ଅଭିଜ୍ଞ ଦ୍ୱିଜମାନେ 'ତଥାସ୍ତୁ' କହି ପ୍ରସନ୍ନ ମନରେ ତିଥି ପ୍ରଭୃତି ଉଚ୍ଚାରଣ କଲେ । ଏହାପରେ ହିମାଳୟ ହୃଦୟ ମଧ୍ୟରେ ଲୀଳାପରାୟଣ ପରମେଶ୍ୱର ଶମ୍ଭୁଙ୍କ ଦ୍ୱାରା ପ୍ରେରିତ ହୋଇ ସ୍ମିତହାସପୂର୍ବକ କହିଲେ—''ଶମ୍ଭୋ ! ଆପଣ ଆପଣଙ୍କ ଗୋତ୍ର ପ୍ରଭୃତିର ପରିଚୟ ଦିଅନ୍ତୁ । ଅଧିକ ବିଳମ୍ବ ନ କରି ଆପଣଙ୍କ ପ୍ରବର, କୁଳ, ନାମ, ବେଦ ଓ ଶାଖା ପ୍ରତିପାଦନ କରନ୍ତୁ ।''

ହିମାଚଳଙ୍କ କଥା ଶୁଣିବାମାତ୍ରେ ଭଗବାନ ଶଙ୍କରଙ୍କ ପ୍ରସନ୍ନ ବଦନ ହଠାତ୍ ମ୍ଳାନ ପଡ଼ିଗଲା । ଶୋଚନାର ଅତୀତ ହୋଇ ମଧ୍ୟ ସେ ଶୋଚନାରେ ପଡ଼ିଗଲେ । ଦେବତା, ମୁନି, ଗନ୍ଧର୍ବ, ଯକ୍ଷ ଓ ସିଦ୍ଧମାନେ ଦେଖିଲେ ଯେ ଶିବଙ୍କ ମୁଖରୁ କୌଣସି ଉତ୍ତର ବାହାରୁ ନାହିଁ । ନାରଦ ! ଏହା ଦେଖି ତୁମେ ହସିବାକୁ ଲାଗିଲ ଓ ମନ ମଧ୍ୟରେ ଶିବଙ୍କ ଦ୍ୱାରା ପ୍ରେରିତ ହୋଇ ବୀଣାବାଦନ କଲ । ହିମାଳୟ ତୁମକୁ ବୀଣା ବଜାଇବାକୁ ମନା କରିବାରୁ ତୁମେ ମହେଶ୍ୱରଙ୍କୁ ସ୍ମରଣ କରି ଗିରିରାଜଙ୍କୁ ଏହିପରି କହିଲ—

ନାରଦ କହିଲେ—ହେ ପର୍ବତରାଜ ! ତୁମେ ମୂଢ଼ତାର ବଶବର୍ତ୍ତୀ ହୋଇଯାଇଛ । ମହେଶ୍ୱରଙ୍କୁ କ'ଣ କହିବା ଉଚିତ ଓ କ'ଣ ନ କହିବା ଉଚିତ, ସେ କଥା ଆଦୌ ତୁମକୁ ଜଣା ନାହିଁ । ବାସ୍ତବରେ ତୁମେ ବହୁତ ବହିର୍ମୁଖୀ ହୋଇଯାଇଛ । ତୁମେ ସାକ୍ଷାତ୍ ହରଙ୍କୁ ତାଙ୍କର ଯେଉଁ କୁଳ-ଗୋତ୍ର ପଚାରିଛ, ତାହା ଅତ୍ୟନ୍ତ ଉପହାସଜନକ । ପର୍ବତରାଜ ! ଏହାଙ୍କ କୁଳ, ଗୋତ୍ର, ନାମକୁ ତ ବିଷ୍ଣୁ ଓ ବ୍ରହ୍ମାଦି ଦେବତା ମଧ୍ୟ ଜାଣନ୍ତି ନାହିଁ, ପୁଣି ଅନ୍ୟମାନଙ୍କ କଥା ବା କ'ଣ କହିବା? ଶୈଳରାଜ ! ଯାହାଙ୍କର ଗୋଟିଏ ଦିନରେ କୋଟି କୋଟି ବ୍ରହ୍ମାଙ୍କର ଲୟ ହୋଇଯାଏ, ତାଙ୍କୁ ତୁମେ ଆଜି କାଳୀଙ୍କ ତପୋବଳରେ ହିଁ ପ୍ରତ୍ୟକ୍ଷ ଦେଖିବାକୁ ପାଇଛ । ଏହାଙ୍କର କୌଣସି ରୂପ ନାହିଁ; ଏ ପ୍ରକୃତିରୁ ଅତୀତ, ନିର୍ଗୁଣ ଓ ପରବ୍ରହ୍ମ ପରମାତ୍ମା ଅଟନ୍ତି । ଏ ନିରାକାର, ନିର୍ବିକାର, ମାୟାଧୀଶ ଓ ପରାତ୍ପର ଅଟନ୍ତି; ଗୋତ୍ର, କୁଳ ଓ ନାମରହିତ ସ୍ୱତନ୍ତ୍ର ପରମେଶ୍ୱର ଅଟନ୍ତି । ଏ ନିଜ ଭକ୍ତଙ୍କ ପ୍ରତି ବହୁତ ଦୟାଳୁ । ଭକ୍ତଙ୍କ ଇଚ୍ଛାରେ ହିଁ ଏ ନିର୍ଗୁଣରୁ ସଗୁଣ ହୋଇଛନ୍ତି, ନିରାକାର ହୋଇ ମଧ୍ୟ ସୁନ୍ଦର ଶରୀର ଧାରଣ କରିଛନ୍ତି ଏବଂ ଅନାମ୍ନା ହୋଇ ମଧ୍ୟ ବହୁନାମଧାରୀ ହୋଇଛନ୍ତି । ଏ ଗୋତ୍ରହୀନ ହୋଇ ମଧ୍ୟ ଉତ୍ତମ ଗୋତ୍ରର, କୁଳହୀନ ହୋଇ ମଧ୍ୟ କୁଳୀନ; ପାର୍ବତୀଙ୍କ ତପସ୍ୟା ଯୋଗୁଁ ହିଁ ଏ ଆଜି ତୁମର ଜ୍ୱାଇଁ ହୋଇଛନ୍ତି—ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଗିରିଶ୍ରେଷ୍ଠ ! ଏହି ଲୀଳାବିହାରୀ ପରମେଶ୍ୱର ହିଁ ଚରାଚର ଜଗତକୁ ମୋହିତ କରି ରଖିଛନ୍ତି । କେହି ଯେତେ ବଡ଼ ବିଦ୍ୱାନ୍ ହେଲେ ମଧ୍ୟ ଏହାଙ୍କୁ ପୂର୍ଣ୍ଣରୂପେ ଜାଣିପାରେ ନାହିଁ ।

ବ୍ରହ୍ମା କହୁଛନ୍ତି—ମୁନେ ! ଏତିକି କହି ଶିବଙ୍କ ଇଚ୍ଛାରେ କାର୍ଯ୍ୟ କରୁଥିବା ତୁମେ ଜ୍ଞାନୀ ଦେବର୍ଷି ନିଜ ବାଣୀରେ ଶୈଳରାଜଙ୍କୁ ହର୍ଷ ପ୍ରଦାନ କରିବା ସହିତ ଏହିପରି ବୁଝାଇଲ—

ନାରଦ କହିଲେ—ଶିବାଙ୍କ ଜନକ ମହାଶୈଳ ! ମୋ କଥା ଶୁଣ ଓ ତଦନୁସାରେ ତୁମ କନ୍ୟାକୁ ଶିବଙ୍କ ହାତରେ ସମର୍ପି ଦିଅ । ଲୀଳାପୂର୍ବକ ରୂପ ଧାରଣ କରିଥିବା ସଗୁଣ ମହେଶ୍ୱରଙ୍କ ଗୋତ୍ର ଓ କୁଳ କେବଳ ନାଦ ଅଟେ । ଏହା ତୁମେ ଭଲଭାବରେ ବୁଝିବାକୁ ଚେଷ୍ଟା କର । ଶିବ ନାଦମୟ ଅଟନ୍ତି ଏବଂ ନାଦ ଶିବମୟ ଅଟେ—ଏହା ସର୍ବଥା ସତ୍ୟ । ନାଦ ଓ ଶିବ—ଏ ଦୁହିଙ୍କ ମଧ୍ୟରେ କୌଣସି ଅନ୍ତର ନାହିଁ । ଶୈଳେନ୍ଦ୍ର !

ସୃଷ୍ଟିକାଳରେ ସର୍ବପ୍ରଥମେ ଲୀଳା ନିମନ୍ତେ ସଗୁଣ ରୂପ ଧାରଣ କରିଥିବା ଶିବଙ୍କ ଠାରୁ ନାଦ ପ୍ରକଟ ହୋଇଥିଲା । ତେଣୁ ତାହା ସବୁଠୁ ଉତ୍କୃଷ୍ଟ । ହିମାଳୟ ! ଏହି କାରଣରୁ ମୁଁ ମନ ମଧ୍ୟରେ ସର୍ବେଶ୍ୱର ଶିବଙ୍କ ଦ୍ୱାରା ପ୍ରେରିତ ହୋଇ ଏବେ ବୀଣା ବଜାଇବା ଆରମ୍ଭ କରି ଦେଇଥିଲି ।

ବ୍ରହ୍ମା କହୁଛନ୍ତି—ମୁନେ ! ତୁମ କଥା ଶୁଣି ଗିରିରାଜ ହିମାଳୟଙ୍କୁ ସନ୍ତୋଷ ମିଳିଲା ଏବଂ ତାଙ୍କ ମନର ସମସ୍ତ ବିସ୍ମୟ ଦୂର ହୋଇଗଲା । ତା'ପରେ ବିଷ୍ଣୁ ଆଦି ଦେବତା ତଥା ମୁନି ସମସ୍ତେ ବିସ୍ମୟଶୂନ୍ୟ ହୋଇ ନାରଦଙ୍କୁ ସାଧୁବାଦ ଦେଲେ । ମହେଶ୍ୱରଙ୍କ ଗମ୍ଭୀରତାକୁ ଜାଣି ସମସ୍ତ ବିଦ୍ୱାନ୍ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଅତି ପ୍ରସନ୍ନତା ସହିତ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଲେ—"ଅହୋ ! ଯାହାଙ୍କ ଆଜ୍ଞାରେ ଏ ବିଶାଳ ଜଗତ ପ୍ରକଟ ହୋଇଛି, ଯେ ପରାତ୍ପରତର, ଆତ୍ମବୋଧ-ସ୍ୱରୂପ, ସ୍ୱତନ୍ତ୍ର ଲୀଳା କରିବାରେ ପ୍ରବୀଣ ଏବଂ ଉତ୍ତମ ଭାବ ଦ୍ୱାରା ଜ୍ଞେୟ, ସେହି ତ୍ରୈଲୋକ୍ୟନାଥ ଭଗବାନ ଶମ୍ଭୁଙ୍କୁ ଆଜି ଆମ୍ଭେମାନେ ଭଲଭାବରେ ଦର୍ଶନ କଲେ ।"

ତା'ପରେ ହିମାଳୟ ବ୍ରହ୍ମାଙ୍କ ପ୍ରେରଣାରେ ଭଗବାନ ଶିବଙ୍କୁ କନ୍ୟାଦାନ କରିଦେଲେ । କନ୍ୟାଦାନ କରିବାବେଳେ ସେ କହିଲେ—

ଇମାଂ କନ୍ୟାଂ ତୁଭ୍ୟମହଂ ଦଦାମି ପରମେଶ୍ୱର ।
ଭାର୍ଯ୍ୟାର୍ଥଂ ପରିଗୃହ୍ଣୀଷ୍ୱ ପ୍ରସୀଦ ସକଳେଶ୍ୱର ॥

"ପରମେଶ୍ୱର ! ମୁଁ ମୋର ଏହି କନ୍ୟା ଆପଣଙ୍କୁ ଦେଉଛି । ଆପଣ ଏହାକୁ ନିଜର ପତ୍ନୀରୂପେ ଗ୍ରହଣ କରନ୍ତୁ । ସର୍ବେଶ୍ୱର ! ଏହି କନ୍ୟାଦାନରେ ଆପଣ ସନ୍ତୁଷ୍ଟ ହୁଅନ୍ତୁ ।"

ଏହିରୂପେ ମନ୍ତ୍ର ଉଚ୍ଚାରଣ କରି ହିମାଳୟ ତାଙ୍କର କନ୍ୟା ତ୍ରିଲୋକଜନନୀ ପାର୍ବତୀଙ୍କୁ ପରମ ଦେବତା ରୁଦ୍ରଙ୍କ ହାତରେ ସମର୍ପି ଦେଲେ । ଶିବାଙ୍କ ହାତ ଶିବଙ୍କ ହାତରେ ସମର୍ପି ଦେଇ ଶୈଳରାଜ ମନେ ମନେ ବହୁତ ଆନନ୍ଦିତ ହେଲେ ଏବଂ ଏହା କରି ନିଜ ମନୋରଥ-ମହାସାଗରକୁ ପାର ହୋଇଗଲେ । ପରମେଶ୍ୱର ମହାଦେବ ପ୍ରସନ୍ନ ହୋଇ ବେଦମନ୍ତ୍ର ଉଚ୍ଚାରଣପୂର୍ବକ ଗିରିଜାଙ୍କ ପାଣିଗ୍ରହଣ କଲେ । ମୁନେ ! ଲୋକାଗ୍ରର ପାଳନର ଆବଶ୍ୟକତାକୁ ଦେଖାଇ ଭଗବାନ ଶଙ୍କର ପୃଥିବୀକୁ ସ୍ପର୍ଶ କରି 'କୋଽଦାତ୍...*' ଇତ୍ୟାଦି କାମ-ସମ୍ବନ୍ଧିତ ମନ୍ତ୍ର ପାଠ କଲେ । ସେତିକିବେଳେ ସବୁଆଡ଼େ ଆନନ୍ଦଦାୟକ ମହୋତ୍ସବ ହେବାକୁ ଲାଗିଲା । ପୃଥିବୀରେ, ଅନ୍ତରୀକ୍ଷରେ ଓ ସ୍ୱର୍ଗରେ ମଧ୍ୟ ଜୟଧ୍ୱନି ଗୁଞ୍ଜିତ ହୋଇଉଠିଲା । ସମସ୍ତେ ହର୍ଷରେ ଉଲ୍ଲସିତ ହୋଇ ସାଧୁବାଦ ଦେଲେ ଓ ନମସ୍କାର କଲେ । ଗନ୍ଧର୍ବଗଣ ପ୍ରେମରେ ଗୀତ ଗାଇଲେ ଓ ଅପ୍ସରାମାନେ ନୃତ୍ୟ କଲେ । ହିମାଚଳଙ୍କ ନଗର ଲୋକେ ମଧ୍ୟ ପରମ ଆନନ୍ଦ ଅନୁଭବ କଲେ । ସେତିକିବେଳେ ପରମ ମଙ୍ଗଳମୟ ଉତ୍ସବ ପାଳନ କରାଗଲା । ମୁଁ, ବିଷ୍ଣୁ, ଇନ୍ଦ୍ର, ଦେବଗଣ ଓ ମୁନିଗଣ—ସମସ୍ତେ ହର୍ଷରେ ପୁଲକିତ ହୋଇ ଉଠିଲେ । ଆମମାନଙ୍କ ମୁଖାରବିନ୍ଦ ପ୍ରଫୁଲ୍ଲିତ ହୋଇଉଠିଲା । ତା'ପରେ ହିମାଳୟ ଅତ୍ୟନ୍ତ ପ୍ରସନ୍ନ ମନରେ ଶିବଙ୍କୁ କନ୍ୟାଦାନର ଯଥୋଚିତ ସାଙ୍ଗତା ପ୍ରଦାନ କଲେ । ତା'ପରେ ତାଙ୍କର ବନ୍ଧୁଜନ ଭକ୍ତିପୂର୍ବକ ଶିବାଙ୍କୁ ପୂଜା କରି ନାନା ବିଧି-ବିଧାନରେ ଭଗବାନ ଶିବଙ୍କୁ ଉତ୍ତମ ଉତ୍ତମ ଦ୍ରବ୍ୟ ସମର୍ପଣ କଲେ । ହିମାଳୟ ଯୌତୁକରୂପେ ଅନେକ ପ୍ରକାର ଦ୍ରବ୍ୟ, ରତ୍ନ, ପାତ୍ର, ଲକ୍ଷେ ସୁସଜ୍ଜିତ ଗାଈ, ଲକ୍ଷେ ସୁସଜ୍ଜିତ ଘୋଡ଼ା, କୋଟିଏ ହାତୀ ଓ ସେତିକି ସଂଖ୍ୟକ ସୁବର୍ଣ୍ଣଜଟିତ ରଥ ଇତ୍ୟାଦି ପ୍ରଦାନ କଲେ । ଏହିରୂପେ ପରମାତ୍ମା ଶିବଙ୍କ ହସ୍ତରେ ବିଧିପୂର୍ବକ ନିଜର କଲ୍ୟାଣମୟୀ ପାର୍ବତୀଙ୍କୁ

* ବିବାହରେ କନ୍ୟା-ପ୍ରତିଗ୍ରହ ପରେ ବର ଏହି କାମସ୍ତୁତି ପାଠ କରେ । ପୂର୍ଣ୍ଣ ମନ୍ତ୍ରଟି ହେଲା—କୋଽଦାତ୍କସ୍ମା ଅଦାତ୍ କାମୋଽଦାତ୍କାମାୟାଦାତ୍କାମୋ ଦାତା କାମଃ ପ୍ରତିଗ୍ରହୀତା କାମୈତତ୍ତେ । (ଶୁ. ଯଜୁର୍ବେଦସଂହିତା ୭ । ୪୮)

ଦାନ କରି ହିମାଳୟ କୃତାର୍ଥ ହୋଇଗଲେ । ତା'ପରେ ସେ କର ଯୋଡ଼ି ଯଜୁର୍ବେଦର ମାଧ୍ୟନ୍ଦିନୀ ଶାଖାରେ ବର୍ଣ୍ଣିତ ସ୍ତୋତ୍ର ଦ୍ୱାରା ପ୍ରସନ୍ନତାପୂର୍ବକ ମଧୁର ବାଣୀରେ ପରମେଶ୍ୱର ଶିବଙ୍କୁ ସ୍ତୁତି କଲେ । ତତ୍ପଶ୍ଚାତ୍ ବେଦବେତ୍ତା ହିମାଳୟଙ୍କ ଆଜ୍ଞାରେ ମୁନିମାନେ ବଡ଼ ଉତ୍ସାହରେ ଶିବାଙ୍କର ଅଭିଷେକ କଲେ ଓ ମହାଦେବଙ୍କ ନାମ ଉଚ୍ଚାରଣ କରି ସେହି ଅଭିଷେକର ବିଧାନ ପୂର୍ଣ୍ଣ କଲେ । ମୁନେ ! ସେତେବେଳେ ବହୁତ ଆନନ୍ଦଦାୟକ ମହୋତ୍ସବ ହେଉଥିଲା । (ଅଧ୍ୟାୟ ୪୮)

***

## ଶିବବିବାହ ସମାପନ, ଶିବଙ୍କ ଦ୍ୱାରା ଦକ୍ଷିଣା ବିତରଣ, ବର ଓ ବଧୂଙ୍କର କୁଳଦେବତା ପୂଜନ, ନାରୀମାନଙ୍କର ଲୋକାଗ୍ରର ନିର୍ବହନ, ରତିଙ୍କ ପ୍ରାର୍ଥନା ଓ ଶିବଙ୍କ କୃପାରୁ କାମଦେବଙ୍କୁ ପୁନର୍ଜୀବନ ଲାଭ ଏବଂ ବରପ୍ରାପ୍ତି, ବର ଓ ବଧୂ ପରସ୍ପରକୁ ମିଷ୍ଟାନ୍ନ ଖୁଆଇବା ରୀତି ଏବଂ ଶିବଙ୍କର ନିଜ ରହଣି ସ୍ଥାନକୁ ପ୍ରସ୍ଥାନ

ବ୍ରହ୍ମା କହୁଛନ୍ତି–ନାରଦ ! ଏହାପରେ ମୋ ଆଜ୍ଞାକ୍ରମେ ମହେଶ୍ୱର ବ୍ରାହ୍ମଣଙ୍କ ଦ୍ୱାରା ଅଗ୍ନି ସ୍ଥାପନ କରାଇଲେ ଏବଂ ପାର୍ବତୀଙ୍କୁ ନିଜ ଆଗରେ ବସାଇ ସେଠାରେ ଋକ୍‌ବେଦ, ଯଜୁର୍ବେଦ ଓ ସାମବେଦର ମନ୍ତ୍ର ପଢ଼ି ଅଗ୍ନିରେ ଆହୁତି ଦେଲେ । ତାତ ! ସେତିକିବେଳେ କାଳୀଙ୍କ ଭାଇ ମୈନାକ ଖଇ ଆଞ୍ଜୁଳି ଦେଲେ ଏବଂ କାଳୀ ଓ ଶିବ ଲୋକାଗ୍ରର ଅନୁସାରେ ପ୍ରସନ୍ନତାପୂର୍ବକ ଅଗ୍ନିଦେବଙ୍କୁ ପରିକ୍ରମା କଲେ ।

ନାରଦ ! ତା'ପରେ ମୁଁ ଶିବଙ୍କ ଆଜ୍ଞାକ୍ରମେ ମୁନିଗଣଙ୍କ ସହାୟତାରେ ଶିବା ଓ ଶିବଙ୍କ ବିବାହର ଅବଶିଷ୍ଟ କାର୍ଯ୍ୟ ପୂର୍ଣ୍ଣ କଲି । ତା'ପରେ ସେହି ନବଦମ୍ପତିଙ୍କ ମସ୍ତକରେ ଅଭିଷେକ କରାଗଲା । ବ୍ରାହ୍ମଣମାନେ ସେଦୁହିଙ୍କୁ ଆଦରରେ ଧ୍ରୁବଦର୍ଶନ କରାଇଲେ । ତା'ପରେ ହୃଦୟାଲମ୍ବନ କର୍ମ ହେଲା; ଉତ୍ସାହର ସହ ସ୍ୱସ୍ତିବାଚନ ହେଲା । ଏହାପରେ ଶିବ ବ୍ରାହ୍ମଣଙ୍କ ଆଜ୍ଞାରେ ଶିବାଙ୍କ ସୀମନ୍ତରେ ସିନ୍ଦୂରଦାନ କଲେ । ସେତେବେଳେ ଗିରିଜାଙ୍କ ଶୋଭା ଅଦ୍ଭୁତ ଓ ଅବର୍ଣ୍ଣନୀୟ ହୋଇଗଲା । ଏହାପରେ ବ୍ରାହ୍ମଣଙ୍କ ଆଦେଶରେ ଶିବଦମ୍ପତି ଗୋଟିଏ ଆସନରେ ବିରାଜମାନ ହୋଇ ଭକ୍ତଙ୍କ ଚିତ୍ତକୁ ଆନନ୍ଦ ପ୍ରଦାନ କଲେ ।

ମୁନେ ! ତା'ପରେ ସେହି ଅଦ୍ଭୁତ ଲୀଳାଧାରୀ ନବଦମ୍ପତି ମୋ ଆଜ୍ଞାରେ ନିଜ ସ୍ଥାନରେ ଆସି ସଂସ୍ରବପ୍ରାଶନ* କଲେ । ଏହି ପ୍ରକାରେ ବୈବାହିକ ଯଜ୍ଞ ପୂର୍ଣ୍ଣ ହେବାପରେ ଭଗବାନ ଶିବ ମୋତେ ପୂର୍ଣ୍ଣପାତ୍ର ଦାନ କଲେ । ତା'ପରେ ଶମ୍ଭୁ ଆଚାର୍ଯ୍ୟଙ୍କୁ ଗୋଦାନ କଲେ ଏବଂ ଆଉ ଯାହା ସବୁ ବଡ଼ ବଡ଼ ମଙ୍ଗଳଦାୟକ ଦାନ ଅଛି, ସେସବୁ ମଧ୍ୟ ସହର୍ଷ ଦେଲେ । ତା'ପରେ ସେ ଅନେକ ବ୍ରାହ୍ମଣଙ୍କୁ ପୃଥକ୍ ପୃଥକ୍ ଶହେ ଲେଖାଏଁ ସ୍ୱର୍ଣ୍ଣମୁଦ୍ରା ଦେଲେ । କୋଟି କୋଟି ରତ୍ନ ଓ ଅନେକ ପ୍ରକାର ଦ୍ରବ୍ୟ ମଧ୍ୟ ଦେଲେ । ସେତେବେଳେ ଦେବତା ଓ ସଚରାଚର ଜୀବ ପ୍ରସନ୍ନ ଚିତ୍ତରେ ଉଚ୍ଚସ୍ୱରରେ ଜୟନାଦ କଲେ । ମଙ୍ଗଳଧ୍ୱନି ସହିତ ମାଙ୍ଗଳିକ ଗୀତ ଓ ବାଦ୍ୟର ସୁମଧୁର ନିନାଦ ସର୍ବତ୍ର ବ୍ୟାପ୍ତ

* ଅଗ୍ନିରେ ଘୃତାହୁତି ଦେବା ପରେ ସ୍ରୁବରେ ଥିବା ଅବଶିଷ୍ଟ ଘୃତକୁ ପ୍ରୋକ୍ଷଣୀପାତ୍ରରେ ପକାଇବାର ବିଧି ରହିଛି । ପ୍ରତ୍ୟେକ ଆହୁତିରେ ଏପରି କରାଯାଏ । ପ୍ରୋକ୍ଷଣୀପାତ୍ରରେ ପକାଯାଇଥିବା ଏହି ଘିଅକୁ 'ସଂସ୍ରବ' କହନ୍ତି । ଶେଷରେ ଯଜମାନ ତାହାକୁ ପାନ କରେ । ଏହାକୁ 'ସଂସ୍ରବପ୍ରାଶନ' କୁହାଯାଏ ।

ହୋଇ ସମସ୍ତଙ୍କର ଆନନ୍ଦବର୍ଦ୍ଧନ କଲା । ଏହାପରେ ମୁଁ, ବିଷ୍ଣୁ, ଦେବଗଣ, ଋଷିଗଣ ତଥା ଅନ୍ୟ ସମସ୍ତେ ଗିରିରାଜଙ୍କ ଆଜ୍ଞା ନେଇ ଆନନ୍ଦ ମନରେ ନିଜ ନିଜ ବାସସ୍ଥାନକୁ ଫେରିଗଲୁ । ଏତିକିବେଳେ ହିମାଳୟନଗରର ନାରୀମାନେ ଆନନ୍ଦମଗ୍ନ ହୋଇ ଶିବ ଓ ପାର୍ବତୀଙ୍କୁ କୁହବର ଘରକୁ ନେଇଗଲେ । ସେଠାରେ ସେମାନେ ଆଦରରେ ବର-ବଧୂଙ୍କ ଦ୍ୱାରା ଲୋକାଗ୍ର ବିଧି ପାଳନ କରାଇଲେ । ଏହାଦ୍ୱାରା ଚତୁର୍ଦ୍ଦିଗରେ ପରମ ଉତ୍ସାହ ବ୍ୟାପିଗଲା । ତା'ପରେ ନାରୀମାନେ ସେହି ଲୋକକଲ୍ୟାଣକାରୀ ଦମ୍ପତିଙ୍କୁ ପରମ ଦିବ୍ୟ ବାସଭବନକୁ ନେଇଗଲେ ଏବଂ ସେଠାରେ ମଧ୍ୟ ଆନନ୍ଦରେ ଲୋକାଗ୍ର ରୀତି ନିର୍ବହନ କଲେ । ତା'ପରେ ସେମାନେ ମଙ୍ଗଳକୃତ୍ୟ କରି ନବଦମ୍ପତିଙ୍କୁ କେଳିଗୃହକୁ ନେଇଗଲେ ଏବଂ ଜୟ ଜୟ ଧ୍ୱନି କରି ସେ ଦୁହିଙ୍କର ଗଇଁଠାଳ ଖୋଲିଲେ ।

ସେତିକିବେଳେ ନବଦମ୍ପତିଙ୍କୁ ଦେଖିବା ପାଇଁ ଷୋଡ଼ଶ ଦିବ୍ୟାଙ୍ଗନା ସେଠାରେ ଉପସ୍ଥିତ ହେଲେ । ସେମାନଙ୍କର ନାମ ହେଲା—ସରସ୍ୱତୀ, ଲକ୍ଷ୍ମୀ, ସାବିତ୍ରୀ, ଗଙ୍ଗା, ଅଦିତି, ଶଚୀ, ଲୋପାମୁଦ୍ରା, ଅରୁନ୍ଧତୀ, ଅହଲ୍ୟା, ତୁଳସୀ, ସ୍ୱାହା, ରୋହିଣୀ, ପୃଥିବୀ, ଶତରୂପା, ସଂଜ୍ଞା ଓ ରତି । ଏ ଦେବାଙ୍ଗନାମାନେ ତଥା ଅନ୍ୟାନ୍ୟ ମନୋହାରିଣୀ ଦେବକନ୍ୟା, ନାଗକନ୍ୟା ଓ ମୁନିକନ୍ୟାମାନେ ମଧ୍ୟ ପହଞ୍ଚିଗଲେ । ସେତେବେଳେ ଯେତେସବୁ ନାରୀ ସେଠାରେ ଉପସ୍ଥିତ ହୋଇଥିଲେ, ସେମାନଙ୍କର ଗଣନା କରିବା ଅସମ୍ଭବ । ସେମାନେ ଶିବଙ୍କୁ ରତ୍ନ-ସିଂହାସନ ପ୍ରଦାନ କଲେ । ଶିବ ତା'ଉପରେ ଆନନ୍ଦରେ ବିରାଜମାନ ହେଲେ । ସେମାନେ ଶିବଙ୍କୁ ନାନା ପ୍ରକାର ବିନୋଦପୂର୍ଣ୍ଣ କଥା କହିଲେ । ତା'ପରେ ମହେଶ୍ୱର ନିଜ ପତ୍ନୀଙ୍କ ସହ ମିଷ୍ଟାନ୍ନ ଭୋଜନ କରିସାରି ଆଚମନ କଲେ ଏବଂ କର୍ପୂର-ଦିଆ ପାନ ଖାଇଲେ । ଏତିକିବେଳେ ଉପଯୁକ୍ତ ଅବସର ଜାଣି ରତିଦେବୀ ଦୀନବତ୍ସଳ ଶିବଙ୍କୁ କହିଲେ—''ଭଗବନ୍ ! ପାର୍ବତୀଙ୍କ ପାଣିଗ୍ରହଣ କରି ଆପଣ ଅତି ଦୁର୍ଲଭ ସୌଭାଗ୍ୟ ପ୍ରାପ୍ତ ହେଲେ । କିନ୍ତୁ ଗୋଟିଏ କଥା କୁହନ୍ତୁ, ମୋ ପ୍ରାଣନାଥ ତ ସମ୍ପୂର୍ଣ୍ଣ ନିଃସ୍ୱାର୍ଥପର ଥିଲେ, ତେବେ ଆପଣ କାହିଁକି ତାଙ୍କୁ ଭସ୍ମ କରିଦେଲେ? ଏବେ ଏହିଠାରେ ମୋ ସ୍ୱାମୀଙ୍କୁ ଜୀବିତ କରିଦିଅନ୍ତୁ ଏବଂ ନିଜ ଅନ୍ତଃକରଣରେ କାମସମ୍ବନ୍ଧିତ ବ୍ୟାପାରକୁ ଉଦ୍ଦୀପ୍ତ କରନ୍ତୁ । ଆପଣଙ୍କୁ ଓ ମୋତେ ଯେଉଁ ଏକା ପ୍ରକାର ବିୟୋଗଜନିତ ସନ୍ତାପ ଭୋଗିବାକୁ ପଡ଼ିଛି, ତାହାକୁ ଦୂର କରନ୍ତୁ । ମହେଶ୍ୱର ! ଆପଣଙ୍କ ବିବାହ ମହୋତ୍ସବରେ ସମସ୍ତେ ଖୁସୀ ଅଛନ୍ତି । କେବଳ ମୁଁ ଏଠି ସ୍ୱାମୀ ବିନା ଦୁଃଖରେ ରହିଛି । ହେ ପ୍ରଭୁ ! ମୋ ଉପରେ ପ୍ରସନ୍ନ ହୁଅନ୍ତୁ ଆଉ ମୋତେ ସନାଥ କରନ୍ତୁ । ଦୀନବନ୍ଧୋ ! ପରମ ପ୍ରଭୋ ! ଆପଣ



ପୂର୍ବେ ଯେଉଁ କଥା କହିଥିଲେ, ତାହାକୁ ସତ୍ୟରେ ପରିଣତ କରନ୍ତୁ । ସଚରାଚର ଜଗତରେ ଓ ତ୍ରିଲୋକରେ ଆପଣଙ୍କ ବ୍ୟତୀତ ଆଉ କିଏ ଅବା

ମୋ ଦୁଃଖକୁ ନାଶ କରିବାକୁ ସମର୍ଥ ହୋଇପାରେ? ଏକଥାକୁ ବୁଝି ମୋ ଉପରେ ଦୟା କରନ୍ତୁ । ହେ ଦୀନଦୟାଳୁ ! ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରୁଥିବା ଆପଣଙ୍କର ଏହି ବିବାହୋତ୍ସବରେ ମୋତେ ମଧ୍ୟ ଉତ୍ସବସମ୍ପନ୍ନ କରନ୍ତୁ । ମୋର ପ୍ରାଣନାଥ ଜୀବିତ ହେଲେ ହିଁ ପାର୍ବତୀଙ୍କ ସହିତ ଆପଣଙ୍କର ସୁନ୍ଦର ବିହାର ପୂର୍ଣ୍ଣତା ଲାଭ କରିବ । ଏଥିରେ ତିଳେମାତ୍ର ସଂଶୟ ନାହିଁ । ସର୍ବେଶ୍ୱର ! ଆପଣ ସବୁକିଛି କରିବାକୁ ସମର୍ଥ; କାରଣ ଆପଣ ପରମେଶ୍ୱର । ଏଠାରେ ଅଧିକ କହିବାରେ କି ଲାଭ? ହେ ସର୍ବେଶ୍ୱର ! ଆପଣ ଶୀଘ୍ର ମୋ ସ୍ୱାମୀଙ୍କୁ ଜୀବିତ କରି ଦିଅନ୍ତୁ ।''

ଏତିକି କହି ରତି ଆପଣା କାନିରେ ବାନ୍ଧିଥିବା କାମଦେବଙ୍କ ଦେହର ଭସ୍ମାବଶେଷକୁ ଶମ୍ଭୁଙ୍କୁ ଦେଇଦେଲେ ଏବଂ ତାଙ୍କ ସମ୍ମୁଖରେ 'ହା ନାଥ ! ହା ନାଥ !' କହି ବିଳାପ କଲେ । ରତିଙ୍କ ରୋଦନ ଶୁଣି ସରସ୍ୱତୀ ପ୍ରମୁଖ ସମସ୍ତ ଦେବୀମାନେ କାନ୍ଦିବାକୁ ଲାଗିଲେ ଏବଂ ଅତ୍ୟନ୍ତ ଦୈନ୍ୟ ବାଣୀରେ କହିଲେ –''ପ୍ରଭୋ ! ଆପଣଙ୍କ ନାମ ଦୀନବତ୍ସଳ । ଆପଣ ଦୀନବନ୍ଧୁ ଓ ଦୟାସିନ୍ଧୁ । ତେଣୁ କାମଦେବଙ୍କୁ ଜୀବନଦାନ ଦେଇ ରତିଙ୍କୁ ଉତ୍ସାହିତ କରନ୍ତୁ । ଆପଣଙ୍କୁ ଆମର ନମସ୍କାର ।''

ବ୍ରହ୍ମା କହୁଛନ୍ତି–ନାରଦ ! ସେମାନଙ୍କ କଥା ଶୁଣି ମହେଶ୍ୱର ପ୍ରସନ୍ନ ହେଲେ । କରୁଣାସାଗର ପ୍ରଭୁ ତୁରନ୍ତ ରତିଙ୍କ ଉପରେ କୃପା କଲେ । ଭଗବାନ ଶୂଳପାଣିଙ୍କର ଅମୃତମୟୀ ଦୃଷ୍ଟି ପଡ଼ିବା କ୍ଷଣି ପୂର୍ବପରି ରୂପ, ବେଶ ଓ ଚିହ୍ନରେ ସମ୍ପନ୍ନ ହୋଇ ଅଦ୍ଭୁତ ଓ ସୁନ୍ଦର ମୂର୍ତ୍ତିଧାରଣ କରି କାମଦେବ ସେହି ଭସ୍ମରୁ ପ୍ରକଟ ହୋଇଗଲେ । ନିଜ ସ୍ୱାମୀଙ୍କୁ ପୂର୍ବପରି ରୂପ, ଆକୃତି, ମନ୍ଦହାସ ଓ ଧନୁର୍ବାଣଯୁକ୍ତ ଦେଖି ରତି ମହେଶ୍ୱରଙ୍କୁ ପ୍ରଣାମ କଲେ । ସେ କୃତାର୍ଥ ହୋଇଗଲେ । ସେ ତାଙ୍କର ପ୍ରାଣନାଥଙ୍କ ଜୀବନ ଫେରାଇ ଦେଇଥିବା ଶିବଙ୍କୁ ଆପଣା ପୁନର୍ଜୀବନପ୍ରାପ୍ତ ସ୍ୱାମୀଙ୍କ ସହିତ ମିଶି କର ଯୋଡ଼ି ବାରମ୍ବାର ସ୍ତବନ କଲେ । ରତି ଓ କାମଦେବଙ୍କ ସ୍ତୁତି ଶୁଣି ଭଗବାନ ଦୟାର୍ଦ୍ରଚିତ୍ତ ଓ ପ୍ରସନ୍ନ ହୋଇ ଏହିପରି କହିଲେ–

ଶିବ କହିଲେ–ମନୋଭବ ! ତୁମେ ସପତ୍ନୀକ ଯେଉଁ ସ୍ତୁତି କଲ, ତଦ୍ୱାରା ମୁଁ ଅତ୍ୟନ୍ତ ପ୍ରସନ୍ନ । ସ୍ୱୟଂଭୂ କାମ ! ତୁମେ ବର ମାଗ । ମୁଁ ତୁମକୁ ମନୋବାଞ୍ଛିତ ବସ୍ତୁ ପ୍ରଦାନ କରିବି ।

ଶମ୍ଭୁଙ୍କ ବଚନ ଶୁଣି କାମଦେବ ପରମ ଆନନ୍ଦରେ ମଗ୍ନ ହୋଇଗଲେ ଏବଂ କର ଯୋଡ଼ି ନତମସ୍ତକ ହୋଇ ଗଦ୍‌ଗଦ ବାଣୀରେ କହିଲେ–

କାମଦେବ କହିଲେ–ହେ ଦେବଦେବ ମହାଦେବ ! କରୁଣାସାଗର ! ପ୍ରଭୋ ! ଯଦି ଆପଣ ମୋ ଉପରେ ପ୍ରସନ୍ନ, ତେବେ ମୋ ପାଇଁ ଆନନ୍ଦଦାୟକ ହୁଅନ୍ତୁ । ପ୍ରଭୋ ! ପୂର୍ବକାଳରେ ମୁଁ ଯେଉଁ ଅପରାଧ କରିଥିଲି, ତାହାକୁ କ୍ଷମା କରନ୍ତୁ । ମୋର ଯେପରି ଆପଣଙ୍କ ଭକ୍ତଙ୍କ ପ୍ରତି ପରମ ପ୍ରେମ ହେବ ଓ ଆପଣଙ୍କ ଚରଣରେ ଭକ୍ତି ହେବ, ସେଭଳି ବର ଦିଅନ୍ତୁ ।

କାମଦେବଙ୍କ ମାଗୁଣି ଶୁଣି ପରମେଶ୍ୱର ଶିବ ପ୍ରସନ୍ନ ହୋଇ କହିଲେ–''ଆଚ୍ଛା, ତାହା ହିଁ ହେବ ।'' ଏହାପରେ କରୁଣାନିଧାନ ହସି ହସି କହିଲେ– ''ମହାମତେ କାମଦେବ ! ମୁଁ ତୁମ ଉପରେ ପ୍ରସନ୍ନ, ତେଣୁ ତୁମେ ମନରୁ ଭୟ ତ୍ୟାଗ କର । ଭଗବାନ ବିଷ୍ଣୁଙ୍କ ପାଖକୁ ଯାଅ ଏବଂ ଏ ଘରର ବାହାରେ ରୁହ ।''

ତା'ପରେ କାମ ଶିବଙ୍କୁ ପ୍ରଣାମ କରି ବାହାରକୁ ଚାଲି ଆସିଲେ । ବିଷ୍ଣୁ ପ୍ରମୁଖ ଦେବତା ତାଙ୍କୁ ଆଶୀର୍ବାଦ ଦେଲେ । ଏହାପରେ ମହାଦେବ ସେହି ବାସଭବନରେ ପାର୍ବତୀଙ୍କୁ ବାମପାର୍ଶ୍ୱରେ ବସାଇ ମିଷ୍ଟାନ୍ନ ଖୁଆଇଲେ ଏବଂ ପାର୍ବତୀ ମଧ୍ୟ ସହର୍ଷ ଶିବଙ୍କୁ ଖୁଆଇଲେ । ତା'ପରେ ଲୋକାଗ୍ରର ଅନୁଯାୟୀ ଆବଶ୍ୟକ କୃତ୍ୟ ସମ୍ପନ୍ନ କରିବାପରେ

ମେନା ଓ ହିମବାନଙ୍କ ଆଜ୍ଞା ନେଇ ଭଗବାନ ଶିବ ବର-ରହଣି ସ୍ଥାନକୁ ଚାଲିଗଲେ । ମୁନେ ! ସେତେବେଳେ ମହାନ୍ ଉତ୍ସବ ହେଲା ଏବଂ ବେଦମନ୍ତ୍ର ଉଚ୍ଚାରଣ ହେଲା । ଲୋକମାନେ ଚାରିପ୍ରକାର* ବାଦ୍ୟ ବଜାଇଲେ । ବର-ରହଣି ଘରେ ପହଞ୍ଚି ଶିବ ଲୋକାଚାର ଅନୁସାରେ ମୁନିମାନଙ୍କୁ, ଶ୍ରୀହରିଙ୍କୁ ଓ ମୋତେ ପ୍ରଣାମ କଲେ । ତା'ପରେ ଦେବଗଣାଦି ତାଙ୍କୁ ବନ୍ଦନା କଲେ । ସେତେବେଳେ ଜୟକାର, ନମସ୍କାର ଏବଂ ସମସ୍ତ ବିଘ୍ନ ଖଣ୍ଡନ କରୁଥିବା ଶୁଭଦାୟକ ବେଦଧ୍ୱନି ମଧ୍ୟ ହେଲା । ତା'ପରେ ମୁଁ, ଭଗବାନ ବିଷ୍ଣୁ, ଇନ୍ଦ୍ର, ଋଷିଗଣ ଓ ସିଦ୍ଧଗଣ—ଆମେ ସମସ୍ତେ ଶିବଙ୍କୁ ସ୍ତୁତି କଲୁ । ଗିରିଜାନାୟକ ମହେଶ୍ୱରଙ୍କୁ ସ୍ତୁତି କରିସାରି ବିଷ୍ଣୁ ପ୍ରଭୃତି ଦେବତା ଆନନ୍ଦରେ ତାଙ୍କର ଯଥୋଚିତ ସେବାରେ ଲାଗିଗଲେ । ତା'ପରେ ଲୀଳାରେ ଶରୀର ଧାରଣ କରିଥିବା ମହାଦେବ ସେ ସମସ୍ତଙ୍କୁ ସମ୍ମାନ ଦେଲେ । ପରମେଶ୍ୱରଙ୍କ ଆଜ୍ଞା ପାଇ ବିଷ୍ଣୁ ପ୍ରଭୃତି ଦେବଗଣ ସହର୍ଷ ନିଜ ନିଜ ବିଶ୍ରାମ ସ୍ଥଳକୁ ଚାଲିଗଲେ । (ଅଧ୍ୟାୟ ୪୯-୫୧)

✯✯✯

# ରାତ୍ରିକାଳରେ ସୁସଜ୍ଜିତ ବାସଗୃହରେ ଶୟନ କରି ସକାଳେ ବର-ରହଣି ସ୍ଥାନକୁ ଶିବଙ୍କର ଆଗମନ

ବ୍ରହ୍ମା କହୁଛନ୍ତି—**ବତ୍ସ !** ଏହାପରେ ପରମ ଭାଗ୍ୟବାନ୍ ଓ ଚତୁର ହିମବାନ ବରଯାତ୍ରୀମାନଙ୍କୁ ଭୋଜନ କରାଇବା ନିମନ୍ତେ ନିଜ ଅଗଣାକୁ ସୁନ୍ଦର ଢଙ୍ଗରେ ସଜାଇଲେ ଏବଂ ନିଜ ପୁତ୍ର ତଥା ଅନ୍ୟାନ୍ୟ ପର୍ବତଙ୍କୁ ପଠାଇ ଶିବଙ୍କ ସମେତ ସମସ୍ତ ଦେବଗଣଙ୍କୁ ଭୋଜନ ନିମନ୍ତେ ଡାକିଲେ । ସମସ୍ତେ ଉପସ୍ଥିତ ହେବାପରେ ସେମାନଙ୍କୁ ଅତ୍ୟନ୍ତ ଆଦରରେ ଉତ୍ତମୋତ୍ତମ ଖାଦ୍ୟରେ ଆପ୍ୟାୟିତ କଲେ । ଭୋଜନ ପରେ ହାତ-ମୁହଁ ଧୋଇ ବିଷ୍ଣୁ ପ୍ରଭୃତି ଦେବତା ବିଶ୍ରାମ ନିମନ୍ତେ ନିଜ ନିଜ ସ୍ଥାନକୁ ଚାଲିଗଲେ । ମେନାଙ୍କ ଆଜ୍ଞାରେ ସାଧ୍ୱୀ ନାରୀମାନେ ଭଗବାନ ଶିବଙ୍କୁ ଭକ୍ତିପୂର୍ବକ ନିବେଦନ କରି ତାଙ୍କୁ ପରମ ଉତ୍ସବମୟ ସୁନ୍ଦର ବାସଭବନରେ ରଖାଇଲେ । ମେନା ତାଙ୍କୁ ମନୋହର ରତ୍ନ ସିଂହାସନରେ ବସାଇଲେ । ଶିବ ସେଠାରେ ଆନନ୍ଦରେ ବସି ସେହି ବାସମନ୍ଦିରକୁ ନିରୀକ୍ଷଣ କଲେ । ଭବନଟି ଶହ ଶହ ରତ୍ନମୟ ପ୍ରଦୀପରେ ଉଦ୍ଭାସିତ ହେଉଥିଲା । ସେଠାରେ ରତ୍ନମୟ ପାତ୍ର ଓ ରତ୍ନର କଳଶମାନ ରଖା ଯାଇଥିଲା । ମୋତି ଓ ମାଣିକ୍ୟରେ ସମଗ୍ର ଭବନଟି ଝଲମଲ ଦିଶୁଥିଲା । ତାହା ରତ୍ନମୟ ଦର୍ପଣର ଶୋଭାରେ ମଣ୍ଡିତ ଏବଂ ଶ୍ୱେତ ଚାମରରେ ଅଲଂକୃତ ଥିଲା । ମଣି ଓ ମୁକ୍ତାର ଝାଲରମାନ ଟଙ୍ଗା ହୋଇଥିବାରୁ ତାହା ଅତ୍ୟନ୍ତ ସମୃଦ୍ଧିଶାଳୀ ଦିଶୁଥିଲା । ସେହି ଅନୁପମ ଭବନଟି ମହାଦିବ୍ୟ, ଅତି ବିଚିତ୍ର, ପରମ ମନୋହର ଓ ଆହ୍ଲାଦକର ଥିଲା । ତାହାର ଭୂମିଭାଗରେ ବିଚିତ୍ର ଝୋଟିମାନ ଅଙ୍କିତ ହୋଇଥିଲା । ଶିବଙ୍କ ବରଦାନର ମହାନ୍

* ଅମରକୋଷରେ ଯେଉଁ ଚାରିପ୍ରକାର ବାଦ୍ୟ ବିଷୟରେ ଉଲ୍ଲେଖ ଅଛି, ଜଗତର ସମସ୍ତ ପ୍ରକାର ପ୍ରାଚୀନ ବା ଅର୍ବାଚୀନ ବାଦ୍ୟ ତାହାର ଅନ୍ତର୍ଗତ । ସେହି ଚାରିଟିର ନାମ ହେଲା—ତତ, ଆନଦ୍ଧ, ସୁଷିର ଓ ଘନ । ଯେଉଁ ବାଦ୍ୟରେ ତାର ଟଣା ଯାଇଥାଏ, ତାହା 'ତତ'ର ଅନ୍ତର୍ଗତ; ଯଥା—ବୀଣା, ସିତାର ଇତ୍ୟାଦି । ଯେଉଁ ବାଦ୍ୟରେ ଚମଡ଼ା ଇତ୍ୟାଦି କଷାଯାଇ ବନ୍ଧା ହୋଇଥାଏ, ତାହା 'ଆନଦ୍ଧ' ଶ୍ରେଣୀର; ଯଥା—ଢୋଲ, ମୃଦଙ୍ଗ, ନାଗରା ଇତ୍ୟାଦି । ଯେଉଁ ବାଦ୍ୟରେ ଛିଦ୍ର ଥାଏ ଓ ପବନ ପୂର୍ଣ୍ଣ କରି ତହିଁରୁ ସ୍ୱର ବାହାର କରାଯାଏ, ତାହା 'ସୁଷିର' ଶ୍ରେଣୀର; ଯଥା—ବଂଶୀ, ଶଙ୍ଖ, ବିଗୁଲ, ହାରମୋନିୟମ୍ ଇତ୍ୟାଦି । କଂସାର ଝାଞ୍ଜ ଇତ୍ୟାଦିକୁ 'ଘନ' କହନ୍ତି ।

ଓ ଅନୁପମ ପ୍ରଭାବ ପ୍ରଦର୍ଶିତ କରିବା ଉଦ୍ଦେଶ୍ୟରେ ସେହି ଭବନଟିକୁ ଶିବଲୋକ ନାମରେ ନାମିତ କରାଯାଇଥିଲା । ତାହା ନାନା ପ୍ରକାର ଶ୍ରେଷ୍ଠ ସୁଗନ୍ଧିତ ଦ୍ରବ୍ୟରେ ସୁବାସିତ ଓ ସୁନ୍ଦର ଆଲୋକମାଳାରେ ସୁସଜ୍ଜିତ ଥିଲା । ସେଠାରେ ଚନ୍ଦନ ଓ ଅଗୁରୁର ସମ୍ମିଳିତ ମୃଦୁ ମୃଦୁ ସୁଗନ୍ଧ ପ୍ରସରିତ ହେଉଥିଲା । ସେଠାରେ ପୁଷ୍ପର ଶେଜ ବିଛା ହୋଇଥିଲା । ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ଉକ୍ତ ଭବନଟି ଉତ୍ତମ ଓ ସାରଭୂତ ମଣି ତଥା ରତ୍ନମାନଙ୍କ ହାରରେ ଅଲଂକୃତ ଏବଂ ନାନା ପ୍ରକାର ବିଚିତ୍ର ଚିତ୍ରରେ ସୁସଜ୍ଜିତ ଥିଲା । ସେଠାରେ ନିର୍ମିତ କୃତ୍ରିମ ବୈକୁଣ୍ଠ, ବ୍ରହ୍ମଲୋକ, କୈଳାସ, ଇନ୍ଦ୍ରଭବନ ଓ ଶିବଲୋକ ଇତ୍ୟାଦି ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ଥିଲା । ଏଭଳି ଆଶ୍ଚର୍ଯ୍ୟମୟ ଶୋଭାସମ୍ପନ୍ନ ବାସଭବନକୁ ଦେଖି ଶିବ ଗିରିରାଜ ହିମାଳୟଙ୍କୁ ପ୍ରଶଂସା କରିବା ସହିତ ନିଜେ ବି ବହୁତ ଖୁସୀ ହେଲେ । ସେଠାରେ ପଡ଼ିଥିବା ରତ୍ନଜଟିତ ପଲଙ୍କ ଉପରେ ପରମେଶ୍ୱର ଶିବ ଲୀଳାପୂର୍ବକ ଶୟନ କଲେ । ଏଣେ ହିମାଳୟ ନିଜର ଭାଇ-ବନ୍ଧୁ ଓ ଅନ୍ୟ ଲୋକମାନଙ୍କୁ ଭୋଜି ଦେଲେ ଏବଂ ଆଉ ଯାହା ସବୁ କାର୍ଯ୍ୟ ଅବଶେଷ ରହିଥିଲା, ତାହା ପୂର୍ଣ୍ଣ କଲେ ।

ଶୈଳରାଜ ହିମାଳୟ ଏହିରୂପେ ଆବଶ୍ୟକ କାର୍ଯ୍ୟରେ ଲାଗିଥାନ୍ତି, ତେଣେ ଶିବ ଶୟନ କରୁଥାନ୍ତି । ଏହିପରି ରାତି ବିତିଗଲା । ପ୍ରଭାତ ହେବାରୁ ଧୈର୍ଯ୍ୟବାନ୍ ଓ ଉତ୍ସାହୀ ଲୋକମାନେ ନାନା ପ୍ରକାର ବାଦ୍ୟ ବଜାଇଲେ । ଏହା ଶୁଣି ବିଷ୍ଣୁ ପ୍ରଭୃତି ଦେବଗଣ ନିଦ୍ରାରୁ ଜାଗ୍ରତ ହେଲେ ଏବଂ ଆପଣା ଇଷ୍ଟଦେବ ଶିବଙ୍କୁ ସ୍ମରଣ କରି ସେଠାରୁ ଶୀଘ୍ର ଶୀଘ୍ର କୈଳାସ ଯିବାକୁ ପ୍ରସ୍ତୁତ ହେଲେ । ସେମାନେ ନିଜ ନିଜ ବାହନକୁ ମଧ୍ୟ ସୁସଜ୍ଜିତ କଲେ । ତା'ପରେ ବିଷ୍ଣୁ ଧର୍ମଙ୍କୁ ଶିବଙ୍କ ପାଖକୁ ପଠାଇଲେ । ଯୋଗଶକ୍ତିସମ୍ପନ୍ନ ଧର୍ମ ନାରାୟଣଙ୍କ ଆଜ୍ଞାରେ ଶିବଙ୍କ ବାସଭବନରେ ପହଞ୍ଚି ଯୋଗୀଶ୍ୱର ଶିବଙ୍କୁ ସମୟୋଚିତ ବଚନ କହିଲେ । ସେ କହିଲେ—''ହେ ପ୍ରମଥଗଣଙ୍କ ସ୍ୱାମୀ ମହେଶ୍ୱର ! ଉଠନ୍ତୁ, ଜାଗ୍ରତ ହୁଅନ୍ତୁ । ଆପଣଙ୍କର କଲ୍ୟାଣ ହେଉ । ଆପଣ ଆମ ପାଇଁ ମଧ୍ୟ କଲ୍ୟାଣକାରୀ ହୁଅନ୍ତୁ । ବର-ରହଣି ଗୃହକୁ ଗ୍ଭଲନ୍ତୁ ଏବଂ ସେଠାରେ ଦେବତାମାନଙ୍କୁ କୃତାର୍ଥ କରନ୍ତୁ ।''

ଧର୍ମଙ୍କ କଥା ଶୁଣି ଭଗବାନ ମହେଶ୍ୱର ହସିଲେ । ସେ ଧର୍ମଙ୍କୁ କୃପାଦୃଷ୍ଟିରେ ଗ୍ଭହିଁଲେ ଏବଂ ଶଯ୍ୟାତ୍ୟାଗ କଲେ । ଏହାପରେ ଧର୍ମଙ୍କୁ ହସି ହସି କହିଲେ—''ତୁମେ ଆଗରେ ଯାଅ, ମୁଁ ଖୁବ୍ ଶୀଘ୍ର ଯାଇ ପହଞ୍ଚିବି ।''

ଭଗବାନ ଶିବ ଏପରି କହିବାରୁ ଧର୍ମ ବରରହଣି ସ୍ଥାନକୁ ଫେରି ଆସିଲେ । ତା'ପରେ ଶମ୍ଭୁ ମଧ୍ୟ ସ୍ୱୟଂ ସେଠାକୁ ଯିବାକୁ ଉଦ୍ୟତ ହେଲେ । ଏକଥା ଜାଣିବାକୁ ପାଇ ନାରୀମାନେ ଆନନ୍ଦ ଉତ୍ସବ କରି କରି ତାଙ୍କ ନିକଟକୁ ଆସିଲେ ଏବଂ ଭଗବାନଙ୍କର ଚରଣଯୁଗଳକୁ ଦର୍ଶନ କରି ମଙ୍ଗଳଗୀତ ଗାନ କଲେ । ତା'ପରେ ଲୋକାଗ୍ଭର ଦୃଷ୍ଟିରୁ ଶମ୍ଭୁ ପ୍ରାତଃକାଳୀନ କୃତ୍ୟ ସମାପ୍ତ କରି ମେନା ଓ ହିମବାନଙ୍କ ଆଜ୍ଞା ନେଇ ବର-ରହଣି ଗୃହକୁ ଗଲେ । ମୁନେ ! ସେତେବେଳେ ବହୁତ ବଡ଼ ଆନନ୍ଦଉତ୍ସବ ହେଲା । ବେଦମନ୍ତ୍ର ଧ୍ୱନି ହେଲା ଏବଂ ଲୋକେ ଗ୍ଭରି ପ୍ରକାର ବାଦ୍ୟ ବଜାଇଲେ । ଶମ୍ଭୁ ନିଜ ସ୍ଥାନକୁ ଆସି ଲୋକାଗ୍ଭର ଅନୁସାରେ ମୁନିଗଣଙ୍କୁ, ବିଷ୍ଣୁଙ୍କୁ ଓ ମୋତେ ପ୍ରଣାମ କଲେ । ଦେବତା ପ୍ରଭୃତି ତାଙ୍କୁ ବନ୍ଦନ କଲେ । ଜୟକାର, ନମସ୍କାର ଓ ବେଦମନ୍ତ୍ରର ମଙ୍ଗଳ ଧ୍ୱନିରେ ଚତୁର୍ଦ୍ଦିଗ ଗୁଞ୍ଜିତ ହୋଇଉଠିଲା ।

(ଅଧ୍ୟାୟ ୫୨)

***

# ଚତୁର୍ଥୀ କର୍ମ, ବରଯାତ୍ରୀଙ୍କର ଅନେକ ଦିନ ପର୍ଯ୍ୟନ୍ତ ନିବାସ, ସପ୍ତର୍ଷିମାନେ ବୁଝାଇବା ପରେ ବରଯାତ୍ରୀଙ୍କୁ ବିଦା କରିବାକୁ ହିମାଳୟଙ୍କ ସମ୍ମତି, ମେନା ଶିବଙ୍କ ନିକଟରେ କନ୍ୟା ସମର୍ପଣ କରିବା ପରେ ବରଯାତ୍ରୀଙ୍କ ପ୍ରସ୍ଥାନ ଏବଂ ନଗର ବାହାରେ ପାର୍ବତୀଙ୍କ ଆଗମନ ନିମନ୍ତେ ପ୍ରତୀକ୍ଷା

ବ୍ରହ୍ମା କହୁଛନ୍ତି—ଏହାପରେ ବିଷ୍ଣୁ ପ୍ରଭୃତି ଦେବତା ଓ ଋଷିଗଣ କୈଳାସ ଫେରିବାକୁ ଚିନ୍ତା କଲେ । ହିମାଳୟ ବର-ରହଣି ଗୃହକୁ ଯାଇ ସମସ୍ତଙ୍କୁ ଭୋଜନ ପାଇଁ ନିମନ୍ତ୍ରିତ କଲେ । ତା'ପରେ ଦେବେଶ୍ୱର ଶିବଙ୍କୁ ଆମନ୍ତ୍ରିତ କରି ନିଜ ଭବନକୁ ଫେରି ଆସିଲେ ଏବଂ ଭୋଜନ-ଉତ୍ସବର ସବୁ ପ୍ରକାର ପ୍ରସ୍ତୁତି କଲେ । ସେ ହର୍ଷ ଓ ଉତ୍କଣ୍ଠା ସହ ଭୋଜନ ନିମନ୍ତେ ସପରିବାର ଶିବଙ୍କୁ ଯଥୋଚିତ ରୀତିରେ ନିଜ ଗୃହକୁ ଡକାଇଲେ । ଗିରିରାଜ ଅତ୍ୟନ୍ତ ଆଦରରେ ଶମ୍ଭୁଙ୍କର, ବିଷ୍ଣୁଙ୍କର, ମୋର ଏବଂ ଦେବତା ଓ ମୁନିଙ୍କର ପାଦପ୍ରକ୍ଷାଳନ କରି ସମସ୍ତଙ୍କୁ ମଣ୍ଡପସ୍ଥିତ ସୁନ୍ଦର ସୁନ୍ଦର ଆସନରେ ବସାଇଲେ । ତା'ପରେ ସେ ତାଙ୍କର ଭାଇବନ୍ଧୁଙ୍କୁ ସଙ୍ଗରେ ନେଇ ସେମାନଙ୍କ ସହଯୋଗରେ ଏହି ଅତିଥିମାନଙ୍କୁ ନାନା ପ୍ରକାର ସରସ ଭୋଜନରେ ପରିତୃପ୍ତ କଲେ । ମୁଁ, ବିଷ୍ଣୁ ଓ ଶମ୍ଭୁଙ୍କ ସମେତ ସମସ୍ତେ ଭୋଜନ କରି ତୃପ୍ତ ହେଲୁ । ନାରଦ ! ବିଧିବତ୍ ଭୋଜନ ଓ ଆଚମନ କରିସାରି ଆମେ ସମସ୍ତେ ହିମାଳୟଙ୍କ ଅନୁମତି ନେଇ ନିଜ ନିଜ ରହଣିସ୍ଥାନକୁ ଚାଲିଗଲୁ । ମୁନେ ! ଏହିପରି ତୃତୀୟ ଦିନ ମଧ୍ୟ ଗିରିରାଜ ଦାନ, ମାନ ଓ ଆଦରରେ ସମସ୍ତଙ୍କୁ ସମ୍ମାନିତ କଲେ । ଚତୁର୍ଥ ଦିନ ଶୁଦ୍ଧତାପୂର୍ବକ ବିଧିବିଧାନରେ ଚତୁର୍ଥୀ କର୍ମ ହେଲା; କାରଣ ଏହା ବିନା ବିବାହକାର୍ଯ୍ୟ ଅପୂର୍ଣ୍ଣ ଧରାଯାଏ । ସେତେବେଳେ ମଧ୍ୟ ନାନା ପ୍ରକାର ଉତ୍ସବ କରାଗଲା । ସାଧୁବାଦ ଓ ଜୟ-ଜୟ ନାଦରେ ଚତୁର୍ଦ୍ଦିଗ କମ୍ପି ଉଠିଲା । ଅନେକ ପ୍ରକାର ଦାନ ଦିଆଗଲା । ନାନା ପ୍ରକାର ନୃତ୍ୟ-ଗୀତ ହେଲା । ପଞ୍ଚମ ଦିନ ଦେବଗଣ ଅତି ଆଦରରେ ହିମବାନଙ୍କୁ ସୂଚିତ କରି କହିଲେ—"ଏବେ ଆମ୍ଭେମାନେ ଫେରିଯିବାକୁ ଚାହୁଁଛୁ । ଆମକୁ ଆଜ୍ଞା ଦିଅନ୍ତୁ ।" ଏକଥା ଶୁଣି ଗିରିରାଜ ହାତ ଯୋଡ଼ି କହିଲେ—"ହେ ଦେବଗଣ ! ଆପଣମାନେ ମୋ ପ୍ରତି ଅନୁଗ୍ରହ କରି ଆଉ କିଛି ଦିନ ରହନ୍ତୁ ।" ଏଭଳି କହି ସେ ସ୍ନେହରେ ଦେବଗଣଙ୍କୁ, ଶିବଙ୍କୁ, ବିଷ୍ଣୁଙ୍କୁ, ମୋତେ ଓ ଅନ୍ୟମାନଙ୍କୁ ବହୁ ଦିନ ପର୍ଯ୍ୟନ୍ତ ଅଟକାଇଲେ ଏବଂ ପ୍ରତିଦିନ ଅତ୍ୟନ୍ତ ଆଦର-ସତ୍କାର କଲେ ।

ଏହିରୂପେ ଦେବତାମାନେ ସେଠାରେ ରହୁ ରହୁ ଅନେକ ଦିନ ବିତିଗଲା । ଏଥର ସେମାନେ ଗିରିରାଜଙ୍କ ନିକଟକୁ ସପ୍ତର୍ଷିଗଣଙ୍କୁ ପଠାଇଲେ । ସପ୍ତର୍ଷିମାନେ ହିମବାନ ଓ ମେନାଙ୍କୁ ସମୟୋଚିତ କଥା କହି ବୁଝାଇବା ସହ ପ୍ରସନ୍ନତାପୂର୍ବକ ସେମାନଙ୍କ ସୌଭାଗ୍ୟର ପ୍ରଶଂସା କଲେ । ତା'ପରେ ସେ ପରମ ଶିବତତ୍ତ୍ୱର ବର୍ଣ୍ଣନା କଲେ । ମୁନେ ! ସେମାନେ ବୁଝାଇବାରୁ ଗିରିରାଜ ବରଯାତ୍ରୀଙ୍କୁ ବିଦା କରିବାକୁ ସହମତ ହେଲେ । ତା'ପରେ ଭଗବାନ ଶମ୍ଭୁ ଯାତ୍ରା ନିମନ୍ତେ ଉଦ୍ୟତ ହୋଇ ଦେବତା ପ୍ରଭୃତିଙ୍କ ସଙ୍ଗରେ ଶୈଳରାଜଙ୍କ ନିକଟକୁ ଆସିଲେ । ଦେବେଶ୍ୱର ଶିବ ଦେବଗଣଙ୍କ ସହ କୈଳାସ ଫେରିଯିବାକୁ ଉଦ୍ୟତ ହେଉଥିବା କଥା ଜାଣି ମେନା ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ ଏବଂ କୃପାନିଧାନ ଶିବଙ୍କୁ କହିଲେ—

ମେନା କହିଲେ—କୃପାନିଧେ ! କୃପା କରି

ମୋ ଶିବାର ଭଲଭାବେ ଲାଳନ-ପାଳନ କରୁଥିବେ । ଆପଣ ଆଶୁତୋଷ । ପାର୍ବତୀର ହଜାର ହଜାର ଅପରାଧକୁ କ୍ଷମା କରିବେ । ମୋ ଝିଅ ଜନ୍ମ-ଜନ୍ମରୁ ଆପଣଙ୍କ ଚରଣାରବିନ୍ଦର ଭକ୍ତ ଏବଂ ଭବିଷ୍ୟତରେ ମଧ୍ୟ ସେ ଭକ୍ତ ହୋଇ ରହିବ । ତାକୁ ଶୟନ-ଜାଗରଣ ସବୁବେଳେ ତା'ର ସ୍ୱାମୀ ମହାଦେବଙ୍କ ଛଡ଼ା ଆଉ କୌଣସି କଥାର ଚେତନା ରହେ ନାହିଁ । ମୃତ୍ୟୁଞ୍ଜୟ ! ଆପଣଙ୍କ ପ୍ରତି ଭକ୍ତିଭାବର କଥା ଶୁଣିବାମାତ୍ରେ ସେ ହର୍ଷରେ ପୁଲକିତ ହୋଇଉଠେ ଓ ତା' ଆଖିରୁ ଆନନ୍ଦାଶ୍ରୁ ଝରିପଡ଼େ । ଆପଣଙ୍କ ନିନ୍ଦା ଶୁଣିଲେ ସେ ଏପରି ମୌନ ହୋଇଯାଏ ଯେ ସତେଯେପରି ନିଷ୍ପ୍ରାଣ ହୋଇଯାଇଛି ।

ବ୍ରହ୍ମା କହୁଛନ୍ତି—ନାରଦ ! ମେନା ଏପରି କହି ଝିଅକୁ ଶିବଙ୍କ ନିକଟରେ ସମର୍ପିଦେଲେ ଏବଂ ସେ ଦୁହିଙ୍କ ସମ୍ମୁଖରେ ଉଚ୍ଚସ୍ୱରରେ ବିଳାପ କରୁ କରୁ ମୂର୍ଚ୍ଛିତ ହୋଇଗଲେ । ତା'ପରେ ମହାଦେବ ମେନାଙ୍କୁ ବୁଝାଇ-ସୁଝାଇ ଶାନ୍ତ କଲେ ଏବଂ ତାଙ୍କ ଠାରୁ ବିଦାୟ ନେଇ ଦେବଗଣଙ୍କ ସହ ମହାନ୍ ହର୍ଷୋଲ୍ଲାସରେ ଯାତ୍ରାରମ୍ଭ କଲେ । ଦେବଗଣ ସେମାନଙ୍କ ସ୍ୱାମୀ ମହାଦେବ ତଥା ସେବକଗଣଙ୍କ ସହ ମନେ ମନେ ଶିବଙ୍କୁ ଚିନ୍ତନ କରି କୈଳାସ ଅଭିମୁଖେ ଯାତ୍ରା କଲେ । ଶିବ ଓ ଦେବଗଣ ହିମାଚଳ-ନଗରୀର ବାହାରକୁ ଆସି ଗୋଟିଏ ବଗିଚ୍ରେ ଅଟକିଗଲେ ଏବଂ ଶିବାଙ୍କ ଆଗମନକୁ ପ୍ରତୀକ୍ଷା କଲେ । ମୁନୀଶ୍ୱର ! ଏହିରୂପେ ମୁଁ ଦେବଗଣଙ୍କ ସମେତ ଶିବଙ୍କ ବରଯାତ୍ରା ପ୍ରସଙ୍ଗ ବର୍ଣ୍ଣନା କରିଦେଲି । ଏବେ ଶିବାଙ୍କ ଯାତ୍ରା ବିଷୟରେ ଶୁଣ, ଯାହା କି ଉଭୟ ବିରହବ୍ୟଥା ଓ ଆନନ୍ଦରେ ସଂଯୁକ୍ତ । (ଅଧ୍ୟାୟ ୫୩)

★★★

## ମେନାଙ୍କ ଇଚ୍ଛାନୁସାରେ ଜଣେ ବ୍ରାହ୍ମଣୀଙ୍କ ଠାରୁ ପାର୍ବତୀଙ୍କୁ ପତିବ୍ରତାଧର୍ମ ଉପଦେଶ ପ୍ରାପ୍ତି

ବ୍ରହ୍ମା କହୁଛନ୍ତି—ନାରଦ ! ଏହାପରେ ସପ୍ତର୍ଷିମାନେ ହିମାଳୟଙ୍କୁ କହିଲେ, ''ଗିରିରାଜ ! ଏବେ ଆପଣ ଝିଅକୁ ବିଦା କରିବାର ବ୍ୟବସ୍ଥା କରନ୍ତୁ ।'' ମୁନୀଶ୍ୱର ! ଏତିକି ଶୁଣିବାମାତ୍ରେ ପାର୍ବତୀଙ୍କ ଭାବୀ ବିରହକୁ ଅନୁଭବ କରି ଗିରିରାଜ ସ୍ନେହ ହେତୁ ବିଷାଦମଗ୍ନ ହୋଇଗଲେ? କିଛି କାଳ ପରେ ସେ ଚିନ୍ତାମୁକ୍ତ ହୋଇ 'ତଥାସ୍ତୁ' କହି ମେନାଙ୍କ ନିକଟକୁ ସନ୍ଦେଶ ପଠାଇଲେ । ମୁନେ ! ହିମବାନଙ୍କ ସନ୍ଦେଶ ପାଇ ମେନା ଶୋକାଭିଭୂତ ହୋଇ ସୁଦ୍ଧା ପାର୍ବତୀଙ୍କୁ ବିଦା କରିବାକୁ ଉଦ୍ୟତ ହେଲେ । ଶୈଳରାଜଙ୍କ ପ୍ରିୟା ମେନା ବିଧିପୂର୍ବକ ବୈଦିକ ଓ ଲୌକିକ କୁଳାଚାର ପାଳନ କଲେ ଏବଂ ସେତେବେଳେ ବିଭିନ୍ନ ପ୍ରକାର ଉତ୍ସବ ହେଲା । ତା'ପରେ ସେ ନାନା ପ୍ରକାର ରତ୍ନଜଟିତ ବସ୍ତ୍ର ଓ ଦ୍ୱାଦଶ ଆଭୂଷଣରେ ପାର୍ବତୀଙ୍କୁ ରାଜକୁଳୋଚିତ ଢଙ୍ଗରେ ବିଭୂଷିତ କଲେ । ଏହାପରେ ମେନାଙ୍କ ମନୋଭାବକୁ ଜାଣି ଜଣେ ସତୀ-ସାଧ୍ୱୀ ବ୍ରାହ୍ମଣୀ ଗିରିଜାଙ୍କୁ ଉତ୍ତମ ପାତିବ୍ରତ୍ୟର ଶିକ୍ଷା ଦେଲେ ।

ବ୍ରାହ୍ମଣୀ କହିଲେ—ଗିରିଜେ! ତୁମେ ଶ୍ରଦ୍ଧାପୂର୍ବକ ମୋର ଉପଦେଶ ଶୁଣ । ଏକଥା ଧର୍ମ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଇହଲୋକ ଓ ପରଲୋକରେ ଆନନ୍ଦ ପ୍ରଦାନ କରିଥାଏ ଏବଂ ଶ୍ରୋତାଙ୍କୁ ମଧ୍ୟ ସୁଖ ପ୍ରଦାନ କରିଥାଏ । ସଂସାରରେ ପତିବ୍ରତା ନାରୀ ହିଁ ଧନ୍ୟ । ସେ ହିଁ ବିଶେଷରୂପେ ପୂଜନୀୟା, ଅନ୍ୟ ନାରୀ ନୁହେଁ । ପତିବ୍ରତା ସମଗ୍ର ଜଗତକୁ ପବିତ୍ର କରିଦିଏ ଓ ସମସ୍ତ ପାପରାଶିକୁ ନଷ୍ଟ କରିଦିଏ । ଶିବେ ! ଯେ ସ୍ୱାମୀଙ୍କୁ ପରମେଶ୍ୱର

ମଣି ପ୍ରେମପୂର୍ବକ ତାଙ୍କ ସେବା କରେ, ସେ ଇହଲୋକରେ ସମସ୍ତ ଭୋଗକୁ ଉପଭୋଗ କରି ଶେଷରେ କଲ୍ୟାଣମୟୀ ଗତିକୁ ପ୍ରାପ୍ତ ହୁଏ ।* ସାବିତ୍ରୀ, ଲୋପାମୁଦ୍ରା, ଅରୁନ୍ଧତୀ, ଶାଣ୍ଡିଲୀ, ଶତରୂପା, ଅନସୂୟା, ଲକ୍ଷ୍ମୀ, ସ୍ୱଧା, ସତୀ, ସଂଜ୍ଞା, ସୁମତି, ଶ୍ରଦ୍ଧା, ମେନା, ସ୍ୱାହା ତଥା ଅନ୍ୟାନ୍ୟ ଅନେକ ନାରୀ ସତୀସାଧ୍ୱୀ ନାମରେ ପ୍ରସିଦ୍ଧ । ବିସ୍ତାର ଭୟରେ ସମସ୍ତଙ୍କର ନାମ କହୁ ନାହିଁ । ସେମାନେ ପତିବ୍ରତା ଧର୍ମ ବଳରେ ସବୁଲୋକଙ୍କର ପୂଜନୀୟା ତଥା ବ୍ରହ୍ମା, ବିଷ୍ଣୁ, ଶିବ ଓ ମୁନୀଶ୍ୱରଙ୍କ ପକ୍ଷେ ମଧ୍ୟ ମାନନୀୟା ହୋଇପାରିଛନ୍ତି । ତେଣୁ ତୁମେ ମଧ୍ୟ ତୁମ ସ୍ୱାମୀ ଭଗବାନ ଶଙ୍କରଙ୍କର ସର୍ବଦା ସେବା କରିବା ଉଚିତ । ସେ ଦୀନଦୟାଳୁ, ସମସ୍ତଙ୍କର ସେବନୀୟ ଓ ସାଧୁଜନଙ୍କର ଆଶ୍ରୟ ଅଟନ୍ତି । ଶ୍ରୁତି ଓ ସ୍ମୃତିମାନଙ୍କରେ ପତିବ୍ରତାଧର୍ମର ଯଥେଷ୍ଟ ମହିମା ଗାନ କରାଯାଇଛି । ଏକଥା ନିଃସନ୍ଦେହ ଯେ ପାତିବ୍ରତ୍ୟ ସଙ୍ଗେ ଅନ୍ୟ କୌଣସି ଧର୍ମ ସରି ନୁହେଁ ।

ପାତିବ୍ରତ୍ୟରେ ତତ୍ପର ରହୁଥିବା ନାରୀ ସ୍ୱାମୀ ଭୋଜନ କରିସାରିଲା ପରେ ହିଁ ଭୋଜନ କରିବା ଉଚିତ । ଶିବେ ! ସ୍ୱାମୀ ଯଦି ଠିଆ ହୋଇଥାନ୍ତି, ସ୍ତ୍ରୀ ମଧ୍ୟ ଠିଆ ହୋଇ ରହିବା ଉଚିତ । ପତିବ୍ରତା ନାରୀ ପ୍ରତିଦିନ ସ୍ୱାମୀ ଶୋଇଯିବା ପରେ ଶୋଇବ ଓ ସ୍ୱାମୀ ଉଠିବା ପୂର୍ବରୁ ଉଠିବ । ସେ ଛଳ କପଟ ଛାଡ଼ି ସର୍ବଦା ସ୍ୱାମୀଙ୍କ ପାଇଁ ହିତକର କାର୍ଯ୍ୟ ହିଁ କରିବ । ଶିବେ ! ସାଧ୍ୱୀ ସ୍ତ୍ରୀ ଯେପର୍ଯ୍ୟନ୍ତ ନିଜେ ବସ୍ତ୍ରାଭୂଷଣରେ ନିଜକୁ ମଣ୍ଡିତ ନ କରିଛି, ସେପର୍ଯ୍ୟନ୍ତ ସେ ସ୍ୱାମୀଙ୍କ ଦୃଷ୍ଟି ସମ୍ମୁଖକୁ ଯିବା ଉଚିତ ନୁହେଁ । ଯଦି ସ୍ୱାମୀ କୌଣସି କାର୍ଯ୍ୟରେ ବିଦେଶକୁ ଯାଇଥିବେ, ତେବେ ସେହି ଦିନମାନଙ୍କରେ ସେ କଦାପି ନିଜକୁ ସଜାଇବା ଉଚିତ ନୁହେଁ । ପତିବ୍ରତା ସ୍ତ୍ରୀ କଦାପି ସ୍ୱାମୀର ନାମ ଧରିବ ନାହିଁ । ସ୍ୱାମୀ କଟୁବଚନ କହିଲେ ମଧ୍ୟ ସେ ପ୍ରତ୍ୟୁତ୍ତରରେ କଟୁବଚନ କହିବ ନାହିଁ । ସ୍ୱାମୀ ଡାକିଲେ ସେ ଘରର ସମସ୍ତ କାର୍ଯ୍ୟ ଛାଡ଼ି ତୁରନ୍ତ ତାଙ୍କ ପାଖକୁ ଯିବ ଓ ହାତ ଯୋଡ଼ି ପ୍ରେମର ସହ ମୁଣ୍ଡ ନୁଆଁଇ ପଚାରିବ–"ସ୍ୱାମୀ ! କେଉଁଥିପାଇଁ ଏ ଦାସୀକୁ ଡାକିଲେ? ମୋତେ ସେବା ପାଇଁ ଆଦେଶ ଦେଇ ଅନୁଗୃହୀତ କରନ୍ତୁ ।" ଏହାପରେ ସ୍ୱାମୀ ଯାହା ଆଦେଶ ଦେବେ, ତାହା ସେ ପ୍ରସନ୍ନ ମନରେ ପାଳନ କରିବ । ସେ ଘରର ଦ୍ୱାରମୁହଁରେ ବେଶୀ ସମୟ ପର୍ଯ୍ୟନ୍ତ ଠିଆ ହେବ ନାହିଁ, ଅନ୍ୟର ଘରକୁ ଯିବ ନାହିଁ ଏବଂ କୌଣସି ଗୋପନୀୟ କଥା ଜାଣିଥିଲେ ତାହାକୁ ପ୍ରତ୍ୟେକ ବ୍ୟକ୍ତି ସମ୍ମୁଖରେ ପ୍ରକାଶିତ କରିବ ନାହିଁ । ସ୍ୱାମୀ ନ କହୁଣୁ ସେ ତାଙ୍କ ପାଇଁ ପୂଜନ ସାମଗ୍ରୀ ଯୋଗାଡ଼ କରି ରଖିବ ଏବଂ ତାଙ୍କର ହିତସାଧନର ଯଥୋଚିତ ଅବସରକୁ ପ୍ରତୀକ୍ଷା କରିବ । ସ୍ୱାମୀଙ୍କ ଆଜ୍ଞା ବିନା କୌଣସି ତୀର୍ଥକୁ ମଧ୍ୟ ଯିବ ନାହିଁ । ବହୁଲୋକଙ୍କ ସମାଗମକୁ, ସଭା-ସମିତି ବା ମେଳା ଇତ୍ୟାଦିକୁ ଦୂରରୁ ବର୍ଜନ କରିବ । ଯେଉଁ ନାରୀ ତୀର୍ଥଯାତ୍ରାର ଫଳ ପାଇବାକୁ ଚାହେଁ, ସେ ନିଜ ସ୍ୱାମୀଙ୍କ ପାଦୋଦକ ପାଇବା ଉଚିତ; କାରଣ ସ୍ୱାମୀଙ୍କ ପାଦୋଦକ ହିଁ ତା' ପାଇଁ ସମସ୍ତ ତୀର୍ଥ ଓ କ୍ଷେତ୍ର; ଏଥିରେ ସଂଶୟ ନାହିଁ ।✽

ପତିବ୍ରତା ନାରୀ ସ୍ୱାମୀଙ୍କ ଉଚ୍ଛିଷ୍ଟ ଅନ୍ନ

* ଧନ୍ୟା ପତିବ୍ରତା ନାରୀ ନାନ୍ୟା ପୂଜ୍ୟା ବିଶେଷତଃ । ପାବନୀ ସର୍ବଲୋକାନାଂ ସର୍ବପାପୌଘନାଶିନୀ ॥
ସେବତେ ଯା ପତିଂ ପ୍ରେମ୍ଣା ପରମେଶ୍ୱରବଚ୍ଛିବେ । ଇହ ଭୁକ୍ତ୍ୱାଖିଲାନ୍ ଭୋଗାନନ୍ତେ ପତ୍ୟା ଶିବାଂ ଗତିମ୍ ॥
(ଶି. ପୁ. ରୁ. ସଂ. ପା. ଖ. ୫୪ । ୯-୧୦)

✽ ତୀର୍ଥାର୍ଥିନୀ ତୁ ଯା ନାରୀ ପତିପାଦୋଦକଂ ପିବେତ୍ । ତସ୍ମିନ୍ ସର୍ବାଣି ତୀର୍ଥାନି କ୍ଷେତ୍ରାଣି ଚ ନ ସଂଶୟଃ ॥
(ଶି. ପୁ. ରୁ. ସଂ. ପା. ଖ. ୫୪ । ୨୫)

ଇତ୍ୟାଦିକୁ ପରମ ପ୍ରିୟ ଭୋଜନ ମଣି ଗ୍ରହଣ କରିବା ଉଚିତ ଏବଂ ସ୍ୱାମୀ ଯାହା କିଛି ଦେବେ, ତାହାକୁ ମହାପ୍ରସାଦ ମଣି ଶିରୋଧାର୍ଯ୍ୟ କରିବା ଉଚିତ। ସେ ଦେବତା, ପିତୃଗଣ, ଅତିଥି, ସେବକଗଣ, ଗାଈ ଓ ଭିକ୍ଷୁକଙ୍କ ପାଇଁ ଅନ୍ନରୁ ଭାଗ ନ ଦେଇ କଦାପି ଭୋଜନ କରିବ ନାହିଁ। ପାତିବ୍ରତ୍ୟରେ ତତ୍ପର ରହୁଥିବା ଗୃହଦେବୀ ଗୃହର ସାମଗ୍ରୀକୁ ସୁରକ୍ଷିତ ରଖିବ। ସେ ଗୃହକାର୍ଯ୍ୟରେ କୁଶଳ ହେବ, ସର୍ବଦା ପ୍ରସନ୍ନ ରହିବ ଏବଂ ଖର୍ଚ୍ଚବାର୍ଚ୍ଚରେ ସଂଯମତା ରକ୍ଷା କରିବ। ସ୍ୱାମୀଙ୍କ ଆଜ୍ଞା ବିନା ବ୍ରତ-ଉପବାସ ଇତ୍ୟାଦି କରିବ ନାହିଁ, ଅନ୍ୟଥା ତାକୁ ସେଥିରୁ କୌଣସି ଫଳ ମିଳିବ ନାହିଁ; ବରଂ ସେ ପରଲୋକରେ ନରକଗାମିନୀ ହେବ। ସ୍ୱାମୀ କେଉଁଠି ସୁଖରେ ବସିଥିବାବେଳେ ଅଥବା ଇଚ୍ଛାନୁସାରେ କ୍ରୀଡ଼ାବିନୋଦ ବା ମନୋରଞ୍ଜନ କରୁଥିବାବେଳେ କୌଣସି ଆନ୍ତରିକ କାର୍ଯ୍ୟ ପଡ଼ିଗଲେ ମଧ୍ୟ ପତିବ୍ରତା ସ୍ତ୍ରୀ ତାଙ୍କୁ ସେଠାରୁ ଉଠାଇବ ନାହିଁ। ସ୍ୱାମୀ ନପୁଂସକ ହୋଇଯାଇଥିଲେ, ଦୁର୍ଗତିରେ ପଡ଼ିଥିଲେ, ରୋଗୀ ହୋଇଥିଲେ, ବୁଢ଼ା ହୋଇଥିଲେ, ସୁଖୀ ବା ଦୁଃଖୀ ହୋଇଥିଲେ ମଧ୍ୟ ନାରୀ କୌଣସି ସ୍ଥିତିରେ ତା'ର ଏକମାତ୍ର ସ୍ୱାମୀକୁ ଉଲ୍ଲଙ୍ଘନ ବା ଅପମାନିତ କରିବା ଉଚିତ ନୁହେଁ। ରଜସ୍ୱଳା ହେବାବେଳେ ନାରୀ ତିନିରାତ୍ରି ପର୍ଯ୍ୟନ୍ତ ସ୍ୱାମୀକୁ ମୁହଁ ଦେଖାଇବ ନାହିଁ ଅର୍ଥାତ୍ ତାଙ୍କ ଠାରୁ ଦୂରେଇ ରହିବ। ସ୍ନାନ କରି ଶୁଦ୍ଧ ନ ହେବା ପର୍ଯ୍ୟନ୍ତ ନିଜର କୌଣସି କଥା ତାଙ୍କ କାନରେ ପଡ଼ିବାକୁ ଦେବ ନାହିଁ। ଶୁଦ୍ଧସ୍ନାନ କରିବା ପରେ ସର୍ବପ୍ରଥମେ ସେ ନିଜ ସ୍ୱାମୀର ମୁଖ ଦର୍ଶନ କରିବ, କଦାପି ଅନ୍ୟ କାହାରି ମୁଖ ଦେଖିବ ନାହିଁ; ଅଥବା ମନେ ମନେ ସ୍ୱାମୀକୁ ଚିନ୍ତନ କରି ସୂର୍ଯ୍ୟଦର୍ଶନ କରିବ। ସ୍ୱାମୀର ଆୟୁବୃଦ୍ଧି ଚାହୁଁଥିବା ପତିବ୍ରତା ନାରୀ ହଳଦୀ, କୁଙ୍କୁମ, ସିନ୍ଦୂର, କଜ୍ଜଳ ଇତ୍ୟାଦି; ଓଢ଼ଣୀ, ପାନ, ମାଙ୍ଗଳିକ ଆଭୂଷଣ ଇତ୍ୟାଦି ଏବଂ କେଶସଂସ୍କାର, ଜୁଡ଼ାବନ୍ଧା, ହାତ ଓ କାନର ଆଭୂଷଣ ପ୍ରଭୃତିକୁ ସଦା ଧାରଣ କରିବ, କାଦାପି ଦେହରୁ ହଟାଇବ ନାହିଁ। ଧୋବଣୀ, ବ୍ୟଭିଚାରିଣୀ ବା କୁଳଟା, ସନ୍ନ୍ୟାସିନୀ ଓ ଭାଗ୍ୟହୀନା ନାରୀକୁ କଦାପି ନିଜର ସଖୀ କରିବ ନାହିଁ। ସ୍ୱାମୀ ପ୍ରତି ଦ୍ୱେଷ କରୁଥିବା ନାରୀ ସଙ୍ଗେ ସେ କଦାପି ସମ୍ଭାଷଣ ନ କରିବା ଉଚିତ। ସେ କେଉଁଠି ଏକୁଟିଆ ରହିବ ନାହିଁ କି କଦାପି ଉଲଗ୍ନ ହୋଇ ସ୍ନାନ କରିବ ନାହିଁ। ସତୀ ସ୍ତ୍ରୀ ଉଦୂଖଳ, ଢିଙ୍କି, ମୁଷଳ, ଝାଡ଼ୁ, ଶିଳ, ଚକ୍କି ଓ ଏରୁଣ୍ଡି ବନ୍ଧ ଉପରେ ବସିବ ନାହିଁ। ମୈଥୁନ କାଳ ବ୍ୟତୀତ ଅନ୍ୟ କୌଣସି ସମୟରେ ସେ ସ୍ୱାମୀ ସମ୍ମୁଖରେ ଧୃଷ୍ଟତା କରିବ ନାହିଁ। ଯେଉଁ ସବୁ ବସ୍ତୁରେ ସ୍ୱାମୀର ରୁଚି ଥିବ ବା ଯେଉଁ କଥା ସ୍ୱାମୀର ପସନ୍ଦ, ତାହାକୁ ସେ ମଧ୍ୟ ଆଦର କରିବ। ପତିବ୍ରତା ଦେବୀ ସଦା ସ୍ୱାମୀର ହିତକାମନା କରିବା ଉଚିତ। ସେ ସ୍ୱାମୀ ସୁଖରେ ସୁଖୀ ଓ ସ୍ୱାମୀ ଦୁଃଖରେ ଦୁଃଖୀ ହେବା ଉଚିତ। ପ୍ରିୟତମ ସ୍ୱାମୀଙ୍କ ପ୍ରତି ଏଭଳି ବ୍ୟବହାର କରିବା ଉଚିତ, ଯଦ୍ୱାରା ସେ ତାଙ୍କୁ ପ୍ରିୟତମା ଲାଗିବ। ପୁଣ୍ୟାତ୍ମା ପତିବ୍ରତା ନାରୀ ସମ୍ପତ୍ତି ଓ ବିପତ୍ତିରେ ସ୍ୱାମୀଙ୍କ ପ୍ରତି ଏକାଭଳି ବ୍ୟବହାର କରିବ; ମନରେ କଦାପି ବିକାରକୁ ସ୍ଥାନ ନ ଦେଇ ଧୈର୍ଯ୍ୟ ଧାରଣ କରିବ। ଘିଅ, ତେଲ, ଲୁଣ ଇତ୍ୟାଦି ଘରୁ ସରିଗଲେ ମଧ୍ୟ ପତିବ୍ରତା ସ୍ତ୍ରୀ ହଠାତ୍ 'ନାହିଁ' ଶବ୍ଦ କହିବ ନାହିଁ। ସେ ସ୍ୱାମୀକୁ କଷ୍ଟ ବା ଚିନ୍ତାରେ ପକାଇବା ଉଚିତ ନୁହେଁ। ହେ ଦେବେଶ୍ୱରୀ! ପତିବ୍ରତା ନାରୀ ପାଇଁ ତା'ର ଏକମାତ୍ର ସ୍ୱାମୀ ହିଁ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ଠାରୁ ଶ୍ରେଷ୍ଠ ଧରାଯାଇଛି। ସେ ସ୍ୱାମୀକୁ ହିଁ ଶିବଙ୍କ

ସ୍ୱରୂପ ବୁଝିବା ଉଚିତ ।* ଯେ ସ୍ୱାମୀର ଆଜ୍ଞାକୁ ଉଲ୍ଲଙ୍ଘନ କରି ବ୍ରତ ଓ ଉପବାସ ଇତ୍ୟାଦି ନିୟମ ପାଳନ କରେ, ସେ ସ୍ୱାମୀର ଆୟୁନାଶ କରିଥାଏ ଏବଂ ମୃତ୍ୟୁ ପରେ ନରକକୁ ଯାଏ । ସ୍ୱାମୀ କିଛି କହିଦେଲେ ଯେଉଁ ସ୍ତ୍ରୀ କ୍ରୋଧପୂର୍ବକ ତାହାର ପ୍ରତ୍ୟୁତ୍ତର ଦିଏ, ସେ ଗ୍ରାମରେ କୁକୁରୀ ଓ ନିର୍ଜନ ବନରେ ଶୃଗାଳିନୀ ହୁଏ । ସ୍ତ୍ରୀ ସ୍ୱାମୀଠାରୁ ଉଚ୍ଚ ଆସନରେ ବସିବ ନାହିଁ, ଦୁଷ୍ଟ ଲୋକଙ୍କ ସମୀପକୁ ଯିବ ନାହିଁ ଏବଂ ସ୍ୱାମୀକୁ କଦାପି କାତର ବଚନ କହିବ ନାହିଁ । ସେ କାହାରିକୁ ନିନ୍ଦା କରିବ ନାହିଁ । କଳହକୁ ଦୂରରୁ ବର୍ଜନ କରିବ । ଗୁରୁଜନଙ୍କ ନିକଟରେ ଉଚ୍ଚସ୍ୱରରେ କଥା କହିବ ନାହିଁ କି ଉଚ୍ଚସ୍ୱରରେ ହସିବ ନାହିଁ । ସ୍ୱାମୀ ବାହାରୁ ଆସିଲେ ଯେଉଁ ନାରୀ ଅବିଳମ୍ବେ ଅନ୍ନ, ଜଳ, ଖାଇବା ଜିନିଷ, ପାନ ଓ ବସ୍ତ୍ର ଇତ୍ୟାଦି ଦେଇ ତାଙ୍କର ସେବା କରେ, ପାଦସଂବାହନ କରେ, ତାଙ୍କୁ ମଧୁର କଥା କହେ ଏବଂ ପ୍ରିୟତମଙ୍କ ଦୁଃଖ ଦୂର କରିବା ଭଳି ଅନ୍ୟାନ୍ୟ ଉପାୟରେ ପ୍ରସନ୍ନଚିତ୍ତରେ ତାଙ୍କ ମନକୁ ସନ୍ତୁଷ୍ଟ କରେ, ଜାଣ ଯେ ସେ ତ୍ରିଲୋକକୁ ତୃପ୍ତ ଓ ସନ୍ତୁଷ୍ଟ କରିଦେଲା । ପିତା, ଭ୍ରାତା ଓ ପୁତ୍ର ପରିମିତ ସୁଖ ଦେଇଥାନ୍ତି, କିନ୍ତୁ ସ୍ୱାମୀ ଅପରିମିତ ସୁଖ ଦେଇଥାଏ । ତେଣୁ ନାରୀ ସର୍ବଦା ସ୍ୱାମୀକୁ ହିଁ ପୂଜା ବା ଆଦର-ସତ୍କାର କରିବା ଉଚିତ । ସ୍ୱାମୀ ହିଁ ଦେବତା, ସ୍ୱାମୀ ହିଁ ଗୁରୁ ଏବଂ ସ୍ୱାମୀ ହିଁ ନାରୀ ପାଇଁ ଧର୍ମ, ତୀର୍ଥ ଓ ବ୍ରତ । ଏଣୁ ସବୁକିଛି ଛାଡ଼ି ଏକମାତ୍ର ସ୍ୱାମୀକୁ ହିଁ ଆରାଧନା କରିବା ଉଚିତ ।✤

ଯେଉଁ ଦୁର୍ବୁଦ୍ଧି ନାରୀ ସ୍ୱାମୀକୁ ଛାଡ଼ି ଏକାନ୍ତରେ ବିଚରଣ କରେ (ବ୍ୟଭିଚାର କରେ), ସେ ବୃକ୍ଷକୋଟରରେ ବାସ କରୁଥିବା ପେଚା ହୁଏ । ଯେ ପରପୁରୁଷକୁ କଟାକ୍ଷପୂର୍ଣ୍ଣ ଦୃଷ୍ଟିରେ ଚାହେଁ, ସେ ଟେରୀ ହୁଏ । ଯେ ସ୍ୱାମୀକୁ ନ ଦେଇ ଏକୁଟିଆ ମିଠାଇ ଇତ୍ୟାଦି ଖାଇଯାଏ, ସେ ଗ୍ରାମଶୁକରୀ ହୁଏ ଅଥବା ଛେଳି ହୋଇ ନିଜ ବିଷ୍ଠା ଖାଏ । ଯେ ସ୍ୱାମୀକୁ ତୁ-ତା କହେ, ସେ ମୂକ ହୁଏ । ଯେ ସଉତୁଣୀ ପ୍ରତି ସର୍ବଦା ଈର୍ଷ୍ୟା କରେ, ସେ ଦୁର୍ଭାଗ୍ୟବତୀ ହୁଏ । ଯେ ସ୍ୱାମୀଠାରୁ ଲୁଚି ଅନ୍ୟ ପୁରୁଷ ଉପରେ ଲୋଲୁପ ଦୃଷ୍ଟି ପକାଏ, ସେ କାଣୀ, ବାଙ୍କମୁହାଁ ଓ କୁରୂପା ହୁଏ । ଜୀବନ ବିନା ଶରୀର ଯେପରି କ୍ଷଣକ ଭିତରେ ଅପବିତ୍ର ହୋଇଯାଏ, ସେହିପରି ପତିହୀନା ନାରୀ ଭଲଭାବେ ସ୍ନାନ କରି ମଧ୍ୟ ସଦା ଅପବିତ୍ର ଅଟେ । ପତିବ୍ରତା ନାରୀ କାରଣରୁ ତା'ର ଜନ୍ମଦାତ୍ରୀ ମାତା ଧନ୍ୟ, ତା'ର ପିତା ଧନ୍ୟ ଏବଂ ତା'ର ପତି ମଧ୍ୟ ଧନ୍ୟ । ପତିବ୍ରତାର ପୁଣ୍ୟ ବଳରେ ତା'ର ପିତୃକୁଳ, ମାତୃକୁଳ ଓ ପତିକୁଳର ତିନି ତିନି ପିଢ଼ି ସ୍ୱର୍ଗରେ ସୁଖ ଭୋଗ କରନ୍ତି ।‡ ଯେଉଁ ଦୁରାଚାରିଣୀ ସ୍ତ୍ରୀମାନେ ନିଜର ସତୀତ୍ୱ ନଷ୍ଟ କରନ୍ତି, ସେମାନେ ନିଜ ମାତା, ପିତା ଓ ସ୍ୱାମୀଙ୍କ କୁଳର ଅଧଃପତନ କରାଇ ଦିଅନ୍ତି ଏବଂ ନିଜେ ଇହଲୋକ ଓ ପରଲୋକରେ ଦୁଃଖ ଭୋଗନ୍ତି । ପତିବ୍ରତାର ପାଦ ଯେଉଁ ଭୂମିରେ ପଡ଼େ,

---

* ବିଧେର୍ବିଷ୍ଣୋର୍ହରାଦ୍ୱାପି ପତିରେକୋଽଧିକୋ ମତଃ । ପତିବ୍ରତାୟା ଦେବେଶି ସ୍ୱପତିଃ ଶିବ ଏବ ଚ ॥
(ଶି. ପୁ. ରୁ. ସଂ. ପା. ଖ. ୫୪ । ୪୩)

✤ ଭର୍ତ୍ତା ଦେବୋ ଗୁରୁର୍ଭର୍ତ୍ତା ଧର୍ମତୀର୍ଥବ୍ରତାନି ଚ । ତସ୍ମାତ୍ସର୍ବଂ ପରିତ୍ୟଜ୍ୟ ପତିମେକଂ ସମର୍ଚୟେତ୍ ॥
(ଶି. ପୁ. ରୁ. ସଂ. ପା. ଖ. ୫୪ । ୫୧)

‡ ସା ଧନ୍ୟା ଜନନୀ ଲୋକେ ସ ଧନ୍ୟୋ ଜନକଃ ପିତା । ଧନ୍ୟଃ ସ ଚ ପତିର୍ଯସ୍ୟ ଗୃହେ ଦେବୀ ପତିବ୍ରତା ॥
ପିତୃବଂଶ୍ୟାଃ ମାତୃବଂଶ୍ୟାଃ ପତିବଂଶ୍ୟାସ୍ତ୍ରୟସ୍ତ୍ରୟଃ । ପତିବ୍ରତାୟାଃ ପୁଣ୍ୟେନ ସ୍ୱର୍ଗେ ସୌଖ୍ୟାନି ଭୁଞ୍ଜତେ ॥
(ଶି. ପୁ. ରୁ. ସଂ. ପା. ଖ. ୫୪ । ୫୮-୫୯)

ସେଠାକାର ଭୂମି ପାପହାରିଣୀ ଓ ପରମ ପାବନ ହୋଇଯାଏ ।* ସୂର୍ଯ୍ୟ, ଚନ୍ଦ୍ର ଓ ବାୟୁଦେବ ମଧ୍ୟ ନିଜ ନିଜକୁ ପବିତ୍ର କରିବା ପାଇଁ ପତିବ୍ରତାକୁ ସ୍ପର୍ଶ କରିଥାନ୍ତି, ଅନ୍ୟ କୌଣସି ଉଦ୍ଦେଶ୍ୟରେ ନୁହେଁ । ଜଳ ମଧ୍ୟ ସଦା ପତିବ୍ରତାର ସ୍ପର୍ଶ ପାଇବାକୁ ଚାହେଁ, ସେ ତା'ର ସ୍ପର୍ଶ ଲାଭ କରି ଅନୁଭବ କରେ ଯେ "ଆଜି ମୋର ଜଡ଼ତା ନାଶ ହୋଇଗଲା ଏବଂ ଆଜି ମୁଁ ଅନ୍ୟକୁ ପବିତ୍ର



କରିବାକୁ ସକ୍ଷମ ହେଲି ।" ଭାର୍ଯ୍ୟା ହିଁ ଗୃହସ୍ଥ ଆଶ୍ରମର ମୂଳ, ଭାର୍ଯ୍ୟା ହିଁ ସୁଖର ମୂଳ, ଭାର୍ଯ୍ୟାଠାରୁ ହିଁ ଧର୍ମର ଫଳ ମିଳିଥାଏ ଏବଂ ଭାର୍ଯ୍ୟା ହିଁ ସନ୍ତାନ ବୃଦ୍ଧିର କାରଣ ।♆

ଘରେ ଘରେ କ'ଣ ନିଜ ରୂପଲାବଣ୍ୟରେ ଗର୍ବ ଅନୁଭବ କରୁଥିବା ନାରୀ ନାହାନ୍ତି? ହେଲେ ପତିବ୍ରତା ସ୍ତ୍ରୀ କେବଳ ବିଶ୍ୱନାଥ ଶିବଙ୍କ ପ୍ରତି ଭକ୍ତି ଥିଲେ ହିଁ ମିଳିଥାଏ । ଭାର୍ଯ୍ୟା ଦ୍ୱାରା ହିଁ ଇହଲୋକ ଓ ପରଲୋକରେ ବିଜୟ ଲାଭ ହୋଇପାରେ । ଭାର୍ଯ୍ୟାହୀନ ପୁରୁଷ ଦେବଯଜ୍ଞ, ପିତୃଯଜ୍ଞ ଓ ଅତିଥିଯଜ୍ଞ କରିବାର ଅଧିକାରୀ ନୁହେଁ । ବାସ୍ତବରେ ସେ ହିଁ ଯଥାର୍ଥରେ ଗୃହସ୍ଥ, ଯାହା ଘରେ ପତିବ୍ରତା ସ୍ତ୍ରୀ ଥାଏ । ଅନ୍ୟ ନାରୀ କେବଳ ଜରାବସ୍ଥା ଓ ରାକ୍ଷସୀ ସଦୃଶ ପୁରୁଷକୁ ଆପଣା ଗ୍ରାସ (ଭୋଗ୍ୟ) ପରି ଉପଯୋଗ କରିଥାଏ । ଗଙ୍ଗାସ୍ନାନ କଲେ ଯେପରି ଶରୀର ପବିତ୍ର ହୋଇଥାଏ, ଠିକ୍ ସେହିପରି ପତିବ୍ରତାର ଦର୍ଶନ ପାଇବା ମାତ୍ରକେ ସବୁ କିଛି ପବିତ୍ର ହୋଇଯାଏ ।⚱ ପତିକୁ ଇଷ୍ଟଦେବ ମଣୁଥିବା ସତୀ ନାରୀ ଓ ଗଙ୍ଗା ମଧ୍ୟରେ କୌଣସି ପ୍ରଭେଦ ନାହିଁ । ପତିବ୍ରତା ଓ ତା'ର ପତିଦେବ ଉମା ଓ ମହେଶ୍ୱରଙ୍କ ତୁଲ୍ୟ ଅଟନ୍ତି । ତେଣୁ ବିଦ୍ୱାନ୍ ବ୍ୟକ୍ତି ସେ ଦୁହିଙ୍କୁ ପୂଜା କରିବା ଉଚିତ । ପତି ପ୍ରଣବ ହେଲେ ପତ୍ନୀ ବେଦର ଋକ୍, ପତି ତପ ହେଲେ ପତ୍ନୀ କ୍ଷମା । ପତ୍ନୀ ସତ୍କର୍ମ ଓ ପତି ତାହାର ଫଳ । ଶିବେ ! ସତୀ ନାରୀ ଓ ତାହାର ପତି ଉଭୟେ ଧନ୍ୟ ।✿

ଗିରିରାଜକୁମାରୀ ! ମୁଁ ତୁମ ସମ୍ମୁଖରେ

---

* ପତିବ୍ରତାୟାଶ୍ଚରଣୋ ଯତ୍ର ଯତ୍ର ସ୍ପୃଶେଦ୍ଭୁବମ୍ । ତତ୍ର ତତ୍ର ଭବେତ୍ ସା ହି ପାପହନ୍ତ୍ରୀ ସୁପାବନୀ ॥ (ଶି. ପୁ. ରୁ. ସଂ. ପା. ଖ. ୫୪ । ୬୧)

♆ ଭାର୍ଯ୍ୟା ମୂଳଂ ଗୃହସ୍ଥସ୍ୟ ଭାର୍ଯ୍ୟା ମୂଳଂ ସୁଖସ୍ୟ ଚ । ଭାର୍ଯ୍ୟା ଧର୍ମଫଳାବାପ୍ତ୍ୟୈ ଭାର୍ଯ୍ୟା ସନ୍ତାନବୃଦ୍ଧୟେ ॥ (ଶି. ପୁ. ରୁ. ସଂ. ପା. ଖ. ୫୪ । ୬୪)

⚱ ଯଥା ଗଙ୍ଗାବଗାହେନ ଶରୀରଂ ପାବନଂ ଭବେତ୍ । ତଥା ପତିବ୍ରତାଂ ଦୃଷ୍ଟ୍ୱା ସକଳଂ ପାବନଂ ଭବେତ୍ ॥ (ଶି. ପୁ. ରୁ. ସଂ. ପା. ଖ. ୫୪ । ୬୮)

✿ ତାରଃ ପତିଃ ଶ୍ରୁତିର୍ନାରୀ କ୍ଷମା ସା ସ ସ୍ୱୟଂ ତପଃ । ଫଳଂ ପତିଃ ସତ୍କ୍ରିୟା ସା ଧନ୍ୟୌ ତୌ ଦମ୍ପତୀ ଶିବେ ॥ (ଶି. ପୁ. ରୁ. ସଂ. ପା. ଖ. ୫୪ । ୭୦)

ପତିବ୍ରତାର ଧର୍ମ ବର୍ଣ୍ଣନା କଲି । ଏବେ ତୁମେ ସାବଧାନ ହୋଇ ପତିବ୍ରତାଙ୍କ ଶ୍ରେଣୀବିଭାଗ ଶୁଣ । ହେ ଦେବୀ ! ପତିବ୍ରତା ଉତ୍ତମା ଆଦି ଭେଦରେ ଚ୍ୱରି ପ୍ରକାରର ହୋଇଥାନ୍ତି, ଯେଉଁମାନେ କି ତାଙ୍କୁ ସ୍ମରଣ କରୁଥିବା ଲୋକଙ୍କର ସମସ୍ତ ପାପ ହରିନିଅନ୍ତି । ଉତ୍ତମା, ମଧ୍ୟମା, ନିକୃଷ୍ଟା ଓ ଅତିନିକୃଷ୍ଟା—ଏହା ହେଲା ପତିବ୍ରତା ନାରୀଙ୍କର ଚ୍ୱରିଟି ଭେଦ । ଏବେ ଏମାନଙ୍କର ଲକ୍ଷଣ ଶୁଣ । ଭଦ୍ରେ ! ଯାହାର ମନ ସ୍ୱପ୍ନରେ ମଧ୍ୟ ନିଜ ସ୍ୱାମୀ ଛଡ଼ା ଅନ୍ୟ କୌଣସି ପୁରୁଷ ଆଡ଼କୁ ଯାଏ ନାହିଁ, ସେ ନାରୀ ଉତ୍ତମା ବା ଉତ୍ତମ ଶ୍ରେଣୀର ପତିବ୍ରତା । ଶୈଳଜେ ! ଯେ ପରପୁରୁଷକୁ ପିତା, ଭାଇ ଓ ପୁତ୍ର ପରି ଦେଖେ, ତାକୁ ମଧ୍ୟମ ଶ୍ରେଣୀର ପତିବ୍ରତା କୁହାଯାଇଛି । ପାର୍ବତୀ ! ଯେ ମନ ମଧ୍ୟରେ ନିଜ ଧର୍ମ କଥା ବିଚ୍ୱର କରି ବ୍ୟଭିଚ୍ୱରରୁ ଦୂରେଇ ରହେ, ସେ ନିକୃଷ୍ଟା ବା ନିମ୍ନ ଶ୍ରେଣୀର ପତିବ୍ରତା । ଯେ କେବଳ ସ୍ୱାମୀ-ଭୟରେ ଅଥବା କୁଳରେ କଳଙ୍କ ଲାଗିବା ଭୟରେ ବ୍ୟଭିଚ୍ୱରରୁ ଦୂରେଇ ରହିବାକୁ ଚେଷ୍ଟା କରେ, ତାକୁ ପୂର୍ବକାଳର ବିଦ୍ୱାନ୍ ଅତିନିକୃଷ୍ଟା ବା ନିମ୍ନସ୍ତରର ପତିବ୍ରତା ବୋଲି କହିଛନ୍ତି । ତଥାପି ଏ ଚ୍ୱରି ପ୍ରକାର ପତିବ୍ରତା ଜଗତର ପାପ ନାଶ କରିଥାନ୍ତି ଓ ଜଗତକୁ ପବିତ୍ର କରିଥାନ୍ତି । ଅତ୍ରିଙ୍କ ସ୍ତ୍ରୀ ଅନସୂୟା ତ୍ରିଦେବଙ୍କ (ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ) ପ୍ରାର୍ଥନାକ୍ରମେ ପାତିବ୍ରତ୍ୟ ପ୍ରଭାବର ଉପଯୋଗ କରି ବାରାହ ଶାପରେ ମରିଥିବା ଜଣେ ବ୍ରାହ୍ମଣକୁ ଜୀବିତ କରି ଦେଇଥିଲେ । ଶୈଳକୁମାରୀ ଶିବେ ! ଏକଥା ବୁଝି ତୁମେ ନିତିଦିନ ପ୍ରସନ୍ନତାପୂର୍ବକ ସ୍ୱାମୀଙ୍କର ସେବା କରିବା ଉଚିତ । ସ୍ୱାମୀସେବା ସଦା ସମସ୍ତ ଅଭୀଷ୍ଟ ଫଳ ପ୍ରଦାନ କରିଥାଏ । ହେ ଦେବୀ! ତୁମେ ତ ହେଉଛ ସାକ୍ଷାତ୍ ଜଗଦମ୍ବା ମହେଶ୍ୱରୀ ଆଉ ତୁମ ସ୍ୱାମୀ ହେଉଛନ୍ତି ସାକ୍ଷାତ୍ ଭଗବାନ ଶିବ । ତୁମକୁ କେବଳ ଚିନ୍ତନ କରିବା ମାତ୍ରେ ନାରୀମାନେ ପବିତ୍ର ହୋଇଯିବେ । ଏ ପରିପ୍ରେକ୍ଷୀରେ ଯଦ୍ୟପି ତୁମ ଆଗରେ ଏସବୁ କହିବାର କୌଣସି ପ୍ରୟୋଜନ ନାହିଁ, ତଥାପି ଲୋକାଚ୍ୱର ଦୃଷ୍ଟିରୁ ଆଜି ମୁଁ ତୁମକୁ ଏହି ସତୀଧର୍ମର ଉପଦେଶ ଦେଲି ।

ବ୍ରହ୍ମା କହୁଛନ୍ତି—ନାରଦ ! ବ୍ରାହ୍ମଣୀ ଏତିକି କହି ଶିବାଦେବୀଙ୍କ ଆଗରେ ମସ୍ତକ ଅବନତ କରି ଚୁପ୍ ହୋଇଗଲେ । ଏଭଳି ଉପଦେଶ ପାଇ ଶଙ୍କରପ୍ରିୟା ପାର୍ବତୀ ବହୁତ ଖୁସୀ ହେଲେ ।

(ଅଧ୍ୟାୟ ୫୪)



# ଶିବ-ପାର୍ବତୀ ତଥା ବରଯାତ୍ରୀଙ୍କର ପ୍ରସ୍ଥାନ, ସମସ୍ତ ଦେବତାଙ୍କୁ ବିଦାୟ ଦେବା ପରେ ଶିବଙ୍କର କୈଳାସରେ ଅବସ୍ଥାନ ଏବଂ ପାର୍ବତୀଖଣ୍ଡ ଶ୍ରବଣର ମହିମା

ବ୍ରହ୍ମା କହୁଛନ୍ତି—ନାରଦ ! ବ୍ରାହ୍ମଣୀ ପାର୍ବତୀ-ଦେବୀଙ୍କୁ ପତିବ୍ରତା ଧର୍ମ ଉପଦେଶ ଦେବାପରେ ମେନାଙ୍କୁ ଡାକି କହିଲେ—''ମହାରାଣୀ ! ଏବେ କନ୍ୟାକୁ ବିଦାୟ ଦିଅ ।'' ମେନା ତାଙ୍କ କଥାରେ ସହମତ ହେଲେ; କିନ୍ତୁ ସ୍ନେହାଧିକ୍ୟ ହେତୁ ହଠାତ୍ ତାଙ୍କ ହୃଦୟ ବ୍ୟାକୁଳ ହୋଇଉଠିଲା । କିଛି କ୍ଷଣ ପରେ ଧୈର୍ଯ୍ୟ ଧାରଣ କରି ସେ କାଳୀଙ୍କୁ ଡାକିଲେ ଏବଂ ତାଙ୍କର ବିୟୋଗ-ଭୟରେ ବ୍ୟାକୁଳ ହୋଇ ଝିଅକୁ ଛାତିରେ ଚ୍ୱପିଧରି ଉଚ୍ଚସ୍ୱରରେ ବହୁତ କାନ୍ଦିଲେ । ପାର୍ବତୀ ମଧ୍ୟ କରୁଣାଜନକ କଥା କହି ଉଚ୍ଚସ୍ୱରରେ କାନ୍ଦିବାକୁ ଲାଗିଲେ । ମେନା ଓ ଶିବା ଉଭୟେ ବିରହ-ଶୋକରେ ମୂର୍ଚ୍ଛିତ

ହୋଇଗଲେ । ପାର୍ବତୀଙ୍କ ରୋଦନ ଶୁଣି ଦେବପତ୍ନୀମାନେ ମଧ୍ୟ ଧୈର୍ଯ୍ୟ ଧରି ପାରିଲେ ନାହିଁ । ସମସ୍ତେ ସେଠାରେ ରୋଦନ କଲେ । ସମସ୍ତେ ଅଚେତ ପରି ହୋଇଗଲେ । ବିଦାୟ ସମୟରେ ତ ପରମ ପ୍ରଭୁ ସାକ୍ଷାତ୍ ଯୋଗୀଶ୍ୱର ଶିବ ମଧ୍ୟ କାନ୍ଦି ପକାଇଲେ, ପୁଣି ଆଉ କାହା କଥା ବା କ'ଣ କହିବା ! ଏତିକିବେଳେ ହିମବାନ ତାଙ୍କର ସମସ୍ତ ପୁତ୍ର, ମନ୍ତ୍ରୀଗଣ ଓ ବ୍ରାହ୍ମଣଙ୍କ ସହିତ ଆସି ସେଠାରେ ପହଞ୍ଚିଲେ ଏବଂ ସ୍ନେହ ଓ ମୋହରେ ଝିଅକୁ ଧରି କାନ୍ଦି କାନ୍ଦି କହିଲେ– "ମାଆରେ ! ତୁ ମୋତେ ଛାଡ଼ି କୁଆଡ଼େ ଚାଲିଯାଉଛୁ?" ଏହା କହି ସେ ବାରମ୍ବାର ବିଳାପ କରିବାକୁ ଲାଗିଲେ । ତାଙ୍କୁ ସମଗ୍ର ଜଗତ ଶୂନ୍ୟ ପରି ଅନୁଭବ ହେଲା । ଏହା ଦେଖି ଜ୍ଞାନବାନ୍ ପୁରୋହିତମାନେ ଅନ୍ୟ ବ୍ରାହ୍ମଣମାନଙ୍କ ସହାୟତାରେ କୃପାପୂର୍ବକ ଅଧ୍ୟାତ୍ମବିଦ୍ୟା ଉପଦେଶ ଦେଇ ସମସ୍ତଙ୍କୁ ସୁଖଦ ରୀତିରେ ବୁଝାଇଲେ । ପାର୍ବତୀ ଭକ୍ତିଭାବରେ ମାତାପିତା ଓ ଗୁରୁଙ୍କୁ ପ୍ରଣାମ କଲେ । ସେ ମହାମାୟା ହୋଇ ମଧ୍ୟ ଲୋକାଚାରକୁ ଆଦର ଦେଇ ବାରମ୍ବାର କାନ୍ଦୁଥାନ୍ତି । ପାର୍ବତୀଙ୍କ ରୋଦନ ଦେଖି ଅନ୍ୟ ଦେବୀମାନେ ମଧ୍ୟ କାନ୍ଦୁଥାନ୍ତି । ମାତା ମେନା ବହୁତ କାନ୍ଦିଲେ । ଭାଉଜମାନେ ଓ ସମ୍ପର୍କୀୟମାନେ ମଧ୍ୟ କାନ୍ଦିଲେ । ସ୍ନେହ ହେତୁ ଶିବାଙ୍କ ମାଆ, ଭାଉଜ ଓ ସଖୀମାନେ ବାରମ୍ବାର କାନ୍ଦୁଥାନ୍ତି । ଭାଇମାନେ ଓ ପିତା ମଧ୍ୟ ସୌହାର୍ଦ୍ଦ୍ୟବଶତଃ ନିଜକୁ ସମ୍ଭାଳି ପାରିଲେ ନାହିଁ । ସେହି ସମୟରେ ବ୍ରାହ୍ମଣମାନେ ସମସ୍ତଙ୍କୁ ଆଦରରେ ବୁଝାଇଲେ ଏବଂ ବିଦାୟ ଦେବାର ସବୁଠୁ ଶୁଭ ଓ ସୁଖଦ ଲଗ୍ନ ଉପସ୍ଥିତ ହୋଇଗଲାଣି ବୋଲି ସୂଚନା ଦେଲେ ।

ଏହା ଶୁଣି ହିମାଳୟ ଓ ମେନା ବିବେକପୂର୍ବକ ଧୈର୍ଯ୍ୟ ଧାରଣ କରି ଶିବାଙ୍କ ପାଇଁ ପାଲିଙ୍କି ମଗାଇଲେ । ବ୍ରାହ୍ମଣୀମାନେ ଶିବାଙ୍କୁ ଧରି ଧରି ନେଇ ସେଥିରେ ବସାଇଲେ ଏବଂ ସମସ୍ତେ ଆଶୀର୍ବାଦ ଦେଲେ । ପିତା-ମାତା ଓ ବ୍ରାହ୍ମଣମାନେ ମଧ୍ୟ ଶୁଭାଶିଷ ଦେଲେ । ମେନା ଓ ହିମାଳୟ ପାର୍ବତୀଙ୍କୁ ମହାରାଣୀଙ୍କ ସମୁଚିତ ନାନା ପ୍ରକାର ଦ୍ରବ୍ୟ ଉପହାରରେ ଦେଲେ, ଯାହା କି ପରମ ଦୁର୍ଲଭ ଥିଲା । ଶିବା ସମସ୍ତ ଗୁରୁଜନଙ୍କୁ, ମାତା-ପିତାଙ୍କୁ, ପୁରୋହିତ ଓ ବ୍ରାହ୍ମଣଙ୍କୁ ତଥା ଭାଉଜମାନଙ୍କୁ ଓ ଅନ୍ୟ ନାରୀମାନଙ୍କୁ ପ୍ରଣାମ କରି ଯାତ୍ରାରମ୍ଭ କଲେ । ସ୍ନେହ ହେତୁ ହିମାଚଳ ଓ ତାଙ୍କର ପୁତ୍ରମାନେ କିଛି ବାଟ ପାର୍ବତୀଙ୍କ ପଛେ ପଛେ ଗଲେ । ଯେଉଁଠି ଦେବତାମାନଙ୍କ ଗହଣରେ ଭଗବାନ ଶିବ ପ୍ରସନ୍ନତାପୂର୍ବକ ତାଙ୍କୁ ପ୍ରତୀକ୍ଷା କରୁଥିଲେ, ସେଠାରେ ସମସ୍ତେ ସ୍ନେହପ୍ରେମବଶତଃ ପରସ୍ପରକୁ ଭେଟିଲେ । ସମସ୍ତେ ଭଗବାନଙ୍କୁ ପ୍ରଣାମ କଲେ ଏବଂ ତାଙ୍କୁ ପ୍ରଶଂସା କରି ନିଜ ନିଜ ସ୍ଥାନକୁ ଲେଉଟି ଗଲେ ।

ତା'ପରେ କୈଳାସରେ ପହଞ୍ଚି ଭଗବାନ ଶିବ ପାର୍ବତୀଙ୍କୁ କହିଲେ–"ହେ ଦେବେଶ୍ୱରୀ ! ତୁମେ ତ କାଳକାଳରୁ ମୋର ପ୍ରିୟା ! ତୁମର ପୂର୍ବଜନ୍ମର କଥା ଅବଶ୍ୟ ମନେ ଥିବ, ତଥାପି ତୁମକୁ ଲୀଳାପୂର୍ବକ ଏକଥା ମୁଁ ମନେ ପକାଇ ଦେଉଛି । ଯଦି ମୋର ଓ ତୁମର ନିତ୍ୟ ସମ୍ବନ୍ଧ କଥା ତୁମର ମନେ ଅଛି, ତେବେ କୁହ ।" ନିଜ ପ୍ରାଣନାଥଙ୍କ କଥା ଶୁଣି ଶଙ୍କରପ୍ରିୟା ସ୍ମିତହାସପୂର୍ବକ କହିଲେ–"ପ୍ରାଣେଶ୍ୱର ! ମୋର ସବୁକଥା ମନେ ଅଛି । କିନ୍ତୁ ଏବେ ଆପଣ ସେ ବିଷୟରେ କିଛି ନ କହନ୍ତୁ, ବରଂ ଏବେକାର ଅବସର ଅନୁରୂପ ଯାହା କରିବା କଥା, ସେହି କାର୍ଯ୍ୟକୁ ପୂର୍ଣ୍ଣ କରନ୍ତୁ ।"

ବ୍ରହ୍ମା କହୁଛନ୍ତି–ହେ ନାରଦ ! ପ୍ରିୟା ପାର୍ବତୀଙ୍କର ଶତ ସୁଧାଧାରାତୁଲ୍ୟ ମଧୁରବାଣୀକୁ ଶୁଣି ଲୋକାଚାରପରାୟଣ ଶିବ ବହୁତ ଖୁସୀ

ହେଲେ । ସେ ଅନେକ ପ୍ରକାର ଖାଦ୍ୟ ସାମଗ୍ରୀ ସଂଗ୍ରହ ଓ ପ୍ରସ୍ତୁତ କରାଇ ନାରାୟଣ ପ୍ରଭୃତି ଦେବଗଣଙ୍କୁ ଭୋଜି ଦେଲେ । ତାଙ୍କ ବିବାହରେ ଯୋଗ ଦେଇଥିବା ଅନ୍ୟମାନଙ୍କୁ ମଧ୍ୟ ଭଗବାନ ଶିବ ପ୍ରସନ୍ନ ମନରେ ନାନା ପ୍ରକାର ସ୍ୱାଦିଷ୍ଟ ଓ ସୁମଧୁର ଭୋଜନରେ ଆପ୍ୟାୟିତ କଲେ । ଭୋଜି ପରେ ଦେବତାମାନେ ନାନା ରତ୍ନରେ ବିଭୂଷିତ ହୋଇ ସପତ୍ନୀକ ସେବକଗଣଙ୍କ ମେଳରେ ଆସି ପ୍ରଭୁ ଚନ୍ଦ୍ରଶେଖରଙ୍କୁ ପ୍ରଣାମ କଲେ । ତା'ପରେ ମଧୁର ବାଣୀରେ ପ୍ରସନ୍ନତାପୂର୍ବକ ତାଙ୍କୁ ସ୍ତୁତି ଓ ପରିକ୍ରମା କରିବା ପରେ ଶିବ-ବିବାହର ପ୍ରଶଂସା କରି କରି ସମସ୍ତେ ନିଜ ନିଜ ଧାମକୁ ବାହୁଡ଼ି ଗଲେ । ମୁନେ! ସାକ୍ଷାତ୍ ଭଗବାନ ଶିବ ଲୋକାଗ୍ରର ପାଳନ କରିବାକୁ ଯାଇ ମୋତେ ଓ ବିଷ୍ଣୁଙ୍କୁ ପ୍ରଣାମ କଲେ । ତାଙ୍କ ପ୍ରଣାମ କରିବା ଠିକ୍ ସେହିପରି ଥିଲା, ଯେପରି ବାମନରୂପଧାରୀ ଶ୍ରୀହରି ମହର୍ଷି କଶ୍ୟପଙ୍କୁ କରିଥିଲେ । ଶ୍ରୀହରି ଓ ମୁଁ ଶିବଙ୍କୁ ବକ୍ଷରେ ଲଗାଇ ଆଲିଙ୍ଗନ କରି ତାଙ୍କୁ ଆଶୀର୍ବାଦ ଦେଲୁ । ତା'ପରେ ଶ୍ରୀହରି ତାଙ୍କୁ ପରବ୍ରହ୍ମ ପରମାତ୍ମା ମାନି ସ୍ତୁତି କଲେ । ତା'ପରେ ମୁଁ ଓ ବିଷ୍ଣୁ ଶିବଙ୍କ ଠାରୁ ବିଦାୟ ନେଲୁ । ଆମେ ଶିବା ଓ ଶିବଙ୍କୁ ଆନନ୍ଦରେ କର ଯୋଡ଼ି ପ୍ରଣାମ କରିବା ସଙ୍ଗେ ସଙ୍ଗେ ତାଙ୍କ ବିବାହର ପ୍ରଶଂସା କରି କରି ନିଜ ନିଜ ଧାମକୁ ଫେରିଗଲୁ । ପାର୍ବତୀଙ୍କ ସଙ୍ଗେ ସାନନ୍ଦ ବିହାର କରିବା ସହିତ ଭଗବାନ ଶିବ କୈଳାସ ପର୍ବତରେ ନିବାସ କଲେ । ଶିବ-ପାର୍ବତୀଙ୍କର ବିବାହ ସମ୍ପନ୍ନ ହୋଇଯିବାରୁ ସମସ୍ତ ଶିବଗଣ ଅତ୍ୟନ୍ତ ଆନନ୍ଦିତ ହେଲେ । ସେମାନେ ଭକ୍ତିପୂର୍ବକ ଶିବ ଓ ଶିବାଙ୍କର ଆରାଧନା କଲେ ।

ବତ୍ସ! ମୁଁ ପରମ ମଙ୍ଗଳମୟ ଶିବ-ବିବାହ ପ୍ରସଙ୍ଗ ବର୍ଣ୍ଣନା କରିଦେଲି । ଏହି ପ୍ରସଙ୍ଗ ଶୋକନାଶକ, ଆନନ୍ଦଦାୟକ ଏବଂ ଧନ ତଥା ଆୟୁ-ବର୍ଦ୍ଧକ । ଯେଉଁ ବ୍ୟକ୍ତି ଶିବ ଓ ଶିବାଙ୍କ ଠାରେ ମନୋନିବେଶ କରି ପବିତ୍ର ହୋଇ ପ୍ରତିଦିନ ଏ ପ୍ରସଙ୍ଗକୁ ଶୁଣେ ଅଥବା ନିୟମପୂର୍ବକ ଅନ୍ୟମାନଙ୍କୁ ଶୁଣାଏ, ସେ ଶିବଲୋକ ପ୍ରାପ୍ତ ହୁଏ । ଏ ଅଦ୍ଭୁତ ଆଖ୍ୟାନ ମଙ୍ଗଳର ନିଧାନ । ଏହା ସମସ୍ତ ବିଘ୍ନ ଓ ରୋଗକୁ ବିନାଶ କରେ । ଏହାଦ୍ୱାରା ସ୍ୱର୍ଗ, ଯଶ, ଆୟୁ ଓ ପୁତ୍ରପୌତ୍ର ଲାଭ ହୋଇଥାଏ । ଏହା ସମସ୍ତ କାମନା ପୂରଣ କରିବା ସହିତ ଇହଲୋକରେ ଭୋଗ ଓ ପରଲୋକରେ ମୋକ୍ଷ ପ୍ରଦାନ କରିଥାଏ । ଏହି ଶୁଭପ୍ରସଙ୍ଗକୁ ଶୁଣିଲେ ଅପମୃତ୍ୟୁ ଶମନ ହୁଏ ଓ ପରମ ଶାନ୍ତି ପ୍ରାପ୍ତି ହୁଏ । ଏହା ସମସ୍ତ ଦୁଃସ୍ୱପ୍ନ-ନାଶକ ଏବଂ ବୁଦ୍ଧି ଓ ବିବେକ ବୃଦ୍ଧି କରିବାରେ ସହାୟକ । ନିଜର ମଙ୍ଗଳ ଚାହୁଁଥିବା ଲୋକେ ଶିବଙ୍କର ସମସ୍ତ ଉତ୍ସବ ସମୟରେ ଏହାକୁ ପ୍ରସନ୍ନତାପୂର୍ବକ ପାଠ କରିବା ଉଚିତ । ଏହା ଭଗବାନ ଶିବଙ୍କୁ ସନ୍ତୋଷ ପ୍ରଦାନ କରିଥାଏ । ବିଶେଷତଃ ଦେବତା ପ୍ରଭୃତିଙ୍କ ପ୍ରତିଷ୍ଠା ସମୟରେ ତଥା ଶିବଙ୍କର ସମସ୍ତ କାର୍ଯ୍ୟରେ ପ୍ରସନ୍ନ ମନରେ ଏହାକୁ ପାଠ କରିବା ଉଚିତ ଅଥବା ପବିତ୍ର ହୋଇ ଶିବପାର୍ବତୀଙ୍କର ଏହି କଲ୍ୟାଣକର ଚରିତ୍ରକୁ ଶ୍ରବଣ କରିବା ଉଚିତ । ଏଭଳି କଲେ ସମସ୍ତ କାର୍ଯ୍ୟରେ ସିଦ୍ଧି ଲାଭ ହୁଏ । ଏହା ସତ୍ୟ, ସତ୍ୟ । ଏଥିରେ ସଂଶୟ ନାହିଁ ।

(ଅଧ୍ୟାୟ ୫୫)

***

## ॥ ରୁଦ୍ରସଂହିତାର ପାର୍ବତୀଖଣ୍ଡ ସମ୍ପୂର୍ଣ୍ଣ ॥



# ରୁଦ୍ରସଂହିତା, ଚତୁର୍ଥ (କୁମାର) ଖଣ୍ଡ

## ଦେବଗଣ ସ୍କନ୍ଦଙ୍କୁ ଶିବପାର୍ବତୀଙ୍କ ନିକଟରେ ସମର୍ପିବା ପରେ ତାଙ୍କର ଲାଳନ-ପାଳନ, ଦେବଗଣଙ୍କ ଅନୁରୋଧରେ ଶିବ ତାରକ ବଧ ପାଇଁ କାର୍ତ୍ତିକେୟଙ୍କୁ ପଠାଇବା, କୁମାରଙ୍କ ଅଧ୍ୟକ୍ଷତାରେ ଦେବଗଣଙ୍କ ସୈନ୍ୟବାହିନୀର ଯୁଦ୍ଧଯାତ୍ରା, ମହୀସାଗର-ସଙ୍ଗମକୁ ତାରକାସୁରର ଆଗମନ ଏବଂ ଉଭୟ ସେନାଙ୍କ ମଧ୍ୟରେ ଯୁଦ୍ଧ, ବୀରଭଦ୍ରଙ୍କର ତାରକ ସହିତ ଘୋର ସଂଗ୍ରାମ, ପୁନଃ ଶ୍ରୀହରି ଓ ତାରକ ମଧ୍ୟରେ ଭୟଙ୍କର ଯୁଦ୍ଧ

ବନ୍ଦେ ବନ୍ଦନତୁଷ୍ଟମାନସମତିପ୍ରେମପ୍ରିୟଂ ପ୍ରେମଦଂ
ପୂର୍ଣ୍ଣଂ ପୂର୍ଣ୍ଣକରଂ ପ୍ରପୂର୍ଣ୍ଣନିଖିଳୈଶ୍ୱର୍ଯ୍ୟୈକବାସଂ ଶିବମ୍ ।
ସତ୍ୟଂ ସତ୍ୟମୟଂ ତ୍ରିସତ୍ୟବିଭବଂ ସତ୍ୟପ୍ରିୟଂ ସତ୍ୟଦଂ
ବିଷ୍ଣୁବ୍ରହ୍ମନୁତଂ ସ୍ୱକୀୟକୃପୟୋପାତ୍ତାକୃତିଂ ଶଙ୍କରମ୍ ॥

ବନ୍ଦନା କଲେ ଯାହାଙ୍କ ମନ ପ୍ରସନ୍ନ ହୋଇଯାଏ, ଯାହାଙ୍କୁ ପ୍ରେମ ଅତ୍ୟନ୍ତ ପ୍ରିୟ, ଯେ ପ୍ରେମପ୍ରଦାନକାରୀ, ପୂର୍ଣ୍ଣାନନ୍ଦମୟ, ଭକ୍ତଙ୍କ ଅଭିଳାଷ ପୂର୍ଣ୍ଣକାରୀ, ସମସ୍ତ ଐଶ୍ୱର୍ଯ୍ୟର ଏକମାତ୍ର ଆଗାର ଓ କଲ୍ୟାଣସ୍ୱରୂପ, ସତ୍ୟ ଯାହାଙ୍କର ଶ୍ରୀବିଗ୍ରହ, ଯେ ସତ୍ୟମୟ, ଯାହାଙ୍କ ଐଶ୍ୱର୍ଯ୍ୟ ତ୍ରିକାଳ-ଅବାଧିତ, ଯେ ସତ୍ୟପ୍ରିୟ ଓ ସତ୍ୟପ୍ରଦାତା, ବ୍ରହ୍ମା ଓ ବିଷ୍ଣୁ ଯାହାଙ୍କୁ ସ୍ତୁତି କରନ୍ତି, ସ୍ୱେଚ୍ଛାନୁସାରେ ଶରୀର ଧାରଣ କରିଥିବା ସେହି ଭଗବାନ ଶଙ୍କରଙ୍କୁ ମୁଁ ବନ୍ଦନା କରୁଛି ।

ମୁନି ନାରଦ ପଚାରିଲେ—ହେ ଦେବଗଣଙ୍କର ମଙ୍ଗଳକାରୀ ଦେବତା ! ସର୍ବସମର୍ଥ ପରମାତ୍ମା ଶିବ ଆତ୍ମାରାମ ହୋଇ ମଧ୍ୟ ତାରକାସୁରକୁ ମାରିବାକୁ ସମର୍ଥ ହେବା ପରି ପୁତ୍ରଟିଏ ଉତ୍ପନ୍ନ କରିବା ପାଇଁ ପାର୍ବତୀଙ୍କ ସଙ୍ଗେ ବିବାହ କରିଥିଲେ; ତେବେ ତାଙ୍କର ସେହି ପୁତ୍ର କିପରି ଉତ୍ପନ୍ନ ହେଲା? ତାରକାସୁର ବଧ କିପରି ହେଲା? ବ୍ରହ୍ମନ୍ ! ମୋ ପ୍ରତି କୃପା କରି ଏ ସମସ୍ତ ବୃତ୍ତାନ୍ତ ପୂର୍ଣ୍ଣରୂପେ ବର୍ଣ୍ଣନା କରନ୍ତୁ ।

ଏହାର ଉତ୍ତରରେ ବ୍ରହ୍ମା ଯଥୋଚିତ କଥା-ପ୍ରସଙ୍ଗ ବର୍ଣ୍ଣନା କରିବାକୁ ଯାଇ ଗଙ୍ଗାରୁ କୁମାରଙ୍କର ଉତ୍ପତ୍ତି, କୃତ୍ତିକା ପ୍ରଭୃତି ଛଅଜଣ ନାରୀଙ୍କ ଦ୍ୱାରା ତାଙ୍କର ଲାଳନ-ପାଳନ, ସେହି ଛଅଜଣଙ୍କ ସନ୍ତୋଷ ନିମନ୍ତେ ଛଅଟି ମୁଖ ଧାରଣ ଏବଂ କୃତ୍ତିକାଙ୍କ ଦ୍ୱାରା ପାଳିତ ହେବାରୁ 'କାର୍ତ୍ତିକେୟ' ନାମରେ ପ୍ରସିଦ୍ଧ ହେବାର ପ୍ରସଙ୍ଗ କହିଲେ । ତା'ପରେ ତାଙ୍କୁ ଶିବ-ପାର୍ବତୀଙ୍କ ନିକଟକୁ ଅଣାଯିବାର ବୃତ୍ତାନ୍ତ ବର୍ଣ୍ଣନା କଲେ । ତା'ପରେ ବ୍ରହ୍ମା କହିଲେ—ଭଗବାନ ଶିବ କାର୍ତ୍ତିକେୟଙ୍କୁ କୋଳରେ ବସାଇ ଅତ୍ୟନ୍ତ ସ୍ନେହ କଲେ । ଦେବଗଣ ତାଙ୍କୁ ନାନା ପ୍ରକାର ପଦାର୍ଥ, ବିଦ୍ୟା, ଶକ୍ତି ଓ ଅସ୍ତ୍ର-ଶସ୍ତ୍ରାଦି ପ୍ରଦାନ କଲେ । ପାର୍ବତୀଙ୍କ ହୃଦୟ ସ୍ନେହରେ ପରିପୂରିତ ହୋଇଗଲା । ସେ ସହର୍ଷ ସ୍ମିତହାସପୂର୍ବକ କୁମାରଙ୍କୁ ପରମୋତ୍ତମ ଐଶ୍ୱର୍ଯ୍ୟ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଚିରଞ୍ଜୀବୀ ମଧ୍ୟ କରିଦେଲେ । ଲକ୍ଷ୍ମୀ ଦିବ୍ୟ ସମ୍ପଦ ଏବଂ ଗୋଟିଏ

ବିଶାଳ ମନୋରମ ହାର ଅର୍ପଣ କଲେ । ସାବିତ୍ରୀ ପ୍ରସନ୍ନଚିତ୍ତରେ ସମସ୍ତ ସିଦ୍ଧବିଦ୍ୟା ପ୍ରଦାନ କଲେ । ମୁନିଶ୍ରେଷ୍ଠ ! ସେଠାରେ ମହୋତ୍ସବ ପାଳନ କରାଗଲା । ସମସ୍ତଙ୍କ ମନ ପ୍ରସନ୍ନ ହୋଇଗଲା । ବିଶେଷତଃ ଶିବ ଓ ପାର୍ବତୀଙ୍କ ଆନନ୍ଦର ସୀମା ନ ଥିଲା । ଇତିମଧ୍ୟରେ ଶିବଙ୍କୁ ଦେବଗଣ କହିଲେ—ପ୍ରଭୋ! ତାରକାସୁର କୁମାରଙ୍କ ହାତରେ ହିଁ ନିହତ ହେବ, ସେହି ଉଦ୍ଦେଶ୍ୟରେ ଏପରି (ପାର୍ବତୀ-ପରିଣୟ ତଥା କୁମାରୋତ୍ପତ୍ତି ଆଦି) ଉତ୍ତମ ଚରିତ ଘଟିତ ହୋଇଛି । ତେଣୁ ଆମ୍ଭମାନଙ୍କ ସୁଖ ନିମନ୍ତେ ତାରକକୁ ମାରିବା ପାଇଁ କୁମାରଙ୍କୁ ଆଜ୍ଞା ଦିଅନ୍ତୁ । ଆମ୍ଭେମାନେ ଆଜି ହିଁ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ତାରକବଧରେ କୁମାରଙ୍କୁ ସହାୟତା କରିବା ପାଇଁ ଯୁଦ୍ଧଯାତ୍ରା ଆରମ୍ଭ କରିବୁ ।

ବ୍ରହ୍ମା କହୁଛନ୍ତି—ମୁନେ! ଏହା ଶୁଣି ଭଗବାନ ଶଙ୍କରଙ୍କ ହୃଦୟ ଦୟାର୍ଦ୍ର ହୋଇଗଲା । ସେ ସେମାନଙ୍କ ପ୍ରାର୍ଥନା ସ୍ୱୀକାର କରି ସେହିକ୍ଷଣି ତାରକବଧ ନିମନ୍ତେ ନିଜ ପୁତ୍ର କାର୍ତ୍ତିକେୟଙ୍କୁ ଦେବତାଙ୍କ ନିକଟରେ ସମର୍ପି ଦେଲେ । ଶିବଙ୍କ ଆଜ୍ଞା ମିଳିଯିବାରୁ ବ୍ରହ୍ମା, ବିଷ୍ଣୁ ପ୍ରଭୃତି ଦେବଗଣ ଏକତ୍ର ହୋଇ କାର୍ତ୍ତିକେୟଙ୍କୁ ଅଗ୍ରଗାମୀ କରାଇ ଅବିଳମ୍ବେ ସେହି ପର୍ବତରୁ ଯାତ୍ରାରମ୍ଭ କଲେ । ସେତେବେଳେ ଶ୍ରୀହରି ପ୍ରଭୃତିଙ୍କ ମନରେ ପୂର୍ଣ୍ଣ ବିଶ୍ୱାସ ଥିଲା (ଯେ କାର୍ତ୍ତିକେୟ ନିଶ୍ଚୟ ତାରକକୁ ବଧ କରିପାରିବେ); ତେଣୁ ସେମାନେ ଭଗବାନ ଶିବଙ୍କ ତେଜରେ ଭାବିତ ହୋଇ କୁମାରଙ୍କ ସେନାପତିତ୍ୱରେ ତାରକକୁ ସଂହାର କରିବା ନିମନ୍ତେ ରଣାଙ୍ଗନକୁ ଆସିଗଲେ । ତେଣେ ମହାବଳୀ ତାରକ ମଧ୍ୟ ଦେବତାଙ୍କର ଯୁଦ୍ଧୋଦ୍ୟମ କଥା ଜାଣିଗଲା । ତେଣୁ ସେ ମଧ୍ୟ ତା'ର ବିଶାଳ ସେନା ଧରି ଦେବଗଣଙ୍କ ସହ ଯୁଦ୍ଧ କରିବାକୁ ବାହାରି ପଡ଼ିଲା । ତା'ର ଏତେ ବଡ଼ ବିଶାଳ ସୈନ୍ୟବାହିନୀକୁ ଦେଖି ଦେବଗଣ ବିସ୍ମୟରେ ପଡ଼ିଗଲେ । ତଥାପି ସେମାନେ ବଳପୂର୍ବକ ବାରମ୍ବାର ସିଂହନାଦ କଲେ । ସେତିକିବେଳେ ଶିବଙ୍କ ପ୍ରେରଣାରେ ବିଷ୍ଣୁ ପ୍ରଭୃତି ସମସ୍ତ ଦେବତାଙ୍କ ନିମନ୍ତେ ଆକାଶବାଣୀ ହେଲା ।

ଆକାଶବାଣୀ କହିଲା—ହେ ଦେବଗଣ ! ତୁମେମାନେ କୁମାରଙ୍କ ଅଧିନାୟକତ୍ୱରେ ଯୁଦ୍ଧ କରିବାକୁ ଉଦ୍ୟତ ହୋଇଛ, ତେଣୁ ଏହି ଯୁଦ୍ଧରେ ତୁମେ ଦୈତ୍ୟଙ୍କ ଉପରେ ନିଶ୍ଚୟ ବିଜୟୀ ହେବ ।

ବ୍ରହ୍ମା କହୁଛନ୍ତି—ମୁନେ ! ଏଭଳି ଆକାଶବାଣୀ ଶୁଣି ଦେବଗଣଙ୍କର ଉତ୍ସାହ ଆହୁରି ବଢ଼ିଗଲା । ସେମାନେ ନିର୍ଭୟ ହୋଇ ବୀରୋଚିତ ରୀତିରେ ଗର୍ଜନ କରିବାକୁ ଲାଗିଲେ । ସେମାନଙ୍କ ଯୁଦ୍ଧକାମନା ବଳବତୀ ହୋଇ ଉଠିଲା ଏବଂ ସେମାନେ କୁମାରଙ୍କୁ ଅଗ୍ରଣୀ କରି ଅତ୍ୟନ୍ତ ଉତ୍ସାହରେ ମହୀସାଗର-ସଙ୍ଗମକୁ ଗଲେ । ତେଣେ ତାରକାସୁର ମଧ୍ୟ ବହୁସଂଖ୍ୟକ ଅସୁରଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଓ ବହୁତ ବଡ଼ ସୈନ୍ୟବାହିନୀ ଧରି ତୁରନ୍ତ ଦେବତାଙ୍କ ନିକଟରେ ପହଞ୍ଚିଗଲା । ତା'ର ଆଗମନ କାଳରେ ପ୍ରଳୟକାଳୀନ ମେଘପରି ଗର୍ଜନ କରୁଥିବା ରଣଭେରୀ ତଥା ଅନ୍ୟାନ୍ୟ କର୍କଶ ଶବ୍ଦ ଉତ୍ପନ୍ନକାରୀ ବାଦ୍ୟଗୁଡ଼ିକର ଭୟଙ୍କର ଧ୍ୱନିରେ ଧରଣୀ କମ୍ପିଉଠିଲା । ତାରକାସୁର ସଙ୍ଗରେ ଆସୁଥିବା ଦୈତ୍ୟଗଣ ବାହାସ୍ଫୋଟ ମାରି ଗର୍ଜନ କରୁଥିଲେ । ସେମାନଙ୍କ ପଦାଘାତରେ ପୃଥିବୀ କମ୍ପମାନ ହେଉଥିଲା । ଏଭଳି କୋଳାହଳ ଶବ୍ଦକୁ ଶୁଣି ମଧ୍ୟ ଦେବଗଣ ନିର୍ଭୟ ଥିଲେ । ସେମାନେ ଏକତ୍ର ହୋଇ ତାରକାସୁର ସଙ୍ଗେ ଯୁଦ୍ଧ କରିବାକୁ ଛିଡ଼ା ହୋଇଗଲେ । ଦେବରାଜ ଇନ୍ଦ୍ର କୁମାରଙ୍କୁ ଗଜରାଜ ଉପରେ ବସାଇ ସାମନାକୁ ଆସିଗଲେ । ସେ ଲୋକପାଳଙ୍କ ଗହଣରେ ବିଦ୍ୟମାନ ଥିଲେ ଏବଂ ତାଙ୍କ ସଙ୍ଗରେ

ଥିଲା ଦେବତାଙ୍କର ବିଶାଳ ସୈନ୍ୟବାହିନୀ । ତା'ପରେ କୁମାର ସେହି ଗଜରାଜକୁ ମହେନ୍ଦ୍ରଙ୍କୁ ପ୍ରଦାନ କରି ନିଜେ ଏକ ପରମ ଆଶ୍ଚର୍ଯ୍ୟଜନକ ବିମାନରେ ଆରୂଢ଼ ହୋଇଗଲେ । ବିମାନଟି ନାନା ପ୍ରକାର ରତ୍ନରେ ସୁଶୋଭିତ ଥିଲା । ବିମାନରେ ଆରୂଢ଼ ହୋଇ ଶିବପୁତ୍ର କାର୍ତ୍ତିକେୟ ଅତ୍ୟନ୍ତ ଶୋଭାମୟ ଦିଶୁଥିଲେ । ତାଙ୍କ ଉପରେ ଚ୍ୱମର ପଡୁଥିଲା । ଇତିମଧ୍ୟରେ ବଳାଭିମାନୀ ଦେବତା ଓ ଦୈତ୍ୟମାନେ କ୍ରୋଧରେ ଅଧୀର ହୋଇ ପରସ୍ପର ସଙ୍ଗେ ଯୁଦ୍ଧ ଆରମ୍ଭ କରିଦେଲେ । ଭୟଙ୍କର ଯୁଦ୍ଧ ହେଲା । କ୍ଷଣକ ଭିତରେ ରଣକ୍ଷେତ୍ର ରୁଣ୍ଡମୁଣ୍ଡରେ ଆଚ୍ଛାଦିତ ହୋଇଗଲା ।

ସେତିକିବେଳେ ମହାବଳୀ ତାରକାସୁର ବହୁତ ବଡ଼ ସୈନ୍ୟବାହିନୀକୁ ଧରି ଦେବଗଣଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଖୁବ୍ ଶୀଘ୍ର ଆଗକୁ ଚ୍ୱଲିଆସିଲା । ରଣଦୁର୍ମଦ ତାରକକୁ ଦେଖି ଇନ୍ଦ୍ରାଦି ଦେବତା ମଧ୍ୟ ତା' ସମ୍ମୁଖକୁ ଆସିଗଲେ । ଉଭୟ ସେନାଙ୍କ ମଧ୍ୟରେ ଭୀଷଣ କୋଳାହଳ ଶୁଭିଲା । ଏହାପରେ ଦେବତା ଓ ଦୈତ୍ୟଙ୍କ ମଧ୍ୟରେ ଏଭଳି ଲୋମ-ହର୍ଷଣକାରୀ ଓ ଉଭୟଙ୍କର ବିନାଶକାରୀ ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ ହୋଇଗଲା, ଯାହା ଶୁଣି ବୀରମାନେ ହର୍ଷୋତ୍‌ଫୁଲ୍ଲ ହେବେ ଏବଂ ଭୀରୁମାନଙ୍କ ମନରେ ଭୟ ବ୍ୟାପିଯିବ । ଏତିକିବେଳେ ବୀରଭଦ୍ର କୁପିତ ହୋଇ ମହାବଳୀ ପ୍ରମଥଗଣଙ୍କ ସହିତ ବଳାଭିମାନୀ ତାରକ ସମୀପରେ ପହଞ୍ଚିଗଲେ । ବଳବାନ୍ ଗଣନାୟକ ବୀରଭଦ୍ର ଭଗବାନ ଶିବଙ୍କ କୋପରୁ ଉତ୍ପନ୍ନ ହୋଇଥିଲେ, ତେଣୁ ସକଳ ଦେବଗଣଙ୍କୁ ଆଡ଼େଇ ଦେଇ ଯୁଦ୍ଧେଚ୍ଛାରେ ତାରକ ସମ୍ମୁଖରେ ଯାଇ ଛିଡ଼ା ହୋଇଗଲେ । ସେତେବେଳେ ସମସ୍ତ ପ୍ରମଥଗଣ ଓ ଅସୁରଗଣଙ୍କ ମନରେ ପରମୋଲ୍ଲାସ ଭରି ରହିଥିଲା, ତେଣୁ ସେମାନଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ଆରମ୍ଭ ହୋଇଗଲା । ବୀରଭଦ୍ର ଓ ତାରକାସୁରଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା । ଅସୁରଙ୍କ ସୈନ୍ୟମାନେ ରଣାଙ୍ଗନରୁ ପୃଷ୍ଠଭଙ୍ଗ ଦେଇ ପଳାୟନ କଲେ । ତାରକାସୁର ନିଜ ସେନାକୁ ଛତ୍ରଭଙ୍ଗ ଦେଇ ପଳାୟନ କରୁଥିବା ଦେଖି କ୍ରୋଧିତ ହୋଇଗଲା । ସେ ଦଶହଜାର ଭୁଜ ଧାରଣ କରି ଏବଂ ଗୋଟିଏ ସିଂହ ଉପରେ ଆରୂଢ଼ ହୋଇ ଦେବଗଣଙ୍କୁ ମାରି ପକାଇବା ପାଇଁ ଖୁବ୍ ବେଗରେ ସେମାନଙ୍କ ଉପରକୁ ମାଡ଼ିଆସିଲା । ସେ ଭୟଙ୍କର ଯୁଦ୍ଧ କରି ଦେବତା ଓ ପ୍ରମଥଗଣଙ୍କୁ ମାରି ଗଡ଼ାଇଦେଇ ଗଲା । ପ୍ରମଥଗଣଙ୍କ ନେତା ମହାବଳୀ ବୀରଭଦ୍ର ତା'ର ଏଭଳି କର୍ମ ଦେଖି ଅତ୍ୟନ୍ତ କୁପିତ ହୋଇଉଠିଲେ । ସେ ତାକୁ ବଧ କରିବାକୁ ନିର୍ଣ୍ଣୟ କରି ଭଗବାନ ଶିବଙ୍କ ପାଦପଦ୍ମ ସ୍ମରଣ-ପୂର୍ବକ ଏପରି ଏକ ତ୍ରିଶୂଳ ଉଠାଇଲେ, ଯାହା ସମସ୍ତ ଦିଗ ଓ ଆକାଶକୁ ତେଜରେ ଝଲସାଇ ଦେଉଥିଲା । ଏତିକିବେଳେ କାର୍ତ୍ତିକେୟ ବଡ଼ କୌତୂହଳ ପ୍ରଦର୍ଶନ କରି କରି ବୀରବାହୁକୁ ପଠାଇ ତାଙ୍କୁ ଅଟକାଇଲେ । କାର୍ତ୍ତିକେୟଙ୍କ ଆଜ୍ଞାରେ ବୀରଭଦ୍ର ସେହି ଯୁଦ୍ଧରୁ ହଟିଗଲେ । ଏହା ଦେଖି ମହାବୀର ତାରକ କୁପିତ ହୋଇଗଲା । ସେ ଯୁଦ୍ଧକୌଶଳରେ ଓ ନାନା ପ୍ରକାର ଅସ୍ତ୍ରଶସ୍ତ୍ର ଚ୍ୱଳନରେ ପାରଙ୍ଗମ ଥିଲା, ତେଣୁ ଦେବତାଙ୍କୁ ବାରମ୍ବାର ଆହ୍ୱାନ ଦେଇ ସେମାନଙ୍କ ଉପରକୁ ଶରବର୍ଷା କଲା । ସେତେବେଳେ ସେ ଏଭଳି ଭୀଷଣ ଯୁଦ୍ଧ କଲା ଯେ ସମସ୍ତ ଦେବତା ମିଶି ମଧ୍ୟ ତା'ର ସମ୍ମୁଖୀନ ହୋଇ ପାରିଲେ ନାହିଁ । ଦେବତାମାନେ ଅସୁରର ପ୍ରହାରରେ ତ୍ରସ୍ତ ହେଉଥିବା ଦେଖି ଭଗବାନ ଅଚ୍ୟୁତ ରାଗିଗଲେ । ସେ ଅସୁର ସଙ୍ଗେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଗଲେ । ସେ ତାଙ୍କ ଆୟୁଧ ସୁଦର୍ଶନଚକ୍ର ଓ ଶାର୍ଙ୍ଗଧନୁ ଦ୍ୱାରା ମହାଦୈତ୍ୟ ତାରକ ଉପରେ ଆକ୍ରମଣ କଲେ । ମୁନେ !

ତା'ପରେ ସମସ୍ତେ ଦେଖୁ ଦେଖୁ ଉଭୟଙ୍କ ମଧ୍ୟରେ ଅତ୍ୟନ୍ତ ଭୟଙ୍କର ଓ ରୋମାଞ୍ଚକାରୀ ଯୁଦ୍ଧ ଆରମ୍ଭ ହୋଇଗଲା । ଅଚ୍ୟୁତ କୁପିତ ହୋଇ ସିଂହନାଦପୂର୍ବକ ତାଙ୍କର ପରମ ଜାଜ୍ୱଲ୍ୟମାନ ଚକ୍ର ଦ୍ୱାରା ଦୈତ୍ୟରାଜ ଉପରେ ପ୍ରହାର କଲେ । ଚକ୍ରର ଆଘାତରେ ଅତ୍ୟନ୍ତ ବ୍ୟଥିତ ହୋଇ ସେ ଭୂମି ଉପରେ ଢଳି ପଡ଼ିଲା । ମାତ୍ର ଅସୁର ଅତ୍ୟନ୍ତ ବଳବାନ୍ ଥିଲା । ତେଣୁ ସେ ତୁରନ୍ତ ଉଠିପଡ଼ି ନିଜ ଶକ୍ତି-ଅସ୍ତ୍ର ଦ୍ୱାରା ସେହି ଚକ୍ରକୁ ଖଣ୍ଡ ଖଣ୍ଡ କରିଦେଲା । ମୁନେ ! ଭଗବାନ ବିଷ୍ଣୁ ଓ ତାରକାସୁର ଉଭୟେ ବଳବାନ୍ ଥିଲେ । ତେଣୁ ଯୁଦ୍ଧସ୍ଥଳରେ ସେ ଦୁହେଁ ଏହିରୂପେ ଅବିରତ ସଂଗ୍ରାମ କରିଚାଲିଲେ ।

(ଅଧ୍ୟାୟ ୧–୮)

★★★

## ବ୍ରହ୍ମାଙ୍କ ଆଜ୍ଞାରେ କୁମାରଙ୍କର ଯୁଦ୍ଧଯାତ୍ରା, ତାରକ ସଙ୍ଗେ ତାଙ୍କର ଭୀଷଣ ସଂଗ୍ରାମ ଓ ତାରକ ବଧ, କୁମାରଙ୍କୁ ଦେବଗଣଙ୍କ ଅଭିନନ୍ଦନ ଓ ସ୍ତବନ, ସେମାନଙ୍କୁ କୁମାରଙ୍କ ବରଦାନ ଏବଂ କୈଳାସରେ ଶିବପାର୍ବତୀଙ୍କ ନିକଟରେ କାର୍ତ୍ତିକେୟଙ୍କ ନିବାସ

ଏତିକିବେଳେ ବ୍ରହ୍ମା କହିଲେ–ଶିବପୁତ୍ର କାର୍ତ୍ତିକେୟ ! ତୁମେ ତ ଦେବାଧିଦେବ । ହେ ପାର୍ବତୀନନ୍ଦନ ! ବିଷ୍ଣୁ ଓ ତାରକାସୁରଙ୍କ ମଧ୍ୟରେ ଏ ବ୍ୟର୍ଥ ଯୁଦ୍ଧ ଚାଲିବାଟା ଶୋଭା ପାଉ ନାହିଁ । କାରଣ ବିଷ୍ଣୁଙ୍କ ହାତରେ ଏହାର ମୃତ୍ୟୁ ହେବ ନାହିଁ । ଏ ମୋ ବରଦାନ ହେତୁ ଅତ୍ୟନ୍ତ ବଳବାନ ହୋଇଯାଇଛି । ମୁଁ ସମ୍ପୂର୍ଣ୍ଣ ସତ୍ୟ କହୁଛି । ହେ ପାର୍ବତୀନନ୍ଦନ ! ତୁମ ଛଡ଼ା ଅନ୍ୟ କେହି ଏହାକୁ ମାରି ପାରିବ ନାହିଁ । ତେଣୁ ତୁମେ ମୋ କଥା ଅନୁସାରେ ହିଁ କରିବା ଉଚିତ । ପରନ୍ତପ ! ତୁମେ ଅତି ଶୀଘ୍ର ତାରକକୁ ବଧ କରିବାକୁ ପ୍ରସ୍ତୁତ ହୋଇଯାଅ; କାରଣ ତାରକକୁ ସଂହାର କରିବା ନିମନ୍ତେ ହିଁ ତୁମେ ଶିବଙ୍କ ଠାରୁ ଉତ୍ପନ୍ନ ହୋଇଛ ।

ବ୍ରହ୍ମା କହୁଛନ୍ତି–ମୁନେ ! ମୋ କଥା ଶୁଣି ଶିବପୁତ୍ର କାର୍ତ୍ତିକେୟ ଠୋଠୋ ହସିଉଠିଲେ ଏବଂ ପ୍ରସନ୍ନତାପୂର୍ବକ କହିଲେ–'ତଥାସ୍ତୁ' । ଏହାପରେ ମହା ଐଶ୍ୱର୍ଯ୍ୟଶାଳୀ ଶିବପୁତ୍ର ତାରକାସୁରକୁ ବଧ କରିବାକୁ ସ୍ଥିର କରି ବିମାନରୁ ତଳକୁ ଓହ୍ଲାଇ ପଡ଼ିଲେ । ମହାବଳୀ କାର୍ତ୍ତିକେୟ ନିଜର ଉଲ୍‌କାପିଣ୍ଡ ସଦୃଶ ପ୍ରଦୀପ୍ତ ତଥା ଜ୍ୱଳନ୍ତ ଶକ୍ତି ଉଠାଇ ଅସୁର ଆଡ଼କୁ ଦୌଡ଼ିଲେ । ସେତେବେଳେ ତାଙ୍କର ଶୋଭା ଅତ୍ୟନ୍ତ ଅଦ୍ଭୁତ ଥିଲା । ତାଙ୍କ ମନରେ ତିଳେମାତ୍ର ଭୟ ନ ଥିଲା । ସେ ପରମ ପ୍ରଚଣ୍ଡ ଓ ଅପ୍ରମେୟ ବଳଶାଳୀ ଥିଲେ । ତାଙ୍କୁ ନିଜ ଆଡ଼କୁ ମାଡ଼ି ଆସୁଥିବା ଦେଖି ତାରକ କହିଲା–''କ'ଣ ଏଇ ହେଉଛନ୍ତି ଶତ୍ରୁଙ୍କ ସଂହାରକାରୀ କୁମାର? ମୁଁ ତେବେ ଏକାକୀ ଏହାଙ୍କ ସଙ୍ଗେ ଯୁଦ୍ଧ କରିବି । ମୁଁ ଆଜି ସକଳ ବୀର ଯୋଦ୍ଧା, ପ୍ରମଥଗଣ ଓ ଲୋକପାଳଙ୍କୁ ତଥା ଶ୍ରୀହରିଙ୍କି ଆପଣା ନାୟକ ମଣୁଥିବା ଦେବଗଣଙ୍କୁ ମାରି ପକାଇବି ।''

ତା'ପରେ ଦେବତାଙ୍କୁ ଦୁର୍ବଚନ କହି ଅସୁର ଭୀଷଣ ଯୁଦ୍ଧ କଲା । ବଡ଼ ବିକଟ ସଂଗ୍ରାମ ହେଲା । ଶତ୍ରୁବୀରଙ୍କ ସଂହାରକାରୀ କୁମାର ଶିବଙ୍କ ପାଦପଦ୍ମକୁ ସ୍ମରଣ କରି ତାରକକୁ ବଧ କରିବାକୁ ନିର୍ଣ୍ଣୟ କଲେ । ତା'ପରେ ମହାବଳୀ କୁମାର ରୋଷରେ ଗର୍ଜନ କରିବା ସହ ବହୁତ ବଡ଼ ସୈନ୍ୟବାହିନୀକୁ ସଙ୍ଗରେ ଘେନି ଯୁଦ୍ଧ ପାଇଁ ଅଟଳଭାବରେ ଠିଆ ହୋଇଗଲେ । ସେତେବେଳେ

ଦେବତାମାନେ ଜୟ-ଜୟ ନାଦ କଲେ ଏବଂ ଦେବର୍ଷିମାନେ ସୁମଧୁର ବାଣୀରେ ତାଙ୍କୁ ସ୍ତୁତି କଲେ । ତାରକ ଓ କୁମାରଙ୍କ ମଧ୍ୟରେ ଭୀଷଣ



ସଂଗ୍ରାମ ଆରମ୍ଭ ହୋଇଗଲା । ତାହା ଅତ୍ୟନ୍ତ ଦୁଃସହ ଓ ପ୍ରାଣୀଙ୍କ ପାଇଁ ମହାଭୟଙ୍କର ଥିଲା । କୁମାର ଓ ତାରକ ଉଭୟେ ଶକ୍ତି-ଯୁଦ୍ଧରେ ପରମ ପ୍ରବୀଣ ଥିଲେ । ତେଣୁ ଭୀଷଣ କ୍ରୋଧରେ ଉଭୟେ ପରସ୍ପର ଉପରକୁ ଶକ୍ତି ପ୍ରହାର କଲେ । ଦୁଇ ପରାକ୍ରମୀ ବୀର ନାନା ପ୍ରକାର ପଇଁତରା ବଦଳାଇ ଗର୍ଜନ କରିବା ସହ ଅନେକ ପ୍ରକାର କୌଶଳରେ ପରସ୍ପରକୁ ଆଘାତ କରୁଥିଲେ । ସେତେବେଳେ ଦେବତା, ଗନ୍ଧର୍ବ ଓ କିନ୍ନର ସମସ୍ତେ ପରମ ବିସ୍ମୟରେ ନିର୍ବାକ୍ ହୋଇ ସେହି ଦୃଶ୍ୟ ଦେଖୁଥିଲେ । ଏପରିକି ବାୟୁ ପ୍ରବାହିତ ହେବା ମଧ୍ୟ ବନ୍ଦ ହୋଇଗଲା, ସୂର୍ଯ୍ୟଙ୍କ ପ୍ରଭା ଫିକା ପଡ଼ିଗଲା ଏବଂ ପର୍ବତ-କାନନ ସମେତ ସମଗ୍ର ପୃଥିବୀ କମ୍ପି ଉଠିଲା । ଏତିକିବେଳେ ହିମାଳୟ ଆଦି ପର୍ବତ ସ୍ନେହ ହେତୁ କୁମାରଙ୍କ ସୁରକ୍ଷା ପାଇଁ ସେଠାରେ ଆସି ପହଞ୍ଚିଗଲେ । ମାତ୍ର ସେତେବେଳେ ସେହି ପର୍ବତମାନେ ଭୟଭୀତ ହେଉଥିଲେ । ସେମାନଙ୍କ ଭୟ ଦେଖି ଗିରିଜାପୁତ୍ର କୁମାର ସେମାନଙ୍କୁ ସାନ୍ତ୍ୱନା ଦେଇ କହିଲେ–

କୁମାର କହିଲେ–''ମହାଭାଗ ପର୍ବତଗଣ ! ତୁମେମାନେ ଦୁଃଖ କର ନାହିଁ । କୌଣସି ପ୍ରକାର ଚିନ୍ତା କରିବା ଦରକାର ନାହିଁ । ମୁଁ ଆଜି ତୁମମାନଙ୍କ ନେତ୍ର ସମ୍ମୁଖରେ ହିଁ ଏ ପାପୀକୁ ବଧ କରିବି ।'' ଏହିରୂପେ ପର୍ବତମାନଙ୍କୁ ଧୈର୍ଯ୍ୟ ଦେଇ କୁମାର ଗିରିଜା ଓ ଶମ୍ଭୁଙ୍କୁ ସ୍ମରଣ କଲେ ଏବଂ ନିଜ ଜାଜ୍ୱଲ୍ୟମାନ ଶକ୍ତି ଉଠାଇଲେ । ଶମ୍ଭୁପୁତ୍ର କାର୍ତ୍ତିକେୟ ମହାବଳୀ ଓ ମହାନ୍ ଐଶ୍ୱର୍ଯ୍ୟଶାଳୀ ଥିଲେ । ଶକ୍ତିକୁ ଉଠାଇବା ବେଳେ ତାଙ୍କର ଶୋଭା ଅନୁପମ ଦିଶୁଥିଲା । ଶିବଙ୍କ ତେଜରେ ସମ୍ପନ୍ନ କୁମାର ସେହି ଶକ୍ତିଅସ୍ତ୍ର ଦ୍ୱାରା ସକଳ ଭୁବନକୁ ତ୍ରାସ ଦେଉଥିବା ତାରକାସୁର ଉପରେ ପ୍ରହାର କଲେ । ଶକ୍ତି ଆଘାତରେ ଅସୁରାଧିପତି ମହାବୀର ତାରକାସୁରର ଅଙ୍ଗ ଛିନ୍ନଭିନ୍ନ ହୋଇଗଲା ଏବଂ ସେ ତତ୍‌କ୍ଷଣାତ୍ ଧରାଶାୟୀ ହୋଇଗଲା । ମୁନେ ! ସମସ୍ତେ ଗ୍ୱହୁଁ ଗ୍ୱହୁଁ ତା'ର ପିଣ୍ଡରୁ ପ୍ରାଣ ବାହାରିଗଲା । ଏତେ ବଡ଼ ବୀର ତାରକ ମହାସମରରେ ପ୍ରାଣବିହୀନ ହୋଇ ଭୂମିରେ ପଡ଼ିଯିବା ଦେଖି ବୀରବର କୁମାର ଆଉ ତା' ଉପରକୁ ଶର ପ୍ରହାର କଲେ ନାହିଁ । ମହାବଳୀ ତାରକ ମରିଯିବାରୁ ଦେବତାମାନେ ଅନ୍ୟାନ୍ୟ ଅନେକ ଅସୁରଙ୍କୁ ମାରି ପକାଇଲେ । କେତେକ ଅସୁର ଭୟଭୀତ ହୋଇ ହାତ ଯୋଡ଼ିଲେ, କେତେକଙ୍କ ଦେହ କ୍ଷତବିକ୍ଷତ ହୋଇଗଲା ଏବଂ ହଜାର ହଜାର ଦୈତ୍ୟ ମୃତ୍ୟୁର ଅତିଥି ହୋଇଗଲେ । କେତେକ ଶରଣାର୍ଥୀ ହୋଇ 'ରକ୍ଷା କର, ରକ୍ଷା କର' କହି କୁମାରଙ୍କ ଠାରେ ଶରଣ ପଶିଲେ । କେତେକ ନିହତ ହେଲେ ତ କେତେକ

ରଣକ୍ଷେତ୍ର ଛାଡ଼ି ପଳାୟନ କଲେ । ହଜାର ହଜାର ଦୈତ୍ୟ ଜୀବନ ଆଶାରେ ରଣାଙ୍ଗନ ଛାଡ଼ି ପାତାଳକୁ ପଳାଇଲେ । ସେମାନଙ୍କ ଆଶା ଭଙ୍ଗ ହୋଇ ସାରିଥିଲା ଏବଂ ମୁଖମଣ୍ଡଳରେ ଦୈନ୍ୟ ଛାଇ ଯାଇଥିଲା ।

ମୁନୀଶ୍ୱର ! ଏହିପରି ସମଗ୍ର ଦୈତ୍ୟସେନା ବିନଷ୍ଟ ହୋଇଗଲା । ଦେବଗଣଙ୍କ ଭୟରେ କେହି ଆଉ ସେଠାରେ ରହି ପାରିଲେ ନାହିଁ । ଦୁରାତ୍ମା ତାରକ ମରିଯିବାରୁ ସମସ୍ତେ ନିଷ୍କଣ୍ଟକ ହୋଇଗଲେ ଏବଂ ଇନ୍ଦ୍ରାଦି ଦେବତା ଆନନ୍ଦରେ ଉଲ୍ଲସିତ ହେଲେ । କୁମାରଙ୍କୁ ବିଜୟୀ ହେବା ଦେଖି ସମସ୍ତ ଦେବତା ଓ ତ୍ରିଲୋକର ସମସ୍ତ ପ୍ରାଣୀ ଆନନ୍ଦିତ ହେଲେ । ଭଗବାନ ଶିବ ମଧ୍ୟ କାର୍ତ୍ତିକେୟଙ୍କ ବିଜୟ ସମାଗ୍ୱର ପାଇ ହର୍ଷିତ ହେଲେ ଏବଂ ପାର୍ବତୀଙ୍କୁ ତଥା ଗଣମାନଙ୍କୁ ସଙ୍ଗରେ ଧରି ସେଠାରେ ପହଞ୍ଚିଲେ । ପାର୍ବତୀଙ୍କ ହୃଦୟରେ ସ୍ନେହ ଉଛୁଳି ଉଠୁଥିଲା । ସେ ପରମ ସ୍ନେହରେ ନିଜର ସୂର୍ଯ୍ୟ ସମ ତେଜସ୍ୱୀ ପୁତ୍ର କୁମାରଙ୍କୁ କୋଳକୁ ଟାଣି ଆଣି ବହୁତ ସ୍ନେହ କଲେ । ସେତିକିବେଳେ ହିମାଳୟ ମଧ୍ୟ ଆପଣା ପୁତ୍ର ଓ ବନ୍ଧୁବାନ୍ଧବଙ୍କ ମେଳରେ ଆସି ଶମ୍ଭୁ, ପାର୍ବତୀ ଓ ଗୁହ (କାର୍ତ୍ତିକେୟ)ଙ୍କୁ ସ୍ତୁତି କଲେ । ତା'ପରେ ସମସ୍ତ ଦେବତା, ମୁନି, ସିଦ୍ଧ ଓ ଗ୍ୱରଣମାନେ ଶିବନନ୍ଦନ କୁମାରଙ୍କୁ, ଶମ୍ଭୁଙ୍କୁ ଓ ପରମ ପ୍ରସନ୍ନ ପାର୍ବତୀଙ୍କୁ ସ୍ତୁତି କଲେ; ଉପଦେବତାମାନେ ପୁଷ୍ପବୃଷ୍ଟି କଲେ । ବିଭିନ୍ନ ପ୍ରକାର ବାଦ୍ୟନାଦ ହେଲା । ବିଶେଷତଃ ଘନଘନ ଜୟକାର ଓ ନମସ୍କାର ଶବ୍ଦରେ ଆକାଶ ପ୍ରକମ୍ପିତ ହେଲା । ସେତେବେଳେ ବହୁତ ବଡ଼ ଉତ୍ସବ ହେଲା, ଯେଉଁଥିରେ କୀର୍ତ୍ତନର ପ୍ରାଧାନ୍ୟ ଥିଲା । ସେହି ସ୍ଥାନଟି ବାଦ୍ୟନାଦ, ଗୀତ ଓ ବ୍ରହ୍ମଘୋଷରେ ଉଛୁଳି ଉଠିଲା । ମୁନେ ! ଦେବଗଣ ପ୍ରସନ୍ନମନରେ ଗାନ ଓ ବାଦନ ସହ କରଯୋଡ଼ି ଜଗତର ସ୍ୱାମୀ ମହାଦେବଙ୍କୁ ସ୍ତୁତି କଲେ । ଏହାପରେ ସମସ୍ତଙ୍କ ଦ୍ୱାରା ପ୍ରଶଂସିତ ଭଗବାନ ରୁଦ୍ର ନିଜ ଗଣ ଓ ପାର୍ବତୀଙ୍କ ସହିତ କୈଳାସକୁ ଫେରିଗଲେ ।

ଏଣେ ତାରକ ମରିଯିବା କଥା ଜାଣି ସମସ୍ତ ଦେବତା ଓ ପ୍ରାଣୀମାନଙ୍କ ମୁଖମଣ୍ଡଳରେ ଆନନ୍ଦର ରେଖା ଦେଖାଦେଲା । ସେମାନେ ଭକ୍ତିପୂର୍ବକ ଶିବପୁତ୍ର କୁମାରଙ୍କୁ ଏହିପରି ସ୍ତୁତି କଲେ– "ହେ ଦେବ ! ତୁମେ ଦାନବଶ୍ରେଷ୍ଠ ତାରକର ହନ୍ତା, ତୁମକୁ ଆମ୍ଭମାନଙ୍କର ନମସ୍କାର । ଶଙ୍କରନନ୍ଦନ ! ତୁମେ ବାଣାସୁରର ପ୍ରାଣହର୍ତ୍ତା ଓ ପ୍ରଳମ୍ବାସୁରର ବିନାଶକ । ତୁମର ସ୍ୱରୂପ ପରମ ପବିତ୍ର, ତୁମକୁ ଆମର ଅଭିବାଦନ ।"

ବ୍ରହ୍ମା କହୁଛନ୍ତି–ମୁନେ ! ବିଷ୍ଣୁ ପ୍ରଭୃତି ଦେବତା କୁମାରଙ୍କୁ ଏପରି ସ୍ତବନ କରିବାରୁ କୁମାର ସେମାନଙ୍କୁ କ୍ରମଶଃ ନୂଆ ନୂଆ ବର ପ୍ରଦାନ



କଲେ । ତା'ପରେ ପର୍ବତମାନେ ସ୍ତୁତି କରୁଥିବା ଦେଖି ଶଙ୍କରତନୟ ପ୍ରସନ୍ନଚିତ୍ତରେ ସେମାନଙ୍କୁ ବର ଦେଇ କହିଲେ–

ସ୍କନ୍ଦ କହିଲେ—ଭୂଧରଗଣ ! ତୁମେ ସମସ୍ତ ପର୍ବତ ତପସ୍ୱୀମାନଙ୍କ ଦ୍ୱାରା ପୂଜନୀୟ, କର୍ମଠ ଓ ଜ୍ଞାନୀମାନଙ୍କ ଦ୍ୱାରା ସେବ୍ୟ ହେବ । ମୋର ମାତାମହ (ଅଜା) ପର୍ବତଶ୍ରେଷ୍ଠ ହିମବାନ ଆଜିଠାରୁ ତପସ୍ୱୀଙ୍କ ପାଇଁ ଫଳଦାତା ହେବେ ।

ଦେବତାମାନେ କହିଲେ—କୁମାର ! ତୁମେ ତ ଅସୁରରାଜ ତାରକକୁ ମାରି ଓ ଦେବତାଙ୍କୁ ବର ଦେଇ ଆମ ସମସ୍ତଙ୍କୁ ତଥା ସଚରାଚର ଜଗତକୁ ସୁଖୀ କରିଦେଲ, ଏଥର ତୁମେ ପରମ ଆନନ୍ଦରେ ତୁମ ପିତାମାତାଙ୍କୁ ଦର୍ଶନ କରିବା ପାଇଁ ଶିବଙ୍କ ନିବାସଭୂତ କୈଳାସକୁ ଯିବା ଉଚିତ ।

ବ୍ରହ୍ମା କହୁଛନ୍ତି—ମୁନେ ! ତା'ପରେ କାର୍ତ୍ତିକେୟ ଦେବଗଣଙ୍କ ସହ ବିମାନରେ ଆରୋହଣ କରି କୈଳାସ ଯାଇ ଶିବଙ୍କ ସମୀପରେ ପହଞ୍ଚିଲେ । ତାଙ୍କୁ ଦେଖି ଶିବ ବହୁତ ପ୍ରସନ୍ନ ହେଲେ । ଦେବତାମାନେ ଶିବଙ୍କୁ ସ୍ତୁତି କଲେ । ଶିବ ସେମାନଙ୍କୁ ବରଦାନ ତଥା ଅଭୟଦାନ ଦେଇ ବିଦା କଲେ । ମୁନେ ! ସେହି ଅବସରରେ ଦେବତାଙ୍କୁ ପରମ ଆନନ୍ଦ ପ୍ରାପ୍ତ ହେଲା । ସେମାନେ ଶିବ, ପାର୍ବତୀ ଓ ଶଙ୍କରନନ୍ଦନ କୁମାରଙ୍କ ରମଣୀୟ ଯଶ ବଖାଣ କରି କରି ନିଜ ନିଜ ଧାମକୁ ଚାଲିଗଲେ । ଶିବ ସେହି ପର୍ବତରେ ପାର୍ବତୀ, କୁମାର ଓ ନିଜ ଗଣଙ୍କ ସଙ୍ଗରେ ଆନନ୍ଦରେ ନିବାସ କଲେ । ମୁନେ ! କୁମାରଙ୍କର ସମସ୍ତ ଚରିତ୍ର ତୁମ ଆଗରେ ବର୍ଣ୍ଣନା କରିଦେଲି । ଏହା ଶିବଭକ୍ତିରେ ଓତପ୍ରୋତ, ସୁଖଦାୟକ ଓ ଦିବ୍ୟ ଅଟେ । ଏବେ ଆଉ କ'ଣ ଶୁଣିବାକୁ ଚାହୁଁଛ?

(ଅଧ୍ୟାୟ ୯—୧୨)

★★★

## ଶିବାଙ୍କ ଦେହ-ମଳିରୁ ଗଣେଶଙ୍କର ଉତ୍ପତ୍ତି ଓ ଦ୍ୱାରପାଳ ପଦରେ ନିଯୁକ୍ତି, ଗଣେଶ ଶିବଙ୍କୁ ଅଟକାଇବାରୁ ଶିବଗଣଙ୍କ ସହ ତାଙ୍କର ଭୀଷଣ ସଂଗ୍ରାମ, ଶିବଙ୍କ ଦ୍ୱାରା ଗଣେଶଙ୍କ ଶିରଶ୍ଛେଦ, ଶିବା କୁପିତ ହୋଇ ତାଙ୍କର ନାନା ଶକ୍ତିଙ୍କୁ ଉତ୍ପନ୍ନ କରିବାରୁ ସେମାନଙ୍କ ଦ୍ୱାରା ସୃଷ୍ଟ ପ୍ରଳୟଙ୍କର ଉତ୍ପାତରେ ଚତୁର୍ଦିଗରେ ହାହାକାର, ଦେବତା ଓ ଋଷିଙ୍କ ସ୍ତବରେ ପାର୍ବତୀଙ୍କ ପ୍ରସନ୍ନତା, ପୁତ୍ରକୁ ଜୀବିତ କରାଯିବାର ପ୍ରସ୍ତାବ, ଶିବଙ୍କ କୃପାରୁ ହସ୍ତୀର ମସ୍ତକ ସଂଯୋଗପୂର୍ବକ ଗଣେଶଙ୍କୁ ପୁନର୍ଜୀବନ ଲାଭ

ସୂତ କହୁଛନ୍ତି—ତାରକାରି କୁମାରଙ୍କର ଉତ୍ତମ ଓ ଅଦ୍ଭୁତ ବୃତ୍ତାନ୍ତ ଶୁଣି ନାରଦ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ପୁନଃ ବ୍ରହ୍ମାଙ୍କୁ ପଚାରିଲେ ।

ନାରଦ କହିଲେ—ଦେବଦେବ ! ଆପଣ ତ ଶିବଙ୍କ ସମ୍ବନ୍ଧିତ ଜ୍ଞାନର ଅଥଳ ସାଗର । ପ୍ରଜାନାଥ ! ମୁଁ ସ୍ୱାମୀ କାର୍ତ୍ତିକେୟଙ୍କର ଅମୃତ ଠାରୁ ବଳି ମଧୁର ସଦ୍‌ବୃତ୍ତାନ୍ତ ଶୁଣିଲି । ଏବେ ଗଣେଶଙ୍କର ଉତ୍ତମ ଚରିତ୍ର ଶୁଣିବାକୁ ଚାହୁଁଛି । ଆପଣ ତାଙ୍କର ଜନ୍ମ-ବୃତ୍ତାନ୍ତ ଓ ଦିବ୍ୟ ଚରିତ୍ର ବର୍ଣ୍ଣନା କରନ୍ତୁ, ଯାହା ମଙ୍ଗଳ ନିମନ୍ତେ ମଧ୍ୟ ମଙ୍ଗଳସ୍ୱରୂପ ଅଟେ ।

ସୂତ କହୁଛନ୍ତି—ମହାମୁନି ନାରଦଙ୍କ ମୁଖରୁ ଏକଥା ଶୁଣି ବ୍ରହ୍ମା ମନେ ମନେ ଆନନ୍ଦରେ ଗଦ୍‌ଗଦ ହୋଇଗଲେ । ସେ ଶିବଙ୍କୁ ସ୍ମରଣ କରି କହିଲେ—

ବ୍ରହ୍ମା କହିଲେ—ନାରଦ ! ମୁଁ ପୂର୍ବରୁ ବିଧିପୂର୍ବକ ଗଣେଶଙ୍କ ଉତ୍ପତ୍ତି ବିଷୟରେ ବର୍ଣ୍ଣନା କଲାବେଳେ କହିଥିଲି ଯେ ଶନିଙ୍କ ଦୃଷ୍ଟି ପଡ଼ିବାରୁ ଗଣେଶଙ୍କ ମସ୍ତକ କଟିଗଲା ଏବଂ ସେତେବେଳେ ତାଙ୍କ ଠାରେ ହସ୍ତୀର ମସ୍ତକ ଆଣି ଯୋଡ଼ି ଦିଆଯାଇଥିଲା । ତାହା ଥିଲା କଳ୍ପାନ୍ତରର କଥା । ଏବେ ଶ୍ୱେତକଳ୍ପରେ ଘଟିତ ଗଣେଶଙ୍କ ଜନ୍ମବୃତ୍ତାନ୍ତ ବର୍ଣ୍ଣନା କରୁଛି, ଯେଉଁଥିରେ କୃପାଳୁ ଶିବ ହିଁ ତାଙ୍କର ମସ୍ତକ କାଟିଦେଇଥିଲେ । ମୁନେ ! ଏ ବିଷୟରେ ତୁମକୁ କିଛି ସନ୍ଦେହ କରିବା ଉଚିତ ନୁହେଁ; କାରଣ ଭଗବାନ ଶମ୍ଭୁ ହେଉଛନ୍ତି କଲ୍ୟାଣକାରୀ, ସୃଷ୍ଟିକର୍ତ୍ତା ଓ ସମସ୍ତଙ୍କର ସ୍ୱାମୀ । ସେ ହିଁ ସଗୁଣ ଓ ନିର୍ଗୁଣ ମଧ୍ୟ । ତାଙ୍କରି ଲୀଳାରେ ସମଗ୍ର ବିଶ୍ୱର ସୃଷ୍ଟି, ରକ୍ଷା ଓ ବିନାଶ ହୁଏ । ମୁନିଶ୍ରେଷ୍ଠ ! ଏବେ ଶଂସିତ ବିଷୟକୁ ଆଦରପୂର୍ବକ ଶ୍ରବଣ କର ।

ଏକଦା ପାର୍ବତୀଙ୍କର ଜୟା ଓ ବିଜୟା ନାମ୍ନୀ ସଖୀ ଦୁହେଁ ତାଙ୍କ ପାଖକୁ ଆସି କହିଲେ— ''ହେ ସଖୀ ! ସମସ୍ତ ଗଣ ତ ରୁଦ୍ରଙ୍କର । ନନ୍ଦୀ, ଭୃଙ୍ଗୀ ପ୍ରଭୃତି ଆମର ଗଣ ହେଲେ ମଧ୍ୟ ସେମାନେ ଶିବଙ୍କ ଆଜ୍ଞାପାଳନରେ ତତ୍ପର ରହନ୍ତି । ଅସଂଖ୍ୟ ପ୍ରମଥଗଣଙ୍କ ମଧ୍ୟରେ କେହି ବି ଆମର ନୁହନ୍ତି । ସେମାନେ ସମସ୍ତେ ଶିବାଜ୍ଞାପରାୟଣ ହୋଇ ଦ୍ୱାରଦେଶରେ ଠିଆ ହୋଇ ରହିଥାନ୍ତି । ଯଦ୍ୟପି ସେ ସମସ୍ତେ ଆମର, ତଥାପି ସେମାନଙ୍କ ସଙ୍ଗେ ଆମର ମନ ମିଶେ ନାହିଁ । ତେଣୁ ହେ ପାପରହିତେ ! ତୁମେ ଆମ୍ଭମାନଙ୍କ ପାଇଁ ଗୋଟିଏ ଗଣ ସୃଷ୍ଟି କରିବା ଉଚିତ ।

ବ୍ରହ୍ମା କହୁଛନ୍ତି—ମୁନେ ! ସଖୀମାନେ ଏଭଳି କହିବାରୁ ପାର୍ବତୀ ସେହି କଥାକୁ ହିତକର ମନେ କଲେ ଏବଂ ସେହିପରି କରିବାକୁ ଭାବିଲେ । କିଛି ଦିନ ପରେ ଥରେ ପାର୍ବତୀ ସ୍ନାନ କରୁଥିବା ବେଳେ ସଦାଶିବ ନନ୍ଦୀକୁ ଡରାଇ-ଧମକାଇ ଭିତରକୁ ପଶିଆସିଲେ । ଶିବଙ୍କୁ ହଠାତ୍ ସେଠାରେ ଦେଖି ଜଗଜ୍ଜନନୀ ପାର୍ବତୀ ସ୍ନାନ ଛାଡ଼ି ଉଠି ଠିଆ ହୋଇଗଲେ । ତାଙ୍କୁ ବଡ଼ ଲଜ୍ଜା ଲାଗିଲା । ସେ ଆଶ୍ଚର୍ଯ୍ୟରେ ପଡ଼ିଗଲେ । ସେତେବେଳେ ସେ ସଖୀମାନଙ୍କ କଥାକୁ ଅତ୍ୟନ୍ତ ହିତକର ଓ ସୁଖପ୍ରଦ ମଣିଲେ । ଏଭଳି ଘଟଣା ଘଟିଯିବାରୁ ପରମେଶ୍ୱରୀ ଶିବପତ୍ନୀ ପାର୍ବତୀ ଭାବିଲେ—''ମୋର ଏପରି ଗୋଟିଏ ସେବକ ଦରକାର, ଯେ କି ପରମ ଶୁଭ ଓ କାର୍ଯ୍ୟକୁଶଳ ହୋଇଥିବ ଏବଂ ମୋ ଆଜ୍ଞାରେ ତତ୍ପର ରହୁଥିବ, ମୋ ଆଜ୍ଞାରୁ ଟିକିଏ ବି ବିଚଳିତ ହେଉ ନ ଥିବ । ଏପରି ଚିନ୍ତା କରି ପାର୍ବତୀ ନିଜ ଦେହର ମଳିରୁ ଏପରି ଏକ ଚେତନ ପୁରୁଷଟିଏ ନିର୍ମାଣ କଲେ, ଯେ କି ସମସ୍ତ ଶୁଭଲକ୍ଷଣରେ ଯୁକ୍ତ ଥିଲା । ତାହାର ସମସ୍ତ ଅଙ୍ଗ ସୁନ୍ଦର ଓ ଦୋଷରହିତ ଥିଲା । ତାହାର ଶରୀର ଥିଲା ବିଶାଳ ଓ ପରମ ଶୋଭମାନ । ସେ ଅତ୍ୟନ୍ତ ବଳବାନ୍ ଓ ପରାକ୍ରମୀ ଥିଲା । ଦେବୀ ତାହାକୁ ଅନେକ ପ୍ରକାର ବସ୍ତ୍ର, ଆଭୂଷଣ ଓ ନାନା ପ୍ରକାର ଆଶୀର୍ବାଦ ଦେଇ କହିଲେ—''ତୁମେ ମୋର ପୁତ୍ର ହେଲ, ମୋର ଆପଣାର ହେଲ । ତୁମ ପରି ମୋର ଆଉ କେହି ପ୍ରିୟ ହେବ ନାହିଁ ।'' ପାର୍ବତୀ ଏପରି କହିବାରୁ ସେହି ପୁରୁଷ ତାଙ୍କୁ ନମସ୍କାର କରି କହିଲା—

ଗଣେଶ କହିଲେ—''ମାଆ ! ଆଜି ତୁମର କ'ଣ କାର୍ଯ୍ୟ ଅଛି, ମୋତେ କୁହ । ମୁଁ ତୁମ କହିବା ଅନୁସାରେ ତାହା ସମ୍ପନ୍ନ କରିବି ।'' ଗଣେଶ ଏପରି ପଚାରିବାରୁ ପାର୍ବତୀ ସେହି ପୁତ୍ରକୁ କହିଲେ—

ଶିବା କହିଲେ—ବତ୍ସ ! ତୁ ମୋର ପୁତ୍ର, ମୋର ଆପଣାର । ତେଣୁ ମୋ କଥା ଶୁଣ । ଆଜିଠାରୁ ତୁ ମୋର ଦ୍ୱାରପାଳ ହୋଇଯାଅ । ସୁପୁତ୍ର ! ମୋ ଆଜ୍ଞା ବିନା କେହି ଯେପରି ବଳପୂର୍ବକ ମୋ ଭବନ ଭିତରକୁ ପ୍ରବେଶ କରି

ନ ପାରେ, ସେ କଥା ଧ୍ୟାନ ରଖିବୁ । ସେ ଯେ କେହି ହୋଇଥାଉ ଓ ଯେଉଁଠୁ ବି ଆସିଥାଉ ନା କାହିଁକି, ତାକୁ ଅଟକାଇବୁ । ପୁତ୍ର ! ଏହା ମୁଁ ତୋତେ ସତ୍ୟ କରି କହୁଛି ।



ବ୍ରହ୍ମା କହୁଛନ୍ତି–ମୁନେ ! ଏପରି କହି ପାର୍ବତୀ ଗଣେଶଙ୍କ ହାତରେ ଗୋଟିଏ ସୁଦୃଢ଼ ଦଣ୍ଡ ଧରାଇଦେଲେ । ସେତେବେଳେ ତାଙ୍କର ସୁନ୍ଦର ରୂପକୁ ଦେଖି ପାର୍ବତୀ ଆନନ୍ଦମଗ୍ନ ହୋଇଗଲେ । ସେ ପରମ ପ୍ରେମରେ ପୁତ୍ର ଗଣେଶଙ୍କ ମୁଖରେ ଚୁମ୍ବନ ଦେଇ ତାଙ୍କୁ ବକ୍ଷକୁ ଆଉଜେଇ ନେଲେ ଏବଂ ତାଙ୍କୁ ଦଣ୍ଡଟିଏ ଧରାଇଦେଇ ଦ୍ୱାରଦେଶରେ ଛିଡ଼ା ହେବାକୁ କହିଲେ । ପୁତ୍ର ନାରଦ ! ତା'ପରେ ପାର୍ବତୀନନ୍ଦନ ମହାବୀର ଗଣେଶ ମାଆଙ୍କ ହିତକାମନାରେ ହାତରେ ଦଣ୍ଡ ଧରି ଦ୍ୱାରଦେଶରେ ପହରା ଦେଲେ । ପୁତ୍ର ଗଣେଶଙ୍କୁ ଦ୍ୱାରଦେଶରେ ନିଯୁକ୍ତ କରି ନିଜେ ଶିବା ସଖୀଗଣଙ୍କ ମେଳରେ ସ୍ନାନ କରିବାକୁ ଗ୍ଲଲିଗଲେ । ମୁନିଶ୍ରେଷ୍ଠ ! ଏତିକିବେଳେ ପରମ କୌତୁକୀ ଓ ନାନା ଲୀଳା-ପାରଙ୍ଗମ ଭଗବାନ ଶିବ ଆସି ଦ୍ୱାରଦେଶରେ ପହଞ୍ଚିଲେ । ଗଣେଶ ତ ପାର୍ବତୀପତି ମହାଦେବଙ୍କୁ ଚିହ୍ନି ନ ଥିଲେ । ତେଣୁ ସେ କହିଲେ–''ହେ ଦେବ ! ମାଆଙ୍କ ଆଜ୍ଞା ବିନା ତୁମେ ଏବେ ଭିତରକୁ ଯାଇ ପାରିବ ନାହିଁ । ମାଆ ସ୍ନାନ କରୁଛନ୍ତି । ତୁମେ କେଉଁଠିକୁ ଯିବାକୁ ଗ୍ଲହୁଁଛ? ଏବେ ଏଠାରୁ ହଟିଯାଅ ।'' ଏପରି କହି ଗଣେଶ ତାଙ୍କୁ ବାଡ଼ିଟିରେ ଅଟକାଇବା ପାଇଁ ଚେଷ୍ଟା କଲେ । ସେ ଏପରି କରିବାରୁ ଶିବ କହିଲେ–''ମୂର୍ଖ ! ତୁ କାହାକୁ ଅଟକାଉଛୁ ଜାଣିଛୁ? ଦୁର୍ବୁଦ୍ଧେ ! ତୁ କ'ଣ ମୋତେ ଚିହ୍ନିନୁ? ମୁଁ ଶିବଙ୍କ ଛଡ଼ା ଆଉ କେହି ନୁହେଁ ।''

ତା'ପରେ ମହେଶ୍ୱରଙ୍କ ଗଣ ତାଙ୍କୁ ବୁଝାଇ-ସୁଝାଇ ହଟାଇବା ପାଇଁ ସେଠାକୁ ଆସିଲେ ଏବଂ ଗଣେଶଙ୍କୁ କହିଲେ–ଶୁଣ, ଆମେସବୁ ମୁଖ୍ୟ ଶିବଗଣ ହିଁ ଦ୍ୱାରପାଳ । ଆମେ ଭଗବାନ ଶଙ୍କରଙ୍କ ଆଜ୍ଞାରେ ତୁମକୁ ହଟାଇବା ପାଇଁ ଏଠାକୁ ଆସିଛୁ । ତୁମକୁ ମଧ୍ୟ ଗଣ ବୋଲି ବୁଝି ଆମେ ମାରିଲୁ ନାହିଁ, ନଚେତ୍ ତୁମେ କେବେଠାରୁ ମାଡ଼ ଖାଇସାରନ୍ତଣି । ଭଲ ଦଶା ଅଛି ଯଦି ଅବିଳମ୍ବେ ରାସ୍ତା ଛାଡ଼ିଦିଅ । କାହିଁକି ବୃଥାରେ ନିଜର ମୃତ୍ୟୁକୁ ନିମନ୍ତ୍ରଣ ଦେଉଛ?

ବ୍ରହ୍ମା କହୁଛନ୍ତି–ମୁନେ ! ସେମାନେ ଏପରି କହିବା ସତ୍ତ୍ୱେ ଗିରିଜାନନ୍ଦନ ଗଣେଶ ଟିକିଏ ବି ଭୟ କଲେ ନାହିଁ । ସେ ଶିବଗଣଙ୍କୁ ଗାଳିଦେଲେ ଏବଂ ଦ୍ୱାରଦେଶରୁ ହଟିଲେ ନାହିଁ । ଏହା ଦେଖି ଶିବଗଣ ଶିବଙ୍କ ପାଖକୁ ଯାଇ ସମସ୍ତ ବୃତ୍ତାନ୍ତ ଶୁଣାଇଲେ । ସେମାନଙ୍କ ଠାରୁ ସବୁ କଥା ଶୁଣି ସଂସାରର ଗତିସ୍ୱରୂପ ଅଦ୍ଭୁତ ଲୀଳାବିହାରୀ ମହେଶ୍ୱର ନିଜ ଗଣଙ୍କୁ କଡ଼ା ଶବ୍ଦରେ କହିଲେ–

ମହେଶ୍ୱର କହିଲେ–''ଗଣମାନେ ! ଏତେ ଉଚ୍ଛୃଙ୍ଖଳ ହୋଇ ଶତ୍ରୁ ପରି କଥା କହୁଥିବା ଏ ଦ୍ୱାରପାଳଟା କିଏ? ଏ ନୂଆ ଦ୍ୱାରପାଳକୁ ଦୂରକୁ

ତଡ଼ିଦିଅ । ତୁମେମାନେ ନପୁଂସକ ପରି ଛିଡ଼ା ହୋଇ ମୋ ଆଗରେ ତା'ର ବୃତ୍ତାନ୍ତ କାହିଁକି ଶୁଣାଉଛ?'' ବିଚିତ୍ର ଲୀଳା ରଚୟିତା ଏବଂ ଆପଣା ସ୍ୱାମୀ ଶିବ ଏପରି କହିବାରୁ ଶିବଗଣମାନେ ପୁନଃ ସେଠାକୁ ଆସିଲେ । ଗଣେଶ ପୁନଃ ସେମାନଙ୍କୁ ଅଟକାଇବାରୁ ଶିବ ତାଙ୍କ ଗଣମାନଙ୍କୁ ଆଜ୍ଞା ଦେଲେ—''ତୁମେମାନେ ପ୍ରଥମେ ଅବଗତ ହୁଅ ଯେ ସେ କିଏ ଏବଂ କାହିଁକି ଏପରି କରୁଛି?'' ଗଣମାନେ ଖବର ନେଇ ଜଣାଇଲେ ଯେ ସେ ହେଉଛନ୍ତି ଗିରିଜାଙ୍କ ପୁତ୍ର ଏବଂ ଦ୍ୱାରପାଳରୂପେ ସେଠି ବସିଛନ୍ତି । ଏହା ଜାଣି ଲୀଳାଧାରୀ ଶଙ୍କର ବିଚିତ୍ର ଲୀଳା କରିବାକୁ ଚାହିଁଲେ ଏବଂ ନିଜ ଗଣଙ୍କର ମଧ୍ୟ ଗର୍ବଗଞ୍ଜନ କରିବାକୁ ଇଚ୍ଛା କଲେ । ଏଣୁ ସେ ନିଜ ଗଣଙ୍କୁ ଓ ଦେବତାଙ୍କୁ ଡାକି ସେମାନଙ୍କର ଗଣେଶଙ୍କ ସଙ୍ଗେ ଭୀଷଣ ଯୁଦ୍ଧ କରାଇଲେ । ମାତ୍ର କେହି ହେଲେ ଗଣେଶଙ୍କୁ



ପରାଜିତ କରିପାରିଲେ ନାହିଁ । ତା'ପରେ ସ୍ୱୟଂ ଶୂଳପାଣି ମହେଶ୍ୱର ଆସିଲେ । ଗଣେଶ ମାଆଙ୍କ ଚରଣକୁ ସ୍ମରଣ କଲେ ଏବଂ ମାତା ଶକ୍ତି ତାଙ୍କୁ ବଳ ପ୍ରଦାନ କଲେ । ସେତେବେଳେ ସମସ୍ତ ଦେବତା ଶିବଙ୍କ ପକ୍ଷରେ ଆସିଥିଲେ । ଭୀଷଣ ଯୁଦ୍ଧ ହେଲା । ଅନ୍ତତୋଗତ୍ୱା ସ୍ୱୟଂ ଶୂଳପାଣି ମହେଶ୍ୱର ଆପଣା ତ୍ରିଶୂଳରେ ଗଣେଶଙ୍କ ମସ୍ତକ କାଟିଦେଲେ । ଏ ସମାଚାର ପାର୍ବତୀଙ୍କ ନିକଟରେ ପହଞ୍ଚିବା ମାତ୍ରେ ସେ କ୍ରୋଧାନ୍ୱିତା ହୋଇ ଅନେକ ଶକ୍ତିଙ୍କୁ ଉତ୍ପନ୍ନ କରିବା ସହ ବିନା ବିଚାରରେ ସେମାନଙ୍କୁ ପ୍ରଳୟ କରିଦେବାକୁ ଆଜ୍ଞା ଦେଇଦେଲେ । ତା'ପରେ ଶକ୍ତିମାନେ ପ୍ରଳୟଙ୍କରୀ ସ୍ଥିତି ଉତ୍ପନ୍ନ କରିଦେଲେ । ଶକ୍ତିମାନଙ୍କର ସେହି ଜାଜ୍ୱଲ୍ୟମାନ ତେଜ ସମସ୍ତ ଦିଗ-ବିଦିଗକୁ ଦଗ୍ଧ କରିଦେବା ଭଳି ମନେହେଲା । ତାହା ଦେଖି ଶିବଗଣ ଭୟଭୀତ ହୋଇଗଲେ ଏବଂ ସେଠାରୁ ପଳାଇ ଯାଇ ଦୂରରେ ଛିଡ଼ା ହେଲେ ।

ମୁନେ ! ଏତିକିବେଳେ ତୁମେ ଦିବ୍ୟଦର୍ଶୀ ନାରଦ ସେଠାରେ ଆସି ପହଞ୍ଚିଲ । ତୁମର ସେଠାକୁ ଆସିବାର ଅଭିପ୍ରାୟ ଥିଲା ଦେବଗଣଙ୍କୁ ସୁଖୀ କରିବା । ତୁମେ ଦେବତାଙ୍କୁ ଓ ଶିବଙ୍କୁ ପ୍ରଣାମ କରି କହିଲ—ଯେ ଏ ବିଷୟରେ ସମସ୍ତେ ମିଳିମିଶି ବିଚାର କରିବା ଉଚିତ । ତା'ପରେ ସମସ୍ତ ଦେବତା ସେହି ଦୁଃଖର ଶମନ ପାଇଁ ମୋ ସହିତ ବିଚାରବିମର୍ଶ କଲେ । ସମସ୍ତେ ଏହି ନିର୍ଣ୍ଣୟରେ ଉପନୀତ ହେଲେ ଯେ ଗିରିଜାଦେବୀ କୃପା ନ କରିବା ପର୍ଯ୍ୟନ୍ତ ସୁଖ ମିଳି ପାରିବ ନାହିଁ; ତେଣୁ ଏ ବିଷୟରେ ଅଧିକ ଚର୍ଚ୍ଚା କରିବା ବୃଥା । ଏପରି ଧାରଣା କରି ତୁମ ସହିତ ସମସ୍ତ ଦେବତା ଓ ଋଷି ଭଗବତୀ ଶିବାଙ୍କ ନିକଟକୁ ଗଲେ ଓ କ୍ରୋଧ ଶାନ୍ତ କରିବା ନିମନ୍ତେ ତାଙ୍କୁ ପ୍ରସନ୍ନ କରିବାକୁ ଚେଷ୍ଟା କଲେ । ସେମାନେ ପ୍ରେମପୂର୍ବକ ତାଙ୍କୁ ଅନେକ ସ୍ତୋତ୍ର ଦ୍ୱାରା ସ୍ତୁତି କରି ବାରମ୍ବାର ତାଙ୍କ ଚରଣରେ ଅଭିବାଦନ କଲେ । ତା'ପରେ ଦେବଗଣଙ୍କ ଆଜ୍ଞାରେ ଋଷିମାନେ କହିଲେ—

ଦେବର୍ଷିମାନେ କହିଲେ—ଜଗଦମ୍ବେ ! ତୁମକୁ ନମସ୍କାର । ହେ ଶିବପତ୍ନୀ! ତୁମକୁ ପ୍ରଣାମ । ଚଣ୍ଡିକେ ! ତୁମକୁ ଆମର ଅଭିନନ୍ଦନ? ହେ କଲ୍ୟାଣୀ ! ତୁମକୁ ବାରମ୍ବାର ପ୍ରଣାମ । ଅମ୍ବେ ! ତୁମେ ଆଦିଶକ୍ତି ଅଟ । ତୁମେ ହିଁ ସମଗ୍ର ସୃଷ୍ଟିର ସୃଜନକାରିଣୀ, ପାଳନକାରିଣୀ ଓ ସଂହାରକାରିଣୀ ଶକ୍ତି ଅଟ । ହେ ଦେବେଶ୍ୱରୀ! ତୁମ କୋପ ହେତୁ ସମଗ୍ର ତ୍ରିଲୋକ ବ୍ୟାକୁଳ ହେଉଛି । ତେଣୁ ପ୍ରସନ୍ନ ହୁଅ ଏବଂ କ୍ରୋଧ ଶାନ୍ତ କର । ଆମେ ସବୁ ତୁମ ଚରଣରେ ମସ୍ତକ ଅବନତ କରୁଛୁ ।

ବ୍ରହ୍ମା କହୁଛନ୍ତି—ନାରଦ ! ତୁମେ ସବୁ ଋଷି ଏଭଳି ସ୍ତୁତି କରିବା ସତ୍ତ୍ୱେ ପରାଦେବୀ ପାର୍ବତୀ ତୁମ ସମସ୍ତଙ୍କ ଆଡ଼କୁ କ୍ରୋଧିତ ହୋଇ ଗ୍ୱହିଁଲେ, କିନ୍ତୁ କିଛି କହିଲେ ନାହିଁ । ତା'ପରେ ଋଷିମାନେ ପୁନଃ ତାଙ୍କ ପାଦପଦ୍ମରେ ମୁଣ୍ଡ ନୁଆଇଁ ଭକ୍ତିପୂର୍ବକ ହାତ ଯୋଡ଼ି ପାର୍ବତୀଙ୍କୁ ନିବେଦନ କଲେ ।

ଋଷିମାନେ କହିଲେ—ହେ ଦେବୀ ! ଏବେ ଜଗତର ସଂହାର ହେବାକୁ ଯାଉଛି । ତେଣୁ କ୍ଷମା କର, କ୍ଷମା କର । ଅମ୍ବିକେ ! ତୁମର ସ୍ୱାମୀ ଶିବ ମଧ୍ୟ ଏଠାରେ ଉପସ୍ଥିତ ଅଛନ୍ତି, ଟିକିଏ ତାଙ୍କ ଆଡ଼କୁ ବି ଗ୍ୱହଁ । ଆମେ ସମସ୍ତେ ଋଷି, ଏ ବ୍ରହ୍ମା-ବିଷ୍ଣୁ ଆଦି ଦେବତା ତଥା ସକଳ ପ୍ରଜା—ସମସ୍ତେ ତୁମର ଅଟନ୍ତି । ଏମାନେ କର ଯୋଡ଼ି ତୁମ ସମ୍ମୁଖରେ ଛିଡ଼ା ହୋଇଛନ୍ତି । ହେ ପରମେଶ୍ୱରୀ ! ଏ ସମସ୍ତଙ୍କର ଅପରାଧ କ୍ଷମା କର । ଶିବେ ! ଏମାନଙ୍କୁ ଶାନ୍ତି ପ୍ରଦାନ କର ।

ବ୍ରହ୍ମା କହୁଛନ୍ତି—ମୁନେ ! ଦେବର୍ଷିମାନେ ଏପରି କହି ଅତ୍ୟନ୍ତ ଦୈନ୍ୟଭାବରେ କର ଯୋଡ଼ି ବ୍ୟାକୁଳ ଚିତ୍ତରେ ଚଣ୍ଡିକାଙ୍କ ସମ୍ମୁଖରେ ଛିଡ଼ା ହୋଇରହିଲେ । ସେମାନଙ୍କ କଥା ଶୁଣି ଚଣ୍ଡିକା ପ୍ରସନ୍ନ ହୋଇଗଲେ । ତାଙ୍କ ହୃଦୟରେ କରୁଣା ଉଦୟ ହେଲା । ସେ ଋଷିମାନଙ୍କୁ କହିଲେ—

ଦେବୀ କହିଲେ—ହେ ଋଷିଗଣ ! ଯଦି ମୋ ପୁତ୍ର ଜୀବିତ ହୋଇଯିବ ଏବଂ ସେ ତୁମ ସମସ୍ତଙ୍କ ମଧ୍ୟରେ ପୂଜନୀୟରୂପେ ଗଣ୍ୟ ହେବ, ତା'ହେଲେ ଏ ସଂହାର ହେବ ନାହିଁ । ତୁମେମାନେ ଯଦି ତାକୁ 'ସର୍ବାଧ୍ୟକ୍ଷ' ପଦ ପ୍ରଦାନ କରିବ, ତେବେ ଜଗତକୁ ଶାନ୍ତି ମିଳିବ, ଅନ୍ୟଥା ତୁମମାନଙ୍କୁ ସୁଖଶାନ୍ତି ମିଳିପାରିବ ନାହିଁ ।

ବ୍ରହ୍ମା କହୁଛନ୍ତି—ମୁନେ ! ପାର୍ବତୀ ଏପରି କହିବାରୁ ତୁମେ ସମସ୍ତ ଋଷି ଦେବଗଣଙ୍କ ନିକଟକୁ ଆସି ସକଳ ବୃତ୍ତାନ୍ତ କହିଲ । ତାହା ଶୁଣି ଇନ୍ଦ୍ରାଦି ଦେବଗଣଙ୍କ ମୁଖମଣ୍ଡଳରେ ନୈରାଶ୍ୟ ଛାଇଗଲା । ସେମାନେ ଶିବଙ୍କ ପାଖକୁ ଗଲେ ଏବଂ କର ଯୋଡ଼ି ତାଙ୍କ ଚରଣରେ ନମସ୍କାର କରି ସମସ୍ତ କଥା ନିବେଦନ କଲେ । ଦେବତାଙ୍କ କଥା ଶୁଣି ଶିବ କହିଲେ—''ଠିକ୍ ଅଛି, ଯେଉଁ ଉପାୟରେ ସମଗ୍ର ତ୍ରୈଲୋକ୍ୟ ସୁଖ ମିଳିବ, ସେପରି କରିବା ଉଚିତ । ଏବେ ତୁମେ ଗୋଟିଏ କାମ କର । ଉତ୍ତର ଦିଗକୁ ଯାଅ ଏବଂ ଯେଉଁ ଜୀବ ପ୍ରଥମେ ମିଳିବ, ତାହାର ମସ୍ତକ କାଟି ଆଣି ସେହି ବାଳକ ଦେହରେ ଯୋଡ଼ିଦିଅ ।''

ବ୍ରହ୍ମା କହୁଛନ୍ତି—ମୁନେ ! ତା'ପରେ ଶିବଙ୍କ ଆଜ୍ଞାକାରୀ ଦେବତାମାନେ ସେହିପରି କଲେ । ସେମାନେ ବାଳକର ଶରୀରକୁ ଧୋଇ ପୋଛି ବିଧିବତ୍ ତାହାକୁ ପୂଜା କଲେ । ତା'ପରେ ଉତ୍ତର ଦିଗ ଅଭିମୁଖେ ଗ୍ୱଲିଲେ । ସେମାନଙ୍କୁ ପ୍ରଥମେ ଗୋଟିଏ ଏକଦନ୍ତଯୁକ୍ତ ହାତୀ ମିଳିଲା । ସେମାନେ ତା'ର ମୁଣ୍ଡ କାଟିଆଣି ବାଳକ ଦେହରେ ଯୋଡ଼ିଦେଲେ । ଏହାପରେ ସେମାନେ ଶିବ ପ୍ରଭୃତିଙ୍କୁ ପ୍ରଣାମ କରି କହିଲେ ଯେ—ଆମେ ଆମ କାମ କରିଦେଲୁ । ଏବେ ଆଉ ଯାହା କରିବାକୁ ବାକି ରହିଲା, ତାହା ଆପଣମାନେ ପୂର୍ଣ୍ଣ କରିବେ ।

ବ୍ରହ୍ମା କହୁଛନ୍ତି—ଶିବାଜ୍ଞାତତ୍ପର ଦେବତାଙ୍କ

କଥା ଶୁଣି ଅନ୍ୟ ସମସ୍ତ ଦେବତା ଓ ପାର୍ଷଦଙ୍କୁ ବହୁତ ଆନନ୍ଦ ଅନୁଭବ ହେଲା । ତା'ପରେ



ବ୍ରହ୍ମା-ବିଷ୍ଣୁ ପ୍ରଭୃତି ଦେବତା ସେମାନଙ୍କ ସ୍ୱାମୀ ନିର୍ଗୁଣସ୍ୱରୂପ ଭଗବାନ୍ ଶିବଙ୍କୁ ପ୍ରଣାମ କରି କହିଲେ—''ସ୍ୱାମିନ୍ ! ଆପଣଙ୍କର ଯେଉଁ ତେଜରୁ ଆମେ ସବୁ ଉତ୍ପନ୍ନ ହୋଇଛୁ, ସେହି ତେଜ ହିଁ ବେଦମନ୍ତ୍ର ପ୍ରଭାବରେ ଏ ବାଳକ ଦେହରେ ମଧ୍ୟ ପ୍ରବେଶ କରୁ ।'' ଏହିରୂପେ ସମସ୍ତ ଦେବତା ମିଳିମିଶି ବେଦମନ୍ତ୍ର ଦ୍ୱାରା ଜଳକୁ ଅଭିମନ୍ତ୍ରିତ କଲେ ଏବଂ ଶିବଙ୍କୁ ସ୍ମରଣ କରି ବାଳକ ଦେହରେ ଛିଞ୍ଚିଦେଲେ । ଅଭିମନ୍ତ୍ରିତ ଜଳର ସ୍ପର୍ଶ ପାଇବାମାତ୍ରେ ଶିବେଚ୍ଛାରୁ ବାଳକଟି ଜୀବିତ ହୋଇଗଲା ଏବଂ ନିଦ୍ରାରୁ ଉଠିବା ପରି ଉଠି ବସିଲା । ସେହି ସୌଭାଗ୍ୟଶାଳୀ ବାଳକଟି ଥିଲା ଅତ୍ୟନ୍ତ ସୁନ୍ଦର । ତାହାର ମୁଖ ଥିଲା ହାତୀର ମୁଖ ପରି । ଶରୀରର ରଙ୍ଗ ଥିଲା ଲାଲ । ମୁଖମଣ୍ଡଳରେ ପ୍ରସନ୍ନତା ଥିଲା । ଆକୃତି କମନୀୟ ଥିଲା ଓ ସୁନ୍ଦର ପ୍ରଭା ବିକଶିତ ହେଉଥିଲା । ମୁନୀଶ୍ୱର ! ପାର୍ବତୀନନ୍ଦନ ଜୀବିତ ହୋଇଯିବା ଦେଖି ସମସ୍ତେ ଆନନ୍ଦମଗ୍ନ ହୋଇଗଲେ ଏବଂ ସେମାନଙ୍କର ସକଳ ଦୁଃଖ ଦୂର ହୋଇଗଲା । ସେମାନେ ହର୍ଷରେ ବିଭୋର ହୋଇ ସେହି ବାଳକକୁ ନେଇ ପାର୍ବତୀଙ୍କୁ ଦେଖାଇଲେ । ପୁତ୍ର ଜୀବିତ ହୋଇଯିବା ଦେଖି ପାର୍ବତୀ ପରମ ପ୍ରସନ୍ନ ହେଲେ । (ଅଧ୍ୟାୟ ୧୩–୧୮)

❋❋❋

## ଗଣେଶଙ୍କୁ ପାର୍ବତୀଙ୍କ ବରଦାନ, ତାଙ୍କୁ ଅଗ୍ରପୂଜ୍ୟ ଭାବେ ଗ୍ରହଣ କରିବାକୁ ଦେବଗଣଙ୍କ ସମ୍ମତି, ଶିବଙ୍କ ଦ୍ୱାରା ଗଣେଶଙ୍କୁ ସର୍ବାଧ୍ୟକ୍ଷ ପଦ ପ୍ରଦାନ, ଗଣେଶ-ଚତୁର୍ଥୀ ବ୍ରତର ବର୍ଣ୍ଣନା ଏବଂ ଦେବତାମାନଙ୍କର ସହର୍ଷ ସ୍ୱସ୍ଥାନ ପ୍ରତ୍ୟାବର୍ତ୍ତନ

ବ୍ରହ୍ମା କହୁଛନ୍ତି—ମୁନେ ! ଗିରିଜାପୁତ୍ର ଗଜାନନ ଏଥର ବିଶେଷ ଆକୃତିଯୁକ୍ତ ହୋଇଗଲେ । ସେ ବ୍ୟଗ୍ରତାଶୂନ୍ୟ ହୋଇ ଉଠି ବସିବାରୁ ଗଣନାୟକ ଦେବତାମାନେ ତାଙ୍କର ଅଭିଷେକ କଲେ । ନିଜ ପୁତ୍ରକୁ ଜୀବିତ ଦେଖି ପାର୍ବତୀଦେବୀ ଆନନ୍ଦମଗ୍ନ ହୋଇଗଲେ ଏବଂ ସେ ହର୍ଷାତିରେକରେ ତାଙ୍କୁ ଦୁଇ ହାତରେ କୋଳକୁ ଟାଣି ଆଣି ଆଲିଙ୍ଗନ କଲେ । ତା'ପରେ ଅମ୍ବିକା ପ୍ରସନ୍ନ ହୋଇ ପୁତ୍ର ଗଣେଶଙ୍କୁ ଅନେକ ପ୍ରକାର ବସ୍ତ୍ର ଓ ଆଭୂଷଣ ପ୍ରଦାନ କଲେ । ତା'ପରେ ସିଦ୍ଧିମାନେ ଅନେକ ବିଧିବିଧାନରେ ତାଙ୍କୁ ପୂଜା କଲେ ଏବଂ ମାଆ ନିଜର ସର୍ବଦୁଃଖହାରୀ ହସ୍ତରେ ତାଙ୍କ ଦେହକୁ

ଆଉଁସି ଦେଲେ । ଏହିରୂପେ ଶିବପତ୍ନୀ ପାର୍ବତୀ ଗଣେଶଙ୍କୁ ଆଦର କରି ତାଙ୍କ ମୁଖରେ ଚୁମ୍ବନ ଦେଲେ ଏବଂ ସ୍ନେହରେ ବର ପ୍ରଦାନ କରି କହିଲେ—ପୁତ୍ର ! ତୋତେ ବହୁତ ବଡ଼ କଷ୍ଟ ସହିବାକୁ ପଡ଼ିଲା । କିନ୍ତୁ ଏବେ ତୁ କୃତକୃତ୍ୟ ହୋଇଗଲୁ । ତୁ ଧନ୍ୟ । ଏବେଠାରୁ ସମସ୍ତ ଦେବତାଙ୍କ ମଧ୍ୟରେ ତୋର ଅଗ୍ରପୂଜା ହେବ ଏବଂ ତୋତେ କଦାପି ଦୁଃଖର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ? ଏବେ ତୋ ମୁଖମଣ୍ଡଳରେ ସିନ୍ଦୂର ଶୋଭା ପାଉଛି; ଏଣୁ ମନୁଷ୍ୟ ତୋତେ ସିନ୍ଦୂରରେ ପୂଜା କରିବା ଉଚିତ । ଯେଉଁ ମନୁଷ୍ୟ ତୋତେ ପୁଷ୍ପ, ଚନ୍ଦନ, ସୁଗନ୍ଧିତ ଦ୍ରବ୍ୟ, ନୈବେଦ୍ୟ, ଆଳତି, ତାମ୍ବୁଳ ଇତ୍ୟାଦି ଅର୍ପଣ କରି ଏବଂ ପରିକ୍ରମା ଓ ନମସ୍କାର କରି ବିଧିପୂର୍ବକ ପୂଜା କରିବ, ତା'ର ସମସ୍ତ ସିଦ୍ଧି ହସ୍ତଗତ ହୋଇଯିବ ଏବଂ ତାହାର ସମସ୍ତ ପ୍ରକାର ବିଘ୍ନ ନଷ୍ଟ ହୋଇଯିବ—ଏଥିରେ ତିଳେମାତ୍ର ସଂଶୟ ନାହିଁ ।

ବ୍ରହ୍ମା କହୁଛନ୍ତି—ମୁନେ ! ଦେବୀ ମହେଶ୍ୱରୀ ତାଙ୍କ ପୁତ୍ର ଗଣେଶଙ୍କୁ ଏପରି କହି ତାଙ୍କୁ ନାନା ପ୍ରକାର ବସ୍ତୁ ପ୍ରଦାନ କରି ପୁନଃ ଅଭିନନ୍ଦନ କଲେ । ହେ ନାରଦ ! ଏଥର ଗିରିଜାଙ୍କ କୃପାରୁ ଦେବତା ଓ ଶିବଗଣଙ୍କ ମନ ପ୍ରଶାନ୍ତ ହୋଇଗଲା । ତା'ପରେ ଇନ୍ଦ୍ରାଦି ଦେବତା ହର୍ଷାତିରେକରେ ପାର୍ବତୀଙ୍କୁ ସ୍ତୁତି କଲେ ଏବଂ ତାଙ୍କୁ ପ୍ରସନ୍ନ କରିବା ପରେ ସେମାନେ ଭକ୍ତିଭାବିତ ଚିତ୍ତରେ ଗଣେଶଙ୍କୁ ନେଇ ଶିବଙ୍କ ନିକଟକୁ ଗଲେ । ସେଠାରେ ପହଞ୍ଚି ସେମାନେ ତ୍ରିଭୁବନର କଲ୍ୟାଣକାମନାରେ ଭବାନୀଙ୍କ ପୁତ୍ରଙ୍କୁ ଶିବଙ୍କ କୋଳରେ ବସାଇଦେଲେ । ଶିବ ମଧ୍ୟ ନିଜ କରକମଳରେ ଗଣେଶଙ୍କ ମସ୍ତକକୁ ଆଉଁସି ଦେଇ ଦେବତାଙ୍କୁ କହିଲେ—''ଏ ମୋର ଦ୍ୱିତୀୟ ପୁତ୍ର ।'' ତା'ପରେ ଗଣେଶ ଉଠିପଡ଼ି ଶିବଙ୍କ ଚରଣରେ ଅଭିବାଦନ କଲେ । ତା'ପରେ ପାର୍ବତୀଙ୍କୁ, ମୋତେ, ବିଷ୍ଣୁଙ୍କୁ ଓ ନାରଦ ପ୍ରଭୃତି ଋଷିମାନଙ୍କୁ ପ୍ରଣାମ କରିସାରି ସମ୍ମୁଖରେ ଛିଡ଼ା ହୋଇ କହିଲେ—''ଅଭିମାନ କରିବା ମନୁଷ୍ୟର ସ୍ୱଭାବ; ତେଣୁ ଆପଣମାନେ ମୋର ଅପରାଧ କ୍ଷମା କରନ୍ତୁ ।'' ତା'ପରେ ମୁଁ, ଶଙ୍କର ଓ ବିଷ୍ଣୁ—ଆମେ ତ୍ରିଦେବ ଏକାବେଳକେ ପ୍ରେମପୂର୍ବକ ତାଙ୍କୁ ଉତ୍ତମ ବର ପ୍ରଦାନ କରି ଦେବତାମାନଙ୍କୁ କହିଲୁ—''ସୁରେଶ୍ୱରଗଣ ! ତ୍ରିଲୋକରେ ଯେପରି ଆମ ତ୍ରିଦେବଙ୍କର ପୂଜା ହେଉଛି, ସେହିପରି ତୁମେ ସମସ୍ତେ ଏ ଗଣେଶଙ୍କୁ ମଧ୍ୟ ପୂଜା କରିବା ଉଚିତ । ଲୋକମାନେ ପ୍ରଥମେ ଏହାଙ୍କୁ ପୂଜା କରି ତା'ପରେ ଯାଇ ଆମ୍ଭମାନଙ୍କୁ ପୂଜା କରିବେ । ଏପରି କଲେ ଆମ୍ଭମାନଙ୍କ ପୂଜା ସମ୍ପନ୍ନ ହେବ । ଦେବଗଣ !



ଯଦି ଏହାଙ୍କ ପୂଜା ପ୍ରଥମେ ନ କରି ଅନ୍ୟ ଦେବତାଙ୍କୁ ପୂଜା କରାଯାଏ, ତେବେ ପୂଜନର ଫଳ ନଷ୍ଟ ହୋଇଯିବ । ଏଥିରେ ଅନ୍ୟଥା ବିଚାର କରିବାର ଆବଶ୍ୟକତା ନାହିଁ ।''

ବ୍ରହ୍ମା କହୁଛନ୍ତି–ମୁନେ ! ତା'ପରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଆଦି ସମସ୍ତ ଦେବତା ମିଶି ପାର୍ବତୀଙ୍କୁ ପ୍ରସନ୍ନ କରିବା ପାଇଁ ସେହିଠାରେ ଗଣେଶଙ୍କୁ 'ସର୍ବାଧ୍ୟକ୍ଷ' ଘୋଷିତ କରିଦେଲେ । ସେତେବେଳେ ଶିବ ପରମ ପ୍ରସନ୍ନ ହୋଇ ପୁନଃ ଗଣେଶଙ୍କୁ ଅନେକ ପ୍ରକାର ସୁଖପ୍ରଦ ବର ପ୍ରଦାନ କରି କହିଲେ–

ଶିବ କହିଲେ–ଗିରିଜାନନ୍ଦନ ! ମୁଁ ତୋ ଉପରେ ଅତ୍ୟନ୍ତ ପ୍ରସନ୍ନ । ମୁଁ ପ୍ରସନ୍ନ ହୋଇଗଲେ ସମଗ୍ର ଜଗତ ପ୍ରସନ୍ନ ହୋଇଗଲା ବୋଲି ବୁଝ । ଏବେ ତୋତେ କେହି ବିରୋଧ କରିପାରିବେ ନାହିଁ । ତୁ ଶକ୍ତିର ପୁତ୍ର, ତେଣୁ ଅତ୍ୟନ୍ତ ତେଜସ୍ୱୀ ହେବୁ । ବାଳକ ହୋଇଥିଲେ ମଧ୍ୟ ତୁ ମହାନ୍ ପରାକ୍ରମ ଦେଖାଇଛୁ, ଏଣୁ ତୁ ସଦା ସୁଖୀ ରହିବୁ । ବିଘ୍ନନାଶ କାର୍ଯ୍ୟରେ ତୋର ନାମ ସର୍ବଶ୍ରେଷ୍ଠ ହେବ । ତୁ ସମସ୍ତଙ୍କର ପୂଜ୍ୟ, ତେଣୁ ତୁ ଆଜିଠାରୁ ମୋର ଗଣମାନଙ୍କ ମଧ୍ୟରେ ଅଧ୍ୟକ୍ଷ ହେଲୁ ।

ଏହା କହି ମହାତ୍ମା ଶଙ୍କର ଅତ୍ୟନ୍ତ ପ୍ରସନ୍ନତା ହେତୁ ଗଣେଶଙ୍କୁ ପୁନଃ ବର ପ୍ରଦାନ କଲେ । ସେ କହିଲେ–"ଗଣେଶ୍ୱର ! ତୁ ଭାଦ୍ରବ ମାସର କୃଷ୍ଣପକ୍ଷ ଚତୁର୍ଥୀ ତିଥିରେ ଶୁଭ ଚନ୍ଦ୍ରୋଦୟ କାଳରେ ପ୍ରକଟ ହୋଇଛୁ । ଯେତେବେଳେ ଗିରିଜାଙ୍କ ସୁନ୍ଦର ଚିତ୍ତରେ ତୁମର ରୂପ ଆବିର୍ଭୂତ ହେଲା, ସେତେବେଳେ ରାତ୍ରିର ପ୍ରଥମ ପ୍ରହର ଚାଲିଥିଲା । ସେହିଦିନଠାରୁ ଆରମ୍ଭ କରି ବର୍ଷେ ପର୍ଯ୍ୟନ୍ତ ଉକ୍ତ ତିଥିରେ ମନୁଷ୍ୟ ସକଳ ସିଦ୍ଧି ନିମନ୍ତେ ତୋର ପରମ ଶୋଭନ ବ୍ରତ କରିବା ଉଚିତ । ବର୍ଷ ଶେଷରେ ଯେବେ ସେହି ତିଥି ପୁନଃ ଆସିବ, ସେପର୍ଯ୍ୟନ୍ତ ମୋ କଥନାନୁସାରେ ତୋ ବ୍ରତ କରିବା ଉଚିତ । ଯେଉଁ ବ୍ୟକ୍ତି ସଂସାରରେ ଅନେକ ପ୍ରକାର ଅନୁପମ ସୁଖ କାମନା କରେ, ସେ ଚତୁର୍ଥୀ ଦିନ ଭକ୍ତିଭାବରେ ବିଧିପୂର୍ବକ ତୋତେ ପୂଜା କରିବା ଉଚିତ । ବ୍ରତ କରିବାକୁ ଇଚ୍ଛୁକ ବ୍ୟକ୍ତି ମାର୍ଗଶିର ମାସ କୃଷ୍ଣପକ୍ଷର ଚତୁର୍ଥୀ ଦିନ ପ୍ରାତଃକାଳରୁ ସ୍ନାନ କରି ବ୍ରତ ପାଇଁ ବ୍ରାହ୍ମଣଙ୍କୁ ନିବେଦନ କରିବେ । ପୂର୍ବୋକ୍ତ ବିଧିରେ ଉପବାସ କରିବେ । ତା'ପରେ ଧାତୁ, ପ୍ରବାଳ, ଶ୍ୱେତାର୍କ ଅଥବା ମୃତ୍ତିକାର ମୂର୍ତ୍ତି ନିର୍ମାଣ କରି ତାହାକୁ ପ୍ରାଣ ପ୍ରତିଷ୍ଠା କରି ଭକ୍ତିଭାବରେ ନାନା ପ୍ରକାର ଦିବ୍ୟ ଗନ୍ଧ, ଚନ୍ଦନ ଓ ପୁଷ୍ପରେ ପୂଜା କରିବେ । ରାତ୍ରିର ପ୍ରଥମ ପ୍ରହର ଉପସ୍ଥିତ ହେଲେ ପୁନଃ ସ୍ନାନ କରି ଦୂର୍ବାଦଳରେ ପୂଜା କରିବେ । ସେହି ଦୂବରେ ମୂଳ ନ ଥିବ ଏବଂ ତାହା ବାରଆଙ୍ଗୁଳି ଲମ୍ବା ଓ ତିନିଗଣ୍ଠିଯୁକ୍ତ ହୋଇଥିବ । ଏପରି ଶହେଏକ ଅଥବା ଏକୋଇଶଟି ଦୂବରେ ସ୍ଥାପିତ ମୂର୍ତ୍ତିକୁ ପୂଜା କରିବେ । ତା'ପରେ ଧୂପ, ଦୀପ, ଅନେକ ପ୍ରକାର ନୈବେଦ୍ୟ, ତାମ୍ବୂଳ, ଅର୍ଘ୍ୟ ଓ ଉତ୍ତମ ଉତ୍ତମ ପଦାର୍ଥରେ ଗଣେଶଙ୍କୁ ପୂଜା ଏବଂ ସ୍ତୁତି କରି ତାଙ୍କୁ ପ୍ରଣିପାତ କରିବେ । ଗଣେଶଙ୍କୁ ପୂଜା କରି ସାରି ବାଳଚନ୍ଦ୍ରମାକୁ ପୂଜା କରିବେ । ତା'ପରେ ସହର୍ଷ ବ୍ରାହ୍ମଣଙ୍କୁ ପୂଜା କରିବେ ଏବଂ ତାଙ୍କୁ ମିଷ୍ଟାନ୍ନ ଭୋଜନ କରାଇବେ । ସେମାନେ ଭୋଜନ କରିସାରିବା ପରେ ନିଜେ ମଧ୍ୟ ବିନା ଲୁଣରେ ପ୍ରସ୍ତୁତ କେବଳ ମିଷ୍ଟ ପ୍ରସାଦ ପାଇବେ । ତା'ପରେ ଗଣେଶଙ୍କୁ ସ୍ମରଣ କରି ବ୍ରତ-ନିୟମକୁ ବିସର୍ଜନ କରିବେ । ଏପରି କଲେ ଏହି ଶୁଭବ୍ରତ ପୂର୍ଣ୍ଣ ହେବ ।

"ପୁତ୍ର ! ଏହିରୂପେ ବ୍ରତ କରି କରି ବର୍ଷେ ପୂର୍ଣ୍ଣ ହୋଇଗଲେ ବ୍ରତଧାରୀ ବ୍ୟକ୍ତି ବ୍ରତର ପୂର୍ଣ୍ଣତା ପାଇଁ ବ୍ରତ-ଉଦ୍ୟାପନ କାର୍ଯ୍ୟ ମଧ୍ୟ କରିବେ । ଏଥିରେ ମୋ ଆଜ୍ଞାନୁସାରେ ବାରଜଣ ବ୍ରାହ୍ମଣଙ୍କୁ ଭୋଜନ କରାଇବେ । ବ୍ରତୀ ବ୍ୟକ୍ତି ଗୋଟିଏ କଳଶ ସ୍ଥାପିତ କରି ତା' ଉପରେ ତୋ ମୂର୍ତ୍ତିକୁ ପୂଜା କରିବେ । ଏହାପରେ ବେଦବିଧି ଅନୁସାରେ

ବେଦି ନିର୍ମାଣ କରି ତା'ଉପରେ ଅଷ୍ଟଦଳ ପଦ୍ମ ଅଙ୍କିତ କରିବେ ଏବଂ କୃପଣତା ଛାଡ଼ି ତା'ଉପରେ ହୋମ କରିବେ । ପୁନଃ ମୂର୍ତ୍ତି ସମ୍ମୁଖରେ ଦୁଇଜଣ ନାରୀ ଓ ଦୁଇଟି ବାଳକଙ୍କୁ ବସାଇ ବିଧିପୂର୍ବକ ସେମାନଙ୍କୁ ପୂଜା କରିବେ ଏବଂ ସାଦର ଭୋଜନ କରାଇବେ । ରାତ୍ରିରେ ଜାଗରଣ କରିବେ । ସକାଳୁ ପୁନଃ ଗଣେଶ-ପୂଜନ କରି ପୁନରାଗମନ ପାଇଁ ବିସର୍ଜନ କରିଦେବେ । ବାଳକଙ୍କ ଠାରୁ ଆଶୀର୍ବାଦ ନେବେ, ସ୍ୱସ୍ତିବାଚନ କରାଇବେ ଏବଂ ବ୍ରତର ପୂର୍ଣ୍ଣତା ନିମନ୍ତେ ପୁଷ୍ପାଞ୍ଜଳି ନିବେଦିତ କରିବେ । ତା'ପରେ ନମସ୍କାର କରି ଅନ୍ୟାନ୍ୟ କାର୍ଯ୍ୟ ସମ୍ପନ୍ନ କରିବେ । ଏହିରୂପେ ଯେ ଏହି ବ୍ରତକୁ ପୂର୍ଣ୍ଣ କରେ, ତାକୁ ଅଭୀଷ୍ଟ ଫଳ ପ୍ରାପ୍ତ ହୁଏ । ଗଣେଶ ! ଯେ ଶ୍ରଦ୍ଧାରେ ନିଜ ଶକ୍ତି ଅନୁସାରେ ନିତ୍ୟ ତୋତେ ପୂଜା କରିବ, ତା'ର ସମସ୍ତ ମନୋରଥ ପୂର୍ଣ୍ଣ ହେବ । ମନୁଷ୍ୟ ସିନ୍ଦୂର, ଚନ୍ଦନ, ଗ୍ୱଉଳ, କେତକୀପୁଷ୍ପ ଆଦି ଅନେକ ଉପଗ୍ୱରଦ୍ୱାରା ଗଣେଶ୍ୱରଙ୍କୁ ପୂଜା କରିବା ଉଚିତ । ଏହିରୂପେ ଯେଉଁମାନେ ତୋତେ ପୂଜା କରିବେ, ସେମାନଙ୍କର ସମସ୍ତ ବିଘ୍ନ ସଦାକାଳ ପାଇଁ ନଷ୍ଟ ହୋଇଯିବ ଏବଂ ସେମାନଙ୍କର କାର୍ଯ୍ୟସିଦ୍ଧି ହେବ । ସବୁ ବର୍ଣ୍ଣର ଲୋକେ ବିଶେଷ କରି ସ୍ତ୍ରୀମାନେ ଏହି ପୂଜା ଅବଶ୍ୟ କରିବା ଉଚିତ ଏବଂ ଅଭ୍ୟୁଦୟ କାମନା କରୁଥିବା ରାଜା ପକ୍ଷେ ମଧ୍ୟ ଏହା ଅବଶ୍ୟ କରଣୀୟ । ବ୍ରତୀ ମନୁଷ୍ୟ ଯେଉଁ ବସ୍ତୁ କାମନା କରେ, ତାହା ତାକୁ ଅବଶ୍ୟ ପ୍ରାପ୍ତ ହୁଏ । ଏଣୁ କାମନାଯୁକ୍ତ ମନୁଷ୍ୟ ତୋତେ ନିଶ୍ଚିତରୂପେ ପୂଜା କରିବା ଉଚିତ ।''

ବ୍ରହ୍ମା କହୁଛନ୍ତି–ମୁନେ ! ଶିବ ଏହିପରି ବର ପ୍ରଦାନ କରିବାରୁ ସମସ୍ତ ଦେବତା, ଶ୍ରେଷ୍ଠ ଋଷିଗଣ ଏବଂ ଶିବଙ୍କ ପ୍ରିୟ ଗଣମାନେ 'ତଥାସ୍ତୁ' କହି ତାହାର ସମର୍ଥନ କଲେ ଏବଂ ବିଧିପୂର୍ବକ ଗଣାଧୀଶଙ୍କୁ ପୂଜା କଲେ । ତା'ପରେ ସମସ୍ତ ଶିବଗଣ ଆଦରରେ ନାନା ପ୍ରକାର ପୂଜନ-ସାମଗ୍ରୀରେ ଗଣେଶ୍ୱରଙ୍କୁ ବିଶେଷରୂପେ ପୂଜା-ଅର୍ଚ୍ଚନା କଲେ ଏବଂ ତାଙ୍କ ଚରଣରେ ପ୍ରଣାମ କଲେ । ସେତେବେଳେ ଗିରିଜାଦେବୀଙ୍କୁ ଯେଉଁ ଆନନ୍ଦ ମିଳିଲା, ତାହାକୁ ମୁଁ ମୋର ଗ୍ୱରିମୁଖରେ ମଧ୍ୟ ବର୍ଣ୍ଣନା କରି ପାରିବି ନାହିଁ । ସେତେବେଳେ ଦେବଦୁନ୍ଦୁଭିମାନ ବାଜିଉଠିଲା । ଅପ୍ସରାଗଣ ନୃତ୍ୟ କଲେ । ଶ୍ରେଷ୍ଠ ଗନ୍ଧର୍ବମାନେ ଗୀତ ଗାଇଲେ ଏବଂ ଆକାଶରୁ ପୁଷ୍ପବୃଷ୍ଟି ହେଲା । ଗଣେଶ ଗଣାଧୀଶପଦରେ ପ୍ରତିଷ୍ଠିତ ହେବାରୁ ସେଠାରେ ମହାନ୍ ଉତ୍ସବ ହେଲା । ସମଗ୍ର ଜଗତରେ ଶାନ୍ତି ସ୍ଥାପିତ ହୋଇଗଲା ଏବଂ ସମସ୍ତଙ୍କର ଦୁଃଖ ନାଶ ହେଲା । ଶିବ ଓ ପାର୍ବତୀଙ୍କୁ ଏହାଦ୍ୱାରା ବିଶେଷ ଆନନ୍ଦ ପ୍ରାପ୍ତ ହେଲା । ସର୍ବତ୍ର ଅନେକ ପ୍ରକାର ସୁଖଦାୟକ ମଙ୍ଗଳକୃତ୍ୟମାନ ହେବାକୁ ଲାଗିଲା । ତା'ପରେ ସେଠାକୁ ଆସିଥିବା ଦେବଗଣ ଓ ଋଷିଗଣ ଶିବଙ୍କ ଆଜ୍ଞାରେ ନିଜ ନିଜ ସ୍ଥାନକୁ ଫେରିଗଲେ । ଯିବାବେଳେ ସେମାନେ ଶିବଙ୍କୁ ସ୍ତୁତି କରୁଥିଲେ ଗଣେଶଙ୍କୁ ଓ ପାର୍ବତୀଙ୍କୁ ବାରମ୍ବାର ପ୍ରଶଂସା କରୁଥିଲେ ଏବଂ ପରସ୍ପର ମଧ୍ୟରେ ସେହି ଅଦ୍ଭୁତ ଯୁଦ୍ଧ ବିଷୟରେ ଚର୍ଚ୍ଚା କରୁଥିଲେ ।

ହେ ନାରଦ! ଗିରିଜାଦେବୀଙ୍କ କ୍ରୋଧ ଶାନ୍ତ ହୋଇସାରିଥିଲା, ତେଣୁ ସ୍ୱାତ୍ମାରାମ ହୋଇ ମଧ୍ୟ ଭକ୍ତଙ୍କ କାର୍ଯ୍ୟ ସିଦ୍ଧ କରିବା ନିମନ୍ତେ ସଦା ଉଦ୍ୟତ ରହୁଥିବା ଭଗବାନ ଶିବ ଗିରିଜାଙ୍କ ନିକଟକୁ ଯାଇ ଜଗତର ହିତକାମନାରେ ପୂର୍ବବତ୍ ନାନା ପ୍ରକାର ସୁଖଦାୟକ କାର୍ଯ୍ୟ କରିବାରେ ରତ ରହିଲେ । ବ୍ରହ୍ମା ଓ ବିଷ୍ଣୁ ଶିବପାର୍ବତୀଙ୍କ ଆଜ୍ଞା ନେଇ ନିଜ ନିଜ ଧାମକୁ ଲେଉଟିଗଲେ ।

ହେ ନାରଦ! ଯେଉଁ ବ୍ୟକ୍ତି ଜିତେନ୍ଦ୍ରିୟ ହୋଇ ଏହି ପରମ ମାଙ୍ଗଳିକ ଆଖ୍ୟାନକୁ ଶ୍ରବଣ

କରେ, ସେ ସମସ୍ତ ମଙ୍ଗଳର ଭାଗୀ ହୋଇ ମଙ୍ଗଳଭବନ ହୋଇଯାଏ । ଏହାକୁ ଶ୍ରବଣ କଲେ ପୁତ୍ରହୀନକୁ ପୁତ୍ର, ନିର୍ଦ୍ଧନକୁ ଧନ, ଭାର୍ଯ୍ୟାର୍ଥୀକୁ ଭାର୍ଯ୍ୟା, ପ୍ରଜାର୍ଥୀକୁ ପ୍ରଜା, ରୋଗୀକୁ ଆରୋଗ୍ୟ ଏବଂ ଭାଗ୍ୟହୀନକୁ ସୌଭାଗ୍ୟ ପ୍ରାପ୍ତି ହୋଇଥାଏ । ଯେଉଁ ସ୍ତ୍ରୀର ପୁତ୍ର ଓ ଧନ ନଷ୍ଟ ହୋଇଯାଇଥାଏ, ତାକୁ ତାହା ମିଳିଯାଏ ଏବଂ ଯାହାର ସ୍ୱାମୀ ବିଦେଶ ଚ୍ଳିଯାଇଥାଏ, ତାକୁ ତା'ର ସ୍ୱାମୀ ମିଳିଯାଏ । ଶୋକସାଗରରେ ବୁଡ଼ି ଯାଉଥିବା ଲୋକ ନିଃସନ୍ଦେହରେ ଶୋକମୁକ୍ତ ହୋଇଯାଏ । ଉକ୍ତ ଗଣେଶ ଚରିତ୍ର ସମ୍ବନ୍ଧୀୟ ଗ୍ରନ୍ଥ ଯାହାର ଘରେ ସଦା ବିଦ୍ୟମାନ ରହିଥାଏ, ସେ ଯେ ମଙ୍ଗଳ ସମ୍ପନ୍ନ ହୋଇଥାଏ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଯେ ଯାତ୍ରାକାଳରେ ଅଥବା ଅନ୍ୟ କୌଣସି ପୁଣ୍ୟପର୍ବରେ ଏହାକୁ ମନ ଲଗାଇ ଶୁଣେ, ତାକୁ ଶ୍ରୀଗଣେଶଙ୍କ ପ୍ରସାଦରୁ ସମସ୍ତ ଅଭୀଷ୍ଟ ଫଳ ମିଳିଥାଏ ।

(ଅଧ୍ୟାୟ ୧୯)



## କାର୍ତ୍ତିକେୟ ଓ ଗଣେଶଙ୍କର ବାଲ୍ୟ ଲୀଳା, ଉଭୟଙ୍କ ମଧ୍ୟରେ ବିବାହବିଷୟକ ବିବାଦ, ଶିବଙ୍କ ମୁଖରୁ ପୃଥିବୀ-ପରିକ୍ରମାର ଆଦେଶ, କାର୍ତ୍ତିକେୟଙ୍କର ପରିକ୍ରମା ନିମନ୍ତେ ପ୍ରସ୍ଥାନ, ଗଣେଶ ମାତାପିତାଙ୍କୁ ପରିକ୍ରମା କରି ତାହାକୁ ପୃଥିବୀ-ପରିକ୍ରମା ବୋଲି ସ୍ୱୀକାର କରାଇବା, ବିଶ୍ୱରୂପଙ୍କ କନ୍ୟାଙ୍କ ସଙ୍ଗେ ଗଣେଶଙ୍କ ବିବାହ ଏବଂ ତାଙ୍କଠାରୁ କ୍ଷେମ ଓ ଲାଭ ନାମକ ଦୁଇଟି ପୁତ୍ରଙ୍କ ଜନ୍ମ, ପରିକ୍ରମାରୁ କୁମାରଙ୍କ ପ୍ରତ୍ୟାବର୍ତ୍ତନ ଓ କ୍ଷୁବ୍ଧ ହୋଇ କ୍ରୌଞ୍ଚ ପର୍ବତକୁ ପଳାୟନ, କୁମାରଖଣ୍ଡ ଶ୍ରବଣର ମହିମା

ନାରଦ ପଚ୍ଚାରିଲେ–ହେ ତାତ ! ମୁଁ ଗଣେଶଙ୍କ ଜନ୍ମସମ୍ବନ୍ଧୀୟ ଅନୁପମ ବୃତ୍ତାନ୍ତ ତଥା ପରମ ପରାକ୍ରମରେ ଶୋଭିତ ତାଙ୍କର ଦିବ୍ୟ ଚରିତ୍ର ଶ୍ରବଣ କଲି । ହେ ସୁରେଶ୍ୱର ! ତା'ପରେ ଆଉ କି ଘଟଣା ଘଟିଲା, ତାହା ମୋତେ କୁହନ୍ତୁ । କାରଣ ପିତୃଦେବ ! ଶିବ ଓ ପାର୍ବତୀଙ୍କ ଉଜ୍ଜ୍ୱଳ ଯଶ ମହାନ୍ ଆନନ୍ଦ ପ୍ରଦାନ କରେ ।

ବ୍ରହ୍ମା କହୁଛନ୍ତି–ହେ ମୁନିଶ୍ରେଷ୍ଠ ! ତୁମେ ବଡ଼ କାରୁଣିକ । ତୁମେ ଅତି ଉତ୍ତମ କଥା ପଚ୍ଚାରିଛ । ଏବେ ମୁଁ ସେହି କଥା କହୁଛି, ମନ ଦେଇ ଶୁଣ । ହେ ଋଷିସତ୍ତମ! ଶିବ ଓ ପାର୍ବତୀ ସେମାନଙ୍କର ଦୁଇ ପୁତ୍ରଙ୍କ ବାଲ୍ୟ ଲୀଳା ଦେଖି ଆନନ୍ଦରେ ମଗ୍ନ ହୋଇଯାଉଥିଲେ । ପୁତ୍ରଙ୍କ ଲାଳନ-ପାଳନ କରିବାରେ ପିତାମାତାଙ୍କର ସୁଖ ଦିନକୁ ଦିନ ବଢ଼ିବାକୁ ଲାଗିଲା ଏବଂ ପୁତ୍ର ଦୁହେଁ ପରସ୍ପରିକ ପ୍ରେମରେ ଓ ଖୁସୀରେ ଅନେକ ପ୍ରକାର ଲୀଳାଖେଳା କରୁଥିଲେ । ମୁନୀଶ୍ୱର ! ଗଣେଶ ଓ କାର୍ତ୍ତିକେୟ ଭକ୍ତିପୂରିତ ଚିତ୍ତରେ ପିତାମାତାଙ୍କ ପରିଚର୍ଯ୍ୟା କରୁଥିଲେ । ଏହାଦ୍ୱାରା ସେ ଦୁହିଙ୍କ ପ୍ରତି ପିତାମାତାଙ୍କର ପରମ ସ୍ନେହ ଶୁକ୍ଳପକ୍ଷର ଚନ୍ଦ୍ର ପରି ବଢ଼ିବାକୁ ଲାଗିଲା । ଥରେ ଶିବ ଓ ଶିବା ଏକାନ୍ତରେ ବସି ପରସ୍ପର ମଧ୍ୟରେ ବିଚ୍ଚାର କଲେ ଯେ "ଆମର ପୁତ୍ର ଦୁହେଁ ବିବାହର ଯୋଗ୍ୟ ହୋଇଗଲେଣି । ଏବେ ଏ ଦୁହିଙ୍କର ବିବାହ କରିଦେବା ଉଚିତ । ଆମକୁ ତ ଷଡ଼ାନନ ଯେତିକି ପ୍ରିୟ, ଗଜାନନ ବି

ସେତିକି ପ୍ରିୟ।'' ଏହିପରି ଚିନ୍ତା କରି ଉଭୟେ ଲୀଳାବଶତଃ ଆନନ୍ଦମଗ୍ନ ହୋଇଗଲେ। ମୁନେ! ପିତାମାତାଙ୍କ ବିଚାରକୁ ଜାଣିପାରି ପୁତ୍ର ଦୁହିଙ୍କ ମନରେ ମଧ୍ୟ ବିବାହର ଇଚ୍ଛା ଜାଗି ଉଠିଲା। ସେ ଦୁହେଁ 'ପ୍ରଥମେ ମୁଁ ବିବାହ କରିବି', 'ନା-ନା ପ୍ରଥମେ ମୁଁ ବିବାହ କରିବି'—ଏହିପରି ବାରଂବାର କୁହାକୁହି ହୋଇ ପରସ୍ପର ମଧ୍ୟରେ ବାଦ-ବିବାଦ କଲେ। ଜଗତର ଅଧୀଶ୍ୱର ଶିବ-ଦମ୍ପତି ପୁତ୍ରଙ୍କର ବିବାଦ ଶୁଣିବା ପରେ ଲୌକିକ ଆଚରଣ ପ୍ରଦର୍ଶନ କରି ଆଶ୍ଚର୍ଯ୍ୟରେ ପଡ଼ିଗଲେ। କିଛି କାଳ ପରେ ସେମାନେ ପୁତ୍ର ଦୁହିଙ୍କୁ ଡାକି ଏହିପରି କହିଲେ—

ଶିବ-ପାର୍ବତୀ କହିଲେ—ସୁପୁତ୍ରମାନେ! ଆମେ ଦୁହେଁ ପ୍ରଥମରୁ ଗୋଟିଏ ନିର୍ଣ୍ଣୟ ନେଇଛୁ, ତାହା ତୁମ ଦୁହିଙ୍କ ପାଇଁ ସୁଖଦାୟକ ହେବ। ଏବେ ତାହାକୁ ସ୍ପଷ୍ଟରୂପେ ବର୍ଣ୍ଣନା କରୁଛୁ ଶୁଣ। ଆମ ପାଇଁ ତୁମେ ଦୁହେଁ ସମାନରୂପେ ପ୍ରିୟ; ଆମର କାହା ପ୍ରତି ବେଶୀ ବା କମ୍ ସ୍ନେହ ନାହିଁ। ତୁମ ଦୁହିଙ୍କ ବିବାହ ପାଇଁ ଆମେ ଗୋଟିଏ ସର୍ତ୍ତ ରଖିଛୁ, ଯାହା କି ତୁମ ଦୁହିଙ୍କ ପାଇଁ କଲ୍ୟାଣକାରୀ ହେବ। ତାହା ହେଲା—ତୁମ ଦୁହିଙ୍କ ଭିତରୁ ଯିଏ ସମଗ୍ର ପୃଥିବୀକୁ ପରିକ୍ରମା କରି ପ୍ରଥମେ ଫେରିବ, ତା'ର ଶୁଭ ବିବାହ ପ୍ରଥମେ କରାଯିବ।

ବ୍ରହ୍ମା କହୁଛନ୍ତି—ମୁନେ! ପିତାମାତାଙ୍କ କଥା ଶୁଣିବାମାତ୍ରେ ଶରଜନ୍ମା ମହାବଳୀ କାର୍ତ୍ତିକେୟ ପୃଥିବୀ ପରିକ୍ରମା କରିବା ପାଇଁ ଅବିଳମ୍ବେ ବାହାରିଗଲେ। ପରନ୍ତୁ ଅଗାଧ ବୁଦ୍ଧିସମ୍ପନ୍ନ ଗଣେଶ ସେହିଠାରେ ଛିଡ଼ା ହୋଇ ରହିଲେ। ସେ ନିଜର ବୁଦ୍ଧି ପ୍ରୟୋଗ କରି ବାରମ୍ବାର ବିଚାର କଲେ ''ଏବେ ମୁଁ କ'ଣ କରିବି? କେଉଁଠିକି ଯିବି? ପୃଥିବୀ ପରିକ୍ରମା ତ ବହୁତ କଠିନ କାର୍ଯ୍ୟ। କୋଶେ ବାଟ ଚାଲିବା ପରେ ଆଉ ଅଧିକ ଚାଲିବା ମୋ ଦ୍ୱାରା ସମ୍ଭବ ହେବ ନାହିଁ। ପୁଣି ସମଗ୍ର ପୃଥିବୀ ପରିକ୍ରମା କରି ମୁଁ କିପରି ସୁଖୀ ହୋଇପାରିବି ଭଲା? ଏହା ବିଚାର କରି ଗଣେଶ



ଯେଉଁ ଉପାୟ କଲେ, ଶୁଣ। ସେ ଘରକୁ ଫେରିଆସି ବିଧିପୂର୍ବକ ସ୍ନାନ କଲେ ଏବଂ ପିତାମାତାଙ୍କୁ ଏହିପରି କହିଲେ—

ଗଣେଶ କହିଲେ—ବାପା! ମାଆ! ମୁଁ ଆପଣଙ୍କୁ ପୂଜା କରିବା ପାଇଁ ଏଠାରେ ଦୁଇଟି ଆସନ ବିଛାଇଛି। ଆପଣ ଦୁହେଁ ତା' ଉପରେ ବସିଯାଆନ୍ତୁ ଏବଂ ମୋର ମନୋରଥ ପୂର୍ଣ୍ଣ କରନ୍ତୁ।

ବ୍ରହ୍ମା କହୁଛନ୍ତି—ମୁନେ! ଗଣେଶଙ୍କ କଥା ଶୁଣି ପାର୍ବତୀ ଓ ପରମେଶ୍ୱର ଗଣେଶଙ୍କ ପୂଜା ଗ୍ରହଣ କରିବା ପାଇଁ ସେଠାରେ ବସିଗଲେ। ତା'ପରେ ଗଣେଶ ବିଧିପୂର୍ବକ ସେ ଦୁହିଙ୍କୁ ପୂଜା କଲେ ଏବଂ ବାରମ୍ବାର ପ୍ରଣାମ କରି ତାଙ୍କୁ ସାତ ଥର ପ୍ରଦକ୍ଷିଣ କଲେ। ପୁତ୍ର ନାରଦ! ଗଣେଶ ତ ବୁଦ୍ଧିର ସାଗର, ସେ ହାତ ଯୋଡ଼ି ସ୍ନେହବିହ୍ୱଳ

ପିତାମାତାଙ୍କୁ ନାନା ପ୍ରକାରେ ସ୍ତୁତି କରିବା ପରେ କହିଲେ—

ଗଣେଶ କହିଲେ—ମାଆ ! ବାପା ! ମୁଁ ଗୋଟିଏ ଭଲ କଥା କହୁଛି, ଶୁଣନ୍ତୁ । ଯଥାଶୀଘ୍ର ମୋର ଶୁଭ ବିବାହ କରିଦିଅନ୍ତୁ ।

ବ୍ରହ୍ମା କହୁଛନ୍ତି—ମୁନେ ! ମହାତ୍ମା ଗଣେଶଙ୍କ ମୁଖରୁ ଏଭଳି କଥା ଶୁଣି ପିତାମାତା ମହାବୁଦ୍ଧିମାନ୍ ଗଣେଶଙ୍କୁ କହିଲେ—

ଶିବା ଓ ଶିବ କହିଲେ—ପୁତ୍ର ! ତୁ ପ୍ରଥମେ କାନନ ସମେତ ସମଗ୍ର ପୃଥିବୀକୁ ପରିକ୍ରମା କରିଆସିଲେ ସିନା ବିବାହ ହେବ? କୁମାର ତ ଚାଲିଗଲାଣି, ତୁ ମଧ୍ୟ ଯା'; ଆଉ ସେ ଫେରିବା ପୂର୍ବରୁ ତୁ ଫେରିଆ (ତେବେ ସିନା ତୋ ବିବାହ ପ୍ରଥମେ କରାଯିବ) ।

ବ୍ରହ୍ମା କହୁଛନ୍ତି—ମୁନେ ! ପିତାମାତାଙ୍କ କଥା ଶୁଣି ଗଣେଶ ସଂଯମର ସହିତ ଟିକିଏ କୁପିତ ହୋଇ କହିଲେ—

ଗଣେଶ କହିଲେ—ମାଆ ! ବାପା ! ଆପଣ ଦୁହେଁ ସର୍ବଶ୍ରେଷ୍ଠ, ଧର୍ମସ୍ୱରୂପ ଓ ମହାବୁଦ୍ଧିମାନ୍; ତେଣୁ ଧର୍ମାନୁସାରେ ମୋ କଥା ଶୁଣନ୍ତୁ । ମୁଁ ତ ସାତ ଥର ପୃଥିବୀ ପରିକ୍ରମା କରିସାରିଲିଣି, ପୁଣି ଆପଣମାନେ ଏଭଳି କାହିଁକି କହୁଛନ୍ତି?

ବ୍ରହ୍ମା କହୁଛନ୍ତି—ମୁନେ ! ଶିବ ଓ ଶିବା ତ ଲୀଳାର ଆନନ୍ଦ ନେଉଥିଲେ, ସେ ଗଣେଶଙ୍କ କଥା ଶୁଣି ଲୌକିକ ଗତିର ଅନୁକରଣରେ କହିଲେ—

ଶିବ-ପାର୍ବତୀ କହିଲେ—ପୁତ୍ର ! ତୁ ସମୁଦ୍ର ପର୍ଯ୍ୟନ୍ତ ବିସ୍ତାରିତ ତଥା ବଡ଼ ବଡ଼ କାନନରେ ପରିବ୍ୟାପ୍ତ ଏତେ ବିଶାଳ ସପ୍ତଦ୍ୱୀପବତୀ ପୃଥିବୀକୁ କେତେବେଳେ ପରିକ୍ରମା କଲୁ?

ବ୍ରହ୍ମା କହୁଛନ୍ତି—ମୁନେ ! ଶିବପାର୍ବତୀଙ୍କ ପ୍ରଶ୍ନ ଶୁଣି ମହାବୁଦ୍ଧିମାନ୍ ଗଣେଶ ଏହିପରି କହିଲେ—

ଗଣେଶ କହିଲେ—ଆପଣ ଶିବ-ପାର୍ବତୀ ହେଉଛନ୍ତି ମୋର ପିତାମାତା । ମୁଁ ମୋ ବୁଦ୍ଧି ଅନୁସାରେ ଆପଣମାନଙ୍କୁ ପୂଜା କରି ପ୍ରଦକ୍ଷିଣ କରି ସାରିଛି । ତେଣୁ ମୋର ତ ସମୁଦ୍ରପର୍ଯ୍ୟନ୍ତ ସମଗ୍ର ପୃଥିବୀର ପରିକ୍ରମା ପୂର୍ଣ୍ଣ ହୋଇଗଲା । ପ୍ରଥମେ ଗୋଟିଏ କଥା କୁହନ୍ତୁ ଯେ ଧର୍ମର ସଂଗ୍ରହସ୍ୱରୂପ ବେଦ ଓ ଶାସ୍ତ୍ରରେ ଯେଉଁ ବଚନ ମିଳେ, ତାହା ସତ୍ୟ ନା ଅସତ୍ୟ? ସେଥିରେ କଥିତ ଅଛି—''ଯେଉଁ ପୁତ୍ର ପିତାମାତାଙ୍କୁ ପୂଜା କରି ତାଙ୍କୁ ପ୍ରଦକ୍ଷିଣ କରେ, ତାକୁ ପୃଥିବୀ ପରିକ୍ରମାଜନିତ ଫଳ ସୁଲଭ ହୋଇଯାଏ । ଯେ ପିତାମାତାଙ୍କୁ ଘରେ ଛାଡ଼ି ତୀର୍ଥଯାତ୍ରା ନିମନ୍ତେ ବାହାରିଯାଏ, ସେ ପିତାମାତାଙ୍କ ହତ୍ୟା ସମକକ୍ଷ ପାପରେ ଭାଗୀ ହୁଏ; କାରଣ ପୁତ୍ର ପାଇଁ ପିତାମାତାଙ୍କ ଚରଣସରୋଜ ହିଁ ମହାନ୍ ତୀର୍ଥ । ଅନ୍ୟ ତୀର୍ଥ ତ ଦୂରକୁ ଗଲେ ପ୍ରାପ୍ତ ହୋଇଥାଏ, ପରନ୍ତୁ ଧର୍ମର ସାଧନଭୂତ ଏହି ତୀର୍ଥ ତ ଅତି ନିକଟରେ ହିଁ ସୁଲଭ ହୋଇଥାଏ । ପୁତ୍ର ନିମନ୍ତେ ପିତାମାତା ଏବଂ ସ୍ତ୍ରୀ ନିମନ୍ତେ ସ୍ୱାମୀ—ଏ ଦୁଇଟି ସୁନ୍ଦର ତୀର୍ଥ ତ ଘରେ ହିଁ ବିଦ୍ୟମାନ ।'' ଏପରି ବାକ୍ୟକୁ ଯେଉଁ ବେଦଶାସ୍ତ୍ର ନିରନ୍ତର ଉଦ୍‌ଘୋଷିତ କରୁଛନ୍ତି, ତାହାକୁ କ'ଣ ଆପଣମାନେ ଅସତ୍ୟ ପ୍ରତିପାଦନ କରିବେ? ଆଉ ଯଦି ତାହା ଅସତ୍ୟ ହୋଇଯିବ, ତେବେ ବେଦ ମଧ୍ୟ ନିଶ୍ଚିତରୂପେ ଅସତ୍ୟ ପ୍ରମାଣିତ ହୋଇଯିବ ଏବଂ ବେଦଦ୍ୱାରା ବର୍ଣ୍ଣିତ ଆପଣଙ୍କର ଏହି ସ୍ୱରୂପ ମଧ୍ୟ ମିଥ୍ୟା ପ୍ରମାଣିତ ହେବ । ଏଣୁ ଖୁବ୍ ଶୀଘ୍ର ମୋର ଶୁଭ ବିବାହ କରିଦିଅନ୍ତୁ ଅଥବା ଏତିକି କହି ଦିଅନ୍ତୁ ଯେ ବେଦଶାସ୍ତ୍ର ମିଥ୍ୟା । ଆପଣ ଦୁହେଁ ଧର୍ମସ୍ୱରୂପ, ତେଣୁ ଭଲଭାବେ ବିଚାର କରି ଏ ଦୁଇଟି ମଧ୍ୟରୁ ଯେଉଁଟିକୁ ପରମୋତ୍ତମ ମନେ କରୁଛନ୍ତି, ତାହାକୁ ପ୍ରଯତ୍ନପୂର୍ବକ କରିବା ଉଚିତ ।

ବ୍ରହ୍ମା କହୁଛନ୍ତି—ମୁନେ ! ପରମ ବୁଦ୍ଧିମାନ୍ ମହାଜ୍ଞାନୀ ପାର୍ବତୀନନ୍ଦନ ଗଣେଶ ଏତିକି କହି ଚୁପ୍ ହୋଇଗଲେ । ଶିବ ଓ ପାର୍ବତୀ ଗଣେଶଙ୍କ ତର୍କସଙ୍ଗତ କଥା ଶୁଣି ବିସ୍ମିତ ହୋଇଗଲେ । ସେମାନେ ତାଙ୍କର ଯଥାର୍ଥଭାଷୀ ଓ ଅଦ୍ଭୁତ ବୁଦ୍ଧିସମ୍ପନ୍ନ ପୁତ୍ର ଗଣେଶଙ୍କୁ ପ୍ରଶଂସା କରି କହିଲେ—

ଶିବା ଓ ଶିବ କହିଲେ—ପୁତ୍ର ! ତୁ ଅତ୍ୟନ୍ତ ଆତ୍ମବଳସମ୍ପନ୍ନ, ତେଣୁ ତୋ'ଠାରେ ଏପରି ନିର୍ମଳ ବୁଦ୍ଧି ଉତ୍ପନ୍ନ ହୋଇଛି । ତୁ ଯେଉଁ କଥା କହୁଛୁ, ତାହା ସମ୍ପୂର୍ଣ୍ଣ ସତ୍ୟ । ସେଥିରେ କିଛି ବି ଅନ୍ୟଥା ନାହିଁ । ଦୁଃଖ ସମୟରେ ଯାହାର ବୁଦ୍ଧି ବିଶେଷରୂପେ କାମ କରେ, ତା'ର ଦୁଃଖ ସୂର୍ଯ୍ୟ ଉଦୟ ହେବା ପରେ ଅନ୍ଧକାର ନଷ୍ଟ ହେବା



ପରି ନଷ୍ଟ ହୋଇଯାଏ । ଯାହା ପାଖରେ ବୁଦ୍ଧି ଅଛି, ସେ ହିଁ ପ୍ରକୃତରେ ବଳବାନ୍ । ବୁଦ୍ଧିହୀନ ପାଖରେ ବା କି ବଳ ଅଛି ? ପୁତ୍ର ! ବେଦଶାସ୍ତ୍ର ଓ ପୁରାଣରେ ପୁତ୍ର ପାଇଁ ଧର୍ମପାଳନର ଯେଉଁ କଥା ସବୁ କୁହାଯାଇଛି, ତାହା ତୁ ପୂର୍ଣ୍ଣ କରିଛୁ । ତୁ ଯେଉଁ କାମ କରିଛୁ, ତାହା ଆଉ କିଏ କରିପାରିବ ଭଲା । ଆମେ ତୋ କଥାକୁ ମାନିନେଲୁ । ଆମେ ଏହାର ବିପରୀତ କାର୍ଯ୍ୟ କରିବୁ ନାହିଁ ।

ବ୍ରହ୍ମା କହୁଛନ୍ତି—ନାରଦ ! ଏପରି କହି ସେ ଦୁହେଁ ବୁଦ୍ଧିସାଗର ଗଣେଶଙ୍କୁ ସାନ୍ତ୍ୱନା ଦେଲେ ଏବଂ ସେମାନେ ତାଙ୍କ ବିବାହ କରିବାକୁ ମନସ୍ଥ କଲେ । ଇତିମଧ୍ୟରେ ପ୍ରଜାପତି ବିଶ୍ୱରୂପ ଶିବଙ୍କ ମନର ଭାବନାକୁ ଜାଣି ପରମ ସୁଖ ଅନୁଭବ କଲେ । ବିଶ୍ୱରୂପଙ୍କର ଦୁଇଟି ଦିବ୍ୟରୂପସମ୍ପନ୍ନା ଏବଂ ସର୍ବାଙ୍ଗଶୋଭନା କନ୍ୟା ଥିଲେ । ସେ ଦୁହିଙ୍କ ନାମ ଥିଲା 'ସିଦ୍ଧି' ଓ 'ବୁଦ୍ଧି' । ଶିବପାର୍ବତୀ ସେହି ଦୁହିଙ୍କ ସଙ୍ଗେ ସହର୍ଷ ଗଣେଶଙ୍କର ବିବାହ-ସଂସ୍କାର କରାଇଦେଲେ । ଉକ୍ତ ବିବାହ ଅବସରରେ ସମସ୍ତ ଦେବତା ସହର୍ଷ ପଦାର୍ପଣ କଲେ । ଶିବ ଓ ଶିବାଙ୍କର ଇଚ୍ଛାନୁସାରେ ବିଶ୍ୱକର୍ମା ହିଁ ବିବାହକାର୍ଯ୍ୟ ସମ୍ପନ୍ନ କଲେ । ଗଣେଶଙ୍କ ବିବାହୋତ୍ସବ ଦେଖି ଦେବଗଣ ଓ ଋଷିଗଣଙ୍କୁ ବହୁତ ସୁଖ ମିଳିଲା । ମୁନେ ! ଗଣେଶଙ୍କୁ ମଧ୍ୟ ଉକ୍ତ ଦୁଇ ପତ୍ନୀଙ୍କ ଠାରୁ ଯେଉଁ ସୁଖ ମିଳିଲା, ତାହା ଅବର୍ଣ୍ଣନୀୟ । କିଛି କାଳ ପରେ ମହାତ୍ମା ଗଣେଶଙ୍କର ଦୁଇ ପତ୍ନୀଙ୍କ ଠାରୁ ଦୁଇଟି ଦିବ୍ୟ ପୁତ୍ର ଉତ୍ପନ୍ନ ହେଲେ । ଗଣେଶଙ୍କ ପତ୍ନୀ ସିଦ୍ଧିଙ୍କ ଗର୍ଭରୁ 'କ୍ଷେମ' ନାମକ ପୁତ୍ର ଉତ୍ପନ୍ନ ହେଲା ଏବଂ ବୁଦ୍ଧିଙ୍କ ଗର୍ଭରୁ ଯେଉଁ ପରମ ସୁନ୍ଦର ପୁତ୍ର ଜନ୍ମ ଗ୍ରହଣ କଲା, ତାହାର ନାମ ହେଲା 'ଲାଭ' । ଏହି ପ୍ରକାରେ ଗଣେଶ ଅଚିନ୍ତ୍ୟ ସୁଖ ଭୋଗ କଲେ । ଏହାପରେ ଶିବଙ୍କର ଅନ୍ୟତମ ପୁତ୍ର କାର୍ତ୍ତିକେୟ ପୃଥିବୀ ପରିକ୍ରମା କରିସାରି ଫେରିଲେ । ସେତିକିବେଳେ ନାରଦ ଆସି କୁମାର ସ୍କନ୍ଦଙ୍କୁ ସମସ୍ତ ସମାଗ୍ଚାର ଶୁଣାଇଦେଲେ । ସେକଥା

ଶୁଣି କୁମାରଙ୍କ ମନରେ ବହୁତ କ୍ଷୋଭ ଉତ୍ପନ୍ନ ହେଲା ଏବଂ ପିତାମାତା ଯେତେ ଅଟକାଇଲେ ମଧ୍ୟ ସେ ସେଠାରେ ନ ରହି କ୍ରୌଞ୍ଚ ପର୍ବତକୁ ଚାଲିଗଲେ ।

ଦେବର୍ଷେ ! ସେହି ଦିନଠାରୁ ଶିବପୁତ୍ର କାର୍ତ୍ତିକେୟଙ୍କ କୁମାରତ୍ୱ (ଅବିବାହିତ୍ୱ) ପ୍ରସିଦ୍ଧ ହୋଇଗଲା । ତାଙ୍କର ନାମ ତ୍ରିଲୋକରେ ବିଖ୍ୟାତ ହୋଇଗଲା । ତାଙ୍କ ନାମ ଶୁଭଦାୟକ, ସର୍ବ-ପାପହାରୀ, ପୁଣ୍ୟମୟ ଓ ତାହା ଉତ୍କୃଷ୍ଟ ବ୍ରହ୍ମଚର୍ଯ୍ୟର ଶକ୍ତି ପ୍ରଦାନ କରିଥାଏ । କାର୍ତ୍ତିକ ପୂର୍ଣ୍ଣିମାକୁ ସମସ୍ତ ଦେବତା, ଋଷି, ତୀର୍ଥ ଓ ମୁନୀଶ୍ୱର ସଦା କୁମାରଙ୍କ ଦର୍ଶନ ନିମନ୍ତେ (କ୍ରୌଞ୍ଚ ପର୍ବତକୁ) ଯାଆନ୍ତି । ଯେଉଁ ମନୁଷ୍ୟ କୃତ୍ତିକାନକ୍ଷତ୍ରଯୁକ୍ତ କାର୍ତ୍ତିକ ପୂର୍ଣ୍ଣିମା ଦିନ କାର୍ତ୍ତିକେୟଙ୍କୁ ଦର୍ଶନ କରେ, ତା'ର ସମସ୍ତ ପାପ ନଷ୍ଟ ହୋଇଯାଏ ଏବଂ ତାକୁ ମନୋବାଞ୍ଛିତ ଫଳ ମିଳିଥାଏ ।

ଦେବର୍ଷେ ! ଏଣେ ସ୍କନ୍ଦଙ୍କ ବିୟୋଗରେ ଉମାଙ୍କ ମନରେ ବହୁତ ଦୁଃଖ ହେଲା । ସେ ଦୈନ୍ୟଭାବରେ ସ୍ୱାମୀଙ୍କୁ କହିଲେ—''ପ୍ରଭୋ ! ଆପଣ ମୋତେ ସାଙ୍ଗରେ ନେଇ ସେଠାକୁ ଚାଲନ୍ତୁ ।'' ତାଙ୍କ କଥା ଶୁଣି ପ୍ରିୟାଙ୍କୁ ସୁଖ ଦେବା ପାଇଁ ସ୍ୱୟଂ ଭଗବାନ ଶଙ୍କର କ୍ରୌଞ୍ଚ ପର୍ବତକୁ ଗଲେ ଏବଂ ନିଜର ଏକ ଅଂଶସ୍ୱରୂପରେ ସେଠାରେ ସୁଖଦାୟକ ମଲ୍ଲିକାର୍ଜୁନ ନାମକ ଜ୍ୟୋତିର୍ଲିଙ୍ଗ ରୂପରେ ପ୍ରତିଷ୍ଠିତ ହୋଇଗଲେ । ସେ ସାଧୁଜନଙ୍କର ଗତି ତଥା ଭକ୍ତଙ୍କର ମନୋରଥ ପୂର୍ଣ୍ଣକାରୀ ଅଟନ୍ତି । ସେ ଆଜି ମଧ୍ୟ ସେହି ପର୍ବତରେ ବିରାଜମାନ ଅଛନ୍ତି ।

ପୁତ୍ର ନାରଦ ! ଶିବା ଓ ଶିବ ଦୁହେଁ ପୁତ୍ରସ୍ନେହବଶତଃ ପ୍ରତ୍ୟେକ ପର୍ବ (ପୂର୍ଣ୍ଣିମା ଓ ଅମାବାସ୍ୟା) ଦିନ କୁମାର କାର୍ତ୍ତିକେୟଙ୍କୁ ଦେଖିବାକୁ ଯାଆନ୍ତି । ଅମାବାସ୍ୟା ଦିନ ସେଠାକୁ ଶମ୍ଭୁ ଯାଆନ୍ତି ଏବଂ ପୂର୍ଣ୍ଣିମା ଦିନ ପାର୍ବତୀ ଯାଆନ୍ତି । ମୁନୀଶ୍ୱର ! ତୁମେ କାର୍ତ୍ତିକେୟ ଓ ଗଣେଶଙ୍କର ଯେଉଁ ଚରିତ୍ର ଜାଣିବାକୁ ମୋତେ ପ୍ରଶ୍ନ କରିଥିଲ, ମୁଁ ତାହା ତୁମକୁ କହିଦେଲି । ଏହାକୁ ଶୁଣି ବୁଦ୍ଧିମାନ୍ ମନୁଷ୍ୟ ସମସ୍ତ ପାପରୁ ମୁକ୍ତ ହୋଇଯାଆନ୍ତି ଏବଂ ତାଙ୍କର ସମସ୍ତ ଶୁଭକାମନା ପୂର୍ଣ୍ଣ ହୋଇଥାଏ । ଯେଉଁ ମନୁଷ୍ୟ ଏହି ଚରିତ୍ରକୁ ପଢ଼େ ଅଥବା ପଢ଼ାଏ ଏବଂ ଶୁଣେ ଅଥବା ଶୁଣାଏ, ନିଃସନ୍ଦେହରେ ତା'ର ସମସ୍ତ ମନୋରଥ ପୂର୍ଣ୍ଣ ହୋଇଥାଏ । ଏହି ଅନୁପମ ଆଖ୍ୟାନ ପାପନାଶକ, କୀର୍ତ୍ତିପ୍ରଦାୟକ, ସୁଖବର୍ଦ୍ଧକ, ଆୟୁବର୍ଦ୍ଧକ, ସ୍ୱର୍ଗପ୍ରଦାୟକ, ପୁତ୍ରପୌତ୍ର ବୃଦ୍ଧିକାରକ ଓ ମୋକ୍ଷପ୍ରଦ । ଏହା ଶିବଙ୍କ ସମ୍ବନ୍ଧରେ ଉତ୍ତମ ଜ୍ଞାନ ପ୍ରଦାନ କରିଥାଏ ଏବଂ ଶିବଙ୍କ ପ୍ରତି ଭକ୍ତି ବୃଦ୍ଧି କରିଥାଏ । ଏହା କଲ୍ୟାଣକାରକ, ଶିବସମ୍ବନ୍ଧୀୟ ଅଦ୍ୱୈତଜ୍ଞାନ ପ୍ରଦାୟକ ଓ ସଦା ଶିବମୟ (କଲ୍ୟାଣକର) ଅଟେ । ତେଣୁ କୌଣସି ମନୁଷ୍ୟ ମୋକ୍ଷକାମୀ ହୋଇଥାଉ ବା ନିଷ୍କାମ ଭକ୍ତ ହୋଇଥାଉ, ସେ ନିଶ୍ଚିତରୂପେ ଏହାକୁ ଶ୍ରବଣ କରିବା ଉଚିତ । (ଅଧ୍ୟାୟ ୨୦)

***

## ॥ ରୁଦ୍ରସଂହିତାର କୁମାରଖଣ୍ଡ ସମ୍ପୂର୍ଣ୍ଣ ॥



# ରୁଦ୍ରସଂହିତା, ପଞ୍ଚମ (ଯୁଦ୍ଧ) ଖଣ୍ଡ

## ତାରକାସୁରର ପୁତ୍ର ତାରକାକ୍ଷ, ବିଦ୍ୟୁନ୍ମାଳୀ ଓ କମଳାକ୍ଷଙ୍କର ତପସ୍ୟା ଏବଂ ବ୍ରହ୍ମାଙ୍କ ଠାରୁ ସେମାନଙ୍କୁ ବରପ୍ରାପ୍ତି, ମୟଦାନବ ଦ୍ୱାରା ସେମାନଙ୍କ ପାଇଁ ତ୍ରିପୁର ନିର୍ମାଣ ଓ ସେଗୁଡ଼ିକର ସାଜସଜ୍ଜା ବର୍ଣ୍ଣନା

ନାରଦ କହିଲେ–ପିତୃଦେବ ! ମୁଁ ଭଗବାନ ଶିବଙ୍କର ଗୃହସ୍ଥାଶ୍ରମ ସମ୍ବନ୍ଧିତ ଉତ୍ତମ ଚରିତ୍ର ତ ଶୁଣିଲି, ଯାହାକି ଗଣେଶ ଓ କାର୍ତ୍ତିକେୟଙ୍କ ଉତ୍ତମ ଲୀଳାକୀର୍ତ୍ତିରେ ଓତପ୍ରୋତ ଏବଂ ଆନନ୍ଦପ୍ରଦାୟକ । ଏବେ କୃପା କରି ତାଙ୍କର ଏଭଳି ପରମୋତ୍ତମ ଲୀଳାଚରିତ ବର୍ଣ୍ଣନା କରନ୍ତୁ, ଯେଉଁଥିରେ ଭଗବାନ ରୁଦ୍ରଦେବ ଅକ୍ଳେଶରେ ଦୁଷ୍ଟମାନଙ୍କୁ ବଧ କରିଥିଲେ । ମହାବୀର୍ଯ୍ୟଶାଳୀ ଶଙ୍କର ଦେବଦ୍ରୋହୀଙ୍କର ତିନୋଟି ନଗରକୁ ଏକାବେଳକେ ଗୋଟିଏ ଶରରେ କାହିଁକି ଏବଂ କିପରି ଭସ୍ମ କଲେ? ଭଗବନ୍ ! ମାୟା ସହିତ ବିହାର କରୁଥିବା ପ୍ରଭୁ ଚନ୍ଦ୍ରମୌଳିଙ୍କର ଚରିତ ସର୍ବଦା ଦେବର୍ଷିମାନଙ୍କୁ ଆନନ୍ଦ ପ୍ରଦାନ କରିଥାଏ । ତେଣୁ ଆପଣ ସେହି ସବୁ ପ୍ରସଙ୍ଗକୁ ସବିସ୍ତାର ବର୍ଣ୍ଣନା କରନ୍ତୁ ।

ବ୍ରହ୍ମା କହିଲେ–ଋଷିଶ୍ରେଷ୍ଠ ! ପୂର୍ବକାଳରେ ଥରେ ବ୍ୟାସଦେବ ସନତ୍କୁମାରଙ୍କୁ ଏହି ପ୍ରଶ୍ନ ପଚାରିଥିଲେ । ସେତେବେଳେ ସେ ଯେଉଁ ଉତ୍ତର ଦେଇଥିଲେ, ତାହା ମୁଁ ବର୍ଣ୍ଣନା କରୁଛି ।

ସନତ୍କୁମାର କହିଥିଲେ–ମହାବୁଦ୍ଧିମାନ୍ ବ୍ୟାସଦେବ ! ବିଶ୍ୱର ସଂହାରକାରୀ ସାକ୍ଷାତ୍ ଚନ୍ଦ୍ରମୌଳି ଶିବ ଯେଉଁପରି ଏକମାତ୍ର ଶରରେ ତ୍ରିପୁରକୁ ଭସ୍ମ କରିଦେଇଥିଲେ, ସେହି ଚରିତ୍ର କହୁଛି, ଶୁଣନ୍ତୁ । ମୁନୀଶ୍ୱର ! ଶିବକୁମାର ସ୍କନ୍ଦ ତାରକାସୁରକୁ ମାରିଦେବା ପରେ ତା'ର ତିନି ପୁଅ ବହୁତ ଦୁଃଖିତ ହେଲେ । ସେମାନଙ୍କ ମଧ୍ୟରେ ତାରକାକ୍ଷ ଥିଲା ସବୁଠୁ ଜ୍ୟେଷ୍ଠ, ବିଦ୍ୟୁନ୍ମାଳୀ ଥିଲା ମଝିଆଁ ଏବଂ ସାନ ଥିଲା କମଳାକ୍ଷ । ତିନିଜଣ ସମାନ ବଳଶାଳୀ ଥିଲେ । ସେମାନେ ଥିଲେ ଜିତେନ୍ଦ୍ରିୟ, ସତତ କାର୍ଯ୍ୟତତ୍ପର, ସଂଯମୀ, ସତ୍ୟବାଦୀ, ଦୃଢ଼ଚିତ୍ତ, ପରମ ବୀର ଓ ଦେବଦ୍ରୋହୀ । ସେ ତିନିହେଁ ସମସ୍ତ ପ୍ରକାର ଉତ୍ତମୋତ୍ତମ ଭୋଗ୍ୟବସ୍ତୁ ପରିତ୍ୟାଗ କରି ମେରୁ ପର୍ବତର ଗୋଟିଏ କନ୍ଦରାରେ ଯାଇ ପରମ ଅଦ୍ଭୁତ ତପସ୍ୟା ପ୍ରାରମ୍ଭ କଲେ । ସେଠାରେ ସେମାନେ ବ୍ରହ୍ମାଙ୍କୁ ପ୍ରସନ୍ନ କରିବା ପାଇଁ ହଜାର ହଜାର ବର୍ଷ ପର୍ଯ୍ୟନ୍ତ ଉଗ୍ର ତପସ୍ୟା କଲେ । ସୁର ଓ ଅସୁରଙ୍କ ଗୁରୁ ମହାଯଶସ୍ୱୀ ବ୍ରହ୍ମା ସେମାନଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ସେମାନଙ୍କୁ ବର ଦେବାକୁ ଆବିର୍ଭୂତ ହେଲେ ।

ବ୍ରହ୍ମା କହିଲେ–ହେ ମହାଦୈତ୍ୟଗଣ ! ମୁଁ ତୁମମାନଙ୍କ ତପସ୍ୟାରେ ପ୍ରସନ୍ନ ହୋଇଛି, ଅତଃ ତୁମମାନଙ୍କ କାମନା ଅନୁସାରେ ମୁଁ ସମସ୍ତ ବର ପ୍ରଦାନ କରିବି । ହେ ଅସୁରଗଣ ! ମୁଁ ସମସ୍ତଙ୍କ ତପସ୍ୟାର ଫଳପ୍ରଦାତା ଓ ସର୍ବଦା ସବୁକିଛି କରିବାକୁ ସମର୍ଥ । ତେଣୁ କୁହ; ତୁମେମାନେ ଏତେ ଘୋର ତପସ୍ୟା କାହିଁକି କଲ?

ସନତ୍କୁମାର କହୁଛନ୍ତି–ମୁନେ ! ବ୍ରହ୍ମାଙ୍କ କଥା ଶୁଣି ସେମାନେ କର ଯୋଡ଼ି ପିତାମହଙ୍କ ଚରଣରେ ପ୍ରଣିପାତ କଲେ ଏବଂ କ୍ରମେ କ୍ରମେ

ସେମାନଙ୍କ ମନ କଥା ପ୍ରକାଶ କଲେ ।

ଦୈତ୍ୟମାନେ କହିଲେ—ହେ ଦେବେଶ ! ଯଦି ଆପଣ ଆମ ଉପରେ ପ୍ରସନ୍ନ ଏବଂ ଆମକୁ ବର ଦେବାକୁ ଆସିଛନ୍ତି, ତେବେ ଏହି ବର ଦିଅନ୍ତୁ ଯେ ଆମେ ଯେପରି କୌଣସି ପ୍ରାଣୀ ଦ୍ୱାରା ମରିବୁ ନାହିଁ । ହେ ଜଗନ୍ନାଥ ! ଆପଣ ଆମକୁ ସ୍ଥିରତା ପ୍ରଦାନ କରନ୍ତୁ ଏବଂ ଆମର ଜରା, ବ୍ୟାଧି ପ୍ରଭୃତି ସମସ୍ତ ଶତ୍ରୁ ନଷ୍ଟ ହୋଇଯାଆନ୍ତୁ; ମୃତ୍ୟୁ କଦାପି ଆମ ପାଖକୁ ଆସି ନ ପାରୁ । ଆମେ ଅଜର-ଅମର ହୋଇଯାଉ ଏବଂ ତ୍ରୈଲୋକ୍ୟରେ ଅନ୍ୟ ସମସ୍ତ ପ୍ରାଣୀଙ୍କୁ ମୃତ୍ୟୁମୁଖରେ ପକାଇବାକୁ ସମର୍ଥ ହୋଇଯାଉ । ଏହା ହିଁ ଆମର ଇଚ୍ଛା । କାରଣ, ଯଦି ଦିନ କେଇଟାରେ କାଳର କବଳିତ ହୋଇଯିବୁ, ତେବେ ଅତୁଳ ଲକ୍ଷ୍ମୀ, ଉତ୍ତମୋତ୍ତମ ନଗର, ଅନ୍ୟାନ୍ୟ ଭୋଗ୍ୟସାମଗ୍ରୀ, ଉତ୍କୃଷ୍ଟ ପଦ ଓ ଐଶ୍ୱର୍ଯ୍ୟ ଥାଇ ବି କି ଲାଭ? ଆମ ବିଗ୍ରରରେ ତ ମରଣୋନ୍ମୁଖୀ ପ୍ରାଣୀ ନିମନ୍ତେ ଏସବୁ ବୃଥା ।



ସନତ୍କୁମାର କହୁଛନ୍ତି—ମହର୍ଷେ ! ସେହି ତପସ୍ୱୀ ଦୈତ୍ୟଙ୍କ ମୁଖରୁ ଏପରି କଥା ଶୁଣି ବ୍ରହ୍ମା ଆପଣା ସ୍ୱାମୀ ଗିରିଶାୟୀ ଭଗବାନ ଶିବଙ୍କୁ ଧ୍ୟାନ କରି କହିଲେ—

ବ୍ରହ୍ମା କହିଲେ—ଅସୁରଗଣ ! ଅମରତ୍ୱ ସମସ୍ତଙ୍କୁ ମିଳି ପାରେ ନାହିଁ, ତେଣୁ ତୁମେମାନେ ଏ ଇଚ୍ଛା ଛାଡ଼ିଦିଅ । ଏହାକୁ ଛାଡ଼ି ଆଉ ଯେଉଁ ବର ତୁମକୁ ଭଲ ଲାଗୁଛି, ମାଗ । କାରଣ, ଏ ଭୂତଳରେ ଯେଉଁଠି ଯେଉଁ ପ୍ରାଣୀ ଜନ୍ମ ହୋଇଛି ବା ଜନ୍ମ ହେବ, ସେ ଜଗତରେ ଅଜର-ଅମର ହୋଇ ପାରିବ ନାହିଁ । ଏଣୁ ପାପରହିତ ଅସୁରଗଣ ! ତୁମେମାନେ ସ୍ୱୟଂ ନିଜ ବୁଦ୍ଧିରେ ବିଗ୍ରର କରି ମୃତ୍ୟୁକୁ ବଞ୍ଚନା କଲାଭଳି ଏଭଳି କିଛି ଦୁର୍ଲଭ ଓ ଦୁଃସାଧ୍ୟ ବର ମାଗ, ଯାହା ଦେବତା ଓ ଅସୁରଙ୍କ ପାଇଁ ଅଶକ୍ୟ ହେବ । ତୁମେମାନେ ନିଜ ବଳ ଆଧାରରେ ପୃଥକ୍ ପୃଥକ୍ ଭାବେ ନିଜ ମରଣର ଏଭଳି କୌଣସି ହେତୁ କୁହ, ଯାହା ଫଳରେ ତୁମର ରକ୍ଷା ହୋଇଯିବ ଏବଂ ମୃତ୍ୟୁ ତୁମ ପାଖକୁ ଆସିପାରିବ ନାହିଁ ।

ସନତ୍କୁମାର କହୁଛନ୍ତି—ମହର୍ଷେ ! ବ୍ରହ୍ମାଙ୍କ ଠାରୁ ଏଭଳି କଥା ଶୁଣି ସେମାନେ ମୁହୂର୍ତ୍ତକ ପାଇଁ ଧ୍ୟାନସ୍ଥ ହୋଇଗଲେ ଏବଂ କିଛି ଚିନ୍ତା କରିବା ପରେ ସର୍ବଲୋକପିତାମହ ବ୍ରହ୍ମାଙ୍କୁ କହିଲେ—

ଦୈତ୍ୟମାନେ କହିଲେ—"ଭଗବନ୍ ! ଯଦ୍ୟପି ଆମ୍ଭେମାନେ ପ୍ରବଳ ପରାକ୍ରମୀ, ତଥାପି ଆମ ପାଖରେ ଏପରି କୌଣସି ସ୍ଥାନ ନାହିଁ, ଯେଉଁଠି ଆମେ ଶତ୍ରୁମାନଙ୍କ ଠାରୁ ସୁରକ୍ଷିତ ରହି ସୁଖରେ ନିବାସ କରିପାରିବୁ । ତେଣୁ ଆମ ପାଇଁ ଏଭଳି ତିନୋଟି ନଗର ନିର୍ମାଣ କରାଇ ଦିଅନ୍ତୁ, ଯାହା ଅତ୍ୟନ୍ତ ଅଦ୍ଭୁତ ଓ ସମସ୍ତ ସମ୍ପତ୍ତିରେ ଭରପୂର ହେବା ସଙ୍ଗେ ସଙ୍ଗେ ଦେବତାଙ୍କ ପକ୍ଷେ ମଧ୍ୟ ଦୁରତିକ୍ରମ୍ୟ ହୋଇଥିବ । ହେ ଲୋକେଶ ! ଆପଣ ତ ଜଗଦ୍‌ଗୁରୁ । ଆମେମାନେ ଆପଣଙ୍କ କୃପାରୁ ସେହି ତିନିପୁରରେ ଅଧିଷ୍ଠିତ ହୋଇ ପୃଥିବୀରେ ବିଚରଣ କରିବୁ ।" ଇତିମଧ୍ୟରେ ତାରକାକ୍ଷ କହିଲା, "ବିଶ୍ୱକର୍ମା ମୋ ପାଇଁ ଯେଉଁ ନଗର

ନିର୍ମାଣ କରିବେ, ତାହା ସ୍ୱର୍ଣ୍ଣମୟ ହୋଇଥିବ ଏବଂ ଦେବତା ମଧ୍ୟ ତାହାକୁ ଭେଦନ କରି ନ ପାରନ୍ତୁ ।'' ଏହାପରେ କମଳାକ୍ଷ ରୌପ୍ୟନିର୍ମିତ ଅତ୍ୟନ୍ତ ବିଶାଳ ନଗରଟିଏ ମାଗିଲା ଏବଂ ବିଦ୍ୟୁନ୍ମାଳୀ ପ୍ରସନ୍ନ ହୋଇ ବଜ୍ରତୁଲ୍ୟ କଠୋର ଲୌହ ନଗର ମାଗିଲା । ସେମାନେ କହିଲେ, ''ବ୍ରହ୍ମନ୍ ! ଏ ତିନୋଟି ପୁର ମଧ୍ୟାହ୍ନ ସମୟରେ, ଅଭିଜିତ୍ ମୁହୂର୍ତ୍ତରେ ଓ ଚନ୍ଦ୍ରମା ପୁଷ୍ୟ ନକ୍ଷତ୍ରରେ ସ୍ଥିତ ହୋଇଥିବା ବେଳେ ଏକତ୍ର ହେଉଥିବେ ଏବଂ ଆକାଶରେ ନୀଳମେଘମାଳାରେ ଯଥାକ୍ରମେ ଉପର୍ଯ୍ୟୁପରି ଅବସ୍ଥାନ କରି ଲୋକଙ୍କ ଦୃଷ୍ଟିରୁ ଅଦୃଶ୍ୟ ହୋଇ ରହିବେ । ପୁଣି ଯେବେ ପୁଷ୍କରାବର୍ତ୍ତ ନାମକ କାଳମେଘ ବର୍ଷା କରିବେ, ସେତେବେଳେ ହଜାରେ ବର୍ଷ ପରେ ଏ ତିନୋଟି ପରସ୍ପର ସହିତ ମିଶିବେ ଏବଂ ଏକାକାର ହୋଇଯିବେ; ଅନ୍ୟଥା ଏହା ସମ୍ଭବ ହେବ ନାହିଁ । ସେତେବେଳେ କୃତ୍ତିବାସା ଭଗବାନ ଶଙ୍କର—ଯେ କି ନିର୍ବୈର ସର୍ବଦେବମୟ ଓ ସମସ୍ତଙ୍କର ଦେବତା, ସେ ଲୀଳାପୂର୍ବକ ସମସ୍ତ ସାମଗ୍ରୀରେ ଯୁକ୍ତ ହୋଇଥିବା ଏକ ଅସମ୍ଭବ ରଥରେ ଆରୂଢ଼ ହୋଇ ଗୋଟିଏ ଅଦ୍ଭୁତ ଶରରେ ଆମର ପୁରକୁ ଭେଦ କରି ପାରିବେ । କିନ୍ତୁ ଭଗବାନ ଶଙ୍କର ତ ଆମର ସଦା ବନ୍ଦନୀୟ, ପୂଜ୍ୟ ଓ ଅଭିବାଦନର ପାତ୍ର; ତେଣୁ ସେ ଆମକୁ କାହିଁକି ଭସ୍ମ କରିବେ— ମନରେ ଏପରି ଧାରଣା କରି ଆମେ ଏଭଳି ଦୁର୍ଲଭ ବର ମାଗୁଛୁ ।''

ସନତ୍କୁମାର କହୁଛନ୍ତି—ବ୍ୟାସଦେବ ! ଦୈତ୍ୟମାନଙ୍କ କଥା ଶୁଣି ସୃଷ୍ଟିକର୍ତ୍ତା ଲୋକପିତାମହ ବ୍ରହ୍ମା ଶିବଙ୍କୁ ସ୍ମରଣ କରି ସେମାନଙ୍କୁ କହିଲେ— ''ଆଚ୍ଛା, ତଥାସ୍ତୁ ।'' ତା'ପରେ ମୟକୁ ଆଜ୍ଞା ଦେଇ କହିଲେ, ''ହେ ମୟ ! ତୁମେ ସୁନା, ରୁପା ଓ ଲୁହାର ତିନୋଟି ନଗର ନିର୍ମାଣ କରିଦିଅ ।'' ମୟକୁ ଏପରି ଆଦେଶ ଦେଇ ତାରକପୁତ୍ରଙ୍କ ଆଖି ଆଗରୁ ବ୍ରହ୍ମା ଅଦୃଶ୍ୟ ହୋଇ ସ୍ୱର୍ଗଲୋକକୁ ଚାଲିଗଲେ । ତା'ପରେ ଧୈର୍ଯ୍ୟଶାଳୀ ମୟ ତା'ର ତପୋବଳରେ ନଗର ନିର୍ମାଣ ଆରମ୍ଭ କଲା । ସେ ତାରକାକ୍ଷ ପାଇଁ ସ୍ୱର୍ଣ୍ଣମୟ, କମଳାକ୍ଷ ପାଇଁ ରଜତମୟ ଓ ବିଦ୍ୟୁନ୍ମାଳୀ ପାଇଁ ଲୌହମୟ ପୁର ନିର୍ମାଣ କଲା ଏବଂ ତିନୋଟି ଦୁର୍ଗ ମଧ୍ୟ ନିର୍ମାଣ କଲା । ସେଗୁଡ଼ିକ ଯଥାକ୍ରମେ ସ୍ୱର୍ଗ, ଅନ୍ତରୀକ୍ଷ ଓ ଭୂଲୋକରେ ନିର୍ମିତ ହୋଇଥିଲା । ଅସୁରଙ୍କ ହିତରେ ତତ୍ପର ମୟ ଏ ତିନୋଟି ପୁରକୁ ତାରକାକ୍ଷ ଆଦି ଅସୁରଙ୍କୁ ସମର୍ପି ଦେଇ ନିଜେ ମଧ୍ୟ ସେଥିରେ ପ୍ରବେଶ କରିଗଲା । ଏପରି ତିନୋଟି ପୁର ପାଇବା ପରେ ମହାପରାକ୍ରମୀ ତାରକପୁତ୍ରମାନେ ସେଥିରେ ପ୍ରବିଷ୍ଟ ହୋଇ ସମସ୍ତ ପ୍ରକାର ଭୋଗ ଉପଭୋଗ କରିବାକୁ ଲାଗିଲେ । ସେହି ନଗରଗୁଡ଼ିକ କଳ୍ପବୃକ୍ଷରେ ପରିପୂର୍ଣ୍ଣ ଥିଲା ଏବଂ ଅପର୍ଯ୍ୟାପ୍ତ ହାତୀ-ଘୋଡ଼ା ସେଥିରେ ଥିଲେ । ସେଗୁଡ଼ିକରେ ମଣିମୁକ୍ତାର ଝାଲରରେ ସୁସଜ୍ଜିତ ଅନେକ ଭବନ ଥିଲା । ସେହି ପୁରଗୁଡ଼ିକରେ ପଦ୍ମରାଗରେ ନିର୍ମିତ ସୂର୍ଯ୍ୟମଣ୍ଡଳ ତୁଲ୍ୟ ଦେଦୀପ୍ୟମାନ ଅନେକ ସୁନ୍ଦର ସୁନ୍ଦର ବିମାନ ଥିଲା ଏବଂ ବିମାନଗୁଡ଼ିକର ଚାରିପଟରେ ଦ୍ୱାର ଥିଲା । କୈଳାସଶିଖର ପରି ଉଚ୍ଚ ଓ ଚନ୍ଦ୍ର ପରି ପ୍ରଭାମୟ ଦିବ୍ୟ ପ୍ରାସାଦ ଓ ଗୋପୁର ଥିବା ହେତୁ ସେହି ନଗରସବୁ ଅଧିକ ସୁଶୋଭିତ ହେଉଥିଲା । ନଗରଗୁଡ଼ିକରେ ଅପ୍ସରା, ଗନ୍ଧର୍ବ, ସିଦ୍ଧ ଓ ଚାରଣ ଭର୍ତ୍ତି ହୋଇଥିଲେ । ପ୍ରତ୍ୟେକ ମହଲରେ ଶିବାଳୟ ଓ ଅଗ୍ନିହୋତ୍ର ସ୍ଥଳ ଥିଲା । ସେଠାରେ ସର୍ବଦା ଶିବଭକ୍ତିପରାୟଣ ଶାସ୍ତ୍ରଜ୍ଞ ବ୍ରାହ୍ମଣ ବାସ କରୁଥିଲେ । ନଗରଗୁଡ଼ିକରେ ପୁଷ୍କରିଣୀ, କୂପ, ଜଳାଶୟ ଇତ୍ୟାଦି ଥିଲା ଏବଂ ଉଦ୍ୟାନ ଓ ବନରେ ସ୍ୱର୍ଗୀୟ ବୃକ୍ଷମାନ ସୁଶୋଭିତ ହେଉଥିଲେ । ପୁଣି ବଡ଼ ବଡ଼ ନଦୀ, ନଦ ଓ

ଛୋଟ ଛୋଟ ପଦ୍ମପୂର୍ଣ୍ଣ ସରିତାରେ ମଧ୍ୟ ସେଗୁଡ଼ିକର ଶୋଭାବର୍ଦ୍ଧନ ହେଉଥିଲା । ସେଠାରେ ଥିବା ସମସ୍ତ କାମନା ପୂର୍ଣ୍ଣକାରୀ ବୃକ୍ଷ ଫଳଭାରରେ ନଇଁ ଯାଉଥିଲେ, ଯାହା ଫଳରେ ନଗରଗୁଡ଼ିକ ବିଶେଷ ମନୋହର ଲାଗୁଥିଲେ । ନଗରମାନଙ୍କରେ ଦଳ ଦଳ ମଦମତ୍ତ ହସ୍ତୀ, ସୁନ୍ଦର ସୁନ୍ଦର ଘୋଡ଼ା, ନାନା ଆକାର ପ୍ରକାରର ରଥ ଓ ପାଲିଙ୍କି ପ୍ରଚୁର ପରିମାଣରେ ଥିଲା । ସେଠାରେ ସମୟାନୁକୂଳ କ୍ରୀଡ଼ା ନିମନ୍ତେ ବିଭିନ୍ନ କ୍ରୀଡ଼ାସ୍ଥଳ ନିର୍ମିତ ହୋଇଥିଲା । ଏବଂ ବେଦାଧ୍ୟୟନ ପାଇଁ ପାଠଶାଳାମାନ ମଧ୍ୟ ଥିଲା । ପାପୀ ଲୋକଙ୍କ ପାଇଁ ସେଗୁଡ଼ିକ ମନ ଓ ବାଣୀର ଅଗୋଚର ଥିଲା । ସେଗୁଡ଼ିକୁ ସଦାଚାରୀ ପୁଣ୍ୟଶୀଳ ମହାତ୍ମା ହିଁ ଦେଖିପାରୁଥିଲେ । ପତିସେବାପରାୟଣା ଓ କୁଧର୍ମରୁ ଦୂରେଇ ରହୁଥିବା ନାରୀମାନେ ସେହି ନଗରଗୁଡ଼ିକର ଉତ୍ତମ ସ୍ଥଳମାନଙ୍କୁ ସର୍ବତ୍ର ପବିତ୍ର କରି ରଖିଥିଲେ । ସେଠାରେ ମହାଭାଗ୍ୟବାନ୍ ବୀର ଦୈତ୍ୟ ଓ ଶ୍ରୁତିସ୍ମୃତିର ତତ୍ତ୍ୱଜ୍ଞ ସ୍ୱଧର୍ମପରାୟଣ ବ୍ରାହ୍ମଣମାନେ ସପରିବାର ନିବାସ କରୁଥିଲେ । ସେଠାରେ ମୟ ଦ୍ୱାରା ସୁରକ୍ଷିତ, ସୁଶିକ୍ଷିତ ଓ ସର୍ବଦା ଯୁଦ୍ଧାଭିଳାଷୀ ବୀରମାନେ ପୂରି ରହିଥିଲେ; ସେମାନଙ୍କ କେଶ ନୀଳକମଳ ପରି ସୁନ୍ଦର ଓ କୁଞ୍ଚୁକୁଞ୍ଚିଆ ଥିଲା । ବ୍ରହ୍ମା ଓ ଶିବଙ୍କୁ ପୂଜା କରୁଥିବାରୁ ସେମାନଙ୍କର ପରାକ୍ରମ ବିଶୁଦ୍ଧ ଥିଲା । ସେମାନେ ସୂର୍ଯ୍ୟ, ମରୁଦ୍‌ଗଣ ଓ ମହେନ୍ଦ୍ରଙ୍କ ପରି ବଳବାନ୍ ଥିଲେ ଏବଂ ଦେବଗଣଙ୍କୁ ଦଳନ କରିବାକୁ ସମର୍ଥ ଥିଲେ । ବେଦଶାସ୍ତ୍ର ଓ ପୁରାଣରେ ଯେଉଁସବୁ ଧର୍ମ ବର୍ଣ୍ଣିତ ହୋଇଛି, ସେ ସମସ୍ତ ଧର୍ମ ଏବଂ ଶିବପ୍ରେମୀ ଦେବତାମାନେ ଚତୁର୍ଦ୍ଦିଗରେ ବ୍ୟାପ୍ତ ଥିଲେ । ଏଭଳି ନଗରମାନଙ୍କରେ ପ୍ରବେଶ କରି ସେହି ଦୈତ୍ୟମାନେ ସଦା ଶିବଭକ୍ତିନିରତ ହୋଇ ସମଗ୍ର ତ୍ରୈଲୋକ୍ୟକୁ ବାଧିତ କରି ବିଶାଳ ରାଜ୍ୟ ଭୋଗ କରିବାକୁ ଲାଗିଲେ । ମୁନେ ! ଏହିରୂପେ ସେଠାରେ ସେହି ପୁଣ୍ୟାତ୍ମାମାନେ ବାସ କରି ସୁଖରେ ଉତ୍ତମରୂପେ ରାଜ୍ୟପାଳନ କରୁ କରୁ ଦୀର୍ଘ କାଳ ବିତିଗଲା । (ଅଧ୍ୟାୟ ୧)

***

## ତାରକପୁତ୍ରଙ୍କ ପ୍ରଭାବରେ ସଂତପ୍ତ ଦେବଗଣଙ୍କର ବ୍ରହ୍ମାଙ୍କ ନିକଟରେ କରୁଣ ନିବେଦନ, ବ୍ରହ୍ମା ସେମାନଙ୍କୁ ଶିବଙ୍କ ନିକଟକୁ ପଠାଇବା, ଶିବଙ୍କ ଆଜ୍ଞାରେ ଦେବଗଣ ବିଷ୍ଣୁଙ୍କ ଶରଣ ଯିବାରୁ ବିଷ୍ଣୁ ସେହି ଦୈତ୍ୟମାନଙ୍କୁ ମୋହିତ କରି ସେମାନଙ୍କୁ ଆଚାରଭ୍ରଷ୍ଟ କରିବା ପ୍ରସଙ୍ଗ

ସନତ୍‌କୁମାର କହୁଛନ୍ତି—ମହର୍ଷେ ! ଏହାପରେ ଯେତେବେଳେ ଇନ୍ଦ୍ରାଦି ଦେବତା ତାରକପୁତ୍ରଙ୍କ ପ୍ରଭାବରେ ସଂତପ୍ତ ହେଲେ, ସେମାନେ ଦୁଃଖୀ ହୋଇ ପରସ୍ପର ବିଚାରବିମର୍ଶ କରି ବ୍ରହ୍ମାଙ୍କ ଠାରେ ଶରଣ ଗଲେ । ସେମାନେ ଅତ୍ୟନ୍ତ ଦୈନ୍ୟଭାବରେ ପିତାମହଙ୍କୁ ପ୍ରଣାମ କଲେ ଓ ଉପଯୁକ୍ତ ଅବସର ଦେଖି ନିଜର ଦୁଃଖ ଶୁଣାଇଲେ ।

ଦେବତାମାନେ କହିଲେ—ଧାତଃ ! ତ୍ରିପୁରର ସ୍ୱାମୀ ତାରକପୁତ୍ରମାନେ ଓ ମୟାସୁର ସକଳ ସ୍ୱର୍ଗବାସୀଙ୍କୁ ସଂତପ୍ତ କରି ରଖିଛନ୍ତି । ବ୍ରହ୍ମନ୍ ! ଏଣୁ ଆମ୍ଭେମାନେ ଦୁଃଖୀ ହୋଇ ଆପଣଙ୍କ ଶରଣକୁ ଆସିଛୁ । ଆପଣ ସେମାନଙ୍କ ବଧର କୌଣସି ଉପାୟ କରନ୍ତୁ, ଯାହାଫଳରେ ଆମ୍ଭେମାନେ ସୁଖରେ ରହିପାରିବୁ ।

ବ୍ରହ୍ମା କହିଲେ—ଦେବଗଣ ! ତୁମ୍ଭେମାନେ ସେହି ଦାନବଙ୍କୁ ବେଶୀ ଭୟ କରିବା ଦରକାର ନାହିଁ ।

ମୁଁ ସେମାନଙ୍କ ବଧର ଉପାୟ କହୁଛି । ଭଗବାନ ଶିବ ତୁମର କଲ୍ୟାଣ କରିବେ । ମୁଁ ହିଁ ସେହି ଦୈତ୍ୟଙ୍କର ଅଭିବୃଦ୍ଧି କରିଛି, ତେଣୁ ମୋ ହାତରେ ସେମାନଙ୍କର ବଧ ହେବାଟା ଅନୁଚିତ କଥା ହେବ । ତା'ଛଡ଼ା ତ୍ରିପୁରରେ ସେମାନଙ୍କ ପୁଣ୍ୟ ମଧ୍ୟ ନିରନ୍ତର ବୃଦ୍ଧି ପାଉଛି । ଏଣୁ ଇନ୍ଦ୍ରସମେତ ସମସ୍ତ ଦେବତା ଶିବଙ୍କୁ ପ୍ରାର୍ଥନା କରନ୍ତୁ । ସର୍ବାଧୀଶ ଶିବ ପ୍ରସନ୍ନ ହୋଇଗଲେ ସେ ତୁମର କାର୍ଯ୍ୟ ସାଧିତ କରିଦେବେ ।

ସନତ୍‌କୁମାର କହୁଛନ୍ତି—**ବ୍ୟାସଦେବ !** ବ୍ରହ୍ମାଙ୍କ କଥା ଶୁଣି ଇନ୍ଦ୍ରାଦି ସକଳ ଦେବତା ଶିବଙ୍କ ନିକଟକୁ ଗଲେ । ସେଠାରେ ସେମାନେ କର ଯୋଡ଼ି ଦେବେଶ୍ୱର ଶିବଙ୍କୁ ଭକ୍ତିପୂର୍ବକ ପ୍ରଣାମ କଲେ ଏବଂ ନତମସ୍ତକ ହୋଇ ଲୋକକଲ୍ୟାଣକାରୀ ଶିବଙ୍କୁ ସ୍ତବନ କଲେ । ମୁନେ ! ନାନା ପ୍ରକାର ଦିବ୍ୟ ସ୍ତୋତ୍ର ଦ୍ୱାରା ତ୍ରିଶୂଳଧାରୀ ପରମେଶ୍ୱରଙ୍କୁ ସ୍ତୁତି କରିବା ପରେ ସ୍ୱାର୍ଥସାଧନରେ ନିପୁଣ ଇନ୍ଦ୍ରାଦି ଦେବତା ନତମସ୍ତକ ହୋଇ ଯୋଡ଼ହସ୍ତପୂର୍ବକ ନିଜ ସ୍ୱାର୍ଥପୂର୍ଣ୍ଣ ନିବେଦନ ତାଙ୍କ ସମ୍ମୁଖରେ ରଖିଲେ ।

ଦେବତାମାନେ କହିଲେ—**ମହାଦେବ !** ତାରକପୁତ୍ର ତିନିଭାଇ ମିଳିମିଶି ଇନ୍ଦ୍ରାଦି ସମସ୍ତ ଦେବତାଙ୍କୁ ପରାସ୍ତ କରିଦେଇଛନ୍ତି । ଭଗବନ୍ ! ସେମାନେ ତ୍ରିଲୋକକୁ ଓ ମୁନୀଶ୍ୱରମାନଙ୍କୁ ମଧ୍ୟ ନିଜ ଅଧୀନରେ ରଖିଛନ୍ତି ଏବଂ ସମସ୍ତ ସିଦ୍ଧସ୍ଥାନକୁ ନଷ୍ଟଭ୍ରଷ୍ଟ କରି ସମଗ୍ର ଜଗତକୁ ଉତ୍ପୀଡ଼ିତ କରି ରଖିଛନ୍ତି । ସେହି ଦାରୁଣ ଦୈତ୍ୟମାନେ ସମସ୍ତ ଯଜ୍ଞଭାଗକୁ ନିଜେ ଗ୍ରହଣ କରୁଛନ୍ତି । ସେମାନେ ଋଷିଧର୍ମକୁ ନିବାରଣ କରି ଅଧର୍ମ ବିସ୍ତାର କରି ଦେଇଛନ୍ତି । ମହାଦେବ ! ତାରକପୁତ୍ରମାନେ ପ୍ରାଣୀମାନଙ୍କ ପକ୍ଷେ ନିଶ୍ଚିତରୂପେ ଅବଧ୍ୟ, ତେଣୁ ସେମାନେ ମନ ଇଚ୍ଛା ସମସ୍ତ କାର୍ଯ୍ୟ କରିଚାଲିଛନ୍ତି । ପ୍ରଭୋ ! ତ୍ରିପୁରନିବାସୀ ଦାରୁଣ ଦୈତ୍ୟମାନେ ଏ ଜଗତକୁ ବିନାଶ କରିଦେଇ ପାରନ୍ତି, ତେଣୁ ତା' ପୂର୍ବରୁ ଆପଣ ଏପରି କୌଣସି ନୀତି ବିଧାନ କରନ୍ତୁ, ଯାହା ଫଳରେ ଜଗତର ରକ୍ଷା ହୋଇପାରିବ ।

ସନତ୍‌କୁମାର କହୁଛନ୍ତି—**ମୁନେ !** ସ୍ୱର୍ଗବାସୀ ଇନ୍ଦ୍ରାଦି ଦେବତାଙ୍କ ଠାରୁ ଏପରି କଥା ଶୁଣି ତାହାର ଉତ୍ତର ଦେବାକୁ ଯାଇ ଶିବ କହିଲେ—

ଶିବ କହିଲେ—**ହେ ଦେବଗଣ !** ଏବେ ତ୍ରିପୁରାଧୀଶମାନେ ମହାନ୍ ପୁଣ୍ୟକର୍ମରେ ସଂଲଗ୍ନ ଅଛନ୍ତି । ନିୟମାନୁସାରେ ପୁଣ୍ୟାତ୍ମାମାନଙ୍କ ଉପରେ ବିଦ୍ୱାନ୍ ବ୍ୟକ୍ତି କୌଣସି ପ୍ରକାର ପ୍ରହାର କରିବା ଉଚିତ ନୁହେଁ । ମୁଁ ଦେବଗଣଙ୍କର ସବୁ କଷ୍ଟକୁ ଜାଣେ, କିନ୍ତୁ ଦୈତ୍ୟମାନେ ଏବେ ବଳବାନ୍; ଏଣୁ ଦେବତା ଓ ଅସୁର ମିଶି ମଧ୍ୟ ସେମାନଙ୍କୁ ବଧ କରିପାରିବେ ନାହିଁ । ତ୍ରିପୁରବାସୀ ତାରକପୁତ୍ରମାନେ ପୁଣ୍ୟବଳରେ ସମ୍ପନ୍ନ, ତେଣୁ ସେମାନଙ୍କୁ ବଧ କରିବା ଦୁଃସାଧ୍ୟ । ଯଦ୍ୟପି ମୁଁ ରଣକର୍କଶ, ତଥାପି ମୁଁ ଜାଣିବୁଝି ଏଭଳି ମିତ୍ରଦ୍ରୋହ କେମିତି କରିବି ! ବ୍ରହ୍ମା ଥରେ କହିଥିଲେ ଯେ ମିତ୍ରଦ୍ରୋହ ଠାରୁ ବଳି ଆଉ ପାପ ନାହିଁ । ସଜ୍ଜନ (ଶାସ୍ତ୍ରକାର) ବ୍ରହ୍ମହତ୍ୟାକାରୀ, ମଦ୍ୟପ, ଚୋର ଓ ବ୍ରତଭଙ୍ଗକାରୀ ପାଇଁ ତ ପ୍ରାୟଶ୍ଚିତ୍ତର ବିଧାନ କରିଛନ୍ତି, କିନ୍ତୁ କୃତଘ୍ନର ଉଦ୍ଧାର ପାଇଁ କୌଣସି ଉପାୟ ନାହିଁ ।* ଦେବଗଣ ! ତୁମେମାନେ ବି ତ ଧର୍ମଜ୍ଞ; ତେବେ ତୁମେମାନେ ହିଁ ଧର୍ମ ଦୃଷ୍ଟିରୁ ବିଚାର କରି ମୋତେ କୁହ ଯେ ସେହି ଦୈତ୍ୟଗଣ ମୋର ଭକ୍ତ ହୋଇଥିବା ବେଳେ ମୁଁ କ'ଣ ସେମାନଙ୍କୁ ମାରିପାରିବି? ଏଣୁ ହେ ଅମରଗଣ ! ଯେପର୍ଯ୍ୟନ୍ତ

* ବ୍ରହ୍ମଘ୍ନେ ଚ ସୁରାପେ ଚ ସ୍ତେନେ ଭଗ୍ନବ୍ରତେ ତଥା । ନିଷ୍କୃତିର୍ବିହିତା ସଦ୍ଭିଃ କୃତଘ୍ନେ ନାସ୍ତି ନିଷ୍କୃତିଃ ॥
(ଶି. ପୁ., ରୁ. ସଂ., ଯୁଦ୍ଧଖଣ୍ଡ ୩ । ୫)

ସେହି ଦୈତ୍ୟମାନେ ମୋ ଭକ୍ତିରେ ତତ୍ପର ରହିବେ, ସେପର୍ଯ୍ୟନ୍ତ ସେମାନଙ୍କର ବଧ ଅସମ୍ଭବ। ତଥାପି ତୁମେମାନେ ବିଷ୍ଣୁଙ୍କ ନିକଟକୁ ଯାଇ ତାଙ୍କ ଆଗରେ ଏହି କଥା ରଖ।

ତା'ପରେ ଦେବଗଣ ବିଷ୍ଣୁଙ୍କ ନିକଟକୁ ଗଲେ। ବିଷ୍ଣୁ ଏପରି ବ୍ୟବସ୍ଥା କଲେ, ଯାହାଫଳରେ ସେହି ଅସୁରମାନେ ଶୈବଧର୍ମ ଅର୍ଥାତ୍ ସନାତନ ଧର୍ମରୁ ବିମୁଖ ହୋଇ ସମ୍ପୂର୍ଣ୍ଣ ଅନାଚାରପରାୟଣ ହୋଇଗଲେ। ବୈଦିକ ଧର୍ମ ନଷ୍ଟ ହୋଇଯିବାରୁ ସେଠାକାର ନାରୀମାନେ ପତିବ୍ରତା ଧର୍ମ ଛାଡ଼ିଦେଲେ, ପୁରୁଷମାନେ ଇନ୍ଦ୍ରିୟମାନଙ୍କର ଅଧୀନ ହୋଇଗଲେ। ସ୍ତ୍ରୀ-ପୁରୁଷ ସମସ୍ତେ ଦୁରାଚାରୀ ହୋଇଗଲେ। ଦେବାରାଧନା, ଶ୍ରାଦ୍ଧ, ଯଜ୍ଞ, ବ୍ରତ, ତୀର୍ଥ, ଶିବ-ବିଷ୍ଣୁ-ସୂର୍ଯ୍ୟ-ଗଣେଶ ପ୍ରଭୃତିଙ୍କର ପୂଜନ, ସ୍ନାନ, ଦାନାଦି ସମସ୍ତ ଶୁଭକର୍ମ ଓ ଆଚରଣ ନଷ୍ଟ ହୋଇଗଲା। ଏହାଫଳରେ ମାୟା ତଥା ଅଲକ୍ଷ୍ମୀ ସେହି ପୁରୀରେ ପ୍ରବେଶ କରିଗଲେ। ତଦ୍ଦ୍ୱାରା ପ୍ରାପ୍ତ ଲକ୍ଷ୍ମୀ ନଗର ଛାଡ଼ି ଚାଲିଗଲେ। ଏହିରୂପେ ସେଠାରେ ଅଧର୍ମ ବିସ୍ତାର ହୋଇଗଲା। ମୁନେ! ତା'ପରେ ଶିବେଚ୍ଛାରେ ଭାଇମାନଙ୍କ ସମେତ ସେହି ଦୈତ୍ୟରାଜଙ୍କର ଓ ମୟର ଶକ୍ତି ହ୍ରାସ ପାଇଲା। (ଅଧ୍ୟାୟ ୨-୫)

★★★

## ଶିବଙ୍କ ନିକଟରେ ଦେବତାମାନଙ୍କ ପ୍ରାର୍ଥନା, ଶିବ ତ୍ରିପୁରବଧ ନିମନ୍ତେ ଉଦ୍ୟତ ନ ହେବାରୁ ବ୍ରହ୍ମା ତାଙ୍କୁ ବୁଝାଇବା, ବିଷ୍ଣୁଙ୍କ ଉପଦିଷ୍ଟ ଶିବମନ୍ତ୍ରକୁ ଦେବଗଣ ଓ ସ୍ୱୟଂ ବିଷ୍ଣୁ ଜପିବାରୁ ଶିବଙ୍କ ପ୍ରସନ୍ନତା ଏବଂ ଶିବଙ୍କ ପାଇଁ ବିଶ୍ୱକର୍ମାଙ୍କ ଦ୍ୱାରା ସର୍ବଦେବମୟ ରଥ ନିର୍ମାଣ

ବ୍ୟାସଦେବ ପଚାରିଲେ—ହେ ସନତ୍କୁମାର! ତ୍ରିପୁରବାସୀ ଦୈତ୍ୟଗଣଙ୍କର ଓ ପୁରବାସୀଙ୍କର ବୁଦ୍ଧି ଅତ୍ୟନ୍ତ ମୋହାଚ୍ଛନ୍ନ ହୋଇଯିବା ପରେ କ'ଣ ହେଲା? ବିଭୋ! ସେ ସମସ୍ତ ବୃତ୍ତାନ୍ତ ମୋତେ କହନ୍ତୁ।

ସନତ୍କୁମାର କହିଲେ—ଯେତେବେଳେ ତ୍ରିପୁରରେ ପୂର୍ବକଥିତ ସ୍ଥିତି ହୋଇଗଲା, ଦୈତ୍ୟମାନେ ଶିବାର୍ଚ୍ଚନ ଛାଡ଼ିଦେଲେ, ନାରୀଧର୍ମ ନଷ୍ଟଭ୍ରଷ୍ଟ ହୋଇଗଲା, ଚାରିଆଡ଼େ ଦୁରାଚାର ବ୍ୟାପିଗଲା, ସେତେବେଳେ ବିଷ୍ଣୁ ଓ ବ୍ରହ୍ମାଙ୍କ ସହିତ ସକଳ ଦେବତା କୈଳାସ ପର୍ବତକୁ ଗଲେ ଏବଂ ସୁନ୍ଦର ଭାବରେ ଶିବଙ୍କୁ ସ୍ତୁତି କରି କହିଲେ, "ମହେଶ୍ୱର! ଆପଣ ପରମୋତ୍କୃଷ୍ଟ ଆତ୍ମବଳରେ ସମ୍ପନ୍ନ; ଆପଣ ହିଁ ସୃଷ୍ଟିକର୍ତ୍ତା ବ୍ରହ୍ମା, ପାଳନକର୍ତ୍ତା ବିଷ୍ଣୁ ଏବଂ ସଂହାରକର୍ତ୍ତା ରୁଦ୍ର। ଆପଣ ହିଁ ପରମ ବ୍ରହ୍ମ। ଆମେ ଆପଣଙ୍କୁ ନମସ୍କାର କରୁଛୁ।" ମହାଦେବଙ୍କୁ ଏଭଳି ସ୍ତବନ କରି ଦେବତାମାନେ ସାଷ୍ଟାଙ୍ଗ ପ୍ରଣାମ କଲେ। ତା'ପରେ ବିଷ୍ଣୁ ଜଳ ମଧ୍ୟରେ ଛିଡ଼ା ହୋଇ ନିଜ ହୃଦୟର ପରମେଶ୍ୱର ଶିବଙ୍କୁ ମନେ ମନେ ସ୍ମରଣ କରି ତନ୍ମୟତାର ସହ ଦକ୍ଷିଣାମୂର୍ତ୍ତିଙ୍କ ଦ୍ୱାରା ପ୍ରକଟିତ ରୁଦ୍ରମନ୍ତ୍ରକୁ ଦେଢ଼ କୋଟି ସଂଖ୍ୟାରେ ଜପିଲେ। ତାଙ୍କ ଜପ ସରିବା ପର୍ଯ୍ୟନ୍ତ ସକଳ ଦେବତା ମଧ୍ୟ ମହେଶ୍ୱରଙ୍କ ଠାରେ ମନ ନିବେଶ କରି ତାଙ୍କୁ ସ୍ତୁତି କରିବାକୁ ଲାଗିଲେ।

ଦେବଗଣ କହିଲେ—ପ୍ରଭୋ! ଆପଣ ସକଳ ପ୍ରାଣୀଙ୍କର ଆତ୍ମସ୍ୱରୂପ, କଲ୍ୟାଣକାରୀ ଏବଂ ଭକ୍ତଙ୍କ କ୍ଲେଶହରଣକାରୀ। ଆପଣଙ୍କ ଗଳାରେ ନୀଳଚିହ୍ନ ଶୋଭା ପାଉଥିବାରୁ ଆପଣ ନୀଳକଣ୍ଠ ନାମରେ ବିଖ୍ୟାତ। ଆପଣ ଚିଦ୍ରୂପ ଓ ପ୍ରଚେତା; ଆପଣଙ୍କୁ ଆମର ନମସ୍କାର। ଅସୁରନିକନ୍ଦନ! ଆପଣ ହିଁ

ଆମର ସମସ୍ତ ବିପତ୍ତିକୁ ନିବାରଣ କରିବାକୁ ସକ୍ଷମ । ଏଣୁ ଆପଣ ହିଁ ସର୍ବଦା ଆମର ଗତି, ଆପଣ ହିଁ ସର୍ବଦା ଆମର ବନ୍ଦନୀୟ । ଆପଣ ସମସ୍ତଙ୍କର ଆଦି ହୋଇ ମଧ୍ୟ ନିଜେ ଅନାଦି । ଆପଣ ଆନନ୍ଦସ୍ୱରୂପ, ଅବ୍ୟୟ, ପ୍ରଭୁ, ପ୍ରକୃତି-ପୁରୁଷର ମଧ୍ୟ ସାକ୍ଷାତ୍ ସ୍ରଷ୍ଟା ଓ ଜଗଦୀଶ୍ୱର । ଆପଣ ହିଁ ରଜୋଗୁଣ, ସତ୍ତ୍ୱଗୁଣ ଓ ତମୋଗୁଣ ଆଶ୍ରୟରେ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ହୋଇ ଜଗତର କର୍ତ୍ତା, ଭର୍ତ୍ତା ତଥା ସଂହର୍ତ୍ତା ହୁଅନ୍ତି । ଆପଣ ଏ ଭବସାଗରରୁ ଉଦ୍ଧାରକାରୀ । ଆପଣ ପ୍ରାଣୀମାନଙ୍କର ସ୍ୱାମୀ, ବରଦାତା, ବାଙ୍ମୟସ୍ୱରୂପ, ବେଦପ୍ରତିପାଦ୍ୟ ଓ ବାଚ୍ୟ-ବାଚକତାରୁ ଊର୍ଦ୍ଧ୍ୱରେ । ଯୋଗବେତ୍ତା ଯୋଗୀମାନେ ଆପଣଙ୍କ ଠାରୁ ମୁକ୍ତି ଭିକ୍ଷା କରିଥାନ୍ତି । ଆପଣ ଯୋଗୀଜନଙ୍କ ହୃଦୟକମଳର କର୍ଣ୍ଣିକାରେ ବିରାଜମାନ ହୋଇଥାନ୍ତି । ଦେବଗଣ ଓ ସନ୍ଥଜନ କହନ୍ତି ଯେ ଆପଣ ପରବ୍ରହ୍ମସ୍ୱରୂପ, ତତ୍ତ୍ୱରୂପ, ତେଜୋରାଶି ଓ ପରାତ୍ପର ଅଟନ୍ତି । ଶର୍ବ ! ଆପଣ ସର୍ବବ୍ୟାପୀ, ସର୍ବାତ୍ମା ଓ ତ୍ରୈଲୋକ୍ୟର ଅଧିପତି । ଭବ ! ଏ ଜଗତରେ ଯାହାଙ୍କୁ ପରମାତ୍ମା କୁହାଯାଏ, ସେ ହେଉଛନ୍ତି ଆପଣ । ଜଗଦ୍‌ଗୁରୋ ! ଏ ଜଗତରେ ଯାହାଙ୍କୁ ଦର୍ଶନୀୟ, ଶ୍ରବଣୀୟ ଓ ସ୍ତବନୀୟ ବୋଲି କୁହାଯାଏ ଏବଂ ଯେ ଅଣୁଠାରୁ ବି ସୂକ୍ଷ୍ମ ଓ ମହାନ୍ ଠାରୁ ବି ମହାନ୍, ଆପଣ ହେଉଛନ୍ତି ସେହି ତତ୍ତ୍ୱ । ଆପଣଙ୍କର ସର୍ବତ୍ର ହସ୍ତ, ପଦ, ନେତ୍ର, ମସ୍ତକ, ମୁଖ, କର୍ଣ୍ଣ ଓ ନାସା ବ୍ୟାପ୍ତ ହୋଇ ରହିଛି । ଏଣୁ ଚତୁର୍ଦ୍ଦିଗରୁ ଆପଣଙ୍କୁ ନମସ୍କାର । ସର୍ବବ୍ୟାପିନ୍ ! ଆପଣ ସର୍ବଜ୍ଞ, ସର୍ବେଶ୍ୱର, ଅନାବୃତ ଓ ବିଶ୍ୱରୂପ ଅଟନ୍ତି । ଆପଣଙ୍କ ପରି ବିରୂପାକ୍ଷଙ୍କୁ ଆମେ ସର୍ବଦ୍ଦିଗରୁ ଅଭିବାଦନ କରୁଛୁ । ଆପଣ ସର୍ବେଶ୍ୱର, ଭବାଧ୍ୟକ୍ଷ, ସତ୍ୟମୟ, କଲ୍ୟାଣକର୍ତ୍ତା, ଅନୁପମେୟ ଓ କୋଟିସୂର୍ଯ୍ୟସମ ତେଜସ୍ୱୀ । ଆପଣଙ୍କୁ ଆମେ ଚତୁର୍ଦ୍ଦିଗରୁ ଦଣ୍ଡବତ୍-ପ୍ରଣାମ କରୁଛୁ । ଆପଣ ବିଶ୍ୱାରାଧ୍ୟ, ଆଦିଅନ୍ତଶୂନ୍ୟ, ଛବିଶତମ ତତ୍ତ୍ୱ, ନିୟାମକରହିତ ଓ ସକଳ ପ୍ରାଣୀଙ୍କୁ ସେମାନଙ୍କ କାର୍ଯ୍ୟରେ ପ୍ରବୃତ୍ତକାରୀ । ଆପଣଙ୍କୁ ଆମର ସବୁଦିଗରୁ ପ୍ରଣାମ । ଆପଣ ପ୍ରକୃତିର ପ୍ରବର୍ତ୍ତକ, ସମସ୍ତଙ୍କର ପ୍ରପିତାମହ ଓ ସମସ୍ତଙ୍କ ଶରୀରରେ ବ୍ୟାପ୍ତ ପରମେଶ୍ୱର; ଆପଣଙ୍କୁ ଆମର ନମସ୍କାର । ଶ୍ରୁତି ଓ ସ୍ମୃତିର ଜ୍ଞାତା ବିଜ୍ଞଜନ ଆପଣଙ୍କୁ ବରଦାତା, ସମସ୍ତ ଭୂତରେ ନିବାସକାରୀ, ସ୍ୱୟମ୍ଭୂ ଓ ଶ୍ରୁତିତତ୍ତ୍ୱଜ୍ଞ ବୋଲି କହିଥାନ୍ତି । ପ୍ରଭୋ ! ଆପଣ ଜଗତରେ ଏଭଳି ଅନେକ କାର୍ଯ୍ୟ କରିଛନ୍ତି, ଯାହା ଆମ ବୁଦ୍ଧିର ଅତୀତ; ଏଣୁ ଦେବତା ଅସୁର ବ୍ରାହ୍ମଣ ଓ ଅନ୍ୟାନ୍ୟ ସ୍ଥାବର-ଜଙ୍ଗମ ମଧ୍ୟ ଆପଣଙ୍କୁ ହିଁ ସ୍ତୁତି କରନ୍ତି । ଶମ୍ଭୋ ! ତ୍ରିପୁରବାସୀ ଦୈତ୍ୟମାନେ ଆମ୍ଭମାନଙ୍କୁ ନଷ୍ଟପ୍ରାୟ କରିଦେଲେଣି, ତେଣୁ ଶୀଘ୍ର ସେମାନଙ୍କୁ ବିନାଶ କରି ଆମକୁ ରକ୍ଷା କରନ୍ତୁ । କାରଣ ହେ ଦେବବଲ୍ଲଭ ! ଏକମାତ୍ର ଆପଣ ହିଁ ଆମ ଦେବତାମାନଙ୍କର ଗତି । ହେ ପରମେଶ୍ୱର ! ଏବେ ସେମାନେ ଆପଣଙ୍କ ମାୟାରେ ମୋହିତ ହୋଇଯାଇଛନ୍ତି । ଏଣୁ ସେମାନେ ଭଗବାନ ବିଷ୍ଣୁଙ୍କ ଦ୍ୱାରା କଥିତ ଉପାୟର କୁଚକ୍ରରେ ପଡ଼ି ସମସ୍ତ ଧର୍ମକର୍ମ ଛାଡ଼ିଦେଲେଣି । ଭକ୍ତବତ୍ସଳ ! ଆମର ସୌଭାଗ୍ୟବଶତଃ ଏବେ ସେହି ଦୈତ୍ୟମାନେ ସମସ୍ତ ଧର୍ମ ପରିତ୍ୟାଗ କରି ନାସ୍ତିକ ଶାସ୍ତ୍ରର ଆଶ୍ରୟ ନେଇଛନ୍ତି । ଶରଣଦାତା ! ଆପଣ ସର୍ବଦା ଦେବତାଙ୍କ କାର୍ଯ୍ୟ ସାଧିତ କରି ଆସିଛନ୍ତି । ତେଣୁ ଆଜି ମଧ୍ୟ ଆମେ ଆପଣଙ୍କର ଶରଣାଗତ ହୋଇଛୁ । ଏଣିକି ଆପଣଙ୍କର ଯାହା ଇଚ୍ଛା, ତାହା କରନ୍ତୁ ।

ସନତ୍‌କୁମାର କହୁଛନ୍ତି–ମୁନିବର ! ଏହିରୂପେ ମହେଶ୍ୱରଙ୍କୁ ସ୍ତୁତି କରି ଦେବଗଣ ଦୈନ୍ୟଭାବରେ ଯୋଡ଼ହସ୍ତପୂର୍ବକ ନତମସ୍ତକ ହୋଇ ତାଙ୍କ ସମ୍ମୁଖରେ ଠିଆ ହୋଇରହିଲେ । ସୁରେନ୍ଦ୍ର ଆଦି ଦେବତା

ମହେଶ୍ୱରଙ୍କୁ ଏଭଳି ସ୍ତୁତି କରିବାରୁ ଓ ବିଷ୍ଣୁ ଈଶାନ-ମନ୍ତ୍ର ଜପ କରିବାରୁ ସର୍ବେଶ୍ୱର ଭଗବାନ ଶିବ ପ୍ରସନ୍ନ ହୋଇଗଲେ ଏବଂ ତତ୍‌କ୍ଷଣାତ୍ ସେଠାରେ ଆବିର୍ଭୂତ ହୋଇଗଲେ । ସେତେବେଳେ ସେ ବୃଷଭାରୁଢ଼ ଥିଲେ ଏବଂ ତାଙ୍କ ମନ ପ୍ରସନ୍ନ ଥିଲା । ସେ ନନ୍ଦୀଶ୍ୱରଙ୍କ ପିଠିରୁ ଓହ୍ଲାଇ ବିଷ୍ଣୁଙ୍କୁ ଆଲିଙ୍ଗନ କଲେ ଏବଂ ନନ୍ଦୀପିଠିରେ ହାତ ଭରା ଦେଇ ଠିଆ ହୋଇ ସକଳ ଦେବତାଙ୍କ ଆଡ଼କୁ କୃପାପୂର୍ଣ୍ଣ ଦୃଷ୍ଟିରେ ଚାହିଁ ଗମ୍ଭୀର ବାଣୀରେ ଶ୍ରୀହରିଙ୍କୁ କହିଲେ—

ଶିବ କହିଲେ—ହେ ସୁରେଶ୍ୱର ! ସେହି ଅଧର୍ମନିଷ୍ଠ ଦୈତ୍ୟଙ୍କର ତିନିପୁରକୁ ମୁଁ ଯେ ନଷ୍ଟ କରିଦେବି, ଏଥିରେ ସନ୍ଦେହ ନାହିଁ; ହେଲେ ସେହି



ମହାଦୈତ୍ୟମାନେ ମୋର ଭକ୍ତ ଥିଲେ, ସେମାନଙ୍କ ମନ ମୋ ଠାରେ ସୁଦୃଢ଼ରୂପେ ଲାଗି ରହୁଥିଲା । ଏବେ ଯଦିଓ ସେମାନେ ଛଳ ହେତୁ ଉତ୍ତମ ଧର୍ମକୁ ପରିତ୍ୟାଗ କରିଦେଇଛନ୍ତି, ତଥାପି ସେମାନେ କ'ଣ ମୋ' ହାତରେ ବଧ ହେବା ଯୋଗ୍ୟ? ଯେଉଁ ବିଷ୍ଣୁ ତ୍ରିପୁରବାସୀ ଦୈତ୍ୟଙ୍କୁ ଧର୍ମଭ୍ରଷ୍ଟ କରିଦେଇ ମୋ ଭକ୍ତିରୁ ବିମୁଖ କରିଦେଇଛନ୍ତି, ସେ ଅଥବା ଅନ୍ୟ କେହି କାହିଁକି ସେମାନଙ୍କୁ ମାରୁନାହାନ୍ତି?

ମୁନୀଶ୍ୱର ! ଶମ୍ଭୁଙ୍କ ମୁଖରୁ ଏକଥା ଶୁଣି ଦେବତାଙ୍କର ଓ ଶ୍ରୀହରିଙ୍କର ମନ ଖଟା ହୋଇଗଲା । ସୃଷ୍ଟିକର୍ତ୍ତା ବ୍ରହ୍ମା ଦେଖିଲେ ଯେ ଦେବଗଣଙ୍କର ଓ ବିଷ୍ଣୁଙ୍କର ମୁଖ ମ୍ଳାନ ହୋଇଯାଇଛି । ତେଣୁ ସେ ହାତ ଯୋଡ଼ି ଶମ୍ଭୁଙ୍କୁ ଏହିପରି କହିବା ଆରମ୍ଭ କଲେ—

ବ୍ରହ୍ମା କହିଲେ—ପରମେଶ୍ୱର ! ଆପଣ ଯୋଗବେତ୍ତାଙ୍କ ମଧ୍ୟରେ ଶ୍ରେଷ୍ଠ, ପରବ୍ରହ୍ମ ଓ ସର୍ବଦା ଦେବତା ଓ ଋଷିଙ୍କ ରକ୍ଷାରେ ତତ୍ପର ରହିଥାନ୍ତି; ତେଣୁ ଆପଣଙ୍କୁ ପାପ ସ୍ପର୍ଶ କରିପାରିବ ନାହିଁ । ଏହାଛଡ଼ା ଆପଣଙ୍କ ଆଦେଶରେ ହିଁ ତ ସେମାନଙ୍କୁ ମୋହରେ ପକାଯାଇଥିଲା । ଏହାର ପ୍ରେରକ ତ ଆପଣ । ଏବେ ସେମାନେ ସ୍ୱଧର୍ମ ପରିତ୍ୟାଗ କରିଦେଇଛନ୍ତି ଏବଂ ଆପଣଙ୍କ ଭକ୍ତିରୁ ବିମୁଖ ହୋଇଯାଇଛନ୍ତି; ପୁଣି ଆପଣଙ୍କ ଛଡ଼ା ଅନ୍ୟ କେହି ସେମାନଙ୍କୁ ମାରି ବି ପାରିବ ନାହିଁ । ତେଣୁ ହେ ଦେବତା ଓ ଋଷିଙ୍କର ପ୍ରାଣରକ୍ଷକ ମହାଦେବ ! ସାଧୁଙ୍କର ରକ୍ଷା ପାଇଁ ଆପଣଙ୍କ ଦ୍ୱାରା ସେହି ମ୍ଲେଚ୍ଛଙ୍କର ବଧ ହେବା ଅନୁଚିତ ନୁହେଁ । ଆପଣ ତ ରାଜା ଅଟନ୍ତି । ରାଜା ଧର୍ମାନୁସାରେ ପାପୀଙ୍କୁ ବଧ କଲେ ତାଙ୍କୁ ପାପ ଲାଗେ ନାହିଁ । ଏଣୁ ସେହି ଅସୁରରୂପୀ କଣ୍ଟକକୁ ଉପାଡ଼ି ସାଧୁ ଓ ବ୍ରାହ୍ମଣଙ୍କୁ ରକ୍ଷା କରନ୍ତୁ । ରାଜା ଯଦି ନିଜର ରାଜ୍ୟ ଓ ସର୍ବଲୋକାଧିପତ୍ୟକୁ ସ୍ଥିର ରଖିବାକୁ ଚାହେଁ, ତା' ପକ୍ଷେ ନିଜ ରାଜ୍ୟରେ ଓ ଅନ୍ୟତ୍ର ମଧ୍ୟ ଏହିପରି ବ୍ୟବହାର କରିବା ଉଚିତ । ଏଣୁ ଆପଣ ଦେବଗଣଙ୍କ ରକ୍ଷା ନିମିତ୍ତ ଉଦ୍ୟତ ହୁଅନ୍ତୁ; ବିଳମ୍ବ ନ କରନ୍ତୁ । ଦେବଦେବେଶ ! ବଡ଼ ବଡ଼ ମୁନୀଶ୍ୱର, ଯଜ୍ଞ, ସମସ୍ତ ବେଦ, ଶାସ୍ତ୍ର, ମୁଁ ଏବଂ ବିଷ୍ଣୁ—ଆମେ ସମସ୍ତେ ନିଶ୍ଚିତରୂପେ ଆପଣଙ୍କର ପ୍ରଜା । ପ୍ରଭୋ ! ଆପଣ ଦେବଗଣଙ୍କର ସାର୍ବଭୌମ ସମ୍ରାଟ୍ । ଏ

ଶ୍ରୀହରି ଆଦି ଦେବଗଣ ତଥା ସାରା ଜଗତ୍ ଆପଣଙ୍କର ହିଁ କୁଟୁମ୍ବ । ଅଜନ୍ମା ଦେବ ! ଶ୍ରୀହରି ହେଉଛନ୍ତି ଆପଣଙ୍କର ଯୁବରାଜ, ମୁଁ ବ୍ରହ୍ମା ଆପଣଙ୍କର ପୁରୋହିତ ଏବଂ ଆପଣଙ୍କ ଆଜ୍ଞାପାଳକ ଇନ୍ଦ୍ର ହେଉଛନ୍ତି ରାଜକାର୍ଯ୍ୟ ସମ୍ଭାଳୁଥିବା ମନ୍ତ୍ରୀ । ସର୍ବେଶ ! ଅନ୍ୟ ଦେବତାମାନେ ମଧ୍ୟ ଆପଣଙ୍କ ଶାସନାଧୀନରେ ଥାଇ ସର୍ବଦା ନିଜ ନିଜ କାର୍ଯ୍ୟରେ ତତ୍ପର ରହିଥାନ୍ତି । ଏହା ସମ୍ପୂର୍ଣ୍ଣ ସତ୍ୟ ।

ସନତ୍କୁମାର କହୁଛନ୍ତି–ବ୍ୟାସଦେବ ! ବ୍ରହ୍ମାଙ୍କ କଥା ଶୁଣି ସୁରପାଳକ ପରମେଶ୍ୱର ଶିବଙ୍କ ମନ ପ୍ରସନ୍ନ ହୋଇଗଲା । ସେ ବ୍ରହ୍ମାଙ୍କୁ କହିଲେ–

ଶିବ କହିଲେ–ବ୍ରହ୍ମନ୍ ! ଆପଣ ମୋତେ ଦେବତାଙ୍କର ସମ୍ରାଟ୍ ବୋଲି କହିଲେ ସତ, ହେଲେ ମୋ ପାଖରେ ସେହି ପଦର ଯୋଗ୍ୟ ଏଭଳି କୌଣସି ସାମଗ୍ରୀ ତ ନାହିଁ, ଯଦ୍ଦ୍ୱାରା ମୁଁ ସେହି ପଦ ଗ୍ରହଣ କରି ପାରିବି । ନା ମୋ ପାଖରେ କୌଣସି ମହାନ୍ ଦିବ୍ୟ ରଥ ଅଛି, ନା ତାହାର ଉପଯୁକ୍ତ ସାରଥି ଅଛି, ନା ସଂଗ୍ରାମରେ ବିଜୟୀ ହେଲା ଭଳି ଧନୁଶର ଅଛି, ଯାହା ସାହାଯ୍ୟରେ ମୁଁ ମନୋଯୋଗପୂର୍ବକ ସଂଗ୍ରାମରତ ହୋଇ ସେହି ବଳବାନ୍ ଦୈତ୍ୟଙ୍କୁ ବଧ କରି ପାରିବି । ଏଭଳି କହି ସେ ନୀରବ ହୋଇଗଲେ । ଶିବ ଜଲ୍‌ଦି ପ୍ରସ୍ତୁତ ନ ହେବା ଦେଖି ସମସ୍ତ ଦେବତା ଓ କଶ୍ୟପାଦି ଋଷି ଅତ୍ୟନ୍ତ ବ୍ୟାକୁଳ ତଥା ଦୁଃଖୀ ହୋଇଗଲେ । ଭଗବାନ ଶ୍ରୀହରି ସେମାନଙ୍କୁ କହିଲେ–

ଭଗବାନ ବିଷ୍ଣୁ କହିଲେ–''ଦେବଗଣ ! ମୁନିଗଣ ! ତୁମେମାନେ କାହିଁକି ମନଦୁଃଖ କରୁଛ? ତୁମେମାନେ ସମସ୍ତ ଦୁଃଖ ପରିତ୍ୟାଗ କର, ଆଉ ମୋ କଥା ଆଦରରେ ଶୁଣ । ଦେବଗଣ ! ବିଗ୍ଚର କରି ଦେଖ, ମହତ୍ ପୁରୁଷଙ୍କ ଆରାଧନା ଏତେ ସହଜସାଧ୍ୟ ନୁହେଁ । ମୁଁ ଶୁଣିଛି ଯେ ମହତ୍ ପୁରୁଷଙ୍କ ଆରାଧନାରେ ପ୍ରଥମେ ବହୁତ କଷ୍ଟ ସହିବାକୁ ପଡ଼ିଥାଏ । ପରେ ଭକ୍ତର ଦୃଢ଼ତା ଦେଖି ଇଷ୍ଟଦେବ ଅବଶ୍ୟ ପ୍ରସନ୍ନ ହୁଅନ୍ତି । ପରନ୍ତୁ ଶିବ ତ ସମସ୍ତ ଗଣଙ୍କ ଅଧ୍ୟକ୍ଷ ଓ ପରମେଶ୍ୱର । ପୁଣି ସେ ଆଶୁତୋଷ ଅଟନ୍ତି । ତେଣୁ ପ୍ରଥମେ 'ଓଁ' ଉଚ୍ଚାରଣ କରି ତା'ପରେ 'ନମଃ' ପ୍ରୟୋଗ କର । ତା'ପରେ 'ଶିବାୟ' କହି ଦୁଇ ଥର 'ଶୁଭମ୍' ଉଚ୍ଚାରଣ କର । ତା'ପରେ ଦୁଇଥର 'କୁରୁ' ପ୍ରୟୋଗ କରି ପୁଣି 'ଶିବାୟ ନମଃ ଓଁ' ସଂଯୋଗ କର । (ଏପରି କଲେ 'ଓଁ ନମଃ ଶିବାୟ ଶୁଭଂ ଶୁଭଂ କୁରୁ କୁରୁ ଶିବାୟ ନମଃ ଓଁ'–ଏହି ମନ୍ତ୍ର ହେବ ।) ହେ ବୁଦ୍ଧି-ବିଶାରଦଗଣ ! ଯଦି ତୁମେମାନେ ଶିବଙ୍କୁ ପ୍ରସନ୍ନ କରିବା ପାଇଁ ଏହି ମନ୍ତ୍ର ପୁନଃ ଏକକୋଟି ଜପ କରିବ, ତେବେ ଶିବ ତୁମର କାର୍ଯ୍ୟ ଅବଶ୍ୟ ପୂର୍ଣ୍ଣ କରିବେ ।'' ମୁନେ ! ପ୍ରଭାବଶାଳୀ ଶ୍ରୀହରି ଏପରି କହିବାରୁ ସମସ୍ତ ଦେବତା ପୁନଃ ଶିବାରାଧନାରେ ରତ ହେଲେ । ତା'ପରେ ଶ୍ରୀହରି ମଧ୍ୟ ଦେବତା ଓ ଋଷିଙ୍କ କାର୍ଯ୍ୟର ସିଦ୍ଧି ନିମନ୍ତେ ଶିବଙ୍କ ଠାରେ ମନ ଲଗାଇ ବିଶେଷରୂପେ ବିଧିବତ୍ ଜପ କଲେ । ମୁନିଶ୍ରେଷ୍ଠ ! ଦେବଗଣ ଧୈର୍ଯ୍ୟ ଧାରଣ କରି ବାରମ୍ବାର 'ଶିବ-ଶିବ' ଉଚ୍ଚାରଣ କରିବା ସହିତ ଏକକୋଟି ମନ୍ତ୍ର ଜପ କରି ସମ୍ମୁଖରେ ଆସି ଛିଡ଼ା ହେଲେ । ଏତିକିବେଳେ ସାକ୍ଷାତ୍ ଶିବ ପୂର୍ବୋକ୍ତ ସ୍ୱରୂପରେ ପ୍ରକଟ ହୋଇ ଏହିପରି କହିଲେ–

ଶିବ କହିଲେ–ହରେ ! ବ୍ରହ୍ମନ୍ ! ଦେବଗଣ ! ଏବଂ ଉତ୍ତମବ୍ରତପରାୟଣ ମୁନିଗଣ ! ମୁଁ ତୁମମାନଙ୍କର ଏହି ଜପରେ ଅତ୍ୟନ୍ତ ପ୍ରସନ୍ନ । ତେଣୁ ତୁମେମାନେ ମନୋବାଞ୍ଛିତ ବର ମାଗ ।

ଦେବଗଣ କହିଲେ–ଦେବାଧିଦେବ ! କଲ୍ୟାଣକାରୀ ଜଗଦୀଶ୍ୱର ! ଯଦି ଆପଣ ଆମ ଉପରେ ପ୍ରସନ୍ନ, ତେବେ ଦେବତାଙ୍କ ବ୍ୟାକୁଳତା କଥା ଚିନ୍ତା କରି ଶୀଘ୍ର ତ୍ରିପୁରକୁ ସଂହାର କରନ୍ତୁ ।

ପରମେଶ୍ୱର ! ଆପଣ ଦୀନବନ୍ଧୁ ଓ କୃପାନିଧାନ । ଆପଣ ହିଁ ଆମେ ସବୁ ଦେବତାଙ୍କୁ ବାରମ୍ବାର ବିପତ୍ତିରୁ ରକ୍ଷା କରି ଆସିଛନ୍ତି । ଏଣୁ ଏବେ ମଧ୍ୟ ଆମକୁ ରକ୍ଷା କରନ୍ତୁ ।

ସନତ୍‌କୁମାର କହୁଛନ୍ତି—ବ୍ରହ୍ମନ୍ ! ବ୍ରହ୍ମା-ବିଷ୍ଣୁ ସମେତ ସମସ୍ତ ଦେବତାଙ୍କ କଥା ଶୁଣି ଶିବ ମନେ ମନେ ପ୍ରସନ୍ନ ହେଲେ ଏବଂ ଏହିପରି କହିଲେ—

ମହେଶ୍ୱର କହିଲେ—ହରେ ! ବ୍ରହ୍ମନ୍ ! ଦେବଗଣ ଓ ଋଷିଗଣ ! ଏବେ ତୁମେମାନେ ତ୍ରିପୁର ନାଶ ଗଲା ବୋଲି ଜାଣ । ତୁମେମାନେ ମୋ କଥାକୁ ଆଦରରେ ଶୁଣ (ଏବଂ ତଦନୁସାରେ କାର୍ଯ୍ୟ କର) । ମୁଁ ପ୍ରଥମେ ଯେଉଁ ଦିବ୍ୟ ରଥ, ସାରଥି, ଧନୁ ଓ ଉତ୍ତମ ଶର କଥା କହିଥିଲି, ତାହା ତୁମେମାନେ ଶୀଘ୍ର ପ୍ରସ୍ତୁତ କର । ବିଷ୍ଣୁ ଓ ବ୍ରହ୍ମା ! ତୁମେ ଦୁହେଁ ନିଶ୍ଚୟ ତ୍ରିଲୋକର ଅଧିପତି; ତେଣୁ ତୁମେ ମୋ ପାଇଁ ପ୍ରଯତ୍ନପୂର୍ବକ ସମ୍ରାଟ୍‌ର ଯୋଗ୍ୟ ସମସ୍ତ ଉପକରଣ ଯୋଗାଡ଼ କରିଦିଅ । ତୁମେ ଦୁହେଁ ସୃଷ୍ଟିର ସୃଜନ ଓ ପାଳନ କାର୍ଯ୍ୟରେ ନିଯୁକ୍ତ ଅଛ, ତେଣୁ ତ୍ରିପୁର ନାଶ ଗଲା ବୋଲି ବୁଝି ଦେବତାଙ୍କ ସହାୟତା ନିମନ୍ତେ ଏ କାର୍ଯ୍ୟ ନିଶ୍ଚୟ କରିବାକୁ ହେବ । ଏହି ଶୁଭ ମନ୍ତ୍ର (ଯାହାକୁ ତୁମେମାନେ ଜପିଥିଲ) ଅତି ପୁଣ୍ୟମୟ ଓ ମୋତେ ପ୍ରସନ୍ନ କରାଇବାକୁ ସକ୍ଷମ । ଏହା ଭୁକ୍ତି ଓ ମୁକ୍ତି ପ୍ରଦାନ କରିଥାଏ, ସମସ୍ତ କାମନା ପୂରଣ କରିଥାଏ ଏବଂ ଶିବଭକ୍ତଙ୍କୁ ଆନନ୍ଦ ଦେଇଥାଏ । ଏହା ସ୍ୱର୍ଗକାମୀ ବ୍ୟକ୍ତିର ଧନ, ଯଶ ଓ ଆୟୁ ବୃଦ୍ଧି କରିଥାଏ । ଏହା ନିଷ୍କାମ ବ୍ୟକ୍ତିକୁ ମୋକ୍ଷ ଏବଂ ସାଧକକୁ ଭୁକ୍ତି ଓ ମୁକ୍ତି ଦେଇଥାଏ । ଯେଉଁ ମନୁଷ୍ୟ ପବିତ୍ର ହୋଇ ସଦା ଏ ମନ୍ତ୍ରକୁ କୀର୍ତ୍ତନ କରେ, ଶୁଣେ ଅଥବା ଅନ୍ୟକୁ ଶୁଣାଏ, ତାହାର ସମସ୍ତ ଅଭିଳାଷ ପୂର୍ଣ୍ଣ ହୋଇଥାଏ ।

ସନତ୍‌କୁମାର କହୁଛନ୍ତି—ମୁନେ ! ପରମାତ୍ମା ଶିବଙ୍କ କଥା ଶୁଣି ସମସ୍ତ ଦେବତା ଅତ୍ୟନ୍ତ ଆନନ୍ଦିତ ହେଲେ । ବ୍ରହ୍ମା ଓ ବିଷ୍ଣୁଙ୍କୁ ତ ବିଶେଷ ଆନନ୍ଦ ମିଳିଲା । ସେହି ଅବସରରେ ବିଶ୍ୱର ହିତ ଦୃଷ୍ଟିରୁ ବିଶ୍ୱକର୍ମା ଶିବଙ୍କ ଆଜ୍ଞାନୁସାରେ ଗୋଟିଏ ସର୍ବଦେବମୟ ତଥା ପରମ ଶୋଭନ ଦିବ୍ୟ ରଥ ନିର୍ମାଣ କଲେ । (ଅଧ୍ୟାୟ ୬–୮)

★★★

## ସର୍ବଦେବମୟ ରଥର ବର୍ଣ୍ଣନ, ସେହି ରଥରେ ଆରୋହଣପୂର୍ବକ ଶିବଙ୍କର ଯୁଦ୍ଧଯାତ୍ରା, ତାଙ୍କର ନାମ 'ପଶୁପତି' ହେବାର କାରଣ, ଶିବଙ୍କ ଦ୍ୱାରା ଗଣେଶପୂଜନ ଓ ତ୍ରିପୁରଦହନ, ତ୍ରିପୁର ବିଧ୍ୱଂସକ ଅଗ୍ନିରୁ ମୟଦାନବର ରକ୍ଷା

ବ୍ୟାସଦେବ କହୁଛନ୍ତି—ହେ ଶୈବପ୍ରବର ସନତ୍‌କୁମାର ! ଆପଣଙ୍କ ବୁଦ୍ଧି ବହୁତ ଉତ୍ତମ, ଆପଣ ସର୍ବଜ୍ଞ ! ତାତ ! ଆପଣ ପରମେଶ୍ୱର ଶିବଙ୍କ ବିଷୟରେ ଯେଉଁ କଥା ଶୁଣାଇଲେ, ତାହା ଅତ୍ୟନ୍ତ ଅଦ୍ଭୁତ । ଏବେ ବିଶ୍ୱକର୍ମା ଶିବଙ୍କ ପାଇଁ ଯେଉଁ ଦେବମୟ ତଥା ପରମୋତ୍କୃଷ୍ଟ ଦିବ୍ୟ ରଥ ନିର୍ମାଣ କଲେ, ସେ ବିଷୟରେ କୁହନ୍ତୁ ।

ସୂତ କହୁଛନ୍ତି—ମୁନେ ! ବ୍ୟାସଙ୍କ କଥା ଶୁଣି ମୁନୀଶ୍ୱର ସନତ୍‌କୁମାର ଶିବଙ୍କ ପାଦପଦ୍ମକୁ ସ୍ମରଣ କରି କହିଲେ—

ସନତ୍‌କୁମାର କହିଲେ—ମହାବୁଦ୍ଧିମାନ୍ ମୁନିବର ବ୍ୟାସ ! ମୁଁ ଶିବଙ୍କ ପାଦପଦ୍ମକୁ ସ୍ମରଣ କରି ନିଜ ବୁଦ୍ଧି ଅନୁସାରେ ରଥ ନିର୍ମାଣ କଥା ବର୍ଣ୍ଣନା କରୁଛି । ବିଶ୍ୱକର୍ମା ରୁଦ୍ରଦେବଙ୍କ ପାଇଁ ଅତି

ଯତ୍ନରେ ଆଦରପୂର୍ବକ ସର୍ବଲୋକମୟ ଦିବ୍ୟ ରଥ ନିର୍ମାଣ କଲେ । ସେହି ସର୍ବସମ୍ମତ ଓ ସର୍ବଭୂତମୟ ରଥ ସୁବର୍ଣ୍ଣରେ ନିର୍ମିତ ଥିଲା । ତାହାର ଡାହାଣ ଚକରେ ସୂର୍ଯ୍ୟ ଓ ବାମ ଚକରେ ଚନ୍ଦ୍ର ବିରାଜମାନ ଥିଲେ । ଡାହାଣ ଚକର ବାରଟି ଅରରେ ଦ୍ୱାଦଶ ଆଦିତ୍ୟ ପ୍ରତିଷ୍ଠିତ ଥିଲେ । ରଥର ବାମ ଚକରେ ଥିଲା ଷୋହଳଟି ଅର; ସେଥିରେ ଚନ୍ଦ୍ରଙ୍କର ଷୋହଳ କଳା ବିଦ୍ୟମାନ ଥିଲା । ହେ ସୁବ୍ରତ! ବିପ୍ରେନ୍ଦ୍ର ! ଅଶ୍ୱିନୀ ପ୍ରଭୃତି ସତେଇଶଟି ନକ୍ଷତ୍ର ମଧ୍ୟ ସେହି ବାମ ଚକର ଶୋଭା ବଢ଼ାଉଥିଲେ । ଛଅଋତୁ ଉଭୟ ଚକର ନେମି ହେଲେ, ଅନ୍ତରୀକ୍ଷ ରଥର ଅଗ୍ରଭାଗ ହେଲା ଏବଂ ମନ୍ଦରାଚଳ ହେଲା ରଥର ବୈଠକସ୍ଥାନ । ଉଦୟାଚଳ ଓ ଅସ୍ତାଚଳ ହେଲେ ରଥର କୁବର । ମହାମେରୁ ହେଲା ଅଧିଷ୍ଠାନ ଓ ଶାଖାପର୍ବତ ହେଲେ ତାହାର ଆଶ୍ରୟସ୍ଥାନ । ସଂବତ୍ସରମାନେ ହେଲେ ରଥର ବେଗ, ଉତ୍ତରାୟଣ ଓ ଦକ୍ଷିଣାୟନ ହେଲେ ଲୋହଧାରକ, ମୁହୂର୍ତ୍ତମାନେ ହେଲେ ବନ୍ଧୁର (ରସି) ଓ କଳାମାନେ ହେଲେ ତାହାର କିଳା । କାଷ୍ଠାମାନେ ହେଲେ ତାହାର ଘୋଣା (ନାସିକାରୂପୀ ଅଗ୍ରଭାଗ), କ୍ଷଣ ହେଲେ ଅକ୍ଷଦଣ୍ଡ, ନିମେଷ ହେଲେ ଅନୁକର୍ଷ (ତଳକାଠ) ଓ ଲବ ହେଲେ ଈଷା । ଦ୍ୟୁଲୋକ ହେଲା ରଥର ବରୂଥ (ଉପର ପରଦା) ତଥା ସ୍ୱର୍ଗ ଓ ମୋକ୍ଷ ଧ୍ୱଜା ହେଲେ । ଅଭ୍ରମୁ (ଐରାବତର ପତ୍ନୀ) ଓ କାମଧେନୁ ଯୁଆଦଣ୍ଡର ଶେଷଭାଗରେ ସ୍ଥିତ ହେଲେ । ଅବ୍ୟକ୍ତ (ପ୍ରକୃତି) ସେହି ରଥର ଈଷାଦଣ୍ଡ, ବୁଦ୍ଧି ନଡ୍ୱଳ, ଅହଂକାର କୋଣ ଓ ପଞ୍ଚମହାଭୂତ ତାହାର ବଳ ହୋଇଥିଲେ । ମୁନିବର ! ଇନ୍ଦ୍ରିୟଗଣ ତାହାକୁ ଚାରିପଟରୁ ଶୋଭାମୟ କରୁଥିଲେ ଏବଂ ଶ୍ରଦ୍ଧା ସେହି ରଥର ଗତି ଥିଲା । ସେତେବେଳେ ବେଦର ଛଅଟି ଅଙ୍ଗ ସେହି ରଥର ଭୂଷଣ ଏବଂ ପୁରାଣ, ନ୍ୟାୟ, ମୀମାଂସା ଓ ଧର୍ମଶାସ୍ତ୍ର ଉପଭୂଷଣ ହୋଇଥିଲେ । ସମସ୍ତ ଶୁଭଲକ୍ଷଣଯୁକ୍ତ ଓ ବଳ-ସମ୍ପନ୍ନ ଶ୍ରେଷ୍ଠ ମନ୍ତ୍ରମାନେ ଘଣ୍ଟାସ୍ଥାନରେ ବିଦ୍ୟମାନ ହେଲେ ଏବଂ ବର୍ଣ୍ଣ ତଥା ଆଶ୍ରମ ତାହାର ପାଦ ହେଲେ । ସହସ୍ର ଫଣାରେ ସୁଶୋଭିତ ଶେଷନାଗ ବନ୍ଧନରଜ୍ଜୁ ହେଲେ ଏବଂ ଦିଗବିଦିଗ ତାହାର ପାଦ ହେଲେ । ପୁଷ୍କର ଆଦି ତୀର୍ଥ ରତ୍ନଜଟିତ ସ୍ୱର୍ଣ୍ଣମୟ ପତାକାର ସ୍ଥାନ ଗ୍ରହଣ କଲେ ଏବଂ ଚାରିସମୁଦ୍ର ରଥର ଆଚ୍ଛାଦନ ବସ୍ତ୍ର ହେଲେ । ଗଙ୍ଗା ଆଦି ସକଳ ଶ୍ରେଷ୍ଠ ସରିତାମାନେ ସୁନ୍ଦରୀ ନାରୀଙ୍କ ରୂପ ଧାରଣ କଲେ ଏବଂ ସେମାନେ ସମସ୍ତ ଅଳଂକାରରେ ବିଭୂଷିତ ହୋଇ ହାତରେ ଚାମର ଧରି ଯତ୍ର-ତତ୍ର ସ୍ଥିତ ହୋଇ ରଥର ଶୋଭାବର୍ଦ୍ଧନ କଲେ । ଆବହ ଆଦି ସପ୍ତବାୟୁ ସ୍ୱର୍ଣ୍ଣମୟ ଉତ୍ତମ ସୋପାନର କାର୍ଯ୍ୟ ତୁଲାଇଲେ । ଲୋକାଲୋକ ପର୍ବତ ତାହାର ଚତୁର୍ଦ୍ଦିଗର ଉପସୋପାନ ଓ ମାନସ ଆଦି ସରୋବର ତାହାର ବହିଃସ୍ଥ ସୁନ୍ଦର ବିଷମସ୍ଥାନ ହେଲେ । ସମସ୍ତ ବର୍ଷାଚଳ ତାହାର ଚତୁର୍ଦ୍ଦିଗର ପାଶ ହେଲେ ଏବଂ ଅଧଃଲୋକର ନିବାସୀ ସେହି ରଥର ତଳଭାଗ ହେଲେ । ଦେବାଧିଦେବ ବ୍ରହ୍ମା ଲଗାମଧାରୀ ସାରଥି ହେଲେ ଏବଂ ବ୍ରହ୍ମଦୈବତ ଓଁକାର ତାଙ୍କର ଚାବୁକ ହେଲା । ଅକାର ବିଶାଳ ଛତ୍ର ରୂପ ଧାରଣ କଲା । ମନ୍ଦରାଚଳ ପାର୍ଶ୍ୱଭାଗର ଦଣ୍ଡ ହେଲା । ଶୈଳରାଜ ହିମାଳୟ ଧନୁ ଓ ସ୍ୱୟଂ ନାଗରାଜ ଶେଷ ତାହାର ପ୍ରତ୍ୟଞ୍ଚା (ଗୁଣ) ହେଲେ । ଶ୍ରୁତିରୂପିଣୀ ସରସ୍ୱତୀ-ଦେବୀ ସେହି ଧନୁର ଘଣ୍ଟା ହେଲେ; ମହାତେଜସ୍ୱୀ ବିଷ୍ଣୁ ଶର ଏବଂ ଅଗ୍ନି ସେହି ଶରର ମୁନ ହେଲେ । ମୁନେ ! ଚାରିବେଦ ଉକ୍ତ ରଥରେ ଯୋଚ୍ଚାଯାଇଥିବା ଚାରିଟି ଅଶ୍ୱ ବୋଲି କଥିତ ହୁଅନ୍ତି । ଅବଶିଷ୍ଟ ଜ୍ୟୋତିଷ୍କମାନେ ଅଶ୍ୱମାନଙ୍କର ଆଭୂଷଣ ହେଲେ । ବିଷରୁ ଉତ୍ପନ୍ନ ବସ୍ତୁମାନ ସେନାର ରୂପ ଧାରଣ କଲା । ବାୟୁ ବାଦକ ଏବଂ ବ୍ୟାସାଦି ପ୍ରମୁଖ

ଋଷିମାନେ ବାହକ ହେଲେ । ମୁନୀଶ୍ୱର ! ଅଧିକ କହିବାରେ କି ପ୍ରୟୋଜନ, ମୁଁ ସଂକ୍ଷେପରେ କହୁଛି ଯେ ବ୍ରହ୍ମାଣ୍ଡରେ ଯାହା କିଛି ବସ୍ତୁ ଥିଲା, ସବୁ ସେହି ରଥରେ ବିଦ୍ୟମାନ ଥିଲା । ଏହି ପ୍ରକାରେ ବୁଦ୍ଧିମାନ୍ ବିଶ୍ୱକର୍ମା ବ୍ରହ୍ମା ଓ ବିଷ୍ଣୁଙ୍କ ଆଜ୍ଞାରେ ସେହି ଶୁଭ ରଥ ଓ ରଥସାମଗ୍ରୀ ନିର୍ମାଣ କରିଥିଲେ ।

ସନତ୍କୁମାର କହୁଛନ୍ତି—ମହର୍ଷେ ! ଅନେକ ପ୍ରକାର ଆଶ୍ଚର୍ଯ୍ୟରେ ସଂଯୁକ୍ତ ଏପରି ଦିବ୍ୟ ରଥରେ ବେଦରୂପୀ ଅଶ୍ୱମାନଙ୍କୁ ଯୋଚି ବ୍ରହ୍ମା ତାହାକୁ ଶିବଙ୍କୁ ସମର୍ପିତ କରିଦେଲେ । ଶମ୍ଭୁଙ୍କୁ ଅର୍ପଣ କରିବାପରେ ସେ ବିଷ୍ଣୁ ପ୍ରମୁଖ ଦେବତାଙ୍କ ସମ୍ମାନନୀୟ ତ୍ରିଶୂଳଧାରୀ ଦେବେଶ୍ୱରଙ୍କୁ ନିବେଦନ କରି ତାଙ୍କୁ ସେହି ରଥରେ ଆରୋହଣ କରାଇଲେ । ମହାନ୍ ଐଶ୍ୱର୍ଯ୍ୟଶାଳୀ ସର୍ବଦେବମୟ ଶମ୍ଭୁ ସକଳ ରଥସାମଗ୍ରୀରେ ସଂଯୁକ୍ତ ଉକ୍ତ ଦିବ୍ୟ ରଥରେ ଆରୂଢ଼ ହେବାବେଳେ ଋଷି, ଦେବତା, ଗନ୍ଧର୍ବ, ନାଗ, ଲୋକପାଳ ଏବଂ ବ୍ରହ୍ମା-ବିଷ୍ଣୁ ମଧ୍ୟ ତାଙ୍କୁ ସ୍ତୁତି କରୁଥିଲେ । ଗାନବିଦ୍ୟାବିଶାରଦ ଅପ୍ସରାଗଣ ତାଙ୍କୁ ଘେରି ରହିଥିଲେ । ସାରଥି ସ୍ଥାନରେ ବ୍ରହ୍ମା ଥିବାରୁ ବରଦାୟକ ଶମ୍ଭୁ ବିଶେଷରୂପେ ଶୋଭିତ ହେଲେ । ଜଗତର ସମସ୍ତ ବସ୍ତୁରେ କଳ୍ପିତ ଉକ୍ତ ରଥରେ ଶିବ ଚଢ଼ୁ ଚଢ଼ୁ ବେଦସମ୍ଭୂତ ଘୋଡ଼ାମାନେ ମୁଣ୍ଡମାଡ଼ି ପଡ଼ିଗଲେ । ପୃଥିବୀ ଦୋହଲି ଗଲା । ସମସ୍ତ ପର୍ବତ ହଲିଗଲେ । ସହସା ଶେଷନାଗ ଶିବଙ୍କ ଭାର ସହି ନ ପାରି ଆତୁର ହୋଇ କମ୍ପି ଉଠିଲେ । ସେତିକିବେଳେ ଭଗବାନ ଧରଣୀଧର ଉଠି ନନ୍ଦୀଶ୍ୱର ରୂପ ଧାରଣ କରିନେଲେ ଏବଂ ରଥର ତଳକୁ ଯାଇ ତାହାକୁ ଉପରକୁ ଉଠାଇଲେ; ହେଲେ ନନ୍ଦୀଶ୍ୱର ମଧ୍ୟ ରଥାରୂଢ଼ ମହେଶଙ୍କ ସେହି ବିଶେଷ ତେଜକୁ ସହି ପାରିଲେ ନାହିଁ, ତେଣୁ ସେ ମଧ୍ୟ ତତ୍କାଳ ଭୂମିରେ ଆଣ୍ଠେଇ ପଡ଼ିଲେ । ତା'ପରେ ଭଗବାନ ବ୍ରହ୍ମା ଶିବଙ୍କ ଆଜ୍ଞାରେ ହାତରେ ଚାବୁକ୍ ଧରି ଘୋଡ଼ାଙ୍କୁ ଉଠାଇ ସେହି ଶ୍ରେଷ୍ଠ ରଥକୁ ଠିଆ କରାଇଲେ । ତା'ପରେ ବ୍ରହ୍ମା ମହେଶ ଅଧିଷ୍ଠିତ ହୋଇଥିବା ଉକ୍ତ ଉତ୍ତମ ରଥରେ ସଂଯୁକ୍ତ ବାୟୁ ତଥା ମନ ପରି ବେଗଗାମୀ ବେଦମୟ ଅଶ୍ୱଙ୍କୁ ତପସ୍ୱୀ ଦାନବଙ୍କ ଆକାଶସ୍ଥିତ ତ୍ରିପୁର ଆଡ଼କୁ ଲକ୍ଷ୍ୟ କରି ଅଡ଼ାଇଲେ । ଏହାପରେ ଲୋକକଲ୍ୟାଣକାରୀ ରୁଦ୍ର ଦେବଗଣଙ୍କ ଆଡ଼କୁ ଦୃଷ୍ଟିପାତ କରି କହିଲେ—"ସୁରଗଣ ! ଯଦି ତୁମେମାନେ ଦେବତା ତଥା ଅନ୍ୟ ପ୍ରାଣୀଙ୍କ ଠାରେ ପୃଥକ୍ ପୃଥକ୍ ପଶୁତ୍ୱ କଳ୍ପନା କରି ସେହି ପଶୁମାନଙ୍କ ଆଧିପତ୍ୟ ମୋତେ ପ୍ରଦାନ କରିବ, ତେବେ ଯାଇ ମୁଁ ସେହି ଅସୁରଙ୍କୁ ସଂହାର କରିବି; କାରଣ ଏପରି ନ କଲେ ସେମାନଙ୍କୁ ବଧ କରିବା ଅସମ୍ଭବ ।"

ସନତ୍କୁମାର କହୁଛନ୍ତି—ମୁନେ ! ଅଗାଧ-ବୁଦ୍ଧିସମ୍ପନ୍ନ ମହାଦେବଙ୍କ କଥା ଶୁଣି ସମସ୍ତ ଦେବତା ପଶୁତ୍ୱ ପ୍ରତି ସଶଙ୍କିତ ହୋଇ ଉଠିଲେ । ସେମାନଙ୍କ ମନ ଦୁଃଖରେ ଭାଙ୍ଗିପଡ଼ିଲା । ସେମାନଙ୍କ ମନୋଭାବକୁ ଜାଣି ଦେବଦେବ ମହାଦେବ କରୁଣାର୍ଦ୍ର ହୋଇଗଲେ । ଏହାପରେ ସେ ହସି ହସି ଦେବଗଣଙ୍କୁ ଏହିପରି କହିଲେ ।

ଶମ୍ଭୁ କହିଲେ—ଶ୍ରେଷ୍ଠ ଦେବଗଣ ! ପଶୁଭାବ ପ୍ରାପ୍ତ ହେଲେ ମଧ୍ୟ ତୁମମାନଙ୍କର ପତନ ହେବ ନାହିଁ । ମୁଁ ସେହି ପଶୁଭାବରୁ ବିମୁକ୍ତ ହେବାର ଉପାୟ କହିଦେଉଛି, ତାହା ଶୁଣ ଓ ସେହିପରି କର । ହେ ସମାହିତଚିତ୍ତ ଦେବଗଣ ! ମୁଁ ତୁମମାନଙ୍କୁ ସତ୍ୟ ପ୍ରତିଜ୍ଞା କରି କହୁଛି, ଯେ ଏହି ଦିବ୍ୟ ପାଶୁପତବ୍ରତ ପାଳନ କରିବ, ସେ ପଶୁତ୍ୱରୁ ମୁକ୍ତ ହୋଇଯିବ । ତୁମମାନଙ୍କ ଛଡ଼ା ଆଉ ଯେଉଁ ପ୍ରାଣୀମାନେ ମଧ୍ୟ ମୋର ପାଶୁପତବ୍ରତକୁ ପାଳନ କରିବେ, ସେମାନେ ମଧ୍ୟ ନିଶ୍ଚିତରୂପେ ପଶୁତ୍ୱରୁ

ମୁକ୍ତି ପାଇଯିବେ । ଯେ ନୈଷ୍ଠିକ ବ୍ରହ୍ମଚର୍ଯ୍ୟ ପାଳନପୂର୍ବକ ବାରବର୍ଷ, ଛଅବର୍ଷ ଅଥବା ତିନିବର୍ଷ ପର୍ଯ୍ୟନ୍ତ ମୋର ସେବା କରିବ କିଂବା କରାଇବ, ସେ ପଶୁତ୍ୱରୁ ବିମୁକ୍ତ ହୋଇଯିବ । ଏଣୁ ଶ୍ରେଷ୍ଠ ଦେବଗଣ ! ତୁମେମାନେ ଏହି ପରମୋତ୍କୃଷ୍ଟ ଦିବ୍ୟ ବ୍ରତକୁ ପାଳନ କରିବାକ୍ଷଣି ଯେ ପଶୁତ୍ୱରୁ ମୁକ୍ତ ହୋଇଯିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ସନତ୍‌କୁମାର କହୁଛନ୍ତି—ମହର୍ଷେ ! ପରମାତ୍ମା ମହେଶ୍ୱରଙ୍କ ବଚନ ଶୁଣି ବିଷ୍ଣୁ ଓ ବ୍ରହ୍ମା ଆଦି ଦେବଗଣ କହିଲେ—'ତଥେତି' ଅର୍ଥାତ୍ ତାହା ହିଁ ହେବ । ଏହି ସର୍ତ୍ତ ଅନୁସାରେ ବଡ଼ ବଡ଼ ଦେବତା ତଥା ଅସୁର ଭଗବାନ ଶଙ୍କରଙ୍କର ପଶୁ ହେଲେ ଏବଂ ପଶୁତ୍ୱରୂପୀ ପାଶରୁ ମୁକ୍ତିଦାତା ଭଗବାନ ରୁଦ୍ର ପଶୁପତି ହେଲେ । ସେହିଦିନ ଠାରୁ ମହେଶ୍ୱରଙ୍କ ନାମ 'ପଶୁପତି' ରୂପେ ବିଶ୍ୱରେ ବିଖ୍ୟାତ ହେଲା । ଏହି ନାମ ସମଗ୍ର ଜଗତରେ କଲ୍ୟାଣପ୍ରଦ । ସେତେବେଳେ ସମସ୍ତ ଦେବତା ତଥା ଋଷି ସହର୍ଷ ଜୟ-ଜୟକାର କଲେ ଏବଂ ଦେବେଶ୍ୱର ବ୍ରହ୍ମା, ବିଷ୍ଣୁ ଓ ଅନ୍ୟାନ୍ୟ ପ୍ରାଣୀ ମଧ୍ୟ ପରମାନନ୍ଦରେ ନିମଗ୍ନ ହୋଇଗଲେ । ସେହି ସମୟରେ ମହାତ୍ମା ମହେଶ୍ୱରଙ୍କର ଯେଉଁ ରୂପ ପ୍ରକଟ ହୋଇଥିଲା, ତାହାକୁ ଶହେ ବର୍ଷରେ ମଧ୍ୟ ବର୍ଣ୍ଣନା କରିବା ଅସମ୍ଭବ । ଏଥର ସମସ୍ତ ଭୁବନର ସ୍ୱାମୀ ଏବଂ ସବୁରି ସୁଖଦାତା ଶିବାପତି ମହେଶ୍ୱର ଏହିରୂପେ ସୁସଜ୍ଜିତ ହୋଇ ତ୍ରିପୁରକୁ ବିନାଶ କରିବାକୁ ବାହାରିଲେ । ଦେବଦେବ ମହାଦେବ ତ୍ରିପୁରକୁ ବିନାଶ କରିବାକୁ ବାହାରିବା ବେଳେ ତାଙ୍କ ସଙ୍ଗରେ ଦେବରାଜ ପ୍ରଭୃତି ମୁଖ୍ୟ ମୁଖ୍ୟ ଦେବତାମାନେ ମଧ୍ୟ ଚାଲିଲେ । ପର୍ବତ ପରି ବିଶାଳକାୟ ସେହି ସୁରେଶ୍ୱରମାନଙ୍କର ମନ ପ୍ରସନ୍ନ ଥିଲା, ସେମାନେ ସୂର୍ଯ୍ୟଙ୍କ ପରି ଉଦ୍ଭାସିତ ହେଉଥିଲେ । ସେମାନେ ସମସ୍ତେ ହାତରେ ହଳ, ଶାଳ, ମୁଷଳ, ଭୁଶୁଣ୍ଡି ଓ ନାନା ପ୍ରକାର ପର୍ବତତୁଲ୍ୟ ବିଶାଳ ବିଶାଳ ଆୟୁଧ ଧରି ହାତୀ, ଘୋଡ଼ା, ସିଂହ, ରଥ ଓ ବଳଦଙ୍କ ଉପରେ ଆରୂଢ଼ ହୋଇ ଯାଉଥାନ୍ତି । ସେତେବେଳେ ପରମ କାନ୍ତିମାନ୍ ଓ ନାନା ପ୍ରକାର ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଇନ୍ଦ୍ର, ବ୍ରହ୍ମା ଓ ବିଷ୍ଣୁ ପ୍ରମୁଖ ଦେବତା ଅତ୍ୟନ୍ତ ଉତ୍ସାହରେ ଶମ୍ଭୁଙ୍କର ଜୟନାଦ କରି କରି ତାଙ୍କ ଆଗେ ଆଗେ ଚାଲିଥାନ୍ତି । ଦଣ୍ଡୀ ଓ ଜଟାଧାରୀ ମୁନିମାନେ ହର୍ଷ ବ୍ୟକ୍ତ କରୁଥାନ୍ତି ଏବଂ ଆକାଶଚାରୀ ସିଦ୍ଧ ତଥା ଚାରଣମାନେ ପୁଷ୍ପବୃଷ୍ଟି କରୁଥାନ୍ତି । ବିପ୍ରେନ୍ଦ୍ର! ତ୍ରିପୁର ଅଭିମୁଖେ ଯାତ୍ରା କରୁଥିବା ସମୟରେ ଯେତେ ସବୁ ଗଣେଶ୍ୱର ଶିବଙ୍କ ସଙ୍ଗରେ ଯାଉଥିଲେ, ସେମାନଙ୍କର ସମ୍ପୂର୍ଣ୍ଣ ଗଣନା କିଏ ବା କରି ପାରିବ? ତଥାପି ମୁଁ ଅଳ୍ପ କିଛି ବର୍ଣ୍ଣନା କରୁଛି । ଯୋଗିନ୍! ସମସ୍ତ ଗଣରାଜଙ୍କ ମଧ୍ୟରେ ଶ୍ରେଷ୍ଠ ଭୃଙ୍ଗୀ ବିମାନରେ ବସି ଗଣେଶ୍ୱର ଓ ଦେବଗଣଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ମହେନ୍ଦ୍ରଙ୍କ ପରି ତ୍ରିପୁର ବିନାଶ ନିମନ୍ତେ ଯାଉଥାନ୍ତି । ତାଙ୍କ ସଙ୍ଗରେ କେଶ, ବିଗତବାସ, ମହାକେଶ, ମହାଜ୍ୱର, ସୋମବଲ୍ଲୀ-ସବର୍ଣ୍ଣ, ସୋମପ, ସନକ, ସୋମଧୃକ୍, ସୂର୍ଯ୍ୟବର୍ଚ୍ଚା, ସୂର୍ଯ୍ୟପ୍ରେକ୍ଷଣକ, ସୂର୍ଯ୍ୟାକ୍ଷ, ସୂରିନାମା, ସୁର, ସୁନ୍ଦର, ପ୍ରସ୍କନ୍ଦ, କୁନ୍ଦର, ଚଣ୍ଡ, କମ୍ପନ, ଅତିକମ୍ପନ, ଇନ୍ଦ୍ର, ଇନ୍ଦ୍ରଜୟ, ଯନ୍ତା, ହିମକର, ଶତାକ୍ଷ, ପଞ୍ଚାକ୍ଷ, ସହସ୍ରାକ୍ଷ, ମହୋଦର, ସତୀଜହ୍ନୁ, ଶତାସ୍ୟ, ରଙ୍କ, କର୍ପୂରପୂତନ, ଦ୍ୱିଶିଖ, ତ୍ରିଶିଖ, ଅହଙ୍କାରକାରକ, ଅଜବକ୍ତ୍ର, ଅଷ୍ଟବକ୍ତ୍ର, ହୟବକ୍ତ୍ର, ଅର୍ଧବକ୍ତ୍ର ପ୍ରଭୃତି ଅନେକ ଅପ୍ରମେୟ ବଳଶାଳୀ ବୀର ଗଣାଧ୍ୟକ୍ଷ ଲକ୍ଷ୍ୟ-ଲକ୍ଷଣକୁ ଖାତିରି ନ କରି ମହେଶ୍ୱରଙ୍କ ଚାରିପଟରେ ଘେରି ଚାଲୁଥାନ୍ତି ।

ବ୍ୟାସଦେବ ! ଏଥର ମହାଦେବ ଶମ୍ଭୁ

ସମସ୍ତ ସାମଗ୍ରୀଯୁକ୍ତ ସେହି ରଥରେ ବିରାଜିତ ହୋଇ ସୁରଦ୍ରୋହୀଙ୍କର ତ୍ରିପୁରକୁ ପୂର୍ଣ୍ଣରୂପେ ଦଗ୍ଧ କରିବା ନିମନ୍ତେ ଉଦ୍ୟତ ହେଲେ । ସେ ରଥର ଶୀର୍ଷସ୍ଥାନରେ ରହି ତାଙ୍କର ଅତ୍ୟଦ୍ଭୁତ ଧନୁରେ ଗୁଣ ସଂଯୋଗ କଲେ ଏବଂ ସେଥିରେ ଉତ୍ତମ ଶର ସନ୍ଧାନ କଲେ । ସେ ରୋଷାବେଶରେ ଓଠ କାମୁଡ଼ି, ଧନୁର ମୁଠାକୁ ଦୃଢ଼ଭାବେ ମୁଠାଇ ଧରି ଏବଂ ଦୃଷ୍ଟିରେ ଦୃଷ୍ଟି ମିଳାଇ ଅଚଳଭାବରେ ଠିଆ ହୋଇଗଲେ । ମାତ୍ର ଗଣେଶ ତାଙ୍କ ବୃଦ୍ଧାଙ୍ଗୁଳିର ଅଗ୍ରଭାଗରେ ରହି ନିରନ୍ତର କଷ୍ଟ ଦେବାକୁ ଲାଗିଲେ, ଯାହା ଫଳରେ ତ୍ରିପୁର ଉପରେ ଶିବଙ୍କର ଲକ୍ଷ୍ୟ କେନ୍ଦ୍ରିତ ହୋଇ ପାରିଲା ନାହିଁ । ଏହାପରେ ଧନୁର୍ବାଣଧାରୀ ମୁଞ୍ଜକେଶ ବିରୂପାକ୍ଷ ଶଙ୍କର ପରମ ଶୋଭନ ଆକାଶବାଣୀ ଶୁଣିବାକୁ ପାଇଲେ । (ସେହି ଶୂନ୍ୟବାଣୀ କହିଲା—) ''ହେ ଐଶ୍ୱର୍ଯ୍ୟଶାଳୀ ଜଗଦୀଶ୍ୱର ! ଯେପର୍ଯ୍ୟନ୍ତ ଆପଣ ଗଣେଶଙ୍କୁ ଅର୍ଚ୍ଚନା ନ କରିଛନ୍ତି, ସେପର୍ଯ୍ୟନ୍ତ ତ୍ରିପୁରକୁ ସଂହାର କରି ପାରିବେ ନାହିଁ ।'' ଏକଥା ଶୁଣି ଅନ୍ଧକାସୁରନିହନ୍ତା ଶିବ ଭଦ୍ରକାଳୀଙ୍କୁ ଡାକି ଗଣେଶଙ୍କୁ ପୂଜା କଲେ । ସମ୍ମୁଖରେ ସ୍ଥିତ ବିନାୟକଙ୍କ ପୂଜନ ସହର୍ଷ ବିଧିବିଧାନରେ ସମ୍ପନ୍ନ ହୋଇଯିବା ପରେ ଗଣେଶ ପ୍ରସନ୍ନ ହୋଇଗଲେ । ଏହାପରେ ଭଗବାନ ଶିବଙ୍କୁ ତାରକପୁତ୍ର ମହାମନସ୍ୱୀ ଦୈତ୍ୟଙ୍କ ତିନୋଟି ନଗର ଯଥୋକ୍ତରୂପରେ ଆକାଶରେ ଅବସ୍ଥିତ ଥିବା ଦୃଶ୍ୟ ହେଲା । ଏ ବିଷୟରେ କିଛି ଲୋକଙ୍କର ମତ ଯେ ଶିବ ଯେହେତୁ ସ୍ୱୟଂ ସ୍ୱତନ୍ତ୍ର, ପରବ୍ରହ୍ମ, ସଗୁଣ, ନିର୍ଗୁଣ, ସମସ୍ତଙ୍କ ଦ୍ୱାରା ଅଲକ୍ଷ୍ୟ, ସ୍ୱାମୀ, ପରମାତ୍ମା, ନିରଞ୍ଜନ, ପଞ୍ଚଦେବମୟ, ପଞ୍ଚଦେବଙ୍କ ଉପାସ୍ୟ, ପରାତ୍ପର ପ୍ରଭୁ ଏବଂ ସେ ହିଁ ସମସ୍ତଙ୍କର ଉପାସ୍ୟ, ତାଙ୍କର କେହି ଉପାସ୍ୟ ନାହିଁ, ତେବେ ଏ ପରିପ୍ରେକ୍ଷୀରେ ସର୍ବବନ୍ଦନୀୟ ପରବ୍ରହ୍ମସ୍ୱରୂପ ଦେବେଶ୍ୱର ମହାଦେବଙ୍କ ବିଷୟରେ ଏଭଳି କିପରି କୁହାଯାଇ ପାରିବ ଯେ ସେ କାର୍ଯ୍ୟସିଦ୍ଧି ପାଇଁ ଅନ୍ୟର କୃପା ଉପରେ ନିର୍ଭର କରିବେ । ପରନ୍ତୁ ମୁନେ ! ଦେବାଧିଦେବ ବରଦାତା ମହେଶ୍ୱରଙ୍କ ଲୀଳାମୟ ଚରିତ୍ରରେ ସବୁ କିଛି ସମ୍ଭବ । ସେ ଯାହା ହେଉ ନା କାହିଁକି, ଏହିରୂପେ ଗଣେଶପୂଜନ ସରିବା ପରେ କାଳବଶାତ୍ ତିନୋଟି ପୁର ଏକୀଭୂତ ହୋଇଗଲେ । ମୁନେ ! ତିନୋଟି ପୁର ପରସ୍ପର ସହ ମିଶି ଏକାକାର ହୋଇଯିବାରୁ ମହାତ୍ ଆତ୍ମବଳସମ୍ପନ୍ନ ଦେବତାଙ୍କ ଆନନ୍ଦର ସୀମା ରହିଲା ନାହିଁ । ସମସ୍ତ ଦେବତା, ସିଦ୍ଧ ଓ ପରମର୍ଷିମାନେ ଅଷ୍ଟମୂର୍ତ୍ତିଧାରୀ ଶିବଙ୍କୁ ସ୍ତୁତି କରି ଉଚ୍ଚସ୍ୱରରେ ଜୟ-ଜୟକାର କରିବାକୁ ଲାଗିଲେ । ବ୍ରହ୍ମା ଓ ଜଗଦୀଶ୍ୱର ବିଷ୍ଣୁ କହିଲେ—''ମହେଶ୍ୱର ! ଏଥର ତାରକପୁତ୍ର ତ୍ରିପୁରନିବାସୀ ଦୈତ୍ୟଙ୍କ ବଧର ସମୟ ଆସିଗଲା; ସେଇଥିପାଇଁ ଏ ତିନିପୁର ଏକୀଭୂତ ହୋଇଗଲେଣି । ତେଣୁ ହେ ଦେବେଶ ! ଏ ତିନିପୁର ପୁଣି ଥରେ ପୃଥକ୍ ପୃଥକ୍ ହେବା ପୂର୍ବରୁ ହିଁ ଆପଣ ଶର ମାରି ତ୍ରିପୁରକୁ ଭସ୍ମ କରି ଦିଅନ୍ତୁ ଏବଂ ଦେବତାଙ୍କ କାର୍ଯ୍ୟ ସାଧିତ କରନ୍ତୁ ।''

ମୁନେ ! ଏହାପରେ ଶିବ ଧନୁରେ ଗୁଣସଂଯୋଗ କରି ସେଥିରେ ପୂଜ୍ୟ ପାଶୁପତାସ୍ତ୍ର ନାମକ ଶର ସନ୍ଧାନ କଲେ ଏବଂ ତାହାକୁ ତ୍ରିପୁର ଉପରକୁ ଛାଡ଼ିବାକୁ ଚିନ୍ତା କଲେ । ଶିବ ଯେତେବେଳେ ତାଙ୍କର ଅଦ୍ଭୁତ ଧନୁକୁ ଟାଣିଲେ ସେତେବେଳେ ଅଭିଜିତ୍ ମୁହୂର୍ତ୍ତ ଚାଲୁଥିଲା । ଭଗବାନ ଧନୁର ଟଙ୍କାର ସହିତ ଦୁଃସହ ସିଂହନାଦ କରି ନିଜର ନାମ ଘୋଷିତ କଲେ ଏବଂ ସେହି ମହାସୁରମାନଙ୍କୁ ଆହ୍ୱାନ କରି କୋଟିସୂର୍ଯ୍ୟସମ

ଉଜ୍ଜ୍ୱଳ ଭୀଷଣ ଶର ସେମାନଙ୍କ ଉପରକୁ ଛାଡ଼ିଦେଲେ । ସେହି ଶର ଥିଲା ବିଶେଷରୂପେ ପାପବିନାଶକ ଓ ବିଷ୍ଣୁମୟ ଏବଂ ତାହାର ମୁନରେ ବିରାଜମାନ ଥିଲେ ଅଗ୍ନିଦେବ । ଉକ୍ତ ମହାଜାଜ୍ୱଲ୍ୟମାନ ଦ୍ରୁତଗାମୀ ଶର ତ୍ରିପୁରନିବାସୀ ଦୈତ୍ୟଙ୍କୁ ଦଗ୍ଧ କରିଦେଲା । ତା'ପରେ ସେହି ତିନୋଟି ପୁର ମଧ୍ୟ ଭସ୍ମ ହୋଇ ଏକାବେଳକେ ଗ୍ରିରି ସମୁଦ୍ରରୂପୀ ମେଖଳା ପରିବେଷ୍ଟିତା ପୃଥିବୀ ଉପରେ ଖସି ପଡ଼ିଲା । ଶିବଙ୍କ ପୂଜା ଅତିକ୍ରମ



କରିଥିବା କାରଣରୁ ଶହ ଶହ ଦୈତ୍ୟ ହାହାକାର କରିବା ସହିତ ଶିବଙ୍କ ଶରାଗ୍ନିରେ ଜଳିପୋଡ଼ି ଭସ୍ମ ହୋଇଗଲେ । ଯେତେବେଳେ ଭାଇମାନଙ୍କ ସମେତ ତାରକାକ୍ଷ ଜଳିବାକୁ ଲାଗିଲା, ସେ ନିଜର ସ୍ୱାମୀ ଭକ୍ତବତ୍ସଳ ଭଗବାନ ଶିବଙ୍କୁ ସ୍ମରଣ କଲା ଏବଂ ମନ ମଧ୍ୟରେ ମହାଦେବଙ୍କୁ ଦର୍ଶନ କରି ପରମ ଭକ୍ତିରେ ନାନା ପ୍ରକାରେ ବିଳାପ କରି କହିଲା—

ତାରକାକ୍ଷ କହିଲା—''ଭବ ! ଆପଣ ଆମ ଉପରେ ଯେ ପ୍ରସନ୍ନ, ଏହା ମୋତେ ଜ୍ଞାତ ହୋଇଗଲା । ଏହି ସତ୍ୟର ପ୍ରଭାବରେ ଆପଣ ପୁଣି କେବେ ଭାଇଙ୍କ ସମେତ ମୋତେ ଦଗ୍ଧ କରିବେ? ଭଗବନ୍ ! ଯାହା ଦେବତା ଓ ଅସୁରଙ୍କୁ ଅପ୍ରାପ୍ୟ, ତାହା (ଆପଣଙ୍କ ହସ୍ତରେ ମରଣ) ଆମକୁ ମିଳିଗଲା । ଏବେ ଯେଉଁ ଯେଉଁ ଯୋନିରେ ଆମେ ଜନ୍ମଗ୍ରହଣ କରିବୁ, ଆମ ବୁଦ୍ଧି ଆପଣଙ୍କ ପ୍ରତି ଭକ୍ତିରେ ଭାବିତ ରହୁ ।'' ମୁନେ ! ଦୈତ୍ୟମାନେ ଏହିପରି ବିଳାପ କରୁ କରୁ ଶିବଙ୍କ ଆଜ୍ଞାରେ ଅଗ୍ନି ସେମାନଙ୍କୁ ଅଦ୍ଭୁତ ରୀତିରେ ଜାଳି ପୋଡ଼ି ପାଉଁଶ ଗଦାରେ ପରିଣତ କରିଦେଲା । ବ୍ୟାସଦେବ ! ସେଠାରେ ଯେତେ ସବୁ ବାଳକ ଓ ବୃଦ୍ଧ ଦାନବ ଥିଲେ, ସେମାନେ ମଧ୍ୟ ଶିବାଜ୍ଞାନୁସାରେ ଅବିଳମ୍ବେ ଅଗ୍ନିରେ ପୋଡ଼ି ପାଉଁଶ ହୋଇଗଲେ । ଏପରି କି ସେଠାରେ ଯେତେ ସ୍ତ୍ରୀ-ପୁରୁଷ ଥିଲେ ବା ବାହନ ପ୍ରଭୃତି ଥିଲା, ସବୁକିଛି ସେହି ଅଗ୍ନିରେ କଳ୍ପାନ୍ତରେ ଯେପରି ଜଗତ ଭସ୍ମ ହୋଇଯାଏ, ସେହିପରି ଭସ୍ମ ହୋଇଗଲା । ସେହି ଭୀଷଣ ଅଗ୍ନିରୁ ସ୍ଥାବର-ଜଙ୍ଗମ କେହି ବି ରକ୍ଷା ପାଇପାରିଲେ ନାହିଁ; କେବଳ ଅସୁରଙ୍କ ବିଶ୍ୱକର୍ମା ଅବିନାଶୀ ମୟ ବଞ୍ଚିଗଲା; କାରଣ ସେ ଦେବତାଙ୍କ ଅବିରୋଧୀ, ଶମ୍ଭୁଙ୍କ ତେଜରେ ସୁରକ୍ଷିତ ଓ ସଦ୍‌ଭକ୍ତ ଥିଲା । ବିପତ୍ତି କାଳରେ ସେ ମହେଶ୍ୱରଙ୍କର ଶରଣାଗତ ହୋଇ ରହୁଥିଲା । ଯେଉଁ ଦୈତ୍ୟଙ୍କର ଓ ଅନ୍ୟ ପ୍ରାଣୀଙ୍କର ଭାବ-ଅଭାବ ଅବସ୍ଥାରେ ଅଥବା କୃତ-ଅକୃତ ସମୟରେ ବିନାଶକାରକ ପତନ ହୁଏ ନାହିଁ, ସେମାନେ ବିନାଶରୁ ରକ୍ଷା ପାଇ ଯାଆନ୍ତି । ଏଣୁ ସତ୍‌ପୁରୁଷମାନେ ଅତ୍ୟନ୍ତ ସମ୍ଭାବିତ ବା ଉତ୍ତମ କର୍ମ ନିମନ୍ତେ ହିଁ ପ୍ରଯତ୍ନ କରିବା ଉଚିତ; କାରଣ ନିନ୍ଦିତ କର୍ମ କଲେ ପ୍ରାଣୀର ବିନାଶ ହୋଇଯାଏ । ଏଣୁ ଗର୍ହିତ କର୍ମ କଦାପି ଭୁଲ୍‌ରେ

ମଧ୍ୟ ନ କରିବା ଉଚିତ ।* ସେହି ସମୟରେ ମଧ୍ୟ ଯେଉଁ ଦୈତ୍ୟମାନେ ବନ୍ଧୁ-ବାନ୍ଧବ ସମେତ ଶିବଙ୍କ ପୂଜାରେ ତତ୍ପର ଥିଲେ, ସେମାନେ ଶିବପୂଜା ପ୍ରଭାବରେ (ପର ଜନ୍ମରେ) ଗଣଙ୍କର ଅଧିପତି ହେଲେ ।

(ଅଧ୍ୟାୟ୯-୧୦)

✯✯✯

## ଦେବତାଙ୍କ ସ୍ତୁତିରେ ଶିବଙ୍କର କୋପଶାନ୍ତି ଓ ଦେବତାଙ୍କୁ ବର ପ୍ରଦାନ, ମୟଦାନବକୁ ଶିବଙ୍କ ଠାରୁ ବରପ୍ରାପ୍ତି ଏବଂ ତା'ର ବିତଳଲୋକ ଗମନ

ବ୍ୟାସ ପଚାରିଲେ—ହେ ମହାବୁଦ୍ଧିମାନ୍ ସନତ୍‌କୁମାର ! ଆପଣ ତ ବ୍ରହ୍ମାଙ୍କ ପୁତ୍ର ଓ ଶିବଭକ୍ତଙ୍କ ମଧ୍ୟରେ ଶ୍ରେଷ୍ଠ, ତେଣୁ ଆପଣ ଧନ୍ୟ । ଏବେ କୁହନ୍ତୁ ଯେ ତ୍ରିପୁରଦହନ ପରେ ଦେବଗଣ କ'ଣ କଲେ? ମୟ କେଉଁଠିକୁ ଗଲା ଏବଂ ତ୍ରିପୁରାଧ୍ୟକ୍ଷ ଅସୁରଙ୍କର କେଉଁ ଗତି ହେଲା? ଯଦି ଏହି ବୃତ୍ତାନ୍ତ ଶମ୍ଭୁଙ୍କ ଲୀଳା ସହ ସମ୍ବନ୍ଧିତ ହୋଇଥାଏ, ତେବେ ସବିସ୍ତାର ବର୍ଣ୍ଣନା କରନ୍ତୁ ।

ସୂତ କହୁଛନ୍ତି—ମୁନେ ! ବ୍ୟାସଙ୍କ ପ୍ରଶ୍ନ ଶୁଣି ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ପୁତ୍ର ସନତ୍‌କୁମାର ଶିବଙ୍କ ଚରଣଯୁଗଳକୁ ଚିନ୍ତନ କରି କହିଲେ ।

ସନତ୍‌କୁମାର କହିଲେ—ମହାବୁଦ୍ଧିମାନ୍ ବ୍ୟାସଦେବ ! ଦୈତ୍ୟମାନଙ୍କ ଦ୍ୱାରା ପରିପୂର୍ଣ୍ଣ ସମଗ୍ର ତ୍ରିପୁରକୁ ମହେଶ୍ୱର ଭସ୍ମ କରିଦେବା ଦେଖି ଦେବତାମାନଙ୍କୁ ଘୋର ଆଶ୍ଚର୍ଯ୍ୟ ଲାଗିଲା । ସେତେବେଳେ ଶିବଙ୍କର ରୌଦ୍ର ରୂପ ଅତ୍ୟନ୍ତ ଭୟଙ୍କର ଥିଲା । ସେ କୋଟିସୂର୍ଯ୍ୟସମ ପ୍ରକାଶମାନ ଓ ପ୍ରଳୟକାଳୀନ ଅଗ୍ନିତୁଲ୍ୟ ତେଜସ୍ୱୀ ଦିଶୁଥିଲେ । ତାଙ୍କ ତେଜରେ ଦଶଦିଗ ପ୍ରଜ୍ୱଳିତ ହେବାପରି ଲାଗୁଥିଲା । ତାଙ୍କର ଭୟଙ୍କର ରୂପକୁ ଦେଖି ଏବଂ ତାଙ୍କ ସଙ୍ଗରେ ଥିବା ହିମାଚଳକନ୍ୟା ପାର୍ବତୀଙ୍କ ଆଡ଼କୁ ଚାହିଁ ସକଳ ଦେବତା ଭୟଭୀତ ହୋଇଗଲେ । ତେଣୁ ପ୍ରମୁଖ ଦେବଗଣ ବିନମ୍ର ହୋଇ ତାଙ୍କ ସମ୍ମୁଖରେ ଛିଡ଼ା ହୋଇଗଲେ । ସେତେବେଳେ ବଡ଼ ବଡ଼ ଋଷି ମଧ୍ୟ ଦେବତାଙ୍କ ଭୟାକୁଳ ସ୍ଥିତିକୁ ଦେଖି ନିରୁତ୍ତର ହୋଇଯାଇଥିଲେ । ସେମାନେ ଚତୁର୍ଦ୍ଦିଗରୁ ରୁଦ୍ରଙ୍କୁ ପ୍ରଣାମ କରିବାକୁ ଲାଗିଲେ । ବ୍ରହ୍ମା ମଧ୍ୟ ଶମ୍ଭୁଙ୍କର ସେହି ରୂପକୁ ଦେଖି ଭୀତତ୍ରସ୍ତ ହୋଇଗଲେ । ସେ ଭୟଭୀତ ବିଷ୍ଣୁ ଓ ଦେବଗଣଙ୍କୁ ସାଥିରେ ନେଇ ପ୍ରସନ୍ନ ମନରେ ସାବଧାନ ହୋଇ ଗିରିଜାସମେତ ତ୍ରିପୁରାରି ମହେଶ୍ୱରଙ୍କୁ ସ୍ତୁତି କଲେ । ତା'ପରେ ମୁଖ୍ୟ ମୁଖ୍ୟ ଦେବତାମାନେ ଭବ ଓ ହର ନାମରେ ପ୍ରସିଦ୍ଧ ଭକ୍ତାଧୀନ ଶିବଙ୍କୁ ସ୍ତୁତି କଲେ । ସେମାନଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ଶିବ କହିଲେ—

ଶିବ କହିଲେ—ହେ ବ୍ରହ୍ମା, ବିଷ୍ଣୁ ଓ ଦେବଗଣ ! ମୁଁ ତୁମମାନଙ୍କ ଉପରେ ଅତ୍ୟନ୍ତ ପ୍ରସନ୍ନ । ତେଣୁ ତୁମେ ସମସ୍ତେ ନିର୍ଣ୍ଣୟ କରି ମନୋବାଞ୍ଛିତ ବର ମାଗ ।

ସନତ୍‌କୁମାର କହୁଛନ୍ତି—ମୁନିଶ୍ରେଷ୍ଠ ! ଶିବଙ୍କ ବାକ୍ୟ ଶୁଣି ଦେବଗଣଙ୍କ ମନ ପ୍ରସନ୍ନତାରେ ଉତ୍‌ଫୁଲ୍ଲିତ ହୋଇ ଉଠିଲା ।

ଦେବତାମାନେ କହିଲେ—ଭଗବନ୍ ! ଦେବଦେବେଶ ! ଯଦି ଆପଣ ଆମ ଉପରେ

---

* ତସ୍ମାଦ୍ ଯତ୍ନଃ ସୁସମ୍ଭାବ୍ୟଃ ସଦ୍ଭିଃ କର୍ତ୍ତବ୍ୟ ଏବ ହି । ଗର୍ହଣାତ୍ କ୍ଷୀୟତେ ଲୋକୋ ନ ତତ୍କର୍ମ ସମାଚରେତ୍ ॥

(ଶି. ପୁ., ରୁ. ସଂ., ଯୁଦ୍ଧଖଣ୍ଡ ୧୦ । ୪୨)

ପ୍ରସନ୍ନ ଏବଂ ଆମ୍ଭମାନଙ୍କୁ ଆପଣା ଦାସ ଭାବି ବର ଦେବାକୁ ଚାହୁଁଛନ୍ତି, ତେବେ ହେ ଦେବସତ୍ତମ ! ଆମକୁ ଏହି ବର ଦିଅନ୍ତୁ ଯେ ଯେବେ ଯେବେ ଆମ୍ଭମାନଙ୍କ ଉପରେ ବିପତ୍ତି ପଡ଼ିବାର ସମ୍ଭାବନା ଦେଖାଦେବ, ସବୁବେଳେ ଆପଣ ପ୍ରକଟ ହୋଇ ଆମ୍ଭମାନଙ୍କ ଦୁଃଖ ବିନାଶ କରୁଥିବେ ।

ସନତ୍‌କୁମାର କହୁଛନ୍ତି–ମହର୍ଷେ ! ବ୍ରହ୍ମା, ବିଷ୍ଣୁ ଓ ଦେବତାମାନେ ଭଗବାନ ରୁଦ୍ରଙ୍କୁ ଏପରି ପ୍ରାର୍ଥନା କରିବାରୁ ସେ ଶାନ୍ତ ଓ ପ୍ରସନ୍ନ ହୋଇ ଏକାବେଳକେ ସମସ୍ତଙ୍କୁ କହିଲେ–''ତଥାସ୍ତୁ, ସବୁବେଳେ ଏହିପରି ହେବ ।'' ଏତିକି କହି ଦେବଗଣଙ୍କ ଦୁଃଖହାରୀ ଶିବ ସେମାନଙ୍କର ସମସ୍ତ ଅଭୀଷ୍ଟ କାମନା ପୂର୍ଣ୍ଣ କଲେ । ଏତିକିବେଳେ ଶିବଙ୍କ କୃପାରୁ ବଞ୍ଚି ଯାଇଥିବା ମୟଦାନବ ଶମ୍ଭୁଙ୍କୁ ପ୍ରସନ୍ନ ଥିବା ଦେଖି ସେଠାକୁ ଆସିଲା । ସେ ବିନୀତଭାବରେ ହାତ ଯୋଡ଼ି ହର ତଥା ଅନ୍ୟାନ୍ୟ ଦେବତାଙ୍କୁ ପ୍ରଣାମ କଲା । ତା'ପରେ ସେ ଶିବଙ୍କ ପାଦ ତଳେ ଲୋଟିପଡ଼ିଲା । ପ୍ରଣାମ କରିସାରି ସେ ଉଠି ଶିବଙ୍କ ଆଡ଼କୁ ଚାହିଁଲା । ସେତେବେଳେ ପ୍ରେମାଧିକ୍ୟ ହେତୁ ତାହାର ଗଳା ରୁଦ୍ଧ ହୋଇଯାଉଥିଲା । ସେ ଭକ୍ତିପୂର୍ଣ୍ଣ ଚିତ୍ତରେ ତାଙ୍କୁ ସ୍ତୁତି କରିବାକୁ ଲାଗିଲା । ମୟର ସ୍ତୁତି ଶୁଣି ପରମେଶ୍ୱର ଶିବ ପ୍ରସନ୍ନ ହୋଇଗଲେ ଏବଂ ସ୍ନେହରେ କହିଲେ–

ଶିବ କହିଲେ–ହେ ଦାନବଶ୍ରେଷ୍ଠ ମୟ ! ମୁଁ ତୋ ଉପରେ ପ୍ରସନ୍ନ । ତେଣୁ ବର ମାଗ । ତୋ ମନରେ ଯାହା କିଛି ଅଭିଳାଷ ଅଛି, ତାହା ମୁଁ ପୂର୍ଣ୍ଣ କରିବି ।

ସନତ୍‌କୁମାର କହୁଛନ୍ତି–ମୁନେ ! ଶମ୍ଭୁଙ୍କ ମଙ୍ଗଳମୟ ବାକ୍ୟକୁ ଶୁଣି ଦାନବଶ୍ରେଷ୍ଠ ମୟ ଅଞ୍ଜଳି ବାନ୍ଧି ବିନମ୍ର ଭାବରେ ପ୍ରଭୁଙ୍କ ଚରଣରେ ନମସ୍କାର କରି କହିଲା–

ମୟ କହିଲା–ହେ ଦେବାଧିଦେବ ମହାଦେବ ! ଯଦି ଆପଣ ମୋ ପ୍ରତି ପ୍ରସନ୍ନ ଏବଂ ମୋତେ ବର ପାଇବାର ଅଧିକାରୀ ବୋଲି ବୁଝୁଛନ୍ତି, ତେବେ ଆପଣଙ୍କ ପ୍ରତି ଶାଶ୍ୱତୀ ଭକ୍ତି ହେବାର ବର ଦିଅନ୍ତୁ । ହେ ପରମେଶ୍ୱର ! ମୋର ସଦା ଭକ୍ତମାନଙ୍କ ପ୍ରତି ମିତ୍ରତା ରହୁ, ଦୀନଜନଙ୍କ ପ୍ରତି ଦୟାଭାବ ରହୁ ଏବଂ ଅନ୍ୟାନ୍ୟ ଦୁଷ୍ଟ ପ୍ରାଣୀମାନଙ୍କ ପ୍ରତି ମୋର ଉପେକ୍ଷା ଭାବ ରହୁ । ହେ ମହେଶ୍ୱର ! କଦାପି ମୋଠାରେ ଆସୁର ଭାବ ଉଦୟ ନ ହେଉ । ପ୍ରଭୋ ! ନିରନ୍ତର ଆପଣଙ୍କ ଶୁଭ ଭଜନରେ ତଲ୍ଲୀନ ରହି ମୁଁ ସଦା ନିର୍ଭୟ ହୋଇଯାଏ ।

ସନତ୍‌କୁମାର କହୁଛନ୍ତି–ହେ ବ୍ୟାସଦେବ ! ଶିବ ତ ସମସ୍ତଙ୍କର ସ୍ୱାମୀ ଓ ଭକ୍ତବତ୍ସଳ । ମୟ ପରମେଶ୍ୱରଙ୍କୁ ଏପରି ପ୍ରାର୍ଥନା କରିବାରୁ ସେ ପ୍ରସନ୍ନ ହୋଇ ମୟକୁ କହିଲେ–

ମହେଶ୍ୱର କହିଲେ–ହେ ଦାନବସତ୍ତମ ! ତୁ ମୋର ଭକ୍ତ, ତୋ ଠାରେ କୌଣସି ବିକାର ନାହିଁ; ତେଣୁ ତୁ ଧନ୍ୟ । ମୁଁ ତୋତେ ସମସ୍ତ ଅଭୀଷ୍ଟ ବର ପ୍ରଦାନ କଲି । ଏବେ ତୁ ମୋ ଆଜ୍ଞାରେ ତୋର ପରିବାର ସହିତ ବିତଳଲୋକକୁ ଚାଲିଯାଆ । ତାହା ସ୍ୱର୍ଗଠାରୁ ମଧ୍ୟ ଅଧିକ ରମଣୀୟ । ତୁ ସେଠାରେ ପ୍ରସନ୍ନ ଚିତ୍ତରେ ମୋତେ ଭଜି ନିର୍ଭୟ ହୋଇ ନିବାସ କର । ମୋ ଆଜ୍ଞାରେ ତୋ'ଠାରେ କଦାପି ଆସୁର ଭାବ ଉଦୟ ହେବ ନାହିଁ ।

ସନତ୍‌କୁମାର କହୁଛନ୍ତି–ମୁନେ ! ମୟଦାନବ ମହାତ୍ମା ଶିବଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କଲା ଏବଂ ଶିବଙ୍କୁ ଓ ଅନ୍ୟାନ୍ୟ ଦେବତାଙ୍କୁ ପ୍ରଣାମ କରି ବିତଳଲୋକକୁ ଚାଲିଗଲା । ଏହାପରେ ମହାଦେବ ମଧ୍ୟ ଦେବତାଙ୍କର ସେହି ମହାନ୍ କାର୍ଯ୍ୟକୁ ପୂର୍ଣ୍ଣ କରି ଦେବୀ ପାର୍ବତୀ, ପୁତ୍ର ଗଣେଶ ଓ ନିଜର ସମସ୍ତ ଗଣଙ୍କ ସହିତ ଅନ୍ତର୍ହିତ ହୋଇଗଲେ । ସପରିବାର ଶିବ ସେଠାରୁ ଅନ୍ତର୍ହିତ ହୋଇଯିବା

ମାତ୍ରେ ତାଙ୍କର ଧନୁ, ଶର, ରଥ ଇତ୍ୟାଦି ସମସ୍ତ ଉପକରଣ ମଧ୍ୟ ଅଦୃଶ୍ୟ ହୋଇଗଲା । ଏହା ଦେଖି ବ୍ରହ୍ମା, ବିଷ୍ଣୁ ଓ ଅନ୍ୟାନ୍ୟ ଦେବତା, ମୁନି, ଗନ୍ଧର୍ବ, କିନ୍ନର, ନାଗ, ସର୍ପ, ଅପ୍ସରା ଓ ମନୁଷ୍ୟମାନେ ଅପୂର୍ବ ଆନନ୍ଦରେ ପୁଲକିତ ହୋଇ ଉଠିଲେ । ସେମାନେ ଶିବଙ୍କର ଉତ୍ତମ ସୁଯଶ ବଖାଣ କରି କରି ସ୍ୱସ୍ଥାନକୁ ଫେରିଗଲେ । ସେମାନଙ୍କୁ ପରମ ସୁଖ ମିଳିଲା । ମହର୍ଷେ ! ଏହା ଥିଲା ଶଶିମୌଳି ଶିବଙ୍କର ପରମ ଉତ୍କୃଷ୍ଟ ତ୍ରିପୁରବିନାଶ ଲୀଳା-ଚରିତ । (ଅଧ୍ୟାୟ ୧୧-୧୨)

***

## ଦମ୍ଭର ତପସ୍ୟା ଓ ବିଷ୍ଣୁଙ୍କ ଠାରୁ ତାକୁ ପୁତ୍ରପ୍ରାପ୍ତିର ବରଲାଭ, ଶଙ୍ଖଚୂଡ଼ର ଜନ୍ମ, ତପସ୍ୟା ଓ ବରପ୍ରାପ୍ତି, ବ୍ରହ୍ମାଙ୍କ ଆଜ୍ଞାରେ ତା'ର ତୁଳସୀ ନିକଟକୁ ଆଗମନ ଓ ତା' ସଙ୍ଗେ ବାର୍ତ୍ତାଳାପ, ବ୍ରହ୍ମାଙ୍କ ଠାରୁ ସେ ଦୁହିଙ୍କୁ ବରପ୍ରାପ୍ତି ଏବଂ ଗାନ୍ଧର୍ବ ବିବାହ ବିଧିରେ ଶଙ୍ଖଚୂଡ଼ ସଙ୍ଗେ ତୁଳସୀର ପରିଣୟ

ଏହାପରେ ଜଳନ୍ଧରର ଉତ୍ପତ୍ତିଠାରୁ ଆରମ୍ଭ କରି ତା'ର ବଧ ପର୍ଯ୍ୟନ୍ତ ସମସ୍ତ ପ୍ରସଙ୍ଗ ଶୁଣାଇ ସାରି ସନତ୍‌କୁମାର କହିଲେ–ମୁନେ ! ଏବେ ଶମ୍ଭୁଙ୍କର ଅନ୍ୟ ଏକ ଚରିତ ପ୍ରେମପୂର୍ବକ ଶ୍ରବଣ କର । ତାହାକୁ ଶ୍ରବଣ କରିବା ମାତ୍ରକେ ଶିବଭକ୍ତି ସୁଦୃଢ଼ ହୋଇଥାଏ । ବ୍ୟାସଦେବ ! ଶଙ୍ଖଚୂଡ଼ ନାମରେ ଗୋଟିଏ ମହାବୀର ଦାନବ ଥିଲା । ସେ ଥିଲା ଦେବତାଙ୍କ ପାଇଁ କଣ୍ଟକସ୍ୱରୂପ । ତାହାକୁ ଶିବ ଯୁଦ୍ଧଭୂମିରେ ତ୍ରିଶୂଳ ଦ୍ୱାରା ବଧ କରିଥିଲେ । ସେହି ଚରିତ୍ର ପରମ ପାବନ ଓ ପାପନାଶକ । ତୁମ ପ୍ରତି ଅଧିକ ସ୍ନେହ ହୋଇଯିବା କାରଣରୁ ମୁଁ ତାହା ବର୍ଣ୍ଣନା କରୁଛି, ଶ୍ରଦ୍ଧାରେ ଶ୍ରବଣ କର । ବ୍ରହ୍ମାଙ୍କର ମରୀଚି ନାମରେ ଯେଉଁ ପୁତ୍ର ଥିଲେ, ତାଙ୍କର ପୁତ୍ର ହେଲେ କଶ୍ୟପ । କଶ୍ୟପ ଥିଲେ ମନନଶୀଳ, ଧର୍ମିଷ୍ଠ, ସୃଷ୍ଟିକର୍ତ୍ତା, ବିଦ୍ୟାସମ୍ପନ୍ନ ଓ ପ୍ରଜାପତି । ଦକ୍ଷ ପ୍ରସନ୍ନ ହୋଇ କଶ୍ୟପଙ୍କ ସଙ୍ଗେ ନିଜର ତେରଟି କନ୍ୟାଙ୍କର ବିବାହ କରିଦେଇଥିଲେ । କଶ୍ୟପଙ୍କ ସନ୍ତାନ ପରମ୍ପରା ଏତେ ଅଧିକ ବିସ୍ତୃତ ହେଲା ଯେ ତାହା ବର୍ଣ୍ଣନା କରିବା କଠିନ । ଏହି କଶ୍ୟପଙ୍କର ଗୋଟିଏ ପତ୍ନୀଙ୍କ ନାମ ଥିଲା ଦନୁ । ସେ ଅତ୍ୟନ୍ତ ସୁନ୍ଦରୀ ତଥା ମହାରୂପବତୀ ଥିଲେ । ତାଙ୍କର ସୌଭାଗ୍ୟ ମଧ୍ୟ ପ୍ରବଳ ଥିଲା । ମୁନେ ! ସାଧ୍ୱୀ ଦନୁଙ୍କର ଅନେକ ସଂଖ୍ୟାରେ ମହାବଳୀ ପୁତ୍ର ହେଲେ । ବିସ୍ତାରଭୟରେ ସେମାନଙ୍କ ନାମ ଗଣୁ ନାହିଁ । ସେମାନଙ୍କ ମଧ୍ୟରୁ ଜଣଙ୍କ ନାମ ଥିଲା ବିପ୍ରଚିତ୍ତି । ସେ ଖୁବ୍ ବଳଶାଳୀ ଓ ପରାକ୍ରମୀ ଥିଲା । ତା'ର ପୁତ୍ର ହେଲା ଦମ୍ଭ । ଦମ୍ଭ ଜିତେନ୍ଦ୍ରିୟ, ଧାର୍ମିକ ଓ ବିଷ୍ଣୁଭକ୍ତ ଥିଲା । ତାହାର କୌଣସି ପୁତ୍ର ନ ହେବାରୁ ସେ ଚିନ୍ତିତ ହୋଇ ପଡ଼ିଲା । ସେ ଶୁକ୍ରାଚାର୍ଯ୍ୟଙ୍କୁ ଗୁରୁ କରି ତାଙ୍କ ଠାରୁ କୃଷ୍ଣମନ୍ତ୍ର ଲାଭ କଲା ଓ ପୁଷ୍କର ତୀର୍ଥକୁ ଯାଇ ଘୋର ତପସ୍ୟା ଆରମ୍ଭ କରିଦେଲା । ସେଠାରେ ଅଟଳ ଆସନରେ ବସି ଅନବରତ କୃଷ୍ଣମନ୍ତ୍ର ଜପି ତପସ୍ୟା କରୁ କରୁ ଏକଲକ୍ଷ ବର୍ଷ ବିତିଗଲା । ଶେଷରେ ସେହି ତପସ୍ୱୀର ମସ୍ତକରୁ ଏକ ଜାଜ୍ୱଲ୍ୟମାନ ତେଜ ବାହାରି ସର୍ବତ୍ର ବ୍ୟାପ୍ତ ହୋଇଗଲା । ଉକ୍ତ ତେଜ ଏତେ ଦୁଃସହ ଥିଲା ଯେ ତଦ୍ଦ୍ୱାରା ସମସ୍ତ ଦେବତା, ଋଷି ତଥା ମନୁ ସଂତପ୍ତ ହୋଇଉଠିଲେ । ତେଣୁ ସେମାନେ ଇନ୍ଦ୍ରଙ୍କୁ

ମୁଖିଆ କରି ବ୍ରହ୍ମାଙ୍କ ଶରଣାପନ୍ନ ହେଲେ । ସେଠାରେ ସେମାନେ ସକଳସମ୍ପତ୍ତିଦାତା ବ୍ରହ୍ମାଙ୍କୁ ପ୍ରଣାମ କରି ସ୍ତୁତି କଲେ ଏବଂ ଅତ୍ୟନ୍ତ ବ୍ୟାକୁଳ ହୋଇ ନିଜର ସମସ୍ୟା ଅବଗତ କଲେ । ସେମାନଙ୍କ କଥା ଶୁଣିବା ପରେ ବ୍ରହ୍ମା ମଧ୍ୟ ସେମାନଙ୍କୁ ସଙ୍ଗରେ ନେଇ ବିଷ୍ଣୁଙ୍କୁ ଶୁଣାଇବା ପାଇଁ ବୈକୁଣ୍ଠକୁ ଗଲେ । ସେଠାରେ ପହଞ୍ଚି ସମସ୍ତେ ତ୍ରୈଲୋକ୍ୟର ଅଧୀଶ୍ୱର ତଥା ରକ୍ଷକ ପରମାତ୍ମା ବିଷ୍ଣୁଙ୍କୁ ବିନୀତ ଭାବରେ ପ୍ରଣାମ କଲେ ଏବଂ ହାତ ଯୋଡ଼ି ସ୍ତୁତି କଲେ ।

ଦେବତାମାନେ କହିଲେ—ଦେବଦେବ ! ଆମେ କେଉଁ ତେଜ ପ୍ରଭାବରୁ ଏତେ ସନ୍ତପ୍ତ ହେଉଛୁ, କିଛି ଜାଣି ପାରୁ ନାହୁଁ; ଏହାର କାରଣ ଆପଣ ହିଁ କୁହନ୍ତୁ । ଦୀନବନ୍ଧୁ ! ଆମ ପରି ଦୁଃଖୀଜନଙ୍କର ଆପଣ ହିଁ ରକ୍ଷକ । ତେଣୁ ହେ ଶରଣଦାତା ! ରମାନାଥ ! ଆମ ପରି ଶରଣାଗତଙ୍କୁ ରକ୍ଷା କରନ୍ତୁ, ରକ୍ଷା କରନ୍ତୁ ।

ସନତ୍‌କୁମାର କହୁଛନ୍ତି—ମୁନେ ! ବ୍ରହ୍ମାଦି ଦେବତାଙ୍କ ବାଣୀ ଶୁଣି ଶରଣାଗତବତ୍ସଳ ଭଗବାନ ବିଷ୍ଣୁ ମନ୍ଦ ମନ୍ଦ ହସିଲେ ଏବଂ ସ୍ନେହରେ କହିଲେ—

ବିଷ୍ଣୁ କହିଲେ—ଅମରଗଣ ! ଶାନ୍ତ ହୁଅ, ବ୍ୟତିବ୍ୟସ୍ତ ହୁଅନା, ଭୟଭୀତ ହୁଅନା । କିଛି ବି ଓଲଟ ପାଲଟ ହୋଇଯିବ ନାହିଁ; କାରଣ ଏବେ ପ୍ରଳୟର ସମୟ ଆସି ନାହିଁ । ଏ ତେଜ ଦମ୍ଭ ନାମକ ଦାନବର । ସେ ମୋର ଭକ୍ତ ଏବଂ ସେ ପୁତ୍ରକାମନାରେ ତପସ୍ୟା କରୁଛି । ମୁଁ ତାକୁ ବର ଦେଲେ ସବୁ ଶାନ୍ତ ହୋଇଯିବ ।

ସନତ୍‌କୁମାର କହୁଛନ୍ତି—ମୁନେ ! ଭଗବାନ୍ ବିଷ୍ଣୁ ଏପରି କହିବାରୁ ସେମାନଙ୍କର ବ୍ୟତିବ୍ୟସ୍ତତା ହ୍ରାସ ପାଇଲା । ସେମାନେ ଧୈର୍ଯ୍ୟ ଧାରଣ କରି ନିଜ ନିଜ ଧାମକୁ ଫେରିଗଲେ । ଏଣେ ବିଷ୍ଣୁ ମଧ୍ୟ ତାକୁ ବର ଦେବା ନିମନ୍ତେ ପୁଷ୍କର ଯିବାକୁ ବାହାରିଲେ । ସେଠାରେ ପହଞ୍ଚି ଶ୍ରୀହରି ତାଙ୍କ ନାମ ଜପୁଥିବା ଦମ୍ଭକୁ ସାନ୍ତ୍ୱନା ଦେଇ ମଧୁର ବାଣୀରେ କହିଲେ—''ବର ମାଗ ।'' ବିଷ୍ଣୁଙ୍କ ମୁଖରୁ ଉପର୍ଯ୍ୟୁକ୍ତ ବଚନ ଶୁଣି ଓ ତାଙ୍କୁ ନିଜ ସମ୍ମୁଖରେ ଦେଖି ଦମ୍ଭ ଅତ୍ୟନ୍ତ ଭକ୍ତିଭାବରେ ତାଙ୍କ ପାଦତଳେ ଲୋଟିଗଲା ଏବଂ ବାରମ୍ବାର ସ୍ତୁତି କରି କହିଲା—

ଦମ୍ଭ କହିଲା—ଦେବାଧିଦେବ ! କମଳନୟନ ! ଆପଣଙ୍କୁ ନମସ୍କାର । ରମାନାଥ ! ମୋ ଉପରେ କୃପା କରନ୍ତୁ । ତ୍ରିଲୋକେଶ ! ମୋତେ ଏପରି ଗୋଟିଏ ପୁତ୍ର ଦିଅନ୍ତୁ, ଯେ କି ଆପଣଙ୍କର ଭକ୍ତ ହେବା ସଙ୍ଗେ ସଙ୍ଗେ ମହାପରାକ୍ରମୀ ମଧ୍ୟ ହେବ । ସେ ତ୍ରିଲୋକକୁ ଜିଣିଯିବ ଏବଂ ଦେବତା ତାକୁ ପରାଜିତ କରିପାରିବେ ନାହିଁ ।

ସନତ୍‌କୁମାର କହୁଛନ୍ତି—ମୁନେ ! ଦାନବରାଜ ଦମ୍ଭ ଏପରି କହିବାରୁ ଶ୍ରୀହରି ତାକୁ ସେହି ବର ଦେଇ ତପରୁ ନିବୃତ୍ତ କଲେ ଏବଂ ନିଜେ ଅନ୍ତର୍ହିତ ହୋଇଗଲେ । ଦାନବେନ୍ଦ୍ର ଦମ୍ଭର ତପସ୍ୟା ସିଦ୍ଧ ହୋଇଥିଲା, ତେଣୁ ତା'ର ମନୋରଥ ପୂର୍ଣ୍ଣ ହେଲା । ଶ୍ରୀହରି ଯେଉଁ ଦିଗରେ ଅନ୍ତର୍ହିତ ହେଲେ, ସେ ସେହି ଦିଗକୁ ନମସ୍କାର କରି ସ୍ୱଗୃହକୁ ଫେରିଗଲା । କିଛି କାଳ ପରେ ତା'ର ଭାଗ୍ୟବତୀ ପତ୍ନୀ ଗର୍ଭବତୀ ହେଲା । ସେ ଆପଣା ଗର୍ଭର ତେଜରେ ଗୃହକୁ ଉଦ୍ଭାସିତ କରିଦେଲା । ମୁନେ ! ଶ୍ରୀକୃଷ୍ଣଙ୍କର ଯେଉଁ ସୁଦାମା ନାମକ ଗୋପ ଅଗ୍ରଣୀ ପାର୍ଷଦ ଥିଲା, ଯାହାକୁ ରାଧା ଅଭିଶାପ ଦେଇଥିଲେ, ସେ ହିଁ ସେହି ଗର୍ଭରେ ପ୍ରବିଷ୍ଟ ହୋଇଥିଲା । ତା'ପରେ ଯଥାସମୟରେ ସାଧ୍ୱୀ ଦମ୍ଭପତ୍ନୀ ଗୋଟିଏ ତେଜସ୍ୱୀ ଶିଶୁକୁ ଜନ୍ମ ଦେଲା । ଦମ୍ଭ ଅନେକ ମୁନିଙ୍କୁ ଡକାଇ ପୁତ୍ରର ଜାତକର୍ମ ସଂସ୍କାର ଇତ୍ୟାଦି କରାଇଲା । ଦ୍ୱିଜୋତ୍ତମ ! ପୁତ୍ର ଜାତ ହୋଇଥିବାରୁ ବହୁତ ବଡ଼ ଉତ୍ସବ କରାଗଲା । ଶୁଭ ସମୟରେ ଦମ୍ଭ ତା' ପୁତ୍ରର ନାମ ରଖିଲା 'ଶଙ୍ଖଚୂଡ଼' । ଶିଶୁଟି

ପିତୃଗୃହରେ ଶୁକ୍ଳପକ୍ଷର ଚନ୍ଦ୍ରମା ପରି ବଢ଼ିବାକୁ ଲାଗିଲା । ସେ ଅତ୍ୟନ୍ତ ତେଜସ୍ୱୀ ଥିଲା, ସେଥିପାଇଁ ବାଲ୍ୟକାଳରୁ ହିଁ ସମସ୍ତ ବିଦ୍ୟା ଶିଖିଗଲା । ସେ ନିତ୍ୟ ଶିଶୁସୁଲଭ କ୍ରୀଡ଼ା କରି ପିତାମାତାଙ୍କୁ ଆନନ୍ଦ ପ୍ରଦାନ କରୁଥିଲା; ବିଶେଷତଃ ସେ କୁଟୁମ୍ବ ଲୋକଙ୍କର ଅତ୍ୟଧିକ ପ୍ରିୟଭାଜନ ହୋଇଗଲା ।

ଶଙ୍ଖଚୂଡ଼ ବଡ଼ ହେଲାପରେ ଜୈଗୀଷବ୍ୟ ମୁନିଙ୍କ ଉପଦେଶରେ ପୁଷ୍କର ଯାଇ ବ୍ରହ୍ମାଙ୍କୁ ପ୍ରସନ୍ନ କରିବା ପାଇଁ ଭକ୍ତିପୂର୍ବକ ତପସ୍ୟା କଲା । ସେ ଇନ୍ଦ୍ରିୟମାନଙ୍କୁ ସଂଯତ କରି ଏକାଗ୍ରଚିତ୍ତରେ ଗୁରୁଙ୍କ ଉପଦିଷ୍ଟ ବ୍ରହ୍ମବିଦ୍ୟା ଜପିବାକୁ ଲାଗିଲା । ଦାନବରାଜ ଶଙ୍ଖଚୂଡ଼ ଏଭଳି ତପସ୍ୟା କରିବାରୁ ତାକୁ ବର ଦେବାକୁ ଲୋକଗୁରୁ ତଥା ଐଶ୍ୱର୍ଯ୍ୟଶାଳୀ ବ୍ରହ୍ମା ଶୀଘ୍ର ସେଠାରେ ଉପଗତ ହୋଇ ବର ମାଗିବାକୁ କହିଲେ । ବ୍ରହ୍ମାଙ୍କୁ ଦେଖି ସେ ଅତି ବିନମ୍ରଭାବରେ ଅଭିବାଦନ କଲା ଏବଂ ଉତ୍ତମ ବାଣୀରେ ସ୍ତୁତି କଲା । ତା'ପରେ ସେ ବର ମାଗିବାକୁ ଯାଇ କହିଲା—"ଭଗବନ୍ ! ମୁଁ ଦେବତାଙ୍କ ପକ୍ଷେ ଅଜେୟ ହୋଇଯାଏ ।" ବ୍ରହ୍ମା 'ତଥାସ୍ତୁ' କହି ବର ଦେବାପରେ ତାକୁ ଏକ ଦିବ୍ୟ ଶ୍ରୀକୃଷ୍ଣକବଚ ପ୍ରଦାନ କଲେ, ଯାହା କି ସମସ୍ତ ମଙ୍ଗଳର ମଧ୍ୟ ମଙ୍ଗଳ ଏବଂ ସର୍ବତ୍ର ବିଜୟ ପ୍ରଦାନ କରିଥାଏ । ତା'ପରେ ବ୍ରହ୍ମା ତାକୁ କହିଲେ—"ତୁମେ ବଦରୀବନକୁ ଚାଲିଯାଅ । ସେଠାରେ ଧର୍ମଧ୍ୱଜର କନ୍ୟା ତୁଳସୀ ସ୍ୱାମୀପ୍ରାପ୍ତି କାମନାରେ ତପସ୍ୟା କରୁଛି । ତୁମେ ତା' ସଙ୍ଗେ ବିବାହ କର ।" ଏତିକି କହି ବ୍ରହ୍ମା ଅନ୍ତର୍ହିତ ହୋଇଗଲେ । ତପସ୍ୟାରେ ସିଦ୍ଧି ପାଇଥିବାରୁ ଓ ନିଜ ମନୋରଥ ପୂର୍ଣ୍ଣ ହୋଇଥିବାରୁ ଶଙ୍ଖଚୂଡ଼ର ମୁଖମଣ୍ଡଳ ଆନନ୍ଦରେ ଉଲ୍ଲସିତ ଦିଶୁଥିଲା । ସେ ସେହି ପୁଷ୍କରକ୍ଷେତ୍ରରେ ହିଁ ଉକ୍ତ ସର୍ବମଙ୍ଗଳସ୍ୱରୂପ କବଚକୁ ପରିଧାନ କଲା ଏବଂ ବ୍ରହ୍ମାଙ୍କ ଆଜ୍ଞାନୁସାରେ ତତ୍‌କ୍ଷଣାତ୍ ବଦରିକା ଆଶ୍ରମ ଅଭିମୁଖେ ଯାତ୍ରା କଲା । ଧର୍ମଧ୍ୱଜର କନ୍ୟା ତୁଳସୀ ଯେଉଁଠି ତପସ୍ୟା କରୁଥିଲା, ସେଠାରେ ଶଙ୍ଖଚୂଡ଼ ପହଞ୍ଚିଗଲା । ତୁଳସୀର ରୂପ ଅତ୍ୟନ୍ତ କମନୀୟ ଓ ମନୋହର ଥିଲା । ସତୀ ତୁଳସୀକୁ ଦେଖି ଶଙ୍ଖଚୂଡ଼ ତା' ନିକଟକୁ ଯାଇ ମଧୁର ବାଣୀରେ କହିଲା—



ଶଙ୍ଖଚୂଡ଼ କହିଲା—ହେ ସୁନ୍ଦରୀ! ତୁମେ କିଏ? କାହାର ଝିଅ? ତୁମେ ଏଠାରେ ଚୁପ୍‌ଚାପ ବସି କ'ଣ କରୁଛ? ମୋତେ ଦାସ ମନେ କରି ମୋ ସଙ୍ଗେ ଟିକିଏ କଥାବାର୍ତ୍ତା କର ।

ସନତ୍‌କୁମାର କହୁଛନ୍ତି—ମୁନେ ! ଶଙ୍ଖଚୂଡ଼ର ଏପରି ପ୍ରେମସିକ୍ତ ବଚନ ଶୁଣି ତୁଳସୀ ତାକୁ କହିଲା—

ତୁଳସୀ କହିଲା—ମୁଁ ଧର୍ମଧ୍ୱଜଙ୍କର ତପସ୍ୱିନୀ କନ୍ୟା । ମୁଁ ଏଠାରେ ତପୋବନରେ ତପସ୍ୟା କରୁଛି । ଆପଣ କିଏ? ଆପଣ ସୁଖପୂର୍ବକ ଆପଣା ଅଭୀଷ୍ଟ ସ୍ଥାନକୁ ଚାଲିଯାଆନ୍ତୁ; କାରଣ ନାରୀଜାତି ବ୍ରହ୍ମା ପ୍ରଭୃତିଙ୍କୁ ମଧ୍ୟ ମୋହରେ ପକାଇ ଦେଇଥାଏ । ନାରୀ ବିଷତୁଲ୍ୟ, ନିନ୍ଦନୀୟ, ଦୋଷ

ଉତ୍ପନ୍ନକାରିଣୀ, ମାୟାରୂପିଣୀ ତଥା ବିଗ୍ରହଶୀଳ ବ୍ୟକ୍ତିଙ୍କୁ ବି ଜଞ୍ଜିରରେ ବାନ୍ଧି ଦେବାକୁ ସମର୍ଥ ।

ସନତ୍କୁମାର କହୁଛନ୍ତି–ମହର୍ଷେ ! ତୁଳସୀ ଏପରି ରସଭରା କଥା କହି ଚୁପ୍ ହୋଇଗଲା । ତୁଳସୀ ମୁଖରେ ସ୍ମିତହାସ ଦେଖି ଶଙ୍ଖଚୂଡ଼ କହିବା ଆରମ୍ଭ କଲା ।

ଶଙ୍ଖଚୂଡ଼ କହିଲା–ହେ ଦେବୀ ! ତୁମେ ଯେଉଁ କଥା କହିଲ, ତାହା ଯେ ସମ୍ପୂର୍ଣ୍ଣ ମିଥ୍ୟା, ସେକଥା ନୁହେଁ । ସେଥିରେ କିଛି ସତ୍ୟ ବି ଅଛି ଏବଂ କିଛି ଅସତ୍ୟ ବି ଅଛି । ଏହାର ପୂରା ବିବରଣ ମୁଁ କହୁଛି, ଶୁଣ । ଶୋଭନେ ! ଜଗତରେ ଯେତେ ପତିବ୍ରତା ନାରୀ ଅଛନ୍ତି, ସେମାନଙ୍କ ମଧ୍ୟରେ ତୁମେ ଅଗ୍ରଣୀ । ମୋ ବିଗ୍ରହରେ ମୁଁ ଯେପରି ପାପବୁଦ୍ଧି କାମୀ ନୁହେଁ, ତୁମେ ବି ସେହିପରି କାମର ଅଧୀନା ନୁହଁ । ତଥାପି ଏବେ ମୁଁ ବ୍ରହ୍ମାଙ୍କ ଆଜ୍ଞାରେ ତୁମ ନିକଟକୁ ଆସିଛି ଏବଂ ଗାନ୍ଧର୍ବ ବିବାହ ବିଧିରେ ତୁମକୁ ଗ୍ରହଣ କରିବାକୁ ଚାହେଁ । ଭଦ୍ରେ ! ତୁମେ କ'ଣ ମୋତେ ଜାଣି ନାହଁ, ନା ମୋ ନାମ କେବେ ଶୁଣି ନାହଁ? ଦେବତାଙ୍କୁ ଭୀତତ୍ରସ୍ତ କରିଦେଉଥିବା ଶଙ୍ଖଚୂଡ଼ ହେଉଛି ମୁଁ । ମୁଁ ଦନୁଙ୍କ ବଂଶଜ ଏବଂ ଦମ୍ଭ ନାମକ ଦାନବଙ୍କ ପୁତ୍ର । ପୂର୍ବକାଳରେ ମୁଁ ଶ୍ରୀହରିଙ୍କ ପାର୍ଷଦ ଥିଲି । ମୋର ନାମ ଥିଲା ସୁଦାମା । ରାଧିକାଙ୍କ ଅଭିଶାପରେ ମୁଁ ଏବେ ଦାନବରାଜ ଶଙ୍ଖଚୂଡ଼ ହୋଇ ଉତ୍ପନ୍ନ ହୋଇଛି । ଏ ସମସ୍ତ ଘଟଣା ମୋର ମନେ ଅଛି; କାରଣ ଶ୍ରୀକୃଷ୍ଣଙ୍କ ପ୍ରଭାବରେ ମୋର ପୂର୍ବଜନ୍ମର କଥା ମନେ ଅଛି ।

ସନତ୍କୁମାର କହୁଛନ୍ତି–ମୁନେ ! ତୁଳସୀ ସମକ୍ଷରେ ଶଙ୍ଖଚୂଡ଼ ଏତିକି କହି ଚୁପ୍ ହୋଇଗଲା । ଦାନବରାଜ ଆଦରପୂର୍ବକ ତୁଳସୀକୁ ଏପରି କହିବାରୁ ତୁଳସୀ ଅତ୍ୟନ୍ତ ପ୍ରସନ୍ନ ହୋଇ ସ୍ମିତହାସପୂର୍ବକ କହିଲା–

ତୁଳସୀ କହିଲା–ଭଦ୍ର ପୁରୁଷ ! ଆଜି ଆପଣ ଆପଣଙ୍କ ସାତ୍ତ୍ୱିକ ବିଗ୍ରହରେ ମୋତେ ପରାଜିତ କରିଦେଲେ । ଯେଉଁ ପୁରୁଷ ନାରୀ ଦ୍ୱାରା ପରାସ୍ତ ନ ହୁଏ, ସେ ସଂସାରରେ ଧନ୍ୟବାଦର ପାତ୍ର । କାରଣ ଯାହାକୁ ନାରୀ ଜିତିଯାଏ, ସେ ପୁରୁଷ ସଦାଚାରୀ ହୋଇଥିଲେ ମଧ୍ୟ ସଦା ଅପାବନ ହୋଇ ରହିଥାଏ । ଦେବତା, ମାନବ ଓ ପିତୃପୁରୁଷ ସମସ୍ତେ ତାକୁ ନିନ୍ଦା କରିଥାନ୍ତି । ଜନନାଶୌଚ ଓ ମରଣାଶୌଚରେ ବ୍ରାହ୍ମଣ ଦଶ ଦିନରେ, କ୍ଷତ୍ରିୟ ବାର ଦିନରେ, ବୈଶ୍ୟ ପନ୍ଦର ଦିନରେ ଓ ଶୂଦ୍ର ଏକ ମାସରେ ଶୁଦ୍ଧ ହୋଇଥାଏ–ଏହା ବେଦର ଅନୁଶାସନ ଅଟେ । କିନ୍ତୁ ନାରୀଠାରୁ ଯେଉଁ ପୁରୁଷ ପରାଜିତ ହୁଏ, ସେ ଚିତାରେ ଦଗ୍ଧୀଭୂତ ନ ହେବା ପର୍ଯ୍ୟନ୍ତ ପବିତ୍ର ହୋଇପାରେ ନାହିଁ । ଏଣୁ ସେ ଦେଇଥିବା ପିଣ୍ଡତର୍ପଣ ଆଦିକୁ ତା'ର ପିତୃପୁରୁଷ ସ୍ୱେଚ୍ଛାରେ ଗ୍ରହଣ କରନ୍ତି ନାହିଁ ଏବଂ ଦେବତା ମଧ୍ୟ ତା'ଦ୍ୱାରା ପ୍ରଦତ୍ତ ଫଳ-ପୁଷ୍ପାଦିକୁ ଗ୍ରହଣ କରନ୍ତି ନାହିଁ । ଯାହାର ମନ ନାରୀଙ୍କ ଦ୍ୱାରା ଆହତ ହୋଇଯାଏ, ତା'ର ଜ୍ଞାନ, ଉତ୍ତମ ତପସ୍ୟା, ଜପ, ହୋମ, ପୂଜା, ବିଦ୍ୟା ଓ ଦାନରେ କି ଲାଭ? ଅର୍ଥାତ୍ ତା' ପାଇଁ ଏ ସମସ୍ତ ନିଷ୍ଫଳ ହୋଇଯାଆନ୍ତି । ମୁଁ ଆପଣଙ୍କ ବିଦ୍ୟା, ପ୍ରଭାବ ଓ ଜ୍ଞାନ ବିଷୟରେ ଅବଗତ ହେବା ନିମନ୍ତେ ଏପରି ପରୀକ୍ଷା ନେଲି; କାରଣ କାମିନୀ ନିଜ ମନୋନୀତ କାନ୍ତର ପରୀକ୍ଷା ନେବା ପରେ ହିଁ ତାକୁ ସ୍ୱାମୀରୂପେ ବରଣ କରିବା ଉଚିତ ।

ସନତ୍କୁମାର କହୁଛନ୍ତି–ବ୍ୟାସଦେବ ! ତୁଳସୀ ଏଭଳି କଥାବାର୍ତ୍ତା କରୁଥିବା ବେଳେ ସୃଷ୍ଟିକର୍ତ୍ତା ବ୍ରହ୍ମା ସ୍ୱୟଂ ଆସି ସେଠାରେ ପହଞ୍ଚିଗଲେ ଏବଂ ଏହିପରି କହିଲେ–

ବ୍ରହ୍ମା କହିଲେ–ଶଙ୍ଖଚୂଡ଼ ! ତୁମେ ଏହା ସଙ୍ଗେ ବୃଥାରେ କାହିଁକି ବାଦ-ବିବାଦ କରୁଛ? ତୁମେ ଗାନ୍ଧର୍ବ-ବିବାହ ବିଧିରେ ଏହାର ପାଣିଗ୍ରହଣ

କର; କାରଣ ତୁମେ ନିଶ୍ଚୟ ଜଣେ ପୁରୁଷରତ୍ନ ଏବଂ ଏ ହେଉଛି ସତୀ-ସାଧ୍ୱୀ ନାରୀଙ୍କ ମଧ୍ୟରେ ରତ୍ନସ୍ୱରୂପା । ଏ ସ୍ଥିତିରେ ନିପୁଣାର ନିପୁଣ ସଙ୍ଗେ ସମାଗମ ନିଶ୍ଚିତରୂପେ ଗୁଣକାରୀ ହେବ । (ଏହାପରେ ତୁଳସୀ ଆଡ଼କୁ ଗ୍ରହିଁ କହିଲେ—) ସତୀ ତୁଳସୀ ! ତୁ ଏପରି ଗୁଣବାନ୍ କାନ୍ତର ପରୀକ୍ଷା କାହିଁକି ନେଉଛୁ? ଏ ତ ଦେବତା, ଅସୁର ଓ ଦାନବଙ୍କର ବି ମାନମର୍ଦ୍ଦନ କରିବାକୁ ସମର୍ଥ । ହେ ସୁନ୍ଦରୀ ! ତୁ ଏହା ସଙ୍ଗେ ଚିରକାଳ ପର୍ଯ୍ୟନ୍ତ ସକଳ ଭୁବନର ନାନା ସ୍ଥାନରେ ମନଇଚ୍ଛା ବିହାର କର । ଦେହାନ୍ତ ହେବା ପରେ ଏ ପୁନଃ ଗୋଲକରେ ଶ୍ରୀକୃଷ୍ଣଙ୍କୁ ପ୍ରାପ୍ତ ହେବ ଏବଂ ଏହାର ମୃତ୍ୟୁ ହୋଇଯିବା ପରେ ତୁ ମଧ୍ୟ ବୈକୁଣ୍ଠରେ ଚତୁର୍ଭୁଜ ଭଗବାନଙ୍କୁ ପ୍ରାପ୍ତ ହେବୁ ।

ସନତ୍‌କୁମାର କହୁଛନ୍ତି—ମୁନେ ! ଏଭଳି ଆଶୀର୍ବାଦ ଦେଇ ବ୍ରହ୍ମା ସ୍ୱଧାମକୁ ଲେଉଟିଗଲେ । ତା'ପରେ ଦାନବ ଶଙ୍ଖଚୂଡ଼ ଗାନ୍ଧର୍ବବିଧିରେ ତୁଳସୀର ପାଣିଗ୍ରହଣ କଲା । ବିବାହ ପରେ ଶଙ୍ଖଚୂଡ଼ ପୈତୃକ ବାସସ୍ଥାନକୁ ଫେରିଯାଇ ମନୋରମ ଭବନରେ ସେହି ରମଣୀ ସଙ୍ଗେ ବିହାର କରିବାକୁ ଲାଗିଲା ।

(ଅଧ୍ୟାୟ ୧୩—୨୯)

★★★

## ଶଙ୍ଖଚୂଡ଼ର ଅସୁରରାଜ ପଦରେ ଅଭିଷେକ ଏବଂ ତା'ଦ୍ୱାରା ଦେବତାଙ୍କ ଅଧିକାର ଅପହରଣ, ଦେବତାମାନେ ବ୍ରହ୍ମାଙ୍କ ଶରଣକୁ ଯିବାରୁ ସେମାନଙ୍କୁ ନେଇ ବ୍ରହ୍ମାଙ୍କର ବିଷ୍ଣୁଙ୍କ ନିକଟକୁ ଗମନ, ବିଷ୍ଣୁଙ୍କ ଦ୍ୱାରା ଶଙ୍ଖଚୂଡ଼ର ଜନ୍ମରହସ୍ୟ ଉଦ୍‌ଘାଟନ ଓ ସମସ୍ତଙ୍କ ଗହଣରେ ଶିବଙ୍କ ନିକଟକୁ ଗମନ ଏବଂ ଶିବଙ୍କୁ ସଭାମଧ୍ୟରେ ଦର୍ଶନ କରି ତାଙ୍କ ସମ୍ମୁଖରେ ଆଗମନର ଅଭିପ୍ରାୟ ନିବେଦନ

ସନତ୍‌କୁମାର କହୁଛନ୍ତି—ମହର୍ଷେ ! ଶଙ୍ଖଚୂଡ଼ ତପସ୍ୟା କରି ବର ଲାଭ କରିବା ଏବଂ ବିବାହ କରି ନିଜ ଘରକୁ ଫେରି ଆସିବା କଥା ଜାଣି ଦାନବମାନେ ବହୁତ ଖୁସୀ ହେଲେ । ସେମାନେ ସମସ୍ତେ ଦଳ ବାନ୍ଧି ଯାଇ ଅବିଳମ୍ବେ ସେମାନଙ୍କ ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ଡାକି ଆଣିଲେ ଏବଂ ଶଙ୍ଖଚୂଡ଼ ପାଖରେ ପହଞ୍ଚି ବିନୟପୂର୍ବକ ପ୍ରଣାମ ଜଣାଇଲେ ତଥା ଅନେକ ପ୍ରକାରେ ସମ୍ମାନ ପ୍ରଦର୍ଶନ କରି ତାକୁ ସ୍ତୁତି କଲେ । ସେମାନେ ତାକୁ ସେମାନଙ୍କର ତେଜସ୍ୱୀ ସ୍ୱାମୀ ମନେକରି ଅତ୍ୟନ୍ତ ପ୍ରେମଭାବରେ ତା' ନିକଟରେ ଛିଡ଼ା ହୋଇଗଲେ । ଦମ୍ଭକୁମାର ଶଙ୍ଖଚୂଡ଼ ମଧ୍ୟ ନିଜର କୁଳଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ଦେଖି ଆଦର ଓ ଭକ୍ତିର ସହ ସାଷ୍ଟାଙ୍ଗ ପ୍ରଣାମ କଲା । ତା'ପରେ ଗୁରୁ ଶୁକ୍ରାଚାର୍ଯ୍ୟ ଅନ୍ୟ ଗୁରୁମାନଙ୍କ ସଙ୍ଗେ ପରାମର୍ଶ କରି ସେମାନଙ୍କ ସମ୍ମତିରେ ଶଙ୍ଖଚୂଡ଼କୁ ଦାନବ ଓ ଅସୁରଙ୍କର ଅଧିପତି କରିଦେଲେ । ଦମ୍ଭପୁତ୍ର ଶଙ୍ଖଚୂଡ଼ ତ ସହଜେ ପ୍ରତାପୀ ଓ ବୀର ଥିଲା, ତେଣୁ ସେ ଅସୁରରାଜ-ପଦରେ ଅଭିଷିକ୍ତ ହୋଇ ବିଶେଷରୂପେ ଶୋଭା ପାଇଲା । ସେ ଦେବତାଙ୍କ ଉପରେ ଆକ୍ରମଣ କରି ଖୁବ୍ ଶୀଘ୍ର ସେମାନଙ୍କୁ ସଂହାର କରିବା ଆରମ୍ଭ କରିଦେଲା । ସକଳ ଦେବତା ଏକତ୍ରିତ ହୋଇ ମଧ୍ୟ ତା'ର ଉତ୍କୃଷ୍ଟ ତେଜକୁ ସହନ କରି ପାରିଲେ ନାହିଁ । ତେଣୁ ସେମାନେ ପ୍ରାଣବିକଳେ ରଣାଙ୍ଗନରୁ ପଳାୟନ କରି ପର୍ବତ ଗୁହା ପ୍ରଭୃତିରେ ଦୟନୀୟ ଅବସ୍ଥାରେ ଆତ୍ମଗୋପନ କଲେ ।

ସେମାନଙ୍କର ସ୍ୱାତନ୍ତ୍ର୍ୟ ରହିଲା ନାହିଁ । ସେମାନେ ଶଙ୍ଖଚୂଡ଼ର ବଶବର୍ତ୍ତୀ ହୋଇଥିବା କାରଣରୁ ପ୍ରଭାହୀନ ହୋଇଗଲେ । ତେଣେ ପ୍ରବଳ ପ୍ରତାପୀ ବୀର ଦମ୍ଭକୁମାର ଦାନବରାଜ ଶଙ୍ଖଚୂଡ଼ ସକଳ ଭୁବନକୁ ଜିଣି ଦେବତାଙ୍କର ସମସ୍ତ ଅଧିକାର ଛଡ଼ାଇନେଲା । ସେ ତ୍ରିଲୋକରେ ନିଜର ଆଧିପତ୍ୟ ବିସ୍ତାର କଲା ଏବଂ ନିଜେ ଇନ୍ଦ୍ର ହୋଇ ସମସ୍ତ ଯଜ୍ଞଭାଗକୁ ମଧ୍ୟ ହରଣ କଲା । ସେ ଆପଣା ଶକ୍ତିରେ କୁବେର, ସୋମ, ସୂର୍ଯ୍ୟ, ଅଗ୍ନି, ଯମ ଓ ବାୟୁ ପ୍ରଭୃତିଙ୍କର ଅଧିକାରକୁ ଛଡ଼ାଇ ନେଇ ନିଜ ହାତରେ ରଖିଲା । ପ୍ରବଳ ପରାକ୍ରମୀ ମହାବୀର ଶଙ୍ଖଚୂଡ଼ ସମସ୍ତ ଦେବତା, ଅସୁର, ଦାନବ, ରାକ୍ଷସ, ଗନ୍ଧର୍ବ, ନାଗ, କିନ୍ନର, ମନୁଷ୍ୟ ତଥା ତ୍ରିଲୋକର ଅନ୍ୟାନ୍ୟ ପ୍ରାଣୀଙ୍କର ଏକଛତ୍ର ସମ୍ରାଟ ହୋଇଗଲା । ଏହିରୂପେ ଶଙ୍ଖଚୂଡ଼ ମହାରାଜେଶ୍ୱର ହୋଇ ବହୁତ ବର୍ଷ ପର୍ଯ୍ୟନ୍ତ ଅନେକ ଭୁବନ ଉପରେ ରାଜୁତି କଲା । ତା' ରାଜ୍ୟରେ ଦୁର୍ଭିକ୍ଷ ପଡୁ ନ ଥିଲା କି ମହାମାରୀ ଅଥବା ଅଶୁଭ ଗ୍ରହଙ୍କର ପ୍ରକୋପ ହେଉ ନ ଥିଲା । ଆଧି-ବ୍ୟାଧି ମଧ୍ୟ ସେଠାରେ ପ୍ରଭାବ ପକାଇ ପାରୁ ନ ଥିଲେ । ତା'ର ପ୍ରଜାମାନେ ସଦା ସୁଖୀ ରହୁଥିଲେ । ପୃଥିବୀ ବିନା କର୍ଷଣରେ ମଧ୍ୟ ଅନେକ ପ୍ରକାର ଧାନ୍ୟାଦି ଶସ୍ୟ ଉତ୍ପନ୍ନ କରୁଥିଲା । ନାନା ପ୍ରକାର ଓଷଧି ବୃକ୍ଷଲତାମାନେ ଉତ୍ତମ ଉତ୍ତମ ଫଳ ଓ ରସ ପ୍ରଦାନ କରୁଥିଲେ । ତା' ରାଜ୍ୟରେ ଭଲ ଭଲ ମଣି ଓ ରତ୍ନର ଖଣିମାନ ଥିଲା । ସମୁଦ୍ର ଆପଣା ଲହରି ଦ୍ୱାରା ବିପୁଳ ରତ୍ନମାନ ଆଣି କୂଳରେ ବିଛାଇ ଦେଉଥିଲା । ବୃକ୍ଷମାନେ ସଦା ଫୁଲ ଓ ଫଳରେ ଭାରାକ୍ରାନ୍ତ ରହୁଥିଲେ । ସରିତାରେ ସୁସ୍ୱାଦୁ ଜଳ ପ୍ରବାହିତ ହେଉଥିଲା । କେବଳ ଦେବତାଙ୍କ ଛଡ଼ା ଅନ୍ୟ ସବୁ ଜୀବ ସୁଖରେ ରହୁଥିଲେ । ସେମାନଙ୍କ ଠାରେ କୌଣସି ପ୍ରକାର ବିକାର ଉତ୍ପନ୍ନ ହେଉ ନ ଥିଲା । ଚାରିବର୍ଣ୍ଣର ଲୋକେ ନିଜ ନିଜ ଧର୍ମରେ ଥିଲେ । ଶଙ୍ଖଚୂଡ଼ର ଶାସନ କାଳରେ କେହି ବି ଦୁଃଖୀ ନ ଥିଲେ; କେବଳ ଦେବତାଙ୍କୁ ଭ୍ରାତୃଦ୍ରୋହବଶତଃ ଦୁଃଖ ସହିବାକୁ ପଡୁଥିଲା । ମୁନେ ! ପୂର୍ବେ ମହାବଳୀ ଶଙ୍ଖଚୂଡ଼ ଗୋଲୋକବାସୀ ଶ୍ରୀକୃଷ୍ଣଙ୍କ ପରମ ମିତ୍ର ଥିଲା । ସେ ସାଧୁସ୍ୱଭାବର ଥିଲା ଏବଂ ସଦା ଶ୍ରୀକୃଷ୍ଣଙ୍କ ଭକ୍ତିରେ ରତ ଥିଲା । ଶାପବଶତଃ ତାକୁ ଦାନବଯୋନିରେ ଜନ୍ମ ନେବାକୁ ପଡ଼ିଥିଲା । ମାତ୍ର ଦାନବ ହୋଇଥିଲେ ମଧ୍ୟ ତା'ର ବୁଦ୍ଧି ଦାନବଙ୍କ ପରି ନ ଥିଲା ।

ପ୍ରିୟ ବ୍ୟାସଦେବ ! ଇତିମଧ୍ୟରେ ରାଜ୍ୟଚ୍ୟୁତ ଓ ପରାଜିତ ହୋଇଥିବା ସୁରଗଣ ତଥା ଋଷିମାନେ ପରସ୍ପର ମଧ୍ୟରେ ମନ୍ତ୍ରଣା କରି ବ୍ରହ୍ମାଙ୍କ ସଭାକୁ ଗଲେ । ସେଠାରେ ପହଞ୍ଚି ସେମାନେ ବ୍ରହ୍ମାଙ୍କୁ ଦର୍ଶନ କଲେ ଏବଂ ତାଙ୍କ ଚରଣରେ ଅଭିବାଦନ କରି ତାଙ୍କୁ ବିଶେଷରୂପେ ସ୍ତୁତି କଲେ । ତା'ପରେ ସେମାନେ ବ୍ୟାକୁଳ ହୋଇ ତାଙ୍କୁ ନିଜର ଦୁଃଖ ଜଣାଇଲେ । ବ୍ରହ୍ମା ସେମାନଙ୍କୁ ଧୈର୍ଯ୍ୟ ଦେବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ସଙ୍ଗରେ ନେଇ ସଜ୍ଜନଙ୍କ ସୁଖଦାତା ବୈକୁଣ୍ଠବିହାରୀଙ୍କ ପାଖକୁ ଗଲେ । ସେଠାରେ ପହଞ୍ଚି ସେମାନେ କିରୀଟ-କୁଣ୍ଡଳଧାରୀ ବନମାଳା ବିଭୂଷିତ ରମାପତିଙ୍କୁ ଦର୍ଶନ କଲେ । ବିଷ୍ଣୁ ତାଙ୍କର ଚାରିଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରିଥିଲେ । ତାଙ୍କ ଶ୍ରୀବିଗ୍ରହରେ ପୀତାମ୍ବର ଶୋଭା ପାଉଥିଲା ଏବଂ ସନନ୍ଦନାଦି ସିଦ୍ଧଗଣ ତାଙ୍କ ସେବାରେ ନିଯୁକ୍ତ ଥିଲେ । ସର୍ବବ୍ୟାପୀ ବିଷ୍ଣୁଙ୍କୁ ଦର୍ଶନ କରି ବ୍ରହ୍ମା ପ୍ରଭୃତି ଦେବତା ଓ ମୁନୀଶ୍ୱରମାନେ ତାଙ୍କୁ ପ୍ରଣାମ କଲେ ଏବଂ ତା'ପରେ ଭକ୍ତିପୂର୍ବକ କର ଯୋଡ଼ି ସ୍ତୁତି କଲେ ।

ଦେବତାମାନେ କହିଲେ—ହେ ଦେବଦେବ ! ହେ ଜଗନ୍ନାଥ ! ହେ ବୈକୁଣ୍ଠାଧିପତି ! ହେ ତ୍ରିଭୁବନର ଗୁରୁ ! ହେ ପ୍ରଭୁ ଶ୍ରୀହରି ! ଆମେ ସବୁ ଆପଣଙ୍କର ଶରଣାପନ୍ନ ହୋଇଛୁ, ଆମକୁ

ରକ୍ଷା କରନ୍ତୁ । ହେ ଅଚ୍ୟୁତ! ହେ ତ୍ରିଲୋକେଶ! ଆପଣ ହିଁ ସମସ୍ତ ଭୁବନର ପାଳକ । ହେ ଗୋବିନ୍ଦ! ହେ ଶ୍ରୀନିବାସ! ଆପଣ ଭକ୍ତଙ୍କର ପ୍ରାଣସ୍ୱରୂପ, ଆପଣଙ୍କୁ ଆମର ନମସ୍କାର ।

ଏହିରୂପେ ସ୍ତୁତି କରି ସମସ୍ତ ଦେବତା ଶ୍ରୀହରିଙ୍କ ସମ୍ମୁଖରେ କାନ୍ଦି ପକାଇଲେ । ସେମାନଙ୍କ କଥା ଶୁଣି ଭଗବାନ ବିଷ୍ଣୁ ବ୍ରହ୍ମାଙ୍କୁ କହିଲେ—

ବିଷ୍ଣୁ କହିଲେ—ବ୍ରହ୍ମନ୍! ମୋର ଏହି ଯୋଗୀ-ଦୁର୍ଲଭ ବୈକୁଣ୍ଠକୁ ଆପଣ କାହିଁକି ଆସିଛନ୍ତି? ଆପଣଙ୍କ ଉପରେ କେଉଁ କଷ୍ଟ ପଡ଼ିଛି, ମୋ ଆଗରେ ଯଥାର୍ଥରୂପେ ବର୍ଣ୍ଣନା କରନ୍ତୁ ।

ସନତ୍‌କୁମାର କହିଲେ—ମୁନେ! ଶ୍ରୀହରିଙ୍କ ବାକ୍ୟ ଶୁଣି ବ୍ରହ୍ମା ବିନମ୍ରଭାବରେ ମୁଣ୍ଡ ନୁଆଁଇ ବାରମ୍ବାର ପ୍ରଣାମ କଲେ ଏବଂ କର ଯୋଡ଼ି ବିଷ୍ଣୁଙ୍କ ସମକ୍ଷରେ ଶଙ୍ଖଚୂଡ଼ ହେତୁ ଉପସ୍ଥିତ ହୋଇଥିବା ଦେବତାଙ୍କର ସମସ୍ତ କ୍ଲେଶ ବିଷୟରେ ବର୍ଣ୍ଣନା କଲେ । ସକଳ ପ୍ରାଣୀଙ୍କ ଭାବର ଜ୍ଞାତା ଭଗବାନ ଶ୍ରୀହରି ତାଙ୍କ କଥା ଶୁଣି ହସିଦେଲେ ଏବଂ ବ୍ରହ୍ମାଙ୍କୁ ସେହି ରହସ୍ୟ ଉଦ୍‌ଘାଟନ କରି କହିଲେ—

ଶ୍ରୀଭଗବାନ କହିଲେ—ମୁଁ ଶଙ୍ଖଚୂଡ଼ର ସମସ୍ତ ବୃତ୍ତାନ୍ତ ଜାଣେ । ପୂର୍ବଜନ୍ମରେ ସେ ମହାତେଜସ୍ୱୀ ଗୋପ ଥିଲା ଏବଂ ମୋର ଭକ୍ତ ଥିଲା । ମୁଁ ତା' ସମ୍ପର୍କରେ ପୁରାତନ ଇତିହାସ ବର୍ଣ୍ଣନା କରୁଛି, ଶୁଣନ୍ତୁ । ଏଥିରେ ସନ୍ଦେହ ନ କରନ୍ତୁ । ଭଗବାନ ଶଙ୍କର ସମସ୍ତଙ୍କର କଲ୍ୟାଣ କରିବେ । ଗୋଲୋକରେ ମୋର ହିଁ ଅନ୍ୟତମ ସ୍ୱରୂପ ଶ୍ରୀକୃଷ୍ଣ ରହୁଛନ୍ତି । ତାଙ୍କ ସ୍ତ୍ରୀ ରାଧା ନାମରେ ବିଖ୍ୟାତ । ସେ ଜଗଜ୍ଜନନୀ ତଥା ପ୍ରକୃତିର ପରମୋତ୍କୃଷ୍ଟ ପଞ୍ଚମ ମୂର୍ତ୍ତି । ସେ ମଧ୍ୟ ସେଠାରେ ସୁନ୍ଦରରୂପେ ବିହାର କରିଥାନ୍ତି । ଶ୍ରୀକୃଷ୍ଣଙ୍କ ଅଙ୍ଗରୁ ଉଦ୍ଭୁତ ଅନେକ ଗୋପ ଓ ଗୋପୀ ମଧ୍ୟ ସେଠାରେ ନିବାସ କରନ୍ତି । ସେମାନେ ନିତ୍ୟ ରାଧା-କୃଷ୍ଣଙ୍କର ଅନୁବର୍ତ୍ତନ କରି ଉତ୍ତମ ଉତ୍ତମ କ୍ରୀଡ଼ାରେ ତତ୍ପର ରହିଥାନ୍ତି । ସେମାନଙ୍କ ମଧ୍ୟରୁ ପୂର୍ବୋକ୍ତ ଗୋପ ହିଁ ଶମ୍ଭୁଙ୍କର ଲୀଳାରେ ମୋହିତ ହୋଇ ଅଭିଶପ୍ତ ହୋଇଥିଲା । ସେ ଏବେ ଏହି ଦୁଃଖଦାୟୀ ଦାନବଜନ୍ମ ପାଇଛି । ଶ୍ରୀକୃଷ୍ଣ ପ୍ରଥମରୁ ହିଁ ରୁଦ୍ରଙ୍କ ତ୍ରିଶୂଳରେ ତା'ର ମୃତ୍ୟୁ ନିର୍ଦ୍ଧାରଣ କରି ଦେଇଛନ୍ତି । ଏହି ଉପାୟରେ ସେ ଦାନବଦେହ ପରିତ୍ୟାଗ କରି ପୁନଃ ଶ୍ରୀକୃଷ୍ଣଙ୍କ ପାର୍ଷଦ ହୋଇଯିବ । ହେ ଦେବେଶ! ଏହା ବୁଝି ତୁମେ ଭୟ କରିବା ଉଚିତ ନୁହେଁ । ଚାଲ ଆମେ ଦୁହେଁ ଶିବଙ୍କ ଶରଣକୁ ଯିବା । ସେ ଖୁବ୍ ଶୀଘ୍ର ଆମର କଲ୍ୟାଣ ସାଧିତ କରିବେ । ଏବେ ମୁଁ, ତୁମେ ଓ ଦେବଗଣ—ଆମେ ସମସ୍ତେ ନିର୍ଭୟ ହୋଇଯିବା ଉଚିତ ।

ସନତ୍‌କୁମାର କହୁଛନ୍ତି—ମୁନେ! ଏତିକି କହି ବିଷ୍ଣୁ ବ୍ରହ୍ମାଙ୍କୁ ସଙ୍ଗରେ ଧରି ଶିବଲୋକକୁ ଗଲେ । ମାର୍ଗରେ ସେ ମନେ ମନେ ଭକ୍ତବତ୍ସଳ ଶିବଙ୍କୁ ସ୍ମରଣ କରି କରି ଯାଉଥିଲେ । ବ୍ୟାସଦେବ! ସେ ବ୍ରହ୍ମାଙ୍କ ସଙ୍ଗରେ ଯାଇ ଶିବଲୋକରେ ପହଞ୍ଚିଲେ । ଶିବଲୋକ ହେଉଛି ମହାନ୍, ଦିବ୍ୟ, ନିରାଧାର ଓ ଭୌତିକତାର ଊର୍ଦ୍ଧ୍ୱରେ । ସେଠାରେ ପହଞ୍ଚି ସେ ଶିବଙ୍କ ସଭାକୁ ଦର୍ଶନ କଲେ । ସେହି ଉତ୍କୃଷ୍ଟ ପ୍ରଭାବଯୁକ୍ତ ସଭା ଜ୍ୟୋତିର୍ମୟ ଶରୀରଧାରୀ ଶିବପାର୍ଷଦଙ୍କ ଦ୍ୱାରା ପରିପୂର୍ଣ୍ଣ ହୋଇଥିବାରୁ ବିଶେଷରୂପେ ଶୋଭା ପାଉଥିଲା । ପାର୍ଷଦମାନଙ୍କ ଶରୀର ଶିବଙ୍କ ସଦୃଶ ତଥା କାନ୍ତିଯୁକ୍ତ ଥିଲା । ସେମାନଙ୍କର ଥିଲା ଦଶଭୁଜ, ପାଞ୍ଚମୁଖ ଓ ତିନି ତିନି ନେତ୍ର । ସେମାନଙ୍କ ଗଳାରେ ଥିଲା ନୀଳଚିହ୍ନ ଓ ରଙ୍ଗ ଥିଲା ଅତ୍ୟନ୍ତ ଗୌର । ସେମାନେ ଉତ୍ତମ ରତ୍ନସଂଯୁକ୍ତ ରୁଦ୍ରାକ୍ଷ ଓ ଭସ୍ମର ଆଭରଣରେ ଭୂଷିତ ଥିଲେ । ସଭାଟି ଥିଲା ନବୀନ ଚନ୍ଦ୍ରମଣ୍ଡଳାକାର ଓ ଚତୁରସ୍ର ।

ତାହା ଉତ୍ତମୋତ୍ତମ ମଣି ଓ ହୀରାର ହାରରେ ସୁସଜ୍ଜିତ ତଥା ଅମୂଲ୍ୟ ରତ୍ନନିର୍ମିତ ପଦ୍ମପତ୍ରରେ ସୁଶୋଭିତ ଥିଲା । ସେଥିରେ ଥିବା ଗବାକ୍ଷରେ ମଣିର ଜାଲି ଲାଗିଥିଲା, ସେଥିପାଇଁ ସେଗୁଡ଼ିକ ଚିତ୍ର ବିଚିତ୍ର ଦିଶୁଥିଲା । ଶିବଙ୍କ ଇଚ୍ଛାରେ ସେଗୁଡ଼ିକରେ ପଦ୍ମରାଗ ମଣି ଜଟିତ ହୋଇଥିଲା, ଫଳରେ ଅତି ଅଦ୍ଭୁତ ପରି ଲାଗୁଥିଲା । ସେଠାରେ ଥିଲା ସ୍ୟମନ୍ତକମଣିର ଶହ ଶହ ପାହାଚ । ତାହାର ଚତୁଷ୍ପାର୍ଶ୍ୱରେ ଥିଲା ଇନ୍ଦ୍ରନୀଳମଣିର ଅନେକ ସ୍ତମ୍ଭ, ସ୍ତମ୍ଭମାନଙ୍କରେ ଝୁଲୁଥିଲା ସୁନାସୂତାରେ ଗୁନ୍ଥା ହୋଇଥିବା ଚନ୍ଦନର ପଲ୍ଲବ, ଯାହାକି ମନମୋହକ ଥିଲା । ସଭାସ୍ଥଳଟି ସୁସଂସ୍କୃତ ତଥା ସୁଗନ୍ଧିତ ବାୟୁରେ ସୁବାସିତ ଥିଲା । ଏକସହସ୍ର ଯୋଜନବିସ୍ତୃତ ସେହି ସଭାରେ ଥିଲେ ଅନେକ କିଂକର । ସଭାର ମଧ୍ୟଭାଗରେ ଥିଲା ଅମୂଲ୍ୟ ରତ୍ନରେ ନିର୍ମିତ ଗୋଟିଏ ବିଚିତ୍ର ସିଂହାସନ । ସୁରେଶ୍ୱର ବିଷ୍ଣୁ ତାହାରି ଉପରେ ମହେଶ୍ୱରଙ୍କୁ ଉମାଙ୍କ ସଙ୍ଗେ ବିରାଜମାନ ଥିବା ଦେଖିବାକୁ ପାଇଲେ । ମହେଶ୍ୱର ତାରକାଙ୍କ ମେଳରେ ଚନ୍ଦ୍ରମା ପରି ଶୋଭା ପାଉଥିଲେ । ସେ କିରୀଟ, କୁଣ୍ଡଳ ଓ ରତ୍ନର ମାଳାସମୂହରେ ବିଭୂଷିତ ଥିଲେ । ତାଙ୍କର ସମସ୍ତ ଅଙ୍ଗରେ ଭସ୍ମ ପ୍ରଲେପିତ ଥିଲା ଓ ସେ ନୀଳକମଳ ଧାରଣ କରିଥିଲେ । ତାଙ୍କ ମନ ପ୍ରଫୁଲ୍ଲ, ଶାନ୍ତ ଓ ପ୍ରସନ୍ନ ଥିଲା । ଦେବୀ ପାର୍ବତୀ ତାଙ୍କୁ ଯେଉଁ ସୁବାସିତ ତାମ୍ବୂଳ ପ୍ରଦାନ କରିଥିଲେ, ତାହାକୁ ସେ ଚୋବାଉ ଥିଲେ । ଶିବଗଣ ହାତରେ ଶ୍ୱେତଚାମର ଧରି ପରମ ଭକ୍ତିରେ ତାଙ୍କ ସେବା କରୁଥିଲେ ଏବଂ ସିଦ୍ଧଗଣ ଭକ୍ତିରେ ମୁଣ୍ଡ ନୁଆଁଇ ତାଙ୍କୁ ସ୍ତୁତି କରୁଥିଲେ । ସେ ହେଉଛନ୍ତି ଗୁଣାତୀତ, ପରେଶାନ, ତ୍ରିଦେବଙ୍କ ଜନକ, ସର୍ବବ୍ୟାପୀ, ନିର୍ବିକଳ୍ପ, ନିରାକାର, ସ୍ୱେଚ୍ଛାନୁସାରେ ସାକାର-ବିଗ୍ରହଧାରୀ, କଲ୍ୟାଣ-ସ୍ୱରୂପ, ମାୟାରହିତ, ଅଜନ୍ମା, ଆଦିପୁରୁଷ, ମାୟାର ଅଧୀଶ୍ୱର, ପ୍ରକୃତି ଓ ପୁରୁଷଠାରୁ ମଧ୍ୟ ପରାତ୍ପର, ସର୍ବସମର୍ଥ, ପରିପୂର୍ଣ୍ଣତମ ଓ ସମତାଯୁକ୍ତ । ଏପରି ବୈଶିଷ୍ଟ୍ୟ-ସମ୍ପନ୍ନ ଶିବଙ୍କୁ ଦେଖି ବ୍ରହ୍ମା ଓ ବିଷ୍ଣୁ କର ଯୋଡ଼ି ପ୍ରଣାମ କଲେ ଏବଂ ତା'ପରେ ତାଙ୍କୁ ସ୍ତୁତି କଲେ । ବିବିଧ ପ୍ରକାରେ ସ୍ତୁତି କରିସାରି ଶେଷରେ କହିଲେ—"ଭଗବନ୍ ! ଆପଣ ଦୀନବନ୍ଧୁ ଓ ଅନାଥଙ୍କର ସହାୟକ, ଦୀନଜନଙ୍କର ପ୍ରତିପାଳକ, ତ୍ରିଲୋକର ଅଧୀଶ୍ୱର ଓ ଶରଣାଗତବତ୍ସଳ । ହେ ଗୌରୀଶ ! ଆମକୁ ଉଦ୍ଧାର କରନ୍ତୁ । ପରମେଶ୍ୱର ! ଆମ ଉପରେ କୃପା କରନ୍ତୁ । ପ୍ରଭୋ ! ଆମେ ଆପଣଙ୍କର ଅଧୀନ; ଏଣିକି ଆପଣଙ୍କର ଯାହା ଇଚ୍ଛା କରନ୍ତୁ ।

(ଅଧ୍ୟାୟ ୨୯-୩୦)



## ରୁଦ୍ରଙ୍କ ନିକଟରେ ଦେବଗଣଙ୍କର ଦୁଃଖ ନିବେଦନ, ରୁଦ୍ରଙ୍କର ସେମାନଙ୍କୁ ଆଶ୍ୱାସନା ଓ ଚିତ୍ରରଥକୁ ଶଙ୍ଖଚୂଡ଼ ପାଖକୁ ପ୍ରେଷଣ, ଚିତ୍ରରଥ ଫେରିବା ପରେ ଶିବଗଣ, ପୁତ୍ର ଓ ଭଦ୍ରକାଳୀଙ୍କୁ ସଙ୍ଗରେ ଧରି ରୁଦ୍ରଙ୍କର ଯୁଦ୍ଧଯାତ୍ରା, ପୁଷ୍ପଭଦ୍ରା ତଟରେ ଶଙ୍ଖଚୂଡ଼ର ସୈନ୍ୟଶିବିର ସ୍ଥାପନ ଏବଂ ଶଙ୍ଖଚୂଡ଼ର ଦୂତ ସଙ୍ଗେ ଶିବଙ୍କର ବାର୍ତ୍ତାଳାପ

ସନତ୍କୁମାର କହୁଛନ୍ତି—ହେ ବ୍ୟାସଦେବ ! ବ୍ରହ୍ମା ଓ ବିଷ୍ଣୁଙ୍କର ଦୈନ୍ୟ ବଚନ ଶୁଣି ଶିବ ମନ୍ଦ ମନ୍ଦ ହସିଲେ ଏବଂ ମେଘ ପରି ଗମ୍ଭୀର ବାଣୀରେ କହିଲେ—

ଶିବ କହିଲେ—ହେ ହରେ ! ହେ ବ୍ରହ୍ମନ୍ ! ତୁମେମାନେ ଶଙ୍ଖଚୂଡ଼ ଦ୍ୱାରା ଉତ୍ପନ୍ନ ଭୟକୁ ସର୍ବଥା

ଭୁଲିଯାଅ । ତୁମର ନିଶ୍ଚୟ କଲ୍ୟାଣ ହେବ । ମୁଁ ଶଙ୍ଖଚୂଡ଼ର ସମସ୍ତ ବୃତ୍ତାନ୍ତ ଭଲଭାବେ ଜାଣେ । ସେ ପୂର୍ବଜନ୍ମରେ ସୁଦାମା ନାମକ ଜଣେ ଗୋପ ଥିଲା ଏବଂ ଶ୍ରୀକୃଷ୍ଣଙ୍କର ଭକ୍ତ ଥିଲା । ସେ ରାଧାଙ୍କ ଅଭିଶାପରେ ଶଙ୍ଖଚୂଡ଼ ନାମକ ଦୈତ୍ୟ ହୋଇ ଉତ୍ପନ୍ନ ହୋଇଛି । ସେ ପରମ ଧର୍ମଜ୍ଞ; କିନ୍ତୁ ଦେବତାଙ୍କର ଦ୍ରୋହୀ । ସେ ଦୁର୍ବୁଦ୍ଧିବଶତଃ ତା'ର ଉତ୍କୃଷ୍ଟ ବଳର ଭରସାରେ ଦେବଗଣଙ୍କୁ କଷ୍ଟ ଦେଉଛି । ଏବେ ତୁମେମାନେ ଶ୍ରଦ୍ଧାରେ ମୋ କଥା ଶୁଣ ଏବଂ ଦେବଗଣଙ୍କୁ ଆନନ୍ଦିତ କରିବା ନିମନ୍ତେ ଶୀଘ୍ର କୈଳାସବାସୀ ରୁଦ୍ରଙ୍କ ନିକଟକୁ ଯାଅ । ମୁଁ ହିଁ ଦେବତାଙ୍କ କାର୍ଯ୍ୟର ସିଦ୍ଧି ନିମନ୍ତେ ପୃଥକ୍ ରୂପ ଧାରଣ କରି ସେଠାରେ ପ୍ରକଟ ହୋଇଛି । ମୋର ସେହି ରୂପ ଐଶ୍ୱର୍ଯ୍ୟଶାଳୀ ଓ ପରିପୂର୍ଣ୍ଣତମ ଅଟେ । ମୁଁ ଭକ୍ତଙ୍କ ଭକ୍ତିର ଅଧୀନ ହୋଇ ଅନ୍ୟତମ ରୂପରେ କୈଳାସପର୍ବତରେ ସଦା ନିବାସ କରିଥାଏ ।

ତାଙ୍କ ଆଦେଶରେ ଦେବଗଣ କୈଳାସରେ ପହଞ୍ଚି ଭଗବାନ ମହେଶଙ୍କୁ ସ୍ତୁତି କଲେ ଏବଂ ଶେଷରେ କହିଲେ—"ମହେଶାନ ! ଆପଣ ତ କୃପାର ନିଧାନ । ଦୀନଜନଙ୍କୁ ଉଦ୍ଧାର କରିବା ଆପଣଙ୍କର ସ୍ୱଭାବ । ପ୍ରଭୋ ! ଦାନବରାଜ ଶଙ୍ଖଚୂଡ଼କୁ ବଧ କରି ଇନ୍ଦ୍ରଙ୍କୁ ଭୟମୁକ୍ତ କରନ୍ତୁ ଏବଂ ଦେବତାଙ୍କୁ ଏହି ବିପତ୍ତିରୁ ଉଦ୍ଧାର କରନ୍ତୁ ।" ଭକ୍ତବତ୍ସଳ ଶମ୍ଭୁ ଦେବତାଙ୍କର ପ୍ରାର୍ଥନା ଶୁଣି ମନ୍ଦମନ୍ଦ ହସିଲେ ଏବଂ ମେଘନାଦ ପରି ଗମ୍ଭୀର ବାଣୀରେ କହିଲେ—

ଶ୍ରୀଶଙ୍କର କହିଲେ—ହେ ହରେ ! ହେ ବ୍ରହ୍ମନ୍ ! ହେ ଦେବଗଣ ! ତୁମେମାନେ ନିଜ ନିଜ ସ୍ଥାନକୁ ଫେରିଯାଅ । ମୁଁ ଶଙ୍ଖଚୂଡ଼କୁ ତା'ର ସୈନିକ ସମେତ ନିଶ୍ଚୟ ବଧ କରିବି । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ସନତ୍କୁମାର କହୁଛନ୍ତି—ହେ ବ୍ୟାସଦେବ ! ମହେଶ୍ୱରଙ୍କ ମୁଖରୁ ଏପରି ଅମୃତବର୍ଷିଣୀ ବାଣୀ ଶୁଣି ଦେବତାମାନଙ୍କୁ ପରମ ଆନନ୍ଦ ପ୍ରାପ୍ତ ହେଲା । ସେମାନେ ବୁଝିଗଲେ ଯେ ଏଥର ଦାନବ ଶଙ୍ଖଚୂଡ଼ର ମୃତ୍ୟୁ ସୁନିଶ୍ଚିତ । ଏହାପରେ ମହେଶ୍ୱରଙ୍କ ଚରଣରେ ପ୍ରଣିପାତ କରି ବିଷ୍ଣୁ ବୈକୁଣ୍ଠକୁ, ବ୍ରହ୍ମା ସତ୍ୟଲୋକକୁ ଏବଂ ଦେବଗଣ ନିଜ ନିଜ ଧାମକୁ ଫେରିଗଲେ । ତେଣେ ପରମେଶ୍ୱର ମହାରୁଦ୍ର, ଯେ କି ଦୁଷ୍ଟଙ୍କ ନିମନ୍ତେ କାଳସ୍ୱରୂପ ଓ ସତ୍ପୁରୁଷଙ୍କର ଗତି, ସେ ଦେବତାଙ୍କ ଇଚ୍ଛାରେ ନିଜ ମନ ମଧ୍ୟରେ ଶଙ୍ଖଚୂଡ଼ ବଧର ଅଟଳ ନିର୍ଣ୍ଣୟ କଲେ । ତା'ପରେ ସେ ତାଙ୍କର ପ୍ରିୟ ଗନ୍ଧର୍ବରାଜ ଚିତ୍ରରଥଙ୍କୁ ଦୂତ କରି ଅବିଳମ୍ବେ ଶଙ୍ଖଚୂଡ଼ ନିକଟକୁ ପଠାଇଦେଲେ । ଚିତ୍ରରଥ ସେଠାକୁ ଯାଇ ଶଙ୍ଖଚୂଡ଼କୁ ବହୁତ ବୁଝାଇଲେ, ମାତ୍ର ସେ ବିନା ଯୁଦ୍ଧରେ ଦେବତାଙ୍କ ରାଜ୍ୟ ଫେରାଇବାକୁ ରାଜି ହେଲା ନାହିଁ । ସେ କହିଲା—"ମୁଁ ଦୃଢ଼ ନିର୍ଣ୍ଣୟ କରିଛି ଯେ ମହେଶ୍ୱରଙ୍କ ସଙ୍ଗେ ଯୁଦ୍ଧ ନ କଲା ପର୍ଯ୍ୟନ୍ତ ମୁଁ ଦେବତାଙ୍କ ରାଜ୍ୟ ଦେବି ନାହିଁ କି ସେମାନଙ୍କର ଅଧିକାର ଫେରାଇବି ନାହିଁ । ତୁ କଲ୍ୟାଣକାରୀ ରୁଦ୍ରଙ୍କ ପାଖକୁ ଫେରିଯା' ଆଉ ମୋର ଏହି କଥାକୁ ଯଥାର୍ଥରୂପେ କହିଦେ' । ସେ ଯାହା ଭଲ ଭାବିବେ କରିବେ । ଆଉ ଅଧିକ ଗପି କିଛି ଲାଭ ନାହିଁ ।"

ସନତ୍କୁମାର କହୁଛନ୍ତି—ମୁନିଶ୍ରେଷ୍ଠ ! ଦୈତ୍ୟରାଜ ଏପରି କହିବାରୁ ଶିବଦୂତ ପୁଷ୍ପଦନ୍ତ (ଚିତ୍ରରଥ) ଆପଣା ସ୍ୱାମୀ ମହେଶ୍ୱରଙ୍କ ନିକଟକୁ ଫେରିଆସି ସମସ୍ତ ବୃତ୍ତାନ୍ତ ଯଥାବତ୍ କହିଦେଲେ । ଦୂତଠାରୁ ଏକଥା ଶୁଣି ଦେବଗଣଙ୍କ ସ୍ୱାମୀ ଭଗବାନ ଶଙ୍କର କ୍ରୁଦ୍ଧ ହୋଇଗଲେ । ସେ ଆପଣା ବୀରଭଦ୍ର ପ୍ରଭୃତି ଗଣଙ୍କୁ କହିଲେ—

ରୁଦ୍ର କହିଲେ—ହେ ବୀରଭଦ୍ର ! ହେ ନନ୍ଦୀ! ହେ କ୍ଷେତ୍ରପାଳ ! ହେ ଅଷ୍ଟ ଭୈରବ ! ମୁଁ ଆଜି

ଖୁବ୍ ଶୀଘ୍ର ଶଙ୍ଖଚୂଡ଼କୁ ବଧ କରିବାକୁ ଯାଉଛି, ତେଣୁ ମୋ ଆଜ୍ଞାରେ ସମସ୍ତ ବଳଶାଳୀ ଗଣ ଆୟୁଧ ଧାରଣ କରି ପ୍ରସ୍ତୁତ ହୋଇଯାଅ ଏବଂ ଅବିଳମ୍ବେ କାର୍ତ୍ତିକ ଓ ଗଣେଶଙ୍କ ସଙ୍ଗରେ ଯୁଦ୍ଧଯାତ୍ରା ନିମନ୍ତେ ବାହାରିପଡ଼ । ଭଦ୍ରକାଳୀ ମଧ୍ୟ ତାଙ୍କ ସେନାକୁ ଧରି ଯୁଦ୍ଧ ପାଇଁ ଚାଲନ୍ତୁ ।

ସନତ୍‌କୁମାର କହୁଛନ୍ତି—ମୁନେ ! ଏପରି ଆଜ୍ଞା ଦେଇ ଶିବ ତାଙ୍କର ସେନା ସହିତ ବାହାରିଗଲେ । ତାଙ୍କ ପଛେ ପଛେ ସମସ୍ତ ବୀରଗଣ ସହର୍ଷ ଚାଲିଲେ । ଏତିକିବେଳେ ସମଗ୍ର ସେନାର ଅଧ୍ୟକ୍ଷ ସ୍କନ୍ଦ ଓ ଗଣେଶ ସହର୍ଷ କବଚ ଧାରଣ କରି ସଶସ୍ତ୍ର ଶିବଙ୍କ ପାଖରେ ପହଞ୍ଚିଗଲେ । ତା'ପରେ ବୀରଭଦ୍ର, ନନ୍ଦୀ, ମହାକାଳ, ସୁଭଦ୍ରକ, ବିଶାଳାକ୍ଷ, ବାଣ, ପିଙ୍ଗଳାକ୍ଷ, ବିକମ୍ପନ, ବିରୂପ, ବିକୃତି, ମଣିଭଦ୍ର, ବାଷ୍କଳ, କପିଳ, ଦୀର୍ଘଦଂଷ୍ଟ୍ର, ବିକାର, ତାମ୍ରଲୋଚନ, କାଳଂକର, ବଳୀଭଦ୍ର, କାଳଜିହ୍ୱ, କୁଟୀଚର, ବଳୋନ୍ମତ୍ତ, ରଣଶ୍ଳାଘ୍ୟ, ଦୁର୍ଜୟ ଓ ଦୁର୍ଗମ ପ୍ରମୁଖ ଗଣନାୟକ ତଥା ପ୍ରଧାନ ପ୍ରଧାନ ସେନାପତିମାନେ ଶିବଙ୍କ ସଙ୍ଗରେ ଚାଲିଲେ । ସେମାନଙ୍କର ଗଣଙ୍କ ସଂଖ୍ୟା ଥିଲା କୋଟି କୋଟି । ଅଷ୍ଟ ଭୈରବ, ଏକାଦଶ ରୁଦ୍ର, ଅଷ୍ଟ ବସୁ, ଇନ୍ଦ୍ର, ଦ୍ୱାଦଶ ଆଦିତ୍ୟ, ଅଗ୍ନି, ଚନ୍ଦ୍ରମା, ବିଶ୍ୱକର୍ମା, ଅଶ୍ୱିନୀକୁମାରଦ୍ୱୟ, କୁବେର, ଯମ, ନିର୍ଋତି, ନଳକୂବର, ବାୟୁ, ବରୁଣ, ବୁଧ, ମଙ୍ଗଳ ତଥା ଅନ୍ୟାନ୍ୟ ଗ୍ରହ, ପରାକ୍ରମୀ କାମଦେବ, ଉଗ୍ରଦଂଷ୍ଟ୍ର, ଉଗ୍ରଦଣ୍ଡ, କୋରଟ ତଥା କୋଟଭ ପ୍ରଭୃତି ଅବିଳମ୍ବେ ମହେଶ୍ୱରଙ୍କର ଅନୁଗମନ କଲେ । ସ୍ୱୟଂ ମହେଶ୍ୱରୀ ଭଦ୍ରକାଳୀ ମଧ୍ୟ ଶହେ ଭୁଜ ଧାରଣ କରି ଶିବଙ୍କ ସଙ୍ଗରେ ଚାଲିଲେ । ସେ ଉତ୍ତମୋତ୍ତମ ରତ୍ନରେ ନିର୍ମିତ ବିମାନରେ ଆରୂଢ଼ା ଥିଲେ । ତାଙ୍କ ଶରୀରରେ ଲାଲ ଚନ୍ଦନର ଅନୁଲେପ ଥିଲା ଏବଂ ଲାଲ ରଙ୍ଗର ବସ୍ତ୍ର ଶୋଭା ପାଉଥିଲା । ସେ ହର୍ଷରେ ଉତ୍‌ଫୁଲ୍ଲିତ ହୋଇ ହସୁଥିଲେ, ନାଚୁଥିଲେ ଏବଂ ସୁନ୍ଦର ସ୍ୱରରେ ଗୀତ ଗାଇ ଗାଇ ନିଜ ଭକ୍ତଗଣଙ୍କୁ ଅଭୟ ଓ ଶତ୍ରୁଙ୍କୁ ଭୟ ପ୍ରଦାନ କରୁଥିଲେ । ତାଙ୍କର ଏକଯୋଜନ ଲମ୍ବା ଭୟଙ୍କର ଜିହ୍ୱା ଲହଲହ ହେଉଥିଲା । ସେ ଭୁଜମାନଙ୍କରେ ଧରିଥିଲେ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଢାଲ, ତରବାରି, ଧନୁ, ଶର, ଏକଯୋଜନବ୍ୟାପୀ ଗଭୀର ଗୋଲାକାର ଖର୍ପର, ଗଗନଚୁମ୍ବୀ ତ୍ରିଶୂଳ, ଏକଯୋଜନ ଲମ୍ବା ଶକ୍ତି, ମୁଦ୍‌ଗର, ମୁଷଳ, ବଜ୍ର, ଖଡ୍‌ଗ, ତୀକ୍ଷ୍ଣ ଫଳକ, ବୈଷ୍ଣବାସ୍ତ୍ର, ବାରୁଣାସ୍ତ୍ର, ବାୟବ୍ୟାସ୍ତ୍ର, ନାଗପାଶ, ନାରାୟଣାସ୍ତ୍ର, ଗନ୍ଧର୍ବାସ୍ତ୍ର, ବ୍ରହ୍ମାସ୍ତ୍ର, ଗାରୁଡାସ୍ତ୍ର, ପର୍ଜନ୍ୟାସ୍ତ୍ର, ପାଶୁପତାସ୍ତ୍ର, ଜୃମ୍ଭଣାସ୍ତ୍ର, ପର୍ବତାସ୍ତ୍ର, ମହାପରାକ୍ରମୀ ସୂର୍ଯ୍ୟାସ୍ତ୍ର, କାଳାସ୍ତ୍ର, ମହାନଳ, ମହେଶ୍ୱରାସ୍ତ୍ର, ଯମଦଣ୍ଡାସ୍ତ୍ର, ସମ୍ମୋହନାସ୍ତ୍ର ତଥା ଦିବ୍ୟ ସମର୍ଥାସ୍ତ୍ର ଏବଂ ଅନ୍ୟାନ୍ୟ ଶହ ଶହ ଦିବ୍ୟାସ୍ତ୍ର । କୋଟି କୋଟି ଯୋଗିନୀ ଓ ଡାକିନୀ ତାଙ୍କ ସଙ୍ଗରେ ଥିଲେ । ସ୍କନ୍ଦ ମଧ୍ୟ ଭୂତ, ପ୍ରେତ, ପିଶାଚ, କୁଷ୍ମାଣ୍ଡ, ବ୍ରହ୍ମରାକ୍ଷସ, ବେତାଳ, ରାକ୍ଷସ, ଯକ୍ଷ ଓ କିଂନରଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ପିତା ଶ୍ରୀଚନ୍ଦ୍ରଶେଖରଙ୍କ ନିକଟକୁ ଆସି ପ୍ରଣାମ କଲେ ଏବଂ ତାଙ୍କ ଆଜ୍ଞାରେ ପାର୍ଶ୍ୱଭାଗରେ ସହାୟକର ସ୍ଥାନ ଗ୍ରହଣ କଲେ । ଏହାପରେ ରୁଦ୍ରରୂପଧାରୀ ଶମ୍ଭୁ ନିଜର ସମଗ୍ର ସେନାକୁ ଏକଜୁଟ କରି ଶଙ୍ଖଚୂଡ଼ ସଙ୍ଗେ ସଂଗ୍ରାମ କରିବାକୁ ଅଗ୍ରସର ହେଲେ ଏବଂ ଦେବତାଙ୍କ ଉଦ୍ଧାର ନିମନ୍ତେ ଚନ୍ଦ୍ରଭାଗା ନଦୀତଟରେ ଗୋଟିଏ ମନୋହର ବଟବୃକ୍ଷ ତଳେ ଯାଇ ଛିଡ଼ା ହେଲେ ।

ବ୍ୟାସଦେବ ! ତେଣେ ଶିବଦୂତ ଫେରିଯିବା ପରେ ପ୍ରତାପୀ ଶଙ୍ଖଚୂଡ଼ ମହଲ ଭିତରକୁ ଯାଇ ତୁଳସୀକୁ ସେହି ସମସ୍ତ ବୃତ୍ତାନ୍ତ କହିଲା ।

ଶଙ୍ଖଚୂଡ଼ କହିଲା—"ହେ ଦେବୀ ! ଶମ୍ଭୁଙ୍କ ଦୂତ ମୁଖରୁ ରଣ-ନିମନ୍ତ୍ରଣ ପାଇ ମୁଁ ଯୁଦ୍ଧ ପାଇଁ ଉଦ୍ୟତ

ହୋଇଛି ଏବଂ ମୁଁ ଯୁଦ୍ଧ କରିବାକୁ ନିଶ୍ଚୟ ଯିବି । ତୁମେ ମୋତେ ଏଥିନିମନ୍ତେ ଅନୁମତି ଦିଅ ।'' ଏହା କହି ସେହି ଜ୍ଞାନୀ ଦୈତ୍ୟ ନିଜ ପ୍ରିୟାକୁ ନାନା ପ୍ରକାରେ ବୁଝାଇଲା । ପରଦିନ ବ୍ରାହ୍ମମୁହୂର୍ତ୍ତରୁ ଉଠି ପ୍ରାତଃକୃତ୍ୟ ଶେଷ କଲା ଏବଂ ନିତ୍ୟକର୍ମ ସାରି ଅନେକ ପ୍ରକାର ଦାନ ଦେଲା । ତା'ପରେ ପୁତ୍ରକୁ ସମଗ୍ର ଦାନବଙ୍କ ରାଜପଦରେ ଅଭିଷେକ କରି ତା' ଉପରେ ନିଜ ଭାର୍ଯ୍ୟାର ତଥା ରାଜ୍ୟ ଓ ସମସ୍ତ ସମ୍ପତ୍ତିର ଭାର ସମର୍ପି ଦେଲା । ଏହାପରେ ତା'ର ପ୍ରିୟା ତୁଳସୀ ତାକୁ କାନ୍ଦି କାନ୍ଦି ରଣଯାତ୍ରାରେ ନ ଯିବାକୁ କହିବାରୁ ରାଜା ଶଙ୍ଖଚୂଡ଼ ନାନା ପ୍ରକାର କଥା କହି ତାକୁ ଧୈର୍ଯ୍ୟ ଦେଲା । ତା'ପରେ ଦାନବରାଜ କବଚ ଧାରଣ କରି ଯୁଦ୍ଧ କରିବାକୁ ଉଦ୍ୟତ ହୋଇ ତା'ର ବୀର ସେନାପତିକୁ ଡାକି ଏହିପରି ଆଦେଶ ଦେଲା–

ଶଙ୍ଖଚୂଡ଼ କହିଲା–ସେନାପତେ ! ମୋର ଯେଉଁସବୁ ବୀର ଯୋଦ୍ଧା ସର୍ବକାର୍ଯ୍ୟରେ କୁଶଳ ଓ ସମରରେ ଶୋଭା ପାଆନ୍ତି, ସେମାନେ ଆଜି କବଚ ଧାରଣ କରି ମୋ ସହିତ ଯୁଦ୍ଧକୁ ବାହାରନ୍ତୁ । ବୀର ଦାନବ ଓ ଦୈତ୍ୟଙ୍କର ଛୟାଶୀ ଦଳ ସୈନ୍ୟ ତଥା ବଳବାନ୍ ନିର୍ଭୀକ କଙ୍କମାନେ ନିଜ ନିଜ ସେନା ସହିତ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ନଗରରୁ ବାହାରି ପଡ଼ନ୍ତୁ । ଅସୁରଙ୍କର ପଚାଶ କୁଳ, ଯେଉଁମାନେ କୋଟି କୋଟି ପ୍ରକାର ପରାକ୍ରମ ଦେଖାଇପାରନ୍ତି, ସେମାନେ ମଧ୍ୟ ଦେବତାଙ୍କର ପକ୍ଷ ନେଉଥିବା ଶମ୍ଭୁଙ୍କ ସହ ଯୁଦ୍ଧ କରିବାକୁ ଚାଲନ୍ତୁ । ମୋ ଆଜ୍ଞାରେ ଧୌମ୍ରଙ୍କର ଶହେ କୁଳ ମଧ୍ୟ କବଚ ଧାରଣ କରି ଶମ୍ଭୁଙ୍କ ସଙ୍ଗେ ଯୁଝିବାକୁ ଶୀଘ୍ର ବାହାରି ପଡ଼ନ୍ତୁ । କାଳକେୟ, ମୌର୍ଯ୍ୟ, ଦୌର୍ହୃଦ ଓ କାଳକଙ୍କୁ ମଧ୍ୟ ମୋ ଆଜ୍ଞା ଶୁଣାଇ ଦିଅ; ସେମାନେ ରୁଦ୍ରଙ୍କ ସଙ୍ଗେ ସଂଗ୍ରାମ କରିବାକୁ ଯୁଦ୍ଧସାମଗ୍ରୀରେ ସୁସଜ୍ଜିତ ହୋଇ ବାହାରନ୍ତୁ ।

ସନତ୍‌କୁମାର କହୁଛନ୍ତି–ମୁନେ ! ସେନାପତିକୁ ଏପରି ଆଦେଶ ଦେଇ ମହାବଳୀ ଦାନବେନ୍ଦ୍ର ଶଙ୍ଖଚୂଡ଼ ସହସ୍ର ପ୍ରକାର ସୈନ୍ୟଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ନଗରରୁ ବାହାରିଗଲା । ତା'ର ସେନାପତି ମଧ୍ୟ ଯୁଦ୍ଧଶାସ୍ତ୍ରରେ ଅତ୍ୟନ୍ତ ନିପୁଣ, ମହାରଥୀ, ପରମ ବୀର ଓ ଯୁଦ୍ଧସ୍ଥଳରେ ରଥୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲା । ଏହିରୂପେ ଯୁଦ୍ଧକ୍ଷେତ୍ରରେ ବୀରଙ୍କୁ ମଧ୍ୟ ଭୟଭୀତ କରିଦେଉଥିବା ଶଙ୍ଖଚୂଡ଼ ତିନିଲକ୍ଷ ଅକ୍ଷୌହିଣୀ ସୈନ୍ୟଙ୍କୁ ସଙ୍ଗରେ ନେଇ ଶିବିରରୁ ବାହାରିଲା ଏବଂ ଉତ୍ତମ ରତ୍ନମାନଙ୍କରେ ନିର୍ମିତ ବିମାନରେ ଆରୂଢ଼ ହୋଇ ଗୁରୁଜନଙ୍କୁ ଅଗ୍ରଗାମୀ କରି ଯୁଦ୍ଧ ନିମନ୍ତେ ଅଗ୍ରସର ହେଲା । ସେ ପୁଷ୍ପଭଦ୍ରା ନଦୀତଟ ସ୍ଥିତ ସିଦ୍ଧାଶ୍ରମରେ ପହଞ୍ଚିଲା । ସେଠାରେ ଏକ ମନୋହର ବଟବୃକ୍ଷ ଥିଲା । ଉକ୍ତ ସିଦ୍ଧକ୍ଷେତ୍ର ସିଦ୍ଧମାନଙ୍କୁ ମଧ୍ୟ ଉତ୍ତମ ସିଦ୍ଧି ପ୍ରଦାନ କରିଥାଏ ଏବଂ ପୁଣ୍ୟକ୍ଷେତ୍ର ଭାରତରେ ତାହା କପିଳଙ୍କ ତପଃସ୍ଥଳୀ ନାମରେ ପ୍ରସିଦ୍ଧ । ସେହି ଭୂଭାଗଟି ପଶ୍ଚିମ ସମୁଦ୍ରରୁ ପୂର୍ବ, ମଳୟ ପର୍ବତରୁ ପଶ୍ଚିମ, ଶ୍ରୀଶୈଳରୁ ଉତ୍ତର ଓ ଗନ୍ଧମାଦନରୁ ଦକ୍ଷିଣ ଦିଗରେ ଅବସ୍ଥିତ । ତାହାର ପ୍ରସ୍ଥ ପାଞ୍ଚ ଯୋଜନ ଓ ଲମ୍ବ ପାଞ୍ଚ ଶହ ଯୋଜନ । ଭାରତର ସେହି ଭୂଭାଗରେ ପୁଷ୍ପଭଦ୍ରା ଓ ସରସ୍ୱତୀ ନାମକ ଦୁଇଟି ପୁଣ୍ୟତୋୟା ନଦୀ ସ୍ଫଟିକ ତୁଲ୍ୟ ସ୍ୱଚ୍ଛ ଜଳ ଘେନି ପ୍ରବାହିତ ହୁଅନ୍ତି । ଲବଣସାଗରର ପ୍ରିୟା ଭାର୍ଯ୍ୟା ଚିରସୌଭାଗ୍ୟବତୀ ପୁଷ୍ପଭଦ୍ରା ନଦୀ ସରସ୍ୱତୀ ସହିତ ହିମାଳୟରୁ ବାହାରିଛି ଏବଂ ଗୋମନ୍ତ ପର୍ବତକୁ ବାମରେ ରଖି ପଶ୍ଚିମ ସମୁଦ୍ରରେ ଯାଇ ମିଶିଛି । ଏଭଳି କ୍ଷେତ୍ରରେ ପହଞ୍ଚି ଶଙ୍ଖଚୂଡ଼ ଶିବଙ୍କ ସେନାକୁ ଦେଖିଲା ।

ମୁନେ ! ସେ ପ୍ରଥମେ ଶିବଙ୍କ ପାଖକୁ ଗୋଟିଏ ଦାନବେଶ୍ୱରକୁ ଦୂତରୂପେ ପଠାଇଲା । ଦୂତ ଶିବଙ୍କୁ

ଯୁଦ୍ଧ ନ କରିବାକୁ କହିଲା ଏବଂ ଶିବ ତା'ସମ୍ମୁଖରେ ଦେବତାଙ୍କ ରାଜ୍ୟ ଫେରାଇ ଦେବାକୁ ସର୍ତ୍ତ ରଖିଲେ । ଶେଷରେ ଶିବ ଏହି ସନ୍ଦେଶ ଦେଲେ– ''ହେ ଦୂତ ! ଆମ୍ଭେ କାହାରି ପକ୍ଷ ନେଇ ନ ଥାଉ; କାରଣ ଆମ୍ଭେ କଦାପି ସ୍ୱତନ୍ତ୍ର ନୋହୁଁ, ଆମ୍ଭେ ସଦା ଭକ୍ତଙ୍କ ଅଧୀନରେ ରହୁ ଏବଂ ସେମାନଙ୍କ ଇଚ୍ଛାରେ ସେମାନଙ୍କ କାର୍ଯ୍ୟ କରୁ । ଦେଖ, ପୂର୍ବକାଳରେ ବ୍ରହ୍ମାଙ୍କ ପ୍ରାର୍ଥନାକ୍ରମେ ପ୍ରଥମେ ପ୍ରଳୟସିନ୍ଧୁରେ ଶ୍ରୀହରିଙ୍କର ମଧୁ-କୈଟଭ ନାମକ ଦୈତ୍ୟଙ୍କ ସହିତ ଯୁଦ୍ଧ ହୋଇଥିଲା । ପୁଣି ଭକ୍ତଙ୍କ ହିତକାରୀ ଶ୍ରୀବିଷ୍ଣୁ ହିଁ ଦେବତାଙ୍କ ପ୍ରାର୍ଥନାକ୍ରମେ ପ୍ରହ୍ଲାଦକୁ ନିମିତ୍ତ କରି ହିରଣ୍ୟକଶିପୁକୁ ବଧ କରିଥିଲେ । ତୁମେ ତ ଏ କଥା ବି ଶୁଣିଥିବ ଯେ ମୁଁ ତ୍ରିପୁରାସୁରଙ୍କ ସଙ୍ଗେ ଯୁଦ୍ଧ କରି ସେମାନଙ୍କୁ ଭସ୍ମ କରିଦେଇଥିଲି; ତାହା ମଧ୍ୟ ଦେବତାଙ୍କ ପ୍ରାର୍ଥନାକ୍ରମେ ହୋଇଥିଲା । ପୂର୍ବକାଳରେ ସର୍ବେଶ୍ୱରୀ ଜଗଜ୍ଜନନୀଙ୍କର ଶୁମ୍ଭ ଆଦିଙ୍କ ସହ ଯେଉଁ ଯୁଦ୍ଧ ହୋଇଥିଲା ଓ ଦୈତ୍ୟଙ୍କର ବଧ ହୋଇଥିଲା, ସେଥିରେ ମଧ୍ୟ ଦେବତାଙ୍କର ପ୍ରାର୍ଥନା ହିଁ କାରଣ ଥିଲା । ସେହି ଦେବଗଣ ଏବେ ମଧ୍ୟ ବ୍ରହ୍ମାଙ୍କ ଶରଣାପନ୍ନ ହୋଇଥିଲେ । ବ୍ରହ୍ମା ଦେବଗଣଙ୍କୁ ଓ ବିଷ୍ଣୁଙ୍କୁ ସଙ୍ଗରେ ନେଇ ମୋ ଶରଣକୁ ଆସିଥିଲେ । ମୁଁ ଦେବତାଙ୍କ ଅଧୀଶ୍ୱର ହୋଇଥିବା କାରଣରୁ ବ୍ରହ୍ମା, ବିଷ୍ଣୁ ଓ ଦେବଗଣଙ୍କ ପ୍ରାର୍ଥନାକ୍ରମେ ଆଜି ଯୁଦ୍ଧ ପାଇଁ ଆସିଛି । ହେ ଦୂତ ! ମୋର ଏ ସନ୍ଦେଶ ତାକୁ ଶୁଣାଇଦେବ–''ହେ ରାଜନ୍ ! ତୁମେ ତ ଶ୍ରୀକୃଷ୍ଣଙ୍କ ଶ୍ରେଷ୍ଠ ପାର୍ଷଦ । ଏପର୍ଯ୍ୟନ୍ତ ଯେଉଁ ସବୁ ଦୈତ୍ୟ ମରି ସାରିଲେଣି, ସେମାନେ ତୁମର ସମକକ୍ଷ ନ ଥିଲେ । ଏଣୁ ଦେବତାଙ୍କ କାର୍ଯ୍ୟ ସାଧିତ କରିବା ପାଇଁ ତୁମ ସହ ଯୁଦ୍ଧ କରିବାକୁ ମୋତେ କାହିଁକି ବା ଲଜ୍ଜା ଲାଗିବ? ଏଥିରେ କିଛି ବି ଲଜ୍ଜାର କଥା ନାହିଁ; କାରଣ ମୁଁ ଈଶ୍ୱର ଏବଂ ଦେବତାମାନେ ମୋତେ ବିନୟପୂର୍ବକ ପଠାଇଛନ୍ତି ।'' ତେଣୁ ହେ ଦୂତ ! ତୁମେ ଯାଅ ଆଉ ଶଙ୍ଖଚୂଡ଼କୁ ମୋର ଏହି ସନ୍ଦେଶ ଶୁଣାଇଦିଅ । ତେଣିକି ସେ ଯାହା ଭଲ ଭାବିବ କରିବ । ମୋତେ ନିଶ୍ଚିତରୂପେ ଦେବତାଙ୍କ କାର୍ଯ୍ୟ କରିବାକୁ ହେବ ।'' ଏତିକି କହି କଲ୍ୟାଣକାରୀ ମହେଶ୍ୱର ଚୁପ୍ ହୋଇଗଲେ । ଏହାପରେ ଦୂତ ଶଙ୍ଖଚୂଡ଼ ନିକଟକୁ ଫେରିଗଲା ।

(ଅଧ୍ୟାୟ ୩୧–୩୫)

★★★

## ଦେବତା ଓ ଦାନବଙ୍କ ମଧ୍ୟରେ ଯୁଦ୍ଧ, ଶଙ୍ଖଚୂଡ଼ ସହ ବୀରଭଦ୍ରଙ୍କର ସଂଗ୍ରାମ, ପୁନଃ ତା' ସଙ୍ଗେ ଭଦ୍ରକାଳୀଙ୍କର ଭୟଙ୍କର ସଂଗ୍ରାମ ଓ ଆକାଶବାଣୀର ପ୍ରେରଣାରେ ସେଥିରୁ ନିବୃତ୍ତି, ପୁଣି ଶଙ୍ଖଚୂଡ଼ ସଙ୍ଗେ ଶିବଙ୍କର ସଂଗ୍ରାମ ଏବଂ ଆକାଶବାଣୀ ଶୁଣି ସେ ମଧ୍ୟ ଯୁଦ୍ଧରୁ ବିରତ ହୋଇ ବିଷ୍ଣୁଙ୍କୁ ପ୍ରେରିତ କରିବା, ବିଷ୍ଣୁଙ୍କ ଦ୍ୱାରା ଶଙ୍ଖଚୂଡ଼ର କବଚହରଣ ଓ ତୁଳସୀର ପାତିବ୍ରତ୍ୟଭଙ୍ଗ, ରୁଦ୍ରଙ୍କ ଦ୍ୱାରା ଶଙ୍ଖଚୂଡ଼ ବଧ ଏବଂ ଶଙ୍ଖର ଉତ୍ପତ୍ତି ପ୍ରସଙ୍ଗ

ସନତ୍‌କୁମାର କହୁଛନ୍ତି–ମହର୍ଷେ ! ଦୂତ ଶଙ୍ଖଚୂଡ଼ ପାଖକୁ ଯାଇ ଶିବଙ୍କ ସନ୍ଦେଶ ଶୁଣାଇ ଦେଲା ଏବଂ ତତ୍ତ୍ୱତଃ ତାଙ୍କର ନିର୍ଣ୍ଣୟ ମଧ୍ୟ ଜଣାଇଦେଲା । ତାହା ଶୁଣି ମହାପ୍ରତାପୀ ଦାନବ

ଶଙ୍ଖଚୂଡ଼ ମଧ୍ୟ ପରମ ପ୍ରସନ୍ନତାପୂର୍ବକ ଯୁଦ୍ଧକୁ ହିଁ ଅଙ୍ଗୀକାର କଲା । ସେ ଅବିଳମ୍ବେ ମନ୍ତ୍ରୀଙ୍କ ସଙ୍ଗରେ ଯାଇ ରଥ ଉପରେ ବସିଲା ଏବଂ ସେନାକୁ ଶିବଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଆଦେଶ ଦେଲା । ଏଣେ ଅଖିଳେଶ୍ୱର ଶିବ ମଧ୍ୟ ତତ୍‌କ୍ଷଣାତ୍ ନିଜ ସେନାକୁ ଅଗ୍ରସର ହେବାକୁ ଆଜ୍ଞା ଦେଲେ ଏବଂ ସ୍ୱୟଂ ଲୀଳାବଶତଃ ଯୁଦ୍ଧ ନିମନ୍ତେ ସଂନଦ୍ଧ ହୋଇଗଲେ । ଯୁଦ୍ଧ ଆରମ୍ଭ ହୋଇଗଲା । ନାନା ପ୍ରକାର ରଣବାଦ୍ୟ ବାଜିଲା । ବୀରଙ୍କର ଗର୍ଜନ ଓ କୋଳାହଳରେ ଚତୁର୍ଦ୍ଦିଗ କମ୍ପିଉଠିଲା । ଏହିରୂପେ ଦେବତା ଓ ଦାନବଙ୍କ ମଧ୍ୟରେ ଯୁଦ୍ଧ ଲାଗିଗଲା । ଉଭୟ ପକ୍ଷ ଧର୍ମପୂର୍ବକ ଯୁଦ୍ଧ କରୁଥିଲେ । ସ୍ୱୟଂ ମହେନ୍ଦ୍ର ବୃଷପର୍ବାଙ୍କ ସହିତ ଯୁଦ୍ଧ କଲେ । ବିପ୍ରଚିତ୍ତିଙ୍କ ସଙ୍ଗେ ସୂର୍ଯ୍ୟଙ୍କର ଯୁଦ୍ଧ ହେଲା । ବିଷ୍ଣୁ ଦମ୍ଭ ସଙ୍ଗେ ଭୀଷଣ ସଂଗ୍ରାମ କଲେ । କାଳାସୁର ସଙ୍ଗେ କାଳ, ଗୋକର୍ଣ୍ଣ ସଙ୍ଗେ ଅଗ୍ନି, କାଳକେୟ ସଙ୍ଗେ କୁବେର, ମୟ ସଙ୍ଗେ ବିଶ୍ୱକର୍ମା, ଭୟଙ୍କର ସଙ୍ଗେ ମୃତ୍ୟୁ, ସଂହାର ସଙ୍ଗେ ଯମ, କାଳାମ୍ବିକ ସଙ୍ଗେ ବରୁଣ, ଚଞ୍ଚଳ ସଙ୍ଗେ ବାୟୁ, ଘଟପୃଷ୍ଠ ସଙ୍ଗେ ବୁଧ, ରକ୍ତାକ୍ଷ ସଙ୍ଗେ ଶନୈଶ୍ଚର, ରତ୍ନସାର ସଙ୍ଗେ ଜୟନ୍ତ, ବର୍ଚ୍ଚାଗଣଙ୍କ ସଙ୍ଗେ ବସୁଗଣ, ଦୀପ୍ତିମାନଦ୍ୱୟଙ୍କ ସଙ୍ଗେ ଅଶ୍ୱିନୀକୁମାରଦ୍ୱୟ, ଧୂମ୍ର ସଙ୍ଗେ ନଳକୂବର, ଧୁରନ୍ଧର ସଙ୍ଗେ ଧର୍ମ, ଗଣକାକ୍ଷ ସଙ୍ଗେ ମଙ୍ଗଳ, ଶୋଭାକର ସଙ୍ଗେ ବୈଶ୍ୱାନର ଏବଂ ପିପିଟ ସଙ୍ଗେ ମନ୍ମଥ ଯୁଦ୍ଧ କଲେ । ଗୋକାମୁଖ, ଚୂର୍ଣ୍ଣ, ଖଡ଼ଗ, ଧୂମ୍ର, ସଂହଳ, ପ୍ରତାପୀ, ବିଶ୍ୱ ଓ ପଳାଶ ନାମକ ଅସୁରମାନଙ୍କ ସଙ୍ଗେ ଦ୍ୱାଦଶ ଆଦିତ୍ୟ ଧର୍ମପୂର୍ବକ ଯୁଦ୍ଧ କଲେ । ଏହିରୂପେ ଶିବଙ୍କ ସହାୟତା ନିମନ୍ତେ ଆସିଥିବା ଅମରଗଣଙ୍କର ଅସୁରଙ୍କ ସଙ୍ଗେ ଯୁଦ୍ଧ ହେଲା । ଏକାଦଶ ମହାରୁଦ୍ର ଏଗାର ଜଣ ମହାବଳୀ ଭୟଙ୍କର ଅସୁରବୀରଙ୍କ ସଙ୍ଗେ ଯୁଦ୍ଧ କଲେ । ଉଗ୍ର ଓ ଚଣ୍ଡ ପ୍ରଭୃତିଙ୍କ ସହିତ ମହାମଣି, ରାହୁ ସଙ୍ଗେ ଚନ୍ଦ୍ର ଓ ଶୁକ୍ରାଚାର୍ଯ୍ୟଙ୍କ ସଙ୍ଗେ ବୃହସ୍ପତି ଧର୍ମଯୁଦ୍ଧ କଲେ । ଏହାଛଡ଼ା ଉକ୍ତ ମହାଯୁଦ୍ଧରେ ନନ୍ଦୀଶ୍ୱର ପ୍ରଭୃତି ସମସ୍ତ ଶିବଗଣ ଶ୍ରେଷ୍ଠ ଦାନବଙ୍କ ସଙ୍ଗେ ସଂଗ୍ରାମ କରିବାକୁ ଲାଗିଲେ । ବିସ୍ତାର ଭୟରେ ସେମାନଙ୍କର ପୃଥକ୍ ପୃଥକ୍ ବର୍ଣ୍ଣନା କରାଯାଉ ନାହିଁ । ମୁନେ ! ସେତେବେଳେ ସମସ୍ତ ସୈନ୍ୟ ନିରନ୍ତର ଯୁଦ୍ଧରେ ବ୍ୟସ୍ତ ଥିଲେ ଏବଂ ଶମ୍ଭୁ କାଳ୍ୟସୁତଙ୍କ ସଙ୍ଗରେ ବଟବୃକ୍ଷ ତଳେ ବିରାଜମାନ ଥିଲେ । ସେପଟେ ଶଙ୍ଖଚୂଡ଼ ମଧ୍ୟ ରତ୍ନାଭରଣରେ ବିଭୂଷିତ ହୋଇ କୋଟି କୋଟି ଦାନବଙ୍କ ଗହଣରେ ରମଣୀୟ ରତ୍ନସିଂହାସନ ଉପରେ ବସିଥିଲା । ଦେବତା ଓ ଅସୁରଙ୍କ ମଧ୍ୟରେ ଦୀର୍ଘକାଳ ପର୍ଯ୍ୟନ୍ତ ଭୟାନକ ଯୁଦ୍ଧ ଚାଲିଲା । ତା'ପରେ ଶଙ୍ଖଚୂଡ଼ ମଧ୍ୟ ଆସି ସେହି ସଂଗ୍ରାମରେ ଯୋଗଦେଲା । ତାକୁ ଦେଖି ମହାବଳୀ ବୀରଭଦ୍ର ଆସି ତା' ସଙ୍ଗେ ଯୁଦ୍ଧ କଲେ । ଯୁଦ୍ଧରେ ଦାନବରାଜ ଯେଉଁ ସବୁ ଅସ୍ତ୍ର ବର୍ଷା କରୁଥିଲା, ବୀରଭଦ୍ର ସେଗୁଡ଼ିକୁ ଅକ୍ଳେଶରେ କାଟି ଦେଉଥିଲେ ।

ବ୍ୟାସଦେବ ! ଏତିକିବେଳେ ଦେବୀ ଭଦ୍ରକାଳୀ ସମରଭୂମିକୁ ଯାଇ ଅତ୍ୟନ୍ତ ଭୟଙ୍କର ସିଂହନାଦ କଲେ । ତାଙ୍କର ଗର୍ଜନକୁ ଶୁଣି ଦାନବମାନେ ମୂର୍ଚ୍ଛିତ ହୋଇଗଲେ । ଦେବୀ ବାରମ୍ବାର ଅଟ୍ଟହାସ କରୁଥାନ୍ତି ଏବଂ ମଧୁପାନ କରି ରଣାଙ୍ଗନରେ ନୃତ୍ୟ କରୁଥାନ୍ତି । ତାଙ୍କ ସଙ୍ଗରେ ଉଗ୍ରଦଂଷ୍ଟ୍ରା, ଉଗ୍ରଦଣ୍ଡା ଓ କୋଟବୀ ମଧ୍ୟ ମଧୁପାନ କଲେ ଏବଂ ଅନ୍ୟାନ୍ୟ ଦେବୀ ମଧ୍ୟ ଖୁବ୍ ମଧୁପାନ କରି ଯୁଦ୍ଧସ୍ଥଳରେ ନାଚିବାକୁ ଲାଗିଲେ । ସେତେବେଳେ ଶିବଗଣଙ୍କ ମଧ୍ୟରେ ତଥା ଦେବତାଙ୍କ ଦଳରେ ଭୀଷଣ କୋଳାହଳ ହେଉଥିଲା । ସମଗ୍ର ଦେବସମୁଦାୟ ହର୍ଷରେ

ନାନା ପ୍ରକାର ଗର୍ଜନ କରୁଥିଲେ । ଇତିମଧ୍ୟରେ କାଳୀ ଶଙ୍ଖଚୂଡ଼ ଉପରକୁ ଗୋଟିଏ ପ୍ରଳୟକାଳୀନ ଅଗ୍ନିଶିଖା ପରି ଉଦ୍ଦୀପ୍ତ ଆଗ୍ନେୟାସ୍ତ୍ର ପ୍ରକ୍ଷେପ କଲେ; ମାତ୍ର ଦାନବରାଜ ତାହାକୁ ବୈଷ୍ଣବାସ୍ତ୍ରରେ ଖୁବ୍ ଶୀଘ୍ର ଶାନ୍ତ କରିଦେଲା । ଏହାପରେ ଦେବୀ ଭଦ୍ରକାଳୀ ତା' ଉପରକୁ ନାରାୟଣାସ୍ତ୍ର ଛାଡ଼ିଲେ । ସେହି ଅସ୍ତ୍ର ଦାନବକୁ ଦେଖି ବଢ଼ିବାକୁ ଲାଗିଲା । ନାରାୟଣାସ୍ତ୍ର ପ୍ରଳୟକାଳୀନ ଅଗ୍ନି ପରି ମାଡ଼ିଆସୁଥିବା ଦେଖି ଶଙ୍ଖଚୂଡ଼ ଭୂମିରେ ଦଣ୍ଡପରି ଶୋଇଯାଇ ତାହାକୁ ବାରମ୍ବାର ପ୍ରଣାମ କଲା । ଦାନବକୁ ବିନମ୍ର ଦେଖି ସେହି ଅସ୍ତ୍ର ନିବୃତ୍ତ ହୋଇଗଲା । ଏହାପରେ ଦେବୀ ତା' ଉପରକୁ ବ୍ରହ୍ମାସ୍ତ୍ର ଛାଡ଼ିଲେ । ବ୍ରହ୍ମାସ୍ତ୍ରର ଜ୍ୱାଳାକୁ ଦେଖି ଦାନବରାଜ ତଳେ ଠିଆ ହୋଇ ତାହାକୁ ପ୍ରଣାମ କଲା ଏବଂ ବ୍ରହ୍ମାସ୍ତ୍ରରେ ହିଁ ତାହାକୁ ନିବାରଣ କରିଦେଲା । ଏହାପରେ ଦାନବରାଜ କୁପିତ ହୋଇଉଠିଲା ଏବଂ ଫୂର୍ତ୍ତିରେ ଧନୁର ଗୁଣକୁ ଟାଣି ଧରି ମନ୍ତ୍ରପାଠପୂର୍ବକ ଦେବୀଙ୍କ ଉପରକୁ ଦିବ୍ୟାସ୍ତ୍ର ବର୍ଷା କରିବାକୁ ଲାଗିଲା । ଭଦ୍ରକାଳୀ ସମରଭୂମିରେ ନିଜର ମୁଖ ବିସ୍ତାର କରି ଦାନବର ସମସ୍ତ ଅସ୍ତ୍ରକୁ ଗିଳି ପକାଇଲେ ଏବଂ ଅଟ୍ଟହାସପୂର୍ବକ ଗର୍ଜନ କଲେ । ଏହା ଫଳରେ ଦାନବମାନେ ଭୟଭୀତ ହୋଇଗଲେ । ଶଙ୍ଖଚୂଡ଼ କାଳୀଙ୍କ ଉପରକୁ ଶହେ ଯୋଜନ ଲମ୍ବର ଗୋଟିଏ ଶକ୍ତି ଉଠାଇ ପ୍ରହାର କଲା; ମାତ୍ର ଦେବୀ ଆପଣା ଦିବ୍ୟାସ୍ତ୍ର ସମୂହରେ ତାହାକୁ ଶହେ ଖଣ୍ଡ କରିଦେଲେ । ଏହିପରି ବହୁକାଳ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଲା ଏବଂ ସମସ୍ତ ଦେବତା ଓ ଦାନବ ଦର୍ଶକ ହୋଇ ଦେଖୁଥାନ୍ତି । ଶେଷରେ ଦେବୀ ଅତ୍ୟନ୍ତ କୁପିତ ହୋଇ ତାହାକୁ ମୁଷ୍ଟିରେ ପ୍ରହାର କଲେ । ମୁଷ୍ଟି ଆଘାତରେ ଦାନବର ମୁଣ୍ଡ ବୁଲାଇଦେଲା ଏବଂ ସେ ତତ୍‌କ୍ଷଣାତ୍ ମୂର୍ଚ୍ଛିତ ହୋଇ ପଡ଼ିଗଲା । କ୍ଷଣକ ମଧ୍ୟରେ ତା'ର ଚେତା ଫେରି ଆସିବାରୁ ସେ ଉଠି ପୁଣି ଠିଆ ହୋଇଗଲା । କିନ୍ତୁ ପ୍ରତାପୀ ଦୈତ୍ୟର ଦେବୀଙ୍କ ପ୍ରତି ମାତୃବୁଦ୍ଧି ଥିବାରୁ ସେ ତାଙ୍କ ସହ ବାହୁଯୁଦ୍ଧ କଲା ନାହିଁ । ଏହାପରେ ଦେବୀ ଅସୁରକୁ ଧରିପକାଇ କ୍ରୋଧରେ ଘୂରାଇ ଘୂରାଇ ଖୁବ୍ ଜୋରରେ ଉପରକୁ ଫୋପାଡ଼ି ଦେଲେ । ଶଙ୍ଖଚୂଡ଼ ଘୂରି ଘୂରି ପୁନଃ ତଳକୁ ଖସିପଡ଼ିଲା ଏବଂ ଉଠି ଠିଆ ହୋଇଗଲା । ଏଭଳି ମହାଯୁଦ୍ଧରେ ସେ ଟିକିଏ ହେଲେ ବିଭ୍ରାନ୍ତ ହୋଇ ନ ଥିଲା, ବରଂ ତା'ର ମନ ପ୍ରସନ୍ନ ଥିଲା । ତା'ପରେ ସେ ଭଦ୍ରକାଳୀଙ୍କୁ ପ୍ରଣାମ କରି ତା'ର ରତ୍ନନିର୍ମିତ ପରମ ମନୋହର ବିମାନରେ ଯାଇ ବସିଗଲା । ଏଣେ କାଳିକା କ୍ଷୁଧାରେ ଆତୁର ହୋଇ ଦାନବଙ୍କ ରକ୍ତପାନ କରିବା ଆରମ୍ଭ କରିଦେଲେ । ସେତିକିବେଳେ ଆକାଶବାଣୀ ହେଲା—"ହେ ଈଶ୍ୱରୀ! ଏବେ ରଣଭୂମିରେ ସିଂହନାଦ କଲାଭଳି ଆହୁରି ଦେଢ଼ଲକ୍ଷ ଦାନବ ଅଛନ୍ତି । ସେମାନେ ଅତି ଉଦ୍ଧତ, ତେଣୁ ତୁମେ ସେମାନଙ୍କୁ ଭକ୍ଷଣ କର । ମାତ୍ର ହେ ଦେବୀ ! ସଂଗ୍ରାମରେ ଦାନବରାଜ ଶଙ୍ଖଚୂଡ଼କୁ ମାରିବାକୁ ମନ ବଳାଅ ନାହିଁ; କାରଣ ସେ ତୁମ ପକ୍ଷରେ ଅବଧ୍ୟ । ଏକଥା ସୁନିଶ୍ଚିତ ବୋଲି ଜାଣ ।" ଆକାଶବାଣୀ ଶୁଣି ଦେବୀ ଭଦ୍ରକାଳୀ ଅନେକ ଦାନବଙ୍କ ମାଂସ ଭକ୍ଷଣ କରି ସେମାନଙ୍କ ରକ୍ତ ପାନ କଲେ ଏବଂ ଶିବଙ୍କ ନିକଟକୁ ଫେରିଗଲେ । ସେ ସେଠାରେ ପୂର୍ବାପର କ୍ରମରେ ଯୁଦ୍ଧର ସମସ୍ତ ବୃତ୍ତାନ୍ତ କହିଦେଲେ ।

ବ୍ୟାସଦେବ ପଚାରିଲେ—ମହାବୁଦ୍ଧିମାନ୍ ସନତ୍‌କୁମାର ! କାଳୀଙ୍କ ବଚନ ଶୁଣି ମହେଶ୍ୱର ସେତେବେଳେ କ'ଣ କହିଲେ ଏବଂ କ'ଣ କଲେ, ତାହା ଆପଣ କୃପା କରି ବର୍ଣ୍ଣନା କରନ୍ତୁ । ମୋ

ମନରେ ତାହା ଶୁଣିବାକୁ ପ୍ରବଳ ଉତ୍କଣ୍ଠା ଜାଗିଛି ।

ସନତ୍‌କୁମାର କହିଲେ–ମୁନେ ! ଶମ୍ଭୁ ତ ଜୀବଙ୍କର କଲ୍ୟାଣକାରୀ, ପରମେଶ୍ୱର ଓ ବଡ଼ ଲୀଳାବିହାରୀ । ସେ କାଳୀଙ୍କ କଥା ଶୁଣି ହସିଲେ ଏବଂ ତାଙ୍କୁ ଆଶ୍ୱାସନା ଦେଲେ । ତା'ପରେ ଆକାଶବାଣୀର କଥା ଶୁଣି ତତ୍ତ୍ୱଜ୍ଞାନବିଶାରଦ ଶମ୍ଭୁ ନିଜେ ତାଙ୍କ ଗଣଙ୍କୁ ସଙ୍ଗରେ ଧରି ରଣଭୂମି ଆଡ଼କୁ ଅଗ୍ରସର ହେଲେ । ସେତେବେଳେ ସେ ମହାବୃଷଭ ଉପରେ ଆରୂଢ଼ ଥିଲେ ଏବଂ ତାଙ୍କରି ପରି ପରାକ୍ରମୀ ବୀରଭଦ୍ର, ଭୈରବ ଓ କ୍ଷେତ୍ରପାଳ ପ୍ରଭୃତି ମଧ୍ୟ ତାଙ୍କ ସଙ୍ଗରେ ଥିଲେ । ରଣଭୂମିରେ ପହଞ୍ଚି ମହେଶ୍ୱର ବୀରରୂପ ଧାରଣ କଲେ । ସେତେବେଳେ ସେ ମୂର୍ତ୍ତିମାନ କାଳ ପରି ଶୋଭା ପାଉଥିଲେ । ଶଙ୍ଖଚୂଡ଼ର ଦୃଷ୍ଟି ଶିବଙ୍କ ଉପରେ ପଡ଼ିବାମାତ୍ରେ ସେ ବିମାନରୁ ଓହ୍ଲାଇ ଆସିଲା ଏବଂ ପରମ ଭକ୍ତିର ସହ ଭୂମିଷ୍ଠ ଦଣ୍ଡବତ୍ ପ୍ରଣାମ କଲା । ଏହିପରି ନମସ୍କାର କରିବା ପରେ ସେ ଯାଇ ତା'ର ବିମାନ ଉପରେ ବସିଲା ଏବଂ ନିଜର କବଚ ଧାରଣ କରି ଧନୁ ଉଠାଇଲା । ଏହାପରେ ଉଭୟ ପକ୍ଷରୁ ଚାଲିଲା ଶରବୃଷ୍ଟି । ଭୀଷଣ ଶରବୃଷ୍ଟି ସହ ଶିବଙ୍କ ସଙ୍ଗେ ଶଙ୍ଖଚୂଡ଼ର ଶହ ଶହ ବର୍ଷ ପର୍ଯ୍ୟନ୍ତ ବୃଥାରେ ଯୁଦ୍ଧ ଚାଲିଲା । ପରିଶେଷରେ ଶଙ୍ଖଚଡ଼କୁ ବଧ କରିବାକୁ ମନସ୍ଥ କରି ମହାବଳୀ ମହେଶ୍ୱର ତାଙ୍କର ଅବ୍ୟର୍ଥ ତ୍ରିଶୂଳ ଉଠାଇଲେ, ଯାହାକୁ ନିବାରଣ କରିବା ବଡ଼ ବଡ଼ ତେଜସ୍ୱୀମାନଙ୍କ ପକ୍ଷେ ମଧ୍ୟ ଅସମ୍ଭବ । ମାତ୍ର ଅଗ୍ରନକ ତାଙ୍କୁ ଅଟକାଇବା ପାଇଁ ଏହିପରି ଆକାଶବାଣୀ ହେଲା–''ହେ ଶଙ୍କର ! ମୋର ପ୍ରାର୍ଥନା ଶୁଣନ୍ତୁ; ଏବେ ଏ ତ୍ରିଶୂଳ ନ ଛାଡ଼ନ୍ତୁ । ଈଶ ! ଆପଣ ତ କ୍ଷଣକ ଭିତରେ ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡକୁ ଧ୍ୱଂସ କରିବାକୁ ସମର୍ଥ, ପୁଣି ଏ ଏକୁଟିଆ ଦାନବ ବିଚରା ଅବା କେଉଁଥିରେ ଗଣା; ତଥାପି ଆପଣଙ୍କ ପରି ସ୍ୱାମୀଙ୍କ ଦ୍ୱାରା ଦେବମର୍ଯ୍ୟାଦାର ବିନାଶ ହେବାଟା ଠିକ୍ ହେବ ନାହିଁ । ମହାଦେବ ! ଆପଣ ସେହି ଦେବମର୍ଯ୍ୟାଦା ଶୁଣନ୍ତୁ ଏବଂ ତାହାକୁ ସତ୍ୟ ଓ ସଫଳ କରନ୍ତୁ । (ସେହି ମର୍ଯ୍ୟାଦା ହେଲା–) ଯେପର୍ଯ୍ୟନ୍ତ ଶଙ୍ଖଚୂଡ଼ ହାତରେ ଶ୍ରୀହରିଙ୍କର ପରମ ଉଗ୍ର କବଚ ରହିଥିବ ଏବଂ ତାହାର ପତିବ୍ରତା ସ୍ତ୍ରୀର ସତୀତ୍ୱ ଅଖଣ୍ଡିତ ରହିଥିବ, ସେପର୍ଯ୍ୟନ୍ତ ତା' ଉପରେ ଜରା ଓ ମୃତ୍ୟୁ କୌଣସି ପ୍ରଭାବ ଦେଖାଇ ପାରିବେ ନାହିଁ । ତେଣୁ ହେ ଶଙ୍କର ! ବ୍ରହ୍ମାଙ୍କର ଏ ବଚନକୁ ସତ୍ୟରେ ପରିଣତ କରନ୍ତୁ ।''

ସତ୍‌ପୁରୁଷଙ୍କ ଆଶ୍ରୟଭୂତ ଶିବ ଉକ୍ତ ଆକାଶବାଣୀ ଶୁଣି 'ତଥାସ୍ତୁ' କହି ତାହାକୁ ସ୍ୱୀକାର କଲେ ଏବଂ ବିଷ୍ଣୁଙ୍କୁ ସେହି କାର୍ଯ୍ୟ ନିମନ୍ତେ ପ୍ରେରିତ କଲେ । ଶିବଙ୍କ ଇଚ୍ଛାରେ ବିଷ୍ଣୁ ସେହି କାର୍ଯ୍ୟ କରିବାକୁ ସେଠାରୁ ବାହାରିଗଲେ । ସେ ତ ମାୟାବୀଙ୍କ ମଧ୍ୟରେ ବି ଶ୍ରେଷ୍ଠ ମାୟାବୀ । ତେଣୁ ସେ ଜଣେ ବୃଦ୍ଧ ବ୍ରାହ୍ମଣ ବେଶରେ ଶଙ୍ଖଚୂଡ଼ ନିକଟକୁ ଯାଇ ଏହିପରି କହିଲେ–

ବୃଦ୍ଧ ବ୍ରାହ୍ମଣ କହିଲେ–''ଦାନବେନ୍ଦ୍ର ! ମୁଁ କିଛି ମାଗିବାକୁ ତୁମ ପାଖକୁ ଆସିଛି, ତାହା ମୋତେ ଦିଅ । ଦୀନବତ୍ସଳ ! ଏବେ ମୁଁ ମୋ ମନୋରଥ ପ୍ରକାଶ କରିବି ନାହିଁ । (ଆଗ ତୁମେ ଦେବାକୁ ଅଙ୍ଗୀକାର କଲେ) ମୁଁ ପରେ ପ୍ରକାଶ କରିବି ଆଉ ତୁମେ ତାହା ପୂର୍ଣ୍ଣ କରିବ ।'' ବ୍ରାହ୍ମଣଙ୍କ କଥା ଶୁଣି ଶଙ୍ଖଚୂଡ଼ର ମୁଖ ଓ ନେତ୍ର ପ୍ରସନ୍ନତାରେ ଉଲ୍ଲସିତ ହୋଇଉଠିଲା । ସେ 'ଓଁ' ଉଚ୍ଚାରଣ କରି ତାହାକୁ ଅଙ୍ଗୀକାର କଲା । ବ୍ରାହ୍ମଣ ଛଳପୂର୍ବକ କହିଲେ–''ମୁଁ ତୁମର କବଚ ଚାହେଁ ।'' ଏହା ଶୁଣି ଐଶ୍ୱର୍ଯ୍ୟଶାଳୀ ଦାନବରାଜ ଶଙ୍ଖଚୂଡ଼ ଆପଣା ପ୍ରାଣପ୍ରିୟ ଦିବ୍ୟ କବଚ

ବ୍ରାହ୍ମଣଙ୍କୁ ଦେଇଦେଲା; କାରଣ ସେ ଥିଲା ବ୍ରାହ୍ମଣଭକ୍ତ ଓ ସତ୍ୟବାଦୀ। ଏହିରୂପେ ଶ୍ରୀହରି



ମାୟା ରଚି ତା'ର କବଚ ନେଇଗଲେ ଏବଂ ଏହାପରେ ସେ ଶଙ୍ଖଚୂଡ଼ର ରୂପ ଧାରଣ କରି ତୁଳସୀ ପାଖରେ ଯାଇ ପହଞ୍ଚିଲେ। ସେଠାକୁ ଯାଇ ସବୁରି ଆତ୍ମା ଏବଂ ତୁଳସୀର ନିତ୍ୟସ୍ୱାମୀ ଶ୍ରୀହରି ଶଙ୍ଖଚୂଡ଼ ରୂପରେ ତା'ର ସତୀତ୍ୱ ହରଣ କଲେ।

ଇତିମଧ୍ୟରେ ଶ୍ରୀହରି ନିଜେ କରିଥିବା ସମସ୍ତ କଥା ଶମ୍ଭୁଙ୍କୁ ଜଣାଇଦେବାରୁ ଶମ୍ଭୁ ଶଙ୍ଖଚୂଡ଼ର ବଧ ନିମନ୍ତେ ଆପଣା ଉଦ୍ଦୀପ୍ତ ତ୍ରିଶୂଳ ଉଠାଇଲେ। ପରମାତ୍ମା ଶିବଙ୍କର ସେହି ବିଜୟ ନାମକ ତ୍ରିଶୂଳ ଆପଣା ଉତ୍କୃଷ୍ଟ ତେଜରେ ଭାସ୍ୱର ହୋଇ ସମସ୍ତ ଦିଗବିଦିଗ ଓ ପୃଥିବୀକୁ ଚମକାଇ ଦେଉଥିଲା। ତାହା କୋଟିଏ ମଧ୍ୟାହ୍ନକାଳୀନ ସୂର୍ଯ୍ୟ ପରି ତଥା ପ୍ରଳୟକାଳୀନ ଅଗ୍ନିଶିଖା ପରି ଜାଜ୍ୱଲ୍ୟମାନ ଥିଲା। ତାହା ଦୁର୍ନିବାର, ଦୁର୍ଦ୍ଧର୍ଷ, ଅବ୍ୟର୍ଥ ଓ ଶତ୍ରୁସଂହାରକ ଥିଲା। ତାହା ଥିଲା ଉଗ୍ରତେଜର ପୁଞ୍ଜ, ସମସ୍ତ ଅସ୍ତ୍ରଶସ୍ତ୍ରର ସହାୟକ, ଭୟଙ୍କର ଏବଂ ସମସ୍ତ ଦେବତା ଓ ଅସୁରଙ୍କ ନିମନ୍ତେ ଦୁଃସହ। ତାହା ଏତେ ଉଦ୍ଦୀପ୍ତ ଦିଶୁଥିଲା ଯେ ସତେଯେପରି ସମଗ୍ର ବ୍ରହ୍ମାଣ୍ଡକୁ ଅବଲୀଳାକ୍ରମେ ସଂହାର କରିଦେବାକୁ ଉଦ୍ୟତ ହୋଇଛି। ତାହାର ଦୈର୍ଘ୍ୟ ଏକହଜାର ଧନୁ ଏବଂ ପ୍ରସ୍ଥ ଶହେ ହାତ ଥିଲା। ସେହି ଜୀବ-ବ୍ରହ୍ମସ୍ୱରୂପ ତ୍ରିଶୂଳଟି କାହାରି ଦ୍ୱାରା ନିର୍ମିତ ହୋଇ ନ ଥିଲା। ତାହାର ରୂପ ନିତ୍ୟ ଥିଲା। ସେହି ତ୍ରିଶୂଳ ଶିବଙ୍କ ଆଜ୍ଞାରେ ଆକାଶରେ ଘୂରି ଘୂରି ଆସି ଶଙ୍ଖଚୂଡ଼ ଉପରେ ପଡ଼ିଲା ଏବଂ ଅବିଳମ୍ବେ ତାକୁ ଭସ୍ମୀଭୂତ କରିଦେଲା। ବିପ୍ର ! ମହେଶ୍ୱରଙ୍କର ସେହି ତ୍ରିଶୂଳ ମନ ପରି ବେଗବାନ୍ ଥିଲା। ସେ ତା'ର କାର୍ଯ୍ୟ ପୂର୍ଣ୍ଣ କରିସାରି ପୁନଃ ଆକାଶମାର୍ଗରେ ଶିବଙ୍କ ପାଖକୁ ଫେରି ଆସିଲା। ସେତେବେଳେ ସ୍ୱର୍ଗରେ ଦୁନ୍ଦୁଭିମାନ ବାଜି ଉଠିଲା। ଗନ୍ଧର୍ବ ଓ କିନ୍ନରମାନେ ଗୀତ ଗାଇଲେ। ଦେବତା ଓ ମୁନିମାନେ ସ୍ତୁତି କରିବାକୁ ଲାଗିଲେ। ଅପ୍ସରାମାନେ ନୃତ୍ୟ ଆରମ୍ଭ କରିଦେଲେ। ଶିବଙ୍କ ଉପରେ ଅନବରତ ପୁଷ୍ପବୃଷ୍ଟି ହେଲା ଏବଂ ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ରାଦି ଦେବତା ତଥା ମୁନିଗଣ ତାଙ୍କୁ ପ୍ରଶଂସା କଲେ। ଦାନବରାଜ ଶଙ୍ଖଚୂଡ଼ ମଧ୍ୟ ଶିବଙ୍କ କୃପାରୁ ଶାପମୁକ୍ତ ହୋଇଗଲା ଏବଂ ତାକୁ ତା'ର ପୂର୍ବ (ଶ୍ରୀକୃଷ୍ଣଙ୍କ ପାର୍ଷଦ) ରୂପ ପ୍ରାପ୍ତ ହୋଇଗଲା। ଶଙ୍ଖଚୂଡ଼ର ହାଡ଼ରୁ ଶଙ୍ଖ ଜାତି ସୃଷ୍ଟି ହେଲା। ଶଙ୍ଖର ଜଳ ଶିବଙ୍କ ବ୍ୟତୀତ ଅନ୍ୟ ସମସ୍ତ ଦେବତାଙ୍କ ନିମନ୍ତେ ପ୍ରଶସ୍ତ ବୋଲି ଧରାଯାଏ। ମହାମୁନେ ! ଶ୍ରୀହରିଙ୍କୁ ଓ ଲକ୍ଷ୍ମୀଙ୍କୁ ତଥା ତାଙ୍କ ସମ୍ବନ୍ଧିତ ଦେବତାଙ୍କୁ ଶଙ୍ଖଜଳ ବିଶେଷ ପ୍ରିୟ; କିନ୍ତୁ ଶିବଙ୍କୁ ପ୍ରିୟ ନୁହେଁ।

ଏହିରୂପେ ଶଙ୍ଖଚୂଡ଼କୁ ମାରିସାରି ଶିବ ନନ୍ଦୀଶ୍ୱର ଉପରେ ବସି ଉମା, ସ୍କନ୍ଦ ଓ ଗଣମାନଙ୍କ ସହିତ ଆନନ୍ଦରେ ଶିବଲୋକକୁ ଚାଲିଗଲେ।

ଭଗବାନ ବିଷ୍ଣୁ ବୈକୁଣ୍ଠକୁ ଚାଲିଗଲେ ଏବଂ ଦେବଗଣ ପରମାନନ୍ଦରେ ମଗ୍ନ ହୋଇ ନିଜ ନିଜ ଲୋକକୁ ଫେରିଗଲେ । ସେତେବେଳେ ସମଗ୍ର ଜଗତରେ ପରମ ଶାନ୍ତି ବ୍ୟାପ୍ତ ହୋଇଗଲା । ସମସ୍ତଙ୍କୁ ନିର୍ବିଘ୍ନରେ ସୁଖ ପ୍ରାପ୍ତ ହେବାକୁ ଲାଗିଲା । ଆକାଶ ନିର୍ମଳ ହୋଇଗଲା ଏବଂ ସମଗ୍ର ପୃଥିବୀରେ ଉତ୍ତମ ଉତ୍ତମ ମଙ୍ଗଳକାର୍ଯ୍ୟ ହେବାକୁ ଲାଗିଲା । ମୁନେ ! ମୁଁ ତୁମ ଆଗରେ ମହେଶ୍ୱରଙ୍କର ଏ ଯେଉଁ ଚରିତ୍ର ବର୍ଣ୍ଣନା କଲି, ଏହା ଆନନ୍ଦଦାୟକ, ସର୍ବଦୁଃଖହାରୀ, ଲକ୍ଷ୍ମୀପ୍ରଦ ଓ ସମସ୍ତ କାମନା-ପୂରଣକାରୀ ।

(ଅଧ୍ୟାୟ ୩୬–୪୦)



## ତୁଳସୀର ପାତିବ୍ରତ୍ୟଭଙ୍ଗ ପ୍ରସଙ୍ଗ, କୁପିତା ତୁଳସୀର ବିଷ୍ଣୁଙ୍କୁ ଶାପ ଏବଂ ଶମ୍ଭୁଙ୍କ ମୁଖରୁ ତୁଳସୀ ଓ ଶାଳଗ୍ରାମର ମାହାତ୍ମ୍ୟ ବର୍ଣ୍ଣନା

ବ୍ୟାସଦେବଙ୍କ ପ୍ରଶ୍ନର ଉତ୍ତରରେ ସନତ୍‌କୁମାର କହିଲେ–**ମହର୍ଷେ ! ରଣଭୂମିରେ ଆକାଶବାଣୀ ଶୁଣି ଯେତେବେଳେ ଶମ୍ଭୁ ଶ୍ରୀହରିଙ୍କୁ ପ୍ରେରିତ କଲେ, ସେତେବେଳେ ଶ୍ରୀହରି ଅବିଳମ୍ବେ ମାୟାରେ ବ୍ରାହ୍ମଣବେଶ ଧାରଣ କରି ଶଙ୍ଖଚୂଡ଼ ନିକଟରେ ପହଞ୍ଚିଲେ ଏବଂ ତା'ଠାରୁ ପରମ ଉତ୍କୃଷ୍ଟ କବଚ ମାଗି ନେଇଗଲେ । ତା'ପରେ ସେ ଶଙ୍ଖଚୂଡ଼ ବେଶ ଧାରଣ କରି ତୁଳସୀର ଗୃହ ଅଭିମୁଖେ ଚାଲିଲେ । ସେଠାରେ ପହଞ୍ଚି ସେ ତା' ମହଲର ଦ୍ୱାରଦେଶରେ ଦୁନ୍ଦୁଭି ନାଦ ଏବଂ ଜୟକାର ଧ୍ୱନିରେ ସୁନ୍ଦରୀ ତୁଳସୀକୁ ନିଜ ଆଗମନ କଥା ସୂଚିତ କରାଇଦେଲେ । ତାହା ଶୁଣି ସତୀ-ସାଧ୍ୱୀ ତୁଳସୀ ବଡ଼ ଆଦରରେ ଝରକା ବାଟେ ରାଜମାର୍ଗ ଆଡ଼କୁ ଦୃଷ୍ଟିପାତ କଲା ଏବଂ ସ୍ୱାମୀ ଆସୁଥିବା ଜାଣି ପରମ ଆନନ୍ଦରେ ମଗ୍ନ ହୋଇଗଲା । ସେ ଅବିଳମ୍ବେ ବ୍ରାହ୍ମଣମାନଙ୍କୁ ଧନଦାନ କରି ସେମାନଙ୍କ ଦ୍ୱାରା ମଙ୍ଗଳାଚାର କରାଇଲା ଏବଂ ତା'ପରେ ନିଜକୁ ସୁସଜ୍ଜିତ କଲା । ଏଣେ ଦେବତାଙ୍କ କାର୍ଯ୍ୟ ସିଦ୍ଧ କରିବାକୁ ମାୟାରେ ଶଙ୍ଖଚୂଡ଼ ବେଶ ଧାରଣ କରି ଆସିଥିବା ଭଗବାନ ବିଷ୍ଣୁ ରଥରୁ ଓହ୍ଲାଇ ତୁଳସୀର ଭବନକୁ ଗଲେ । ତୁଳସୀ ସ୍ୱାମୀଙ୍କ ରୂପରେ ଆସିଥିବା ଭଗବାନଙ୍କୁ ପୂଜା କଲା, ଅନେକ ପ୍ରକାର କଥାବାର୍ତ୍ତା କଲା, ତା'ପରେ ତାଙ୍କ ସହିତ ରମଣ କଲା । ସେତେବେଳେ ତୁଳସୀ ସୁଖ, ସାମର୍ଥ୍ୟ ଓ ଆକର୍ଷଣରେ କିଛି ବ୍ୟତିକ୍ରମ ଲକ୍ଷ୍ୟ କରି ସେସବୁ ଉପରେ ବିଚାର କଲା । ତା' ମନରେ ସନ୍ଦେହ ଉତ୍ପନ୍ନ ହେଲା, ତେଣୁ ସେ ପଚାରିଲା, "ତୁ କିଏ?" ଏପରି କହି ସେ ଗାଳି ଦେଇ କହିଲା–**

ତୁଳସୀ କହିଲା–**ରେ ଦୁଷ୍ଟ ! ମୋତେ ଶୀଘ୍ର କହ, ତୁ କିଏ ମାୟାରେ ମୋତେ ଉପଭୋଗ କରିବାକୁ ଏଠାକୁ ଆସିଛୁ? ତୁ ମୋର ସତୀତ୍ୱ ନଷ୍ଟ କରିଦେଲୁ, ତେଣୁ ମୁଁ ତୋତେ ଏହିକ୍ଷଣି ଅଭିଶାପ ଦେଉଛି ।**

ସନତ୍‌କୁମାର କହୁଛନ୍ତି–**ବ୍ରହ୍ମନ୍ ! ତୁଳସୀର କଥା ଶୁଣି ଶ୍ରୀହରି ଲୀଳାପୂର୍ବକ ନିଜର ପରମ ମନୋହର ରୂପରେ ପ୍ରକଟିତ ହୋଇଗଲେ । ସେହି ରୂପକୁ ଦେଖି ତୁଳସୀ ଲକ୍ଷଣରୁ ଚିହ୍ନିଗଲା ଯେ ଏ ହେଉଛନ୍ତି ସାକ୍ଷାତ୍ ବିଷ୍ଣୁ । ମାତ୍ର ତାହାର ପାତିବ୍ରତ୍ୟ ନଷ୍ଟ ହୋଇସାରିଥିବାରୁ ସେ କୁପିତ ହୋଇ ବିଷ୍ଣୁଙ୍କୁ କହିଲା–**

ତୁଳସୀ କହିଲା–**ହେ ବିଷ୍ଣୁ ! ତୁମର ମନ ପଥର ପରି କଠୋର । ତୁମଠାରେ ଲେଶମାତ୍ର ଦୟା ନାହିଁ । ମୋର ପତିବ୍ରତା ଧର୍ମ ନଷ୍ଟ ହୋଇଯିବାରୁ ଜାଣ ନିଶ୍ଚୟ ମୋ ସ୍ୱାମୀଙ୍କର ନିଧନ**

ହୋଇଗଲା; କାରଣ ତୁମେ ପାଷାଣ ସଦୃଶ କଠୋର, ନିର୍ଦ୍ଦୟ ଓ ଦୁଷ୍ଟ । ତେଣୁ ଏବେ ତୁମେ ମୋ ଶାପ ଗ୍ରହଣ କରି ପାଷାଣରୂପ ହୋଇଯାଅ ।

ସନତ୍‌କୁମାର କହୁଛନ୍ତି–ମୁନେ ! ଏତିକି କହି ଶଙ୍ଖଚୂଡ଼ର ସତୀ-ସାଧ୍ୱୀ ପତ୍ନୀ ତୁଳସୀ କଇଁକଇଁ ହୋଇ କାନ୍ଦିବାକୁ ଲାଗିଲା ଏବଂ ଶୋକାର୍ତ୍ତ ହୋଇ ନାନା ପ୍ରକାରେ ବିଳାପ କଲା । ଏତିକିବେଳେ ସେଠାରେ ଭକ୍ତବତ୍ସଳ ଶିବ ପ୍ରକଟ ହୋଇଗଲେ । ସେ ତାକୁ ବୁଝାଇ କହିଲେ, ତୁଳସୀ ! ତୁମେ ମୋ କଥା ଶୁଣ; ତୁମର ଦୁଃଖ ଦୂର ହୋଇଯିବ । ଶ୍ରୀହରି ମଧ୍ୟ ସ୍ୱସ୍ଥ ମନରେ ଏହା ଶ୍ରବଣ କରନ୍ତୁ; କାରଣ ତୁମ ଦୁହିଁଙ୍କ ପାଇଁ ଯାହା ସୁଖକାରକ ହେବ, ତାହା ହିଁ ମୁଁ କହିବି । ଭଦ୍ରେ ! ତୁମେ ଯେଉଁ ମନୋରଥକୁ ନେଇ ତପସ୍ୟା କରିଥିଲ, ଏହା ହେଉଛି ସେହି ତପସ୍ୟାର ଫଳ । ତାହା ଭଲା କେମିତି ଅନ୍ୟଥା ହୋଇପାରିଥାନ୍ତା । ଏଣୁ ତୁମକୁ ତାହାରି ଅନୁରୂପ ଫଳ ମିଳିଲା । ଏବେ ତୁମେ ଏ ଦେହକୁ ତ୍ୟାଗ କରି ଦିବ୍ୟ ଦେହ ଧାରଣ କର ଏବଂ ଲକ୍ଷ୍ମୀଙ୍କ ସମାନ ହୋଇ ନିତ୍ୟ ଶ୍ରୀହରିଙ୍କ ସହିତ (ବୈକୁଣ୍ଠରେ) ବିହାର କର । ତୁମେ ଏ ଶରୀରକୁ ତ୍ୟାଗ କରିଦେବା ପରେ ଏହା ନଦୀରୂପରେ ପରିବର୍ତ୍ତିତ ହୋଇ ଭାରତବର୍ଷରେ ପୁଣ୍ୟସଲିଳା ଗଣ୍ଡକୀ ନଦୀ ନାମରେ ପ୍ରସିଦ୍ଧ ହେବ । ହେ ମହାଦେବୀ! କିଛି କାଳ ପରେ ମୋର ବର ପ୍ରଭାବରେ ଦେବପୂଜନ ସାମଗ୍ରୀରେ ତୁଳସୀର ପ୍ରଧାନ ସ୍ଥାନ ରହିବ । ହେ ସୁନ୍ଦରୀ! ତୁମେ ସ୍ୱର୍ଗଲୋକରେ, ମର୍ତ୍ତ୍ୟଲୋକରେ ଓ ପାତାଳଲୋକରେ ସଦା ଶ୍ରୀହରିଙ୍କ ନିକଟରେ ନିବାସ କରିବ ଏବଂ ଫୁଲଗଛ ମଧ୍ୟରେ ଶ୍ରେଷ୍ଠ ତୁଳସୀବୃକ୍ଷ ହୋଇଯିବ । ତୁମେ ବୈକୁଣ୍ଠରେ ଦିବ୍ୟରୂପଧାରିଣୀ ବୃକ୍ଷାଧିଷ୍ଠାତ୍ରୀ ଦେବୀ ହୋଇ ସଦା ଏକାନ୍ତରେ ଶ୍ରୀହରିଙ୍କ ସଙ୍ଗେ କ୍ରୀଡ଼ା କରିବ । ଏହାଛଡ଼ା ଭାରତବର୍ଷରେ ନଦୀମାନଙ୍କର ଅଧିଷ୍ଠାତ୍ରୀ ଦେବୀ ହୋଇ ପରମ ପୁଣ୍ୟଦାୟିନୀ ହେବ ଏବଂ ଶ୍ରୀହରିଙ୍କ ଅଂଶଭୂତ ଲବଣସାଗରର ପତ୍ନୀ ହେବ । ଶ୍ରୀହରି ମଧ୍ୟ ତୁମ ଅଭିଶାପ ଫଳରେ ପଥରରୂପ ଧାରଣ କରି ଭାରତରେ ଗଣ୍ଡକୀ ନଦୀର ଜଳ ନିକଟରେ ନିବାସ କରିବେ । ସେଠାରେ ତୀକ୍ଷ୍ଣଦନ୍ତଧାରୀ କୋଟି କୋଟି ଭୟଙ୍କର କୀଟ ସେହି ପଥରକୁ କାଟି ତାହାର ଛିଦ୍ର ମଧ୍ୟରେ ଚକ୍ରାକାର ଚିହ୍ନ କରିଦେବେ । କୀଟମାନଙ୍କ ଦ୍ୱାରା ଛିଦ୍ର ହୋଇଥିବା ଶିଳା ଅତ୍ୟନ୍ତ ପୁଣ୍ୟପ୍ରଦାୟକ ଶାଳଗ୍ରାମଶିଳା ନାମରେ ପ୍ରସିଦ୍ଧ ହେବ । ଚକ୍ର-ଭେଦରେ ତାହାର ଲକ୍ଷ୍ମୀନାରାୟଣ ଇତ୍ୟାଦି ନାମ ମଧ୍ୟ ହେବ । ଯେଉଁ ବ୍ୟକ୍ତି ବିଷ୍ଣୁଙ୍କ ଶାଳଗ୍ରାମଶିଳା ସଙ୍ଗେ ତୁଳସୀର ସଂଯୋଗ କରାଇବ, ତାହାର ସେହି କାର୍ଯ୍ୟ ଅତ୍ୟନ୍ତ ପୁଣ୍ୟପ୍ରଦ ହେବ । ଭଦ୍ରେ ! ଯେ ଶାଳଗ୍ରାମଶିଳା ଠାରୁ ତୁଳସୀକୁ ପୃଥକ୍ କରିବ, ତାହାର ଜନ୍ମାନ୍ତରରେ ସ୍ତ୍ରୀବିୟୋଗ ହେବ ଏବଂ ଯେ ଶଙ୍ଖଠାରୁ ତୁଳସୀ ପତ୍ରକୁ ଦୂର କରିବ, ସେ ମଧ୍ୟ ଭାର୍ଯ୍ୟାହୀନ ହେବ ଏବଂ ସାତ ଜନ୍ମପର୍ଯ୍ୟନ୍ତ ରୋଗୀ ହେବ । ଯେଉଁ ମହାଜ୍ଞାନୀ ଶାଳଗ୍ରାମଶିଳା, ତୁଳସୀ ଓ ଶଙ୍ଖକୁ ଏକତ୍ର ରଖି ସେସବୁକୁ ରକ୍ଷା କରିବ, ସେ ଶ୍ରୀହରିଙ୍କର ପ୍ରିୟ ହେବ ।

ସନତ୍‌କୁମାର କହୁଛନ୍ତି–ବ୍ୟାସଦେବ ! ଶିବ ସେତେବେଳେ ଶାଳଗ୍ରାମଶିଳାର ଓ ତୁଳସୀର ଏପରି ପରମ ପୁଣ୍ୟଦାୟକ ମାହାତ୍ମ୍ୟ ବର୍ଣ୍ଣନା କଲେ । ତା'ପରେ ସାଧୁଜନଙ୍କର କଲ୍ୟାଣକାରୀ ଶମ୍ଭୁ ଶ୍ରୀହରିଙ୍କୁ ତଥା ତୁଳସୀଙ୍କୁ ଅଭିନନ୍ଦିତ କରି ସେଠାରୁ ଅନ୍ତର୍ହିତ ହୋଇ ସ୍ୱସ୍ଥାନକୁ ଚାଲିଗଲେ । ଶମ୍ଭୁଙ୍କ କଥା ଶୁଣି ତୁଳସୀଙ୍କୁ ପ୍ରସନ୍ନତା ପ୍ରାପ୍ତ ହେଲା । ସେ ସ୍ୱଦେହ ପରିତ୍ୟାଗ କରି ଦିବ୍ୟ ରୂପ ଧାରଣ କଲେ । ତା'ପରେ କମଳାପତି ବିଷ୍ଣୁ ତାଙ୍କୁ ସଙ୍ଗରେ ନେଇ ବୈକୁଣ୍ଠକୁ ଚାଲିଗଲେ । ତୁଳସୀଙ୍କ ପରିତ୍ୟକ୍ତ ଶରୀରରୁ ଗଣ୍ଡକୀ ନଦୀ ସୃଷ୍ଟି ହେଲା ଏବଂ ଭଗବାନ ଅଚ୍ୟୁତ ମଧ୍ୟ ତାହାର

ତଟରେ ମନୁଷ୍ୟଙ୍କୁ ପୁଣ୍ୟଦାନ କରୁଥିବା ଶିଳାରୂପରେ ପରିଣତ ହୋଇଗଲେ । ମୁନେ ! ସେଥିରେ କୀଟମାନେ ଅନେକ ପ୍ରକାରର ଛିଦ୍ର କରିଥାନ୍ତି । ସେଥିମଧ୍ୟରୁ ଯେଉଁ ଶିଳା ଗଣ୍ଡକୀଜଳ ଭିତରକୁ ପଡ଼ିଯାଏ, ତାହା ପରମ ପୁଣ୍ୟପ୍ରଦ ହୋଇଥାଏ; କିନ୍ତୁ ଯେଉଁ ଶିଳା ସ୍ଥଳଭାଗରେ ହିଁ ରହିଯାଏ, ତାହାକୁ ପିଙ୍ଗଳା କୁହାଯାଏ ଏବଂ ତାହା ପ୍ରାଣୀଙ୍କ ପାଇଁ ସନ୍ତାପକାରକ ହୁଏ । ବ୍ୟାସଦେବ ! ତୁମ ପ୍ରଶ୍ନାନୁସାରେ ମୁଁ ଶମ୍ଭୁଙ୍କର ପୁଣ୍ୟପ୍ରଦ ଓ କାମନାପୂରଣକାରୀ ଚରିତ୍ର ବର୍ଣ୍ଣନା କଲି । ଏହି ପୁଣ୍ୟ ଆଖ୍ୟାନ ବିଷ୍ଣୁଙ୍କ ମାହାତ୍ମ୍ୟରେ ସଂଯୁକ୍ତ ତଥା ଏହା ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ଏବେ ଆଉ କ'ଣ ଶୁଣିବାକୁ ଚାହୁଁଛ?

(ଅଧ୍ୟାୟ ୪୧)

★★★

## ଉମା ଶମ୍ଭୁଙ୍କ ଆଖି ବୁଜିଦେବାରୁ ଅନ୍ଧକାରରେ ଶମ୍ଭୁଙ୍କ ସ୍ୱେଦରୁ ଅନ୍ଧକାସୁରର ଉତ୍ପତ୍ତି, ହିରଣ୍ୟାକ୍ଷର ପୁତ୍ରପ୍ରାପ୍ତି ନିମନ୍ତେ ତପସ୍ୟା ଏବଂ ଶିବଙ୍କ ଠାରୁ ଅନ୍ଧକକୁ ପୁତ୍ରରୂପେ ଲାଭ କରି ହିରଣ୍ୟାକ୍ଷର ଗୃହ ପ୍ରତ୍ୟାବର୍ତ୍ତନ, ହିରଣ୍ୟାକ୍ଷ ତ୍ରିଲୋକକୁ ଜିଣି ପୃଥିବୀକୁ ରସାତଳକୁ ନେଇଯିବାରୁ ବରାହରୂପଧାରୀ ବିଷ୍ଣୁଙ୍କ ଦ୍ୱାରା ହିରଣ୍ୟାକ୍ଷ ବଧ

ସନତ୍କୁମାର କହୁଛନ୍ତି—ବ୍ୟାସଦେବ ! ଅନ୍ଧକାସୁର ଯେପରି ପରମାତ୍ମା ଶମ୍ଭୁଙ୍କ ଗଣାଧ୍ୟକ୍ଷ-ପଦକୁ ପ୍ରାପ୍ତ ହେଲା, ଏବେ ମହେଶ୍ୱରଙ୍କର ସେହି ମଙ୍ଗଳମୟ ଚରିତ୍ର ଶ୍ରବଣ କର । ମୁନୀଶ୍ୱର ! ଅନ୍ଧକାସୁର ପ୍ରଥମେ ଶିବଙ୍କ ସଙ୍ଗେ ଘୋର ସଂଗ୍ରାମ କରିଥିଲା, ମାତ୍ର ପରେ ତାହାର ବାରମ୍ବାର ସାତ୍ତ୍ୱିକଭାବ ଉଦ୍ରେକ ହେବାରୁ ସେ ଶମ୍ଭୁଙ୍କୁ ପ୍ରସନ୍ନ କରି ପାରିଥିଲା । କାରଣ ନାନା ପ୍ରକାର ଲୀଳା କରିବାରେ ପ୍ରବୀଣ ଶମ୍ଭୁ ଶରଣାଗତରକ୍ଷକ ଓ ପରମ ଭକ୍ତବତ୍ସଳ ଅଟନ୍ତି । ତାଙ୍କର ମାହାତ୍ମ୍ୟ ପରମ ଅଦ୍ଭୁତ ।

ବ୍ୟାସଦେବ ପଚାରିଲେ—ଐଶ୍ୱର୍ଯ୍ୟଶାଳୀ ମୁନିବର ! ଅନ୍ଧକ କିଏ ଥିଲା ଏବଂ ଭୂତଳରେ ସେ କେଉଁ ବୀର୍ଯ୍ୟବାନ୍‌ର କୁଳରେ ଉତ୍ପନ୍ନ ହୋଇଥିଲା? ସେହି ମହାମନସ୍ୱୀ ଦୈତ୍ୟର ରୂପ କିପରି ଥିଲା ଏବଂ ସେ କାହାର ପୁତ୍ର ଥିଲା? ସେ ପରମ ତେଜସ୍ୱୀ ଶମ୍ଭୁଙ୍କର ଗଣାଧ୍ୟକ୍ଷପଦକୁ କିପରି ପ୍ରାପ୍ତ ହେଲା? ଯଦି ଅନ୍ଧକାସୁର ଗଣେଶ୍ୱରପଦ ପାଇଗଲା, ତେବେ ତ ସେ ପରମ ଧନ୍ୟବାଦର ପାତ୍ର !

ସନତ୍କୁମାର କହିଲେ—ମୁନେ ! ପୂର୍ବକାଳର କଥା । ଥରେ ଭକ୍ତାନୁଗ୍ରହକାରୀ ତଥା ଦେବଗଣଙ୍କ ଚକ୍ରବର୍ତ୍ତୀ ସମ୍ରାଟ୍ ଭଗବାନ ଶିବଙ୍କର ବିହାର କରିବାକୁ ଇଚ୍ଛା ହେଲା । ସେ ପାର୍ବତୀଙ୍କୁ ଓ ଗଣମାନଙ୍କୁ ସଙ୍ଗରେ ନେଇ ତାଙ୍କର ନିବାସ କୈଳାସରୁ କାଶୀ ଆସିଲେ । ସେ କାଶୀପୁରୀକୁ ନିଜର ରାଜଧାନୀ କରି ଭୈରବ ନାମକ ବୀରକୁ ତାହାର ରକ୍ଷକ କରିଦେଲେ । ତା'ପରେ ସେ ପାର୍ବତୀଙ୍କ ସଙ୍ଗେ ରହି ନାନା ପ୍ରକାର ଭକ୍ତାନନ୍ଦଦାୟୀ ଲୀଳା କଲେ । ଥରେ ଗୋଟିଏ ବରଦାନକୁ ନିମିତ୍ତ କରି ମୁଖ୍ୟ ମୁଖ୍ୟ ଗଣ ତଥା ଶିବାଙ୍କୁ ସଙ୍ଗରେ ନେଇ ମନ୍ଦରାଚଳ ଗଲେ ଏବଂ ସେଠାରେ ମଧ୍ୟ ନାନା ପ୍ରକାର ଲୀଳା-ଖେଳା କଲେ । ଦିନେ ପ୍ରଚଣ୍ଡ ପରାକ୍ରମୀ କପର୍ଦୀ ଶିବ ମନ୍ଦରାଚଳର ପୂର୍ବଦିଗରେ ବସିଥିଲେ, ସେତିକିବେଳେ ଗିରିଜା ପ୍ରେମରେ ହସମଜା କରୁ କରୁ ତାଙ୍କର ଆଖି ବୁଜିଦେଲେ ।

ପାର୍ବତୀ ଆପଣା ପ୍ରବାଳ, ସୁବର୍ଣ୍ଣ ଓ ପଦ୍ମବର୍ଣ୍ଣାଭ କରକମଳରେ ଶିବଙ୍କ ଆଖି ବୁଜିଦେବାରୁ କ୍ଷଣକ ଭିତରେ ସେଠାରେ ଘୋର ଅନ୍ଧକାର ଛାଇଗଲା । ପାର୍ବତୀଙ୍କ ହାତ ମହେଶ୍ୱରଙ୍କ ଲଲାଟରେ ସ୍ପର୍ଶ ହେବାମାତ୍ରେ ତାହା ଶମ୍ଭୁଙ୍କ ଲଲାଟସ୍ଥ ଅଗ୍ନିରେ ସଂତପ୍ତ ହୋଇ ସେଥିରୁ ମଦଜଳ ଉତ୍ପନ୍ନ ହୋଇଗଲା ଏବଂ ସେଠାରେ କେତୋଟି ବିନ୍ଦୁ ଝରିପଡ଼ିଲା । ତା'ପରେ ସେହି ଜଳବିନ୍ଦୁ ଏକତ୍ର ହୋଇ ଗୋଟିଏ ଗର୍ଭର ରୂପ ଧାରଣ କଲା । ସେଥିରୁ ଗୋଟିଏ ଜୀବ ଉତ୍ପନ୍ନ ହୋଇଗଲା । ସେହି ଜୀବର ମୁଖ ଥିଲା ବିକରାଳ । ସେ ଅତ୍ୟନ୍ତ ଭୟଙ୍କର, କ୍ରୋଧୀ, କୃତଘ୍ନ, ଅନ୍ଧ, କୁରୂପ, ଜଟାଧାରୀ, କାଳିଆ, ମନୁଷ୍ୟଠାରୁ ଭିନ୍ନ ଓ ବିକୃତ ଥିଲା; କିନ୍ତୁ ତାହାର କେଶ ଥିଲା ସୁନ୍ଦର । ତା' କଣ୍ଠରୁ ଘର୍‌ଘର୍ ଶବ୍ଦ ବାହାରୁଥିଲା । ସେ କେବେ ଗୀତ ଗାଉଥିଲା ତ କେବେ ହସୁଥିଲା, ପୁଣି କେବେ କାନ୍ଦୁଥିଲା ତ କେବେ ଦାନ୍ତକୁ ଘ୍ରଟି ଘ୍ରଟି ନାଚୁଥିଲା । ଏଭଳି ଅଦ୍ଭୁତ ରୂପକାନ୍ତିର ଜୀବଟି ସୃଷ୍ଟି ହୋଇଯିବାରୁ ଶିବ ମନ୍ଦ ମନ୍ଦ ହସି ପାର୍ବତୀଙ୍କୁ କହିଲେ—

ମହେଶ୍ୱର କହିଲେ—"ପ୍ରିୟେ ! ମୋର ନେତ୍ରକୁ ବନ୍ଦ କରି ତୁମେ ହିଁ ତ ଏ କର୍ମ କରିଛ, ପୁଣି ଏବେ ଭୟ କରୁଛ କାହିଁକି?" ଶିବଙ୍କ କଥା ଶୁଣି ଗୌରୀ ହସିଦେଲେ ଏବଂ ତାଙ୍କ ଆଖି ଉପରୁ ହାତ କାଢ଼ି ନେଲେ । ସେଠାରେ ପୂର୍ବପରି ଆଲୋକ ଦିଶିଲା; କିନ୍ତୁ ସେ ପ୍ରାଣୀର ରୂପ ସେହିପରି ଭୟଙ୍କର ହୋଇ ରହିଲା ଏବଂ ଅନ୍ଧକାରରୁ ଉତ୍ପନ୍ନ ହୋଇଥିବାରୁ ସେ ଅନ୍ଧ ଥିଲା । ଏପରି ପ୍ରାଣୀ ପ୍ରକଟ ହେବା ଦେଖି ଗୌରୀ ମହେଶ୍ୱରଙ୍କୁ ପଚ୍ଚାରିଲେ ।

ଗୌରୀ କହିଲେ—ଭଗବନ୍ ! ମୋତେ ସତ କହନ୍ତୁ ଯେ ଆମ ସମ୍ମୁଖରେ ପ୍ରକଟ ହୋଇଥିବା ଏ ବିକୃତ ପ୍ରାଣୀଟି କିଏ? ଏ ତ ଅତ୍ୟନ୍ତ ଭୟଙ୍କର । କେଉଁ ଉଦ୍ଦେଶ୍ୟରେ ଏବଂ କିଏ ଏହାକୁ ସୃଷ୍ଟି କଲା? ଏ କାହାର ପୁତ୍ର?

ସନତ୍‌କୁମାର କହୁଛନ୍ତି—ମହର୍ଷେ ! ଲୀଳାମୟୀ ତ୍ରୈଲୋକ୍ୟଜନନୀ ଗୌରୀ ସୃଷ୍ଟିକର୍ତ୍ତାଙ୍କର ସେହି ଅନ୍ଧ-ସୃଷ୍ଟି ସମ୍ବନ୍ଧରେ ଏଭଳି ପ୍ରଶ୍ନ କରିବାରୁ ଲୀଳାବିହାରୀ ଭଗବାନ ତାଙ୍କ ପ୍ରିୟାଙ୍କୁ ସ୍ମିତହାସପୂର୍ବକ ଏହିପରି ଉତ୍ତର ଦେଲେ ।

ମହେଶ୍ୱର କହିଲେ—ଅଦ୍ଭୁତ ଚରିତ୍ରକାରିଣୀ ଅମ୍ବିକେ ! ଶୁଣ । ତୁମେ ଯେତେବେଳେ ମୋ ଆଖି ବୁଜିଦେଲ, ସେତିକିବେଳେ ଏ ଅଦ୍ଭୁତ ଓ ପ୍ରଚଣ୍ଡ ପରାକ୍ରମୀ ପ୍ରାଣୀ ମୋର ସ୍ୱେଦରୁ ଉତ୍ପନ୍ନ ହୋଇଛି । ଏହାର ନାମ ଅନ୍ଧକ । ତୁମେ ହିଁ ଏହାର ଉତ୍ପନ୍ନକାରିଣୀ । ତେଣୁ ତୁମେ ହିଁ ସଖୀମାନଙ୍କ ସହିତ ମିଶି କରୁଣାପୂର୍ବକ ଏହାକୁ ଗଣଙ୍କ ଠାରୁ ଯଥାଯୋଗ୍ୟ ରକ୍ଷା କର । ଆର୍ଯ୍ୟେ ! ବୁଦ୍ଧିପୂର୍ବକ ବିଚ୍ଚାର କରି ହିଁ ତୁମେ ଏସବୁ କାର୍ଯ୍ୟ କରିବା ଉଚିତ ।

ସନତ୍‌କୁମାର କହୁଛନ୍ତି—ମୁନେ ! ସ୍ୱାମୀଙ୍କ ମୁଖରୁ ଏହା ଶୁଣି ଗୌରୀଙ୍କ ହୃଦୟ କରୁଣାର୍ଦ୍ର ହୋଇଗଲା । ସେ ତାଙ୍କ ସଖୀମାନଙ୍କୁ ସଙ୍ଗରେ ନେଇ ଅନ୍ଧକକୁ ନିଜ ପୁତ୍ର ପରି ନାନା ପ୍ରକାର ଉପାୟରେ ରକ୍ଷା କଲେ । ଏ ଘଟଣା ପରେ ଯେତେବେଳେ ଶିଶିର ଋତୁ ଆସିଲା, ସେତେବେଳେ ଦୈତ୍ୟ ହିରଣ୍ୟାକ୍ଷ ପୁତ୍ରକାମନାରେ ସେହି ବନକୁ ଆସିଲା; କାରଣ ତା' ପତ୍ନୀ ତା'ର ବଡ଼ଭାଇର (ହିରଣ୍ୟକଶିପୁର) ସନ୍ତାନ ପରମ୍ପରା ଦେଖି ତାକୁ ସନ୍ତାନପ୍ରାପ୍ତି ନିମନ୍ତେ ତପସ୍ୟା କରିବା ପାଇଁ ପ୍ରେରିତ କରିଥିଲା । କଶ୍ୟପନନ୍ଦନ ହିରଣ୍ୟାକ୍ଷ ସେହି ବନରେ ରହି ପୁତ୍ରପ୍ରାପ୍ତି ନିମନ୍ତେ ଘୋର ତପସ୍ୟା କଲା । ତା' ମନରେ ମହେଶ୍ୱରଙ୍କୁ ଦର୍ଶନ କରିବାର ଅଭିଳାଷ ଥିଲା । ତେଣୁ ସେ କ୍ରୋଧାଦି ଦୋଷକୁ ନିୟନ୍ତ୍ରଣ କରି ଅଚଳ ପରି ସମାଧିସ୍ଥ ହୋଇଗଲା । ହେ

ଦ୍ୱିଜେନ୍ଦ୍ର ! ବୃଷଭଧ୍ୱଜ ପିନାକଧାରୀ ମହେଶ ତା'ର ତପସ୍ୟାରେ ଅତ୍ୟନ୍ତ ପ୍ରସନ୍ନ ହୋଇ ତାକୁ ବର ପ୍ରଦାନ କରିବାକୁ ଗଲେ । ସେ ସେଠାରେ ପହଞ୍ଚି ଦୈତ୍ୟପ୍ରବର ହିରଣ୍ୟାକ୍ଷକୁ କହିଲେ—

ମହେଶ କହିଲେ—ଦୈତ୍ୟନାଥ ! ଏବେ ତୁ ଆଉ ଇନ୍ଦ୍ରିୟଗଣଙ୍କୁ ବିନାଶ ନ କର । କାହିଁକି ତୁ ଏ ବ୍ରତ କରିଛୁ? ତୋର ମନୋରଥ ପ୍ରକାଶ କର । ମୁଁ ହେଉଛି ବରଦାତା ଶଙ୍କର । ତୋର ଯାହା ଅଭିଳାଷ ଅଛି, ତାହା ମୁଁ ପୂରଣ କରିବି ।

ସନତ୍‌କୁମାର କହୁଛନ୍ତି—ମହର୍ଷେ ! ମହେଶ୍ୱରଙ୍କ ଠାରୁ ଏଭଳି କଥା ଶୁଣି ଦୈତ୍ୟରାଜ ହିରଣ୍ୟାକ୍ଷ ପରମ ପ୍ରସନ୍ନ ହେଲା । ସେ ଗିରିଶଙ୍କ ଚରଣରେ ନମସ୍କାର କରି ଅନେକ ପ୍ରକାରେ ସ୍ତୁତି କଲା । ତା'ପରେ ସେ ନତମସ୍ତକ ହୋଇ ଯୋଡ଼ହସ୍ତପୂର୍ବକ କହିଲା—

ହିରଣ୍ୟାକ୍ଷ କହିଲା—ହେ ଶଶିଶେଖର ! ମୋର ଗୋଟିଏ ହେଲେ ଦୈତ୍ୟକୁଳ ଅନୁରୂପ ପରାକ୍ରମୀ ପୁତ୍ର ନାହିଁ, ତେଣୁ ମୁଁ ଏହି ବ୍ରତ ଅନୁଷ୍ଠାନ କରିଛି । ହେ ଦେବେଶ ! ମୋତେ ପରମ ବଳଶାଳୀ ପୁତ୍ରଟିଏ ଦିଅନ୍ତୁ ।

ସନତ୍‌କୁମାର କହୁଛନ୍ତି—ମୁନେ ! ଦୈତ୍ୟରାଜର କଥା ଶୁଣି କୃପାଳୁ ଶଙ୍କର ପ୍ରସନ୍ନ ହୋଇଗଲେ ଏବଂ ତାକୁ କହିଲେ—ଦୈତ୍ୟାଧିପ ! ତୋ ଭାଗ୍ୟରେ ତ ତୋର ବୀର୍ଯ୍ୟରୁ ପୁତ୍ର ଉତ୍ପନ୍ନ ହେବା ଲେଖା ନାହିଁ, ତଥାପି ମୁଁ ତୋତେ ପୁତ୍ରଟିଏ ପ୍ରଦାନ କରୁଛି । ମୋର ଗୋଟିଏ ପୁତ୍ର ଅଛି, ତାହାର ନାମ ଅନ୍ଧକ । ସେ ତୋରି ପରି ପରାକ୍ରମୀ ଓ ଅଜେୟ । ତୁ ସମସ୍ତ ଦୁଃଖ ପରିତ୍ୟାଗ କରି ତାକୁ ପୁତ୍ରରୂପେ ଗ୍ରହଣ କର; ଏହି ପ୍ରକାରେ ହିଁ ତୁ ପୁତ୍ରପ୍ରାପ୍ତି କରିପାରିବୁ ।

ସନତ୍‌କୁମାର କହୁଛନ୍ତି—ମହର୍ଷେ ! ଏତିକି କହି ଗୌରୀଙ୍କ ସହ ବିରାଜମାନ ଭୂତନାଥ ତ୍ରିପୁରାରି ପ୍ରସନ୍ନ ଚିତ୍ତରେ ହିରଣ୍ୟାକ୍ଷ ହସ୍ତରେ ଅନ୍ଧକକୁ ପୁତ୍ରରୂପେ ପ୍ରଦାନ କଲେ । ଏହିରୂପେ ପୁତ୍ର ଲାଭ କରି ମହାମନସ୍ୱୀ ଦୈତ୍ୟ ହିରଣ୍ୟାକ୍ଷ ପରମ ପ୍ରସନ୍ନ ହେଲା । ସେ ଅନେକ ସ୍ତୋତ୍ର ଦ୍ୱାରା ରୁଦ୍ରଙ୍କୁ ପୂଜା



କରି ପ୍ରଦକ୍ଷିଣ କଲା ଏବଂ ତା'ପରେ ନିଜ ରାଜ୍ୟକୁ ଫେରିଗଲା । ଗିରିଶଙ୍କ ଠାରୁ ପୁତ୍ର ଲାଭ କରିବା ପରେ ସେହି ପ୍ରଚଣ୍ଡ ପରାକ୍ରମୀ ଦୈତ୍ୟ ସମସ୍ତ ଦେବଗଣଙ୍କୁ ପରାସ୍ତ କରି ପୃଥିବୀକୁ ଆପଣା ସ୍ଥାନ ରସାତଳକୁ ନେଇଗଲା । ଏହା ଦେଖି ଦେବତା, ମୁନି ଓ ସିଦ୍ଧମାନେ ଅନନ୍ତ ପରାକ୍ରମୀ ବିଷ୍ଣୁଙ୍କୁ ଆରାଧନା କଲେ । ଏହାପରେ ଭଗବାନ ବିଷ୍ଣୁ ସର୍ବାତ୍ମକ ଯଜ୍ଞମୟ ବିକରାଳ ବରାହରୂପ ଧାରଣ କରି ଥୋଡ଼ିର ପ୍ରହାରରେ ପୃଥିବୀକୁ ଚିରି ପାତାଳଲୋକରେ ପହଞ୍ଚିଗଲେ । ସେ ସେଠାରେ ନିଜର ଅତୁଟ ସୁଦୃଢ଼ ଆଗଦାନ୍ତରେ ଏବଂ ଥୋଡ଼ିରେ ଶହ ଶହ ଦୈତ୍ୟଙ୍କୁ ମର୍ଦ୍ଦନ କରିବା ସହ ବଜ୍ରତୁଲ୍ୟ କଠୋର ପାଦପ୍ରହାରରେ ନିଶାଚରଙ୍କ ସୈନ୍ୟଙ୍କୁ ଦଳି ପକାଇଲେ । ତା'ପରେ ପ୍ରଚଣ୍ଡ ତେଜସ୍ୱୀ ଓ ଅଦ୍ଭୁତ ପରାକ୍ରମୀ ବିଷ୍ଣୁ କୋଟିସୂର୍ଯ୍ୟ-ସମପ୍ରଭ ସୁଦର୍ଶନ ଚକ୍ରରେ ହିରଣ୍ୟାକ୍ଷର ଉଜ୍ଜ୍ୱଳ ମୁଣ୍ଡକୁ କାଟି

ପକାଇଲେ ଏବଂ ଅନ୍ୟାନ୍ୟ ଦୁଷ୍ଟ ଦୈତ୍ୟଙ୍କୁ ପୋଡ଼ିଜାଳି ଭସ୍ମ କରିଦେଲେ । ଏହା ଦେଖି ଦେବରାଜ ଇନ୍ଦ୍ରଙ୍କୁ ବହୁତ ପ୍ରସନ୍ନତା ଅନୁଭବ ହେଲା । ସେ ଅସୁରରାଜ-ପଦରେ ଅନ୍ଧକର ରାଜ୍ୟାଭିଷେକ କରିଦେଲେ । ତା'ପରେ ବିଷ୍ଣୁ ନିଜ ଦନ୍ତାଗ୍ରରେ ପାତାଳଲୋକରୁ ପୃଥିବୀକୁ ପୁନଃ ନେଇ ଆସୁଥିବାର ଦେଖି ମହାତ୍ମା ଇନ୍ଦ୍ର ପରମ ପ୍ରସନ୍ନ ହେଲେ ଏବଂ ସ୍ୱସ୍ଥାନକୁ ଫେରିଆସି ପୂର୍ବବତ୍ ସ୍ୱର୍ଗ ଓ ଭୂଲୋକର ରକ୍ଷା କରିବାକୁ ଲାଗିଲେ । ଏଣେ ବରାହରୂପ ଧାରଣ କରି ଉତ୍ତମ କାର୍ଯ୍ୟ କରିଥିବା ଶ୍ରୀହରି ସମସ୍ତ ଦେବତା, ମୁନି ଓ ପଦ୍ମଯୋନି ବ୍ରହ୍ମାଙ୍କ ଦ୍ୱାରା ପ୍ରଶଂସିତ ହୋଇ ପ୍ରସନ୍ନଚିତ୍ତରେ ସ୍ୱଧାମକୁ ବାହୁଡ଼ିଗଲେ । ବରାହ-ରୂପଧାରୀ ବିଷ୍ଣୁଙ୍କ ଦ୍ୱାରା ଅସୁରରାଜ ହିରଣ୍ୟାକ୍ଷ ନିହତ ହେବା ପରେ ଦେବଗଣ, ମୁନିଗଣ ଓ ଅନ୍ୟାନ୍ୟ ସକଳ ଜୀବ ସୁଖୀ ହେଲେ । (ଅଧ୍ୟାୟ ୪୨)

***

## ହିରଣ୍ୟକଶିପୁର ତପସ୍ୟା, ବ୍ରହ୍ମାଙ୍କ ଠାରୁ ବରପ୍ରାପ୍ତି ଏବଂ ତାହାର ଅତ୍ୟାଗ୍ରହ, ନୃସିଂହଙ୍କ ଦ୍ୱାରା ତାହାର ବଧ ଓ ପ୍ରହ୍ଲାଦକୁ ରାଜ୍ୟପ୍ରାପ୍ତି

ସନତ୍କୁମାର କହୁଛନ୍ତି—ହେ ବ୍ୟାସଦେବ ! ବରାହରୂପଧାରୀ ଶ୍ରୀହରି ହିରଣ୍ୟାକ୍ଷକୁ ମାରିଦେବାରୁ ତା'ର ଭାଇ ହିରଣ୍ୟକଶିପୁ ଶୋକ ଓ କ୍ରୋଧରେ ଅତ୍ୟନ୍ତ ସନ୍ତପ୍ତ ହୋଇଉଠିଲା । ଶ୍ରୀହରିଙ୍କ ସଙ୍ଗେ ଶତ୍ରୁତା କରିବା ତ ତା'ର ସ୍ୱଭାବ ଥିଲା, ତେଣୁ ସେ ତା'ର ସଂହାରପ୍ରେମୀ ବୀର ଅସୁରମାନଙ୍କୁ ପ୍ରଜାନାଶ କରିବାକୁ ଆଦେଶ ଦେଲା । ସଂହାରପ୍ରିୟ ଅସୁରମାନେ ସ୍ୱାମୀଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ପ୍ରଜାମାନଙ୍କୁ ବିନାଶ କରିବାକୁ ଲାଗିଲେ । ଦୁଷ୍ଟ ଅସୁରମାନେ ସମଗ୍ର ଦେବଲୋକକୁ ନଷ୍ଟଭ୍ରଷ୍ଟ କରିଦେଲେ; ଫଳରେ ଦେବତାମାନେ ସ୍ୱର୍ଗ ଛାଡ଼ି ଗୁପ୍ତରୂପେ ପୃଥିବୀରେ ବିଚରଣ କରିବାକୁ ଲାଗିଲେ । ତେଣେ ଭାଇର ମୃତ୍ୟୁରେ ଦୁଃଖସଂତପ୍ତ ହିରଣ୍ୟକଶିପୁ ଭାଇକୁ ତିଳାଞ୍ଜଳି ଦେଇ ଭାଇର ସ୍ତ୍ରୀ ପ୍ରଭୃତିଙ୍କୁ ଧୈର୍ଯ୍ୟ ଦେଲା । ତା'ପରେ ସେ ନିଜ ପାଇଁ ବିଚାର କଲା ଯେ "ମୁଁ କୌଣସି ପ୍ରକାରେ ଅଜର ଅମର ହୋଇଯାଏ । ମୋର ଏକଚ୍ଛତ୍ର ସାମ୍ରାଜ୍ୟ ହୋଇଯାଉ ଏବଂ ମୋର ପ୍ରତିଦ୍ୱନ୍ଦ୍ୱୀ କେହି ନ ରହୁ ।" ଏପରି ଚିନ୍ତା କରି ସେ ମନ୍ଦରାଚଳକୁ ଗଲା ଏବଂ ସେଠାରେ ଗୋଟିଏ ଗୁମ୍ଫାରେ ଘୋର ତପସ୍ୟା ଆରମ୍ଭ କରିଦେଲା । ସେ ପାଦର ଗୋଟିଏ ଆଙ୍ଗୁଠିରେ ଠିଆ ହୋଇ ହାତ ଉପରକୁ ଟେକି ଏବଂ ଆକାଶ ଆଡ଼କୁ ଚାହିଁ ତପସ୍ୟା କଲା । ତା'ର ଉଗ୍ରତପସ୍ୟାରେ ସନ୍ତପ୍ତ ହୋଇ ଦେବତାମାନଙ୍କ ମୁଖ ବିକୃତ ହୋଇଗଲା । ସେମାନେ ସ୍ୱର୍ଗ ଛାଡ଼ି ବ୍ରହ୍ମଲୋକରେ ଯାଇ ପହଞ୍ଚିଲେ ଏବଂ ବ୍ରହ୍ମାଙ୍କୁ ସେମାନଙ୍କ ଦୁଃଖ କାହାଣୀ କହିଲେ । ବ୍ୟାସଦେବ ! ଦେବଗଣଙ୍କ କଥା ଶୁଣି ସ୍ୱୟମ୍ଭୂ ବ୍ରହ୍ମା ଭୃଗୁ, ଦକ୍ଷ ପ୍ରଭୃତିଙ୍କୁ ସଙ୍ଗରେ ଧରି ଦୈତ୍ୟେଶ୍ୱର ହିରଣ୍ୟକଶିପୁର ଆଶ୍ରମକୁ ଗଲେ । ତପ ବଳରେ ସମଗ୍ର ଭୁବନକୁ ସନ୍ତପ୍ତ କରି ରଖିଥିବା ହିରଣ୍ୟକଶିପୁ ବର ଦେବାକୁ ଆଗତ ପଦ୍ମଯୋନି ବ୍ରହ୍ମାଙ୍କୁ ନିଜ ସମ୍ମୁଖରେ ଉପସ୍ଥିତ ହୋଇଥିବାର ଦେଖିଲା । ପିତାମହ ବ୍ରହ୍ମା ତାକୁ ବର ମାଗିବାକୁ କହିଲେ । ତା'ର ତ ବୁଦ୍ଧି ମାୟାବିମୋହିତ ଥିଲା, ତେଣୁ ସେ ବିଧାତାଙ୍କୁ ଦେଖି ମଧୁର ବାଣୀରେ ଏହି ପ୍ରକାର କହିଲା—

ହିରଣ୍ୟକଶିପୁ କହିଲା—ହେ ଐଶ୍ୱର୍ଯ୍ୟଶାଳୀ ପ୍ରଜାପତି ! ପିତାମହ ! ମୁଁ ଚାହୁଁଛି ଯେ ସ୍ୱର୍ଗରେ, ଭୂତଳରେ, ଦିନରେ, ରାତିରେ, ଉପରେ ଅଥବା

ତଳେ; ପୁଣି ଅସ୍ତ୍ର, ଶସ୍ତ୍ର, ପାଶ, ବଜ୍ର, ଶୁଷ୍କ ବୃକ୍ଷ, ପର୍ବତ, ଜଳ ବା ଅଗ୍ନିରେ ଏବଂ ଦେବତା, ଦୈତ୍ୟ, ମୁନି, ସିଦ୍ଧ—ଏପରି କି ସ୍ୱୟଂ ଆପଣଙ୍କ ଦ୍ୱାରା ସୃଷ୍ଟ କୌଣସି ଜୀବ ହାତରେ କଦାପି ମୋର ମୃତ୍ୟୁ ନ ହେଉ ।

ସନତ୍କୁମାର କହୁଛନ୍ତି—ମୁନେ ! ହିରଣ୍ୟକଶିପୁର କଥା ଶୁଣି ପଦ୍ମଯୋନି ବ୍ରହ୍ମାଙ୍କ ମନରେ ଦୟାଭାବ ଜାଗ୍ରତ ହେଲା । ସେ ମନେ ମନେ ବିଷ୍ଣୁଙ୍କୁ ପ୍ରଣାମ କରି ତାକୁ କହିଲେ—"ଦୈତ୍ୟେନ୍ଦ୍ର ! ମୁଁ ତୁମ ଉପରେ ପ୍ରସନ୍ନ । ତେଣୁ ତୁମେ ଯାହା ମାଗିଲ, ସେସବୁ ତୁମକୁ ପ୍ରାପ୍ତ ହେବ । ତୁମେ ଛୟାନବେ ହଜାର ବର୍ଷ ତପସ୍ୟା କରିଛ, ଏବେ ତୁମର କାମନା ପୂରଣ ହୋଇଗଲା; ଏଥର ତପସ୍ୟାରୁ ବିରତ ହୋଇଯାଅ ଏବଂ ଦାନବରାଜ୍ୟ ଉପଭୋଗ କର ।" ବ୍ରହ୍ମାଙ୍କ ବାଣୀ ଶୁଣି ହିରଣ୍ୟକଶିପୁର ମୁଖ ପ୍ରସନ୍ନତାରେ ଉଲ୍ଲସିତ ହୋଇଉଠିଲା । ଏହିରୂପେ ପିତାମହ ତାକୁ ଦାନବଙ୍କ ରାଜସିଂହାସନରେ ଅଭିଷିକ୍ତ କରିଦେବାରୁ ସେ ଉନ୍ମତ୍ତ ହୋଇଗଲା ଏବଂ ତ୍ରୈଲୋକ୍ୟକୁ ନଷ୍ଟ କରିବାକୁ ଚିନ୍ତା କଲା । ସେ ସମସ୍ତ ଧର୍ମକୁ ଉଚ୍ଛେଦ କରି ସଂଗ୍ରାମରେ ସକଳ ଦେବତାଙ୍କୁ ପରାସ୍ତ କରିଦେଲା । ତା'ପରେ ଦେବତାମାନେ ପଳାୟନ କରି ବିଷ୍ଣୁଙ୍କ ପାଖରେ ପହଞ୍ଚିଲେ । ବିଷ୍ଣୁ ଦେବତା ଓ ମୁନିଙ୍କ ଦୁଃଖକାହାଣୀ ଶୁଣି ସେମାନଙ୍କୁ ଆଶ୍ୱାସନା ଦେଲେ ଏବଂ ଶୀଘ୍ର ସେହି ଦୈତ୍ୟକୁ ବଧ କରିବାକୁ ବଚନ ଦେଲେ । ଦେବତାମାନେ ନିଜ ନିଜ ସ୍ଥାନକୁ ଫେରିଗଲେ । ତା'ପରେ ମହାତ୍ମା ବିଷ୍ଣୁ ଏପରି ରୂପ ଧାରଣ କଲେ, ଯାହା କି ଅଧା ସିଂହର ଓ ଅଧା ମନୁଷ୍ୟର ରୂପ ଥିଲା । ସେ ଅତ୍ୟନ୍ତ ଭୟଙ୍କର ଓ ବିକରାଳ ଦିଶୁଥିଲେ । ତାଙ୍କର ମୁଖ ଥିଲା ବିସ୍ତାରିତ, ନାସିକା ଥିଲା ସୁନ୍ଦର, ନଖଗୁଡ଼ିକ ଥିଲା ତୀକ୍ଷ୍ଣ । ବେକରେ କେଶରାଜି ତରଙ୍ଗାୟିତ ହେଉଥିଲା । ତାଙ୍କର ଆୟୁଧ ଥିଲା ଦନ୍ତପଙ୍‌କ୍ତି । ତାଙ୍କ ଦେହରୁ କୋଟିସୂର୍ଯ୍ୟସମ ଜ୍ୟୋତି ବିକଶିତ ହେଉଥିଲା ଏବଂ ତାହା ପ୍ରଳୟାଗ୍ନି ପରି ମନେ ହେଉଥିଲା । ଅଧିକ କ'ଣ ବା କହିବା, ସେହି ରୂପ ଥିଲା ଜଗନ୍ମୟ । ଏପରି ରୂପ ଧାରଣ କରି ସେ ସୂର୍ଯ୍ୟ ଅସ୍ତାଚଳକୁ ଯିବା ସମୟରେ ଅସୁରଙ୍କ ନଗରୀରେ ପ୍ରବିଷ୍ଟ ହେଲେ । ଏପରି ଅତୁଳ ପ୍ରଭାବଶାଳୀ ନୃସିଂହଙ୍କୁ ଦେଖି ସମସ୍ତ ଦୈତ୍ୟ ଏକାବେଳେକେ ତାଙ୍କ ଉପରେ ଆକ୍ରମଣ କରିଦେଲେ । ହେଲେ ଅଦ୍‌ଭୁତ ପରାକ୍ରମଶାଳୀ ନୃସିଂହ ଏକାକୀ ସେହି ଦୈତ୍ୟମାନଙ୍କ ସଙ୍ଗେ ଯୁଦ୍ଧ କରି ଅନେକଙ୍କୁ ମାରି ପକାଇଲେ ଅନେକଙ୍କୁ ଧରି ଦଳି-ଚକଟି ଫୋପାଡ଼ି ଦେଲେ । ତା'ପରେ ସେ ନଗର ମଧ୍ୟରେ ପରାକ୍ରମ ଦେଖାଇ ଦେଖାଇ ବୁଲିଲେ । ଏଭଳି ସର୍ବମୟ ସିଂହକୁ ଦେଖି ଦୈତ୍ୟରାଜର ପୁତ୍ର ପ୍ରହ୍ଲାଦ ରାଜାଙ୍କୁ ଯାଇ କହିଲା—"ଏ ମୃଗେନ୍ଦ୍ର ତ ଜଗନ୍ମୟ ଦିଶୁଛି, ଏ ଏଠାକୁ କାହିଁକି ଆସିଛି?"

ପ୍ରହ୍ଲାଦ ପୁଣି କହିଲା—ବାପା ! ମୋତେ ତ ଲାଗୁଛି, ଏ ହେଉଛନ୍ତି ଭଗବାନ ଅନନ୍ତ । ଏ ନୃସିଂହରୂପ ଧାରଣ କରି ଆପଣଙ୍କ ନଗରରେ ପ୍ରବିଷ୍ଟ ହୋଇଛନ୍ତି; କାରଣ ଏହାଙ୍କ ମୂର୍ତ୍ତି ମୋତେ ବଡ଼ ବିକରାଳ ଦିଶୁଛି । ଏଣୁ ଆପଣ ଯୁଦ୍ଧରୁ ଓହରି ଯାଇ ଏହାଙ୍କ ଶରଣ ନିଅନ୍ତୁ । ଏହାଙ୍କ ଠାରୁ ବଳି ବଡ଼ ଯୋଦ୍ଧା ତ୍ରିଲୋକରେ କେହି ବି ନାହିଁ; ଏଣୁ ଆପଣ ଏହାଙ୍କ ସମ୍ମୁଖରେ ନତମସ୍ତକ ହୋଇ ନିଜ ରାଜ୍ୟ ଉପଭୋଗ କରନ୍ତୁ । ପୁତ୍ର କଥା ଶୁଣି ସେ ଦୁରାତ୍ମା କହିଲା—"ପୁତ୍ର ! ତୁ ଭୟଭୀତ ହୋଇଗଲୁ କି?" ପ୍ରହ୍ଲାଦକୁ ଏପରି କହି ଦୈତ୍ୟାଧିପତି ହିରଣ୍ୟକଶିପୁ ମହାବଳୀ ଦୈତ୍ୟମାନଙ୍କୁ ଆଦେଶ ଦେଇ କହିଲା—"ବୀରଗଣ ! ତୁମେମାନେ ସେ କୁଟିଳଭ୍ରୂକୁଟିଯୁକ୍ତ ବଙ୍କା ଆଖିଆ ସିଂହଟାକୁ ଧରି ପକାଅ ।" ସ୍ୱାମୀଙ୍କ ଆଜ୍ଞା ପାଇ ବଡ଼ ବଡ଼ ଦୈତ୍ୟମାନେ ସେହି ମୃଗେନ୍ଦ୍ରକୁ

ଧରିବା ପାଇଁ ରଣଭୂମିରେ ଅବତୀର୍ଣ୍ଣ ହେଲେ; କିନ୍ତୁ ରୂପର ଆକର୍ଷଣରେ ଅଗ୍ନିରେ ପଶି ପୋଡ଼ିଯାଉଥିବା ପତଙ୍ଗମାନଙ୍କ ପରି ସେମାନେ କ୍ଷଣକ ମଧ୍ୟରେ ଜଳିପୋଡ଼ି ପାଉଁଶ ହୋଇଗଲେ । ଦୈତ୍ୟମାନେ ଦଗ୍ଧ ହୋଇଯିବା ପରେ ଦୈତ୍ୟରାଜ ହିରଣ୍ୟକଶିପୁ ଅସ୍ତ୍ର, ଶସ୍ତ୍ର, ଶକ୍ତି, ରଷ୍ଟି, ପାଶ, ଅଙ୍କୁଶ ଓ ପାବକ ଇତ୍ୟାଦି ଧରି ତାଙ୍କ ସଙ୍ଗେ ସଂଗ୍ରାମ କଲା । ବହୁକାଳ ପର୍ଯ୍ୟନ୍ତ ଭୀଷଣ ସଂଗ୍ରାମ ଚାଲିଲା । ଶେଷରେ ନୃସିଂହ ଆପଣା ବଜ୍ରତୁଲ୍ୟ କଠୋର ଭୁଜରେ ଦୈତ୍ୟରାଜକୁ ଧରି ପକାଇଲେ ଏବଂ ନିଜ ଜଙ୍ଘ ଉପରେ ପକାଇ ସୁଦୃଢ଼ ମର୍ମଭେଦୀ ନଖରେ ତା'ର ଛାତିକୁ ଫାଡ଼ିଦେଲେ ତଥା ଛାତି ଭିତରୁ ତା'ର ରକ୍ତ ଜୁଡ୍ଡୁବୁଡ୍ଡୁ ହୃଦୟକମଳକୁ ଟାଣିଆଣିଲେ । ସେହିକ୍ଷଣି ତା'ର ପ୍ରାଣପକ୍ଷୀ ଉଡ଼ିଗଲା । ନୃସିଂହଙ୍କର ବାରମ୍ବାର ଆଘାତରେ ହିରଣ୍ୟକଶିପୁର ଅଙ୍ଗପ୍ରତ୍ୟଙ୍ଗ ଚୂନା ହୋଇଯାଇଥିଲା । ଏହାପରେ କାଠପରି ନିଷ୍ପ୍ରାଣ ହୋଇଯାଇଥିବା ସେହି ଦୈତ୍ୟକୁ ସେ ତଳକୁ ପକାଇଦେଲେ । ଏହିରୂପେ ଦେବଶତ୍ରୁ ହିରଣ୍ୟକଶିପୁ ମରିଯିବାରୁ ସେ ଅତି ପ୍ରସନ୍ନ ହେଲେ । ଏହାପରେ ଅଦ୍ଭୁତ ପରାକ୍ରମୀ ବିଷ୍ଣୁ ପ୍ରହ୍ଲାଦକୁ ଡାକିଲେ । ପ୍ରହ୍ଲାଦ ଆସି ତାଙ୍କ ପାଦତଳେ ମୁଣ୍ଡ ନୁଆଁଇବାରୁ ତାକୁ ରାଜସିଂହାସନରେ ଅଭିଷିକ୍ତ କରାଇଦେଇ ସ୍ୱୟଂ ଅନ୍ତର୍ହିତ ହୋଇଗଲେ । ଏ ଘଟଣାରେ ପିତାମହ ଆଦି ସୁରେଶ୍ୱରମାନେ ପରମ ପ୍ରସନ୍ନ ହେଲେ । ସେମାନେ ସେମାନଙ୍କ କାର୍ଯ୍ୟ ସାଧିତ କରିଥିବା ବିଷ୍ଣୁଙ୍କୁ ସେ ଅନ୍ତର୍ହିତ ହୋଇଥିବା ଦିଗ ଆଡ଼କୁ ଚାହିଁ ପ୍ରଣାମ କରି ନିଜ ନିଜ ଧାମକୁ ଫେରିଗଲେ । ବିପ୍ରବର ! ମୁଁ ରୁଦ୍ରଙ୍କ ଠାରୁ ଅନ୍ଧକର ଉତ୍ପତ୍ତି, ବରାହ ଅବତାର ଦ୍ୱାରା ହିରଣ୍ୟାକ୍ଷବଧ, ନୃସିଂହଙ୍କ ହାତରେ ତା' ଭାଇର ବିନାଶ ଏବଂ ପ୍ରହ୍ଲାଦର ରାଜ୍ୟଲାଭ ପ୍ରସଙ୍ଗ ବର୍ଣ୍ଣନା କରିଦେଲି । ଦ୍ୱିଜଶ୍ରେଷ୍ଠ ! ଏବେ ଅନ୍ଧକର ଶିବକୃପାଲବ୍ଧ ପ୍ରଭାବ, ଶିବଙ୍କ ସଙ୍ଗେ ତା'ର ଯୁଦ୍ଧ ଓ ପରେ ସେ ଯେପରି ମହେଶଙ୍କର ଗଣାଧ୍ୟକ୍ଷପଦ ପ୍ରାପ୍ତ ହେଲା, ସେ ପ୍ରସଙ୍ଗ ବର୍ଣ୍ଣନା କରୁଛି, ଶୁଣ ।

(ଅଧ୍ୟାୟ ୪୩)



## ଅନ୍ଧକାସୁରର ତପସ୍ୟା, ବରପ୍ରାପ୍ତି, ତ୍ରିଲୋକବିଜୟ ଓ ସ୍ୱେଚ୍ଛାଚାର; ମନ୍ତ୍ରୀଙ୍କ ମୁଖରୁ ପାର୍ବତୀଙ୍କ ସୌନ୍ଦର୍ଯ୍ୟର ବର୍ଣ୍ଣନା ଶୁଣି ତାଙ୍କ ପ୍ରତି ମୋହିତ ହୋଇ ଅନ୍ଧକର ପାର୍ବତୀଙ୍କ ନିକଟକୁ ଗମନ ଏବଂ ନନ୍ଦୀଶ୍ୱରଙ୍କ ସହ ଯୁଦ୍ଧ, ନନ୍ଦୀଶ୍ୱରଙ୍କ ମୂର୍ଚ୍ଛା, ପାର୍ବତୀଙ୍କ ଆବାହନରେ ପ୍ରକଟିତା ଦେବୀମାନଙ୍କର ସଂଗ୍ରାମ, ଶିବଙ୍କ ଆଗମନ ଓ ଯୁଦ୍ଧ, ଶିବ ଶୁକ୍ରାଚାର୍ଯ୍ୟଙ୍କୁ ଗିଳିଦେବା ପରେ ଶିବଙ୍କ ପ୍ରେରଣାରେ ବିଷ୍ଣୁ କାଳୀରୂପ ଧାରଣ କରି ଦାନବଙ୍କ ରକ୍ତ ପାନ କରିବା ପ୍ରସଙ୍ଗ, ଶିବ ଅନ୍ଧକକୁ ନିଜ ତ୍ରିଶୂଳରେ ଗୁଞ୍ଚି ପକାଇବା ଓ ଯୁଦ୍ଧ ସମାପ୍ତି

ସନତ୍କୁମାର କହୁଛନ୍ତି—ମୁନିବର ! ଥରେ ହିରଣ୍ୟାକ୍ଷର ପୁତ୍ର ଅନ୍ଧକ ଭାଇମାନଙ୍କ ସଙ୍ଗେ ବିହାର କରୁଥିଲା । ସେତିକିବେଳେ ତା'ର କାମାନ୍ଧ ଭାଇମାନେ ତାକୁ କହିଲେ—"ଆରେ ଅନ୍ଧ ! ତୋର ରାଜ୍ୟରେ ଅବା କି ପ୍ରୟୋଜନ? ତୋ ପିତା ହିରଣ୍ୟାକ୍ଷ ପ୍ରକୃତରେ ମୂର୍ଖ ଥିଲା; କାରଣ ସେ

ଘୋର ତପସ୍ୟା ଦ୍ୱାରା ଶଙ୍କରଙ୍କୁ ପ୍ରସନ୍ନ କରି ମଧ୍ୟ ତୋ ପରି ଗୋଟାଏ କୁରୂପ, ବିକୃତ, କଳହପ୍ରିୟ ଓ ଅନ୍ଧ ପୁତ୍ର ଲାଭ କଲା । ତୁ ରାଜ୍ୟ ଭୋଗ କରି ପାରିବୁ ନାହିଁ; କାହିଁକି ନା ତୁ ନିଜେ ଚିନ୍ତା କରି କହ ଯେ ଅନ୍ୟଠାରୁ ଉତ୍ପନ୍ନ ହୋଇଥିବା ପୁତ୍ର କେଉଁଠି ରାଜ୍ୟ ପାଇଲାଣି କି? ସତ କହିବାକୁ ଗଲେ ଆମେମାନେ ହିଁ ଏ ରାଜ୍ୟଭୋଗର ଅଧିକାରୀ ।''

ସନତ୍‌କୁମାର କହିଲେ—ମୁନେ ! ସେମାନଙ୍କ କଥା ଶୁଣି ଅନ୍ଧକ ବହୁତ ଦୁଃଖୀ ହେଲା । ସେ ନିଜ ବୁଦ୍ଧି ଅନୁସାରେ ସେମାନଙ୍କୁ ଉତ୍ତର ଦେଇ ଶାନ୍ତ କଲା ଏବଂ ରାତିରେ ନିର୍ଜନ ବନସ୍ତକୁ ବାହାରିଗଲା । ସେଠାରେ ହଜାର ହଜାର ବର୍ଷ ପର୍ଯ୍ୟନ୍ତ ତପସ୍ୟା କରି ନିଜ ଦେହକୁ ଶୁଖାଇ ଦେଲା ଏବଂ ଶେଷରେ ସେହି ଦେହକୁ ଯେତେବେଳେ ଅଗ୍ନିରେ ସ୍ୱାହା କରିଦେବାକୁ ଉଦ୍ୟତ ହେଲା, ବ୍ରହ୍ମା ତାକୁ ଅଟକାଇ ଦେଇ କହିଲେ—''ଦାନବ ! ଏବେ ତୁ ବର ମାଗ । ସଂସାରରେ ଯାହା କିଛି ଦୁର୍ଲଭ ବସ୍ତୁ ପାଇବାକୁ ତୋ ମନରେ ଲାଳସା ଅଛି, ତାହା ମାଗ ।'' ପଦ୍ମଯୋନି ବ୍ରହ୍ମାଙ୍କ ବଚନ ଶୁଣି ଦୈତ୍ୟ ଅନ୍ଧକ ଦୈନ୍ୟଭାବରେ ନମ୍ରତାପୂର୍ବକ କହିଲା— ''ଭଗବନ୍ ! ଯେଉଁ ନିଷ୍ଠୁର ଦୈତ୍ୟମାନେ ମୋର ରାଜ୍ୟ ଛଡ଼ାଇ ନେଇଛନ୍ତି, ସେମାନେ ମୋର ଭୃତ୍ୟ ହୋଇଯାଆନ୍ତୁ; ମୋତେ ଦିବ୍ୟଚକ୍ଷୁ ପ୍ରାପ୍ତ ହେଉ; ଇନ୍ଦ୍ରାଦି ଦେବତା, ଦୈତ୍ୟ, ଗନ୍ଧର୍ବ, ଯକ୍ଷ, ନାଗ, ମନୁଷ୍ୟ, ଦୈତ୍ୟଙ୍କ ଶତ୍ରୁ ନାରାୟଣ, ସର୍ବମୟ ଶଙ୍କର ଓ ଅନ୍ୟାନ୍ୟ କୌଣସି ପ୍ରାଣୀଙ୍କ ଦ୍ୱାରା ମୋର ମୃତ୍ୟୁ ନ ହେଉ ।'' ତା'ର ଏଭଳି ଦାରୁଣ ବଚନକୁ ଶୁଣି ବ୍ରହ୍ମା ସଶଙ୍କିତ ହୋଇ କହିଲେ—

ବ୍ରହ୍ମା କହିଲେ—''ଦୈତ୍ୟେନ୍ଦ୍ର ! ତୋର ଏ ସମସ୍ତ କଥା ତ ପୂରଣ ହୋଇଯିବ, କିନ୍ତୁ ମୃତ୍ୟୁ ପାଇଁ ଯେମିତି ହେଲେ କୌଣସି କାରଣକୁ ନିଶ୍ଚୟ ବାଛିବାକୁ ପଡ଼ିବ । ଜଗତରେ ଏପରି କୌଣସି ପ୍ରାଣୀ ନାହିଁ, ନ ଥିଲା କି ହେବ ନାହିଁ, ଯେ କି କାଳର କବଳରୁ ମୁକ୍ତ ହୋଇଥିବ । ତା'ଛଡ଼ା ତୋ ପରି ସତ୍‌ପୁରୁଷ ତ ଅତ୍ୟଧିକ ଦୀର୍ଘାୟୁ ହେବାର କାମନା ବି ଛାଡ଼ି ଦେବା ଉଚିତ ।'' ବ୍ରହ୍ମାଙ୍କ ମୁଖରୁ ଏଭଳି ଅନୁନୟ ବଚନ ଶୁଣି ସେ କହିଲା—

ଅନ୍ଧକ କହିଲା—ପ୍ରଭୋ ! ତ୍ରିକାଳରେ ଯେତେ ସବୁ ଉତ୍ତମ, ମଧ୍ୟମ ଓ ନୀଚ ନାରୀ ସୃଷ୍ଟି ହୁଅନ୍ତି, ସେମାନଙ୍କ ମଧ୍ୟରୁ କେହି ଜଣେ ରତ୍ନସ୍ୱରୂପା ନାରୀ ମୋର ଜନନୀ ପରି ହେବ । ସେ ମର୍ତ୍ତ୍ୟମଣ୍ଡଳରେ ଦୁର୍ଲଭ ତଥା କାୟ-ମନ-ବଚନରେ ମଧ୍ୟ ଅଗମ୍ୟ ହୋଇଥିବ । ରାକ୍ଷସସ୍ୱଭାବ କାରଣରୁ ତା' ପ୍ରତି ଯେବେ ମୋର କାମଭାବନା ଉତ୍ପନ୍ନ ହୋଇଯିବ, ସେତେବେଳେ ଯାଇ ମୋର ବିନାଶ ହେବ । ତା' କଥା ଶୁଣି ସ୍ୱୟମ୍ଭୂ ବ୍ରହ୍ମାଙ୍କୁ ଘୋର ଆଶ୍ଚର୍ଯ୍ୟ ଲାଗିଲା । ସେ ଶିବଙ୍କ ପାଦପଦ୍ମକୁ ସ୍ମରଣ କଲେ । ଶମ୍ଭୁଙ୍କ ଆଜ୍ଞା ପାଇ ସେ ଅନ୍ଧକକୁ କହିଲେ—

ବ୍ରହ୍ମା କହିଲେ—''ଦୈତ୍ୟବର ! ତୁ ଯାହା କିଛି ଚାହୁଁଛୁ, ତାହା ପୂର୍ଣ୍ଣ ହେବ । ଦୈତ୍ୟେନ୍ଦ୍ର ! ଏବେ ତୁ ଉଠି ଯାଆ ଏବଂ ଆପଣା ଅଭୀଷ୍ଟ ଲାଭ କରି ସଦା ବୀରଙ୍କ ସହିତ ଯୁଦ୍ଧ କରୁଥାଅ ।'' ମୁନୀଶ ! ହିରଣ୍ୟାକ୍ଷପୁତ୍ର ଅନ୍ଧକ ଶରୀରରେ କେବଳ ଶିରାପ୍ରଶିରା ଓ ଅସ୍ଥି ହିଁ ଅବଶେଷ ରହିଥିଲା । ସେ ଲୋକେଶ୍ୱର ବ୍ରହ୍ମାଙ୍କ ବଚନକୁ ଶୁଣିବାମାତ୍ରେ ଭକ୍ତିପୂର୍ବକ ତାଙ୍କ ଚରଣରେ ଲୋଟିଗଲା ଏବଂ ଏହିପରି କହିଲା—

ଅନ୍ଧକ କହିଲା—ବିଭୋ ! ମୋ ଶରୀରରେ ତ କେବଳ ଅସ୍ଥି ଓ ଶିରାପ୍ରଶିରା ହିଁ ଅବଶେଷ ଅଛି, ଏ ପରିପ୍ରେକ୍ଷୀରେ ମୁଁ ଶତ୍ରୁସେନାଙ୍କ ଭିତରେ ପଶି ଯୁଦ୍ଧ କେମିତି କରିପାରିବି? ତେଣୁ ମୋର ଏ ଶରୀରକୁ ଆପଣଙ୍କ ପବିତ୍ର କରସ୍ପର୍ଶରେ ମାଂସଳ କରି ଦିଅନ୍ତୁ ।

ସନତ୍‌କୁମାର କହୁଛନ୍ତି—ମହର୍ଷେ ! ଅନ୍ଧକର

ପ୍ରାର୍ଥନା ଶୁଣି ବ୍ରହ୍ମା ତା'ର ଶରୀରକୁ ସ୍ପର୍ଶ କରିଦେଲେ ଏବଂ ତା'ପରେ ମୁନିଗଣ ଓ ସିଦ୍ଧଗଣଙ୍କ ଦ୍ୱାରା ପୂଜିତ ହୋଇ ଦେବଗଣଙ୍କ ସହିତ ସ୍ୱଧାମକୁ ଫେରିଗଲେ । ବ୍ରହ୍ମାଙ୍କ ସ୍ପର୍ଶ ପାଇବା ମାତ୍ରେ ଦୈତ୍ୟରାଜର ଶରୀର ସୁଗଠିତ ଓ ସୁନ୍ଦର ହୋଇଗଲା । ତା'ଠାରେ ବଳ ମଧ୍ୟ ଆସିଗଲା । ତାକୁ ନେତ୍ର ମିଳିଗଲା । ସେ ଆନନ୍ଦରେ ନିଜ ନଗରକୁ ଫେରିଗଲା । ସେତେବେଳେ ପ୍ରହ୍ଲାଦ ପ୍ରଭୃତି ଶ୍ରେଷ୍ଠ ଦାନବମାନେ ତାକୁ ବରପ୍ରାପ୍ତ ହୋଇ ଫେରିଥିବା ଜାଣି ସମଗ୍ର ରାଜ୍ୟ ଦେଇଦେଲେ ଏବଂ ତା'ର ବଶବର୍ତ୍ତୀ ଭୃତ୍ୟ ହୋଇ ରହିଲେ ।

ଏହାପରେ ଅନ୍ଧକ ତା'ର ସେନା ଓ ଭୃତ୍ୟବର୍ଗଙ୍କୁ ସଙ୍ଗରେ ଧରି ସ୍ୱର୍ଗ ଜୟ କରିବାକୁ ବାହାରିଗଲା । ସେଠାରେ ସଂଗ୍ରାମରେ ସମସ୍ତ ଦେବତାଙ୍କୁ ପରାଜିତ କରି ବଜ୍ରଧାରୀ ଇନ୍ଦ୍ରଙ୍କୁ ନିଜର କରଦାତା କରିନେଲା । ସେ ନାନା ସ୍ଥାନରେ ଅନେକ ଯୁଦ୍ଧ କରି ନାଗ, ସୁପର୍ଣ୍ଣ, ଶ୍ରେଷ୍ଠ ରାକ୍ଷସ, ଗନ୍ଧର୍ବ, ଯକ୍ଷ, ମନୁଷ୍ୟ, ବଡ଼ ବଡ଼ ପର୍ବତ, ବୃକ୍ଷ ଓ ସିଂହ ଆଦି ଚତୁଷ୍ପଦଙ୍କୁ ମଧ୍ୟ ଜିଣିଗଲା । ଏପରିକି ସେ ସମଗ୍ର ତ୍ରୈଲୋକ୍ୟକୁ ମଧ୍ୟ ନିଜର ଅଧୀନ କରିନେଲା । ଏହାପରେ ରସାତଳରେ, ଭୂତଳରେ, ସ୍ୱର୍ଗରେ ଯେତେ ବି ସୁନ୍ଦରୀ ନାରୀ ଥିଲେ, ସେମାନଙ୍କ ମଧ୍ୟରୁ ହଜାର ହଜାର ସଂଖ୍ୟାରେ ଅତ୍ୟନ୍ତ ରୂପବତୀ ଓ ନିଜ ମନୋନୁକୂଳ ନାରୀଙ୍କୁ ସାଥିରେ ନେଇ ବିଭିନ୍ନ ରମଣୀୟ ପର୍ବତ ଓ ନଦୀତଟରେ ବିହାର କରିବାକୁ ଲାଗିଲା । ଦୈତ୍ୟରାଜ ଅନ୍ଧକ ସର୍ବଦା ଦୁଷ୍ଟଙ୍କ ମେଳରେ ରହୁଥିଲା । ସେ ଅତ୍ୟନ୍ତ ମଦାନ୍ଧ ହୋଇଯାଇଥିଲା, ଯାହା ଫଳରେ ତା'ର ଏ ଜ୍ଞାନ ରହିଲା ନାହିଁ ଯେ ପରଲୋକରେ ଆତ୍ମାକୁ ସୁଖ ଦେବା ଭଳି କିଛି କର୍ମ କରିବା ଉଚିତ । ଏହି ପ୍ରକାରେ ମହାମନସ୍ୱୀ ଅନ୍ଧକ ଉନ୍ମତ୍ତ ହୋଇ, ନିଜର ସମସ୍ତ ପ୍ରଧାନ ପ୍ରଧାନ ପୁତ୍ରଙ୍କୁ କୁତର୍କବାଦରେ ପରାସ୍ତ କରିବା ସହିତ ସମସ୍ତ ବୈଦିକ ଧର୍ମକୁ ବିନାଶ କରି କରି ଦୈତ୍ୟମାନଙ୍କ ମେଳରେ ବିଚରଣ କଲା । ସେ ଧନମଦରେ ଉନ୍ମତ୍ତ ହୋଇ ବେଦ, ଦେବତା, ବ୍ରାହ୍ମଣ, ଗୁରୁ ପ୍ରଭୃତି କାହାରିକୁ ମାନିଲା ନାହିଁ । ପ୍ରାରବ୍ଧବଶତଃ ତାହାର ଆୟୁ ସମାପ୍ତ ହୋଇ ଆସିଥିଲା; ତେଣୁ ସେ ସ୍ୱେଚ୍ଛାଗ୍ରହରେ ପ୍ରବୃତ୍ତ ହୋଇ ବୃଥାରେ ନିଜର ଅବଶିଷ୍ଟ ଆୟୁକୁ ମଧ୍ୟ ନଷ୍ଟ କରିଦେଲା । ତାହାର ଦୁର୍ଯ୍ୟୋଧନ, ବୈଧସ ଓ ହସ୍ତୀ ନାମଧାରୀ ତିନିଜଣ ମନ୍ତ୍ରୀ ଥିଲେ । ଥରେ ଏ ତିନିଜଣ କୌଣସି ରମଣୀୟ ସ୍ଥାନରେ ଗୋଟିଏ ପରମ ରୂପବତୀ ନାରୀକୁ ଦେଖିଲେ । ତାକୁ ଦେଖି ଏହି ଦ୍ରୁତଗାମୀ ଦୈତ୍ୟମାନେ ଆନନ୍ଦରେ ତୁରନ୍ତ ମହାଦୈତ୍ୟାଧିପତି ବୀରବର ଅନ୍ଧକ ପାଖକୁ ଆସି ସେଠାରେ ଦେଖିଥିବା ଘଟଣା ବର୍ଣ୍ଣନା କଲେ ।

ମନ୍ତ୍ରୀମାନେ କହିଲେ–ଦୈତ୍ୟେନ୍ଦ୍ର ! ଗୋଟିଏ ଗୁମ୍ଫା ଭିତରେ ଆମେ ଗୋଟିଏ ମୁନିକୁ ଦେଖିଛୁ । ସେ ଆଖି ବନ୍ଦ କରି ଧ୍ୟାନ କରୁଛି, ତାହାର ରୂପ ଅତି ସୁନ୍ଦର । ତାହାର ମସ୍ତକ ଉପରେ ଅର୍ଦ୍ଧଚନ୍ଦ୍ରର କଳା ଆପଣା ଶୋଭା ବିଚ୍ଛୁରିତ କରୁଛି ଏବଂ ସେ କଟିରେ ଗଜେନ୍ଦ୍ରର ଚର୍ମ ପିନ୍ଧିଛି । ବଡ଼ ବଡ଼ ନାଗ ତାହାର ସମଗ୍ର ଶରୀରରେ ଗୁଡ଼େଇ ହୋଇ ରହିଛନ୍ତି । ଖପୁରିର ମାଳା ହିଁ ସେହି ଜଟାଧାରୀର ଭୂଷଣ । ତା' ହାତରେ ଅଛି ଗୋଟିଏ ତ୍ରିଶୂଳ ଓ ଗୋଟିଏ ବିଶାଳ ଧନୁ । ସେ ଶର ଓ ତୂଣୀର ମଧ୍ୟ ଧାରଣ କରିଛି । ତା'ର ଅକ୍ଷସୂତ୍ର ସ୍ପଷ୍ଟ ଦୃଶ୍ୟମାନ ହେଉଛି । ତା'ର ଚାରିଟି ଭୁଜ ଓ ଲମ୍ବା ଲମ୍ବା ଜଟା ଅଛି । ସେ ଖଡ଼୍ଗ, ତ୍ରିଶୂଳ ଓ ଦଣ୍ଡ ଧାରଣ କରିଛି । ତା'ର ବର୍ଣ୍ଣ ଅତ୍ୟନ୍ତ ଗୌର ଏବଂ ସର୍ବାଙ୍ଗରେ ଭସ୍ମ ଲେପିତ ହୋଇଛି । ସେ ଆପଣା ପରମ ଉତ୍କୃଷ୍ଟ ତେଜରେ ସୁଶୋଭିତ ହେଉଛି । ସେହି ଶ୍ରେଷ୍ଠ ତପସ୍ୱୀର ବେଶ ଅତ୍ୟନ୍ତ

ଅଦ୍ଭୁତ । ତାହାର ଅଳ୍ପ କିଛି ଦୂରରେ ବିକରାଳ ବାନର ଆକୃତିର ଆଉ ଜଣେ ପୁରୁଷକୁ ଦେଖିଲୁ । ତାହାର ମୁଖ ଅତି ଭୟଙ୍କର । ସେ ସମସ୍ତ ଆୟୁଧ ଧାରଣ କରିଛି, ମାତ୍ର ତାର ହାତ ରୁକ୍ଷ । ସେ ସେହି ତପସ୍ୱୀର ରକ୍ଷାରେ ତତ୍ପର ରହିଥାଏ । ତା' ପାଖରେ ଗୋଟିଏ ଧଳା ରଙ୍ଗର ବୁଢ଼ା ବଳଦ ମଧ୍ୟ ଅଛି । ତପସ୍ୱୀର ପାର୍ଶ୍ୱଭାଗରେ ଆମେ ଗୋଟିଏ ଶୁଭଲକ୍ଷଣା ନାରୀକୁ ବି ଦେଖିଲୁ । ସେ ଭୂମଣ୍ଡଳରେ ରତ୍ନସ୍ୱରୂପା ଅଟେ । ତା'ର ରୂପ ଅତ୍ୟନ୍ତ ମନୋରମ ଓ ତରୁଣୀ ହୋଇଥିବା ହେତୁ ମନକୁ ମୋହି ନେଉଛି । ପ୍ରବାଳ, ମୋତି, ମଣି, ସୁବର୍ଣ୍ଣ, ରତ୍ନ ଓ ଉତ୍ତମ ବସ୍ତ୍ରରେ ସେ ସୁସଜ୍ଜିତା । ସେ ଗଳାରେ ସୁନ୍ଦର ସୁନ୍ଦର ମାଳା ପିନ୍ଧିଛି । ସେ ଏତେ ସୁନ୍ଦରୀ ଯେ କେହି ଯଦି ଥରେ ତାକୁ ଦେଖିଦେଲା, ଜାଣନ୍ତୁ ଯେ ତା'ର ନେତ୍ର ସଫଳ ହୋଇଗଲା ଏବଂ ତା'ର ଜଗତରେ ଅନ୍ୟ କିଛି ଦେଖିବାରେ କୌଣସି ପ୍ରୟୋଜନ ରହିଯିବ ନାହିଁ । ସେହି ଦିବ୍ୟ ନାରୀ ପୁଣ୍ୟାତ୍ମା ମୁନିବର ମହେଶଙ୍କ ମାନ୍ୟା ଓ ପ୍ରିୟତମା ଭାର୍ଯ୍ୟା । ଦୈତ୍ୟେନ୍ଦ୍ର ! ଆପଣ ତ ଉତ୍ତମୋତ୍ତମ ରତ୍ନର ଉପଭୋଗ କରିଥାନ୍ତି । ତେଣୁ ତାକୁ ଏଠାକୁ ଡକାଇ ଦେଖନ୍ତୁ । ସେ ଆପଣଙ୍କ ପାଇଁ ଅବଶ୍ୟ ଦେଖିବାର ଯୋଗ୍ୟ ।

ସନତ୍କୁମାର କହୁଛନ୍ତି–ହେ ମୁନିଶ୍ରେଷ୍ଠ ! ମନ୍ତ୍ରୀମାନଙ୍କ କଥା ଶୁଣି ଦୈତ୍ୟରାଜ ଅନ୍ଧକ କାମାତୁର ହୋଇଗଲା । ତା'ର ସମଗ୍ର ଶରୀର କାମାବେଶରେ ଥର ଥର କମ୍ପିଲା । ସେ ତୁରନ୍ତ ଦୁର୍ଯ୍ୟୋଧନ ପ୍ରଭୃତି ମନ୍ତ୍ରୀଙ୍କୁ ସେହି ମୁନିଙ୍କ ପାଖକୁ ପଠାଇଲା । ମନ୍ତ୍ରୀମାନେ ସେଠାକୁ ଯାଇ ମୁନୀଶ୍ୱରଙ୍କୁ (ଶିବଙ୍କୁ) ପ୍ରଣାମ କରି ତାଙ୍କୁ ଅନ୍ଧକାସୁରର ସନ୍ଦେଶ ଶୁଣାଇଦେଲେ ଏବଂ ବଦଳରେ ଶିବଙ୍କ ଉତ୍ତର ଶୁଣି ଆସି ଅନ୍ଧକକୁ କହିଲେ ।

ମନ୍ତ୍ରୀମାନେ କହିଲେ–ରାଜନ୍ ! ଆପଣ ତ ସମସ୍ତ ଦୈତ୍ୟମାନଙ୍କର ସ୍ୱାମୀ, ତଥାପି ସେହି ମହାପରାକ୍ରମୀ ବୀରବର ତପସ୍ୱୀ ମୁନି ନିଜ ବୁଦ୍ଧିରେ ତ୍ରିଲୋକକୁ ତୃଣ ପରି ତୁଚ୍ଛ ମଣୁଛନ୍ତି । ସେ ହସି ହସି ଆପଣଙ୍କ ପାଇଁ ଏହି କଥା କହିଛନ୍ତି । ସେ କହିଛନ୍ତି–''ସେ ନିଶାଚରଟାର ଶୌର୍ଯ୍ୟ ଓ ଧୈର୍ଯ୍ୟ ଅସ୍ଥିର । ସେ ଦାନବଟା କୃପଣ, ସତ୍ତ୍ୱହୀନ, କ୍ରୂର, କୃତଘ୍ନ ଓ ସଦା ପାପକର୍ମପରାୟଣ । ତାକୁ କ'ଣ ସୂର୍ଯ୍ୟପୁତ୍ର ଯମରାଜଙ୍କ ପ୍ରତି ଭୟ ନାହିଁ?'' ସେ ପୁଣି ଆପଣଙ୍କୁ କହିଛନ୍ତି–''କାହିଁ ମୁଁ ଆଉ ମୋର ଦାରୁଣ ଶସ୍ତ୍ର ଓ ମୃତ୍ୟୁକୁ ମଧ୍ୟ ସଂତ୍ରସ୍ତ କରିଦେଉଥିବା ଯୁଦ୍ଧ, ଆଉ କାହିଁ ତୋ ପରି ବାନରମୁଖ ଭୀରୁ ନିଶାଚର, ଯାହାର ସମସ୍ତ ଅଙ୍ଗ ବୃଦ୍ଧାବସ୍ଥା ହେତୁ ଜର୍ଜର ! କାହିଁ ମୋର ଏହି ସ୍ୱରୂପ, ଆଉ କାହିଁ ତୋର ମନ୍ଦଭାଗ୍ୟତା ! ତୋର ସେନା ମଧ୍ୟ ନଗଣ୍ୟ । ତଥାପି ଯଦି ତୋ ଠାରେ କିଛି ସାମର୍ଥ୍ୟ ଥାଏ, ତେବେ ଯୁଦ୍ଧକୁ ଆସି ତାହାର ପ୍ରମାଣ ଦେ । ମୋ ପାଖରେ ତୋ ପରି ପାପୀଙ୍କୁ ବିନାଶ କରିବାକୁ ବଜ୍ରପରି ଭୟଙ୍କର ଶସ୍ତ୍ର ରହିଛି, ଆଉ ତୋର ଶରୀର ତ ପଦ୍ମପରି କୋମଳ । ଏ ସ୍ଥିତିରେ ବିଗ୍ରହ କରି ତୋତେ ଯାହା ଭଲ ଲାଗୁଛି, ତାହା କର ।''

ସନତ୍କୁମାର କହୁଛନ୍ତି–ହେ ମୁନିବର ! ମନ୍ତ୍ରୀମାନଙ୍କ କଥା ଶୁଣି ମାତା ପାର୍ବତୀଙ୍କ ରୂପରେ ମୋହିତ ହୋଇଥିବା ସେହି କାମାନ୍ଧ ରାକ୍ଷସ ବିଶାଳ ସେନା ନେଇ ବାହାରି ପଡ଼ିଲା । ସେଠାରେ ପହଞ୍ଚି ନନ୍ଦୀଶ୍ୱରଙ୍କ ସଙ୍ଗେ ଯୁଦ୍ଧ କଲା । ବଡ଼ ଭୟାନକ ଯୁଦ୍ଧ ହେଲା । ସେତେବେଳେ ଯୁଦ୍ଧସ୍ଥଳ ଚର୍ବି, ମଜ୍ଜା, ମାଂସ ଓ ରକ୍ତର କାଦୁଅରେ ବ୍ୟାପ୍ତ ହୋଇଗଲା । ମୁଣ୍ଡବିହୀନ ଗଣ୍ଡିଗୁଡ଼ାକ ନାଚୁଥିଲେ ଏବଂ କଞ୍ଚାମାଂସ ଭକ୍ଷଣକାରୀ ପ୍ରାଣୀମାନେ

ଗ୍ୱରିଆଡ଼େ ଦେଖାଯାଉଥିଲେ, ଯାହାଫଳରେ ରଣାଙ୍ଗନ ଭୟଙ୍କର ଲାଗୁଥିଲା । କିଛି ସମୟ ମଧ୍ୟରେ ଦୈତ୍ୟମାନେ ହାରିଗଲେ । ତା'ପରେ ପିନାକଧାରୀ ଶଙ୍କର ଦାକ୍ଷାୟଣୀଙ୍କୁ ଭଲଭାବରେ ବୁଝାଇ ଧୈର୍ଯ୍ୟ ଦେଇ କହିଲେ—''ପ୍ରିୟେ ! ମୁଁ ପୂର୍ବେ ଯେଉଁ ପାଶୁପତ ବ୍ରତ ଅନୁଷ୍ଠାନ କରିଥିଲି, ସେଥିରେ ରାତିଦିନ ତୁମ ପ୍ରସଙ୍ଗରେ ମଜ୍ଜି ରହିବାରୁ ମୋର ସେନାଙ୍କର ଯେଉଁ ବିନାଶ ହୋଇଛି, ଏହା ବିଘ୍ନ ପରି ଆସି ପଡ଼ିଲା । ହେ ଦେବୀ! ମରଣଧର୍ମା ପ୍ରାଣୀଙ୍କର ଅମରଗଣଙ୍କ ଉପରେ ଆକ୍ରମଣ ହୋଇଛି, ଏହା ଜାଣ ଯେ କୌଣସି ପୁଣ୍ୟନାଶକାରୀ ଗ୍ରହ ପ୍ରକଟ ହୋଇଛି । ତେଣୁ ଏବେ ମୁଁ ପୁନଃ କୌଣସି ନିର୍ଜନ ବନକୁ ଯାଇ ସେହି ପରମ ଅଦ୍ଭୁତ ଦିବ୍ୟ ବ୍ରତର ଦୀକ୍ଷା ନେବି ଓ ସେହି କଠିନ ବ୍ରତର ଅନୁଷ୍ଠାନ କରିବି । ହେ ସୁନ୍ଦରୀ! ତୁମେ ଶୋକ ଓ ଭୟ ନ କରିବା ଉଚିତ ।''

ସନତ୍‌କୁମାର କହୁଛନ୍ତି—ମୁନେ ! ଏତିକି କହି ପରମ ତେଜସ୍ୱୀ ମହାତ୍ମା ଶଙ୍କର ଅନୁଚ୍ଚସ୍ୱରରେ ନିଜର ଶିଙ୍ଗା ବଜାଇ ଗୋଟିଏ ପବିତ୍ର ଗହନ ବନକୁ ଗ୍ୱଲିଗଲେ । ସେଠାରେ ସେ ହଜାରେ ବର୍ଷ ପର୍ଯ୍ୟନ୍ତ ପାଶୁପତ ବ୍ରତ ଅନୁଷ୍ଠାନରେ ଏଭଳି ତତ୍ପର ରହିଲେ, ଯାହା କରିବା ଦେବତା ଓ ଅସୁରଙ୍କ ଶକ୍ତିର ବାହାରେ । ଏଣେ ଶୀଳଗୁଣସମ୍ପନ୍ନା ପତିବ୍ରତା ଦେବୀ ପାର୍ବତୀ ମନ୍ଦରାଚଳରେ ରହି ଶିବଙ୍କ ଆଗମନର ପ୍ରତୀକ୍ଷା କରୁଥିଲେ । ଯଦ୍ୟପି ପୁତ୍ରସ୍ଥାନୀୟ ବୀରକ ତାଙ୍କ ସୁରକ୍ଷାରେ ଥିଲେ, ତଥାପି ଗୁହା ଭିତରେ ଏକୁଟିଆ ରହୁଥିବା ହେତୁ ସେ ସଦା ଭୟଭୀତ ରହୁଥିଲେ ଏବଂ ଏହାଫଳରେ ତାଙ୍କୁ ଦୁଃଖ ହେଉଥିଲା । ଇତିମଧ୍ୟରେ ବରଦାନ ପ୍ରଭାବରେ ଉନ୍ମତ୍ତ ଦୈତ୍ୟ ଅନ୍ଧକ, ଯାହାର ଧୈର୍ଯ୍ୟ କାମଦେବଙ୍କ ବାଣରେ ଛିନ୍ନଭିନ୍ନ ହୋଇଯାଇଥିଲା, ସେ ଆପଣା ମୁଖ୍ୟ ମୁଖ୍ୟ ଯୋଦ୍ଧାଙ୍କୁ ସାଙ୍ଗରେ ନେଇ ପୁନଃ ସେହି ଗୁମ୍ଫା ଉପରେ ଆକ୍ରମଣ କରିଦେଲା । ସେ ସସୈନ୍ୟ ଆସି ବୀରକଙ୍କ ସଙ୍ଗେ ଅତ୍ୟନ୍ତ ଅଦ୍ଭୁତ ଯୁଦ୍ଧ କଲା । ସେତେବେଳେ ସମସ୍ତ ବୀର ଅନ୍ନ, ଜଳ ଓ ନିଦ୍ରା ପରିତ୍ୟାଗ କରି ଯୁଦ୍ଧ କରୁଥିଲେ । ସେହି ଯୁଦ୍ଧ ରାତିଦିନ ଲଗାତର ପାଞ୍ଚଶହପାଞ୍ଚ ଦିନ ପର୍ଯ୍ୟନ୍ତ ଗ୍ୱଲିଲା । ଶେଷରେ ଦୈତ୍ୟଙ୍କ ଆୟୁଧ ପ୍ରହାରରେ ନନ୍ଦୀଶ୍ୱର ଆହତ ହୋଇଗଲେ, ଫଳରେ ସେ ମୂର୍ଚ୍ଛିତ ହୋଇ ଗୁହାର ଦ୍ୱାରଦେଶରେ ପଡ଼ିଗଲେ । ସେ ପଡ଼ିଯିବାରୁ ତାଙ୍କ ଶରୀରଦ୍ୱାରା ଗୁହାଦ୍ୱାର ବନ୍ଦ ହୋଇଗଲା, ଯାହାକୁ ଖୋଲିବା ଅସମ୍ଭବ ଥିଲା । ତା'ପରେ ଦୈତ୍ୟମାନଙ୍କ ଅସ୍ତ୍ରଶସ୍ତ୍ରରେ ମୁହୂର୍ତ୍ତକ ପାଇଁ ବୀରକ ଢାଙ୍କି ହୋଇଗଲେ । ପାର୍ବତୀ ଭଗବାନ ବିଷ୍ଣୁ ଓ ବ୍ରହ୍ମାଙ୍କୁ ସ୍ମରଣ କଲେ । ସେ ସ୍ମରଣ କରିବା ମାତ୍ରେ ସମସ୍ତ ଦେବତା, ଯକ୍ଷ, ସିଦ୍ଧ, ଗୁହ୍ୟକ, ପ୍ରଭୃତି ବ୍ରାହ୍ମୀ, ନାରାୟଣୀ, ଐନ୍ଦ୍ରୀ, ବୈଶ୍ୱାନରୀ, ଯାମ୍ୟା, ନୈର୍ଋତି, ବାରୁଣୀ, ବାୟବୀ, କୌବେରୀ, ଯକ୍ଷେଶ୍ୱରୀ, ଗାରୁଡ଼ୀ ଇତ୍ୟାଦି ଦେବୀଙ୍କ ରୂପରେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ତଥା ନିଜ ନିଜ ବାହନରେ ଆରୂଢ଼ ହୋଇ ପାର୍ବତୀଙ୍କ ନିକଟରେ ପହଞ୍ଚିଗଲେ ଏବଂ ରାକ୍ଷସଙ୍କ ସଙ୍ଗେ ଯୁଝିବାକୁ ଲାଗିଲେ । କିଛି କ୍ଷଣ ମଧ୍ୟରେ ଶିବ ମଧ୍ୟ ପହଞ୍ଚିଗଲେ । ଭୀଷଣ ଯୁଦ୍ଧ ହେଲା । ତା'ପରେ ଭୂତନାଥ ଶିବ ଦେଖିଲେ ଯେ ଶୁକ୍ରାଗ୍ୱର୍ଯ୍ୟ ଦୈତ୍ୟମାନଙ୍କୁ ସଂଜୀବନୀ ବିଦ୍ୟାଦ୍ୱାରା ଜୀବିତ କରିଦେଉଛନ୍ତି, ତେଣୁ ସେ ଶୁକ୍ରାଗ୍ୱର୍ଯ୍ୟଙ୍କୁ ଗିଳିଦେଲେ । ଏହା ଫଳରେ ଦୈତ୍ୟଗଣ ଶିଥିଳ ପଡ଼ିଗଲେ ।

ବ୍ୟାସଦେବ ! ଅନ୍ଧକ ଥିଲା ମହାପରାକ୍ରମୀ, ବୀର ଓ ତ୍ରିପୁରହନ୍ତା ଶିବଙ୍କ ପରି ଅତ୍ୟନ୍ତ ବୁଦ୍ଧିମାନ୍ । ଶହ ଶହ ବରଦାନ ପାଇଥିବାରୁ

ସେ ଉନ୍ମତ୍ତ ହୋଇଯାଇଥିଲା । ବହୁସଂଖ୍ୟକ ଅସ୍ତ୍ରଶସ୍ତ୍ରରେ ତା'ର ଶରୀର ଜର୍ଜର ହୋଇ-ଯାଇଥିଲେ ମଧ୍ୟ ସେ ଶିବଙ୍କ ଉପରେ ବିଜୟୀ ହେବା ପାଇଁ ଅନ୍ୟ ଏକ ମାୟା ରଚିଲା । ଭୂତନାଥ ତ୍ରିପୁରାରି ଯେତେବେଳେ ପ୍ରଳୟକାଳୀନ ଅଗ୍ନିତୁଲ୍ୟ ଶରୀର ଧାରଣ କରି ତ୍ରିଶୂଳରେ ତା'ର ଦେହକୁ ଫୋଡ଼ି ପକାଇଲେ, ସେତେବେଳେ ତା' ଦେହରୁ ଝରି ଭୂମିରେ ପଡୁଥିବା ରକ୍ତବିନ୍ଦୁମାନଙ୍କରୁ ଦଳ ଦଳ ଅନ୍ଧକ ସୃଷ୍ଟି ହୋଇଗଲେ । ଉକ୍ତ ମାୟାସୃଷ୍ଟ ଅନ୍ଧକମାନେ ସମଗ୍ର ରଣଭୂମିରେ ବ୍ୟାପ୍ତ ହୋଇଗଲେ । ସେହି ବିକୃତ ମୁଖଯୁକ୍ତ ଭୟଙ୍କର ରାକ୍ଷସମାନେ ଅନ୍ଧକ ପରି ପରାକ୍ରମୀ ଥିଲେ । ଏହାଛଡ଼ା ପଶୁପତିଙ୍କ ଦ୍ୱାରା ନିହତ ହେଉଥିବା ସୈନିକଙ୍କ କ୍ଷତରୁ ଯେଉଁ ଉଷ୍ମ ରକ୍ତ ବହୁଥିଲା, ସେଥିରୁ ମଧ୍ୟ ଅନେକ ସୈନିକ ଉତ୍ପନ୍ନ ହେଉଥିଲେ । ଏହା ଦେଖି ଏବଂ ଅନେକ ଭୁଜରୂପୀ ଲତାଦ୍ୱାରା ଆକ୍ରାନ୍ତ ହୋଇ ବୁଦ୍ଧିମାନ୍ ବିଷ୍ଣୁ କୁପିତ ହୋଇଗଲେ । ସେ ପ୍ରମଥନାଥ ଶିବଙ୍କୁ ଡାକି ନିଜେ ଯୋଗବଳରେ ଏପରି ଏକ ଅଜେୟ ସ୍ତ୍ରୀରୂପ ଧାରଣ କଲେ, ଯାହାର ମୁଖ ଥିଲା ବିକୃତ, ଉଗ୍ର ଏବଂ ଶରୀର ଥିଲା ବିକରାଳ କଙ୍କାଳମାତ୍ର । ସେହି ଦେବୀ ଶମ୍ଭୁଙ୍କ କାନରୁ ବାହାରି ଥିଲେ । ସେ ରଣଭୂମିରେ ଉପସ୍ଥିତ ହୋଇ ତାଙ୍କ ପାଦଯୁଗଳରେ ପୃଥିବୀକୁ ଅଳଂକୃତ କରିବାରୁ ସମସ୍ତ ଦେବତା ତାଙ୍କୁ ସ୍ତୁତି କଲେ । ତା'ପରେ ଭଗବାନ ତାଙ୍କ ବୁଦ୍ଧିକୁ ପ୍ରେରିତ କଲେ, ଯାହାଫଳରେ ସେ କ୍ଷୁଧାର୍ତ୍ତ ହୋଇ ରଣାଙ୍ଗନରେ ସୈନିକଗଣଙ୍କର ତଥା ଦୈତ୍ୟରାଜର ଶରୀରରୁ ବାହାରୁଥିବା ଉଷ୍ମ ରକ୍ତକୁ ପିଇଗଲେ । (ଏହାଫଳରେ ରାକ୍ଷସ ଉତ୍ପନ୍ନ ହେବା ବନ୍ଦ ହୋଇଗଲା ।) ଶେଷରେ ଏକମାତ୍ର ଅନ୍ଧକ ହିଁ ରହିଗଲା । ଯଦ୍ୟପି ତା'ର ଶରୀରରୁ ରକ୍ତ ଶୁଖି ଯାଇଥିଲା, ତଥାପି ସେ ନିଜ କୁଳୋଚିତ ସନାତନ କ୍ଷାତ୍ରଧର୍ମକୁ ସ୍ମରଣ କରି ହାତରେ ଭୟଙ୍କର ଗୃପୁଡ଼ା ମାରି, ବଜ୍ରସଦୃଶ ଜଙ୍ଘ ଓ ପାଦରେ, ବଜ୍ରାକାର ନଖରେ ଏବଂ ମୁଖ, ଭୁଜ ଓ ମୁଣ୍ଡ ଦ୍ୱାରା ଆଘାତ କରି ଅବିନାଶୀ ଶିବଙ୍କ ସଙ୍ଗେ ସଂଗ୍ରାମ କଲା । ଏହାପରେ ପ୍ରମଥନାଥ ଶିବ ରଣଭୂମିରେ ତା'ର ହୃଦୟ ବିଦୀର୍ଣ୍ଣ କରି ତାକୁ ନିସ୍ତେଜ କରିଦେଲେ ଏବଂ ତ୍ରିଶୂଳରେ ଫୋଡ଼ିଦେଇ ତାକୁ ସ୍ଥାଣୁ ପରି ଉପରକୁ ଟେକିଦେଲେ । ତା'ର ଜର୍ଜର ଶରୀର ତଳକୁ ଓହଳି ରହିଲା । ଭଗବାନ ତାକୁ ସୂର୍ଯ୍ୟଙ୍କ କିରଣରେ ଶୁଖାଇ ଦେଲେ । ତୁହା ତୁହା ପବନରେ ମେଘମାନ ଆସି ମୁଷଳାଧାର ଜଳ ବର୍ଷା କରି ତାକୁ ଓଦା କରିଦେଲେ । ହିମଖଣ୍ଡ ସମ ଶୀତଳ ଚନ୍ଦ୍ରକିରଣ ତାକୁ ବିଶୀର୍ଣ୍ଣ କରିଦେଲା । ତଥାପି ଦୈତ୍ୟରାଜର ପ୍ରାଣ ଗଲା ନାହିଁ । ସେ ଶିବଙ୍କୁ ବିଶେଷରୂପେ ସ୍ତୁତି କଲା । ତା' ସ୍ତୁତିରେ ଅଗାଧ କରୁଣାର ସାଗର ଶମ୍ଭୁ ପ୍ରସନ୍ନ ହୋଇଗଲେ ଏବଂ ତାକୁ ଗଣାଧ୍ୟକ୍ଷପଦ ପ୍ରଦାନ କଲେ । ଯୁଦ୍ଧ ସମାପ୍ତ ହୋଇଯିବା ପରେ ଲୋକପାଳମାନେ ନାନା ପ୍ରକାର ସାରଗର୍ଭିତ ସ୍ତୋତ୍ର ଦ୍ୱାରା ବିଧିପୂର୍ବକ ଶିବଙ୍କୁ ଅର୍ଚ୍ଚନା କଲେ ଏବଂ ବ୍ରହ୍ମା, ବିଷ୍ଣୁ ଆଦି ଦେବତା ନତମସ୍ତକ ହୋଇ ସହର୍ଷ ଉତ୍ତମ ସ୍ତୋତ୍ର ଦ୍ୱାରା ସ୍ତୁତି କରିବା ସଙ୍ଗେ ସଙ୍ଗେ ଜୟ-ଜୟ ଧ୍ୱନି କରି ଆନନ୍ଦ ଉତ୍ସବ କଲେ । ତା'ପରେ ଶିବ ସେ ସମସ୍ତଙ୍କୁ ସଙ୍ଗରେ ନେଇ ଆନନ୍ଦରେ ଗିରିରାଜଙ୍କ ଗୁମ୍ଫାକୁ ଫେରିଗଲେ । ସେଠାରେ ସେ ନିଜ ଅଂଶଭୂତ ପୂଜନୀୟ ଦେବତାଙ୍କୁ ନାନା ପ୍ରକାର ଉପହାର ସମର୍ପିତ କରି ସେମାନଙ୍କୁ ବିଦାୟ ଦେଲେ ଏବଂ ନିଜେ ପ୍ରମୁଦିତ ହୋଇ ଗିରିରାଜକୁମାରୀଙ୍କ ସଙ୍ଗେ ଉତ୍ତମ ଉତ୍ତମ ଲୀଳାମାନ କରିବାକୁ ଲାଗିଲେ ।

(ଅଧ୍ୟାୟ ୪୪–୪୬)

★★★

# ନନ୍ଦୀଶ୍ୱରଙ୍କ ଦ୍ୱାରା ଶୁକ୍ରାଚାର୍ଯ୍ୟଙ୍କ ଅପହରଣ ଓ ଶିବ ତାଙ୍କୁ ଗିଳିଦେବା ପ୍ରସଙ୍ଗର ବିସ୍ତୃତ ବର୍ଣ୍ଣନା, ଶହେବର୍ଷ ପରେ ଶିବଙ୍କ ଲିଙ୍ଗମାର୍ଗ ଦେଇ ଶୁକ୍ରାଚାର୍ଯ୍ୟଙ୍କର ବହିରାଗମନ, ଶିବଙ୍କ ଦ୍ୱାରା ତାଙ୍କର 'ଶୁକ୍ର' ନାମକରଣ, ଶୁକ୍ର ଜପିଥିବା ମୃତ୍ୟୁଞ୍ଜୟ ମନ୍ତ୍ର ଓ ଶିବଙ୍କ ଅଷ୍ଟୋତ୍ତରଶତନାମ ସ୍ତୋତ୍ରର ବର୍ଣ୍ଣନା ଏବଂ ଶିବଙ୍କ ଠାରୁ ଅନ୍ଧକକୁ ବରପ୍ରାପ୍ତି

ବ୍ୟାସଦେବ ପଚାରିଲେ–ମହାବୁଦ୍ଧିମାନ୍ ସନତ୍‌କୁମାର ! ପୂର୍ବୋକ୍ତ ମହାଭୟଙ୍କର ଯୁଦ୍ଧ ଚାଲିଥିବାବେଳେ ତ୍ରିପୁରାରି ଶିବ ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ଗିଳି ପକାଇଥିଲେ । ସେହି ଘଟଣାକୁ ମୁଁ ସଂକ୍ଷେପରେ ଶୁଣିଲି । ଏବେ ବିସ୍ତୃତରୂପେ ତାହା ବର୍ଣ୍ଣନା କରନ୍ତୁ । ପିନାକଧାରୀ ଶିବଙ୍କ ଉଦରକୁ ଯାଇ ମହାଯୋଗୀ ଶୁକ୍ରାଚାର୍ଯ୍ୟ କ'ଣ କଲେ? ଶମ୍ଭୁଙ୍କ ଜଠରାଗ୍ନି ତାଙ୍କୁ ହଜମ କରିଦେଲା ନାହିଁ କାହିଁକି? ଭୃଗୁନନ୍ଦନ ଶୁକ୍ର ମଧ୍ୟ କଳ୍ପାନ୍ତକାଳୀନ ଅଗ୍ନି ପରି ଉଗ୍ରତେଜସମ୍ପନ୍ନ ଥିଲେ, ସେ ଶମ୍ଭୁଙ୍କ ଜଠରପଞ୍ଜରରୁ କିପରି ବାହାରିଲେ? ସେ କିପରି ଓ କେତେକାଳ ପର୍ଯ୍ୟନ୍ତ ଆରାଧନା କରିଥିଲେ? ତାତ ! ତାଙ୍କୁ ଯେଉଁ ମୃତ୍ୟୁଶମନକାରୀ ପରାବିଦ୍ୟା ପ୍ରାପ୍ତ ହୋଇଥିଲା, ତାହା କେଉଁ ବିଦ୍ୟା, ଯଦ୍ଦ୍ୱାରା ମୃତ୍ୟୁକୁ ମଧ୍ୟ ଟାଳି ଦିଆଯାଇପାରେ? ମୁନେ ! ଲୀଳାବିହାରୀ ଦେବାଧିଦେବ ଭଗବାନ ଶଙ୍କରଙ୍କ ତ୍ରିଶୂଳରୁ ବାହାରିବା ପରେ ଅନ୍ଧକକୁ ଗଣାଧ୍ୟକ୍ଷ ପଦ କିପରି ପ୍ରାପ୍ତ ହେଲା? ତାତ ! ମୋର ଶିବଲୀଳାମୃତ ଶ୍ରବଣ କରିବାକୁ ବିଶେଷ ଇଚ୍ଛା ରହିଛି, ତେଣୁ ମୋ ଉପରେ କୃପା କରି ସେ ସମସ୍ତ ବୃତ୍ତାନ୍ତ ପୂର୍ଣ୍ଣରୂପେ କହନ୍ତୁ ।

ବ୍ରହ୍ମା କହୁଛନ୍ତି–ଅମିତତେଜସ୍ୱୀ ବ୍ୟାସଙ୍କ ବଚନ ଶୁଣି ସନତ୍‌କୁମାର ଶିବଙ୍କ ପଦାରବିନ୍ଦକୁ ସ୍ମରଣ କରି ଏହିପରି କହିଲେ ।

ସନତ୍‌କୁମାର କହିଲେ–ମୁନିବର ! ଭଗବାନ ଶଙ୍କରଙ୍କ ପ୍ରମଥଗଣ ବିଜୟୀ ହେଉଥିବା ଦେଖି ଅନ୍ଧକ ଦଉଡ଼ିଯାଇ ଶୁକ୍ରାଚାର୍ଯ୍ୟଙ୍କ ଶରଣକୁ ଗଲା ଏବଂ ସେ କାକୁତିମିନତି ହୋଇ ଯୁଦ୍ଧରେ ନିହତ ଅସୁରଙ୍କୁ ମୃତ-ସଂଜୀବନୀ ବିଦ୍ୟାଦ୍ୱାରା ଜୀବିତ କରିଦେବାକୁ ପ୍ରାର୍ଥନା କଲା । ଶୁକ୍ରାଚାର୍ଯ୍ୟ ଶରଣାଗତଧର୍ମ ରକ୍ଷା କରିବାକୁ ଉଚିତ ମଣିଲେ । ତେଣୁ ସେ ଯୁଦ୍ଧସ୍ଥଳକୁ ଗଲେ ଏବଂ ଆଦରପୂର୍ବକ ସେହି ବିଦ୍ୟାର ସ୍ୱାମୀ ଶିବଙ୍କୁ ସ୍ମରଣ କରିବାପରେ ଜଣ ଜଣ କରି ଦୈତ୍ୟଙ୍କ ଉପରେ ମୃତସଂଜୀବନୀ ବିଦ୍ୟା ପ୍ରୟୋଗ କରିବାକୁ ଲାଗିଲେ । ଏହା ଫଳରେ ସେଠାରେ ମୃତ ସମସ୍ତ ଦୈତ୍ୟ-ଦାନବ ନିଦ୍ରାରୁ ଉଠିଲା ପରି ଏକାବେଳେକେ ଉଠି ହାତରେ ଅସ୍ତ୍ରଶସ୍ତ୍ର ଧରି ଛିଡ଼ା ହୋଇଗଲେ । ଯେପରି ପୂର୍ଣ୍ଣରୂପେ ଅଭ୍ୟାସ କରାଯାଇଥିବା ବେଦ, ଯାଥାସମୟରେ ବାଦଲ ଏବଂ ବିପତ୍ତି ସମୟରେ ଶ୍ରଦ୍ଧାପୂର୍ବକ ବ୍ରାହ୍ମଣଙ୍କୁ ଦିଆଯାଇଥିବା ଧନ ତୁରନ୍ତ ପ୍ରକଟ ହୋଇଯାଏ, ସେହିପରି ମୃତ ଦୈତ୍ୟମାନେ ଉଠି ଠିଆ ହୋଇଗଲେ ଏବଂ ସେମାନେ ପ୍ରମଥଗଣଙ୍କୁ ଭୟଙ୍କର ମାଡ଼ ମାରିଲେ । ପ୍ରମଥମାନେ ଯାଇ ପ୍ରମଥେଶ୍ୱର ଶିବଙ୍କୁ ଏ ସମାଚାର ଶୁଣାଇଲେ । ଶିବ କହିଲେ–ନନ୍ଦିନ୍ ! ତୁମେ ଅବିଳମ୍ବେ ଯାଅ ଏବଂ ବାଜପକ୍ଷୀ ତା'ର ଶିକାରକୁ ଉଠାଇ ଆଣିଲା ପରି ଦ୍ୱିଜବର ଶୁକ୍ରାଚାର୍ଯ୍ୟଙ୍କୁ ଉଠାଇ ନେଇ ଆସ ।

ସନତ୍‌କୁମାର କହୁଛନ୍ତି–ମହର୍ଷେ ! ବୃଷଭଧ୍ୱଜ

ଏପରି କହିବାମାତ୍ରେ ନନ୍ଦୀ ଷଣ୍ଢ ପରି ଖୁବ୍ ଜୋରରେ ଗର୍ଜନ କଲେ ଏବଂ ଅସୁରସେନାକୁ ଭେଦ କରି ଭୃଗୁବଂଶର ଦୀପ ଶୁକ୍ରାଚାର୍ଯ୍ୟଙ୍କ ନିକଟରେ ପହଞ୍ଚିଗଲେ । ସେଠାରେ ଦୈତ୍ୟମାନେ ହାତରେ ପାଶ, ଖଡ୍ଗ, ବୃକ୍ଷ, ପଥର ଓ ପର୍ବତ ଖଣ୍ଡମାନ ଧରି ତାଙ୍କୁ ରକ୍ଷା କରୁଥିଲେ । ବଳବାନ୍ ନନ୍ଦୀ ସେମାନଙ୍କୁ ନିଜ ପରାକ୍ରମରେ ବିକ୍ଷୁବ୍ଧ କରି ଶରଭ ହାତୀକୁ ଉଠାଇନେବା ପରି ଶୁକ୍ରାଚାର୍ଯ୍ୟଙ୍କୁ ଉଠାଇନେଲେ । ମହାବଳୀ ନନ୍ଦୀଶ୍ୱର ତାଙ୍କୁ ଧରିବା ମାତ୍ରେ ଶୁକ୍ରାଚାର୍ଯ୍ୟଙ୍କ ବସ୍ତ୍ର ଖୋଲିଗଲା, ଆଭୂଷଣ ବି ଖସିପଡ଼ିଲା ଏବଂ କେଶଗୁଚ୍ଛ ମଧ୍ୟ ଅସ୍ତବ୍ୟସ୍ତ ହୋଇଗଲା । ଏହା ଦେଖି ଦେବଶତ୍ରୁ ଦାନବଗଣ ତାଙ୍କୁ ମୁକ୍ତ କରିବା ପାଇଁ ସିଂହନାଦ କରି ନନ୍ଦୀଙ୍କ ପଛେ ପଛେ ଦୌଡ଼ିଲେ ଏବଂ ତାଙ୍କ ଉପରକୁ ତୀବ୍ର ବେଗରେ ତ୍ରିଶୂଳ, ତରବାରୀ, ଫାରଶା, ତୀକ୍ଷ୍ଣ ଚକ୍ର, ପାଷାଣ, କମ୍ପନ ଆଦି ଅସ୍ତ୍ର ବର୍ଷା କଲେ । ଦେବାସୁର ସଂଗ୍ରାମ ଏପରି ବିକରାଳ ରୂପ ଧାରଣ କରିବାରୁ ଗଣାଧିପ ନନ୍ଦୀ ନିଜ ମୁଖରୁ ଅଗ୍ନି ଉଦ୍‌ଗୀରଣ କରି ଶହ ଶହ ଅସ୍ତ୍ରକୁ ଭସ୍ମ କରିଦେଲେ ଏବଂ ଭୃଗୁନନ୍ଦନଙ୍କୁ ଚପିଧରିବା ସହ ଶତ୍ରୁଦଳକୁ ବ୍ୟଥିତ କରି କରି ଶିବଙ୍କ ସମୀପରେ ଆସି ପହଞ୍ଚିଗଲେ । ସେ ଅବିଳମ୍ବେ ଶିବଙ୍କ ନିକଟରେ ଶୁକ୍ରାଚାର୍ଯ୍ୟଙ୍କୁ ଅର୍ପଣ କରି କହିଲେ— ''ଭଗବନ୍ ! ଏଇ ନିଅନ୍ତୁ, ଶୁକ୍ରାଚାର୍ଯ୍ୟ ଆପଣଙ୍କ ସମ୍ମୁଖରେ ଉପସ୍ଥିତ ।'' ଏହାପରେ ଭୂତନାଥ ଦେବାଧିଦେବ ଶିବ ଶୁକ୍ରାଚାର୍ଯ୍ୟଙ୍କୁ ପବିତ୍ର ବ୍ୟକ୍ତି ଦ୍ୱାରା ପ୍ରଦତ୍ତ ଉପହାର ପରି ଧରିପକାଇଲେ ଏବଂ କିଛି ନ କହି ତତ୍‌କ୍ଷଣାତ୍ ତାଙ୍କୁ ଫଳଟିଏ ପରି ପାଟିକୁ ପକାଇଦେଲେ । ଏହା ଦେଖି ଅସୁରମାନେ ଉଚ୍ଚସ୍ୱରରେ ହାହାକାର କଲେ ।

ବ୍ୟାସଦେବ ! ଗିରିଜେଶ୍ୱର ଶୁକ୍ରାଚାର୍ଯ୍ୟଙ୍କୁ ଗିଳି ପକାଇବାରୁ ଦୈତ୍ୟମାନଙ୍କର ବିଜୟର ଆଶା ମଉଳି ଗଲା । ସେତେବେଳେ ସେମାନଙ୍କ ଅବସ୍ଥା ଶୁଣ୍ଢବିହୀନ ହାତୀ, ଶିଙ୍ଗବିହୀନ ଷଣ୍ଢ, ମସ୍ତକବିହୀନ ଦେହ, ଅଧ୍ୟୟନରହିତ ବ୍ରାହ୍ମଣ, ଉଦ୍ୟମହୀନ ପ୍ରାଣୀ, ଭାଗ୍ୟହୀନର ଉଦ୍ୟମ, ସ୍ୱାମୀବିହୀନା ସ୍ତ୍ରୀ, ଫଳାବିହୀନ ଶର, ପୁଣ୍ୟହୀନର ଆୟୁ, ବ୍ରତରହିତ ବେଦାଧ୍ୟୟନ, ବୈଭବଶକ୍ତିହୀନ କର୍ମସମୂହ, ବୀରତ୍ୱହୀନ କ୍ଷତ୍ରିୟ ଓ ସତ୍ୟହୀନ ଧର୍ମ ପରି ଶୋଚନୀୟ ଓ ନିଷ୍ଫଳ ହୋଇଗଲା । ଦୈତ୍ୟମାନଙ୍କର ସମସ୍ତ ଉତ୍ସାହ ମଧ୍ୟ ନଷ୍ଟ ହୋଇଗଲା । ଏହା ଦେଖି ଅନ୍ଧକ ଦୁଃଖ ପ୍ରକାଶ କରୁଥିବା ତା'ର ବୀର ଯୋଦ୍ଧାଙ୍କୁ ବହୁତ ଉତ୍ସାହିତ କଲା ଏବଂ କହିଲା—''ବୀରଗଣ ! ଯେଉଁମାନେ ରଣାଙ୍ଗନ ଛାଡ଼ି ପଳାଇଯାଆନ୍ତି, ସେମାନଙ୍କ ଖ୍ୟାତି ଅପଯଶରୂପୀ କାଳିମାରେ ମଳିନ ହୋଇଯାଏ ଏବଂ ସେମାନଙ୍କୁ ଇହଲୋକରେ କି ପରଲୋକରେ କେଉଁଠି ବି ସୁଖ ମିଳେ ନାହିଁ । ଯଦି ପୁନର୍ଜନ୍ମରୂପୀ ମଳର ଅପହରଣକାରୀ ଧରାତୀର୍ଥ ଅର୍ଥାତ୍ ରଣତୀର୍ଥରେ ଅବଗାହନ କରାଯାଏ, ତେବେ ଅନ୍ୟ ତୀର୍ଥରେ ସ୍ନାନ, ଦାନ ଓ ତପ କରିବାରେ ଆଉ କି ପ୍ରୟୋଜନ? ଅର୍ଥାତ୍ ଏ ସମସ୍ତ କର୍ମର ଫଳ କେବଳ ରଣଭୂମିରେ ପ୍ରାଣତ୍ୟାଗ କରିଦେଲେ ହିଁ ମିଳିଯାଏ । ଦୈତ୍ୟରାଜର ଏପରି ବଚନକୁ ଧାରଣ କରି ଦାନବ ଓ ଦୈତ୍ୟମାନେ ପୁନଃ ରଣଭେରୀ ବଜାଇ ରଣଭୂମିରେ ପ୍ରମଥଗଣଙ୍କ ଉପରକୁ ମାଡ଼ିଆସିଲେ । ସେମାନେ ଶର, ଖଡ୍ଗ, ବଜ୍ରତୁଲ୍ୟ କଠୋର ପଥର, ଭୁଶୁଣ୍ଡୀ, ଭିନ୍ଦିପାଳ, ପଟ୍ଟିଶ, ତ୍ରିଶୂଳ, ଲକୁଟ ଓ ମୁଷଳ ଦ୍ୱାରା ପ୍ରହାର କରି ଭୟଙ୍କର ଯୁଦ୍ଧ କଲେ । ଏପରି ଭୀଷଣ ଯୁଦ୍ଧ ଭିତରେ ବିନାୟକ, ସ୍କନ୍ଦ, ନନ୍ଦୀ, ସୋମନନ୍ଦୀ, ବୀର ନୈଗମେୟ ଓ ମହାବଳୀ ବୈଶାଖ ପ୍ରଭୃତି ଉଗ୍ର ଶିବଗଣମାନେ ଅନବରତ ତ୍ରିଶୂଳ, ଶକ୍ତି ଓ

ବାଣସମୂହର ଭୟଙ୍କର ବର୍ଷା କରି ଅନ୍ଧକକୁ ଅନ୍ଧ କରିଦେଲେ । ସେତେବେଳେ ପ୍ରମଥ ଓ ଅସୁରଙ୍କ ସୈନ୍ୟବାହିନୀରେ ଭୀଷଣ କୋଳାହଳ ଶବ୍ଦ ହେଲା । ଏଭଳି ଘୋର ଶବ୍ଦକୁ ଶୁଣି ଶମ୍ଭୁଙ୍କ ଉଦରରେ ସ୍ଥିତ ଶୁକ୍ରାଚାର୍ଯ୍ୟ ଆଶ୍ରୟଶୂନ୍ୟ ବାୟୁ ପରି ଉଦରରୁ ବାହାରିବାକୁ ମାର୍ଗ ଖୋଜି ଖୋଜି ବୁଲିବାକୁ ଲାଗିଲେ । ସେତେବେଳେ ତାଙ୍କୁ ରୁଦ୍ରଙ୍କ ଉଦରରେ ପାତାଳ ସମେତ ସପ୍ତଲୋକ, ବ୍ରହ୍ମା, ନାରାୟଣ, ଇନ୍ଦ୍ର, ଆଦିତ୍ୟ ଓ ଅପ୍ସରାଙ୍କର ବିଚିତ୍ର ବିଚିତ୍ର ଭୁବନ ତଥା ସେହି ପ୍ରମଥାସୁର-ସଂଗ୍ରାମ ମଧ୍ୟ ଦେଖାଗଲା । ଏହିରୂପେ ସେ ଶହେବର୍ଷ ପର୍ଯ୍ୟନ୍ତ ଶିବଙ୍କ କୁକ୍ଷିରେ ଚାରିଆଡ଼େ ଭ୍ରମଣ କଲେ; ମାତ୍ର ଦୁଷ୍ଟ ପୁରୁଷର ଦୃଷ୍ଟି ଯେପରି ସଦାଚାରୀଙ୍କ ଛିଦ୍ରକୁ ଦେଖିପାରେ ନାହିଁ, ଠିକ୍ ସେହିପରି ତାଙ୍କୁ କୌଣସି ଛିଦ୍ର ଦିଶିଲା ନାହିଁ । ଏଣୁ ଭୃଗୁନନ୍ଦନ ଶୈବଯୋଗର ଆଶ୍ରୟ ନେଇ ଗୋଟିଏ ମନ୍ତ୍ର ଜପ କଲେ । ସେହି ମନ୍ତ୍ର ପ୍ରଭାବରେ ସେ ଶମ୍ଭୁଙ୍କ ଜଠର-ପଞ୍ଜରରୁ ଶୁକ୍ରରୂପରେ ଲିଙ୍ଗମାର୍ଗ ଦେଇ ବାହାରକୁ ବାହାରିଲେ । ସେଠାରୁ ବାହାରି ସେ ଶିବଙ୍କୁ ପ୍ରଣାମ କଲେ । ଗୌରୀ ତାଙ୍କୁ ପୁତ୍ରରୂପେ ସ୍ୱୀକାର କଲେ ଏବଂ ବିଘ୍ନରହିତ କରିଦେଲେ । ତା'ପରେ କରୁଣାସାଗର ମହେଶ୍ୱର ଭୃଗୁନନ୍ଦନ ଶୁକ୍ରାଚାର୍ଯ୍ୟଙ୍କୁ ବୀର୍ଯ୍ୟମାର୍ଗ ଦେଇ ବାହାରିଥିବା ଦେଖି ସ୍ମିତହାସପୂର୍ବକ କହିଲେ—

ମହେଶ୍ୱର କହିଲେ—**ଭୃଗୁନନ୍ଦନ ! ତୁମେ ମୋର ଲିଙ୍ଗମାର୍ଗ ଦେଇ ଶୁକ୍ର ପରି ବାହାରିଛ, ଏଣୁ ଏବେ ତୁମେ 'ଶୁକ୍ର' ନାମରେ ଖ୍ୟାତ ହେବ । ଯାଅ, ଏବେ ତୁମେ ମୋର ପୁତ୍ର ହୋଇଗଲ ।**

ସନତ୍‌କୁମାର କହୁଛନ୍ତି—**ହେ ମୁନିବର ! ଦେବେଶ୍ୱର ଶିବ ଏପରି କହିବାରୁ ସୂର୍ଯ୍ୟସମ କାନ୍ତିବାନ୍ ଶୁକ୍ର ପୁନଃ ଶିବଙ୍କୁ ପ୍ରଣାମ କଲେ ଏବଂ ହାତ ଯୋଡ଼ି ସ୍ତୁତି କଲେ ।**

ଶୁକ୍ର କହିଲେ—**ଭଗବନ୍ ! ଆପଣଙ୍କ ପାଦ, ଶିର, ନେତ୍ର, ହସ୍ତ ଓ ଭୁଜ ଅନନ୍ତ । ଆପଣଙ୍କ ମୂର୍ତ୍ତିର ଗଣନା ମଧ୍ୟ ଅସମ୍ଭବ । ଏ ପରିପ୍ରେକ୍ଷୀରେ ମୁଁ ଆପଣଙ୍କ ପରି ସ୍ତୁତ୍ୟଙ୍କ ଆଗରେ ମୁଣ୍ଡ ନୁଆଁଇ କିପରି ବା ସ୍ତୁତି କରିବାକୁ ସକ୍ଷମ ହୋଇପାରିବି? ଆପଣ ଅଷ୍ଟମୂର୍ତ୍ତିରୂପେ ପ୍ରସିଦ୍ଧ ଅଟନ୍ତି, ପୁଣି ଆପଣ ଅନନ୍ତମୂର୍ତ୍ତି ମଧ୍ୟ ଅଟନ୍ତି । ଆପଣ ସୁର ଓ ଅସୁର ସମସ୍ତଙ୍କର କାମନା ପୂର୍ଣ୍ଣ କରିଥାନ୍ତି ଏବଂ ଅନିଷ୍ଟ ଦୃଷ୍ଟିଯୁକ୍ତ ଲୋକଙ୍କୁ ସଂହାର ମଧ୍ୟ କରିଦିଅନ୍ତି । ଆପଣ ଏପରି ସ୍ତୁତ୍ୟ, ଏଣୁ ମୁଁ ଅବା ଆପଣଙ୍କୁ କେଉଁ ପ୍ରକାରେ ସ୍ତୁତି କରିବି?**

ସନତ୍‌କୁମାର କହୁଛନ୍ତି—**ମୁନେ ! ଶୁକ୍ରାଚାର୍ଯ୍ୟ ଏହିରୂପେ ସ୍ତୁତି କରି ତାଙ୍କୁ ନମସ୍କାର କଲେ ଏବଂ ତାଙ୍କର ଆଜ୍ଞା ନେଇ ମେଘମାଳା ଭିତରେ ଚନ୍ଦ୍ର ପ୍ରବେଶ କଲା ପରି ପୁନଃ ଦାନବଙ୍କ ସେନାରେ ପ୍ରବେଶ କଲେ । ବ୍ୟାସଦେବ ! ଶିବ ଶୁକ୍ରଙ୍କୁ କିପରି ଗିଳି ପକାଇଥିଲେ, ସେହି ପ୍ରସଙ୍ଗ ମୁଁ କହିଦେଲି । ଏବେ ଶମ୍ଭୁଙ୍କ ଉଦରରେ ଶୁକ୍ର ଯେଉଁ ମନ୍ତ୍ର ଜପିଥିଲେ, ତାହା ଶୁଣ । ମହର୍ଷେ ! ସେହି ମନ୍ତ୍ର ହେଲା—**

"ଓଁ ନମସ୍ତେ ଦେବେଶାୟ ସୁରାସୁର-ନମସ୍କୃତାୟ ଭୂତଭବ୍ୟମହାଦେବାୟ ହରିତପିଙ୍ଗଳ-ଲୋଚନାୟ ବଳାୟ ବୁଦ୍ଧିରୂପିଣେ ବୈୟାଘ୍ରବସନ-ଚ୍ଛଦାୟାରଣେୟାୟ ତ୍ରୈଲୋକ୍ୟପ୍ରଭବେ ଈଶ୍ୱରାୟ ହରାୟ ହରିନେତ୍ରାୟ ଯୁଗାନ୍ତକରଣାୟାନଳାୟ ଗଣେଶାୟ ଲୋକପାଳାୟ ମହାଭୁଜାୟ ମହାହସ୍ତାୟ ଶୂଳିନେ ମହାଦଂଷ୍ଟ୍ରିଣେ କାଳାୟ ମହେଶ୍ୱରାୟ ଅବ୍ୟୟାୟ କାଳରୂପିଣେ ନୀଳଗ୍ରୀବାୟ ମହୋଦରାୟ ଗଣାଧ୍ୟକ୍ଷାୟ ସର୍ବାତ୍ମନେ ସର୍ବଭାବନାୟ ସର୍ବଗାୟ ମୃତ୍ୟୁହନ୍ତ୍ରେ ପାରିଯାତ୍ରସୁବ୍ରତାୟ ବ୍ରହ୍ମଚାରିଣେ ବେଦାନ୍ତଗାୟ ତପୋଽନ୍ତଗାୟ ପଶୁପତୟେ

ବ୍ୟଙ୍ଗାୟ ଶୂଳପାଣୟେ ବୃଷକେତବେ ହରୟେ ଜଟିନେ ଶିଖଣ୍ଡିନେ ଲକୁଟିନେ ମହାଯଶସେ ଭୂତେଶ୍ୱରାୟ ଗୁହାବାସିନେ ବୀଣାପଣବତାଳବତେ ଅମରାୟ ଦର୍ଶନୀୟାୟ ବାଳସୂର୍ଯ୍ୟନିଭାୟ ଶ୍ମଶାନବାସିନେ ଭଗବତେ ଉମାପତୟେ ଅରିନ୍ଦମାୟ ଭଗସ୍ୟାକ୍ଷିପାତିନେ ପୂଷ୍ଣୋ ଦଶନନାଶନାୟ କ୍ରୂରକର୍ତିକାୟ ପାଶହସ୍ତାୟ ପ୍ରଳୟକାଳାୟ ଉଲ୍‌କାମୁଖାୟାଗ୍ନିକେତବେ ମୁନୟେ ଦୀପ୍ତାୟ ବିଶାମ୍ପତୟେ ଉନ୍ନୟତେ ଜନକାୟ ଚତୁର୍ଥକାୟ ଲୋକସତ୍ତମାୟ ବାମଦେବାୟ ବାଗ୍‌ଦାକ୍ଷିଣ୍ୟାୟ ବାମତୋ ଭିକ୍ଷବେ ଭିକ୍ଷୁରୂପିଣେ ଜଟିନେ ସ୍ୱୟଂ ଜଟିଳାୟ ଶକ୍ରହସ୍ତପ୍ରତିସ୍ତମ୍ଭକାୟ ବସୂନାଂ ସ୍ତମ୍ଭକାୟ କ୍ରତବେ କ୍ରତୁକରାୟ କାଳାୟ ମେଧାବିନେ ମଧୁକରାୟ ଚଳାୟ ବାନସ୍ପତ୍ୟାୟ ବାଜସନେତି-ସମାଶ୍ରମପୂଜିତାୟ ଜଗଦ୍‌ଧାତ୍ରେ ଜଗତ୍‌କର୍ତ୍ରେ ପୁରୁଷାୟ ଶାଶ୍ୱତାୟ ଧ୍ରୁବାୟ ଧର୍ମାଧ୍ୟକ୍ଷାୟ ତ୍ରିବର୍ତ୍ମନେ ଭୂତଭାବନାୟ ତ୍ରିନେତ୍ରାୟ ବହୁରୂପାୟ ସୂର୍ଯ୍ୟାୟୁତସମପ୍ରଭାୟ ଦେବାୟ ସର୍ବତୂର୍ଯ୍ୟନିନାଦିନେ ସର୍ବବାଧାବିମୋଚନାୟ ବନ୍ଧନାୟ ସର୍ବଧାରିଣେ ଧର୍ମୋତ୍ତମାୟ ପୁଷ୍ପଦନ୍ତାୟାବିଭାଗାୟ ମୁଖାୟ ସର୍ବହରାୟ ହିରଣ୍ୟଶ୍ରବସେ ଦ୍ୱାରିଣେ ଭୀମାୟ ଭୀମପରାକ୍ରମାୟ ଓଁ ନମୋ ନମଃ ।*

**ଉପରୋକ୍ତ ଶ୍ରେଷ୍ଠ ମନ୍ତ୍ରକୁ ଜପ କରି ଶୁକ୍ର ଶମ୍ଭୁଙ୍କ ଜଠରପଞ୍ଜରରୁ ଲିଙ୍ଗମାର୍ଗ ଦେଇ ଉତ୍କଟ ବୀର୍ଯ୍ୟ ପରି ବାହାରିଥିଲେ । ଶିବଙ୍କ ଠାରୁ ବାହାରିବାରୁ ଗୌରୀ ତାଙ୍କୁ ପୁତ୍ରରୂପେ ଆପଣାର କରିନେଲେ ଏବଂ ଜଗଦୀଶ୍ୱର ଶିବ ଅଜର ଅମର କରିଦେଲେ । ସେତେବେଳେ ସେ ଦ୍ୱିତୀୟ ଶଙ୍କରଙ୍କ ସଦୃଶ ଶୋଭା ପାଇଲେ । ତିନିହଜାର ବର୍ଷ ବିତିଯିବା ପରେ ଯେତେବେଳେ ବେଦନିଧି ମୁନିବର ଶୁକ୍ର ପୁନଃ ଏହିରୂପେ ଭୂତଳରେ ମହେଶ୍ୱରଙ୍କ ଠାରୁ ଉତ୍ପନ୍ନ ହେଲେ, ସେତେବେଳେ ସେ ଧୈର୍ଯ୍ୟଶାଳୀ ଏବଂ ତପସ୍ୱୀ ଦାନବରାଜ ଅନ୍ଧକକୁ ଦେଖିଲେ । ତା'ର ଶରୀର ଶୁଖି ଯାଇଥିଲା ଏବଂ ସେ ତ୍ରିଶୂଳ ଉପରେ ଝୁଲିରହି ପରମେଶ୍ୱର ଶିବଙ୍କୁ ଧ୍ୟାନ କରୁଥିଲା । (ସେ ଶିବଙ୍କର ନିମ୍ନୋକ୍ତ**

---

* "ଓଁ ଯେ ଦେବତାଙ୍କର ସ୍ୱାମୀ, ସୁର ଓ ଅସୁରଙ୍କ ଦ୍ୱାରା ବନ୍ଦିତ, ଭୂତ ଓ ଭବିଷ୍ୟତର ମହାନ୍ ଦେବତା, ହରିତ ଓ ପୀତ ନେତ୍ରଯୁକ୍ତ, ମହାବଳୀ, ବୁଦ୍ଧିସ୍ୱରୂପ, ବ୍ୟାଘ୍ରାମ୍ବରଧାରୀ, ଅଗ୍ନିସ୍ୱରୂପ, ତ୍ରିଲୋକର ଉତ୍ପତ୍ତିସ୍ଥାନ, ଈଶ୍ୱର, ହର, ହରିନେତ୍ର, ପ୍ରଳୟକାରୀ, ଅଗ୍ନିସ୍ୱରୂପ, ଗଣେଶ, ଲୋକପାଳ, ମହାଭୁଜ, ମହାହସ୍ତ, ତ୍ରିଶୂଳଧାରୀ, ବଡ଼ ବଡ଼ ଦନ୍ତବିଶିଷ୍ଟ, କାଳସ୍ୱରୂପ, ମହେଶ୍ୱର, ଅବିନାଶୀ, କାଳରୂପୀ, ନୀଳକଣ୍ଠ, ମହୋଦର, ଗଣାଧ୍ୟକ୍ଷ, ସର୍ବାତ୍ମା, ସବୁରି ସ୍ରଷ୍ଟା, ସର୍ବବ୍ୟାପୀ, ମୃତ୍ୟୁନିବାରକ, ପାରିଯାତ୍ର ପର୍ବତରେ ଉତ୍ତମ ବ୍ରତାଚରଣକାରୀ, ବ୍ରହ୍ମଚାରୀ, ବେଦାନ୍ତପ୍ରତିପାଦ୍ୟ, ତପର ଅନ୍ତିମ ସୀମାରେ ଉପନୀତ, ପଶୁପତି, ବିଶିଷ୍ଟ ଅଙ୍ଗଯୁକ୍ତ, ଶୂଳପାଣି, ବୃଷଧ୍ୱଜ, ପାପାପହାରୀ, ଜଟାଧାରୀ, ଶିଖଣ୍ଡ ଧାରଣକାରୀ, ଦଣ୍ଡଧାରୀ, ମହାଯଶସ୍ୱୀ, ଭୂତେଶ୍ୱର, ଗୁହାବାସୀ, ବୀଣା ଓ ପଣବ ବାଦକ, ଅମର, ଦର୍ଶନୀୟ, ବାଳସୂର୍ଯ୍ୟ ସମ ରୂପଧାରୀ, ଶ୍ମଶାନବାସୀ, ଐଶ୍ୱର୍ଯ୍ୟଶାଳୀ, ଉମାପତି, ଶତ୍ରୁଦମନ, ଭଗଙ୍କ ନେତ୍ର ବିନାଶକାରୀ, ପୂଷାଙ୍କ ଦନ୍ତ ବିନାଶକ, କ୍ରୂରତାପୂର୍ବକ ସଂହାରକାରୀ, ପାଶଧାରୀ, ପ୍ରଳୟକାଳରୂପଧାରୀ, ଉଲ୍‌କାମୁଖ, ଅଗ୍ନିକେତୁ, ମନନଶୀଳ, ପ୍ରଦୀପ୍ତ, ପ୍ରଜାପତି, ଉନ୍ନୟନକାରୀ, ଜୀବଙ୍କ ସ୍ରଷ୍ଟା, ତୁରୀୟତତ୍ତ୍ୱରୂପ, ଜଗତରେ ସର୍ବଶ୍ରେଷ୍ଠ, ବାମଦେବ, ବାକ୍‌ପଟୁ, ବାମମାର୍ଗରେ ଭିକ୍ଷୁରୂପ, ଭିକ୍ଷୁକ, ଜଟାଧାରୀ, ଜଟିଳ ବା ଦୁରାରାଧ୍ୟ, ଇନ୍ଦ୍ରଙ୍କ ହସ୍ତ ସ୍ତମ୍ଭନକାରୀ, ବସୁମାନଙ୍କୁ ସ୍ତମ୍ଭନକାରୀ, ଯଜ୍ଞସ୍ୱରୂପ, ଯଜ୍ଞକର୍ତ୍ତା, କାଳ, ମେଧାବୀ, ମଧୁକର, ବିଚରଣକାରୀ, ବନସ୍ପତିଙ୍କର ଆଶ୍ରିତ, ବାଜସନ ନାମରେ ସମସ୍ତ ଆଶ୍ରମ ଦ୍ୱାରା ପୂଜିତ, ଜଗତର ଧାତା, ଜଗତର କର୍ତ୍ତା, ସର୍ବାନ୍ତର୍ଯାମୀ, ସନାତନ, ଧ୍ରୁବ, ଧର୍ମାଧ୍ୟକ୍ଷ, ତ୍ରିଲୋକରେ (ଭୂଃ-ଭୁବଃ-ସ୍ୱଃ ଲୋକରେ) ବିଚରଣଶୀଳ, ଭୂତଭାବନ, ତ୍ରିନେତ୍ର, ବହୁରୂପ, ଦଶହଜାର ସୂର୍ଯ୍ୟଙ୍କ ପରି ପ୍ରଭାବଶାଳୀ, ମହାଦେବ, ସର୍ବପ୍ରକାର ବାଦ୍ୟର ବାଦକ, ସମସ୍ତ ବାଧାରୁ ବିମୁକ୍ତକାରୀ, ବନ୍ଧନସ୍ୱରୂପ, ସମସ୍ତଙ୍କର ଧାରଣକାରୀ, ଉତ୍ତମ ଧର୍ମରୂପ, ପୁଷ୍ପଦନ୍ତ, ବିଭାଗରହିତ, ମୁଖ୍ୟରୂପ, ସମସ୍ତଙ୍କର ହରଣକାରୀ, ସୁବର୍ଣ୍ଣ ପରି ଦୀପ୍ତକୀର୍ତ୍ତି, ମୁକ୍ତିର ଦ୍ୱାରସ୍ୱରୂପ, ଭୀମ ତଥା ଭୀମପରାକ୍ରମୀ ଅଟନ୍ତି, ତାଙ୍କୁ ନମସ୍କାର, ନମସ୍କାର ।

୧୦୮ ନାମ ସ୍ମରଣ କରୁଥିଲା—)

ମହାଦେବ—**ଦେବତାଙ୍କ ମଧ୍ୟରେ ମହାନ୍**, ବିରୂପାକ୍ଷ—**ବିକରାଳଲୋଚନ**, ଚନ୍ଦ୍ରାର୍ଦ୍ଧକୃତଶେଖର—**ମସ୍ତକରେ ଅର୍ଦ୍ଧଚନ୍ଦ୍ର ଧାରଣକାରୀ**, ଅମୃତ—**ଅମୃତସ୍ୱରୂପ**, ଶାଶ୍ୱତ—**ସନାତନ**, ସ୍ଥାଣୁ—**ସମାଧିସ୍ଥ ଅବସ୍ଥାରେ ସ୍ଥାବର ପରି ସ୍ଥିର**, ନୀଳକଣ୍ଠ—**ଗଳାରେ ନୀଳ ଚିହ୍ନ ଧାରଣକାରୀ**, ପିନାକୀ—**ପିନାକଧନୁ ଧାରଣକାରୀ**, ବୃଷଭାକ୍ଷ—**ବୃଷଭର ନେତ୍ର ପରି ବିଶାଳନେତ୍ରଧାରୀ**, ମହାଜ୍ଞେୟ—**'ମହାନ୍' ରୂପେ ଜାଣିବାର ଯୋଗ୍ୟ**, ପୁରୁଷ—**ଅନ୍ତର୍ଯ୍ୟାମୀ**, ସର୍ବକାମଦ—**ସମସ୍ତ କାମନା ପୂରଣକାରୀ**, କାମାରି—**କନ୍ଦର୍ପ ଶତ୍ରୁ**, କାମଦହନ—**କନ୍ଦର୍ପ ଦହନକାରୀ**, **କାମରୂପ—ଇଚ୍ଛାନୁସାରେ ରୂପଧାରୀ**, କପର୍ଦ୍ଦୀ—**ବିଶାଳ ଜଟାଧାରୀ**, ବିରୂପ—**ବିକରାଳରୂପ**, ଗିରିଶ—**ଗିରିବର କୈଳାସରେ ଶୟନକାରୀ**, ଭୀମ—**ଭୟଙ୍କର ରୂପଧାରୀ**, ସୃକ୍କୀ—**ବଡ଼ ବଡ଼ ଦନ୍ତପଙ୍କ୍ତିଧାରୀ**, ରକ୍ତବାସା—**ଲାଲ ବସ୍ତ୍ରପରିହିତ**, ଯୋଗୀ—**ଯୋଗର ଜ୍ଞାତା**, କାଳଦହନ—**କାଳର ଭସ୍ମକାରୀ**, ତ୍ରିପୁରଘ୍ନ—**ତ୍ରିପୁରଙ୍କର ନିହନ୍ତା**, କପାଳୀ—**କପାଳଧାରୀ**, ଗୂଢ଼ବ୍ରତ—**ଯାହାଙ୍କ ବ୍ରତ ପ୍ରକଟ ନୁହେଁ**, ଗୁପ୍ତମନ୍ତ୍ର—**ଯାହାଙ୍କର ମନ୍ତ୍ର ଗୋପନୀୟ**, ଗମ୍ଭୀର—**ଗମ୍ଭୀର ସ୍ୱଭାବର**, ଭାବଗୋଚର—**ଯେ ଭକ୍ତଙ୍କର ଭାବନାନୁସାରେ ପ୍ରକଟ ହୁଅନ୍ତି**, ଅଣିମାଦିଗୁଣାଧାର—**ଅଣିମାଦି ସିଦ୍ଧିମାନଙ୍କର ଅଧିଷ୍ଠାନ**, ତ୍ରିଲୋକୈଶ୍ୱର୍ଯ୍ୟଦାୟକ—**ତ୍ରିଭୁବନର ଐଶ୍ୱର୍ଯ୍ୟ ପ୍ରଦାନକାରୀ**, ବୀର—**ବଳଶାଳୀ**, ବୀରହନ୍ତା—**ବୀର ଶତ୍ରୁଙ୍କର ବିନାଶକାରୀ**, ଘୋର—**ଦୁଷ୍ଟଙ୍କ ନିମନ୍ତେ ଭୟଙ୍କର**, ବିରୂପ—**ବିକଟରୂପଧାରୀ**, ମାଂସଳ—**ସୁପୁଷ୍ଟ ଶରୀରଧାରୀ**, ପଟୁ—**ନିପୁଣ**, ମହାମାଂସଦ—**ଶ୍ରେଷ୍ଠ ଫଳର ଶସ ଭକ୍ଷଣକାରୀ**, ଉନ୍ମତ୍ତ—**ମତୁଆଲା**, ଭୈରବ—**କାଳଭୈରବସ୍ୱରୂପ**, ମହେଶ୍ୱର—**ଦେବେଶ୍ୱରଙ୍କ ମଧ୍ୟରେ ଶ୍ରେଷ୍ଠ**, ତ୍ରୈଲୋକ୍ୟଦ୍ରାବଣ—**ତ୍ରୈଲୋକ୍ୟନାଶକାରୀ**, ଲୁବ୍ଧ—**ସ୍ୱଜନଙ୍କ ପ୍ରତି ଲୋଭୀ**, ଲୁବ୍ଧକ—**ମହାବ୍ୟାଧସ୍ୱରୂପ**, ଯଜ୍ଞସୂଦନ—**ଦକ୍ଷଯଜ୍ଞ ବିନାଶକ**, କୃତ୍ତିକାସୁତଯୁକ୍ତ—**କାର୍ତ୍ତିକେୟଙ୍କ ସହ ଯୁକ୍ତ**, ଉନ୍ମତ୍ତ—**ଉନ୍ମତ୍ତ ସଦୃଶ ବେଶଧାରୀ**, କୃତ୍ତିବାସା—**ବସ୍ତ୍ରରୂପେ ଗଜାସୁରର ଚର୍ମ ଧାରଣକାରୀ**, ଗଜକୃତ୍ତିପରୀଧାନ—**ହାତୀର ଚର୍ମ ପରିଧାନକାରୀ**, କ୍ଷୁବ୍ଧ—**ଭକ୍ତଙ୍କ କଷ୍ଟରେ କ୍ଷୋଭ ପ୍ରକାଶକାରୀ**, ଭୁଜଗଭୂଷଣ—**ସର୍ପମାନଙ୍କୁ ଭୂଷଣରୂପେ ଧାରଣକାରୀ**, ଦତ୍ତାଲମ୍ବ—**ଭକ୍ତଗଣଙ୍କ ଅବଲମ୍ବନ**, ବେତାଳ—**ବେତାଳସ୍ୱରୂପ**, ଘୋର—**ଘୋର**, ଶାକିନୀପୂଜିତ—**ଶାକିନୀଙ୍କ ଦ୍ୱାରା ସମାରାଧିତ**, ଅଘୋର—**ଅଘୋର ପଥର ପ୍ରବର୍ତ୍ତକ**, ଘୋରଦୈତ୍ୟଘ୍ନ—**ଭୟଙ୍କର ଦୈତ୍ୟଙ୍କର ସଂହାରକ**, ଘୋରଘୋଷ—**ଭୀଷଣ ଶବ୍ଦକାରୀ**, ବନସ୍ପତି—**ବନସ୍ପତିସ୍ୱରୂପ**, ଭସ୍ମାଙ୍ଗ—**ଶରୀରରେ ଭସ୍ମ ଲେପନକାରୀ**, ଜଟିଳ—**ଜଟାଧାରୀ**, ଶୁଦ୍ଧ—**ପରମ ପାବନ**, ଭେରୁଣ୍ଡଶତସେବିତ—**ଶହ ଶହ ଭେରୁଣ୍ଡ ପକ୍ଷୀଙ୍କ ଦ୍ୱାରା ସେବିତ**, ଭୂତେଶ୍ୱର—**ଭୂତଙ୍କର ଅଧିପତି**, ଭୂତନାଥ—**ଭୂତଗଣଙ୍କ ସ୍ୱାମୀ**, ପଞ୍ଚଭୂତାଶ୍ରିତ—**ପଞ୍ଚଭୂତଙ୍କର ଆଶ୍ରୟ**, ଖଗ—**ଗଗନବିହାରୀ**, କ୍ରୋଧିତ—**କ୍ରୋଧଯୁକ୍ତ**, ନିଷ୍ଠୁର—**ଦୁଷ୍ଟମାନଙ୍କ ପ୍ରତି କଠୋର**, ଚଣ୍ଡ—**ପ୍ରଚଣ୍ଡ ପରାକ୍ରମୀ**, ଚଣ୍ଡୀଶ—**ଚଣ୍ଡୀଙ୍କ ପ୍ରାଣନାଥ**, ଚଣ୍ଡିକାପ୍ରିୟ—**ଚଣ୍ଡିକାଙ୍କ ପ୍ରିୟତମ**, ଚଣ୍ଡତୁଣ୍ଡ—**ଅତ୍ୟନ୍ତ କୁପିତ ମୁଖାକୃତିବିଶିଷ୍ଟ**, ଗରୁତ୍ମାନ୍—**ଗରୁଡସ୍ୱରୂପ**, ନିସ୍ତ୍ରିଂଶ—**ଖଡ୍ଗସ୍ୱରୂପ**, ଶବଭୋଜନ—**ଶବକୁ ଭୋଗ ଲଗାଉଥିବା**, ଲେଲିହାନ—**କ୍ରୁଦ୍ଧ ହେବାବେଳେ ଜିହ୍ୱା ଲହ ଲହ କରୁଥିବା**, ମହାରୌଦ୍ର—**ଅତ୍ୟନ୍ତ ଭୟଙ୍କର**, ମୃତ୍ୟୁ—**ମୃତ୍ୟୁସ୍ୱରୂପ**, ମୃତ୍ୟୋରଗୋଚର—**ମୃତ୍ୟୁର ସୀମାରୁ ଅତୀତ**, ମୃତ୍ୟୋର୍ମୃତ୍ୟୁ—**ମୃତ୍ୟୁର ମଧ୍ୟ କାଳ**, ମହାସେନ—**ବିଶାଳସେନା ସେନା ଥିବା କାର୍ତ୍ତିକେୟସ୍ୱରୂପ**, ଶ୍ମଶାନାରଣ୍ୟବାସୀ—**ଶ୍ମଶାନ ଓ ଅରଣ୍ୟରେ ବିଚରଣକାରୀ**, ରାଗ—

**ପ୍ରେମସ୍ୱରୂପ**, ବିରାଗ–**ଆସକ୍ତିରହିତ**, ରାଗାନ୍ଧ–**ପ୍ରେମରେ ପ୍ରମୁଦିତ**, ବୀତରାଗ–**ବୈରାଗୀ**, ଶତାର୍ଚ୍ଚି–**ଅସଂଖ୍ୟ ତେଜ କଣିକାରେ ଯୁକ୍ତ**, ସତ୍ତ୍ୱ–**ସତ୍ତ୍ୱଗୁଣରୂପ**, ରଜଃ–**ରଜୋଗୁଣରୂପ**, ତମଃ–**ତମୋଗୁଣରୂପ**, ଧର୍ମ–**ଧର୍ମସ୍ୱରୂପ**, ଅଧର୍ମ–**ଅଧର୍ମରୂପ**, ବାସବାନୁଜ–**ଇନ୍ଦ୍ରଙ୍କ ସାନଭାଇ ଉପେନ୍ଦ୍ରସ୍ୱରୂପ**, ସତ୍ୟ–**ସତ୍ୟରୂପ**, ଅସତ୍ୟ–**ସତ୍ୟଠାରୁ ମଧ୍ୟ ଅତୀତ**, ସଦ୍ରୂପ–**ଉତ୍ତମ ରୂପସମ୍ପନ୍ନ**, ଅସଦ୍‌ରୂପ–**ବୀଭତ୍ସ ରୂପଧାରୀ**, ଅହେତୁକ–**ହେତୁରହିତ**, ଅର୍ଦ୍ଧନାରୀଶ୍ୱର–**ଯାହାଙ୍କ ଶରୀରର ଅର୍ଦ୍ଧଭାଗ ନାରୀ ଓ ଅର୍ଦ୍ଧଭାଗ ପୁରୁଷ**, ଭାନୁ–**ସୂର୍ଯ୍ୟସ୍ୱରୂପ**, ଭାନୁକୋଟିଶତପ୍ରଭ–**ଶହେ କୋଟି ସୂର୍ଯ୍ୟଙ୍କ ପରି ପ୍ରଭାବଶାଳୀ**, ଯଜ୍ଞ–**ଯଜ୍ଞସ୍ୱରୂପ**, ଯଜ୍ଞପତି–**ଯଜ୍ଞେଶ୍ୱର**, ରୁଦ୍ର–**ସଂହାରକର୍ତ୍ତା**, ଈଶାନ–**ଈଶ୍ୱର**, ବରଦ–**ବରଦାତା**, ଶିବ–**କଲ୍ୟାଣସ୍ୱରୂପ । ପରମାତ୍ମା ଶିବଙ୍କର ଏହି ୧୦୮ ମୂର୍ତ୍ତିକୁ ଧ୍ୟାନ କରିବାରୁ ଦାନବ ଅନ୍ଧକ ମହାଭୟରୁ ମୁକ୍ତ ହୋଇଗଲା ।* ଜଟାଧାରୀ ଶିବ ପ୍ରସନ୍ନ ହୋଇ ତାଙ୍କୁ ତ୍ରିଶୂଳର ଅଗ୍ରଭାଗରୁ ତଳକୁ ଓହ୍ଲାଇଦେଲେ ଏବଂ ତାଙ୍କୁ ଦିବ୍ୟ ଅମୃତ ବର୍ଷାରେ ଅଭିଷିକ୍ତ କରିଦେଲେ । ତା'ପରେ ସେ ଯାହା କିଛି କରିଥିଲା, ମହାତ୍ମା ମହେଶ୍ୱର ସେକଥା ସାନ୍ତ୍ୱନାପୂର୍ବକ ବର୍ଣ୍ଣନା କରି ମହାଦୈତ୍ୟ ଅନ୍ଧକକୁ କହିଲେ–**

ଈଶ୍ୱର କହିଲେ–**ହେ ଦୈତ୍ୟେନ୍ଦ୍ର! ମୁଁ ତୋର ଇନ୍ଦ୍ରିୟନିଗ୍ରହ, ନିୟମ, ଶୌର୍ଯ୍ୟ ଓ ଧୈର୍ଯ୍ୟ ଦେଖି ପ୍ରସନ୍ନ ହୋଇଯାଇଛି; ତେଣୁ ହେ ସୁବ୍ରତ! ଏବେ କୌଣସି ବର ମାଗ । ଦୈତ୍ୟଙ୍କ ରାଜାଧିରାଜ! ତୁ ନିରନ୍ତର ମୋର ଆରାଧନା କରିଛୁ, ତଦ୍ଦ୍ୱାରା ତୋର ସକଳ କଳ୍ମଷ ଧୋଇଯାଇଛି । ଏବେ ତୁ ବର ଲାଭ କରିବାର ଯୋଗ୍ୟ ହୋଇଯାଇଛୁ । ତେଣୁ ତୋତେ ମୁଁ ବର ଦେବାକୁ ଆସିଛି; କାରଣ ତିନି ହଜାର ବର୍ଷ ପର୍ଯ୍ୟନ୍ତ ତୁ ନ ଖାଇ ନ ପିଇ ବଞ୍ଚିରହିବା ଦ୍ୱାରା ଯେଉଁ ପୁଣ୍ୟ ଅର୍ଜନ କରିଛୁ, ତାହାର ଫଳସ୍ୱରୂପ ତୋତେ ସୁଖପ୍ରାପ୍ତି ହେବା ଆବଶ୍ୟକ ।**

---

* ମହାଦେବଂ ବିରୂପାକ୍ଷଂ ଚନ୍ଦ୍ରାର୍ଧକୃତଶେଖରମ୍ । ଅମୃତଂ ଶାଶ୍ୱତଂ ସ୍ଥାଣୁଂ ନୀଳକଣ୍ଠଂ ପିନାକିନମ୍ ॥
ବୃଷଭାକ୍ଷଂ ମହାଜ୍ଞେୟଂ ପୁରୁଷଂ ସର୍ବକାମଦମ୍ । କାମାରିଂ କାମଦହନଂ କାମରୂପଂ କପର୍ଦ୍ଦିନମ୍ ॥
ବିରୂପଂ ଗିରିଶଂ ଭୀମଂ ସ୍ରକ୍ୱିଣଂ ରକ୍ତବାସସମ୍ । ଯୋଗିନଂ କାଳଦହନଂ ତ୍ରିପୁରଘ୍ନଂ କପାଳିନମ୍ ॥
ଗୂଢବ୍ରତଂ ଗୁପ୍ତମନ୍ତ୍ରଂ ଗମ୍ଭୀରଂ ଭାବଗୋଚରମ୍ । ଅଣିମାଦିଗୁଣାଧାରଂ ତ୍ରିଲୋକୈଶ୍ୱର୍ଯ୍ୟଦାୟକମ୍ ॥
ବୀରଂ ବୀରହଣଂ ଘୋରଂ ବିରୂପଂ ମାଂସଳ ପଟୁମ୍ । ମହାମାଂସାଦମୁନ୍ମତ୍ତଂ ଭୈରବଂ ବୈ ମହେଶ୍ୱରମ୍ ॥
ତ୍ରୈଲୋକ୍ୟଦ୍ରାବଣଂ ଲୁବ୍ଧଂ ଲୁବ୍ଧକଂ ଯଜ୍ଞସୂଦନମ୍ । କୃତ୍ତିକାନାଂ ସୁତୈର୍ଯୁକ୍ତମୁନ୍ମତ୍ତଂ କୃତ୍ତିବାସସମ୍ ॥
ଗଜକୃତ୍ତିପରୀଧାନଂ କ୍ଷୁବ୍ଧଂ ଭୁଜଗଭୂଷଣମ୍ । ଦତ୍ତାଲମ୍ବଂ ଚ ବେତାଳଂ ଘୋରଂ ଶାକିନିପୂଜିତମ୍ ॥
ଅଘୋରଂ ଘୋରଦୈତ୍ୟଘ୍ନଂ ଘୋରଘୋଷଂ ବନସ୍ପତିମ୍ । ଭସ୍ମାଙ୍ଗଂ ଜଟିଳଂ ଶୁଦ୍ଧଂ ଭେରୁଣ୍ଡଶତସେବିତମ୍ ॥
ଭୂତେଶ୍ୱରଂ ଭୂତନାଥଂ ପଞ୍ଚଭୂତାଶ୍ରିତଂ ଖଗମ୍ । କ୍ରୋଧିତଂ ନିଷ୍ଠୁରଂ ଚଣ୍ଡଂ ଚଣ୍ଡୀଶଂ ଚଣ୍ଡିକାପ୍ରିୟମ୍ ॥
ଚଣ୍ଡତୁଣ୍ଡଂ ଗରୁତ୍ମନ୍ତଂ ନିସ୍ତ୍ରିଂଶଂ ଶବଭୋଜନମ୍ । ଲେଲିହାନଂ ମହାରୌଦ୍ରଂ ମୃତ୍ୟୁଂ ମୃତ୍ୟୋରଗୋଚରମ୍ ॥
ମୃତ୍ୟୋର୍ମୃତ୍ୟୁଂ ମହାସେନଂ ଶ୍ମଶାନାରଣ୍ୟବାସିନମ୍ । ରାଗଂ ବିରାଗଂ ରାଗାନ୍ଧଂ ବୀତରାଗଂ ଶତାର୍ଚ୍ଚିଷମ୍ ॥
ସତ୍ତ୍ୱଂ ରଜସ୍ତମୋଧର୍ମମଧର୍ମଂ ବାସବାନୁଜମ୍ । ସତ୍ୟଂ ତ୍ୱସତ୍ୟଂ ସଦ୍ରୂପମସଦ୍ରୂପମହେତୁକମ୍ ॥
ଅର୍ଧନାରୀଶ୍ୱରଂ ଭାନୁଂ ଭାନୁକୋଟିଶତପ୍ରଭମ୍ । ଯଜ୍ଞଂ ଯଜ୍ଞପତିଂ ରୁଦ୍ରମୀଶାନଂ ବରଦଂ ଶିବମ୍ ॥
ଅଷ୍ଟୋତ୍ତରଶତଂ ହ୍ୟେତନ୍ମୂର୍ତ୍ତୀନାଂ ପରମାତ୍ମନଃ । ଶିବସ୍ୟ ଦାନବୋ ଧ୍ୟାୟନ୍ ମୁକ୍ତସ୍ତସ୍ମାନ୍ମହାଭୟାତ୍ ॥

(ଶି. ପୁ., ରୁ. ସଂ., ଯୁଦ୍ଧଖଣ୍ଡ ୪୯ । ୫–୧୮)

ସନତ୍‌କୁମାର କହୁଛନ୍ତି—ମୁନେ ! ଏକଥା ଶୁଣି ଅନ୍ଧକ ଭୂମିରେ ଆଣ୍ଠୋଇପଡ଼ି ହାତ ଯୋଡ଼ି ଥରି ଥରି ଭଗବାନ ଉମାପତିଙ୍କୁ କହିଲା—

ଅନ୍ଧକ କହିଲା—ଭଗବନ୍ ! ଆପଣଙ୍କର ମହିମା ନ ଜାଣି ମୁଁ ପ୍ରଥମେ ରଣାଙ୍ଗନରେ ହର୍ଷଗଦ୍‌ଗଦ ହୋଇ ଆପଣଙ୍କୁ ଯେଉଁ ଦୀନ, ହୀନ ଓ ନୀଗ୍ରତିନୀଚ ବୋଲି କହିଛି ଏବଂ ମୂର୍ଖତା ହେତୁ ଯେଉଁ ନିନ୍ଦିତ କର୍ମ କରିଛି, ପ୍ରଭୋ ! ସେ ସବୁକୁ ଆପଣ ମନରୁ ଭୁଲିଯାଆନ୍ତୁ । ମହାଦେବ ! ମୁଁ ଅତ୍ୟନ୍ତ ନୀଚ ଓ ଦୁଃଖୀ । ମୁଁ କାମଦୋଷବଶତଃ ପାର୍ବତୀଦେବୀଙ୍କ ବିଷୟରେ ମଧ୍ୟ ଯେଉଁ ଦୂଷିତ ଭାବନା କରିଥିଲି, ତାହା କ୍ଷମା କରିଦିଅନ୍ତୁ । ଆପଣ ତ ଆପଣଙ୍କର କୃପଣ, ଦୀନ ଓ ଦୁଃଖୀ ଭକ୍ତ ଉପରେ ବିଶେଷ କୃପା କରିଥାନ୍ତି । ମୁଁ ସେହିପରି ଗୋଟିଏ ଦୀନହୀନ ଭକ୍ତ ଆପଣଙ୍କ ଶରଣକୁ ଆସିଛି । ଦେଖନ୍ତୁ, ମୁଁ ଆପଣଙ୍କ ସମ୍ମୁଖରେ କର ଯୋଡ଼ିଛି । ମୋତେ ରକ୍ଷା କରନ୍ତୁ । ଏ ଜଗଜ୍ଜନନୀ ପାର୍ବତୀଦେବୀ ମଧ୍ୟ ମୋ ଉପରେ ପ୍ରସନ୍ନ ହୁଅନ୍ତୁ ଏବଂ ସମସ୍ତ କ୍ରୋଧ ପରିତ୍ୟାଗ କରି ମୋତେ କୃପାଦୃଷ୍ଟିରେ ଦେଖନ୍ତୁ । ଚନ୍ଦ୍ରଶେଖର ! କାହିଁ ଏହାଙ୍କର ଭୟଙ୍କର କ୍ରୋଧ ଆଉ କାହିଁ ମୋ ପରି ତୁଚ୍ଛ ଦୈତ୍ୟ? ଚନ୍ଦ୍ରମୌଳି ! ମୁଁ କୌଣସି ପ୍ରକାରେ ତାହାକୁ ସହି ପାରିବି ନାହିଁ । ଶମ୍ଭୋ ! କାହାନ୍ତି ପରମ ଉଦାର ଆପଣ ଆଉ କାହିଁ ବାର୍ଦ୍ଧକ୍ୟ-ମୃତ୍ୟୁ-କାମ-କ୍ରୋଧ ଆଦି ଦୋଷର ବଶୀଭୂତ ମୁଁ? (ଅର୍ଥାତ୍ ଆମ ଦୁହିଙ୍କ ଭିତରେ ତୁଳନା କରାଯିବା ସମ୍ପୂର୍ଣ୍ଣ ଅସମ୍ଭବ ।) ମହେଶ୍ୱର ! ଆପଣଙ୍କର ଏ ଯୁଦ୍ଧକଳା ନିପୁଣ ବୀର ପୁତ୍ରମାନେ ମୋର ଦୀନତା ଉପରେ ବିଗ୍ରହ କରି ଆଉ କୋଧିତ ନ ହୁଅନ୍ତୁ । ତୁଷାର, ହାର, ଚନ୍ଦ୍ରକିରଣ, ଶଙ୍ଖ, କୁନ୍ଦପୁଷ୍ପ ଓ ଚନ୍ଦ୍ର ସଦୃଶ ଶୁଭ୍ରବର୍ଣ୍ଣ ଶିବ ! ମୋତେ ଏଭଳି ବର ଦିଅନ୍ତୁ, ଯାହାଫଳରେ ମୁଁ ଏ ପାର୍ବତୀଦେବୀଙ୍କୁ ଗୁରୁତାର ଗୌରବରେ ନିତ୍ୟ ମାତୃଦୃଷ୍ଟିରେ ଦେଖିବି ଏବଂ ଆପଣ ଦୁହିଙ୍କ ଭକ୍ତ ହୋଇ ରହିବି । ଦେବତାଙ୍କ ପ୍ରତି ମୋର ବୈରଭାବ ନଷ୍ଟ ହୋଇଯିବ ଏବଂ ମୁଁ ଶାନ୍ତଚିତ୍ତ ହୋଇ ଯୋଗଚିନ୍ତନ କରି କରି ଗଣଙ୍କ ସହିତ ନିବାସ କରିବି । ମହେଶାନ ! ଆପଣଙ୍କ କୃପାରୁ ମୁଁ ଯେପରି ଏ ଦାନବଭାବକୁ ଆଉ କେବେ ସ୍ମରଣ ନ କରିବି, ସେଭଳି ଉତ୍ତମ ବର ମୋତେ ପ୍ରଦାନ କରନ୍ତୁ ।

ସନତ୍‌କୁମାର କହୁଛନ୍ତି—ମୁନିସତ୍ତମ ! ଏତିକି କହି ଦୈତ୍ୟରାଜ ଅନ୍ଧକ ମାତା ପାର୍ବତୀଙ୍କ ଆଡ଼କୁ ଚାହିଁ ତ୍ରିଲୋଚନଙ୍କୁ ଧ୍ୟାନ କରି କରି ମୌନ ହୋଇଗଲା । ଏହାପରେ ରୁଦ୍ରଦେବ ତାକୁ କୃପାଦୃଷ୍ଟିରେ ଦେଖିଲେ । ତାଙ୍କ ଦୃଷ୍ଟି ପଡ଼ିବା ମାତ୍ରେ ତାକୁ ତା'ର ପୂର୍ବବୃତ୍ତାନ୍ତ ତଥା ଅଦ୍ଭୁତ ଜନ୍ମ କଥା ସ୍ମରଣ ଆସିଗଲା । ସେହି ଘଟଣା ସ୍ମରଣ ଆସିବା ମାତ୍ରେ ତାହାର ମନୋରଥ ପୂର୍ଣ୍ଣ ହୋଇଗଲା । ତା'ପରେ ସେ ମାତାପିତା ଉମାମହେଶ୍ୱରଙ୍କୁ ପ୍ରଣାମ କରି କୃତାର୍ଥ ହୋଇଗଲା । ସେତେବେଳେ ଶିବପାର୍ବତୀ ତାକୁ ସ୍ନେହ ପ୍ରଦାନ କଲେ । ଅନ୍ଧକ ପ୍ରସନ୍ନ ଚନ୍ଦ୍ରଶେଖରଙ୍କ ଠାରୁ ତା'ର ସମସ୍ତ ମନୋବାଞ୍ଛିତ ଫଳ ଲାଭ କଲା । ମୁନେ ! ମହାଦେବଙ୍କ କୃପାରୁ ଅନ୍ଧକକୁ ଯେପରି ପରମ ସୁଖଦ ଗଣାଧ୍ୟକ୍ଷ ପଦ ପ୍ରାପ୍ତ ହେଲା, ତାହାର ସମସ୍ତ ବୃତ୍ତାନ୍ତ ମୁଁ ତୁମ ଆଗରେ ବର୍ଣ୍ଣନା କଲି ଏବଂ ମୃତ୍ୟୁଞ୍ଜୟ ମନ୍ତ୍ର ମଧ୍ୟ କହିଦେଲି । ଏ ମନ୍ତ୍ର ମୃତ୍ୟୁନିବାରକ ଓ ସମସ୍ତ କାମନା ପୂରଣକାରୀ । ଏହାକୁ ପ୍ରଯତ୍ନପୂର୍ବକ ଜପିବା ଉଚିତ ।

(ଅଧ୍ୟାୟ ୪୭—୪୯)



# ଶୁକ୍ରାଚାର୍ଯ୍ୟଙ୍କର ଘୋର ତପସ୍ୟା ଓ ଶିବଙ୍କୁ ଚିତ୍ତରତ୍ନ ଅର୍ପଣ ତଥା ଅଷ୍ଟମୂର୍ତ୍ତ୍ୟଷ୍ଟକ ସ୍ତୋତ୍ର ଦ୍ୱାରା ଶିବଙ୍କୁ ସ୍ତବନ, ଶିବଙ୍କ ଠାରୁ ତାଙ୍କୁ ମୃତ-ସଂଜୀବନୀ ବିଦ୍ୟା ଓ ଅନ୍ୟାନ୍ୟ ବରପ୍ରାପ୍ତି

ସନତ୍‌କୁମାର କହୁଛନ୍ତି—ବ୍ୟାସଦେବ ! ମୁନିବର ଶୁକ୍ରାଚାର୍ଯ୍ୟଙ୍କୁ ଶିବଙ୍କ ଠାରୁ ମୃତ୍ୟୁଞ୍ଜୟ ନାମକ ମୃତ୍ୟୁପ୍ରଶମନ କରିବାର ପରାବିଦ୍ୟା କିପରି ପ୍ରାପ୍ତ ହେଲା, ତାହା ମୁଁ ବର୍ଣ୍ଣନା କରୁଛି, ଶୁଣ ।

ପୂର୍ବକାଳର କଥା । ଭୃଗୁନନ୍ଦନ ଶୁକ୍ର ବାରାଣସୀ ପୁରୀକୁ ଯାଇ ପ୍ରଭାବଶାଳୀ ବିଶ୍ୱନାଥଙ୍କୁ ଧ୍ୟାନ କରି କରି ବହୁକାଳ ପର୍ଯ୍ୟନ୍ତ ଘୋର ତପସ୍ୟା କରିଥିଲେ । ବେଦବ୍ୟାସ ! ସେତେବେଳେ ସେ ସେଠାରେ ଗୋଟିଏ ଶିବଲିଙ୍ଗ ସ୍ଥାପନ କରି ତା' ସମ୍ମୁଖରେ ଏକ ପରମ ରମଣୀୟ କୂପ ଖନନ କରାଇଲେ । ତା'ପରେ ସେ ଦ୍ରୋଣ ପରିମାଣର ପଞ୍ଚାମୃତରେ ଓ ଅନେକ ପ୍ରକାର ସୁଗନ୍ଧିତ ଦ୍ରବ୍ୟରେ ଦେବେଶ୍ୱରଙ୍କୁ ଲକ୍ଷେ ବାର ସ୍ନାନ କରାଇଲେ । ସହସ୍ରବାର ପରମ ପ୍ରୀତିପୂର୍ବକ ଚନ୍ଦନ, ଯକ୍ଷକର୍ଦ୍ଦମ* ଓ ସୁଗନ୍ଧିତ ପ୍ରଲେପ ସେହି ଲିଙ୍ଗରେ ଅନୁଲେପନ କଲେ । ତା'ପରେ ସାବଧାନତାପୂର୍ବକ ଆନନ୍ଦରେ ରାଜଚମ୍ପା, ଧତୁରା, କନିଅର, ପଦ୍ମ, ମାଳତୀ, କର୍ଣ୍ଣିକାର, କଦମ୍ବ, ବଉଳ, ଉତ୍ପଳ, ମଲ୍ଲିକା, ଶତପତ୍ରୀ, ସିନ୍ଧୁବାର, କିଂଶୁକ, ବନ୍ଧୁଲୀ, ପୁନ୍ନାଗ, ନାଗକେଶର, କେଶର, ନବମଲ୍ଲିକ, ଚିବିଳିକ (ରକ୍ତଦଳା), କୁନ୍ଦ, ମୁଚୁକୁନ୍ଦ, ମନ୍ଦାର (ଅରଖ), ବିଲ୍ୱପତ୍ର, ଦ୍ରୋଣ, ମରୁବୃକ, ବୃକ, ଗ୍ରନ୍ଥିପର୍ଣ୍ଣ, ଦୟଣା, ସୁନ୍ଦର ଆମ୍ରପଲ୍ଲବ, ତୁଳସୀ, ଦେବଗନ୍ଧାରୀ, ବୃହତ୍‌ପତ୍ରୀ, କୁଶାଙ୍କୁ, ନନ୍ଦାବର୍ତ୍ତ, ଅଗସ୍ତ୍ୟ, ଶାଳ, ଦେବଦାରୁ, କାଞ୍ଚନ, କୁରବକ, ଦୂର୍ବାଙ୍କୁର, କୁରଣ୍ଟକ ଇତ୍ୟାଦି ପୁଷ୍ପରେ ତଥା ଅନ୍ୟାନ୍ୟ ପଲ୍ଲବ, ନାନା ପ୍ରକାର ମନୋହର ପତ୍ର ଏବଂ ସୁନ୍ଦର ପଦ୍ମମାନଙ୍କରେ ଶିବଙ୍କର ବିଧିବତ୍ ଅର୍ଚ୍ଚନା କଲେ । ତାଙ୍କୁ ଅନେକ ପ୍ରକାର ଉପହାର ଅର୍ପଣ କଲେ ଏବଂ ଶିବଲିଙ୍ଗ ସମ୍ମୁଖରେ ଶିବସହସ୍ରନାମ ଓ ଅନ୍ୟାନ୍ୟ ସ୍ତୋତ୍ର ଗାନ କରି ଆନନ୍ଦରେ ନୃତ୍ୟ କଲେ । ଏହିରୂପେ ଶୁକ୍ରାଚାର୍ଯ୍ୟ ପାଞ୍ଚହଜାର ବର୍ଷପର୍ଯ୍ୟନ୍ତ ନାନା ବିଧିବିଧାନରେ ମହେଶ୍ୱରଙ୍କୁ ପୂଜା କଲେ । ଏହା ସତ୍ତ୍ୱେ ଶିବ ବର ଦେବାକୁ ତିଳେମାତ୍ର ଉଦ୍ୟତ ନ ହେବାରୁ ସେ ଆଉ ଗୋଟିଏ ଦୁଃସହ ଓ କଠୋର ନିୟମ ଅବଲମ୍ବନ କଲେ । ଶୁକ୍ର ଇନ୍ଦ୍ରିୟଙ୍କ ସମେତ ମନର ଚଞ୍ଚଳତାରୂପୀ ଦୋଷକୁ ବାରମ୍ବାର ଭାବନାରୂପୀ ଜଳରେ ପ୍ରକ୍ଷାଳିତ କଲେ । ଏହି ଉପାୟରେ ଚିତ୍ତରତ୍ନକୁ ନିର୍ମଳ କରି ତାହାକୁ ପିନାକଧାରୀ ଶିବଙ୍କୁ ଅର୍ପଣ କରିଦେଲେ ଏବଂ ସ୍ୱୟଂ ଧୂମକଣିକା ପାନ କରି ତପସ୍ୟା କରିବାକୁ ଲାଗିଲେ । ଏହିରୂପେ ଆହୁରି ହଜାରେ ବର୍ଷ ବିତିଗଲା । ଭୃଗୁନନ୍ଦନ ଏତେ ଦୃଢ଼ଚିତ୍ତରେ ତପସ୍ୟା କରୁଥିବା ଦେଖି ମହେଶ୍ୱର ପ୍ରସନ୍ନ ହୋଇଗଲେ । ଏଥର ଦାକ୍ଷାୟଣୀଙ୍କ ସ୍ୱାମୀ ସହସ୍ର ସୂର୍ଯ୍ୟତୁଲ୍ୟ କାନ୍ତିଧରୀ ସାକ୍ଷାତ୍ ବିରୂପାକ୍ଷ ଶିବ ସେହି ଲିଙ୍ଗରୁ ଆବିର୍ଭୂତ ହୋଇ ଶୁକ୍ରଙ୍କୁ କହିଲେ—

ମହେଶ୍ୱର କହିଲେ—ମହାଭାଗ ଭୃଗୁନନ୍ଦନ ! ତୁମେ ତ ତପୋନିଧି ଅଟ । ମହାମୁନେ ! ମୁଁ ତୁମର ଏହି ଅବିଚ୍ଛିନ୍ନ ତପରେ ଅତ୍ୟନ୍ତ ପ୍ରସନ୍ନ । ଭାର୍ଗବ ! ମୋତେ ବର ମାଗ । ତୁମର ଯାହା କିଛି ମନୋବାଞ୍ଛା ଅଛି, ମୁଁ ଆନନ୍ଦରେ ସେ

* କର୍ପୂର, ଅଗୁରୁ, କସ୍ତୁରୀ ଓ କଙ୍କୋଳକୁ ମିଶାଇ ପ୍ରସ୍ତୁତ କରାଯାଉଥିବା ଏକ ପ୍ରକାର ଅଙ୍ଗଲେପ ।

ସମସ୍ତ ଅବଶ୍ୟ ପୂର୍ଣ୍ଣ କରିବି । ମୋ ପାଖରେ ତୁମ ପାଇଁ କିଛି ବି ଅଦେୟ ନାହିଁ ।

ସନତ୍କୁମାର କହୁଛନ୍ତି—ମୁନେ ! ଶମ୍ଭୁଙ୍କ ପରମ ସୁଖଦ ବଚନ ଶୁଣି ଶୁକ୍ର ମନେ ମନେ ପ୍ରସନ୍ନ ହୋଇ ଆନନ୍ଦସାଗରରେ ନିମଗ୍ନ ହୋଇଗଲେ । କମଳନୟନ ଦ୍ୱିଜବର ଶୁକ୍ରଙ୍କ ଶରୀର ପରମାନନ୍ଦଜନିତ ରୋମାଞ୍ଚରେ ପୁଲକିତ ହୋଇଗଲା । ସେ ଆନନ୍ଦାଧିକ୍ୟରେ ଶମ୍ଭୁଙ୍କ ଚରଣତଳେ ଲୋଟିପଡ଼ି ପ୍ରଣାମ କଲେ । ତାଙ୍କ ନେତ୍ରଯୁଗଳ ହର୍ଷରେ ପ୍ରଫୁଲ୍ଲିତ ହୋଇ ଉଠିଲା । ସେ କର ଯୋଡ଼ି ଶିବଙ୍କର ଜୟଧ୍ୱନି କରିବା ସହ ଅଷ୍ଟମୂର୍ତ୍ତିଧାରୀ* ବରଦାୟକ ଶିବଙ୍କୁ ସ୍ତୁତି କରିବାକୁ ଲାଗିଲେ ।

ଭାର୍ଗବ କହିଲେ—ହେ ସୂର୍ଯ୍ୟସ୍ୱରୂପ ଭଗବନ୍ ! ଆପଣ ତ୍ରିଲୋକର ହିତ କରିବା ପାଇଁ ଆକାଶରେ ପ୍ରକାଶିତ ହୁଅନ୍ତି ଏବଂ ନିଜ କିରଣ ଦ୍ୱାରା ସମସ୍ତ ଅନ୍ଧକାରକୁ ଅଭିଭୂତ କରି ନିଶାଚର ଅସୁରଙ୍କ ମନୋରଥକୁ ନଷ୍ଟ କରିଦିଅନ୍ତି । ଜଗଦୀଶ୍ୱର ! ଆପଣଙ୍କୁ ନମସ୍କାର । ଘୋର ଅନ୍ଧକାର ନିମନ୍ତେ ଚନ୍ଦ୍ରସ୍ୱରୂପ ଶଙ୍କର ! ଆପଣ ଅମୃତ ପ୍ରବାହରେ ପରିପୂର୍ଣ୍ଣ ତଥା ଜଗତର ସମସ୍ତ ପ୍ରାଣୀଙ୍କର ନେତ୍ର ଅଟନ୍ତି । ଆପଣ ଆପଣଙ୍କର ଅମର୍ଯ୍ୟାଦ ତେଜୋମୟ କିରଣରେ ଆକାଶରେ ଓ ଭୂତଳରେ ଅପାର ଆଲୋକ ବିସ୍ତାର କରିଦିଅନ୍ତି, ଯାହା ଫଳରେ ସମସ୍ତ ଅନ୍ଧକାର ଦୂର ହୋଇଯାଏ । ଆପଣଙ୍କୁ ପ୍ରଣାମ । ସର୍ବବ୍ୟାପିନ୍ ! ଆପଣ ପାବନ ପଥ ବା ଯୋଗମାର୍ଗର ଆଶ୍ରିତଙ୍କର ଗତି ଓ ଉପାସ୍ୟଦେବ । ଭୁବନଜୀବନ ! ଆପଣଙ୍କ ବିନା ଏ ଜଗତରେ କିଏ ବା ଜୀବିତ ରହିପାରିବ ଭଲା । ସର୍ପକୁଳର ସନ୍ତୋଷଦାତା ! ଆପଣ ନିଶ୍ଚଳ ବାୟୁରୂପରେ ସମସ୍ତ ପ୍ରାଣୀଙ୍କର ଅଭିବୃଦ୍ଧି କରିଥାନ୍ତି, ଆପଣଙ୍କୁ ଅଭିବାଦନ । ବିଶ୍ୱର ଏକମାତ୍ର ପାବନକାରୀ ! ଆପଣ ଶରଣାଗତରକ୍ଷକ ଓ ଅଗ୍ନିର ଏକମାତ୍ର ଶକ୍ତି । ପାବକ ଆପଣଙ୍କର ହିଁ ସ୍ୱରୂପ । ଆପଣଙ୍କ ବିନା ମୃତ ପ୍ରାଣୀଙ୍କର ବାସ୍ତବିକ ଦିବ୍ୟ କାର୍ଯ୍ୟ ଦାହ ଇତ୍ୟାଦି ହୋଇ ପାରିବ ନାହିଁ । ଜଗତର ଅନ୍ତରାତ୍ମା ! ଆପଣ ପ୍ରାଣଶକ୍ତିପ୍ରଦାତା, ଜଗତ୍ସ୍ୱରୂପ ଓ ପ୍ରତି ପଦକ୍ଷେପରେ ଶାନ୍ତି ପ୍ରଦାନ କରିଥାନ୍ତି । ଆପଣଙ୍କ ଚରଣରେ ମୁଁ ମଥା ଅବନତ କରୁଛି । ଜଳସ୍ୱରୂପ ପରମେଶ୍ୱର ! ଆପଣ ଜଗତର ପାବନକାରୀ ଓ ବିଚିତ୍ର ଚରିତ୍ର ଚରୟିତା । ବିଶ୍ୱନାଥ ! ଜଳରେ ଅବଗାହନ କଲେ ଆପଣ ହିଁ ବିଶ୍ୱକୁ ନିର୍ମଳ ଓ ପବିତ୍ର କରିଥାନ୍ତି । ଏଣୁ ଆପଣଙ୍କୁ ନମସ୍କାର । ଆକାଶରୂପ ଈଶ୍ୱର ! ଆପଣଠାରୁ ଅବକାଶ ପାଇ ଏ ବିଶ୍ୱ ବାହାରେ ଓ ଭିତରେ ବିକଶିତ ହୋଇ ସ୍ୱଭାବବଶତଃ ଶ୍ୱାସ ନେଉଛି ଅର୍ଥାତ୍ ଜଗତର ପରମ୍ପରା ଗ୍ରୁଲୁ ରହିଛି ଏବଂ ଆପଣଙ୍କ ଦ୍ୱାରା ଏହା ସଂକୁଚିତ ମଧ୍ୟ ହେଉଛି ଅର୍ଥାତ୍ ନଷ୍ଟ ହେଉଛି । ଏଣୁ ହେ ଦୟାଳୁ ଭଗବନ୍ ! ମୁଁ ଆପଣଙ୍କ ଆଗରେ ନତମସ୍ତକ ହେଉଛି । ବିଶ୍ୱମ୍ଭରାତ୍ମକ ! ଆପଣ ହିଁ ଏ ବିଶ୍ୱର ଭରଣପୋଷଣ କରନ୍ତି । ସର୍ବବ୍ୟାପିନ୍ ! ଆପଣଙ୍କ ଅତିରିକ୍ତ ଆଉ କିଏ ଅବା ଏ ଅଜ୍ଞାନାନ୍ଧକାରକୁ ଦୂର କରିବାକୁ ସମର୍ଥ ହୋଇପାରିବ । ତେଣୁ ବିଶ୍ୱନାଥ ! ଆପଣ ମୋର ଅଜ୍ଞାନାନ୍ଧକାରକୁ ନଷ୍ଟ କରିଦିଅନ୍ତୁ । ନାଗଭୂଷଣ ! ଆପଣ ସ୍ତବନୀୟ ପୁରୁଷଙ୍କ ମଧ୍ୟରେ ସବୁଠାରୁ ଶ୍ରେଷ୍ଠ । ଏଣୁ ଆପଣଙ୍କ ପରି ପରାତ୍ପର ପ୍ରଭୁଙ୍କୁ ମୁଁ ବାରମ୍ବାର ପ୍ରଣାମ କରୁଛି । ଆତ୍ମସ୍ୱରୂପ ଶଙ୍କର ! ଆପଣ

* ଭୂମି, ଜଳ, ଅଗ୍ନି, ବାୟୁ, ଆକାଶ, ଯଜମାନ, ଚନ୍ଦ୍ର ଓ ସୂର୍ଯ୍ୟ—ଏ ଆଠଟିରେ ଅଧିଷ୍ଠିତ ଶର୍ବ, ଭବ, ରୁଦ୍ର, ଉଗ୍ର, ଭୀମ, ପଶୁପତି, ମହାଦେବ ଓ ଈଶାନ ହେଉଛି ଏ ଅଷ୍ଟମୂର୍ତ୍ତିର ନାମ ।

ସକଳ ପ୍ରାଣୀଙ୍କ ଅନ୍ତରାତ୍ମାରେ ନିବାସ କରନ୍ତି, ପ୍ରତ୍ୟେକ ରୂପରେ ବ୍ୟାପ୍ତ ଅଟନ୍ତି । ଅଷ୍ଟମୂର୍ତ୍ତେ ! ଆପଣଙ୍କର ଏହି ରୂପ-ପରମ୍ପରାମାନଙ୍କରୁ ଏ ସଚରାଚର ବିଶ୍ୱ ବିସ୍ତାରିତ ହୋଇଛି । ମୁଁ ତ ଆପଣଙ୍କର ସେବକ, ତେଣୁ ମୁଁ ଆପଣଙ୍କୁ ନିତ୍ୟ ପ୍ରଣାମ କରୁଛି । ମୁକ୍ତପୁରୁଷଙ୍କର ବନ୍ଧୁ ! ଆପଣ ବିଶ୍ୱର ସମସ୍ତ ପ୍ରାଣୀଙ୍କର ସ୍ୱରୂପ, ପ୍ରଣତଜନଙ୍କ ସମସ୍ତ ଯୋଗକ୍ଷେମ ନିର୍ବହନକାରୀ ଓ ପରମାର୍ଥସ୍ୱରୂପ । ଆପଣ ଏହି ଅଷ୍ଟମୂର୍ତ୍ତିରେ ଯୁକ୍ତ ହୋଇ ଏ ବିଶାଳ ବିଶ୍ୱକୁ ଉତ୍ତମରୂପେ ବିସ୍ତାରିତ କରନ୍ତି; ତେଣୁ ଆପଣଙ୍କୁ ମୋର ଅଭିବାଦନ ।*

ସନତ୍କୁମାର କହୁଛନ୍ତି—**ମୁନିବର ! ଭୃଗୁନନ୍ଦନ ଶୁକ୍ର ଏପରି ଅଷ୍ଟମୂର୍ତ୍ତ୍ୟଷ୍ଟକସ୍ତୋତ୍ର ଦ୍ୱାରା ଶିବଙ୍କୁ ସ୍ତୁତି କରି ବାରମ୍ବାର ଭୂମିଷ୍ଟ ପ୍ରଣାମ କଲେ । ଅମିତ ତେଜସ୍ୱୀ ଭାର୍ଗବ ମହାଦେବଙ୍କୁ ଏପରି ସ୍ତୁତି ଓ ନମସ୍କାର କରିବାରୁ ଶିବ ନିଜ ଚରଣତଳେ ଲୋଟିଥିବା ଭୃଗୁଙ୍କୁ ଦୁଇ ଭୁଜରେ ଉଠାଇଲେ ଏବଂ ପରମ ସ୍ନେହରେ ମେଘ-ଗମ୍ଭୀର ବାଣୀରେ ତାଙ୍କୁ ଆଶ୍ୱାସନା ଦେଲେ । ସେତେବେଳେ ତାଙ୍କ ଦନ୍ତପଙ୍କ୍ତିର ଚମକରେ ସମସ୍ତ ଦିଗ ଝଟକି ଉଠୁଥିଲା ।**

ମହାଦେବ କହିଲେ—**ବିପ୍ରବର ! କବେ ! ତୁମେ ମୋର ପବିତ୍ର ଭକ୍ତ । ବତ୍ସ ! ତୁମର ଏହି ଉଗ୍ର ତପସ୍ୟାରେ, ଉତ୍ତମ ଆଚରଣରେ, ଲିଙ୍ଗସ୍ଥାପନଜନିତ ପୁଣ୍ୟରେ, ଲିଙ୍ଗ ଆରାଧନାରେ, ଚିତ୍ତରୂପୀ ଉପହାର ପ୍ରଦାନରେ, ପବିତ୍ର ଅବିଚଳ**

---

* ତ୍ୱଂ ଭାଭିରାଭିରଭିଭୂୟ ତମସ୍ସମସ୍ତମସ୍ତଂ ନୟସ୍ୟଭିମତାନି ନିଶାଚରାଣାମ୍ ।
ଦେଦୀପ୍ୟସେ ଦିବମଣେ ଗଗନେ ହିତାୟ ଲୋକତ୍ରୟସ୍ୟ ଜଗଦୀଶ୍ୱର ତନ୍ନମସ୍ତେ ॥

ଲୋକେଽତିବେଲମତିବେଲମହାମହୋଭିର୍ନିର୍ଭାସି କୌ ଚ ଗଗନେଽଖିଲଲୋକନେତ୍ରଃ ।
ବିଦ୍ରାବିତାଖିଳତମାସ୍ସୁତମୋ ହିମାଂଶୋ ପୀୟୂଷପୂରପରିପୂରିତ ତନ୍ନମସ୍ତେ ॥

ତ୍ୱଂ ପାବନେ ପଥି ସଦା ଗତିରପ୍ୟୁପାସ୍ୟଃ କସ୍ତ୍ୱାଂ ବିନା ଭୁବନଜୀବନ ଜୀବତୀହ ।
ସ୍ତବ୍ଧପ୍ରଭଞ୍ଜନବିବର୍ଦ୍ଧିତସର୍ବଜନ୍ତୋ ସଂତୋଷିତାହିକୁଳ ସର୍ବଗ ବୈ ନମସ୍ତେ ॥

ବିଶ୍ୱୈକପାବକ ନତାବକ ପାବକୈକ ଶକ୍ତେ ଋତେ ମୃତବତାମୃତଦିବ୍ୟକାର୍ଯ୍ୟମ୍ ।
ପ୍ରାଣିଷ୍ୟଦୋ ଜଗଦହୋ ଜଗଦନ୍ତରାତ୍ମଂସ୍ତ୍ୱଂ ପାବକଃ ପ୍ରତିପଦଂ ଶମଦୋ ନମସ୍ତେ ॥

ପାନୀୟରୂପ ପରମେଶ ଜଗତ୍ପବିତ୍ର ଚିତ୍ରାତିଚିତ୍ରସୁଚରିତ୍ରକରୋଽସି ନୂନମ୍ ।
ବିଶ୍ୱଂ ପବିତ୍ରମମଳଂ କିଲ ବିଶ୍ୱନାଥ ପାନୀୟଗାହନତ ଏତଦତୋ ନତୋଽସ୍ମି ॥

ଆକାଶରୂପବହିରନ୍ତରୁତାବକାଶଦାନାଦ୍ ବିକଶ୍ୱରମିହେଶ୍ୱର ବିଶ୍ୱମେତତ୍ ।
ତ୍ୱତ୍ତସ୍ସଦା ସଦୟ ସଂଶ୍ୱସିତି ସ୍ୱଭାବାତ୍ ସଂକୋଚମେତି ଭବତୋଽସ୍ମି ନତସ୍ତତସ୍ତ୍ୱାମ୍ ॥

ବିଶ୍ୱମ୍ଭରାତ୍ମକ ବିଭର୍ଷି ବିଭୋଽତ୍ର ବିଶ୍ୱଂ କୋ ବିଶ୍ୱନାଥ ଭବତୋଽନ୍ୟତମସ୍ତମୋଽରିଃ ।
ସ ତ୍ୱଂ ବିନାଶୟ ତମୋ ମମ ଗୃହିଭୂଷ ସ୍ତବ୍ୟାତ୍ପରଃ ପରପରଂ ପ୍ରଣତସ୍ତତସ୍ତ୍ୱାମ୍ ॥

ଆତ୍ମସ୍ୱରୂପ ତବ ରୂପପରମ୍ପରାଭିରାଭିସ୍ତତଂ ହର ଚରାଚରରୂପମେତତ୍ ।
ସର୍ବାନ୍ତରାତ୍ମନିଲୟ ପ୍ରତିରୂପରୂପ ନିତ୍ୟଂ ନତୋଽସ୍ମି ପରମାତ୍ମଜନୋଽଷ୍ଟମୂର୍ତ୍ତେ ॥

ଇତ୍ୟଷ୍ଟମୂର୍ତ୍ତିଭିରିମାଭିରବନ୍ଧବନ୍ଧୋ ଯୁକ୍ତଃ କରୋଷି ଖଲୁ ବିଶ୍ୱଜନୀନମୂର୍ତ୍ତେ ।
ଏତତ୍ତତଂ ସୁବିତତଂ ପ୍ରଣତପ୍ରଣୀତ ସର୍ବାର୍ଥସାର୍ଥପରମାର୍ଥ ତତୋ ନତୋଽସ୍ମି ॥

(ଶି. ପୁ., ରୁ. ସଂ., ଯୁଦ୍ଧଖଣ୍ଡ ୫୦ । ୨୪–୩୨)

ଭାବରେ ଏବଂ ଅବିମୁକ୍ତ ମହାକ୍ଷେତ୍ର କାଶୀରେ ଅବସ୍ଥାନପୂର୍ବକ ପାବନ ଆଚରଣ କରିବାରେ ପ୍ରସନ୍ନ ହୋଇ ମୁଁ ତୁମକୁ ପୁତ୍ରରୂପେ ଦେଖୁଛି। ତେଣୁ ତୁମ ପାଇଁ ମୋ ନିକଟରେ କିଛି ବି ଅଦେୟ ନାହିଁ। ତୁମେ ସଶରୀର ମୋର ଉଦରରୂପୀ ଗୁମ୍ଫାରେ ପ୍ରବେଶ କରିବ ଏବଂ ମୋର ଶ୍ରେଷ୍ଠ ଇନ୍ଦ୍ରିୟମାର୍ଗରେ ବାହାରି ପୁତ୍ରରୂପରେ ଜନ୍ମ ଗ୍ରହଣ କରିବ। ମହାଶୁଚେ ! ମୋ ପାଖରେ ଯେଉଁ ମୃତ୍ୟୁ-ସଂଜୀବନୀ ନାମକ ନିର୍ମଳ ବିଦ୍ୟା ଅଛି, ଯାହାକୁ ମୁଁ ମୋ ତପୋବଳରେ ସୃଷ୍ଟି କରିଛି, ସେହି ମହାମନ୍ତ୍ରରୂପା ବିଦ୍ୟାକୁ ଆଜି ମୁଁ ତୁମକୁ ପ୍ରଦାନ କରିବି; କାରଣ ତୁମେ ପବିତ୍ର ତପର ନିଧି ଏବଂ ତୁମଠାରେ ସେହି ବିଦ୍ୟାକୁ ଧାରଣ କରିବାର ଯୋଗ୍ୟତା ବିଦ୍ୟମାନ। ତୁମେ ନିୟମପୂର୍ବକ ଯାହା ଉଦ୍ଦେଶ୍ୟରେ ଏହି ବିଦ୍ୟେଶ୍ୱର ଶ୍ରେଷ୍ଠ ବିଦ୍ୟାକୁ ପ୍ରୟୋଗ କରିବ, ସେ ନିଶ୍ଚିତ ଜୀବିତ ହୋଇଯିବ—ଏଥିରେ ସଂଶୟ ନାହିଁ। ତୁମେ ଆକାଶରେ ଅତ୍ୟନ୍ତ ଦୀପ୍ତିମାନ୍ ତାରା ରୂପରେ ବିରାଜମାନ ହେବ। ତୁମର ତେଜ ସୂର୍ଯ୍ୟ ଓ ଅଗ୍ନିର ତେଜକୁ ମଧ୍ୟ ଅତିକ୍ରମ କରିଯିବ। ତୁମେ ଗ୍ରହଙ୍କ ମଧ୍ୟରେ ପ୍ରଧାନ ରୂପେ ଗଣ୍ୟ ହେବ। ଯେଉଁ ସ୍ତ୍ରୀ ବା ପୁରୁଷ ତୁମେ ସମ୍ମୁଖରେ ଥିବା ବେଳେ ଯାତ୍ରା କରିବେ, ତାଙ୍କର ସମସ୍ତ କାର୍ଯ୍ୟ ତୁମ ଦୃଷ୍ଟି ପଡ଼ିବାରୁ ନଷ୍ଟ ହୋଇଯିବ। ସୁବ୍ରତ ! ତୁମେ ଉଦିତ ହେଲେ ମନୁଷ୍ୟଙ୍କର ବିବାହ ଆଦି ସମସ୍ତ ଧର୍ମକାର୍ଯ୍ୟ ସଫଳ ହେବ। ସମସ୍ତ ନନ୍ଦା (ପ୍ରତିପଦା, ଷଷ୍ଠୀ ଓ ଏକାଦଶୀ) ତିଥି ତୁମ ସଂଯୋଗରେ ଶୁଭ ହେବ ଏବଂ ତୁମ ଭକ୍ତ ବୀର୍ଯ୍ୟସମ୍ପନ୍ନ ତଥା ଅନେକ ସନ୍ତାନସନ୍ତତିଯୁକ୍ତ ହେବେ। ତୁମ ଦ୍ୱାରା ସ୍ଥାପିତ ଏହି ଶିବଲିଙ୍ଗ 'ଶୁକ୍ରେଶ' ନାମରେ ବିଖ୍ୟାତ ହେବ। ଯେଉଁ ଲୋକ ଏହି ଲିଙ୍ଗର ଅର୍ଚ୍ଚନା କରିବ, ତାକୁ ସିଦ୍ଧି ପ୍ରାପ୍ତ ହେବ। ଯେଉଁ ଲୋକେ ବର୍ଷେକାଳ ନକ୍ତବ୍ରତ ପରାୟଣ ହୋଇ ପ୍ରତି ଶୁକ୍ରବାର ଦିନ ଶୁକ୍ରକୂପ ଜଳରେ ସମସ୍ତ କ୍ରିୟା ସମ୍ପନ୍ନ କରି ଶୁକ୍ରେଶଙ୍କୁ ଅର୍ଚ୍ଚନା କରିବେ, ସେମାନଙ୍କୁ ଯେଉଁ ଫଳ ପ୍ରାପ୍ତି ହେବ, ତାହା ଶୁଣ। ସେମାନଙ୍କ ଠାରେ ବୀର୍ଯ୍ୟର ଆଧିକ୍ୟ ରହିବ, ସେମାନଙ୍କ ବୀର୍ଯ୍ୟ କଦାପି ନିଷ୍ଫଳ ହେବ ନାହିଁ; ସେମାନେ ପୁତ୍ରବାନ୍ ତଥା ପୁରୁଷତ୍ୱର ସୌଭାଗ୍ୟରେ ଯେ ସମ୍ପନ୍ନ ହେବେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ସେମାନେ ଅନେକ ପ୍ରକାର ବିଦ୍ୟାର ଜ୍ଞାତା ଓ ସୁଖଭାଗୀ ହେବେ। ଏପରି ବର ଦେଇ ମହାଦେବ ସେହି ଲିଙ୍ଗରେ ପ୍ରବିଷ୍ଟ ହୋଇଗଲେ। ତା'ପରେ ଭୃଗୁନନ୍ଦନ ଶୁକ୍ର ମଧ୍ୟ ପ୍ରସନ୍ନମନରେ ନିଜ ଧାମକୁ ଚାଲିଗଲେ। ହେ ବ୍ୟାସଦେବ ! ଶୁକ୍ରାଚାର୍ଯ୍ୟଙ୍କୁ ଯେଉଁ ପ୍ରକାରେ ତାଙ୍କ ତପୋବଳରେ ମୃତ୍ୟୁଞ୍ଜୟ ନାମକ ବିଦ୍ୟା ପ୍ରାପ୍ତ ହୋଇଥିଲା, ସେହି ବୃତ୍ତାନ୍ତ ମୁଁ ତୁମକୁ କହିଦେଲି। ଏବେ ଆଉ କ'ଣ ଶୁଣିବାକୁ ଚାହୁଁଛ?

(ଅଧ୍ୟାୟ ୫୦)



## ବାଣାସୁରର ତପସ୍ୟା ଓ ଶିବଙ୍କ ଠାରୁ ବରପ୍ରାପ୍ତି, ତା' ନଗରରେ ପୁତ୍ର ଓ ଗଣଙ୍କ ସମେତ ଶିବଙ୍କ ନିବାସ, ସ୍ୱପ୍ନରେ ବାଣକନ୍ୟା ଉଷାର ଅନିରୁଦ୍ଧ ସଙ୍ଗେ ମିଳନ, ଚିତ୍ରଲେଖା ଦ୍ୱାରା ଦ୍ୱାରକାରୁ ଅନିରୁଦ୍ଧ ଅପହରଣ, ବାଣାସୁର ଅନିରୁଦ୍ଧଙ୍କୁ ନାଗପାଶରେ ବାନ୍ଧି ରଖିବାରୁ ଦୁର୍ଗାଙ୍କୁ ସ୍ତୁତି କରି ସେଥିରୁ ଅନିରୁଦ୍ଧଙ୍କ ମୁକ୍ତି, ନାରଦଙ୍କ ଠାରୁ ସମାଗ୍ଚର ପାଇ ଶୋଣିତପୁର ଉପରେ ଶ୍ରୀକୃଷ୍ଣଙ୍କ ଆକ୍ରମଣ, ଶିବଙ୍କ ସଙ୍ଗେ ତାଙ୍କର ଘୋର ଯୁଦ୍ଧ, ଶିବଙ୍କ ଆଜ୍ଞାନୁସାରେ ଶ୍ରୀକୃଷ୍ଣ ତାଙ୍କୁ ଜୃମ୍ଭଣାସ୍ତ୍ରରେ ମୋହିତ କରି ବାଣର ସେନାକୁ ସଂହାର କରିବା ପ୍ରସଙ୍ଗ

ବ୍ୟାସ କହିଲେ–ସର୍ବଜ୍ଞ ସନତ୍‌କୁମାର ! ଆପଣ ଅନୁଗ୍ରହ କରି ପ୍ରେମପୂର୍ବକ ଏପରି ଅଦ୍ଭୁତ ଓ ସୁନ୍ଦର କଥା କହିଲେ, ଯାହାକି ଶିବଙ୍କ କୃପାରେ ଓତପ୍ରୋତ ଅଟେ । ଏବେ ମୋର ଶଶିମୌଳିଙ୍କ ସେହି ଚରିତ୍ର ଶ୍ରବଣ କରିବାର ଇଚ୍ଛା ଅଛି, ଯେଉଁଥିରେ ସେ ପ୍ରସନ୍ନ ହୋଇ ବାଣାସୁରକୁ ଗଣାଧ୍ୟକ୍ଷ ପଦ ପ୍ରଦାନ କରିଥିଲେ ।

ସନତ୍‌କୁମାର କହିଲେ–ବ୍ୟାସଦେବ ! ପରମାତ୍ମା ଶମ୍ଭୁ ଯେଉଁ ଲୀଳା କ୍ରମେ ବାଣାସୁରକୁ ଗଣନାୟକ କରିଦେଇଥିଲେ, ସେକଥା ଏବେ ଆଦରପୂର୍ବକ ଶ୍ରବଣ କର । ଏହି ପ୍ରସଙ୍ଗରେ ମହାପ୍ରଭୁ ଶିବଙ୍କର ସେହି ସୁନ୍ଦର ଚରିତ୍ର ମଧ୍ୟ ଆସିବ, ଯେଉଁଥିରେ ସେ ବାଣାସୁର ଉପରେ ଅନୁଗ୍ରହ କରିବାକୁ ଯାଇ ଶ୍ରୀକୃଷ୍ଣଙ୍କ ସଙ୍ଗେ ସଂଗ୍ରାମ କରିଥିଲେ । ବ୍ୟାସଦେବ ! ଦକ୍ଷପ୍ରଜାପତିଙ୍କର ତେରଟି କନ୍ୟା ଥିଲେ କଶ୍ୟପଙ୍କର ପତ୍ନୀ । ସେମାନେ ସମସ୍ତେ ପତିବ୍ରତା ତଥା ସୁଶୀଳା ଥିଲେ । ସେମାନଙ୍କ ମଧ୍ୟରେ ସବୁଠାରୁ ବଡ଼ ଥିଲେ ଦିତି, ତାଙ୍କରି ପୁତ୍ରମାନେ ହିଁ ଦୈତ୍ୟ ନାମରେ ପ୍ରଖ୍ୟାତ ହୋଇଛନ୍ତି । ଅନ୍ୟ ପତ୍ନୀମାନଙ୍କ ଠାରୁ ଦେବତା ଓ ସଚରାଚର ପ୍ରାଣୀ ପୁତ୍ରରୂପରେ ଉତ୍ପନ୍ନ ହୋଇଥିଲେ । ଜ୍ୟେଷ୍ଠା ପତ୍ନୀ ଦିତିଙ୍କ ଗର୍ଭରୁ ସର୍ବପ୍ରଥମେ ଯେଉଁ ଦୁଇଟି ମହାବଳୀ ପୁତ୍ର ଉତ୍ପନ୍ନ ହୋଇଥିଲେ, ତାଙ୍କ ମଧ୍ୟରେ ହିରଣ୍ୟକଶିପୁ ଜ୍ୟେଷ୍ଠ ଥିଲା ଓ କନିଷ୍ଠ ଥିଲା ହିରଣ୍ୟାକ୍ଷ । ହିରଣ୍ୟକଶିପୁର ଚାରିଟି ପୁତ୍ର ହେଲେ । ସେହି ଦୈତ୍ୟଶ୍ରେଷ୍ଠଙ୍କ ନାମ ହେଲା ହ୍ରାଦ, ଅନୁହ୍ରାଦ, ସଂହ୍ରାଦ ଓ ପ୍ରହ୍ରାଦ । ସେମାନଙ୍କ ମଧ୍ୟରେ ପ୍ରହ୍ରାଦ (ପ୍ରହ୍ଲାଦ) ଜିତେନ୍ଦ୍ରିୟ ଓ ମହାନ୍ ବିଷ୍ଣୁଭକ୍ତ ହେଲେ । ତାଙ୍କୁ ମାରିବାକୁ କୌଣସି ଦୈତ୍ୟ ସକ୍ଷମ ହୋଇପାରିଲା ନାହିଁ । ପ୍ରହ୍ରାଦଙ୍କ ପୁତ୍ର ହେଲା ବିରୋଚନ, ସେ ଥିଲା ଦାନୀଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ବିପ୍ରରୂପ ଧାରଣ କରି ଇନ୍ଦ୍ର ଆସି ତାକୁ ତା'ର ମସ୍ତକ ମାଗିବାରୁ ସେ ନିଜ ମସ୍ତକ ଦାନ କରିଦେଇଥିଲା । ତାହାର ପୁତ୍ର ହେଲା ବଳି । ବଳି ମଧ୍ୟ ମହାଦାନୀ ଓ ଶିବଭକ୍ତ ଥିଲା । ସେ ବାମନରୂପଧାରୀ ବିଷ୍ଣୁଙ୍କୁ ସମଗ୍ର ପୃଥିବୀ ଦାନ କରିଦେଇଥିଲା । ବଳିର ଔରସ ପୁତ୍ର ହେଲା ବାଣ । ସେ ଶିବଭକ୍ତ, ମାନୀ, ଉଦାର, ବୁଦ୍ଧିମାନ୍ ଓ ସତ୍ୟପ୍ରତିଜ୍ଞ ଥିଲା । ସେ ହଜାର ହଜାର ଦାନ କରିଥିଲା । ଅସୁରରାଜ ବାଣ ପୂର୍ବକାଳରେ ତ୍ରିଲୋକକୁ ଓ ତ୍ରିଲୋକାଧିପତିଙ୍କୁ ବାହୁବଳରେ ପରାଭୂତ କରି ଶୋଣିତ ପୁରରେ

ତା'ର ରାଜଧାନୀ ସ୍ଥାପନ କଲା ଏବଂ ସେହିଠାରେ ରହି ରାଜ୍ୟ ଶାସନ କଲା । ବାଣାସୁର ପ୍ରତି ଶିବଙ୍କ କୃପା ହେତୁ ସେତେବେଳେ ଦେବଗଣ ଶିବଭକ୍ତ ବାଣାସୁରର କିଂକର ପରି ହୋଇଯାଇଥିଲେ । ତା' ରାଜ୍ୟରେ ଦେବତାଙ୍କ ଅତିରିକ୍ତ ଅନ୍ୟ କୌଣସି ପ୍ରଜା ଦୁଃଖରେ ନ ଥିଲେ । ଶତ୍ରୁଧର୍ମ ଆଚରଣକାରୀ ଦେବତା ଶତ୍ରୁତା ହେତୁ ହିଁ କଷ୍ଟ ପାଉଥିଲେ । ଥରେ ମହାସୁର ବାଣ ତା'ର ସହସ୍ର ଭୁଜରେ ତାଳି ବଜାଇ ତାଣ୍ଡବ ନୃତ୍ୟ କରି ମହେଶ୍ୱରଙ୍କୁ ପ୍ରସନ୍ନ କରିବାକୁ ଚେଷ୍ଟା କଲା । ସେହି ନୃତ୍ୟରେ ଭକ୍ତବତ୍ସଳ ଶିବ ସନ୍ତୁଷ୍ଟ ହୋଇଗଲେ । ସେ ପରମ ପ୍ରସନ୍ନ ହୋଇ ତା' ଆଡ଼କୁ କୃପାଦୃଷ୍ଟିରେ ଚାହିଁଲେ । ଶିବ ତ ସମଗ୍ର ଜଗତର ସ୍ୱାମୀ, ଶରଣାଗତ ଓ ଭକ୍ତବାଞ୍ଛାକଳ୍ପତରୁ । ତେଣୁ ସେ ବଳିପୁତ୍ର ମହାସୁର ବାଣକୁ ବର ଦେବାକୁ ଇଚ୍ଛା ପ୍ରକାଶ କଲେ ।

ମୁନେ ! ବଳିନନ୍ଦନ ମହାଦୈତ୍ୟ ବାଣ ଶିବଭକ୍ତଙ୍କ ମଧ୍ୟରେ ଅଗ୍ରଣୀ ଓ ପରମ ବୁଦ୍ଧିମାନ୍ ଥିଲା । ସେ ପରମେଶ୍ୱର ଶିବଙ୍କୁ ପ୍ରଣାମ କରି ତାଙ୍କୁ ସ୍ତୁତି କରି ଏହିପରି କହିଲା ।

ବାଣାସୁର କହିଲା–ପ୍ରଭୋ ! ଆପଣ ମୋର ରକ୍ଷକ ହୋଇଯାଆନ୍ତୁ ଏବଂ ମୋ ନଗରର ଅଧ୍ୟକ୍ଷ ହୋଇ ସର୍ବଥା ପ୍ରୀତିପୂର୍ଣ୍ଣ ବ୍ୟବହାର କରିବା ସଙ୍ଗେ ସଙ୍ଗେ ଆପଣା ପୁତ୍ର ତଥା ଗଣଙ୍କ ସହିତ ମୋ ନିକଟରେ ନିବାସ କରନ୍ତୁ ।

ସନତ୍କୁମାର କହୁଛନ୍ତି–ମହର୍ଷେ ! ସତ କହିବାକୁ ଗଲେ ବଳିପୁତ୍ର ବାଣ ଶିବଙ୍କ ମାୟାମୋହରେ ପଡ଼ିଯାଇଥିଲା, ସେଥିପାଇଁ ସେ ମୁକ୍ତିପ୍ରଦାତା ଦୁରାରାଧ୍ୟ ମହେଶ୍ୱରଙ୍କୁ ପାଇ ମଧ୍ୟ ତାଙ୍କୁ ଏଭଳି ବର ମାଗିଲା । ଏହାପରେ ଐଶ୍ୱର୍ଯ୍ୟଶାଳୀ ଭକ୍ତବତ୍ସଳ ଶମ୍ଭୁ ତାକୁ ସେହି ବର ଦେଇ ପୁତ୍ର ଓ ଗଣଙ୍କ ସହିତ ପ୍ରେମପୂର୍ବକ ତା' ନଗରରେ ନିବାସ କଲେ । ଥରେ ବାଣାସୁର ମନରେ ପ୍ରବଳ ଗର୍ବ ହୋଇଗଲା । ସେ ତାଣ୍ଡବ ନୃତ୍ୟ କରି ଶିବଙ୍କୁ ସନ୍ତୁଷ୍ଟ କରିଦେଲା । ଯେତେବେଳେ ବାଣାସୁରକୁ ଜଣା ପଡ଼ିଗଲା ଯେ ପାର୍ବତୀବଲ୍ଲଭ ଶିବ ତା' ଉପରେ ପ୍ରସନ୍ନ ହୋଇଗଲେଣି, ସେ ହାତ ଯୋଡ଼ି ମସ୍ତକ ଅବନତ କରି କହିଲା–

ବାଣାସୁର କହିଲା–ହେ ଦେବାଧିଦେବ ମହାଦେବ ! ଆପଣ ସମସ୍ତ ଦେବତାଙ୍କ ଶିରୋମଣି । ଆପଣଙ୍କ କୃପାରୁ ମୁଁ ବଳୀୟାନ୍ ହୋଇଛି । ଏବେ ମୋର କଥାକୁ ଟିକେ ଶୁଣନ୍ତୁ । ଆପଣ ମୋତେ ଯେଉଁ ଏକହଜାର ଭୁଜ ପ୍ରଦାନ କରିଛନ୍ତି, ତାହା ଏବେ ମୋ ପାଇଁ ବେକାର ଓ ଭାରସ୍ୱରୂପ ମନେ ହେଉଛି; କାରଣ ଏ ତ୍ରିଲୋକରେ ମୋତେ ଆପଣଙ୍କ ଛଡ଼ା ଆଉ କେହି ମୋର ସମକକ୍ଷ ଯୋଦ୍ଧା ମିଳିଲା ନାହିଁ । ଏଣୁ ହେ ବୃଷଭଧ୍ୱଜ ! ଯୁଦ୍ଧ ବିନା ପର୍ବତ ପରି ଏ ହଜାରେ ଭୁଜକୁ ରଖି ମୁଁ କ'ଣ କରିବି? ମୋର ଏ ବଳିଷ୍ଠ ଭୁଜମାନଙ୍କର କଣ୍ଡୂ ଦୂର କରିବାକୁ ମୁଁ ଯୁଦ୍ଧ ଲାଳସାରେ ଅନେକ ନଗର ଓ ପର୍ବତମାନଙ୍କୁ ଚୂର୍ଣ୍ଣ କରି କରି ଦିଗ୍‌ଗଜମାନଙ୍କ ପାଖକୁ ଗଲି, ହେଲେ ସେମାନେ ମଧ୍ୟ ଭୟଭୀତ ହୋଇ ପଳାୟନ କଲେ । ମୁଁ ଦିକ୍‌ପାଳମାନଙ୍କୁ ପରାସ୍ତ କରି ଯମକୁ ଯୋଦ୍ଧା, ଅଗ୍ନିକୁ ମହାନ୍ କାର୍ଯ୍ୟ ସମ୍ପାଦନକାରୀ, ବରୁଣକୁ ଗୋ-ପାଳକ, କୁବେରକୁ ଗଜାଧ୍ୟକ୍ଷ, ନିର୍ଋତିକୁ ସୈରନ୍ଧ୍ରୀ ଓ ଇନ୍ଦ୍ରକୁ ଚିରକାଳ ପାଇଁ କରଦାତା କରିନେଇଛି । ମହେଶ୍ୱର ! ଏବେ ମୋତେ ଏଭଳି କୌଣସି ଯୁଦ୍ଧ କଥା କୁହନ୍ତୁ, ଯେଉଁଥିରେ ମୋର ଏ ଭୁଜମାନ ହୁଏତ ଶତ୍ରୁଙ୍କ ହାତର ଅସ୍ତ୍ରଶସ୍ତ୍ରରେ ଜର୍ଜର ହୋଇ ଖସିପଡ଼ିବେ, ନଚେତ୍ ଶତ୍ରୁଙ୍କର ଭୁଜକୁ ହଜାରେ ଖଣ୍ଡ କରି ଖସାଇ ପକାଇବେ । କୃପା କରି ମୋର ଏହି ଅଭିଳାଷ ପୂରଣ କରନ୍ତୁ ।

ସନତ୍କୁମାର କହୁଛନ୍ତି–ମୁନିବର ! ତା' କଥା ଶୁଣି ଭକ୍ତବାଧାପହାରୀ ତଥା ମହାମନ୍ୟୁସ୍ୱରୂପ ରୁଦ୍ରଙ୍କୁ କ୍ରୋଧ ଆସିଗଲା । ସେ ଅଦ୍ଭୁତରୂପେ ଘୋର ଅଟ୍ଟହାସ କରି କହିଲେ–

ରୁଦ୍ର କହିଲେ–ଆରେ ଅଭିମାନୀ ! ନୀଚ ଦୈତ୍ୟ ! ତୋତେ ଧିକ୍କାର, ଶତଧିକ୍କାର । ତୁ ବଳିର ପୁତ୍ର ଓ ମୋର ଭକ୍ତ । ତୋ ପକ୍ଷେ ଏପରି କହିବା ଆଦୌ ଉଚିତ ନ ଥିଲା । ଠିକ୍ ଅଛି । ଏବେ ତୋର ଦର୍ପ ନିଶ୍ଚୟ ଚୂର୍ଣ୍ଣ ହେବ । ଖୁବ୍ ଶୀଘ୍ର ମୋ ପରି ଜଣେ ବଳବାନ୍ ସଙ୍ଗେ ତୋର ଭେଟ ହେବ ଏବଂ ତା' ସଙ୍ଗେ ତୋର ଭୀଷଣ ଯୁଦ୍ଧ ହେବ । ସେହି ସଂଗ୍ରାମରେ ତୋର ଏ ପର୍ବତତୁଲ୍ୟ ଭୁଜଗୁଡ଼ିକ ଅସ୍ତ୍ରଶସ୍ତ୍ରରେ ଛିନ୍ନଭିନ୍ନ ହୋଇ ଜାଳେଣୀ କାଠ ପରି ଭୂମିରେ ଖସି ପଡ଼ିବ । ଦୁଷ୍ଟାତ୍ମନ୍ ! ତୋର ଆୟୁଧାଗାର ଉପରେ ଯେଉଁ ମୟୂର ସମେତ ମନୁଷ୍ୟମୁଣ୍ଡ ଚିହ୍ନ ଥିବା ଧ୍ୱଜା ଉଡ଼ୁଛି, ତାହା ଯେତେବେଳେ ବିନା ବାୟୁରେ ଖସି ପଡ଼ିବ, ସେତେବେଳେ ତୁ ବୁଝିଯିବୁ ଯେ ତୋ ପାଇଁ ସେହି ଭୟଙ୍କର ଯୁଦ୍ଧ ଆଗତ ହୋଇଗଲା । ସେତେବେଳେ ତୁ ଘୋର ସଂଗ୍ରାମ ପାଇଁ ଦୃଢ଼ନିର୍ଣ୍ଣୟ କରି ତୋର ସୈନ୍ୟଙ୍କୁ ନେଇ ଯୁଦ୍ଧକ୍ଷେତ୍ରକୁ ବାହାରିଯିବୁ । ଏବେ ତୁ ତୋ ମହଲକୁ ଫେରିଯାଆ; କାରଣ ଏଇଥିରେ ହିଁ ତୋର କଲ୍ୟାଣ ନିହିତ । ଦୁର୍ମତେ ! ସେଠାରେ ତୋତେ ବହୁତ ବଡ଼ ବଡ଼ ଉତ୍ପାତ ଦେଖାଦେବ ।'' ଏତିକି କହି ଗର୍ବହାରୀ ଭକ୍ତବତ୍ସଳ ଭଗବାନ ଶିବ ଚୁପ୍ ହୋଇଗଲେ ।

ସନତ୍କୁମାର କହୁଛନ୍ତି–ମୁନେ ! ଏହା ଶୁଣି ବାଣାସୁର ଦିବ୍ୟ ପୁଷ୍ପର କଢ଼ମାନ ଅଞ୍ଜଳିରେ ଧରି ରୁଦ୍ରଙ୍କୁ ଅଭ୍ୟର୍ଚ୍ଚନା କଲା ଏବଂ ମହାଦେବଙ୍କୁ ପ୍ରଣାମ କରି ନିଜ ମହଲକୁ ଫେରିଗଲା । କିଛି ଦିନ ପରେ ଏକଦା ଦୈବବଶତଃ ସେହି ଧ୍ୱଜା ଆପେ ଆପେ ଭାଙ୍ଗି ଖସିପଡ଼ିଲା । ଏହା ଦେଖି ବାଣାସୁର ଆନନ୍ଦିତ ହୋଇ ଯୁଦ୍ଧ ପାଇଁ ଉଦ୍ୟତ ହେଲା । ସେ ମନେ ମନେ ଚିନ୍ତା କଲା, କିଏ ଏପରି ଯୁଦ୍ଧପ୍ରେମୀ ବୀର ଯୋଦ୍ଧା କେଉଁ ଦେଶରୁ ଆସିବ, ଯେ କି ନାନା ପ୍ରକାର ଅସ୍ତ୍ରଶସ୍ତ୍ର ବିଦ୍ୟାରେ ପାରଙ୍ଗମ ହୋଇଥିବ ଏବଂ ମୋର ଭୁଜଗୁଡ଼ିକୁ ଜାଳେଣୀ କାଠ ପରି କାଟି ପକାଇବ ଅଥବା ମୁଁ ମୋର ଅତ୍ୟନ୍ତ ତୀକ୍ଷ୍ଣ ଶସ୍ତ୍ରରେ ତାକୁ କାଟି ଶହ ଶହ ଖଣ୍ଡ କରିପକାଇବି? ବାସ୍ତବରେ ଶିବଙ୍କ ପ୍ରେରଣାରେ ସେହି ସମୟ ଆସିଯାଇଥିଲା । ଦିନେ ବାଣାସୁରର କନ୍ୟା ଉଷା ବୈଶାଖମାସରେ ମାଧବଙ୍କ ପୂଜା ସାରି ମାଙ୍ଗଳିକ ଶୃଙ୍ଗାରରେ ସୁସଜ୍ଜିତା ହୋଇ ରାତିରେ ନିଜ ଗୁପ୍ତ ଅନ୍ତଃପୁରରେ ଶୋଇଥିଲା । ସେତେବେଳେ ସେ ସ୍ତ୍ରୀଭାବ (କାମଭାବ)ରେ ଭାବିତ ହୋଇଗଲା । ଦେବୀ ପାର୍ବତୀଙ୍କ ଶକ୍ତିବଳରେ ସ୍ୱପ୍ନରେ ଶ୍ରୀକୃଷ୍ଣଙ୍କ ପୌତ୍ର ଅନିରୁଦ୍ଧ ସଙ୍ଗେ ଉଷାର ମିଳନ ହେଲା । ସ୍ୱପ୍ନ ଭାଙ୍ଗିବା ପରେ ସେ ବ୍ୟାକୁଳ ହୋଇଉଠିଲା ଏବଂ ତା'ର ସଖୀ ଚିତ୍ରଲେଖାକୁ ସ୍ୱପ୍ନରେ ମିଳିତ ହୋଇଥିବା ପୁରୁଷକୁ ଆଣି ପହଞ୍ଚାଇବାକୁ କହିଲା ।

ଚିତ୍ରଲେଖା କହିଲା–''ହେ ଦେବୀ ! ତୁମେ ସ୍ୱପ୍ନରେ ଯେଉଁ ପୁରୁଷକୁ ଦେଖିଲ, ତାକୁ ମୁଁ କେମିତି ବା ଆଣି ଦେଇପାରିବି, ମୁଁ ତ ତାକୁ ଆଦୌ ଜାଣିନି?'' ସେ ଏପରି କହିବାରୁ ଦୈତ୍ୟକନ୍ୟା ଉଷା ପ୍ରେମାନ୍ଧ ହୋଇ ପ୍ରାଣତ୍ୟାଗ କରିବାକୁ ପ୍ରସ୍ତୁତ ହୋଇଗଲା । ଏହା ଦେଖି ସଖୀ ତାକୁ ବାରଣ କଲା । ମୁନିଶ୍ରେଷ୍ଠ ! କୁମ୍ଭାଣ୍ଡର କନ୍ୟା ଚିତ୍ରଲେଖା ବଡ଼ ବୁଦ୍ଧିମତୀ ଥିଲା, ସେ ବାଣତନୟା ଉଷାକୁ କହିଲା–

ଚିତ୍ରଲେଖା କହିଲା–ଲୋ ସଖୀ ! ଯେଉଁ ପୁରୁଷ ତୁମର ମନକୁ ମୋହିନେଇଛି, ତା' ବିଷୟରେ ମୋତେ କିଛି ସୂଚନା ଦିଅ । ସେ ତ୍ରିଲୋକରେ ଯେଉଁଠି ଥିଲେ ବି ମୁଁ ତାକୁ ଆଣି

ତୁମ ପାଖରେ ପହଞ୍ଚାଇ ତୁମର ମନକଷ୍ଟ ଦୂର କରିବି ।

ସନତ୍‌କୁମାର କହୁଛନ୍ତି–ମହର୍ଷେ ! ଏହା କହି ଚିତ୍ରଲେଖା କପଡ଼ା ଉପରେ ଦେବତା, ଦୈତ୍ୟ, ଦାନବ, ଗନ୍ଧର୍ବ, ସିଦ୍ଧ, ନାଗ ଓ ଯକ୍ଷ ପ୍ରଭୃତିଙ୍କର ଅନେକ ଚିତ୍ର ଆଙ୍କି ତାକୁ ଦେଖାଇଲା । ତା'ପରେ ସେ ମନୁଷ୍ୟଙ୍କ ଚିତ୍ର ଆଙ୍କିଲା । ପୁଣି ବୃଷ୍ଣିବଂଶର ଲୋକଙ୍କ ଚିତ୍ର ଅଙ୍କିବା କ୍ରମରେ ଶୂର, ବସୁଦେବ, ବଳରାମ, କୃଷ୍ଣ ଓ ନରଶ୍ରେଷ୍ଠ ପ୍ରଦ୍ୟୁମ୍ନଙ୍କ ଚିତ୍ର ଆଙ୍କିଲା । ତା'ପରେ ସେ ଯେତେବେଳେ ପ୍ରଦ୍ୟୁମ୍ନନନ୍ଦନ ଅନିରୁଦ୍ଧଙ୍କ ଚିତ୍ର ଆଙ୍କିଲା, ତାହାକୁ ଦେଖି ଉଷାର ମୁଖମଣ୍ଡଳ ଲଜ୍ଜାରେ ଅବନତ ହୋଇଗଲା ଓ ହୃଦୟ ହର୍ଷରେ ପରିପୂରିତ ହୋଇଉଠିଲା ।

ଉଷା କହିଲା–''ସଖୀ ଲୋ! ରାତିରେ ଯେ ମୋ ପାଖକୁ ଆସିଥିଲା ଏବଂ ଯେ ଏତେ ଶୀଘ୍ର ମୋ ଚିତ୍ତରୂପୀ ରତ୍ନକୁ ଚୋରାଇ ନେଇଛି, ଏ ହେଉଛି ସେହି ଚିତ୍ତଚୋର ।'' ତା'ପରେ ଉଷାର ଅନୁରୋଧରେ ଦିବ୍ୟ ଯୋଗିନୀ ଚିତ୍ରଲେଖା ଆପଣା ଯୋଗବିଦ୍ୟା ବଳରେ ଜ୍ୟେଷ୍ଠ କୃଷ୍ଣ ଚତୁର୍ଦ୍ଦଶୀ ଦିନ ତୃତୀୟ ପ୍ରହରବେଳକୁ ଦ୍ୱାରକାପୁରୀରେ ପହଞ୍ଚି କ୍ଷଣକ ଭିତରେ ପଲଙ୍କରେ ବସିଥିବା ଅନିରୁଦ୍ଧଙ୍କୁ ରାଜମହଲରୁ ଉଠାଇ ଆଣିଲା । ଉଷା ତା'ର ପ୍ରିୟତମକୁ ପାଇ ଅତ୍ୟନ୍ତ ଆନନ୍ଦିତ ହେଲା । ଏଣେ ଅନ୍ତଃପୁର ଦ୍ୱାରଦେଶରେ ପହରା ଦେଉଥିବା ବେତଧାରୀ ପ୍ରହରୀମାନେ କିଛି କାର୍ଯ୍ୟକଳାପରୁ ଏ କଥା ଅନୁମାନ କରିନେଲେ । ସେମାନେ ଜଣେ ଦିବ୍ୟ, ଦର୍ଶନୀୟ, ସାହସୀ ଓ ସମରପ୍ରିୟ ନବଯୁବକକୁ କନ୍ୟା ସହିତ ଦୁଃଶୀଳ ଆଚରଣ କରୁଥିବାବେଳେ ଦେଖିଦେଲେ । ତାହାକୁ ଦେଖି କନ୍ୟାର ଅନ୍ତଃପୁରର ରକ୍ଷକମାନେ ବଳିପୁତ୍ର ବାଣାସୁର ନିକଟକୁ ଯାଇ ଏହିପରି ନିବେଦନ କଲେ–

ଦ୍ୱାରପାଳ କହିଲେ–ପ୍ରଭୋ ! ଆପଣଙ୍କ ଅନ୍ତଃପୁରରେ କେହି ଜଣେ ପୁରୁଷ ବଳପୂର୍ବକ ପ୍ରବେଶ କରି ଲୁଚିରହିଛି! ସେ ଇନ୍ଦ୍ର ନୁହେଁ ତ? ସେ ବେଶ ବଦଳାଇ ଆପଣଙ୍କ କନ୍ୟାକୁ ଉପଭୋଗ କରୁନାହିଁ ତ? ମହାବାହୁ ଦାନବରାଜ ! ତାକୁ ଏଇଠୁ ଦେଖନ୍ତୁ, ଲକ୍ଷ୍ୟ କରନ୍ତୁ; ଆଉ ଯାହା ଉଚିତ ମଣୁଛନ୍ତି, ସେପରି କରନ୍ତୁ । ଏଥିରେ ଆମ୍ଭମାନଙ୍କର କୌଣସି ଦୋଷ ନାହିଁ ।

ସନତ୍‌କୁମାର କହୁଛନ୍ତି–ହେ ମୁନିବର ! ଦ୍ୱାରପାଳଙ୍କ ମୁଖରୁ କନ୍ୟା ଦୂଷିତ ହେବା କଥା ଶୁଣି ମହାବଳୀ ଦାନବରାଜ ବାଣ ଆଶ୍ଚର୍ଯ୍ୟଚକିତ ହୋଇଗଲା । ତା'ପରେ ସେ କୁପିତ ହୋଇ ଅନ୍ତଃପୁରରେ ଯାଇ ପହଞ୍ଚିଲା ଏବଂ ସେଠାରେ ଦିବ୍ୟଦେହଧାରୀ ନବଯୁବକ ଅନିରୁଦ୍ଧଙ୍କୁ ଦେଖିଲା । ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟରେ ପଡ଼ିଗଲା । ଏହାପରେ ସେହି ଯୁବକର ବଳ ଜାଣିବା ପାଇଁ ସେ ଦଶହଜାର ସୈନିକଙ୍କୁ ପଠାଇ ତାକୁ ମାରିପକାଇବାକୁ ଆଦେଶ ଦେଲା । ସୈନିକମାନେ ଅନିରୁଦ୍ଧଙ୍କ ଉପରେ ଆକ୍ରମଣ କଲେ । ମାତ୍ର ଅନିରୁଦ୍ଧ ଏକୁଟିଆ ଅକ୍ଳେଶରେ ଦଶହଜାର ସୈନିକଙ୍କୁ ମାରି ପକାଇଲେ । ତା'ପରେ ଜଣ ଜଣ କରି ଅଗଣିତ ସୈନ୍ୟ ଆସି ସେଠାରେ ପହଞ୍ଚିଗଲେ । ସେମାନଙ୍କୁ ମଧ୍ୟ ଅନିରୁଦ୍ଧ ମୃତ୍ୟୁମୁଖକୁ ଠେଲିଦେଲେ । ତା'ପରେ ସେ ବାଣାସୁରକୁ ବଧ କରିବାକୁ କାଳ ପରି ଭୟଙ୍କର ଦିଶୁଥିବା ଗୋଟିଏ ଶକ୍ତି ଉଠାଇ ତଦ୍ଦ୍ୱାରା ରଥରେ ବସିଥିବା ବାଣାସୁର ଉପରେ ଆକ୍ରମଣ କଲେ । ଶକ୍ତିର ଆଘାତରେ ବୀରବର ବାଣ ଆହତ ହୋଇ ଅଶ୍ୱନକ ଘୋଡ଼ା ସହିତ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲା । ତା'ପରେ ମହାନ୍ ବୀର ତଥା ଶିବଭକ୍ତ ବଳିପୁତ୍ର ବାଣାସୁର ଛଳପୂର୍ବକ

ଅନିରୁଦ୍ଧଙ୍କୁ ବାନ୍ଧି ପକାଇଲା ଏବଂ ତାଙ୍କୁ ନେଇ ପିଞ୍ଜରାରେ ଅବରୁଦ୍ଧ କରି ରଖି ଯୁଦ୍ଧରୁ ଉପରତ ହୋଇଗଲା । ଏହାପରେ ବାଣ କୁପିତ ହୋଇ ମହାବଳୀ ସୂତପୁତ୍ରକୁ କହିଲା ।

ବାଣାସୁର କହିଲା—ସୂତପୁତ୍ର ! ଘାସପତ୍ରରେ ଆଚ୍ଛାଦିତ ଅରମା ଗଭୀର କୂଅରେ ଏହାକୁ ଠେଲିଦେଇ ମାରିପକାଅ । ଅଧିକ କ'ଣ ବା କହିବି, ଏହାକୁ କୌଣସି ପ୍ରକାରେ ମାରି ପକାଇବା ହିଁ ଉଚିତ ହେବ ।

ସନତ୍କୁମାର କହୁଛନ୍ତି—ମୁନେ ! ତା' କଥା ଶୁଣି ମନ୍ତ୍ରୀବର ଧର୍ମବୁଦ୍ଧି କୁମ୍ଭାଣ୍ଡ ବାଣାସୁରକୁ କହିଲା—

କୁମ୍ଭାଣ୍ଡ କହିଲା—ହେ ଦେବ ! ଟିକିଏ ବିଗ୍ଭର କରନ୍ତୁ । ମୋ ବିଗ୍ଭରରେ ଏଭଳି କର୍ମ କରିବା ଉଚିତ ହେବ ନାହିଁ; କାରଣ ଏହାକୁ ମାରିଲେ ଆମରି ଆତ୍ମା ହିଁ ଆହତ ହେବ । ପରାକ୍ରମରେ ଏ ତ ବିଷ୍ଣୁଙ୍କ ପରି ଲାଗୁଛି । ଯାହା ଜଣା ପଡୁଛି, ଆପଣଙ୍କ ଉପରେ କୁପିତ ହୋଇ ଚନ୍ଦ୍ରଚୂଡ଼ ଏହାକୁ ଉତ୍ତମ ତେଜ ଦାନ କରି ବଢ଼ାଇଛନ୍ତି । ସାହସରେ ଏ ଶଶିମୌଳିଙ୍କ ସମାନ ଲାଗୁଛି; କାରଣ ଏପରି ଅବସ୍ଥାରେ ପହଞ୍ଚି ମଧ୍ୟ ଏ ନିଜ ପୁରୁଷାର୍ଥ ଉପରେ ଅଟଳ ଭରସା କରୁଛି । ଏ ଏତେ ବଳୀୟାନ୍ ଯେ ନାଗମାନେ ଏହାକୁ ବଳପୂର୍ବକ ଦଂଶନ କଲେ ମଧ୍ୟ ଏ ଆମ୍ଭମାନଙ୍କୁ ତୃଣବତ୍ ମନେ କରୁଛି ।

ସନତ୍କୁମାର କହୁଛନ୍ତି—ବ୍ୟାସଦେବ ! ଦାନବ କୁମ୍ଭାଣ୍ଡ ରାଜନୀତିର ପ୍ରକାଣ୍ଡ ଜ୍ଞାତା ଥିଲା । ସେ ବାଣକୁ ଏପରି କହିସାରି ଅନିରୁଦ୍ଧଙ୍କୁ କହିଲା—

କୁମ୍ଭାଣ୍ଡ କହିଲା—ରେ ନରାଧମ ! ଏବେ ତୁ ବୀରବର ଦୈତ୍ୟରାଜଙ୍କୁ ସ୍ତୁତି କରି ଏବଂ 'ମୁଁ ହାରିଗଲି' ଏଭଳି ବାରମ୍ବାର ଦୈନ୍ୟଭାବରେ କହି ତାଙ୍କୁ ହାତ ଯୋଡ଼ି ନମସ୍କାର କର । ଏପରି କଲେ ତୁ ବନ୍ଧନରୁ ମୁକ୍ତ ହୋଇପାରିବୁ, ଅନ୍ୟଥା ତୋତେ ବନ୍ଧନ ଇତ୍ୟାଦିର କଷ୍ଟ ଭୋଗିବାକୁ ପଡ଼ିବ ।'' ତା' କଥାର ଉତ୍ତର ଦେବାକୁ ଯାଇ ଅନିରୁଦ୍ଧ କହିଲେ—

ଅନିରୁଦ୍ଧ କହିଲେ—ଦୁରାଗ୍ରହୀ ନିଶାଚର ! ତୋତେ କ୍ଷତ୍ରିୟ ଧର୍ମ ଜଣା ନାହିଁ । ଶୁଣ, ବୀର ପକ୍ଷେ ଦୈନ୍ୟଭାବ ଦେଖାଇବା ଓ ଯୁଦ୍ଧରୁ ପଛଘୁଞ୍ଚା ଦେଇ ପଳାୟନ କରିବା ମରଣଠାରୁ ମଧ୍ୟ ଅଧିକ କଷ୍ଟଦାୟକ । ମୋ ବିଗ୍ଭରରେ ଏତାଦୃଶ ଯୁଦ୍ଧବିରୁଦ୍ଧ ଆଚରଣ ଜୀବନସାରା କଣ୍ଟାପରି ଫୋଡ଼ି ହେବ । ବୀରତ୍ୱ ଅଭିମାନୀ କ୍ଷତ୍ରିୟ ପକ୍ଷେ ରଣଭୂମିରେ ସମ୍ମୁଖ ଯୁଦ୍ଧରେ ସଂଗ୍ରାମ କରି କରି ମରିଯିବା ବରଂ ଶ୍ରେୟସ୍କର, କିନ୍ତୁ ପାଦତଳେ ପଡ଼ି ହାତ ଯୋଡ଼ି ଦୀନଜନ ପରି ମରିବା କଦାପି ସ୍ପୃହଣୀୟ ନୁହେଁ ।*

ସନତ୍କୁମାର କହୁଛନ୍ତି—ମୁନେ ! ଏହିରୂପେ ଅନିରୁଦ୍ଧ ବହୁତ ପ୍ରକାର ବୀରତ୍ୱର କଥା କହିଲେ । ତାହା ଶୁଣି ବାଣାସୁରକୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା ଏବଂ ତା' ମନରେ କ୍ରୋଧ ମଧ୍ୟ ଉତ୍ପନ୍ନ ହେଲା । ସେତିକିବେଳେ ସମସ୍ତ ବୀର ଯୋଦ୍ଧା, ଅନିରୁଦ୍ଧ ତଥା ମନ୍ତ୍ରୀ କୁମ୍ଭାଣ୍ଡ ପ୍ରଭୃତିଙ୍କ ଉପସ୍ଥିତିରେ ସମସ୍ତେ ଶୁଣି ପାରିଲା ପରି ଆକାଶବାଣୀ ହେଲା ।

ଆକାଶବାଣୀ କହିଲା—ମହାବଳୀ ବାଣ ! ତୁମେ ବଳୀଙ୍କର ପୁତ୍ର, ତେଣୁ ଟିକିଏ ବିଗ୍ଭର କର । ହେ ପରମ ବୁଦ୍ଧିମାନ୍ ଶିବଭକ୍ତ ! ତୁମ ପକ୍ଷେ କ୍ରୋଧ କରିବା ଉଚିତ ନୁହେଁ । ଶିବ ସମସ୍ତ ପ୍ରାଣୀଙ୍କର ଈଶ୍ୱର, କର୍ମମାନଙ୍କର ସାକ୍ଷୀ

* କ୍ଷତ୍ରିୟସ୍ୟ ରଣେ ଶ୍ରେୟୋ ମରଣଂ ସମ୍ମୁଖେ ସଦା । ନ ବୀରମାନିନୀ ଭୂମୌ ଦୀନସ୍ୟେବ କୃତାଞ୍ଜଲେଃ ॥
(ଶି. ପୁ., ରୁ. ସଂ., ଯୁଦ୍ଧଖଣ୍ଡ ୫୩ । ୩୫)

ଏବଂ ପରମେଶ୍ୱର । ଏ ସମଗ୍ର ଜଗତ ତାଙ୍କରି ଅଧୀନ । ସେ ସଦା ରଜୋଗୁଣ, ସତ୍ତ୍ୱଗୁଣ ଓ ତମୋଗୁଣର ଆଶ୍ରୟ ନେଇ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ରୂପରେ ଜଗତର ସୃଷ୍ଟି, ପାଳନ ଓ ସଂହାର କରନ୍ତି । ସେ ସର୍ବାନ୍ତର୍ଯାମୀ, ସର୍ବେଶ୍ୱର, ସମସ୍ତଙ୍କର ପ୍ରେରକ, ସର୍ବଶ୍ରେଷ୍ଠ, ବିକାରରହିତ, ଅବିନାଶୀ, ନିତ୍ୟ ଓ ମାୟାଧୀଶ ହୋଇ ମଧ୍ୟ ନିର୍ଗୁଣ ଅଟନ୍ତି । ତାଙ୍କ ଇଚ୍ଛାରେ ନିର୍ବଳକୁ ମଧ୍ୟ ବଳବାନ୍ ବୋଲି ବୁଝିବା ଉଚିତ । ମହାମତେ ! ମନରେ ଏପରି ଚିନ୍ତା କରି ସାବଧାନ ହୋଇଯାଅ । ନାନା ପ୍ରକାର ଲୀଳା ରଚନାରେ ନିପୁଣ ଭକ୍ତବତ୍ସଳ ଭଗବାନ ଶିବ ଗର୍ବକୁ ନଷ୍ଟ କରିଦିଅନ୍ତି । ସେ ତୋର ଗର୍ବକୁ ଚୂର୍ଣ୍ଣ କରିଦେବେ ।

ସନତ୍କୁମାର କହୁଛନ୍ତି—ମହାମୁନେ ! ଏତିକି କହି ଆକାଶବାଣୀ ନିରବ ହୋଇଗଲା । ଏଭଳି ବାଣୀକୁ ଶୁଣି ବାଣାସୁର ଅନିରୁଦ୍ଧଙ୍କୁ ବଧ କରିବାର ବିଗ୍ରହ ଛାଡ଼ିଦେଲା । ଏହାପରେ ବିଷାକ୍ତ ନାଗଙ୍କର ବନ୍ଧନରେ ପଡ଼ିଥିବା ଅନିରୁଦ୍ଧ ଅବିଳମ୍ବେ ଦୁର୍ଗାଙ୍କୁ ସ୍ମରଣ କଲେ ।

ଅନିରୁଦ୍ଧ କହିଲେ—ହେ ଶରଣାଗତବତ୍ସଳେ ! ଆପଣ ଯଶପ୍ରଦାନକାରିଣୀ, ଆପଣଙ୍କ ରୋଷ ଅତ୍ୟନ୍ତ ଉଗ୍ର । ହେ ଦେବୀ ! ମୁଁ ବିଷାକ୍ତ ନାଗଙ୍କ ବନ୍ଧନରେ ପଡ଼ି ବିଷଜ୍ୱାଳାରେ ସଂତପ୍ତ ହେଉଛି; ତେଣୁ ଶୀଘ୍ର ଆସନ୍ତୁ ଏବଂ ମୋତେ ରକ୍ଷା କରନ୍ତୁ ।

ସନତ୍କୁମାର କହୁଛନ୍ତି—ମୁନୀଶ୍ୱର ! ଅନିରୁଦ୍ଧ ଅଞ୍ଜନତୁଲ୍ୟ କୃଷ୍ଣବର୍ଣ୍ଣା କାଳୀଙ୍କୁ ଏପରି ସନ୍ତୁଷ୍ଟ କରିବାରୁ ଦେବୀ କାଳୀ ଜ୍ୟେଷ୍ଠ କୃଷ୍ଣ ଚତୁର୍ଦ୍ଦଶୀ ଦିନ ମହାରାତ୍ରିରେ ସେଠାରେ ପ୍ରକଟ ହେଲେ । ଦେବୀ ସର୍ପରୂପୀ ଭୟାନକ ଶରମାନଙ୍କୁ ଭସ୍ମସାତ୍ କରି ନିଜ ବଳିଷ୍ଠ ମୁଷ୍ଟିକାଘାତରେ ନାଗପିଞ୍ଜରକୁ ବିଦୀର୍ଣ୍ଣ କରିଦେଲେ । ଏହିରୂପେ ଦୁର୍ଗା ଅନିରୁଦ୍ଧଙ୍କୁ ବନ୍ଧନମୁକ୍ତ କରି ତାଙ୍କୁ ପୁନଃ ଅନ୍ତଃପୁରରେ ପହଞ୍ଚାଇ ଦେଲେ ଏବଂ ନିଜେ ଅନ୍ତର୍ଦ୍ଧାନ ହୋଇଗଲେ । ଶିବଙ୍କ ଶକ୍ତିସ୍ୱରୂପା ଦେବୀ ଦୁର୍ଗାଙ୍କ କୃପାରୁ ଅନିରୁଦ୍ଧ କଷ୍ଟରୁ ମୁକ୍ତ ହୋଇଗଲେ । ତାଙ୍କର ସମସ୍ତ ବ୍ୟଥା ଦୂର ହୋଇଗଲା । ପ୍ରଦ୍ୟୁମ୍ନନନ୍ଦନ ଅନିରୁଦ୍ଧ ଦେବୀଙ୍କ ପ୍ରତାପରେ ବିଜୟୀ ହୋଇ ନିଜ ପ୍ରିୟା ବାଣତନୟା ଉଷାକୁ ପାଇ ପରମ ହର୍ଷିତ ହେଲେ ଏବଂ ତା' ସଙ୍ଗେ ପୂର୍ବବତ୍ ସୁଖରେ ବିହାର କରିବାକୁ ଲାଗିଲେ । ଏଣେ ଦ୍ୱାରକାରେ ଶ୍ରୀକୃଷ୍ଣ ଅନିରୁଦ୍ଧଙ୍କୁ ଦେଖିବାକୁ ପାଇଲେ ନାହିଁ । ପରେ ସେ ନାରଦଙ୍କ ମୁଖରୁ ଶୁଣିବାକୁ ପାଇଲେ ଯେ ବାଣାସୁର ଅନିରୁଦ୍ଧଙ୍କୁ ନାଗପାଶରେ ବାନ୍ଧି ରଖିଛି । ତେଣୁ ଭଗବାନ ଶ୍ରୀକୃଷ୍ଣ ବାର ଅକ୍ଷୌହିଣୀ ସୈନ୍ୟ ଓ ପ୍ରଦ୍ୟୁମ୍ନ ପ୍ରଭୃତି ବୀରଙ୍କୁ ସଙ୍ଗରେ ନେଇ ଶୋଣିତପୁର ଉପରେ ଆକ୍ରମଣ କରିଦେଲେ । ତେଣେ ଭଗବାନ ରୁଦ୍ର ମଧ୍ୟ ନିଜ ଭକ୍ତ ପକ୍ଷରୁ ସଜବାଜ ହୋଇ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ । ଏହାପରେ ଆରମ୍ଭ ହେଲା କୃଷ୍ଣ ଓ ଶିବଙ୍କ ମଧ୍ୟରେ ଘୋର ଯୁଦ୍ଧ । ଉଭୟେ ନିଜ ନିଜ ପକ୍ଷରୁ ଜ୍ୱରକୁ ପ୍ରେଷଣ କଲେ । ଶେଷରେ ଶ୍ରୀକୃଷ୍ଣ ସ୍ୱୟଂ ରୁଦ୍ରଦେବଙ୍କ ନିକଟକୁ ଯାଇ ତାଙ୍କୁ ସ୍ତବନ କରି କହିଲେ—''ସର୍ବବ୍ୟାପୀ ଶଙ୍କର ! ଆପଣ ଗୁଣରୁ ନିର୍ଲିପ୍ତ ହୋଇ ମଧ୍ୟ ଗୁଣମାନଙ୍କ ଦ୍ୱାରା ହିଁ ଗୁଣମାନଙ୍କୁ ପ୍ରକାଶିତ କରନ୍ତି । ଗିରିଶାୟୀ ଭୂମନ୍ ! ଆପଣ ସ୍ୱପ୍ରକାଶ ଅଟନ୍ତି । ଯେଉଁମାନଙ୍କ ବୁଦ୍ଧି ଆପଣଙ୍କ ମାୟାରେ ମୋହିତ ହୋଇଯାଇଛି, ସେମାନେ ସ୍ତ୍ରୀ, ପୁତ୍ର, ଗୃହ ଇତ୍ୟାଦି ବିଷୟରେ ଆସକ୍ତ ହୋଇ ଦୁଃଖସାଗରରେ ଉବୁଟୁବୁ ହୁଅନ୍ତି । ଯେଉଁ ଅଜିତେନ୍ଦ୍ରିୟ ପୁରୁଷ ପ୍ରାରବ୍ଧବଶତଃ ମନୁଷ୍ୟଜୀବନ ପାଇ ମଧ୍ୟ ଆପଣଙ୍କ ଚରଣରେ ପ୍ରେମ କରେ ନାହିଁ, ସେ ଶୋଚନୀୟ ତଥା ଆତ୍ମବଞ୍ଚକ ଅଟେ । ଭଗବନ୍ ! ଆପଣ ଗର୍ବହାରୀ

ଏବଂ ଆପଣ ହିଁ ତ ଏ ଗର୍ବୀ ବାଣକୁ ଶାପ ଦେଇଥିଲେ; ତେଣୁ ଆପଣଙ୍କ ଆଜ୍ଞାରେ ମୁଁ ବାଣାସୁରର ଭୁଜ ଛେଦନ କରିବାକୁ ଏଠାକୁ ଆସିଛି । ଏଣୁ ହେ ମହାଦେବ ! ଆପଣ ଯୁଦ୍ଧରୁ ନିବୃତ୍ତ ହୋଇଯାଆନ୍ତୁ । ପ୍ରଭୋ ! ମୋତେ ବାଣର ଭୁଜମାନଙ୍କୁ କାଟିବାପାଇଁ ଆଜ୍ଞା ପ୍ରଦାନ କରନ୍ତୁ, ଯାହାଫଳରେ ଆପଣଙ୍କ ଶାପ ବୃଥା ହେବ ନାହିଁ ।''

ମହେଶ୍ୱର କହିଲେ—ଆପଣ ଠିକ୍ କଥା କହିଛନ୍ତି । ମୁଁ ଏ ଦୈତ୍ୟରାଜକୁ ଅଭିଶାପ ଦେଇଛି ଏବଂ ମୋ ଆଜ୍ଞାରେ ଆପଣ ବାଣାସୁରର ଭୁଜମାନ କାଟିବାକୁ ଏଠାକୁ ଆସିଛନ୍ତି; କିନ୍ତୁ ହେ ରମାନାଥ ! ମୁଁ କ'ଣ ବା କରିପାରିବି, ମୁଁ ତ ଭକ୍ତଜନଙ୍କର ଅଧୀନରେ ରହିଥାଏ । ଏଭଳି ସ୍ଥିତିରେ ମୁଁ ଦେଖୁ ଦେଖୁ ମୋ ଆଖି ଆଗରେ ଆପଣ ବାଣର ଭୁଜ କାଟିବେ—ଏଇଟା କେମିତି ସମ୍ଭବ ହେବ? ତେଣୁ ମୋ ଆଜ୍ଞାରେ ଆପଣ ପ୍ରଥମେ ଜୃମ୍ଭଣାସ୍ତ୍ରରେ ମୋତେ ଜୃମ୍ଭିତ କରିଦିଅନ୍ତୁ ଏବଂ ତା'ପରେ ଆପଣା ଅଭୀଷ୍ଟ କାର୍ଯ୍ୟ ସମ୍ପାଦନ କରି ସୁଖୀ ହୁଅନ୍ତୁ ।

ସନତ୍କୁମାର କହୁଛନ୍ତି—ମୁନୀଶ୍ୱର ! ଶିବଙ୍କ କଥା ଶୁଣି ଶାର୍ଙ୍ଗପାଣି ଶ୍ରୀହରିଙ୍କୁ ବଡ଼ ବିସ୍ମୟ ଲାଗିଲା । ସେ ଯୁଦ୍ଧସ୍ଥଳକୁ ଆସି ପରମ ଆନନ୍ଦିତ ହେଲେ । ବ୍ୟାସଦେବ ! ଏହାପରେ ନାନା ପ୍ରକାର ଅସ୍ତ୍ର ସଂଚାଳନରେ ନିପୁଣ ଶ୍ରୀହରି ଅବିଳମ୍ବେ ତାଙ୍କ ଧନୁରେ ଜୃମ୍ଭଣାସ୍ତ୍ର ସନ୍ଧାନ କରି ଶିବଙ୍କ ଉପରକୁ ଛାଡ଼ିଦେଲେ । ଶ୍ରୀକୃଷ୍ଣ ଏହିରୂପେ ଜୃମ୍ଭଣାସ୍ତ୍ର ଦ୍ୱାରା ଶିବଙ୍କୁ ମୋହରେ ପକାଇଦେଇ ଖଡ଼୍ଗ, ଗଦା, ଋଷ୍ଟି ଇତ୍ୟାଦିରେ ବାଣାସୁରର ସେନାକୁ ସଂହାର କରିବାକୁ ଲାଗିଲେ । (ଅଧ୍ୟାୟ ୫୧—୫୪)

★★★

## ଶ୍ରୀକୃଷ୍ଣଙ୍କ ଦ୍ୱାରା ବାଣାସୁରର ଭୁଜଚ୍ଛେଦନ ଏବଂ ମସ୍ତକ ଛେଦିବାକୁ ଉଦ୍ୟତ ହେବାବେଳେ ଶିବ ତାଙ୍କୁ ବାରଣ କରି ବାଣାସୁରର ପ୍ରାଣରକ୍ଷା କରିବା ପ୍ରସଙ୍ଗ, ଶ୍ରୀକୃଷ୍ଣଙ୍କର ସପରିବାର ଦ୍ୱାରକା ପ୍ରତ୍ୟାବର୍ତ୍ତନ, ବାଣ ତାଣ୍ଡବନୃତ୍ୟ ଦ୍ୱାରା ଶିବଙ୍କୁ ପ୍ରସନ୍ନ କରିବାରୁ ତାକୁ ଅନ୍ୟାନ୍ୟ ବର ସହିତ ମହାକାଳତ୍ୱ ପ୍ରାପ୍ତି

ସନତ୍କୁମାର କହୁଛନ୍ତି— ହେ ମହାପ୍ରାଜ୍ଞ ବ୍ୟାସ ! ଲୋକଲୀଳାର ଅନୁସରଣ କରି ଶ୍ରୀକୃଷ୍ଣ ଓ ଶିବ ଯେଉଁ ଲୀଳା କଲେ, ସେହି ପରମ ଅଦ୍ଭୁତ ପ୍ରସଙ୍ଗ ଶ୍ରବଣ କର । ତାତ ! ଭଗବାନ ରୁଦ୍ର ଲୀଳାନୁସାରେ ଯେତେବେଳେ ପୁତ୍ର ଓ ଗଣଙ୍କ ସହିତ ଶୋଇଗଲେ, ସେତିକିବେଳେ ଦୈତ୍ୟରାଜ ବାଣ ଶ୍ରୀକୃଷ୍ଣଙ୍କ ସହିତ ଯୁଦ୍ଧ କରିବାକୁ ବାହାରିଲା । ସେହି ସମୟରେ କୁମ୍ଭାଣ୍ଡ ସାରଥି ହେଇ ତାହାର ଘୋଡ଼ାଙ୍କ ଲଗାମ ଧରିଥିଲା ଏବଂ ସେ ନାନା ପ୍ରକାର ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଥିଲା । ମହାବଳୀ ବଳିପୁତ୍ର ଭୀଷଣ ଯୁଦ୍ଧ କରିବାକୁ ଲାଗିଲା । ବିଷ୍ଣୁଙ୍କ ଅବତାର ଶ୍ରୀକୃଷ୍ଣ ଶିବରୂପ ହିଁ ଥିଲେ ଏବଂ ସେପଟେ ବଳବାନ୍ ବାଣାସୁର ମଧ୍ୟ ଉତ୍ତମ ଶିବଭକ୍ତ ଥିଲା, ତେଣୁ ଉଭୟଙ୍କ ମଧ୍ୟରେ ବହୁକାଳ ପର୍ଯ୍ୟନ୍ତ ଘୋର ଯୁଦ୍ଧ ଚାଲିଲା । ମୁନୀଶ୍ୱର ! ଶିବଙ୍କ ଆଜ୍ଞାରେ ଶ୍ରୀକୃଷ୍ଣ ଦୀର୍ଘକାଳ ପର୍ଯ୍ୟନ୍ତ ଯୁଦ୍ଧ କରି କରି ଶେଷରେ କୁପିତ ହୋଇଉଠିଲେ । ଶମ୍ଭୁଙ୍କ ଆଦେଶାନୁକ୍ରମେ ଶତ୍ରୁବୀରଙ୍କର ସଂହାରକାରୀ ଭଗବାନ ଶ୍ରୀକୃଷ୍ଣ ସୁଦର୍ଶନ ଚକ୍ରଦ୍ୱାରା ଅତି

ଶୀଘ୍ର ବାଣର ଅନେକ ଭୁଜ କାଟି ପକାଇଲେ । ଶେଷରେ ତା'ର କେବଳ ଚାରିଟି ସୁନ୍ଦର ଭୁଜ ଅବଶେଷ ରହିଲା ଏବଂ ଶିବଙ୍କ କୃପାରୁ ତା'ର ବ୍ୟଥା ମଧ୍ୟ ଶୀଘ୍ର ନଷ୍ଟ ହୋଇଗଲା । ଯେତେବେଳେ ବାଣର ସ୍ମୃତି ଲୁପ୍ତ ହୋଇଗଲା ଏବଂ ବୀରଦର୍ପରେ ଶ୍ରୀକୃଷ୍ଣ ତା'ର ମସ୍ତକ କାଟିବାକୁ ଉଦ୍ୟତ ହେଲେ, ସେତିକିବେଳେ ଶିବ ମୋହନିଦ୍ରା ତ୍ୟାଗ କରି ଉଠି ପଡ଼ିଲେ ଏବଂ କହିଲେ—

ରୁଦ୍ର କହିଲେ—ହେ ଦେବକୀନନ୍ଦନ ! ଆପଣ ତ ସର୍ବଦା ମୋ ଆଜ୍ଞା ପାଳନ କରିଥାନ୍ତି । ତେଣୁ



ରୁହନ୍ତୁ । ମୁଁ ପ୍ରଥମରୁ ଆପଣଙ୍କୁ ଯେଉଁ କର୍ମ ପାଇଁ ଆଜ୍ଞା ଦେଇଥିଲି, ଆପଣ ତାହା କରି ସାରିଲେଣି । ଏବେ ଆଉ ବାଣର ଶିରଶ୍ଛେଦ ନ କରନ୍ତୁ ଏବଂ ସୁଦର୍ଶନ ଚକ୍ରକୁ ଫେରାଇ ନିଅନ୍ତୁ । ମୋ ଆଜ୍ଞାରେ ଏ ଚକ୍ର ମୋ ଭକ୍ତଙ୍କ ରକ୍ଷଣରେ ସର୍ବଦା ଅମୋଘ ହୋଇ ଆସିଛି । ଗୋବିନ୍ଦ ! ମୁଁ ହିଁ ପୂର୍ବେ ଆପଣଙ୍କୁ ଯୁଦ୍ଧରେ ଅପ୍ରତିହତ ଚକ୍ର ଓ ଜୟ ପ୍ରଦାନ କରିଥିଲି, ଏଣୁ ଆପଣ ଯୁଦ୍ଧରୁ ନିବୃତ୍ତ ହୋଇଯାଆନ୍ତୁ । ଲକ୍ଷ୍ମୀଶ ! ପୂର୍ବକାଳରେ ମଧ୍ୟ ଆପଣ ମୋ ଆଜ୍ଞା ବିନା ଦଧୀଚି, ବୀରବର ରାବଣ ଉପରେ ତଥା ତାରକାକ୍ଷ ଆଦିଙ୍କ ପୁର ଉପରେ ଚକ୍ର ପ୍ରୟୋଗ କରି ନ ଥିଲେ । ଜନାର୍ଦ୍ଦନ ! ଆପଣ ତ ଯୋଗୀଶ୍ୱର, ସାକ୍ଷାତ୍ ପରମାତ୍ମା ଓ ସମସ୍ତ ପ୍ରାଣୀଙ୍କ ହିତରେ ତତ୍ପର ରହିଥାନ୍ତି । ଆପଣ ସ୍ୱୟଂ ନିଜ ମନ ମଧ୍ୟରେ ଏକଥା ବିଚାର କରନ୍ତୁ । ମୁଁ ଏହାକୁ ବର ଦେଇଛି ଯେ 'ତୋତେ ମୃତ୍ୟୁ ଭୟ ହେବ ନାହିଁ'; ତେଣୁ ମୋର ଏ ବଚନ ସତ୍ୟ ହେବା ଉଚିତ । ମୁଁ ଆପଣଙ୍କ ଉପରେ ପ୍ରସନ୍ନ । ହରେ ! ବହୁଦିନ ପୂର୍ବରୁ ଏ ଗର୍ବରେ ଅତି ଉନ୍ମତ୍ତ ହୋଇ ଯାଇଥିଲା ଏବଂ ନିଜକୁ ବି ଭୁଲିଯାଇଥିଲା । ଏ ଆପଣା ଭୁଜକୁ କୁଣ୍ଡାଇ କୁଣ୍ଡାଇ ଆସି ମୋତେ କହିଲା, ''ମୋ ସହିତ ଯୁଦ୍ଧ କରନ୍ତୁ ।'' ସେତେବେଳେ ମୁଁ ଏହାକୁ ଅଭିଶାପ ଦେଇ କହିଥିଲି—''ବ୍ୟସ୍ତ ହୁଅନା, କିଛି କାଳ ପରେ ତୋର ଭୁଜ ଛେଦନ କରିବା ଲୋକ ଆସିଯିବ, ସେତେବେଳେ ତୋର ଗର୍ବ ଗଞ୍ଜନ ହେବ ।'' ତା'ପରେ ବାଣ ଆଡ଼କୁ ଚାହିଁ ଶିବ କହିଲେ— ''ମୋ ଆଜ୍ଞାରେ ତୋର ଭୁଜ କାଟିବାକୁ ଶ୍ରୀହରି ଆସିଗଲେ ।'' (ପୁଣି ଶ୍ରୀକୃଷ୍ଣଙ୍କୁ କହିଲେ—) ''ଏବେ ଆପଣ ଯୁଦ୍ଧ ବନ୍ଦ କରିଦିଅନ୍ତୁ ଏବଂ ବର-ବଧୂଙ୍କୁ ସଙ୍ଗରେ ନେଇ ସ୍ୱଗୃହକୁ ଫେରିଯାଆନ୍ତୁ ।'' ଏତିକି କହି ମହେଶ୍ୱର ସେ ଦୁହିଙ୍କ ମଧ୍ୟରେ ମିତ୍ରତା କରାଇଦେଲେ ଏବଂ ସେମାନଙ୍କ ଅନୁମତି ନେଇ ଆପଣା ପୁତ୍ର ଓ ଗଣାଦିଙ୍କ ସହ ନିଜ ନିବାସସ୍ଥାନକୁ ଫେରିଗଲେ ।

ସନତ୍କୁମାର କହୁଛନ୍ତି—ମୁନେ ! ଶମ୍ଭୁଙ୍କ କଥନ ଶୁଣି ଅକ୍ଷତଶରୀର ଶ୍ରୀକୃଷ୍ଣ ସୁଦର୍ଶନକୁ ଫେରାଇନେଲେ ଏବଂ ବିଜୟଶ୍ରୀରେ ମଣ୍ଡିତ

ହୋଇ ବାଣାସୁରର ଅନ୍ତଃପୁରରେ ପହଞ୍ଚିଲେ । ସେଠାରେ ସେ ଉଷା ଓ ଅନିରୁଦ୍ଧଙ୍କୁ ଆଶ୍ୱାସନା ଦେଲେ ଏବଂ ବାଣଦ୍ୱାରା ପ୍ରଦତ୍ତ ଅନେକ ପ୍ରକାର ରତ୍ନମାନ ଗ୍ରହଣ କଲେ । ଉଷାର ସଖୀ ପରମ ଯୋଗିନୀ ଚିତ୍ରଲେଖାକୁ ଦେଖି ଶ୍ରୀକୃଷ୍ଣଙ୍କୁ ଅତ୍ୟନ୍ତ ହର୍ଷ ଅନୁଭବ ହେଲା । ଏହିରୂପେ ଶିବଙ୍କ ଆଦେଶ ଅନୁସାରେ ସମସ୍ତ କାର୍ଯ୍ୟ ପୂର୍ଣ୍ଣ ହୋଇଯିବାରୁ ଶ୍ରୀହରି ନିଜ ହୃଦୟ ମଧ୍ୟରେ ଶିବଙ୍କୁ ପ୍ରଣାମ କରି ଓ ବଳିପୁତ୍ର ବାଣାସୁରର ଅନୁମତି ନେଇ ସପରିବାର ଦ୍ୱାରକାପୁରୀକୁ ଫେରିଗଲେ । ସେଠାରେ ପହଞ୍ଚି ସେ ଗରୁଡ଼କୁ ବିଦା କଲେ । ତା'ପରେ ସହର୍ଷ ମିତ୍ରଙ୍କ ସଙ୍ଗେ ଭେଟିଲେ ଏବଂ ନିଜ ଇଚ୍ଛାନୁସାରେ ଅନ୍ୟାନ୍ୟ କାର୍ଯ୍ୟ କଲେ ।

ଏଣେ ନନ୍ଦୀଶ୍ୱର ବାଣାସୁରକୁ ବୁଝାଇ କହିଲେ—"ଭକ୍ତଶାର୍ଦ୍ଦୂଳ ! ତୁମେ ବାରମ୍ବାର ଶିବଙ୍କୁ ସ୍ମରଣ କର । ସେ ଭକ୍ତଙ୍କ ଉପରେ ଅନୁଗ୍ରହ କରନ୍ତି । ତେଣୁ ଆଦିଗୁରୁ ଶିବଙ୍କ ଠାରେ ମନ ସମାହିତ କରି ନିତ୍ୟ ତାଙ୍କର ମହୋତ୍ସବ କର ।" ମହାମନସ୍ୱୀ ବାଣ ଦ୍ୱେଷରହିତ ହୋଇ ନନ୍ଦୀଙ୍କ କହିବା ଅନୁସାରେ ଧୈର୍ଯ୍ୟଧାରଣ କରି ତୁରନ୍ତ ଶିବଙ୍କ ନିକଟକୁ ଗଲା । ସେଠାରେ ପହଞ୍ଚି ସେ ନାନା ପ୍ରକାର ସ୍ତୋତ୍ରଦ୍ୱାରା ଶିବଙ୍କୁ ସ୍ତୁତି କଲା ଏବଂ ତାଙ୍କୁ ପ୍ରଣାମ କଲା । ତା'ପରେ ସେ ପାଦକୁ ନଗ୍ରଇ ନଗ୍ରଇ ଓ ହାତକୁ ଘୂରାଇ ଘୂରାଇ ନାନା ପ୍ରକାର ଆଲୀଢ଼ ଓ ପ୍ରତ୍ୟାଲୀଢ଼ ଆଦି ପ୍ରମୁଖ ସ୍ଥାନକ ଦ୍ୱାରା ସୁଶୋଭିତ ତାଣ୍ଡବନୃତ୍ୟ କରିବାକୁ ଲାଗିଲା । ସେତେବେଳେ ସେ ମୁଖରୁ ହଜାର ପ୍ରକାର ଧ୍ୱନି ବାହାର କରୁଥିଲା ଏବଂ ମଝି ମଝିରେ ଭ୍ରୂଲତାକୁ ନଗ୍ରଇ ଓ ମୁଣ୍ଡକୁ ହଲାଇ ହଜାର ହଜାର ପ୍ରକାର ଭାବ ପ୍ରଦର୍ଶନ କରୁଥିଲା । ମହାଭକ୍ତ ବାଣାସୁର ଏହିରୂପେ ନୃତ୍ୟ କରି ଏବଂ ତ୍ରିଶୂଳଧାରୀ ଚନ୍ଦ୍ରଶେଖରଙ୍କୁ ପ୍ରଣାମ କରି ପ୍ରସନ୍ନ କରିଦେଲା । ତା'ପରେ ନୃତ୍ୟଗୀତପ୍ରିୟ ଭକ୍ତବତ୍ସଳ ହର ହର୍ଷିତ ହୋଇ ବାଣକୁ କହିଲେ—

ରୁଦ୍ର କହିଲେ—ବଳିପୁତ୍ର ! ପ୍ରିୟ ବାଣ ! ତୋ ନୃତ୍ୟରେ ମୁଁ ସନ୍ତୁଷ୍ଟ । ତେଣୁ ହେ ଦୈତେନ୍ଦ୍ର ! ତୋ ମନରେ ଯାହା ଅଭିଳାଷ ଅଛି, ତଦନୁରୂପ ବର ମାଗ ।

ସନତ୍‌କୁମାର କହୁଛନ୍ତି—ମୁନେ ! ଶମ୍ଭୁଙ୍କ କଥା ଶୁଣି ଦୈତ୍ୟରାଜ ବାଣ କହିଲା—"ମୋର କ୍ଷତ ଶୁଖିଯାଉ, ମୋଠାରେ ବାହୁଯୁଦ୍ଧର କ୍ଷମତା ରହିଥାଉ, ମୋତେ ଅକ୍ଷୟ ଗଣନାୟକତ୍ୱ ପ୍ରାପ୍ତ ହେଉ । ଶୋଣିତପୁରରେ ଉଷାପୁତ୍ର ଅର୍ଥାତ୍ ମୋର ନାତି ରାଜତ୍ୱ କରୁ । ଦେବତାଙ୍କ ପ୍ରତି, ବିଶେଷ କରି ବିଷ୍ଣୁଙ୍କ ପ୍ରତି ଥିବା ମୋର ଦ୍ୱେଷଭାବ ନଷ୍ଟ ହୋଇଯାଉ । ମୋ'ଠାରେ ରଜୋଗୁଣୀ ଓ ତମୋଗୁଣୀ ଦୂଷିତ ଦୈତ୍ୟଭାବ ପୁନଃ ଉଦିତ ନ ହେଉ । ମୋଠାରେ ସଦା ନିର୍ବିକାର ଶମ୍ଭୁଭକ୍ତି ବିଦ୍ୟମାନ ରହୁ ଏବଂ ଶିବଭକ୍ତଙ୍କ ଉପରେ ମୋର ସ୍ନେହ ତଥା ସମସ୍ତ ପ୍ରାଣୀଙ୍କ ପ୍ରତି ଦୟାଭାବ ହେଉ ।" ଏହିପରି ବର ମାଗି ବଳିପୁତ୍ର ମହାସୁର ବାଣ କରଯୋଡ଼ି ରୁଦ୍ରଙ୍କୁ ସ୍ତୁତି କଲା । ସେତେବେଳେ ତା'ର ନେତ୍ରରୁ ପ୍ରେମାଶ୍ରୁ ଝରୁଥିଲା । ତା'ପରେ ପ୍ରେମରେ ପୁଲକିତ ବଳିନନ୍ଦନ ବାଣାସୁର ମହେଶ୍ୱରଙ୍କୁ ପ୍ରଣାମ କରି ମୌନ ହୋଇଗଲା । ଭକ୍ତ ବାଣର ପ୍ରାର୍ଥନା ଶୁଣି ପ୍ରଭୁ ଶିବ 'ତୋତେ ଏସବୁ ପ୍ରାପ୍ତ ହେବ' ବୋଲି କହି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ ରୁଦ୍ରାନୁଚର ବାଣ ଶମ୍ଭୁଙ୍କ କୃପାରୁ ମହାକାଳତ୍ୱ ପ୍ରାପ୍ତ ହୋଇ ପରମାନନ୍ଦରେ ନିମଗ୍ନ ହୋଇଗଲା । ବ୍ୟାସଦେବ ! ଏହା ଥିଲା ସମସ୍ତ ଗୁରୁଙ୍କର ମଧ୍ୟ ସଦ୍‌ଗୁରୁ ତଥା ସମଗ୍ର ଭୁବନରେ

କ୍ରୀଡ଼ା କରୁଥିବା ଶୂଳପାଣି ଶିବଙ୍କର ବାଣ-ବିଷୟକ ଚରିତ । ଏହି ପରମୋତ୍ତମ, କର୍ଣ୍ଣପ୍ରିୟ ଓ ମଧୁର ଚରିତକୁ ମୁଁ ତୁମ ଆଗରେ ବର୍ଣ୍ଣନା କରିଦେଲି । (ଅଧ୍ୟାୟ ୫୫-୫୬)

★★★

# ଗଜାସୁରର ତପସ୍ୟା, ବରପ୍ରାପ୍ତି ଓ ଅତ୍ୟାଚାର, ଶିବଙ୍କ ହସ୍ତରେ ତାହାର ନିଧନ, ତା'ର ପ୍ରାର୍ଥନାକ୍ରମେ ଶିବ ତା'ର ଚର୍ମ ଧାରଣ କରି କୃତ୍ତିବାସା ନାମରେ ବିଖ୍ୟାତ ହେବା ପ୍ରସଙ୍ଗ ତଥା କୃତ୍ତିବାସେଶ୍ୱର ଲିଙ୍ଗର ସ୍ଥାପନା

ସନତ୍କୁମାର କହୁଛନ୍ତି–ବ୍ୟାସଦେବ ! ଏବେ ପରମ ଶ୍ରଦ୍ଧାରେ ଶଶିମୌଳି ଶିବଙ୍କର ଗଜାସୁର ବଧ ଚରିତ୍ର ଶ୍ରବଣ କର । ଦାନବରାଜ ଗଜାସୁର ଥିଲା ମହିଷାସୁରର ପୁତ୍ର । ତାକୁ ଶିବ ତ୍ରିଶୂଳରେ ବଧ କରିଥିଲେ । ଗଜାସୁର ଯେତେବେଳେ ଜାଣିଲା ଯେ ଦେବତାମାନଙ୍କ ଦ୍ୱାରା ପ୍ରେରିତ ହୋଇ ଦେବୀ ତା'ର ପିତାକୁ ମାରି ଦେଇଛନ୍ତି, ସେ ପ୍ରତିଶୋଧ ନେବା ଭାବନାରେ ଘୋର ତପସ୍ୟା କଲା । ତା'ର ତପସ୍ୟାର ଜ୍ୱାଳାରେ ସମସ୍ତେ ସନ୍ତପ୍ତ ହେବାକୁ ଲାଗିଲେ । ଦେବତାମାନେ ଯାଇ ବ୍ରହ୍ମାଙ୍କୁ ସେମାନଙ୍କର ଦୁଃଖ ଜଣାଇଲେ । ଏହାପରେ ବ୍ରହ୍ମା ଅସୁର ସମ୍ମୁଖରେ ପ୍ରକଟ ହୋଇ ତା'ର ପ୍ରାର୍ଥନାନୁସାରେ ତାକୁ ବର ଦେଲେ ଯେ ସେ କାମର ବଶ ହେଉଥିବା କୌଣସି ସ୍ତ୍ରୀ ବା ପୁରୁଷ ହାତରେ ମରିବ ନାହିଁ ଏବଂ ସେ ମହାବଳୀ ହେବା ସହ ଦେବତାଦିଙ୍କ ପକ୍ଷେ ଅଜେୟ ହେବ ।

ଏଭଳି ବର ପାଇ ସେ ଗର୍ବରେ ଫୁଲି ଉଠିଲା ଏବଂ ସମସ୍ତ ଦିଗପାଳ ଓ ଲୋକପାଳଙ୍କ ସ୍ଥାନକୁ ଅଧିକାର କରିନେଲା । ଶେଷରେ ଶିବଙ୍କ ରାଜଧାନୀ ଆନନ୍ଦବନ କାଶୀକୁ ଯାଇ ସମସ୍ତଙ୍କୁ କଷ୍ଟ ଦେବାକୁ ଲାଗିଲା । ଦେବତାମାନେ ଶିବଙ୍କୁ ପ୍ରାର୍ଥନା କଲେ । ଶିବ ତ କାମବିଜୟୀ ଅଟନ୍ତି । ସେ ଘୋର ଯୁଦ୍ଧରେ ତାକୁ ପରାସ୍ତ କରି ତ୍ରିଶୂଳରେ ତାକୁ ଗୁନ୍ଥି ପକାଇଲେ । ତା'ପରେ ସେ ଭଗବାନ ଶିବଙ୍କୁ ସ୍ତବନ କଲା । ଶିବ ତା' ଉପରେ ପ୍ରସନ୍ନ ହୋଇ ଇଚ୍ଛିତ ବର ମାଗିବାକୁ କହିଲେ ।

ଗଜାସୁର କହିଲା–ହେ ଦିଗମ୍ବର ! ହେ ମହେଶାନ ! ଯଦି ଆପଣ ମୋ ଉପରେ ପ୍ରସନ୍ନ, ତେବେ ଆପଣଙ୍କ ତ୍ରିଶୂଳର ଅଗ୍ନିରେ ପବିତ୍ର ହୋଇଯାଇଥିବା ମୋ ଦେହର ଚର୍ମକୁ ଆପଣ ସଦା ଧାରଣ କରନ୍ତୁ । ବିଭୋ ! ମୁଁ ପୁଣ୍ୟଗନ୍ଧର ନିଧି; ସେଥିପାଇଁ ମୋର ଏ ଚର୍ମ ଚିରକାଳ ପର୍ଯ୍ୟନ୍ତ ଉଗ୍ରତପରୂପୀ ଅଗ୍ନିର ଜ୍ୱାଳାରେ ପଡ଼ି ମଧ୍ୟ ଦଗ୍ଧ ହୋଇ ନାହିଁ । ଯଦି ମୋର ଏ ଚର୍ମ ପୁଣ୍ୟବାନ୍ ନ ହୋଇଥାନ୍ତା, ରଣାଙ୍ଗନରେ ଆପଣଙ୍କ ଅଙ୍ଗସଙ୍ଗ ଏହାକୁ କିପରି ମିଳିଥାନ୍ତା? ହେ ମହାଦେବ ! ଯଦି ଆପଣ ସନ୍ତୁଷ୍ଟ, ମୋତେ ଆଉ ଗୋଟିଏ ବର ଦିଅନ୍ତୁ । ତାହା ହେଲା– ଆଜି ଠାରୁ ଆପଣଙ୍କ ନାମ 'କୃତ୍ତିବାସା' ହେଉ ।

ସନତ୍କୁମାର କହୁଛନ୍ତି–ମୁନେ ! ଗଜାସୁରର କଥା ଶୁଣି ଭକ୍ତବତ୍ସଳ ଶିବ ପରମ ପ୍ରସନ୍ନତାପୂର୍ବକ ମହିଷାସୁରନନ୍ଦନ ଗଜକୁ 'ତଥାସ୍ତୁ' କହି ବର ପ୍ରଦାନ କଲେ । ଦାନବରାଜ ଗଜର ମନ ନିର୍ମଳ ହୋଇଯାଇଥିଲା, ତେଣୁ ପ୍ରସନ୍ନାତ୍ମା ଭକ୍ତପ୍ରିୟ ମହେଶାନ ତାକୁ ପୁନଃ କହିଲେ–

ଈଶ୍ୱର କହିଲେ–ଦାନବରାଜ ! ତୋର ଏ ପାବନ ଶରୀର ମୋର ଏହି ମୁକ୍ତିସାଧକ କ୍ଷେତ୍ର

କାଶୀରେ ଶିବଲିଙ୍ଗ ରୂପରେ ସ୍ଥିତ ହୋଇଯିବ। ଏହାର ନାମ ହେବ କୃତ୍ତିବାସେଶ୍ୱର। ଏ ଲିଙ୍ଗ ପ୍ରାଣୀଙ୍କ ପାଇଁ ମୁକ୍ତିଦାତା, ମହାପାତକ ବିନାଶକ, ସମସ୍ତ ଲିଙ୍ଗଙ୍କ ମଧ୍ୟରେ ମୁକୁଟମଣି ଓ ମୋକ୍ଷପ୍ରଦ ହେବ। ଏହା କହି ଦେବେଶ୍ୱର ଦିଗମ୍ବର ଶିବ ଗଜାସୁରର ସେହି ବିଶାଳ ଚର୍ମକୁ ନେଇ ଘୋଡ଼ାଇ ହେଲେ। ମୁନୀଶ୍ୱର! ସେଦିନ ବହୁତ ବଡ଼ ଉତ୍ସବ ହେଲା। କାଶୀନିବାସୀ ଜନତା ତଥା ପ୍ରମଥଗଣ ଆନନ୍ଦିତ ହେଲେ; ବିଷ୍ଣୁ ଓ ବ୍ରହ୍ମା ପ୍ରଭୃତି ଦେବତାଙ୍କ ମନ ହର୍ଷରେ ପରିପୂରିତ ହୋଇଉଠିଲା। ସେମାନେ ମହେଶ୍ୱରଙ୍କୁ କର ଯୋଡ଼ି ନମସ୍କାର କରି ସ୍ତୁତି କରିବାକୁ ଲାଗିଲେ।

(ଅଧ୍ୟାୟ ୫୭)



## ଦୁନ୍ଦୁଭିନିର୍ହ୍ରାଦ ନାମକ ଦୈତ୍ୟ ବ୍ୟାଘ୍ରରୂପ ଧରି ଜଣେ ଶିବଭକ୍ତ ଉପରେ ଆକ୍ରମଣ କରିବାକୁ ଚେଷ୍ଟା କରିବା ବେଳେ ଶିବଙ୍କ ଦ୍ୱାରା ତାହାର ବଧ

ସନତ୍କୁମାର କହୁଛନ୍ତି–ବ୍ୟାସଦେବ! ଏବେ ଚନ୍ଦ୍ରମୌଳିଙ୍କ ଚରିତ୍ର ମଧ୍ୟରୁ ଦୁନ୍ଦୁଭିନିର୍ହ୍ରାଦ ନାମକ ଦୈତ୍ୟର ବଧ ପ୍ରସଙ୍ଗ ବର୍ଣ୍ଣନା କରିବି। ତୁମେ ସାବଧାନ ହୋଇ ତାହା ଶ୍ରବଣ କର। ଦିତିପୁତ୍ର ମହାବଳୀ ହିରଣ୍ୟାକ୍ଷ ବିଷ୍ଣୁଙ୍କ ଦ୍ୱାରା ନିହତ ହେବା ପରେ ଦିତି ବହୁତ ଦୁଃଖିତ ହେଲେ। ସେତେବେଳେ ଦେବଶତ୍ରୁ ଦୁନ୍ଦୁଭିନିର୍ହ୍ରାଦ ତାଙ୍କୁ ଆଶ୍ୱାସନା ଦେଇ ମନେ ମନେ ନିର୍ଣ୍ଣୟ କଲା ଯେ "ଦେବତାଙ୍କ ବଳ ହେଉଛନ୍ତି ବ୍ରାହ୍ମଣ। ବ୍ରାହ୍ମଣ ନଷ୍ଟ ହୋଇଗଲେ ଯଜ୍ଞ ହେବ ନାହିଁ, ଯଜ୍ଞ ନ ହେଲେ ଦେବତା ଆହାର ନ ପାଇ ନିର୍ବଳ ହୋଇଯିବେ। ଏପରି ହେଲେ ମୁଁ ସେମାନଙ୍କ ଉପରେ ସହଜରେ ବିଜୟ ହାସଲ କରିପାରିବି।" ଏଭଳି ଚିନ୍ତା କରି ସେ ବ୍ରାହ୍ମଣଙ୍କୁ ମାରିବାକୁ ଲାଗିଲା। ବ୍ରାହ୍ମଣଙ୍କର ପ୍ରଧାନ ସ୍ଥାନ ବାରାଣସୀ ବୋଲି ଜାଣି ସେ କାଶୀରେ ଯାଇ ପହଞ୍ଚିଲା ଏବଂ ବନରେ ବନଚର ହୋଇ, ଜଳରେ ଜଳଚର ହୋଇ ଏବଂ ରାତିରେ ବ୍ୟାଘ୍ର ହୋଇ ଯଥାକ୍ରମେ ବନରେ କାଠ ସଂଗ୍ରହ କରୁଥିବା, ଜଳରେ ସ୍ନାନ କରୁଥିବା ଓ ରାତିରେ ଶୋଇଥିବା ବ୍ରାହ୍ମଣଙ୍କୁ ମାରି ଖାଇବାକୁ ଲାଗିଲା।

ଥରେ ଶିବରାତ୍ରି ଅବସରରେ ଜଣେ ଭକ୍ତ ନିଜ ପର୍ଣ୍ଣଶାଳାରେ ଦେବାଧିଦେବଙ୍କୁ ପୂଜା କରି ଧ୍ୟାନସ୍ଥ ହୋଇ ବସିଥିଲା। ବଳାଭିମାନୀ ଦୈତ୍ୟରାଜ ଦୁନ୍ଦୁଭିନିର୍ହ୍ରାଦ ବ୍ୟାଘ୍ରରୂପ ଧାରଣ କରି ତାକୁ ଖାଇବାକୁ ଭାବିଲା। କିନ୍ତୁ ଭକ୍ତ ଦୃଢ଼ଚିତ୍ତରେ ଶିବଦର୍ଶନ ଅଭିଳାଷରେ ଧ୍ୟାନରେ ତଲ୍ଲୀନ ଥିଲା ଏବଂ ସେ ପ୍ରଥମରୁ ହିଁ ମନ୍ତ୍ରରୂପୀ ଅସ୍ତ୍ରର ବିନ୍ୟାସ କରିଥିଲା। ଏହି କାରଣରୁ ଦୈତ୍ୟ ତା' ଉପରେ ଆକ୍ରମଣ କରିବାକୁ ସମର୍ଥ ହୋଇପାରିଲା ନାହିଁ। ତେଣେ ସର୍ବବ୍ୟାପୀ ଭଗବାନ୍ ଶମ୍ଭୁଙ୍କୁ ସେହି ଦୁଷ୍ଟ ଦୈତ୍ୟର ଅଭିପ୍ରାୟ ଜଣା ପଡ଼ିଗଲା। ଶମ୍ଭୁ ତାକୁ ମାରିଦେବାକୁ ଚିନ୍ତା କଲେ। ଦୈତ୍ୟ ବ୍ୟାଘ୍ରରୂପ ଧରି ସେହି ଭକ୍ତକୁ ଗ୍ରାସ କରିବାକୁ ଚେଷ୍ଟା କରିବାମାତ୍ରେ ଜଗତରକ୍ଷକ ତଥା ଭକ୍ତରକ୍ଷଣକୁଶଳ ତ୍ରିଲୋଚନ ଅବିଳମ୍ବେ ସେଠାରେ ପ୍ରକଟ ହୋଇଗଲେ ଏବଂ ତାକୁ କାଖତଳେ ଚିପିଧରି ତା' ମୁଣ୍ଡରେ ବଜ୍ର ପରି ଗୋଟିଏ ମୁଷ୍ଟିକାଘାତ କଲେ। ଭୀଷଣ ମୁଷ୍ଟିକାଘାତ ହେତୁ ଓ କାଖରେ ଚିପି ହୋଇଯାଇଥିବାରୁ ବ୍ୟାଘ୍ର

ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ିଲା ଏବଂ ଘୋର ଗର୍ଜନରେ ପୃଥିବୀ ଓ ଆକାଶକୁ କମ୍ପମାନ କରି ସେହିକ୍ଷଣି ପ୍ରାଣତ୍ୟାଗ କଲା । ତା'ର ଭୟଙ୍କର ଶବ୍ଦକୁ ଶୁଣି ତପସ୍ୱୀମାନଙ୍କର ହୃଦୟ କମ୍ପିଉଠିଲା । ସେମାନେ ରାତାରାତି ଉକ୍ତ ଶବ୍ଦର ଅନୁସରଣ କରି କରି ଯାଇ ସେହି ସ୍ଥାନରେ ପହଞ୍ଚିଲେ । ସେଠାରେ ପରମେଶ୍ୱର ଶିବଙ୍କୁ କାଖରେ ବ୍ୟାଘ୍ରକୁ ଚ୍ରିପି ଧରିଥିବା ଅବସ୍ଥାରେ ଦେଖି ସମସ୍ତେ ତାଙ୍କ ଚରଣତଳେ ଲୋଟିପଡ଼ିଲେ ଏବଂ ଜୟ ଜୟ ଧ୍ୱନି କରି ତାଙ୍କୁ ସ୍ତୁତି କଲେ ।

ମହେଶ୍ୱର କହିଲେ—ଯେଉଁ ମନୁଷ୍ୟ ଏଠାକୁ ଆସି ଶ୍ରଦ୍ଧାପୂର୍ବକ ମୋର ଏହି ରୂପକୁ ଦର୍ଶନ କରିବ, ମୁଁ ନିଶ୍ଚିତରୂପେ ତା'ର ସମସ୍ତ ଉପଦ୍ରବକୁ ଶମନ କରିବି । ଯେଉଁ ମନୁଷ୍ୟ ମୋର ଏହି ଚରିତକୁ ଶୁଣି ଓ ହୃଦୟରେ ମୋର ଏହି ଲିଙ୍ଗକୁ ସ୍ମରଣ କରି ସଂଗ୍ରାମକୁ ଯିବ, ସେ ନିଶ୍ଚୟ ବିଜୟ ଲାଭ କରିବ ।

ମୁନେ ! ଯେଉଁ ମନୁଷ୍ୟ ବ୍ୟାଘ୍ରେଶ୍ୱରଙ୍କ ପ୍ରାକଟ୍ୟ ସହ ସମ୍ବନ୍ଧିତ ଏହି ପରମୋତ୍ତମ ଚରିତ୍ରକୁ ଶୁଣିବ ଅଥବା ଅନ୍ୟକୁ ଶୁଣାଇବ, ପଢ଼ିବ ବା ପଢ଼ାଇବ, ସେ ସମସ୍ତ ମନୋବାଞ୍ଛିତ ଫଳ ଲାଭ କରିବ ଏବଂ ଶେଷରେ ସମସ୍ତ ଦୁଃଖରୁ ମୁକ୍ତ ହୋଇ ମୋକ୍ଷଭାଗୀ ହେବ । ଶିବଲୀଳାସମ୍ବନ୍ଧୀୟ ଅମୃତମୟ ଅକ୍ଷରେ ପରିପୂର୍ଣ୍ଣ ଏହି ଅନୁପମ ଆଖ୍ୟାନ ସ୍ୱର୍ଗ, ଯଶ ଓ ଆୟୁ ପ୍ରଦାନ କରିଥାଏ ତଥା ପୁତ୍ର-ପୌତ୍ର ବୃଦ୍ଧି କରାଇଥାଏ ।

(ଅଧ୍ୟାୟ ୫୮)



## ବିଦଳ ଓ ଉତ୍ପଳ ନାମକ ଦୈତ୍ୟ ପାର୍ବତୀଙ୍କ ପ୍ରତି ମୋହିତ ହୋଇ କପଟରେ ତାଙ୍କ ନିକଟକୁ ଆସିବାରୁ ପାର୍ବତୀଙ୍କ କନ୍ଦୁକ ପ୍ରହାରରେ ସେମାନଙ୍କ ମୃତ୍ୟୁ ଏବଂ କନ୍ଦୁକେଶ୍ୱରଙ୍କ ସ୍ଥାପନା ଓ ମହିମା

ସନତ୍‌କୁମାର କହୁଛନ୍ତି—ବ୍ୟାସଦେବ ! ପରମେଶ୍ୱର ଶିବ ଯେଉଁ ପ୍ରକାରେ ସଂକେତରେ ଦୈତ୍ୟକୁ ଲକ୍ଷ୍ୟ କରାଇ ନିଜ ପ୍ରିୟା ପାର୍ବତୀଙ୍କ ଦ୍ୱାରା ତାହାର ବଧ କରାଇଥିଲେ, ସେହି ଚରିତ୍ର ତୁମେ ଶ୍ରଦ୍ଧାରେ ଶ୍ରବଣ କର । ବିଦଳ ଓ ଉତ୍ପଳ ନାମରେ ଦୁଇଟି ମହାଦୈତ୍ୟ ଥିଲେ । ସେ ଦୁହେଁ ବ୍ରହ୍ମାଙ୍କ ଠାରୁ କାହାରି ଦ୍ୱାରା ନ ମରିବାର ବର ପାଇ ସବୁ ଦେବତାଙ୍କୁ ପରାସ୍ତ କରି ଦେଇଥିଲେ । ତେଣୁ ଦେବତାମାନେ ବ୍ରହ୍ମାଙ୍କ ପାଖକୁ ଯାଇ ସେମାନଙ୍କର ଦୁଃଖ ଶୁଣାଇଲେ । ସେମାନଙ୍କର କ୍ଳେଶ କଥା ଶୁଣି ବ୍ରହ୍ମା କହିଲେ—"ତୁମେମାନେ ଶିବ ଓ ଶିବାଙ୍କୁ ଆଦରରେ ସ୍ମରଣ କରି ଧୈର୍ଯ୍ୟ ଧାରଣ କର । ଦୁଷ୍ଟ ଦୈତ୍ୟ ଦୁହେଁ ନିଶ୍ଚୟ ଦେବୀଙ୍କ ହାତରେ ନିହତ ହେବେ । ଶିବା ଓ ଶିବ ପରମେଶ୍ୱର, କଲ୍ୟାଣକାରୀ ଓ ଭକ୍ତବତ୍ସଳ । ସେମାନେ ନିଶ୍ଚୟ ତୁମର କଲ୍ୟାଣ କରିବେ ।"

ସନତ୍‌କୁମାର କହୁଛନ୍ତି—ମୁନେ ! ଦେବତାଙ୍କୁ ଏପରି କହି ବ୍ରହ୍ମା ଶିବଙ୍କୁ ସ୍ମରଣ କରି ମୌନ ହୋଇଗଲେ । ଦେବଗଣ ମଧ୍ୟ ଆନନ୍ଦିତ ହୋଇ ନିଜ ନିଜ ଧାମକୁ ଫେରିଗଲେ । ଏକଦା ନାରଦଙ୍କ ମୁଖରୁ ପାର୍ବତୀଙ୍କ ସୌନ୍ଦର୍ଯ୍ୟର ପ୍ରଶଂସା ଶୁଣି ସେହି ଦୈତ୍ୟ ଦୁହେଁ ତାଙ୍କୁ ଅପହରଣ କରିବାକୁ ଚିନ୍ତା କଲେ ଏବଂ ପାର୍ବତୀ ଯେଉଁଠି କନ୍ଦୁକ ଖେଳୁଥିଲେ, ସେଠାକୁ ଯାଇ ଆକାଶରେ ବିଚରଣ କରିବାକୁ ଲାଗିଲେ । ସେ ଦୁହେଁ ଘୋର ଦୁରାଗ୍ରହୀ ଥିଲେ । ସେମାନଙ୍କ ମନ

ଚଞ୍ଚଳ ଥିଲା । ସେ ଦୁହେଁ ଶିବଗଣଙ୍କ ରୂପ ଧାରଣ କରି ଅମ୍ବିକାଙ୍କ ନିକଟକୁ ଆସିଲେ । ଦୁଷ୍ଟବିନାଶକାରୀ ଶିବ ସାମାନ୍ୟ ଦୃଷ୍ଟିପାତ କରିବା ମାତ୍ରେ ସେମାନଙ୍କ ନେତ୍ରର ଚଞ୍ଚଳତାରୁ ସେମାନଙ୍କ ମନବୃତ୍ତିକୁ ଜାଣିଗଲେ । ତା'ପରେ ସର୍ବସ୍ୱରୂପ ମହାଦେବ ଦୁର୍ଗତିନାଶିନୀ ଦୁର୍ଗାଙ୍କୁ ନେତ୍ରର ଇଙ୍ଗିତରେ ସୂଚିତ କରିଦେଲେ ଯେ ଏ ଦୁହେଁ ଦୈତ୍ୟ ଅଟନ୍ତି, ଗଣ ନୁହନ୍ତି । ତାତ ! ପାର୍ବତୀ ତାଙ୍କ ସ୍ୱାମୀ ମହାକୌତୁକୀ ପରମେଶ୍ୱରଙ୍କ ନେତ୍ରସଂକେତରୁ ସବୁ କିଛି ବୁଝିଗଲେ । ତା'ପରେ ସର୍ବଜ୍ଞ ଶିବଙ୍କର ଅର୍ଦ୍ଧାଙ୍ଗିନୀ ତାଙ୍କ କ୍ରୀଡ଼ା-କନ୍ଦୁକ ଦ୍ୱାରା ଏକାବେଳକେ ସେ ଦୁହିଙ୍କୁ ଆଘାତ କଲେ । ମହାଦେବୀଙ୍କ କନ୍ଦୁକ ଆଘାତରେ ଉକ୍ତ ମହାବଳୀ ଦୁଷ୍ଟ ଦୁହେଁ ଘୂରି ଘୂରି ପବନରେ ପାଚିଲା ତାଳ ଖସିପଡ଼ିଲା ପରି ଅଥବା ବଜ୍ରାଘାତରେ ମହାଗିରିର ଦୁଇଟି ଶିଖର ଭାଙ୍ଗି ପଡ଼ିଲା ପରି ତଳେ ପଡ଼ିଗଲେ । ଅକାର୍ଯ୍ୟ କରିବାକୁ ଉଦ୍ୟତ ସେହି ଦୈତ୍ୟ ଦୁହିଙ୍କୁ କନ୍ଦୁକଟି ଧରାଶାୟୀ କରି ଲିଙ୍ଗରୂପରେ ପରିଣତ ହୋଇଗଲା । ଦୁଷ୍ଟଙ୍କୁ ନିବାରଣ କରିଥିବା ସେହି ଲିଙ୍ଗ କନ୍ଦୁକେଶ୍ୱର ନାମରେ ପ୍ରସିଦ୍ଧ ହେଲା ଏବଂ ଜ୍ୟେଷ୍ଠେଶ୍ୱରଙ୍କ ସମୀପରେ ବିଦ୍ୟମାନ ହୋଇଗଲା । କାଶୀରେ ସ୍ଥିତ କନ୍ଦୁକେଶ୍ୱର ଶିବଲିଙ୍ଗ ଦୁଷ୍ଟବିନାଶକାରୀ, ଭୋଗ ଓ ମୋକ୍ଷପ୍ରଦାତା ଏବଂ ସର୍ବଦା ସତ୍‌ପୁରୁଷଙ୍କ କାମନା ପୂରଣକାରୀ । ଯେଉଁ ବ୍ୟକ୍ତି ଏହି ଆଖ୍ୟାନକୁ ଆନନ୍ଦରେ ପଢ଼େ ଅଥବା ଶୁଣେ, ତାହାକୁ କୌଣସି ଭୟ ରହେ ନାହିଁ । ସେ ଇହଲୋକରେ ନାନା ପ୍ରକାର ଉତ୍ତମୋତ୍ତମ ଭୋଗମାନ ଉପଭୋଗ କରି ଶେଷରେ ଦେବଦୁର୍ଲଭ ଦିବ୍ୟ ଗତି ପ୍ରାପ୍ତ ହୁଏ ।

ବ୍ରହ୍ମା କହୁଛନ୍ତି–ହେ ମୁନିସତ୍ତମ ! ମୁଁ ରୁଦ୍ରସଂହିତା ଅନ୍ତର୍ଗତ ଯୁଦ୍ଧଖଣ୍ଡଟି ତୁମ ଆଗରେ ବର୍ଣ୍ଣନା କରିଦେଲି । ଏହା ସମସ୍ତ ପ୍ରକାର ମନୋରଥ ପୂରଣ କରିଥାଏ । ଏହିଠାରେ ରୁଦ୍ରସଂହିତା ସଂପୂର୍ଣ୍ଣ ହେଲା । ଏହା ଶିବଙ୍କୁ ସଦା ପରମ ପ୍ରିୟ ହେବା ସଙ୍ଗେ ସଙ୍ଗେ ଭୁକ୍ତିମୁକ୍ତିରୂପୀ ଫଳ ପ୍ରଦାନ କରିଥାଏ ।

ସୂତ କହୁଛନ୍ତି–ଏହିରୂପେ ବ୍ରହ୍ମାଙ୍କ ପୁତ୍ର ଶିବାନୁଗାମୀ ନାରଦ ଶିବଙ୍କର ଉତ୍ତମ ଯଶ ତଥା ଶିବଶତନାମ ଶ୍ରବଣ କରି କୃତାର୍ଥ ହୋଇଗଲେ । ସମସ୍ତ ଚରିତ୍ର ମଧ୍ୟରେ ପ୍ରଧାନ ଏହି ବ୍ରହ୍ମା-ନାରଦ-ସଂବାଦକୁ ମୁଁ ପୂର୍ଣ୍ଣରୂପେ ବର୍ଣ୍ଣନା କଲି । ଏବେ ଆଉ କ'ଣ ଶୁଣିବାକୁ ଚାହୁଁଛ?

(ଅଧ୍ୟାୟ ୫୯)

***

## ॥ ରୁଦ୍ରସଂହିତାର ଯୁଦ୍ଧଖଣ୍ଡ ସମ୍ପୂର୍ଣ୍ଣ ॥



## ॥ ରୁଦ୍ରସଂହିତା ସମାପ୍ତ ॥

# ଶତରୁଦ୍ରସଂହିତା

## ଶିବଙ୍କ ସଦ୍ୟୋଜାତ, ବାମଦେବ, ତତ୍‌ପୁରୁଷ, ଅଘୋର ଓ ଈଶାନ ନାମକ ପାଞ୍ଚ ଅବତାରର ବର୍ଣ୍ଣନା

ବନ୍ଦେ ମହାନନ୍ଦମନନ୍ତଲୀଳଂ ମହେଶ୍ୱରଂ ସର୍ବବିଭୁଂ ମହାନ୍ତମ୍ ।
ଗୌରୀପ୍ରିୟଂ କାର୍ତ୍ତିକବିଘ୍ନରାଜସମୁଦ୍ଭବଂ ଶଂକରମାଦିଦେବମ୍ ॥

**ଯେ ପରମାନନ୍ଦମୟ, ଯାହାଙ୍କ ଲୀଳା ଅନନ୍ତ, ଯେ ଈଶ୍ୱରଙ୍କର ମଧ୍ୟ ଈଶ୍ୱର, ସର୍ବବ୍ୟାପକ, ମହାନ୍, ଗୌରୀଙ୍କ ପ୍ରିୟତମ ଏବଂ କାର୍ତ୍ତିକ ଓ ବିଘ୍ନରାଜ ଗଣେଶଙ୍କର ଜନକ, ସେହି ଆଦିଦେବ ଶଙ୍କରଙ୍କୁ ମୁଁ ବନ୍ଦନା କରୁଛି ।**

ଶୌନକ କହିଲେ–**ମହାଭାଗ ସୂତ ! ଆପଣ ତ ପୁରାଣକର୍ତ୍ତା ବ୍ୟାସଦେବଙ୍କ ଶିଷ୍ୟ ତଥା ଜ୍ଞାନ ଓ ଦୟାର ନିଧି; ତେଣୁ ଆପଣ ଶମ୍ଭୁଙ୍କର ଏଭଳି କିଛି ଅବତାର କଥା ବର୍ଣ୍ଣନା କରନ୍ତୁ, ଯେଉଁ ଅବତାରରେ ସେ ସାଧୁଜନଙ୍କର କଲ୍ୟାଣ କରିଛନ୍ତି ।**

ସୂତ କହିଲେ–**ଶୌନକ ! ଆପଣ ଜଣେ ମନନଶୀଳ ବ୍ୟକ୍ତି, ତେଣୁ ମୁଁ ଆପଣଙ୍କ ଆଗରେ ଶମ୍ଭୁଙ୍କର ସେହି ଅବତାରମାନଙ୍କ କଥା ବର୍ଣ୍ଣନା କରୁଛି । ଆପଣ ସଂଯତେନ୍ଦ୍ରିୟ ହୋଇ ଭକ୍ତିପୂର୍ବକ ମନ ଦେଇ ଶୁଣନ୍ତୁ । ମୁନେ ! ପୂର୍ବକାଳରେ ସନତ୍‌କୁମାର ନନ୍ଦୀଶ୍ୱରଙ୍କୁ ଠିକ୍ ଏହିପରି ପ୍ରଶ୍ନ କରିଥିଲେ । ନନ୍ଦୀଶ୍ୱର ତ ସାଧୁଜନଙ୍କ ଗତି ଏବଂ ଶିବସ୍ୱରୂପ ଅଟନ୍ତି, ସେ ସେତେବେଳେ ଶିବଙ୍କୁ ସ୍ମରଣ କରି ଏହିରୂପେ ଉତ୍ତର ଦେଇଥିଲେ–**

ନନ୍ଦୀଶ୍ୱର କହିଲେ–**ମୁନେ ! ଏମିତି ତ ଦେଖିବାକୁ ଗଲେ ସର୍ବବ୍ୟାପୀ ସର୍ବେଶ୍ୱର ଶିବଙ୍କର କଳ୍ପ-କଳ୍ପାନ୍ତରରେ ଅସଂଖ୍ୟ ଅବତାର ହୋଇଛି, ତଥାପି ମୁଁ ମୋ ବୁଦ୍ଧି ଅନୁସାରେ ସେଥିମଧ୍ୟରୁ ଅଳ୍ପ କିଛି ବର୍ଣ୍ଣନା କରୁଛି । ଊନବିଂଶ କଳ୍ପ 'ଶ୍ୱେତଲୋହିତ' କଳ୍ପ ନାମରେ ବିଖ୍ୟାତ । ସେହି କଳ୍ପରେ ଶିବଙ୍କର 'ସଦ୍ୟୋଜାତ' ନାମକ ଅବତାର ହୋଇଥିଲା । ତାହା ତାଙ୍କର ପ୍ରଥମ ଅବତାର ବୋଲି କୁହାଯାଏ । ସେହି କଳ୍ପରେ ବ୍ରହ୍ମା ଯେତେବେଳେ ପରବ୍ରହ୍ମଙ୍କୁ ଧ୍ୟାନ କରୁଥିଲେ, ସେତିକିବେଳେ ତାଙ୍କ ଠାରୁ ଗୋଟିଏ ଶ୍ୱେତ ଓ ଲୋହିତବର୍ଣ୍ଣର ଶିଖାଧାରୀ କୁମାର ଉତ୍ପନ୍ନ ହେଲା । ସେହି କୁମାର ବିଷୟରେ ବହୁତ ଚିନ୍ତା କରିବା ପରେ ତାଙ୍କୁ ଯେତେବେଳେ ଜଣା ପଡ଼ିଲା ଯେ ସେ ବ୍ରହ୍ମରୂପୀ ପରମେଶ୍ୱର, ସେତେବେଳେ ସେ କର ଯୋଡ଼ି ତାଙ୍କୁ ବନ୍ଦନା କଲେ । ତା'ପରେ ବ୍ରହ୍ମା ଜାଣିଲେ ଯେ ସେ ହେଉଛନ୍ତି ସଦ୍ୟୋଜାତ କୁମାର ଶିବ । ତେଣୁ ସେ ଅତ୍ୟନ୍ତ ହର୍ଷିତ ହେଲେ । ସେ ନିଜ ସଦ୍‌ବୁଦ୍ଧିରେ ବାରମ୍ବାର ସେହି ପରବ୍ରହ୍ମଙ୍କୁ ଚିନ୍ତନ କଲେ । ବ୍ରହ୍ମା ଧ୍ୟାନ କରିବା ବେଳେ ସେଠାରେ ପୁନଃ ଶ୍ୱେତବର୍ଣ୍ଣର ଗ୍ରୀରିଜଣ ଯଶସ୍ୱୀ କୁମାର ପ୍ରକଟ ହେଲେ । ସେମାନେ ପରମୋତ୍କୃଷ୍ଟ ଜ୍ଞାନରେ ସମ୍ପନ୍ନ ତଥା ପରବ୍ରହ୍ମଙ୍କ ସ୍ୱରୂପ ଥିଲେ । ସେମାନଙ୍କ ନାମ ଥିଲା ସୁନନ୍ଦ, ନନ୍ଦନ, ବିଶ୍ୱନନ୍ଦ ଓ ଉପନନ୍ଦନ । ସେ ସମସ୍ତେ ମହାତ୍ମା ଥିଲେ ଓ ବ୍ରହ୍ମାଙ୍କ ଶିଷ୍ୟ ହେଲେ । ସେମାନଙ୍କ ଦ୍ୱାରା ବ୍ରହ୍ମଲୋକ ପୂରିଉଠିଲା । ତା'ପରେ ସଦ୍ୟୋଜାତ ରୂପରେ ପ୍ରକଟିତ ପରମେଶ୍ୱର ଶିବ ପରମ ପ୍ରସନ୍ନ ହୋଇ ବ୍ରହ୍ମାଙ୍କୁ ଜ୍ଞାନ ଓ ସୃଷ୍ଟିରଚନାର ଶକ୍ତି ପ୍ରଦାନ କଲେ । (ଏହା ହେଲା 'ସଦ୍ୟୋଜାତ' ନାମକ ପ୍ରଥମ ଅବତାର ।)**

**ତା'ପରେ 'ରକ୍ତ' ନାମରେ ପ୍ରସିଦ୍ଧ ବିଂଶତିତମ କଳ୍ପ ହେଲା । ସେହି କଳ୍ପରେ ବ୍ରହ୍ମା ରକ୍ତବର୍ଣ୍ଣ**

ଶରୀର ଧାରଣ କରିଥିଲେ । ବ୍ରହ୍ମା ପୁତ୍ରକାମନାରେ ଧ୍ୟାନ କରୁଥିବା ସମୟରେ ତାଙ୍କ ଠାରୁ ଗୋଟିଏ ପୁତ୍ର ଆବିର୍ଭୂତ ହେଲା । ତା'ର ନେତ୍ର ରକ୍ତବର୍ଣ୍ଣ ଥିଲା । ମାଳା, ବସ୍ତ୍ର ଓ ଆଭୂଷଣ ମଧ୍ୟ ଲୋହିତ ଥିଲା । ଏଭଳି ମହାନ୍ ଆତ୍ମବଳସମ୍ପନ୍ନ କୁମାରକୁ ଦେଖି ବ୍ରହ୍ମା ଧ୍ୟାନସ୍ଥ ହୋଇଗଲେ । ତାଙ୍କୁ ଯେବେ ଜ୍ଞାତ ହେଲା ଯେ ସେ ହେଉଛନ୍ତି ବାମଦେବ ଶିବ, ସେ କର ଯୋଡ଼ି ତାଙ୍କୁ ପ୍ରଣାମ କଲେ । ତା'ପରେ ତାଙ୍କର ବିରଜା, ବିବାହ, ବିଶୋକ ଓ ବିଶ୍ୱଭାବନ ନାମକ ଚାରିଟି ପୁତ୍ର ଉତ୍ପନ୍ନ ହେଲେ । ସେ ସମସ୍ତେ ରକ୍ତବସ୍ତ୍ର ପରିଧାନ କରିଥିଲେ । ବାମଦେବରୂପଧାରୀ ପରମେଶ୍ୱର ଶମ୍ଭୁ ପରମ ପ୍ରସନ୍ନ ହୋଇ ବ୍ରହ୍ମାଙ୍କୁ ଜ୍ଞାନ ତଥା ସୃଷ୍ଟିରଚନା ଶକ୍ତି ପ୍ରଦାନ କଲେ । (ଏହା ହେଲା 'ବାମଦେବ' ନାମକ ଦ୍ୱିତୀୟ ଅବତାର ।)

ଏହାପରେ ଏକବିଂଶତି କଳ୍ପ ଆସିଲା, ଯାହାକି 'ପୀତବାସା' ନାମରେ ପ୍ରସିଦ୍ଧ । ସେହି କଳ୍ପରେ ମହାଭାଗ ବ୍ରହ୍ମା ପୀତବସ୍ତ୍ରଧାରୀ ହେଲେ । ସେ ଯେବେ ପୁତ୍ର କାମନାରେ ଧ୍ୟାନ କରୁଥିଲେ, ତାଙ୍କଠାରୁ ଗୋଟିଏ ମହାନ୍ ତେଜସ୍ୱୀ କୁମାର ଉତ୍ପନ୍ନ ହେଲା । ସେହି ପ୍ରୌଢ଼ କୁମାରର ଭୁଜମାନ ବିଶାଳ ଥିଲା ଏବଂ ତାହାର ଶରୀରରେ ହଳଦିଆ ରଙ୍ଗର ବସ୍ତ୍ର ଝଲମଲ କରୁଥିଲା । ସେହି ବାଳକକୁ ଧ୍ୟାନମଗ୍ନ ଦେଖି ବ୍ରହ୍ମା ନିଜ ବୁଦ୍ଧି ଅନୁସାରେ ତାହାକୁ 'ତତ୍ପୁରୁଷ' ଶିବ ବୋଲି ଜାଣିଲେ । ତା'ପରେ ସେ ଧ୍ୟାନଯୁକ୍ତ ଚିତ୍ତରେ ଶିବଗାୟତ୍ରୀ (ତତ୍ପୁରୁଷାୟ ବିଦ୍ମହେ ମହାଦେବାୟ ଧୀମହି) ଜପ କରି ତାଙ୍କୁ ନମସ୍କାର କଲେ । ବ୍ରହ୍ମା ସକଳ ଭୁବନର ବନ୍ଦନୀୟା ମହାଦେବୀ ଗାୟତ୍ରୀଙ୍କ ଧ୍ୟାନପୂର୍ବକ ମନ୍ତ୍ର ଜପ କରୁଥିବାର ଦେଖି ମହାଦେବ ପ୍ରସନ୍ନ ହୋଇଗଲେ । ତା'ପରେ ବ୍ରହ୍ମାଙ୍କ ପାର୍ଶ୍ୱଭାଗରୁ ପୀତବସ୍ତ୍ରଧାରୀ ଦିବ୍ୟକୁମାରମାନେ ଆବିର୍ଭୂତ ହେଲେ, ସେ ସମସ୍ତେ ଯୋଗମାର୍ଗର ପ୍ରବର୍ତ୍ତକ ହେଲେ । (ଏହା 'ତତ୍ପୁରୁଷ' ନାମକ ତୃତୀୟ ଅବତାର ।)

ସ୍ୱୟମ୍ଭୂ ବ୍ରହ୍ମାଙ୍କର ସେହି ପୀତବାସା ନାମକ କଳ୍ପ ବିତିଯିବା ପରେ 'ଶିବ' ନାମକ କଳ୍ପ ପ୍ରବେଶ କଲା । ଏକାର୍ଣ୍ଣବ ସ୍ଥିତିରେ ହଜାରେ ଦିବ୍ୟ ବର୍ଷ ବିତିଯିବା ସତ୍ତ୍ୱେ ବ୍ରହ୍ମା ପ୍ରଜାସୃଷ୍ଟି କରି ନ ପାରି ଦୁଃଖରେ ଚିନ୍ତିତ ହୋଇପଡ଼ିଲେ । ସେତେବେଳେ ମହାତେଜସ୍ୱୀ ବ୍ରହ୍ମାଙ୍କ ସମକ୍ଷରେ ଗୋଟିଏ କୃଷ୍ଣବର୍ଣ୍ଣର ମହାପରାକ୍ରମୀ କୁମାର ଉତ୍ପନ୍ନ ହେଲା । ସେ ଆପଣା ତେଜରେ ଅତ୍ୟନ୍ତ ଉଦ୍ଦୀପ୍ତ ଦିଶୁଥିଲା ଏବଂ କଳା ବସ୍ତ୍ର, କଳା ପଗଡ଼ି ଏବଂ କଳା ଉପବୀତ ଧାରଣ କରିଥିଲା । ତାହାର ମୁକୁଟ ମଧ୍ୟ କଳା ଥିଲା, ଏପରିକି ସ୍ନାନର ପରବର୍ତ୍ତୀ ଅନୁଲେପନ ଯଥା ଚନ୍ଦନ ମଧ୍ୟ କଳା ଥିଲା । ବ୍ରହ୍ମା ସେହି ମହାପରାକ୍ରମୀ, ମହାମନସ୍ୱୀ, ଦେବଦେବେଶ୍ୱର, ଅଲୌକିକ, କୃଷ୍ଣପିଙ୍ଗଳବର୍ଣ୍ଣ 'ଅଘୋର'ଙ୍କୁ ଦେଖି ତାଙ୍କୁ ବନ୍ଦନା କଲେ । ତା'ପରେ ବ୍ରହ୍ମା ସେହି ଭକ୍ତବତ୍ସଳ ଅବିନାଶୀ ଅଘୋରଙ୍କୁ ବ୍ରହ୍ମରୂପ ଜାଣି ଇଷ୍ଟବଚନ ଦ୍ୱାରା ସ୍ତୁତି କଲେ । ସେତେବେଳେ ତାଙ୍କ ପାର୍ଶ୍ୱଭାଗରୁ କଳା ରଙ୍ଗର ଅନୁଲେପନ ଧାରଣ କରି ଚାରିଟି କୃଷ୍ଣବର୍ଣ୍ଣର ମହାମନସ୍ୱୀ କୁମାର ଉତ୍ପନ୍ନ ହେଲେ । ସେମାନେ ପରମ ତେଜସ୍ୱୀ, ଅବ୍ୟକ୍ତନାମା ଓ ଦେଖିବାକୁ ଶିବଙ୍କ ସଦୃଶ ଥିଲେ । ସେମାନଙ୍କ ନାମ ଥିଲା– କୃଷ୍ଣ, କୃଷ୍ଣଶିଖ, କୃଷ୍ଣାସ୍ୟ ଓ କୃଷ୍ଣକଣ୍ଠଧୃକ୍ । ଏହି ପ୍ରକାରେ ଉତ୍ପନ୍ନ ହୋଇ ସେହି ମହାତ୍ମାମାନେ ବ୍ରହ୍ମାଙ୍କର ସୃଷ୍ଟିରଚନା ନିମିତ୍ତ ଅତି ଅଦ୍ଭୁତ 'ଘୋର' ନାମକ ଯୋଗର ପ୍ରଚାର କଲେ । (ଏହା ହେଲା 'ଅଘୋର' ନାମକ ଚତୁର୍ଥ ଅବତାର ।)

ମୁନୀଶ୍ୱର ! ତା'ପରେ ବ୍ରହ୍ମାଙ୍କର ପରବର୍ତ୍ତୀ କଳ୍ପ ଆରମ୍ଭ ହେଲା । ତାହା ପରମ ଅଦ୍ଭୁତ ଓ 'ବିଶ୍ୱରୂପ' ନାମରେ ପ୍ରସିଦ୍ଧ ଥିଲା । ସେହି କଳ୍ପରେ ବ୍ରହ୍ମା ପୁତ୍ରକାମନାରେ ମନେ ମନେ ଶିବଙ୍କୁ ଧ୍ୟାନ

କରୁଥିବା ବେଳେ ମହାନ୍ ନାଦକାରିଣୀ ବିଶ୍ୱରୂପା ସରସ୍ୱତୀ ପ୍ରକଟ ହେଲେ ଏବଂ ତାଙ୍କରି ପରି ଶୁଦ୍ଧସ୍ଫଟିକ ତୁଲ୍ୟ ଉଜ୍ଜ୍ୱଳ ବର୍ଣ୍ଣଧାରୀ ପରମେଶ୍ୱର 'ଈଶାନ' ପ୍ରକଟ ହେଲେ । ସେ ସମସ୍ତ ଭୂଷଣରେ ବିଭୂଷିତ ଥିଲେ । ଏଭଳି ଅଜନ୍ମା, ସର୍ବବ୍ୟାପୀ, ସର୍ବାନ୍ତର୍ଯ୍ୟାମୀ, ସର୍ବପ୍ରଦାତା, ସର୍ବସ୍ୱରୂପ, ସୁନ୍ଦର ରୂପସମ୍ପନ୍ନ ଓ ଅରୂପ ଈଶାନଙ୍କୁ ଦେଖି ବ୍ରହ୍ମା ପ୍ରଣାମ କଲେ । ତା'ପରେ ଶକ୍ତିଙ୍କ ସଙ୍ଗେ ବିରାଜିତ ସେହି ବିଭୁ ଈଶାନ ବ୍ରହ୍ମାଙ୍କୁ ସନ୍ମାର୍ଗର ଉପଦେଶ ଦେଇ ଚାରିଜଣ ସୁନ୍ଦର ବାଳକଙ୍କୁ ସୃଷ୍ଟି କଲେ । ସେହି ବାଳକମାନଙ୍କ ନାମ ଥିଲା—ଜଟୀ, ମୁଣ୍ଡୀ, ଶିଖଣ୍ଡୀ ଓ ଅର୍ଦ୍ଧମୁଣ୍ଡ । ସେମାନେ ଯୋଗାନୁସାରେ ସଦ୍ଧର୍ମ ପାଳନ କରି ଯୋଗଗତିକୁ ପ୍ରାପ୍ତ ହେଲେ । (ଏହା ହେଲା 'ଈଶାନ' ନାମକ ପଞ୍ଚମ ଅବତାର ।)

ସର୍ବଜ୍ଞ ସନତ୍‌କୁମାର ! ମୁଁ ଜଗତର ହିତ-କାମନାରେ ସଦ୍ୟୋଜାତ ପ୍ରଭୃତି ଅବତାରଙ୍କ ପ୍ରାକଟ୍ୟ ବିଷୟରେ ସଂକ୍ଷେପରେ ବର୍ଣ୍ଣନା କରିଦେଲି । ତାଙ୍କର ଲୋକହିତକାରୀ ବ୍ୟବହାର ବ୍ରହ୍ମାଣ୍ଡରେ ଯଥାବତ୍ ବିଦ୍ୟମାନ । ମହେଶ୍ୱରଙ୍କର ଏହି ଈଶାନ, ପୁରୁଷ (ତତ୍‌ପୁରୁଷ), ଅଘୋର, ବାମଦେବ ଓ ବ୍ରହ୍ମ ନାମକ ପାଞ୍ଚଟି ମୂର୍ତ୍ତି ବିଶେଷରୂପେ ପ୍ରସିଦ୍ଧ । ତନ୍ମଧ୍ୟରେ ଈଶାନଙ୍କୁ ସର୍ବପ୍ରଥମ କୁହାଯାଏ; ଏହା ସବୁଠୁ ଶ୍ରେଷ୍ଠ, ଶିବସ୍ୱରୂପ ଓ ଅଧିକ ପ୍ରସିଦ୍ଧ । ସେ ସାକ୍ଷାତ୍ ପ୍ରକୃତିର ଭୋକ୍ତା କ୍ଷେତ୍ରଜ୍ଞଠାରେ ଅଧିଷ୍ଠିତ । ଶିବଙ୍କର ଦ୍ୱିତୀୟ ସ୍ୱରୂପ ତତ୍‌ପୁରୁଷ ନାମରେ ଖ୍ୟାତ । ସେ ସଦ୍‌ଗୁଣମାନଙ୍କର ଆଶ୍ରୟ ତଥା ଭୋଗ୍ୟ ସର୍ବଜ୍ଞଠାରେ ଅଧିଷ୍ଠିତ । ପିନାକଧାରୀ ଶିବଙ୍କର ଅଘୋର ନାମକ ତୃତୀୟ ସ୍ୱରୂପ ଧର୍ମ ନିମନ୍ତେ ସମସ୍ତ ଅଙ୍ଗସମେତ ବୁଦ୍ଧିତତ୍ତ୍ୱକୁ ବିସ୍ତାର କରି ଅନ୍ତଃକରଣରେ ବିରାଜମାନ ରହେ । ବାମଦେବ ନାମକ ଶିବଙ୍କର ଚତୁର୍ଥ ସ୍ୱରୂପ ଅହଂକାରର ଅଧିଷ୍ଠାନ । ଏହି ସ୍ୱରୂପ ସର୍ବଦା ନାନା ପ୍ରକାର କାର୍ଯ୍ୟ ସମ୍ପାଦିତ କରିଥାଏ । ବିଚାରଶୀଳ ବୁଦ୍ଧିମାନ୍ ବ୍ୟକ୍ତିଙ୍କ ମତରେ ଶଙ୍କରଙ୍କ ଈଶାନସଂଜ୍ଞକ ସ୍ୱରୂପ ସଦା କର୍ଣ୍ଣ, ବାଣୀ ଓ ସର୍ବବ୍ୟାପୀ ଆକାଶର ଅଧୀଶ୍ୱର । ପରମେଶ୍ୱରଙ୍କ ପୁରୁଷ ନାମକ ରୂପ ତ୍ୱକ୍, ପାଣି, ସ୍ପର୍ଶ ଓ ବାୟୁର ସ୍ୱାମୀ । ମନୀଷୀଗଣ ଅଘୋର ନାମକ ରୂପକୁ ଶରୀର, ରସ, ରୂପ ଓ ଅଗ୍ନିର ଅଧିଷ୍ଠାନ ବୋଲି କହିଥାନ୍ତି । ଶିବଙ୍କ ବାମଦେବସଂଜ୍ଞକ ସ୍ୱରୂପକୁ ରସନା, ପାୟୁ, ରସ ଓ ଜଳର ସ୍ୱାମୀ ବୋଲି କୁହାଯାଏ । ଶିବଙ୍କ ସଦ୍ୟୋଜାତ ନାମକ ରୂପକୁ ଘ୍ରାଣ, ଉପସ୍ଥ, ଗନ୍ଧ ଓ ପୃଥିବୀର ଈଶ୍ୱର ବୋଲି କୁହାଯାଏ । କଲ୍ୟାଣକାମୀ ମନୁଷ୍ୟ ଶିବଙ୍କର ଏହି ସ୍ୱରୂପମାନଙ୍କୁ ସଦା ପ୍ରଯତ୍ନପୂର୍ବକ ବନ୍ଦନା କରିବା ଉଚିତ; କାରଣ ଏହି ସ୍ୱରୂପମାନ ଶ୍ରେୟପ୍ରାପ୍ତିର ଏକମାତ୍ର ହେତୁ । ଯେଉଁ ଲୋକ ଏହି ସଦ୍ୟୋଜାତାଦି ଅବତାରଙ୍କ ପ୍ରାକଟ୍ୟ ପ୍ରସଙ୍ଗକୁ ପଢ଼େ ଅଥବା ଶୁଣେ, ସେ ଜଗତରେ ସମସ୍ତ କାମ୍ୟ ଭୋଗମାନ ଉପଭୋଗ କରି ଶେଷରେ ପରମଗତି ପାଏ । (ଅଧ୍ୟାୟ ୧)

***

## ଶିବଙ୍କ ଅଷ୍ଟମୂର୍ତ୍ତିର ପରିଚୟ ତଥା ଅର୍ଦ୍ଧନାରୀ-ନର ରୂପର ବିସ୍ତୃତ ବର୍ଣ୍ଣନା

ନନ୍ଦୀଶ୍ୱର କହୁଛନ୍ତି—ଐଶ୍ୱର୍ଯ୍ୟଶାଳୀ ମୁନେ ! ଏବେ ତୁମେ ମହେଶ୍ୱରଙ୍କର ଶ୍ରେଷ୍ଠ ଅଷ୍ଟ-ଅବତାରମାନଙ୍କ ବିଷୟରେ ଶ୍ରବଣ କର, ଯାହା ଜଗତରେ ସମସ୍ତ କାର୍ଯ୍ୟକୁ ପୂର୍ଣ୍ଣ କରିବା ସହ ସୁଖ ପ୍ରଦାନ କରିଥାଏ । ତାତ ! ଏ ଜଗତ ପରମେଶ୍ୱର ଶମ୍ଭୁଙ୍କ ଅଷ୍ଟମୂର୍ତ୍ତିଙ୍କର ସ୍ୱରୂପ ଅଟେ । ସୂତାରେ ମଣି ଗୁନ୍ଥା ହୋଇଥିବା ପରି ଏହି ବିଶ୍ୱ ଉକ୍ତ ଅଷ୍ଟମୂର୍ତ୍ତିଙ୍କ ମଧ୍ୟରେ ହିଁ ପରିବ୍ୟାପ୍ତ ହୋଇ

ରହିଛି । ଶମ୍ଭୁଙ୍କ ଅଷ୍ଟମୂର୍ତ୍ତିଙ୍କ ନାମ ହେଲା—ଶର୍ବ, ଭବ, ରୁଦ୍ର, ଉଗ୍ର, ଭୀମ, ପଶୁପତି, ଈଶାନ ଓ ମହାଦେବ । ଶିବଙ୍କର ଏହି ଶର୍ବ ପ୍ରଭୃତି ଅଷ୍ଟମୂର୍ତ୍ତି ଦ୍ୱାରା ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ, କ୍ଷେତ୍ରଜ୍ଞ, ସୂର୍ଯ୍ୟ ଓ ଚନ୍ଦ୍ର ଅଧିଷ୍ଠିତ । ଶାସ୍ତ୍ରର ନିର୍ଣ୍ଣୟ ଯେ କଲ୍ୟାଣକାରୀ ମହେଶ୍ୱରଙ୍କର ବିଶ୍ୱମ୍ଭରାତ୍ମକ ('ଶର୍ବ') ରୂପ ହିଁ ସଚରାଚର ଜଗତକୁ ଧାରଣ କରିରଖିଛି । ପରମାତ୍ମା ଶିବଙ୍କର ଯେଉଁ ସଲିଳାତ୍ମକ ରୂପ ଜଗତକୁ ଜୀବନ ଦାନ କରିଥାଏ, ତାହା 'ଭବ' ନାମରେ ପ୍ରସିଦ୍ଧ । ଯେଉଁ ରୂପରେ ପ୍ରଭୁ ଜଗତର ଭିତରେ ଓ ବାହାରେ ବିଦ୍ୟମାନ ରହି ବିଶ୍ୱର ଭରଣ ପୋଷଣ କରନ୍ତି ତଥା ସ୍ପନ୍ଦିତ ହୁଅନ୍ତି, ପ୍ରଭୁଙ୍କର ସେହି ଉଗ୍ରସ୍ୱରୂପକୁ ସାଧୁଜନ 'ଉଗ୍ର' ବୋଲି କହିଥାନ୍ତି । ମହାଦେବଙ୍କର ସମସ୍ତଙ୍କୁ ଅବକାଶ ଦେଉଥିବା ଯେଉଁ ସର୍ବବ୍ୟାପୀ ଆକାଶାତ୍ମକ ରୂପ ରହିଛି, ତାହାକୁ 'ଭୀମ' କହନ୍ତି । ତାହା ମହାଭୂତଙ୍କର ଭେଦକ । ଯେଉଁ ରୂପ ଆତ୍ମାମାନଙ୍କର ଅଧିଷ୍ଠାନ, ସମସ୍ତ କ୍ଷେତ୍ରରେ ନିବାସ କରେ ଏବଂ ଜୀବଙ୍କର ଭବବନ୍ଧନର ଭେଦକ, ତାହାକୁ 'ପଶୁପତି' ରୂପ ବୋଲି ବୁଝିବା ଉଚିତ । ମହେଶ୍ୱରଙ୍କର ଯେଉଁ ସୂର୍ଯ୍ୟ ନାମକ ରୂପ ସମଗ୍ର ଜଗତକୁ ଆଲୋକିତ କରିଥାଏ, ତାହାକୁ 'ଈଶାନ' କହନ୍ତି । ତାହା ଦ୍ୟୁଲୋକରେ ଭ୍ରମଣ କରିଥାଏ । ଅମୃତମୟ ରଶ୍ମି ବିଚ୍ଛୁରିତ କରୁଥିବା ଯେଉଁ ଚନ୍ଦ୍ର ସମସ୍ତ ବିଶ୍ୱକୁ ଆହ୍ଲାଦିତ କରିଥାଏ, ଶିବଙ୍କର ସେହି ରୂପକୁ 'ମହାଦେବ' ବୋଲି କୁହାଯାଏ । 'ଆତ୍ମା' ପରମାତ୍ମା ଶିବଙ୍କର ଅଷ୍ଟମ ରୂପ ଅଟେ । ଏହି ମୂର୍ତ୍ତି ଅନ୍ୟ ସମସ୍ତ ମୂର୍ତ୍ତି ଅପେକ୍ଷା ଅଧିକ ବ୍ୟାପକ ଅଟେ । ସୁତରାଂ ସାରା ବିଶ୍ୱ ହେଉଛି ଶିବମୟ । ବୃକ୍ଷର ମୂଳରେ ଜଳ ଢାଳିଲେ ଯେପରି ସମସ୍ତ ଶାଖା ପୁଷ୍ପିତ-ପଲ୍ଲବିତ ହୋଇଥାଏ, ସେହିପରି ଶିବଙ୍କୁ ପୂଜା କଲେ ଶିବସ୍ୱରୂପ ସମଗ୍ର ବିଶ୍ୱ ପରିପୁଷ୍ଟ ହୁଏ । ପୁତ୍ର-ପୌତ୍ରାଦିଙ୍କୁ ପ୍ରସନ୍ନ ଦେଖି ପିତା ଯେପରି ହର୍ଷିତ ହୋଇଥାଏ, ସେହିପରି ବିଶ୍ୱକୁ ହର୍ଷିତ ଦେଖି ଶିବଙ୍କୁ ଆନନ୍ଦ ମିଳିଥାଏ । ଏଣୁ କେହି ଯଦି କୌଣସି ଦେହଧାରୀକୁ କଷ୍ଟ ଦିଏ, ତେବେ ସେ ସତେ ଯେପରି ସେହି ଅଷ୍ଟମୂର୍ତ୍ତି ଶିବଙ୍କ ପ୍ରତି ହିଁ ଅନିଷ୍ଟ କରିଥାଏ । ସନତ୍‌କୁମାର ! ଏହି ପ୍ରକାରେ ପ୍ରଭୁ ଶିବ ତାଙ୍କର ଅଷ୍ଟମୂର୍ତ୍ତି ଦ୍ୱାରା ସମସ୍ତ ବିଶ୍ୱକୁ ଅଧିଷ୍ଠିତ କରି ବିରାଜମାନ ଅଟନ୍ତି, ତେଣୁ ତୁମେ ପୂର୍ଣ୍ଣ ଭକ୍ତିରେ ସେହି ପରମ କାରଣ ରୁଦ୍ରଙ୍କୁ ଭଜ ।

ପ୍ରିୟ ସନତ୍‌କୁମାର ! ମହାପ୍ରାଜ୍ଞ ! ଏବେ ତୁମେ ଶିବଙ୍କର ଅନୁପମ ଅର୍ଦ୍ଧନାରୀଶ୍ୱରରୂପର ବର୍ଣ୍ଣନା ଶୁଣ, ଯାହା ବ୍ରହ୍ମାଙ୍କର କାମନାକୁ ପୂରଣ କରିଥିଲା । (ସୃଷ୍ଟି ଆରମ୍ଭକାଳରେ) ଯେବେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଦ୍ୱାରା ରଚିତ ପ୍ରଜାଙ୍କ ସଂଖ୍ୟା ବୃଦ୍ଧି ପାଇଲା ନାହିଁ, ସେତେବେଳେ ବ୍ରହ୍ମା ଦୁଃଖିତ ଓ ଚିନ୍ତାକୁଳ ହୋଇ ପଡ଼ିଲେ । ସେତିକିବେଳେ ଆକାଶବାଣୀ ହେଲା, "ବ୍ରହ୍ମନ୍ ! ଏଥର ମୈଥୁନୀ ସୃଷ୍ଟିର ବ୍ୟବସ୍ଥା କର ।" ସେହି ବ୍ୟୋମବାଣୀକୁ ଶୁଣି ବ୍ରହ୍ମା ମୈଥୁନୀ ପ୍ରଜା ଉତ୍ପନ୍ନ କରିବାକୁ ଚିନ୍ତା କଲେ; କିନ୍ତୁ ଏହା ପୂର୍ବରୁ ଈଶାନଙ୍କ ଠାରୁ ନାରୀକୁଳର ଉତ୍ପତ୍ତି ହୋଇ ନ ଥିଲା, ଏହି କାରଣରୁ ପଦ୍ମଯୋନି ବ୍ରହ୍ମା ମୈଥୁନୀ ସୃଷ୍ଟି ଉତ୍ପନ୍ନ କରିବାକୁ ସମର୍ଥ ହୋଇ ପାରିଲେ ନାହିଁ । ଶମ୍ଭୁଙ୍କ କୃପା ବିନା ମୈଥୁନୀ ପ୍ରଜା ଉତ୍ପନ୍ନ ହୋଇ ପାରିବେ ନାହିଁ ବୋଲି ଅନୁଭବ କରି ସେ ତପସ୍ୟା କରିବାକୁ ଉଦ୍ୟତ ହେଲେ । ସେତେବେଳେ ବ୍ରହ୍ମା ପରାଶକ୍ତି ଶିବାଙ୍କ ସମେତ ଶିବଙ୍କୁ ହୃଦୟ ମଧ୍ୟରେ ପ୍ରେମପୂର୍ବକ ଚିନ୍ତନ କରି ଘୋର ତପସ୍ୟା କଲେ । ତାଙ୍କର ତୀବ୍ର ତପ ଅନୁଷ୍ଠାନରେ ଅଳ୍ପକାଳରେ ଶିବ ପ୍ରସନ୍ନ ହୋଇଗଲେ । କଷ୍ଟହାରୀ ଶିବ ପୂର୍ଣ୍ଣସଚ୍ଚିଦାନନ୍ଦ କାମଦା ମୂର୍ତ୍ତିରେ ପ୍ରବିଷ୍ଟ ହୋଇ

ଅର୍ଦ୍ଧନାରୀଶ୍ୱର ରୂପରେ ବ୍ରହ୍ମାଙ୍କ ସମ୍ମୁଖରେ ପ୍ରକଟିତ ହେଲେ । ଦେବାଧିଦେବ ଶିବଙ୍କୁ ପରାଶକ୍ତି ଶିବାଙ୍କ ସମ୍ମୁଖରେ ଉପସ୍ଥିତ ଦେଖି ବ୍ରହ୍ମା ତାଙ୍କୁ ଦଣ୍ଡବତ୍ ଭୂମିଷ୍ଠ ପ୍ରଣାମ କଲେ । ତା'ପରେ ସେ ହାତ ଯୋଡ଼ି ସ୍ତୁତି କଲେ । ବିଶ୍ୱକର୍ତ୍ତା ଦେବାଧିଦେବ ମହେଶ୍ୱର ପରମ ପ୍ରସନ୍ନ ହୋଇ ବ୍ରହ୍ମାଙ୍କୁ ମେଘନାଦ ତୁଲ୍ୟ ଗମ୍ଭୀର ବାଣୀରେ କହିଲେ—

ଈଶ୍ୱର କହିଲେ—ମହାଭାଗ ! ବତ୍ସ ! ମୋର ପ୍ରିୟ ପୁତ୍ର ପିତାମହ ! ମୋତେ ତୁମର ସକଳ ମନୋରଥ ଜଣା ପଡ଼ିସାରିଛି । ତୁମେ ପ୍ରଜାବୃଦ୍ଧି



ନିମନ୍ତେ ଏତାଦୃଶ ଘୋର ତପସ୍ୟା କରିଛ, ତୁମର ଏହି ତପରେ ମୁଁ ଅତି ପ୍ରସନ୍ନ । ଏଣୁ ମୁଁ ତୁମର ଅଭୀଷ୍ଟ ପୂର୍ଣ୍ଣ କରିବି । ଏପରି ମଧୁର ଓ ପରମ ଉଦାର ବଚନ କହିବା ପରେ ଶିବ ନିଜ ଶରୀରର ଅର୍ଦ୍ଧଭାଗରୁ ଶିବାଦେବୀଙ୍କୁ ପୃଥକ୍ କରିଦେଲେ । ଶିବଦେବୀ ଶିବଙ୍କ ଠାରୁ ପୃଥକ୍ ହୋଇ ଦଣ୍ଡାୟମାନ ହେବାରୁ ତାଙ୍କୁ ବ୍ରହ୍ମା ବିନମ୍ରଭାବରେ ପ୍ରଣାମ କରି ପ୍ରାର୍ଥନା କଲେ ।

ବ୍ରହ୍ମା କହିଲେ—ଶିବେ ! ସୃଷ୍ଟିର ପ୍ରାରମ୍ଭରେ ଆପଣଙ୍କ ସ୍ୱାମୀ ଦେବାଧିଦେବ ପରମାତ୍ମା ଶମ୍ଭୁ ମୋତେ ସୃଷ୍ଟି କରିଥିଲେ ଏବଂ ମୋ ଦ୍ୱାରା ସମସ୍ତ ପ୍ରଜାଙ୍କୁ ସୃଷ୍ଟି କରାଇଥିଲେ । ଶିବେ ! ମୁଁ ସେତେବେଳେ ଦେବାଦି ସମସ୍ତ ପ୍ରଜାଙ୍କୁ ମନରୁ ସୃଷ୍ଟି କଲି; ମାତ୍ର ବାରମ୍ବାର ମାନସ-ସୃଷ୍ଟି କଲେ ମଧ୍ୟ ପ୍ରଜାବୃଦ୍ଧି ହେଉ ନାହିଁ । ଏଣୁ ଏବେ ମୁଁ ସ୍ତ୍ରୀ-ପୁରୁଷଙ୍କ ସମାଗମରୁ ଉତ୍ପନ୍ନ ହେବାଭଳି ପ୍ରଜାଙ୍କୁ ସୃଷ୍ଟି କରି ତଦ୍ଦ୍ୱାରା ପ୍ରଜାବୃଦ୍ଧି କରିବାକୁ ଚାହୁଁଛି । କିନ୍ତୁ ଏ ପର୍ଯ୍ୟନ୍ତ ଆପଣଙ୍କ ଠାରୁ ଅକ୍ଷୟ ନାରୀକୁଳର ଉତ୍ପତ୍ତି ହୋଇ ନାହିଁ; ଏହି କାରଣରୁ ନାରୀକୁଳକୁ ସୃଷ୍ଟି କରିବା ମୋ ଶକ୍ତିର ବାହାରେ । ଯେହେତୁ ଆପଣ ହିଁ ଅଖିଳେଶ୍ୱରୀ ପରମା ଶକ୍ତି ଓ ସମସ୍ତ ଶକ୍ତିର ଉଦ୍‌ଗମ ସ୍ଥାନ, ତେଣୁ ମୁଁ ଆପଣଙ୍କୁ ପ୍ରାର୍ଥନା କରୁଛି । ଶିବେ ! ମୁଁ ଆପଣଙ୍କୁ ନମସ୍କାର କରୁଛି; ଆପଣ ମୋତେ ନାରୀକୁଳକୁ ସୃଷ୍ଟି କରିବାର ଶକ୍ତି ପ୍ରଦାନ କରନ୍ତୁ; କାରଣ ଶିବପ୍ରିୟେ ! ଏହାକୁ ହିଁ ଆପଣ ଚରାଚର ଜଗତର ଉତ୍ପତ୍ତିର କାରଣ ବୋଲି ଜାଣନ୍ତୁ । ବରଦେଶ୍ୱରୀ ! ମୁଁ ଆପଣଙ୍କୁ ଆଉ ଗୋଟିଏ ବର ମାଗୁଛି, ଜଗନ୍ମାତ ! କୃପା କରି ତାହା ମଧ୍ୟ ମୋତେ ପ୍ରଦାନ କରନ୍ତୁ । ମୁଁ ଆପଣଙ୍କ ଚରଣରେ ପ୍ରଣାମ କରୁଛି । ହେ ସର୍ବବ୍ୟାପିନୀ ଜଗଜ୍ଜନନୀ ! (ମୋର ମାଗୁଣି ହେଲା—) ଆପଣ ସଚରାଚର ଜଗତର ଅଭିବୃଦ୍ଧି ନିମନ୍ତେ ନିଜର ଅନ୍ୟତମ ସର୍ବସମର୍ଥ ରୂପରେ ମୋ ପୁତ୍ର ଦକ୍ଷର କନ୍ୟା ହୁଅନ୍ତୁ ।'' ବ୍ରହ୍ମା ଏପରି ମାଗୁଣି କରିବାରୁ ପରମେଶ୍ୱରୀ ଦେବୀ ଶିବା 'ତଥାସ୍ତୁ' କହି ବ୍ରହ୍ମାଙ୍କୁ ଉପଯୁକ୍ତ ଶକ୍ତି ପ୍ରଦାନ କଲେ । ସୁତରାଂ ଶିବଙ୍କର ଜଗନ୍ମୟୀ ଶକ୍ତି ଶିବାଦେବୀ ନିଜ ଭ୍ରୂଲତାଦ୍ୱୟର ମଧ୍ୟଭାଗରୁ ନିଜ ପରି ପ୍ରଭାବଯୁକ୍ତା ଗୋଟିଏ ଶକ୍ତିକୁ ସୃଷ୍ଟି କଲେ । ସେହି ଶକ୍ତିଙ୍କୁ ଦେଖି ଲୀଳାପରାୟଣ, କଷ୍ଟହାରୀ, କୃପାସିନ୍ଧୁ ଦେବଶ୍ରେଷ୍ଠ ଭଗବାନ ଶଙ୍କର ହସି ହସି ଜଗଦମ୍ବିକାଙ୍କୁ କହିଲେ—

ଶିବ କହିଲେ–"ହେ ଦେବୀ ! ପରମେଷ୍ଠୀ ବ୍ରହ୍ମା ତପସ୍ୟା ଦ୍ୱାରା ତୁମକୁ ଆରାଧନା କରିଛନ୍ତି, ତେଣୁ ତୁମେ ପ୍ରସନ୍ନ ହୋଇ ତାଙ୍କର ସମସ୍ତ ମନୋରଥ ପୂର୍ଣ୍ଣ କର ।" ଶିବାଦେବୀ ପରମେଶ୍ୱର ଶିବଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ବ୍ରହ୍ମାଙ୍କ କଥନାନୁସାରେ ଦକ୍ଷଙ୍କ କନ୍ୟା ହେବାକୁ ସ୍ୱୀକାର କଲେ । ହେ ମୁନି! ଏହରୂପେ ଶିବାଦେବୀ ବ୍ରହ୍ମାଙ୍କୁ ଅନୁପମ ଶକ୍ତି ପ୍ରଦାନ କରି ଶମ୍ଭୁଙ୍କ ଶରୀରରେ ପ୍ରବିଷ୍ଟ ହୋଇଗଲେ । ଭଗବାନ ଶମ୍ଭୁ ମଧ୍ୟ ଅବିଳମ୍ବେ ସେଠାରୁ ଅନ୍ତର୍ହିତ ହୋଇଗଲେ । ସେହିଦିନଠାରୁ ଜଗତରେ ସ୍ତ୍ରୀ-ଜାତିଙ୍କୁ ସୃଷ୍ଟିକର୍ମରେ ଭାଗ ମିଳିଲା ଏବଂ ମୈଥୁନୀ ସୃଷ୍ଟି ଆରମ୍ଭ ହେଲା । ଏହାଦ୍ୱାରା ବ୍ରହ୍ମାଙ୍କୁ ପରମ ସନ୍ତୋଷ ମିଳିଲା । ବତ୍ସ ! ମୁଁ ତୁମ ଆଗରେ ଏ ଯେଉଁ ଅର୍ଦ୍ଧନାରୀଶ୍ୱର ରୂପର ବର୍ଣ୍ଣନା କଲି, ଏହା ସଜ୍ଜନଙ୍କ ପାଇଁ ମଙ୍ଗଳଦାୟକ ଅଟେ । (ଅଧ୍ୟାୟ ୨-୩)



## ବାରାହକଳ୍ପରେ ହୋଇଥିବା ଶିବଙ୍କର ପ୍ରଥମ ଅବତାରଠାରୁ ଆରମ୍ଭ କରି ଋଷଭ ଅବତାର ପର୍ଯ୍ୟନ୍ତ ବର୍ଣ୍ଣନା

ନନ୍ଦୀଶ୍ୱର କହୁଛନ୍ତି–ସର୍ବଜ୍ଞ ସନତ୍କୁମାର ! ଥରେ ରୁଦ୍ର ହର୍ଷିତ ହୋଇ ବ୍ରହ୍ମାଙ୍କୁ ଶଙ୍କରଙ୍କର ଚରିତ୍ର ପ୍ରେମପୂର୍ବକ ବର୍ଣ୍ଣନା କରିଥିଲେ । ସେହି ଚରିତ୍ର ପରମ ସୁଖଦାୟକ ଅଟେ । ତାହା ଏବେ ଶ୍ରବଣ କର ।

ଶିବ କହିଥିଲେ–ବ୍ରହ୍ମନ୍ ! ବାରାହକଳ୍ପର ସପ୍ତମ ମନ୍ୱନ୍ତରରେ ସମଗ୍ର ଭୁବନର ପ୍ରକାଶକ ଭଗବାନ କଳ୍ପେଶ୍ୱର, ଯେ କି ତୁମର ପ୍ରପୌତ୍ର, ସେ ବୈବସ୍ୱତ ମନୁଙ୍କ ପୁତ୍ର ହେବେ । ସେତେବେଳେ ସେହି ମନ୍ୱନ୍ତର ଅନ୍ତର୍ଗତ ଚତୁର୍ଯୁଗୀର ପ୍ରତ୍ୟେକ ଦ୍ୱାପରଯୁଗ ଶେଷଭାଗରେ ମୁଁ ଜଗତ ପ୍ରତି ଅନୁଗ୍ରହ କରିବାକୁ ଏବଂ ବ୍ରାହ୍ମଣଙ୍କର ହିତ ନିମିତ୍ତ ଅବତରିତ ହେବି । ବ୍ରହ୍ମନ୍ ! ଯୁଗପ୍ରବୃତ୍ତି ଅନୁସାରେ ପ୍ରଥମ ଚତୁର୍ଯୁଗୀର ପ୍ରଥମ ଦ୍ୱାପରଯୁଗରେ ଯେତେବେଳେ ସ୍ୱୟଂପ୍ରଭୁ ନାମକ ବ୍ୟାସ ହେବେ, ମୁଁ ସେତେବେଳେ କଳିଯୁଗର ଶେଷଭାଗରେ ବ୍ରାହ୍ମଣଙ୍କ ହିତାର୍ଥେ ଶିବାଙ୍କ ସହିତ ଶ୍ୱେତ ନାମକ ମହାମୁନି ରୂପେ ଅବତରିତ ହେବି । ସେତେବେଳେ ହିମାଳୟର ରମଣୀୟ ଶିଖର ଛାଗଳ ନାମକ ଶ୍ରେଷ୍ଠ ପର୍ବତ ଉପରେ ମୋର ଚାରିଟି ଶିଖାଧାରୀ ଶିଷ୍ୟ ଉତ୍ପନ୍ନ ହେବେ । ସେମାନଙ୍କ ନାମ ହେବ–ଶ୍ୱେତ, ଶ୍ୱେତଶିଖ, ଶ୍ୱେତାଶ୍ୱ ଓ ଶ୍ୱେତଲୋହିତ । ସେ ଚାରିଜଣ ଧ୍ୟାନଯୋଗ ଆଶ୍ରୟରେ ମୋ ନଗରକୁ ଯିବେ । ସେଠାରେ ସେମାନେ ମୋ ପରି ଅବିନାଶୀକୁ ତତ୍ତ୍ୱତଃ ଜାଣି ମୋର ଭକ୍ତ ହୋଇଯିବେ ଏବଂ ଜନ୍ମ, ଜରା ଓ ମୃତ୍ୟୁରୁ ମୁକ୍ତ ହୋଇ ପରବ୍ରହ୍ମଙ୍କ ସମାଧିରେ ଲୀନ ରହିବେ । ବତ୍ସ ପିତାମହ ! ସେତେବେଳେ ମନୁଷ୍ୟ ଧ୍ୟାନ ବ୍ୟତିରେକେ ଦାନ, ଧର୍ମ, ଆଦି କର୍ମହେତୁକ ସାଧନ ଦ୍ୱାରା ମୋର ଦର୍ଶନ ପାଇବାକୁ ସମର୍ଥ ହେବେ ନାହିଁ । ଦ୍ୱିତୀୟ ଦ୍ୱାପରରେ ପ୍ରଜାପତି ସତ୍ୟ ବ୍ୟାସ ହେବେ । ସେତେବେଳେ ମୁଁ କଳିଯୁଗରେ ସୁତାର ନାମରେ ଉତ୍ପନ୍ନ ହେବି । ସେଠାରେ ମୋର ଦୁନ୍ଦୁଭି, ଶତରୂପ, ହୃଷୀକ ତଥା କେତୁମାନ୍ ନାମକ ଚାରିଜଣ ବେଦବାଦୀ ଦ୍ୱିଜ ଶିଷ୍ୟ ହେବେ । ସେ ଚାରିଜଣ ଧ୍ୟାନଯୋଗ ବଳରେ ମୋ ଧାମକୁ ଯିବେ ଏବଂ ମୋତେ ଅବିନାଶୀ ବୋଲି ତତ୍ତ୍ୱତଃ ଜାଣି ମୁକ୍ତ ହୋଇଯିବେ । ତୃତୀୟ ଦ୍ୱାପରରେ ଭାର୍ଗବ ନାମକ ବ୍ୟାସ ହେବେ, ସେତେବେଳେ ମୁଁ ଦମନ ନାମରେ ଅବତରିତ

ହେବି । ସେତେବେଳେ ମୋର ବିଶୋକ, ବିଶେଷ, ବିପାପ ଓ ପାପନାଶନ ନାମକ ଚାରିଟି ପୁତ୍ର ହେବେ । ଚତୁରାନନ ! ସେହି ଅବତାରରେ ମୁଁ ଶିଷ୍ୟମାନଙ୍କୁ ସଙ୍ଗରେ ନେଇ ବ୍ୟାସଙ୍କୁ ସହାୟତା କରିବି ଏବଂ କଳିଯୁଗରେ ନିବୃତ୍ତିମାର୍ଗକୁ ସୁଦୃଢ଼ କରିବି । ଚତୁର୍ଥ ଦ୍ୱାପରରେ ଯେତେବେଳେ ଅଙ୍ଗିରା ବ୍ୟାସ ହେବେ, ସେତେବେଳେ ମୁଁ ସୁହୋତ୍ର ନାମରେ ଅବତରିତ ହେବି? ମୋର ଚାରିଟି ଯୋଗସାଧକ ମହାତ୍ମା ପୁତ୍ର ହେବେ । ସେମାନଙ୍କ ନାମ ହେବ—ସୁମୁଖ, ଦୁର୍ମୁଖ, ଦୁର୍ଦମ ଓ ଦୁରତିକ୍ରମ । ସେତେବେଳେ ମଧ୍ୟ ମୁଁ ଶିଷ୍ୟମାନଙ୍କ ସହିତ ରହି ବ୍ୟାସଙ୍କୁ ସାହାଯ୍ୟ କରିବି । ପଞ୍ଚମ ଦ୍ୱାପରରେ ସବିତା ବ୍ୟାସ ହେବେ, ସେତେବେଳେ ମୁଁ କଙ୍କ ନାମକ ମହାତପସ୍ୱୀ ଯୋଗୀ ହେବି । ବ୍ରହ୍ମନ୍ ! ସେତେବେଳେ ମଧ୍ୟ ମୋର ଚାରିଜଣ ଯୋଗସାଧକ ମହାତ୍ମା ପୁତ୍ର ହେବେ । ସେମାନଙ୍କ ନାମ ହେବ—ସନକ, ସନାତନ, ପ୍ରଭାବଶାଳୀ ସନନ୍ଦନ ଓ ସର୍ବବ୍ୟାପକ ନିର୍ମଳ ତଥା ନିରହଂକାର ସନତ୍କୁମାର । ସେତେବେଳେ ମୁଁ କଙ୍କ ନାମ ଧାରଣ କରି ସବିତା ନାମକ ବ୍ୟାସଙ୍କର ସହାୟକ ହେବି ଏବଂ ନିବୃତ୍ତିମାର୍ଗର ସଂବର୍ଦ୍ଧନ କରିବି । ଷଷ୍ଠ ଦ୍ୱାପର ଆସିଲେ ମୃତ୍ୟୁ ହିଁ ଲୋକକାରକ ବ୍ୟାସ ହେବେ ଏବଂ ବେଦମାନଙ୍କର ବିଭାଜନ କରିବେ, ସେତେବେଳେ ମୁଁ ବ୍ୟାସଙ୍କୁ ସାହାଯ୍ୟ କରିବାକୁ ଲୋକାକ୍ଷି ନାମରେ ଅବତରିତ ହୋଇ ନିବୃତ୍ତି ମାର୍ଗର ଉନ୍ନତି ସାଧନ କରିବି । ସେତେବେଳେ ମଧ୍ୟ ମୋର ଚାରିଟି ଦୃଢ଼ବ୍ରତୀ ଶିଷ୍ୟ ହେବେ । ସେମାନଙ୍କ ନାମ ହେବ—ସୁଧାମା, ବିରଜା, ସଂଜୟ ଓ ବିଜୟ । ବିଧେ ! ସପ୍ତମ ଦ୍ୱାପରର ଆରମ୍ଭରେ ଯେବେ ଶତକ୍ରତୁ ନାମକ ବ୍ୟାସ ହେବେ, ସେତେବେଳେ ମୁଁ ଯୋଗମାର୍ଗରେ ପରମ ନିପୁଣ ଜୈଗୀଷବ୍ୟ ନାମରେ ଅବତରିତ ହେବି ଏବଂ କାଶୀପୁରରେ ଗୁମ୍ଫା ମଧ୍ୟସ୍ଥ ଦିବ୍ୟସ୍ଥାନରେ କୁଶାସନରେ ବସି ଯୋଗକୁ ସୁଦୃଢ଼ କରିବି ଏବଂ ଶତକ୍ରତୁ ନାମକ ବ୍ୟାସଙ୍କ ସହାୟତା କରିବା ସହିତ ଭକ୍ତଙ୍କୁ ସଂସାରଭୟରୁ ଉଦ୍ଧାର କରିବି । ସେହି ଯୁଗରେ ମଧ୍ୟ ମୋର ସାରସ୍ୱତ, ଯୋଗୀଶ, ମେଘବାହ ଓ ସୁବାହନ ନାମରେ ଚାରିଟି ପୁତ୍ର ହେବେ । ଅଷ୍ଟମ ଦ୍ୱାପର ଆଗମନରେ ମୁନିବର ବଶିଷ୍ଠ ବେଦ-ବିଭାଜନକାରୀ ବ୍ୟାସ ହେବେ । ଯୋଗବିତ୍ତମ ! ସେହି ଯୁଗରେ ମୁଁ ଦଧିବାହନ ନାମରେ ଅବତରିତ ହେବି ଏବଂ ବ୍ୟାସଙ୍କୁ ସହାୟତା କରିବି । ସେତେବେଳେ କପିଳ, ଆସୁରି, ପଞ୍ଚଶିଖ ଓ ଶାଲ୍ୱଳ ନାମରେ ମୋର ଚାରିଟି ଯୋଗୀ ପୁତ୍ର ହେବେ ଏବଂ ସେମାନେ ମୋର ସମକକ୍ଷ ହେବେ । ବ୍ରହ୍ମନ୍ ! ନବମ ଚତୁର୍ଯୁଗୀର ଦ୍ୱାପରରେ ମୁନିଶ୍ରେଷ୍ଠ ସାରସ୍ୱତ ବ୍ୟାସ ନାମରେ ପ୍ରସିଦ୍ଧ ହେବେ । ସେହି ବ୍ୟାସ ନିବୃତ୍ତିମାର୍ଗର ବୃଦ୍ଧି ପାଇଁ ଧ୍ୟାନ କଲେ ମୁଁ ଋଷଭ ନାମରେ ଅବତାର ଗ୍ରହଣ କରିବି । ସେତେବେଳେ ପରାଶର, ଗର୍ଗ, ଭାର୍ଗବ ଓ ଗିରୀଶ ନାମରେ ଚାରିଜଣ ମହାଯୋଗୀ ମୋର ଶିଷ୍ୟ ହେବେ । ପ୍ରଜାପତେ ! ସେମାନଙ୍କର ସହଯୋଗରେ ମୁଁ ଯୋଗମାର୍ଗକୁ ସୁଦୃଢ଼ କରିବି । ମୁନେ ! ଏହି ପ୍ରକାରେ ମୁଁ ବ୍ୟାସଙ୍କର ସହାୟକ ହେବି । ବ୍ରହ୍ମନ୍ ! ସେହି ଅବତାରରେ ମୁଁ ଅନେକ ଦୁଃଖୀ ଭକ୍ତଙ୍କ ଉପରେ ଦୟା କରି ସେମାନଙ୍କୁ ଭବସାଗରରୁ ଉଦ୍ଧାର କରିବି । ମୋର ଋଷଭ ନାମକ ଅବତାର ଯୋଗମାର୍ଗର ପ୍ରବର୍ତ୍ତକ ସାରସ୍ୱତ ନାମକ ବ୍ୟାସଙ୍କ ମନକୁ ସନ୍ତୋଷ ପ୍ରଦାନ କରିବ ଏବଂ ନାନା ପ୍ରକାରେ ରକ୍ଷା କରିବ । ସେହି ଅବତାରରେ ବିଷଦ୍ୱାରା ମରିଯାଇଥିବା ଏବଂ ପିତା ତ୍ୟାଗ କରିଦେଇଥିବା ଭଦ୍ରାୟୁ ନାମକ ରାଜକୁମାରଙ୍କୁ ମୁଁ ଜୀବନ ଦାନ କରିବି । ଉକ୍ତ ରାଜକୁମାରଙ୍କୁ ଷୋହଳ

ବର୍ଷ ହୋଇଥିବା ବେଳେ ମୋର ଅଂଶସ୍ୱରୂପ ଋଷଭ ଋଷି ତା' ଗୃହରେ ପଦାର୍ପଣ କରିବେ । ପ୍ରଜାପତେ ! ରାଜକୁମାର ଦ୍ୱାରା ପୂଜିତ ହେବା ପରେ ସଦ୍‌ରୂପଧାରୀ କୃପାଳୁ ମୁନି ଋଷଭ ତାକୁ ରାଜଧର୍ମର ଉପଦେଶ ଦେବେ । ତା'ପରେ ଦୀନବତ୍ସଳ ମୁନି ହର୍ଷିତ ଚିତ୍ତରେ ତାହାକୁ ଦିବ୍ୟ କବଚ, ଶଙ୍ଖ ଓ ଗୋଟିଏ ଶତ୍ରୁନାଶକାରୀ ଉଜ୍ଜ୍ୱଳ ଖଡ୍‌ଗ ପ୍ରଦାନ କରିବେ । ପୁଣି ସେ କୃପାପୂର୍ବକ ତା' ଶରୀରରେ ଭସ୍ମ ବୋଳି ତାକୁ ବାରହଜାର ହାତୀଙ୍କର ବଳ ପ୍ରଦାନ କରିବେ । ଭଦ୍ରାୟୁକୁ ଓ ତା' ମାଆକୁ ଉତ୍ତମରୂପେ ଆଶ୍ୱାସନା ଦେଇ ଏବଂ ଉଭୟଙ୍କ ଦ୍ୱାରା ପୂଜିତ ହୋଇ ପ୍ରଭାବଶାଳୀ ମୁନି ଋଷଭ ସ୍ୱେଚ୍ଛାନୁସାରେ ସେଠାରୁ ଗ୍ଲାଲିଯିବେ । ବ୍ରହ୍ମନ୍ ! ରାଜର୍ଷି ଭଦ୍ରାୟୁ ରିପୁମାନଙ୍କୁ ଜିଣି ଏବଂ କୀର୍ତ୍ତିମାଳିନୀ ସଙ୍ଗେ ବିବାହ କରି ଧର୍ମପୂର୍ବକ ରାଜ୍ୟଶାସନ କରିବେ । ମୁନେ ! ମୋର ଋଷଭ ନାମକ ଅବତାର ଏପରି ପ୍ରଭାବଶାଳୀ ହେବ ଯେ ତାହା ସତ୍‌ପୁରୁଷଙ୍କର ଗତି ତଥା ଦୀନଜନଙ୍କର ବନ୍ଧୁ ପରି ହିତକାରୀ ସିଦ୍ଧ ହେବ । ମୁଁ ତୁମ ଆଗରେ ଋଷଭ ଅବତାର ବିଷୟରେ ବର୍ଣ୍ଣନା କରିଦେଲି । ଋଷଭ ଚରିତ ପରମ ପାବନ, ମହାନ୍ ଏବଂ ଏହା ସ୍ୱର୍ଗ, ଯଶ ତଥା ଆୟୁ ପ୍ରଦାନ କରିଥାଏ; ତେଣୁ ଏହାକୁ ପ୍ରଯତ୍ନପୂର୍ବକ ଶ୍ରବଣ କରିବା ଉଚିତ । (ଅଧ୍ୟାୟ ୪)

***

## ଶିବଙ୍କର ଦଶମ ଠାରୁ ଅଠାଇଶତମ ଯୋଗେଶ୍ୱରାବତାର ପର୍ଯ୍ୟନ୍ତ ବର୍ଣ୍ଣନା

ଶିବ କହୁଛନ୍ତି–ବ୍ରହ୍ମନ୍ ! ଦଶମ ଦ୍ୱାପରରେ ତ୍ରିଧାମା ନାମକ ମୁନି ବ୍ୟାସ ହେବେ । ସେ ହିମାଳୟର ଭୃଗୁତୁଙ୍ଗ ନାମକ ରମଣୀୟ ଶିଖରରେ ନିବାସ କରିବେ । ସେତେବେଳେ ମଧ୍ୟ ମୋର ଗ୍ୱରିଜଣ ଶ୍ରୁତିବିଦିତ ପୁତ୍ର ହେବେ । ସେମାନଙ୍କ ନାମ ହେବ–ଭୃଙ୍ଗ, ବଳବନ୍ଧୁ, ନରାମିତ୍ର ଓ ତପୋଧନ କେତୁଶୃଙ୍ଗ । ଏକାଦଶ ଦ୍ୱାପରରେ ଯେବେ ତ୍ରିବୃତ ନାମକ ବ୍ୟାସ ହେବେ, ସେତେବେଳେ କଳିଯୁଗରେ ଗଙ୍ଗାଦ୍ୱାରରେ ମୁଁ ତପ ନାମରେ ଅବତରିତ ହେବି । ସେଠାରେ ମଧ୍ୟ ମୋର ଲମ୍ବୋଦର, ଲମ୍ବାକ୍ଷ, କେଶଲମ୍ବ ଓ ପ୍ରଲମ୍ବକ ନାମରେ ଗ୍ୱରିଟି ଦୃଢ଼ବ୍ରତୀ ପୁତ୍ର ହେବେ । ଦ୍ୱାଦଶ ଚତୁର୍ଯୁଗୀର ଦ୍ୱାପରରେ ଶତତେଜା ନାମକ ବ୍ୟାସ ହେବେ । ସେତେବେଳେ ମୁଁ ଦ୍ୱାପର ଶେଷରେ କଳିଯୁଗରେ ହେମକଞ୍ଚୁକ ନାମକ ସ୍ଥାନରେ ଅତ୍ରି ନାମରେ ଅବତରିତ ହେବି ଏବଂ ବ୍ୟାସଙ୍କ ସହାୟତା ପାଇଁ ନିବୃତ୍ତିମାର୍ଗର ପ୍ରତିଷ୍ଠା କରିବି । ମହାମୁନେ ! ସେଠାରେ ମଧ୍ୟ ମୋର ସର୍ବଜ୍ଞ, ସମବୁଦ୍ଧି, ସାଧ୍ୟ ଓ ଶର୍ବ ନାମରେ ଗ୍ୱରିଜଣ ଉତ୍ତମ ଯୋଗୀ ପୁତ୍ର ହେବେ । ତ୍ରୟୋଦଶ ଦ୍ୱାପରରେ ଧର୍ମସ୍ୱରୂପ ନାରାୟଣ ବ୍ୟାସ ହେଲାବେଳେ ମୁଁ ପର୍ବତଶ୍ରେଷ୍ଠ ଗନ୍ଧମାଦନ ଉପରେ ବାଳଖିଲ୍ୟାଶ୍ରମରେ ମହାମୁନି ବଳି ନାମରେ ଅବତରିତ ହେବି । ସେଠାରେ ମଧ୍ୟ ମୋର ସୁଧାମା, କାଶ୍ୟପ, ବସିଷ୍ଠ ଓ ବିରଜା ନାମରେ ଗ୍ୱରିଜଣ ସୁନ୍ଦର ପୁତ୍ର ହେବେ । ଚତୁର୍ଦ୍ଦଶ ଚତୁର୍ଯୁଗୀର ଦ୍ୱାପରରେ ରକ୍ଷ ନାମକ ବ୍ୟାସ ହେଲାବେଳେ ମୁଁ ଅଙ୍ଗିରାଙ୍କ ବଂଶରେ ଗୌତମ ନାମରେ ଉତ୍ପନ୍ନ ହେବି । ସେତେବେଳେ ମଧ୍ୟ କଳିଯୁଗରେ ଅତ୍ରି, ବଶଦ, ଶ୍ରବଣ ଓ ଶ୍ରବିଷ୍କଟ ମୋର ପୁତ୍ର ହେବେ । ପଞ୍ଚଦଶ ଦ୍ୱାପରରେ ତ୍ରୟ୍ୟାରୁଣି ବ୍ୟାସ ହେଲା ବେଳେ ମୁଁ ହିମାଳୟର ପୃଷ୍ଠଭାଗରେ ସ୍ଥିତ ବେଦଶୀର୍ଷ ନାମକ ପର୍ବତ ଉପରେ ସରସ୍ୱତୀର ଉତ୍ତରତଟରେ ବେଦଶିରା ନାମରେ ଅବତାର

ଗ୍ରହଣ କରିବି । ସେତେବେଳେ ମହାପରାକ୍ରମୀ ବେଦଶିର ହିଁ ମୋର ଅସ୍ତ୍ର ହେବ । ସେଠାରେ ମୋର ଯେଉଁ ଚାରିଟି ପରାକ୍ରମୀ ପୁତ୍ର ହେବେ, ସେମାନଙ୍କ ନାମ ହେବ–କୁଣି, କୁଣିବାହୁ, କୁଶରୀର ଓ କୁନେତ୍ରକ ।

ଷୋଡ଼ଶ ଦ୍ୱାପରରେ ବ୍ୟାସଙ୍କ ନାମ ହେବ ଦେବ । ସେତେବେଳେ ମୁଁ ଯୋଗ ପ୍ରଦାନ କରିବାକୁ ପରମ ପୁଣ୍ୟମୟ ଗୋକର୍ଣ୍ଣବନରେ ଗୋକର୍ଣ୍ଣ ନାମରେ ଅବତରିତ ହେବି । ସେଠାରେ ମୋର କାଶ୍ୟପ, ଉଶନା, ଚ୍ୟବନ ଓ ବୃହସ୍ପତି ନାମରେ ଚାରିଟି ପୁତ୍ର ହେବେ । ସେମାନେ ଜଳ ପରି ନିର୍ମଳ ଓ ଯୋଗୀ ହେବେ ତଥା ଯୋଗମାର୍ଗ ଦ୍ୱାରା ଶିବଲୋକକୁ ପ୍ରାପ୍ତ ହେବେ । ସପ୍ତଦଶ ଚତୁର୍ଯୁଗୀର ଦ୍ୱାପରରେ ଦେବକୃତଞ୍ଜୟ ବ୍ୟାସ ହେବେ । ସେତେବେଳେ ମୁଁ ହିମାଳୟର ଅତ୍ୟନ୍ତ ଉଚ୍ଚ ଏବଂ ରମଣୀୟ ଶିଖରସ୍ଥ ମହାଳୟ ପର୍ବତ ଉପରେ ଗୁହାବାସୀ ନାମରେ ଅବତାର ଧାରଣ କରିବି; କାରଣ ହିମାଳୟ ଶିବକ୍ଷେତ୍ର ନାମରେ ପ୍ରସିଦ୍ଧ । ସେଠାରେ ଉତଥ୍ୟ, ବାମଦେବ, ମହାଯୋଗ ଓ ମହାବଳ ନାମରେ ମୋର ଚାରିଟି ପୁତ୍ର ହେବେ । ଅଷ୍ଟାଦଶ ଚତୁର୍ଯୁଗୀର ଦ୍ୱାପରରେ ଋତଞ୍ଜୟ ଯେବେ ବ୍ୟାସ ହେବେ, ସେତେବେଳେ ମୁଁ ହିମାଳୟର ଶିଖଣ୍ଡୀ ନାମକ ସୁନ୍ଦର ଶିଖରରେ ଶିଖଣ୍ଡୀ ନାମରେ ଉତ୍ପନ୍ନ ହେବି । ସେହି ଶିଖରରେ ଅତ୍ୟନ୍ତ ପୁଣ୍ୟମୟ ସିଦ୍ଧକ୍ଷେତ୍ର ଓ ସିଦ୍ଧଜନଙ୍କ ଦ୍ୱାରା ସେବିତ ଶିଖଣ୍ଡୀ ବନ ମଧ୍ୟ ଅଛି । ସେଠାରେ ମଧ୍ୟ ମୋର ବାଚଃଶ୍ରବା, ରୁଚୀକ, ଶ୍ୟାବାସ୍ୟ ଓ ଯତୀଶ୍ୱର ନାମକ ଚାରିଟି ତପସ୍ୱୀ ପୁତ୍ର ହେବେ । ଊନବିଂଶ ଦ୍ୱାପରରେ ମହାମୁନି ଭରଦ୍ୱାଜ ବ୍ୟାସ ହେଲାବେଳେ ମୁଁ ହିମାଳୟ ଶିଖରରେ ମାଳୀ ନାମରେ ଉତ୍ପନ୍ନ ହେବି ଏବଂ ମୋ ମସ୍ତକରେ ଲମ୍ବା ଲମ୍ବା ଜଟା ଥିବ । ସେଠାରେ ମୋର ହିରଣ୍ୟନାମା, କୌସଲ୍ୟ, ଲୋକାକ୍ଷି ଓ ପ୍ରଧିମି ନାମକ ଚାରିଟି ପୁତ୍ର ହେବେ । ସେମାନଙ୍କ ସ୍ୱଭାବ ସାଗରଠାରୁ ମଧ୍ୟ ଗମ୍ଭୀର ହେବ । ବିଂଶ ଚତୁର୍ଯୁଗୀର ଦ୍ୱାପରରେ ବ୍ୟାସଙ୍କ ନାମ ହେବ ଗୌତମ । ସେତେବେଳେ ହିମବାନ୍‌ର ପୃଷ୍ଠଭାଗସ୍ଥ ଅଟ୍ଟହାସ ନାମକ ଯେଉଁ ଶ୍ରେଷ୍ଠ ପର୍ବତ ଅଛି, ଯାହା କି ମନୁଷ୍ୟ, ଯକ୍ଷେନ୍ଦ୍ର, ସିଦ୍ଧ ଓ ଚାରଣଙ୍କ ଦ୍ୱାରା ସେବିତ, ସେଠାରେ ମୁଁ ଅଟ୍ଟହାସ ନାମରେ ଅବତାର ଧାରଣ କରିବି । ସେହି ଯୁଗର ମନୁଷ୍ୟ ଅଟ୍ଟହାସଙ୍କର ପ୍ରେମୀ ହେବେ । ସେତେବେଳେ ମୋର ଯେଉଁ ଚାରି ପୁତ୍ର ହେବେ, ସେମାନଙ୍କ ନାମ ହେବ–ସୁମନ୍ତ, ବର୍ବରି, ବିଦ୍ୱାନ୍ କବନ୍ଧ ଓ କୁଣିକନ୍ଧର । ଏକବିଂଶ ଦ୍ୱାପରରେ ଯେବେ ବାଚଃଶ୍ରବା ନାମକ ବ୍ୟାସ ହେବେ, ସେତେବେଳେ ମୁଁ ଦାରୁକ ନାମରେ ଅବତରିତ ହେବି । ଏହି କାରଣରୁ ସେହି ଶୁଭ ସ୍ଥାନର ନାମ 'ଦାରୁବନ' ହେବ । ସେଠାରେ ମୋର ପ୍ଲକ୍ଷ, ଦାର୍ଭାୟଣି, କେତୁମାନ୍ ଓ ଗୌତମ ନାମରେ ଚାରିଟି ପରମ ଯୋଗୀ ପୁତ୍ର ହେବେ । ଦ୍ୱାବିଂଶ ଚତୁର୍ଯୁଗୀରେ ଶୁଷ୍ମାୟଣ ବ୍ୟାସ ହେଲା ବେଳେ ମୁଁ ବାରାଣସୀରେ ଲାଙ୍ଗଳୀ ଭୀମ ନାମକ ମହାମୁନିଙ୍କ ରୂପରେ ଅବତରିତ ହେବି । ସେତେବେଳର କଳିଯୁଗରେ ଇନ୍ଦ୍ର ସମେତ ସମସ୍ତ ଦେବତା ମୋର ସେହି ହଳାୟୁଧଧାରୀ ଶିବ ରୂପକୁ ଦର୍ଶନ କରିବେ । ଉକ୍ତ ଅବତାରରେ ମୋର ଭଲ୍ଲବୀ, ମଧୁ, ପିଙ୍ଗ ଓ ଶ୍ୱେତକେତୁ ନାମକ ଚାରିଟି ପରମ ଧାର୍ମିକ ପୁତ୍ର ହେବେ । ତ୍ରୟୋବିଂଶ ଚତୁର୍ଯୁଗୀରେ ତୃଣବିନ୍ଦୁ ବ୍ୟାସ ହେଲାବେଳେ ମୁଁ ସୁନ୍ଦର କାଳିଞ୍ଜରଗିରିରେ ଶ୍ୱେତ ନାମରେ ଅବତରିତ ହେବି । ସେଠାରେ ମୋର ଉଶିକ, ବୃହଦଶ୍ୱ, ଦେବଳ ଓ କବି ନାମରେ ଚାରିଟି ପ୍ରସିଦ୍ଧ ତପସ୍ୱୀ ପୁତ୍ର ହେବେ । ଚତୁର୍ବିଂଶ ଚତୁର୍ଯୁଗୀରେ ଐଶ୍ୱର୍ଯ୍ୟଶାଳୀ ଯକ୍ଷ ବ୍ୟାସ

ହେବେ । ସେତେବେଳେ ମୁଁ ନୈମିଷକ୍ଷେତ୍ରରେ ଶୂଳୀ ନାମକ ମହାଯୋଗୀ ହୋଇ ଉତ୍ପନ୍ନ ହେବି । ସେହି ଯୁଗରେ ମୋର ଶାଳିହୋତ୍ର, ଅଗ୍ନିବେଶ, ଯୁବନାଶ୍ୱ ଓ ଶରଦ୍‌ବସୁ ନାମକ ଚାରିଜଣ ତପସ୍ୱୀ ଶିଷ୍ୟ ହେବେ । ପଞ୍ଚବିଂଶ ଦ୍ୱାପରରେ ଶକ୍ତି ନାମକ ବ୍ୟାସ ହେଲାବେଳେ ମୁଁ ପ୍ରଭାବଶାଳୀ ଓ ଦଣ୍ଡଧାରୀ ମହାଯୋଗୀ ରୂପରେ ପ୍ରକଟ ହେବି । ମୋର ନାମ ହେବ ମୁଣ୍ଡୀଶ୍ୱର । ସେହି ଅବତାରରେ ଛାଗଳ, କୁଣ୍ଡକର୍ଣ୍ଣ, କୁମ୍ଭାଣ୍ଡ ଓ ପ୍ରବାହକ ହେବେ ମୋର ତପସ୍ୱୀ ଶିଷ୍ୟ । ଷଡ୍‌ବିଂଶ ଦ୍ୱାପରରେ ବ୍ୟାସଙ୍କ ନାମ ହେବ ପରାଶର । ସେତେବେଳେ ମୁଁ ଭଦ୍ରବଟ ନାମକ ନଗରରେ ସହିଷ୍ଣୁ ନାମରେ ଅବତାର ଗ୍ରହଣ କରିବି । ସେତେବେଳେ ଉଲୂକ, ବିଦ୍ୟୁତ୍, ଶମ୍ବୂକ ଓ ଆଶ୍ୱଳାୟନ ନାମରେ ମୋର ଚାରିଜଣ ତପସ୍ୱୀ ଶିଷ୍ୟ ହେବେ । ସପ୍ତବିଂଶ ଦ୍ୱାପରରେ ଜାତୂକର୍ଣ୍ଣ୍ୟ ହେବେ ବ୍ୟାସ, ସେତେବେଳେ ମୁଁ ପ୍ରଭାସତୀର୍ଥରେ ସୋମଶର୍ମା ନାମରେ ଅବତରିତ ହେବି । ସେଠାରେ ମୋର ଅକ୍ଷପାଦ, କୁମାର, ଉଲୂକ ଓ ବତ୍ସ ନାମରେ ପ୍ରସିଦ୍ଧ ଚାରିଟି ତପସ୍ୱୀ ଶିଷ୍ୟ ହେବେ । ଅଷ୍ଟାବିଂଶ ଦ୍ୱାପରରେ ଯେତେବେଳେ ଭଗବାନ୍ ଶ୍ରୀହରି ପରାଶରଙ୍କ ପୁତ୍ର ରୂପରେ ଜନ୍ମ ଗ୍ରହଣ କରି ଦ୍ୱୈପାୟନ ନାମକ ବ୍ୟାସ ହେବେ, ସେତେବେଳେ ପୁରୁଷୋତ୍ତମ ଶ୍ରୀକୃଷ୍ଣ ଆପଣା ଷଷ୍ଠ ଅଂଶରୁ ବସୁଦେବଙ୍କ ଶ୍ରେଷ୍ଠ ପୁତ୍ର ରୂପରେ ଉତ୍ପନ୍ନ ହୋଇ ବାସୁଦେବ ନାମରେ ପ୍ରସିଦ୍ଧ ହେବେ । ସେହି ସମୟରେ ମୁଁ ଜଗତକୁ ବିସ୍ମିତ କରିବା ପାଇଁ ଯୋଗାତ୍ମା ନାମକ ବ୍ରହ୍ମଚାରୀ ରୂପ ଧାରଣ କରିବି । ସେତେବେଳେ ଶ୍ମଶାନ ଭୂମିରେ ମୃତକ ରୂପେ ପଡ଼ିଥିବା ଅବିଚ୍ଛିନ୍ନ ଶରୀରକୁ ଦେଖି ମୁଁ ବ୍ରାହ୍ମଣଙ୍କ ହିତସାଧନ ନିମନ୍ତେ ଯୋଗମାୟା ଆଶ୍ରୟରେ ସେଥିରେ ପ୍ରବେଶ କରିଯିବି ଏବଂ ତୁମ ସହିତ ଓ ବିଷ୍ଣୁଙ୍କ ସହିତ ମେରୁଗିରିର ପୁଣ୍ୟମୟ ଦିବ୍ୟ ଗୁହାରେ ପ୍ରବେଶ କରିବି । ବ୍ରହ୍ମନ୍ ! ସେଠାରେ ମୋର ନାମ ହେବ ଲଂକୁଳୀ । ଏହି ପ୍ରକାରେ ମୋର ଉକ୍ତ କାୟାବତାର ଉତ୍କୃଷ୍ଟ ସିଦ୍ଧକ୍ଷେତ୍ର ନାମରେ ବିଖ୍ୟାତ ହେବ ଏବଂ ଏ ପୃଥିବୀ ରହିଥିବା ପର୍ଯ୍ୟନ୍ତ ଜଗତରେ ପରମ ବିଖ୍ୟାତ ହୋଇ ରହିବ । ସେହି ଅବତାରରେ ମଧ୍ୟ ମୋର ଚାରିଜଣ ତପସ୍ୱୀ ଶିଷ୍ୟ ହେବେ । ସେମାନଙ୍କର ନାମ ହେବ—କୁଶିକ, ଗର୍ଗ, ମିତ୍ର ଓ ପୌରୁଷ୍ୟ । ସେମାନେ ବେଦ-ପାରଙ୍ଗମ ଊର୍ଦ୍ଧ୍ୱରେତା ବ୍ରାହ୍ମଣ ଯୋଗୀ ହେବେ ଏବଂ ମାହେଶ୍ୱର ଯୋଗକୁ ପ୍ରାପ୍ତ ହୋଇ ଶିବଲୋକକୁ ଚାଲିଯିବେ ।

ହେ ସୁବ୍ରତ ମୁନିଗଣ ! ପରମାତ୍ମା ଶିବ ବୈବସ୍ୱତ ମନ୍ୱନ୍ତରର ସମସ୍ତ ଚତୁର୍ଯୁଗୀର ଯୋଗେଶ୍ୱରାବତାରଙ୍କ ବିଷୟରେ ସମ୍ୟକ୍‌ରୂପେ ବର୍ଣ୍ଣନା କରିଥିଲେ । ବିଭୋ ! ଅଠେଇଶ ଜଣ ବ୍ୟାସ କ୍ରମାନ୍ୱୟରେ ଜଣ ଜଣ କରି ପ୍ରତ୍ୟେକ ଦ୍ୱାପରରେ ହେବେ ଏବଂ ଯୋଗେଶ୍ୱରାବତାର ପ୍ରତ୍ୟେକ କଳିଯୁଗ ଆରମ୍ଭରେ ହେବେ । ପ୍ରତ୍ୟେକ ଯୋଗେଶ୍ୱରାବତାର ସଙ୍ଗରେ ତାଙ୍କର ଚାରିଜଣ ଅବିନାଶୀ ଶିଷ୍ୟ ମଧ୍ୟ ରହିବେ, ଯେଉଁମାନେ ମହାନ୍ ଶିବଭକ୍ତ ଓ ଯୋଗମାର୍ଗର ଅଭିବୃଦ୍ଧିକାରୀ ହେବେ । ପଶୁପତିଙ୍କର ସେହି ଶିଷ୍ୟମାନଙ୍କ ଶରୀର ଭସ୍ମମଣ୍ଡିତ ହୋଇଥିବ, ସେମାନଙ୍କ ଲଲାଟରେ ତ୍ରିପୁଣ୍ଡ୍ର ଶୋଭା ପାଉଥିବ ଏବଂ ରୁଦ୍ରାକ୍ଷ ମାଳା ସେମାନଙ୍କର ଆଭୂଷଣ ହେବ । ଏ ସମସ୍ତ ଶିଷ୍ୟ ଧର୍ମପରାୟଣ, ବେଦବେଦାନ୍ତରେ ପାରଙ୍ଗମ ବିଦ୍ୱାନ୍ ତଥା ବାହ୍ୟ-ଅଭ୍ୟନ୍ତରରେ ଲିଙ୍ଗାର୍ଚ୍ଚନାରେ ତତ୍ପର ରହିବେ । ଏମାନେ ଶିବଙ୍କୁ ଭକ୍ତି କରିବେ, ଯୋଗସାଧନାପୂର୍ବକ ଧ୍ୟାନରେ ନିଷ୍ଠା ରଖିବେ ଏବଂ ଜିତେନ୍ଦ୍ରିୟ ହେବେ । ବିଦ୍ୱାନ୍‌ମାନେ ଏମାନଙ୍କ ସଂଖ୍ୟା ଏକଶହ ବାର ବୋଲି କହିଛନ୍ତି । ଏହିରୂପେ

ମୁଁ ଅଠେଇଶ ଯୁଗ କ୍ରମରେ ମନୁଙ୍କ ଠାରୁ ଆରମ୍ଭ କରି ଶ୍ରୀକୃଷ୍ଣାବତାର ପର୍ଯ୍ୟନ୍ତ ସମସ୍ତ ଅବତାରଙ୍କ ଲକ୍ଷଣ ବର୍ଣ୍ଣନା କରିଦେଲି । ଏହି କଳ୍ପରେ ଯେବେ କୃଷ୍ଣଦ୍ୱୈପାୟନ ବ୍ୟାସ ହେବେ, ସେତେବେଳେ ବେଦାନ୍ତ ରୂପରେ ଶ୍ରୁତିସମୂହର ପ୍ରୟୋଗ ହେବ । ହେ ସନତ୍‌କୁମାର ! ଏହିରୂପେ ଦେବେଶ୍ୱର ଭଗବାନ ଶିବ ବ୍ରହ୍ମାଙ୍କ ଉପରେ ଅନୁଗ୍ରହ କରି ଯୋଗେଶ୍ୱରାବତାରଙ୍କର ବର୍ଣ୍ଣନା କଲେ ଏବଂ ତା'ପରେ ତାଙ୍କୁ କୃପାଦୃଷ୍ଟିରେ ଚାହିଁ ସେଠାରୁ ଅନ୍ତର୍ହିତ ହୋଇଗଲେ । (ଅଧ୍ୟାୟ ୫)

***

## ନନ୍ଦୀଶ୍ୱରାବତାର ବର୍ଣ୍ଣନା

ଏପର୍ଯ୍ୟନ୍ତ ବୟାଳିଶଟି ଅବତାର ବିଷୟରେ ବର୍ଣ୍ଣନା ହେଲା । ଏବେ ନନ୍ଦୀଶ୍ୱରାବତାର ବିଷୟରେ ବର୍ଣ୍ଣନା କରାଯାଉଛି ।

ସନତ୍‌କୁମାର ପଚାରିଲେ—ପ୍ରଭୋ ! ଆପଣ ମହାଦେବଙ୍କ ଅଂଶରୁ ଉତ୍ପନ୍ନ ହୋଇ ପୁଣି ପରେ ଶିବଙ୍କୁ କିପରି ପ୍ରାପ୍ତ ହେଲେ? ସେହି ସମସ୍ତ ବୃତ୍ତାନ୍ତ ମୁଁ ଶୁଣିବାକୁ ଚାହୁଁଛି । ଦୟା କରି ତାହା ବର୍ଣ୍ଣନା କରନ୍ତୁ ।

ନନ୍ଦୀଶ୍ୱର କହୁଛନ୍ତି—ସର୍ବଜ୍ଞ ସନତ୍‌କୁମାର ! ମୁଁ କିପରି ମହାଦେବଙ୍କ ଅଂଶରୁ ଜନ୍ମି ଶିବଙ୍କୁ ପ୍ରାପ୍ତ ହେଲି, ସେହି ପ୍ରସଙ୍ଗ କହୁଛି । ତୁମେ ସାବଧାନ ହୋଇ ତାହା ଶ୍ରବଣ କର । ଶିଳାଦ ନାମରେ ଜଣେ ଧର୍ମାତ୍ମା ମୁନି ଥିଲେ । ପିତୃପୁରୁଷଙ୍କ ଆଦେଶରେ ସେ ଗୋଟିଏ ଅଯୋନିଜ, ମୃତ୍ୟୁହୀନ ତଥା ସୁବ୍ରତ ପୁତ୍ର ପାଇବାକୁ ତପସ୍ୟା କରି ଦେବେଶ୍ୱର ଇନ୍ଦ୍ରଙ୍କୁ ପ୍ରସନ୍ନ କରିଦେଲେ । ମାତ୍ର ଦେବେଶ୍ୱର ଏପରି ପୁତ୍ର ପ୍ରଦାନ କରିବାରେ ନିଜକୁ ଅସମର୍ଥ ବୋଲି କହି ମହାଶକ୍ତିସମ୍ପନ୍ନ ସର୍ବେଶ୍ୱର ମହାଦେବଙ୍କ ଆରାଧନା କରିବାକୁ ଉପଦେଶ ଦେଲେ । ଶିଳାଦ ମହାଦେବଙ୍କୁ ପ୍ରସନ୍ନ କରିବାକୁ ତପସ୍ୟା କଲେ । ତାଙ୍କ ତପସ୍ୟାରେ ପ୍ରସନ୍ନ ହୋଇ ମହାଦେବ ସେଠାରେ ଉପସ୍ଥିତ ହେଲେ ଏବଂ ମହାସମାଧିମଗ୍ନ ଶିଳାଦଙ୍କ ପିଠିରେ ହାତ ମାରି ତାଙ୍କୁ ଜାଗ୍ରତ କଲେ । ତା'ପରେ ଶିଳାଦ ଶିବଙ୍କୁ ସ୍ତୁତି କଲେ । ଶିବ ତାଙ୍କୁ ବର ଦେବାକୁ ପ୍ରସ୍ତୁତ ହେବାରୁ ଶିଳାଦ କହିଲେ—"ପ୍ରଭୋ ! ମୁଁ ଆପଣଙ୍କ ପରି ମୃତ୍ୟୁହୀନ ଅଯୋନିଜ ପୁତ୍ରଟିଏ ଚାହୁଁଛି ।" ଶିବ ପ୍ରସନ୍ନ ହୋଇ ମୁନିଙ୍କୁ କହିଲେ—

ଶିବ କହିଲେ—ତପୋଧନ ବିପ୍ର ! ପୂର୍ବକାଳରେ ବ୍ରହ୍ମା, ମୁନିଗଣ ଓ ବଡ଼ ବଡ଼ ଦେବତାମାନେ ମୋର ଅବତାର ହେବା ପାଇଁ ତପସ୍ୟା ଦ୍ୱାରା ମୋତେ ଆରାଧନା କରିଥିଲେ । ତେଣୁ ମୁନେ ! ଯଦ୍ୟପି ମୁଁ ସାରା ଜଗତର ପିତା, ତଥାପି ତୁମେ ମୋର ପିତା ହେବ ଓ ମୁଁ ତୁମର ଅଯୋନିଜ ପୁତ୍ର ହେବି ଏବଂ ମୋର ନାମ ହେବ ନନ୍ଦୀ ।

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଏପରି କହି କୃପାଳୁ ଶିବ ନିଜ ଚରଣ ତଳେ ପ୍ରଣିପାତ କରି ସମ୍ମୁଖରେ ଦଣ୍ଡାୟମାନ ହୋଇଥିବା ଶିଳାଦ ମୁନିଙ୍କୁ କୃପା ଦୃଷ୍ଟିରେ ଚାହିଁଲେ ଏବଂ ତାଙ୍କୁ ଏପରି ଆଦେଶ ଦେଇ ଉମାଙ୍କ ସମେତ ସେଠାରୁ ଅନ୍ତର୍ହିତ ହୋଇଗଲେ । ମହାଦେବ ଚାଲିଯିବାରୁ ମହାମୁନି ଶିଳାଦ ନିଜ ଆଶ୍ରମକୁ ଯାଇ ଋଷିମାନଙ୍କୁ ସମସ୍ତ ବୃତ୍ତାନ୍ତ କହିଲେ । କିଛି ଦିନ ପରେ ଯଜ୍ଞବେତ୍ତାଙ୍କ ମଧ୍ୟରେ ଶ୍ରେଷ୍ଠ ମୋର ପିତା ଯେତେବେଳେ ଯଜ୍ଞାରମ୍ଭ ନିମନ୍ତେ ଯଜ୍ଞକ୍ଷେତ୍ରକୁ ହଳ କରୁଥିଲେ, ସେତେବେଳେ ମୁଁ ଶିବଙ୍କ ଆଜ୍ଞାନୁସାରେ ଯଜ୍ଞପୂର୍ବରୁ ହିଁ ତାଙ୍କ ଶରୀରରୁ ଉତ୍ପନ୍ନ ହେଲି । ସେତେବେଳେ ମୋ ଶରୀରର ପ୍ରଭା ଥିଲା ଯୁଗାନ୍ତକାଳୀନ ଅଗ୍ନି ପରି । ମୋର ପ୍ରାକଟ୍ୟ ପରେ ଚତୁର୍ଦ୍ଦିଗରେ ପ୍ରସନ୍ନତା ଖେଳିଗଲା ।

ଏବଂ ଶିଳାଦ ମୁନିଙ୍କର ବହୁତ ପ୍ରଶଂସା ହେଲା । ଶିଳାଦ ମୁନି ମଧ୍ୟ ମୋତେ ପ୍ରଳୟକାଳୀନ ଅଗ୍ନି ସଦୃଶ ପ୍ରଭାବଶାଳୀ, ତ୍ରିନେତ୍ରଯୁକ୍ତ, ଚତୁର୍ଭୁଜଧାରୀ, ତେଜୋମୟ, ଜଟାଧାରୀ, ତ୍ରିଶୂଳ ଆଦି ଆୟୁଧରେ ଯୁକ୍ତ ଏବଂ ସର୍ବଥା ରୁଦ୍ର ରୂପରେ ଦେଖି ପରମ ଆନନ୍ଦରେ ନିମଗ୍ନ ହୋଇଗଲେ ଏବଂ ମୋତେ ପ୍ରଣମ୍ୟ ଭାବି ନମସ୍କାର କରି କହିଲେ—

ଶିଳାଦ କହିଲେ—**ସୁରେଶ୍ୱର ! ତୁମେ ମୋତେ ଆନନ୍ଦିତ କରିଥିବାରୁ ତୁମର ନାମ ନନ୍ଦୀ ହେବ । ମୁଁ ତୁମ ପରି ଆନନ୍ଦମୟ ଜଗଦୀଶ୍ୱରଙ୍କୁ ପ୍ରଣାମ କରୁଛି ।**

ନନ୍ଦୀଶ୍ୱର କହୁଛନ୍ତି—**ମୁନେ ! ତା'ପରେ ନିର୍ଦ୍ଧନକୁ ଧନ ମିଳିଗଲେ ସେ ଯେପରି ଖୁସୀ ହୁଏ, ସେହିପରି ମୋତେ ପାଇ ମୋ ପିତା ହର୍ଷରେ ମହେଶ୍ୱରଙ୍କୁ ବନ୍ଦନା କଲେ ଏବଂ ମୋତେ ନେଇ ଶୀଘ୍ର ଆପଣା ପର୍ଣ୍ଣଶାଳାକୁ ଫେରିଗଲେ । ମହାମୁନେ ! ଶିଳାଦଙ୍କ କୁଟିରରେ ପହଞ୍ଚିଯିବା ପରେ ମୁଁ ମୋର ସେହି ରୂପ ପରିତ୍ୟାଗ କରି ମନୁଷ୍ୟ ରୂପ ଧାରଣ କରିନେଲି । ତା'ପରେ ଶାଳଂକାୟନ-ନନ୍ଦନ ପୁତ୍ରବତ୍ସଳ ଶିଳାଦ ମୋର ଜାତକର୍ମାଦି ସଂସ୍କାର ସମ୍ପନ୍ନ କଲେ । ତା'ପରେ ପଞ୍ଚମ ବର୍ଷରେ ପିତା ମୋତେ ସାଙ୍ଗୋପାଙ୍ଗ ସମସ୍ତ ବେଦ ଅଧ୍ୟୟନ କରାଇଲେ । ସପ୍ତମ ବର୍ଷ ପୂର୍ଣ୍ଣ ହେବାରୁ ଶିବଙ୍କ ଆଜ୍ଞାରେ ମିତ୍ର ଓ ବରୁଣ ନାମକ ମୁନି ମୋତେ ଦେଖିବାକୁ ପିତାଙ୍କ ଆଶ୍ରମକୁ ଆସିଲେ । ମୋ ପିତା ତାଙ୍କର ଉତ୍ତମରୂପେ ସତ୍କାର କଲେ । ମହାତ୍ମା ମୁନୀଶ୍ୱର ଦୁହେଁ ଆନନ୍ଦରେ ଆସନରେ ବିରାଜମାନ ହୋଇଯିବା ପରେ ମୋ ଆଡ଼କୁ ବାରମ୍ବାର ଦୃଷ୍ଟିପାତ କରି ମୋ ପିତାଙ୍କୁ କହିଲେ—**

ମିତ୍ର ଓ ବରୁଣ କହିଲେ—**''ବତ୍ସ ଶିଳାଦ ! ଯଦ୍ୟପି ତୁମର ପୁତ୍ର ନନ୍ଦୀ ସମସ୍ତ ଶାସ୍ତ୍ରର ଜ୍ଞାତା ଓ ବିଦ୍ୱାନ୍, ତଥାପି ଏହାର ଆୟୁ ଅଳ୍ପ । ଆମେମାନେ ବହୁତ ପ୍ରକାରେ ବିଚାର କରି ଦେଖିଲୁ; ହେଲେ ଏହାର ଆୟୁ ଏକବର୍ଷରୁ ଅଧିକ ଦେଖାଯାଉ ନାହିଁ ।''**

**ବିପ୍ରବର ଦୁହେଁ ଏଭଳି କଥା କହିଦେବାରୁ ପୁତ୍ରବତ୍ସଳ ଶିଳାଦ ନନ୍ଦୀଙ୍କୁ ଛାତିରେ ଚାପି ଧରି ଦୁଃଖରେ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ । ନନ୍ଦୀ ଦେଖିଲେ ଯେ ତାଙ୍କ ପିତା ଓ ପିତାମହ କାନ୍ଦି କାନ୍ଦି ମୃତବ୍ୟକ୍ତି ପରି ଭୂମିରେ ପଡ଼ିଛନ୍ତି; ତେଣୁ ସେ ଶିବଙ୍କ ପାଦପଦ୍ମକୁ ସ୍ମରଣ କରି ପ୍ରସନ୍ନତାପୂର୍ବକ ପଚାରିଲେ—''ବାପା ! ଏପରି କି ଦୁଃଖ ଆସି ପଡ଼ିଲା ଯେ ଆପଣ ଏପରି କାନ୍ଦୁଛନ୍ତି ଏବଂ ଆପଣଙ୍କ ଦେହ ଥର ଥର ହୋଇ କମ୍ପୁଛି? ଏଭଳି ଦୁଃଖ କେଉଁ କାରଣରୁ ଆସିଲା, ମୋତେ ସତ ସତ କହନ୍ତୁ ।''**

ପିତା କହିଲେ—**ପୁଅରେ ! ତୋର ଆୟୁ ଅତି କମ୍ ହୋଇଥିବା କାରଣରୁ ମୁଁ ଅତ୍ୟନ୍ତ ଦୁଃଖୀ । ତୁ କହ, ମୋର ଏ କଷ୍ଟକୁ କିଏ ଦୂର କରି ପାରିବ? ମୁଁ କାହାର ଶରଣ ଯିବି?**

ପୁତ୍ର କହିଲା—**ବାପା ! ମୁଁ ଆପଣଙ୍କ ସମ୍ମୁଖରେ ଶପଥ କରି କହୁଛି ଏବଂ ସମ୍ପୂର୍ଣ୍ଣ ସତ୍ୟ କହୁଛି ଯେ ଦେବତା, ଦାନବ, ଯମ, କାଳ ଓ ଅନ୍ୟାନ୍ୟ ସମସ୍ତ ପ୍ରାଣୀ—ଏକାଠି ହୋଇ ମୋତେ ମାରିବାକୁ ଚାହିଁଲେ ବି ମୋର ବାଲ୍ୟକାଳରେ ମୃତ୍ୟୁ ହେବ ନାହିଁ । ତେଣୁ ଆପଣ ମନଦୁଃଖ କରନ୍ତୁ ନାହିଁ ।**

ପିତା ପଚାରିଲେ—**ବାପାରେ ! ତୁ ଏମିତି କି ତପ କରିଛୁ ଅଥବା ତୋତେ ଏମିତି କି ଜ୍ଞାନ ବା ଯୋଗ ବା ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇଛି, ଯାହା ଫଳରେ ତୁ ଏହି ଦାରୁଣ ଦୁଃଖକୁ ଟାଳିଦେଇ ପାରିବୁ?**

ପୁତ୍ର କହିଲା—**ତାତ ! ମୁଁ ତପସ୍ୟା ଦ୍ୱାରା କି ବିଦ୍ୟା ଦ୍ୱାରା ମୃତ୍ୟୁକୁ ଟାଳିବି ନାହିଁ, ମୁଁ ତ କେବଳ ମହାଦେବଙ୍କୁ ଭଜି ହିଁ ମୃତ୍ୟୁକୁ ଜିଣିବି । ଏହା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ ।**

ନନ୍ଦୀଶ୍ୱର କହୁଛନ୍ତି–ହେ ମୁନି ! ଏହିପରି କହି ମୁଁ ଅବନତମସ୍ତକରେ ପିତାଙ୍କୁ ପ୍ରଣାମ କଲି ଏବଂ ତାଙ୍କୁ ପ୍ରଦକ୍ଷିଣ କରି ବନ ଅଭିମୁଖେ ଯାତ୍ରା କଲି । (ଅଧ୍ୟାୟ ୬)

***

## ନନ୍ଦୀଶ୍ୱରଙ୍କ ଜନ୍ମ, ବରପ୍ରାପ୍ତି, ଅଭିଷେକ ଓ ବିବାହ

ନନ୍ଦୀଶ୍ୱର କହୁଛନ୍ତି–ମୁନେ ! ବନକୁ ଯାଇ ମୁଁ ଏକାନ୍ତ ସ୍ଥାନରେ ବସି ଶୁଦ୍ଧାନ୍ତଃକରଣରେ ଏଭଳି ଉଗ୍ର ତପସ୍ୟାରେ ପ୍ରବୃତ୍ତ ହେଲି, ଯାହା ବଡ଼ ବଡ଼ ମୁନିଙ୍କ ପକ୍ଷରେ ମଧ୍ୟ ଦୁଷ୍କର । ସେତେବେଳେ ମୁଁ ନଦୀର ଉତ୍ତର ତଟରେ ପବିତ୍ର ସ୍ଥାନରେ ଅଟଳ ଆସନରେ ବସି ଧ୍ୟାନ କଲି ଏବଂ ଏକାଗ୍ର ଓ ସମାହିତ ଚିତ୍ତରେ ନିଜ ହୃଦୟପଦ୍ମର ମଧ୍ୟଭାଗରେ ତ୍ରିଲୋଚନ, ଦଶଭୁଜଧାରୀ, ପଞ୍ଚାନନ ଓ ଶାନ୍ତିସ୍ୱରୂପ ଦେବାଧିଦେବ ସଦାଶିବଙ୍କୁ ଧ୍ୟାନ କରିବା ସହ ରୁଦ୍ରମନ୍ତ୍ର ଜପ କଲି । ମୋତେ ଜପରେ ତଲ୍ଲୀନ ଦେଖି ଚନ୍ଦ୍ରାର୍ଦ୍ଧଭୂଷଣ ପରମେଶ୍ୱର ମହାଦେବ ପ୍ରସନ୍ନ ହୋଇଗଲେ ଏବଂ ଉମାଙ୍କ ସଙ୍ଗେ ସେଠାରେ ଉଭା ହୋଇ ସ୍ନେହରେ କହିଲେ–

ଶିବ କହିଲେ–''ଶିଳାଦନନ୍ଦନ ! ତୁମେ ବହୁତ ବଡ଼ ଉତ୍ତମ ତପସ୍ୟା କରିଛ । ତୁମ ତପସ୍ୟାରେ ମୁଁ ସନ୍ତୁଷ୍ଟ ହୋଇ ତୁମକୁ ବର ଦେବାକୁ ଆସିଛି । ତୁମ ମନରେ ଯାହା କିଛି ଅଭିଳାଷ ଅଛି, ମାଗ ।'' ମହାଦେବଙ୍କ କଥା ଶୁଣି ମୁଁ ତାଙ୍କ ଚରଣ ତଳେ ଲୋଟିଗଲି ଏବଂ ଜରା ଓ ଶୋକ ନିବାରଣକାରୀ ପରମେଶାନଙ୍କୁ ସ୍ତୁତି କରିବାକୁ ଲାଗିଲି । ସେତେବେଳେ ମୋ ନେତ୍ର ଅଶ୍ରୁପୂରିତ ଥିଲା । ପରମ କଷ୍ଟହାରୀ ବୃଷଭଧ୍ୱଜ ଶମ୍ଭୁ ମୋତେ ତଳୁ ଉଠାଇଲେ ଏବଂ ମୋ ମସ୍ତକରେ ହାତ ବୁଲାଇଲେ । ପ୍ରଭୁ ଜଗଦୀଶ୍ୱର ତାଙ୍କର ଗଣାଧ୍ୟକ୍ଷ ତଥା ହିମାଚଳକୁମାରୀ ପାର୍ବତୀଦେବୀଙ୍କ ଆଡ଼କୁ ଗ୍ରହିଁବା ପରେ ମୋତେ କୃପାଦୃଷ୍ଟିରେ ଦେଖି କହିଲେ, ''ବତ୍ସ ନନ୍ଦୀ ! ସେହି ଦୁଇଜଣ ବିପ୍ରଙ୍କୁ ମୁଁ ହିଁ ପଠାଇଥିଲି । ମହାପ୍ରାଜ୍ଞ ! ତୁମକୁ ମୃତ୍ୟୁର ବା ଭୟ କାହିଁ! ତୁମେ ଯେ ମୋ ସମାନ, ଏଥିରେ ତିଳେମାତ୍ର ସଂଶୟ ନାହିଁ । ତୁମେ ଅଜର, ଅମର, ଦୁଃଖରହିତ, ଅବ୍ୟୟ ଓ ଅକ୍ଷୟ ହେବା ସହ ସର୍ବଦା ପିତା ତଥା ସୁହୃଦବର୍ଗଙ୍କ ମେଳରେ ମୋର ଗଣନାୟକ ଓ ପ୍ରିୟଜନ ହୋଇ ରହିବ । ତୁମଠାରେ ମୋରି ପରି ବଳ ହେବ । ତୁମେ ନିତ୍ୟ ମୋ ପାର୍ଶ୍ୱଭାଗରେ ରହିବ ଏବଂ ତୁମ ପ୍ରତି ମୋର ପ୍ରେମ ରହିବ । ମୋ କୃପାରୁ ଜନ୍ମ, ଜରା ଓ ମୃତ୍ୟୁ ତୁମ ଉପରେ କୌଣସି ପ୍ରଭାବ ପକାଇ ପାରିବେ ନାହିଁ ।''

ନନ୍ଦୀଶ୍ୱର କହୁଛନ୍ତି–ମୁନେ ! ଏତିକି କହି କୃପାସାଗର ଶମ୍ଭୁ ସହସା ତାଙ୍କ ମସ୍ତକରେ ଥିବା ପଦ୍ମମାଳାକୁ କାଢ଼ି ଅବିଳମ୍ବେ ମୋ ଗଳାରେ ପକାଇଦେଲେ । ବିପ୍ରବର ! ସେହି ଶୁଭ ମାଳା



ଗଳାରେ ପଡ଼ିବା ମାତ୍ରେ ମୁଁ ତ୍ରିନେତ୍ରଧାରୀ ଓ ଦଶଭୁଜଯୁକ୍ତ ହୋଇଗଲି ଏବଂ ଦ୍ୱିତୀୟ ଶିବଙ୍କ

ପରି ଦିଶିଲି । ତା'ପରେ ପରମେଶ୍ୱର ଶିବ ମୋର ହାତ ଧରି ପଗ୍ଚରିଲେ—''ଏବେ କୁହ, ମୁଁ ତୁମକୁ କେଉଁ ଉତ୍ତମ ବର ଦେବି?'' ତା'ପରେ ବୃଷଧ୍ୱଜ ତାଙ୍କ ଜଟାରେ ସ୍ଥିତ ହାରତୁଲ୍ୟ ନିର୍ମଳ ଜଳକୁ ହାତରେ ଧରି ''ତୁମେ ନନ୍ଦୀ ହୋଇଯାଅ'' ଏପରି କହି ତଳେ ପକାଇଦେଲେ । ସେହି ଜଳ କଳକଳନାଦରେ ପ୍ରବହମାନ, ସ୍ୱଚ୍ଛଜଳରେ ପରିପୂର୍ଣ୍ଣ, ମହାବେଗଶାଳିନୀ, ଦିବ୍ୟରୂପା ପାଞ୍ଚଟି ସୁନ୍ଦର ନଦୀରୂପରେ ପରିଣତ ହୋଇଗଲା । ସେହି ନଦୀମାନଙ୍କର ନାମ ହେଲା—ଜଟୋଦକା, ତ୍ରିସ୍ରୋତା, ବୃଷଧ୍ୱନି, ସ୍ୱର୍ଣ୍ଣୋଦକା ଓ ଜମ୍ବୂନଦୀ । ମୁନେ ! ଜପେଶ୍ୱରଙ୍କ ସମୀପସ୍ଥ ଏହି ପଞ୍ଚନଦ ନାମକ ସ୍ଥାନ ଶିବଙ୍କ ପୃଷ୍ଠଭାଗ ପରି ପରମ ପବିତ୍ର ଅଟେ । ଯେଉଁ ମନୁଷ୍ୟ ପଞ୍ଚନଦକୁ ଯାଇ ସ୍ନାନ ଓ ଜପ କରି ପରମେଶ୍ୱର ଶିବଙ୍କୁ ପୂଜନ କରେ, ତାକୁ ନିଶ୍ଚୟ ଶିବସାଯୁଜ୍ୟ ପ୍ରାପ୍ତ ହୁଏ । ତା'ପରେ ଶମ୍ଭୁ ଉମାଙ୍କୁ କହିଲେ—''ଅବ୍ୟୟେ ! ମୁଁ ନନ୍ଦୀର ଅଭିଷେକ କରି ତାହାକୁ ଗଣାଧ୍ୟକ୍ଷ କରିବାକୁ ଗ୍ଚହୁଁଛି । ଏ ବିଷୟରେ ତୁମର ମତ କଣ?''

ଉମା କହିଲେ—''ଦେବେଶ ! ଆପଣ ନନ୍ଦୀକୁ ଗଣାଧ୍ୟକ୍ଷ ପଦ ପ୍ରଦାନ କରି ପାରନ୍ତି; କାରଣ ହେ ପରମେଶ୍ୱର ! ଏ ଶିଳାଦନନ୍ଦନ ମୋ ପାଇଁ ପୁତ୍ର ପରି । ତେଣୁ ହେ ନାଥ ! ଏ ମୋର ବହୁତ ପ୍ରିୟ ।'' ଏହାପରେ ଭକ୍ତବତ୍ସଳ ଶିବ ନିଜ ଅତୁଳବଳଶାଳୀ ଗଣନାୟକଙ୍କୁ ଡାକି ସେମାନଙ୍କୁ କହିଲେ—

ଶିବ କହିଲେ— ଗଣନାୟକବୃନ୍ଦ ! ତୁମେ ସମସ୍ତେ ମୋର ଗୋଟିଏ ଆଜ୍ଞା ପାଳନ କର । ଏ ମୋର ପୁତ୍ର ନନ୍ଦୀଶ୍ୱର ସମସ୍ତ ଗଣନାୟକଙ୍କର ଅଧ୍ୟକ୍ଷ ଓ ଗଣଙ୍କର ନେତା ଅଟେ । ତୁମେ ସମସ୍ତେ ମିଶି ଏହାକୁ ମୋର ଗଣଙ୍କ ମଧ୍ୟରେ ଅଧିପତିରୂପେ ପ୍ରେମପୂର୍ବକ ଅଭିଷେକ କର । ଆଜିଠାରୁ ଏ ନନ୍ଦୀଶ୍ୱର ତୁମମାନଙ୍କର ସ୍ୱାମୀ ହେବ ।

ନନ୍ଦୀଶ୍ୱର କହୁଛନ୍ତି—ହେ ମୁନି ! ଶିବଙ୍କ କଥନାନୁସାରେ ସମସ୍ତ ଗଣନାୟକ 'ଯଥା ଆଜ୍ଞା' କହି ତାହାକୁ ସ୍ୱୀକାର କଲେ ଏବଂ ଅଭିଷେକ ସାମଗ୍ରୀ ସଂଗ୍ରହ କରିବାକୁ ଲାଗିଲେ । ତା'ପରେ ସକଳ ଦେବତା ଓ ମୁନିମାନେ ମିଶି ମୋର ଅଭିଷେକ କରିଦେଲେ । ଏହାପରେ ମରୁତଙ୍କର ମନୋହାରିଣୀ ଦିବ୍ୟ କନ୍ୟା ସୁଯଶା ସହିତ ମୋର ବିବାହ କରାଇଦେଲେ । ସେହି ସମୟରେ ମୋତେ ଅନେକ ପ୍ରକାର ଦିବ୍ୟ ବସ୍ତୁ ମିଳିଲା । ମହାମୁନେ ! ବିବାହ ପରେ ଆମେ ପତିପତ୍ନୀ ଦୁହେଁ ଶମ୍ଭୁ, ଶିବା, ବ୍ରହ୍ମା ଓ ବିଷ୍ଣୁଙ୍କ ଚରଣରେ ପ୍ରଣାମ କଲୁ । ତା'ପରେ ତ୍ରିଲୋକେଶ୍ୱର ଭକ୍ତବତ୍ସଳ ଭଗବାନ ଶିବ ମୋତେ ସପତ୍ନୀକ ଦେଖି ପରମ ପ୍ରେମପୂର୍ବକ କହିଲେ—

ଈଶ୍ୱର କହିଲେ—ସୁପୁତ୍ର ! ଏ ତୁମର ପ୍ରିୟା ପତ୍ନୀ ସୁଯଶା । ତୁମେ ଦୁହେଁ ମୋ କଥା ଶୁଣ । ତୁମେ ମୋର ପରମ ପ୍ରିୟ, ତେଣୁ ମୁଁ ସ୍ନେହରେ ତୁମକୁ ମନୋବାଞ୍ଛିତ ବର ପ୍ରଦାନ କରିବି । ଗଣେଶ୍ୱର ନନ୍ଦୀଶ ! ମୁଁ ଓ ଦେବୀ ପାର୍ବତୀ ତୁମ ଉପରେ ସନ୍ତୁଷ୍ଟ । ଏଣୁ ବତ୍ସ ! ତୁମେ ମୋର ଉତ୍ତମ ବଚନ ଶ୍ରବଣ କର । ତୁମେ ମୋର ଅତୁଟ ପ୍ରେମୀ, ବିଶେଷ ପ୍ରିୟ, ପରମ ଐଶ୍ୱର୍ଯ୍ୟସମ୍ପନ୍ନ, ମହାଯୋଗୀ, ମହାନ୍ ଧନୁର୍ଦ୍ଧାରୀ, ଅଜେୟ, ସମସ୍ତଙ୍କ ଉପରେ ବିଜୟୀ ତଥା ମହାବଳୀ ଓ ସର୍ବଦା ପୂଜନୀୟ ହେବ । ଯେଉଁଠି ମୁଁ ରହିବି, ସେଠାରେ ତୁମେ ରହିବ ଏବଂ ଯେଉଁଠି ତୁମେ ରହିବ, ସେଠାରେ ମୁଁ ଉପସ୍ଥିତ ରହିବି । ପୁତ୍ର ! ତୁମର ଏ ମହାବଳୀ ପିତା ପରମ ଐଶ୍ୱର୍ଯ୍ୟଶାଳୀ, ମୋର ଭକ୍ତ ଓ ଗଣାଧ୍ୟକ୍ଷ ହେବେ । ବତ୍ସ ! ଏହି ନିୟମ ତୁମ ପିତାମହଙ୍କ ପାଇଁ ମଧ୍ୟ ପ୍ରଯୁଜ୍ୟ । ଶେଷରେ ତୁମେମାନେ ମୋ ବର ପ୍ରଭାବରେ ମୋର ସାନ୍ନିଧ୍ୟ ପ୍ରାପ୍ତ ହେବ ।

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ତା'ପରେ ମହାଭାଗା ଉମାଦେବୀ ବର ଦେବାକୁ ଉତ୍ସୁକ ହୋଇ

ମୋତେ କହିଲେ—''ପୁତ୍ର ! ତୁ ମୋତେ ମଧ୍ୟ ବର ମାଗ । ମୁଁ ତୋର ସମସ୍ତ ଅଭିଳାଷ ପୂରଣ କରିବି ।'' ଦେବୀଙ୍କ କଥା ଶୁଣି ମୁଁ ହାତ ଯୋଡ଼ି କହିଲି— ''ହେ ଦେବୀ! ଆପଣଙ୍କ ଚରଣରେ ମୋର ସଦା ଉତ୍ତମ ପ୍ରୀତି ରହିଥାଉ ।'' ଦେବୀ ମୋର ଏ ପ୍ରକାର ମାଗୁଣି ଶୁଣି 'ତଥାସ୍ତୁ' କହିଲେ । ତା'ପରେ ଶିବା ମୋ ପ୍ରିୟତମା ପତ୍ନୀ ସୁଯଶାଙ୍କୁ କହିଲେ—

ଦେବୀ କହିଲେ—ବତ୍ସେ ! ତୁମେ ମଧ୍ୟ ତୁମର ଅଭୀଷ୍ଟ ବର ଗ୍ରହଣ କର । ତୁମର ତିନି ନେତ୍ର ହେବ । ତୁମେ ଜନ୍ମବନ୍ଧନରୁ ମୁକ୍ତ ହୋଇଯିବ ଏବଂ ପୁତ୍ର-ପୌତ୍ରସମ୍ପନ୍ନା ହେବ । ତୁମର ମୋ ପ୍ରତି ଓ ତୁମ ସ୍ୱାମୀଙ୍କ ପ୍ରତି ଅଟଳ ଭକ୍ତି ରହିବ ।

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଏହାପରେ ଶିବଙ୍କ ଆଜ୍ଞାରେ ବ୍ରହ୍ମା, ବିଷ୍ଣୁ ତଥା ସମସ୍ତ ଦେବଗଣ ମଧ୍ୟ ପ୍ରସନ୍ନ ହୋଇ ପ୍ରେମପୂର୍ବକ ଆମ ଦୁହିଙ୍କୁ ବର ଦେଲେ । ଏହିରୂପେ ପରମେଶ୍ୱର ଶିବ ମୋତେ ସକୁଟୁମ୍ବେ ଆପଣାର କରିନେଲେ ଏବଂ ଉମାଙ୍କ ସହ ବୃଷଭ ଉପରେ ଆରୂଢ଼ ହୋଇ ସ୍ୱଜନ-କୁଟୁମ୍ବଙ୍କ ସଙ୍ଗେ ସ୍ୱଧାମକୁ ବାହୁଡ଼ିଗଲେ । ସେତେବେଳେ ସେଠାରେ ଉପସ୍ଥିତ ବିଷ୍ଣୁ ପ୍ରଭୃତି ଦେବଗଣ ମୋତେ ପ୍ରଶଂସା କରି ଏବଂ ଶିବ ଓ ଶିବାଙ୍କୁ ସ୍ତୁତି କରି ନିଜ ନିଜ ସ୍ଥାନକୁ ଫେରିଗଲେ । ମୁଁ ତୁମକୁ ମୋ ଅବତାର ସମ୍ବନ୍ଧରେ କହିଦେଲି । ମହାମୁନେ ! ଏହା ମନୁଷ୍ୟଙ୍କ ପାଇଁ ସଦା ଆନନ୍ଦଦାୟକ ଓ ଶିବଭକ୍ତିବର୍ଦ୍ଧନକାରୀ । ଯେଉଁ ଶ୍ରଦ୍ଧାଳୁ ମାନବ ଭକ୍ତିଭାବିତ ଚିତ୍ତରେ ମୋର ଜନ୍ମ, ବରପ୍ରାପ୍ତି, ଅଭିଷେକ ଓ ବିବାହ ପ୍ରସଙ୍ଗ ଶୁଣିବ ଅଥବା ଅନ୍ୟକୁ ଶୁଣାଇବ, ସେ ଇହଲୋକରେ ସମସ୍ତ ସୁଖ ଭୋଗ କରି ଶେଷରେ ପରମଗତି ଲାଭ କରିବ । (ଅଧ୍ୟାୟ ୭)

★★★

## କାଳଭୈରବଙ୍କ ମାହାତ୍ମ୍ୟ, ବିଶ୍ୱାନରଙ୍କ ତପସ୍ୟା ଏବଂ ଶିବ ପ୍ରସନ୍ନ ହୋଇ ବିଶ୍ୱାନରଙ୍କ ପତ୍ନୀ ଶୁଚିଷ୍ମତୀଙ୍କ ଗର୍ଭରୁ ନିଜେ ପୁତ୍ରରୂପେ ଅବତରିତ ହେବାକୁ ବର ପ୍ରଦାନ କରିବା

ଏହାପରେ ଭଗବାନ ଶଙ୍କର ଭୈରବ ଅବତାରର ବର୍ଣ୍ଣନା କରି ସାରି ନନ୍ଦୀଶ୍ୱର କହିଲେ—ମହାମୁନେ ! ପରମେଶ୍ୱର ଶିବ ଉତ୍ତମୋତ୍ତମ ଲୀଳା ରଚିଥାନ୍ତି ଏବଂ ସେ ସାଧୁଜନଙ୍କର ପ୍ରେମୀ । ସେ ମାର୍ଗଶିର ମାସର କୃଷ୍ଣପକ୍ଷ ଅଷ୍ଟମୀ ଦିନ ଭୈରବରୂପରେ ଅବତାର ଗ୍ରହଣ କରିଥିଲେ । ତେଣୁ ଯେଉଁ ମନୁଷ୍ୟ ମାର୍ଗଶିର ମାସର କୃଷ୍ଣାଷ୍ଟମୀ ଦିନ କାଳଭୈରବଙ୍କ ସନ୍ନିକଟରେ ଉପବାସ କରି ରାତ୍ରି ଜାଗରଣ କରେ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ । ଯେଉଁ ମନୁଷ୍ୟ ଅନ୍ୟତ୍ର ମଧ୍ୟ ଭକ୍ତିପୂର୍ବକ ରାତ୍ରିଜାଗରଣ ସହିତ ଏହି ବ୍ରତ ଅନୁଷ୍ଠାନ କରିବ, ସେ ମଧ୍ୟ ମହାପାପରୁ ମୁକ୍ତ ହୋଇ ସଦ୍‌ଗତି ପାଇବ । ପ୍ରାଣୀଙ୍କର ଲକ୍ଷେ ଜନ୍ମରେ ହୋଇଥିବା ପାପ କାଳଭୈରବଙ୍କ ଦର୍ଶନମାତ୍ରକେ ଧୋଇଯାଏ । ଯେଉଁ ମୂର୍ଖ କାଳଭୈରବଙ୍କ ଭକ୍ତଙ୍କର ଅନିଷ୍ଟ କରେ, ସେ ଇହଜନ୍ମରେ ଦୁଃଖ ଭୋଗ କରି ପୁନଃ ଦୁର୍ଗତି ପ୍ରାପ୍ତ ହୁଏ । ଯେଉଁ ଲୋକେ ବିଶ୍ୱନାଥଙ୍କ ଭକ୍ତ ହୋଇ ମଧ୍ୟ କାଳଭୈରବଙ୍କୁ ଭକ୍ତି କରନ୍ତି ନାହିଁ, ସେମାନଙ୍କୁ ଘୋର ଦୁଃଖ ଭୋଗିବାକୁ ପଡ଼େ । କାଶୀରେ ଏହାର ବିଶେଷ ପ୍ରଭାବ ପଡ଼ିଥାଏ । ଯେଉଁ ମନୁଷ୍ୟ ବାରାଣସୀରେ ନିବାସ କରି କାଳଭୈରବଙ୍କ ଭଜନ କରେ ନାହିଁ, ତାହାର ପାପ ଶୁକ୍ଳପକ୍ଷର ଚନ୍ଦ୍ର ପରି ବଢ଼ି ବଢ଼ି ଚାଲେ । ଯେ କାଶୀରେ ପ୍ରତ୍ୟେକ ମଙ୍ଗଳବାର

କୃଷ୍ଣାଷ୍ଟମୀ ଦିନ କାଳରାଜଙ୍କର ଭଜନ ପୂଜନ କରେ ନାହିଁ, ତାହାର ପୁଣ୍ୟ କୃଷ୍ଣପକ୍ଷର ଚନ୍ଦ୍ର ପରି କ୍ଷୀଣ ହୋଇଯାଏ ।

ଏହାପରେ ନନ୍ଦୀଶ୍ୱର ବୀରଭଦ୍ରଙ୍କ ବୃତ୍ତାନ୍ତ ତଥା ଶରଭାବତାର କଥା କହି ସାରି ପୁଣି କହିଲେ— ବ୍ରହ୍ମପୁତ୍ର ! ଭଗବାନ ଶିବ ଯେଉଁ ପ୍ରକାରେ ପ୍ରସନ୍ନ ହୋଇ ବିଶ୍ୱାନର ମୁନିଙ୍କ ଗୃହରେ ଅବତୀର୍ଣ୍ଣ ହୋଇଥିଲେ, ଶଶିମୌଳିଙ୍କର ସେହି ଚରିତ୍ର ତୁମେ ପ୍ରେମପୂର୍ବକ ଶ୍ରବଣ କର । ସେତେବେଳେ ତେଜୋନିଧି ଅଗ୍ନିସ୍ୱରୂପ ସର୍ବାତ୍ମା ପରମ ପ୍ରଭୁ ଶିବ ଅଗ୍ନିଲୋକର ଅଧିପତିରୂପେ ଗୃହପତି ନାମରେ ଅବତୀର୍ଣ୍ଣ ହୋଇଥିଲେ । ପୂର୍ବକାଳର କଥା । ନର୍ମଦାର ରମଣୀୟ ତଟରେ ନର୍ମପୁର ନାମକ ଗୋଟିଏ ନଗର ଥିଲା । ସେହି ନଗରରେ ବିଶ୍ୱାନର ନାମରେ ଜଣେ ଶାଣ୍ଡିଲ୍ୟ ଗୋତ୍ରୀୟ ମୁନି ନିବାସ କରୁଥିଲେ । ସେ ପରମ ପବିତ୍ର, ପୁଣ୍ୟାତ୍ମା, ଶିବଭକ୍ତ, ବ୍ରହ୍ମତେଜର ନିଧି ଓ ଜିତେନ୍ଦ୍ରିୟ ଥିଲେ । ବ୍ରହ୍ମଚର୍ଯ୍ୟାଶ୍ରମରେ ତାଙ୍କର ଅତ୍ୟନ୍ତ ନିଷ୍ଠା ଥିଲା । ସେ ସଦା ବ୍ରହ୍ମଯଜ୍ଞରେ ତତ୍ପର ରହୁଥିଲେ । ତଥାପି ସେ ଶୁଚିଷ୍ମତୀ ନାମ୍ନୀ କନ୍ୟା ସଙ୍ଗେ ବିବାହ କଲେ ଏବଂ ବ୍ରାହ୍ମଣୋଚିତ କର୍ମ କରି ଦେବତା ଓ ପିତୃପୁରୁଷଙ୍କୁ ପ୍ରିୟ ଲାଗିବା ପରି ଜୀବନ ବିତାଉଥିଲେ । ଏହିପରି ବହୁକାଳ ବିତିଯିବା ପରେ ବ୍ରାହ୍ମଣ ବିଶ୍ୱାନରଙ୍କ ପତ୍ନୀ ସୁବ୍ରତା ଶୁଚିଷ୍ମତୀ ସ୍ୱାମୀଙ୍କୁ କହିଲେ—''ପ୍ରାଣନାଥ ! ନାରୀ ନିମନ୍ତେ ଯେତେ ସବୁ ଆନନ୍ଦପ୍ରଦ ଭୋଗ ରହିଛି, ମୁଁ ଆପଣଙ୍କ କୃପାରୁ ଆପଣଙ୍କ ସହିତ ରହି ସେସବୁ ଉପଭୋଗ କରି ସାରିଛି । କିନ୍ତୁ ସ୍ୱାମୀ ! ମୋ ହୃଦୟରେ ବହୁକାଳରୁ ଗୋଟିଏ ଲାଳସା ରହିଛି; ତାହା ଗୃହସ୍ଥାଶ୍ରମ ପାଇଁ ସମୁଚିତ ମଧ୍ୟ । ଆପଣ ତାହାକୁ ପୂର୍ଣ୍ଣ କରନ୍ତୁ । ସ୍ୱାମୀ ! ଯଦି ମୁଁ ବର ପାଇବାକୁ ଯୋଗ୍ୟା ଏବଂ ଆପଣ ମୋତେ ବର ଦେବାକୁ ଚାହୁଁଛନ୍ତି, ତେବେ ମୋତେ ମହେଶ୍ୱରଙ୍କ ପରି ପୁତ୍ରଟିଏ ପ୍ରଦାନ କରନ୍ତୁ । ଏହା ଛଡ଼ା ଅନ୍ୟ କୌଣସି ବରରେ ମୋର ପ୍ରୟୋଜନ ନାହିଁ ।''

ନନ୍ଦୀଶ୍ୱର କହୁଛନ୍ତି—ପତ୍ନୀଙ୍କ କଥା ଶୁଣି ପବିତ୍ର-ବ୍ରତପରାୟଣ ବ୍ରାହ୍ମଣ ବିଶ୍ୱାନର କ୍ଷଣକ ପାଇଁ ସମାଧିସ୍ଥ ହୋଇଗଲେ ଏବଂ ହୃଦୟ ମଧ୍ୟରେ ବିଚାର କରିବାକୁ ଲାଗିଲେ—ଅହୋ ! ମୋର ଏ ସୂକ୍ଷ୍ମାଙ୍ଗୀ ପତ୍ନୀ ତ ଅତି ଦୁର୍ଲଭ ବର ମାଗିଦେଲା । ଏହା ତ ମୋ ମନୋରଥ-ମାର୍ଗ ଠାରୁ ବହୁତ ଦୂର । ହଉ, ଶିବ ତ ସବୁ କିଛି କରିବାକୁ ସମର୍ଥ । ଯାହା ଜଣାପଡୁଛି, ସ୍ୱୟଂ ଶିବ ହିଁ ତା' କଣ୍ଠରେ ବସି ଏହି କଥା ତା' ମୁଖରେ କୁହାଇଛନ୍ତି । ନଚେତ୍ ଅନ୍ୟ କିଏ ଏପରି କରିବାକୁ ସମର୍ଥ ହୋଇ ପାରିବ ଭଲା? ତା'ପରେ ଏକପତ୍ନୀବ୍ରତ ମୁନି ବିଶ୍ୱାନର ପତ୍ନୀକୁ ଆଶ୍ୱାସନା ଦେଇ ବାରାଣସୀ ଚାଲିଗଲେ ଏବଂ ଘୋର ତପସ୍ୟା ଦ୍ୱାରା ଶିବଙ୍କର ବୀରେଶ ଲିଙ୍ଗର ଆରାଧନା କଲେ । ସେ ବର୍ଷେ ପର୍ଯ୍ୟନ୍ତ ଭକ୍ତିପୂର୍ବକ ସେହି ଶ୍ରେଷ୍ଠ ବୀରେଶ ଲିଙ୍ଗର ତ୍ରିକାଳ ଅର୍ଚ୍ଚନା କରିବା ସହ ଅଦ୍ଭୁତ ତପସ୍ୟା କଲେ । ତ୍ରୟୋଦଶ ମାସ ପ୍ରବେଶ କଲା । ଦିନେ ଦ୍ୱିଜବର ସକାଳୁ ତ୍ରିପଥଗାମିନୀ ଗଙ୍ଗାରେ ସ୍ନାନ କରିସାରି ବୀରେଶ ଲିଙ୍ଗଙ୍କ ନିକଟରେ ଉପାସନା କରିବାକୁ ପହଞ୍ଚିବା ମାତ୍ରେ ସେହି ଲିଙ୍ଗ ମଧ୍ୟରେ ତାଙ୍କୁ ଗୋଟିଏ ଅଷ୍ଟବର୍ଷୀୟ ବିଭୂତିଭୂଷିତ ବାଳକ ଦୃଶ୍ୟମାନ ହେଲା । ସେହି ନଗ୍ନ ବାଳକର ନେତ୍ର କାନ ପର୍ଯ୍ୟନ୍ତ ଲମ୍ବିତ ଥିଲା । ଓଷ୍ଠରେ ଥିଲା ଗାଢ଼ ଲାଲିମା । ତା'ର ମସ୍ତକରେ ପିଙ୍ଗଳ ରଙ୍ଗର ସୁନ୍ଦର ଜଟା ସୁଶୋଭିତ ଥିଲା ଏବଂ ମୁଖମଣ୍ଡଳରେ ଥିଲା ସ୍ମିତହାସ । ସେ ଶୈଶବୋଚିତ ଅଳଂକାର ଓ ଚିତାଭସ୍ମ ଧାରଣ କରିଥିଲା ଏବଂ ଲୀଳାପୂର୍ବକ ହସି ହସି ବେଦର ସୂକ୍ତମାନ ପାଠ କରୁଥିଲା ।

ଏପରି ବାଳକକୁ ଦେଖି ବିଶ୍ୱାନର ମୁନି କୃତାର୍ଥ ହୋଇଗଲେ । ଆନନ୍ଦ ହେତୁ ତାଙ୍କର ଶରୀର ରୋମାଞ୍ଚିତ ହୋଇଗଲା । ତାଙ୍କ ହୃଦୟରୁ ବାରମ୍ବାର 'ନମସ୍କାର, ନମସ୍କାର' ଶବ୍ଦର ଉଦ୍‌ଗାର ବାହାରି ପଡ଼ିଲା । ତା'ପରେ ସେ ଅଭିଳାଷ ପୂରଣକାରୀ ଆଠଟି ପଦ୍ୟରେ ବାଳରୂପଧାରୀ ପରମାନନ୍ଦସ୍ୱରୂପ ଶମ୍ଭୁଙ୍କୁ ସ୍ତବନ କରି କରି କହିଲେ–

ବିଶ୍ୱାନର କହିଲେ–ଭଗବନ୍ ! ଆପଣ ହିଁ ଏକମାତ୍ର ଅଦ୍ୱିତୀୟ ବ୍ରହ୍ମ, ଏ ସମଗ୍ର ଜଗତ ଆପଣଙ୍କର ସ୍ୱରୂପ । ଏଠାରେ ଅନେକ ବୋଲି କିଛି ନାହିଁ । ଏକମାତ୍ର ରୁଦ୍ରଙ୍କ ଅତିରିକ୍ତ ଅନ୍ୟ କାହାରି ସତ୍ତା ନାହିଁ । ଏଣୁ ମୁଁ ଆପଣଙ୍କ ଶରଣ ଗ୍ରହଣ କରୁଛି । ଶମ୍ଭୋ ! ଆପଣ ହିଁ ସମସ୍ତଙ୍କର କର୍ତ୍ତା ଓ ହର୍ତ୍ତା । ଆତ୍ମଧର୍ମ ଏକ ହୋଇ ମଧ୍ୟ ଯେପରି ଅନେକ ରୂପରେ ଦୃଶ୍ୟମାନ ହୁଏ, ସେହିପରି ଆପଣ ଏକ ହୋଇ ମଧ୍ୟ ନାନା ରୂପରେ ବ୍ୟାପ୍ତ ଅଟନ୍ତି । ତଥାପି ଆପଣ ରୂପରହିତ ଅଟନ୍ତି । ତେଣୁ ଆପଣଙ୍କ ପରି ଈଶ୍ୱରଙ୍କ ଅତିରିକ୍ତ ମୁଁ ଅନ୍ୟ କାହାରି ଶରଣ ନେଇ ନ ପାରେ । ଯେପରି ରଜ୍ଜୁରେ ସର୍ପ, ଶାମୁକାରେ ରୂପା ଓ ମୃଗ-ମରୀଚିକାରେ ଜଳପ୍ରବାହର ଭ୍ରମ ହୋଇଥାଏ, ସେହିପରି ଯାହାଙ୍କ ଶରଣ ନେବା ପରେ ଏ ଜଗତ ମିଥ୍ୟା ବୋଲି ଭାସିତ ହୋଇଥାଏ, ମୁଁ ସେହି ମହେଶ୍ୱରଙ୍କ ଶରଣ ନେଉଛି । ଶମ୍ଭୋ ! ଜଳରେ ଯେଉଁ ଶୀତଳତା ଅଛି, ଅଗ୍ନିରେ ଯେଉଁ ଦାହିକାଶକ୍ତି ଅଛି, ସୂର୍ଯ୍ୟରେ ଯେଉଁ ଉତ୍ତାପ ଅଛି, ଚନ୍ଦ୍ରରେ ଯେଉଁ ଆହ୍ଲାଦକାରିତା ଅଛି, ପୁଷ୍ପରେ ଯେଉଁ ସୁଗନ୍ଧ ଓ ଦୁଗ୍ଧରେ ଯେଉଁ ଘୃତ ବିଦ୍ୟମାନ ଅଛି, ସେ ସମସ୍ତ ଆପଣଙ୍କ ସ୍ୱରୂପ । ତେଣୁ ମୁଁ ଆପଣଙ୍କ ଶରଣ ଗ୍ରହଣ କରୁଛି । ଆପଣ କର୍ଣ୍ଣରହିତ ହୋଇ ମଧ୍ୟ ଶୁଣି ପାରନ୍ତି, ନାସିକାବିହୀନ ହୋଇ ଶୁଙ୍ଘି ପାରନ୍ତି, ନେତ୍ରବିହୀନ ହୋଇ ସବୁ କିଛି ଦେଖି ପାରନ୍ତି ଏବଂ ଜିହ୍ୱାରହିତ ହୋଇ ସବୁ ରସକୁ ଜାଣି ପାରନ୍ତି । ଆପଣଙ୍କୁ ଭଲା ପୂର୍ଣ୍ଣରୂପେ କିଏ ବା ଜାଣି ପାରିବ ! ଏଣୁ ମୁଁ ଆପଣଙ୍କ ଶରଣ ଯାଉଛି । ଈଶ ! ଆପଣଙ୍କ ରହସ୍ୟକୁ ସାକ୍ଷାତ୍ ବେଦ ଜାଣନ୍ତି ନାହିଁ କିଂବା ବିଷ୍ଣୁ, ଅଖିଳ ବିଶ୍ୱର ବିଧାତା ବ୍ରହ୍ମା, ଯୋଗୀନ୍ଦ୍ର କି ଇନ୍ଦ୍ରାଦି ବଡ଼ ବଡ଼ ଦେବତା ମଧ୍ୟ ଜାଣନ୍ତି ନାହିଁ । କିନ୍ତୁ ଆପଣଙ୍କ ଭକ୍ତ ତାହା ଜାଣି ଯାଆନ୍ତି । ତେଣୁ ମୁଁ ଆପଣଙ୍କ ଶରଣ ଗ୍ରହଣ କରୁଛି । ଈଶ ! ଆପଣଙ୍କର ନା ଗୋତ୍ର ଅଛି, ନା ଜନ୍ମ ଅଛି, ନା ନାମ ଅଛି, ନା ରୂପ ଅଛି, ନା ଶୀଳ ଅଛି ନା ଦେଶ ଅଛି; ଏହା ସତ୍ତ୍ୱେ ଆପଣ ତ୍ରିଲୋକର ଅଧୀଶ୍ୱର ତଥା ସମସ୍ତ କାମନା ପୂରଣକାରୀ । ସେଥିପାଇଁ ମୁଁ ଆପଣଙ୍କୁ ଭଜୁଛି । ସ୍ମରାରେ ! ଆପଣ ସର୍ବସ୍ୱରୂପ । ଏ ସମଗ୍ର ବିଶ୍ୱପ୍ରପଞ୍ଚ ଆପଣଙ୍କ ଠାରୁ ଉତ୍ପନ୍ନ ହୋଇଛି । ଆପଣ ଗୌରୀପତି, ଦିଗମ୍ବର ଓ ପରମ ଶାନ୍ତ । ବାଳକ, ଯୁବକ ଓ ବୃଦ୍ଧ ରୂପରେ ଆପଣ ହିଁ ବିଦ୍ୟମାନ । ଏପରି କେଉଁ ବସ୍ତୁ ଅଛି, ଯେଉଁଥିରେ ଆପଣ ବ୍ୟାପ୍ତ ନ ଥିବେ । ତେଣୁ ମୁଁ ଆପଣଙ୍କ ଚରଣରେ ନତମସ୍ତକ ହେଉଛି ।''*

* ବିଶ୍ୱାନର ଉବାଚ–
ଏକଂ ବ୍ରହ୍ମୈବାଦ୍ୱିତୀୟଂ ସମସ୍ତଂ ସତ୍ୟଂ ସତ୍ୟଂ ନେହ ନାନାସ୍ତି କିଂଚିତ୍ ।
ଏକୋ ରୁଦ୍ରୋ ନ ଦ୍ୱିତୀୟୋଽବତସ୍ଥେ ତସ୍ମାଦେକଂ ତ୍ୱାଂ ପ୍ରପଦ୍ୟେ ମହେଶମ୍ ॥
କର୍ତ୍ତା ହର୍ତ୍ତା ତ୍ୱଂ ହି ସର୍ବସ୍ୟ ଶମ୍ଭୋ ନାନାରୂପେଷ୍ୱେକରୂପୋଽପ୍ୟରୂପଃ ।
ଯଦ୍ୱଦ୍‌ପ୍ରତ୍ୟଗ୍‌ଧର୍ମ ଏକୋଽପ୍ୟନେକସ୍ତସ୍ମାନ୍ନାନ୍ୟଂ ତ୍ୱାଂ ବିନେଶଂ ପ୍ରପଦ୍ୟେ ॥
ରଜ୍ଜୌ ସର୍ପଃ ଶୁକ୍ତିକାୟାଂ ଚ ରୌପ୍ୟଂ ନରୈଃ ପୂରସ୍ତନ୍ ମୃଗାଖ୍ୟେ ମରୀଚୌ ।
ଯଦ୍ୱତ୍ତଦ୍ୱଦ୍ୱିଶ୍ୱଗେଷ ପ୍ରପଞ୍ଚୋ ଯସ୍ମିନ୍ ଜ୍ଞାତେ ତଂ ପ୍ରପଦ୍ୟେ ମହେଶମ୍ ॥

ନନ୍ଦୀଶ୍ୱର କହୁଛନ୍ତି–ମୁନେ ! ବିପ୍ରବର ବିଶ୍ୱାନର କର ଯୋଡ଼ି ଏପରି ସ୍ତୁତି କରି ତଳେ ଲୋଟିବାକୁ ଯାଉ ଯାଉ ସମସ୍ତ ବୃଦ୍ଧଙ୍କ ମଧ୍ୟରେ ବି ବୃଦ୍ଧ ବାଳରୂପଧାରୀ ଶିବ ପରମ ହର୍ଷିତ ହୋଇ ସେହି ବ୍ରାହ୍ମଣଙ୍କୁ କହିଲେ ।

ବାଳରୂପଧାରୀ ଶିବ କହିଲେ–ମୁନିଶ୍ରେଷ୍ଠ ବିଶ୍ୱାନର ! ତୁମେ ଆଜି ମୋତେ ସନ୍ତୁଷ୍ଟ କରିଦେଲ । ଭୂଦେବ ! ମୋର ମନ ପରମ ପ୍ରସନ୍ନ ହୋଇଗଲା । ତେଣୁ ତୁମେ ଉତ୍ତମ ବର ମାଗ । ଏହା ଶୁଣି ମୁନିଶ୍ରେଷ୍ଠ ବିଶ୍ୱାନର କୃତକୃତ୍ୟ ହୋଇଗଲେ । ତାଙ୍କ ମନ ହର୍ଷରେ ପୂରିଉଠିଲା । ସେ ଉଠି ବାଳରୂପଧାରୀ ଶିବଙ୍କୁ କହିଲେ–

ବିଶ୍ୱାନର କହିଲେ–ପ୍ରଭାବଶାଳୀ ମହେଶ୍ୱର ! ଆପଣ ସର୍ବାନ୍ତର୍ଯାମୀ, ଐଶ୍ୱର୍ଯ୍ୟସମ୍ପନ୍ନ, ଶର୍ବ ଓ ଭକ୍ତଙ୍କୁ ସର୍ବସ୍ୱପ୍ରଦାନକାରୀ । ଆପଣଙ୍କୁ କେଉଁ କଥା ବା ଅଛପା ଅଛି? ତଥାପି ଆପଣ ମୋତେ ଦୀନତା ପ୍ରକାଶିତ କରୁଥିବା ମାଗୁଣି କରିବାକୁ କାହିଁକି ପ୍ରେରିତ କରୁଛନ୍ତି? ମହେଶାନ ଏକଥା ଜାଣି ଆପଣଙ୍କର ଯାହା ଇଚ୍ଛା ତାହା କରନ୍ତୁ ।

ନନ୍ଦୀଶ୍ୱର କହୁଛନ୍ତି–ମୁନେ ! ପବିତ୍ର ବ୍ରତରେ ତତ୍ପର ବିଶ୍ୱାନରଙ୍କ କଥା ଶୁଣି ପାବନ ଶିଶୁରୂପଧାରୀ ମହାଦେବ ହସି ହସି ଶୁଚି (ବିଶ୍ୱାନର)ଙ୍କୁ କହିଲେ–''ଶୁଚେ ! ତୁମେ ହୃଦୟ ମଧ୍ୟରେ ଶୁଚିଷ୍ମତୀଙ୍କ ମନର ଯେଉଁ ଅଭିଳାଷ ରଖିଛ, ତାହା ନିଶ୍ଚୟ ଅଳ୍ପ ଦିନ ମଧ୍ୟରେ ପୂର୍ଣ୍ଣ ହୋଇଯିବ । ମହାମତେ ! ମୁଁ ଶୁଚିଷ୍ମତୀଙ୍କ ଗର୍ଭରୁ ତୁମର ପୁତ୍ରରୂପେ ଅବତରିତ ହେବି । ମୋର ନାମ ହେବ ଗୃହପତି । ମୁଁ ପରମ ପାବନ ଓ ସମସ୍ତ ଦେବତାଙ୍କ ପାଇଁ ପ୍ରିୟ ହେବି । ଯେଉଁ ମନୁଷ୍ୟ ବର୍ଷେ ପର୍ଯ୍ୟନ୍ତ ଶିବଙ୍କ ସନ୍ନିକଟରେ ତୁମେ ପଢ଼ିଥିବା ଏଇ ପୁଣ୍ୟମୟ ଅଭିଳାଷାଷ୍ଟକ ସ୍ତୋତ୍ର ତ୍ରିକାଳ ପାଠ କରିବ, ତାହାର ସମସ୍ତ ଅଭିଳାଷ ପୂର୍ଣ୍ଣ ହୋଇଯିବ । ଏହି ସ୍ତୋତ୍ର ପୁତ୍ର, ପୌତ୍ର ଓ ଧନ ପ୍ରଦାନ କରିଥାଏ, ଶାନ୍ତି ପ୍ରଦାନ କରିଥାଏ, ସମସ୍ତ ବିପତ୍ତି ନାଶ କରିଥାଏ ଏବଂ ସ୍ୱର୍ଗ ଓ ମୋକ୍ଷରୂପୀ ସମ୍ପତ୍ତି ପ୍ରଦାନ କରିବା ସହ ସମସ୍ତ କାମନା ପୂର୍ଣ୍ଣ କରିଥାଏ । ଏକାକୀ ଏହି ଗୋଟିଏ ସ୍ତୋତ୍ର ହିଁ ସମସ୍ତ ସ୍ତୋତ୍ର ପାଠ କରିବା ସହିତ ସମାନ?''

ନନ୍ଦୀଶ୍ୱର କହୁଛନ୍ତି–ମୁନେ ! ଏତିକି କହି ସାଧୁଜନଙ୍କର ଗତିସ୍ୱରୂପ ବାଳରୂପଧାରୀ ଶମ୍ଭୁ ଅନ୍ତର୍ହିତ ହୋଇଗଲେ । ଏହାପରେ ବିପ୍ରବର ବିଶ୍ୱାନର ମଧ୍ୟ ପ୍ରସନ୍ନ ଚିତ୍ତରେ ନିଜ ଗୃହକୁ ଫେରିଗଲେ । (ଅଧ୍ୟାୟ ୮–୧୩)

★★★

ତୋୟେ ଶୈତ୍ୟଂ ଦାହକତ୍ୱଂ ଚ ବହ୍ନୌ ତାପୋ ଭାନୌ ଶୀତଭାନୌ ପ୍ରସାଦଃ ।
ପୁଷ୍ପେ ଗନ୍ଧୋ ଦୁଗ୍ଧମଧ୍ୟେଽପି ସର୍ପିର୍ଯତ୍ତଚ୍ଛମ୍ଭୋ ତ୍ୱଂ ତତସ୍ତ୍ୱାଂ ପ୍ରପଦ୍ୟେ ॥
ଶବ୍ଦଂ ଗୃହ୍ଣାସ୍ୟଶ୍ରବାସ୍ତ୍ୱଂ ହି ଜିଘ୍ରସ୍ୟଘ୍ରାଣସ୍ତ୍ୱଂ ବ୍ୟଂଘ୍ରିରାୟାସି ଦୂରାତ୍ ।
ବ୍ୟକ୍ଷଃ ପଶ୍ୟେସ୍ତ୍ୱଂ ରସଜ୍ଞୋଽପ୍ୟଜିହ୍ୱଃ କସ୍ତ୍ୱାଂ ସମ୍ୟଗ୍‌ବେତ୍ତ୍ୟତସ୍ତ୍ୱାଂ ପ୍ରପଦ୍ୟେ ॥
ନୋ ବେଦସ୍ତ୍ୱାମୀଶ ସାକ୍ଷାଦ୍ଧି ବେଦ ନୋ ବା ବିଷ୍ଣୁର୍ନୋ ବିଧାତାଖିଳସ୍ୟ ।
ନୋ ଯୋଗୀନ୍ଦ୍ରା ନେନ୍ଦ୍ରମୁଖ୍ୟାଶ୍ଚ ଦେବା ଭକ୍ତୋ ବେଦ ତ୍ୱାମତସ୍ତ୍ୱାଂ ପ୍ରପଦ୍ୟେ ॥
ନୋ ତେ ଗୋତ୍ରଂ ନେଶ ଜନ୍ମାପି ନାଖ୍ୟା ନୋ ବା ରୂପଂ ନୈବ ଶୀଳଂ ନ ଦେଶଃ ।
ଇତ୍ଥମ୍ଭୂତୋଽପୀଶ୍ୱରସ୍ତ୍ୱଂ ତ୍ରିଲୋକ୍ୟାଃ ସର୍ବାନ୍ କାମାନ୍ ପୂରୟେସ୍ତଦ୍ ଭଜେ ତ୍ୱାମ୍ ॥
ତ୍ୱତ୍ତଃ ସର୍ବଂ ତ୍ୱଂ ହି ସର୍ବଂ ସ୍ମରାରେ ତ୍ୱଂ ଗୌରୀଶସ୍ତ୍ୱଂ ଚ ନଗ୍ନୋଽତିଶାନ୍ତଃ ।
ତ୍ୱଂ ବୈ ବୃଦ୍ଧସ୍ତ୍ୱଂ ଯୁବା ତ୍ୱଂ ଚ ବାଳସ୍ତତ୍ତ୍ୱଂ ଯତ୍ କିଂ ନାସ୍ୟତସ୍ତ୍ୱାଂ ନତୋଽହମ୍ ॥

(ଶି. ପୁ. ଶତରୁଦ୍ରସଂହିତା ୧୩ । ୪୨–୪୯)

# ଶୁଚିଷ୍ମତୀଙ୍କ ଗର୍ଭରୁ ଶିବଙ୍କର ପ୍ରାକଟ୍ୟ, ବ୍ରହ୍ମାଙ୍କ ଦ୍ୱାରା ଶିଶୁର ସଂସ୍କାର ଓ 'ଗୃହପତି' ନାମକରଣ, ନାରଦଙ୍କ ମୁଖରୁ ଶିଶୁର ଭବିଷ୍ୟ ବର୍ଣ୍ଣନ, ପିତାଙ୍କ ଆଜ୍ଞାରେ ଗୃହପତିଙ୍କର କାଶୀ ଗମନ ଓ ତପସ୍ୟା, ବର ଦେବାକୁ ଇନ୍ଦ୍ରଙ୍କ ପ୍ରାକଟ୍ୟ, ଇନ୍ଦ୍ରଙ୍କ ବରଦାନକୁ ଗୃହପତିଙ୍କର ପ୍ରତ୍ୟାଖ୍ୟାନ, ଶିବଙ୍କ ଆବିର୍ଭାବ, ବରଦାନ ଓ ଦିକ୍‌ପାଳ ପଦ ପ୍ରଦାନ ଏବଂ ଅଗ୍ନୀଶ୍ୱରଲିଙ୍ଗ ଓ ଅଗ୍ନିଙ୍କର ମାହାତ୍ମ୍ୟ

ନନ୍ଦୀଶ୍ୱର କହୁଛନ୍ତି–ମୁନେ ! ଘରକୁ ଆସି ବ୍ରାହ୍ମଣ ବିଶ୍ୱାନର ଅତି ଆନନ୍ଦରେ ପତ୍ନୀକୁ ସମସ୍ତ ବୃତ୍ତାନ୍ତ କହିଲେ । ତାହା ଶୁଣି ବିପ୍ରପତ୍ନୀ ଶୁଚିଷ୍ମତୀକୁ ବହୁତ ଆନନ୍ଦ ଅନୁଭବ ହେଲା । ସେ ପ୍ରେମପୂର୍ବକ ନିଜ ଭାଗ୍ୟର ପ୍ରଶଂସା କରିବାକୁ ଲାଗିଲା । ତା'ପରେ ଯଥାସମୟରେ ବ୍ରାହ୍ମଣ ବିଶ୍ୱାନରଙ୍କ ଦ୍ୱାରା ବିଧିପୂର୍ବକ ଗର୍ଭାଧାନ ସଂସ୍କାର କର୍ମ ସମ୍ପନ୍ନ କରାଯିବା ପରେ ସେ ଗର୍ଭବତୀ ହେଲା । ତା'ପରେ ବିଦ୍ୱାନ୍ ମୁନି ଗର୍ଭସ୍ପନ୍ଦନ ହେବା ପୂର୍ବରୁ ପୁଂସ୍ତ୍ୱ ବୃଦ୍ଧି ନିମନ୍ତେ ଗୃହ୍ୟସୂତ୍ରରେ ବର୍ଣ୍ଣିତ ବିଧି ଅନୁସାରେ ସମ୍ୟକ୍ ପ୍ରକାରେ ପୁଂସବନ ସଂସ୍କାର କଲେ । ପୁଣି ଅଷ୍ଟମ ମାସରେ କୃପାଳୁ ବିଶ୍ୱାନର ସୁଖପୂର୍ବକ ପ୍ରସବ ହେବା ଅଭିପ୍ରାୟରେ ଗର୍ଭର ରୂପ-ସମୃଦ୍ଧିକାରୀ ସୀମନ୍ତ-ସଂସ୍କାର ସମ୍ପନ୍ନ କରାଇଲେ । ଏହାପରେ ତାରାମାନେ ଅନୁକୂଳ ସ୍ଥିତିକୁ ଆସିବା ପରେ ବୃହସ୍ପତି ଯେବେ କେନ୍ଦ୍ରବର୍ତ୍ତୀ ହେଲେ ଏବଂ ଶୁଭଗ୍ରହଙ୍କର ଯୋଗ ଉପସ୍ଥିତ ହେଲା, ସେହି ଶୁଭଲଗ୍ନରେ ତ୍ରିଭୁବନ ସୁଖଦାତା, ସର୍ବାରିଷ୍ଟ-ବିନାଶକ ଭଗବାନ ଶଙ୍କର, ଯାହାଙ୍କର ମୁଖକାନ୍ତି ପୂର୍ଣ୍ଣିମାର ଚନ୍ଦ୍ର ପରି ତଥା ଯେ ଅରିଷ୍ଟରୂପୀ ଦୀପକୁ ଲିଭାଇଦେଇ ପାରନ୍ତି, ସେ ଶୁଚିଷ୍ମତୀଙ୍କ ଗର୍ଭରୁ ପୁତ୍ରରୂପରେ ଅବତରିତ ହେଲେ । ସେତେବେଳେ ଗନ୍ଧବହନକାରୀ ବାୟୁର ବାହନ ମେଘମାନେ ଦିଗରୂପୀ ବଧୂମାନଙ୍କ ମୁଖର ଓଢ଼ଣୀ ପରି ହୋଇଗଲେ ଅର୍ଥାତ୍ ଚତୁର୍ଦ୍ଦିଗରେ କଳା କଳା ବାଦଲ ଘୋଟିଗଲା । ସେହି ଘନ ବାଦଲ ସୁଗନ୍ଧିତ ପୁଷ୍ପମାନ ବର୍ଷା କଲେ । ଦେବଗଣଙ୍କର ଦୁନ୍ଦୁଭିମାନ ବାଜି ଉଠିଲା । ଚତୁର୍ଦ୍ଦିଗ ନିର୍ମଳ ହୋଇଗଲା । ପ୍ରାଣୀଙ୍କର ମନ ତଥା ସରିତାମାନଙ୍କର ଜଳ ମଧ୍ୟ ନିର୍ମଳ ହୋଇଗଲା । ପ୍ରାଣୀଙ୍କର ବାଣୀ ସମ୍ପୂର୍ଣ୍ଣ କଲ୍ୟାଣମୟୀ ଓ ପ୍ରିୟଭାଷିଣୀ ହୋଇଗଲା । ସମସ୍ତ ପ୍ରସିଦ୍ଧ ଋଷି, ମୁନି, ଦେବତା, ଯକ୍ଷ, କିଂନର, ବିଦ୍ୟାଧର ପ୍ରଭୃତି ମଙ୍ଗଳ ଦ୍ରବ୍ୟ ଘେନି ପଦାର୍ପଣ କଲେ । ସ୍ୱୟଂ ବ୍ରହ୍ମା ହିଁ ନମ୍ରତାପୂର୍ବକ ନବଜାତ ଶିଶୁର ଜାତକର୍ମ ସଂସ୍କାର କଲେ ଏବଂ ତା'ର ରୂପ ଓ ବେଦକୁ ବିଗ୍ରହକୁ ନେଇ ଏହି ନିର୍ଣ୍ଣୟ କଲେ ଯେ ତାହାର ନାମ 'ଗୃହପତି' ହେବା ଉଚିତ । ତା'ପରେ ଏକାଦଶ ଦିନ ସେ ନାମକରଣର ବିଧି ଅନୁସାରେ ବେଦମନ୍ତ୍ର ଉଚ୍ଚାରଣ କରି ତା'ର 'ଗୃହପତି' ନାମ ରଖିଲେ । ଏହାପରେ ସମସ୍ତଙ୍କ ପିତାମହ ବ୍ରହ୍ମା ଚ୍ୱରିବେଦରେ କଥିତ ଆଶୀର୍ବାଦାତ୍ମକ ମନ୍ତ୍ରଦ୍ୱାରା ତାକୁ ଅଭିନନ୍ଦନ କରି ହଂସ ଉପରେ ଆରୂଢ଼ ହୋଇ ନିଜ ଲୋକକୁ ଫେରିଗଲେ । ତା'ପରେ ଶିବ ମଧ୍ୟ ଲୌକିକୀ ଗତିର ଆଶ୍ରୟ ନେଇ ସେହି ବାଳକର ଯଥୋଚିତ ରକ୍ଷାବିଧାନ କରିବା ପରେ ଆପଣା ବାହନରେ ଆରୂଢ଼ ହୋଇ ସ୍ୱଧାମକୁ ଚ୍ୱଲିଗଲେ । ଏହି ପ୍ରକାରେ ଶ୍ରୀହରି, ସମସ୍ତ ଦେବତା ଏବଂ ଋଷି-ମୁନିମାନେ ମଧ୍ୟ ଗୃହପତି ପ୍ରଭୃତିଙ୍କୁ ପ୍ରଶଂସା

କରି ନିଜ ନିଜ ସ୍ଥାନକୁ ଫେରିଗଲେ । ଏହାପରେ ବ୍ରାହ୍ମଣମାନେ ଯଥାସମୟରେ ସମସ୍ତ ସଂସ୍କାର କରି ବାଳକକୁ ବେଦାଧ୍ୟୟନ କରାଇଲେ । ନଅ ବର୍ଷର ହେବା ପରେ ପିତାମାତାଙ୍କ ସେବାରେ ତତ୍ପର ରହୁଥିବା ବିଶ୍ୱାନରନନ୍ଦନ ଗୃହପତିକୁ ଦେଖିବାକୁ ନାରଦ ସେଠାରେ ଉପସ୍ଥିତ ହେଲେ । ବାଳକ ଓ ତା'ର ପିତାମାତା ନାରଦଙ୍କୁ ନମସ୍କାର କଲେ । ନାରଦ ବାଳକର ହସ୍ତରେଖା, ଜିହ୍ୱା, ତାଲୁ ଇତ୍ୟାଦି ଦେଖି କହିଲେ—''ମୁନି ବିଶ୍ୱାନର ! ମୁଁ ତୁମ ପୁତ୍ରର ଲକ୍ଷଣ ବର୍ଣ୍ଣନା କରୁଛି, ଆଦରରେ ଶ୍ରବଣ କର । ତୁମର ଏ ପୁତ୍ର ପରମ ଭାଗ୍ୟବାନ୍ । ଏହାର ସମସ୍ତ ଅଙ୍ଗରେ ଶୁଭଲକ୍ଷଣ ରହିଛି । ଏ ସର୍ବଗୁଣସମ୍ପନ୍ନ ଓ ସମସ୍ତ ଶୁଭଲକ୍ଷଣରେ ସମନ୍ୱିତ । ଏ ଚନ୍ଦ୍ର ପରି ନିର୍ମଳ କଳାରେ ସୁଶୋଭିତ; ତଥାପି ବିଧାତା ହିଁ ଏହାକୁ ରକ୍ଷା କରନ୍ତୁ; କାରଣ ଗୋଟିଏ ବିଘ୍ନ ରହିଛି । ଏଣୁ ସବୁ ପ୍ରକାର ଉପାୟରେ ଏହାକୁ ରକ୍ଷା କର । ସତରେ, ବିଧାତା ବିପରୀତ ହୋଇଗଲେ ସମସ୍ତ ଗୁଣ ଦୋଷରେ ପରିଣତ ହୋଇଯାଏ । ମୋ ମନରେ ଆଶଙ୍କା ଉପୁଜୁଛି ଯେ ବାର ବର୍ଷ ବୟସରେ ଏହା ପାଇଁ ବିଜୁଳି ଅଥବା ଅଗ୍ନିର ଭୟ ରହିଛି ।'' ଏହା କହି ନାରଦ ଦେବଲୋକକୁ ଫେରିଗଲେ ।

ସନତ୍କୁମାର ! ନାରଦଙ୍କ କଥା ଶୁଣିବାମାତ୍ରେ ବିଶ୍ୱାନର ଓ ତାଙ୍କ ପତ୍ନୀଙ୍କ ମସ୍ତକରେ ସତେ ଯେପରି ବଜ୍ରପାତ ହୋଇଗଲା । ବିଶ୍ୱାନର ''ହାୟ ! ମୁଁ ତ ମରିଗଲି'' ଏପରି କହି ଛାତିରେ ହାତ ପିଟି ପିଟି ପୁତ୍ରଶୋକରେ ବ୍ୟାକୁଳ ହୋଇ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ତେଣେ ଶୁଚିଷ୍ମତୀ ମଧ୍ୟ ଗଭୀର ଦୁଃଖରେ ଉଚ୍ଚସ୍ୱରରେ ହାହାକାର କରି ବିଳାପ କରିବାକୁ ଲାଗିଲେ । ତାଙ୍କର ଇନ୍ଦ୍ରିୟଗଣ ବ୍ୟାକୁଳ ହୋଇ ଉଠିଲେ । ପତ୍ନୀର ଆର୍ତ୍ତନାଦ ଶୁଣି ବିଶ୍ୱାନରଙ୍କର ମୂର୍ଚ୍ଛା ଭାଙ୍ଗିଲା ଏବଂ ସେ ଏସବୁ କ'ଣ ହୋଇଗଲା?— ଏପରି ବାରମ୍ବାର ଉଚ୍ଚାରଣ କରି କହିଲେ—''ମୋ ଗୃହପତି କାହିଁ? ସେ ତ ମୋର ବାହାରେ ବିଚରଣ କରୁଥିବା ପ୍ରାଣ, ମୋର ସମସ୍ତ ଇନ୍ଦ୍ରିୟଙ୍କ ସ୍ୱାମୀ ଏବଂ ମୋ ଅନ୍ତରାତ୍ମାରେ ନିବାସକାରୀ ।'' ମାତା ପିତାଙ୍କର ଏପରି ଶୋକଗ୍ରସ୍ତ ଅବସ୍ଥା ଦେଖି ଶିବଙ୍କ ଅଂଶରୁ ଉତ୍ପନ୍ନ ହୋଇଥିବା ସେହି ବାଳକ ମନ୍ଦ ମନ୍ଦ ହସି କହିଲା—

ଗୃହପତି କହିଲା—''ବାପା ! ମାଆ ! ତୁମେ ଦୁହେଁ କାନ୍ଦିବାର କାରଣ କ'ଣ? କାହିଁକି ଏମିତି କଇଁ କଇଁ ହୋଇ କାନ୍ଦୁଛ? ଏ କେଉଁ ଭୟ ତୁମକୁ ସଂତପ୍ତ କରୁଛି? ଯଦି ମୁଁ ତୁମ ଦୁହିଙ୍କ ଚରଣରେଣୁ ଦ୍ୱାରା ନିଜ ଶରୀରକୁ ରକ୍ଷା କରିନିଏ, ତେବେ ମୋ ଉପରେ କାଳ ମଧ୍ୟ ତା'ର ପ୍ରଭାବ ପକାଇ ପାରିବ ନାହିଁ; ପୁଣି ଏ ତୁଚ୍ଛ ଓ ଚଞ୍ଚଳ ବିଜୁଳି ଅବା ମୋର କ'ଣ କରିପକାଇବ? ବାପା ! ମାଆ ! ତୁମେମାନେ ମୋର ପ୍ରତିଜ୍ଞା ଶୁଣ । ଯଦି ମୁଁ ତୁମର ଠିକ୍ ପୁତ୍ର ହୋଇଥିବି, ତା'ହେଲେ ଏମିତି କାମ କରିବି ଯେ ମୃତ୍ୟୁ ମଧ୍ୟ ଭୟଭୀତ ହୋଇଯିବ । ମୁଁ ସାଧୁଜନଙ୍କୁ ସର୍ବସ୍ୱ ଦାନ କରିଦେଉଥିବା ସର୍ବଜ୍ଞ ମୃତ୍ୟୁଞ୍ଜୟଙ୍କୁ ଉତ୍ତମରୂପେ ଆରାଧନା କରି ମହାକାଳକୁ ମଧ୍ୟ ଜିଣିଯିବି । ମୁଁ ତୁମକୁ ସମ୍ପୂର୍ଣ୍ଣ ସତ୍ୟ କହୁଛି ।''

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଗୃହପତିଙ୍କର ବାଣୀ ମରୁଡ଼ିକାଳରେ ଘୋର ଅମୃତଧାରା ବୃଷ୍ଟି ପରି ଥିଲା, ଏଭଳି ବାଣୀକୁ ଶୁଣି ଶୋକସନ୍ତପ୍ତ ଦ୍ୱିଜଦମ୍ପତି ସନ୍ତାପରହିତ ହୋଇଗଲେ ଏବଂ କହିଲେ—''ପୁତ୍ର ! ତୁ ସତ କହିଛୁ । ଯେ ବ୍ରହ୍ମା ପ୍ରଭୃତିଙ୍କ ସ୍ରଷ୍ଟା, ମେଘବାହନ, ଯେ ନିଜ ମହିମାରୁ କଦାପି ଚ୍ୟୁତ ହୋଇ ନ ଥାନ୍ତି ଓ ବିଶ୍ୱର ରକ୍ଷାକବଚ, ତୁ ସେହି ଶିବଙ୍କ ଶରଣକୁ ଯାଆ ।''

ନନ୍ଦୀଶ୍ୱର କହୁଛନ୍ତି— ମୁନେ ! ପିତାମାତାଙ୍କ ଆଜ୍ଞା ପାଇ ଗୃହପତି ସେମାନଙ୍କ ଚରଣରେ ପ୍ରଣାମ

କଲେ । ତା'ପରେ ସେମାନଙ୍କୁ ପ୍ରଦକ୍ଷିଣ କରିସାରି ବହୁପ୍ରକାରେ ଆଶ୍ୱାସନା ଦେବା ପରେ ସେମାନଙ୍କ ଠାରୁ ବିଦାୟ ନେଇ କାଶୀ ଅଭିମୁଖେ ଯାତ୍ରା କଲେ । କାଶୀ ହେଉଛି ବ୍ରହ୍ମା ବିଷ୍ଣୁ ପ୍ରଭୃତି ଦେବତାଙ୍କ ନିମନ୍ତେ ମଧ୍ୟ ଦୁଷ୍ପ୍ରାପ୍ୟ, ମହାପ୍ରଳୟ-ଜନିତ ସନ୍ତାପର ବିନାଶକାରୀ, ବିଶ୍ୱନାଥଙ୍କ ଦ୍ୱାରା ସୁରକ୍ଷିତ, ଗଙ୍ଗାରୂପୀ କଣ୍ଠହାର ଦ୍ୱାରା ସୁଶୋଭିତ ଏବଂ ବିଚିତ୍ର ଗୁଣଶାଳିନୀ ହରପତ୍ନୀ ଗିରିଜାଙ୍କ ଦ୍ୱାରା ବିଭୂଷିତ ନଗରୀ । ସେଠାରେ ପହଞ୍ଚି ବିପ୍ରବର ଗୃହପତି ପ୍ରଥମେ ମଣିକର୍ଣ୍ଣିକା ଗଲେ । ସେ ବିଧିପୂର୍ବକ ସ୍ନାନ କରି ଭଗବାନ ବିଶ୍ୱନାଥଙ୍କୁ ଦର୍ଶନ କଲେ । ଗୃହପତି ତ୍ରୈଲୋକ୍ୟରକ୍ଷକ ଶିବଙ୍କୁ ପ୍ରଣାମ କରି ପରମାନନ୍ଦରେ ମଗ୍ନ ହୋଇଗଲେ । ସେ ଯୋଡ଼ହସ୍ତପୂର୍ବକ ମସ୍ତକ ଅବନତ କରି ଠିଆ ହୋଇ ବାରମ୍ବାର ସେହି ଶିବଲିଙ୍ଗ ଆଡ଼କୁ ଗ୍ୱହିଁ ହୃଦୟରେ ହର୍ଷ ଅନୁଭବ କରୁଥିଲେ ଏବଂ ଭାବୁଥିଲେ ଯେ ଏହି ଲିଙ୍ଗ ନିଶ୍ଚିତରୂପେ ଆନନ୍ଦକନ୍ଦ ଅଟନ୍ତି । ସେ କହିଲେ—ଅହୋ ! ଆଜି ମୋତେ ସର୍ବବ୍ୟାପୀ ଶ୍ରୀମାନ୍ ବିଶ୍ୱନାଥଙ୍କ ଦର୍ଶନ ପ୍ରାପ୍ତ ହୋଇଛି, ଏଣୁ ଏ ସଚରାଚର ତ୍ରିଲୋକରେ ମୋଠାରୁ ବଳି ଧନ୍ୟ ଆଉ କେହି ନାହିଁ । ସତରେ, ମୋର ଭାଗ୍ୟୋଦୟ ହେବାରୁ ହିଁ ସେଦିନ ନାରଦ ଆସି ସେପରି କଥା କହିଥିଲେ । ତାହାରି ଫଳରେ ଆଜି ମୁଁ କୃତକୃତ୍ୟ ହୋଇଗଲି ।

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଏହିରୂପେ ଭାବନାର ଆନନ୍ଦାମୃତରୂପୀ ରସରେ ପାରଣ କରି ଗୃହପତି ଶୁଭ ଦିନରେ ସର୍ବହିତକାରୀ ଶିବଲିଙ୍ଗଟିଏ ସ୍ଥାପନା କଲେ ଏବଂ ଶହେଆଠ କଳସ ପବିତ୍ର ଗଙ୍ଗାଜଳରେ ଶିବଙ୍କୁ ସ୍ନାନ କରାଇ ଏଭଳି କଠୋର ନିୟମର ସଂକଳ୍ପ ନେଲେ, ଯାହା ଅକୃତାତ୍ମାଙ୍କ ପକ୍ଷେ ଦୁଷ୍କର ଥିଲା । ନାରଦ ! ଏହିରୂପେ ଏକମାତ୍ର ଶିବଙ୍କ ଠାରେ ମନ ଲଗାଇ ତପସ୍ୟା କରୁ କରୁ ଗୃହପତିଙ୍କ ଆୟୁରୁ ଆହୁରି ଏକବର୍ଷ କମ୍ ହୋଇଗଲା । ତାଙ୍କୁ ବାରବର୍ଷ ପ୍ରବେଶ କଲା । ନାରଦଙ୍କ କହିବା ଅନୁସାରେ ବଜ୍ରଧାରୀ ଇନ୍ଦ୍ର ତାଙ୍କ ନିକଟକୁ ଆସି କହିଲେ—''ବିପ୍ରବର ! ମୁଁ ହେଉଛି ଇନ୍ଦ୍ର; ମୁଁ ତୁମର ଏହି ଶୁଭ ବ୍ରତରେ ପ୍ରସନ୍ନ ହୋଇ ଏଠାକୁ ଆସିଛି । ତୁମେ ବର ମାଗ; ମୁଁ ତୁମର ମନୋବାଞ୍ଛା ପୂରଣ କରିବି ।''

ଗୃହପତି କହିଲେ—ମଘବନ୍ ! ମୁଁ ଜାଣେ ଯେ ଆପଣ ବଜ୍ରଧାରୀ ଇନ୍ଦ୍ର ! ମାତ୍ର ହେ ବୃତ୍ରଶତ୍ରୁ ! ମୁଁ ଆପଣଙ୍କୁ ବର ମାଗିବାକୁ ଗ୍ୱହେଁନା; ମୋତେ ତ ଶିବ ହିଁ ବର ଦେବେ ।

ଇନ୍ଦ୍ର କହିଲେ—ବାଳକ ! ଶିବ କ'ଣ ମୋ ଠାରୁ ଭିନ୍ନ ! ଆରେ, ମୁଁ ସ୍ୱୟଂ ଦେବରାଜ; ତେଣୁ ମୂର୍ଖତା ପରିତ୍ୟାଗ କରି ବର ମାଗ, ବିଳମ୍ବ ନ କର ।

ଗୃହପତି କହିଲେ—ପାକଶାସନ ! ଆପଣ ଅହଲ୍ୟାର ସତୀତ୍ୱ ନଷ୍ଟ କରିଥିବା ସେହି ଦୁରାଗ୍ୱରୀ ପର୍ବତଶତ୍ରୁ ନା? ଯାଆନ୍ତୁ, ଯାଆନ୍ତୁ । ମୁଁ ପଶୁପତିଙ୍କ ଛଡ଼ା ଅନ୍ୟ କୌଣସି ଦେବତାଙ୍କ ଆଗରେ ସ୍ପଷ୍ଟରୂପରେ ପ୍ରାର୍ଥନା କରିବାକୁ ଗ୍ୱହେଁନା ।

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଗୃହପତିଙ୍କ ବାକ୍ୟ ଶୁଣି ଇନ୍ଦ୍ରଙ୍କ ନେତ୍ର କ୍ରୋଧରେ ଲାଲ୍ ହୋଇଗଲା । ସେ ତାଙ୍କର ଭୟଙ୍କର ବଜ୍ର ଉଠାଇ ବାଳକ ଗୃହପତିଙ୍କୁ ଧମକାଇଲେ । ବଜ୍ରର ବିଜୁଳି ପରି ଜ୍ୱାଳାକୁ ଦେଖି ବାଳକ ଗୃହପତିଙ୍କୁ ନାରଦଙ୍କ କଥା ସ୍ମରଣ ହେଲା । ସେ ଭୟରେ ବ୍ୟାକୁଳ ହୋଇ ମୂର୍ଚ୍ଛିତ ହୋଇଗଲେ । ତା'ପରେ ଅଜ୍ଞାନାନ୍ଧକାର-ନାଶକ ଗୌରୀପତି ଶମ୍ଭୁ ସେଠାରେ ପ୍ରକଟ ହୋଇଗଲେ ଏବଂ ନିଜ କରକମଳସ୍ପର୍ଶରେ ତାଙ୍କୁ ଜୀବନଦାନ କରି କହିଲେ—''ଉଠ ବତ୍ସ ! ଉଠ । ତୁମର କଲ୍ୟାଣ ହେଉ ।'' ରାତ୍ରିରେ ମୁଦି ହୋଇଯାଇଥିବା ପଦ୍ମ ପ୍ରଭାତରେ ଯେପରି ବିକଶିତ

ହୁଏ, ଗୃହପତି ସେହିପରି ନିଜ ପଦ୍ମତୁଲ୍ୟ ନେତ୍ର ଖୋଲି ସମ୍ମୁଖରେ ସହସ୍ର ସୂର୍ଯ୍ୟତୁଲ୍ୟ ଜାଜ୍ୱଲ୍ୟମାନ ଶମ୍ଭୁଙ୍କୁ ଉପସ୍ଥିତ ଦେଖିଲେ । ଶମ୍ଭୁଙ୍କ ଲଲାଟରେ ତୃତୀୟ ନେତ୍ର ଉଜ୍ଜ୍ୱଳ ଦିଶୁଥିଲା । ଗଳାରେ ଥିଲା ନୀଳ ଚିହ୍ନ । ଧ୍ୱଜାରେ ବୃଷଭର ସ୍ୱରୂପ ଥିଲା ଏବଂ ବାମଭାଗରେ ବିରାଜମାନ ଥିଲେ ଗିରିଜାଦେବୀ । ମସ୍ତକରେ ଚନ୍ଦ୍ରମା ସୁଶୋଭିତ ଥିଲା । ବଡ଼ ବଡ଼ ଜଟା ହେତୁ ତାଙ୍କର ଅଦ୍ଭୁତ ଶୋଭା ବିକଶିତ ହେଉଥିଲା । ସେ ଆୟୁଧରୂପେ ତ୍ରିଶୂଳ ଓ ଆଜଗବ ଧନୁ ଧାରଣ କରିଥିଲେ ଓ ଗଜଚର୍ମ ପିନ୍ଧିଥିଲେ । ତାଙ୍କର କର୍ପୂର ପରି ଗୌର ଶରୀର ସୁନ୍ଦର ଆଭା ବିଚ୍ଛୁରିତ କରୁଥିଲା । ଶାସ୍ତ୍ରକଥିତ ଲକ୍ଷଣରୁ ଓ ଗୁରୁଙ୍କ ବଚନ ଅନୁସାରେ ଗୃହପତି ତାଙ୍କୁ ମହାଦେବ ବୋଲି ଚିହ୍ନି ପାରିଲେ । ହର୍ଷ ହେତୁ ତାଙ୍କ ନେତ୍ରରୁ ଅଶ୍ରୁ ବହି ଆସିଲା, ଗଳା ରୁନ୍ଧି ହୋଇଗଲା ଓ ଶରୀର ରୋମାଞ୍ଚିତ ହୋଇଉଠିଲା । ସେ କ୍ଷଣକ ପାଇଁ ନିଜକୁ ଭୁଲିଯାଇ ଚିତ୍ରକୂଟ ଓ ତ୍ରିପୁତ୍ରକ ପର୍ବତ ପରି ନିଶ୍ଚଳ ତଥା ସ୍ତମ୍ଭୀଭୂତ ହୋଇଗଲେ । ସେ ସ୍ତୁତି କରିବାକୁ, ନମସ୍କାର କରିବାକୁ ଅଥବା କିଛି ବି କରିବାକୁ ସମର୍ଥ ହୋଇ ପାରିଲେ ନାହିଁ । ଏହାପରେ ଶିବ ମନ୍ଦ ମନ୍ଦ ହସି ତାଙ୍କୁ କହିଲେ—

ଈଶ୍ୱର କହିଲେ—"ଗୃହପତେ ! ଜଣା ପଡୁଛି ଯେ ତୁମେ ବଜ୍ରଧାରୀ ଇନ୍ଦ୍ରଙ୍କୁ ଦେଖି ଡରିଗଲ । ବତ୍ସ ! ଭୟ କର ନାହିଁ । ମୋ ଭକ୍ତ ଉପରେ ଇନ୍ଦ୍ର ଅଥବା ବଜ୍ର ବା କ'ଣ, ସ୍ୱୟଂ ଯମରାଜ ମଧ୍ୟ କିଛି ପ୍ରଭାବ ପକାଇ ପାରିବେ ନାହିଁ । ମୁଁ ହିଁ ଇନ୍ଦ୍ରରୂପରେ ତୁମର ପରୀକ୍ଷା ନେଇଥିଲି ଏବଂ ତୁମକୁ ଡରାଇଥିଲି । ଭଦ୍ର ! ଏବେ ମୁଁ ତୁମକୁ ବର ଦେଉଛି । ଆଜିଠାରୁ ତୁମେ ଅଗ୍ନିପଦର ଅଧିକାରୀ ହେବ । ତୁମେ ସମସ୍ତ ଦେବତାଙ୍କ ନିମନ୍ତେ ବରଦାତା ହେବ । ତୁମେ ସମସ୍ତ ପ୍ରାଣୀଙ୍କ ଭିତରେ ଜଠରାଗ୍ନିରୂପରେ ରହି ବିଚରଣ କରିବ । ତୁମେ ଦିଗ୍‌ପାଳରୂପେ ଦକ୍ଷିଣ ଓ ପୂର୍ବଦିଗର ମଧ୍ୟବର୍ତ୍ତୀ ସ୍ଥାନରେ ରାଜ୍ୟ ଲାଭ କରିବ । ତୁମ ଦ୍ୱାରା ସ୍ଥାପିତ ଏହି ଶିବଲିଙ୍ଗ ତୁମ ନାମାନୁସାରେ 'ଅଗ୍ନୀଶ୍ୱର' ନାମରେ ପ୍ରସିଦ୍ଧ ହେବ । ଏହି ଶିବଲିଙ୍ଗ ସମସ୍ତ ପ୍ରକାର ତେଜ ବୃଦ୍ଧି କରିବ । ଯେଉଁମାନେ



ଅଗ୍ନୀଶ୍ୱରଲିଙ୍ଗର ଭକ୍ତ ହେବେ, ସେମାନଙ୍କୁ ବିଜୁଳି ଅଥବା ଅଗ୍ନିର ଭୟ ରହିବ ନାହିଁ, ଅଗ୍ନିମାନ୍ଦ୍ୟ ନାମକ ରୋଗ ହେବ ନାହିଁ ଏବଂ ସେମାନଙ୍କର ଅକାଳ ମୃତ୍ୟୁ ହେବ ନାହିଁ । କାଶୀପୁରରେ ସ୍ଥିତ ଏହି ସର୍ବସମୃଦ୍ଧିପ୍ରଦାତା ଅଗ୍ନୀଶ୍ୱରଙ୍କୁ ସମ୍ୟଗ୍‌ରୂପେ ଅର୍ଚ୍ଚନା କରୁଥିବା ଭକ୍ତ ଯଦି ପ୍ରାରବ୍ଧବଶତଃ କୌଣସି ଅନ୍ୟ ସ୍ଥାନରେ ମୃତ୍ୟୁବରଣ କରେ, ତେବେ ବି ସେ ବହ୍ନିଲୋକରେ ପ୍ରତିଷ୍ଠିତ ହେବ ।

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଏହା କହି ଭଗବାନ୍ ଶିବ ଗୃହପତିଙ୍କ ବନ୍ଧୁବାନ୍ଧବଙ୍କୁ ଡାକି ତାଙ୍କ ପିତାମାତାଙ୍କ ସମ୍ମୁଖରେ ହିଁ ତାଙ୍କୁ ଅଗ୍ନିକୋଣର ଦିକ୍‌ପାଳ ପଦରେ ଅଭିଷିକ୍ତ କରିଦେଲେ ଏବଂ ସ୍ୱୟଂ ସେହି ଲିଙ୍ଗରେ ସମାବିଷ୍ଟ ହୋଇଗଲେ । ତାତ ! ମୁଁ ତୁମକୁ ପରମାତ୍ମା ଶିବଙ୍କର ଗୃହପତି ନାମକ ଅଗ୍ନ୍ୟବତାର ବିଷୟରେ କହିଦେଲି । ଏହି

ଅବତାର ଦୁଷ୍ଟଙ୍କୁ ଦଣ୍ଡ ଦେଇଥାଏ । ଯେଉଁ ଦୃଢ଼ ପରାକ୍ରମୀ ଜିତେନ୍ଦ୍ରିୟ ପୁରୁଷ ଅଥବା ସତ୍ତ୍ୱସମ୍ପନ୍ନା ନାରୀମାନେ ଅଗ୍ନିରେ ପ୍ରବେଶ କରିଯାଆନ୍ତି, ସେମାନେ ସମସ୍ତେ ଅଗ୍ନିପରି ତେଜସ୍ୱୀ ହୋଇଥାନ୍ତି । ଆହୁରି ମଧ୍ୟ ଯେଉଁ ବ୍ରାହ୍ମଣ ଅଗ୍ନିହୋତ୍ରପରାୟଣ, ବ୍ରହ୍ମଚାରୀ ତଥା ପଞ୍ଚାଗ୍ନି ସେବନ କରନ୍ତି, ସେମାନେ ଅଗ୍ନିତୁଲ୍ୟ ବର୍ଚ୍ଚସ୍ୱୀ ହୋଇ ଅଗ୍ନିଲୋକରେ ବିଚରଣ କରନ୍ତି । ଯେ ଶୀତକାଳରେ ଶୀତନିବାରଣ ନିମିତ୍ତ ଭାର ଭାର କାଠ ଦାନ କରେ, ଅଥବା ଅଗ୍ନିରେ ଇଷ୍ଟି କରେ, ସେ ଅଗ୍ନିର ସନ୍ନିକଟରେ ବାସ କରେ । ଯେ ଶ୍ରଦ୍ଧାପୂର୍ବକ କୌଣସି ଅନାଥ ମୃତ ବ୍ୟକ୍ତିର ଅଗ୍ନିସଂସ୍କାର କରେ ଅଥବା ନିଜେ ଅସମର୍ଥ ହୋଇଥିଲେ ଅନ୍ୟକୁ ପ୍ରେରିତ କରେ, ସେ ଅଗ୍ନିଲୋକରେ ପ୍ରଶଂସିତ ହୁଏ । ଅଗ୍ନି ହିଁ ଦ୍ୱିଜାତିମାନଙ୍କ ପାଇଁ ପରମ କଲ୍ୟାଣକାରକ । ସେ ହିଁ ସେମାନଙ୍କର ଗୁରୁ, ଦେବତା, ବ୍ରତ, ତୀର୍ଥ ଅର୍ଥାତ୍ ସବୁ କିଛି । ଯେତେ ସବୁ ଅପାବନ ବସ୍ତୁ ରହିଛି, ସବୁକିଛି ଅଗ୍ନିର ସଂସ୍ପର୍ଶରେ ଆସିବାମାତ୍ରେ ତତ୍‌କ୍ଷଣାତ୍ ପାବନ ହୋଇଯାଏ; ତେଣୁ ଅଗ୍ନିକୁ ପାବକ ବୋଲି କୁହାଯାଏ । ଏହା ଶମ୍ଭୁଙ୍କର ପ୍ରତ୍ୟକ୍ଷ ତେଜୋମୟୀ ଦହନାତ୍ମିକା ମୂର୍ତ୍ତି ଅଟେ, ଯାହାକି ସୃଜନ, ପାଳନ ଓ ସଂହାରର କାରଣ । ଅଗ୍ନି ବିନା କୌଣସି ବସ୍ତୁ କ'ଣ ଦୃଷ୍ଟିଗୋଚର ହୋଇପାରିବ? ଏହାଙ୍କ ଦ୍ୱାରା ଭକ୍ଷିତ ଧୂପ, ଦୀପ, ନୈବେଦ୍ୟ, ଦୁଧ, ଦହି, ଘିଅ ଓ ଶର୍କରା ଆଦିକୁ ଦେବଗଣ ସ୍ୱର୍ଗରେ ସେବନ କରିଥାନ୍ତି । (ଅଧ୍ୟାୟ ୧୪-୧୫)

✰✰✰

## ଶିବଙ୍କର ମହାକାଳ ଆଦି ଦଶାବତାର ତଥା ଏକାଦଶ ରୁଦ୍ରାବତାରଙ୍କ ବର୍ଣ୍ଣନା

ଏହାପରେ ଯକ୍ଷେଶ୍ୱରାବତାର କଥା କହିସାରି ନନ୍ଦୀଶ୍ୱର କହିଲେ–ମୁନେ ! ଏବେ ଶିବଙ୍କର ଉପାସନାକାଣ୍ଡଦ୍ୱାରା ସେବିତ ମହେଶ୍ୱରଙ୍କର ମହାକାଳ ପ୍ରଭୃତି ଦଶ ଅବତାର ବିଷୟରେ ଭକ୍ତିପୂର୍ବକ ଶ୍ରବଣ କର । ସେଥିମଧ୍ୟରୁ ପ୍ରଥମ ଅବତାର 'ମହାକାଳ' ନାମରେ ପ୍ରସିଦ୍ଧ । ସେ ସାଧୁଜନଙ୍କୁ ଭୋଗ ଓ ମୋକ୍ଷ ପ୍ରଦାନ କରିଥାନ୍ତି । ମହାକାଳଙ୍କର ଶକ୍ତି ହେଉଛନ୍ତି ଭକ୍ତଙ୍କର ମନୋବାଞ୍ଛାପୂର୍ଣ୍ଣକାରିଣୀ ମହାକାଳୀ । ଦ୍ୱିତୀୟ ଅବତାରର ନାମ ହେଲା 'ତାର', ଯାହାଙ୍କ ଶକ୍ତି ହେଉଛନ୍ତି ତାରାଦେବୀ । ସେ ଦୁହେଁ ଭୁକ୍ତି ଓ ମୁକ୍ତିର ପ୍ରଦାତା ଏବଂ ସେବକଙ୍କ ନିମିତ୍ତ ସୁଖଦାୟକ । ତୃତୀୟ ଅବତାର ହେଲା 'ବାଳ ଭୁବନେଶ' । ବାଳା ଭୁବନେଶୀ ହେଲେ ତାଙ୍କର ଶକ୍ତି । ସେହି ଦେବୀ ସଜ୍ଜନମାନଙ୍କୁ ସୁଖପ୍ରଦାନ କରିଥାନ୍ତି । ଚତୁର୍ଥ ଅବତାରର ନାମ ହେଲା 'ଷୋଡ଼ଶ ଶ୍ରୀବିଦ୍ୟେଶ', ସେ ଭକ୍ତଙ୍କ ନିମନ୍ତେ ସୁଖ, ଭୋଗ ଓ ମୋକ୍ଷ ପ୍ରଦାୟକ ହୋଇଥାନ୍ତି । ତାଙ୍କର ଶକ୍ତି ହେଲେ ଷୋଡ଼ଶୀ ଶ୍ରୀବିଦ୍ୟା । ପଞ୍ଚମ ଅବତାର 'ଭୈରବ' ନାମରେ ବିଖ୍ୟାତ, ଯାହାକି ସର୍ବଦା ଭକ୍ତଙ୍କ କାମନା ପୂର୍ଣ୍ଣ କରିଥାଏ । ଏହି ଅବତାରଙ୍କ ଶକ୍ତିଙ୍କ ନାମ ହେଲା ଭୈରବୀ । ସେ ଆପଣା ଉପାସକଙ୍କୁ ଅଭୀଷ୍ଟ ପ୍ରଦାନ କରିଥାନ୍ତି । ଷଷ୍ଠ ଅବତାରଙ୍କ ନାମ 'ଛିନ୍ନମସ୍ତକ' ଏବଂ ତାଙ୍କର ଶକ୍ତି ଭକ୍ତକାମପ୍ରଦା ଗିରିଜାଙ୍କ ନାମ ହେଉଛି ଛିନ୍ନମସ୍ତା । ସମସ୍ତ ମନୋକାମନା ପୂରଣକାରୀ ଶମ୍ଭୁଙ୍କର ସପ୍ତମ ଅବତାର 'ଧୂମବାନ୍' ନାମରେ ବିଖ୍ୟାତ । ସେହି ଅବତାରରେ ଉପାସକଙ୍କ ଲାଳସା ପୂର୍ଣ୍ଣକାରିଣୀ ଶିବା ହିଁ ଧୂମାବତୀ ହେଲେ । ଶିବଙ୍କ ଅଷ୍ଟମ ଅବତାର ନାମ 'ବଗଳାମୁଖ' । ତାଙ୍କର

ଶକ୍ତି ମହାନ୍ ଆନନ୍ଦଦାୟିନୀ ବଗଳାମୁଖୀ ହେଲେ । ନବମ ଶିବାବତାର 'ମାତଙ୍ଗ' ନାମରେ ବିଖ୍ୟାତ। ତାଙ୍କର ଶକ୍ତି ହେଲେ ସମସ୍ତ ଅଭୀଷ୍ଟ ପୂର୍ଣ୍ଣକାରିଣୀ ଶର୍ବାଣୀ ମାତଙ୍ଗୀ । ଶମ୍ଭୁଙ୍କର ଭୁକ୍ତିମୁକ୍ତିରୂପୀ ଫଳ ପ୍ରଦାନକାରୀ ଦଶମ ଅବତାରର ନାମ 'କମଳ' । ସେହି ଅବତାରରେ ଭକ୍ତଙ୍କର ଆନନ୍ଦଦାତ୍ରୀ ଗିରିଜା କମଳା ବୋଲାଇଲେ । ଏହା ହେଲା ଶିବଙ୍କ ଦଶ ଅବତାର । ଏ ସମସ୍ତ ଅବତାର ଭକ୍ତ ତଥା ସଜ୍ଜନଙ୍କ ପାଇଁ ସୁଖଦାୟକ ତଥା ଭୋଗ ଓ ମୋକ୍ଷର ପ୍ରଦାତା । ଯେଉଁମାନେ ମହାତ୍ମା ଶିବଙ୍କର ଏହି ଦଶ ଅବତାରଙ୍କୁ ନିର୍ବିକାର ଭାବରେ ସେବା କରନ୍ତି, ପ୍ରଭୁ ସେମାନଙ୍କୁ ନିତ୍ୟ ନାନା ପ୍ରକାର ସୁଖ ପ୍ରଦାନ କରନ୍ତି । ମୁନେ ! ମୁଁ ଦଶ ଅବତାରର ମାହାତ୍ମ୍ୟ ବର୍ଣ୍ଣନା କରିଦେଲି । ତନ୍ତ୍ରଶାସ୍ତ୍ରରେ ଏହାକୁ ସର୍ବକାମପ୍ରଦ ବିଦ୍ୟା ବୋଲି କୁହାଯାଇଛି । ଏହି ଶକ୍ତିମାନଙ୍କର ମଧ୍ୟ ଅଦ୍ଭୁତ ମହିମା ରହିଛି । ସେମାନେ ନିତ୍ୟ ଦୁଷ୍ଟମାନଙ୍କୁ ଦଣ୍ଡ ଦେଇଥାନ୍ତି ଓ ବ୍ରହ୍ମତେଜକୁ ବିଶେଷରୂପେ ବୃଦ୍ଧି କରିଥାନ୍ତି । ବ୍ରହ୍ମନ୍ ! ମୁଁ ତୁମ ଆଗରେ ମହେଶ୍ୱରଙ୍କର ମହାକାଳ ଆଦି ଦଶଟି ଶୁଭ ଅବତାର ବିଷୟରେ ତଥା ସେମାନଙ୍କ ଶକ୍ତି ବିଷୟରେ ବର୍ଣ୍ଣନା କରିଦେଲି । ଯେଉଁ ମନୁଷ୍ୟ ସମସ୍ତ ଶିବପର୍ବ ଅବସରରେ ଏହି ପରମ ପାବନ ଆଖ୍ୟାନକୁ ଭକ୍ତିପୂର୍ବକ ପାଠ କରେ, ସେ ଶିବଙ୍କର ପରମ ପ୍ରିୟ ହୋଇଯାଏ । ଏହି ଆଖ୍ୟାନକୁ ପାଠ କଲେ ବ୍ରାହ୍ମଣଙ୍କର ବ୍ରହ୍ମତେଜ ବୃଦ୍ଧି ପାଏ, କ୍ଷତ୍ରିୟ ବିଜୟୀ ହୁଏ, ବୈଶ୍ୟ ଧନ ଲାଭ କରେ ଏବଂ ଶୂଦ୍ରକୁ ସୁଖପ୍ରାପ୍ତି ହୁଏ । ସ୍ୱଧର୍ମପରାୟଣ ଶିବଭକ୍ତ ଏ ଚରିତ ଶୁଣିଲେ ତାଙ୍କୁ ସୁଖପ୍ରାପ୍ତି ହୁଏ ଏବଂ ତାଙ୍କର ଶିବଭକ୍ତି ବିଶେଷରୂପେ ବୃଦ୍ଧି ପାଏ ।

ମୁନେ ! ଏବେ ମୁଁ ଶିବଙ୍କ ଏକାଦଶ ଶ୍ରେଷ୍ଠ ଅବତାର ବିଷୟରେ ବର୍ଣ୍ଣନା କରୁଛି, ଶୁଣ । ଏହା ଶ୍ରବଣ କଲେ ଅସତ୍ୟାଦି ଜନିତ ବାଧା କ୍ଲେଶ ଦେଇ ପାରନ୍ତି ନାହିଁ । ପୂର୍ବକାଳର କଥା । ଥରେ ଇନ୍ଦ୍ରାଦି ଦେବଗଣ ଦୈତ୍ୟମାନଙ୍କ ଠାରୁ ପରାସ୍ତ ହୋଇଗଲେ । ସେମାନେ ଭୟଭୀତ ହୋଇ ଅମରାବତୀ ଛାଡ଼ି ପଳାୟନ କଲେ । ସେମାନେ ଦୈତ୍ୟଙ୍କ ଦ୍ୱାରା ଅତ୍ୟନ୍ତ ପୀଡ଼ିତ ହୋଇ କଶ୍ୟପଙ୍କ ପାଖରେ ପହଞ୍ଚିଲେ । ସେଠାରେ ସେମାନେ ପରମ ବ୍ୟାକୁଳତାର ସହ କର ଯୋଡ଼ି, ମସ୍ତକ ଅବନତ କରି ଓ ତାଙ୍କ ପାଦ ତଳେ ପଡ଼ି ଅଭିବାଦନ କଲେ ଏବଂ ତାଙ୍କୁ ସ୍ତବନ କରି ସାରି ଆପଣା ଆଗମନର କାରଣ ପ୍ରକାଶ କଲେ । ପୁଣି ଦୈତ୍ୟଙ୍କ ଦ୍ୱାରା ପରାଜିତ ହୋଇ ଭୋଗୁଥିବା ସମସ୍ତ ଦୁଃଖ ତାଙ୍କ ଆଗରେ ନିବେଦନ କଲେ । ତାତ ! ସେମାନଙ୍କ ପିତା କଶ୍ୟପ ଦେବତାଙ୍କ କଷ୍ଟ କଥା ଶୁଣି ଅଧିକ ଦୁଃଖୀ ହେଲେ ନାହିଁ; କାରଣ ତାଙ୍କ ବୁଦ୍ଧି ଶିବଙ୍କ ପ୍ରତି ଅନୁରକ୍ତ ଥିଲା । ମୁନେ ! ଶାନ୍ତବୁଦ୍ଧି ମୁନି କଶ୍ୟପ ଧୈର୍ଯ୍ୟଧାରଣ କରି ଦେବତାଙ୍କୁ ଆଶ୍ୱାସନା ଦେଲେ ଏବଂ ନିଜେ ପରମ ହର୍ଷରେ ବିଶ୍ୱନାଥଙ୍କ ଧାମ କାଶୀ ଅଭିମୁଖେ ଯାତ୍ରା କଲେ । ସେଠାରେ ପହଞ୍ଚି ସେ ଗଙ୍ଗାଜଳରେ ସ୍ନାନ କରି ନିଜର ନିତ୍ୟ ନିୟମ ପୂରଣ କଲେ ଏବଂ ତା'ପରେ ଆଦରପୂର୍ବକ ଉମାଙ୍କ ସହିତ ସର୍ବେଶ୍ୱର ଭଗବାନ ବିଶ୍ୱନାଥଙ୍କୁ ଭଲଭାବରେ ଅର୍ଚ୍ଚନା କଲେ । ଏହାପରେ ଶମ୍ଭୁଙ୍କ ଦର୍ଶନ ପାଇବା ଉଦ୍ଦେଶ୍ୟରେ ଗୋଟିଏ ଶିବଲିଙ୍ଗ ସ୍ଥାପନ କରି ଦେବତାଙ୍କ ହିତାର୍ଥେ ପରମ ପ୍ରସନ୍ନତାପୂର୍ବକ ଘୋର ତପସ୍ୟା କଲେ । ମୁନେ ! ଧୈର୍ଯ୍ୟଶାଳୀ ମୁନିବର କଶ୍ୟପ ଶିବଙ୍କ ପାଦପଦ୍ମରେ ଅନୁରକ୍ତ ରହି ଏପରି ତପସ୍ୟା କରୁ କରୁ ବହୁକାଳ ବିତିଗଲା । ସାଧୁଜନଙ୍କ ଗତିସ୍ୱରୂପ ମହାଦେବ ଋଷି କଶ୍ୟପଙ୍କୁ ବର ଦେବାକୁ ସେଠାରେ ଆବିର୍ଭୂତ ହେଲେ । ଭକ୍ତବତ୍ସଳ ମହେଶ୍ୱର ପରମ ପ୍ରସନ୍ନ ଥିଲେ, ତେଣୁ ସେ ତାଙ୍କ ଭକ୍ତ ମୁନିବର କଶ୍ୟପଙ୍କୁ

ବର ମାଗିବାକୁ କହିଲେ । ମହେଶ୍ୱରଙ୍କ ଦର୍ଶନ ପାଇ ଦେବତାଙ୍କ ପିତା କଶ୍ୟପ ହର୍ଷିତ ହୋଇ ଉଠିଲେ । ସେ ତାଙ୍କ ପାଦତଳେ ପଡ଼ି ପ୍ରଣାମ କରିସାରି ଯୋଡ଼ହସ୍ତପୂର୍ବକ ସ୍ତୁତି କରି କହିଲେ— ‘‘ହେ ମହେଶ୍ୱର ! ମୁଁ ସର୍ବଥା ଆପଣଙ୍କର ଶରଣାଗତ । ସ୍ୱାମିନ୍ ! ଦେବତାଙ୍କ ଦୁଃଖ ବିନାଶ କରି ମୋର ଅଭିଳାଷ ପୂରଣ କରନ୍ତୁ । ଦେବେଶ ! ମୁଁ ପୁତ୍ରଙ୍କ ଦୁଃଖରେ ଅତି ଦୁଃଖିତ । ତେଣୁ ହେ ଈଶ୍ୱର ! ମୋତେ ସୁଖ ପ୍ରଦାନ କରନ୍ତୁ; କାରଣ ଆପଣ ହିଁ ଦେବତାଙ୍କର ସହାୟକ । ପ୍ରଭୋ ! ମହାବଳୀ ଦୈତ୍ୟଗଣ ଦେବତା ଓ ଯକ୍ଷଙ୍କୁ ପରାଜିତ କରିଦେଇଛନ୍ତି । ତେଣୁ ଶମ୍ଭୋ ! ଆପଣ ମୋର ପୁତ୍ରରୂପରେ ଅବତୀର୍ଣ୍ଣ ହୋଇ ଦେବତାଙ୍କ ନିମନ୍ତେ ଆନନ୍ଦଦାତା ହୁଅନ୍ତୁ ।’’

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! କଶ୍ୟପ ଏପରି କହିବାରୁ ସର୍ବେଶ୍ୱର ଭଗବାନ ଶିବ ‘ତଥାସ୍ତୁ’ କହି ତାଙ୍କ ସମ୍ମୁଖରୁ ଅନ୍ତର୍ହିତ ହୋଇଗଲେ । କଶ୍ୟପ ମଧ୍ୟ ପରମ ଆନନ୍ଦରେ ସ୍ୱସ୍ଥାନକୁ ଫେରିଗଲେ ଏବଂ ସେଠାରେ ସମସ୍ତ ବୃତ୍ତାନ୍ତ ଆଦରପୂର୍ବକ ଦେବତାଙ୍କୁ କହିଦେଲେ । ଏହାପରେ ଭଗବାନ ଶିବ ନିଜ ବଚନକୁ ସତ୍ୟ କରିବାକୁ କଶ୍ୟପଙ୍କ ଦ୍ୱାରା ସୁରଭୀଙ୍କ ଗର୍ଭରୁ ଏକାଦଶ ରୂପ ଧାରଣ କରି ଅବତରିତ ହେଲେ । ସେତେବେଳେ ମହାନ୍ ଉତ୍ସବ ପାଳନ କରାଗଲା । ସାରା ଜଗତ୍ ଶିବମୟ ହୋଇଗଲା । ମୁନି କଶ୍ୟପଙ୍କ ସମେତ ସମସ୍ତ ଦେବତା ଆନନ୍ଦରେ ବିଭୋର ହୋଇଗଲେ । ସେହି ପୁତ୍ରମାନଙ୍କ ନାମ ରଖାଗଲା—କପାଳୀ, ପିଙ୍ଗଳ, ଭୀମ, ବିରୂପାକ୍ଷ, ବିଲୋହିତ, ଶାସ୍ତା, ଅଜପାଦ, ଅହିର୍ବୁଧ୍ନ୍ୟ, ଶମ୍ଭୁ, ଚଣ୍ଡ ଓ ଭବ । ଏହି ଏକାଦଶ ରୁଦ୍ର ସୁରଭୀଙ୍କ ପୁତ୍ର ନାମରେ ପ୍ରସିଦ୍ଧ ହେଲେ । ଏମାନେ ସୁଖର ନିବାସ ସ୍ଥାନ ଅଟନ୍ତି । ଏମାନେ ଦେବତାଙ୍କର କାର୍ଯ୍ୟସିଦ୍ଧି ନିମନ୍ତେ ଶିବରୂପରେ ଉତ୍ପନ୍ନ ହୋଇଥିଲେ । ଉକ୍ତ କଶ୍ୟପନନ୍ଦନ ରୁଦ୍ରମାନେ ପରମ ବଳଶାଳୀ ଓ ପରାକ୍ରମୀ ଥିଲେ । ଏମାନେ ସଂଗ୍ରାମରେ ଦେବତାଙ୍କୁ ସହାୟତା କରି ଦୈତ୍ୟଙ୍କୁ ସଂହାର କରିଥିଲେ । ଏମାନଙ୍କ କୃପାରୁ ଇନ୍ଦ୍ରାଦି ଦେବଗଣ ଦୈତ୍ୟମାନଙ୍କୁ ଜିଣି ନିର୍ଭୟ ହୋଇଗଲେ । ସେମାନଙ୍କର ମନ ସୁସ୍ଥ ହେଲା ଏବଂ ସେମାନେ ନିଜ ନିଜ କାର୍ଯ୍ୟ ସମ୍ଭାଳିବାକୁ ଲାଗିଲେ । ଏବେ ମଧ୍ୟ ଶିବରୂପଧାରୀ ସେହି ମହାରୁଦ୍ରମାନେ ଦେବତାଙ୍କ ରକ୍ଷା ପାଇଁ ସର୍ବଦା ସ୍ୱର୍ଗରେ ବିରାଜମାନ ଅଛନ୍ତି । ତାତ ! ମୁଁ ତୁମ ସମ୍ମୁଖରେ ଶିବଙ୍କର ଏକାଦଶ ରୁଦ୍ରାବତାର ବିଷୟରେ ବର୍ଣ୍ଣନା କରିଦେଲି । ଏ ସମସ୍ତେ ଜଗତ ପାଇଁ ସୁଖଦାୟକ । ଉକ୍ତ ନିର୍ମଳ ଆଖ୍ୟାନ ସମସ୍ତ ପାପର ବିନାଶକ, ଧନ, ଯଶ ଓ ଆୟୁ ପ୍ରଦାତା ଏବଂ ସମସ୍ତ ମନୋରଥ ପୂର୍ଣ୍ଣକାରୀ ।

(ଅଧ୍ୟାୟ ୧୬—୧୮)



## ଶିବଙ୍କର ଦୁର୍ବାସା ଅବତାର ଓ ହନୁମତ୍ ଅବତାର ପ୍ରସଙ୍ଗ

ନନ୍ଦୀଶ୍ୱର କହୁଛନ୍ତି—ମହାମୁନେ ! ଏବେ ତୁମେ ଶିବଙ୍କର ଦୁର୍ବାସା ଅବତାର ଚରିତ ପ୍ରେମପୂର୍ବକ ଶ୍ରବଣ କର । ଶିବ ଧର୍ମ ନିମନ୍ତେ ହିଁ ଦୁର୍ବାସାଙ୍କ ରୂପରେ ଅବତୀର୍ଣ୍ଣ ହୋଇଥିଲେ । ଅନସୂୟାଙ୍କ ସ୍ୱାମୀ ବ୍ରହ୍ମବେତ୍ତା ତପସ୍ୱୀ ଅତ୍ରି ବ୍ରହ୍ମାଙ୍କ ନିର୍ଦ୍ଦେଶାନୁସାରେ ସପତ୍ନୀକ ଋକ୍ଷକୁଳ ପର୍ବତକୁ ଯାଇ ପୁତ୍ରକାମନାରେ ଘୋର ତପସ୍ୟା କଲେ । ତାଙ୍କ ତପସ୍ୟାରେ ପ୍ରସନ୍ନ ହୋଇ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ତାଙ୍କ ଆଶ୍ରମକୁ ଆସିଲେ । ସେମାନେ କହିଲେ—‘‘ଆମେ ତିନିଜଣ ସଂସାରର ଈଶ୍ୱର । ଆମ ଅଂଶରୁ ତୁମର ତିନୋଟି ପୁତ୍ର ହେବେ । ସେମାନେ ତ୍ରିଲୋକରେ ବିଖ୍ୟାତ ହେବା ସହ

ମାତାପିତାଙ୍କ ଯଶବର୍ଦ୍ଧନକାରୀ ହେବେ ।'' ଏପରି କହି ସେମାନେ ଚାଲିଗଲେ । ବ୍ରହ୍ମାଙ୍କ ଅଂଶରୁ 'ଚନ୍ଦ୍ର' ଜାତ ହେଲେ; ଦେବତାମାନେ ତାଙ୍କୁ ସମୁଦ୍ରରେ ପକାଇବା ପରେ ସେ ପୁନଃ ସମୁଦ୍ରରୁ ପ୍ରକଟ ହୋଇଥିଲେ । ବିଷ୍ଣୁଙ୍କ ଅଂଶରୁ ଶ୍ରେଷ୍ଠ ସନ୍ନ୍ୟାସ-ପଦ୍ଧତିର ପ୍ରଚଳନକାରୀ 'ଦତ୍ତ' ଏବଂ ରୁଦ୍ରଙ୍କ ଅଂଶରୁ ମୁନିବର 'ଦୁର୍ବାସା' ଅବତରିତ ହେଲେ ।

ଏହି ଦୁର୍ବାସା ହିଁ ମହାରାଜ ଅମ୍ବରୀଷଙ୍କର ପରୀକ୍ଷା ନେଇଥିଲେ । ସୁଦର୍ଶନ ଚକ୍ର ଏହାଙ୍କର ପିଛା କଲା ଏବଂ ଶିବଙ୍କ ଆଦେଶରେ ଅମ୍ବରୀଷ ପ୍ରାର୍ଥନା କରିବାରୁ ଚକ୍ର ଶାନ୍ତ ହେଲା । ସେ ଭଗବାନ ରାମଙ୍କର ପରୀକ୍ଷା ନେଇଥିଲେ । ମୁନିଙ୍କ ବେଶ ଧାରଣ କରି କାଳ ଶ୍ରୀରାମଙ୍କ ଆଗରେ ଏହି ସର୍ତ୍ତ ରଖିଥିଲେ ଯେ ''ମୋ ସଙ୍ଗେ କଥାବାର୍ତ୍ତା କରିବା ସମୟରେ ଶ୍ରୀରାମଙ୍କ ପାଖକୁ ଆଉ କେହି ଯେପରି ନ ଆସିବେ । ଯେ ଆସିବ ତାହାକୁ ନିର୍ବାସିତ କରିଦିଆଯିବ ।'' ଦୁର୍ବାସା ଜିଦି କରି ଲକ୍ଷ୍ମଣଙ୍କୁ ପଠାଇଲେ, ତେଣୁ ଶ୍ରୀରାମ ତୁରନ୍ତ ଲକ୍ଷ୍ମଣଙ୍କୁ ତ୍ୟାଗ କରିଦେଲେ । ଏହି ଦୁର୍ବାସା ହିଁ ଭଗବାନ ଶ୍ରୀକୃଷ୍ଣଙ୍କୁ ପରୀକ୍ଷା କଲେ ଏବଂ ତାଙ୍କୁ ରୁକ୍ମିଣୀଙ୍କ ସହିତ ରଥରେ ଯୋଚିଲେ । ଦୁର୍ବାସା ମୁନି ଏହିପରି ଅନେକ ବିଚିତ୍ର ଚରିତ୍ର କଲେ ।

ମୁନେ ! ଏବେ ତୁମେ ହନୁମାନଙ୍କ ଚରିତ୍ର ଶ୍ରବଣ କର । ହନୁମତ୍ ରୂପରେ ଶିବ ଅତି ଉତ୍ତମ ଲୀଳା କରିଛନ୍ତି । ବିପ୍ରବର ! ଏହି ରୂପରେ ମହେଶ୍ୱର ଶ୍ରୀରାମଙ୍କର ପରମ ହିତ ସାଧନ କରିଥିଲେ । ସେସବୁ ଚରିତ୍ର ସବୁ ପ୍ରକାର ସୁଖପ୍ରଦାନ କରିଥାଏ । ତୁମେ ତାହାକୁ ପ୍ରେମପୂର୍ବକ ଶ୍ରବଣ କର । ଏକଦା ଅତ୍ୟନ୍ତ ଅଦ୍ଭୁତ ଲୀଳାଧାରୀ ସର୍ବଗୁଣସମ୍ପନ୍ନ ଭଗବାନ ଶମ୍ଭୁଙ୍କୁ ବିଷ୍ଣୁଙ୍କ ମୋହିନୀରୂପର ଦର୍ଶନ ପ୍ରାପ୍ତ ହେଲା । ସେ କାମଦେବଙ୍କ ବାଣରେ ଆହତ ହେବାପରି ନିଜକୁ ବିକ୍ଷୁବ୍ଧ କରିଦେଲେ ଏବଂ ସେହି ପରମେଶ୍ୱର ହିଁ ଶ୍ରୀରାମଙ୍କ କାର୍ଯ୍ୟ ସମ୍ପନ୍ନ କରିବା ଉଦ୍ଦେଶ୍ୟରେ ବୀର୍ଯ୍ୟପାତ କରିଦେଲେ । ଉକ୍ତ ବୀର୍ଯ୍ୟକୁ ସପ୍ତର୍ଷିମାନେ ପତ୍ରପୁଟକରେ ସ୍ଥାପିତ କରି ରଖିଲେ; କାରଣ ଶିବ ହିଁ ରାମଙ୍କ କାର୍ଯ୍ୟର ସଫଳତା ନିମନ୍ତେ ଆଦରପୂର୍ବକ ସେମାନଙ୍କ ମନରେ ଏହିପରି ପ୍ରେରଣା ପ୍ରଦାନ କରିଥିଲେ । ତା'ପରେ ସେହି ମହର୍ଷିମାନେ ଶମ୍ଭୁଙ୍କ ବୀର୍ଯ୍ୟକୁ ରାମକାର୍ଯ୍ୟ ନିମନ୍ତେ ଗୌତମକନ୍ୟା ଅଞ୍ଜନୀଙ୍କ ଠାରେ ତାଙ୍କ କର୍ଣ୍ଣପଥ ଦେଇ ସ୍ଥାପିତ କରିଦେଲେ । ଏହାପରେ ଯଥାସମୟରେ ତାଙ୍କ ଗର୍ଭରୁ ଶମ୍ଭୁ ମହାନ୍ ବଳ ଓ ପରାକ୍ରମରେ ସମ୍ପନ୍ନ ବାନରଶରୀର ଧାରଣ କରି ଉତ୍ପନ୍ନ ହେଲେ; ତାଙ୍କର ନାମ ହେଲା ହନୁମାନ୍ । ମହାବଳୀ କପୀଶ୍ୱର ହନୁମାନ ବାଲ୍ୟକାଳରେ ଉଦିତ ସୂର୍ଯ୍ୟବିମ୍ବକୁ ଗୋଟିଏ ଛୋଟ ଫଳ ବୋଲି ବୁଝି ଗିଳି ପକାଇଥିଲେ । ପରେ ଦେବତାମାନେ ପ୍ରାର୍ଥନା କରିବାରୁ ସେ ତାଙ୍କୁ ମହାବଳୀ ସୂର୍ଯ୍ୟ ବୋଲି ବୁଝି ପାରି ପାଟିରୁ ବାହାର କରି ପକାଇଥିଲେ । ଏ ଘଟଣାରୁ ଦେବର୍ଷିମାନେ ତାଙ୍କୁ ଶିବଙ୍କ ଅବତାର ବୋଲି ଜାଣିଗଲେ ଏବଂ ଅନେକ ପ୍ରକାର ବର ପ୍ରଦାନ କଲେ । ତା'ପରେ ହନୁମାନ ଅତ୍ୟନ୍ତ ହର୍ଷିତ ହୋଇ ମାଆଙ୍କ ପାଖକୁ ଯାଇ ସମସ୍ତ ବୃତ୍ତାନ୍ତ କହିଲେ । ଏହାପରେ ମାଆଙ୍କ ଆଜ୍ଞାରେ ଧୀର-ବୀର ହନୁମାନ ନିତ୍ୟ ସୂର୍ଯ୍ୟଙ୍କ ନିକଟକୁ ଯାଇ ତାଙ୍କ ଠାରୁ ଅନାୟାସରେ ସମସ୍ତ ପ୍ରକାର ବିଦ୍ୟା ଶିକ୍ଷା କଲେ । ତତ୍‌ପଶ୍ଚାତ୍ ରୁଦ୍ରଙ୍କ ଅଂଶଭୂତ କପିଶ୍ରେଷ୍ଠ ହନୁମାନ ସୂର୍ଯ୍ୟଙ୍କ ଆଜ୍ଞାରେ ସୂର୍ଯ୍ୟାଂଶରୁ ଉତ୍ପନ୍ନ ସୁଗ୍ରୀବଙ୍କ ନିକଟକୁ ଗଲେ । ସେଥିପାଇଁ ତାଙ୍କୁ ମାଆଙ୍କ ଠାରୁ ମଧ୍ୟ ଅନୁମତି ମିଳିଥିଲା ।

ଏହାପରେ ନନ୍ଦୀଶ୍ୱର ଭଗବାନ ଶ୍ରୀରାମଙ୍କର

ସମସ୍ତ ଚରିତ୍ର ସଂକ୍ଷେପରେ ବର୍ଣ୍ଣନା କରିସାରି କହିଲେ–ମୁନେ ! ଏହି ପ୍ରକାରେ କପିଶ୍ରେଷ୍ଠ ହନୁମାନ ଶ୍ରୀରାମଙ୍କର ସମସ୍ତ କାର୍ଯ୍ୟ ସମ୍ପନ୍ନ



କଲେ, ନାନା ପ୍ରକାର ଲୀଳା କଲେ, ଅସୁରଙ୍କ ମାନ ମର୍ଦ୍ଦନ କଲେ, ଭୂପୃଷ୍ଠରେ ରାମଭକ୍ତି ସ୍ଥାପନା କଲେ ଏବଂ ସ୍ୱୟଂ ଭକ୍ତାଗ୍ରଗଣ୍ୟ ହୋଇ ସୀତାରାମଙ୍କୁ ସୁଖ ପ୍ରଦାନ କଲେ । ରୁଦ୍ରାବତାର ହନୁମାନ ହିଁ ଲକ୍ଷ୍ମଣଙ୍କ ପ୍ରାଣଦାତା, ସମସ୍ତ ଦେବତାଙ୍କର ଗର୍ବହାରୀ ଓ ଭକ୍ତଙ୍କର ଉଦ୍ଧାରକାରୀ ଅଟନ୍ତି । ମହାବୀର ହନୁମାନ ସଦା ରାମକାର୍ଯ୍ୟରେ ତତ୍ପର ରହିଥାନ୍ତି; ଜଗତରେ ସେ 'ରାମଦୂତ' ନାମରେ ବିଖ୍ୟାତ, ଦୈତ୍ୟଗଣଙ୍କ ସଂହାରକ ଓ ଭକ୍ତବତ୍ସଳ ଅଟନ୍ତି । ତାତ ! ମୁଁ ହନୁମାନଙ୍କ ଶ୍ରେଷ୍ଠ ଚରିତ ବର୍ଣ୍ଣନା କରିଦେଲି । ଏହା ଧନ, କୀର୍ତ୍ତି ଓ ଆୟୁବର୍ଦ୍ଧକ ତଥା ସମସ୍ତ ଅଭୀଷ୍ଟ ଫଳପ୍ରଦାତା । ଯେଉଁ ମନୁଷ୍ୟ ଏହି ଚରିତ୍ରକୁ ଭକ୍ତିପୂର୍ବକ ଶୁଣେ ଅଥବା ସମାହିତ ଚିତ୍ତରେ ଶୁଣାଏ, ସେ ଇହଲୋକରେ ସମସ୍ତ ଭୋଗ ଉପଭୋଗ କରି ଶେଷରେ ପରମ ମୋକ୍ଷ ପ୍ରାପ୍ତ ହୁଏ ।

(ଅଧ୍ୟାୟ ୧୯-୨୦)



## ଶିବଙ୍କର ପିପ୍ପଲାଦ-ଅବତାର ଉପାଖ୍ୟାନରେ ଦେବତାମାନେ ଦଧୀଚିମୁନିଙ୍କୁ ଅସ୍ଥି ମାଗିବା ପ୍ରସଙ୍ଗ, ଦଧୀଚିଙ୍କର ଦେହତ୍ୟାଗ, ତାଙ୍କ ଅସ୍ଥିରେ ବଜ୍ର ନିର୍ମାଣ ଓ ତଦ୍ଦ୍ୱାରା ବୃତ୍ରାସୁର ବଧ, ସୁବର୍ଚ୍ଚାଙ୍କର ଦେବଗଣଙ୍କୁ ଅଭିଶାପ, ପିପ୍ପଲାଦଙ୍କ ଜନ୍ମ ଓ ତାଙ୍କର ବିସ୍ତୃତ ବୃତ୍ତାନ୍ତ

ଏହାପରେ ମହେଶାବତାର ତଥା ବୃଷେଶାବତାର ଚରିତ୍ର ଶୁଣାଇ ନନ୍ଦୀଶ୍ୱର କହିଲେ–ହେ ମହାବୁଦ୍ଧିମାନ୍ ସନତ୍କୁମାର ! ଏବେ ଅତ୍ୟନ୍ତ ଆହ୍ଲାଦପୂର୍ବକ ମହେଶ୍ୱରଙ୍କର 'ପିପ୍ପଲାଦ' ନାମକ ପରମୋତ୍କୃଷ୍ଟ ଅବତାର ବିଷୟରେ ଶ୍ରବଣ କର । ଏହି ଉତ୍ତମ ଆଖ୍ୟାନ ଭକ୍ତି ବୃଦ୍ଧି କରିଥାଏ । ମୁନୀଶ୍ୱର ! ଏକଦା ଦୈତ୍ୟମାନେ ବୃତ୍ରାସୁରର ସହାୟତାରେ ଇନ୍ଦ୍ରାଦି ଦେବତାଙ୍କୁ ପରାଜିତ କରିଦେଲେ । ଏହାପରେ ଦେବତାମାନେ ଦଧୀଚିଙ୍କ ଆଶ୍ରମରେ ନିଜ ନିଜ ଅସ୍ତ୍ରମାନ ଫୋପାଡ଼ି ଦେଇ ପରାଜୟ ସ୍ୱୀକାର କଲେ । ପୀଡ଼ିତ ଇନ୍ଦ୍ରାଦି ଦେବତାମାନେ ଓ ଦେବର୍ଷିମାନେ ଅବିଳମ୍ବେ ବ୍ରହ୍ମଲୋକରେ ପହଞ୍ଚିଲେ ଏବଂ ସେଠାରେ ବ୍ରହ୍ମାଙ୍କୁ ସେମାନଙ୍କର ସମସ୍ତ ଦୁଃଖ କାହାଣୀ ଶୁଣାଇଲେ । ଦେବତାଙ୍କର ଗୁହାରି ଶୁଣିସାରି ଲୋକପିତାମହ ବ୍ରହ୍ମା ସମସ୍ତ ରହସ୍ୟ ଯଥାର୍ଥରୂପେ ଉନ୍ମୋଚନ କରି କହିଲେ–"ଏସବୁ ହେଉଛି ତ୍ୱଷ୍ଟାଙ୍କର କାଣ୍ଡ । ତ୍ୱଷ୍ଟା ହିଁ ତୁମମାନଙ୍କୁ ବଧ କରିବା ପାଇଁ ତପସ୍ୟା ଦ୍ୱାରା

ଏହି ମହାତେଜସ୍ୱୀ ବୃତ୍ରାସୁରକୁ ଉତ୍ପନ୍ନ କରିଛନ୍ତି । ଏ ଦୈତ୍ୟ ଅତ୍ୟନ୍ତ ଆତ୍ମବଳସମ୍ପନ୍ନ ଏବଂ ସମସ୍ତ ଦୈତ୍ୟଙ୍କର ଅଧିପତି । ତେଣୁ ଏଭଳି କିଛି ପ୍ରଯତ୍ନ କର, ଯାହା ଫଳରେ ଏହାର ବଧ ହୋଇପାରିବ । ବୁଦ୍ଧିମାନ୍ ଦେବରାଜ ! ମୁଁ ଧର୍ମକୁ ଆଖି ଆଗରେ ରଖି ଗୋଟିଏ ଉପାୟ କହୁଛି, ଶୁଣ । ମହାମୁନି ଦଧୀଚି ହେଉଛନ୍ତି ବଡ଼ ତପସ୍ୱୀ ଓ ଜିତେନ୍ଦ୍ରିୟ । ସେ ପୂର୍ବକାଳରେ ଶିବଙ୍କୁ ଉତ୍ତମରୂପେ ଆରାଧନା କରି ବର ଲାଭ କରିଛନ୍ତି ଯେ ତାଙ୍କ ଅସ୍ଥି ବଜ୍ରତୁଲ୍ୟ ହୋଇଯିବ । ତେଣୁ ତୁମେମାନେ ତାଙ୍କୁ ତାଙ୍କର ଅସ୍ଥି ମାଗ । ସେ ନିଶ୍ଚୟ ଦେଇଦେବେ । ସେହି ଅସ୍ଥିରେ ବଜ୍ରଦଣ୍ଡ ନିର୍ମାଣ କରି ତୁମେ ନିଶ୍ଚୟ ବୃତ୍ରାସୁରକୁ ମାରି ପାରିବ ।''

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ବ୍ରହ୍ମାଙ୍କ ମୁଖରୁ ଏ କଥା ଶୁଣି ଇନ୍ଦ୍ର ଦେବଗୁରୁ ବୃହସ୍ପତିଙ୍କୁ ତଥା ଦେବତାମାନଙ୍କୁ ସଙ୍ଗରେ ଧରି ଅବିଳମ୍ବେ ଦଧୀଚି ଋଷିଙ୍କ ଆଶ୍ରମକୁ ଗଲେ । ସେଠାରେ ଇନ୍ଦ୍ର ସୁବର୍ଚ୍ଚାଙ୍କ ସହିତ ଦଧୀଚି ମୁନିଙ୍କୁ ଦର୍ଶନ କଲେ ଏବଂ ଆଦରପୂର୍ବକ ହାତ ଯୋଡ଼ି ନମସ୍କାର କଲେ । ଏହାପରେ ଦେବଗୁରୁ ବୃହସ୍ପତି ଓ ଅନ୍ୟ ଦେବତାମାନେ ମଧ୍ୟ ନମ୍ରତାପୂର୍ବକ ତାଙ୍କୁ ପ୍ରଣତି ଜଣାଇଲେ । ଦଧୀଚି ମୁନି ତ ଶ୍ରେଷ୍ଠ ବିଦ୍ୱାନ୍ ଥିଲେ, ସେ ଅବିଳମ୍ବେ ସେମାନଙ୍କ ଆସିବାର ଅଭିପ୍ରାୟକୁ ଜାଣିଗଲେ । ସେ ନିଜ ପତ୍ନୀ ସୁବର୍ଚ୍ଚାଙ୍କୁ ଆଶ୍ରମରୁ ଅନ୍ୟତ୍ର ପଠାଇଦେଲେ । ଦେବରାଜ ଇନ୍ଦ୍ର ତ ସ୍ୱାର୍ଥସାଧନରେ ଅତି ଦକ୍ଷ ଥିଲେ, ସେ ନିଜ ପ୍ରୟୋଜନ ଦୃଷ୍ଟିରୁ ମୁନିବରଙ୍କୁ କହିଲେ ।

ଇନ୍ଦ୍ର କହିଲେ—ମୁନେ ! ଆପଣ ମହାନ୍ ଶିବଭକ୍ତ, ଦାନୀ ଓ ଶରଣାଗତରକ୍ଷକ । ଏହା ଜାଣି ଆମେ ସବୁ ଦେବତା ଓ ଦେବର୍ଷି ଆପଣଙ୍କ ଶରଣକୁ ଆସିଛୁ । ବିପ୍ରବର ! ଆପଣ ଆପଣଙ୍କର ବଜ୍ରମୟୀ ଅସ୍ଥିମାନ ଆମକୁ ଦିଅନ୍ତୁ; କାରଣ ମୁଁ ସେଥିରେ ବଜ୍ର ନିର୍ମାଣ କରି ସେ ଦେବଦ୍ରୋହୀକୁ ବଧ କରିପାରିବି ।'' ଇନ୍ଦ୍ର ଏପରି କହିବାରୁ ପରୋପକାର-ପରାୟଣ ଦଧୀଚି ମୁନି ନିଜର ସ୍ୱାମୀ ଶିବଙ୍କୁ ଧ୍ୟାନ କରି ଆପଣା ଦେହତ୍ୟାଗ କରିଦେଲେ । ତାଙ୍କର ସମସ୍ତ ବନ୍ଧନ କଟିଯାଇଥିଲା, ତେଣୁ ସେ ତୁରନ୍ତ ବ୍ରହ୍ମଲୋକକୁ ଚାଲିଗଲେ । ସେତେବେଳେ ଆକାଶରୁ ପୁଷ୍ପବୃଷ୍ଟି ହେଲା ଏବଂ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ତା'ପରେ ଇନ୍ଦ୍ର ସୁରଭି ନାମକ ଧେନୁକୁ ଡକାଇ ମୁନିଙ୍କ ଶରୀରକୁ ଚଟାଇଲେ ଏବଂ ତାଙ୍କ ଅସ୍ଥିରେ ଅସ୍ତ୍ର ନିର୍ମାଣ କରିବା ପାଇଁ ବିଶ୍ୱକର୍ମାଙ୍କୁ ଆଦେଶ ଦେଲେ । ଇନ୍ଦ୍ରଙ୍କ ଆଜ୍ଞା ପାଇ ବିଶ୍ୱକର୍ମା ଶିବଙ୍କ ତେଜରେ ସୁଦୃଢ଼ ହୋଇଥିବା ମୁନିଙ୍କ ହାଡ଼ରେ ସମସ୍ତ ଅସ୍ତ୍ରର କଳ୍ପନା କଲେ । ତାଙ୍କ ମେରୁଦଣ୍ଡରେ ବଜ୍ର ଓ ବ୍ରହ୍ମଶିର ନାମକ ଶର ନିର୍ମାଣ କଲେ ଏବଂ ଅନ୍ୟ ଅସ୍ଥିମାନଙ୍କରେ ଆହୁରି ଅନେକ ପ୍ରକାର ଅସ୍ତ୍ର ନିର୍ମାଣ କଲେ । ଏହାପରେ ଶିବଙ୍କ ତେଜରେ ଉତ୍କର୍ଷ ଲାଭ କରିଥିବା ଇନ୍ଦ୍ର ସେହି ବଜ୍ରକୁ ନେଇ କ୍ରୋଧପୂର୍ବକ ବୃତ୍ରାସୁର ଉପରେ ଆକ୍ରମଣ କରିଦେଲେ, ଯେପରି କି ରୁଦ୍ର ଯମରାଜ ଉପରେ କରିଥିଲେ । ଇନ୍ଦ୍ର କବଚ ଇତ୍ୟାଦିରେ ସୁରକ୍ଷିତ ହୋଇ ତୁରନ୍ତ ନିଜର ପରାକ୍ରମ ପ୍ରକଟନପୂର୍ବକ ଉକ୍ତ ବଜ୍ର ଦ୍ୱାରା ବୃତ୍ରାସୁରର ପର୍ବତଶିଖର ତୁଲ୍ୟ ମସ୍ତକକୁ କାଟି ପକାଇଲେ । ତାତ ! ସେତେବେଳେ ସ୍ୱର୍ଗବାସୀମାନେ ମହାନ୍ ଉତ୍ସବ ପାଳନ କଲେ, ଇନ୍ଦ୍ରଙ୍କ ଉପରେ ପୁଷ୍ପବୃଷ୍ଟି ହେଲା ଓ ସମସ୍ତ ଦେବତା ତାଙ୍କୁ ସ୍ତୁତି କଲେ । ମହାନ୍ ଆତ୍ମବଳସମ୍ପନ୍ନ ଦଧୀଚିଙ୍କ ପତିବ୍ରତା ପତ୍ନୀ ସୁବର୍ଚ୍ଚା ସ୍ୱାମୀଙ୍କ ଆଜ୍ଞାପାଳନ ପରେ ନିଜ ଆଶ୍ରମକୁ ଫେରିବା ପରେ ଜାଣିଲେ ଯେ ଦେବତାଙ୍କ କାର୍ଯ୍ୟ ନିମନ୍ତେ ତାଙ୍କ ସ୍ୱାମୀ ମୃତ୍ୟୁବରଣ କରିସାରିଛନ୍ତି । ସେ ଦେବତାମାନଙ୍କୁ ଅଭିଶାପ ଦେଇ କହିଲେ—

ସୁବର୍ଚ୍ଚା କହିଲେ—"ଅହୋ ! ଇନ୍ଦ୍ର ସମେତ ଏ ସମସ୍ତ ଦେବତା ବଡ଼ ଦୁଷ୍ଟ । ଏମାନେ ସ୍ୱାର୍ଥସିଦ୍ଧି କରିବାରେ ନିପୁଣ; ଏମାନେ ମୂର୍ଖ ଏବଂ ଲୋଭୀ । ତେଣୁ ଏ ସମସ୍ତେ ଆଜିଠାରୁ ମୋ ଅଭିଶାପରେ ପଶୁ ହୋଇଯାଆନ୍ତୁ ।" ତପସ୍ୱିନୀ ମୁନିପତ୍ନୀ ସୁବର୍ଚ୍ଚା ଦେବଗଣଙ୍କୁ ଏହିରୂପେ ଅଭିଶାପ ଦେଲେ । ତା'ପରେ ପତିବ୍ରତା ସୁବର୍ଚ୍ଚା ପତିଲୋକ ଯିବାକୁ ସ୍ଥିର କଲେ । ସେ ପରମ ପବିତ୍ର କାଷ୍ଠମାନ ସଂଗ୍ରହ କରି ଚିତା ପ୍ରସ୍ତୁତ କଲେ । ସେତିକିବେଳେ ଶିବଙ୍କ ପ୍ରେରଣାରେ ସୁଖଦାୟିନୀ ଆକାଶବାଣୀ ଶୁଭିଲା । ସେହି ବାଣୀ ମୁନିପତ୍ନୀ ସୁବର୍ଚ୍ଚାଙ୍କୁ ଆଶ୍ୱାସନା ଦେଇ କହିଲା—

ଆକାଶବାଣୀ କହିଲା—**ପ୍ରାଜ୍ଞେ ! ଏପରି ଦୁଃସାହସ କର ନାହିଁ । ମୋ କଥା ଶୁଣ । ତୁମ ଉଦରରେ ମୁନିଙ୍କ ତେଜ ବିଦ୍ୟମାନ ଅଛି । ତେଣୁ ତୁମେ ତାହାକୁ ଯତ୍ନପୂର୍ବକ ଜନ୍ମ ଦିଅ । ତା'ପରେ ତୁମର ଯାହା ଇଚ୍ଛା ହେବ କରିବ; କାରଣ ଶାସ୍ତ୍ରର ଆଦେଶ ଯେ ଗର୍ଭବତୀ ସ୍ତ୍ରୀ ନିଜ ଶରୀରକୁ ଜଳାଇବା ଅର୍ଥାତ୍ ସତୀ ହୋଇଯିବା ଅନୁଚିତ ।**

ନନ୍ଦୀଶ୍ୱର କହୁଛନ୍ତି—**ମୁନୀଶ୍ୱର ! ଏତିକି କହି ଆକାଶବାଣୀ ଚୁପ୍ ହୋଇଗଲା । ତାହାକୁ ଶୁଣି ମୁନିପତ୍ନୀ କ୍ଷଣକ ପାଇଁ ବିସ୍ମୟରେ ପଡ଼ିଗଲେ । ମାତ୍ର ସତୀ ସୁବର୍ଚ୍ଚାଙ୍କର ପତିଲୋକ ଯିବାକୁ ଅଭୀଷ୍ଟ ଥିଲା; ତେଣୁ ସେ ବସିପଡ଼ି ପଥରରେ ନିଜ ଉଦରକୁ ବିଦୀର୍ଣ୍ଣ କରିଦେଲେ । ତାଙ୍କ ଉଦରରୁ ମୁନିଙ୍କ ଅଂଶ ବାହାରି ଆସିଲା । ତା'ର ଶରୀର ପରମ ଦିବ୍ୟ ଓ ଜ୍ୟୋତିର୍ମୟ ଥିଲା । ସେ ଆପଣା ପ୍ରଭାରେ ଦଶଦିଗକୁ ଉଦ୍ଭାସିତ କରିଦେଉଥିଲା । ତାତ ! ଦଧୀଚିଙ୍କ ଉତ୍ତମ ତେଜରୁ ଉତ୍ପନ୍ନ ହୋଇଥିବା ସେହି ଗର୍ଭ ଲୀଳାମୟ ରୁଦ୍ରଙ୍କର ହିଁ ଅବତାର ଥିଲା । ମୁନିପ୍ରିୟା ସୁବର୍ଚ୍ଚା ଏତାଦୃଶ ଦିବ୍ୟରୂପଧାରୀ ପୁତ୍ରକୁ ଦେଖି ମନେ ମନେ ବୁଝିଗଲେ ଯେ ସେ ହେଉଛି ରୁଦ୍ରଙ୍କର ଅବତାର । ଏଣୁ ମହାସାଧ୍ୱୀ ସୁବର୍ଚ୍ଚା ପରମାନନ୍ଦରେ ମଗ୍ନ ହୋଇଗଲେ ଏବଂ ତାହାକୁ ନମସ୍କାର କରି ସ୍ତୁତି କଲେ । ମୁନୀଶ୍ୱର ! ପତିଲୋକ ଯିବାକୁ ଉତ୍ସୁକ ହେଉଥିବା ସୁବର୍ଚ୍ଚା ପୁତ୍ରର ସେହି ଦିବ୍ୟ ସ୍ୱରୂପକୁ ହୃଦୟରେ ଧାରଣ କରି ସ୍ନେହରେ ସ୍ମିତହାସପୂର୍ବକ କହିଲେ—**

ସୁବର୍ଚ୍ଚା କହିଲେ—**ବତ୍ସ ପରମେଶାନ ! ତୁମେ ଏ ଅଶ୍ୱତ୍ଥ ବୃକ୍ଷ ନିକଟରେ ଚିରକାଳ ନିବାସ କର । ମହାଭାଗ ! ତୁମେ ସମସ୍ତ ପ୍ରାଣୀଙ୍କ ପାଇଁ ସୁଖଦାତା ହୁଅ ଏବଂ ମୋତେ ଏବେ ପତିଲୋକ ଯିବାକୁ ଅନୁମତି ଦିଅ । ସେଠାରେ ସ୍ୱାମୀଙ୍କ ସହିତ ରହି ମୁଁ ତୁମର ଏହି ରୁଦ୍ରରୂପକୁ ଧ୍ୟାନ କରିବି ।**

ନନ୍ଦୀଶ୍ୱର କହୁଛନ୍ତି—**ମୁନେ ! ସାଧ୍ୱୀ ସୁବର୍ଚ୍ଚା ପୁତ୍ରକୁ ଏପରି କହି ପରମ ସମାଧି ଦ୍ୱାରା ସ୍ୱାମୀଙ୍କର ଅନୁଗମନ କଲେ । ମୁନିବର ! ଏହିରୂପେ ଦଧୀଚିପତ୍ନୀ ସୁବର୍ଚ୍ଚା ଶିବଲୋକରେ ପହଞ୍ଚି ସ୍ୱାମୀଙ୍କ ସଙ୍ଗେ ମିଳିତ ହେଲେ ଏବଂ ଆନନ୍ଦରେ ଶିବଙ୍କ ସେବାରେ ନିମଗ୍ନ ରହିଲେ । ତାତ ! ଇତିମଧ୍ୟରେ ଇନ୍ଦ୍ରାଦି ଦେବତାମାନେ ହର୍ଷାଧିକ୍ୟରେ ନିମନ୍ତ୍ରିତ ହେଲା ପରି ଆସି ସେଠାରେ ପହଞ୍ଚିଗଲେ । ବ୍ରହ୍ମା ସେହି ବାଳକର ନାମ ରଖିଲେ ପିପ୍ପଳାଦ । ତା'ପରେ ଦେବତାମାନେ ଆନନ୍ଦଉତ୍ସବ କରି ନିଜ ନିଜ ଧାମକୁ ଫେରିଗଲେ । ମହାନ୍ ଐଶ୍ୱର୍ଯ୍ୟଶାଳୀ ପିପ୍ପଳାଦ ସେହି ଅଶ୍ୱତ୍ଥବୃକ୍ଷ ତଳେ ଲୋକଙ୍କ ହିତକାମନାରେ ଚିରକାଳ ପର୍ଯ୍ୟନ୍ତ ତପରେ ପ୍ରବୃତ୍ତ ହେଲେ । ଲୋକାଗ୍ରର ଅନୁକରଣରେ ଏହିପରି ତପସ୍ୟା କରୁ କରୁ ବହୁତ ବର୍ଷ ବିତିଗଲା ।**

**ପିପ୍ପଳାଦ ରାଜା ଅନରଣ୍ୟଙ୍କ କନ୍ୟା ପଦ୍ମାଙ୍କ ସଙ୍ଗେ ବିବାହ କରିବା ପରେ ତାରୁଣ୍ୟ ଲାଭ କରି ତା' ସଙ୍ଗେ ବିଳାସ କଲେ । ପିପ୍ପଳାଦଙ୍କର**

ଦଶଟି ପୁତ୍ର ହେଲେ । ସେମାନେ ସମସ୍ତେ ପିତାଙ୍କ ପରି ମହାତ୍ମା ଓ ଉଗ୍ର ତପସ୍ୱୀ ଥିଲେ । ସେମାନେ ମାତା ପଦ୍ମାଙ୍କ ପାଇଁ ସୁଖବର୍ଦ୍ଧନକାରୀ ଥିଲେ । ମହାପ୍ରଭୁ ଶିବଙ୍କ ଲୀଳାବତାର ମୁନିବର ପିପ୍ପଳାଦ ଏହିରୂପେ ନାନା ପରମ ଐଶ୍ୱର୍ଯ୍ୟଶାଳୀ ଲୀଳା କଲେ । ଲୋକେ ଭୋଗୁଥିବା ଦୁର୍ନିର୍ବାର ଶନୈଶ୍ଚରଙ୍କ ପ୍ରକୋପ ପୀଡ଼ାକୁ ଦେଖି ଲୋକଙ୍କୁ ପ୍ରସନ୍ନତାପୂର୍ବକ ବରଦାନ ଦେଲେ ଯେ "ଜନ୍ମରୁ ଷୋହଳ ବର୍ଷ ପର୍ଯ୍ୟନ୍ତ ମନୁଷ୍ୟଙ୍କୁ ଓ ଶିବଭକ୍ତଙ୍କୁ ଶନିପୀଡ଼ା ହେବ ନାହିଁ । ମୋର ଏ ବଚନ ସର୍ବଥା ସତ୍ୟ । ଯଦି ଶନି ମୋ ବଚନକୁ ଅନାଦର କରି ସେଭଳି ମନୁଷ୍ୟଙ୍କୁ ପୀଡ଼ା ଦେବ, ସେ ନିଃସନ୍ଦେହରେ ଭସ୍ମ ହୋଇଯିବ ।" ହେ ସନତ୍କୁମାର ! ତେଣୁ ତାଙ୍କରି ଭୟରେ ଗ୍ରହଶ୍ରେଷ୍ଠ ଶନୈଶ୍ଚର କ୍ରୋଧିତ ହୋଇଥିଲେ ମଧ୍ୟ ସେଭଳି ଲୋକଙ୍କୁ କଦାପି କଷ୍ଟ ଦିଅନ୍ତି ନାହିଁ । ମୁନିବର ! ଏହା ଥିଲା ଲୀଳାରେ ମନୁଷ୍ୟରୂପ ଧାରଣ କରିଥିବା ପିପ୍ପଳାଦଙ୍କ ଉତ୍ତମ ଚରିତ । ମୁଁ ତୁମକୁ ଏହା ଶୁଣାଇଦେଲି । ଏହା ସମସ୍ତ କାମନା ପୂର୍ଣ୍ଣ କରିଥାଏ । ଗାଧି, କୌଶିକ ଓ ମହାମୁନି ପିପ୍ପଳାଦ—ଏ ତିନିଙ୍କୁ ସ୍ମରଣ କଲେ ଏମାନେ ଶନୈଶ୍ଚର-ଜନିତ ପୀଡ଼ା ନଷ୍ଟ କରିଦିଅନ୍ତି । ପରମ ଜ୍ଞାନୀ ଓ ସାଧୁଜନଙ୍କ ପ୍ରିୟ ମୁନିବର ଶିବଭକ୍ତ ଦଧୀଚି ଧନ୍ୟ ଅଟନ୍ତି; କାରଣ ତାଙ୍କ ଗୃହରେ ସ୍ୱୟଂ ଆତ୍ମଜ୍ଞାନୀ ମହେଶ୍ୱର ପିପ୍ପଳାଦ ନାମକ ପୁତ୍ର ହୋଇ ଉତ୍ପନ୍ନ ହେଲେ । ମୁନେ ! ଏହି ଆଖ୍ୟାନ ନିର୍ଦୋଷ, ସ୍ୱର୍ଗପ୍ରଦାୟକ, ଦୁଷ୍ଟଗ୍ରହଜନିତ ଦୋଷ ନିବାରଣକାରୀ ଏବଂ ସମସ୍ତ ମନୋରଥ ପୂରଣକାରୀ । ଏହା ଶିବଭକ୍ତି ବୃଦ୍ଧି କରିଥାଏ ।

(ଅଧ୍ୟାୟ ୨୧—୨୫)



## ଭଗବାନ ଶିବଙ୍କର ଦ୍ୱିଜେଶ୍ୱରାବତାର କଥା—ରାଜା ଭଦ୍ରାୟୁ ଓ ରାଣୀ କୀର୍ତ୍ତିମାଳିନୀଙ୍କ ଧାର୍ମିକ ଦୃଢ଼ତାର ପରୀକ୍ଷା

ଏହାପରେ ବୈଶ୍ୟନାଥ ଅବତାର କଥା ବର୍ଣ୍ଣନା କରିସାରି ନନ୍ଦୀଶ୍ୱର ଦ୍ୱିଜେଶ୍ୱରାବତାର ପ୍ରସଙ୍ଗ ଆରମ୍ଭ କଲେ । ସେ କହିଲେ—ତାତ ! ପୂର୍ବରୁ ଯେଉଁ ନୃପବର ଭଦ୍ରାୟୁଙ୍କର ପରିଚୟ ଦେଇଥିଲି ଏବଂ ଯାହାଙ୍କ ପ୍ରତି ଭଗବାନ ଶିବ ଋଷଭରୂପରେ ଅନୁଗ୍ରହ କରିଥିଲେ, ସେହି ନରେଶଙ୍କ ଧର୍ମର ପରୀକ୍ଷା ନେବା ପାଇଁ ଭଗବାନ ପୁଣି ଦ୍ୱିଜେଶ୍ୱର-ରୂପରେ ପ୍ରକଟ ହୋଇଥିଲେ । ଋଷଭଙ୍କ ପ୍ରଭାବରେ ରଣଭୂମିରେ ଶତ୍ରୁଙ୍କ ଉପରେ ବିଜୟ ଲାଭ କରି ଶକ୍ତିଶାଳୀ ରାଜକୁମାର ଭଦ୍ରାୟୁ ଯେବେ ରାଜସିଂହାସନରେ ଆରୂଢ଼ ହେଲେ, ସେତେବେଳେ ରାଜା ଚନ୍ଦ୍ରାଙ୍ଗଦ ତଥା ରାଣୀ ସୀମନ୍ତିନୀଙ୍କ ଝିଅ ସତୀ-ସାଧ୍ୱୀ କୀର୍ତ୍ତିମାଳିନୀଙ୍କ ସଙ୍ଗେ ତାଙ୍କର ବିବାହ ହେଲା । ଏକଦା ରାଜା ଭଦ୍ରାୟୁ ତାଙ୍କର ଧର୍ମପତ୍ନୀଙ୍କ ସହ ବସନ୍ତଋତୁରେ ବନବିହାର କରିବା ନିମନ୍ତେ ଗୋଟିଏ ଗହନ ବନକୁ ଗଲେ । ତାଙ୍କ ପତ୍ନୀ ଶରଣାଗତଜନଙ୍କର ପାଳନକାରିଣୀ ଥିଲେ । ରାଜାଙ୍କର ମଧ୍ୟ ସେହିପରି ନିୟମ ଥିଲା । ସେହି ରାଜଦମ୍ପତିଙ୍କର ଆପଣା ଧର୍ମରେ କେତେ ଦୃଢ଼ନିଷ୍ଠା ରହିଛି, ତାହା ପରୀକ୍ଷା କରିବା ନିମନ୍ତେ ଶିବ-ପାର୍ବତୀ ଗୋଟିଏ ଲୀଳା ରଚିଲେ । ଶିବା ଓ ଶିବ ସେହି ବନରେ ବ୍ରାହ୍ମଣୀ ଓ ବ୍ରାହ୍ମଣ ରୂପରେ ପ୍ରକଟ ହେଲେ । ସେ ଦୁହେଁ ଲୀଳାପୂର୍ବକ ଗୋଟିଏ ମାୟାମୟ ବ୍ୟାଘ୍ର ସୃଷ୍ଟି କରିଦେଲେ । ଏହାପରେ ସେ ଦୁହେଁ ଭୟରେ ବ୍ୟାକୁଳ ହୋଇ ବାଘଠାରୁ କିଛି ଦୂରରେ ଆଗେ ଆଗେ ଚିତ୍କାର କରି ଦୌଡ଼ିବାକୁ ଲାଗିଲେ ଏବଂ ବାଘ ସେ ଦୁହିଙ୍କୁ ଗୋଡ଼ାଇଲା । ରାଜା ଏପରି ଅବସ୍ଥାରେ ସେ ଦୁହିଙ୍କୁ

ଦେଖିଦେଲେ । ବ୍ରାହ୍ମଣଦମ୍ପତି ଭୟରେ ବ୍ୟାକୁଳ ହୋଇ ଦୌଡ଼ି ଆସି ମହାରାଜାଙ୍କ ଠାରେ ଶରଣ ପଶିଲେ ଏବଂ କହିଲେ—

ବ୍ରାହ୍ମଣଦମ୍ପତି କହିଲେ—ମହାରାଜ ! ଆମକୁ ରକ୍ଷା କରନ୍ତୁ, ରକ୍ଷା କରନ୍ତୁ । ସେ ବାଘଟା ଆମ ଦୁହିଙ୍କୁ ଖାଇବାକୁ ଗୋଡ଼ାଉଛି । ପ୍ରାଣୀମାନଙ୍କୁ କାଳ ପରି ଭୟଭୀତ କରୁଥିବା ସେହି ହିଂସ୍ର ପ୍ରାଣୀଟା ଆମକୁ ନିଶ୍ଚୟ ଖାଇଯିବ, ଆମକୁ ରକ୍ଷା କରନ୍ତୁ ।

ସେ ଦୁହିଙ୍କ କରୁଣ କ୍ରନ୍ଦନ ଶୁଣି ମହାବୀର ରାଜା ଆପଣା ଧନୁ ଉଠାଉ ଉଠାଉ ବାଘଟି ସେମାନଙ୍କ ନିକଟରେ ପହଞ୍ଚିଗଲା ଏବଂ ବ୍ରାହ୍ମଣୀକୁ ଧରି ପକାଇଲା । ସେ ବିଚ୍ରାରୀ ହା ନାଥ ! ହା ନାଥ ! ହା ପ୍ରାଣବଲ୍ଲଭ ! ହେ ଶମ୍ଭୁ ! ହେ ଜଗଦ୍‌ଗୁରୁ ! ଏହିପରି ଚିତ୍କାର କରି କାନ୍ଦିବାକୁ ଲାଗିଲା । ବାଘଟି ବଡ଼ ଭୟଙ୍କର ଥିଲା । ସେ ବ୍ରାହ୍ମଣୀଙ୍କୁ ଖାଇବାକୁ ଚେଷ୍ଟା କରିବା ମାତ୍ରେ ଭଦ୍ରାୟୁ ତା'ର ମର୍ମସ୍ଥାନକୁ ଲକ୍ଷ୍ୟ କରି ଶର ମାରିଲେ । ମାତ୍ର ଶରାଘାତରେ ବାଘକୁ ଟିକିଏ ହେଲେ କଷ୍ଟ ହେଲା ନାହିଁ । ସେ ବ୍ରାହ୍ମଣୀକୁ ବଳପୂର୍ବକ ଘୋଷାରି ଘୋଷାରି ଦୂରକୁ ନେଇଗଲା । ପତ୍ନୀକୁ ବାଘ ନେଇଯିବା ଦେଖି ବ୍ରାହ୍ମଣଙ୍କୁ ବହୁତ ଦୁଃଖ ହେଲା । ସେ ବାରମ୍ବାର କାନ୍ଦିବାକୁ ଲାଗିଲେ । ବହୁତ ସମୟ ପର୍ଯ୍ୟନ୍ତ କାନ୍ଦିବା ପରେ ସେ ରାଜା ଭଦ୍ରାୟୁଙ୍କୁ କହିଲେ—''ତୁମର ସେ ବଡ଼ ବଡ଼ ଅସ୍ତ୍ର ସବୁ କୁଆଡ଼େ ଗଲା? ଦୁଃଖୀମାନଙ୍କୁ ରକ୍ଷା କରୁଥିବା ତୁମର ସେହି ବିଶାଳ ଧନୁ କୁଆଡ଼େ ଗଲା? ଶୁଣିଥିଲି ଯେ ତୁମଠାରେ କୁଆଡ଼େ ବାରହଜାର ହସ୍ତୀର ବଳ ଅଛି । କୁଆଡ଼େ ଗଲା ସେ ବଳ? ତୁମର ଶଙ୍ଖ, ଖଡ୍‌ଗ ଓ ମନ୍ତ୍ରଯୁକ୍ତ ଅସ୍ତ୍ରବିଦ୍ୟାରେ କି ଲାଭ ହେଲା? ଅନ୍ୟକୁ ସଂକଟରୁ ରକ୍ଷା କରିବା କ୍ଷତ୍ରିୟର ଧର୍ମ । ଧର୍ମଜ୍ଞ ରାଜା ଆପଣା ଧନ ଓ ପ୍ରାଣ ବିନିମୟରେ ମଧ୍ୟ ଶରଣାଗତ ଦୀନଦୁଃଖୀଙ୍କୁ ରକ୍ଷା କରିଥାନ୍ତି । ଯେଉଁମାନେ ପୀଡ଼ିତଙ୍କର ପ୍ରାଣ ରକ୍ଷା କରି ନ ପାରନ୍ତି, ସେଭଳି ଲୋକ ବଞ୍ଚିରହିବା ଅପେକ୍ଷା ମରିଯିବା ବରଂ ଭଲ ।''

ବ୍ରାହ୍ମଣଙ୍କ ମୁଖରୁ ଏପରି ବିଳାପ ଓ ଆପଣା ପରାକ୍ରମର ନିନ୍ଦା ଶୁଣି ରାଜା ଶୋକଗ୍ରସ୍ତ ହୋଇ ମନେ ମନେ ଚିନ୍ତା କଲେ—''ସତରେ, ଆଜି ଭାଗ୍ୟ ପ୍ରତିକୂଳ ହୋଇଯିବାରୁ ମୋର ପରାକ୍ରମ ନିରର୍ଥକ ହୋଇଗଲା । ମୋର ଧର୍ମ ମଧ୍ୟ ନଷ୍ଟ ହୋଇଗଲା । ଏଣୁ ମୋର ସମ୍ପଦ, ରାଜ୍ୟ ଓ ଆୟୁଧ ମଧ୍ୟ ନିଶ୍ଚୟ ନଷ୍ଟ ହୋଇଯିବ ।'' ଏପରି ବିଚ୍ରର କରି ରାଜା ଭଦ୍ରାୟୁ ବ୍ରାହ୍ମଣଙ୍କ ପାଦତଳେ ଲୋଟିପଡ଼ିଲେ ଏବଂ ତାଙ୍କୁ ଧୈର୍ଯ୍ୟ ଦେଇ କହିଲେ—''ବ୍ରହ୍ମନ୍ ! ମୋର ପରାକ୍ରମ ନଷ୍ଟ ହୋଇଯାଇଛି । ମହାମତେ ! ମୋ ପରି କ୍ଷତ୍ରିୟାଧମ ଉପରେ କୃପା କରି ଶୋକ ପରିତ୍ୟାଗ କରନ୍ତୁ । ମୁଁ ଆପଣଙ୍କୁ ମନୋବାଞ୍ଛିତ ପଦାର୍ଥ ଦେବି । ଏ ରାଜ୍ୟ, ଏ ରାଣୀ, ମୋର ଏ ଶରୀର ସବୁ କିଛି ଆପଣଙ୍କ ଅଧୀନରେ । କୁହନ୍ତୁ କ'ଣ ନେବାକୁ ଚ୍ରାହାନ୍ତି?''

ବ୍ରାହ୍ମଣ କହିଲେ—ରାଜନ୍ ! ଅନ୍ଧର ଦର୍ପଣରେ କି କାର୍ଯ୍ୟ? ଯେ ଭିକ୍ଷା ମାଗି ଜୀବନ ନିର୍ବାହ କରେ, ସେ ଅନେକ ଘର ନେଇ କ'ଣ କରିବ? ଯେ ମୂର୍ଖ, ପୁସ୍ତକ ତା'ର କି କାମରେ ଆସିବ? ଯା ପାଖରେ ସ୍ତ୍ରୀ ନାହିଁ, ସେ ଧନ ନେଇ କ'ଣ କରିବ? ମୋର ପତ୍ନୀ ଚ୍ରାଲିଗଲା; ମୁଁ କଦାପି କାମସୁଖ ଉପଭୋଗ କରି ନାହିଁ । ତେଣୁ କାମୋପଭୋଗ ପାଇଁ ଆପଣ ଆପଣଙ୍କର ଏ ବଡ଼ରାଣୀକୁ ମୋତେ ଦେଇଦିଅନ୍ତୁ ।

ରାଜା କହିଲେ—ବ୍ରହ୍ମନ୍ ! କ'ଣ ଏଇଆ ତୁମର ଧର୍ମ? ତୁମ ଗୁରୁ କ'ଣ ତୁମକୁ ଏଇ ଉପଦେଶ ଦେଇଛନ୍ତି? ତୁମେ କ'ଣ ଜାଣି ନାହଁ ଯେ ପରନାରୀକୁ ସ୍ପର୍ଶ କରିବା ସ୍ୱର୍ଗ ଓ ସୁଯଶ ନିମନ୍ତେ

ହାନିକାରକ ବୋଲି ? ପରସ୍ତ୍ରୀ ଉପଭୋଗରୁ ଯେଉଁ ପାପ ହୁଏ, ତାହାକୁ ଶହ ଶହ ପ୍ରାୟଶ୍ଚିତ୍ତ ଦ୍ୱାରା ମଧ୍ୟ ଧୋଇ ହୁଏ ନାହିଁ ।

ବ୍ରାହ୍ମଣ କହିଲେ–ରାଜନ୍ ! ମୁଁ ତପସ୍ୟା ବଳରେ ବ୍ରହ୍ମହତ୍ୟା ଓ ମଦିରାପାନ ପରି ଭୟଙ୍କର ପାପକୁ ମଧ୍ୟ ନଷ୍ଟ କରିପାରିବି; ପୁଣି ପରସ୍ତ୍ରୀଗମନ ବା କେଉଁ ପାପରେ ଗଣା ? ତେଣୁ ଆପଣଙ୍କର ଏଇ ଭାର୍ଯ୍ୟାକୁ ମୋତେ ଦେଇଦିଅନ୍ତୁ, ନଚେତ୍ ଆପଣ ନିଶ୍ଚୟ ନରକରେ ପଡ଼ିବେ ।

ବ୍ରାହ୍ମଣଙ୍କ କଥା ଶୁଣି ରାଜା ମନେ ମନେ ଭାବିଲେ, ବ୍ରାହ୍ମଣଙ୍କର ପ୍ରାଣରକ୍ଷା ନ କଲେ ମହାପାପ ହେବ; ତେଣୁ ସେଥିରୁ ରକ୍ଷା ପାଇବା ପାଇଁ ପତ୍ନୀକୁ ଦେଇଦେବା ବରଂ ଶ୍ରେୟସ୍କର ହେବ । ଏହି ବିପ୍ରବରଙ୍କୁ ମୋର ପତ୍ନୀ ଦେଇଦେବା ପରେ ମୁଁ ପାପମୁକ୍ତ ହୋଇ ଅବିଳମ୍ବେ ଅଗ୍ନିରେ ପ୍ରବେଶ କରିଯିବି । ମନ ମଧ୍ୟରେ ଏଭଳି ନିର୍ଣ୍ଣୟ କରି ରାଜା ଅଗ୍ନି ପ୍ରଜ୍ୱଳିତ କଲେ ଏବଂ ବ୍ରାହ୍ମଣଙ୍କୁ ଡାକି ତାଙ୍କୁ ନିଜର ପତ୍ନୀ ଦେଇଦେଲେ । ତା'ପରେ ସ୍ନାନ ସାରି ପବିତ୍ର ହୋଇ ଦେବତାଙ୍କୁ ପ୍ରଣାମ କରି ଅଗ୍ନିକୁ ଦୁଇଥର ପରିକ୍ରମା କଲେ ଏବଂ ଏକାଗ୍ର ଚିତ୍ତରେ ଶିବଙ୍କୁ ଧ୍ୟାନ କଲେ । ରାଜାଙ୍କୁ ଅଗ୍ନିରେ ଝାସ ଦେବାକୁ ଉଦ୍ୟତ ହେଉଥିବା ଦେଖି ଜଗତ୍‌ପତି ଭଗବାନ ବିଶ୍ୱନାଥ ସହସା ସେଠାରେ ପ୍ରକଟ ହୋଇଗଲେ । ତାଙ୍କର ଥିଲା ପାଞ୍ଚଟି ମୁଖ । ମସ୍ତକରେ ଚନ୍ଦ୍ରକଳା ଆଭୂଷଣ ପରି ଶୋଭା ପାଉଥିଲା । ଜଟାର ରଙ୍ଗ ଥିଲା ପିଙ୍ଗଳ । ସେ କୋଟି କୋଟି ସୂର୍ଯ୍ୟ ପରି ତେଜସ୍ୱୀ ଦିଶୁଥିଲେ । ହାତରେ ଅଭୟ ଓ ବରଦ ମୁଦ୍ରା ତଥା ଖଟ୍ୱାଙ୍ଗ, ତ୍ରିଶୂଳ, କୁଠାର, ଢାଲ, ମୃଗ, ଓ ପିନାକ ଶୋଭା ପାଉଥିଲା । ବୃଷଭ ପିଠିରେ ଆରୂଢ଼ ହୋଇ ଭଗବାନ ନୀଳକଣ୍ଠ ମହାଦେବ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇଥିବାର ରାଜା ପ୍ରତ୍ୟକ୍ଷ ଦେଖିବାକୁ ପାଇଲେ । ତାଙ୍କୁ ଦର୍ଶନ କରିବାର ଆନନ୍ଦରେ ପୁଲକିତ ହୋଇ ରାଜା ଭଦ୍ରାୟୁ ହାତ ଯୋଡ଼ି ସ୍ତବନ କଲେ ।

ରାଜା ସ୍ତୁତି କରିବାରୁ ଶିବ-ପାର୍ବତୀ ପ୍ରସନ୍ନ ହୋଇଗଲେ । ମହେଶ୍ୱର କହିଲେ–ରାଜନ୍ ! ତୁମେ ଅନ୍ୟ କାହାରିକୁ ଚିନ୍ତନ ନ କରି ସଦାସର୍ବଦା ମୋତେ ପୂଜା କରିଛ, ତୁମର ଏହି ଭକ୍ତି ହେତୁ ଓ ତୁମେ କରିଥିବା ଏହି ସ୍ତୁତିରେ ମୁଁ ଅତ୍ୟନ୍ତ ପ୍ରସନ୍ନ । ତୁମ ଭକ୍ତିଭାବର ପରୀକ୍ଷା ନେବା ପାଇଁ ମୁଁ ସ୍ୱୟଂ ବ୍ରାହ୍ମଣ ବେଶରେ ଆସିଥିଲି । ଯାହାକୁ ବ୍ୟାଘ୍ର ଗ୍ରାସ କଲା, ସେ ଆଉ କେହି ନୁହେଁ, ସେ ଥିଲେ ସ୍ୱୟଂ ଗିରିରାଜନନ୍ଦିନୀ ଉମାଦେବୀ । ତୁମେ ଶର ମାରିବା ସତ୍ତ୍ୱେ ଯାହାର କିଛି ହେଲା ନାହିଁ, ସେ ଥିଲା ମାୟାନିର୍ମିତ ବ୍ୟାଘ୍ର । ତୁମ ଧୈର୍ଯ୍ୟର ପରୀକ୍ଷା ପାଇଁ ମୁଁ ତୁମର ପତ୍ନୀ ମାଗିଥିଲି । ଏ କୀର୍ତ୍ତିମାଳିନୀର ଓ ତୁମର ଭକ୍ତିରେ ମୁଁ ସନ୍ତୁଷ୍ଟ । ତୁମେ କୌଣସି ଦୁର୍ଲଭ ବର ମାଗ, ମୁଁ ତାହା ଅବଶ୍ୟ ପ୍ରଦାନ କରିବି ।

ରାଜା କହିଲେ–ପ୍ରଭୋ ! ଆପଣ ସାକ୍ଷାତ୍ ପରମେଶ୍ୱର । ଆପଣ ସାଂସାରିକ ତାପରେ ଘେରି ହୋଇଥିବା ମୋ ପରି ଅଧମକୁ ଯେଉଁ ପ୍ରତ୍ୟକ୍ଷ ଦର୍ଶନ ଦେଲେ, ତାହା ମୋ ପାଇଁ କୌଣସି ବରରୁ କମ୍ ନୁହେଁ । ହେ ଶ୍ରେଷ୍ଠ ବରଦାତା ! ମୋର ଏତିକିମାତ୍ର ଇଚ୍ଛା ଯେ ମୋତେ, ମୋ ରାଣୀଙ୍କୁ, ମୋର ପିତାମାତାଙ୍କୁ, ପଦ୍ମାକର ବୈଶ୍ୟକୁ ଏବଂ ତା'ର ପୁତ୍ର ସୁନୟକୁ–ଆମ ସମସ୍ତଙ୍କୁ ଆପଣଙ୍କର ପାର୍ଶ୍ୱବର୍ତ୍ତୀ ସେବକ କରି ରଖନ୍ତୁ । ମୋର ଅନ୍ୟ କୌଣସି ବରରେ ପ୍ରୟୋଜନ ନାହିଁ ।

ଏହାପରେ ରାଣୀ କୀର୍ତ୍ତିମାଳିନୀ ପ୍ରଣାମ କରି ନିଜ ଭକ୍ତିରେ ଭଗବାନ ଶଙ୍କରଙ୍କୁ ପ୍ରସନ୍ନ କଲେ ଏବଂ ବର ମାଗିବାକୁ ଯାଇ କହିଲେ–"ହେ ମହାଦେବ ! ମୋର ପିତା ଚନ୍ଦ୍ରାଙ୍ଗଦ ଓ ମାତା

ସୀମନ୍ତିନୀଙ୍କୁ ଆପଣଙ୍କ ସାନ୍ନିଧ୍ୟ ପ୍ରାପ୍ତ ହେଉ ।'' ଭକ୍ତବତ୍ସଳ ମହାଦେବ ପ୍ରସନ୍ନ ହୋଇ 'ତଥାସ୍ତୁ' କହିଲେ ଏବଂ ରାଜାରାଣୀଙ୍କୁ ବର ଦେଇ କ୍ଷଣକ ଭିତରେ ଅନ୍ତର୍ଦ୍ଧାନ ହୋଇଗଲେ । ଏହାପରେ ରାଜା ମହାଦେବଙ୍କ ପ୍ରସାଦରୁ ରାଣୀ କୀର୍ତ୍ତିମାଳିନୀ ସହିତ ପ୍ରିୟ ବିଷୟମାନ ଭୋଗ କରି ଦଶ ହଜାର ବର୍ଷ ପର୍ଯ୍ୟନ୍ତ ରାଜ୍ୟ ଶାସନ କଲେ । ଶେଷରେ ପୁତ୍ରଙ୍କୁ ରାଜ୍ୟଭାର ଦେଇ ଶିବଙ୍କର ପରମ ପଦ ଲାଭ କଲେ । ରାଜା ଓ ରାଣୀ ଉଭୟେ ଭକ୍ତିପୂର୍ବକ ମହାଦେବଙ୍କୁ ପୂଜା କରି ଶିବଙ୍କ ଧାମକୁ ଗଲେ । ଶିବଙ୍କର ଏହି ପରମ ପବିତ୍ର, ପାପନାଶକ ଏବଂ ଅତ୍ୟନ୍ତ ଗୋପନୀୟ ବିଚିତ୍ର ଗୁଣାନୁବାଦକୁ ଯେ ବିଦ୍ୱାନଙ୍କୁ ଶୁଣାଏ ଅଥବା ସ୍ୱୟଂ ଶୁଦ୍ଧଚିତ୍ତ ହୋଇ ପାଠ କରେ, ସେ ଇହଲୋକରେ ଭୋଗ ଓ ଐଶ୍ୱର୍ଯ୍ୟ ଲାଭ କରି ଶେଷରେ ଭଗବାନ ଶିବଙ୍କୁ ପ୍ରାପ୍ତ ହୁଏ । (ଅଧ୍ୟାୟ ୨୬-୨୭)

***

## ଶିବଙ୍କ ଯତିନାଥ ଅବତାର ଏବଂ ହଂସ ଅବତାର

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଏବେ ମୁଁ ପରମାତ୍ମା ଶିବଙ୍କର ଯତିନାଥ ନାମକ ଅବତାର ବିଷୟରେ ବର୍ଣ୍ଣନା କରୁଛି । ମୁନୀଶ୍ୱର ! ଅର୍ବୁଦାଚଳ ନାମକ ପର୍ବତ ସମୀପରେ ଗୋଟିଏ ଶବର ରହୁଥିଲା । ତାହାର ନାମ ଥିଲା ଆହୁକ । ତା'ର ପତ୍ନୀକୁ ଲୋକେ ଆହୁକା କହୁଥିଲେ । ଆହୁକା ଉତ୍ତମ ବ୍ରତ ପାଳନକାରିଣୀ ଥିଲା । ପତିପତ୍ନୀ ଦୁହେଁ ମହାନ୍ ଶିବଭକ୍ତ ଥିଲେ ଏବଂ ଶିବଙ୍କ ପୂଜା ଆରାଧନାରେ ନିମଗ୍ନ ରହୁଥିଲେ । ଦିନେ ଶିବଭକ୍ତ ଶବର ତା' ପତ୍ନୀ ପାଇଁ ଆହାର ଖୋଜି ବୁଲୁ ବୁଲୁ ଜଙ୍ଗଲ ଭିତରେ ବହୁ ଦୂରକୁ ଚାଲିଗଲା । ସନ୍ଧ୍ୟା ହୋଇଗଲା । ଏତିକିବେଳେ ଶବରର ପରୀକ୍ଷା ନେବା ପାଇଁ ଭଗବାନ ଶଙ୍କର ସଂନ୍ୟାସୀ ରୂପ ଧାରଣ କରି ତା' ଘରକୁ ଗଲେ । ଇତିମଧ୍ୟରେ ଶବର ମଧ୍ୟ ଘରେ ପହଞ୍ଚିଲା ଏବଂ ଅତି ଶ୍ରଦ୍ଧାରେ ଯତିରାଜଙ୍କୁ ପୂଜା କଲା । ଶବରର ମନୋଭାବକୁ ପରୀକ୍ଷା କରିବା ପାଇଁ ଯତୀଶ୍ୱର ବେଶଧାରୀ ଶିବ ଦୈନ୍ୟବାଣୀରେ କହିଲେ—''କିରାତ ! ଆଜି ରାତିଟା ଏଠାରେ ମୋତେ ରହିବାକୁ ସ୍ଥାନ ଦିଅ, ସକାଳ ହେବା ମାତ୍ରେ ମୁଁ ଚାଲିଯିବି । ତୁମର କଲ୍ୟାଣ ହେବ ।''

ଶବର କହିଲା—ସ୍ୱାମୀଜୀ ! ଆପଣ ଠିକ୍ କଥା କହିଛନ୍ତି; ତଥାପି ମୋ କଥା ଶୁଣନ୍ତୁ । ମୋ ଘରେ ଜାଗା କମ୍, ତେଣୁ ଆପଣ କେମିତି ରହିପାରିବେ?

ଶବରର କଥା ଶୁଣି ସ୍ୱାମୀଜୀ ସେଠାରୁ ଚାଲିଯିବାକୁ ଉଦ୍ୟତ ହେଲେ ।

ଏହା ଦେଖି ତା'ର ପତ୍ନୀ କହିଲା—ପ୍ରାଣନାଥ ! ଘରକୁ ଆସିଥିବା ଅତିଥିଙ୍କୁ ନିରାଶ କରି ଫେରାଇ ନ ଦିଅ । ଯେମିତି ହେଲେ ବି ସ୍ୱାମୀଜୀଙ୍କୁ ସ୍ଥାନ ଦିଅ । ନହେଲେ ଆମର ଗୃହସ୍ଥ-ଧର୍ମ ପାଳନରେ ହାନି ହେବ । ତୁମେ ସ୍ୱାମୀଜୀଙ୍କ ସଙ୍ଗରେ ଘରେ ଆନନ୍ଦରେ ରୁହ, ମୁଁ ବଡ଼ ବଡ଼ ଅସ୍ତ୍ରଶସ୍ତ୍ର ଧରି ବାହାରେ ଛିଡ଼ା ହୋଇରହିବି ।

ପତ୍ନୀର କଥା ଶୁଣି ଶବର ଭାବିଲା—ସ୍ତ୍ରୀକୁ ବାହାରେ ଠିଆ କରି ମୁଁ ଘର ଭିତରେ ରହିବାଟା ଶୋଭା ଦେବ ନାହିଁ । ପୁଣି ସଂନ୍ୟାସୀ ଅନ୍ୟତ୍ର ଚାଲିଗଲେ ମୋ ପାଇଁ ଅଧର୍ମ ହେବ । ଏ ଦୁଇଟିଯାକ କାର୍ଯ୍ୟ ଗୃହସ୍ଥ ପକ୍ଷେ ଅନୁଚିତ । ତେଣୁ ମୋତେ ହିଁ ବାହାରେ ରହିବାକୁ ହେବ । ଯାହା ହେବାର ଥିବ, ତାହା ତ ନିଶ୍ଚୟ ହେବ । ଏପରି ଭାବି ସେ ବାଧ୍ୟ କରି ସଂନ୍ୟାସୀଙ୍କୁ ଓ ତା' ସ୍ତ୍ରୀକୁ ଆନନ୍ଦରେ ଗୋଟିଏ ଘରେ ରହିବାକୁ ସ୍ଥାନ

ଦେଲା ଏବଂ ନିଜେ ଆୟୁଧ ଧରି ବାହାରେ ଛିଡ଼ା ହୋଇରହିଲା । ରାତିରେ ଜଙ୍ଗଲୀ ହିଂସ୍ର ପଶୁ ତାକୁ ବହୁତ କ୍ଳେଶ ଦେଲେ । ସେ ବଳବାନ୍ ଥିବାରୁ ଯଦିଓ ସେମାନଙ୍କ ଠାରୁ ରକ୍ଷା ପାଇବାକୁ ଯଥାଶକ୍ତି ଉଦ୍ୟମ କଲା, ତଥାପି ବନ୍ୟଜନ୍ତୁଙ୍କ କବଳରୁ ନିଜକୁ ରକ୍ଷା କରିପାରିଲା ନାହିଁ । ସେମାନେ ତାକୁ ମାରି ଖାଇଗଲେ । ସକାଳୁ ଉଠି ଯତି ଯେତେବେଳେ ଦେଖିଲେ ଯେ ତାକୁ ପଶୁମାନେ ମାରି ପକାଇଛନ୍ତି, ସେ ବହୁତ ଦୁଃଖ ପ୍ରକାଶ କଲେ । ସଂନ୍ୟାସୀଙ୍କୁ ଦୁଃଖିତ ଦେଖି ଆହୁକା ସ୍ୱାମୀଙ୍କ ନିଧନଦୁଃଖରେ ବ୍ୟାକୁଳିତ ଥିଲେ ମଧ୍ୟ ଧୈର୍ଯ୍ୟପୂର୍ବକ ସେହି ଦୁଃଖକୁ ଅନ୍ତରରେ ଗୁପି ରଖି କହିଲା—''ସ୍ୱାମୀଜୀ ! ଆପଣ କାହିଁକି ଦୁଃଖ କରୁଛନ୍ତି? ଏ ଶବରରାଜଙ୍କର ତ କଲ୍ୟାଣ ହୋଇଗଲା । ଏଭଳି ମୃତ୍ୟୁକୁ ବରଣ କରି ଏ ତ ଧନ୍ୟ ଓ କୃତାର୍ଥ ହୋଇଗଲେ । ମୁଁ ଚିତାଗ୍ନିରେ ନିଜକୁ ଝାସ ଦେଇ ମୋ ସ୍ୱାମୀଙ୍କର ପଥ ଅନୁସରଣ କରିବି । ତେଣୁ ଆପଣ ପ୍ରସନ୍ନତାପୂର୍ବକ ମୋ ପାଇଁ ଗୋଟିଏ ଚିତା ପ୍ରସ୍ତୁତ କରିଦିଅନ୍ତୁ; କାରଣ ସ୍ୱାମୀର ଅନୁସରଣ କରିବା ସ୍ତ୍ରୀ ପାଇଁ ସନାତନ ଧର୍ମ । ଆହୁକାର କଥା ଅନୁସାରେ ସଂନ୍ୟାସୀ ସ୍ୱୟଂ ଚିତା ପ୍ରସ୍ତୁତ କରିଦେଲେ ଏବଂ ଶବରପତ୍ନୀ ଆପଣା ଧର୍ମ ପାଳନ କରିବାକୁ ଯାଇ ସେଥିରେ ପ୍ରବେଶ କରିଗଲା । ଏତିକି ବେଳେ ଭଗବାନ ଶିବ ନିଜ ପ୍ରକୃତ ସ୍ୱରୂପରେ ତା' ସମ୍ମୁଖରେ ପ୍ରକଟ ହୋଇଗଲେ ଏବଂ ତାକୁ ପ୍ରଶଂସା କରି କହିଲେ—''ତୁମେ ଧନ୍ୟ, ଅତ୍ୟନ୍ତ ଧନ୍ୟ? ମୁଁ ତୁମ ଉପରେ ପ୍ରସନ୍ନ ହୋଇଛି । ତୁମର ଯାହା ଇଚ୍ଛା ବର ମାଗ । ତୁମ ପାଇଁ ମୋ ନିକଟରେ କିଛି ବି ଅଦେୟ ନାହିଁ ।''

ଭଗବାନଙ୍କ ମୁଖରୁ ଏଭଳି ପରମାନନ୍ଦ-ଦାୟକ ବାଣୀ ଶୁଣି ଶବରପତ୍ନୀକୁ ବହୁତ ସୁଖ



ମିଳିଲା । ସେ ଏତେ ଭାବବିଭୋର ହୋଇଗଲା ଯେ ତାହାର ବାହ୍ୟଜ୍ଞାନ ରହିଲା ନାହିଁ । ତା'ର ଏଭଳି ସ୍ଥିତିକୁ ଲକ୍ଷ୍ୟ କରି ଶିବ ଆହୁରି ଅଧିକ ପ୍ରସନ୍ନ ହେଲେ ଏବଂ ସେ ନ ମାଗୁଣୁ ତାକୁ ବର ଦେଇ କହିଲେ—''ମୋର ଏହି ଯତିରୂପ ଆଗାମୀ ଜନ୍ମରେ ହଂସରୂପରେ ପ୍ରକଟ ହେବ ଏବଂ ପ୍ରସନ୍ନାତାପୂର୍ବକ ତୁମ ଦୁହିଙ୍କର ସଂଯୋଗ କରାଇବ । ଏ ଶବର ନିଷଧଦେଶର ରାଜଧାନୀରେ ରାଜା ବୀରସେନଙ୍କର ଶ୍ରେଷ୍ଠ ପୁତ୍ର ହେବ । ସେତେବେଳେ ଏ ନଳ ନାମରେ ବିଖ୍ୟାତ ହେବ ଏବଂ ତୁମେ ବିଦର୍ଭ ନଗରରେ ଭୀମରାଜଙ୍କ କନ୍ୟା ଦମୟନ୍ତୀ ହେବ । ତୁମେ ଦୁହେଁ ମିଳିତ ହୋଇ ରାଜୋଚିତ ଭୋଗ ଉପଭୋଗ କରିବା ପରେ ମୋକ୍ଷଗତି ପ୍ରାପ୍ତ ହେବ, ଯାହା ବଡ଼ ବଡ଼ ଯୋଗୀଶ୍ୱରଙ୍କ ପାଇଁ ମଧ୍ୟ ଦୁର୍ଲଭ ।''

ନନ୍ଦୀଶ୍ୱର କହୁଛନ୍ତି—ଏତିକି କହି ଭଗବାନ ଶିବ ତତ୍‌କ୍ଷଣାତ୍ ଲିଙ୍ଗରୂପରେ ପରିଣତ ହୋଇଗଲେ । ଶବର ଆପଣା ଧର୍ମରୁ ବିଚଳିତ ହୋଇ ନ ଥିଲା । ତେଣୁ ତା'ର ଉକ୍ତ ଅବିଚଳ

ଗୁଣ ହେତୁ ସେହି ଲିଙ୍ଗର ନାମ ହେଲା 'ଅଚଳେଶ' । ପରଜନ୍ମରେ ଶବର ଆହୁକ ନିଷଧ ନଗରରେ ବୀରସେନଙ୍କ ପୁତ୍ର ମହାରାଜ ନଳ ନାମରେ ବିଖ୍ୟାତ ହେଲା ଏବଂ ଆହୁକା ବିଦର୍ଭ ନଗରରେ ରାଜା ଭୀମଙ୍କ କନ୍ୟା ଦମୟନ୍ତୀ ହେଲା ଏବଂ ଯତିନାଥ ଶିବ ସେଠାରେ ହଂସରୂପରେ ପ୍ରକଟ ହେଲେ । ସେ ଦମୟନ୍ତୀଙ୍କର ନଳଙ୍କ ସଙ୍ଗେ ବିବାହ କରାଇଲେ । ପୂର୍ବଜନ୍ମର ଅତିଥିସତ୍କାର-ଜନିତ ପୁଣ୍ୟ ପ୍ରଭାବରେ ଭଗବାନ ଶିବ ହଂସ ରୂପ ଧାରଣ କରି ସେ ଦୁହିଙ୍କୁ ସୁଖ ପ୍ରଦାନ କଲେ । ହଂସାବତାରଧାରୀ ଶିବ ଅନେକ ପ୍ରକାର କଥା କହିବାରେ ଓ ସନ୍ଦେଶ ପହଞ୍ଚାଇବାରେ କୁଶଳ ଥିଲେ । ସେ ନଳ ଓ ଦମୟନ୍ତୀଙ୍କ ପାଇଁ ପରମ ଆନନ୍ଦଦାୟକ ହେଲେ । (ଅଧ୍ୟାୟ ୨୮)



## ଭଗବାନ ଶିବଙ୍କର କୃଷ୍ଣଦର୍ଶନ ନାମକ ଅବତାର କଥା

ନନ୍ଦୀଶ୍ୱର କହୁଛନ୍ତି—ସନତ୍କୁମାର ! ଭଗବାନ ଶମ୍ଭୁଙ୍କର ଗୋଟିଏ ଉତ୍ତମ ଅବତାରର ନାମ ହେଉଛି କୃଷ୍ଣଦର୍ଶନ ଅବତାର । ଏହି ଅବତାରରେ ସେ ରାଜା ନଭଗଙ୍କୁ ଜ୍ଞାନ ପ୍ରଦାନ କରିଥିଲେ । ସେହି କଥା ବର୍ଣ୍ଣନା କରୁଛି, ଶୁଣ । ଶ୍ରାଦ୍ଧଦେବ ନାମକ ମନୁଙ୍କର ଯେଉଁ ଇକ୍ଷ୍ୱାକୁ ଆଦି ପୁତ୍ର ଥିଲେ, ସେମାନଙ୍କ ମଧ୍ୟରେ ନବମ ପୁତ୍ରର ନାମ ଥିଲା ନଭଗ । ଏହି ନଭଗଙ୍କର ପୁତ୍ର ହିଁ ନାଭାଗ ନାମରେ ପ୍ରସିଦ୍ଧ ହୋଇଥିଲେ, ଯାହାଙ୍କ ପୁତ୍ର ଅମ୍ବରୀଷ ଭଗବାନ ବିଷ୍ଣୁଙ୍କ ଭକ୍ତ ଥିଲେ ତଥା ତାଙ୍କ ବ୍ରାହ୍ମଣଭକ୍ତି ଦେଖି ତାଙ୍କ ଉପରେ ମହର୍ଷି ଦୁର୍ବାସା ପ୍ରସନ୍ନ ହୋଇଯାଇଥିଲେ । ମୁନେ ! ଏବେ ଅମ୍ବରୀଷଙ୍କ ପିତାମହ ନଭଗଙ୍କ ଚରିତ୍ର ଶୁଣ । ତାଙ୍କୁ ହିଁ ଭଗବାନ ଶିବ ଜ୍ଞାନ ପ୍ରଦାନ କରିଥିଲେ । ମନୁପୁତ୍ର ନଭଗ ବଡ଼ ବୁଦ୍ଧିମାନ୍ ଥିଲେ । ସେ ବିଦ୍ୟାଧ୍ୟୟନ ନିମନ୍ତେ ଦୀର୍ଘକାଳ ପର୍ଯ୍ୟନ୍ତ ଇନ୍ଦ୍ରିୟସଂଯମପୂର୍ବକ ଗୁରୁକୁଳରେ ନିବାସ କଲେ । ଇତିମଧ୍ୟରେ ତାଙ୍କର ଇକ୍ଷ୍ୱାକୁ ଆଦି ଭାଇମାନେ ନଭଗଙ୍କ ପାଇଁ କୌଣସି ଭାଗ ନ ରଖି ପିତାଙ୍କର ସମସ୍ତ ସମ୍ପତ୍ତିକୁ ପରସ୍ପର ମଧ୍ୟରେ ବାଣ୍ଟିନେଲେ ଏବଂ ନିଜ ନିଜ ଭାଗକୁ ନେଇ ସେମାନେ ଉତ୍ତମ ରୀତିରେ ରାଜ୍ୟ ଶାସନ କଲେ । ସେମାନେ ପିତାଙ୍କ ଆଜ୍ଞାରେ ହିଁ ପରସ୍ପର ମଧ୍ୟରେ ଧନ ବାଣ୍ଟି ନେଇଥିଲେ । କିଛି କାଳ ପରେ ବ୍ରହ୍ମଚାରୀ ନଭଗ ଗୁରୁକୁଳରୁ ଅଙ୍ଗଉପାଙ୍ଗ ସହିତ ବେଦାଦି ଅଧ୍ୟୟନ କରିସାରି ଘରକୁ ଫେରିଲେ । ସେ ଦେଖିଲେ ଯେ ଭାଇମାନେ ସମସ୍ତ ସମ୍ପତ୍ତିକୁ ପରସ୍ପର ମଧ୍ୟରେ ବାଣ୍ଟିନେଇ ସାରିଛନ୍ତି । ସେ ଆପଣା ନ୍ୟାଯ୍ୟ ଭାଗ ପାଇବା ନିମନ୍ତେ ଇକ୍ଷ୍ୱାକୁ ପ୍ରଭୃତି ଭାଇଙ୍କୁ କହିଲେ—''ଭାଇମାନେ ! ମୋ ପାଇଁ ଭାଗ ନ ରଖି ତୁମେମାନେ ସମସ୍ତ ସମ୍ପତ୍ତି ବାଣ୍ଟିନେଇଛ, ତେଣୁ ଏବେ ମୋର ଭାଗ ଖୁସୀ-ଖୁସୀରେ ମୋତେ ଦେଇଦିଅ । ମୁଁ ମୋର ଭାଗ ନେବାକୁ ଆସିଛି ।''

ଭାଇମାନେ କହିଲେ—ସମ୍ପତ୍ତିର ବାଣ୍ଟକୁଣ୍ଟ ହେବା ବେଳେ ଆମେ ତୁମକୁ ଭାଗ ଦେବା କଥା ଭୁଲିଯାଇଥିଲୁ । ଏବେ କେବଳ ତୁମ ଭାଗରେ ଅଛନ୍ତି ବାପା । ତୁମେ ବାପାଙ୍କୁ ହିଁ ନେଇଯାଅ ।

ଭାଇମାନଙ୍କ କଥା ଶୁଣି ନଭଗ ବିସ୍ମୟରେ ପଡ଼ିଗଲେ । ସେ ପିତାଙ୍କ ପାଖକୁ ଯାଇ କହିଲେ—''ବାପା ! ମୁଁ ବିଦ୍ୟାଧ୍ୟୟନ ନିମନ୍ତେ ଗୁରୁକୁଳକୁ ଯାଇଥିଲି ଏବଂ ସେଠାରେ ଏପର୍ଯ୍ୟନ୍ତ ବ୍ରହ୍ମଚାରୀ ହୋଇରହିଛି । ଇତିମଧ୍ୟରେ ଭାଇମାନେ ମୋତେ ଛାଡ଼ି ଅନ୍ୟ ସମସ୍ତେ ପରସ୍ପର ମଧ୍ୟରେ ସବୁ ଧନ ବାଣ୍ଟି ନେଇଛନ୍ତି । ସେଠାରୁ ଫେରି ମୁଁ ମୋ ବାଣ୍ଟ ବିଷୟରେ ପଚାରିବାରୁ ସେମାନେ ମୋତେ ଭାଗ

ହିସାବରେ ଆପଣଙ୍କୁ ହିଁ ଦେବାକୁ ଚାହୁଁଛନ୍ତି । ତେଣୁ ମୁଁ ଆପଣଙ୍କ ପାଖକୁ ଆସିଛି । ନଭଗଙ୍କ କଥା ଶୁଣି ପିତା ଶ୍ରାଦ୍ଧଦେବ ଅତି ବିସ୍ମୟରେ ପଡ଼ିଗଲେ । ସେ ପୁତ୍ରକୁ ଆଶ୍ୱାସନା ଦେଇ କହିଲେ—"ପୁତ୍ର ! ଭାଇମାନଙ୍କ କଥାରେ ବିଶ୍ୱାସ କରନା । ସେମାନେ ତୋତେ ଠକିଦେବାକୁ ଏପରି କହିଛନ୍ତି । ମୁଁ ତୋ ପାଇଁ ଭୋଗସାଧନର ଉତ୍ତମ ମାଧ୍ୟମ ହୋଇ ନ ପାରେ । ତଥାପି ଯଦି ସେହି ଠକମାନେ ତୋ ଭାଗ ରୂପରେ ମୋତେ ହିଁ ସମର୍ପି ଦେଇଛନ୍ତି, ତେବେ ମୁଁ ତୋ ଜୀବିକାର ଗୋଟିଏ ଉପାୟ କହୁଛି, ଶୁଣ । ଆଜିକାଲି ଆଙ୍ଗିରସ ଗୋତ୍ରୀୟ ବୁଦ୍ଧିମାନ୍ ବ୍ରାହ୍ମଣମାନେ ଗୋଟିଏ ବହୁତ ବଡ଼ ଯଜ୍ଞ କରୁଛନ୍ତି । କିନ୍ତୁ ଯଜ୍ଞରେ ପ୍ରତି ଷଷ୍ଠ ଦିନର କାର୍ଯ୍ୟକୁ ସେମାନେ ଠିକ୍‌ଭାବରେ ବୁଝି ପାରୁ ନାହାନ୍ତି । ତେଣୁ ସେମାନଙ୍କର ଭୁଲ୍ ହୋଇଯାଉଛି । ତୁ ସେଠାକୁ ଯାଇ ବ୍ରାହ୍ମଣମାନଙ୍କୁ ବିଶ୍ୱେଦେବସମ୍ବନ୍ଧୀୟ ଦୁଇଟି ସୂକ୍ତ କହିଦେ । ଏହା ଦ୍ୱାରା ଉକ୍ତ ଯଜ୍ଞ ଶୁଦ୍ଧରୂପେ ସମ୍ପାଦିତ ଓ ପୂର୍ଣ୍ଣାଙ୍ଗ ହୋଇପାରିବ । ଯଜ୍ଞ ସମାପ୍ତି ପରେ ବ୍ରାହ୍ମଣମାନେ ଯେତେବେଳେ ସ୍ୱର୍ଗକୁ ଯିବାକୁ ବାହାରିବେ, ସେତେବେଳେ ସେମାନେ ସନ୍ତୁଷ୍ଟ ହୋଇ ତୋତେ ଯଜ୍ଞରୁ ବଳିଥିବା ସମସ୍ତ ଧନ ଦେଇଦେବେ ।"

ପିତାଙ୍କ କଥା ଶୁଣି ସତ୍ୟବାଦୀ ନଭଗ ଆନନ୍ଦ ମନରେ ସେହି ଯଜ୍ଞସ୍ଥଳକୁ ଗଲେ । ମୁନେ ! ସେଠାରେ ଷଷ୍ଠ ଦିବସର କର୍ମରେ ବୁଦ୍ଧିମାନ୍ ମନୁପୁତ୍ର ବୈଶ୍ୱଦେବସମ୍ବନ୍ଧୀୟ ଦୁଇଟି ସୂକ୍ତ ସ୍ପଷ୍ଟରୂପେ ଉଚ୍ଚାରଣ କଲେ । ଯଜ୍ଞ କର୍ମ ସମାପ୍ତ ହେବା ପରେ ସେହି ଆଙ୍ଗିରସ ବ୍ରାହ୍ମଣମାନେ ଯଜ୍ଞରୁ ବଳିଥିବା ସମସ୍ତ ଧନ ନଭଗଙ୍କୁ ଦେଇ ସ୍ୱର୍ଗଲୋକକୁ ଚାଲିଗଲେ । ଉକ୍ତ ଯଜ୍ଞାବଶେଷ ଧନକୁ ସେ ନେବାବେଳେ ଲୀଳାପରାୟଣ ଭଗବାନ ଶିବ ଅଗ୍ରନକ ସେଠାରେ ପ୍ରକଟ ହୋଇଗଲେ । ତାଙ୍କର ସମଗ୍ର ଅବୟବ ଅତି ସୁନ୍ଦର ଥିଲା, କେବଳ ନେତ୍ର ଥିଲା କଳା । ସେ ନଭଗଙ୍କୁ ପଚାରିଲେ—"ତୁମେ କିଏ? ଏ ଧନକୁ ତୁମେ କେମିତି ନେଇଯାଉଛ? ଏସବୁ ତ ମୋର ସମ୍ପତ୍ତି । ତୁମକୁ ଏଠାକୁ କିଏ ପଠାଇଲା? ଏ ସମସ୍ତ କଥା ସତ ସତ କୁହ ।"

ନଭଗ କହିଲେ—ଯଜ୍ଞରୁ ବଳିଥିବା ଏ ସମସ୍ତ ଧନ ମୋତେ ଋଷିମାନେ ଦେଇ ଯାଇଛନ୍ତି । ଏସବୁ ମୋର ହୋଇଗଲା, ପୁଣି ମୋତେ ତୁମେ କାହିଁକି ଅଟକାଉଛ?

କଳା ନେତ୍ରଯୁକ୍ତ କୃଷ୍ଣଦର୍ଶନ କହିଲେ—"ବତ୍ସ ! ଆମ ଦୁହିଙ୍କ ଝଗଡ଼ାରେ ତୁମର ପିତା ହିଁ ବିଚାରକ ହୋଇ ସମାଧାନ କରିପାରିବେ । ତୁମେ ଯାଇ ତୁମ ପିତାଙ୍କୁ ପଚାର; ସେ ଯାହା ନିର୍ଣ୍ଣୟ ଦେବେ, ତାହା ମୋତେ ସତ ସତ କହିବ ।" ତାହା ଶୁଣି ନଭଗ ପିତାଙ୍କ ପାଖକୁ ଯାଇ ଉକ୍ତ ପ୍ରଶ୍ନକୁ ତାଙ୍କ ସମ୍ମୁଖରେ ରଖିଲେ । ଶ୍ରାଦ୍ଧଦେବଙ୍କୁ କିଛି ପୁରାତନ କଥା ମନେ ପଡ଼ିଗଲା ଏବଂ ସେ ଶିବଙ୍କ ପାଦପଦ୍ମକୁ ଚିନ୍ତନ କରି କହିଲେ—

ମନୁ କହିଲେ—"ବତ୍ସ ! ଯେ ତୋତେ ଅଟକାଉଥିଲେ, ସେ ହେଉଛନ୍ତି ସାକ୍ଷାତ୍ ଶିବ । ଏମିତି ଦେଖିବାକୁ ଗଲେ ତ ଜଗତର ସମସ୍ତ ବସ୍ତୁରେ ତାଙ୍କର ଅଧିକାର ଅଛି, କିନ୍ତୁ ବିଶେଷତଃ ଯଜ୍ଞରୁ ବଳିଥିବା ବସ୍ତୁରେ ତାଙ୍କର ବିଶେଷ ଅଧିକାର ରହିଛି । ଯଜ୍ଞ କରିବା ପରେ ଯାହା କିଛି ଧନ ବଳିପଡ଼େ, ସେଥିରେ ଭଗବାନ ରୁଦ୍ରଙ୍କର ଭାଗ ନିର୍ଦ୍ଧାରିତ କରାଯାଇଛି । ତେଣୁ ଯଜ୍ଞାବଶିଷ୍ଟ ସମସ୍ତ ବସ୍ତୁ ଗ୍ରହଣ କରିବାର ଅଧିକାରୀ ହେଉଛନ୍ତି ସର୍ବେଶ୍ୱର ମହାଦେବ । ତାଙ୍କ ଇଚ୍ଛାରେ ହିଁ ଅନ୍ୟ କେହି ସେହି ବସ୍ତୁକୁ ନେଇ ପାରିବ । ଭଗବାନ ଶିବ ତୋ ଉପରେ କୃପା କରିବା ନିମନ୍ତେ ସେଠାକୁ ଏପରି ବେଶ ଧାରଣ କରି ଆସିଛନ୍ତି । ତୁ ସେଠାକୁ ଯାଆ ଏବଂ ତାଙ୍କୁ ପ୍ରସନ୍ନ କର । ଅପରାଧ ନିମନ୍ତେ

କ୍ଷମା ମାଗ ଏବଂ ପ୍ରଣାମପୂର୍ବକ ତାଙ୍କୁ ସ୍ତୁତି କର ।'' ନଭଗ ପିତାଙ୍କ ଆଜ୍ଞାରେ ସେଠାକୁ ଯାଇ ଭଗବାନଙ୍କୁ ପ୍ରଣାମ କରି ହାତ ଯୋଡ଼ି କହିଲେ—''ମହେଶ୍ୱର ! ଏ ସମଗ୍ର ତ୍ରିଲୋକ ଆପଣଙ୍କର । ତେବେ ପୁଣି ଯଜ୍ଞରୁ ବଳିଥିବା ଏ ଧନ କଥା ବା କ'ଣ କହିବା । ଏହା ଉପରେ ନିଶ୍ଚିତରୂପେ ଆପଣଙ୍କର ଅଧିକାର ଅଛି । ଏହା ହିଁ ମୋ ପିତା ନିର୍ଣ୍ଣୟ ଦେଇଛନ୍ତି । ପ୍ରଭୋ ! ମୁଁ ଯଥାର୍ଥ କଥା ନ ଜାଣି ଆପଣଙ୍କୁ ଭୁଲ୍‌ରେ ଯାହା କିଛି କହିଦେଇଛି, ସେଥିପାଇଁ ମୋତେ କ୍ଷମା କରନ୍ତୁ । ମୁଁ ଆପଣଙ୍କ ଚରଣରେ ମସ୍ତକ ରଖି ପ୍ରାର୍ଥନା କରୁଛି ଯେ ଆପଣ ମୋ ଉପରେ ପ୍ରସନ୍ନ ହୁଅନ୍ତୁ ।''

ଏତିକି କହି ନଭଗ ଅତ୍ୟନ୍ତ ଦୈନ୍ୟଭାବରେ କର ଯୋଡ଼ି ମହେଶ୍ୱର କୃଷ୍ଣଦର୍ଶନଙ୍କୁ ସ୍ତୁତି କଲେ । ତେଣେ ଶ୍ରାଦ୍ଧଦେବ ମଧ୍ୟ ନିଜ ଅପରାଧ ନିମନ୍ତେ କ୍ଷମା ମାଗି ଭଗବାନ ଶିବଙ୍କୁ ସ୍ତୁତି କଲେ । ଭଗବାନ ମନେ ମନେ ପ୍ରସନ୍ନ ହୋଇ ନଭଗଙ୍କୁ କୃପାଦୃଷ୍ଟିରେ ଚାହିଁଲେ ଏବଂ ମନ୍ଦ ମନ୍ଦ ହସି କହିଲେ—

କୃଷ୍ଣଦର୍ଶନ କହିଲେ—ନଭଗ ! ତୁମ ପିତା ଯେଉଁ ଧର୍ମାନୁକୂଳ କଥା କହିଛନ୍ତି, ତାହା ସମ୍ପୂର୍ଣ୍ଣ ସତ୍ୟ । ତୁମେ ମଧ୍ୟ ସାଧୁସ୍ୱଭାବ ହେତୁ ସତ କଥା ମୋ ଆଗରେ ଆସି ପ୍ରକାଶ କରିଛ । ତେଣୁ ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରସନ୍ନ । ମୁଁ ତୁମକୁ କୃପା କରି ସନାତନ ବ୍ରହ୍ମତତ୍ତ୍ୱର ଉପଦେଶ ଦେଉଛି । ଏବେ ଏ ସମସ୍ତ ଧନ ମଧ୍ୟ ମୁଁ ତୁମକୁ ପ୍ରଦାନ କରୁଛି । ତୁମେ ଏହାକୁ ଗ୍ରହଣ କର ଏବଂ ଇହଲୋକରେ ନିର୍ବିକାର ଚିତ୍ତରେ ସୁଖ ଭୋଗ କର । ଅନ୍ତକାଳରେ ତୁମେ ମୋ କୃପାରୁ ସଦ୍‌ଗତି ପ୍ରାପ୍ତ ହେବ ।'' ଏହା କହି ଭଗବାନ ସଦାଶିବ ସେମାନଙ୍କ ସମ୍ମୁଖରୁ ଅନ୍ତର୍ହିତ ହୋଇଗଲେ । ଶ୍ରାଦ୍ଧଦେବ ମଧ୍ୟ ପୁତ୍ର ନଭଗ ସହିତ ସ୍ୱସ୍ଥାନକୁ ଲେଉଟି ଗଲେ । ସେ ଇହଲୋକରେ ବିପୁଳ ଭୋଗ ଉପଭୋଗ କରି ଶେଷରେ ଶିବଙ୍କ ଧାମ ପ୍ରାପ୍ତ ହେଲେ । ବ୍ରହ୍ମନ୍ ! ମୁଁ ତୁମ ଆଗରେ ଶିବଙ୍କର କୃଷ୍ଣଦର୍ଶନ ନାମକ ଅବତାର ବିଷୟରେ ବର୍ଣ୍ଣନା କରିଦେଲି । ଏ ପ୍ରସଙ୍ଗକୁ ଯିଏ ପଢ଼େ ଓ ଶୁଣେ, ତାଙ୍କୁ ସମସ୍ତ ମନୋବାଞ୍ଛିତ ଫଳ ପ୍ରାପ୍ତ ହୁଏ ।

(ଅଧ୍ୟାୟ ୨୯)

★★★

## ଶିବଙ୍କର ଅବଧୂତେଶ୍ୱର ଅବତାର କଥା ଓ ତାହାର ମହିମା ବର୍ଣ୍ଣନା

ନନ୍ଦୀଶ୍ୱର କହୁଛନ୍ତି—ସନତ୍‌କୁମାର ! ଏବେ ତୁମେ ପରମେଶ୍ୱର ଶିବଙ୍କର ଅବଧୂତେଶ୍ୱର ନାମକ ଅବତାର କଥା ଶୁଣ । ସେ ଇନ୍ଦ୍ରଙ୍କର ଗର୍ବକୁ ଚୂର୍ଣ୍ଣ କରିଦେଇଥିଲେ । ପୂର୍ବକାଳର କଥା, ଇନ୍ଦ୍ର ସମସ୍ତ ଦେବତାଙ୍କୁ ତଥା ବୃହସ୍ପତିଙ୍କୁ ସଙ୍ଗରେ ଧରି ଶିବଙ୍କୁ ଦର୍ଶନ କରିବା ନିମନ୍ତେ କୈଳାସ ପର୍ବତକୁ ଗଲେ । ସେତେବେଳେ ବୃହସ୍ପତିଙ୍କର ଓ ଇନ୍ଦ୍ରଙ୍କର ଶୁଭାଗମନ କଥା ଜାଣି ମହାଦେବ ସେ ଦୁହିଙ୍କର ପରୀକ୍ଷା ନେବା ପାଇଁ ନିଜେ ଅବଧୂତ ରୂପ ହୋଇଗଲେ । ତାଙ୍କ ଶରୀରରେ କୌଣସି ବସ୍ତ୍ର ନ ଥିଲା । ସେ ପ୍ରଜ୍ୱଳିତ ଅଗ୍ନି ତୁଲ୍ୟ ତେଜସ୍ୱୀ ହୋଇଥିବାରୁ ମହା ଭୟଙ୍କର ଜଣା ପଡୁଥିଲେ । କିନ୍ତୁ ତାଙ୍କର ଆକୃତି ଅତି ସୁନ୍ଦର ଥିଲା । ସେ ରାସ୍ତା ଅବରୋଧ କରି ଛିଡ଼ା ହୋଇଥିଲେ । ବୃହସ୍ପତି ଓ ଇନ୍ଦ୍ର ଶିବଙ୍କ ସମୀପକୁ ଯିବାବେଳେ ଏପରି ଏକ ଅବଧୂତକୁ ରାସ୍ତା ମଝିରେ ଛିଡ଼ା ହୋଇଥିବାର ଦେଖିଲେ । ଇନ୍ଦ୍ରଙ୍କର ତ ନିଜ ଅଧିକାରକୁ ନେଇ ବହୁତ ଗର୍ବ ଥିଲା, ତେଣୁ ସେ ତାଙ୍କୁ ଶିବ ବୋଲି ଚିହ୍ନି ପାରିଲେ ନାହିଁ । ତେଣୁ ସେ ତାଙ୍କୁ ପଚାରିଲେ—''ତୁମେ କିଏ? ଏପରି ନଗ୍ନ ଅବଧୂତ ବେଶରେ କେଉଁଠୁ ଆସିଲ? ତୁମର ନାମ କଣ? ବିଳମ୍ବ ନ କରି ସବୁ କଥା ସତ

ସତ କୁହ । ଭଗବାନ ଶିବ ତାଙ୍କ ସ୍ଥାନରେ ଅଛନ୍ତି ନା କେଉଁଠିକୁ ଯାଇଛନ୍ତି? ମୁଁ ଦେବତା ଓ ଗୁରୁଙ୍କୁ ସଙ୍ଗରେ ଧରି ତାଙ୍କୁ ଦର୍ଶନ କରିବାକୁ ଆସିଛି ।'' ଇନ୍ଦ୍ର ବାରମ୍ବାର ପଗ୍ଚରିଲେ ସୁଦ୍ଧା ଅହଂକାରନାଶକ ତଥା କୌତୁକପ୍ରିୟ ତ୍ରୈଲୋକ୍ୟନାଥ ମହାଯୋଗୀ ଶିବ କିଛି ନ କହି ଚୁପ୍ ରହିଲେ । ଏହାପରେ ଐଶ୍ୱର୍ଯ୍ୟପ୍ରମତ୍ତ ଇନ୍ଦ୍ର ରାଗିଯାଇ ସେହି ଜଟାଧାରୀ ପୁରୁଷକୁ ବହୁତ କଟୁବଚନ କହିଲେ ।

ଇନ୍ଦ୍ର କହିଲେ—ରେ ମୂଢ଼ ! ଦୁର୍ମତେ ! ବାରମ୍ବାର ପଗ୍ଚରୁଥିଲେ ମଧ୍ୟ ତୁ ଉତ୍ତର କାହିଁକି ଦେଉ ନାହୁଁ? ଏବେ ତୋ ଉପରକୁ ବଜ୍ରପ୍ରହାର କରୁଛି ରହ । ଦେଖିବି ତୋତେ କିଏ ରକ୍ଷା କରିବ?

ଏତିକି କହି ସେ ସେହି ଦିଗମ୍ବର ପୁରୁଷ ଆଡ଼କୁ କ୍ରୋଧରେ ଗ୍ଚହିଁ ତାକୁ ମାରି ପକାଇବା ପାଇଁ ବଜ୍ର ଉଠାଇଲେ । ଏହା ଦେଖି ଭଗବାନ ଶିବ ହଠାତ୍ ତାଙ୍କ ବଜ୍ରକୁ ସ୍ତମ୍ଭନ କରିଦେଲେ । ଇନ୍ଦ୍ରଙ୍କ ବାହୁ ଅଚଳ ହୋଇଗଲା । ସେ ବଜ୍ର ପ୍ରହାର କରି ପାରିଲେ ନାହିଁ । ଏହାପରେ ଅବଧୂତ ହଠାତ୍ କ୍ରୋଧ ହେତୁ ଆପଣା ତେଜରେ ପ୍ରଜ୍ୱଳିତ ହେବା ପରି ଦିଶିଲେ; ସତେଯେପରି ଇନ୍ଦ୍ରଙ୍କୁ ଭସ୍ମ କରିଦେବେ । ତେଣେ ବାହୁ ସ୍ତମ୍ଭିତ ହୋଇଯିବାରୁ ଶଚୀପତି ଇନ୍ଦ୍ର ମନ୍ତ୍ରବଳରେ ପରାକ୍ରମ ଅବରୁଦ୍ଧ ହୋଇ ଯାଇଥିବା ସର୍ପ ପରି କେବଳ ଡହଳ-ବିକଳ ହେଉଥାନ୍ତି । ବୃହସ୍ପତି ଅବଧୂତଙ୍କର ଅପାର ତେଜକୁ ଦେଖି ଅବିଳମ୍ବେ ଜାଣିଗଲେ ଯେ ସେ ହେଉଛନ୍ତି ସାକ୍ଷାତ୍ ଭଗବାନ ହର । ତେଣୁ ସେ ହାତ ଯୋଡ଼ି ପ୍ରଣାମ କରି ତାଙ୍କୁ ସ୍ତୁତି କରିବାକୁ ଲାଗିଲେ । ସ୍ତୁତି ପରେ ସେ ଇନ୍ଦ୍ରଙ୍କୁ ତାଙ୍କ ପାଦ ତଳେ ଲୋଟାଇ ଦେଇ କହିଲେ—''ହେ ଦୀନବନ୍ଧୁ! ହେ ମହାଦେବ! ଇନ୍ଦ୍ର ଆପଣଙ୍କ ପାଦତଳେ ଲୋଟିଛନ୍ତି, ଆପଣ ଏହାଙ୍କୁ ଓ ମୋତେ ଉଦ୍ଧାର କରନ୍ତୁ । ଆମ ପରି ଦୀନଙ୍କ ଉପରେ କ୍ରୋଧ ନ କରି ପ୍ରେମ କରନ୍ତୁ । ଆପଣଙ୍କ ଲଲାଟରୁ ପ୍ରକଟ ହୋଇଥିବା ଏ ଅଗ୍ନି ଏହାଙ୍କୁ ଜାଳି ଦେବାକୁ ଉଦ୍ୟତ ହେଉଛି ।''

ବୃହସ୍ପତିଙ୍କ କଥା ଶୁଣି ଅବଧୂତ ବେଶଧାରୀ କରୁଣାସିନ୍ଧୁ ଶିବ ହସିଲା ପରି କହିଲେ—''ମୋ ନେତ୍ରରୁ ବାହାରିଥିବା କ୍ରୋଧାଗ୍ନିକୁ ମୁଁ ପୁନଃ ଭିତରକୁ କେମିତି ନେବି? ସର୍ପ ତା'ର ଛାଡ଼ିଦେଇଥିବା କାତିକୁ କ'ଣ ପୁନଃ ଗ୍ରହଣ କରି ପାରେ?''

ବୃହସ୍ପତି କହିଲେ—ପ୍ରଭୁ ! ଭକ୍ତ ସର୍ବଦା ଆପଣଙ୍କ କୃପାର ପାତ୍ର । ଆପଣ ନିଜ ଭକ୍ତବତ୍ସଳ ନାମକୁ ଚରିତାର୍ଥ କରନ୍ତୁ ଏବଂ ଏ ଉଗ୍ରତେଜକୁ ଅନ୍ୟତ୍ର ନିକ୍ଷେପ କରି ପ୍ରଶମିତ କରନ୍ତୁ ।

ରୁଦ୍ର କହିଲେ—ଦେବଗୁରୁ ! ମୁଁ ତୁମ ଉପରେ ପ୍ରସନ୍ନ ! ତେଣୁ ତୁମକୁ ଉତ୍ତମ ବର ଦେଉଛି । ଇନ୍ଦ୍ରଙ୍କୁ ଜୀବନ ଦେଇଥିବାରୁ ଆଜିଠାରୁ ତୁମର ଅନ୍ୟତମ ନାମ 'ଜୀବ' ହେବ । ମୋ ଲଲାଟବର୍ତ୍ତୀ ନେତ୍ରରୁ ପ୍ରକଟିତ ହୋଇଥିବା ଏ ଅଗ୍ନିକୁ ଦେବତା ସହି ପାରିବେ ନାହିଁ । ତେଣୁ ଏହାକୁ ବହୁତ



ଦୂରରେ ଛାଡ଼ିବି, ଯାହାଫଳରେ ଏହା ଇନ୍ଦ୍ରଙ୍କର କିଛି କ୍ଷତି କରିବ ନାହିଁ ।

ଏତିକି କହି ସେ ନିଜ ତେଜସ୍ୱରୂପ ଅଦ୍ଭୁତ ଅଗ୍ନିକୁ ହାତରେ ଧରି କ୍ଷାର ସମୁଦ୍ର ଭିତରକୁ ଫିଙ୍ଗିଦେଲେ । ସେଠାକୁ ଫୋପାଡ଼ି ଦେବାମାତ୍ରେ ତାହା ଗୋଟିଏ ବାଳକ ରୂପରେ ପରିଣତ ହୋଇଗଲା ଏବଂ ପରବର୍ତ୍ତୀ କାଳରେ ସେ ସିନ୍ଧୁସୁତ ଜଳନ୍ଧର ନାମରେ ବିଖ୍ୟାତ ହେଲା । ଦେବତାଙ୍କ ପ୍ରାର୍ଥନାକ୍ରମେ ଶିବ ହିଁ ଅସୁରାଧିପତି ଜଳନ୍ଧରକୁ ବଧ କରିଥିଲେ । ଅବଧୂତ ରୂପରେ ଏପରି ସୁନ୍ଦର ଲୀଳା କରି ଲୋକକଲ୍ୟାଣକାରୀ ଶମ୍ଭୁ ସେଠାରୁ ଅନ୍ତର୍ହିତ ହୋଇଗଲେ । ସମସ୍ତ ଦେବତା ନିର୍ଭୟ ଓ ସୁଖୀ ହେଲେ । ଇନ୍ଦ୍ର ଓ ବୃହସ୍ପତି ମଧ୍ୟ ଭୟମୁକ୍ତ ହୋଇ ଉତ୍ତମ ସୁଖ ଲାଭ କଲେ । ଯେଉଁ ଶିବଙ୍କ ଦର୍ଶନ ପାଇଁ ସେମାନେ ଆସିଥିଲେ ତାଙ୍କ ଦର୍ଶନରେ କୃତାର୍ଥ ହୋଇ ସ୍ୱସ୍ଥାନକୁ ଫେରିଗଲେ । ସନତ୍କୁମାର ! ମୁଁ ତୁମ ଆଗରେ ପରମେଶ୍ୱର ଶିବଙ୍କ ଅବଧୂତେଶ୍ୱର ନାମକ ଅବତାର ବିଷୟରେ ବର୍ଣ୍ଣନା କଲି । ଏହି ଅବତାର ଦୁଷ୍ଟଙ୍କୁ ଦଣ୍ଡ ଓ ଭକ୍ତଙ୍କୁ ପରମ ଆନନ୍ଦ ପ୍ରଦାନ କରିଥାଏ । ଏହି ଦିବ୍ୟ ଆଖ୍ୟାନ ପାପ ନିବାରଣ କରି ଯଶ, ସ୍ୱର୍ଗ, ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ଯେ ଏହାକୁ ଶୁଣେ ବା ଶୁଣାଏ, ସେ ଇହଲୋକରେ ସମସ୍ତ ସୁଖ ଉପଭୋଗ କରି ଶେଷରେ ଶିବଲୋକ ପ୍ରାପ୍ତ ହୁଏ ।

(ଅଧ୍ୟାୟ ୩୦)

***

## ଶିବଙ୍କର ଭିକ୍ଷୁବର ଅବତାର କଥା, ରାଜକୁମାର ଓ ଦ୍ୱିଜକୁମାରଙ୍କ ଉପରେ କୃପା

ନନ୍ଦୀଶ୍ୱର କହୁଛନ୍ତି—ମୁନିବର ! ଏବେ ତୁମେ ଭଗବାନ ଶମ୍ଭୁଙ୍କର ନାରୀ-ସନ୍ଦେହଭଞ୍ଜକ ଭିକ୍ଷୁ-ଅବତାର କଥା ଶୁଣ । ପ୍ରଭୁ ଭକ୍ତଙ୍କ ଉପରେ ଦୟା କରି ଏହି ଅବତାର ଗ୍ରହଣ କରିଥିଲେ । ବିଦର୍ଭ ଦେଶରେ ସତ୍ୟରଥ ନାମରେ ଜଣେ ପ୍ରସିଦ୍ଧ ରାଜା ଥିଲେ । ସେ ଧର୍ମରେ ତତ୍ପର, ସତ୍ୟଶୀଳ ଥିଲେ ଏବଂ ଶିବଭକ୍ତଙ୍କ ପ୍ରତି ପ୍ରେମଭାବ ରଖୁଥିଲେ । ଧର୍ମପୂର୍ବକ ରାଜ୍ୟଶାସନ କରୁ କରୁ ତାଙ୍କର ବହୁତ ବର୍ଷ ସୁଖରେ ବିତିଗଲା । ଥରେ ଶାଲ୍ୱଦେଶର ରାଜା ଓ ଅନ୍ୟ କ୍ଷତ୍ରିୟମାନେ ଆକ୍ରମଣ କରିବା ଉଦ୍ଦେଶ୍ୟରେ ତାଙ୍କ ରାଜଧାନୀକୁ ଚାରିପଟରୁ ଘେରିଗଲେ । ବହୁତ ବଡ଼ ସୈନ୍ୟବାହିନୀ ଧରି ଆସିଥିବା ସେହି ବଳୋନ୍ମତ୍ତ ଶାଲ୍ୱ ଦେଶୀୟ କ୍ଷତ୍ରିୟମାନଙ୍କ ସଙ୍ଗେ ରାଜା ସତ୍ୟରଥଙ୍କର ଭୟଙ୍କର ଯୁଦ୍ଧ ହେଲା । ଶତ୍ରୁଙ୍କ ସଙ୍ଗେ ଯୁଦ୍ଧ କରୁ କରୁ ତାଙ୍କର ବହୁତ ବଡ଼ ସୈନ୍ୟବାହିନୀ ନଷ୍ଟ ହୋଇଗଲା । ତା'ପରେ ଦୈବଯୋଗକୁ ସ୍ୱୟଂ ରାଜା ମଧ୍ୟ ଶାଲ୍ୱକ୍ଷତ୍ରିୟଙ୍କ ହାତରେ ନିହତ ହେଲେ । ରାଜା ନିହତ ହେବାରୁ ଜୀବିତ ଥିବା ସୈନିକ ଓ ମନ୍ତ୍ରୀମାନେ ଭୟରେ ବ୍ୟାକୁଳ ହୋଇ ପଳାୟନ କଲେ । ମୁନେ ! ଇତିମଧ୍ୟରେ ବିଦର୍ଭରାଜ ସତ୍ୟରଥଙ୍କ ମହାରାଣୀ କୌଣସି ପ୍ରକାରେ ଶତ୍ରୁଙ୍କ ଘେରକୁ ପାର କରି ରାତ୍ରିକାଳରେ ନଗରରୁ ବାହାରି ପଳାଇଲେ । ସେ ଗର୍ଭବତୀ ଥିଲେ । ତେଣୁ ଶୋକରେ ସନ୍ତପ୍ତ ହୋଇ ମଧ୍ୟ ଭଗବାନ ଶଙ୍କରଙ୍କ ପାଦପଦ୍ମକୁ ଚିନ୍ତନ କରି କରି ଧୀରେ ଧୀରେ ପୂର୍ବଦିଗ ଅଭିମୁଖେ ବହୁ ଦୂରକୁ ଚାଲିଗଲେ । ସକାଳ ହେବାରୁ ରାଣୀ ଶିବଙ୍କ କୃପାରୁ ଗୋଟିଏ ନିର୍ମଳ ସରୋବର ଦେଖିବାକୁ ପାଇଲେ । ସୁକୁମାରୀ ରାଣୀ

ବହୁତ ଦୂରରୁ ଆସି ଥକିଯାଇଥିବାରୁ ସରୋବର ତଟରେ ଗୋଟିଏ ବୃକ୍ଷତଳେ ଛାୟାରେ ବସିଲେ । ସୌଭାଗ୍ୟକୁ ସେହି ନିର୍ଜନ ସ୍ଥାନରେ ବୃକ୍ଷତଳେ ରାଣୀ ଶୁଭମୁହୂର୍ତ୍ତରେ ଗୋଟିଏ ଉତ୍ତମ ଗୁଣଯୁକ୍ତ ଦିବ୍ୟ ପୁତ୍ରକୁ ଜନ୍ମ ଦେଲେ । ଶିଶୁଟି ଶୁଭ-ଲକ୍ଷଣସମ୍ପନ୍ନ ଥିଲା । ଦୈବାତ୍ ଶିଶୁର ଜନନୀ ମହାରାଣୀଙ୍କୁ ପ୍ରବଳ ଶୋଷ ଲାଗିଲା । ସେ ପାଣି ପିଇବା ପାଇଁ ସରୋବର କୂଳକୁ ଗଲେ । ସେତିକିବେଳେ ଗୋଟିଏ ବଡ଼ କୁମ୍ଭୀର ଆସି ରାଣୀଙ୍କୁ ଗିଳିପକାଇଲା । ଶିଶୁଟି ଜନ୍ମ ହେଉ ହେଉ ମାତାପିତା ଛେଉଣ୍ଡ ହୋଇଗଲା ଏବଂ ଭୋକ-ଶୋଷରେ ବ୍ୟାକୁଳ ହୋଇ ପୁଷ୍କରିଣୀ କୂଳରେ ଉଚ୍ଚସ୍ୱରରେ ରୋଦନ କଲା । ଏତିକି ବେଳେ ତା' ଉପରେ କୃପା କରିବାକୁ ପ୍ରଭୁ ମହାଦେବ ସେଠାକୁ ଆସି ଶିଶୁଟିକୁ ରକ୍ଷା କଲେ । ତାଙ୍କରି ପ୍ରେରଣାରେ ଗୋଟିଏ ବିଧବା ବ୍ରାହ୍ମଣୀ ଅକସ୍ମାତ୍ ସେଠାକୁ ଆସିଲା । ସେ ଘର ଘର ବୁଲି ଭିକ ମାଗି ଚଳେ । ସେ ତା'ର ବର୍ଷକର ପୁଅକୁ କୋଳରେ ଧରି ସେଠାକୁ ଆସିଥିଲା । ସେ ଏଭଳି ନିର୍ଜନ ବନରେ ଅନାଥ ଶିଶୁଟିକୁ କ୍ରନ୍ଦନ କରୁଥିବାର ଦେଖି ବିସ୍ମୟରେ ପଡ଼ି ମନେ ମନେ ଭାବିଲା—''ଆହା ! କେଡ଼େ ଆଶ୍ଚର୍ଯ୍ୟର କଥା, ଏ ନବଜାତ ଶିଶୁଟି ଏଠି ତଳେ କେମିତି ପଡ଼ିଛି ! ଏହାର ତ ଏପର୍ଯ୍ୟନ୍ତ ନାଳଛେଦନ ବି ହୋଇନି, ଏହାର ମାଆ ବି ପାଖରେ ନାହିଁ କି ବାପା ଅଥବା ଅନ୍ୟ କେହି ସହାୟକ ଏଠି ଦେଖାଯାଉ ନାହାନ୍ତି ! କ'ଣ ବା କାରଣ ହୋଇପାରେ? ଏ କାହାର ପୁଅ? ଏହାକୁ ଜାଣିବା ଲୋକ ତ କେହି ଏଠି ନାହିଁ, କାହାଠାରୁ ମୁଁ ଏ କଥା ପଗ୍ଚରି ବୁଝିବି? ପିଲାଟିକୁ ଦେଖି ମୋ ହୃଦୟରେ କରୁଣା ଉତ୍ପନ୍ନ ହୋଇଯାଉଛି । ମନ କହୁଛି, ଏହାକୁ ନେଇ ନିଜ ଔରସ ପୁତ୍ର ପରି ପାଳିବାକୁ । ହେଲେ ଏହାର କୁଳ ଓ ଗୋତ୍ର କିଛି ଜଣା ନ ଥିବାରୁ ଏହାକୁ ଛୁଇଁବାକୁ ସାହସ ହେଉ ନାହିଁ ।''

ବ୍ରାହ୍ମଣୀ ଏହିପରି ଭାବୁ ଭାବୁ ଭକ୍ତବତ୍ସଳ ପ୍ରଭୁ ଶମ୍ଭୁ କୃପା କରିଦେଲେ । ସ୍ୱୟଂ ଲୀଳାମୟ ମହେଶ୍ୱର ଜଣେ ସଂନ୍ୟାସୀ ରୂପ ଧାରଣ କରି ସହସା ସେହି ସ୍ଥାନରେ ପହଞ୍ଚିଲେ, ଯେଉଁଠି ବ୍ରାହ୍ମଣୀ ନାନା ସନ୍ଦେହରେ ପଡ଼ି ଯଥାର୍ଥ କଥାଟି ଜାଣିବାକୁ ଗ୍ଚହୁଁଥିଲା । ଶ୍ରେଷ୍ଠ ଭିକ୍ଷୁ ରୂପ ଧାରଣ କରି ଆସିଥିବା କରୁଣାନିଧାନ ପ୍ରଭୁ ହସି ହସି ତାକୁ କହିଲେ—''ବ୍ରାହ୍ମଣୀ ! ମନରେ ସନ୍ଦେହ ଓ ଦୁଃଖକୁ ସ୍ଥାନ ଦିଅ ନାହିଁ । ଏ ଶିଶୁଟି ପରମ ପବିତ୍ର । ତୁମେ ଏହାକୁ ନିଜର ପୁତ୍ର ବୋଲି ବୁଝି ସ୍ନେହରେ ଲାଳନ-ପାଳନ କର ।''

ବ୍ରାହ୍ମଣୀ କହିଲା—ଭିକ୍ଷୁପ୍ରବର ! ଆପଣ ମୋର ବଡ଼ ସୌଭାଗ୍ୟରୁ ଏଠାକୁ ଆସିଛନ୍ତି । ମୁଁ ଆପଣଙ୍କ ଆଦେଶରେ ଏ ଶିଶୁକୁ ନେଇ ନିଶ୍ଚୟ ପାଳିବି—ଏଥିରେ ସନ୍ଦେହ ନାହିଁ । କିନ୍ତୁ ମୁଁ ଜାଣିବାକୁ ଗ୍ଚହୁଁଛି ଯେ—ଏ କିଏ, କାହାର ପୁତ୍ର, ଆଉ ଆପଣ କିଏ? ମୋ ମନରେ ବାରମ୍ବାର ଏ କଥା ଉଠୁଛି ଯେ ଆପଣ ବୋଧହୁଏ କରୁଣାସିନ୍ଧୁ ପ୍ରଭୁ ଶିବ ଆଉ ଏ ବାଳକ ପୂର୍ବଜନ୍ମରେ ଆପଣଙ୍କର ଭକ୍ତ ଥିଲା । କୌଣସି କର୍ମଦୋଷରୁ ଏ ଆଜି ଏଭଳି ଦୁରବସ୍ଥାରେ ପଡ଼ିଛି । କର୍ମଫଳ ଭୋଗିସାରିଲେ ଏ ପୁନଃ ଆପଣଙ୍କ କୃପାରୁ ପରମ କଲ୍ୟାଣର ଭାଗୀ ହେବ । ମୁଁ ମଧ୍ୟ ଆପଣଙ୍କ ମାୟାରେ ବାଟବଣା ହୋଇ ଏଠାକୁ ଗ୍ଚଲି ଆସିଛି । ଆପଣ ହିଁ ଏହାର ପାଳନ ପାଇଁ ମୋତେ ଏଠାକୁ ଅଣାଇଛନ୍ତି ।

ଭିକ୍ଷୁପ୍ରବର ଶିବ କହିଲେ—ବ୍ରାହ୍ମଣୀ ! ଶୁଣ । ଏ ଶିଶୁ ଶିବଭକ୍ତ ବିଦର୍ଭରାଜ ସତ୍ୟରଥଙ୍କ ପୁତ୍ର । ସତ୍ୟରଥଙ୍କୁ ଶାଲ୍ୱଦେଶୀୟ କ୍ଷତ୍ରିୟମାନେ ଯୁଦ୍ଧରେ ମାରି ପକାଇଛନ୍ତି । ତାଙ୍କ ଗର୍ଭବତୀ ପତ୍ନୀ ଅତ୍ୟନ୍ତ

ବ୍ୟଗ୍ର ହୋଇ ରାତିରେ ମହଲ ଛାଡ଼ି ଦ୍ରୁତଗତିରେ ପଳାଇ ଆସିଥିଲା ଏବଂ ଏଠାରେ ପହଞ୍ଚି ଶିଶୁକୁ ଜନ୍ମ ଦେଲା । ସକାଳ ହେବାରୁ ସେ ତୃଷାରେ ଆକୁଳ ହୋଇ ସରୋବରକୁ ପାଣି ପିଇବାକୁ ଯାଇଥିବା ବେଳେ ଦୁର୍ଭାଗ୍ୟବଶତଃ ତାକୁ କୁମ୍ଭୀର ଖାଇଗଲା ।

ବ୍ରାହ୍ମଣୀ ପଚ୍ଚାରିଲା–ଭିକ୍ଷୁଦେବ ! ଏହାର ପିତା ରାଜା ସତ୍ୟରଥ ଶ୍ରେଷ୍ଠ ଭୋଗ ଉପଭୋଗ କରୁ କରୁ ଅଧାବୟସରୁ ଶତ୍ରୁଙ୍କ ଦ୍ୱାରା କାହିଁକି ନିହତ ହେଲେ? କେଉଁ କାରଣରୁ ଏହାର ମାଆକୁ କୁମ୍ଭୀର ଖାଇଗଲା? ଏ ଶିଶୁଟି ଜନ୍ମରୁ ହିଁ ମାତୃପିତୃବିହୀନ କେଉଁ କାରଣରୁ ହେଲା? ମୋ ପୁତ୍ର ମଧ୍ୟ ଅତ୍ୟନ୍ତ ଦରିଦ୍ର ଓ ଭିକ୍ଷୁକ କାହିଁକି ହେଲା ଏବଂ ଏ ପୁତ୍ର ଦୁହିଙ୍କୁ ଭବିଷ୍ୟତରେ କିପରି ସୁଖ ମିଳିବ?

ଭିକ୍ଷୁବର୍ଯ୍ୟ ଶିବ କହିଲେ–ଏ ରାଜକୁମାରର ପିତା ବିଦର୍ଭରାଜ ପୂର୍ବଜନ୍ମରେ ପାଣ୍ଡ୍ୟଦେଶର ଶ୍ରେଷ୍ଠ ରାଜା ଥିଲେ । ସେ ଧର୍ମଜ୍ଞ ଥିଲେ ଏବଂ ସମଗ୍ର ପୃଥିବୀକୁ ଧର୍ମପୂର୍ବକ ପାଳନ କରୁଥିଲେ । ଦିନେ ପ୍ରଦୋଷକାଳରେ ରାଜା ଅତ୍ୟନ୍ତ ଭକ୍ତି-ଭାବରେ ତ୍ରୈଲୋକ୍ୟନାଥ ମହାଦେବଙ୍କୁ ପୂଜା-ଆରାଧନା କରୁଥିବାବେଳେ ତାଙ୍କ ନଗରରେ ଭୀଷଣ କୋଳାହଳ ଶୁଭିଲା । କୋଳାହଳ ଧ୍ୱନି ଶୁଣି ରାଜା ପୂଜା ମଣ୍ଡପରୁ ଉଠି ପଡ଼ିଲେ ଏବଂ ନଗରରେ କ୍ଷୋଭ ବ୍ୟାପିଯିବା ଆଶଙ୍କାରେ ରାଜଭବନରୁ ବାହାରକୁ ବାହାରିଗଲେ । ଏତିକିବେଳେ ରାଜାଙ୍କର ମହାବଳୀ ମନ୍ତ୍ରୀ ଶତ୍ରୁକୁ ଡାକି ଆଣିଲା । ସେହି ଶତ୍ରୁ ପାଣ୍ଡ୍ୟରାଜାଙ୍କ ସାମନ୍ତ ଥିଲା । ତାକୁ ଦେଖି ରାଜା କ୍ରୋଧରେ ତା'ର ମସ୍ତକ କାଟିବାକୁ ଆଦେଶ ଦେଇଦେଲେ । ଶିବପୂଜା ଛାଡ଼ି ଓ ନିୟମକୁ ପୂର୍ଣ୍ଣ ନ କରି ରାଜା ରାତିରେ ଭୋଜନ ମଧ୍ୟ କଲେ । ଏହିପରି ରାଜକୁମାର ମଧ୍ୟ ପ୍ରଦୋଷ କାଳରେ ଶିବଙ୍କୁ ପୂଜା ନ କରି ଭୋଜନ କରି ଶୋଇଗଲା । ସେହି ରାଜା ପରଜନ୍ମରେ ବିଦର୍ଭରାଜ ହୋଇଥିଲେ । ଶିବଙ୍କ ପୂଜାରେ ବିଘ୍ନ ଘଟିବାରୁ ଶତ୍ରୁମାନେ ତାଙ୍କୁ ଅଧାବୟସରେ ସୁଖଭୋଗ ସମୟରେ ହିଁ ମାରିଦେଲେ । ପୂର୍ବଜନ୍ମରେ ଯେ ତାଙ୍କର ପୁତ୍ର ଥିଲା, ଏ ଜନ୍ମରେ ମଧ୍ୟ ସେ ପୁତ୍ର ହୋଇଛି । ଶିବଙ୍କ ପୂଜାରେ ଅବହେଳନା କରିବା କାରଣରୁ ସେ ଦରିଦ୍ର ହୋଇଛି । ଏହାର ମାଆ ପୂର୍ବଜନ୍ମରେ ଛଳ କରି ତା'ର ସୌତୁଣୀକୁ ମାରିଦେଇଥିଲା । ସେହି ପାପ କାରଣରୁ ଏ ଜନ୍ମରେ ସେ କୁମ୍ଭୀର ଦ୍ୱାରା ନିହତ ହେଲା । ବ୍ରାହ୍ମଣୀ ! ତୁମର ଏ ପୁତ୍ର ପୂର୍ବଜନ୍ମରେ ଉତ୍ତମ ବ୍ରାହ୍ମଣ ଥିଲା; କିନ୍ତୁ ଏ ସମଗ୍ର ଆୟୁ କେବଳ ଦାନ ନେବାରେ ବିତାଇଦେଲା । ଯଜ୍ଞାଦି ସତ୍‌କର୍ମ କଲା ନାହିଁ । ତେଣୁ ଏଭଳି ଦରିଦ୍ର ହୋଇଛି । ସେହି ଦୋଷକୁ ଦୂର କରିବା ନିମନ୍ତେ ତୁମେ ଶିବଙ୍କ ଠାରେ ଶରଣ ଯାଅ । ଏ ବାଳକ ଦୁହେଁ ମଧ୍ୟ ଉପନୟନ



ସଂସ୍କାର ପରେ ଭଗବାନ ଶିବଙ୍କ ଆରାଧନା କରନ୍ତୁ । ପ୍ରଭୁ ଶିବ ଏହାଙ୍କର କଲ୍ୟାଣ କରିବେ ।

ବ୍ରାହ୍ମଣୀକୁ ଏହିପରି ଉପଦେଶ ଦେଇ ଭିକ୍ଷୁରୂପଧାରୀ ଭକ୍ତବତ୍ସଳ ଶିବ ନିଜର ପ୍ରକୃତ ସ୍ୱରୂପରେ ଦର୍ଶନ ଦେଲେ । ତାହାଙ୍କୁ ଭଗବାନ ଶିବ ବୋଲି ଜାଣି ବ୍ରାହ୍ମଣୀ ପ୍ରଣାମ କଲା ଏବଂ ପ୍ରେମପୂରିତ ଗଦ୍‌ଗଦ ବାଣୀରେ ସ୍ତୁତି କଲା । ତା'ପରେ ପ୍ରଭୁ ସେଠାରୁ ଅନ୍ତର୍ହିତ ହୋଇଗଲେ । ଶିବ ଚାଲିଯିବାପରେ ବ୍ରାହ୍ମଣୀ ନିଜ ପୁଅ ସହିତ ନବଜାତ ଶିଶୁଟିକୁ ନେଇ ଘରକୁ ଫେରିଆସିଲା । ଏକଚକ୍ରା ନାମକ ସୁନ୍ଦର ଗ୍ରାମରେ ସେ ଘର ତୋଳିଥିଲା । ସେ ଭଲ ଭଲ ଜିନିଷ ଖାଇବାକୁ ଦେଇ ନିଜ ପୁଅ ପରି ସେହି ରାଜକୁମାରକୁ ମଧ୍ୟ ପାଳନପୋଷଣ କଲା । ଉପଯୁକ୍ତ ସମୟରେ ବ୍ରାହ୍ମଣମାନେ ସେ ଦୁହିଁଙ୍କର ଉପନୟନ ସଂସ୍କାର କରାଇଦେଲେ । ପିଲା ଦୁହେଁ ଶିବପୂଜାରେ ତତ୍ପର ରହିବା ସହିତ ବଢ଼ିବାକୁ ଲାଗିଲେ । ସେ ଦୁହେଁ ଶାଣ୍ଡିଲ୍ୟମୁନିଙ୍କ ଉପଦେଶରେ ନିୟମପରାୟଣ ହୋଇ ଓ ଶୁଭବ୍ରତ ପାଳନ କରି ପ୍ରଦୋଷକାଳରେ ଶିବଙ୍କୁ ପୂଜା କରୁଥିଲେ । ଦିନେ ଦ୍ୱିଜକୁମାରକୁ ସଙ୍ଗରେ ନ ନେଇ ରାଜକୁମାର ନଦୀରେ ସ୍ନାନ କରିବାକୁ ଯାଇଥିଲା । ସେଠାରେ ତାକୁ ଗୋଟିଏ ଧନରତ୍ନପୂର୍ଣ୍ଣ କଳସ ମିଳିଗଲା । ଏହି ପ୍ରକାରେ ଶିବଙ୍କ ପୂଜା କରି କରି ପିଲା ଦୁହିଁଙ୍କର ସେଠାରେ ଆହୁରି ବର୍ଷେ ବିତିଗଲା । ତା'ପରେ ଦିନେ ରାଜକୁମାର ବ୍ରାହ୍ମଣକୁମାର ସଙ୍ଗେ ବନକୁ ଯାଇଥିବା ବେଳେ ଅକସ୍ମାତ୍ ପିତାଙ୍କ ସଙ୍ଗେ ଆସିଥିବା ଗୋଟିଏ ଗନ୍ଧର୍ବକନ୍ୟା ସହ ତା'ର ଭେଟ ହେଲା । ଗନ୍ଧର୍ବ ତା'ର କନ୍ୟାର ବିବାହ ରାଜକୁମାର ସହିତ କରିଦେଲା ଏବଂ ବିବାହ କରି ରାଜକୁମାର ନିଷ୍କଣ୍ଟକ ରାଜ୍ୟ ଭୋଗ କଲା । ଯେଉଁ ବ୍ରାହ୍ମଣପତ୍ନୀ ପ୍ରଥମେ ତାକୁ ପୁତ୍ର ପରି ପାଳନ କରିଥିଲା, ସେ ରାଜମାତା ହୋଇଗଲା ଏବଂ ବ୍ରାହ୍ମଣକୁମାର ତା'ର ଭାଇ ହେଲା । ରାଜାଙ୍କ ନାମ ଧର୍ମଗୁପ୍ତ ଥିଲା । ଏହିରୂପେ ଦେବେଶ୍ୱର ଶିବଙ୍କୁ ଆରାଧନା କରି ରାଜା ଧର୍ମଗୁପ୍ତ ନିଜ ରାଣୀ ସହିତ ବିଦର୍ଭଦେଶରେ ରାଜୋଚିତ ସୁଖ ଉପଭୋଗ କଲେ । ଏହା ଥିଲା ଭିକ୍ଷୁବର୍ଯ୍ୟ ଅବତାର କଥା । ଏହି ଅବତାରରେ ଭଗବାନ ରାଜା ଧର୍ମଗୁପ୍ତଙ୍କୁ ବାଲ୍ୟକାଳରେ ସୁଖପ୍ରଦାନ କରିଥିଲେ । ଏହି ପବିତ୍ର ଆଖ୍ୟାନ ପାପହାରୀ, ପରମ ପାବନ, ଚତୁର୍ବର୍ଗପ୍ରଦାତା ଏବଂ ସମସ୍ତ ଅଭୀଷ୍ଟପ୍ରଦାୟକ । ଯେ ପ୍ରତିଦିନ ଏକାଗ୍ରଚିତ୍ତରେ ଏହାକୁ ଶୁଣେ ବା ଶୁଣାଏ, ସେ ଇହଲୋକରେ ସମସ୍ତ ଭୋଗ ଉପଭୋଗ କରି ଶେଷରେ ଶିବଙ୍କ ଧାମକୁ ଯାଏ ।

(ଅଧ୍ୟାୟ ୩୧)



## ଶିବଙ୍କର ସୁରେଶ୍ୱରାବତାର କଥା, ଉପମନ୍ୟୁଙ୍କ ତପସ୍ୟା ଓ ତାଙ୍କୁ ଉତ୍ତମ ବର ପ୍ରାପ୍ତି

ନନ୍ଦୀଶ୍ୱର କହୁଛନ୍ତି—ସନତ୍‌କୁମାର ! ଏବେ ମୁଁ ପରମାତ୍ମା ଶିବଙ୍କ ସୁରେଶ୍ୱରାବତାର ସମ୍ବନ୍ଧରେ ବର୍ଣ୍ଣନା କରିବି, ଯେ କି ଧୌମ୍ୟଙ୍କ ବଡ଼ ଭାଇ ଉପମନ୍ୟୁଙ୍କର ହିତସାଧନ କରିଥିଲେ । ଉପମନ୍ୟୁ ବ୍ୟାଘ୍ରପାଦ ମୁନିଙ୍କ ପୁତ୍ର ଥିଲେ । ସେ ପୂର୍ବଜନ୍ମରେ ତପସଂସିଦ୍ଧ ଥିଲେ ସୁଦ୍ଧା ସମ୍ପ୍ରତି ମୁନିକୁମାର ରୂପରେ ଜନ୍ମଗ୍ରହଣ କରିଥିଲେ । ସେ ଦୈବବିଧାନବଶତଃ ଗରିବ ଥିଲେ ଏବଂ ଶୈଶବାବସ୍ଥାରେ ହିଁ ମାଆଙ୍କ ସହିତ ମାମୁଁଘରେ ରହୁଥିଲେ । ଦିନେ ତାଙ୍କୁ ସ୍ୱଳ୍ପ ମାତ୍ରାରେ କ୍ଷୀର ପିଇବାକୁ ମିଳିଥିଲା । ସେହିଦିନ ଠାରୁ ତାଙ୍କର କ୍ଷୀର ପ୍ରତି ଲାଳସା ବୃଦ୍ଧି ପାଇଲା ଏବଂ ସେ

ମାଆଙ୍କୁ ବାରମ୍ବାର କ୍ଷୀର ମାଗିଲେ । ତାଙ୍କର ତପସ୍ୱିନୀ ମାଆ ଘର ଭିତରକୁ ଯାଇ ଗୋଟିଏ ଉପାୟ କଲେ । ଉଞ୍ଛବୃତ୍ତିରେ ସଂଗ୍ରହ କରିଥିବା କିଛି ଶସ୍ୟକୁ ଶିଳରେ ବାଟି ତାହାକୁ ପାଣିରେ ଗୋଳାଇ କ୍ଷୀର ପରି କରିଦେଲେ ଏବଂ ପୁଅକୁ ସ୍ନେହରେ ବୁଝାଇ-ସୁଝାଇ ପିଇବାକୁ ଦେଲେ । ମାଆ ଦେଇଥିବା ନକଲି କ୍ଷୀରକୁ ପିଇବାମାତ୍ରେ ଉପମନ୍ୟୁ "ଏ ତ କ୍ଷୀର ନୁହେଁ" କହି ପୁଣି କାନ୍ଦିବାକୁ ଲାଗିଲେ । ପୁଅର କାନ୍ଦ ଦେଖି ମାଆ ମନରେ ବହୁତ ଦୁଃଖ ହେଲା । ସେ ପୁଅର ଅଶ୍ରୁ ପୋଛି ଦେଇ କହିଲେ—"ବାପାରେ ! ଆମେ ତ ସର୍ବଦା ବନରେ ରହିଥାଉ । ଆମକୁ କ୍ଷୀର କେଉଁଠୁ ମିଳିବ? ଭଗବାନ ଶିବଙ୍କ କୃପା ବିନା କାହାକୁ କ୍ଷୀର ମିଳେ ନାହିଁ । ପୂର୍ବଜନ୍ମରେ ଭଗବାନ ଶିବଙ୍କ ନିମିତ୍ତ ଯାହା କିଛି କରାଯାଇଛି, ଏବେକାର ଜନ୍ମରେ ତାହାରି ଫଳ ହିଁ ମିଳୁଛି ।"

ମାଆଙ୍କ କଥା ଶୁଣି ଉପମନ୍ୟୁ ଭଗବାନ ଶିବଙ୍କ ଆରାଧନା କରିବାକୁ ନିର୍ଣ୍ଣୟ କଲେ । ସେ ହିମାଳୟ ପର୍ବତକୁ ଯାଇ ସେଠାରେ ବାୟୁ ପାନ କରି ରହି ତପସ୍ୟା କଲେ । ସେ ଆଠଟି ଇଟାରେ ଗୋଟିଏ ମନ୍ଦିର ତିଆରି କଲେ । ତା' ଭିତରେ ଗୋଟିଏ ମାଟିର ଶିବଲିଙ୍ଗ ସ୍ଥାପନ କରି ସେଥିରେ ଶିବପାର୍ବତୀଙ୍କୁ ଆବାହନ କଲେ । ତା'ପରେ ଜଙ୍ଗଲରୁ ପତ୍ରପୁଷ୍ପ ଆଣି ଭକ୍ତିଭାବରେ ପଞ୍ଚାକ୍ଷର ମନ୍ତ୍ର ଉଚ୍ଚାରଣପୂର୍ବକ ଶିବପାର୍ବତୀଙ୍କୁ ପୂଜା କଲେ । ଶିବପାର୍ବତୀଙ୍କୁ ଧ୍ୟାନ ଓ ପୂଜା କରିବା ପରେ ସେ ପଞ୍ଚକ୍ଷର ମନ୍ତ୍ର ଜପ କରୁଥିଲେ । ଏହି ପ୍ରକାରେ ତପସ୍ୟା କରୁ କରୁ ବହୁକାଳ ବିତିଗଲା । ମୁନେ ! ବାଳକ ଉପମନ୍ୟୁଙ୍କ ତପସ୍ୟାରେ ଚରାଚର ପ୍ରାଣୀ ସମେତ ସମଗ୍ର ଭୁବନ ସଂତପ୍ତ ହୋଇଉଠିଲା । ତେଣୁ ଦେବତାଙ୍କ ପ୍ରାର୍ଥନାକ୍ରମେ ଉପମନ୍ୟୁଙ୍କ ଭକ୍ତିଭାବର ପରୀକ୍ଷା ନେବା ନିମନ୍ତେ ମାତା ପାର୍ବତୀଙ୍କ ସହିତ ଭଗବାନ ଶିବ ତାଙ୍କ ସମୀପକୁ ଗଲେ । ସେତେବେଳେ ଶିବ ଦେବରାଜ ଇନ୍ଦ୍ରଙ୍କର ଓ ପାର୍ବତୀ ଶଚୀଙ୍କର ଏବଂ ନନ୍ଦୀଶ୍ୱର ବୃଷଭ ଐରାବତର ରୂପ ଧାରଣ କରିଥିଲେ । ନିକଟକୁ ଆସି ସୁରେଶ୍ୱର ରୂପଧାରୀ ଶିବ ବାଳକ ଉପମନ୍ୟୁଙ୍କୁ ବର ମାଗିବାକୁ କହିଲେ । ଉପମନ୍ୟୁ ପ୍ରଥମେ ଶିବଭକ୍ତି ମାଗିଲେ । ଭଗବାନ ଶିବ ନିଜକୁ ଇନ୍ଦ୍ର ବୋଲି ପରିଚୟ ଦେଇ ପରୀକ୍ଷା ନିମନ୍ତେ ଶିବଙ୍କୁ ନିନ୍ଦା କଲେ । ଏହା ଶୁଣି ଉପମନ୍ୟୁ ଶିବଙ୍କ ଅତିରିକ୍ତ ଅନ୍ୟ କାହାରି ଠାରୁ କିଛି ନେବାକୁ ଅସ୍ୱୀକାର କରିଦେଲେ । ଏପରିକି ସେ ଇନ୍ଦ୍ରଙ୍କୁ ମାରି ନିଜେ ମଧ୍ୟ ମରିଯିବାକୁ ପ୍ରସ୍ତୁତ ହୋଇଗଲେ । ସେ ଭସ୍ମକୁ ଅଘୋରାସ୍ତ୍ରରୂପେ ଅଭିମନ୍ତ୍ରିତ କରି ନିକ୍ଷେପ କରିବା ମାତ୍ରେ ତାହାକୁ ନନ୍ଦୀଶ୍ୱର ଧରିପକାଇଲେ; ପୁଣି ସେ ନିଜକୁ ପୋଡ଼ିଦେବା ପାଇଁ ଯେଉଁ ଅଗ୍ନିକୁ ଧାରଣ କଲେ, ତାହାକୁ ଭଗବାନ ଶିବ ଶାନ୍ତ କରିଦେଲେ । ଏହାପରେ ସେମାନେ ସମସ୍ତେ ସେମାନଙ୍କର ପ୍ରକୃତ ରୂପରେ ପ୍ରକଟ ହୋଇଗଲେ । ଶିବ ଉପମନ୍ୟୁଙ୍କୁ ନିଜର ପୁତ୍ରରୂପେ ସ୍ୱୀକାର କଲେ ଏବଂ ତାଙ୍କୁ ସ୍ନେହ ଦେଇ କହିଲେ—"ବତ୍ସ ! ମୁଁ ତୁମର ପିତା ଓ ପାର୍ବତୀ ତୁମର ମାତା । ତୁମକୁ ଆଜିଠାରୁ ସନାତନ କୁମାରତ୍ୱ ପ୍ରାପ୍ତ ହେବ । ମୁଁ ତୁମ ପାଇଁ ଦୁଗ୍ଧ, ଦଧି ଓ ମଧୁର ହଜାର ହଜାର ସମୁଦ୍ର ଦେଉଛି । ଭକ୍ଷ୍ୟ, ଭୋଜ୍ୟ ଇତ୍ୟାଦି ପଦାର୍ଥର ସମୁଦ୍ର ମଧ୍ୟ ତୁମ ପାଇଁ ସୁଲଭ ହୋଇଯିବ । ମୁଁ ତୁମକୁ ଅମରତ୍ୱ ଓ ମୋ ଗଣଙ୍କର ଆଧିପତ୍ୟ ପ୍ରଦାନ କରୁଛି ।" ଏପରି କହି ଶମ୍ଭୁ ଉପମନ୍ୟୁଙ୍କୁ ଆହୁରି ଅନେକ ପ୍ରକାର ଦିବ୍ୟ ବର ପ୍ରଦାନ କଲେ । ପାଶୁପତବ୍ରତ, ପାଶୁପତଜ୍ଞାନ ତଥା ବ୍ରତଯୋଗର ଉପଦେଶ ମଧ୍ୟ ପ୍ରଦାନ କଲେ । ତାଙ୍କୁ ପ୍ରବଚନର ଶକ୍ତି ଦେଲେ ଏବଂ ନିଜର

ପରମ ପଦ ପ୍ରଦାନ କଲେ । ତା'ପରେ ତାଙ୍କୁ ଦୁଇ ହାତରେ କୋଳକୁ ଟାଣିନେଇ ତାଙ୍କ ମଥାରେ ଚୁମ୍ବନ ଦେଲେ; ପୁଣି ଦେବୀ ପାର୍ବତୀଙ୍କୁ ସମର୍ପି ଦେଇ କହିଲେ–"ଏ ତୁମର ପୁତ୍ର।" ପାର୍ବତୀ ମଧ୍ୟ ଅତ୍ୟନ୍ତ ସ୍ନେହରେ ତାଙ୍କ ମୁଣ୍ଡ ଉପରେ ହାତ ବୁଲାଇ ତାଙ୍କୁ ଅକ୍ଷୟ କୁମାରପଦ ପ୍ରଦାନ କଲେ । ଶିବ ସନ୍ତୁଷ୍ଟ ହୋଇ ତାଙ୍କ ପାଇଁ ପିଣ୍ଡୀଭୂତ ଏବଂ ଅବିନାଶୀ ସାକାର କ୍ଷୀରସାଗର ପ୍ରସ୍ତୁତ କରିଦେଲେ । ଏହାଛଡ଼ା ଯୋଗସମ୍ବନ୍ଧିତ ଐଶ୍ୱର୍ଯ୍ୟ, ନିତ୍ୟ ସନ୍ତୋଷ, ଅକ୍ଷୟ ବ୍ରହ୍ମବିଦ୍ୟା ତଥା ଉତ୍ତମ ସମୃଦ୍ଧି ପ୍ରଦାନ କଲେ । ତାଙ୍କ କୁଳ ଓ ଗୋତ୍ର ଅକ୍ଷୟ ହେବ ବୋଲି ବର ଦେଲେ । ସେ ଏହା ମଧ୍ୟ କହିଲେ ଯେ–ମୁଁ ତୁମର ଏହି ଆଶ୍ରମରେ ନିତ୍ୟ ନିବାସ କରିବି ।

ଏତିକି କହି ଭଗବାନ ସେଠାରୁ ଅନ୍ତର୍ହିତ ହୋଇଗଲେ । ଉପମନ୍ୟୁ ବର ପାଇ ପ୍ରସନ୍ନ ମନରେ ଘରକୁ ଫେରିଲେ । ସେ ମାଆଙ୍କ ଆଗରେ ସବୁ କଥା କହିଲେ । ତାହା ଶୁଣି ମାଆ ପରମ ଆନନ୍ଦିତ ହେଲେ । ଉପମନ୍ୟୁ ମଧ୍ୟ ଅତ୍ୟନ୍ତ ସୁଖୀ ହେବା ସହିତ ସମସ୍ତଙ୍କର ପୂଜନୀୟ ହୋଇଗଲେ । ହେ ସନତ୍କୁମାର ! ମୁଁ ତୁମକୁ ପରମେଶ୍ୱର ଶିବଙ୍କର ସୁରେଶ୍ୱରାବତାର ପ୍ରସଙ୍ଗ କହିଦେଲି । ଏହି ଅବତାର ସାଧୁ-ସଜ୍ଜନଙ୍କୁ ସଦା ସୁଖ ପ୍ରଦାନ କରିଥାଏ । ସୁରେଶ୍ୱରାବତାର କଥା ପାପ ଦୂର କରିବା ସହ ସମସ୍ତ ମନୋବାଞ୍ଛା ପୂରଣ କରିଥାଏ । ଯେ ଏହାକୁ ଭକ୍ତିଭାବରେ ଶୁଣେ ବା ଶୁଣାଏ, ସେ ଜୀବନରେ ସମସ୍ତ ସୁଖ ଭୋଗ କରି ଅନ୍ତକାଳରେ ଭଗବାନ ଶିବଙ୍କୁ ପ୍ରାପ୍ତ ହୁଏ । (ଅଧ୍ୟାୟ ୩୨)

***

## ଶିବଙ୍କ କିରାତାବତାର ପ୍ରସଙ୍ଗର ଉପକ୍ରମ, ଶ୍ରୀକୃଷ୍ଣଙ୍କ କୃପାରୁ ଦ୍ୱୈତବନରେ ଦୁର୍ବାସାଙ୍କ ଶାପରୁ ପାଣ୍ଡବଙ୍କ ରକ୍ଷା, ବ୍ୟାସଦେବ ଅର୍ଜୁନଙ୍କୁ ଶକ୍ରବିଦ୍ୟା ପ୍ରଦାନ କରିବା ସହ ପାର୍ଥିବପୂଜନର ବିଧି ଶିଖାଇ ତପ ନିମନ୍ତେ ସମ୍ମତି ଦେବା, ଇନ୍ଦ୍ରକୀଳ ପର୍ବତରେ ଅର୍ଜୁନଙ୍କର ତପସ୍ୟା, ଇନ୍ଦ୍ରଙ୍କ ଆଗମନ ଓ ବରଦାନ ଏବଂ ଶିବଙ୍କୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ ପୁନଃ ଅର୍ଜୁନଙ୍କ ତପସ୍ୟା

ଏହାପରେ ନନ୍ଦୀଶ୍ୱର ପାର୍ବତୀଙ୍କ ବିବାହ ପ୍ରସଙ୍ଗରେ ଜଟିଳ, ନର୍ତ୍ତକ ଓ ଦ୍ୱିଜ ଅବତାର କଥା ଏବଂ ତା'ପରେ ଅଶ୍ୱତ୍ଥାମା ଅବତାର କଥା ବର୍ଣ୍ଣନା କରି ପୁନଃ କହିଲେ–ବୁଦ୍ଧିମାନ୍ ସନତ୍କୁମାର! ଏବେ ତୁମେ ପିନାକଧାରୀଙ୍କର କିରାତ ନାମକ ଅବତାର କଥା ଶୁଣ । ଏହି ଅବତାରରେ ସେ ମୂକ ନାମକ ଦୈତ୍ୟକୁ ବଧ କରିଥିଲେ ଏବଂ ପ୍ରସନ୍ନ ହୋଇ ଅର୍ଜୁନଙ୍କୁ ବର ପ୍ରଦାନ କରିଥିଲେ । ସୁଯୋଧନ ଯେତେବେଳେ ମହାବଳୀ ପାଣ୍ଡବଙ୍କୁ ଜୁଆରେ ପରାସ୍ତ କରିଦେଲା, ସେତେବେଳେ ପାଣ୍ଡବମାନେ ସତୀସାଧ୍ୱୀ ଦ୍ରୌପଦୀଙ୍କୁ ସାଙ୍ଗରେ ନେଇ ଦ୍ୱୈତବନକୁ ପଳାଇଗଲେ । ସେଠାରେ ପାଣ୍ଡବମାନେ ସୂର୍ଯ୍ୟଙ୍କ ପ୍ରଦତ୍ତ ଅକ୍ଷୟପାତ୍ରର ସହାୟତାରେ ସୁଖରେ କାଳାତିପାତ କରୁଥିଲେ । ବିପ୍ରବର ! ସେହି ସମୟରେ ସୁଯୋଧନ ମୁନିବର ଦୁର୍ବାସାଙ୍କୁ ସମ୍ମାନିତ କରି ତାଙ୍କୁ ଛଳପୂର୍ବକ ପାଣ୍ଡବଙ୍କ ନିକଟକୁ ଯିବାକୁ ପ୍ରେରିତ କଲା । ମହର୍ଷି ଦୁର୍ବାସା ତାଙ୍କର ଦଶହଜାର ଶିଷ୍ୟଙ୍କ ସହିତ ଆନନ୍ଦରେ ସେଠାରେ ଉପସ୍ଥିତ ହେଲେ ଏବଂ ପାଣ୍ଡବଙ୍କ ସମ୍ମୁଖରେ ମନୋନୁକୂଳ ଭୋଜନର

ଅଭିଳାଷ ବ୍ୟକ୍ତ କଲେ । ପାଣ୍ଡବମାନେ ତାଙ୍କ ଇଚ୍ଛା ରକ୍ଷା କରି ସେମାନଙ୍କୁ ସ୍ନାନାଦି କୃତ୍ୟ ସମ୍ପନ୍ନ କରି ଆସିବାକୁ ପଠାଇଦେଲେ । ମୁନୀଶ୍ୱର ! ଏଣେ କୁଟୀରରେ ଅନ୍ନର ଅଭାବ ଦେଖି ପାଣ୍ଡବମାନେ ବଡ଼ ସଂକଟରେ ପଡ଼ିଗଲେ ଏବଂ ମନେ ମନେ ପ୍ରାଣତ୍ୟାଗ କରିଦେବାକୁ ଭାବିଲେ । ଏତିକିବେଳେ ଦ୍ରୌପଦୀ ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ । ସେ ଅବିଳମ୍ବେ ସେଠାରେ ପହଞ୍ଚିଲେ ଏବଂ ଶାଗ ଟିକିଏ ପାଟିରେ ପକାଇଦେଇ ସମସ୍ତ ତପସ୍ୱୀଙ୍କୁ ତୃପ୍ତ କରିଦେଲେ । ଦୁର୍ବାସା ଯେତେବେଳେ ଜାଣିଲେ ଯେ ସମସ୍ତଙ୍କ କ୍ଷୁଧା ଶାନ୍ତ ହୋଇସାରିଛି, ସେ ସେଠାରୁ ସଶିଷ୍ୟ ପଳାୟନ କଲେ । ଏହିରୂପେ ଶ୍ରୀକୃଷ୍ଣଙ୍କ କୃପାରୁ ପାଣ୍ଡବ ସଂକଟରୁ ରକ୍ଷା ପାଇଗଲେ ।

ତା'ପରେ ଭଗବାନ ଶ୍ରୀକୃଷ୍ଣ ପାଣ୍ଡବଙ୍କୁ ଶିବଙ୍କ ଆରାଧନା କରିବାକୁ ପ୍ରେରିତ କଲେ । ବ୍ୟାସଦେବ ମଧ୍ୟ ଆସି ସେମାନଙ୍କୁ ଶିବଙ୍କ ଆରାଧନା କରିବାକୁ ଉପଦେଶ ଦେଇ କହିଲେ—''ଶିବ ସମସ୍ତ ଦୁଃଖ ନାଶ କରିଥାନ୍ତି । ଭକ୍ତି କଲେ ସେ ଅତି ଶୀଘ୍ର ପ୍ରସନ୍ନ ହୋଇଯାଆନ୍ତି । ତେଣୁ ସମସ୍ତେ ଶିବଙ୍କ ସେବା କରିବା ଉଚିତ । ମହେଶ୍ୱର ପ୍ରସନ୍ନ ହେଲେ ଭକ୍ତଙ୍କର ସମସ୍ତ ଅଭିଳାଷ ପୂରଣ କରିଦିଅନ୍ତି; ଏପରିକି ସେ ଇହଲୋକ ପାଇଁ ସମସ୍ତ ପ୍ରକାର ଭୋଗ ଓ ପରଲୋକ ପାଇଁ ମୋକ୍ଷ ମଧ୍ୟ ପ୍ରଦାନ କରନ୍ତି । ଏଣୁ ଭୁକ୍ତି ଓ ମୁକ୍ତି ରୂପୀ ଫଳ ଚାହୁଁଥିବା ବ୍ୟକ୍ତି ସର୍ବଦା ଶମ୍ଭୁଙ୍କ ସେବାପୂଜା କରିବା ଉଚିତ; କାରଣ ଭଗବାନ ଶଙ୍କର ସାକ୍ଷାତ୍ ପରମ ପୁରୁଷ, ଦୁଷ୍ଟମାନଙ୍କ ସଂହାରକ ଓ ସାଧୁଜନଙ୍କ ଆଶ୍ରୟ । ଏବେ ଅର୍ଜୁନ ପ୍ରଥମେ ଦୃଢ଼ତାପୂର୍ବକ ଶକ୍ରବିଦ୍ୟା ଜପ କରୁ । ଇନ୍ଦ୍ର ଆସି ପ୍ରଥମେ ପରୀକ୍ଷା ନେବେ ଓ ତା'ପରେ ସନ୍ତୁଷ୍ଟ ହୋଇଯିବେ । ସେ ପ୍ରସନ୍ନ ହୋଇଗଲେ ସର୍ବଦା ବିଘ୍ନମାନ ନଷ୍ଟ କରିବେ ଓ ଶିବଙ୍କ ଶ୍ରେଷ୍ଠ ମନ୍ତ୍ର ମଧ୍ୟ ପ୍ରଦାନ କରିବେ ।''

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଏତିକି କହି ବ୍ୟାସଦେବ ଅର୍ଜୁନଙ୍କୁ ଡାକି ତାଙ୍କୁ ଶକ୍ରବିଦ୍ୟା ଉପଦେଶ ଦେବାକୁ ପ୍ରସ୍ତୁତ ହେଲେ । ତୀକ୍ଷ୍ଣବୁଦ୍ଧି



ଅର୍ଜୁନ ସ୍ନାନ କରି ପୂର୍ବାଭିମୁଖୀ ହୋଇ ବସି ସେହି ବିଦ୍ୟାକୁ ଗ୍ରହଣ କଲେ । ତା'ପରେ ଉଦାରବୁଦ୍ଧି ମୁନିବର ବ୍ୟାସ ଅର୍ଜୁନଙ୍କୁ ପାର୍ଥିବଲିଙ୍ଗ ପୂଜନର ବିଧାନ ଶିଖାଇ କହିଲେ—

ବ୍ୟାସ କହିଲେ—''ପାର୍ଥ ! ଏବେ ତୁମେ ପରମ ରମଣୀୟ ଇନ୍ଦ୍ରକୀଳ ପର୍ବତକୁ ଯାଅ ଏବଂ ସେଠାରେ ଜାହ୍ନବୀ ତଟରେ ବସି ସମ୍ୟକ୍ ପ୍ରକାରେ ତପସ୍ୟା କର । ଏହି ବିଦ୍ୟା ଅଦୃଶ୍ୟରୂପେ ସର୍ବଦା ତୁମର ହିତ କରିବ ।'' ଏପରି ଆଶୀର୍ବାଦ ଦେଇ ବ୍ୟାସ ପାଣ୍ଡବଙ୍କୁ କହିଲେ—''ନୃପଶ୍ରେଷ୍ଠ ! ତୁମେମାନେ ଧର୍ମପଥରେ ଅଟଳ ରୁହ; ଏହାଦ୍ୱାରା ତୁମକୁ ଯେ ସର୍ବଥା ଶ୍ରେଷ୍ଠ ସିଦ୍ଧି ପ୍ରାପ୍ତ ହେବ, ଏଥିରେ ସନ୍ଦେହ କର ନାହିଁ ।''

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ମୁନିବର ବ୍ୟାସ ପାଣ୍ଡବଙ୍କୁ ଏପରି ଆଶୀର୍ବାଦ ଦେଇ ତଥା ଶିବଙ୍କ ପାଦପଦ୍ମକୁ ସ୍ମରଣ କରି ସେଠାରୁ ଅଦୃଶ୍ୟ

ହୋଇଗଲେ । ଏଣେ ଶିବମନ୍ତ୍ର ଧାରଣ କରିବାରୁ ଅର୍ଜୁନଙ୍କ ଠାରେ ମଧ୍ୟ ଅନୁପମ ତେଜ ବ୍ୟାପ୍ତ ହୋଇଗଲା । ସେ ଉଦ୍ଦୀପ୍ତ ଦିଶିଲେ । ଅର୍ଜୁନଙ୍କ ଠାରେ ବିପୁଳ ତେଜ ଦେଖି ଅନ୍ୟ ପାଣ୍ଡବମାନଙ୍କୁ ବିଶ୍ୱାସ ହୋଇଗଲା ଯେ ସେମାନଙ୍କର ବିଜୟ ସୁନିଶ୍ଚିତ । (ତା'ପରେ ସେମାନେ ଅର୍ଜୁନଙ୍କୁ କହିଲେ–) "ବ୍ୟାସଦେବଙ୍କ କଥନ ଅନୁସାରେ ଏହା ପ୍ରତୀତ ହେଉଛି ଯେ ଏ କାର୍ଯ୍ୟକୁ କେବଳ ତୁମେ ହିଁ କରିପାରିବ, ଅନ୍ୟ କାହାରି ଦ୍ୱାରା କଦାପି ଏହି କାର୍ଯ୍ୟ ହୋଇପାରିବ ନାହିଁ । ତେଣୁ ତୁମେ ଯାଅ ଏବଂ ଆମମାନଙ୍କ ଜୀବନକୁ ସଫଳ କର ।" ଅର୍ଜୁନ ଗୃହିଭାଇଙ୍କ ଠାରୁ ଓ ଦ୍ରୌପଦୀଙ୍କ ଠାରୁ ଅନୁମତି ମାଗିଲେ । ସେମାନେ ଯଦ୍ୟପି ଅର୍ଜୁନଙ୍କ ବିରହ ପାଇଁ ଦୁଃଖୀ ହେଲେ, କିନ୍ତୁ କାର୍ଯ୍ୟର ମହତ୍ତ୍ୱକୁ ଦେଖି ସମସ୍ତେ ଅନୁମତି ଦେଲେ । ଅର୍ଜୁନ ମନେ ମନେ ପ୍ରସନ୍ନ ହୋଇ ଇନ୍ଦ୍ରକୀଳ ପର୍ବତ ଅଭିମୁଖେ ଗମନ କଲେ । ସେଠାକୁ ଯାଇ ସେ ଗଙ୍ଗା ନିକଟସ୍ଥ ଗୋଟିଏ ମନୋରମ ସ୍ଥାନରେ ରହିଲେ । ତାହା ସ୍ୱର୍ଗଠାରୁ ମଧ୍ୟ ଉତ୍ତମ ଓ ଅଶୋକବନ ଠାରୁ ମଧ୍ୟ ଅଧିକ ସୁଶୋଭିତ ଥିଲା । ସେଠାରେ ସେ ସ୍ନାନ ସାରି ଗୁରୁବରଙ୍କୁ ପ୍ରଣାମ କଲେ ଏବଂ ତାଙ୍କ ଉପଦେଶ ଅନୁସାରେ ଆପଣା ବେଶ ବଦଳାଇ ଦେଲେ । ତା'ପରେ ମନେ ମନେ ଇନ୍ଦ୍ରିୟଙ୍କୁ ଅପକର୍ଷଣ କରି ଯଥୋଚିତ ଆସନରେ ବସିଗଲେ ଏବଂ ସୁନ୍ଦର ସମସୂତ୍ରକ ପାର୍ଥିବ ଶିବଲିଙ୍ଗଟିଏ ନିର୍ମାଣ କରି ତା' ଆଗରେ ବସି ଅନୁପମ ତେଜୋରାଶିସମ୍ପନ୍ନ ଶିବଙ୍କୁ ଧ୍ୟାନ କଲେ । ସେ ତ୍ରିସଂଧ୍ୟାରେ ସ୍ନାନ କରି ଶିବଙ୍କୁ ଅନେକ ପ୍ରକାରେ ବାରମ୍ବାର ପୂଜା କରିବା ସହ ତାଙ୍କ ଉପାସନାରେ ତଲ୍ଲୀନ ରହିଲେ । ଏହାଫଳରେ ଅର୍ଜୁନଙ୍କ ଶିରୋଭାଗରୁ ତେଜର ଜ୍ୱାଳା ନିର୍ଗତ ହେଲା । ତାହାକୁ ଦେଖି ଇନ୍ଦ୍ରଙ୍କ ଗୁପ୍ତଚରମାନେ ଭୟଭୀତ ହୋଇଗଲେ । ସେମାନେ ଭାବିଲେ–"ଏ ବ୍ୟକ୍ତି ଏଠାକୁ କେତେବେଳେ ଆସିଲା?" ସେମାନେ ଉକ୍ତ ଘଟଣା ଇନ୍ଦ୍ରଙ୍କୁ ଜଣାଇ ଦେବାକୁ ଉଚିତ ମଣିଲେ ଏବଂ ସେହି ଉଦ୍ଦେଶ୍ୟରେ ସେମାନେ ଇନ୍ଦ୍ରଙ୍କ ପାଖକୁ ଗଲେ ।

ଗୁପ୍ତଚରମାନେ କହିଲେ—**ଦେବେଶ !** ବନରେ ଜଣେ ବ୍ୟକ୍ତି ତପସ୍ୟା କରୁଛି । କିନ୍ତୁ ସେ କେଉଁ ଦେବତା, କି ଋଷି, କି ସୂର୍ଯ୍ୟ, କି ଅଗ୍ନି—ଆମେ କିଛି ଜାଣିପାରୁ ନାହୁଁ । ତା'ର ଅସହ୍ୟ ତେଜରେ ସନ୍ତପ୍ତ ହୋଇ ଆମେ ଆପଣଙ୍କ ପାଖକୁ ଆସିଛୁ । ଆମେ ତାହାର ଚରିତ ଆପଣଙ୍କୁ କହିଦେଲୁ; ଏଣିକି ଆପଣଙ୍କର ଯାହା ଇଚ୍ଛା କରନ୍ତୁ ।

ନନ୍ଦୀଶ୍ୱର କହିଲେ–**ମୁନେ !** ଗୁପ୍ତଚରଙ୍କ କଥା ଶୁଣି ଇନ୍ଦ୍ରଙ୍କୁ ନିଜ ପୁତ୍ର ଅର୍ଜୁନଙ୍କର ସମସ୍ତ ମନୋରଥ ଜଣା ପଡ଼ିଗଲା । ସେ ପର୍ବତରକ୍ଷକଙ୍କୁ ବିଦା କରି ନିଜେ ସେଠାକୁ ଯିବାକୁ ଚିନ୍ତା କଲେ । ବିପ୍ରବର ! ଇନ୍ଦ୍ର ଅର୍ଜୁନଙ୍କୁ ପରୀକ୍ଷା କରିବା ପାଇଁ ଜଣେ ବୃଦ୍ଧ ବ୍ରହ୍ମଚାରୀ ବ୍ରାହ୍ମଣବେଶରେ ସେଠାରେ ପହଞ୍ଚିଲେ ।



ତାଙ୍କ ଆଗମନ ଦେଖି ପାଣ୍ଡୁପୁତ୍ର ଅର୍ଜୁନ ତାଙ୍କୁ ପୂଜା ଓ ସ୍ତୁତି କଲେ । ତା'ପରେ ତାଙ୍କ ସମ୍ମୁଖରେ ଛିଡ଼ା ହୋଇ ପଚ୍ଚାରିଲେ—''ବ୍ରହ୍ମନ୍ ! କୁହନ୍ତୁ, କେଉଁଠାରୁ ଆପଣଙ୍କର ଆଗମନ ହେଲା?'' ଉତ୍ତରରେ ବ୍ରାହ୍ମଣବେଶଧାରୀ ଇନ୍ଦ୍ର ଏଭଳି ଉତ୍ତର ଦେଲେ, ଯଦ୍ଦ୍ୱାରା ଅର୍ଜୁନ ତପସ୍ୟାରୁ ବିଚଳିତ ହୋଇଯିବେ । ମାତ୍ର ସେ ଦେଖିଲେ ଯେ ଅର୍ଜୁନ ତାଙ୍କ ନିର୍ଣ୍ଣୟରେ ଅଟଳ । ତେଣୁ ଇନ୍ଦ୍ର ନିଜର ବାସ୍ତବିକ ସ୍ୱରୂପ ପ୍ରକଟ କରି ଅର୍ଜୁନଙ୍କୁ ଶିବଙ୍କ ମନ୍ତ୍ର ପ୍ରଦାନ କଲେ ଏବଂ ତାହା ଜପ କରିବାକୁ ଆଜ୍ଞା ଦେଲେ । ତା'ପରେ ତାଙ୍କ ଅନୁଚରଙ୍କୁ ସାବଧାନତାପୂର୍ବକ ଅର୍ଜୁନଙ୍କୁ ରକ୍ଷା କରିବାର ଆଦେଶ ଦେଇ ଅର୍ଜୁନଙ୍କୁ କହିଲେ—''ଭଦ୍ର ! ତୁମେ କଦାପି ଭୁଲ୍‌ରେ ବି ରାଜ୍ୟଶାସନ କରିବା ଉଚିତ ନୁହେଁ । ପରନ୍ତପ ! ଏ ବିଦ୍ୟା ତୁମ ପାଇଁ ଶ୍ରେୟସ୍କର ହେବ । ସାଧକ ପକ୍ଷେ ସର୍ବଥା ଧୈର୍ଯ୍ୟ ଧାରଣ କରିବା ଉଚିତ । ରକ୍ଷକ ତ କେବଳ ଭଗବାନ ଶିବ ଅଟନ୍ତି । ସେ ସମ୍ପତ୍ତି ଓ ଫଳ (ମୋକ୍ଷ) ଉଭୟ ସମାନରୂପେ ପ୍ରଦାନ କରିଥାନ୍ତି; ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।''

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଅର୍ଜୁନଙ୍କୁ ବର ଦେବାପରେ ଦେବରାଜ ଇନ୍ଦ୍ର ଶିବଙ୍କୁ ସ୍ମରଣ କରି ସ୍ୱସ୍ଥାନକୁ ଫେରିଗଲେ । ମହାପରାକ୍ରମୀ ଅର୍ଜୁନ ମଧ୍ୟ ସୁରେଶ୍ୱରଙ୍କୁ ପ୍ରଣାମ କରିବା ପରେ ମନକୁ ସଂଯତ କରି ଇନ୍ଦ୍ରଙ୍କ ଉପଦେଶାନୁସାରେ ଶିବଙ୍କ ଉଦ୍ଦେଶ୍ୟରେ ତପସ୍ୟାରେ ନିମଗ୍ନ ରହିଲେ ।

(ଅଧ୍ୟାୟ ୩୩—୩୮)

***

## କିରାତାବତାର ପ୍ରସଙ୍ଗରେ ମୂକ ନାମକ ଦୈତ୍ୟ ଶୂକରରୂପ ଧାରଣ କରି ଅର୍ଜୁନଙ୍କ ପାଖକୁ ଯିବାରୁ କିରାତବେଶରେ ଶିବଙ୍କର ପ୍ରାକଟ୍ୟ ଏବଂ ଅର୍ଜୁନ ତଥା କିରାତବେଶଧାରୀ ଶିବଙ୍କ ଦ୍ୱାରା ସେହି ଦୈତ୍ୟର ବଧ

ନନ୍ଦୀଶ୍ୱର କହୁଛନ୍ତି—ମୁନିବର ! ଏହାପରେ ଅର୍ଜୁନ ବ୍ୟାସଙ୍କ ଉପଦେଶ ଅନୁସାରେ ବିଧିପୂର୍ବକ ସ୍ନାନ ଓ ନ୍ୟାସ ଇତ୍ୟାଦି କରି ପରମ ଭକ୍ତିର ସହ ଶିବଙ୍କ ଧ୍ୟାନରେ ମଗ୍ନ ରହିଲେ । ସେ ଜଣେ ଶ୍ରେଷ୍ଠ ମୁନିଙ୍କ ପରି ଗୋଟିଏ ଗୋଡ଼ରେ ଠିଆ ହୋଇ ସୂର୍ଯ୍ୟଙ୍କ ଆଡ଼କୁ ଏକାଗ୍ର ଦୃଷ୍ଟିରେ ଚାହିଁ ମନ୍ତ୍ର ଜପୁଥିଲେ । ଏହିରୂପେ ସେ ପରମ ପ୍ରେମପୂର୍ବକ ମନେ ମନେ ଶିବଙ୍କୁ ସ୍ମରଣ କରିବା ଓ ଶମ୍ଭୁଙ୍କ ସର୍ବୋତ୍କୃଷ୍ଟ ପଞ୍ଚାକ୍ଷର ମନ୍ତ୍ର ଜପିବା ସହିତ ତପସ୍ୟାରେ ନିମଗ୍ନ ରହିଲେ । ତାଙ୍କ ତପସ୍ୟାରୁ ଏଭଳି ତେଜ ବାହାରିଲା ଯେ ଦେବଗଣ ମଧ୍ୟ ବିସ୍ମିତ ହୋଇଗଲେ । ଏଣୁ ସେମାନେ ଶିବଙ୍କ ପାଖକୁ ଯାଇ ସମାହିତ ଚିତ୍ତରେ କହିଲେ—

ଦେବଗଣ କହିଲେ—ହେ ସର୍ବେଶ ! ଜଣେ ମନୁଷ୍ୟ ଆପଣଙ୍କ ପାଇଁ ତପସ୍ୟା କରୁଛି । ପ୍ରଭୋ ! ସେ ଯାହା ଚାହୁଁଛି, ତାହା ତାକୁ କାହିଁକି ଦେଇ ଦେଉ ନାହାନ୍ତି?

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଏପରି କହି ଦେବତାମାନେ ଅନେକ ପ୍ରକାରେ ତାଙ୍କୁ ସ୍ତୁତି କଲେ ଏବଂ ତାଙ୍କ ପାଦପଦ୍ମରେ ଦୃଷ୍ଟିନିବଦ୍ଧ କରି ବିନମ୍ରଭାବରେ ଛିଡ଼ା ହୋଇରହିଲେ । ଉଦାରବୁଦ୍ଧି ଓ ପ୍ରସନ୍ନାତ୍ମା ମହାପ୍ରଭୁ ଶିବ ସେମାନଙ୍କ କଥା ଶୁଣି ଉଚ୍ଚସ୍ୱରେ ହସିବାକୁ ଲାଗିଲେ ଏବଂ ଦେବତାମାନଙ୍କୁ ଏହିପରି କହିଲେ—

ଶିବ କହିଲେ—ହେ ଦେବଗଣ ! ଏବେ ତୁମେମାନେ ସ୍ୱସ୍ଥାନକୁ ଫେରିଯାଅ । ମୁଁ ତୁମମାନଙ୍କ କାର୍ଯ୍ୟକୁ ଅବଶ୍ୟ ପୂର୍ଣ୍ଣ କରିବି । ଏଥିରେ ସନ୍ଦେହ ନ କର ।

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଶମ୍ଭୁଙ୍କ କଥାରେ ଦେବଗଣଙ୍କୁ ପୂର୍ଣ୍ଣରୂପେ ବିଶ୍ୱାସ ହୋଇଗଲା । ସେମାନେ ସ୍ୱସ୍ଥାନକୁ ଲେଉଟିଗଲେ । ଇତିମଧ୍ୟରେ ମୂକ ନାମକ ଦୈତ୍ୟ ଶୂକରରୂପ ଧାରଣ କରି ଅର୍ଜୁନଙ୍କ ନିକଟକୁ ଆସିଲା । ବିପ୍ରେନ୍ଦ୍ର ! ତାକୁ ସେତେବେଳେ ମାୟାବୀ ଦୁରାତ୍ମା ଦୁର୍ଯ୍ୟୋଧନ ପଠାଇଥିଲା । ସେ ଅତ୍ୟନ୍ତ ଦ୍ରୁତଗତିରେ ପର୍ବତ-ଶିଖରମାନଙ୍କୁ ତାଡ଼ି, ବୃକ୍ଷମାନଙ୍କୁ ଉପାଡ଼ି ଛିନ୍ନଭିନ୍ନ କରିବା ସହିତ ଅନେକ ପ୍ରକାର ଶବ୍ଦ କରି କରି ଅର୍ଜୁନ ଯେଉଁଠି ବସିଥିଲେ, ସେହି ମାର୍ଗ ଦେଇ ଗଲା । ଅର୍ଜୁନଙ୍କ ଦୃଷ୍ଟି ତା' ଉପରେ ପଡ଼ିଗଲା । ସେ ଶିବଙ୍କୁ ସ୍ମରଣ କରି ଏହିପରି ଭାବିଲେ ।

ଅର୍ଜୁନ (ମନେ ମନେ) କହିଲେ—''ଏ କିଏ? ଆଉ କେଉଁଠୁ ଏଠାକୁ ଆସିଲା? ଏ ତ କ୍ରୂରକର୍ମା ପରି ଜଣା ପଡୁଛି । ଏ ନିଶ୍ଚିତରୂପେ ମୋର ଅନିଷ୍ଟ କରିବାକୁ ଏଠାକୁ ଆସୁଛି; କାରଣ ଯାହାକୁ ଦେଖିଲା ମାତ୍ରେ ମନ ପ୍ରସନ୍ନ ହୋଇଯାଏ, ସେ ନିଶ୍ଚୟ ହିତୈଷୀ; ଆଉ ଯାହାକୁ ଦେଖିଲା ମାତ୍ରେ ମନ ବ୍ୟାକୁଳ ହୋଇଯାଏ, ସେ ନିଶ୍ଚୟ ଶତ୍ରୁ । ଆଚାରରୁ କୁଳର, ଶରୀରରୁ ଭୋଜନର, ବାର୍ତ୍ତାଳାପରୁ ଶାସ୍ତ୍ରଜ୍ଞାନର ଏବଂ ନେତ୍ରରୁ ସ୍ନେହର ପରିଚୟ ମିଳିଯାଏ । ଆଚାରରୁ, ଚାଲିଚଳନରୁ, କାର୍ଯ୍ୟରୁ, କଥାବାର୍ତ୍ତାରୁ ତଥା ନେତ୍ର ଓ ମୁଖର ବିକାରରୁ ମନ ଭିତରର ଭାବ ଜଣାପଡ଼ିଯାଏ । ନେତ୍ର ଚାରି ପ୍ରକାରର—ଉଜ୍ଜ୍ୱଳ, ସରସ, ତେରେଛା ଓ ଲାଲ୍ । ବିଦ୍ୱାନ୍‌ମାନେ ଏଗୁଡ଼ିକର ପୃଥକ୍ ପୃଥକ୍ ଭାବ ପ୍ରତିପାଦନ କରିଛନ୍ତି । ବ୍ୟକ୍ତିର ନେତ୍ର ପ୍ରିୟର ସଂଯୋଗରେ ଉଜ୍ଜ୍ୱଳ, ପୁତ୍ର ଦର୍ଶନରେ ସରସ, କାମିନୀକୁ ଦେଖି ବକ୍ର ଓ ଶତ୍ରୁକୁ ଦେଖି ଲାଲ୍ ହୋଇଯାଏ । ଯେହେତୁ ଏହାକୁ ଦେଖିବା ମାତ୍ରେ ମୋର ସମସ୍ତ ଇନ୍ଦ୍ରିୟ କଳୁଷିତ ହୋଇଉଠିଛନ୍ତି, ତେଣୁ ନିଶ୍ଚୟ ଏ ମୋର ଶତ୍ରୁ; ତେଣୁ ଏହାକୁ ମାରି ପକାଇବା ଉଚିତ । ତା'ଛଡ଼ା ମୋ ଗୁରୁଙ୍କର ମଧ୍ୟ ଏହିପରି ଆଦେଶ ରହିଛି ଯେ 'ରାଜନ୍ ! ଯିଏ ତୁମକୁ କଷ୍ଟ ଦେବାକୁ ଉଦ୍ୟତ ହେବ, ତୁମେ ନିର୍ବିଘ୍ନରରେ ତାକୁ ମାରି ପକାଇବ'; ପୁଣି ଏହି ଉଦ୍ଦେଶ୍ୟରେ ଆୟୁଧ ମଧ୍ୟ ମୋ ପାଖରେ ରହିଛି ।'' ଏପରି ଚିନ୍ତା କରି ଅର୍ଜୁନ ଶରସନ୍ଧାନ କରି ଛିଡ଼ା ହୋଇଗଲେ ।

ଇତିମଧ୍ୟରେ ଭକ୍ତବତ୍ସଳ ଶିବ ଅର୍ଜୁନଙ୍କ ରକ୍ଷା, ତାଙ୍କ ଭକ୍ତିର ପରୀକ୍ଷା ଏବଂ ଦୈତ୍ୟର ବିନାଶ ଉଦ୍ଦେଶ୍ୟରେ ଅବିଳମ୍ୱେ ସେଠାରେ ପହଞ୍ଚିଗଲେ । ତାଙ୍କ ସଙ୍ଗରେ ଶିବଗଣଙ୍କର ଗୋଟିଏ ଦଳ ମଧ୍ୟ ଥିଲା । ସେ ଅତି ଅଦ୍ଭୁତ ଓ ସୁଶିକ୍ଷିତ କିରାତ ରୂପ ଧାରଣ କରିଥିଲେ । ସେ ଭଲଭାବରେ କଚ୍ଛାକୁ ଭିଡ଼ି ବସ୍ତ୍ର ପିନ୍ଧିଥିଲେ ଏବଂ ଲତାରେ କେଶଗୁଚ୍ଛକୁ ବାନ୍ଧିଥିଲେ । ତାଙ୍କ ଦେହରେ ଶ୍ୱେତବର୍ଣ୍ଣର ରେଖା ଅଙ୍କିତ ଥିଲା । ସେ ପିଠି ପଟେ ବାନ୍ଧିଥିଲେ ଶରପୂର୍ଣ୍ଣ ତୂଣୀର ଏବଂ ହାତରେ ଧରିଥିଲେ ଧନୁଶର । ତାଙ୍କର ଗଣମାନେ ମଧ୍ୟ ସେହିପରି ସାଜସଜ୍ଜାରେ ଯୁକ୍ତ ଥିଲେ । ଶିବ ହୋଇଥିଲେ ସେହି ଶବରମାନଙ୍କର ସର୍ଦ୍ଦାର । ସେ ସେନାଧ୍ୟକ୍ଷ ହୋଇ ନାନା ପ୍ରକାର ଶବ୍ଦ କରି କରି ଆଗେଇ ଚାଲିଥିଲେ । ଏତିକିବେଳେ ଶୂକରର ଭୟଙ୍କର ଶବ୍ଦ ଦଶଦିଗକୁ କମ୍ପାଇ ଦେଲା । ତା'ର ଶବ୍ଦରେ ପର୍ବତ ଆଦି ସମସ୍ତ ଜଡ଼ସୃଷ୍ଟି ଥରି ଉଠିଲା । ସେହି ବନଚାରୀ ଜୀବର ଏପରି ଶବ୍ଦରେ ଅର୍ଜୁନ ବ୍ୟତିବ୍ୟସ୍ତ ହୋଇ ଚିନ୍ତା କଲେ—''ଅହୋ ! ଏ ଭଗବାନ ଶିବ ନୁହନ୍ତି ତ? ଏ ମୋର ଶୁଭ କରିବାକୁ ଏଠାକୁ ଆସି ନାହାନ୍ତି ତ? କାରଣ ମୁଁ ପ୍ରଥମରୁ ହିଁ ଏକଥା ଶୁଣିଥିଲି । ପୁନଃ ଶ୍ରୀକୃଷ୍ଣ ଓ ବ୍ୟାସ ମଧ୍ୟ ଏକଥା କହିଥିଲେ ତଥା ଦେବତାମାନେ ମଧ୍ୟ ବାରମ୍ବାର ସ୍ମରଣ କରି ଏହିପରି ଘୋଷଣା କରିଛନ୍ତି ଯେ ଶିବ ହେଉଛନ୍ତି

କଲ୍ୟାଣକାରୀ ଓ ସୁଖଦାତା । ସେ ମୁକ୍ତି ପ୍ରଦାନ କରୁଥିବା କାରଣରୁ ମୁକ୍ତିଦାତା ଅଟନ୍ତି । ତାଙ୍କର ନାମସ୍ମରଣ କଲେ ମନୁଷ୍ୟଙ୍କର କଲ୍ୟାଣ ହେବା ସୁନିଶ୍ଚିତ । ଯେଉଁମାନେ ସର୍ବଭାବରେ ତାଙ୍କୁ ଭଜନ୍ତି, ସେମାନଙ୍କୁ ସ୍ୱପ୍ନରେ ମଧ୍ୟ ଦୁଃଖର ଦର୍ଶନ ହୋଇ ନ ଥାଏ । ଯଦି କେବେ ଦୁଃଖ ଆସେ, ତାହାକୁ କର୍ମଜନିତ ବୋଲି ବୁଝିବା ଉଚିତ । ପୁଣି ତାହା ମଧ୍ୟ ଅଧିକ ଆସିବା ସ୍ଥାନରେ ସ୍ୱଳ୍ପ ହୋଇଯାଏ; ଅଥବା ତାହାକୁ ବିଶେଷରୂପେ ପ୍ରାରବ୍ଧର ହିଁ ଦୋଷ ବୋଲି ବୁଝିବା ଉଚିତ । ଅଥବା କେବେ କେବେ ଭଗବାନ ଶଙ୍କର ନିଜ ଇଚ୍ଛାରେ ଟିକିଏ ଅଧିକ ଦୁଃଖ ଭୋଗାଇ ତାହାକୁ ଦୂର କରିଦିଅନ୍ତି । ସେ ବିଷକୁ ଅମୃତ ଓ ଅମୃତକୁ ବିଷ କରିଦେଇ ପାରନ୍ତି । ତାଙ୍କର ଯେପରି ଇଚ୍ଛା, ସେପରି କରନ୍ତି । ତାଙ୍କୁ କିଏ ବା ମନା କରିପାରିବ । ଅନ୍ୟାନ୍ୟ ପ୍ରାଚୀନ ଭକ୍ତଙ୍କର ମଧ୍ୟ ଏହି ଧାରଣା ଥିଲା, ତେଣୁ ଭାବୀ ଭକ୍ତ ମଧ୍ୟ ଏହି ଧାରଣା ଉପରେ ଅଟଳ ରହିବା ଉଚିତ । ଲକ୍ଷ୍ମୀ ରହନ୍ତୁ ବା ଚାଲିଯାଆନ୍ତୁ, ମୃତ୍ୟୁ ପଛକେ ନିଜ ନେତ୍ର ସମ୍ମୁଖରେ ନାଚୁଥାଉ, ଲୋକ ନିନ୍ଦା କରନ୍ତୁ ଅଥବା ପ୍ରଶଂସା କରନ୍ତୁ, ମାତ୍ର ଶିବଭକ୍ତିଦ୍ୱାରା ଦୁଃଖର ବିନାଶ ଅବଶ୍ୟ ହୋଇଥାଏ । ଶିବଙ୍କ ଭକ୍ତ ପାପୀ ହୋଇଥାଉ କି ପୁଣ୍ୟାତ୍ମା ହୋଇଥାଉ, ଶିବ ତାକୁ ସର୍ବଦା ସୁଖ ଦେଇଥାନ୍ତି । ଯଦି କେବେ ପରୀକ୍ଷା ନେବା ଉଦ୍ଦେଶ୍ୟରେ ଭକ୍ତଙ୍କୁ କଷ୍ଟ ଦେଇଥାନ୍ତି, ତେବେ ମଧ୍ୟ ଶେଷରେ ଦୟାଳୁ ହେବା କାରଣରୁ ସେ ତା'ର ସୁଖଦାତା ମଧ୍ୟ ହୋଇଥାନ୍ତି । ଅଗ୍ନିରେ ପଡ଼ି ସୁନା ବିଶୁଦ୍ଧ ହେବା ପରି ଭକ୍ତ ନିର୍ମଳ ହୋଇଯାଇ ଥାଏ । ଏହିପରି କଥା ମୁଁ ପୂର୍ବରୁ ମୁନିଜନଙ୍କ ମୁଖରୁ ଶୁଣିଛି । ତେଣୁ ମୁଁ ଶିବଙ୍କୁ ଭଜି ତାହାରି ଦ୍ୱାରା ହିଁ ଉତ୍ତମ ସୁଖ ଲାଭ କରିବି ।''

ଅର୍ଜୁନ ଏହିପରି ଚିନ୍ତା କରୁଥିବା ବେଳେ ଶୂକର ସେଠାରେ ପହଞ୍ଚିଗଲା । ତେଣେ କିରାତ-ରୂପଧାରୀ ଶିବ ମଧ୍ୟ ତା' ପଛରେ ଗୋଡ଼ାଉ ଥିବାର ଦୃଷ୍ଟିଗୋଚର ହେଲେ । ସେ ଦୁହିଙ୍କ ମଧ୍ୟରେ ଶୂକର ଅଦ୍ଭୁତ ଶିଖର ପରି ଦିଶୁଥିଲା । ଅର୍ଜୁନ ଶିବଙ୍କର ବହୁତ ମହିମା ଗାନ କରିଥିଲେ, ସେଥିପାଇଁ ଭକ୍ତବତ୍ସଳ ଶିବ ଅର୍ଜୁନଙ୍କ ରକ୍ଷା ନିମନ୍ତେ ଖୁବ୍ ଜୋର୍‌ରେ ଆଗକୁ ଦୌଡ଼ିଗଲେ । ଏତିକି ବେଳେ ସେ ଦୁହେଁ ତା' ଉପରକୁ ତୀର ମାରିଦେଲେ । ଶିବ ତା'ର ପୁଚ୍ଛଭାଗକୁ ଲକ୍ଷ୍ୟ କରି ତୀର ମାରିଥିବା ବେଳେ ଅର୍ଜୁନ ତା'ର ମୁଖକୁ ଲକ୍ଷ୍ୟ କରି ତୀର ମାରିଥିଲେ । ଶିବଙ୍କ ତୀର ତା'ର ପୁଚ୍ଛଭାଗରେ ପ୍ରବେଶ କରି ମୁଖବାଟ ଦେଇ ବାହାରିଗଲା ଏବଂ ଭୂମିରେ ବିଲୀନ ହୋଇଗଲା । ଅର୍ଜୁନଙ୍କ ତୀର ତା'ର ପୁଚ୍ଛଭାଗ ଦେଇ ବାହାରି ଯାଇ ତଳେ ପଡ଼ିଗଲା । ଶୂକରରୂପଧାରୀ ଦୈତ୍ୟ ପ୍ରାଣହୀନ ହୋଇ



ସେହିକ୍ଷଣି ତଳେ ଢଳି ପଡ଼ିଲା । ଏହା ଦେଖି ଦେବତାମାନଙ୍କୁ ବହୁତ ସୁଖ ମିଳିଲା । ସେମାନେ ଜୟଧ୍ୱନି କରି ପୁଷ୍ପବୃଷ୍ଟି କଲେ ଏବଂ ବାରମ୍ବାର

ନମସ୍କାର କରି ସ୍ତୁତି କରିବାକୁ ଲାଗିଲେ । ସେତିକିବେଳେ ଶିବ ଓ ଅର୍ଜୁନ ଦୈତ୍ୟର ସେହି କ୍ରୂର ରୂପ ଦେଖିବାକୁ ପାଇଲେ । ତାହାକୁ ଦେଖି ଶିବଙ୍କ ମନ ଖୁସୀ ହେଲା । ଅର୍ଜୁନଙ୍କୁ ମଧ୍ୟ ସୁଖ ମିଳିଲା । ଅର୍ଜୁନ ମନେ ମନେ ଅଧିକ ଖୁସୀ ହୋଇ କହିବାକୁ ଲାଗିଲେ—''ଅହୋ ! ଏ ଦୁର୍ଦ୍ଧାନ୍ତ ଦୈତ୍ୟ ପରମ ଅଦ୍ଭୁତ ରୂପ ଧାରଣ କରି ନିଶ୍ଚୟ ମୋତେ ମାରିବାକୁ ଆସିଥିଲା । ମାତ୍ର ମୋ ପ୍ରଭୁ ଶିବ ମୋତେ ରକ୍ଷା କରିଦେଲେ । ନିଶ୍ଚୟ ସେହି ପରମେଶ୍ୱର ଆଜି ମୋ ବୁଦ୍ଧିକୁ ପ୍ରେରିତ କରି ଏପରି କରାଇଲେ ।'' ଏହା ଭାବି ଅର୍ଜୁନ ଶିବନାମ-ସଂକୀର୍ତ୍ତନ କଲେ ଏବଂ ବାରମ୍ବାର ତାଙ୍କୁ ପ୍ରଣାମ କରି ସ୍ତୁତି କଲେ ।

(ଅଧ୍ୟାୟ ୩୯)

***

## ଅର୍ଜୁନ ଓ ଶିବଦୂତଙ୍କ ମଧ୍ୟରେ ତର୍କ, କିରାତ ବେଶଧାରୀ ଶିବଙ୍କ ସଙ୍ଗେ ଅର୍ଜୁନଙ୍କ ଯୁଦ୍ଧ, ପରିଚୟ ପାଇବା ପରେ ଶିବଙ୍କୁ ଅର୍ଜୁନଙ୍କର ସ୍ତୁତି, ଅର୍ଜୁନଙ୍କୁ ବର ପ୍ରଦାନ କରି ଶିବଙ୍କର ଅନ୍ତର୍ଦ୍ଧାନ, ଅର୍ଜୁନଙ୍କର ଆଶ୍ରମ ପ୍ରତ୍ୟାବର୍ତ୍ତନ ଓ ଭାଇମାନଙ୍କ ସହ ଭେଟ ଏବଂ ଅର୍ଜୁନଙ୍କ ସଙ୍ଗେ ଭେଟିବାକୁ ଶ୍ରୀକୃଷ୍ଣଙ୍କ ଆଗମନ

ନନ୍ଦୀଶ୍ୱର କହୁଛନ୍ତି—ମହାଜ୍ଞାନୀ ସନତ୍କୁମାର ! ଏବେ ଶିବଙ୍କର ସେହି ଲୀଳା ଶ୍ରବଣ କର, ଯାହା ତାଙ୍କ ଭକ୍ତବତ୍ସଳତାରେ ପରିପୂର୍ଣ୍ଣ ଏବଂ ତାଙ୍କ ପ୍ରତି ଦୃଢ଼ ଭକ୍ତିର ନିଦର୍ଶନ । ଏ ଘଟଣା ପରେ ଶିବ ସେହି ତୀରକୁ ଆଣିବା ପାଇଁ ତୁରନ୍ତ ନିଜ ଅନୁଚରକୁ ପଠାଇଲେ । ସେପଟରୁ ଅର୍ଜୁନ ମଧ୍ୟ ଶର ନେବାକୁ ସେଠାକୁ ଆସିଲେ । ଏହି ପ୍ରକାରେ ଅର୍ଜୁନ ଓ ରୁଦ୍ରାନୁଚର ସେଠାରେ ପହଞ୍ଚିଥିବା ବେଳେ ଅର୍ଜୁନ ରୁଦ୍ରାନୁଚରକୁ ଡରାଇ-ଧମକାଇ ଆପଣା ଶର ଉଠାଇ ନେଲେ । ଏହା ଦେଖି ରୁଦ୍ରାନୁଚର କହିଲା—''ହେ ଋଷିସତ୍ତମ ! ଆପଣ କାହିଁକି ଏ ଶରଟିକୁ ନେଇଯାଉଛନ୍ତି? ଏହା ଆମର ଶର । କିରାତଙ୍କ ଅନୁଚର ଏପରି କହିବାରୁ ମୁନିଶ୍ରେଷ୍ଠ ଅର୍ଜୁନ ଶିବଙ୍କୁ ସ୍ମରଣ କରି ଏହିପରି କହିଲେ ।

ଅର୍ଜୁନ କହିଲେ—ବନେଚର ! ତୁ ଅତ୍ୟନ୍ତ ମୂର୍ଖ । ତୁ ନ ବୁଝି ନ ବିଗ୍ଭରି ଏ କ'ଣ କହୁଛୁ? ଏ ଶରକୁ ତ ମୁଁ ଏହିକ୍ଷଣି ମାରିଥିଲି । ପୁଣି ଏଇଟା ତୋର କେମିତି ହୋଇଗଲା? ଏହାର ଫଳକ ଓ ପୁଚ୍ଛରେ ମୋର ନାମ ଲେଖା ହୋଇଛି । ପୁଣି ତୋର ବୋଲି କେମିତି କହୁଛୁ? ଲାଗୁଛି, ତୋର କୁଟିଳ ସ୍ୱଭାବ ସହଜରେ ଦୂର ହେବ ନାହିଁ ।

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଅର୍ଜୁନଙ୍କ କଥା ଶୁଣି ଶବର ରୂପଧାରୀ ସେହି ଗଣେଶ୍ୱରଙ୍କୁ ହସ ଲାଗିଲା । ସେ ଋଷିରୂପଧାରୀ ଅର୍ଜୁନଙ୍କୁ ଉତ୍ତର ଦେବାକୁ ଯାଇ କହିଲେ—''ରେ ତାପସ ! ଶୁଣ । ଯାହା ଜଣାଯାଉଛି, ତୁ ତପସ୍ୟା କରୁ ନାହୁଁ, କେବଳ ତପସ୍ୱୀର ବେଶ ଧାରଣ କରିଛୁ; କାରଣ ପ୍ରକୃତ ତପସ୍ୱୀ ଛଳକପଟ କରେ ନାହିଁ । ଯେ ତପସ୍ୟା କରୁଥିବ, ସେ କିପରି ବା ମିଥ୍ୟା କହିପାରିବ ଓ ଛଳ କରିବ? ଆରେ ! ତୁ ମୋତେ ଏକୁଟିଆ ବୋଲି ନ ବୁଝ, ତୁ ଜାଣିବା ଉଚିତ ଯେ ମୁଁ ଗୋଟିଏ ସେନାବାହିନୀର ଅଧିପତି । ମୋ ସ୍ୱାମୀ ଅନେକ ବନଚ୍ୱରୀ ଶବରଙ୍କ ସଙ୍ଗେ ସେଠାରେ

ବସିଛନ୍ତି । ସେ ବିଗ୍ରହ ଓ ଅନୁଗ୍ରହ କରିବାରେ ସର୍ବଥା ସମର୍ଥ । ତୁ ଉଠାଇ ନେଇଥିବା ଶରଟି ହେଉଛି ତାଙ୍କରି । ଏ ଶର ତୋ ପାଖରେ କଦାପି ତିଷ୍ଠି ରହି ପାରିବ ନାହିଁ । ରେ ତାପସ ! ତୁ କାହିଁକି ତୋ ତପସ୍ୟାର ଫଳକୁ ନଷ୍ଟ କରିବାକୁ ଗ୍ରହୁଁଛୁ? ମୁଁ ତ ଶୁଣିଛି ଯେ ଗ୍ରେରି କଲେ, ଛଳପୂର୍ବକ କାହାକୁ କଷ୍ଟ ଦେଲେ, ବିସ୍ମୟ କଲେ ଏବଂ ସତ୍ୟତ୍ୟାଗ କଲେ ପ୍ରାଣୀର ତପସ୍ୟା କ୍ଷୀଣ ହୋଇଯାଏ—ଏହା ସମ୍ପୂର୍ଣ୍ଣ ସତ୍ୟ ।* ଏଭଳି ସ୍ଥିତିରେ ତୋତେ ତପସ୍ୟାର ଫଳ କେମିତି ମିଳିବ? ଏହି ଶରକୁ ନେଇଗଲେ ତୁ ତପସ୍ୟାରୁ ଚ୍ୟୁତ ତଥା କୃତଘ୍ନ ହୋଇଯିବୁ; କାରଣ ଏଇଟା ନିଶ୍ଚିତରୂପେ ମୋ ସ୍ୱାମୀଙ୍କର ଏବଂ ତୋରି ରକ୍ଷା ପାଇଁ ସେ ଏହି ଶର ମାରିଥିଲେ । ଏହି ଶରରେ ସେ ଶତ୍ରୁକୁ ମାରିପକାଇଲେ ଏବଂ ପୁଣି ଏହାକୁ ସୁରକ୍ଷିତ ବି ରଖିଲେ । ତୁ ତ ଅତ୍ୟନ୍ତ କୃତଘ୍ନ । ତୁ ତପସ୍ୟାରେ ଅମଙ୍ଗଳ କରୁଛୁ । ତୁ ଯଦି ସତ୍ୟ କହୁ ନାହୁଁ, ତେବେ ଏ ତପସ୍ୟାରୁ ସିଦ୍ଧି କିପରି ଆଶା କରୁଛୁ? ଯଦି ତୋର ଏ ଶର ଆବଶ୍ୟକ, ତେବେ ମୋ ସ୍ୱାମୀଙ୍କ ଠାରୁ ମାଗି ନେଇପାରୁ । ସେ ଗ୍ରହିଁଲେ ତୋତେ ଏପରି ଅନେକ ଶର ଦେଇ ପାରିବେ । ମୋ ସ୍ୱାମୀ ଆଜି ଏଇଠି ଅଛନ୍ତି, ତୁ କାହିଁକି ତାଙ୍କୁ ମାଗୁ ନାହୁଁ? ତୁ ବରଂ ତାଙ୍କ ଉପକାର ପ୍ରତି କୃତଜ୍ଞ ହେବା ଉଚିତ, କିନ୍ତୁ ତୁ ତ ଓଲଟା ତାଙ୍କର ଅପକାର କରିବାକୁ ଗ୍ରହୁଁଛୁ! ଏହା ତୋ ପକ୍ଷେ ଅନୁଚିତ କାର୍ଯ୍ୟ । ତୁ ଏ ଚପଳତା ଛାଡ଼ି ଦେ ।''

ଏହା ଶୁଣି ଅର୍ଜୁନ କୁପିତ ହୋଇ ତାକୁ ଅନେକ କଟୁ କଥା କହିଲେ । ଉଭୟଙ୍କ ମଧ୍ୟରେ ବହୁତ ବଡ଼ ବିବାଦ ହେଲା । ଶେଷରେ ଅର୍ଜୁନ କହିଲେ— ''ବନଗ୍ରରୀ ଶବର ! ମୋ କଥା ଶୁଣ । ତୋ ସ୍ୱାମୀ ଯଦି ଅସିବେ, ମୁଁ ନିଶ୍ଚୟ ତାଙ୍କୁ ତାଙ୍କର ଉଚିତ ଫଳ ଚଖାଇବି । ତୋ ସଙ୍ଗେ ଯୁଦ୍ଧ କରିବାଟା ମୋତେ ଶୋଭା ଦେବ ନାହିଁ । ତୋ ସ୍ୱାମୀଙ୍କ ସହିତ ହିଁ ମୁଁ ଯୁଦ୍ଧ କରିବି; କାରଣ ସିଂହ ଓ ଶୃଗାଳ ମଧ୍ୟରେ ଯୁଦ୍ଧ ହାସ୍ୟାସ୍ପଦ ହୋଇଥାଏ । ଶବର ! ତୁ ମୋ କଥା ତ ଶୁଣିଲୁ, ଏଥର ମୋର ମହାନ୍ ପରାକ୍ରମ ମଧ୍ୟ ଦେଖିବୁ । ଯା'; ତୁ ତୋର ସ୍ୱାମୀ ପାଖକୁ ଫେରିଯା, ଅଥବା ତୋର ଯାହା ଇଚ୍ଛା, ତାହା କର ।''

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଅର୍ଜୁନ ଏପରି କହିବାରୁ ଶବର (ରୁଦ୍ରାନୁଚର) ଆପଣା ସେନାପତି କିରାତରାଜ ବେଶଧାରୀ ଶିବଙ୍କ ନିକଟକୁ ଫେରିଗଲା ଏବଂ ଅର୍ଜୁନ କହିଥିବା ସମସ୍ତ କଥା ବିସ୍ତାରପୂର୍ବକ କହିଦେଲା । ତା' କଥା ଶୁଣି କିରାତେଶ୍ୱରଙ୍କୁ ମହାନ୍ ହର୍ଷ ଅନୁଭବ ହେଲା । ସେ ନିଜର ସେନାକୁ ସଙ୍ଗରେ ଧରି ସେଠାକୁ ଗଲେ । ତେଣେ ଅର୍ଜୁନ କିରାତଙ୍କ ସେନାକୁ ଦେଖି ନିଜର ଧନୁ ଓ ଶର ସଜାଡ଼ି ଧରି ପ୍ରସ୍ତୁତ ହୋଇଗଲେ । ଏହାପରେ କିରାତବେଶଧାରୀ ଶିବ ପୁନଃ ସେହି ଦୂତଦ୍ୱାରା ଭରତବଂଶୀ ଅର୍ଜୁନଙ୍କ ପାଇଁ ଏହି ସନ୍ଦେଶ ପଠାଇଲେ ।

କିରାତ କହିଲେ (ତାଙ୍କ ସନ୍ଦେଶ ଥିଲା)— ତପସ୍ୱିନ୍ ! ଟିକିଏ ଏ ସେନା ଆଡ଼କୁ ଦୃଷ୍ଟିପାତ କର; ଆଉ ଏ ଶରଟିକୁ ଛାଡ଼ିଦେଇ ଜଲ୍ଦି ପଳାଇଯାଆ । ଏଭଳି ସମାନ୍ୟ କାର୍ଯ୍ୟଟି ପାଇଁ କାହିଁକି ପ୍ରାଣ ଦେବାକୁ ଗ୍ରହୁଁଛୁ? ତୋ ଭାଇମାନେ ଦୁଃଖୀ ହେବେ, ବିଗ୍ରରୀ ସ୍ତ୍ରୀ ତ ଆହୁରି ଅଧିକ ଦୁଃଖୀ ହେବ । ମୋ ମତରେ ଏପରି କଲେ ଭୂମଣ୍ଡଳ ମଧ୍ୟ ତୋ ହାତରୁ ଗ୍ରଲିଯିବ ।

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଅର୍ଜୁନଙ୍କୁ ସବୁ ପ୍ରକାରେ ରକ୍ଷା କରିବାକୁ ଏବଂ ତାଙ୍କ ଭକ୍ତିର

* ଚୌର୍ଯ୍ୟାଚ୍ଛଳାଦର୍ଦ୍ୟମାନାଦ୍ ବିସ୍ମୟାତ୍ସତ୍ୟଭଞ୍ଜନାତ୍ ॥ ତପସା କ୍ଷୀୟତେ ସତ୍ୟମେତଦେବ ମୟା ଶ୍ରୁତମ୍ ।
(ଶି. ପୁ. ଶତରୁଦ୍ରସଂହିତା ୪୦ । ୧୩-୧୪)

ଦୃଢ଼ତା ପରୀକ୍ଷା କରିବାକୁ କିରାତ-ବେଶଧାରୀ ପରମେଶ୍ୱର ଶମ୍ଭୁ ଏଭଳି ସନ୍ଦେଶ ପଠାଇଲେ । ଶିବଦୂତ ଅର୍ଜୁନଙ୍କ ପାଖରେ ପହଞ୍ଚି ତାଙ୍କୁ ଶିବଙ୍କ ସନ୍ଦେଶ ସବିସ୍ତାର କହିଦେଲା । ଦୂତର କଥା ଶୁଣି ଅର୍ଜୁନ ପୁଣି କହିଲେ—''ଦୂତ ! ତୁ ଯାଇ ତୋ ସେନାପତିଙ୍କୁ କହିଦେ ଯେ ତାଙ୍କ କହିବା ଅନୁସାରେ କଲେ ସବୁ କଥା ବିପରୀତ ହୋଇଯିବ । ଯଦି ମୁଁ ତାଙ୍କୁ ମୋର ଶର ଦେଇଦେବି, ତେବେ ମୁଁ ମୋ କୁଳର କଳଙ୍କ ହୋଇଯିବି । ତେଣୁ ମୋର ଭାଇମାନେ ପଛେ ଦୁଃଖାର୍ତ୍ତ ହୋଇଯାଆନ୍ତୁ ଏବଂ ମୋର ସମସ୍ତ ବିଦ୍ୟା ପଛେ ବିଫଳ ହୋଇଯାଉ, କିନ୍ତୁ ସେ ସାମନାକୁ ତ ଆସନ୍ତୁ । ସିଂହ କଦାପି ଶୃଗାଳ ଭୟରେ ଡରି ପଳାଇବା କଥା ମୁଁ ଶୁଣିନି, ଅର୍ଥାତ୍ ରାଜା (କ୍ଷତ୍ରିୟ) କଦାପି ବନେଚର ପ୍ରତି ଭୟଭୀତ ହୁଏ ନାହିଁ ।

ନନ୍ଦୀଶ୍ୱର କହୁଛନ୍ତି—ମୁନେ ! ଅର୍ଜୁନ ଏପରି କହିବାରୁ ଦୂତ ପୁନଃ ତା'ର ସ୍ୱାମୀଙ୍କ ପାଖକୁ ଫେରିଗଲା ଏବଂ ଅର୍ଜୁନ କହିଥିବା ସମସ୍ତ ବୃତ୍ତାନ୍ତ କହିଦେଲା । ତାହା ଶୁଣି କିରାତବେଶଧାରୀ ମହାଦେବ ନିଜ ସେନା ସହିତ ଅର୍ଜୁନଙ୍କ ସମ୍ମୁଖକୁ ଆସିଗଲେ । ତାଙ୍କୁ ଦେଖି ଅର୍ଜୁନ ଶିବଙ୍କୁ ଧ୍ୟାନ କଲେ । ତା'ପରେ ନିକଟକୁ ଯାଇ ତାଙ୍କ ସଙ୍ଗେ ଭୀଷଣ ସଂଗ୍ରାମ ଆରମ୍ଭ କରିଦେଲେ । ଗଣଙ୍କୁ ସଙ୍ଗରେ ଧରି ଆସିଥିବା ଶିବଙ୍କ ସଙ୍ଗେ ଅର୍ଜୁନଙ୍କର ଘୋର ସଂଗ୍ରାମ ଚାଲିଲା । ଶେଷରେ ଅର୍ଜୁନ ଶିବଙ୍କ ପାଦପଦ୍ମକୁ ସ୍ମରଣ କଲେ । ତାଙ୍କୁ ସ୍ମରଣ କରିବା ମାତ୍ରେ ଅର୍ଜୁନଙ୍କ ବଳ ବହୁତ ବଢ଼ିଗଲା । ସେ କିରାତରୂପଧାରୀ ଶିବଙ୍କର ଗୋଡ଼ ଦୁଇଟିକୁ ଧରି ଘୂରାଇବାକୁ ଲାଗିଲେ । ହେଲେ ଭକ୍ତବତ୍ସଳ ମହାଦେବ ସତେବେଳେ ହସୁଥିଲେ । ମୁନେ ! ଭକ୍ତାଧୀନ ହୋଇଥିବା ହେତୁ ସେ ଭକ୍ତଙ୍କୁ ନିଜର ଦାସତ୍ୱ ଦେଖାଇବାକୁ ଚାହୁଁଥିଲେ । ଏହି କାରଣରୁ



ସେ ଏପରି ଲୀଳା କରୁଥିଲେ, ନଚେତ୍ ଏପରି ଘଟିବା ଅସମ୍ଭବ ଥିଲା । ତା'ପରେ ଶିବ ଭକ୍ତାଧୀନତା କାରଣରୁ ସେହିଠାରେ ମନ୍ଦ-ମନ୍ଦ ହସି ନିଜର ସୌମ୍ୟ ଓ ଅଦ୍ଭୁତ ରୂପ ପ୍ରକଟ କରିଦେଲେ । ପୁରୁଷୋତ୍ତମ ! ଶିବଙ୍କର ଯେଉଁ ରୂପ ବେଦ, ଶାସ୍ତ୍ର ତଥା ପୁରାଣରେ ବର୍ଣ୍ଣିତ ତଥା ବ୍ୟାସଦେବ ଅର୍ଜୁନଙ୍କୁ ଯେଉଁ ସର୍ବସିଦ୍ଧିଦାତା ରୂପର ଧ୍ୟାନ କରିବାକୁ ଉପଦେଶ ଦେଇଥିଲେ, ଶିବ ସେହି ରୂପ ତାଙ୍କୁ ଦେଖାଇଲେ । ଅର୍ଜୁନ ଧ୍ୟାନରେ ଦେଖୁଥିବା ସ୍ୱରୂପକୁ ସାକ୍ଷାତ୍ ସମ୍ମୁଖରେ ଦେଖି ବିସ୍ମିତ ହୋଇଗଲେ । ସେ ଲଜ୍ଜିତ ହୋଇ ସ୍ୱୟଂ ଅନୁତାପ କରି ଭାବିଲେ—''ଅହୋ ! ଯାହାଙ୍କୁ ମୁଁ ସ୍ୱାମୀରୂପେ ବରଣ କରିଛି, ଏ ତ ହେଉଛନ୍ତି ସାକ୍ଷାତ୍ ସେହି ତ୍ରୈଲୋକ୍ୟାଧୀଶ୍ୱର କଲ୍ୟାଣକାରୀ ଶିବ । ମୁଁ ଏ କ'ଣ କରିଦେଲି? ହାୟ ! ଭଗବାନଙ୍କ ମାୟା ଅତି ଦୁର୍ଗମ । ତାହା ବଡ଼ ବଡ଼ ମାୟାବୀଙ୍କୁ ମଧ୍ୟ ମୋହିତ କରିଦିଏ । ପୁଣି ମୋ କଥା ବା କ'ଣ? ସେହି ପ୍ରଭୁ ନିଜ ସ୍ୱରୂପକୁ ଗୁପ୍ତ ରଖି ଏ କି ଲୀଳା ରଚିଦେଲେ? ମୁଁ ତ ଠକିଗଲି ।''

ଏହିରୂପେ ନାନା ପ୍ରକାର ବିଗ୍ରହ କରି ଅର୍ଜୁନ ପ୍ରେମପୂର୍ବକ ହାତ ଯୋଡ଼ି ଓ ମସ୍ତକ ଅବନତ କରି ଶିବଙ୍କୁ ପ୍ରଣାମ କରିବା ପରେ ଦୁଃଖିତ ମନରେ ଏହିପରି କହିଲେ–

ଅର୍ଜୁନ କହିଲେ–ଦେବାଧିଦେବ ମହାଦେବ ! ଆପଣ ବଡ଼ କୃପାଳୁ ଏବଂ ଭକ୍ତଙ୍କର କଲ୍ୟାଣକାରୀ । ସର୍ବେଶ ! ମୋର ଅପରାଧ କ୍ଷମା କରନ୍ତୁ । ଆପଣ ନିଜର ସ୍ୱରୂପକୁ ଲୁଗ୍ୱଇ ରଖି ଏ କି ଲୀଳା କରିଦେଲେ? ଆପଣ ତ ମୋତେ ଛଳିଦେଲେ । ପ୍ରଭୋ ! ଆପଣଙ୍କ ପରି ସ୍ୱାମୀଙ୍କ ସଙ୍ଗେ ମୁଁ ପୁଣି ଯୁଦ୍ଧ କଲି ! ମୋତେ ଧିକ୍କାର ।

ନନ୍ଦୀଶ୍ୱର କହୁଛନ୍ତି–ମୁନେ ! ପାଣ୍ଡୁପୁତ୍ର ଅର୍ଜୁନ ଏହିପରି ଘୋର ଅନୁତାପ କଲେ । ସେ ତୁରନ୍ତ ଭଗବାନଙ୍କ ପାଦ ତଳେ ଲୋଟି ପଡ଼ିଲେ । ଏହା ଦେଖି ମହେଶ୍ୱରଙ୍କ ମନ ପ୍ରସନ୍ନ ହୋଇଗଲା। ସେ ଅର୍ଜୁନଙ୍କୁ ଆଶ୍ୱାସନା ଦେଇ କହିଲେ–

ଶିବ କହିଲେ–ପାର୍ଥ ! ତୁମେ ତ ମୋର ପରମ ଭକ୍ତ । ତେଣୁ ଦୁଃଖ କର ନାହିଁ। ମୁଁ ତୁମର ପରୀକ୍ଷା ନେବା ପାଇଁ ଏପରି ଲୀଳା ରଚିଥିଲି, ତେଣୁ ଶୋକ ପରିତ୍ୟାଗ କର ।

ନନ୍ଦୀଶ୍ୱର କହୁଛନ୍ତି–ମୁନେ ! ଏହା କହି ଭଗବାନ ଦୁଇହାତରେ ଅର୍ଜୁନଙ୍କୁ ତଳୁ ଉଠାଇଲେ ଏବଂ ଗଣଙ୍କ ସମକ୍ଷରେ ତାଙ୍କର ଲଜ୍ଜା ଦୂର କଲେ । ତା'ପରେ ଭକ୍ତବତ୍ସଳ ଭଗବାନ ବୀରାଗ୍ରଗଣ୍ୟ ଅର୍ଜୁନଙ୍କୁ ହର୍ଷିତ କରିବାକୁ ଯାଇ ଏହିପରି କହିଲେ–

ଶିବ କହିଲେ–ହେ ଶ୍ରେଷ୍ଠ ପାଣ୍ଡୁପୁତ୍ର ! ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରସନ୍ନ, ତେଣୁ ବର ମାଗ । ଏବେ ତୁମେ ମୋ ଉପରେ ଯେଉଁ ପ୍ରହାର ଓ ଆଘାତ କରିଛ, ତାହାକୁ ମୁଁ ମୋର ପୂଜା ବୋଲି ମାନି ନେଇଛି । ଏହାଛଡ଼ା ମୁଁ ଏସବୁ ଆପଣା ଇଚ୍ଛାରେ ହିଁ କରିଛି । ଏଥିରେ ତୁମର କିଛି ଅପରାଧ ନାହିଁ। ତେଣୁ ତୁମର ଯାହା ଇଚ୍ଛା, ମୋତେ ମାଗ । ମୋ ପାଖରେ ତୁମ ପାଇଁ କିଛି ବି ଅଦେୟ ନାହିଁ। ଏ ଯାହା କିଛି ହେଲା, ଶତ୍ରୁଙ୍କ ମଧ୍ୟରେ ତୁମର ଯଶବିସ୍ତାର ପାଇଁ ଓ ରାଜ୍ୟସ୍ଥାପନା ପାଇଁ ଭଲ ହେଲା । ତୁମକୁ ଏଥିପାଇଁ ସୁଖୀ ହେବା ଉଚିତ । ତୁମେ ସମସ୍ତ ଭୟ ଦୂର କର ।

ନନ୍ଦୀଶ୍ୱର କହୁଛନ୍ତି–ମୁନେ ! ଭଗବାନ ଏପରି କହିବାରୁ ଅର୍ଜୁନ ସାବଧାନତାପୂର୍ବକ ଭକ୍ତିଭାବରେ ଶିବଙ୍କୁ କହିଲେ–

ଅର୍ଜୁନ କହିଲେ–ଶମ୍ଭୋ ! ଆପଣ ବହୁତ ଉତ୍ତମ ସ୍ୱାମୀ । ଆପଣଙ୍କୁ ଭକ୍ତ ବହୁତ ପ୍ରିୟ । ମୁଁ ଆପଣଙ୍କ କରୁଣାର କି ବର୍ଣ୍ଣନା ଅବା କରିପାରିବି । ସଦାଶିବ ! ଆପଣ ସତରେ ବହୁତ କୃପାଳୁ । ଏପରି କହି ଅର୍ଜୁନ ମହାପ୍ରଭୁ ଶିବଙ୍କର ସଭକ୍ତିଯୁକ୍ତ ଓ ବେଦସମ୍ମତ ସ୍ତୁତି ଆରମ୍ଭ କଲେ ।

ଅର୍ଜୁନ କହିଲେ–ଦେବାଧିଦେବ ! ଆପଣଙ୍କୁ ନମସ୍କାର । କୈଳାସବାସିନ୍ ! ଆପଣଙ୍କୁ ପ୍ରଣାମ । ସଦାଶିବ ! ଆପଣଙ୍କୁ ଅଭିବାଦନ । ପଞ୍ଚାନନ ! ପରମେଶ୍ୱର ! ଆପଣଙ୍କ ସମ୍ମୁଖରେ ମୁଁ ମୁଣ୍ଡ ନୁଆଁଉଛି । ହେ ଜଟାଧାରୀ ତ୍ରିଲୋଚନ ! ଆପଣଙ୍କୁ ବାରମ୍ବାର ନମସ୍କାର । ହେ ପ୍ରସନ୍ନରୂପଧାରୀ ଏବଂ ସହସ୍ରବଦନ ! ଆପଣଙ୍କୁ ପ୍ରଣାମ । ନୀଳକଣ୍ଠ ! ଆପଣଙ୍କୁ ନମସ୍କାର । ମୁଁ ଆପଣଙ୍କ ପରି ସଦ୍ୟୋଜାତଙ୍କୁ ଅଭିବାଦନ କରୁଛି । ବାମଭାଗରେ ଗିରିଜାଙ୍କୁ ଧାରଣ କରିଥିବା ହେ ବୃଷଭଧ୍ୱଜ! ଆପଣଙ୍କୁ ପ୍ରଣାମ । ଦଶଭୁଜଧାରୀ ପରମାତ୍ମାଙ୍କୁ ମୋର ପୁନଃ ପୁନଃ ଅଭିବାଦନ । ଡମ୍ବରୁଧର, କପାଳଧାରୀ ଓ ମୁଣ୍ଡମାଳାଧାରୀ ଶିବଙ୍କୁ ମୋର ନମସ୍କାର । ଆପଣଙ୍କ ଶ୍ରୀବିଗ୍ରହ ଶୁଦ୍ଧ ସ୍ଫଟିକ ତଥା ନିର୍ମଳ କର୍ପୂର ତୁଲ୍ୟ ଗୌର; ହାତରେ ପିନାକ ଓ ତ୍ରିଶୂଳ ସୁଶୋଭିତ । ଆପଣଙ୍କୁ ପ୍ରଣାମ । ଗଙ୍ଗାଧର ! ଆପଣ ବ୍ୟାଘ୍ରଚର୍ମକୁ ଉତ୍ତରୀୟ ଓ

ଗଜଚର୍ମକୁ ବସ୍ତ୍ରରୂପେ ଧାରଣ କରନ୍ତି ଏବଂ ଆପଣଙ୍କ ଅଙ୍ଗରେ ନାଗମାନେ ଗୁଡ଼େଇ ହୋଇଥାନ୍ତି । ଆପଣଙ୍କୁ ବାରମ୍ବାର ଅଭିବାଦନ । ଆପଣଙ୍କ ପାଦ ସୁନ୍ଦର ଓ ରକ୍ତିମ ଆଭାଯୁକ୍ତ ଏବଂ ଆପଣ ନନ୍ଦୀ ପ୍ରଭୃତି ଗଣଙ୍କ ଦ୍ୱାରା ସେବିତ । ଆପଣଙ୍କ ପରି ଗଣନାୟକଙ୍କୁ ପ୍ରଣାମ । ଆପଣ ଗଣେଶସ୍ୱରୂପ ଓ କାର୍ତ୍ତିକେୟ ଆପଣଙ୍କର ଅନୁଗାମୀ ଏବଂ ଆପଣ ଭକ୍ତଙ୍କୁ ଭକ୍ତି ଓ ମୁକ୍ତି ପ୍ରଦାନ କରିଥାନ୍ତି । ଆପଣଙ୍କୁ ବାରମ୍ବାର ନମସ୍କାର । ଆପଣ ନିର୍ଗୁଣ, ସଗୁଣ, ରୂପରହିତ, ରୂପବାନ୍, କଳାଯୁକ୍ତ ତଥା ନିଷ୍କଳ । ଆପଣଙ୍କ ଆଗରେ ମୁଁ ବାରମ୍ବାର ମୁଣ୍ଡ ନୁଆଁଉଛି । ଯେ ମୋ ଉପରେ ଅନୁଗ୍ରହ କରିବା ନିମନ୍ତେ କିରାତବେଶ ଧାରଣ କଲେ, ପୁଣି ଯେ ବୀରଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଉତ୍ସୁକ ଏବଂ ନାନା ପ୍ରକାର ଲୀଳା କରିବାରେ ନିପୁଣ, ସେହି ମହେଶ୍ୱରଙ୍କୁ ମୁଁ ପ୍ରଣାମ କରୁଛି । ଜଗତରେ ଯାହା କିଛି ଦୃଷ୍ଟିଗୋଚର ହେଉଛି, ସେସବୁ ଆପଣଙ୍କ ତେଜ ବୋଲି କୁହାଯାଏ । ଆପଣ ହେଉଛନ୍ତି ଚିଦ୍‌ରୂପ ଏବଂ ଆପଣ ହିଁ ଅନ୍ୱୟଭେଦରେ ତ୍ରିଲୋକରେ ରମଣ କରୁଛନ୍ତି । ଧୂଳିକଣାକୁ, ଆକାଶରେ ଉଦିତ ତାରାଗଣଙ୍କୁ ଓ ବର୍ଷାର ଜଳବିନ୍ଦୁଗୁଡ଼ିକୁ ଯେପରି ଗଣି ହୁଏ ନାହିଁ, ଠିକ୍ ସେହିପରି ଆପଣଙ୍କ ଗୁଣମାନଙ୍କର ଗଣନା ସମ୍ଭବ ନୁହେଁ । ହେ ନାଥ ! ଆପଣଙ୍କ ଗୁଣମାନ ଗଣନା କରିବାକୁ ତ ବେଦଗଣ ମଧ୍ୟ ସମର୍ଥ ନୁହଁନ୍ତି, ପୁଣି ମୋ ପରି ଗୋଟିଏ ମନ୍ଦବୁଦ୍ଧି ବ୍ୟକ୍ତି ବା ତାହା କିପରି କରିପାରିବ? ମହେଶାନ ! ଆପଣ ଯେ କେହି ବି ହୁଅନ୍ତୁ, ଆପଣଙ୍କୁ ନମସ୍କାର । ମହେଶ୍ୱର ! ଆପଣ ମୋର ସ୍ୱାମୀ ଏବଂ ମୁଁ ଆପଣଙ୍କର ଦାସ । ତେଣୁ ମୋ ଉପରେ କୃପା କରନ୍ତୁ ।

ନନ୍ଦୀଶ୍ୱର କହୁଛନ୍ତି—**ମୁନେ !** ଅର୍ଜୁନ ଏପରି ସ୍ତବ କରିବାରୁ ଭଗବାନଙ୍କ ମନ ପରମ ପ୍ରସନ୍ନ ହୋଇଗଲା । ସେ ହସି ହସି ପୁନଃ ଅର୍ଜୁନଙ୍କୁ କହିଲେ—

ଶିବ କହିଲେ—**ବତ୍ସ !** ଏବେ ଆଉ ଅଧିକ କହିବାରେ କି ଲାଭ । ତୁମେ ମୋ କଥା ଶୁଣ । ଆପଣା ଅଭୀଷ୍ଟ ବର ମାଗ । ତୁମେ ଯାହା କିଛି ମାଗିବ, ମୁଁ ତୁମକୁ ପ୍ରଦାନ କରିବି ।

ନନ୍ଦୀଶ୍ୱର କହୁଛନ୍ତି—**ମହର୍ଷେ !** ଶିବ ଏପରି କହିବାରୁ ଅର୍ଜୁନ କର ଯୋଡ଼ି ନତମସ୍ତକ ହୋଇ ସଦାଶିବଙ୍କୁ ପ୍ରଣାମ କଲେ ଏବଂ ତା'ପରେ ପ୍ରେମପୂର୍ବକ ଗଦ୍‌ଗଦ ବାଣୀରେ କହିବାକୁ ଆରମ୍ଭ କଲେ ।

ଅର୍ଜୁନ କହିଲେ—**ବିଭୋ !** ଆପଣ ତ ସ୍ୱୟଂ ଅନ୍ତର୍ଯାମୀରୂପେ ସମସ୍ତଙ୍କ ଭିତରେ ବିରାଜମାନ; ତେଣୁ ସମସ୍ତଙ୍କ ଅନ୍ତର କଥା ଜାଣନ୍ତି । ଏ ପରିପ୍ରେକ୍ଷୀରେ ମୁଁ ଅଧିକ କ'ଣ କହିବି ! ତଥାପି ମୁଁ ଯାହା କିଛି କହୁଛି, ଶୁଣନ୍ତୁ । ଭଗବନ୍ ! ଶତ୍ରୁଙ୍କ କାରଣରୁ ମୋ ଉପରେ ଯେଉଁ ସଙ୍କଟ ଆସିଥିଲା, ତାହା ଜାଣନ୍ତୁ ଆପଣଙ୍କ ଦର୍ଶନମାତ୍ରେ ବିନଷ୍ଟ ହୋଇଗଲା । ଏବେ ଏଭଳି କୃପା କରନ୍ତୁ, ଯଦ୍ଦ୍ୱାରା ମୋତେ ଇହଲୋକର ପରାସିଦ୍ଧି ପ୍ରାପ୍ତ ହୋଇ ପାରିବ ।

ନନ୍ଦୀଶ୍ୱର କହୁଛନ୍ତି—**ମୁନେ !** ଏତିକି କହି ଅର୍ଜୁନ ଭକ୍ତବତ୍ସଳ ଶଙ୍କରଙ୍କୁ ନମସ୍କାର କଲେ ଏବଂ କର ଯୋଡ଼ି ଅବନତମସ୍ତକରେ ଛିଡ଼ା ହୋଇ ରହିଲେ । ଶିବ ପାଣ୍ଡୁପୁତ୍ର ଅର୍ଜୁନଙ୍କୁ ତାଙ୍କର ଅନନ୍ୟ ଭକ୍ତ ବୋଲି ଜାଣି ପରମ ପ୍ରସନ୍ନ ହେଲେ । ତା'ପରେ ନିଜର ପାଶୁପତ ନାମକ ଅସ୍ତ୍ର ତାଙ୍କୁ ପ୍ରଦାନ କଲେ । ଏହି ଅସ୍ତ୍ର ଜଗତର ପ୍ରାଣୀଙ୍କ ପକ୍ଷେ ଦୁର୍ଜୟ ।

ଶିବ କହିଲେ—**ବତ୍ସ !** ମୁଁ ତୁମକୁ ମୋର ମହାନ୍ ଅସ୍ତ୍ର ପ୍ରଦାନ କଲି । ଏହାକୁ ଧାରଣ

କଲେ ତୁମେ ଶତ୍ରୁଙ୍କ ପାଇଁ ଅଜେୟ ହୋଇଯିବ । ଯାଅ, ବିଜୟ ଲାଭ କର । ମୁଁ ଶ୍ରୀକୃଷ୍ଣଙ୍କୁ କହିବି,



ସେ ତୁମକୁ ସାହାଯ୍ୟ କରିବେ; କାରଣ ଶ୍ରୀକୃଷ୍ଣ ମୋର ଆତ୍ମସ୍ୱରୂପ, ଭକ୍ତ ଏବଂ ସେ ମୋର କାର୍ଯ୍ୟ କରନ୍ତି । ହେ ଭାରତ ! ମୋ ପ୍ରଭାବରୁ ତୁମେ ନିଷ୍କଣ୍ଟକ ରାଜ୍ୟ ଭୋଗ କର ଓ ତୁମ ଭାଇ ଯୁଧିଷ୍ଠିରଙ୍କ ଦ୍ୱାରା ସର୍ବଦା ବିଭିନ୍ନ ପ୍ରକାର ଧର୍ମକାର୍ଯ୍ୟ କରାଉଥାଅ ।

ନନ୍ଦୀଶ୍ୱର କହୁଛନ୍ତି–ମୁନେ ! ଏହା କହି ଶିବ ଅର୍ଜୁନଙ୍କ ମସ୍ତକ ଉପରେ ଆପଣା କରକମଳ ରଖିଦେଲେ ଏବଂ ଅର୍ଜୁନଙ୍କ ଦ୍ୱାରା ପୂଜିତ ହୋଇ ତତ୍‌କ୍ଷଣାତ୍ ଅନ୍ତର୍ହିତ ହୋଇଗଲେ । ଭଗବାନଙ୍କ ଠାରୁ ବରଦାନ ଓ ଅସ୍ତ୍ର ଲାଭ କରି ଅର୍ଜୁନଙ୍କ ମନ ଆନନ୍ଦିତ ହେଲା । ସେ ତାଙ୍କର ପ୍ରମୁଖ ଗୁରୁ ଶିବଙ୍କୁ ଭକ୍ତିପୂର୍ବକ ସ୍ମରଣ କରି ନିଜ ଆଶ୍ରମକୁ ଫେରିଗଲେ । ଅର୍ଜୁନଙ୍କୁ ଭେଟି ଭାଇମାନଙ୍କୁ ନବଜୀବନ ଲାଭ ହେଲା ପରି ଅନୁଭବ ହେଲା । ଉତ୍ତମ ବ୍ରତ ପାଳନକାରିଣୀ ଦ୍ରୌପଦୀଙ୍କୁ ଅତ୍ୟନ୍ତ ସୁଖ ମିଳିଲା । ମହାପ୍ରଭୁ ଶିବ ପ୍ରସନ୍ନ ହୋଇଥିବା କଥା ଶୁଣି ପାଣ୍ଡବମାନଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେମାନଙ୍କୁ ସେହି ବୃତ୍ତାନ୍ତ ଯେତେ ଶୁଣିଲେ ମଧ୍ୟ ପୂର୍ଣ୍ଣ ତୃପ୍ତି ମିଳୁ ନ ଥିଲା । ସେତେବେଳେ ମହାମନସ୍ୱୀ ପାଣ୍ଡବଙ୍କ ଆଶ୍ରମରେ ମଙ୍ଗଳର ନିଦର୍ଶନରୂପେ ଚନ୍ଦନଯୁକ୍ତ ପୁଷ୍ପମାନ ବୃଷ୍ଟି ହେଲା । ସେମାନେ ସହର୍ଷ ସର୍ବସମ୍ପତ୍ତିଦାତା ତଥା କଲ୍ୟାଣକର୍ତ୍ତା ଶିବଙ୍କୁ ନମସ୍କାର କଲେ ଏବଂ ବନବାସର ତେରବର୍ଷ ଅବଧି ବିତିଗଲାଣି ବୋଲି ଜାଣି ବିଶ୍ୱାସ କଲେ ଯେ ସେମାନଙ୍କର ନିଶ୍ଚୟ ବିଜୟ ହେବ । ଇତିମଧ୍ୟରେ ଶ୍ରୀକୃଷ୍ଣଙ୍କୁ ଜଣାପଡ଼ିଲା ଯେ ଅର୍ଜୁନ ସଫଳ ହୋଇ ଫେରିଛନ୍ତି । ତେଣୁ ସେ ବହୁତ ଖୁସୀ ହେଲେ ଏବଂ ଅର୍ଜୁନଙ୍କ ସଙ୍ଗେ ଭେଟିବା ପାଇଁ ସେଠାକୁ ଆସିଲେ । ସବୁ କଥା ଶୁଣିସାରି ସେ କହିଲେ–''ଏଇଥିପାଇଁ ମୁଁ କହିଥିଲି ଯେ ଶିବ ସମସ୍ତ କଷ୍ଟ ନିବାରଣକାରୀ । ମୁଁ ନିତ୍ୟ ତାଙ୍କର ସେବା କରିଥାଏ, ତେଣୁ ଆପଣମାନେ ମଧ୍ୟ ତାଙ୍କରି ସେବା କରନ୍ତୁ ।''

ହେ ସନତ୍‌କୁମାର! ମୁଁ ଶିବଙ୍କର କିରାତ ନାମକ ଅବତାର ସମ୍ବନ୍ଧରେ ବର୍ଣ୍ଣନା କରିଦେଲି । ଯେ ଏହାକୁ ଶୁଣେ ଅଥବା ଶୁଣାଏ ତା'ର ସମସ୍ତ କାମନା ପୂର୍ଣ୍ଣ ହୋଇଥାଏ । (ଅଧ୍ୟାୟ ୪୦-୪୧)

***

## ଶିବଙ୍କର ଦ୍ୱାଦଶ ଜ୍ୟୋତିର୍ଲିଙ୍ଗାବତାରର ସବିସ୍ତାର ବର୍ଣ୍ଣନା

ନନ୍ଦୀଶ୍ୱର କହୁଛନ୍ତି–ମୁନେ ! ଏବେ ତୁମେ ସର୍ବବ୍ୟାପୀ ଶିବଙ୍କର ବାରଟି କଲ୍ୟାଣକାରୀ ଜ୍ୟୋତିର୍ଲିଙ୍ଗସ୍ୱରୂପ ଅବତାର ବିଷୟରେ ଶୁଣ । (ସେମାନଙ୍କ ନାମ ହେଲା–) ସୌରାଷ୍ଟ୍ରରେ ସୋମନାଥ, ଶ୍ରୀଶୈଳରେ ମଲ୍ଲିକାର୍ଜୁନ, ଉଜ୍ଜୟିନୀରେ ମହାକାଳ, ଓଁକାରରେ ଅମରେଶ୍ୱର, ହିମାଳୟରେ

କେଦାର, ଡାକିନୀରେ ଭୀମଶଙ୍କର, କାଶୀରେ ବିଶ୍ୱନାଥ, ଗୌତମୀ ତଟରେ ତ୍ର୍ୟମ୍ବକେଶ୍ୱର, ଚିତାଭୂମିରେ ବୈଦ୍ୟନାଥ, ଦାରୁକବନରେ ନାଗେଶ୍ୱର, ସେତୁବନ୍ଧରେ ରାମେଶ୍ୱର ଏବଂ ଶିବାଳୟରେ ଘୁଶ୍ମେଶ୍ୱର । ହେ ମୁନି ! ଏମାନେ ହେଲେ ପରମାତ୍ମା ଶମ୍ଭୁଙ୍କର ବାରଟି ଅବତାର । ଏମାନଙ୍କ ଦର୍ଶନ ଓ ସ୍ପର୍ଶନରେ ମନୁଷ୍ୟକୁ ସବୁ ପ୍ରକାର ଆନନ୍ଦ ପ୍ରାପ୍ତ ହୋଇଥାଏ ।

ମୁନିବର ! ଏମାନଙ୍କ ମଧ୍ୟରେ ସର୍ବପ୍ରଥମ ହେଲା ସୋମନାଥ ଅବତାର । ଏ ଅବତାରରେ ଶମ୍ଭୁ ଚନ୍ଦ୍ରଙ୍କର ଦୁଃଖ ନାଶ କରିଥିଲେ । ଏହାଙ୍କୁ ପୂଜା କଲେ କ୍ଷୟ, କୁଷ୍ଠ ଆଦି ରୋଗ ନାଶ ହୋଇଥାଏ । ଶିବଙ୍କର ଏହି ସୋମେଶ୍ୱର ଅବତାର ସୌରାଷ୍ଟ୍ର ନାମକ ପାବନ ପ୍ରଦେଶରେ ଲିଙ୍ଗରୂପରେ ଅବସ୍ଥିତ । ପୂର୍ବକାଳରେ ଚନ୍ଦ୍ର ଏହାଙ୍କୁ ପୂଜା କରିଥିଲେ । ସେଠାରେ ଗୋଟିଏ ଚନ୍ଦ୍ରକୁଣ୍ଡ ଅଛି, ଯାହା କି ସକଳ ପାପ ନାଶ କରିଥାଏ । ସେଥିରେ ସ୍ନାନ କରୁଥିବା ବୁଦ୍ଧିମାନ୍ ମନୁଷ୍ୟ ସମସ୍ତ ରୋଗରୁ ମୁକ୍ତ ହୋଇଯାଏ । ପରମାତ୍ମା ଶିବଙ୍କର ଉକ୍ତ ସୋମେଶ୍ୱର ନାମକ ମହାଲିଙ୍ଗଙ୍କୁ ଦର୍ଶନ କରି ମନୁଷ୍ୟ ପାପମୁକ୍ତ ହୋଇଯାଏ ଏବଂ ତାକୁ ଭୋଗ ଓ ମୋକ୍ଷ ସୁଲଭ ହୋଇଯାଏ । ହେ ମୁନି ! ଶିବଙ୍କର ମଲ୍ଲିକାର୍ଜୁନ ନାମକ ଦ୍ୱିତୀୟ ଅବତାର ହୋଇଛି ଶ୍ରୀଶୈଳ ପର୍ବତରେ । ସେ ଭକ୍ତଙ୍କୁ ଅଭୀଷ୍ଟ ଫଳ ପ୍ରଦାନ କରିଥାନ୍ତି । ଭଗବାନ ଶିବ ପ୍ରସନ୍ନତାପୂର୍ବକ ନିଜର ନିବାସଭୂତ କୈଳାସଗିରିରୁ ଆସି ଲିଙ୍ଗରୂପରେ ଶ୍ରୀଶୈଳରେ ବିରାଜମାନ ହୋଇଛନ୍ତି । ପୁତ୍ରପ୍ରାପ୍ତି ନିମନ୍ତେ ଏହାଙ୍କୁ ସ୍ତୁତି କରାଯାଇଥାଏ । ପ୍ରଭୁଙ୍କର ଏହି ଦ୍ୱିତୀୟ ଜ୍ୟୋତିର୍ଲିଙ୍ଗଙ୍କୁ ଦର୍ଶନ ଓ ପୂଜନ କରିବା ଅତ୍ୟନ୍ତ ସୁଖକାରକ ହୋଇଥାଏ ଏବଂ ପରିଶେଷରେ ମୁକ୍ତି ମଧ୍ୟ ମିଳିଥାଏ, ଏଥିରେ ତିଳେମାତ୍ର ସଂଶୟ ନାହିଁ । ମୁନିବର ! ଶିବଙ୍କର ମହାକାଳ ନାମକ ତୃତୀୟ ଅବତାର ଉଜ୍ଜୟିନୀ ନାମକ ନଗରୀରେ ହୋଇଥିଲା । ସେ ତାଙ୍କ ଭକ୍ତଙ୍କୁ ରକ୍ଷା କରିଥାନ୍ତି । ଥରେ ରତ୍ନମାଳନିବାସୀ ଦୂଷଣ ନାମକ ଅସୁର, ଯେ କି ଧର୍ମନାଶକାରୀ, ବିପ୍ରଦ୍ରୋହୀ ତଥା ସର୍ବନାଶକାରୀ ଥିଲା, ସେ ଯାଇ ଉଜ୍ଜୟିନୀରେ ପହଞ୍ଚିଲା । ସେତେବେଳେ ବେଦ ନାମକ ବିପ୍ରଙ୍କ ପୁତ୍ର ଶିବଙ୍କୁ ଧ୍ୟାନ କଲା । ଶିବ ତୁରନ୍ତ ପ୍ରକଟ ହୋଇ ହୁଂକାର ମାତ୍ରକେ ସେହି ଅସୁରକୁ ଭସ୍ମ କରିଦେଲେ । ଏହାପରେ ଭକ୍ତଙ୍କ ପାଳକ ଶିବ ଦେବତାଙ୍କ ଅନୁରୋଧକ୍ରମେ ମହାକାଳ ନାମକ ଜ୍ୟୋତିର୍ଲିଙ୍ଗ ରୂପରେ ସେଠାରେ ପ୍ରତିଷ୍ଠିତ ହେଲେ । ମହାକାଳ ନାମକ ଶିବଲିଙ୍ଗର ଦର୍ଶନ ଓ ପୂଜନ କଲେ ମନୁଷ୍ୟର ସମସ୍ତ କାମନା ପୂରଣ ହୋଇଥାଏ ଏବଂ ଶେଷରେ ତାକୁ ପରମ ଗତି ପ୍ରାପ୍ତ ହୋଇଥାଏ । ପରମ ଆତ୍ମବଳସମ୍ପନ୍ନ ପରମେଶ୍ୱର ଶମ୍ଭୁ ଓଁକାର ନାମକ ଚତୁର୍ଥ ଅବତାର ଧାରଣ କରି ଭକ୍ତଙ୍କୁ ଅଭୀଷ୍ଟ ଫଳ ପ୍ରଦାନ କରିଥାନ୍ତି । ମୁନେ ! ବିନ୍ଧ୍ୟଗିରି ଭକ୍ତିପୂର୍ବକ ବିଧିବିଧାନରେ ଶିବଙ୍କ ପାର୍ଥିବଲିଙ୍ଗ ସ୍ଥାପନ କରିଥିଲେ । ସେହି ଲିଙ୍ଗରେ ତାଙ୍କର ମନୋରଥ ପୂରଣକାରୀ ମହାଦେବ ପ୍ରକଟ ହୋଇଥିଲେ । ଦେବତାଙ୍କ ପ୍ରାର୍ଥନାକ୍ରମେ ଭୁକ୍ତି-ମୁକ୍ତିପ୍ରଦାତା ଭକ୍ତବତ୍ସଳ ଲିଙ୍ଗରୂପୀ ଶିବ ସେଠାରେ ଦୁଇଟି ରୂପରେ ବିଭକ୍ତ ହୋଇଗଲେ । ମୁନୀଶ୍ୱର ! ତନ୍ମଧ୍ୟରୁ ଗୋଟିଏ ଭାଗ ଓଁକାରରେ ଓଁକାରେଶ୍ୱର ନାମକ ଲିଙ୍ଗରୂପରେ ଓ ଅନ୍ୟ ପାର୍ଥିବ ଲିଙ୍ଗଟି ପରମେଶ୍ୱର ନାମରେ ପ୍ରସିଦ୍ଧ ହେଲା । ମୁନେ ! ଉଭୟ ମଧ୍ୟରୁ ଯେକୌଣସି ଲିଙ୍ଗର ଦର୍ଶନ-ପୂଜନ କଲେ ବି ଭକ୍ତଙ୍କର ଅଭିଳାଷ ପୂର୍ଣ୍ଣ ହୋଇଥାଏ । ମହାମୁନେ ! ମୁଁ ତୁମକୁ ଏ ଦୁଇଟି ମହାଦିବ୍ୟ ଜ୍ୟୋତିର୍ଲିଙ୍ଗଙ୍କ ବିଷୟରେ କହିଦେଲି ।

ପରମାତ୍ମା ଶିବଙ୍କର ପଞ୍ଚମ ଅବତାରର ନାମ କେଦାରେଶ । ସେ କେଦାରରେ ଜ୍ୟୋତିର୍ଲିଙ୍ଗ-ରୂପରେ ଅବସ୍ଥିତ ହୋଇଛନ୍ତି । ମୁନେ! ଶ୍ରୀହରିଙ୍କର ଅବତାର ନର ଓ ନାରାୟଣଙ୍କ ପ୍ରାର୍ଥନାକ୍ରମେ ଶିବ ହିମଗିରିର କେଦାରଶିଖରରେ ଅବସ୍ଥିତ ହୋଇଥିଲେ । ସେ ଦୁହେଁ ନିତ୍ୟ କେଦାରେଶ୍ୱର ଲିଙ୍ଗଙ୍କୁ ପୂଜା କରିଥାନ୍ତି । ସେଠାରେ ଶମ୍ଭୁଙ୍କୁ ଦର୍ଶନ ଓ ପୂଜନ କରୁଥିବା ଭକ୍ତଙ୍କୁ ପ୍ରଭୁ ଅଭୀଷ୍ଟ ଫଳ ପ୍ରଦାନ କରିଥାନ୍ତି । ହେ ମୁନି! ସର୍ବେଶ୍ୱର ହୋଇ ମଧ୍ୟ ଶିବ ଏହି ଖଣ୍ଡବିଶେଷର ସ୍ୱାମୀ । ଶିବଙ୍କର ଏହି ଅବତାର ସମସ୍ତ ଅଭୀଷ୍ଟ ପ୍ରଦାନ କରିଥାଏ । ମହାପ୍ରଭୁ ଶମ୍ଭୁଙ୍କର ଷଷ୍ଠ ଅବତାରର ନାମ ଭୀମଶଙ୍କର । ଏହି ଅବତାରରେ ସେ ବଡ଼ ବଡ଼ ଲୀଳା କରିଥିଲେ ଏବଂ ଭୀମାସୁରକୁ ବିନାଶ କରିଥିଲେ । କାମରୂପ ଦେଶର ଅଧିପତି ରାଜା ସୁଦକ୍ଷିଣ ଶିବଙ୍କର ଭକ୍ତ ଥିଲେ । ଭୀମାସୁର ତାଙ୍କୁ କଷ୍ଟ ଦେଉଥିଲା । ଶିବ ତାଙ୍କ ଭକ୍ତକୁ ଦୁଃଖ ଦେଉଥିବା ସେହି ଅଦ୍ଭୁତ ଅସୁରକୁ ବଧ କରି ତାଙ୍କୁ ରକ୍ଷା କଲେ । ତା'ପରେ ରାଜା ସୁଦକ୍ଷିଣଙ୍କ ପ୍ରାର୍ଥନା ଅନୁସାରେ ସ୍ୱୟଂ ଶିବ ଡାକିନୀରେ ଭୀମଶଙ୍କର ନାମକ ଜ୍ୟୋତିର୍ଲିଙ୍ଗରୂପରେ ବିରାଜିତ ହୋଇଗଲେ । ମୁନେ! ବିଶ୍ୱେଶ୍ୱର ନାମକ ସପ୍ତମ ଅବତାର କାଶୀରେ ହୋଇଥିଲା, ସେ ହେଉଛନ୍ତି ସମସ୍ତ ବ୍ରହ୍ମାଣ୍ଡସ୍ୱରୂପ ତଥା ଭୋଗ ଓ ମୋକ୍ଷର ପ୍ରଦାତା । ସ୍ୱୟଂ ମୁକ୍ତିଦାତା ସିଦ୍ଧିସ୍ୱରୂପ ଭଗବାନ୍ ଶଙ୍କର ନିଜର ପୁରୀ କାଶୀରେ ଜ୍ୟୋତିର୍ଲିଙ୍ଗ-ରୂପରେ ବିରାଜିତ ଅଛନ୍ତି । ବିଷ୍ଣୁ ଆଦି ଦେବଗଣ, କୈଳାସପତି ଶିବ ଓ ଭୈରବ ନିତ୍ୟ ତାଙ୍କର ପୂଜା କରନ୍ତି । ଯେ କାଶୀ ବିଶ୍ୱନାଥଙ୍କର ଭକ୍ତ ଓ ନିତ୍ୟ ତାଙ୍କର ନାମ ଜପନ୍ତି, ସେମାନେ କର୍ମରୁ ନିର୍ଲିପ୍ତ ହୋଇ କୈବଲ୍ୟପଦର ଭାଗୀ ହୁଅନ୍ତି । ଚନ୍ଦ୍ରଶେଖର ଶିବଙ୍କର ତ୍ର୍ୟମ୍ବକ ନାମକ ଅଷ୍ଟମ ଅବତାର ଗୌତମ ଋଷିଙ୍କ ପ୍ରାର୍ଥନା ଅନୁସାରେ ଗୌତମୀ ନଦୀର ତଟରେ ହୋଇଥିଲା । ଗୌତମ ମୁନିଙ୍କ ପ୍ରାର୍ଥନାକ୍ରମେ ତାଙ୍କୁ ପ୍ରସନ୍ନ କରିବା ନିମନ୍ତେ ଶିବ ପ୍ରେମପୂର୍ବକ ଜ୍ୟୋତିର୍ଲିଙ୍ଗରୂପରେ ସେଠାରେ ଅଚଳ ଭାବରେ ଅବସ୍ଥିତ ହୋଇଗଲେ । ଅହୋ ! ମହେଶ୍ୱରଙ୍କ ସେହି ଲିଙ୍ଗକୁ ଦର୍ଶନ ଓ ସ୍ପର୍ଶ କଲେ ସମସ୍ତ କାମନା ପୂର୍ଣ୍ଣ ହୁଏ; ତା'ପରେ ମୁକ୍ତି ମଧ୍ୟ ମିଳିଯାଏ । ଶିବଙ୍କ ଅନୁଗ୍ରହରେ ଶଙ୍କରପ୍ରିୟା ପରମ ପାବନୀ ଗଙ୍ଗା ଗୌତମଙ୍କ ପ୍ରସନ୍ନତା ନିମନ୍ତେ ସେଠାରେ ଗୌତମୀ ନାମରେ ପ୍ରବାହିତ ହେଲେ । ତାଙ୍କର ନବମ ଅବତାର ବୈଦ୍ୟନାଥ ନାମରେ ପ୍ରସିଦ୍ଧ । ଏହି ଅବତାରରେ ବିଚିତ୍ର ଲୀଳା କରିବାରେ ପ୍ରବୀଣ ଶିବ ରାବଣ ନିମନ୍ତେ ଆବିର୍ଭୂତ ହୋଇଥିଲେ । ରାବଣ ଦ୍ୱାରା ଅଣାଯାଇଥିବା ଘଟଣାକୁ ଆଧାର କରି ମହେଶ୍ୱର ଜ୍ୟୋତିର୍ଲିଙ୍ଗରୂପରେ ଚିତାଭୂମିରେ ପ୍ରତିଷ୍ଠିତ ହୋଇଗଲେ । ସେହିକାଳ ଠାରୁ ସେ ତ୍ରିଲୋକରେ ବୈଦ୍ୟନାଥେଶ୍ୱର ନାମରେ ବିଖ୍ୟାତ ହେଲେ । ଭକ୍ତିପୂର୍ବକ ଦର୍ଶନ ଓ ପୂଜନ କରୁଥିବା ଭକ୍ତକୁ ସେ ଭୋଗ ଓ ମୋକ୍ଷ ପ୍ରଦାନ କରନ୍ତି । ମୁନେ ! ଯେଉଁମାନେ ବୈଦ୍ୟନାଥେଶ୍ୱର ଶିବଙ୍କ ମାହାତ୍ମ୍ୟକୁ ପଢ଼ନ୍ତି ବା ଶୁଣନ୍ତି, ସେମାନଙ୍କୁ ସେ ଭୁକ୍ତି ଓ ମୁକ୍ତିର ଭାଗୀ କରିଦିଅନ୍ତି । ଦଶମ ଅବତାର ହେଲା ନାଗେଶ୍ୱରାବତାର । ପ୍ରଭୁ ମହେଶ୍ୱର ଭକ୍ତଙ୍କ ରକ୍ଷା ନିମିତ୍ତ ଏହି ଲିଙ୍ଗରୂପରେ ଆବିର୍ଭୂତ ହୋଇଥିଲେ । ସେ ଦୁଷ୍ଟଙ୍କୁ ଦଣ୍ଡ ଦିଅନ୍ତି । ଏହି ଅବତାରରେ ଶିବ ଦାରୁକ ନାମକ ଧର୍ମଘାତୀ ରାକ୍ଷସକୁ ମାରି ବୈଶ୍ୟମାନଙ୍କ ସ୍ୱାମୀ ସୁପ୍ରିୟ ନାମକ ଭକ୍ତକୁ ରକ୍ଷା କରିଥିଲେ । ତା'ପରେ ଲୀଳାଧାରୀ ପରାତ୍ପର ଶମ୍ଭୁ ଜଗତର ହିତ ନିମନ୍ତେ ଅମ୍ବିକାଙ୍କ ସହିତ ଜ୍ୟୋତିର୍ଲିଙ୍ଗ ରୂପରେ ଅବସ୍ଥିତ ହୋଇଥିଲେ । ମୁନେ ! ନାଗେଶ୍ୱର ନାମକ

ଶିବଲିଙ୍ଗଙ୍କ ଦର୍ଶନ ତଥା ଅର୍ଚ୍ଚନ କଲେ ଘୋର ପାପରାଶି ଅବିଳମ୍ବେ ନଷ୍ଟ ହୋଇଯାଏ । ମୁନେ ! ଶିବଙ୍କର ଏକାଦଶ ଅବତାର ରାମେଶ୍ୱର ନାମରେ ପ୍ରସିଦ୍ଧ । ଏହି ଅବତାରରେ ସେ ଶ୍ରୀରାମଚନ୍ଦ୍ରଙ୍କର ପ୍ରିୟକାର୍ଯ୍ୟ କରିଥିଲେ । ତାଙ୍କୁ ଶ୍ରୀରାମ ହିଁ ସ୍ଥାପନ କରିଥିଲେ । ମୁନେ! ଯେଉଁ ଭକ୍ତବତ୍ସଳ ଶିବ ଆବିର୍ଭୂତ ହୋଇ ପରମ ପ୍ରସନ୍ନତାର ସହ ଶ୍ରୀରାମଙ୍କୁ ବିଜୟର ବର ପ୍ରଦାନ କରିଥିଲେ, ସେ ହିଁ ଶ୍ରୀରାମଙ୍କ ପ୍ରାର୍ଥନାକ୍ରମେ ସେତୁବନ୍ଧରେ ଜ୍ୟୋତିର୍ଲିଙ୍ଗରୂପରେ ଅବସ୍ଥିତ ହେଲେ । ସେତେବେଳେ ପ୍ରଭୁ ଶ୍ରୀରାମ ତାଙ୍କୁ ଉତ୍ତମରୂପେ ପୂଜା-ଅର୍ଚ୍ଚନା କରିଥିଲେ । ରାମେଶ୍ୱରଙ୍କ ଅଦ୍ଭୁତ ମହିମା ପରି ଭୂତଳରେ ଆଉ କାହାରି ମହିମା ନାହିଁ । ସେ ସର୍ବଦା ଭୁକ୍ତି ଓ ମୁକ୍ତି ପ୍ରଦାନ କରନ୍ତି ଓ ଭକ୍ତଙ୍କ କାମନା ପୂରଣ କରନ୍ତି । ଯେଉଁ ମନୁଷ୍ୟ ସଭକ୍ତିପୂର୍ବକ ରାମେଶ୍ୱର ଶିବଲିଙ୍ଗଙ୍କୁ ଗଙ୍ଗାଜଳରେ ସ୍ନାନ କରାଇବ, ସେ ଜୀବନ୍ମୁକ୍ତ ହୋଇଗଲା ବୋଲି ଜାଣ । ସେ ଇହଲୋକରେ ଦେବଦୁର୍ଲଭ ଭୋଗମାନ ଉପଭୋଗ କରିବା ପରେ ପରମ ଜ୍ଞାନ ଲାଭ କରିବ ଏବଂ ତା'ପରେ ତାକୁ କୈବଲ୍ୟ ମୋକ୍ଷ ପ୍ରାପ୍ତ ହେବ । ଘୁଶ୍ମେଶ୍ୱରାବତାର ହେଉଛି ଶିବଙ୍କର ଦ୍ୱାଦଶ ଅବତାର । ସେ ନାନା ପ୍ରକାର ଲୀଳା କରିଥାନ୍ତି । ସେ ଭକ୍ତବତ୍ସଳ ଓ ଘୁଶ୍ମାକୁ ଆନନ୍ଦ ପ୍ରଦାନକାରୀ । ମୁନେ! ଘୁଶ୍ମାର ପ୍ରିୟ କାର୍ଯ୍ୟ କରିବା ନିମନ୍ତେ ଭଗବାନ ଶଙ୍କର ଦାକ୍ଷିଣାତ୍ୟର ଦେବଶୈଳ ନିକଟବର୍ତ୍ତୀ ଗୋଟିଏ ସରୋବର ମଧ୍ୟରୁ ପ୍ରକଟ ହୋଇଥିଲେ । ମୁନେ ! ଶିବଭକ୍ତିନିରତା ଘୁଶ୍ମାର ପୁତ୍ରକୁ ସୁଦେହା ମାରି ପକାଇଥିଲା । ଘୁଶ୍ମାର ଆରାଧନା ଓ ଭକ୍ତିରେ ସନ୍ତୁଷ୍ଟ ହୋଇ ଭକ୍ତବତ୍ସଳ ଶମ୍ଭୁ ତା'ର ପୁତ୍ରକୁ ବଞ୍ଚାଇଦେଲେ । ତା'ପରେ କାମନାପୂରଣକାରୀ ଶମ୍ଭୁ ଘୁଶ୍ମାର ପ୍ରାର୍ଥନା କ୍ରମେ ସେହି ତଡ଼ାଗରେ ଜ୍ୟୋତିର୍ଲିଙ୍ଗରୂପରେ ଅବସ୍ଥାନ କଲେ । ସେହି ଦିନଠାରୁ ତାଙ୍କର ନାମ ଘୁଶ୍ମେଶ୍ୱର ହେଲା । ଯେଉଁ ମନୁଷ୍ୟ ଘୁଶ୍ମେଶ୍ୱର ଶିବଲିଙ୍ଗଙ୍କୁ ଭକ୍ତିପୂର୍ବକ ଦର୍ଶନ ବା ପୂଜନ କରେ, ସେ ଇହଲୋକରେ ସମସ୍ତ ସୁଖ ଭୋଗ କରିବା ସହ ଶେଷରେ ମୁକ୍ତି ଲାଭ କରେ । ସନତ୍‌କୁମାର ! ମୁଁ ତୁମ ଆଗରେ ଦ୍ୱାଦଶ ଦିବ୍ୟ ଜ୍ୟୋତିର୍ଲିଙ୍ଗଙ୍କ ବିଷୟରେ ବର୍ଣ୍ଣନା କରିଦେଲି । ଏ ସମସ୍ତ ଲିଙ୍ଗ ଭୋଗ ଓ ମୋକ୍ଷ ପ୍ରଦାନ କରିଥାନ୍ତି । ଯେଉଁ ମନୁଷ୍ୟ ଜ୍ୟୋତିର୍ଲିଙ୍ଗଙ୍କର ଏହି ପ୍ରସଙ୍ଗକୁ ପଢ଼େ ଅଥବା ଶୁଣେ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ ଏବଂ ଭୋଗ ଓ ମୋକ୍ଷ ଲାଭ କରେ । ଏହି ପ୍ରକାରେ ମୁଁ ଶତରୁଦ୍ର ନାମକ ସଂହିତା ବର୍ଣ୍ଣନା କରିଦେଲି । ଏହା ଶିବଙ୍କର ଉତ୍ତମ କୀର୍ତ୍ତିରେ ପରିପୂର୍ଣ୍ଣ ତଥା ସମସ୍ତ ଅଭୀଷ୍ଟ ଫଳ-ପ୍ରଦାନକାରୀ । ଯେଉଁ ଲୋକ ଏହାକୁ ନିତ୍ୟ ସମାହିତଚିତ୍ତରେ ପଢ଼େ ଅଥବା ଶୁଣେ, ତା'ର ସମସ୍ତ ଲାଳସା ପୂରଣ ହୋଇଥାଏ ଏବଂ ତାକୁ ଶେଷରେ ନିଶ୍ଚିତରୂପେ ମୁକ୍ତି ମିଳିଯାଏ ।

(ଅଧ୍ୟାୟ ୪୨)

★★★

## ॥ ଶତରୁଦ୍ରସଂହିତା ସମ୍ପୂର୍ଣ୍ଣ ॥



# କୋଟିରୁଦ୍ରସଂହିତା

## ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ତଥା ସେମାନଙ୍କ ଉପଲିଙ୍ଗର ବର୍ଣ୍ଣନା ଏବଂ ସେମାନଙ୍କ ଦର୍ଶନ ଓ ପୂଜନର ମହିମା

ଯୋ ଧତ୍ତେ ନିଜମାୟୟୈବ ଭୁବନାକାରଂ ବିକାରୋଜ୍ଝିତୋ
ଯସ୍ୟାହୁଃ କରୁଣାକଟାକ୍ଷବିଭବୌ ସ୍ୱର୍ଗାପବର୍ଗାଭିଧୌ ।
ପ୍ରତ୍ୟଗ୍‌ବୋଧସୁଖାଦ୍ୱୟଂ ହୃଦି ସଦା ପଶ୍ୟନ୍ତି ଯଂ ଯୋଗିନ-
ସ୍ତସ୍ମୈ ଶୈଳସୁତାଞ୍ଚିତାର୍ଦ୍ଧବପୁଷେ ଶଶ୍ୱନ୍ନମସ୍ତେଜସେ ॥ ୧

**ଯେ ନିର୍ବିକାର ହୋଇ ମଧ୍ୟ ନିଜ ମାୟାରେ ବିରାଟ ବିଶ୍ୱର ଆକାର ଧାରଣ କରିନିଅନ୍ତି, ସ୍ୱର୍ଗ ଓ ଅପବର୍ଗ (ମୋକ୍ଷ) ଯାହାଙ୍କର କୃପାକଟାକ୍ଷର ହିଁ ବୈଭବ ବୋଲି କୁହାଯାଏ, ଯୋଗୀଜନ ଯାହାଙ୍କୁ ସଦା ନିଜ ହୃଦୟ ଭିତରେ ଅଦ୍ୱିତୀୟ ଆତ୍ମଜ୍ଞାନାନନ୍ଦସ୍ୱରୂପରେ ହିଁ ଦେଖିଥାନ୍ତି, ଯାହାଙ୍କ ଅର୍ଦ୍ଧାଙ୍ଗ ଶୈଳରାଜକୁମାରୀ ପାର୍ବତୀଙ୍କ ଦ୍ୱାରା ସୁଶୋଭିତ, ସେହି ତେଜୋମୟ ଭଗବାନ ଶଙ୍କରଙ୍କୁ ମୋର ନିରନ୍ତର ନମସ୍କାର ॥ ୧ ॥**

କୃପାଲଳିତବୀକ୍ଷଣଂ ସ୍ମିତମନୋଜ୍ଞବକ୍ତ୍ରାମ୍ବୁଜଂ
ଶଶାଙ୍କକଲୟୋଜ୍ଜ୍ୱଳଂ ଶମିତଘୋରତାପତ୍ରୟମ୍ ।
କରୋତୁ କିମପି ସ୍ଫୁରତ୍ ପରମସୌଖ୍ୟସଚ୍ଚିଦ୍ ବପୁ-
ର୍ଧରାଧରସୁତାଭୁଜୋଦ୍‌ବଳୟିତଂ ମହୋ ମଙ୍ଗଳମ୍ ॥ ୨

**କୃପାପୂର୍ଣ୍ଣ ସୁନ୍ଦର ଚାହାଣି ଓ ମନ୍ଦହାସର ଛଟାରେ ଯାହାଙ୍କ ମୁଖାରବିନ୍ଦ ଅତ୍ୟନ୍ତ ମନୋହର, ଯେ ଚନ୍ଦ୍ରମାର କଳାରେ ପରମୋଜ୍ଜ୍ୱଳ, ଆଧ୍ୟାତ୍ମିକାଦି ତ୍ରିତାପକୁ ଶାନ୍ତ କରିବାକୁ ସମର୍ଥ, ସଚ୍ଚିନ୍ମୟ ଏବଂ ପରମାନନ୍ଦସ୍ୱରୂପ ତଥା ଗିରିଜାଙ୍କ ଭୁଜପାଶରେ ଆବେଷ୍ଟିତ, ସେହି ଶିବ ନାମକ ଅନିର୍ବଚନୀୟ ତେଜଃପୁଞ୍ଜ ସମସ୍ତଙ୍କର ମଙ୍ଗଳ କରୁ ॥ ୨ ॥**

ଋଷିମାନେ କହିଲେ—**ସୂତ ମହାଭାଗ ! ଆପଣ ସମସ୍ତ ଭୁବନର ହିତ କାମନାରେ ନାନା ଆଖ୍ୟାନ ଦ୍ୱାରା ଯେଉଁ ଶିବାବତାର-ମାହାତ୍ମ୍ୟ କହିଲେ, ତାହା ଅତ୍ୟନ୍ତ ଉତ୍ତମ । ଏବେ ପୁନଃ ଶିବଲିଙ୍ଗମାନଙ୍କର ପରମୋତ୍ତମ ମାହାତ୍ମ୍ୟକୁ ପ୍ରସନ୍ନତାପୂର୍ବକ ବର୍ଣ୍ଣନା କରନ୍ତୁ । ଆପଣ ଶିବଭକ୍ତଙ୍କ ମଧ୍ୟରେ ଶ୍ରେଷ୍ଠ, ତେଣୁ ଧନ୍ୟ ଅଟନ୍ତି । ଆପଣଙ୍କ ମୁଖାରବିନ୍ଦରୁ ନିର୍ଗତ ଭଗବାନ ଶିବଙ୍କର ସୁରମ୍ୟ ସୁଯଶରୂପୀ ଅମୃତକୁ କର୍ଣ୍ଣପୁଟ ଦ୍ୱାରା ଯେତେ ପାନ କଲେ ମଧ୍ୟ ପୂର୍ଣ୍ଣ ତୃପ୍ତି ମିଳୁ ନାହିଁ । ତେଣୁ ପୁନଃ ତାହାକୁ ବର୍ଣ୍ଣନା କରନ୍ତୁ । ହେ ବ୍ୟାସଶିଷ୍ୟ ! ଭୂମଣ୍ଡଳରେ ଓ ନାନା ତୀର୍ଥରେ ପରମେଶ୍ୱର ଶିବଙ୍କର ଯେତେ ସବୁ ଶୁଭ ଲିଙ୍ଗ ଅଛି, ଅଥବା ଅନ୍ୟ ସ୍ଥଳରେ ଯେତେ ସବୁ ପ୍ରସିଦ୍ଧ ଶିବଲିଙ୍ଗ ବିରାଜମାନ, ଜଗତର ମଙ୍ଗଳ ନିମନ୍ତେ ସେ ସମସ୍ତ ଦିବ୍ୟ ଲିଙ୍ଗ ସମ୍ପର୍କରେ ବର୍ଣ୍ଣନା କରନ୍ତୁ ।**

ସୂତ କହିଲେ—**ମହର୍ଷିଗଣ ! ସମସ୍ତ ତୀର୍ଥ ଲିଙ୍ଗମୟ । ସବୁକିଛି ଲିଙ୍ଗରେ ହିଁ ପ୍ରତିଷ୍ଠିତ । ଏଣୁ ଶିବଲିଙ୍ଗର ଗଣନା ଅସମ୍ଭବ । ତଥାପି ମୁଁ ସେଥିମଧ୍ୟରୁ କିଞ୍ଚିତ୍ ବର୍ଣ୍ଣନା କରୁଛି । ଯାହା କିଛି ଦୃଶ୍ୟ ହୁଏ ଓ ଯାହା କିଛି ବର୍ଣ୍ଣନ ବା ସ୍ମରଣ କରାଯାଇପାରେ, ସେ ସମସ୍ତ ଶିବଙ୍କର ହିଁ ରୂପ; କୌଣସି ବସ୍ତୁ ଶିବଙ୍କ ସ୍ୱରୂପରୁ ଭିନ୍ନ ନୁହେଁ । ହେ ଶ୍ରେଷ୍ଠ ଋଷିଗଣ! ଭଗବାନ ଶମ୍ଭୁ ସମସ୍ତଙ୍କ ଉପରେ ଅନୁଗ୍ରହ କରିବା ପାଇଁ ଦେବତା, ଅସୁର ଓ ମନୁଷ୍ୟରେ ପରିପୂର୍ଣ୍ଣ ସମଗ୍ର ତ୍ରିଲୋକରେ ଲିଙ୍ଗରୂପରେ ବ୍ୟାପି ରହିଛନ୍ତି । ସମସ୍ତଙ୍କ ଉପରେ କୃପା କରିବା ଉଦ୍ଦେଶ୍ୟରେ ମହେଶ୍ୱର ନାନା ତୀର୍ଥରେ ଓ ଅନ୍ୟ ସ୍ଥଳରେ ମଧ୍ୟ ନାନା ପ୍ରକାର ଲିଙ୍ଗ ରୂପ ଧାରଣ କରିଛନ୍ତି । ଯେଉଁ ଯେଉଁଠାରେ ଓ ଯେତେବେଳେ ଭକ୍ତମାନେ ଶମ୍ଭୁଙ୍କୁ ସ୍ମରଣ କରିଛନ୍ତି, ସବୁ କ୍ଷେତ୍ରରେ ସେ ଅବତାର ଗ୍ରହଣ କରି ସେମାନଙ୍କ କାର୍ଯ୍ୟ ସାଧିତ କରି ସେଠାରେ**

ଅବସ୍ଥିତ ହୋଇଛନ୍ତି । ସଂସାରର ହିତ ଉଦ୍ଦେଶ୍ୟରେ ସେ ସ୍ୱୟଂ ନିଜ ସ୍ୱରୂପଭୂତ ଲିଙ୍ଗର କଳ୍ପନା କରିଛନ୍ତି, ଯାହାକୁ ପୂଜା କରି ଶିବଭକ୍ତମାନେ ଅବଶ୍ୟ ସିଦ୍ଧି ପ୍ରାପ୍ତି କରିଥାନ୍ତି । ବ୍ରାହ୍ମଣଗଣ ! ଭୂମଣ୍ଡଳରେ ଯେତେ ଶିବଲିଙ୍ଗ ରହିଛି, ତାହାର ଗଣନା ଅସମ୍ଭବ, ତଥାପି ମୁଁ ମୁଖ୍ୟ ମୁଖ୍ୟ ଶିବଲିଙ୍ଗର ପରିଚୟ ଦେଉଛି । ହେ ମୁନିବର ଶୌନକ ! ସେଥିମଧ୍ୟରୁ ବି ପ୍ରମୁଖ ଜ୍ୟୋତିର୍ଲିଙ୍ଗ ବିଷୟରେ ଏବେ ମୁଁ ବର୍ଣ୍ଣନା କରୁଛି, ଯାହାଙ୍କ ନାମ ଶ୍ରବଣମାତ୍ରକେ ପାପ ଦୂର ହୋଇଯାଏ । ସୌରାଷ୍ଟ୍ରରେ ସୋମନାଥ[୧], ଶ୍ରୀଶୈଳ ଉପରେ ମଲ୍ଲିକାର୍ଜୁନ[୨], ଉଜ୍ଜୟିନୀରେ ମହାକାଳ[୩], ଓଁକାର-ତୀର୍ଥରେ ପରମେଶ୍ୱର[୪], ହିମାଳୟ ଶିଖରରେ କେଦାର[୫], ଡାକିନୀରେ ଭୀମଶଙ୍କର[୬], ବାରାଣସୀରେ ବିଶ୍ୱନାଥ[୭], ଗୋଦାବରୀ ତଟରେ ତ୍ର୍ୟମ୍ବକ[୮], ଚିତାଭୂମିରେ ବୈଦ୍ୟନାଥ[୯], ଦାରୁକ-ବନରେ ନାଗେଶ[୧୦], ସେତୁବନ୍ଧରେ ରାମେଶ୍ୱର[୧୧] ଏବଂ ଶିବାଳୟରେ ଘୁଶ୍ମେଶ୍ୱର[୧୨] ପ୍ରତିଷ୍ଠିତ ଅଛନ୍ତି ।

---

୧. ଶ୍ରୀସୋମନାଥ କାଠିଆବାଡ ପ୍ରଦେଶ ଅନ୍ତର୍ଗତ ପ୍ରଭାସକ୍ଷେତ୍ରରେ ବିଦ୍ୟମାନ । ୨. ଶ୍ରୀମଲ୍ଲିକାର୍ଜୁନ ନାମକ ଜ୍ୟୋତିର୍ଲିଙ୍ଗ ଶ୍ରୀଶୈଳ ବା ଶ୍ରୀପର୍ବତ ଉପରେ ବିରାଜମାନ । ଏହି ସ୍ଥାନ ମାଡ୍ରାସ ପ୍ରାନ୍ତ କୃଷ୍ଣା ଜିଲ୍ଲାର କୃଷ୍ଣା ନଦୀତଟରେ ଅବସ୍ଥିତ । ଏହାକୁ ଦକ୍ଷିଣର କୈଳାସ କୁହାଯାଏ । ୩. ମହାକାଳ ବା ମହାକାଳେଶ୍ୱର ମାଳବା ପ୍ରଦେଶରେ କ୍ଷିପ୍ରା ନଦୀତଟରେ ଉଜ୍ଜୈନ ନାମକ ନଗରୀରେ ବିରାଜମାନ । ଉଜ୍ଜୈନକୁ ଅବନ୍ତିକା ପୁରୀ ମଧ୍ୟ କହନ୍ତି । ୪. ପରମେଶ୍ୱର ଶିବଲିଙ୍ଗକୁ ଓଁକାରେଶ୍ୱର ମଧ୍ୟ କହନ୍ତି । ଓଁକାରେଶ୍ୱର ମାଳବା ପ୍ରାନ୍ତରେ ନର୍ମଦାତଟରେ ଅବସ୍ଥିତ । ଉଜ୍ଜୈନରୁ ଖଣ୍ଡବା ଯାଉଥିବା ପତଳା ରେଳରାସ୍ତାରେ ଗଲେ ମୋରଟକ୍କା ନାମକ ଷ୍ଟେସନ ପଡ଼େ । ସେଠାରୁ ଓଁକାରେଶ୍ୱରଙ୍କ ବିଜେସ୍ଥଳୀ ୭ ମାଇଲ ଦୂର । ଏଠାରେ ଓଁକାରେଶ୍ୱର ଓ ଅମଳେଶ୍ୱର ନାମକ ଦୁଇଟି ପୃଥକ୍ ପୃଥକ୍ ଲିଙ୍ଗ ଅଛି; ମାତ୍ର ଉଭୟ ଲିଙ୍ଗକୁ ଗୋଟିଏ ଜ୍ୟୋତିର୍ଲିଙ୍ଗର ଦୁଇଟି ସ୍ୱରୂପ ବୋଲି ଧରାଯାଏ । ୫. ଶ୍ରୀକେଦାରନାଥ ବା କେଦାରେଶ୍ୱର ହିମାଳୟର କେଦାର ନାମକ ଶିଖରରେ ଅବସ୍ଥିତ । ଶିଖରର ପୂର୍ବ ଆଡ଼କୁ ଅଳକନନ୍ଦାତଟରେ ଶ୍ରୀବଦ୍ରୀନାଥ ଅବସ୍ଥିତ ଏବଂ ପଶ୍ଚିମକୁ ମନ୍ଦାକିନୀ ତଟରେ ଶ୍ରୀକେଦାରେଶ୍ୱର ବିରାଜମାନ । ଏହି ସ୍ଥାନ ହରିଦ୍ୱାରରୁ ୧୫୦ ମାଇଲ୍ ଓ ଋଷିକେଶରୁ ୧୩୨ ମାଇଲ୍ ଦୂର । ୬. ଶ୍ରୀଭୀମଶଙ୍କରଙ୍କ ସ୍ଥାନ ବମ୍ବେଠାରୁ ପୂର୍ବ ଓ ପୁନାଠାରୁ ଉତ୍ତରକୁ ଭୀମା ନଦୀର ତଟରେ ତାହାର ଉଦ୍ଗମସ୍ଥାନ ସହ୍ୟ ପର୍ବତ ଉପରେ ଅବସ୍ଥିତ । ଲାରୀ ରାସ୍ତାରେ ଗଲେ ନାସିକଠାରୁ ପ୍ରାୟ ୧୨୦ ମାଇଲ୍ ଦୂର । ସହ୍ୟ ପର୍ବତର ଯେଉଁ ଶିଖରରେ ଜ୍ୟୋତିର୍ଲିଙ୍ଗଙ୍କ ପ୍ରାଚୀନ ମନ୍ଦିର ଅଛି, ତାହାର ନାମ ଡାକିନୀ । ଏଥିରୁ ଅନୁମାନ ହୁଏ ଯେ ପୂର୍ବେ କୌଣସି ସମୟରେ ଏହା ଡାକିନୀ ଓ ଭୂତଙ୍କର ନିବାସ ସ୍ଥାନ ଥିଲା । ଶିବପୁରାଣର ଗୋଟିଏ ଆଖ୍ୟାନ ଅନୁସାରେ ଭୀମଶଙ୍କର ଜ୍ୟୋତିର୍ଲିଙ୍ଗ ଆସାମର କାମରୂପ ଜିଲ୍ଲା ଅନ୍ତର୍ଗତ ଗୌହାଟି ନିକଟସ୍ଥ ବ୍ରହ୍ମପୁର ପାହାଡ଼ରେ ଅବସ୍ଥିତ । କେତେକ କହନ୍ତି ଯେ ନୈନୀତାଲ ଜିଲ୍ଲାର ଉଜ୍ଜନ ନାମକ ସ୍ଥାନରେ ଥିବା ବିଶାଳ ଶିବମନ୍ଦିର ହିଁ ଭୀମଶଙ୍କରଙ୍କ ସ୍ଥାନ । ୭. କାଶୀରେ ଅବସ୍ଥିତ ବିଶ୍ୱନାଥ ତ ସର୍ବତ୍ର ପ୍ରସିଦ୍ଧ । ୮. ଏ ଜ୍ୟୋତିର୍ଲିଙ୍ଗ ତ୍ର୍ୟମ୍ବକ ବା ତ୍ର୍ୟମ୍ବକେଶ୍ୱର ନାମରେ ପ୍ରସିଦ୍ଧ । ବମ୍ବେର ନାସିକ ଜିଲ୍ଲାରେ ନାସିକ ପଞ୍ଚବଟୀରୁ ୧୮ ମାଇଲ୍ ଦୂରରେ ବ୍ରହ୍ମଗିରି ନିକଟସ୍ଥ ଗୋଦାବରୀ ତଟରେ ଏ ଲିଙ୍ଗ ଅବସ୍ଥିତ । ୯. ଏ ସ୍ଥାନଟି ସଂଥାଲ ପ୍ରଗଣା ଅନ୍ତର୍ଗତ ଇ. ଆଇ. ରେଲୱେର ଜସିଡିହ ଷ୍ଟେସନ ନିକଟରେ ବୈଦ୍ୟନାଥ ଧାମ ନାମରେ ପ୍ରସିଦ୍ଧ । ପୁରାଣାନୁସାରେ ଏହା ହିଁ ଚିତାଭୂମି । କେଉଁଠି କେଉଁଠି 'ପରଲ୍ୟାଂ ବୈଦ୍ୟନାଥଂ ଚ' ଏପରି ପାଠ ମିଳେ । ଉକ୍ତ ପାଠ ଅନୁସାରେ ପରଲୀରେ ବୈଦ୍ୟନାଥ ଅବସ୍ଥିତ । ଦକ୍ଷିଣର ହାଇଦ୍ରାବାଦ ନିକଟସ୍ଥ ପରଭନୀ ନାମକ ଜଙ୍କସନ୍‌ରୁ ପରଲୀ ପର୍ଯ୍ୟନ୍ତ ଗୋଟିଏ ଶାଖା ଲାଇନ୍ ଯାଇଛି । ପରଲୀ ଷ୍ଟେସନ୍ ସମୀପସ୍ଥ ପରଲୀ ନାମକ ଗ୍ରାମ ନିକଟରେ ଶ୍ରୀବୈଦ୍ୟନାଥ ନାମକ ଜ୍ୟୋତିର୍ଲିଙ୍ଗ ଅବସ୍ଥିତ । ୧୦. ନାଗେଶ ନାମକ ଜ୍ୟୋତିର୍ଲିଙ୍ଗ ବଡୌଦା ରାଜ୍ୟ ଅନ୍ତର୍ଗତ ଗୋମତୀ ଦ୍ୱାରକାରୁ ଈଶାନ କୋଣରେ ବାର-ତେର ମାଇଲ୍ ଦୂରରେ ଅବସ୍ଥିତ । ଏହାରି ନାମ ଦାରୁକାବନ । କେହି କେହି ଦାରୁକାବନ ସ୍ଥାନରେ 'ଦ୍ୱାରକାବନ' ପାଠ ଗ୍ରହଣ କରିଥାନ୍ତି । ଏହି ପାଠ ଅନୁସାରେ ମଧ୍ୟ ଉକ୍ତ ସ୍ଥାନ ପ୍ରତିପାଦିତ ହୁଏ; କାରଣ ତାହା ଦ୍ୱାରକା ନିକଟରେ ଓ ସେହି କ୍ଷେତ୍ରର ଅନ୍ତର୍ଗତ । କେହି କେହି ଦକ୍ଷିଣ ହାଇଦ୍ରାବାଦ ଅନ୍ତର୍ଗତ ଔଢା ଗ୍ରାମରେ ସ୍ଥିତ ଶିବଲିଙ୍ଗକୁ ନାଗେଶ୍ୱର ଜ୍ୟୋତିର୍ଲିଙ୍ଗ ବୋଲି ମାନିଥାନ୍ତି । କିଛି ଲୋକଙ୍କ ମତରେ ଅଲମୋଡ଼ାରୁ ୧୭ ମାଇଲ୍ ଉତ୍ତର-ପୂର୍ବ ଦିଗରେ ସ୍ଥିତ ଯାଗେଶ (ଜାଗେଶ୍ୱର) ଶିବଲିଙ୍ଗ ହିଁ ନାଗେଶ ଜ୍ୟୋତିର୍ଲିଙ୍ଗ । ୧୧. ଶ୍ରୀରାମେଶ୍ୱର ତୀର୍ଥକୁ ସେତୁବନ୍ଧ ତୀର୍ଥ ମଧ୍ୟ କହନ୍ତି । ଏ ସ୍ଥାନ ମାଡ୍ରାସ ପ୍ରାନ୍ତର ରାମନାଥମ୍ ବା ରାମନଦ ଜିଲ୍ଲାରେ ସ୍ଥିତ । ଏଠାରେ ସମୁଦ୍ରତଟରେ ରାମେଶ୍ୱରଙ୍କର ବିଶାଳ ମନ୍ଦିର ଶୋଭା ପାଏ । ୧୨. ଶ୍ରୀଘୁଶ୍ମେଶ୍ୱରଙ୍କୁ ଘୁସୃଣେଶ୍ୱର ବା ଘୃଷ୍ଣେଶ୍ୱର ମଧ୍ୟ କହନ୍ତି । ଏହା ହାଇଦ୍ରାବାଦ୍ ରାଜ୍ୟ ଅନ୍ତର୍ଗତ ଦୌଲତାବାଦ ଷ୍ଟେସନରୁ ୧୨ ମାଇଲ୍ ଦୂରରେ ବେରୁଲ ଗାଆଁ ନିକଟରେ ଅବସ୍ଥିତ । ଏହି ସ୍ଥାନକୁ ହିଁ ଶିବାଳୟ କହନ୍ତି ।

ଯେ ପ୍ରତିଦିନ ପ୍ରାତଃକାଳରୁ ଉଠି ଏ ବାରଟି ନାମ ପାଠ କରେ, ସେ ସମସ୍ତ ପାପରୁ ମୁକ୍ତ ହୋଇ ସମସ୍ତ ସିଦ୍ଧିର ଫଳ ଲାଭ କରେ ।*

ମୁନୀଶ୍ୱରଗଣ ! ଏ ବାରଟି ନାମ ପାଠ କରୁଥିବା ଲୋକେ ଇହଲୋକ ଓ ପରଲୋକରେ ସେମାନଙ୍କ ମନୋବାଞ୍ଛିତ ଫଳ ଅବଶ୍ୟ ଲାଭ କରିଥାନ୍ତି । ଯେଉଁ ଶୁଦ୍ଧାନ୍ତଃକରଣଯୁକ୍ତ ବ୍ୟକ୍ତିମାନେ ନିଷ୍କାମଭାବରେ ଏ ନାମଗୁଡ଼ିକୁ ପଢ଼ନ୍ତି, ସେମାନେ ଆଉ ମାତୃଗର୍ଭକୁ ଆସନ୍ତି ନାହିଁ । ଏହି ଲିଙ୍ଗମାନଙ୍କ ପୂଜନମାତ୍ରକେ ସବୁ ବର୍ଣ୍ଣର ଲୋକଙ୍କର ସକଳ ଦୁଃଖ ନଷ୍ଟ ହୋଇଯାଏ ଏବଂ ପରଲୋକରେ ସେମାନଙ୍କୁ ଅବଶ୍ୟ ମୋକ୍ଷପ୍ରାପ୍ତି ହୁଏ । ଏ ବାରଟି ଜ୍ୟୋତିର୍ଲିଙ୍ଗଙ୍କ ନୈବେଦ୍ୟ ଯତ୍ନପୂର୍ବକ ଗ୍ରହଣ କରିବା ଉଚିତ । ଏପରି କରୁଥିବା ଲୋକର ସମସ୍ତ ପାପ ତତ୍‌କ୍ଷଣାତ୍ ଜଳି ଭସ୍ମ ହୋଇଯାଏ ।卐

ମୁନୀଶ୍ୱରଗଣ ! ମୁଁ ଜ୍ୟୋତିର୍ଲିଙ୍ଗଙ୍କର ଦର୍ଶନ ଓ ପୂଜନର ଫଳ କହିଦେଲି । ଏବେ ଏମାନଙ୍କ ଉପଲିଙ୍ଗ ବିଷୟରେ କହୁଛି । ମନ ଦେଇ ଶୁଣନ୍ତୁ । ସୋମନାଥଙ୍କର ଉପଲିଙ୍ଗର ନାମ ହେଉଛି ଅନ୍ତକେଶ୍ୱର । ଏହା ମହୀ ନଦୀ ଓ ସମୁଦ୍ରର ସଙ୍ଗମସ୍ଥଳରେ ଅବସ୍ଥିତ । ମଲ୍ଲିକାର୍ଜୁନଙ୍କ ଠାରୁ ପ୍ରକଟ ଉପଲିଙ୍ଗ ରୁଦ୍ରେଶ୍ୱର ନାମରେ ପ୍ରସିଦ୍ଧ । ଏହା ଭୃଗୁକକ୍ଷରେ ଅବସ୍ଥିତ ଏବଂ ଉପାସକଙ୍କ ପାଇଁ ସୁଖପ୍ରଦାନକାରୀ । ମହାକାଳଙ୍କ ଠାରୁ ପ୍ରକଟିତ ଉପଲିଙ୍ଗ ଦୁଗ୍ଧେଶ୍ୱର ବା ଦୁଧନାଥ ନାମରେ ପ୍ରସିଦ୍ଧ । ଉକ୍ତ ଲିଙ୍ଗ ନର୍ମଦାତଟରେ ଅବସ୍ଥିତ ଏବଂ ଏହା ସମସ୍ତ ପାପନାଶକ ବୋଲି କୁହାଯାଇଛି । ଓଁକାରେଶ୍ୱରଙ୍କ ଉପଲିଙ୍ଗ କର୍ଦମେଶ୍ୱର ନାମରେ ପ୍ରସିଦ୍ଧ । ସମସ୍ତ ମନୋବାଞ୍ଛା ପୂର୍ଣ୍ଣ କରୁଥିବା ଏହି ଉପଲିଙ୍ଗ ବିନ୍ଦୁସରୋବରତଟରେ ଅବସ୍ଥିତ । କେଦାରେଶ୍ୱରଙ୍କ ଉପଲିଙ୍ଗ ଭୂତେଶ୍ୱର ନାମରେ ପ୍ରସିଦ୍ଧ; ଏହା ଯମୁନାତଟରେ ଅବସ୍ଥିତ । ଭୂତେଶ୍ୱରଙ୍କୁ ଦର୍ଶନ ଓ ପୂଜନ କରୁଥିବା ଲୋକଙ୍କର ବଡ଼ ବଡ଼ ପାପ ନଷ୍ଟ ହୋଇଯାଏ । ଭୀମଶଙ୍କରଙ୍କ ଉପଲିଙ୍ଗ ଭୀମେଶ୍ୱର ନାମରେ ପ୍ରସିଦ୍ଧ । ଏହା ସହ୍ୟ ପର୍ବତରେ ଅବସ୍ଥିତ । ଭୀମେଶ୍ୱର ମହାନ୍ ବଳ ବୃଦ୍ଧି କରିଥାନ୍ତି । ନାଗେଶ୍ୱରଙ୍କ ଠାରୁ ସମୁଦ୍ଭୂତ ଉପଲିଙ୍ଗଙ୍କ ନାମ ମଧ୍ୟ ଭୂତେଶ୍ୱର । ଦର୍ଶନମାତ୍ରକେ ସର୍ବପାପ ନାଶ କରୁଥିବା ଏହି ଲିଙ୍ଗ ମଲ୍ଲିକା-ସରସ୍ୱତୀର ତଟରେ ଅବସ୍ଥିତ । ରାମେଶ୍ୱରଙ୍କ ଠାରୁ ପ୍ରକଟ ଉପଲିଙ୍ଗଙ୍କୁ ଗୁପ୍ତେଶ୍ୱର ଏବଂ ଘୁଶ୍ମେଶ୍ୱରଙ୍କ ଠାରୁ ପ୍ରକଟ ଉପଲିଙ୍ଗଙ୍କୁ ବ୍ୟାଘ୍ରେଶ୍ୱର କୁହାଯାଏ । ବ୍ରାହ୍ମଣବୃନ୍ଦ ! ମୁଁ ଜ୍ୟୋତିର୍ଲିଙ୍ଗଙ୍କ ଉପଲିଙ୍ଗମାନଙ୍କର ପରିଚୟ ଦେଲି । ଏମାନେ ଦର୍ଶନମାତ୍ରକେ ପାପହାରୀ ତଥା ସମସ୍ତ ଅଭୀଷ୍ଟ ପ୍ରଦାତା ଅଟନ୍ତି । ମୁନିବର ! ଉପରୋକ୍ତ ପ୍ରଧାନ ଲିଙ୍ଗ ଓ ଉପଲିଙ୍ଗ ଜଗତରେ ମୁଖ୍ୟରୂପେ ପ୍ରସିଦ୍ଧ । ଏବେ ଅନ୍ୟ କେତେକ ପ୍ରମୁଖ ଶିବଲିଙ୍ଗ ବିଷୟରେ ଶୁଣନ୍ତୁ । (ଅଧ୍ୟାୟ ୧)



* ସୌରାଷ୍ଟ୍ରେ ସୋମନାଥଂ ଚ ଶ୍ରୀଶୈଳେ ମଲ୍ଲିକାର୍ଜୁନମ୍ । ଉଜ୍ଜୟିନ୍ୟାଂ ମହାକାଳମୋଂକାରେ ପରମେଶ୍ୱରମ୍ ॥
କେଦାରଂ ହିମବତ୍ ପୃଷ୍ଠେ ଡାକିନ୍ୟାଂ ଭୀମଶଙ୍କରମ୍ । ବାରାଣସ୍ୟାଂ ଚ ବିଶ୍ୱେଶଂ ତ୍ର୍ୟମ୍ବକଂ ଗୌତମୀତଟେ ॥
ବୈଦ୍ୟନାଥଂ ଚିତାଭୂମୌ ନାଗେଶଂ ଦାରୁକାବନେ । ସେତୁବନ୍ଧେ ଚ ରାମେଶଂ ଘୁଶ୍ମେଶଂ ତୁ ଶିବାଳୟେ ॥
ଦ୍ୱାଦଶୈତାନି ନାମାନି ପ୍ରାତରୁତ୍ଥାୟ ଯଃ ପଠେତ୍ । ସର୍ବପାପୈର୍ବିନିର୍ମୁକ୍ତଃ ସର୍ବସିଦ୍ଧିଫଳଂ ଲଭେତ୍ ॥
(ଶି. ପୁ. କୋଟିରୁ. ସଂ. ୧ ।୨୧–୨୪)

卐 ଗ୍ରାହ୍ୟମେଷାଂ ଚ ନୈବେଦ୍ୟଂ ଭୋଜନୀୟଂ ପ୍ରଯତ୍ନତଃ । ତତ୍କର୍ତ୍ତୁଃ ସର୍ବପାପାନି ଭସ୍ମସାଦ୍ୟାନ୍ତି ବୈ କ୍ଷଣାତ୍ ॥
(ଶି. ପୁ. କୋଟିରୁ. ସଂ. ୧ । ୧୮)

# କାଶୀ ପ୍ରଭୃତି ସ୍ଥାନରେ ପ୍ରକଟିତ ବିଭିନ୍ନ ଲିଙ୍ଗର ବର୍ଣ୍ଣନା ତଥା ଅତ୍ରୀଶ୍ୱରଙ୍କ ଉତ୍ପତ୍ତି ଆଖ୍ୟାନରେ ଗଙ୍ଗା ଓ ଶିବ ଅତ୍ରିଙ୍କ ତପୋବନରେ ନିତ୍ୟ ନିବାସ କରିବା ପ୍ରସଙ୍ଗ

ସୂତ କହୁଛନ୍ତି–ମୁନୀଶ୍ୱରବୃନ୍ଦ! ଗଙ୍ଗାତଟରେ ମୁକ୍ତିଦାୟିନୀ କାଶୀପୁରୀ ସୁପ୍ରସିଦ୍ଧ । ତାହା ଭଗବାନ ଶିବଙ୍କର ନିବାସସ୍ଥଳୀ ବୋଲି ଧରାଯାଇଛି । ତାହାକୁ ଶିବଲିଙ୍ଗମୟୀ ବୋଲି ବୁଝିବା ଉଚିତ । ଏତିକି କହି ସୂତ କାଶୀସ୍ଥିତ ଅବିମୁକ୍ତ କୃତ୍ତିବାସେଶ୍ୱର, ତିଳଭାଣ୍ଡେଶ୍ୱର, ଦଶାଶ୍ୱମେଧ ପ୍ରଭୃତି ଏବଂ ଗଙ୍ଗାସାଗର ଆଦି ସ୍ଥାନର ସଙ୍ଗମେଶ୍ୱର, ଭୂତେଶ୍ୱର, ନାରୀଶ୍ୱର, ବଟୁକେଶ୍ୱର, ପୂରେଶ୍ୱର, ସିଦ୍ଧନାଥେଶ୍ୱର, ଦୂରେଶ୍ୱର, ଶୃଙ୍ଗେଶ୍ୱର, ବୈଦ୍ୟନାଥ, ଜାପ୍ୟେଶ୍ୱର, ଗୋପେଶ୍ୱର, ରଙ୍ଗେଶ୍ୱର, ବାମେଶ୍ୱର, ନାଗେଶ, କାମେଶ, ବିମଳେଶ୍ୱର, ପ୍ରୟାଗର ବ୍ରହ୍ମେଶ୍ୱର, ସୋମେଶ୍ୱର, ଭାରଦ୍ୱାଜେଶ୍ୱର, ଶୂଳଟଙ୍କେଶ୍ୱର, ମାଧବେଶ ତଥା ଅଯୋଧ୍ୟାର ନାଗେଶ ପ୍ରଭୃତି ଅନେକ ପ୍ରସିଦ୍ଧ ଶିବଲିଙ୍ଗ ବିଷୟରେ ବର୍ଣ୍ଣନା କଲେ ଏବଂ ତା'ପରେ ଅତ୍ରୀଶ୍ୱରଙ୍କ ପ୍ରସଙ୍ଗରେ କହିଲେ ଯେ ଅତ୍ରିପତ୍ନୀ ଅନସୂୟାଙ୍କ ଉପରେ କୃପା କରି ଗଙ୍ଗାଙ୍କର ସେଠାକୁ ଆଗମନ ହୋଇଥିଲା । ଅନସୂୟା ଗଙ୍ଗାଙ୍କୁ ସେଠାରେ ନିତ୍ୟ ନିବାସ କରିବାକୁ ପ୍ରାର୍ଥନା କରିଥିଲେ ।

ସେତେବେଳେ ଗଙ୍ଗା କହିଥିଲେ–ଅନସୂୟେ ! ଯଦି ତୁମେ ବର୍ଷେ ପର୍ଯ୍ୟନ୍ତ କରିଥିବା ଶିବଙ୍କ ପୂଜା ଓ ପତିସେବାର ଫଳ ମୋତେ ଦେଇଦେବ, ତେବେ ମୁଁ ଦେବତାଙ୍କ ଉପକାର କରିବା ନିମନ୍ତେ ଏଠାରେ ସଦା ଅବସ୍ଥାନ କରିବି । ପତିବ୍ରତାକୁ ଦର୍ଶନ କରି ମୋ ମନରେ ଯେତିକି ପ୍ରସନ୍ନତା ହେଉଛି, ସେପରି ଅନ୍ୟ କୌଣସି ଉପାୟରେ ହେଉ ନାହିଁ । ସତୀ ଅନସୂୟେ ! ଏହା ମୁଁ ତୁମକୁ ସତ୍ୟ କରି କହୁଛି । ପତିବ୍ରତା ନାରୀର ଦର୍ଶନ କଲେ ମୋର ସମସ୍ତ ପାପ ନଷ୍ଟ ହୋଇଯାଏ ଏବଂ ମୁଁ ବିଶେଷରୂପେ ଶୁଦ୍ଧ ହୋଇଯାଏ; କାରଣ ପତିବ୍ରତା ନାରୀ ପାର୍ବତୀଙ୍କ ସଦୃଶ ପବିତ୍ର ହୋଇଥାଏ । ତେଣୁ ଯଦି ତୁମେ ଜଗତର କଲ୍ୟାଣ ଚାହୁଁଛ ଏବଂ ଲୋକହିତ-କାମନାରେ ମୁଁ ମାଗିଥିବା ବସ୍ତୁ ମୋତେ ଦେବାକୁ ପ୍ରସ୍ତୁତ, ତେବେ ମୁଁ ନିଶ୍ଚୟ ଏଠାରେ ସ୍ଥାୟୀରୂପେ ନିବାସ କରିବି ।



ସୂତ କହୁଛନ୍ତି–ମୁନିବୃନ୍ଦ ! ଗଙ୍ଗାଙ୍କ କଥା ଶୁଣି ପତିବ୍ରତା ଅନସୂୟା ବର୍ଷକର ପୁଣ୍ୟ ତାଙ୍କୁ ଅର୍ପଣ କରିଦେଲେ । ଅନସୂୟାଙ୍କର ଏଭଳି ମହାନ୍ କର୍ମକୁ ଦେଖି ଭଗବାନ ମହାଦେବ ପ୍ରସନ୍ନ ହୋଇଗଲେ ଏବଂ ପାର୍ଥିବଲିଙ୍ଗରୁ ଅବିଳମ୍ବେ ଆବିର୍ଭୂତ ହୋଇ ସାକ୍ଷାତ୍ ଦର୍ଶନ ଦେଲେ ।

ଶମ୍ଭୁ କହିଲେ–ସାଧ୍ୱୀ ଅନସୂୟେ ! ତୁମର ଏପରି କର୍ମ ଦେଖି ମୁଁ ଅତ୍ୟନ୍ତ ପ୍ରସନ୍ନ । ହେ ପତିବ୍ରତେ ! ବର ମାଗ; କାରଣ ତୁମେ ମୋର ବହୁତ ପ୍ରିୟ ।

ସେତେବେଳେ ଅତ୍ରି ଓ ଅନସୂୟା ଅଦ୍ଭୁତ ଆକୃତିରେ ପ୍ରକଟିତ ପଞ୍ଚମୁଖଧାରୀ ଭଗବାନ ଶିବଙ୍କୁ ଦେଖି ବିସ୍ମିତ ହୋଇଗଲେ । ସେ ଦୁହେଁ ହାତ ଯୋଡ଼ି ନମସ୍କାର ଓ ସ୍ତୁତି କରି ଅତ୍ୟନ୍ତ ଭକ୍ତିଭାବରେ ଶିବଙ୍କୁ ପୂଜା କଲେ । ତା'ପରେ ଲୋକକଲ୍ୟାଣକାରୀ ଶିବଙ୍କୁ କହିଲେ–

ବ୍ରାହ୍ମଣଦମ୍ପତି କହିଲେ–ଦେବେଶ୍ୱର ! ଯଦି ଆପଣ ପ୍ରସନ୍ନ ଏବଂ ଜଗଦମ୍ବା ଗଙ୍ଗା ମଧ୍ୟ ପ୍ରସନ୍ନ, ତେବେ ଆପଣ ଏହି ତପୋବନରେ ନିବାସ କରି ଜଗତ ପାଇଁ ସୁଖଦାୟକ ହୁଅନ୍ତୁ ।

ଏହାପରେ ଉଭୟେ ଗଙ୍ଗା ଓ ଶିବ ପ୍ରସନ୍ନ ହୋଇ ଋଷିଙ୍କର ସେହି ବାସସ୍ଥାନ ନିକଟରେ ପ୍ରତିଷ୍ଠିତ ହୋଇଗଲେ । ସେଠାରେ ଶିବଙ୍କର ନାମ ହେଲା ଅତ୍ରୀଶ୍ୱର । (ଅଧ୍ୟାୟ ୨–୪)

★★★

## ଋଷିକାଙ୍କ ଉପରେ ଭଗବାନ ଶିବଙ୍କ କୃପା, ଗୋଟିଏ ଅସୁର ଠାରୁ ତା'ର ଧର୍ମ ରକ୍ଷା କରି ତା' ଆଶ୍ରମରେ 'ନନ୍ଦୀକେଶ' ନାମରେ ନିବାସ କରିବା ଏବଂ ବର୍ଷରେ ଗୋଟିଏ ଦିନ ଗଙ୍ଗାଙ୍କର ସେଠାକୁ ଆସିବା ପ୍ରସଙ୍ଗ

ଏହାପରେ ସୂତ ଅନେକ ଶିବଲିଙ୍ଗ ବିଷୟରେ ବର୍ଣ୍ଣନା କଲେ । ଇତିମଧ୍ୟରେ ଋଷିମାନେ ପଚାରିଲେ–"ମହାମତେ ସୂତ ! ବୈଶାଖ ଶୁକ୍ଳ ସପ୍ତମୀ ଦିନ ଗଙ୍ଗା ନର୍ମଦାକୁ କିପରି ଆସିଲେ? ଏ ବିଷୟରେ ବିସ୍ତୃତରୂପେ ବର୍ଣ୍ଣନା କରନ୍ତୁ । ସେଠାରେ ମହାଦେବଙ୍କ ନାମ ନନ୍ଦୀକେଶ୍ୱର କିପରି ହେଲା, ଏକଥା ମଧ୍ୟ ପ୍ରସନ୍ନମନରେ ପ୍ରକାଶ କରନ୍ତୁ ।

ସୂତ କହିଲେ–ମହର୍ଷିଗଣ ! ଋଷିକା ନାମରେ ଜଣେ ବ୍ରାହ୍ମଣୀ ଥିଲା । ସେ କୌଣସି ବ୍ରାହ୍ମଣର କନ୍ୟା ଥିଲା ଏବଂ ଜଣେ ବ୍ରାହ୍ମଣକୁ ହିଁ ବିଧିପୂର୍ବକ ବିବାହ କରିଥିଲା । ବିପ୍ରଗଣ ! ଯଦ୍ୟପି ସେ ଉତ୍ତମ ବ୍ରତ ପାଳନକାରିଣୀ ଥିଲା, ତଥାପି ପୂର୍ବଜନ୍ମର କୌଣସି ଅଶୁଭ କର୍ମର ପ୍ରଭାବରେ ବାଲ୍ୟବିଧବା ହୋଇଗଲା । ଏହାପରେ ସେ ବ୍ରହ୍ମଚର୍ଯ୍ୟବ୍ରତ ପାଳନପୂର୍ବକ ପାର୍ଥିବପୂଜନରେ ତତ୍ପର ରହି ଅତ୍ୟନ୍ତ କଠୋର ତପସ୍ୟା କଲା । ଏହି ଅବସରରେ ମୂଢ଼ ନାମକ ଗୋଟିଏ ବହୁତ ବଡ଼ ମାୟାବୀ, ଦୁଷ୍ଟ ତଥା ବଳବାନ୍ ଅସୁର କାମବାଣରେ ପୀଡ଼ିତ ହୋଇ ତା'ର ତପଃସ୍ଥଳୀକୁ ଆସିଲା । ସେଠାରେ ଅତ୍ୟନ୍ତ ସୁନ୍ଦରୀ ନାରୀଟିଏ ତପସ୍ୟା କରୁଥିବାର ଦେଖି ଅସୁର ତାକୁ ନାନା ପ୍ରକାର ପ୍ରଲୋଭନ ଦେଖାଇବା ସହିତ ତା' ସହିତ ସମ୍ଭୋଗ କରିବାକୁ ଇଚ୍ଛା ପ୍ରକାଶ କଲା । ମାତ୍ର ଉତ୍ତମ ବ୍ରତପାଳନରେ ତତ୍ପର ରହିଥିବା ସେହି ସାଧ୍ୱୀ ନାରୀ ଅସୁର ଉପରେ ଆଦୌ କାମଭାବରେ ଦୃଷ୍ଟି ପକାଇଲା ନାହିଁ କି କୌଣସି ପ୍ରକାରେ ତା'ର ସମ୍ମାନ କଲା ନାହିଁ; କାରଣ ସେ ଅତ୍ୟନ୍ତ ତପୋନିଷ୍ଠ ଓ ଶିବଧ୍ୟାନପରାୟଣା ଥିଲା । କୃଶାଙ୍ଗୀ ଯୁବତୀ ଋଷିକାଠାରୁ ଏପରି ତିରସ୍କୃତ ହେବାଫଳରେ ମୂଢ଼ ଦୈତ୍ୟ ତା' ଉପରେ କ୍ରୋଧ ପ୍ରକାଶ କଲା ଏବଂ ନିଜର ବିକଟ ରୂପ ଦେଖାଇଲା । ଏହାପରେ ଦୁଷ୍ଟାତ୍ମା ମୂଢ଼ ତାକୁ ଭୟପ୍ରଦ ଦୁର୍ବଚନ କହି ବାରମ୍ବାର ତ୍ରାସ ଦେବା ଆରମ୍ଭ କରିଦେଲା । ବ୍ରାହ୍ମଣୀ ଭୟରେ ଥରିବାକୁ ଲାଗିଲା ଏବଂ ବାରମ୍ବାର ସ୍ନେହରେ ଶିବ-ଶିବ

କହି ଭଗବାନଙ୍କୁ ଡାକିଲା । ବିପ୍ରରୀ ଦ୍ୱିଜପତ୍ନୀ ଶିବଙ୍କ ଉପରେ ହିଁ ପୂର୍ଣ୍ଣରୂପେ ଭରସା କରିଥିଲା ଏବଂ ଶିବଙ୍କ ନାମ ଜପୁଥିଲା, ତେଣୁ ସେ ଅତ୍ୟନ୍ତ ଆକୁଳ ହୋଇ ନିଜର ଧର୍ମ ରକ୍ଷା ପାଇଁ ଭଗବାନ ଶମ୍ଭୁଙ୍କ ଠାରେ ଶରଣ ଗଲା ।

ଶରଣାଗତର ରକ୍ଷା, ସଦାଗ୍ରରର ପ୍ରତିଷ୍ଠା ତଥା ବ୍ରାହ୍ମଣୀକୁ ଆନନ୍ଦ ଦେବା ପାଇଁ ଭଗବାନ ଶିବ ସେଠାରେ ଆବିର୍ଭୂତ ହୋଇଗଲେ । ଭକ୍ତବତ୍ସଳ ପରମେଶ୍ୱର ଶିବ କାମବିହ୍ୱଳ ଦୈତ୍ୟରାଜ ମୂଢ଼କୁ ତତ୍କ୍ଷଣାତ୍ ଭସ୍ମ କରିଦେଲେ ଏବଂ ବ୍ରାହ୍ମଣୀ ଆଡ଼କୁ କୃପାଦୃଷ୍ଟିରେ ଗ୍ରହିଁ ଭକ୍ତର ରକ୍ଷା ପାଇଁ ଦତ୍ତଚିତ୍ତ ହୋଇ କହିଲେ–'ବର ମାଗ' । ମହେଶ୍ୱରଙ୍କ ବଚନ ଶୁଣି ସାଧ୍ୱୀ ବ୍ରାହ୍ମଣପତ୍ନୀ ପ୍ରଭୁଙ୍କର ଆନନ୍ଦଦାୟକ ମଙ୍ଗଳମୟ ସ୍ୱରୂପକୁ ଦର୍ଶନ କଲା ଏବଂ ସବୁରି ସୁଖଦାତା ପରମେଶ୍ୱର ଶମ୍ଭୁଙ୍କୁ ଅବନତ ମସ୍ତକରେ କର ଯୋଡ଼ି ପ୍ରଣାମ କରି ସ୍ତୁତି କଲା ।



ରଷିକା କହିଲା–ହେ ଦେବଦେବ ମହାଦେବ ! ହେ ଶରଣାଗତବତ୍ସଳ ! ହେ ଦୀନବନ୍ଧୁ ! ଆପଣ ଭକ୍ତରକ୍ଷକ ଈଶ୍ୱର । ଆପଣ ମୂଢ଼ ନାମକ ଅସୁର ଠାରୁ ମୋର ଧର୍ମ ରକ୍ଷା କଲେ ଏବଂ ତାକୁ ବଧ କରି ସମଗ୍ର ଜଗତକୁ ମଧ୍ୟ ରକ୍ଷା କଲେ । ଏବେ ମୋତେ ଆପଣଙ୍କ ଚରଣରେ ପରମୋତ୍ତମ ନିଶ୍ଚଳା ଭକ୍ତି ପ୍ରଦାନ କରନ୍ତୁ । ପ୍ରଭୁ ! ଏହା ମୋ ପାଇଁ ବର ଅଟେ । ଏହାଠାରୁ ଆଉ ଅଧିକ କ'ଣ ହୋଇପାରେ? ମହେଶ୍ୱର ! ମୋର ଦ୍ୱିତୀୟ ପ୍ରାର୍ଥନା ମଧ୍ୟ ଶୁଣନ୍ତୁ । ଆପଣ ଲୋକହିତରେ ସଦା ଏଠାରେ ଅବସ୍ଥାନ କରନ୍ତୁ ।

ମହାଦେବ କହିଲେ–ତୁମେ ସଦାଗ୍ରରିଣୀ ଓ ବିଶେଷରୂପେ ମୋ ପ୍ରତି ଭକ୍ତି ରଖିଛ । ତେଣୁ ତୁମେ ମୋତେ ଯାହା କିଛି ବର ମାଗିଲ, ତାହା ମୁଁ ପ୍ରଦାନ କରୁଛି ।

ବ୍ରାହ୍ମଣଗଣ ! ଇତିମଧ୍ୟରେ ବିଷ୍ଣୁ, ବ୍ରହ୍ମା ଓ ଅନ୍ୟାନ୍ୟ ଦେବତା ମଧ୍ୟ ସେଠାରେ ଭଗବାନ ଶିବଙ୍କ ଆବିର୍ଭାବ ହେବା ଘଟଣା ଜାଣି ଆନନ୍ଦମନରେ ଉପସ୍ଥିତ ହୋଇଗଲେ ଏବଂ ଅତ୍ୟନ୍ତ ପ୍ରେମପୂର୍ବକ ଶିବଙ୍କୁ ପ୍ରଣାମ କରି ତାଙ୍କୁ ଭଲଭାବରେ ପୂଜା କଲେ । ତା'ପରେ ଶୁଦ୍ଧ ହୃଦୟରେ କର ଯୋଡ଼ି ମସ୍ତକ ଅବନତ କରି ତାଙ୍କୁ ସ୍ତୁତି କଲେ । ଏତିକିବେଳେ ଦେବନଦୀ ଗଙ୍ଗା ସେଠାକୁ ଆସି ରଷିକାର ଭାଗ୍ୟକୁ ପ୍ରଶଂସା କରି କରି ତାକୁ କହିଲେ–

ଗଙ୍ଗା କହିଲେ–ରଷିକେ ! ବୈଶାଖ ମାସରେ ଦିନେ ଏଠାରେ ରହିବା ପାଇଁ ମୋତେ ତୁମେ ବଚନ ଦିଅ । ସେଦିନ ମୁଁ ଏ ତୀର୍ଥରେ ନିବାସ କରିବାକୁ ଗ୍ରହେଁ ।''

ସୂତ କହୁଛନ୍ତି–ମହର୍ଷିବୃନ୍ଦ ! ଗଙ୍ଗାଙ୍କ କଥା ଶୁଣି ସୁବ୍ରତା ସତୀ ରଷିକା ଲୋକହିତରେ କହିଲା–''ବହୁତ ଭଲ କଥା, ଏହା ହିଁ ହେଉ ।'' ମହାଦେବ ରଷିକାର ସନ୍ତୋଷ ପାଇଁ ଅତ୍ୟନ୍ତ ପ୍ରସନ୍ନ ଚିତ୍ତରେ ସେହି ପାର୍ଥିବଲିଙ୍ଗରେ ନିଜର ପୂର୍ଣ୍ଣ ଅଂଶ ସହ ପ୍ରବିଷ୍ଟ ହୋଇଗଲେ । ଏହା

ଦେଖି ସମସ୍ତ ଦେବତା ଆନନ୍ଦମନରେ ଶିବଙ୍କୁ ତଥା ଋଷିକାଙ୍କୁ ପ୍ରଶଂସା କରି ନିଜ ନିଜ ଧାମକୁ ଫେରିଗଲେ । ସେହି ଦିନଠାରୁ ନର୍ମଦାର ଉକ୍ତ ତୀର୍ଥ ଉତ୍ତମ ଓ ପାବନ ହୋଇଗଲା ଏବଂ ସର୍ବପାପହର ଶିବ ସେଠାରେ ନନ୍ଦୀକେଶ ନାମରେ ବିଖ୍ୟାତ ହେଲେ । ଗଙ୍ଗା ପ୍ରତିବର୍ଷ ବୈଶାଖମାସର ସପ୍ତମୀ ଦିନ ତାଙ୍କ ଠାରେ ମନୁଷ୍ୟ ଧୋଉଥିବା ପାପରାଶିର ପ୍ରକ୍ଷାଳନ ପାଇଁ ଶୁଭେଚ୍ଛାରେ ସେଠାକୁ ଯାଆନ୍ତି ।

(ଅଧ୍ୟାୟ ୫–୭)



## ପ୍ରଥମ ଜ୍ୟୋତିର୍ଲିଙ୍ଗ ସୋମନାଥଙ୍କ ଆବିର୍ଭାବର କଥା ଓ ତାଙ୍କର ମହିମା

ଏହାପରେ କପିଳା ନଗରୀର କାଳେଶ୍ୱର, ରାମେଶ୍ୱର ପ୍ରଭୃତିଙ୍କର ମହିମା ଗାନ କରି ସୂତ ସମୁଦ୍ର ତଟରେ ସ୍ଥିତ ଗୋକର୍ଣ୍ଣତୀର୍ଥ ଅନ୍ତର୍ଗତ ଶିବଲିଙ୍ଗମାନଙ୍କ ମହିମା ବର୍ଣ୍ଣନା କଲେ । ଏହାପରେ ମହାବଳ ନାମକ ଶିବଲିଙ୍ଗର ଅଦ୍ଭୁତ ମାହାତ୍ମ୍ୟ ବଖାଣ କରି ଆହୁରି ଅନେକ ଶିବଲିଙ୍ଗଙ୍କର ମଧ୍ୟ ବିଚିତ୍ର ମାହାତ୍ମ୍ୟ ପ୍ରକାଶ କଲେ । ଏହାପରେ ଋଷିମାନଙ୍କ ପ୍ରଶ୍ନର ଉତ୍ତରରେ ସେ ଜ୍ୟୋତିର୍ଲିଙ୍ଗଙ୍କର ବର୍ଣ୍ଣନା ଆରମ୍ଭ କଲେ ।

ସୂତ କହିଲେ–ବ୍ରାହ୍ମଣବୃନ୍ଦ ! ମୁଁ ସଦ୍‌ଗୁରୁଙ୍କ ଠାରୁ ଜ୍ୟୋତିର୍ଲିଙ୍ଗମାନଙ୍କର ପ୍ରାକଟ୍ୟ ବିଷୟରେ ଯାହା କିଛି ଶୁଣିଛି, ନିଜ ବୁଦ୍ଧି ଅନୁସାରେ ତାହା ସଂକ୍ଷେପରେ କହିବି । ମୁନେ ! ଜ୍ୟୋତିର୍ଲିଙ୍ଗଙ୍କ ମଧ୍ୟରେ ସର୍ବପ୍ରଥମେ ସୋମନାଥଙ୍କ ନାମ ଆସେ । ତେଣୁ ପ୍ରଥମେ ତାଙ୍କର ମାହାତ୍ମ୍ୟ ମନ ଦେଇ ଶୁଣ । ମୁନୀଶ୍ୱରବୃନ୍ଦ ! ମହାମନା ଦକ୍ଷ ତାଙ୍କର ଅଶ୍ୱିନୀ ପ୍ରମୁଖ ସତେଇଶ କନ୍ୟାଙ୍କର ବିବାହ ଚନ୍ଦ୍ରଙ୍କ ସଙ୍ଗେ କରିଥିଲେ । ଚନ୍ଦ୍ରଙ୍କୁ ସ୍ୱାମୀରୂପେ ପାଇ ଉକ୍ତ ଦକ୍ଷକନ୍ୟାମାନେ ଅତ୍ୟନ୍ତ ଶୋଭା ପାଇଲେ । ଚନ୍ଦ୍ର ମଧ୍ୟ ସେମାନଙ୍କୁ ପତ୍ନୀରୂପେ ପାଇ ନିରନ୍ତର ସୁଶୋଭିତ ହେଲେ । କିନ୍ତୁ ସେମାନଙ୍କ ମଧ୍ୟରେ ରୋହିଣୀ ନାମ୍ନୀ ପତ୍ନୀ ଚନ୍ଦ୍ରଙ୍କର ଯେତେ ପ୍ରିୟଭାଜନା ଥିଲା, ଅନ୍ୟମାନେ ସେତେ ନ ଥିଲେ । ଏହା ଫଳରେ ଅନ୍ୟ ପତ୍ନୀମାନଙ୍କୁ ବହୁତ ଦୁଃଖ ହେଲା । ସେମାନେ ସେମାନଙ୍କ ପିତା ଦକ୍ଷଙ୍କ ନିକଟକୁ ଯାଇ ତାଙ୍କ ଆଗରେ ଏକଥା ନିବେଦନ କଲେ । ଦ୍ୱିଜଗଣ ! ସେମାନଙ୍କ କଥା ଶୁଣି ଦକ୍ଷ ମଧ୍ୟ ଦୁଃଖୀ ହେଲେ ଏବଂ ଚନ୍ଦ୍ରଙ୍କ ନିକଟକୁ ଯାଇ ଶାନ୍ତିପୂର୍ବକ ବୁଝାଇବାକୁ ଚେଷ୍ଟା କଲେ ।

ଦକ୍ଷ କହିଲେ–କଳାନିଧେ ! ତୁମେ ନିର୍ମଳ କୁଳରେ ଉତ୍ପନ୍ନ ହୋଇଛ । ତୁମ ଆଶ୍ରୟରେ ଯେତେ ସ୍ତ୍ରୀ ଅଛନ୍ତି, ସେମାନଙ୍କ ପ୍ରତି ତୁମ ମନରେ ଏପରି ଭେଦଭାବ କାହିଁକି? ତୁମେ କାହାକୁ ଅଧିକ ଓ ଆଉ କାହାକୁ କମ୍ ପ୍ରେମ କାହିଁକି କରୁଛ? ଏପର୍ଯ୍ୟନ୍ତ ଯାହା ହୋଇଗଲା ଗଲା, ଏବେଠାରୁ ଆଉ ଭବିଷ୍ୟତରେ ତୁମେ ଏପରି ବିଷମ ବ୍ୟବହାର କରିବା ଉଚିତ ନୁହେଁ; କାରଣ ବିଷମତା ନରକଗାମୀ କରାଏ ।

ସୂତ କହୁଛନ୍ତି–ମହର୍ଷିଗଣ ! ପ୍ରଜାପତି ଦକ୍ଷ ସ୍ୱୟଂ ନିଜ ଜ୍ୱାଇଁଙ୍କୁ ଏପରି ପ୍ରାର୍ଥନା କରି ସ୍ୱସ୍ଥାନକୁ ଫେରିଗଲେ । ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ଭବିଷ୍ୟତରେ ଚନ୍ଦ୍ର ଆଉ ଏପରି କରିବେ ନାହିଁ । କିନ୍ତୁ ଚନ୍ଦ୍ର ପ୍ରବଳ ଭବିତବ୍ୟତାର ବଶବର୍ତ୍ତୀ ହୋଇ ତାଙ୍କ କଥା ମାନିଲେ ନାହିଁ । ସେ ରୋହିଣୀ ପ୍ରତି ଏତେ ଆସକ୍ତ ହୋଇ-ଯାଇଥିଲେ ଯେ ଅନ୍ୟ ସ୍ତ୍ରୀମାନଙ୍କୁ କଦାପି ଆଦର କରୁ ନ ଥିଲେ । ଏକଥା ଶୁଣି ଦକ୍ଷ ଦୁଃଖୀ ହୋଇ ପୁଣି ଥରେ ଚନ୍ଦ୍ରଙ୍କୁ ଭଲରେ ଭଲରେ ନୀତିପୂର୍ବକ ବୁଝାଇଲେ ଏବଂ

ନ୍ୟାୟୋଚିତ ବ୍ୟବହାର କରିବାକୁ ପ୍ରାର୍ଥନା କଲେ ।

ଦକ୍ଷ କହିଲେ–**ଚନ୍ଦ୍ର ! ଶୁଣ, ମୁଁ ବହୁତ ଥର ତୁମକୁ ବୁଝାଇଲି । ତଥାପି ତୁମେ ମୋ କଥା ମାନିଲ ନାହିଁ । ତେଣୁ ଆଜି ଅଭିଶାପ ଦେଉଛି ଯେ ତୁମକୁ କ୍ଷୟ ରୋଗ ହୋଇଯାଉ ।**

ସୂତ କହୁଛନ୍ତି–**ଦକ୍ଷ ଏତିକି କହିବା ମାତ୍ରେ କ୍ଷଣକ ଭିତରେ ଚନ୍ଦ୍ର କ୍ଷୟରୋଗରେ ଆକ୍ରାନ୍ତ ହୋଇଗଲେ । ସେ ରୋଗରେ କ୍ଷୀଣ ହୋଇଯିବାରୁ ଚାରିଆଡ଼େ ହାହାକାର ଖେଳିଗଲା । ଦେବତା ଓ ଋଷିମାନେ ଦୁଃଖରେ ବିହ୍ୱଳ ହେଲେ । ସେମାନେ କହିଲେ "ହାୟ ! ହାୟ ! ଏବେ କ'ଣ କରିବା? ଚନ୍ଦ୍ର କିପରି ଭଲ ହେବେ?" ମୁନେ ! ଚନ୍ଦ୍ର ମଧ୍ୟ ଇନ୍ଦ୍ରାଦି ଦେବତାଙ୍କୁ ଓ ଋଷିମାନଙ୍କୁ ନିଜ ଅବସ୍ଥା କଥା ସୂଚିତ କରିଦେଲେ । ଏହାପରେ ଦେବତା ତଥା ବସିଷ୍ଠାଦି ଋଷି ବ୍ରହ୍ମାଙ୍କ ଶରଣକୁ ଗଲେ ।**

ସେମାନଙ୍କ କଥା ଶୁଣି ବ୍ରହ୍ମା କହିଲେ–**ଦେବଗଣ ! ଯାହା ହୋଇଗଲା, ସେ କଥା ଛାଡ଼ । ତାହା ଆଉ ଫେରି ଆସିବ ନାହିଁ । ଏବେ ତାହାର ନିରାକରଣ ପାଇଁ ମୁଁ ତୁମମାନଙ୍କୁ ଗୋଟିଏ ଉପାୟ କହୁଛି, ଆଦରପୂର୍ବକ ଶୁଣ । ଚନ୍ଦ୍ର ଦେବଗଣଙ୍କ ସହିତ ପ୍ରଭାସ ନାମକ ଶୁଭ କ୍ଷେତ୍ରକୁ ଯାଆନ୍ତୁ ଏବଂ ସେଠାରେ ବିଧିପୂର୍ବକ ମୃତ୍ୟୁଞ୍ଜୟମନ୍ତ୍ରର ଅନୁଷ୍ଠାନ କରି ଭଗବାନ ଶିବଙ୍କର ଆରାଧନା କରନ୍ତୁ । ସମ୍ମୁଖରେ ଶିବଲିଙ୍ଗ ସ୍ଥାପନ କରି ସେଠାରେ ଚନ୍ଦ୍ରଦେବ ନିତ୍ୟ ତପସ୍ୟା କରନ୍ତୁ । ଏହାଦ୍ୱାରା ଶିବ ପ୍ରସନ୍ନ ହୋଇ ତାଙ୍କୁ କ୍ଷୟରୋଗରୁ ମୁକ୍ତ କରିଦେବେ ।**

ଦେବଗଣ ଓ ଋଷିଗଣଙ୍କ ପ୍ରେରଣା ତଥା ବ୍ରହ୍ମାଙ୍କ ଆଦେଶ ଅନୁସାରେ ଚନ୍ଦ୍ର ସେଠାରେ ଛଅ ମାସ ପର୍ଯ୍ୟନ୍ତ ତପସ୍ୟା କଲେ ଏବଂ ମୃତ୍ୟୁଞ୍ଜୟମନ୍ତ୍ରରେ ଭଗବାନ ବୃଷଭଧ୍ୱଜଙ୍କୁ ପୂଜା କଲେ । ଦଶକୋଟି ମନ୍ତ୍ର ଜପିବା ସହ ଅନବରତ ଛିଡ଼ା ହୋଇ ସ୍ଥିରଚିତ୍ତରେ ମୃତ୍ୟୁଞ୍ଜୟଙ୍କୁ ଧ୍ୟାନ କଲେ । ତାଙ୍କ ତପସ୍ୟାରେ ଭକ୍ତବତ୍ସଳ ଶିବ ପ୍ରସନ୍ନ ହୋଇ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ଏବଂ ଚନ୍ଦ୍ରଙ୍କୁ କହିଲେ–

ଶିବ କହିଲେ–**ଚନ୍ଦ୍ରଦେବ ! ତୁମର କଲ୍ୟାଣ ହେଉ । ତୁମ ମନରେ ଯାହା କିଛି ଅଭିଳାଷ ଅଛି, ମାଗ । ମୁଁ ପ୍ରସନ୍ନ ହୋଇଛି । ତୁମକୁ ସମସ୍ତ ଉତ୍ତମ ବର ପ୍ରଦାନ କରିବି ।**

ଚନ୍ଦ୍ର କହିଲେ–**ଦେବେଶ୍ୱର ! ଯଦି ଆପଣ ପ୍ରସନ୍ନ, ତେବେ ମୋ ପାଇଁ କ'ଣ ବା ଅସାଧ୍ୟ ହୋଇପାରେ? ତଥାପି ପ୍ରଭୋ ! ଆପଣ ମୋ ଦେହର ଏ କ୍ଷୟରୋଗକୁ ନିବାରଣ କରନ୍ତୁ । ମୋ ଦ୍ୱାରା ଯାହା କିଛି ଅପରାଧ ହୋଇଯାଇଛି, ତାହାକୁ କ୍ଷମା କରନ୍ତୁ ।**

ଶିବ କହିଲେ–**ଚନ୍ଦ୍ରଦେବ ! ଗୋଟିଏ ପକ୍ଷରେ ତୁମର କଳା କ୍ଷୀଣ ହେବ ଏବଂ ଅନ୍ୟ ପକ୍ଷରେ ତାହା ପୁଣି ନିରନ୍ତର ବୃଦ୍ଧି ପାଇବ ।**



ଏହାପରେ ଚନ୍ଦ୍ର ଭକ୍ତିଭାବରେ ଭଗବାନ ଶିବଙ୍କୁ ସ୍ତୁତି କଲେ । ତାଙ୍କ ଭକ୍ତି ପ୍ରଭାବରେ ପୂର୍ବରୁ ନିରାକାର ଭାବରେ ରହୁଥିବା ଭଗବାନ

ଶିବ ପୁନଃ ସାକାର ହୋଇଗଲେ । ଦେବତାଙ୍କ ଉପରେ ପ୍ରସନ୍ନ ହୋଇ ସେହି କ୍ଷେତ୍ରର ମାହାତ୍ମ୍ୟବୃଦ୍ଧି ତଥା ଚନ୍ଦ୍ରଙ୍କର ଯଶବିସ୍ତାର ନିମନ୍ତେ ଭଗବାନ ଶିବ ସେଠାରେ ଅବସ୍ଥାନ କରିବା ସହ ଚନ୍ଦ୍ରଙ୍କ ନାମାନୁସାରେ ସୋମେଶ୍ୱର ବା ସୋମନାଥ ନାମରେ ତ୍ରିଲୋକରେ ବିଖ୍ୟାତ ହେଲେ । ବ୍ରାହ୍ମଣବୃନ୍ଦ ! ସୋମନାଥଙ୍କୁ ପୂଜା କଲେ ସେ ଉପାସକର କ୍ଷୟ ତଥା କୁଷ୍ଠାଦି ରୋଗ ନଷ୍ଟ କରିଦିଅନ୍ତି । ଯେଉଁ ଚନ୍ଦ୍ରଙ୍କ ନାମାନୁସାରେ ତ୍ରିଲୋକର ସ୍ୱାମୀ ସାକ୍ଷାତ୍ ଭଗବାନ ଚନ୍ଦ୍ରଶେଖର ଏ ଭୂତଳକୁ ପବିତ୍ର କରିବା ସହ ପ୍ରଭାସକ୍ଷେତ୍ରରେ ବିରାଜମାନ ହେଲେ, ସେହି ଚନ୍ଦ୍ର ମଧ୍ୟ ଧନ୍ୟ । ସେ କୃତକୃତ୍ୟ ହୋଇଗଲେ । ସେଠାରେ ଦେବତାମାନେ ସୋମକୁଣ୍ଡ ସ୍ଥାପନା କଲେ । ସେଥିରେ ଶିବ ଓ ବ୍ରହ୍ମାଙ୍କର ସଦା ନିବାସ ବୋଲି ଧରାଯାଏ । ଚନ୍ଦ୍ରକୁଣ୍ଡ ଭୂତଳରେ ପାପବିନାଶକ ତୀର୍ଥରୂପରେ ପ୍ରସିଦ୍ଧ । ଯେଉଁ ବ୍ୟକ୍ତି ଏହି କୁଣ୍ଡରେ ସ୍ନାନ କରେ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ । ଉକ୍ତ କୁଣ୍ଡରେ ଛଅମାସ ସ୍ନାନ କଲେ କ୍ଷୟ ପ୍ରଭୃତି ରୋଗ ନଷ୍ଟ ହୋଇଯାଏ । ମନୁଷ୍ୟ ଯେଉଁ ଫଳ ଉଦ୍ଦେଶ୍ୟରେ ଏହି ତୀର୍ଥର ସେବନ କରେ, ତାହା ସେ ନିଃସନ୍ଦେହରେ ଲାଭ କରେ ।

ଚନ୍ଦ୍ର ନୀରୋଗ ହୋଇ ପୂର୍ବବତ୍ ଆପଣା କାର୍ଯ୍ୟ ସମ୍ଭାଳିଲେ । ଏହା ହେଲା ସୋମନାଥଙ୍କ ଉତ୍ପତ୍ତିର ପ୍ରସଙ୍ଗ । ମୁନୀଶ୍ୱରବୃନ୍ଦ ! ଏହିରୂପେ ସୋମନାଥଙ୍କର ଆବିର୍ଭାବ ହୋଇଥିଲା । ଯେଉଁ ଲୋକ ସୋମନାଥଙ୍କର ଆବିର୍ଭାବ ପ୍ରସଙ୍ଗକୁ ଶୁଣେ ଅଥବା ଅନ୍ୟକୁ ଶୁଣାଏ, ସେ ସମସ୍ତ ଅଭୀଷ୍ଟ ଫଳ ଲାଭ କରେ ଏବଂ ସମସ୍ତ ପାପରୁ ମୁକ୍ତ ହୋଇଯାଏ । (ଅଧ୍ୟାୟ ୮–୧୪)



## ମଲ୍ଲିକାର୍ଜୁନ ଓ ମହାକାଳ ନାମକ ଜ୍ୟୋତିର୍ଲିଙ୍ଗଙ୍କ ଆବିର୍ଭାବ କଥା ଏବଂ ସେମାନଙ୍କ ମହିମା

ସୂତ କହୁଛନ୍ତି–ମହର୍ଷିଗଣ ! ଏବେ ମୁଁ ମଲ୍ଲିକାର୍ଜୁନଙ୍କ ଆବିର୍ଭାବ ପ୍ରସଙ୍ଗ ବର୍ଣ୍ଣନା କରୁଛି । ଏହାକୁ ଶୁଣି ବୁଦ୍ଧିମାନ୍ ମନୁଷ୍ୟ ସମସ୍ତ ପାପରୁ ମୁକ୍ତ ହୋଇଯାଏ । ତାରକଶତ୍ରୁ ଶିବାପୁତ୍ର ମହାବଳୀ କାର୍ତ୍ତିକେୟ ସମଗ୍ର ପୃଥିବୀକୁ ପରିକ୍ରମା କରିସାରି ଯେତେବେଳେ କୈଳାସକୁ ଫେରିଥିଲେ, ସେତେବେଳକୁ ଗଣେଶଙ୍କର ବିବାହ ହୋଇ ସାରିଥିଲା । ଏକଥା ଶୁଣି ସେ କ୍ରୌଞ୍ଚପର୍ବତକୁ ଚାଲିଗଲେ । ଶିବ ଓ ପାର୍ବତୀ ସେଠାକୁ ଯାଇ ତାଙ୍କୁ ଫେରି ଆସିବାକୁ ଅନୁରୋଧ କରିବା ସତ୍ତ୍ୱେ ସେ ନ ଫେରି ସେଠାରୁ ଆହୁରି ବାର କୋଶ ଦୂରକୁ ଚାଲିଗଲେ । ତେଣୁ ଶିବ ଓ ପାର୍ବତୀ ଜ୍ୟୋତିର୍ମୟ ସ୍ୱରୂପ ଧାରଣ କରି ସେଠାରେ ପ୍ରତିଷ୍ଠିତ ହୋଇଗଲେ । ସେ ଦୁହେଁ ପୁତ୍ରସ୍ନେହରେ ଆତୁର ହୋଇ ପର୍ବଦିନମାନଙ୍କରେ କୁମାରଙ୍କୁ ଦେଖିବାକୁ ତାଙ୍କ ପାଖକୁ ଯାଇଥାନ୍ତି । ଅମାବାସ୍ୟା ଦିନ ସାକ୍ଷାତ୍ ଭଗବାନ ଶଙ୍କର ସେଠାକୁ ଯାଆନ୍ତି ଏବଂ ପୂର୍ଣ୍ଣିମା ଦିନ ପାର୍ବତୀ ନିଶ୍ଚୟ ସେଠାରେ ପଦାର୍ପଣ କରନ୍ତି । ସେହି ଦିନଠାରୁ ଭଗବାନ ଶିବଙ୍କର ମଲ୍ଲିକାର୍ଜୁନ ନାମରେ ଗୋଟିଏ ଜ୍ୟୋତିର୍ଲିଙ୍ଗ ତ୍ରିଲୋକରେ ପ୍ରସିଦ୍ଧ ହେଲା । (ସେଥିରେ ଉଭୟ ପାର୍ବତୀ ଓ ଶିବଙ୍କର ଜ୍ୟୋତି ପ୍ରତିଷ୍ଠିତ । 'ମଲ୍ଲିକା' ଅର୍ଥ ପାର୍ବତୀ ଓ 'ଅର୍ଜୁନ' ଶବ୍ଦ ଶିବଙ୍କର ବାଚକ ।) ସେହି ଲିଙ୍ଗକୁ ଯେ ଦର୍ଶନ କରେ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ ଏବଂ ସମସ୍ତ ଅଭୀଷ୍ଟ ଫଳ ଲାଭ

କରେ । ଏଥିରେ ସଂଶୟ ନାହିଁ । ଏହା ହେଲା ମଲ୍ଲିକାର୍ଜୁନ ନାମକ ଦ୍ୱିତୀୟ ଜ୍ୟୋତିର୍ଲିଙ୍ଗର ବର୍ଣ୍ଣନା; ଏହି ଲିଙ୍ଗର ଦର୍ଶନମାତ୍ରକେ ଲୋକଙ୍କୁ ସବୁପ୍ରକାର ସୁଖ ମିଳିଥାଏ ।

ଋଷିମାନେ କହିଲେ–ପ୍ରଭୋ ! ଏବେ ଆପଣ ବିଶେଷ କୃପା କରି ତୃତୀୟ ଜ୍ୟୋତିର୍ଲିଙ୍ଗ ବିଷୟରେ ବର୍ଣ୍ଣନା କରନ୍ତୁ ।

ସୂତ କହୁଛନ୍ତି–ବ୍ରାହ୍ମଣବୃନ୍ଦ ! ମୁଁ ଧନ୍ୟ, କୃତକୃତ୍ୟ; କାରଣ ମୋତେ ତୁମମାନଙ୍କ ପରି ଶ୍ରୀମାନ୍‌ମାନଙ୍କ ସଙ୍ଗ ମିଳିଛି । ସାଧୁପୁରୁଷଙ୍କ ସଙ୍ଗତି ନିଶ୍ଚୟ ଧନ୍ୟ । ତେଣୁ ମୁଁ ଆପଣା ସୌଭାଗ୍ୟ ବୋଲି ବୁଝି ସେହି ପାପବିନାଶକ ପରମ ପାବନ ଦିବ୍ୟ ପ୍ରସଙ୍ଗ ବର୍ଣ୍ଣନା କରୁଛି, ଆଦରରେ ଶ୍ରବଣ କର । ଅବନ୍ତି ନାମରେ ଗୋଟିଏ ପ୍ରସିଦ୍ଧ ରମଣୀୟ ନଗରୀ ଅଛି । ତାହା ଦେହଧାରୀଙ୍କୁ ମୋକ୍ଷ ପ୍ରଦାନ କରିବାକୁ ସମର୍ଥ ଏବଂ ଭଗବାନ ଶିବଙ୍କର ବହୁତ ପ୍ରିୟ । ଏଭଳି ପରମ ପୁଣ୍ୟମୟୀ ଓ ଜଗତପାବନୀ ନଗରୀରେ ବେଦପ୍ରିୟ ନାମକ ଜଣେ ଶ୍ରେଷ୍ଠ ବ୍ରାହ୍ମଣ ବାସ କରୁଥିଲେ । ସେ ଶୁଭକର୍ମ-ପରାୟଣ, ବେଦ ସ୍ୱାଧ୍ୟାୟରେ ସଂଲଗ୍ନ ତଥା ବୈଦିକ କର୍ମ ଅନୁଷ୍ଠାନରେ ସଦା ତତ୍ପର ରହୁଥିଲେ । ସେ ଘରେ ଅଗ୍ନି ସ୍ଥାପନ କରି ପ୍ରତିଦିନ ଅଗ୍ନିହୋତ୍ର କରୁଥିଲେ ଏବଂ ଶିବଙ୍କ ପୂଜାରେ ତତ୍ପର ରହୁଥିଲେ । ସେ ପ୍ରତିଦିନ ପାର୍ଥିବ ଶିବଲିଙ୍ଗ ନିର୍ମାଣ କରି ତାହାକୁ ପୂଜା କରୁଥିଲେ ଏବଂ ସମ୍ୟକ୍ ଜ୍ଞାନାର୍ଜନରେ ନିମଗ୍ନ ରହୁଥିଲେ । ସେଥିପାଇଁ ସେ ସମସ୍ତ କର୍ମର ଫଳସ୍ୱରୂପ ସଦ୍‌ଗତି ଲାଭ କଲେ, ଯାହାକି ସନ୍ଥଜନଙ୍କୁ ହିଁ ସୁଲଭ ହୋଇଥାଏ । ତାଙ୍କର ଚାରିଜଣ ଶିବପୂଜାପରାୟଣ ତେଜସ୍ୱୀ ପୁତ୍ର ଥିଲେ । ସେମାନେ ମଧ୍ୟ ସଦ୍‌ଗୁଣରେ ପିତାମାତାଙ୍କ ଠାରୁ କୌଣସି ପ୍ରକାରେ କମ୍ ନ ଥିଲେ । ସେମାନଙ୍କ ନାମ ଥିଲା–ଦେବପ୍ରିୟ, ପ୍ରିୟମେଧା, ସୁକୃତ ଓ ସୁବ୍ରତ । ସେମାନଙ୍କର ସୁଖଦାୟୀ ଗୁଣମାନ ଦିନକୁ ଦିନ ବୃଦ୍ଧି ପାଉଥିଲା । ସେମାନଙ୍କ ହେତୁ ଅବନ୍ତୀ ନଗରୀ ବ୍ରହ୍ମତେଜରେ ପରିପୂର୍ଣ୍ଣ ମନେ ହେଉଥିଲା ।

ସେହି ସମୟରେ ରତ୍ନମାଳ ପର୍ବତ ଉପରେ ଦୂଷଣ ନାମକ ଗୋଟିଏ ଧର୍ମଦ୍ୱେଷୀ ଅସୁର ବ୍ରହ୍ମାଙ୍କ ବରରେ ବଳୀୟାନ୍ ହୋଇ ବେଦ, ଧର୍ମ ଓ ଧର୍ମାତ୍ମାଙ୍କ ଉପରେ ଆକ୍ରମଣ କଲା । ଶେଷରେ ସେ ସେନା ନେଇ ଅବନ୍ତୀ (ଉଜ୍ଜୟିନୀ) ଉପରେ ଆକ୍ରମଣ କରିଦେଲା । ତା' ଆଜ୍ଞାରେ ଚତୁର୍ଦ୍ଦିଗରେ ଭୟାନକ ଦୈତ୍ୟ ପ୍ରଳୟାଗ୍ନି ପରି ପ୍ରକଟ ହୋଇଗଲେ; ମାତ୍ର ସେହି ଶିବବିଶ୍ୱାସୀ ବ୍ରାହ୍ମଣ ଭାଇମାନେ ଦୈତ୍ୟମାନଙ୍କୁ ଭୟ କଲେ ନାହିଁ । ବରଂ ନଗରର ବ୍ରାହ୍ମଣମାନେ ବହୁତ ଭୟଭୀତ ହୋଇଯିବାରୁ ଏମାନେ ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ, ''ଆପଣମାନେ ଭକ୍ତବତ୍ସଳ ଶିବଙ୍କ ଉପରେ ଭରସା ରଖନ୍ତୁ ।'' ଏପରି କହି ଶିବଲିଙ୍ଗର ପୂଜା କରି ପ୍ରଭୁଙ୍କୁ ଧ୍ୟାନ କଲେ ।

ଇତିମଧ୍ୟରେ ଦୂଷଣ ଆପଣା ସେନା ସହିତ ଆସି ବ୍ରାହ୍ମଣଙ୍କୁ ଦେଖିଲା ଏବଂ କହିଲା–''ଏମାନଙ୍କୁ ବାନ୍ଧି ପକାଅ, ମାରି ପକାଅ ।'' ବେଦପ୍ରିୟ ବ୍ରାହ୍ମଣଙ୍କ ପୁତ୍ରମାନେ ଦୈତ୍ୟର କଥାକୁ ଶୁଣିଲେ ନାହିଁ; କାରଣ ସେମାନେ ଭଗବାନ ଶମ୍ଭୁଙ୍କ ଧ୍ୟାନମାର୍ଗରେ ସ୍ଥିତ ହୋଇଯାଇଥିଲେ । ଦୁଷ୍ଟାତ୍ମା ଦୈତ୍ୟ ସେହି ବ୍ରାହ୍ମଣମାନଙ୍କୁ ମାରିପକାଇବାକୁ ଇଚ୍ଛା କରିବା ମାତ୍ରେ ସେମାନଙ୍କ ଦ୍ୱାରା ପୂଜିତ ପାର୍ଥିବଲିଙ୍ଗ ସ୍ଥାନରେ ଭୀଷଣ ଶବ୍ଦ ସହିତ ଗୋଟିଏ ଗର୍ତ୍ତ ସୃଷ୍ଟି ହୋଇଗଲା । ସେହି ଗର୍ତ୍ତ ଭିତରୁ ଭଗବାନ ଶମ୍ଭୁ ଅବିଳମ୍ବେ ବିକଟରୂପ ଧରି ପ୍ରକଟ ହୋଇଗଲେ, ଯେ କି ମହାକାଳ ନାମରେ ବିଖ୍ୟାତ ହେଲେ । ସେ ଦୁଷ୍ଟଙ୍କର ବିନାଶକ ଓ ସାଧୁଜନଙ୍କର ଆଶ୍ରୟଦାତା । ସେ ଦୈତ୍ୟକୁ କହିଲେ–''ରେ ଖଳ ! ମୁଁ ତୋ'ପରି

ଦୁଷ୍ଟ ପାଇଁ ମହାକାଳ । ତୁ ଏ ବ୍ରାହ୍ମଣଙ୍କ ନିକଟରୁ ଶୀଘ୍ର ଦୂରକୁ ପଳାଇଯାଆ ।''

ଏପରି କହି ମହାକାଳ ଶିବ ଦୂଷଣକୁ ତା'ର ସେନାସହିତ ହୁଂକାରମାତ୍ରକେ ଅବିଳମ୍ବେ ଭସ୍ମ କରିଦେଲେ । କେତେକ ସୈନ୍ୟ ସେଠାରେ ନିହତ ହେଲେ, ଆଉ କିଛି ପଳାୟନ କଲେ । ପରମାତ୍ମା



ଶିବ ଦୂଷଣକୁ ମାରି ପକାଇଲେ । ସୂର୍ଯ୍ୟଙ୍କୁ ଦେଖିବାମାତ୍ରେ ଅନ୍ଧକାର ଯେପରି ଉଭେଇଯାଏ, ସେହିପରି ଭଗବାନ ଶିବଙ୍କୁ ଦେଖି ତାହାର ସକଳ ସେନା ଅଦୃଶ୍ୟ ହୋଇଗଲେ । ଦେବତାଙ୍କ ଦୁନ୍ଦୁଭି ବାଜି ଉଠିଲା ଏବଂ ଆକାଶରୁ ପୁଷ୍ପବୃଷ୍ଟି ହେଲା । ମହାକାଳ ମହେଶ୍ୱର ସେହି ବ୍ରାହ୍ମଣମାନଙ୍କ ଉପରେ ସୁପ୍ରସନ୍ନ ହୋଇ ଆଶ୍ୱାସନ ଦେଇ କହିଲେ—''ତୁମେମାନେ ବର ମାଗ ।'' ଭଗବାନଙ୍କ କଥା ଶୁଣି ସେମାନେ ହାତ ଯୋଡ଼ି ଭକ୍ତିଭାବରେ ପ୍ରଣାମ କରି ନତମସ୍ତକ ହୋଇ କହିଲେ—

ଦ୍ୱିଜମାନେ କହିଲେ—ହେ ମହାକାଳ ! ମହାଦେବ ! ଦୁଷ୍ଟଙ୍କୁ ଦଣ୍ଡିତ କରିଥିବା ପ୍ରଭୁ ! ଶମ୍ଭୋ ! ଆପଣ ଆମକୁ ସଂସାରସାଗରରୁ ମୁକ୍ତି ଦିଅନ୍ତୁ । ଶିବ ! ଆପଣ ଜନସାଧାରଣଙ୍କ ରକ୍ଷା ନିମନ୍ତେ ସର୍ବଦା ଏଠାରେ ନିବାସ କରନ୍ତୁ । ପ୍ରଭୋ ! ଶମ୍ଭୋ ! ଆପଣଙ୍କୁ ଦର୍ଶନ କରୁଥିବା ଲୋକଙ୍କୁ ଆପଣ ସଦା ଉଦ୍ଧାର କରନ୍ତୁ ।

ସୂତ କହୁଛନ୍ତି—ମହର୍ଷିଗଣ ! ସେମାନେ ଏପରି କହିବାରୁ ଭଗବାନ ଶିବ ସେମାନଙ୍କୁ ସଦ୍‌ଗତି ପ୍ରଦାନ କରିବା ସହ ଭକ୍ତଙ୍କ ରକ୍ଷା ପାଇଁ ସେହି ପରମ ସୁନ୍ଦର ଗର୍ତ୍ତରେ ବିରାଜମାନ ହୋଇଗଲେ । ବ୍ରାହ୍ମଣମାନେ ମୋକ୍ଷଗତି ଲାଭ କଲେ ଏବଂ ସେଠାକାର ଚତୁଷ୍ପାର୍ଶ୍ୱର ଏକକୋଶ ପର୍ଯ୍ୟନ୍ତ ଭୂମି ଲିଙ୍ଗରୂପୀ ଶିବଙ୍କର ପୁଣ୍ୟସ୍ଥଳ ହୋଇଗଲା । ପ୍ରଭୁ ଭୂତଳରେ ମହାକାଳେଶ୍ୱର ନାମରେ ବିଖ୍ୟାତ ହେଲେ । ହେ ଦ୍ୱିଜବୃନ୍ଦ ! ତାଙ୍କୁ ଦର୍ଶନ କଲେ ସ୍ୱପ୍ନରେ ମଧ୍ୟ ଦୁଃଖ ଆସେ ନାହିଁ । ଭକ୍ତ ଯେଉଁ କାମନାରେ ତାଙ୍କୁ ଉପାସନା କରେ, ତା'ର ସେହି ମନୋରଥ ପୂର୍ଣ୍ଣ ହୁଏ ଏବଂ ପରଲୋକରେ ତାକୁ ମୋକ୍ଷ ମଧ୍ୟ ମିଳିଯାଏ । (ଅଧ୍ୟାୟ ୧୫-୧୬)

***

## ମହାକାଳଙ୍କ ମାହାତ୍ମ୍ୟ ପ୍ରସଙ୍ଗରେ ଶିବଭକ୍ତ ରାଜା ଚନ୍ଦ୍ରସେନ ତଥା ଗୋପବାଳକ ଶ୍ରୀକରଙ୍କ ଶିବୋପାସନା ଓ ତାହାର ଫଳ

ସୂତ କହୁଛନ୍ତି—ବ୍ରାହ୍ମଣବୃନ୍ଦ ! ଭକ୍ତରକ୍ଷକ ମହାକାଳ ନାମକ ଜ୍ୟୋତିର୍ଲିଙ୍ଗଙ୍କ ମାହାତ୍ମ୍ୟ ଭକ୍ତି ବୃଦ୍ଧି କରିଥାଏ । ଏବେ ତାହା ଆଦରପୂର୍ବକ ଶୁଣ । ଉଜ୍ଜୟିନୀରେ ଚନ୍ଦ୍ରସେନ ନାମରେ ଜଣେ ମହାନ୍ ରାଜା ଥିଲେ । ସେ ଅନେକ ଶାସ୍ତ୍ରର ମର୍ମଜ୍ଞ, ଶିବଭକ୍ତ ଓ ଜିତେନ୍ଦ୍ରିୟ ଥିଲେ । ଶିବଙ୍କ ପାର୍ଷଦଙ୍କ ମଧ୍ୟରେ ପ୍ରଧାନ ତଥା ସର୍ବଲୋକବନ୍ଦିତ ମଣିଭଦ୍ର ଥିଲେ ରାଜା ଚନ୍ଦ୍ରସେନଙ୍କର ସଖା । ଥରେ ସେ ରାଜାଙ୍କ ଉପରେ ପ୍ରସନ୍ନ ହୋଇ ତାଙ୍କୁ ଚିନ୍ତାମଣି ନାମକ ମହାମଣି ପ୍ରଦାନ କଲେ, ଯାହା କି କୌସ୍ତୁଭମଣି ତଥା ସୂର୍ଯ୍ୟଙ୍କ ପରି ଦେଦୀପ୍ୟମାନ ଥିଲା । ସେହି ମଣିକୁ ଦେଖିଲେ, ଧ୍ୟାନ କଲେ

ଅଥବା ତା' କଥା ଶୁଣିଲେ ମଧ୍ୟ ତାହା ମନୁଷ୍ୟଙ୍କୁ ନିଶ୍ଚିତରୂପେ ମଙ୍ଗଳ ପ୍ରଦାନ କରୁଥିଲା । ଶିବଙ୍କ ଆଶ୍ରିତ ରାଜା ଚନ୍ଦ୍ରସେନ ଉକ୍ତ ଚିନ୍ତାମଣିକୁ ଗଳାରେ ଧାରଣ କରି ସିଂହାସନରେ ବିରାଜମାନ ହେବା ବେଳେ ଦେବଗଣଙ୍କ ମଧ୍ୟରେ ସୂର୍ଯ୍ୟନାରାୟଣଙ୍କ ପରି ଶୋଭମାନ ହେଉଥିଲେ । ନୃପଶ୍ରେଷ୍ଠ ଚନ୍ଦ୍ରସେନଙ୍କ ଗଳାରେ ଚିନ୍ତାମଣି ଏପରି ଶୋଭା ପାଉଥିବା କଥା ଶୁଣି ଅନ୍ୟ ରାଜାଙ୍କ ମନରେ ଉକ୍ତ ମଣି ପ୍ରତି ଲୋଭ ଜାତ ହୋଇଗଲା ଏବଂ ସେମାନେ ମନେ ମନେ କ୍ଷୁବ୍ଧ ହେବାକୁ ଲାଗିଲେ । ତା'ପରେ ସେହି ରାଜାମାନେ ଚତୁରଙ୍ଗିଣୀ ସେନା ଘେନି ଯୁଦ୍ଧରେ ଚନ୍ଦ୍ରସେନଙ୍କୁ ପରାସ୍ତ କରିବାକୁ ଉଦ୍ୟତ ହେଲେ । ସେମାନେ ପରସ୍ପର ସହିତ ମିଶି ଏହି ଷଡ଼ଯନ୍ତ୍ର କରିଥିଲେ, ପୁଣି ଅନେକ ସେନାବାହିନୀ ମଧ୍ୟ ସେମାନଙ୍କ ସଙ୍ଗରେ ଥିଲା । ତେଣୁ ସେମାନେ ପରସ୍ପରକୁ ସଂକେତ କରି ଉଜ୍ଜୟିନୀର ଗ୍ରିଦ୍ୱାରକୁ ଘେରି ସାମୁହିକରୂପେ ଆକ୍ରମଣ କରିଦେଲେ । ନିଜ ନଗରୀ ଉପରେ ଏପରି ଅନେକ ରାଜାଙ୍କ ଦ୍ୱାରା ଆକ୍ରମଣ ହେବା କଥା ଜାଣି ରାଜା ଚନ୍ଦ୍ରସେନ ଭଗବାନ ମହାକାଳଙ୍କ ଠାରେ ଶରଣ ଗଲେ । ସେ ନିଃସନ୍ଦେହ ହୋଇ ଦୃଢ଼ନିଶ୍ଚୟରେ ଦିନରାତି ଉପବାସପୂର୍ବକ ଅନନ୍ୟଭାବରେ ମହାକାଳଙ୍କ ଆରାଧନାରେ ମଗ୍ନ ରହିଲେ ।

ସେହି ଉଜ୍ଜୟିନୀ ନଗରୀରେ ଗୋଟିଏ ବିଧବା ଗୋପାଳୁଣୀ ରହୁଥିଲା । ତା'ର ଥିଲା ଏକମାତ୍ର ପୁତ୍ର । ସେ ସେଠାରେ ଅନେକ ଦିନରୁ ବାସ କରିଆସୁଥିଲା । ସେ ତା'ର ପାଞ୍ଚବର୍ଷର ପୁତ୍ରକୁ ନେଇ ମହାକାଳଙ୍କ ମନ୍ଦିରକୁ ଗଲା ଏବଂ ରାଜା ଚନ୍ଦ୍ରସେନ ମହାକାଳଙ୍କୁ ପୂଜା କରୁଥିବା ବେଳେ ଆଦରପୂର୍ବକ ତାହା ଦର୍ଶନ କଲା । ରାଜାଙ୍କ ଶିବପୂଜନରୂପୀ ଆଶ୍ଚର୍ଯ୍ୟମୟ ଉତ୍ସବକୁ ଦେଖିବା ପରେ ଭଗବାନଙ୍କୁ ପ୍ରଣାମ କରି ନିଜ ନିବାସସ୍ଥାନକୁ ଫେରିଆସିଲା । ତା'ର ପୁଅ ମଧ୍ୟ ସେହି ପୂଜା ଦେଖିଥିଲା । ତେଣୁ ସେ କୌତୂହଳପୂର୍ବକ ସେହିପରି ପୂଜା କରିବାକୁ ଭାବିଲା । ଗୋଟିଏ ସୁନ୍ଦର ପଥର ଆଣି ତାହାକୁ ନିଜ ଶିବିର ଠାରୁ କିଛି ଦୂରରେ ଅନ୍ୟ ଗୋଟିଏ ଶିବିର ନିକଟରେ ଏକାନ୍ତ ସ୍ଥାନରେ ରଖିଲା ଏବଂ ତାହାକୁ ଶିବଲିଙ୍ଗ ମଣି ଭକ୍ତିପୂର୍ବକ କୃତ୍ରିମ ଗନ୍ଧ, ଅଳଂକାର, ବସ୍ତ୍ର, ଧୂପ, ଦୀପ ଓ ଅକ୍ଷତ ଇତ୍ୟାଦି ଯୋଗାଡ଼ କରି ତଦ୍ଦ୍ୱାରା ପୂଜା କଲା ଏବଂ ମନଃକଳ୍ପିତ ଦିବ୍ୟ ନୈବେଦ୍ୟ ମଧ୍ୟ ଅର୍ପଣ କଲା । ସୁନ୍ଦର ସୁନ୍ଦର ପତ୍ର ଓ ପୁଷ୍ପରେ ବାରମ୍ବାର ପୂଜା କରି ସେ ତାଙ୍କ ଆଗରେ ନାନା ପ୍ରକାର ନାଚ ନାଚିଲା ଏବଂ ବାରମ୍ବାର ପ୍ରଭୁଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲା । ଏତିକିବେଳେ ଗୋପାଳୁଣୀ ତା'ପୁଅକୁ ସ୍ନେହରେ ଖାଇବାକୁ ଡାକିଲା । କିନ୍ତୁ ପିଲାଟିର ମନ ଶିବଙ୍କ ଠାରେ ଆସକ୍ତ ଥିବାରୁ ଭୋଜନ କରିବାକୁ ଯିବାକୁ ତା'ର ଇଚ୍ଛା ହେଲା ନାହିଁ । ସେ ନ ଯିବାରୁ ମାଆ ତା' ପାଖକୁ ଆସି ଦେଖିଲା ଯେ ପୁଅ ଶିବଙ୍କ ଆଗରେ ଆଖି ବୁଜି ଧ୍ୟାନ କରୁଛି । ସେ ତା'ର ହାତ ଧରି ଟାଣିଲା । ଏହା ସତ୍ତ୍ୱେ ସେ ନ ଉଠିବାରୁ ସେ ରାଗିଯାଇ ତାକୁ ବହୁତ ମାରିଲା ଏବଂ ତା'ର ଶିବଲିଙ୍ଗକୁ ଉଠାଇ ଦୂରକୁ ଫୋପାଡ଼ିଦେଲା । ପୁଣି ଶିବଲିଙ୍ଗରେ ଅର୍ପଣ କରିଥିବା ସମସ୍ତ ପୂଜା ସାମଗ୍ରୀକୁ ମଧ୍ୟ ନଷ୍ଟ କରିଦେଲା । ଏହା ଦେଖି ପିଲାଟି 'ହାୟ ! ହାୟ !' କରି କାନ୍ଦିବାକୁ ଲାଗିଲା । ଶେଷରେ ଗୋପାଳୁଣୀ ରାଗରେ ପୁଅକୁ ବହୁତ ଗାଳିମନ୍ଦ ଦେଇ ନିଜ ଘରକୁ ଫେରିଗଲା । ଶିବଙ୍କ ପୂଜାକୁ ମାଆ ଏପରି ନଷ୍ଟଭ୍ରଷ୍ଟ କରିଦେବା ଦେଖି ପିଲାଟି 'ହେ ଦେବଦେବ ! ହେ ମହାଦେବ !' ଏପରି ଚିତ୍କାର କରି ସହସା ମୂର୍ଚ୍ଛିତ ହୋଇ ପଡ଼ିଗଲା । ତା' ଆଖିରୁ ଧାର ଧାର ଲୁହ ବୋହି

ଯାଉଥିଲା । ଦୁଇ ଘଡ଼ି ପରେ ତା'ର ଚେତା ଆସିବାରୁ ସେ ଆଖି ଖୋଲିଲା ।

ଆଖି ଖୋଲି ଗ୍ରହିଁବାମାତ୍ରେ ସେ ଦେଖିଲା ଯେ ସେହି ଶିବିରଟି ଶିବଙ୍କ ଅନୁଗ୍ରହରୁ ସହସା ମହାକାଳଙ୍କ ସୁନ୍ଦର ମନ୍ଦିରରେ ରୂପାନ୍ତରିତ ହୋଇଯାଇଛି । ମନ୍ଦିରରେ ମଣିନିର୍ମିତ ସ୍ତମ୍ଭମାନ ଚକ୍‌ଚକ୍ ଦିଶୁଛି । ସ୍ଫଟିକମଣିର ମେଜିଆ ଏବଂ ଶୁଦ୍ଧ ସୁବର୍ଣ୍ଣର ଅନେକ ବିଚିତ୍ର କଳଶ ସେହି ଶିବାଳୟକୁ ସୁଶୋଭିତ କରୁଛି । ତାହାର ବିଶାଳ ଦ୍ୱାର, କବାଟ ଓ ଫାଟକ ସୁବର୍ଣ୍ଣମୟ ଦିଶୁଛି । ଚଉତରା ସବୁ ବହୁମୂଲ୍ୟ ନୀଳମଣି ଓ ହୀରାରେ ନିର୍ମିତ । ଶିବାଳୟର ମଧ୍ୟଭାଗରେ ଦୟାନିଧି ଶିବଙ୍କର ରତ୍ନମୟ ଲିଙ୍ଗ ପ୍ରତିଷ୍ଠିତ । ଗୋପାଳୁଣୀର ପୁଅ ଆହୁରି ମଧ୍ୟ ଦେଖିଲା ଯେ ସେ ଶିବଲିଙ୍ଗରେ ଅର୍ପଣ କରିଥିବା ପୂଜାସମାଗ୍ରୀ ସବୁ ପୂର୍ବବତ୍ ବିଦ୍ୟମାନ ଅଛି । ଏସବୁ ଦେଖି ବାଳକଟି ସହସା ଉଠି ଠିଆ ହୋଇପଡ଼ିଲା । ସେ ମନେ ମନେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପରମାନନ୍ଦ-ସାଗରରେ ନିମଗ୍ନ ହୋଇଗଲା । ଏହାପରେ ଭଗବାନ ଶିବଙ୍କୁ ସ୍ତୁତି କରି ବାରମ୍ବାର ନମସ୍କାର କଲା ଏବଂ ସୂର୍ଯ୍ୟାସ୍ତ ହେବା ପରେ ମନ୍ଦିରରୁ ବାହାରକୁ ବାହାରିଲା । ବାହାରକୁ ଆସି ସେ ଆପଣା ଶିବିର ଦେଖିବାକୁ ପାଇଲା । ତାହା ଇନ୍ଦ୍ରଭବନ ପରି ଶୋଭା ପାଉଥିଲା । ସେଠାରେ ସବୁକିଛି ସୁବର୍ଣ୍ଣମୟ, ବିଚିତ୍ର ଓ ପରମୋଜ୍ଜ୍ୱଳ ବୈଭବରେ ଉଦ୍ଭାସିତ ହେଉଥିଲା । ଏହା ଦେଖି ସେ ସେହି ପ୍ରଦୋଷକାଳରେ ଭବନ ଭିତରକୁ ପ୍ରବେଶ କଲା । ଭିତରଭାଗ ମଧ୍ୟ ନାନା ପ୍ରକାର ଶୋଭାରେ ମଣ୍ଡିତ ଥିଲା । ଭବନରେ ସର୍ବତ୍ର ମଣି, ରତ୍ନ ଓ ସୁବର୍ଣ୍ଣ ବିଜଡ଼ିତ ଥିଲା । ସେ ଦେଖିଲା ଯେ ତା' ମାଆ ଦିବ୍ୟ ଲକ୍ଷଣରେ ସୁଶୋଭିତ ଓ ନାନା ରତ୍ନମୟ ଅଳଂକାରରେ ବିମଣ୍ଡିତ ହୋଇ ପଲଙ୍କ ଉପରେ ଶୋଇଛି । ସେ ଦେବାଙ୍ଗନା ପରି ଦିଶୁଛି । ବାଳକଟି ଭାବବିହ୍ୱଳ ହୋଇ ମାଆକୁ ଡାକି ଉଠାଇଲା । ସେ ଭଗବାନଙ୍କ କୃପାପାତ୍ର ହୋଇସାରିଥିଲା । ଗୋପାଳୁଣୀ ଉଠି ଦେଖିଲା ଯେ ସବୁକିଛି ଅପୂର୍ବ ଓ ଅଦ୍ଭୁତ ହୋଇସାରିଛି । ସେ ପରମ ଆନନ୍ଦରେ ବିଭୋର ହୋଇ ପୁଅକୁ କୁଣ୍ଢାଇ ପକାଇଲା । ପୁଅ ମୁହଁରୁ ଗିରିଜାପତିଙ୍କ କୃପାପ୍ରସାଦର ସମସ୍ତ ବୃତ୍ତାନ୍ତ ଶୁଣି ଗୋପାଳୁଣୀ ଅବିରତ ଶିବଙ୍କ ପୂଜାରେ ରତ ରହୁଥିବା ସେହି ରାଜାଙ୍କୁ ସୂଚନା ଦେଲା । ରାଜା ନିଜର ନିୟମ ପୂର୍ଣ୍ଣ କରିସାରି ରାତିରେ ସେଠାକୁ ଆସିଲେ ଏବଂ ଗୋପାଳୁଣୀ ପୁଅର ସେହି ପ୍ରଭାବକୁ ଦେଖିଲେ, ଯାହା ଶିବଙ୍କୁ ସନ୍ତୁଷ୍ଟ କରି ପାରିଥିଲା । ମନ୍ତ୍ରୀ, ପୁରୋହିତ ଓ ରାଜା ଚନ୍ଦ୍ରସେନ ଏପରି ଅଦ୍ଭୁତ ଘଟଣା ଦେଖି ପରମାନନ୍ଦ-ସାଗରରେ ନିମଗ୍ନ ହୋଇଗଲେ । ରାଜାଙ୍କ ନେତ୍ରରୁ ପ୍ରେମାଶ୍ରୁ ଝରିଆସିଲା । ସେ ଆନନ୍ଦରେ 'ଶିବ-ଶିବ' ଉଚ୍ଚାରଣ କରି ପିଲାଟିକୁ ଆନନ୍ଦରେ କୋଳକୁ ଟାଣିନେଇ ଆଲିଙ୍ଗନ କଲେ । ବ୍ରାହ୍ମଣବୃନ୍ଦ ! ସେତେବେଳେ ବହୁତ ବଡ଼ ଆନନ୍ଦ ଉତ୍ସବ କରାଗଲା । ସମସ୍ତେ ଆନନ୍ଦରେ ବିଭୋର ହୋଇ ମହେଶ୍ୱରଙ୍କ ନାମ ଓ ଯଶ କୀର୍ତ୍ତନ କରିବାକୁ ଲାଗିଲେ । ଶିବଙ୍କର ଏପରି ଅଦ୍ଭୁତ ଲୀଳାର ମାହାତ୍ମ୍ୟ ଦେଖି ପୁରବାସୀଙ୍କୁ ବହୁତ ଆନନ୍ଦ ମିଳିଲା ଏବଂ ଏହି ଚର୍ଚ୍ଚାରେ ପୂରା ରାତିଟି କ୍ଷଣକ ପରି ବିତିଗଲା ।

ଯୁଦ୍ଧ ପାଇଁ ଆସି ନଗରକୁ ଚ୍ରରିଆଡୁ ଘେରି ରହିଥିବା ରାଜାମାନେ ମଧ୍ୟ ସକାଳୁ ସେମାନଙ୍କ ଗୁପ୍ତଚରଙ୍କ ଠାରୁ ଏହି ଅଦ୍ଭୁତ ସମାଚ୍ରର ପାଇଲେ । ଏଭଳି ଚରିତ୍ର ଶୁଣି ସେମାନେ ଚକିତ ହୋଇ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଲେ—''ରାଜା

ଚନ୍ଦ୍ରସେନ ଶିବଙ୍କର ବହୁତ ବଡ଼ ଭକ୍ତ; ତେଣୁ ଏହାଙ୍କୁ ପରାସ୍ତ କରିବା ବହୁତ କଠିନ । ଏ ସମ୍ପୂର୍ଣ୍ଣ ନିର୍ଭୟ ହୋଇ ମହାକାଳଙ୍କ ନଗରୀ ଉଜ୍ଜୟିନୀକୁ ପାଳନ କରୁଛନ୍ତି । ଯେଉଁ ଚନ୍ଦ୍ରସେନ ରାଜାଙ୍କ ନଗରୀରେ ଛୋଟ ବାଳକଟିଏ ଏଭଳି ଶିବଭକ୍ତ, ସ୍ୱୟଂ ରାଜା ତ ନିଶ୍ଚୟ ବହୁତ ବଡ଼ ଶିବଭକ୍ତ ହୋଇଥିବେ । ତାଙ୍କ ସଙ୍ଗେ ବିରୋଧ କଲେ ଭଗବାନ ଶିବ ନିଶ୍ଚୟ ଆମ ଉପରେ କୋପ କରିବେ ଏବଂ ତାଙ୍କ କ୍ରୋଧରେ ଆମେମାନେ ନଷ୍ଟ ହୋଇଯିବା । ତେଣୁ ଗ୍ୱଲ ରାଜା ଚନ୍ଦ୍ରସେନଙ୍କ ସଙ୍ଗେ ଆମେ ସନ୍ଧି କରିନେବା । ଏପରି କଲେ ମହେଶ୍ୱର ଆମ ଉପରେ ବହୁତ କୃପା କରିବେ ।''

ସୂତ କହୁଛନ୍ତି–ବ୍ରାହ୍ମଣବୃନ୍ଦ ! ଏଭଳି ନିର୍ଣ୍ଣୟ କରି ରାଜାମାନେ ନିଜ ନିଜ ଅସ୍ତ୍ରଶସ୍ତ୍ର ରଖିଦେଲେ । ସେମାନଙ୍କ ମନରୁ ବୈରଭାବ ଉଭେଇ ଗଲା ଓ ହୃଦୟ ନିର୍ମଳ ହୋଇଗଲା । ସେମାନେ ପ୍ରସନ୍ନ ମନରେ ଚନ୍ଦ୍ରସେନଙ୍କ ଅନୁମତି ନେଇ ମହାକାଳଙ୍କ ରମଣୀୟ ନଗରୀ ଭିତରେ ପ୍ରବେଶ କଲେ । ସେଠାରେ ପହଞ୍ଚି ସେମାନେ ମହାକାଳଙ୍କୁ ପୂଜା କଲେ । ଏହାପରେ ସମସ୍ତେ ଗୋପାଳୁଣୀର ମହାନ୍ ଅଭ୍ୟୁଦୟପୂର୍ଣ୍ଣ ଦିବ୍ୟ ସୌଭାଗ୍ୟର ଭୂରି ଭୂରି ପ୍ରଶଂସା କରିବା ସହ ତା' ଘରେ ପଦାର୍ପଣ କଲେ । ରାଜା ଚନ୍ଦ୍ରସେନ ଆଗଭର ହୋଇ ଆସି ସମସ୍ତଙ୍କର ସ୍ୱାଗତ ଓ ଆତିଥ୍ୟ କଲେ । ସେମାନେ ବହୁମୂଲ୍ୟ ଆସନରେ ବସି ଆଶ୍ଚର୍ଯ୍ୟାନ୍ୱିତ ଓ ଆନନ୍ଦିତ ହେଲେ । ଗୋପବାଳକ ଉପରେ କୃପା କରିବା ନିମନ୍ତେ ସ୍ୱତଃ ପ୍ରକଟ ହୋଇଥିବା ଶିବାଳୟ ଓ ଶିବଲିଙ୍ଗଙ୍କୁ ଦର୍ଶନ କରି ସେହି ରାଜାମାନେ ଶିବଙ୍କ ଠାରେ ମନବୁଦ୍ଧିକୁ ନିବେଶ କଲେ । ସେମାନେ ଶିବଙ୍କ କୃପା ଲାଭ କରିବା ଆଶାରେ ଗୋପବାଳକକୁ ନାନା ପ୍ରକାର ଦ୍ରବ୍ୟ ଆନନ୍ଦରେ ଉପହାର ଦେଲେ । ପୁଣି ତାକୁ ସେହି ଜନପଦରେ ରହୁଥିବା ଗୋପାଳମାନଙ୍କର ରାଜା କରିଦେଲେ ।

ଏତିକିବେଳେ ସକଳ ଦେବତାଙ୍କର ପୂଜନୀୟ ପରମ ତେଜସ୍ୱୀ ବାନରରାଜ ହନୁମାନ୍ ସେଠାରେ ପ୍ରକଟ ହୋଇଗଲେ । ତାଙ୍କୁ ଦେଖି ସକଳ ରାଜା ଧପପଡ଼ ହୋଇ ଉଠି ଠିଆ ହୋଇଗଲେ । ସମସ୍ତେ ଭକ୍ତିଭାବରେ ବିନମ୍ର ହୋଇ ତାଙ୍କୁ ପ୍ରଣାମ କଲେ । ରାଜାମାନଙ୍କ ଦ୍ୱାରା ପୂଜିତ ହେବା ପରେ ବାନରରାଜ ହନୁମାନ ସେମାନଙ୍କ ଗହଣରେ ବସିଲେ ଏବଂ ଗୋପବାଳକକୁ ଆଲିଙ୍ଗନ କରିବା ପରେ ନରେଶମାନଙ୍କ ଆଡ଼କୁ ଚାହିଁ କହିଲେ– ''ରାଜାଗଣ ! ତୁମେ ସମସ୍ତେ ଏବଂ ଅନ୍ୟ ସମସ୍ତ ଦେହଧାରୀ ପ୍ରାଣୀ ମଧ୍ୟ ମୋ କଥା ଶୁଣ । ଏଥିରେ ତୁମମାନଙ୍କର ହିତ ନିହିତ । ଭଗବାନ ଶିବଙ୍କ ଛଡ଼ା ଦେହଧାରୀଙ୍କ ପାଇଁ ଅନ୍ୟ ଗତି ନାହିଁ । ବଡ଼



ସୌଭାଗ୍ୟର କଥା ଯେ ଏ ଗୋପପୁଅ ଶିବଙ୍କ ପୂଜା ଦେଖି ତଦ୍ୱାରା ପ୍ରେରିତ ହେଲା ଏବଂ ବିନା ମନ୍ତ୍ରରେ ମଧ୍ୟ ଶିବଙ୍କୁ ପୂଜା କରି ତାଙ୍କୁ ପାଇଗଲା । ଏ ଗୋପବଂଶର କୀର୍ତ୍ତି-ବିସ୍ତାରକାରୀ ବାଳକ

ଶିବଙ୍କର ବହୁତ ବଡ଼ ଭକ୍ତ । ଏ ଇହଲୋକରେ ସମସ୍ତ ଭୋଗ ଉପଭୋଗ କରି ଶେଷରେ ମୋକ୍ଷ ପ୍ରାପ୍ତ ହେବ । ଏହାର ବଂଶରେ ଅଷ୍ଟମ ପିଢ଼ିରେ ମହାଯଶସ୍ୱୀ ନନ୍ଦ ଜନ୍ମ ଗ୍ରହଣ କରିବେ ଏବଂ ତାଙ୍କ ଠାରୁ ସାକ୍ଷାତ୍ ନାରାୟଣ ପୁତ୍ରରୂପେ ଅବତରିତ ହୋଇ ଶ୍ରୀକୃଷ୍ଣ ନାମରେ ପ୍ରସିଦ୍ଧ ହେବେ । ଆଜିଠାରୁ ଏହି ଗୋପକୁମାର ଜଗତରେ ଶ୍ରୀକର ନାମରେ ବିଖ୍ୟାତ ହେବ ।

ସୂତ କହୁଛନ୍ତି–ବ୍ରାହ୍ମଣବୃନ୍ଦ ! ଏତିକି କହି ଅଞ୍ଜନୀନନ୍ଦନ ଶିବସ୍ୱରୂପ ବାନରରାଜ ହନୁମାନ ସମସ୍ତ ରାଜା ତଥା ମହାରାଜ ଚନ୍ଦ୍ରସେନଙ୍କ ଆଡ଼କୁ କୃପାଦୃଷ୍ଟିରେ ଚାହିଁଲେ । ତା'ପରେ ସେ ବୁଦ୍ଧିମାନ ବାଳକ ଶ୍ରୀକରକୁ ଶିବୋପାସନାର ଆଚାର-ବ୍ୟବହାର ଉପଦେଶ ଦେଲେ, ଯାହାକି ଶିବଙ୍କର ବହୁତ ପ୍ରିୟ । ଏହାପରେ ହନୁମାନ ପରମ ପ୍ରସନ୍ନ ହୋଇ ଚନ୍ଦ୍ରସେନ ଓ ଶ୍ରୀକରଙ୍କ ଠାରୁ ବିଦାୟ ନେଇ ସେମାନଙ୍କ ନେତ୍ରପଥରୁ ଅନ୍ତର୍ହିତ ହୋଇଗଲେ । ରାଜାମାନେ ହର୍ଷିତ ଓ ସମ୍ମାନିତ ହୋଇ ମହାରାଜ ଚନ୍ଦ୍ରସେନଙ୍କ ଆଜ୍ଞା ନେଇ ନିଜ ନିଜ ସ୍ଥାନକୁ ଫେରିଗଲେ । ମହାତେଜସ୍ୱୀ ଶ୍ରୀକର ମଧ୍ୟ ହନୁମାନଙ୍କ ଉପଦେଶକ୍ରମେ ଧର୍ମଜ୍ଞ ବ୍ରାହ୍ମଣଙ୍କ ସଙ୍ଗେ ମିଶି ଶିବଙ୍କୁ ଉପାସନା କଲା । ମହାରାଜ ଚନ୍ଦ୍ରସେନ ଓ ଗୋପବାଳକ ଶ୍ରୀକର ଉଭୟେ ଅତି ଆନନ୍ଦରେ ମହାକାଳଙ୍କ ସେବା କରୁଥିଲେ । ତାଙ୍କୁ ଆରାଧନା କରି ସେ ଦୁହେଁ ପରମ ପଦ ଲାଭ କଲେ । ବିପ୍ରବୃନ୍ଦ ! ମହାକାଳ ନାମକ ଶିବଲିଙ୍ଗ ହେଉଛି ସାଧୁଜନଙ୍କ ଆଶ୍ରୟ । ଭକ୍ତବତ୍ସଳ ଶିବ ହେଉଛନ୍ତି ଦୁଷ୍ଟମାନଙ୍କର ସର୍ବଥା ବିନାଶକାରୀ । ଏହି ପରମ ପବିତ୍ର ରହସ୍ୟମୟ ଆଖ୍ୟାନ ମୁଁ କହିଦେଲି । ଏହି ଆଖ୍ୟାନ ସର୍ବସୁଖ-ପ୍ରଦାୟକ । ଏହା ଶିବଭକ୍ତି ବଢ଼ାଇବା ସଙ୍ଗେ ସଙ୍ଗେ ସ୍ୱର୍ଗପ୍ରାପ୍ତି କରାଇଥାଏ । (ଅଧ୍ୟାୟ ୧୭)



# ବିନ୍ଧ୍ୟର ତପସ୍ୟା, ଓଁକାରରେ ପରମେଶ୍ୱରଲିଙ୍ଗର ଆବିର୍ଭାବ ଓ ସେହି ଲିଙ୍ଗର ମହିମା

ଋଷିମାନେ କହିଲେ–ମହାଭାଗ ସୂତ ! ଭକ୍ତକୁ ରକ୍ଷା କରୁଥିବା ମହାକାଳ ନାମକ ଶିବଲିଙ୍ଗ ବିଷୟରେ ଆପଣ ବହୁତ ଅଦ୍ଭୁତ କଥା କହିଲେ । ଏବେ କୃପା କରି ଚତୁର୍ଥ ଜ୍ୟୋତିର୍ଲିଙ୍ଗର ପରିଚୟ ପ୍ରଦାନ କରନ୍ତୁ । ଓଁକାରତୀର୍ଥରେ ସର୍ବପାପହାରୀ ପରମେଶ୍ୱରଙ୍କର ଯେଉଁ ଜ୍ୟୋତିର୍ଲିଙ୍ଗ ଅଛି, ତାହାର ଆବିର୍ଭାବ କଥା କୁହନ୍ତୁ ।

ସୂତ କହିଲେ–ମହର୍ଷିଗଣ ! ଓଁକାରତୀର୍ଥରେ ପରମେଶ୍ୱର ନାମକ ଜ୍ୟୋତିର୍ଲିଙ୍ଗ ଯେପରି ପ୍ରକଟ ହେଲା, ତାହା କହୁଛି, ମନ ଦେଇ ଶୁଣ । ଏକଦା ନାରଦ ମୁନି ଗୋକର୍ଣ୍ଣ ନାମକ ଶିବଙ୍କ ସମୀପକୁ ଯାଇ ଅତ୍ୟନ୍ତ ଭକ୍ତିଭାବରେ ତାଙ୍କର ସେବା କଲେ । କିଛି କାଳ ପରେ ମୁନିଶ୍ରେଷ୍ଠ ନାରଦ ସେଠାରୁ ବିନ୍ଧ୍ୟପର୍ବତକୁ ଆସିଲେ ଏବଂ ବିନ୍ଧ୍ୟ ସେଠାରେ ବଡ଼ ଆଦରରେ ତାଙ୍କୁ ପୂଜା କଲା । ସେ ନାରଦଙ୍କ ସମ୍ମୁଖରେ ଛିଡ଼ା ହୋଇ କହିଲା, "ମୋର ଏଠାରେ କୌଣସି ପଦାର୍ଥର ଅଭାବ ନାହିଁ, ମୋର ଏଠି ସବୁ କିଛି ଅଛି ।" ତାଙ୍କର ଏଭଳି ଅଭିମାନପୂର୍ଣ୍ଣ କଥାକୁ ଶୁଣି ଅହଂକାରନାଶକ ନାରଦ ମୁନି ଦୀର୍ଘ ନିଃଶ୍ୱାସଟିଏ ନେଇ ନୀରବରେ ଛିଡ଼ା ହୋଇ ରହିଲେ । ଏହା ଦେଖି ବିନ୍ଧ୍ୟପର୍ବତ ପଚାରିଲା–"ଆପଣ ମୋର ଏଠାରେ କେଉଁ ବସ୍ତୁର ଅଭାବ ଦେଖିଲେ? ଏପରି ଦୀର୍ଘଶ୍ୱାସ ନେବାର କାରଣ କ'ଣ?"

ନାରଦ କହିଲେ—''ଆରେ ଭାଇ ! ତୁମ ପାଖରେ ସବୁ କିଛି ଅଛି ସତ, ତଥାପି ମେରୁପର୍ବତ ତୁମଠାରୁ ବହୁତ ଉଚ୍ଚ । ତାହାର ଶିଖର ଦେବଲୋକ ନିକଟରେ ପହଞ୍ଚିଯାଇଛି; କିନ୍ତୁ ତୁମ ଶିଖର ସେଠାରେ ପହଞ୍ଚିପାରି ନାହିଁ ।

ସୂତ କହିଲେ—ଏତିକି କହି ନାରଦ ସେଠାରୁ ଚ୍ଲିଗଲେ । ମାତ୍ର ବିନ୍ଧ୍ୟପର୍ବତ 'ମୋ ଜୀବନ ଇତ୍ୟାଦିକୁ ଧିକ୍କାର' ଏପରି ଭାବି ମନେ ମନେ ସନ୍ତପ୍ତ ହେବାକୁ ଲାଗିଲା । ଏହାପରେ ସେ ବିଶ୍ୱେଶ୍ୱର ଶମ୍ଭୁଙ୍କ ଆରାଧନାପୂର୍ବକ କଠୋର ତପସ୍ୟା କରିବାକୁ ହୃଦୟ ମଧ୍ୟରେ ଦୃଢ଼ନିଶ୍ଚୟ କରି ଶିବଙ୍କ ଠାରେ ଶରଣ ଗଲା । ତା'ପରେ ଯେଉଁଠି ସାକ୍ଷାତ୍ ଓଁକାର ଅବସ୍ଥିତ, ସେଠାକୁ ଯାଇ ସେ ଶିବଙ୍କ ପାର୍ଥିବମୂର୍ତ୍ତି ନିର୍ମାଣ କଲା ଏବଂ ଛଅମାସ ପର୍ଯ୍ୟନ୍ତ ନିରନ୍ତର ଶମ୍ଭୁଙ୍କୁ ଆରାଧନା କରି ଶିବଙ୍କୁ ଧ୍ୟାନ କଲା । ସେ ନିଜ ତପସ୍ୟାସ୍ଥାନରୁ ଟିକିଏ ବି ଟଳିଲା ନାହିଁ । ବିନ୍ଧ୍ୟାଚଳର ଏତାଦୃଶ ତପସ୍ୟା ଦେଖି ପାର୍ବତୀପତି ପ୍ରସନ୍ନ ହୋଇଗଲେ । ସେ ବିନ୍ଧ୍ୟାଚଳକୁ ନିଜ ସ୍ୱରୂପର ଦର୍ଶନ କରାଇଲେ, ଯାହାକି ଯୋଗୀଜନଙ୍କୁ ମଧ୍ୟ ଦୁର୍ଲଭ ହୋଇଥାଏ । ସେ ପ୍ରସନ୍ନ ହୋଇ ତାକୁ କହିଲେ—''ବିନ୍ଧ୍ୟ ! ତୁମେ ମନୋବାଞ୍ଛିତ ବର ମାଗ । ମୁଁ ଭକ୍ତଙ୍କ ପାଇଁ ଅଭୀଷ୍ଟ ବରଦାତା, ଏବେ ମୁଁ ତୁମ ଉପରେ ପ୍ରସନ୍ନ ।''

ବିନ୍ଧ୍ୟ କହିଲା—ଦେବେଶ୍ୱର! ଶମ୍ଭୋ! ଆପଣ ସଦା ଭକ୍ତବତ୍ସଳ ଅଟନ୍ତି । ଯଦି ଆପଣ ମୋ ଉପରେ ପ୍ରସନ୍ନ, ତେବେ ମୋତେ ଏଭଳି ଅଭିଳଷିତ ବୁଦ୍ଧି ପ୍ରଦାନ କରନ୍ତୁ, ଯଦ୍ଦ୍ୱାରା ମୋର କାର୍ଯ୍ୟ ସଫଳ ହେବ ।

ଭଗବାନ ଶମ୍ଭୁ ତାକୁ ତା'ର ମନୋବାଞ୍ଛିତ ବର ଦେଇସାରି କହିଲେ—''ପର୍ବତରାଜ ବିନ୍ଧ୍ୟ ! ତୁମେ ଯେପରି ଚ୍ହୁଁଛ, ସେପରି କର ।'' ଏତିକି ବେଳେ ଦେବତା ଓ ନିର୍ମଳହୃଦୟ ଦେବର୍ଷିମାନେ ସେଠାକୁ ଆସିଲେ ଏବଂ ଶିବଙ୍କୁ ପୂଜା କରି



କହିଲେ—''ପ୍ରଭୋ ! ଆପଣ ଏଠାରେ ସ୍ଥିରରୂପେ ନିବାସ କରନ୍ତୁ ।''

ଦେବତାଙ୍କ କଥା ଶୁଣି ପରମେଶ୍ୱର ଶିବ ପ୍ରସନ୍ନ ହୋଇଗଲେ ଏବଂ ଜଗତକୁ ସୁଖ ଦେବା ପାଇଁ ତାହା ସହର୍ଷ ସ୍ୱୀକାର କଲେ । ସେଠାରେ ଯେଉଁ ଓଁକାରଲିଙ୍ଗ ଥିଲା, ତାହା ଦୁଇଟି ସ୍ୱରୂପରେ ବିଭକ୍ତ ହୋଇଗଲା । ପ୍ରଣବରେ ଯେଉଁ ସଦାଶିବ ଥିଲେ, ସେ ଓଁକାର ନାମରେ ପ୍ରସିଦ୍ଧ ହେଲେ ଏବଂ ପାର୍ଥିବମୂର୍ତ୍ତିରେ ଯେଉଁ ଶିବଜ୍ୟୋତି ପ୍ରତିଷ୍ଠିତ ହେଲା, ତାହାର ନାମ ହେଲା ପରମେଶ୍ୱର । (ପରମେଶ୍ୱରଙ୍କୁ ହିଁ ଅମଳେଶ୍ୱର କୁହାଯାଏ ।) ଏହିରୂପେ ଓଁକାର ଓ ପରମେଶ୍ୱର—ଉଭୟ ଶିବଲିଙ୍ଗ ଭକ୍ତଙ୍କୁ ଅଭୀଷ୍ଟ ଫଳ ପ୍ରଦାନ କରିଥାନ୍ତି । ସେତେବେଳେ ଦେବତା ଓ ଋଷିମାନେ ଉଭୟ ଲିଙ୍ଗକୁ ପୂଜା କଲେ ଏବଂ ଭଗବାନ ବୃଷଭଧ୍ୱଜଙ୍କୁ ସନ୍ତୁଷ୍ଟ କରି ଅନେକ ବର ଲାଭ କଲେ । ତା'ପରେ ଦେବତାମାନେ ନିଜ ନିଜ ସ୍ଥାନକୁ ବାହୁଡ଼ିଗଲେ ଏବଂ ବିନ୍ଧ୍ୟାଚଳ ମଧ୍ୟ ଅତ୍ୟନ୍ତ

ପ୍ରସନ୍ନତା ଅନୁଭବ କଲା । ସେ ନିଜ ଅଭୀଷ୍ଟ କାର୍ଯ୍ୟ ସିଦ୍ଧ କରି ମାନସିକ ପରିତାପରୁ ମୁକ୍ତ ହେଲା । ଯେଉଁ ବ୍ୟକ୍ତି ଏଭଳିଭାବରେ ଶିବଙ୍କୁ ପୂଜା କରେ, ସେ ଆଉ ମାତୃଗର୍ଭକୁ ଆସେ ନାହିଁ ଏବଂ ତାକୁ ନିଶ୍ଚୟ ଅଭୀଷ୍ଟ ଫଳ ମିଳେ— ଏଥିରେ କୌଣସି ସଂଶୟ ନାହିଁ ।

ସୂତ କହୁଛନ୍ତି—ମହର୍ଷିଗଣ ! ଓଁକାରରେ ଯେଉଁ ଶିବଲିଙ୍ଗ ପ୍ରକଟ ହେଲା ଏବଂ ତାହାର ଆରାଧନାରୁ ଯେଉଁ ଫଳ ମିଳେ, ତାହା ମୁଁ ତୁମକୁ କହିଦେଲି । ଏବେ ମୁଁ କେଦାର ନାମକ ଜ୍ୟୋତିର୍ଲିଙ୍ଗ ବିଷୟରେ କହିବି ।

(ଅଧ୍ୟାୟ ୧୮)

***

## କେଦାରେଶ୍ୱର ଓ ଭୀମଶଙ୍କର ନାମକ ଜ୍ୟୋତିର୍ଲିଙ୍ଗଙ୍କର ଆବିର୍ଭାବର କଥା ଏବଂ ସେମାନଙ୍କ ମାହାତ୍ମ୍ୟ ବର୍ଣ୍ଣନା

ସୂତ କହୁଛନ୍ତି—ବ୍ରାହ୍ମଣବୃନ୍ଦ ! ଭଗବାନ ବିଷ୍ଣୁଙ୍କର ନର-ନାରାୟଣ ନାମକ ଦୁଇଟି ଅବତାର ହୋଇଛି । ସେ ଦୁହେଁ ଭାରତବର୍ଷର ବଦରିକାଶ୍ରମ ତୀର୍ଥରେ ତପସ୍ୟା କରନ୍ତି । ସେ ଦୁହେଁ ପାର୍ଥିବ ଶିବଲିଙ୍ଗ ନିର୍ମାଣ କରି ଶମ୍ଭୁଙ୍କୁ ସେଥିରେ ସ୍ଥିତ ହୋଇ ପୂଜା ଗ୍ରହଣ କରିବାକୁ ପ୍ରାର୍ଥନା କଲେ । ଭକ୍ତଙ୍କର ଅଧୀନ ହୋଇଥିବାରୁ ଶିବ ପ୍ରତିଦିନ ସେମାନଙ୍କ ଦ୍ୱାରା ନିର୍ମିତ ପାର୍ଥିବଲିଙ୍ଗରେ ପୂଜିତ ହେବା ନିମନ୍ତେ ସେଠାକୁ ଆସୁଥିଲେ । ସେ ଦୁହେଁ ଏହିପରି ପୂଜା କରୁ କରୁ ବହୁତ ଦିନ ବିତିଗଲା । ଥରେ ପରମେଶ୍ୱର ଶିବ ପ୍ରସନ୍ନ ହୋଇ କହିଲେ—



"ମୁଁ ତୁମ ଆରାଧନାରେ ଅତ୍ୟନ୍ତ ପ୍ରସନ୍ନ । ତୁମେ ଦୁହେଁ ବର ମାଗ ।" ନର ଓ ନାରାୟଣ ଲୋକହିତ କାମନାରେ କହିଲେ—"ଦେବେଶ୍ୱର ! ଯଦି ଆପଣ ପ୍ରସନ୍ନ ଏବଂ ବର ଦେବାକୁ ଚାହାନ୍ତି, ତେବେ ନିଜ ସ୍ୱରୂପରେ ପୂଜା ଗ୍ରହଣ କରିବାକୁ ଏଠାରେ ସ୍ଥିତ ହୋଇଯାଆନ୍ତୁ ।"

ସେ ଦୁଇଭାଇ ଏପରି ଅନୁରୋଧ କରିବାରୁ କଲ୍ୟାଣକାରୀ ମହେଶ୍ୱର ହିମାଳୟର ସେହି କେଦାରତୀର୍ଥରେ ସ୍ୱୟଂ ଜ୍ୟୋତିର୍ଲିଙ୍ଗ ରୂପରେ ସ୍ଥିତ ହୋଇଗଲେ । ସେ ଦୁହିଙ୍କ ଦ୍ୱାରା ପୂଜିତ ହୋଇ ସମସ୍ତ ଦୁଃଖ ଓ ଭୟ ନାଶକାରୀ ଶମ୍ଭୁ ଲୋକମାନଙ୍କର ହିତ କରିବା ଏବଂ ଭକ୍ତଙ୍କୁ ଦର୍ଶନ ଦେବା ନିମନ୍ତେ ସ୍ୱୟଂ କେଦାରେଶ୍ୱର ନାମରେ ପ୍ରସିଦ୍ଧ ହୋଇ ସେଠାରେ ଉପସ୍ଥିତ ରହିଲେ । ତାଙ୍କୁ ଦର୍ଶନ ଓ ପୂଜନ କରୁଥିବା ଭକ୍ତଙ୍କୁ ସେ ସଦା ଅଭୀଷ୍ଟ ଫଳ ପ୍ରଦାନ କରନ୍ତି । ସେହି ଦିନରୁ ଯେଉଁ ବ୍ୟକ୍ତି ଭକ୍ତିଭାବରେ କେଦାରେଶ୍ୱରଙ୍କୁ ପୂଜା କରନ୍ତି, ତାଙ୍କ ପାଇଁ ଦୁଃଖ ସ୍ୱପ୍ନରେ ବି ଦୁର୍ଲଭ ହୋଇଯାଏ । ଶିବଙ୍କର ଯେଉଁ ପ୍ରିୟ ଭକ୍ତ ସେଠାକାର ଶିବଲିଙ୍ଗ ନିକଟରେ ଶିବରୂପଯୁକ୍ତ ବଳୟ (କଙ୍କଣ ବା କଡ଼ା) ଅର୍ପଣ କରେ, ସେ ସେହି ସ୍ୱରୂପର ଦର୍ଶନ କରି ସମସ୍ତ

ପାପରୁ ମୁକ୍ତ ହୋଇଯାଏ ଏବଂ ଜୀବନ୍ମୁକ୍ତ ମଧ୍ୟ ହୋଇଯାଏ । ଯେ ବଦରୀବନ ଯାତ୍ରା କରନ୍ତି, ତାଙ୍କୁ ମଧ୍ୟ ଜୀବନ୍ମୁକ୍ତି ମିଳିଯାଏ । ନର-ନାରାୟଣ ତଥା କେଦାରେଶ୍ୱର ଶିବଙ୍କ ସ୍ୱରୂପକୁ ଦର୍ଶନ କରି ଯେ ମନୁଷ୍ୟ ମୋକ୍ଷର ଭାଗୀ ହୁଏ, ଏଥିରେ ସଂଶୟ ନାହିଁ । କେଦାରେଶ୍ୱରଙ୍କ ପ୍ରତି ଭକ୍ତି ରଖୁଥିବା ଲୋକ ସେଠାକୁ ଯିବାକୁ ବାହାରି ପଡ଼ିବା ପରେ ଯଦି ପହଞ୍ଚି ନ ପାରି ବାଟରେ ମରିଯାଏ, ସେ ମଧ୍ୟ ମୋକ୍ଷ ଲାଭ କରେ । ଏଥିରେ ସଂଶୟର ଅବକାଶ ନାହିଁ ।* କେଦାରେଶ୍ୱରରେ ପହଞ୍ଚି ସପ୍ରେମ କେଦାରେଶ୍ୱରଙ୍କୁ ପୂଜା କରି ସେଠାକାର ଜଳ ପାନ କରିବା ପରେ ମନୁଷ୍ୟର ଆଉ ପୁନର୍ଜନ୍ମ ହୁଏ ନାହିଁ । ବ୍ରାହ୍ମଣବୃନ୍ଦ ! ଏ ଭାରତବର୍ଷରେ ସମସ୍ତ ଜୀବ ଭକ୍ତିଭାବରେ ଭଗବାନ ନର-ନାରାୟଣଙ୍କୁ ତଥା କେଦାରେଶ୍ୱରଙ୍କୁ ପୂଜା କରିବା ଉଚିତ ।

ଏବେ ମୁଁ ଭୀମଶଙ୍କର ନାମକ ଜ୍ୟୋତିର୍ଲିଙ୍ଗର ମାହାତ୍ମ୍ୟ କହିବି । କାମରୂପ ଦେଶରେ ଲୋକହିତ କାମନାରେ ସାକ୍ଷାତ୍ ଭଗବାନ ଶିବ ଜ୍ୟୋତିର୍ଲିଙ୍ଗ ରୂପରେ ଆବିର୍ଭୂତ ହୋଇଥିଲେ । ତାଙ୍କର ସ୍ୱରୂପ କଲ୍ୟାଣ ଓ ସୁଖର ଆଶ୍ରୟ । ବ୍ରାହ୍ମଣବୃନ୍ଦ ! ପୂର୍ବକାଳରେ ଗୋଟିଏ ମହାବଳୀ ରାକ୍ଷସ ଥିଲା, ତାହାର ନାମ ଥିଲା ଭୀମ । ସେ ସବୁବେଳେ ଧର୍ମର ହାନି କରୁଥିଲା ଏବଂ ପ୍ରାଣୀମାନଙ୍କୁ ଦୁଃଖ ଦେଉଥିଲା । ସେ ମହାବଳୀ ରାକ୍ଷସ କୁମ୍ଭକର୍ଣ୍ଣ ଔରସରେ କର୍କଟୀ ଗର୍ଭରୁ ଉତ୍ପନ୍ନ ହୋଇଥିଲା । ସେ ତା' ମାଆ ସହିତ ସହ୍ୟ ପର୍ବତରେ ନିବାସ କରୁଥିଲା । ଦିନେ ଜଗତକୁ ଦୁଃଖ ଦେଉଥିବା ସେହି ପରାକ୍ରମୀ ଦୁଷ୍ଟ ଭୀମ ତା' ମାଆକୁ ପଚାରିଲା—''ମାଆ ! ମୋ ବାପା କାହାନ୍ତି? ତୁ ଏକୁଟିଆ କାହିଁକି ରହୁଛୁ? ମୁଁ ଏ ବିଷୟରେ ଜାଣିବାକୁ ଚାହେଁ । ତେଣୁ ଯଥାର୍ଥ କଥାଟି ମୋତେ କହ ।''

କର୍କଟୀ କହିଲା—ପୁଅରେ ! ରାବଣର ସାନଭାଇ ପ୍ରବଳ ପରାକ୍ରମୀ ବୀର କୁମ୍ଭକର୍ଣ୍ଣ ଥିଲେ ତୋର ପିତା । ତାଙ୍କୁ ଶ୍ରୀରାମ ମାରି ପକାଇଲେ । ମୋ ବାପାଙ୍କ ନାମ କର୍କଟ ଓ ମାଆର ନାମ ପୁଷ୍କସୀ ଥିଲା । ବିରାଧ ମୋର ସ୍ୱାମୀ ଥିଲେ, ତାଙ୍କୁ ପୂର୍ବରୁ ହିଁ ରାମ ମାରିଦେଇଥିଲେ । ମୋ ସ୍ୱାମୀ ମରିଯିବାରୁ ମୁଁ ମୋ ବାପାମାଆଙ୍କ ପାଖରେ ରହୁଥିଲି । ଦିନେ ମୋ ବାପାମାଆ ଅଗସ୍ତ୍ୟ ମୁନିଙ୍କ ଶିଷ୍ୟ ସୁତୀକ୍ଷ୍ଣଙ୍କୁ ଖାଇବା ପାଇଁ ଗଲେ । ସେ ବହୁତ ବଡ଼ ତପସ୍ୱୀ ଓ ମହାତ୍ମା ଥିଲେ । ସେ କ୍ରୋଧିତ ହୋଇ ମୋ ବାପାମାଆଙ୍କୁ ଭସ୍ମ କରିଦେଲେ । ସେ ଦୁହେଁ ମରିଗଲେ । ସେହି ଦିନଠାରୁ ମୁଁ ଏକାକିନୀ ହୋଇ ଅତି ଦୁଃଖରେ ଏହି ପର୍ବତ ଉପରେ ରହିଲି । ମୋର କେହି ଅବଲମ୍ବନ ନ ଥିଲା । ମୁଁ ଅସହାୟ ହୋଇ ଏଠାରେ ଦୁଃଖରେ କାଳ କାଟୁଥିଲି । ଏତିକିବେଳେ ରାବଣର ସାନଭାଇ ମହାପରାକ୍ରମୀ ରାକ୍ଷସ କୁମ୍ଭକର୍ଣ୍ଣ ଏଠାକୁ ଆସିଲେ । ସେ ବଳପୂର୍ବକ ମୋ ସଙ୍ଗେ ସମାଗମ କଲେ ଏବଂ ମୋତେ ଏଠାରେ ଛାଡ଼ିଦେଇ ଲଙ୍କା ପଳାଇଗଲେ । ତା'ପରେ ତୋର ଜନ୍ମ ହେଲା । ତୁ ମଧ୍ୟ ତୋ ପିତା ପରି ମହାବଳବାନ୍ ଓ ପରାକ୍ରମୀ । ତେଣୁ ଏବେ ତୋରି ଆଶ୍ରୟରେ ମୁଁ ଏଠାରେ କାଳ କାଟୁଛି ।

ସୂତ କହୁଛନ୍ତି—ବ୍ରାହ୍ମଣବୃନ୍ଦ ! କର୍କଟୀର କଥା ଶୁଣି ପରାକ୍ରମୀ ଭୀମ କ୍ରୁଦ୍ଧ ହୋଇ ଉଠିଲା । ସେ ଭାବିଲା—''ମୁଁ ବିଷ୍ଣୁଙ୍କ ସଙ୍ଗେ କେଉଁଭଳି ବ୍ୟବହାର କରିବି? ସେ ମୋ ପିତାଙ୍କୁ ମାରି

* କେଦାରେଶସ୍ୟ ଭକ୍ତା ଯେ ମାର୍ଗସ୍ଥାସ୍ତସ୍ୟ ବୈ ମୃତାଃ । ତେଽପି ମୁକ୍ତା ଭବନ୍ତ୍ୟେବ ନାତ୍ର କାର୍ଯ୍ୟା ବିଚାରଣା ॥
(ଶି. ପୁ. କୋଟିରୁ. ସଂ. ୧୯।୨୨)

ପକାଇଲେ । ମୋ ଅଜା ଆଣ ମଧ୍ୟ ତାଙ୍କରି ଭକ୍ତ ହାତରେ ମଲେ । ବିରାଧଙ୍କୁ ମଧ୍ୟ ସେ ମାରି ପକାଇଲେ । ସେ ଆମକୁ ଅନେକ ପ୍ରକାର ଦୁଃଖ ଦେଇଛନ୍ତି । ଯଦି ମୁଁ ମୋ ବାପାଙ୍କର ଠିକ୍ ପୁଅ ହୋଇଥିବି, ତେବେ ଶ୍ରୀହରିଙ୍କୁ ମୁଁ ନିଶ୍ଚୟ କଷ୍ଟ ଦେବି ।''

ଏପରି ସ୍ଥିର କରି ଭୀମ ଘୋର ତପସ୍ୟା କରିବାକୁ ଚାଲିଗଲା । ସେ ବ୍ରହ୍ମାଙ୍କୁ ପ୍ରସନ୍ନ କରିବାକୁ ହଜାରେ ବର୍ଷପର୍ଯ୍ୟନ୍ତ ଘୋର ତପସ୍ୟା କଲା । ତପସ୍ୟା କରିବା ବେଳେ ସେ ମନେ ମନେ ଇଷ୍ଟଦେବଙ୍କୁ ଧ୍ୟାନ କରୁଥିଲା । ଏହାଫଳରେ ଲୋକପିତାମହ ବ୍ରହ୍ମା ତାକୁ ବର ଦେବା ପାଇଁ ଆସିଲେ ଏବଂ ଏହିପରି କହିଲେ—

ବ୍ରହ୍ମା କହିଲେ—ଭୀମ ! ମୁଁ ତୋ ଉପରେ ପ୍ରସନ୍ନ, ତୋର ଯାହା ଇଚ୍ଛା ମାଗ ।

ଭୀମ କହିଲା—ଦେବେଶ୍ୱର ! କମଳାସନ ! ଯଦି ଆପଣ ମୋ ଉପରେ ପ୍ରସନ୍ନ ଏବଂ ମୋତେ ବର ଦେବାକୁ ଚାହାନ୍ତି, ତେବେ ମୋତେ ଏତେ ବଳ ଦିଅନ୍ତୁ, ଯାହାର ତୁଳନା ନ ଥିବ ।

ସୂତ କହୁଛନ୍ତି—ଏପରି କହି ରାକ୍ଷସ ବ୍ରହ୍ମାଙ୍କୁ ନମସ୍କାର କଲା ଏବଂ ବ୍ରହ୍ମା ତାକୁ ତାହାର ଅଭୀଷ୍ଟ ବର ପ୍ରଦାନ କରି ନିଜ ଧାମକୁ ବାହୁଡ଼ିଗଲେ । ବ୍ରହ୍ମାଙ୍କ ଠାରୁ ଅତୁଳନୀୟ ବଳ ପାଇ ସେ ସ୍ୱଗୃହକୁ ଫେରିଗଲା ଏବଂ ମାଆକୁ ପ୍ରଣାମ କରି ବ୍ୟଗ୍ରତାପୂର୍ବକ କହିଲା ''ମାଆ ! ଏଥର ତୁ ମୋର ବଳ ଦେଖ । ମୁଁ ଇନ୍ଦ୍ରାଦି ଦେବତା ତଥା ସେମାନଙ୍କୁ ସହାୟତା କରୁଥିବା ଶ୍ରୀହରିଙ୍କର ଭୟଙ୍କର ସ୍ଥିତି କରିଦେବି ।'' ଏପରି କହି ମହାପରାକ୍ରମୀ ରାକ୍ଷସ ଭୀମ ପ୍ରଥମେ ଇନ୍ଦ୍ରାଦି ଦେବତାଙ୍କୁ ପରାସ୍ତ କରି ସେମାନଙ୍କୁ ସ୍ୱସ୍ଥାନରୁ ତଡ଼ିଦେଲା । ତା'ପରେ ଦେବତାଙ୍କ ପ୍ରାର୍ଥନାକ୍ରମେ ସେମାନଙ୍କ ପକ୍ଷ ନେଉଥିବା ଶ୍ରୀହରିଙ୍କୁ ମଧ୍ୟ ଯୁଦ୍ଧରେ ପରାସ୍ତ କରିଦେଲା । ତା'ପରେ ସେ ପୃଥିବୀବିଜୟରେ ବାହାରି ଗଲା । ସର୍ବପ୍ରଥମେ ସେ କାମରୂପ ଦେଶର ରାଜା ସୁଦକ୍ଷିଣଙ୍କୁ ପରାସ୍ତ କରିବାକୁ ଗଲା । ସେଠାରେ ରାଜାଙ୍କ ସଙ୍ଗେ ତା'ର ଭୀଷଣ ସଂଗ୍ରାମ ହେଲା । ଦୁଷ୍ଟ ଅସୁର ଭୀମ ବ୍ରହ୍ମାଙ୍କ ବର ପ୍ରଭାବରେ ଶିବଙ୍କ ଆଶ୍ରିତ ମହାବୀର ସୁଦକ୍ଷିଣଙ୍କୁ ପରାସ୍ତ କରିଦେଲା ଏବଂ ତାଙ୍କର ସମସ୍ତ ସାମଗ୍ରୀ, ଧନସମ୍ପତ୍ତି ଓ ରାଜ୍ୟ ଛଡ଼ାଇନେଲା । ଶିବଙ୍କର ପ୍ରିୟ ଭକ୍ତ ଧର୍ମପ୍ରେମୀ ପରମ ଧର୍ମାତ୍ମା ରାଜା ସୁଦକ୍ଷିଣଙ୍କ ଗୋଡ଼ରେ ବେଡ଼ି ବାନ୍ଧି ତାଙ୍କୁ ଏକାନ୍ତ ସ୍ଥାନରେ ବନ୍ଦୀ କରି ରଖିଲା । ସେଠାରେ ଭକ୍ତିପରାୟଣ ରାଜା ଶିବଙ୍କର ଉତ୍ତମ ପାର୍ଥିବମୂର୍ତ୍ତି ନିର୍ମାଣ କରି ତାଙ୍କୁ ପୂଜା କରିବା ଆରମ୍ଭ କରିଦେଲେ । ସେ ବାରମ୍ବାର ଗଙ୍ଗାଙ୍କୁ ସ୍ତୁତି କଲେ ଏବଂ ମାନସିକ ସ୍ନାନାଦି କରି ପାର୍ଥିବ ପୂଜନ ବିଧିରେ ଶିବଙ୍କୁ ପୂଜା କଲେ । ବିଧିପୂର୍ବକ ଶିବଙ୍କୁ ଧ୍ୟାନ କରି ସେ ପ୍ରଣବଯୁକ୍ତ ପଞ୍ଚାକ୍ଷରମନ୍ତ୍ର (ଓଁ ନମଃ ଶିବାୟ) ଜପିବାକୁ ଲାଗିଲେ । ସେତେବେଳେ ତାଙ୍କର ଆଉ କିଛି କାମ ନ ଥିଲା । ତାଙ୍କର ସାଧ୍ୱୀ ପତ୍ନୀ ରାଜବଲ୍ଲଭା ଦକ୍ଷିଣା ମଧ୍ୟ ପ୍ରେମପୂର୍ଣ୍ଣ ଚିତ୍ତରେ ପାର୍ଥିବପୂଜନ କରୁଥିଲେ । ରାଜା ଓ ରାଣୀ ଅନନ୍ୟଭାବରେ ଭକ୍ତମଙ୍ଗଳକାରୀ ଶିବଙ୍କୁ ଭଜି ଭଜି ତାଙ୍କରି ଆରାଧନାରେ ଦିନ କାଟୁଥିଲେ । ଏଣେ ରାକ୍ଷସ ଭୀମ ବର-ଅଭିମାନରେ ଯଜ୍ଞାଦି ସମସ୍ତ ଧର୍ମକର୍ମକୁ ଲୋପ କରିବାରେ ଲାଗିଲା ଏବଂ ସମସ୍ତଙ୍କୁ କହିଦେଲା ''ତୁମେମାନେ ସବୁ କିଛି ମୋତେ ଅର୍ପଣ କର ।'' ମହର୍ଷିଗଣ ! ଭୀମ ଦୁରାତ୍ମା ରାକ୍ଷସମାନଙ୍କର ବିଶାଳ ସେନାବାହିନୀକୁ ନେଇ ସମଗ୍ର ପୃଥିବୀକୁ ନିଜର ଅଧିକାରଭୁକ୍ତ କରିନେଲା । ଶକ୍ତିଶାଳୀ ହେବା କାରଣରୁ ସେ ବେଦ, ଶାସ୍ତ୍ର, ସ୍ମୃତି ଓ ପୁରାଣରେ କଥିତ ଧର୍ମକୁ

ଲୋପ କରି ସବୁକିଛି ନିଜେ ଉପଭୋଗ କରିବାକୁ ଲାଗିଲା ।

ଏହାଫଳରେ ସମସ୍ତ ଦେବତା ତଥା ଋଷିଗଣ ଅତ୍ୟନ୍ତ ପୀଡ଼ିତ ହୋଇ ମହାକୋଶୀ ତଟକୁ ଗଲେ ଏବଂ ଶିବଙ୍କୁ ଆରାଧନା ତଥା ସ୍ତୁତି କଲେ । ସେମାନଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ଭଗବାନ ଶିବ ଦେବଗଣଙ୍କୁ କହିଲେ—''ଦେବଗଣ ଓ ଋଷିଗଣ ! ମୁଁ ପ୍ରସନ୍ନ ହୋଇଛି । ବର ମାଗ । ମୁଁ ତୁମମାନଙ୍କର କେଉଁ କାମ ସିଦ୍ଧ କରିବି କୁହ ।''

ଦେବତାମାନେ କହିଲେ—ଦେବବର ! ଆପଣ ତ ଅନ୍ତର୍ଯାମୀ, ତେଣୁ ସମସ୍ତଙ୍କ ମନର କଥା ଜାଣନ୍ତି । ଆପଣଙ୍କୁ କ'ଣ ଅବା ଅଛପା ଅଛି? ପ୍ରଭୋ ! ମହେଶ୍ୱର ! କୁମ୍ଭକର୍ଣ୍ଣ ଔରସରୁ ଉପନ୍ନ କର୍କଟୀର ବଳବାନ୍ ପୁତ୍ର ରାକ୍ଷସ ଭୀମ ବ୍ରହ୍ମାଙ୍କ ବର ହେତୁ ଶକ୍ତିଶାଳୀ ହୋଇ ଦେବତାଙ୍କୁ ନିରନ୍ତର କଷ୍ଟ ଦେଉଛି । ତେଣୁ ଆପଣ ସେହି ଦୁଃଖଦାୟୀ ରାକ୍ଷସକୁ ବିନାଶ କରନ୍ତୁ । ଆମ ଉପରେ କୃପା କରନ୍ତୁ । ଆଉ ବିଳମ୍ବ କରନ୍ତୁ ନାହିଁ ।

ଶମ୍ଭୁ କହିଲେ—ଦେବଗଣ ! କାମରୂପ ଦେଶର ରାଜା ସୁଦକ୍ଷିଣ ମୋର ଶ୍ରେଷ୍ଠ ଭକ୍ତ । ତାକୁ ମୋର ଗୋଟିଏ ସନ୍ଦେଶ ଶୁଣାଇଦିଅ । ଏହାପରେ ତୁମର ସମସ୍ତ କାର୍ଯ୍ୟ ଶୀଘ୍ର ପୂରଣ ହେଇଯିବ । ତାକୁ କହିବ ଯେ ଶିବ ତୁମକୁ କହିଛନ୍ତି—''ହେ କାମରୂପ ଦେଶର ଅଧିପତି ! ମହାରାଜ ସୁଦକ୍ଷିଣ ! ତୁମେ ମୋର ବହୁତ ବଡ଼ ଭକ୍ତ । ତେଣୁ ପ୍ରେମପୂର୍ବକ ମୋତେ ଭଜୁଥାଅ । ଦୁଷ୍ଟ ରାକ୍ଷସ ଭୀମ ବ୍ରହ୍ମାଙ୍କ ବରରେ ବଳୀୟାନ୍ ହୋଇଯାଇଛି । ତେଣୁ ସେ ତୁମର ତିରସ୍କାର କରିଛି । ମାତ୍ର ଏବେ ମୁଁ ସେହି ଦୁଷ୍ଟକୁ ନିଶ୍ଚୟ ମାରି ପକାଇବି, ଏ ବିଷୟରେ ମନରେ ସନ୍ଦେହ କର ନାହିଁ ।''

ସୂତ କହୁଛନ୍ତି—ବ୍ରାହ୍ମଣବୃନ୍ଦ! ଦେବଗଣ ପ୍ରସନ୍ନ ମନରେ ଯାଇ ମହାରାଜ ସୁଦକ୍ଷିଣଙ୍କୁ ଶିବଙ୍କର ସନ୍ଦେଶ ଶୁଣାଇଦେଲେ । ଏପରି ସନ୍ଦେଶ ଦେବା ଦ୍ୱାରା ଦେବତା ଓ ମହର୍ଷିଙ୍କୁ ବହୁତ ଆନନ୍ଦ ମିଳିଲା । ସମାଗ୍ରର ଦେଇସାରି ସେମାନେ ନିଜ ନିଜ ଆଶ୍ରମକୁ ଫେରିଗଲେ ।

ଏଣେ ଭଗବାନ ଶିବ ମଧ୍ୟ ତାଙ୍କ ଗଣମାନଙ୍କୁ ସଙ୍ଗରେ ଧରି ଲୋକହିତ କାମନାରେ ଓ ଭକ୍ତର ରକ୍ଷା ନିମନ୍ତେ ସାଦରେ ରାଜାଙ୍କ ପାଖକୁ ଗଲେ ଏବଂ ଗୁପ୍ତରୂପେ ସେଠାରେ ରହିଲେ । ଏତିକିବେଳେ କାମରୂପନରେଶ ପାର୍ଥିବ ଶିବଲିଙ୍ଗ ସମ୍ମୁଖରେ ପ୍ରଗାଢ଼ ଧ୍ୟାନରେ ଲୀନ ହୋଇଗଲେ । ଏହା ଦେଖି କେହି ଯାଇ ରାକ୍ଷସକୁ କହିଦେଲା ଯେ ରାଜା ତୁମର ବିନାଶ ପାଇଁ କିଛି ଗୋଟାଏ ପୁରଶ୍ଚରଣ କରୁଛନ୍ତି ।

ଏ ଖବର ପାଇବା ମାତ୍ରେ ରାକ୍ଷସ କୁପିତ ହୋଇଗଲା । ସେ ରାଜାଙ୍କୁ ମାରି ପକାଇବା ପାଇଁ ଉନ୍ମୁକ୍ତ ତରବାରି ଧରି ରାଜାଙ୍କ ନିକଟକୁ ମାଡ଼ିଆସିଲା । ସେଠାରେ ପାର୍ଥିବପୂଜା ପାଇଁ ଯାହା କିଛି ସାମଗ୍ରୀ ରଖା ଯାଇଥିଲା, ସେଗୁଡ଼ିକୁ ଦେଖି ତା'ର ବିଶ୍ୱାସ ହୋଇଗଲା ଯେ ପ୍ରକୃତରେ ରାଜା ତା' ବିରୁଦ୍ଧରେ କିଛି କରୁଛି ।

ତେଣୁ ସେ ରାଜାଙ୍କୁ ଓ ତାଙ୍କର ସମସ୍ତ ସାମଗ୍ରୀକୁ ବଳପୂର୍ବକ ଅବିଳମ୍ବେ ନଷ୍ଟଭ୍ରଷ୍ଟ କରିଦେବାକୁ ମନ ମଧ୍ୟରେ ସ୍ଥିର କରି ପ୍ରଥମେ ରାଜାଙ୍କୁ ବହୁତ ଗାଳି ଦେଲା ଏବଂ ପଚାରିଲା ''ତୁ କ'ଣ କରୁଛୁ?'' ରାଜା ଭଗବାନଙ୍କ ଉପରେ ନିଜ ରକ୍ଷାର ଭାର ଛାଡ଼ିଦେଇ କହିଲେ—''ମୁଁ ଚରାଚର ଜଗତର ସ୍ୱାମୀ ଭଗବାନ ଶିବଙ୍କୁ ପୂଜା କରୁଛି ।'' ରାକ୍ଷସ ଭୀମ ଶିବଙ୍କ ପ୍ରତି ବହୁତ ତିରସ୍କାରପୂର୍ଣ୍ଣ ବାକ୍ୟ ଓ ଦୁର୍ବଚନ ପ୍ରୟୋଗ କରିବା ସହ ରାଜାଙ୍କୁ ଧମକାଇଲା ଏବଂ ପାର୍ଥିବ ଲିଙ୍ଗ ଉପରେ ଆଘାତ କରିବାକୁ ତରବାରି ଉଠାଇଲା । ତରବାରି ସେହି ଲିଙ୍ଗରେ ବାଜିବା ପୂର୍ବରୁ ସେଠାରେ ସାକ୍ଷାତ୍ ହର

ପ୍ରକଟ ହୋଇଗଲେ ଏବଂ କହିଲେ—''ମୁଁ ଭୀମଶଙ୍କର, ମୁଁ ମୋ ଭକ୍ତର ରକ୍ଷା ପାଇଁ ପ୍ରକଟ ହୋଇଛି । ଭକ୍ତଙ୍କୁ ରକ୍ଷା କରିବା ମୋର ବ୍ରତ । ଏବେ ମୋ ବଳ ଦେଖ ।''

ଏତିକି କହି ଭଗବାନ ଆପଣା ପିନାକ ଦ୍ୱାରା ତା' ତରବାରିକୁ ଦୁଇ ଖଣ୍ଡ କରିଦେଲେ । ଏହାପରେ ରାକ୍ଷସ ତା'ର ତ୍ରିଶୂଳ ପ୍ରୟୋଗ କଲା, ମାତ୍ର ଶମ୍ଭୁ ତାହାକୁ ମଧ୍ୟ ଶହ ଶହ ଖଣ୍ଡ କରିଦେଲେ । ଏହାପରେ ଶିବଙ୍କ ସଙ୍ଗେ ତା'ର ଘୋର ଯୁଦ୍ଧ ହେଲା; ଏହା ଫଳରେ ସମଗ୍ର ଜଗତ କ୍ଷୁବ୍ଧ ହୋଇ ଉଠିଲା । ଏଣୁ ନାରଦ ଯାଇ ଶିବଙ୍କୁ ପ୍ରାର୍ଥନା କଲେ ।

ନାରଦ କହିଲେ—ହେ ଲୋକ-ବିଭ୍ରମକାରୀ ମହେଶ୍ୱର ! ପ୍ରଭୋ ! କ୍ଷମା କରନ୍ତୁ, କ୍ଷମା କରନ୍ତୁ । ତୃଣଟିକୁ କାଟିବାକୁ କୁରାଢ଼ି କ'ଣ ଦରକାର? ଶୀଘ୍ର ଏହାକୁ ସଂହାର କରନ୍ତୁ ।

ନାରଦ ଏପରି ପ୍ରାର୍ଥନା କରିବାରୁ ଭଗବାନ ଶମ୍ଭୁ ହୁଙ୍କାରମାତ୍ରକେ ସେହି ରାକ୍ଷସକୁ ଭସ୍ମ କରିଦେଲେ । ମୁନେ ! ସକଳ ଦେବତା ଦେଖୁ ଦେଖୁ ଶିବ ସେଠାରେ ସମସ୍ତ ରାକ୍ଷସଙ୍କୁ ମଧ୍ୟ ପୋଡ଼ି ପକାଇଲେ । ଭଗବାନ ଶଙ୍କରଙ୍କ କୃପାରେ ଇନ୍ଦ୍ରାଦି ଦେବତା ଓ ମୁନୀଶ୍ୱରଙ୍କୁ ଶାନ୍ତି ମିଳିଲା ଏବଂ ସମଗ୍ର ଜଗତ ସୁସ୍ଥ ହେଲା । ସେତେବେଳେ ଦେବଗଣ ଓ ମୁନିଗଣ ଶିବଙ୍କୁ ବିଶେଷରୂପେ ପ୍ରାର୍ଥନା କଲେ, ''ପ୍ରଭୋ ! ଆପଣ ଏଠାରେ ଲୋକମାନଙ୍କୁ ସୁଖ ଦେବାକୁ ସଦା ନିବାସ କରନ୍ତୁ । ଏ ଦେଶ ନିନ୍ଦିତ ବୋଲି ଧରାଯାଇଛି, ଏଠାକୁ ଆସୁଥିବା ଲୋକଙ୍କୁ ପ୍ରାୟ ଦୁଃଖ ଭୋଗିବାକୁ



ପଡ଼ିଥାଏ; ମାତ୍ର ଆପଣଙ୍କ ଦର୍ଶନ ପାଇ ଏ ସମସ୍ତଙ୍କର କଲ୍ୟାଣ ହୋଇଯିବ । ଆପଣ ଭୀମଶଙ୍କର ନାମରେ ବିଖ୍ୟାତ ହେବେ ଏବଂ ସମସ୍ତଙ୍କ ମନୋରଥ ପୂର୍ଣ୍ଣ କରିବେ । ଆପଣଙ୍କର ଏ ଜ୍ୟୋତିର୍ଲିଙ୍ଗ ସଦା ପୂଜନୀୟ ଓ ସମସ୍ତ ବିପତ୍ତିର ବିନାଶକାରୀ ହେବ ।''

ସୂତ କହୁଛନ୍ତି—ବ୍ରାହ୍ମଣବୃନ୍ଦ ! ସେମାନଙ୍କ ପ୍ରାର୍ଥନାକ୍ରମେ ଲୋକହିତକାରୀ ଏବଂ ଭକ୍ତବତ୍ସଳ ପରମ ସ୍ୱତନ୍ତ୍ର ଶିବ ପ୍ରସନ୍ନତାପୂର୍ବକ ସେହିଠାରେ ଅବସ୍ଥାନ କଲେ । (ଅଧ୍ୟାୟ ୧୯–୨୧)

***

## ବିଶ୍ୱେଶ୍ୱର ଜ୍ୟୋତିର୍ଲିଙ୍ଗ ଏବଂ ତାହାର ମହିମା ପ୍ରସଙ୍ଗରେ ପଞ୍ଚକୋଶୀର ମହତ୍ତ୍ୱ ପ୍ରତିପାଦନ

ସୂତ କହୁଛନ୍ତି—ମୁନୀଶ୍ୱରବୃନ୍ଦ ! ଏବେ ମୁଁ କାଶୀର ବିଶ୍ୱେଶ୍ୱର ନାମକ ଜ୍ୟୋତିର୍ଲିଙ୍ଗଙ୍କ ମାହାତ୍ମ୍ୟ କହିବି, ଯାହା କି ମହାପାତକ ନାଶକ । ତୁମେମାନେ ମନ ଦେଇ ଶୁଣ । ଏ ଭୂପୃଷ୍ଠରେ ଯାହା କିଛି ଦୃଷ୍ଟିଗୋଚର ହୁଏ, ସବୁକିଛି ସଚ୍ଚିଦାନନ୍ଦସ୍ୱରୂପ, ନିର୍ବିକାର ଓ ସନାତନ ବ୍ରହ୍ମରୂପ

ଅଟେ । ନିଜ କୈବଲ୍ୟ (ଅଦ୍ୱୈତ) ଭାବରେ ହିଁ ରମଣ କରୁଥିବା ସେହି ଅଦ୍ୱିତୀୟ ପରମାତ୍ମାଙ୍କ ଠାରେ ଏକଦା ଏକରୁ ଦୁଇ ହୋଇ ଯିବାକୁ ଇଚ୍ଛା ହେଲା।* ପରମାତ୍ମା ସଗୁଣରୂପରେ ପ୍ରକଟ ହୋଇ ଶିବ ବୋଲାଇଲେ । ପୁଣି ସେହି ଶିବ ହିଁ ପୁରୁଷ ଓ ସ୍ତ୍ରୀ ରୂପରେ ପ୍ରକଟ ହୋଇଗଲେ । ସେ ଦୁହିଙ୍କ ମଧ୍ୟରୁ ପୁରୁଷର ନାମ ହେଲା 'ଶିବ' ଏବଂ ସ୍ତ୍ରୀର ନାମ ହେଲା 'ଶକ୍ତି' । ଉକ୍ତ ଚିଦାନନ୍ଦସ୍ୱରୂପ ଶିବ ଓ ଶକ୍ତି ସ୍ୱୟଂ ଅଦୃଷ୍ଟ ରହି ସ୍ୱଭାବରୁ ଦୁଇଟି ଚେତନ (ପ୍ରକୃତି ଓ ପୁରୁଷ)କୁ ସୃଷ୍ଟି କଲେ । ମୁନିବର ! କିନ୍ତୁ ସେତେବେଳେ ପ୍ରକୃତି ଓ ପୁରୁଷ ସେଠାରେ ନିଜର ସେହି ସ୍ରଷ୍ଟା ମାତାପିତାଙ୍କୁ ଦେଖିବାକୁ ନ ପାଇ ଘୋର ସଂଶୟରେ ପଡ଼ିଗଲେ । ସେତେବେଳେ ନିର୍ଗୁଣ ପରମାତ୍ମାଙ୍କ ଠାରୁ ଏହିପରି ଆକାଶବାଣୀ ହେଲା– ''ତୁମେ ଦୁହେଁ ତପସ୍ୟା କର । ଏହାପରେ ତୁମଠାରୁ ପରମ ଉତ୍କୃଷ୍ଟ ସୃଷ୍ଟିର ବିସ୍ତାର ହେବ ।''

ପ୍ରକୃତି ଓ ପୁରୁଷ କହିଲେ–ପ୍ରଭୋ ! ଶିବ ! ତପସ୍ୟା ପାଇଁ ତ କୌଣସି ସ୍ଥାନ ଥିବା ଦରକାର, ତାହା ତ ନାହିଁ; ତେବେ ଆପଣଙ୍କ ଆଦେଶରେ ଆମେ କେଉଁଠି ରହି ତପସ୍ୟା କରିବୁ?

ଏହାପରେ ନିର୍ଗୁଣ ଶିବ ସମଗ୍ର ତେଜର ସାରଭୂତ ତଥା ପାଞ୍ଚକୋଶ ଦୈର୍ଘ୍ୟ-ପ୍ରସ୍ଥବିଶିଷ୍ଟ ଗୋଟିଏ ଶୁଭ ଓ ସୁନ୍ଦର ନଗର ନିର୍ମାଣ କଲେ, ଯାହାକି ଥିଲା ତାଙ୍କରି ସ୍ୱରୂପ । ସେହି ନଗର ସମସ୍ତ ପ୍ରକାର ଆବଶ୍ୟକ ଉପକରଣରେ ସମ୍ପନ୍ନ ଥିଲା । ଏପରି ନଗରଟିଏ ନିର୍ମାଣ କରି ପ୍ରଭୁ ତାହାକୁ ସେ ଦୁହିଙ୍କ ପାଇଁ ପଠାଇଲେ । ନଗରଟି ଆକାଶମାର୍ଗରେ ସେହି ପୁରୁଷ ପାଖକୁ ଚ୍ଚାଲିଗଲା । ସେତେବେଳେ ପୁରୁଷ ବା ଶ୍ରୀହରି ସେହି ନଗରରେ ସ୍ଥିତ ହୋଇ ସୃଷ୍ଟିକାମନାରେ ଶିବଙ୍କୁ ଧ୍ୟାନ କରି କରି ବହୁତ ବର୍ଷ ପର୍ଯ୍ୟନ୍ତ ତପସ୍ୟା କଲେ । ସେତେବେଳେ ପରିଶ୍ରମ ହେତୁ ତାଙ୍କ ଶରୀରରୁ ଶ୍ୱେତଜଳର ଅନେକ ଧାରା ଉତ୍ପନ୍ନ ହୋଇଗଲା, ଯେଉଁଥିରେ ସମଗ୍ର ଶୂନ୍ୟ ଆକାଶ ବ୍ୟାପ୍ତ ହୋଇଗଲା । ସେତେବେଳେ ସେଠାରେ ଆଉ କିଛି ବି ଦିଶୁ ନ ଥିଲା । ତାହାକୁ ଦେଖି ଭଗବାନ ବିଷ୍ଣୁ ମନେ ମନେ କହି ଉଠିଲେ–ଏ କି ଅଦ୍ଭୁତ ବସ୍ତୁ ଦେଖାଯାଉଛି? ଏହି ଆଶ୍ଚର୍ଯ୍ୟକୁ ଦେଖି ସେ ନିଜ ମୁଣ୍ଡକୁ ହଲାଇଦେଲେ; ଏହାଫଳରେ ପ୍ରଭୁଙ୍କ ସମ୍ମୁଖରେ ହିଁ ତାଙ୍କର ଗୋଟିଏ କାନରୁ ମଣିଟିଏ ଖସିପଡ଼ିଲା । ଯେଉଁ ସ୍ଥାନରେ ସେ ମଣିଟି ପଡ଼ିଲା, ତାହା ମଣିକର୍ଣ୍ଣିକା ନାମକ ମହାନ୍ ତୀର୍ଥରେ ପରିଣତ ହେଲା । ପୂର୍ବୋକ୍ତ ଜଳରାଶିରେ ସମଗ୍ର ପଞ୍ଚକୋଶୀ ବୁଡ଼ିଯିବାକୁ ବସିବାରୁ ନିର୍ଗୁଣ ଶିବ ଅତିଶୀଘ୍ର ତାହାକୁ ନିଜ ତ୍ରିଶୂଳରେ ଉଠାଇ ରଖିଲେ । ଏହାପରେ ବିଷ୍ଣୁ ତାଙ୍କ ପତ୍ନୀ ପ୍ରକୃତି ସହିତ ସେଠାରେ ଶୋଇଗଲେ । ସେଠାରେ ତାଙ୍କ ନାଭିରୁ ଗୋଟିଏ ପଦ୍ମ ପ୍ରକଟିତ ହେଲା ଏବଂ ସେହି ପଦ୍ମରୁ ବ୍ରହ୍ମା ଉତ୍ପନ୍ନ ହେଲେ । ତାଙ୍କ ଉତ୍ପତ୍ତିରେ ମଧ୍ୟ ଶିବଙ୍କ ଆଦେଶ ହିଁ କାରଣ ଥିଲା । ଏହାପରେ ବ୍ରହ୍ମା ଶିବଙ୍କ ଆଜ୍ଞାକ୍ରମେ ଅଦ୍ଭୁତ ସୃଷ୍ଟି ରଚନା ଆରମ୍ଭ କଲେ । ସେ ବ୍ରହ୍ମାଣ୍ଡରେ ଚଉଦ ଭୁବନ ନିର୍ମାଣ କଲେ । ମହର୍ଷିମାନେ ବ୍ରହ୍ମାଣ୍ଡର ବିସ୍ତାର ପଚ୍ଚାଶ କୋଟି ଯୋଜନ ବୋଲି କହିଛନ୍ତି । ଏହାପରେ ଶିବ ଭାବିଲେ ଯେ ''ବ୍ରହ୍ମାଣ୍ଡ ଭିତରେ କର୍ମପାଶରେ ଆବଦ୍ଧ ପ୍ରାଣୀ ମୋତେ କିପରି ପାଇବେ?'' ଏହା ଭାବି ସେ ମୁକ୍ତିଦାୟିନୀ ପଞ୍ଚକୋଶୀକୁ ଏ ଜଗତରେ ରଖିଦେଲେ ।

''ଏହି ପଞ୍ଚକୋଶୀ କାଶୀକୁ ଜଗତରେ କଲ୍ୟାଣଦାୟିନୀ, କର୍ମବନ୍ଧନ ବିନାଶକାରିଣୀ,

* 'ସ ଦ୍ୱିତୀୟମୈଚ୍ଛତ୍' (ବୃହଦାରଣ୍ୟକ ଉ.–୧ ।୪ । ୩) ଏହି ଶ୍ରୁତିବାକ୍ୟରୁ ମଧ୍ୟ ଏକଥା ସିଦ୍ଧ ହୁଏ ।

ଜ୍ଞାନଦାତ୍ରୀ ଓ ମୋକ୍ଷତତ୍ତ୍ୱ ପ୍ରକାଶିନୀ ବୋଲି ଧରାଯାଇଛି । ତେଣୁ ଏହି ପୁରୀ ମୋର ପରମ ପ୍ରିୟ । ଏଠାରେ ସ୍ୱୟଂ ପରମାତ୍ମା 'ଅବିମୁକ୍ତ' ଲିଙ୍ଗ ସ୍ଥାପନା କରିଛନ୍ତି । ତେଣୁ ମୋର ଅଂଶଭୂତ ହରେ ! ତୁମେ କଦାପି ଏ କ୍ଷେତ୍ରକୁ ପରିତ୍ୟାଗ କରିବା ଉଚିତ ନୁହେଁ ।" ଏପରି କହି ଭଗବାନ ହର କାଶୀପୁରୀକୁ ସ୍ୱୟଂ ନିଜ ତ୍ରିଶୂଳରୁ ଓହ୍ଲାଇ ଦେଇ ମର୍ତ୍ତ୍ୟଲୋକରେ ସ୍ଥାପିତ କଲେ । ବ୍ରହ୍ମାଙ୍କର ଗୋଟିଏ ଦିନ ପୂରିଗଲେ ଯେତେବେଳେ ସମଗ୍ର ଜଗତର ପ୍ରଳୟ ହୁଏ, ସେତେବେଳେ ମଧ୍ୟ ଏ କାଶୀପୁରୀ ନଷ୍ଟ ହୁଏ ନାହିଁ । ସେତେବେଳେ ଭଗବାନ ଶିବ ଏହାକୁ ତ୍ରିଶୂଳ ଉପରେ ଧାରଣ କରି ରଖନ୍ତି ଏବଂ ବ୍ରହ୍ମାଙ୍କ ଦ୍ୱାରା ପୁନଃ ସୃଷ୍ଟି ସର୍ଜନା ହେଲା ପରେ ତାହାକୁ ଭୂପୃଷ୍ଠରେ ପୁନଃ ସ୍ଥାପିତ କରିଦିଅନ୍ତି । କର୍ମକୁ କର୍ଷଣ କରୁଥିବାରୁ ଏହାକୁ 'କାଶୀ' କହନ୍ତି । କାଶୀରେ ଅବିମୁକ୍ତେଶ୍ୱର-ଲିଙ୍ଗ ସଦା ବିରାଜମାନ ରହେ । ତାହା ମହାପାତକୀ ଲୋକଙ୍କୁ ମଧ୍ୟ ମୋକ୍ଷ ପ୍ରଦାନ କରିଥାଏ । ମୁନୀଶ୍ୱରବୃନ୍ଦ ! ଅନ୍ୟ ମୋକ୍ଷଦାୟକ ଧାମରେ ସାରୂପ୍ୟ ଆଦି ମୁକ୍ତି ପ୍ରାପ୍ତ ହୁଏ । କେବଳ କାଶୀରେ ହିଁ ଜୀବଙ୍କୁ ସାଯୁଜ୍ୟ ନାମକ ସର୍ବୋତ୍ତମ ମୁକ୍ତି ସୁଲଭ ହୋଇଥାଏ । ଯାହାଙ୍କର କୌଣସି ଗତି ନାହିଁ, ତାଙ୍କ ପାଇଁ ବାରାଣସୀ ପୁରୀ ହିଁ ଗତି । ମହାପୁଣ୍ୟମୟୀ ପଞ୍ଚକୋଶୀ କୋଟିହତ୍ୟାର ଦୋଷ ନାଶ କରିଥାଏ । ଏଠାରେ ସକଳ ଅମରଗଣ ମଧ୍ୟ ମରିବାକୁ ଇଚ୍ଛା କରିଥାନ୍ତି; ପୁଣି ଅନ୍ୟମାନଙ୍କ କଥା ବା କ'ଣ କହିବା ! ଶଙ୍କରଙ୍କ ପ୍ରିୟ ଏହି କାଶୀ ନଗରୀ ସଦା ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ ।

ହେ ମହର୍ଷିବୃନ୍ଦ! କୈଳାସପତିଙ୍କୁ ଭିତରେ ସତ୍ତ୍ୱଗୁଣୀ ଓ ବାହାରେ ତମୋଗୁଣୀ କୁହାଯାଏ । ସେ କାଳାଗ୍ନି ରୁଦ୍ର ରୂପରେ ବିଖ୍ୟାତ । ସେ ନିର୍ଗୁଣ ହୋଇ ମଧ୍ୟ ସଗୁଣରୂପରେ ପ୍ରକଟିତ ଶିବ ଅଟନ୍ତି । ସେ ବାରମ୍ବାର ପ୍ରଣାମ କରି ନିର୍ଗୁଣ ଶିବଙ୍କୁ ଏପରି କହିଲେ—

ରୁଦ୍ର କହିଲେ—ବିଶ୍ୱନାଥ ! ମହେଶ୍ୱର ! ଏଥିରେ ତିଳେମାତ୍ର ସଂଶୟ ନାହିଁ ଯେ ମୁଁ ଆପଣଙ୍କର । ହେ ସାମ୍ବ ମହାଦେବ ! ମାଦୃଶ ଆତ୍ମଜ ଉପରେ କୃପା କରନ୍ତୁ । ଜଗତ୍ପତେ ! ଲୋକହିତ କାମନାରେ ଆପଣଙ୍କୁ ସଦା ଏଠାରେ ରହିବା ଉଚିତ । ଜଗନ୍ନାଥ ! ମୁଁ ଆପଣଙ୍କୁ ପ୍ରାର୍ଥନା କରୁଛି ଯେ ଆପଣ ଏଠାରେ ରହି ଜୀବଙ୍କର ଉଦ୍ଧାର କରନ୍ତୁ ।



ସୂତ କହୁଛନ୍ତି—ଏହାପରେ ମନ ଓ ଇନ୍ଦ୍ରିୟଙ୍କୁ ନିଜ ବଶରେ ରଖିଥିବା ଅବିମୁକ୍ତ ମଧ୍ୟ ଶିବଙ୍କୁ ଅଶ୍ରୁଳନୟନରେ ବାରମ୍ବାର ପ୍ରାର୍ଥନା କରି ପ୍ରସନ୍ନତାପୂର୍ବକ କହିଲେ—

ଅବିମୁକ୍ତ କହିଲେ—ହେ ଦେବାଧିଦେବ ମହାଦେବ ! ଆପଣ କାଳରୂପୀ ରୋଗ ପାଇଁ ସୁନ୍ଦର ଔଷଧସ୍ୱରୂପ । ଆପଣ ତ୍ରିଲୋକର ସ୍ୱାମୀ ତଥା ବ୍ରହ୍ମା ଓ ବିଷ୍ଣୁ ଆଦିଙ୍କ ଦ୍ୱାରା ମଧ୍ୟ ସେବନୀୟ । ହେ ଦେବ ! ଆପଣ କାଶୀପୁରୀକୁ

ଆପଣା ରାଜଧାନୀରୂପେ ଗ୍ରହଣ କରନ୍ତୁ । ମୁଁ ଅଚିନ୍ତ୍ୟ ସୁଖପ୍ରାପ୍ତି ପାଇଁ ଏଠାରେ ସଦା ଆପଣଙ୍କୁ ଧ୍ୟାନ କରି କରି ସ୍ଥିରଭାବରେ ବସି ରହିବି । ଆପଣ ହିଁ ମୁକ୍ତିଦାତା ଓ ସମସ୍ତ କାମନା ପୂର୍ଣ୍ଣକାରୀ । ଏପରି ଅନ୍ୟ କେହି ନାହିଁ । ତେଣୁ ଆପଣ ପରୋପକାର ନିମନ୍ତେ ଉମାଙ୍କ ସମେତ ସଦା ଏଠାରେ ବିରାଜମାନ କରନ୍ତୁ । ସଦାଶିବ ! ଆପଣ ସମସ୍ତ ଜୀବଙ୍କୁ ସଂସାର-ସାଗରରୁ ପାର କରନ୍ତୁ? ହର ! ମୁଁ ବାରମ୍ବାର ପ୍ରାର୍ଥନା କରୁଛି ଯେ ଆପଣ ଭକ୍ତଜନଙ୍କର କାର୍ଯ୍ୟ ସାଧିତ କରନ୍ତୁ ।

ସୂତ କହୁଛନ୍ତି—ବ୍ରାହ୍ମଣବୃନ୍ଦ ! ବିଶ୍ୱନାଥ ଶଙ୍କର ଏପରି ପ୍ରାର୍ଥନା କରିବାରୁ ସର୍ବେଶ୍ୱର ଶିବ ସମଗ୍ର ଜଗତର ହିତ ନିମନ୍ତେ ସେଠାରେ ବିରାଜମାନ ହୋଇଗଲେ । ଯେଉଁଦିନ ଠାରୁ ଭଗବାନ ଶିବ କାଶୀକୁ ଆସିଲେ, ସେହି ଦିନରୁ କାଶୀ ସର୍ବଶ୍ରେଷ୍ଠ ପୁରୀ ହୋଇଗଲା । (ଅଧ୍ୟାୟ ୨୨)



## ବାରାଣସୀକ୍ଷେତ୍ରର ତଥା ବିଶ୍ୱେଶ୍ୱରଙ୍କର ମାହାତ୍ମ୍ୟ

ସୂତ କହୁଛନ୍ତି—ହେ ମୁନୀଶ୍ୱରଗଣ ! ମୁଁ ସଂକ୍ଷେପରେ ହିଁ ବାରାଣସୀର ତଥା ବିଶ୍ୱେଶ୍ୱରଙ୍କର ପରମ ସୁନ୍ଦର ମାହାତ୍ମ୍ୟ ବର୍ଣ୍ଣନା କରୁଛି, ଶୁଣ । ଥରେ ପାର୍ବତୀଦେବୀ ଲୋକହିତ କାମନାରେ ଅତି ପ୍ରସନ୍ନତାର ସହିତ ଶିବଙ୍କୁ ଅବିମୁକ୍ତ କ୍ଷେତ୍ର ଓ ଅବିମୁକ୍ତ ଲିଙ୍ଗର ମାହାତ୍ମ୍ୟ ବିଷୟରେ ପଚ୍ଚାରିଲେ ।

ପରମେଶ୍ୱର ଶିବ କହିଲେ—ଏ ବାରାଣସୀ ପୁରୀ ସଦାକାଳ ପାଇଁ ମୋର ଗୁହ୍ୟତମ କ୍ଷେତ୍ର ଓ ସମସ୍ତ ଜୀବଙ୍କର ମୁକ୍ତିର ହେତୁ ଅଟେ । ଏ କ୍ଷେତ୍ରରେ ସିଦ୍ଧଗଣ ସଦା ମୋ ବ୍ରତର ଆଶ୍ରୟ ନେଇ ନାନା ପ୍ରକାର ବେଶ ଧାରଣ କରି ମୋ ଧାମକୁ ଯିବା ଇଚ୍ଛାରେ ଜିତାତ୍ମା ଓ ଜିତେନ୍ଦ୍ରିୟ ହୋଇ ନିତ୍ୟ ମହାଯୋଗର ଅଭ୍ୟାସ କରନ୍ତି । ସେହି ଉତ୍ତମ ମହାଯୋଗର ନାମ ପାଶୁପତ ଯୋଗ । ତାହା ଶ୍ରୁତିଦ୍ୱାରା ପ୍ରତିପାଦିତ । ତାହା ଭୋଗ ଓ ମୋକ୍ଷରୂପୀ ଫଳ ପ୍ରଦାନ କରିଥାଏ । ହେ ମହେଶ୍ୱରୀ ! ବାରାଣସୀପୁରୀରେ ନିବାସ କରିବା ମୋତେ ସବୁବେଳେ ଭଲ ଲାଗିଥାଏ । ଯେଉଁ କାରଣରୁ ମୁଁ ସବୁକିଛି ଛାଡ଼ି କାଶୀରେ ରହେ, ତାହା କହୁଛି ଶୁଣ । ଯେ ମୋର ଭକ୍ତ ଏବଂ ଯେ ମୋ ତତ୍ତ୍ୱର ଜ୍ଞାତା, ସେ ଦୁହେଁ ଅବଶ୍ୟ ମୋକ୍ଷର ଭାଗୀ ହୋଇଥାନ୍ତି । ସେମାନଙ୍କ ପାଇଁ ତୀର୍ଥର ଆବଶ୍ୟକତା ନାହିଁ । ବିହିତ ଓ ଅବିହିତ ଉଭୟ ପ୍ରକାର କର୍ମ ସେମାନଙ୍କ ପାଇଁ ସମାନ । ସେମାନଙ୍କୁ ଜୀବନ୍ମୁକ୍ତ ବୋଲି ବୁଝିବା ଉଚିତ । ସେମାନେ ଯେଉଁଠି ମଲେ ବି ଅବିଳମ୍ବେ ମୁକ୍ତି ଲାଭ କରିଥାନ୍ତି । ମୁଁ ଏହା ନିଶ୍ଚିତ କରି କହୁଛି । ହେ ସର୍ବୋତ୍ତମ ଶକ୍ତି ଉମେ ! ଏ ପରମ ଉତ୍ତମ ଅବିମୁକ୍ତ ତୀର୍ଥରେ ଯାହା ବିଶେଷ କଥା, ତାହା କହୁଛି ମନ ଲଗାଇ ଶୁଣ । ବ୍ୟକ୍ତି ଯେକୌଣସି ବର୍ଣ୍ଣ ଓ ଆଶ୍ରମର ହୋଇଥାଉ ଏବଂ ସେ ବାଳକ, ଯୁବକ, ବୃଦ୍ଧ ଯେକୌଣସି ବୟସର ହୋଇଥାଉ, ସେ ଏହି ପୁରୀରେ ମୃତ୍ୟୁବରଣ କଲେ ନିଃସନ୍ଦେହରେ ମୁକ୍ତ ହୋଇଯାଏ । ନାରୀ ପବିତ୍ର ହୋଇଥାଉ ବା ଅପବିତ୍ର ହୋଇଥାଉ, କୁମାରୀ ହୋଇଥାଉ କି ବିବାହିତା ହୋଇଥାଉ, ବିଧବା ହୋଇଥାଉ କି ବନ୍ଧ୍ୟା ହୋଇଥାଉ, ଅଥବା ରଜସ୍ୱଳା, ପ୍ରସୂତା, ସଂସ୍କାରବିହୀନା ବା ଯେଉଁପରି ହୋଇଥାଉ ନା କାହିଁକି, ସେ ଯଦି ଏ କ୍ଷେତ୍ରରେ ମରେ, ତେବେ ସେ ଅବଶ୍ୟ ମୋକ୍ଷଭାଗିନୀ ହୁଏ । ସ୍ୱେଦଜ, ଅଣ୍ଡଜ, ଉଦ୍ଭିଜ୍ଜ ଅଥବା ଜରାୟୁଜ ପ୍ରାଣୀ ମଧ୍ୟ ଏଠାରେ ମରି ଯେପରି ମୋକ୍ଷ ପାଏ, ସେପରି ଆଉ କେଉଁଠି ପାଇପାରେ ନାହିଁ ।

ହେ ଦେବୀ ! ଏଠାରେ ମରୁଥିବା ପ୍ରାଣୀର ମୋକ୍ଷ ପାଇଁ ଜ୍ଞାନ, ଭକ୍ତି, କର୍ମ, ଦାନ, ସଂସ୍କୃତି, ଧର୍ମ, ନାମକୀର୍ତ୍ତନ, ପୂଜନ ଓ ଉତ୍ତମ ଜାତି ଇତ୍ୟାଦି କୌଣସି କଥାର ଅପେକ୍ଷା ନାହିଁ । ଯେଉଁ ମନୁଷ୍ୟ ମୋର ଏ ମୋକ୍ଷଦାୟକ କ୍ଷେତ୍ରରେ ନିବାସ କରେ, ସେ ଯେପରି ମରିଥାଉ ନା କାହିଁକି, ତା' ପାଇଁ ମୋକ୍ଷପ୍ରାପ୍ତି ସୁନିଶ୍ଚିତ । ପ୍ରିୟେ ! ମୋର ଏ ଦିବ୍ୟ ପୁର ଗୁହ୍ୟାତିଗୁହ୍ୟ ଅଟେ । ବ୍ରହ୍ମାଦି ଦେବତା ମଧ୍ୟ ଏହାର ମାହାତ୍ମ୍ୟକୁ ଜାଣି ନାହାନ୍ତି । ତେଣୁ ଏ ଅବିମୁକ୍ତ ନାମରେ ପ୍ରସିଦ୍ଧ; କାରଣ ନୈମିଷ ଇତ୍ୟାଦି ସମସ୍ତ ତୀର୍ଥଠାରୁ ଏହା ଶ୍ରେଷ୍ଠ । ଏଠାରେ ମଲେ ଏହା ଅବଶ୍ୟ ମୋକ୍ଷ ପ୍ରଦାନ କରିଥାଏ । ଧର୍ମର ସାର ସତ୍ୟ, ମୋକ୍ଷର ସାର ସମତା ଏବଂ ସମସ୍ତ କ୍ଷେତ୍ର ଓ ତୀର୍ଥର ସାର ହେଉଛି ଏହି 'ଅବିମୁକ୍ତ' ତୀର୍ଥ—ଏହା ବିଦ୍ୱାନ୍‌ମାନଙ୍କର ବିଶ୍ୱାସ । ସ୍ୱଚ୍ଛନ୍ଦରେ ଭୋଜନ, ଶୟନ, କ୍ରୀଡ଼ା ଓ ବିବିଧ କର୍ମ ଅନୁଷ୍ଠାନ କରି ମଧ୍ୟ ଯଦି ମନୁଷ୍ୟ ଏହି ଅବିମୁକ୍ତ ତୀର୍ଥ (କାଶୀ)ରେ ପ୍ରାଣତ୍ୟାଗ କରେ, ତାହାକୁ ମୋକ୍ଷ ମିଳିଯାଏ । ଯାହାର ଚିତ୍ତ ବିଷୟରେ ଆସକ୍ତ, ଯାହାର ଧର୍ମ ପ୍ରତି ରୁଚି ନାହିଁ, ସେ ମଧ୍ୟ ଏ କ୍ଷେତ୍ରରେ ପ୍ରାଣତ୍ୟାଗ କରି ସଂସାର-ବନ୍ଧନରେ ପଡ଼େ ନାହିଁ; ତେବେ ପୁଣି ଯେ ମମତାରହିତ, ଧୀର, ସତ୍ତ୍ୱଗୁଣୀ, ଦମ୍ଭହୀନ, କର୍ମକୁଶଳ ଓ କର୍ତ୍ତୃତ୍ୱାଭିମାନଶୂନ୍ୟ ହୋଇଥିବାରୁ କର୍ମାରମ୍ଭ କରନ୍ତି ନାହିଁ, ସେମାନଙ୍କ କଥା ବା କ'ଣ କହିବା । ସେ ସମସ୍ତେ ମୋଠାରେ ହିଁ ସ୍ଥିତ ଅଟନ୍ତି ।

କାଶୀପୁରୀରେ ଶିବଭକ୍ତଙ୍କ ଦ୍ୱାରା ଅନେକ ଶିବଲିଙ୍ଗ ସ୍ଥାପିତ କରାଯାଇଛି । ହେ ପାର୍ବତୀ ! ସମସ୍ତ ଲିଙ୍ଗ ଅଭୀଷ୍ଟ ଫଳ ଓ ମୋକ୍ଷ ପ୍ରଦାନ କରେ । ଚତୁର୍ଦ୍ଦିଗରେ ପାଞ୍ଚକୋଶ ବ୍ୟାପୀ ଏହି ଅଞ୍ଚଳକୁ 'ଅବିମୁକ୍ତକ୍ଷେତ୍ର' କୁହାଯାଇଛି । ଏହା ସବୁ ଦୃଷ୍ଟିରୁ ମୋକ୍ଷଦାୟକ । ଜୀବକୁ ମୃତ୍ୟୁକାଳରେ ଏ କ୍ଷେତ୍ର ମିଳିଗଲେ ତାକୁ ଅବଶ୍ୟ ମୋକ୍ଷ ପ୍ରାପ୍ତି ହୁଏ । ଯଦି ନିଷ୍ପାପ ମନୁଷ୍ୟ କାଶୀରେ ମରେ, ତାକୁ ତତ୍କାଳ ମୋକ୍ଷ ମିଳିଯାଏ ଏବଂ ପାପୀ ମନୁଷ୍ୟ ମଲେ ସେ କାୟବ୍ୟୂହ ପ୍ରାପ୍ତ ହୁଏ । ପ୍ରଥମେ ଯାତନା ଭୋଗିସାରିଲେ ପରେ ତାକୁ ମୋକ୍ଷ ପ୍ରାପ୍ତ ହୁଏ । ହେ ସୁନ୍ଦରୀ ! ଯେ ଅବିମୁକ୍ତ କ୍ଷେତ୍ରରେ ପାପ କରେ, ସେ ହଜାରେ ବର୍ଷ ପର୍ଯ୍ୟନ୍ତ ଭୈରବୀ ଯାତନା ଭୋଗ କରି ପାପର ଫଳ ପାଇବାପରେ ମୋକ୍ଷ ଲାଭ କରେ; କାରଣ ଜୀବ କରିଥିବା ଶୁଭାଶୁଭ କର୍ମର ଫଳ ତାକୁ ଅବଶ୍ୟ ଭୋଗିବାକୁ ପଡ଼େ । ଶତକୋଟି କଳ୍ପରେ ମଧ୍ୟ ନିଜ କୃତକର୍ମର କ୍ଷୟ ହୁଏ ନାହିଁ । ଅଶୁଭ କର୍ମ ନରକ ପ୍ରଦାନ କରିଥାଏ, ଶୁଭ କର୍ମ ସ୍ୱର୍ଗ ପ୍ରାପ୍ତି କରାଇଥାଏ ଏବଂ ଶୁଭ ଓ ଅଶୁଭର ମିଶ୍ରିତ କର୍ମ ହେତୁ ମନୁଷ୍ୟଜନ୍ମ ମିଳିଥାଏ । ଅଶୁଭ କର୍ମର ସ୍ୱଳ୍ପତା ଓ ଶୁଭ କର୍ମର ଆଧିକ୍ୟ ହେଲେ ଉତ୍ତମ ଜନ୍ମ ମିଳିଥାଏ । ଶୁଭ କର୍ମର ସ୍ୱଳ୍ପତା ଓ ଅଶୁଭ କର୍ମର ଆଧିକ୍ୟ ହେଲେ ଅଧମ ଜନ୍ମ ମିଳିଥାଏ । ହେ ପାର୍ବତୀ ! ଶୁଭ ଓ ଅଶୁଭ ସମସ୍ତ କର୍ମ କ୍ଷୟ ହୋଇଯିବା ପରେ ହିଁ ଜୀବକୁ ପ୍ରକୃତ ମୋକ୍ଷ ମିଳିଥାଏ । ଯଦି କେହି ପୂର୍ବଜନ୍ମରେ ଆଦରପୂର୍ବକ କାଶୀ ଦର୍ଶନ କରିଥାଏ, ତେବେ ସେ ଏ ଜନ୍ମରେ କାଶୀରେ ପହଞ୍ଚି ମୃତ୍ୟୁବରଣ କରେ । ଯେ କାଶୀ ଯାଇ ଗଙ୍ଗାରେ ସ୍ନାନ କରେ, ତାହାର କ୍ରିୟମାଣ କର୍ମ ଓ ସଞ୍ଚିତ କର୍ମ ନଷ୍ଟ ହୋଇଯାଏ; ମାତ୍ର ତା'ର ପାରବ୍ଧ କର୍ମ ନ ଭୋଗିବା ପର୍ଯ୍ୟନ୍ତ ନଷ୍ଟ ହୁଏ ନାହିଁ, ଏହା ସୁନିଶ୍ଚିତ କଥା । କିନ୍ତୁ ଯାହାର କାଶୀରେ ମୁକ୍ତି ହୋଇଯାଏ, ତାହାର ପ୍ରାରବ୍ଧ କର୍ମ ମଧ୍ୟ ବିନଷ୍ଟ ହୋଇଯାଏ । ପ୍ରିୟେ ! ଯେ ଜଣେ ମାତ୍ର ବ୍ରାହ୍ମଣକୁ ବି କାଶୀବାସ କରାଇଥାଏ, ସେ ସ୍ୱୟଂ ମଧ୍ୟ

କାଶୀବାସର ଅବସର ପାଇ ମୋକ୍ଷ ଲାଭ କରେ ।

ସୂତ କହୁଛନ୍ତି—ମୁନିବର ! ମୁଁ କାଶୀର ଓ ବିଶ୍ୱେଶ୍ୱରଲିଙ୍ଗର ଅନେକ ମାହାତ୍ମ୍ୟ ବର୍ଣ୍ଣନା କଲି । ଏହା ସତ୍‌ପୁରୁଷଙ୍କୁ ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ଏହାପରେ ମୁଁ ତ୍ର୍ୟମ୍ବକ ନାମକ ଜ୍ୟୋତିର୍ଲିଙ୍ଗର ମାହାତ୍ମ୍ୟ କହିବି, ତାହା ଶୁଣି ମନୁଷ୍ୟ କ୍ଷଣକ ଭିତରେ ସମସ୍ତ ପାପରୁ ମୁକ୍ତ ହୋଇଯାଏ । (ଅଧ୍ୟାୟ ୨୩)

★★★

## ତ୍ର୍ୟମ୍ବକ ଜ୍ୟୋତିର୍ଲିଙ୍ଗ ପ୍ରସଙ୍ଗରେ ଗୌତମଙ୍କ ପରୋପକାର କଥା, ତାଙ୍କ ତପସ୍ୟା ପ୍ରଭାବରେ ଅନାବୃଷ୍ଟି କଷ୍ଟରେ ପୀଡ଼ିତ ଋଷିମାନଙ୍କୁ ଅକ୍ଷୟ ଜଳ ପ୍ରାପ୍ତି, ନାରୀମାନଙ୍କ ପ୍ରରୋଚନାରେ ଋଷିମାନେ ତାଙ୍କୁ ଛଳପୂର୍ବକ ଗୋହତ୍ୟାରେ ଜଡ଼ିତ କରି ଆଶ୍ରମରୁ ବିତାଡ଼ିତ କରିବା ପ୍ରସଙ୍ଗ ଏବଂ ତହିଁରୁ ମୁକ୍ତ ହେବାର ଉପାୟ ନିର୍ଦ୍ଦେଶ

ସୂତ କହୁଛନ୍ତି—ମୁନିବର ! ମୁଁ ସଦ୍‌ଗୁରୁ ବ୍ୟାସଦେବଙ୍କ ମୁଖରୁ ଗୋଟିଏ ପାପନାଶକ କଥା ଶୁଣିଥିଲି; ତାହା କହୁଛି, ଶୁଣ । ପୂର୍ବକାଳରେ ଗୌତମ ନାମରେ ଜଣେ ବିଖ୍ୟାତ ଋଷି ଥିଲେ, ତାଙ୍କର ପରମ ଧର୍ମଶୀଳା ପତ୍ନୀଙ୍କ ନାମ ଥିଲା ଅହଲ୍ୟା । ଦକ୍ଷିଣଦିଗରେ ଅବସ୍ଥିତ ବ୍ରହ୍ମଗିରିରେ ସେ ଦଶହଜାର ବର୍ଷ ପର୍ଯ୍ୟନ୍ତ ତପସ୍ୟା କରିଥିଲେ । ହେ ସୁବ୍ରତ ମହର୍ଷିବୃନ୍ଦ ! ଏକଦା ସେଠାରେ ଶହେ ବର୍ଷ ପର୍ଯ୍ୟନ୍ତ ଭୀଷଣ ମରୁଡ଼ି ପଡ଼ିଲା । ଲୋକମାନେ ଭୟଙ୍କର ଦୁଃଖରେ ହନ୍ତସନ୍ତ ହେଲେ । ଜଳ ମୁନ୍ଦାଏ ତ ଦୂରର କଥା, କେଉଁଠି କଞ୍ଚା ପତ୍ରଟିଏ ବି ଦେଖିବାକୁ ମିଳିଲା ନାହିଁ । ମୁନିଋଷି, ସାଧାରଣ ମନୁଷ୍ୟ, ପଶୁ, ପକ୍ଷୀ ସମସ୍ତେ ନିଜ ସ୍ଥାନ ଛାଡ଼ି ଏଣେତେଣେ ପଳାଇଗଲେ । ଏହି ଅବସରରେ ଗୌତମ ଋଷି ଛଅମାସ ପର୍ଯ୍ୟନ୍ତ ତପସ୍ୟା କରି ବରୁଣଙ୍କୁ ପ୍ରସନ୍ନ କରିଦେଲେ । ବରୁଣ ଆବିର୍ଭୂତ ହୋଇ ବର ମାଗିବାକୁ କହିବାରୁ ଋଷି ବୃଷ୍ଟି କରିବାକୁ ପ୍ରାର୍ଥନା କଲେ । ବରୁଣ କହିଲେ—‘‘ଦେବତାଙ୍କ ବିଧାନର ବିରୁଦ୍ଧରେ ଯାଇ ମୁଁ ବୃଷ୍ଟି କରିପାରିବି ନାହିଁ, କିନ୍ତୁ ମୁଁ ତୁମ ଇଚ୍ଛାନୁସାରେ ତୁମକୁ ସଦା ଅକ୍ଷୟ ହୋଇ ରହୁଥିବା ଜଳ ପ୍ରଦାନ କରିପାରିବି । ତୁମେ ଗୋଟିଏ ଗର୍ତ୍ତ ପ୍ରସ୍ତୁତ କର ।’’

ସେ ଏପରି କହିବାରୁ ମୁନିବର ଗୌତମ ହାତେ ଗଭୀର ଗାତଟିଏ ଖୋଳିଦେଲେ ଏବଂ ବରୁଣ ତାହାକୁ ଦିବ୍ୟ ଜଳରେ ପୂର୍ଣ୍ଣ କରିଦେଲେ । ଏହାପରେ ସେ ପରୋପକାର ଗୁଣରେ ସୁଶୋଭିତ ଗୌତମଙ୍କୁ କହିଲେ ‘‘ମହାମୁନେ ! ଏହି ଅସରନ୍ତି ଜଳ ତୁମ ପାଇଁ ତୀର୍ଥସ୍ୱରୂପ ହୋଇଯିବ ଏବଂ ପୃଥିବୀରେ ତୁମ ନାମରେ ଏହା ବିଖ୍ୟାତ ହେବ । ଏଠାରେ କରାଯାଉଥିବା ଦାନ, ହୋମ, ତପ, ଦେବପୂଜନ ତଥା ପିତୃଶ୍ରାଦ୍ଧ ସବୁକିଛି ଅକ୍ଷୟ ହେବ ।’’

ଏପରି କହିବା ପରେ ମହର୍ଷିଙ୍କ ଦ୍ୱାରା ପ୍ରଶଂସିତ ହୋଇ ବରୁଣଦେବ ସେଠାରୁ ଅନ୍ତର୍ହିତ ହୋଇଗଲେ । ସେହି ଜଳଦ୍ୱାରା ଅନ୍ୟମାନଙ୍କର ଉପକାର କରି ମହର୍ଷି ଗୌତମଙ୍କୁ ବହୁତ ସୁଖ ମିଳିଲା । ମହାତ୍ମା ପୁରୁଷଙ୍କ ଆଶ୍ରୟ ମନୁଷ୍ୟଙ୍କ ପାଇଁ ମହତ୍ତ୍ୱ ବୃଦ୍ଧିର କାରଣ ହୋଇଥାଏ । ମହାନ୍ ବ୍ୟକ୍ତି ହିଁ ମହାତ୍ମାଙ୍କର ସେହି ସ୍ୱରୂପକୁ ଦେଖି ପାରନ୍ତି ଓ ବୁଝି ପାରନ୍ତି, ଅଧମ ଲୋକେ ବୁଝି ପାରନ୍ତି ନାହିଁ । ମନୁଷ୍ୟ ଯେଉଁ ପରି ବ୍ୟକ୍ତିଙ୍କ

ସେବା କରେ, ସେହିପରି ଫଳ ପାଏ । ମହତ୍ ପୁରୁଷଙ୍କ ସେବାରେ ମହତ୍ତ୍ୱ ମିଳିଥାଏ ଏବଂ କ୍ଷୁଦ୍ର ଲୋକଙ୍କ ସେବାରେ କ୍ଷୁଦ୍ରତା ମିଳିଥାଏ । ଉତ୍ତମ ବ୍ୟକ୍ତିଙ୍କର ଏହା ସ୍ୱଭାବ ଯେ ସେମାନେ ଅନ୍ୟମାନଙ୍କର ଦୁଃଖ ଦେଖି ସହି ପାରନ୍ତି ନାହିଁ । ନିଜକୁ ଦୁଃଖ ମିଳିଲେ ତାହାକୁ ଅଙ୍ଗୀକାର କରି ନିଅନ୍ତି, ସହିଯାଆନ୍ତି; କିନ୍ତୁ ଅନ୍ୟର ଦୁଃଖ ଅବଶ୍ୟ ନିବାରଣ କରିଥାନ୍ତି । ଦୟାଳୁ, ଅଭିମାନଶୂନ୍ୟ, ଉପକାରୀ ଓ ଜିତେନ୍ଦ୍ରିୟ—ଏ ଚାରିପ୍ରକାର ଲୋକେ ହେଉଛନ୍ତି ପୁଣ୍ୟର ଚାରିଟି ସ୍ତମ୍ଭ, ଯାହାଙ୍କ ଆଧାରରେ ଏ ପୃଥିବୀ ତିଷ୍ଠି ରହିଛି ।*

ବରୁଣଦେବ ଚାଲିଯିବା ପରେ ଗୌତମ ସେହି ପରମ ଦୁର୍ଲଭ ଜଳକୁ ପାଇ ବିଧିପୂର୍ବକ ନିତ୍ୟ-ନୈମିତ୍ତିକ କର୍ମ କରିବାକୁ ଲାଗିଲେ । ମୁନୀଶ୍ୱର ଗୌତମ ସେଠାରେ ନିତ୍ୟ ହୋମ ପାଇଁ ଧାନ, ଯବ ଓ ଅନେକ ପ୍ରକାର ନୀବାର ବୁଣିଦେଲେ । ସ୍ଥାନଟି ନାନା ପ୍ରକାର ଧାନ୍ୟ, ବୃକ୍ଷଲତା ଓ ଫୁଲଫଳରେ ସୁଶୋଭିତ ହୋଇଗଲା । ଏ ଖବର ପାଇ ଅନ୍ୟ ସ୍ଥାନରୁ ହଜାର ହଜାର ମୁନିଋଷି, ପଶୁପକ୍ଷୀ ଓ ଅନେକ ପ୍ରକାର ଜୀବ ସେଠାକୁ ଆସି ନିବାସ କଲେ । ସେହି ଅରଣ୍ୟଟି ଭୂମଣ୍ଡଳରେ ଅତି ସୁନ୍ଦର ହୋଇଗଲା । ସେଠାକାର ଅକ୍ଷୟ ଜଳସ୍ରୋତର ସାନ୍ନିଧ୍ୟ ହେତୁ ଅନାବୃଷ୍ଟି ସେ ସ୍ଥାନ ପାଇଁ ଆଉ ଦୁଃଖଦାୟୀ ହୋଇ ରହିଲା ନାହିଁ । ଅନେକ ଶୁଭକର୍ମପରାୟଣ ଋଷିମୁନି ସେମାନଙ୍କ ଶିଷ୍ୟ, ଭାର୍ଯ୍ୟା ଓ ପୁତ୍ରାଦିଙ୍କ ସଙ୍ଗେ ସେଠାରେ ନିବାସ କରିବାକୁ ଲାଗିଲେ । ସେମାନେ ଆହାର ନିମନ୍ତେ ସେଠାରେ ଧାନ ବୁଣିଦେଲେ । ଗୌତମଙ୍କ ପ୍ରଭାବରେ ସେହି ଅରଣ୍ୟରେ ସର୍ବତ୍ର ଆନନ୍ଦ ବିସ୍ତାରିତ ହୋଇଗଲା ।

ଥରେ ଗୌତମଙ୍କ ଆଶ୍ରମ ନିକଟରେ ବାସ କରୁଥିବା ଋଷିପତ୍ନୀମାନେ ପାଣି ନେବା ପ୍ରସଙ୍ଗକୁ ନେଇ ଅହଲ୍ୟାଙ୍କ ଉପରେ ଅସନ୍ତୁଷ୍ଟ ହୋଇଗଲେ । ସେମାନେ ନିଜ ନିଜ ସ୍ୱାମୀମାନଙ୍କୁ ଉସୁକାଇଲେ । ନାରୀମାନଙ୍କ ପ୍ରରୋଚନାରେ ପଡ଼ି ସେମାନେ ଗୌତମଙ୍କର ଅନିଷ୍ଟ କରିବାକୁ ଗଣେଶଙ୍କୁ ଆରାଧନା କଲେ । ଭକ୍ତାଧୀନ ଗଣେଶ ପ୍ରକଟ ହୋଇ ବର ମାଗିବାକୁ କହିବାରୁ ଋଷିମାନେ କହିଲେ— "ଭଗବନ୍ ! ଯଦି ଆପଣ ଆମକୁ ବର ଦେବାକୁ ଚାହାନ୍ତି, ତେବେ ଏପରି କିଛି ଉପାୟ କରନ୍ତୁ, ଯଦ୍ଦ୍ୱାରା ସମସ୍ତ ଋଷି ଗାଳିମନ୍ଦ ଦେଇ ଗୌତମଙ୍କୁ ଆଶ୍ରମରୁ ବାହାର କରିଦେବେ ।"

ଗଣେଶ କହିଲେ—"ଋଷିଗଣ ! ତୁମେମାନେ ଏଇଟା ଉଚିତ କାମ କରୁ ନାହଁ । ବିନା ଅପରାଧରେ ତାଙ୍କ ଉପରେ କ୍ରୋଧ କଲେ ତୁମରି ହାନି ହେବ । ଯେ ତୁମର ଉପକାର କରିଛନ୍ତି, ତାଙ୍କୁ ଦୁଃଖ ଦେବାଟା କଦାପି ହିତକର ହୋଇ ନ ପାରେ । ଉପକାରୀକୁ ଦୁଃଖ ଦେଲେ ଜଗତରେ ନିଜର ହିଁ ଅନିଷ୍ଟ ହୋଇଥାଏ ।卐 ତା'ଛଡ଼ା ତପସ୍ୟା କରି ଉତ୍ତମ ଫଳ ହିଁ ସିଦ୍ଧି କରାଯାଇଥାଏ, ଜାଣିଶୁଣି ଶୁଭଫଳ ପରିତ୍ୟାଗ କରି ଅହିତକାରକ ଫଳକୁ କେହି ଗ୍ରହଣ କରି

* ଉତ୍ତମାନାଂ ସ୍ୱଭାବୋଽୟଂ ପରଦୁଃଖାସହିଷ୍ଣୁତା ॥
ସ୍ୱୟଂ ଦୁଃଖଂ ଚ ସମ୍ପ୍ରାପ୍ତଂ ମନ୍ୟତେଽନ୍ୟସ୍ୟ ବାର୍ଯ୍ୟତେ । ଦୟାଳୁରମଦସ୍ପର୍ଶ ଉପକାରୀ ଜିତେନ୍ଦ୍ରିୟଃ ॥
ଏତୈଶ୍ଚ ପୁଣ୍ୟସ୍ତମ୍ଭୈସ୍ତୁ ଚତୁର୍ଭିର୍ଧାର୍ଯ୍ୟତେ ମହୀ । (ଶି. ପୁ. କୋଟିରୁ. ସଂ. ୨୪ । ୨୪–୨୬)

卐 ଅପରାଧଂ ବିନା ତସ୍ମୈ କ୍ରୁଧ୍ୟତାଂ ହାନିରେବ ଚ ॥
ଉପକୃତଂ ପୁରା ଯୈସ୍ତୁ ତେଭ୍ୟୋ ଦୁଃଖଂ ହିତଂ ନହି । ଯଦା ଚ ଦୀୟତେ ଦୁଃଖଂ ତଦା ନାଶୋ ଭବେଦିହ ॥
(ଶି. ପୁ. କୋଟିରୁ. ସଂ. ୨୫ ।୧୪-୧୫)

ନ ଥାଏ । ବ୍ରହ୍ମା ସମ୍ପୂର୍ଣ୍ଣ ସତ୍ୟ ଓ ଯଥାର୍ଥ କଥା କହିଛନ୍ତି ଯେ ଅସାଧୁ କଦାପି ସାଧୁତାକୁ ଓ ସାଧୁ କଦାପି ଅସାଧୁତାକୁ ଗ୍ରହଣ କରି ନ ଥାଏ । ପ୍ରଥମେ ତୁମେମାନେ ଉପବାସରେ ରହି ଦୁଃଖ ଭୋଗୁଥିଲ, ସେତେବେଳେ ଗୌତମ ତୁମମାନଙ୍କ ପାଇଁ ଜଳର ବ୍ୟବସ୍ଥା କରି ତୁମକୁ ସୁଖ ପ୍ରଦାନ କଲେ । ମାତ୍ର ଏବେ ତୁମେମାନେ ସମସ୍ତେ ମିଳିମିଶି ଓଲଟା ତାଙ୍କୁ ହିଁ ଦୁଃଖ ଦେବାକୁ ଭାବୁଛ ! ଜଗତରେ ଏପରି କାର୍ଯ୍ୟ କରିବା କଦାପି ଉଚିତ ନୁହେଁ । ଏ କଥା ଉପରେ ତୁମେମାନେ ଭଲଭାବରେ ବିଗ୍ଚର କର । ଯଦି ସ୍ତ୍ରୀମାନଙ୍କ ଶକ୍ତିରେ ମୋହିତ ହୋଇ ତୁମେମାନେ ମୋ କଥା ନ ମାନିବ, ତେବେ ମଧ୍ୟ ତୁମର ଏପରି ବ୍ୟବହାର ଗୌତମଙ୍କ ପାଇଁ ଯେ ପରମ ହିତକର ହେବ, ଏଥିରେ ସନ୍ଦେହ ନାହିଁ । ଏଇ ଗୌତମ ହିଁ ତୁମମାନଙ୍କୁ ପୁନଃ ସୁଖ ଦେବେ । ତେଣୁ ତାଙ୍କ ସଙ୍ଗେ ଛଳ ନ କର । ତୁମେମାନେ ଅନ୍ୟ କିଛି ବର ମାଗ ।''

ସୂତ କହୁଛନ୍ତି—ବ୍ରାହ୍ମଣବୃନ୍ଦ ! ମହାତ୍ମା ଗଣେଶ ଋଷିମାନଙ୍କୁ ଯେଉଁ କଥା କହିଲେ, ତାହା ସେମାନଙ୍କ ପାଇଁ ହିତକର ଥିଲା; ତଥାପି ସେମାନେ ଗଣେଶଙ୍କ କଥା ମାନିଲେ ନାହିଁ । ଏଣୁ ଭକ୍ତଙ୍କର ଅଧୀନ ହୋଇଥିବାରୁ ଶିବକୁମାର ଗଣେଶ କହିଲେ— ''ତୁମେମାନେ ଯାହା ପ୍ରାର୍ଥନା କରିଛ, ମୁଁ ତାହା ନିଶ୍ଚୟ ଦେବି; ତେଣିକି ଯାହା ହେବାର ଥିବ, ହେବ ।'' ଏତିକି କହି ସେ ଅନ୍ତର୍ହିତ ହୋଇଗଲେ । ମୁନୀଶ୍ୱରଗଣ ! ଏହାପରେ ସେହି ଦୁଷ୍ଟ ଋଷିମାନଙ୍କ ପ୍ରଭାବରେ ତଥା ସେମାନଙ୍କୁ ମିଳିଥିବା ବର ପ୍ରଭାବରେ ଯେଉଁ ଘଟଣା ଘଟିଲା, ତାହା ଶୁଣ । ଗଣେଶ ଗୋଟିଏ ଦୁର୍ବଳ ଗାଈ ରୂପ ଧରି ଗୌତମଙ୍କର ଧାନ ଓ ଯଅ କିଆରି ପାଖରେ ଯାଇ ଚରିଲେ । ଗଣେଶଙ୍କ ବର ହେତୁ ସେହି ଗାଈଟି ଥରି ଥରି ଯାଇ ଧାନ ଓ ଯଅ ବି ଖାଇବା ଆରମ୍ଭ କଲା । ଏତିକିବେଳେ ଦୈବାତ୍ ଗୌତମ ସେଠାକୁ ଆସିଲେ । ସେ ତ ଦୟାଳୁ ଥିଲେ, ତେଣୁ ସେ ଛଣ କେରାଏ ହାତରେ ଧରି ଗାଈଟିକୁ ଘଉଡ଼ାଇବାକୁ ଚେଷ୍ଟା କଲେ । ମାତ୍ର ଛଣ କେରାକ ବାଜୁ ବାଜୁ ଗାଈଟି ତଳେ ପଡ଼ିଗଲା ଏବଂ ଗ୍ରହୁଁ ଗ୍ରହୁଁ ତା'ର ପ୍ରାଣ ଛାଡ଼ିଗଲା ।

ଏ ଘଟଣାକୁ ଅନ୍ୟସବୁ ଦ୍ୱେଷପରାୟଣ ବ୍ରାହ୍ମଣ ଓ ସେମାନଙ୍କ ସ୍ତ୍ରୀମାନେ ଲୁଚି ଲୁଚି ଦେଖୁଥିଲେ । ଗାଈଟି ପଡ଼ିଯିବାମାତ୍ରେ ସେମାନେ ଚିତ୍କାର କରି କହି ଉଠିଲେ—''ହାୟ ! ହାୟ ! ଗୌତମ ଏ କ'ଣ କରିଦେଲେ ।'' ନିଜେ ଗୌତମ ମଧ୍ୟ ଆଶ୍ଚର୍ଯ୍ୟରେ ପଡ଼ିଗଲେ । ସେ ଅହଲ୍ୟାଙ୍କୁ ଡାକି ବ୍ୟଥିତ ହୃଦୟରେ କହିଲେ—''ହେ ଦେବୀ ! ଏ କ'ଣ ହେଲା, କେମିତି ହେଲା? ମୁଁ କିଛି ବୁଝି ପାରୁନି । ଯାହା ଜଣାପଡୁଛି, ପରମେଶ୍ୱର ମୋ ଉପରେ କୁପିତ ହୋଇଯାଇଛନ୍ତି । ଏବେ କ'ଣ କରିବି? କେଉଁଠିକି ଯିବି? ମୋତେ ତ ହତ୍ୟା ଦୋଷ ଲାଗିଗଲା ।''

ଏତିକି ବେଳେ ଅନ୍ୟ ବ୍ରାହ୍ମଣ ଓ ସେମାନଙ୍କ ପତ୍ନୀମାନେ ଗୌତମଙ୍କୁ ଗାଳିମନ୍ଦ କଲେ ଏବଂ ଅହଲ୍ୟାଙ୍କୁ ବି କଟୁବଚନ କହିଲେ । ସେମାନଙ୍କର ଦୁର୍ବୁଦ୍ଧି ଶିଷ୍ୟ ଓ ପୁତ୍ରମାନେ ମଧ୍ୟ ଗୌତମଙ୍କୁ ବାରମ୍ବାର ଧିକ୍କାରିଲେ ।

ବ୍ରାହ୍ମଣମାନେ କହିଲେ—ଏବେ ତୁମେ ଆଉ ଆମକୁ ମୁହଁ ଦେଖାଅ ନାହିଁ । ଏଠାରୁ ପଳାଇ ଯାଅ, ବାହାରି ଯାଅ । ଗୋହତ୍ୟାକାରୀର ମୁହଁ ଗ୍ରହିଁଲେ ତୁରନ୍ତ ସଚୈଳ (ପିନ୍ଧିଥିବା ବସ୍ତ୍ର ସହିତ) ସ୍ନାନ କରିବାକୁ ପଡ଼େ । ଯେପର୍ଯ୍ୟନ୍ତ ତୁମେ ଏ ଆଶ୍ରମରେ ରହିବ, ସେପର୍ଯ୍ୟନ୍ତ ଅଗ୍ନିଦେବ ଓ ପିତୃପୁରୁଷ ଆମ ହାତରୁ କୌଣସି ପ୍ରକାରେ ହବ୍ୟ-କବ୍ୟ ଗ୍ରହଣ କରିବେ ନାହିଁ । ଏଣୁ ହେ

ପାପୀ ଗୋହତ୍ୟାକାରୀ ! ତୁମେ ଅବିଳମ୍ବେ ଏଠାରୁ ସପରିବାର ଅନ୍ୟତ୍ର ଚ୍ୱଲିଯାଅ ।

ସୂତ କହୁଛନ୍ତି—ଏପରି କହି ସେମାନେ ତାଙ୍କ ଉପରକୁ ପଥର ଫୋପାଡ଼ିବା ଆରମ୍ଭ କରିଦେଲେ । ପୁଣି କଟୁଶବ୍ଦରେ ଗାଳିମନ୍ଦ କରି ଗୌତମ ଓ ଅହଲ୍ୟାଙ୍କ ମନରେ କଷ୍ଟ ଦେଲେ । ସେହି ଦୁଷ୍ଟମାନେ ଏପରି ମାରପିଟ କରିବାରୁ ଓ ଧମକାଇବାରୁ ଗୌତମ କହିଲେ—"ମୁନିଗଣ ! ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ଏ ସ୍ଥାନ ଛାଡ଼ି ଅନ୍ୟତ୍ର ଯାଇ ରହିବି ।" ଏପରି କହି ଗୌତମ ସେଠାରୁ ବାହାରିଗଲେ ଏବଂ ସେମାନଙ୍କ ଆଜ୍ଞାନୁସାରେ କୋଶେ ଦୂରରେ ନିଜ ପାଇଁ ଗୋଟିଏ ଆଶ୍ରମ ତୋଳିଲେ । ସେଠାରେ ମଧ୍ୟ ସେହି ଋଷିମାନେ ପହଞ୍ଚି କହିଲେ—"ଯେପର୍ଯ୍ୟନ୍ତ ତୁମ ଉପରେ ଗୋହତ୍ୟା ପାପ ଲାଗିଛି, ସେପର୍ଯ୍ୟନ୍ତ ତୁମେ କୌଣସି ପ୍ରକାର ଯାଗଯଜ୍ଞ କରି ପାରିବ ନାହିଁ । ସେପର୍ଯ୍ୟନ୍ତ କୌଣସି ବୈଦିକ ଦେବଯଜ୍ଞ ବା ପିତୃଯଜ୍ଞ କରିବାର ଅଧିକାର ତୁମର ନାହିଁ ।" ମୁନିବର ଗୌତମ ସେମାନଙ୍କ କହିବା ଅନୁସାରେ କୌଣସି ପ୍ରକାରେ ଗୋଟିଏ ପକ୍ଷ ବିତାଇ ମନଦୁଃଖରେ ବାରମ୍ବାର ସେମାନଙ୍କୁ ଆତ୍ମଶୁଦ୍ଧିର ଉପାୟ ପଚ୍ଚରିଲେ । ତାଙ୍କ ଦୈନ୍ୟ ବଚନ ଶୁଣି ମୁନିମାନେ କହିଲେ—"ଗୌତମ ! ତୁମେ ତୁମ ପାପକୁ ପ୍ରକାଶ କରି କରି ତିନି ଥର ସମଗ୍ର ପୃଥିବୀ ପରିକ୍ରମା କର । ପରିକ୍ରମା ସାରି ମାସେ ପର୍ଯ୍ୟନ୍ତ ବ୍ରତ କର । ତା'ପରେ ଏହି ବ୍ରହ୍ମଗିରିକୁ ଶହେଏକ ବାର ପରିକ୍ରମା କର । ଏହା କଲେ ତୁମେ ଶୁଦ୍ଧ ହେବ । ନଚେତ୍ ଏଠାକୁ ଗଙ୍ଗାଙ୍କୁ ଅଣାଇ ଗଙ୍ଗାଜଳରେ ସ୍ନାନ କର ଏବଂ କୋଟିଏ ପାର୍ଥିବଲିଙ୍ଗ ନିର୍ମାଣ କରି ମହାଦେବଙ୍କୁ ଆରାଧନା କର । ତା'ପରେ ପୁଣି ଗଙ୍ଗାସ୍ନାନ କରି ଏହି ପର୍ବତକୁ ଏଗାର ଥର ପରିକ୍ରମା କର । ତା'ପରେ ଶହେ ମାଠିଆ ଜଳରେ ପାର୍ଥିବଲିଙ୍ଗକୁ ସ୍ନାନ କରାଅ । ଏପରି କଲେ ଯାଇ ତୁମର ଉଦ୍ଧାର ହେବ ।" ଋଷିମାନଙ୍କ କଥାକୁ ଗୌତମ ଆଦରରେ ମାନିନେଲେ । ସେ କହିଲେ—"ମୁନିଗଣ ! ମୁଁ ଆପଣଙ୍କ ପରି ମହାନୁଭାବମାନଙ୍କ ଆଜ୍ଞାନୁସାରେ ଏଠାରେ ପାର୍ଥିବପୂଜନ ତଥା ବ୍ରହ୍ମଗିରି ପରିକ୍ରମା କରିବି ।" ଏହା କହି ମୁନିଶ୍ରେଷ୍ଠ ଗୌତମ ସେହି ପର୍ବତକୁ ପରିକ୍ରମା କରିବା ପରେ ପାର୍ଥିବଲିଙ୍ଗ ନିର୍ମାଣ କରି ପୂଜା କଲେ । ସାଧ୍ୱୀ ଅହଲ୍ୟା ମଧ୍ୟ ତାଙ୍କୁ ସହଯୋଗ କଲେ । ସେତେବେଳେ ତାଙ୍କ ଶିଷ୍ୟ-ପ୍ରଶିଷ୍ୟ ମଧ୍ୟ ସେ ଦୁହିଁଙ୍କର ସେବା କରୁଥିଲେ । (ଅଧ୍ୟାୟ ୨୪-୨୫)

✽✽✽

## ସପତ୍ନୀକ ଗୌତମଙ୍କ ଆରାଧନାରେ ସନ୍ତୁଷ୍ଟ ହୋଇ ଭଗବାନ ଶିବ ତାଙ୍କୁ ଦର୍ଶନ ଦେବା ସହ ଗଙ୍ଗାଙ୍କୁ ସେଠାରେ ଅବସ୍ଥାପିତ କରି ନିଜେ ମଧ୍ୟ ଅବସ୍ଥାନ କରିବା ପ୍ରସଙ୍ଗ, ସିଂହରାଶିରେ ବୃହସ୍ପତିଙ୍କ ଅବସ୍ଥାନ କାଳରେ ଗଙ୍ଗାଙ୍କ ବିଶେଷ ମାହାତ୍ମ୍ୟକୁ ଦେବତାମାନଙ୍କର ସ୍ୱୀକୃତି, ଗୌତମୀ ନାମରେ ଗଙ୍ଗା ଏବଂ ତ୍ର୍ୟମ୍ବକ ଜ୍ୟୋତିର୍ଲିଙ୍ଗ ନାମରେ ଶିବଙ୍କର ପ୍ରସିଦ୍ଧି ଏବଂ ଏ ଦୁହିଁଙ୍କର ମହିମା

ସୂତ କହୁଛନ୍ତି—ପତ୍ନୀସମେତ ଋଷି ଗୌତମ ଏହିରୂପେ ଆରାଧନା କରିବାରୁ ଭଗବାନ ଶିବ ସନ୍ତୁଷ୍ଟ ହୋଇ ଶିବା ଓ ପ୍ରମଥଗଣଙ୍କ ସଙ୍ଗରେ ଆସି ତାଙ୍କୁ ସାକ୍ଷାତ୍ ଦର୍ଶନ ଦେଲେ । ଏହାପରେ

କୃପାନିଧାନ ଶିବ କହିଲେ–"ମହାମୁନେ ! ମୁଁ ତୁମର ଉତ୍ତମ ଭକ୍ତିରେ ଅତ୍ୟନ୍ତ ପ୍ରସନ୍ନ । ତୁମେ କିଛି ବର ମାଗ ।" ସେତେବେଳେ ଶମ୍ଭୁଙ୍କ ରୂପକୁ



ଦେଖି ଗୌତମ ଆନନ୍ଦିତ ହୋଇ ଭକ୍ତିଭାବରେ ପ୍ରଣାମ କଲେ ଏବଂ ସ୍ତୁତି କଲେ । ଅନେକ ପ୍ରକାରେ ସ୍ତୁତି କରିବା ପରେ ପୁନଃ ପ୍ରଣାମ କରି ଦୁଇ କର ଯୋଡ଼ି ଛିଡ଼ା ହୋଇଗଲେ ଏବଂ କହିଲେ–"ହେ ପ୍ରଭୁ ! ମୋତେ ନିଷ୍ପାପ କରିଦିଅନ୍ତୁ ।"

ଭଗବାନ ଶିବ କହିଲେ–ମୁନେ ! ତୁମେ ଧନ୍ୟ ଓ କୃତକୃତ୍ୟ । ତୁମେ ପ୍ରକୃତରେ ନିଷ୍ପାପ । ଏ ଦୁଷ୍ଟମାନେ ତୁମ ସହିତ ଛଳ କରିଛନ୍ତି । ଜଗତର ଲୋକେ ତୁମକୁ ଦର୍ଶନ କରି ପାପଶୂନ୍ୟ ହୋଇଯାଆନ୍ତି, ପୁଣି ମୋ ଭକ୍ତିରେ ତୁମେ ତତ୍ପର ରହିଥାଅ । ତେବେ ତୁମେ କ'ଣ ପାପୀ ହୋଇପାର? ମୁନେ ! ଯେଉଁ ଦୁରାତ୍ମାମାନେ ତୁମ ଉପରେ ଅତ୍ୟାଗ୍ରହ କରିଛନ୍ତି, ସେମାନେ ପାପୀ, ଦୁରାଗ୍ରହୀ ଓ ହତ୍ୟାକାରୀ ଅଟନ୍ତି । ସେମାନଙ୍କ ଦର୍ଶନମାତ୍ରକେ ଅନ୍ୟ ଲୋକେ ମଧ୍ୟ ପାପିଷ୍ଠ ହୋଇଯିବେ । ସେମାନେ ସମସ୍ତେ କୃତଘ୍ନ । ସେମାନଙ୍କର କଦାପି ଉଦ୍ଧାର ହୋଇପାରିବ ନାହିଁ ।

ମହାଦେବଙ୍କ ବଚନ ଶୁଣି ମହର୍ଷି ଗୌତମ ମନେ ମନେ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ସେ ଭକ୍ତିଭାବରେ ଶିବଙ୍କୁ ପ୍ରଣାମ କରି ହାତ ଯୋଡ଼ି ପୁନଃ ଏହିପରି କହିଲେ–

ଗୌତମ କହିଲେ–ମହେଶ୍ୱର ! ସେହି ଋଷିମାନେ ତ ମୋର ବଡ଼ ଉପକାର କଲେ । ଯଦି ସେମାନେ ଏପରି ବ୍ୟବହାର ନ କରିଥାନ୍ତେ, ମୋତେ କ'ଣ ଆପଣଙ୍କ ଦର୍ଶନ ମିଳିପାରିଥାନ୍ତା? ଧନ୍ୟ ସେହି ମହର୍ଷି, ସେମାନେ ମୋ ପାଇଁ ପରମ କଲ୍ୟାଣକାରୀ କାର୍ଯ୍ୟ କଲେ । ସେମାନଙ୍କର ଏହି ଦୁରାଗ୍ରହ ହେତୁ ମୋର ଆଜି ମହାନ୍ ସ୍ୱାର୍ଥ ସାଧିତ ହୋଇଗଲା !

ଗୌତମଙ୍କ କଥା ଶୁଣି ମହେଶ୍ୱର ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ଗୌତମଙ୍କୁ କୃପାଦୃଷ୍ଟିରେ ଚାହିଁ ତୁରନ୍ତ ଏହିପରି ଉତ୍ତର ଦେଲେ–

ଶିବ କହିଲେ–ବିପ୍ରବର ! ତୁମେ ଧନ୍ୟ, ସମସ୍ତ ଋଷିଙ୍କ ମଧ୍ୟରେ ଶ୍ରେଷ୍ଠ । ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରସନ୍ନ । ଏପରି ଜାଣି ତୁମେ ମୋତେ ଉତ୍ତମ ବର ମାଗ ।

ଗୌତମ କହିଲେ–ପ୍ରଭୋ ! ଆପଣ ସତ୍ୟ କହୁଛନ୍ତି । ତଥାପି ପାଞ୍ଚଜଣ ଯାହା କହିଦେଲେ ବା କରିଦେଲେ, ତାହା ତ ଅନ୍ୟଥା ହେବ ନାହିଁ । ତେଣୁ ଯାହା ହୋଇଗଲା, ହୋଇଗଲା । ଦେବେଶ ! ଯଦି ଆପଣ ପ୍ରସନ୍ନ, ମୋତେ ଗଙ୍ଗା ପ୍ରଦାନ କରନ୍ତୁ ଏବଂ ଏପରି କରି ଲୋକଙ୍କର ପରମ ଉପକାର କରନ୍ତୁ । ଆପଣଙ୍କୁ ମୋର ନମସ୍କାର, ନମସ୍କାର ।

ଏହା କହି ଗୌତମ ଦେବଦେବ ମହାଦେବଙ୍କ ଚରଣାରବିନ୍ଦକୁ ଧରି ପକାଇଲେ ଏବଂ ଲୋକହିତକାମନାରେ ତାଙ୍କୁ ନମସ୍କାର କଲେ । ଏହାପରେ ଭକ୍ତବତ୍ସଳ ଶମ୍ଭୁ ନିଜ ପାଖରେ ରଖିଥିବା ପୃଥିବୀ ଓ ସ୍ୱର୍ଗର ସାରଭୂତ ଜଳକୁ ତଥା

ବିବାହରେ ବ୍ରହ୍ମା ଦେଇଥିବା ଜଳର ଅବଶିଷ୍ଟାଂଶକୁ ବାହାର କରି ଗୌତମ ମୁନିଙ୍କୁ ପ୍ରଦାନ କଲେ । ସେତେବେଳେ ଗଙ୍ଗାର ଜଳ ପରମ ସୁନ୍ଦର ନାରୀରୂପ ହୋଇ ସେଠାରେ ଉପସ୍ଥିତ ହୋଇଗଲା । ମୁନିବର ଗୌତମ ଗଙ୍ଗାଙ୍କୁ ସ୍ତୁତି କରି ନମସ୍କାର କଲେ ।

ଗୌତମ କହିଲେ—ଦେବୀ ଗଙ୍ଗେ ! ତୁମେ ଧନ୍ୟ, ତୁମେ କୃତାର୍ଥ । ତୁମେ ସମଗ୍ର ଭୁବନକୁ ପବିତ୍ର କରିଛ । ଏଣୁ ନରକରେ ପଡ଼ିବାକୁ ଯାଉଥିବା ମୋ ପରି ଅଧମ ଗୌତମକୁ ପବିତ୍ର କର ।

ଏହା ପରେ ଶିବ ଗଙ୍ଗାଙ୍କୁ କହିଲେ—ହେ ଦେବୀ ! ତୁମେ ମୁନିଙ୍କୁ ପବିତ୍ର କର ଏବଂ ଏଠାରୁ ଶୀଘ୍ର ଫେରି ନ ଯାଇ ବୈବସ୍ୱତ ମନୁଙ୍କ ଅଠାଇଶତମ କଳିଯୁଗ ପର୍ଯ୍ୟନ୍ତ ଏଠାରେ ରୁହ ।

ଗଙ୍ଗା କହିଲେ—ମହେଶ୍ୱର ! ଯଦି ମୋର ମାହାତ୍ମ୍ୟ ଅନ୍ୟ ସମସ୍ତ ନଦୀଙ୍କ ଠାରୁ ଅଧିକ ହେବ ଏବଂ ଅମ୍ବିକା ତଥା ଗଣଙ୍କ ସହିତ ଆପଣ ମଧ୍ୟ ଏଠାରେ ରହିବେ, ତେବେ ଯାଇ ମୁଁ ଏ ଧରାପୃଷ୍ଠରେ ରହିବି ।

ଗଙ୍ଗାଙ୍କ କଥା ଶୁଣି ଭଗବାନ ଶିବ କହିଲେ—ଗଙ୍ଗେ ! ତୁମେ ଧନ୍ୟ । ମୋ କଥା ଶୁଣ । ମୁଁ ତୁମଠାରୁ ପୃଥକ୍ ନୁହେଁ, ତଥାପି ମୁଁ ତୁମ କଥନାନୁସାରେ ଏଠାରେ ଉପସ୍ଥିତ ରହିବି । ତୁମେ ମଧ୍ୟ ରୁହ ।

ନିଜ ସ୍ୱାମୀ ପରମେଶ୍ୱର ଶିବଙ୍କ କଥା ଶୁଣି ଗଙ୍ଗା ମନେ ମନେ ପ୍ରସନ୍ନ ହୋଇ ତାଙ୍କୁ ଭୂରି ଭୂରି ପ୍ରଶଂସା କଲେ । ଏତିକିବେଳେ ଦେବଗଣ, ପ୍ରାଚୀନ ଋଷିଗଣ, ପିତୃଗଣ, ଅନେକ ଉତ୍ତମ ତୀର୍ଥ ଓ ନାନା ପ୍ରକାର କ୍ଷେତ୍ର ସେଠାରେ ଆସି ପହଞ୍ଚିଲେ । ସମସ୍ତେ ଅତି ଆଦରରେ ଜୟନାଦ କରି ଗୌତମ, ଗଙ୍ଗା ଓ ଗିରିଶାୟୀ ଶିବଙ୍କୁ ପୂଜା କଲେ । ଏହାପରେ ଦେବତାମାନେ ନତମସ୍ତକ ହୋଇ କର ଯୋଡ଼ି ସମସ୍ତଙ୍କୁ ପ୍ରସନ୍ନ ମନରେ ସ୍ତୁତି କଲେ । ଏତିକିବେଳେ ଗଙ୍ଗା ଓ ଗିରୀଶ ପ୍ରସନ୍ନ ହୋଇ ସେମାନଙ୍କୁ କହିଲେ—"ଶ୍ରେଷ୍ଠ ଦେବଗଣ !



ବର ମାଗ । ତୁମର ପ୍ରିୟ କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ଆମେ ତୁମକୁ ବର ଦେବୁ ।"

ଦେବତାମାନେ କହିଲେ—"ହେ ଦେବେଶ୍ୱର ! ଯଦି ଆପଣ ସନ୍ତୁଷ୍ଟ ଏବଂ ହେ ନଦୀଶ୍ରେଷ୍ଠ ଗଙ୍ଗେ ! ଯଦି ଆପଣ ପ୍ରସନ୍ନ, ତେବେ ଆମର ଓ ମନୁଷ୍ୟଙ୍କର ହିତ ଦୃଷ୍ଟିରୁ ଆପଣମାନେ ଦୟା କରି ଏଠାରେ ନିବାସ କରନ୍ତୁ ।

ଗଙ୍ଗା କହିଲେ—ଦେବଗଣ ! ତେବେ ପୁଣି ସମସ୍ତଙ୍କ ହିତ କରିବା ପାଇଁ ଆପଣମାନେ ସ୍ୱୟଂ କାହିଁକି ଏଠାରେ ନ ରହୁଛନ୍ତି? ମୁଁ ତ ଗୌତମଙ୍କ ପାପର ପ୍ରକ୍ଷାଳନ କରିସାରି ଯେପରି ଆସିଥିଲି ସେପରି ଫେରିଯିବି । ଆପଣଙ୍କ ସମାଜରେ ମୋର କୌଣସି ବିଶେଷ ମହତ୍ତ୍ୱ କିପରି ବିସ୍ତାରିତ ହେବ? ଯଦି ଆପଣମାନେ ଏଠାରେ ମୋର ବିଶେଷତ୍ୱ ପ୍ରମାଣିତ କରିବେ, ତେବେ ମୁଁ ଅବଶ୍ୟ ଏଠାରେ ରହିବି—ଏଥିରେ ସଂଶୟ ନାହିଁ ।

ଦେବଗଣ କହିଲେ–ନଦୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଗଙ୍ଗେ ! ସମସ୍ତଙ୍କର ପରମ ସୁହୃଦ୍ ବୃହସ୍ପତି ଯେବେ ଯେବେ ସିଂହରାଶିରେ ଅବସ୍ଥାନ କରିବେ, ସେତେବେଳେ ଆମେ ସବୁ ଏଠାକୁ ଆସିବୁ, ଏଥିରେ ସଂଶୟ ନାହିଁ । ଏଗାର ବର୍ଷ ପର୍ଯ୍ୟନ୍ତ ଲୋକମାନଙ୍କର ପାତକ ପ୍ରକ୍ଷାଳିତ କରି କରି ଆମେ ମଳିନ ହୋଇଗଲେ, ସେସବୁ ପାପରାଶିକୁ ଧୋଇବା ପାଇଁ ଆମେ ଆଦରରେ ଆପଣଙ୍କ ପାଖକୁ ଆସିବୁ । ଆମେ ସତ୍ୟ କହୁଛୁ । ଏଣୁ ହେ ସରିଦ୍ବରେ ! ହେ ମହାଦେବୀ ! ଆପଣ ଓ ମହାଦେବ ସମସ୍ତଙ୍କ ଉପରେ ଅନୁଗ୍ରହ କରିବା ପାଇଁ ତଥା ଆମର ପ୍ରିୟ କାର୍ଯ୍ୟ କରିବା ପାଇଁ ଏଠାରେ ନିତ୍ୟ ନିବାସ କରିବା ଉଚିତ । ଗୁରୁ ଯେପର୍ଯ୍ୟନ୍ତ ସିଂହରାଶିରେ ରହିବେ, ସେପର୍ଯ୍ୟନ୍ତ ଆମେ ଏଠାରେ ନିବାସ କରିବୁ । ସେତେବେଳେ ଆପଣଙ୍କ ଜଳରେ ତ୍ରିକାଳ ସ୍ନାନ କରି ଓ ଭଗବାନ ଶିବଙ୍କୁ ଦର୍ଶନ କରି ଆମେ ଶୁଦ୍ଧ ହୋଇଯିବୁ । ତା'ପରେ ପୁନଃ ଆପଣଙ୍କ ଆଜ୍ଞା ନେଇ ଆମେ ସ୍ୱସ୍ଥାନକୁ ଫେରିଯିବୁ ।

ସୂତ କହୁଛନ୍ତି–ଏହିରୂପେ ଦେବଗଣଙ୍କ ଓ ମହର୍ଷି ଗୌତମଙ୍କ ପ୍ରାର୍ଥନାକ୍ରମେ ଭଗବାନ ଶିବ ଓ ଶ୍ରେଷ୍ଠ ନଦୀ ଗଙ୍ଗା ଉଭୟେ ସେଠାରେ ଅବସ୍ଥାନ କଲେ । ସେଠାରେ ଗଙ୍ଗାନଦୀ ଗୌତମୀ (ଗୋଦାବରୀ) ନାମରେ ବିଖ୍ୟାତ ହେଲା ଏବଂ ମହାଦେବ ଶିବଙ୍କ ଜ୍ୟୋତିର୍ମୟ ଲିଙ୍ଗ ତ୍ର୍ୟମ୍ବକ ନାମରେ ପ୍ରସିଦ୍ଧ ହେଲା । ଏହି ଜ୍ୟୋତିର୍ଲିଙ୍ଗ ମହାପାତକନାଶକ । ସେହିଦିନ ଠାରୁ ଆଜି ପର୍ଯ୍ୟନ୍ତ ଯେତେ ଥର ବୃହସ୍ପତି ସିଂହରାଶିରେ ଅବସ୍ଥାନ କରନ୍ତି, ସେହି ସମୟରେ ସକଳ ତୀର୍ଥ, କ୍ଷେତ୍ର, ଦେବତା, ପୁଷ୍କରାଦି ସରୋବର, ଗଙ୍ଗାଦି ନଦୀ ଓ ବିଷ୍ଣୁ ପ୍ରଭୃତି ଦେବଗଣ ନିଶ୍ଚିତରୂପେ ଗୌତମୀ ତଟକୁ ଆସନ୍ତି ଏବଂ ସେଠାରେ ବାସ କରନ୍ତି । ସେମାନେ ଯେପର୍ଯ୍ୟନ୍ତ ଗୌତମୀ ତଟରେ ରହନ୍ତି, ସେପର୍ଯ୍ୟନ୍ତ ସେମାନଙ୍କ ସ୍ୱସ୍ଥାନରେ କୌଣସି ଫଳ ମିଳେ ନାହିଁ । ସେମାନେ ସ୍ୱସ୍ଥାନକୁ ଫେରିଯିବା ପରେ ଯାଇ ସେମାନଙ୍କୁ ସେବା କରିବାର ଫଳ ମିଳେ । ତ୍ର୍ୟମ୍ବକ ନାମକ ଏହି ପ୍ରସିଦ୍ଧ ଜ୍ୟୋତିର୍ଲିଙ୍ଗ ଗୌତମୀ ତଟରେ ସ୍ଥିତ ଏବଂ ଏହା ବଡ଼ ବଡ଼ ପାପ ନାଶ କରିଥାଏ । ଯେ ଭକ୍ତିଭାବରେ ତ୍ର୍ୟମ୍ବକ ଲିଙ୍ଗର ଦର୍ଶନ, ପୂଜନ, ସ୍ତବନ ଓ ବନ୍ଦନ କରେ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ । ଗୌତମଙ୍କ ଦ୍ୱାରା ପୂଜିତ ତ୍ର୍ୟମ୍ବକ ନାମକ ଜ୍ୟୋତିର୍ଲିଙ୍ଗ ଇହଲୋକରେ ସମସ୍ତ ଅଭୀଷ୍ଟ ପ୍ରଦାନ କରିଥାଏ ତଥା ପରଲୋକରେ ମୋକ୍ଷ ପ୍ରଦାନ କରିଥାଏ । ମୁନୀଶ୍ୱରଗଣ ! ତୁମେମାନେ ଯାହା ପଚ୍ରିଥିଲ, ମୁଁ କହିଦେଲି । ଏବେ ଆଉ କ'ଣ ଶୁଣିବାକୁ ଚାହୁଁଛ, କୁହ । ମୁଁ ତାହା ମଧ୍ୟ ତୁମକୁ ନିଶ୍ଚୟ କହିବି । (ଅଧ୍ୟାୟ ୨୬)

⁂

## ବୈଦ୍ୟନାଥେଶ୍ୱର ଜ୍ୟୋତିର୍ଲିଙ୍ଗ ପ୍ରାକଟ୍ୟର କଥା ଓ ମହିମା

ସୂତ କହୁଛନ୍ତି–ଏବେ ମୁଁ ବୈଦ୍ୟନାଥେଶ୍ୱର ଜ୍ୟୋତିର୍ଲିଙ୍ଗଙ୍କ ପାପହାରୀ ମାହାତ୍ମ୍ୟ କହିବି, ଶୁଣ । ରାକ୍ଷସରାଜ ରାବଣ ବଡ଼ ଅଭିମାନୀ ଓ ଅହଂକାରୀ ଥିଲା । ସେ ଗିରିବର କୈଳାସ ଉପରେ ଭକ୍ତିଭାବରେ ଭଗବାନ ଶିବଙ୍କର ଆରାଧନା କରୁଥିଲା । ଦୀର୍ଘକାଳ ଆରାଧନା ପରେ ମଧ୍ୟ ଶିବ ପ୍ରସନ୍ନ ନ ହେବାରୁ ତାଙ୍କୁ ପ୍ରସନ୍ନ କରିବା ପାଇଁ ସେ ଅନ୍ୟ ଗୋଟିଏ ତପସ୍ୟା କଲା । ପୁଲସ୍ତ୍ୟକୁଳନନ୍ଦନ ଶ୍ରୀମାନ୍ ରାବଣ ସିଦ୍ଧିର ସ୍ଥାନଭୂତ ହିମାଳୟ ପର୍ବତର ଦକ୍ଷିଣଭାଗରେ ବୃକ୍ଷରାଜିରେ ସୁଶୋଭିତ ଗୋଟିଏ ବନରେ ବିଶାଳ ଗାତଟିଏ ଖୋଳି ସେଥିରେ ଅଗ୍ନି ସ୍ଥାପନ କଲା ।

ଏବଂ ତାହାରି ନିକଟରେ ଭଗବାନ ଶିବଙ୍କୁ ସ୍ଥାପିତ କରି ହୋମ ଆରମ୍ଭ କଲା । ଗ୍ରୀଷ୍ମଋତୁରେ ସେ ପଞ୍ଚାଗ୍ନିର ପରିବେଷ୍ଟନୀରେ ବସି, ବର୍ଷାଋତୁରେ ଖୋଲା ଆକାଶ ତଳେ ଭୂମି ଉପରେ ବସି ଏବଂ ଶୀତକାଳରେ ପାଣି ଭିତରେ ଠିଆ ହୋଇ ତପସ୍ୟା କରୁଥିଲା । ଏହିରୂପେ ତା'ର ତିନିପ୍ରକାର ତପସ୍ୟା ଚାଲୁଥିଲା । ଏଭଳି ଦୀର୍ଘକାଳ ତପସ୍ୟା କରିବା ସତ୍ତ୍ୱେ ପରମାତ୍ମା ମହେଶ୍ୱର ତା' ଉପରେ ପ୍ରସନ୍ନ ହେଲେ ନାହିଁ; କାରଣ ତାଙ୍କୁ ପ୍ରସନ୍ନ କରିବା ଦୁରାତ୍ମା ପକ୍ଷେ ଅତ୍ୟନ୍ତ କଷ୍ଟକର । ଏହାପରେ ମହାମନସ୍ୱୀ ଦୈତ୍ୟରାଜ ରାବଣ ନିଜ ମସ୍ତକ କାଟି ଶିବଙ୍କୁ ପୂଜା କରିବା ଆରମ୍ଭ କରିଦେଲା । ସେ ବିଧିପୂର୍ବକ ଶିବଙ୍କୁ ପୂଜା କରି ନିଜର ଗୋଟିଏ ଲେଖାଏଁ ମୁଣ୍ଡ କାଟେ ଏବଂ ଶିବଙ୍କୁ ଅର୍ପଣ କରିଦିଏ । ଏହିପରି ସେ ନଅଟା ମୁଣ୍ଡ କାଟିଦେଲା । ଶେଷରେ ଯେତେବେଳେ ଗୋଟିଏ ମାତ୍ର ମୁଣ୍ଡ ବାକି ରହିଲା, ସେତେବେଳେ ଯାଇ ଭକ୍ତବତ୍ସଳ ଶିବ ସନ୍ତୁଷ୍ଟ ଓ ପ୍ରସନ୍ନ ହୋଇ ତା' ସମ୍ମୁଖରେ ପ୍ରକଟ ହେଲେ । ଭଗବାନ ତା'ର ସମସ୍ତ ମସ୍ତକକୁ ପୂର୍ବବତ୍ ଅକ୍ଷୁଣ୍ଣ କରିଦେଇ ତାକୁ ଇଚ୍ଛାନୁସାରେ ଅନୁପମ ବଳ ପ୍ରଦାନ କଲେ । ଶିବଙ୍କ କୃପାପ୍ରସାଦ ଲାଭ କରି ରାକ୍ଷସ ରାବଣ ନତମସ୍ତକ ହୋଇ କର ଯୋଡ଼ି ତାଙ୍କୁ କହିଲା – ''ହେ ଦେବେଶ୍ୱର ! ପ୍ରସନ୍ନ ହୁଅନ୍ତୁ । ମୁଁ ଆପଣଙ୍କୁ ଲଙ୍କା ନେଇଯିବାକୁ ଚାହେଁ; ମୋର ଏହି ମନୋରଥ ସଫଳ କରନ୍ତୁ । ମୁଁ ଆପଣଙ୍କ ଶରଣାଗତ ।''

ରାବଣର କଥା ଶୁଣି ଭଗବାନ ବଡ଼ ସଙ୍କଟରେ ପଡ଼ିଗଲେ । ସେ କିଞ୍ଚିତ୍ ବିମନା ହୋଇ କହିଲେ ''ରାକ୍ଷସରାଜ ! ମୋର ସାରଗର୍ଭକ କଥା ଶୁଣ । ତୁମେ ମୋର ଏ ଉତ୍ତମ ଶିବଲିଙ୍ଗକୁ ଭକ୍ତିଭାବରେ ତୁମ ଘରକୁ ନେଇଯାଅ । କିନ୍ତୁ ଏହାକୁ ଯଦି କେଉଁଠି ଭୂମି ଉପରେ ରଖିଦେବ, ତେବେ ଏହା ସେଠାରେ ସୁସ୍ଥିର ହୋଇଯିବ, ଏଥିରେ ସନ୍ଦେହ ନାହିଁ । ଏଣିକି ତୁମର ଯେପରି ଇଚ୍ଛା ସେପରି କର ।''

ସୂତ କହୁଛନ୍ତି—ବ୍ରାହ୍ମଣବୃନ୍ଦ ! ଭଗବାନ ଶିବ ଏପରି କହିବାରୁ ରାକ୍ଷସରାଜ ରାବଣ ସେଥିରେ ସହମତ ହୋଇ ସେହି ଶିବଲିଙ୍ଗକୁ ଉଠାଇ ନିଜ ଗୃହ ଅଭିମୁଖେ ଅଗ୍ରସର ହେଲା । ମାର୍ଗରେ ଶିବଙ୍କ ମାୟାରେ ତାକୁ ପରିସ୍ରା ଲାଗିଲା । ପୁଲସ୍ତ୍ୟନନ୍ଦନ ରାବଣ ଅତି ସାମର୍ଥ୍ୟବାନ୍ ହୋଇଥିଲେ ମଧ୍ୟ ମୂତ୍ର ରୋକିବାକୁ ଅସମର୍ଥ ହୋଇପଡ଼ିଲା । ସେତିକିବେଳେ ସେଠାରେ ଗୋଟିଏ ଗୋପାଳକୁ ଦେଖିଲା । ସେ ତାକୁ ଅନୁରୋଧ କରି ତା' ହାତରେ ଶିବଲିଙ୍ଗ ଧରାଇଦେଇ ନିଜେ ପରିସ୍ରା କରିବାକୁ ବସିଗଲା । ଶିବଲିଙ୍ଗର ଓଜନ ହେତୁ ମୁହୂର୍ତ୍ତିକ ଭିତରେ ଗୋପାଳ ଅତ୍ୟନ୍ତ ବ୍ୟଥିତ ହୋଇପଡ଼ିଲା ଏବଂ ସେ ତାହାକୁ ସମ୍ଭାଳି ନ ପାରି ତଳେ ଥୋଇଦେଲା । ଏହାଫଳରେ ସେହି ହୀରକମୟ ଶିବଲିଙ୍ଗ ସେହିଠାରେ ଅବସ୍ଥିତ ହୋଇଗଲା । ତାହାକୁ ଦର୍ଶନ କଲେ ସମସ୍ତ ଅଭୀଷ୍ଟ ପୂର୍ଣ୍ଣ ହୋଇଥାଏ ଏବଂ ପାପରାଶି ନଷ୍ଟ ହୋଇଥାଏ । ମୁନେ ! ସେହି ଶିବଲିଙ୍ଗ ତ୍ରିଲୋକରେ ବୈଦ୍ୟନାଥେଶ୍ୱର ନାମରେ ପ୍ରସିଦ୍ଧ ହେଲା, ଯାହାକି ସାଧୁଜନଙ୍କୁ ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ସେହି ଦିବ୍ୟ ଉତ୍ତମ ଏବଂ ଶ୍ରେଷ୍ଠ ଜ୍ୟୋତିର୍ଲିଙ୍ଗର ଦର୍ଶନ ଓ ପୂଜନ କଲେ ସମସ୍ତ ପାପ ହରଣ ହୋଇଥାଏ ଏବଂ ମୋକ୍ଷପ୍ରାପ୍ତି ହୋଇଥାଏ । ଉକ୍ତ ଶିବଲିଙ୍ଗ ସମଗ୍ର ଜଗତର ହିତ ନିମନ୍ତେ ସେଠାରେ ସ୍ଥିତ ହୋଇଗଲା ଏବଂ ରାବଣ ଭଗବାନ ଶିବଙ୍କ ଠାରୁ ପରମ ଉତ୍ତମ ବର ପାଇ ସ୍ୱଗୃହକୁ ବାହୁଡ଼ିଗଲା । ସେଠାକୁ ଯାଇ ମହାସୁର ରାବଣ ଅତି ହର୍ଷରେ ତା'ର ପ୍ରିୟା ମନ୍ଦୋଦରୀକୁ ସକଳ ବୃତ୍ତାନ୍ତ କହିଲା । ଇନ୍ଦ୍ରାଦି

ସକଳ ଦେବତା ଓ ନିର୍ମଳଚିତ୍ତ ମୁନିମାନେ ଏ ସମାଗ୍ଭର ପାଇ ପରସ୍ପର ମଧ୍ୟରେ ବିଗ୍ଭର ବିମର୍ଶ କରି ସେଠାକୁ ଆସିଲେ । ସେମାନଙ୍କ ମନ ଶିବଙ୍କ



ଠାରେ ନିବିଷ୍ଟ ଥିଲା । ସେମାନେ ପ୍ରସନ୍ନ ଚିତ୍ତରେ ଶିବଙ୍କୁ ବିଶେଷରୂପେ ପୂଜା-ଅର୍ଚ୍ଚନା କଲେ । ସେମାନେ ଶିବଙ୍କର ସାକ୍ଷାତ୍ ଦର୍ଶନ ପାଇ ସେହି ଲିଙ୍ଗକୁ ସେଠାରେ ବିଧିବତ୍ ସ୍ଥାପନା କଲେ ଏବଂ ତାହାର ନାମ ବୈଦ୍ୟନାଥେଶ୍ୱର ରଖି ତାହାର ବନ୍ଦନ ଓ ସ୍ତବନ କରିବା ପରେ ସ୍ୱର୍ଗଲୋକକୁ ଫେରିଗଲେ ।

ଋଷିଗଣ ପଗ୍ଭରିଲେ–ସୂତ ! ଯେତେବେଳେ ଶିବଲିଙ୍ଗ ସେଠାରେ ସ୍ଥିତ ହୋଇଗଲା ଏବଂ ରାବଣ ସ୍ୱଗୃହକୁ ଫେରିଗଲା, ସେତେବେଳେ ସେଠାରେ କ'ଣ ଘଟିଲା, ସେ ବିଷୟରେ କୁହନ୍ତୁ ।

ସୂତ କହିଲେ–ବ୍ରାହ୍ମଣବୃନ୍ଦ ! ଶିବଙ୍କ ଠାରୁ ପରମୋତ୍ତମ ବର ପାଇ ମହାସୁର ରାବଣ ତା' ନିବାସ ସ୍ଥାନକୁ ଗ୍ଭଲିଗଲା । ସେଠାରେ ସେ ତା'ର ପ୍ରିୟାକୁ ସବୁ ଘଟଣା କହିଲା ଏବଂ ନିଜେ ବି ଅତ୍ୟନ୍ତ ଆନନ୍ଦ ଅନୁଭବ କଲା । ଏଣେ ଏ ସମାଗ୍ଭର ଶୁଣି ଦେବତା ଭୟଭୀତ ହୋଇ ଭାବିଲେ, ଏ ଦେବଦ୍ରୋହୀ ମହାଦୁଷ୍ଟ ରାବଣ ଶିବଙ୍କ ବରଦାନରେ ବଳୀୟାନ୍ ହୋଇ କ'ଣ କ'ଣ କରିବ, କିଏ ଜାଣେ? ସେମାନେ ନାରଦଙ୍କୁ ପଠାଇଲେ । ନାରଦ ଯାଇ ରାବଣକୁ କହିଲେ– "ତୁମେ କୈଳାସ ପର୍ବତକୁ ଉଠାଇ ଦେଖ ଯେ ଶିବ ଦେଇଥିବା ବରଦାନ କେତେ ଦୂର ସଫଳ ହେଉଛି ।" ରାବଣ ମନକୁ କଥାଟି ପାଇଗଲା । ସେ ଯାଇ କୈଳାସକୁ ଉପାଡ଼ି ପକାଇଲା । ଏହାଦ୍ୱାରା ସମଗ୍ର କୈଳାସ ହଲିଗଲା । ଗିରିଜାଙ୍କ କଥନ ଅନୁସାରେ ମହାଦେବ ରାବଣକୁ ଅହଂକାରୀ ବୋଲି ବୁଝି ତାକୁ ଅଭିଶାପ ଦେଲେ ।

ମହାଦେବ କହିଲେ–ରେ ରେ ଦୁଷ୍ଟଭକ୍ତ ଦୁର୍ବୁଦ୍ଧି ରାବଣ ! ତୁ ତୋ ବଳ ଉପରେ ଏତେ ଗର୍ବ ନ କର । ତୋର ଭୁଜମାନଙ୍କର ଦର୍ପ ଚୂର୍ଣ୍ଣ କରିବା ପରି ବୀରପୁରୁଷ ଖୁବ୍ ଶୀଘ୍ର ଏ ଜଗତରେ ଅବତୀର୍ଣ୍ଣ ହେବ ।

ସୂତ କହିଲେ–ଏ ଯେଉଁ ଘଟଣା ସେଠାରେ ଘଟିତ ହେଲା, ତାହାକୁ ନାରଦ ନାରଦ ମଧ୍ୟ ଜାଣିପାରିଲେ ଓ ଶୁଣିପାରିଲେ । ରାବଣ ମଧ୍ୟ ପ୍ରସନ୍ନ ଚିତ୍ତରେ ଯେପରି ଆସିଥିଲା, ସେପରି ଫେରିଗଲା । ଏହା ଥିଲା ବୈଦ୍ୟନାଥେଶ୍ୱରଙ୍କ ମାହାତ୍ମ୍ୟ । ଏହି ଚରିତ୍ରକୁ ଶ୍ରବଣ କରୁଥିବା ବ୍ୟକ୍ତିର ପାପ ଭସ୍ମ ହୋଇଯାଏ । (ଅଧ୍ୟାୟ ୨୭-୨୮)

✽✽✽

## ନାଗେଶ୍ୱର ନାମକ ଜ୍ୟୋତିର୍ଲିଙ୍ଗର ଆବିର୍ଭାବ ଓ ମହିମା

ସୂତ କହୁଛନ୍ତି–ବ୍ରାହ୍ମଣବୃନ୍ଦ ! ଏବେ ମୁଁ ପରମାତ୍ମା ଶିବଙ୍କ ନାଗେଶ ନାମକ ପରମୋତ୍ତମ ଜ୍ୟୋତିର୍ଲିଙ୍ଗର ଆବିର୍ଭାବ ପ୍ରସଙ୍ଗ ଶୁଣାଇବି । ଦାରୁକା ନାମରେ ଗୋଟିଏ ରାକ୍ଷସୀ ଥିଲା । ସେ

ପାର୍ବତୀଙ୍କ ବରଦାନରେ ଅତ୍ୟନ୍ତ ଗର୍ବିତା ହୋଇଯାଇଥିଲା । ଅତ୍ୟନ୍ତ ବଳଶାଳୀ ଦାରୁକ ଥିଲା ତାହାର ସ୍ୱାମୀ । ସେ ଅନେକ ରାକ୍ଷସଙ୍କୁ ସଙ୍ଗରେ ଧରି ସେଠାରେ ବହୁତ ଉତ୍ପାତ କରୁଥିଲା ଏବଂ ସାଧୁଲୋକଙ୍କୁ ମାରି ପକାଉଥିଲା । ଲୋକଙ୍କର ଯଜ୍ଞ ଓ ଧର୍ମକୁ ନଷ୍ଟ କରିଦେଉଥିଲା । ସମୁଦ୍ରର ପଶ୍ଚିମ ତଟରେ ତାହାର ଗୋଟିଏ ବନ ଥିଲା, ତାହା ନାନା ପ୍ରକାର ସମୃଦ୍ଧିରେ ଭରପୂର ଥିଲା । ସେହି ବନର ଦୈର୍ଘ୍ୟ ଓ ପ୍ରସ୍ଥ ଷୋହଳ ଯୋଜନ ଥିଲା । ଦାରୁକା ବିଳାସ କରିବା ପାଇଁ ଯେଉଁଠାକୁ ଯାଉଥିଲା, ସେଠାକୁ ଭୂମି, ବୃକ୍ଷ ଓ ଅନ୍ୟ ସବୁ ଉପକରଣରେ ପରିପୂର୍ଣ୍ଣ ସେହି ବନ ମଧ୍ୟ ଗ୍ଲିଯାଉଥିଲା । ଦେବୀ ପାର୍ବତୀ ସେହି ବନର ରକ୍ଷଣାବେକ୍ଷଣର ଭାର ଦାରୁକା ଉପରେ ନ୍ୟସ୍ତ କରିଦେଇଥିଲେ । ଦାରୁକା ତା'ର ସ୍ୱାମୀ ସଙ୍ଗେ ଇଚ୍ଛାନୁସାରେ ସେହି ବନରେ ବିଚରଣ କରୁଥିଲା । ରାକ୍ଷସ ଦାରୁକ ନିଜ ପତ୍ନୀ ସହିତ ସେଠାରେ ରହି ସମସ୍ତଙ୍କୁ ତ୍ରାସ ଦେଉଥିଲା । ତା'ର ଅତ୍ୟାଗ୍ୱରରେ ପୀଡ଼ିତ ପ୍ରଜାଗଣ ମହର୍ଷି ଔର୍ବଙ୍କ ଶରଣକୁ ଯାଇ ଆପଣା ଦୁଃଖ ଶୁଣାଇଲେ । ଔର୍ବ ଶରଣାଗତଙ୍କ ରକ୍ଷା ପାଇଁ ରାକ୍ଷସମାନଙ୍କୁ ଅଭିଶାପ ଦେଲେ ଯେ "ଏ ରାକ୍ଷସମାନେ ଯଦି ପୃଥିବୀପୃଷ୍ଠରେ ପ୍ରାଣୀଙ୍କ ପ୍ରତି ହିଂସା କରିବେ କିଂବା ଯଜ୍ଞବିଧ୍ୱଂସ କରିବେ, ତେବେ ସେହିକ୍ଷଣି ପ୍ରାଣ ହରାଇବେ ।" ଦେବତାମାନେ ଯେତେବେଳେ ଏକଥା ଶୁଣିଲେ, ସେମାନେ ଦୁରାଗ୍ୱରୀ ରାକ୍ଷସଙ୍କ ଉପରେ ଆକ୍ରମଣ କରିଦେଲେ । ରାକ୍ଷସମାନେ ଭୟଭୀତ ହୋଇଗଲେ । ଯଦି ସେମାନେ ଯୁଦ୍ଧରେ ଦେବତାଙ୍କୁ ମାରୁଛନ୍ତି, ମୁନିଙ୍କ ଶାପରେ ସ୍ୱୟଂ ମରିଯିବେ ଏବଂ ଯଦି ନ ମାରୁଛନ୍ତି, ପରାଜିତ ହୋଇ ଭୋକରେ ମରିଯିବେ । ଏଭଳି ସ୍ଥିତି ଦେଖି ରାକ୍ଷସୀ ଦାରୁକା କହିଲା, "ଭବାନୀଙ୍କ ବରଦାନରେ ମୁଁ ଏ ବନକୁ ଯେଉଁଠିକୁ ଇଚ୍ଛା ସେଠାକୁ ନେଇଯାଇ ପାରିବି ।" ଏହା କହି ସେ ସମଗ୍ର ବନକୁ ନେଇ ସମୁଦ୍ରରେ ଯାଇ ରହିଲା । ରାକ୍ଷସମାନେ ପୃଥିବୀପୃଷ୍ଠରେ ନ ରହି ଜଳରେ ନିର୍ଭୟ ହୋଇ ରହିଲେ ଏବଂ ସେଠାକାର ପ୍ରାଣୀଙ୍କୁ କଷ୍ଟ ଦେବାକୁ ଲାଗିଲେ ।

ଥରେ କେତେଗୁଡ଼ିଏ ନୌକା ସେହି ବାଟ ଦେଇ ଯାଉଥିଲା । ସେଥିରେ ଲୋକ ଭର୍ତ୍ତି ହୋଇଥିଲେ । ରାକ୍ଷସମାନେ ସେଥିରେ ବସିଥିବା ଲୋକଙ୍କୁ ଧରି ସେମାନଙ୍କ ହାତଗୋଡ଼କୁ ବାନ୍ଧି ପକାଇ କାରାଗାରରେ ଅବରୁଦ୍ଧ କରି ରଖିଲେ । ସେମାନଙ୍କୁ ବାରମ୍ବାର ଧମକାଚମକା କଲେ । ସେମାନଙ୍କ ମଧ୍ୟରେ ସୁପ୍ରିୟ ନାମରେ ଗୋଟିଏ ବୈଶ୍ୟ ଥିଲା । ସେ ସେହି ଦଳର ସର୍ଦ୍ଦାର ଥିଲା । ସେ ଅତି ସଦାଗ୍ୱରୀ, ଭସ୍ମ-ରୁଦ୍ରାକ୍ଷଧାରୀ ଓ ଭଗବାନ ଶିବଙ୍କ ଭକ୍ତ ଥିଲା । ସୁପ୍ରିୟ ଶିବଙ୍କୁ ପୂଜା ନ କରି ଭୋଜନ କରୁ ନ ଥିଲା । ସେ ସ୍ୱୟଂ ତ ଶିବଙ୍କୁ ପୂଜା କରୁଥିଲା, ଏପରିକି ତା'ର ଅନେକ ସାଥୀମାନଙ୍କୁ ମଧ୍ୟ ସେ ଶିବପୂଜା ଶିଖାଇ ଦେଇଥିଲା । ତେଣୁ ସମସ୍ତେ 'ନମଃ ଶିବାୟ' ମନ୍ତ୍ର ଜପିବା ସଙ୍ଗେ ସଙ୍ଗେ ଶିବଙ୍କୁ ଧ୍ୟାନ ବି କରୁଥିଲେ । ସୁପ୍ରିୟକୁ ଶିବଙ୍କ ଦର୍ଶନ ମଧ୍ୟ ମିଳୁଥିଲା । ଦାରୁକ ରାକ୍ଷସକୁ ଏକଥା ଜଣାପଡ଼ିବାରୁ ସେ ଆସି ସୁପ୍ରିୟକୁ ଧମକାଇଲା । ରାକ୍ଷସର ସାଥୀମାନେ ସୁପ୍ରିୟକୁ ମାରିବାକୁ ଗୋଡ଼ାଇଲେ । ରାକ୍ଷସମାନଙ୍କୁ ଦେଖି ସୁପ୍ରିୟ ଭୟରେ କାତର ହୋଇ ଉଠିଲା । ସେ ପ୍ରେମପୂର୍ଣ୍ଣ ଚିତ୍ତରେ ଶିବଙ୍କୁ ଚିନ୍ତନ କରି ତାଙ୍କ ନାମ ଜପିବାକୁ ଲାଗିଲା ।

ବୈଶ୍ୟପତି କହିଲା—ହେ ଦେବେଶ୍ୱର ଶଙ୍କର ! ମୋତେ ରକ୍ଷା କରନ୍ତୁ । ହେ କଲ୍ୟାଣକାରୀ ତ୍ରୈଲୋକ୍ୟନାଥ ! ହେ ଦୁଷ୍ଟହନ୍ତା ଭକ୍ତବତ୍ସଳ

ଶିବ ! ମୋତେ ଦୁଷ୍ଟଙ୍କ କବଳରୁ ରକ୍ଷା କରନ୍ତୁ । ଏବେ ଆପଣ ହିଁ ମୋର ସର୍ବସ୍ୱ । ପ୍ରଭୋ ! ମୁଁ ଆପଣଙ୍କର, ଆପଣଙ୍କ ଅଧୀନ ଏବଂ ଆପଣ ହିଁ ସଦା ମୋର ଜୀବନ ଓ ପ୍ରାଣ ।

ସୂତ କହୁଛନ୍ତି–ସୁପ୍ରିୟ ଏପରି ପ୍ରାର୍ଥନା କରିବାରୁ ଶିବ ଗୋଟିଏ ବିବର ମଧ୍ୟରୁ ବାହାରି ପଡ଼ିଲେ । ତାଙ୍କ ସହିତ ଚାରିଟି ଦ୍ୱାର ଥିବା ଗୋଟିଏ ମନ୍ଦିର ମଧ୍ୟ ପ୍ରକଟ ହୋଇଗଲା । ମନ୍ଦିରର ମଧ୍ୟଭାଗରେ ଉକ୍ତ ଅଦ୍ଭୁତ ଜ୍ୟୋତିର୍ମୟ ଶିବଲିଙ୍ଗ ଉଦ୍ଭାସିତ ହେଉଥିଲା । ସେଠାରେ ଶିବପରିବାରର ସମସ୍ତ ସଦସ୍ୟ ମଧ୍ୟ ବିଦ୍ୟମାନ ଥିଲେ । ସୁପ୍ରିୟ ଶିବଙ୍କ ଦର୍ଶନ ପାଇ ତାଙ୍କୁ ପୂଜା କଲା । ପୂଜାରେ ପ୍ରସନ୍ନ ହୋଇ ସ୍ୱୟଂ ଶିବ ପାଶୁପତାସ୍ତ୍ର ନେଇ ମୁଖ୍ୟ ମୁଖ୍ୟ ରାକ୍ଷସଙ୍କୁ ଏବଂ ସେମାନଙ୍କ ସମସ୍ତ ଉପକରଣ ସମେତ ସେବକଙ୍କୁ ଅବିଳମ୍ବେ ନଷ୍ଟ କରିଦେଲେ । ଏପରି କରି ଦୁଷ୍ଟହନ୍ତା ଶଙ୍କର ତାଙ୍କ ଭକ୍ତ ସୁପ୍ରିୟକୁ ରକ୍ଷା କଲେ । ଏହାପରେ ଅଦ୍ଭୁତ ଲୀଳାରଚୟିତା ଓ ଲୀଳାବିଗ୍ରହଧାରୀ ଶମ୍ଭୁ ସେହି ବନକୁ ବର ଦେଲେ ଯେ ଆଜିଠାରୁ ଏ ବନରେ ସଦା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଙ୍କର ଧର୍ମ ପାଳନ ହେବ । ଏଠାରେ ଶ୍ରେଷ୍ଠ ମୁନିଗଣ ଏବଂ ଶିବଧର୍ମର ଉପଦେଶକ, ପ୍ରଚାରକ ଓ ପ୍ରବର୍ତ୍ତକ ନିବାସ କରିବେ । ତମୋଗୁଣୀ ରାକ୍ଷସମାନେ ଏଠାରେ କଦାପି ରହିବେ ନାହିଁ ।

ସୂତ କହୁଛନ୍ତି–ଏତିକିବେଳେ ରାକ୍ଷସୀ ଦାରୁକା ଦୈନ୍ୟଭାବରେ ଦେବୀ ପାର୍ବତୀଙ୍କୁ ସ୍ତୁତି କଲା । ଦେବୀ ପାର୍ବତୀ ପ୍ରସନ୍ନ ହୋଇଗଲେ ଏବଂ କହିଲେ–"କୁହ, ତୋର କେଉଁ କାର୍ଯ୍ୟ ସାଧିତ କରିବି?" ସେ କହିଲା–"ମୋର ବଂଶକୁ ରକ୍ଷା କରନ୍ତୁ ।" ଦେବୀ କହିଲେ–"ମୁଁ ସତ୍ୟ କହୁଛି, ତୋ କୁଳକୁ ରକ୍ଷା କରିବି ।" ଏତିକି କହି ଦେବୀ ଶିବଙ୍କୁ କହିଲେ–"ସ୍ୱାମୀ ! ଆପଣଙ୍କ କଥା ଯୁଗର ଅନ୍ତିମଭାଗରେ ସତ୍ୟ ହେବ । ମୋ ବିଚାରରେ ସେପର୍ଯ୍ୟନ୍ତ ତାମସୀ ସୃଷ୍ଟି ମଧ୍ୟ ରହୁ । ମୁଁ ମଧ୍ୟ ଆପଣଙ୍କର ଏବଂ ଆପଣଙ୍କ ଆଶ୍ରିତା । ତେଣୁ ମୋ କଥାକୁ ମଧ୍ୟ ପ୍ରମାଣିତ (ସତ୍ୟ) କରନ୍ତୁ । ଏ ରାକ୍ଷସୀ ଦାରୁକା ଦେବୀ ଅଟେ–ମୋର ଶକ୍ତି ଅଟେ ଏବଂ ରାକ୍ଷସୀଙ୍କ ମଧ୍ୟରେ ବଳଶାଳିନୀ ଅଟେ । ତେଣୁ ଏ ରାକ୍ଷସଙ୍କ ରାଜ୍ୟରେ ଶାସନ କରିବ । ଏ ରାକ୍ଷସପତ୍ନୀମାନେ ଯେଉଁ ପୁତ୍ର ଉତ୍ପନ୍ନ କରିବେ, ସେମାନେ ସମସ୍ତେ ମିଳିମିଶି ଏ ବନରେ ନିବାସ କରିବେ । ଏହା ମୋର ଇଚ୍ଛା ।"

ଶିବ କହିଲେ–ପ୍ରିୟେ ! ତୁମେ ଯଦି ଏଭଳି କଥା କହୁଛ, ତେବେ ମୋ କଥା ଶୁଣ । ମୁଁ



ଭକ୍ତଙ୍କର ପାଳନ କରିବା ପାଇଁ ପ୍ରସନ୍ନତାପୂର୍ବକ ଏ ବନରେ ରହିବି । ଯେଉଁ ବ୍ୟକ୍ତି ଏଠାରେ ବର୍ଣ୍ଣଧର୍ମ ପାଳନରେ ତତ୍ପର ରହି ପ୍ରେମଭାବରେ ମୋତେ ଦର୍ଶନ କରିବ, ସେ ଚକ୍ରବର୍ତ୍ତୀ ସମ୍ରାଟ୍ ହେବ । କଳିଯୁଗର ଶେଷ ଓ ସତ୍ୟଯୁଗର ଆରମ୍ଭରେ ମହାସେନର ପୁତ୍ର ବୀରସେନ ରାଜାଧିରାଜ ହେବ । ସେ ମୋର ଭକ୍ତ ହେବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ପରାକ୍ରମୀ ହେବ ଏବଂ

ଏଠାକୁ ଆସି ମୋତେ ଦର୍ଶନ କରିବ । ଦର୍ଶନ କରିବାମାତ୍ରେ ସେ ଚକ୍ରବର୍ତ୍ତୀ ସମ୍ରାଟ୍ ହୋଇଯିବ ।

ସୂତ କହୁଛନ୍ତି—ବ୍ରାହ୍ମଣବୃନ୍ଦ ! ମହତୀ ଲୀଳା-ରଚୟିତା ଶିବ ଓ ଶିବାନୀ ପରସ୍ପର ମଧ୍ୟରେ ଏପରି ହାସ୍ୟ-ବିଳାସଯୁକ୍ତ ବାର୍ତ୍ତାଳାପ କରି ସ୍ୱୟଂ ସେଠାରେ ଅବସ୍ଥାନ କଲେ । ଜ୍ୟୋତିର୍ଲିଙ୍ଗସ୍ୱରୂପ ମହାଦେବ ସେଠାରେ ନାଗେଶ୍ୱର ନାମରେ ଏବଂ ଦେବୀ ପାର୍ବତୀ ନାଗେଶ୍ୱରୀ ନାମରେ ପ୍ରସିଦ୍ଧ ହେଲେ । ସେ ଦୁହେଁ ସାଧୁଜନଙ୍କର ପ୍ରିୟ ଅଟନ୍ତି ।

ଏହିରୂପେ ଜ୍ୟୋତିମାନଙ୍କର ସ୍ୱାମୀ ନାଗେଶ୍ୱର ମହାଦେବ ଜ୍ୟୋତିର୍ଲିଙ୍ଗରୂପରେ ପ୍ରକଟ ହେଲେ । ସେ ତ୍ରିଲୋକରେ ସମସ୍ତ କାମନା ପୂରଣ କରିଥାନ୍ତି । ଯେଉଁ ବୁଦ୍ଧିମାନ୍ ମାନବ ପ୍ରତିଦିନ ନାଗେଶ୍ୱରଙ୍କ ପ୍ରାକଟ୍ୟ ପ୍ରସଙ୍ଗ ସାଦର ଶ୍ରବଣ କରେ, ତାହାର ସମସ୍ତ ପ୍ରକାର ମହାପାତକ ନାଶକାରୀ ମନୋରଥ ପୂର୍ଣ୍ଣ ହୋଇଥାଏ । (ଅଧ୍ୟାୟ ୨୯-୩୦)

***

## ରାମେଶ୍ୱର ନାମକ ଜ୍ୟୋତିର୍ଲିଙ୍ଗର ଆବିର୍ଭାବ ଓ ମାହାତ୍ମ୍ୟ

ସୂତ କହୁଛନ୍ତି—ଋଷିଗଣ ! ଏବେ ରାମେଶ୍ୱର ନାମକ ଜ୍ୟୋତିର୍ଲିଙ୍ଗ କିପରି ପ୍ରକଟ ହେଲା, ତାହା କହୁଛି, ଶ୍ରଦ୍ଧାରେ ଶ୍ରବଣ କର । ଭଗବାନ ବିଷ୍ଣୁଙ୍କ ରାମାବତାର ସମୟରେ ଯେବେ ରାବଣ ସୀତାଙ୍କୁ ହରଣ କରି ଲଙ୍କା ନେଇଯାଇଥିଲା, ସେତେବେଳେ ସୁଗ୍ରୀବଙ୍କୁ ତଥା ଅଠର ପଦ୍ମ ବାନରସେନାଙ୍କୁ ନେଇ ଶ୍ରୀରାମ ସମୁଦ୍ରତଟକୁ ଆସିଲେ । ସେଠାରେ ସେ କିପରି ସମୁଦ୍ରକୁ ପାର କରିବେ ଏବଂ କିପରି ରାବଣକୁ ପରାସ୍ତ କରିବେ, ସେହି କଥା ଚିନ୍ତା କରୁଥିଲେ । ଏତିକି ବେଳେ ତାଙ୍କୁ ଶୋଷ ଲାଗିଲା । ସେ ଜଳ ମାଗିଲେ ଏବଂ ବାନର ମିଠା ଜଳ ନେଇ ଆସିଲେ । ଶ୍ରୀରାମ ପ୍ରସନ୍ନ ହୋଇ ତାଙ୍କଠାରୁ ଜଳ ନେଲେ । ତାଙ୍କ ମନରେ ଭାବନା ଆସିଲା ଯେ "ମୁଁ ତ ମୋ ସ୍ୱାମୀ ଶିବଙ୍କୁ ଦର୍ଶନ କରି ନାହିଁ, ତେବେ କିପରି ଜଳ ଗ୍ରହଣ କରିବି?" ଏପରି ଭାବି ସେ ସେହି ଜଳକୁ ପିଇଲେ ନାହିଁ । ଜଳକୁ ରଖିଦେଇ ରଘୁନନ୍ଦନ ପାର୍ଥିବ ପୂଜନ କଲେ । ଆବାହନାଦି ଷୋଡ଼ଶ ଉପଚାର ଦ୍ୱାରା ବିଧିପୂର୍ବକ ପ୍ରେମମଗ୍ନ-ଚିତ୍ତରେ ଶିବଙ୍କୁ ଅର୍ଚ୍ଚନା କଲେ । ପ୍ରଣାମ କରି ତଥା ଦିବ୍ୟ ସ୍ତୋତ୍ରଦ୍ୱାରା ଶିବଙ୍କୁ ସନ୍ତୁଷ୍ଟ କରି ଶ୍ରୀରାମ ଭକ୍ତିଭାବରେ ତାଙ୍କୁ ପ୍ରାର୍ଥନା କଲେ ।

ଶ୍ରୀରାମ କହିଲେ—ହେ ମୋର ସ୍ୱାମୀ ମହେଶ୍ୱର ! ଆପଣ ମୋତେ ସାହାଯ୍ୟ କରନ୍ତୁ । ଆପଣଙ୍କ ସହଯୋଗ ବିନା ମୋ କାର୍ଯ୍ୟରେ ସିଦ୍ଧି ମିଳିବା ଅତ୍ୟନ୍ତ ଦୁଷ୍କର । ରାବଣ ମଧ୍ୟ ଆପଣଙ୍କର ହିଁ ଭକ୍ତ । ସେ ସମସ୍ତଙ୍କ ପାଇଁ ସର୍ବଥା ଦୁର୍ଜୟ, ମାତ୍ର ଆପଣଙ୍କ ବର ପାଇ ସେ ସର୍ବଦା ଦର୍ପରେ ଫୁଲି ରହୁଛି । ସେ ତ୍ରିଭୁବନବିଜୟୀ ମହାବୀର । ଅପରପକ୍ଷେ ମୁଁ ମଧ୍ୟ ଆପଣଙ୍କ ଦାସ, ସର୍ବଦା ଆପଣଙ୍କର ଅଧୀନରେ ରହେ । ହେ ସଦାଶିବ ! ଏକଥା ଚିନ୍ତା କରି ଆପଣ ମୋର ପକ୍ଷ ନେବା ଉଚିତ ।

ସୂତ କହୁଛନ୍ତି—ଏପରି ପ୍ରାର୍ଥନା କରିସାରି ସେ ବାରମ୍ବାର ଉଚ୍ଚସ୍ୱରରେ 'ଜୟ ଶଙ୍କର, ଜୟ ଶିବ ଶଙ୍କର' ଇତ୍ୟାଦି ଉଦ୍‌ଘୋଷପୂର୍ବକ ଶିବଙ୍କୁ ସ୍ତୁତି କଲେ । ପୁଣି ତାଙ୍କର ମନ୍ତ୍ର ଜପିଲେ ଏବଂ ତାଙ୍କୁ ଧ୍ୟାନ କଲେ । ଏହାପରେ ପୁନଃ ପୂଜନ କରି ସେ ପ୍ରଭୁ ଶିବଙ୍କ ଆଗରେ ନୃତ୍ୟ କଲେ । ସେତେବେଳେ ତାଙ୍କ ହୃଦୟ ପ୍ରେମରେ ପରିପୂରିତ ହୋଇଯାଇଥିଲା । ସେ ଶିବଙ୍କ ସନ୍ତୋଷ ପାଇଁ ଅବ୍ୟକ୍ତ ଗଳନାଦ ମଧ୍ୟ କଲେ । ଶିବ ତାଙ୍କ ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇଗଲେ । ଜ୍ୟୋତିର୍ମୟ ମହେଶ୍ୱର ଆପଣା ବାମାଙ୍ଗଭୂତା ପାର୍ବତୀ ଓ ପାର୍ଷଦଗଣଙ୍କ ସହିତ

ଶାସ୍ତ୍ରୋକ୍ତ ନିର୍ମଳ ରୂପ ଧାରଣ କରି ଅବିଳମ୍ବେ ସେଠାରେ ଆବିର୍ଭୂତ ହେଲେ । ଶ୍ରୀରାମଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ ମହେଶ୍ୱର ତାଙ୍କୁ କହିଲେ– "ଶ୍ରୀରାମ ! ତୁମର କଲ୍ୟାଣ ହେଉ । ବର ମାଗ ।" ଶିବଙ୍କ ରୂପ ଦର୍ଶନ କରି ସେଠାରେ ଉପସ୍ଥିତ ଅନ୍ୟମାନେ ମଧ୍ୟ ପବିତ୍ର ହୋଇଗଲେ । ଶିବଧର୍ମପରାୟଣ ଶ୍ରୀରାମ ତାଙ୍କୁ ପୂଜା କଲେ; ନାନା ପ୍ରକାରେ ସ୍ତୁତି କରି ପ୍ରଣାମ କଲେ । ଏହାପରେ ରାବଣ ସଙ୍ଗେ ହେବାକୁ ଥିବା ଯୁଦ୍ଧରେ ବିଜୟୀ ହେବା ପାଇଁ ବର ମାଗିଲେ । ଶ୍ରୀରାମଙ୍କ ଭକ୍ତିରେ ପ୍ରସନ୍ନ ହୋଇ ମହେଶ୍ୱର କହିଲେ–



"ମହାରାଜ ! ତୁମର ଜୟ ହେଉ !" ଭଗବାନ ଶିବଙ୍କ ଠାରୁ ବିଜୟସୂଚକ ବର ଓ ଯୁଦ୍ଧ ଆଜ୍ଞା ପାଇ ଶ୍ରୀରାମ ନତମସ୍ତକ ହୋଇ କର ଯୋଡ଼ି ତାଙ୍କୁ ପୁନଃ ପ୍ରାର୍ଥନା କଲେ ।

ଶ୍ରୀରାମ କହିଲେ–ପ୍ରଭୋ ! ଯଦି ଆପଣ ସନ୍ତୁଷ୍ଟ, ତେବେ ଜଗତର ଲୋକଙ୍କୁ ପବିତ୍ର କରିବା ପାଇଁ ଏବଂ ଅନ୍ୟମାନଙ୍କର ଉପକାର କରିବା ପାଇଁ ଆପଣ ଏଠାରେ ସର୍ବଦା ନିବାସ କରନ୍ତୁ ।

ସୂତ କହୁଛନ୍ତି–ଶ୍ରୀରାମ ଏପରି କହିବାରୁ ଭଗବାନ ଶିବ ସେଠାରେ ଜ୍ୟୋତିର୍ଲିଙ୍ଗ ରୂପରେ ଅବସ୍ଥାନ କଲେ । ସେ ତ୍ରିଲୋକରେ ରାମେଶ୍ୱର ନାମରେ ପ୍ରସିଦ୍ଧ ହେଲେ । ତାଙ୍କ ପ୍ରଭାବରେ ଅପାର ସାଗରକୁ ଅନାୟାସରେ ପାର ହୋଇ ଶ୍ରୀରାମ ରାବଣାଦି ରାକ୍ଷସଙ୍କୁ ଶୀଘ୍ର ସଂହାର କଲେ ଏବଂ ନିଜ ପ୍ରିୟା ସୀତାଙ୍କୁ ଫେରି ପାଇଲେ । ସେହି ଦିନଠାରୁ ଧରାପୃଷ୍ଠରେ ରାମେଶ୍ୱରଙ୍କର ଅଦ୍ଭୁତ ମହିମା ପ୍ରସାରିତ ହେଲା । ଭଗବାନ ରାମେଶ୍ୱର ସଦା ଭୋଗ ଓ ମୋକ୍ଷ ପ୍ରଦାନ କରିଥାନ୍ତି ଏବଂ ଭକ୍ତଗଣଙ୍କର ଇଚ୍ଛା ପୂରଣ କରିଥାନ୍ତି । ଯେ ଦିବ୍ୟ ଗଙ୍ଗାଜଳରେ ରାମେଶ୍ୱରଙ୍କୁ ଭକ୍ତିପୂର୍ବକ ସ୍ନାନ କରାଏ, ସେ ଜୀବନ୍ମୁକ୍ତ ଅଟେ । ସେ ସଂସାରରେ ସମସ୍ତ ଦେବଦୁର୍ଲଭ ଭୋଗ ଉପଭୋଗ କରେ ଏବଂ ଶେଷରେ ଉତ୍ତମ ଜ୍ଞାନ ଲାଭ କରି ନିଶ୍ଚିତରୂପେ କୈବଲ୍ୟ ମୋକ୍ଷ ପ୍ରାପ୍ତ ହୁଏ । ମୁଁ ତୁମମାନଙ୍କ ଆଗରେ ଏ ଦିବ୍ୟ ଜ୍ୟୋତିର୍ଲିଙ୍ଗ ବିଷୟରେ ବର୍ଣ୍ଣନା କରିଦେଲି । ପ୍ରଭୁ ରାମେଶ୍ୱର ତାଙ୍କର ମହିମା ଶ୍ରବଣ କରୁଥିବା ବ୍ୟକ୍ତିର ସମସ୍ତ ପାପ ହରଣ କରିଥାନ୍ତି ।

(ଅଧ୍ୟାୟ ୩୧)

❀❀❀

## ଘୁଶ୍ମାର ଶିବଭକ୍ତି ହେତୁ ତା'ର ମୃତ ପୁତ୍ରକୁ ପୁନର୍ଜୀବନ ଲାଭ, ଘୁଶ୍ମେଶ୍ୱର ଶିବଙ୍କର ଆବିର୍ଭାବ ଓ ମହିମା

ସୂତ କହୁଛନ୍ତି–ଏବେ ମୁଁ ଘୁଶ୍ମେଶ ନାମକ ଜ୍ୟୋତିର୍ଲିଙ୍ଗଙ୍କ ଆବିର୍ଭାବ ବିଷୟରେ ଏବଂ ତାଙ୍କ ମହିମା ବିଷୟରେ କହିବି । ହେ ମୁନିବୃନ୍ଦ ! ମନଯୋଗପୂର୍ବକ ଶ୍ରବଣ କର । ଦକ୍ଷିଣଦିଗରେ

ଦେବଗିରି ନାମରେ ଗୋଟିଏ ଶ୍ରେଷ୍ଠ ପର୍ବତ ଅଛି । ତାହା ଦେଖିବାକୁ ଅଦ୍ଭୁତ ଓ ପରମ ଶୋଭାସମ୍ପନ୍ନ । ତାହାରି ନିକଟରେ ସୁଧର୍ମା ନାମକ ଜଣେ ଭରଦ୍ୱାଜକୁଳୋଦ୍ଭବ ବ୍ରହ୍ମବେତ୍ତା ବ୍ରାହ୍ମଣ ନିବାସ କରୁଥିଲେ । ତାଙ୍କ ପ୍ରିୟା ପତ୍ନୀର ନାମ ଥିଲା ସୁଦେହା । ସୁଦେହା ସର୍ବଦା ଶିବଧର୍ମ ପାଳନରେ ତତ୍ପର ରହୁଥିଲା । ସେ ଗୃହକାର୍ଯ୍ୟରେ ଦକ୍ଷ ଥିଲା ଏବଂ ସଦା ପତିସେବାରେ ରତ ରହୁଥିଲା । ଦ୍ୱିଜବର ସୁଧର୍ମା ମଧ୍ୟ ଦେବତା ଓ ଅତିଥିଙ୍କ ପୂଜକ ଥିଲେ । ସେ ବେଦବର୍ଣ୍ଣିତ ମାର୍ଗରେ ଚାଲୁଥିଲେ ଏବଂ ନିତି ଦିନ ଅଗ୍ନିହୋତ୍ର କରୁଥିଲେ । ତ୍ରିକାଳ ସନ୍ଧ୍ୟା କରିବାରୁ ତାଙ୍କର କାନ୍ତି ସୂର୍ଯ୍ୟଙ୍କ ପରି ଉଦ୍ଦୀପ୍ତ ଥିଲା । ସେ ବେଦଶାସ୍ତ୍ରର ମର୍ମଜ୍ଞ ଥିଲେ ଏବଂ ଶିଷ୍ୟଙ୍କୁ ପଢ଼ାଉଥିଲେ । ସେ ଧନବାନ୍ ଏବଂ ବଡ଼ ଦାତା ମଧ୍ୟ ଥିଲେ । ସେ ସୌଜନ୍ୟ ଆଦି ସଦ୍‌ଗୁଣର ଭାଜନ ଥିଲେ ଏବଂ ଶିବଙ୍କ ପୂଜନାଦି କାର୍ଯ୍ୟରେ ମନୋନିବେଶ କରୁଥିଲେ । ସେ ନିଜେ ବି ଶିବଭକ୍ତ ଥିଲେ ଏବଂ ଶିବଭକ୍ତଙ୍କ ପ୍ରତି ଅତି ପ୍ରେମଭାବ ମଧ୍ୟ ରଖୁଥିଲେ । ପୁଣି ଶିବଭକ୍ତଙ୍କର ସେ ବହୁତ ପ୍ରିୟ ମଧ୍ୟ ଥିଲେ । ଏତେ ଗୁଣ ତାଙ୍କ ପାଖରେ ଥିଲେ ସୁଦ୍ଧା ତାଙ୍କର ପୁତ୍ର ନ ଥିଲା । ଯଦିଓ ଏଥିପାଇଁ ତାଙ୍କ ମନରେ ଦୁଃଖ ନ ଥିଲା, ତଥାପି ତାଙ୍କ ପତ୍ନୀ ବହୁତ ଦୁଃଖିତ ରହୁଥିଲେ । ପଡ଼ୋଶୀ ଓ ଅନ୍ୟଲୋକେ ମଧ୍ୟ ତାଙ୍କୁ ବହୁତ ଖୁଣ୍ଟା ଦେଉଥିଲେ । ସେ ସ୍ୱାମୀଙ୍କୁ ବାରମ୍ବାର ପୁତ୍ରଟିଏ ପାଇଁ ପ୍ରାର୍ଥନା କରୁଥିଲେ । ସ୍ୱାମୀ ତାଙ୍କୁ ଜ୍ଞାନୋପଦେଶ ଦ୍ୱାରା ସାନ୍ତ୍ୱନା ଦେଉଥିଲେ; କିନ୍ତୁ ସୁଦେହାଙ୍କ ମନ ମାନୁ ନ ଥିଲା । ଶେଷରେ ବ୍ରାହ୍ମଣ କିଛି ଉପାୟ ବି କଲେ, କିନ୍ତୁ ତାହା ମଧ୍ୟ ସଫଳ ହେଲା ନାହିଁ । ଏହାପରେ ବ୍ରାହ୍ମଣୀ ଅତ୍ୟନ୍ତ ଦୁଃଖୀ ହୋଇ ନିଜ ସାନଭଉଣୀ ଘୁଶ୍ମା ସହିତ ତାଙ୍କର ଦ୍ୱିତୀୟ ବିବାହ କରାଇବାକୁ ଜିଦି ଧରିଲା ଏବଂ ତାହା ହିଁ ହେଲା । ବିବାହ ପୂର୍ବରୁ ସୁଧର୍ମା ତାଙ୍କୁ ବୁଝାଇଲେ ଯେ "ଏବେ ସିନା ତୁମେ ତୁମ ଭଉଣୀକୁ ଭଲ ପାଉଛ, କିନ୍ତୁ ତା'ର ଯେତେବେଳେ ପୁତ୍ର ହୋଇଯିବ, ସେତେବେଳେ ତୁମେ ପୁଣି ତା' ସଙ୍ଗେ ସ୍ପର୍ଦ୍ଧା କରିବ ।" ସୁଦେହା ଭଉଣୀ ପ୍ରତି କଦାପି ଈର୍ଷା କରିବ ନାହିଁ ବୋଲି କଥା ଦେଲା । ବିବାହ ହୋଇଯିବା ପରେ ଘୁଶ୍ମା ଦାସୀ ପରି ବଡ଼ ଭଉଣୀର ସେବା କଲା ଏବଂ ସୁଦେହା ମଧ୍ୟ ତାକୁ ବହୁତ ସ୍ନେହ କରୁଥିଲା । ଘୁଶ୍ମା ତା'ର ଶିବଭକ୍ତା ଭଉଣୀର ଆଦେଶ ଅନୁସାରେ ନିତ୍ୟ ଶହେଏକ ପାର୍ଥିବ ଶିବଲିଙ୍ଗ ତିଆରି କରି ବିଧିପୂର୍ବକ ପୂଜା କରୁଥିଲା ଏବଂ ପୂଜା ଶେଷରେ ନିକଟସ୍ଥ ପୋଖରୀରେ ବିସର୍ଜନ କରିଦେଉଥିଲା ।

ଶିବଙ୍କ କୃପାରୁ ଘୁଶ୍ମାଠାରୁ ଗୋଟିଏ ସୁନ୍ଦର, ସୌଭାଗ୍ୟବାନ୍ ଓ ସଦ୍‌ଗୁଣସମ୍ପନ୍ନ ପୁତ୍ର ଜାତ ହେଲା । ଏହାଦ୍ୱାରା ଘୁଶ୍ମାର କିଛି ସମ୍ମାନ ବଢ଼ିଲା । ଏହା ଦେଖି ସୁଦେହା ମନରେ ଈର୍ଷା ଉତ୍ପନ୍ନ ହୋଇଗଲା । ଯଥାସମୟରେ ପୁତ୍ରର ବିବାହ ହୋଇଗଲା । ଘରକୁ ବୋହୂ ଆସିଲା । ଏହା ଦେଖି ସେ ଆହୁରି ଈର୍ଷାନ୍ୱିତ ହୋଇଗଲା । ତାହାର ବୁଦ୍ଧି ଭ୍ରଷ୍ଟ ହୋଇଗଲା । ଏପରିକି ଦିନେ ରାତିରେ ସେ ଶୋଇଥିବା ପୁଅକୁ ଛୁରିରେ ଟିକି ଟିକି କରି କାଟି ମାରି ପକାଇଲା ଏବଂ ଯେଉଁଠି ଘୁଶ୍ମା ପ୍ରତିଦିନ ପାର୍ଥିବଲିଙ୍ଗ ବିସର୍ଜିତ କରୁଥିଲା, ସେହି ପୋଖରୀରେ ତା'ର କଟା ଅଙ୍ଗପ୍ରତ୍ୟଙ୍ଗକୁ ନେଇ ପକାଇଦେଲା । ପୁଅର ଅଙ୍ଗମାନ ପୋଖରୀରେ ପକାଇଦେଇ ସେ ଆସି ସୁଖରେ ଘରେ ଶୋଇଗଲା । ଘୁଶ୍ମା ସକାଳୁ ଉଠି ପ୍ରତିଦିନ ପରି ପୂଜନାଦି କର୍ମରେ ବ୍ୟସ୍ତ ରହିଲା । ବିପ୍ରବର ସୁଧର୍ମା ମଧ୍ୟ ନିତ୍ୟକର୍ମରେ ଲାଗିପଡ଼ିଲେ ।

ଏତିକି ବେଳେ ତାଙ୍କର ଜ୍ୟେଷ୍ଠା ପତ୍ନୀ ସୁଦେହା ବି ଉଠିପଡ଼ି ଘର ପାଇଟି କରିବାରେ ଲାଗିଗଲା; କାରଣ ତା'ର ଈର୍ଷାରୂପୀ ଅଗ୍ନି ନିର୍ବାପିତ ହୋଇସାରିଥିଲା । ସକାଳୁ ବୋହୂ ଉଠି ତା'ର ସ୍ୱାମୀର ଶଯ୍ୟା ଆଡ଼କୁ ଗ୍ରହିଁଦେବା ମାତ୍ରେ ଦେଖିଲା ଯେ ସେଥିରେ ବହୁତ ରକ୍ତ ଲାଗିଛି । ସେଠାରେ କିଛି ମାଂସଖଣ୍ଡ ମଧ୍ୟ ପଡ଼ିଛି । ଏହା ଦେଖି ତା' ମନରେ ବହୁତ ଦୁଃଖ ହେଲା । ସେ ଶାଶୁ (ଘୁଶ୍ମା) ପାଖକୁ ଯାଇ କହିଲା—''ତୁମ ପୁଅ କାହାନ୍ତି? ତାଙ୍କ ଶେଯ ରକ୍ତରେ ଜୁଡୁବୁଡୁ ହୋଇଛି କେମିତି? ସେଠାରେ କିଛି ମାଂସଖଣ୍ଡ ପଡ଼ିଛି କେମିତି? ହାୟ! ମୋର ତ ସର୍ବନାଶ ହୋଇଗଲା । କେଉଁ ଦୁଷ୍ଟ ଏମିତି କାମ କଲା?'' ଏପରି କହି ବୋହୂ ନାନା ପ୍ରକାରେ କରୁଣ ସ୍ୱରରେ ବିଳାପ କରିବାକୁ ଲାଗିଲା । ସୁଧର୍ମାଙ୍କ ବଡ଼ ସ୍ତ୍ରୀ ସୁଦେହା ମଧ୍ୟ 'ହାୟ! ହାୟ!' କରି ନାନା ପ୍ରକାରେ ବିଳାପ କଲା । ସେ ଉପରେ ଉପରେ ଦୁଃଖ ପ୍ରକାଶ କରି ମନେ ମନେ ଖୁସୀ ହେଉଥିଲା । ଘୁଶ୍ମା ଏପରି ଦୁଃସମୟରେ ବୋହୂର ଦୁଃଖକୁ ଦେଖି ମଧ୍ୟ ତା'ର ନିତ୍ୟ ପାର୍ଥିବପୂଜନ ବ୍ରତରୁ ବିଚଳିତ ହେଲା ନାହିଁ । ତା' ମନ ପୁଅକୁ ଦେଖିବାକୁ ଟିକିଏ ବି ଉତ୍ସୁକ ହେଲା ନାହିଁ । ତା'ର ସ୍ୱାମୀ ମଧ୍ୟ ଏହିପରି ଥିଲେ । ସେ ନିତ୍ୟ ନିୟମ ପୂରଣ ନ ହେବା ଯାଏ ଅନ୍ୟ କଥାରେ ମୁଣ୍ଡ ପୂରାଇଲେ ନାହିଁ । ମଧ୍ୟାହ୍ନ ପୂଜା ସାରି ଘୁଶ୍ମା ତା'ର ପୁତ୍ରର ସେହି ଭୟଙ୍କର ଶଯ୍ୟା ଉପରେ ଦୃଷ୍ଟିପାତ କଲା । ତଥାପି ସେ ମନଦୁଃଖ କଲା ନାହିଁ । ସେ ଭାବିଲା—''ଯିଏ ପୁଅ ଦେଇଥିଲେ, ସେ ହିଁ ତାକୁ ରକ୍ଷା କରିବେ । ସେ ଭକ୍ତପ୍ରିୟ ବୋଲାନ୍ତି, ସେ କାଳର ମଧ୍ୟ କାଳ ଏବଂ ସଜ୍ଜନଙ୍କର ଆଶ୍ରୟ । ଏକମାତ୍ର ସେଇ ସର୍ବେଶ୍ୱର ଶମ୍ଭୁ ହିଁ ଆମର ରକ୍ଷକ । ସେ ମାଳାକାର ପରି ଯାହାକୁ ଯୋଡ଼ିଥାନ୍ତି, ତାହାକୁ ଛିଡ଼ାଇ ବି ଦେଇଥାନ୍ତି । ତେଣୁ ମୁଁ ଚିନ୍ତା କଲେ କି ଲାଭ ।'' ଏହି ତତ୍ତ୍ୱକୁ ବୁଝିଥିବାରୁ ସେ ମନରେ ଧୈର୍ଯ୍ୟ ବାନ୍ଧିଲା ଏବଂ ସେତେବେଳେ ଦୁଃଖ କଲା ନାହିଁ । ସେ ପୂର୍ବପରି ପାର୍ଥିବ ଶିବଲିଙ୍ଗମାନ ନେଇ ସ୍ୱଚ୍ଛଚିତ୍ତରେ ଶିବଙ୍କ ନାମ ଉଚ୍ଚାରଣ କରି କରି ପୋଖରୀ କୂଳକୁ ଗଲା । ଲିଙ୍ଗମାନ ବିସର୍ଜିତ କରି ଫେରିବା ବେଳକୁ ତାକୁ ତା'ର ପୁଅ ପୋଖରୀ କୂଳରେ ଛିଡ଼ା ହୋଇଥିବାର ଦେଖାଗଲା ।

ସୂତ କହୁଛନ୍ତି—ବ୍ରାହ୍ମଣବୃନ୍ଦ ! ପୁତ୍ରକୁ ଜୀବିତ ଦେଖି ମାତା ଘୁଶ୍ମା ମନରେ ହର୍ଷ ହେଲା ନାହିଁ କି ବିଷାଦ ହେଲା ନାହିଁ । ସେ ପୂର୍ବବତ୍ ଅବିଚଳିତ ରହିଲା । ଏତିକିବେଳେ ତା' ପ୍ରତି ସନ୍ତୁଷ୍ଟ ହୋଇ ଜ୍ୟୋତିଃସ୍ୱରୂପ ମହେଶ୍ୱର ଶିବ ଅବିଳମ୍ବେ ତା' ସମ୍ମୁଖରେ ପ୍ରକଟ ହୋଇଗଲେ ।

ଶିବ କହିଲେ—ହେ ସୁମୁଖୀ ! ମୁଁ ତୁମ ଉପରେ ପ୍ରସନ୍ନ । ବର ମାଗ । ତୁମର ଦୁଷ୍ଟା ସଉତୁଣୀ ହିଁ ଏ ପୁଅକୁ ମାରି ପକାଇଥିଲା । ତେଣୁ ମୁଁ ତାକୁ ତ୍ରିଶୂଳରେ ବଧ କରିବି ।

ସୂତ କହୁଛନ୍ତି—ଘୁଶ୍ମା ଶିବଙ୍କୁ ପ୍ରଣାମ କରି ଏହି ବର ମାଗିଲା—''ହେ ପ୍ରଭୁ! ସୁଦେହା ମୋର ବଡ଼ ଭଉଣୀ, ତେଣୁ ଆପଣ ତାକୁ ରକ୍ଷା କରନ୍ତୁ ।''

ଶିବ କହିଲେ—ସେ ତ ବହୁତ ବଡ଼ ଅପରାଧ କରିଛି, ତୁମେ ତା' ଉପରେ ଦୟା କରୁଛ କାହିଁକି? କୁକର୍ମ କରିଥିବା ସୁଦେହା ତ ମୃତ୍ୟୁଦଣ୍ଡ ପାଇବାର ଯୋଗ୍ୟ ।

ଘୁଶ୍ମା କହିଲା—ହେ ପ୍ରଭୁ! ଆପଣଙ୍କୁ ଦର୍ଶନ କରିବାମାତ୍ରେ ପାତକ ରହେ ନାହିଁ । ଏବେ ଆପଣଙ୍କ ଦର୍ଶନ ଲାଭ କରି ତା'ର ପାତକ ଧୋଇଯାଉ । ହେ ଶମ୍ଭୁ! ମୁଁ ତ ଏହି ମହାନ୍ ଭଗବତ୍ ବାକ୍ୟ ଶୁଣିଛି ଯେ, ''ଯେଉଁ ବ୍ୟକ୍ତି ଅପକାରୀର ବି ଉପକାର କରେ, ତାହାକୁ ଦର୍ଶନ

କରିବାମାତ୍ରେ ପାପ ବହୁତ ଦୂରକୁ ପଳାଇଯାଏ ।''* ଏଣୁ ହେ ସଦାଶିବ ! ଯେ ଏପରି କୁକର୍ମ କରିଛି, ତାହା ତା'ର । ମୁଁ କାହିଁକି ଏପରି କରିବି? (ଅହିତ କରୁଥିବା ଲୋକର ବି ହିତ କରିବା ମୋର କାମ ।)



ସୂତ କହୁଛନ୍ତି—ଘୁଶ୍ମାର କଥା ଶୁଣି ଦୟାସିନ୍ଧୁ ଭକ୍ତବତ୍ସଳ ମହେଶ୍ୱର ଆହୁରି ଅଧିକ ପ୍ରସନ୍ନ ହେଲେ ଏବଂ ସେ କହିଲେ—''ଘୁଶ୍ମେ ! ତୁମେ ଆହୁରି କିଛି ବର ମାଗ । ମୁଁ ତୁମ ପାଇଁ ହିତକର ବର ଅବଶ୍ୟ ପ୍ରଦାନ କରିବି; କାରଣ ତୁମର ଏପରି ଭକ୍ତିରେ ଓ ନିର୍ବିକାର ସ୍ୱଭାବରେ ମୁଁ ଅତ୍ୟନ୍ତ ପ୍ରସନ୍ନ ।''

ଶିବଙ୍କ କଥା ଶୁଣି ଘୁଶ୍ମା କହିଲା, ''ପ୍ରଭୋ ! ଯଦି ଆପଣ ବର ଦେବାକୁ ଚାହାନ୍ତି, ତେବେ ଲୋକମାନଙ୍କ ରକ୍ଷା ପାଇଁ ସଦା ଏଠାରେ ନିବାସ କରନ୍ତୁ ଏବଂ ମୋ ନାମରେ ହିଁ ଆପଣଙ୍କର ଖ୍ୟାତି ହେଉ ।'' ଶିବ ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ—''ମୁଁ ତୁମ ନାମାନୁସାରେ ଘୁଶ୍ମେଶ୍ୱର ନାମରେ ପ୍ରସିଦ୍ଧ ହୋଇ ଏଠାରେ ନିବାସ କରିବି ଏବଂ ସମସ୍ତଙ୍କ ପାଇଁ ସୁଖଦାୟୀ ହେବି । ମୋର ଶୁଭ ଜ୍ୟୋତିର୍ଲିଙ୍ଗ ଘୁଶ୍ମେଶ ନାମରେ ପ୍ରସିଦ୍ଧ ହେବ ।

ଏହି ସରୋବର ଶିବଲିଙ୍ଗମାନଙ୍କର ଆଳୟ ହୋଇଯାଉ ଏବଂ ଏହା ତ୍ରିଲୋକରେ ଶିବାଳୟ ନାମରେ ପ୍ରସିଦ୍ଧ ହେଉ । ଏହି ସରୋବର ସଦା ଦର୍ଶନମାତ୍ରକେ ସମସ୍ତ ଅଭୀଷ୍ଟ ଫଳଦାତା ହେଉ । ସୁବ୍ରତେ ! ତୁମ ବଂଶରେ ଶହେଏକ ପିଢ଼ି ପର୍ଯ୍ୟନ୍ତ ଏହିପରି ଶ୍ରେଷ୍ଠ ସନ୍ତାନ ଯେ ଜନ୍ମ ହେବେ, ଏଥିରେ ସଂଶୟ ନାହିଁ । ସେମାନେ ସମସ୍ତେ ସୁନ୍ଦରୀ ପତ୍ନୀ ଲାଭ କରିବେ ଏବଂ ଧନବାନ୍, ଦୀର୍ଘଜୀବୀ, ମେଧାବୀ, ବିଦ୍ୱାନ୍, ଉଦାର ହେବା ସହିତ ଭୋଗ ଓ ମୋକ୍ଷରୂପୀ ଫଳ ପାଇବାର ଅଧିକାରୀ ହେବେ । ଶହେଏକ ପିଢ଼ି ପର୍ଯ୍ୟନ୍ତ ସମସ୍ତ ପୁତ୍ର ଅତ୍ୟନ୍ତ ଗୁଣବାନ୍ ହେବେ । ତୁମର ଏପରି ବିସ୍ତାରିତ ବଂଶ ଅତ୍ୟନ୍ତ ଶୋଭାଦାୟକ ହେବ ।''

ଏପରି କହି ଭଗବାନ ଶିବ ସେଠାରେ ଜ୍ୟୋତିର୍ଲିଙ୍ଗ ରୂପରେ ସ୍ଥିତ ହୋଇଗଲେ । ସେ ଘୁଶ୍ମେଶ ନାମରେ ପ୍ରସିଦ୍ଧ ହେଲେ ଏବଂ ସେହି ସରୋବରର ନାମ ଶିବାଳୟ ହୋଇଗଲା । ସୁଧର୍ମା, ଘୁଶ୍ମା ଓ ସୁଦେହା—ତିନିହେଁ ଆସି ତୁରନ୍ତ ସେହି ଶିବଲିଙ୍ଗକୁ ଶହେଏକ ବାର ପରିକ୍ରମା କଲେ । ପୂଜା ସାରି ପରସ୍ପର ସଙ୍ଗେ ମିଶି ମନୋମାଳିନ୍ୟ ଦୂର କରି ବହୁତ ସୁଖ ଅନୁଭବ କଲେ । ପୁତ୍ର ଜୀବିତ ହୋଇଯିବା ଦେଖି ସୁଦେହା ବହୁତ ଲଜ୍ଜିତ ହେଲା ଏବଂ ସ୍ୱାମୀଙ୍କୁ ଓ ଘୁଶ୍ମାକୁ କ୍ଷମା ମାଗି ସେ ତା'ର ପାପ ପାଇଁ ପ୍ରାୟଶ୍ଚିତ୍ତ କଲା । ମୁନୀଶ୍ୱରଗଣ ! ଏହିରୂପେ ଘୁଶ୍ମେଶ୍ୱର ଲିଙ୍ଗର ଆବିର୍ଭାବ ହେଲା । ତାହାର ଦର୍ଶନ ଓ ପୂଜନ କଲେ ସଦା ସୁଖ ବୃଦ୍ଧି ହୁଏ । ବ୍ରାହ୍ମଣବୃନ୍ଦ ! ଏହିରୂପେ ମୁଁ ତୁମକୁ ଦ୍ୱାଦଶ

* ଅପକାରେଷୁ ଯଶ୍ଚୈବ ହ୍ୟୁପକାରଂ କରୋତି ବୈ । ତସ୍ୟ ଦର୍ଶନମାତ୍ରେଣ ପାପଂ ଦୂରତରଂ ବ୍ରଜେତ୍ ॥

(ଶି. ପୁ. କୋଟିରୁ. ସଂ. ୩୩।୨୯)

ଜ୍ୟୋତିର୍ଲିଙ୍ଗର ମହିମା କହିଦେଲି । ଏ ସମସ୍ତ ଜ୍ୟୋତିର୍ଲିଙ୍ଗ ସକଳ କାମନା ପୂରଣ କରିଥାଏ ତଥା ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ଯେ ଏହି ଜ୍ୟୋତିର୍ଲିଙ୍ଗ ପ୍ରସଙ୍ଗ ପଢ଼େ ଓ ଶୁଣେ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ ଏବଂ ଭୋଗ ଓ ମୋକ୍ଷ ଲାଭ କରେ । (ଅଧ୍ୟାୟ ୩୨-୩୩)

✽✽✽

## ଶିବଙ୍କ ଆରାଧନାରେ ଭଗବାନ ବିଷ୍ଣୁଙ୍କୁ ସୁଦର୍ଶନ ଚକ୍ର ପ୍ରାପ୍ତି ଏବଂ ତଦ୍ଦ୍ୱାରା ଦୈତ୍ୟଙ୍କର ସଂହାର

ବ୍ୟାସ କହୁଛନ୍ତି—ସୂତଙ୍କ ଠାରୁ କଥା ଶ୍ରବଣ କରି ମୁନୀଶ୍ୱରମାନେ ତାଙ୍କୁ ଭୂରି ଭୂରି ପ୍ରଶଂସା କଲେ ଏବଂ ଜଗତର ହିତକାମନାରେ ଏହିପରି କହିଲେ—

ଋଷିମାନେ କହିଲେ—ହେ ସୂତମୁନି ! ଆପଣ ସବୁ କିଛି ଜାଣନ୍ତି । ତେଣୁ ଆମେ ଆପଣଙ୍କୁ ପ୍ରଶ୍ନ କରୁଛୁ । ପ୍ରଭୋ ! ହରୀଶ୍ୱରଲିଙ୍ଗର ମହିମା ବର୍ଣ୍ଣନା କରନ୍ତୁ । ଆମେ ପୂର୍ବରୁ ଶୁଣିଛୁ ଯେ ଭଗବାନ ବିଷ୍ଣୁ ଶିବଙ୍କୁ ଆରାଧନା କରି ସୁଦର୍ଶନ ଚକ୍ର ପାଇଥିଲେ । ତେଣୁ ସେହି ପ୍ରସଙ୍ଗ ଉପରେ ବିଶେଷରୂପେ ଆଲୋକପାତ କରନ୍ତୁ ।

ସୂତ କହିଲେ—ମୁନିବରଗଣ ! ହରୀଶ୍ୱର-ଲିଙ୍ଗର ଶୁଭ ଚରିତ ଶୁଣ । ଭଗବାନ ବିଷ୍ଣୁ ପୂର୍ବକାଳରେ ହରୀଶ୍ୱର ଶିବଙ୍କ ଠାରୁ ହିଁ ସୁଦର୍ଶନ ଚକ୍ର ପ୍ରାପ୍ତି କରିଥିଲେ । ଏକଦା ଦୈତ୍ୟମାନେ ଅତ୍ୟନ୍ତ ବଳଶାଳୀ ହୋଇ ଲୋକମାନଙ୍କୁ କଷ୍ଟ ଦେବା ସହିତ ଧର୍ମ ଲୋପ କରିବାକୁ ଲାଗିଲେ । ମହାବଳୀ ଓ ପରାକ୍ରମୀ ଦୈତ୍ୟଙ୍କ ଦ୍ୱାରା ପୀଡ଼ିତ ହୋଇ ଦେବତାମାନେ ଦେବରକ୍ଷକ ବିଷ୍ଣୁଙ୍କୁ ସେମାନଙ୍କର ଦୁଃଖ ଶୁଣାଇଲେ । ଏହାପରେ ଶ୍ରୀହରି କୈଳାସ ଯାଇ ଭଗବାନ ଶିବଙ୍କୁ ବିଧିପୂର୍ବକ ଆରାଧନା କଲେ । ସେ ସେତେବେଳେ ସହସ୍ରନାମ ଦ୍ୱାରା ଶିବଙ୍କୁ ସ୍ତୁତି କରୁଥିଲେ ଏବଂ ପ୍ରତ୍ୟେକ ନାମରେ ଗୋଟିଏ ଲେଖାଏଁ ପଦ୍ମଫୁଲ ଅର୍ପଣ କରୁଥିଲେ । ଭଗବାନ ଶିବ ତାଙ୍କ ଭକ୍ତିର ପରୀକ୍ଷା ନେବାକୁ ସେ ରଖିଥିବା ହଜାରେ ପଦ୍ମଫୁଲ ମଧ୍ୟରୁ ଗୋଟିଏ ଲୁଗ୍ଇ ରଖିଦେଲେ । ଶିବଙ୍କ ମାୟାରେ ଘଟିଥିବା ଏହି ଅଦ୍ଭୁତ ଘଟଣା ବିଷ୍ଣୁଙ୍କୁ ଜଣା ପଡ଼ିଲା ନାହିଁ । ଶେଷରେ ଗୋଟିଏ ଫୁଲ କମ୍ ହେବା ଦେଖି ସେ ଖୋଜିବା ଆରମ୍ଭ କଲେ । ଦୃଢ଼ବ୍ରତଧାରୀ ଶ୍ରୀହରି ଭଗବାନ ଶିବଙ୍କ ପ୍ରସନ୍ନତା ନିମନ୍ତେ ସେହି ଗୋଟିଏ ଫୁଲକୁ ସମଗ୍ର ଭୁବନରେ ଭ୍ରମଣ କରି କରି ଖୋଜିଲେ; କିନ୍ତୁ କେଉଁଠି ବି ତାହାକୁ ପାଇଲେ ନାହିଁ । ଶେଷରେ ବିଶୁଦ୍ଧଚେତା ଶ୍ରୀହରି ସେହି ଗୋଟିଏ ପଦ୍ମଫୁଲର ପୂର୍ଣ୍ଣତା ପାଇଁ ନିଜର ପଦ୍ମତୁଲ୍ୟ ଲୋଚନଟିକୁ ବାହାର କରି ଅର୍ପଣ କରିଦେଲେ । ଏହା ଦେଖି ସମସ୍ତଙ୍କର ଦୁଃଖମୋଚନକାରୀ ଭଗବାନ ଶିବ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ସେହିଠାରେ ତାଙ୍କ ସମ୍ମୁଖରେ ପ୍ରକଟ ହୋଇଗଲେ । ସେ ଶ୍ରୀହରିଙ୍କୁ କହିଲେ— "ହରେ ! ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରସନ୍ନ । ତେଣୁ ଇଚ୍ଛାନୁସାରେ ବର ମାଗ । ମୁଁ ତୁମକୁ ମନୋବାଞ୍ଛିତ ବର ପ୍ରଦାନ କରିବି । ତୁମ ପାଇଁ ମୋ ପାଖରେ କିଛି ଅଦେୟ ନାହିଁ ।"

ବିଷ୍ଣୁ କହିଲେ—ପ୍ରଭୋ ! ଆପଣଙ୍କ ଆଗରେ ମୁଁ କ'ଣ ବା କହିବି । ଆପଣ ତ ଅନ୍ତର୍ଯାମୀ, ସବୁ କିଛି ଜାଣନ୍ତି; ତଥାପି ଆପଣଙ୍କ ଆଦେଶର ମାନ ରଖିବାକୁ ମୁଁ କିଛି କହୁଛି । ଦୈତ୍ୟମାନେ ସମଗ୍ର ଜଗତକୁ ପୀଡ଼ିତ କରି ରଖିଛନ୍ତି । ସଦାଶିବ ! ଆମ୍ଭମାନଙ୍କୁ ସୁଖ ମିଳିପାରୁ ନାହିଁ । ମୋର

ଅସ୍ତ୍ରଶସ୍ତ୍ର ଦୈତ୍ୟଙ୍କୁ ବଧ କରିବାରେ ବିଫଳ ହେଉଛି । ତେଣୁ ହେ ପରମେଶ୍ୱର ! ମୁଁ ଆପଣଙ୍କ ଶରଣକୁ ଆସିଛି ।

ସୂତ କହୁଛନ୍ତି–**ବିଷ୍ଣୁଙ୍କ କଥା ଶୁଣି ଦେବାଧିଦେବ ମହେଶ୍ୱର ନିଜର ଜ୍ୟୋତିର୍ମୟ ସୁଦର୍ଶନ ଚକ୍ର ତାଙ୍କୁ ପ୍ରଦାନ କଲେ । ଉକ୍ତ ଚକ୍ର ଦ୍ୱାରା ଭଗବାନ ବିଷ୍ଣୁ ସେହି ପ୍ରବଳ ପରାକ୍ରମୀ ଦୈତ୍ୟମାନଙ୍କୁ ସଂହାର କଲେ । ଏହା ଫଳରେ ସମଗ୍ର ଜଗତ ସୁସ୍ଥ ହେଲା । ଦେବତାଙ୍କୁ ମଧ୍ୟ ସୁଖ ମିଳିଲା । ବିଷ୍ଣୁ ମଧ୍ୟ ଏପରି ଆୟୁଧଟି ପାଇ ଅତ୍ୟନ୍ତ ପ୍ରସନ୍ନ ହେଲେ ।**

ଋଷିମାନେ ପଚ୍ଚାରିଲେ–**ଶିବଙ୍କର ସେହି ସହସ୍ର ନାମ କ'ଣ କ'ଣ, ଯାହାକୁ ବିଷ୍ଣୁ ଜପିବାରୁ ଶିବ ସନ୍ତୁଷ୍ଟ ହୋଇ ତାଙ୍କୁ ଚକ୍ର ପ୍ରଦାନ କରିଥିଲେ? ସେହି ନାମଗୁଡ଼ିକର ମାହାତ୍ମ୍ୟ ମଧ୍ୟ ବର୍ଣ୍ଣନା କରନ୍ତୁ । ବିଷ୍ଣୁଙ୍କ ଉପରେ ଶିବଙ୍କର ଯେପରି କୃପା ହେଲା, ସେହି ପ୍ରସଙ୍ଗ ମଧ୍ୟ ଯଥାର୍ଥରୂପେ ପ୍ରତିପାଦନ କରନ୍ତୁ ।**

**ଶୁଦ୍ଧାନ୍ତଃକରଣ ମୁନିମାନଙ୍କର ଏପରି ପ୍ରଶ୍ନ ଶୁଣି ସୂତ ଶିବଙ୍କ ଚରଣାରବିନ୍ଦକୁ ସ୍ମରଣ କରି ଏହି ପ୍ରକାରେ କହିବା ଆରମ୍ଭ କଲେ–**

(ଅଧ୍ୟାୟ ୩୪)

***

# ଭଗବାନ ବିଷ୍ଣୁଙ୍କ ଦ୍ୱାରା ପଠିତ ଶିବସହସ୍ରନାମସ୍ତୋତ୍ର

### ସୂତ ଉବାଚ

ଶ୍ରୂୟତାଂ ଭୋ ଋଷିଶ୍ରେଷ୍ଠା ଯେନ ତୁଷ୍ଟୋ ମହେଶ୍ୱରଃ ।
ତଦହଂ କଥୟାମ୍ୟଦ୍ୟ ଶୈବଂ ନାମସହସ୍ରକମ୍ ॥ ୧

ସୂତ କହିଲେ–**ହେ ମୁନିବରଗଣ ! ଯେଉଁ ଶିବସହସ୍ରନାମସ୍ତୋତ୍ର ଦ୍ୱାରା ମହେଶ୍ୱର ସନ୍ତୁଷ୍ଟ ହୁଅନ୍ତି, ତାହା ଆଜି ମୁଁ ତୁମମାନଙ୍କୁ କହୁଛି, ଶୁଣ ॥ ୧ ॥**

### ବିଷ୍ଣୁରୁବାଚ

ଶିବୋ ହରୋ ମୃଡୋ ରୁଦ୍ରଃ ପୁଷ୍କରଃ ପୁଷ୍ପଲୋଚନଃ ।
ଅର୍ଥିଗମ୍ୟଃ ସଦାଚାରଃ ଶର୍ବଃ ଶମ୍ଭୁର୍ମହେଶ୍ୱରଃ ॥ ୨

ଭଗବାନ ବିଷ୍ଣୁ କହିଲେ–୧ ଶିବଃ–**କଲ୍ୟାଣସ୍ୱରୂପ,** ୨ ହରଃ–**ଭକ୍ତଙ୍କ ପାପତାପ ହରଣକାରୀ,** ୩ ମୃଡଃ–**ସୁଖଦାତା,** ୪ ରୁଦ୍ରଃ–**ଦୁଃଖହାରୀ,** ୫ ପୁଷ୍କରଃ–**ଆକାଶସ୍ୱରୂପ,** ୬ ପୁଷ୍ପଲୋଚନଃ–**ପୁଷ୍ପପରି ପ୍ରସ୍ଫୁଟିତ ଯାହାଙ୍କର ନେତ୍ର,** ୭ ଅର୍ଥିଗମ୍ୟଃ–**ପ୍ରାର୍ଥନାକାରୀଙ୍କୁ ଯେ ମିଳିଥାନ୍ତି,** ୮ ସଦାଚାରଃ–**ଶ୍ରେଷ୍ଠ ଆଚରଣକାରୀ,** ୯ ଶର୍ବଃ–**ସଂହାରକାରୀ,** ୧୦ ଶମ୍ଭୁଃ–**କଲ୍ୟାଣର ନିକେତନ,** ୧୧ ମହେଶ୍ୱରଃ–**ମହାନ୍ ଈଶ୍ୱର ॥ ୨ ॥**

ଚନ୍ଦ୍ରାପୀଡଶ୍ଚନ୍ଦ୍ରମୌଳିର୍ବିଶ୍ୱଂ ବିଶ୍ୱମ୍ଭରେଶ୍ୱରଃ ।
ବେଦାନ୍ତସାରସଂଦୋହଃ କପାଳୀ ନୀଳଲୋହିତଃ ॥ ୩

୧୨ ଚନ୍ଦ୍ରାପୀଡଃ–**ଚନ୍ଦ୍ରକୁ ଶିରୋଭୂଷଣରୂପେ ଧାରଣକାରୀ,** ୧୩ ଚନ୍ଦ୍ରମୌଳିଃ–**ଚନ୍ଦ୍ରକୁ ମୁକୁଟରୂପେ ଧାରଣକାରୀ,** ୧୪ ବିଶ୍ୱମ୍–**ସର୍ବସ୍ୱରୂପ,** ୧୫ ବିଶ୍ୱମ୍ଭରେଶ୍ୱରଃ–**ବିଶ୍ୱର ଭରଣ-ପୋଷଣ କରୁଥିବା ବିଷ୍ଣୁଙ୍କର ମଧ୍ୟ ଈଶ୍ୱର,** ୧୬ ବେଦାନ୍ତସାର-ସଂଦୋହଃ–**ବେଦାନ୍ତର ସାରତତ୍ତ୍ୱ ସଚ୍ଚିଦାନନ୍ଦମୟ ବ୍ରହ୍ମର ସାକାର ମୂର୍ତ୍ତି,** ୧୭ କପାଳୀ–**ହସ୍ତରେ କପାଳ ଧାରଣକାରୀ,** ୧୮ ନୀଳଲୋହିତଃ–**ଯାହାଙ୍କ ବର୍ଣ୍ଣ (ଗଳାରେ) ନୀଳ ଓ (ଅନ୍ୟ ସବୁ ଅଙ୍ଗ) ଲୋହିତ ॥ ୩ ॥**

ଧ୍ୟାନାଧାରୋଽପରିଚ୍ଛେଦ୍ୟୋ ଗୌରୀଭର୍ତ୍ତା ଗଣେଶ୍ୱରଃ ।
ଅଷ୍ଟମୂର୍ତ୍ତିର୍ବିଶ୍ୱମୂର୍ତ୍ତିସ୍ତ୍ରିବର୍ଗସ୍ୱର୍ଗସାଧନଃ ॥ ୪

୧୯ ଧ୍ୟାନାଧାରଃ–**ଧ୍ୟାନର ଆଧାର,** ୨୦ ଅପରିଚ୍ଛେଦ୍ୟଃ–**ଦେଶ, କାଳ ଓ ବସ୍ତୁର ସୀମା ଦ୍ୱାରା ଅବିଭାଜ୍ୟ,** ୨୧ ଗୌରୀଭର୍ତ୍ତା–**ପାର୍ବତୀପତି,** ୨୨ ଗଣେଶ୍ୱରଃ–**ପ୍ରମଥଗଣଙ୍କ ସ୍ୱାମୀ,** ୨୩ ଅଷ୍ଟମୂର୍ତ୍ତିଃ–**ଜଳ, ଅଗ୍ନି, ବାୟୁ, ଆକାଶ, ସୂର୍ଯ୍ୟ,**

**ଚନ୍ଦ୍ର, ପୃଥିବୀ ଓ ଯଜମାନ ନାମକ ଆଠରୂପଧାରୀ,** ୨୪ ବିଶ୍ୱମୂର୍ତ୍ତିଃ–**ଅଖିଳ ବ୍ରହ୍ମାଣ୍ଡମୟ ବିରାଟ୍ ପୁରୁଷ,** ୨୫ ତ୍ରିବର୍ଗସ୍ୱର୍ଗସାଧନଃ–**ଧର୍ମ, ଅର୍ଥ ଓ କାମ ତଥା ସ୍ୱର୍ଗ ପ୍ରଦାନକାରୀ ॥ ୪ ॥**

ଜ୍ଞାନଗମ୍ୟୋ ଦୃଢପ୍ରଜ୍ଞୋ ଦେବଦେବସ୍ତ୍ରିଲୋଚନଃ ।
ବାମଦେବୋ ମହାଦେବଃ ପଟୁଃ ପରିବୃଢୋ ଦୃଢଃ ॥ ୫

୨୬ ଜ୍ଞାନଗମ୍ୟଃ–**ଜ୍ଞାନଦ୍ୱାରା ଅନୁଭୂତ ହେଉଥିବା,** ୨୭ ଦୃଢପ୍ରଜ୍ଞଃ–**ସୁସ୍ଥିର ବୁଦ୍ଧିଯୁକ୍ତ,** ୨୮ ଦେବଦେବଃ–**ଦେବତାଙ୍କର ମଧ୍ୟ ଆରାଧ୍ୟ,** ୨୯ ତ୍ରିଲୋଚନଃ–**ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନିରୂପୀ ତ୍ରିନେତ୍ରଧାରୀ,** ୩୦ ବାମଦେବଃ–**ଜଗତରେ ବିପରୀତ ସ୍ୱଭାବର ଦେବତା,** ୩୧ ମହାଦେବଃ–**ମହାନ୍ ଦେବତା ବ୍ରହ୍ମାଦିଙ୍କର ମଧ୍ୟ ପୂଜନୀୟ,** ୩୨ ପଟୁଃ–**ସବୁ କିଛି କରିବାରେ ସମର୍ଥ,** ୩୩ ପରିବୃଢଃ–**ସ୍ୱାମୀ,** ୩୪ ଦୃଢଃ–**ଅବିଚଳିତ-ସ୍ୱଭାବ ॥ ୫ ॥**

ବିଶ୍ୱରୂପୋ ବିରୂପାକ୍ଷୋ ବାଗୀଶଃ ଶୁଚିସତ୍ତମଃ ।
ସର୍ବପ୍ରମାଣସଂବାଦୀ ବୃଷାଙ୍କୋ ବୃଷବାହନଃ ॥ ୬

୩୫ ବିଶ୍ୱରୂପୋ–**ଜଗତ୍‌ସ୍ୱରୂପ,** ୩୬ ବିରୂପାକ୍ଷଃ–**ବିକଟନେତ୍ରଯୁକ୍ତ,** ୩୭ ବାଗୀଶଃ–**ବାଣୀର ଅଧିପତି,** ୩୮ ଶୁଚିସତ୍ତମଃ–**ପବିତ୍ର ବ୍ୟକ୍ତିମାନଙ୍କ ଭିତରେ ସର୍ବଶ୍ରେଷ୍ଠ,** ୩୯ ସର୍ବପ୍ରମାଣସଂବାଦୀ–**ସମସ୍ତ ପ୍ରମାଣ ମଧ୍ୟରେ ସାମଞ୍ଜସ୍ୟ ସ୍ଥାପନକାରୀ,** ୪୦ ବୃଷାଙ୍କଃ–**ଯାହାଙ୍କ ଧ୍ୱଜାରେ ବୃଷଭ ଚିହ୍ନ ରହିଛି,** ୪୧ ବୃଷବାହନଃ–**ବୃଷଭ ବା ଧର୍ମ ଯାହାଙ୍କର ବାହନ ॥ ୬ ॥**

ଈଶଃ ପିନାକୀ ଖଟ୍ୱାଙ୍ଗୀ ଚିତ୍ରବେଷଶ୍ଚିରନ୍ତନଃ ।
ତମୋହରୋ ମହାଯୋଗୀ ଗୋପ୍ତା ବ୍ରହ୍ମା ଚ ଧୂର୍ଜଟିଃ ॥ ୭

୪୨ ଈଶଃ–**ସ୍ୱାମୀ ବା ଶାସକ,** ୪୩ ପିନାକୀ–**ପିନାକ ଧନୁଧାରୀ,** ୪୪ ଖଟ୍ୱାଙ୍ଗୀ–**ଖଟ ଗୋଡ଼ ଆକୃତିର ଆୟୁଧଧାରୀ,** ୪୫ ଚିତ୍ରବେଷଃ–**ବିଚିତ୍ର ବେଶଧାରୀ,** ୪୬ ଚିରନ୍ତନଃ–**ପୁରାଣ (ଅନାଦି) ପୁରୁଷୋତ୍ତମ,** ୪୭ ତମୋହରଃ–**ଅଜ୍ଞାନାନ୍ଧକାର ହରଣକାରୀ,** ୪୮ ମହାଯୋଗୀ–**ମହାନ୍ ଯୋଗରେ ସମ୍ପନ୍ନ,** ୪୯ ଗୋପ୍ତା–**ରକ୍ଷକ,** ୫୦ ବ୍ରହ୍ମା–**ସୃଷ୍ଟିକର୍ତ୍ତା,** ୫୧ ଧୂର୍ଜଟିଃ–**ଜଟାଭାରଯୁକ୍ତ ॥ ୭ ॥**

କାଳକାଳଃ କୃତ୍ତିବାସାଃ ସୁଭଗଃ ପ୍ରଣବାତ୍ମକଃ ।
ଉନ୍ନଧ୍ରଃ ପୁରୁଷୋ ଜୁଷ୍ୟୋ ଦୁର୍ବାସାଃ ପୁରଶାସନଃ ॥ ୮

୫୨ କାଳକାଳଃ–**କାଳର ମଧ୍ୟ କାଳ,** ୫୩ କୃତ୍ତିବାସାଃ–**ଗଜାସୁରର ଚର୍ମକୁ ବସ୍ତ୍ରରୂପେ ଧାରଣକାରୀ,** ୫୪ ସୁଭଗଃ–**ସୌଭାଗ୍ୟଶାଳୀ,** ୫୫ ପ୍ରଣବାତ୍ମକଃ–**ଓଁକାରସ୍ୱରୂପ ବା ପ୍ରଣବର ବାଚ୍ୟାର୍ଥ,** ୫୬ ଉନ୍ନଧ୍ରଃ–**ବନ୍ଧନରହିତ,** **୫୭** ପୁରୁଷଃ–**ଅନ୍ତର୍ଯାମୀ ଆତ୍ମା,** **୫୮** ଜୁଷ୍ୟଃ–**ସେବନୀୟ,** ୫୯ ଦୁର୍ବାସାଃ–**ଦୁର୍ବାସାଙ୍କ ରୂପରେ ଅବତୀର୍ଣ୍ଣ,** ୬୦ ପୁରଶାସନଃ–**ତ୍ରିପୁରାସୁରଙ୍କ ଦମନକାରୀ ॥ ୮ ॥**

ଦିବ୍ୟାୟୁଧଃ ସ୍କନ୍ଦଗୁରୁଃ ପରମେଷ୍ଠୀ ପରାତ୍ପରଃ ।
ଅନାଦିମଧ୍ୟନିଧନୋ ଗିରୀଶୋ ଗିରିଜାଧବଃ ॥ ୯

୬୧ ଦିବ୍ୟାୟୁଧଃ–**'ପାଶୁପତ' ଆଦି ଦିବ୍ୟ ଅସ୍ତ୍ର ଧାରଣକାରୀ,** ୬୨ ସ୍କନ୍ଦଗୁରୁଃ–**କାର୍ତ୍ତିକେୟଙ୍କ ପିତା,** ୬୩ ପରମେଷ୍ଠୀ–**ନିଜ ପ୍ରକୃଷ୍ଟ ମହିମାରେ ସ୍ଥିତ,** ୬୪ ପରାତ୍ପରଃ–**କାରଣର ମଧ୍ୟ କାରଣ,** ୬୫ ଅନାଦିମଧ୍ୟନିଧନଃ–**ଆଦି-ମଧ୍ୟ-ଅନ୍ତରହିତ,** ୬୬ ଗିରୀଶଃ–**କୈଳାସର ଅଧିପତି,** ୬୭ ଗିରିଜାଧବଃ–**ପାର୍ବତୀଙ୍କ ସ୍ୱାମୀ ॥ ୯ ॥**

କୁବେରବନ୍ଧୁଃ ଶ୍ରୀକଣ୍ଠୋ ଲୋକବର୍ଣ୍ଣୋତ୍ତମୋ ମୃଦୁଃ ।
ସମାଧିବେଦ୍ୟଃ କୋଦଣ୍ଡୀ ନୀଳକଣ୍ଠଃ ପରଶ୍ୱଧୀ ॥ ୧୦

୬୮ କୁବେରବନ୍ଧୁଃ–**କୁବେରଙ୍କୁ ନିଜର ମିତ୍ର କରିଥିବା,** ୬୯ ଶ୍ରୀକଣ୍ଠଃ–**ଶ୍ୟାମବର୍ଣ୍ଣ କଣ୍ଠରେ ସୁଶୋଭିତ,** ୭୦ ଲୋକବର୍ଣ୍ଣୋତ୍ତମଃ–**ସକଳ ଲୋକ ଓ ବର୍ଣ୍ଣ ମଧ୍ୟରେ ଶ୍ରେଷ୍ଠ,** ୭୧ ମୃଦୁଃ–**କୋମଳ ସ୍ୱଭାବଯୁକ୍ତ,** ୭୨ ସମାଧିବେଦ୍ୟଃ–**ସମାଧି ବା ଚିତ୍ତବୃତ୍ତିନିରୋଧ ଦ୍ୱାରା ଅନୁଭବଯୋଗ୍ୟ,**

୭୩ କୋଦଣ୍ଡୀ–**ଧନୁର୍ଦ୍ଧର,** ୭୪ ନୀଳକଣ୍ଠଃ–**କଣ୍ଠରେ ବିଷର ନୀଳଚିହ୍ନ ଧାରଣକାରୀ,** ୭୫ ପରଶ୍ୱଧୀ–**ପରଶୁଧାରୀ ॥ ୧୦ ॥**

ବିଶାଳାକ୍ଷୋ ମୃଗବ୍ୟାଧଃ ସୁରେଶଃ ସୂର୍ଯ୍ୟତାପନଃ ।
ଧର୍ମଧାମ କ୍ଷମାକ୍ଷେତ୍ରଂ ଭଗବାନ୍ ଭଗନେତ୍ରଭିତ୍ ॥ ୧୧

୭୬ ବିଶାଳାକ୍ଷଃ–**ବଡ଼ ବଡ଼ ନେତ୍ରଯୁକ୍ତ,** ୭୭ ମୃଗବ୍ୟାଧଃ–**ବ୍ୟାଧ ବା କିରାତ ବେଶରେ ଶୂକରବଧକାରୀ,** ୭୮ ସୁରେଶଃ–**ଦେବତାଙ୍କର ସ୍ୱାମୀ,** ୭୯ ସୂର୍ଯ୍ୟତାପନଃ–**ସୂର୍ଯ୍ୟଙ୍କର ଦଣ୍ଡଦାତା,** ୮୦ ଧର୍ମଧାମ–**ଧର୍ମର ଆଶ୍ରୟ,** ୮୧ କ୍ଷମାକ୍ଷେତ୍ରମ୍–**କ୍ଷମାର ଉତ୍ପତ୍ତି ସ୍ଥାନ,** ୮୨ ଭଗବାନ୍–**ସମସ୍ତ ଐଶ୍ୱର୍ଯ୍ୟ, ଧର୍ମ, ଯଶ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟର ଆଶ୍ରୟ,** ୮୩ ଭଗନେତ୍ରଭିତ୍–**ଭଗଦେବତାଙ୍କ ନେତ୍ର ଭେଦନକାରୀ ॥ ୧୧ ॥**

ଉଗ୍ରଃ ପଶୁପତିସ୍ତାର୍କ୍ଷ୍ୟଃ ପ୍ରିୟଭକ୍ତଃ ପରନ୍ତପଃ ।
ଦାତା ଦୟାକରୋ ଦକ୍ଷଃ କପର୍ଦ୍ଦୀ କାମଶାସନଃ ॥ ୧୨

୮୪ ଉଗ୍ରଃ–**ସଂହାରକାଳରେ ଭୟଙ୍କର ରୂପଧାରୀ,** ୮୫ ପଶୁପତିଃ–**ମାୟାପାଶରେ ଆବଦ୍ଧ ଜୀବରୂପୀ ପଶୁ(ଜୀବ)ମାନଙ୍କୁ ତତ୍ତ୍ୱଜ୍ଞାନ ଦ୍ୱାରା ମୁକ୍ତ କରି ସେମାନଙ୍କୁ ଯଥାର୍ଥରୂପେ ପାଳନକାରୀ,** ୮୬ ତାର୍କ୍ଷ୍ୟଃ–**ଗରୁଡ଼ସ୍ୱରୂପ,** ୮୭ ପ୍ରିୟଭକ୍ତଃ–**ଭକ୍ତପ୍ରିୟ,** ୮୮ ପରନ୍ତପଃ–**ଶତ୍ରୁତା ରଖୁଥିବା ଲୋକଙ୍କ ପାଇଁ ସନ୍ତାପଦାତା,** ୮୯ ଦାତା–**ଦାନୀ,** ୯୦ ଦୟାକରଃ–**ଦୟାର ନିଧାନ,** ୯୧ ଦକ୍ଷଃ–**କୁଶଳ,** ୯୨ କପର୍ଦ୍ଦୀ–**ଜଟାଜୂଟଧାରୀ,** ୯୩ କାମଶାସନଃ–**କାମଦେବଙ୍କ ଦମନକାରୀ ॥ ୧୨ ॥**

ଶ୍ମଶାନନିଳୟଃ ସୂକ୍ଷ୍ମଃ ଶ୍ମଶାନସ୍ଥୋ ମହେଶ୍ୱରଃ ।
ଲୋକକର୍ତ୍ତା ମୃଗପତିର୍ମହାକର୍ତ୍ତା ମହୌଷଧିଃ ॥ ୧୩

୯୪ ଶ୍ମଶାନନିଳୟଃ–**ଶ୍ମଶାନବାସୀ,** ୯୫ ସୂକ୍ଷ୍ମଃ–**ଇନ୍ଦ୍ରିୟାତୀତ ଓ ସର୍ବବ୍ୟାପୀ,** ୯୬ ଶ୍ମଶାନସ୍ଥଃ–**ଶ୍ମଶାନଭୂମିରେ ବିଶ୍ରାମକାରୀ,** ୯୭ ମହେଶ୍ୱରଃ–**ମହାନ୍ ଈଶ୍ୱର ବା ପରମେଶ୍ୱର,** ୯୮ ଲୋକକର୍ତ୍ତା–**ଜଗତର ସ୍ରଷ୍ଟା,** ୯୯ ମୃଗପତିଃ–**ମୃଗର ପାଳକ ବା ପଶୁପତିଃ,** ୧୦୦ ମହାକର୍ତ୍ତା–**ବିରାଟ୍ ବ୍ରହ୍ମାଣ୍ଡର ସୃଷ୍ଟି ସମୟରେ ମହାକର୍ତ୍ତୃତ୍ୱସମ୍ପନ୍ନ,** ୧୦୧ ମହୌଷଧିଃ–**ଭବରୋଗ ନିବାରଣରେ ମହାନ୍ ଓଷଧିସ୍ୱରୂପ ॥ ୧୩ ॥**

ଉତ୍ତରୋ ଗୋପତିର୍ଗୋପ୍ତା ଜ୍ଞାନଗମ୍ୟଃ ପୁରାତନଃ ।
ନୀତିଃ ସୁନୀତିଃ ଶୁଦ୍ଧାତ୍ମା ସୋମଃ ସୋମରତଃ ସୁଖୀ ॥ ୧୪

୧୦୨ ଉତ୍ତରଃ–**ସଂସାରସାଗରରୁ ପାର କରୁଥିବା,** ୧୦୩ ଗୋପତିଃ–**ସ୍ୱର୍ଗ, ପୃଥିବୀ, ପଶୁ, ବାଣୀ, କିରଣ, ଇନ୍ଦ୍ରିୟ ଓ ଜଳର ସ୍ୱାମୀ,** ୧୦୪ ଗୋପ୍ତା–**ରକ୍ଷକ,** ୧୦୫ ଜ୍ଞାନଗମ୍ୟଃ–**ତତ୍ତ୍ୱଜ୍ଞାନ ଦ୍ୱାରା ଜ୍ଞାନସ୍ୱରୂପରେ ଜାଣି ହେବାର ଯୋଗ୍ୟ,** ୧୦୬ ପୁରାତନଃ–**ସବୁଠାରୁ ପୁରାତନ,** ୧୦୭ ନୀତିଃ–**ନ୍ୟାୟସ୍ୱରୂପ,** ୧୦୮ ସୁନୀତିଃ–**ଉତ୍ତମ ନୀତିଜ୍ଞ,** ୧୦୯ ଶୁଦ୍ଧାତ୍ମା–**ବିଶୁଦ୍ଧ ଆତ୍ମସ୍ୱରୂପ,** ୧୧୦ ସୋମଃ–**ଉମାଙ୍କ ସଙ୍ଗରେ ସ୍ଥିତ,** ୧୧୧ ସୋମରତଃ–**ଚନ୍ଦ୍ର ପ୍ରତି ପ୍ରେମ କରୁଥିବା,** ୧୧୨ ସୁଖୀ–**ଆତ୍ମାନନ୍ଦରେ ପରିପୂର୍ଣ୍ଣ ॥ ୧୪ ॥**

ସୋମପୋଽମୃତପଃ ସୌମ୍ୟୋ ମହାତେଜା ମହାଦ୍ୟୁତିଃ ।
ତେଜୋମୟୋଽମୃତମୟୋଽନ୍ନମୟଶ୍ଚ ସୁଧାପତିଃ ॥ ୧୫

୧୧୩ ସୋମପଃ–**ସୋମପାନକାରୀ ଅଥବା ସୋମନାଥରୂପେ ଚନ୍ଦ୍ରଙ୍କର ପାଳକ,** ୧୧୪ ଅମୃତପଃ–**ସମାଧି ଦ୍ୱାରା ସ୍ୱରୂପଭୂତ ଅମୃତର ଆସ୍ୱାଦନକାରୀ,** ୧୧୫ ସୌମ୍ୟଃ–**ଭକ୍ତଙ୍କ ନିମିତ୍ତ ସୌମ୍ୟରୂପଧାରୀ,** ୧୧୬ ମହାତେଜାଃ–**ମହାନ୍ ତେଜସମ୍ପନ୍ନ,** ୧୧୭ ମହାଦ୍ୟୁତିଃ–**ପରମକାନ୍ତିମାନ୍,** ୧୧୮ ତେଜୋମୟଃ–**ପ୍ରକାଶସ୍ୱରୂପ,** ୧୧୯ ଅମୃତମୟଃ–**ଅମୃତସ୍ୱରୂପ,** ୧୨୦ ଅନ୍ନମୟଃ–**ଅନ୍ନସ୍ୱରୂପ,** ୧୨୧ ସୁଧାପତିଃ–**ଅମୃତର ପାଳକ ॥ ୧୫ ॥**

ଅଜାତଶତ୍ରୁରାଲୋକଃ ସମ୍ଭାବ୍ୟୋ ହବ୍ୟବାହନଃ ।
ଲୋକକରୋ ବେଦକରଃ ସୂତ୍ରକାରଃ ସନାତନଃ ॥ ୧୬

୧୨୨ ଅଜାତଶତ୍ରୁଃ–**ଯାହାଙ୍କ ମନରେ କାହା ପ୍ରତି ଶତ୍ରୁତା ଉତ୍ପନ୍ନ ହୋଇ ନ ଥାଏ ବା ସମଦର୍ଶୀ,**

୧୨୩ ଆଲୋକଃ–**ଜ୍ୟୋତିଃସ୍ୱରୂପ**, ୧୨୪ ସମ୍ଭାବ୍ୟଃ–**ସମ୍ମାନନୀୟ**, ୧୨୫ ହବ୍ୟବାହନଃ–**ଅଗ୍ନିସ୍ୱରୂପ**, ୧୨୬ ଲୋକକରଃ–**ଜଗତର ସ୍ରଷ୍ଟା**, ୧୨୭ ବେଦକରଃ–**ବେଦ ପ୍ରକଟନକାରୀ**, ୧୨୮ ସୂତ୍ରକାରଃ–**ଢକ୍କାନାଦରୂପରେ ଚତୁର୍ଦଶ ମାହେଶ୍ୱର ସୂତ୍ରର ପ୍ରଣେତା**, ୧୨୯ ସନାତନଃ–**ନିତ୍ୟସ୍ୱରୂପ ॥ ୧୬ ॥**

ମହର୍ଷିକପିଲାଗ୍ରର୍ଯ୍ୟୋ ବିଶ୍ୱଦୀପ୍ତିସ୍ତ୍ରିଲୋଚନଃ ।
ପିନାକପାଣିର୍ଭୂଦେବଃ ସ୍ୱସ୍ତିଦଃ ସ୍ୱସ୍ତିକୃତ୍ ସୁଧୀଃ ॥ ୧୭

୧୩୦ ମହର୍ଷିକପିଲାଗ୍ରର୍ଯ୍ୟଃ–**ସାଂଖ୍ୟଶାସ୍ତ୍ରର ପ୍ରଣେତା ଭଗବାନ କପିଳାଗ୍ରର୍ଯ୍ୟ**, ୧୩୧ ବିଶ୍ୱଦୀପ୍ତିଃ–**ନିଜ ପ୍ରଭାରେ ସବୁରି ପ୍ରକାଶକ**, ୧୩୨ ତ୍ରିଲୋଚନଃ–**ତ୍ରିଲୋକର ଦ୍ରଷ୍ଟା**, ୧୩୩ ପିନାକପାଣିଃ–**ହସ୍ତରେ ପିନାକ ନାମକ ଧନୁ ଧାରଣକାରୀ**, ୧୩୪ ଭୂଦେବଃ–**ପୃଥିବୀର ଦେବତା (ବ୍ରାହ୍ମଣ) ସ୍ୱରୂପ ଅଥବା ପାର୍ଥିବଲିଙ୍ଗସ୍ୱରୂପ**, ୧୩୫ ସ୍ୱସ୍ତିଦଃ–**କଲ୍ୟାଣଦାତା**, ୧୩୬ ସ୍ୱସ୍ତିକୃତ୍–**କଲ୍ୟାଣକାରୀ**, ୧୩୭ ସୁଧୀଃ–**ବିଶୁଦ୍ଧବୁଦ୍ଧିଯୁକ୍ତ ॥ ୧୭ ॥**

ଧାତୃଧାମା ଧାମକରଃ ସର୍ବଗଃ ସର୍ବଗୋଚରଃ ।
ବ୍ରହ୍ମସୃଗ୍‌ବିଶ୍ୱସୃକ୍ ସର୍ଗଃ କର୍ଣ୍ଣିକାରପ୍ରିୟଃ କବିଃ ॥ ୧୮

୧୩୮ ଧାତୃଧାମା–**ବିଶ୍ୱର ଧାରଣ-ପୋଷଣ କରିବାରେ ତେଜସ୍ୱୀ**, ୧୩୯ ଧାମକରଃ–**ତେଜ ସୃଷ୍ଟିକାରୀ**, ୧୪୦ ସର୍ବଗଃ–**ସର୍ବବ୍ୟାପୀ**, ୧୪୧ ସର୍ବଗୋଚରଃ–**ସବୁଥିରେ ବ୍ୟାପ୍ତ**, ୧୪୨ ବ୍ରହ୍ମସୃକ୍–**ବ୍ରହ୍ମାଙ୍କର ଉତ୍ପାଦକ**, ୧୪୩ ବିଶ୍ୱସୃକ୍–**ଜଗତର ସ୍ରଷ୍ଟା**, ୧୪୪ ସର୍ଗଃ–**ସୃଷ୍ଟିସ୍ୱରୂପ**, ୧୪୫ କର୍ଣ୍ଣିକାରପ୍ରିୟଃ–**କନିଅର ପୁଷ୍ପପ୍ରିୟ**, ୧୪୬ କବିଃ–**ତ୍ରିକାଳଦର୍ଶୀ ॥ ୧୮ ॥**

ଶାଖୋ ବିଶାଖୋ ଗୋଶାଖଃ ଶିବୋ ଭିଷଗନୁତ୍ତମଃ ।
ଗଙ୍ଗାପ୍ଲବୋଦକୋ ଭବ୍ୟଃ ପୁଷ୍କଳଃ ସ୍ଥପତିଃ ସ୍ଥିରଃ ॥ ୧୯

୧୪୭ ଶାଖଃ–**କାର୍ତ୍ତିକେୟଙ୍କ ସାନଭାଇ ଶାଖସ୍ୱରୂପ**, ୧୪୮ ବିଶାଖଃ–**ସ୍କନ୍ଦଙ୍କ ସାନଭାଇ ବିଶାଖସ୍ୱରୂପ ଅଥବା ବିଶାଖ ନାମକ ଋଷି**, ୧୪୯ ଗୋଶାଖଃ–**ବେଦବାଣୀର ଶାଖାବିସ୍ତାରକାରୀ**, ୧୫୦ ଶିବଃ–**ମଙ୍ଗଳମୟ**, ୧୫୧ ଭିଷଗନୁତ୍ତମଃ–**ଭବରୋଗର ନିବାରଣକାରୀ ବୈଦ୍ୟ (ଜ୍ଞାନୀ)ଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ**, ୧୫୨ ଗଙ୍ଗାପ୍ଲବୋଦକଃ–**ଗଙ୍ଗାର ପ୍ରବାହିତ ଜଳକୁ ମସ୍ତକ ଉପରେ ଧାରଣକାରୀ**, ୧୫୩ ଭବ୍ୟଃ–**କଲ୍ୟାଣସ୍ୱରୂପ**, ୧୫୪ ପୁଷ୍କଳଃ–**ପୂର୍ଣ୍ଣତମ ଅଥବା ବ୍ୟାପକ**, ୧୫୫ ସ୍ଥପତିଃ–**ବ୍ରହ୍ମାଣ୍ଡରୂପୀ ଭବନର ନିର୍ମାତା**, ୧୫୬ ସ୍ଥିରଃ–**ଅଚଞ୍ଚଳ ଅଥବା ସ୍ଥାଣୁରୂପୀ ॥ ୧୯ ॥**

ବିଜିତାତ୍ମା ବିଧେୟାତ୍ମା ଭୂତବାହନସାରଥିଃ ।
ସଗଣୋ ଗଣକାୟଶ୍ଚ ସୁକୀର୍ତ୍ତିଶ୍ଛିନ୍ନସଂଶୟଃ ॥ ୨୦

୧୫୭ ବିଜିତାତ୍ମା–**ମନସଂଯମୀ**, ୧୫୮ ବିଧେୟାତ୍ମା–**ଶରୀର, ମନ ଓ ଇନ୍ଦ୍ରିୟଙ୍କୁ ନିଜ ଇଚ୍ଛାନୁସାରେ କାର୍ଯ୍ୟରେ ପ୍ରୟୋଗକାରୀ**, ୧୫୯–ଭୂତବାହନସାରଥିଃ–**ପାଞ୍ଚଭୌତିକ ରଥ (ଶରୀର)ର ସଂଗ୍ରଳନ ନିମନ୍ତେ ବୁଦ୍ଧିରୂପୀ ସାରଥି**, ୧୬୦ ସଗଣଃ–**ପ୍ରମଥଗଣଙ୍କ ସଙ୍ଗରେ ନିବାସକାରୀ**, ୧୬୧ ଗଣକାୟଃ–**ଗଣସ୍ୱରୂପ**, ୧୬୨ ସୁକୀର୍ତ୍ତିଃ–**ଉତ୍ତମ କୀର୍ତ୍ତିମାନ୍**, ୧୬୩ ଛିନ୍ନସଂଶୟଃ–**ସଂଶୟ ଛିନ୍ନକାରୀ ॥ ୨୦ ॥**

କାମଦେବଃ କାମପାଳୋ ଭସ୍ମୋଦ୍ଧୂଳିତବିଗ୍ରହଃ ।
ଭସ୍ମପ୍ରିୟୋ ଭସ୍ମଶାୟୀ କାମୀ କାନ୍ତଃ କୃତାଗମଃ ॥ ୨୧

୧୬୪ କାମଦେବଃ–**ମନୁଷ୍ୟ ଦ୍ୱାରା ଅଭିଳଷିତ ସମସ୍ତ କାମନାର ଅଧିଷ୍ଠାତା ପରମ ଦେବ**, ୧୬୫ କାମପାଳଃ–**ସକାମ ଭକ୍ତଙ୍କ କାମନା ପୂରଣକାରୀ**, ୧୬୬ ଭସ୍ମୋଦ୍ଧୂଳିତବିଗ୍ରହଃ–**ନିଜ ଶ୍ରୀଅଙ୍ଗରେ ଭସ୍ମ ଲେପନକାରୀ**, ୧୬୭ ଭସ୍ମପ୍ରିୟଃ–**ଭସ୍ମପ୍ରେମୀ**, ୧୬୮ ଭସ୍ମଶାୟୀ–**ଭସ୍ମ ଉପରେ ଶୟନକାରୀ**, ୧୬୯ କାମୀ–**ନିଜ ପ୍ରିୟ ଭକ୍ତଙ୍କୁ ପାଇବାକୁ ଅଭିଳାଷୀ**, ୧୭୦ କାନ୍ତଃ–**ପରମ କମନୀୟ ପ୍ରାଣବଲ୍ଲଭସ୍ୱରୂପ**, ୧୭୧ କୃତାଗମଃ–**ସମସ୍ତ ତନ୍ତ୍ରଶାସ୍ତ୍ରର ରଚୟିତା ॥ ୨୧ ॥**

ସମାବର୍ତ୍ତୋଽନିବୃତ୍ତାତ୍ମା ଧର୍ମପୁଞ୍ଜଃ ସଦାଶିବଃ ।
ଅକଲ୍ମଷଶ୍ଚତୁର୍ବାହୁର୍ଦୁରାବାସୋ ଦୁରାସଦଃ ॥ ୨୨

୧୭୨ ସମାବର୍ତ୍ତଃ- **ସଂସାରଚକ୍ରର ଘୂର୍ଣ୍ଣନକାରୀ,** ୧୭୩ ଅନିବୃତ୍ତାତ୍ମା-**ସର୍ବତ୍ର ବିଦ୍ୟମାନ ହୋଇଥିବାରୁ ଯାହାଙ୍କ ଆତ୍ମା କେଉଁଠି ନିବୃତ୍ତ (ଅନୁପସ୍ଥିତ) ନୁହେଁ,** ୧୭୪ ଧର୍ମପୁଞ୍ଜଃ- **ଧର୍ମ ବା ପୁଣ୍ୟର ରାଶି,** ୧୭୫ ସଦାଶିବଃ- **ନିରନ୍ତର କଲ୍ୟାଣକାରୀ,** ୧୭୬ ଅକଲ୍ମଷଃ- **ପାପରହିତ, ୧୭୭** ଚତୁର୍ବାହୁଃ-**ଚ୍ୱରିଭୁଜଧାରୀ,** ୧୭୮ ଦୁରାବାସଃ-**ଯୋଗୀଜନ ଯାହାଙ୍କୁ ଅତି କଷ୍ଟରେ ନିଜ ହୃଦୟମନ୍ଦିରରେ ବସାଇ ପାରନ୍ତି,** ୧୭୯ ଦୁରାସଦଃ-**ପରମ ଦୁର୍ଜ୍ଜୟ ॥ ୨୨ ॥**

ଦୁର୍ଲଭୋ ଦୁର୍ଗମୋ ଦୁର୍ଗଃ ସର୍ବାୟୁଧବିଶାରଦଃ ।
ଅଧ୍ୟାତ୍ମଯୋଗନିଲୟଃ ସୁତନ୍ତୁସ୍ତନ୍ତୁବର୍ଧନଃ ॥ ୨୩

୧୮୦ ଦୁର୍ଲଭଃ-**ଭକ୍ତିହୀନ ବ୍ୟକ୍ତି ପକ୍ଷେ ଯାହାଙ୍କୁ ପାଇବା ଅତି କଠିନ,** ୧୮୧ ଦୁର୍ଗମଃ- **ଯାହାଙ୍କ ନିକଟରେ ପହଞ୍ଚିବା ଅତି କଠିନ,** ୧୮୨ ଦୁର୍ଗଃ-**ପାପତାପରୁ ରକ୍ଷା କରିବା ପାଇଁ ଦୁର୍ଗ ପରି ଅଥବା ଦୁର୍ଜ୍ଞେୟ,** ୧୮୩ ସର୍ବାୟୁଧବିଶାରଦଃ- **ସମସ୍ତ ଅସ୍ତ୍ର ପ୍ରୟୋଗ କଳାରେ କୁଶଳ,** ୧୮୪ ଅଧ୍ୟାତ୍ମଯୋଗନିଲୟଃ-**ଅଧ୍ୟାତ୍ମଯୋଗରେ ସ୍ଥିତ,** ୧୮୫ ସୁତନ୍ତୁଃ-**ସୁନ୍ଦର ବିସ୍ତୃତ ଜଗତରୂପୀ ତନ୍ତୁଯୁକ୍ତ,** ୧୮୬ ତନ୍ତୁବର୍ଦ୍ଧନଃ-**ଜଗତ୍‌ରୂପ ତନ୍ତୁର ବୃଦ୍ଧିକାରକ ॥ ୨୩ ॥**

ଶୁଭାଙ୍ଗୋ ଲୋକସାରଙ୍ଗୋ ଜଗଦୀଶୋ ଜନାର୍ଦନଃ ।
ଭସ୍ମଶୁଦ୍ଧିକରୋ ମେରୁରୋଜସ୍ୱୀ ଶୁଦ୍ଧବିଗ୍ରହଃ ॥ ୨୪

୧୮୭ ଶୁଭାଙ୍ଗଃ-**ସୁନ୍ଦର ଅଙ୍ଗଯୁକ୍ତ,** ୧୮୮ ଲୋକସାରଙ୍ଗଃ-**ଲୋକସାରଗ୍ରାହୀ,** ୧୮୯ ଜଗଦୀଶଃ-**ଜଗତର ସ୍ୱାମୀ,** ୧୯୦ ଜନାର୍ଦନଃ- **ଭକ୍ତଙ୍କ ଯାଚନାର ଆଲମ୍ବନ,** ୧୯୧ ଭସ୍ମଶୁଦ୍ଧିକରଃ-**ଭସ୍ମଦ୍ୱାରା ଶୁଦ୍ଧିକାର୍ଯ୍ୟ ସମ୍ପାଦନ କରୁଥିବା,** ୧୯୨ ମେରୁଃ-**ସୁମେରୁ ପର୍ବତ ପରି କେନ୍ଦ୍ରରୂପ,** ୧୯୩ ଓଜସ୍ୱୀ-**ତେଜ ଓ ବଳରେ ସମ୍ପନ୍ନ,** ୧୯୪ ଶୁଦ୍ଧବିଗ୍ରହଃ-**ନିର୍ମଳ ଶରୀରଧାରୀ ॥ ୨୪ ॥**

ଅସାଧ୍ୟଃ ସାଧୁସାଧ୍ୟଶ୍ଚ ଭୃତ୍ୟମର୍କଟରୂପଧୃକ୍ ।
ହିରଣ୍ୟରେତାଃ ପୌରାଣୋ ରିପୁଜୀବହରୋ ବଳୀ ॥ ୨୫

୧୯୫ ଅସାଧ୍ୟଃ-**ସାଧନ-ଭଜନରୁ ଦୂରରେ ରହୁଥିବା ଲୋକଙ୍କ ପାଇଁ ଅଲଭ୍ୟ,** ୧୯୬ ସାଧୁସାଧ୍ୟଃ-**ସାଧନ-ଭଜନପରାୟଣ ଲୋକଙ୍କ ପାଇଁ ସୁଲଭ,** ୧୯୭ ଭୃତ୍ୟମର୍କଟରୂପଧୃକ୍- **ଶ୍ରୀରାମଙ୍କ ସେବକ ବାନର ଅର୍ଥାତ୍ ହନୁମାନ ରୂପଧାରୀ,** ୧୯୮ ହିରଣ୍ୟରେତାଃ-**ଅଗ୍ନିସ୍ୱରୂପ ଅଥବା ସୁବର୍ଣ୍ଣମୟ ବୀର୍ଯ୍ୟ ଯାହାର,** ୧୯୯ ପୌରାଣଃ-**ପୁରାଣଦ୍ୱାରା ପ୍ରତିପାଦିତ,** ୨୦୦ ରିପୁଜୀବହରଃ-**ଶତ୍ରୁଙ୍କର ପ୍ରାଣହାରୀ,** ୨୦୧ ବଳୀ-**ବଳଶାଳୀ ॥ ୨୫ ॥**

ମହାହ୍ରଦୋ ମହାଗର୍ତ୍ତଃ ସିଦ୍ଧବୃନ୍ଦାରବନ୍ଦିତଃ ।
ବ୍ୟାଘ୍ରଚର୍ମାମ୍ବରୋ ବ୍ୟାଳୀ ମହାଭୂତୋ ମହାନିଧିଃ ॥ ୨୬

୨୦୨ ମହାହ୍ରଦଃ-**ପରମାନନ୍ଦର ମହାନ୍ ସରୋବର,** ୨୦୩ ମହାଗର୍ତ୍ତଃ-**ମହାନ୍ ଆକାଶରୂପ,** ୨୦୪ ସିଦ୍ଧବୃନ୍ଦାରବନ୍ଦିତଃ-**ସିଦ୍ଧଗଣ ଓ ଦେବଗଣଙ୍କ ଦ୍ୱାରା ବନ୍ଦିତ,** ୨୦୫ ବ୍ୟାଘ୍ରଚର୍ମାମ୍ବରଃ-**ବ୍ୟାଘ୍ରଚର୍ମକୁ ବସ୍ତ୍ରରୂପେ ଧାରଣକାରୀ,** ୨୦୬ ବ୍ୟାଳୀ-**ସର୍ପମାନଙ୍କୁ ଆଭୂଷଣରୂପେ ଧାରଣକାରୀ,** ୨୦୭ ମହାଭୂତଃ- **ତ୍ରିକାଳରେ ମଧ୍ୟ କଦାପି ନଷ୍ଟ ନ ହେଉଥିବା ମହାଭୂତସ୍ୱରୂପ,** ୨୦୮ ମହାନିଧିଃ-**ସମସ୍ତଙ୍କର ମହାନ୍ ନିବାସସ୍ଥାନ ॥ ୨୬ ॥**

ଅମୃତାଶୋଽମୃତବପୁଃ ପାଞ୍ଚଜନ୍ୟଃ ପ୍ରଭଞ୍ଜନଃ ।
ପଞ୍ଚବିଂଶତିତତ୍ତ୍ୱସ୍ଥଃ ପାରିଜାତଃ ପରାବରଃ ॥ ୨୭

୨୦୯ ଅମୃତାଶଃ-**ଯାହାଙ୍କ ଆଶା ବା ସଂକଳ୍ପ କଦାପି ବିଫଳ ହୁଏ ନାହିଁ,** ୨୧୦ ଅମୃତବପୁଃ- **ଯାହାଙ୍କ କଳେବର କଦାପି ନଷ୍ଟ ହୁଏ ନାହିଁ,** ୨୧୧ ପାଞ୍ଚଜନ୍ୟଃ-**ପାଞ୍ଚଜନ୍ୟ ନାମକ ଶଙ୍ଖସ୍ୱରୂପ,** ୨୧୨ ପ୍ରଭଞ୍ଜନଃ-**ବାୟୁସ୍ୱରୂପ ଅଥବା ସଂହାରକାରୀ,** ୨୧୩ ପଞ୍ଚବିଂଶତିତତ୍ତ୍ୱସ୍ଥଃ-**ପ୍ରକୃତି,**

**ମହତ୍ତତ୍ତ୍ୱ (ବୁଦ୍ଧି), ଅହଂକାର, ଚକ୍ଷୁ, ଶ୍ରୋତ୍ର, ଘ୍ରାଣ, ରସନା, ତ୍ୱକ୍, ବାକ୍, ପାଣି, ପାୟୁ, ପାଦ, ଉପସ୍ଥ, ମନ, ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ, ପୃଥିବୀ, ଜଳ, ତେଜ, ବାୟୁ ଓ ଆକାଶ—ଏହି ଚତୁର୍ବିଂଶ ଜଡ଼ ତତ୍ତ୍ୱ ସହ ପଞ୍ଚବିଂଶତି ଚେତନତତ୍ତ୍ୱ ପୁରୁଷଠାରେ ବ୍ୟାପ୍ତ,** ୨୧୪ ପାରିଜାତଃ—**ଯାଚକଙ୍କ ଇଚ୍ଛା ପୂରଣ କରିବାରେ କଳ୍ପବୃକ୍ଷସ୍ୱରୂପ,** ୨୧୫ ପରାବରଃ—**କାରଣ ଓ କାର୍ଯ୍ୟରୂପ ॥ ୨୭ ॥**

ସୁଲଭଃ ସୁବ୍ରତଃ ଶୂରୋ ବ୍ରହ୍ମବେଦନିଧିର୍ନିଧିଃ ।
ବର୍ଣ୍ଣାଶ୍ରମଗୁରୁର୍ବର୍ଣୀ ଶତ୍ରୁଜିଚ୍ଛତ୍ରୁତାପନଃ ॥ ୨୮

୨୧୬ ସୁଲଭଃ—**ନିତ୍ୟ-ନିରନ୍ତର ଚିନ୍ତନରତ ଭକ୍ତ ପାଇଁ ସହଜଲଭ୍ୟ,** ୨୧୭ ସୁବ୍ରତଃ—**ଉତ୍ତମ ବ୍ରତଧାରୀ,** ୨୧୮ ଶୂରଃ—**ଶୌର୍ଯ୍ୟସମ୍ପନ୍ନ,** ୨୧୯ ବ୍ରହ୍ମବେଦନିଧିଃ—**ବ୍ରହ୍ମା ଓ ବେଦର ଉତ୍ପତ୍ତି ସ୍ଥାନ,** ୨୨୦ ନିଧିଃ—**ଜଗତ୍‌ରୂପୀ ରତ୍ନର ଉତ୍ପତ୍ତି ସ୍ଥାନ,** ୨୨୧ ବର୍ଣ୍ଣାଶ୍ରମଗୁରୁଃ—**ସମସ୍ତ ବର୍ଣ୍ଣ ଓ ଆଶ୍ରମର ଗୁରୁ (ଉପଦେଷ୍ଟା),** ୨୨୨ ବର୍ଣ୍ଣୀ—**ବ୍ରହ୍ମଚାରୀ,** ୨୨୩ ଶତ୍ରୁଜିତ୍—**ଅନ୍ଧକାସୁର ଆଦି ଶତ୍ରୁଙ୍କ ଉପରେ ବିଜୟୀ,** ୨୨୪ ଶତ୍ରୁତାପନଃ—**ଶତ୍ରୁଙ୍କ ପାଇଁ ସନ୍ତାପଦାତା ॥ ୨୮ ॥**

ଆଶ୍ରମଃ କ୍ଷପଣଃ କ୍ଷାମୋ ଜ୍ଞାନବାନଚଳେଶ୍ୱରଃ ।
ପ୍ରମାଣଭୂତୋ ଦୁର୍ଜ୍ଞେୟଃ ସୁପର୍ଣ୍ଣୋ ବାୟୁବାହନଃ ॥ ୨୯

୨୨୫ ଆଶ୍ରମଃ—**ସମସ୍ତଙ୍କ ବିଶ୍ରାମ ସ୍ଥାନ,** ୨୨୬ କ୍ଷପଣଃ—**ଜନ୍ମମରଣରୂପୀ କଷ୍ଟର ମୂଳ ଉଚ୍ଛେଦନକାରୀ,** ୨୨୭ କ୍ଷାମଃ—**ପ୍ରଳୟକାଳରେ ପ୍ରଜାଙ୍କ କ୍ଷୟକାରୀ,** ୨୨୮ ଜ୍ଞାନବାନ୍—**ଜ୍ଞାନୀ,** ୨୨୯ ଅଚଳେଶ୍ୱରଃ—**ପର୍ବତ ଅଥବା ସ୍ଥାବରଙ୍କର ସ୍ୱାମୀ,** ୨୩୦ ପ୍ରମାଣଭୂତଃ—**ନିତ୍ୟସିଦ୍ଧ ପ୍ରମାଣଭୂତ,** ୨୩୧ ଦୁର୍ଜ୍ଞେୟଃ—**ଯାହାଙ୍କୁ ଜାଣିବା କଠିନ,** ୨୩୨ ସୁପର୍ଣ୍ଣଃ—**ବେଦମୟ ସୁନ୍ଦର ପକ୍ଷଧାରୀ ବା ଗରୁଡ଼ରୂପୀ,** ୨୩୩ ବାୟୁବାହନଃ—**ନିଜ ଭୟରେ ବାୟୁକୁ ପ୍ରବାହିତକାରୀ ॥ ୨୯ ॥**

ଧନୁର୍ଧରୋ ଧନୁର୍ବେଦୋ ଗୁଣରାଶିର୍ଗୁଣାକରଃ ।
ସତ୍ୟ ସତ୍ୟପରୋଽଦୀନୋ ଧର୍ମାଙ୍ଗୋ ଧର୍ମସାଧନଃ ॥ ୩୦

୨୩୪ ଧନୁର୍ଧରଃ—**ପିନାକଧାରୀ,** ୨୩୫ ଧନୁର୍ବେଦଃ—**ଧନୁର୍ବେଦର ଜ୍ଞାତା,** ୨୩୬ ଗୁଣରାଶିଃ—**ଅନନ୍ତ କଲ୍ୟାଣମୟ ଗୁଣର ରାଶି,** ୨୩୭ ଗୁଣାକରଃ—**ସଦ୍‌ଗୁଣର ଭଣ୍ଡାର,** ୨୩୮ ସତ୍ୟଃ—**ସତ୍ୟସ୍ୱରୂପ,** ୨୩୯ ସତ୍ୟପରଃ—**ସତ୍ୟପରାୟଣ,** ୨୪୦ ଅଦୀନଃ—**ଦୈନ୍ୟଶୂନ୍ୟ ବା ଉଦାର,** ୨୪୧ ଧର୍ମାଙ୍ଗଃ—**ଧର୍ମମୟବିଗ୍ରହ,** ୨୪୨ ଧର୍ମସାଧନଃ—**ଧର୍ମାନୁଷ୍ଠାନକାରୀ ॥ ୩୦ ॥**

ଅନନ୍ତଦୃଷ୍ଟିରାନନ୍ଦୋ ଦଣ୍ଡୋ ଦମୟିତା ଦମଃ ।
ଅଭିବାଦ୍ୟୋ ମହାମାୟୋ ବିଶ୍ୱକର୍ମବିଶାରଦଃ ॥ ୩୧

୨୪୩ ଅନନ୍ତଦୃଷ୍ଟିଃ—**ଅସୀମଦୃଷ୍ଟିସମ୍ପନ୍ନ,** ୨୪୪ ଆନନ୍ଦଃ—**ପରମାନନ୍ଦମୟ,** ୨୪୫ ଦଣ୍ଡଃ—**ଦୁଷ୍ଟଙ୍କ ପାଇଁ ଦଣ୍ଡଦାତା ବା ଦଣ୍ଡସ୍ୱରୂପ,** ୨୪୬ ଦମୟିତା—**ଦୁର୍ଦାନ୍ତ ଦାନବଙ୍କ ଦମନକାରୀ,** ୨୪୭ ଦମଃ—**ଦମନସ୍ୱରୂପ,** ୨୪୮ ଅଭିବାଦ୍ୟଃ—**ପ୍ରଣମ୍ୟ,** ୨୪୯ ମହାମାୟଃ—**ମହାମାୟାବୀ,** ୨୫୦ ବିଶ୍ୱକର୍ମବିଶାରଦଃ—**ସଂସାର ସୃଷ୍ଟି କରିବାରେ କୁଶଳ ॥ ୩୧ ॥**

ବୀତରାଗୋ ବିନୀତାତ୍ମା ତପସ୍ୱୀ ଭୂତଭାବନଃ ।
ଉନ୍ମତ୍ତବେଷଃ ପ୍ରଚ୍ଛନ୍ନୋ ଜିତକାମୋଽଜିତପ୍ରିୟଃ ॥ ୩୨

୨୫୧ ବୀତରାଗଃ—**ପୂର୍ଣ୍ଣରୂପେ ଅନାସକ୍ତ,** ୨୫୨ ବିନୀତାତ୍ମା—**ବିନୟଶୀଳ ଅଥବା ମନସଂଯମୀ,** ୨୫୩ ତପସ୍ୱୀ—**ତପସ୍ୟାପରାୟଣ,** ୨୫୪ ଭୂତଭାବନଃ—**ସକଳ ଭୂତଙ୍କ ସ୍ରଷ୍ଟା ଓ ରକ୍ଷକ,** ୨୫୫ ଉନ୍ମତ୍ତବେଷଃ—**ପାଗଳଙ୍କ ପରି ବେଶଧାରୀ,** ୨୫୬ ପ୍ରଚ୍ଛନ୍ନଃ—**ମାୟା ପରଦାରେ ଲୁକ୍କାୟିତ,** ୨୫୭ ଜିତକାମଃ—**କାମବିଜୟୀ,** ୨୫୮ ଅଜିତପ୍ରିୟଃ—**ବିଷ୍ଣୁଙ୍କର ପ୍ରିୟ ॥ ୩୨ ॥**

କଲ୍ୟାଣପ୍ରକୃତିଃ କଳ୍ପଃ ସର୍ବଲୋକପ୍ରଜାପତିଃ ।
ତରସ୍ୱୀ ତାରକୋ ଧୀମାନ୍ ପ୍ରଧାନଃ ପ୍ରଭୁରବ୍ୟୟଃ ॥ ୩୩

୨୫୯ କଲ୍ୟାଣପ୍ରକୃତିଃ—**ଯାହାଙ୍କର ସ୍ୱଭାବ**

**କଲ୍ୟାଣକାରୀ,** ୨୬୦ କଲ୍ପଃ–**ସମର୍ଥ,** ୨୬୧ ସର୍ବଲୋକପ୍ରଜାପତିଃ–**ସମସ୍ତ ଭୁବନର ପ୍ରଜାଙ୍କ ପାଳକ,** ୨୬୨ ତରସ୍ୱୀ–**ବେଗଶାଳୀ,** ୨୬୩ ତାରକଃ–**ଉଦ୍ଧାରକ,** ୨୬୪ ଧୀମାନ୍–**ବିଶୁଦ୍ଧବୁଦ୍ଧିଯୁକ୍ତ,** ୨୬୫ ପ୍ରଧାନଃ–**ସବୁଠୁ ଶ୍ରେଷ୍ଠ,** ୨୬୬ ପ୍ରଭୁଃ–**ସର୍ବସମର୍ଥ,** ୨୬୭ ଅବ୍ୟୟଃ–**ଅବିନାଶୀ ॥ ୩୩ ॥**

ଲୋକପାଲୋଽନ୍ତର୍ହିତାତ୍ମା କଲ୍ପାଦିଃ କମଲେକ୍ଷଣଃ ।
ବେଦଶାସ୍ତ୍ରାର୍ଥତତ୍ତ୍ୱଜ୍ଞୋଽନିୟମୋ ନିୟତାଶ୍ରୟଃ ॥ ୩୪

୨୬୮ ଲୋକପାଳଃ–**ସମସ୍ତ ଲୋକର ରକ୍ଷକ,** ୨୬୯ ଅନ୍ତର୍ହିତାତ୍ମା–**ଅନ୍ତର୍ଯାମୀ ଆତ୍ମା ଅଥବା ଅଦୃଶ୍ୟ ସ୍ୱରୂପସମ୍ପନ୍ନ,** ୨୭୦ କଲ୍ପାଦିଃ–**କଳ୍ପର ଆଦିକାରଣ,** ୨୭୧ କମଲେକ୍ଷଣଃ–**ପଦ୍ମଲୋଚନ,** ୨୭୨ ବେଦଶାସ୍ତ୍ରାର୍ଥତତ୍ତ୍ୱଜ୍ଞଃ–**ବେଦ ଓ ଶାସ୍ତ୍ରମାନଙ୍କର ତତ୍ତ୍ୱଜ୍ଞାତା,** ୨୭୩ ଅନିୟମଃ–**ନିୟନ୍ତ୍ରଣରହିତ,** ୨୭୪ ନିୟତାଶ୍ରୟଃ–**ସମସ୍ତଙ୍କର ସୁନିଶ୍ଚିତ ଆଶ୍ରୟସ୍ଥାନ ॥ ୩୪ ॥**

ଚନ୍ଦ୍ରଃ ସୂର୍ଯ୍ୟଃ ଶନିଃ କେତୁର୍ବରାଙ୍ଗୋ ବିଦ୍ରୁମଚ୍ଛବିଃ ।
ଭକ୍ତିବଶ୍ୟଃ ପରବ୍ରହ୍ମ ମୃଗବାଣାର୍ପଣୋଽନଘଃ ॥ ୩୫

୨୭୫ ଚନ୍ଦ୍ରଃ–**ଚନ୍ଦ୍ରରୂପରେ ଆହ୍ଲାଦକାରୀ,** ୨୭୬ ସୂର୍ଯ୍ୟଃ–**ସମସ୍ତଙ୍କ ଉତ୍ପତ୍ତିର ହେତୁଭୂତ ସୂର୍ଯ୍ୟ,** ୨୭୭ ଶନିଃ–**ଶନୈଶ୍ଚରରୂପ,** ୨୭୮ କେତୁଃ–**କେତୁ ନାମକ ଗ୍ରହରୂପ,** ୨୭୯ ବରାଙ୍ଗଃ–**ସୁନ୍ଦର ଶରୀର,** ୨୮୦ ବିଦ୍ରୁମଚ୍ଛବିଃ–**ପ୍ରବାଳକାନ୍ତିଯୁକ୍ତ,** ୨୮୧ ଭକ୍ତିବଶ୍ୟଃ–**ଭକ୍ତି ବଳରେ ଭକ୍ତର ବଶ୍ୟ,** ୨୮୨ ପରବ୍ରହ୍ମ–**ପରମାତ୍ମା,** ୨୮୩ ମୃଗବାଣାର୍ପଣଃ–**ମୃଗରୂପଧାରୀ ଯଜ୍ଞ ଉପରକୁ ଶର ମାରିଥିବା,** ୨୮୪ ଅନଘଃ–**ପାପରହିତ ॥ ୩୫ ॥**

ଅଦ୍ରିରଦ୍ର୍ୟାଳୟଃ କାନ୍ତଃ ପରମାତ୍ମା ଜଗଦ୍‌ଗୁରୁଃ ।
ସର୍ବକର୍ମାଳୟସ୍ତୁଷ୍ଟୋ ମଙ୍ଗଲ୍ୟୋ ମଙ୍ଗଳାବୃତଃ ॥ ୩୬

୨୮୫ ଅଦ୍ରିଃ–**କୈଳାସାଦି ପର୍ବତସ୍ୱରୂପ,** ୨୮୬ ଅଦ୍ର୍ୟାଳୟଃ–**କୈଳାସ ଓ ମନ୍ଦର ଆଦି ପର୍ବତ ଉପରେ ନିବାସକାରୀ,** ୨୮୭ କାନ୍ତଃ–**ସମସ୍ତଙ୍କର ପ୍ରିୟତମ,** ୨୮୮ ପରମାତ୍ମା–**ପରବ୍ରହ୍ମ ପରମେଶ୍ୱର,** ୨୮୯ ଜଗଦ୍‌ଗୁରୁଃ–**ସମଗ୍ର ଜଗତର ଗୁରୁ,** ୨୯୦ ସର୍ବକର୍ମାଳୟଃ–**ସମସ୍ତ କର୍ମର ଆଶ୍ରୟ ସ୍ଥାନ,** ୨୯୧ ତୁଷ୍ଟଃ–**ସଦା ପ୍ରସନ୍ନ,** ୨୯୨ ମଙ୍ଗଲ୍ୟଃ–**ମଙ୍ଗଳକାରୀ,** ୨୯୩ ମଙ୍ଗଳାବୃତଃ–**ମଙ୍ଗଳକାରିଣୀ ଶକ୍ତି ସଙ୍ଗେ ସଂଯୁକ୍ତ ॥ ୩୬ ॥**

ମହାତପା ଦୀର୍ଘତପାଃ ସ୍ଥବିଷ୍ଠଃ ସ୍ଥବିରୋ ଧ୍ରୁବଃ ।
ଅହଃସଂବତ୍ସରୋ ବ୍ୟାପ୍ତିଃ ପ୍ରମାଣଂ ପରମଂ ତପଃ ॥ ୩୭

୨୯୪ ମହାତପାଃ–**ମହାନ୍ ତପସ୍ୱୀ,** ୨୯୫ ଦୀର୍ଘତପାଃ–**ଦୀର୍ଘକାଳ ପର୍ଯ୍ୟନ୍ତ ତପାଚରଣକାରୀ,** ୨୯୬ ସ୍ଥବିଷ୍ଠଃ–**ଅତ୍ୟନ୍ତ ସ୍ଥୂଳ,** ୨୯୭ ସ୍ଥବିରୋ ଧ୍ରୁବଃ–**ଅତି ପ୍ରାଚୀନ ଓ ଅତ୍ୟନ୍ତ ସ୍ଥିର,** ୨୯୮ ଅହଃସଂବତ୍ସରୋ–**ଦିବସ ଓ ସଂବତ୍ସର ଆଦି କାଳରୂପରେ ବିଦ୍ୟମାନ, ଅଂଶକାଳସ୍ୱରୂପ,** ୨୯୯ ବ୍ୟାପ୍ତିଃ–**ବ୍ୟାପକତାସ୍ୱରୂପ,** ୩୦୦ ପ୍ରମାଣମ୍–**ପ୍ରତ୍ୟକ୍ଷାଦି ପ୍ରମାଣସ୍ୱରୂପ,** ୩୦୧ ପରମଂ ତପଃ–**ଉତ୍କୃଷ୍ଟ ତପସ୍ୟାସ୍ୱରୂପ ॥ ୩୭ ॥**

ସଂବତ୍ସରକରୋ ମନ୍ତ୍ରପ୍ରତ୍ୟୟଃ ସର୍ବଦର୍ଶନଃ ।
ଅଜଃ ସର୍ବେଶ୍ୱରଃ ସିଦ୍ଧୋ ମହାରେତା ମହାବଳଃ ॥ ୩୮

୩୦୨ ସଂବତ୍ସରକରଃ–**ସଂବତ୍ସରାଦି କାଳବିଭାଗର ଉତ୍ପାଦକ,** ୩୦୩ ମନ୍ତ୍ରପ୍ରତ୍ୟୟଃ–**ବେଦାଦି ମନ୍ତ୍ରଦ୍ୱାରା ପ୍ରତୀତ (ପ୍ରତ୍ୟକ୍ଷ) ହେବା ଯୋଗ୍ୟ,** ୩୦୪ ସର୍ବଦର୍ଶନଃ–**ସମସ୍ତଙ୍କ ସାକ୍ଷୀ,** ୩୦୫ ଅଜଃ–**ଅଜନ୍ମା,** ୩୦୬ ସର୍ବେଶ୍ୱରଃ–**ସମସ୍ତଙ୍କର ଶାସକ,** ୩୦୭ ସିଦ୍ଧଃ–**ସିଦ୍ଧିଗୁଡ଼ିକର ଆଶ୍ରୟ,** ୩୦୮ ମହାରେତାଃ–**ଶ୍ରେଷ୍ଠ ବୀର୍ଯ୍ୟସମ୍ପନ୍ନ,** ୩୦୯ ମହାବଳଃ–**ପ୍ରମଥଗଣରୂପୀ ମହାନ୍ ସେନାସମ୍ପନ୍ନ ॥ ୩୮ ॥**

ଯୋଗୀ ଯୋଗ୍ୟୋ ମହାତେଜାଃ ସିଦ୍ଧିଃ ସର୍ବାଦିରଗ୍ରହଃ ।
ବସୁର୍ବସୁମନାଃ ସତ୍ୟଃ ସର୍ବପାପହରୋ ହରଃ ॥ ୩୯

୩୧୦ ଯୋଗୀ ଯୋଗ୍ୟଃ–**ସୁଯୋଗ୍ୟ ଯୋଗୀ,** ୩୧୧ ମହାତେଜାଃ–**ମହାନ୍ ତେଜସମ୍ପନ୍ନ,** ୩୧୨ ସିଦ୍ଧିଃ–**ସମସ୍ତ ସାଧନାର ଫଳ,** ୩୧୩ ସର୍ବାଦିଃ–

**ସମସ୍ତ ଭୂତଙ୍କର ଆଦ୍ୟ କାରଣ,** ୩୧୪ ଅଗ୍ରହଃ–**ଇନ୍ଦ୍ରିୟଗ୍ରାହ୍ୟ ଶକ୍ତିର ବାହାରେ,** ୩୧୫ ବସୁଃ–**ସକଳ ଭୂତଙ୍କ ବାସସ୍ଥାନ,** ୩୧୬ ବସୁମନାଃ–**ଉଦାରଚିତ୍ତ,** ୩୧୭ ସତ୍ୟଃ–**ସତ୍ୟସ୍ୱରୂପ,** ୩୧୮ ସର୍ବପାପହରୋ ହରଃ–**ସମସ୍ତ ପାପ ଅପହରଣ କରୁଥିବାରୁ ହର ନାମରେ ପ୍ରସିଦ୍ଧ ।। ୩୯ ।।**

ସୁକୀର୍ତ୍ତିଶୋଭନଃ ଶ୍ରୀମାନ୍ ବେଦାଙ୍ଗୋ ବେଦବିନ୍ମୁନିଃ ।
ଭ୍ରାଜିଷ୍ଣୁର୍ଭୋଜନଂ ଭୋକ୍ତା ଲୋକନାଥୋ ଦୁରାଧରଃ ।। ୪୦

୩୧୯ ସୁକୀର୍ତ୍ତିଶୋଭନଃ–**ଉତ୍ତମ କୀର୍ତ୍ତିରେ ସୁଶୋଭିତ,** ୩୨୦ ଶ୍ରୀମାନ୍–**ବିଭୂତିସ୍ୱରୂପା ଉମାଙ୍କ ସହ ଯୁକ୍ତ,** ୩୨୧ ବେଦାଙ୍ଗଃ–**ବେଦ ଯାହାଙ୍କ ଅଙ୍ଗ,** ୩୨୨ ବେଦବିନ୍ମୁନିଃ–**ବେଦଜ୍ଞ ମନନଶୀଳ ମୁନି,** ୩୨୩ ଭ୍ରାଜିଷ୍ଣୁଃ–**ସ୍ଥିର ଆଲୋକସ୍ୱରୂପ,** ୩୨୪ ଭୋଜନମ୍–**ଜ୍ଞାନୀଙ୍କ ଉପଭୋଗ୍ୟ ଅମୃତସ୍ୱରୂପ,** ୩୨୫ ଭୋକ୍ତା–**ପୁରୁଷରୂପରେ ଉପଭୋଗକାରୀ,** ୩୨୬ ଲୋକନାଥଃ–**ବିଶ୍ୱନାଥ,** ୩୨୭ ଦୁରାଧରଃ–**ଅଜିତେନ୍ଦ୍ରିୟ ବ୍ୟକ୍ତିଙ୍କ ଦ୍ୱାରା ଯାହାଙ୍କ ଆରାଧନା ଅତ୍ୟନ୍ତ କଠିନ ।। ୪୦ ।।**

ଅମୃତଃ ଶାଶ୍ୱତଃ ଶାନ୍ତୋ ବାଣହସ୍ତଃ ପ୍ରତାପବାନ୍ ।
କମଣ୍ଡଳୁଧରୋ ଧନ୍ୱୀ ଅବାଙ୍ମନସଗୋଚରଃ ।। ୪୧

୩୨୮ ଅମୃତଃ ଶାଶ୍ୱତଃ–**ସନାତନ ଅମୃତସ୍ୱରୂପ,** ୩୨୯ ଶାନ୍ତଃ–**ଶାନ୍ତିମୟ,** ୩୩୦ ବାଣହସ୍ତଃ ପ୍ରତାପବାନ୍–**ହସ୍ତରେ ଶର ଧରିଥିବା ପ୍ରତାପୀ ବୀର,** ୩୩୧ କମଣ୍ଡଳୁଧରଃ–**କମଣ୍ଡଳୁଧାରୀ,** ୩୩୨ ଧନ୍ୱୀ–**ପିନାକଧାରୀ,** ୩୩୩ ଅବାଙ୍ମନସଗୋଚରଃ–**ମନ ଓ ବାଣୀର ଅଗୋଚର ।। ୪୧ ।।**

ଅତିନ୍ଦ୍ରିୟୋ ମହାମାୟଃ ସର୍ବାବାସଶ୍ଚତୁଷ୍ପଥଃ ।
କାଳଯୋଗୀ ମହାନାଦୋ ମହୋତ୍ସାହୋ ମହାବଳଃ ।। ୪୨

୩୩୪ ଅତୀନ୍ଦ୍ରିୟୋ ମହାମାୟଃ–**ଇନ୍ଦ୍ରିୟାତୀତ ଓ ମହାମାୟାବୀ,** ୩୩୫ ସର୍ବାବାସଃ–**ସବୁରି ବାସସ୍ଥାନ,** ୩୩୬ ଚତୁଷ୍ପଥଃ–**ଚାରି ପୁରୁଷାର୍ଥ ସିଦ୍ଧିର ଏକମାତ୍ର ମାର୍ଗ,** ୩୩୭ କାଳଯୋଗୀ–**ପ୍ରଳୟବେଳେ ସମସ୍ତଙ୍କୁ କାଳ ସହ ସଂଯୋଗକାରୀ,** ୩୩୮ ମହାନାଦଃ–**ଗମ୍ଭୀର ଶବ୍ଦକାରୀ ଅଥବା ଅନାହତ ନାଦରୂପ,** ୩୩୯ ମହୋତ୍ସାହୋ ମହାବଳଃ–**ମହାନ୍ ଉତ୍ସାହ ଓ ବଳରେ ସମ୍ପନ୍ନ ।। ୪୨ ।।**

ମହାବୁଦ୍ଧିର୍ମହାବୀର୍ଯ୍ୟୋ ଭୂତଚାରୀ ପୁରନ୍ଦରଃ ।
ନିଶାଚରଃ ପ୍ରେତଚାରୀ ମହାଶକ୍ତିର୍ମହାଦ୍ୟୁତିଃ ।। ୪୩

୩୪୦ ମହାବୁଦ୍ଧିଃ–**ଶ୍ରେଷ୍ଠ ବୁଦ୍ଧିଯୁକ୍ତ,** ୩୪୧ ମହାବୀର୍ଯ୍ୟଃ–**ଅନନ୍ତ ପରାକ୍ରମୀ,** ୩୪୨ ଭୂତଚାରୀ–**ଭୂତଗଣଙ୍କ ସହ ବିଚରଣକାରୀ,** ୩୪୩ ପୁରନ୍ଦରଃ–**ତ୍ରିପୁରସଂହାରକ,** ୩୪୪ ନିଶାଚରଃ–**ରାତ୍ରିରେ ବିଚରଣକାରୀ,** ୩୪୫ ପ୍ରେତଚାରୀ–**ପ୍ରେତଗଣଙ୍କ ସହ ବିଚରଣକାରୀ,** ୩୪୬ ମହାଶକ୍ତିର୍ମହାଦ୍ୟୁତିଃ–**ଅନନ୍ତ ଶକ୍ତି ଓ ଶ୍ରେଷ୍ଠ କାନ୍ତିରେ ସମ୍ପନ୍ନ ।। ୪୩ ।।**

ଅନିର୍ଦ୍ଦେଶ୍ୟବପୁଃ ଶ୍ରୀମାନ୍ ସର୍ବାଚାର୍ଯ୍ୟମନୋଗତିଃ ।
ବହୁଶ୍ରୁତୋଽମହାମାୟୋ ନିୟତାତ୍ମା ଧ୍ରୁବୋଽଧ୍ରୁବଃ ।। ୪୪

୩୪୭ ଅନିର୍ଦ୍ଦେଶ୍ୟବପୁଃ–**ଅନିର୍ବଚନୀୟସ୍ୱରୂପ,** ୩୪୮ ଶ୍ରୀମାନ୍–**ଐଶ୍ୱର୍ଯ୍ୟବାନ୍,** ୩୪୯ ସର୍ବାଚାର୍ଯ୍ୟମନୋଗତିଃ–**ସମସ୍ତଙ୍କ ନିମନ୍ତେ ଅବିଚାର୍ଯ୍ୟ ମନୋଗତି,** ୩୫୦ ବହୁଶ୍ରୁତଃ–**ବହୁଜ୍ଞ ଅଥବା ସର୍ବଜ୍ଞ,** ୩୫୧ ଅମହାମାୟଃ–**ବଡ଼ ବଡ଼ ମାୟା ମଧ୍ୟ ଯାହାଙ୍କ ଉପରେ ନିଷ୍କ୍ରିୟ ହୋଇଯାଏ,** ୩୫୨ ନିୟତାତ୍ମା–**ମନଃ ସଂଯମୀ,** ୩୫୩ ଧ୍ରୁବୋଽଧ୍ରୁବଃ–**ଧ୍ରୁବ (ନିତ୍ୟ କାରଣ) ଓ ଅଧ୍ରୁବ (ଅନିତ୍ୟ କାର୍ଯ୍ୟ) ରୂପ ।। ୪୪ ।।**

ଓଜସ୍ତେଜୋଦ୍ୟୁତିଧରୋ ଜନକଃ ସର୍ବଶାସନଃ ।
ନୃତ୍ୟପ୍ରିୟୋ ନିତ୍ୟନୃତ୍ୟଃ ପ୍ରକାଶାତ୍ମା ପ୍ରକାଶକଃ ।। ୪୫

୩୫୪ ଓଜସ୍ତେଜୋଦ୍ୟୁତିଧରଃ–**ଓଜ (ପ୍ରାଣ ଓ ବଳ), ତେଜ (ଶୌର୍ଯ୍ୟାଦି ଗୁଣ) ତଥା ଜ୍ଞାନଦୀପ୍ତି ଧାରଣକାରୀ,** ୩୫୫ ଜନକଃ–**ସବୁରି ଉତ୍ପାଦକ,** ୩୫୬ ସର୍ବଶାସନଃ–**ସମସ୍ତଙ୍କ ଶାସକ,** ୩୫୭ ନୃତ୍ୟପ୍ରିୟଃ–**ନୃତ୍ୟପ୍ରେମୀ,** ୩୫୮ ନିତ୍ୟନୃତ୍ୟଃ–**ପ୍ରତିଦିନ ତାଣ୍ଡବ ନୃତ୍ୟକାରୀ,** ୩୫୯ ପ୍ରକାଶାତ୍ମା–**ପ୍ରକାଶରୂପ,** ୩୬୦ ପ୍ରକାଶକଃ–

**ସୂର୍ଯ୍ୟାଦିଙ୍କୁ ଆଲୋକିତକାରୀ ॥ ୪୫ ॥**

ସ୍ପଷ୍ଟାକ୍ଷରୋ ବୁଧୋ ମନ୍ତ୍ରଃ ସମାନଃ ସାରସଂପ୍ଳବଃ ।
ଯୁଗାଦିକୃଦ୍‌ଯୁଗାବର୍ତ୍ତୋ ଗମ୍ଭୀରୋ ବୃଷବାହନଃ ॥ ୪୬

୩୬୧ ସ୍ପଷ୍ଟାକ୍ଷରଃ–**ଓଁକାରରୂପୀ ସ୍ପଷ୍ଟ ଅକ୍ଷରସ୍ୱରୂପ,** ୩୬୨ ବୁଧଃ–**ଜ୍ଞାନବାନ୍‌,** ୩୬୩ ମନ୍ତ୍ରଃ–**ଋକ୍‌, ସାମ ଓ ଯଜୁର୍ବେଦର ମନ୍ତ୍ରସ୍ୱରୂପ,** ୩୬୪ ସମାନଃ–**ସମସ୍ତଙ୍କ ପ୍ରତି ସମଭାବାପନ୍ନ,** ୩୬୫ ସାରସଂପ୍ଳବଃ–**ସଂସାରସାଗରରୁ ପାର ହେବାକୁ ନୌକାସଦୃଶ,** ୩୬୬ ଯୁଗାଦିକୃଦ୍‌-ଯୁଗାବର୍ତ୍ତଃ–**ଯୁଗାଦିର ପ୍ରବର୍ତ୍ତକ ତଥା ଯୁଗମାନଙ୍କୁ ଚକ୍ରପରି ଘୂର୍ଣ୍ଣନକାରୀ,** ୩୬୭ ଗମ୍ଭୀରଃ–**ଗାମ୍ଭୀର୍ଯ୍ୟଯୁକ୍ତ,** ୩୬୮ ବୃଷବାହନଃ–**ନନ୍ଦୀ ନାମକ ବୃଷଭ ଯାହାର ବାହାନ ॥ ୪୬ ॥**

ଇଷ୍ଟୋଽବିଶିଷ୍ଟଃ ଶିଷ୍ଟେଷ୍ଟଃ ସୁଲଭଃ ସାରଶୋଧନଃ ।
ତୀର୍ଥରୂପସ୍ତୀର୍ଥନାମା ତୀର୍ଥଦୃଶ୍ୟସ୍ତୁ ତୀର୍ଥଦଃ ॥ ୪୭

୩୬୯ ଇଷ୍ଟଃ– **ପରମାନନ୍ଦର ସ୍ୱରୂପ ହୋଇଥିବାରୁ ସମସ୍ତଙ୍କର ପ୍ରିୟ,** ୩୭୦ ଅବିଶିଷ୍ଟଃ–**ସମସ୍ତ ବିଶେଷଣରହିତ,** ୩୭୧ ଶିଷ୍ଟେଷ୍ଟଃ–**ଶିଷ୍ଟ ପୁରୁଷଙ୍କ ଇଷ୍ଟଦେବ,** ୩୭୨ ସୁଲଭଃ–**ଅନନ୍ୟଚେତା ଭକ୍ତଙ୍କ ପାଇଁ ସହଜଲଭ୍ୟ,** ୩୭୩ ସାରଶୋଧନଃ–**ସାରତତ୍ତ୍ୱ ଅନ୍ୱେଷଣକାରୀ,** ୩୭୪ ତୀର୍ଥରୂପଃ–**ତୀର୍ଥସ୍ୱରୂପ,** ୩୭୫ ତୀର୍ଥନାମା–**ତୀର୍ଥନାମଧାରୀ ଅଥବା ଯାହାଙ୍କ ନାମ ଭବସାଗରରୁ ପାର କରାଇଥାଏ,** ୩୭୬ ତୀର୍ଥଦୃଶ୍ୟଃ–**ତୀର୍ଥସେବନ ଦ୍ୱାରା ନିଜ ସ୍ୱରୂପର ଦର୍ଶନ ପ୍ରଦାନକାରୀ ଅଥବା ଗୁରୁକୃପାରେ ପ୍ରତ୍ୟକ୍ଷ ହେଉଥିବା,** ୩୭୭ ତୀର୍ଥଦଃ–**ଚରଣୋଦକରୂପୀ ତୀର୍ଥ ପ୍ରଦାନକାରୀ ॥ ୪୭ ॥**

ଅପାଂନିଧିରଧିଷ୍ଠାନଂ ଦୁର୍ଜୟୋ ଜୟକାଳବିତ୍‌ ।
ପ୍ରତିଷ୍ଠିତଃ ପ୍ରମାଣଜ୍ଞୋ ହିରଣ୍ୟକବଚସ୍ତ୍ୱେ ହରିଃ ॥ ୪୮

୩୭୮ ଅପାଂନିଧିଃ– **ଜଳର ନିଧାନ ସମୁଦ୍ରସ୍ୱରୂପ,** ୩୭୯ ଅଧିଷ୍ଠାନମ୍‌–**ଉପାଦାନ-କାରଣରୂପରେ ସକଳ ଭୂତଙ୍କ ଆଶ୍ରୟ ଅଥବା ଜଗତରୂପୀ ପ୍ରପଞ୍ଚର ଅଧିଷ୍ଠାନ,** ୩୮୦ ଦୁର୍ଜୟଃ–**ଯାହାଙ୍କୁ ଜିଣିବା କଠିନ,** ୩୮୧ ଜୟକାଳବିତ୍‌–**ବିଜୟ ଅବସରର ଜ୍ଞାତା,** ୩୮୨ ପ୍ରତିଷ୍ଠିତଃ–**ନିଜ ମହିମାରେ ସ୍ଥିତ,** ୩୮୩ ପ୍ରମାଣଜ୍ଞଃ–**ପ୍ରମାଣର ଜ୍ଞାତା,** ୩୮୪ ହିରଣ୍ୟକବଚଃ–**ସୁବର୍ଣ୍ଣ କବଚଧାରୀ,** ୩୮୫ ହରିଃ–**ଶ୍ରୀହରିସ୍ୱରୂପ ॥ ୪୮ ॥**

ବିମୋଚନଃ ସୁରଗଣୋ ବିଦ୍ୟେଶୋ ବିନ୍ଦୁସଂଶ୍ରୟଃ ।
ବାଳରୂପୋଽବଲୋନ୍ମତ୍ତୋଽବିକର୍ତ୍ତା ଗହନୋ ଗୁହଃ ॥ ୪୯

୩୮୬ ବିମୋଚନଃ–**ସଂସାର-ବନ୍ଧନରୁ ମୁକ୍ତିଦାତା,** ୩୮୭ ସୁରଗଣଃ–**ଦେବସମୁଦାୟ-ସ୍ୱରୂପ,** ୩୮୮ ବିଦ୍ୟେଶଃ–**ସକଳ ବିଦ୍ୟାର ସ୍ୱାମୀ,** ୩୮୯ ବିନ୍ଦୁସଂଶ୍ରୟଃ–**ବିନ୍ଦୁରୂପୀ ପ୍ରଣବର ଆଶ୍ରୟ,** ୩୯୦ ବାଳରୂପଃ–**ବାଳକରୂପଧାରୀ,** ୩୯୧ ଅବଲୋନ୍ମତ୍ତଃ–**ବଳରେ ଉନ୍ମତ୍ତ ନ ହେଉଥିବା,** ୩୯୨ ଅବିକର୍ତ୍ତା–**ବିକାରଶୂନ୍ୟ,** ୩୯୩ ଗହନଃ–**ଦୁର୍ବୋଧ୍ୟ ଅଥବା ଅଗମ୍ୟ,** ୩୯୪ ଗୁହଃ–**ମାୟାଦ୍ୱାରା ନିଜକୁ ଗୋପନକାରୀ ॥ ୪୯ ॥**

କରଣଂ କାରଣଂ କର୍ତ୍ତା ସର୍ବବନ୍ଧବିମୋଚନଃ ।
ବ୍ୟବସାୟୋ ବ୍ୟବସ୍ଥାନଃ ସ୍ଥାନଦୋ ଜଗଦାଦିଜଃ ॥ ୫୦

୩୯୫ କରଣମ୍‌–**ଜଗତର ଉତ୍ପତ୍ତିର ବୃହତ୍ତମ ସାଧନ,** ୩୯୬ କାରଣମ୍‌–**ଜଗତ ଉତ୍ପତ୍ତିରେ ଉପାଦାନ ଓ ନିମିତ୍ତ କାରଣ,** ୩୯୭ କର୍ତ୍ତା–**ସବୁରି ସ୍ରଷ୍ଟା,** ୩୯୮ ସର୍ବବନ୍ଧବିମୋଚନଃ–**ସକଳ ବନ୍ଧନ-ବିମୋଚନକାରୀ,** ୩୯୯ ବ୍ୟବସାୟଃ–**ନିଶ୍ଚୟାତ୍ମକ ଜ୍ଞାନସ୍ୱରୂପ,** ୪୦୦ ବ୍ୟବସ୍ଥାନଃ–**ସମଗ୍ର ଜଗତର ବ୍ୟବସ୍ଥାକାରୀ,** ୪୦୧ ସ୍ଥାନଦଃ–**ଧ୍ରୁବାଦି ଭକ୍ତଙ୍କୁ ଅବିଚଳ ସ୍ଥାନ ପ୍ରଦାନକାରୀ,** ୪୦୨ ଜଗଦାଦିଜଃ–**ହିରଣ୍ୟଗର୍ଭରୂପେ ଜଗତର ଆଦ୍ୟକାଳରେ ପ୍ରକଟିତ ॥ ୫୦ ॥**

ଗୁରୁଦୋ ଲଳିତୋଽଭେଦୋ ଭାବାତ୍ମାଽଽତ୍ମନି ସଂସ୍ଥିତଃ ।
ବୀରେଶ୍ୱରୋ ବୀରଭଦ୍ରୋ ବୀରାସନବିଧିର୍ବିରାଟ୍‌ ॥ ୫୧

୪୦୩ ଗୁରୁଦଃ–**ଶ୍ରେଷ୍ଠ ବସ୍ତୁ ପ୍ରଦାତା ଅଥବା ଜିଜ୍ଞାସୁଙ୍କୁ ଗୁରୁ ପ୍ରଦାନକାରୀ,** ୪୦୪ ଲଳିତଃ–

**ସୁନ୍ଦର ସ୍ୱରୂପଯୁକ୍ତ**, ୪୦୫ ଅଭେଦଃ–**ଭେଦରହିତ**, ୪୦୬ ଭାବାତ୍ମାଽଽତ୍ମନି ସଂସ୍ଥିତଃ–**ସତ୍‌ସ୍ୱରୂପ ଆତ୍ମାରେ ପ୍ରତିଷ୍ଠିତ**, ୪୦୭ ବୀରେଶ୍ୱରଃ–**ବୀରଶିରୋମଣି**, ୪୦୮ ବୀରଭଦ୍ରଃ–**ବୀରଭଦ୍ର ନାମକ ଗଣାଧ୍ୟକ୍ଷ**, ୪୦୯ ବୀରାସନବିଧିଃ–**ବୀରାସନରେ ବିରାଜିତ**, ୪୧୦ ବିରାଟ୍–**ଅଖିଳବ୍ରହ୍ମାଣ୍ଡସ୍ୱରୂପ ॥ ୫୧ ॥**

ବୀରଚୂଡାମଣିର୍ବେତ୍ତା ଚିଦାନନ୍ଦୋ ନଦୀଧରଃ ।
ଆଜ୍ଞାଧାରସ୍ତ୍ରିଶୂଳୀ ଚ ଶିପିବିଷ୍ଟଃ ଶିବାଳୟଃ ॥ ୫୨

୪୧୧ ବୀରଚୂଡାମଣିଃ–**ବୀରଙ୍କ ମଧ୍ୟରେ ଶ୍ରେଷ୍ଠ**, ୪୧୨ ବେତ୍ତା–**ବିଦ୍ୱାନ୍**, ୪୧୩ ଚିଦାନନ୍ଦଃ–**ବିଜ୍ଞାନାନନ୍ଦସ୍ୱରୂପ**, ୪୧୪ ନଦୀଧରଃ–**ମସ୍ତକରେ ଗଙ୍ଗା ଧାରଣକାରୀ**, ୪୧୫ ଆଜ୍ଞାଧାରଃ–**ଆଜ୍ଞାପାଳନକାରୀ**, ୪୧୬ ତ୍ରିଶୂଳୀ–**ତ୍ରିଶୂଳଧାରୀ**, ୪୧୭ ଶିପିବିଷ୍ଟଃ–**ତେଜୋମୟୀ କିରଣରେ ବ୍ୟାପ୍ତ**, ୪୧୮ ଶିବାଳୟଃ–**ଭଗବତୀ ଶିବାଙ୍କ ଆଶ୍ରୟ ॥ ୫୨ ॥**

ବାଲଖିଲ୍ୟୋ ମହାଗ୍ରପସ୍ତିଗ୍ମାଂଶୁର୍ବଧିରଃ ଖଗଃ ।
ଅଭିରାମଃ ସୁଶରଣଃ ସୁବ୍ରହ୍ମଣ୍ୟଃ ସୁଧାପତିଃ ॥ ୫୩

୪୧୯ ବାଲଖିଲ୍ୟଃ–**ବାଲଖିଲ୍ୟ ଋଷିରୂପ**, ୪୨୦ ମହାଗ୍ରପଃ–**ମହାଧନୁର୍ଦ୍ଧାରୀ**, ୪୨୧ ତିଗ୍ମାଂଶୁଃ–**ସୂର୍ଯ୍ୟରୂପ**, ୪୨୨ ବଧିରଃ–**ଲୌକିକ ବିଷୟ ଚର୍ଚ୍ଚା ଯେ ନ ଶୁଣନ୍ତି**, ୪୨୩ ଖଗଃ–**ଆକାଶଗାମୀ**, ୪୨୪ ଅଭିରାମଃ–**ପରମ ସୁନ୍ଦର**, ୪୨୫ ସୁଶରଣଃ–**ସମସ୍ତଙ୍କ ପାଇଁ ସୁନ୍ଦର ଆଶ୍ରୟରୂପ**, ୪୨୬ ସୁବ୍ରହ୍ମଣ୍ୟଃ–**ବ୍ରାହ୍ମଣଙ୍କର ପରମ ହିତୈଷୀ**, ୪୨୭ ସୁଧାପତିଃ–**ଅମୃତକଳଶର ରକ୍ଷକ ॥ ୫୩ ॥**

ମଘବାନ୍ କୌଶିକୋ ଗୋମାନ୍ ବିରାମଃ ସର୍ବସାଧନଃ ।
ଲଲାଟାକ୍ଷୋ ବିଶ୍ୱଦେହଃ ସାରଃ ସଂସାରଚକ୍ରଭୃତ୍ ॥ ୫୪

୪୨୮ ମଘବାନ୍ କୌଶିକଃ–**କୁଶିକବଂଶୀୟ ଇନ୍ଦ୍ରସ୍ୱରୂପ**, ୪୨୯ ଗୋମାନ୍–**କିରଣଯୁକ୍ତ**, ୪୩୦ ବିରାମଃ–**ସମସ୍ତ ପ୍ରାଣୀଙ୍କର ଲୟ ସ୍ଥାନ**, ୪୩୧ ସର୍ବସାଧନଃ–**ସକଳ କାମନାର ସିଦ୍ଧିଦାତା**, ୪୩୨ ଲଲାଟାକ୍ଷଃ–**ଲଲାଟରେ ତୃତୀୟ ନେତ୍ରଧାରୀ**, ୪୩୩ ବିଶ୍ୱଦେହଃ–**ଜଗତ୍‌ସ୍ୱରୂପ**, ୪୩୪ ସାରଃ–**ସାରତତ୍ତ୍ୱସ୍ୱରୂପ**, ୪୩୫ ସଂସାରଚକ୍ରଭୃତ୍–**ସଂସାରଚକ୍ର ଧାରଣକାରୀ ॥ ୫୪ ॥**

ଅମୋଘଦଣ୍ଡୋ ମଧ୍ୟସ୍ଥୋ ହିରଣ୍ୟୋ ବ୍ରହ୍ମବର୍ଚସୀ ।
ପରମାର୍ଥଃ ପରୋ ମାୟୀ ଶମ୍ବରୋ ବ୍ୟାଘ୍ରଲୋଚନଃ ॥ ୫୫

୪୩୬ ଅମୋଘଦଣ୍ଡଃ–**ଯାହାଙ୍କ ଦଣ୍ଡ କଦାପି ବୃଥା ଯାଏ ନାହିଁ**, ୪୩୭ ମଧ୍ୟସ୍ଥଃ–**ଉଦାସୀନ**, ୪୩୮ ହିରଣ୍ୟଃ–**ସୁବର୍ଣ୍ଣ ବା ତେଜର ସ୍ୱରୂପ**, ୪୩୯ ବ୍ରହ୍ମବର୍ଚସୀ–**ବ୍ରହ୍ମତେଜସମ୍ପନ୍ନ**, ୪୪୦ ପରମାର୍ଥଃ–**ମୋକ୍ଷରୂପୀ ଉତ୍କୃଷ୍ଟ ଅର୍ଥ ପ୍ରଦାନକାରୀ**, ୪୪୧ ପରୋ ମାୟୀ–**ମହାମାୟାବୀ**, ୪୪୨ ଶମ୍ବରଃ–**କଲ୍ୟାଣପ୍ରଦ**, ୪୪୩ ବ୍ୟାଘ୍ରଲୋଚନଃ–**ବ୍ୟାଘ୍ର ପରି ଯାହାଙ୍କ ନେତ୍ର ଭୟାନକ ॥ ୫୫ ॥**

ରୁଚିର୍ବିରଞ୍ଚିଃ ସ୍ୱର୍ବନ୍ଧୁର୍ବାଚସ୍ପତିରହର୍ପତିଃ ।
ରବିର୍ବିରୋଚନଃ ସ୍କନ୍ଦଃ ଶାସ୍ତା ବୈବସ୍ୱତୋ ଯମଃ ॥ ୫୬

୪୪୪ ରୁଚିଃ–**ଦୀପ୍ତିରୂପ**, ୪୪୫ ବିରଞ୍ଚିଃ–**ବ୍ରହ୍ମସ୍ୱରୂପ**, ୪୪୬ ସ୍ୱର୍ବନ୍ଧୁଃ–**ସ୍ୱର୍ଲୋକରେ ବନ୍ଧୁ ପରି ସୁଖଦ**, ୪୪୭ ବାଚସ୍ପତିଃ–**ବାଣୀର ଅଧିପତି**, ୪୪୮ ଅହର୍ପତିଃ–**ଦିନର ସ୍ୱାମୀ ସୂର୍ଯ୍ୟରୂପ**, ୪୪୯ ରବିଃ–**ସମସ୍ତ ରସ ଶୋଷଣକାରୀ**, ୪୫୦ ବିରୋଚନଃ–**ବିବିଧ ପ୍ରକାରେ ଆଲୋକ ବିଚ୍ଛୁରଣକାରୀ**, ୪୫୧ ସ୍କନ୍ଦଃ–**କାର୍ତ୍ତିକେୟସ୍ୱରୂପ**, ୪୫୨ ଶାସ୍ତା ବୈବସ୍ୱତୋ ଯମଃ–**ସମସ୍ତଙ୍କ ଉପରେ ଶାସନକାରୀ ସୂର୍ଯ୍ୟପୁତ୍ର ଯମ ॥ ୫୬ ॥**

ଯୁକ୍ତିରୁନ୍ନତକୀର୍ତ୍ତିଶ୍ଚ ସାନୁରାଗଃ ପରଞ୍ଜୟଃ ।
କୈଳାସାଧିପତିଃ କାନ୍ତଃ ସବିତା ରବିଲୋଚନଃ ॥ ୫୭

୪୫୩ ଯୁକ୍ତିରୁନ୍ନତକୀର୍ତ୍ତିଃ–**ଅଷ୍ଟାଙ୍ଗଯୋଗ-ସ୍ୱରୂପ ଏବଂ ଊର୍ଦ୍ଧ୍ୱଲୋକରେ ଯାହାଙ୍କ କୀର୍ତ୍ତି ବିସ୍ତାରିତ**, ୪୫୪ ସାନୁରାଗଃ–**ଭକ୍ତଜନଙ୍କ ପ୍ରତି ଅନୁରାଗୀ**, ୪୫୫ ପରଞ୍ଜୟଃ–**ଅନ୍ୟମାନଙ୍କ ଉପରେ ବିଜୟୀ**, ୪୫୬ କୈଳାସାଧିପତିଃ–

**କୈଳାସର ସ୍ୱାମୀ,** ୪୫୭ କାନ୍ତଃ–**କମନୀୟ ଅଥବା କାନ୍ତିମାନ୍,** ୪୫୮ ସବିତା–**ସମଗ୍ର ଜଗତର ଉତ୍ପନ୍ନକାରୀ,** ୪୫୯ ରବିଲୋଚନଃ–**ସୂର୍ଯ୍ୟ ଯାହାଙ୍କର ନେତ୍ର ॥ ୫୭ ॥**

ବିଦ୍ୱତ୍ତମୋ ବୀତଭୟୋ ବିଶ୍ୱଭର୍ତ୍ତାନିବାରିତଃ ।
ନିତ୍ୟୋ ନିୟତକଲ୍ୟାଣଃ ପୁଣ୍ୟଶ୍ରବଣକୀର୍ତ୍ତନଃ ॥ ୫୮

୪୬୦ ବିଦ୍ୱତ୍ତମଃ–**ବିଦ୍ୱାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ,** ୪୬୧ ବୀତଭୟଃ–**ଭୟରହିତ,** ୪୬୨ ବିଶ୍ୱଭର୍ତ୍ତା–**ଜଗତର ଭରଣପୋଷଣକାରୀ,** ୪୬୩ ଅନିବାରିତଃ–**ଯାହାଙ୍କୁ କେହି ରୋକି ପାରେ ନାହିଁ,** ୪୬୪ ନିତ୍ୟଃ–**ସତ୍ୟସ୍ୱରୂପ,** ୪୬୫ ନିୟତ-କଲ୍ୟାଣଃ–**ସୁନିଶ୍ଚିତରୂପେ କଲ୍ୟାଣକାରୀ,** ୪୬୬ ପୁଣ୍ୟଶ୍ରବଣକୀର୍ତ୍ତନଃ–**ଯାହାଙ୍କ ନାମ, ଗୁଣ, ମହିମା ଓ ସ୍ୱରୂପର ଶ୍ରବଣ କୀର୍ତ୍ତନ ପରମ ପାବନ ॥ ୫୮ ॥**

ଦୂରଶ୍ରବା ବିଶ୍ୱସହୋ ଧ୍ୟେୟୋ ଦୁଃସ୍ୱପ୍ନନାଶନଃ ।
ଉତ୍ତାରଣୋ ଦୁଷ୍କୃତିହା ବିଜ୍ଞେୟୋ ଦୁଃସହୋଽଭବଃ ॥ ୫୯

୪୬୭ ଦୂରଶ୍ରବାଃ–**ସର୍ବବ୍ୟାପୀ ହୋଇଥିବାରୁ ଦୂରର କଥାକୁ ବି ଶୁଣିବାକୁ ସକ୍ଷମ,** ୪୬୮ ବିଶ୍ୱସହଃ–**ଭକ୍ତଜନଙ୍କ ସମସ୍ତ ଅପରାଧକୁ କୃପା-ପୂର୍ବକ ଯେ ସହନ କରନ୍ତି,** ୪୬୯ ଧ୍ୟେୟଃ–**ଧ୍ୟାନର ଯୋଗ୍ୟ,** ୪୭୦ ଦୁଃସ୍ୱପ୍ନନାଶନଃ–**ଚିନ୍ତନମାତ୍ରକେ ଦୁଃସ୍ୱପ୍ନ ନାଶକାରୀ,** ୪୭୧ ଉତ୍ତାରଣଃ–**ସଂସାରସାଗରରୁ ତ୍ରାଣକର୍ତ୍ତା,** ୪୭୨ ଦୁଷ୍କୃତିହା–**ପାପନାଶକାରୀ,** ୪୭୩ ବିଜ୍ଞେୟଃ–**ଜାଣିବାର ଯୋଗ୍ୟ, ୪୭୪** ଦୁଃସହଃ–**ଯାହାଙ୍କ ବେଗକୁ ସହନ କରିବା କଠିନ,** ୪୭୫ ଅଭବଃ–**ସଂସାରବନ୍ଧନରୁ ମୁକ୍ତ ଅଥବା ଅଜନ୍ମା ॥ ୫୯ ॥**

ଅନାଦିର୍ଭୂର୍ଭୁବୋ ଲକ୍ଷ୍ମୀଃ କିରୀଟୀ ତ୍ରିଦଶାଧିପଃ ।
ବିଶ୍ୱଗୋପ୍ତା ବିଶ୍ୱକର୍ତ୍ତା ସୁବୀରୋ ରୁଚିରାଙ୍ଗଦଃ ॥ ୬୦

୪୭୬ ଅନାଦିଃ–**ଯାହାଙ୍କର ଆଦି ନାହିଁ,** ୪୭୭ ଭୂର୍ଭୁବୋ ଲକ୍ଷ୍ମୀଃ–**ଭୂର୍ଲୋକ ଓ ଭୁବର୍ଲୋକର ଶୋଭା,** ୪୭୮ କିରୀଟୀ–**ମୁକୁଟଧାରୀ,** ୪୭୯ ତ୍ରିଦଶାଧିପଃ–**ଦେବତାଙ୍କ ସ୍ୱାମୀ,** ୪୮୦ ବିଶ୍ୱଗୋପ୍ତା–**ଜଗତର ରକ୍ଷକ,** ୪୮୧ ବିଶ୍ୱକର୍ତ୍ତା–**ସଂସାରର ସ୍ରଷ୍ଟା,** ୪୮୨ ସୁବୀରଃ–**ଶ୍ରେଷ୍ଠ ବୀର,** ୪୮୩ ରୁଚିରାଙ୍ଗଦଃ–**ସୁନ୍ଦର ବାଜୁବନ୍ଧ ଧାରଣକାରୀ ॥ ୬୦ ॥**

ଜନନୋ ଜନଜନ୍ମାଦିଃ ପ୍ରୀତିମାନ୍ନୀତିମାନ୍ଧବଃ ।
ବସିଷ୍ଠଃ କଶ୍ୟପୋ ଭାନୁର୍ଭୀମୋ ଭୀମପରାକ୍ରମଃ ॥ ୬୧

୪୮୪ ଜନନଃ–**ପ୍ରତ୍ୟେକ ପ୍ରାଣୀର ଜନ୍ମଦାତା,** ୪୮୫ ଜନଜନ୍ମାଦିଃ–**ଜୀବଙ୍କ ଜନ୍ମର ମୂଳକାରଣ,** ୪୮୬ ପ୍ରୀତିମାନ୍–**ପ୍ରସନ୍ନ,** ୪୮୭ ନୀତିମାନ୍–**ସର୍ବଦା ନୀତିପରାୟଣ,** ୪୮୮ ଧବଃ–**ସବୁରି ସ୍ୱାମୀ,** ୪୮୯ ବସିଷ୍ଠଃ–**ମନ ଓ ଇନ୍ଦ୍ରିୟଙ୍କର ସୁସଂଯମୀ ଅଥବା ବସିଷ୍ଠ ଋଷିସ୍ୱରୂପ,** ୪୯୦ କଶ୍ୟପଃ–**ଦ୍ରଷ୍ଟା ଅଥବା କଶ୍ୟପ ମୁନିସ୍ୱରୂପ,** ୪୯୧ ଭାନୁଃ–**ପ୍ରକାଶମାନ୍ ଅଥବା ସୂର୍ଯ୍ୟରୂପ,** ୪୯୨ ଭୀମଃ–**ଦୁଷ୍ଟଙ୍କୁ ଭୟଭୀତକାରୀ,** ୪୯୩ ଭୀମପରାକ୍ରମଃ–**ଅତିଶୟ ଭୟଙ୍କର ପରାକ୍ରମରେ ଯୁକ୍ତ ॥ ୬୧ ॥**

ପ୍ରଣବଃ ସତ୍ପଥାଗ୍ରୁରୋ ମହାକୋଶୋ ମହାଧନଃ ।
ଜନ୍ମାଧିପୋ ମହାଦେବଃ ସକଳାଗମପାରଗଃ ॥ ୬୨

୪୯୪ ପ୍ରଣବଃ–**ଓଁକାରସ୍ୱରୂପ,** ୪୯୫ ସତ୍ପଥାଗ୍ରୃରଃ–**ଯେ ସତ୍ପୁରୁଷଙ୍କ ମାର୍ଗରେ ଚାଲନ୍ତି,** ୪୯୬ ମହାକୋଶଃ–**ଅନ୍ନମୟାଦି ପାଞ୍ଚ କୋଷକୁ ନିଜ ଭିତରେ ଧାରଣ କରିବା ହେତୁ ମହାକୋଷରୂପ,** ୪୯୭ ମହାଧନଃ–**ଅପରିମିତ ଐଶ୍ୱର୍ଯ୍ୟଶାଳୀ ଅଥବା କୁବେରଙ୍କୁ ମଧ୍ୟ ଧନ ଦେଇଥିବାରୁ ମହାଧନବାନ୍,** ୪୯୮ ଜନ୍ମାଧିପଃ–**ଜନ୍ମରୂପୀ କାର୍ଯ୍ୟର ଅଧ୍ୟକ୍ଷ ବ୍ରହ୍ମା,** ୪୯୯ ମହାଦେବଃ–**ସର୍ବୋତ୍କୃଷ୍ଟ ଦେବତା,** ୫୦୦ ସକଳାଗମପାରଗଃ–**ସମସ୍ତ ଶାସ୍ତ୍ରରେ ପାରଙ୍ଗମ ବିଦ୍ୱାନ୍ ॥ ୬୩ ॥**

ତତ୍ତ୍ୱଂ ତତ୍ତ୍ୱବିଦେକାତ୍ମା ବିଭୁର୍ବିଶ୍ୱବିଭୂଷଣଃ ।
ଋଷିର୍ବ୍ରାହ୍ମଣ ଐଶ୍ୱର୍ଯ୍ୟଜନ୍ମମୃତ୍ୟୁଜରାତିଗଃ ॥ ୬୩

୫୦୧ ତତ୍ତ୍ୱମ୍–**ଯଥାର୍ଥ ତତ୍ତ୍ୱସ୍ୱରୂପ,** ୫୦୨ ତତ୍ତ୍ୱବିତ୍–**ଯଥାର୍ଥ ତତ୍ତ୍ୱର ପୂର୍ଣ୍ଣଜ୍ଞାତା,** ୫୦୩ ଏକାତ୍ମା–**ଅଦ୍ୱିତୀୟ ଆତ୍ମରୂପ,** ୫୦୪ ବିଭୁଃ–**ସର୍ବତ୍ର**

**ବ୍ୟାପକ**, ୫୦୫ ବିଶ୍ୱବିଭୂଷଣଃ–**ସମ୍ପୂର୍ଣ୍ଣ ଜଗତକୁ ଉତ୍ତମ ଗୁଣରେ ବିଭୂଷିତକାରୀ**, ୫୦୬ ଋଷିଃ–**ମନ୍ତ୍ରଦ୍ରଷ୍ଟା**, ୫୦୭ ବ୍ରାହ୍ମଣଃ–**ବ୍ରହ୍ମବେତ୍ତା**, ୫୦୮ ଐଶ୍ୱର୍ଯ୍ୟଜନ୍ମମୃତ୍ୟୁଜରାତିଗଃ–**ଐଶ୍ୱର୍ଯ୍ୟ, ଜନ୍ମ, ମୃତ୍ୟୁ ଓ ଜରାରୁ ଅତୀତ ॥ ୬୩ ॥**

ପଞ୍ଚଯଜ୍ଞସମୁତ୍ପତ୍ତିର୍ବିଶ୍ୱେଶୋ ବିମଲୋଦୟଃ ।
ଆତ୍ମଯୋନିରନାଦ୍ୟନ୍ତୋ ବତ୍ସଲୋ ଭକ୍ତଲୋକଧୃକ୍ ॥ ୬୪

୫୦୯ ପଞ୍ଚଯଜ୍ଞସମୁତ୍ପତ୍ତିଃ–**ପଞ୍ଚଯଜ୍ଞ ଉତ୍ପତ୍ତିର ହେତୁ**, ୫୧୦ ବିଶ୍ୱେଶଃ–**ବିଶ୍ୱନାଥ**, ୫୧୧ ବିମଲୋଦୟଃ–**ନିର୍ମଳ ଅଭ୍ୟୁଦୟ ପ୍ରଦାନ କରୁଥିବା ଧର୍ମରୂପ**, ୫୧୨ ଆତ୍ମଯୋନିଃ–**ସ୍ୱୟମ୍ଭୂ**, ୫୧୩ ଅନାଦ୍ୟନ୍ତଃ–**ଆଦି-ଅନ୍ତରହିତ**, ୫୧୪ ବତ୍ସଳଃ–**ଭକ୍ତଙ୍କ ପ୍ରତି ବାତ୍ସଲ୍ୟ ସ୍ନେହୀ**, ୫୧୫ ଭକ୍ତଲୋକଧୃକ୍–**ଭକ୍ତଜନଙ୍କ ଆଶ୍ରୟ ॥ ୬୪ ॥**

ଗାୟତ୍ରୀବଲ୍ଲଭଃ ପ୍ରାଂଶୁର୍ବିଶ୍ୱାବାସଃ ପ୍ରଭାକରଃ ।
ଶିଶୁର୍ଗିରିରତଃ ସମ୍ରାଟ୍ ସୁଷେଣଃ ସୁରଶତ୍ରୁହା ॥ ୬୫

୫୧୬ ଗାୟତ୍ରୀବଲ୍ଲଭଃ–**ଗାୟତ୍ରୀମନ୍ତ୍ରର ପ୍ରେମୀ**, ୫୧୭ ପ୍ରାଂଶୁଃ–**ଉଚ୍ଚ ଶରୀରଯୁକ୍ତ**, ୫୧୮ ବିଶ୍ୱାବାସଃ–**ସମଗ୍ର ଜଗତର ଆବାସସ୍ଥାନ**, ୫୧୯ ପ୍ରଭାକରଃ–**ସୂର୍ଯ୍ୟରୂପ**, ୫୨୦ ଶିଶୁଃ–**ବାଳକରୂପ**, ୫୨୧ ଗିରିରତଃ–**କୈଳାସ ପର୍ବତରେ ରମଣକାରୀ**, ୫୨୨ ସମ୍ରାଟ୍–**ଦେବେଶ୍ୱରଙ୍କର ମଧ୍ୟ ଈଶ୍ୱର**, ୫୨୩ ସୁଷେଣଃ ସୁରଶତ୍ରୁହା–**ପ୍ରମଥଗଣଙ୍କ ସୁନ୍ଦର ସେନାଯୁକ୍ତ ତଥା ଦେବଶତ୍ରୁଙ୍କ ସଂହାରକାରୀ ॥ ୬୫ ॥**

ଅମୋଘୋଽରିଷ୍ଟନେମିଶ୍ଚ କୁମୁଦୋ ବିଗତଜ୍ୱରଃ ।
ସ୍ୱୟଂଜ୍ୟୋତିସ୍ତନୁଜ୍ୟୋତିରାତ୍ମଜ୍ୟୋତିରଚଞ୍ଚଳଃ ॥ ୬୬

୫୨୪ ଅମୋଘୋଽରିଷ୍ଟନେମିଃ–**ଅମୋଘ ସଂକଳ୍ପଯୁକ୍ତ ମହର୍ଷି କଶ୍ୟପରୂପ**, ୫୨୫ କୁମୁଦଃ–**ଭୂତଳକୁ ଆହ୍ଲାଦିତ କରୁଥିବା ଚନ୍ଦ୍ରରୂପ**, ୫୨୬ ବିଗତଜ୍ୱରଃ–**ଚିନ୍ତାରହିତ**, ୫୨୭ ସ୍ୱୟଂଜ୍ୟୋତିସ୍ତନୁଜ୍ୟୋତିଃ–**ନିଜ ଆଲୋକରେ ହିଁ ଆଲୋକିତ ସୂକ୍ଷ୍ମଜ୍ୟୋତିଃସ୍ୱରୂପ**, ୫୨୮ ଆତ୍ମଜ୍ୟୋତିଃ–**ନିଜ ସ୍ୱରୂପଭୂତ ଜ୍ଞାନପ୍ରଭାରେ ପ୍ରକାଶିତ**, ୫୨୯ ଅଚଞ୍ଚଳଃ–**ଚଞ୍ଚଳତାରହିତ ॥ ୬୬ ॥**

ପିଙ୍ଗଳଃ କପିଳଶ୍ମଶ୍ରୁର୍ଭାଲନେତ୍ରସ୍ତ୍ରୟୀତନୁଃ ।
ଜ୍ଞାନସ୍କନ୍ଦୋ ମହାନୀତିର୍ବିଶ୍ୱୋତ୍ପତ୍ତିରୁପପ୍ଲବଃ ॥ ୬୭

୫୩୦ ପିଙ୍ଗଳଃ–**ପିଙ୍ଗଳବର୍ଣ୍ଣଯୁକ୍ତ**, ୫୩୧ କପିଳଶ୍ମଶ୍ରୁଃ–**କପିଳ ବର୍ଣ୍ଣର ଦାଢ଼ି-ନିଶଯୁକ୍ତ ଦୁର୍ବାସା ମୁନିଙ୍କ ରୂପରେ ଅବତୀର୍ଣ୍ଣ**, ୫୩୨ ଭାଲନେତ୍ରଃ–**ଲଲାଟରେ ତୃତୀୟ ନେତ୍ରଧାରୀ**, ୫୩୩ ତ୍ରୟୀତନୁଃ–**ତିନିଲୋକ ଓ ତିନିବେଦ ଯାହାଙ୍କର ସ୍ୱରୂପ**, ୫୩୪ ଜ୍ଞାନସ୍କନ୍ଦୋ ମହାନୀତିଃ–**ଜ୍ଞାନପ୍ରଦ ଓ ଶ୍ରେଷ୍ଠ ନୀତିଜ୍ଞ**, ୫୩୫ ବିଶ୍ୱୋତ୍ପତ୍ତିଃ–**ଜଗତର ଉତ୍ପାଦକ**, ୫୩୬ ଉପପ୍ଲବଃ–**ସଂହାରକ ॥ ୬୭ ॥**

ଭଗୋ ବିବସ୍ୱାନାଦିତ୍ୟୋ ଯୋଗପାରୋ ଦିବସ୍ପତିଃ ।
କଲ୍ୟାଣଗୁଣନାମା ଚ ପାପହା ପୁଣ୍ୟଦର୍ଶନଃ ॥ ୬୮

୫୩୭ ଭଗୋ ବିବସ୍ୱାନାଦିତ୍ୟଃ–**ଅଦିତିନନ୍ଦନ ଭଗ ଓ ବିବସ୍ୱାନ୍**, ୫୩୮ ଯୋଗପାରଃ–**ଯୋଗବିଦ୍ୟାରେ ପାରଙ୍ଗମ**, ୫୩୯ ଦିବସ୍ପତିଃ–**ସ୍ୱର୍ଗଲୋକର ସ୍ୱାମୀ**, ୫୪୦ କଲ୍ୟାଣଗୁଣନାମା–**କଲ୍ୟାଣକାରୀ ଗୁଣ-ନାମଧାରୀ**, ୫୪୧ ପାପହା–**ପାପନାଶକ**, ୫୪୨ ପୁଣ୍ୟଦର୍ଶନଃ–**ଯାହାଙ୍କ ଦର୍ଶନ ପୁଣ୍ୟଜନକ ଅଥବା ପୁଣ୍ୟଦ୍ୱାରା ହିଁ ଯାହାଙ୍କ ଦର୍ଶନ ମିଳେ ॥ ୬୮ ॥**

ଉଦାରକୀର୍ତ୍ତିରୁଦ୍ୟୋଗୀ ସଦ୍‌ଯୋଗୀ ସଦସନ୍ମୟଃ ।
ନକ୍ଷତ୍ରମାଳୀ ନାକେଶଃ ସ୍ୱାଧିଷ୍ଠାନପଦାଶ୍ରୟଃ ॥ ୬୯

୫୪୩ ଉଦାରକୀର୍ତ୍ତିଃ–**ଉତ୍ତମ କୀର୍ତ୍ତିସମ୍ପନ୍ନ**, ୫୪୪ ଉଦ୍ୟୋଗୀ–**ଉଦ୍ୟମଶୀଳ**, ୫୪୫ ସଦ୍‌ଯୋଗୀ–**ଶ୍ରେଷ୍ଠ ଯୋଗୀ**, ୫୪୬ ସଦସନ୍ମୟଃ–**ସତ୍-ଅସତ୍‌ସ୍ୱରୂପ**, ୫୪୭ ନକ୍ଷତ୍ରମାଳୀ–**ନକ୍ଷତ୍ରମାଳାରେ ଅଳଂକୃତ ଆକାଶରୂପ**, ୫୪୮ ନାକେଶଃ–**ସ୍ୱର୍ଗର ସ୍ୱାମୀ**, ୫୪୯ ସ୍ୱାଧିଷ୍ଠାନପଦାଶ୍ରୟଃ–**ସ୍ୱାଧିଷ୍ଠାନ ଚକ୍ରର ଆଶ୍ରୟ ॥ ୬୯ ॥**

ପବିତ୍ରଃ ପାପହାରୀ ଚ ମଣିପୂରୋ ନଭୋଗତିଃ ।
ହୃତ୍ପୁଣ୍ଡରୀକମାସୀନଃ ଶକ୍ରଃ ଶାନ୍ତୋ ବୃଷାକପିଃ ॥ ୭୦

୫୫୦ ପବିତ୍ରଃ ପାପହାରୀ–**ନିତ୍ୟ ଶୁଦ୍ଧ ଏବଂ ପାପନାଶକ,** ୫୫୧ ମଣିପୂରଃ–**ମଣିପୂର ନାମକ ଚକ୍ରସ୍ୱରୂପ,** ୫୫୨ ନଭୋଗତିଃ–**ଆକାଶଗ୍ୱରୀ,** ୫୫୩ ହୃତ୍‌ପୁଣ୍ଡରୀକମାସୀନଃ–**ହୃଦୟକମଳରେ ସ୍ଥିତ,** ୫୫୪ ଶକ୍ରଃ–**ଇନ୍ଦ୍ରରୂପ,** ୫୫୫ ଶାନ୍ତଃ–**ଶାନ୍ତସ୍ୱରୂପ,** ୫୫୬ ବୃଷାକପିଃ–**ହରିହର ॥ ୭୦ ॥**

ଉଷ୍ଣୋ ଗୃହପତିଃ କୃଷ୍ଣଃ ସମର୍ଥୋଽନର୍ଥନାଶନଃ ।
ଅଧର୍ମଶତ୍ରୁରଜ୍ଞେୟଃ ପୁରୁହୂତଃ ପୁରୁଶ୍ରୁତଃ ॥ ୭୧

୫୫୭ ଉଷ୍ଣଃ–**ହଳାହଳ ବିଷର ଜ୍ୱାଳାରେ ଉଷ୍ଣ,** ୫୫୮ ଗୃହପତିଃ–**ସମସ୍ତ ବ୍ରହ୍ମାଣ୍ଡରୂପୀ ଗୃହର ସ୍ୱାମୀ,** ୫୫୯ କୃଷ୍ଣଃ–**ସଚ୍ଚିଦାନନ୍ଦସ୍ୱରୂପ,** ୫୬୦ ସମର୍ଥଃ–**ସାମର୍ଥ୍ୟଶାଳୀ,** ୫୬୧ ଅନର୍ଥନାଶନଃ–**ଅନର୍ଥର ନାଶକ,** ୫୬୨ ଅଧର୍ମଶତ୍ରୁଃ–**ଅଧର୍ମନାଶକ,** ୫୬୩ ଅଜ୍ଞେୟଃ–**ବୁଦ୍ଧିର ଅଗୋଚର,** ୫୬୪ ପୁରୁହୂତଃ ପୁରୁଶ୍ରୁତଃ–**ଅନେକ ନାମରେ ଯାହାଙ୍କୁ ଡକାଯାଏ ଓ ଶୁଣାଯାଏ ॥ ୭୧ ॥**

ବ୍ରହ୍ମଗର୍ଭୋ ବୃହଦ୍‌ଗର୍ଭୋ ଧର୍ମଧେନୁର୍ଧନାଗମଃ ।
ଜଗଦ୍ଧିତୈଷୀ ସୁଗତଃ କୁମାରଃ କୁଶଳାଗମଃ ॥ ୭୨

୫୬୫ ବ୍ରହ୍ମଗର୍ଭଃ–**ବ୍ରହ୍ମା ଯାହାଙ୍କ ଗର୍ଭସ୍ଥ ଶିଶୁ ସମାନ,** ୫୬୬ ବୃହଦ୍‌ଗର୍ଭଃ–**ବିଶ୍ୱବ୍ରହ୍ମାଣ୍ଡ ପ୍ରଳୟକାଳରେ ଯାହାଙ୍କ ଗର୍ଭରେ ରହେ,** ୫୬୭ ଧର୍ମଧେନୁଃ–**ଧର୍ମରୂପୀ ବୃଷଭକୁ ଉତ୍ପନ୍ନ କରିବା ପାଇଁ ଧେନୁ ସ୍ୱରୂପ,** ୫୬୮ ଧନାଗମଃ–**ଧନପ୍ରଦାନକାରୀ,** ୫୬୯ ଜଗଦ୍ଧିତୈଷୀ–**ସମଗ୍ର ସଂସାରର ହିତକାରୀ,** ୫୭୦ ସୁଗତଃ–**ଉତ୍ତମ ଜ୍ଞାନସମ୍ପନ୍ନ ଅଥବା ବୁଦ୍ଧସ୍ୱରୂପ,** ୫୭୧ କୁମାରଃ–**କାର୍ତ୍ତିକେୟରୂପ,** ୫୭୨ କୁଶଳାଗମଃ–**କଲ୍ୟାଣଦାତା ॥ ୭୨ ॥**

ହିରଣ୍ୟବର୍ଣ୍ଣୋ ଜ୍ୟୋତିଷ୍ମାନ୍ନାନାଭୂତରତୋ ଧ୍ୱନିଃ ।
ଅରାଗୋ ନୟନାଧ୍ୟକ୍ଷୋ ବିଶ୍ୱାମିତ୍ରୋ ଧନେଶ୍ୱରଃ ॥ ୭୩

୫୭୩ ହିରଣ୍ୟବର୍ଣ୍ଣୋ ଜ୍ୟୋତିଷ୍ମାନ୍–**ସୁବର୍ଣ୍ଣ ପରି ଗୌରବର୍ଣ୍ଣଯୁକ୍ତ ତଥା ତେଜସ୍ୱୀ,** ୫୭୪ ନାନାଭୂତରତଃ–**ନାନା ପ୍ରକାର ଭୂତଙ୍କ ସଙ୍ଗେ କ୍ରୀଡ଼ାରତ,** ୫୭୫ ଧ୍ୱନିଃ–**ନାଦସ୍ୱରୂପ,** ୫୭୬ ଅରାଗଃ–**ଆସକ୍ତିଶୂନ୍ୟ,** ୫୭୭ ନୟନାଧ୍ୟକ୍ଷଃ–**ନେତ୍ରରେ ଦ୍ରଷ୍ଟାରୂପରେ ବିଦ୍ୟମାନ,** ୫୭୮ ବିଶ୍ୱାମିତ୍ରଃ–**ସମଗ୍ର ଜଗତ ପ୍ରତି ମୈତ୍ରୀଭାବ ରଖୁଥିବା ମୁନିସ୍ୱରୂପ,** ୫୭୯ ଧନେଶ୍ୱରଃ–**ଧନର ସ୍ୱାମୀ କୁବେର ॥ ୭୩ ॥**

ବ୍ରହ୍ମଜ୍ୟୋତିର୍ବସୁଧାମା ମହାଜ୍ୟୋତିରନୁତ୍ତମଃ ।
ମାତାମହୋ ମାତରିଶ୍ୱା ନଭସ୍ୱାନ୍ନାଗହାରଧୃକ୍ ॥ ୭୪

୫୮୦ ବ୍ରହ୍ମଜ୍ୟୋତିଃ–**ଜ୍ୟୋତିଃସ୍ୱରୂପ ବ୍ରହ୍ମ,** ୫୮୧ ବସୁଧାମା–**ସୁବର୍ଣ୍ଣ ଓ ରତ୍ନମାନଙ୍କ ତେଜରେ ପ୍ରକାଶିତ ଅଥବା ବସୁଧାସ୍ୱରୂପ,** ୫୮୨ ମହାଜ୍ୟୋତିରନୁତ୍ତମଃ–**ସୂର୍ଯ୍ୟାଦି ଜ୍ୟୋତିମାନଙ୍କର ପ୍ରକାଶକ ମହାଜ୍ୟୋତିଃସ୍ୱରୂପ,** ୫୮୩ ମାତାମହଃ–**ମାତୃକାଙ୍କର ଜନ୍ମଦାତା ହୋଇଥିବାରୁ ମାତାମହ,** ୫୮୪ ମାତରିଶ୍ୱା ନଭସ୍ୱାନ୍–**ଆକାଶଚର ବାୟୁଦେବ,** ୫୮୫ ନାଗହାରଧୃକ୍–**ସର୍ପମୟ ହାର ଧାରଣକାରୀ ॥ ୭୪ ॥**

ପୁଲସ୍ତ୍ୟଃ ପୁଲହୋଽଗସ୍ତ୍ୟୋ ଜାତୂକର୍ଣ୍ଣ୍ୟଃ ପରାଶରଃ ।
ନିରାବରଣନିର୍ବାରୋ ବୈରଞ୍ଚ୍ୟୋ ବିଷ୍ଟରଶ୍ରବାଃ ॥ ୭୫

୫୮୬ ପୁଲସ୍ତ୍ୟଃ–**ପୁଲସ୍ତ୍ୟ ନାମକ ମୁନି,** ପୁଲହଃ–**ପୁଲହ ନାମକ ଋଷି,** ୫୮୮ ଅଗସ୍ତ୍ୟଃ–**କୁମ୍ଭଜନ୍ମା ଅଗସ୍ତ୍ୟ ଋଷି,** ୫୮୯ ଜାତୂକର୍ଣ୍ଣ୍ୟଃ–**ଜାତୂକର୍ଣ୍ଣ୍ୟ ମୁନି,** ୫୯୦ ପରାଶରଃ–**ଶକ୍ତିଙ୍କ ପୁତ୍ର ତଥା ବ୍ୟାସଙ୍କ ପିତା ପରାଶର,** ୫୯୧ ନିରାବରଣନିର୍ବାରଃ–**ଆବରଣଶୂନ୍ୟ ଓ ଅବରୋଧ-ରହିତ,** ୫୯୨ ବୈରଞ୍ଚ୍ୟଃ–**ବ୍ରହ୍ମାଙ୍କ ପୁତ୍ର ନୀଳଲୋହିତ ରୁଦ୍ର,** ୫୯୩ ବିଷ୍ଟରଶ୍ରବାଃ–**ବିସ୍ତୃତଯଶଯୁକ୍ତ ବିଷ୍ଣୁସ୍ୱରୂପ ॥ ୭୫ ॥**

ଆତ୍ମଭୂରନିରୁଦ୍ଧୋଽତ୍ରିର୍ଜ୍ଞାନମୂର୍ତ୍ତିର୍ମହାଯଶାଃ ।
ଲୋକବୀରାଗ୍ରଣୀର୍ବୀରଶ୍ଚଣ୍ଡଃ ସତ୍ୟପରାକ୍ରମଃ ॥ ୭୬

୫୯୪ ଆତ୍ମଭୂଃ–**ସ୍ୱୟମ୍ଭୂ ବ୍ରହ୍ମା,** ୫୯୫ ଅନିରୁଦ୍ଧଃ–**ଯାହାଙ୍କର ଗତି ଅବାଧିତ,** ୫୯୬

ଅତ୍ରିଃ–**ଅତ୍ରି ନାମକ ଋଷି ଅଥବା ତ୍ରିଗୁଣାତୀତ** ୫୯୭ ଜ୍ଞାନମୂର୍ତ୍ତିଃ–**ଜ୍ଞାନସ୍ୱରୂପ,** ୫୯୮ ମହାଯଶାଃ–**ମହାଯଶସ୍ୱୀ,** ୫୯୯ ଲୋକ-ବୀରାଗ୍ରଣୀଃ–**ବିଶ୍ୱବିଖ୍ୟାତ ବୀରଙ୍କ ମଧ୍ୟରେ ଅଗ୍ରଗଣ୍ୟ,** ୬୦୦ ବୀରଃ–**ବୀର,** ୬୦୧ ଚଣ୍ଡଃ–**ପ୍ରଳୟ ସମୟରେ ଅତ୍ୟନ୍ତ କ୍ରୋଧ ପ୍ରକାଶକାରୀ,** ୬୦୨ ସତ୍ୟପରାକ୍ରମଃ–**ସତ୍ୟ ପରାକ୍ରମୀ ॥ ୭୬ ॥**

ବ୍ୟାଳାକଳ୍ପୋ ମହାକଳ୍ପଃ କଳ୍ପବୃକ୍ଷଃ କଳାଧରଃ ।
ଅଳଂକରିଷ୍ଣୁରଚଳୋ ରୋଚିଷ୍ଣୁର୍ବିକ୍ରମୋନ୍ନତଃ ॥ ୭୭

୬୦୩ ବ୍ୟାଳାକଳ୍ପଃ–**ସର୍ପଭୂଷଣରେ ବିଭୂଷିତ,** ୬୦୪ ମହାକଳ୍ପଃ–**ମହାକଳ୍ପସଂଜ୍ଞକ କାଳସ୍ୱରୂପ,** ୬୦୫ କଳ୍ପବୃକ୍ଷଃ–**ଶରଣାଗତଙ୍କ ଇଚ୍ଛା ପୂରଣ ନିମନ୍ତେ କଳ୍ପବୃକ୍ଷ ତୁଲ୍ୟ ଉଦାର,** ୬୦୬ କଳାଧରଃ–**ଚନ୍ଦ୍ରକଳାଧାରୀ,** ୬୦୭ ଅଳଂକରିଷ୍ଣୁଃ–**ଅଳଙ୍କାର ଧାରଣ କରୁଥିବା ବା କରାଉଥିବା,** ୬୦୮ ଅଚଳଃ–**ଅବିଚଳିତ,** ରୋଚିଷ୍ଣୁଃ–**ଜ୍ୟୋତିଷ୍ମାନ୍,** ୬୧୦ ବିକ୍ରମୋନ୍ନତଃ–**ପରାକ୍ରମରେ ଅଗ୍ରଣୀ ॥ ୭୭ ॥**

ଆୟୁଃ ଶବ୍ଦପତିର୍ବେଗୀ ପ୍ଲବନଃ ଶିଖିସାରଥିଃ ।
ଅସଂସୃଷ୍ଟୋଽତିଥିଃ ଶକ୍ରପ୍ରମାଥୀ ପାଦପାସନଃ ॥ ୭୮

୬୧୧ ଆୟୁଃ ଶବ୍ଦପତିଃ–**ଆୟୁ ତଥା ବାଣୀର ସ୍ୱାମୀ,** ୬୧୨ ବେଗୀ ପ୍ଲବନଃ–**ବେଗଶାଳୀ ତଥା ଡେଉଁଥିବା ବା ପହଁରୁଥିବା,** ୬୧୩ ଶିଖିସାରଥିଃ–**ଅଗ୍ନି ଯାହାଙ୍କର ସହାୟକ,** ୬୧୪ ଅସଂସୃଷ୍ଟଃ–**ନିର୍ଲେପ,** ୬୧୫ ଅତିଥିଃ–**ପ୍ରେମୀ ଭକ୍ତଙ୍କ ଘରେ ଅତିଥିରୂପେ ସତ୍କାର ଗ୍ରହୀତା,** ୬୧୬ ଶକ୍ରପ୍ରମାଥୀ–**ଇନ୍ଦ୍ରଙ୍କ ମାନ ମର୍ଦ୍ଦନକାରୀ,** ୬୧୭ ପାଦପାସନଃ–**ବୃକ୍ଷ ଉପରେ ବା ତଳେ ଅବସ୍ଥାନକାରୀ ॥ ୭୮ ॥**

ବସୁଶ୍ରବା ହବ୍ୟବାହଃ ପ୍ରତପ୍ତୋ ବିଶ୍ୱଭୋଜନଃ ।
ଜପ୍ୟୋ ଜରାଦିଶମନୋ ଲୋହିତାତ୍ମା ତନୂନପାତ୍ ॥ ୭୯

୬୧୮ ବସୁଶ୍ରବାଃ–**ଯଶରୂପୀ ଧନସମ୍ପନ୍ନ,** ୬୧୯ ହବ୍ୟବାହଃ–**ଅଗ୍ନିସ୍ୱରୂପ,** ୬୨୦ ପ୍ରତପ୍ତଃ–**ସୂର୍ଯ୍ୟରୂପେ ପ୍ରଚଣ୍ଡ ଉତ୍ତାପଦାତା,** ୬୨୧ ବିଶ୍ୱଭୋଜନଃ–**ପ୍ରଳୟକାଳରେ ବିଶ୍ୱବ୍ରହ୍ମାଣ୍ଡର ଗ୍ରାସକାରୀ,** ୬୨୨ ଜପ୍ୟଃ–**ଯାହାଙ୍କ ନାମ ଜପିବାର ଯୋଗ୍ୟ,** ୬୨୩ ଜରାଦିଶମନଃ–**ବାର୍ଦ୍ଧକ୍ୟାଦି ଦୋଷର ନିବାରଣକାରୀ,** ୬୨୪ ଲୋହିତାତ୍ମା ତନୂନପାତ୍–**ଲୋହିତ ଅଗ୍ନିସ୍ୱରୂପ ॥ ୭୯ ॥**

ବୃହଦଶ୍ୱୋ ନଭୋଯୋନିଃ ସୁପ୍ରତୀକସ୍ତମିସ୍ରହା ।
ନିଦାଘସ୍ତପନୋ ମେଘଃ ସ୍ୱକ୍ଷଃ ପରପୁରଞ୍ଜୟଃ ॥ ୮୦

୬୨୫ ବୃହଦଶ୍ୱଃ–**ବିଶାଳ ଅଶ୍ୱଯୁକ୍ତ,** ୬୨୬ ନଭୋଯୋନିଃ–**ଆକାଶର ଉତ୍ପତ୍ତିର ସ୍ଥାନ,** ୬୨୭ ସୁପ୍ରତୀକଃ–**ସୁନ୍ଦର ଦେହଧାରୀ,** ୬୨୮ ତମିସ୍ରହା–**ଅଜ୍ଞାନାନ୍ଧକାରନାଶକ,** ୬୨୯ ନିଦାଘସ୍ତପନଃ–**ଉତ୍ତପ୍ତ ଗ୍ରୀଷ୍ମରୂପ,** ୬୩୦ ମେଘଃ–**ବାଦଲରେ ଉପଲକ୍ଷିତ ବର୍ଷାରୂପ,** ୬୩୧ ସ୍ୱକ୍ଷଃ–**ସୁନ୍ଦର ନେତ୍ରଧାରୀ,** ୬୩୨ ପରପୁରଞ୍ଜୟଃ–**ତ୍ରିପୁରରୂପୀ ଶତ୍ରୁଙ୍କ ନଗର ବିଜୟକାରୀ ॥ ୮୦ ॥**

ସୁଖାନିଳଃ ସୁନିଷ୍ପନ୍ନଃ ସୁରଭିଃ ଶିଶିରାତ୍ମକଃ ।
ବସନ୍ତୋ ମାଧବୋ ଗ୍ରୀଷ୍ମୋ ନଭସ୍ୟୋ ବୀଜବାହନଃ ॥ ୮୧

୬୩୩ ସୁଖାନିଳଃ–**ସୁଖଦାୟକ ବାୟୁ ପ୍ରକଟକାରୀ ଶରତ୍‌କାଳରୂପ,** ୬୩୪ ସୁନିଷ୍ପନ୍ନଃ–**ଅନ୍ନକୁ ସୁନ୍ଦରରୂପେ ପରିପାକ କରୁଥିବା ହେମନ୍ତ-କାଳରୂପ,** ୬୩୫ ସୁରଭିଃ ଶିଶିରାତ୍ମକଃ–**ସୁଗନ୍ଧିତ ମଳୟାନିଳଯୁକ୍ତ ଶିଶିରକାଳରୂପ,** ୬୩୬ ବସନ୍ତୋ ମାଧବଃ–**ଚୈତ୍ର-ବୈଶାଖ ମାସଯୁକ୍ତ ବସନ୍ତକାଳରୂପ,** ୬୩୭ ଗ୍ରୀଷ୍ମଃ–**ଗ୍ରୀଷ୍ମ ଋତୁରୂପ,** ୬୩୮ ନଭସ୍ୟଃ–**ଭାଦ୍ରବ ମାସରୂପ,** ୬୩୯ ବୀଜବାହନଃ–**ଧାନାଦି ବୀଜ ଉପଲବ୍ଧ କରାଉଥିବା ଶରତ୍‌କାଳ ॥ ୮୧ ॥**

ଅଙ୍ଗିରା ଗୁରୁରାତ୍ରେୟୋ ବିମଳୋ ବିଶ୍ୱବାହନଃ ।
ପାବନଃ ସୁମତିର୍ବିଦ୍ୱାଂସ୍ତ୍ରୈବିଦ୍ୟୋ ବରବାହନଃ ॥ ୮୨

୬୪୦ ଅଙ୍ଗିରା ଗୁରୁଃ–**ଅଙ୍ଗିରା ଋଷି ତଥା ତାଙ୍କ ପୁତ୍ର ଦେବଗୁରୁ ବୃହସ୍ପତି,** ୬୪୧ ଆତ୍ରେୟଃ–**ଅତ୍ରିପୁତ୍ର ଦୁର୍ବାସା,** ୬୪୨ ବିମଳଃ–**ନିର୍ମଳଃ,** ୬୪୩ ବିଶ୍ୱବାହନଃ–**ସମ୍ପୂର୍ଣ୍ଣ ଜଗତର ନିର୍ବାହକାରୀ,** ୬୪୪ ପାବନଃ–**ପବିତ୍ରକାରୀ,**

୬୪୫ ସୁମତିର୍ବିଦ୍ୱାନ୍–**ଉତ୍ତମ ବୁଦ୍ଧିଯୁକ୍ତ ବିଦ୍ୱାନ୍**, ୬୪୬ ତ୍ରୈବିଦ୍ୟଃ–**ତ୍ରିବେଦର ବିଦ୍ୱାନ୍ ଅଥବା ତ୍ରିବେଦ ଦ୍ୱାରା ପ୍ରତିପାଦିତ**, ୬୪୭ ବରବାହନଃ–**ବୃଷଭରୂପୀ ଶ୍ରେଷ୍ଠ ବାହନ ଯାହାର ।**

ମନୋବୁଦ୍ଧିରହଙ୍କାରଃ କ୍ଷେତ୍ରଜ୍ଞଃ କ୍ଷେତ୍ରପାଳକଃ ।
ଜମଦଗ୍ନିର୍ବଳନିଧିର୍ବିଗାଲୋ ବିଶ୍ୱଗାଲବଃ ॥ ୮୩

୬୪୮ ମନୋବୁଦ୍ଧିରହଙ୍କାରଃ–**ମନ-ବୁଦ୍ଧି-ଅହଂକାରସ୍ୱରୂପ**, ୬୪୯ କ୍ଷେତ୍ରଜ୍ଞଃ–**ଆତ୍ମା**, ୬୫୦ କ୍ଷେତ୍ରପାଳକଃ–**ଶରୀରରୂପୀ କ୍ଷେତ୍ରର ପାଳକ ପରମାତ୍ମା**, ୬୫୧ ଜମଦଗ୍ନିଃ–**ଜମଦଗ୍ନି ନାମକ ଋଷିରୂପ**, ୬୫୨ ବଳନିଧିଃ–**ଅନନ୍ତ ବଳର ସାଗର**, ୬୫୩ ବିଗାଳଃ–**ନିଜ ଜଟାରୁ ଗଙ୍ଗାଜଳକୁ ଝରାଉଥିବା**, ୬୫୪ ବିଶ୍ୱଗାଲବଃ–**ବିଶ୍ୱବିଖ୍ୟାତ ଗାଲବ ମୁନି ଅଥବା ପ୍ରଳୟକାଳରେ କାଳାଗ୍ନିରୂପେ ଯେ ଜଗତକୁ ଗିଳିପକାନ୍ତି ॥ ୮୩ ॥**

ଅଘୋରୋଽନୁତ୍ତରୋ ଯଜ୍ଞଃ ଶ୍ରେଷ୍ଠୋ ନିଃଶ୍ରେୟସପ୍ରଦଃ ।
ଶୈଲୋ ଗଗନକୁନ୍ଦାଭୋ ଦାନବାରିରରିଂଦମଃ ॥ ୮୪

୬୫୫ ଅଘୋରଃ–**ସୌମ୍ୟରୂପଯୁକ୍ତ**, ୬୫୬ ଅନୁତ୍ତରଃ–**ସର୍ବଶ୍ରେଷ୍ଠ**, ୬୫୭ ଯଜ୍ଞଃ ଶ୍ରେଷ୍ଠଃ–**ଶ୍ରେଷ୍ଠ ଯଜ୍ଞରୂପ**, ୬୫୮ ନିଃଶ୍ରେୟସପ୍ରଦଃ–**କଲ୍ୟାଣଦାତା**, ୬୫୯ ଶୈଳଃ–**ଶିଳାମୟ ଲିଙ୍ଗରୂପ**, ୬୬୦ ଗଗନକୁନ୍ଦାଭଃ–**ଆକାଶର କୁନ୍ଦ ବା ଚନ୍ଦ୍ର ପରି ଗୌରକାନ୍ତିଯୁକ୍ତ**, ୬୬୧ ଦାନବାରିଃ–**ଦାନବଙ୍କ ଶତ୍ରୁ**, ୬୬୨ ଅରିଂଦମଃ–**ଶତ୍ରୁଦମନକାରୀ ॥ ୮୪ ॥**

ରଜନୀଜନକଶ୍ଚାରୁର୍ନିଃଶଲ୍ୟୋ ଲୋକଶଲ୍ୟଧୃକ୍ ।
ଚତୁର୍ବେଦଶ୍ଚତୁର୍ଭାବଶ୍ଚତୁରଶ୍ଚତୁରପ୍ରିୟଃ ॥ ୮୫

୬୬୩ ରଜନୀଜନକଶ୍ଚାରୁଃ–**ଅତି ସୁନ୍ଦର ନିଶାକରରୂପ**, ୬୬୪ ନିଃଶଲ୍ୟଃ–**ନିଷ୍କଣ୍ଟକ**, ୬୬୫ ଲୋକଶଲ୍ୟଧୃକ୍–**ଶରଣାଗତ ଜନଙ୍କ ଶୋକରୂପୀ ଶଲ୍ୟକୁ ବାହାର କରି ନିଜେ ଧାରଣ କରୁଥିବା**, ୬୬୬ ଚତୁର୍ବେଦଃ–**ଚାରିବେଦ ଦ୍ୱାରା ଜ୍ଞାତବ୍ୟ**, ୬୬୭ ଚତୁର୍ଭାବଃ–**ଚାରି ପୁରୁଷାର୍ଥ ପ୍ରଦାନକାରୀ**, ୬୬୮ ଚତୁରଶ୍ଚତୁରପ୍ରିୟଃ–**ଚତୁର ଓ ଚତୁରଜନଙ୍କ ପ୍ରିୟ ॥ ୮୫ ॥**

ଆମ୍ନାୟୋଽଥ ସମାମ୍ନାୟସ୍ତୀର୍ଥଦେବଶିବାଳୟଃ ।
ବହୁରୂପୋ ମହାରୂପଃ ସର୍ବରୂପଶ୍ଚରାଚରଃ ॥ ୮୬

୬୬୯ ଆମ୍ନାୟଃ–**ବେଦସ୍ୱରୂପ**, ୬୭୦ , ସମାମ୍ନାୟଃ–**ଅକ୍ଷରସମାମ୍ନାୟ ବା ଶିବସୂତ୍ରରୂପ**, ୬୭୧ ତୀର୍ଥଦେବଶିବାଳୟଃ–**ତୀର୍ଥଙ୍କ ଦେବତା ଓ ଶିବାଳୟସ୍ୱରୂପ**, ୬୭୨ ବହୁରୂପଃ–**ଅନେକ ରୂପଧାରୀ**, ୬୭୩ ମହାରୂପଃ–**ବିରାଟ ରୂପଧାରୀ**, ୬୭୪ ସର୍ବରୂପଶ୍ଚରାଚରଃ–**ସମଗ୍ର ଚର ଓ ଅଚର ଯାହାର ରୂପ ॥ ୮୬ ॥**

ନ୍ୟାୟନିର୍ମାୟକୋ ନ୍ୟାୟୀ ନ୍ୟାୟଗମ୍ୟୋ ନିରଞ୍ଜନଃ ।
ସହସ୍ରମୂର୍ଦ୍ଧା ଦେବେନ୍ଦ୍ରଃ ସର୍ବଶସ୍ତ୍ରପ୍ରଭଞ୍ଜନଃ ॥ ୮୭

୬୭୫ ନ୍ୟାୟନିର୍ମାୟକୋ ନ୍ୟାୟୀ–**ନ୍ୟାୟକର୍ତ୍ତା ତଥା ନ୍ୟାୟଶୀଳ**, ୬୭୬ ନ୍ୟାୟଗମ୍ୟଃ–**ନ୍ୟାୟଯୁକ୍ତ ଆଚରଣ ଦ୍ୱାରା ପ୍ରାପ୍ତବ୍ୟ**, ୬୭୭ ନିରଞ୍ଜନଃ–**ନିର୍ମଳ**, ୬୭୮ ସହସ୍ରମୂର୍ଦ୍ଧା–**ସହସ୍ର ମସ୍ତକଯୁକ୍ତ**, ୬୭୯ ଦେବେନ୍ଦ୍ରଃ–**ଦେବତାଙ୍କ ସ୍ୱାମୀ**, ୬୮୦ ସର୍ବଶସ୍ତ୍ରପ୍ରଭଞ୍ଜନଃ–**ବିପକ୍ଷୀ ଯୋଦ୍ଧାଙ୍କର ସମସ୍ତ ଶସ୍ତ୍ର ବିନଷ୍ଟକାରୀ ॥ ୮୭ ॥**

ମୁଣ୍ଡୋ ବିରୂପୋ ବିକ୍ରାନ୍ତୋ ଦଣ୍ଡୀ ଦାନ୍ତୋ ଗୁଣୋତ୍ତମଃ ।
ପିଙ୍ଗଳାକ୍ଷୋ ଜନାଧ୍ୟକ୍ଷୋ ନୀଳଗ୍ରୀବୋ ନିରାମୟଃ ॥ ୮୮

୬୮୧ ମୁଣ୍ଡଃ–**ଲୁଣ୍ଡିତମସ୍ତକ ସନ୍ନ୍ୟାସୀ**, ୬୮୨ ବିରୂପଃ–**ବିବିଧ ରୂପଧାରୀ**, ୬୮୩ ବିକ୍ରାନ୍ତଃ–**ବିକ୍ରମଶୀଳ**, ୬୮୪ ଦଣ୍ଡୀ–**ଦଣ୍ଡଧାରୀ**, ୬୮୫ ଦାନ୍ତଃ–**ମନ ଓ ଇନ୍ଦ୍ରିୟଙ୍କୁ ଦମନକାରୀ**, ୬୮୬ ଗୁଣୋତ୍ତମଃ–**ଗୁଣରେ ସମସ୍ତଙ୍କ ଠାରୁ ଶ୍ରେଷ୍ଠ**, ୬୮୭ ପିଙ୍ଗଳାକ୍ଷଃ–**ପିଙ୍ଗଳ ନେତ୍ରଯୁକ୍ତ**, ୬୮୮ ଜନାଧ୍ୟକ୍ଷଃ–**ଜୀବମାନଙ୍କର ସାକ୍ଷୀ**, ୬୮୯ ନୀଳଗ୍ରୀବଃ–**ନୀଳକଣ୍ଠ**, ୬୯୦ ନିରାମୟଃ–**ନୀରୋଗ ॥ ୮୮ ॥**

ସହସ୍ରବାହୁଃ ସର୍ବେଶଃ ଶରଣ୍ୟଃ ସର୍ବଲୋକଧୃକ୍ ।
ପଦ୍ମାସନଃ ପରଂ ଜ୍ୟୋତିଃ ପାରମ୍ପର୍ଯ୍ୟଫଳପ୍ରଦଃ ॥ ୮୯

୬୯୧ ସହସ୍ରବାହୁଃ–**ସହସ୍ରଭୁଜଧାରୀ,** ୬୯୨ ସର୍ବେଶଃ–**ସମସ୍ତଙ୍କ ସ୍ୱାମୀ,** ୬୯୩ ଶରଣ୍ୟଃ–**ଶରଣାଗତଙ୍କ ହିତୈଷୀ,** ୬୯୪ ସର୍ବଲୋକଧୃକ୍–**ସମସ୍ତ ଜଗତର ଧାରଣକାରୀ,** ୬୯୫ ପଦ୍ମାସନଃ–**ପଦ୍ମ ଉପରେ ବିରାଜମାନ,** ୬୯୬ ପରଂ ଜ୍ୟୋତିଃ–**ପରମ ଜ୍ୟୋତିଃସ୍ୱରୂପ,** ୬୯୭ ପାରମ୍ପର୍ଯ୍ୟଫଳପ୍ରଦଃ–**ପରମ୍ପରାଗତ ଫଳ ପ୍ରଦାନକାରୀ ॥ ୮୯ ॥**

ପଦ୍ମଗର୍ଭୋ ମହାଗର୍ଭୋ ବିଶ୍ୱଗର୍ଭୋ ବିଚକ୍ଷଣଃ ।
ପରାବରଜ୍ଞୋ ବରଦୋ ବରେଣ୍ୟଶ୍ଚ ମହାସ୍ୱନଃ ॥ ୯୦

୬୯୮ ପଦ୍ମଗର୍ଭଃ–**ନିଜ ନାଭିରୁ ପଦ୍ମ ପ୍ରକଟକାରୀ ବିଷ୍ଣୁରୂପ,** ୬୯୯ ମହାଗର୍ଭଃ–**ବିରାଟ୍ ବ୍ରହ୍ମାଣ୍ଡକୁ ଗର୍ଭରେ ଧାରଣକାରୀ,** ୭୦୦ ବିଶ୍ୱଗର୍ଭଃ–**ସମ୍ପୂର୍ଣ୍ଣ ଜଗତକୁ ନିଜ ଗର୍ଭରେ ଧାରଣକାରୀ,** ୭୦୧ ବିଚକ୍ଷଣଃ–**ଚତୁର,** ୭୦୨ ପରାବରଜ୍ଞଃ–**କାରଣ ଓ କାର୍ଯ୍ୟର ଜ୍ଞାତା,** ୭୦୩ ବରଦଃ–**ଅଭୀଷ୍ଟ ବରଦାତା,** ୭୦୪ ବରେଣ୍ୟଃ–**ବରଣୀୟ ଅଥବା ଶ୍ରେଷ୍ଠ,** ୭୦୫ ମହାସ୍ୱନଃ–**ଡମ୍ବରୁ ଦ୍ୱାରା ଗମ୍ଭୀର ନାଦକାରୀ ॥ ୯୦ ॥**

ଦେବାସୁରଗୁରୁର୍ଦେବୋ ଦେବାସୁରନମସ୍କୃତଃ ।
ଦେବାସୁରମହାମିତ୍ରୋ ଦେବାସୁରମହେଶ୍ୱରଃ ॥ ୯୧

୭୦୬ ଦେବାସୁରଗୁରୁର୍ଦେବଃ–**ଦେବତା ଓ ଅସୁରଙ୍କ ଗୁରୁଦେବ ଏବଂ ଆରାଧ୍ୟ,** ୭୦୭ ଦେବାସୁରନମସ୍କୃତଃ–**ଦେବତା ଓ ଅସୁରଙ୍କ ଦ୍ୱାରା ବନ୍ଦିତ,** ୭୦୮ ଦେବାସୁରମହାମିତ୍ରଃ–**ଉଭୟ ଦେବତା ଓ ଅସୁରଙ୍କର ବଡ଼ ମିତ୍ର,** ୭୦୯ ଦେବାସୁରମହେଶ୍ୱରଃ–**ଦେବତା ଓ ଅସୁରଙ୍କର ମହାନ୍ ଈଶ୍ୱର ॥ ୯୧ ॥**

ଦେବାସୁରେଶ୍ୱରୋ ଦିବ୍ୟୋ ଦେବାସୁରମହାଶ୍ରୟଃ ।
ଦେବଦେବମୟୋଽଚିନ୍ତ୍ୟୋ ଦେବଦେବାତ୍ମସମ୍ଭବଃ ॥ ୯୨

୭୧୦ ଦେବାସୁରେଶ୍ୱରଃ–**ଦେବତା ଓ ଅସୁରଙ୍କର ଶାସକ,** ୭୧୧ ଦିବ୍ୟଃ–**ଅଲୌକିକ ରୂପଯୁକ୍ତ,** ୭୧୨ ଦେବାସୁରମହାଶ୍ରୟଃ –**ଦେବତା ଓ ଅସୁରଙ୍କର ମହାନ୍ ଆଶ୍ରୟ,** ୭୧୩ ଦେବଦେବମୟଃ–**ଦେବତାଙ୍କ ପାଇଁ ମଧ୍ୟ ଦେବତାରୂପ,** ୭୧୪ ଅଚିନ୍ତ୍ୟଃ–**ଚିତ୍ତର ସୀମାରୁ ଅତୀତ,** ୭୧୫ ଦେବଦେବାତ୍ମସମ୍ଭବଃ–**ଦେବାଧିଦେବ ବ୍ରହ୍ମାଙ୍କ ଠାରୁ ରୁଦ୍ର ରୂପରେ ଉତ୍ପନ୍ନ ॥ ୯୨ ॥**

ସଦ୍ୟୋନିରସୁରବ୍ୟାଘ୍ରୋ ଦେବସିଂହୋ ଦିବାକରଃ ।
ବିବୁଧାଗ୍ରଚରଶ୍ରେଷ୍ଠଃ ସର୍ବଦେବୋତ୍ତମୋତ୍ତମଃ ॥ ୯୩

୭୧୬ ସଦ୍‌ଯୋନିଃ–**ସତ୍ ପଦାର୍ଥର ଉତ୍ପତ୍ତିସ୍ଥାନ,** ୭୧୭ ଅସୁରବ୍ୟାଘ୍ରଃ–**ଅସୁରଙ୍କ ବିନାଶ ପାଇଁ ବ୍ୟାଘ୍ରରୂପ,** ୭୧୮ ଦେବସିଂହଃ–**ଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ,** ୭୧୮ ଦିବାକରଃ–**ସୂର୍ଯ୍ୟରୂପ,** ୭୨୦ ବିବୁଧାଗ୍ରଚରଶ୍ରେଷ୍ଠଃ–**ଦେବତାଙ୍କ ନାୟକଙ୍କ ଭିତରେ ସର୍ବଶ୍ରେଷ୍ଠ,** ୭୨୧ ସର୍ବଦେବୋତ୍ତମୋତ୍ତମଃ– **ସମସ୍ତ ଶ୍ରେଷ୍ଠ ଦେବତାଙ୍କର ଶିରୋମଣି ॥ ୯୩ ॥**

ଶିବଜ୍ଞାନରତଃ ଶ୍ରୀମାନ୍ ଶିଖିଶ୍ରୀପର୍ବତପ୍ରିୟଃ ।
ବଜ୍ରହସ୍ତଃ ସିଦ୍ଧଖଡ୍‌ଗୋ ନରସିଂହନିପାତନଃ ॥ ୯୪

୭୨୨ ଶିବଜ୍ଞାନରତଃ–**କଲ୍ୟାଣମୟ ଶିବତତ୍ତ୍ୱ ବିଚାରରେ ତତ୍ପର,** ୭୨୩ ଶ୍ରୀମାନ୍–**ଅଣିମାଦି ବିଭୂତିରେ ସୁସମ୍ପନ୍ନ,** ୭୨୪ ଶିଖିଶ୍ରୀପର୍ବତପ୍ରିୟଃ–**କାର୍ତ୍ତିକେୟଙ୍କ ନିବାସ ଶ୍ରୀଶୈଳ ପର୍ବତ ପ୍ରତି ପ୍ରୀତି ରଖୁଥିବା,** ୭୨୫ ବଜ୍ରହସ୍ତଃ–**ବଜ୍ରଧାରୀ ଇନ୍ଦ୍ରସ୍ୱରୂପ,** ୭୨୬ ସିଦ୍ଧଖଡ୍‌ଗଃ–**ଶତ୍ରୁଙ୍କୁ ମାରିବାରେ ଯାହାଙ୍କ ଖଡ୍‌ଗ ଅବ୍ୟର୍ଥ,** ୭୨୭ ନରସିଂହନିପାତନଃ–**ଶରଭରୂପରେ ନୃସିଂହଙ୍କୁ ଧରାଶାୟୀ କରିଥିବା ॥ ୯୪ ॥**

ବ୍ରହ୍ମଚାରୀ ଲୋକଚାରୀ ଧର୍ମଚାରୀ ଧନାଧିପଃ ।
ନନ୍ଦୀ ନନ୍ଦୀଶ୍ୱରୋଽନନ୍ତୋ ନଗ୍ନବ୍ରତଧରଃ ଶୁଚିଃ ॥ ୯୫

୭୨୮ ବ୍ରହ୍ମଚାରୀ–**ଉମାଙ୍କ ପ୍ରେମର ପରୀକ୍ଷା ପାଇଁ ବ୍ରହ୍ମଚାରୀ ବେଶ ଧାରଣକାରୀ,** ୭୨୯ ଲୋକଚାରୀ–**ସମସ୍ତ ଲୋକରେ ବିଚରଣକାରୀ,** ୭୩୦ ଧର୍ମଚାରୀ–**ଧର୍ମ ଆଚରଣକାରୀ,** ୭୩୧

ଧନାଧିପଃ–**ଧନର ଅଧିପତି କୁବେର,** ୭୩୨ ନନ୍ଦୀ–**ନନ୍ଦୀ ନାମକ ଗଣ,** ୭୩୩ ନନ୍ଦୀଶ୍ୱରଃ–**ନନ୍ଦୀ ନାମରେ ପ୍ରସିଦ୍ଧ ବୃଷଭ,** ୭୩୪ ଅନନ୍ତଃ–**ଅନ୍ତରହିତ,** ୭୩୫ ନଗ୍ନବ୍ରତଧରଃ–**ଦିଗମ୍ବର ବ୍ରତଧାରୀ,** ୭୩୬ ଶୁଚିଃ–**ନିତ୍ୟ ଶୁଦ୍ଧ ॥ ୯୫ ॥**

ଲିଙ୍ଗାଧ୍ୟକ୍ଷଃ ସୁରାଧ୍ୟକ୍ଷୋ ଯୋଗାଧ୍ୟକ୍ଷୋ ଯୁଗାବହଃ ।
ସ୍ୱଧର୍ମା ସ୍ୱର୍ଗତଃ ସ୍ୱର୍ଗସ୍ୱରଃ ସ୍ୱରମୟସ୍ୱନଃ ॥ ୯୬

୭୩୭ ଲିଙ୍ଗାଧ୍ୟକ୍ଷଃ–**ଲିଙ୍ଗଦେହର ଦ୍ରଷ୍ଟା,** ୭୩୮ ସୁରାଧ୍ୟକ୍ଷଃ–**ଦେବତାଙ୍କର ଅଧିପତି,** ୭୩୯ ଯୋଗାଧ୍ୟକ୍ଷଃ–**ଯୋଗେଶ୍ୱର,** ୭୪୦ ଯୁଗାବହଃ–**ଯୁଗର ନିର୍ବାହକ,** ୭୪୧ ସ୍ୱଧର୍ମା–**ଆତ୍ମବିଗ୍ରହରୂପୀ ଧର୍ମରେ ସ୍ଥିତ ଅଥବା ସ୍ୱଧର୍ମପରାୟଣ,** ୭୪୨ ସ୍ୱର୍ଗତଃ–**ସ୍ୱର୍ଗଲୋକରେ ସ୍ଥିତ,** ୭୪୩ ସ୍ୱର୍ଗସ୍ୱରଃ–**ଯାହାଙ୍କ ଯଶୋଗାଥା ସ୍ୱର୍ଗଲୋକରେ ଗାୟନ ହୁଏ,** ୭୪୪ ସ୍ୱରମୟସ୍ୱନଃ–**ଯାହାଙ୍କର ଧ୍ୱନି ସପ୍ତସ୍ୱରଯୁକ୍ତ ॥ ୯୬ ॥**

ବାଣାଧ୍ୟକ୍ଷୋ ବୀଜକର୍ତ୍ତା ଧର୍ମକୃଦ୍ଧର୍ମସମ୍ଭବଃ ।
ଦମ୍ଭୋଽଲୋଭୋଽର୍ଥବିଚ୍ଛମ୍ଭୁଃ ସର୍ବଭୂତମହେଶ୍ୱରଃ ॥ ୯୭

୭୪୫ ବାଣାଧ୍ୟକ୍ଷଃ–**ବାଣାସୁରର ସ୍ୱାମୀ ଅଥବା ବାଣଲିଙ୍ଗ ନର୍ମଦେଶ୍ୱରଙ୍କ ଠାରେ ଅଧିଦେବତାରୂପେ ସ୍ଥିତ,** ୭୪୬ ବୀଜକର୍ତ୍ତା–**ବୀଜର ଉତ୍ପାଦକ,** ୭୪୭ ଧର୍ମକୃଦ୍ଧର୍ମସମ୍ଭବଃ–**ଧର୍ମର ପାଳକ ଓ ଉତ୍ପାଦକ,** ୭୪୮ ଦମ୍ଭଃ–**ମାୟାମୟରୂପଧାରୀ,** ୭୪୯ ଅଲୋଭଃ–**ଲୋଭରହିତ,** ୭୫୦ ଅର୍ଥବିଚ୍ଛମ୍ଭୁଃ–**ସମସ୍ତଙ୍କ ପ୍ରୟୋଜନର ଜ୍ଞାତା କଲ୍ୟାଣନିକେତନ ଶିବ,** ୭୫୧ ସର୍ବଭୂତମହେଶ୍ୱରଃ–**ସମସ୍ତ ପ୍ରାଣୀଙ୍କର ପରମେଶ୍ୱର ॥ ୯୭ ॥**

ଶ୍ମଶାନନିଳୟସ୍ତ୍ର୍ୟକ୍ଷଃ ସେତୁରପ୍ରତିମାକୃତିଃ ।
ଲୋକୋତ୍ତରସ୍ଫୁଟାଲୋକସ୍ତ୍ର୍ୟମ୍ବକୋ ନାଗଭୂଷଣଃ ॥ ୯୮

୭୫୨ ଶ୍ମଶାନନିଳୟଃ–**ଶ୍ମଶାନବାସୀ,** ୭୫୩ ତ୍ର୍ୟକ୍ଷଃ–**ତ୍ରିନେତ୍ରଧାରୀ,** ୭୫୪ ସେତୁଃ–**ଧର୍ମମର୍ଯ୍ୟାଦା ପାଳକ,** ୭୫୫ ଅପ୍ରତିମାକୃତିଃ–**ଅନୁପମ ରୂପଧାରୀ,** ୭୫୬ ଲୋକୋତ୍ତରସ୍ଫୁଟାଲୋକଃ–**ଅଲୌକିକ ଓ ସୁସ୍ପଷ୍ଟ ପ୍ରକାଶଯୁକ୍ତ,** ୭୫୭ ତ୍ର୍ୟମ୍ବକଃ–**ତ୍ରିନେତ୍ରଧାରୀ ଅଥବା ତ୍ର୍ୟମ୍ବକ ନାମକ ଜ୍ୟୋତିର୍ଲିଙ୍ଗ,** ୭୫୮ ନାଗଭୂଷଣଃ–**ନାଗହାରଦ୍ୱାରା ବିଭୂଷିତ ॥ ୯୮ ॥**

ଅନ୍ଧକାରିର୍ମଖଦ୍ୱେଷୀ ବିଷ୍ଣୁକନ୍ଧରପାତନଃ ।
ହୀନଦୋଷୋଽକ୍ଷୟଗୁଣୋ ଦକ୍ଷାରିଃ ପୂଷଦନ୍ତଭିତ୍ ॥ ୯୯

୭୫୯ ଅନ୍ଧକାରିଃ–**ଅନ୍ଧକାସୁର ହନ୍ତା,** ୭୬୦ ମଖଦ୍ୱେଷୀ–**ଦକ୍ଷଯଜ୍ଞ ବିଧ୍ୱଂସକାରୀ,** ୭୬୧ ବିଷ୍ଣୁକନ୍ଧରପାତନଃ–**ଯଜ୍ଞମୟ ବିଷ୍ଣୁଙ୍କ ଗଳା କର୍ତ୍ତନକାରୀ,** ୭୬୨ ହୀନଦୋଷଃ–**ଦୋଷରହିତ,** ୭୬୩ ଅକ୍ଷୟଗୁଣଃ–**ଅବିନାଶୀ ଗୁଣସମ୍ପନ୍ନ,** ୭୬୪ ଦକ୍ଷାରିଃ–**ଦକ୍ଷଦ୍ରୋହୀ,** ୭୬୫ ପୂଷଦନ୍ତଭିତ୍–**ପୂଷା ଦେବତାଙ୍କ ଦନ୍ତଭଗ୍ନକାରୀ ॥ ୯୯ ॥**

ଧୂର୍ଜଟିଃ ଖଣ୍ଡପରଶୁଃ ସକଲୋ ନିଷ୍କଲୋଽନଘଃ ।
ଅକାଳଃ ସକଳାଧାରଃ ପାଣ୍ଡୁରାଭୋ ମୃଡୋ ନଟଃ ॥୧୦୦

୭୬୬ ଧୂର୍ଜଟିଃ–**ଜଟାଭାରରେ ବିଭୂଷିତ,** ୭୬୭ ଖଣ୍ଡପରଶୁଃ–**ଖଣ୍ଡିତ ପରଶୁଧାରୀ,** ୭୬୮ ସକଲୋ ନିଷ୍କଲଃ–**ସାକାର ଓ ନିରାକାର ପରମାତ୍ମା,** ୭୬୯ ଅନଘଃ–**ନିଷ୍ପାପ,** ୭୭୦ ଅକାଳଃ–**କାଳ ପ୍ରଭାବରୁ ମୁକ୍ତ,** ୭୭୧ ସକଳାଧାରଃ–**ସମସ୍ତଙ୍କର ଆଧାର,** ୭୭୨ ପାଣ୍ଡୁରାଭଃ–**ଶ୍ୱେତକାନ୍ତିଯୁକ୍ତ,** ୭୭୩ ମୃଡୋ ନଟଃ–**ସୁଖଦାୟକ ଓ ତାଣ୍ଡବ ନୃତ୍ୟକାରୀ ॥ ୧୦୦ ॥**

ପୂର୍ଣ୍ଣଃ ପୂରୟିତା ପୁଣ୍ୟଃ ସୁକୁମାରଃ ସୁଲୋଚନଃ ।
ସାମଗେୟପ୍ରିୟୋଽକ୍ରୂରଃ ପୁଣ୍ୟକୀର୍ତ୍ତିରନାମୟଃ ॥୧୦୧

୭୭୪ ପୂର୍ଣ୍ଣଃ–**ସର୍ବବ୍ୟାପୀ ପରବ୍ରହ୍ମ ପରମାତ୍ମା,** ୭୭୫ ପୂରୟିତା–**ଭକ୍ତଙ୍କ ଅଭିଳାଷ ପୂର୍ଣ୍ଣକାରୀ,** ୭୭୬ ପୁଣ୍ୟଃ–**ପରମ ପବିତ୍ର,** ୭୭୭ ସୁକୁମାରଃ–**ଯାହାଙ୍କ କୁମାର ସୁନ୍ଦର ଅଥବା ଯେ ମୃଦୁତାଯୁକ୍ତ,** ୭୭୮ ସୁଲୋଚନଃ–**ଯାହାଙ୍କ ନେତ୍ର ସୁନ୍ଦର,** ୭୭୯ ସାମଗେୟପ୍ରିୟଃ–**ସାମଗାନର ପ୍ରେମୀ,** ୭୮୦ ଅକ୍ରୂରଃ–**କ୍ରୂରତାଶୂନ୍ୟ,** ୭୮୧ ପୁଣ୍ୟକୀର୍ତ୍ତିଃ–**ଯାହାଙ୍କର କୀର୍ତ୍ତି ପବିତ୍ର,** ୭୮୨

ଅନାମୟଃ–**ରୋଗ-ଶୋକରହିତ ॥ ୧୦୧ ॥**

ମନୋଜବସ୍ତୀର୍ଥକରୋ ଜଟିଳୋ ଜୀବିତେଶ୍ୱରଃ ।
ଜୀବିତାନ୍ତକରୋ ନିତ୍ୟୋ ବସୁରେତା ବସୁପ୍ରଦଃ ॥୧୦୨

୭୮୩ ମନୋଜବଃ–**ମନ ପରି ବେଗବାନ୍,** ୭୮୪ ତୀର୍ଥକରଃ–**ତୀର୍ଥ ସୃଷ୍ଟିକାରୀ,** ୭୮୫ ଜଟିଳଃ–**ଜଟାଧାରୀ,** ୭୮୬ ଜୀବିତେଶ୍ୱରଃ–**ସବୁରି ପ୍ରାଣେଶ୍ୱର,** ୭୮୭ ଜୀବିତାନ୍ତକରଃ–**ପ୍ରଳୟକାଳରେ ସମସ୍ତଙ୍କ ଅନ୍ତକାରୀ,** ୭୮୮ ନିତ୍ୟଃ–**ସନାତନ,** ୭୮୯ ବସୁରେତାଃ–**ଯାହାଙ୍କର ବୀର୍ଯ୍ୟ ସୁବର୍ଣ୍ଣମୟ,** ୭୯୦ ବସୁପ୍ରଦଃ–**ଧନଦାତା ॥ ୧୦୨ ॥**

ସଦ୍‌ଗତିଃ ସତ୍‌କୃତିଃ ସିଦ୍ଧିଃ ସଜ୍ଜାତିଃ ଖଳକଣ୍ଟକଃ ।
କଳାଧରୋ ମହାକାଳଭୂତଃ ସତ୍ୟପରାୟଣଃ ॥୧୦୩

୭୯୧ ସଦ୍‌ଗତିଃ–**ସତ୍‌ପୁରୁଷଙ୍କ ଆଶ୍ରୟ,** ୭୯୨ ସତ୍‌କୃତିଃ–**ଶୁଭକର୍ମକାରୀ,** ୭୯୩ ସିଦ୍ଧିଃ–**ସିଦ୍ଧିସ୍ୱରୂପ,** ୭୯୪ ସଜ୍ଜାତିଃ–**ସତ୍‌ପୁରୁଷଙ୍କ ଜନ୍ମଦାତା,** ୭୯୫ ଖଳକଣ୍ଟକଃ–**ଦୁଷ୍ଟଙ୍କ ପାଇଁ କଣ୍ଟକସ୍ୱରୂପ,** ୭୯୬ କଳାଧରଃ–**କଳାଧାରୀ,** ୭୯୭ ମହାକାଳଭୂତଃ–**ମହାକାଳ ନାମକ ଜ୍ୟୋତିର୍ଲିଙ୍ଗସ୍ୱରୂପ ଅଥବା କାଳର ମଧ୍ୟ କାଳ,** ୭୯୮ ସତ୍ୟପରାୟଣଃ–**ସତ୍ୟନିଷ୍ଠ ॥ ୧୦୩ ॥**

ଲୋକଲାବଣ୍ୟକର୍ତ୍ତା ଚ ଲୋକୋତ୍ତରସୁଖାଳୟଃ ।
ଚନ୍ଦ୍ରସଂଜୀବନଃ ଶାସ୍ତା ଲୋକଗୂଢୋ ମହାଧିପଃ ॥୧୦୪

୭୯୯ ଲୋକଲାବଣ୍ୟକର୍ତ୍ତା–**ସମସ୍ତଙ୍କର ସୌନ୍ଦର୍ଯ୍ୟ ପ୍ରଦାତା,** ୮୦୦ ଲୋକୋତ୍ତର-ସୁଖାଳୟଃ–**ଲୋକୋତ୍ତର ସୁଖର ଆଶ୍ରୟ,** ୮୦୧ ଚନ୍ଦ୍ରସଂଜୀବନଃ ଶାସ୍ତା–**ସୋମନାଥ ରୂପରେ ଚନ୍ଦ୍ରଙ୍କ ଜୀବନଦାତା ସର୍ବଶାସକ ଶିବ,** ୮୦୨ ଲୋକଗୂଢଃ–**ସମଗ୍ର ସଂସାରରେ ଅବ୍ୟକ୍ତରୂପେ ବ୍ୟାପକ,** ୮୦୩ ମହାଧିପଃ–**ମହେଶ୍ୱର ॥ ୧୦୪ ॥**

ଲୋକବନ୍ଧୁର୍ଲୋକନାଥଃ କୃତଜ୍ଞଃ କୀର୍ତ୍ତିଭୂଷଣଃ ।
ଅନପାୟୋଽକ୍ଷରଃ କାନ୍ତଃ ସର୍ବଶସ୍ତ୍ରଭୃତାଂ ବରଃ ॥୧୦୫

୮୦୪ ଲୋକବନ୍ଧୁର୍ଲୋକନାଥଃ–**ସମଗ୍ର ଜଗତର ବନ୍ଧୁ ଓ ରକ୍ଷକ,** ୮୦୫ କୃତଜ୍ଞଃ–**ଉପକାର ସ୍ୱୀକାରକାରୀ,** ୮୦୬ କୀର୍ତ୍ତିଭୂଷଣଃ–**ଉତ୍ତମ କୀର୍ତ୍ତିରେ ବିଭୂଷିତ,** ୮୦୭ ଅନପାୟୋଽକ୍ଷରଃ–**ଅବିନାଶୀ,** ୮୦୮ କାନ୍ତଃ–**ପ୍ରଜାପତି ଦକ୍ଷଙ୍କର ଅନ୍ତକ,** ୮୦୯ ସର୍ବଶସ୍ତ୍ରଭୃତାଂ ବରଃ–**ସମସ୍ତ ଶସ୍ତ୍ରଧାରୀଙ୍କ ମଧ୍ୟରେ ଶ୍ରେଷ୍ଠ ॥ ୧୦୫ ॥**

ତେଜୋମୟୋ ଦ୍ୟୁତିଧରୋ ଲୋକାନାମଗ୍ରଣୀରଣୁଃ ।
ଶୁଚିସ୍ମିତଃ ପ୍ରସନ୍ନାତ୍ମା ଦୁର୍ଜେୟୋ ଦୁରତିକ୍ରମଃ ॥୧୦୬

୮୧୦ ତେଜୋମୟୋ ଦ୍ୟୁତିଧରଃ–**ତେଜସ୍ୱୀ ଓ କାନ୍ତିମାନ୍,** ୮୧୧ ଲୋକାନାମଗ୍ରଣୀଃ–**ସମଗ୍ର ଜଗତର ଅଗ୍ରଗଣ୍ୟ ଦେବତା ଅଥବା ଜଗତକୁ ଅଗ୍ରସରକାରୀ,** ୮୧୨ ଅଣୁଃ–**ଅତ୍ୟନ୍ତ ସୂକ୍ଷ୍ମ,** ୮୧୩ ଶୁଚିସ୍ମିତଃ–**ପବିତ୍ର ସ୍ମିତହାସକାରୀ,** ୮୧୪ ପ୍ରସନ୍ନାତ୍ମା–**ସହର୍ଷହୃଦୟ,** ୮୧୫ ଦୁର୍ଜେୟଃ–**ଯାହାଙ୍କୁ ଜିଣିବା କଠିନ,** ୮୧୬ ଦୁରତିକ୍ରମଃ–**ଦୁର୍ଲଙ୍ଘ୍ୟ ॥ ୧୦୬ ॥**

ଜ୍ୟୋତିର୍ମୟୋ ଜଗନ୍ନାଥୋ ନିରାକାରୋ ଜଳେଶ୍ୱରଃ ।
ତୁମ୍ବବୀଣୋ ମହାକୋପୋ ବିଶୋକଃ ଶୋକନାଶନଃ ॥୧୦୭

୮୧୭ ଜ୍ୟୋତିର୍ମୟଃ–**ତେଜୋମୟ,** ୮୧୮ ଜଗନ୍ନାଥଃ–**ଜଗତର ସ୍ୱାମୀ,** ୮୧୯ ନିରାକାରଃ–**ଆକାରରହିତ ପରମାତ୍ମା,** ୮୨୦ ଜଳେଶ୍ୱରଃ–**ଜଳର ସ୍ୱାମୀ,** ୮୨୧ ତୁମ୍ବବୀଣଃ–**ତୁମ୍ବୀରୂପୀ ବୀଣାବାଦକ,** ୮୨୨ ମହାକୋପଃ–**ସଂହାରକାଳରେ ମହାକ୍ରୋଧୀ,** ୮୨୩ ବିଶୋକଃ–**ଶୋକରହିତ,** ୮୨୪ ଶୋକନାଶନଃ–**ଶୋକନାଶକାରୀ ॥୧୦୭॥**

ତ୍ରିଲୋକପସ୍ତ୍ରିଲୋକେଶଃ ସର୍ବଶୁଦ୍ଧିରଧୋକ୍ଷଜଃ ।
ଅବ୍ୟକ୍ତଲକ୍ଷଣୋ ଦେବୋ ବ୍ୟକ୍ତାବ୍ୟକ୍ତୋ ବିଶାମ୍ପତିଃ ॥୧୦୮

୮୨୫ ତ୍ରିଲୋକପଃ–**ତ୍ରିଲୋକର ପାଳକ,** ୮୨୬ ତ୍ରିଲୋକେଶଃ–**ତ୍ରିଭୁବନର ସ୍ୱାମୀ,** ୮୨୭ ସର୍ବଶୁଦ୍ଧିଃ–**ସର୍ବଶୁଦ୍ଧକାରୀ,** ୮୨୮ ଅଧୋକ୍ଷଜଃ–**ଇନ୍ଦ୍ରିୟ ଓ ସେମାନଙ୍କ ବିଷୟରୁ ଅତୀତ,** ୮୨୯ ଅବ୍ୟକ୍ତଲକ୍ଷଣୋ ଦେବଃ–**ଅବ୍ୟକ୍ତ ଲକ୍ଷଣଯୁକ୍ତ ଦେବତା,** ୮୩୦ ବ୍ୟକ୍ତାବ୍ୟକ୍ତଃ–**ସ୍ଥୂଳସୂକ୍ଷ୍ମରୂପ,**

୮୩୧ ବିଶାମ୍ପତିଃ—**ପ୍ରଜାମାନଙ୍କ ପାଳକ ॥ ୧୦୮ ॥**

ବରଶୀଳୋ ବରଗୁଣଃ ସାରୋ ମାନଧନୋ ମୟଃ ।
ବ୍ରହ୍ମା ବିଷ୍ଣୁଃ ପ୍ରଜାପାଳୋ ହଂସୋ ହଂସଗତିର୍ବୟଃ ॥୧୦୯

୮୩୨ ବରଶୀଳଃ—**ଶ୍ରେଷ୍ଠ ସ୍ୱଭାବଯୁକ୍ତ,** ୮୩୩ ବରଗୁଣଃ—**ଉତ୍ତମଗୁଣଯୁକ୍ତ,** ୮୩୪ ସାରଃ—**ସାରତତ୍ତ୍ୱ,** ୮୩୫ ମାନଧନଃ—**ସ୍ୱାଭିମାନରେ ଧନୀ,** ୮୩୬ ମୟଃ—**ସୁଖସ୍ୱରୂପ,** ୮୩୭ ବ୍ରହ୍ମା—**ସୃଷ୍ଟିକର୍ତ୍ତା ବ୍ରହ୍ମା,** ୮୩୮ ବିଷ୍ଣୁଃ ପ୍ରଜାପାଳଃ—**ପ୍ରଜାପାଳକ ବିଷ୍ଣୁ,** ୮୩୯ ହଂସଃ—**ସୂର୍ଯ୍ୟସ୍ୱରୂପ,** ୮୪୦ ହଂସଗତିଃ—**ଯାହାଙ୍କ ଗତି ହଂସ ପରି,** ୮୪୧ ବୟଃ—**ଗରୁଡ଼ ପକ୍ଷୀ ॥ ୧୦୯ ॥**

ବେଧା ବିଧାତା ଧାତା ଚ ସ୍ରଷ୍ଟା ହର୍ତ୍ତା ଚତୁର୍ମୁଖଃ ।
କୈଳାସଶିଖରାବାସୀ ସର୍ବାବାସୀ ସଦାଗତିଃ ॥୧୧୦

୮୪୨ ବେଧା ବିଧାତା ଧାତା—**ବ୍ରହ୍ମା, ବିଧାତା ଓ ଧାତା ନାମକ ଦେବତାସ୍ୱରୂପ,** ୮୪୩ ସ୍ରଷ୍ଟା—**ସୃଷ୍ଟିକର୍ତ୍ତା,** ୮୪୪ ହର୍ତ୍ତା—**ସଂହାରକାରୀ,** ୮୪୫ ଚତୁର୍ମୁଖଃ—**ଚତୁରାନନ ବ୍ରହ୍ମା,** ୮୪୬ କୈଳାସ-ଶିଖରାବାସୀ—**କୈଳାସଶିଖରରେ ନିବାସକାରୀ,** ୮୪୭ ସର୍ବାବାସୀ—**ସର୍ବବ୍ୟାପୀ,** ୮୪୮ ସଦାଗତିଃ—**ନିରନ୍ତର ଗତିଶୀଳ ବାୟୁଦେବ ॥ ୧୧୦ ॥**

ହିରଣ୍ୟଗର୍ଭୋ ଦ୍ରୁହିଣୋ ଭୂତପାଳୋଽଥ ଭୂପତିଃ ।
ସଦ୍‌ଯୋଗୀ ଯୋଗବିଦ୍‌ଯୋଗୀ ବରଦୋ ବ୍ରାହ୍ମଣପ୍ରିୟଃ ॥୧୧୧

୮୪୯ ହିରଣ୍ୟଗର୍ଭଃ—**ବ୍ରହ୍ମା,** ୮୫୦ ଦ୍ରୁହିଣଃ—**ବ୍ରହ୍ମା,** ଭୂତପାଳଃ—**ପ୍ରାଣୀଙ୍କ ପାଳନକାରୀ,** ୮୫୨ ଭୂପତିଃ—**ପୃଥିବୀର ସ୍ୱାମୀ,** ୮୫୩ ସଦ୍‌ଯୋଗୀ—**ଶ୍ରେଷ୍ଠ ଯୋଗୀ,** ୮୫୪ ଯୋଗବିଦ୍‌ଯୋଗୀ—**ଯୋଗବିଦ୍ୟା ଜାଣିଥିବା ଯୋଗୀ,** ୮୫୫ ବରଦଃ—**ବରଦାତା,** ୮୫୬ ବ୍ରାହ୍ମଣପ୍ରିୟଃ—**ବ୍ରାହ୍ମଣଙ୍କ ପ୍ରେମୀ ॥ ୧୧୧ ॥**

ଦେବପ୍ରିୟୋ ଦେବନାଥୋ ଦେବଜ୍ଞୋ ଦେବଚିନ୍ତକଃ ।
ବିଷମାକ୍ଷୋ ବିଶାଳାକ୍ଷୋ ବୃଷଦୋ ବୃଷବର୍ଦ୍ଧନଃ ॥୧୧୨

୮୫୭ ଦେବପ୍ରିୟୋ ଦେବନାଥଃ—**ଦେବତାଙ୍କ ପ୍ରିୟ ତଥା ରକ୍ଷକ,** ୮୫୮ ଦେବଜ୍ଞଃ—**ଦେବତତ୍ତ୍ୱର ଜ୍ଞାତା,** ୮୫୯ ଦେବଚିନ୍ତକଃ—**ଦେବତାଙ୍କ କଥା ବିଗ୍ରହକାରୀ,** ୮୬୦ ବିଷମାକ୍ଷଃ—**ବିଷମ ନେତ୍ରଯୁକ୍ତ,** ୮୬୧ ବିଶାଳାକ୍ଷଃ—**ବଡ଼ ବଡ଼ ନେତ୍ରଯୁକ୍ତ,** ୮୬୨ ବୃଷଦୋ ବୃଷବର୍ଦ୍ଧନଃ—**ଧର୍ମ ପ୍ରଦାତା ଓ ଧର୍ମ ବର୍ଦ୍ଧନକାରୀ ॥ ୧୧୨ ॥**

ନିର୍ମମୋ ନିରହଙ୍କାରୋ ନିର୍ମୋହୋ ନିରୁପଦ୍ରବଃ ।
ଦର୍ପହା ଦର୍ପଦୋ ଦୃପ୍ତଃ ସର୍ବର୍ତ୍ତୁପରିବର୍ତକଃ ॥୧୧୩

୮୬୩ ନିର୍ମମଃ—**ମମତାରହିତ,** ୮୬୪ ନିରହଙ୍କାରଃ—**ଅହଂକାରଶୂନ୍ୟ,** ୮୬୫ ନିର୍ମୋହଃ—**ମୋହଶୂନ୍ୟ,** ୮୬୬ ନିରୁପଦ୍ରବଃ—**ଉପଦ୍ରବ ବା ଉତ୍ପାତ ଠାରୁ ଦୂରରେ,** ୮୬୭ ଦର୍ପହା ଦର୍ପଦଃ—**ଦର୍ପର ହନନ ଓ ଖଣ୍ଡନକାରୀ,** ୮୬୮ ଦୃପ୍ତଃ—**ସ୍ୱାଭିମାନୀ,** ୮୬୯ ସର୍ବର୍ତ୍ତୁପରିବର୍ତକଃ—**ସମସ୍ତ ଋତୁର ପରିବର୍ତ୍ତନକାରୀ ॥ ୧୧୩ ॥**

ସହସ୍ରଜିତ୍ ସହସ୍ରାର୍ଚିଃ ସ୍ନିଗ୍ଧପ୍ରକୃତିଦକ୍ଷିଣଃ ।
ଭୂତଭବ୍ୟଭବନ୍ନାଥଃ ପ୍ରଭବୋ ଭୂତିନାଶନଃ ॥୧୧୪

୮୭୦ ସହସ୍ରଜିତ୍—**ସହସ୍ର ବାର ବିଜୟୀ,** ୮୭୧ ସହସ୍ରାର୍ଚିଃ—**ସହସ୍ର କିରଣରେ ଭାସ୍ୱର ସୂର୍ଯ୍ୟରୂପ,** ୮୭୨ ସ୍ନିଗ୍ଧପ୍ରକୃତିଦକ୍ଷିଣଃ—**ସ୍ନେହଶୀଳ ତଥା ଉଦାର,** ୮୭୩ ଭୂତଭବ୍ୟଭବନ୍ନାଥଃ—**ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ସ୍ୱାମୀ,** ୮୭୪ ପ୍ରଭବଃ—**ସମସ୍ତଙ୍କ ଉତ୍ପତ୍ତିର କାରଣ,** ୮୭୫ ଭୂତିନାଶନଃ—**ଦୁଷ୍ଟଙ୍କ ଐଶ୍ୱର୍ଯ୍ୟ ନାଶକାରୀ ॥ ୧୧୪ ॥**

ଅର୍ଥୋଽନର୍ଥୋ ମହାକୋଶଃ ପରକାର୍ଯ୍ୟୈକପଣ୍ଡିତଃ ।
ନିଷ୍କଣ୍ଟକଃ କୃତାନନ୍ଦୋ ନିର୍ବ୍ୟାଜୋ ବ୍ୟାଜମର୍ଦନଃ ॥୧୧୫

୮୭୬ ଅର୍ଥଃ—**ପରମପୁରୁଷାର୍ଥସ୍ୱରୂପ,** ୮୭୭ ଅନର୍ଥଃ—**ପ୍ରୟୋଜନରହିତ,** ୮୭୮ ମହାକୋଶଃ—**ଅନନ୍ତ ଧନରାଶିର ସ୍ୱାମୀ,** ୮୭୯ ପରକାର୍ଯ୍ୟୈକ-ପଣ୍ଡିତଃ—**ପରକାର୍ଯ୍ୟ ସିଦ୍ଧ କରିବାରେ କୁଶଳୀ,** ୮୮୦ ନିଷ୍କଣ୍ଟକଃ—**କଣ୍ଟକରହିତ,** ୮୮୧ କୃତାନନ୍ଦଃ—**ନିତ୍ୟସିଦ୍ଧ ଆନନ୍ଦସ୍ୱରୂପ,** ୮୮୨ ନିର୍ବ୍ୟାଜୋ ବ୍ୟାଜମର୍ଦନଃ—**ସ୍ୱୟଂ କପଟରହିତ ହୋଇ ଅନ୍ୟର କପଟ ନାଶକାରୀ ॥ ୧୧୫ ॥**

ସତ୍ତ୍ୱବାନ୍ ସାତ୍ତ୍ୱିକଃ ସତ୍ୟକୀର୍ତ୍ତିଃ ସ୍ନେହକୃତାଗମଃ ।
ଅକମ୍ପିତୋ ଗୁଣଗ୍ରାହୀ ନୈକାତ୍ମା ନୈକକର୍ମକୃତ୍ ॥୧୧୬

୮୮୩ ସତ୍ତ୍ୱବାନ୍—**ସତ୍ତ୍ୱଗୁଣସମ୍ପନ୍ନ,** ୮୮୪ ସାତ୍ତ୍ୱିକଃ—**ସତ୍ତ୍ୱନିଷ୍ଠ,** ୮୮୫ ସତ୍ୟକୀର୍ତ୍ତିଃ—**ସତ୍ୟକୀର୍ତ୍ତିଯୁକ୍ତ,** ୮୮୬ ସ୍ନେହକୃତାଗମଃ—**ଜୀବଙ୍କ ପ୍ରତି ସ୍ନେହ ହେତୁ ଅନେକ ଆଗମ ପ୍ରକଟନକାରୀ,** ୮୮୭ ଅକମ୍ପିତଃ—**ସୁସ୍ଥିର,** ୮୮୮ ଗୁଣଗ୍ରାହୀ—**ଗୁଣର ଆଦରକାରୀ,** ୮୮୯ ନୈକାତ୍ମା ନୈକକର୍ମକୃତ୍—**ଅନେକରୂପ ହୋଇ ଅନେକ ପ୍ରକାର କର୍ମ ସମ୍ପାଦକ ॥ ୧୧୬ ॥**

ସୁପ୍ରୀତଃ ସୁମୁଖଃ ସୂକ୍ଷ୍ମଃ ସୁକରୋ ଦକ୍ଷାଣାନିଳଃ ।
ନନ୍ଦୀସ୍କନ୍ଧଧରୋ ଧୁର୍ଯ୍ୟଃ ପ୍ରକଟଃ ପ୍ରୀତିବର୍ଦ୍ଧନଃ ॥୧୧୭

୮୯୦ ସୁପ୍ରୀତଃ—**ଅତ୍ୟନ୍ତ ପ୍ରସନ୍ନ,** ୮୯୧ ସୁମୁଖଃ—**ସୁନ୍ଦର ମୁଖଯୁକ୍ତ,** ୮୯୨ ସୂକ୍ଷ୍ମଃ—**ସ୍ଥୂଳଭାବଶୂନ୍ୟ,** ୮୯୩ ସୁକରଃ—**ସୁନ୍ଦର ହସ୍ତଯୁକ୍ତ,** ୮୯୪ ଦକ୍ଷିଣାନିଳଃ—**ମଳୟ ପବନ ପରି ସୁଖଦ,** ୮୯୫ ନନ୍ଦୀସ୍କନ୍ଧଧରଃ—**ନନ୍ଦୀ ପୃଷ୍ଠରେ ଆରୂଢ଼,** ୮୯୬ ଧୁର୍ଯ୍ୟଃ—**ଉତ୍ତରଦାୟିତ୍ୱ ବହନକାରୀ,** ୮୯୭ ପ୍ରକଟଃ—**ଭକ୍ତଙ୍କ ସମ୍ମୁଖରେ ପ୍ରକଟ ହେଉଥିବା ଅଥବା ଜ୍ଞାନୀଙ୍କ ସମ୍ମୁଖରେ ନିତ୍ୟ ପ୍ରକଟ ରହୁଥିବା ପ୍ରଭୁ,** ୮୯୮ ପ୍ରୀତିବର୍ଦ୍ଧନଃ—**ପ୍ରେମ ବୃଦ୍ଧିକାରୀ ॥ ୧୧୭ ॥**

ଅପରାଜିତଃ ସର୍ବସତ୍ତ୍ୱୋ ଗୋବିନ୍ଦଃ ସତ୍ତ୍ୱବାହନଃ ।
ଅଧୃତଃ ସ୍ୱଧୃତଃ ସିଦ୍ଧଃ ପୂତମୂର୍ତ୍ତିର୍ଯଶୋଧନଃ ॥୧୧୮

୮୯୯ ଅପରାଜିତଃ—**ଯେ କାହାରି ଠାରୁ ପରାଜିତ ନ ହୁଅନ୍ତି,** ୯୦୦ ସର୍ବସତ୍ତ୍ୱଃ—**ସମସ୍ତ ସତ୍ତ୍ୱଗୁଣର ଆଶ୍ରୟ ଅଥବା ସମସ୍ତ ପ୍ରାଣୀଙ୍କ ଉତ୍ପତ୍ତିର ହେତୁ,** ୯୦୧ ଗୋବିନ୍ଦଃ—**ଗୋଲୋକ ପ୍ରଦାନକାରୀ,** ୯୦୨ ସତ୍ତ୍ୱବାହନଃ—**ସତ୍ତ୍ୱରୂପୀ ଧର୍ମବୃଷଭ ଯାହାଙ୍କ ବାହନ,** ୯୦୩ ଅଧୃତଃ—**ଆଧାରଶୂନ୍ୟ,** ୯୦୪ ସ୍ୱଧୃତଃ—**ନିଜ ମଧ୍ୟରେ ସ୍ଥିତ,** ୯୦୫ ସିଦ୍ଧଃ—**ନିତ୍ୟସିଦ୍ଧ,** ୯୦୬ ପୂତମୂର୍ତ୍ତିଃ—**ପବିତ୍ର ଶରୀରଧାରୀ,** ୯୦୭ ଯଶୋଧନଃ—**ସୁଯଶର ଧନୀ ॥ ୧୧୮ ॥**

ବାରାହଶୃଙ୍ଗଧୃକ୍ ଶୃଙ୍ଗୀ ବଳବାନେକନାୟକଃ ।
ଶ୍ରୁତିପ୍ରକାଶଃ ଶ୍ରୁତିମାନେକବନ୍ଧୁରନେକକୃତ୍ ॥୧୧୯

୯୦୮ ବାରାହଶୃଙ୍ଗଧୃକ୍ ଶୃଙ୍ଗୀ—**ବରାହକୁ ମାରି ତାହାର ଦାନ୍ତକୁ ଶୃଙ୍ଗରୂପେ ଧାରଣ କରିବା ହେତୁ ଶୃଙ୍ଗୀରୂପେ ପ୍ରସିଦ୍ଧ,** ୯୦୯ ବଳବାନ୍—**ଶକ୍ତିଶାଳୀ,** ୯୧୦ ଏକନାୟକଃ—**ଅଦ୍ୱିତୀୟ ନେତା,** ୯୧୧ ଶ୍ରୁତିପ୍ରକାଶଃ—**ବେଦସମୂହର ପ୍ରକାଶକାରୀ,** ୯୧୨ ଶ୍ରୁତିମାନ୍—**ବେଦଜ୍ଞାନସମ୍ପନ୍ନ,** ୯୧୩ ଏକବନ୍ଧୁଃ—**ସମସ୍ତଙ୍କର ଏକମାତ୍ର ସହାୟକ,** ୯୧୪ ଅନେକକୃତ୍—**ଅନେକ ପ୍ରକାର ପଦାର୍ଥର ସୃଜନକାରୀ ॥ ୧୧୯ ॥**

ଶ୍ରୀବତ୍ସଲଶିବାରମ୍ଭଃ ଶାନ୍ତଭଦ୍ରଃ ସମୋ ଯଶଃ ।
ଭୂଶୟୋ ଭୂଷଣୋ ଭୂତିର୍ଭୂତକୃଦ୍ ଭୂତଭାବନଃ ॥୧୨୦

୯୧୫ ଶ୍ରୀବତ୍ସଲଶିବାରମ୍ଭଃ—**ଶ୍ରୀବତ୍ସଧାରୀ ବିଷ୍ଣୁଙ୍କ ପାଇଁ ମଙ୍ଗଳକାରୀ,** ୯୧୬ ଶାନ୍ତଭଦ୍ରଃ—**ଶାନ୍ତ ଓ ମଙ୍ଗଳସ୍ୱରୂପ,** ୯୧୭ ସମଃ—**ସର୍ବତ୍ର ସମଭାବ ରକ୍ଷାକାରୀ,** ୯୧୮ ଯଶଃ—**ଯଶସ୍ୱରୂପ,** ୯୧୯ ଭୂଶୟଃ—**ଭୂମିରେ ଶୟନକାରୀ,** ୯୨୦ ଭୂଷଣଃ—**ସମସ୍ତଙ୍କୁ ବିଭୂଷିତ କରୁଥିବା,** ୯୨୧ ଭୂତିଃ—**କଲ୍ୟାଣସ୍ୱରୂପ,** ୯୨୨ ଭୂତକୃତ୍—**ପ୍ରାଣୀଙ୍କର ସୃଜନକାରୀ,** ୯୨୩ ଭୂତଭାବନଃ—**ଭୂତଗଣଙ୍କ ଉତ୍ପାଦକ ॥ ୧୨୦ ॥**

ଅକମ୍ପୋ ଭକ୍ତିକାୟସ୍ତୁ କାଳହା ନୀଳଲୋହିତଃ ।
ସତ୍ୟବ୍ରତମହାତ୍ୟାଗୀ ନିତ୍ୟଶାନ୍ତିପରାୟଣଃ ॥୧୨୧

୯୨୪ ଅକମ୍ପଃ—**ଯେ କମ୍ପିତ ନ ହୁଅନ୍ତି,** ୯୨୫ ଭକ୍ତିକାୟଃ—**ଭକ୍ତିସ୍ୱରୂପ,** ୯୨୬ କାଳହା—**କାଳନାଶକ,** ୯୨୭ ନୀଳଲୋହିତଃ—**ନୀଳ ଓ ଲୋହିତ ବର୍ଣ୍ଣଧାରୀ,** ୯୨୮ ସତ୍ୟବ୍ରତମହାତ୍ୟାଗୀ—**ସତ୍ୟବ୍ରତଧାରୀ ଓ ମହାନ୍ ତ୍ୟାଗୀ,** ୯୨୯ ନିତ୍ୟଶାନ୍ତିପରାୟଣଃ—**ନିରନ୍ତର ଶାନ୍ତ ॥ ୧୨୧ ॥**

ପରାର୍ଥବୃତ୍ତିର୍ବରଦୋ ବିରକ୍ତସ୍ତୁ ବିଶାରଦଃ ।
ଶୁଭଦଃ ଶୁଭକର୍ତ୍ତା ଚ ଶୁଭନାମା ଶୁଭଃ ସ୍ୱୟମ୍ ॥୧୨୨

୯୩୦ ପରାର୍ଥବୃତ୍ତିର୍ବରଦଃ—**ପରୋପକାରବ୍ରତୀ**

**ଓ ଅଭୀଷ୍ଟ ବରଦାତା,** ୯୩୧ ବିରକ୍ତଃ–**ବୈରାଗ୍ୟବାନ୍,** ୯୩୨ ବିଶାରଦଃ–**ବିଜ୍ଞାନବାନ୍,** ୯୩୩ ଶୁଭଦଃ ଶୁଭକର୍ତ୍ତା–**ଶୁଭଦାୟକ ଓ ଶୁଭକାରକ,** ୯୩୪ ଶୁଭନାମା ଶୁଭଃ ସ୍ୱୟମ୍–**ସ୍ୱୟଂ ଶୁଭସ୍ୱରୂପ ହେବା କାରଣରୁ ଶୁଭ ନାମଧାରୀ ॥ ୧୨୨ ॥**

ଅନର୍ଥିତୋଽଗୁଣଃ ସାକ୍ଷୀ ହ୍ୟକର୍ତ୍ତା କନକପ୍ରଭଃ ।
ସ୍ୱଭାବଭଦ୍ରୋ ମଧ୍ୟସ୍ଥଃ ଶତ୍ରୁଘ୍ନୋ ବିଘ୍ନନାଶନଃ ॥୧୨୩

୯୩୫ ଅନର୍ଥିତଃ–**ଯାଚନାରହିତ,** ୯୩୬ ଅଗୁଣଃ–**ନିର୍ଗୁଣ,** ୯୩୭ ସାକ୍ଷୀ ଅକର୍ତ୍ତା–**ଦ୍ରଷ୍ଟା ଏବଂ କର୍ତ୍ତୃତ୍ୱରହିତ,** ୯୩୮ କନକପ୍ରଭଃ–**ସୁବର୍ଣ୍ଣତୁଲ୍ୟ କାନ୍ତିମାନ୍,** ୯୩୯ ସ୍ୱଭାବଭଦ୍ରଃ–**ସ୍ୱଭାବତଃ କଲ୍ୟାଣକାରୀ,** ୯୪୦ ମଧ୍ୟସ୍ଥଃ–**ଉଦାସୀନ,** ୯୪୧ ଶତ୍ରୁଘ୍ନଃ–**ଶତ୍ରୁନାଶକ,** ୯୪୨ ବିଘ୍ନ-ନାଶନଃ–**ବିଘ୍ନ ନିବାରଣକାରୀ ॥ ୧୨୩ ॥**

ଶିଖଣ୍ଡୀ କବଚୀ ଶୂଳୀ ଜଟୀ ମୁଣ୍ଡୀ ଚ କୁଣ୍ଡଳୀ ।
ଅମୃତ୍ୟୁଃ ସର୍ବଦୃକ୍ ସିଂହସ୍ତେଜୋରାଶିର୍ମହାମଣିଃ ॥୧୨୪

୯୪୩ ଶିଖଣ୍ଡୀ କବଚୀ ଶୂଳୀ–**ମୟୂରପକ୍ଷୀ, କବଚ ଓ ତ୍ରିଶୂଳ ଧାରଣକାରୀ,** ୯୪୪ ଜଟୀ ମୁଣ୍ଡୀ ଚ କୁଣ୍ଡଳୀ–**ଜଟା, ମୁଣ୍ଡମାଳା ଓ କୁଣ୍ଡଳ ଧାରଣକାରୀ,** ୯୪୫ ଅମୃତ୍ୟୁଃ–**ମୃତ୍ୟୁରହିତ,** ୯୪୬ ସର୍ବଦୃକ୍‌ସିଂହଃ–**ସର୍ବଜ୍ଞଙ୍କ ଭିତରେ ଶ୍ରେଷ୍ଠ,** ୯୪୭ ତେଜୋରାଶିର୍ମହାମଣିଃ–**ତେଜଃପୁଞ୍ଜ ମହାମଣି କୌସ୍ତୁଭାଦିରୂପ ॥ ୧୨୪ ॥**

ଅସଂଖ୍ୟେୟୋଽପ୍ରମେୟାତ୍ମା ବୀର୍ଯ୍ୟବାନ୍ ବୀର୍ଯ୍ୟକୋବିଦଃ ।
ବେଦ୍ୟଶ୍ଚୈବ ବିୟୋଗାତ୍ମା ପରାବରମୁନୀଶ୍ୱରଃ ॥୧୨୫

୯୪୮ ଅସଂଖ୍ୟେୟୋଽପ୍ରମେୟାତ୍ମା–**ଅସଂଖ୍ୟ ନାମ, ରୂପ ଓ ଗୁଣଯୁକ୍ତ ହୋଇଥିବା କାରଣରୁ ଯାହାଙ୍କୁ ମାପିବା ସମ୍ଭବ ନୁହେଁ,** ୯୪୯ ବୀର୍ଯ୍ୟବାନ୍ ବୀର୍ଯ୍ୟକୋବିଦଃ–**ପରାକ୍ରମୀ ଓ ପରାକ୍ରମର ଜ୍ଞାତା, ୯୫୦** ବେଦ୍ୟଃ–**ଜାଣିବାର ଯୋଗ୍ୟ,** ୯୫୧ ବିୟୋଗାତ୍ମା–**ଦୀର୍ଘକାଳ ପର୍ଯ୍ୟନ୍ତ ସତୀଙ୍କ ବିୟୋଗରେ ଅଥବା ବିଶିଷ୍ଟ ଯୋଗସାଧନାରେ ସଂଲଗ୍ନଚିତ୍ତ,** ୯୫୨ ପରାବରମୁନୀଶ୍ୱରଃ–**ଭୂତ ଓ ଭବିଷ୍ୟତର ଜ୍ଞାତା ମୁନୀଶ୍ୱରରୂପ ॥ ୧୨୫ ॥**

ଅନୁତ୍ତମୋ ଦୁରାଧର୍ଷୋ ମଧୁରପ୍ରିୟଦର୍ଶନଃ ।
ସୁରେଶଃ ଶରଣଂ ସର୍ବଃ ଶବ୍ଦବ୍ରହ୍ମ ସତାଂ ଗତିଃ ॥୧୨୬

୯୫୩ ଅନୁତ୍ତମୋ ଦୁରାଧର୍ଷଃ–**ସର୍ବୋତ୍ତମ ଓ ଦୁର୍ଜୟ,** ୯୫୪ ମଧୁରପ୍ରିୟଦର୍ଶନଃ–**ଯାହାଙ୍କ ଦର୍ଶନ ମନୋହର ଓ ପ୍ରିୟ ଲାଗେ,** ୯୫୫ ସୁରେଶଃ–**ଦେବତାଙ୍କ ଈଶ୍ୱର,** ୯୫୬ ଶରଣମ୍–**ଆଶ୍ରୟଦାତା,** ସର୍ବଃ–**ସର୍ବସ୍ୱରୂପ,** ୯୫୮ ଶବ୍ଦବ୍ରହ୍ମ ସତାଂ ଗତିଃ–**ପ୍ରଣବରୂପ ଓ ସତ୍‌ପୁରୁଷଙ୍କ ଆଶ୍ରୟ ॥ ୧୨୬ ॥**

କାଳପକ୍ଷଃ କାଳକାଳଃ କଙ୍କଣୀକୃତବାସୁକିଃ ।
ମହେଷ୍ୱାସୋ ମହୀଭର୍ତ୍ତା ନିଷ୍କଳଙ୍କୋ ବିଶୃଙ୍ଖଳଃ ॥୧୨୭

୯୫୯ କାଳପକ୍ଷଃ–**କାଳ ଯାହାଙ୍କ ସହାୟକ,** ୯୬୦ କାଳକାଳଃ–**କାଳର ମଧ୍ୟ କାଳ,** ୯୬୧ କଙ୍କଣୀକୃତବାସୁକିଃ–**ବାସୁକୀନାଗକୁ ନିଜ ହାତରେ କଙ୍କଣ ପରି ଧାରଣକାରୀ,** ୯୬୨ ମହେଷ୍ୱାସଃ–**ମହାଧନୁର୍ଧର,** ୯୬୩ ମହୀଭର୍ତ୍ତା–**ପୃଥିବୀପାଳକ,** ୯୬୪ ନିଷ୍କଳଙ୍କଃ–**କଳଙ୍କଶୂନ୍ୟ,** ୯୬୫ ବିଶୃଙ୍ଖଳଃ–**ବନ୍ଧନରହିତ ॥ ୧୨୭ ॥**

ଦ୍ୟୁମଣିସ୍ତରଣିର୍ଧନ୍ୟଃ ସିଦ୍ଧିଦଃ ସିଦ୍ଧିସାଧନଃ ।
ବିଶ୍ୱତଃ ସଂବୃତଃ ସ୍ତୁତ୍ୟୋ ବୂଢୋରସ୍କୋ ମହାଭୁଜଃ ॥୧୨୮

୯୬୬ ଦ୍ୟୁମଣିସ୍ତରଣିଃ–**ଆକାଶରେ ମଣି ପରି ଦେଦୀପ୍ୟମାନ ତଥା ଭକ୍ତଙ୍କୁ ଭବସାଗରରୁ ତାରିବା ପାଇଁ ନୌକାସ୍ୱରୂପ ସୂର୍ଯ୍ୟ,** ୯୬୭ ଧନ୍ୟଃ–**କୃତକୃତ୍ୟ,** ୯୬୮ ସିଦ୍ଧିଦଃ ସିଦ୍ଧିସାଧନଃ–**ସିଦ୍ଧିଦାତା ଓ ସିଦ୍ଧିର ସାଧକ,** ୯୬୯ ବିଶ୍ୱତଃ ସଂବୃତଃ–**ସବୁଆଡୁ ମାୟାଦ୍ୱାରା ଆବୃତ,** ୯୭୦ ସ୍ତୁତ୍ୟଃ–**ସ୍ତବନୀୟ,** ୯୭୧ ବ୍ୟୂଢୋରସ୍କଃ–**ଯାହାଙ୍କ ବକ୍ଷ ପ୍ରଶସ୍ତ,** ୯୭୨ ମହାଭୁଜଃ–**ଯାହାଙ୍କର ବାହୁ ବିଶାଳ ॥ ୧୨୮ ॥**

ସର୍ବଯୋନିର୍ନିରାତଙ୍କୋ ନରନାରାୟଣପ୍ରିୟଃ ।
ନିର୍ଲେପୋ ନିଷ୍ପ୍ରପଞ୍ଚାତ୍ମା ନିର୍ବ୍ୟଙ୍ଗୋ ବ୍ୟଙ୍ଗନାଶନଃ ॥୧୨୯

୯୭୩ ସର୍ବଯୋନିଃ—**ସମସ୍ତଙ୍କର ଉତ୍ପତ୍ତି ସ୍ଥାନ,** ୯୭୪ ନିରାତଙ୍କଃ—**ନିର୍ଭୟ,** ୯୭୫ ନରନାରାୟଣପ୍ରିୟଃ—**ନରନାରାୟଣଙ୍କର ପ୍ରିୟ,** ୯୭୬ ନିର୍ଲେପୋ ନିଷ୍ପ୍ରପଞ୍ଚାତ୍ମା—**ଦୋଷସମ୍ପର୍କରୁ ରହିତ ଓ ଜଗତ୍ ପ୍ରପଞ୍ଚରୁ ଅତୀତ,** ୯୭୭ ନିର୍ବ୍ୟଙ୍ଗଃ—**ବିଶିଷ୍ଟ ଅଙ୍ଗଯୁକ୍ତ ପ୍ରାଣୀଙ୍କ ପ୍ରାକଟ୍ୟରେ ହେତୁ,** ୯୭୮ ବ୍ୟଙ୍ଗନାଶନଃ—**ଯଜ୍ଞାଦି କର୍ମରେ ହେଉଥିବା ଅଙ୍ଗବୈଗୁଣ୍ୟର ନାଶକ ॥ ୧୨୯ ॥**

ସ୍ତବ୍ୟଃ ସ୍ତବପ୍ରିୟଃ ସ୍ତୋତା ବ୍ୟାସମୂର୍ତ୍ତିର୍ନିରଙ୍କୁଶଃ ।
ନିରବଦ୍ୟମୟୋପାୟୋ ବିଦ୍ୟାରାଶୀ ରସପ୍ରିୟଃ ॥୧୩୦

୯୭୯ ସ୍ତବ୍ୟଃ—**ସ୍ତୁତିର ଯୋଗ୍ୟ,** ୯୮୦ ସ୍ତବପ୍ରିୟଃ—**ସ୍ତୁତିପ୍ରିୟ,** ୯୮୧ ସ୍ତୋତା—**ସ୍ତୁତିକାରୀ,** ୯୮୨ ବ୍ୟାସମୂର୍ତ୍ତିଃ—**ବ୍ୟାସସ୍ୱରୂପ,** ୯୮୩ ନିରଙ୍କୁଶଃ—**ଅଙ୍କୁଶରହିତ ବା ସ୍ୱତନ୍ତ୍ର,** ୯୮୪ ନିରବଦ୍ୟମୟୋପାୟଃ—**ମୋକ୍ଷପ୍ରାପ୍ତିର ନିର୍ଦୋଷ ଉପାୟରୂପ,** ୯୮୫ ବିଦ୍ୟାରାଶିଃ—**ବିଦ୍ୟାମାନଙ୍କର ସାଗର,** ୯୮୬ ରସପ୍ରିୟଃ—**ବ୍ରହ୍ମାନନ୍ଦରସର ପ୍ରେମୀ ॥ ୧୩୦ ॥**

ପ୍ରଶାନ୍ତବୁଦ୍ଧିରକ୍ଷୁଣ୍ଣଃ ସଂଗ୍ରହୀ ନିତ୍ୟସୁନ୍ଦରଃ ।
ବୈୟାଘ୍ରଧୁର୍ଯ୍ୟୋ ଧାତ୍ରୀଶଃ ଶାକଲ୍ୟଃ ଶର୍ବରୀପତିଃ ॥୧୩୧

୯୮୭ ପ୍ରଶାନ୍ତବୁଦ୍ଧିଃ—**ଶାନ୍ତବୁଦ୍ଧି,** ୯୮୮ ଅକ୍ଷୁଣ୍ଣଃ—**କ୍ଷୋଭଶୂନ୍ୟ ବା ନାଶରହିତ,** ୯୮୯ ସଂଗ୍ରହୀ—**ଭକ୍ତସଂଗ୍ରହକାରୀ,** ୯୯୦ ନିତ୍ୟସୁନ୍ଦରଃ—**ସତତ ମନୋହର,** ୯୯୧ ବୈୟାଘ୍ରଧୁର୍ଯ୍ୟଃ—**ବ୍ୟାଘ୍ରଚର୍ମଧାରୀ,** ୯୯୨ ଧାତ୍ରୀଶଃ—**ବ୍ରହ୍ମାଙ୍କର ସ୍ୱାମୀ,** ୯୯୩ ଶାକଲ୍ୟଃ—**ଶାକଲ୍ୟ ଋଷିରୂପ,** ୯୯୪ ଶର୍ବରୀପତିଃ—**ରାତ୍ରିର ସ୍ୱାମୀ ଚନ୍ଦ୍ରରୂପ ॥ ୧୩୧ ॥**

ପରମାର୍ଥଗୁରୁର୍ଦତ୍ତଃ ସୂରିରାଶ୍ରିତବତ୍ସଳଃ ।
ସୋମୋ ରସଜ୍ଞୋ ରସଦଃ ସର୍ବସତ୍ତ୍ୱାବଲମ୍ବନଃ ॥୧୩୨

୯୯୫ ପରମାର୍ଥଗୁରୁର୍ଦତ୍ତଃ ସୂରିଃ—**ପରମାର୍ଥ ତତ୍ତ୍ୱ ଉପଦେଷ୍ଟା ଜ୍ଞାନୀ ଗୁରୁ ଦତ୍ତାତ୍ରେୟରୂପ,** ୯୯୬ ଆଶ୍ରିତବତ୍ସଳଃ—**ଶରଣାଗତଙ୍କ ଉପରେ ଦୟାକାରୀ,** ୯୯୭ ସୋମଃ—**ଉମାଙ୍କ ସଙ୍ଗେ ବିଦ୍ୟମାନ,** ୯୯୮ ରସଜ୍ଞଃ—**ଭକ୍ତିରସର ଜ୍ଞାତା,** ୯୯୯ ରସଦଃ—**ପ୍ରେମରସ ପ୍ରଦାନକାରୀ,** ୧୦୦୦ ସର୍ବସତ୍ତ୍ୱାବଲମ୍ବନଃ—**ସମସ୍ତ ପ୍ରାଣୀଙ୍କର ସହାୟକ ॥ ୧୩୨ ॥**

ଏହିରୂପେ ଶ୍ରୀହରି ପ୍ରତିଦିନ ସହସ୍ରନାମ ଦ୍ୱାରା ଭଗବାନ ଶିବଙ୍କୁ ସ୍ତୁତି କରିବା ସହ ସହସ୍ର ପଦ୍ମ ଦ୍ୱାରା ତାଙ୍କୁ ପୂଜା ଓ ପ୍ରାର୍ଥନା କରୁଥିଲେ । ଦିନେ ଭଗବାନ ଶିବଙ୍କ ଲୀଳାକ୍ରମେ ଗୋଟିଏ ପଦ୍ମ କମ୍ ହୋଇଯିବାରୁ ବିଷ୍ଣୁ ଆପଣା ପଦ୍ମୋପମ ନେତ୍ର ଅର୍ପଣ କରିଦେଲେ । ଏହିରୂପେ ତାଙ୍କ ଦ୍ୱାରା ପୂଜିତ ହୋଇ ଓ ପ୍ରସନ୍ନ ହୋଇ ଶିବ ତାଙ୍କୁ ଚକ୍ର ପ୍ରଦାନ କଲେ ଏବଂ କହିଲେ—''ହରେ ! ସମସ୍ତ ପ୍ରକାର ଅନର୍ଥର ଶାନ୍ତି ପାଇଁ ତୁମେ ମୋର ସ୍ୱରୂପକୁ ଧ୍ୟାନ କରିବା ଉଚିତ । ଅନେକାନେକ ଦୁଃଖର ବିନାଶ ପାଇଁ ଏହି ସହସ୍ରନାମ ପାଠ କରିବା ଉଚିତ ତଥା ସମସ୍ତ ମନୋରଥର ସିଦ୍ଧି ପାଇଁ ସଦା ମୋର ଏହି ଚକ୍ରକୁ ପ୍ରଯତ୍ନପୂର୍ବକ ଧାରଣ କରିବା ଉଚିତ । ଏହା ସମସ୍ତ ଚକ୍ର ଭିତରେ ଉତ୍ତମ । ଅନ୍ୟ ଯେଉଁମାନେ ଏହି ସହସ୍ରନାମ ପାଠ କରିବେ ବା କରାଇବେ, ସେମାନଙ୍କୁ ସ୍ୱପ୍ନରେ ମଧ୍ୟ କୌଣସି ଦୁଃଖ ଭୋଗିବାକୁ ପଡ଼ିବ ନାହିଁ । ରାଜାମାନଙ୍କ ତରଫରୁ କଷ୍ଟ ପଡ଼ିଲେ ଯଦି ମନୁଷ୍ୟ ସାଙ୍ଗୋପାଙ୍ଗ ବିଧିପୂର୍ବକ ଏହି ସହସ୍ରନାମସ୍ତୋତ୍ର ଶହେ ବାର ପାଠ କରିବ, ତେବେ ନିଶ୍ଚିତରୂପେ ସେ କଲ୍ୟାଣର ଭାଗୀ ହେବ । ଏହି ଉତ୍ତମ ସ୍ତୋତ୍ର ରୋଗନାଶକ, ବିଦ୍ୟା ଓ ଧନ ପ୍ରଦାୟକ, ସମସ୍ତ ଅଭୀଷ୍ଟ ପ୍ରଦାୟକ, ପୁଣ୍ୟଜନକ ଓ ସଦା ଶିବଭକ୍ତି ପ୍ରଦାନକାରୀ । ଯେଉଁ ଫଳ ନିମନ୍ତେ ମନୁଷ୍ୟମାନେ ଉକ୍ତ ଶ୍ରେଷ୍ଠ ସ୍ତୋତ୍ର ପାଠ କରିବେ, ସେମାନେ ସେହି ଫଳ ନିଃସନ୍ଦେହରେ ଲାଭ କରିବେ । ଯେ ପ୍ରତିଦିନ ସକାଳୁ ଉଠି ମୋର ପୂଜା ସାରି ମୋ ସମ୍ମୁଖରେ ଏହାକୁ ପାଠ କରେ, ସିଦ୍ଧି ତାହାଠାରୁ ଦୂରକୁ ଯାଏ ନାହିଁ । ତାହାକୁ ସିଦ୍ଧି ପୂର୍ଣ୍ଣରୂପେ ପ୍ରାପ୍ତ

ହୁଏ ଓ ଶେଷରେ ସେ ସାଯୁଜ୍ୟ ମୋକ୍ଷ ପ୍ରାପ୍ତ ହୁଏ; ଏଥିରେ ସଂଶୟ ନାହିଁ ।''

ସୂତ କହୁଛନ୍ତି—ମୁନୀଶ୍ୱରବୃନ୍ଦ ! ଏପରି କହି ସର୍ବେଶ୍ୱର ଭଗବାନ ରୁଦ୍ର ଶ୍ରୀହରିଙ୍କ ଅଙ୍ଗକୁ ସ୍ପର୍ଶ କରିଦେଲେ ଏବଂ ତତ୍‌କ୍ଷଣାତ୍ ତାଙ୍କ ଆଖି ଆଗରୁ ଅନ୍ତର୍ହିତ ହୋଇଗଲେ । ଭଗବାନ ବିଷ୍ଣୁ ମଧ୍ୟ ଶିବଙ୍କ ବଚନ ଶୁଣି ତଥା ସେହି ଶୁଭ ଚକ୍ର ପ୍ରାପ୍ତ କରି ମନେ ମନେ ବହୁତ ପ୍ରସନ୍ନ ହେଲେ । ଏହାପରେ ସେ ପ୍ରତିଦିନ ଶମ୍ଭୁଙ୍କ ଧ୍ୟାନପୂର୍ବକ ଏହି ସ୍ତୋତ୍ରକୁ ପାଠ କରିବାକୁ ଲାଗିଲେ । ସେ ତାଙ୍କ ଭକ୍ତଙ୍କୁ ମଧ୍ୟ ଏହି ସ୍ତୋତ୍ର ଉପଦେଶ ଦେଲେ । ତୁମ ପ୍ରଶ୍ନାନୁସାରେ ମୁଁ ଏ ପ୍ରସଙ୍ଗ ଶୁଣାଇ ଦେଲି । ଏହା ଶ୍ରୋତାଙ୍କ ପାପ ହରଣ କରିଥାଏ । ଏବେ ଆଉ କ'ଣ ଶୁଣିବାକୁ ଚାହୁଁଛ?

(ଅଧ୍ୟାୟ ୩୫-୩୬)

***

## ଶିବଙ୍କୁ ସନ୍ତୁଷ୍ଟ କରୁଥିବା ବ୍ରତମାନଙ୍କ ବିଷୟରେ ବର୍ଣ୍ଣନା, ଶିବରାତ୍ରି ବ୍ରତର ବିଧି ଓ ମହିମା

ଏହାପରେ ଋଷିମାନଙ୍କ ପ୍ରଶ୍ନାନୁସାରେ ସୂତ ଶିବଙ୍କ ଆରାଧନା ଦ୍ୱାରା ଉତ୍ତମ ଓ ମନୋବାଞ୍ଛିତ ଫଳ ପାଇଥିବା ଅନେକ ନାରୀ ଓ ପୁରୁଷଙ୍କ ନାମ କହିଲେ । ଏହାପରେ ଋଷିମାନେ ପୁଣି ପଚାରିଲେ— ''ହେ ବ୍ୟାସଶିଷ୍ୟ ! କେଉଁ ବ୍ରତରେ ସନ୍ତୁଷ୍ଟ ହୋଇ ଭଗବାନ ଶିବ ଉତ୍ତମ ସୁଖ ପ୍ରଦାନ କରନ୍ତି? ଯେଉଁ ବ୍ରତ ଅନୁଷ୍ଠାନ କଲେ ଭକ୍ତଜନ ଭୋଗ ଓ ମୋକ୍ଷ ଲାଭ କରି ପାରିବେ, ତାହାକୁ ଆପଣ ବିଶେଷରୂପେ ବର୍ଣ୍ଣନା କରନ୍ତୁ ।

ସୂତ କହିଲେ—ମହର୍ଷିଗଣ ! ତୁମେମାନେ ଯାହା କଛି ପଚାରିଲ, ସେହି କଥା ଏକଦା ବ୍ରହ୍ମା, ବିଷ୍ଣୁ ଓ ପାର୍ବତୀ ମଧ୍ୟ ଶିବଙ୍କୁ ପଚାରିଥିଲେ । ଏହାର ଉତ୍ତରରେ ଶିବ ଯାହା କିଛି କହିଥିଲେ, ତାହା ମୁଁ ତୁମ ଆଗରେ କହୁଛି ।

ଭଗବାନ ଶିବ କହିଲେ—ମୋର ଅନେକ ବ୍ରତ ଅଛି, ଯାହା ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ସେଥିମଧ୍ୟରୁ ଦଶଟି ମୁଖ୍ୟ, ଯାହାକୁ ଜାବାଲଶ୍ରୁତିରେ ବିଦ୍ୱାନମାନେ 'ଦଶ ଶୈବବ୍ରତ' କହିଛନ୍ତି । ଦ୍ୱିଜମାନେ ଯତ୍ନପୂର୍ବକ ଏହି ବ୍ରତମାନ ପାଳନ କରିବା ଉଚିତ । ହରେ ! ପ୍ରତ୍ୟେକ ଅଷ୍ଟମୀକୁ କେବଳ ରାତିରେ ଭୋଜନ କରିବେ । ବିଶେଷତଃ କୃଷ୍ଣପକ୍ଷ ଅଷ୍ଟମୀକୁ ଭୋଜନ ସର୍ବଥା ତ୍ୟାଗ କରିବେ । ଶୁକ୍ଳପକ୍ଷ ଏକାଦଶୀ ଦିନ ମଧ୍ୟ ଭୋଜନ କରିବେ ନାହିଁ । କିନ୍ତୁ କୃଷ୍ଣପକ୍ଷ ଏକାଦଶୀକୁ ରାତିରେ ମୋତେ ପୂଜା କରି ସାରିବାପରେ ଭୋଜନ କରିପାରିବେ । ଶୁକ୍ଳପକ୍ଷ ତ୍ରୟୋଦଶୀକୁ ରାତିରେ ଭୋଜନ କରିବା ଉଚିତ, କିନ୍ତୁ କୃଷ୍ଣପକ୍ଷ ଚତୁର୍ଦଶୀ ଦିନ ଶିବବ୍ରତଧାରୀଙ୍କ ପାଇଁ ଭୋଜନ ସର୍ବଥା ବର୍ଜିତ । ଉଭୟ ପକ୍ଷର ପ୍ରତ୍ୟେକ ସୋମବାର ଦିନ ପ୍ରଯତ୍ନପୂର୍ବକ କେବଳ ରାତିରେ ହିଁ ଭୋଜନ କରିବା ଉଚିତ । ଶିବ ବ୍ରତପରାୟଣ ଲୋକଙ୍କ ପାଇଁ ଏହା ଅନିବାର୍ଯ୍ୟ ନିୟମ । ଏ ସମସ୍ତ ବ୍ରତରେ ବ୍ରତର ପୂର୍ଣ୍ଣତା ପାଇଁ ନିଜ ଶକ୍ତି ଅନୁସାରେ ଶିବଭକ୍ତ ବ୍ରାହ୍ମଣଙ୍କୁ ଭୋଜନ କରାଇବା ଉଚିତ । ଦ୍ୱିଜମାନେ ଏ ସମସ୍ତ ବ୍ରତ ନିୟମପୂର୍ବକ ପାଳନ କରିବା ଉଚିତ । ଯେଉଁ ଦ୍ୱିଜ ଏହାକୁ ତ୍ୟାଗ କରନ୍ତି, ସେମାନେ ଚୋର ଅଟନ୍ତି । ଯେଉଁମାନେ ମୁକ୍ତିମାର୍ଗରେ ପ୍ରବୀଣ, ସେମାନେ ମୋକ୍ଷପ୍ରାପ୍ତିକାରକ ଚାରିଟି ବ୍ରତକୁ ନିୟମପୂର୍ବକ ପାଳନ କରିବା ଉଚିତ । ସେହି ଚାରିଟି ହେଲା—ଶିବଙ୍କ ପୂଜା, ରୁଦ୍ରମନ୍ତ୍ରଜପ, ଶିବମନ୍ଦିରରେ ଉପବାସ ତଥା କାଶୀରେ ମରଣ ।

ଏଗୁଡ଼ିକ ସନାତନ ମାର୍ଗ । ସୋମବାରଯୁକ୍ତ ଅଷ୍ଟମୀ ଓ କୃଷ୍ଣପକ୍ଷର ଚତୁର୍ଦ୍ଦଶୀ ଏହି ଦୁଇ ତିଥିରେ ଉପବାସପୂର୍ବିକ ବ୍ରତ ପାଳନ କଲେ ତାହା ନିଶ୍ଚିତରୂପେ ଭଗବାନ ଶିବଙ୍କୁ ସନ୍ତୁଷ୍ଟ କରିଥାଏ ।

ହରେ ! ଏ ଚାରୋଟି ଭିତରୁ ଶିବରାତ୍ରି ବ୍ରତ ସର୍ବାଧିକ ବଳବାନ୍ । ତେଣୁ ଭୋଗ ଓ ମୋକ୍ଷରୂପୀ ଫଳ ଚାହୁଁଥିବା ଲୋକମାନେ ମୁଖ୍ୟତଃ ଏହି ବ୍ରତ କରିବା ଉଚିତ । ମନୁଷ୍ୟଙ୍କ ପାଇଁ ଏହାଠାରୁ ବଳି ଅନ୍ୟ କୌଣସି ହିତକାରକ ବ୍ରତ ନାହିଁ । ଏହା ସମସ୍ତଙ୍କ ପାଇଁ ଧର୍ମର ଉତ୍ତମ ସାଧନ । ନିଷ୍କାମ ଅଥବା ସକାମଭାବ ରଖୁଥିବା ସମସ୍ତ ମନୁଷ୍ୟ, ବର୍ଣ୍ଣ, ଆଶ୍ରମ, ନାରୀ, ବାଳକ, ଦାସ, ଦାସୀ ତଥା ଦେବତା ଆଦି ସକଳ ଦେହଧାରୀଙ୍କ ପାଇଁ ଏହି ଶ୍ରେଷ୍ଠ ବ୍ରତ ହିତକାରକ ବୋଲି କୁହାଯାଇଛି ।

ମାଘମାସ* କୃଷ୍ଣପକ୍ଷରେ ପଡୁଥିବା ଶିବରାତ୍ରି ତିଥିର ବିଶେଷ ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି । ଯେଉଁ ଦିନ ଅର୍ଦ୍ଧରାତ୍ରି ସମୟ ପର୍ଯ୍ୟନ୍ତ ସେହି ତିଥି ବିଦ୍ୟମାନ ରହେ, ସେଦିନକୁ ବ୍ରତ ନିମନ୍ତେ ଗ୍ରହଣ କରିବା ଉଚିତ । ଶିବରାତ୍ରି କୋଟି କୋଟି ହତ୍ୟାର ପାପ ନାଶ କରିଥାଏ । କେଶବ ! ସେଦିନ ସକାଳୁ ଯେଉଁ କାର୍ଯ୍ୟ କରିବା ଆବଶ୍ୟକ, ତାହା ପ୍ରସନ୍ନତାପୂର୍ବିକ ତୁମକୁ କହିଦେଉଛି, ମନ ଦେଇ ଶୁଣ । ବୁଦ୍ଧିମାନ ବ୍ୟକ୍ତି ସକାଳୁ ଉଠି ଆନନ୍ଦମନରେ ସ୍ନାନାଦି ନିତ୍ୟକର୍ମ କରିବେ । ଆଳସ୍ୟ ତ୍ୟାଗ କରି ଶିବାଳୟକୁ ଯାଇ ବିଧିବତ୍ ଶିବଲିଙ୍ଗଙ୍କୁ ପୂଜା କରି ମୋତେ ନମସ୍କାର କରିବା ପରେ ଉତ୍ତମ ରୀତିରେ ସଂକଳ୍ପ କରିବେ ।

### ସଂକଳ୍ପ

ଦେବଦେବ ମହାଦେବ ନୀଳକଣ୍ଠ ନମୋଽସ୍ତୁ ତେ ।
କର୍ତ୍ତୁମିଚ୍ଛାମ୍ୟହଂ ଦେବ ଶିବରାତ୍ରିବ୍ରତଂ ତବ ॥
ତବ ପ୍ରଭାବାଦ୍ଦେବେଶ ନିର୍ବିଘ୍ନେନ ଭବେଦିତି ।
କାମାଦ୍ୟାଃ ଶତ୍ରବୋ ମାଂ ବୈ ପୀଡ଼ାଂ କୁର୍ବନ୍ତୁ ନୈବ ହି ॥

"ଦେବଦେବ ! ମହାଦେବ ! ନୀଳକଣ୍ଠ ! ଆପଣଙ୍କୁ ନମସ୍କାର । ହେ ଦେବ ! ମୁଁ ଆପଣଙ୍କ ଶିବରାତ୍ରି ବ୍ରତ ଅନୁଷ୍ଠାନ କରିବାକୁ ଚାହୁଁଛି । ଦେବେଶ୍ୱର ! ଆପଣଙ୍କ ପ୍ରଭାବରେ ଏହି ବ୍ରତ ନିର୍ବିଘ୍ନରେ ପୂର୍ଣ୍ଣ ହେଉ ଏବଂ କାମାଦି ଶତ୍ରୁ ମୋତେ ପୀଡ଼ା ନ ଦିଅନ୍ତୁ ।"

ଏପରି ସଂକଳ୍ପ କରି ପୂଜନ ସାମଗ୍ରୀ ସଂଗ୍ରହ କରିବେ ଏବଂ ଉତ୍ତମ ସ୍ଥାନରେ ଯେଉଁଠି ଶାସ୍ତ୍ରପ୍ରସିଦ୍ଧ ଶିବଲିଙ୍ଗ ଥିବ, ସେଠାକୁ ରାତିରେ ଯାଇ ସ୍ୱୟଂ ଉତ୍ତମ ବିଧିବିଧାନ ସମ୍ପାଦନ କରିବେ; ତା'ପରେ ଶିବଙ୍କ ଦକ୍ଷିଣ ବା ପଶ୍ଚିମ ଭାଗରେ ହାତପାଆନ୍ତାରେ ସୁନ୍ଦର ସ୍ଥାନରେ ସମସ୍ତ ପୂଜା ସାମଗ୍ରୀକୁ ସଜାଇ ରଖିବେ । ତା'ପରେ ସେଠାରେ ଆଉ ଥରେ ସ୍ନାନ କରିବେ । ସ୍ନାନ ପରେ ସୁନ୍ଦର ବସ୍ତ୍ର ଓ ଉପବୀତ ଧାରଣ କରି ତିନି ଥର ଆଚମନ କରିବା ପରେ ପୂଜା ଆରମ୍ଭ କରିବେ । ଯେଉଁ ମନ୍ତ୍ର ପଢ଼ି ଯେଉଁ ଦ୍ରବ୍ୟ ଦେବାର ବିଧାନ ନିୟତ ହୋଇଛି, ତାହାକୁ ଅନୁସରଣ କରି ପୂଜା କରିବେ । ବିନା ମନ୍ତ୍ରରେ ମହାଦେବଙ୍କ ପୂଜା କରିବା ଉଚିତ ନୁହେଁ । ଗୀତ, ବାଦ୍ୟ, ନୃତ୍ୟ ଇତ୍ୟାଦି ସହିତ ଭକ୍ତିଭାବରେ ରାତ୍ରିର ପ୍ରଥମ ପ୍ରହରର ପୂଜା ସାରି ବିଦ୍ୱାନ୍ ବ୍ୟକ୍ତି ମନ୍ତ୍ର ଜପିବେ । ଯଦି ମନ୍ତ୍ରଜ୍ଞ ବ୍ୟକ୍ତି ସେତେବେଳେ ଶ୍ରେଷ୍ଠ ପାର୍ଥିବଲିଙ୍ଗ ନିର୍ମାଣ କରିଥିବେ, ତେବେ ନିତ୍ୟକର୍ମ କରିବା ପରେ ପାର୍ଥିବଲିଙ୍ଗଙ୍କୁ ହିଁ ପୂଜା କରିବେ । ପ୍ରଥମେ ପାର୍ଥିବଲିଙ୍ଗ ନିର୍ମାଣ କରି ପରେ ତାହାକୁ ବିଧିବତ୍ ସ୍ଥାପନା କରିବ । ତା'ପରେ ପୂଜା ସାରି ନାନା ପ୍ରକାର ସ୍ତୋତ୍ରଦ୍ୱାରା ଭଗବାନ ବୃଷଭଧ୍ୱଜଙ୍କୁ

* ଶୁକ୍ଳପକ୍ଷରୁ ମାସ ଆରମ୍ଭ ଧରାଯିବାରୁ ଫାଲ୍‌ଗୁନ ମାସର କୃଷ୍ଣ ତ୍ରୟୋଦଶୀକୁ ମାଘମାସରେ ଅନ୍ତର୍ଗତ କରାଯାଇଛି । ଯଦି କୃଷ୍ଣପକ୍ଷରୁ ମାସ ଆରମ୍ଭ ଧରାଯାଏ, ତେବେ ଏଠାରେ ଉଲ୍ଲିଖିତ ମାଘକୁ ଫାଲ୍‌ଗୁନରୂପେ ଗ୍ରହଣ କରିବା ଉଚିତ ।

ସନ୍ତୁଷ୍ଟ କରିବେ । ବୁଦ୍ଧିମାନ୍ ବ୍ୟକ୍ତି ସେତିକିବେଳେ ଶିବରାତ୍ରି ବ୍ରତର ମାହାତ୍ମ୍ୟ ପାଠ କରିବେ । ଶ୍ରେଷ୍ଠ ଭକ୍ତ ନିଜ ବ୍ରତର ପୂର୍ଣ୍ଣତା ପାଇଁ ସେହି ମାହାତ୍ମ୍ୟକୁ ଶ୍ରଦ୍ଧାରେ ଶ୍ରବଣ କରିବେ । ରାତ୍ରିର ଚାରିପ୍ରହରରେ ଚାରିଟି ପାର୍ଥିବଲିଙ୍ଗ ନିର୍ମାଣ କରି ଆବାହନ ଠାରୁ ଆରମ୍ଭ କରି ବିସର୍ଜନ ପର୍ଯ୍ୟନ୍ତ କ୍ରମଶଃ ପୂଜା କରିବେ ଏବଂ ଉତ୍ସବ ସହିତ ପ୍ରସନ୍ନତାପୂର୍ବକ ଜାଗରଣ କରିବେ । ପ୍ରାତଃକାଳ ସ୍ନାନ କରି ପୁନଃ ସେଠାରେ ପାର୍ଥିବ ଶିବଙ୍କୁ ସ୍ଥାପନ ଓ ପୂଜନ କରିବେ । ଏହିପରି ବ୍ରତକୁ ପୂର୍ଣ୍ଣ କରି ଅବନତମସ୍ତକରେ ବାରମ୍ବାର ନମସ୍କାର କରି ଭଗବାନ ଶମ୍ଭୁଙ୍କୁ ଯୋଡ଼ହସ୍ତରେ ଏହିପରି ପ୍ରାର୍ଥନା କରିବେ ।

### ପ୍ରାର୍ଥନା ଓ ବିସର୍ଜନ

ନିୟମୋ ଯୋ ମହାଦେବ କୃତଶ୍ଚୈବ ତ୍ୱଦାଜ୍ଞୟା ।
ବିସୃଜ୍ୟତେ ମୟା ସ୍ୱାମିନ୍ ବ୍ରତଂ ଜାତମନୁତ୍ତମମ୍ ॥
ବ୍ରତେନାନେନ ଦେବେଶ ଯଥାଶକ୍ତିକୃତେନ ଚ ।
ସନ୍ତୁଷ୍ଟୋ ଭବ ଶର୍ବାଦ୍ୟ କୃପାଂ କୁରୁ ମମୋପରି ॥

"ମହାଦେବ ! ସ୍ୱାମିନ୍ ! ଆପଣଙ୍କ ଆଜ୍ଞାରେ ମୁଁ ଯେଉଁ ଉତ୍ତମ ବ୍ରତ ଗ୍ରହଣ କରିଥିଲି, ତାହା ପୂର୍ଣ୍ଣ ହୋଇଗଲା । ତେଣୁ ଏବେ ତାହାକୁ ବିସର୍ଜନ କରୁଛି । ଦେବେଶ୍ୱର! ଶର୍ବ ! ଯଥାଶକ୍ତି ମୁଁ କରିଥିବା ଏହି ବ୍ରତରେ ଆପଣ ସନ୍ତୁଷ୍ଟ ହୁଅନ୍ତୁ ଏବଂ ମୋ ଉପରେ କୃପା କରନ୍ତୁ ।"

ଏହାପରେ ଶିବଙ୍କୁ ପୁଷ୍ପାଞ୍ଜଳି ସମର୍ପିତ କରି ବିଧିପୂର୍ବକ ଦାନ ଦେବେ । ତା'ପରେ ଶିବଙ୍କୁ ନମସ୍କାର କରି ବ୍ରତସମ୍ବନ୍ଧୀୟ ନିୟମକୁ ବିସର୍ଜନ କରିଦେବେ । ନିଜ ଶକ୍ତି ଅନୁସାରେ ଶିବଭକ୍ତ ବ୍ରାହ୍ମଣଙ୍କୁ, ବିଶେଷତଃ ସନ୍ନ୍ୟାସୀମାନଙ୍କୁ ଭୋଜନ ଦେଇ ପୂର୍ଣ୍ଣରୂପେ ସନ୍ତୁଷ୍ଟ କରିବେ ଏବଂ ନିଜେ ବି ଭୋଜନ କରିବେ ।

ହରେ ! ଶିବରାତ୍ରିର ପ୍ରତ୍ୟେକ ପ୍ରହରରେ ଶ୍ରେଷ୍ଠ ଶିବଭକ୍ତ ଯେଉଁ ବିଧିରେ ବିଶେଷ ପୂଜା କରିବେ, ତାହା କହୁଛି, ଶୁଣ । ପ୍ରଥମ ପ୍ରହରରେ ପାର୍ଥିବଲିଙ୍ଗ ସ୍ଥାପନା କରି ଅନେକ ପ୍ରକାର ସୁନ୍ଦର ଉପଚାର ଦ୍ୱାରା ଭକ୍ତିଭାବରେ ପୂଜା କରିବେ । ପ୍ରଥମେ ଗନ୍ଧ, ପୁଷ୍ପ ଇତ୍ୟାଦି ପାଞ୍ଚଟି ଦ୍ରବ୍ୟ ଦ୍ୱାରା ମହାଦେବଙ୍କୁ ପୂଜା କରିବା ଉଚିତ । ଅର୍ପଣୀୟ ଦ୍ରବ୍ୟର ଯଥୋଚିତ ମନ୍ତ୍ର ଉଚ୍ଚାରଣ କରି ପୃଥକ୍ ପୃଥକ୍ ଭାବରେ ସେହି ଦ୍ରବ୍ୟମାନ ସମର୍ପଣ କରିବେ । ଏହା ପରେ ଶିବଙ୍କୁ ଜଳଧାରା ଅର୍ପଣ କରିବେ । ବିଦ୍ୱାନ୍ ପୁରୁଷ ଅର୍ପିତ ଦ୍ରବ୍ୟକୁ ଜଳଧାରା ଦ୍ୱାରା ହିଁ ଅପସାରିତ କରିବେ । ଜଳଧାରା ସଙ୍ଗେ ସଙ୍ଗେ ଶହେଆଠ ମନ୍ତ୍ର ଜପି ସେଠାରେ ନିର୍ଗୁଣ-ସଗୁଣରୂପ ଶିବଙ୍କୁ ପୂଜା କରିବେ । ଗୁରୁପ୍ରଦତ୍ତ ମନ୍ତ୍ରରେ, ନଚେତ୍ ନାମମନ୍ତ୍ରରେ ସଦାଶିବଙ୍କୁ ପୂଜା କରିବେ । ସୁଗନ୍ଧିତ ଚନ୍ଦନ, ଅଖଣ୍ଡିତ ଚାଉଳ (ଅକ୍ଷତ) ଓ କଳା ତିଳରେ ପରମାତ୍ମା ଶିବଙ୍କୁ ପୂଜା କରିବେ । ପଦ୍ମ ଓ କନିଅର ପୁଷ୍ପ ଅର୍ପଣ କରିବେ । ଆଠଟି ନାମରେ ପୁଷ୍ପ ଅର୍ପଣ କରିବେ । ଶିବଙ୍କର ସେହି ଆଠଟି ନାମ ହେଲା—ଭବ, ଶର୍ବ, ରୁଦ୍ର, ପଶୁପତି, ଉଗ୍ର, ମହାନ୍, ଭୀମ ଓ ଈଶାନ । ଏହି ନାମଗୁଡ଼ିକ ଆରମ୍ଭରେ ଶ୍ରୀ ଯୋଡ଼ି ଓ ଶେଷରେ ଚତୁର୍ଥୀ ବିଭକ୍ତି କରି ଅର୍ଥାତ୍ "ଶ୍ରୀଭବାୟ ନମଃ" ଇତ୍ୟାଦି ନାମମନ୍ତ୍ର ଉଚ୍ଚାରଣ କରି ଶିବଙ୍କୁ ପୂଜା କରିବେ । ପୁଷ୍ପ ସମର୍ପଣ ପରେ ଧୂପ, ଦୀପ ଓ ନୈବେଦ୍ୟ ନିବେଦନ କରିବେ । ପ୍ରଥମ ପ୍ରହରରେ ବିଦ୍ୱାନ୍ ପୁରୁଷ ନୈବେଦ୍ୟ ନିମନ୍ତେ ପକ୍ୱାନ୍ନ ପ୍ରସ୍ତୁତ କରି ରଖିଥିବେ । ତା'ପରେ ଶ୍ରୀଫଳଯୁକ୍ତ ବିଶେଷାର୍ଘ୍ୟ ଦେଇ ତାମ୍ବୂଳ ସମର୍ପଣ କରିବେ । ଏହାପରେ ନମସ୍କାର ଓ ଧ୍ୟାନ କରି ଗୁରୁଙ୍କ ଠାରୁ ପ୍ରାପ୍ତ ମନ୍ତ୍ର ଜପ କରିବେ । ଗୁରୁପ୍ରଦତ୍ତ ମନ୍ତ୍ର ଅଭାବରେ ପଞ୍ଚାକ୍ଷର (ନମଃ ଶିବାୟ) ମନ୍ତ୍ର ଜପରେ ଶିବଙ୍କୁ

ସନ୍ତୁଷ୍ଟ କରିବେ । ଧେନୁମୁଦ୍ରା* ଦେଖାଇ ଉତ୍ତମ ଜଳରେ ତର୍ପଣ କରିବେ । ତା'ପରେ ନିଜ ଶକ୍ତି ଅନୁସାରେ ପାଞ୍ଚଜଣ ବ୍ରାହ୍ମଣଙ୍କୁ ଭୋଜନ ଦେବାକୁ ସଙ୍କଳ୍ପ କରିବେ । ଏହାପରେ ପ୍ରଥମ ପ୍ରହର ବିତି ନ ଯିବା ପର୍ଯ୍ୟନ୍ତ ଉତ୍ସବ ଇତ୍ୟାଦି କରିବେ ।

ଦ୍ୱିତୀୟ ପ୍ରହର ଚାଲିଲେ ପୁନଃ ପୂଜା ନିମିତ୍ତ ସଙ୍କଳ୍ପ କରିବେ । ଅଥବା ଏକାବେଳକେ ଚାରି ପ୍ରହର ପୂଜା ପାଇଁ ସଙ୍କଳ୍ପ କରି ପ୍ରଥମ ପ୍ରହର ପରି ପୂଜା କରିବେ । ପ୍ରଥମେ ପୂର୍ବୋକ୍ତ ଦ୍ରବ୍ୟରେ ପୂଜା କରିସାରି ଜଳଧାରା ସମର୍ପିତ କରିବେ । ପ୍ରଥମ ପ୍ରହର ଅପେକ୍ଷା ଦୁଇଗୁଣ ମନ୍ତ୍ର ଜପି ଶିବଙ୍କୁ ପୂଜା କରିବେ । ପୂର୍ବୋକ୍ତ ତିଳ, ଯଅ ତଥା ପଦ୍ମଫୁଲରେ ଶିବଙ୍କୁ ଅର୍ଚ୍ଚନା କରିବେ । ବିଶେଷତଃ ବିଲ୍ୱପତ୍ରରେ ପରମେଶ୍ୱର ଶିବଙ୍କୁ ପୂଜା କରିବା ଉଚିତ । ଦ୍ୱିତୀୟ ପ୍ରହରରେ ଟଭା ଲେମ୍ବୁ ସହିତ ଅର୍ଘ୍ୟ ଦେଇ ଖିରି ନୈବେଦ୍ୟ ପ୍ରଦାନ କରିବେ । ଜନାର୍ଦ୍ଦନ ! ଏଥିରେ ପ୍ରଥମ ଥର ଅପେକ୍ଷା ଦୁଇଗୁଣ ମନ୍ତ୍ର ଆବୃତ୍ତି କରିବେ । ଏହାପରେ ବ୍ରାହ୍ମଣଭୋଜନ ପାଇଁ ସଙ୍କଳ୍ପ କରିବେ । ଅନ୍ୟ ସବୁ କଥା ପୂର୍ବ ପରି କରି ଦ୍ୱିତୀୟ ପ୍ରହର ବିତାଇବେ । ତୃତୀୟ ପ୍ରହର ଆରମ୍ଭ ହୋଇଗଲେ ପୂର୍ବବତ୍ ସବୁ ପୂଜା କରିବେ, କିନ୍ତୁ ଯଅ ସ୍ଥାନରେ ଗହମ ଉପଯୋଗ କରିବେ ଏବଂ ଅରଖ ଫୁଲ ଅର୍ପଣ କରିବେ । ଏହାପରେ ନାନା ପ୍ରକାର ଧୂପ ଓ ଦୀପ ଦେଇ ମାଲପୁଆ ନୈବେଦ୍ୟ ଅର୍ପଣ କରିବେ । ଏହା ସହିତ ନାନା ପ୍ରକାରର ଶାଗ ମଧ୍ୟ ଅର୍ପଣ କରିବେ । ଏଭଳି ଭାବରେ ପୂଜା କରିସାରି କର୍ପୂର ଆଳତି କରିବେ । ଡାଳିମ୍ବଫଳ ସଙ୍ଗେ ଅର୍ଘ୍ୟ ଦେବେ ଏବଂ ଦ୍ୱିତୀୟ ପ୍ରହର ଠାରୁ ଦୁଇଗୁଣ ମନ୍ତ୍ର ଜପିବେ । ଏହାପରେ ଦକ୍ଷିଣାସହିତ ବ୍ରାହ୍ମଣଭୋଜନ କରାଇବା ପାଇଁ ସଙ୍କଳ୍ପ କରିସାରି ତୃତୀୟ ପ୍ରହରର ଅବଶିଷ୍ଟ ସମୟକୁ ଉତ୍ସବ ଆଦିରେ ବିତାଇବେ । ଚତୁର୍ଥ ପ୍ରହର ଆସିବା ପରେ ତୃତୀୟ ପ୍ରହରର ପୂଜାକୁ ବିସର୍ଜନ କରିବେ । ପୁନଃ ଆବାହନ ଆଦି କରି ବିଧିବତ୍ ପୂଜା କରିବେ । ବିରି, ପ୍ରିୟଙ୍ଗୁ, ମୁଗ, ସପ୍ତଧାନ୍ୟ, ଶଙ୍ଖପୁଷ୍ପୀ ଓ ବିଲ୍ୱପତ୍ରରେ ପରମେଶ୍ୱର ଶିବଙ୍କୁ ପୂଜା କରିବେ । ସେ ପ୍ରହରରେ ନାନା ପ୍ରକାର ମିଠାଇ ନୈବେଦ୍ୟ ଅର୍ପଣ କରିବେ ଅଥବା ବିରିବରା ଇତ୍ୟାଦିରେ ଶିବଙ୍କୁ ସନ୍ତୁଷ୍ଟ କରିବେ । କଦଳୀ ତଥା ଅନ୍ୟାନ୍ୟ ବିବିଧ ଫଳ ସହିତ ଶିବଙ୍କୁ ଅର୍ଘ୍ୟ ଦେବେ । ତୃତୀୟ ପ୍ରହରର ଦୁଇଗୁଣ ମନ୍ତ୍ର ଜପିବେ ଏବଂ ବ୍ରାହ୍ମଣଭୋଜନର ସଙ୍କଳ୍ପ କରିବେ । ଗୀତ, ବାଦ୍ୟ ଓ ନୃତ୍ୟରେ ଶିବଙ୍କ ଆରାଧନାପୂର୍ବକ ସମୟ ବିତାଇବେ । ଭକ୍ତଜନ ସୂର୍ଯ୍ୟୋଦୟ ହେବା ପର୍ଯ୍ୟନ୍ତ ମହାନ୍ ଉତ୍ସବ କରିବେ । ଅରୁଣୋଦୟ ହୋଇଗଲେ ପୁନଃ ସ୍ନାନ କରି ନାନା ପ୍ରକାର ପୂଜା ଉପଚାର ଓ ଉପହାର ଦ୍ୱାରା ଶିବଙ୍କୁ ଅର୍ଚ୍ଚନା କରିବେ । ତା'ପରେ ନିଜର ଅଭିଷେକ କରାଇବେ, ନାନା ପ୍ରକାର ଦାନ

---

* ଧେନୁମୁଦ୍ରାର ଲକ୍ଷଣ ନିମ୍ନରେ ପ୍ରଦତ୍ତ ହେଲା–

ବାମାଙ୍ଗୁଳୀନାଂ ମଧ୍ୟେଷୁ ଦକ୍ଷିଣାଙ୍ଗୁଳିକାସ୍ତଥା । ସଂଯୋଜ୍ୟ ତର୍ଜନୀଂ ଦକ୍ଷାଂ ମଧ୍ୟମାନାମୟୋସ୍ତଥା ॥
ଦକ୍ଷମଧ୍ୟମୟୋର୍ବାମାଂ ତର୍ଜନୀଂ ଚ ନିୟୋଜୟେତ୍ । ବାମୟାନାମୟା ଦକ୍ଷକନିଷ୍ଠାଂ ଚ ନିୟୋଜୟେତ୍ ॥
ଦକ୍ଷୟାନାମୟା ବାମାଂ କନିଷ୍ଠାଂ ଚ ନିୟୋଜୟେତ୍ । ବିହିତାଧୋମୁଖୀ ଚୈଷା ଧେନୁମୁଦ୍ରା ପ୍ରକୀର୍ତ୍ତିତା ॥

"ବାମହାତର ଅଙ୍ଗୁଳି ସନ୍ଧିରେ ଡାହାଣ ହାତର ଅଙ୍ଗୁଳିଗୁଡ଼ିକୁ ସଂଯୁକ୍ତ କରି ଡାହାଣ ତର୍ଜନୀକୁ ବାମ ମଧ୍ୟମାରେ ଯୋଡ଼ିବେ । ଡାହାଣ ହାତର ମଧ୍ୟମାରେ ବାଆଁ ହାତର ତର୍ଜନୀକୁ ଯୋଡିବେ । ତା'ପରେ ବାମ ହାତର ଅନାମିକାରେ ଡାହାଣ ହାତର କନିଷ୍ଠାକୁ ଏବଂ ଡାହାଣ ହାତର ଅନାମିକା ସହିତ ବାମ ହାତର କନିଷ୍ଠାକୁ ସଂଯୁକ୍ତ କରିବେ । ଏହାପରେ ଏ ସମସ୍ତଙ୍କୁ ତଳମୁହାଁ କରିବେ । ଏହାକୁ ଧେନୁମୁଦ୍ରା କୁହାଯାଏ ।"

ଦେବେ ଓ ପ୍ରହର ସଂଖ୍ୟା ଅନୁସାରେ ବ୍ରାହ୍ମଣଙ୍କୁ ତଥା ସନ୍ନ୍ୟାସୀଙ୍କୁ ଅନେକ ପ୍ରକାର ଖାଦ୍ୟ ପରଷି ଭୋଜନ କରାଇବେ । ଏହାପରେ ଶିବଙ୍କୁ ନମସ୍କାର କରି ପୁଷ୍ପାଞ୍ଜଳି ଦେବେ ଓ ବୁଦ୍ଧିମାନ୍ ବ୍ୟକ୍ତି ଉତ୍ତମ ପ୍ରକାରେ ସ୍ତୁତି କରି ନିମ୍ନାଙ୍କିତ ମନ୍ତ୍ରରେ ପ୍ରାର୍ଥନା କରିବେ–

ତାବକସ୍ତ୍ୱଦ୍‌ଗତପ୍ରାଣସ୍ତ୍ୱଚ୍ଚିତ୍ତୋଽହଂ ସଦା ମୃଡ ।<br>
କୃପାନିଧେ ଇତି ଜ୍ଞାତ୍ୱା ଯଥା ଯୋଗ୍ୟଂ ତଥା କୁରୁ ॥<br>
ଅଜ୍ଞାନାଦ୍ ଯଦି ବା ଜ୍ଞାନାଜ୍ଜପପୂଜାଦିକଂ ମୟା ।<br>
କୃପାନିଧିତ୍ୱାଜ୍‌ଜ୍ଞାତ୍ୱୈବ ଭୂତନାଥ ପ୍ରସୀଦ ମେ ॥<br>
ଅନେନୈବୋପବାସେନ ଯଜ୍ଜାତଂ ଫଳମେବ ଚ ।<br>
ତେନୈବ ପ୍ରୀୟତାଂ ଦେବଃ ଶଙ୍କରଃ ସୁଖଦାୟକଃ ॥<br>
କୁଳେ ମମ ମହାଦେବ ଭଜନଂ ତେଽସ୍ତୁ ସର୍ବଦା ।<br>
ମାଭୂତ୍ତସ୍ୟ କୁଳେ ଜନ୍ମ ଯତ୍ର ତ୍ୱଂ ନହି ଦେବତା ॥

"ହେ ସୁଖଦାୟକ କୃପାନିଧାନ ଶିବ ! ମୁଁ ଆପଣଙ୍କର ଏବଂ ମୋର ପ୍ରାଣ ଆପଣଙ୍କ ଉପରେ ଅବଲମ୍ବିତ । ଏପରି ଜାଣି ଆପଣ ଯାହା ଉଚିତ ମନେ କରୁଛନ୍ତି, ତାହା କରନ୍ତୁ । ଭୂତନାଥ ! ମୁଁ ଜାଣିଶୁଣି ବା ଅଜାଣତରେ ଯେଉଁ ଜପ ଓ ପୂଜନ ଆଦି କରିଛି, ତାହାକୁ ବୁଝି ଆପଣ ଦୟାସାଗର ହୋଇଥିବାରୁ ମୋ ଉପରେ ପ୍ରସନ୍ନ ହୁଅନ୍ତୁ । ସେହି ଉପବାସବ୍ରତର ଯାହା ଫଳ ହୋଇଥିବ, ତଦ୍ଦ୍ୱାରା ସୁଖଦାୟକ ଭଗବାନ ଶଙ୍କର ମୋ ଉପରେ ପ୍ରସନ୍ନ ହୁଅନ୍ତୁ । ମହାଦେବ ! ମୋ କୁଳରେ ସଦା ଆପଣଙ୍କ ଭଜନ ହେଉଥାଉ । ଯେଉଁ କୁଳରେ ଆପଣ ଇଷ୍ଟଦେବ ହୋଇ ନ ଥିବେ, ସେଠାରେ ମୋର କଦାପି ଜନ୍ମ ନ ହେଉ ।"

ଏହିରୂପେ ପ୍ରାର୍ଥନା କରିବା ପରେ ଶିବଙ୍କୁ ପୁଷ୍ପାଞ୍ଜଳି ଦେଇ ବ୍ରାହ୍ମଣଙ୍କ ଠାରୁ ତିଳକ ଓ ଆଶୀର୍ବାଦ ଗ୍ରହଣ କରିବେ । ଏହାପରେ ଶମ୍ଭୁଙ୍କୁ ବିସର୍ଜନ କରିଦେବେ । ହେ ବିଷ୍ଣୁ! ଯେ ଏହି ପ୍ରକାରେ ବ୍ରତ କରେ, ତା'ଠାରୁ ମୁଁ ଦୂରରେ ରହେ ନାହିଁ । ଏହି ବ୍ରତର ଫଳକୁ ବର୍ଣ୍ଣନା କରାଯାଇ ପାରିବ ନାହିଁ । ମୋ ପାଖରେ ଏପରି କୌଣସି ବସ୍ତୁ ନାହିଁ, ଯାହା ମୁଁ ଶିବରାତ୍ରି ବ୍ରତ କରିଥିବା ଭକ୍ତକୁ ଦେଇ ନ ପାରିବି । ଯେଉଁ ବ୍ୟକ୍ତି ଅନାୟାସରେ ଏ ବ୍ରତ ପାଳନ କରିଥାଏ, ତା' ହୃଦୟରେ ଅବଶ୍ୟ ମୁକ୍ତିର ବୀଜ ବପନ ହୋଇଯାଇଛି ବୋଲି ଜାଣ । ମନୁଷ୍ୟ ପ୍ରତିମାସରେ ଭକ୍ତିପୂର୍ବକ ଶିବରାତ୍ରି ବ୍ରତ କରିବା ଉଚିତ । ଏହାପରେ ବ୍ରତ ଉଦ୍‌ଯାପନ କରି ମନୁଷ୍ୟ ସାଙ୍ଗୋପାଙ୍ଗ ଫଳ ଲାଭ କରେ । ଏହି ବ୍ରତ କରୁଥିବା ଉପାସକର ସମସ୍ତ ଦୁଃଖ ମୁଁ ଦୂର କରିଦିଏ ଏବଂ ତାକୁ ଭୋଗ, ମୋକ୍ଷ ଇତ୍ୟାଦି ସମସ୍ତ ମନୋବାଞ୍ଛିତ ଫଳ ପ୍ରଦାନ କରେ ।

ସୂତ କହୁଛନ୍ତି–ମହର୍ଷିଗଣ ! ଭଗବାନ ଶିବଙ୍କର ଏହି ପରମ ହିତକାରକ ଓ ଅଦ୍ଭୁତ ବଚନ ଶୁଣିସାରି ବିଷ୍ଣୁ ତାଙ୍କର ସ୍ୱଧାମକୁ ଫେରିଗଲେ । ଏହାପରେ ନିଜର ସର୍ବବିଧ କଲ୍ୟାଣ ଚାହୁଁଥିବା ଭକ୍ତଙ୍କ ମଧ୍ୟରେ ଏହି ଉତ୍ତମ ବ୍ରତର ପ୍ରଚାର ହୋଇଗଲା । ଏକଦା କେଶବ ନାରଦଙ୍କୁ ଏହି ଭୋଗ ଓ ମୋକ୍ଷ ପ୍ରଦାୟକ ଦିବ୍ୟ ଶିବରାତ୍ରି ବ୍ରତ ବିଷୟରେ ବର୍ଣ୍ଣନା କରିଥିଲେ ।

(ଅଧ୍ୟାୟ ୩୭-୩୮)



## ଶିବରାତ୍ରି ବ୍ରତର ଉଦ୍‌ଯାପନ ବିଧି

ଋଷି କହିଲେ–ସୂତ ମହାଭାଗ ! ଏବେ ଆମକୁ ଶିବରାତ୍ରି ବ୍ରତର ଉଦ୍‌ଯାପନ ବିଧି ବିଷୟରେ କୁହନ୍ତୁ, ଯାହା ପାଳନ କଲେ ସାକ୍ଷାତ୍ ଶିବ ନିଶ୍ଚିତରୂପେ ପ୍ରସନ୍ନ ହୁଅନ୍ତି ।

ସୂତ କହିଲେ–ଋଷିଗଣ ! ତୁମେମାନେ ଭକ୍ତିଭାବରେ ଶିବରାତ୍ରି ବ୍ରତର ଉଦ୍‌ଯାପନ ବିଧି

ଶୁଣ । ଏହାକୁ ପାଳନ କଲେ ବ୍ରତଟି ଅବଶ୍ୟ ପୂର୍ଣ୍ଣ ଫଳ ପ୍ରଦାନ କରିଥାଏ । ଅବିରତ ଚଉଦ ବର୍ଷ ପର୍ଯ୍ୟନ୍ତ ଶିବରାତ୍ରି ବ୍ରତ ପାଳନ କରିବା ଉଚିତ । ତ୍ରୟୋଦଶୀ ଦିନ ବଖତେ ଭୋଜନ କରି ଚତୁର୍ଦ୍ଦଶୀ ଦିନ ପୂର୍ଣ୍ଣ ଉପବାସ କରିବେ । ଶିବରାତ୍ରି ଦିନ ନିତ୍ୟକର୍ମ ସମ୍ପନ୍ନ କରି ଶିବାଳୟକୁ ଯାଇ ବିଧିପୂର୍ବକ ଶିବପୂଜା କରିବେ । ଏହାପରେ ସେଠାରେ ଯତ୍ନପୂର୍ବକ ଗୋଟିଏ ଦିବ୍ୟ ମଣ୍ଡଳ ତିଆରି କରିବେ, ଯାହାକି ତ୍ରିଲୋକରେ ଗୌରୀତିଳକ ନାମରେ ପ୍ରସିଦ୍ଧ । ତାହାର ମଧ୍ୟଭାଗରେ ଦିବ୍ୟ ଲିଙ୍ଗତୋଭଦ୍ର ମଣ୍ଡଳ ନିର୍ମାଣ କରିବେ ଅଥବା ମଣ୍ଡପ ଭିତରେ ସର୍ବତୋଭଦ୍ର ମଣ୍ଡଳ ନିର୍ମାଣ କରିବେ । ସେଠାରେ ପ୍ରାଜାପତ୍ୟ ନାମକ କଳଶମାନ ସ୍ଥାପନ କରିବା ଉଚିତ । ସେହି ଶୁଭ କଳଶଗୁଡ଼ିକରେ ବସ୍ତ୍ର, ଫଳ ଓ ଦକ୍ଷିଣା ଅର୍ପଣ ହୋଇଥିବା ଆବଶ୍ୟକ । ସେଗୁଡ଼ିକୁ ମଣ୍ଡପର ପାର୍ଶ୍ୱଭାଗରେ ଯତ୍ନପୂର୍ବକ ସ୍ଥାପିତ କରିବେ । ମଣ୍ଡପର ମଧ୍ୟଭାଗରେ ଗୋଟିଏ ସୁନାର ବା ତମ୍ବା ଆଦି ଅନ୍ୟ ଧାତୁର କଳଶ ସ୍ଥାପନ କରିବେ । ବ୍ରତୀ ବ୍ୟକ୍ତି ସେହି କଳଶ ଉପରେ ପାର୍ବତୀଙ୍କ ସମେତ ଶିବଙ୍କର ସୁବର୍ଣ୍ଣ ପ୍ରତିମା ରଖିବେ । ସେହି ପ୍ରତିମା ଗୋଟିଏ ପଳ ଅଥବା ଅଧା ପଳ ପରିମାଣର ହେବା ଉଚିତ, ନଚେତ୍ ନିଜ ସାମର୍ଥ୍ୟ ଅନୁସାରେ ପ୍ରତିମା ନିର୍ମାଣ କରିବେ । ବାମଭାଗରେ ପାର୍ବତୀଙ୍କର ଓ ଦକ୍ଷିଣଭାଗରେ ଶିବଙ୍କର ପ୍ରତିମା ସ୍ଥାପିତ କରି ରାତିରେ ତାଙ୍କୁ ପୂଜା କରିବେ । ଆଳସ୍ୟ ଛାଡ଼ି ପୂଜା କାର୍ଯ୍ୟ କରିବା ଉଚିତ । ସେହି କାର୍ଯ୍ୟ ପାଇଁ ଋତ୍ୱିଜଣ ଋତ୍ୱିଜଙ୍କ ସଙ୍ଗେ ଜଣେ ପବିତ୍ର ଆଚାର୍ଯ୍ୟଙ୍କୁ ବରଣ କରିବେ ଏବଂ ସେମାନଙ୍କ ଆଜ୍ଞା ନେଇ ଭକ୍ତିପୂର୍ବକ ଶିବଙ୍କୁ ପୂଜା କରିବେ । ରାତ୍ରିର ପ୍ରତ୍ୟେକ ପ୍ରହରରେ ପୃଥକ୍ ପୃଥକ୍ ପୂଜା କରି ରାତ୍ରି ଜାଗରଣ କରିବେ । ବ୍ରତୀ ବ୍ୟକ୍ତି ଭଗବତ୍ ସମ୍ବନ୍ଧୀୟ କୀର୍ତ୍ତନ, ଗୀତ, ନୃତ୍ୟ ଇତ୍ୟାଦିରେ ରାତି ବିତାଇବେ । ଏହିପରି ବିଧିବତ୍ ପୂଜାଦ୍ୱାରା ଶିବଙ୍କୁ ସନ୍ତୁଷ୍ଟ କରି ସକାଳେ ପୁନଃ ପୂଜନ କରିବା ପରେ ବିଧିପୂର୍ବକ ହୋମ କରିବେ ଏବଂ ଯଥାଶକ୍ତି ପ୍ରାଜାପତ୍ୟ ବିଧାନ କରିବେ । ତା'ପରେ ବ୍ରାହ୍ମଣମାନଙ୍କୁ ଭକ୍ତିଭାବରେ ଭୋଜନ କରାଇବେ ଓ ଯଥାଶକ୍ତି ଦାନ ଦେବେ ।

ଏହାପରେ ବସ୍ତ୍ର, ଅଳଂକାର ଓ ଆଭୂଷଣ ଦ୍ୱାରା ଋତ୍ୱିଜଦମ୍ପତିଙ୍କୁ ଅଳଂକୃତ କରି ସେମାନଙ୍କୁ ବିଧିପୂର୍ବକ ପୃଥକ୍ ପୃଥକ୍ ଦାନ ଦେବେ । ଏହାପରେ ଶିବଙ୍କ ପ୍ରସନ୍ନତା ଆଶାରେ ଆବଶ୍ୟକ ସାମଗ୍ରୀ ସହିତ ସବତ୍ସା ଧେନୁ ଆଚାର୍ଯ୍ୟଙ୍କୁ ଦାନ କରିବେ । ତା'ପରେ କଳଶ ଓ ମୂର୍ତ୍ତିକୁ ବସ୍ତ୍ର ସହିତ ବୃଷଭ ପିଠିରେ ରଖି ସମସ୍ତ ଅଳଙ୍କାର ସହିତ ଆଚାର୍ଯ୍ୟଙ୍କୁ ଅର୍ପଣ କରିଦେବେ । ଏହାପରେ କର ଯୋଡ଼ି ଅବନତମସ୍ତକରେ ମହାପ୍ରଭୁ ମହେଶ୍ୱରଙ୍କୁ ପ୍ରେମଗଦ୍‌ଗଦ ବାଣୀରେ ପ୍ରାର୍ଥନା କରିବେ ।

ପ୍ରାର୍ଥନା

ଦେବଦେବ ମହାଦେବ ଶରଣାଗତବତ୍ସଳ ।
ବ୍ରତେନାନେନ ଦେବେଶ କୃପାଂ କୁରୁ ମମୋପରି ॥
ମୟା ଭକ୍ତ୍ୟନୁସାରେଣ ବ୍ରତମେତତ୍ କୃତଂ ଶିବ ।
ନ୍ୟୂନଂ ସମ୍ପୂର୍ଣ୍ଣତାଂ ଯାତୁ ପ୍ରସାଦାତ୍ତବ ଶଙ୍କର ॥
ଅଜ୍ଞାନାଦ୍ ଯଦି ବା ଜ୍ଞାନାଜ୍ଜପପୂଜାଦିକଂ ମୟା ।
କୃତଂ ତଦସ୍ତୁ କୃପୟା ସଫଳଂ ତବ ଶଙ୍କର ॥

"ହେ ଦେବଦେବ ମହାଦେବ ! ହେ ଶରଣାଗତବତ୍ସଳ ! ହେ ଦେବେଶ୍ୱର ! ଏହି ବ୍ରତରେ ସନ୍ତୁଷ୍ଟ ହୋଇ ଆପଣ ମୋ ଉପରେ କୃପା କରନ୍ତୁ । ଶିବ-ଶଙ୍କର ! ମୁଁ ଭକ୍ତିଭାବରେ ଏ ବ୍ରତ ପାଳନ କରିଛି । ଏଥିରେ ଯାହା କିଛି ନ୍ୟୂନତା ରହିଯାଇଥିବ, ଆପଣଙ୍କ ପ୍ରସାଦରୁ ତାହା ପୂର୍ଣ୍ଣ ହୋଇଯାଉ । ହେ ଶଙ୍କର ! ମୁଁ ଅଜ୍ଞାନରେ ବା ଜାଣିବୁଝି ଯାହା କିଛି ପୂଜା କରିଛି, ତାହା ଆପଣଙ୍କ କୃପାରୁ ସଫଳ ହେଉ ।"

ଏପରି କହି ପରମାତ୍ମା ଶିବଙ୍କୁ ପୁଷ୍ପାଞ୍ଜଳି ଦେଇ ପୁନଃ ନମସ୍କାର ଓ ପ୍ରାର୍ଥନା କରିବେ । ଯେ ଏହି ବିଧିରେ ବ୍ରତ ପୂର୍ଣ୍ଣ କରିଥାଏ, ତା'ର ବ୍ରତରେ ଆଉ କିଛି ନ୍ୟୂନତା ରହିଯାଏ ନାହିଁ । ତାକୁ ନିଃସନ୍ଦେହରେ ମନୋବାଞ୍ଛିତ ଫଳ ମିଳିଥାଏ ।

(ଅଧ୍ୟାୟ ୩୯)

★★★

## ଅଜ୍ଞାତରେ ଶିବରାତ୍ରି ବ୍ରତ କରିଥିବା ଶବର ଉପରେ ଶିବଙ୍କ କୃପା

ଋଷିଗଣ ପଗ୍ଚରିଲେ–ସୂତ ମହାଭାଗ ! ପୂର୍ବକାଳରେ କିଏ ଏହି ଉତ୍ତମ ଶିବରାତ୍ରି ବ୍ରତ ପାଳନ କରିଥିଲା ଏବଂ ଅଜାଣତରେ ମଧ୍ୟ କେହି ଏ ବ୍ରତ ପାଳନ କରି କେଉଁ ଫଳ ପାଇଛି କି?

ସୂତ କହିଲେ–ଋଷିଗଣ ! ତୁମେମାନେ ଏହି ପ୍ରସଙ୍ଗ ଶୁଣ । ମୁଁ ଏ ବିଷୟରେ ଗୋଟିଏ ପ୍ରାଚୀନ ଇତିହାସ କହୁଛି; ଏହା ପାପନାଶକାରୀ । କୌଣସି ବନରେ ଗୋଟିଏ ଶବର ରହୁଥିଲା । ତାହାର ନାମ ଥିଲା ଗୁରୁଦ୍ରୁହ । ତାହାର କୁଟୁମ୍ବ ବଡ଼ ଥିଲା । ସେ ବଳବାନ୍ ଓ କ୍ରୂର ସ୍ୱଭାବର ଥିଲା ଏବଂ କ୍ରୂରତାପୂର୍ଣ୍ଣ କର୍ମରେ ତତ୍ପର ରହୁଥିଲା । ସେ ପ୍ରତିଦିନ ବନକୁ ଯାଇ ମୃଗମାନଙ୍କୁ ମାରୁଥିଲା ଏବଂ ସେଠାରେ ରହି ନାନା ପ୍ରକାର ଚୋରି କରୁଥିଲା । ସେ ବାଲ୍ୟକାଳରୁ କଦାପି କୌଣସି ଶୁଭକର୍ମ କରି ନ ଥିଲା । ଏହିରୂପେ ଉକ୍ତ ଦୁରାତ୍ମାର ଜୀବନର ଦୀର୍ଘକାଳ ବନରେ ଅତିବାହିତ ହୋଇସାରିଥିଲା । ଥରେ ବହୁତ ସୁନ୍ଦର ଓ ଶୁଭକାରକ ଶିବରାତ୍ରି ପଡ଼ିଲା । କିନ୍ତୁ ଘୋର ଜଙ୍ଗଲରେ ନିବାସ କରୁଥିବା ଦୁରାତ୍ମା ଶବରକୁ ଏଭଳି ବ୍ରତ ବିଷୟରେ କ'ଣ ଅବା ଜଣା! ସେଦିନ ଶବରର ପିତାମାତା ଓ ପତ୍ନୀ କ୍ଷୁଧାରେ ପୀଡ଼ିତ ହୋଇ ତାକୁ କିଛି ଆହାର ଯୋଗାଡ଼ କରି ଆଣିବାକୁ କହିଲେ ।

ସେମାନଙ୍କ କଥା ଶୁଣି ସେ ଅବିଳମ୍ବେ ଧନୁଶର ଧରି ଶିକାର କରିବାକୁ ବାହାରିଗଲା ଏବଂ ମୃଗଙ୍କୁ ଖୋଜି ଖୋଜି ବନରେ ବୁଲିଲା । ଦୈବଯୋଗକୁ ସେଦିନ ତାକୁ କୌଣସି ଶିକାର ମିଳିଲା ନାହିଁ ଏବଂ ସୂର୍ଯ୍ୟ ବି ଅସ୍ତ ହୋଇଗଲେ । ତା' ମନରେ ବହୁତ ଦୁଃଖ ହେଲା । ସେ ଭାବିଲା, ଏବେ ମୁଁ କ'ଣ କରିବି? କେଉଁଠିକି ଯିବି? ଆଜି ତ କିଛି ମିଳିଲା ନାହିଁ, ଘରେ ପିଲାମାନଙ୍କର ଓ ବାପାମାଆଙ୍କର କ'ଣ ହେବ? ମୋ ପତ୍ନୀର କ'ଣ ହେବ? ମୋତେ କିଛି ନା କିଛି ନିଶ୍ଚୟ ନେଇ ଯିବାକୁ ପଡ଼ିବ; ଖାଲି ହାତରେ ଫେରିବି ନାହିଁ । ଏପରି ଭାବି ବ୍ୟାଧ ଗୋଟିଏ ଜଳାଶୟ ପାଖକୁ ଗଲା । ସେଠାକୁ ପାଣି ପିଇବାକୁ ପ୍ରାଣୀମାନେ ଆସିଥାନ୍ତି । ସେ ମନେ ମନେ ଚିନ୍ତା କଲା, "ଏହି ଘାଟକୁ କୌଣସି ଜନ୍ତୁ ନିଶ୍ଚୟ ଆସିବ । ତାହାକୁ ମାରି ମୁଁ ଆନନ୍ଦରେ ଘରକୁ ନେଇଯିବି ।" ଏପରି ସ୍ଥିର କରି ସେ କିଛି ପାଣି ନେଇ ଗୋଟିଏ ବେଲଗଛ ଉପରେ ଚଢ଼ିଗଲା ଏବଂ ଗଛ ଉପରେ ବସି ରହିଲା । ତା' ମନରେ କେବଳ ଗୋଟିଏ ଚିନ୍ତା ଥିଲା ଯେ କେତେବେଳେ ଜୀବଟିଏ ଆସିବ ଓ ସେ ତାକୁ ମାରିବ । ସେ କ୍ଷୁଧାତୃଷାରେ ଆକୁଳ ହେଉଥିଲେ ମଧ୍ୟ ଏହି ଆଶାରେ ପ୍ରତୀକ୍ଷା କରି ସେଠାରେ ବସି ରହିଲା । ରାତିର ପ୍ରଥମ ପ୍ରହର ବେଳକୁ ଗୋଟିଏ ତୃଷାର୍ତ୍ତ ମୃଗୁଣୀ ଆସିଲା । ସେ ଚକିତ ହୋଇ ଏଣେତେଣେ ଚାହୁଁଥିଲା । ବ୍ରାହ୍ମଣବୃନ୍ଦ ! ମୃଗୁଣୀକୁ ଦେଖି ବ୍ୟାଧ ମନେ ମନେ ଆନନ୍ଦିତ ହେଲା । ସେ କାଳବିଳମ୍ବ ନ କରି ଧନୁରେ ଶର ଯୋଖିଲା । ଏପରି କରିବାବେଳେ ତା' ହାତ ବାଜି ପାଖରେ ରଖିଥିବା ଜଳପାତ୍ରରୁ କିଛି ଜଳ ଚହଲି ତଳକୁ ପଡ଼ିଗଲା ଏବଂ ଗଛରୁ ବେଲପତ୍ର ମଧ୍ୟ ଝଡ଼ିପଡ଼ିଲା । ସେହି ବୃକ୍ଷତଳେ ଶିବଲିଙ୍ଗ ଥିଲା । ଉକ୍ତ ଜଳ ଓ ବେଲପତ୍ରରେ

ଶିବଙ୍କର ପ୍ରଥମ ପ୍ରହରର ପୂଜା ସମ୍ପନ୍ନ ହୋଇଗଲା । ସେହି ପୂଜାର ମାହାତ୍ମ୍ୟରେ ବ୍ୟାଧର ଅନେକ ପାପ ଅବିଳମ୍ବେ ନଷ୍ଟ ହୋଇଗଲା । ବ୍ୟାଧର ହାତ ବାଜିବାର ଶବ୍ଦ ଶୁଣି ମୃଗୀ ଭୟରେ ଉପରକୁ ଗ୍ଲହିଁଲା । ବ୍ୟାଧକୁ ଦେଖିବାମାତ୍ରେ ସେ ବ୍ୟାକୁଳ ହୋଇଗଲା ଓ କହିଲା—

ମୃଗୀ କହିଲା—**ବ୍ୟାଧ ! ତୁମେ କ'ଣ କରିବାକୁ ଗ୍ଲହୁଁଛ? ମୋତେ ସତ ସତ କୁହ ।**

ହରିଣୀର କଥା ଶୁଣି ବ୍ୟାଧ କହିଲା—**ଆଜି ମୋର କୁଟୁମ୍ବ ଭୋକରେ ଅଛନ୍ତି । ତେଣୁ ତୋତେ ମାରି ସେମାନଙ୍କ ଭୋକ ମେଣ୍ଟାଇବି, ସେମାନଙ୍କୁ ସନ୍ତୁଷ୍ଟ କରିବି ।**



ବ୍ୟାଧର ନିଷ୍ଠୁର କଥା ଶୁଣି ଏବଂ ସେ ଧନୁରେ ଶର ସଂଯୋଗ କରିଥିବା ଦେଖି ମୃଗୀ ଭାବିଲା—''ଏବେ ମୁଁ କ'ଣ କରିବି? କେଉଁଠିକି ଯିବି? କିଛି ନା କିଛି ଉପାୟ କରିବାକୁ ପଡ଼ିବ ।'' ଏପରି ଚିନ୍ତା କରି ସେ କହିଲା—

ମୃଗୀ କହିଲା—**କିରାତ ! ମୋର ଏ ଅନର୍ଥକାରୀ ଶରୀରର ମାଂସରେ ଯଦି ତୁମକୁ ସୁଖ ମିଳିବ, ତେବେ ଏହାଠାରୁ ବଳି ମହାପୁଣ୍ୟର କଥା ଆଉ କ'ଣ ହୋଇପାରେ? ଉପକାରୀ ପ୍ରାଣୀକୁ ଏ ଜଗତରେ ଯେଉଁ ପୁଣ୍ୟ ମିଳେ, ତାହାକୁ ଶହେ ବର୍ଷରେ ମଧ୍ୟ ବର୍ଣ୍ଣନା କରାଯାଇ ପାରିବ ନାହିଁ ।* କିନ୍ତୁ ଗୋଟିଏ ଅସୁବିଧା କଥା ହେଲା ଯେ ମୋ ପିଲାମାନେ ଏବେ ମୋ ଆଶ୍ରମରେ ଅଛନ୍ତି । ଏବେ ମୋତେ ଛାଡ଼ିଦିଅ । ସେମାନଙ୍କୁ ମୁଁ ମୋ ଭଉଣୀ ପାଖରେ ଅଥବା ମୋ ସ୍ୱାମୀ ପାଖରେ ସମର୍ପି ଦେଇ ଫେରିଆସିବି । ବନେଚର ! ସେତେବେଳେ ମୋତେ ମାରିବ । ମୋ କଥାକୁ ମିଛ ଭାବ ନାହିଁ । ମୁଁ ନିଶ୍ଚୟ ତୁମ ପାଖକୁ ଫେରି ଆସିବି । ସତ୍ୟବଳରେ ହିଁ ପୃଥିବୀ ତିଷ୍ଠି ରହିଛି, ସତ୍ୟବଳରେ ହିଁ ସମୁଦ୍ର ଆପଣା ମର୍ଯ୍ୟାଦାରେ ରହିଛି ଏବଂ ସତ୍ୟବଳରେ ହିଁ ନିର୍ଝରରୁ ଜଳଧାରା ଝରୁଛି । ସତ୍ୟରେ ହିଁ ସବୁ କିଛି ସ୍ଥିତ ।**ᵠ**

ସୂତ କହୁଛନ୍ତି—ମୃଗୀ ଏପରି କହିବା ସତ୍ତ୍ୱେ ବ୍ୟାଧ ଯେତେବେଳେ ତା' କଥା ନ ମାନିଲା, ସେତେବେଳେ ସେ ଅତ୍ୟନ୍ତ ବିସ୍ମିତ ଓ ଭୟଭୀତ ହୋଇ ପୁଣି କହିଲା—

ମୃଗୀ କହିଲା—**ବ୍ୟାଧ ! ଶୁଣ, ମୁଁ ତୁମ ସମ୍ମୁଖରେ ଶପଥ କରୁଛି, ଘରକୁ ଯାଇ ପୁଣି ତୁମ ପାଖକୁ ନିଶ୍ଚୟ ଫେରିବି । ଯଦି ମୁଁ ନ ଫେରିବି, ତେବେ ବ୍ରାହ୍ମଣ ବେଦ ବିକିଲେ ଓ ତ୍ରିକାଳ ସନ୍ଧ୍ୟା ନ କଲେ ତାକୁ ଯେଉଁ ପାପ ଲାଗେ, ସ୍ୱାମୀର**

* ଉପକାରକରସ୍ୟୈବ ଯତ୍ ପୁଣ୍ୟଂ ଜାୟତେ ତ୍ୱିହ । ତତ୍ ପୁଣ୍ୟଂ ଶକ୍ୟତେ ନୈବ ବକ୍ତୁଂ ବର୍ଷଶତୈରପି ॥
(ଶି. ପୁ. କୋଟିରୁ. ସଂ. ୪୦।୨୬)

ᵠ ସ୍ଥିତା ସତ୍ୟେନ ଧରଣୀ ସତ୍ୟେନୈବ ଚ ବାରିଧିଃ । ସତ୍ୟେନ ଜଳଧାରାଶ୍ଚ ସତ୍ୟେ ସର୍ବଂ ପ୍ରତିଷ୍ଠିତମ୍ ॥
(ଶି. ପୁ. କୋଟିରୁ. ସଂ. ୪୦।୨୯)

ଆଜ୍ଞା ଉଲ୍ଲଙ୍ଘନ କରି ସ୍ୱେଚ୍ଛାନୁସାରେ କାର୍ଯ୍ୟ କରୁଥିବା ନାରୀକୁ ଯେଉଁ ପାପ ଲାଗେ, କୃତଘ୍ନ, ଶିବବିମୁଖ, ପରଦ୍ରୋହରତ, ଧର୍ମ-ଉଲ୍ଲଙ୍ଘନକାରୀ, ବିଶ୍ୱାସଘାତୀ ଓ ଛଳ କରୁଥିବା ଲୋକଙ୍କୁ ଯେଉଁ ପାପ ଲାଗେ, ସେହି ପାପ ମୋତେ ଲାଗିବ ।

ଏହିପରି ଅନେକ ପ୍ରକାର ଶପଥ କରିସାରି ମୃଗୁଣୀ ଯେତେବେଳେ ନୀରବରେ ଛିଡ଼ା ହୋଇଗଲା, ବ୍ୟାଧର ତା' ଉପରେ ବିଶ୍ୱାସ ଆସିଗଲା । ସେ କହିଲା–''ଆଚ୍ଛା, ଠିକ୍ ଅଛି, ତୁ ଘରକୁ ଯାଆ ।'' ଏହାପରେ ମୃଗୁଣୀ ଆନନ୍ଦରେ ପାଣି ପିଇସାରି ତା'ର ଆଶ୍ରମ-ମଣ୍ଡଳକୁ ଚାଲିଗଲା । ଏହିରୂପେ ରାତ୍ରିର ପ୍ରଥମ ପ୍ରହରଟି ବ୍ୟାଧର ଜାଗରଣରେ ବିତିଗଲା । ଏହାପରେ ପୂର୍ବୋକ୍ତ ମୃଗୁଣୀର ଭଉଣୀ ମଧ୍ୟ ତା'ର ବାଟ ଚାହିଁ ଚାହିଁ ସେଠାକୁ ଜଳ ପିଇବାକୁ ଆସିଲା । ତାହାକୁ ଦେଖି ବ୍ୟାଧ ପୂର୍ବପରି ପୁଣି ଥରେ ତୂଣୀରରୁ ଶର ବାହାର କଲା । ଏପରି କରିବା ବେଳେ ପୁଣି ଥରେ କିଛି ଜଳ ଓ ବେଲପତ୍ର ଶିବଙ୍କ ମୁଣ୍ଡ ଉପରେ ପଡ଼ିଗଲା । ଏହାଦ୍ୱାରା ଶିବଙ୍କର ଦ୍ୱିତୀୟ ପ୍ରହରର ପୂଜା ସମ୍ପନ୍ନ ହୋଇଗଲା । ଯଦିଓ ଏହା ଅକସ୍ମାତ୍ ହୋଇଥିଲା, ତଥାପି ଏହା ବ୍ୟାଧ ପାଇଁ ସୁଖଦାୟକ ହେଲା । ବ୍ୟାଧ ଶରସନ୍ଧାନ କରିଥିବାର ଦେଖି ମୃଗୀ ପଚାରିଲା–''ବନେଚର ! ଏ କ'ଣ କରୁଛ?'' ବ୍ୟାଧ ପୂର୍ବପରି ଉତ୍ତର ଦେଲା–''ମୁଁ ମୋର ଭୋକିଲା କୁଟୁମ୍ବଙ୍କ ଉଦର ପୂରଣ କରିବା ପାଇଁ ତୋତେ ମାରିବି ।''

ଏହା ଶୁଣି ମୃଗୀ କହିଲା–ବ୍ୟାଧ ! ମୋ କଥା ଶୁଣ । ମୁଁ ଧନ୍ୟ ହୋଇଗଲି । ମୋର ଦେହ ଧାରଣ କରିବା ସଫଳ ହୋଇଗଲା; କାରଣ ଏହି ଅନିତ୍ୟ ଶରୀର ଦ୍ୱାରା ଆଜି କାହାର ଉପକାର ହେବାକୁ ଯାଉଛି । କିନ୍ତୁ ମୋର ଛୋଟ ଛୋଟ ପିଲା ଘରେ ଅଛନ୍ତି । ତେଣୁ ମୁଁ ଥରେ ଯାଇ ସେମାନଙ୍କୁ ମୋ ସ୍ୱାମୀ ପାଖରେ ସମର୍ପି ଦେଇ ଆସେ, ତା'ପରେ ତୁମ ପାଖକୁ ଫେରି ଆସିବି ।

ବ୍ୟାଧ କହିଲା–ତୋ କଥା ଉପରେ ମୋର ବିଶ୍ୱାସ ହେଉନି । ମୁଁ ତୋତେ ନିଶ୍ଚୟ ମାରିବି, ଏଥିରେ ସନ୍ଦେହ ନାହିଁ ।

ଏହା ଶୁଣି ହରିଣୀ ଭଗବାନ ବିଷ୍ଣୁଙ୍କ ନାମରେ ଶପଥ କରି କହିଲା–''ବ୍ୟାଧ ! ଯାହା କିଛି ମୁଁ କହୁଛି, ଶୁଣ । ଯଦି ମୁଁ ଫେରି ନ ଆସେ, ତେବେ ମୋର ସମସ୍ତ ପୁଣ୍ୟ ନଷ୍ଟ ହୋଇଯିବ; କାରଣ ଯେ କଥା ଦେଇ ସେଥିରୁ ଓହରିଯାଏ, ସେ ତା'ର ସମସ୍ତ ପୁଣ୍ୟ ହାରିଯାଏ । ଯେଉଁ ପୁରୁଷ ତା'ର ବିବାହିତା ସ୍ତ୍ରୀକୁ ଛାଡ଼ି ଅନ୍ୟ ସ୍ତ୍ରୀ ପାଖକୁ ଯାଏ, ଯେ ବୈଦିକ ଧର୍ମକୁ ଉଲ୍ଲଙ୍ଘନ କରି କପୋଳ-କଳ୍ପିତ ଧର୍ମ ଅନୁସାରେ ଚାଲେ, ଯେ ଭଗବାନ ବିଷ୍ଣୁଙ୍କ ଭକ୍ତ ହୋଇ ଶିବଙ୍କୁ ନିନ୍ଦା କରେ, ଯେ ପିତାମାତାଙ୍କ ମୃତ୍ୟୁ ତିଥିରେ ଶ୍ରାଦ୍ଧାଦି କରେ ନାହିଁ ଏବଂ ଯେ ବହୁତ ସନ୍ତାପପୂର୍ବକ ନିଜେ ଦେଇଥିବା ବଚନକୁ ପୂର୍ଣ୍ଣ କରେ, ଏପରି ଲୋକମାନଙ୍କୁ ଯେଉଁ ପାପ ଲାଗେ, ସେହି ପାପ ମୋତେ ମଧ୍ୟ ଲାଗିବ, ଯଦି ମୁଁ ଫେରି ନ ଆସିବି ।''

ସୂତ କହୁଛନ୍ତି–ତା' ମୁଖରୁ ଏପରି ବାକ୍ୟ ଶୁଣି ବ୍ୟାଧ ତାକୁ ଯିବାକୁ ଅନୁମତି ଦେଇଦେଲା । ଏହାଫଳରେ ଦ୍ୱିତୀୟ ହରିଣୀ ମଧ୍ୟ ଜଳ ପିଇସାରି ସହର୍ଷ ଆପଣା ଆଶ୍ରମକୁ ଚାଲିଗଲା । ଇତିମଧ୍ୟରେ ରାତ୍ରିର ଦ୍ୱିତୀୟ ପ୍ରହର ମଧ୍ୟ ବ୍ୟାଧର ଜାଗରଣରେ ବିତିଗଲା । ତୃତୀୟ ପ୍ରହର ପ୍ରବେଶ କଲା । ହରିଣୀର ଆସିବାରେ ବିଳମ୍ବ ହେଉଥିବା ଅନୁଭବ କରି ବ୍ୟାଧ ତାହାକୁ ଖୋଜିବାକୁ ଏଣେତେଣେ ଚାହିଁଲା । ଏତିକି ବେଳେ ପାଣିଘାଟର ରାସ୍ତାରେ ସେ ଗୋଟିଏ ହରିଣକୁ ଦେଖିବାକୁ ପାଇଲା । ହରିଣଟି ଖୁବ୍ ହୃଷ୍ଟପୁଷ୍ଟ ଥିଲା । ତାହାକୁ ଦେଖି ବ୍ୟାଧ ମନେ ମନେ ବହୁତ ଆନନ୍ଦିତ ହେଲା । ସେ ଧନୁରେ

ଶର ସଂଯୋଗ କରି ତାକୁ ମାରିବାକୁ ଉଦ୍ୟତ ହେଲା । ତା'ର ପ୍ରାରବ୍ଧବଶତଃ ପୁଣି କିଛି ପାଣି ଓ ବେଲପତ୍ର ଶିବଲିଙ୍ଗ ଉପରେ ପଡ଼ିଲା, ଯଦ୍ଦ୍ୱାରା ତା'ର ସୌଭାଗ୍ୟରୁ ଶିବଙ୍କର ତୃତୀୟ ପ୍ରହରର ପୂଜା ସମ୍ପନ୍ନ ହୋଇଗଲା । ଏହିରୂପେ ଭଗବାନ ତା' ପ୍ରତି ଦୟା ଦେଖାଇଲେ । ପତ୍ରାଦି ପଡ଼ିବାର ଶବ୍ଦ ଶୁଣି ମୃଗଟି ବ୍ୟାଧ ଆଡ଼କୁ ଚାହିଁଲା ଏବଂ ପଚାରିଲା—"ଏ କ'ଣ କରୁଛ?" ବ୍ୟାଧ ଉତ୍ତର ଦେଲା—"ମୁଁ ମୋ କୁଟୁମ୍ବକୁ ଭୋଜନ ଦେବା ପାଇଁ ତୋତେ ବଧ କରିବି ।" ବ୍ୟାଧର କଥା ଶୁଣି ହରିଣ ମନେ ମନେ ବହୁତ ଖୁସୀ ହେଲା ଏବଂ ବ୍ୟାଧକୁ କହିଲା—

ହରିଣ କହିଲା—**ମୁଁ ଧନ୍ୟ । ମୋର ଶରୀର ହୃଷ୍ଟପୁଷ୍ଟ ହେବାଟା ଆଜି ସଫଳ ହୋଇଗଲା । କାରଣ ମୋ ଶରୀରଦ୍ୱାରା ତୁମମାନଙ୍କୁ ତୃପ୍ତି ମିଳିବ । ଯାହାର ଶରୀର ପରୋପକାରରେ ଲାଗେ ନାହିଁ, ତା'ର ସବୁକିଛି ବୃଥା । ସାମର୍ଥ୍ୟ ଥାଇ ମଧ୍ୟ ଯେ ପରୋପକାର କରେ ନାହିଁ, ତାହାର ସେହି ସାମର୍ଥ୍ୟ ବୃଥାରେ ନଷ୍ଟ ହୋଇଯାଏ ଏବଂ ସେ ପରଲୋକରେ ନରକଗାମୀ ହୁଏ ।* କିନ୍ତୁ ଏବେ ଥରେମାତ୍ର ମୋତେ ଘରକୁ ଯିବାକୁ ଦିଅ । ମୁଁ ମୋ ପିଲାଙ୍କୁ ତାଙ୍କ ମାଆ ପାଖରେ ସମର୍ପି ଦେଇ ଓ ସେମାନଙ୍କୁ ସାନ୍ତ୍ୱନା ଦେଇ ଏଠାକୁ ଫେରିଆସିବି ।**

ସେ ଏପରି କହିବାରୁ ବ୍ୟାଧ ମନେ ମନେ ବିସ୍ମିତ ହେଲା । ତାହାର ହୃଦୟ କିଛି କିଛି ଶୁଦ୍ଧ ହୋଇ ଆସିଥିଲା ଏବଂ ତାହାର ପାପପୁଞ୍ଜ ମଧ୍ୟ ନଷ୍ଟ ହୋଇ ସାରିଥିଲା । ତେଣୁ ସେ କହିଲା—

ବ୍ୟାଧ କହିଲା—**ଯେତେ ପ୍ରାଣୀ ଏଠାକୁ ଆସିଲେ, ସମସ୍ତେ ତୋରି ପରି ମିଠା ମିଠା କଥା କହି ଚାଲିଗଲେ । ଏପର୍ଯ୍ୟନ୍ତ ସେହି ଠକମାନେ ଫେରିଲେ ନାହିଁ । ମୃଗ ! ତୁ ମଧ୍ୟ ସେମାନଙ୍କ ପରି ଏବେ ସଂକଟରେ ପଡ଼ିଛୁ ବୋଲି ମିଛ କହି ଚାଲିଯିବାକୁ ଚାହୁଁଛୁ! ତେବେ ଆଜି ମୋର ଜୀବନନିର୍ବାହ କେମିତି ହେବ?**

ମୃଗ କହିଲା—**ବ୍ୟାଧ ! ମୁଁ ଯାହା କହୁଛି, ଶୁଣ । ମୁଁ ଅସତ୍ୟ କହୁନି । ସମଗ୍ର ସଚରାଚର ବ୍ରହ୍ମାଣ୍ଡ ସତ୍ୟରେ ହିଁ ପ୍ରତିଷ୍ଠିତ । ଯେ ମିଥ୍ୟା କହେ, ତାହାର ପୁଣ୍ୟ ସେହିକ୍ଷଣି ନଷ୍ଟ ହୋଇଯାଏ । ତଥାପି ଶବର ! ତୁମେ ମୋର ସତ୍ୟ ପ୍ରତିଜ୍ଞା ଶୁଣ । ମୁଁ ଯଦି ଫେରି ନ ଆସିବି, ତେବେ ସନ୍ଧ୍ୟାକାଳରେ ମୈଥୁନ କଲେ, ଶିବରାତ୍ରି ଦିନ ଭୋଜନ କଲେ, ମିଥ୍ୟା ସାକ୍ଷୀ ଦେଲେ, ପର ଅମାନତକୁ ମାଡ଼ିବସିଲେ ଯେଉଁ ପାପ ଲାଗେ ଏବଂ ସନ୍ଧ୍ୟା ନ କଲେ ଦ୍ୱିଜକୁ ଯେଉଁ ପାପ ଲାଗେ, ସେହି ପାପ ମୋତେ ଲାଗିବ । ଯାହା ମୁଖରୁ କଦାପି ଶିବ ନାମ ବାହାରେ ନାହିଁ, ଯେ ସାମର୍ଥ୍ୟ ଥିଲେ ସୁଦ୍ଧା ପରୋପକାର କରେ ନାହିଁ, ଶିବପର୍ବ ଦିନ ବେଲ ତୋଳେ, ଅଭକ୍ଷ୍ୟଭକ୍ଷଣ କରେ ଏବଂ ଶିବଙ୍କୁ ପୂଜା ନ କରି ଓ ଭସ୍ମ ନ ଲଗାଇ ଭୋଜନ କରେ, ସେମାନଙ୍କୁ ଯେଉଁ ପାପ ଲାଗେ, ସେହି ପାପ ମୋତେ ଲାଗିବ, ଯଦି ମୁଁ ଫେରି ନ ଆସିବି ।**

ସୂତ କହୁଛନ୍ତି—**ତା' କଥା ଶୁଣି ବ୍ୟାଧ କହିଲା—"ଯାଆ, ଶୀଘ୍ର ଫେରି ଆସିବୁ ।" ବ୍ୟାଧ ଏପରି କହିବାରୁ ମୃଗ ପାଣି ପିଇସାରି ଚାଲିଗଲା । ସେମାନେ ସମସ୍ତେ ଆଶ୍ରମରେ ମେଳ ହେଲେ । ତିନିହେଁ ପ୍ରତିଜ୍ଞାବଦ୍ଧ ହୋଇଥିଲେ । ସମସ୍ତେ ପରସ୍ପରର ବୃତ୍ତାନ୍ତକୁ ଭଲଭାବରେ ବୁଝିବା ପରେ ସତ୍ୟର ପାଶରେ ବାନ୍ଧି ହୋଇଥିବାରୁ ହରିଣ ଓ ହରିଣୀ ତିନିହେଁ ସେଠାକୁ ଯିବାକୁ ସ୍ଥିର**

* ଯୋ ବୈ ସାମର୍ଥ୍ୟଯୁକ୍ତଶ୍ଚ ନୋପକାରଂ କରୋତି ବୈ । ତତ୍ସାମର୍ଥ୍ୟଂ ଭବେଦ୍ ବ୍ୟର୍ଥଂ ପରତ୍ର ନରକଂ ବ୍ରଜେତ୍ ॥
(ଶି. ପୁ. କୋଟିରୁ. ସଂ. ୪୦।୫୭)

କଲେ । ସେମାନେ ପିଲାମାନଙ୍କୁ ଆଶ୍ୱାସନା ଦେଇ ସେଠାକୁ ଯିବାକୁ ବାହରିଲେ । ଏତିକିବେଳେ ବଡ଼ ମୃଗୁଣୀ ତା' ସ୍ୱାମୀକୁ କହିଲା—''ସ୍ୱାମୀ ! ତୁମ ବିନା ପିଲାମାନେ କେମିତି ରହିବେ? ମୁଁ ଯେହେତୁ ପ୍ରଥମେ ସେଠାରେ ପ୍ରତିଜ୍ଞା କରିଛି, ତେଣୁ କେବଳ ମୁଁ ଯିବି । ତୁମେ ଦୁହେଁ ଏଠାରେ ରୁହ ।'' ତା' କଥା ଶୁଣି ଛୋଟ ମୃଗୁଣୀ କହିଲା— ''ନାନୀ ! ମୁଁ ତୋର ସେବିକା, ତେଣୁ ମୁଁ ଆଜି ବ୍ୟାଧ ପାଖକୁ ଯାଉଛି । ତୁ ଏଇଠି ରହ ।'' ଏକଥା ଶୁଣି ମୃଗ କହିଲା—''ମୁଁ ସେଠାକୁ ଯାଉଛି; ତୁମେ ଦୁହେଁ ଏଠାରେ ରୁହ । କାରଣ ମାଆ ହିଁ ପିଲାମାନଙ୍କର ରକ୍ଷା କରି ପାରେ ।'' ସ୍ୱାମୀର କଥା ଶୁଣି ମଧ୍ୟ ମୃଗୁଣୀ ଦୁହେଁ ଧର୍ମଦୃଷ୍ଟିରୁ ତାହାକୁ ଗ୍ରହଣ କଲେ ନାହିଁ । ସେ ଦୁହେଁ ସ୍ୱାମୀକୁ ପ୍ରେମପୂର୍ବକ ବୁଝାଇ କହିଲେ—''ସ୍ୱାମୀ ବିନା ଏ ଜୀବନକୁ ଧିକ୍ ।'' ଏହାପରେ ସେମାନେ ସମସ୍ତେ ପିଲାମାନଙ୍କୁ ସାନ୍ତ୍ୱନା ଦେଇ ସେମାନଙ୍କୁ ପଡ଼ୋଶୀଙ୍କ ହାତରେ ସମର୍ପି ଦେଲେ ଏବଂ ଶୀଘ୍ର ଶୀଘ୍ର ବ୍ୟାଧ ନିକଟକୁ ଯିବାକୁ ବାହାରିଲେ । ସେମାନେ ବାହାରିବାରୁ ସେମାନଙ୍କ ପିଲାମାନେ ମଧ୍ୟ ପଛେ ପଛେ ଗ୍ଲିଲେ । ସେମାନେ ସ୍ଥିର କରି ସାରିଥିଲେ ଯେ ବାପମାଆଙ୍କର ଯାହା ହେବ, ସେମାନଙ୍କର ମଧ୍ୟ ସେଇଆ ହେବା ଉଚିତ । ଏଣେ ବ୍ୟାଧ ସେମାନଙ୍କ ବାଟ ଗ୍ଳହିଁ ବସିଥିଲା । ସେମାନେ ସମସ୍ତେ ଏକସଙ୍ଗରେ ଆସୁଥିବା ଦେଖି ବ୍ୟାଧ ମନରେ ଆନନ୍ଦର ଲହରୀ ଖେଳିଗଲା । ସେ ଧନୁରେ ଶର ଯୋଖିଲା । ସେତିକିବେଳେ ପୁଣି ଥରେ ପାଣି ଓ ବେଲପତ୍ର ଶିବଙ୍କ ଉପରେ ପଡ଼ିଲା । ଏହାଦ୍ୱାରା ଶିବଙ୍କର ଚତୁର୍ଥ ପ୍ରହରର ପୂଜା ସମ୍ପନ୍ନ ହୋଇଗଲା । ବ୍ୟାଧର ସମସ୍ତ ପାପ ଅବିଳମ୍ବେ ନଷ୍ଟ ହୋଇଗଲା । ଏତିକିବେଳେ ମୃଗ ଓ ମୃଗୁଣୀ ଦୁହେଁ କହିଲେ—''ବ୍ୟାଧଶିରୋମଣେ ! ଶୀଘ୍ର କୃପା କରି ଆମ୍ଭମାନଙ୍କ ଶରୀରକୁ ସାର୍ଥକ କର ।''

ସେମାନଙ୍କ କଥା ଶୁଣି ବ୍ୟାଧ ଅତ୍ୟନ୍ତ ଆଶ୍ଚର୍ଯ୍ୟରେ ପଡ଼ିଗଲା । ଶିବପୂଜା ପ୍ରଭାବରେ ତାହାକୁ ଅକସ୍ମାତ୍ ଦୁର୍ଲଭ ଜ୍ଞାନ ଲାଭ ହେଲା । ସେ ଭାବିଲା—''ଏ ମୃଗମାନେ ଜ୍ଞାନହୀନ ପଶୁ ହୋଇଥିଲେ ମଧ୍ୟ ଧନ୍ୟ, ଏମାନେ ଅତ୍ୟନ୍ତ



ଆଦରଣୀୟ; କାରଣ ନିଜ ଶରୀରଦ୍ୱାରା ଏମାନେ ପରୋପକାର କରିବାକୁ ଗ୍ଳହାନ୍ତି । ମୁଁ ମଣିଷ ଜନ୍ମ ପାଇ ମଧ୍ୟ କେଉଁ ପୁରୁଷାର୍ଥ ବା ସାଧିତ କଲି? ଅନ୍ୟର ଶରୀରକୁ କଷ୍ଟ ଦେଇ ନିଜ ଶରୀରକୁ ହିଁ ତ ପୋଷିଲି ! ପ୍ରତିଦିନ ଅନେକ ପ୍ରକାର ପାପ କରି କେବଳ ନିଜ କୁଟୁମ୍ବ ପାଳନ କଲି । ହାୟ ! ଏପରି ପାପ କରିବା ହେତୁ ମୋର କେଉଁ ଗତି ହେବ କେଜାଣି? ଜନ୍ମଠାରୁ ଆଜି ପର୍ଯ୍ୟନ୍ତ ମୁଁ ଯେତେ ପାପ କରିଛି, ଏବେ ସେସବୁ ଗୋଟି ଗୋଟି ହୋଇ ମନେ ପଡ଼ୁଛି । ମୋ ଜୀବନକୁ ଧିକ୍ ।'' ଏଭଳି ଜ୍ଞାନ ଜାଗ୍ରତ ହେବାରୁ ବ୍ୟାଧ

ସେମାନଙ୍କୁ ଶର ମାରିଲା ନାହିଁ । ସେ କହିଲା— ''ଶ୍ରେଷ୍ଠ ମୃଗଗଣ ! ତୁମେମାନେ ଫେରିଯାଅ, ତୁମର ଜୀବନ ଧନ୍ୟ ।''

ବ୍ୟାଧ ଏପରି କହିବାରୁ ଭଗବାନ ଶିବ ପ୍ରସନ୍ନ ହୋଇଗଲେ । ସେ ବ୍ୟାଧକୁ ନିଜ ସମ୍ମାନିତ ତଥା ପୂଜିତ ସ୍ୱରୂପରେ ଦର୍ଶନ ଦେଇ କୃପାପୂର୍ବକ ତା'ର ଦେହକୁ ଆଉଁସି ଦେଲେ ଏବଂ ସ୍ନେହରେ କହିଲେ—''ଶବର ! ମୁଁ ତୁମ ବ୍ରତରେ ପ୍ରସନ୍ନ । ବର ମାଗ ।'' ବ୍ୟାଧ ଭଗବାନଙ୍କ ରୂପ ଦର୍ଶନ କରି ତତ୍‌କ୍ଷଣାତ୍ ଜୀବନ୍ମୁକ୍ତ ହୋଇଗଲା ଏବଂ ''ମୁଁ ସବୁକିଛି ପାଇଗଲି'' କହି ତାଙ୍କ ଚରଣରେ ଲୋଟିପଡ଼ିଲା । ତାହାର ଭାବକୁ ଦେଖି ପ୍ରଭୁ ମନେ ମନେ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ତାକୁ 'ଗୁହ' ନାମ ଦେବା ସଙ୍ଗେ ସଙ୍ଗେ କୃପାଦୃଷ୍ଟିରେ ଗ୍ଚହିଁ ଦିବ୍ୟ ବର ମଧ୍ୟ ପ୍ରଦାନ କଲେ ।

ଶିବ କହିଲେ—ବ୍ୟାଧ ! ଶୁଣ । ଆଜିଠାରୁ ତୁମେ ଶୃଙ୍ଗବେରପୁରରେ ଉତ୍ତମ ରାଜଧାନୀ ସ୍ଥାପନ କରି ଦିବ୍ୟ ଭୋଗ ଉପଭୋଗ କର । ତୁମର ନିର୍ବିଘ୍ନରେ ବଂଶବୃଦ୍ଧି ହେବ । ଦେବତା ମଧ୍ୟ ତୁମକୁ ପ୍ରଶଂସା କରିବେ । ବ୍ୟାଧ ! ମୋ ଭକ୍ତଙ୍କ ଉପରେ ସ୍ନେହ ରଖୁଥିବା ପ୍ରଭୁ ଶ୍ରୀରାମ ଦିନେ ନିଶ୍ଚୟ ତୁମ ଘରକୁ ଆସିବେ ଓ ତୁମ ସଙ୍ଗେ ମିତ୍ରତା କରିବେ । ତୁମେ ମୋ ସେବାରେ ମନୋନିବେଶ କରି ଦୁର୍ଲଭ ମୋକ୍ଷପଦ ପାଇବ ।

ଏତିକିବେଳେ ମୃଗମାନେ ଭଗବାନ ଶିବଙ୍କ ଦର୍ଶନ ପାଇ ଓ ତାଙ୍କୁ ପ୍ରଣାମ କରି ମୃଗଯୋନିରୁ ମୁକ୍ତ ହୋଇଗଲେ । ସେମାନେ ଶିବଙ୍କ ଦର୍ଶନ-ମାତ୍ରକେ ଶାପମୁକ୍ତ ହେବା ସହ ଦିବ୍ୟ ଦେହଧାରୀ ହୋଇ ବିମାନରେ ବସି ଦିବ୍ୟଧାମକୁ ଗ୍ଚଲିଗଲେ । ସେହିଦିନଠାରୁ ଅର୍ବୁଦ ପର୍ବତ ଉପରେ ଶିବ ବ୍ୟାଧେଶ୍ୱର ନାମରେ ପ୍ରସିଦ୍ଧ ହେଲେ । ସେ ଦର୍ଶନ ଓ ପୂଜନମାତ୍ରକେ ତତ୍କାଳ ଭୋଗ ଓ ମୋକ୍ଷ ପ୍ରଦାନ କରନ୍ତି । ମହର୍ଷିଗଣ ! ବ୍ୟାଧ ମଧ୍ୟ ସେହିଦିନଠାରୁ ଦିବ୍ୟ ଭୋଗ ଉପଭୋଗ କରି ନିଜ ରାଜଧାନୀରେ ରହିଲା । ସେ ଭଗବାନ ଶ୍ରୀରାମଙ୍କ କୃପା ଲାଭ କରି ଶିବଙ୍କ ସାଯୁଜ୍ୟ ପ୍ରାପ୍ତ ହେଲା । ଯଦି ଅଜାଣତରେ ଏହି ବ୍ରତ ଅନୁଷ୍ଠାନ କରି ମଧ୍ୟ ସେ ସାଯୁଜ୍ୟ ମୁକ୍ତି ପାଇଗଲା, ତେବେ ପୁଣି ଯେଉଁମାନେ ଭକ୍ତିଭାବରେ ଏହି ବ୍ରତ କରନ୍ତି, ସେମାନେ ଯେ ଶିବଙ୍କ ଶୁଭ ସାଯୁଜ୍ୟ ପ୍ରାପ୍ତ ହେବେ, ଏଥିରେ ସନ୍ଦେହ କ'ଣ? ସମସ୍ତ ଶାସ୍ତ୍ର ଓ ଧର୍ମ ବିଷୟରେ ଭଲଭାବରେ ବିଗ୍ଚର କରି ଶିବରାତ୍ରି ବ୍ରତକୁ ସବୁଠାରୁ ଉତ୍ତମ ବୋଲି କୁହାଯାଇଛି । ଇହଲୋକରେ ଯେତେସବୁ ବ୍ରତ, ତୀର୍ଥ, ବିଭିନ୍ନ ପ୍ରକାର ଦାନ, ଯଜ୍ଞ, ତପ ଓ ଜପ ଅଛି, ସେସବୁ ଶିବରାତ୍ରି ବ୍ରତର ସମକକ୍ଷ ହୋଇ ପାରିବେ ନାହିଁ । ଏଣୁ ନିଜର ହିତ ଗ୍ଚହୁଁଥିବା ମନୁଷ୍ୟ ଏହି ଶୁଭଙ୍କର ବ୍ରତ ନିଶ୍ଚିତରୂପେ କରିବା ଉଚିତ । ଶିବରାତ୍ରି ବ୍ରତ ଦିବ୍ୟ ଅଟେ । ଏହାଦ୍ୱାରା ସଦା ଭୋଗ ଓ ମୋକ୍ଷ ପ୍ରାପ୍ତି ହୋଇଥାଏ । ମହର୍ଷିଗଣ ! ଏହି ଶୁଭ ଶିବରାତ୍ରି ବ୍ରତ ବ୍ରତରାଜ ନାମରେ ବିଖ୍ୟାତ । ଏ ବିଷୟରେ ମୁଁ ସବୁ କଥା ତୁମକୁ କହିଦେଲି । ଏବେ ଆଉ କ'ଣ ଶୁଣିବାକୁ ଗ୍ଚହୁଁଛ?

(ଅଧ୍ୟାୟ ୪୦)

★★★

# ମୁକ୍ତି ଓ ଭକ୍ତିର ସ୍ୱରୂପ ବିବେଚନ

ଋଷିଗଣ ପଗ୍ଚରିଲେ—ସୂତ ମହାଭାଗ ! ଆପଣ ବାରମ୍ବାର ମୁକ୍ତିର ନାମ ଉଚ୍ଚାରଣ କଲେ । ଏଠାରେ ମୁକ୍ତି ମିଳିଲେ କ'ଣ ହୁଏ? ମୁକ୍ତିରେ ଜୀବର କିପରି ଅବସ୍ଥା ହୁଏ? ଏସବୁ ଆମକୁ କୁହନ୍ତୁ ।

ସୂତ କହୁଛନ୍ତି—ମହର୍ଷିଗଣ ! ମୁଁ ତୁମମାନଙ୍କୁ ସଂସାରକ୍ଲେଶନାଶକ ଓ ପରମାନନ୍ଦଦାୟକ ମୁକ୍ତିର

ସ୍ୱରୂପ ବିଷୟରେ କହୁଛି, ଶୁଣ । ମୁକ୍ତି ଚାରିପ୍ରକାର ବୋଲି କୁହାଯାଏ । ତାହା ହେଲା—ସାରୂପ୍ୟ, ସାଲୋକ୍ୟ, ସାନ୍ନିଧ୍ୟ ଓ ସାଯୁଜ୍ୟ । ଶିବରାତ୍ରି ବ୍ରତ ଦ୍ୱାରା ସବୁ ପ୍ରକାର ମୁକ୍ତି ସୁଲଭ ହୋଇଯାଏ । ଯେଉଁ ଜ୍ଞାନରୂପୀ ଶିବ ଅବିନାଶୀ, ସାକ୍ଷୀ, ଜ୍ଞାନଗମ୍ୟ ଓ ଅଦ୍ୱୈତ ଅଟନ୍ତି, ସେ କୈବଲ୍ୟମୋକ୍ଷ ତଥା ଧର୍ମ, ଅର୍ଥ ଓ କାମରୂପୀ ତ୍ରିବର୍ଗ ମଧ୍ୟ ପ୍ରଦାନ କରନ୍ତି । କୈବଲ୍ୟ ନାମକ ପଞ୍ଚମ ମୁକ୍ତି ମନୁଷ୍ୟ ପାଇଁ ଅତ୍ୟନ୍ତ ଦୁର୍ଲଭ । ମୁନିବୃନ୍ଦ ! ମୁଁ ତାହାର ଲକ୍ଷଣ କହୁଛି, ଶୁଣ । ସମଗ୍ର ଜଗତ ଯାହାଙ୍କ ଠାରୁ ଉତ୍ପନ୍ନ ହୁଏ, ଯାହାଙ୍କ ଦ୍ୱାରା ପାଳିତ ହୁଏ ଏବଂ ଯାହାଙ୍କ ଠାରେ ଲୀନ ହୋଇଯାଏ, ସେ ହେଉଛନ୍ତି ଶିବ । ଶିବଙ୍କ ରୂପଦ୍ୱାରା ଏ ସଂସାର ପରିବ୍ୟାପ୍ତ । ମୁନୀଶ୍ୱରବୃନ୍ଦ ! ବେଦରେ ଶିବଙ୍କର ସକଳ ଓ ନିଷ୍କଳ ନାମକ ଦୁଇଟି ରୂପ ପ୍ରତିପାଦିତ ହୋଇଛି । ଶିବତତ୍ତ୍ୱ ସତ୍ୟ, ଜ୍ଞାନ, ଅନନ୍ତ ଓ ସଚ୍ଚିଦାନନ୍ଦ ନାମରେ ପ୍ରସିଦ୍ଧ । ତାହା ନିର୍ଗୁଣ, ଉପାଧିରହିତ, ଅବିନାଶୀ, ଶୁଦ୍ଧ ଓ ନିରଞ୍ଜନ (ନିର୍ମଳ) । ତାହା ଲାଲ କି ହଳଦିଆ ନୁହେଁ, ଧଳା କି ନୀଳ ନୁହେଁ, ଛୋଟ କି ବଡ଼ ନୁହେଁ, କିମ୍ବା ମୋଟା କି ପତଳା ନୁହେଁ । ମନସମେତ ବାଣୀ ଯାହା ନିକଟରେ ପହଞ୍ଚି ନ ପାରି ଫେରି ଆସେ, ସେହି ପରବ୍ରହ୍ମ ହିଁ ଶିବ ନାମରେ ଅଭିହିତ ହୁଏ । ଶିବତତ୍ତ୍ୱ ଆକାଶ ପରି ସର୍ବବ୍ୟାପୀ, ମାୟାରୁ ଅତୀତ, ସମସ୍ତ ଦ୍ୱନ୍ଦ୍ୱରୁ ଊର୍ଦ୍ଧ୍ୱରେ ଓ ମତ୍ସରତାଶୂନ୍ୟ ପରମାତ୍ମା ଅଟେ । ଶିବଜ୍ଞାନ ଉଦୟ ହେଲେ ନିଶ୍ଚିତରୂପେ ତାହା ପ୍ରାପ୍ତ ହୋଇଥାଏ ଅଥବା ସୂକ୍ଷ୍ମ ବୁଦ୍ଧି ଦ୍ୱାରା ଶିବଙ୍କର ଭଜନ-ଧ୍ୟାନ କଲେ ସାଧୁଜନଙ୍କୁ ଶିବପଦ ପ୍ରାପ୍ତି ହୋଇଥାଏ ।*

ସଂସାରରେ ଜ୍ଞାନପ୍ରାପ୍ତି ଅତ୍ୟନ୍ତ ଦୁଷ୍କର, ମାତ୍ର ଭଜନ (ଭକ୍ତି) ଅତ୍ୟନ୍ତ ସୁକର ବୋଲି ଧରାଯାଏ । ଏଣୁ ଶ୍ରେଷ୍ଠ ସଜ୍ଜନ ମୁକ୍ତି ନିମନ୍ତେ ଶିବଙ୍କୁ ଭଜିଥାନ୍ତି । ଜ୍ଞାନସ୍ୱରୂପ ମୋକ୍ଷଦାତା ପରମାତ୍ମା ଶିବ ଭଜନର ଅଧୀନ । ଭକ୍ତିଦ୍ୱାରା ଅନେକ ଲୋକ ସିଦ୍ଧିଲାଭ କରି ପ୍ରସନ୍ନତାପୂର୍ବକ ପରମ ମୋକ୍ଷ ପାଇଛନ୍ତି । ଭଗବାନ ଶମ୍ଭୁଙ୍କ ପ୍ରତି ଭକ୍ତି ଜ୍ଞାନର ଜନନୀ ଅଟେ, ଯାହାକି ସର୍ବଦା ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ତାହା ସାଧୁମହାପୁରୁଷଙ୍କ କୃପା-ପ୍ରସାଦ ଦ୍ୱାରା ସୁଲଭ ହୋଇଥାଏ । ଉତ୍ତମ ପ୍ରେମର ଅଙ୍କୁର ହିଁ ତାହାର ଲକ୍ଷଣ । ଦ୍ୱିଜଗଣ ! ସେହି ଭକ୍ତି ସଗୁଣ ଓ ନିର୍ଗୁଣ ଭେଦରେ ଦୁଇ ଭାଗରେ ବିଭକ୍ତ । ପୁଣି ସେଥିରେ ବୈଧୀ ଓ ସ୍ୱାଭାବିକୀ ନାମରେ ବି ଦୁଇଟି ଭେଦ ହୋଇଯାଏ । ଏଥିମଧ୍ୟରୁ ବୈଧୀ ଅପେକ୍ଷା ସ୍ୱାଭାବିକୀ ଶ୍ରେଷ୍ଠ ବୋଲି ଧରାଯାଏ । ଏହାଛଡ଼ା ନୈଷ୍ଠିକୀ ଓ ଅନୈଷ୍ଠିକୀ ଭେଦରେ ମଧ୍ୟ ଭକ୍ତି ଆହୁରି ଦୁଇ ପ୍ରକାରର ହୋଇଯାଏ । ନୈଷ୍ଠିକୀ ଭକ୍ତି ଛଅ ପ୍ରକାରର । ପୁଣି ବିହିତା ଓ ଅବିହିତା ଭେଦରେ ବିଦ୍ୱାନ୍‌ମାନେ ତାହାକୁ ଅନେକ ଭାଗରେ ବିଭକ୍ତ କରିଥାନ୍ତି । ଏହିରୂପେ ସେଗୁଡ଼ିକରେ ବି ଅନେକ ପ୍ରକାର ଭେଦ ଥିବାରୁ ଏଠାରେ ସେସବୁ ବିଷୟରେ ବିସ୍ତୃତ ବର୍ଣ୍ଣନା କରାଯାଉ ନାହିଁ । ସେହି ଦୁଇ ପ୍ରକାର

---

* ସତ୍ୟଂ ଜ୍ଞାନମନନ୍ତଂ ଚ ସଚ୍ଚିଦାନନ୍ଦସଂଜ୍ଞିତମ୍ । ନିର୍ଗୁଣୋ ନିରୁପାଧିଶ୍ଚାବ୍ୟୟଃ ସୁଦ୍ଧୋ ନିରଞ୍ଜନଃ ॥
ନ ରକ୍ତୋ ନୈବ ପୀତଶ୍ଚ ନ ଶ୍ୱେତୋ ନୀଳ ଏବ ଚ । ନ ହ୍ରସ୍ୱୋ ନ ଚ ଦୀର୍ଘଶ୍ଚ ନ ସ୍ଥୂଳଃ ସୂକ୍ଷ୍ମ ଏବ ଚ ॥
ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ । ତଦେବ ପରମଂ ପ୍ରୋକ୍ତଂ ବ୍ରହ୍ମୈବ ଶିବସଂଜ୍ଞକମ୍ ॥
ଆକାଶଂ ବ୍ୟାପକଂ ଯଦ୍‌ବତ୍ ତଥୈବ ବ୍ୟାପକଂ ତ୍ୱିଦମ୍ । ମାୟାତୀତଂ ପରାତ୍ମାନଂ ଦ୍ୱନ୍ଦ୍ୱାତୀତଂ ବିମତ୍ସରମ୍ ॥
ତତ୍‌ପ୍ରାପ୍ତିଶ୍ଚ ଭବେଦତ୍ର ଶିବଜ୍ଞାନୋଦୟାଦ୍ ଧ୍ରୁବମ୍ । ଭଜନାଦ୍ ବା ଶିବସ୍ୟୈବ ସୂକ୍ଷ୍ମମତ୍ୟା ସତାଂ ଦ୍ୱିଜାଃ ॥
(ଶି. ପୁ. କୋଟିରୁ. ସଂ. ୪୧ । ୧୨–୧୬)

ଭକ୍ତିର ଶ୍ରବଣାଦି ଭେଦରେ ନଅଟି ଅଙ୍ଗ ରହିଛି । ଭଗବାନଙ୍କ କୃପା ବିନା ଭକ୍ତିର ଯଥାର୍ଥ ସମ୍ପାଦନ ହେବା କଷ୍ଟକର । ଭଗବାନଙ୍କ କୃପା ହେଲେ ସହଜରେ ଏହା ସାଧିତ ହୋଇ ପାରେ । ଦ୍ୱିଜଗଣ ! ଭକ୍ତି ଓ ଜ୍ଞାନକୁ ଶମ୍ଭୁ ପରସ୍ପର ଠାରୁ ଭିନ୍ନ ବୋଲି କହି ନାହାନ୍ତି । ତେଣୁ ଏ ଦୁଇଟି ମଧ୍ୟରେ ଭେଦ କରିବା ଉଚିତ ନୁହେଁ । ଜ୍ଞାନ ଓ ଭକ୍ତି ଉଭୟ ଦ୍ୱାରା ସାଧକକୁ ସର୍ବଦା ସୁଖପ୍ରାପ୍ତି ହୋଇଥାଏ । ହେ ବ୍ରାହ୍ମଣବୃନ୍ଦ ! ଯେ ଭକ୍ତିର ବିରୋଧୀ, ତାକୁ ଜ୍ଞାନପ୍ରାପ୍ତି ହୁଏ ନାହିଁ । ଶିବଙ୍କୁ ଭକ୍ତି କରୁଥିବା ଲୋକଙ୍କୁ ହିଁ ଶୀଘ୍ର ଜ୍ଞାନପ୍ରାପ୍ତି ହୋଇଥାଏ । ତେଣୁ ମୁନୀଶ୍ୱରଗଣ ! ମହେଶ୍ୱରଙ୍କ ଭକ୍ତି ହିଁ ସାଧନା କରିବା ଆବଶ୍ୟକ । ଏହା ଦ୍ୱାରା ନିଶ୍ଚିତରୂପେ ସବୁ କିଛି ସାଧିତ ହୋଇଯାଏ । ମହର୍ଷିଗଣ ! ତୁମେମାନେ ଯାହା କିଛି ପଚ୍ରିଥିଲ, ମୁଁ ତାହା ବର୍ଣ୍ଣନା କରିଦେଲି । ଏହି ପ୍ରସଙ୍ଗକୁ ଶ୍ରବଣ କଲେ ମନୁଷ୍ୟ ସମସ୍ତ ପାପରୁ ନିଃସନ୍ଦେହରେ ମୁକ୍ତ ହୋଇଯାଏ । (ଅଧ୍ୟାୟ ୪୧)

★★★

## ଶିବ, ବିଷ୍ଣୁ, ରୁଦ୍ର ଓ ବ୍ରହ୍ମାଙ୍କ ସ୍ୱରୂପର ବିବେଚନା

ଋଷିଗଣ ପଚ୍ରିଲେ—ଶିବ କିଏ? ବିଷ୍ଣୁ କିଏ? ରୁଦ୍ର କିଏ ଓ ବ୍ରହ୍ମା କିଏ? ଏମାନଙ୍କ ମଧ୍ୟରେ ନିର୍ଗୁଣ କିଏ? ଆମର ଏ ସନ୍ଦେହର ନିବାରଣ କରନ୍ତୁ ।

ସୂତ କହୁଛନ୍ତି—ମହର୍ଷିଗଣ ! ବେଦ-ବେଦାନ୍ତର ଜ୍ଞାତା ବିଦ୍ୱାନ୍‌ମାନଙ୍କର ମତ ଯେ ନିର୍ଗୁଣ ପରମାତ୍ମାଙ୍କ ଠାରୁ ସର୍ବପ୍ରଥମେ ଯେଉଁ ସଗୁଣରୂପ ପ୍ରକଟ ହେଲା, ତାହାରି ନାମ ଶିବ । ଶିବଙ୍କ ଠାରୁ ପୁରୁଷ ସମେତ ପ୍ରକୃତିର ଉତ୍ପତ୍ତି ହେଲା । ସେ ଦୁହେଁ ମୂଳସ୍ଥାନରେ ସ୍ଥିତ ଜଳ ଭିତରେ ତପସ୍ୟା କଲେ । ସେହି ସ୍ଥାନ ହିଁ ପଞ୍ଚକୋଶୀ କାଶୀ ନାମରେ ବିଖ୍ୟାତ ହୋଇଛି, ଯାହା କି ଶିବଙ୍କର ଅତ୍ୟନ୍ତ ପ୍ରିୟ । ଏହି ଜଳ ସମଗ୍ର ବିଶ୍ୱରେ ବ୍ୟାପ୍ତ ଥିଲା । ଏହି ଜଳର ଆଶ୍ରୟରେ ଯୋଗମାୟାଯୁକ୍ତ ଶ୍ରୀହରି ସେଠାରେ ଶୟନ କଲେ । ନାର ଅର୍ଥାତ୍ ଜଳକୁ ଅୟନ (ନିବାସ ସ୍ଥାନ) କରିଥିବାରୁ ସେ 'ନାରାୟଣ' ନାମରେ ପ୍ରସିଦ୍ଧ ହେଲେ ଏବଂ ପ୍ରକୃତି 'ନାରାୟଣୀ' ବୋଲାଇଲେ । ନାରାୟଣଙ୍କ ନାଭିକମଳରୁ ଯିଏ ଉତ୍ପନ୍ନ ହେଲେ, ସେ ବ୍ରହ୍ମା ହେଲେ । ବ୍ରହ୍ମା ତପସ୍ୟା କରି ଯାହାଙ୍କୁ ସାକ୍ଷାତ୍କାର କଲେ, ତାଙ୍କୁ ବିଷ୍ଣୁ କୁହାଗଲା । ବ୍ରହ୍ମା ଓ ବିଷ୍ଣୁଙ୍କ ବିବାଦକୁ ଶାନ୍ତ କରିବାକୁ ନିର୍ଗୁଣ ଶିବ ଯେଉଁ ରୂପ ପ୍ରକଟ କଲେ, ତାହାର ନାମ ହେଲା 'ମହାଦେବ' । ସେ କହିଲେ—"ମୁଁ ଶମ୍ଭୁ ବ୍ରହ୍ମାଙ୍କ ଲଲାଟରୁ ପ୍ରକଟ ହେବି" ଏହି କଥନାନୁସାରେ ସମଗ୍ର ଜଗତ ଉପରେ ଅନୁଗ୍ରହ କରିବାକୁ ଯେ ବ୍ରହ୍ମାଙ୍କ ଲଲାଟରୁ ପ୍ରକଟ ହେଲେ, ତାଙ୍କର ନାମ ହେଲା 'ରୁଦ୍ର' । ଏହିରୂପେ ରୂପରହିତ ପରମାତ୍ମା ସମସ୍ତଙ୍କ ଚିନ୍ତନର ବିଷୟ ହେବା ପାଇଁ ସାକାର ରୂପରେ ପ୍ରକଟ ହେଲେ । ସେ ହିଁ ସାକ୍ଷାତ୍ ଭକ୍ତବତ୍ସଳ ଶିବ । ସୁନା ଓ ସୁନାଗହଣା ମଧ୍ୟରେ ଭେଦ ନ ଥିବା ପରି ତ୍ରିଗୁଣାତୀତ ଶିବ ଓ ଗୁଣର ଧାମ ରୁଦ୍ରଙ୍କ ମଧ୍ୟରେ କିଛି ଭେଦ ନାହିଁ । ଉଭୟଙ୍କର ରୂପ ଓ କର୍ମ ସମାନ । ଉଭୟେ ସମାନରୂପେ ଭକ୍ତଙ୍କୁ ଉତ୍ତମ ଗତି ପ୍ରଦାନ କରିଥାନ୍ତି । ଉଭୟେ ସମସ୍ତଙ୍କର ସ୍ତବନୀୟ ଏବଂ ନାନା ପ୍ରକାର ଲୀଳା-ବିହାରକାରୀ । ଘୋର ପରାକ୍ରମୀ ରୁଦ୍ର ପୂର୍ଣ୍ଣରୂପେ ଶିବ ହିଁ ଅଟନ୍ତି । ସେ ଭକ୍ତଙ୍କ କାର୍ଯ୍ୟ ସିଦ୍ଧ କରିବା ନିମନ୍ତେ ବିଷ୍ଣୁ ଓ ବ୍ରହ୍ମାଙ୍କ ସହାୟତା କରିବାକୁ ପ୍ରକଟ ହୋଇଛନ୍ତି ।

ଅନ୍ୟ ସବୁ ଦେବତା ଯେଉଁ କ୍ରମରେ ପ୍ରକଟ ହୋଇଛନ୍ତି, ସେହି କ୍ରମରେ ଲୀନ ମଧ୍ୟ ହୁଅନ୍ତି । ମାତ୍ର ରୁଦ୍ରଦେବ ସେପରି ଲୀନ ହୁଅନ୍ତି ନାହିଁ । ତାଙ୍କର ସାକ୍ଷାତ୍ ଶିବଙ୍କ ଠାରେ ହିଁ ଲୟ ହୁଏ । ସକଳ ପ୍ରାକୃତ ପ୍ରାଣୀ ରୁଦ୍ରଙ୍କ ଠାରେ ମିଶି ଶେଷରେ ଲୟକୁ ପ୍ରାପ୍ତ ହୁଅନ୍ତି । ମାତ୍ର ରୁଦ୍ର ଏମାନଙ୍କ ଠାରେ ମିଶି ଲୟପ୍ରାପ୍ତ ହୁଅନ୍ତି ନାହିଁ । ଏହା ଭଗବତୀ ଶ୍ରୁତିଙ୍କର ଉପଦେଶ ଅଟେ । ସମସ୍ତେ ରୁଦ୍ରଙ୍କୁ ଭଜିଥାନ୍ତି, କିନ୍ତୁ ରୁଦ୍ର କାହାକୁ ଭଜି ନ ଥାନ୍ତି । ସେ ଭକ୍ତବତ୍ସଳ ହୋଇଥିବାରୁ କେବେ କେବେ ନିଜ ଇଚ୍ଛାରେ ଭକ୍ତଜନଙ୍କୁ ଚିନ୍ତନ କରିଥାନ୍ତି । ଯେଉଁମାନେ ଅନ୍ୟ ଦେବତାଙ୍କୁ ଭଜିଥାନ୍ତି, ସେମାନେ ତାଙ୍କ ଠାରେ ଲୀନ ହୁଅନ୍ତି, ସେଥିପାଇଁ ସେମାନେ ଦୀର୍ଘକାଳ ପରେ ରୁଦ୍ରଙ୍କ ଠାରେ ଲୀନ ହେବାର ଅବସର ପାଆନ୍ତି । ଯେଉଁମାନେ ରୁଦ୍ରଙ୍କର ଭକ୍ତ, ସେମାନେ ତତ୍କାଳ ରୁଦ୍ର ହୋଇଯାଆନ୍ତି; ତେଣୁ ସେମାନଙ୍କୁ ଅନ୍ୟ ଉପରେ ନିର୍ଭର ହେବାକୁ ପଡ଼େ ନାହିଁ । ଏହା ସନାତନ ଶ୍ରୁତିର ନିର୍ଦ୍ଦେଶ ।

ଦ୍ୱିଜଗଣ ! ଅଜ୍ଞାନ ଅନେକ ପ୍ରକାରର ହୋଇଥାଏ, କିନ୍ତୁ ବିଜ୍ଞାନର ସ୍ୱରୂପ ଏକ ଅଟେ । ତାହା ଅନେକ ପ୍ରକାରର ହୋଇ ନ ଥାଏ । ତାହାକୁ ବୁଝିବାର ପ୍ରଣାଳୀ ମୁଁ କହୁଛି, ଆଦରପୂର୍ବକ ଶୁଣ । ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ତୃଣ ପର୍ଯ୍ୟନ୍ତ ଯାହା କିଛି ଦୃଶ୍ୟମାନ ହେଉଛି, ସବୁ ହେଉଛି ଶିବସ୍ୱରୂପ । ସେଥିରେ ନାନାତ୍ୱର କଳ୍ପନା ମିଥ୍ୟା । ସୃଷ୍ଟି ପୂର୍ବରୁ ଶିବଙ୍କର ସତ୍ତା ଥିଲା, ସୃଷ୍ଟିର ମଧ୍ୟକାଳରେ ଶିବ ଅଛନ୍ତି, ସୃଷ୍ଟିର ଶେଷରେ ମଧ୍ୟ ଶିବ ହିଁ ରହିବେ ଏବଂ ଯେତେବେଳେ ସବୁକିଛି ଶୂନ୍ୟତାରେ ପରିଣତ ହୋଇଯାଏ, ସେତେବେଳେ ମଧ୍ୟ ଶିବଙ୍କର ସତ୍ତା ରହିଥାଏ । ତେଣୁ ମୁନୀଶ୍ୱରବୃନ୍ଦ ! ଶିବଙ୍କୁ ହିଁ ଚତୁର୍ଗୁଣ କୁହାଯାଇଛି । ଶିବ ହିଁ ଶକ୍ତିମାନ୍ ହୋଇଥିବା କାରଣରୁ 'ସଗୁଣ' ରୂପେ ବୋଧଗମ୍ୟ ହୁଅନ୍ତି । ଏହିରୂପେ ସେ ସଗୁଣ ଓ ନିର୍ଗୁଣ ଭେଦରେ ଦୁଇ ପ୍ରକାରର । ଯେଉଁ ଶିବ ଭଗବାନ ବିଷ୍ଣୁଙ୍କୁ ସମସ୍ତ ସନାତନ ବେଦ, ଅନେକ ବର୍ଣ୍ଣ, ଅନେକ ମାତ୍ରା ଓ ନିଜର ଧ୍ୟାନ-ପୂଜନର ରହସ୍ୟ ପ୍ରଦାନ କଲେ, ସେ ହିଁ ସକଳ ବିଦ୍ୟାର ଈଶ୍ୱର—ଏହା ସନାତନ ଶ୍ରୁତି । ତେଣୁ ଶମ୍ଭୁଙ୍କୁ 'ବେଦମାନଙ୍କର ପ୍ରକଟନକାରୀ' ଏବଂ 'ବେଦପତି' କୁହାଯାଏ । ସେ ହିଁ ସମସ୍ତଙ୍କ ଉପରେ ଅନୁଗ୍ରହ କରୁଥିବା ଶଙ୍କର ଅଟନ୍ତି । କର୍ତ୍ତା, ଭର୍ତ୍ତା, ହର୍ତ୍ତା, ସାକ୍ଷୀ ଓ ନିର୍ଗୁଣ ମଧ୍ୟ ସେହି ଅଟନ୍ତି । ଅନ୍ୟମାନଙ୍କ ପାଇଁ କାଳର ମାନ ରହିଛି, କିନ୍ତୁ କାଳସ୍ୱରୂପ ରୁଦ୍ରଙ୍କ ପାଇଁ କାଳର କୌଣସି ଗଣନା ନାହିଁ; କାରଣ ସେ ସାକ୍ଷାତ୍ ମହାକାଳ ଏବଂ ମହାକାଳୀ ତାଙ୍କର ଆଶ୍ରିତ । ବ୍ରାହ୍ମଣମାନେ ରୁଦ୍ର ଓ କାଳୀଙ୍କୁ ସମସ୍ତଙ୍କର କାରଣ ବୋଲି କହନ୍ତି । ସେ ଦୁହେଁ ତାଙ୍କର ସତ୍ୟ ଲୀଳା କରିବାର ଇଚ୍ଛାମାତ୍ରକେ ସବୁକିଛି ପ୍ରାପ୍ତି କରିଛନ୍ତି । ଶିବଙ୍କର କେହି ଉତ୍ପାଦକ ନାହାନ୍ତି । ତାଙ୍କର କେହି ପାଳକ କି ସଂହାରକ ନାହାନ୍ତି । ସେ ସ୍ୱୟଂ ସମସ୍ତଙ୍କର ହେତୁ । ସେ ଏକ ହୋଇ ମଧ୍ୟ ଅନେକତାକୁ ପ୍ରାପ୍ତ ହୋଇ ପାରନ୍ତି ଏବଂ ଅନେକ ହୋଇ ମଧ୍ୟ ଏକତାକୁ ପ୍ରାପ୍ତ ହୋଇ ପାରନ୍ତି । ଗୋଟିଏ ମାତ୍ର ବୀଜ ଯେପରି ବାହାରକୁ ବାହାରି ବୃକ୍ଷ ଓ ଫଳ ଆଦି ରୂପରେ ପରିଣତ ହୋଇ ପୁନଃ ବୀଜଭାବକୁ ପ୍ରାପ୍ତ ହୁଏ, ଠିକ୍ ସେହିପରି ଶିବରୂପୀ ମହେଶ୍ୱର ସ୍ୱୟଂ ଏକରୁ ଅନେକ ହେବାରେ ହେତୁ ଅଟନ୍ତି । ତତ୍ତ୍ୱଦୃଷ୍ଟି ଆଧାରରେ ଏହି ଶିବଜ୍ଞାନ ତୁମ ଆଗରେ କୁହାଗଲା । ଜ୍ଞାନବାନ୍ ବ୍ୟକ୍ତି ହିଁ ଏହାକୁ ଜାଣିଥାଏ, ଅନ୍ୟ କେହି ଜାଣେ ନାହିଁ ।

ମୁନିମାନେ କହିଲେ—ହେ ସୂତମୁନି ! ଆପଣ ଲକ୍ଷଣସହିତ ଜ୍ଞାନ ବିଷୟରେ ବର୍ଣ୍ଣନା କରନ୍ତୁ, ଯାହାକୁ ଜାଣି ମନୁଷ୍ୟ ଶିବଭାବକୁ ପ୍ରାପ୍ତ

ହୋଇଯାଆନ୍ତି । ସମଗ୍ର ଜଗତ ଶିବରୂପ କିପରି ଅଥବା ଶିବ ହିଁ ସମଗ୍ର ଜଗତ କିପରି?

ମୁନିମାନଙ୍କ ପ୍ରଶ୍ନ ଶୁଣି ପୌରାଣିକଶିରୋମଣି ସୂତମୁନି ଭଗବାନ ଶିବଙ୍କ ଚରଣାରବିନ୍ଦକୁ ଚିନ୍ତନ କରି ଏହିପରି କହିଲେ—

(ଅଧ୍ୟାୟ ୪୨)

***

## ଶିବତତ୍ତ୍ୱର ଜ୍ଞାନ ଓ ମହିମା, କୋଟିରୁଦ୍ରସଂହିତାର ମାହାତ୍ମ୍ୟ ତଥା ଉପସଂହାର

ସୂତ କହିଲେ—ଋଷିଗଣ ! ମୁଁ ଶିବଜ୍ଞାନ ବିଷୟରେ ଯାହା କିଛି ଶୁଣିଛି, ତାହା ବର୍ଣ୍ଣନା କରୁଛି, ଶୁଣ । ଏହା ଅତ୍ୟନ୍ତ ଗୁହ୍ୟ ଓ ପରମ ମୋକ୍ଷପ୍ରଦ । ବ୍ରହ୍ମା, ନାରଦ, ସନକାଦି, ମୁନି ବ୍ୟାସ ତଥା କପିଳ ସେମାନଙ୍କ ସମାଜରେ ନିର୍ଣ୍ଣୟ କରି ଜ୍ଞାନର ଯେଉଁ ସ୍ୱରୂପ ପ୍ରତିପାଦିତ କରିଛନ୍ତି, ତାହାକୁ ହିଁ ଯଥାର୍ଥ ଜ୍ଞାନ ବୋଲି ବୁଝିବା ଉଚିତ । ସମଗ୍ର ଜଗତ ଶିବମୟ, ଏ ଜ୍ଞାନକୁ ସଦା ଅନୁଶୀଳନ କରିବା ଉଚିତ । ସର୍ବଜ୍ଞ ବିଦ୍ୱାନ୍‌ମାନେ ଏହା ନିଶ୍ଚିତରୂପେ ଜାଣିବା ଉଚିତ ଯେ ଶିବ ହେଉଛନ୍ତି ସର୍ବମୟ । ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ତୃଣ ପର୍ଯ୍ୟନ୍ତ ଯାହା କିଛି ଜଗତରେ ଦୃଶ୍ୟ ହେଉଛି, ସବୁକିଛି ହେଉଛି ଶିବଙ୍କ ସ୍ୱରୂପ । ସେହି ମହାଦେବ ହିଁ ଶିବ ବୋଲାନ୍ତି । ତାଙ୍କର ଯେବେ ଇଚ୍ଛା ହୁଏ, ସେତେବେଳେ ସେ ଜଗତକୁ ରଚନା କରନ୍ତି । ସେ ସମସ୍ତଙ୍କୁ ଜାଣନ୍ତି, ହେଲେ ତାଙ୍କୁ କେହି ଜାଣେ ନାହିଁ । ଏ ଜଗତକୁ ସୃଷ୍ଟି କରି ସ୍ୱୟଂ ତାହାରି ଭିତରେ ପ୍ରବିଷ୍ଟ ହୋଇଥିଲେ ମଧ୍ୟ ସେ ତା'ଠାରୁ ବହୁତ ଊର୍ଦ୍ଧ୍ୱରେ । ବାସ୍ତବରେ ତାଙ୍କର ପ୍ରବେଶ ହୋଇ ନାହିଁ; କାରଣ ସେ ନିର୍ଲିପ୍ତ, ସଚ୍ଚିଦାନନ୍ଦସ୍ୱରୂପ । ଯେପରି ସୂର୍ଯ୍ୟଚନ୍ଦ୍ରଙ୍କର ପ୍ରତିବିମ୍ବ ଜଳରେ ପଡ଼ିଲେ ସୁଦ୍ଧା ବାସ୍ତବରେ ସେମାନଙ୍କର ତନ୍ମଧ୍ୟରେ ପ୍ରବେଶ ହୁଏ ନାହିଁ, ଠିକ୍ ସେହିପରି ସାକ୍ଷାତ୍ ଶିବଙ୍କ ବିଷୟରେ ବୁଝିବାକୁ ହେବ । ମତଭେଦ ହିଁ ଅଜ୍ଞାନ; କାରଣ ଶିବଙ୍କ ଠାରୁ ଭିନ୍ନ କିଛି ନାହିଁ, କୌଣସି ଦ୍ୱୈତ ବସ୍ତୁର ସତ୍ତା ନାହିଁ । ସମସ୍ତ ଦର୍ଶନରେ ମତଭେଦ ପରିଲକ୍ଷିତ ହୋଇଥାଏ, ମାତ୍ର ବେଦାନ୍ତବାଦୀମାନେ ନିତ୍ୟ ଅଦ୍ୱୈତ ତତ୍ତ୍ୱର ହିଁ ବର୍ଣ୍ଣନା କରନ୍ତି । ଜୀବ ହେଉଛି ପରମାତ୍ମା ଶିବଙ୍କର ହିଁ ଅଂଶ, ମାତ୍ର ସେ ଅବିଦ୍ୟାରେ ମୋହିତ ହୋଇ ଅବଶ ହୋଇଯାଇଛି ଏବଂ ନିଜକୁ ଶିବଙ୍କ ଠାରୁ ଭିନ୍ନ ବୁଝୁଛି । ଅବିଦ୍ୟାରୁ ମୁକ୍ତ ହେଲେ ସେ ଶିବ ହୋଇଯାଏ । ଶିବ ସମସ୍ତଙ୍କୁ ବ୍ୟାପ୍ତ କରି ରହି ଅଛନ୍ତି ଏବଂ ସମସ୍ତ ପ୍ରାଣୀଙ୍କ ଠାରେ ସେ ବ୍ୟାପକ ଅଟନ୍ତି । ସେ ଜଡ଼ ଓ ଚେତନ ସମସ୍ତଙ୍କର ଈଶ୍ୱର ହୋଇ ସ୍ୱୟଂ ସମସ୍ତଙ୍କର କଲ୍ୟାଣ କରନ୍ତି । ଯେଉଁ ବିଦ୍ୱାନ୍ ପୁରୁଷ ବେଦାନ୍ତମାର୍ଗର ଆଶ୍ରୟ ନେଇ ତାଙ୍କର ସାକ୍ଷାତ୍କାର ନିମନ୍ତେ ସାଧନା କରେ, ତାହାକୁ ସାକ୍ଷାତ୍କାରରୂପୀ ଫଳ ଅବଶ୍ୟ ପ୍ରାପ୍ତ ହୁଏ । ବ୍ୟାପକ ଅଗ୍ନିତତ୍ତ୍ୱ ପ୍ରତ୍ୟେକ କାଷ୍ଠରେ ବିଦ୍ୟମାନ; ମାତ୍ର ଯେ ସେହି କାଷ୍ଠକୁ ମନ୍ଥନ କରେ, ସେହି ବ୍ୟକ୍ତି ହିଁ ନିଃସନ୍ଦିଗ୍ଧରୂପେ ଅଗ୍ନିକୁ ପ୍ରକଟ କରି ଦେଖିପାରେ । ଠିକ୍ ସେହିପରି ଯେଉଁ ବୁଦ୍ଧିମାନ୍ ଏଠାରେ ଭକ୍ତି ପ୍ରଭୃତି ସାଧନ ଅନୁଷ୍ଠାନ କରେ, ତାହାକୁ ଅବଶ୍ୟ ଶିବଙ୍କ ଦର୍ଶନ ପ୍ରାପ୍ତ ହୁଏ, ଏଥିରେ ସଂଶୟ ନାହିଁ । ସର୍ବତ୍ର କେବଳ ଶିବ, ଶିବ, ଶିବ ହିଁ ବିଦ୍ୟାମାନ; ଅନ୍ୟ କିଛି ନାହିଁ । ସେହି ଶିବ ହିଁ ଭ୍ରମ ହେତୁ ନାନା ରୂପରେ ପ୍ରତିଭାସିତ ହେଉଛନ୍ତି ।

ଯେପରି ସମୁଦ୍ର, ମାଟି ଅଥବା ସୁନା ଉପାଧିଭେଦରେ ନାନାତ୍ୱକୁ ପ୍ରାପ୍ତ ହୋଇଥାନ୍ତି,

ଠିକ୍ ସେହିପରି ଭଗବାନ ଶଙ୍କର ମଧ୍ୟ ଉପାଧିମାନଙ୍କରେ ନାନା ରୂପରେ ଭାସିତ ହେଉଥାନ୍ତି । କାର୍ଯ୍ୟ ଓ କାରଣରେ ବାସ୍ତବିକ ଭେଦ ନ ଥାଏ । କେବଳ ଭ୍ରମପୂର୍ଣ୍ଣ ବୁଦ୍ଧିରେ ହିଁ ସେଥିରେ ଭେଦ ପ୍ରତୀତ ହେଉଥାଏ । ଭ୍ରମ ଦୂର ହେବାମାତ୍ରେ ଭେଦବୁଦ୍ଧି ନଷ୍ଟ ହୋଇଯାଏ । ଯେତେବେଳେ ବୀଜରୁ ଅଙ୍କୁର ଉତ୍ପନ୍ନ ହୁଏ, ସେତେବେଳେ ସେ ନାନାତ୍ୱ ପ୍ରକଟ କରେ, ସର୍ବଶେଷରେ ସେ ବୀଜରୂପରେ ହିଁ ସ୍ଥିତ ରହେ ଏବଂ ଅଙ୍କୁର ନଷ୍ଟ ହୋଇଯାଏ । ଜ୍ଞାନୀ ବୀଜ ରୂପରେ ହିଁ ସ୍ଥିତ ଅଟନ୍ତି ଏବଂ ନାନା ପ୍ରକାର ବିକାର ହେଉଛି ଅଙ୍କୁର । ବିକାରସ୍ୱରୂପ ଅଙ୍କୁର ନିବୃତ୍ତ ହୋଇଯିବା ପରେ ପୁରୁଷ ପୁନଃ ଜ୍ଞାନୀରୂପରେ ହିଁ ସ୍ଥିତ ହୋଇଯାଏ । ଏଥିରେ ଅନ୍ୟଥା ବିଗ୍ରହ କରିବାର ଆବଶ୍ୟକତା ନାହିଁ । ସବୁରି ରୂପରେ ଶିବ ଓ ଶିବ ହିଁ ସବୁକିଛି । ଶିବ ତଥା ସମଗ୍ର ଜଗତରେ କିଛି ଅନ୍ତର ନାହିଁ । ତେବେ କେହି ଅନେକତା କାହିଁକି ଦେଖେ ଆଉ କାହିଁକି ଅନେକତା ଖୋଜେ? ଯେପରି ଏକମାତ୍ର ସୂର୍ଯ୍ୟ ନାମକ ଜ୍ୟୋତିଷ୍କ ଜଳ ଆଦି ଉପାଧିରେ ନାନା ପ୍ରକାର ଦେଖାଯାଏ, ଠିକ୍ ସେହିପରି ଶିବ ମଧ୍ୟ ଅଟନ୍ତି । ଆକାଶ ଯେପରି ସର୍ବତ୍ର ବ୍ୟାପକ ହୋଇ ମଧ୍ୟ ସ୍ପର୍ଶ ଆଦି ବନ୍ଧନରେ ନ ଥାଏ, ଠିକ୍ ସେହିପରି ବ୍ୟାପକ ଶିବ ମଧ୍ୟ କେଉଁ ବନ୍ଧନରେ ନ ଥାନ୍ତି । ଅହଂକାରଯୁକ୍ତ ହୋଇଯିବାରୁ ଶିବଙ୍କ ଅଂଶ ଜୀବ ନାମରେ ପରିଚିତ ହୁଏ । ଅହଂକାରରୁ ମୁକ୍ତ ହୋଇଗଲେ ସେ ସାକ୍ଷାତ୍ ଶିବ ହିଁ ଅଟେ । କର୍ମଭୋଗରେ ଲିପ୍ତ ହେବା କାରଣରୁ ଜୀବ ତୁଚ୍ଛ ଅଟେ, ଅପରପକ୍ଷେ ନିର୍ଲିପ୍ତ ହେବା କାରଣରୁ ଶିବ ମହାନ୍ ଅଟନ୍ତି । ଯେପରି ଏକମାତ୍ର ସୁନା ଅନ୍ୟ ଧାତୁ ରୁପା ଇତ୍ୟାଦି ସହ ମିଶିଗଲେ କମ୍ ମୂଲ୍ୟର ହୋଇଯାଏ, ସେହିପରି ଅହଂକାରଯୁକ୍ତ ଜୀବ ନିଜର ମହତ୍ତ୍ୱ ହରାଇ ବସେ । କ୍ଷାର ଇତ୍ୟାଦି ଦ୍ୱାରା ଶୁଦ୍ଧ କରାଗଲେ ସେହି ସୁନା ଯେପରି ପୂର୍ବବତ୍ ବହୁମୂଲ୍ୟର ହୋଇଯାଏ, ଠିକ୍ ସେହିପରି ସଂସ୍କାରବିଶେଷ ଦ୍ୱାରା ଶୁଦ୍ଧ ହୋଇ ଜୀବ ମଧ୍ୟ ଶୁଦ୍ଧ ହୋଇଯାଏ ।

ପ୍ରଥମେ ସଦ୍‌ଗୁରୁଙ୍କୁ ପାଇ ଭକ୍ତିଭାବରେ ଶିବବୁଦ୍ଧିରେ ତାଙ୍କୁ ପୂଜା ଓ ସ୍ମରଣ ପ୍ରଭୃତି କରିବା ଆବଶ୍ୟକ । ଗୁରୁଙ୍କ ଠାରେ ଶିବବୁଦ୍ଧି କଲେ ସମସ୍ତ ପାପାଦି ମଳ ଶରୀରରୁ ବାହାରି ଯାଏ । ସେତେବେଳେ ଅଜ୍ଞାନ ନଷ୍ଟ ହୋଇଯାଏ । ସେହି ଅବସ୍ଥାରେ ଅହଂକାରମୁକ୍ତ ନିର୍ମଳ ବୁଦ୍ଧିଯୁକ୍ତ ଜୀବ ଶିବଙ୍କ ପ୍ରସାଦରୁ ପୁନଃ ଶିବରୂପ ହୋଇଯାଏ । ଦର୍ପଣରେ ନିଜର ରୂପ ଦୃଶ୍ୟ ହେଲା ପରି ତାହାକୁ ସର୍ବତ୍ର ଶମ୍ଭୁଙ୍କର ସାକ୍ଷାତ୍କାର ହେବାକୁ ଲାଗେ । ସେ ସେତେବେଳେ ଜୀବନ୍ମୁକ୍ତ ବୋଲାଏ । ଶରୀର ନଷ୍ଟ ହୋଇଗଲେ ସେହି ଜୀବନ୍ମୁକ୍ତ ଜ୍ଞାନୀ ଶିବଙ୍କ ଠାରେ ମିଶିଯାଏ । ଦେହ ପ୍ରାରବ୍ଧର ଅଧୀନ । ଯେ ସେହି ଦେହ ପ୍ରତି ଅଭିମାନଶୂନ୍ୟ, ତାହାକୁ ଜ୍ଞାନୀ କୁହାଯାଏ । ଯେ ଶୁଭ ବସ୍ତୁକୁ ପାଇ ହର୍ଷରେ ଉତ୍‌ଫୁଲ୍ଲିତ ହୁଏ ନାହିଁ କି ଅଶୁଭକୁ ପାଇ କ୍ରୋଧ ବା ଶୋକ କରେ ନାହିଁ ଏବଂ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱରେ ସମଭାବ ରଖେ, ତାହାକୁ ଜ୍ଞାନବାନ୍ କୁହାଯାଏ ।* ଆତ୍ମଚିନ୍ତନ ଓ ତତ୍ତ୍ୱବିବେକ ଦ୍ୱାରା ଏପରି ପ୍ରଯତ୍ନ କରିବା ଉଚିତ, ଯାହାଫଳରେ ଶରୀରଠାରୁ ନିଜର ପାର୍ଥକ୍ୟ ଅନୁଭବ ହୋଇଯିବ । ମୁକ୍ତି ଚାହୁଁଥିବା ବ୍ୟକ୍ତି ଦେହ ଓ ଦେହାଭିମାନ ତ୍ୟାଗ କରି ଅହଂକାରଶୂନ୍ୟ ଏବଂ ମୁକ୍ତ ହୋଇ ସଦାଶିବଙ୍କ ଠାରେ ବିଲୀନ ହୋଇଯାଏ । ଅଧ୍ୟାତ୍ମଚିନ୍ତନ ଏବଂ ଶିବଙ୍କ ଭକ୍ତି—ଏସବୁ ଜ୍ଞାନର ମୂଳ କାରଣ । ଭକ୍ତିଦ୍ୱାରା ସାଧନବିଷୟକ ପ୍ରେମର ଉପଲବ୍ଧି ହୋଇଥାଏ ବୋଲି କୁହାଯାଇଛି । ପ୍ରେମରୁ

* ଶୁଭଂ ଲବ୍‌ଧ୍ୱା ନ ହୃଷ୍ୟେତ କୁପ୍ୟେଲ୍ଲବ୍‌ଧ୍ୱାଶୁଭଂ ନହି । ଦ୍ୱନ୍ଦ୍ୱେଷୁ ସମତା ଯସ୍ୟ ଜ୍ଞାନବାନୁଚ୍ୟତେ ହି ସଃ ॥
(ଶି. ପୁ. କୋଟିରୁ. ସଂ. ୪୩ । ୩୧)

ଶ୍ରବଣ, ଶ୍ରବଣରୁ ସତ୍ସଙ୍ଗ ପ୍ରାପ୍ତ ହୁଏ ଏବଂ ସତ୍ସଙ୍ଗରୁ ଜ୍ଞାନୀ ଗୁରୁ ମିଳନ୍ତି । ଗୁରୁକୃପାରୁ ଜ୍ଞାନପ୍ରାପ୍ତି ହୋଇଗଲେ ମନୁଷ୍ୟ ନିଶ୍ଚିତରୂପେ ମୁକ୍ତ ହୋଇଯାଏ । ତେଣୁ ବୁଦ୍ଧିମାନ୍ ଲୋକେ ସଦା ଶମ୍ଭୁଙ୍କୁ ଭଜିବା ଉଚିତ । ଯେ ଅନନ୍ୟ ଭକ୍ତିରେ ଶମ୍ଭୁଙ୍କୁ ଭଜେ, ତାହାକୁ ଶେଷରେ ଅବଶ୍ୟ ମୋକ୍ଷ ପ୍ରାପ୍ତି ହୋଇଥାଏ । ତେଣୁ ମୁକ୍ତି ଦେବା ପାଇଁ ଭଗବାନ ଶଙ୍କରଙ୍କ ଠାରୁ ବଳି ବଡ଼ ଦେବତା ଆଉ କେହି ନାହିଁ । ତାଙ୍କରି ଶରଣ ଯାଇ ଜୀବ ସଂସାର ବନ୍ଧନରୁ ମୁକ୍ତ ହୋଇଯାଏ ।

ବ୍ରାହ୍ମଣବୃନ୍ଦ ! ଏହିରୂପେ ସେଠାରେ ଉପସ୍ଥିତ ଋଷିମାନେ ପରସ୍ପର ବିଚାର-ବିମର୍ଶ ଦ୍ୱାରା ନିର୍ଣ୍ଣୟ କରି ଏ ଯେଉଁ ଜ୍ଞାନର କଥା କହିଲେ, ଏହାକୁ ନିଜ ବୁଦ୍ଧିରେ ପ୍ରଯତ୍ନପୂର୍ବକ ଧାରଣ କରିବା ଉଚିତ । ମୁନୀଶ୍ୱରବୃନ୍ଦ ! ତୁମେମାନେ ଯାହା ପଚାରିଥିଲ, ମୁଁ ସେ ସବୁର ଉତ୍ତର ଦେଇଦେଲି । ଏହାକୁ ତୁମେ ପ୍ରଯତ୍ନପୂର୍ବକ ଗୁପ୍ତ ରଖିବା ଉଚିତ । ଏଥର ଆଉ କ'ଣ ଶୁଣିବାକୁ ଚାହୁଁଛ, କୁହ ।

ଋଷିମାନେ କହିଲେ—ବ୍ୟାସଶିଷ୍ୟ ! ଆପଣଙ୍କୁ ନମସ୍କାର । ଆପଣ ଧନ୍ୟ ଓ ଶିବଭକ୍ତଙ୍କ ମଧ୍ୟରେ ଶ୍ରେଷ୍ଠ । ଆପଣ ଆମକୁ ଶିବତତ୍ତ୍ୱସମ୍ବନ୍ଧୀୟ ପରମ ଉତ୍ତମ ଜ୍ଞାନ ଶୁଣାଇଲେ । ଆପଣଙ୍କ କୃପାରୁ ଆମ ମନର ଭ୍ରାନ୍ତି ଦୂର ହୋଇଗଲା । ଆମେ ଆପଣଙ୍କ ଠାରୁ ମୋକ୍ଷଦାୟକ ଶିବତତ୍ତ୍ୱର ଜ୍ଞାନ ଲାଭ କରି ସନ୍ତୁଷ୍ଟ ହେଲୁ ।

ସୂତ କହିଲେ—ଦ୍ୱିଜବୃନ୍ଦ ! ମୁଁ ଏ ଯେଉଁ ତତ୍ତ୍ୱଜ୍ଞାନର ଉପଦେଶ ଦେଲି, ଏହା ନାସ୍ତିକକୁ, ଶ୍ରଦ୍ଧାହୀନକୁ, ଶଠକୁ, ଶିବଙ୍କର ଅଭକ୍ତକୁ ଏବଂ ଏ ବିଷୟରେ ରୁଚି ନ ରଖୁଥିବା ଲୋକକୁ କହିବ ନାହିଁ । ବ୍ୟାସଦେବ ଇତିହାସ, ପୁରାଣ, ବେଦ ଓ ଶାସ୍ତ୍ରକୁ ବାରମ୍ବାର ବିଚାର କରି ସେଗୁଡ଼ିକର ସାର ମୋତେ ଉପଦେଶ ଦେଇଛନ୍ତି । ଏହାକୁ ଥରେ ମାତ୍ର ଶ୍ରବଣ କଲେ ମଧ୍ୟ ସମସ୍ତ ପାପ ଭସ୍ମ ହୋଇଯାଏ, ଅଭକ୍ତକୁ ଭକ୍ତି ପ୍ରାପ୍ତ ହୁଏ ଏବଂ ଭକ୍ତର ଭକ୍ତି ବୃଦ୍ଧି ପାଏ । ଦ୍ୱିତୀୟ ଥର ଶ୍ରବଣ କଲେ ଉତ୍ତମ ଭକ୍ତି ପ୍ରାପ୍ତ ହୁଏ । ତୃତୀୟ ଥର ଶ୍ରବଣରେ ମୋକ୍ଷପ୍ରାପ୍ତି ହୋଇଯାଏ । ତେଣୁ ଭୋଗ ଓ ମୋକ୍ଷରୂପୀ ଫଳ ଚାହୁଁଥିବା ଲୋକେ ଏହାକୁ ବାରମ୍ବାର ଶ୍ରବଣ କରିବା ଆବଶ୍ୟକ । ଉତ୍ତମ ଫଳ ପାଇବା ଉଦ୍ଦେଶ୍ୟରେ ଏ ପୁରାଣକୁ ପାଞ୍ଚଥର ଆବୃତ୍ତି କରିବା ବିଧେୟ । ଏପରି କଲେ ମନୁଷ୍ୟ ଅବଶ୍ୟ ତାହା ଲାଭ କରେ, ଏଥିରେ ତିଳେମାତ୍ର ସଂଶୟ ନାହିଁ । କାରଣ ଏହା ବ୍ୟାସଦେବଙ୍କ ବଚନ । ଯେ ଏହି ପୁରାଣକୁ ଶ୍ରବଣ କରିଛି, ତା ପାଇଁ କିଛି ବି ଦୁର୍ଲଭ ନୁହେଁ ।

ଏହି ଶିବ-ବିଜ୍ଞାନ ଭଗବାନ ଶଙ୍କରଙ୍କର ଅତି ପ୍ରିୟ । ଏହା ଭୋଗ ଓ ମୋକ୍ଷ ପ୍ରଦାନ କରିବା ସହ ଶିବଭକ୍ତି ବୃଦ୍ଧି କରିଥାଏ । ମୁଁ ଶିବପୁରାଣର କୋଟିରୁଦ୍ରସଂହିତା ନାମକ ଏହି ଆନନ୍ଦଦାୟିନୀ ତଥା ପୁଣ୍ୟମୟୀ ଚତୁର୍ଥସଂହିତା ବର୍ଣ୍ଣନା କରିଦେଲି । ଯେଉଁ ବ୍ୟକ୍ତି ଏକାଗ୍ରଚିତ୍ତ ହୋଇ ଭକ୍ତିଭାବରେ ଏହି ସଂହିତାକୁ ଶୁଣିବ ବା ଶୁଣାଇବ, ସେ ସମସ୍ତ ଭୋଗ ଉପଭୋଗ କରି ଶେଷରେ ପରମଗତି ଲାଭ କରିବ । (ଅଧ୍ୟାୟ ୪୩)

★★★

## ॥ କୋଟିରୁଦ୍ରସଂହିତା ସମ୍ପୂର୍ଣ୍ଣ ॥



# ଉମାସଂହିତା

## ଭଗବାନ ଶ୍ରୀକୃଷ୍ଣଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ତାଙ୍କୁ ଶିବ ଓ ପାର୍ବତୀଙ୍କର ଅଭୀଷ୍ଟ ବର ପ୍ରଦାନ ଏବଂ ଶିବଙ୍କ ମହିମା

ଯୋ ଧତ୍ତେ ଭୁବନାନି ସପ୍ତ ଗୁଣବାନ୍ ସ୍ରଷ୍ଟା ରଜଃସଂଶ୍ରୟଃ
ସଂହର୍ତ୍ତା ତମସାନ୍ୱିତୋ ଗୁଣବତୀଂ ମାୟାମତୀତ୍ୟ ସ୍ଥିତଃ ।
ସତ୍ୟାନନ୍ଦମନନ୍ତବୋଧମମଲଂ ବ୍ରହ୍ମାଦିସଂଜ୍ଞାସ୍ପଦଂ
ନିତ୍ୟଂ ସତ୍ତ୍ୱସମନ୍ୱୟାଦଧିଗତଂ ପୂର୍ଣ୍ଣଂ ଶିବଂ ଧୀମହି ॥

"ଯେ ରଜୋଗୁଣର ଆଶ୍ରୟ ନେଇ ଜଗତକୁ ସୃଷ୍ଟି କରନ୍ତି, ସତ୍ତ୍ୱଗୁଣରେ ଯୁକ୍ତ ହୋଇ ସପ୍ତ-ଭୁବନକୁ ଧାରଣ-ପୋଷଣ କରନ୍ତି, ତମୋଗୁଣରେ ଯୁକ୍ତ ହୋଇ ସମସ୍ତଙ୍କୁ ସଂହାର କରନ୍ତି ତଥା ତ୍ରିଗୁଣମୟୀ ମାୟାକୁ ଲଙ୍ଘି ନିଜ ଶୁଦ୍ଧ ସ୍ୱରୂପରେ ସ୍ଥିତ ରହନ୍ତି, ସେହି ସତ୍ୟାନନ୍ଦସ୍ୱରୂପ, ଅନନ୍ତ ବୋଧମୟ, ନିର୍ମଳ ଓ ପୂର୍ଣ୍ଣବ୍ରହ୍ମ ଶିବଙ୍କୁ ଆମେ ଧ୍ୟାନ କରୁଛୁ । ସେ ହିଁ ସୃଷ୍ଟିକାଳରେ ବ୍ରହ୍ମା, ପାଳନକାଳରେ ବିଷ୍ଣୁ ଓ ସଂହାରକାଳରେ ରୁଦ୍ର ନାମ ଧାରଣ କରନ୍ତି ଏବଂ ନିତ୍ୟ ସାତ୍ତ୍ୱିକଭାବକୁ ଆପଣେଇ ନେଲେ ହିଁ ପ୍ରାପ୍ତ ହୁଅନ୍ତି ।"

ଋଷିମାନେ କହିଲେ—ମହାଜ୍ଞାନୀ ବ୍ୟାସଶିଷ୍ୟ ସୂତ ! ଆପଣଙ୍କୁ ନମସ୍କାର । ଆପଣ କୋଟିରୁଦ୍ର-ସଂହିତା ଆମକୁ ଶୁଣାଇଲେ । ଏବେ ଉମାସଂହିତା ଅନ୍ତର୍ଗତ ନାନା ପ୍ରକାର ଉପାଖ୍ୟାନ କ୍ରମେ ପରମାତ୍ମା ସାମ୍ବସଦାଶିବଙ୍କର ଚରିତ୍ର ବର୍ଣ୍ଣନା କରନ୍ତୁ ।

ସୂତ କହିଲେ—ଶୌନକାଦି ମହର୍ଷିଗଣ ! ଭଗବାନ ଶଙ୍କରଙ୍କ ମଙ୍ଗଳମୟ ଚରିତ୍ର ପରମ ଦିବ୍ୟ ଏବଂ ତାହା ଭୋଗ ଓ ମୋକ୍ଷ ପ୍ରଦାନକାରୀ । ତୁମେମାନେ ପ୍ରେମପୂର୍ଣ୍ଣଚିତ୍ତରେ ତାହା ଶ୍ରବଣ କର । ପୂର୍ବକାଳରେ ମୁନିବର ବ୍ୟାସ ମଧ୍ୟ ସନତ୍‌କୁମାରଙ୍କ ସମ୍ମୁଖରେ ଏହିପରି ପବିତ୍ର ପ୍ରଶ୍ନ ଉପସ୍ଥାପିତ କରିଥିଲେ ଏବଂ ତାହାର ଉତ୍ତରରେ ସେ ଭଗବାନ ଶିବଙ୍କର ଉତ୍ତମ ଚରିତ୍ର ଗାନ କରିଥିଲେ ।

ସେତେବେଳେ ସନତ୍‌କୁମାର ଶିବଙ୍କ ଚରିତ୍ର ବର୍ଣ୍ଣନା କରିବାକୁ ଯାଇ ପ୍ରଥମେ ଶ୍ରୀକୃଷ୍ଣ କିପରି ପୁତ୍ରପ୍ରାପ୍ତି ନିମିତ୍ତ ହିମବାନ ପର୍ବତକୁ ଯାଇ ମହର୍ଷି ଉପମନ୍ୟୁଙ୍କ ସଙ୍ଗେ ଭେଟିଲେ ଏବଂ ତାଙ୍କ ଉପଦିଷ୍ଟ ପଦ୍ଧତି ଅନୁସାରେ ଶିବଙ୍କୁ ପ୍ରସନ୍ନ କରିବା ପାଇଁ କିପରି ତପସ୍ୟା କଲେ, ପୁଣି ତାଙ୍କ ତପସ୍ୟାରେ ପ୍ରସନ୍ନ ହୋଇ କିପରି ପାର୍ବତୀ, କାର୍ତ୍ତିକେୟ ତଥା ଗଣେଶଙ୍କ ସହିତ ଭଗବାନ ଶିବ ଆବିର୍ଭୂତ ହେଲେ ତଥା ଶ୍ରୀକୃଷ୍ଣ କିପରି ସ୍ତୁତିପୂର୍ବକ ବର ମାଗିଲେ—ଏ ସମସ୍ତ ପ୍ରସଙ୍ଗ ଶୁଣାଇଲେ । ତା'ପରେ କହିଲେ—ଶ୍ରୀକୃଷ୍ଣ ବର ମାଗିବାରୁ ଭଗବାନ ଭବ କହିଲେ—"ହେ ବାସୁଦେବ ! ତୁମର ଯାହା କିଛି ମନୋରଥ ଅଛି, ତାହା ପୂର୍ଣ୍ଣ ହେବ ।" ଏତିକି କହି ତ୍ରିଶୂଳଧାରୀ ଭଗବାନ ଶିବ ପୁଣି କହିଲେ—"ହେ ଯାଦବେନ୍ଦ୍ର ! ତୁମକୁ ସାମ୍ବ ନାମରେ ପ୍ରସିଦ୍ଧ ଗୋଟିଏ ମହାପରାକ୍ରମୀ ପୁତ୍ର ପ୍ରାପ୍ତ ହେବ । ଥରେ ମୁନିମାନେ ସଂବର୍ତ୍ତକ (ପ୍ରଳୟଙ୍କର) ସୂର୍ଯ୍ୟଙ୍କୁ ମାନବଯୋନିରେ ଉତ୍ପନ୍ନ ହେବାକୁ ଅଭିଶାପ ଦେଇଥିଲେ । ତେଣୁ ସେହି ସଂବର୍ତ୍ତକ ସୂର୍ଯ୍ୟ ହିଁ ତୁମର ପୁତ୍ର ହେବେ । ଏହାଛଡ଼ା ତୁମର ଆଉ ଯାହା କିଛି ଅଭୀଷ୍ଟ ଅଛି, ତାହା ମଧ୍ୟ ତୁମକୁ ପ୍ରଦାନ କଲି ।"

ସନତ୍‌କୁମାର କହୁଛନ୍ତି—ପରମେଶ୍ୱର ଶିବଙ୍କ ଠାରୁ ଏଭଳି ବର ଲାଭ କରି ଶ୍ରୀକୃଷ୍ଣ ବିବିଧ ସ୍ତୁତି ଦ୍ୱାରା ତାଙ୍କୁ ସନ୍ତୁଷ୍ଟ କଲେ । ଏହାପରେ ଭକ୍ତବତ୍ସଳା

ଗିରିରାଜକୁମାରୀ ପାର୍ବତୀ ମଧ୍ୟ ପ୍ରସନ୍ନ ହୋଇ ସେହି ତପସ୍ୱୀ ଶିବଭକ୍ତ ମହାତ୍ମା ବାସୁଦେବଙ୍କୁ କହିଲେ—

ପାର୍ବତୀ କହିଲେ—ପରମ ବୁଦ୍ଧିମାନ୍ ବସୁଦେବନନ୍ଦନ ! ମୁଁ ତୁମ ଉପରେ ଅତ୍ୟନ୍ତ



ପ୍ରସନ୍ନ । ଅନଘ ! ତୁମେ ମୋଠାରୁ ମଧ୍ୟ ମନୋବାଞ୍ଛିତ ବର ଗ୍ରହଣ କର, ଯାହାକି ଭୂତଳରେ ଦୁର୍ଲଭ ।

ଶ୍ରୀକୃଷ୍ଣ କହିଲେ—ହେ ଦେବୀ ! ଯଦି ଆପଣ ମୋର ଏହି ଅନାବିଳ ତପସ୍ୟାରେ ସନ୍ତୁଷ୍ଟ, ତେବେ ମୋତେ ଏହି ବର ଦିଅନ୍ତୁ ଯେ ମୋ ମନରେ ଯେପରି କେବେ ବ୍ରାହ୍ମଣଙ୍କ ପ୍ରତି ଦ୍ୱେଷଭାବ ନ ହେବ, ମୁଁ ସଦା ଦ୍ୱିଜଙ୍କୁ ପୂଜା କରୁଥିବି । ପିତାମାତା ସଦା ମୋ ପ୍ରତି ସନ୍ତୁଷ୍ଟ ରହିବେ । ମୁଁ ଯେଉଁଠିକୁ ଗଲେ ବି ସକଳ ପ୍ରାଣୀଙ୍କ ପ୍ରତି ମୋ ମନରେ ଅନୁକୂଳ ଭାବ ରହିବ । ଆପଣଙ୍କ ଦର୍ଶନ ପ୍ରଭାବରେ ମୋର ସନ୍ତତି ଉତ୍ତମ ହେବେ । ଏହାଛଡ଼ା ମୁଁ ଯେପରି ଶହେ ଯଜ୍ଞ କରି ଇନ୍ଦ୍ରାଦି ଦେବତାଙ୍କୁ ତୃପ୍ତ କରିପାରିବି, ହଜାର ହଜାର ସାଧୁ-ସନ୍ନ୍ୟାସୀଙ୍କୁ ଓ ଅତିଥିଙ୍କୁ ସଦା ମୋ ଗୃହରେ ପବିତ୍ର ଅନ୍ନ ଭୋଜନ କରାଇ ପାରିବି, ଭାଇବନ୍ଧୁଙ୍କ ସହ ମୋର ନିତ୍ୟ ପ୍ରେମଭାବ ରହିବ ଏବଂ ମୁଁ ସଦା ସନ୍ତୁଷ୍ଟ ରହିବି, ସେପରି ବର ମୋତେ ପ୍ରଦାନ କରନ୍ତୁ ।

ସନତ୍‌କୁମାର କହୁଛନ୍ତି—ଶ୍ରୀକୃଷ୍ଣଙ୍କ କଥା ଶୁଣି ସକଳ ଅଭୀଷ୍ଟଦାତ୍ରୀ ସନାତନୀ ଦେବୀ ପାର୍ବତୀ ବିସ୍ମିତ ହୋଇ କହିଲେ—''ବାସୁଦେବ ! ତଥାସ୍ତୁ । ତୁମର କଲ୍ୟାଣ ହେଉ ।'' ଏପରିଭାବରେ ଶ୍ରୀକୃଷ୍ଣଙ୍କ ଉପରେ କୃପା କରି ଓ ତାଙ୍କୁ ବର ପ୍ରଦାନ କରି ଦେବୀ ପାର୍ବତୀ ତଥା ପରମେଶ୍ୱର ଶିବ ଉଭୟେ ଅନ୍ତର୍ହିତ ହୋଇଗଲେ । ଏହାପରେ କେଶିହନ୍ତା ଶ୍ରୀକୃଷ୍ଣ ମୁନିବର ଉପମନ୍ୟୁଙ୍କୁ ପ୍ରଣାମ କରି ତାଙ୍କୁ ବରପ୍ରାପ୍ତିର ସମସ୍ତ ବୃତ୍ତାନ୍ତ ଅବଗତ କରାଇଲେ । ମୁନି କହିଲେ—''ହେ ଜନାର୍ଦ୍ଦନ ! ସଂସାରରେ ଭଗବାନ ଶିବଙ୍କ ଛଡ଼ା ଆଉ କିଏ ଏପରି ମହାଦାନୀ ଈଶ୍ୱର ଅଛନ୍ତି, ପୁଣି କ୍ରୋଧ ସମୟରେ ଅନ୍ୟ କିଏ ଏତେ ଦୁଃସହ ହୋଇ ଉଠନ୍ତି? ମହାଯଶସ୍ୱୀ ଗୋବିନ୍ଦ ! ଦାନ, ତପ, ଶୌର୍ଯ୍ୟ ତଥା ସ୍ଥିରତାରେ ଶିବଙ୍କ ଠାରୁ ଅଧିକ ଆଉ କିଏ ଅଛି? ତେଣୁ ତୁମେ ଶମ୍ଭୁଙ୍କ ଦିବ୍ୟ ଐଶ୍ୱର୍ଯ୍ୟକୁ ନିତ୍ୟ ଶ୍ରବଣ କରୁଥାଅ ।''*

ଉପମନ୍ୟୁଙ୍କ ମୁଖରୁ ଶିବଙ୍କ ମହିମା ଶୁଣିବା ପରେ ବସୁଦେବସୁତ କେଶବ ମୁନୀଶ୍ୱରଙ୍କୁ ନମସ୍କାର କଲେ ଏବଂ ମନ ମଧ୍ୟରେ ଶମ୍ଭୁଙ୍କୁ ସ୍ମରଣ କରି କରି ଦ୍ୱାରକାକୁ ଫେରିଗଲେ । (ଅଧ୍ୟାୟ ୧—୩)

⁂⁂⁂

* ମହର୍ଷି ଉପମନ୍ୟୁଙ୍କ ଦ୍ୱାରା ଶ୍ରୀକୃଷ୍ଣଙ୍କ ପ୍ରତି ଶିବତତ୍ତ୍ୱ ଉପଦେଶ ଏବଂ ଉପମନ୍ୟୁଙ୍କ ଆଖ୍ୟାନ ବାୟବୀୟସଂହିତାରେ ସବିସ୍ତାର ବର୍ଣ୍ଣନା କରାଯିବ ।

# ନରକରେ ନିପତିତ କରାଉଥିବା ପାପଗୁଡ଼ିକର ସଂକ୍ଷିପ୍ତ ପରିଚୟ

ସନତ୍‌କୁମାର କହୁଛନ୍ତି—ବ୍ୟାସଦେବ ! ଯେଉଁ ପାପପରାୟଣ ଜୀବମାନେ ଘୋର ନରକର ଅଧିକାରୀ, ସେମାନଙ୍କର ସଂକ୍ଷିପ୍ତ ପରିଚୟ ଦେଉଛି, ମନ ଦେଇ ଶୁଣ । ପରସ୍ତ୍ରୀକୁ ପାଇବାର ସଂକଳ୍ପ, ପରଧନ ହରିବାର ଇଚ୍ଛା, ମନରେ ଅନ୍ୟର ଅନିଷ୍ଟ ଚିନ୍ତନ ଏବଂ ଅକରଣୀୟ କର୍ମରେ ପ୍ରବୃତ୍ତ ହେବାର ଦୁରାଗ୍ରହ—ଏ ଚାରୋଟି ହେଉଛି ମାନସିକ ପାପକର୍ମ । ଅସଙ୍ଗତ ପ୍ରଳାପ, ଅସତ୍ୟ ଭାଷଣ, ଅପ୍ରିୟ କଥନ ଓ ପରୋକ୍ଷରେ ଚୁଗୁଲି କରିବା—ଏ ଚାରୋଟି ବାଚିକ ପାପକର୍ମ । ଅଭକ୍ଷ୍ୟଭକ୍ଷଣ, ପ୍ରାଣୀହିଂସା, ବୃଥାକର୍ମରେ ସଂଲଗ୍ନ ରହିବା ଓ ଅନ୍ୟର ଧନ ଛଡ଼ାଇ ନେବା—ଏ ଚାରୋଟି ଶାରୀରିକ ପାପକର୍ମ । ଏ ବାରଟି ପାପକର୍ମ ମନ, ବାଣୀ ଓ ଶରୀର ଦ୍ୱାରା ସମ୍ପନ୍ନ ହୋଇଥାଏ । ଯେଉଁମାନେ ସଂସାରସାଗରରୁ ପାର କରାଉଥିବା ମହାଦେବଙ୍କ ପ୍ରତି ଦ୍ୱେଷ କରନ୍ତି, ସେମାନେ ସମସ୍ତେ ନରକସମୁଦ୍ରରେ ନିପତିତ ହୁଅନ୍ତି । ସେମାନେ ବହୁତ ବଡ଼ ପାପରେ ଭାଗୀ ହୁଅନ୍ତି । ଯେଉଁମାନେ ଶିବଜ୍ଞାନ ଉପଦେଷ୍ଟା ତପସ୍ୱୀଙ୍କୁ, ଗୁରୁଜନଙ୍କୁ ଓ ବାପା-ବଡ଼ବାପା ପ୍ରଭୃତିଙ୍କୁ ନିନ୍ଦା କରନ୍ତି, ସେପରି ଉନ୍ମତ୍ତ ମନୁଷ୍ୟ ନରକସିନ୍ଧୁରେ ପଡ଼ନ୍ତି । ବ୍ରହ୍ମହତ୍ୟାକାରୀ, ମଦ୍ୟପ, ସ୍ୱର୍ଣ୍ଣ-ଚୋର, ଗୁରୁପତ୍ନୀ-ଗମନକାରୀ ତଥା ଏମାନଙ୍କ ସଙ୍ଗେ ସମ୍ପର୍କ ରଖୁଥିବା ବ୍ୟକ୍ତି—ଏ ପାଞ୍ଚ ପ୍ରକାର ପାପୀ ମହାପାତକୀ ନାମରେ କଥିତ ହୁଅନ୍ତି ।

ଯେ କ୍ରୋଧରେ, ଲୋଭରେ, ଭୟରେ ତଥା ଦ୍ୱେଷରେ ବ୍ରାହ୍ମଣବଧ ପାଇଁ ଅତ୍ୟନ୍ତ ମର୍ମଭେଦୀ ବାକ୍ୟରେ ଦୋଷ ବର୍ଣ୍ଣନା କରେ, ସେ ବ୍ରହ୍ମହତ୍ୟାକାରୀ ଅଟେ । ଯେ ବ୍ରାହ୍ମଣକୁ ଡାକି ତାକୁ କୌଣସି ବସ୍ତୁ ଦେବା ପରେ ପୁଣି ତାହାକୁ ନେଇଯାଏ ତଥା ଯେ ନିର୍ଦୋଷ ବ୍ୟକ୍ତି ଉପରେ ଦୋଷାରୋପ କରେ, ସେ ମଧ୍ୟ ବ୍ରହ୍ମହତ୍ୟାକାରୀ ଅଟେ । ଯେ ପୂର୍ଣ୍ଣସଭାରେ ଉଦାସୀନ ଭାବରେ ବସିଥିବା ଶ୍ରେଷ୍ଠ ଦ୍ୱିଜଙ୍କୁ ନିଜ ବିଦ୍ୟାର ଅଭିମାନରେ ଅପମାନିତ କରି ତାଙ୍କୁ ହତପ୍ରଭ କରିଦିଏ, ତାକୁ ବ୍ରହ୍ମହତ୍ୟାକାରୀ କୁହାଯାଏ । ଯେ ଅନ୍ୟର ଯଥାର୍ଥ ଗୁଣକୁ ମଧ୍ୟ ବଳପୂର୍ବକ ଖଣ୍ଡନ କରି ମିଥ୍ୟା ଗୁଣଦ୍ୱାରା ନିଜର ଉତ୍କୃଷ୍ଟତା ପ୍ରତିପାଦିତ କରେ, ସେ ମଧ୍ୟ ନିଶ୍ଚିତରୂପେ ବ୍ରହ୍ମହତ୍ୟାକାରୀ । ଯେ ଷଣ୍ଢ ଓ ଗାଈଙ୍କ ସଙ୍ଗମ ବେଳେ ତଥା ଦ୍ୱିଜମାନେ ଗୁରୁଙ୍କ ଠାରୁ ଉପଦେଶ ଗ୍ରହଣ କରୁଥିବା ବେଳେ ସେମାନଙ୍କ କାର୍ଯ୍ୟରେ ବିଘ୍ନ ଉପସ୍ଥିତ କରେ, ତାକୁ ମଧ୍ୟ ବ୍ରହ୍ମହତ୍ୟାକାରୀ କହନ୍ତି । ଯେ ଦେବତା, ବ୍ରାହ୍ମଣ ତଥା ଗୋରୁଙ୍କ ଉପଯୋଗ ପାଇଁ ପ୍ରଦତ୍ତ ଭୂମିକୁ ପୁନଃ ହରଣ କରିନିଏ, ତାହାକୁ ବ୍ରହ୍ମହତ୍ୟାକାରୀ କୁହାଯାଇଛି । ଦେବତା ଓ ବ୍ରାହ୍ମଣଙ୍କ ଧନ ହରିନେବା ତଥା ଅନ୍ୟାୟରେ ଧନ ଉପାର୍ଜନ କରିବା ବ୍ରହ୍ମହତ୍ୟା ସଦୃଶ ପାପ ବୋଲି ଜାଣିବା ଉଚିତ । କୌଣସି ବ୍ରତ, ନିୟମ ତଥା ଯଜ୍ଞ କରିବାର ସଂକଳ୍ପ କରି ପରେ ତାହାକୁ ପାଳନ ନ କରିବା ଏବଂ ପଞ୍ଚମହାଯଜ୍ଞ ଅନୁଷ୍ଠାନ ନ କରିବା ମଦ୍ୟପାନ ସଦୃଶ ପାତକ ବୋଲି ଧରାଯାଇଛି । ପିତାମାତାଙ୍କୁ ପରିତ୍ୟାଗ କରିବା, ମିଛ ସାକ୍ଷୀ ଦେବା, ବ୍ରାହ୍ମଣଙ୍କୁ ମିଥ୍ୟା ପ୍ରତିଶ୍ରୁତି ଦେବା, ଶିବଭକ୍ତଙ୍କୁ ମାଂସ ଖୋଇବା ଏବଂ ଅଭକ୍ଷ୍ୟ ଦ୍ରବ୍ୟ ଭକ୍ଷଣ କରିବା ବ୍ରହ୍ମହତ୍ୟା ତୁଲ୍ୟ ଅଟେ । ବନରେ ନିରପରାଧ ପ୍ରାଣୀଙ୍କୁ ବଧ କରିବା ମଧ୍ୟ ବ୍ରହ୍ମହତ୍ୟା ତୁଲ୍ୟ । ସାଧୁପୁରୁଷ ବ୍ରାହ୍ମଣଙ୍କ ଧନକୁ ତ୍ୟାଗ କରିବା ଉଚିତ । ତାହାକୁ ଧର୍ମକାର୍ଯ୍ୟରେ ମଧ୍ୟ ନ ଲଗାଇବା ଉଚିତ, ଅନ୍ୟଥା ବ୍ରହ୍ମହତ୍ୟାର ଦୋଷ ଲାଗେ । ଗୋରୁଙ୍କ ଯିବାଆସିବା ମାର୍ଗରେ, ବନରେ ତଥା ଗାଆଁରେ ଯେଉଁ ଲୋକେ ନିଆଁ ଲଗାଇ ଦିଅନ୍ତି, ସେମାନେ ମଧ୍ୟ ବ୍ରହ୍ମହତ୍ୟା

ହିଁ କରିଥାନ୍ତି । ଏପରି ଯେତେ ସବୁ ଭୟାନକ ପାପ ଅଛି, ସେସବୁ ବ୍ରହ୍ମହତ୍ୟା ସମାନ ।

ବ୍ରାହ୍ମଣଙ୍କ ଦ୍ରବ୍ୟ ଅପହରଣ କରିବା, ପୈତୃକ ସମ୍ପତ୍ତି ବାଣ୍ଟକୁଣ୍ଟରେ କପଟ କରିବା, ଅତ୍ୟଧିକ ଅଭିମାନ ଓ କ୍ରୋଧ କରିବା, ପାଷଣ୍ଡତା ବିସ୍ତାର କରିବା, କୃତଘ୍ନତା କରିବା, ବିଷୟରେ ଅତ୍ୟନ୍ତ ଆସକ୍ତ ରହିବା, କୃପଣତା କରିବା, ସାଧୁଜନଙ୍କ ପ୍ରତି ଦ୍ୱେଷ କରିବା, ପରସ୍ତ୍ରୀସମାଗମ କରିବା, ଶ୍ରେଷ୍ଠ କୁଳର କନ୍ୟାମାନଙ୍କୁ କଳଙ୍କିତ କରିବା, ଯଜ୍ଞ, ବାଗବଗିଚ୍ଚ, ସରୋବର ତଥା ସ୍ତ୍ରୀପୁରୁଷଙ୍କୁ ବିକ୍ରୟ କରିବା, ତୀର୍ଥଯାତ୍ରା, ଉପବାସ ଓ ବ୍ରତ-ଉପନୟନ ଆଦିର ବେପାର କରିବା, ସ୍ତ୍ରୀ-ଧନରେ ଜୀବିକା ପୋଷଣ କରିବା, ନାରୀଙ୍କର ଅତ୍ୟଧିକ ବଶରେ ରହିବା, ସ୍ତ୍ରୀମାନଙ୍କୁ ରକ୍ଷା ନ କରିବା ଏବଂ ଛଳପୂର୍ବକ ପରନାରୀ ସେବନ କରିବା, ବ୍ରହ୍ମଚର୍ଯ୍ୟାଦି ବ୍ରତ ତ୍ୟାଗ କରିଦେବା, ଅନ୍ୟର ଆଗ୍ରହକୁ ଗ୍ରହଣ କରିବା, ଅସତ୍ ଶାସ୍ତ୍ର ଅଧ୍ୟୟନ କରିବା, ମିଥ୍ୟା ତର୍କର ଆଶ୍ରୟ ନେବା, ଦେବତା, ଅଗ୍ନି, ଗୁରୁ, ସାଧୁ ଓ ବ୍ରାହ୍ମଣଙ୍କୁ ନିନ୍ଦା କରିବା, ପିତୃଯଜ୍ଞ ଓ ଦେବଯଜ୍ଞକୁ ତ୍ୟାଗ କରିଦେବା, ସ୍ୱକର୍ମ ପରିତ୍ୟାଗ କରିବା, ମନ୍ଦ ସ୍ୱଭାବକୁ ଆଦରି ନେବା, ନାସ୍ତିକ ହେବା, ପାପରେ ଲିପ୍ତ ରହିବା ଏବଂ ସର୍ବଦା ମିଥ୍ୟା କହିବା—ଏପରି ପାପ କରୁଥିବା ନାରୀ ବା ପୁରୁଷକୁ ଉପପାତକୀ କହନ୍ତି ।

ଯେଉଁ ମନୁଷ୍ୟ ଗୋରୁ, ବ୍ରାହ୍ମଣକନ୍ୟା, ସ୍ୱାମୀ, ମିତ୍ର ତଥା ତପସ୍ୱୀ ମହାତ୍ମାଙ୍କ କାର୍ଯ୍ୟ ନଷ୍ଟ କରିଦିଅନ୍ତି, ସେମାନେ ନାରକୀ ବୋଲାନ୍ତି । ଯେଉଁମାନେ ବ୍ରାହ୍ମଣଙ୍କୁ ଦୁଃଖ ଦିଅନ୍ତି ଓ ସେମାନଙ୍କୁ ମାରିବାକୁ ଶସ୍ତ୍ର ଉଠାନ୍ତି, ଯେଉଁମାନେ ଦ୍ୱିଜ ହୋଇ ଶୂଦ୍ରଙ୍କ ସେବା କରନ୍ତି ଏବଂ କାମବଶତଃ ମଦ୍ୟପାନ କରନ୍ତି, ଯେଉଁମାନେ ପାପପରାୟଣ, କ୍ରୂର ଓ ହିଂସାପ୍ରେମୀ, ଯେଉଁମାନେ ଗୋଶାଳାରେ, ଅଗ୍ନିରେ, ଜଳରେ, ରାସ୍ତାରେ, ବୃକ୍ଷଛାୟାରେ, ପର୍ବତ ଉପରେ, ବଗିଚ୍ଚରେ ତଥା ଦେବମନ୍ଦିର ଆଖପାଖରେ ମଳମୂତ୍ର ବିସର୍ଜନ କରନ୍ତି, ବାଉଁଶ, ଇଟା, ପଥର, କାଠ, ଶିଙ୍ଗ ଓ କଣ୍ଟାଦ୍ୱାରା ରାସ୍ତା ଅବରୋଧ କରନ୍ତି, ଅନ୍ୟର ବିଲହିଡ଼ ବା ଜମିର ସୀମା ହାଣି ନିଶ୍ଚିହ୍ନ କରିଦିଅନ୍ତି, ଛଳପୂର୍ବକ ଶାସନ କରନ୍ତି, ଛଳକପଟପୂର୍ଣ୍ଣ କାର୍ଯ୍ୟରେ ଅଭିରତ ରହନ୍ତି, କାହାକୁ ଠକି ଆଣିଥିବା ପାକ, ଅନ୍ନ ଓ ବସ୍ତ୍ରମାନ କପଟରେ ଉପଯୋଗ କରନ୍ତି, ଯେଉଁମାନେ ସ୍ତ୍ରୀ, ପୁତ୍ର, ମିତ୍ର, ବାଳକ, ବୃଦ୍ଧ, ଦୁର୍ବଳ, ଆତୁର, ଭୃତ୍ୟ, ଅତିଥି ଓ ବନ୍ଧୁଜନଙ୍କୁ ଭୋକିଲା ଛାଡ଼ିଦେଇ ନିଜେ ଖାଇଯାଆନ୍ତି, ଯେଉଁ ଅଜିତେନ୍ଦ୍ରିୟ ଲୋକେ ସ୍ୱୟଂ ନିଜ ଇଚ୍ଛାରେ ନିୟମ ଗ୍ରହଣ କରି ପୁଣି ତାହାକୁ ତ୍ୟାଗ କରିଦିଅନ୍ତି, ସନ୍ନ୍ୟାସ ଗ୍ରହଣ କରି ମଧ୍ୟ ପୁନଃ ଘରସଂସାର କରନ୍ତି, ଯେଉଁମାନେ ଶିବପ୍ରତିମାକୁ ଭାଙ୍ଗଦିଅନ୍ତି, ଗୋରୁଙ୍କୁ ନିଷ୍ଠୁର ଭାବରେ ମାରନ୍ତି ଓ ବାରମ୍ବାର ଦମନ କରନ୍ତି, ଯେଉଁମାନେ ଦୁର୍ବଳ ପଶୁମାନଙ୍କୁ ନ ପୋଷି ଛାଡ଼ିଦିଅନ୍ତି, ଅଧିକ ଭାର ଲଦି ସେମାନଙ୍କୁ କଷ୍ଟ ଦିଅନ୍ତି, ସେମାନଙ୍କ ସହିବା ସାମର୍ଥ୍ୟ ନ ଥିଲେ ମଧ୍ୟ ବଳପୂର୍ବକ ଗାଡ଼ିରେ ବା ହଳରେ ଯୋଚି ଅସହ୍ୟ ଭାର ବୁହାନ୍ତି, ପଶୁମାନଙ୍କୁ ଖାଇବାକୁ ନ ଦେଇ ହଳ କରାନ୍ତି ବା ଭାର ବୁହାନ୍ତି, ଭୋକିଲା ପଶୁଙ୍କୁ ଚରିବାକୁ ନ ଛାଡ଼ି ବାନ୍ଧି ରଖନ୍ତି, କ୍ଲାନ୍ତ, ରୋଗଗ୍ରସ୍ତ ଓ କ୍ଷୁଧାତୁର ଗାଈବଳଦଙ୍କୁ ଯତ୍ନରେ ପାଳନ କରନ୍ତି ନାହିଁ, ସେମାନେ ସମସ୍ତେ ଗୋହତ୍ୟାକାରୀ ଓ ନରକଗାମୀ ବୋଲି ଧରାଯାଇଛି ।

ଯେଉଁ ପାପିଷ୍ଠ ଲୋକେ ବଳଦଙ୍କର ଅଣ୍ଡକୋଷକୁ ଛେଚି ଦିଅନ୍ତି ଓ ବନ୍ଧ୍ୟା ଗାଈକୁ ଭାର ବୋହିବା କାମରେ ଯୋଚନ୍ତି, ସେମାନେ ମହାନାରକୀ ଅଟନ୍ତି । ଯେଉଁମାନେ ଅନ୍ନ ପାଇବା ଆଶାରେ ଆସିଥିବା କ୍ଷୁଧାର୍ତ୍ତ, ପିପାସୁ, ଶ୍ରାନ୍ତ-କ୍ଲାନ୍ତ ଅତିଥି, ଅନାଥ, ସ୍ୱେଚ୍ଛାରେ ବିଚରଣକାରୀ,

ଦୀନଜନ, ବାଳକ, ବୃଦ୍ଧ, ଦୁର୍ବଳ ଓ ରୋଗୀଙ୍କ ପ୍ରତି କୃପା କରନ୍ତି ନାହିଁ, ସେପରି ମୂଢ଼ ଲୋକେ ନରକ-ସିନ୍ଧୁରେ ପଡ଼ନ୍ତି । ମନୁଷ୍ୟ ଯେବେ ମରେ, ତା'ର ଉପାର୍ଜିତ ସମସ୍ତ ଧନ ତା' ଘରେ ହିଁ ରହିଯାଏ । ତା'ର ଭାଇବନ୍ଧୁ କେବଳ ଶ୍ମଶାନ ପର୍ଯ୍ୟନ୍ତ ଯାଆନ୍ତି, କିନ୍ତୁ ସେ ଅର୍ଜନ କରିଥିବା ପାପ ଓ ପୁଣ୍ୟ ହିଁ ତା' ସଙ୍ଗରେ ପରଲୋକକୁ ଯାଇଥାଏ ।

ଯେଉଁ ରାଜା ଔଚିତ୍ୟ ସୀମାକୁ ଲଙ୍ଘନ କରି ମନଇଚ୍ଛା କର ଅସୁଲ କରେ ଓ ଅନ୍ୟକୁ ଦଣ୍ଡ ଦେବାରେ ଅଭିରୁଚି ରଖିଥାଏ, ସେ ନରକରେ ପଡ଼େ । ଯେଉଁ ରାଜାର ରାଜ୍ୟରେ ପ୍ରଜାମାନେ ଲାଞ୍ଚୁଆଙ୍କ ଦ୍ୱାରା, ମନଇଚ୍ଛାରେ ଅଳ୍ପ ମୂଲ୍ୟ ଦେଇ ଅଧିକମୂଲ୍ୟର ମାଲ ନେଇଯାଉଥିବା ଅଧିକାରୀଙ୍କ ଦ୍ୱାରା ତଥା ଚୋର-ଡାକୁଙ୍କ ଦ୍ୱାରା ଅଧିକ ହଇରାଣ ହୁଅନ୍ତି, ସେ ରାଜା ମଧ୍ୟ ନରକରେ ପଡ଼େ । ବ୍ୟଭିଚାରୀ, ଚୋର ଓ କ୍ରୂର ବ୍ୟକ୍ତିଙ୍କୁ ଯେଉଁ ପାପ ଲାଗେ, ସେହି ପାପ ପରସ୍ତ୍ରୀଗାମୀ ରାଜାଙ୍କୁ ବି ଲାଗେ । ଯେଉଁ ରାଜା ସାଧୁକୁ ଚୋର ଓ ଚୋରକୁ ସାଧୁ ବୋଲି ବୁଝେ ଏବଂ ନିର୍ବିଚାରରେ ନିରପରାଧ ବ୍ୟକ୍ତିକୁ ପ୍ରାଣଦଣ୍ଡ ଦିଏ, ସେ ନରକରେ ପଡ଼େ । କୌଣସି ପରଦ୍ରବ୍ୟକୁ ସୋରିଷ ପରିମାଣର ଚୋରି କଲେ ମଧ୍ୟ ମନୁଷ୍ୟ ନରକରେ ପଡ଼େ, ଏଥିରେ ସଂଶୟ ନାହିଁ । ଏପରି ପାପୀ ଲୋକମାନେ ମୃତ୍ୟୁ ପରେ ଯାତନା ଭୋଗିବା ପାଇଁ ସମ୍ପୂର୍ଣ୍ଣ ଅବୟବଯୁକ୍ତ ନୂତନ ଶରୀର (ଯାତନାଶରୀର) ପାଆନ୍ତି । ତେଣୁ ନିଜେ କରିଥିବା ପାପ ପାଇଁ ପ୍ରାୟଶ୍ଚିତ୍ତ କରିନେବା ଉଚିତ । ନଚେତ୍ ଶହେ କଳ୍ପରେ ମଧ୍ୟ ନ ଭୋଗିବା ପର୍ଯ୍ୟନ୍ତ ସେହି ପାପ ନଷ୍ଟ ହୁଏ ନାହିଁ । ଯେ ମନ, ବାଣୀ ଓ ଶରୀର ଦ୍ୱାରା ସ୍ୱୟଂ ପାପ କରେ, ଅନ୍ୟ ଦ୍ୱାରା ପାପ କରାଏ ଏବଂ କାହାରି ଦୁଷ୍କର୍ମକୁ ଅନୁମୋଦନ କରେ, ତା' ପାଇଁ ପାପଗତି (ନରକ) ହିଁ ଫଳ ଅଟେ । (ଅଧ୍ୟାୟ ୪–୬)



## ପାପୀ ଓ ପୁଣ୍ୟାତ୍ମାଙ୍କର ଯମଲୋକଯାତ୍ରା

ସନତ୍‌କୁମାର କହୁଛନ୍ତି–ବ୍ୟାସଦେବ ! ମନୁଷ୍ୟ ଚାରିପ୍ରକାର ପାପ ହେତୁ ଯମଲୋକକୁ ଯାଆନ୍ତି । ଯମଲୋକ ଅତ୍ୟନ୍ତ ଭୟଙ୍କର । ସେଠାକୁ ସମସ୍ତ ଦେହଧାରୀଙ୍କୁ ବିବଶ ହୋଇ ଯିବାକୁ ପଡ଼ିଥାଏ । ଏପରି କୌଣସି ପ୍ରାଣୀ ନାହିଁ, ଯେ ଯମଲୋକକୁ ନ ଯାଉଥିବ । କରିଥିବା କର୍ମର ଫଳ କର୍ତ୍ତାକୁ ଅବଶ୍ୟ ଭୋଗିବାକୁ ପଡ଼େ । ଏକଥା ବିଚାର କର । ଜୀବଙ୍କ ଭିତରେ ଯେଉଁମାନେ ଶୁଭକର୍ମକାରୀ, ସୌମ୍ୟଚିତ୍ତ ଓ ଦୟାଳୁ, ସେମାନେ ସୌମ୍ୟମାର୍ଗରେ ପୂର୍ବଦ୍ୱାର ଦେଇ ଯମପୁରୀକୁ ଯାଆନ୍ତି । ଯେଉଁମାନେ ପାପୀ, ପାପକର୍ମା ତଥା ଦାନକର୍ମରହିତ, ସେମାନେ ଭୟାନକ ଦକ୍ଷିଣମାର୍ଗ ଦେଇ ଯମଲୋକକୁ ଯାଆନ୍ତି । ମର୍ତ୍ତ୍ୟଲୋକଠାରୁ ଛୟାଶୀ ହଜାର ଯୋଜନ ଦୂର ଅତିକ୍ରମ କଲା ପରେ ଯମଲୋକ ପଡ଼େ ବୋଲି ଜାଣିବା ଉଚିତ । ପୁଣ୍ୟକର୍ମକାରୀ ଲୋକଙ୍କୁ ସେହି ନଗର ଅଳ୍ପ ଦୂର ଜଣାପଡ଼େ, କିନ୍ତୁ ଭୟାନକ ମାର୍ଗରେ ଯାତ୍ରା କରୁଥିବା ପାପୀଙ୍କୁ ତାହା ବହୁତ ଦୂର ଜଣା ପଡ଼େ । ସେଠାକାର ମାର୍ଗ କେଉଁଠି ତୀକ୍ଷ୍ଣକଣ୍ଟକଯୁକ୍ତ, କେଉଁଠି ଗୋଡ଼ିମୟ, କେଉଁଠି ଛୁରି ପରି ଧାରୁଆ ପଥରମୟ ତ ଆଉ କେଉଁଠି ଭୟଙ୍କର କାଦୁଅରେ ପୂର୍ଣ୍ଣ । ପାପର ଲଘୁତା ଓ ଗୁରୁତା ଭେଦରେ ସେଠାକାର କ୍ଳେଶରେ ନ୍ୟୂନାଧିକତା ରହିଥାଏ । କେଉଁଠି କେଉଁଠି ଯମପୁରୀମାର୍ଗ ଲୁହା ଛୁଞ୍ଚି ପରି ତୀକ୍ଷ୍ଣ କୁଶରେ ପୂରି ରହିଥାଏ ।

ଏହାପରେ ଯମପୁରୀ ମାର୍ଗର ଭୀଷଣ ଯାତନା ଓ କଷ୍ଟ ବର୍ଣ୍ଣନା କରିସାରି ସନତ୍‌କୁମାର କହିଲେ–

ବ୍ୟାସଦେବ ! ଯେଉଁମାନେ କଦାପି ଦାନ କରି ନାହାନ୍ତି, ସେମାନେ ହିଁ ଏପରି କଷ୍ଟ ସହିଥାନ୍ତି ଏବଂ ସୁଖ ମାଗି ମାଗି ସେହି ମାର୍ଗରେ ଯାଆନ୍ତି । ଯେଉଁମାନେ ପ୍ରଥମରୁ ହିଁ ଦାନରୂପୀ ପାଥେୟ (ଗସ୍ତଖର୍ଚ୍ଚ) ସଙ୍ଗରେ ନେଇକରି ଯାଇଥାନ୍ତି, ସେମାନେ ସୁଖପୂର୍ବକ ଯମଲୋକକୁ ଯାତ୍ରା କରନ୍ତି । ଏହି ବ୍ୟବସ୍ଥାନୁସାରେ ପାପୀ ଜୀବମାନେ କଷ୍ଟ ସହି ସହି ପ୍ରେତପୁରୀରେ ପହଞ୍ଚିବା ପରେ ଯମରାଜଙ୍କୁ ସୂଚନା ଦିଆଯାଏ । ତାଙ୍କର ଆଜ୍ଞା ପାଇ ଦୂତମାନେ ସେହି ପାପୀମାନଙ୍କୁ ଯମରାଜଙ୍କ ସମ୍ମୁଖରେ ଉପସ୍ଥିତ କରାନ୍ତି । ଶୁଭକର୍ମକାରୀ ଲୋକମାନଙ୍କୁ ଯମରାଜ ସ୍ୱାଗତପୂର୍ବକ ଆସନ ଦେଇ ପାଦ୍ୟ-ଅର୍ଘ୍ୟ ନିବେଦନ କରି ପ୍ରିୟ ବ୍ୟବହାରଦ୍ୱାରା ସମ୍ମାନିତ କରନ୍ତି ଓ କହନ୍ତି—



"ବେଦୋକ୍ତ କର୍ମକାରୀ ମହାତ୍ମାଗଣ ! ଆପଣମାନେ ଧନ୍ୟ; କାରଣ ଦିବ୍ୟ ସୁଖ ପାଇବା ପାଇଁ ଆପଣମାନେ ପୁଣ୍ୟକର୍ମ କରିଛନ୍ତି । ତେଣୁ ଆପଣମାନେ ଦିବ୍ୟାଙ୍ଗନାଙ୍କ ଭୋଗରେ ଭୂଷିତ ତଥା ସମସ୍ତ ମନୋବାଞ୍ଛିତ ପଦାର୍ଥରେ ସମ୍ପନ୍ନ ନିର୍ମଳ ସ୍ୱର୍ଗଲୋକକୁ ଯାଆନ୍ତୁ । ସେଠାରେ ମହାନ୍ ଭୋଗମାନ ଉପଭୋଗ କରି ଶେଷରେ ପୁଣ୍ୟ ସମାପ୍ତ ହୋଇଗଲେ ଯାହା କିଛି ଅଳ୍ପ ଅଶୁଭ ବଳିଥିବ, ତାହାକୁ ଏଠାକୁ ଆସି ଭୋଗିବେ ।"

ଯେଉଁମାନେ ଧର୍ମାତ୍ମା ମନୁଷ୍ୟ, ସେମାନେ ସତେ ଯେପରି ଯମରାଜଙ୍କର ମିତ୍ର ପରି ହୋଇଥାନ୍ତି । ସେମାନଙ୍କୁ ଯମରାଜ ସୌମ୍ୟ ଧର୍ମରାଜ ପରି ଦିଶନ୍ତି । କିନ୍ତୁ ଯେଉଁମାନେ କ୍ରୂରକର୍ମା, ସେମାନଙ୍କୁ ଯମରାଜ ଭୟାନକ ଦିଶନ୍ତି । ସେମାନଙ୍କୁ ଯମରାଜଙ୍କ ମୁଖରେ ବିକରାଳ ଦନ୍ତପଂକ୍ତି ଦୃଶ୍ୟ ହୁଏ । ନେତ୍ର କୁଟିଳଭ୍ରୁକୁଟିଯୁକ୍ତ ପ୍ରତୀତ ହୁଏ । ତାଙ୍କର କେଶ ଠିଆ ଠିଆ ଏବଂ



ଦାଢ଼ି ଓ ନିଶ ବଡ଼ ବଡ଼ ଦେଖାଯାଏ । ତାଙ୍କ ଓଠ ଫଡ଼କୁଥାଏ । ସେ ଅଠର ଭୁଜଯୁକ୍ତ, କୁପିତ ଓ କଳା କୋଇଲାର ପର୍ବତ ପରି ଦୃଶ୍ୟ ହୁଅନ୍ତି । ତାଙ୍କ ହାତରେ ସବୁ ପ୍ରକାରର ଅସ୍ତ୍ରଶସ୍ତ୍ର ଥାଏ । ସେ ନାନା ପ୍ରକାର ଦଣ୍ଡର ଭୟ ଦେଖାଇ ସେହି ପାପୀମାନଙ୍କୁ ଗାଳିଦିଅନ୍ତି । ବହୁତ ବଡ଼ ମଇଁଷି ଉପରେ ଆରୂଢ଼ ହୋଇ, ଲାଲ ବସ୍ତ୍ର ପିନ୍ଧି ବହୁତ ବଡ଼ ମହାମେରୁ ପରି ଦୃଷ୍ଟିଗୋଚର ହୁଅନ୍ତି । ତାଙ୍କ

ନେତ୍ର ପ୍ରଜ୍ୱଳିତ ଅଗ୍ନି ପରି ଉଦ୍ଦୀପ୍ତ ଦିଶେ । ତାଙ୍କ ଶବ୍ଦ ପ୍ରଳୟକାଳୀନ ମେଘଗର୍ଜନ ପରି ଶୁଭେ । ତାଙ୍କୁ ଦେଖିଲେ ଲାଗେ ସତେ ଯେପରି ସେ ମହାସାଗରକୁ ପିଇଯାଉଛନ୍ତି, ଗିରିରାଜକୁ ଗିଳି ପକାଉଛନ୍ତି ଓ ମୁହଁରୁ ଅଗ୍ନି ଉଦ୍‌ଗୀରଣ କରୁଛନ୍ତି ।

ତାଙ୍କ ସମୀପରେ ପ୍ରଳୟକାଳୀନ ଅଗ୍ନି ତୁଲ୍ୟ ପ୍ରଭାରେ ମୃତ୍ୟୁ ଦେବତା ଛିଡ଼ା ହୋଇଥାନ୍ତି । କଜ୍ଜଳ ପରି କଳା କାଳଦେବତା ଓ ଭୟାନକ କୃତାନ୍ତ ଦେବତା ମଧ୍ୟ ଥାଆନ୍ତି । ଏହାଛଡ଼ା ମାରୀ, ଉତ୍କଟ ମହାମାରୀ, ଭୟଙ୍କର କାଳରାତ୍ରି, ଅନେକ ପ୍ରକାରର ରୋଗ ଓ ନାନା ପ୍ରକାର ଭୟାବହ କୁଷ୍ଠ ମୂର୍ତ୍ତିମାନ୍ ହୋଇ ହାତରେ ଶକ୍ତି, ଶୂଳ, ଅଙ୍କୁଶ, ପାଶ, ଚକ୍ର ଓ ଖଡ୍‌ଗ ପ୍ରଭୃତି ଧାରଣ କରି ଛିଡ଼ା ହୋଇଥାନ୍ତି ।

ବଜ୍ରତୁଲ୍ୟ ମୁଖଧାରୀ ରୁଦ୍ରଗଣ କ୍ଷୁର, ତୂଣୀର ଓ ଧନୁ ଧରି ସେଠାରେ ଉପସ୍ଥିତ ଥାଆନ୍ତି । ସେମାନେ ନାନା ଆୟୁଧଧାରୀ, ପରମ ବୀର ଓ ଭୟଙ୍କର ହୋଇଥାନ୍ତି । ସେମାନଙ୍କ ଛଡ଼ା କୋଇଲା ପରି କଳାରଙ୍ଗର ଅସଂଖ୍ୟ ମହାବୀର ଯମଦୂତ, ସମସ୍ତ ପ୍ରକାର ଅସ୍ତ୍ର-ଶସ୍ତ୍ର ଧରି ଠିଆ ହୋଇଥିବାରୁ ଅତ୍ୟନ୍ତ ଭୟଙ୍କର ଦିଶୁଥାନ୍ତି । ଏପରି ପରିବାରଙ୍କ ମେଳରେ ଘୋର ଯମରାଜଙ୍କୁ ତଥା ଭୟଙ୍କର ଚିତ୍ରଗୁପ୍ତଙ୍କୁ ପାପିଷ୍ଠ ପ୍ରାଣୀ ଦେଖିବାକୁ ପାଆନ୍ତି । ଯମରାଜ ସେହି ପାପକର୍ମୀମାନଙ୍କୁ ବହୁତ ଧମକାନ୍ତି ଏବଂ ଚିତ୍ରଗୁପ୍ତ ଧର୍ମଯୁକ୍ତ ବାଣୀରେ ସେମାନଙ୍କୁ ବୁଝାନ୍ତି । (ଅଧ୍ୟାୟ ୭)

★★★

## ନରକର ଅଠେଇଶ ଶ୍ରେଣୀ ତଥା ପ୍ରତ୍ୟେକର ପାଞ୍ଚଟି ଲେଖାଏଁ ନାୟକ କ୍ରମରେ ରୌରବାଦି ଶହେ ଚାଳିଶଟି ନରକର ନାମାବଳୀ

ସନତ୍‌କୁମାର କହୁଛନ୍ତି–ବ୍ୟାସଦେବ ! ଏହାପରେ ଯମଦୂତ ପାପୀମାନଙ୍କୁ ଅତ୍ୟନ୍ତ ଉତ୍ତପ୍ତ ପଥର ଉପରେ ଏପରି କଚାଡ଼ି ଦିଅନ୍ତି, ଲାଗେ ସତେଯେପରି ବଡ଼ ବଡ଼ ବୃକ୍ଷମାନଙ୍କୁ ଧରାଶାୟୀ କରି ଦିଆଯାଇଛି । ସେତେବେଳେ ଦେହଧାରୀ ଜୀବର ଶରୀରରୁ ରକ୍ତ ବହିବାକୁ ଲାଗେ ଏବଂ ସେ ବେହୋସ ଓ ନିଶ୍ଚେଷ୍ଟ ହୋଇଯାଏ । ତା'ପରେ ବାୟୁ ସ୍ପର୍ଶ କରାଇ ଯମଦୂତ ତାକୁ ପୁନଃ ଉଜ୍ଜୀବିତ କରାଇ ଦିଅନ୍ତି ଏବଂ ତା'ର ପାପର ଶୋଧନ ନିମନ୍ତେ ତାକୁ ନରକସିନ୍ଧୁରେ ପକାଇଦିଅନ୍ତି । ପୃଥିବୀର ତଳେ ନରକର ସାତଟି କୋଟି ବା ଶ୍ରେଣୀ ରହିଛି, ଯାହା ସପ୍ତମ ତଳର ଶେଷରେ ଘୋର ଅନ୍ଧକାର ମଧ୍ୟରେ ସ୍ଥିତ । ପୁଣି ପ୍ରତ୍ୟେକର ଅଠାଇଶ ଶ୍ରେଣୀ ରହିଛି । ପ୍ରଥମ ଶ୍ରେଣୀର ନାମ ଘୋରା । ଦ୍ୱିତୀୟଟି ସୁଘୋରା, ଯାହା କି ତାହାର ତଳକୁ ରହିଛି । ତୃତୀୟଟି ଅତିଘୋରା, ଚତୁର୍ଥ ମହାଘୋରା, ପଞ୍ଚମ ଘୋରରୂପା, ଷଷ୍ଠ ତଳାତଳା, ସପ୍ତମ ଭୟାନକା, ଅଷ୍ଟମ କାଳରାତ୍ରି, ନବମ ଭୟୋତ୍କଟା, ତାହାର ତଳକୁ ଦଶମ ସ୍ତର ହେଲା ଚଣ୍ଡା, ତା' ତଳକୁ ମହାଚଣ୍ଡା, ତା'ପରେ ଚଣ୍ଡ-କୋଳାହଳା ତଥା ତା'ଠାରୁ ଭିନ୍ନ ପ୍ରଚଣ୍ଡା, ଯାହା ଚଣ୍ଡଙ୍କ ନାୟିକାରୂପେ କଥିତ; ତାହାପରେ ପଦ୍ମା, ପଦ୍ମାବତୀ, ଭୀତା ଏବଂ ତା'ପରେ ଭୀଷଣର ନାୟିକା ଭୀମା । ଅଷ୍ଟାଦଶ ହେଲା କରାଳା, ଊନବିଂଶ ବିକରାଳା ଓ ବିଂଶ ନରକ ଶ୍ରେଣୀ ହେଲା ବଜ୍ରା । ଏହାପରେ ତ୍ରିକୋଣା, ପଞ୍ଚକୋଣା, ସୁଦୀର୍ଘା, ଅଖିଳାର୍ତ୍ତିଦା, ସମା, ଭୀମବଳା, ଭୀମା ଓ ଅଷ୍ଟାବିଂଶ ଶ୍ରେଣୀର ନାମ ଦୀପ୍ତପ୍ରାୟା । ମୁଁ ତୁମକୁ ଭୟାନକ ନରକକୋଟିଗୁଡ଼ିକର ନାମ କହିଦେଲି । ଏଗୁଡ଼ିକର ସଂଖ୍ୟା ଅଠେଇଶ । ଏଗୁଡ଼ିକରେ ପାପୀମାନଙ୍କୁ ଦଣ୍ଡ ଦିଆଯାଏ ।

ସେହି ନରକ କୋଟିଗୁଡ଼ିକରେ ପ୍ରତ୍ୟେକର

ପାଞ୍ଚଟି ଲେଖାଏଁ ନାୟକ (ପ୍ରଧାନ ନରକ) ରହିଛି । ଏବେ ସେଗୁଡ଼ିକର ନାମ ଶୁଣ । ସେଥିମଧ୍ୟରୁ ପ୍ରଥମର ନାମ ରୌରବ ନରକ, ଯେଉଁଠି ପହଞ୍ଚି ଦେହଧାରୀ ଜୀବ କାନ୍ଦିବାକୁ ଲାଗେ । ମହାରୌରବ ପୀଡ଼ାରେ ତ ବଡ଼ ବଡ଼ ଧୈର୍ଯ୍ୟବାନ୍ ମଧ୍ୟ କାନ୍ଦି ପକାଇବେ । ତା'ପରେ ଶୀତ ଏବଂ ତା'ପରେ ଉଷ୍ଣ ନାମକ ନରକ ରହିଛି । ତା'ପରେ ରହିଛି ସୁଘୋର । ରୌରବରୁ ସୁଘୋର ପର୍ଯ୍ୟନ୍ତ ନରକକୁ ପ୍ରାରମ୍ଭିକ ପାଞ୍ଚ ନରକ କୁହାଯାଏ । ଏହାପରେ ସୁମହାତୀକ୍ଷ୍ଣ, ସଂଜୀବନ, ମହାତମ, ବିଲୋମ, ବିଲୋପ, କଣ୍ଟକ, ତୀବ୍ରବେଗ, କରାଳ, ବିକରାଳ, ପ୍ରକମ୍ପନ, ମହାବକ୍ର, କାଳ, କାଳସୂତ୍ର, ପ୍ରଗର୍ଜନ, ସୂଚୀମୁଖ, ସୁନୋତି, ଖାଦକ, ସୁପ୍ରପୀଡ଼ନ, କୁମ୍ଭୀପାକ, ସୁପାକ, କ୍ରକଚ, ଅତିଦାରୁଣ, ଅଙ୍ଗାରରାଶିଭବନ, ମେରୁ, ଅସୃକ୍ପ୍ରହିତ, ତୀକ୍ଷ୍ଣତୁଣ୍ଡ, ଶକୁନି, ମହାସଂବର୍ତ୍ତକ, କ୍ରତୁ, ତପ୍ତଜନ୍ତୁ, ପଙ୍କଲେପ, ପ୍ରତିମାଂସ, ତ୍ରପୂଭବ, ଉଚ୍ଛ୍ୱାସ, ସୁନିରୁଚ୍ଛ୍ୱାସ, ସୁଦୀର୍ଘ, କୂଟଶାଲ୍ମଳି, ଦୁରିଷ୍ଟ, ସୁମହାବାଦ, ପ୍ରବାଦ, ସୁପ୍ରତାପନ, ମେଘ, ବୃଷ, ଶାଲ୍ମ, ସିଂହମୁଖ, ବ୍ୟାଘ୍ରମୁଖ, ଗଜମୁଖ, କୁକ୍କୁରମୁଖ, ସୂକରମୁଖ, ଅଜମୁଖ, ମହିଷମୁଖ, ଘୂକମୁଖ, କୋକମୁଖ, ବୃକମୁଖ, ଗ୍ରାହ, କୁମ୍ଭୀନସ, ନକ୍ର, ସର୍ପ, କୂର୍ମ, କାକ, ଗୃଧ୍ର, ଉଲୂକ, ହଲୌକ, ଶାର୍ଦ୍ଦୂଳ, କ୍ରଥ, କର୍କଟ, ମଣ୍ଡୂକ, ପୂତିମୁଖ, ରକ୍ତାକ୍ଷ, ପୂତିମୃତ୍ତିକ, କଣଧୂମ୍ର, ଅଗ୍ନି, କୃମି, ଗନ୍ଧିବପୁ, ଅଗ୍ନୀଧ୍ର, ଅପ୍ରତିଷ୍ଠ, ରୁଧିରାଭ, ଶ୍ୱଭୋଜନ, ଲାଳାଭକ୍ଷ, ଅନ୍ତ୍ରଭକ୍ଷ, ସର୍ବଭକ୍ଷ, ସୁଦାରୁଣ, କଣ୍ଟକ, ସୁବିଶାଳ, ବିକଟ, କଟପୂତନ, ଅମ୍ବରୀଷ, କଟାହ, କଷ୍ଟଦାୟକ ବୈତରଣୀ ନଦୀ, ସୁତପ୍ତ ଲୋହଶୟନ, ଏକପାଦ, ପ୍ରପୂରଣ, ଘୋର ଅସିତାଳବନ, ଅସ୍ଥିଭଙ୍ଗ, ସୁପୂରଣ, ବିଳାତସ, ଅସୁଯନ୍ତ୍ର, କୂଟପାଶ, ପ୍ରମର୍ଦ୍ଦନ, ମହାଚୂର୍ଣ୍ଣ, ଅସୁଚୂର୍ଣ୍ଣ, ତପ୍ତଲୋହମୟ, ପର୍ବତ, କ୍ଷୁରଧାରା, ଯମଳପର୍ବତ, ମୂତ୍ରକୂପ, ବିଷ୍ଠାକୂପ, ଅଶ୍ରୁକୂପ, ଶୀତଳ କ୍ଷାରକୂପ, ମୁସଳୋଲୂଖଳ, ଯନ୍ତ୍ର, ଶିଳା, ଶକଟ, ଲାଙ୍ଗଳ, ତାଳପତ୍ରବନ, ଅସିପତ୍ରବନ, ମହାଶକଟମଣ୍ଡପ, ସମ୍ମୋହ, ଅସ୍ଥିଭଙ୍ଗ, ତପ୍ତ, ଚଞ୍ଚଳ, ଅୟୋଗୁଡ (ଲୌହ ଗୁଳି), ବହୁଦୁଃଖ, ମହାକ୍ଲେଶ, କଶ୍ମଳ, ଶମଳ, ମଳାତ୍, ହଳାହଳ, ବିରୂପ, ସ୍ୱରୂପ, ଯମାନୁଗ, ଏକପାଦ, ତ୍ରିପାଦ, ତୀବ୍ର, ଅଚୀବର ଓ ତମ ।

ଏହିପ୍ରକାର ଏ ଅଠାଇଶ ନରକ ଓ କ୍ରମଶଃ ସେଗୁଡ଼ିକର ପାଞ୍ଚଟି ଲେଖାଏଁ ନାୟକ ଥିବା କୁହାଯାଇଛି । ଅଠାଇଶ କୋଟିର ଯଥାକ୍ରମେ ରୌରବାଦି ପାଞ୍ଚଟି ଲେଖାଏଁ ନାୟକ ଥିବା କୁହାଯାଏ । ଉପର୍ଯ୍ୟୁକ୍ତ ୨୮ କୋଟିକୁ ଛାଡ଼ି ପ୍ରାୟ ଶହେ ନରକ ରହିଛି ଏବଂ ଶହେଗ୍ଭଳିଶ ନରକକୁ ମହାନରକମଣ୍ଡଳ କୁହାଯାଏ ।* (ଅଧ୍ୟାୟ ୮)

★★★

## ବିଭିନ୍ନ ପାପ ହେତୁ ମିଳୁଥିବା ନରକଯାତନାର ବର୍ଣ୍ଣନା ଏବଂ ଶ୍ୱାନବଳି, କାକବଳି ତଥା ଦେବତା ପ୍ରଭୃତିଙ୍କ ପାଇଁ ଦିଆଯାଇଥିବା ବଳିର ଆବଶ୍ୟକତା ଓ ମହତ୍ତ୍ୱ

ସନତ୍କୁମାର କହୁଛନ୍ତି—ବ୍ୟାସଦେବ ! ଏ **ସମସ୍ତ ଭୟାନକ ଯନ୍ତ୍ରଣାଦାୟକ ନରକରେ ପାପୀ ଜୀବଙ୍କୁ ଅତ୍ୟନ୍ତ ଭୀଷଣ ନରକଯାତନା ଭୋଗିବାକୁ ପଡ଼େ । ଯେ ମିଥ୍ୟା ଆଗମରେ (ପାଷଣ୍ଡମାନଙ୍କ ଶାସ୍ତ୍ରରେ) ପ୍ରବୃତ୍ତ ରହେ, ସେ ଦ୍ୱିଜିହ୍ୱ ନାମକ ନରକରେ ପଡ଼େ ଏବଂ ସେଠାରେ ଜିହ୍ୱା ଆକାରର**

* ଏଠାରେ ୨୮ କୋଟି ବିଷୟରେ ପୂର୍ବରୁ କୁହାଯାଇଛି, ପରେ ପ୍ରତ୍ୟେକର ପାଞ୍ଚଟି ଲେଖାଏଁ ନାୟକ କଥା କହି ୧୪୦ ନରକର ନାମୋଲ୍ଲେଖ କରାଯାଇଛି । ତହିଁରେ କୋଟିଗୁଡ଼ିକର ସଂଖ୍ୟାକୁ ମିଶାଇଲେ ମୋଟ ଶହେ ୧୬୮ ହେଉଛି ।

ଅର୍ଦ୍ଧକୋଶବ୍ୟାପୀ ତୀକ୍ଷ୍ଣ ହଳଦ୍ୱାରା ତାହାକୁ ବହୁତ କଷ୍ଟ ଦିଆଯାଏ । ଯେଉଁ କ୍ରୂର ମନୁଷ୍ୟ ପିତାମାତାଙ୍କୁ ଓ ଗୁରୁଙ୍କୁ ଗାଳିଦିଏ, ତାହାର ମୁଖରେ କୀଟ ସାଲୁବାଲୁ ହେଉଥିବା ବିଷ୍ଠା ଖୁନ୍ଦି ଦେଇ ତାକୁ ଖୁବ୍ ମାଡ଼ ମରାଯାଏ । ଯେଉଁ ଲୋକ ଶିବମନ୍ଦିର, ବଗିଚ୍ଚ, ପୁଷ୍କରିଣୀ, କୂପ, ବାଆ୍ପୀ ତଥା ବ୍ରାହ୍ମଣଙ୍କ ସ୍ଥାନକୁ ନଷ୍ଟଭ୍ରଷ୍ଟ କରିଦିଅନ୍ତି ଏବଂ ସେଠାରେ ମନଇଚ୍ଛା ରମଣ କରନ୍ତି, ସେମାନଙ୍କୁ ଭୟଙ୍କର ଘଣା ପ୍ରଭୃତିରେ ପୂରାଇ ପେଡ଼ାଯାଏ ଓ ରନ୍ଧାଯାଏ । ସେମାନେ ପ୍ରଳୟକାଳ ପର୍ଯ୍ୟନ୍ତ ନରକାଗ୍ନିରେ ପଡ଼ି ସିଝୁଥାନ୍ତି । ପରସ୍ତ୍ରୀଗାମୀ ପୁରୁଷଙ୍କୁ ବ୍ୟଭିଚ୍ଚର କଲାବେଳେ ମାଡ଼ ମରାଯାଏ । ସେମାନଙ୍କୁ ପୂର୍ବପରି ଶରୀର ଧାରଣ କରି ଲୌହନିର୍ମିତ ଉତ୍ତପ୍ତ ନାରୀମୂର୍ତ୍ତିକୁ ଆଲିଙ୍ଗନ କରିବାକୁ ପଡ଼େ, ଯଦ୍ଦ୍ୱାରା ସେମାନେ ଭୀଷଣ ପୋଡ଼ାଜଳା ଯନ୍ତ୍ରଣା ଅନୁଭବ କରି ଚିତ୍କାର କରନ୍ତି । ଯେଉଁମାନେ ସାଧୁଜନଙ୍କ ନିନ୍ଦା ଶୁଣନ୍ତି, ସେମାନଙ୍କ କାନରେ ଲୁହା ବା ତମ୍ବାର ଉତ୍ତପ୍ତ କଣ୍ଟା ଭର୍ତ୍ତି କରି ଦିଆଯାଏ । ଏହାଛଡ଼ା ଦସ୍ତା, କାଚ ଓ ପିତ୍ତଳକୁ ପାଣି ପରି ତରଳାଇ ସେମାନଙ୍କ କାନରେ ଢଳାଯାଏ । ପୁଣି ବାରମ୍ବାର ଗରମ କ୍ଷୀର ଓ ଫୁଟନ୍ତା ତେଲ ଢଳାଯାଏ । ଏହାପରେ ସେହି କାନ ଉପରେ ବଜ୍ର ପରି ଲେପ ଲଗାଇ ଦିଆଯାଏ । ଏହିରୂପେ କ୍ରମାନୁସାରେ ଉପରୋକ୍ତ ବସ୍ତୁମାନ ପୂରାଇ ସେମାନଙ୍କୁ ନରକରେ ଯାତନା ଦିଆଯାଏ । ସବୁ ନରକରେ ଘ୍ରିଆଡୁ ଏପରି ନାନା ଯାତନା ଦିଆଯାଏ ଏବଂ ସେସବୁ ନରକଯାତନା ଅତ୍ୟନ୍ତ କଷ୍ଟକର ହୋଇଥାଏ । ଯେଉଁମାନେ ପିତାମାତାଙ୍କୁ ଉଦ୍ଦଣ୍ଡତାପୂର୍ବକ କୁଟିଳ ଦୃଷ୍ଟିରେ ଚ୍ହାନ୍ତି ବା ସେମାନଙ୍କ ଉପରକୁ ହାତ ଉଠାନ୍ତି, ସେମାନଙ୍କ ମୁଖରେ ଲୁହା କଣ୍ଟାମାନ ଜବରଦସ୍ତି ତଣ୍ଟିପର୍ଯ୍ୟନ୍ତ ଭର୍ତ୍ତି କରିଦିଆଯାଏ । ଯେଉଁମାନେ ପରସ୍ତ୍ରୀମାନଙ୍କ ଆଡ଼କୁ ଲୋଲୁପ ଦୃଷ୍ଟିରେ ଅପଲକ ନୟନରେ ଚ୍ହାନ୍ତି, ସେମାନଙ୍କ ଆଖିରେ ଅଗ୍ନିପରି ଲାଲ ହୋଇଥିବା ଉତ୍ତପ୍ତ ଛୁଞ୍ଚିମାନ ଭର୍ତ୍ତି କରିଦିଆଯାଏ ।

ଯେଉଁମାନେ ଦେବତା, ଅଗ୍ନି, ଗୁରୁ ଓ ବ୍ରାହ୍ମଣଙ୍କୁ ପ୍ରଥମେ ନିବେଦନ ନ କରି ଭୋଜନ କରନ୍ତି, ସେମାନଙ୍କ ଜିହ୍ୱା ଓ ମୁଖରେ ଶହ ଶହ ଲୁହା କଣ୍ଟା ଉତ୍ତପ୍ତ କରି ଭର୍ତ୍ତି କରି ଦିଆଯାଏ । ଯେଉଁମାନେ ଧର୍ମୋପଦେଷ୍ଟା ମହାତ୍ମା କଥା-ବାଚକଙ୍କର ନିନ୍ଦା କରନ୍ତି, ଦେବତା, ଅଗ୍ନି ଓ ଗୁରୁଙ୍କ ଭକ୍ତଙ୍କୁ ତଥା ସନାତନ ଧର୍ମଶାସ୍ତ୍ରକୁ ପରିହାସ କରନ୍ତି, ସେମାନଙ୍କ ଛାତି, କଣ୍ଠ, ଜିହ୍ୱା, ଦାନ୍ତସନ୍ଧି, ତାଳୁ, ଓଠ, ନାକ, ମସ୍ତକ ଓ ସମସ୍ତ ଅଙ୍ଗସନ୍ଧିରେ ଜଳନ୍ତା ଅଗ୍ନିପରି ଉତ୍ତପ୍ତ ତିନିମୁନିଆଁ ଲୁହା କଣ୍ଟାମାନ ମୁଦ୍ଗର ଦ୍ୱାରା ପିଟି ପିଟି ପୋତାଯାଏ । ସେତେବେଳେ ସେମାନଙ୍କୁ ବହୁତ କଷ୍ଟ ହୁଏ । ଏହାପରେ ସବୁ କ୍ଷତସ୍ଥାନରେ ଗରମ ଲୁଣ ଛିଞ୍ଚାଯାଏ । ସେତେବେଳେ ସେମାନଙ୍କ ସର୍ବାଙ୍ଗରେ ଭୀଷଣ କଷ୍ଟ ହୁଏ । ଯେଉଁ ପାପୀମାନେ ଶିବମନ୍ଦିର ପାଖରେ ଅଥବା ଦେବତାଙ୍କ ବଗିଚ୍ଚରେ ମଳମୂତ୍ର ବିସର୍ଜନ କରନ୍ତି, ସେମାନଙ୍କ ଲିଙ୍ଗ ଓ ଅଣ୍ଡକୋଷକୁ ଲୌହ ମୁଦ୍ଗରରେ ଛେଚି ଚୂନା କରି ଦିଆଯାଏ, ପୁଣି ନିଆଁରେ ଗରମ କରାଯାଇଥିବା ଛୁଞ୍ଚିମାନ ସେଥିରେ ଭର୍ତ୍ତି କରିଦିଆଯାଏ, ଯାହା ଫଳରେ ସେମାନଙ୍କ ମନ ଓ ଇନ୍ଦ୍ରିୟରେ ଘୋର ଯନ୍ତ୍ରଣା ଅନୁଭୂତ ହୁଏ । ଯେଉଁମାନେ ଧନ ଥାଇ ମଧ୍ୟ ତୃଷ୍ଣା ହେତୁ ଦାନ କରନ୍ତି ନାହିଁ ଏବଂ ଭୋଜନ ସମୟରେ ଗୃହାଗତ ଅତିଥିଙ୍କୁ ଅନାଦର କରନ୍ତି, ସେମାନେ ପାପର ଫଳ ଭୋଗି ଅପବିତ୍ର ନରକରେ ପଡ଼ନ୍ତି ।*

* ଧନେ ସତ୍ୟପି ଯେ ଦାନଂ ନ ପ୍ରଯଚ୍ଛନ୍ତି ତୃଷ୍ଣୟା ॥
ଅତିଥିଂ ଚ୍ବମନ୍ୟନ୍ତେ କାଳେ ପ୍ରାପ୍ତେ ଗୃହାଶ୍ରମେ । ତସ୍ମାଦ୍ ତେ ଦୁଷ୍କୃତଂ ପ୍ରାପ୍ୟ ଗଚ୍ଛନ୍ତି ନିରୟେଽଶୁଚୌ ॥
(ଶି. ପୁ. ଉ. ସଂ. ୧୦ । ୩୧-୩୨)

ଯେଉଁମାନେ କୁକୁର ଓ ଗୋରୁଙ୍କୁ ସେମାନଙ୍କ ଭାଗ ବା ବଳି ନ ଦେଇ ସ୍ୱୟଂ ଭୋଜନ କରନ୍ତି, ସେମାନଙ୍କ ମୁଖ ଖୋଲି ସେଥିରେ ଦୁଇଟି କଣ୍ଟା ପିଟି ଦିଆଯାଏ । ଏଣୁ ''ଯମରାଜଙ୍କ ମାର୍ଗ ଅନୁସରଣକାରୀ ଶ୍ୟାମ ଓ ଶବଳ (ଶ୍ୟାମଳ ଓ କାଇଁଚିଆ) କୁକୁର ଦୁହିଙ୍କୁ ମୁଁ ଏହି ଅନ୍ନର ଭାଗ ଦେଉଛି, ସେମାନେ ଏ ବଳି ଗ୍ରହଣ କରନ୍ତୁ ।''* ''ପଶ୍ଚିମ, ବାୟବ୍ୟ, ଦକ୍ଷିଣ ଓ ନୈର୍ଋତ୍ୟ ଦିଗରେ ଥିବା ପୁଣ୍ୟକର୍ମା କୁଆମାନେ ମୋ ଦ୍ୱାରା ପ୍ରଦତ୍ତ ଏହି ବଳିକୁ ଗ୍ରହଣ କରନ୍ତୁ''—ଏହିରୂପେ ଦୁଇଟି ମନ୍ତ୍ରରେ କ୍ରମଶଃ କୁକୁର ଓ କୁଆଙ୍କୁ ବଳି ଦେବା ଉଚିତ । ଯେଉଁମାନେ ଯତ୍ନପୂର୍ବକ ଭଗବାନ ଶଙ୍କରଙ୍କୁ ପୂଜା କରି ବିଧିବତ୍ ଅଗ୍ନିରେ ଆହୁତି ଦେଇ ଶିବସମ୍ବନ୍ଧୀୟ ମନ୍ତ୍ରରେ ବଳି ସମର୍ପିତ କରନ୍ତି, ସେମାନେ ଯମରାଜଙ୍କୁ ଦେଖନ୍ତି ନାହିଁ ଏବଂ ସ୍ୱର୍ଗକୁ ଯାଆନ୍ତି । ତେଣୁ ପ୍ରତିଦିନ ବଳି ଅର୍ପଣ କରିବା ଉଚିତ ।

ବଳି ପ୍ରଦାନ ନିମନ୍ତେ ଗୋଟିଏ ଚାରିକୋଣିଆ ମଣ୍ଡପ ତିଆରି କରି ତାହାକୁ ଗନ୍ଧାଦିରେ ସୁଗନ୍ଧିତ କିରବେ । ତା'ପରେ ଈଶାନକୋଣରେ ଧନ୍ୱନ୍ତରିଙ୍କ ପାଇଁ ଓ ପୂର୍ବଦିଗରେ ଇନ୍ଦ୍ରଙ୍କ ପାଇଁ ବଳି ଅର୍ପଣ କରିବେ । ଦକ୍ଷିଣଦିଗରେ ଯମଙ୍କ ପାଇଁ, ପଶ୍ଚିମ-ଦିଗରେ ସୁଦକ୍ଷୋମଙ୍କ ପାଇଁ ଓ ଦକ୍ଷିଣଦିଗରେ ପିତୃଗଣଙ୍କ ପାଇଁ ବଳି ଅର୍ପଣ କରି ପୁନଃ ପୂର୍ବଦିଗରେ ଅର୍ଯ୍ୟମାଙ୍କୁ ଅନ୍ନର ଭାଗ ଅର୍ପଣ କରିବେ । ଦ୍ୱାରଦେଶରେ ଧାତା ଓ ବିଧାତାଙ୍କ ପାଇଁ ବଳି ନିବେଦନ କରିବେ । ତା'ପରେ କୁକୁର, କୁକୁରଙ୍କ ସ୍ୱାମୀ ଓ ପକ୍ଷୀମାନଙ୍କ ପାଇଁ ଭୂମି ଉପରେ ଅନ୍ନ ରଖିବେ । ଦେବତା, ପିତୃପୁରୁଷ, ମନୁଷ୍ୟ, ପ୍ରେତ, ଭୂତ, ଗୁହ୍ୟକ, ପକ୍ଷୀ, କୃମି ଓ କୀଟ—ଏ ସମସ୍ତେ ଗୃହସ୍ଥଙ୍କ ଠାରୁ ପାଇ ନିଜ ଜୀବିକା ଚଳାନ୍ତି । ସ୍ୱାହାକାର, ସ୍ୱଧାକାର, ବଷଟ୍କାର ଓ ହନ୍ତକାର—ଏ ଚାରୋଟି ହେଲା ଧର୍ମମୟୀ ଧେନୁର ପହ୍ନାରେ ଚାରିଟି ଚେର । ସ୍ୱାହାକାର ନାମକ ଚେରକୁ ଦେବତାମାନେ ପିଅନ୍ତି । ସ୍ୱଧାକାର ଚେରକୁ ପିତୃଗଣ, ବଷଟ୍କାରକୁ ଅନ୍ୟାନ୍ୟ ଦେବତା ଓ ଭୂତେଶ୍ୱର ଏବଂ ହନ୍ତକାର ନାମକ ଚେରକୁ ମନୁଷ୍ୟମାନେ ପିଅନ୍ତି । ଯେଉଁ ମାନବ ଶ୍ରଦ୍ଧାପୂର୍ବକ ଏହି ଧର୍ମମୟୀ ଧେନୁର ପାଳନ-ପୋଷଣ ସଦା ଉପଯୁକ୍ତ ସମୟରେ କରେ, ସେ ଅଗ୍ନିହୋତ୍ରୀ ହୋଇଯାଏ । ଯେ ସୁସ୍ଥ ହୋଇଥିଲେ ମଧ୍ୟ ତାହା ତ୍ୟାଗ କରିଦିଏ, ସେ ଅନ୍ଧକାରମୟ ନରକରେ ବୁଡ଼ିଯାଏ । ମନୁଷ୍ୟ ସମସ୍ତଙ୍କୁ ବଳି ଅର୍ପଣ କରିବା ପରେ ଦ୍ୱାରଦେଶରେ କ୍ଷଣକ ପାଇଁ ଛିଡ଼ା ହୋଇ ଅତିଥିଙ୍କୁ ପ୍ରତୀକ୍ଷା କରିବା ଆବଶ୍ୟକ । ଯଦି କେହି କ୍ଷୁଧାର୍ତ୍ତ ଅତିଥି ବା ସେହି ଗ୍ରାମର ନିବାସୀ ମିଳିଯାଏ, ତେବେ ନିଜେ ଭୋଜନ କରିବା ପୂର୍ବରୁ ତାକୁ ଯଥାଶକ୍ତି ଶୁଭ ଅନ୍ନ ଭୋଜନ କରାଇବେ । ଯେଉଁ ଗୃହସ୍ଥର ଦ୍ୱାରଦେଶରୁ ଅତିଥି ନିରାଶ ହୋଇ ଫେରିଯାଏ, ସେ ନିଜର ପାପ ଦେଇ ତା' ପରିବର୍ତ୍ତେ ଗୃହସ୍ଥର ପୁଣ୍ୟ ନେଇ ଚାଲିଯାଏ ।¥

(ଅଧ୍ୟାୟ ୯-୧୦)



* ଦ୍ୱୌ ଶ୍ୱାନୌ ଶ୍ୟାମଶବଳୌ ଯମମାର୍ଗାନୁରୋଧକୌ । ଯୌ ତାଭ୍ୟାଂ ପ୍ରଯଚ୍ଛାମି ତୌ ଗୃହ୍ଣୀତାମିମଂ ବଳିମ୍ ॥
ଐନ୍ଦ୍ରବାରୁଣବାୟବ୍ୟା ଯାମ୍ୟା ନୈର୍ଋତ୍ୟକାସ୍ତଥା । ବାୟସାଃ ପୁଣ୍ୟକର୍ମାଣସ୍ତେ ପ୍ରଗୃହ୍ଣନ୍ତୁ ମେ ବଳିମ୍ ॥
(ଶି. ପୁ. ଉ. ସଂ. ୧୦ । ୩୫-୩୬)

¥ ଅତିଥିର୍ଯସ୍ୟ ଭଗ୍ନାଶୋ ଗୃହାତ୍ ପ୍ରତି ନିବର୍ତ୍ତତେ । ସ ତସ୍ମୈ ଦୁଷ୍କୃତଂ ଦତ୍ତ୍ୱା ପୁଣ୍ୟମାଦାୟ ଗଚ୍ଛତି ॥
(ଶି. ପୁ. ଉ. ସଂ. ୧୦ । ୪୮)

# ଯମଲୋକ ମାର୍ଗରେ କଷ୍ଟ ନିବାରଣ କରୁଥିବା ବିବିଧ ଦାନର ବର୍ଣ୍ଣନା

ବ୍ୟାସ କହିଲେ–ପ୍ରଭୋ ! ପାପୀ ମନୁଷ୍ୟ ବହୁତ ଦୁଃଖକଷ୍ଟ ସହି ଯମଲୋକର ମାର୍ଗ ଅତିକ୍ରମ କରନ୍ତି । କିନ୍ତୁ କେଉଁ ଧର୍ମ ବଳରେ ଜୀବ ସୁଖପୂର୍ବକ ଯମଲୋକମାର୍ଗରେ ଯାତ୍ରା କରିପାରନ୍ତି, ମୋତେ ତାହା ବୁଝାଇ କହନ୍ତୁ ।

ସନତ୍‌କୁମାର କହିଲେ–ମୁନେ ! ଜୀବକୁ ନିଜକୃତ ଶୁଭ ବା ଅଶୁଭ କର୍ମର ଫଳ ବିବଶ ହୋଇ ଭୋଗିବାକୁ ପଡ଼ିଥାଏ । ଏବେ ମୁଁ ସେହି ଧର୍ମ ବିଷୟରେ ବର୍ଣ୍ଣନା କରୁଛି, ଯାହାକି ସୁଖଦାୟକ । ଇହଲୋକରେ ଯେଉଁମାନେ ଉତ୍ତମ କର୍ମ କରନ୍ତି, ଯେଉଁମାନେ କୋମଳଚିତ୍ତ ଓ ଦୟାଳୁ, ସେମାନେ ଭୟଙ୍କର ଯମଲୋକମାର୍ଗରେ ସୁଖରେ ଯାତ୍ରା କରନ୍ତି । ଯେଉଁ ବ୍ୟକ୍ତି ଶ୍ରେଷ୍ଠ ବ୍ରାହ୍ମଣଙ୍କୁ ଜୋତା ଓ କଠଉ ଦାନ କରେ, ସେ ବିଶାଳ ଘୋଡ଼ା ଉପରେ ଆରୋହଣ କରି ଅତି ସୁଖରେ ଯମଲୋକକୁ ଯାତ୍ରା କରେ । ଛତ୍ରଦାନ କଲେ ମନୁଷ୍ୟ ସେହି ମାର୍ଗରେ ଛତାର ଛାୟାରେ ଯାତ୍ରା କରିଥାଏ । ଶିବିକା ଦାନ କଲେ ମନୁଷ୍ୟ ରଥରେ ଚଢ଼ି ସୁଖରେ ଯାତ୍ରା କରେ । ଶଯ୍ୟା ଓ ଆସନ ଦାନ କଲେ ଦାତା ଯମଲୋକମାର୍ଗରେ ବିଶ୍ରାମ କରି କରି ସୁଖପୂର୍ବକ ଯାତ୍ରା କରିଥାଏ । ଯେଉଁମାନେ ଛାୟାପ୍ରଦ ବୃକ୍ଷମାନ ରୋପଣ କରନ୍ତି ଓ ବଗିଚ୍ଚ ତିଆରି କରନ୍ତି, ଅଥବା ରାସ୍ତା କଡ଼ରେ ବୃକ୍ଷରୋପଣ କରନ୍ତି, ସେମାନେ ଖରାରେ ମଧ୍ୟ ବିନା କଷ୍ଟରେ ଯମଲୋକକୁ ଯାଆନ୍ତି । ଯେଉଁମାନେ ବଗିଚ୍ଚରେ ଫୁଲଗଛ ଲଗାନ୍ତି, ସେମାନେ ପୁଷ୍ପକ ବିମାନରେ ଯାତ୍ରା କରନ୍ତି । ଦେବମନ୍ଦିର ନିର୍ମାଣକାରୀ ସେହି ମାର୍ଗରେ ଗୃହ ମଧ୍ୟରେ କ୍ରୀଡ଼ା କରିଥାନ୍ତି । ଯେଉଁମାନେ ଯତିମାନଙ୍କ ପାଇଁ ଆଶ୍ରମ ଓ ଅନାଥଙ୍କ ପାଇଁ ଘର ତିଆରି କରିଦିଅନ୍ତି, ସେମାନେ ମଧ୍ୟ ଗୃହ ମଧ୍ୟରେ କ୍ରୀଡ଼ା କରିଥାନ୍ତି । ଯେଉଁ ଲୋକେ ଦେବତା, ଅଗ୍ନି, ଗୁରୁ, ବ୍ରାହ୍ମଣ ଓ ପିତା-ମାତାଙ୍କୁ ପୂଜା କରନ୍ତି, ସେମାନେ ସ୍ୱୟଂ ପୂଜିତ ହୋଇ ନିଜ ଇଚ୍ଛାନୁକୂଳ ମାର୍ଗରେ ସୁଖରେ ଯାତ୍ରା କରନ୍ତି । ଦୀପଦାନ କରୁଥିବା ବ୍ୟକ୍ତି ସକଳ ଦିଗକୁ ଆଲୋକିତ କରି କରି ଯାତ୍ରା କରନ୍ତି । ଗୃହଦାନ କଲେ ଦାତା ରୋଗ-ଶୋକରହିତ ହୋଇ ସୁଖରେ ଯାତ୍ରା କରନ୍ତି । ଗୁରୁଜନଙ୍କ ସେବା କରୁଥିବା ବ୍ୟକ୍ତି ବିଶ୍ରାମ କରି କରି ଯାତ୍ରା କରନ୍ତି, ସତେ ଯେପରି ନିଜ ଘରକୁ ଯାଉଛନ୍ତି । ଗୋଦାନ କରିଥିବା ବ୍ୟକ୍ତି ଏପରି ମାର୍ଗ ଦେଇ ଯାଆନ୍ତି, ଯେଉଁଠି ସମସ୍ତ ମନୋବାଞ୍ଛିତ ବସ୍ତୁ ପରିପୂର୍ଣ୍ଣ ରହିଥାଏ । ଇହଲୋକରେ ଦେଇଥିବା ଅନ୍ନ ଓ ଜଳକୁ ମନୁଷ୍ୟ ସେଠାରେ ଲାଭ କରିଥାଏ । ଯେ କାହାକୁ ପାଦ ଧୋଇବାକୁ ଜଳ ଦେଇଥାଏ, ସେ ଏପରି ମାର୍ଗରେ ଯାଏ, ଯେଉଁଠି ଜଳର ସୁବିଧା ଥାଏ । ଯେ ଆଦରଣୀୟ ବ୍ୟକ୍ତିଙ୍କ ପାଦରେ ହଳଦୀ ପ୍ରଭୃତି ଲେପ ଲଗାଇଥାଏ, ସେ ଘୋଡ଼ା ପିଠିରେ ବସି ଯାତ୍ରା କରେ ।

ବ୍ୟାସଦେବ ! ଯେ ପାଦ୍ୟ, ଅଭ୍ୟଙ୍ଗ (ଅଙ୍ଗରାଗ), ଦୀପ, ଅନ୍ନ ଓ ଗୃହ ଦାନ କରେ, ତା' ପାଖକୁ ଯମରାଜ କଦାପି ଯାଆନ୍ତି ନାହିଁ । ସୁବର୍ଣ୍ଣ ଓ ରତ୍ନ ଦାନ କଲେ ମନୁଷ୍ୟ ଦୁର୍ଗମ ସଙ୍କଟ ଓ ଦୁର୍ଗମ ସ୍ଥାନକୁ ସହଜରେ ଅତିକ୍ରମ କରିଯାଏ । ରୁପା, ଗାଡ଼ି ବୋହୁଥିବା ବଳଦ ଓ ଫୁଲମାଳା ଦାନ କଲେ ଦାତା ସୁଖପୂର୍ବକ ଯମଲୋକକୁ ଯାଏ । ଏପରି ଦାନରେ ସୁଖରେ ଯାତ୍ରା କରିବା ସହ ସ୍ୱର୍ଗରେ ସେ ନାନା ପ୍ରକାର ଭୋଗ ଲାଭ କରେ । ସବୁ ଦାନ ଭିତରେ ଅନ୍ନଦାନକୁ ଉତ୍ତମ କୁହାଯାଇଛି; କାରଣ ଏହା ତ୍ରିକାଳରେ ତୃପ୍ତି ପ୍ରଦାନ କରେ । ମନକୁ ପ୍ରିୟ ଲାଗେ ଓ ବଳ-ବୁଦ୍ଧି ବୃଦ୍ଧି କରେ । ମୁନିଶ୍ରେଷ୍ଠ !

ଅନ୍ନଦାନ ପରି ଅନ୍ୟ କୌଣସି ଦାନ ନାହିଁ; କାରଣ ପ୍ରାଣୀ ଅନ୍ନରୁ ହିଁ ଉତ୍ପନ୍ନ ହୁଅନ୍ତି ଏବଂ ଅନ୍ନ ବିନା କ୍ଷୁଧାଗ୍ନିରେ ପ୍ରତପ୍ତ ହୋଇ ପ୍ରାଣୀ ମୃତ୍ୟୁମୁଖରେ ପଡ଼ିଥାନ୍ତି। ଏଣୁ ଅନ୍ନଦାନ ଦ୍ୱାରା ବହୁତ ବଡ଼ ପୁଣ୍ୟ ହୋଇଥାଏ। ଅନ୍ନକୁ ସମସ୍ତେ ପ୍ରଶଂସା କରିଥାନ୍ତି। ଅନ୍ନରେ ହିଁ ସବୁକିଛି ପ୍ରତିଷ୍ଠିତ। ଅନ୍ନ ସମାନ ଦାନ ଆଉ କିଛି ନ ଥିଲା କି ହେବ ନାହିଁ। ମୁନେ! ସମଗ୍ର ଜଗତ ଅନ୍ନଦ୍ୱାରା ହିଁ ଜୀବିତ ରହିଛି। ଜଗତରେ ଅନ୍ନକୁ ବଳକାରକ କୁହାଯାଇଛି; କାରଣ ଅନ୍ନରେ ହିଁ ପ୍ରାଣ ପ୍ରତିଷ୍ଠିତ।*

ମିଳୁଥିବା ଅନ୍ନକୁ କଦାପି ନିନ୍ଦା କରିବା ଉଚିତ ନୁହେଁ କି ଫୋପାଡ଼ିବା ଉଚିତ ନୁହେଁ। କୁକୁର ଓ ଚଣ୍ଡାଳକୁ ଦିଆଯାଇଥିବା ଅନ୍ନ ମଧ୍ୟ ନିରର୍ଥକ ଯାଏ ନାହିଁ। ଯେଉଁ ଲୋକ କ୍ଳାନ୍ତ ଓ ଅପରିଚିତ ପଥିକଙ୍କୁ ଅନ୍ନ ଦିଏ ଏବଂ ଦେବାବେଳେ କୌଣସି ପ୍ରକାର କଷ୍ଟ ଅନୁଭବ କରେ ନାହିଁ, ସେ ସମୃଦ୍ଧିର ଭାଗୀ ହୋଇଥାଏ। ମହାମୁନେ! ଯେ ଦେବତା, ପିତୃପୁରୁଷ, ବ୍ରାହ୍ମଣ ଓ ଅତିଥିମାନଙ୍କୁ ଅନ୍ନରେ ତୃପ୍ତ କରେ, ସେ ମହାନ୍ ପୁଣ୍ୟଫଳ ଲାଭ କରେ। ଅନ୍ନ ଓ ଜଳ ଶୂଦ୍ରକୁ ଦିଆଯାଉ ବା ବ୍ରାହ୍ମଣକୁ ଦିଆଯାଉ, ତାହା ସମାନରୂପେ ମହତ୍ତ୍ୱପୂର୍ଣ୍ଣ। ଅନ୍ନ ଆଶା କରୁଥିବା ବ୍ୟକ୍ତିର ଗୋତ୍ର, ଶାଖା, ସ୍ୱାଧ୍ୟାୟ ଓ ଦେଶ ପଚାରିବା ଅନାବଶ୍ୟକ।

ଅନ୍ନ ସାକ୍ଷାତ୍ ବ୍ରହ୍ମ ଅଟେ, ଅନ୍ନ ସାକ୍ଷାତ୍ ବିଷ୍ଣୁ ଓ ଶିବ ଅଟେ। ତେଣୁ ଅନ୍ନର ସମକକ୍ଷ ଦାନ ଆଉ କିଛି ନ ଥିଲା କି ଆଗକୁ ହେବ ନାହିଁ। ଯେ ପ୍ରଥମରୁ ବହୁତ ପାପ କରିଥିଲେ ମଧ୍ୟ ପରେ ଅନ୍ନଦାନକାରୀ ହୋଇଯାଏ, ସେ ସମସ୍ତ ପାପରୁ ମୁକ୍ତ ହୋଇ ସ୍ୱର୍ଗଲୋକକୁ ଯାଏ। ଅନ୍ନ, ଜଳ, ଅଶ୍ୱ, ଧେନୁ, ବସ୍ତ୍ର, ଶଯ୍ୟା, ଛତ୍ର ଓ ଆସନ—ଏ ଆଠ ପ୍ରକାର ବସ୍ତୁ ଦାନ କରିବା ଯମଲୋକ ପାଇଁ ବହୁତ ଉତ୍ତମ ବୋଲି ଧରାଯାଏ। ଏ ପ୍ରକାର ବିଶେଷ ଦାନ ଦ୍ୱାରା ମନୁଷ୍ୟ ବିମାନରେ ବସି ଧର୍ମରାଜଙ୍କ ନଗରକୁ ଯାଏ। ତେଣୁ ସମସ୍ତେ ଦାନ କରିବା ଉଚିତ। ମହାମୁନେ! ଯେ ଏ ପ୍ରସଙ୍ଗକୁ ଶୁଣେ ଅଥବା ଶ୍ରାଦ୍ଧ ସମୟରେ ବ୍ରାହ୍ମଣଙ୍କୁ ଶୁଣାଏ, ତା'ର ପିତୃପୁରୁଷଙ୍କୁ ଅକ୍ଷୟ ଅନ୍ନଦାନର ଫଳ ପ୍ରାପ୍ତ ହୁଏ। (ଅଧ୍ୟାୟ ୧୧)



## ଜଳଦାନ, ଜଳାଶୟ-ନିର୍ମାଣ, ବୃକ୍ଷରୋପଣ, ସତ୍ୟଭାଷଣ ଓ ତପର ମହିମା

ସନତ୍କୁମାର କହୁଛନ୍ତି—ବ୍ୟାସଦେବ! ଜଳଦାନ ସବୁଠାରୁ ଶ୍ରେଷ୍ଠ। ଏହା ସବୁ ଦାନ ମଧ୍ୟରେ ଉତ୍ତମ; କାରଣ ସକଳ ଜୀବଙ୍କୁ ତୃପ୍ତି ପ୍ରଦାନ କରୁଥିବାରୁ ଜଳକୁ ଜୀବନ ବୋଲି କୁହାଯାଏ।¥ ଏଣୁ ଖୁସୀ ମନରେ ଜଳଛତ୍ର ଖୋଲି ଅନ୍ୟମାନଙ୍କ ପାଇଁ ପାଣି ପିଇବାର ବ୍ୟବସ୍ଥା କରିବା ଉଚିତ। ଜଳାଶୟ ନିର୍ମାଣ ଇହଲୋକ ଓ ପରଲୋକରେ ମହାନ୍ ଆନନ୍ଦ ପ୍ରଦାନ କରାଇଥାଏ—

* ସର୍ବେଷାମେବ ଦାନାନାମନ୍ନଦାନଂ ପରଂ ସ୍ମୃତମ୍। ସଦ୍ୟଃ ପ୍ରୀତିକରଂ ହୃଦ୍ୟଂ ବଲବୁଦ୍ଧିବିବର୍ଦ୍ଧନମ୍॥
ନାନ୍ନଦାନସମଂ ଦାନଂ ବିଦ୍ୟତେ ମୁନିସତ୍ତମ। ଅନ୍ନାଦ୍ଭବନ୍ତି ଭୂତାନି ତଦଭାବେ ମ୍ରିୟନ୍ତି ଚ॥
ଅତଏବ ମହତ୍ ପୁଣ୍ୟମନ୍ନଦାନେ ପ୍ରକୀର୍ତ୍ତିତମ୍। ତଥା କ୍ଷୁଧାଗ୍ନିନା ତପ୍ତା ମ୍ରିୟନ୍ତେ ସର୍ବଦେହିନଃ॥
ଅନ୍ନମେବ ପ୍ରଶଂସନ୍ତି ସର୍ବମନ୍ନେ ପ୍ରତିଷ୍ଠିତମ୍। ଅନ୍ନେନ ସଦୃଶଂ ଦାନଂ ନ ଭୂତଂ ନ ଭବିଷ୍ୟତି॥
ଅନ୍ନେନ ଧାର୍ଯ୍ୟତେ ସର୍ବଂ ବିଶ୍ୱଂ ଜଗଦିଦଂ ମୁନେ। ଅନ୍ନମୂର୍ଜସ୍କରଂ ଲୋକେ ପ୍ରାଣା ହ୍ୟନ୍ନେ ପ୍ରତିଷ୍ଠିତାଃ॥
(ଶି. ପୁ. ଉ. ସଂ. ୧୧।୧୭-୧୮, ୨୪, ୨୯-୩୦)

¥ ପାନୀୟଦାନଂ ପରମଂ ଦାନାନାମୁତ୍ତମଂ ତଦା। ସର୍ବେଷାଂ ଜୀବପୁଞ୍ଜାନାଂ ତର୍ପଣଂ ଜୀବନଂ ସ୍ମୃତମ୍॥
(ଶି. ପୁ. ଉ. ସଂ. ୧୨।୧)

ଏହା ସତ୍ୟ, ସତ୍ୟ । ଏଥିରେ ସଂଶୟ ନାହିଁ । ଏଣୁ ମନୁଷ୍ୟ କୂଅ, ବାମ୍ପୀ, ପୋଖରୀ ଇତ୍ୟାଦି ଖୋଳାଇବା ଉଚିତ । କୂଅରୁ ପାଣି ବାହାରିଲା ମାତ୍ରେ ତାହା ପାପୀଲୋକର ପାପକର୍ମରୁ ଅଧା ହରିନିଏ ଏବଂ ସତ୍‌କର୍ମନିରତ ମନୁଷ୍ୟର ସମସ୍ତ ପାପକୁ ହରିନିଏ । ଯାହାଦ୍ୱାରା ଖନନ ହୋଇଥିବା ଜଳାଶୟରୁ ଗୋରୁ, ବ୍ରାହ୍ମଣ ଓ ସାଧୁଜନ ସଦା ପାଣି ପିଅନ୍ତି, ସେ ତା'ର ବଂଶକୁ ଉଦ୍ଧାର କରିଦିଏ । ଯାହାର ଜଳାଶୟରେ ଗ୍ରୀଷ୍ମକାଳରେ ମଧ୍ୟ ନିଶ୍ଚିତରୂପେ ପାଣି ରହେ, ସେ କଦାପି ଦୁର୍ଗମ ଓ ବିଷମ ସଙ୍କଟରେ ପଡ଼େ ନାହିଁ । ଯାହାର ପୋଖରୀରେ କେବଳ ବର୍ଷାଋତୁରେ ଜଳ ରହେ, ତାହାକୁ ପ୍ରତିଦିନ ଅଗ୍ନିହୋତ୍ର କରିବାର ଫଳ ମିଳେ—ଏହା ବ୍ରହ୍ମାଙ୍କର କଥନ । ଯାହାର ଜଳାଶୟରେ ଶରତ୍‌କାଳ ପର୍ଯ୍ୟନ୍ତ ଜଳ ରହେ, ତାହାକୁ ସହସ୍ର ଗୋଦାନର ଫଳ ମିଳେ—ଏଥିରେ ସଂଶୟ ନାହିଁ । ଯାହାଙ୍କ ପୋଖରୀରେ ହେମନ୍ତ ଓ ଶିଶିର ଋତୁ ପର୍ଯ୍ୟନ୍ତ ପାଣି ରହେ, ସେ ସ୍ୱର୍ଣ୍ଣମୁଦ୍ରା-ଦକ୍ଷିଣାଯୁକ୍ତ ଯଜ୍ଞର ଫଳ ଲାଭ କରେ । ଯାହାର ସରୋବରରେ ବସନ୍ତ ଓ ଗ୍ରୀଷ୍ମକାଳ ପର୍ଯ୍ୟନ୍ତ ପାଣି ରହେ, ତାହାକୁ ଅତିରାତ୍ର ଓ ଅଶ୍ୱମେଧ ଯଜ୍ଞର ଫଳ ମିଳିଥାଏ—ଏହା ମନୀଷୀ ମହାତ୍ମାମାନଙ୍କର କଥନ ।

ମୁନିବର ! ବ୍ୟାସ ! ଜୀବଙ୍କୁ ତୃପ୍ତି ପ୍ରଦାନ କରୁଥିବା ଜଳାଶୟର ଉତ୍ତମ ଫଳ ବର୍ଣ୍ଣନା ପରେ ଏବେ ବୃକ୍ଷରୋପଣ କରିବାର ଗୁଣ କହୁଛି, ଶୁଣ । ଯେ ନିର୍ଜନ ଓ ଦୁର୍ଗମ ସ୍ଥାନରେ ବୃକ୍ଷରୋପଣ କରେ, ସେ ତା'ର ପୂର୍ବପିଢ଼ି ଓ ପରପିଢ଼ିମାନଙ୍କୁ ତାରି ଦେଇଥାଏ । ତେଣୁ ନିଶ୍ଚିତରୂପେ ଗଛ ଲଗାଇବା ଉଚିତ ।* ଏ ଗଛସବୁ ଲଗାଇଥିବା ଲୋକର ପୁତ୍ର ହୋଇଥାନ୍ତି, ଏଥିରେ ସଂଶୟ ନାହିଁ । ବୃକ୍ଷରୋପଣକାରୀ ପରଲୋକରେ ଅକ୍ଷୟ ସୁଖ ଭୋଗ କରେ । ପୁଷ୍କରିଣୀ ଖୋଳାଇଥିବା, ବୃକ୍ଷ ଲଗାଇ ଥିବା ଓ ଯଜ୍ଞ କରିଥିବା ଦ୍ୱିଜ ତଥା ଅନ୍ୟାନ୍ୟ ସତ୍ୟବାଦୀ ଲୋକେ ସ୍ୱର୍ଗରୁ କଦାପି ଚ୍ୟୁତ ହୁଅନ୍ତି ନାହିଁ ।

ସତ୍ୟ ହିଁ ପରମ ବ୍ରହ୍ମ, ସତ୍ୟ ହିଁ ପରମ ତପ, ସତ୍ୟ ହିଁ ଶ୍ରେଷ୍ଠ ଯଜ୍ଞ ଓ ସତ୍ୟ ହିଁ ଉତ୍କୃଷ୍ଟ ଶାସ୍ତ୍ରଜ୍ଞାନ । ସୁପ୍ତ ବ୍ୟକ୍ତିଠାରେ ସତ୍ୟ ହିଁ ଜାଗ୍ରତ ଥାଏ, ସତ୍ୟ ହିଁ ପରମପଦ, ସତ୍ୟରେ ହିଁ ପୃଥିବୀ ତିଷ୍ଠି ରହିଛି ଏବଂ ସତ୍ୟରେ ହିଁ ସବୁକିଛି ପ୍ରତିଷ୍ଠିତ । ତପ, ଯଜ୍ଞ, ପୁଣ୍ୟ, ଦେବତା, ଋଷି ଓ ପିତୃଗଣଙ୍କ ପୂଜା, ଜଳ ଓ ବିଦ୍ୟା—ଏସବୁ ସତ୍ୟ ଉପରେ ହିଁ ଅବଲମ୍ବିତ । ସବୁରି ଆଧାର ସତ୍ୟ । ସତ୍ୟ ହିଁ ଯଜ୍ଞ, ତପ, ଦାନ, ମନ୍ତ୍ର, ସରସ୍ୱତୀଦେବୀ ଓ ବ୍ରହ୍ମଚର୍ଯ୍ୟ । ଓଁକାର ମଧ୍ୟ ସତ୍ୟରୂପ ଅଟେ । ସତ୍ୟଦ୍ୱାରା ହିଁ ବାୟୁ ବହେ, ସତ୍ୟଦ୍ୱାରା ହିଁ ସୂର୍ଯ୍ୟ ଉତ୍ତପ୍ତ ହୁଏ, ସତ୍ୟଦ୍ୱାରା ହିଁ ଅଗ୍ନି ଦହନ କରେ ଏବଂ ସତ୍ୟଦ୍ୱାରା ହିଁ ସ୍ୱର୍ଗ ତିଷ୍ଠି ରହିଛି । ଜଗତରେ ସମସ୍ତ ବେଦର ପାଳନ ତଥା ସମସ୍ତ ତୀର୍ଥର ସ୍ନାନ କେବଳ ସତ୍ୟଦ୍ୱାରା ହିଁ ସୁଲଭ ହୁଏ । ସତ୍ୟଦ୍ୱାରା ହିଁ ସବୁକିଛି ପ୍ରାପ୍ତ ହୁଏ—ଏଥିରେ ସଂଶୟ ନାହିଁ । ହଜାରେ ଅଶ୍ୱମେଧ ଯଜ୍ଞ ଓ ଲକ୍ଷେ ଅନ୍ୟ ଯଜ୍ଞକୁ ତରାଜୁର ଗୋଟିଏ ପଟରେ ରଖି ଅନ୍ୟ ପଟରେ କେବଳ ସତ୍ୟକୁ ରଖିଲେ ସତ୍ୟ ହିଁ ଭାରୀ ହେବ । ଦେବତା, ପିତୃଗଣ, ମନୁଷ୍ୟ, ନାଗ, ରାକ୍ଷସ ଓ ଚରାଚର ପ୍ରାଣୀସମେତ ସମଗ୍ର ଜଗତ ସତ୍ୟଦ୍ୱାରା ହିଁ ପ୍ରସନ୍ନ ହୁଏ । ସତ୍ୟକୁ ପରମ ଧର୍ମ କୁହାଯାଇଛି । ସତ୍ୟକୁ ହିଁ ପରମପଦ କୁହାଯାଇଛି ଏବଂ ସତ୍ୟକୁ ହିଁ ପରବ୍ରହ୍ମ ପରମାତ୍ମା କହନ୍ତି । ଏଣୁ ସଦା ସତ୍ୟ

* ଅତୀତାନାଗତାନ୍ ସର୍ବାନ୍ ପିତୃବଂଶାଂସ୍ତୁ ତାରୟେତ୍ । କାନ୍ତାରେ ବୃକ୍ଷରୋପୀ ଯସ୍ତସ୍ମାଦ୍ ବୃକ୍ଷାଂସ୍ତୁ ରୋପୟେତ୍ ॥
(ଶି. ପୁ. ଉ. ସଂ. ୧୨ । ୧୭)

ହିଁ କହିବା ଉଚିତ ।* ସତ୍ୟପରାୟଣ ମୁନି ଅତ୍ୟନ୍ତ ଦୁଷ୍କର ତପସ୍ୟା କରି ସ୍ୱର୍ଗ ଲାଭ କରିଛନ୍ତି ଏବଂ ସତ୍ୟଧର୍ମରେ ଅନୁରକ୍ତ ସିଦ୍ଧ ପୁରୁଷ ମଧ୍ୟ ସତ୍ୟଦ୍ୱାରା ହିଁ ସ୍ୱର୍ଗର ନିବାସୀ ହୋଇଛନ୍ତି । ତେଣୁ ସଦା ସତ୍ୟ କହିବା ଉଚିତ । ସତ୍ୟଠାରୁ ବଳି ଆଉ କିଛି ଧର୍ମ ନାହିଁ । ସତ୍ୟରୂପୀ ତୀର୍ଥ ହେଉଛି ଏକ ଅଗାଧ, ବିଶାଳ, ସିଦ୍ଧ ଓ ପବିତ୍ର ଜଳାଶୟ । ସେଥିରେ ଯୋଗଯୁକ୍ତ ହୋଇ ମାନସିକ ସ୍ନାନ କରିବା ଉଚିତ । ସତ୍ୟକୁ ପରମ ପଦ କୁହାଯାଇଛି । ଯେଉଁ ମନୁଷ୍ୟ ନିଜ ପାଇଁ, ଅନ୍ୟ ପାଇଁ ଅଥବା ନିଜ ପୁତ୍ର ପାଇଁ ମଧ୍ୟ ମିଥ୍ୟା କହନ୍ତି ନାହିଁ, ସେ ସ୍ୱର୍ଗଗାମୀ ହୁଅନ୍ତି । ବେଦ, ଯଜ୍ଞ ଓ ମନ୍ତ୍ର ବ୍ରାହ୍ମଣଙ୍କ ଠାରେ ସଦା ନିବାସ କରନ୍ତି; ମାତ୍ର ଅସତ୍ୟବାଦୀ ବ୍ରାହ୍ମଣଙ୍କ ଠାରେ ଏହା ଦେଖାଯାଏ ନାହିଁ । ତେଣୁ ସଦା ସତ୍ୟ ବଚନ କହିବା ଉଚିତ ।

ଏହାପରେ ତପସ୍ୟାର ବହୁତ ମହିମା ବଖାଣ କରି ସନତ୍କୁମାର କହିଲେ—ମୁନେ ! ସଂସାରରେ ଏପରି କୌଣସି ସୁଖ ନାହିଁ, ଯାହା ତପସ୍ୟା ବିନା ସୁଲଭ ହୋଇପାରିବ । ତପସ୍ୟା ଦ୍ୱାରା ହିଁ ସମସ୍ତ ସୁଖ ମିଳିଥାଏ । ଏକଥା ବେଦବେତ୍ତା ବ୍ୟକ୍ତି ହିଁ ଜାଣନ୍ତି । ଜ୍ଞାନ, ବିଜ୍ଞାନ, ଆରୋଗ୍ୟ, ସୁନ୍ଦର ରୂପ, ସୌଭାଗ୍ୟ ଓ ଶାଶ୍ୱତ ସୁଖ ତପସ୍ୟା ଦ୍ୱାରା ହିଁ ପ୍ରାପ୍ତ ହୁଏ । ତପସ୍ୟା ଦ୍ୱାରା ହିଁ ବ୍ରହ୍ମା ଅକ୍ଳେଶରେ ସମସ୍ତ ବିଶ୍ୱକୁ ସୃଷ୍ଟି କରନ୍ତି । ତପସ୍ୟା ବଳରେ ହିଁ ବିଷ୍ଣୁ ବିଶ୍ୱର ପାଳନ କରନ୍ତି । ତପସ୍ୟା ବଳରେ ହିଁ ରୁଦ୍ରଦେବ ସଂହାର କରନ୍ତି ଏବଂ ତପସ୍ୟାର ପ୍ରଭାବରେ ହିଁ ଶେଷଦେବ ଅଶେଷ ଭୂମଣ୍ଡଳକୁ ଧାରଣ କରନ୍ତି ।

(ଅଧ୍ୟାୟ ୧୨)



## ବେଦ-ପୁରାଣର ସ୍ୱାଧ୍ୟାୟ ତଥା ବିବିଧ ପ୍ରକାର ଦାନର ମହିମା, ନରକ-ବର୍ଣ୍ଣନା ଓ ସେଥିରେ ପକାଉଥିବା ପାପମାନଙ୍କର ଦିଗ୍‌ଦର୍ଶନ, ଶିବସ୍ମରଣକୁ ପାପର ସର୍ବୋତ୍ତମ ପ୍ରାୟଶ୍ଚିତ୍ତରୂପେ ପ୍ରତିପାଦନ ଏବଂ ଜ୍ଞାନର ମହତ୍ତ୍ୱ

ସନତ୍କୁମାର କହୁଛନ୍ତି—ମୁନେ ! ବନରେ ବନ୍ୟ ଫଳମୂଳ ଖାଇ ତପସ୍ୟା କରୁଥିବା ବ୍ୟକ୍ତିକୁ ଯେଉଁ ଫଳ ମିଳେ, ତାହା ବେଦର ଗୋଟିଏ ଋଗ୍ ସ୍ୱାଧ୍ୟାୟ କରୁଥିବା ବ୍ୟକ୍ତିକୁ ବି ମିଳିଯାଏ । ଶ୍ରେଷ୍ଠ

---

* ସତ୍ୟମେବ ପରଂ ବ୍ରହ୍ମ ସତ୍ୟମେବ ପରଂ ତପଃ । ସତ୍ୟମେବ ପରୋ ଯଜ୍ଞଃ ସତ୍ୟମେବ ପରଂ ଶ୍ରୁତମ୍ ॥
ସତ୍ୟଂ ସୁପ୍ତେଷୁ ଜାଗର୍ତ୍ତି ସତ୍ୟଂ ଚ ପରମଂ ପଦମ୍ । ସତ୍ୟେନୈବ ଧୃତା ପୃଥ୍ୱୀ ସତ୍ୟେ ସର୍ବଂ ପ୍ରତିଷ୍ଠିତମ୍ ॥
ତପୋ ଯଜ୍ଞଶ୍ଚ ପୁଣ୍ୟଂ ଚ ଦେବର୍ଷିପିତୃପୂଜନେ । ଆପୋ ବିଦ୍ୟା ଚ ତେ ସର୍ବେ ସର୍ବଂ ସତ୍ୟେ ପ୍ରତିଷ୍ଠିତମ୍ ॥
ସତ୍ୟଂ ଯଜ୍ଞସ୍ତପୋ ଦାନଂ ମନ୍ତ୍ରା ଦେବୀ ସରସ୍ୱତୀ । ବ୍ରହ୍ମଚର୍ଯ୍ୟଂ ତଥା ସତ୍ୟମୋଙ୍କାରଃ ସତ୍ୟମେବ ଚ ॥
ସତ୍ୟେନ ବାୟୁରଭ୍ୟେତି ସତ୍ୟେନ ତପତେ ରବିଃ । ସତ୍ୟେନାଗ୍ନିର୍ନିର୍ଦହତି ସ୍ୱର୍ଗଃ ସତ୍ୟେନ ତିଷ୍ଠତି ॥
ପାଳନଂ ସର୍ବବେଦାନାଂ ସର୍ବତୀର୍ଥାବଗାହନମ୍ । ସତ୍ୟେନ ବହତେ ଲୋକେ ସର୍ବମାପ୍ନୋତ୍ୟସଂଶୟମ୍ ॥
ଅଶ୍ୱମେଧସହସ୍ରଂ ଚ ସତ୍ୟଂ ଚ ତୁଳୟା ଧୃତମ୍ । ଲକ୍ଷାଣି କ୍ରତବଶ୍ଚୈବ ସତ୍ୟମେବ ବିଶିଷ୍ୟତେ ॥
ସତ୍ୟେନ ଦେବାଃ ପିତରୋ ମାନବୋରଗରାକ୍ଷସାଃ । ପ୍ରୀୟନ୍ତେ ସତ୍ୟତଃ ସର୍ବେ ଲୋକାଶ୍ଚ ସଚରାଚରାଃ ॥
ସତ୍ୟମାହୁଃ ପରଂ ଧର୍ମଂ ସତ୍ୟମାହୁଃ ପରଂ ପଦମ୍ । ସତ୍ୟମାହୁଃ ପରଂ ବ୍ରହ୍ମ ତସ୍ମାଦ୍ ସତ୍ୟଂ ସଦା ବଦେତ୍ ॥
(ଶି. ପୁ. ଉ. ସଂ. ୧୨ । ୨୩–୩୧)

ଦ୍ୱିଜ ବେଦାଧ୍ୟୟନ ଦ୍ୱାରା ଯେଉଁ ପୁଣ୍ୟ ଲାଭ କରେ, ତାହାର ଦୁଇଗୁଣ ଫଳ ସେ ବେଦ ଅଧ୍ୟାପନ କରି ପାଇଥାଏ । ମୁନେ ! ସୂର୍ଯ୍ୟ ଓ ଚନ୍ଦ୍ର ବିନା ଯେପରି ଜଗତରେ ଅନ୍ଧାର ଘୋଟିଯାଏ, ଠିକ୍ ସେହିପରି ପୁରାଣ ବିନା (ଜ୍ଞାନର ଆଲୋକ ନ ରହିବାରୁ) ଅଜ୍ଞାନ-ଅନ୍ଧକାର ଘୋଟିଯାଏ । ଏଥିପାଇଁ ସଦା ପୁରାଣ ଅଧ୍ୟୟନ କରିବା ଆବଶ୍ୟକ । ଅଜ୍ଞାନ ହେତୁ ନରକରେ ପଡ଼ି ସନ୍ତପ୍ତ ହେଉଥିବା ବ୍ୟକ୍ତିକୁ ଯେ ଶାସ୍ତ୍ରଜ୍ଞାନ ପ୍ରଦାନ କରି ବୁଝାଏ, ସେପରି ପୁରାଣବକ୍ତା ତା'ର ଏହି ମହତ୍ତ୍ୱ ହେତୁ କାଳ କାଳ ପାଇଁ ପୂଜନୀୟ ଅଟେ । ଯେଉଁ ସାଧୁପୁରୁଷ ପୁରାଣବକ୍ତା ବିଦ୍ୱାନ୍‌ଙ୍କୁ ଦାନର ପାତ୍ର ମନେକରି ଅତ୍ୟନ୍ତ ପ୍ରସନ୍ନତାର ସହ ଉତ୍ତମୋତ୍ତମ ବସ୍ତୁ ପ୍ରଦାନ କରେ, ସେ ପରମ ଗତି ପ୍ରାପ୍ତ ହୋଇଥାଏ । ଯେ ସୁପାତ୍ର ବ୍ରାହ୍ମଣଙ୍କୁ ଭୂମି, ଧେନୁ, ରଥ, ହସ୍ତୀ ଓ ସୁନ୍ଦର ଘୋଡ଼ା ପ୍ରଦାନ କରେ, ତାହାର ପୁଣ୍ୟଫଳ ଶୁଣ । ସେ ଇହଲୋକରେ ଓ ପରଲୋକରେ ସମସ୍ତ ଅକ୍ଷୟ ମନୋରଥ ଅନୁରୂପ ଫଳ ପାଇବା ସହିତ ଅଶ୍ୱମେଧଯଜ୍ଞର ଫଳ ମଧ୍ୟ ପାଇଥାଏ ।

ମୁନୀଶ୍ୱର ! ଯେଉଁ ବ୍ୟକ୍ତି ଭଗବାନ ଶିବଙ୍କ ଚରିତ୍ର ଶୁଣେ, ସେ କର୍ମର ବିଶାଳ ବନକୁ ଭସ୍ମ କରି ସଂସାରରୁ ଉଦ୍ଧାର ପାଇଯାଏ । ଯେଉଁ ଲୋକେ ଘଡ଼ିଏ-ଦି'ଘଡ଼ି ବା କ୍ଷଣେମାତ୍ର ବି ଭକ୍ତିଭାବରେ ଭଗବାନ ଶିବଙ୍କ କଥା ଶ୍ରବଣ କରନ୍ତି, ତାଙ୍କର କଦାପି ଦୁର୍ଗତି ହୁଏ ନାହିଁ । ମୁନେ ! ସମସ୍ତ ଦାନ ଓ ଯଜ୍ଞରେ ଯେଉଁ ପୁଣ୍ୟ ଲାଭ ହୁଏ, ତାହା ଶିବପୁରାଣ ଶ୍ରବଣରେ ଅବିଚଳରୂପେ ପ୍ରାପ୍ତ ହୁଏ । ହେ ବ୍ୟାସଦେବ ! ବିଶେଷତଃ କଳିଯୁଗରେ ପୁରାଣଶ୍ରବଣ ବିନା ମନୁଷ୍ୟ ପାଇଁ ଅନ୍ୟ କୌଣସି ଶ୍ରେଷ୍ଠ ଧର୍ମ ନାହିଁ । ତାହା ହିଁ ତା' ପାଇଁ ମୋକ୍ଷ ଓ ଧ୍ୟାନରୂପୀ ଫଳ ପ୍ରଦାତା । ଶିବପୁରାଣ ଶ୍ରବଣ ଓ ଶିବନାମ କୀର୍ତ୍ତନ ମନୁଷ୍ୟ ପାଇଁ ନିଶ୍ଚିତରୂପେ କଳ୍ପବୃକ୍ଷର ରମଣୀୟ ଫଳ । ଯଜ୍ଞ, ଦାନ, ତପ ଓ ତୀର୍ଥସେବନ ଦ୍ୱାରା ଯେଉଁ ଫଳ ମିଳେ, ତାହାକୁ ମନୁଷ୍ୟ ପୁରାଣଶ୍ରବଣ ମାତ୍ରକେ ଲାଭ କରିପାରେ ।

ପ୍ରତିଦିନ ସୁପାତ୍ର ଲୋକଙ୍କୁ ବଡ଼ ବଡ଼ ଦାନ ଦେବା ଆବଶ୍ୟକ, ସେହି ଦାନ ଦାତା ପାଇଁ ଉଦ୍ଧାରକ ହୋଇଥାଏ । ବିପ୍ରବର ! ସୁବର୍ଣ୍ଣଦାନ, ଗୋଦାନ ଓ ଭୂମିଦାନ ହେଉଛି ପବିତ୍ର ଦାନ, ଯାହା ଦାତାକୁ ତାରିବା ସଙ୍ଗେ ସଙ୍ଗେ ଗ୍ରହୀତାକୁ ମଧ୍ୟ ଉଦ୍ଧାର କରି ଦେଇଥାଏ । ସୁବର୍ଣ୍ଣଦାନ, ଗୋଦାନ ଓ ପୃଥ୍ୱୀଦାନ କରି ମନୁଷ୍ୟ ସମସ୍ତ ପାପରୁ ମୁକ୍ତ ହୋଇଯାଇପାରେ । ତୁଳାଦାନର ବହୁତ ପ୍ରଶଂସା କରାଯାଇଛି । ଗୋ ଓ ପୃଥ୍ୱୀ (ଭୂମି) ଦାନ ମଧ୍ୟ ପ୍ରଶସ୍ତ ଏବଂ ପରସ୍ପରର ସମକକ୍ଷ । ମାତ୍ର ସରସ୍ୱତୀ (ବିଦ୍ୟା) ଦାନ ଏଗୁଡ଼ିକ ଠାରୁ ଅଧିକ ଉତ୍ତମ । ଦୁହାଁଳିଆ ଗାଈ, ଛତା, ବସ୍ତ୍ର, ଜୋତା ଓ ଅନ୍ନ-ଜଳ—ଏସବୁ ଯାଚକଙ୍କୁ ଦେବା ଉଚିତ । ବ୍ରାହ୍ମଣଙ୍କୁ ଓ ଅପୀଡ଼ିତ ଯାଚକଙ୍କୁ ସଂକଳ୍ପପୂର୍ବକ ଧନାଦି ବସ୍ତୁ ପ୍ରଦାନ କଲେ ତଦ୍ଦ୍ୱାରା ଦାତା ମନସ୍ୱୀ ହୋଇଥାଏ । ଜଗତରେ ଯାହା କିଛି ଅତ୍ୟନ୍ତ ଅଭୀଷ୍ଟ ଓ ପ୍ରିୟ ବସ୍ତୁ ଅଛି, ତାହା ଘରେ ଥିଲେ ତାହାକୁ ଅକ୍ଷୟ କରିବାକୁ ଚାହୁଁଥିବା ବ୍ୟକ୍ତି ଗୁଣବାନ୍ ପୁରୁଷ ଦେଖି ଦାନ କରିବା ଉଚିତ । ତୁଳାପୁରୁଷ ଦାନ ସବୁ ଦାନ ମଧ୍ୟରେ ଉତ୍ତମ । ଯେ ନିଜର କଲ୍ୟାଣ ଚାହେଁ, ସେ ତରାଜୁରେ ବସି ନିଜ ଶରୀରର ଯେତିକି ଓଜନ, ସେତିକି ଓଜନର ବସ୍ତୁ ଦାନ ଦେବା ଉଚିତ । ଦିନରେ, ରାତିରେ, ଉଭୟ ସଂଧ୍ୟା ସମୟରେ, ଦ୍ୱିପ୍ରହର ବେଳେ, ଅର୍ଦ୍ଧରାତ୍ରିରେ ତଥା ଭୂତ-ବର୍ତ୍ତମାନ-ଭବିଷ୍ୟକାଳରେ ମନ, ବାଣୀ ଓ ଶରୀର ଦ୍ୱାରା କରିଥିବା ସମସ୍ତ ପାପକୁ ତୁଳାପୁରୁଷ-ଦାନ ଦୂର କରିଦିଏ ।

ଏହାପରେ ବ୍ରହ୍ମାଣ୍ଡଦାନର ମାହାତ୍ମ୍ୟ ଓ ବ୍ରହ୍ମାଣ୍ଡର ବର୍ଣ୍ଣନା କରି ସନତ୍‌କୁମାର କହିଲେ—ମୁନିବରଙ୍କ ମଧ୍ୟରେ ଶ୍ରେଷ୍ଠ ବ୍ୟାସଦେବ ! ପାତାଳଲୋକର ଉପରେ ଯେଉଁ ନରକ ଅଛି, ସେ ବିଷୟରେ

ମୋଠାରୁ ଶ୍ରବଣ କର । ପାପୀ ଲୋକେ ସେଇଠାରେ ଯାତନା ଭୋଗ କରିଥାନ୍ତି । ସେଠାରେ ରୌରବ, ଶୂକର, ରୋଧ, ତାଳ, ବିବସନ ବା ବିଶସନ, ମହାଜ୍ୱାଳ, ତପ୍ତକୁମ୍ଭ, ଲବଣ, ବିଲୋହିତ, ପୂୟବହା ବୈତରଣୀ, କୃମି ବା କୃମୀଶ, କୃମିଭୋଜନ, କୃଷ୍ଣ, ଅସିପତ୍ରବନ, ଦାରୁଣ ଲାଳାଭକ୍ଷ, ପୂୟବହ, ବହ୍ନିଜ୍ୱାଳ, ଅଧଃଶିରା, ସନ୍ଦଂଶ, କାଳସୂତ୍ର, ତାମସ, ଅବୀଚି, ରୋଧନ, ଶ୍ୱଭୋଜନ, ଅପ୍ରତିଷ୍ଠ, ମହାରୌରବ ଓ ଶାଲ୍ମଳି ଇତ୍ୟାଦି ଅନେକ ପ୍ରକାର ଦୁଃଖଦାୟକ ନରକ ରହିଛି । ବ୍ୟାସଦେବ ! ସେଥିରେ ଯେଉଁ ପାପକର୍ମପରାୟଣ ଲୋକଙ୍କୁ ପକାଯାଏ, ସେମାନଙ୍କ କଥା କ୍ରମଶଃ କହୁଛି, ସାବଧାନ ହୋଇ ଶୁଣ । ଯେଉଁ ଲୋକ ବ୍ରାହ୍ମଣ, ଦେବତା ଓ ଗୋରୁଙ୍କ ହିତକାର୍ଯ୍ୟ ଛଡ଼ା ଅନ୍ୟ କୌଣସି କାର୍ଯ୍ୟ ପାଇଁ ମିଛ ସାକ୍ଷୀ ଦିଏ ଅଥବା ସଦା ମିଥ୍ୟା କହେ, ସେ ରୌରବ ନରକରେ ପଡ଼େ ।

ଯେ ଭ୍ରୂଣହତ୍ୟା (ଗର୍ଭସ୍ଥ ଶିଶୁ ହତ୍ୟା) ଓ ସୁବର୍ଣ୍ଣ ଚୋରି କରେ, ଗାଈଙ୍କୁ କାଠଘେରାରେ ଆବଦ୍ଧ କରେ, ଯେ ବିଶ୍ୱାସଘାତୀ, ମଦ୍ୟପ, ବ୍ରହ୍ମହତ୍ୟାକାରୀ, ଅନ୍ୟର ଦ୍ରବ୍ୟ ଅପହରଣକାରୀ ତଥା ଏମାନଙ୍କ ସଙ୍ଗୀ, ଏମାନେ ସମସ୍ତେ ମୃତ୍ୟୁ ପରେ ତପ୍ତକୁମ୍ଭ ନାମକ ନରକକୁ ଯାଆନ୍ତି । ଗୁରୁବଧ କରିଥିଲେ ମଧ୍ୟ ଏହି ନରକକୁ ଯିବାକୁ ପଡ଼ିଥାଏ । ମାଆ, ଭଉଣୀ, ଧେନୁ ବା କନ୍ୟାକୁ ବଧ କଲେ ତପ୍ତକୁମ୍ଭରେ ପଡ଼ିବାକୁ ହୁଏ । ସାଧ୍ୱୀ ସ୍ତ୍ରୀକୁ ବିକି ଦେଉଥିବା, ଅଧିକ ସୁଧ ନେଉଥିବା, କେଶ ବିକୁଥିବା ଏବଂ ନିଜ ଭକ୍ତଙ୍କୁ ତ୍ୟାଗ କରି ଦେଉଥିବା ପାପୀମାନେ ତପ୍ତଲୋହ ନାମକ ନରକରେ ପଡ଼ନ୍ତି । ଯେଉଁ ନରାଧମ ଗୁରୁଜନଙ୍କୁ ଅପମାନିତ କରେ, ସେମାନଙ୍କୁ ଦୁର୍ବଚନ କହେ, ବେଦକୁ ନିନ୍ଦା କରେ, ବେଦ ବିକ୍ରୟ କରେ ଅଥବା ଅଗମ୍ୟା ନାରୀକୁ ସମ୍ଭୋଗ କରେ, ସେ ଲବଣ ନାମକ ନରକରେ ପଡ଼େ । ଚୋର ବିଲୋହିତ ନାମକ ନରକରେ ପଡ଼େ । ମର୍ଯ୍ୟାଦା ଦୂଷିତକାରୀ ବ୍ୟକ୍ତିଙ୍କର ମଧ୍ୟ ଏହି ଗତି ହୁଏ । ଯେଉଁ ବ୍ୟକ୍ତି ଦେବତା, ବ୍ରାହ୍ମଣ ଓ ପିତୃଗଣଙ୍କ ପ୍ରତି ଦ୍ୱେଷ କରେ ଓ ରତ୍ନକୁ ଦୂଷିତ (ସେଥିରେ ଅପମିଶ୍ରଣ) କରେ, ସେ କୃମିଭକ୍ଷ ନାମକ ନରକରେ ପଡ଼େ । ଯେ ଦୂଷିତ ଯଜ୍ଞ (ଅନ୍ୟର ହାନି କରିବା ଉଦ୍ଦେଶ୍ୟରେ କରାଯାଉଥିବା ଆଭିଚାରିକ ପ୍ରୟୋଗ ବା ହିଂସାପ୍ରଧାନ ତାମସ ଯଜ୍ଞ) କରେ, ସେ କୃମୀଶ ନାମକ ନରକରେ ପଡ଼େ । ଯେଉଁ ନରାଧମ ପିତୃଗଣ, ଦେବଗଣ ଓ ଅତିଥିଗଣଙ୍କୁ ଛାଡ଼ି (ବଳିବୈଶ୍ୱଦେବ ଦ୍ୱାରା ଦେବତା ପ୍ରଭୃତିଙ୍କୁ ସେମାନଙ୍କର ଭାଗ ନ ଦେଇ) ଭୋଜନ କରେ, ସେ ଉଗ୍ର ଲାଳାଭକ୍ଷ ନରକରେ ପଡ଼େ । ଯେ ଶାସ୍ତ୍ର ଉପରେ କୁତର୍କ କରେ, ସେ ମଧ୍ୟ ସେଇଥିରେ ପଡ଼େ । ଯେଉଁ ଦ୍ୱିଜ ଅନ୍ତ୍ୟଜଙ୍କ ଠାରୁ ସେବା ଗ୍ରହଣ କରେ, ଅସତ୍ ଦାନ ଗ୍ରହଣ କରେ, ଯଜ୍ଞର ଅନଧିକାରୀଙ୍କ ଦ୍ୱାରା ଯଜ୍ଞ କରାଏ ଓ ଅଭକ୍ଷ୍ୟ ଭକ୍ଷଣ କରେ, ସେ ରୁଧିରୌଘ (ପୂୟବହ) ନାମକ ନରକରେ ପଡ଼େ । ସୋମରସ ବିକ୍ରୟକାରୀଙ୍କର ମଧ୍ୟ ଏହି ଗତି ହୁଏ । ଯଜ୍ଞ ଓ ଗ୍ରାମକୁ ନଷ୍ଟ କରୁଥିବା ଲୋକ ବୈତରଣୀ ନଦୀରେ ପଡ଼େ ।

ଯେଉଁମାନେ ନବଯୌବନରେ ଉନ୍ମତ୍ତ ହୋଇ ଧର୍ମର ମର୍ଯ୍ୟାଦା ଭଙ୍ଗ କରନ୍ତି, ଅପବିତ୍ର ଆଚାର-ବିଚାରରେ ଚଳନ୍ତି ଓ ଛଳକପଟରେ ଜୀବିକା ଚଳାନ୍ତି, ସେମାନେ କୃଷ୍ଣ ନାମକ ନରକରେ ପଡ଼ନ୍ତି । ଅକାରଣେ ବୃକ୍ଷମାନ କାଟି ପକାଉଥିବା ଲୋକ ଅସିପତ୍ରବନ ନାମକ ନରକରେ ପଡ଼େ । ମାଂସ ବିକି ଜୀବିକା ଚଳାଉ ଥିବା କଂସେଇ ବା ପଶୁହିଂସା କରୁଥିବା ଲୋକେ ବହ୍ନିଜ୍ୱାଳ ନାମକ ନରକରେ ପଡ଼ନ୍ତି । ଭ୍ରଷ୍ଟାଚାରୀ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏବଂ କଞ୍ଚା ଟାଇଲ ବା ଇଟା ଭାଟିରେ ନିଆଁ ଦେଉଥିବା ଲୋକେ ମଧ୍ୟ ସେହି ବହ୍ନିଜ୍ୱାଳ

ନରକରେ ପଡ଼ନ୍ତି । ଯେଉଁମାନେ ବ୍ରତ ଲୋପ କରନ୍ତି ଏବଂ ନିଜ ଆଶ୍ରମ ନିୟମରୁ ପତିତ, ସେମାନେ ଅତ୍ୟନ୍ତ ଦାରୁଣ ସନ୍ଦଂଶ ନାମକ ନରକରେ ଯାତନା ଭୋଗ କରନ୍ତି । ବ୍ରହ୍ମଚାରୀ ହୋଇ ମଧ୍ୟ ସ୍ୱପ୍ନରେ ବୀର୍ଯ୍ୟସ୍ଖଳନ କରୁଥିବା ଏବଂ ପୁତ୍ରଙ୍କୁ ପାଠ ପଢ଼ାଉ ନ ଥିବା ଲୋକେ ଶ୍ୱଭୋଜନ ନାମକ ନରକରେ ପଡ଼ନ୍ତି । ଏହିପରି ଆହୁରି ଶହ ଶହ, ହଜାର ହଜାର ନରକ ରହିଛି, ଯେଉଁଥିରେ ପାପୀମାନଙ୍କୁ ପକାଇ ଯାତନା ଦିଆଯାଏ । ଉପରୋକ୍ତ ପାପକର୍ମ ଛଡ଼ା ଆହୁରି ହଜାର ହଜାର ପାପକର୍ମ ରହିଛି, ଯାହାର ଫଳ ଭୋଗିବାକୁ ନରକ ଯିବାକୁ ପଡ଼ିଥାଏ । ଯେଉଁମାନେ ମନ, ବାଣୀ ଓ କ୍ରିୟା ଦ୍ୱାରା ନିଜ ବର୍ଣ୍ଣ ଓ ଆଶ୍ରମର ବିରୁଦ୍ଧ କର୍ମ କରନ୍ତି, ସେମାନେ ମଧ୍ୟ ନରକରେ ପଡ଼ନ୍ତି । ନରକରେ ତଳମୁଣ୍ଡିଆ କରି ଝୁଲାଇ ରଖାଯାଇଥିବା ପ୍ରାଣୀମାନେ ସ୍ୱର୍ଗରେ ରହୁଥିବା ଦେବତାମାନଙ୍କୁ ଦେଖୁଥାନ୍ତି ଏବଂ ଦେବତାମାନେ ମଧ୍ୟ ତଳକୁ ଗ୍ରହିଁ ସେହି ଅଧୋମୁଖ ନାରକୀ ଜୀବଙ୍କୁ ଦେଖନ୍ତି । ପାପୀମାନେ ନରକଭୋଗ ପରେ କ୍ରମଶଃ ଉନ୍ନତି ପଥରେ ଗତି କରି ସ୍ଥାବର, କୃମି, ଜଳଚର, ପକ୍ଷୀ, ପଶୁ, ମନୁଷ୍ୟ, ଧର୍ମାତ୍ମା, ଦେବତା ତଥା ମୁମୁକ୍ଷୁ ହୋଇ ସର୍ବଶେଷରେ ମୋକ୍ଷଗତି ଲାଭ କରନ୍ତି । ଯେତେ ଜୀବ ସ୍ୱର୍ଗରେ ଥାଆନ୍ତି, ସେତିକି ଜୀବ ନରକରେ ମଧ୍ୟ ଥାଆନ୍ତି । ଯେଉଁ ପାପୀ ମନୁଷ୍ୟ ନିଜ ପାପର ପ୍ରାୟଶ୍ଚିତ୍ତ ନ କରେ, ସେ ନରକରେ ପଡ଼େ ।

କାଳୀନନ୍ଦନ ! ସ୍ୱାୟମ୍ଭୁବ ମନୁ ଘୋର ପାପ ପାଇଁ ଘୋର ପ୍ରାୟଶ୍ଚିତ୍ତ ଓ ଲଘୁ ପାପ ପାଇଁ ଲଘୁ ପ୍ରାୟଶ୍ଚିତ୍ତର ବିଧାନ କରିଛନ୍ତି । ବିବିଧ ପାପକର୍ମ ପାଇଁ ଯେଉଁ ଯେଉଁ ପ୍ରାୟଶ୍ଚିତ୍ତ କର୍ମ ନିର୍ଦ୍ଦେଶିତ ହୋଇଛି, ସେଗୁଡ଼ିକ ମଧ୍ୟରେ ଶିବସ୍ମରଣ ହିଁ ସର୍ବଶ୍ରେଷ୍ଠ । ଯେଉଁ ବ୍ୟକ୍ତିର ଚିତ୍ତରେ ପାପକର୍ମ କରିବା ପରେ ପଶ୍ଚାତ୍ତାପ ହୁଏ, ତା ପାଇଁ ଏକମାତ୍ର ଶିବସ୍ମରଣ ହିଁ ସର୍ବୋତ୍ତମ ପ୍ରାୟଶ୍ଚିତ୍ତ । ସକାଳେ, ସଂଧ୍ୟାରେ, ରାତିରେ ତଥା ମଧ୍ୟାହ୍ନରେ ଭଗବାନ ଶିବଙ୍କୁ ସ୍ମରଣ କରି ପାପରହିତ ହୋଇଥିବା ମନୁଷ୍ୟ ମାହେଶ୍ୱରଧାମକୁ ଯାଏ । ଶିବଙ୍କ ସ୍ମରଣ ଦ୍ୱାରା ସମସ୍ତ ପାପ ଓ କ୍ଳେଶ କ୍ଷୟ ହୋଇଗଲେ ମନୁଷ୍ୟ ସ୍ୱର୍ଗ ଅଥବା ମୋକ୍ଷ ପ୍ରାପ୍ତି କରେ । ଯାହାର ଚିତ୍ତ ଜପ, ହୋମ ଓ ପୂଜା କରିବା ବେଳେ ନିରନ୍ତର ଭଗବାନ ମହେଶ୍ୱରଙ୍କ ଠାରେ ହିଁ ଅଭିନିବିଷ୍ଟ ଥାଏ, ତା' ପାଇଁ ଇନ୍ଦ୍ରାଦି ପଦ ପ୍ରାପ୍ତି ଏକପ୍ରକାର ଅନ୍ତରାୟ ବା ବିଘ୍ନ ଅଟେ । ମୁନେ ! ଯେଉଁ ବ୍ୟକ୍ତି ଭକ୍ତିଭାବରେ ଦିନରାତି ଭଗବାନ ଶିବଙ୍କୁ ସ୍ମରଣ କରେ, ତାହାର ସମସ୍ତ ପାପ ନଷ୍ଟ ହୋଇଯାଏ । ତେଣୁ ସେ କଦାପି ନରକରେ ପଡ଼େ ନାହିଁ । ନରକ ଓ ସ୍ୱର୍ଗ ହେଉଛି ପାପ ଓ ପୁଣ୍ୟର ଅନ୍ୟତମ ନାମ । ସେଥିମଧ୍ୟରୁ ଗୋଟିଏ ଦୁଃଖଦାୟୀ ଓ ଅନ୍ୟଟି ସୁଖଦାୟୀ । ଗୋଟିଏ ବସ୍ତୁ କେତେବେଳେ ଦୁଃଖ ଦେଇଥାଏ ତ ଅନ୍ୟ କେତେବେଳେ ସୁଖ ଦେଇଥାଏ; ଏଥିରୁ ପ୍ରମାଣିତ ହୁଏ ଯେ କୌଣସି ବସ୍ତୁ ଦୁଃଖଦାୟକ ବା ସୁଖଦାୟକ ନୁହେଁ; ଏ ଦୁଃଖ ଓ ସୁଖ କେବଳ ମନର ବିକାରମାତ୍ର । ଜ୍ଞାନ ହିଁ ପରବ୍ରହ୍ମ ଓ ଜ୍ଞାନ ହିଁ ତାତ୍ତ୍ୱିକ ବୋଧର କାରଣ । ଏ ସମଗ୍ର ବିଶ୍ୱ ଜ୍ଞାନମୟ । ସେହି ପରମ ବିଜ୍ଞାନ ଠାରୁ ଭିନ୍ନ ଅନ୍ୟ କିଛି ବି ନାହିଁ । (ଅଧ୍ୟାୟ ୧୩–୧୬)

***

# ମୃତ୍ୟୁକାଳ ସନ୍ନିକଟ ହେବାର ଲକ୍ଷଣ

ଏହାପରେ ନାନା ଦ୍ୱୀପ, ଲୋକ (ଭୁବନ) ଓ ମନୁଙ୍କର ପରିଚୟ ପ୍ରଦାନ କରି ସଂଗ୍ରାମର ଫଳ, ଶରୀର ଓ ନାରୀସ୍ୱଭାବ ଇତ୍ୟାଦିର ବର୍ଣ୍ଣନା କଲେ । ତା'ପରେ ବ୍ୟାସଦେବଙ୍କର କାଳବିଷୟକ ପ୍ରଶ୍ନ ଶୁଣି ସନତ୍କୁମାର କହିଲେ–**ମୁନିଶ୍ରେଷ୍ଠ ! ପୂର୍ବକାଳରେ ଦେବୀ ପାର୍ବତୀ ନାନା ପ୍ରକାର ଦିବ୍ୟ କଥାମାନ ଶ୍ରବଣ କଲାପରେ ପରମେଶ୍ୱର ଶିବଙ୍କୁ ପ୍ରଣାମ କରି ଏହି କଥା ହିଁ ପଚ୍ଚରିଥିଲେ ।**

ପାର୍ବତୀ କହିଲେ–**ଭଗବନ୍ ! ମୁଁ ଆପଣଙ୍କ କୃପାରୁ ସମସ୍ତ ମତ ଜାଣିଗଲି । ଯେଉଁ ମନ୍ତ୍ର ଦ୍ୱାରା ଯେଉଁ ବିଧିରେ ଯେଉଁପରି ଆପଣଙ୍କ ପୂଜା ହୁଏ, ତାହା ମୁଁ ଜାଣିଗଲି । କିନ୍ତୁ ପ୍ରଭୋ ! ଏବେ ବି ଗୋଟିଏ ସଂଶୟ ରହିଯାଇଛି । ସେହି ସଂଶୟଟି କାଳ ସମ୍ବନ୍ଧରେ । ହେ ଦେବ ! ମୃତ୍ୟୁର ଚିହ୍ନ କ'ଣ? ଆୟୁର କ'ଣ ପ୍ରମାଣ? ସ୍ୱାମୀ! ଯଦି ମୁଁ ଆପଣଙ୍କର ପ୍ରିୟ, ମୋତେ ଏ ସମସ୍ତ କଥା ଅବଶ୍ୟ କୁହନ୍ତୁ ।**

ମହାଦେବ କହିଲେ–**ପ୍ରିୟେ ! ଅଗ୍ରନକ ଶରୀର ଗ୍ରରିଆଡ଼ୁ ଧଳା ବା ହଳଦିଆ ପଡ଼ିଗଲେ ଏବଂ ଉପରୁ କିଛି ଲାଲ ଦିଶିଲେ ଜାଣିବ ଯେ ଛଅମାସ ଭିତରେ ସେହି ଲୋକର ମୃତ୍ୟୁ ହେବ । ଶିବେ ! ଯେତେବେଳେ ମୁଖ, କାନ, ନେତ୍ର ଓ ଜିହ୍ୱା ସ୍ତମ୍ଭିତ ହୋଇଯିବ, ସେତେବେଳେ ମଧ୍ୟ ଛଅ ମାସ ମଧ୍ୟରେ ମୃତ୍ୟୁ ହେବ ବୋଲି ଜାଣିବ । ଭଦ୍ରେ ! ଯେ ପଛରୁ ଆସୁଥିବା ଭୟାନକ ଧ୍ୱନିକୁ ଶୀଘ୍ର ଶୁଣି ପାରେ ନାହିଁ, ତାହାର ମଧ୍ୟ ମୃତ୍ୟୁ ଛଅମାସ ଭିତରେ ହେବ ବୋଲି ଜାଣ । ସୂର୍ଯ୍ୟ, ଚନ୍ଦ୍ର ବା ଅଗ୍ନି ବିଦ୍ୟମାନ ଥିଲେ ମଧ୍ୟ ଯାହାକୁ ତାଙ୍କ ଆଲୋକ ଦିଶେ ନାହିଁ, ସବୁ କିଛି କଳା ବା ଅନ୍ଧକାରାଚ୍ଛନ୍ନ ଦିଶେ, ତା'ର ଜୀବନ ଛଅମାସରୁ ଅଧିକ ରହିବ ନାହିଁ । ହେ ଦେବୀ ! ପ୍ରିୟେ ! ଯଦି ମନୁଷ୍ୟର ବାମ ହାତ ଅନବରତ ଏକସପ୍ତାହ ପର୍ଯ୍ୟନ୍ତ ଫିଡ଼ିକେ, ତେବେ ତା'ର ଜୀବନ ଆଉ**



**ମାତ୍ର ମାସେ ଅଛି ବୋଲି ଜାଣିବା ଉଚିତ । ତ୍ରିଦୋଷରେ ଯାହାର ନାକରୁ ପାଣି ବହେ, ସେ ପନ୍ଦର ଦିନରୁ ଅଧିକ ବଞ୍ଚେ ନାହିଁ । ପାଟି ଓ କଣ୍ଠ ଶୁଖି ଯାଉଥିଲେ ଛଅମାସ ଭିତରେ ତାହାର ଆୟୁ ସମାପ୍ତ ହୋଇଯିବ ବୋଲି ଜାଣିବା ଉଚିତ । ହେ ଭାମିନୀ ! ଯାହାର ଜିଭ ଫୁଲିଯାଏ ଏବଂ ଦାନ୍ତରୁ ପୂଜ ବାହାରେ, ତାହାର ମଧ୍ୟ ଛଅମାସ ଭିତରେ ମୃତ୍ୟୁ ହୁଏ । ଏହି ଲକ୍ଷଣରୁ ମୃତ୍ୟୁକାଳକୁ ଜାଣିବା ଉଚିତ । ହେ ସୁନ୍ଦରୀ ! ଜଳ, ତୈଳ, ଘୃତ ଓ ଦର୍ପଣରେ ନିଜର ପ୍ରତିବିମ୍ବ ନ ଦିଶିଲେ ବା ବିକୃତ ଦିଶିଲେ କାଳଚକ୍ରଜ୍ଞାତା ବ୍ୟକ୍ତି ଜାଣିଯିବା ଉଚିତ ଯେ ତାହାର ଆୟୁ ଛଅମାସରୁ ଅଧିକ ବାକି ନାହିଁ । ହେ ଦେବେଶ୍ୱରୀ! ଏବେ ଅନ୍ୟ ଗୋଟିଏ କଥା ଶୁଣ, ଯଦ୍ଦ୍ୱାରା ମୃତ୍ୟୁର ଜ୍ଞାନ ହୋଇଯାଏ । ଯେବେ ମନୁଷ୍ୟ ନିଜ ଛାୟାକୁ**

ମସ୍ତକବିହୀନ ଦେଖେ ଅଥବା ନିଜକୁ ଛାୟାରହିତ ଦେଖେ, ତେବେ ସେ ମାସକରୁ ଅଧିକ ବଞ୍ଚେ ନାହିଁ ।

ହେ ପାର୍ବତୀ ! ମୁଁ ଅଙ୍ଗରୁ ବ୍ୟକ୍ତ ହେଉଥିବା ମୃତ୍ୟୁ-ଲକ୍ଷଣ କହିଲି । ଏବେ ବାହ୍ୟ ଲକ୍ଷଣ କହୁଛି, ଶୁଣ । ହେ ଦେବୀ ! ଯେବେ ଚନ୍ଦ୍ରମଣ୍ଡଳ ବା ସୂର୍ଯ୍ୟମଣ୍ଡଳ ପ୍ରଭାହୀନ ଓ ଲାଲ ଦିଶେ, ତେବେ ବୁଝିବ ଯେ ଅଧାମାସରେ ମନୁଷ୍ୟର ମୃତ୍ୟୁ ହେବ । ଅରୁନ୍ଧତୀ, ମହାଯାନ, ଚନ୍ଦ୍ର– ଏଗୁଡ଼ିକୁ ଯେ ଦେଖି ନ ପାରେ ଅଥବା ଯାହାକୁ ତାରା ଦର୍ଶନ ନ ହୁଏ, ସେଭଳି ବ୍ୟକ୍ତି ମାସେ ମାତ୍ର ଜୀବିତ ରହେ । ଯଦି ଗ୍ରହଙ୍କ ଦର୍ଶନ ହେଉଥିଲେ ମଧ୍ୟ ଦିଗଜ୍ଞାନ ହୁଏ ନାହିଁ ଅର୍ଥାତ୍ ମନ ଉପରେ ମୂଢ଼ତା ଛାଇଯାଏ, ତେବେ ଛଅମାସ ଭିତରେ ନିଶ୍ଚୟ ମୃତ୍ୟୁ ହେବ । ଯଦି ଉତଥ୍ୟ ନାମକ ତାରା, ଧ୍ରୁବ ଅଥବା ସୂର୍ଯ୍ୟମଣ୍ଡଳ ନ ଦିଶେ, ରାତିରେ ଇନ୍ଦ୍ରଧନୁ ଓ ମଧ୍ୟାହ୍ନରେ ଉଲ୍‌କାପାତ ହେଉଥିବା ଦୃଶ୍ୟ ହୁଏ ଏବଂ ଶାଗୁଣା ଓ କୁଆ ଘେରି ହୋଇ ରହନ୍ତି, ତେବେ ସେ ମନୁଷ୍ୟର ଆୟୁ ଛଅମାସରୁ ଅଧିକ ନୁହେଁ । ଯଦି ଆକାଶରେ ସପ୍ତର୍ଷି ଓ ସ୍ୱର୍ଗମାର୍ଗ (ଛାୟାପଥ) ନ ଦିଶେ, କାଳଜ୍ଞ ବ୍ୟକ୍ତି ତାହାର ଆୟୁ ଛଅମାସ ଅବଶିଷ୍ଟ ଅଛି ବୋଲି ଜାଣି ପାରନ୍ତି । ଯେ ଅଗ୍ନିକ ସୂର୍ଯ୍ୟ ଓ ଚନ୍ଦ୍ରକୁ ରାହୁଗ୍ରସ୍ତ ଦେଖେ ଏବଂ ସମସ୍ତ ଦିଗ ଘୂରିଲା ପରି ଅନୁଭବ ହୁଏ, ସେ ନିଶ୍ଚୟ ଛଅମାସ ଭିତରେ ମୃତ୍ୟୁମୁଖରେ ପଡ଼େ । ଯଦି ଅକସ୍ମାତ୍ ନୀଳମାଛିମାନେ ଆସି କାହାକୁ ଘେରିଯାଆନ୍ତି, ତା'ର ଆୟୁ ଆଉ ମାତ୍ର ମାସେ ଅଛି ବୋଲି ଜାଣିବାକୁ ହେବ । ଯଦି ଶାଗୁଣା, କୁଆ ଅଥବା ପାରା ମୁଣ୍ଡ ଉପରେ ବସନ୍ତି, ତେବେ ସେ ବ୍ୟକ୍ତିର ନିଶ୍ଚୟ ମାସେ ଭିତରେ ମୃତ୍ୟୁ ହୁଏ । (ଅଧ୍ୟାୟ ୧୭–୨୫)



## କାଳକୁ ଜିଣିବାର ଉପାୟ, ନବଧା ଶବ୍ଦବ୍ରହ୍ମ ଓ ତୁଂକାରର ଅନୁସନ୍ଧାନ ତଥା ସେଥିରୁ ଉପଲବ୍ଧ ସିଦ୍ଧିର ବର୍ଣ୍ଣନା

ଦେବୀ ପାର୍ବତୀ କହିଲେ–ପ୍ରଭୋ ! କାଳ ଦ୍ୱାରା ଆକାଶର ମଧ୍ୟ ବିନାଶ ହୋଇଥାଏ । ସେହି ଭୟଙ୍କର କାଳ ବହୁତ ବିକରାଳ । ତାହା ସ୍ୱର୍ଗର ମଧ୍ୟ ଏକମାତ୍ର ସ୍ୱାମୀ । ଆପଣ ତାହାକୁ ଦଗ୍ଧ କରିଦେଇଥିଲେ, କିନ୍ତୁ ସେ ଅନେକ ପ୍ରକାର ସ୍ତୋତ୍ର ଦ୍ୱାରା ସ୍ତୁତି କରିବାରୁ ଆପଣ ତା' ଉପରେ ସନ୍ତୁଷ୍ଟ ହୋଇଗଲେ । କାଳ ପୁନଃ ଆପଣା ପ୍ରକୃତିକୁ ପ୍ରାପ୍ତ ହେଲା । ଆପଣ କଥାବାର୍ତ୍ତା କ୍ରମେ ତାକୁ କହିଲେ–"କାଳ! ତୁମେ ସର୍ବତ୍ର ବିଚରଣ କରିବ, କିନ୍ତୁ ଲୋକେ ତୁମକୁ ଦେଖି ପାରିବେ ନାହିଁ ।" ଆପଣଙ୍କ କୃପାଦୃଷ୍ଟି ପଡ଼ିବାରୁ ଏବଂ ବରପ୍ରାପ୍ତି ହେବାରୁ ସେହି କାଳ ବଞ୍ଚିଗଲା ଏବଂ ତାହାର ପ୍ରଭାବ ବହୁତ ବୃଦ୍ଧି ପାଇଲା । ଅତଏବ ହେ ମହେଶ୍ୱର ! କ'ଣ ଏପରି କିଛି ଉପାୟ ଅଛି, ଯଦ୍ଦ୍ୱାରା କାଳକୁ ମଧ୍ୟ ନଷ୍ଟ କରାଯାଇ ପାରେ? ଯଦି ଅଛି, ତାହା ପ୍ରକାଶ କରନ୍ତୁ; କାରଣ ଆପଣ ଯୋଗୀଙ୍କ ମଧ୍ୟରେ ଶିରୋମଣି ଓ ସ୍ୱତନ୍ତ୍ର ପ୍ରଭୁ । ଆପଣ ପରୋପକାର ନିମନ୍ତେ ହିଁ ଶରୀର ଧାରଣ କରନ୍ତି ।

ଶିବ କହିଲେ–ହେ ଦେବୀ ! ଶ୍ରେଷ୍ଠ ଦେବତା, ଦୈତ୍ୟ, ଯକ୍ଷ, ରାକ୍ଷସ, ନାଗ ଓ ମନୁଷ୍ୟ କେହି ବି କାଳକୁ ନାଶ କରିବାକୁ ସକ୍ଷମ ନୁହେଁ । ମାତ୍ର ଯେଉଁମାନେ ଧ୍ୟାନଯୋଗପରାୟଣ ଯୋଗୀ, ସେମାନେ ଶରୀରଧାରୀ ହେଲେ ମଧ୍ୟ ସୁଖପୂର୍ବକ କାଳକୁ ନଷ୍ଟ କରି ଦିଅନ୍ତି । ବରାରୋହେ ! ଏ ପାଞ୍ଚଭୌତିକ ଶରୀର ସର୍ବଦା ଭୂତମାନଙ୍କ ଗୁଣରେ

ଯୁକ୍ତ ହୋଇ ଉତ୍ପନ୍ନ ହୁଏ ଏବଂ ସେହିଥିରେ ହିଁ ଲୟ ହୁଏ । ମାଟିର ଦେହ ମାଟିରେ ମିଶିଯାଏ । ଆକାଶରୁ ବାୟୁ ଉତ୍ପନ୍ନ ହୁଏ, ବାୟୁରୁ ତେଜସ୍ତତ୍ତ୍ୱ ପ୍ରକଟ ହୁଏ, ତେଜରୁ ଜଳ ଓ ଜଳରୁ ପୃଥ୍ୱୀ ବା ଭୂମି ଉତ୍ପନ୍ନ ହୁଏ । ଭୂମି ଇତ୍ୟାଦି ଭୂତ କ୍ରମାନୁସାରେ ନିଜ ନିଜ କାରଣରେ ଲୀନ ହୋଇଯାଆନ୍ତି । ଭୂମିର ପାଞ୍ଚଟି, ଜଳର ଚାରିଟି, ତେଜର ତିନୋଟି ଓ ବାୟୁର ଦୁଇଟି ଗୁଣ ଥାଏ । ଆକାଶର କେବଳ ଶବ୍ଦ ହିଁ ଏକମାତ୍ର ଗୁଣ । ପୃଥ୍ୱୀ ଆଦିରେ ଯେଉଁ ସବୁ ଗୁଣ ରହିଛି, ସେଗୁଡ଼ିକ ହେଲା—ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ । ଭୂତ ଯେତେବେଳେ ନିଜ ଗୁଣକୁ ତ୍ୟାଗ କରେ, ସେତେବେଳେ ତାହା ନଷ୍ଟ ହୋଇଯାଏ ଓ ଯେତେବେଳେ ଗୁଣକୁ ଗ୍ରହଣ କରେ, ସେତେବେଳେ ତାହା ଉତ୍ପନ୍ନ ହୁଏ । ହେ ଦେବେଶ୍ୱରୀ ! ଏହିରୂପେ ତୁମେ ପାଞ୍ଚଟି ଭୂତର ଯଥାର୍ଥ ସ୍ୱରୂପକୁ ବୁଝ । ଏଣୁ ହେ ଦେବୀ! କାଳକୁ ଜିଣିବାକୁ ଚାହୁଁଥିବା ଯୋଗୀ ପ୍ରତିଦିନ ପ୍ରଯତ୍ନପୂର୍ବକ ଉପଯୁକ୍ତ କାଳ ଓ ତାହାର ଅଂଶଭୂତ ଗୁଣଗୁଡ଼ିକ ବିଷୟରେ ବିଚାର କରିବା ଉଚିତ ।

ଯୋଗବେତ୍ତା ପୁରୁଷ ସୁଖଦ ଆସନରେ ବିରାଜମାନ ହୋଇ ବିଶୁଦ୍ଧ ଶ୍ୱାସ (ପ୍ରାଣାୟାମ) ଦ୍ୱାରା ଯୋଗାଭ୍ୟାସ କରିବେ । ରାତିରେ ଲୋକମାନେ ଶୋଇ ପଡ଼ିବା ପରେ ଦୀପ ଲିଭାଇ ଅନ୍ଧକାରରେ ଯୋଗଧାରଣା କରିବେ । ତର୍ଜନୀ ଅଙ୍ଗୁଳିରେ ଦୁଇ କାନକୁ ବନ୍ଦ କରି ଦୁଇ ଘଡ଼ି ପର୍ଯ୍ୟନ୍ତ ଦବାଇ ରଖିବେ । ସେହି ଅବସ୍ଥାରେ ଅଗ୍ନିପ୍ରେରିତ ଶବ୍ଦ ଶୁଭେ । ଏହାଦ୍ୱାରା ସଂଧ୍ୟା ପରବର୍ତ୍ତୀକାଳରେ ଖାଇଥିବା ଅନ୍ନ କ୍ଷଣକ ଭିତରେ ହଜମ ହୋଇଯାଏ ଏବଂ ସମସ୍ତ ରୋଗ ତଥା ଜ୍ୱର ପ୍ରଭୃତି ନାନା ଉପଦ୍ରବ ଶୀଘ୍ର ନଷ୍ଟ ହୋଇଯାଏ । ଯେଉଁ ସାଧକ ପ୍ରତିଦିନ ଏପରି ଦୁଇଘଡ଼ି ପର୍ଯ୍ୟନ୍ତ ଶବ୍ଦବ୍ରହ୍ମର ସାକ୍ଷାତ୍କାର କରେ, ସେ ମୃତ୍ୟୁ ତଥା କାମକୁ ଜିଣି ଜଗତରେ ସ୍ୱଚ୍ଛନ୍ଦରେ ବିଚରଣ କରେ ଏବଂ ସର୍ବଜ୍ଞ ଓ ସମଦର୍ଶୀ ହୋଇ ସମସ୍ତ ସିଦ୍ଧି ଲାଭ କରେ । ଆକାଶରେ ବର୍ଷାଯୁକ୍ତ ବାଦଲ ଗର୍ଜନ କଲାପରି ଶବ୍ଦ ଶୁଣି ଯୋଗୀ ତତ୍‌କ୍ଷଣାତ୍ ସଂସାରବନ୍ଧନରୁ ମୁକ୍ତ ହୋଇଯାଏ । ଯୋଗୀ ପ୍ରତିଦିନ ଏପରି ଚିନ୍ତନ କଲେ ସେହି ଶବ୍ଦ କ୍ରମଶଃ ସୂକ୍ଷ୍ମରୁ ସୂକ୍ଷ୍ମତର ହେବାକୁ ଲାଗେ । ହେ ଦେବୀ ! ମୁଁ ତୁମକୁ ଶବ୍ଦବ୍ରହ୍ମର ଚିନ୍ତନର କ୍ରମ କହିଦେଲି । ଧାନ ପାଇବାକୁ ଚାହୁଁଥିବା ବ୍ୟକ୍ତି ଯେପରି ନଡ଼ାକୁଟାକୁ ତ୍ୟାଗ କରିଥାଏ, ସେହିପରି ମୋକ୍ଷ ଚାହୁଁଥିବା ଯୋଗୀ ସମସ୍ତ ବନ୍ଧନକୁ ତ୍ୟାଗ କରିଥାଏ ।

ଏଭଳି ଶବ୍ଦବ୍ରହ୍ମକୁ ପାଇ ମଧ୍ୟ ଯେଉଁମାନେ ଅନ୍ୟ ବସ୍ତୁ ଅଭିଳାଷ କରନ୍ତି , ସେମାନେ ସତେ ଯେପରି ଆକାଶକୁ ମୁଥ ମାରନ୍ତି ଏବଂ କ୍ଷୁଧାତୃଷାର କାମନା କରନ୍ତି । ଏହି ଶବ୍ଦବ୍ରହ୍ମ ହିଁ ସୁଖଦ, ମୋକ୍ଷର କାରଣ, ବାହ୍ୟ-ଆଭ୍ୟନ୍ତରଭେଦଶୂନ୍ୟ, ଅବିନାଶୀ ଓ ସମସ୍ତ ଉପାଧିରହିତ ପରବ୍ରହ୍ମ । ଏହାକୁ ଜାଣି ମନୁଷ୍ୟ ମୁକ୍ତ ହୋଇଯାଏ । ଯେଉଁ ପାପୀ ଓ କୁବୁଦ୍ଧି ମନୁଷ୍ୟ କାଳପାଶରେ ମୋହିତ ହୋଇ ଶବ୍ଦବ୍ରହ୍ମକୁ ଜାଣନ୍ତି ନାହିଁ, ସେମାନେ ମୃତ୍ୟୁପାଶରେ ଛନ୍ଦି ହୋଇ ରହନ୍ତି । ଯେପର୍ଯ୍ୟନ୍ତ ସମସ୍ତଙ୍କ ଆଶ୍ରୟ ପରମତତ୍ତ୍ୱ (ପରବ୍ରହ୍ମ ପରମାତ୍ମା) ପ୍ରାପ୍ତି ହୋଇ ନାହିଁ, ସେପର୍ଯ୍ୟନ୍ତ ମନୁଷ୍ୟ ସଂସାରରେ ଜନ୍ମ ନେଉଥାଏ । ପରମତତ୍ତ୍ୱର ଜ୍ଞାନ ହୋଇଗଲେ ସେ ଜନ୍ମ-ମୃତ୍ୟୁର ବନ୍ଧନରୁ ମୁକ୍ତ ହୋଇଯାଏ । ନିଦ୍ରା ଓ ଆଳସ୍ୟ ସାଧନାର ବହୁତ ବଡ଼ ବିଘ୍ନ । ଏ ଶତ୍ରୁ ଦୁହିଙ୍କୁ ବଳପୂର୍ବକ ଜିଣି ସୁଖଦ ଆସନରେ ବିରାଜିତ ହୋଇ ପ୍ରତିଦିନ ଶବ୍ଦବ୍ରହ୍ମର ଅଭ୍ୟାସ କରିବା ଉଚିତ । ଶହେବର୍ଷର ବୃଦ୍ଧ ବ୍ୟକ୍ତି ଯଦି ଆଜୀବନ ଏହା ଅଭ୍ୟାସ କରିବ, ତାହାର ଶରୀରରୂପୀ ସ୍ତମ୍ଭ ମୃତ୍ୟୁକୁ ଜିଣିବା ପରି ହୋଇଯାଏ ଏବଂ ତାହାକୁ ପ୍ରାଣବାୟୁର ଶକ୍ତିବର୍ଦ୍ଧନକାରୀ ଆରୋଗ୍ୟ ପ୍ରାପ୍ତ ହୁଏ । ଯଦି ବୃଦ୍ଧ ବ୍ୟକ୍ତିଙ୍କୁ ବି ଅଭ୍ୟାସ ଦ୍ୱାରା ଏପରି ଉପକାରିତା ମିଳିବା ପରିଲକ୍ଷିତ ହୁଏ,

ତେବେ ତରୁଣ ବ୍ୟକ୍ତି ଏପରି ସାଧନା ଦ୍ୱାରା ଯେ ଉପକୃତ ହେବେ, ଏହା କହିବା ଅତ୍ୟୁକ୍ତିମାତ୍ର । ଶବ୍ଦବ୍ରହ୍ମ ଓଁକାର ନୁହେଁ କି ମନ୍ତ୍ର ନୁହେଁ କି ବୀଜ ନୁହେଁ କି ଅକ୍ଷର ନୁହେଁ । ଏହା ଅନାହତ ନାଦ (ବିନା ଆଘାତରେ ହେଉଥିବା ଶବ୍ଦ) । ଏହାକୁ ଉଚ୍ଚାରଣ ନ କଲେ ମଧ୍ୟ ଆପେ ଆପେ ଚିନ୍ତନ ହେଉଥାଏ । ଏହି ଶବ୍ଦବ୍ରହ୍ମ ପରମ କଲ୍ୟାଣମୟ । ପ୍ରିୟେ ! ଶୁଦ୍ଧବୁଦ୍ଧିଯୁକ୍ତ ବ୍ୟକ୍ତି ଯତ୍ନପୂର୍ବକ ନିରନ୍ତର ଏହାର ଅନୁସନ୍ଧାନ କରନ୍ତି । ତେଣୁ ନଅ ପ୍ରକାର ଶବ୍ଦକୁ ଗୁଣବେତ୍ତା ପୁରୁଷ ଲକ୍ଷ୍ୟ କରିଛନ୍ତି । ମୁଁ ତାହା କହିବାକୁ ପ୍ରଯତ୍ନ କରୁଛି । ସେହି ଶବ୍ଦଗୁଡ଼ିକୁ ନାଦସିଦ୍ଧି ମଧ୍ୟ କହନ୍ତି । ସେଗୁଡ଼ିକ ହେଲା– ଘୋଷ, କାଂସ୍ୟ (ଝାଞ୍ଜ ଇତ୍ୟାଦି), ଶୃଙ୍ଗ (ଶିଙ୍ଗା ଇତ୍ୟାଦି), ଘଣ୍ଟା, ବୀଣା ଇତ୍ୟାଦି, ବଂଶୀ, ଦୁନ୍ଦୁଭି, ଶଙ୍ଖ ଓ ମେଘଗର୍ଜନ । ଏ ନଅଟି ଶବ୍ଦକୁ ତ୍ୟାଗ କରି ତୁଂକାର ଅଭ୍ୟାସ କରିବା ଉଚିତ । ଏପରି ସଦା ଧ୍ୟାନ କରୁଥିବା ଯୋଗୀ ପୁଣ୍ୟ ଓ ପାପରେ ଲିପ୍ତ ହୁଏ ନାହିଁ ।

ହେ ଦେବୀ ! ଯୋଗାଭ୍ୟାସ ଦ୍ୱାରା ଶୁଣିବାକୁ ପ୍ରଯତ୍ନ କଲେ ମଧ୍ୟ ଯଦି ଯୋଗୀ ସେହି ଶବ୍ଦଗୁଡ଼ିକୁ ଶୁଣି ପାରେ ନାହିଁ ଏବଂ ଅଭ୍ୟାସ କରି କରି ମରଣାସନ୍ନ ହୋଇଯାଏ, ତଥାପି ସେ ରାତିଦିନ ତାହା ଅଭ୍ୟାସ କରିବାରେ ଲାଗି ରହିବା ଉଚିତ । ଏପରି କଲେ ସାତ ଦିନ ଭିତରେ ସେହି ଶବ୍ଦ ପ୍ରକଟ ହୋଇଯିବ, ଯଦ୍ୱାରା ସେ ମୃତ୍ୟୁକୁ ଜିଣିଯାଇ ପାରିବ । ହେ ଦେବୀ! ସେହି ଶବ୍ଦ ନଅ ପ୍ରକାରର । ତାହାକୁ ମୁଁ ଯଥାର୍ଥରୂପେ ବର୍ଣ୍ଣନା କରୁଛି । ପ୍ରଥମେ ଘୋଷାତ୍ମକ ନାଦ ପ୍ରକଟ ହୁଏ, ଯାହା କି ଆତ୍ମଶୁଦ୍ଧିର ଉତ୍କୃଷ୍ଟ ସାଧନ । ସେହି ଉତ୍ତମ ନାଦ ସମସ୍ତ ରୋଗକୁ ହରିନିଏ ଏବଂ ମନକୁ ସଂଯତ କରିବା ସହ ନିଜ ଆଡ଼କୁ ଆକର୍ଷିତ କରେ । ଦ୍ୱିତୀୟଟି କାଂସ୍ୟ ନାଦ, ତାହା ପ୍ରାଣୀଙ୍କ ଗତିକୁ ସ୍ତମ୍ଭିତ କରିଦିଏ । ତାହା ବିଷ, ଭୂତ ଓ ଗ୍ରହ ପ୍ରଭୃତିଙ୍କୁ ବାନ୍ଧିଦିଏ । ତୃତୀୟଟି ହେଲା ଶୃଙ୍ଗନାଦ; ଏହା ଅଭିଗ୍ରର ସହ ସମ୍ବନ୍ଧିତ । ଏହାକୁ ଶତ୍ରୁର ଉଚ୍ଚାଟନ ଓ ମାରଣରେ ନିଯୋଗ ଓ ପ୍ରୟୋଗ କରିବେ । ଚତୁର୍ଥଟି ହେଲା ଘଣ୍ଟାନାଦ, ଯାହା ସାକ୍ଷାତ୍ ପରମେଶ୍ୱର ଶିବ ଉଚ୍ଚାରଣ କରନ୍ତି । ସେହି ନାଦ ତ ସମସ୍ତ ଦେବତାଙ୍କୁ ବି ଆକୃଷ୍ଟ କରିପାରେ, ପୁଣି ମର୍ତ୍ତ୍ୟମଣ୍ଡଳର ମନୁଷ୍ୟଙ୍କ କଥା ବା କଣ କହିବା ! ଯକ୍ଷ ଓ ଗନ୍ଧର୍ବଙ୍କ କନ୍ୟାମାନେ ସେହି ନାଦରେ ଆକୃଷ୍ଟ ହୋଇ ଯୋଗୀକୁ ତାହାର ଇଚ୍ଛାନୁସାରେ ମହାସିଦ୍ଧି ପ୍ରଦାନ କରନ୍ତି ଏବଂ ତାହାର ଅନ୍ୟ କାମନା ମଧ୍ୟ ପୂରଣ କରନ୍ତି । ପଞ୍ଚମଟି ବୀଣାନାଦ, ଯାହାକୁ ଯୋଗୀପୁରୁଷ ସଦା ଶୁଣିବାକୁ ପାଇଥାନ୍ତି । ହେ ଦେବୀ ! ବୀଣାନାଦରେ ଦୂରଦର୍ଶନର ଶକ୍ତି ମିଳିଥାଏ । ବଂଶୀନାଦର ଧ୍ୟାନ କରୁଥିବା ଯୋଗୀକୁ ସମସ୍ତ ତତ୍ତ୍ୱ ପ୍ରାପ୍ତ ହୁଏ । ଦୁନ୍ଦୁଭିର ଚିନ୍ତନ କରୁଥିବା ସାଧକ ଜରା ଓ ମୃତ୍ୟୁର କଷ୍ଟରୁ ମୁକ୍ତି ପାଇଯାଏ । ଶଙ୍ଖନାଦର ଅନୁସନ୍ଧାନ କଲେ ଇଚ୍ଛାନୁସାରେ ରୂପ ଧାରଣ କରିବାର ଶକ୍ତି ପ୍ରାପ୍ତ ହୁଏ । ମେଘନାଦର ଚିନ୍ତନ ଦ୍ୱାରା ଯୋଗୀକୁ କଦାପି ବିପତ୍ତିର ସମ୍ମୁଖୀନ ହେବାକୁ ପଡ଼େ ନାହିଁ । ହେ ଦେବୀ ! ଯେ ପ୍ରତିଦିନ ଏକାଗ୍ରଚିତ୍ତରେ ବ୍ରହ୍ମରୂପୀ ତୁଂକାରକୁ ଧ୍ୟାନ କରେ, ତା'ପାଇଁ କିଛି ବି ଅସାଧ୍ୟ ହୋଇ ରହେ ନାହିଁ । ତାକୁ ମନୋବାଞ୍ଛିତ ସିଦ୍ଧି ପ୍ରାପ୍ତ ହୋଇଥାଏ । ସେ ସର୍ବଜ୍ଞ, ସର୍ବଦର୍ଶୀ ଓ ଇଚ୍ଛାନୁସାରେ ରୂପଧାରଣକାରୀ ହୋଇ ସର୍ବତ୍ର ବିଚରଣ କରେ, କଦାପି ବିକାରର ବଶବର୍ତ୍ତୀ ହୁଏ ନାହିଁ । ସେ ଯେ ସାକ୍ଷାତ୍ ଶିବ ଅଟେ, ଏଥିରେ ସଂଶୟ ନାହିଁ । ହେ ପରମେଶ୍ୱରୀ ! ମୁଁ ତୁମ ଆଗରେ ଶବ୍ଦବ୍ରହ୍ମର ନବଧା ସ୍ୱରୂପ ବିଷୟରେ ପୂର୍ଣ୍ଣରୂପେ ବର୍ଣ୍ଣନା କରିଦେଲି । ଏବେ ଆଉ କ'ଣ ଶୁଣିବାକୁ ଚାହୁଁଛ? (ଅଧ୍ୟାୟ ୨୬)

★★★

# କାଳ ବା ମୃତ୍ୟୁକୁ ଜିଣି ଅମରତ୍ୱ ଲାଭ କରିବାର ଚ୍ୱରିଟି ଯୌଗିକ ସାଧନାଃ ପ୍ରାଣାୟାମ, ଭ୍ରୂମଧ୍ୟରେ ଅଗ୍ନିଙ୍କ ଧ୍ୟାନ, ମୁଖଦ୍ୱାରା ବାୟୁପାନ ଓ ଜିହ୍ୱାକୁ ମୋଡ଼ି ତଦ୍ୱାରା ଗଳାଘଣ୍ଟିକା ସ୍ପର୍ଶ

ଦେବୀ କହିଲେ—ପ୍ରଭୋ ! ଯଦି ଆପଣ ପ୍ରସନ୍ନ, ତେବେ ଯୋଗୀ ଯୋଗାକାଶଜନିତ ବାୟୁପଦକୁ ଯେଉଁ ଉପାୟରେ ପ୍ରାପ୍ତି କରେ, ତାହା ମୋତେ କହନ୍ତୁ ।

ଭଗବାନ ଶିବ କହିଲେ—ହେ ସୁନ୍ଦରୀ ! ପ୍ରଥମରୁ ମୁଁ ଯୋଗୀମାନଙ୍କ ହିତ ଦୃଷ୍ଟିରୁ ସବୁ କିଛି କହିଛି, ଯଦ୍ୱାରା ଯୋଗୀମାନେ କାଳ ଉପରେ ବିଜୟ ଲାଭ କରିଛନ୍ତି । ଯୋଗୀ ଯେଉଁ ଉପାୟରେ ବାୟୁ ରୂପ ଧାରଣ କରନ୍ତି, ସେ କଥା ମଧ୍ୟ କହିଛି । ଏଣୁ ଯୋଗଶକ୍ତି ଦ୍ୱାରା ମୃତ୍ୟୁଦିବସକୁ ଜାଣି ପ୍ରାଣାୟାମରେ ତତ୍ପର ହୋଇଯିବା ଉଚିତ । ଏପରି କଲେ ଅଧାମାସ ଭିତରେ ସେ ଆଗତ କାଳକୁ ଜିଣିବାକୁ ସମର୍ଥ ହୋଇଯାଏ । ହୃଦୟରେ ସ୍ଥିତ ପ୍ରାଣବାୟୁ ସଦା ଅଗ୍ନିକୁ ଉଦ୍ଦୀପ୍ତ କରୁଥାଏ । ତାହାକୁ ଅଗ୍ନିର ସହାୟକ କୁହାଯାଇଛି । ସେହି ବାୟୁ ବାହାରେ ଓ ଭିତରେ ସର୍ବତ୍ର ବ୍ୟାପ୍ତ ଓ ମହାନ୍ । ଜ୍ଞାନ, ବିଜ୍ଞାନ ଓ ଉତ୍ସାହ—ଏସବୁର ପ୍ରବୃତ୍ତି ବାୟୁ ଦ୍ୱାରା ହୋଇଥାଏ । ଯେ ବାୟୁକୁ ଜିଣିଗଲା, ସେ ସମଗ୍ର ଜଗତକୁ ଜିଣିଗଲା ।

ସାଧକ ଜରା ଓ ମୃତ୍ୟୁକୁ ଜିଣିବା ଇଚ୍ଛାରେ ସଦା ଧାରଣାରେ ସ୍ଥିତ ରହିବା ଉଚିତ; କାରଣ ଯୋଗପରାୟଣ ଯୋଗୀ ଭଲଭାବରେ ଧାରଣା ଓ ଧ୍ୟାନରେ ତତ୍ପର ରହିବା ଉଚିତ । କମାର ଯେପରି ଭାଟିକୁ ଫୁଙ୍କି ଫୁଙ୍କି ସେହି ବାୟୁଦ୍ୱାରା ତା'ର ସମସ୍ତ କାର୍ଯ୍ୟ ସିଦ୍ଧ କରିଥାଏ, ସେହିପରି ଯୋଗୀ ମଧ୍ୟ ବାରଂବାର ପ୍ରାଣାୟାମ ଅଭ୍ୟାସ କରିବା ଉଚିତ । ପ୍ରାଣାୟାମ କାଳରେ ଯେଉଁ ଆରାଧ୍ୟ ପରମେଶ୍ୱରଙ୍କୁ ଧ୍ୟାନ କରାଯାଏ, ତାଙ୍କର ସହସ୍ର ସଂଖ୍ୟାରେ ମସ୍ତକ, ନେତ୍ର, ପାଦ ଓ ହସ୍ତ ରହିଛି ଏବଂ ସେ ସମସ୍ତ ଗ୍ରନ୍ଥିକୁ ଆବୃତ କରି ତାହାଠାରୁ ମଧ୍ୟ ଦଶଅଙ୍ଗୁଳ ଉର୍ଦ୍ଧ୍ୱରେ ସ୍ଥିତ ଅଟନ୍ତି । ଆରମ୍ଭରେ ବ୍ୟାହୃତି ଓ ଶେଷରେ ଶିରୋମନ୍ତ୍ର ସହିତ ଗାୟତ୍ରୀକୁ ତ୍ରିବାର ଜପି ପ୍ରାଣବାୟୁକୁ ଅଟକାଇ ରଖିବା ଉଚିତ । ପ୍ରାଣକୁ ଏ ପ୍ରକାର ଆୟାମ କରିବା ହିଁ ପ୍ରାଣାୟାମ । ଚନ୍ଦ୍ର ଓ ସୂର୍ଯ୍ୟ ପ୍ରଭୃତି ଗ୍ରହ ଯାଆଆସ କରୁଥାନ୍ତି, କିନ୍ତୁ ପ୍ରାଣାୟାମପୂର୍ବକ ଧ୍ୟାନପରାୟଣ ହେଉଥିବା ଯୋଗୀ ଯାଇକରି ଆଜି ପର୍ଯ୍ୟନ୍ତ ଫେରି ନାହାନ୍ତି (ଅର୍ଥାତ୍ ସେମାନେ ମୁକ୍ତ ହୋଇଯାଇଛନ୍ତି) । ହେ ଦେବୀ ! ଶହେବର୍ଷ ପର୍ଯ୍ୟନ୍ତ ତପସ୍ୟା କରି କୁଶାଗ୍ରରେ ବୁନ୍ଦାଏ ଜଳ ପିଇବା ଦ୍ୱାରା ଦ୍ୱିଜ ଯେଉଁ ଫଳ ପାଏ, ତାହା ବ୍ରାହ୍ମଣଙ୍କୁ କେବଳ ଧାରଣା ଅଥବା ପ୍ରାଣାୟାମ ଦ୍ୱାରା ମିଳିଯାଏ । ଯେଉଁ ଦ୍ୱିଜ ସକାଳୁ ଉଠି କେବଳ ପ୍ରାଣାୟାମ କରେ, ସେ ତାହାର ସମସ୍ତ ପାପକୁ ଶୀଘ୍ର ବିନଷ୍ଟ କରି ବ୍ରହ୍ମଲୋକକୁ ଯାଏ । ଯେ ଆଳସ୍ୟରହିତ ହୋଇ ସଦା ଏକାନ୍ତରେ ପ୍ରାଣାୟାମ କରେ, ସେ ଜରା ଓ ମୃତ୍ୟୁକୁ ଜିଣି ବାୟୁ ସଦୃଶ ଗତିଶୀଳ ହୋଇ ଆକାଶରେ ବିଚରଣ କରେ । ସେ ସିଦ୍ଧଗଣଙ୍କ ସ୍ୱରୂପ, କାନ୍ତି, ମେଧା, ପରାକ୍ରମ ଓ ଶୌର୍ଯ୍ୟ ଲାଭ କରେ । ତାହାର ଗତି ବାୟୁ ପରି ହୋଇଯାଏ । ତାହାକୁ ପ୍ରଶଂସନୀୟ ସୌଖ୍ୟ ଓ ପରମ ସୁଖ ପ୍ରାପ୍ତ ହୁଏ ।

ହେ ଦେବେଶ୍ୱରୀ ! ଯୋଗୀ ଯେଉଁ ପ୍ରକାରେ ବାୟୁ ଦ୍ୱାରା ସିଦ୍ଧି ପ୍ରାପ୍ତ କରେ, ତାହା ମୁଁ କହିଦେଲି । ଏବେ ତେଜ ଦ୍ୱାରା ସେ କିପରି ସିଦ୍ଧି ଲାଭ କରେ, ତାହା କହୁଛି । ସେ ଏଭଳି

ଏକାନ୍ତ ସ୍ଥାନରେ ସୁଖାସନରେ ବସିବା ଉଚିତ, ଯେଉଁଠି ଅନ୍ୟ ଲୋକଙ୍କର କୌଣସି ପ୍ରକାର କୋଳାହଳ ଶୁଭୁ ନ ଥିବ। ଏପରି ସ୍ଥାନରେ ବସି ଚନ୍ଦ୍ର ଓ ସୂର୍ଯ୍ୟ (ବାମ ଓ ଦକ୍ଷିଣ ନେତ୍ର)ର କାନ୍ତିରେ ପ୍ରକାଶିତ ମଧ୍ୟବର୍ତ୍ତୀ ସ୍ଥାନ ଭ୍ରୂକୁଟିର ମଧ୍ୟଭାଗରେ ଯେଉଁ ଅଗ୍ନିର ତେଜ ଅବ୍ୟକ୍ତ ରୂପରେ ପ୍ରକାଶିତ ହେଉଛି, ତାହାକୁ ଆଳସ୍ୟରହିତ ଯୋଗୀ ଦୀପଶୂନ୍ୟ ଅନ୍ଧକାରମୟ ସ୍ଥାନରେ ଚିନ୍ତନ କରି ନିଶ୍ଚୟ ଦେଖି ପାରିବ। ଯୋଗୀ ହାତର ଅଙ୍ଗୁଳିମାନଙ୍କ ଦ୍ୱାରା ଦୁଇ ନେତ୍ରକୁ କିଞ୍ଚିତ୍ ଚିପି ରଖି ସେ ଦୁଇଟିର ତାରାକୁ ଦେଖି ଏକାଗ୍ରଚିତ୍ତରେ ଅଧ ମୁହୂର୍ତ୍ତ ପର୍ଯ୍ୟନ୍ତ ତାହାକୁ ହିଁ ଚିନ୍ତନ କରିବ। ତା'ପରେ ଅନ୍ଧକାର ଭିତରେ ବି ଧ୍ୟାନ କଲେ ସେ ସେହି ଈଶ୍ୱରୀୟ ଜ୍ୟୋତିକୁ ଦେଖିପାରିବ। ସେହି ଜ୍ୟୋତି ଧଳା, ଲାଲ, ହଳଦିଆ, କଳା ଓ ଇନ୍ଦ୍ରଧନୁ ପରି ନାନାବର୍ଣ୍ଣର ହୋଇଥାଏ। ଭ୍ରୂକୁଟିର ମଧ୍ୟଭାଗରେ ଲଲାଟବର୍ତ୍ତୀ ବାଳସୂର୍ଯ୍ୟ ପରି ତେଜୀୟାନ୍ ଦିଶୁଥିବା ସେହି ଅଗ୍ନିଦେବଙ୍କର ସାକ୍ଷାତ୍କାର କରି ଯୋଗୀ ଇଚ୍ଛାନୁସାରେ ରୂପ ଧାରଣ କରିପାରେ ତଥା ମନୋବାଞ୍ଛିତ ଶରୀର ଧାରଣ କରି କ୍ରୀଡ଼ା କରେ। ଯୋଗୀ ଅଭ୍ୟାସ ଦ୍ୱାରା କାରଣତତ୍ତ୍ୱକୁ ଶାନ୍ତ କରି ତହିଁରେ ଆବିଷ୍ଟ ହେବା, ଅନ୍ୟ ଶରୀରରେ ପ୍ରବେଶ କରିବା, ଅଣିମାଦି ଗୁଣ ଲାଭ କରିବା, ମନରେ ସବୁ କିଛି ଦେଖିପାରିବା, ଦୂରର କଥାକୁ ଶୁଣିବା ଓ ଜାଣିବା, ଅଦୃଶ୍ୟ ହୋଇଯିବା, ଅନେକ ରୂପ ଧାରଣ କରିପାରିବା ଏବଂ ଆକାଶରେ ବିଚରଣ କରିବା ଇତ୍ୟାଦି ସିଦ୍ଧିକୁ ଲାଭ କରିପାରେ। ଅନ୍ଧକାରରୁ ଅତୀତ ଓ ସୂର୍ଯ୍ୟସମ ତେଜସ୍ୱୀ ମହାଜ୍ୟୋତିର୍ମୟ ପୁରୁଷ (ପରମାତ୍ମା)ଙ୍କୁ ମୁଁ ଜାଣେ—ଏପରି ଅନୁଭବ କରି ମନୁଷ୍ୟ କାଳ ବା ମୃତ୍ୟୁକୁ ଅତିକ୍ରମ କରିଯାଏ। ମୋକ୍ଷ ନିମନ୍ତେ ଏହାଛଡ଼ା ଆଉ କିଛି ମାର୍ଗ ନାହିଁ।* ହେ ଦେବୀ! ମୁଁ ତୁମ ଆଗରେ ତେଜସ୍ତତ୍ତ୍ୱ ଚିନ୍ତନର ଉତ୍ତମ ବିଧି ବର୍ଣ୍ଣନା କରିଦେଲି। ଏହାଦ୍ୱାରା ଯୋଗୀ କାଳ ଉପରେ ବିଜୟୀ ହୋଇ ଅମରତ୍ୱ ଲାଭ କରେ।

ହେ ଦେବୀ! ଏବେ ଅନ୍ୟ ଏକ ଶ୍ରେଷ୍ଠ ଉପାୟ କହୁଛି, ଯଦ୍ଦ୍ୱାରା ମୃତ୍ୟୁ ହୁଏ ନାହିଁ।

ହେ ଦେବୀ! ଏହା ହେଲା ଧ୍ୟାନପରାୟଣ ଯୋଗୀଙ୍କର ଚତୁର୍ଥ ଗତି (ସାଧନା)। ଯୋଗୀ ନିଜ ଚିତ୍ତକୁ ବଶରେ ରଖି ଯଥାଯୋଗ୍ୟ ସୁଖାସନରେ ସିଧା ହୋଇ ବସିବ। ଅଞ୍ଜଳି ବାନ୍ଧି ଓ ତୁଣ୍ଡକୁ ଥଣ୍ଟ ପରି କରି ଧୀରେ ଧୀରେ ବାୟୁ ପାନ କରିବ। ଏପରି କଲେ କ୍ଷଣକ ଭିତରେ ତାଳୁ ଭିତରେ ସ୍ଥିତ ଜୀବନଦାୟକ ଜଳବିନ୍ଦୁ ଝରିବାକୁ ଲାଗେ। ସେହି ବିନ୍ଦୁଗୁଡ଼ିକୁ ବାୟୁ ଦ୍ୱାରା ନେଇ ଶୁଙ୍ଘିବ। ଉକ୍ତ ଶୀତଳ ଜଳ ଅମୃତସ୍ୱରୂପ। ଯେଉଁ ଯୋଗୀ ପ୍ରତିଦିନ ତାହାକୁ ପାନ କରେ, ସେ କଦାପି ମୃତ୍ୟୁର ଅଧୀନ ହୁଏ ନାହିଁ। ତାକୁ କ୍ଷୁଧା-ତୃଷା ଲାଗେ ନାହିଁ। ତା'ର ଶରୀର ଦିବ୍ୟ ଏବଂ ତେଜ ମହାନ୍ ହୋଇଯାଏ। ସେ ବଳରେ ହାତୀ ପରି ଓ ବେଗରେ ଘୋଡ଼ା ପରି ହୋଇଯାଏ। ତାହାର ଦୃଷ୍ଟି ଗରୁଡ଼ ପରି ତୀକ୍ଷ୍ଣ ହୋଇଯାଏ ଏବଂ ତାକୁ ଅନ୍ୟର କଥା ମଧ୍ୟ ଶୁଭେ। ତାହାର କେଶ କଳା ଓ କୁଞ୍ଚୁକୁଞ୍ଚିଆ ହୋଇଯାଏ ତଥା ଅଙ୍ଗକାନ୍ତି ଗନ୍ଧର୍ବ ଓ ବିଦ୍ୟାଧରଙ୍କ ପରି ହୋଇଯାଏ। ସେପରି ମନୁଷ୍ୟ ଶହେ ଦିବ୍ୟବର୍ଷ ପର୍ଯ୍ୟନ୍ତ ଜୀବିତ ରହେ ଏବଂ ବୃହସ୍ପତିଙ୍କ ତୁଲ୍ୟ ବୁଦ୍ଧିମାନ୍ ହୋଇଯାଏ। ତା'ଠାରେ ଇଚ୍ଛାନୁସାରେ ବିଚରଣ

* ବେଦାହମେତଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍। ତମେବ ବିଦିତ୍ୱାତିମୃତ୍ୟୁମେତି ନାନ୍ୟଃ ପନ୍ଥା ବିଦ୍ୟତେ ପ୍ରାୟଣାୟ॥
(ଶି. ପୁ. ଉ. ସଂ. ୨୭।୨୫)

କରିବାର ଶକ୍ତି ଆସିଯାଏ ଏବଂ ସେ ସଦା ସୁଖୀ ହୋଇ ଆକାଶରେ ବିଚରଣ କରିବାର ଶକ୍ତି ପ୍ରାପ୍ତ ହୁଏ ।

ବରାନନେ ! ଏବେ ମୃତ୍ୟୁ ଉପରେ ବିଜୟ ପାଇବାର ଅଉ ଗୋଟିଏ ବିଧି କହୁଛି, ଯାହାକୁ ଦେବତାମାନେ ଯତ୍ନପୂର୍ବକ ଗୁପ୍ତ ରଖିଛନ୍ତି । ଯୋଗୀପୁରୁଷ ନିଜ ଜିହ୍ୱାକୁ ମୋଡ଼ି ତାଲୁରେ ଲଗାଇବାକୁ ଚେଷ୍ଟା କରିବେ । କିଛି କାଳ ଏପରି କଲେ ତାହା କ୍ରମେ କ୍ରମେ ଲମ୍ୱା ହୋଇ ଗଳାର ଘଣ୍ଟିକା ନିକଟରେ ପହଞ୍ଚିଯାଏ । ତା'ପରେ ଯେତେବେଳେ ଜିହ୍ୱା ଘଣ୍ଟିକାକୁ ସ୍ପର୍ଶ କରେ, ସେତେବେଳେ ଶୀତଳ ସୁଧା ସ୍ରାବ ହୁଏ, ସେହି ସୁଧାକୁ ଯେଉଁ ଯୋଗୀ ସଦା ପାନ କରେ, ସେ ଅମରତ୍ୱ ଲାଭ କରେ । (ଅଧ୍ୟାୟ ୨୭)

❋❋❋

## ଭଗବତୀ ଉମାଙ୍କ କାଳିକା ଅବତାର କଥାଃ ମହର୍ଷି ମେଧା ରାଜା ସୁରଥ ଓ ସମାଧି ବୈଶ୍ୟଙ୍କୁ ଦେବୀଙ୍କ କୃପାରୁ ମଧୁ-କୈଟଭଙ୍କ ବଧ ହେବା ପ୍ରସଙ୍ଗ ଶୁଣାଇବା

ଏହାପରେ ଛାୟାପୁରୁଷ, ସର୍ଗ, କଶ୍ୟପବଂଶ, ମନ୍ୱନ୍ତର, ମନୁବଂଶ, ସତ୍ୟବ୍ରତାଦିଙ୍କ ବଂଶ, ପିତୃକଳ୍ପ ତଥା ବ୍ୟାସୋତ୍ପତ୍ତି ପ୍ରଭୃତିର ବର୍ଣ୍ଣନା ଶୁଣି ସାରିବା ପରେ ମୁନିମାନେ ସୂତଙ୍କୁ କହିଲେ–ହେ ବ୍ରହ୍ମବେତ୍ତାଶିରୋମଣେ ! ଆମେ ଆପଣଙ୍କ ମୁଖରୁ ଭଗବାନ ଶିବଙ୍କର ଅନେକ ଇତିହାସଯୁକ୍ତ ରମଣୀୟ ଆଖ୍ୟାନ ଶୁଣିଲୁ, ଯାହାକି ନାନା ଅବତାର ସହ ସମ୍ପୃକ୍ତ ତଥା ଭୋଗ ଓ ମୋକ୍ଷ ପ୍ରଦାନକାରୀ । ଏବେ ଆମେ ଆପଣଙ୍କ ଠାରୁ ଜଗଜ୍ଜନନୀ ଭଗବତୀ ଉମାଙ୍କ ମନୋହର ଚରିତ୍ର ଶୁଣିବାକୁ ଚାହୁଁଛୁ । ପରବ୍ରହ୍ମ ପରମାତ୍ମା ମହେଶ୍ୱରଙ୍କ ଆଦ୍ୟା ସନାତନୀ ଶକ୍ତି ଉମା ନାମରେ ବିଖ୍ୟାତ । ସେ ତ୍ରିଲୋକର ଉତ୍ପନ୍ନକାରିଣୀ ପରାଶକ୍ତି ଅଟନ୍ତି । ମହାମତେ ! ଦକ୍ଷକନ୍ୟା ସତୀ ଓ ହିମବାନ୍‌ଙ୍କ କନ୍ୟା ପାର୍ବତୀରୂପରେ ଉମାଙ୍କର ଦୁଇଟି ଅବତାର ବିଷୟରେ ଆମେ ଶୁଣିଛୁ । ସୂତ ମହାଭାଗ ! ଏବେ ତାଙ୍କର ଅନ୍ୟାନ୍ୟ ଅବତାର ବିଷୟରେ ବର୍ଣ୍ଣନା କରନ୍ତୁ । ଜଗଦମ୍ୱା ଉମାଙ୍କ ଗୁଣଶ୍ରବଣରୁ କିଏ ବା ବିରତ ହୋଇପାରିବ? ଜ୍ଞାନୀପୁରୁଷ କଦାପି ତାଙ୍କର ଚରିତଶ୍ରବଣର ଶୁଭ ଅବସରକୁ ଛାଡ଼ି ପାରନ୍ତି ନାହିଁ ।

ସୂତ କହିଲେ–ମହାତ୍ମାଗଣ ! ତୁମେମାନେ ଧନ୍ୟ ଏବଂ କୃତକୃତ୍ୟ; କାରଣ ପରାମ୍ୱା ଉମାଙ୍କ ମହାନ୍ ଚରିତ୍ର ବିଷୟରେ ପଚାରିଛ । ଯେଉଁ ବ୍ୟକ୍ତି ଏହି କଥା ଶୁଣେ, ପଚାରେ ଓ କହେ, ତାହାର ଚରଣକମଳର ଧୂଳିକୁ ହିଁ ଋଷିମାନେ ତୀର୍ଥ ମଣନ୍ତି । ଯାହାର ଚିତ୍ତ ପରମ ସଂବିତ୍-ସ୍ୱରୂପା ଉମାଦେବୀଙ୍କ ଚିନ୍ତନରେ ଲୀନ, ସେ ଧନ୍ୟ, କୃତକୃତ୍ୟ; ତାହାର ମାତା ଓ କୁଳ ମଧ୍ୟ ଧନ୍ୟ । ଯେଉଁମାନେ ସମସ୍ତ କାରଣର ମଧ୍ୟ କାରଣସ୍ୱରୂପା ଦେବେଶ୍ୱରୀ ଉମାଙ୍କୁ ସ୍ତୁତି କରନ୍ତି ନାହିଁ, ସେମାନେ ଯେ ମାୟାର ଗୁଣରେ ମୋହିତ ତଥା ଭାଗ୍ୟହୀନ, ଏଥିରେ ସଂଶୟ ନାହିଁ । ଯେଉଁମାନେ କରୁଣାସିନ୍ଧୁସ୍ୱରୂପା ମହାଦେବୀଙ୍କୁ ଭଜନ୍ତି ନାହିଁ, ସେମାନେ ସଂସାରରୂପୀ ଘୋର ଅନ୍ଧକୂପରେ ପଡ଼ନ୍ତି । ଯେ ଦେବୀ ଉମାଙ୍କୁ ଛାଡ଼ି ଅନ୍ୟ ଦେବଦେବୀଙ୍କ ଶରଣ ନିଏ, ସେ ସତେ ଯେପରି ଗଙ୍ଗାକୁ ଛାଡ଼ି ମରୁସ୍ଥଳର ଶୁଷ୍କ ଜଳାଶୟ ପାଖକୁ ତୃଷା ମେଣ୍ଟାଇବାକୁ ଯାଏ । ଯେଉଁ ଉମାଦେବୀଙ୍କୁ ସ୍ମରଣ କରିବାମାତ୍ରେ ଧର୍ମାଦି ଚାରିପୁରୁଷାର୍ଥ ଅନାୟାସରେ ମିଳିଯାଏ, ତାଙ୍କ ଆରାଧନା କେଉଁ ଶ୍ରେଷ୍ଠ ବ୍ୟକ୍ତି ଅବା ଛାଡ଼ି ପାରିବ !

ପୂର୍ବକାଳରେ ମହାମନା ସୁରଥ ମହର୍ଷି

ମେଧାଙ୍କୁ ଏହି କଥା ପଚାରିଥିଲେ । ସେତେବେଳେ ମେଧା ଯାହା ଉତ୍ତର ଦେଇଥିଲେ, ମୁଁ ତାହା କହୁଛି, ଶୁଣ । ପୂର୍ବେ ସ୍ୱାରୋଚିଷ ମନ୍ୱନ୍ତରରେ ବିରଥ ନାମରେ ଜଣେ ପ୍ରସିଦ୍ଧ ରାଜା ଥିଲେ । ତାଙ୍କ ପୁତ୍ରର ନାମ ଥିଲା ସୁରଥ । ସୁରଥ ଅତ୍ୟନ୍ତ ବଳବାନ୍ ଓ ପରାକ୍ରମୀ ଥିଲେ । ସେ ଦାନନିପୁଣ, ସତ୍ୟବାଦୀ, ସ୍ୱଧର୍ମକୁଶଳ, ବିଦ୍ୱାନ୍, ଦେବୀଭକ୍ତ, ଦୟାସାଗର ତଥା ପ୍ରଜାଜନଙ୍କର ଉତ୍ତମ ପରିପାଳକ ଥିଲେ । ଇନ୍ଦ୍ରଙ୍କ ସଦୃଶ ତେଜସ୍ୱୀ ରାଜା ସୁରଥ ପୃଥିବୀରେ ଶାସନ କରୁଥିବା ବେଳେ ଏପରି ନଅଟି ରାଜା ଥିଲେ ଯେଉଁମାନେ ତାଙ୍କ ହାତରୁ ଭୂମଣ୍ଡଳର ରାଜ୍ୟ ଛଡ଼ାଇ ନେବାକୁ ଚେଷ୍ଟା କରୁଥିଲେ । ସେମାନେ ଭୂପାଳ ସୁରଥଙ୍କ ରାଜଧାନୀ କୋଲାପୁରୀକୁ ଚତୁର୍ଦ୍ଦିଗରୁ ଘେରିଗଲେ । ସେମାନଙ୍କ ସଙ୍ଗେ ସୁରଥଙ୍କର ଭୟଙ୍କର ଯୁଦ୍ଧ ହେଲା । ହେଲେ ଶତ୍ରୁମାନେ ବଳଶାଳୀ ଥିଲେ, ତେଣୁ ଯୁଦ୍ଧରେ ରାଜା ସୁରଥଙ୍କର ପରାଜୟ ହେଲା । ଶତ୍ରୁମାନେ ସମଗ୍ର ରାଜ୍ୟ ଅଧିକାର କରିନେଇ ସୁରଥଙ୍କୁ କୋଲାପୁରୀରୁ ବିତାଡ଼ିତ କରିଦେଲେ । ରାଜା ତାଙ୍କର ଆଉ ଗୋଟିଏ ପୁରୀକୁ ଆସି ମନ୍ତ୍ରୀମାନଙ୍କ ସଙ୍ଗେ ରହି ସେଠାରେ ରାଜ୍ୟ ଶାସନ କଲେ । ମାତ୍ର ବଳବାନ୍ ଶତ୍ରୁମାନେ ସେଠାରେ ମଧ୍ୟ ତାଙ୍କ ଉପରେ ଆକ୍ରମଣ କରି ତାଙ୍କୁ ପରାଜିତ କରିଦେଲେ । ଦୈବଯୋଗକୁ ରାଜାଙ୍କର ମନ୍ତ୍ରୀ ପ୍ରଭୃତି ସହାୟକଗଣ ମଧ୍ୟ ତାଙ୍କର ଶତ୍ରୁ ହୋଇଗଲେ ଏବଂ ରାଜକୋଷରେ ଯାହା ଧନ ସଞ୍ଚିତ ଥିଲା, ସେସବୁକୁ କରାୟତ୍ତ କରିନେଲେ ।

ଏହାପରେ ରାଜା ସୁରଥ ଶିକାର କରିବାକୁ ଯିବା ବାହାନାରେ ଏକୁଟିଆ ଘୋଡ଼ାରେ ଚଢ଼ି ନଗରରୁ ବାହାରି ଗହନ ବନକୁ ଚାଲିଗଲେ । ସେଠାରେ ଏଣେତେଣେ ବୁଲୁ ବୁଲୁ ରାଜା ଜଣେ ଶ୍ରେଷ୍ଠ ମୁନିଙ୍କ ଆଶ୍ରମ ଦେଖିଲେ । ଆଶ୍ରମର ଚତୁର୍ଦ୍ଦିଗରେ ଫୁଲବଗିଚା ଥିବାରୁ ଆଶ୍ରମଟି ଅତି ସୁନ୍ଦର ଦିଶୁଥିଲା । ସେଠାରେ ବେଦମନ୍ତ୍ର ଧ୍ୱନିତ ହେଉଥିଲା । ସକଳ ଜୀବଜନ୍ତୁ ଶାନ୍ତ ଓ ନିର୍ବୈରଭାବରେ ରହୁଥିଲେ । ଆଶ୍ରମଟି ମୁନିଙ୍କ ଶିଷ୍ୟ, ପ୍ରଶିଷ୍ୟ ପ୍ରଭୃତିଙ୍କ ଦ୍ୱାରା ପରିବେଷ୍ଟିତ ଥିଲା । ମହାମତେ ! ବିପ୍ରବର ମେଧାଙ୍କ ପ୍ରଭାବରେ ଆଶ୍ରମରେ ମହାଶକ୍ତିଶାଳୀ ବ୍ୟାଘ୍ର ପ୍ରଭୃତି ସ୍ୱଳ୍ପ ଶକ୍ତିସମ୍ପନ୍ନ ଧେନୁ ପ୍ରଭୃତି ପଶୁମାନଙ୍କୁ କଷ୍ଟ ଦେଉ ନ ଥିଲେ । ପରମ ଦୟାଳୁ ବିଦ୍ୱାନ୍ ନରେଶ ସେଠାକୁ ଯିବାରୁ ମୁନୀଶ୍ୱର ମେଧା ମଧୁର ବଚନ, ଭୋଜନ ଓ ଆସନ ଦ୍ୱାରା ତାଙ୍କୁ ସ୍ୱାଗତ-ସତ୍କାର କଲେ ।



ଦିନେ ରାଜା ସୁରଥ ଅତ୍ୟନ୍ତ ଚିନ୍ତିତ ଓ ମୋହଗ୍ରସ୍ତ ହୋଇ ମନେ ମନେ ଅନେକ ପ୍ରକାର ବିଚାର କରୁଥିଲେ । ଇତିମଧ୍ୟରେ ସେଠାରେ ଜଣେ ବୈଶ୍ୟ ଆସି ପହଞ୍ଚିଲା । ରାଜା ତାକୁ ପଚାରିଲେ—"ଭାଇ ! ତୁମେ କିଏ ଆଉ କାହିଁକି ଏଠାକୁ ଆସିଛ? ତୁମେ କାହିଁକି ଦୁଃଖୀ ଜଣାପଡୁଛ?

ମୋତେ ଏସବୁ କଥା କୁହ ।'' ରାଜାଙ୍କ ମୁଖରୁ ଏପରି ମଧୁର ବଚନ ଶୁଣିବାମାତ୍ରେ ବୈଶ୍ୟପ୍ରବର ସମାଧିର ନେତ୍ରରୁ ଅଶ୍ରୁ ଝରିଆସିଲା । ସେ ପ୍ରେମପୂର୍ଣ୍ଣ ଚିତ୍ତରେ ବିନମ୍ରତାର ସହ ଏହିପରି ଉତ୍ତର ଦେଲା ।

ବୈଶ୍ୟ କହିଲା—**ରାଜନ୍ ! ମୁଁ ଜଣେ ବୈଶ୍ୟ । ମୋ ନାମ ସମାଧି । ମୁଁ ଧନୀକୁଳରେ ଉତ୍ପନ୍ନ ହୋଇଛି । ମାତ୍ର ମୋର ସ୍ତ୍ରୀ ଓ ପୁତ୍ରମାନେ ମୋତେ ଧନଲୋଭରେ ଘରୁ ବାହାର କରିଦେଇଛନ୍ତି । ତେଣୁ ମୋର ପ୍ରାରବ୍ଧକର୍ମ ହେତୁ ମୁଁ ଅତ୍ୟନ୍ତ ଦୁଃଖୀ ହୋଇ ବନକୁ ପଳାଇ ଆସିଛି । କିନ୍ତୁ କରୁଣାସାଗର ପ୍ରଭୋ ! ଏଠାକୁ ଆସିଲା ପରେ ମୁଁ ମୋର ପୁଅ, ନାତି, ସ୍ତ୍ରୀ, ଭାଇ, ପୁତୁରା ଓ ଅନ୍ୟ ସୁହୃଦମାନଙ୍କର କିଛି ବି କୁଶଳ ସମାଗ୍ରର ପାଇ ପାରୁ ନାହିଁ ।**

ରାଜା କହିଲେ—**ଯେଉଁ ଦୁରାଗ୍ରହୀ ତଥା ଧନଲୋଭୀ ପୁତ୍ରାଦି ତୁମକୁ ଘରୁ ତଡ଼ିଦେଇଛନ୍ତି, ସେମାନଙ୍କ ପ୍ରତି ତୁମେ ମୂର୍ଖଙ୍କ ପରି କାହିଁକି ସ୍ନେହ କରୁଛ?**

ବୈଶ୍ୟ କହିଲା—**ରାଜନ୍ ! ଆପଣ ବହୁତ ଭଲ କଥାଟିଏ କହିଲେ । ଆପଣଙ୍କ ବାଣୀ ସାରଗର୍ଭିକ, ତଥାପି ମୋ ମନ କାହିଁକି କେଜାଣି ସ୍ନେହପାଶରେ ବାନ୍ଧି ହୋଇ ଏମିତି ମୋହଗ୍ରସ୍ତ ହେଉଛି ।**

**ଏହିରୂପେ ରାଜା ଓ ବୈଶ୍ୟ ଉଭୟେ ମୋହ ହେତୁ ବ୍ୟାକୁଳ ହୋଇ ମୁନିବର ମେଧାଙ୍କ ନିକଟକୁ ଗଲେ । ବୈଶ୍ୟ ଓ ରାଜା କରଯୋଡ଼ି ମୁନିଙ୍କୁ ପ୍ରଣାମ କଲେ । ରାଜା କହିଲେ— ''ଭଗବନ୍ ! ଆପଣ ଆମ ଦୁହିଁଙ୍କ ମୋହପାଶକୁ କାଟି ଦିଅନ୍ତୁ । ମୋତେ ରାଜଲକ୍ଷ୍ମୀ ଛାଡ଼ି ଦେଇଛି ଏବଂ ମୁଁ ଏହି ଗହନ ବନରେ ଶରଣ ନେଇଛି, ତଥାପି ରାଜ୍ୟ ହରାଇ ଥିବାରୁ ମୋତେ ସନ୍ତୋଷ ମିଳୁ ନାହିଁ । ଆଉ ଏ ବୈଶ୍ୟକୁ ସ୍ତ୍ରୀପୁତ୍ରାଦି ସ୍ୱଜନ ଘରୁ ବାହାର କରିଦେଲେ, ତଥାପି ସେମାନଙ୍କ ପ୍ରତି ଏହାର ମମତା ଦୂର ହେଉ ନାହିଁ । ଏହାର କାରଣ କ'ଣ? ବୁଝିବା-ସୁଝିବା ଲୋକ ହୋଇ ମଧ୍ୟ ଆମ ଦୁହିଁଙ୍କ ମନ ମୋହରେ ବ୍ୟାକୁଳ ହେବା ତ ବହୁତ ବଡ଼ ମୂର୍ଖତା !**

ଋଷି କହିଲେ—**ରାଜନ୍ ! ସନାତନ ଶକ୍ତିସ୍ୱରୂପା ଜଗଦମ୍ବା ମହାମାୟା ନାମରେ ପ୍ରସିଦ୍ଧ । ସେ ହିଁ**



**ସମସ୍ତଙ୍କ ମନକୁ ଆକର୍ଷିତ କରି ମୋହରେ ପକାଇ ଦିଅନ୍ତି । ପ୍ରଭୋ ! ତାଙ୍କ ମାୟାରେ ମୋହିତ ହୋଇ ବ୍ରହ୍ମାଦି ସକଳ ଦେବତା ମଧ୍ୟ ପରମ ତତ୍ତ୍ୱକୁ ଜାଣି ପାରନ୍ତି ନାହିଁ, ତେବେ ପୁଣି ମନୁଷ୍ୟଙ୍କ କଥା ବା କ'ଣ? ସେହି ପରମେଶ୍ୱରୀ ହିଁ ରଜଃ, ସତ୍ତ୍ୱ ଓ ତମ ଗୁଣର ଆଶ୍ରୟରେ ସମୟାନୁସାରେ ସମସ୍ତ ବିଶ୍ୱର ସୃଷ୍ଟି, ପାଳନ ଓ ସଂହାର କରନ୍ତି । ନୃପଶ୍ରେଷ୍ଠ ! ସ୍ୱେଚ୍ଛାନୁସାରେ ରୂପଧାରଣକାରିଣୀ ଜଗଦମ୍ବା ଯାହା ଉପରେ ପ୍ରସନ୍ନ ହୁଅନ୍ତି, ସେ ମୋହମାୟାର ସୀମାକୁ ଅତିକ୍ରମ କରିଯାଏ ।**

ରାଜା ପଚ୍ଚାରିଲେ—**ମୁନେ ! ସମସ୍ତଙ୍କୁ ମୋହିତ**

କରି ରଖିଥିବା ସେହି ମହାମାୟା କିଏ? ଏବଂ କେଉଁପରି ତାଙ୍କର ଉତ୍ପତ୍ତି ହେଲା? ଏକଥା ଦୟା କରି ମୋତେ କୁହନ୍ତୁ ।

ଋଷି କହିଲେ–ସମଗ୍ର ଜଗତ ଯେତେବେଳେ ଏକାର୍ଣ୍ଣବ ଜଳରେ ନିମଗ୍ନ ଥିଲା ଏବଂ ଯୋଗେଶ୍ୱର ଭଗବାନ କେଶବ ଶେଷଶଯ୍ୟାରେ ଯୋଗନିଦ୍ରାର ଆଶ୍ରୟରେ ଶୟନ କରୁଥିଲେ, ସେହି ସମୟରେ ଭଗବାନ ବିଷ୍ଣୁଙ୍କ କର୍ଣ୍ଣମଳରୁ ଦୁଇଟି ଅସୁର ଉତ୍ପନ୍ନ ହେଲେ ଏବଂ ସେମାନେ ପୃଥିବୀରେ ମଧୁ ଓ କୈଟଭ ନାମରେ ବିଖ୍ୟାତ ହେଲେ । ସେ ଦୁଇଟି ବିଶାଳକାୟ ଭୟଙ୍କର ଅସୁର ପ୍ରଳୟକାଳୀନ ସୂର୍ଯ୍ୟ ପରି ତେଜସ୍ୱୀ ଥିଲେ । ସେମାନଙ୍କର ହନୁହାଡ଼ ବହୁତ ବଡ଼ ବଡ଼ ଥିଲା । ସେମାନଙ୍କ ବିକରାଳ ମୁଖ ଦେଖି ଲାଗୁଥିଲା ସତେଯେପରି ସମଗ୍ର ଜଗତକୁ ଖାଇଯିବେ । ସେ ଦୁହେଁ ଭଗବାନ ବିଷ୍ଣୁଙ୍କ ନାଭିରୁ ଉତ୍ପନ୍ନ ହୋଇଥିବା ପଦ୍ମ ଉପରେ ବିରାଜିତ ବ୍ରହ୍ମାଙ୍କୁ ଦେଖି ପଗ୍ଚରିଲେ–"ଆରେ, ତୁ କିଏ?" ଏହା କହି ତାଙ୍କୁ ମାରି ପକାଇବାକୁ ଉଦ୍ୟତ ହେଲେ । ବ୍ରହ୍ମା ଦେଖିଲେ ଯେ ସେ ଦୁହେଁ ତାଙ୍କ ଉପରେ ଆକ୍ରମଣ କରିବାକୁ ଗ୍ଚହୁଁଛନ୍ତି ଏବଂ ଭଗବାନ ଜନାର୍ଦ୍ଦନ ସମୁଦ୍ର ଜଳରେ ଶୟନ କରୁଛନ୍ତି, ତେଣୁ ସେ ପରମେଶ୍ୱରୀଙ୍କୁ ସ୍ତୁତି କଲେ ଏବଂ ତାଙ୍କୁ ପ୍ରାର୍ଥନା କରି କହିଲେ–"ଅମ୍ବିକେ ! ତୁମେ ଏ ଦୁଇଟି ଦୁର୍ଜୟ ଅସୁରଙ୍କୁ ମୋହିତ କର ଏବଂ ଅଜନ୍ମା ଭଗବାନ ନାରାୟଣଙ୍କୁ ନିଦ୍ରାରୁ ଜାଗ୍ରତ କର ।"

ଋଷି କହୁଛନ୍ତି–ମଧୁ ଓ କୈଟଭଙ୍କୁ ନାଶ କରିବା ନିମନ୍ତେ ବ୍ରହ୍ମା ଏପରି ସ୍ତୁତି କରିବାରୁ ସମସ୍ତ ବିଦ୍ୟାର ଅଧିଦେବୀ ଜଗଜ୍ଜନନୀ ମହାବିଦ୍ୟା ହିଁ ଫାଲ୍‌ଗୁନ ଶୁକ୍ଳ ଦ୍ୱାଦଶୀ ଦିନ ତ୍ରୈଲୋକ୍ୟ-ମୋହିନୀ ଶକ୍ତି ରୂପରେ ପ୍ରକଟ ହୋଇ ମହାକାଳୀ ନାମରେ ବିଖ୍ୟାତ ହେଲେ । ତା'ପରେ ଆକାଶବାଣୀ ହେଲା–"କମଳାସନ ! ଭୟ କର ନାହିଁ । ମୁଁ ଆଜି ଯୁଦ୍ଧରେ ମଧୁ ଓ କୈଟଭକୁ ମାରି ତୁମର କଣ୍ଟକ ନାଶ କରିବି ।" ଏପରି କହି ମହାମାୟା ଶ୍ରୀହରିଙ୍କ ନେତ୍ର ଓ ମୁଖ ଇତ୍ୟାଦିରୁ ବାହାରି ଅବ୍ୟକ୍ତଜନ୍ମା ବ୍ରହ୍ମାଙ୍କ ଦୃଷ୍ଟିପଥରେ ଦଣ୍ଡାୟମାନ



ହୋଇଗଲେ । ଏହାପରେ ଦେବାଧିଦେବ ହୃଷୀକେଶ ଜନାର୍ଦ୍ଦନ ଉଠି ପଡ଼ିଲେ । ସେ ମଧୁ ଓ କୈଟଭଙ୍କୁ ସମ୍ମୁଖରେ ଦେଖିବାକୁ ପାଇଲେ । ସେହି ଅତୁଳ ତେଜସ୍ୱୀ ଦୈତ୍ୟ ଦୁହିଙ୍କ ସଙ୍ଗେ ତାଙ୍କର ପାଞ୍ଚହଜାର ବର୍ଷ ପର୍ଯ୍ୟନ୍ତ ବାହୁଯୁଦ୍ଧ ହେଲା । ସେତେବେଳେ ମହାମାୟାଙ୍କ ପ୍ରଭାବରେ ମୋହିତ ହୋଇ ଉକ୍ତ ଦାନବବୀର ଦୁହେଁ ଲକ୍ଷ୍ମୀପତିଙ୍କୁ କହିଲେ–"ତୁମେ ଆମକୁ ମନୋବାଞ୍ଛିତ ବର ମାଗ ।"

ନାରାୟଣ କହିଲେ–ଯଦି ତୁମେମାନେ ପ୍ରସନ୍ନ, ତେବେ ମୋ ହାତରେ ନିହତ ହୁଅ । ଏହି ବର ମୋତେ ଦିଅ । ମୁଁ ତୁମ ଦୁହିଙ୍କୁ ଅନ୍ୟ କିଛି ବର ମାଗୁ ନାହିଁ ।

ଋଷି କହୁଛନ୍ତି–ଅସୁର ଦୁହେଁ ଦେଖିଲେ ଯେ,

ସମଗ୍ର ପୃଥିବୀ ଏକାର୍ଣ୍ଣବ ଜଳରେ ବୁଡ଼ିରହିଛି । ତେଣୁ ସେମାନେ କେଶବଙ୍କୁ କହିଲେ—"ଆମ ଦୁହିଙ୍କୁ ଏପରି ସ୍ଥାନରେ ମାର, ଯେଉଁଠି ପୃଥିବୀ ଜଳରେ ଓଦା ହୋଇ ନ ଥିବ । ଭଗବାନ ବିଷ୍ଣୁ 'ତଥାସ୍ତୁ' କହି ନିଜର ପରମ ତେଜସ୍ୱୀ ଚକ୍ର ଉଠାଇଲେ ଏବଂ ନିଜ ଜଙ୍ଘ ଉପରେ ସେମାନଙ୍କ ମସ୍ତକ ରଖି କାଟି ପକାଇଲେ । ରାଜନ୍ ! ଏହା ଥିଲା କାଳିକାଙ୍କ ଉତ୍ପତ୍ତିର ପ୍ରସଙ୍ଗ । ମହାମତେ ! ଏବେ ମହାଲକ୍ଷ୍ମୀଙ୍କ ଆବିର୍ଭାବ ପ୍ରସଙ୍ଗ ଶୁଣ । ଦେବୀ ଉମା ନିର୍ବିକାର ଓ ନିରାକାର ହୋଇ ମଧ୍ୟ ଦେବତାଙ୍କ ଦୁଃଖ ଦୂର କରିବା ପାଇଁ ଯୁଗେ ଯୁଗେ ସାକାର ରୂପ ଧାରଣ କରି ପ୍ରକଟ ହୁଅନ୍ତି । ତାଙ୍କର ଶରୀର ଧାରଣ କରିବା ତାଙ୍କ ଇଚ୍ଛାର ବୈଭବ ଅଟେ । ଭକ୍ତଜନ ତାଙ୍କ ଗୁଣାଦି ଗାନ କରି ପାରନ୍ତୁ, ଏହି ଉଦ୍ଦେଶ୍ୟରେ ସେ ଲୀଳାକ୍ରମେ ପ୍ରକଟ ହୁଅନ୍ତି । (ଅଧ୍ୟାୟ ୨୮–୪୫)

***

## ଦେବଗଣଙ୍କ ତେଜରୁ ଦେବୀଙ୍କର ମହାଲକ୍ଷ୍ମୀ ରୂପରେ ଆବିର୍ଭାବ ଏବଂ ତାଙ୍କ ଦ୍ୱାରା ମହିଷାସୁର ବଧ

ଋଷି କହୁଛନ୍ତି–ରାଜନ୍ ! ରମ୍ଭ ନାମରେ ଗୋଟିଏ ପ୍ରସିଦ୍ଧ ଅସୁର ଥିଲା । ତାକୁ ଦୈତ୍ୟବଂଶର ଶିରୋମଣି ଧରାଯାଉଥିଲା । ତା'ଠାରୁ ମହାତେଜସ୍ୱୀ ମହିଷ ନାମକ ଦାନବର ଜନ୍ମ ହେଲା । ଦାନବରାଜ ମହିଷ ସମସ୍ତ ଦେବତାଙ୍କୁ ଯୁଦ୍ଧରେ ପରାଜିତ କରି ଦେବରାଜ ଇନ୍ଦ୍ରଙ୍କ ସିଂହାସନ ଅଧିକାର କରିନେଲା ଏବଂ ସ୍ୱର୍ଗଲୋକରେ ରହି ତ୍ରୈଲୋକ୍ୟକୁ ଶାସନ କଲା । ସେତେବେଳେ ପରାସ୍ତ ହୋଇଥିବା ସମସ୍ତ ଦେବତା ବ୍ରହ୍ମାଙ୍କ ଶରଣକୁ ଗଲେ । ବ୍ରହ୍ମା ସେମାନଙ୍କୁ ସଙ୍ଗରେ ଧରି ଭଗବାନ ଶିବ ଓ ବିଷ୍ଣୁ ଯେଉଁଠି ବିରାଜମାନ ଥିଲେ, ସେଠାକୁ ଗଲେ । ସେଠାରେ ପହଞ୍ଚି ଦେବଗଣ ଶିବଙ୍କୁ ଓ କେଶବଙ୍କୁ ନମସ୍କାର କଲେ ଓ ନିଜର ସମସ୍ତ ବୃତ୍ତାନ୍ତ ଯଥାର୍ଥରୂପେ ସବିସ୍ତାର ବର୍ଣ୍ଣନା କଲେ । ସେମାନେ କହିଲେ—"ଭଗବନ୍ ! ଦୁରାତ୍ମା ମହିଷାସୁର ଆମ୍ଭମାନଙ୍କୁ ରଣାଙ୍ଗନରେ ପରାସ୍ତ କରି ସ୍ୱର୍ଗଲୋକରୁ ବିତାଡ଼ିତ କରିଦେଇଛି । ଏଣୁ ଆମେ ମର୍ତ୍ତ୍ୟମଣ୍ଡଳରେ ଏଣେତେଣେ ବୁଲୁଛୁ; କେଉଁଠି ବି ଆମକୁ ଶାନ୍ତି ମିଳୁ ନାହିଁ । ସେ ଅସୁର ଇନ୍ଦ୍ରାଦି ଦେବତାଙ୍କର କେଉଁ ଦୁର୍ଦ୍ଦଶା ବା ନ କରିଛି । ସୂର୍ଯ୍ୟ, ଚନ୍ଦ୍ର, ବରୁଣ, କୁବେର, ଯମ, ଇନ୍ଦ୍ର, ଅଗ୍ନି, ବାୟୁ, ଗନ୍ଧର୍ବ, ବିଦ୍ୟାଧର ଓ ଚାରଣ—ଏ ସମସ୍ତଙ୍କର ତଥା ଅନ୍ୟମାନଙ୍କର ଯାହା କିଛି କର୍ତ୍ତବ୍ୟ-କର୍ମ ଅଛି, ସେଗୁଡ଼ିକୁ ସେ ପାପାତ୍ମା ଅସୁର ସ୍ୱୟଂ କରିବାକୁ ଲାଗିଲାଣି । ସେ ଦୈତ୍ୟପକ୍ଷକୁ ଅଭୟ କରିଦେଇଛି । ଏଣୁ ଆମେ ସବୁ ଦେବତା ଆପଣଙ୍କ ଶରଣକୁ ଆସିଛୁ । ଆମକୁ ରକ୍ଷା କରନ୍ତୁ ଏବଂ ଶୀଘ୍ର ସେହି ଅସୁରକୁ ବଧ କରିବାର ଉପାୟ କରନ୍ତୁ; କାରଣ କେବଳ ଆପଣ ଦୁହେଁ ଏହା କରିବାକୁ ସମର୍ଥ ।"

ଦେବତାଙ୍କ କଥା ଶୁଣି ଭଗବାନ ଶିବ ଓ ବିଷ୍ଣୁ ଅତ୍ୟନ୍ତ କ୍ରୋଧିତ ହୋଇଗଲେ । ରୋଷ ହେତୁ ସେ ଦୁହିଙ୍କ ନେତ୍ର ଘୂର୍ଣ୍ଣିତ ହେଲା । ଭୀଷଣ କ୍ରୋଧରେ ଶିବ ଓ ବିଷ୍ଣୁଙ୍କ ମୁଖରୁ ଏବଂ ଅନ୍ୟ ଦେବତାଙ୍କ ଶରୀରରୁ ତେଜ ଉତ୍ପନ୍ନ ହେଲା । ସେହି ଭୟଙ୍କର ତେଜସମୂହ ଦଶଦିଗକୁ ଉଦ୍ଭାସିତ କରିଦେଲା । ଦୁର୍ଗାଙ୍କ ଧ୍ୟାନରେ ମଗ୍ନ ଥିବା ଦେବତାମାନେ ଉକ୍ତ ଦେଦୀପ୍ୟମାନ ତେଜକୁ ପ୍ରତ୍ୟକ୍ଷ ଦେଖି ପାରିଲେ । ଏହା ପରେ ଦେବଗଣଙ୍କ ଶରୀରରୁ ନିର୍ଗତ ଭୀଷଣ ତେଜ ପୁଞ୍ଜୀଭୂତ ହୋଇ

ଗୋଟିଏ ନାରୀ ରୂପ ଧାରଣ କଲା । ସେହି ନାରୀ ଥିଲେ ସାକ୍ଷାତ୍ ମହିଷାମର୍ଦ୍ଦିନୀ ଦେବୀ । ତାଙ୍କର ଦେଦୀପ୍ୟମାନ ମୁଖ ଭଗବାନ ଶିବଙ୍କ ତେଜରୁ ପ୍ରକଟ ହୋଇଥିଲା । ତାଙ୍କର ଭୁଜମାନ ବିଷ୍ଣୁଙ୍କ ତେଜରୁ, କେଶ ଯମରାଜଙ୍କ ତେଜରୁ, ସ୍ତନଦ୍ୱୟ ଚନ୍ଦ୍ରଙ୍କ ତେଜରୁ, କଟିଭାଗ ଇନ୍ଦ୍ରଙ୍କ ତେଜରୁ ଏବଂ ଜଙ୍ଘ ତଥା ଉରୁ ବରୁଣଙ୍କ ତେଜରୁ ଉତ୍ପନ୍ନ ହୋଇଥିଲା । ପୃଥିବୀର ତେଜରୁ ତାଙ୍କ ନିତମ୍ବ ଓ ବ୍ରହ୍ମାଙ୍କ ତେଜରୁ ଦୁଇ ପାଦ ଉତ୍ପନ୍ନ ହୋଇଥିଲା । ପାଦର ଅଙ୍ଗୁଳି ସୂର୍ଯ୍ୟଙ୍କ ତେଜରୁ ଓ ହସ୍ତର ଅଙ୍ଗୁଳି ବସୁଙ୍କ ତେଜରୁ ସୃଷ୍ଟି ହୋଇଥିଲା । ନାସିକା କୁବେରଙ୍କ ତେଜରୁ, ଦାନ୍ତ ପ୍ରଜାପତିଙ୍କ ତେଜରୁ, ତ୍ରିନେତ୍ର ଅଗ୍ନିଙ୍କ ତେଜରୁ, ଉଭୟ ଭ୍ରୂଲତା ସାଧ୍ୟଗଣଙ୍କ ତେଜରୁ, ଉଭୟ କାନ ବାୟୁ ତଥା ଅନ୍ୟ ଦେବତାଙ୍କ ତେଜରୁ ପ୍ରକଟିତ ହୋଇଥିଲା । ଏହିରୂପେ ଦେବତାଙ୍କ ତେଜରୁ ପ୍ରକଟିତା କମଳାଳୟା ଲକ୍ଷ୍ମୀ ହିଁ ସେହି ପରମେଶ୍ୱରୀ ଥିଲେ ।

ସକଳ ଦେବଙ୍କ ତେଜୋରାଶିରୁ ପ୍ରକଟିତା ସେହି ଦେବୀଙ୍କୁ ଦେଖି ଦେବତାମାନଙ୍କୁ ହର୍ଷ ଅନୁଭବ ହେଲା । ମାତ୍ର ଦେବୀଙ୍କ ପାଖରେ କୌଣସି ଅସ୍ତ୍ର ନ ଥିଲା । ଏହା ଦେଖି ବ୍ରହ୍ମାଦି ଦେବେଶ୍ୱର ଶିବାଦେବୀଙ୍କୁ ଅସ୍ତ୍ରଶସ୍ତ୍ରରେ ସମ୍ପନ୍ନ କରିବାକୁ ଚିନ୍ତା କଲେ । ସେତେବେଳେ ମହେଶ୍ୱର ଶିବ ମହେଶ୍ୱରୀଙ୍କୁ ଶୂଳ ସମର୍ପିତ କଲେ । ଭଗବାନ ବିଷ୍ଣୁ ଚକ୍ର, ବରୁଣ ପାଶ, ଅଗ୍ନିଦେବ ଶକ୍ତି, ବାୟୁଦେବ ଧନୁ ଓ ଦୁଇଟି ଶରପୂର୍ଣ୍ଣ ତୂଣୀର ଏବଂ ଶଚୀପତି ଇନ୍ଦ୍ର ବଜ୍ର ଓ ଘଣ୍ଟା ପ୍ରଦାନ କଲେ । ଯମରାଜ କାଳଦଣ୍ଡ, ପ୍ରଜାପତି ଅକ୍ଷମାଳା, ବ୍ରହ୍ମା କମଣ୍ଡଳୁ ଏବଂ ସୂର୍ଯ୍ୟଦେବ ସମସ୍ତ ରୋମକୂପରେ ନିଜର କିରଣ ଅର୍ପିତ କଲେ । କାଳ ତାଙ୍କୁ ଉଜ୍ଜ୍ୱଳ ଢାଲ ଓ ତରବାରି ଦେଲେ । କ୍ଷୀରସାଗର ସୁନ୍ଦର ହାର ଓ ଦୁଇଟି ଦିବ୍ୟ ଅମ୍ଳାନ ବସ୍ତ୍ର ଅର୍ପଣ କରିବା ସହ ଦିବ୍ୟ ଚୂଡ଼ାମଣି, କୁଣ୍ଡଳ, କଡ଼ା, ଅର୍ଦ୍ଧଚନ୍ଦ୍ର, କେୟୂର, ମନୋହର ନୂପୁର, ଗ୍ରୀବାର ଆଭୂଷଣ, ଅଙ୍ଗୁଳିମାନଙ୍କରେ ପିନ୍ଧିବା ପାଇଁ ରତ୍ନର ମୁଦ୍ରିକା ମଧ୍ୟ ପ୍ରଦାନ କଲେ । ବିଶ୍ୱକର୍ମା ତାଙ୍କୁ ମନୋହର ପରଶୁ ସହିତ ଅନେକ ପ୍ରକାର ଅସ୍ତ୍ର ଓ ଅଭେଦ୍ୟ କବଚ ମଧ୍ୟ ଦେଲେ । ସମୁଦ୍ର ସଦା ସୁରମ୍ୟ ଓ ସରସ ରହୁଥିବା ମାଳା ଏବଂ ଗୋଟିଏ ପଦ୍ମଫୁଲ ଉପହାରରୂପେ ଅର୍ପଣ କଲେ । ହିମବାନ୍ ବାହନ ନିମନ୍ତେ ସିଂହ ତଥା ଆଭୂଷଣ ନିମନ୍ତେ ନାନା ପ୍ରକାର ରତ୍ନ ପ୍ରଦାନ କଲେ । କୁବେର ତାଙ୍କୁ ମଧୁପୂର୍ଣ୍ଣ ପାତ୍ର ଅର୍ପଣ କଲେ ଏବଂ ସର୍ପଙ୍କ ଅଗ୍ରଣୀ ଶେଷନାଗ ବିଚିତ୍ର ରଚନାକୌଶଳରେ ସୁଶୋଭିତ ତଥା ସୁନ୍ଦର ସୁନ୍ଦର ମଣିରେ ବିଜଡ଼ିତ ଗୋଟିଏ ନାଗହାର ଉପହାରରୂପେ ପ୍ରଦାନ କଲେ । ଏମାନେ ତଥା ଅନ୍ୟ ଦେବତାମାନେ ମଧ୍ୟ ଆଭୂଷଣ ଓ ଅସ୍ତ୍ରଶସ୍ତ୍ର ଦେଇ ଦେବୀଙ୍କୁ ସମ୍ମାନିତ କଲେ । ତା'ପରେ ଦେବୀ ବାରମ୍ବାର ଅଟ୍ଟହାସ କରି ଉଚ୍ଚସ୍ୱରରେ ଗର୍ଜନ କଲେ । ତାଙ୍କର ସେହି ଭୟଙ୍କର ନାଦରେ ସମଗ୍ର ଆକାଶ ଗୁଞ୍ଜିତ ହୋଇଉଠିଲା । ପୁଣି ତାହାର ଯେଉଁ ଭୟଙ୍କର ପ୍ରତିଧ୍ୱନି ସୃଷ୍ଟି ହେଲା, ତଦ୍ୱାରା ତ୍ରିଲୋକରେ ହଇଚଇ ଖେଳିଗଲା । ଗିରି ସମୁଦ୍ର ନିଜ ନିଜର ମର୍ଯ୍ୟାଦା ଲଙ୍ଘି ଉଛୁଳି ଉଠିଲେ । ପୃଥିବୀ ଟଳମଳ ହେଲା । ଏତିକି ବେଳେ ମହିଷାସୁର ଦ୍ୱାରା ପୀଡ଼ିତ ଦେବତାମାନେ ଦେବୀଙ୍କର ଜୟନାଦ କଲେ ।

ଏହାପରେ ସମସ୍ତ ଦେବତା ସେହି ମହାଲକ୍ଷ୍ମୀସ୍ୱରୂପା ପରାଶକ୍ତି ଜଗଦମ୍ବାଙ୍କୁ ଭକ୍ତିଗଦ୍‌ଗଦ ବାଣୀରେ ସ୍ତବନ କଲେ । ସମଗ୍ର ତ୍ରୈଲୋକ୍ୟ କ୍ଷୁବ୍ଧ ହେବା ଦେଖି ଦେବଶତ୍ରୁ ଦୈତ୍ୟମାନେ ସେମାନଙ୍କ ସେନାକୁ କବଚ ଇତ୍ୟାଦିରେ ସୁସଜ୍ଜିତ କରି ଅସ୍ତ୍ରଶସ୍ତ୍ର ଧରି ପ୍ରସ୍ତୁତ

ହୋଇଗଲେ । ମହିଷାସୁର କ୍ରୋଧରେ ସେହି ଭୀଷଣ ଶବ୍ଦ ଆସୁଥିବା ଦିଗକୁ ଲକ୍ଷ୍ୟ କରି ଦୌଡ଼ିଲା ଏବଂ ଆଗକୁ ଯିବା ପରେ ଦେବୀଙ୍କୁ ଦେଖିବାକୁ ପାଇଲା । ଦେବୀ ଆପଣା ପ୍ରଭାରେ ତ୍ରିଲୋକକୁ ଉଦ୍ଭାସିତ କରୁଥିଲେ । ଏତିକି ବେଳେ ମହିଷାସୁର ଦ୍ୱାରା ପାଳିତ କୋଟି କୋଟି ଶସ୍ତ୍ରଧାରୀ ମହାବୀର ସେଠାରେ ଆସି ପହଞ୍ଚିଗଲେ । ଚିକ୍ଷୁର, ଚାମର, ଉଦଗ୍ର, କରାଳ, ଉଦ୍ଧତ, ବାଷ୍କଳ, ତାମ୍ର, ଉଗ୍ରାସ୍ୟ, ଉଗ୍ରବୀର୍ଯ୍ୟ, ବିଡ଼ାଳ, ଅନ୍ଧକ, ଦୁର୍ଦ୍ଧର, ଦୁର୍ମୁଖ, ତ୍ରିନେତ୍ର ମହାହନୁ ତଥା ଆହୁରି ଅନେକ ଯୁଦ୍ଧକୁଶଳ ବୀରଯୋଦ୍ଧା ରଣଭୂମିରେ ପହଞ୍ଚି ଦେବୀଙ୍କ ସଙ୍ଗେ ଯୁଦ୍ଧ ଆରମ୍ଭ କରିଦେଲେ । ସେମାନେ ସମସ୍ତେ ଅସ୍ତ୍ରଶସ୍ତ୍ର ବିଦ୍ୟାରେ କୁଶଳ ଥିଲେ । ଏହିରୂପେ ଦେବୀ ଓ ଦୈତ୍ୟଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ଚାଲିଲା । ଏପରି ଭୟଙ୍କର ମାରକାଟ ଭିତରେ ମହିଷାସୁର ଦେବୀଙ୍କ ସଙ୍ଗରେ ମାୟାଯୁଦ୍ଧ କରିବା ଆରମ୍ଭ କରିଦେଲା ।

ଦେବୀ କହିଲେ—ରେ ମୂଢ଼! ତୋ ବୁଦ୍ଧି ଭ୍ରଷ୍ଟ ହୋଇଗଲାଣି । ତୁ ବୃଥାରେ କାହିଁକି ହଠ କରୁଛୁ? ତ୍ରିଲୋକରେ କୌଣସି ଅସୁର ଯୁଦ୍ଧରେ ମୋ ସମ୍ମୁଖରେ ତିଷ୍ଠି ପାରିବ ନାହିଁ ।

ଏହା କହି ସର୍ବକଳାମୟୀ ଦେବୀ ଡେଇଁପଡ଼ି ମହିଷାସୁର ଉପରେ ଚଢ଼ିଗଲେ ଏବଂ ତାକୁ ପାଦରେ ଚାପିଧରି ତା' କଣ୍ଠରେ ତ୍ରିଶୂଳ ଭୁଷିଦେଲେ । ପାଦରେ ଚାପି ହୋଇଥିବା କାରଣରୁ ମହିଷାସୁର ନିଜ ମୁଖବାଟେ ଅନ୍ୟ ଏକ ରୂପରେ ବାହାରକୁ ବାହାରିବାକୁ ଚେଷ୍ଟା କଲା, କିନ୍ତୁ ତା'ର ଆଧା ଶରୀର ବାହାରୁ ବାହାରୁ ଦେବୀ ନିଜ ପ୍ରଭାବରେ ତାକୁ ଅଟକାଇ ଦେଲେ । ଅଧା ଶରୀର ବାହାରି ଥିଲେ ମଧ୍ୟ ସେ ଅଧମ ଦୈତ୍ୟ ସେହିପରି ଅବସ୍ଥାରେ ଦେବୀଙ୍କ ସଙ୍ଗେ ଯୁଦ୍ଧ କଲା । ଏତିକିବେଳେ ଦେବୀ ଗୋଟିଏ ବିଶାଳ ତରବାରିରେ ତା'ର ମସ୍ତକ କାଟିଦେଲେ । ଏହିରୂପେ ଦେବୀ ମହିଷାସୁରକୁ ବଧ କରିବାରୁ ତା'ର ଗଣମାନେ 'ହାୟ ହାୟ' କରି ମୁଣ୍ଡ ନୁଆଁଇ ରଣଭୂମିରୁ ପଳାୟନ କଲେ ଏବଂ ଭୟରେ 'ତ୍ରାହି ତ୍ରାହି' ଡାକ ଛାଡ଼ିଲେ । ସେତିକି ବେଳେ ଇନ୍ଦ୍ରାଦି ଦେବଗଣ ଦେବୀଙ୍କୁ ସ୍ତୁତି କଲେ । ଗନ୍ଧର୍ବମାନେ ଗୀତ ଗାଇଲେ ଏବଂ ଅପ୍ସରାଗଣ ନୃତ୍ୟ କଲେ । ରାଜନ୍! ମୁଁ ତୁମକୁ ଦେବୀଙ୍କ ମହାଲକ୍ଷ୍ମୀ ଅବତାର କଥା କହିଦେଲି । ଏଥର ତୁମେ ସୁସ୍ଥିର ଚିତ୍ତରେ ସରସ୍ୱତୀଙ୍କ ଆବିର୍ଭାବ ପ୍ରସଙ୍ଗ ଶୁଣ । (ଅଧ୍ୟାୟ ୪୬)

***

## ଉମାଦେବୀଙ୍କ ଶରୀରରୁ ସରସ୍ୱତୀଙ୍କ ଆବିର୍ଭାବ, ସରସ୍ୱତୀଙ୍କ ରୂପର ପ୍ରଶଂସା ଶୁଣି ଶୁମ୍ଭ ତାଙ୍କ ପାଖକୁ ଦୂତ ପଠାଇବା, ଦୂତ ନିରାଶ ହୋଇ ଫେରିବାରୁ ଶୁମ୍ଭ ଯଥାକ୍ରମେ ଧୂମ୍ରଲୋଚନ, ଚଣ୍ଡ, ମୁଣ୍ଡ ଓ ରକ୍ତବୀଜକୁ ପଠାଇବା ପ୍ରସଙ୍ଗ ଏବଂ ଦେବୀଙ୍କ ହସ୍ତରେ ସେମାନଙ୍କର ସଂହାର

ଋଷି କହୁଛନ୍ତି—ପୂର୍ବକାଳରେ ଶୁମ୍ଭ ଓ ନିଶୁମ୍ଭ ନାମରେ ଦୁଇଜଣ ପ୍ରତାପୀ ଦୈତ୍ୟ ଥିଲେ । ସେ ଦୁଇଭାଇ ସଚରାଚର ସମଗ୍ର ତ୍ରୈଲୋକ୍ୟ ଉପରେ ବଳପୂର୍ବକ ଆକ୍ରମଣ କରିଦେଲେ । ସେମାନଙ୍କ ଦ୍ୱାରା ପୀଡ଼ିତ ହୋଇ ଦେବତାମାନେ ହିମାଳୟ ପର୍ବତରେ ଶରଣ ନେଲେ ଏବଂ ସକଳ ଅଭୀଷ୍ଟଦାତ୍ରୀ ସର୍ବଭୂତଜନନୀ ଉମାଦେବୀଙ୍କୁ ସ୍ତୁତି କଲେ ।

ଦେବଗଣ କହିଲେ—ହେ ମହେଶ୍ୱରୀ ଦୁର୍ଗେ !

ଆପଣଙ୍କର ଜୟ ହେଉ । ହେ ଭକ୍ତଜନଙ୍କ ପ୍ରିୟକାରିଣୀ ଦେବୀ ! ଆପଣଙ୍କର ଜୟ ହେଉ । ହେ ତ୍ରିଲୋକର ରକ୍ଷାକାରିଣୀ! ଆପଣଙ୍କୁ ବାରମ୍ବାର ନମସ୍କାର । ହେ ମୋକ୍ଷଦାତ୍ରୀ ପରାମ୍ବା! ଆପଣଙ୍କୁ ବାରମ୍ବାର ନମସ୍କାର । ଆପଣ ସମଗ୍ର ସଂସାରର ଉତ୍ପତ୍ତି, ସ୍ଥିତି ଓ ସଂହାରକାରିଣୀ । ଆପଣଙ୍କୁ ନମସ୍କାର । ହେ କାଳିକା ଓ ତାରା ରୂପଧାରିଣୀ ଦେବୀ! ଆପଣଙ୍କୁ ନମସ୍କାର । ଛିନ୍ନମସ୍ତା ଆପଣଙ୍କ ସ୍ୱରୂପ । ଆପଣ ହିଁ ଶ୍ରୀବିଦ୍ୟା । ଆପଣଙ୍କୁ ନମସ୍କାର । ହେ ଭୁବନେଶ୍ୱରୀ ! ଆପଣଙ୍କୁ ନମସ୍କାର । ହେ ଭୈରବରୂପିଣୀ ! ଆପଣଙ୍କୁ ନମସ୍କାର । ଆପଣ ବଗଳାମୁଖୀ ଓ ଧୂମାବତୀ । ଆପଣଙ୍କୁ ବାରମ୍ବାର ନମସ୍କାର । ଆପଣ ହିଁ ତ୍ରିପୁରସୁନ୍ଦରୀ ଓ ମାତଙ୍ଗୀ । ଆପଣଙ୍କୁ ବାରମ୍ବାର ନମସ୍କାର । ଅଜିତା, ବିଜୟା, ଜୟା, ମଙ୍ଗଳା ଓ ବିଳାସିନୀ ହେଉଛି ଆପଣଙ୍କ ଭିନ୍ନ ଭିନ୍ନ ରୂପର ନାମମାତ୍ର । ଏ ସମସ୍ତ ରୂପରେ ଆପଣଙ୍କୁ ନମସ୍କାର । ହେ ଘୋରରୂପଧାରିଣୀ! ଆପଣଙ୍କୁ ନମସ୍କାର । ଦୋଗ୍ଧ୍ରୀ (ମାତା ଅଥବା କାମଧେନୁ) ରୂପରେ ଆପଣଙ୍କୁ ନମସ୍କାର । ଅପରାଜିତା ରୂପରେ ଆପଣଙ୍କୁ ପ୍ରଣାମ । ନିତ୍ୟା ମହାବିଦ୍ୟା ରୂପରେ ଆପଣଙ୍କୁ ବାରମ୍ବାର ନମସ୍କାର । ଆପଣ ହିଁ ଶରଣାଗତଙ୍କ ପାଳନକାରିଣୀ ରୁଦ୍ରାଣୀ । ଆପଣଙ୍କୁ ବାରମ୍ବାର ନମସ୍କାର । ବେଦାନ୍ତ ଦ୍ୱାରା ଆପଣଙ୍କ ସ୍ୱରୂପର ବୋଧ ହୋଇଥାଏ । ଆପଣଙ୍କୁ ନମସ୍କାର । ଆପଣ ପରମାତ୍ମା । ଆପଣଙ୍କୁ ଆମର ପ୍ରଣାମ । ଅନନ୍ତକୋଟି ବ୍ରହ୍ମାଣ୍ଡର ସଂଚାଳନକାରିଣୀ ଜଗଦମ୍ବାଙ୍କୁ ବାରମ୍ବାର ନମସ୍କାର ।*

ଦେବତାମାନେ ଏପରି ସ୍ତୁତି କରିବାରୁ ବରଦାୟିନୀ ଓ କଲ୍ୟାଣରୂପିଣୀ ଗୌରୀ ଦେବୀ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ଦେବତାମାନଙ୍କୁ ପଚାରିଲେ—''ଆପଣମାନେ ଏଠାରେ କାହାକୁ ସ୍ତୁତି କରୁଛନ୍ତି?'' ସେତିକିବେଳେ ଗୌରୀଙ୍କ ଶରୀରରୁ ଗୋଟିଏ କନ୍ୟା ପ୍ରକଟ ହେଲା । ଦେବଗଣଙ୍କ ନେତ୍ର ସମ୍ମୁଖରେ ହିଁ ସେ ଶିବଶକ୍ତିଙ୍କୁ ଆଦରପୂର୍ବକ କହିଲା—''ମାଆ ! ଏ ସମସ୍ତ ସ୍ୱର୍ଗବାସୀ ଦେବତା ନିଶୁମ୍ଭ ଓ ଶୁମ୍ଭ ନାମକ ବଳବାନ୍ ଦୈତ୍ୟଙ୍କ ଦ୍ୱାରା ଅତ୍ୟନ୍ତ ପୀଡ଼ିତ ହୋଇ ନିଜର ରକ୍ଷା ପାଇଁ ମୋତେ ସ୍ତୁତି କରୁଛନ୍ତି ।'' ପାର୍ବତୀଙ୍କ ଶରୀରକୋଶରୁ ସେହି କୁମାରୀ ଆବିର୍ଭୂତା ହୋଇଥିଲେ, ତେଣୁ ତାଙ୍କର ନାମ ହେଲା କୌଶିକୀ । କୌଶିକୀ ହିଁ ସାକ୍ଷାତ୍ ଶୁମ୍ଭାସୁରର ବିନାଶକାରିଣୀ ସରସ୍ୱତୀ । ତାଙ୍କୁ ଉଗ୍ରତାରା ଓ ମହୋଗ୍ରତାରା ମଧ୍ୟ କୁହାଯାଏ । ମାତାଙ୍କ ଶରୀରରୁ ସ୍ୱତଃ ପ୍ରକଟ ହୋଇଥିବାରୁ ସେ ଭୂତଳରେ ମାତଙ୍ଗୀ ମଧ୍ୟ ବୋଲାଇଲେ । ସେ ଦେବତାମାନଙ୍କୁ କହିଲେ—''ତୁମେମାନେ

---

* ଦେବା ଊଚୁଃ—

ଜୟ ଦୁର୍ଗେ ମହେଶାନି ଜୟାତ୍ମୀୟଜନପ୍ରିୟେ । ତ୍ରୈଲୋକ୍ୟତ୍ରାଣକାରିଣ୍ୟୈ ଶିବାୟୈ ତେ ନମୋ ନମଃ ॥
ନମୋ ମୁକ୍ତିପ୍ରଦାୟିନ୍ୟୈ ପରାମ୍ବାୟୈ ନମୋ ନମଃ । ନମଃ ସମସ୍ତସଂସାରୋତ୍ପତ୍ତିସ୍ଥିତ୍ୟନ୍ତକାରିକେ ॥
କାଳିକାରୂପସମ୍ପନ୍ନେ ନମସ୍ତାରାକୃତେ ନମଃ । ଛିନ୍ନମସ୍ତାସ୍ୱରୂପାୟୈ ଶ୍ରୀବିଦ୍ୟାୟୈ ନମୋଽସ୍ତୁ ତେ ॥
ଭୁବନେଶି ନମସ୍ତୁଭ୍ୟଂ ନମସ୍ତେ ଭୈରବାକୃତେ । ନମୋଽସ୍ତୁ ବଗଳାମୁଖ୍ୟୈ ଧୂମାବତ୍ୟୈ ନମୋ ନମଃ ॥
ନମସ୍ତ୍ରିପୁରସୁନ୍ଦର୍ଯ୍ୟୈ ମାତଙ୍ଗ୍ୟୈ ତେ ନମୋ ନମଃ । ଅଜିତାୟୈ ନମସ୍ତୁଭ୍ୟଂ ବିଜୟାୟୈ ନମୋ ନମଃ ॥
ଜୟାୟୈ ମଙ୍ଗଳାୟୈ ତେ ବିଲାସିନ୍ୟୈ ନମୋ ନମଃ । ଦୋଗ୍ଧ୍ରୀରୂପେ ନମସ୍ତୁଭ୍ୟଂ ନମୋ ଘୋରାକୃତେଽସ୍ତୁ ତେ ॥
ନମୋଽପରାଜିତାକାରେ ନିତ୍ୟାକାରେ ନମୋ ନମଃ । ଶରଣାଗତପାଳିନ୍ୟୈ ରୁଦ୍ରାଣ୍ୟୈ ତେ ନମୋ ନମଃ ॥
ନମୋ ବେଦାନ୍ତବେଦ୍ୟାୟୈ ନମସ୍ତେ ପରମାତ୍ମନେ । ଅନନ୍ତକୋଟିବ୍ରହ୍ମାଣ୍ଡନାୟିକାୟୈ ନମୋ ନମଃ ॥

(ଶି. ପୁ. ଉ. ସଂ. ୪୭ । ୩–୧୦)

ନିର୍ଭୟରେ ରୁହ । ମୁଁ ସ୍ୱତନ୍ତ୍ର; ତେଣୁ କାହାରି ସାହାଯ୍ୟ ନ ନେଇ ମଧ୍ୟ ତୁମର କାର୍ଯ୍ୟ ସିଦ୍ଧ କରିପାରିବି ।'' ଏତିକି କହି ଦେବୀ ସେଠାରୁ ଅଦୃଶ୍ୟ ହୋଇଗଲେ ।

ଦିନେ ଶୁମ୍ଭ ଓ ନିଶୁମ୍ଭଙ୍କ ସେବକ ଚଣ୍ଡ ଓ ମୁଣ୍ଡ ସେହି ଦେବୀଙ୍କୁ ଦେଖିବାକୁ ପାଇଲେ । ଦେବୀଙ୍କ ମନୋହର ରୂପ ନେତ୍ର ପାଇଁ ସୁଖଦାୟୀ ଥିଲା । ତାଙ୍କୁ ଦେଖିବାମାତ୍ରେ ସେମାନେ ମୋହିତ ହୋଇ ଚେତନା ହରାଇ ତଳେ ପଡ଼ିଗଲେ । ଚେତା ଫେରିବା ପରେ ସେମାନେ ନିଜ ରାଜାଙ୍କ ପାଖକୁ ଯାଇ ଆରମ୍ଭରୁ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କରି କହିଲେ—''ମହାରାଜ ! ଆମେ ଆଜି ଗୋଟିଏ ଅନୁପମ ସୁନ୍ଦରୀ ନାରୀକୁ ଦେଖିଲୁ । ସେ ହିମାଳୟର ରମଣୀୟ ଶିଖରରେ ରହୁଛି ଓ ସିଂହ ତା'ର ବାହନ ।'' ଚଣ୍ଡ ଓ ମୁଣ୍ଡଙ୍କ ମୁଖରୁ ଏଭଳି କଥା ଶୁଣି ଅସୁରରାଜ ଶୁମ୍ଭ ଦେବୀଙ୍କ ପାଖକୁ ସୁଗ୍ରୀବ ନାମକ ଦୂତକୁ ପଠାଇଲା ଏବଂ କହିଲା—''ଦୂତ ! ହିମାଳୟରେ କେହି ଜଣେ ଅପୂର୍ବ ସୁନ୍ଦରୀ ରହୁଛି । ତୁମେ ସେଠାକୁ ଯାଅ ଏବଂ ତାକୁ ମୋର ସନ୍ଦେଶ ଶୁଣାଇ କୌଣସି ପ୍ରକାରେ ଏଠାକୁ ନେଇଆସ ।'' ଆଜ୍ଞା ପାଇବାମାତ୍ରେ ଦାନବ ସୁଗ୍ରୀବ ହିମାଳୟ ଅଭିମୁଖେ ଯାତ୍ରା କଲା ଏବଂ ଜଗଦମ୍ବା ମହେଶ୍ୱରୀଙ୍କୁ ଏହିପରି କହିଲା—

ଦୂତ କହିଲା—ହେ ଦେବୀ ! ଦୈତ୍ୟ ଶୁମ୍ଭ ତାଙ୍କର ମହାନ୍ ବଳ ଓ ପରାକ୍ରମ ପାଇଁ ତ୍ରିଲୋକରେ ବିଖ୍ୟାତ । ତାଙ୍କ ସାନଭାଇ ନିଶୁମ୍ଭ ମଧ୍ୟ ତଦନୁରୂପ । ଶୁମ୍ଭ ମୋତେ ତୁମ ପାଖକୁ ଦୂତ କରି ପଠାଇଛନ୍ତି; ସେଥିପାଇଁ ମୁଁ ଆସିଛି । ହେ ସୁରେଶ୍ୱରୀ ! ସେ ଯେଉଁ ସନ୍ଦେଶ ଦେଇଛନ୍ତି, ତାହା ଶୁଣ । ସେ କହିଛନ୍ତି, ''ମୁଁ ରଣାଙ୍ଗନରେ ଇନ୍ଦ୍ରାଦି ଦେବତାଙ୍କୁ ପରାସ୍ତ କରି ସେମାନଙ୍କର ସମସ୍ତ ରତ୍ନକୁ ଅପହରଣ କରି ନେଇଆସିଛି । ଯଜ୍ଞରେ ଦେବଗଣଙ୍କୁ ଅର୍ପିତ ଯଜ୍ଞଭାଗକୁ ମୁଁ ସ୍ୱୟଂ ବଳପୂର୍ବକ ଉପଭୋଗ କରୁଛି । ମୁଁ ଜାଣେ ଯେ ତୁମେ ନାରୀଙ୍କ ମଧ୍ୟରେ ରତ୍ନ ଓ ସବୁ ରତ୍ନ ମଧ୍ୟରେ ଶ୍ରେଷ୍ଠ । ତେଣୁ ତୁମେ କାମସୁଖ ନିମନ୍ତେ ମୋତେ ଅଥବା ମୋ ଭାଇକୁ ଅଙ୍ଗୀକାର କର ।''

ଦୂତ ମୁଖରୁ ଶୁମ୍ଭର ସନ୍ଦେଶ ଶୁଣି ଭଗବାନ ଭୂତନାଥଙ୍କ ପ୍ରାଣବଲ୍ଲଭା ମହାମାୟା ଏହିପରି କହିଲେ—

ଦେବୀ କହିଲେ—ଦୂତ ! ତୁମେ ସତ କହିଛ । ତୁମ କଥାରେ ଟିକିଏ ବି ଅସତ୍ୟ ନାହିଁ । ମାତ୍ର ମୁଁ ପ୍ରଥମରୁ ଗୋଟିଏ ପ୍ରତିଜ୍ଞା କରିସାରିଛି, ତାହା ଶୁଣ । ଯେ ମୋର ଗର୍ବକୁ ଚୂର୍ଣ୍ଣ କରିପାରିବ



ଏବଂ ଯେ ମୋତେ ଯୁଦ୍ଧରେ ପରାସ୍ତ କରିପାରିବ, ତାହାକୁ ହିଁ ମୁଁ ପତିରୂପେ ଗ୍ରହଣ କରିବି, ଅନ୍ୟକୁ ନୁହେଁ । ଏହା ମୋର ଅଟଳ ପ୍ରତିଜ୍ଞା । ତେଣୁ ତୁମେ ଶୁମ୍ଭ ଓ ନିଶୁମ୍ଭଙ୍କୁ ମୋର ଏ ପ୍ରତିଜ୍ଞା

ଜଣାଇଦିଅ । ତେଣିକି ସେ ଯାହା ଉଚିତ ମଣିବେ, ତାହା କରିବେ ।

ଦେବୀଙ୍କ କଥା ଶୁଣି ଦାନବ ସୁଗ୍ରୀବ ଫେରିଗଲା । ସେଠାକୁ ଯାଇ ସେ ବିସ୍ତାରପୂର୍ବକ ସବୁ କଥା ତା' ରାଜାକୁ ଶୁଣାଇଲା । ଦୂତ କଥା ଶୁଣି ଉଗ୍ରଶାସନ ଶୁମ୍ଭ କୁପିତ ହୋଇ ଉଠିଲା ଏବଂ ଅତ୍ୟନ୍ତ ବଳଶାଳୀ ସେନାପତି ଧୂମ୍ରାକ୍ଷକୁ କହିଲା—''ଧୂମ୍ରାକ୍ଷ! ହିମାଳୟରେ କେହି ଜଣେ ସୁନ୍ଦରୀ ରହୁଛି । ତୁମେ ଶୀଘ୍ର ସେଠାକୁ ଯାଇ ତାକୁ ଯେକୌଣସି ପ୍ରକାରେ ମନାଇ ଏଠାକୁ ନେଇଆସ । ଅସୁରପ୍ରବର ! ତାକୁ ଆଣିବାରେ କୌଣସି ପ୍ରକାରେ ଭୟ କରନା । ଯଦି ସେ ଯୁଦ୍ଧ କରିବାକୁ ଚାହେଁ, ତା' ସଙ୍ଗେ ଯୁଦ୍ଧ ବି କରିବ ।''

ଶୁମ୍ଭର ଆଜ୍ଞା ପାଇ ଦୈତ୍ୟ ଧୂମ୍ରଲୋଚନ ହିମାଳୟକୁ ଗଲା ଏବଂ ଉମାଙ୍କ ଅଂଶରୁ ପ୍ରକଟିତା ସେହି ଭୁବନେଶ୍ୱରୀଙ୍କୁ କହିଲା—''ହେ ନିତମ୍ବିନୀ! ମୋ ସ୍ୱାମୀ ଶୁମ୍ଭଙ୍କ ପାଖକୁ ଚାଲ, ନ ଗଲେ ମୁଁ ତୁମକୁ ମାରିପକାଇବି । ଜାଣିଥାଅ ଯେ ମୋ ସଙ୍ଗରେ ଷାଠିଏ ହଜାର ଅସୁର ସୈନିକ ଅଛନ୍ତି ।''

ଦେବୀ କହିଲେ—ବୀର ! ତୁମକୁ ଦୈତ୍ୟରାଜ ପଠାଇଛନ୍ତି । ଯଦି ମୋତେ ମାରି ପକାଇବ, ତେବେ ମୁଁ କ'ଣ ବା କରିପାରିବି ! କିନ୍ତୁ ଯୁଦ୍ଧ ବିନା ମୋର ସେଠାକୁ ଯିବା ଅସମ୍ଭବ ।

ଦେବୀ ଏପରି କହିବାରୁ ଦାନବ ଧୂମ୍ରଲୋଚନ ତାଙ୍କୁ ଧରିବାକୁ ଦୌଡ଼ିଗଲା । ମାତ୍ର ମହେଶ୍ୱରୀ ହୁଂକାରନାଦ ମାତ୍ରକେ ତାକୁ ଭସ୍ମ କରିଦେଲେ । ସେହି ଘଟଣା ପରଠାରୁ ଦେବୀ ଧୂମାବତୀ ନାମରେ ପୃଥିବୀରେ ପ୍ରସିଦ୍ଧ ହେଲେ । ତାଙ୍କୁ ଆରାଧନା କଲେ ସେ ତାଙ୍କ ଭକ୍ତଙ୍କ ଶତ୍ରୁଙ୍କୁ ସଂହାର କରିଦିଅନ୍ତି । ଧୂମ୍ରାକ୍ଷ ମରିଯିବା ପରେ ଦେବୀଙ୍କ ବାହନ ଅତ୍ୟନ୍ତ କୁପିତ ହୋଇ ଧୂମ୍ରାକ୍ଷ ସଙ୍ଗେ ଆସିଥିବା ଅସୁରଗଣଙ୍କୁ କାମୁଡ଼ି ଚୋବାଇ ଖାଇଗଲା । କେତେକ ଅସୁର ପ୍ରାଣ ବିକଳରେ ଦୌଡ଼ି ପଳାଇଗଲେ । ଏହିରୂପେ ଦେବୀ ଧୂମ୍ରାକ୍ଷକୁ ମାରିପକାଇଲେ । ଏ ସମାଚାର ପାଇ ମହାପ୍ରତାପୀ ଶୁମ୍ଭ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଓଠ କାମୁଡ଼ିବାକୁ ଲାଗିଲା । ସେ ଜଣ ଜଣ କରି ଚଣ୍ଡ, ମୁଣ୍ଡ ଓ ରକ୍ତବୀଜ ନାମକ ଅସୁରଙ୍କୁ ପଠାଇଲା । ଆଜ୍ଞା ପାଇ ଅସୁରମାନେ ଦେବୀଙ୍କ ନିକଟକୁ ଗଲେ । ଅଣିମା ପ୍ରଭୃତି ସିଦ୍ଧିଙ୍କ ଦ୍ୱାରା ସେବିତା ତଥା ନିଜ ପ୍ରଭାରେ ସମସ୍ତ ଦିଗବିଦିଗକୁ ଉଦ୍ଭାସିତ କରୁଥିବା ଭଗବତୀ ସିଂହବାହିନୀ ଦେବୀଙ୍କୁ ଦେଖି ସେହି ଦାନବବୀରମାନେ କହିଲେ—''ହେ ଦେବୀ! ତୁମେ ଶୀଘ୍ର ଶୁମ୍ଭ-ନିଶୁମ୍ଭଙ୍କ ନିକଟକୁ ଚାଲ, ନ ଗଲେ ଆମେ ତୁମକୁ ତୁମ ଗଣ ଓ ବାହନ ସମେତ ମାରିପକାଇବୁ । ବାମେ ! ତୁମେ ଶୁମ୍ଭଙ୍କୁ ସ୍ୱାମୀରୂପେ ବରଣ କର । ଲୋକପାଳ ପ୍ରଭୃତି ତାଙ୍କୁ ସ୍ତୁତି କରିଥାନ୍ତି । ଦୈତ୍ୟରାଜ ଶୁମ୍ଭଙ୍କୁ ସ୍ୱାମୀରୂପେ ଅଙ୍ଗୀକାର କଲେ ତୁମକୁ ଏଭଳି ଆନନ୍ଦ ମିଳିବ, ଯାହା ଦେବତାଙ୍କୁ ମଧ୍ୟ ଦୁର୍ଲଭ ।''

ସେମାନଙ୍କ କଥା ଶୁଣି ପରମେଶ୍ୱରୀ ଅମ୍ବା ସ୍ମିତହାସପୂର୍ବକ ମଧୁର ଓ ସରସ ବାଣୀରେ କହିଲେ—

ଦେବୀ କହିଲେ—ଅଦ୍ୱିତୀୟ ମହେଶ୍ୱର ପରବ୍ରହ୍ମ ପରମାତ୍ମାରୂପେ ସର୍ବତ୍ର ବିରାଜମାନ । ସେ ସଦାଶିବ ବୋଲାନ୍ତି । ବିଷ୍ଣୁ ପ୍ରଭୃତିଙ୍କ କଥା ବା କ'ଣ କହିବି, ବେଦ ମଧ୍ୟ ତାଙ୍କ ତତ୍ତ୍ୱକୁ ଜାଣନ୍ତି ନାହିଁ । ମୁଁ ହେଉଛି ସେହି ସଦାଶିବଙ୍କର ସୂକ୍ଷ୍ମପ୍ରକୃତି । ପୁଣି ମୁଁ ଅନ୍ୟ କାହାକୁ କିପରି ସ୍ୱାମୀରୂପେ ବରଣ କରିବି! ସିଂହିନୀ ଯେତେ କାମାତୁରା ହୋଇଥିଲେ ବି ସେ ଶିଆଳକୁ କଦାପି ସ୍ୱାମୀରୂପେ ସ୍ୱୀକାର କରିବ ନାହିଁ । ହସ୍ତିନୀ ଗଧକୁ ଓ ବାଘୁଣୀ ଠେକୁଆକୁ ବରଣ କରିବ ନାହିଁ । ଦୈତ୍ୟଗଣ ! ତୁମେମାନେ ସମସ୍ତେ କାଳରୂପୀ

ସର୍ପିର ପାଲରେ ପଡ଼ିଯାଇଥିବାରୁ ମିଥ୍ୟା କହୁଛ । ତୁମେ ପାତାଳକୁ ଫେରିଯାଅ, ନଚେତ୍ ଶକ୍ତି ଅଛି ଯଦି ଯୁଦ୍ଧ କର ।

ଦେବୀଙ୍କ ମୁଖରୁ ଏପରି କ୍ରୋଧ ଉତ୍ପନ୍ନକାରୀ ଭାଷା ଶୁଣି ଦୈତ୍ୟମାନେ କହିଲେ–"ଆମେମାନେ ତୁମକୁ ଅବଳା ବୋଲି ଚୁଟି ମାରୁ ନ ଥିଲୁ । ମାତ୍ର ତୁମ ମନରେ ଯଦି ଯୁଦ୍ଧ କରିବାକୁ ଇଚ୍ଛା ରହିଛି, ତେବେ ସିଂହ ଉପରେ ସୁସ୍ଥିର ହୋଇ ବସିଯାଅ ଏବଂ ଯୁଦ୍ଧ ପାଇଁ ଅଗ୍ରସର ହୁଅ ।" ଏହିପରି ବାଦ-ବିବାଦ କରୁ କରୁ କଳହ ବଢ଼ିଗଲା ଏବଂ ଯୁଦ୍ଧଭୂମିରେ ଉଭୟ ପକ୍ଷରୁ ତୀକ୍ଷ୍ଣ ଶରବୃଷ୍ଟି ଆରମ୍ଭ ହୋଇଗଲା । ଅସୁରମାନଙ୍କ ସଙ୍ଗେ ଯୁଦ୍ଧ କରି ପରମେଶ୍ୱରୀ ଚଣ୍ଡ, ମୁଣ୍ଡ ଓ ମହାସୁର ରକ୍ତବୀଜକୁ ମାରି ପକାଇଲେ । ଦେବବୈରୀ ଅସୁରମାନେ ଯଦ୍ୟପି ଦ୍ୱେଷବୁଦ୍ଧି କରି ଆସିଥିଲେ, ତଥାପି ସେମାନଙ୍କୁ ସେହି ଉତ୍ତମ ଲୋକ ପ୍ରାପ୍ତ ହେଲା, ଯାହା ଦେବୀଙ୍କ ଭକ୍ତଙ୍କୁ ପ୍ରାପ୍ତ ହୋଇଥାଏ ।

(ଅଧ୍ୟାୟ ୪୭)

★★★

## ଦେବୀଙ୍କ ଦ୍ୱାରା ସେନା ଓ ସେନାପତିଙ୍କ ସମେତ ନିଶୁମ୍ଭ ଓ ଶୁମ୍ଭଙ୍କର ସଂହାର

ଋଷି କହୁଛନ୍ତି–'ରାଜନ୍ ! ମହାପରାକ୍ରମୀ ଅସୁର ଶୁମ୍ଭ ଏତେ ବଡ଼ ବଡ଼ ଦୈତ୍ୟଙ୍କ ନିଧନ କଥା ଶୁଣି ତା'ର ଦୁର୍ଜୟ ସୈନ୍ୟଗଣଙ୍କୁ ଯୁଦ୍ଧ ନିମନ୍ତେ ବାହାରିବାକୁ ଆଜ୍ଞା ଦେଲା । ଯୁଦ୍ଧର ନାମ ଶୁଣିବାମାତ୍ରେ ହର୍ଷରେ ଉତ୍‌ଫୁଲ୍ଲିତ ହୋଇଉଠୁଥିବା ସେହି ସୈନିକଙ୍କୁ ଶୁମ୍ଭ କହିଲା– "ଆଜି ମୋ ଆଜ୍ଞାରେ କାଳକ, କାଳକେୟ, ମୌର୍ଯ୍ୟ, ଦୌର୍ହୃଦ ଓ ଅନ୍ୟ ଅସୁରଗଣ ସଂଗଠିତ ହୋଇ ବିଶାଳ ସୈନ୍ୟବାହିନୀ ସହିତ ବିଜୟ ଆଶାରେ ଖୁବ୍ ଶୀଘ୍ର ଯୁଦ୍ଧ ନିମନ୍ତେ ଅଗ୍ରସର ହୁଅନ୍ତୁ ।" ନିଶୁମ୍ଭ ଓ ଶୁମ୍ଭ ଦୈତ୍ୟମାନଙ୍କୁ ପୂର୍ବୋକ୍ତ ଆଦେଶ ଦେଇ ନିଜେ ରଥରେ ଆରୂଢ଼ ହୋଇ ନଗରରୁ ବାହାରି ପଡ଼ିଲେ । ସେହି ମହାବଳୀ ବୀର ଦୁହିଙ୍କ ଆଜ୍ଞାରେ ସୈନ୍ୟଗଣ ମରଣୋନ୍ମୁଖ ପତଙ୍ଗମାନେ ନିଆଁକୁ ଡେଇଁବାକୁ ପ୍ରସ୍ତୁତ ହେଲା ପରି ଯୁଦ୍ଧ ନିମନ୍ତେ ଅଗ୍ରସର ହେଲେ । ସେତେବେଳେ ଅସୁରରାଜଙ୍କ ଆଦେଶରେ ଯୁଦ୍ଧସ୍ଥଳରେ ମୃଦଙ୍ଗ, ମର୍ଦ୍ଦଳ, ଭେରୀ, ଡିଣ୍ଡିମ, ଝାଞ୍ଜ, ଢୋଲ ପ୍ରଭୃତି ବାଜିଲା । ଯୁଦ୍ଧବାଦ୍ୟର ନିନାଦ ଶୁଣି ଯୁଦ୍ଧପ୍ରେମୀ ବୀରମାନେ ହର୍ଷ ଓ ଉତ୍ସାହରେ ଉତ୍‌ଫୁଲ୍ଲିତ ହୋଇଉଠିଲେ । ମାତ୍ର ଯେଉଁମାନଙ୍କୁ ପ୍ରାଣ ଅଧିକ ପ୍ରିୟ ଥିଲା, ସେମାନେ ରଣାଙ୍ଗନରୁ ପଳାୟନ କଲେ । ବୀର ଯୋଦ୍ଧାମାନେ ଯୁଦ୍ଧପୋଷାକ ଓ କବଚ ପରିଧାନ କରି ବିଜୟ ଆଶାରେ ଅସ୍ତ୍ରଶସ୍ତ୍ର ଧାରଣ କରି ଯୁଦ୍ଧସ୍ଥଳରେ ଉପସ୍ଥିତ ହେଲେ । ଅନେକ ସୈନିକ ଘୋଡ଼ା ପିଠିରେ ବସିଥିଲେ, କେତେକ ସୈନିକ ଅସ୍ତ୍ରଶସ୍ତ୍ର ଉପରେ ଆରୋହଣ କରିଥିଲେ ଏବଂ ଅନ୍ୟମାନେ ରଥରେ ବିରାଜମାନ ଥିଲେ । ସେତେବେଳେ ସେମାନେ ଆପଣା-ପର ଭେଦକୁ ଭୁଲିଯାଇଥିଲେ । ସେମାନେ ଅସୁରରାଜ ସଙ୍ଗେ ରଣଭୂମିରେ ଉପସ୍ଥିତ ହୋଇ ଯୁଦ୍ଧ ଆରମ୍ଭ କରିଦେଲେ । ବାରମ୍ବାର ଶତଘ୍ନୀ ବା ତୋପ ଶବ୍ଦ କଲେ, ଯାହା ଶୁଣି ଦେବତାମାନେ କମ୍ପି ଉଠିଲେ । ଧୂଳି ଓ ଧୂଆଁ ହେତୁ ଆକାଶରେ ଘୋର ଅନ୍ଧକାର ଘୋଟିଗଲା । ସୂର୍ଯ୍ୟଙ୍କ ରଥ ଦେଖାଦେଲା ନାହିଁ । କୋଟି କୋଟି ବୀରତ୍ୱାଭିମାନୀ ଯୋଦ୍ଧା ବିଜୟ ଅଭିଳାଷରେ ରଣାଙ୍ଗନରେ ଉପସ୍ଥିତ ହୋଇଥିଲେ । ଅଶ୍ୱାରୋହୀ,

ଗଜାରୋହୀ ଏବଂ ଅନ୍ୟାନ୍ୟ ରଥାରୂଢ଼ ଅସୁର ମଧ୍ୟ ଅତି ଆନନ୍ଦରେ କୋଟି କୋଟି ସଂଖ୍ୟାରେ ସେଠାକୁ ଆସିଥିଲେ । ସେହି ମହାସମରରେ କଳା ପର୍ବତ ପରି ବିଶାଳ ବିଶାଳ ଗଜରାଜ ଖୁବ୍ ଜୋରରେ ଗର୍ଜନ କରୁଥିଲେ ଏବଂ ଛୋଟ ଛୋଟ ଶୈଳଶିଖର ପରି ଦିଶୁଥିବା ଓଟମାନେ ଗଲ୍‌ଗଲ୍ ଶବ୍ଦ କରୁଥିଲେ । ଉତ୍ତମ ଭୂମିରେ ଉତ୍ପନ୍ନ ତଥା ବଡ଼ ବଡ଼ ହାରରେ ସୁସଜ୍ଜିତ ଘୋଡ଼ାମାନେ ଉଚ୍ଚସ୍ୱରରେ ହ୍ରେଷାରବ କରୁଥିଲେ । ସେମାନେ ଅନେକ ପ୍ରକାର ଗତି ଜାଣିଥିଲେ ଓ ହାତୀମୁଣ୍ଡ ଉପରେ ଗୋଡ଼ ରଖି ଆକାଶମାର୍ଗରେ ପକ୍ଷୀଙ୍କ ପରି ଉଡ଼ିଯାଉଥିଲେ । ଶତ୍ରୁଙ୍କର ଏପରି ବିଶାଳ ସେନାର ଆକ୍ରମଣକୁ ଦେଖି ଜଗଦମ୍ବା ନିଜ ଧନୁରେ ଗୁଣ ସଂଯୋଗ କଲେ ଏବଂ ଶତ୍ରୁଙ୍କୁ ହତୋତ୍ସାହିତ କରିବାକୁ ଘଣ୍ଟାନାଦ କଲେ । ଏହା ଦେଖି ସିଂହ ମଧ୍ୟ ତା'ର କେସରକୁ ଝାଡ଼ି ଘୋର ଗର୍ଜନ କଲା ।

ସେତେବେଳେ ହିମାଳୟ ପର୍ବତରେ ଦଣ୍ଡାୟମାନା ତଥା ଆଭୂଷଣ ଓ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତା ଦେବୀଙ୍କ ଆଡ଼କୁ ଗ୍ରହିଁ ନିଶୁମ୍ଭ ବିଳାସିନୀ ରମଣୀଙ୍କ ମନୋଭାବକୁ ବୁଝିବାରେ ନିପୁଣ ପୁରୁଷ ପରି ସରସ ବାଣୀରେ କହିଲା– "ହେ ମହେଶ୍ୱରୀ ! ତୁମ ପରି ସୁନ୍ଦରୀର ରମଣୀୟ ଶରୀର ଉପରକୁ ମାଳତୀ ଫୁଲର ପାଖୁଡ଼ାଟିଏ ଫିଙ୍ଗିଦେଲେ ବି ତାହା ବ୍ୟଥା ଉତ୍ପନ୍ନ କରିବ । ଏପରି ସୁକୋମଳ ମନୋହର ଶରୀରରେ ତୁମେ ଏତେ ବିକରାଳ ଯୁଦ୍ଧର ଆୟୋଜନ କାହିଁକି କରୁଛ?" ଏତିକି କହି ଅସୁର ନୀରବ ହୋଇଗଲା । ଏହା ଶୁଣି ଚଣ୍ଡିକା କହିଲେ–"ମୂଢ଼ ଅସୁର ! ବୃଥା ବାକ୍ୟାଳାପ କାହିଁକି କରୁଛୁ? ଯୁଦ୍ଧ କର; ନଚେତ୍ ପାତାଳକୁ ପଳାଇଯାଆ ।" ଏହା ଶୁଣି ମହାରଥୀ ବୀର ନିଶୁମ୍ଭ ଅତ୍ୟନ୍ତ ରୁଷ୍ଟ ହୋଇ ବାଦଲରୁ ଜଳବୃଷ୍ଟି ହେଲା ପରି ସମରଭୂମିରେ ଏଭଳି ଅଦ୍ଭୁତରୂପେ ଶରବୃଷ୍ଟି କଲା, ଲାଗିଲା ସତେଯେପରି ରଣଭୂମିରେ ବର୍ଷାଋତୁର ଆଗମନ ହୋଇଛି । ସେ ମଦୋନ୍ମତ୍ତ ହୋଇ ତୀକ୍ଷ୍ଣ ଶର, ଶୂଳ, ଫାରସା, ଭିନ୍ଦିପାଳ, ପରିଘ, ଧନୁ, ଭୁଶୁଣ୍ଡି, ପ୍ରାସ, କ୍ଷୁରପ୍ର ଓ ବଡ଼ ବଡ଼ ତରବାରି ଧରି ଯୁଦ୍ଧ କଲା । ଦେବୀଙ୍କ ଆକ୍ରମଣରେ କଳା କଳା ପର୍ବତ ପରି ଦିଶୁଥିବା ବଡ଼ ବଡ଼ ଗଜରାଜଙ୍କ କୁମ୍ଭସ୍ଥଳ ବିଦୀର୍ଣ୍ଣ ହୋଇଯିବାରୁ ସେମାନେ ରଣାଙ୍ଗନରେ ବିଚଳିତ ହୋଇ ପାଗଳ ପରି ଇତଃସ୍ତତଃ ଧାଇଁଲେ । ସେମାନଙ୍କ ପିଠି ଉପରେ ଉଡୁଥିବା ଶୁମ୍ଭ-ନିଶୁମ୍ଭଙ୍କ ପତାକା, ଯାହା ଉଡ଼ିଲାବେଳେ ବଗପଲଙ୍କ ପରି ଦିଶୁଥିଲା, ଯଥାସ୍ଥାନରୁ ଖସି ପଡ଼ିଲା । ଦୈତ୍ୟମାନେ କ୍ଷତ-ବିକ୍ଷତ ହୋଇ ମାଛ ପରି ଛଟପଟ ହେଉଥାନ୍ତି । ମୁଣ୍ଡ କଟିଯାଇଥିବା ଘୋଡ଼ାମାନେ ଅତି ଭୟଙ୍କର ଦିଶୁଥାନ୍ତି । କାଳିକା ଅନେକ ଦୈତ୍ୟଙ୍କୁ ମୃତ୍ୟୁମୁଖରେ ପକାଇ ଦେଲେ ଏବଂ ତାଙ୍କ ବାହନ ସିଂହ ଅନେକ ଅସୁରଙ୍କୁ ଭକ୍ଷଣ କଲା । ଦୈତ୍ୟମାନେ ମରିଯିବାରୁ ସେମାନଙ୍କ ରକ୍ତରେ ସେଠାରେ ଅନେକ ରକ୍ତନଦୀ ପ୍ରବାହିତ ହେଲା । ସେହି ନଦୀରେ ସୈନିକଙ୍କର କେଶଗୁଚ୍ଛ ଶିଉଳି ପରି ଦିଶୁଥିବା ବେଳେ ସେମାନଙ୍କ ଗ୍ରଦର ଧଳା ଧଳା ଫେଣ ପରି ଦିଶୁଥିଲା ।

ଭୟଙ୍କର ଯୁଦ୍ଧରେ ରାକ୍ଷସଙ୍କର ଘୋର ସଂହାର ହୋଇଯିବା ପରେ ଅମ୍ବିକା ତାଙ୍କର ବିଷବୋଳା ତୀକ୍ଷ୍ଣ ଶରରେ ନିଶୁମ୍ଭକୁ ମାରି ଧରାଶାୟୀ କରିଦେଲେ । ଅସୀମ ଶକ୍ତିଶାଳୀ ସାନଭାଇର ମୃତ୍ୟୁ ହୋଇଯିବା ଦେଖି ଶୁମ୍ଭ ଅତ୍ୟନ୍ତ କ୍ରୋଧରେ ଅଷ୍ଟଭୁଜଯୁକ୍ତ ହୋଇ ମହେଶ୍ୱରପ୍ରିୟା ଅମ୍ବିକାଙ୍କ ସମ୍ମୁଖକୁ ଗଲା । ସେ ଖୁବ୍ ଜୋରରେ ଶଙ୍ଖ

ବଜାଇଲା ଏବଂ ତାହାର ଶତ୍ରୁଦମନକ ଧନୁରେ ଦୁଃସହ ଟଙ୍କାର ଧ୍ୱନି କଲା । ଦେବୀଙ୍କ ସିଂହ ମଧ୍ୟ କେସରକୁ ହଲାଇ ଗର୍ଜନ କରିବାକୁ ଲାଗିଲା । ଏଭଳି ତ୍ରିବିଧ ଧ୍ୱନିରେ ଆକାଶମଣ୍ଡଳ କମ୍ପିଉଠିଲା ।

ଏହାପରେ ଜଗଦମ୍ବା ଉଚ୍ଚସ୍ୱରରେ ଅଟ୍ଟହାସ କଲେ, ଯଦ୍ଦ୍ୱାରା ଅସୁରମାନେ ଭୟଭୀତ ହୋଇଗଲେ । ଦେବୀ ଶୁମ୍ଭକୁ ଆହ୍ୱାନ ଦେଇ କହିଲେ, ''ରେ ଅସୁର! ତୁ ଯୁଦ୍ଧ ପାଇଁ କଟିବଦ୍ଧ ହୋଇ ଛିଡ଼ା ହୁଅ ।'' ଏହା ଶୁଣି ଦେବତାମାନେ ବାରମ୍ବାର ଜଗଦମ୍ବାଙ୍କର ଜୟଧ୍ୱନି କଲେ । ଏହାପରେ ଦୈତ୍ୟରାଜ ଶୁମ୍ଭ ଦେବୀଙ୍କ ଉପରକୁ ବହୁତ ବଡ଼ ଶକ୍ତି ପ୍ରକ୍ଷେପ କଲା । ତାହା ଅଗ୍ନି ଉଦ୍‌ଗୀରଣ କରି ମାଡ଼ି ଆସୁଥିବା ଦେଖି ଦେବୀ ତାହାକୁ ଗୋଟିଏ ଉଲ୍‌କା ଦ୍ୱାରା କାଟି ତଳେ ପକାଇଦେଲେ । ଶୁମ୍ଭର ବାଣକୁ ଦେବୀ ଏବଂ ଦେବୀଙ୍କ ବାଣକୁ ଶୁମ୍ଭ ହଜାର ହଜାର ଖଣ୍ଡ କରି କାଟି ପକାଉଥିଲେ । ଇତିମଧ୍ୟରେ ଚଣ୍ଡିକା ସେହି ଦୁର୍ଦ୍ଧାନ୍ତ ଅସୁର ଉପରକୁ ତ୍ରିଶୂଳ ପ୍ରକ୍ଷେପ କଲେ । ତ୍ରିଶୂଳ ଆଘାତରେ ମୂର୍ଚ୍ଛିତ ହୋଇ ସେ ଇନ୍ଦ୍ରଙ୍କ ଦ୍ୱାରା ପକ୍ଷ କଟାଯାଇଥିବା ପର୍ବତ ପରି ଭୂମି ଉପରେ ଢଳିପଡ଼ିଲା । ସେତେବେଳେ ଆକାଶ, ପୃଥିବୀ ଓ ସମୁଦ୍ର କମ୍ପି ଉଠିଲେ । ତଥାପି ମହାବଳୀ ଅସୁର ତ୍ରିଶୂଳ ଆଘାତକୁ ସହନ କରି ଉଠି ଦଶହଜାର ବାହୁ ଧାରଣ କଲା ଏବଂ ଦେବତାଙ୍କୁ ମଧ୍ୟ ନାଶ କରିବାକୁ ସମର୍ଥ ଚକ୍ର ଦ୍ୱାରା ସିଂହସମେତ ମହେଶ୍ୱରୀ ଶିବାଙ୍କ ଉପରେ ଆକ୍ରମଣ କଲା । ଦେବୀ ତା'ର ଚକ୍ରକୁ ଅକ୍ଳେଶରେ କାଟିଦେଲେ ଏବଂ ତ୍ରିଶୂଳ ଦ୍ୱାରା ଅସୁରକୁ ସଂହାର କଲେ । ଏହିରୂପେ ଶିବାଙ୍କ ଲୋକପାବନ କରକମଳରେ ଅସୁର ଦୁହେଁ ମୃତ୍ୟୁବରଣ କରି ପରମପଦର ଭାଗୀ ହେଲେ ।

ମହାପରାକ୍ରମୀ ନିଶୁମ୍ଭ ଓ ପରମ ବଳଶାଳୀ ଶୁମ୍ଭ ନିହତ ହେବାରୁ ଦୈତ୍ୟମାନେ ପାତାଳକୁ ପଳାଇଗଲେ, କେତେକ ଅସୁରଙ୍କୁ କାଳୀ ଓ ସିଂହ ପ୍ରଭୃତି ଖାଇଗଲେ, ଅବଶିଷ୍ଟ ଦୈତ୍ୟ ଭୟରେ ବ୍ୟାକୁଳ ହୋଇ ଦଶଦିଗକୁ ପଳାୟନ କଲେ । ନଦୀଗୁଡ଼ିକର ଜଳ ସ୍ୱଚ୍ଛ ହୋଇଗଲା । ସେଗୁଡ଼ିକ ଯଥାରୀତି ପ୍ରବାହିତ ହେଲେ । ମନ୍ଦମନ୍ଦ ସୁଖଦାୟକ ବାୟୁ ପ୍ରବାହିତ ହେଲା । ଆକାଶ ମଧ୍ୟ ନିର୍ମଳ ହୋଇଗଲା । ଦେବତାମାନେ ଓ ବ୍ରହ୍ମର୍ଷିମାନେ ପୁନଃ ଯାଗଯଜ୍ଞାଦି ଆରମ୍ଭ କରିଦେଲେ । ଇନ୍ଦ୍ରାଦି ଦେବତାମାନେ ସୁଖୀ ହେଲେ । ପ୍ରଭୋ ! ଏହି ଦୈତ୍ୟରାଜ-ବଧ ପ୍ରସଙ୍ଗ ସହ ସମ୍ବନ୍ଧିତ ପବିତ୍ର ଉମାଙ୍କ ଚରିତକୁ ଯେ ଶ୍ରଦ୍ଧାପୂର୍ବକ ବାରମ୍ବାର ଶ୍ରବଣ କରେ ବା ପାଠ କରେ, ସେ ଇହଲୋକରେ ଦେବଦୁର୍ଲଭ ଭୋଗମାନ ଉପଭୋଗ କରି ପରଲୋକରେ ମହାମାୟାଙ୍କ ପ୍ରସାଦରୁ ଉମାଙ୍କ ଧାମକୁ ଯାଏ । ରାଜନ୍ ! ଏହା ଥିଲା ଶୁମ୍ଭାସୁରର ସଂହାରକାରିଣୀ ତଥା ସାକ୍ଷାତ୍ ଉମାଙ୍କ ଅଂଶରୁ ପ୍ରକଟ ହୋଇଥିବା ଦେବୀ ସରସ୍ୱତୀଙ୍କ ଲୀଳା ଚରିତ ।

(ଅଧ୍ୟାୟ ୪୮)



## ଦେବତାଙ୍କ ଗର୍ବ ଗଞ୍ଜନ କରିବାକୁ ତେଜଃପୁଞ୍ଜରୂପିଣୀ ଉମାଙ୍କ ଆବିର୍ଭାବ

ମୁନିଗଣ କହିଲେ–ସମସ୍ତ ବିଷୟର ପୂର୍ଣ୍ଣ ଜ୍ଞାତା ସୂତ ମହାଭାଗ ! ଯେଉଁ ଭୁବନେଶ୍ୱରୀ ଉମାଦେବୀ ସରସ୍ୱତୀଙ୍କୁ ପ୍ରକଟ କରିଥିଲେ ଏବଂ ଯେ ପରବ୍ରହ୍ମ, ମୂଳପ୍ରକୃତି, ଈଶ୍ୱରୀ, ନିରାକାର ହୋଇ ମଧ୍ୟ ସାକାର ତଥା ନିତ୍ୟାନନ୍ଦମୟୀ ସତୀ ନାମରେ ପ୍ରସିଦ୍ଧ, ତାଙ୍କ ଅବତାର

ବିଷୟରେ ଆହୁରି କିଛି କୁହନ୍ତୁ ।

ସୂତ କହୁଛନ୍ତି–ହେ ତପସ୍ୱୀ ମୁନିଗଣ ! ଆପଣମାନେ ଦେବୀଙ୍କ ଉତ୍ତମ ଓ ମହାନ୍ ଚରିତ୍ର ଶ୍ରଦ୍ଧାରେ ଶ୍ରବଣ କରନ୍ତୁ, ଏହା ଶ୍ରବଣ କରି ମନୁଷ୍ୟ ପରମ ଗତି ପାଇଥାଏ । ଥରେ ଦେବତା ଓ ଦାନବଙ୍କ ମଧ୍ୟରେ ଯୁଦ୍ଧ ହେଲା ଏବଂ ସେଥିରେ ମହାମାୟାଙ୍କ ପ୍ରଭାବରେ ଦେବଗଣଙ୍କର ବିଜୟ ହେଲା, ଯାହାଫଳରେ ଦେବତାମାନେ ନିଜର ବୀରତ୍ୱ ପାଇଁ ବହୁତ ଗର୍ବିତ ହୋଇଉଠିଲେ । ସେମାନେ ଆତ୍ମଶ୍ଲାଘାରେ ନିଜ ବିଷୟରେ ପ୍ରଶ୍ନର କଲେ ଯେ "ଆମ୍ଭେମାନେ ଧନ୍ୟ, ଧନ୍ୟବାଦର ପାତ୍ର । ଅସୁରମାନେ ଆମର କ'ଣ କରି ପକାଇବେ? ଆମର ଦୁଃସହ ପ୍ରଭାବକୁ ଦେଖି ସେମାନେ ଭୟରେ ପାତାଳକୁ ପଳାଇଲେ । ଆମର ବଳ ଅଦ୍ଭୁତ । ଆମଠାରେ ଆଶ୍ଚର୍ଯ୍ୟଜନକ ତେଜ ରହିଛି । ଆମର ବଳ ଓ ତେଜ ଦୈତ୍ୟକୁଳକୁ ବିନାଶ କରିବାକୁ ସମର୍ଥ । ଅହୋ ! ଆମ ପରି ଦେବତାଙ୍କର କେଡ଼େ ସୌଭାଗ୍ୟ !" ଏହିରୂପେ ସେମାନେ ସବୁଆଡ଼େ ଆତ୍ମଶ୍ଲାଘା ବଖାଣିଲେ ।

ଏହି ଘଟଣା ପରେ ଦେବଗଣଙ୍କ ସମକ୍ଷରେ ଗୋଟିଏ ଅଦ୍ଭୁତ ତେଜଃପୁଞ୍ଜ ପ୍ରକଟ ହେଲା, ଯାହାକୁ ସେମାନେ ପୂର୍ବରୁ କଦାପି ଦେଖି ନ ଥିଲେ । ତାହାକୁ ଦେଖି ସେମାନେ ବିସ୍ମୟରେ ପଡ଼ିଗଲେ । ସେମାନେ ଅବରୁଦ୍ଧ କଣ୍ଠରେ ପରସ୍ପର ମଧ୍ୟରେ "ଏଇଟା କ'ଣ?" ବୋଲି ପଚରାପଚରି ହେଲେ । ସେମାନଙ୍କୁ ଜଣା ନ ଥିଲା ଯେ ତାହା ଶ୍ୟାମା (ଉମା)ଙ୍କ ପ୍ରଭାବ ଏବଂ ତାହା ସେମାନଙ୍କ ଅଭିମାନ ମର୍ଦ୍ଦନ କରିବାକୁ ପ୍ରକଟ ହୋଇଛି ।

ଦେବରାଜ ଇନ୍ଦ୍ର ଦେବଗଣଙ୍କୁ ଆଜ୍ଞା ଦେଲେ–"ତୁମେମାନେ ଯାଇ ଯଥାର୍ଥରୂପେ ପରୀକ୍ଷା କର ଯେ ତାହା କ'ଣ?" ଦେବେନ୍ଦ୍ରଙ୍କ ଆଜ୍ଞାରେ ବାୟୁଦେବ ତେଜଃପୁଞ୍ଜ ନିକଟକୁ ଗଲେ । ତେଜୋରାଶି ତାଙ୍କୁ ସମ୍ବୋଧିତ କରି ପଚାରିଲା– "ତୁମେ କିଏ?" ବାୟୁଦେବ ଅଭିମାନପୂର୍ବକ କହିଲେ–"ମୁଁ ବାୟୁଦେବ, ସମଗ୍ର ଜଗତର ପ୍ରାଣ ଏବଂ ମୋ ପରି ସର୍ବାଧାର ପରମେଶ୍ୱରଙ୍କ ଠାରେ ହିଁ ଏ ସଚରାଚର ଜଗତ ଓତପ୍ରୋତ ହୋଇରହିଛି । ମୁଁ ହିଁ ସମଗ୍ର ବିଶ୍ୱର ସଂଚାଳନ କରେ ।" ଏହାପରେ ସେହି ମହାତେଜ କହିଲା–"ବାୟୋ ! ଯଦି ତୁମେ ଜଗତକୁ ସଂଚାଳନ କରିବାରେ ସକ୍ଷମ, ତେବେ ଏଠି ରଖାଯାଇଥିବା ତୃଣଟିକୁ ସଂଚାଳନ କରି ଦେଖାଅ ।" ବାୟୁଦେବ ନିଜର ସମସ୍ତ ଶକ୍ତି ପ୍ରୟୋଗ କରି ସୁଦ୍ଧା ତୃଣଟିକୁ ତିଳେମାତ୍ର ଘୁଞ୍ଚାଇ ପାରିଲେ ନାହିଁ । ଏଥିରେ ବାୟୁଦେବ ଲଜ୍ଜିତ ହୋଇ ଚୁପ୍‌ଚାପ ଇନ୍ଦ୍ରଙ୍କ ସଭାକୁ ଫେରିଗଲେ ଏବଂ ନିଜ ପରାଜୟର ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲେ । ସେ କହିଲେ–"ହେ ଦେବେନ୍ଦ୍ର ! ଆମେମାନେ ବୃଥାରେ ନିଜକୁ ସର୍ବେଶ୍ୱର ହେବାର ଅଭିମାନ କରୁଛୁ; କାରଣ ଛୋଟିଆ ଜିନିଷଟିର ବି ମୁଁ କିଛି କରି ପାରିଲି ନାହିଁ ।" ଏହାପରେ ଇନ୍ଦ୍ର ଜଣ ଜଣ କରି ସମସ୍ତ ଦେବତାଙ୍କୁ ପଠାଇଲେ । ସେମାନେ ସମସ୍ତେ ଯାଇ ସୁଦ୍ଧା ତାଙ୍କୁ ଚିହ୍ନି ନ ପାରିବାରୁ ଶେଷରେ ଇନ୍ଦ୍ର ସ୍ୱୟଂ ଗଲେ । ଇନ୍ଦ୍ର ଆସିବାମାତ୍ରେ ସେହି ଦୁଃସହ ତେଜ ଅବିଳମ୍ବେ ଅଦୃଶ୍ୟ ହୋଇଗଲା । ଏହା ଦେଖି ଇନ୍ଦ୍ର ଅତ୍ୟନ୍ତ ବିସ୍ମୟରେ ପଡ଼ିଗଲେ ଏବଂ ମନେ ମନେ କହିଲେ–"ଯାହାଙ୍କ ଚରିତ୍ର ଏପରି ଅଦ୍ଭୁତ, ମୁଁ ତାଙ୍କ ଠାରେ ଶରଣ ପଶୁଛି ।" ସହସ୍ରନେତ୍ରଧାରୀ ଇନ୍ଦ୍ର ବାରମ୍ବାର ଏହି ଭାବକୁ ଚିନ୍ତନ କରିବାରୁ ନିଶ୍ଛଳ କରୁଣାକାରିଣୀ ସଚ୍ଚିଦାନନ୍ଦମୟୀ ଶିବପ୍ରିୟା ଉମାଦେବୀ ଦେବତାଙ୍କ ଉପରେ ଦୟା କରିବାକୁ ଓ ସେମାନଙ୍କ ଗର୍ବ ଖଣ୍ଡିତ କରିବାକୁ ସେହି ଚୈତ୍ରଶୁକ୍ଳ ନବମୀ ଦିନ ମଧ୍ୟାହ୍ନ କାଳରେ ସେଠାରେ ଆବିର୍ଭୂତା ହେଲେ । ସେ ତେଜଃପୁଞ୍ଜର

ମଧ୍ୟରେ ବିରାଜିତ ହୋଇ ଦଶଦିଗକୁ ଉଦ୍ଭାସିତ କରୁଥିଲେ ଏବଂ ସମସ୍ତ ଦେବତାଙ୍କୁ ଏହା ସ୍ପଷ୍ଟରୂପେ ଅନୁଭବ କରାଉଥିଲେ ଯେ ସେ ହିଁ ସାକ୍ଷାତ୍ ପରବ୍ରହ୍ମ ପରମାତ୍ମା । ତାଙ୍କ ଚାରିଭୁଜରେ ଯଥାକ୍ରମେ ବର, ପାଶ, ଅଙ୍କୁଶ ଓ ଅଭୟ ମୁଦ୍ରା ଶୋଭା ପାଉଥିଲା । ଶ୍ରୁତିଗଣ ମୂର୍ତ୍ତିମାନ ହୋଇ ତାଙ୍କ ସେବାରେ ଉପସ୍ଥିତ ଥିଲେ । ଦେବୀ ଅତ୍ୟନ୍ତ ସୁନ୍ଦର ତଥା ନବଯୌବନରେ ବିମଣ୍ଡିତା ଥିଲେ । ସେ ରକ୍ତବସ୍ତ୍ର ପରିଧାନ କରିଥିଲେ ଏବଂ ରକ୍ତପୁଷ୍ପର ମାଳା ତଥା ରକ୍ତଚନ୍ଦନରେ ସୁଶୋଭିତା ଥିଲେ । ସେ କୋଟି କୋଟି କନ୍ଦର୍ପ ପରି ମନୋହାରିଣୀ ତଥା ଅସଂଖ୍ୟ ଚନ୍ଦ୍ରର ଜ୍ୟୋତ୍ସ୍ନାରେ ସୁଶୋଭିତା ଥିଲେ । ସମସ୍ତଙ୍କର ଅନ୍ତର୍ଯ୍ୟାମିଣୀ, ସମସ୍ତ ଭୂତଙ୍କ ସାକ୍ଷିଣୀ ତଥା ପରବ୍ରହ୍ମସ୍ୱରୂପିଣୀ ମହାମାୟା ସେତିକି ବେଳେ ଏହିପରି କହିଲେ—

ଉମା କହିଲେ—ମୁଁ ହିଁ ପରବ୍ରହ୍ମ, ପରମ ଜ୍ୟୋତି, ପ୍ରଣବରୂପିଣୀ ତଥା ଯୁଗଳରୂପଧାରିଣୀ । ମୁଁ ହିଁ ସବୁକିଛି । ମୋଠାରୁ ଭିନ୍ନ କିଛି ନାହିଁ । ମୁଁ ନିରାକାର ହୋଇ ମଧ୍ୟ ସାକାର ଅଟେ, ସର୍ବତତ୍ତ୍ୱସ୍ୱରୂପିଣୀ ଅଟେ । ମୋର ଗୁଣ ଅତର୍କ୍ୟ । ମୁଁ ନିତ୍ୟସ୍ୱରୂପା ଓ କାର୍ଯ୍ୟକାରଣରୂପିଣୀ । ମୁଁ କେବେ ପ୍ରାଣବଲ୍ଲଭା ଆକାର ଧାରଣ କରିଥାଏ ତ କେବେ ପ୍ରାଣବଲ୍ଲଭ ପୁରୁଷ ରୂପ ଧାରଣ କରିଥାଏ । କେବେ କେବେ ଏକାବେଳକେ ସ୍ତ୍ରୀ ଓ ପୁରୁଷ ଉଭୟଙ୍କ ରୂପ (ଅର୍ଦ୍ଧନାରୀଶ୍ୱର ରୂପ) ଧାରଣ କରିଥାଏ । ମୁଁ ସର୍ବରୂପିଣୀ ଈଶ୍ୱରୀ ଅଟେ । ମୁଁ ହିଁ ସୃଷ୍ଟିକର୍ତ୍ତା ବ୍ରହ୍ମା, ମୁଁ ହିଁ ଜଗତପାଳକ ବିଷ୍ଣୁ ଓ ମୁଁ ହିଁ ସଂହାରକର୍ତ୍ତା ରୁଦ୍ର । ମୁଁ ହିଁ ସମଗ୍ର ବିଶ୍ୱକୁ ମୋହରେ ପକାଉଥିବା ମହାମାୟା । କାଳୀ, ଲକ୍ଷ୍ମୀ ଓ ସରସ୍ୱତୀ ନାମ୍ନୀ ସମସ୍ତ ଶକ୍ତି ମୋରି ଅଂଶରୁ ଉତ୍ପନ୍ନ ହୋଇଛନ୍ତି ଏବଂ ଏମାନେ ମୋରି କଳା ଅଟନ୍ତି । ମୋରି ପ୍ରଭାବରେ ତୁମେମାନେ ଦୈତ୍ୟଙ୍କ ଉପରେ ବିଜୟୀ ହୋଇଥିଲ । ମୋତେ ସର୍ବବିଜୟିନୀ ବୋଲି ନ ବୁଝି ତୁମେମାନେ ବୃଥାରେ ନିଜକୁ



ସର୍ବେଶ୍ୱର ମଣୁଛ । ଇନ୍ଦ୍ରଜାଲ ଦେଖାଉଥିବା ସୂତ୍ରଧାର କାଠକଣ୍ଢେଇକୁ ନଚାଇଲା ପରି ମୁଁ ହିଁ ସମସ୍ତ ପ୍ରାଣୀଙ୍କୁ ନଚାଇଥାଏ । ମୋ ଭୟରେ ବାୟୁ ପ୍ରବାହିତ ହୋଇଥାଏ, ମୋ ଭୟରେ ଅଗ୍ନି ସମସ୍ତଙ୍କୁ ଜଳାଇଥାଏ ଏବଂ ମୋ ଭୟରେ ଲୋକପାଳଗଣ ନିରନ୍ତର ନିଜ ନିଜ କର୍ମରେ ତତ୍ପର ରହିଥାନ୍ତି । ମୁଁ ସର୍ବଥା ସ୍ୱତନ୍ତ୍ର । ମୁଁ ଲୀଳାରେ ହିଁ କେବେ ଦେବଗଣଙ୍କୁ ତ କେବେ ଦୈତ୍ୟଗଣଙ୍କୁ ବିଜୟ ପ୍ରଦାନ କରାଇଥାଏ । ଯେଉଁ ମାୟାତୀତ ଅବିନାଶୀ ପରାତ୍ପର ଧାମ କଥା ଶ୍ରୁତିମାନେ ବର୍ଣ୍ଣନା କରିଥାନ୍ତି, ତାହା ମୋରି ରୂପ । ସଗୁଣ ଓ ନିର୍ଗୁଣ ମୋର ଦୁଇ ପ୍ରକାର ରୂପ ବୋଲି କୁହାଯାଏ । ଏଥିମଧ୍ୟରୁ ପ୍ରଥମଟି ମାୟାଯୁକ୍ତ ଓ ଅନ୍ୟଟି ମାୟାରହିତ । ଦେବଗଣ ! ଏହା ଜାଣି ଗର୍ବ ଛାଡ଼ ଏବଂ ମାତୃଶ

ସନାତନୀ ପ୍ରକୃତିକୁ ପ୍ରୀତିପୂର୍ବକ ଆରାଧନା କର ।*

ଦେବୀଙ୍କ କରୁଣାଯୁକ୍ତ ବାଣୀ ଶୁଣି ଦେବତା ଭକ୍ତିଭାବରେ ମସ୍ତକ ଅବନତ କରି ପରମେଶ୍ୱରୀଙ୍କୁ ସ୍ତୁତି କଲେ—''ହେ ଜଗଦୀଶ୍ୱରୀ! କ୍ଷମା କର । ହେ ପରମେଶ୍ୱରୀ! ପ୍ରସନ୍ନ ହୁଅ । ମାତଃ! ଏପରି କୃପା କର, ଯାହା ଫଳରେ ଆଉ କେବେ ଆମ ମନରେ ଗର୍ବ ନ ହେବ ।''

ସେହିଦିନଠାରୁ ଦେବଗଣ ଗର୍ବ ପରିହାର କରି ଏକାଗ୍ରଚିତ୍ତରେ ପୂର୍ବବତ୍ ବିଧିପୂର୍ବକ ଉମାଦେବୀଙ୍କୁ ଆରାଧନା କଲେ । ବ୍ରାହ୍ମଣବୃନ୍ଦ! ମୁଁ ତୁମମାନଙ୍କ ଆଗରେ ଉମାଦେବୀଙ୍କ ଆବିର୍ଭାବ କଥା ବର୍ଣ୍ଣନା କରିଦେଲି । ଏହା ଶ୍ରବଣ କଲେ ପରମପଦ ପ୍ରାପ୍ତି ହୋଇଥାଏ । (ଅଧ୍ୟାୟ ୪୯)

***

## ଦେବୀଙ୍କ ଦ୍ୱାରା ଦୁର୍ଗମାସୁର ବଧ ତଥା ଦେବୀଙ୍କର ଦୁର୍ଗା, ଶତାକ୍ଷୀ, ଶାକମ୍ଭରୀ ଓ ଭ୍ରାମରୀ ଇତ୍ୟାଦି ନାମ ପ୍ରସିଦ୍ଧ ହେବାର କାରଣ

ମୁନିଗଣ କହିଲେ—ହେ ମହାପ୍ରାଜ୍ଞ ସୂତ! ଆମ୍ଭେମାନେ ନିରନ୍ତର ଦୁର୍ଗାଙ୍କ ଚରିତ୍ର ଶୁଣିବାକୁ ଚାହୁଁଛୁ । ତେଣୁ ଆପଣ ଆଉ କୌଣସି ଅଦ୍ଭୁତ ଲୀଳାତତ୍ତ୍ୱ ଆମ ସମକ୍ଷରେ ବର୍ଣ୍ଣନା କରନ୍ତୁ । ହେ ସର୍ବଜ୍ଞ-ଶିରୋମଣେ! ଆପଣଙ୍କ ମୁଖାରବିନ୍ଦରୁ ନାନା ପ୍ରକାର ସୁଧାସମ ମଧୁର କଥା ଯେତେ ଶୁଣିଲେ ବି ଆମର ମନ ତୃପ୍ତ ହେଉ ନାହିଁ ।

ସୂତ କହୁଛନ୍ତି—ମୁନିଗଣ! ଦୁର୍ଗମ ନାମରେ ଗୋଟିଏ ବିଖ୍ୟାତ ଅସୁର ଥିଲା । ସେ ଥିଲା ରୁରୁର ମହାବଳବାନ୍ ପୁତ୍ର । ସେ ବ୍ରହ୍ମାଙ୍କ ବରଦାନରେ ଚାରିବେଦକୁ କରାୟତ୍ତ କରି ପାରିଥିଲା । ଦେବତାଙ୍କ ପକ୍ଷେ ଅଜେୟ ହେବାର ବର ଲାଭ କରି ସେ ପୃଥିବୀରେ ଏତେ ଉତ୍ପାତ କଲା ଯେ ଦେବଲୋକରେ ଦେବତାମାନେ ପ୍ରମାଦ ଗଣିଲେ । ବେଦମାନେ ଅଦୃଶ୍ୟ ହୋଇଯିବାରୁ ସମସ୍ତ ବୈଦିକ କ୍ରିୟା ନଷ୍ଟ

---

* ଉମୋବାଚ—

ପରଂ ବ୍ରହ୍ମ ପରଂ ଜ୍ୟୋତିଃ ପ୍ରଣବଦ୍ୱନ୍ଦ୍ୱରୂପିଣୀ । ଅହମେବାସ୍ମି ସକଳଂ ମଦନ୍ୟୋ ନାସ୍ତି କଶ୍ଚନ ॥
ନିରାକାରାପି ସାକାରା ସର୍ବତତ୍ତ୍ୱସ୍ୱରୂପିଣୀ । ଅପ୍ରତର୍କ୍ୟଗୁଣା ନିତ୍ୟା କାର୍ଯ୍ୟକାରଣରୂପିଣୀ ॥
କଦାଚିଦ୍ଦୟିତାକାରା କଦାଚିତ୍ ପୁରୁଷାକୃତିଃ । କଦାଚିଦୁଭୟାକାରା ସର୍ବାକାରାହମୀଶ୍ୱରୀ ॥
ବିରଞ୍ଚିଃ ସୃଷ୍ଟିକର୍ତ୍ତାହଂ ଜଗତ୍ପାତାହମଚ୍ୟୁତଃ । ରୁଦ୍ରଃ ସଂହାରକର୍ତ୍ତାହଂ ସର୍ବବିଶ୍ୱବିମୋହିନୀ ॥
କାଳିକାକମଳାବାଣୀମୁଖାଃ ସର୍ବା ହି ଶକ୍ତୟଃ । ମଦଂଶାଦେବ ସଂଜାତାସ୍ତଥେମାଃ ସକଳାଃ କଳାଃ ॥
ମତ୍ ପ୍ରଭାବାଜ୍ଜିତାଃ ସର୍ବେ ଯୁଷ୍ମାଭିର୍ଦିତିନନ୍ଦନାଃ । ତାମବିଜ୍ଞାୟ ମାଂ ଯୂୟଂ ବୃଥା ସର୍ବେଶମାନିନଃ ॥
ଯଥା ଦାରୁମୟୀଂ ଯୋଷାଂ ନର୍ତ୍ତୟତ୍ୟୈନ୍ଦ୍ରଜାଲିକଃ । ତଥୈବ ସର୍ବଭୂତାନି ନର୍ତ୍ତୟାମ୍ୟହମୀଶ୍ୱରୀ ॥
ମଦ୍ଭୟାଦ୍ ବାତି ପବନଃ ସର୍ବଂ ଦହତି ହବ୍ୟଭୁକ୍ । ଲୋକପାଳାଃ ପ୍ରକୁର୍ବନ୍ତି ସ୍ୱସ୍ୱକର୍ମାଣ୍ୟନାରତମ୍ ॥
କଦାଚିଦ୍ଦେବବର୍ଗାଣାଂ କଦାଚିଦ୍ଦିତିଜନ୍ମନାମ୍ । କରୋମି ବିଜୟଂ ସମ୍ୟକ୍ ସ୍ୱତନ୍ତ୍ରା ନିଜଲୀଳୟା ॥
ଅବିନାଶିପରଂ ଧାମ ମାୟାତୀତଂ ପରାତ୍ପରମ୍ । ଶ୍ରୁତୟୋ ବର୍ଣ୍ଣୟନ୍ତେ ଯତ୍ତଦ୍ରୂପଂ ତୁ ମମୈବ ହି ॥
ସଗୁଣଂ ନିର୍ଗୁଣଂ ଚେତି ମଦ୍ରୂପଂ ଦ୍ୱିବିଧଂ ମତମ୍ । ମାୟାଶବଳିତଂ ଚୈକଂ ଦ୍ୱିତୀୟଂ ତଦନାଶ୍ରିତମ୍ ॥
ଏବଂ ବିଜ୍ଞାୟ ମାଂ ଦେବାଃ ସ୍ୱଂ ସ୍ୱଂ ଗର୍ବଂ ବିହାୟ ଚ । ଭଜତ ପ୍ରଣୟୋପେତାଃ ପ୍ରକୃତିଂ ମାଂ ସନାତନୀମ୍ ॥

(ଶି. ପୁ. ଉ. ସଂ. ୪୯ । ୨୭–୩୮)

ହୋଇଗଲା । ସେତେବେଳେ ବ୍ରାହ୍ମଣ ଓ ଦେବତା ମଧ୍ୟ ଦୁରାଗ୍ରହୀ ହୋଇଗଲେ । କେଉଁଠି ଆଉ ଦାନ କି ଉଗ୍ରତପସ୍ୟା ଦେଖିବାକୁ ମିଳିଲା ନାହିଁ । ଯଜ୍ଞ କି ହୋମ ମଧ୍ୟ ହେଲା ନାହିଁ । ଏହାର ପରିଣାମସ୍ୱରୂପ ପୃଥିବୀରେ ଶହେ ବର୍ଷ ପର୍ଯ୍ୟନ୍ତ ବର୍ଷା ହେଲା ନାହିଁ । ତ୍ରିଲୋକରେ ହାହାକାର ଖେଳିଗଲା । ସମସ୍ତେ ଦୁଃଖରେ କାଳାତିପାତ କଲେ । ସମସ୍ତେ କ୍ଷୁଧାତୃଷାରେ ପୀଡ଼ିତ ହୋଇ ଘୋର କଷ୍ଟରେ ବ୍ୟାକୁଳ ହେଲେ । କୂଅ, ପୋଖରୀ, ସରିତା, ଏପରିକି ସମୁଦ୍ର ମଧ୍ୟ ଜଳଶୂନ୍ୟ ହୋଇଗଲା । ବୃକ୍ଷଲତା ସବୁ ଶୁଖି ମରିଗଲେ । ଏହା ଫଳରେ ସକଳ ପ୍ରଜାଙ୍କ ଚିତ୍ତରେ ଦୈନ୍ୟ ଛାଇଗଲା । ସେମାନଙ୍କର ଦାରୁଣ ଦୁଃଖକୁ ଦେଖି ସମସ୍ତ ଦେବତା ମହେଶ୍ୱରୀ ଯୋଗମାୟାଙ୍କ ଶରଣ ଗଲେ ।

ଦେବତାମାନେ କହିଲେ—**ମହାମାୟେ !** ଆପଣ ଆପଣଙ୍କର ସମସ୍ତ ପ୍ରଜାଙ୍କୁ ରକ୍ଷା କରନ୍ତୁ, ରକ୍ଷା କରନ୍ତୁ । କ୍ରୋଧକୁ ରୋକନ୍ତୁ, ନଚେତ୍ ସମସ୍ତେ ନିଶ୍ଚୟ ନଷ୍ଟ ହୋଇଯିବେ । କୃପାସିନ୍ଧୋ ! ଦୀନବନ୍ଧୋ ! ଯେପରି ଶୁମ୍ଭ ନାମକ ଦୈତ୍ୟ, ମହାବଳୀ ନିଶୁମ୍ଭ, ଧୂମ୍ରାକ୍ଷ, ଚଣ୍ଡ, ମୁଣ୍ଡ, ମହାବଳଶାଳୀ ରକ୍ତବୀଜ, ମଧୁ, କୈଟଭ ତଥା ମହିଷାସୁରକୁ ଆପଣ ବଧ କରିଥିଲେ, ସେହିପରି ଏ ଦୁର୍ଗମାସୁରକୁ ଶୀଘ୍ର ସଂହାର କରନ୍ତୁ । ଶିଶୁ ଦ୍ୱାରା ପ୍ରତି ପଦକ୍ଷେପରେ ଭୁଲ୍ ହୋଇଯାଏ । କେବଳ ମାଆ ଛଡ଼ା ଆଉ ସଂସାରରେ କିଏ ଏମିତି ଅଛି, ଯେ ସେହି ଅପରାଧକୁ ସହନ କରିବ । ଦେବତା ଓ ବ୍ରାହ୍ମଣଙ୍କ ଉପରେ ଯେବେ ଯେବେ ଦୁଃଖ ଆସେ, ସବୁବେଳେ ଆପଣ ଖୁବ୍ ଶୀଘ୍ର ଅବତାର ଧାରଣ କରି ସମସ୍ତଙ୍କୁ ସୁଖୀ କରିଥାଆନ୍ତି ।

ଦେବତାଙ୍କର ଏପରି ବ୍ୟାକୁଳ ପ୍ରାର୍ଥନା ଶୁଣି କୃପାମୟୀ ଦେବୀ ଅବିଳମ୍ବେ ନିଜର ଅନନ୍ତ ନେତ୍ରଧାରୀ ରୂପରେ ଦର୍ଶନ ଦେଲେ । ତାଙ୍କର ମୁଖାରବିନ୍ଦ ପ୍ରସନ୍ନତାରେ ଉତ୍‌ଫୁଲ୍ଲିତ ଥିଲା । ସେ ତାଙ୍କର ଚାରିଟି ହାତରେ ଧନୁ, ଶର, ପଦ୍ମ ତଥା ନାନା ପ୍ରକାର ଫଳମୂଳ ଧାରଣ କରିଥିଲେ । ସେତେବେଳେ ସକଳ ପ୍ରଜା କଷ୍ଟ ଭୋଗ କରୁଥିବା ଦେଖି ତାଙ୍କ ନେତ୍ରରୁ ଧାର ଧାର କରୁଣାର ଅଶ୍ରୁ ଝରିଆସିଲା । ସେ ବ୍ୟାକୁଳ ହୋଇ ନିରବଚ୍ଛିନ୍ନ ଭାବରେ ନଅ ଦିନ ଓ ନଅ ରାତି କାନ୍ଦିବାକୁ ଲାଗିଲେ । ସେ ତାଙ୍କ ଅଶ୍ରୁରେ ସହସ୍ର ଜଳଧାରା ପ୍ରବାହିତ କରିଦେଲେ । ସେହି ଜଳଧାରାରେ ସମସ୍ତେ ତୃପ୍ତ ହୋଇଗଲେ ଏବଂ ସମସ୍ତ ଓଷଧି ବା ବୃକ୍ଷଲତା ମଧ୍ୟ ଜଳ ପାଇଗଲେ । ସରିତା ଓ ସମୁଦ୍ର ମଧ୍ୟ ଅଗାଧ ଜଳରେ ପରିପୂର୍ଣ୍ଣ ହୋଇଗଲା । ପୃଥିବୀପୃଷ୍ଠରେ ଶାଗ ଓ ଫଳମୂଳର ଅଙ୍କୁରୋଦ୍‌ଗମ ହେଲା । ଦେବୀ ଶୁଦ୍ଧହୃଦୟ ମହାତ୍ମାମାନଙ୍କୁ ତାଙ୍କ ହାତରେ ଥିବା ଫଳ



ବାଣ୍ଟିବାକୁ ଲାଗିଲେ । ସେ ଗାଈଙ୍କ ପାଇଁ ସୁନ୍ଦର ଘାସ ଓ ଅନ୍ୟ ପ୍ରାଣୀଙ୍କ ପାଇଁ ଯଥାଯୋଗ୍ୟ

ଭୋଜନ ପ୍ରସ୍ତୁତ କଲେ । ଦେବତା, ବ୍ରାହ୍ମଣ ଓ ମନୁଷ୍ୟସମେତ ସମସ୍ତ ପ୍ରାଣୀ ସନ୍ତୋଷ ଲାଭ କଲେ । ଏହାପରେ ଦେବତାଙ୍କୁ ପଗ୍ଚରିଲେ—"ମୁଁ ତୁମର ଆଉ କେଉଁ କାର୍ଯ୍ୟ ସିଦ୍ଧ କରିବି?" ସେତେବେଳେ ଦେବତାମାନେ ଏକସ୍ୱରରେ କହିଲେ—"ହେ ଦେବୀ ! ଆପଣ ସମସ୍ତଙ୍କୁ ସନ୍ତୁଷ୍ଟ କରିଦେଲେ । ଏବେ କୃପା କରି ଦୁର୍ଗମାସୁର ଦ୍ୱାରା ଅପହୃତ ବେଦ ଆଣି ଆମକୁ ଦିଅନ୍ତୁ ।" ଦେବୀ 'ତଥାସ୍ତୁ' କହି ପୁଣି କହିଲେ—"ଦେବଗଣ ! ନିଜ ନିଜ ଗୃହକୁ ଯାଅ । ମୁଁ ଖୁବ୍ ଶୀଘ୍ର ସମସ୍ତ ବେଦ ଆଣି ତୁମକୁ ଅର୍ପଣ କରିବି ।"

ଏକଥା ଶୁଣି ସକଳ ଦେବତା ଅତ୍ୟନ୍ତ ଆନନ୍ଦିତ ହେଲେ । ପ୍ରଫୁଲ୍ଲ ନୀଳକମଳ ସଦୃଶ ନେତ୍ରଧାରିଣୀ ଜଗଦ୍‌ଯୋନି ଜଗଦମ୍ବାଙ୍କୁ ସେମାନେ ବିନମ୍ର ପ୍ରଣାମ କରି ନିଜ ନିଜ ସ୍ଥାନକୁ ଫେରିଗଲେ । ଏହାପରେ ସ୍ୱର୍ଗ, ଅନ୍ତରିକ୍ଷ ଓ ପୃଥିବୀରେ ଭୀଷଣ କୋଳାହଳ ଖେଳିଗଲା । ତାହା ଶୁଣି ଦୁର୍ଗମ ଦୈତ୍ୟ ଚତୁର୍ଦ୍ଦିଗରୁ ଦେବପୁରୀକୁ ଘେରାଉ କରିଦେଲା । ଏହା ଦେଖି ଶିବା ଦେବୀ ଦେବତାଙ୍କ ରକ୍ଷା ପାଇଁ ସେମାନଙ୍କ ଚତୁର୍ଦ୍ଦିଗରେ ଗୋଟିଏ ତେଜୋମୟ ମଣ୍ଡଳ ନିର୍ମାଣ କରି ନିଜେ ସେହି ମଣ୍ଡଳର ବାହାରକୁ ଗ୍ଚଲିଗଲେ । ଏହାପରେ ଆରମ୍ଭ ହୋଇଗଲା ଦେବୀ ଓ ଦୈତ୍ୟଙ୍କ ମଧ୍ୟରେ ଭୟଙ୍କର ସଂଗ୍ରାମ । ରଣାଙ୍ଗନରେ ଉଭୟ ପକ୍ଷରୁ କବଚ ଛିନ୍ନଭିନ୍ନ କରିଦେବା ଭଳି ତୀକ୍ଷ୍ଣ ଶର ବର୍ଷା ହେଲା । ଏତିକିବେଳେ ଦେବୀଙ୍କ ଦେହରୁ କାଳୀ, ତାରା, ଛିନ୍ନମସ୍ତା, ଶ୍ରୀବିଦ୍ୟା, ଭୁବନେଶ୍ୱରୀ, ଭୈରବୀ, ବଗଳା, ଧୂମ୍ରା, ତ୍ରିପୁରସୁନ୍ଦରୀ ଓ ମାତଙ୍ଗୀ—ଏ ଦଶ ମହାବିଦ୍ୟା ସୁନ୍ଦର ସୁନ୍ଦର ରୂପରେ ଉତ୍ପନ୍ନ ହୋଇ ଅସ୍ତ୍ର-ଶସ୍ତ୍ର ଧରି ବାହାରି ପଡ଼ିଲେ । ଏହାପରେ ଦିବ୍ୟ ମୂର୍ତ୍ତି ଧାରଣ କରି ଅସଂଖ୍ୟ ମାତୃକା ପ୍ରକଟ ହୋଇଗଲେ । ସେମାନଙ୍କ ମସ୍ତକରେ ଚନ୍ଦ୍ର ମୁକୁଟ ପରି ଶୋଭାପାଉଥିଲା । ସମସ୍ତେ ବିଦ୍ୟୁତ୍ ପରି ଦୀପ୍ତିମୟୀ ଦିଶୁଥିଲେ । ଏହାପରେ ଉକ୍ତ ମାତୃକାଗଣଙ୍କ ସଙ୍ଗେ ଦୈତ୍ୟଙ୍କର ଭୀଷଣ ସଂଗ୍ରାମ ହେଲା । ମାତୃକାମାନେ ରୁରୁପୁତ୍ର ଦୁର୍ଗମ ଦୈତ୍ୟର ଶହେ ଅକ୍ଷୌହିଣୀ ସୈନ୍ୟଙ୍କୁ ନଷ୍ଟ କରିଦେଲେ । ଏହାପରେ ଦେବୀ ତ୍ରିଶୂଳ ମୁନରେ ଦୁର୍ଗମ ଦୈତ୍ୟକୁ ବଧ କଲେ । ଦୁର୍ଗମ ଦୈତ୍ୟ ବୃକ୍ଷ ଉପୁଡ଼ି ପଡ଼ିବା ପରି ଧରାଶାୟୀ ହୋଇଗଲା । ଏହିରୂପେ ଈଶ୍ୱରୀ ଦୁର୍ଗମାସୁର ନାମକ ଦୈତ୍ୟକୁ ବଧ କରି ତା'ଠାରୁ ଗ୍ଚରି ବେଦ ଛଡ଼ାଇ ଆଣି ଦେବତାଙ୍କୁ ପ୍ରଦାନ କଲେ ।

ଦେବତାମାନେ କହିଲେ—ଅମ୍ବିକେ ! ଆପଣ ଆମମାନଙ୍କ ପାଇଁ ଅସଂଖ୍ୟ ନେତ୍ରଯୁକ୍ତ ରୂପ ଧାରଣ କରିଥିଲେ, ଏଣୁ ମୁନିଜନ ଆପଣଙ୍କୁ 'ଶତାକ୍ଷୀ' ନାମରେ ଡାକିବେ । ନିଜ ଶରୀରରୁ ଶାକ ଉତ୍ପନ୍ନ କରି ତଦ୍ଦ୍ୱାରା ସମସ୍ତ ଲୋକଙ୍କର ଭରଣ-ପୋଷଣ କରିଥିବାରୁ ଆପଣ 'ଶାକମ୍ଭରୀ' ନାମରେ ବିଖ୍ୟାତ ହେବେ । ଶିବେ ! ଆପଣ ଦୁର୍ଗମ ନାମକ ମହାଦୈତ୍ୟକୁ ବଧ କରିଛନ୍ତି, ଏଣୁ ଲୋକେ ଆପଣଙ୍କୁ କଲ୍ୟାଣମୟୀ 'ଦୁର୍ଗା' ବୋଲି କହିବେ । ହେ ଯୋଗନିଦ୍ରେ ! ଆପଣଙ୍କୁ ନମସ୍କାର । ହେ ଜ୍ଞାନଦାୟିନୀ! ହେ ମହାବଳେ! ଆପଣଙ୍କୁ ନମସ୍କାର । ଆପଣ ଜଗନ୍ମାତା, ଆପଣଙ୍କୁ ବାରମ୍ବାର ନମସ୍କାର । ତତ୍ତ୍ୱମସି ଆଦି ମହାବାକ୍ୟ ଦ୍ୱାରା ଯେଉଁ ପରମେଶ୍ୱରୀଙ୍କୁ ଅନୁଭବ କରାଯାଏ, ଅନନ୍ତକୋଟି ବ୍ରହ୍ମାଣ୍ଡର ସଂଗ୍ଚଳନକାରିଣୀ ସେହି ଭଗବତୀ ଦୁର୍ଗାଙ୍କୁ ବାରମ୍ବାର ନମସ୍କାର । ମାତ ! ଆପଣଙ୍କ ନିକଟରେ ମନ, ବାଣୀ ଓ ଶରୀର ପହଞ୍ଚି ପାରିବା କଠିନ । ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ଆପଣଙ୍କ ନେତ୍ର । ଆମେ ଆପଣଙ୍କ ପ୍ରଭାବକୁ ଜାଣୁନା, ତେଣୁ ଆପଣଙ୍କୁ ସ୍ତୁତି କରିବାକୁ ଆମେ

ଅସମର୍ଥ । ସୁରେଶ୍ୱରୀ ମାତା ଶତାକ୍ଷୀଙ୍କ ଛଡ଼ା ଅନ୍ୟ କିଏ ଅବା ଆମ ପରି ଅମରଗଣଙ୍କୁ କୃପାଦୃଷ୍ଟିରେ ଦେଖିବ? ହେ ଦେବୀ ! ଆପଣ ସଦା ଏହିପରି ପ୍ରଯତ୍ନ କରୁଥାନ୍ତୁ, ଯାହାଫଳରେ ତ୍ରିଲୋକ ନିରନ୍ତର ବାଧାବିଘ୍ନରେ ତିରସ୍କୃତ ନ ହେବ । ଆପଣ ଆମର ଶତ୍ରୁଙ୍କୁ ବିନାଶ କରୁଥାନ୍ତୁ ।

ଦେବୀ କହିଲେ–ଦେବଗଣ ! ଯେପରି ବାଛୁରୀଙ୍କୁ ଦେଖି ଗାଈମାନେ ହମ୍ବାରଡ଼ି ଛାଡ଼ି ସେମାନଙ୍କ ଆଡ଼କୁ ଦୌଡ଼ି ଆସନ୍ତି, ସେହିପରି ମୁଁ ତୁମମାନଙ୍କୁ ଦେଖି ବ୍ୟାକୁଳ ହୋଇ ଦୌଡ଼ି ଆସେ । ତୁମମାନଙ୍କୁ ନ ଦେଖିଲେ ଗୋଟିଏ ଗୋଟିଏ କ୍ଷଣ ବି ମୋତେ ଯୁଗ ପରି ଲାଗେ । ମୁଁ ତୁମମାନଙ୍କୁ ମୋର ସନ୍ତାନ ପରି ଦେଖେ ଏବଂ ତୁମ ପାଇଁ ପ୍ରାଣ ମଧ୍ୟ ଦେଇପାରେ । ତୁମମାନଙ୍କର ମୋ ପ୍ରତି ଭକ୍ତିଭାବ ରହିଛି, ଏଣୁ ତୁମମାନଙ୍କୁ କୌଣସି ଚିନ୍ତା କରିବାର ଆବଶ୍ୟକତା ନାହିଁ । ମୁଁ ତୁମର ସମସ୍ତ ବିପତ୍ତି ନିବାରଣ କରିବାକୁ ସଦା ଉଦ୍ୟତ ରହିବି । ପୂର୍ବକାଳରେ ଯେପରି ତୁମମାନଙ୍କ ରକ୍ଷା ନିମନ୍ତେ ମୁଁ ଦୈତ୍ୟଙ୍କୁ ବଧ କରିଥିଲି, ସେହିପରି ଭବିଷ୍ୟତରେ ମଧ୍ୟ ଅସୁରଙ୍କୁ ସଂହାର କରିବି, ଏଥିରେ ସଂଶୟ ନ କର । ମୁଁ ଏହା ସତ୍ୟ କରି କହୁଛି । ଭବିଷ୍ୟତରେ ଯେବେ ପୁନଃ ଶୁମ୍ଭ ଓ ନିଶୁମ୍ଭ ନାମକ ଅନ୍ୟ ଦୈତ୍ୟମାନେ ଜନ୍ମିବେ, ମୁଁ ଯଶୋମୟୀ ଦେବୀ ସେତେବେଳେ ନନ୍ଦପତ୍ନୀ ଯଶୋଦାଙ୍କ ଗର୍ଭରୁ ଯୋନିଜ ରୂପ ଧାରଣ କରି ଗୋକୁଳରେ ଉତ୍ପନ୍ନ ହେବି ଏବଂ ଯଥାସମୟରେ ଅସୁରଙ୍କୁ ବଧ କରିବି । ନନ୍ଦଙ୍କ କନ୍ୟା ହେବା ହେତୁ ଲୋକେ ମୋତେ 'ନନ୍ଦଜା' ବୋଲି କହିବେ । ମୁଁ ଭ୍ରମର ରୂପ ଧାରଣ କରି ଅରୁଣ ନାମକ ଅସୁରକୁ ବଧ କଲେ ଲୋକେ ମୋତେ 'ଭ୍ରାମରୀ' ବୋଲି କହିବେ । ତା'ପରେ ମୁଁ ଭୀମ (ଭୟଙ୍କର) ରୂପ ଧାରଣ କରି ଯେବେ ରାକ୍ଷସଙ୍କୁ ଖାଇଯିବି, ସେତେବେଳେ ମୋର ନାମ ହେବ 'ଭୀମାଦେବୀ' । ଯେତେଥର ପୃଥିବୀରେ ଅସୁରଙ୍କ ଦ୍ୱାରା ବାଧା ଉତ୍ପନ୍ନ ହେବ, ସବୁ ସମୟରେ ମୁଁ ଅବତାର ଗ୍ରହଣ କରି ପ୍ରଜାଜନଙ୍କର କଲ୍ୟାଣ କରିବି, ଏଥିରେ ସଂଶୟ ନାହିଁ ।

ଯେଉଁ ଦେବୀ ଶତାକ୍ଷୀ ନାମରେ କଥିତ, ସେ ହିଁ ଶାକମ୍ଭରୀ ଅଟନ୍ତି ଏବଂ ତାଙ୍କୁ ହିଁ ଦୁର୍ଗା କୁହାଯାଏ । ତିନୋଟି ନାମ ଦ୍ୱାରା ସେହି ଜଣେ ମାତ୍ର ଦେବୀ ହିଁ ପ୍ରତିପାଦିତ ହୁଅନ୍ତି । ଏ ପୃଥିବୀରେ ମହେଶ୍ୱରୀ ଶତାକ୍ଷୀଙ୍କ ପରି ଅନ୍ୟ କେହି ଦୟାଳୁ ଦେବତା ନାହିଁ; କାରଣ ଦେବୀ ଶତାକ୍ଷୀ ସମସ୍ତ ପ୍ରଜାଙ୍କୁ ସନ୍ତପ୍ତ ଦେଖି ନଅଦିନ ପର୍ଯ୍ୟନ୍ତ କାନ୍ଦିଥିଲେ ।

(ଅଧ୍ୟାୟ ୫୦)

❋❋❋

## ଦେବୀଙ୍କ କ୍ରିୟାଯୋଗର ବର୍ଣ୍ଣନ: ଦେବୀଙ୍କ ମୂର୍ତ୍ତି ଓ ମନ୍ଦିର ନିର୍ମାଣ, ସ୍ଥାପନ ଓ ପୂଜନର ମହତ୍ତ୍ୱ, ପରା ଅମ୍ବାଙ୍କ ଶ୍ରେଷ୍ଠତ୍ୱ, ବିଭିନ୍ନ ମାସ ଓ ତିଥିରେ ଦେବୀଙ୍କ ବ୍ରତ, ଉତ୍ସବ, ପୂଜନ ପ୍ରଭୃତିର ଫଳ ଏବଂ ଉମାସଂହିତା ଶ୍ରବଣ-ପଠନର ମହିମା

ବ୍ୟାସଦେବ କହୁଛନ୍ତି–ମହାମତେ ! ସର୍ବଜ୍ଞ ! ବ୍ରହ୍ମପୁତ୍ର ! ସନତ୍କୁମାର ! ମୁଁ ଉମାଙ୍କର ପରମ ଅଦ୍ଭୁତ କ୍ରିୟାଯୋଗ ବିଷୟରେ ଜାଣିବାକୁ ଚାହେଁ । ସେହି କ୍ରିୟାଯୋଗର ଲକ୍ଷଣ କ'ଣ? ତାହା ଅନୁଷ୍ଠାନ କଲେ କେଉଁ ଫଳ ମିଳେ? ଏବଂ ଅମ୍ବାଙ୍କୁ ପ୍ରିୟ ଲାଗୁଥିବା କ୍ରିୟାଯୋଗ କ'ଣ? ଏ

ସମସ୍ତ କଥା ମୋତେ ବୁଝାଇ କୁହନ୍ତୁ ।

ସନତ୍‌କୁମାର କହିଲେ–ମହାବୁଦ୍ଧିମାନ୍ ଦ୍ୱୈପାୟନ ! ତୁମେ ଯେଉଁ କଥା ପଚ୍ଚରିଲ, ମୁଁ ତାହା କହୁଛି, ମନ ଦେଇ ଶୁଣ । ଜ୍ଞାନଯୋଗ, କ୍ରିୟାଯୋଗ ଓ ଭକ୍ତିଯୋଗ–ଏ ତିନୋଟି ହେଲା ଦେବୀଙ୍କ ଉପାସନାର ମାର୍ଗ, ଯାହାକି ଭୋଗ ଓ ମୋକ୍ଷ ପ୍ରଦାନ କରିଥାଏ । ଚିତ୍ତର ଆତ୍ମା ସଙ୍ଗରେ ସଂଯୋଗ ହେଲେ ତାହାର ନାମ ହୁଏ 'ଜ୍ଞାନଯୋଗ' । ବାହ୍ୟ ବସ୍ତୁଗୁଡ଼ିକ ସଙ୍ଗେ ସଂଯୋଗ ହେଲେ ତାହା 'କ୍ରିୟାଯୋଗ' ବୋଲାଏ । ଦେବୀଙ୍କ ସଙ୍ଗେ ଆତ୍ମାର ଏକତ୍ୱ ଭାବନାକୁ 'ଭକ୍ତିଯୋଗ' କୁହାଯାଏ । ଏ ତିନୋଟି ମଧ୍ୟରୁ ମୁଁ କ୍ରିୟାଯୋଗ ବିଷୟରେ କହୁଛି । କର୍ମରୁ ଭକ୍ତି ଉତ୍ପନ୍ନ ହୁଏ, ଭକ୍ତିରୁ ଜ୍ଞାନ ହୁଏ ଏବଂ ଜ୍ଞାନରୁ ମୁକ୍ତି ହୁଏ । ଏକଥା ଶାସ୍ତ୍ରରେ ନିର୍ଣ୍ଣୀତ ହୋଇଛି । ମୁନିଶ୍ରେଷ୍ଠ ! ମୋକ୍ଷର ପ୍ରଧାନ କାରଣ ହେଉଛି ଯୋଗ; ମାତ୍ର ଯୋଗର ଧ୍ୟେୟ ନିମନ୍ତେ ଉତ୍ତମ ସାଧନ ହେଉଛି କ୍ରିୟାଯୋଗ । ପ୍ରକୃତିକୁ ମାୟା ବୋଲି ବୁଝ ଏବଂ ସନାତନ ବ୍ରହ୍ମକୁ ମାୟାବୀ ଅଥବା ମାୟାର ସ୍ୱାମୀ ବୋଲି ବୁଝ । ସେ ଦୁଇଟିର ସ୍ୱରୂପକୁ ପରସ୍ପରଠାରୁ ଅଭିନ୍ନ ବୁଝି ମନୁଷ୍ୟ ସଂସାର ବନ୍ଧନରୁ ମୁକ୍ତ ହୋଇଯାଏ ।*

ହେ କାଳୀନନ୍ଦନ ବ୍ୟାସ ! ଯେଉଁ ମନୁଷ୍ୟ ଦେବୀଙ୍କ ପାଇଁ ପଥର, କାଠ ବା ମାଟିରେ ମନ୍ଦିର ନିର୍ମାଣ କରେ, ତାହାର ପୁଣ୍ୟଫଳ ଶୁଣ । ପ୍ରତିଦିନ ଯୋଗ ଦ୍ୱାରା ଆରାଧନା କରୁଥିବା ବ୍ୟକ୍ତିକୁ ଯେଉଁ ସବୁ ଫଳ ମିଳେ, ସେ ସମସ୍ତ ଫଳ ଦେବୀଙ୍କ ମନ୍ଦିର ତୋଳାଉଥିବା ଲୋକକୁ ମିଳିଯାଏ । ଯେ ଶ୍ରୀମାତାଙ୍କ ମନ୍ଦିର ତୋଳାଏ, ସେହି ଧର୍ମାତ୍ମାର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ହଜାର ହଜାର ପିଢ଼ିର ଲୋକେ ଉଦ୍ଧାର ପାଇଯାଆନ୍ତି । କୋଟି କୋଟି ଜନ୍ମରୁ ଯାହା କିଛି ଅଳ୍ପ-ବହୁତ ପାପ ବାକି ରହିଥାଏ, ତାହା ଶ୍ରୀମାତାଙ୍କ ମନ୍ଦିର ନିର୍ମାଣ ଆରମ୍ଭ କରିବା ମାତ୍ରେ କ୍ଷଣକ ଭିତରେ ନଷ୍ଟ ହୋଇଯାଏ । ଯେପରି ନଦୀ ମଧ୍ୟରେ ଗଙ୍ଗା, ସକଳ ନଦ ମଧ୍ୟରେ ଶୋଣଭଦ୍ର, କ୍ଷମାରେ ପୃଥିବୀ, ଗଭୀରତାରେ ସମୁଦ୍ର ଓ ସମସ୍ତ ଗ୍ରହଙ୍କ ମଧ୍ୟରେ ସୂର୍ଯ୍ୟଙ୍କର ବିଶିଷ୍ଟ ସ୍ଥାନ ରହିଛି, ଠିକ୍ ସେହିପରି ସମସ୍ତ ଦେବତାଙ୍କ ମଧ୍ୟରେ ଶ୍ରୀପରାତ୍ମା ଶ୍ରେଷ୍ଠ ଅଟନ୍ତି । ସେ ଦେବତାମାନଙ୍କ ମଧ୍ୟରେ ମୁଖ୍ୟ । ଯେ ତାଙ୍କ ପାଇଁ ମନ୍ଦିର ତୋଳାଏ, ସେ ଜନ୍ମ-ଜନ୍ମାନ୍ତରରେ ପ୍ରତିଷ୍ଠା ପାଏ । କାଶୀ, କୁରୁକ୍ଷେତ୍ର, ପ୍ରୟାଗ, ପୁଷ୍କର, ଗଙ୍ଗାସାଗର-ତଟ, ନୈମିଷାରଣ୍ୟ, ଅମରକଣ୍ଟକ ପର୍ବତ, ପରମ ପୁଣ୍ୟମୟ ଶ୍ରୀପର୍ବତ, ଜ୍ଞାନପର୍ବତ, ଗୋକର୍ଣ୍ଣ, ମଥୁରା, ଅଯୋଧ୍ୟା, ଦ୍ୱାରକା ଇତ୍ୟାଦି ପୁଣ୍ୟ ପ୍ରଦେଶରେ ଅଥବା ଅନ୍ୟ କୌଣସି ସ୍ଥାନରେ ମଧ୍ୟ ମାଆଙ୍କର ମନ୍ଦିର ତୋଳାଉଥିବା ମନୁଷ୍ୟ ସଂସାରବନ୍ଧନରୁ ମୁକ୍ତ ହୋଇଯାଏ । ମନ୍ଦିରରେ ଇଟାର ଯୋଡ଼େଇ ଯେପର୍ଯ୍ୟନ୍ତ ବା ଯେତେ ବର୍ଷ ରହିଥାଏ, ସେତିକି ହଜାର ବର୍ଷ ପର୍ଯ୍ୟନ୍ତ ସେ ବ୍ୟକ୍ତି ମଣିଦ୍ୱୀପରେ ପ୍ରତିଷ୍ଠିତ ହୋଇଥାଏ । ଯେ ଉମାଙ୍କର ଶୁଭଲକ୍ଷଣଯୁକ୍ତ ପ୍ରତିମା ନିର୍ମାଣ କରାଏ, ସେ ନିଶ୍ଚିତରୂପେ ନିର୍ଭୟ ହୋଇ ତାଙ୍କର ପରମ ଧାମକୁ ଯାଏ । ଶୁଭ ଋତୁ, ଶୁଭ ଗ୍ରହ ଓ ଶୁଭ ନକ୍ଷତ୍ରରେ ଦେବୀଙ୍କ ମୂର୍ତ୍ତି ସ୍ଥାପନ କରି ଯୋଗମାୟାଙ୍କ ପ୍ରସାଦରେ ମନୁଷ୍ୟ କୃତକୃତ୍ୟ ହୋଇଯାଏ । କଳ୍ପ ଆରମ୍ଭରୁ କଳ୍ପ ଶେଷ ପର୍ଯ୍ୟନ୍ତ ତା' କୁଳରେ ଯେତିକି ପିଢ଼ି ଜନ୍ମ ହୋଇଥାନ୍ତି

* ମାୟାଂ ତୁ ପ୍ରକୃତିଂ ବିଦ୍ୟାନ୍ମାୟାବୀ ବ୍ରହ୍ମ ଶାଶ୍ୱତମ୍ । ଅଭିନ୍ନଂ ତଦ୍‌ବପୁର୍ଜ୍ଞାତ୍ୱା ମୁଚ୍ୟତେ ଭବବନ୍ଧନାତ୍ ॥

ଓ ଯେତିକି ପିଢ଼ି ଜନ୍ମ ହେବାକୁ ଥାଆନ୍ତି, ସମସ୍ତଙ୍କୁ ସେ ଦେବୀଙ୍କ ମୂର୍ତ୍ତିସ୍ଥାପନା କରିବାର ପୁଣ୍ୟବଳରେ ତାରି ଦେଇଥାଏ ।

ଯେ କେବଳ ଜଗଦ୍‌ଯୋନି ପରା ଅମ୍ବାଙ୍କ ଶରଣ ନିଏ, ସେ ସାକ୍ଷାତ୍ ଦେବୀଙ୍କର ଗଣ ଅଟେ, ତାକୁ ମନୁଷ୍ୟ ବୋଲି ଭାବିବା ଉଚିତ ନୁହେଁ । ଯେଉଁ ବ୍ୟକ୍ତି ଗ୍ଭଲିବା-ବୁଲିବା ବେଳେ, ଶୟନ ଜାଗରଣ ବେଳେ ଅଥବା ଛିଡ଼ା ହୋଇଥିବା ସମୟରେ 'ଉମା' ଏହି ଦୁଇ ଅକ୍ଷରଯୁକ୍ତ ନାମ ଉଚ୍ଚାରଣ କରେ, ସେ ଶିବାଙ୍କର ହିଁ ଗଣ ଅଟେ । ଯେ ନିତ୍ୟ-ନୈମିତ୍ତିକ କର୍ମରେ ପରାଦେବୀ ଶିବାଙ୍କୁ ପୁଷ୍ପ, ଧୂପ ଓ ଦୀପଦ୍ୱାରା ପୂଜା କରେ, ସେ ଶିବାଦେବୀଙ୍କ ଧାମକୁ ଯାଏ । ଯେ ପ୍ରତିଦିନ ଗୋବର ବା ମାଟିରେ ଦେବୀଙ୍କ ମନ୍ଦିରକୁ ଲିପେ ଅଥବା ଝାଡୁ ଦିଏ, ସେ ମଧ୍ୟ ଉମାଙ୍କ ଧାମକୁ ଯାଏ । ଯେ ଦେବୀଙ୍କ ପାଇଁ ପରମୋତ୍ତମ ତଥା ରମଣୀୟ ମନ୍ଦିର ନିର୍ମାଣ କରାଇଛି, ତା' କୁଳର ଲୋକଙ୍କୁ ମାତା ଉମା ସର୍ବଦା ଆଶୀର୍ବାଦ ଦିଅନ୍ତି । ସେ କହନ୍ତି, "ଏମାନେ ମୋର । ତେଣୁ ମୋ ପ୍ରତି ପ୍ରେମଭାବ ରଖି ଏମାନେ ଶହେ ବର୍ଷ ଜୀବିତ ରହନ୍ତୁ ଏବଂ ଏମାନଙ୍କ ଉପରକୁ କଦାପି କୌଣସି ପ୍ରକାର ବିପତ୍ତି ନ ଆସୁ ।" ଏହିପରି ମାଆ ଦିନରାତି ଆଶୀର୍ବାଦ ଦିଅନ୍ତି । ଯେ ମହାଦେବୀ ଉମାଙ୍କ ଶୁଭ ମୂର୍ତ୍ତି ନିର୍ମାଣ କରାଇଥାଏ, ତା' କୁଳର ଦଶ ହଜାର ପିଢ଼ି ମଣିଦ୍ୱୀପରେ ସମ୍ମାନପୂର୍ବକ ନିବାସ କରନ୍ତି । ମହାମାୟାଙ୍କ ମୂର୍ତ୍ତି ସ୍ଥାପିତ କରି ତାହାକୁ ଭଲଭାବରେ ପୂଜା କରିସାରିବା ପରେ ସାଧକ ଯେଉଁ ମନୋରଥ ନିମନ୍ତେ ପ୍ରାର୍ଥନା କରେ, ତାହା ସେ ନିଶ୍ଚୟ ଲାଭ କରେ ।

ଯେ ମାଆଙ୍କର ସ୍ଥାପିତ ମୂର୍ତ୍ତିକୁ ମଧୁମିଶ୍ରିତ ଘୃତରେ ସ୍ନାନ କରାଏ, ତାହାର ପୁଣ୍ୟକୁ କେହି ମୁଖରେ ବର୍ଣ୍ଣନା କରିପାରିବ ନାହିଁ । ଉପାସକ ଚନ୍ଦନ, ଅଗୁରୁ, କର୍ପୂର, ଜଟାମାଂସୀ ଓ ନାଗରମୋଥା ଇତ୍ୟାଦି ପଡ଼ିଥିବା ଜଳରେ ଏବଂ ଏକବର୍ଣ୍ଣୀ ଗାଈର ଦୁଗ୍ଧରେ ପରମେଶ୍ୱରୀଙ୍କୁ ସ୍ନାନ କରାଇବା ଉଚିତ । ତା'ପରେ ଅଷ୍ଟାଦଶାଙ୍ଗଧୂପ ଦ୍ୱାରା ଅଗ୍ନିରେ ଭଲରୂପେ ଆହୁତି ଦେବେ ଏବଂ କର୍ପୂରମିଶ୍ରିତ ଘୃତବତୀରେ ଆଳତି କରିବେ । କୃଷ୍ଣପକ୍ଷର ଅଷ୍ଟମୀ, ନବମୀ, ଅମାବାସ୍ୟାରେ ଅଥବା ଶୁକ୍ଲପକ୍ଷର ପଞ୍ଚମୀ ଓ ଦଶମୀ ତିଥିରେ ଗନ୍ଧ, ପୁଷ୍ପାଦି ଉପଗ୍ଭର ଦ୍ୱାରା ଜଗଦମ୍ବାଙ୍କୁ ବିଶେଷରୂପେ ପୂଜା କରିବେ । ରାତ୍ରିସୂକ୍ତ, ଶ୍ରୀସୂକ୍ତ ଅଥବା ଦେବୀସୂକ୍ତ ପଢ଼ି ବା ମୂଳମନ୍ତ୍ର ଜପ କରି କରି ଦେବୀଙ୍କୁ ଆରାଧନା କରିବା ଉଚିତ । ବିଷ୍ଣୁକ୍ରାନ୍ତା ଓ ତୁଳସୀକୁ ଛାଡ଼ି ଅନ୍ୟ ସମସ୍ତ ପୁଷ୍ପ ଦେବୀଙ୍କ ପାଇଁ ପ୍ରୀତିକାରକ । ପଦ୍ମ ତାଙ୍କର ବିଶେଷ ପ୍ରିୟ । ଯେ ଦେବୀଙ୍କୁ ସୁନା ବା ରୁପାର ଫୁଲ ଅର୍ପଣ କରେ, ସେ କୋଟି କୋଟି ସିଦ୍ଧଗଣଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ତାଙ୍କର ଧାମକୁ ଯାତ୍ରା କରେ । ଦେବୀଙ୍କ ଉପାସକ ପୂଜା ଶେଷରେ ଅପରାଧ ନିମନ୍ତେ କ୍ଷମା ପ୍ରାର୍ଥନା କରିବା ଉଚିତ । ଦେବୀଙ୍କୁ ଭଜୁଥିବା ଉପାସକ "ହେ ଜଗତର ଆନନ୍ଦପ୍ରଦାନକାରିଣୀ! ହେ ପରମେଶ୍ୱରୀ! ପ୍ରସନ୍ନ ହୁଅନ୍ତୁ ।"—ଏତାଦୃଶ ନାନା ବାକ୍ୟ ଦ୍ୱାରା ସ୍ତୁତି କରି ଓ ମନ୍ତ୍ରପାଠ କରି ତାଙ୍କୁ ଏହିରୂପେ ଧ୍ୟାନ କରିବେ ଯେ—ଦେବୀ ସିଂହ ଉପରେ ବସିଛନ୍ତି ଏବଂ ତାଙ୍କ ହସ୍ତରେ ଅଭୟ ଓ ବର ମୁଦ୍ରା ଶୋଭା ପାଉଛି । ଭକ୍ତଙ୍କୁ ଅଭୀଷ୍ଟ ପ୍ରଦାନ କରୁଥିବା ମହେଶ୍ୱରୀଙ୍କୁ ଏହିପରି ଧ୍ୟାନ କରି ତାଙ୍କୁ ନୈବେଦ୍ୟରୂପେ ନାନା ପ୍ରକାର ପକ୍ୱ ଫଳ ଅର୍ପଣ କରିବା ବିଧେୟ । ଯେ ପରମେଶ୍ୱରୀ ଶମ୍ଭୁଶକ୍ତିଙ୍କ ପ୍ରସାଦ ଭକ୍ଷଣ କରେ, ସେ ତା'ର ସମସ୍ତ ପାପ-ପଙ୍କକୁ ପ୍ରକ୍ଷାଳିତ

କରି ନିର୍ମଳ ହୋଇଯାଏ । ଯେ ଚୈତ୍ରଶୁକ୍ଳ ତୃତୀୟା ଦିନ ଭବାନୀଙ୍କ ପ୍ରସନ୍ନତା ପାଇଁ ବ୍ରତ କରେ, ସେ ଜନ୍ମ-ମରଣ ବନ୍ଧନରୁ ମୁକ୍ତ ହୋଇ ପରମପଦ ଲାଭ କରେ । ବିଦ୍ୱାନ୍ ବ୍ୟକ୍ତି ଏହି ଦିନ ଦୋଳ (ଝୁଲଣ) ଉତ୍ସବ କରିବା ଉଚିତ । ସେଥିରେ ଶିବଙ୍କ ସମେତ ଉମାଙ୍କୁ ପୂଜା କରିବେ । ଫୁଲ, କୁଙ୍କୁମ, ବସ୍ତ୍ର, କର୍ପୂର, ଅଗୁରୁ, ଚନ୍ଦନ, ଧୂପ, ଦୀପ, ନୈବେଦ୍ୟ, ପୁଷ୍ପହାର ଓ ଅନ୍ୟ ଗନ୍ଧଦ୍ରବ୍ୟ ଦ୍ୱାରା ଶିବଙ୍କ ସହିତ ସର୍ବକଲ୍ୟାଣକାରିଣୀ ମହାମାୟା ମହେଶ୍ୱରୀ ଗୌରୀଦେବୀଙ୍କୁ ପୂଜା କରି ତାଙ୍କୁ ଦୋଳିରେ ଝୁଲାଇବେ । ଯେ ପ୍ରତିବର୍ଷ ନିୟମପୂର୍ବକ ଉକ୍ତ ତିଥିରେ ଦେବୀଙ୍କ ବ୍ରତ ଓ ଦୋଳ-ଉତ୍ସବ କରେ, ତାହାକୁ ଶିବାଦେବୀ ସମସ୍ତ ଅଭୀଷ୍ଟ ପଦାର୍ଥ ପ୍ରଦାନ କରନ୍ତି ।

ବୈଶାଖମାସର ଶୁକ୍ଳପକ୍ଷରେ ଅକ୍ଷୟ ତୃତୀୟା ପଡ଼େ । ସେଦିନ ଯେଉଁ ବ୍ୟକ୍ତି ନିରଳସ ହୋଇ ଜଗଦମ୍ବାଙ୍କ ବ୍ରତ କରେ ଏବଂ ମଲ୍ଲିକା, ମାଳତୀ, ଚମ୍ପା, ଜପା (ମନ୍ଦାର), ବଧୂଲୀ ଓ ପଦ୍ମଫୁଲରେ ଶିବ ଓ ଗୌରୀଙ୍କୁ ପୂଜା କରେ, ସେ କୋଟି କୋଟି ଜନ୍ମରେ କରିଥିବା କାୟିକ, ବାଚିକ ଓ ମାନସିକ ପାପରୁ ମୁକ୍ତ ହୋଇ ଅକ୍ଷୟ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଲାଭ କରେ ।

ଜ୍ୟେଷ୍ଠ ଶୁକ୍ଳ ତୃତୀୟା ଦିନ ବ୍ରତ କରି ଯେ ପରମ ପ୍ରୀତିପୂର୍ବକ ମହେଶ୍ୱରୀଙ୍କୁ ପୂଜା କରେ, ତା'ପାଇଁ କିଛି ବି ଅସାଧ୍ୟ ରହେ ନାହିଁ । ଆଷାଢ଼ ଶୁକ୍ଳପକ୍ଷ ତୃତୀୟା ଦିନ ନିଜ ବୈଭବ ଅନୁସାରେ ରଥୋତ୍ସବ କରିବା ଉଚିତ । ଏହି ଉତ୍ସବ ଦେବୀଙ୍କର ଅତ୍ୟନ୍ତ ପ୍ରିୟ । ପୃଥିବୀକୁ ରଥ ବୋଲି ବୁଝିବେ । ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ତାହାର ଚକ, ବେଦମାନଙ୍କୁ ଘୋଡ଼ା ଓ ବ୍ରହ୍ମାଙ୍କୁ ସାରଥି ବୋଲି ବୁଝିବେ । ଏହି ଭାବନାରେ ମଣିଜଟିତ ରଥର କଳ୍ପନା କରି ତାହାକୁ ପୁଷ୍ପମାଳାରେ ସୁଶୋଭିତ କରିବେ । ଏଭଳି ରଥରେ ଶିବାଦେବୀଙ୍କୁ ବିରାଜମାନ କରାଇବେ । ବୁଦ୍ଧିମାନ ବ୍ୟକ୍ତି ଏପରି ଭାବନା କରିବେ ଯେ ପରା ଅମ୍ବା ଉମାଦେବୀ ସମଗ୍ର ଜଗତର ରକ୍ଷଣାବେକ୍ଷଣ ପାଇଁ ରଥରେ ବିରାଜିତ ହୋଇଛନ୍ତି । ରଥ ଧୀରେ ଧୀରେ ଗ୍ଲିବା ବେଳେ ଜୟନାଦ କରିବା ସଙ୍ଗେ ସଙ୍ଗେ ପ୍ରାର୍ଥନା କରିବେ– "ହେ ଦେବୀ ! ଦୀନବତ୍ସଳେ ! ଆମେ ଆପଣଙ୍କ ଶରଣାଗତ, ଆମକୁ ରକ୍ଷା କରନ୍ତୁ । (ପାହି ଦେବି ଜନାନସ୍ମାନ୍ ପ୍ରପନ୍ନାନ୍ ଦୀନବତ୍ସଳେ) ।" ଏହି ବାକ୍ୟ ଉଚ୍ଚାରଣ କରି ଦେବୀଙ୍କୁ ସନ୍ତୁଷ୍ଟ କରିବେ ଏବଂ ଯାତ୍ରାକାଳରେ ନାନା ପ୍ରକାର ବାଦ୍ୟ ବଜାଇବେ । ଗ୍ରାମ ବା ନଗରର ସୀମା ପର୍ଯ୍ୟନ୍ତ ରଥକୁ ନେଇ ସେଠାରେ ରଥସ୍ଥିତ ଦେବୀଙ୍କୁ ପୂଜା କରିବେ ଏବଂ ନାନା ପ୍ରକାର ସ୍ତୋତ୍ରରେ ତାଙ୍କୁ ସ୍ତୁତି କରି ତା'ପରେ ତାଙ୍କୁ ସେଠାରୁ ନିଜ ଘରକୁ ଫେରାଇ ଆଣିବେ । ଏହାପରେ ଶତବାର ପ୍ରଣାମ କରି ଜଗଦମ୍ବାଙ୍କୁ ପ୍ରାର୍ଥନା କରିବେ । ଯେଉଁ ବିଦ୍ୱାନ୍ ବ୍ୟକ୍ତି ଏଭଳି ଭାବରେ ଦେବୀଙ୍କର ପୂଜା, ବ୍ରତ ଓ ରଥୋତ୍ସବ କରେ, ସେ ଇହଲୋକରେ ସମସ୍ତ ପ୍ରକାର ଭୋଗ ଉପଭୋଗ କରି ଅନ୍ତକାଳରେ ଦେବୀଙ୍କ ଧାମକୁ ଯାଏ ।

ଶ୍ରାବଣ ଓ ଭାଦ୍ରବ ମାସର ଶୁକ୍ଳ ତୃତୀୟା ଦିନ ବିଧିପୂର୍ବକ ଅମ୍ବାଙ୍କ ବ୍ରତ ଓ ପୂଜା କରୁଥିବା ବ୍ୟକ୍ତି ଇହଲୋକରେ ପୁତ୍ର, ପୌତ୍ର ଓ ଧନାଦିରେ ସମ୍ପନ୍ନ ହୋଇ ସୁଖଭୋଗ କରେ ଏବଂ ଶେଷରେ ସକଳ ଭୁବନର ଊର୍ଦ୍ଧ୍ୱରେ ସ୍ଥିତ ଉମାଲୋକକୁ ଯାଏ ।

ଆଶ୍ୱିନ ମାସର ଶୁକ୍ଳପକ୍ଷରେ ନବରାତ୍ର ବ୍ରତ କରିବା ଉଚିତ । ଏହା କଲେ ସମସ୍ତ କାମନା ଯେ ପୂରଣ ହୁଏ, ଏଥିରେ ସଂଶୟ ନାହିଁ । ନବରାତ୍ର ବ୍ରତର ପ୍ରଭାବ ବିଷୟରେ

ଚତୁରାନନ ବ୍ରହ୍ମା, ପଞ୍ଚାନନ ମହାଦେବ ଓ ଷଡ଼ାନନ କାର୍ତ୍ତିକେୟ ମଧ୍ୟ ବର୍ଣ୍ଣନା କରିବାକୁ ଅସମର୍ଥ, ତେବେ ପୁଣି ଅନ୍ୟ କାହା କଥା ବା କ'ଣ କହିବା । ମୁନିଶ୍ରେଷ୍ଠ ! ନବରାତ୍ରବ୍ରତ ଅନୁଷ୍ଠାନ କରି ବିରଥଙ୍କ ପୁତ୍ର ରାଜା ସୁରଥ ତାଙ୍କର ଅପହୃତ ରାଜ୍ୟ ଫେରି ପାଇଥିଲେ । ଅଯୋଧ୍ୟାର ବୁଦ୍ଧିମାନ୍ ନରେଶ ଧ୍ରୁବସନ୍ଧିକୁମାର ସୁଦର୍ଶନ ମଧ୍ୟ ଏହି ବ୍ରତ ପ୍ରଭାବରେ ହିଁ ଅପହୃତ ରାଜ୍ୟ ପୁନଃ ପ୍ରାପ୍ତ କରିଥିଲେ । ଏହି ଶ୍ରେଷ୍ଠ ବ୍ରତ ପାଳନ କରି ତଥା ମହେଶ୍ୱରୀଙ୍କୁ ଆରାଧନା କରି ସମାଧି ବୈଶ୍ୟ ସଂସାର-ବନ୍ଧନରୁ ମୁକ୍ତ ହୋଇ ମୋକ୍ଷପଦର ଭାଗୀ ହୋଇଥିଲେ । ଯେଉଁ ମନୁଷ୍ୟ ଆଶ୍ୱିନମାସର ଶୁକ୍ଳପକ୍ଷରେ ବିଧିପୂର୍ବକ ବ୍ରତ କରି ତୃତୀୟା, ପଞ୍ଚମୀ, ସପ୍ତମୀ, ଅଷ୍ଟମୀ, ନବମୀ ଓ ଚତୁର୍ଦ୍ଦଶୀ ତିଥିରେ ଦେବୀଙ୍କୁ ପୂଜା କରେ, ଦେବୀ ଶିବା ନିରନ୍ତର ତାହାର ସମସ୍ତ ଅଭୀଷ୍ଟ ମନୋରଥ ପୂରଣ କରିଥାନ୍ତି । ଯେ କାର୍ତ୍ତିକ, ମାର୍ଗଶିର, ପୌଷ, ମାଘ ଓ ଫାଲ୍‌ଗୁନ ମାସର ଶୁକ୍ଳପକ୍ଷରେ ତୃତୀୟା ବ୍ରତ କରେ ଏବଂ ନାଲି କନିଅର ପ୍ରଭୃତି ଫୁଲ ଓ ସୁଗନ୍ଧିତ ଧୂପରେ ମଙ୍ଗଳମୟୀ ଦେବୀଙ୍କୁ ପୂଜା କରେ, ସେ ସମସ୍ତ ମଙ୍ଗଳ ଲାଭ କରେ । ନାରୀମାନେ ଆପଣା ସୌଭାଗ୍ୟ ନିମନ୍ତେ ସଦା ଏହି ମହାନ୍ ବ୍ରତ କରିବା ଉଚିତ । ପୁରୁଷମାନେ ମଧ୍ୟ ବିଦ୍ୟା, ଧନ ଓ ପୁତ୍ର ପ୍ରାପ୍ତି ନିମନ୍ତେ ଏହି ବ୍ରତାନୁଷ୍ଠାନ କରିବା ଉଚିତ । ଏହାଛଡ଼ା ଦେବୀଙ୍କୁ ପ୍ରିୟ ଲାଗୁଥିବା ଉମା-ମହେଶ୍ୱରଙ୍କର ଅନ୍ୟ ଯାହା କିଛି ବ୍ରତ ଅଛି, ମୁମୁକ୍ଷୁ ବ୍ୟକ୍ତି ସେଗୁଡ଼ିକୁ ମଧ୍ୟ ଭକ୍ତିଭାବରେ ପାଳନ କରିବା ଉଚିତ ।

ଏହି ଉମାସଂହିତା ପରମ ପୁଣ୍ୟମୟୀ ତଥା ଶିବଭକ୍ତିବୃଦ୍ଧିକାରିଣୀ । ଏଥିରେ ନାନା ପ୍ରକାର ଉପାଖ୍ୟାନ ରହିଛି । ଉକ୍ତ କଲ୍ୟାଣମୟୀ ସଂହିତା ଭୋଗ ଓ ମୋକ୍ଷ ପ୍ରଦାନ କରେ । ଯେ ଏହାକୁ ଭକ୍ତିଭାବରେ ଶୁଣେ, ପଢ଼େ ଅଥବା ପଢ଼ାଏ, ସେ ପରମଗତି ଲାଭ କରେ । ଯାହାର ଘରେ ସୁନ୍ଦର ଅକ୍ଷରରେ ଲେଖା ହୋଇଥିବା ଏହି ସଂହିତା ବିଧିବତ୍ ପୂଜିତ ହୁଏ, ସେ ସମସ୍ତ ଅଭୀଷ୍ଟ ଫଳ ଲାଭ କରେ । ତାହାର ଭୂତ, ପ୍ରେତ ଓ ପିଶାଚାଦି ଦୁଷ୍ଟମାନଙ୍କ ପ୍ରତି କଦାପି ଭୟ ରହେ ନାହିଁ । ସେ ପୁତ୍ରପୌତ୍ରାଦି ସମ୍ପତ୍ତି ଯେ ଅବଶ୍ୟ ପ୍ରାପ୍ତ ହୁଏ, ଏଥିରେ ସଂଶୟ ନାହିଁ । ତେଣୁ ଦେବୀଙ୍କ ପ୍ରତି ଭକ୍ତି ଚାହୁଁଥିବା ବ୍ୟକ୍ତି ସଦା ଏହି ପରମ ପୁଣ୍ୟମୟୀ ରମଣୀୟ ଉମାସଂହିତାକୁ ପଠନ-ଶ୍ରବଣ କରିବା ଉଚିତ ।

(ଅଧ୍ୟାୟ ୫୧)

★★★

## ॥ ଉମାସଂହିତା ସମ୍ପୂର୍ଣ୍ଣ ॥



# କୈଳାସସଂହିତା

## ଋଷିମାନଙ୍କର ସୂତଙ୍କୁ ଏବଂ ବାମଦେବଙ୍କର ସ୍କନ୍ଦଙ୍କୁ ପ୍ରଶ୍ନ– ପ୍ରଣବାର୍ଥନିରୂପଣ ନିମନ୍ତେ ଅନୁରୋଧ

ନମଃ ଶିବାୟ ସାମ୍ବାୟ ସଗଣାୟ ସସୂନବେ ।
ପ୍ରଧାନପୁରୁଷେଶାୟ ସର୍ଗସ୍ଥିତ୍ୟନ୍ତହେତବେ ॥

ଯେ ପ୍ରଧାନ (ପୁରୁଷ) ଓ ପୁରୁଷଙ୍କ ନିୟନ୍ତା ଏବଂ ସୃଷ୍ଟି, ପାଳନ ଓ ସଂହାରର କାରଣ, ସକଳ ଗଣ, ପାର୍ଷଦ ଓ ପାର୍ବତୀଙ୍କ ସମେତ ସେହି ଶିବଙ୍କୁ ପ୍ରଣାମ ।

ଋଷିମାନେ କହିଲେ–''ସୂତ ମହାଭାଗ ! ଆମେ ଅନେକ ଆଖ୍ୟାନଯୁକ୍ତ ପରମ ମନୋହର ଉମାସଂହିତା ଶୁଣିଲୁ । ଏବେ ଆପଣ ଶିବତତ୍ତ୍ୱ ସମ୍ବନ୍ଧୀୟ ଜ୍ଞାନ ବୃଦ୍ଧି କରାଉଥିବା କୈଳାସସଂହିତା ଶୁଣାନ୍ତୁ ।

ବ୍ୟାସ କହୁଛନ୍ତି–ପୁତ୍ରଗଣ ! ଏବେ ଶିବତତ୍ତ୍ୱ ପ୍ରତିପାଦନ କରୁଥିବା ଦିବ୍ୟ କୈଳାସସଂହିତା ବର୍ଣ୍ଣନା କରୁଛି, ପ୍ରେମପୂର୍ବକ ଶ୍ରବଣ କର । ତୁମ ପ୍ରତି ସ୍ନେହ ଥିବାରୁ ମୁଁ ତୁମକୁ ଏ ପ୍ରସଙ୍ଗ କହୁଛି ।

ଏହା କହି ବ୍ୟାସଦେବ କାଶୀରେ ମୁନିଗଣଙ୍କ ସହ ସୂତଙ୍କ ସଂବାଦ, ବ୍ୟାସ-ମୁନିଗଣସଂବାଦ, ଶିବ-ପାର୍ବତୀସଂବାଦ, ଶିବଙ୍କର ପାର୍ବତୀଙ୍କ ଆଗରେ ସଂନ୍ୟାସ-ପଦ୍ଧତିର ପ୍ରତିପାଦନ, ସଂନ୍ୟାସାଗ୍ରର, ସଂନ୍ୟାସ-ମଣ୍ଡଳ, ସଂନ୍ୟାସ-ପଦ୍ଧତିନ୍ୟାସ, ବର୍ଣ୍ଣପୂଜନ, ପ୍ରଣବାର୍ଥ-ପଦ୍ଧତି ଇତ୍ୟାଦି ପ୍ରସଙ୍ଗ ବର୍ଣ୍ଣନା କରିସାରି ପୁନଃ ଋଷିଗଣଙ୍କ ସହ ସୂତଙ୍କ ମିଳନ ଓ ସଂବାଦର ଅବତାରଣା କରିବାକୁ ଯାଇ ସୂତଙ୍କ ପ୍ରତି ଋଷିଙ୍କର ପ୍ରଶ୍ନକୁ ଏହିପରି ବର୍ଣ୍ଣନା କଲେ ।

ଋଷିମାନେ କହିଲେ–ମହାଭାଗ ସୂତ ! ଆପଣ ଆମର ଗୁରୁ । ତେଣୁ ଯଦି ଆପଣଙ୍କର ଆମ ପ୍ରତି ଅନୁଗ୍ରହ ରହିଛି, ତେବେ ଆପଣଙ୍କୁ ଆମେ ଗୋଟିଏ ପ୍ରଶ୍ନ ପଚାରୁଛୁ । ଶ୍ରଦ୍ଧାଳୁ ଶିଷ୍ୟଙ୍କ ଉପରେ ଆପଣଙ୍କ ପରି ଗୁରୁଜନ ସଦା ସ୍ନେହ ରଖିଥାନ୍ତି, ଏକଥାକୁ ଆପଣ ଏବେ ପ୍ରତ୍ୟକ୍ଷ ଦେଖାଇଦେଲେ ! ମୁନେ ବିରଜାହୋମ ସମୟରେ ପ୍ରଥମେ ଆପଣ ଯେଉଁ ବାମଦେବଙ୍କ ମତ ସୂଚିତ କରିଥିଲେ, ତାହାକୁ ଆମେ ବିସ୍ତାରପୂର୍ବକ ଶୁଣି ନାହୁଁ । ଏବେ ଆମେ ଅତି ଆଦର ଓ ଶ୍ରଦ୍ଧାର ସହ ତାହା ଶୁଣିବାକୁ ଚାହୁଁଛୁ । କୃପାସିନ୍ଧୋ ! ଆପଣ ପ୍ରସନ୍ନତାପୂର୍ବକ ତାହା ବର୍ଣ୍ଣନା କରନ୍ତୁ ।

ଋଷିମାନଙ୍କ କଥା ଶୁଣି ସୂତଙ୍କ ଶରୀର ରୋମାଞ୍ଚିତ ହୋଇଗଲା । ସେ ଗୁରୁଙ୍କର ମଧ୍ୟ ପରମୋତ୍କୃଷ୍ଟ ଗୁରୁ ମହାଦେବଙ୍କୁ, ତ୍ରିଭୁବନଜନନୀ ମହାଦେବୀ ଉମାଙ୍କୁ ତଥା ଗୁରୁ ବ୍ୟାସଙ୍କୁ ଭକ୍ତିପୂର୍ବକ ନମସ୍କାର କରି ମୁନିମାନଙ୍କୁ ଆହ୍ଲାଦିତ କରିବା ସହିତ ଗମ୍ଭୀର ବାଣୀରେ ଏହିପରି କହିଲେ ।

ସୂତ କହିଲେ–ମୁନିଗଣ ! ତୁମର କଲ୍ୟାଣ ହେଉ, ତୁମେମାନେ ସମସ୍ତେ ସଦା ସୁଖୀ ରୁହ । ମହାଭାଗ ମହାତ୍ମାବୃନ୍ଦ ! ତୁମେମାନେ ଭଗବାନ ଶିବଙ୍କ ଭକ୍ତ ତଥା ଦୃଢ଼ତାପୂର୍ବକ ବ୍ରତ-ପାଳନକାରୀ, ଏହା ଜାଣି ମୁଁ ତୁମମାନଙ୍କ ସମକ୍ଷରେ ଏ ବିଷୟକୁ ପ୍ରସନ୍ନତାପୂର୍ବକ ବର୍ଣ୍ଣନା କରୁଛି । ମନ ଦେଇ ଶୁଣ । ପୂର୍ବକାଳରେ ରଥନ୍ତର କଳ୍ପରେ ମହାମୁନି ବାମଦେବ ମାତାଙ୍କ ଗର୍ଭରୁ ବାହାରିବା ମାତ୍ରେ ଶିବତତ୍ତ୍ୱର ଜ୍ଞାତାଙ୍କ ମଧ୍ୟରେ ସର୍ବଶ୍ରେଷ୍ଠରୂପେ ବିବେଚିତ ହେଲେ । ସେ ବେଦ, ଆଗମ, ପୁରାଣ ଓ ଅନ୍ୟ ସମସ୍ତ ଶାସ୍ତ୍ରମାନଙ୍କର ମଧ୍ୟ ତାତ୍ତ୍ୱିକ

ଅର୍ଥକୁ ଜାଣିଥିଲେ । ଦେବତା, ଅସୁର, ମନୁଷ୍ୟ ପ୍ରଭୃତି ଜୀବଙ୍କର ଜନ୍ମ ଓ କର୍ମ ବିଷୟରେ ତାଙ୍କର ଉତ୍ତମ ଜ୍ଞାନ ଥିଲା । ତାଙ୍କର ସମସ୍ତ ଅଙ୍ଗ ଭସ୍ମଲେପନ ହେତୁ ଉଜ୍ଜ୍ୱଳ ଦିଶୁଥିଲା । ତାଙ୍କ ମସ୍ତକ ଉପରେ ଜଟାଜୂଟ ଶୋଭା ପାଉଥିଲା । ସେ କାହାରି ଆଶ୍ରିତ ନ ଥିଲେ । ତାଙ୍କ ମନରେ କୌଣସି ବସ୍ତୁର ଇଚ୍ଛା ନ ଥିଲା । ସେ ଶୀତ-ଉଷ୍ଣ ଆଦି ଦ୍ୱନ୍ଦ୍ୱରୁ ଉର୍ଦ୍ଧ୍ୱରେ ତଥା ଅହଂକାରଶୂନ୍ୟ ଥିଲେ । ସେ ଦିଗମ୍ବର ଓ ମହାଜ୍ଞାନୀ ଥିଲେ ତଥା ଦ୍ୱିତୀୟ ମହେଶ୍ୱରଙ୍କ ସଦୃଶ ଜଣା ପଡୁଥିଲେ । ତାଙ୍କରି ପରି ସ୍ୱଭାବର ବଡ଼ ବଡ଼ ମୁନିମାନେ ଶିଷ୍ୟ ଭାବରେ ତାଙ୍କୁ ଘେରି ରହୁଥିଲେ । ସେ ନିଜ ଚରଣସ୍ପର୍ଶଜନିତ ପୁଣ୍ୟରେ ଏ ପୃଥିବୀକୁ ପବିତ୍ର କରି କରି ସର୍ବତ୍ର ବିଚରଣ କରୁଥିଲେ ଏବଂ ନିଜ ଚିତ୍ତକୁ ନିରନ୍ତର ପରମଧାମସ୍ୱରୂପ ପରବ୍ରହ୍ମ ପରମାତ୍ମାଙ୍କ ଠାରେ ଲଗାଇ ରଖିଥିଲେ । ଏହିପରି ବୁଲୁ ବୁଲୁ ବାମଦେବ ମେରୁର ଦକ୍ଷିଣ ଶିଖର ଅର୍ଥାତ୍ କୁମାରଶୃଙ୍ଗରେ ପ୍ରସନ୍ନତାପୂର୍ବକ ପ୍ରବେଶ କଲେ, ଯେଉଁଠି ମୟୂରବାହନ ଶିବପୁତ୍ର, ଜ୍ଞାନମୟ ଶକ୍ତିଧାରୀ, ଅସୁରଙ୍କ ନିହନ୍ତା ଓ ସର୍ବଦେବବନ୍ଦିତ ଭଗବାନ ସ୍କନ୍ଦ ରହୁଥିଲେ । ତାଙ୍କ ସଙ୍ଗରେ ଥିଲେ ତାଙ୍କର ଶକ୍ତି 'ଗଜାବଲୀ' । ସେଠାରେ ସ୍କନ୍ଦସର ନାମରେ ପ୍ରସିଦ୍ଧ ଗୋଟିଏ ସରୋବର ଥିଲା, ଯାହା ସମୁଦ୍ର ପରି ଅଗାଧ, ବିଶାଳ ଓ ବିପୁଳ ଜଳରାଶିରେ ପୂର୍ଣ୍ଣ ଥିଲା । ତାହାର ଜଳ ଥିଲା ଶୀତଳ, ସ୍ୱାଦିଷ୍ଟ ଓ ସ୍ୱଚ୍ଛ । ସେଥିରେ ସମସ୍ତ ଆଶ୍ଚର୍ଯ୍ୟଜନକ ଗୁଣ ବିଦ୍ୟମାନ ଥିଲା । ଉକ୍ତ ଜଳାଶୟଟି ସ୍କନ୍ଦଙ୍କ ସମୀପରେ ଥିଲା । ମହାମୁନି ବାମଦେବ ସଶିଷ୍ୟ ସେଥିରେ ସ୍ନାନ କରି ଶିଖରରେ ବିରାଜମାନ ମୁନିଗଣ ସେବିତ କୁମାରଙ୍କୁ ଦର୍ଶନ କଲେ । ସେ ଉଦିତ ସୂର୍ଯ୍ୟତୁଲ୍ୟ ତେଜସ୍ୱୀ ଥିଲେ । ମୟୂର ଥିଲା ତାଙ୍କର ଶ୍ରେଷ୍ଠ ବାହନ । ତାଙ୍କର ଥିଲା ଚାରି ଭୁଜ । ସମସ୍ତ ଅଙ୍ଗରୁ ଉଦାରତା ସୂଚିତ ହେଉଥିଲା । ମୁକୁଟ ପ୍ରଭୃତି ତାଙ୍କର ଶୋଭା ବୃଦ୍ଧି କରୁଥିଲା । ରତ୍ନଭୂତା ଦୁଇ ଶକ୍ତି ତାଙ୍କ ଉପାସନା କରୁଥିଲେ । ସ୍କନ୍ଦଙ୍କର ଚାରି ହାତରେ ଶୋଭା ପାଉଥିଲା ଶକ୍ତି, କୁକ୍କୁଟ, ବର ଓ ଅଭୟ ମୁଦ୍ରା । ସ୍କନ୍ଦଙ୍କ ଦର୍ଶନ ଓ ପୂଜନ କରିସାରି ମୁନୀଶ୍ୱର ଭକ୍ତିରେ ତାଙ୍କ ସ୍ତବନ ଆରମ୍ଭ କଲେ ।

ବାମଦେବ କହିଲେ—ପ୍ରଣବର ବାଚ୍ୟାର୍ଥ, ପ୍ରଣବାର୍ଥର ପ୍ରତିପାଦକ, ପ୍ରଣବାକ୍ଷରରୂପୀ ବୀଜଯୁକ୍ତ ଓ ପ୍ରଣବସ୍ୱରୂପ କାର୍ତ୍ତିକେୟଙ୍କୁ ମୋର ବାରମ୍ବାର ପ୍ରଣାମ । ବେଦାନ୍ତର ଅର୍ଥଭୂତ ବ୍ରହ୍ମ ହିଁ ଯାହାଙ୍କର ସ୍ୱରୂପ, ଯେ ବେଦାନ୍ତର ଅର୍ଥ କରିଥାନ୍ତି, ବେଦାନ୍ତର



ଅର୍ଥକୁ ଜାଣନ୍ତି ଓ ନିତ୍ୟ ବନ୍ଦିତ, ସେହି ସ୍କନ୍ଦଙ୍କୁ ମୋର ବାରମ୍ବାର ନମସ୍କାର । ସମସ୍ତ ପ୍ରାଣୀଙ୍କର ହୃଦୟଗୁହାରେ ପ୍ରତିଷ୍ଠିତ ଗୁହଙ୍କୁ ମୋର ନମସ୍କାର । ଯେ ସ୍ୱୟଂ ଗୁହ୍ୟ, ଯାହାଙ୍କ ରୂପ ଗୁହ୍ୟ ଏବଂ ଯେ ଗୁହ୍ୟ ଶାସ୍ତ୍ରମାନଙ୍କର ଜ୍ଞାତା, ସେହି କାର୍ତ୍ତିକେୟଙ୍କୁ ମୋର ନମସ୍କାର । ପ୍ରଭୋ ! ଆପଣ ଅଣୁଠାରୁ ମଧ୍ୟ ଅତ୍ୟନ୍ତ ସୂକ୍ଷ୍ମ ଅଣୁ ଏବଂ ମହାନ୍ ଠାରୁ ମଧ୍ୟ ପରମ ମହାନ୍ । ଆପଣ କାରଣ ଓ କାର୍ଯ୍ୟ ଅଥବା

ଭୂତ ଓ ଭବିଷ୍ୟର ଜ୍ଞାତା । ଆପଣଙ୍କ ପରି ପରମାତ୍ମାଙ୍କୁ ମୋର ନମସ୍କାର । ଆପଣ ସ୍କନ୍ଦ (ମାତାଙ୍କ ଗର୍ଭରୁ ଚ୍ୟୁତ) । ସ୍କନ୍ଦନ (ଗର୍ଭରୁ ସ୍ଖଳନ) ହିଁ ଆପଣଙ୍କ ରୂପ । ଆପଣ ସୂର୍ଯ୍ୟ ଓ ଅରୁଣଙ୍କ ପରି ତେଜସ୍ୱୀ । ପାରିଜାତ ମାଳାରେ ତଥା ମୁକୁଟାଦିରେ ସୁଶୋଭିତ । ଆପଣଙ୍କୁ ମୋର ନମସ୍କାର । ଆପଣ ଶିବଙ୍କ ଶିଷ୍ୟ ଓ ପୁତ୍ର, ଶିବ (କଲ୍ୟାଣ) ପ୍ରଦାତା, ଶିବଙ୍କର ପ୍ରିୟ ଓ ଶିବା ଓ ଶିବଙ୍କ ପାଇଁ ଆନନ୍ଦର ନିଧି । ଆପଣଙ୍କୁ ନମସ୍କାର । ଆପଣ ଗଙ୍ଗାଙ୍କ ତନୟ, କୃତ୍ତିକାଙ୍କ କୁମାର, ଭଗବତୀ ଉମାଙ୍କ ପୁତ୍ର ଏବଂ ଶରବନରେ ଶୟନକାରୀ । ଆପଣଙ୍କ ପରି ମହାବୁଦ୍ଧିମାନ୍ ଦେବତାଙ୍କୁ ନମସ୍କାର । ଷଡ଼କ୍ଷର ମନ୍ତ୍ର ଆପଣଙ୍କ ଶରୀର । ଆପଣ ଷଡ୍‌ମାର୍ଗରୁ ଅତୀତ । ଆପଣଙ୍କ ପରି ଷଡ଼ାନନଙ୍କୁ ବାରମ୍ବାର ନମସ୍କାର । ଦ୍ୱାଦଶାତ୍ମନ୍ ! ଆପଣଙ୍କର ଦ୍ୱାଦଶ ନେତ୍ର ବିଶାଳ ଏବଂ ଦ୍ୱାଦଶ ଭୁଜରେ ଆପଣ ଦ୍ୱାଦଶ ଆୟୁଧ ଧାରଣ କରିଛନ୍ତି । ଆପଣଙ୍କୁ ନମସ୍କାର । ଆପଣ ଚତୁର୍ଭୁଜରୂପଧାରୀ, ଶାନ୍ତ ଏବଂ ଚତୁର୍ଭୁଜରେ ଯଥାକ୍ରମେ ଶକ୍ତି, କୁକ୍କୁଟ, ବର ଓ ଅଭୟ ଧାରଣ କରିଥାନ୍ତି । ଆପଣଙ୍କ ପରି ଅସୁରନିହନ୍ତାଙ୍କୁ ନମସ୍କାର । ଆପଣଙ୍କ ବକ୍ଷଃସ୍ଥଳ ଗଜାବଲ୍ଲୀଙ୍କ କୁଚକୁଙ୍କୁମରେ ଶୋଭିତ, ସାନଭାଇ ଗଜାନନଙ୍କ ଆନନ୍ଦମୟୀ ମହିମା ଶୁଣି ଆପଣ ମନେ ମନେ ଆନନ୍ଦିତ ହୁଅନ୍ତି । ଆପଣଙ୍କୁ ନମସ୍କାର । ବ୍ରହ୍ମାଦି ଦେବତା, ମୁନି ଓ କିନ୍ନରଗଣ ଗାନ କରୁଥିବା ଗାଥାବିଶେଷ ଦ୍ୱାରା ଆପଣଙ୍କ ପବିତ୍ର କୀର୍ତ୍ତିଧାମକୁ ଚିନ୍ତନ କରାଯାଇଥାଏ । ଏପରି ସ୍କନ୍ଦଙ୍କୁ ନମସ୍କାର । ଦେବତାଙ୍କ ନିର୍ମଳ କିରୀଟକୁ ବିଭୂଷିତ କରୁଥିବା ପୁଷ୍ପମାଳାରେ ଆପଣଙ୍କ ମନୋହର ଚରଣାରବିନ୍ଦର ପୂଜା କରାଯାଇଥାଏ । ଆପଣଙ୍କୁ ନମସ୍କାର । ଯେ ବାମଦେବଙ୍କ ଦ୍ୱାରା ବର୍ଣ୍ଣିତ ଏହି ଦିବ୍ୟ ସ୍କନ୍ଦସ୍ତୋତ୍ର ପାଠ ବା ଶ୍ରବଣ କରେ, ସେ ପରମଗତି ପ୍ରାପ୍ତ ହୁଏ । ଏହି ସ୍ତୋତ୍ର ବୁଦ୍ଧିବର୍ଦ୍ଧକ, ଶିବଭକ୍ତିବର୍ଦ୍ଧକ ଏବଂ ଆୟୁ, ଆରୋଗ୍ୟ, ଧନ ତଥା ସମସ୍ତ ଅଭୀଷ୍ଟ ପ୍ରଦାୟକ ।*

ବାମଦେବ ଏହିରୂପେ ଦେବସେନାପତି

---

* ବାମଦେବ ଉବାଚ–

ଓଁ ନମଃ ପ୍ରଣବାର୍ଥାୟ ପ୍ରଣବାର୍ଥବିଧାୟିନେ । ପ୍ରଣବାକ୍ଷରବୀଜାୟ ପ୍ରଣବାୟ ନମୋ ନମଃ ॥
ବେଦାନ୍ତାର୍ଥସ୍ୱରୂପାୟ ବେଦାନ୍ତାର୍ଥବିଧାୟିନେ । ବେଦାନ୍ତାର୍ଥବିଦେ ନିତ୍ୟଂ ବିଦିତାୟ ନମୋ ନମଃ ॥
ନମୋ ଗୁହାୟ ଭୂତାନାଂ ଗୁହାସୁ ନିହିତାୟ ଚ । ଗୁହ୍ୟାୟ ଗୁହ୍ୟରୂପାୟ ଗୁହ୍ୟାଗମବିଦେ ନମଃ ॥
ଅଣୋରଣୀୟସେ ତୁଭ୍ୟଂ ମହୋତୋଽପି ମହୀୟସେ । ନମଃ ପରାବରଜ୍ଞାୟ ପରମାତ୍ମସ୍ୱରୂପିଣେ ॥
ସ୍କନ୍ଦାୟ ସ୍କନ୍ଦରୂପାୟ ମିହିରାରୁଣତେଜସେ । ନମୋ ମନ୍ଦାରମାଲୋଦ୍ୟନ୍ମୁକୁଟାଦିଭୃତେ ସଦା ॥
ଶିବଶିଷ୍ୟାୟ ପୁତ୍ରାୟ ଶିବସ୍ୟ ଶିବଦାୟିନେ । ଶିବପ୍ରିୟାୟ ଶିବୟୋରାନନ୍ଦନିଧୟେ ନମଃ ॥
ଗାଙ୍ଗେୟାୟ ନମସ୍ତୁଭ୍ୟଂ କାର୍ତ୍ତିକେୟାୟ ଧୀମତେ । ଉମାପୁତ୍ରାୟ ମହତେ ଶରକାନନଶାୟିନେ ॥
ଷଡକ୍ଷରଶରୀରାୟ ଷଡ୍‌ବିଧାର୍ଥବିଧାୟିନେ । ଷଡଧ୍ୱାତୀତରୂପାୟ ଷଣ୍ମୁଖାୟ ନମୋ ନମଃ ॥
ଦ୍ୱାଦଶାୟତନେତ୍ରାୟ ଦ୍ୱାଦଶୋଦ୍ୟତବାହବେ । ଦ୍ୱାଦଶାୟୁଧଧାରାୟ ଦ୍ୱାଦଶାତ୍ମନ୍ ନମୋଽସ୍ତୁ ତେ ॥
ଚତୁର୍ଭୁଜାୟ ଶାନ୍ତାୟ ଶକ୍ତିକୁକ୍କୁଟଧାରିଣେ । ବରଦାଭୟହସ୍ତାୟ ନମୋଽସୁରବିଦାରିଣେ ॥
ଗଜାବଲ୍ଲୀକୁଚାଲିପ୍ତକୁଙ୍କୁମାଙ୍କିତବକ୍ଷସେ । ନମୋ ଗଜାନନାନନ୍ଦମହିମାନନ୍ଦିତାତ୍ମନେ ॥
ବ୍ରହ୍ମାଦିଦେବମୁନିକିଂନରଗୀୟମାନଗାଥାବିଶେଷଶୁଚିଚିନ୍ତିତକୀର୍ତ୍ତିଧାମ୍ନେ ।
ବୃନ୍ଦାରକାମଳକିରୀଟବିଭୂଷଣସ୍ରକ୍‌ପୂଜ୍ୟାଭିରାମପଦପଙ୍କଜ ତେ ନମୋଽସ୍ତୁ ॥
ଇତି ସ୍କନ୍ଦସ୍ତବଂ ଦିବ୍ୟଂ ବାମଦେବେନ ଭାଷିତମ୍ । ଯ ପଠେଚ୍ଛୃଣୁୟାଦପି ସ ଯାତି ପରମାଂ ଗତିମ୍ ॥
ମହାପ୍ରଜ୍ଞାକରଂ ହ୍ୟେତଚ୍ଛିବଭକ୍ତିବିବର୍ଧନମ୍ । ଆୟୁରାରୋଗ୍ୟଧନକୃତ୍ସର୍ବକାମପ୍ରଦଂ ସଦା ॥

(ଶି. ପୁ. କୈ. ସଂ. ୧୧ । ୨୨–୩୫)

ଭଗବାନ ସ୍କନ୍ଦଙ୍କୁ ସ୍ତୁତି କରିସାରି ତିନି ଥର ତାଙ୍କୁ ପରିକ୍ରମା କଲେ ଏବଂ ଭୂମି ଉପରେ ଦଣ୍ଡ ପରି ଶୋଇ ବାରମ୍ବାର ସାଷ୍ଟାଙ୍ଗ ପ୍ରଣାମ ଓ ପରିକ୍ରମା କରିବା ପରେ ତାଙ୍କ ପାଖରେ ନତମସ୍ତକ ହୋଇ ବିନୀତଭାବରେ ଛିଡ଼ା ହୋଇଗଲେ । ବାମଦେବଙ୍କ କୃତ ଏହି ପରମାର୍ଥପୂର୍ଣ୍ଣ ସ୍ତୋତ୍ରକୁ ଶୁଣି ମହେଶନନ୍ଦନ ସ୍କନ୍ଦ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ବାମଦେବଙ୍କୁ କହିଲେ—ମୁନେ ! ତୁମେ କରିଥିବା ପୂଜା, ସ୍ତୁତି ଓ ଭକ୍ତିରେ ମୁଁ ଅତି ପ୍ରସନ୍ନ । ତୁମର କଲ୍ୟାଣ ହେଉ । କୁହ, ଆଜି ମୁଁ ତୁମର କେଉଁ ପ୍ରିୟ କାର୍ଯ୍ୟ ସିଦ୍ଧ କରିବି? ତୁମେ ଯୋଗୀଙ୍କ ମଧ୍ୟରେ ପ୍ରଧାନ, ସର୍ବଥା ପରିପୂର୍ଣ୍ଣ ଓ ନିଃସ୍ପୃହ । ଏ ଜଗତରେ ଏପରି କୌଣସି ବସ୍ତୁ ନାହିଁ, ଯାହା ତୁମ ପରି ବୀତରାଗ ମହର୍ଷି ଯାଚନା କରିବ, ତଥାପି ଧର୍ମରକ୍ଷା ଓ ସମଗ୍ର ଜଗତ ପ୍ରତି ଅନୁଗ୍ରହ କରିବା ନିମନ୍ତେ ତୁମ ପରି ସାଧୁସନ୍ଥ ଭୂତଳରେ ବିଚରଣ କରିଥାନ୍ତି । ବ୍ରହ୍ମନ୍ ! ଯଦି ଏବେ କିଛି ଶୁଣିବାକୁ ଇଚ୍ଛା ଅଛି, ତେବେ କୁହ । ମୁଁ ଜଗତର କଲ୍ୟାଣ ଦୃଷ୍ଟିରୁ ତାହା ବର୍ଣ୍ଣନା କରିବି ।''

ସ୍କନ୍ଦଙ୍କ ଉକ୍ତି ଶୁଣି ମହାମୁନି ବାମଦେବ ବିନୟାବନତ ହୋଇ ମେଘ ପରି ଗମ୍ଭୀର ବାଣୀରେ କହିଲେ—

ବାମଦେବ କହିଲେ—**ଭଗବନ୍ !** ଆପଣ ପରମେଶ୍ୱର । ଅଲୌକିକ ଓ ଲୌକିକ ସମସ୍ତ ପ୍ରକାର ବିଭୂତିର ପ୍ରଦାତା । ସର୍ବଜ୍ଞ, ସର୍ବକର୍ତ୍ତା, ସମସ୍ତ ଶକ୍ତିଧାରଣକାରୀ ଓ ସବୁରି ସ୍ୱାମୀ । ମୁଁ ତ ସାଧାରଣ ଜୀବ । ଆପଣଙ୍କ ପରି ପରମେଶ୍ୱରଙ୍କ ସମକ୍ଷରେ କଥା କହିବାର ଶକ୍ତି ବା ଯୋଗ୍ୟତା ମୋଠାରେ ନାହିଁ । ବରଂ ଆପଣ ଅନୁଗ୍ରହ କରି ମୋ ସହିତ କଥା ହେଉଛନ୍ତି । ମହାପ୍ରାଜ୍ଞ ! ମୁଁ କୃତାର୍ଥ ହୋଇଗଲି । ରେଣୁମାତ୍ର ବିଜ୍ଞାନରେ ପ୍ରେରିତ ହୋଇ ଆପଣଙ୍କ ସମକ୍ଷରେ ମୋର ପ୍ରଶ୍ନ ରଖୁଛି । ମୋର ଏହି ଧୃଷ୍ଟତାକୁ କ୍ଷମା କରିବେ । ପ୍ରଣବ ସବୁଠାରୁ ଉତ୍ତମ ମନ୍ତ୍ର । ତାହା ସାକ୍ଷାତ୍ ପରମେଶ୍ୱରଙ୍କର ହିଁ ବାଚକ । ପଶୁ (ଜୀବ)ଙ୍କର ପାଶ (ବନ୍ଧନ)କୁ କାଟୁଥିବା ଭଗବାନ ପଶୁପତି ହିଁ ତାହାର ବାଚ୍ୟାର୍ଥ । 'ଓମିତୀଦଂ ସର୍ବମ୍' (ତୈ. ଉ. ୧ । ୮ । ୧) ଅର୍ଥାତ୍ 'ଓଁକାର ହିଁ ପ୍ରତ୍ୟକ୍ଷ ଦୃଷ୍ଟିଗୋଚର ହେଉଥିବା ଏ ଜଗତ'—ଏହା ସନାତନ ଶ୍ରୁତିର କଥନ । 'ଓମିତି ବ୍ରହ୍ମ' (ତୈ. ଉ. ୧ । ୮ । ୧) ଅର୍ଥାତ୍ 'ଓଁ ହିଁ ଏହି ବ୍ରହ୍ମ' ଏବଂ 'ସର୍ବଂ ହ୍ୟେତଦ୍ ବ୍ରହ୍ମ' (ମାଣ୍ଡୂ. ୨)—'ଏ ସବୁକିଛି ବ୍ରହ୍ମ' ଇତ୍ୟାଦି ବାକ୍ୟ ମଧ୍ୟ ଶ୍ରୁତିଦ୍ୱାରା ହିଁ କଥିତ । ଏହି ପ୍ରକାରେ ମୁଁ ସମଷ୍ଟି ଓ ବ୍ୟଷ୍ଟିଭାବରେ ପ୍ରଣବର ଅର୍ଥ ଶ୍ରବଣ କରିଛି । ତାତ୍ପର୍ଯ୍ୟ ଏହି ଯେ ସମଷ୍ଟି ଓ ବ୍ୟଷ୍ଟି ସବୁକିଛି ପ୍ରଣବର ଅର୍ଥ ଏବଂ ପ୍ରଣବ ଦ୍ୱାରା ସବୁରି ପ୍ରତିପାଦନ ହୋଇଥାଏ ବୋଲି ମୁଁ ଶୁଣିଛି । ମହାସେନ ! ମୋତେ ଆପଣଙ୍କ ପରି ଗୁରୁ କଦାପି ମିଳି ନ ଥିଲେ, ତେଣୁ କୃପା କରି ଆପଣ ପ୍ରଣବର ଅର୍ଥ ପ୍ରତିପାଦନ କରନ୍ତୁ । ଉପଦେଶ ବିଧିରେ ତଥା ସଦାଗ୍ରରପରମ୍ପରାକୁ ଦୃଷ୍ଟିରେ ରଖି ମୋତେ ପ୍ରଣବାର୍ଥର ଉପଦେଶ ଦିଅନ୍ତୁ ।

ମୁନିଙ୍କ ପ୍ରଶ୍ନ ଶୁଣି ସ୍କନ୍ଦ ପ୍ରଣବସ୍ୱରୂପ, ଅଡତିରିଶ ଶ୍ରେଷ୍ଠ କଳାଦ୍ୱାରା ଲକ୍ଷିତ ଓ ମୁନିଗଣଙ୍କ ଦ୍ୱାରା ପରିବେଷ୍ଟିତ ରହୁଥିବା ସାମ୍ବସଦାଶିବଙ୍କୁ ପ୍ରଣାମ କରି ସେହି ଶ୍ରେୟର ବର୍ଣ୍ଣନା ପ୍ରାରମ୍ଭ କଲେ, ଯାହାକୁ ମୁନିଜନ ମଧ୍ୟ ଗୁପ୍ତ ରଖିଥାନ୍ତି ।

(ଅଧ୍ୟାୟ ୧–୧୧)

❀❀❀

# ପ୍ରଣବର ବାଚ୍ୟାର୍ଥରୂପ ସଦାଶିବଙ୍କ ସ୍ୱରୂପର ଧ୍ୟାନ, ବର୍ଣ୍ଣାଶ୍ରମଧର୍ମ ପାଳନର ମହତ୍ତ୍ୱ, ଜ୍ଞାନମୟୀ ପୂଜା, ସଂନ୍ୟାସର ପୂର୍ବାଙ୍ଗଭୂତ ନାନ୍ଦୀଶ୍ରାଦ୍ଧ ଓ ବ୍ରହ୍ମଯଜ୍ଞ ଇତ୍ୟାଦିର ବର୍ଣ୍ଣନା

ଶ୍ରୀସ୍କନ୍ଦ କହିଲେ–ମହାଭାଗ ମୁନୀଶ୍ୱର ବାମଦେବ ! ତୁମକୁ ମୁଁ ସାଧୁବାଦ ଦେଉଛି; କାରଣ ତୁମେ ଭଗବାନ ଶିବଙ୍କର ବହୁତ ବଡ଼ ଭକ୍ତ ଏବଂ ଶିବତତ୍ତ୍ୱର ଜ୍ଞାତା ମଧ୍ୟରେ ସର୍ବଶ୍ରେଷ୍ଠ । ତ୍ରିଲୋକରେ ତୁମକୁ କିଛି ବି ଅଛପା ନାହିଁ । ତଥାପି ତୁମେ ଜଗତ ପ୍ରତି ଅନୁଗ୍ରହ କରିବାକୁ ଏପରି ପଚ୍ଚାରିଛ, ମୁଁ ତୁମ ସମକ୍ଷରେ ଏ ବିଷୟରେ ବର୍ଣ୍ଣନା କରିବି । ଏ ଜଗତରେ ଯେତେ ଜୀବ ଅଛନ୍ତି, ସମସ୍ତେ ନାନା ପ୍ରକାର ଶାସ୍ତ୍ରରେ ମୋହିତ ହୋଇ ରହିଛନ୍ତି । ପରମେଶ୍ୱରଙ୍କ ବଳବତୀ ବିଚିତ୍ର ମାୟା ସେମାନଙ୍କୁ ପରମାର୍ଥରୁ ବଞ୍ଚିତ କରି ରଖିଛି । ତେଣୁ ପ୍ରଣବର ବାଚ୍ୟାର୍ଥଭୂତ ସାକ୍ଷାତ୍ ମହେଶ୍ୱରଙ୍କୁ ସେମାନେ ଜାଣନ୍ତି ନାହିଁ । ସେହି ମହେଶ୍ୱର ହିଁ ସଗୁଣ-ନିର୍ଗୁଣ ତଥା ତ୍ରିଦେବଙ୍କ ଜନକ ପରବ୍ରହ୍ମ ପରମାତ୍ମା । ମୁଁ ମୋର ଡାହାଣ ହାତ ଉଠାଇ ଶପଥ କରି ତୁମ ଆଗରେ କହୁଛି ଯେ ଏହା ସତ୍ୟ, ସତ୍ୟ, ସତ୍ୟ । ମୁଁ ବାରମ୍ବାର ଏହାକୁ ପୁନରାବୃତ୍ତି କରୁଛି ଯେ ପ୍ରଣବର ଅର୍ଥ ସାକ୍ଷାତ୍ ଶିବ ଅଟନ୍ତି । ଶ୍ରୁତି, ସ୍ମୃତି, ପୁରାଣ ତଥା ଆଗମରେ ମୁଖ୍ୟରୂପରେ ତାହାଙ୍କୁ ହିଁ ପ୍ରଣବର ବାଚ୍ୟାର୍ଥ ବୋଲି ପ୍ରତିପାଦିତ କରାଯାଇଛି । ମନ ସମେତ ବାଣୀ ଯେଉଁ ପରମେଶ୍ୱରଙ୍କ ନିକଟରେ ନ ପହଞ୍ଚିପାରି ଫେରି ଆସେ, ଯେଉଁ ଆନନ୍ଦକୁ ଅନୁଭବ କରିଥିବା ବ୍ୟକ୍ତି ଆଉ କାହାକୁ ଭୟ କରେ ନାହିଁ, ବ୍ରହ୍ମା, ବିଷ୍ଣୁ ଓ ଇନ୍ଦ୍ରଙ୍କ ସମେତ ସମଗ୍ର ଜଗତ ଭୂତ ଓ ଇନ୍ଦ୍ରିୟ ସମୁଦାୟ ସହିତ ସର୍ବପ୍ରଥମେ ଯାହାଙ୍କ ଠାରୁ ପ୍ରକଟ ହୁଏ, ଯେଉଁ ପରମାତ୍ମା ସ୍ୱୟଂ କାହାରି ଠାରୁ ଓ କଦାପି ଉତ୍ପନ୍ନ ହୁଅନ୍ତି ନାହିଁ, ଯାହାଙ୍କ ନିକଟରେ ବିଦ୍ୟୁତ୍, ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ଆଲୋକ ନିଷ୍ପ୍ରୟୋଜନ ଏବଂ ଯାହାଙ୍କ ଜ୍ୟୋତିରେ ସମଗ୍ର ଜଗତ ସବୁ ପ୍ରକାରେ ଆଲୋକିତ ହୁଏ, ସେହି ପରବ୍ରହ୍ମ ପରମାତ୍ମା ସମସ୍ତ ଐଶ୍ୱର୍ଯ୍ୟରେ ସମ୍ପନ୍ନ ହୋଇଥିବା ହେତୁ ସ୍ୱୟଂ ସର୍ବେଶ୍ୱର 'ଶିବ' ନାମ ଧାରଣ କରିଥାନ୍ତି ।* ହୃଦୟାକାଶରେ ବିରାଜମାନ ଯେଉଁ ଭଗବାନ ଶମ୍ଭୁ ମୁମୁକ୍ଷୁ ପୁରୁଷଙ୍କର ଧ୍ୟେୟ, ଯେ ସର୍ବବ୍ୟାପୀ ପ୍ରକାଶାତ୍ମା, ଭାସସ୍ୱରୂପ ଏବଂ ଚିନ୍ମୟ, ଯେଉଁ ପରମ ପୁରୁଷଙ୍କ ପରାଶକ୍ତି ଶିବା ହେଉଛନ୍ତି ଭକ୍ତିଭାବଗମ୍ୟା, ମନୋହରା, ନିର୍ଗୁଣା, ନିଜ ଗୁଣରେ ହିଁ ନିଗୂଢ଼ା ଓ ନିଷ୍କଳା, ସେହି ପରମେଶ୍ୱରଙ୍କର ତିନିଟି ରୂପ ରହିଛି—ସ୍ଥୂଳ, ସୂକ୍ଷ୍ମ ଏବଂ ଏ ଦୁଇଟିରୁ ବି ଅତୀତ ରୂପ । ମୁନେ ! ମୁମୁକ୍ଷୁ ଯୋଗୀମାନେ ନିତ୍ୟ କ୍ରମଶଃ ତାଙ୍କର ଏହି ସ୍ୱରୂପକୁ ଧ୍ୟାନ କରିବା ଉଚିତ । ସେହି ଶମ୍ଭୁ ହିଁ ନିଷ୍କଳ, ସମସ୍ତ ଦେବଙ୍କର ସନାତନ ଆଦିଦେବ, ଜ୍ଞାନ-କ୍ରିୟା-ସ୍ୱଭାବ ଓ ପରମାତ୍ମା ବୋଲି ଅଭିହିତ ହୁଅନ୍ତି । ସେହି ଦେବାଧିଦେବଙ୍କର ସାକ୍ଷାତ୍ ମୂର୍ତ୍ତି ହେଉଛନ୍ତି ସଦାଶିବ । ଈଶାନାଦି ପାଞ୍ଚଟି ମନ୍ତ୍ର

---

* ଯତୋ ବାଚ୍ଚେ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ । ଆନନ୍ଦଂ ଯସ୍ୟ ବୈ ବିଦ୍ୱାନ୍ନ ବିଭେତି କୁତଶ୍ଚନ ॥
ଯସ୍ମାଜ୍ଜଗଦିଦଂ ସର୍ବଂ ବିଧିବିଷ୍ଣ୍ୱିନ୍ଦ୍ରପୂର୍ବକମ୍ । ସହ ଭୂତେନ୍ଦ୍ରିୟଗ୍ରାମୈଃ ପ୍ରଥମଂ ସମ୍ପ୍ରସୂୟତେ ॥
ନ ସମ୍ପ୍ରସୂୟତେ ଯୋ ବୈ କୁତଶ୍ଚନ କଦାଚନ । ଯସ୍ମିନ୍ନ ଭାସତେ ବିଦ୍ୟୁନ୍ନ ଚ ସୂର୍ଯ୍ୟୋ ନ ଚନ୍ଦ୍ରମାଃ ॥
ଯସ୍ୟ ଭାସୋ ବିଭାତୀଦଂ ଜଗଦ୍ ସର୍ବଂ ସମନ୍ତତଃ । ସର୍ବୈଶ୍ୱର୍ଯ୍ୟେଣ ସମ୍ପନ୍ନୋ ନାମ୍ନା ସର୍ବେଶ୍ୱର ସ୍ୱୟମ୍ ॥
(ଶି. ପୁ. କୈ. ସଂ. ୧୨ । ୭–୧୦)

ତାଙ୍କର ଶରୀର । ପଞ୍ଚକଳା ତାଙ୍କର ରୂପ । ତାଙ୍କର ଅଙ୍ଗକାନ୍ତି ଶୁଦ୍ଧ ସ୍ଫଟିକ ପରି ଉଜ୍ଜ୍ୱଳ । ସେ ସଦାପ୍ରସନ୍ନ ତଥା ଶୀତଳଆଭାଯୁକ୍ତ । ସେହି ପ୍ରଭୁଙ୍କର ପାଞ୍ଚ ମୁଖ, ଦଶ ଭୁଜ ଓ ପନ୍ଦର ନେତ୍ର ରହିଛି । 'ଈଶାନ' ମନ୍ତ୍ର ତାଙ୍କର ମୁକୁଟମଣ୍ଡିତ ମସ୍ତକ ଅଟେ । 'ତତ୍‌ପୁରୁଷ' ମନ୍ତ୍ର ସେହି ପୁରାତନ ପ୍ରଭୁଙ୍କର ମୁଖ ଅଟେ । 'ଅଘୋର' ମନ୍ତ୍ର ତାଙ୍କର ହୃଦୟ, 'ବାମଦେବ' ମନ୍ତ୍ର ଗୁହ୍ୟ ପ୍ରଦେଶ ଏବଂ 'ସଦ୍ୟୋଜାତ' ମନ୍ତ୍ର ପାଦ ଅଟେ । ଏହିରୂପେ ସେ ହେଉଛନ୍ତି ପଞ୍ଚମନ୍ତ୍ରସ୍ୱରୂପ । ସେ ସାକ୍ଷାତ୍ ସାକାର ଓ ନିରାକାର ପରମାତ୍ମା । ସର୍ବଜ୍ଞତା ଆଦି ଷଡ଼ଶକ୍ତି ତାଙ୍କ ଶରୀରର ଛଅଟି ଅଙ୍ଗ । ସେ ଶବ୍ଦାଦି ଶକ୍ତିରେ ସ୍ଫୁରିତ ହୃଦୟକମଳରେ ବିରାଜିତ ତଥା ବାମଭାଗରେ ମନୋନ୍ମୟୀ ନାମକ ଶକ୍ତିଦ୍ୱାରା ବିଭୂଷିତ ଅଟନ୍ତି ।

ମନ୍ତ୍ରାଦି ଛଅ ପ୍ରକାର ଅର୍ଥକୁ ପ୍ରକଟ କରିବା ପାଇଁ ଯେଉଁ ଅର୍ଥୋପନ୍ୟାସ ପଦ୍ଧତି ରହିଛି, ତାହା ଦ୍ୱାରା ପ୍ରଣବର ସମଷ୍ଟି ଓ ବ୍ୟଷ୍ଟିସମ୍ବନ୍ଧୀୟ ଭାବାର୍ଥକୁ ଏବେ ମୁଁ ବର୍ଣ୍ଣନା କରିବି । ମାତ୍ର ତାହା ପୂର୍ବରୁ ପ୍ରଥମେ ଉପଦେଶର କ୍ରମ କହିଦେବା ଉଚିତ ହେବ, ତେଣୁ ତାହା ଶୁଣ । ମୁନେ ! ମର୍ତ୍ତ୍ୟମଣ୍ଡଳରେ ଚାରିଟି ବର୍ଣ୍ଣ ପ୍ରସିଦ୍ଧ । ସେଥିମଧ୍ୟରୁ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ବର୍ଣ୍ଣଙ୍କର ବୈଦିକ ଆଚାର ସଙ୍ଗେ ସମ୍ବନ୍ଧ ରହିଛି । ଏ ତ୍ରିବର୍ଣ୍ଣର ସେବା କରିବା ହେଉଛି ଶୂଦ୍ରଙ୍କର ସାରଭୂତ ଧର୍ମ । ବେଦାଧ୍ୟୟନରେ ଶୂଦ୍ରଙ୍କର ଅଧିକାର ନାହିଁ । ଯଦି ତ୍ରିବର୍ଣ୍ଣର ଲୋକେ ନିଜ ନିଜ ଆଶ୍ରମଧର୍ମ ପାଳନରେ ହାର୍ଦ୍ଦିକ ଅନୁରାଗପୂର୍ବକ ସଂଲଗ୍ନ ଥାଆନ୍ତି, ତେବେ କେବଳ ସେଇମାନଙ୍କର ଶ୍ରୁତି-ସ୍ମୃତି-ପ୍ରତିପାଦିତ ଧର୍ମ ଅନୁଷ୍ଠାନରେ ଅଧିକାର ହୁଏ, ଅନ୍ୟମାନଙ୍କର କଦାପି ନୁହେଁ । ଶ୍ରୁତି ଓ ସ୍ମୃତିରେ ପ୍ରତିପାଦିତ କର୍ମ ଅନୁଷ୍ଠାନ କରୁଥିବା ବ୍ୟକ୍ତି ଅବଶ୍ୟ ସିଦ୍ଧି ପ୍ରାପ୍ତ ହୋଇଥାଏ— ଏ କଥା ବେଦୋକ୍ତମାର୍ଗର ପ୍ରଦର୍ଶକ ସ୍ୱୟଂ ପରମେଶ୍ୱର କହିଛନ୍ତି । ବର୍ଣ୍ଣଧର୍ମ ଓ ଆଶ୍ରମଧର୍ମ ପାଳନଜନିତ ପୁଣ୍ୟରେ ପରମେଶ୍ୱରଙ୍କୁ ପୂଜା କରି ଅନେକ ଶ୍ରେଷ୍ଠ ମୁନି ପରମାତ୍ମାଙ୍କ ସାନ୍ନିଧ୍ୟ ଲାଭ କରିଛନ୍ତି । ବ୍ରହ୍ମଚର୍ଯ୍ୟ ପାଳନରେ ଋଷିଗଣଙ୍କୁ, ଯଜ୍ଞକର୍ମ ଅନୁଷ୍ଠାନରେ ଦେବତାଙ୍କୁ ଓ ସନ୍ତାନୋତ୍ପାଦନରେ ପିତୃଗଣଙ୍କୁ ତୃପ୍ତି ମିଳିଥାଏ । ଏକଥା ଶ୍ରୁତିଗଣ କହିଛନ୍ତି । ଋଷିଋଣ, ଦେବଋଣ ଓ ପିତୃଋଣରୁ ମୁକ୍ତ ହେବା ପରେ ମନୁଷ୍ୟ ବାନପ୍ରସ୍ଥ ଆଶ୍ରମରେ ପ୍ରବିଷ୍ଟ ହୋଇ ଶୀତ, ଉଷ୍ଣ ଓ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱକୁ ସହନ କରିବା ସହ ଜିତେନ୍ଦ୍ରିୟ, ତପସ୍ୱୀ ଓ ମିତାହାରୀ ହୋଇ ଯମ-ନିୟମାଦି ଯୋଗ ଅଭ୍ୟାସ କରିବା ଉଚିତ, ଯଦ୍ଦ୍ୱାରା ବୁଦ୍ଧି ନିଶ୍ଚଳ ଓ ଅଟଳ ହୋଇପାରିବ । ଏଭଳି ଅଭ୍ୟାସ ଦ୍ୱାରା ଶୁଦ୍ଧଚିତ୍ତ ହୋଇଥିବା ବ୍ୟକ୍ତି ସମସ୍ତ କର୍ମକୁ ସଂନ୍ୟାସ (ତ୍ୟାଗ) କରିଦେବେ ଏବଂ ତା'ପରେ ଜ୍ଞାନ-ସମାଦରରେ ତତ୍ପର ହୋଇଯିବେ । ଜ୍ଞାନ-ସମାଦରକୁ ହିଁ ଜ୍ଞାନମୟୀ ପୂଜା କହନ୍ତି । ସେହି ପୂଜା ସାକ୍ଷାତ୍ ଶିବଙ୍କ ସଙ୍ଗେ ଜୀବର ଐକ୍ୟବୋଧ କରାଇ ଜୀବନ୍ମୁକ୍ତିରୂପୀ ଫଳ ପ୍ରଦାନ କରେ । ଯତିମାନଙ୍କ ପାଇଁ ଏହି ପୂଜା ସର୍ବୋତ୍ତମ ଓ ଦୋଷଶୂନ୍ୟ । ମହାପ୍ରାଜ୍ଞ ! ତୁମ ପ୍ରତି ସ୍ନେହ ହୋଇଯିବାରୁ ଲୋକାନୁଗ୍ରହ କାମନାରେ ମୁଁ ସେହି ପୂଜାର ବିଧି କହୁଛି, ସାବଧାନ ହୋଇ ଶ୍ରବଣ କର ।

ସାଧକ ପକ୍ଷେ ସମସ୍ତ ଶାସ୍ତ୍ରର ତତ୍ତ୍ୱଜ୍ଞ, ବେଦାନ୍ତରେ ପାରଙ୍ଗମ ଓ ଶ୍ରେଷ୍ଠବୁଦ୍ଧିଯୁକ୍ତ ଆଚାର୍ଯ୍ୟଙ୍କ ଶରଣ ଯିବା ଉଚିତ । ଆଚାର୍ଯ୍ୟଙ୍କ ସମୀପକୁ ଯାଇ ସେହି ବୁଦ୍ଧିମାନ୍ ଓ ଚତୁର ସାଧକ ବିଧିପୂର୍ବକ ଦଣ୍ଡପ୍ରଣାମ ପ୍ରଭୃତି ଦ୍ୱାରା ତାଙ୍କୁ ସନ୍ତୁଷ୍ଟ କରିବା ଉଚିତ । ତା'ପରେ ସେ ଗୁରୁଙ୍କ ଆଜ୍ଞା ନେଇ ବାରଦିନ ପର୍ଯ୍ୟନ୍ତ କେବଳ ଦୁଗ୍ଧାହାର କରି ରହିବେ । ଏହାପରେ ଶୁକ୍ଳପକ୍ଷର ଚତୁର୍ଥୀ ବା ଦଶମୀ ଦିନ ସକାଳୁ ବିଧିବତ୍ ସ୍ନାନାଦି କରି

ଶୁଦ୍ଧଚିତ୍ତ ହୋଇ ନିତ୍ୟକର୍ମ ସାରିବା ପରେ ଗୁରୁଙ୍କୁ ଡକାଇ ଶାସ୍ତ୍ରବିଧିରେ ନାନ୍ଦୀଶ୍ରାଦ୍ଧ କରିବେ। ନାନ୍ଦୀଶ୍ରାଦ୍ଧରେ ବିଶ୍ୱେଦେବଙ୍କ ସଂଜ୍ଞା ସତ୍ୟ ଓ ବସୁ ଅଟେ। ପ୍ରଥମ ଦେବଶ୍ରାଦ୍ଧରେ ନାନ୍ଦୀମୁଖ ଦେବତା ହେଉଛନ୍ତି ବ୍ରହ୍ମା, ବିଷ୍ଣୁ ଓ ମହେଶ। ଦ୍ୱିତୀୟ ଋଷିଶ୍ରାଦ୍ଧରେ ବ୍ରହ୍ମର୍ଷି, ଦେବର୍ଷି ଓ ରାଜର୍ଷି। ତୃତୀୟ ଦିବ୍ୟ ଶ୍ରାଦ୍ଧରେ ସେମାନଙ୍କର ସଂଜ୍ଞା ହେଉଛି ବସୁ, ରୁଦ୍ର ଓ ଆଦିତ୍ୟ। ଚତୁର୍ଥ ମନୁଷ୍ୟଶ୍ରାଦ୍ଧରେ ସନକାଦି ଚ୍ରିଜଣ* ମୁନୀଶ୍ୱର ହିଁ ନାନ୍ଦୀମୁଖ-ଦେବତା। ପଞ୍ଚମ ଭୂତଶ୍ରାଦ୍ଧରେ ପଞ୍ଚମହାଭୂତ, ନେତ୍ରାଦି ଏଗାର ଇନ୍ଦ୍ରିୟ ତଥା ଜରାୟୁଜ ପ୍ରଭୃତି ଚତୁର୍ବିଧ ପ୍ରାଣୀସମୂହଙ୍କୁ ନାନ୍ଦୀମୁଖ ବୋଲି ଧରାଯାଏ। ଷଷ୍ଠ ପିତୃଶ୍ରାଦ୍ଧରେ ପିତା, ପିତାମହ ଓ ପ୍ରପିତାମହ ନାନ୍ଦୀମୁଖର ଦେବତା ଅଟନ୍ତି। ସପ୍ତମ ମାତୃଶ୍ରାଦ୍ଧରେ ମାତା, ପିତାମହୀ ଓ ପ୍ରପିତାମହୀଙ୍କୁ ନାନ୍ଦୀମୁଖର ଦେବତା ବୋଲି ଧରାଯାଇଛି। ଅଷ୍ଟମ ଆତ୍ମଶ୍ରାଦ୍ଧରେ ଆତ୍ମା, ପିତା, ପିତାମହ ଓ ପ୍ରପିତାମହ—ଏ ଚ୍ରିଜଣଙ୍କୁ ନାନ୍ଦୀମୁଖ-ଦେବତା କୁହାଯାଏ¥। ମାତାମହାତ୍ମକ ଶ୍ରାଦ୍ଧରେ ମାତାମହ, ପ୍ରମାତାମହ ଓ ବୃଦ୍ଧପ୍ରମାତାମହ—ଏ ତିନି ନାନ୍ଦୀମୁଖ ଦେବତା ସପତ୍ନୀକ ହୋଇଥାନ୍ତି। ପ୍ରତ୍ୟେକ ଶ୍ରାଦ୍ଧରେ ଦୁଇ ଜଣ ଲେଖାଏଁ ବ୍ରାହ୍ମଣ ହିସାବରେ ଯେତେ ବ୍ରାହ୍ମଣ ଆବଶ୍ୟକ, ସେତିକି ଆମନ୍ତ୍ରିତ କରିବେ ଏବଂ ନିଜେ ଯତ୍ନପୂର୍ବକ ଆଚମନ କରି ପବିତ୍ର ହୋଇ ସେହି ବ୍ରାହ୍ମଣମାନଙ୍କ ପାଦ ଧୋଇଦେବେ। ସେତେବେଳେ ଏହିପରି ଉଚ୍ଚାରଣ କରିବେ— "ଯେଉଁ ବ୍ରାହ୍ମଣଙ୍କ ପଦରେଣୁ ସମସ୍ତ ସମ୍ପତ୍ତିପ୍ରାପ୍ତିରେ କାରଣ, ବିପତ୍ତିକୁ ନଷ୍ଟ କରିବାରେ ଧୂମକେତୁ (ଅଗ୍ନି) ସ୍ୱରୂପ ଏବଂ ଅପାର ସଂସାରସାଗରରୁ ପାର କରିବାରେ ସେତୁ ସମାନ, ସେହି ପଦରେଣୁ ମୋତେ ପବିତ୍ର କରୁ। ଯେଉଁ ବିପ୍ରପଦରେଣୁ ବିପତ୍ତିରୂପୀ ଘନ ଅନ୍ଧକାରକୁ ଦୂର କରିବା ପାଇଁ ସୂର୍ଯ୍ୟ ତୁଲ୍ୟ, ଅଭୀଷ୍ଟ ଅର୍ଥ ପ୍ରଦାନ କରିବା ନିମନ୍ତେ କାମଧେନୁ ତୁଲ୍ୟ ତଥା ସମସ୍ତ ତୀର୍ଥଙ୍କର ପବିତ୍ରମୂର୍ତ୍ତି ସଦୃଶ, ତାହା ମୋତେ ରକ୍ଷା କରୁ।✦

ଏପରି କହି ଭୂମିରେ ଲୋଟି ସାଷ୍ଟାଙ୍ଗ ପ୍ରଣାମ କରିବେ। ଏହାପରେ ପୂର୍ବାଭିମୁଖ ହୋଇ ବସି ଭଗବାନ ଶିବଙ୍କ ଚରଣଯୁଗଳକୁ ଚିନ୍ତନ କରି ସ୍ଥିରଆସନ ଗ୍ରହଣ କରିବେ। ହାତରେ ପବିତ୍ରୀ ଧାରଣ କରି ଏବଂ ଶୁଦ୍ଧପୂତ ହୋଇ ନୂତନ ଯଜ୍ଞୋପବୀତ ପିନ୍ଧି ତ୍ରିବାର ପ୍ରାଣାୟାମ କରିବେ। ଏହାପରେ ତିଥି ପ୍ରଭୃତି ସ୍ମରଣ କରି ଏହିପରି ସଂକଳ୍ପ କରିବେ—"ମୋର ସଂନ୍ୟାସର ଅଙ୍ଗସ୍ୱରୂପ ପ୍ରଥମେ ବିଶ୍ୱେଦେବ ପୂଜା, ପରେ ଦେବାଦି ଅଷ୍ଟବିଧ ଶ୍ରାଦ୍ଧ ଶେଷରେ ମାତାମହଶ୍ରାଦ୍ଧ ହେବ, ତାହାକୁ ଆପଣଙ୍କ ଆଜ୍ଞାକ୍ରମେ ମୁଁ ପାର୍ବଣ ବିଧିରେ ସମ୍ପନ୍ନ କରିବି।" ଏପରି ସଂକଳ୍ପ କରି ଆସନ ପାଇଁ ଦକ୍ଷିଣଦିଗରୁ ଆରମ୍ଭ କରି ଉତ୍ତରୋତ୍ତର କୁଶ ପକାଇବେ। ତା'ପରେ ଆଚମନ କରି ଛିଡ଼ା ହୋଇ ବର୍ଣ୍ଣକ୍ରମ ଆରମ୍ଭ କରିବେ। ହାତରେ ପବିତ୍ରୀ ଧାରଣ କରି ଦୁଇଜଣ ବ୍ରାହ୍ମଣଙ୍କ କରସ୍ପର୍ଶ କରି ଏହିପରି ଉଚ୍ଚାରଣ କରିବେ—

"ବିଶ୍ୱେଦେବାର୍ଥଂ ଭବନ୍ତୌ ବୃଣେ।
ଭବଦ୍ଭ୍ୟାଂ ନାନ୍ଦୀଶ୍ରାଦ୍ଧେ କ୍ଷଣଃ ପ୍ରସାଦନୀୟଃ।"

ଅର୍ଥାତ୍ ମୁଁ ବିଶ୍ୱେଦେବ ଶ୍ରାଦ୍ଧ ନିମନ୍ତେ ଆପଣ ଦୁହିଙ୍କୁ ବରଣ କରୁଛି। ଆପଣ ଦୁହେଁ

* ସନକ, ସନନ୍ଦନ, ସନାତନ ଓ ସନତ୍କୁମାର।

¥ ଧର୍ମସିନ୍ଧୁକାର ପ୍ରଭୃତି ଆତ୍ମଶ୍ରାଦ୍ଧରେ ମଧ୍ୟ ତିନୋଟି ନାନ୍ଦୀମୁଖର ଉଲ୍ଲେଖ କରିଛନ୍ତି; ଯଥା—ଆତ୍ମା, ପିତା ଓ ପିତାମହ।

✦ ସମସ୍ତସମ୍ପତ୍ସମବାପ୍ତିହେତବଃ ସମୁତ୍ଥିତାପତ୍କୁଳଧୂମକେତବଃ। ଅପାରସଂସାରସମୁଦ୍ରସେତବଃ ପୁନନ୍ତୁ ମାଂ ବ୍ରାହ୍ମଣପାଦରେଣବଃ॥
ଆପଦ୍ଘନଧ୍ୱାନ୍ତସହସ୍ରଭାନବଃ ସମୀହିତାର୍ଥାର୍ପଣକାମଧେନବଃ। ସମସ୍ତତୀର୍ଥାମ୍ବୁପବିତ୍ରମୂର୍ତ୍ତୟୋ ରକ୍ଷନ୍ତୁ ମାଂ ବ୍ରାହ୍ମଣପାଦପାଂସବଃ॥
(ଶି. ପୁ. କୈ. ସଂ. ୧୨।୪୪-୪୫)

କୃପା କରି ନାନ୍ଦୀଶ୍ରାଦ୍ଧ ପାଇଁ ସମୟ ଦିଅନ୍ତୁ ।'' ଏପରି ବାକ୍ୟ ସମସ୍ତ ଶ୍ରାଦ୍ଧ ପାଇଁ ଆସିଥିବା ବ୍ରାହ୍ମଣଙ୍କୁ କହିବେ । ଏହା ହିଁ ସର୍ବତ୍ର ବ୍ରାହ୍ମଣବରଣର ବିଧିର କ୍ରମ ।

ବରଣ କାର୍ଯ୍ୟ ପୂର୍ଣ୍ଣ ହୋଇଯିବା ପରେ ଦଶଟି ମଣ୍ଡଳ ନିର୍ମାଣ କରିବେ । ଉତ୍ତରରୁ ଆରମ୍ଭ କରି ଦଶଟି ମଣ୍ଡଳକୁ ଅକ୍ଷତରେ ପୂଜା କରି ସେଗୁଡ଼ିରେ କ୍ରମାନ୍ୱୟରେ ବ୍ରାହ୍ମଣଙ୍କୁ ସ୍ଥାପିତ କରିବେ । ତା'ପରେ ସେମାନଙ୍କ ପାଦରେ ଅକ୍ଷତ ପ୍ରଭୃତି ଦେବେ । ତା'ପରେ ସମ୍ବୋଧନପୂର୍ବକ ବିଶ୍ୱେଦେବ ଆଦି ନାମ ଉଚ୍ଚାରଣ କରି କୁଶ, ଫୁଲ, ଅକ୍ଷତ ଓ ଜଳରେ 'ଇଦଂ ବଃ ପାଦ୍ୟମ୍' କହି ପାଦ୍ୟ ନିବେଦନ କରିବେ* ।

ଏହିରୂପେ ପାଦ୍ୟ ଦେଇସାରି ନିଜେ ମଧ୍ୟ ଗୋଡ଼ ଧୋଇ ଉତ୍ତରାଭିମୁଖୀ ହୋଇ ବସି ଆଚମନ କରିବେ ଏବଂ ପ୍ରତ୍ୟେକ ଶ୍ରାଦ୍ଧ ପାଇଁ ଯେଉଁ ବ୍ରାହ୍ମଣଯୁଗଳଙ୍କୁ ସ୍ଥିର କରିଥିବେ, ସେମାନଙ୍କୁ ଆସନରେ ବସାଇ ନିମ୍ନ ବାକ୍ୟ ଉଚ୍ଚାରଣ କରିବେ– ''ବିଶ୍ୱେଦେବସ୍ୱରୂପସ୍ୟ ବ୍ରାହ୍ମଣସ୍ୟ ଇଦମାସନମ୍ ।'' ଅର୍ଥାତ୍ ବିଶ୍ୱେଦେବସ୍ୱରୂପ ବ୍ରାହ୍ମଣଙ୍କ ପାଇଁ ଏ ଆସନ ସମର୍ପିତ । ଏପରି କହି କୁଶାସନ ଦେବେ ଏବଂ ନିଜେ ମଧ୍ୟ ହାତରେ କୁଶ ଧରି ଆସନରେ ବସିବେ । ଏହାପରେ କହିବେ–''ଅସ୍ମିନ୍ନାନ୍ଦୀମୁଖଶ୍ରାଦ୍ଧେ ବିଶ୍ୱେଦେବାର୍ଥେ ଭବଭ୍ୟାଂ କ୍ଷଣଃ କ୍ରିୟତାମ୍''–ଏ ନାନ୍ଦୀମୁଖ ଶ୍ରାଦ୍ଧରେ ବିଶ୍ୱେଦେବଙ୍କ ପାଇଁ ଆପଣ ଦୁହେଁ କ୍ଷଣେ (ସମୟ ପ୍ରଦାନ) କରନ୍ତୁ ।'' ଏହାପରେ ''ପ୍ରାପ୍ନୁତାଂ ଭବନ୍ତୌ''–ଆପଣ ଦୁହେଁ ଗ୍ରହଣ କରନ୍ତୁ–ଏପରି କହିବେ । ତା'ପରେ ସେ ଦୁହେଁ ଉତ୍ତର ଦେବେ ''ପ୍ରାପ୍ନୁୟାବ''–ଆମେ ଗ୍ରହଣ କରିବୁ । ଯଜମାନ ସେହି ଶ୍ରେଷ୍ଠ ବ୍ରାହ୍ମଣଙ୍କୁ ପ୍ରାର୍ଥନା କରିବେ–''ମୋ ମନୋରଥ ପୂରଣ ହେଉ, ସଂକଳ୍ପର ସିଦ୍ଧି ହେଉ–ଏଥିପାଇଁ ଅନୁଗ୍ରହ କରନ୍ତୁ ।''

ତା'ପରେ (ପଦ୍ଧତି ଅନୁସାରେ ଅର୍ଘ୍ୟ ଦେବେ, ପୂଜା କରି) ଧୁଆ କଦଳୀପତ୍ର ଇତ୍ୟାଦି ଉପରେ ପକ୍ୱ ଅନ୍ନାଦି ଭୋଜ୍ୟ ପଦାର୍ଥ ପରିବେଷଣ କରି ପୃଥକ୍ ପୃଥକ୍ କୁଶ ବିଛାଇ ଓ ସ୍ୱୟଂ ସେଠାରେ ଜଳ ସିଞ୍ଚି ପ୍ରତ୍ୟେକ ପାତ୍ରରେ ଆଦରପୂର୍ବକ ଦୁଇ ହାତ ଲଗାଇ 'ପୃଥିବୀ ତେ ପାତ୍ରମ୍''⁑ ଇତ୍ୟାଦି ମନ୍ତ୍ର ପାଠ କରିବେ । ସେଠାରେ ଉପସ୍ଥିତ ଦେବତା ପ୍ରଭୃତିଙ୍କ ନାମକୁ ଚତୁର୍ଥ୍ୟନ୍ତ କରି ଅକ୍ଷତସହିତ ଜଳ ଧରି 'ସ୍ୱାହା' ଉଚ୍ଚାରଣପୂର୍ବକ ଅନ୍ନ ଅର୍ପିତ କରିବେ ଏବଂ ଶେଷରେ 'ନ ମମ' ଯୋଡ଼ିବେ ।✦ ସର୍ବତ୍ର ଅର୍ଥାତ୍ ମାତା ପ୍ରଭୃତିଙ୍କ ପାଇଁ ମଧ୍ୟ ଅନ୍ନ-ଅର୍ପଣ କରିବାରେ ଏହି ବିଧି ଅନୁସରଣ କରିବେ ।

ଶେଷରେ ପ୍ରାର୍ଥନା କରିବେ–

ଯତ୍ ପାଦପଦ୍ମସ୍ମରଣାଦ୍ ଯସ୍ୟ ନାମଜପାଦପି ।
ନ୍ୟୂନଂ କର୍ମ ଭବେତ୍ ପୂର୍ଣ୍ଣଂ ତଂ ବନ୍ଦେ ସାମ୍ବମୀଶ୍ୱରମ୍ ॥

''ଯାହାଙ୍କ ଚରଣାରବିନ୍ଦର ଚିନ୍ତନ ଓ ନାମର

---

* ପ୍ରଥମ ମଣ୍ଡଳରେ ଦୁଇ ବିଶ୍ୱେଦେବଙ୍କ ପାଇଁ, ପରବର୍ତ୍ତୀ ଆଠଟି ମଣ୍ଡଳରେ କ୍ରମଶଃ ଆଠଜଣ ଶ୍ରାଦ୍ଧ ଅଧିକାରୀଙ୍କ ପାଇଁ ଏବଂ ଦଶମ ମଣ୍ଡଳରେ ସପତ୍ନୀକ ମାତାମହ ପ୍ରଭୃତିଙ୍କ ପାଇଁ ପାଦ୍ୟ ଅର୍ପଣ କରିବା ଉଚିତ । ଅର୍ପଣର ବାକ୍ୟପ୍ରୟୋଗ ତଳେ ଦିଆଗଲା–

ଓଁ ସତ୍ୟବସୁସଂଜ୍ଞକାଃ ବିଶ୍ୱେଦେବାଃ ନାନ୍ଦୀମୁଖାଃ ଭୂର୍ଭୁବଃ ସ୍ୱଃ ଇଦଂ ବଃ ପାଦ୍ୟଂ ପାଦାବନେଜନଂ ପାଦପ୍ରକ୍ଷାଳନଂ ବୃଦ୍ଧିଃ ॥ ୧ ॥
ଓଁ ବ୍ରହ୍ମବିଷ୍ଣୁମହେଶ୍ୱରାଃ ନାନ୍ଦୀମୁଖାଃ ଭୂର୍ଭୁବଃ ସ୍ୱଃ ଇଦଂ ବଃ ପାଦ୍ୟଂ ପାଦାବନେଜନଂ ପାଦପ୍ରକ୍ଷାଳନଂ ବୃଦ୍ଧିଃ ॥ ୨ ॥
ଓଁ ଦେବର୍ଷିବ୍ରହ୍ମର୍ଷିକ୍ଷେତ୍ରର୍ଷୟୋ ନାନ୍ଦୀମୁଖାଃ ଭୂର୍ଭୁବଃ ସ୍ୱଃ ଇଦଂ ବଃ ପାଦ୍ୟଂ ପାଦାବନେଜନଂ ପାଦପ୍ରକ୍ଷାଳନଂ ବୃଦ୍ଧିଃ ॥ ୩ ॥
ଏହିରୂପେ ଅନ୍ୟ ଶ୍ରାଦ୍ଧ ପାଇଁ ବାକ୍ୟ ତିଆରି କରିବା ଆବଶ୍ୟକ ।

⁑ ପୃଥିବୀ ତେ ପାତ୍ରଂ ଦ୍ୟୌରପିଧାନଂ ବ୍ରାହ୍ମଣସ୍ୟ ମୁଖେଽମୃତେଽମୃତଂ ଜୁହୋମି ସ୍ୱାହା ।' ଏହା ପୂରା ମନ୍ତ୍ର ଅଟେ ।

✦ ବାକ୍ୟର ପ୍ରୟୋଗ ଏହିପରି–'ଓଁ ସତ୍ୟବସୁସଂଜ୍ଞକେଭ୍ୟୋ ବିଶ୍ୱେଭ୍ୟୋ ଦେବେଭ୍ୟୋ ନାନ୍ଦୀମୁଖେଭ୍ୟଃ ସ୍ୱାହା ନ ମମ' ଇତ୍ୟାଦି ।

ଜପମାତ୍ରକେ ନ୍ୟୂନତାଯୁକ୍ତ ବା ଅପୂର୍ଣ୍ଣ କର୍ମ ପୂର୍ଣ୍ଣ ହୋଇଯାଏ, ସେହି ସାମ୍ବସଦାଶିବ (ଉମା-ମହେଶ୍ୱର)ଙ୍କୁ ମୁଁ ବନ୍ଦନା କରୁଛି ।''

ଏହା ପଢ଼ିସାରି କହିବେ—''ବ୍ରାହ୍ମଣଗଣ ! ମୋ ଦ୍ୱାରା କୃତ ଏ ନାନ୍ଦୀମୁଖ ଶ୍ରାଦ୍ଧ ଯଥୋକ୍ତ-ରୂପରେ ପରିପୂର୍ଣ୍ଣ ହେଉ ବୋଲି ଆଶୀର୍ବାଦ ଦିଅନ୍ତୁ ।'' ଏପରି ପ୍ରାର୍ଥନା ଦ୍ୱାରା ବ୍ରାହ୍ମଣମାନଙ୍କୁ ପ୍ରସନ୍ନ କରି ସେମାନଙ୍କ ଆଶୀର୍ବାଦ ନେବେ ଓ ହାତରେ ଧରିଥିବା ଜଳ ତଳେ ପକାଇଦେବେ । ତା'ପରେ ଦଣ୍ଡ ପରି ତଳେ ଲୋଟି ପ୍ରଣାମ କରିବେ ଏବଂ ଉଠି ପୁଣି ବ୍ରାହ୍ମଣଙ୍କୁ କହିବେ—''ଏ ଅନ୍ନ ଅମୃତସ୍ୱରୂପ ହେଉ ।'' ତା'ପରେ ଉଦାରଚେତା ସାଧକ ହାତ ଯୋଡ଼ି ଅତ୍ୟନ୍ତ ପ୍ରସନ୍ନତାପୂର୍ବକ ପ୍ରାର୍ଥନା କରିବେ । ଶ୍ରୀରୁଦ୍ରସୂକ୍ତକୁ ଚମକାଧ୍ୟାୟ ସହିତ ପାଠ କରିବେ । ପୁରୁଷସୂକ୍ତ ମଧ୍ୟ ବିଧିବତ୍ ଆବୃତ୍ତି କରିବେ । ମନରେ ଭଗବାନ ସଦାଶିବଙ୍କୁ ଧ୍ୟାନ କରି 'ଈଶାନଃ ସର୍ବବିଦ୍ୟାନାମ୍' ଇତ୍ୟାଦି ପାଞ୍ଚଟି ମନ୍ତ୍ର ଜପ କରିବେ । ବ୍ରାହ୍ମଣମାନେ ଭୋଜନ କରି ସାରିଲେ ରୁଦ୍ରସୂକ୍ତ ପାଠ ଶେଷ କରି କ୍ଷମାପ୍ରାର୍ଥନାପୂର୍ବକ ବ୍ରାହ୍ମଣମାନଙ୍କୁ ପୁନଃ 'ଅମୃତାପିଧାନମସି ସ୍ୱାହା' କହି ଉତ୍ତରାପୋଶନ ପାଇଁ ଜଳ ଦେବେ ।

ଏହାପରେ ହାତଗୋଡ଼ ଧୋଇ ଆଚମନ କରି ପିଣ୍ଡଦାନ ସ୍ଥାନକୁ ଯିବେ । ସେଠାରେ ପୂର୍ବାଭିମୁଖ ହୋଇ ବସି ମୌନଭାବରେ ତିନି ଥର ପ୍ରାଣାୟାମ କରିବେ । ଏହାପରେ 'ମୁଁ ନାନ୍ଦୀମୁଖ ଶ୍ରାଦ୍ଧର ଅଙ୍ଗଭୂତ ପିଣ୍ଡଦାନ କରିବି'—ଏପରି ସଂକଳ୍ପ କରି ଦକ୍ଷିଣରୁ ଉତ୍ତର ଆଡ଼କୁ ନଅଟି ରେଖା ଟାଣିବେ ଏବଂ ରେଖା ଉପରେ ଯଥାକ୍ରମେ ବାରଟି ଲେଖାଏଁ କୁଶ ପୂର୍ବାଗ୍ର କରି ବିଛାଇବେ । ତା'ପରେ ଦକ୍ଷିଣପଟରୁ ଦେବତା ପ୍ରଭୃତିଙ୍କ ପାଇଁ ପାଞ୍ଚଟି * ସ୍ଥାନରେ ମୌନ ହୋଇ ଅକ୍ଷତ ଓ ଜଳ ପକାଇବେ । ପିତୃବର୍ଗଙ୍କ ପାଇଁ ତିନୋଟି ❦ ସ୍ଥାନରେ ଅକ୍ଷତ ଓ ଜଳ ପକାଇ ନବମ ବା ମାତାମହାଦିଙ୍କ ସ୍ଥାନରେ ମଧ୍ୟ ମାର୍ଜନ କରିବେ ।✦ ତା'ପରେ 'ଅତ୍ର ପିତରୋ ମାଦୟଧ୍ୱମ୍' କହି ଦେବାଦିଙ୍କ ପାଞ୍ଚ ସ୍ଥାନରେ ଅକ୍ଷତ ଓ ଜଳ ପକାଇବେ । ଏହିରୂପେ ଦେବତାଙ୍କ ନାମକୁ ଚତୁର୍ଥ୍ୟନ୍ତ କରି ପାଞ୍ଚଟି ସ୍ଥାନରେ ପ୍ରତ୍ୟେକ ନିମନ୍ତେ ତିନୋଟି ଲେଖାଏଁ ପିଣ୍ଡ ଦେବେ ।§ (ଅବଶିଷ୍ଟ ସ୍ଥାନରେ ମଧ୍ୟ ଏହିପରି କରିବେ ।) ନିଜ ଗୃହ୍ୟସୂତ୍ରରେ ନିର୍ଦ୍ଦେଶିତ ପଦ୍ଧତି ଅନୁସାରେ ସମସ୍ତ ପିଣ୍ଡ ପୃଥକ୍ ପୃଥକ୍ ହେବା ଉଚିତ । ତା'ପରେ ପିତୃଗଣଙ୍କ ସାଦ୍‌ଗୁଣ୍ୟ ନିମନ୍ତେ ଜଳ ଓ ଅକ୍ଷତ ଅର୍ପଣ କରିବେ । ତା'ପରେ ନିଜ ହୃଦୟକମଳରେ ସଦାଶିବଙ୍କୁ ଧ୍ୟାନ କରିବେ ଏବଂ ପୂର୍ବୋକ୍ତ 'ଯତ୍ ପାଦପଦ୍ମସ୍ମରଣାତ୍...' ଇତ୍ୟାଦି ଶ୍ଳୋକ ପୁନର୍ବାର ପଢ଼ି ବ୍ରାହ୍ମଣଙ୍କୁ ନମସ୍କାର କରିବା ସହ ଯଥାଶକ୍ତି ଦକ୍ଷିଣା ଦେବେ । ତା'ପରେ ତ୍ରୁଟିମାର୍ଜନ ନିମନ୍ତେ କ୍ଷମା ପ୍ରାର୍ଥନା କରି ଦେବତା ଓ ପିତୃଗଣଙ୍କୁ

---

* ଦେବ, ଋଷି, ଦିବ୍ୟ ମନୁଷ୍ୟ ଓ ଭୂତ—ଏମାନଙ୍କର ହିଁ ଏ ପାଞ୍ଚଟି ସ୍ଥାନ ।

❦ ପିତା ପ୍ରଭୃତି, ମାତା ପ୍ରଭୃତି ଓ ଆତ୍ମା ପ୍ରଭୃତି—ଏମାନଙ୍କର ହିଁ ଏ ତିନୋଟି ସ୍ଥାନ ।

✦ ସେତେବେଳେ ଏହିପରି କହିବେ—'ଶୁନ୍ଧନ୍ତାଂ ବ୍ରହ୍ମାଣୋ ନାନ୍ଦୀମୁଖାଃ ଶୁନ୍ଧନ୍ତାଂ ବିଷ୍ଣବୋ ନାନ୍ଦୀମୁଖାଃ ଶୁନ୍ଧନ୍ତାଂ ମହେଶ୍ୱରା ନାନ୍ଦୀମୁଖାଃ ।' ଏହା ପ୍ରଥମ ରେଖାରେ ମାର୍ଜନ କରିବା ବେଳେ କହିବେ । ଅନ୍ୟ ରେଖାମାନଙ୍କ ଉପରେ ମାର୍ଜନ କଲାବେଳେ ମଧ୍ୟ ଏହିପରି କହିଚାଲିବେ ।

§ ପିଣ୍ଡଦାନବାକ୍ୟ ଏହିପରି—'ବ୍ରହ୍ମଣେ ନାନ୍ଦୀମୁଖାୟ ସ୍ୱାହା', 'ବିଷ୍ଣବେ ନାନ୍ଦୀମୁଖାୟ ସ୍ୱାହା' ଇତ୍ୟାଦି ।

ଧର୍ମସିନ୍ଧୁକାର ପ୍ରତ୍ୟେକ ଦେବତାଙ୍କ ପାଇଁ ଦୁଇଟି ଲେଖାଏଁ ପିଣ୍ଡର ବିଧାନ କରିଛନ୍ତି, ତେଣୁ ନଅଟି ସ୍ଥାନର ୨୭ ଦେବତାଙ୍କ ପାଇଁ ୫୪ ପିଣ୍ଡ ହେବ ।

ବିସର୍ଜନ କରିବେ । ପିଣ୍ଡୋତ୍ସର୍ଗ କରି ତାହାକୁ ଗୋରୁଙ୍କୁ ଖୋଇଦେବେ ଅଥବା ଜଳାଶୟରେ ପକାଇଦେବେ । ତା'ପରେ ପୁଣ୍ୟାହ ବାଚନ କରି ସ୍ୱଜନଙ୍କ ସହିତ ଭୋଜନ କରିବେ ।

ପରଦିନ ସକାଳୁ ଉଠି ଶୁଦ୍ଧବୁଦ୍ଧି ସାଧକ ଉପବାସପୂର୍ବକ ବ୍ରତ କରିବେ । କାଖ ଓ ଉପସ୍ଥର କେଶକୁ ଛାଡ଼ି ଆଉ ସବୁ କେଶ ସଫା କରି ଲଣ୍ଡିତ ହୋଇଯିବେ । କେବଳ ଶିଖାରେ ସାତ ଆଠଟି କେଶ ଛାଡ଼ିଦେବେ । ତା'ପରେ ସ୍ନାନ ସାରି ଧୌତବସ୍ତ୍ର ପରିଧାନ କରିବେ । ଦୁଇଥର ଆଚମନ କରି ମୌନ ହୋଇ ବିଧିବତ୍ ଭସ୍ମ ଧାରଣ କରିବେ । ପୁଣ୍ୟାହବାଚନ କରି ଏବଂ ପ୍ରୋକ୍ଷଣ ଦ୍ୱାରା ନିଜର ବାହ୍ୟାଭ୍ୟନ୍ତରକୁ ଶୁଦ୍ଧ କରି ହୋମ ଦ୍ରବ୍ୟ ଓ ଆଗ୍ନେୟଙ୍କ ଦକ୍ଷିଣାକୁ ଛାଡ଼ି ଅନ୍ୟ ସବୁକିଛି ମହେଶ୍ୱରାର୍ପଣବୁଦ୍ଧିରେ ବ୍ରାହ୍ମଣଙ୍କୁ ଓ ବିଶେଷତଃ ଶିବଭକ୍ତଙ୍କୁ ବାଣ୍ଟିଦେବେ । ତା'ପରେ ଗୁରୁରୂପଧାରୀ ଶିବଙ୍କ ପାଇଁ ବସ୍ତ୍ରାଦି ଦକ୍ଷିଣାରୂପେ ଦେବେ । ଦଣ୍ଡବତ୍ ଭୂମିଷ୍ଠ ପ୍ରଣାମ କରିବା ପରେ ଧୁଆ ହୋଇ ପବିତ୍ର ହୋଇଥିବା ଡୋରି, କୌପୀନ, ବସ୍ତ୍ର ଓ ଦଣ୍ଡ ଇତ୍ୟାଦି ଧାରଣ କରିବେ । ତା'ପରେ ହୋମଦ୍ରବ୍ୟ ଓ ସମିଧ ଇତ୍ୟାଦି ନେଇ ସମୁଦ୍ର ବା ନଦୀର ତଟରେ, ପର୍ବତରେ, ଶିବାଳୟରେ, ବନରେ ଅଥବା ଗୋଶାଳାରେ ଉତ୍ତମ ସ୍ଥାନଟିଏ ଚୟନ କରି ସେଠାରେ ବସି ଆଚମନପୂର୍ବକ ମାନସିକ ଜପ କରିବେ । ତା'ପରେ 'ଓଁ ନମୋ ବ୍ରହ୍ମଣେ' ମନ୍ତ୍ର ତ୍ରିବାର ଜପ କରି 'ଅଗ୍ନିମୀଳେ ପୁରୋହିତମ୍' ମନ୍ତ୍ର ପଢ଼ିବେ । ଏହାପରେ 'ଅଥ ମହାବ୍ରତମ୍', 'ଅଗ୍ନିର୍ବୈ ଦେବାନାମ୍', 'ଏତସ୍ୟ ସମାମ୍ନାୟମ୍', 'ଓଁ ଇଷେ ତ୍ୱୋର୍ଜେ ତ୍ୱା ବାୟବସ୍ଥ', 'ଅଗ୍ନ ଆୟାହି ବୀତୟେ' ଏବଂ 'ଶଂ ନୋ ଦେବୀରଭୀଷ୍ଟୟେ' ଇତ୍ୟାଦି ପାଠ କରିବେ । ତା'ପରେ 'ମ ଯ ର ସ ତ ଜ ଭ ନ ଲ ଗ' 'ପଞ୍ଚସଂବତ୍ସରମୟମ୍', 'ସମାମ୍ନାୟଃ ସମାମ୍ନାତଃ,' 'ଅଥ ଶିକ୍ଷାଂ ପ୍ରବକ୍ଷାମି', 'ବୃଦ୍ଧିରାଦୈଚ୍', 'ଅଥାତୋ ଧର୍ମଜିଜ୍ଞାସା', 'ଅଥାତୋ ବ୍ରହ୍ମଜିଜ୍ଞାସା' ଇତ୍ୟାଦି ପାଠ କରିବେ । ଏହାପରେ ଯଥାସମ୍ଭବ ବେଦ, ପୁରାଣ ଇତ୍ୟାଦି ସ୍ୱାଧ୍ୟାୟ କରିବେ । ତା'ପରେ 'ଓଁ ବ୍ରହ୍ମଣେ ନମଃ', 'ଓଁ ଇନ୍ଦ୍ରାୟ ନମଃ', 'ଓଁ ସୂର୍ଯ୍ୟାୟ ନମଃ', 'ଓଁ ସୋମାୟ ନମଃ', 'ଓଁ ପ୍ରଜାପତୟେ ନମଃ','ଓଁ ଆତ୍ମନେ ନମଃ', 'ଓଁ ଅନ୍ତରାତ୍ମନେ ନମଃ', 'ଓଁ ଜ୍ଞାନାତ୍ମନେ ନମଃ', 'ଓଁ ପରମାତ୍ମନେ ନମଃ' ଇତ୍ୟାଦି ରୂପରେ ବ୍ରହ୍ମାଦି ଶବ୍ଦ ପୂର୍ବରେ 'ଓଁ' ଓ ଶେଷରେ 'ନମଃ' ଯୋଡ଼ି ନାମକୁ ଚତୁର୍ଥ୍ୟନ୍ତ କରି ଜପିବେ । ଏହାପରେ ତିନି ମୁଠା ଛତୁଆ ନେଇ ମନ୍ତ୍ରୋଚ୍ଚାରଣପୂର୍ବକ ତ୍ରିବାର ଖାଇବା ପରେ ପ୍ରଣବରେ ଦୁଇଥର ଆଚମନ କରି ନାଭିକୁ ସ୍ପର୍ଶ କରିବେ । ସେତେବେଳେ ନିମ୍ନୋକ୍ତ ମନ୍ତ୍ରକୁ ଆରମ୍ଭରେ ପ୍ରଣବ ଓ ଶେଷରେ 'ନମଃ ସ୍ୱାହା' ଯୋଡ଼ି ଉଚ୍ଚାରଣ କରିବେ । ଯଥା—'ଓଁ ଆତ୍ମନେ ନମଃ ସ୍ୱାହା', 'ଓଁ ଅନ୍ତରାତ୍ମନେ ନମଃ ସ୍ୱାହା', 'ଓଁ ଜ୍ଞାନାତ୍ମନେ ନମଃ ସ୍ୱାହା', 'ଓଁ ପରମାତ୍ମନେ ନମଃ ସ୍ୱାହା', 'ଓଁ ପ୍ରଜାପତୟେ ନମଃ ସ୍ୱାହା' ଇତି । ଏହାପରେ ପୃଥକ୍ ପୃଥକ୍ ପ୍ରଣବମନ୍ତ୍ରରେ* କ୍ଷୀର ଓ ଦହିମିଶ୍ରିତ ଘିଅକୁ (ଅଥବା କେବଳ ଜଳକୁ) ତ୍ରିବାର ଗ୍ରଚି ପୁନଃ ଦୁଇଥର ଆଚମନ କରିବେ? ଏହାପରେ ମନକୁ ସ୍ଥିର କରି ସୁସ୍ଥିର ଆସନରେ ପୂର୍ବାଭିମୁଖ ହୋଇ ବସି ଶାସ୍ତ୍ରୋକ୍ତ ବିଧିରେ ତ୍ରିବାର ପ୍ରାଣାୟାମ କରିବେ । (ଅଧ୍ୟାୟ ୧୨)



* ଧର୍ମସିନ୍ଧୁକାର ଏଥିନିମନ୍ତେ ତିନୋଟି ମନ୍ତ୍ର ଲେଖିଛନ୍ତି । ପ୍ରଥମ ଥର ଗ୍ରଚିବା ବେଳେ 'ତ୍ରିବୃଦସି', ଦ୍ୱିତୀୟ ଥର 'ପ୍ରବୃଦସି' ଓ ତୃତୀୟ ଥର 'ବିବୃଦସି' ଉଚ୍ଚାରଣ କରିବେ ।

# ସଂନ୍ୟାସ ଗ୍ରହଣର ଶାସ୍ତ୍ରୀୟ ବିଧି—ଗଣପତିପୂଜା, ହୋମ, ତତ୍ତ୍ୱଶୁଦ୍ଧି, ସାବିତ୍ରୀ ପ୍ରବେଶ, ସର୍ବସଂନ୍ୟାସ ଓ ଦଣ୍ଡଧାରଣ ଇତ୍ୟାଦିର ବିଧି

ସ୍କନ୍ଦ କହୁଛନ୍ତି—ବାମଦେବ ! ଏହାପରେ ମଧ୍ୟାହ୍ନ କାଳରେ ସ୍ନାନ କରି ସାଧକ ସଂଯତମନା ହୋଇ ଗନ୍ଧ, ପୁଷ୍ପ ଓ ଅକ୍ଷତ ପ୍ରଭୃତି ପୂଜାଦ୍ରବ୍ୟ ଦ୍ୱାରା ନୈର୍ଋତ୍ୟକୋଣରେ ଦେବପୂଜିତ ବିଘ୍ନରାଜ ଗଣେଶଙ୍କୁ ପୂଜା କରିବେ । 'ଗଣାନାଂ ତ୍ୱା' ଇତ୍ୟାଦି ମନ୍ତ୍ରରେ ବିଧିପୂର୍ବକ ଗଣେଶଙ୍କୁ ଆବାହନ କରିବେ । ଆବାହନ ପରେ ତାଙ୍କ ସ୍ୱରୂପକୁ ନିମ୍ନମତେ ଧ୍ୟାନ କରିବେ । ତାଙ୍କର ଅଙ୍ଗକାନ୍ତି ଲାଲ, ଶରୀର ବିଶାଳ । ସବୁ ପ୍ରକାର ଆଭୂଷଣ ତାଙ୍କର ଶୋଭାବର୍ଦ୍ଧନ କରୁଛି । ତାଙ୍କ କରକମଳରେ ଶୋଭା ପାଉଛି ପାଶ, ଅଙ୍କୁଶ, ଅକ୍ଷମାଳା ଓ ବରମୁଦ୍ରା । ଏହିରୂପେ ଆବାହନ ଓ ଧ୍ୟାନାଦି କରିବା ପରେ ଶମ୍ଭୁପୁତ୍ର ଗଜାନନଙ୍କୁ ଖିରି, ପିଠା, ନଡ଼ିଆ ଓ ଗୁଡ଼ର ଉତ୍ତମ ନୈବେଦ୍ୟ ନିବେଦନ କରିବେ । ତା'ପରେ ତାମ୍ବୂଳ ଦେଇ ସନ୍ତୁଷ୍ଟ କରିସାରି ନମସ୍କାର କରିବେ ଏବଂ ନିଜ ଅଭୀଷ୍ଟ କାର୍ଯ୍ୟ ନିର୍ବିଘ୍ନରେ ସମାପ୍ତ ହେବାକୁ ପ୍ରାର୍ଥନା କରିବେ ।

ତା'ପରେ ନିଜ ଗୃହ୍ୟସୂତ୍ରରେ ନିର୍ଦ୍ଦେଶିତ ବିଧି ଅନୁସାରେ ଔପାସନାଗ୍ନିରେ ଆଜ୍ୟଭାଗାନ୍ତ* ଆହୁତି ଦେଇ ଅଗ୍ନିଦେବସମ୍ବନ୍ଧୀୟ ଯଜ୍ଞବିଷୟକ ସ୍ଥାଲୀପାକ ହୋମ କରିବେ । ଏହାପରେ 'ଭୂଃ ସ୍ୱାହା' ମନ୍ତ୍ରରେ ପୂର୍ଣ୍ଣାହୁତି ହୋମ କରି ହୋମକାର୍ଯ୍ୟ ସମାପ୍ତ କରିବେ । ପୁଣି ନିରଳସ ହୋଇ ଅପରାହ୍ଣକାଳ ପର୍ଯ୍ୟନ୍ତ ଗାୟତ୍ରୀମନ୍ତ୍ର ଜପ କରିବେ । ତା'ପରେ ସ୍ନାନ କରି ସାୟଂକାଳୀନ ସଂଧ୍ୟୋପାସନା ଏବଂ ଉପାସନାସମ୍ବନ୍ଧୀୟ ନିତ୍ୟହୋମ କରିବା ପରେ ଗୁରୁଙ୍କ ଆଜ୍ଞାରେ ଚରୁ ରାନ୍ଧିବେ । ତା'ପରେ ଅଗ୍ନିରେ ସମିଧ, ଚରୁ ଓ ଘିଅକୁ ରୁଦ୍ରସୂକ୍ତ ତଥା ସଦ୍ୟୋଜାତାଦି ପାଞ୍ଚମନ୍ତ୍ରରେ ଆହୁତି ଦେବେ । ଅଗ୍ନିରେ ଉମାମହେଶ୍ୱରଙ୍କ ଭାବନା କରିବେ ଏବଂ ଗୌରୀଦେବୀଙ୍କୁ ଚିନ୍ତନ କରି 'ଗୌରୀର୍ମିମାୟ'❦ ମନ୍ତ୍ରରେ ଶହେଆଠ ବାର ଆହୁତି ଦେଇ 'ଅଗ୍ନୟେ ସ୍ୱିଷ୍ଟକୃତେ ସ୍ୱାହା' ମନ୍ତ୍ରରେ ଥରେ ଆହୁତି ଦେବେ ।

ଏପରି ହୋମ କରିସାରି ଅଗ୍ନିର ଉତ୍ତରକୁ କୁଶାସନରେ ବସିବେ । କୁଶାସନ ଉପରେ ମୃଗଚର୍ମ ଓ ତା'ଉପରେ କପଡ଼ା ପଡ଼ିଥିବା ଉଚିତ । ଏପରି ସୁଖଦ ଆସନରେ ମୌନଭାବରେ ସ୍ଥିରଚିତ୍ତ ହୋଇ ବସି ରାତ୍ରିଜାଗରଣପୂର୍ବକ ବ୍ରାହ୍ମମୁହୂର୍ତ୍ତ ପର୍ଯ୍ୟନ୍ତ ଗାୟତ୍ରୀ ଜପ କରିବେ । ଏହାପରେ ସ୍ନାନ କରିବେ । ଜଳସ୍ନାନ କରିବାକୁ ଅସମର୍ଥ ହେଲେ ଭସ୍ମଦ୍ୱାରା ବିଧିପୂର୍ବକ ସ୍ନାନ କରିବେ । ତା'ପରେ ସେହି ଅଗ୍ନିରେ ଚରୁ ରାନ୍ଧି ତାହାକୁ ଘିଅରେ ଜୁଡୁବୁଡୁ କରିଦେବେ । ତାହାକୁ ଅଗ୍ନିରୁ ଓହ୍ଲାଇ ଉତ୍ତର ଦିଗରେ କୁଶ ଉପରେ ଥୋଇବେ । ସେଥିରେ ପୁନଃ ଘିଅ ମିଶାଇବେ । ତା'ପରେ ବ୍ୟାହୃତି ମନ୍ତ୍ର, ରୁଦ୍ରସୂକ୍ତ ଓ ସଦ୍ୟୋଜାତାଦି ପାଞ୍ଚଟି ମନ୍ତ୍ର ଜପିବେ ଏବଂ ଏହି ମନ୍ତ୍ରଗୁଡ଼ିକରେ ଗୋଟିଏ ଲେଖାଏଁ ଆହୁତି ମଧ୍ୟ ଦେବେ । ଭଗବାନ ଶିବଙ୍କ ପଦାରବିନ୍ଦରେ ଚିତ୍ତ ନିବେଶ କରି ପ୍ରଜାପତି, ଇନ୍ଦ୍ର, ବିଶ୍ୱେଦେବ ଓ ବ୍ରହ୍ମାଙ୍କ ପାଇଁ ମଧ୍ୟ ଗୋଟିଏ

---

* କୁଶକଣ୍ଡିକା ପରେ ଅଗ୍ନିରେ ଦିଆଯାଉଥିବା ଚାରିଟି ଆହୁତି ମଧ୍ୟରୁ ପ୍ରଥମ ଦୁଇଟିକୁ 'ଆଘାର' ଓ ଶେଷ ଦୁଇଟିକୁ 'ଆଜ୍ୟଭାଗ' କହନ୍ତି । ପ୍ରଜାପତି ଓ ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ 'ଆଘାର' ତଥା ଅଗ୍ନି ଓ ସୋମଙ୍କ ଉଦ୍ଦେଶ୍ୟରେ 'ଆଜ୍ୟଭାଗ' ଦିଆଯାଏ ।

❦ ପୂର୍ଣ୍ଣ ମନ୍ତ୍ରଟି ହେଲା—'ଗୌରୀର୍ମିମାୟ ସଲିଲାନି ତକ୍ଷତ୍ୟେକପଦୀ ଦ୍ୱିପଦୀ ସା ଚତୁଷ୍ପଦୀ । ଅଷ୍ଟାପଦୀ ନବପଦୀ ବଭୂବୁଷୀ ସହସ୍ରାକ୍ଷରା ପରମେ ବ୍ୟୋମନ୍ ସ୍ୱାହା । (ଋଗ୍‌ବେଦ ମଂ. ୧ ସୂ. ୧୬୪ । ୪୧)

ଲେଖାଏଁ ଆହୁତି ଦେବେ । ଏମାନଙ୍କ ନାମକୁ ଚତୁର୍ଥ୍ୟନ୍ତ କରି ଆରମ୍ଭରେ 'ଓଁ' ଏବଂ ଶେଷରେ 'ନମଃ ସ୍ୱାହା' ଉଚ୍ଚାରଣ କରି ଆହୁତି ଦେବେ । (ଯଥା–'ଓଁ ପ୍ରଜାପତୟେ ନମଃ ସ୍ୱାହା' ଇତ୍ୟାଦି ।) ତା'ପରେ ପୁଣ୍ୟାହବାଚନ କରି 'ଅଗ୍ନୟେ ସ୍ୱାହା' ମନ୍ତ୍ରରେ ଅଗ୍ନିର ମୁଖରେ ଆହୁତି ଦେବେ । ତା'ପରେ 'ପ୍ରାଣାୟ ସ୍ୱାହା' ଇତ୍ୟାଦି ପାଞ୍ଚମନ୍ତ୍ରରେ ଘୃତମିଶ୍ରିତ ଚରୁ ଆହୁତି ଦେବେ । ଏହାପରେ 'ଅଗ୍ନୟେ ସ୍ୱିଷ୍ଟକୃତେ ସ୍ୱାହା' କହି ଗୋଟିଏ ଆହୁତି ଦେବେ । ଏହାପରେ ପୁନଃ ରୁଦ୍ରସୂକ୍ତ ତଥା ଈଶାନାଗ୍ନି ପାଞ୍ଚମନ୍ତ୍ର ଜପିବେ । ମହେଶାଦି ଚତୁର୍ବ୍ୟୂହ ମନ୍ତ୍ର ମଧ୍ୟ ପାଠ କରିବେ । ଏହିରୂପେ ତନ୍ତ୍ରହୋମ କରି ନିଜ ଗୃହ୍ୟଶାଖାରେ ନିର୍ଦ୍ଦେଶିତ ପଦ୍ଧତିରେ ତତ୍ ତତ୍ ଦେବତାଙ୍କ ଉଦ୍ଦେଶ୍ୟରେ ସାଙ୍ଗ ହୋମ କରିବେ । ଏହିରୂପେ ଯେଉଁ ଅଗ୍ନିମୁଖ ଆଦି କର୍ମତନ୍ତ୍ର ପ୍ରବର୍ତ୍ତିତ କରାଯାଇଛି, ତାହା ନିର୍ବାହ କରି ବିରଜା ହୋମ କରିବେ । ଛବିଶ ତତ୍ତ୍ୱରୂପୀ ଏ ଶରୀରରେ ଲୁକ୍କାୟିତ ରହିଥିବା ତତ୍ତ୍ୱମାନଙ୍କ ଶୁଦ୍ଧି ପାଇଁ ବିରଜା ହୋମ କରିବା ଉଚିତ ।

ସେତେବେଳେ କହିବେ "ମୋ ଶରୀରରେ ଥିବା ସମସ୍ତ ତତ୍ତ୍ୱର ଶୁଦ୍ଧିକରଣ ହେଉ ।" ଏ ପରିପ୍ରେକ୍ଷୀରେ ଆତ୍ମତତ୍ତ୍ୱର ଶୁଦ୍ଧି ପାଇଁ ଆରୁଣକେତୁକ ମନ୍ତ୍ର ପାଠ କରି ପୃଥିବୀ ଆଦି ତତ୍ତ୍ୱଠାରୁ ଆରମ୍ଭ କରି ପୁରୁଷତତ୍ତ୍ୱ ପର୍ଯ୍ୟନ୍ତ ସମସ୍ତ ତତ୍ତ୍ୱର ଶୁଦ୍ଧି ପାଇଁ ଘୃତଯୁକ୍ତ ଚରୁ ହୋମ କରିବେ ଏବଂ ମୌନ ହୋଇ ଶିବଙ୍କ ଚରଣାରବିନ୍ଦର ଚିନ୍ତନ କରିବେ ।* ପୃଥିବୀ, ଜଳ, ତେଜ, ବାୟୁ ଓ ଆକାଶକୁ ପୃଥିବ୍ୟାଦିପଞ୍ଚକ କହନ୍ତି । ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ–ଏଗୁଡ଼ିକୁ ଶବ୍ଦାଦିପଞ୍ଚକ କୁହାଯାଏ । ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ–ଏଗୁଡ଼ିକ ବାଗାଦିପଞ୍ଚକ । ଶ୍ରୋତ୍ର, ନେତ୍ର, ନାସିକା, ରସନା ଓ ତ୍ୱକ୍–ଏଗୁଡ଼ିକ ଶ୍ରୋତ୍ରାଦିପଞ୍ଚକ । ଶିର, ପାର୍ଶ୍ୱ, ପୃଷ୍ଠ ଓ ଉଦର ଏ ଚାରୋଟି ସହିତ ଜଙ୍ଘକୁ ମିଶାଇଲେ ଏମାନଙ୍କ ସଂଖ୍ୟା ପାଞ୍ଚ ହୁଏ । ତ୍ୱକ୍ ଆଦି ସାତ ଧାତୁ ରହିଥାନ୍ତି । ପ୍ରାଣ, ଅପାନ ଆଦି ପାଞ୍ଚ ବାୟୁକୁ ପ୍ରାଣାଦିପଞ୍ଚକ କୁହାଯାଇଛି । ଅନ୍ନମୟାଦି ପାଞ୍ଚ କୋଶକୁ କୋଶପଞ୍ଚକ କହନ୍ତି । (ସେଗୁଡ଼ିକର ନାମ ହେଲା–ଅନ୍ନମୟ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ ।) ଏତଦ୍‌ବ୍ୟତୀତ ମନ, ଚିତ୍ତ, ବୁଦ୍ଧି, ଅହଂକାର, ଖ୍ୟାତି, ସଂକଳ୍ପ, ଗୁଣ, ପ୍ରକୃତି ଓ ପୁରୁଷ ମଧ୍ୟ ରହିଛି । ଭୋକ୍ତାର ଭୋଗକାଳରେ ସହାୟକ ହେଉଥିବା ପାଞ୍ଚଟି ଅନ୍ତରଙ୍ଗ ସାଧନକୁ ତତ୍ତ୍ୱପଞ୍ଚକ କୁହାଯାଏ । ସେଗୁଡ଼ିକର ନାମ ହେଲା–ନିୟତି, କାଳ, ରାଗ, ବିଦ୍ୟା ଓ କଳା । ଏ ପାଞ୍ଚଟି ମାୟାରୁ ଉତ୍ପନ୍ନ । 'ମାୟାଂ ତୁ ପ୍ରକୃତିଂ ବିଦ୍ୟାତ୍'–ଏ ଶ୍ରୁତିବାକ୍ୟରେ ପ୍ରକୃତିକୁ ହିଁ ମାୟା କୁହାଯାଇଛି । ଏଥିରୁ ତତ୍ତ୍ୱ ଉତ୍ପନ୍ନ ହୋଇଥାନ୍ତି । କାଳର ସ୍ୱଭାବ ହିଁ 'ନିୟତି'–ଏହା ଶ୍ରୁତିର କଥନ । ନିୟତି ପ୍ରଭୃତି ପାଞ୍ଚତତ୍ତ୍ୱକୁ 'ପଞ୍ଚକଞ୍ଚୁକ' କହନ୍ତି । ଏ ପାଞ୍ଚ ତତ୍ତ୍ୱକୁ ଜାଣି ନ ଥିଲେ ବିଦ୍ୱାନ୍ ମଧ୍ୟ ମୂଢ଼ ବୋଲାନ୍ତି ।

ନିୟତି ପ୍ରକୃତିର ତଳେ ଏବଂ ପୁରୁଷ ପ୍ରକୃତିର ଉପରେ । ଯେପରି କାଉର ଗୋଟିଏ ଆଖି ହିଁ ଦୁଇଟି ଗୋଲକରେ ଘୂରିଥାଏ, ଠିକ୍ ସେହିପରି ପୁରୁଷ ହିଁ ପ୍ରକୃତି ଓ ନିୟତି ଉଭୟଙ୍କ ପାଖରେ ରହିଥାଏ । ଏହାକୁ ବିଦ୍ୟାତତ୍ତ୍ୱ କୁହାଯାଏ । ଶୁଦ୍ଧବିଦ୍ୟା, ମହେଶ୍ୱର, ସଦାଶିବ, ଶକ୍ତି ଓ ଶିବ–ଏ ପାଞ୍ଚଟିକୁ ଶିବତତ୍ତ୍ୱ କହନ୍ତି । ବ୍ରହ୍ମନ୍ ! 'ପ୍ରଜ୍ଞାନଂ ବ୍ରହ୍ମ' ଉକ୍ତ ଶ୍ରୁତିବାକ୍ୟ ଦ୍ୱାରା ଏହି ଶିବତତ୍ତ୍ୱ ହିଁ ପ୍ରତିପାଦିତ ହୋଇଛି । ମୁନୀଶ୍ୱର ! ପୃଥିବୀ ଠାରୁ ଆରମ୍ଭ କରି

* ତତ୍ତ୍ୱଶୁଦ୍ଧି ପାଇଁ ପୃଥକ୍ ପୃଥକ୍ ବାକ୍ୟ ସଂଯୋଜନା କରିବା ଉଚିତ; ଯଥା–ପୃଥିବୀ ଇତ୍ୟାଦି ପାଇଁ 'ପୃଥିବ୍ୟାପସ୍ତେଜୋ ବାୟୁରାକାଶୋ ମେ ଶୁଧ୍ୟନ୍ତାଂ ଜ୍ୟୋତିରହଂ ବିରଜା ବିପାପ୍ମା ଭୂୟାସଂ ସ୍ୱାହା' ଏତିକି କହି ସମିଧ, ଚରୁ ଓ ଆଜ୍ୟ ପକାଇ ଚାଳିଶଟି ଲେଖାଏଁ ଆହୁତି ଦେବେ । ଏହିପରି ସମସ୍ତ ତତ୍ତ୍ୱର ନାମ ଉଚ୍ଚାରଣ କରି ବାକ୍ୟ ସଂଯୋଜନା କରିବେ ।

**ଶିବ ପର୍ଯ୍ୟନ୍ତ ଯାହାକିଛି ତତ୍ତ୍ୱସମୂହ ଅଛି, ସେଥିମଧ୍ୟରୁ ପ୍ରତ୍ୟେକକୁ ଯଥାକ୍ରମେ ନିଜ ନିଜ କାରଣରେ ଲୀନ କରି କରି ତାହାକୁ ଶୁଦ୍ଧ କରିବାକୁ ହୁଏ । ୧-ପୃଥିବ୍ୟାଦିପଞ୍ଚକ, ୨-ଶବ୍ଦପଞ୍ଚକ, ୩-ବାଗାଦିପଞ୍ଚକ, ୪-ଶ୍ରୋତ୍ରାଦିପଞ୍ଚକ, ୫-ଶିରାଦିପଞ୍ଚକ, ୬-ତ୍ୱଗାଦିପଞ୍ଚକ, ୭-ପ୍ରାଣାଦିପଞ୍ଚକ, ୮-ଅନ୍ନମୟାଦିକୋଶପଞ୍ଚକ, ୯-ମନ ଆଦି ପୁରୁଷାନ୍ତ ତତ୍ତ୍ୱ, ୧୦-ନିୟତ୍ୟାଦି ତତ୍ତ୍ୱପଞ୍ଚକ (ଅଥବା ପଞ୍ଚକଞ୍ଚୁକ) ଏବଂ ୧୧-ଶିବତତ୍ତ୍ୱପଞ୍ଚକ—ଏଗୁଡ଼ିକ ହେଲା ଏଗାରଟି ବର୍ଗ । ଉକ୍ତ ଏଗାରଟି ବର୍ଗ ସମ୍ବନ୍ଧୀୟ ମନ୍ତ୍ରର ଶେଷରେ** 'ପରସ୍ମୈ ଶିବଜ୍ୟୋତିଷେ ଇଦଂ ନ ମମ' **ଉଚ୍ଚାରଣ କରିବା ଉଚିତ ।* ଏହାଦ୍ୱାରା ନିଜ ଉଦ୍ଦେଶ୍ୟର ତ୍ୟାଗ ହୋଇଥାଏ ।**

**ଏହାପରେ 'ବିବିଦ୍ୟା' ଓ 'କର୍ଷୋହ୍ନ' ସମ୍ବନ୍ଧୀୟ ମନ୍ତ୍ରର ଶେଷରେ ଅର୍ଥାତ୍** 'ବିବିଦ୍ୟାୟୈ ସ୍ୱାହା', 'କର୍ଷୋହ୍ନାୟ ସ୍ୱାହା' **କହିବା ପରେ ସ୍ୱତ୍ୱତ୍ୟାଗ ନିମିତ୍ତ** 'ବ୍ୟାପକାୟ ପରମାତ୍ମନେ ଶିବଜ୍ୟୋତିଷେ ବିଶ୍ୱଭୂତଘସନୋତ୍ସୁକାୟ ପରସ୍ମୈ ଦେବାୟ ଇଦଂ ନ ମମ' **ଉଚ୍ଚାରଣ କରିବେ । ତା'ପରେ** 'ଉତ୍ତିଷ୍ଠବ୍ରହ୍ମଣସ୍ପତେ ଦେବୟନ୍ତସ୍ତ୍ୱେମହେ । ଉପ ପ୍ର ଯନ୍ତୁ ମରୁତଃ ସୁଦାନବ ଇନ୍ଦ୍ର ପ୍ରାଶୂର୍ଭବାଃ ସ ଗ୍ଂ' **ମନ୍ତ୍ରର ଶେଷରେ** 'ବିଶ୍ୱରୂପାୟ ପୁରୁଷାୟ ଓଁ ସ୍ୱାହା' **ଉଚ୍ଚାରଣ କରି ସ୍ୱତ୍ୱତ୍ୟାଗ ପାଇଁ** 'ଲୋକତ୍ରୟବ୍ୟାପିନେ ପରମାତ୍ମନେ ଶିବାୟେଦଂ ନ ମମ' **ଉଚ୍ଚାରଣ କରିବେ । ପରେ ନିଜ ଶାଖାରେ ନିର୍ଦ୍ଦେଶିତ ବିଧିରେ ପ୍ରଥମେ ତନ୍ତ୍ରକର୍ମ ସମ୍ପାଦନ କରି ଘୃତମିଶ୍ରିତ ଚରୁ ପ୍ରାଶନ ଓ ଆଚମନ କରିବା ପରେ ପୁରୋଧା ଆଗ୍ୱର୍ଯ୍ୟଙ୍କୁ ସ୍ୱର୍ଣ୍ଣାଦି ସହିତ ସମୁଚିତ ଦକ୍ଷିଣା ଦେବେ ।**

**ତା'ପରେ ବ୍ରହ୍ମାଙ୍କୁ ବିସର୍ଜନ କରି ପ୍ରାତଃକାଳୀନ ଉପାସନାର ନିତ୍ୟହୋମ କରିବେ । ଏହାପରେ ମନୁଷ୍ୟ** 'ସଂ ମା ସିଞ୍ଚନ୍ତୁ ମରୁତଃ' **ମନ୍ତ୍ର ଜପିବେ ।**卐 **ତା'ପରେ** 'ଯା ତେ ଅଗ୍ନେ ଯଜ୍ଞିୟା ତନୂସ୍ତୟେହ୍ୟାରୋହାତ୍ମାତ୍ମାନମ୍'✦ **ଇତ୍ୟାଦି ମନ୍ତ୍ରରେ ହାତକୁ ଅଗ୍ନିରେ ଗରମ କରି ସେହି ଅଗ୍ନିକୁ ଅଦ୍ୱୈତଧାମସ୍ୱରୂପ ନିଜ ଆତ୍ମାରେ ଆରୋପିତ କରିବେ । ଏହାପରେ ପ୍ରାତଃକାଳୀନ ସନ୍ଧ୍ୟୋପାସନା**

---

* ଯଥା–'ପୃଥିବ୍ୟାଦିପଞ୍ଚକଂ ମେ ଶୁଧ୍ୟତାଂ ଜ୍ୟୋତିରହଂ ବିରଜା ବିପାପ୍ମା ଭୂୟାସଂ ସ୍ୱାହା–ପୃଥିବ୍ୟାଦିପଞ୍ଚକାୟ ପରସ୍ମୈ ଶିବଜ୍ୟୋତିଷେ ଇଦଂ ନ ମମ ।'

卐 ଧର୍ମସିନ୍ଧୁକାର କହିଛନ୍ତି ଯେ 'ସଂ ମା ସିଞ୍ଚନ୍ତୁ ମରୁତଃ' ମନ୍ତ୍ରରେ ଅଗ୍ନି ଉପସ୍ଥାନ କରି ସେଥିରେ କାଷ୍ଠମୟ ଯଜ୍ଞପାତ୍ରଗୁଡ଼ିକୁ ପୋଡ଼ିଦେବେ । ଯଦି ପାତ୍ରଗୁଡ଼ିକ ତୈଜସ ଧାତୁର ହୋଇଥାଏ, ତେବେ ସେଗୁଡ଼ିକୁ ଆଗ୍ୱର୍ଯ୍ୟଙ୍କୁ ଦେଇଦେବେ ।

ପୂର୍ଣ୍ଣ ମନ୍ତ୍ର ଓ ତାହାର ଅର୍ଥ ନିମ୍ନରେ ଦିଆଗଲା–

ସଂ ମା ସିଞ୍ଚନ୍ତୁ ମରୁତଃ ସମିନ୍ଦ୍ରଃ ସଂ ବୃହସ୍ପତିଃ । ସଂ ମାୟମଗ୍ନିଃ ସିଞ୍ଚତ୍ୱାୟୁଷା ଚ ଧନେନ ଚ ବଳେନ ଗ୍ୟୁଷ୍ମନ୍ତଂ କରୋତୁ ମା ।

ଅର୍ଥାତ୍ ମରୁଦ୍‌ଗଣ, ଇନ୍ଦ୍ର, ବୃହସ୍ପତି ଓ ଅଗ୍ନି–ଏ ସମସ୍ତ ଦେବତା ମୋ ଉପରେ କଲ୍ୟାଣ ବର୍ଷା କରନ୍ତୁ । ଅଗ୍ନିଦେବ ମୋତେ ଆୟୁ, ଜ୍ଞାନରୂପୀ ଧନ ଓ ସାଧନଶକ୍ତିରେ ସମ୍ପନ୍ନ କରନ୍ତୁ ଏବଂ ମୋତେ ଦୀର୍ଘଜୀବୀ ମଧ୍ୟ କରନ୍ତୁ ।

✦ ପୂର୍ଣ୍ଣ ମନ୍ତ୍ର ଓ ତାହାର ଅର୍ଥ ନିମ୍ନରେ ଦିଆଗଲା–

ଯା ତେ ଅଗ୍ନେ ଯଜ୍ଞିୟା ତନୂସ୍ତୟେହ୍ୟାରୋହାତ୍ମାତ୍ମାନମ୍ । ଅଚ୍ଛା ବସୂନି କୃଣ୍ୱନ୍ନସ୍ମେ ନର୍ଯ୍ୟା ପୁରୂଣି ॥

ଯଜ୍ଞୋ ଭୂତ୍ୱା ଯଜ୍ଞମାସୀଦ ସ୍ୱାଂ ଯୋନିମ୍ । ଜାତବେଦୋ ଭୁବ ଆଜାୟମାନଃ ସକ୍ଷୟ ଏହି ॥

'ହେ ଅଗ୍ନିଦେବ! ଯାହା ତୁମର ଯଜ୍ଞିୟ ସ୍ୱରୂପ, ସେହି ସ୍ୱରୂପରେ ତୁମେ ଏଠାରେ ଉପସ୍ଥିତ ହୁଅ ଏବଂ ମୋ ପାଇଁ ଅନେକ ମନୁଷ୍ୟୋପଯୋଗୀ ବିଶୁଦ୍ଧ ଧନ (ସାଧନ-ସମ୍ପତ୍ତି) ସୃଷ୍ଟି କରିବା ସହ ଆତ୍ମାରୂପରେ ମୋର ଆତ୍ମାରେ ବିରାଜମାନ ହୋଇଯାଅ । ତୁମେ ଯଜ୍ଞରୂପ ହୋଇ ନିଜର କାରଣରୂପ ଯଜ୍ଞରେ ପହଞ୍ଚିଯାଅ । ହେ ଜାତବେଦା! ତୁମେ ପୃଥିବୀରୁ ଉତ୍ପନ୍ନ ହୋଇ ନିଜ ଧାମ ସହିତ ଏଠାରେ ଉପସ୍ଥିତ ହୁଅ ।'

କରି ସୂର୍ଯ୍ୟୋପସ୍ଥାନ ପରେ ଜଳାଶୟକୁ ଯାଇ ନାଭିପର୍ଯ୍ୟନ୍ତ ପାଣିରେ ଛିଡ଼ା ହୋଇ ପ୍ରସନ୍ନମନରେ ସ୍ଥିରଚିତ୍ତରେ ଉତ୍ସୁକତାପୂର୍ବକ ବେଦମନ୍ତ୍ର ଜପ କରିବେ ।*

ଯେ ଅଗ୍ନିହୋତ୍ରୀ ହୋଇଥିବେ, ସେ ସ୍ଥାପିତ ଅଗ୍ନିରେ 'ପ୍ରାଜାପତ୍ୟେଷ୍ଟି'୪ କରିବେ ଏବଂ ବେଦୋକ୍ତ ବୈଶ୍ୱାନର ସ୍ଥାଲୀପାକ ହୋମ କରି ସେଥିରେ ନିଜର ସର୍ବସ୍ୱ ଦାନ କରିଦେବେ । ପୂର୍ବୋକ୍ତରୂପରେ ଅଗ୍ନିକୁ ଆତ୍ମାରେ ଆରୋପିତ କରି ଘରୁ ବାହାରିଯିବେ । ମୁନୀଶ୍ୱର ! ତା'ପରେ ସେହି ସାଧକ ନିମ୍ନ ପ୍ରକାରେ 'ସାବିତ୍ରୀପ୍ରବେଶ' କରିବେ—

ଓଁ ଭୂଃ ସାବିତ୍ରୀଂ ପ୍ରବେଶୟାମି, ଓଁ ତତ୍ସବିତୁର୍ବରେଣ୍ୟମ୍, ଓଁ ଭୁବଃ ସାବିତ୍ରୀଂ ପ୍ରବେଶୟାମି✦ ଭର୍ଗୋ ଦେବସ୍ୟ ଧୀମହି, ଓଁ ସ୍ୱଃ ସାବିତ୍ରୀଂ ପ୍ରବେଶୟାମି, ଧିୟୋ ଯୋ ନଃ ପ୍ରଚୋଦୟାତ୍, ଓଁ ଭୂର୍ଭୁବଃ ସ୍ୱଃ ସାବିତ୍ରୀଂ ପ୍ରବେଶୟାମି, ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ଧିୟୋ ଯୋ ନଃ ପ୍ରଚୋଦୟାତ୍ ।

—ଉପରୋକ୍ତ ବାକ୍ୟମାନ ସ୍ଥିର ଚିତ୍ତରେ ପ୍ରେମପୂର୍ବକ ଉଚ୍ଚାରଣ କରିବେ ।

ସେତେବେଳେ ଗାୟତ୍ରୀଙ୍କୁ ନିମ୍ନମତେ ଧ୍ୟାନ କରିବେ—ଏ ଭଗବତୀ ଗାୟତ୍ରୀ ଭଗବାନ ଶିବଙ୍କ ଅର୍ଦ୍ଧାଙ୍ଗରେ ନିବାସ କରନ୍ତି । ଗାୟତ୍ରୀଙ୍କର ପାଞ୍ଚ ମୁଖ, ଦଶ ଭୁଜ ଓ ପନ୍ଦର ନେତ୍ର ରହିଛି । ନୂତନ ରତ୍ନମୟ କିରୀଟରେ ଝଟକୁଥିବା ଚନ୍ଦ୍ରଲେଖା ତାଙ୍କ ମସ୍ତକକୁ ବିଭୂଷିତ କରୁଛି । ତାଙ୍କର ଅଙ୍ଗକାନ୍ତି ଶୁଦ୍ଧ ସ୍ଫଟିକମଣି ପରି ଉଜ୍ଜ୍ୱଳ । ସେହି ଶୁଭଲକ୍ଷଣା ଦେବୀ ତାଙ୍କ ଦଶ ଭୁଜରେ ଦଶ ପ୍ରକାର ଆୟୁଧ ଧାରଣ କରିଛନ୍ତି । ହାର, କେୟୂର, କଡ଼ା, କଟିସୂତ୍ର ଓ ନୂପୁର ପ୍ରଭୃତି ଆଭୂଷଣରେ ତାଙ୍କର ଅଙ୍ଗ ବିଭୂଷିତ । ସେ ଦିବ୍ୟ ବସ୍ତ୍ର ପରିଧାନ କରିଛନ୍ତି । ତାଙ୍କର ସମସ୍ତ ଆଭୂଷଣ ରତ୍ନନିର୍ମିତ । ବିଷ୍ଣୁ, ବ୍ରହ୍ମା, ଦେବତା, ଋଷି, ଗନ୍ଧର୍ବରାଜ ଓ ମନୁଷ୍ୟ ସଦା ତାଙ୍କର ସେବା କରିଥାନ୍ତି । ସେହି ସର୍ବବ୍ୟାପିନୀ ଶିବାଦେବୀ ସଦାଶିବଙ୍କ ମନୋହାରିଣୀ ଧର୍ମପତ୍ନୀ, ସମଗ୍ର ଜଗତର ମାତା, ତ୍ରିଲୋକର ଜନନୀ, ତ୍ରିଗୁଣମୟୀ, ନିର୍ଗୁଣା ତଥା ଅଜନ୍ମା ଅଟନ୍ତି । ଏହିରୂପେ ଗାୟତ୍ରୀଦେବୀଙ୍କ ସ୍ୱରୂପକୁ ଚିନ୍ତନ କରି ଶୁଦ୍ଧବୁଦ୍ଧି ପୁରୁଷ ବ୍ରାହ୍ମଣତ୍ୱାଦି ପ୍ରଦାନକାରିଣୀ ଅଜନ୍ମା ଆଦ୍ୟା ଦେବୀଙ୍କର ତ୍ରିପଦା ଗାୟତ୍ରୀ ମନ୍ତ୍ର ଜପିବେ । ଗାୟତ୍ରୀ ବ୍ୟାହୃତିରୁ ଉତ୍ପନ୍ନ ହୋଇଛନ୍ତି ଏବଂ ସେଇଥିରେ ଲୀନ ହୁଅନ୍ତି । ବ୍ୟାହୃତି ପ୍ରଣବରୁ ପ୍ରକଟ ହୋଇଛି ଓ ପ୍ରଣବରେ ହିଁ ଲୟ ହୁଏ । ପ୍ରଣବ ସମସ୍ତ ବେଦର ଆଦି । ତାହା ଶିବଙ୍କର ବାଚକ, ମନ୍ତ୍ରମାନଙ୍କର ରାଜାଧିରାଜ, ମହାବୀଜସ୍ୱରୂପ ଓ ଶ୍ରେଷ୍ଠ ମନ୍ତ୍ର । ଶିବ ହିଁ ପ୍ରଣବ ଓ ପ୍ରଣବ ହିଁ ଶିବ ବୋଲି କଥିତ; କାରଣ ବାଚ୍ୟ ଓ ବାଚକରେ ଅଧିକ ଭେଦ ନ ଥାଏ । କାଶୀରେ ଦେହତ୍ୟାଗ କରୁଥିବା ଜୀବକୁ ମରଣକାଳରେ ଏହି ମହାମନ୍ତ୍ର ଶୁଣାଇ ଭଗବାନ ଶିବ ପରମ ମୋକ୍ଷ ପ୍ରଦାନ କରିଥାନ୍ତି । ତେଣୁ ଶ୍ରେଷ୍ଠ ଯତି ନିଜ ହୃଦୟକମଳର

---

* ସେଠାରେ ଜଳ ଉଠାଇ ତାହାକୁ 'ଆଶୁଃ ଶିଶାନଃ' ସୂକ୍ତରେ ଅଭିମନ୍ତ୍ରିତ କରି 'ସର୍ବାଭ୍ୟୋ ଦେବତାଭ୍ୟଃ ସ୍ୱାହା' କହି ପକାଇଦେବେ । ତା'ପରେ ସଂନ୍ୟାସର ସଂକଳ୍ପ ନେଇ ତିନି ଥର ଜଳାଞ୍ଜଳି ଦେବେ । ତାହାର ମନ୍ତ୍ର ହେଲା—

ଓଁ ଏଷ ହ ବା ଅଗ୍ନିଃ ସୂର୍ଯ୍ୟଃ ପ୍ରାଣଂ ଗଚ୍ଛ ସ୍ୱାହା ॥ ୧ ॥ ଓଁ ସ୍ୱାମ ଯୋନିଂ ଗଚ୍ଛ ସ୍ୱାହା ॥ ୨ ॥ ଓଁ ଆପୋ ବୈ ଗଚ୍ଛ ସ୍ୱାହା ॥ ୩ ॥ (ଧର୍ମସିନ୍ଧୁ)

୪ 'ଯଦିଷ୍ଟଂ ଯଚ୍ଚ ପୂର୍ତ୍ତଂ ଯଚ୍ଚାପଦ୍ୟନାପଦି ପ୍ରଜାପତୌ ତନ୍ମନସି ଜୁହୋମି । ବିମୁକ୍ତୋଽହଂ ଦେବକିଲ୍‌ବିଷାତ୍ ସ୍ୱାହା' କହି ଘୃତାହୁତି ଦେବେ । 'ଇଦଂ ପ୍ରଜାପତୟେ ନ ମମ' କହି ତ୍ୟାଗ କରିବେ । ଏହା ହିଁ ପ୍ରାଜାପତ୍ୟେଷ୍ଟି ।

✦ ଧର୍ମସିନ୍ଧୁରେ 'ପ୍ରବିଶାମି' ପାଠ ରହିଛି ।

**ମଧ୍ୟଭାଗରେ ବିରାଜମାନ ଏକାକ୍ଷର ପ୍ରଣବରୂପ ପରମ କାରଣ ଶିବଙ୍କୁ ଉପାସନା କରନ୍ତି । ଅନ୍ୟ ମୁମୁକ୍ଷୁ, ଧୀର ଓ ଅନାସକ୍ତ ଲୌକିକ ପୁରୁଷ ମଧ୍ୟ ମନରେ ବିଷୟମାନ ପରିତ୍ୟାଗ କରି ପ୍ରଣବରୂପ ପରମ ଶିବଙ୍କୁ ଉପାସନା କରନ୍ତି ।**

**ଏହିରୂପେ ଗାୟତ୍ରୀଙ୍କ ଶିବବାଚକ ପ୍ରଣବରେ ଲୟ କରି** 'ଅହଂ ବୃକ୍ଷସ୍ୟ ରେରିବା'* **ଅନୁବାକ ଜପ କରିବେ । ତା'ପରେ** 'ଯଶ୍ଛନ୍ଦସାମୃଷଭଃ' **(ତୈତ୍ତିରୀୟ. ୧ । ୪ । ୧) ଅନୁବାକକୁ ଆରମ୍ଭରୁ** ....'ଶ୍ରୁତଂ ମେ ଗୋପୟ'⁕ **ପର୍ଯ୍ୟନ୍ତ ପାଠ କରି କହିବେ—**'ଦାରୈଷଣାୟାଶ୍ଚ ବିତ୍ତୈଷଣାୟାଶ୍ଚ ଲୋକୈଷଣାୟାଶ୍ଚ ବ୍ୟୁତ୍ଥିତୋଽହମ୍' **ଅର୍ଥାତ୍ 'ମୁଁ ସ୍ତ୍ରୀ, ଧନ ଓ ଖ୍ୟାତିର କାମନାରୁ ଉପରକୁ ଉଠିସାରିଛି ।'' ମୁନେ ! ଏହି ବାକ୍ୟକୁ ମନ୍ଦ, ମଧ୍ୟମ ଓ ଉଚ୍ଚସ୍ୱରରେ ତ୍ରିବାର ଉଚ୍ଚାରଣ କରିବେ । ତା'ପରେ ସୃଷ୍ଟି, ସ୍ଥିତି ଓ ଲୟ କ୍ରମରେ ପ୍ରଥମେ ପ୍ରଣବମନ୍ତ୍ରକୁ ଉଦ୍ଧାର କରି ତା'ପରେ କ୍ରମଶଃ ନିମ୍ନ ବାକ୍ୟମାନ ଉଚ୍ଚାରଣ କରିବେ—**'ଓଁ ଭୂଃ ସଂନ୍ୟସ୍ତଂ ମୟା', 'ଓଁ ଭୁବଃ ସଂନ୍ୟସ୍ତଂ ମୟା', 'ଓଁ ସୁବଃ ସଂନ୍ୟସ୍ତଂ ମୟା', 'ଓଁ ଭୂର୍ଭୁବଃ ସୁବଃ ସଂନ୍ୟସ୍ତଂ ମୟା'✦ **ଏହି ବାକ୍ୟମାନ ହୃଦୟ ମଧ୍ୟରେ ମନୋଯୋଗପୂର୍ବକ ସଦାଶିବଙ୍କୁ ଧ୍ୟାନ କରିବା ବେଳେ ମନ୍ଦ, ମଧ୍ୟମ ଓ ଉଚ୍ଚସ୍ୱରରେ ଉଚ୍ଚାରଣ କରିବେ । ତା'ପରେ** 'ଅଭୟଂ ସର୍ବଭୂତେଭ୍ୟୋ ମତ୍ତଃ ସ୍ୱାହା' **(ମୋ ପକ୍ଷରୁ ସବୁ ପ୍ରାଣୀଙ୍କୁ ଅଭୟ ଦିଆଗଲା)—ଏପରି କହି ପୂର୍ବଦିଗରେ ଆଞ୍ଜୁଳିଏ ଜଳ ଦେବେ । ତା'ପରେ ଶିଖାର ଅବଶିଷ୍ଟ କେଶକୁ ହାତରେ ଉପାଡ଼ି ପକାଇବେ ଏବଂ ଯଜ୍ଞୋପବୀତକୁ ଓହ୍ଲାଇ ପକାଇ ପାଣି ସହିତ ହାତରେ ଧରି କହିବେ—**'ଓଁ ଭୂଃ ସମୁଦ୍ରଂ ଗଚ୍ଛ ସ୍ୱାହା' **ଏପରି କହି ଜଳରେ ହିଁ ତାହାକୁ ହୋମ କରିଦେବେ । ତାପରେ** 'ଓଁ ଭୂଃ ସଂନ୍ୟସ୍ତଂ ମୟା', 'ଓଁ ଭୁବଃ ସଂନ୍ୟସ୍ତଂ ମୟା', 'ଓଁ ସୁବଃ ସଂନ୍ୟସ୍ତଂ ମୟା' **ଏପରି ତ୍ରିବାର କହି ତ୍ରିବାର ଜଳକୁ ଅଭିମନ୍ତ୍ରିତ କରି ସେଥିରେ ଆଚମନ କରିବେ । ତା'ପରେ ଜଳାଶୟର କୂଳକୁ ଆସି ବସ୍ତ୍ର ଓ କଟିସୂତ୍ରକୁ ଭୂମି ଉପରେ ତ୍ୟାଗ କରିଦେବେ ଏବଂ ଉତ୍ତର ବା ପୂର୍ବଆଡ଼କୁ ମୁହଁ**

---

* ଅହଂ ବୃକ୍ଷସ୍ୟ ରେରିବା । କୀର୍ତ୍ତିଃ ପୃଷ୍ଠଂ ଗିରେରିବ । ଊର୍ଦ୍ଧ୍ୱପବିତ୍ରୋ ବାଜିନୀବ ସ୍ୱମୃତମସ୍ମି । ଦ୍ରବିଣଂ ସବର୍ଚସମ୍ । ସୁମେଧା ଅମୃତୋକ୍ଷିତିଃ । ଇତି ତ୍ରିଶଙ୍କୋର୍ବେଦାନୁବଚନମ୍ । (ତୈତ୍ତିରୀୟ. ୧ । ୧୦ । ୧)

''ମୁଁ ସଂସାରବୃକ୍ଷର ଉଚ୍ଛେଦକ, ମୋର କୀର୍ତ୍ତି ପର୍ବତଶିଖର ପରି ଉନ୍ନତ; ଅନ୍ନୋତ୍ପାଦକ ଶକ୍ତିଯୁକ୍ତ ସୂର୍ଯ୍ୟଠାରେ ଯେପରି ଉତ୍ତମ ଅମୃତ ରହିଛି, ସେହିପରି ମୁଁ ମଧ୍ୟ ଅତିଶୟ ପବିତ୍ର ଅମତସ୍ୱରୂପ ଅଟେ ଏବଂ ମୁଁ ଉଜ୍ଜ୍ୱଳ ଧନର ଭଣ୍ଡାର, ପରମାନନ୍ଦମୟ ଅମୃତରେ ଅଭିଷିକ୍ତ ତଥା ଶ୍ରେଷ୍ଠବୁଦ୍ଧିସମ୍ପନ୍ନ—ଏହା ତ୍ରିଶଙ୍କୁ ଋଷିଙ୍କ ଅନୁଭୂତ ବୈଦିକ ପ୍ରବଚନ ।''

⁕ ଯଶ୍ଛନ୍ଦସାମୃଷଭୋ ବିଶ୍ୱରୂପଃ । ଛନ୍ଦୋଭ୍ୟୋଽଧ୍ୟମୃତାତ୍ସମ୍ବଭୂବ । ସ ମେନ୍ଦ୍ରୋ ମେଧୟା ସ୍ପୃଣୋତୁ । ଅମୃତସ୍ୟ ଦେବ ଧାରଣୋ ଭୂୟାସମ୍ । ଶରୀରଂ ମେ ବିଚର୍ଷଣମ୍ । ଜିହ୍ୱା ମେ ମଧୁମତ୍ତମା । କର୍ଣ୍ଣାଭ୍ୟାଂ ଭୂରି ବିଶ୍ରୁବମ୍ । ବ୍ରହ୍ମଣଃ କୋଶୋଽସି ମେଧୟା ପିହିତଃ ଶ୍ରୁତଂ ମେ ଗୋପାୟ ।

''ଯେ ବେଦରେ ସର୍ବଶ୍ରେଷ୍ଠ, ସର୍ବରୂପ ଏବଂ ଅମୃତସ୍ୱରୂପ ବେଦମାନଙ୍କରୁ ପ୍ରଧାନରୂପେ ପ୍ରକଟ ହୋଇଛନ୍ତି, ସମସ୍ତଙ୍କ ସ୍ୱାମୀ ସେହି ପରମେଶ୍ୱର ମୋତେ ଧାରଣାଯୁକ୍ତ ବୁଦ୍ଧିରେ ସମ୍ପନ୍ନ କରନ୍ତୁ । ହେ ଦେବ ! ମୁଁ ଆପଣଙ୍କ କୃପାରୁ ଅମୃତମୟ ପରମାତ୍ମାଙ୍କୁ ନିଜ ହୃଦୟରେ ଧାରଣ କରିବାକୁ ସମର୍ଥ ହୋଇଯାଏ । ମୋର ଶରୀର ବିଶେଷରୂପେ ଫୁର୍ତ୍ତିଯୁକ୍ତ ଅର୍ଥାତ୍ ସବୁପ୍ରକାରେ ରୋଗମୁକ୍ତ ହୋଇଯାଉ ଏବଂ ମୋର ଜିହ୍ୱା ଅତିଶୟ ମଧୁରଭାଷିଣୀ ହୋଇଯାଉ । ମୁଁ ଉଭୟ କାନଦ୍ୱାରା ଅଧିକ ଶୁଣି ପାରେ । (ହେ ପ୍ରଣବ ! ତୁମେ) ଲୌକିକ ବୁଦ୍ଧିରେ ଆଚ୍ଛାଦିତ ପରମାତ୍ମାଙ୍କ ନିଧି ଅଟ । ତୁମେ ମୁଁ ଶୁଣିଥିବା ଉପଦେଶକୁ ରକ୍ଷା କର ।''

✦ ମୁଁ ଭୂଲୋକକୁ ସଂନ୍ୟାସ (ପୂର୍ଣ୍ଣତଃ ତ୍ୟାଗ) କରିଦେଲି । ମୁଁ ଭୁବଃ (ଅନ୍ତରିକ୍ଷ) ଲୋକକୁ ପରିତ୍ୟାଗ କରିଦେଲି ଏବଂ ସ୍ୱର୍ଗଲୋକକୁ ମଧ୍ୟ ସର୍ବଥା ତ୍ୟାଗ କରିଦେଲି । ମୁଁ ଭୂର୍ଲୋକ, ଭୁବର୍ଲୋକ ଓ ସ୍ୱର୍ଲୋକକୁ ପୂର୍ଣ୍ଣତଃ ପରିତ୍ୟାଗ କରିଦେଲି ।

କରି ସାତ ପାହୁଣ୍ଡରୁ କିଛି ଅଧିକ ଗ୍ଲିବେ । କିଛି ଦୂର ଯିବା ପରେ ଆଗ୍ର୍ଯ୍ୟ ତାଙ୍କୁ କହିବେ ''ରୁହ, ରୁହ ଭଗବନ୍ ! ଲୋକ-ବ୍ୟବହାର ପାଇଁ କୌପୀନ ଓ ଦଣ୍ଡ ଗ୍ରହଣ କର ।'' ଏପରି କହି ଆଗ୍ର୍ଯ୍ୟ ନିଜ ହାତରେ ତାଙ୍କୁ କଟିସୂତ୍ର ଓ କୌପୀନ ଦେଇ ଗେରୁଆ ବସ୍ତ୍ର ମଧ୍ୟ ଅର୍ପଣ କରିବେ । ତା'ପରେ ସଂନ୍ୟାସୀ ସେଥିରେ ଶରୀରକୁ ଆବୃତ କରି ଦୁଇଥର ଆଚମନ କରିବେ ଏବଂ ଆଗ୍ର୍ଯ୍ୟ ଶିଷ୍ୟକୁ କହିବେ 'ଇନ୍ଦ୍ରସ୍ୟ ବ୍ରଜୋଽସି' ମନ୍ତ୍ର ପଢ଼ି ଦଣ୍ଡ ଗ୍ରହଣ କର । ସେତେବେଳେ ସେ ଉକ୍ତ ମନ୍ତ୍ରକୁ ପଢ଼ିବେ ଏବଂ 'ସଖା ମା ଗୋପାୟୌଜଃ ସଖା ଯୋଽସୀନ୍ଦ୍ରସ୍ୟ ବ୍ରଜୋସି ବାର୍ତ୍ରଘ୍ନଃ ଶର୍ମ ମେ ଭବ ଯତ୍ପାପଂ ତନ୍ନିବାରୟ'* ଉଚ୍ଚାରଣ କରିବା ସହ ଦଣ୍ଡକୁ ପ୍ରାର୍ଥନା କରି ତାହାକୁ ହାତରେ ଧରିବେ । (ତା'ପରେ ପ୍ରଣବ ବା ଗାୟତ୍ରୀ ଉଚ୍ଚାରଣ କରି କମଣ୍ଡଳୁ ଗ୍ରହଣ କରିବେ ।)

ଏହାପରେ ଭଗବାନ ଶିବଙ୍କ ଚରଣାରବିନ୍ଦକୁ ଚିନ୍ତନ କରି କରି ଗୁରୁଙ୍କ ନିକଟକୁ ଯାଇ ତ୍ରିବାର ଭୂମିରେ ଲୋଟି ଦଣ୍ଡବତ୍ ପ୍ରଣାମ କରିବେ । ସେତେବେଳେ ସେ ନିଜ ମନକୁ ପୂର୍ଣ୍ଣରୂପେ ସଂଯମିତ ରଖିବେ । ତା'ପରେ ଧୀରଭାବେ ଉଠି ପ୍ରେମପୂର୍ବକ ନିଜ ଗୁରୁଙ୍କ ଆଡ଼କୁ ଗ୍ହିଁ କର ଯୋଡ଼ି ତାଙ୍କ ପାଦ ପାଖରେ ଛିଡ଼ା ହେବେ । ସଂନ୍ୟାସଦୀକ୍ଷା ବିଷୟକ କର୍ମ ଆରମ୍ଭ ହେବା ପୂର୍ବରୁ ଶୁଦ୍ଧ ଗୋବରରେ ଅଁଳା ପରି ଗୁଳି ତିଆରି କରି ଖରାରେ ଶୁଖାଇ ରଖିଥିବେ । ହୋମ ଆରମ୍ଭ ହେଲେ ସେହି ଗୁଳିକୁ ହୋମାଗ୍ନିରେ ପକାଇଦେବେ । ହୋମ ସମାପ୍ତ ହେବା ପରେ ସେଗୁଡ଼ିକୁ ସଂଗ୍ରହ କରି ସୁରକ୍ଷିତ ରଖିବେ । ତା'ପରେ ଦଣ୍ଡଧାରଣ ପରେ ଗୁରୁ ବିରଜାଗ୍ନିଜନିତ ସେହି ଶ୍ୱେତ ଭସ୍ମକୁ ନେଇ ଶିଷ୍ୟର ଅଙ୍ଗରେ ଲଗାଇବେ ଅଥବା ଲଗାଇବାକୁ ଶିଷ୍ୟକୁ ଆଜ୍ଞା ଦେବେ । ତାହାର କ୍ରମ ହେଲା—'ଓଁ ଅଗ୍ନିରିତି ଭସ୍ମ ବାୟୁରିତି ଭସ୍ମ ଜଳମିତି ଭସ୍ମ ସ୍ଥଳମିତି ଭସ୍ମ ବ୍ୟୋମେତି ଭସ୍ମ ସର୍ବଂ ହ ବା ଇଦଂ ଭସ୍ମ ମନ ଏତାନି ଚକ୍ଷୁଂଷି' ଏହି ମନ୍ତ୍ରରେ ଭସ୍ମକୁ ଅଭିମନ୍ତ୍ରିତ କରିବେ । ତା'ପରେ ଈଶାନାଦି ପାଞ୍ଚଟି ମନ୍ତ୍ରରେ ସେହି ଭସ୍ମକୁ ଶିଷ୍ୟର ଅଙ୍ଗରେ ସ୍ପର୍ଶ କରାଇ ତାହାକୁ ମସ୍ତକଠାରୁ ପାଦ ପର୍ଯ୍ୟନ୍ତ ସର୍ବାଙ୍ଗରେ ଲଗାଇବାକୁ ଦେବେ । ଶିଷ୍ୟ ଭସ୍ମକୁ ବିଧିପୂର୍ବକ ହାତରେ ଧରି 'ତ୍ର୍ୟାୟୁଷମ୍...❦' ଏବଂ 'ତ୍ର୍ୟମ୍ବକମ୍...✦'ମନ୍ତ୍ରକୁ ତିନି ତିନି ଥର ପଢ଼ି ଲଲାଟାଦି ଅଙ୍ଗରେ କ୍ରମାନୁସାରେ ତ୍ରିପୁଣ୍ଡ୍ର ଧାରଣ କରିବେ ।

ତା'ପରେ ଶ୍ରେଷ୍ଠ ଶିଷ୍ୟ ଭକ୍ତିଯୁକ୍ତ ଚିତ୍ତରେ ନିଜ ହୃଦୟକମଳରେ ବିରାଜମାନ ଉମା-ମହେଶ୍ୱରଙ୍କୁ ଧ୍ୟାନ କରିବେ । ତା'ପରେ ଗୁରୁ ଶିଷ୍ୟ ମସ୍ତକ ଉପରେ ହାତ ରଖି ତା'ର ଡାହାଣ କାନରେ ଋଷି, ଛନ୍ଦ ଓ ଦେବତା ସମେତ ପ୍ରଣବ ଉପଦେଶ ଦେବେ । ଏହାପରେ କୃପା କରି ପ୍ରଣବର ଅର୍ଥ ମଧ୍ୟ ବୋଧ କରାଇବେ । ଶ୍ରେଷ୍ଠ ଗୁରୁ ପ୍ରଣବର ଛଅ ପ୍ରକାର ଅର୍ଥ ଜ୍ଞାନ କରାଇବା ସହିତ ତାହାର ବାର ପ୍ରକାର ଭେଦ ବିଷୟରେ ମଧ୍ୟ ଉପଦେଶ ଦେବା ଉଚିତ । ତା'ପରେ ଶିଷ୍ୟ ଗୁରୁଙ୍କୁ ଦଣ୍ଡବତ୍ ପ୍ରଣାମ କରିବେ ଓ ସର୍ବଦା ତାଙ୍କର ଅଧୀନ ରହିବେ; ତାଙ୍କ ଆଜ୍ଞା ବିନା କୌଣସି କାର୍ଯ୍ୟ କରିବେ ନାହିଁ । ଗୁରୁଙ୍କ

---

* ହେ ଦଣ୍ଡ! ତୁମେ ମୋର ସଖା (ସହାୟକ) ଅଟ, ମୋତେ ରକ୍ଷା କର । ମୋର ଓଜ (ପ୍ରାଣଶକ୍ତି)କୁ ରକ୍ଷା କର । ତୁମେ ମୋର ସେହି ସଖା ଯେ କି ଇନ୍ଦ୍ରଙ୍କ ହାତରେ ବଜ୍ର ରୂପରେ ରହିଥାଅ । ତୁମେ ହିଁ ବଜ୍ରରୂପରେ ଆଘାତ କରି ବୃତ୍ରାସୁରକୁ ସଂହାର କରିଛ । ତୁମେ ମୋ ପାଇଁ କଲ୍ୟାଣମୟ ହୁଅ । ମୋଠାରେ ଯେଉଁ ପାପ ରହିଛି, ତାହା ନିବାରଣ କର ।

❦ ତ୍ର୍ୟାୟୁଷଂ ଜମଦଗ୍ନେଃ କଶ୍ୟପଶ୍ୟ ତ୍ର୍ୟାୟୁଷମ୍ । ଯଦ୍ଦେବେଷୁ ତ୍ର୍ୟାୟୁଷଂ ତନ୍ନୋଽସ୍ତୁ ତ୍ର୍ୟାୟୁଷମ୍ ॥ (ଯଜୁର୍ବେଦ ୩ ।୬୨)

✦ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍ । ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍ ॥ (ଯଜୁର୍ବେଦ ୩ ।୬୦)

ଆଜ୍ଞାକ୍ରମେ ଶିଷ୍ୟ ବେଦାନ୍ତର ତାତ୍ପର୍ଯ୍ୟ ଅନୁରୂପ ସଗୁଣ-ନିର୍ଗୁଣଭେଦରେ ଶିବଜ୍ଞାନରେ ତତ୍ପର ରହିବେ । ଗୁରୁ ନିଜ ଶିଷ୍ୟ ଦ୍ୱାରା ଶ୍ରବଣ, ମନନ, ନିଦିଧ୍ୟାସନ ଓ ଜପ କରାଇ ଶେଷରେ ପ୍ରାତଃକାଳୀନ ନିୟମାଦି ଅନୁଷ୍ଠାନ କରାଇବେ । କୈଳାସପ୍ରସ୍ତର ନାମକ ମଣ୍ଡଳରେ ଶିବ ଯେଉଁ ମାର୍ଗ ପ୍ରତିପାଦିତ କରିଛନ୍ତି, ତଦନୁସାରେ ଶିଷ୍ୟ ସେଇଠି ରହି ଶିବପୂଜନ କରିବେ । ଯଦି ଗୁରୁଙ୍କ ଆଦେଶାନୁସାରେ ସେ ପ୍ରତିଦିନ ସେଠାରେ ରହି ମଙ୍ଗଳମୟ ଦେବତା ଶିବଙ୍କୁ ପୂଜା କରିବାରେ ଅସମର୍ଥ ହୁଅନ୍ତି, ତେବେ ସେ ପୀଠଯୁକ୍ତ ସ୍ଫଟିକ ଶିବଲିଙ୍ଗ ନେଇ ଅନ୍ୟତ୍ର ରହି ନିତ୍ୟ ତାହାକୁ ପୂଜା କରିବେ । ସେ ଗୁରୁଙ୍କ ନିକଟରେ ଶପଥପୂର୍ବକ ପ୍ରତିଜ୍ଞା କରିବେ–"ମୋ ପ୍ରାଣ ପଛେ ଗ୍ଳିଯାଉ, ମୋର ମୁଣ୍ଡ ପଛେ କଟିଯାଉ, କିନ୍ତୁ ମୁଁ ତ୍ରିଲୋଚନଙ୍କ ପୂଜା ବିନା କଦାପି ଭୋଜନ କରିବି ନାହିଁ ।" ଶିଷ୍ୟ ଏପରି ଦୃଢ଼ଚିତ୍ତରେ ଶିବଭକ୍ତି ନିମନ୍ତେ ଗୁରୁଙ୍କ ସମ୍ମୁଖରେ ତ୍ରିବାର ଶପଥ କରିବା ପରେ ଉତ୍ସାହପୂର୍ବକ ଭକ୍ତିଭାବରେ ପଞ୍ଚାବରଣ-ପୂଜନ ପଦ୍ଧତି ଅନୁସାରେ ପ୍ରତିଦିନ ମହାଦେବଙ୍କୁ ପୂଜା କରିବେ ।

(ଅଧ୍ୟାୟ ୧୩)

✯✯✯

# ପ୍ରଣବର ଅର୍ଥ ନିରୂପଣ

ବାମଦେବ କହିଲେ–ଭଗବନ୍ ! ଷଡ଼ାନନ ! ହେ ସମସ୍ତ ବିଜ୍ଞାନମୟ ଅମୃତର ସାଗର ! ହେ ଦେବାଧିଦେବ ମହେଶ୍ୱରଙ୍କ ପୁତ୍ର ! ହେ ପ୍ରଣତାର୍ତ୍ତିଭଞ୍ଜନ କାର୍ତ୍ତିକେୟ ! ଆପଣ କହିଲେ ଯେ ପ୍ରଣବର ଛଅ ପ୍ରକାର ଅର୍ଥର ପରିଜ୍ଞାନ ଅଭୀଷ୍ଟ ବସ୍ତୁ ପ୍ରଦାନ କରିଥାଏ । ତେବେ ଏ ଛଅ ପ୍ରକାର ଅର୍ଥର ଜ୍ଞାନ କ'ଣ? ପ୍ରଭୋ ! ତାହା କେଉଁ କେଉଁ ଅର୍ଥ ଏବଂ ତାହାର ପରିଜ୍ଞାନ କ'ଣ? ତାହାଦ୍ୱାରା କେଉଁ ବସ୍ତୁ ପ୍ରତିପାଦିତ ହୁଏ ଏବଂ ସେହି ଅର୍ଥର ସମ୍ୟକ୍ ଜ୍ଞାନ ହେଲା ପରେ କେଉଁ ଫଳ ମିଳେ? ହେ ପାର୍ବତୀନନ୍ଦନ ! ମୁଁ ଯାହା ସବୁ ପଗ୍ଚରିଲି, ସେ ବିଷୟରେ ବିଶଦଭାବେ ବର୍ଣ୍ଣନା କରନ୍ତୁ ।

ସୁବ୍ରହ୍ମଣ୍ୟ ସ୍କନ୍ଦ କହିଲେ–ହେ ମୁନିବର ! ତୁମେ ଯାହା କିଛି ପଗ୍ଚରିଲ, ତାହା ଆଦରପୂର୍ବକ ଶୁଣ । ସମଷ୍ଟି ଓ ବ୍ୟଷ୍ଟିଭାବରେ ମହେଶ୍ୱରଙ୍କ ପରିଜ୍ଞାନ ହିଁ ପ୍ରଣବାର୍ଥର ପରିଜ୍ଞାନ । ମୁଁ ଏ ବିଷୟକୁ ସବିସ୍ତାର ବର୍ଣ୍ଣନା କରୁଛି । ହେ ଉତ୍ତମ ବ୍ରତପାଳନକାରୀ ମୁନୀଶ୍ୱର ! ମୋର ଏହି ପ୍ରବଚନଦ୍ୱାରା ସେହି ଛଅ ପ୍ରକାର ଅର୍ଥର ଏକତ୍ୱ ବିଷୟରେ ମଧ୍ୟ ବୋଧ ହୋଇଯିବ । ପ୍ରଥମଟି ମନ୍ତ୍ରରୂପ ଅର୍ଥ, ଦ୍ୱିତୀୟଟି ଯନ୍ତ୍ରଭାବିତ ଅର୍ଥ, ତୃତୀୟଟି ଦେବତାବୋଧକ ଅର୍ଥ, ଚତୁର୍ଥଟି ପ୍ରପଞ୍ଚରୂପ ଅର୍ଥ, ପଞ୍ଚମ ଅର୍ଥ ଗୁରୁଙ୍କ ରୂପକୁ ଦର୍ଶାଇଥାଏ ଏବଂ ଷଷ୍ଠ ଅର୍ଥ ଶିଷ୍ୟଙ୍କ ସ୍ୱରୂପର ପରିଚୟ ଦେଇଥାଏ । ଏପରି ଛଅ ପ୍ରକାର ଅର୍ଥ କରାଯାଏ । ମୁନିଶ୍ରେଷ୍ଠ ! ଏଗୁଡ଼ିକ ମଧ୍ୟରୁ ମନ୍ତ୍ରରୂପ ଅର୍ଥ ବିଷୟରେ ତୁମକୁ କହୁଛି । ଏ ବିଷୟରେ ଜ୍ଞାନ ହେବାମାତ୍ରେ ମନୁଷ୍ୟ ମହାଜ୍ଞାନୀ ହୋଇଯାଏ । ପ୍ରଣବରେ ବେଦ ପାଞ୍ଚଟି ଅକ୍ଷର ନିର୍ଦ୍ଦେଶ କରିଛନ୍ତି, ପ୍ରଥମ ହେଲା ଆଦିସ୍ୱର 'ଅ', ଦ୍ୱିତୀୟଟି ପଞ୍ଚମ ସ୍ୱର 'ଉ', ତୃତୀୟଟି ପଞ୍ଚମ ବର୍ଗ ପବର୍ଗର ଅନ୍ତିମ ଅକ୍ଷର 'ମ', ଚତୁର୍ଥ ଅକ୍ଷରଟି ହେଲା ବିନ୍ଦୁ ଏବଂ ପଞ୍ଚମ ଅକ୍ଷରଟି ହେଲା ନାଦ । ଏଗୁଡ଼ିକ ଛଡ଼ା ଆଉ କୌଣସି ଅକ୍ଷର ନାହିଁ । ଏଗୁଡ଼ିକର ସମଷ୍ଟିରୂପ ଓଁକାର (ପ୍ରଣବ)କୁ ବେଦର ଆଦି କୁହାଯାଏ । ନାଦ ସମସ୍ତ ଅକ୍ଷରର ସମଷ୍ଟିରୂପ ଏବଂ ବିନ୍ଦୁଯୁକ୍ତ ଗ୍ଚରିଟି ଅକ୍ଷର ହିଁ

ଶିବବାଚକ ପ୍ରଣବରେ ବ୍ୟଷ୍ଟିରୂପରେ ପ୍ରତିଷ୍ଠିତ ।

ବିଦ୍ୱନ୍ ! ଏବେ ଯନ୍ତ୍ରରୂପ ବା ଯନ୍ତ୍ରଭାବିତ ଅର୍ଥ ଶୁଣ । ସେହି ଯନ୍ତ୍ର ହିଁ ଶିବଲିଙ୍ଗରୂପରେ ସ୍ଥିତ । ସବାତଳେ ପୀଠ (ଶକ୍ତି) ଲେଖ । ତା' ଉପରକୁ ପ୍ରଥମ ସ୍ୱର ଅକାର ଲେଖ । ତା'ଉପରେ ଉକାର ଅଙ୍କିତ କର ଏବଂ ତା' ଉପରେ ପବର୍ଗର ଶେଷ ଅକ୍ଷର ମକାର ଲେଖ । ମକାର ଉପରେ ଅନୁସ୍ୱାର ଓ ତା'ଉପରେ ଅର୍ଦ୍ଧଚନ୍ଦ୍ରାକାର ନାଦ ଅଙ୍କିତ କର । ଏହିପରି ଯନ୍ତ୍ର ଲେଖି ତାହାକୁ ପ୍ରଣବଦ୍ୱାରା ହିଁ ବେଷ୍ଟିତ କର । ପ୍ରଣବରୁ ପ୍ରକଟିତ ନାଦଦ୍ୱାରା ହିଁ ନାଦର ଅବସାନ ବୋଲି ବୁଝ ।

ମୁନେ ! ଏବେ ମୁଁ ଦେବତାରୂପ ତୃତୀୟ ଅର୍ଥ କହୁଛି, ଯାହା କି ସର୍ବତ୍ର ଗୁପ୍ତ । ବାମଦେବ ! ତୁମ ପ୍ରତି ସ୍ନେହ ହେତୁ ମହାଦେବଙ୍କ ଦ୍ୱାରା ପ୍ରତିପାଦିତ ସେହି ଅର୍ଥକୁ ମୁଁ ତୁମ ଆଗରେ ପ୍ରକାଶ କରୁଛି । 'ସଦ୍ୟୋଜାତଂ ପ୍ରପଦ୍ୟାମି' ଠାରୁ ଆରମ୍ଭ କରି 'ସଦାଶିବୋମ୍' ପର୍ଯ୍ୟନ୍ତ ଯେଉଁ ପାଞ୍ଚଟି ମନ୍ତ୍ର* ରହିଛି, ପ୍ରଣବ ହିଁ ଏସବୁର ଆଧାରବାଚକ ବୋଲି ଶ୍ରୁତି କହନ୍ତି । ଏଗୁଡ଼ିକୁ ବ୍ରହ୍ମରୂପୀ ପାଞ୍ଚ ସୂକ୍ଷ୍ମ ଦେବତା ବୋଲି ବୁଝିବା ଉଚିତ । ଏଗୁଡ଼ିକୁ ଶିବଙ୍କ ମୂର୍ତ୍ତିରୂପରେ ମଧ୍ୟ ବିସ୍ତୃତଭାବେ ବର୍ଣ୍ଣନା କରାଯାଇଛି । ଶିବଙ୍କ ବାଚକ ମନ୍ତ୍ର ଶିବମୂର୍ତ୍ତିର ମଧ୍ୟ ବାଚକ; କାରଣ ମୂର୍ତ୍ତି ଓ ମୂର୍ତ୍ତିମାନ୍ ମଧ୍ୟରେ ଅଧିକ ଭେଦ ନାହିଁ । 'ଈଶାନ ମୁକୁଟୋପେତଃ' ଇତ୍ୟାଦି ମନ୍ତ୍ରଗୁଡ଼ିକ ଦ୍ୱାରା ପୂର୍ବରୁ ଶିବଙ୍କ ବିଗ୍ରହର ପ୍ରତିପାଦନ କରାଯାଇ ସାରିଛି । ଏବେ ସେଗୁଡ଼ିକର ପାଞ୍ଚ ମୁଖର ବର୍ଣ୍ଣନା ଶୁଣ । ପଞ୍ଚମ ମନ୍ତ୍ର 'ଈଶାନଃ ସର୍ବବିଦ୍ୟାନାମ୍' ଠାରୁ ଉପରୋକ୍ତ 'ସଦ୍ୟୋଜାତ' ମନ୍ତ୍ର ପର୍ଯ୍ୟନ୍ତ କ୍ରମଶଃ ଗୋଟିଏ ଚକ୍ରରେ ଅଙ୍କିତ କରିବ । ତା'ପରେ 'ସଦ୍ୟୋଜାତ' ଠାରୁ ଆରମ୍ଭ କରି 'ଈଶାନ' ମନ୍ତ୍ର ପର୍ଯ୍ୟନ୍ତ କ୍ରମଶଃ ସେହି ଚକ୍ରରେ ଅଙ୍କିତ କରିବ । ଏ ପାଞ୍ଚଟି ଶିବଙ୍କର ପାଞ୍ଚ ମୁଖ ବୋଲି କଥିତ । ତତ୍‌ପୁରୁଷଠାରୁ ସଦ୍ୟୋଜାତ ପର୍ଯ୍ୟନ୍ତ ଚାରିଟି ବ୍ରହ୍ମରୂପ ମନ୍ତ୍ର ହିଁ ମହେଶ୍ୱରଙ୍କ ଚତୁର୍ବ୍ୟୂହପଦରେ ପ୍ରତିଷ୍ଠିତ । 'ଈଶାନ' ମନ୍ତ୍ର ସଦ୍ୟୋଜାତାଦି ପାଞ୍ଚ ମନ୍ତ୍ରର ସମଷ୍ଟିରୂପ । ମୁନେ ! ତତ୍‌ପୁରୁଷଠାରୁ ସଦ୍ୟୋଜାତ ପର୍ଯ୍ୟନ୍ତ ଥିବା ଚାରିଟି ମନ୍ତ୍ର ହେଉଛି ଈଶାନଦେବଙ୍କ ବ୍ୟଷ୍ଟିରୂପ ।

ଏହାକୁ ଅନୁଗ୍ରହମୟ ଚକ୍ର କହନ୍ତି । ଏହା ହିଁ ପଞ୍ଚାର୍ଥର କାରଣ । ଏହା ସୂକ୍ଷ୍ମ, ନିର୍ବିକାର, ଅନାମୟ ପରବ୍ରହ୍ମସ୍ୱରୂପ । ଅନୁଗ୍ରହ ମଧ୍ୟ ଦୁଇ ପ୍ରକାରର । ଗୋଟିଏ ତିରୋଭାବ ଆଦି ପାଞ୍ଚ¥ କୃତ୍ୟର ଅନ୍ତର୍ଗତ ଓ ଅନ୍ୟଟି ଜୀବଙ୍କୁ କାର୍ଯ୍ୟକାରଣ ଆଦି ବନ୍ଧନରୁ ମୁକ୍ତି ଦେବାରେ ସମର୍ଥ । ଦୁଇଟିଯାକ ଅନୁଗ୍ରହ ସଦାଶିବଙ୍କର ଦ୍ୱିବିଧ କୃତ୍ୟ ଅଟେ । ମୁନେ ! ଅନୁଗ୍ରହରେ ମଧ୍ୟ ସୃଷ୍ଟ୍ୟାଦି କୃତ୍ୟ ଯୋଗ ହେବାରୁ ତାହା ଶିବଙ୍କ ପଞ୍ଚକୃତ୍ୟ ହୋଇଯାଏ । ଏହି ପଞ୍ଚକୃତ୍ୟରେ ମଧ୍ୟ ସଦ୍ୟୋଜାତାଦି ଦେବତା ପ୍ରତିଷ୍ଠିତ ଥାଆନ୍ତି । ସେ ପାଞ୍ଚଜଣ ଦେବତା ପରବ୍ରହ୍ମସ୍ୱରୂପ ଓ ସଦା କଲ୍ୟାଣ ପ୍ରଦାୟକ ଅଟନ୍ତି । ଅନୁଗ୍ରହମୟ ଚକ୍ର ଶାନ୍ତ୍ୟତୀତ✦ କଳାରୂପ । ସଦାଶିବଙ୍କ ଠାରେ ଅଧିଷ୍ଠିତ ହୋଇଥିବାରୁ ତାହାକୁ ପରମ ପଦ କହନ୍ତି । ଶୁଦ୍ଧାନ୍ତଃକରଣ ସଂନ୍ୟାସୀଙ୍କୁ ଏହି ପଦ ହିଁ ପ୍ରାପ୍ତ ହୋଇଥାଏ । ସଦାଶିବଙ୍କ ଉପାସକ ଓ ପ୍ରଣବୋପାସନାରେ ନିମଗ୍ନ ବ୍ୟକ୍ତିଙ୍କୁ ମଧ୍ୟ ଏହି ପଦ ପ୍ରାପ୍ତ ହୋଇଥାଏ । ଏହି ପଦକୁ ପ୍ରାପ୍ତ ହୋଇ ମୁନୀଶ୍ୱରଗଣ ବ୍ରହ୍ମରୂପୀ ମହାଦେବଙ୍କ ସଙ୍ଗେ ପ୍ରଚୁର ଦିବ୍ୟ ଭୋଗ ଉପଭୋଗ କରି ମହାପ୍ରଳୟକାଳରେ ଶିବଙ୍କ ସମାନତା ପ୍ରାପ୍ତ

* ଏ ପାଞ୍ଚଟି ମନ୍ତ୍ର ପୂର୍ବରୁ ଦିଆଯାଇଛି ।

¥ ସୃଷ୍ଟି, ସ୍ଥିତି, ସଂହାର, ତିରୋଭାବ ଓ ଅନୁଗ୍ରହ—ଏ ପାଞ୍ଚଟି ପରମେଶ୍ୱରଙ୍କ କୃତ୍ୟ ଅଟେ ।

✦ ପାଞ୍ଚଟି କଳାର ନାମ ହେଲା—ନିବୃତ୍ତିକଳା, ପ୍ରତିଷ୍ଠାକଳା, ବିଦ୍ୟାକଳା, ଶାନ୍ତିକଳା ଓ ଶାନ୍ତ୍ୟତୀତାକଳା ।

ହୁଅନ୍ତି । ସେହି ମୁକ୍ତ ଜୀବମାନେ ଆଉ କେବେ ସଂସାରସାଗରରେ ପଡ଼ନ୍ତି ନାହିଁ ।

ତେ ବ୍ରହ୍ମଲୋକେଷୁ ପରାନ୍ତକାଳେ ପରାମୃତାଃ ପରିମୁଚ୍ୟନ୍ତି ସର୍ବେ ॥

(ମୁଣ୍ଡକ. ୩ । ୨ । ୬)

—ଉକ୍ତ ସନାତନ ଶ୍ରୁତି ଏହି ଅର୍ଥ ପ୍ରତିପାଦନ କରିଛନ୍ତି । ସମଷ୍ଟି ହିଁ ସଦାଶିବଙ୍କ ଐଶ୍ୱର୍ଯ୍ୟ । ଅଥର୍ବବେଦର ଶ୍ରୁତି ମଧ୍ୟ କହନ୍ତି ଯେ ସେ ସମସ୍ତ ଐଶ୍ୱର୍ଯ୍ୟରେ ସମ୍ପନ୍ନ । ସମସ୍ତ ଐଶ୍ୱର୍ଯ୍ୟ ପ୍ରଦାନ କରିବାର ଶକ୍ତି ଶିବଙ୍କ ଠାରେ ହିଁ ରହିଛି । ଚମକାଧ୍ୟାୟର ପଦରୁ ସୂଚିତ ହୁଏ ଯେ ଶିବପଦ ଠାରୁ ବଳି ଅନ୍ୟ କୌଣସି ପଦ ନାହିଁ । ବ୍ରହ୍ମପଞ୍ଚକର ବିସ୍ତାରକୁ ପ୍ରପଞ୍ଚ କହନ୍ତି । ଏ ପାଞ୍ଚଟି ବ୍ରହ୍ମମୂର୍ତ୍ତିଠାରୁ ନିବୃତ୍ତି ଆଦି ପାଞ୍ଚ କଳା ଉତ୍ପନ୍ନ । ସେଗୁଡ଼ିକ ସୂକ୍ଷ୍ମଭୂତ ସ୍ୱରୂପିଣୀ ହୋଇଥିବାରୁ କାରଣରୂପରେ ବିଖ୍ୟାତ । ହେ ସୁବ୍ରତ ବାମଦେବ ! ସ୍ଥୂଳରୂପରେ ପ୍ରକଟିତ ଏ ଜଗତ ପ୍ରପଞ୍ଚକୁ ଯେଉଁ ବ୍ରହ୍ମ ପାଞ୍ଚଟି ରୂପରେ ବ୍ୟାପ୍ତ କରି ରଖିଛି, ସେହି ବ୍ରହ୍ମ ହିଁ ନିଜର ସେହି ପାଞ୍ଚଟି ରୂପ ସମେତ ବ୍ରହ୍ମପ୍ରପଞ୍ଚ ନାମ ଧାରଣ କରିଛି । ମୁନିଶ୍ରେଷ୍ଠ ! ପୁରୁଷ, ଶ୍ରୋତ୍ର, ବାଣୀ, ଶବ୍ଦ ଓ ଆକାଶ—ଏ ପାଞ୍ଚଟି ଈଶାନରୂପୀ ବ୍ରହ୍ମ ଦ୍ୱାରା ପରିବ୍ୟାପ୍ତ । ମୁନୀଶ୍ୱର ! ପ୍ରକୃତି, ତ୍ୱକ୍, ପାଣି, ସ୍ପର୍ଶ ଓ ବାୟୁ—ଏ ପାଞ୍ଚଟି ପୁରୁଷରୂପୀ ବ୍ରହ୍ମ ଦ୍ୱାରା ପରିବ୍ୟାପ୍ତ । ଅହଂକାର, ନେତ୍ର, ପାଦ, ରୂପ ଓ ଅଗ୍ନି ଅଘୋରରୂପୀ ବ୍ରହ୍ମ ଦ୍ୱାରା ବ୍ୟାପ୍ତ । ବୁଦ୍ଧି, ରସନା, ପାୟୁ, ରସ ଓ ଜଳ ବାମଦେବରୂପୀ ବ୍ରହ୍ମ ଦ୍ୱାରା ନିତ୍ୟ ବ୍ୟାପ୍ତ । ମନ, ନାସିକା, ଉପସ୍ଥ, ଗନ୍ଧ ଓ ପୃଥିବୀ ସଦ୍ୟୋଜାତରୂପୀ ବ୍ରହ୍ମଦ୍ୱାରା ପରିବ୍ୟାପ୍ତ । ଏହିରୂପେ ଏ ଜଗତ ପଞ୍ଚବ୍ରହ୍ମସ୍ୱରୂପ । ଯନ୍ତ୍ରରୂପରେ ଯେଉଁ ଶିବବାଚକ ପ୍ରଣବ କଥା କୁହାଗଲା, ତାହା ନାଦ ପର୍ଯ୍ୟନ୍ତ ପାଞ୍ଚବର୍ଣ୍ଣର ସମଷ୍ଟିରୂପ ଅଟେ ଏବଂ ବିନ୍ଦୁଯୁକ୍ତ ଗ୍ରିବର୍ଣ୍ଣ ହେଉଛି ପ୍ରଣବର ବ୍ୟଷ୍ଟିରୂପ । ଶିବଙ୍କ ଉପଦିଷ୍ଟ ମାର୍ଗରେ ଉତ୍କୃଷ୍ଟ ମନ୍ତ୍ରାଧିରାଜ ଶିବରୂପୀ ପ୍ରଣବକୁ ପୂର୍ବୋକ୍ତ ଯନ୍ତ୍ରରୂପରେ ଚିନ୍ତନ କରିବା ଉଚିତ ।

(ଅଧ୍ୟାୟ ୧୪)



# ଶୈବଦର୍ଶନ ଅନୁସାରେ ଶିବତତ୍ତ୍ୱ, ଜଗତ୍ ପ୍ରପଞ୍ଚ ଓ ଜୀବତତ୍ତ୍ୱ ବିଷୟରେ ବିଶଦ ପର୍ଯ୍ୟାଲୋଚନା ଏବଂ ଶିବଙ୍କ ସହିତ ଜୀବ ଓ ଜଗତର ଅଭିନ୍ନତା ପ୍ରତିପାଦନ

ଏହାପରେ ସ୍କନ୍ଦ ଉତ୍ତମ ସୃଷ୍ଟିପଦ୍ଧତିର ବର୍ଣ୍ଣନା କରି ସୃଷ୍ଟି, ସ୍ଥିତି ଓ ସଂହାରକୁ ଶକ୍ତିମାନ୍ ଶିବଙ୍କ ଲୀଳା ବୋଲି କହୁ କହୁ ବାମଦେବଙ୍କ ପ୍ରଶ୍ନର ଉତ୍ତରରେ କହିଲେ —ମୁନେ ! କର୍ମାସ୍ତିତତ୍ତ୍ୱଠାରୁ ଆରମ୍ଭ କରି ଯେଉଁ ବିସ୍ତୃତ ଶାସ୍ତ୍ରବାଦ ରହିଛି, ଅର୍ଥାତ୍ କର୍ମସତ୍ତାର ପ୍ରତିପାଦକ କର୍ମଫଳବାଦରୁ ଆରମ୍ଭ କରି ଶାସ୍ତ୍ରରେ ଯେଉଁ ବିବିଧ ବିଷୟର ବିଶଦ ବର୍ଣ୍ଣନା ରହିଛି, ତାହା ଜ୍ଞାନପ୍ରଦାୟକ । ତେଣୁ ଜ୍ଞାନବାନ୍ ପୁରୁଷ ବିବେକପୂର୍ବକ ତାହା ଶ୍ରବଣ କରିବା ଉଚିତ । ତୁମେ ଯେଉଁ ଶିଷ୍ୟମାନଙ୍କୁ ଉପଦେଶ ଦେଇଛ, ସେମାନଙ୍କ ମଧ୍ୟରୁ କିଏ ଅବା ତୁମ ସମାନ ହୋଇପାରିବ? ସେହି ଅଧମ ଶିଷ୍ୟମାନେ ଆଜି ମଧ୍ୟ ଅନ୍ୟାନ୍ୟ ଶାସ୍ତ୍ରରେ ଭ୍ରମୁଛନ୍ତି । ଅନୀଶ୍ୱରବାଦୀ ଦର୍ଶନର ଜାଲରେ ପଡ଼ି ମୋହିତ ହୋଇଯାଇଛନ୍ତି । ପୂର୍ବେ ସେମାନେ ଶିବନିନ୍ଦା କରିଥିବାରୁ ଛଅ ଜଣ ମୁନି ସେମାନଙ୍କୁ ଅଭିଶାପ ଦେଇଛନ୍ତି । ତେଣୁ ସେମାନଙ୍କ କଥା ଶୁଣିବା

ଉଚିତ ନୁହେଁ; କାରଣ ସେମାନେ ଅନ୍ୟଥାବାଦୀ (ଶିବଶାସ୍ତ୍ରର ବିପରୀତ ମତ ଦିଅନ୍ତି) । ଏଠାରେ ପାଞ୍ଚ* ଅବୟବଯୁକ୍ତ ଅନୁମାନର ପ୍ରୟୋଗ ନିମନ୍ତେ ମଧ୍ୟ ଅବକାଶ ରହିଛି । ସୁବ୍ରତ ବାମଦେବ ! ଯେପରି ପର୍ବତ ଉପରେ ଧୂଆଁକୁ ଦେଖି ଲୋକେ ଅନୁମାନ ଦ୍ୱାରା ସେଠାରେ ଅଗ୍ନିର ଅସ୍ତିତ୍ୱ ପ୍ରତିପାଦିତ କରନ୍ତି, ଠିକ୍ ସେହିପରି ଏ ପ୍ରତ୍ୟକ୍ଷ ପ୍ରପଞ୍ଚଦର୍ଶନରୂପୀ ହେତୁର ଅବଲମ୍ବନରେ ପରମେଶ୍ୱର ପରମାତ୍ମାଙ୍କୁ ନିଶ୍ଚିତରୂପେ ଜାଣି ହୋଇପାରେ ।

ଏ ବିଶ୍ୱ ସ୍ତ୍ରୀ-ପୁରୁଷମୟ ବୋଲି ପ୍ରତ୍ୟକ୍ଷ ଦେଖାଯାଏ । ଛଅଟି କୋଷରେ ନିର୍ମିତ ଏ ଶରୀରର ପ୍ରଥମ ତିନିଟି କୋଷ ମାଆଙ୍କ ଅଂଶରୁ ଏବଂ ପରବର୍ତ୍ତୀ ତିନିଟି କୋଷ ପିତାଙ୍କ ଅଂଶରୁ ଉତ୍ପନ୍ନ ହୁଏ ବୋଲି ଶ୍ରୁତି କହିଛନ୍ତି । ଲୋକେ ସମସ୍ତ ଶରୀରରେ ସ୍ତ୍ରୀ-ପୁରୁଷର ଭାବନା କରିଥାନ୍ତି । ମୁନେ ! ବିଦ୍ୱାନ୍ ଲୋକେ ପରମାତ୍ମାଙ୍କ ଠାରେ ମଧ୍ୟ ସ୍ତ୍ରୀ-ପୁରୁଷଭାବକୁ ଜାଣନ୍ତି । ଶ୍ରୁତି କହନ୍ତି, ପରବ୍ରହ୍ମ ପରମାତ୍ମା ସତ୍, ଚିତ୍ ଓ ଆନନ୍ଦରୂପ ଅଟନ୍ତି । ଅସତ୍ ପ୍ରପଞ୍ଚକୁ ନିବୃତ୍ତ କରୁଥିବା ଶବ୍ଦକୁ ହିଁ ସତ୍‌ରୂପ କୁହାଯାଏ । ଚିତ୍ ଶବ୍ଦରେ ଜଡ଼ ଜଗତର ନିବୃତ୍ତି ହୋଇଥାଏ । ଯଦ୍ୟପି 'ସତ୍' ଶବ୍ଦ ତିନି ଲିଙ୍ଗରେ ବିଦ୍ୟମାନ, ତଥାପି ଏଠାରେ ପରବ୍ରହ୍ମ ପରମାତ୍ମାଙ୍କ ଅର୍ଥରେ ପୁଂଲିଙ୍ଗ ସତ୍ ଶବ୍ଦକୁ ହିଁ ଗ୍ରହଣ କରିବା ଉଚିତ । 'ସତ୍' ଶବ୍ଦ ପ୍ରକାଶର ବାଚକ । 'ସନ୍ ପ୍ରକାଶଃ'ର 'ସତ୍' ଶବ୍ଦ ସ୍ପଷ୍ଟରୂପରେ ପ୍ରକାଶର ବାଚକ । ପରମାତ୍ମାଙ୍କ ଠାରେ ଯେଉଁ ସତ୍ତା ବା ପ୍ରକାଶରୂପତା ଅଛି, ତାହା ତାଙ୍କର ପୁରୁଷଭାବକୁ ସୂଚିତ କରେ । ଜ୍ଞାନ ଶବ୍ଦର ପର୍ଯ୍ୟାୟବାଚୀ 'ଚିତ୍' ଶବ୍ଦ ସ୍ତ୍ରୀଲିଙ୍ଗ ଅଟେ ଅର୍ଥାତ୍ ପରମାତ୍ମାଙ୍କ ଠାରେ ଚିଦ୍‌ରୂପତା ତାଙ୍କର ସ୍ତ୍ରୀତ୍ୱକୁ ସୂଚିତ କରେ । ପ୍ରକାଶ ଓ ଚିତ୍ ଏ ଦୁଇଟି ଜଗତର କାରଣଭାବକୁ ପ୍ରାପ୍ତ ହୋଇଛନ୍ତି । ଏହିପରି ସଚ୍ଚିଦାତ୍ମା ପରମେଶ୍ୱର ମଧ୍ୟ ଯେବେ କାରଣଭାବକୁ ପ୍ରାପ୍ତ ହୁଅନ୍ତି, ସେତେବେଳେ ଏକମାତ୍ର ପରମାତ୍ମାଙ୍କ ଠାରେ ହିଁ 'ଶିବ'ଭାବ ଓ 'ଶକ୍ତି'ଭାବର ଭେଦ କରାଯାଏ । ଯେତେବେଳେ ତେଲ ଓ ବତୀରେ ମଳିନତା ଆସିଯାଏ, ସେତେବେଳେ ତାହାର ପ୍ରକାଶ ବା ଆଲୋକରେ ମଧ୍ୟ ମଳିନତା ଆସିଯାଏ । ଚିତାଗ୍ନି ପ୍ରଭୃତିରେ ଅଶିବତା ଓ ମଳିନତା ସ୍ପଷ୍ଟ ଦୃଶ୍ୟ ହୋଇଥାଏ । ତେଣୁ ମଳିନତା ଆଦି ଆରୋପିତ ବସ୍ତୁ; ତାହାର ନିବର୍ତ୍ତକ ହୋଇଥିବାରୁ ପରମାତ୍ମାଙ୍କ 'ଶିବତ୍ୱ' ହିଁ ଶ୍ରୁତି ଦ୍ୱାରା ପ୍ରତିପାଦିତ ହୋଇଛି ।

ଜୀବର ଆଶ୍ରିତ ଚିଦ୍‌ଶକ୍ତି ସଦା ଦୁର୍ବଳ ହୋଇଥାଏ । ତାହାର ନିବୃତ୍ତି ପାଇଁ ପରମାତ୍ମାଙ୍କ

* ପ୍ରତିଜ୍ଞା, ହେତୁ, ଉଦାହରଣ, ଉପନୟ ଓ ନିଗମନ—ଏଗୁଡ଼ିକ ଅନୁମାନର ପାଞ୍ଚଟି ଅବୟବ । 'ପର୍ବତୋ ବହ୍ନିମାନ୍' (ପର୍ବତରେ ଅଗ୍ନି ଅଛି)—ଏହା ପ୍ରତିଜ୍ଞା । 'ଧୂମବତ୍ତ୍ୱାତ୍' (କାରଣ ସେଠାରେ ଧୂମ ଦେଖାଯାଉଛି)—ଏହା ହେତୁ ଅଟେ । 'ଯେଉଁଠି ଧୂଆଁ ଅଛି, ସେଠାରେ ଅବଶ୍ୟ ଅଗ୍ନି ଥାଏ, ଯଥାः— ରୋଷେଇଘର'—ଏହା ଉଦାହରଣ । 'ଯତୋଽୟଂ ଧୂମବାନ୍' (ଯେହେତୁ ଏ ପର୍ବତ ଧୂମବାନ୍)—ଏହା ଉପନୟ । 'ଅତଃ ଅଗ୍ନିମାନ୍' (ତେଣୁ ଅଗ୍ନିଯୁକ୍ତ)—ଏହା ନିଗମନ । ଏହିପରି ଈଶ୍ୱର ନିମନ୍ତେ ବି ଅନୁମାନ ହୋଇଥାଏ; ଯଥା—'କ୍ଷିତ୍ୟଙ୍କୁରାଦିକଂ କର୍ତ୍ତୃଜନ୍ୟମ୍' (ପୃଥିବୀ ତଥା ଅଙ୍କୁର ଇତ୍ୟାଦି କୌଣସି କର୍ତ୍ତାଦ୍ୱାରା ଉତ୍ପନ୍ନ ହୋଇଛନ୍ତି)—ଏହା ପ୍ରତିଜ୍ଞା । 'କାର୍ଯ୍ୟତ୍ୱାତ୍' (କାରଣ ଏହା କାର୍ଯ୍ୟ—) ଏହା ହେତୁ । 'ଯଦ୍ ଯଦ୍ କାର୍ଯ୍ୟଂ ତଦ୍ ତଦ୍ କର୍ତ୍ତୃଜନ୍ୟଂ ଯଥା ଘଟଃ କୁମ୍ଭକାରଜନ୍ୟଃ' (ପ୍ରତ୍ୟେକ କାର୍ଯ୍ୟ କୌଣସି ନା କୌଣସି କର୍ତ୍ତା ଦ୍ୱାରା ଉତ୍ପନ୍ନ ହୁଏ, ଯେପରି କି ମାଠିଆ କୁମ୍ଭକାର ଦ୍ୱାରା ଉତ୍ପନ୍ନ)—ଏହା ଉଦାହରଣ ହେଲା । 'ଯତ ଇଦମ୍ କାର୍ଯ୍ୟମ୍' (ଯେହେତୁ ଏ ପୃଥିବୀ ଇତ୍ୟାଦି କାର୍ଯ୍ୟ)—ଏହା ଉପନୟ ହେଲା । 'ଅତଃ କର୍ତ୍ତୃଜନ୍ୟମ୍' (ଏଣୁ କର୍ତ୍ତାଦ୍ୱାରା ଉତ୍ପନ୍ନ)—ଏହା ନିଗମନ ହେଲା । ପୃଥିବୀ ଆଦି କାର୍ଯ୍ୟ ଆମ ପରି ଲୋକଙ୍କ ଦ୍ୱାରା ଉତ୍ପନ୍ନ ହେଲା, ଏହା କହିବା ସମ୍ଭବ ହେବ ନାହିଁ; ତେଣୁ ଏହାର ନିଶ୍ଚିତରୂପେ କେହି ବିଲକ୍ଷଣ କର୍ତ୍ତା ଅଛି ଆଉ ସେ ହିଁ ସର୍ବଶକ୍ତିମାନ୍ ଈଶ୍ୱର ।

ଠାରେ ସାର୍ବକାଳିକ ସର୍ବଶକ୍ତିମତ୍ତା ବିଦ୍ୟମାନ । ଏଣୁ ଈଶ୍ୱର ହିଁ ବଳବାନ୍ ଓ ଶକ୍ତିମାନ୍—ଏପରି ବ୍ୟବହାର ଜଗତରେ ଦେଖାଯାଇଥାଏ । ମହାମୁନେ ବାମଦେବ ! ଲୋକ ଓ ବେଦରେ ମଧ୍ୟ ସଦା ପରମାତ୍ମାଙ୍କ ଶିବରୂପତା ଓ ଶକ୍ତିରୂପତାର ସାକ୍ଷାତ୍କାର କରାଯାଇଛି । ଶିବ ଓ ଶକ୍ତିର ସଂଯୋଗରେ ନିରନ୍ତର ଆନନ୍ଦ ପ୍ରକଟିତ ରହିଥାଏ । ତେଣୁ ମୁନେ ! ସେହି ଆନନ୍ଦକୁ ପ୍ରାପ୍ତ କରିବା ଉଦ୍ଦେଶ୍ୟରେ ହିଁ ପାପରହିତ ମୁନି ଶିବଙ୍କ ଠାରେ ମନ ଲଗାଇ ନିରାମୟ ଶିବଙ୍କୁ (ପରମ କଲ୍ୟାଣ ଓ ପରମାନନ୍ଦକୁ) ପ୍ରାପ୍ତ ହୋଇଛନ୍ତି । ଉପନିଷଦରେ ଶିବ ଓ ଶକ୍ତିଙ୍କୁ ହିଁ ସର୍ବାତ୍ମା ଏବଂ ବ୍ରହ୍ମ କୁହାଯାଇଛି । ବ୍ରହ୍ମ ଶବ୍ଦରୁ ବୃଂହିଧାତ୍ୱର୍ଥଗତ ବ୍ୟାପକତା ଓ ସର୍ବାତ୍ମତା ହିଁ ପ୍ରତିପାଦିତ ହୁଏ । ଶମ୍ଭୁ ନାମକ ବିଗ୍ରହରେ ବୃଂହଣତ୍ୱ ଓ ବୃହତ୍ତ୍ୱ (ବ୍ୟାପକତା ଓ ବିଶାଳତା) ନିତ୍ୟ ବିଦ୍ୟମାନ । ସଦ୍ୟୋଜାତାଦି ପଞ୍ଚବ୍ରହ୍ମମୟ ଶିବବିଗ୍ରହରେ ବିଶ୍ୱର ପ୍ରତୀତି ବ୍ରହ୍ମଶବ୍ଦରେ ହୋଇଛି ବୋଲି କୁହାଯାଏ ।

ବାମଦେବ ! 'ହଂସଃ' ପଦକୁ ଓଲଟାଇ ଦେଲେ 'ସୋଽହମ୍' ପଦ ହୁଏ । ସେଥିରେ ପ୍ରଣବର ପ୍ରାକଟ୍ୟ କିପରି ହୁଏ, ସେକଥା ତୁମକୁ କହୁଛି, ସାବଧାନ ହୋଇ ଶୁଣ । 'ସୋଽହମ୍' ପଦରୁ ସକାର ଓ ହକାର ନାମକ ବ୍ୟଞ୍ଜନକୁ କାଢ଼ିଦେଲେ ସ୍ଥୂଳ 'ଓମ୍' ଶବ୍ଦ ରହିଯାଏ, ଯାହା କି ପରମାତ୍ମାଙ୍କ ବାଚକ । ତତ୍ତ୍ୱଦର୍ଶୀ ମୁନି କହନ୍ତି ଯେ ତାହାକୁ ମହାମନ୍ତ୍ରସ୍ୱରୂପ ବୁଝିବା ଉଚିତ । ଏବେ ସେଥିରେ ଥିବା ସୂକ୍ଷ୍ମ ମହାମନ୍ତ୍ରର ଉଦ୍ଧାର ତୁମକୁ କହୁଛି । 'ହଂସଃ' ପଦରେ ତିନୋଟି ଅକ୍ଷର ଅଛି—'ହ୍, ଅ, ସ' । ଏଥିମଧ୍ୟରୁ ଆଦିସ୍ୱର 'ଅ' ପଞ୍ଚଦଶ (ଅନୁସ୍ୱାର) ଓ ଷୋଡ଼ଶ (ବିସର୍ଗ) ସ୍ୱର ସହିତ ରହିଛି । ସକାର ସଙ୍ଗେ ଥିବା 'ଅ' ବିସର୍ଗ ସହିତ ରହିଛି । ତାହା ଯଦି ସକାର ସମେତ ଉଠି 'ହଂ'ର ପୂର୍ବକୁ ଗ୍ଭଲିଯାଏ, ତେବେ 'ହଂସଃ'ର ବିପରୀତ 'ସୋଽହମ୍' ମହାମନ୍ତ୍ର ହୋଇଯିବ । ସକାର ଶିବଙ୍କ ବାଚକ, ଅର୍ଥାତ୍ ଶିବ ହିଁ ସକାରର ଅର୍ଥ । ଶକ୍ତ୍ୟାତ୍ମକ ଶିବ ହିଁ ଏ ମହାମନ୍ତ୍ରର ବାଚ୍ୟାର୍ଥ, ଏହା ବିଦ୍ୱାନଙ୍କର ନିର୍ଣ୍ଣୟ । ଗୁରୁ ଶିଷ୍ୟକୁ ଏହି ମହାମନ୍ତ୍ର ଉପଦେଶ ଦେଲା ବେଳେ 'ସୋଽହମ୍' ପଦରେ ତାହାକୁ ଶକ୍ତ୍ୟାତ୍ମକ ଶିବଙ୍କ ବୋଧ କରାଇବା ହିଁ ତାଙ୍କର ଉଦ୍ଦେଶ୍ୟ ହୋଇଥାଏ । ଅର୍ଥାତ୍ ଶିଷ୍ୟ ଅନୁଭବ କରୁ ଯେ "ମୁଁ ଶକ୍ତ୍ୟାତ୍ମକ ଶିବରୂପ ଅଟେ ।" ଯେତେବେଳେ ଏ ମହାମନ୍ତ୍ର ଜୀବପରକ ହୋଇଥାଏ ଅର୍ଥାତ୍ ଜୀବଙ୍କ ଶିବରୂପତାକୁ ବୋଧ କରାଏ, ସେତେବେଳେ ପଶୁ (ଜୀବ) ନିଜକୁ ଶକ୍ତ୍ୟାତ୍ମକ ଏବଂ ଶିବଙ୍କ ଅଂଶ ବୋଲି ଜାଣି ଶିବଙ୍କ ସଙ୍ଗେ ନିଜର ଏକତ୍ୱ ସିଦ୍ଧ କରେ ଏବଂ ଏହାଫଳରେ ଶିବଙ୍କ ସମତାରେ ଭାଗୀ ହୁଏ ।

ଏବେ ଶ୍ରୁତିର 'ପ୍ରଜ୍ଞାନଂ ବ୍ରହ୍ମ' ବାକ୍ୟରେ ଯେଉଁ 'ପ୍ରଜ୍ଞାନମ୍' ପଦ ରହିଛି, ତାହାର ଅର୍ଥ କୁହାଯାଉଛି । 'ପ୍ରଜ୍ଞାନ' ଶବ୍ଦ 'ଚୈତନ୍ୟ'ର ପର୍ଯ୍ୟାୟବାଚୀ । ମୁନେ ! ଶିବସୂତ୍ରରେ କୁହାଯାଇଛି ଯେ 'ଚୈତନ୍ୟମ୍ ଆତ୍ମା' ଅର୍ଥାତ୍ ଆତ୍ମା (ବ୍ରହ୍ମ ବା ପରମାତ୍ମା) ଚୈତନ୍ୟରୂପ । ଚୈତନ୍ୟ ଶବ୍ଦରୁ ସୂଚିତ ହୁଏ ଯେ ଯେଉଁଥିରେ ବିଶ୍ୱର ସମସ୍ତ ଜ୍ଞାନ ତଥା ସ୍ୱତନ୍ତ୍ରତାପୂର୍ବକ ଜଗତ ନିର୍ମାଣର କ୍ରିୟା ସ୍ୱଭାବତଃ ବିଦ୍ୟମାନ, ତାହାକୁ ଆତ୍ମା ବା ପରମାତ୍ମା କହନ୍ତି । ଏପରିଭାବରେ ମୁଁ ଏଠାରେ ଶିବସୂତ୍ରଗୁଡ଼ିକର ବ୍ୟାଖ୍ୟା କରିଦେଲି ।

'ଜ୍ଞାନଂ ବନ୍ଧଃ' ଏହା ଦ୍ୱିତୀୟ ଶିବସୂତ୍ର । ଏଥିରେ ପଶୁବର୍ଗ (ଜୀବସମୁଦାୟ)ର ଲକ୍ଷଣ କୁହାଯାଇଛି । ଏ ସୂତ୍ରର ଆଦ୍ୟ ପଦ 'ଜ୍ଞାନମ୍' ଦ୍ୱାରା କିଞ୍ଚିନ୍ମାତ୍ର ଜ୍ଞାନ ଓ କ୍ରିୟା ଘଟିବା ହିଁ ଜୀବର ଲକ୍ଷଣ ବୋଲି କୁହାଯାଇଛି । ଏହି ଜ୍ଞାନ ଓ କ୍ରିୟା ପରାଶକ୍ତିର ପ୍ରଥମ ସ୍ପନ୍ଦନ । କୃଷ୍ଣ-ଯଜୁର୍ବେଦର ଶ୍ୱେତାଶ୍ୱତର ଶାଖା ଅଧ୍ୟୟନକାରୀ

ବିଦ୍ୱାନ୍‌ମାନେ 'ସ୍ୱାଭାବିକୀ ଜ୍ଞାନବଳକ୍ରିୟା ଚ'* ଶ୍ରୁତି ଦ୍ୱାରା ଏହି ପରାଶକ୍ତିକୁ ପ୍ରସନ୍ନତାପୂର୍ବକ ସ୍ତବନ କରିଛନ୍ତି । ଜ୍ଞାନ, କ୍ରିୟା ଓ ଇଚ୍ଛାରୂପ—ଏ ତିନୋଟିକୁ ଭଗବାନ ଶିବଙ୍କର ତିନୋଟି ଦୃଷ୍ଟି ଧରାଯାଇଛି । ଏ ତିନୋଟି ଦୃଷ୍ଟି ଜୀବଙ୍କ ମନରେ ସ୍ଥିତ ହୋଇ ଅର୍ଥାତ୍ ଇନ୍ଦ୍ରିୟଜ୍ଞାନଗୋଚ ର ଦେହରେ ପ୍ରବେଶ କରିବା ଦ୍ୱାରା ଜୀବରୂପ ହୋଇ ସଦା ଜାଣେ ଓ କରେ । ତେଣୁ ଏହି ଦୃଷ୍ଟିତ୍ରୟରୂପ ଜୀବ ବାସ୍ତବରେ ଆତ୍ମାର (ମହେଶ୍ୱରଙ୍କର) ସ୍ୱରୂପ ଅଟେ, ଏହା ନିଶ୍ଚିତ ସିଦ୍ଧାନ୍ତ ।

ଏବେ ମୁଁ ଜଗତ୍ ପ୍ରପଞ୍ଚ ସହିତ ପ୍ରଣବର ଏକତା ବୋଧ କରାଉଥିବା ପ୍ରପଞ୍ଚାର୍ଥର ବର୍ଣ୍ଣନା କରିବି । 'ଓମିତୀଦଂ ସର୍ବମ୍' (ତୈତ୍ତିରୀୟ. ୧ । ୮ । ୧) ଅର୍ଥାତ୍ ପ୍ରତ୍ୟକ୍ଷ ଦୃଷ୍ଟିଗୋଚର ହେଉଥିବା ଏ ଜଗତ ଓଁକାର ଅଟେ—ଏହା ସନାତନ ଶ୍ରୁତିର କଥନ । ଏଥିରେ ପ୍ରଣବ ଓ ଜଗତର ଏକତ୍ୱ ସୂଚିତ ହୁଏ । 'ତସ୍ମାଦ୍ ବା' (ତୈତ୍ତିରୀୟ. ୨ । ୧) ବାକ୍ୟରୁ ଆରମ୍ଭ କରି ତୈତ୍ତିରୀୟ ଶ୍ରୁତି ଜଗତ-ସୃଜନର କ୍ରମ ବର୍ଣ୍ଣନା କରିଛି । ବାମଦେବ ! ସେହି ଶ୍ରୁତିର ଜ୍ଞାନପୂର୍ଣ୍ଣ ଅର୍ଥ ମୁଁ ତୁମ ଆଗରେ ସ୍ନେହବଶତଃ ବର୍ଣ୍ଣନା କରୁଛି, ଶୁଣ । ଶିବଶକ୍ତିଙ୍କ ସଂଯୋଗ ହିଁ ପରମାତ୍ମା, ଏହା ଜ୍ଞାନୀପୁରୁଷଙ୍କର ନିର୍ଣ୍ଣୀତ ମତ । ଶିବଙ୍କର ପରାଶକ୍ତିରୁ ଚିତ୍‌ଶକ୍ତି ପ୍ରକଟ ହୁଏ । ଚିତ୍‌ଶକ୍ତିରୁ ଆନନ୍ଦଶକ୍ତି ପ୍ରକଟ ହୁଏ । ଆନନ୍ଦଶକ୍ତିରୁ ଇଚ୍ଛାଶକ୍ତି, ଇଚ୍ଛାଶକ୍ତିରୁ ଜ୍ଞାନଶକ୍ତି ଓ ଜ୍ଞାନଶକ୍ତିରୁ କ୍ରିୟାଶକ୍ତି ପ୍ରକଟ ହୋଇଛି । ମୁନେ ! ଏଇ ଶକ୍ତିଗୁଡ଼ିକରୁ ନିବୃତ୍ତି ଆଦି କଳାମାନ ଉତ୍ପନ୍ନ ହୋଇଛି । ଚିତ୍‌ଶକ୍ତିରୁ ନାଦ ଓ ଆନନ୍ଦଶକ୍ତିରୁ ବିନ୍ଦୁର ପ୍ରାକଟ୍ୟ ହୋଇଛି ବୋଲି କୁହାଯାଏ । ଇଚ୍ଛାଶକ୍ତିରୁ ମକାର ପ୍ରକଟ ହୋଇଛି । ଜ୍ଞାନଶକ୍ତିରୁ ପଞ୍ଚମ ସ୍ୱର ଉକାର ଏବଂ କ୍ରିୟାଶକ୍ତିରୁ ଅକାର ଉତ୍ପନ୍ନ ହୋଇଛି । ମୁନୀଶ୍ୱର ! ଏହିରୂପେ ମୁଁ ପ୍ରଣବର ଉତ୍ପତ୍ତି କଥା କହିଲି ।

ଏବେ ଈଶାନାଦି ପଞ୍ଚବ୍ରହ୍ମ ଉତ୍ପତ୍ତିର ବର୍ଣ୍ଣନା ଶୁଣ । ଶିବଙ୍କ ଠାରୁ ଈଶାନ ଉତ୍ପନ୍ନ ହୋଇଛନ୍ତି, ଈଶାନଙ୍କ ଠାରୁ ତତ୍‌ପୁରୁଷଙ୍କ ଆବିର୍ଭାବ ହୋଇଛି, ତତ୍‌ପୁରୁଷଙ୍କ ଠାରୁ ଅଘୋରଙ୍କର, ଅଘୋରଙ୍କ ଠାରୁ ବାମଦେବଙ୍କର ଏବଂ ବାମଦେବଙ୍କ ଠାରୁ ସଦ୍ୟୋଜାତଙ୍କର ପ୍ରାକଟ୍ୟ ହୋଇଛି । ଆଦ୍ୟ ଅକ୍ଷର ପ୍ରଣବରୁ ହିଁ ମୂଳଭୂତ ପାଞ୍ଚସ୍ୱର ଓ ତେତିଶ ବ୍ୟଞ୍ଜନରୂପରେ ଅଡ଼ତିରିଶ ଅକ୍ଷରର ଉଦ୍ଭବ ହୋଇଛି । ଏବେ କଳାମାନଙ୍କ ଉତ୍ପତ୍ତିର କ୍ରମ ଶୁଣ । ଈଶାନଙ୍କ ଠାରୁ ଶାନ୍ତ୍ୟତୀତାକଳା ଉତ୍ପନ୍ନ ହୋଇଛି । ତତ୍‌ପୁରୁଷଙ୍କ ଠାରୁ ଶାନ୍ତିକଳା, ଅଘୋରଙ୍କ ଠାରୁ ବିଦ୍ୟାକଳା, ବାମଦେବଙ୍କ ଠାରୁ ପ୍ରତିଷ୍ଠାକଳା ଓ ସଦ୍ୟୋଜାତଙ୍କ ଠାରୁ ନିବୃତ୍ତିକଳା ଉତ୍ପନ୍ନ ହୋଇଛି । ଈଶାନଙ୍କ ଠାରୁ ଚିତ୍‌ଶକ୍ତି ଦ୍ୱାରା ମିଥୁନପଞ୍ଚକର ଉତ୍ପତ୍ତି ହୁଏ । ଅନୁଗ୍ରହ, ତିରୋଭାବ, ସଂହାର, ସ୍ଥିତି ଓ ସୃଷ୍ଟି—ଏ ପାଞ୍ଚଟି କୃତ୍ୟର ହେତୁ ହୋଇଥିବାରୁ ତାହାକୁ ପଞ୍ଚକ କୁହାଯାଏ । ଏ କଥା ତତ୍ତ୍ୱଦର୍ଶୀ ଜ୍ଞାନୀ ମୁନିମାନେ କହିଛନ୍ତି । ବାଚ୍ୟ-ବାଚକ ସମ୍ବନ୍ଧରେ ସେଗୁଡ଼ିକ ମିଥୁନତ୍ୱ ପ୍ରାପ୍ତ ହେଲେ । କଳା ବର୍ଣ୍ଣସ୍ୱରୂପ ଏହି ପଞ୍ଚକରେ ଭୂତପଞ୍ଚକର ଗଣନା କରାଯାଏ । ମୁନିବର ! ଆକାଶାଦି କ୍ରମରେ ଏହି ପାଞ୍ଚ ମିଥୁନଙ୍କର ଉତ୍ପତ୍ତି ହୋଇଛି । ଏଥିମଧ୍ୟରୁ ପ୍ରଥମ ମିଥୁନ ହେଲା ଆକାଶ, ଦ୍ୱିତୀୟ ହେଲା ବାୟୁ, ତୃତୀୟ ଅଗ୍ନି, ଚତୁର୍ଥ ଜଳ ଓ ପଞ୍ଚମ ମିଥୁନ ହେଲା ପୃଥିବୀ । ଏଥିରେ ଆକାଶରୁ ପୃଥିବୀ ପର୍ଯ୍ୟନ୍ତ ଭୂତଙ୍କର ଯେଉଁପରି ସ୍ୱରୂପ କୁହାଯାଇଛି, ତାହା ଶୁଣ । ଆକାଶର ଏକମାତ୍ର ଗୁଣ ହେଲା

* ଏହି ଶ୍ରୁତି ଶ୍ୱେତାଶ୍ୱତରୋପନିଷଦ୍ (୬ । ୮)ର ଅଟେ । ପୂରା ପାଠଟି ହେଲା—
ନ ତସ୍ୟ କାର୍ଯ୍ୟଂ କରଣଂ ଚ ବିଦ୍ୟତେ ନ ତତ୍ସମଶ୍ଚାଭ୍ୟଧିକଶ୍ଚ ଦୃଶ୍ୟତେ ।
ପରାସ୍ୟ ଶକ୍ତିର୍ବିବିଧୈବ ଶ୍ରୂୟତେ ସ୍ୱାଭାବିକୀ ଜ୍ଞାନବଳକ୍ରିୟା ଚ ॥

ଶବ୍ଦ; ବାୟୁର ଶବ୍ଦ ଓ ସ୍ପର୍ଶ ନାମକ ଦୁଇଟି ଗୁଣ ଅଛି; ଅଗ୍ନିରେ ଶବ୍ଦ, ସ୍ପର୍ଶ ଓ ରୂପ—ଏ ତିନୋଟି ଗୁଣର ପ୍ରାଧାନ୍ୟ ରହିଛି; ଜଳରେ ଶବ୍ଦ, ସ୍ପର୍ଶ, ରୂପ ଓ ରସ ନାମକ ଚାରିଟି ଗୁଣ ଅଛି ଏବଂ ପୃଥିବୀରେ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ନାମକ ପାଞ୍ଚଟି ଗୁଣ ରହିଛି । ଏହାକୁ ହିଁ ଭୂତମାନଙ୍କର ବ୍ୟାପକତ୍ୱ କୁହାଯାଏ । ଅର୍ଥାତ୍ ଶବ୍ଦାଦି ଗୁଣଦ୍ୱାରା ଆକାଶାଦି ଭୂତ ବାୟୁ ଆଦି ପରବର୍ତ୍ତୀ ଭୂତରେ କେଉଁ ପ୍ରକାରେ ବ୍ୟାପକ, ତାହା ଦର୍ଶାଯାଇଛି । ଅପରପକ୍ଷେ ଗନ୍ଧାଦି ଗୁଣ କ୍ରମରେ ସେହି ଭୂତମାନେ ପରବର୍ତ୍ତୀ ଭୂତର ବ୍ୟାପ୍ୟ ଅର୍ଥାତ୍ ଗନ୍ଧଗୁଣଯୁକ୍ତ ପୃଥିବୀ ଜଳର ଓ ରସଗୁଣଯୁକ୍ତ ଜଳ ଅଗ୍ନିର ବ୍ୟାପ୍ୟ । ଏହିପରି ଏଗୁଡ଼ିକର ବ୍ୟାପ୍ୟତାକୁ ବୁଝିବା ଉଚିତ । ପାଞ୍ଚ ଭୂତର ଏହି ବିସ୍ତାର ହିଁ 'ପ୍ରପଞ୍ଚ' ବୋଲାଏ । ସର୍ବସମଷ୍ଟିର ଆତ୍ମାର ନାମ 'ବିରାଟ୍' ଏବଂ ପୃଥିବୀତତ୍ତ୍ୱରୁ ଆରମ୍ଭ କରି କ୍ରମାନ୍ୱୟରେ ଶିବତତ୍ତ୍ୱ ପର୍ଯ୍ୟନ୍ତ ଯେଉଁ ତତ୍ତ୍ୱସମୁଦାୟ ରହିଛି, ତାହା ହିଁ ବ୍ରହ୍ମାଣ୍ଡ । ତାହା କ୍ରମଶଃ ତତ୍ତ୍ୱସମୁଦାୟରେ ଲୀନ ହୋଇ ହୋଇ ସର୍ବଶେଷରେ ସବୁରି ଜୀବନଭୂତ ଚୈତନ୍ୟମୟ ପରମେଶ୍ୱରଙ୍କ ଠାରେ ହିଁ ଲୀନ ହୁଏ ଏବଂ ସୃଷ୍ଟିକାଳରେ ପୁନଃ ଶକ୍ତିଦ୍ୱାରା ଶିବଙ୍କ ଠାରୁ ବାହାରି ସ୍ଥୂଳ ପ୍ରପଞ୍ଚରୂପରେ ପ୍ରଳୟକାଳ ପର୍ଯ୍ୟନ୍ତ ସୁଖପୂର୍ବକ ସ୍ଥିତ ରହେ ।

ନିଜ ଇଚ୍ଛାରେ ସଂସାରର ସୃଷ୍ଟି ନିମନ୍ତେ ଉଦ୍ୟତ ମହେଶ୍ୱରଙ୍କର ପ୍ରଥମ ପରିସ୍ପନ୍ଦକୁ 'ଶିବତତ୍ତ୍ୱ' କହନ୍ତି । ଏହା ଇଚ୍ଛାଶକ୍ତିତତ୍ତ୍ୱ ଅଟେ; କାରଣ ସମସ୍ତ କୃତ୍ୟରେ ଏହାରି ଅନୁବର୍ତ୍ତନ ହୋଇଥାଏ । ମୁନୀଶ୍ୱର ! ଜ୍ଞାନ ଓ କ୍ରିୟା—ଉଭୟ ଶକ୍ତି ମଧ୍ୟରେ ଯେତେବେଳେ ଜ୍ଞାନର ଆଧିକ୍ୟ ହୁଏ, ସେତେବେଳେ ତାହାକୁ ସଦାଶିବତତ୍ତ୍ୱ ବୋଲି ବୁଝିବା ଉଚିତ; ଯେତେବେଳେ କ୍ରିୟାଶକ୍ତିର ଉଦ୍ରେକ ହୁଏ, ସେତେବେଳେ ତାକୁ ମହେଶ୍ୱରତତ୍ତ୍ୱ ବୋଲି ବୁଝିବା ଉଚିତ ଏବଂ ଜ୍ଞାନ ଓ କ୍ରିୟା ଉଭୟ ଶକ୍ତି ସମାନ ହୋଇଥିବା ବେଳେ ତାହାକୁ ଶୁଦ୍ଧ ବିଦ୍ୟାତ୍ମକ ତତ୍ତ୍ୱ ବୋଲି ବୁଝିବା ଉଚିତ । ସମସ୍ତ ଭାବ-ପଦାର୍ଥ ପରମେଶ୍ୱରଙ୍କ ଅଙ୍ଗଭୂତ ଅଟନ୍ତି; ତଥାପି ସେଗୁଡ଼ିକ ପ୍ରତି ଯେଉଁ ଭେଦବୁଦ୍ଧି ହୁଏ, ତାହାର ନାମ ମାୟାତତ୍ତ୍ୱ । ଶିବ ତାଙ୍କ ପରମ ଐଶ୍ୱର୍ଯ୍ୟଶାଳୀ ରୂପକୁ ମାୟାଦ୍ୱାରା ନିଗୃହୀତ କରି ସମସ୍ତ ପଦାର୍ଥକୁ ଗ୍ରହଣ କଲେ ତାଙ୍କର ନାମ 'ପୁରୁଷ' ହୁଏ । 'ତତ୍ ସୃଷ୍ଟ୍ୱା ତଦେବାନୁ ପ୍ରାବିଶତ୍' (ସେହି ଶରୀରକୁ ରଚି ସ୍ୱୟଂ ସେଥିରେ ପ୍ରବିଷ୍ଟ ହେଲେ)—ଉକ୍ତ ଶ୍ରୁତିବାକ୍ୟ ତାହାର ଏହି ରୂପକୁ ପ୍ରତିପାଦନ କରିଛି ଅଥବା ଏହି ତତ୍ତ୍ୱର ପ୍ରତିପାଦନ କରିବା ନିମନ୍ତେ ଉକ୍ତ ଶ୍ରୁତିର ଆବିର୍ଭାବ ହୋଇଛି । ପୁରୁଷ ହିଁ ମାୟାରେ ମୋହିତ ହୋଇ ସଂସାରୀ (ସଂସାର-ବନ୍ଧନରେ ଆବଦ୍ଧ) ଜୀବ ପଶୁ ବୋଲାଏ । ସେ ଶିବତତ୍ତ୍ୱଜ୍ଞାନରୁ ବଞ୍ଚିତ ହୋଇଥିବାରୁ ତାହାର ବୁଦ୍ଧି ନାନା କର୍ମରେ ଆସକ୍ତ ହୋଇ ମୂଢ଼ଭାବକୁ ପ୍ରାପ୍ତ ହୋଇଥାଏ । ସେ ଜଗତକୁ ଶିବଙ୍କ ସହ ଅଭିନ୍ନ ବୋଲି ଜାଣେ ନାହିଁ ଏବଂ ନିଜକୁ ଶିବଙ୍କ ଠାରୁ ଭିନ୍ନ ବୋଲି ବୁଝେ । ପ୍ରଭୋ ! ଯଦି ଶିବଙ୍କ ସହିତ ଜଗତକୁ ଓ ନିଜକୁ ଅଭିନ୍ନ ବୋଲି ବୁଝିଯିବ, ସେ ପଶୁ(ଜୀବ)କୁ ବନ୍ଧନ ପ୍ରାପ୍ତ ହେବ ନାହିଁ । ଯେପରି ଇନ୍ଦ୍ରଜାଲ ବିଦ୍ୟାର ଜ୍ଞାତାକୁ ନିଜଦ୍ୱାରା ରଚିତ ଅଦ୍ଭୁତ ବସ୍ତୁ ବିଷୟରେ ମୋହ ବା ଭ୍ରମ ହୁଏ ନାହିଁ, ଠିକ୍ ସେହିପରି ଜ୍ଞାନଯୋଗୀଙ୍କୁ ମଧ୍ୟ ଭ୍ରମ ହୁଏ ନାହିଁ । ଗୁରୁଙ୍କ ଉପଦେଶ ଦ୍ୱାରା ନିଜ ଐଶ୍ୱର୍ଯ୍ୟର ବୋଧ ହୋଇଗଲେ ସେ ଚିଦାନନ୍ଦଘନ ଶିବରୂପ ହୋଇଯାଏ ।

ଶିବଙ୍କର ପାଞ୍ଚଟି ଶକ୍ତି ରହିଛି—୧. ସର୍ବକର୍ତ୍ତୃତ୍ୱରୂପା, ୨. ସର୍ବତତ୍ତ୍ୱରୂପା, ୩. ପୂର୍ଣ୍ଣତ୍ୱରୂପା, ୪. ନିତ୍ୟତ୍ୱରୂପା ଓ ୫. ବ୍ୟାପକତ୍ୱରୂପା । ଜୀବର ପାଞ୍ଚ କଳା ରହିଛି—୧. କଳା, ୨. ବିଦ୍ୟା, ୩. ରାଗ, ୪. କାଳ ଓ ୫. ନିୟତି । ଏହାକୁ କଳାପଞ୍ଚକ କହନ୍ତି । ଯାହା ଏଠାରେ ପଞ୍ଚତତ୍ତ୍ୱରୂପରେ

ପ୍ରକଟ ହୁଏ, ତାହାର ନାମ 'କଳା'। ଯାହା କେତେକାଂଶରେ କର୍ତ୍ତୃତ୍ୱରେ ହେତୁ ହୁଏ ଏବଂ କେତେକାଂଶରେ ତତ୍ତ୍ୱର ସାଧନ ହୁଏ, ସେହି କଳାର ନାମ 'ବିଦ୍ୟା'। ବିଷୟ ପ୍ରତି ଆସକ୍ତି ଉତ୍ପନ୍ନ କରୁଥିବା କଳାକୁ 'ରାଗ' କହନ୍ତି। ଯାହା ଭାବ ପଦାର୍ଥ ଓ ପ୍ରକାଶର ଭାସନାତ୍ମକରୂପରେ କ୍ରମଶଃ ଅବଚ୍ଛେଦକ ହୋଇ ସମସ୍ତ ଭୂତଙ୍କର ଆଦି ବୋଲାଏ, ତାହା 'କାଳ'। ଏହା ମୋର କର୍ତ୍ତବ୍ୟ, ଏହା ମୋର କର୍ତ୍ତବ୍ୟ ନୁହେଁ—ଏଭଳି ନିୟନ୍ତ୍ରଣକାରୀ ବିଭୁଶକ୍ତିର ନାମ 'ନିୟତି'। ତାହାରି ଆକ୍ଷେପରେ ଜୀବର ପତନ ହୁଏ। ଏ ପାଞ୍ଚଟି ଜୀବର ସ୍ୱରୂପକୁ ଆଚ୍ଛାଦିତ କରୁଥିବା ଆବରଣ ହୋଇଥିବାରୁ ଏଗୁଡିକୁ 'ପଞ୍ଚକଞ୍ଚୁକ' କୁହାଯାଏ। ଏଗୁଡ଼ିକୁ ନିବାରଣ କରିବା ନିମନ୍ତେ ଅନ୍ତରଙ୍ଗ ସାଧନ କରଣୀୟ।

(ଅଧ୍ୟାୟ ୧୫-୧୬)



## ମହାବାକ୍ୟର ଅର୍ଥ ଉପରେ ବିଗ୍ରର ଓ ସଂନ୍ୟାସୀଙ୍କ ଯୋଗପଟ୍ଟର ବିଧି

ସ୍କନ୍ଦ କହୁଛନ୍ତି—ମୁନେ! ଏବେ ମହାବାକ୍ୟ କହୁଛି—*

*୧-ପ୍ରଜ୍ଞାନଂ ବ୍ରହ୍ମ* (ଐତରେ. ୩।୩ ଓ ଆତ୍ମପ୍ର. ୧),
*୨-ଅହଂ ବ୍ରହ୍ମାସ୍ମି* (ବୃହଦା. ୧।୪।୧୦),
*୩-ତତ୍ତ୍ୱମସି* (ଛା. ଉ. ଖଂ.୮ରୁ ୧୬ ପର୍ଯ୍ୟନ୍ତ),
*୪-ଅୟମାତ୍ମା ବ୍ରହ୍ମ* (ମାଣ୍ଡୂକ୍ୟ. ୨; ବୃହ. ୨।୫।୧୯),
*୫-ଈଶା ବାସ୍ୟମିଦଂ ସର୍ବମ୍* (ଈଶା. ୧),
*୬-ପ୍ରାଣୋଽସ୍ମି* (କୌଷୀ. ୩),
*୭-ପ୍ରଜ୍ଞାନାତ୍ମା* (କୌଷୀ. ୩),
*୮-ଯଦେବେହ ତଦମୁତ୍ର ତଦନ୍ୱିହ* (କଠ. ୨।୧।୧୦),
*୯-ଅନ୍ୟଦେବ ତଦ୍‌ବିଦିତାଦଥୋ ଅବିଦିତାଦଧି* (କେନ. ୧।୩),
*୧୦-ଏଷ ତ ଆତ୍ମାନ୍ତର୍ଯାମ୍ୟମୃତଃ* (ବୃହ. ୩।୭।୩–୨୩),
*୧୧-ସ ଯଶ୍ଚାୟଂ ପୁରୁଷେ ଯଶ୍ଚାସାବାଦିତ୍ୟେ ସ ଏକଃ* (ତୈତ୍ତିରୀୟ. ୨।୮),
*୧୨-ଅହମସ୍ମି ପରଂ ବ୍ରହ୍ମ ପରାତ୍ପରମ୍।*
*୧୩-ବେଦଶାସ୍ତ୍ରଗୁରୂଣାଂ ତୁ ସ୍ୱୟମାନନ୍ଦଲକ୍ଷଣମ୍।*
*୧୪-ସର୍ବଭୂତସ୍ଥିତଂ ବ୍ରହ୍ମ ତଦେବାହଂ ନ ସଂଶୟଃ।*
*୧୫-ତତ୍ତ୍ୱସ୍ୟ ପ୍ରାଣୋଽହମସ୍ମି ପୃଥିବ୍ୟାଃ ପ୍ରାଣୋଽହମସ୍ମି,*
*୧୬-ଅପାଂ ଚ ପ୍ରାଣୋଽହମସ୍ମି ତେଜସଶ୍ଚ ପ୍ରାଣୋଽହମସ୍ମି,*
*୧୭-ବାୟୋଶ୍ଚ ପ୍ରାଣୋଽହମସ୍ମି ଆକାଶସ୍ୟ ପ୍ରାଣୋଽହମସ୍ମି,*
*୧୮-ତ୍ରିଗୁଣସ୍ୟ ପ୍ରାଣୋଽହମସ୍ମି,*
*୧୯-ସର୍ବୋଽହଂ ସର୍ବାତ୍ମକୋ ସଂସାରୀ ଯଦ୍ଭୂତଂ ଯଚ୍ଚ ଭବ୍ୟଂ ଯଦ୍‌ବର୍ତ୍ତମାନଂ ସର୍ବାତ୍ମକତ୍ୱାଦଦ୍ୱିତୀୟୋଽହମ୍,*
*୨୦-ସର୍ବଂ ଖଳ୍ୱିଦଂ ବ୍ରହ୍ମ* (ଛାନ୍ଦୋ. ୩।୧୪।୧)
*୨୧-ସର୍ବୋଽହଂ ବିମୁକ୍ତୋଽହମ୍।*
*୨୨-ଯୋଽସୌ ସୋଽହଂ ହଂସଃ ସୋଽହମସ୍ମି।*

—ଏହିରୂପେ ସର୍ବତ୍ର ଚିନ୍ତନ କରିବ। ଏବେ ଏହି ମହାବାକ୍ୟଗୁଡ଼ିକର ଭାବାର୍ଥ କହୁଛି—'ପ୍ରଜ୍ଞାନଂ

* ଏହି ବାକ୍ୟମାନଙ୍କର ସାଧାରଣ ଅର୍ଥ ଏହିପରି— ୧-ବ୍ରହ୍ମ ଉତ୍କୃଷ୍ଟ ଜ୍ଞାନସ୍ୱରୂପ ଅଥବା ଚୈତନ୍ୟରୂପ। ୨-ସେହି ବ୍ରହ୍ମ ମୁଁ ଅଟେ। ୩-ସେହି ବ୍ରହ୍ମ ତୁମେ ଅଟ। ୪-ଏହି ଆତ୍ମା ବ୍ରହ୍ମ ଅଟେ। ୫-ଏସବୁ ଈଶ୍ୱରଦ୍ୱାରା ବ୍ୟାପ୍ତ। ୬-ମୁଁ ପ୍ରାଣ ଅଟେ। ୭-ପ୍ରଜ୍ଞାନସ୍ୱରୂପ ଅଟେ। ୮-ଯେଉଁ ପରବ୍ରହ୍ମ ଏଠାରେ ଅଛି, ତାହା ହିଁ ସେଠାରେ (ପରଲୋକରେ) ମଧ୍ୟ ଅଛି; ଯାହା ସେଠାରେ ଅଛି, ତାହା ଏଠାରେ (ଇହଲୋକରେ) ମଧ୍ୟ ଅଛି। ୯-ସେହି ବ୍ରହ୍ମ ବିଦିତ (ଜ୍ଞାତ ବସ୍ତୁ) ଠାରୁ ଭିନ୍ନ ଓ ଅବିଦିତ (ଅଜ୍ଞାତ) ଠାରୁ ମଧ୍ୟ ଉର୍ଦ୍ଧ୍ୱରେ। ୧୦-ତୁମର ସେହି ଆତ୍ମା ଅନ୍ତର୍ଯାମୀ ଅମୃତ ଅଟେ। ୧୧-ଯେ ଏ ପୁରୁଷଠାରେ ଅଛି ଏବଂ ଯେ ଏ ଆଦିତ୍ୟଠାରେ ଅଛି–ତାହା ଏକ ବା ଅଭିନ୍ନ ଅଟେ। ୧୨-ମୁଁ ପରାପରସ୍ୱରୂପ ପରାତ୍ପର ପରବ୍ରହ୍ମ ଅଟେ। ୧୩-ବେଦ, ଶାସ୍ତ୍ର

ବ୍ରହ୍ମ'ର ବାକ୍ୟାର୍ଥ ପୂର୍ବରୁ ବୁଝାଇ ଦିଆଯାଇଛି । (ଏବେ 'ଅହଂ ବ୍ରହ୍ମାସ୍ମି'ର ଅର୍ଥ କହୁଛି ।) ଶକ୍ତିସ୍ୱରୂପ ଅଥବା ଶକ୍ତିଯୁକ୍ତ ପରମେଶ୍ୱର ହିଁ 'ଅହମ୍' ପଦର ଅର୍ଥଭୂତ ଅଟେ । 'ଅକାର' ସବୁ ବର୍ଣ୍ଣର ଅଗ୍ରଗଣ୍ୟ, ପରମ ପ୍ରକାଶ ଶିବରୂପ ଅଟେ । 'ହକାର' ବ୍ୟୋମସ୍ୱରୂପ ହୋଇଥିବାରୁ ତାହାକୁ ଶକ୍ତିରୂପରେ ବର୍ଣ୍ଣନା କରାଯାଇଛି । ଶିବ ଓ ଶକ୍ତିର ସଂଯୋଗରେ ସଦା ଆନନ୍ଦ ଉଦିତ ହୋଇଥାଏ । 'ମକାର' ସେହି ଆନନ୍ଦର ବୋଧକ । 'ବ୍ରହ୍ମ' ଶବ୍ଦରେ ଶିବଶକ୍ତିର ସର୍ବରୂପତା ସ୍ପଷ୍ଟ ସୂଚିତ ହୁଏ । ପୂର୍ବରୁ ଏହି ଉପଦେଶ ଦିଆଯାଇଛି ଯେ 'ସେହି ସର୍ବଶକ୍ତିମାନ୍ ପରମାତ୍ମା ମୁଁ ବୋଲି ଭାବନା କରିବା ଉଚିତ । (ଏବେ ତତ୍ତ୍ୱମସିର ଅର୍ଥ କହୁଛି—) 'ତତ୍ତ୍ୱମସି' ବାକ୍ୟରେ ଥିବା 'ତତ୍' ପଦର ଅର୍ଥ 'ସୋଽହମସ୍ମି' ରେ 'ସଃ' ପଦର ଅର୍ଥ ସହିତ ସମାନ ଅର୍ଥାତ୍ 'ତତ୍' ପଦ ଶକ୍ତ୍ୟାତ୍ମକ ପରମେଶ୍ୱରଙ୍କ ବାଚକ, ଅନ୍ୟଥା 'ସୋଽହମ୍' ବାକ୍ୟରେ ବିପରୀତ ଅର୍ଥର ଭାବନା ହୋଇପାରେ । କାରଣ 'ଅହମ୍' ପଦ ପୁଂଲିଙ୍ଗ, ତେଣୁ ତାହାର 'ସଃ' ପଦ ସଙ୍ଗେ ଅନ୍ୱୟ ହୋଇପାରିବ; କିନ୍ତୁ 'ତତ୍' ପଦ ନପୁଂସକ-ଲିଙ୍ଗ ଏବଂ 'ତ୍ୱମ୍' ପୁଂଲିଙ୍ଗ, ତେଣୁ ପରସ୍ପର ବିରୋଧୀ ଲିଙ୍ଗ ହୋଇଥିବାରୁ ଉଭୟ ମଧ୍ୟରେ ଅନ୍ୱୟ ହୋଇ ପାରିବ ନାହିଁ । ଉଭୟ ଅର୍ଥ 'ଶକ୍ତିମାନ୍ ପରମେଶ୍ୱର' କରାଗଲେ ଅର୍ଥରେ ସମାନ ଲିଙ୍ଗ ହେବାଫଳରେ ଅନ୍ୱୟରେ ଅନୁପପତ୍ତି ହେବ ନାହିଁ । ଯଦି ଏପରି ଧରା ନ ଯିବ, ତେବେ ସ୍ତ୍ରୀ-ପୁରୁଷରୂପ ଜଗତର କାରଣ ମଧ୍ୟ ଅନ୍ୟ କିଛି ପ୍ରକାରର ହୋଇଯିବ । ଅତଏବ 'ସୋଽହମସ୍ମି' ର 'ସଃ' ଓ 'ତତ୍ତ୍ୱମସି'ର 'ତତ୍' ଉଭୟେ ସମାନାର୍ଥକ ଅଟେ । ଏହି ମହାବାକ୍ୟର ଉପଦେଶରେ ଏକା ଅର୍ଥ ଭାବନାର ବିଧାନ ରହିଛି ।

(ଏବେ 'ଅୟମାତ୍ମା ବ୍ରହ୍ମ' ର ଅର୍ଥ କହିବା ।) 'ଅୟମାତ୍ମା ବ୍ରହ୍ମ' ରେ 'ଅୟମ୍' ଓ 'ଆତ୍ମା' ହେଲା ପୁଂଲିଙ୍ଗ ରୂପ । ତେଣୁ ଏଠାରେ ଅନ୍ୱୟରେ କିଛି ବାଧା ନାହିଁ । 'ଅୟମ୍' ଶକ୍ତିମାନ୍ ପରମେଶ୍ୱରରୂପ ଆତ୍ମା ବ୍ରହ୍ମ ଅଟେ—ଏହା ହିଁ ଏ ବାକ୍ୟର ତାତ୍ପର୍ଯ୍ୟ । (ଏବେ 'ଈଶା ବାସ୍ୟମିଦଂ ସର୍ବମ୍'ର ଭାବାର୍ଥ ଶୁଣ ।) ପରମେଶ୍ୱରଙ୍କ ଦ୍ୱାରା ରକ୍ଷଣୀୟ ହୋଇଥିବାରୁ ଏ ସମଗ୍ର ବିଶ୍ୱ ତାଙ୍କ ଦ୍ୱାରା ପରିବ୍ୟାପ୍ତ । (ଏବେ 'ପ୍ରାଣୋଽସ୍ମି', 'ପ୍ରଜ୍ଞାନାତ୍ମା' ଓ 'ଯଦେବେହ ତଦମୁତ୍ର.' ଏହି ବାକ୍ୟମାନଙ୍କ ଅର୍ଥ ଉପରେ ବିଗ୍ରହ କରାଯାଉଛି ।) ମୁଁ ପ୍ରଜ୍ଞାନସ୍ୱରୂପ ପ୍ରାଣ ଅଟେ । ଏଠାରେ ପ୍ରାଣ ଶବ୍ଦ ପରମେଶ୍ୱରଙ୍କ ବାଚକ । ଯାହା ଏଠାରେ ଅଛି, ତାହା ସେଠାରେ ବି ଅଛି— ଏପରି ଚିନ୍ତନ କର । ଏଠାରେ 'ଯତ୍, ତତ୍'ର ଅର୍ଥ ଯଥାକ୍ରମେ 'ଯଃ' ଓ 'ସଃ' ଅର୍ଥାତ୍ ଯେଉଁ ପରମାତ୍ମା ଏଠାରେ ଅଛନ୍ତି, ସେ ସେଠାରେ ମଧ୍ୟ ଅଛନ୍ତି—ଏକଥା ସିଦ୍ଧାନ୍ତପକ୍ଷ ଅବଲମ୍ବନକାରୀ ବିଦ୍ୱାନମାନେ କହିଛନ୍ତି । ଉପରୋକ୍ତ ବାକ୍ୟରେ 'ଯଦମୁତ୍ର ତଦନ୍ୱିହ'ର ଭାବ ହେଲା 'ଯୋଽମୁତ୍ର ସ ଇହ ସ୍ଥିତଃ' ଅର୍ଥାତ୍ ଯେଉଁ ପରମାତ୍ମା ପରଲୋକରେ ଅଛନ୍ତି, ସେ ଇହଲୋକରେ ମଧ୍ୟ ଅଛନ୍ତି । ପୂର୍ବ ପରି ପରମପୁରୁଷ ପରମାତ୍ମାରୂପ ଅର୍ଥ ହିଁ ଏଠାରେ ବିଦ୍ୱାନ୍‌ମାନଙ୍କର ଅଭୀଷ୍ଟ ।

---

ଓ ଗୁରୁଜନଙ୍କ ବଚନଦ୍ୱାରା ଆପେ ଆପେ ହୃଦୟରେ ଆନନ୍ଦସ୍ୱରୂପ ବ୍ରହ୍ମର ଅନୁଭବ ହେବାକୁ ଲାଗେ । ୧୪-ଯାହା ସମସ୍ତ ଭୂତଙ୍କ ଠାରେ ସ୍ଥିତ, ସେହି ବ୍ରହ୍ମ ମୁଁ ଅଟେ—ଏଥିରେ ସଂଶୟ ନାହିଁ । ୧୫-ମୁଁ ତତ୍ତ୍ୱର ପ୍ରାଣ ଅଟେ, ପୃଥିବୀର ପ୍ରାଣ ଅଟେ । ୧୬-ମୁଁ ଜଳର ପ୍ରାଣ, ତେଜର ପ୍ରାଣ । ୧୭-ବାୟୁର ପ୍ରାଣ, ଆକାଶର ପ୍ରାଣ । ୧୮-ମୁଁ ତ୍ରିଗୁଣର ପ୍ରାଣ । ୧୯-ମୁଁ ସବୁକିଛି, ସର୍ବରୂପ, ସଂସାରୀ ଜୀବାତ୍ମା ଅଟେ; ଭୂତ, ବର୍ତ୍ତମାନ ଓ ଭବିଷ୍ୟ ସବୁକିଛି ମୋର ସ୍ୱରୂପ ହୋଇଥିବାରୁ ମୁଁ ଅଦ୍ୱିତୀୟ ପରମାତ୍ମା ଅଟେ ୨୦-ଏସବୁ ନିଶ୍ଚିତରୂପେ ବ୍ରହ୍ମ ଅଟେ । ୨୧-ମୁଁ ସର୍ବରୂପ ଅଟେ, ମୁକ୍ତ ଅଟେ । ୨୨-ସେ ଯିଏ, ମୁଁ ସିଏ । ମୁଁ ସେ ଅଟେ ଓ ହେ ମୁଁ ଅଟେ ।

(ଏବେ 'ଅନ୍ୟଦେବ ତଦ୍‌ବିଦିତାଦଥୋ ଅବିଦିତାଦଧି' ଉପରେ ବିଗ୍ୱର କରିବା–) ମୁନେ ! 'ଅନ୍ୟଦେବ ତଦ୍‌ବିଦିତାଦଥୋ ଅବିଦିତାଦଧି' ବାକ୍ୟରେ ଯେଉଁ ପ୍ରକାର ଫଳର ବିପରୀତତା ଭାବନା ହେଉଛି, ତାହା ଏଠାରେ କହୁଛି, ଶୁଣ । 'ବିଦିତାତ୍' ପଦ 'ଅଯଥାବିଦିତାତ୍' ଅର୍ଥରେ ପ୍ରବୃତ୍ତ ହୋଇପାରେ । ତାହା ବିଦିତଠାରୁ ଭିନ୍ନ ଅର୍ଥାତ୍ ଯେ ଅସମ୍ୟଗ୍‌ରୂପେ ଜ୍ଞାତ, ତା'ଠାରୁ ଭିନ୍ନ । ଠିକ୍ ଏହିପରି ଯେ ଯଥାବତ୍‌ରୂପେ ବିଦିତ ନୁହେଁ, ତା'ଠାରୁ ବି ପୃଥକ୍ । ଏହି କଥନରୁ ନିଶ୍ଚିତ ହୁଏ ଯେ ମୁକ୍ତିରୂପ ଫଳର ସିଦ୍ଧି ନିମନ୍ତେ ଅନ୍ୟ କିଛି ତତ୍ତ୍ୱ ରହିଛି, ଯାହା ବିଦିତାବିଦିତ ଠାରୁ ଅତୀତ । ମାତ୍ର ଯାହା ଆତ୍ମା, ତାହା ସର୍ବରୂପ, ତାହା କାହାରିଠାରୁ ଅନ୍ୟ ହୋଇ ନ ପାରେ । ତେଣୁ ଆତ୍ମା ବା ବ୍ରହ୍ମ ଆଦି ପଦକୁ ପୂର୍ବବତ୍ ଶକ୍ତିମାନ୍ ପରମେଶ୍ୱର ଶିବଙ୍କର ହିଁ ବୋଧକ ବୋଲି ମାନିବା ଉଚିତ ।

(ଏବେ 'ଏଷ ତ ଆତ୍ମା' ତଥା 'ଯଶ୍ଚାୟଂ ପୁରୁଷେ' ଏ ଦୁଇଟି ବାକ୍ୟର ଅର୍ଥ ଉପରେ ବିଗ୍ୱର କରିବା–) ତୁମର ଏ ଅନ୍ତର୍ଯାମୀ ଆତ୍ମା ହିଁ ସ୍ୱୟଂ ଅମୃତସ୍ୱରୂପ ଶିବ । ଏ ପୁରୁଷଠାରେ ଯେ ଶମ୍ଭୁ, ସେ ସୂର୍ଯ୍ୟଠାରେ ମଧ୍ୟ ସ୍ଥିତ । ଉଭୟଙ୍କ ମଧ୍ୟରେ କୌଣସି ଭେଦ ନାହିଁ । ଯେ ପୁରୁଷଠାରେ ବିଦ୍ୟମାନ, ସେ ଆଦିତ୍ୟଠାରେ ମଧ୍ୟ ବିଦ୍ୟମାନ । ଏ ଦୁହିଙ୍କ ମଧ୍ୟରେ ପାର୍ଥକ୍ୟ ନାହିଁ । ସେହି ତତ୍ତ୍ୱ ଅଭିନ୍ନ ଅଟେ । ତାହାକୁ ସର୍ବରୂପ କୁହାଯାଇଛି । ପୁରୁଷ ଓ ଆଦିତ୍ୟ–ଏ ଦୁଇ ଉପାଧିଯୁକ୍ତ ଯେଉଁ ଅର୍ଥ କରାଯାଇଛି, ତାହା ଔପଗ୍ରିକ । ସେହି ଶମ୍ଭୁନାଥଙ୍କୁ ସବୁ ଶ୍ରୁତି ହିରଣ୍ୟମୟ କହିଥାନ୍ତି । 'ହିରଣ୍ୟବାହବେ ନମଃ' ଏଥିରେ ଥିବା ବାହୁ ଶବ୍ଦ ସମସ୍ତ ଅଙ୍ଗର ଉପଲକ୍ଷଣ । ଅନ୍ୟଥା ତାହାକୁ ହିରଣ୍ୟପତି କହିବା କୌଣସି ପ୍ରକାରେ ସମ୍ଭବ ହୋଇ ନ ଥାନ୍ତା । ଛାନ୍ଦୋଗ୍ୟୋପନିଷଦ୍‌ରେ ଗୋଟିଏ ଶ୍ରୁତି ଅଛି ଯେ– 'ଯ ଏଷୋଽନ୍ତରାଦିତ୍ୟେ ହିରଣ୍ମୟଃ ପୁରୁଷୋ ଦୃଶ୍ୟତେ ହିରଣ୍ୟଶ୍ମଶ୍ରୁର୍ହିରଣ୍ୟକେଶ ଆପ୍ରଣଖାତ୍ ସର୍ବ ଏବ ସୁବର୍ଣ୍ଣଃ ।' (ଛାନ୍ଦୋଗ୍ୟ. ୧ । ୬ । ୬) । ଏହାଦ୍ୱାରା ଆଦିତ୍ୟମଣ୍ଡଳ ଅନ୍ତର୍ଗତ ପୁରୁଷକୁ ସୁବର୍ଣ୍ଣମୟ ନିଶ-ଦାଢ଼ିଯୁକ୍ତ, ସୁବର୍ଣ୍ଣସଦୃଶ କେଶଯୁକ୍ତ ଏବଂ ନଖଠାରୁ କେଶପର୍ଯ୍ୟନ୍ତ ସମଗ୍ର ଦେହ ସୁବର୍ଣ୍ଣମୟ ବା ଜ୍ୟୋତିର୍ମୟ କୁହାଯାଇଛି । ତେଣୁ ସେହି ହିରଣ୍ୟମୟ ପୁରୁଷ ସାକ୍ଷାତ୍ ଶମ୍ଭୁ ଅଟନ୍ତି ।

ଏବେ 'ଅହମସ୍ମି ପରଂ ବ୍ରହ୍ମ ପରାପର-ପରାତ୍ପରମ୍' ବାକ୍ୟର ତାତ୍ପର୍ଯ୍ୟ କହୁଛି, ଶୁଣ । 'ଅହମ୍' ପଦର ଅର୍ଥରୂପେ ସତ୍ୟାତ୍ମା ଶିବ ହିଁ ପରିଲକ୍ଷିତ । ସେହି ଶିବ ମୁଁ ଅଟେ, ଏପରି ବାକ୍ୟାର୍ଥଯୋଜନା ଅବଶ୍ୟ ହୋଇଥାଏ । ତାଙ୍କୁ ହିଁ ସବୁଠୁ ଉତ୍କୃଷ୍ଟ ଓ ସର୍ବସ୍ୱରୂପ ପରବ୍ରହ୍ମ କୁହାଯାଇଛି । ତାହାର ତିନୋଟି ଭେଦ ରହିଛି–ପର, ଅପର ଓ ପରାତ୍ପର । ରୁଦ୍ର, ବ୍ରହ୍ମା ଓ ବିଷ୍ଣୁ ଏ ତିନି ଦେବତାଙ୍କ ନାମ ଶ୍ରୁତିଗଣ କହିଛନ୍ତି । ଏ ତିନିହେଁ ଯଥାକ୍ରମେ ପର, ଅପର ଓ ପରାତ୍ପରରୂପ ଅଟନ୍ତି । ତିନିଙ୍କ ମଧ୍ୟରେ ଜ୍ୟେଷ୍ଠ ଦେବତା ଶମ୍ଭୁ ହିଁ 'ପରବ୍ରହ୍ମ' ଶବ୍ଦରେ କଥିତ ହୋଇଛନ୍ତି ।

ବେଦ, ଶାସ୍ତ୍ର ଓ ଗୁରୁବାଣୀ ଅଭ୍ୟାସରୁ ଶିଷ୍ୟ ହୃଦୟରେ ଆପେ ଆପେ ପୂର୍ଣ୍ଣାନନ୍ଦମୟ ଶମ୍ଭୁଙ୍କର ଆବିର୍ଭାବ ହୋଇଥାଏ । ସମସ୍ତ ଭୂତଙ୍କ ହୃଦୟରେ ବିରାଜମାନ ଶମ୍ଭୁ ବ୍ରହ୍ମରୂପ ଅଟନ୍ତି । ସେ ହିଁ ମୁଁ, ଏଥିରେ ସଂଶୟ ନାହିଁ । ମୁଁ ଶିବ ହିଁ ସମସ୍ତ ତତ୍ତ୍ୱସମୁଦାୟର ପ୍ରାଣ ।

ଏପରି କହିସାରି ସ୍କନ୍ଦ ପୁଣି କହିଲେ–ମୁନେ ! ମୁଁ ଶିବ ଆତ୍ମତତ୍ତ୍ୱ, ବିଦ୍ୟାତତ୍ତ୍ୱ ଓ ଶିବତତ୍ତ୍ୱର ପ୍ରାଣ ଅଟେ । ପୃଥିବୀ ଆଦିର ମଧ୍ୟ ପ୍ରାଣ ଅଟେ । ପୃଥିବୀ ଆଦିର ଗୁଣ ପର୍ଯ୍ୟନ୍ତ ଗୃହୀତ ହୋଇଗଲେ ଏଠି ସବୁ ଆତ୍ମତତ୍ତ୍ୱ ଗୃହୀତ ହୋଇଗଲା ବୋଲି ବୁଝିବା ଉଚିତ । ପୁଣି ସବୁ ଗୃହୀତ ହୋଇଗଲେ ବିଦ୍ୟାତତ୍ତ୍ୱ ଓ ଶିବତତ୍ତ୍ୱ ବି ଗୃହୀତ ହୋଇଗଲା । ଏସବୁ ତତ୍ତ୍ୱର ମୁଁ ପ୍ରାଣ ଅଟେ । ମୁଁ ସର୍ବ, ସର୍ବାତ୍ମକ ଏବଂ

ଜୀବର ମଧ୍ୟ ଅନ୍ତର୍ଯାମୀ ହୋଇଥିବାରୁ ତାହାର ମଧ୍ୟ ଜୀବ (ଆତ୍ମା) ଅଟେ । ଭୂତ, ବର୍ତ୍ତମାନ ଓ ଭବିଷ୍ୟତ କାଳ ମଧ୍ୟ ମୋର ସ୍ୱରୂପ ହୋଇଥିବାରୁ ତାହା ମଧ୍ୟ ମୁଁ ହିଁ ଅଟେ; 'ସର୍ବୋ ବୈ ରୁଦ୍ରଃ' (ସବୁକିଛି ରୁଦ୍ର ଅଟେ)—ଏହି ଶ୍ରୁତି ସାକ୍ଷାତ୍ ଶିବଙ୍କ ମୁଖରୁ ପ୍ରକଟ ହୋଇଛି । ତେଣୁ ଶିବ ହିଁ ସର୍ବରୂପ । କାରଣ ତାଙ୍କର ଏ ସମସ୍ତ ଉତ୍କୃଷ୍ଟ ଗୁଣ ସହିତ ନିତ୍ୟ ସମ୍ବନ୍ଧ ରହିଛି । ନିଜ-ପର ଭେଦଭାବରୁ ଅତୀତ ହୋଇଥିବା କାରଣରୁ ମୁଁ ହିଁ ଅଦ୍ୱିତୀୟ ଆତ୍ମା । 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' ବାକ୍ୟର ଅର୍ଥ ପୂର୍ବରୁ କୁହାଯାଇଛି । ମୁଁ ଭାବରୂପ ହୋଇଥିବାରୁ ପୂର୍ଣ୍ଣ ଅଟେ । ନିତ୍ୟମୁକ୍ତ ମଧ୍ୟ ମୁଁ ହିଁ ଅଟେ । ପଶୁ (ଜୀବ) ମୋ କୃପାରୁ ମୁକ୍ତ ହୋଇ ମୋର ସ୍ୱରୂପକୁ ପ୍ରାପ୍ତ ହୋଇଥାନ୍ତି । ମୁଁ ହିଁ ସର୍ବାତ୍ମକ ଶମ୍ଭୁ ଅଟେ । ମୁଁ ଶିବରୂପ ଅଟେ । ବାମଦେବ ! ଏହିରୂପେ ସମସ୍ତ ବାକ୍ୟର ଅର୍ଥ ଭଗବାନ ଶିବ ବୋଲି କୁହାଯାଇଛି ।* ଈଶାବାସ୍ୟୋପନିଷଦ୍‌ରୂପୀ ଶ୍ରୁତିର ଦୁଇଟି ବାକ୍ୟରେ ପ୍ରତିପାଦିତ ଅର୍ଥ ସାକ୍ଷାତ୍ ଶିବଙ୍କର ଐକ୍ୟ ବୋଧ କରାଇଥାଏ । ଗୁରୁ ତାଙ୍କ ଶିଷ୍ୟଙ୍କୁ ଆଦରପୂର୍ବକ ଏହି ଉପଦେଶ ଦେବା ଉଚିତ ।

ଗୁରୁ ଆଧାର ସହିତ ଶଙ୍ଖକୁ ନେଇ ଅସ୍ତ୍ରମନ୍ତ୍ର (ଫଟ୍) ଓ ଭସ୍ମ ଦ୍ୱାରା ତାହାକୁ ଶୁଦ୍ଧ କରି ତାହାକୁ ନିଜ ସମ୍ମୁଖସ୍ଥ ଚତୁଷ୍କୋଣ ମଣ୍ଡଳରେ ସ୍ଥାପିତ କରିବା ଉଚିତ । ତା'ପରେ ଓଁକାର ଉଚ୍ଚାରଣ କରି ଗନ୍ଧାଦି ଦ୍ୱାରା ସେହି ଶଙ୍ଖକୁ ପୂଜା କରିବେ । ସେଥିରେ ବସ୍ତ୍ର ଗୁଡ଼ାଇଦେବେ ଏବଂ ସୁଗନ୍ଧିତ ଜଳ ପୂରାଇ ପ୍ରଣବ ଉଚ୍ଚାରଣପୂର୍ବକ ତାହାକୁ ପୂଜା କରିବେ । ତତ୍‌ପଶ୍ଚାତ୍ ସାତଥର ପ୍ରଣବ ଦ୍ୱାରା ସେହି ଶଙ୍ଖକୁ ଅଭିମନ୍ତ୍ରିତ କରି ଶିଷ୍ୟକୁ କହିବେ—''ହେ ଶିଷ୍ୟ ! ଯେ ଟିକିଏ ବି ଅନ୍ତର କରେ ବା ଭେଦଭାବ କରେ, ସେ ଭୟ ପ୍ରାପ୍ତ ହୁଏ । ଏହା ଶ୍ରୁତିର ସିଦ୍ଧାନ୍ତ, ଏଣୁ ତୁମେ ଚିତ୍ତକୁ ସ୍ଥିର କରି ନିର୍ଭୟ ହୋଇଯାଅ ।¥'' ଏପରି କହି ଗୁରୁ ସ୍ୱୟଂ ମହାଦେବଙ୍କୁ ଧ୍ୟାନ କରି ତାଙ୍କରି ରୂପରେ ଶିଷ୍ୟର ଅର୍ଚ୍ଚନା କରିବେ । ଶିଷ୍ୟର ଆସନ ପୂଜା କରି ତହିଁରେ ଶିବଙ୍କ ଆସନ ଓ ଶିବଙ୍କ ମୂର୍ତ୍ତିର ଭାବନା କରିବେ । ତା'ପରେ ମସ୍ତକ ଠାରୁ ପାଦ ପର୍ଯ୍ୟନ୍ତ 'ସଦ୍ୟୋଜାତାଦି' ପାଞ୍ଚମନ୍ତ୍ରକୁ ନ୍ୟାସ କରି ମସ୍ତକ, ମୁଖ ଓ କଳାମାନଙ୍କ ଭେଦରେ ପ୍ରଣବର କଳାମାନ ମଧ୍ୟ ନ୍ୟାସ କରିବେ । ଶିଷ୍ୟର ଶରୀରରେ ଅଡ଼ତିରିଶ ମନ୍ତ୍ରରୂପା ପ୍ରଣବର କଳା ନ୍ୟାସ କରି ତା' ମସ୍ତକ ଉପରେ ଶିବଙ୍କୁ ଆବାହନ କରିବେ । ତା'ପରେ ସ୍ଥାପନୀ ଆଦି ମୁଦ୍ରା ପ୍ରଦର୍ଶନ କରିବେ । ତା'ପରେ ଅଙ୍ଗନ୍ୟାସ କରି ଆସନପୂର୍ବକ ଷୋଡ଼ଶ ଉପଚାରର କଳ୍ପନା କରିବେ । ଖିରି ନୈବେଦ୍ୟରୂପେ ଅର୍ପଣ କରି 'ଓଁ ସ୍ୱାହା' ଉଚ୍ଚାରଣ କରିବେ । କୁଳି ଓ ଆଚମନ କରାଇବେ । ଅର୍ଘ୍ୟ ଇତ୍ୟାଦି ଦେଇ କ୍ରମାନୁସାରେ ଧୂପଦୀପାଦି ଅର୍ପଣ କରିବେ । ଶିବଙ୍କ

---

* ତତ୍ତ୍ୱଯୋଶ୍ଚାସ୍ମ୍ୟହଂ ପ୍ରାଣଃ ସର୍ବଃ ସର୍ବାତ୍ମକୋ ହ୍ୟହମ୍ । ଜୀବସ୍ୟ ସ୍ୱନ୍ତର୍ଯାମିତ୍ୱାଜ୍ଜୀବୋଽହଂ ତସ୍ୟ ସର୍ବଦା ॥
ଯଦ୍ ଭୂତଂ ଯଚ୍ଚ ଭବ୍ୟଂ ଯଦ୍ ଭବିଷ୍ୟଦ୍ ସର୍ବମେବ ଚ । ମନ୍ମୟତ୍ୱାଦହଂ ସର୍ବଃ ସର୍ବୋ ବୈ ରୁଦ୍ର ଇତ୍ୟପି ॥
ଶ୍ରୁତିରାହ ମୁନେ ସା ହି ସାକ୍ଷାଚ୍ଛିବମୁଖୋଦ୍‌ଗତା । ସର୍ବାତ୍ମା ପରମୈରେଭିର୍ଗୁଣୈର୍ନିତ୍ୟସମନ୍ୱୟାତ୍ ॥
ସ୍ୱସ୍ମାତ୍ ପରାତ୍ମବିରହାଦଦ୍ୱିତୀୟୋଽହମେବ ହି । ସର୍ବଂ ଖଲ୍ୱିଦଂ ବ୍ରହ୍ମେତି ବାକ୍ୟାର୍ଥଃ ପୂର୍ବମୀରିତଃ ॥
ପୂର୍ଣ୍ଣୋଽହଂ ଭାବରୂପତ୍ୱାନ୍ନିତ୍ୟମୁକ୍ତୋଽହମେବ ହି । ପଶବୋ ମତ୍‌ପ୍ରସାଦେନ ମୁକ୍ତା ମଦ୍ଭାବମାଶ୍ରିତାଃ ॥
ଯୋଽସୌ ସର୍ବାତ୍ମକଃ ଶମ୍ଭୁଃ ସୋଽହଂ ହଂସ ଶିବୋଽସ୍ମ୍ୟହମ୍ । ଇତି ବୈ ସର୍ବବାକ୍ୟାର୍ଥୋ ବାମଦେବ ଶିବୋଦିତଃ ॥
(ଶି. ପୁ. କୈ. ସଂ. ୧୯ । ୨୬–୩୧)

¥ ଯସ୍ତ୍ୱନ୍ତରଂ କିଞ୍ଚିଦପି କୁରୁତେଽସ୍ୟତି ଭୀତିଭାକ୍ । ଇତ୍ୟାହ ଶ୍ରୁତିସତ୍ତ୍ୱଂ ଦୃଷ୍ଟାତ୍ମା ଗତଭୀର୍ଭବ ॥
(ଶି. ପୁ. କୈ. ସଂ. ୧୯ । ୩୫-୩୬)

ଆଠ ନାମରେ ପୂଜା କରି ବେଦପାରଙ୍ଗମ ବ୍ରାହ୍ମଣଙ୍କ ସଙ୍ଗେ 'ବ୍ରହ୍ମବିଦାପ୍ନୋତି ପରମ୍' ଇତ୍ୟାଦି ବ୍ରହ୍ମାନନ୍ଦବଲ୍ଲୀ ମନ୍ତ୍ରକୁ ତଥା 'ଭୃଗୁର୍ବୈ ବାରୁଣିଃ' ଇତ୍ୟାଦି ଭୃଗୁବଲ୍ଲୀ ମନ୍ତ୍ର ପଢ଼ିବେ । ତା'ପରେ 'ଯୋ ଦେବାନାଂ ପ୍ରଥମଂ ପୁରସ୍ତାତ୍'–(୧୦ । ୩) ଠାରୁ ଆରମ୍ଭ କରି 'ତସ୍ୟ ପ୍ରକୃତିଲୀନସ୍ୟ ଯଃ ପରଃ ସ ମହେଶ୍ୱରଃ' (୧୦ । ୮) ପର୍ଯ୍ୟନ୍ତ ମହାନାରାୟଣୋପନିଷଦ୍‌ର ମନ୍ତ୍ର ପାଠ କରିବେ । ଏହାପରେ ଶିଷ୍ୟ ସମ୍ମୁଖରେ କହ୍ଲାର ଆଦିର ମାଳା ଧରି ଛିଡ଼ା ହୋଇ ଗୁରୁ ଶିବନିର୍ମିତ ପାଞ୍ଚାସ୍ୟକ ଶାସ୍ତ୍ରର ସିଦ୍ଧିସ୍କନ୍ଧକୁ ଧୀରେ ଧୀରେ ଜପିବେ । ଅନୁକୂଳ ଚିତ୍ତରେ 'ପୂର୍ଣ୍ଣୋଽହମ୍' ମନ୍ତ୍ର ପର୍ଯ୍ୟନ୍ତ ଜପ କରି ଗୁରୁ ସେହି ମାଳାକୁ ଶିଷ୍ୟ କଣ୍ଠରେ ପିନ୍ଧାଇଦେବେ । ତା'ପରେ ଲଲାଟରେ ତିଳକ ଲଗାଇ ସମ୍ପ୍ରଦାୟ ଅନୁସାରେ ତାହାର ସର୍ବାଙ୍ଗରେ ବିଧିବତ୍ ଚନ୍ଦନ ଲେପ କରାଇବେ । ତା'ପରେ ଗୁରୁ ପ୍ରସନ୍ନତାପୂର୍ବକ ଶ୍ରୀପାଦଯୁକ୍ତ ନାମ ଦେଇ ଶିଷ୍ୟକୁ ଛତ୍ର ଓ ଚରଣପାଦୁକା ଅର୍ପଣ କରିବେ । ତାକୁ ବ୍ୟାଖ୍ୟାନ ଦେବା ଓ ଆବଶ୍ୟକ କର୍ମ ଇତ୍ୟାଦି ପାଇଁ ଗୁର୍ବାସନ ଗ୍ରହଣ କରିବାର ଅଧିକାର ଦେବେ । ତା'ପରେ ଗୁରୁ ନିଜର ସେହି ଶିବରୂପୀ ଶିଷ୍ୟ ଉପରେ ଅନୁଗ୍ରହ କରି କହିବେ–''ତୁମେ ସଦା ସମାଧିସ୍ଥ ହୋଇ 'ମୁଁ ଶିବ ଅଟେ' ଏପ୍ରକାର ଭାବନା କରୁଥାଅ ।'' ଏପରି କହି ସ୍ୱୟଂ ଶିବଙ୍କୁ ନମସ୍କାର କରିବେ । ତା'ପରେ ସମ୍ପ୍ରଦାୟର ମର୍ଯ୍ୟାଦାନୁସାରେ ଅନ୍ୟ ଲୋକେ ମଧ୍ୟ ତାକୁ ନମସ୍କାର କରିବେ । ଏତିକିବେଳେ ଶିଷ୍ୟ ଉଠି ଗୁରୁଙ୍କୁ ନମସ୍କାର କରିବ । ଗୁରୁଙ୍କ ଗୁରୁଙ୍କୁ ଏବଂ ତାଙ୍କ ଶିଷ୍ୟଙ୍କୁ ମଧ୍ୟ ନମସ୍କାର କରିବ ।

ନମସ୍କାର କରିସାରି ସୁଶୀଳ ଶିଷ୍ୟ ମୌନ ହୋଇ ବିନୀତ ଭାବରେ ଗୁରୁଙ୍କ ସମୀପରେ ଛିଡ଼ା ହେବ । ଗୁରୁ ସ୍ୱୟଂ ତାକୁ ଉପଦେଶ ଦେଇ କହିବେ–''ବତ୍ସ ! ଆଜିଠାରୁ ତୁମେ ସମଗ୍ର ଜଗତ ଉପରେ ଅନୁଗ୍ରହ କର । ଯଦି କେହି ଶିଷ୍ୟ ହେବାକୁ ଆସିବ, ପ୍ରଥମେ ତା'ର ପରୀକ୍ଷା ନିଅ, ତା'ପରେ ଶାସ୍ତ୍ରବିଧି ଅନୁସାରେ ତାକୁ ଶିଷ୍ୟ କର । ଆସକ୍ତି ଇତ୍ୟାଦି ଦୋଷକୁ ପରିତ୍ୟାଗ କରି ନିରନ୍ତର ଶିବଙ୍କୁ ଚିନ୍ତନ କର । ଶ୍ରେଷ୍ଠ ସମ୍ପ୍ରଦାୟର ସିଦ୍ଧ ପୁରୁଷଙ୍କ ସଙ୍ଗ କର, ଅନ୍ୟର ନ କର । ପ୍ରାଣ ଉପରେ ସଂକଟ ଆସିଲେ ମଧ୍ୟ ଶିବପୂଜା ନ କରି କଦାପି ଭୋଜନ କରିବ ନାହିଁ । ଗୁରୁଭକ୍ତିର ଆଶ୍ରୟ ନେଇ ସୁଖୀ ରୁହ, ସୁଖୀ ରୁହ ।*''

ମୁନୀଶ୍ୱର ବାମଦେବ ! ତୁମ ପ୍ରତି ସ୍ନେହ ଥିବାରୁ ମୁଁ ଏହି ପରମ ଗୋପନୀୟ ଯୋଗପଟ୍ଟର ପ୍ରକାର ତୁମ ଆଗରେ ପ୍ରକାଶ କଲି । –ଏପରି କହିସାରି ସ୍କନ୍ଦ ଯତିଙ୍କ ହିତ ଦୃଷ୍ଟିରୁ ତାଙ୍କ ଆଗରେ ସଂନ୍ୟାସୀଙ୍କ କ୍ଷୌର ଓ ସ୍ନାନବିଧି ବିଷୟରେ ବର୍ଣ୍ଣନା କଲେ । (ଅଧ୍ୟାୟ ୧୭–୧୯)



## ଯତିଙ୍କ ଅନ୍ତ୍ୟେଷ୍ଟିକର୍ମର ଦଶାହ ପର୍ଯ୍ୟନ୍ତ କରଣୀୟ ବିଧି

ବାମଦେବ କହିଲେ–ଯେଉଁମାନେ ମୁକ୍ତ ଯତି, ସେମାନଙ୍କ ଶରୀରର ଦାହକର୍ମ ହୁଏ ନାହିଁ । ମୁଁ ଶୁଣିଛି ଯେ ମୃତ୍ୟୁ ପରେ ସେମାନଙ୍କ ଶରୀରକୁ ପୋତି ଦିଆଯାଏ । ମୋ ଗୁରୁ କାର୍ତ୍ତିକେୟ ! ଆପଣ ପ୍ରସନ୍ନତାପୂର୍ବକ ଯତିମାନଙ୍କର ସେହି ଅନ୍ତ୍ୟେଷ୍ଟିକର୍ମ ବିଷୟରେ ବର୍ଣ୍ଣନା କରନ୍ତୁ; କାରଣ ତ୍ରିଲୋକରେ

* ରାଗାଦିଦୋଷାନ୍ ସଂତ୍ୟଜ୍ୟ ଶିବଧ୍ୟାନପରୋ ଭବ । ସତ୍ସମ୍ପ୍ରଦାୟସଂସିଦ୍ଧୈଃ ସଙ୍ଗଂ କୁରୁ ନ ଚେତରୈଃ ॥
ଅନଭ୍ୟର୍ଚ୍ୟ ଶିବଂ ଜାତୁ ମା ଭୁଙ୍କ୍ଷ୍ୱାପ୍ରାଣସଂକ୍ଷୟମ୍ । ଗୁରୁଭକ୍ତିଂ ସମାସ୍ଥାୟ ସୁଖୀ ଭବ ସୁଖୀ ଭବ ॥
(ଶି. ପୁ. କୈ. ସଂ. ୧୯ । ୫୩-୫୪)

ଆପଣଙ୍କ ଛଡ଼ା ଆଉ କେହି ଏ ବିଷୟରେ ବର୍ଣ୍ଣନା କରି ପାରିବ ନାହିଁ । ଭଗବନ୍ ! ଶଙ୍କରନନ୍ଦନ ! ଯେ ପୂର୍ଣ୍ଣ ପରବ୍ରହ୍ମରେ ଅହଂଭାବର ଆଶ୍ରୟ ନେଇ ଦେହପଞ୍ଜରରୁ ମୁକ୍ତ ହୋଇଯାଇଛନ୍ତି ଏବଂ ଯେଉଁମାନେ ଉପାସନା ମାର୍ଗରେ ଶରୀରବନ୍ଧନରୁ ମୁକ୍ତ ହୋଇ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଛନ୍ତି, ସେମାନଙ୍କ ଗତିରେ ଅନ୍ତର କ'ଣ? ତାହା କୁହନ୍ତୁ । ପ୍ରଭୋ ! ମୁଁ ଆପଣଙ୍କ ଶିଷ୍ୟ, ତେଣୁ ଭଲଭାବରେ ବିଗ୍ୱର କରି ପ୍ରସନ୍ନତାପୂର୍ବକ ମୋ ଆଗରେ ସେ କଥା କୁହନ୍ତୁ ।

ସ୍କନ୍ଦ କହିଲେ—ଯେଉଁ ଯତି ସମାଧିସ୍ଥ ହୋଇ ଶିବଚିନ୍ତନପୂର୍ବକ ଦେହତ୍ୟାଗ କରେ, ସେ ଯଦି ମହାନ୍ ଧୀର ହୋଇଥାଏ, ତେବେ ପରିପୂର୍ଣ୍ଣ ଶିବରୂପ ହୋଇଯାଏ; କିନ୍ତୁ ସେ ଯଦି କୌଣସି ପ୍ରକାର ଅଧୀରଚିତ୍ତ ହୋଇଯିବା ଦ୍ୱାରା ସମାଧିଲାଭ କରି ନ ପାରେ, ତେବେ ତା'ପାଇଁ ଉପାୟ କହୁଛି, ସାବଧାନ ହୋଇ ଶୁଣ । ବେଦାନ୍ତଶାସ୍ତ୍ରର ବାକ୍ୟମାନଙ୍କରୁ ଯେଉଁ ଜ୍ଞାତା, ଜ୍ଞାନ ଓ ଜ୍ଞେୟର ପରିଜ୍ଞାନ ହୋଇଥାଏ, ତାହାକୁ ଗୁରୁମୁଖରୁ ଶୁଣି ଯତି ଯମ-ନିୟମାଦିରୂପୀ ଯୋଗ ଅଭ୍ୟାସ କରିବ । ତାହା କରିବା ସହ ସେ ଶିବଙ୍କ ଧ୍ୟାନରେ ତତ୍ପର ରହିବ । ମୁନେ ! ସେ ନିତ୍ୟ ନିୟମପୂର୍ବକ ପ୍ରଣବ ଜପ ଓ ତାହାର ଅର୍ଥଚିନ୍ତନରେ ମନକୁ ଲଗାଇ ରଖିବା ଉଚିତ । ମୁନେ ! ଯଦି ଦେହର ଦୁର୍ବଳତା ହେତୁ ଧୈର୍ଯ୍ୟ ଧାରଣ କରିବାରେ ଅସମର୍ଥ ହୁଏ, ତେବେ ଯତି ନିଷ୍କାମଭାବରେ ଶିବଙ୍କୁ ସ୍ମରଣ କରି ନିଜ ଜୀର୍ଣ୍ଣଶରୀରକୁ ତ୍ୟାଗ କରିଦେଲେ ସଦାଶିବଙ୍କ ଅନୁଗ୍ରହରୁ ନନ୍ଦୀଙ୍କ ଦ୍ୱାରା ପ୍ରେଷିତ ପାଞ୍ଚଜଣ ଆତିବାହିକ ଦେବତା ଆସିଥାନ୍ତି । ସେମାନଙ୍କ ମଧ୍ୟରେ ଜଣେ ଅଗ୍ନିର ଅଭିମାନୀ, ଜଣେ ଜ୍ୟୋତିଃପୁଞ୍ଜସ୍ୱରୂପ, ଜଣେ ଦିନାଭିମାନୀ, ଜଣେ ଶୁକ୍ଳପକ୍ଷାଭିମାନୀ ଏବଂ ଆଉ ଜଣେ ଉତ୍ତରାୟଣର ଅଭିମାନୀ ଦେବତା ଥାଆନ୍ତି । ଏ ପାଞ୍ଚଜଣ ସମସ୍ତ ପ୍ରାଣୀଙ୍କ ଉପରେ ଅନୁଗ୍ରହ କରିବାରେ ତତ୍ପର ରହିଥାନ୍ତି । ଠିକ୍ ଏହିପରି ଧୂମାଭିମାନୀ, ତମର ଅଭିମାନୀ, ରାତ୍ରିର ଅଭିମାନୀ, କୃଷ୍ଣପକ୍ଷର ଅଭିମାନୀ ଓ ଦକ୍ଷିଣାୟନର ଅଭିମାନୀ ମିଶି ପାଞ୍ଚଜଣ ଦେବତା ମଧ୍ୟ ଅଛନ୍ତି । ଏ ପାଞ୍ଚଜଣ ଦକ୍ଷିଣ ମାର୍ଗ ନିମନ୍ତେ ପ୍ରସିଦ୍ଧ । ମହାମୁନେ ବାମଦେବ ! ଏବେ ତୁମେ ଏହି ଦେବତାମାନଙ୍କ ବୃତ୍ତି ବିଷୟରେ ଶୁଣ । କର୍ମାନୁଷ୍ଠାନନିରତ ଜୀବଙ୍କ ପୁଣ୍ୟ ପ୍ରଭାବରେ ସେହି ପାଞ୍ଚ ଜଣ ଦେବତା ସେମାନଙ୍କୁ ସ୍ୱର୍ଗଲୋକକୁ ନେଇଯାଆନ୍ତି ଏବଂ ସେଠାରେ ଯଥୋକ୍ତ ଭୋଗ ଉପଭୋଗ କରି ପୁଣ୍ୟ କ୍ଷୟ ହେବା ପରେ ଜୀବମାନେ ପୁନଃ ମର୍ତ୍ତ୍ୟଲୋକକୁ ଫେରି ଆସନ୍ତି ଏବଂ ପୂର୍ବବତ୍ ଜନ୍ମଗ୍ରହଣ କରନ୍ତି ।

ଏମାନଙ୍କ ଅତିରିକ୍ତ ଅନ୍ୟ ଯେଉଁ ପାଞ୍ଚଜଣ ଉତ୍ତର ମାର୍ଗର ଦେବତା ଅଛନ୍ତି, ସେମାନେ ଭୂତଳଠାରୁ ଊର୍ଦ୍ଧ୍ୱଲୋକ ପର୍ଯ୍ୟନ୍ତ ମାର୍ଗକୁ ପାଞ୍ଚଭାଗରେ ବିଭକ୍ତ କରି ସେହି ମାର୍ଗରେ ଯତିକୁ ସଙ୍ଗରେ ନେଇ କ୍ରମାନୁସାରେ ଅଗ୍ନି ପ୍ରଭୃତିଙ୍କ ମାର୍ଗ ଦେଇ ସଦାଶିବଙ୍କ ଧାମରେ ପହଞ୍ଚାଇ ଦିଅନ୍ତି । ସେଠାରେ ଦେବାଧିଦେବ ମହାଦେବଙ୍କ ଚରଣରେ ପ୍ରଣାମ କରି ଲୋକାନୁଗ୍ରହ କର୍ମରେ ନିରତ ଥିବା ସେହି ଅନୁଗ୍ରହାକାର ଦେବତା ସଦାଶିବଙ୍କ ପଛରେ ଛିଡ଼ା ହୋଇଯାଆନ୍ତି । ଯତି ଯଦି ଅନାସକ୍ତ ହୋଇଥାଏ, ତେବେ ତାକୁ ଦେଖି ଦେବାଧିଦେବ ସଦାଶିବ ମହାମନ୍ତ୍ରର ତାତ୍ପର୍ଯ୍ୟ ଉପଦେଶ ଦେବା ସହିତ ଗଣପତି ପଦରେ ଅଭିଷିକ୍ତ କରି ନିଜ ସମାନ ଶରୀର ପ୍ରଦାନ କରନ୍ତି । ଏହିପରି ସର୍ବେଶ୍ୱର ସର୍ବନିୟନ୍ତା ଭଗବାନ ଶଙ୍କର ତା'ଉପରେ ଅନୁଗ୍ରହ କରନ୍ତି । ସେ ତାକୁ ଅନୁଗୃହୀତ କରି ନିଶ୍ଚଳ ସାମାଧି ପ୍ରଦାନ କରନ୍ତି । ତାକୁ ନିଜ ପ୍ରତି ଦାସ୍ୟଭାବର ଫଳସ୍ୱରୂପ ଏପରି ସିଦ୍ଧି ପ୍ରଦାନ କରନ୍ତି, ଯାହା କି କେଉଁଠି ଅବରୁଦ୍ଧ ହୁଏ ନାହିଁ ।

ଏହାଛଡ଼ା ଜଗଦ୍‌ଗୁରୁ ଶିବ ସେହି ଯତିକୁ ପରମ ମୁକ୍ତି ପ୍ରଦାନ କରନ୍ତି, ଯାହା ଫଳରେ ସେ ବ୍ରହ୍ମାଙ୍କ ଆୟୁ ସମାପ୍ତ ହୋଇଯିବାପରେ ମଧ୍ୟ ପୁନରାବୃତ୍ତି ଚକ୍ରରେ ପଡ଼େ ନାହିଁ । ତେଣୁ ଏହା ହିଁ ସମଷ୍ଟିମାତ୍ର ସମସ୍ତ ଐଶ୍ୱର୍ଯ୍ୟଯୁକ୍ତ ପଦ ଏବଂ ଏହା ହିଁ ମୋକ୍ଷର ରାଜମାର୍ଗ—ଏହା ବେଦାନ୍ତଶାସ୍ତ୍ରର ନିର୍ଣ୍ଣୟ ।

ଯେତେବେଳେ ଯତି ମରଣାସନ୍ନ ହୋଇଯିବ, ତା'ର ଶରୀର ଶିଥିଳ ହୋଇଯିବ, ସେତେବେଳେ ତା'ର ସମ୍ପ୍ରଦାୟର ଅନ୍ୟ ଯତିମାନେ ତା'ର ହିତ ଭାବନାରେ ତା' ଚାରିପାଖରେ ଛିଡ଼ା ହୋଇଯିବେ । ସେମାନେ ଜଣ ଜଣ କରି ପ୍ରଣବାଦି ବାକ୍ୟଗୁଡ଼ିକର ଉପଦେଶ ଦେବା ସହ ସେଗୁଡ଼ିକର ତାତ୍ପର୍ଯ୍ୟକୁ ସାବଧାନତା ଓ ପ୍ରସନ୍ନତାପୂର୍ବକ ସ୍ପଷ୍ଟରୂପେ ବର୍ଣ୍ଣନା କରିବେ ଏବଂ ତା'ର ପ୍ରାଣ ନ ଗଲା ପର୍ଯ୍ୟନ୍ତ ତାକୁ ବାରମ୍ବାର ନିର୍ଗୁଣ ପରମଜ୍ୟୋତିଃସ୍ୱରୂପ ସଦାଶିବଙ୍କର ସ୍ମରଣ କରାଇବେ । ସମସ୍ତ ଯତିଙ୍କ ପାଇଁ ଏଠାରେ ସମାନରୂପେ ସଂସ୍କାର କ୍ରମ କୁହାଯାଉଛି । ସଂନ୍ୟାସୀ ସମସ୍ତ କର୍ମକୁ ପରିତ୍ୟାଗ କରି ଶିବଙ୍କ ଆଶ୍ରୟ ଗ୍ରହଣ କରିଥାଏ । ସେଥିପାଇଁ ତା' ଶରୀରର ଦାହସଂସ୍କାର କରାଯାଏ ନାହିଁ । ଏହା କରା ନ ଯାଉଥିବାରୁ ତା'ର ଯେ ଦୁର୍ଗତି ହେବ, ସେକଥା ମଧ୍ୟ ନୁହେଁ । ସଂନ୍ୟାସୀର ଶରୀରକୁ ଦୂଷିତ କରୁଥିବା ରାଜାର ରାଜ୍ୟ ନଷ୍ଟ ହୋଇଯାଏ । ତା' ଗ୍ରାମରେ ବାସ କରୁଥିବା ଲୋକେ ଅତ୍ୟନ୍ତ ଦୁଃଖୀ ହୁଅନ୍ତି । ଏଣୁ ଏହି ଦୋଷର ପରିହାର ନିମନ୍ତେ ଶାନ୍ତିର ବିଧାନ ନିର୍ଦ୍ଦେଶ କରାଯାଉଛି । ସେତେବେଳେ 'ନମଃ ଇରିଣ୍ୟାୟ' ଠାରୁ ଆରମ୍ଭ କରି 'ନମଃ ଅମୀବକେଭ୍ୟଃ' ପର୍ଯ୍ୟନ୍ତ ମନ୍ତ୍ର ବିନୀତଚିତ୍ତ ହୋଇ ଜପ କରିବା ଆବଶ୍ୟକ । ଶେଷରେ ଓଁକାର ଜପ କରି କରି ମାଟିରେ ଦେବଯଜନ* କାର୍ଯ୍ୟ ପୂର୍ଣ୍ଣ କରିବେ । ମୁନୀଶ୍ୱର ! ଏପରି କଲେ ସେହି ଦୋଷର ଶାନ୍ତି ହୁଏ ।

(ଏବେ ସଂନ୍ୟାସୀର ଶବସଂସ୍କାର ବିଧି ନିର୍ଦ୍ଦେଶ କରାଯାଉଛି ।) ପୁତ୍ର ବା ଶିଷ୍ୟ ପ୍ରଭୃତି ଯତିର ଶରୀରକୁ ଯଥୋଚିତ ରୀତିରେ ଉତ୍ତମରୂପେ ସଂସ୍କାର କରିବା ଉଚିତ । ବ୍ରହ୍ମନ୍ ! ମୁଁ କୃପା କରି ସଂସ୍କାର ବିଧି କହୁଛି, ସାବଧାନ ହୋଇ ଶୁଣ । ପ୍ରଥମେ ଯତିର ଶରୀରକୁ ଶୁଦ୍ଧ ଜଳରେ ସ୍ନାନ କରାଇ ପୁଷ୍ପାଦିରେ ତାହାକୁ ପୂଜା କରିବେ । ପୂଜା ସମୟରେ ରୁଦ୍ରଦେବଙ୍କ ମନ୍ତ୍ରରୂପେ ଚମକାଧ୍ୟାୟ ଓ ନମକାଧ୍ୟାୟ ପାଠ କରିସାରି ରୁଦ୍ରସୂକ୍ତ ଉଚ୍ଚାରଣ କରିବେ । ତା' ଆଗରେ ଶଙ୍ଖ ସ୍ଥାପନା କରି ଶଙ୍ଖଜଳରେ ଯତିର ଶରୀରକୁ ଅଭିଷେକ କରିବେ । ମୁଣ୍ଡରେ ଫୁଲ ଥୋଇ ପ୍ରଣବ ଦ୍ୱାରା ତାହାକୁ ମାର୍ଜନ କରିବେ । ପିନ୍ଧା କୌପୀନ ଆଦିକୁ ବଦଳାଇ ନୂତନ କୌପୀନାଦି ଧାରଣ କରାଇବେ । ତା'ପରେ ବିଧିପୂର୍ବକ ତା'ର ସମଗ୍ର ଅଙ୍ଗରେ ଭସ୍ମ ଲେପନ କରିବେ । ବିଧିବତ୍ ତ୍ରିପୁଣ୍ଡ୍ର ଲଗାଇ ଦେଇ ଚନ୍ଦନରେ ତିଳକ କରିଦେବେ । ତା'ପରେ ଫୁଲମାଳରେ ତା' ଶରୀରକୁ ମଣ୍ଡିତ କରିବେ । ବକ୍ଷ, କଣ୍ଠ, ମସ୍ତକ, ବାହୁ, କଚଟି ଓ କର୍ଣ୍ଣରେ କ୍ରମାନୁସାରେ ରୁଦ୍ରାକ୍ଷ ମାଳାର ଆଭୂଷଣ ମନ୍ତ୍ରୋଚ୍ଚାରଣପୂର୍ବକ ଧାରଣ କରାଇ ସୁଶୋଭିତ କରିବେ । ତା'ପରେ ଧୂପ ଦେଇସାରି ସେହି ଶରୀରକୁ ଉଠାଇ ବିମାନରେ ରଖି ଈଶାନାଦି ପଞ୍ଚବ୍ରହ୍ମମୟ ରମଣୀୟ ରଥ ଉପରେ ସ୍ଥାପିତ କରିବେ । ପ୍ରଥମେ ଓଁକାର ସହିତ ପାଞ୍ଚଟି ସଦ୍ୟୋଜାତାଦି ବ୍ରହ୍ମମନ୍ତ୍ର ଉଚ୍ଚାରଣ କରି ସୁଗନ୍ଧିତ ପୁଷ୍ପ ଓ ମାଳାରେ ସେହି ରଥକୁ ସୁସଜ୍ଜିତ କରିବେ । ତା'ପରେ ନୃତ୍ୟ, ବାଦ୍ୟ ଓ ବ୍ରାହ୍ମଣଙ୍କ ବେଦମନ୍ତ୍ର ଧ୍ୱନି ସହ ଗ୍ରାମ ପ୍ରଦକ୍ଷିଣ କରି କରି ସେହି ପ୍ରେତକୁ ବାହାରକୁ ନେଇଯିବେ ।

* ସଂନ୍ୟାସୀର ଶରୀରକୁ ପୋତିବା ପାଇଁ ଯେଉଁ ଗାତ ଖୋଳାଯାଏ, ତାହାକୁ 'ଦେବଯଜନ' କହନ୍ତି ।

ତା'ପରେ ସଙ୍ଗରେ ଯାଇଥିବା ଯତି ଗ୍ରାମର ପୂର୍ବ ବା ଉତ୍ତର ଦିଗରେ ପବିତ୍ର ସ୍ଥାନରେ କୌଣସି ପବିତ୍ର ବୃକ୍ଷ ନିକଟରେ ଦେବଯଜନ (ଗାତ) ଖୋଳିବେ । ତାହାର ଦୈର୍ଘ୍ୟ ସଂନ୍ୟାସୀର ଦଣ୍ଡର ଦୈର୍ଘ୍ୟ ସମାନ ହେବା ଆବଶ୍ୟକ । ତା'ପରେ ପ୍ରଣବ ଓ ବ୍ୟାହୃତି ମନ୍ତ୍ରରେ ସେହି ସ୍ଥାନକୁ ପ୍ରୋକ୍ଷଣ କରି ସେଠାରେ କ୍ରମାନୁସାରେ ଶମୀ ପତ୍ର ଓ ଫୁଲ ବିଛାଇବେ । ତା'ଉପରେ ଉତ୍ତରାଗ୍ର କରି କୁଶ ବିଛାଇ ତା'ଉପରେ ଯୋଗପୀଠ ରଖିବେ । ତା'ଉପରେ ପ୍ରଥମେ କୁଶ, କୁଶ ଉପରେ ମୃଗଚର୍ମ ଓ ତା' ଉପରେ ବସ୍ତ୍ର ବିଛାଇ ପ୍ରଣବ ସହିତ ସଦ୍ୟୋଜାତାଦି ପଞ୍ଚବ୍ରହ୍ମମନ୍ତ୍ର ପାଠ କରି କରି ପଞ୍ଚଗବ୍ୟ ଦ୍ୱାରା ଶବକୁ ପ୍ରୋକ୍ଷଣ କରିବେ । ତା'ପରେ ରୁଦ୍ରସୂକ୍ତ ଏବଂ ପ୍ରଣବ ଉଚ୍ଚାରଣ କରି ଶଙ୍ଖଜଳରେ ତାହାର ଅଭିଷେକ କରି ତା' ମସ୍ତକ ଉପରେ ଫୁଲ ପକାଇବେ । ସଙ୍ଗରେ ଯାଇଥିବା ଶିଷ୍ୟାଦି ସଂସ୍କାରକର୍ତ୍ତା ଯତିଙ୍କ ଅନୁକୂଳ ଭାବ ରଖି ଶିବଙ୍କୁ ଚିନ୍ତନ କରିବେ । ତା'ପରେ ଓଁକାର ଉଚ୍ଚାରଣ ଓ ସ୍ୱସ୍ତିବାଚନ କରି ଶବକୁ ଉଠାଇ ନେଇ ଗାତରେ ପୂର୍ବାଭିମୁଖ କରି ଯୋଗାସନରେ ବସାଇବେ । ତା'ପରେ ପୁଷ୍ପ-ଚନ୍ଦନରେ ଅଳଂକୃତ କରି ତାହାକୁ ଧୂପ ଓ ଗୁଗ୍‌ଗୁଳର ସୁଗନ୍ଧ ଦେବେ । ତା'ପରେ 'ବିଷ୍ଣୋ! ହବ୍ୟମିଦଂ ରକ୍ଷସ୍ୱ' କହି ତା'ର ଡାହାଣ ହାତରେ ଦଣ୍ଡ ଧରାଇବେ ଓ 'ପ୍ରଜାପତେ ନ ତ୍ୱଦେତାନ୍ୟନ୍ୟୋ..' (ଶୁ. ଯଜୁ. ୨୩ । ୬୫) ମନ୍ତ୍ର ପଢ଼ି ବାମ ହାତରେ ଜଳପୂର୍ଣ୍ଣ କମଣ୍ଡଳୁ ଅର୍ପିତ କରିବେ । ତା'ପରେ 'ବ୍ରହ୍ମ ଯଜ୍ଞାନଂ ପ୍ରଥମଂ...' (ଶୁ. ଯଜୁ. ୧୩ । ୩) ମନ୍ତ୍ରରେ ତା'ର ମସ୍ତକ ସ୍ପର୍ଶ କରି ଦୁଇ ଭୂଲତା ଛୁଇଁ ରୁଦ୍ରମନ୍ତ୍ର ଜପିବେ । ତା'ପରେ 'ମା ନୋ ମହାନ୍ତମୁତ..' (ଶୁ. ଯଜୁ. ୧୬ । ୧୫) ଇତ୍ୟାଦି ଗ୍ରିଟି ମନ୍ତ୍ର ପଢ଼ି ନାରିକେଳ ଦ୍ୱାରା ମୃତଦେହର ମସ୍ତକ ଭେଦନ କରିବେ । ଏହାପରେ ସେହି ଗାତକୁ ବୁଜିଦେବେ । ତା'ପରେ ସେହି ସ୍ଥାନକୁ ସ୍ପର୍ଶ କରି ଅନନ୍ୟଚିତ୍ତରେ ପାଞ୍ଚଟି ବ୍ରହ୍ମମନ୍ତ୍ର ଜପିବେ । ତା'ପରେ 'ଯୋ ଦେବାନାଂ ପ୍ରଥମଂ ପୁରସ୍ତାତ୍' (୧୦ । ୩) ଠାରୁ 'ତସ୍ୟ ପ୍ରକୃତିଲୀନସ୍ୟ ଯଃ ପରଃ ସ ମହେଶ୍ୱରଃ' (୧୦ । ୮) ପର୍ଯ୍ୟନ୍ତ ମହାନାରାୟଣୋପନିଷଦର ମନ୍ତ୍ର ଜପି ସଂସାରରୂପୀ ରୋଗର ଭେଷଜ, ସର୍ବଜ୍ଞ, ସ୍ୱତନ୍ତ୍ର ଓ ସବୁରି ଅନୁଗ୍ରହକାରୀ ଉମାମହେଶ୍ୱରଙ୍କୁ ଚିନ୍ତନ ତଥା ପୂଜନ କରିବେ । (ପୂଜନର ବିଧି ଏହିପରି—)

ହାତେ ଉଚ୍ଚ ଏବଂ ଦୁଇହାତ ଲମ୍ବା ଓ ଚଉଡ଼ାର ଗ୍ରିକୋଣିଆ ପୀଠଟିଏ ମାଟିରେ ନିର୍ମାଣ କରି ତାହାକୁ ଗୋବରରେ ଲିପିଦେବେ । ତାହାର ମଧ୍ୟଭାଗରେ ଉମା-ମହେଶ୍ୱରଙ୍କୁ ସ୍ଥାପିତ କରି ଗନ୍ଧ, ଅକ୍ଷତ, ସୁଗନ୍ଧିତ ପୁଷ୍ପ, ବେଲପତ୍ର ଓ ତୁଳସୀପତ୍ରରେ ତାଙ୍କୁ ପୂଜା କରିବେ । ତା'ପରେ ପ୍ରଣବରେ ଧୂପ ଓ ଦୀପ ନିବେଦନ କରିବେ । ତା'ପରେ ଦୁଗ୍ଧ ଓ ହବିଷ୍ୟ ନୈବେଦ୍ୟ ଅର୍ପଣ କରି ପାଞ୍ଚଥର ପରିକ୍ରମା କରି ନମସ୍କାର କରିବେ । ତା'ପରେ ବାରଥର ପ୍ରଣବ ଜପି ପ୍ରଣାମ କରିବେ । (ତା'ପରେ ବ୍ରହ୍ମୀଭୂତ ଯତିର ତୃପ୍ତି ପାଇଁ ନାରାୟଣପୂଜନ, ବଳିଦାନ, ଘୃତଦୀପଦାନର ସଂକଳ୍ପ କରି ଗର୍ତ୍ତ ଉପରେ ମୃଣ୍ମୟ ଲିଙ୍ଗ ତିଆରି କରି ପୁରୁଷସୂକ୍ତରେ ପୂଜା କରି ଘୃତମିଶ୍ରିତ ପାୟସ ବଳି ଦେବେ । ଘିଅଦୀପ ଜଳାଇ ପାୟସବଳିକୁ ଜଳରେ ପକାଇଦେବେ) ପୁନଃ ଦିଗ-ବିଦିଗ କ୍ରମରେ ପ୍ରଣବ ଉଚ୍ଚାରଣପୂର୍ବକ 'ଓଁ ବ୍ରହ୍ମଣେ ନମଃ' ମନ୍ତ୍ରରେ ବ୍ରହ୍ମୀଭୂତ ଯତି ନିମନ୍ତେ ଶଙ୍ଖରେ ଆଠ ଥର ଜଳ ଦେବେ । ଏହିରୂପେ ଦଶ ଦିନ ପର୍ଯ୍ୟନ୍ତ କରିବେ । ମୁନିଶ୍ରେଷ୍ଠ ! ମୁଁ ତୁମକୁ ଦଶାହପର୍ଯ୍ୟନ୍ତ କରାଯିବା କୃତ୍ୟର ବିଧି କହିଦେଲି । ଏବେ ଯତିଙ୍କ ଏକାଦଶାହ ବିଧି ଶୁଣ । (ଅଧ୍ୟାୟ ୨୦-୨୧)

***

# ଯତିଙ୍କ ନିମନ୍ତେ ଏକାଦଶାହ କୃତ୍ୟର ବିଧି

ସ୍କନ୍ଦ କହୁଛନ୍ତି–ହେ ବାମଦେବ ! ଯତିଙ୍କ ଏକାଦଶାହ ପାଇଁ ଯାହା ବିଧି ଅଛି, ତାହା ମୁଁ ତୁମ ଆଗରେ ସ୍ନେହବଶତଃ କହୁଛି । ମାଟିରେ ବେଦି ତିଆରି କରି ତାହାକୁ ସମ୍ମାର୍ଜନ ଓ ଉପଲେପନ କରିବେ । ତା'ପରେ ପୁଣ୍ୟାହବାଚନପୂର୍ବକ ପ୍ରୋକ୍ଷଣ କରି ପଶ୍ଚିମରୁ ପୂର୍ବକୁ ପାଞ୍ଚଟି ମଣ୍ଡଳ ତିଆରି କରିବେ । ସ୍ୱୟଂ ଶ୍ରାଦ୍ଧକର୍ତ୍ତା ଉତ୍ତରାଭିମୁଖୀ ହୋଇ ବସି କାର୍ଯ୍ୟ କରିବେ । ପ୍ରାଦେଶମାତ୍ର ଲମ୍ବା ଓ ଚଉଡ଼ା ତ୍ରିକୋଣିଆ ମଣ୍ଡଳ ତିଆରି କରି ତାହାର ମଧ୍ୟଭାଗରେ ବିନ୍ଦୁ, ତାହାର ଉପରେ ଷଟ୍‌କୋଣ ମଣ୍ଡଳ, ତା'ଉପରେ ଗୋଲ ମଣ୍ଡଳ ତିଆରି କରିବେ । ତା'ପରେ ନିଜ ସମ୍ମୁଖରେ ଶଙ୍ଖ ସ୍ଥାପନା କରି ପୂଜା ପାଇଁ ନିର୍ଦ୍ଦେଶିତ ପଦ୍ଧତି କ୍ରମରେ ଆଚମନ, ପ୍ରାଣାୟାମ ଓ ସଂକଳ୍ପ କରି ପୂର୍ବୋକ୍ତ ପାଞ୍ଚଜଣ ଆତିବାହିକ ଦେବତାଙ୍କୁ ଦେବେଶ୍ୱରୀ ଦେବୀଙ୍କ ରୂପରେ ପୂଜନ କରିବେ । ଉତ୍ତର ପଟକୁ ଆସନ ନିମନ୍ତେ କୁଶ ପକାଇ ଜଳସ୍ପର୍ଶ କରିବେ । ପଶ୍ଚିମରୁ ପୂର୍ବକୁ ଯେଉଁ ମଣ୍ଡଳମାନ ନିର୍ମାଣ କରିଥିବେ, ସେଗୁଡ଼ିକ ଭିତରେ ପୀଠରୂପରେ ପୁଷ୍ପ ରଖିବେ ଓ ସେହି ପୁଷ୍ପ ଉପରେ କ୍ରମଶଃ ଉକ୍ତ ପାଞ୍ଚଜଣ ଦେବୀଙ୍କୁ ଆବାହନ କରିବେ । ପ୍ରଥମେ ଅଗ୍ନିପୁଞ୍ଜସ୍ୱରୂପିଣୀ ଆତିବାହିକ ଦେବୀଙ୍କୁ ଆବାହନ କରି କହିବେ– 'ଓଁ ହ୍ରୀଂ ଅଗ୍ନିରୂପାମାତିବାହିକଦେବତାମ୍ ଆବାହୟାମି ନମଃ ।' ଏହିପରି ସର୍ବତ୍ର ବାକ୍ୟଯୋଜନା ଓ ଭାବନା କରିବେ । ଏପରି ପାଞ୍ଚ ଦେବୀଙ୍କୁ ଆବାହନ କରି ପ୍ରତ୍ୟେକଙ୍କ ପାଇଁ ଆଦରପୂର୍ବକ ସ୍ଥାପନା ଆଦି ମୁଦ୍ରା ପ୍ରଦର୍ଶନ କରିବେ । ତା'ପରେ ହ୍ରାଂ ହ୍ରୀଂ ହ୍ରୂଂ ହ୍ରୈଂ ହ୍ରୌଂ ହ୍ରଃ–ଏହି ବୀଜମନ୍ତ୍ର ଦ୍ୱାରା ଷଡ଼ଙ୍ଗନ୍ୟାସ ଓ କରନ୍ୟାସ କରିବେ । ଏହାପରେ ସେହି ଦେବୀମାନଙ୍କୁ ନିମ୍ନମତେ ଧ୍ୟାନ କରିବେ । ସେମାନଙ୍କର ଚ୍ୟରିଟି ଲେଖାଏଁ ହାତ ରହିଛି । ସମସ୍ତଙ୍କର ଦୁଇଟି ହାତରେ ପାଶ ଓ ଅଙ୍କୁଶ ରହିଛି ଏବଂ ଅନ୍ୟ ଦୁଇଟି ହାତରେ ଅଭୟ ଓ ବରଦ ମୁଦ୍ରା ଶୋଭା ପାଉଛି । ସେମାନଙ୍କ ଅଙ୍ଗକାନ୍ତି ଚନ୍ଦ୍ରକାନ୍ତମଣି ପରି । ନାଲି ନାଲି ମୁଦ୍ରିକାର ପ୍ରଭାରେ ସେମାନେ ସମଗ୍ର ଦଶଦିଗର ମୁଖମଣ୍ଡଳକୁ ରଞ୍ଜିତ କରିଦେଉଛନ୍ତି । ସେମାନେ ରକ୍ତବସ୍ତ୍ର ପରିଧାନ କରିଛନ୍ତି । ସେମାନଙ୍କ ହାତ ଓ ପାଦ ପଦ୍ମ ପରି ଶୋଭମାନ । ତ୍ରିନେତ୍ରଯୁକ୍ତ ମୁଖମଣ୍ଡଳରୂପୀ ପୂର୍ଣ୍ଣଚନ୍ଦ୍ରର ଛଟାରେ ସେମାନେ ମନକୁ ମୋହି ନେଉଛନ୍ତି । ମାଣିକ୍ୟନିର୍ମିତ ମୁକୁଟରେ ଉଦ୍ଭାସିତ ଚନ୍ଦ୍ରଲେଖା ସେମାନଙ୍କ ସୀମନ୍ତକୁ ବିଭୂଷିତ କରୁଛି । କପୋଳ ଉପରେ ରତ୍ନମୟ କୁଣ୍ଡଳ ଝଲମଲ କରୁଛି । ସେମାନଙ୍କ ସ୍ତନମଣ୍ଡଳ ସୁନ୍ଦର । ହାର, କେୟୂର, କଡ଼ା ଓ କଟିସୂତ୍ରର ଝାଲରରେ ବିଭୂଷିତ ହୋଇ ସେମାନେ ଅତ୍ୟନ୍ତ ମନୋହାରିଣୀ ଦିଶୁଛନ୍ତି । ସେହି ଦିବ୍ୟ ରକ୍ତାମ୍ବରଧାରିଣୀ ଦେବୀମାନଙ୍କର କଟିଭାଗ କୃଶ ଓ ନିତମ୍ବ ସ୍ଥୂଳ । ଚରଣାରବିନ୍ଦରେ ମାଣିକ୍ୟନିର୍ମିତ ନୂପୁର ରୁଣୁଝୁଣୁ ଝଙ୍କାର କରୁଛି । ପାଦର ଆଙ୍ଗୁଳିମାନଙ୍କରେ ଗୋଡ଼ମୁଦିଗୁଡ଼ିକ ଅତ୍ୟନ୍ତ ମନୋହର ।

ଯଦି ଅନୁଗ୍ରହ ମୁର୍ଦ୍ଧାର ପରି ମୂର୍ତ୍ତିମାନ୍ ହୋଇଥାଏ, ତେବେ ତଦ୍ୱାରା କେଉଁ କାର୍ଯ୍ୟ ସିଦ୍ଧ ହୋଇପାରିବ ଭଲା । ତେଣୁ ସେହି ଦେବୀମାନେ ମହେଶ୍ୱରଙ୍କ ପରି ଶକ୍ତ୍ୟାତ୍ମକ ମୂର୍ତ୍ତିଯୁକ୍ତ ଅନୁଗ୍ରହରେ ସମ୍ପନ୍ନ । ସେମାନଙ୍କ ଅନୁଗ୍ରହରୁ ସବୁକିଛି ସିଦ୍ଧ ହୋଇପାରେ । ସମସ୍ତଙ୍କ ଉପରେ ଅନୁଗ୍ରହକାରୀ ଭଗବାନ ଶିବ ହିଁ ସେହି ପାଞ୍ଚମୂର୍ତ୍ତିଙ୍କୁ ଅଙ୍ଗୀକାର କରିଛନ୍ତି । ସେଥିପାଇଁ ସେମାନେ ଦିବ୍ୟ, ସମସ୍ତ କାର୍ଯ୍ୟ କରିବାରେ ସମର୍ଥ ଓ ପରମ ଅନୁଗ୍ରହରେ

ତତ୍ପର ରହନ୍ତି । ସେହି ସବୁ ଅନୁଗ୍ରହପରାୟଣା କଲ୍ୟାଣମୟୀ ଦେବୀଙ୍କୁ ଏହିରୂପେ ଧ୍ୟାନ କରି ସେମାନଙ୍କ ପାଇଁ ଶଙ୍ଖସ୍ଥିତ ଜଳବିନ୍ଦୁରେ ପାଦରେ ପାଦ୍ୟ, ହାତରେ ଆଚମନୀୟ ଓ ମସ୍ତକରେ ଅର୍ଘ୍ୟ ଦେବା ଆବଶ୍ୟକ । ତା'ପରେ ଶଙ୍ଖସ୍ଥିତ ଜଳବିନ୍ଦୁରେ ହିଁ ସେମାନଙ୍କର ସ୍ନାନକର୍ମ ସମ୍ପନ୍ନ କରାଇବା ଉଚିତ । ସ୍ନାନ ପରେ ଦିବ୍ୟ ଲୋହିତ ବସ୍ତ୍ର ଓ ଉତ୍ତରୀୟ ଅର୍ପଣ କରିବେ । ବହୁମୂଲ୍ୟ ମୁକୁଟ ଏବଂ ଆଭୂଷଣ ଦେବେ (ଏସବୁ ବସ୍ତୁ ଅଭାବରେ ମାନସିକ ଭାବନାରେ ଏଗୁଡ଼ିକୁ ଅର୍ପଣ କରାଯାଇ ପାରେ ।) ତା'ପରେ ସୁଗନ୍ଧିତ ଚନ୍ଦନ, ଅତ୍ୟନ୍ତ ସୁନ୍ଦର ଅକ୍ଷତ ଓ ସୁଗନ୍ଧିତ ମନୋହର ପୁଷ୍ପ ଅର୍ପଣ କରିବେ । ଅତି ସୁଗନ୍ଧିତ ଧୂପ ଓ ଘିଅଦୀପ ନିବେଦନ କରିବେ । ଏସବୁ କରିବା ବେଳେ ଆରମ୍ଭରେ 'ଓଁ ହ୍ରୀଂ' ପ୍ରୟୋଗ କରି ଶେଷରେ 'ସମର୍ପୟାମି ନମଃ' କହିବା ଉଚିତ । ଯଥା—'ଓଁ ହ୍ରୀଂ ଅଗ୍ନ୍ୟାଦିରୂପାଭ୍ୟଃ ପଞ୍ଚଦେବୀଭ୍ୟଃ ଦୀପଂ ସମର୍ପୟାମି ନମଃ ।' ଅନ୍ୟ ଉପଗ୍ରହ ଅର୍ପଣ ବେଳେ ମଧ୍ୟ ଏହିପରି ବାକ୍ୟ ଯୋଜନା କରିବେ ।

ଦୀପ ସମର୍ପଣ ପରେ ହାତ ଯୋଡ଼ି ପ୍ରତ୍ୟେକ ଦେବୀଙ୍କ ପାଇଁ ପୃଥକ୍ ପୃଥକ୍ କଦଳୀପତ୍ର ପକାଇ ତା' ଉପରେ ସୁବାସିତ ନୈବେଦ୍ୟ ବାଢ଼ିବେ । ସେହି ନୈବେଦ୍ୟ ଘିଅ, ଶର୍କରା, ମଧୁମିଶ୍ରିତ ଖିରି, ମାଲପୁଆ, କଦଳୀ ଓ ଗୁଡ଼ ଇତ୍ୟାଦିରେ ପ୍ରସ୍ତୁତ ହୋଇଥିବା ଦରକାର । 'ଭୂର୍ଭୁବଃ ସ୍ୱଃ' ଉଚ୍ଚାରଣ କରି ନୈବେଦ୍ୟର ପ୍ରୋକ୍ଷଣାଦି ସଂସ୍କାର କରିବା ପରେ 'ଓଁ ହ୍ରୀଂ ସ୍ୱାହା ନୈବେଦ୍ୟଂ ନିବେଦୟାମି ନମଃ' କହି ନୈବେଦ୍ୟ ସମର୍ପଣ କରିବେ । ତା'ପରେ 'ଓଁ ହ୍ରୀଂ ନୈବେଦ୍ୟାନ୍ତେ ଆଚମନାର୍ଥଂ ପାନୀୟଂ ସମର୍ପୟାମି ନମଃ' କହି ପ୍ରେମର ସହ ଜଳ ଅର୍ପଣ କରିବେ । ମୁନିଶ୍ରେଷ୍ଠ ! ଏହାପରେ ପ୍ରସନ୍ନତାପୂର୍ବକ ନୈବେଦ୍ୟ ପୂର୍ବଦିଗକୁ ଘୁଞ୍ଚାଇ-ଦେବେ ଏବଂ ସେହି ସ୍ଥାନକୁ ଶୁଦ୍ଧ କରି କୁଳି, ଆଚମନ ଓ ଅର୍ଘ୍ୟ ନିମନ୍ତେ ଜଳ ଦେବେ । ତା'ପରେ ତାମ୍ବୂଳ, ଧୂପ ଓ ଦୀପ ଦେଇ ପରିକ୍ରମା ଏବଂ ନମସ୍କାର କରିବା ପରେ ଯୋଡ଼ହସ୍ତକୁ ମସ୍ତକରେ ଲଗାଇ ଏ ସମସ୍ତ ଦେବୀଙ୍କୁ ନିମ୍ନମତେ ପ୍ରାର୍ଥନା କରି କହିବେ—"ହେ ଶ୍ରୀମାତାଗଣ ! ଆପଣମାନେ ଅତ୍ୟନ୍ତ ପ୍ରସନ୍ନ ହୋଇ ଶିବପଦର ଅଭିଳାଷ ରଖିଥିବା ଏ ଯତିକୁ ପରମେଶ୍ୱରଙ୍କ ଚରଣାରବିନ୍ଦରେ ସ୍ଥାନ ଦିଅନ୍ତୁ ଏବଂ ଏଥିପାଇଁ ନିଜର ସ୍ୱୀକୃତି ଦିଅନ୍ତୁ ।" ଏପରି ପ୍ରାର୍ଥନା କରି ସେମାନଙ୍କୁ ବିଦାୟ ଦେବା ନିମନ୍ତେ ବିସର୍ଜନ କରିଦେବେ ଏବଂ ସେମାନଙ୍କ ପ୍ରସାଦ ନେଇ କୁମାରୀ କନ୍ୟାଙ୍କୁ ବାଣ୍ଟିଦେବେ ଅଥବା ଗୋରୁଙ୍କୁ ଖୁଆଇ ଦେବେ ଅଥବା ଜଳରେ ପକାଇ ଦେବେ । ଏହାଛଡ଼ା ଅନ୍ୟ କେଉଁଠି ପକାଇବେ ନାହିଁ ।

ଏଇଠି ପାର୍ବଣ ଶ୍ରାଦ୍ଧ କରିବେ । ଯତିଙ୍କ ପାଇଁ କେଉଁଠି ବି ଏକୋଦ୍ଦିଷ୍ଟ-ଶ୍ରାଦ୍ଧ କରିବାର ବିଧାନ ନାହିଁ । ଏଠାରେ ପାର୍ବଣ-ଶ୍ରାଦ୍ଧ ନିମନ୍ତେ ଯେଉଁ ନିୟମ ଅଛି, ତାହା ମୁଁ କହୁଛି, ଶୁଣ । ମୁନିଶ୍ରେଷ୍ଠ ! ଏହା ଦ୍ୱାରା କଲ୍ୟାଣପ୍ରାପ୍ତି ହୁଏ । ଶ୍ରାଦ୍ଧକର୍ତ୍ତା ସ୍ନାନ କରିସାରି ପ୍ରାଣାୟାମ କରିବେ । ଉପବୀତ ଧାରଣ କରି ହାତରେ କୁଶବଟୁ ପିନ୍ଧି ଦେଶ-କାଳାଦି ଉଚ୍ଚାରଣ କରିବା ପରେ 'ମୁଁ ଏହି ପୁଣ୍ୟତିଥିକୁ ପାର୍ବଣ ଶ୍ରାଦ୍ଧ କରିବି' ଏପରି ସଂକଳ୍ପ କରିବେ । ସଂକଳ୍ପ ପରେ ଉତ୍ତର ଦିଗରେ ଆସନ ନିମନ୍ତେ ଉତ୍ତମ କୁଶ ବିଛାଇବେ । ତା'ପରେ ଜଳ ସ୍ପର୍ଶ କରିବେ । ସେହି ଆସନରେ ଗୃହିଜଣ ଦୃଢ଼ବ୍ରତ ଉତ୍ତମ ବ୍ରାହ୍ମଣଙ୍କୁ ଡାକି ଭକ୍ତିଭାବରେ ବସାଇବେ । ସେମାନେ ହଳଦୀ ପ୍ରଭୃତି ଲଗାଇ ସ୍ନାନ କରିଥିବା ଆବଶ୍ୟକ । ସେମାନଙ୍କ ମଧ୍ୟରୁ ଜଣକୁ କହିବେ—'ଆପଣ ଦୟା କରି ଏଠାରେ ବିଶ୍ୱେଦେବଙ୍କ ପାଇଁ ଶ୍ରାଦ୍ଧ ଗ୍ରହଣ କରିବେ ।' ଏହିପରି ଦ୍ୱିତୀୟ ବ୍ରାହ୍ମଣଙ୍କୁ ଆତ୍ମା ପାଇଁ, ତୃତୀୟ ବ୍ରାହ୍ମଣଙ୍କୁ ଅନ୍ତରାତ୍ମା ପାଇଁ ଓ ଚତୁର୍ଥ ବ୍ରାହ୍ମଣଙ୍କୁ ପରମାତ୍ମାଙ୍କ ପାଇଁ ଶ୍ରାଦ୍ଧ ଗ୍ରହଣ

କରିବାକୁ ଅନୁରୋଧ କରି ଶ୍ରାଦ୍ଧକର୍ତ୍ତା ଯତି ଶ୍ରଦ୍ଧା ଓ ଆଦରପୂର୍ବକ ସେମାନଙ୍କୁ ଯଥୋଚିତରୂପରେ ବରଣ କରିବେ । ତା'ପରେ ସେମାନଙ୍କ ପାଦ ଧୋଇ ଦେଇ ପୂର୍ବାଭିମୁଖ କରି ବସାଇବେ ଏବଂ ଗନ୍ଧାଦିରେ ବିଭୂଷିତ କରି ଶିବଙ୍କ ସମ୍ମୁଖରେ ଭୋଜନ କରାଇବେ । ତା'ପରେ ସେଠାରେ ଭୂମିକୁ ଗୋବରରେ ଲିପି ପୂର୍ବାଗ୍ର କରି କୁଶ ବିଛାଇବେ ଏବଂ ପ୍ରାଣାୟାମପୂର୍ବକ ପିଣ୍ଡଦାନ ନିମନ୍ତେ ସଂକଳ୍ପ କରି ତିନୋଟି ମଣ୍ଡଳକୁ ପୂଜା କରିବେ । ଏହାପରେ ଗୋଟିଏ ପିଣ୍ଡକୁ ହାତରେ ଧରି 'ଆତ୍ମନେ ଇମଂ ପିଣ୍ଡଂ ଦଦାମି' କହି ତାହାକୁ ପ୍ରଥମ ମଣ୍ଡଳରେ ଥୋଇବେ । ତା'ପରେ ଦ୍ୱିତୀୟ ପିଣ୍ଡକୁ 'ଅନ୍ତରାତ୍ମନେ ଇମଂ ପିଣ୍ଡଂ ଦଦାମି' କହି ଦ୍ୱିତୀୟ ମଣ୍ଡଳରେ ଥୋଇବେ, ତା'ପରେ ତୃତୀୟ ପିଣ୍ଡକୁ ଧରି 'ପରମାତ୍ମନେ ଇମଂ ପିଣ୍ଡଂ ଦଦାମି' କହି ତୃତୀୟ ମଣ୍ଡଳରେ ଥୋଇବେ । ଏହିପରି ଭକ୍ତିଭାବରେ ବିଧିପୂର୍ବକ ପିଣ୍ଡ ଓ କୁଶୋଦକ ଅର୍ପଣ କରିବେ । ଏହାପରେ ପରିକ୍ରମା ଓ ନମସ୍କାର କରିବେ । ବ୍ରାହ୍ମଣଙ୍କୁ ବିଧିବତ୍ ଦକ୍ଷିଣା ଦେବେ । ସେଦିନ ସେହି ସ୍ଥାନରେ ନାରାୟଣବଳି କରିବେ । ରକ୍ଷା ନିମନ୍ତେ ସର୍ବତ୍ର ବିଷ୍ଣୁଙ୍କୁ ପୂଜା କରିବାର ବିଧାନ ରହିଛି । ତେଣୁ ବିଷ୍ଣୁଙ୍କର ମହାପୂଜା କରି ଖିରି ଭୋଗ ଲଗାଇବେ । ତା'ପରେ ବାରଜଣ ବେଦପାରଙ୍ଗମ ବିଦ୍ୱାନ୍ ବ୍ରାହ୍ମଣଙ୍କୁ ଡାକି କେଶବାଦି ନାମମନ୍ତ୍ର ଦ୍ୱାରା ଗନ୍ଧ, ପୁଷ୍ପ ଓ ଅକ୍ଷତ ଇତ୍ୟାଦିରେ ସେମାନଙ୍କୁ ପୂଜା କରିବେ । ସେମାନଙ୍କୁ ବିଧିପୂର୍ବକ ଜୋତା, ଛତା ଓ ବସ୍ତ୍ର ଦେବେ । ଭକ୍ତିଭାବରେ ମଧୁର ବଚନରେ ସେମାନଙ୍କୁ ସନ୍ତୁଷ୍ଟ କରିବେ । ତା'ପରେ ପୂର୍ବାଗ୍ର କରି କୁଶ ବିଛାଇ 'ଓଁ ଭୂଃ ସ୍ୱାହା, ଓଁ ଭୁବଃ ସ୍ୱାହା, ଓଁ ସ୍ୱଃ ସ୍ୱାହା, ଓଁ ସୁବଃ ସ୍ୱାହା' ଉଚ୍ଚାରଣ କରି ଭୂମି ଉପରେ ଖିରି ବଳି ଦେବେ । ମୁନୀଶ୍ୱର ! ମୁଁ ଏକାଦଶାହ ବିଧି କହିଦେଲି । ଏବେ ଦ୍ୱାଦଶାହ ବିଧି କହୁଛି, ମନ ଦେଇ ଶୁଣ । (ଅଧ୍ୟାୟ ୨୨)

✯✯✯

## ଯତିଙ୍କ ଦ୍ୱାଦଶାହ କୃତ୍ୟ ବିଧି, ସ୍କନ୍ଦ ଓ ବାମଦେବଙ୍କର କୈଳାସ ପର୍ବତକୁ ଗମନ ଏବଂ କୈଳାସସଂହିତାର ଉପସଂହାର

ସ୍କନ୍ଦ କହୁଛନ୍ତି—ବାମଦେବ ! ଦ୍ୱାଦଶାହ ଦିନ ସକାଳୁ ଉଠି ଶ୍ରାଦ୍ଧକର୍ତ୍ତା ସ୍ନାନ ଓ ନିତ୍ୟକର୍ମ ସାରି ଶିବଭକ୍ତ, ଯତି ଅଥବା ଶିବଙ୍କ ପ୍ରତି ପ୍ରୀତି ରଖୁଥିବା ବ୍ରାହ୍ମଣଙ୍କୁ* ନିମନ୍ତ୍ରିତ କରିବେ । ମଧ୍ୟାହ୍ନକାଳରେ ସ୍ନାନ କରି ପବିତ୍ର ହୋଇ ସେହି ବ୍ରାହ୍ମଣମାନଙ୍କୁ ଡାକି ଭକ୍ତିଭାବରେ ବିଧିପୂର୍ବକ ବିଭିନ୍ନ ପ୍ରକାର ସ୍ୱାଦିଷ୍ଟ ଅନ୍ନ ଭୋଜନ କରାଇବେ । ତା'ପରେ ପରମେଶ୍ୱରଙ୍କ ନିକଟରେ ବସାଇ ପଞ୍ଚାବରଣ-ପଦ୍ଧତିରେ ସେମାନଙ୍କୁ ପୂଜା କରିବେ । ତା'ପରେ ମୌନଭାବରେ ପ୍ରାଣାୟାମ କରି ଦେଶ-କାଳାଦି ଉଚ୍ଚାରଣ କରି ମହାନ୍ ସଂକଳ୍ପ ପ୍ରଣାଳୀରେ ସଂକଳ୍ପ କରି 'ଅସ୍ମଦ୍ ଗୁରୋରିହ ପୂଜାଂ କରିଷ୍ୟେ' (ମୁଁ ମୋ ଗୁରୁଙ୍କ ପାଇଁ ଏଠାରେ ପୂଜା କରିବି) କହି କୁଶ ସ୍ପର୍ଶ କରିବେ । ତା'ପରେ ବ୍ରାହ୍ମଣଙ୍କ ପାଦ ଧୋଇ ଆଚମନ କରି ଶ୍ରାଦ୍ଧକର୍ତ୍ତା ମୌନ ରହିବେ ଏବଂ ସେହି ଭସ୍ମ-ବିଭୂଷିତ ବ୍ରାହ୍ମଣଙ୍କୁ ପୂର୍ବାଭିମୁଖ କରି ଆସନରେ ବସାଇବେ । ସେଠାରେ ସଦାଶିବ ଆଦିଙ୍କ କ୍ରମରେ ଆଠ ଜଣ

* ଧର୍ମସିନ୍ଧୁ ଅନୁସାରେ ଷୋହଳ ଜଣ ବ୍ରାହ୍ମଣଙ୍କୁ ନିମନ୍ତ୍ରିତ କରିବା ଉଚିତ । ଏଥିମଧ୍ୟରୁ ଚାରିଜଣ ଗୁରୁ, ପରମଗୁରୁ, ପରମେଷ୍ଠିଗୁରୁ ଓ ପରାତ୍ପରଗୁରୁଙ୍କ ପ୍ରତୀକରୂପେ ଏବଂ ଅବଶିଷ୍ଟ ବାରଜଣ କେଶବାଦି ନାମରେ ପୂଜିତ ହୁଅନ୍ତି । ମାତ୍ର ଏ ପୁରାଣର ବର୍ଣ୍ଣନା ଅନୁସାରେ ବାରଜଣ ବ୍ରାହ୍ମଣଙ୍କୁ ନିମନ୍ତ୍ରିତ କରିବା ଆବଶ୍ୟକ ।

ବ୍ରାହ୍ମଣଙ୍କୁ ଆଦରରେ ଚିନ୍ତନ କରିବେ ଅର୍ଥାତ୍ ସେମାନଙ୍କୁ ସଦାଶିବଙ୍କ ସ୍ୱରୂପ ମଣିବେ । ଅନ୍ୟ ଯ୍ରିଜଣଙ୍କୁ ମଧ୍ୟ ଯ୍ରିଜଣ ଗୁରୁଙ୍କ ରୂପରେ ଚିନ୍ତନ କରିବେ । ସେ ଯ୍ରିଜଣ ଗୁରୁ ହେଲେ–ଗୁରୁ, ପରମ ଗୁରୁ, ପରାତ୍ପର ଗୁରୁ ଓ ପରମେଷ୍ଠୀ ଗୁରୁ । ପରମେଷ୍ଠୀ ଗୁରୁଙ୍କ ଠାରେ ଉମାମହେଶ୍ୱରଙ୍କ ଭାବନା କରିବେ । ନିଜ ଗୁରୁଙ୍କ ନାମ ଉଚ୍ଚାରଣ କରି ଧ୍ୟାନ କରିବେ । ସେମାନଙ୍କ ପାଇଁ 'ଇଦମାସନମ୍' କହି ପୃଥକ୍ ପୃଥକ୍ ଆସନ ଦେବେ । ଆରମ୍ଭରେ ପ୍ରଣବ, ମଧ୍ୟରେ ଦ୍ୱିତୀୟାନ୍ତ ଗୁରୁ-ନାମ ତଥା ଶେଷରେ 'ଆବାହୟାମି ନମଃ' ଉଚ୍ଚାରଣ କରି ଆବାହନ କରିବେ । ଯଥା–ଓଁ ଅମୁକନାମାନଂ ଗୁରୁମ୍ ଆବାହୟାମି ନମଃ । ଓଁ ପରମଗୁରୁମ୍ ଆବାହୟାମି ନମଃ । ଓଁ ପରାତ୍ପରଗୁରୁମ୍ ଆବାହୟାମି ନମଃ । ଓଁ ପରମେଷ୍ଠୀଗୁରୁମ୍ ଆବାହୟାମି ନମଃ । ଏପରି ଆବାହନ କରି ଅର୍ଘୋଦକ (ପାତ୍ରୀରେ ଥିବା ଜଳ) ଦ୍ୱାରା ପାଦ୍ୟ, ଆଚମନ ଓ ଅର୍ଘ୍ୟ ନିବେଦନ କରିବେ । ତା'ପରେ ବସ୍ତ୍ର, ଗନ୍ଧ ଓ ଅକ୍ଷତ ଦେଇ 'ଓଁ ଗୁରବେ ନମଃ' ଇତ୍ୟାଦି ରୂପରେ ଗୁରୁମାନଙ୍କୁ ଓ ତଥା 'ଓଁ ସଦାଶିବାୟ ନମଃ' ଇତ୍ୟାଦି ରୂପରେ ଆଠ ନାମ ଉଚ୍ଚାରଣ କରି ଅନ୍ୟ ଆଠ ଜଣ ବ୍ରାହ୍ମଣଙ୍କୁ ସୁଗନ୍ଧିତ ପୁଷ୍ପରେ ଅଳଂକୃତ କରିବେ । ତା'ପରେ ଧୂପ, ଦୀପ ଦେଇ 'କୃତମିଦଂ ସକଳମାରାଧନଂ ସମ୍ପୂର୍ଣ୍ଣମସ୍ତୁ' (କରାଯାଇଥିବା ସମସ୍ତ ଆରାଧନା ପୂର୍ଣ୍ଣରୂପେ ସଫଳ ହେଉ) କହି ଠିଆ ହୋଇ ନମସ୍କାର କରିବେ । ଏହାପରେ କଦଳୀପତ୍ରରେ ପାଣି ସିଞ୍ଚି ସେଥିରେ ଶୁଦ୍ଧ ଅନ୍ନ, ଖିରି, ମାଲପୁଆ, ଡାଲି, ଶାଗ ଇତ୍ୟାଦି ବ୍ୟଞ୍ଜନ ପରିବେଷଣ କରି ସେଥିରେ ପାଚିଲାକଦଳୀ ନଡ଼ିଆ ଓ ଗୁଡ଼ ମଧ୍ୟ ରଖିବେ । ପାତ୍ରଗୁଡ଼ିକୁ ରଖିବା ପାଇଁ ପୃଥକ୍ ପୃଥକ୍ ଆସନ ମଧ୍ୟ ଦେଇଥିବେ । ସେହି ଆସନଗୁଡ଼ିକୁ କ୍ରମାନ୍ୱୟରେ ପ୍ରୋକ୍ଷଣ କରି ଯଥାସ୍ଥାନରେ ରଖିବେ । ତା'ପରେ ଭୋଜନପାତ୍ରକୁ ମଧ୍ୟ ପ୍ରୋକ୍ଷଣ ଓ ଅଭିଷେକ କରି ହାତରେ ତାହାକୁ ଛୁଇଁ 'ବିଷ୍ଣୋ! ହବ୍ୟମିଦଂ ରକ୍ଷସ୍ୱ' (ହେ ବିଷ୍ଣୁ! ଏହି ହବିଷ୍ୟକୁ ଆପଣ ସୁରକ୍ଷିତ ରଖନ୍ତୁ) କହିବେ । ତା'ପରେ ଉଠି ବ୍ରାହ୍ମଣମାନଙ୍କୁ ପିଇବା ପାଇଁ ଜଳ ଦେଇ 'ସଦାଶିବାଦୟୋ ମେ ପ୍ରୀତା ବରଦା ଭବନ୍ତୁ' (ସଦାଶିବ ପ୍ରଭୃତି ମୋ ଉପରେ ପ୍ରସନ୍ନ ହୋଇ ଅଭୀଷ୍ଟ ବର ଦିଅନ୍ତୁ) କହି ପ୍ରାର୍ଥନା କରିବେ ।

ଏହାପରେ 'ଯେ ଦେବା' (ଶୁ. ଯଜୁ. ୧୭ । ୧୩-୧୪) ଇତ୍ୟାଦି ମନ୍ତ୍ର ଉଚ୍ଚାରଣ କରି ଅକ୍ଷତ ସହ ସେହି ଅନ୍ନ ତ୍ୟାଗ କରିବେ । ତା'ପରେ ନମସ୍କାର କରି ଉଠିବେ ଏବଂ 'ସର୍ବତ୍ରାକୃତମସ୍ତୁ' କହି ବ୍ରାହ୍ମଣଙ୍କୁ ସନ୍ତୁଷ୍ଟ କରି 'ଗଣାନାଂ ତ୍ୱା' (ଶୁ. ଯଜୁ. ୨୩ । ୧୯) ମନ୍ତ୍ର ପ୍ରଥମେ ପାଠ କରି ଯ୍ରିବେଦର ଆଦ୍ୟମନ୍ତ୍ର, ରୁଦ୍ରାଧ୍ୟାୟ, ଚମକାଧ୍ୟାୟ, ରୁଦ୍ରସୂକ୍ତ ଓ ସଦ୍ୟୋଜାତାଦି ପାଞ୍ଚଟି ବ୍ରହ୍ମମନ୍ତ୍ର ପାଠ କରିବେ । ବ୍ରାହ୍ମଣଭୋଜନ ଶେଷରେ ମଧ୍ୟ ଯଥାସମ୍ଭବ ମନ୍ତ୍ର ପଢ଼ିବେ ଓ ଅକ୍ଷତ ପକାଇବେ, ତା'ପରେ ଆଚମନାଦି ଜଳ ଦେବେ । ହାତମୁହଁ ଧୋଇବା ପାଇଁ ମଧ୍ୟ ଜଳ ଦେବେ । ଆଚମନ ପରେ ସମସ୍ତ ବ୍ରାହ୍ମଣଙ୍କୁ ସୁଖରେ ଆସନରେ ବସାଇ ଶୁଦ୍ଧଜଳ ଦେବାପରେ ମୁଖଶୁଦ୍ଧି ନିମନ୍ତେ କର୍ପୂରାଦିଯୁକ୍ତ ତାମ୍ବୂଳ ଅର୍ପଣ କରିବେ । ତା'ପରେ ଦକ୍ଷିଣା, ଚରଣପାଦୁକା, ଆସନ, ଛତା, ବ୍ୟଜନ, ଖଟ ଓ ବାଉଁଶ ଦଣ୍ଡ ଦେଇ ପରିକ୍ରମା ଓ ନମସ୍କାର ଦ୍ୱାରା ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ କରିବେ ଓ ଆଶୀର୍ବାଦ ନେବେ । ପୁନଃ ପ୍ରଣାମ କରି ଗୁରୁଙ୍କ ପ୍ରତି ଅବିଚଳ ଭକ୍ତି ହେବା ନିମନ୍ତେ 'ସଦାଶିବାଦୟଃ ପ୍ରୀତା ଯଥାସୁଖଂ ଗଚ୍ଛନ୍ତୁ' (ସଦାଶିବ ପ୍ରଭୃତି ସନ୍ତୁଷ୍ଟ ହୋଇ ସୁଖପୂର୍ବକ ପ୍ରସ୍ଥାନ କରନ୍ତୁ) କହିବେ । ଏପରି ବିଦାୟ ଦେବା ପରେ ଦ୍ୱାରଦେଶ ପର୍ଯ୍ୟନ୍ତ ପଛେ ପଛେ ଯିବେ । ତା'ପରେ ସେମାନେ ମନା କଲାପରେ ଫେରି ଆସିବେ ।

ଫେରି ଆସି ଦ୍ୱାରଦେଶରେ ବସିଥିବା ବ୍ରାହ୍ମଣ, ବନ୍ଧୁଜନ, ଦୀନଜନ ଓ ଅନାଥଙ୍କ ସଙ୍ଗେ ନିଜେ ମଧ୍ୟ ଭୋଜନ କରିବେ । ଏପରି କଲେ ସେଥିରେ କେଉଁଠି ହେଲେ ବିକୃତି ଆସେ ନାହିଁ । ଏସବୁ ସତ୍ୟ, ସତ୍ୟ ଏବଂ ବାରମ୍ବାର ସତ୍ୟ । ଏହିରୂପେ ପ୍ରତିବର୍ଷ ଗୁରୁଙ୍କୁ ଆରାଧନା କରୁଥିବା ଶିଷ୍ୟ ଇହଲୋକରେ ମହାନ୍ ଭୋଗ ଉପଭୋଗ କରି ଅନ୍ତକାଳରେ ଶିବଲୋକକୁ ଯାଇଥାଏ ।

ମୁନେ ! ଏହା ସାକ୍ଷାତ୍ ଭଗବାନ ଶିବଙ୍କ ଦ୍ୱାରା କଥିତ ଉତ୍ତମ ରହସ୍ୟ, ଯାହା କି ବେଦାନ୍ତର ସିଦ୍ଧାନ୍ତ ଦ୍ୱାରା ନିର୍ଣ୍ଣୀତ । ତୁମେ ମୋଠାରୁ ଯାହା କିଛି ଶୁଣିଲ, ତାହାକୁ ବିଦ୍ୱାନ୍ ଲୋକେ ତୁମର ମତ ବୋଲି କହିବେ । ଯତି ଏହି ମାର୍ଗରେ ଯାଇ 'ଶିବୋଽହମସ୍ମି' (ମୁଁ ଶିବ ଅଟେ) ଏହିରୂପେ ଆତ୍ମସ୍ୱରୂପ ଶିବଙ୍କୁ ଭାବନା କରି ଶିବରୂପ ହୋଇଯାଏ ।

ସୂତ କହୁଛନ୍ତି—ମୁନୀଶ୍ୱର ବାମଦେବଙ୍କୁ ଏହିପରି ଉପଦେଶ ଦେଇ ଦିବ୍ୟଜ୍ଞାନଦାତା ଗୁରୁ ଦେବେଶ୍ୱର କାର୍ତ୍ତିକେୟ ପିତାମାତାଙ୍କ ସର୍ବଦେବ-ବନ୍ଦିତ ଚରଣାରବିନ୍ଦକୁ ଚିନ୍ତନ କରି କରି ଅନେକ ଶିଖରାବୃତ, ଶୋଭାଶାଳୀ ଓ ପରମାଶ୍ଚର୍ଯ୍ୟମୟ କୈଳାସଶିଖରକୁ ଚାଲିଗଲେ । ଶ୍ରେଷ୍ଠ ଶିଷ୍ୟଙ୍କ ସହ ବାମଦେବ ମଧ୍ୟ ମୟୂରବାହନ କାର୍ତ୍ତିକେୟଙ୍କୁ ପ୍ରଣାମ କରି ଶୀଘ୍ର ପରମ ଅଦ୍ଭୁତ କୈଳାସଶିଖରରେ ପହଞ୍ଚି ଉମାମହେଶ୍ୱରଙ୍କ ମାୟାନାଶକ ତଥା ମୋକ୍ଷଦାୟକ ଚରଣାରବିନ୍ଦର ଦର୍ଶନ କଲେ । ତା'ପରେ ଭକ୍ତିଭାବରେ ନିଜର ସର୍ବାଙ୍ଗ ଭଗବାନ ଶିବଙ୍କୁ ସମର୍ପି ଦେଇ ବାହ୍ୟଜ୍ଞାନଶୂନ୍ୟ ହୋଇ ସେ ତାଙ୍କ ନିକଟରେ ଦଣ୍ଡ ପରି ଭୂମିରେ ଲୋଟି ପଡ଼ିଲେ ଏବଂ ବାରମ୍ବାର ଉଠି ପୁନଃ ପୁନଃ ନମସ୍କାର କଲେ । ତା'ପରେ ସେ ବେଦ ଓ ଆଗମ ରସରେ ପୂର୍ଣ୍ଣ ନାନା ପ୍ରକାର ସ୍ତୋତ୍ରଦ୍ୱାରା ଜଗଦମ୍ବାଙ୍କୁ ଓ ପୁତ୍ରଙ୍କ ସହିତ ପରମେଶ୍ୱର ଶିବଙ୍କୁ ସ୍ତୁତି କଲେ । ତା'ପରେ ଦେବୀ ପାର୍ବତୀ ଓ ମହାଦେବଙ୍କ ଚରଣାରବିନ୍ଦକୁ ନିଜ ମସ୍ତକ ଉପରେ ରଖି ତାଙ୍କର ପୂର୍ଣ୍ଣ ଅନୁଗ୍ରହ ପ୍ରାପ୍ତ କରି ସେ ସେଠାରେ ସୁଖପୂର୍ବକ ନିବାସ କଲେ । ସେହିପରି ତୁମେ ସମସ୍ତ ଋଷି ମଧ୍ୟ ପ୍ରଣବର ଅର୍ଥଭୂତ ମହେଶ୍ୱରଙ୍କୁ ଜାଣି ଏବଂ ବେଦମାନଙ୍କର ଗୋପନୀୟ ରହସ୍ୟ, ବେଦସର୍ବସ୍ୱ ଓ ମୋକ୍ଷଦାୟକ ତାରକ ମନ୍ତ୍ର ଓଁକାରର ଜ୍ଞାନ ଲାଭ କରି ଏଠାରେ ସୁଖରେ ନିବାସ କର ଏବଂ ବିଶ୍ୱନାଥଙ୍କ ଚରଣରେ ସାୟୁଜ୍ୟରୂପା ଅନୁପମ ଓ ଉତ୍ତମ ମୁକ୍ତିର ଚିନ୍ତନ କର । ଏବେ ମୁଁ ଗୁରୁଦେବଙ୍କ ସେବା ନିମନ୍ତେ ବଦରିକାଶ୍ରମ ତୀର୍ଥକୁ ଯିବି । ତୁମକୁ ପୁନଃ ମୋ ସଙ୍ଗେ ସମ୍ଭାଷଣ ଓ ସତ୍ସଙ୍ଗର ଅବସର ପ୍ରାପ୍ତ ହେଉ ।

(ଅଧ୍ୟାୟ ୨୩)

❋❋❋

## ॥ କୈଳାସସଂହିତା ସମ୍ପୂର୍ଣ୍ଣ ॥



# ବାୟବୀୟସଂହିତା (ପୂର୍ବଖଣ୍ଡ)

## ପ୍ରୟାଗରେ ଋଷିଗଣଙ୍କ ଦ୍ୱାରା ସମ୍ମାନିତ ହେବା ପରେ ସୂତମୁନିଙ୍କ ଦ୍ୱାରା ପୁରାଣ କଥା ପ୍ରାରମ୍ଭ, ବିଦ୍ୟାସ୍ଥାନ ଓ ପୁରାଣଗୁଡ଼ିକର ପରିଚୟ ଏବଂ ବାୟୁସଂହିତା ଆରମ୍ଭ

ବ୍ୟାସ ଉବାଚ

ନମଃ ଶିବାୟ ସୋମାୟ ସଗଣାୟ ସସୂନବେ।
ପ୍ରଧାନପୁରୁଷେଶାୟ ସର୍ଗସ୍ଥିତ୍ୟନ୍ତହେତବେ॥
ଶକ୍ତିରପ୍ରତିମା ଯସ୍ୟ ହ୍ୟୈଶ୍ୱର୍ଯ୍ୟଂ ଚାପି ସର୍ବଗମ୍।
ସ୍ୱାମିତ୍ୱଂ ଚ ବିଭୁତ୍ୱଂ ଚ ସ୍ୱଭାବଂ ସମ୍ପ୍ରଚକ୍ଷତେ॥
ତମଜଂ ବିଶ୍ୱକର୍ମାଣଂ ଶାଶ୍ୱତଂ ଶିବମବ୍ୟୟମ୍।
ମହାଦେବଂ ମହାତ୍ମାନଂ ବ୍ରଜାମି ଶରଣଂ ଶିବମ୍॥

ବ୍ୟାସଦେବ କହୁଛନ୍ତି—**ଯେଉଁ ଭଗବାନ ଶିବ ଜଗତର ସୃଷ୍ଟି, ପାଳନ ଓ ସଂହାରର ହେତୁ, ପ୍ରକୃତି ଓ ପୁରୁଷଙ୍କର ଈଶ୍ୱର, ଯେ ଉମା, ପୁତ୍ରଗଣ ଓ ପ୍ରମଥଗଣଙ୍କ ସହିତ ବିରାଜିତ ଥାଆନ୍ତି, ସେଇ ପ୍ରଭୁଙ୍କୁ ନମସ୍କାର। ଯାହାଙ୍କ ଶକ୍ତ ଅତୁଳନୀୟ, ଯାହାଙ୍କ ଐଶ୍ୱର୍ଯ୍ୟ ସର୍ବତ୍ର ବ୍ୟାପ୍ତ ଏବଂ ସ୍ୱାମିତ୍ୱ ଓ ବିଭୁତ୍ୱ ଯାହାଙ୍କର ସ୍ୱଭାବ ବୋଲି କୁହାଯାଏ, ସେହି ବିଶ୍ୱସ୍ରଷ୍ଟା, ସନାତନ, ଅଜନ୍ମା, ଅବିନାଶୀ, ମହାନ୍ ଦେବତା, ମଙ୍ଗଳମୟ ପରମାତ୍ମା ଶିବଙ୍କ ଠାରେ ମୁଁ ଶରଣ ପଶୁଛି।**

**ପ୍ରୟାଗ ହେଉଛି ଗୋଟିଏ ଧର୍ମକ୍ଷେତ୍ର ଓ ମହାନ୍ ତୀର୍ଥସ୍ଥଳ। ତାହା ଗଙ୍ଗା ଓ ଯମୁନାର ସଙ୍ଗମସ୍ଥଳ ଏବଂ ବ୍ରହ୍ମଲୋକର ମାର୍ଗସଦୃଶ। ସେଠାରେ ଶୁଦ୍ଧହୃଦୟ ସତ୍ୟବ୍ରତପରାୟଣ ମହାତେଜସ୍ୱୀ ମହାଭାଗ ମୁନିଗଣ ଗୋଟିଏ ମହାଯଜ୍ଞର ଆୟୋଜନ କଲେ। ଅକ୍ଳେଶ କର୍ମକାରୀ ମହାତ୍ମାମାନେ ସେଠାରେ ଏପରି ଯଜ୍ଞ କରୁଥିବାର ସମାଚାର ପାଇ ନିପୁଣ କଥାବାଚକ, ତ୍ରିକାଳଜ୍ଞ, ଉତ୍ତମ ନୀତିଜ୍ଞ, ବିଦ୍ୱାନ୍, ପୌରାଣିକଶିରୋମଣି, ବ୍ୟାସଶିଷ୍ୟ ସୂତ ସେହି ସ୍ଥାନକୁ ଆସିଲେ। ସୂତଙ୍କୁ ଆସିବା ଦେଖି ମୁନିଗଣଙ୍କ ମନ ପ୍ରସନ୍ନତାରେ ଉଲ୍ଲସିତ ହୋଇଉଠିଲା। ସେମାନେ ତାଙ୍କୁ ସାନ୍ତ୍ୱନାପୂର୍ଣ୍ଣ ମଧୁର ବାକ୍ୟରେ ଯଥାଯୋଗ୍ୟ ସ୍ୱାଗତ ଓ ପୂଜା କଲେ। ମୁନିଗଣଙ୍କ ପୂଜା ଗ୍ରହଣ କରିସାରି ସୂତ ସେମାନଙ୍କ ଅନୁରୋଧରେ ନିଜ ପାଇଁ ଉପଯୁକ୍ତ ଆସନଟିଏ ଗ୍ରହଣ କଲେ। ସେତିକିବେଳେ ମହର୍ଷିମାନେ ଅନୁକୂଳ ବାଣୀରେ ତାଙ୍କୁ ସତ୍କାର କରିବା ସଙ୍ଗେ ସଙ୍ଗେ ତାଙ୍କ ସମ୍ମୁଖରେ ଏକଥା କହିଲେ।**

ଋଷିମାନେ କହିଲେ—**ହେ ଶିବଭକ୍ତ-ଶିରୋମଣେ! ହେ ମହାବୁଦ୍ଧିମାନ୍ ମହାଭାଗ ରୋମହର୍ଷଣ! ଆପଣ ସର୍ବଜ୍ଞ ଏବଂ ଆମର ପରମ ସୌଭାଗ୍ୟରୁ ଏଠାରେ ପଦାର୍ପଣ କରିଛନ୍ତି। ତ୍ରିଲୋକରେ ଏପରି କୌଣସି କଥା ନାହିଁ, ଯାହା ଆପଣଙ୍କୁ ବିଦିତ ନଥିବ। ଆମର ପରମ ସୌଭାଗ୍ୟ ଯେ ଆପଣ ସ୍ୱୟଂ ଏଠାକୁ ଆସି ଆମ୍ଭମାନଙ୍କୁ ଦର୍ଶନ ଦେଇଛନ୍ତି। ଏଣୁ ଆପଣ ଆମର କୌଣସି ପ୍ରକାର କଲ୍ୟାଣ ବିଧାନ ନ କରି ଏଠାରୁ ଚାଲିଯିବା ଉଚିତ ହେବ ନାହିଁ। ସୁତରାଂ ଆମକୁ ଏଭଳି ପବିତ୍ର ପୁରାଣ ଶୁଣାନ୍ତୁ, ଯାହା ଅତ୍ୟନ୍ତ ଶ୍ରବଣୀୟ ତଥା ଉତ୍ତମ ପ୍ରସଙ୍ଗ ଓ ଜ୍ଞାନରେ ସଂଯୁକ୍ତ ଏବଂ ବେଦାନ୍ତର ସାରସର୍ବସ୍ୱରେ ସମ୍ପନ୍ନ ହୋଇଥିବ। ବେଦବାଦୀ ମୁନିମାନେ ଏପରି ପ୍ରାର୍ଥନା କରିବାରୁ ସୂତ ମଧୁର, ନ୍ୟାୟଯୁକ୍ତ ଓ ଶୁଭ ବଚନରେ ସେମାନଙ୍କୁ ନିମ୍ନ ପ୍ରକାରେ ଉତ୍ତର ଦେଲେ।**

ସୂତ କହିଲେ–ମହର୍ଷିଗଣ ! ଆପଣମାନେ ମୋର ସତ୍କାର କଲେ ଓ ମୋ ଉପରେ କୃପା କଲେ । ଏ ପରିପ୍ରେକ୍ଷୀରେ ଆପଣଙ୍କ ଦ୍ୱାରା ପ୍ରେରିତ ହୋଇ ମୁଁ ଆପଣଙ୍କ ସମକ୍ଷରେ ମହର୍ଷିଙ୍କ ଦ୍ୱାରା ସମ୍ମାନିତ ପୁରାଣ ପ୍ରବଚନ କେମିତି ବା ନ କରିବି? ଏବେ ମୁଁ ମହାଦେବଙ୍କୁ ତଥା ଦେବୀ ପାର୍ବତୀ, କୁମାର ସ୍କନ୍ଦ, ଗଣେଶ, ନନ୍ଦୀ ଓ ସତ୍ୟବତୀକୁମାର ସାକ୍ଷାତ୍ ବ୍ୟାସଦେବଙ୍କୁ ପ୍ରଣାମ କରି ସେହି ପରମ ପବିତ୍ର ବେଦତୁଲ୍ୟ ପୁରାଣ କଥା କହିବି, ଯାହା ଶିବତତ୍ତ୍ୱ-ଜ୍ଞାନର ସାଗର ଏବଂ ଭୋଗ ଓ ମୋକ୍ଷରୂପୀ ଫଳପ୍ରାପ୍ତିର ସାକ୍ଷାତ୍ ସାଧନ । ମୁଁ ବିଦ୍ୟାର ସମସ୍ତ ସାଧନ, ପୁରାଣର ସଂଖ୍ୟା ଓ ସେଗୁଡ଼ିକର ଉତ୍ପତ୍ତି ବିଷୟରେ ବିବରଣ ଦେବି । ଆପଣମାନେ ଏସବୁ ବିଷୟକୁ ମନଦେଇ ଶୁଣନ୍ତୁ । ଛଅ ବେଦାଙ୍ଗ, ଚାରି ବେଦ, ମୀମାଂସା, ବିସ୍ତୃତ ନ୍ୟାୟଶାସ୍ତ୍ର, ପୁରାଣ ଓ ଧର୍ମଶାସ୍ତ୍ର–ଏଗୁଡ଼ିକ ହେଲା ଚଉଦ ବିଦ୍ୟା । ଏଥିସହିତ ଆୟୁର୍ବେଦ, ଧନୁର୍ବେଦ, ଗନ୍ଧର୍ବବେଦ ଓ ଉତ୍ତମ ଅର୍ଥଶାସ୍ତ୍ରକୁ ମିଶାଇଲେ ଏ ବିଦ୍ୟାମାନଙ୍କ ସଂଖ୍ୟା ଅଠର ହୋଇଯାଏ । ଏ ଅଠରଟି ବିଦ୍ୟାର ମାର୍ଗ ପରସ୍ପର ଠାରୁ ଭିନ୍ନ । ଏଗୁଡ଼ିକର ଆଦିସ୍ରଷ୍ଟା ସାକ୍ଷାତ୍ ତ୍ରିକାଳଦର୍ଶୀ ଭଗବାନ ଶୂଳପାଣି ଶିବ ଅଟନ୍ତି ବୋଲି ଶ୍ରୁତି କହନ୍ତି । ସମସ୍ତ ଜଗତର ସ୍ୱାମୀ ଭଗବାନ ଶିବଙ୍କର ଯେତେବେଳେ ଅଖିଳ ବ୍ରହ୍ମାଣ୍ଡର ସୃଜନ କରିବାକୁ ଇଚ୍ଛା ହେଲା, ସେତେବେଳେ ସେ ସର୍ବପ୍ରଥମେ ତାଙ୍କର ସନାତନ ପୁତ୍ର ସାକ୍ଷାତ୍ ବ୍ରହ୍ମାଙ୍କୁ ଉତ୍ପନ୍ନ କଲେ ଏବଂ ସେହି ପ୍ରଥମ ପୁତ୍ର ବିଶ୍ୱଯୋନି ବ୍ରହ୍ମାଙ୍କୁ ପରମେଶ୍ୱର ଶିବ ଜଗତ-ସୃଜନ ଉଦ୍ଦେଶ୍ୟରେ ପ୍ରଥମେ ଏହି ସବୁ ବିଦ୍ୟା ପ୍ରଦାନ କଲେ । ତା'ପରେ ସେ ଜଗତର ପାଳନ ନିମନ୍ତେ ଭଗବାନ ଶ୍ରୀହରିଙ୍କୁ ନିଯୁକ୍ତ କଲେ ଏବଂ ତାଙ୍କୁ ରକ୍ଷାର ଶକ୍ତି ପ୍ରଦାନ କଲେ । ଭଗବାନ ବିଷ୍ଣୁ ବ୍ରହ୍ମାଙ୍କର ମଧ୍ୟ ପାଳକ । ବ୍ରହ୍ମା ବିଦ୍ୟା ଲାଭ କରି ପ୍ରଜାସୃଷ୍ଟିର ବିସ୍ତାର କାର୍ଯ୍ୟରେ ଲାଗିଲା ବେଳେ ସେ ସମସ୍ତ ଶାସ୍ତ୍ର ମଧ୍ୟରୁ ପ୍ରଥମେ ପୁରାଣକୁ ହିଁ ସ୍ମରଣ କଲେ ଏବଂ ସେଗୁଡ଼ିକୁ ସେ ପ୍ରକାଶକୁ ଆଣିଲେ । ପୁରାଣ ପ୍ରକଟ ହେବା ପରେ ତାଙ୍କ ଚାରିମୁଖରୁ ଚାରିବେଦର ଆବିର୍ଭାବ ହେଲା । ତା'ପରେ ତାଙ୍କରି ମୁଖରୁ ସମସ୍ତ ଶାସ୍ତ୍ରର ପ୍ରବୃତ୍ତି ହେଲା ।

ଦ୍ୱାପରରେ ଭଗବାନ ଶ୍ରୀହରି ସତ୍ୟବତୀଙ୍କ ଗର୍ଭରୁ ଅରଣିରୁ ଅଗ୍ନି ପ୍ରକଟ ହେଲା ପରି ପ୍ରକଟ ହେଲେ । ସେତେବେଳେ ତାଙ୍କ ନାମ ହୋଇଥିଲା ଶ୍ରୀକୃଷ୍ଣଦ୍ୱୈପାୟନ । ମୁନିବର ! ଶ୍ରୀକୃଷ୍ଣଦ୍ୱୈପାୟନ ବେଦମାନଙ୍କୁ ସଂକ୍ଷିପ୍ତ କରି ଚାରିଭାଗରେ ବିଭକ୍ତ କରିଦେଲେ । ଏହିରୂପେ ଚାରିଭାଗରେ ବେଦମାନଙ୍କୁ ବ୍ୟାସ (ବିସ୍ତାର) କରିବାରୁ ସେ ଜଗତରେ ବେଦବ୍ୟାସ ନାମରେ ପ୍ରସିଦ୍ଧ ହେଲେ । ଠିକ୍ ଏହିପରି ସେ ପୁରାଣଗୁଡ଼ିକୁ ସଂକ୍ଷିପ୍ତ କରି ଚାରି ଲକ୍ଷ ଶ୍ଳୋକରେ ସୀମିତ କଲେ । ଆଜି ମଧ୍ୟ ଦେବଲୋକରେ ପୁରାଣ ଶହେକୋଟି ଶ୍ଳୋକରେ ବିସ୍ତାରିତ । ଯେଉଁ ଦ୍ୱିଜ ଛଅଟି ଅଙ୍ଗ ତଥା ଉପନିଷଦମାନଙ୍କ ସହିତ ଚାରିବେଦକୁ ଜାଣିଥିଲେ ସୁଦ୍ଧା ପୁରାଣକୁ ଜାଣି ନ ଥାଏ, ସେ ଶ୍ରେଷ୍ଠ ବିଦ୍ୱାନ୍ ହୋଇ ନ ପାରେ । ଇତିହାସ ଓ ପୁରାଣ ଦ୍ୱାରା ବେଦର ବ୍ୟାଖ୍ୟା କରିବା ଆବଶ୍ୟକ । ଯାହାର ଜ୍ଞାନ ଅଳ୍ପ ଅର୍ଥାତ୍ ଯେ ପୌରାଣିକ-ଜ୍ଞାନଶୂନ୍ୟ, ସେପରି ଲୋକକୁ ବେଦ ଭୟ କରନ୍ତି ଯେ 'ଏ ମୋ ଉପରେ ପ୍ରହାର କରିବ' । ସର୍ଗ, ପ୍ରତିସର୍ଗ, ବଂଶ, ମନ୍ୱନ୍ତର ଓ ବଂଶାନୁଚରିତ–ଏଗୁଡ଼ିକ ହେଲା ପୁରାଣର ପାଞ୍ଚଲକ୍ଷଣ । ଛୋଟ-ବଡ଼ ଭେଦରେ ପୁରାଣର ସଂଖ୍ୟା ଅଠର ବୋଲି କୁହାଯାଇଛି; ଯଥା–୧-ବ୍ରହ୍ମପୁରାଣ, ୨-ପଦ୍ମପୁରାଣ, ୩-ବିଷ୍ଣୁପୁରାଣ, ୪-ଶିବପୁରାଣ, ୫-ଭାଗବତ-ପୁରାଣ, ୬-ଭବିଷ୍ୟପୁରାଣ, ୭-ନାରଦପୁରାଣ,

୮-ମାର୍କଣ୍ଡେୟପୁରାଣ, ୯-ଅଗ୍ନିପୁରାଣ, ୧୦-ବ୍ରହ୍ମବୈବର୍ତ୍ତପୁରାଣ, ୧୧-ଲିଙ୍ଗପୁରାଣ, ୧୨-ବରାହପୁରାଣ, ୧୩-ସ୍କନ୍ଦପୁରାଣ, ୧୪-ବାମନ-ପୁରାଣ, ୧୫-କୂର୍ମ-ପୁରାଣ, ୧୬-ମତ୍ସ୍ୟପୁରାଣ, ୧୭-ଗରୁଡ଼ପୁରାଣ, ୧୮-ବ୍ରହ୍ମାଣ୍ଡପୁରାଣ—ଏହା ହେଲା ପୁରାଣର ପବିତ୍ର କ୍ରମ । ଏଥିମଧ୍ୟରେ ଶିବପୁରାଣର ସ୍ଥାନ ଚତୁର୍ଥ, ଯାହା ଭଗବାନ ଶିବଙ୍କ ସହ ସମ୍ବନ୍ଧିତ ଏବଂ ସମସ୍ତ ମନୋରଥ ସିଦ୍ଧିର ମାଧ୍ୟମ । ଏ ଗ୍ରନ୍ଥର ଶ୍ଳୋକସଂଖ୍ୟା ଏକଲକ୍ଷ ଏବଂ ଏହା ବାରଟି ସଂହିତାରେ ବିଭକ୍ତ । ଏହାକୁ ସାକ୍ଷାତ୍ ଭଗବାନ ଶିବ ହିଁ ନିର୍ମାଣ କରିଛନ୍ତି ଏବଂ ଏଥିରେ ଧର୍ମ ପ୍ରତିଷ୍ଠିତ । ବେଦବ୍ୟାସ ଉକ୍ତ ଏକଲକ୍ଷ ଶ୍ଳୋକାତ୍ମକ ଶିବପୁରାଣକୁ ଚବିଶ ହଜାର ଶ୍ଳୋକରେ ସଂକ୍ଷିପ୍ତ କରି ଦେଇଛନ୍ତି । ଏଥିରେ ସାତଟି ସଂହିତା ରହିଛି । ପ୍ରଥମ ବିଦ୍ୟେଶ୍ୱରସଂହିତା, ଦ୍ୱିତୀୟ ରୁଦ୍ରସଂହିତା, ତୃତୀୟ ଶତରୁଦ୍ରସଂହିତା, ଚତୁର୍ଥ କୋଟିରୁଦ୍ରସଂହିତା, ପଞ୍ଚମ ଉମାସଂହିତା, ଷଷ୍ଠ କୈଳାସସଂହିତା ଓ ସପ୍ତମ ବାୟବୀୟସଂହିତା ଅଟେ । ବିଦ୍ୟେଶ୍ୱର-ସଂହିତାରେ ଦୁଇହଜାର, ରୁଦ୍ରସଂହିତାରେ ଦଶହଜାର ପାଞ୍ଚଶହ, ଶତରୁଦ୍ରସଂହିତାରେ ଦୁଇହଜାର ଏକଶହ ଅଶୀ, କୋଟିରୁଦ୍ରସଂହିତାରେ ଦୁଇହଜାର ଦୁଇଶହ ଚାଳିଶ, ଉମାସଂହିତାରେ ଏକହଜାର ଆଠଶହ ଚାଳିଶ, କୈଳାସସଂହିତାରେ ଏକହଜାର ଦୁଇଶହ ଚାଳିଶ ଓ ବାୟବୀୟ-ସଂହିତାରେ ଚାରିହଜାର ଶ୍ଳୋକ ରହିଛି । ଏହି ପବିତ୍ର ଶିବପୁରାଣକୁ ଆପଣମାନେ ଶୁଣିଲେ । କେବଳ ଚାରିହଜାର ଶ୍ଳୋକବିଶିଷ୍ଟ ବାୟବୀୟ-ସଂହିତା ବାକି ରହିଛି, ଯାହାକି ଦୁଇ ଭାଗରେ ବିଭକ୍ତ । ଏବେ ଏହାରି ବର୍ଣ୍ଣନା ମୁଁ କରିବି । ଯେ ବେଦର ବିଦ୍ୱାନ୍ ହୋଇ ନ ଥିବ, ତା' ଆଗରେ ଏ ଉତ୍ତମ ଶାସ୍ତ୍ର ବର୍ଣ୍ଣନା କରିବା ଉଚିତ ନୁହେଁ । ଯେ ପୁରାଣର ଜ୍ଞାତା ହୋଇ ନ ଥିବ, ଯାହାର ପୁରାଣ ଉପରେ ଶ୍ରଦ୍ଧା ନ ଥିବ, ତାକୁ ମଧ୍ୟ ଏହା ଶୁଣାଇବା ଉଚିତ ନୁହେଁ । ଯେ ଭଗବାନ ଶିବଙ୍କର ଭକ୍ତ ହୋଇଥିବ, ଶିବୋକ୍ତ ଧର୍ମ ପାଳନ କରୁଥିବ ଏବଂ ଦୋଷଦୃଷ୍ଟିରହିତ ହୋଇଥିବ, ସେପରି ବୁଦ୍ଧିମାନ୍ ଧର୍ମାତ୍ମା ଶିଷ୍ୟକୁ ହିଁ ପରୀକ୍ଷା କରିବା ପରେ ଏହି ଉପଦେଶ ଦେବା ଉଚିତ । ଯେଉଁ ଅମିତତେଜସ୍ୱୀ ଭଗବାନ ବ୍ୟାସଙ୍କ କୃପାରୁ ମୋର ଏ ପୁରାଣସଂହିତା ବିଷୟରେ ଜ୍ଞାନ ହୋଇଛି, ତାହାଙ୍କୁ ମୋର ନମସ୍କାର ।

(ଅଧ୍ୟାୟ ୧)



## ବ୍ରହ୍ମାଙ୍କ ନିକଟକୁ ଋଷିଗଣଙ୍କ ଆଗମନ ଓ ସ୍ତୁତି, ତାଙ୍କ ସମ୍ମୁଖରେ ପରମ-ପୁରୁଷ ବିଷୟରେ ପ୍ରଶ୍ନ ଉପସ୍ଥାପନ ଏବଂ ଆନନ୍ଦରେ 'ରୁଦ୍ର' ଉଚ୍ଚାରଣପୂର୍ବକ ବ୍ରହ୍ମାଙ୍କର ଉତ୍ତର ଦେବା ଆରମ୍ଭ

ସୂତ କହୁଛନ୍ତି—ମହର୍ଷିଗଣ ! ପୂର୍ବେ ଅନେକ କଳ୍ପ ବାରମ୍ବାର ଭୋଗ ହେବା ପରେ ଚଳିତ କଳ୍ପ ଆଗତ ହେବାରୁ ସୃଷ୍ଟିକାର୍ଯ୍ୟ ଆରମ୍ଭ ହେଲା । ଏହି କ୍ରମରେ ଜୀବିକା-ଉପାର୍ଜନକର୍ମ—କୃଷି, ଗୋରକ୍ଷା ଓ ବାଣିଜ୍ୟର ପ୍ରତିଷ୍ଠା ହେଲା ଏବଂ ପ୍ରଜାବର୍ଗ ସାବଧାନ ଓ ସତର୍କ ହୋଇଗଲେ । ସେହି ସମୟରେ ଷଟ୍‌କୁଳରେ ଉତ୍ପନ୍ନ ମହର୍ଷିଙ୍କ ମଧ୍ୟରେ ପାରସ୍ପରିକ ତର୍କ-ବିତର୍କ ହେଲା । 'ଏହା ପରବ୍ରହ୍ମ ଅଟେ ଆଉ ଏହା ନୁହେଁ' ଏପରି ଘୋର ବିବାଦର ସୂତ୍ରପାତ ହେଲା । କିନ୍ତୁ ପରମ ତତ୍ତ୍ୱର ନିରୂପଣ ଅତ୍ୟନ୍ତ କଠିନ ହୋଇଥିବାରୁ ସେତେବେଳେ ସେଠାରେ କିଛି ନିର୍ଣ୍ଣୟ ହୋଇପାରିଲା ନାହିଁ । ଏଣୁ ସେମାନେ

ସମସ୍ତେ ଜଗତ୍‌ସ୍ରଷ୍ଟା ଅବିନାଶୀ ବ୍ରହ୍ମାଙ୍କୁ ସାକ୍ଷାତ୍ କରିବାକୁ ଗଲେ । ବ୍ରହ୍ମା ସେତେବେଳେ ମେରୁ-ଶିଖରରେ ଦେବତା ଓ ଅସୁରଙ୍କ ମୁଖରୁ ଆପଣା ସ୍ତୁତି ଶୁଣୁଥିଲେ । ଦେବତା ଓ ଦାନବଙ୍କ ସମୂହରେ ଭରପୂର ସେହି ସୁନ୍ଦର ମେରୁଶିଖରରେ ସିଦ୍ଧ, ଚାରଣ, ଯକ୍ଷ ଓ ଗନ୍ଧର୍ବମାନେ ନିବାସ କରୁଥାନ୍ତି, ବିହଙ୍ଗମାନେ କଳରବ କରୁଥାନ୍ତି, ମଣି ଓ ପ୍ରବାଳ ତାହାର ଶୋଭା ବୃଦ୍ଧି କରୁଥାନ୍ତି, ନିକୁଞ୍ଜ, କନ୍ଦର, ଛୋଟ ଛୋଟ ଗୁମ୍ଫା ଓ ଅନେକ ନିର୍ଝର ତାହାକୁ ସୁଶୋଭିତ କରୁଥାନ୍ତି । ସେଠାରେ ବ୍ରହ୍ମବନ ନାମରେ ପ୍ରସିଦ୍ଧ ଗୋଟିଏ ବନ ଥିଲା । ସେହି ବନରେ ନାନା ପ୍ରକାର ବନ୍ୟପଶୁ ପୂରିରହିଥିଲେ । ବନଟି ଥିଲା ଦୈର୍ଘ୍ୟରେ ଶହେ ଯୋଜନ ଓ ପ୍ରସ୍ଥରେ ଦଶ ଯୋଜନ । ତାହାରି ଭିତରେ ଗୋଟିଏ ମନୋହର ସରୋବର ଥିଲା, ଯାହା ସୁସ୍ୱାଦୁ ଜଳରେ ପୂର୍ଣ୍ଣ ରହେ । ସେଠାକାର ରମଣୀୟ ପୁଷ୍ପିତ ବୃକ୍ଷ ଉପରେ ମତ୍ତ ଭ୍ରମରଗଣ ଗୁଞ୍ଜନ କରୁଥିଲେ । ସେହି ବନରେ ଗୋଟିଏ ମନୋହର ବିଶାଳ ନଗର ଥିଲା, ଯାହା ପ୍ରାତଃକାଳୀନ ସୂର୍ଯ୍ୟ ପରି ଉଜ୍ଜ୍ୱଳ ଦିଶୁଥିଲା । ସେଠାରେ ଅପରିମିତ ଶକ୍ତିଶାଳୀ ଦୈତ୍ୟ, ଦାନବ ଓ ରାକ୍ଷସ ନିବାସ କରୁଥିଲେ । ସୁଉଚ୍ଚ ପ୍ରାଚୀର ଓ ଫାଟକମାନ ଦ୍ୱାରା ଶୋଭମାନ ଉକ୍ତ ନଗରଟି ତପ୍ତ ସୁବର୍ଣ୍ଣ ପରି ଦେଦୀପ୍ୟମାନ ଦୃଶ୍ୟ ହେଉଥିଲା । ଗୋପୁର, ତୋରଣ, ବହୁମୂଲ୍ୟ ମଣିରେ ମଣ୍ଡିତ ନଭଶ୍ଚୁମ୍ବୀ ଅଟ୍ଟାଳିକା ଓ ବିଶାଳ ଭବନମାନଙ୍କରେ ଅଳଂକୃତ ହୋଇ ନଗରଟି ଅତ୍ୟନ୍ତ ଶୋଭମାନ ହେଉଥିଲା ।

ଉକ୍ତ ବୈଭବପୂର୍ଣ୍ଣ ନଗରରେ ପ୍ରଜାପତି ବ୍ରହ୍ମା ତାଙ୍କର ସଭାସଦଙ୍କ ସହ ନିବାସ କରନ୍ତି । ସେଠାରେ ପହଞ୍ଚି ମୁନିଗଣ ସାକ୍ଷାତ୍ ଲୋକପିତାମହ ବ୍ରହ୍ମାଙ୍କୁ ଦର୍ଶନ କଲେ । ଦେବର୍ଷିମାନେ ତାଙ୍କ ସଭାରେ ଉପସ୍ଥିତ ଥିଲେ । ବ୍ରହ୍ମାଙ୍କ ଅଙ୍ଗକାନ୍ତି ଶୁଦ୍ଧ ସୁବର୍ଣ୍ଣ ପରି ଥିଲା । ସେ ସମସ୍ତ ଆଭୂଷଣରେ ମଣ୍ଡିତ ଥିଲେ । ତାଙ୍କ ମୁଖାକୃତିରୁ ପ୍ରସନ୍ନତା ଓ ସୌମ୍ୟଭାବ ଝଲକୁ ଥିଲା । ନେତ୍ର କମଳଦଳ ପରି ବିଶାଳ ଥିଲା । ସୁରେନ୍ଦ୍ର, ଅସୁରେନ୍ଦ୍ର ଓ ଯୋଗୀନ୍ଦ୍ର ସମସ୍ତେ ସେହି ଦିବ୍ୟ କାନ୍ତିସମ୍ପନ୍ନ, ଦିବ୍ୟ ଗନ୍ଧ ଓ ଅନୁଲେପନରେ ଚର୍ଚ୍ଚିତ, ଦିବ୍ୟ ଶ୍ୱେତବସ୍ତ୍ରରେ ସୁଶୋଭିତ ତଥା ଦିବ୍ୟ ମାଳାମାନଙ୍କରେ ବିଭୂଷିତ ବ୍ରହ୍ମାଙ୍କ ଚରଣାରବିନ୍ଦର ବନ୍ଦନା କରୁଥିଲେ । ପ୍ରଭା ଯେପରି ଦିବାକରଙ୍କ ସେବା କରିଥାନ୍ତି, ଠିକ୍ ସେହିପରି ସର୍ବଶୁଭଲକ୍ଷଣା ସରସ୍ୱତୀଦେବୀ ହାତରେ ଚାମର ଧରି ବ୍ରହ୍ମାଙ୍କ ସେବାରେ ରତ ଥାଆନ୍ତି ।

ବ୍ରହ୍ମାଙ୍କୁ ଦର୍ଶନ କରି ମହର୍ଷିମାନଙ୍କ ମୁଖ ଓ ନେତ୍ର ଉତ୍‌ଫୁଲ୍ଲିତ ହୋଇ ଉଠିଲା । ସେମାନେ କରସମ୍ପୁଟକୁ ମସ୍ତକରେ ଲଗାଇ ସେହି ସୁରଶ୍ରେଷ୍ଠଙ୍କୁ ସ୍ତୁତି କଲେ ।



ଋଷିମାନେ କହିଲେ—ସଂସାରର ସୃଷ୍ଟି, ପାଳନ ଓ ସଂହାର ନିମନ୍ତେ ତ୍ରିରୂପଧାରୀ ପୁରାଣପୁରୁଷ ପରମାତ୍ମା ବ୍ରହ୍ମାଙ୍କୁ ଆମେମାନେ ନମସ୍କାର

କରୁଛୁ । ପ୍ରକୃତି ଯାହାଙ୍କ ଶରୀର, ଯେ ପ୍ରକୃତିରେ କ୍ଷୋଭ ଉତ୍ପନ୍ନକାରୀ ଓ ପ୍ରକୃତିରୂପରେ ତେଇଶି ବିକାରଯୁକ୍ତ ହୋଇଥିଲେ ମଧ୍ୟ ବାସ୍ତବରେ ନିର୍ବିକାର ଅଟନ୍ତି, ସେହି ବ୍ରହ୍ମଦେବଙ୍କୁ ଆମର ନମସ୍କାର । ବ୍ରହ୍ମାଣ୍ଡ ଯାହାଙ୍କ ଶରୀର ହୋଇଥିଲେ ସୁଦ୍ଧା ଯେ ବ୍ରହ୍ମାଣ୍ଡ ଭିତରେ ନିବାସ କରନ୍ତି ଏବଂ ସେଠାରେ ରହି ଯାହାଙ୍କର କାର୍ଯ୍ୟ ଓ କାରଣ ସମ୍ୟଗ୍‌ରୂପେ ସିଦ୍ଧ ହୁଏ, ସେହି ବ୍ରହ୍ମାଙ୍କୁ ନମସ୍କାର । ଯେ ସର୍ବଲୋକ-ସ୍ୱରୂପ, ସମସ୍ତ ଲୋକର ସ୍ରଷ୍ଟା ଓ ସମସ୍ତ ଜୀବଙ୍କୁ ଶରୀର ସଙ୍ଗେ ସଂଯୋଗ-ବିୟୋଗ କରାଇବାରେ ହେତୁ ଅଟନ୍ତି, ସେହି ବ୍ରହ୍ମାଙ୍କୁ ନମସ୍କାର । ସ୍ୱାମୀ! ପିତାମହ ! ଆପଣଙ୍କ ଦ୍ୱାରା ସମସ୍ତ ଜଗତର ସୃଜନ, ପାଳନ ଓ ସଂହାର ହୁଏ, ତଥାପି ମାୟାରେ ଆବୃତ ହୋଇଥିବାରୁ ଆମେ ଆପଣଙ୍କୁ ଜାଣିପାରୁନା ।

ସୂତ କହୁଛନ୍ତି—ମହାଭାଗ ମହର୍ଷିମାନେ ଏପରି ସ୍ତୁତି କରିବାରୁ ବ୍ରହ୍ମା ସେମାନଙ୍କୁ ଆହ୍ଲାଦିତ କରିବାକୁ ଯାଇ ଏହିପରି କହିଲେ ।

ବ୍ରହ୍ମା କହିଲେ—ହେ ମହାନ୍ ସତ୍ତ୍ୱଗୁଣସମ୍ପନ୍ନ ମହାଭାଗ ମହାତେଜସ୍ୱୀ ମହର୍ଷିଗଣ ! ତୁମେମାନେ ଏକାଠି ହୋଇ ଏଠାକୁ କାହିଁକି ଆସିଛ?

ବ୍ରହ୍ମା ଏପରି ପଗ୍ଚରିବାରୁ ବ୍ରହ୍ମବେତ୍ତା ମୁନିମାନେ କର ଯୋଡ଼ି ବିନୀତଭାବରେ କହିଲେ—

ମୁନିମାନେ କହିଲେ—ଭଗବନ୍ ! ଆମେମାନେ ଅଜ୍ଞାନର ଘୋର ଅନ୍ଧକାରରେ ପଡ଼ି ଦୁଃଖ ଭୋଗୁଛୁ । ପରସ୍ପର ମଧ୍ୟରେ ବିବାଦ କରୁଛୁ, ଆମକୁ ପରମ ତତ୍ତ୍ୱର ସାକ୍ଷାତ୍କାର ହେଉ ନାହିଁ । ଆପଣ ଜଗତର ଧାରଣ-ପୋଷଣକାରୀ ତଥା ସମସ୍ତ କାରଣର ମଧ୍ୟ କାରଣ । ନାଥ ! ଏଠାରେ ଏପରି କୌଣସି ବସ୍ତୁ ନାହିଁ, ଯାହା ଆପଣଙ୍କୁ ବିଦିତ ନ ଥିବ । ଆମର ସନ୍ଦେହ ଯେ ସମସ୍ତଙ୍କ ଠାରୁ ପୁରାତନ, ଅନ୍ତର୍ଯାମୀ, ଉତ୍କୃଷ୍ଟ, ବିଶୁଦ୍ଧ, ପରିପୂର୍ଣ୍ଣ ଓ ସନାତନ ପରମେଶ୍ୱର କିଏ? କିଏ ତାଙ୍କର ଅଦ୍ଭୁତ କ୍ରିୟାକଳାପ ଦ୍ୱାରା ସର୍ବପ୍ରଥମେ ଏ ସୃଷ୍ଟିକୁ ସୃଜନ କରନ୍ତି? ମହାପ୍ରାଜ୍ଞ ! ଆମର ଏହି ସନ୍ଦେହର ନିବାରଣ ଉଦ୍ଦେଶ୍ୟରେ ଆପଣ ଆମକୁ ପରମାର୍ଥତତ୍ତ୍ୱର ଉପଦେଶ ଦିଅନ୍ତୁ ।

ମୁନିଗଣଙ୍କ ପ୍ରଶ୍ନ ଶୁଣି ବ୍ରହ୍ମାଙ୍କ ନେତ୍ର ଆଶ୍ଚର୍ଯ୍ୟରେ ବିସ୍ଫାରିତ ହୋଇ ଉଠିଲା । ସେ ଦେବ, ଦାନବ ଓ ମୁନିଗଣଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇଗଲେ ଏବଂ ବହୁ ସମୟ ପର୍ଯ୍ୟନ୍ତ ଧ୍ୟାନରେ ମଗ୍ନ ରହିଲେ । ତା'ପରେ ସେ 'ରୁଦ୍ର' ଉଚ୍ଚାରଣ କରିବା ସହିତ ଆନନ୍ଦରେ ପୁଲକିତ ହୋଇ କର ଯୋଡ଼ି ଏହିପରି କହିଲେ— (ଅଧ୍ୟାୟ ୨)

★★★

## ବ୍ରହ୍ମା ପରମତତ୍ତ୍ୱ ରୂପରେ ଭଗବାନ ଶିବଙ୍କ ମହତ୍ତ୍ୱ ପ୍ରତିପାଦନ କରି ତାଙ୍କ କୃପାକୁ ସମସ୍ତ ସାଧନାର ଫଳ ବୋଲି କହିବା ଏବଂ ବ୍ରହ୍ମାଙ୍କ ଆଜ୍ଞାରେ ସମସ୍ତ ମୁନିଙ୍କର ନୈମିଷାରଣ୍ୟ ଗମନ

ବ୍ରହ୍ମା କହିଲେ—ମୁନିଗଣ ! ଯାହାଙ୍କୁ ପାଇ ନ ପାରି ମନ ସମେତ ବାଣୀ ଫେରିଆସେ, ଯାହାଙ୍କ ଆନନ୍ଦମୟ ସ୍ୱରୂପକୁ ଅନୁଭବ କରୁଥିବା ବ୍ୟକ୍ତି କଦାପି କାହାକୁ ଭୟ କରେ ନାହିଁ, ଯାହାଙ୍କ ଠାରୁ ସମସ୍ତ ଭୂତ ଓ ଇନ୍ଦ୍ରିୟଙ୍କ ସମେତ ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଇନ୍ଦ୍ର ତଥା ଏ ସମଗ୍ର ଜଗତ ସର୍ବପ୍ରଥମେ ପ୍ରକଟ ହୁଏ, ଯେ ସକଳ କାରଣର ମଧ୍ୟ ପରମ କାରଣ, ଯାହାଙ୍କ ବିନା ଆଉ କାହାରି ଦ୍ୱାରା

ଜଗତର ଉତ୍ପତ୍ତି ହୋଇ ନ ଥାଏ*, ସକଳ ଐଶ୍ୱର୍ଯ୍ୟସମ୍ପନ୍ନ ହୋଇଥିବାରୁ ଯେ ସ୍ୱୟଂ ସର୍ବେଶ୍ୱର ବୋଲାନ୍ତି, ଯେଉଁ ଶମ୍ଭୁଙ୍କୁ ମୁମୁକ୍ଷୁଜନ ନିଜ ହୃଦୟାକାଶ ଭିତରେ ଧ୍ୟାନ କରନ୍ତି, ଯେ ସର୍ବପ୍ରଥମେ ମୋତେ ନିଜ ପୁତ୍ରରୂପରେ ଉତ୍ପନ୍ନ କଲେ ଏବଂ ସମସ୍ତ ବେଦର ଜ୍ଞାନ ପ୍ରଦାନ କଲେ, ଯାହାଙ୍କ କୃପାପ୍ରସାଦରେ ମୁଁ ଏ ପ୍ରଜାପତି ପଦ ପ୍ରାପ୍ତ ହେଲି, ଯେଉଁ ଈଶ୍ୱର ଏକାକୀ ବୃକ୍ଷ ପରି ନିଶ୍ଚଳଭାବରେ ଜ୍ୟୋତିର୍ମୟ ଆକାଶରେ ବିରାଜମାନ ଅଟନ୍ତି, ଯେଉଁ ପରମପୁରୁଷ ପରମାତ୍ମାଙ୍କ ଦ୍ୱାରା ଏ ଜଗତ ପରିପୂର୍ଣ୍ଣ, ଯେ ଏକାକୀ ହିଁ ଅନେକ ନିଷ୍କ୍ରିୟ ଜୀବଙ୍କ ଶାସକ ହୋଇ ସେମାନଙ୍କୁ ସକ୍ରିୟତା ପ୍ରଦାନ କରନ୍ତି, ଯେଉଁ ସର୍ବନିୟନ୍ତା ଈଶ୍ୱର ଗୋଟିଏ ବୀଜକୁ ଅନେକ ରୂପରେ ପରିଣତ କରି ପାରନ୍ତି, ଏ ଜୀବବର୍ଗ ସମେତ ସମଗ୍ର ବିଶ୍ୱକୁ ନିୟନ୍ତ୍ରଣରେ ରଖନ୍ତି, ସକଳ ରୂପରେ ବିଦ୍ୟମାନ ଅଟନ୍ତି, ଯେ ସଦା ମନୁଷ୍ୟଙ୍କ ହୃଦୟରେ ସଂପ୍ରବିଷ୍ଟ ଅଟନ୍ତି, ଯେ ସମଗ୍ର ବିଶ୍ୱକୁ ଦେଖୁଥିଲେ ମଧ୍ୟ ଅନ୍ୟଦ୍ୱାରା ଦୃଷ୍ଟିଗୋଚର ହୁଅନ୍ତି ନାହିଁ, ଯେ ସମଗ୍ର ଜଗତର ଅଧିଷ୍ଠାତା, ଯେଉଁ ଅନନ୍ତ ଶକ୍ତିଶାଳୀ ଭଗବାନ ସମସ୍ତ କାଳାତୀତ କାରଣ ଉପରେ ମଧ୍ୟ ଶାସନ କରନ୍ତି, ଯାହାଙ୍କ ପାଇଁ ଦିନ ନାହିଁ କି ରାତି ନାହିଁ, ଯାହାଙ୍କ ଜ୍ଞାନ, ବଳ ଓ କ୍ରିୟାରୂପା ପରାଶକ୍ତି ସ୍ୱାଭାବିକ ଏବଂ ନିତ୍ୟ⁑, ଯେ କ୍ଷର (ବିନାଶଶୀଳ), ଅବ୍ୟକ୍ତ (ପ୍ରକୃତି) ତଥା ଅମୃତସ୍ୱରୂପ ଅକ୍ଷର (ଅବିନାଶୀ) ଜୀବାତ୍ମା ଉପରେ ଶାସନ କରନ୍ତି, ତାଙ୍କୁ ନିରନ୍ତର ଧ୍ୟାନ କଲେ, ମନକୁ ତାଙ୍କ ଠାରେ ଲଗାଇଲେ ଏବଂ ତାଙ୍କରି ତତ୍ତ୍ୱର ଭାବନା କରି କରି ତାଙ୍କ ଠାରେ ତନ୍ମୟ ରହିଲେ ଜୀବ ଶେଷରେ ତାଙ୍କୁ ହିଁ ପ୍ରାପ୍ତ ହୁଏ । ଏହାପରେ ସମସ୍ତ ମାୟା ଆପେ ଆପେ ଦୂର ହୋଇଯାଏ । ତାଙ୍କୁ ବିଦ୍ୟୁତ୍, ଚନ୍ଦ୍ର କିଂବା ସୂର୍ଯ୍ୟ କେହି ବି ଆଲୋକିତ କରି ପାରନ୍ତି ନାହିଁ, ବରଂ ତାଙ୍କରି ଆଲୋକରେ ସମଗ୍ର ଜଗତ ଆଲୋକିତ ହୋଇଥାଏ । ଏହା ସନାତନ ଶ୍ରୁତିର କଥନ ।✦ ଏକମାତ୍ର ମହାଦେବ ମହେଶ୍ୱରଙ୍କୁ ହିଁ ନିଜର ଆରାଧ୍ୟଦେବ ବୋଲି ବୁଝିବା ଉଚିତ । ତାଙ୍କ ଠାରୁ ଶ୍ରେଷ୍ଠ ଅନ୍ୟ କୌଣସି ପଦ ନାହିଁ । ସେ ସ୍ୱୟଂ ହିଁ ସମସ୍ତଙ୍କର ଆଦି, କିନ୍ତୁ ତାଙ୍କର ଆଦି ନାହିଁ କି ଅନ୍ତ ନାହିଁ । ସେ ସ୍ୱାଭାବିକଭାବେ ନିର୍ମଳ, ସ୍ୱତନ୍ତ୍ର, ପରିପୂର୍ଣ୍ଣ, ସ୍ୱେଚ୍ଛାଧୀନ ଓ ଚରାଚର ସ୍ୱରୂପ । ତାଙ୍କ ଶରୀର ଅପ୍ରାକୃତ (ଦିବ୍ୟ) । ସେହି ଶ୍ରୀମାନ୍ ମହେଶ୍ୱର ଲକ୍ଷ୍ୟ ଓ ଲକ୍ଷଣରୁ ମୁକ୍ତ । ସେ ନିତ୍ୟମୁକ୍ତ ଏବଂ ସମସ୍ତଙ୍କର ମୁକ୍ତିଦାତା । ସେ କାଳାତୀତ ହୋଇ ରହି କାଳକୁ ପ୍ରେରିତ କରିଥାନ୍ତି ।§ ସେ ସବୁରି

---

* ଯତୋ ବାଚ୍ୟେ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ । ଆନନ୍ଦଂ ଯସ୍ୟ ବୈ ବିଦ୍ୱାନ୍ ନ ବିଭେତି କୁତଶ୍ଚନ ॥
ଯସ୍ମାଦ୍ ସର୍ବମିଦଂ ବ୍ରହ୍ମବିଷ୍ଣୁରୁଦ୍ରେନ୍ଦ୍ରପୂର୍ବକମ୍ । ସହ ଭୂତେନ୍ଦ୍ରିୟୈଃ ସର୍ବୈଃ ପ୍ରଥମଂ ସମ୍ପ୍ରସୂୟତେ ॥
କାରଣାନାଂ ଚ ଯୋ ଧାତା ଧ୍ୟାତା ପରମକାରଣମ୍ । ନ ସମ୍ପ୍ରସୂୟତେଽନ୍ୟସ୍ମାଦ୍ କୁତଶ୍ଚନ କଦାଚନ ॥
(ଶି. ପୁ. ବା. ସଂ. ପୂ. ଖ. ୩ । ୧–୩)

⁑ ନ ଯସ୍ୟ ଦିବସୋ ରାତ୍ରିର୍ନ ସମାନୋ ନ ଚାଧିକଃ । ସ୍ୱାଭାବିକୀ ପରାଶକ୍ତିର୍ନିତ୍ୟା ଜ୍ଞାନକ୍ରିୟେ ଅପି ॥
(ଶି. ପୁ. ବା. ସଂ. ପୂ. ଖ. ୩ । ୧୧)

✦ ଯସ୍ମିନ୍ନ ଭାସତେ ବିଦ୍ୟୁନ୍ନ ସୂର୍ଯ୍ୟୋ ନ ଚ ଚନ୍ଦ୍ରମାଃ । ଯସ୍ୟ ଭାସା ବିଭାତୀଦମିତ୍ୟେଷା ଶାଶ୍ୱତୀ ଶ୍ରୁତିଃ ॥
(ଶି. ପୁ. ବା. ସଂ. ପୂ. ଖ. ୩ । ୧୪)

§ ଅପ୍ରାକୃତବପୁଃ ଶ୍ରୀମାନ୍ ଲକ୍ଷ୍ୟଲକ୍ଷଣବର୍ଜିତଃ । ଅୟଂ ମୁକ୍ତୋ ମୋଚକଶ୍ଚ ହ୍ୟକାଲଃ କାଳଚୋଦକଃ ॥
(ଶି. ପୁ. ବା. ସଂ. ପୂ. ଖ. ୩ । ୧୭)

ଊର୍ଦ୍ଧ୍ୱରେ ନିବାସ କରିଥାନ୍ତି । ସେ ସ୍ୱୟଂ ସବୁରି ଆବାସସ୍ଥାନ, ସର୍ବଜ୍ଞ ଏବଂ ଏହି ଷଡଧ୍ୱଯୁକ୍ତ ଜଗତର ପାଳକ । ଉତ୍ତରୋତ୍ତର ଉତ୍କୃଷ୍ଟ ଭୂତଙ୍କ ଠାରୁ ସେ ପରମ ଉତ୍କୃଷ୍ଟ । ତାଙ୍କ ଠାରୁ ବଳି ଅନ୍ୟ କେହି ନାହିଁ । ସେ ଅନନ୍ତ ଆନନ୍ଦରାଶିରୂପୀ ମକରନ୍ଦ ପାନକାରୀ ଭ୍ରମର ଓ ଅଖଣ୍ଡ ବ୍ରହ୍ମାଣ୍ଡକୁ ଦଳିଚକଟି ମାଟିପିଣ୍ଡୁଳା ପରି କରିଦେବାରେ ପଣ୍ଡିତ ଅଟନ୍ତି । ସେ ଉଦାରତା, ବୀରତା, ଗମ୍ଭୀରତା ଓ ମଧୁରତାର ମହାସାଗର । ତାଙ୍କ ସମକକ୍ଷ ହେବାଭଳି ବି ଅନ୍ୟ କେହି ନାହିଁ, ପୁଣି ତାଙ୍କ ଠାରୁ ବଳି ବା କେହି କେଉଁଠୁ ଆସିବ ! ସେ ଉପମାରହିତ ଏବଂ ସକଳ ପ୍ରାଣୀଙ୍କ ରାଜାଧିରାଜ ରୂପରେ ବିରାଜମାନ । ସେ ହିଁ ସୃଷ୍ଟିର ଆରମ୍ଭରେ ନିଜ ଅଦ୍ଭୁତ କ୍ରିୟାକଳାପ ଦ୍ୱାରା ସମଗ୍ର ଜଗତକୁ ସୃଷ୍ଟି କରନ୍ତି, ଯାହା ଅନ୍ତକାଳରେ ପୁନଃ ତାଙ୍କରି ଠାରେ ଲୀନ ହୋଇଯାଏ । ସମସ୍ତ ପ୍ରାଣୀ ତାଙ୍କରି ବଶରେ ଅଛନ୍ତି । ସେ ସମସ୍ତଙ୍କୁ ବିଭିନ୍ନ କାର୍ଯ୍ୟରେ ନିଯୁକ୍ତ କରିଥାନ୍ତି । କେବଳ ପରାଭକ୍ତି ବଳରେ ହିଁ ତାଙ୍କର ଦର୍ଶନ ମିଳିପାରେ, ଅନ୍ୟ କୌଣସି ଉପାୟରେ ନୁହେଁ ।

ତାହାଙ୍କୁ ପାଇବାର ସାଧନରୂପେ ପୂର୍ବକାଳରେ ସତ୍‌ପୁରୁଷମାନେ ନାନା ପ୍ରକାର ବ୍ରତ, ସବୁ ପ୍ରକାର ଦାନ, ତପସ୍ୟା ଓ ନିୟମ ପ୍ରଭୃତି ଯେ ନିରୂପିତ କରିଥିଲେ, ଏଥିରେ ସଂଶୟ ନାହିଁ । ମୁଁ, ଭଗବାନ ବିଷ୍ଣୁ, ରୁଦ୍ରଦେବ, ଅନ୍ୟାନ୍ୟ ଦେବତା ଓ ଅସୁର ଆଜି ମଧ୍ୟ ଉଗ୍ର ତପସ୍ୟା ଦ୍ୱାରା ତାଙ୍କୁ ଦର୍ଶନ କରିବାର ଅଭିଳାଷ କରିଥାଉ । ଧର୍ମଭ୍ରଷ୍ଟ, ମୂଢ଼, ଦୁଷ୍ଟ ଓ ଘୃଣିତ ଆଗ୍ରହ-ବିଗ୍ରହଯୁକ୍ତ ଲୋକଙ୍କୁ ତାଙ୍କର ଦର୍ଶନ ମିଳିବା ଅସମ୍ଭବ । ଭକ୍ତଜନ ଅନ୍ତର-ବାହାରେ ତାଙ୍କୁ ହିଁ ପୂଜା ଓ ଧ୍ୟାନ କରିଥାନ୍ତି । ସେହି ରୂପ ତିନି ପ୍ରକାରର—ସ୍ଥୂଳ, ସୂକ୍ଷ୍ମ ଓ ଏ ଦୁଇଟିରୁ ଊର୍ଦ୍ଧ୍ୱରେ । ଆମେ ସବୁ ଦେବତା ପ୍ରଭୃତି ଯେଉଁ ରୂପର ଦର୍ଶନ କରୁ, ତାହା ସ୍ଥୂଳରୂପ । ସୂକ୍ଷ୍ମରୂପର ଦର୍ଶନ କେବଳ ଯୋଗୀମାନଙ୍କୁ ମିଳିଥାଏ । ତହିଁରୁ ପରେ ଯେଉଁ ନିତ୍ୟ, ଜ୍ଞାନସ୍ୱରୂପ ଆନନ୍ଦମୟ ତଥା ଅବିନାଶୀ ଭଗବତ୍‌ସ୍ୱରୂପ ରହିଛି, ତାହାର ଦର୍ଶନ କେବଳ ତାଙ୍କ ଠାରେ ନିଷ୍ଠା ରଖୁଥିବା ଭଜନପରାୟଣ ଭକ୍ତଙ୍କୁ ହିଁ ମିଳିଥାଏ । ଭଗବଦ୍‌ବ୍ରତର ଆଶ୍ରିତ ଭକ୍ତ ହିଁ ସେହି ରୂପକୁ ଦେଖି ପାରନ୍ତି । ଅଧିକ କ'ଣ ବା କହିବା, ଯାହା କିଛି ଗୁହ୍ୟାତ୍ ଗୁହ୍ୟତର ଓ ଉତ୍କୃଷ୍ଟ ସାଧନ ରହିଛି, ତାହା ହେଲା ଭଗବାନ ଶିବଙ୍କ ପ୍ରତି ଭକ୍ତି । ଯେ ସେହି ଭକ୍ତିରେ ଯୁକ୍ତ, ଜାଣ ଯେ ସେ ନିଶ୍ଚିତରୂପେ ସଂସାରବନ୍ଧନରୁ ମୁକ୍ତ ହୋଇଯାଏ । ସେହି ଭକ୍ତି ଭଗବାନ ଶିବଙ୍କ କୃପାରୁ ହିଁ ପ୍ରାପ୍ତ ହୋଇଥାଏ ଏବଂ ତାଙ୍କ କୃପା ବି ଭକ୍ତିବଳରେ ହିଁ ପ୍ରାପ୍ତ ହୋଇଥାଏ । ଅଙ୍କୁରରୁ ବୀଜ ଓ ବୀଜରୁ ଅଙ୍କୁର ହେବା ପରି ଉଭୟେ ପରସ୍ପରର ଆଶ୍ରିତ । ଜୀବକୁ ଭଗବଦ୍‌କୃପାରୁ ସର୍ବତ୍ର ସିଦ୍ଧିମାନ ପ୍ରାପ୍ତ ହୋଇଥାଏ । ସମସ୍ତ ସାଧନ ଦ୍ୱାରା ଶେଷରେ ଭଗବଦ୍‌କୃପା ହିଁ ସାଧ୍ୟ ହୁଏ । ଅନ୍ତଃକରଣର ଶୁଦ୍ଧି ବା ପ୍ରସାଦର ସାଧନ ହେଉଛି ଧର୍ମ ଓ ସେହି ଧର୍ମର ସ୍ୱରୂପକୁ ବେଦ ପ୍ରତିପାଦିତ କରିଛନ୍ତି । ବେଦାଭ୍ୟାସ ଦ୍ୱାରା ପ୍ରଥମେ ପୁଣ୍ୟ ଓ ପାପରେ ସମତା ଆସେ, ସେହି ସମତାରୁ ପ୍ରସାଦ (ପ୍ରସନ୍ନତା ବା ଅନ୍ତଃକରଣର ଶୁଦ୍ଧି) ପ୍ରାପ୍ତ ହୁଏ ଏବଂ ତଦ୍ୱାରା ଧର୍ମ ବୃଦ୍ଧି ହୁଏ । ଧର୍ମବୃଦ୍ଧି ହେଲେ ପଶୁ (ଜୀବ)ର ପାପକ୍ଷୟ ହୁଏ । ଏହିରୂପେ ଯାହାର ପାପ କ୍ଷୀଣ ହୋଇଯାଏ, ସେହି ଜୀବକୁ ଅନେକ ଜନ୍ମର ଅଭ୍ୟାସରୁ କ୍ରମଶଃ ଉମା-ମହେଶ୍ୱରଙ୍କ ତତ୍ତ୍ୱର ଜ୍ଞାନଲାଭ ହୁଏ ଏବଂ ତଦ୍ୱାରା ତାଙ୍କ ପ୍ରତି ଭକ୍ତି ଉଦିତ ହୁଏ । ଭକ୍ତିଭାବ ଅନୁସାରେ ହିଁ ମହେଶ୍ୱରଙ୍କ କୃପାପ୍ରସାଦ ପ୍ରାପ୍ତ ହୁଏ । ସେହି ପ୍ରସାଦ ବଳରେ କର୍ମତ୍ୟାଗ ହୁଏ । କର୍ମତ୍ୟାଗର ପ୍ରକୃତ ଅର୍ଥ ଫଳତ୍ୟାଗ, ପ୍ରତ୍ୟକ୍ଷତଃ କାର୍ଯ୍ୟର ତ୍ୟାଗ ନୁହେଁ । ଏଥିରୁ ସିଦ୍ଧ ହୁଏ ଯେ କର୍ମଫଳର ତ୍ୟାଗ ଦ୍ୱାରା ଶିବଧର୍ମରେ ମଙ୍ଗଳମୟୀ ପ୍ରବୃତ୍ତି ହୋଇଥାଏ ।

ଏଣୁ ଶିବଙ୍କ କୃପାପ୍ରସାଦ ପ୍ରାପ୍ତି ନିମନ୍ତେ ବାଣୀ ଓ ମନକୁ ନିର୍ଦ୍ଦୋଷ କରି ସ୍ତ୍ରୀ-ପୁତ୍ର ଓ ଅଗ୍ନିମାନଙ୍କ ସହିତ ତୁମେମାନେ ଏକମାତ୍ର ଶିବଙ୍କୁ ହିଁ ଧ୍ୟାନ କର । ତାଙ୍କରି ଠାରେ ନିଷ୍ଠା ରଖି ତାଙ୍କରି ଭଜନରେ ତତ୍ପର ରୁହ । ତାଙ୍କରି ଠାରେ ମନୋନିବେଶ କରି ତାଙ୍କରି ଆଶ୍ରିତ ହୋଇ ରୁହ । ସମସ୍ତ କାର୍ଯ୍ୟ କରି ମଧ୍ୟ ମନରେ ତାଙ୍କୁ ହିଁ ଚିନ୍ତନ କର । ଏକସହସ୍ର ଦିବ୍ୟବର୍ଷବ୍ୟାପୀ ଦୀର୍ଘକାଳିକ ଯଜ୍ଞ ଆରମ୍ଭ କରି ତାହାକୁ ପୂର୍ଣ୍ଣ କର । ଯଜ୍ଞର ଶେଷରେ ମନ୍ତ୍ରଦ୍ୱାରା ଆବାହନ କଲେ ସାକ୍ଷାତ୍ ବାୟୁଦେବତା ସେଠାରେ ପଦାର୍ପଣ କରିବେ । ସେ ହିଁ ତୁମମାନଙ୍କୁ କଲ୍ୟାଣର ସାଧନ ଓ ଉପାୟ କହିଦେବେ । ତା'ପରେ ତୁମେମାନେ ପରମ ସୁନ୍ଦର ପୁଣ୍ୟମୟୀ ବାରାଣସୀ ପୁରୀ ଯିବ, ଯେଉଁଠି ପିନାକପାଣି ଶ୍ରୀମାନ୍ ବିଶ୍ୱନାଥ ଭକ୍ତଜନଙ୍କ ପ୍ରତି ଅନୁଗ୍ରହ କରିବା ପାଇଁ ପାର୍ବତୀଙ୍କ ସହିତ ବିରାଜମାନ ଅଛନ୍ତି । ଦ୍ୱିଜୋତ୍ତମଗଣ ! ସେଠାରେ ତୁମକୁ ଗୋଟିଏ ଆଶ୍ଚର୍ଯ୍ୟକର ଘଟଣା ଦେଖିବାକୁ ମିଳିବ । ତାହା ଦେଖି ତୁମେ ମୋ ପାଖକୁ ଆସିବ, ମୁଁ ତୁମମାନଙ୍କୁ ମୋକ୍ଷର ଉପାୟ କହିଦେବି । ଏହି ଉପାୟରେ ଗୋଟିଏ ଜନ୍ମରେ ହିଁ ତୁମମାନଙ୍କର ମୁକ୍ତି ହସ୍ତଗତ ହୋଇଯିବ, ଯଦ୍ଦ୍ୱାରା ଅନେକ ଜନ୍ମର ସଂସାରବନ୍ଧନରୁ ତ୍ରାହି ମିଳିଯିବ । ମୁଁ ଗୋଟିଏ ମନୋମୟ ଚକ୍ର ନିର୍ମାଣ କରିଛି । ମୁଁ ଏବେ ତାହାକୁ ଫୋପାଡୁଛି । ଯେଉଁଠି ପଡ଼ି ଏହାର ନେମି ବିଶୀର୍ଣ୍ଣ ହୋଇଯିବ ଅର୍ଥାତ୍ ଭାଙ୍ଗିଯିବ, ତାହା ହିଁ ତପସ୍ୟା ପାଇଁ ଶୁଭ ସ୍ଥାନ ବୋଲି ଜାଣ ।

ଏପରି କହି ପିତାମହ ବ୍ରହ୍ମା ସେହି ସୂର୍ଯ୍ୟତୁଲ୍ୟ ତେଜସ୍ୱୀ ମନୋମୟ ଚକ୍ର ଆଡ଼କୁ ଚାହିଁଲେ ଏବଂ ମହାଦେବଙ୍କୁ ପ୍ରଣାମ କରି ତାହାକୁ ଫିଙ୍ଗିଦେଲେ । ବ୍ରାହ୍ମଣମାନେ ଲୋକପିତା ବ୍ରହ୍ମାଙ୍କୁ ପ୍ରଣାମ କରି ସେହି ଚକ୍ରର ଅନୁସରଣ କଲେ । ତାହା ଯାଇ ସୁନ୍ଦର ଶିଳାଖଣ୍ଡରେ ଶୋଭିତ ଏକ ବନରେ ପଡ଼ିଲା । ସେଠାରେ ନିର୍ମଳ ଓ ସୁସ୍ୱାଦୁ ଜଳ ଉପଲବ୍ଧ ଥିଲା । ଚକ୍ରର ନେମି ଶୀର୍ଣ୍ଣ ହେବାରୁ ସେହି ମୁନିଜନସେବିତ ବନ ନୈମିଷ ନାମରେ ବିଖ୍ୟାତ ହେଲା । ଅନେକ ଯକ୍ଷ, ଗନ୍ଧର୍ବ ଓ ବିଦ୍ୟାଧର ଯାଇ ସେଠାରେ ନିବାସ କଲେ । ପୂର୍ବକାଳରେ ଜଗତର ସୃଷ୍ଟି ଇଚ୍ଛାରେ ବିଶ୍ୱସ୍ରଷ୍ଟା ଏବଂ ଗାର୍ହପତ୍ୟ ଅଗ୍ନିର ଉପାସକ ବ୍ରହ୍ମାଙ୍କ ପ୍ରଜାପତିମାନେ ସେଠାରେ ଦିବ୍ୟ ଯଜ୍ଞ ଆରମ୍ଭ କରିଥିଲେ । ସେଠାରେ ଶବ୍ଦଶାସ୍ତ୍ର, ଅର୍ଥଶାସ୍ତ୍ର ଓ ନ୍ୟାୟଶାସ୍ତ୍ରର ଜ୍ଞାତା ବିଦ୍ୱାନ୍ ମହର୍ଷିମାନେ ଶକ୍ତି, ଜ୍ଞାନ ଓ କ୍ରିୟାଯୋଗ ଦ୍ୱାରା ଶାସ୍ତ୍ରୀୟ ବିଧି ଅନୁଷ୍ଠାନ



କରିଥିଲେ । ସେହି ସ୍ଥାନରେ ବେଦବେତ୍ତା ବିଦ୍ୱାନ୍ ସଦା ବାଦ ଓ ଜଳ୍ପମୟ ବାକ୍ୟଦ୍ୱାରା ଅତିବାଦ କରୁଥିବା ବେଦବହିଷ୍କୃତ ନାସ୍ତିକଙ୍କୁ ପରାଜିତ କରୁଥିଲେ । ସେହି ଦିନଠାରୁ ଋଷିମାନଙ୍କ ନିମନ୍ତେ ନୈମିଷାରଣ୍ୟ ଉପଯୁକ୍ତ ତପଃସ୍ଥଳୀ ହୋଇଗଲା । ପର୍ବତର ସ୍ଫଟିକମଣିମୟ ଶିଳାରୁ ଝରୁଥିବା

ଅମୃତତୁଲ୍ୟ ମଧୁର ଓ ସ୍ୱଚ୍ଛ ଜଳ ହେତୁ ସେହି ଅରଣ୍ୟଟି ଅତି ରମଣୀୟ ବୋଧ ହେଉଥିଲା । ସେଠାରେ ପ୍ରାୟ ଅଧିକ ରସମୟ ଫଳଦାୟକ ବୃକ୍ଷ ବିଦ୍ୟମାନ ଥାଆନ୍ତି ଏବଂ ହିଂସ୍ର ଜୀବଜନ୍ତୁଙ୍କର ଅଭାବ ଥାଏ ।

(ଅଧ୍ୟାୟ ୩)

***

## ନୈମିଷାରଣ୍ୟରେ ଅନୁଷ୍ଠିତ ଦୀର୍ଘସତ୍ର ଶେଷରେ ମୁନିଗଣଙ୍କ ନିକଟକୁ ବାୟୁଦେବଙ୍କ ଆଗମନ ଓ ସତ୍କାର, ଋଷିଗଣଙ୍କ ପ୍ରଶ୍ନର ଉତ୍ତରସ୍ୱରୂପ ବାୟୁଦେବଙ୍କର ବ୍ୟାଖ୍ୟାନ ଆରମ୍ଭ, ପଶୁ, ପାଶ ଓ ପଶୁପତିଙ୍କ ବିଷୟରେ ତାତ୍ତ୍ୱିକ ବିବେଚନା

ସୂତ କହୁଛନ୍ତି–ମୁନୀଶ୍ୱରଗଣ ! ଏହାପରେ ସେହି ସୁବ୍ରତ ମହାଭାଗ ମହର୍ଷିମାନେ ମହାଦେବଙ୍କ ଆରାଧନା କରି କରି ସେଠାରେ ଗୋଟିଏ ମହାନ୍ ଯଜ୍ଞର ଆୟୋଜନ କଲେ । ଆରମ୍ଭ ବେଳେ ଯଜ୍ଞଟି ମହର୍ଷିମାନଙ୍କୁ ବହୁତ ଆଶ୍ଚର୍ଯ୍ୟଜନକ ଅନୁଭବ ହେଲା । ତା'ପରେ କାଳକ୍ରମେ ପ୍ରଚୁର ଦକ୍ଷିଣଯୁକ୍ତ ସେହି ଯଜ୍ଞ ସମାପ୍ତ ହେବାରୁ ବ୍ରହ୍ମାଙ୍କ ଆଜ୍ଞାନୁସାରେ ସେଠାରେ ସାକ୍ଷାତ୍ ବାୟୁଦେବ ପଦାର୍ପଣ କଲେ । ତାଙ୍କ ଆଗମନ ଦେଖି ଦୀର୍ଘକାଳୀନ ଯଜ୍ଞାନୁଷ୍ଠାନ କରୁଥିବା ମୁନିଗଣ ବ୍ରହ୍ମାଙ୍କ କଥାକୁ ସ୍ମରଣ କରି ଅପାର ହର୍ଷ ଅନୁଭବ କଲେ । ସେମାନେ ଉଠି ନଭଜନ୍ମା ବାୟୁଦେବଙ୍କୁ ପ୍ରଣାମ କଲେ ଏବଂ ତାଙ୍କୁ ବସିବା ନିମନ୍ତେ ଗୋଟିଏ ସୁବର୍ଣ୍ଣ ଆସନ ଦେଲେ । ବାୟୁଦେବ ଆସନରେ ବିରାଜିତ ହେବାରୁ ମୁନିମାନେ ତାଙ୍କୁ ବିଧିବତ୍ ପୂଜା କଲେ । ତା'ପରେ ବାୟୁଦେବ ସମସ୍ତଙ୍କୁ ଅଭିନନ୍ଦନ କରି ପ୍ରଥମେ କୁଶଳବାର୍ତ୍ତା ପଚାରିଲେ ।

ବାୟୁଦେବ କହିଲେ–ବ୍ରାହ୍ମଣଗଣ ! ଏ ମହାନ୍ ଯଜ୍ଞାନୁଷ୍ଠାନ ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ତୁମେମାନେ ସବୁ ସକୁଶଳ ଥିଲ ତ? ଯଜ୍ଞହନ୍ତା ଦେବଦ୍ରୋହୀ ଦୈତ୍ୟମାନେ ତୁମମାନଙ୍କୁ ବାଧା ଦେଲେ ନାହିଁ ତ? ତୁମମାନଙ୍କୁ କୌଣସି ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିଲା ନାହିଁ ତ? ତୁମ ଯଜ୍ଞରେ କୌଣସି ଦୋଷ ରହି ନ ଥିଲା ତ? ତୁମେମାନେ ସ୍ତୋତ୍ର ଓ ମନ୍ତ୍ରଜପ ଦ୍ୱାରା ଦେବତାମାନଙ୍କୁ ଏବଂ ପିତୃକର୍ମ ଦ୍ୱାରା ପିତୃଗଣଙ୍କୁ ଉତ୍ତମରୂପେ ପୂଜନ କରି ଯଜ୍ଞବିଧିକୁ ଯଥାର୍ଥରୂପେ ପୂର୍ଣ୍ଣ କଲ ତ? ଏବେ ଏ ମହାଯଜ୍ଞ ସମାପ୍ତ ହେବା ପରେ ତୁମମାନେ ଆଉ କ'ଣ କରିବାକୁ ଚାହୁଁଛ?



ମୁନିମାନେ କହିଲେ–ପ୍ରଭୋ ! ଆମର କଲ୍ୟାଣବୃଦ୍ଧି ନିମନ୍ତେ ଯେହେତୁ ଆପଣ ସ୍ୱୟଂ ଏଠାରେ ପଦାର୍ପଣ କଲେଣି, ଏଣୁ ଆମର ସବୁପ୍ରକାର କୁଶଳ-ମଙ୍ଗଳ ହୋଇଗଲା ଏବଂ

ଆମର ତପସ୍ୟା ମଧ୍ୟ ସଫଳ ହୋଇଗଲା । ଏଥର ପୂର୍ବର ବୃତ୍ତାନ୍ତ ଶୁଣନ୍ତୁ । ଆମ ହୃଦୟ ଅଜ୍ଞାନାନ୍ଧକାରରେ ଆଚ୍ଛନ୍ନ ହୋଇଯାଇଥିଲା, ତେଣୁ ଆମେ ବିଜ୍ଞାନ ପ୍ରାପ୍ତି ପାଇଁ ପୂର୍ବକାଳରେ ପ୍ରଜାପତିଙ୍କୁ ଆରାଧନା କଲୁ । ଶରଣାଗତବତ୍ସଳ ପ୍ରଜାପତି ଆମ ପରି ଶରଣାଗତଙ୍କ ଉପରେ କୃପା କରି ଏହିପରି କହିଲେ—''ବ୍ରାହ୍ମଣଗଣ ! ରୁଦ୍ରଦେବ ସବୁଠୁ ଶ୍ରେଷ୍ଠ । ସେ ହିଁ ପରମ କାରଣ । ତାଙ୍କୁ ତର୍କଦ୍ୱାରା ଜାଣି ହେବ ନାହିଁ । ଭକ୍ତିମାନ ପୁରୁଷ ହିଁ ତାଙ୍କ ସ୍ୱରୂପକୁ ଯଥାର୍ଥରୂପେ ଜାଣିପାରେ ଓ ଦେଖିପାରେ । ଭକ୍ତି ମଧ୍ୟ ତାଙ୍କରି କୃପାରୁ ମିଳେ ଏବଂ ସେହି କୃପା ବଳରେ ହିଁ ପରମାନନ୍ଦ ପ୍ରାପ୍ତ ହୁଏ । ତେଣୁ ତାଙ୍କ କୃପାପ୍ରସାଦ ଲାଭ କରିବା ପାଇଁ ତୁମେମାନେ ନୈମିଷାରଣ୍ୟରେ ଯଜ୍ଞର ଆୟୋଜନ କର । ଦୀର୍ଘକାଳବ୍ୟାପୀ ସେହି ଯଜ୍ଞଦ୍ୱାରା ପରମ କାରଣ ରୁଦ୍ରଦେବଙ୍କୁ ଆରାଧନା କର । ଯଜ୍ଞ ଶେଷରେ ରୁଦ୍ରଦେବଙ୍କ କୃପାରୁ ବାୟୁଦେବ ସେଠାରେ ପଦାର୍ପଣ କରିବେ । ତାଙ୍କ ମୁଖରୁ ତୁମକୁ ଜ୍ଞାନଲାଭ ହେବ ।'' ମହାଭାଗ ! ଏପରି ଆଦେଶ ସହିତ ପରମେଷ୍ଠୀ ଆମକୁ ଏଠାକୁ ପଠାଇଥିଲେ । ଆମେ ସବୁ ଆପଣଙ୍କ ପ୍ରତୀକ୍ଷାରେ ଏଠାରେ ଏକସହସ୍ର ଦିବ୍ୟବର୍ଷ ପର୍ଯ୍ୟନ୍ତ ଦୀର୍ଘକାଳୀନ ଯଜ୍ଞାନୁଷ୍ଠାନରେ ସଂଲଗ୍ନ ରହିଲୁ । ଏଣୁ ଆପଣଙ୍କ ଆଗମନ ହିଁ ଆକାଂକ୍ଷା ଥିଲା, ଏହା ବ୍ୟତୀତ ଆମର ଆଉ କୌଣସି ଦ୍ୱିତୀୟ ପ୍ରାର୍ଥନୀୟ କଥା ନାହିଁ ।

ଦୀର୍ଘକାଳରୁ ଯଜ୍ଞାନୁଷ୍ଠାନରତ ସେହି ମହର୍ଷିମାନଙ୍କର ପୁରାତନ ବୃତ୍ତାନ୍ତ ଶୁଣି ବାୟୁଦେବତା ମନେ ମନେ ପ୍ରସନ୍ନତା ଅନୁଭବ କରି ମୁନିଗଣଙ୍କ ଗହଣରେ ସେଠାରେ ବସି ରହିଲେ । ତା'ପରେ ସେମାନଙ୍କ ପ୍ରଶ୍ନାନୁସାରେ ଭକ୍ତିଭାବର ବୃଦ୍ଧି ନିମିତ୍ତ ସେ ଭଗବାନ ଶିବଙ୍କର ସୃଷ୍ଟ୍ୟାଦି ଐଶ୍ୱର୍ଯ୍ୟକୁ ସଂକ୍ଷେପରେ ବର୍ଣ୍ଣନା କଲେ ।

ନୈମିଷାରଣ୍ୟର ଋଷିମାନେ ପଚାରିଲେ—ହେ ଦେବ ! ଆପଣ ଈଶ୍ୱରବିଷୟକ ଜ୍ଞାନ କିପରି ପ୍ରାପ୍ତ ହେଲେ? ଏବଂ ଆପଣ ଅବ୍ୟକ୍ତଜନ୍ମା ବ୍ରହ୍ମାଙ୍କର ଶିଷ୍ୟ କେମିତି ହେଲେ?

ବାୟୁଦେବ କହିଲେ—ମହର୍ଷିଗଣ ! ଊନବିଂଶ କଳ୍ପର ନାମ ଶ୍ୱେତଲୋହିତ କଳ୍ପ ବୋଲି ବୁଝିବା ଉଚିତ । ସେହି କଳ୍ପରେ ଚତୁର୍ମୁଖ ବ୍ରହ୍ମା ସୃଷ୍ଟିକାମନାରେ ତପସ୍ୟା କରିଥିଲେ । ତାଙ୍କର ତୀବ୍ର ତପସ୍ୟାରେ ସନ୍ତୁଷ୍ଟ ହୋଇ ସ୍ୱୟଂ ତାଙ୍କର ପିତା ଦେବଦେବ ମହେଶ୍ୱର ତାଙ୍କୁ ଦର୍ଶନ ଦେଲେ । ସେ ଦିବ୍ୟ କୁମାରାବସ୍ଥାଯୁକ୍ତ ରୂପ ଧାରଣ କରି ରୂପବାନଙ୍କ ମଧ୍ୟରେ ଶ୍ରେଷ୍ଠ ଶ୍ୱେତ ନାମକ ମୁନି ହୋଇ ଦିବ୍ୟ ବାଣୀ ଉଚ୍ଚାରଣପୂର୍ବକ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ବେଦମାନଙ୍କର ଅଧିପତି, ସମସ୍ତଙ୍କ ପାଳକ ତଥା ପିତା ମହେଶ୍ୱରଙ୍କ ଦର୍ଶନ ପାଇ ବ୍ରହ୍ମା ଗାୟତ୍ରୀଙ୍କ ସହିତ ଆସି ତାଙ୍କୁ ନମସ୍କାର କଲେ ଏବଂ ତାଙ୍କ ଠାରୁ ଜ୍ଞାନଲାଭ କଲେ । ଜ୍ଞାନ ପାଇଲା ପରେ ବିଶ୍ୱକର୍ମା ଚତୁର୍ମୁଖ ବ୍ରହ୍ମା ସମସ୍ତ ଚରାଚର ଭୂତଙ୍କୁ ସୃଷ୍ଟି କଲେ । ସାକ୍ଷାତ୍ ପରମେଶ୍ୱର ଶିବଙ୍କ ଠାରୁ ବ୍ରହ୍ମା ଅମୃତସ୍ୱରୂପ ଜ୍ଞାନ ଲାଭ କରିଥିଲେ, ତେଣୁ ମୁଁ ତପସ୍ୟା ବଳରେ ତାଙ୍କରି ମୁଖରୁ ସେହି ଜ୍ଞାନ ଲାଭ କଲି ।

ମୁନିମାନେ ପଚାରିଲେ—ଆପଣ କେଉଁ ଜ୍ଞାନ ଲାଭ କଲେ, ଯାହା ସତ୍ୟ ମଧ୍ୟରେ ବି ପରମ ସତ୍ୟ ଓ ଶୁଭ ତଥା ଯେଉଁଥିରେ ଉତ୍ତମ ନିଷ୍ଠା ରଖି ବ୍ୟକ୍ତି ପରମାନନ୍ଦ ଲାଭ କରିଥାଏ?

ବାୟୁଦେବ କହିଲେ—ମହର୍ଷିଗଣ ! ମୁଁ ପୂର୍ବକାଳରେ ପଶୁ, ପାଶ ଓ ପଶୁପତି ସମ୍ବନ୍ଧରେ ଯେଉଁ ଜ୍ଞାନ ଲାଭ କରିଥିଲି, ସେଥିରେ ସୁଖାର୍ଥୀ ବ୍ୟକ୍ତି ଉତ୍ତମ ନିଷ୍ଠା ରଖିବା ଉଚିତ । ଅଜ୍ଞାନଜନିତ

ଦୁଃଖ ଜ୍ଞାନଦ୍ୱାରା ହିଁ ଦୂର ହୋଇଥାଏ । ବସ୍ତୁ ସମ୍ବନ୍ଧୀୟ ବିବେକର ନାମ ଜ୍ଞାନ । ବସ୍ତୁର ତିନୋଟି ଭେଦ ରହିଛି—ଜଡ଼ (ପ୍ରକୃତି), ଚେତନ (ଜୀବ) ଓ ଏ ଦୁଇଟିର ନିୟନ୍ତା (ପରମେଶ୍ୱର) । ଏ ତିନୋଟିକୁ କ୍ରମାନ୍ୱୟରେ ପାଶ, ପଶୁ ଓ ପଶୁପତି କହନ୍ତି । ତତ୍ତ୍ୱଜ୍ଞ ପୁରୁଷ ପ୍ରାୟ ଏ ତିନିଙ୍କୁ କ୍ଷର, ଅକ୍ଷର ତଥା ଏ ଦୁଇଟିରୁ ଅତୀତ ବୋଲି କହନ୍ତି । ଅକ୍ଷରକୁ ପଶୁ କୁହାଯାଏ । କ୍ଷର ତତ୍ତ୍ୱର ନାମ ପାଶ ଏବଂ କ୍ଷର ଓ ଅକ୍ଷରରୁ ଅତୀତ ହୋଇ ଯେଉଁ ପରମ ତତ୍ତ୍ୱ ରହିଛି, ତାହାକୁ ପତି ବା ପଶୁପତି କହନ୍ତି । ପ୍ରକୃତିକୁ ହିଁ କ୍ଷର କୁହାଯାଇଛି । ପୁରୁଷ (ଜୀବ)କୁ ଅକ୍ଷର କହନ୍ତି ଏବଂ ଏ ଦୁଇଟିକୁ ଯେ ପ୍ରେରିତ କରେ, ତାହାକୁ କ୍ଷର ଓ ଅକ୍ଷର ଠାରୁ ଭିନ୍ନ ତତ୍ତ୍ୱ ପରମେଶ୍ୱର କୁହାଯାଏ । ମାୟାର ନାମ ପ୍ରକୃତି । ପୁରୁଷ ସେହି ମାୟାରେ ଆବୃତ । ମଳ ବା କର୍ମ ଦ୍ୱାରା ପ୍ରକୃତିର ପୁରୁଷ ସହ ସମ୍ବନ୍ଧ ହୁଏ । ଶିବ ହିଁ ସେହି ଦୁହିଙ୍କ ପ୍ରେରକ ଈଶ୍ୱର । ମାୟା ମହେଶ୍ୱରଙ୍କ ଶକ୍ତି । ଚିତ୍‌ସ୍ୱରୂପ ଜୀବ ସେହି ମାୟା ଦ୍ୱାରା ଆବୃତ । ଚେତନ ଜୀବକୁ ଆଚ୍ଛାଦିତ କରୁଥିବା ଅଜ୍ଞାନମୟ ପାଶ ହିଁ ମଳ ବୋଲାଏ । ସେଥିରୁ ଶୁଦ୍ଧ ହୋଇଗଲେ ଜୀବ ସ୍ୱତଃ ଶିବ ହୋଇଯାଏ । ସେହି ବିଶୁଦ୍ଧତା ହିଁ ଶିବତ୍ୱ ଅଟେ ।

ମୁନିଗଣ ପଚ୍ଚାରିଲେ—ସର୍ବବ୍ୟାପୀ ଚେତନକୁ ମାୟା କେଉଁ ହେତୁରୁ ଆବୃତ କରେ? କାହିଁକି ପୁରୁଷ ଆବରଣ ପ୍ରାପ୍ତ ହୁଏ? ଏବଂ କେଉଁ ଉପାୟରେ ତାହାର ନିରାକରଣ ହୋଇପାରିବ?

ବାୟୁଦେବ କହିଲେ—ବ୍ୟାପକ ତତ୍ତ୍ୱକୁ ମଧ୍ୟ ଆଂଶିକ ଆବରଣ ପ୍ରାପ୍ତ ହୁଏ; କାରଣ କଳା ଆଦି ମଧ୍ୟ ବ୍ୟାପକ । ଭୋଗ ନିମନ୍ତେ କରାଯାଉଥିବା କର୍ମ ହିଁ ସେହି ଆବରଣରେ କାରଣ ହୁଏ । ମଳ ନାଶ ହେଲେ ଆବରଣ ଦୂର ହୋଇଯାଏ । କଳା, ବିଦ୍ୟା, ରାଗ, କାଳ ଓ ନିୟତି—ଏଗୁଡ଼ିକୁ କଳା ଇତ୍ୟାଦି କହନ୍ତି । କର୍ମଫଳକୁ ଯେ ଉପଭୋଗ କରେ, ତାହାରି ନାମ ପୁରୁଷ (ଜୀବ) । କର୍ମ ଦୁଇ ପ୍ରକାରର—ପୁଣ୍ୟକର୍ମ ଓ ପାପକର୍ମ । ପୁଣ୍ୟକର୍ମର ଫଳ ସୁଖ ଓ ପାପକର୍ମର ଫଳ ଦୁଃଖ । କର୍ମ ଅନାଦି ଓ ତାହାର ଫଳକୁ ଭୋଗ କରିଦେଲେ ତାହା ସମାପ୍ତ ହୋଇଯାଏ । ଯଦିଓ ଜଡ଼ କର୍ମର ଚେତନ ଆତ୍ମା ସହ କୌଣସି ସମ୍ବନ୍ଧ ନାହିଁ, ତଥାପି ଅଜ୍ଞାନତା ହେତୁ ଜୀବ ତାହାକୁ ନିଜ ଠାରେ ଅସ୍ତିତ୍ୱ ଦେଇଛି । ଭୋଗ ହେଉଛି କର୍ମର ବିନାଶକ, ପ୍ରକୃତିକୁ ଭୋଗ୍ୟ କହନ୍ତି ଏବଂ ଭୋଗର ସାଧନ ହେଉଛି ଶରୀର । ବାହ୍ୟ ଇନ୍ଦ୍ରିୟ ଓ ଅନ୍ତଃକରଣ ହେଉଛି ତାହାର ଦ୍ୱାର । ପରମ ଭକ୍ତି ଦ୍ୱାରା ପ୍ରାପ୍ତ ହେଉଥିବା ମହେଶ୍ୱରଙ୍କ କୃପାରୁ ମଳର ନାଶ ହୁଏ ଏବଂ ମଳ ନଷ୍ଟ ହେଲାପରେ ପୁରୁଷ ନିର୍ମଳ ବା ଶିବଙ୍କ ତୁଲ୍ୟ ହୋଇଯାଏ । ବିଦ୍ୟା ପୁରୁଷର ଜ୍ଞାନଶକ୍ତିକୁ ଓ କଳା ତାହାର କ୍ରିୟାଶକ୍ତିକୁ ଅଭିବ୍ୟକ୍ତ କରେ । ରାଗ ହିଁ ଭୋଗ୍ୟ ବସ୍ତୁ ପାଇଁ କ୍ରିୟାରେ ପ୍ରବୃତ୍ତ କରାଇଥାଏ । କାଳ ସେଥିରେ ଅବଚ୍ଛେଦକ ହୋଇଥାଏ ଓ ନିୟତି ତାହାକୁ ନିୟନ୍ତ୍ରଣରେ ରଖିଥାଏ । ଅବ୍ୟକ୍ତ ରୂପୀ କାରଣ ତ୍ରିଗୁଣମୟ ଅଟେ, ତାହାରି ଦ୍ୱାରା ଜଡ଼ ଜଗତର ଉତ୍ପତ୍ତି ହୁଏ ଓ ତାହାରି ମଧ୍ୟରେ ତାହାର ବିଲୟ ହୁଏ । ତତ୍ତ୍ୱଚିନ୍ତକ ପୁରୁଷମାନେ ସେହି ଅବ୍ୟକ୍ତକୁ ହିଁ ପ୍ରଧାନ ଓ ପ୍ରକୃତି କହନ୍ତି । ସତ୍ତ୍ୱ, ରଜ ଓ ତମ ଗୁଣ ପ୍ରକୃତିରୁ ପ୍ରକଟ ହୁଅନ୍ତି, ତିଳରେ ତେଲ ଥିବା ପରି ସେଗୁଡ଼ିକ ପ୍ରକୃତିରେ ସୂକ୍ଷ୍ମଭାବରେ ବିଦ୍ୟମାନ ଥାଆନ୍ତି । ସୁଖ ଓ ତାହାର ହେତୁକୁ ସଂକ୍ଷେପରେ ସାତ୍ତ୍ୱିକ କୁହାଯାଏ, ଦୁଃଖ ଓ ତାହାର ହେତୁ ହେଲା ରାଜସ କାର୍ଯ୍ୟ ଏବଂ ଜଡ଼ତା ଓ ମୋହ ହେଉଛି ତମୋଗୁଣର କାର୍ଯ୍ୟ । ସାତ୍ତ୍ୱିକୀ ବୃତ୍ତି ଊର୍ଦ୍ଧ୍ୱକୁ ନେଇଯାଏ, ତାମସୀ ବୃତ୍ତି ଅଧୋଗତିରେ ପକାଇଥାଏ ଏବଂ ରାଜସୀ ବୃତ୍ତି

ମଧ୍ୟମ ସ୍ଥିତିରେ ରଖିଥାଏ । ପାଞ୍ଚ ତନ୍ମାତ୍ର, ପାଞ୍ଚ ଭୂତ, ପାଞ୍ଚ ଜ୍ଞାନେନ୍ଦ୍ରିୟ, ପାଞ୍ଚ କର୍ମେନ୍ଦ୍ରିୟ ତଥା ପ୍ରଧାନ (ଚିତ୍ତ), ମହତ୍ତ୍ୱ (ବୁଦ୍ଧି), ଅହଂକାର ଓ ମନ (ଅର୍ଥାତ୍ ଚାରୋଟି ଅନ୍ତଃକରଣ)—ଏ ସମସ୍ତେ ମିଶି ଚବିଶତତ୍ତ୍ୱ ହୁଅନ୍ତି । ଏହା ହେଲା ସଂକ୍ଷେପରେ ବିକାରସହିତ ଅବ୍ୟକ୍ତ (ପ୍ରକୃତି)ର ବର୍ଣ୍ଣନା । କାରଣାବସ୍ଥାରେ ରହିଥିବା ବେଳେ ଏହାକୁ 'ଅବ୍ୟକ୍ତ' କହନ୍ତି ଏବଂ ଶରୀରାଦି ରୂପରେ କାର୍ଯ୍ୟାବସ୍ଥା ପ୍ରାପ୍ତ ହେଲେ ଏହାକୁ 'ବ୍ୟକ୍ତ' କହନ୍ତି; ଯେପରି କି କାରଣାବସ୍ଥାରେ ଥିବାବେଳେ ଯାହାକୁ ଆମେ 'ମାଟି' କହୁ, ତାହା ହିଁ କାର୍ଯ୍ୟାବସ୍ଥାରେ 'ଘଟ' ଇତ୍ୟାଦି ନାମ ଧାରଣ କରେ । ଘଟ ଇତ୍ୟାଦି କାର୍ଯ୍ୟ ଯେପରି ମୃତ୍ତିକା ଆଦି କାରଣରୁ ଅଧିକ ଭିନ୍ନ ନୁହେଁ, ଠିକ୍ ସେହିପରି ଶରୀର ଇତ୍ୟାଦି ବ୍ୟକ୍ତ ପଦାର୍ଥ ଅବ୍ୟକ୍ତରୁ ଅଧିକ ଭିନ୍ନ ନୁହେଁ । ଏକମାତ୍ର ଅବ୍ୟକ୍ତ ହିଁ କାରଣ, କରଣ, ତାହାର ଆଧାରଭୂତ ଶରୀର ଓ ଭୋଗ୍ୟ ବସ୍ତୁ ଅଟେ, ଅନ୍ୟ କେହି ନୁହେଁ ।

ମୁନିମାନେ ପଚାରିଲେ—ପ୍ରଭୋ ! ବୁଦ୍ଧି, ଇନ୍ଦ୍ରିୟ ଓ ଶରୀର ଅତିରିକ୍ତ ଆତ୍ମା ନାମରେ କୌଣସି ବସ୍ତୁର ବାସ୍ତବିକ ସ୍ଥିତି କେଉଁଠି?

ବାୟୁଦେବ କହିଲେ—ମହର୍ଷିଗଣ ! ସର୍ବବ୍ୟାପୀ ଚେତନର ବୁଦ୍ଧି, ଇନ୍ଦ୍ରିୟ ଓ ଶରୀରଠାରୁ ପାର୍ଥକ୍ୟ ରହିଛି । ଆତ୍ମା ନାମକ କୌଣସି ପଦାର୍ଥ ନିଶ୍ଚୟ ବିଦ୍ୟମାନ; ମାତ୍ର ତାହାର ସତ୍ତାରେ କୌଣସି ହେତୁର ଉପଲବ୍ଧି ବହୁତ କଠିନ । ସତ୍‌ପୁରୁଷ ବୁଦ୍ଧି, ଇନ୍ଦ୍ରିୟ ଓ ଶରୀରକୁ ଆତ୍ମା ମାନନ୍ତି ନାହିଁ; କାରଣ ସ୍ମୃତି (ବୁଦ୍ଧିର ଜ୍ଞାନ) ଅନିୟତ ଏବଂ ତଦ୍ଦ୍ୱାରା ଏକାବେଳକେ ସମଗ୍ର ଶରୀରର ଅନୁଭବ ହୋଇ ପାରେ ନାହିଁ । ଏଣୁ ବେଦ ଓ ବେଦାନ୍ତରେ ଆତ୍ମାକୁ ପୂର୍ବାନୁଭୂତ ବିଷୟର ସ୍ମରଣକର୍ତ୍ତା, ସମସ୍ତ ଜ୍ଞେୟ ପଦାର୍ଥରେ ବ୍ୟାପକ ତଥା ଅନ୍ତର୍ଯାମୀ କୁହାଯାଏ । ଆତ୍ମା ସ୍ତ୍ରୀ ନୁହେଁ, କି ପୁରୁଷ ନୁହେଁ କି ନପୁଂସକ ନୁହେଁ । ସେ ଉପରେ ନ ଥାଏ, କି ତଳେ ନ ଥାଏ, କି ଏପାଖରେ ବା ସେପାଖରେ ନ ଥାଏ, କି କୌଣସି ସ୍ଥାନବିଶେଷରେ ନ ଥାଏ । ସେ ସମଗ୍ର ଚଳ ଶରୀରରେ ଅବିଚଳ, ନିରାକାର ଓ ଅବିନାଶୀରୂପରେ ସ୍ଥିତ । ଜ୍ଞାନୀ ପୁରୁଷ ନିରନ୍ତର ବିଚାର କରି ସେହି ଆତ୍ମତତ୍ତ୍ୱର ସାକ୍ଷାତ୍‌କାର କରିପାରନ୍ତି ।*

ଶରୀର ଠାରୁ ବଳି ଅଶୁଦ୍ଧ, ପରାଧୀନ, ଦୁଃଖମୟ ଓ ଅସ୍ଥିର ଅନ୍ୟ କିଛି ନାହିଁ । ଶରୀର ହିଁ ସମସ୍ତ ବିପତ୍ତିର ମୂଳ କାରଣ । ତା'ସହିତ ସଂଶ୍ଳିଷ୍ଟ ହୋଇ ପୁରୁଷ ନିଜ କର୍ମାନୁସାରେ ସୁଖୀ, ଦୁଃଖୀ ଓ ମୂଢ଼ ହୋଇଥାଏ ।¥ ଯେପରି ଜଳରେ ଆପ୍ଳାବିତ ଜମି ଅଙ୍କୁର ଉତ୍ପନ୍ନ କରେ, ସେହିପରି ଅଜ୍ଞାନରେ ଆପ୍ଳାବିତ କର୍ମ ନୂତନ ଶରୀରକୁ ଜନ୍ମ ଦିଏ । ଶରୀର ଘୋର ଦୁଃଖର ଆଳୟ ଅଟେ । ଏହାର ମୃତ୍ୟୁ ଅନିବାର୍ଯ୍ୟ । ଆଜି ପର୍ଯ୍ୟନ୍ତ ଅଗଣିତ ଶରୀର ନଷ୍ଟ ହୋଇ ସାରିଲାଣି ଏବଂ ଭବିଷ୍ୟତରେ ଯେତେ ଶରୀର ସୃଷ୍ଟି ହେବ, ସେସବୁ ମଧ୍ୟ ଜୀର୍ଣ୍ଣଶୀର୍ଣ୍ଣ ହୋଇଗଲେ ପୁରୁଷ ତାହାକୁ ଛାଡ଼ିଦେବ । କୌଣସି

---

* ନ ଚ ସ୍ତ୍ରୀ ନ ପୁମାନେଷ ନୈବ ଚାପି ନପୁଂସକ । ନୈବୋର୍ଦ୍ଧ୍ୱଂ ନାପି ତିର୍ଯ୍ୟକ୍ ଚ ନାଧସ୍ତାନ୍ନ କୁତଶ୍ଚନ ॥
ଅଶରୀରଂ ଶରୀରେଷୁ ଚଳେଷୁ ସ୍ଥାଣୁମବ୍ୟୟମ୍ । ସଦା ପଶ୍ୟତି ତଂ ଧୀରୋ ନରଃ ପ୍ରତ୍ୟବମର୍ଶନାତ୍ ॥
(ଶି. ପୁ. ବା. ସଂ. ପୂ. ଖ. ୫ । ୪୮-୪୯)

¥ ଯଚ୍ଛରୀରମିଦଂ ପ୍ରୋକ୍ତଂ ପୁରୁଷସ୍ୟ ତତଃ ପରମ୍ । ଅଶୁଦ୍ଧମବଶଂ ଦୁଃଖମଧ୍ରୁବଂ ନ ଚ ବିଦ୍ୟତେ ॥
ବିପଦାଂ ବୀଜଭୂତେନ ପୁରୁଷସ୍ତେନ ସଂଯୁତଃ । ସୁଖୀ ଦୁଃଖୀ ଚ ମୂଢଶ୍ଚ ଭବତି ସ୍ୱେନ କର୍ମଣା ॥
(ଶି. ପୁ. ବା. ସଂ. ପୂ. ଖ. ୫ । ୫୧-୫୨)

ଜୀବାତ୍ମା କୌଣସି ଶରୀରରେ ଅନନ୍ତ କାଳପର୍ଯ୍ୟନ୍ତ ରହିବାକୁ ଅବସର ପାଏ ନାହିଁ। ଏଠାରେ ସ୍ତ୍ରୀ, ପୁତ୍ର ଓ ବନ୍ଧୁବାନ୍ଧବଙ୍କ ସଙ୍ଗେ ଯେଉଁ ମିଳନ ହୁଏ, ତାହା ମାର୍ଗରେ ପଥିକଙ୍କ ସଙ୍ଗେ ହେଉଥିବା ଭେଟ ପରି ଅସ୍ଥାୟୀ। ମହାସାଗରରେ ଯେପରି କାଠ ଖଣ୍ଡିଏ ଭାସି ଭାସି ଆସି ଆଉ ଖଣ୍ଡିଏ କାଠ ସହ ମିଳିତ ହୁଏ ଏବଂ ପରକ୍ଷଣରେ ଦୂରକୁ ଗ୍ଳିଯାଏ, ଏଠାରେ ପ୍ରାଣୀମାନଙ୍କର ହେଉଥିବା ସମାଗମ ସେହିପରି ସଂଯୋଗ-ବିଯୋଗମୟ।* ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ସ୍ଥାବର ପ୍ରାଣୀ ପର୍ଯ୍ୟନ୍ତ ସମସ୍ତ ଜୀବ ପଶୁ ବୋଲାନ୍ତି। ସେଇସବୁ ପଶୁଙ୍କ ପାଇଁ ଏହି ଦୃଷ୍ଟାନ୍ତ ବା ଦର୍ଶନଶାସ୍ତ୍ର ବର୍ଣ୍ଣିତ ହୋଇଛି। ଜୀବ ହିଁ ପାଶରେ ବାନ୍ଧି ହୁଏ ଏବଂ ସୁଖ-ଦୁଃଖ ଭୋଗ କରେ, ସେଥିପାଇଁ ତାହାକୁ 'ପଶୁ' କୁହାଯାଏ। ଜୀବ ଈଶ୍ୱରଙ୍କ ଲୀଳାର ସାଧନ ବୋଲି ଜ୍ଞାନୀ ମହାତ୍ମା କହନ୍ତି। (ଅଧ୍ୟାୟ ୪-୫)



## ମହେଶ୍ୱରଙ୍କ ମହତ୍ତ୍ୱ ପ୍ରତିପାଦନ

ବାୟୁଦେବ କହୁଛନ୍ତି—**ମହର୍ଷିଗଣ!** ଏ ବିଶ୍ୱର ନିର୍ମାତାଭାବରେ କେହି ଜଣେ ପତି ଅଛନ୍ତି, ଯେ କି ଅନନ୍ତ ରମଣୀୟ ଗୁଣର ଆଶ୍ରୟ ବୋଲାନ୍ତି। ସେ ପଶୁମାନଙ୍କୁ ପାଶରୁ ମୁକ୍ତ କରିଥାନ୍ତି। ତାଙ୍କ ବିନା ସଂସାରର ସୃଷ୍ଟି ଅସମ୍ଭବ; କାରଣ ପଶୁ ଅଜ୍ଞାନୀ ଓ ପାଶ ଅଚେତନ। ପ୍ରଧାନ ପରମାଣୁ ଆଦି ଯେତେ ବି ଜଡ଼ ତତ୍ତ୍ୱ ଅଛି, ସେଗୁଡ଼ିକର କର୍ତ୍ତା ହେଉଛନ୍ତି ସେହି ପତି—ଏକଥା ସୁସ୍ପଷ୍ଟ। କୌଣସି ବୁଦ୍ଧିମାନ ବା ଚେତନ କାରଣ ବିନା ଏ ଜଡ଼ ତତ୍ତ୍ୱର ନିର୍ମାଣ କ'ଣ ସମ୍ଭବ? ପଶୁ, ପାଶ ଓ ପତିର ବାସ୍ତବିକ ପାର୍ଥକ୍ୟକୁ ଜାଣି ବ୍ରହ୍ମବେତ୍ତା ପୁରୁଷ ଯୋନିଜନ୍ମରୁ ମୁକ୍ତ ହୋଇଯାଏ। କ୍ଷର ଓ ଅକ୍ଷର ଉଭୟେ ପରସ୍ପର ସହ ସଂଯୁକ୍ତ। ପତି ବା ମହେଶ୍ୱର ହିଁ ବ୍ୟକ୍ତାବ୍ୟକ୍ତ ଜଗତର ଭରଣ-ପୋଷଣ କରନ୍ତି, ସେ ହିଁ ଜଗତକୁ ବନ୍ଧନରୁ ମୁକ୍ତ କରନ୍ତି। ଭୋକ୍ତା, ଭୋଗ୍ୟ ଓ ପ୍ରେରକ—ଏ ତିନୋଟି ତତ୍ତ୍ୱ ଜାଣିବାର ବିଷୟ। ଏଥିରୁ ଭିନ୍ନ ବସ୍ତୁ ବିଜ୍ଞ ପୁରୁଷଙ୍କ ନିମନ୍ତେ ଜାଣିବାର ଯୋଗ୍ୟ ନୁହେଁ। ସୃଷ୍ଟି ଆରମ୍ଭରେ ଏକମାତ୍ର ରୁଦ୍ରଦେବଙ୍କ ଭିନ୍ନ ଅନ୍ୟ କିଛି ନ ଥାଏ। ସେ ହିଁ ଏ ଜଗତକୁ ସୃଷ୍ଟି କରି ଏହାକୁ ରକ୍ଷା କରନ୍ତି ଓ ଶେଷରେ ସଂହାର କରିଦିଅନ୍ତି। ତାଙ୍କର ସର୍ବତ୍ର ନେତ୍ର ରହିଛି, ସର୍ବତ୍ର ମୁଖ ରହିଛି, ସର୍ବତ୍ର ଭୁଜ ରହିଛି, ସର୍ବତ୍ର ପାଦ ରହିଛି। ସେ ହିଁ ସର୍ବପ୍ରଥମେ ଦେବତାଙ୍କ ମଧ୍ୟରେ ବ୍ରହ୍ମାଙ୍କୁ ଉତ୍ପନ୍ନ କରନ୍ତି। ଶ୍ରୁତି କହନ୍ତି—''ରୁଦ୍ରଦେବ ହିଁ ସର୍ବଶ୍ରେଷ୍ଠ ମହାନ୍ ଋଷି। ମୁଁ ଏ ମହାନ୍ ଅମୃତସ୍ୱରୂପ ଅବିନାଶୀ ପୁରୁଷ ପରମେଶ୍ୱରଙ୍କୁ ଜାଣେ। ତାଙ୍କର ଅଙ୍ଗକାନ୍ତି ସୂର୍ଯ୍ୟ ତୁଲ୍ୟ। ସେହି ପ୍ରଭୁ ଅଜ୍ଞାନାନ୍ଧକାରର ଊର୍ଦ୍ଧ୍ୱରେ ବିରାଜମାନ।''¶ ସେହି ପରମାତ୍ମାଙ୍କ ଉପରେ ଅନ୍ୟ କିଛି ନାହିଁ। ତାଙ୍କ ଠାରୁ ଅତ୍ୟନ୍ତ ସୂକ୍ଷ୍ମ ଓ ଅଧିକ ମହାନ୍ କିଛି ନାହିଁ। ତାଙ୍କରି

---

* ନୈବାସ୍ୟ ଭବିତା କଶ୍ଚିନ୍ନାସୌ ଭବତି କସ୍ୟଚିତ୍। ପଥି ସଂଗମ ଏବାୟଂ ଦାରୈଃ ପୁତ୍ରୈଶ୍ଚ ବନ୍ଧୁଭିଃ॥
ଯଥା କାଷ୍ଠଂ ଚ କାଷ୍ଠଂ ଚ ସମେୟାତାଂ ମହୋଦଧୌ। ସମେତ୍ୟ ଚ ବ୍ୟପେୟାତାଂ ତଦ୍ୱବଦ୍ ଭୂତସମାଗମଃ॥
(ଶି. ପୁ. ବା. ସଂ. ପୂ. ଖ. ୫। ୫୮-୫୯)

¶ ବିଶ୍ୱସ୍ମାଦଧିକୋ ରୁଦ୍ରୋ ମହର୍ଷିରିତି ହି ଶ୍ରୁତିଃ॥
ବେଦାହମେତଂ ପୁରୁଷଂ ମହାନ୍ତମମୃତଂ ଧ୍ରୁବମ୍। ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ସଂସ୍ଥିତଂ ପ୍ରଭୁମ୍॥
(ଶି. ପୁ. ବା. ସଂ. ପୂ. ଖ. ୬। ୧୭-୧୮)

ଦ୍ୱାରା ସାରା ଜଗତ ପରିପୂର୍ଣ୍ଣ । ତାଙ୍କର ସର୍ବତ୍ର ହସ୍ତ, ପାଦ, ମସ୍ତକ, ମୁଖ, ନେତ୍ର ଓ କର୍ଣ୍ଣ ରହିଛି । ସେ ଜଗତରେ ସମସ୍ତଙ୍କୁ ବ୍ୟାପି ରହିଛନ୍ତି । ସେ ସମସ୍ତ ଇନ୍ଦ୍ରିୟଙ୍କ ବିଷୟକୁ ଜାଣନ୍ତି, ମାତ୍ର ବାସ୍ତବରେ ସମସ୍ତ ଇନ୍ଦ୍ରିୟରହିତ । ସେ ସମସ୍ତଙ୍କର ସ୍ୱାମୀ, ଶାସକ, ଶରଣଦାତା ଓ ସୁହୃଦ୍ । ସେ ନେତ୍ର ବିନା ମଧ୍ୟ ଦେଖନ୍ତି ଓ କାନ ବିନା ମଧ୍ୟ ଶୁଣନ୍ତି । ସେ ସମସ୍ତଙ୍କୁ ଜାଣନ୍ତି, କିନ୍ତୁ ତାଙ୍କୁ କେହି ପୂର୍ଣ୍ଣରୂପେ ଜାଣି ପାରେ ନାହିଁ । ତାଙ୍କୁ ପରମ ପୁରୁଷ କହନ୍ତି । ସେ ଅଣୁଠାରୁ ମଧ୍ୟ ପରମ ଅଣୁ ଏବଂ ମହାନ୍ ଠାରୁ ମଧ୍ୟ ପରମ ମହାନ୍ । ସେହି ଅବିନାଶୀ ମହେଶ୍ୱର ଏ ଜୀବର ହୃଦୟଗୁହାରେ ନିବାସ କରନ୍ତି ।*

ଏକ ସଙ୍ଗରେ ରହୁଥିବା ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷ (ଶରୀର)ର ଆଶ୍ରୟରେ ରହନ୍ତି । ସେଥିମଧ୍ୟରୁ ଗୋଟିଏ ସେହି ବୃକ୍ଷର କର୍ମରୂପୀ ଫଳର ସ୍ୱାଦ ନେଇ ଉପଭୋଗ କରେ, କିନ୍ତୁ ଅନ୍ୟଟି ସେହି ବୃକ୍ଷର ଫଳକୁ ଉପଭୋଗ ନ କରି କେବଳ ଦେଖୁଥାଏ ।ꕥ ଜୀବାତ୍ମା ଏ ବୃକ୍ଷ ପ୍ରତି ଆସକ୍ତିରେ ମଜ୍ଜି ରହିଥାଏ । ତେଣୁ ମୋହିତ ହୋଇ ଶୋକ କରେ । ସେ ଯେତେବେଳେ ଭଗବତ୍କୃପାରୁ ଭକ୍ତସେବିତ ପରମ କାରଣରୂପ ପରମେଶ୍ୱରଙ୍କର ଏବଂ ତାଙ୍କ ମହିମାର ସାକ୍ଷାତ୍କାର କଲେ ଯାଇ ଶୋକରହିତ ଓ ସୁଖୀ ହୁଏ । ଛନ୍ଦ, ଯଜ୍ଞ, କ୍ରତୁ ଏବଂ ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ସମସ୍ତ ବିଶ୍ୱକୁ ସେହି ମାୟାବୀ ହିଁ ରଚନା କରେ ଏବଂ ମାୟା ଦ୍ୱାରା ହିଁ ସେଥିରେ ପ୍ରବିଷ୍ଟ ହୋଇ ରହିଥାଏ । ପ୍ରକୃତିକୁ ହିଁ ମାୟା ବୁଝିବା ଉଚିତ ଏବଂ ମହେଶ୍ୱର ହେଉଛନ୍ତି ମାୟାବୀ ।✦ ସେହି ବିଶ୍ୱକର୍ମା ମହେଶ୍ୱର ହିଁ ପରମ ଦେବତା ପରମାତ୍ମା, ଯେ କି ସମସ୍ତଙ୍କ ହୃଦୟରେ ବିରାଜମାନ । ତାଙ୍କୁ ଜାଣି ପୁରୁଷ ପରମାନନ୍ଦମୟ ଅମୃତକୁ ଅନୁଭବ କରେ । ବ୍ରହ୍ମାଙ୍କ ଠାରୁ ମଧ୍ୟ ଶ୍ରେଷ୍ଠ, ଅସୀମ ଓ ଅବିନାଶୀ ପରମାତ୍ମାଙ୍କ ଠାରେ ବିଦ୍ୟା ଓ ଅବିଦ୍ୟା ଉଭୟ ଗୂଢ଼ରୂପେ ବିଦ୍ୟମାନ । ବିନାଶଶୀଳ ଜଡ଼ବର୍ଗକୁ ହିଁ ଏଠାରେ ଅବିଦ୍ୟା କୁହାଯାଇଛି ଏବଂ ଅବିନାଶୀ ଜୀବକୁ ବିଦ୍ୟା ନାମ ଦିଆଯାଇଛି । ଉଭୟ ବିଦ୍ୟା ଓ ଅବିଦ୍ୟା ଉପରେ ଶାସନ କରୁଥିବା ମହେଶ୍ୱର ଏ ଦୁଇଟି ଠାରୁ ସମ୍ପୂର୍ଣ୍ଣ ପୃଥକ୍ ଅଟନ୍ତି । ସେହି ପ୍ରତାପୀ ମହେଶ୍ୱର ଏ ଜଗତରେ ସମଷ୍ଟିଭୂତ ଓ ଇନ୍ଦ୍ରିୟବର୍ଗରୂପୀ ପ୍ରତ୍ୟେକ ଜାଲକୁ ଅନେକ ପ୍ରକାରେ ରଚନା କରି ତାହାକୁ ବିସ୍ତାର କରନ୍ତି । ଶେଷରେ ସଂହାର କରି ଅନେକକୁ ପୁନଃ ଏକ କରିଦିଅନ୍ତି । ପୁନଶ୍ଚ ସୃଷ୍ଟିକାଳରେ ସମସ୍ତଙ୍କୁ ପୂର୍ବବତ୍ ରଚନା କରି ସମସ୍ତଙ୍କ ଉପରେ ଆଧିପତ୍ୟ ସ୍ଥାପିତ କରନ୍ତି । ଏକମାତ୍ର

---

* ସର୍ବତଃପାଣିପାଦୋଽୟଂ ସର୍ବତୋଽକ୍ଷିଶିରୋମୁଖଃ । ସର୍ବତଃଶ୍ରୁତିମାଁଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ॥
ସର୍ବେନ୍ଦ୍ରିୟଗୁଣାଭାସଃ ସର୍ବେନ୍ଦ୍ରିୟବିବର୍ଜିତଃ । ସର୍ବସ୍ୟ ପ୍ରଭୁରୀଶାନଃ ସର୍ବସ୍ୟ ଶରଣଂ ସୁହୃତ୍ ॥
ଅଚକ୍ଷୁରପି ଯଃ ପଶ୍ୟତ୍ୟକର୍ଣ୍ଣୋଽପି ଶୃଣୋତି ଯଃ । ସର୍ବଂ ବେତ୍ତି ନ ବେତ୍ତାସ୍ୟ ତମାହୁଃ ପୁରୁଷଂ ପରମ୍ ॥
ଅଣୋରଣୀୟାନ୍ମହତୋ ମହୀୟାନୟମବ୍ୟୟଃ । ଗୁହାୟାଂ ନିହିତଶ୍ଚାପି ଜନ୍ତୋରସ୍ୟ ମହେଶ୍ୱରଃ ॥
(ଶି. ପୁ. ବା. ସଂ. ପୂ. ଖ. ୬ । ୨୧–୨୪)

ꕥ ଦ୍ୱୌ ସୁପର୍ଣ୍ଣୌ ଚ ସଯୁଜୌ ସମାନଂ ବୃକ୍ଷମାସ୍ଥିତୌ । ଏକୋଽତ୍ତି ପିପ୍ପଳଂ ସ୍ୱାଦୁ ପରୋଽନଶ୍ନନ୍ ପ୍ରପଶ୍ୟତି ॥
(ଶି. ପୁ. ବା. ସଂ. ପୂ. ଖ. ୬ । ୩୦)

✦ ଛନ୍ଦାଂସି ଯଜ୍ଞାଃ କ୍ରତବୋ ଯଦ୍ଭୂତଂ ଭବ୍ୟମେବ ଚ ॥
ମାୟା ବିଶ୍ୱଂ ସୃଜତ୍ୟସ୍ମିନ୍ନିବିଷ୍ଟୋ ମାୟୟା ପରଃ । ମାୟାଂ ତୁ ପ୍ରକୃତିଂ ବିଦ୍ୟାନ୍ମାୟିନଂ ତୁ ମହେଶ୍ୱରମ୍ ॥
(ଶି. ପୁ. ବା. ସଂ. ପୂ. ଖ. ୬ । ୩୨-୩୩)

ସୂର୍ଯ୍ୟ ଯେପରି ଉପର, ତଳ ଓ ଚତୁଷ୍ପାର୍ଶ୍ୱର ସମସ୍ତ ଦିଗମାନଙ୍କୁ ଆଲୋକିତ କରିବା ସହିତ ନିଜେ ବି ଦେଦୀପ୍ୟମାନ ହୋଇ ରହିଥାଏ, ଠିକ୍ ସେହିପରି ଏହି ଭଜନୀୟ ପରମେଶ୍ୱର ଏକାକୀ ସମସ୍ତ କାରଣରୂପ ପୃଥିବ୍ୟାଦି ତତ୍ତ୍ୱକୁ ନିୟମନ କରନ୍ତି । ଶ୍ରଦ୍ଧା ଓ ଭକ୍ତିଭାବରେ ପ୍ରାପଣୀୟ, ଆଶ୍ରୟରହିତ, ଜଗତର ଉତ୍ପତ୍ତି ଓ ସଂହାରକାରୀ, କଲ୍ୟାଣସ୍ୱରୂପ ଓ ଷୋହଳକଳାର ରଚୟିତା ସେହି ମହାଦେବଙ୍କୁ ଯେଉଁମାନେ ଜାଣନ୍ତି, ସେମାନେ ଶରୀର ବନ୍ଧନରୁ ଅର୍ଥାତ୍ ଜନ୍ମମୃତ୍ୟୁ-ଆବର୍ତ୍ତରୁ ସଦାକାଳ ପାଇଁ ମୁକ୍ତ ହୋଇଯାଆନ୍ତି ।

ସେହି ପରମେଶ୍ୱର ତ୍ରିକାଳରୁ ଅତୀତ, ନିଷ୍କଳ, ସର୍ବଜ୍ଞ, ତ୍ରିଗୁଣାଧୀଶ୍ୱର ଓ ସାକ୍ଷାତ୍ ପରାତ୍ପର ବ୍ରହ୍ମ ଅଟନ୍ତି । ସମସ୍ତ ବିଶ୍ୱ ତାଙ୍କରି ରୂପ । ସେ ସମସ୍ତଙ୍କର ଉତ୍ପତ୍ତିର କାରଣ ହୋଇ ମଧ୍ୟ ସ୍ୱୟଂ ଅଜନ୍ମା, ସ୍ତବନୀୟ, ପ୍ରଜାପାଳକ, ଦେବତାଙ୍କର ମଧ୍ୟ ଦେବତା ଏବଂ ସମଗ୍ର ଜଗତର ପୂଜନୀୟ । ଆମେ ଆମ ହୃଦୟରେ ବିରାଜମାନ ସେହି ପରମେଶ୍ୱରଙ୍କୁ ଉପାସନା କରୁଛୁ । ଯେ କାଳାଦିରୁ ପର, ଯାହାଙ୍କ ଠାରୁ ସମସ୍ତ ପ୍ରପଞ୍ଚ ସୃଷ୍ଟି ହୁଏ, ଯେ ଧର୍ମର ପାଳକ, ପାପର ନାଶକ, ଭୋଗମାନଙ୍କର ସ୍ୱାମୀ ଓ ସମଗ୍ର ବିଶ୍ୱର ଧାମ, ଈଶ୍ୱରଙ୍କ ମଧ୍ୟରେ ପରମ ମହେଶ୍ୱର, ଦେବତାଙ୍କର ପରମ ଦେବତା, ପତିଙ୍କର ମଧ୍ୟ ପରମ ପତି ଓ ଭୁବନେଶ୍ୱରଙ୍କର ମଧ୍ୟ ଈଶ୍ୱର, ସେହି ମହାଦେବଙ୍କୁ ଆମେ ସବୁଠାରୁ ପର ବୋଲି ଜାଣୁ । ତାଙ୍କର ଶରୀରରୂପୀ କାର୍ଯ୍ୟ କିଂବା ଇନ୍ଦ୍ରିୟ ଓ ମନରୂପୀ କରଣ ନାହିଁ; ତାଙ୍କର ସମକକ୍ଷ ଅଥବା ତାଙ୍କଠାରୁ ଅଧିକ ଜଗତରେ ଆଉ କେହି ଥିବାର ଦେଖାଯାଏ ନାହିଁ । ତାଙ୍କର ଜ୍ଞାନ, ବଳ ଓ କ୍ରିୟାରୂପୀ ସ୍ୱାଭାବିକ ପରାଶକ୍ତି ବିଷୟରେ ବେଦରେ ନାନା ପ୍ରକାରେ ଗାନ କରାଯାଇଛି । ସେହି ଶକ୍ତିମାନଙ୍କ ଦ୍ୱାରା ଏ ସମଗ୍ର ବିଶ୍ୱର ରଚନା ହୋଇଛି । ତାଙ୍କର କେହି ସ୍ୱାମୀ ନାହିଁ କି ତାଙ୍କର କିଛି ନିର୍ଦ୍ଦିଷ୍ଟ ଚିହ୍ନ ନାହିଁ କି ତାଙ୍କ ଉପରେ ଆଉ କାହାରି ଶାସନ ନାହିଁ । ସେ ସମସ୍ତ କାରଣର କାରଣ ହୋଇ ସୁଦ୍ଧା ସେଗୁଡ଼ିକର ଅଧୀଶ୍ୱର ଅଟନ୍ତି । ତାଙ୍କର କେହି ଜନ୍ମଦାତା ନାହିଁ କି ତାଙ୍କର ଜନ୍ମ ନାହିଁ, କିଂବା ଜନ୍ମର ମାୟା-ମଳାଦି ହେତୁ ବି ନାହିଁ । ଏକମାତ୍ର ସେହି ପ୍ରଭୁ ହିଁ ସମଗ୍ର ବିଶ୍ୱରେ ସମସ୍ତ ଭୂତଙ୍କ ଠାରେ ଗୁହ୍ୟରୂପରେ ବ୍ୟାପ୍ତ ଅଛନ୍ତି । ସେ ହିଁ ସମସ୍ତ ଭୂତଙ୍କର ଅନ୍ତରାତ୍ମା ଓ ଧର୍ମାଧ୍ୟକ୍ଷ ବୋଲାନ୍ତି । ସେ ସମସ୍ତ ଭୂତଙ୍କ ଭିତରେ ବିରାଜମାନ, ସବୁରି ଦ୍ରଷ୍ଟା, ସାକ୍ଷୀ, ଚେତନ ଓ ନିର୍ଗୁଣ । ସେ ଅଦ୍ୱିତୀୟ ଓ ବଶୀ; ସେ ଅନେକ ବିବଶାତ୍ମା ନିଷ୍କ୍ରିୟ ପୁରୁଷଙ୍କୁ ବଶରେ ରଖିଥାନ୍ତି । ସେ ନିତ୍ୟଙ୍କର ନିତ୍ୟ, ଚେତନଙ୍କର ଚେତନ । ସେ ଅଦ୍ୱିତୀୟ, କାମନାରହିତ ଓ ଅନେକଙ୍କର କାମନା ପୂରଣକାରୀ ଈଶ୍ୱର । ସାଂଖ୍ୟ ଓ ଯୋଗ ଅର୍ଥାତ୍ ଜ୍ଞାନଯୋଗ ଓ ନିଷ୍କାମ କର୍ମଯୋଗ ଦ୍ୱାରା ପ୍ରାପଣୀୟ ସମସ୍ତ କାରଣରୂପ ସେହି ଜଗଦୀଶ୍ୱର ପରମଦେବଙ୍କୁ ଜାଣି ଜୀବ ସମସ୍ତ ପାଶ (ବନ୍ଧନ)ରୁ ମୁକ୍ତ ହୋଇଯାଏ । ସେ ଅଖିଳ ବିଶ୍ୱର ସ୍ରଷ୍ଟା ସର୍ବଜ୍ଞ, ସ୍ୱୟଂ ନିଜ ପ୍ରାକଟ୍ୟର ହେତୁ, ଜ୍ଞାନରୂପ, କାଳର ମଧ୍ୟ ସ୍ରଷ୍ଟା, ସମସ୍ତ ଦିବ୍ୟ ଗୁଣରେ ସମ୍ପନ୍ନ, ପ୍ରକୃତି ଓ ଜୀବାତ୍ମାର ସ୍ୱାମୀ, ସମସ୍ତ ଗୁଣଙ୍କର ଶାସକ ତଥା ସଂସାରବନ୍ଧରୁ ବିମୁକ୍ତକାରୀ । ଯେଉଁ ପରମଦେବ ସର୍ବପ୍ରଥମେ ବ୍ରହ୍ମାଙ୍କୁ ଉତ୍ପନ୍ନ କଲେ ଓ ସ୍ୱୟଂ ତାଙ୍କୁ ବେଦମାନଙ୍କର ଜ୍ଞାନ ଉପଦେଶ ଦେଲେ, ନିଜ ସ୍ୱରୂପବିଷୟକ ବୁଦ୍ଧିକୁ ପ୍ରସନ୍ନ (ବିକଶିତ) କରୁଥିବା ସେହି ପରମେଶ୍ୱର ଶିବଙ୍କୁ ଜାଣି ମୁଁ

ଏ ସଂସାରବନ୍ଧନରୁ ମୁକ୍ତି ପାଇବା ପାଇଁ ତାଙ୍କଠାରେ ଶରଣ ପଶୁଛି ।*

ଏହା ବେଦାନ୍ତଶାସ୍ତ୍ରର ପରମ ଗୋପନୀୟ ଜ୍ଞାନ । ପୂର୍ବକଳ୍ପରେ ମୋତେ ଏହି ଉପଦେଶ ମିଳିଥିଲା । ମୁଁ ବଡ଼ ସୌଭାଗ୍ୟରୁ ବ୍ରହ୍ମାଙ୍କ ମୁଖରୁ ଏ ଜ୍ଞାନ ଲାଭ କରିଥିଲି । ଯେ ଶମ-ଦମରହିତ, ତାକୁ ଏ ପରମ ଉତ୍ତମ ଜ୍ଞାନୋପଦେଶ ଦେବା ଉଚିତ ନୁହେଁ । ନିଜ ପୁତ୍ର ବା ଶିଷ୍ୟ ସଦାଗ୍ରହୀ ନ ହୋଇଥିଲେ ତାକୁ ମଧ୍ୟ ଦେବା ଉଚିତ ନୁହେଁ । ଯାହାର ପରମଦେବ ପରମେଶ୍ୱରଙ୍କ ଠାରେ ପରମ ଭକ୍ତି ଥିବ, ପରମେଶ୍ୱରଙ୍କ ପରି ପରମ ଗୁରୁଙ୍କ ଠାରେ ମଧ୍ୟ ଭକ୍ତି ଥିବ, ସେଭଳି ମହାତ୍ମା ପୁରୁଷଙ୍କ ହୃଦୟରେ ହିଁ ଉକ୍ତ ରହସ୍ୟମୟ ଅର୍ଥ ପ୍ରକାଶିତ ହୁଏ ।୪ ତେଣୁ ସଂକ୍ଷେପରେ ଏ ସିଦ୍ଧାନ୍ତର କଥା ଶୁଣ । ଭଗବାନ ଶିବ ପ୍ରକୃତି ଓ ପୁରୁଷ ଠାରୁ ଅତୀତ । ସେ ହିଁ ସୃଷ୍ଟିକାଳରେ ଜଗତକୁ ରଚନା କରନ୍ତି ଓ ପୁନଃ ସଂହାରକାଳରେ ସମସ୍ତଙ୍କୁ ଆତ୍ମସାତ୍ କରିନିଅନ୍ତି । (ଅଧ୍ୟାୟ ୬)

✫✫✫

## ବ୍ରହ୍ମାଙ୍କ ମୂର୍ଚ୍ଛା, ତାଙ୍କ ମୁଖରୁ ରୁଦ୍ରଦେବଙ୍କ ପ୍ରାକଟ୍ୟ, ସପ୍ରାଣ ହେବାପରେ ବ୍ରହ୍ମାଙ୍କ ଦ୍ୱାରା ଅଷ୍ଟନାମଯୁକ୍ତ ମହେଶ୍ୱରଙ୍କ ସ୍ତୁତି ଏବଂ ରୁଦ୍ରଙ୍କ ଆଜ୍ଞାରେ ସୃଷ୍ଟିସର୍ଜନା

ଏହାପରେ କାଳର ମହିମା, ପ୍ରଳୟ, ବ୍ରହ୍ମାଣ୍ଡର ସ୍ଥିତି ଓ ସର୍ଗ ଇତ୍ୟାଦିର ବର୍ଣ୍ଣନା କରିସାରି ବାୟୁଦେବ କହିଲେ–**ପ୍ରଥମେ ବ୍ରହ୍ମା ପାଞ୍ଚଟି ମାନସପୁତ୍ରଙ୍କୁ ଉତ୍ପନ୍ନ କଲେ । ସେମାନେ ତାଙ୍କରି**

---

* ପରସ୍ତିକାଳାଦକଳଃ ସ ଏବ ପରମେଶ୍ୱରଃ । ସର୍ବବିତ୍ ତ୍ରିଗୁଣାଧୀଶୋ ବ୍ରହ୍ମ ସାକ୍ଷାତ୍ ପରାତ୍ପରଃ ॥
ତଂ ବିଶ୍ୱରୂପମଭବଂ ଭବମୀଡ୍ୟଂ ପ୍ରଜାପତିମ୍ । ଦେବଦେବଂ ଜଗତ୍ପୂଜ୍ୟଂ ସ୍ୱଚିତ୍ତସ୍ଥମୁପାସ୍ମହେ ॥
କାଳାଦିଭିଃ ପରୋ ଯସ୍ମାତ୍ ପ୍ରପଞ୍ଚଃ ପରିବର୍ତ୍ତତେ । ଧର୍ମାବହଂ ପାପନୁଦଂ ଭୋଗେଶଂ ବିଶ୍ୱଧାମ ଚ ॥
ତମୀଶ୍ୱରାଣାଂ ପରମଂ ମହେଶ୍ୱରଂ ତଂ ଦେବତାନାଂ ପରମଂ ଚ ଦୈବତମ୍ ।
ପତିଂ ପତୀନାଂ ପରମଂ ପରସ୍ତାଦ୍ ବିଦାମ ଦେବଂ ଭୁବନେଶ୍ୱରେଶ୍ୱରମ୍ ॥
ନ ତସ୍ୟ ବିଦ୍ୟତେ କାର୍ଯ୍ୟଂ କାରଣଂ ଚ ନ ବିଦ୍ୟତେ । ନ ତତ୍ସମୋଽଧିକଶ୍ଚାପି କ୍ୱଚିଜ୍ଜଗତି ଦୃଶ୍ୟତେ ॥
ପରାସ୍ୟ ବିବିଧା ଶକ୍ତିଃ ଶ୍ରୁତୌ ସ୍ୱାଭାବିକୀ ଶ୍ରୁତା । ଜ୍ଞାନଂ ବଳଂ କ୍ରିୟା ଚୈବ ଯାଭ୍ୟୋ ବିଶ୍ୱମିଦଂ କୃତମ୍ ॥
ନ ତସ୍ୟାସ୍ତି ପତିଃ କଶ୍ଚିନ୍ନୈବ ଲିଙ୍ଗଂ ନ ଚେଶିତା । କାରଣଂ କାରଣାନାଂ ଚ ସ ତେଷାମଧିପାଧିପଃ ॥
ନ ଚାସ୍ୟ ଜନିତା କଶ୍ଚିନ୍ନ ଚ ଜନ୍ମ କୁତଶ୍ଚନ । ନ ଜନ୍ମହେତବସ୍ତଦ୍ୱନ୍ ମଳମାୟାଦିସଂଜ୍ଞିକାଃ ॥
ସ ଏକଃ ସର୍ବଭୂତେଷୁ ଗୂଢ଼ୋ ବ୍ୟାପ୍ତଶ୍ଚ ବିଶ୍ୱତଃ । ସର୍ବଭୂତାନ୍ତରାତ୍ମା ଚ ଧର୍ମାଧ୍ୟକ୍ଷଃ ସ କଥ୍ୟତେ ॥
ସର୍ବଭୂତାଧିବାସଶ୍ଚ ସାକ୍ଷୀ ଚେତା ଚ ନିର୍ଗୁଣଃ । ଏକୋ ବଶୀ ନିଷ୍କ୍ରିୟାଣାଂ ବହୂନାଂ ବିବଶାତ୍ମନାମ୍ ॥
ନିତ୍ୟାନାମପ୍ୟସୌ ନିତ୍ୟଶ୍ଚେତନାନାଂ ଚ ଚେତନଃ । ଏକୋ ବହୂନାଂ ଚ କାମଃ କାମାନୀଶଃ ପ୍ରଯଚ୍ଛତି ॥
ସାଂଖ୍ୟଯୋଗାଧିଗମ୍ୟଂ ଯତ୍ କାରଣଂ ଜଗତାଂ ପତିମ୍ । ଜ୍ଞାତ୍ୱା ଦେବଂ ପଶୁଃ ପାଶୈଃ ସର୍ବୈରେବ ବିମୁଚ୍ୟତେ ॥
ବିଶ୍ୱକୃଦ୍ ବିଶ୍ୱବିଦ୍ ସ୍ୱାତ୍ମଯୋନିଜ୍ଞଃ କାଳକୃଦ୍ ଗୁଣୀ । ପ୍ରଧାନଃ କ୍ଷେତ୍ରଜ୍ଞପତିର୍ଗୁଣେଶଃ ପାଶମୋଚକଃ ॥
ବ୍ରହ୍ମାଣଂ ବିଦଧେ ପୂର୍ବଂ ବେଦାଂଶ୍ଚୋପାଦିଶତ୍ ସ୍ୱୟମ୍ । ଯୋ ଦେବସ୍ତମହଂ ବୁଦ୍ଧ୍ୱା ସ୍ୱାତ୍ମବୁଦ୍ଧିପ୍ରସାଦତଃ ॥
ମୁମୁକ୍ଷୁରସ୍ମାତ୍ ସଂସାରାତ୍ ପ୍ରପଦ୍ୟେ ଶରଣଂ ଶିବମ୍ । (ଶି. ପୁ. ବା. ସଂ. ପୂ. ଖଂ. ୬ । ୫୫–୬୮ ୧/୨)

୪ ଯସ୍ୟ ଦେବେ ପରା ଭକ୍ତିର୍ଯଥା ଦେବେ ତଥା ଗୁରୌ । ତସ୍ୟୈତେ କଥିତା ହ୍ୟର୍ଥାଃ ପ୍ରକାଶନ୍ତେ ମହାତ୍ମନଃ ॥
(ଶି. ପୁ. ବା. ସଂ. ପୂ. ଖଂ. ୬ । ୭୫)

ପରି ଥିଲେ । ସେମାନଙ୍କ ନାମ ହେଲା—ସନକ, ସନନ୍ଦନ, ବିଦ୍ୱାନ୍ ସନାତନ, ଋଭୁ ଓ ସନତ୍‌କୁମାର । ସେ ସମସ୍ତେ ଥିଲେ ଯୋଗୀ, ବୀତରାଗ ଓ ଈର୍ଷ୍ୟାଦୋଷରୁ ମୁକ୍ତ । ସେମାନଙ୍କ ମନ ଈଶ୍ୱର-ଚିନ୍ତନରେ ନିମଗ୍ନ ରହୁଥିଲା । ଏଣୁ ସେମାନେ ସୃଷ୍ଟିରଚନା ପାଇଁ ଇଚ୍ଛା କଲେ ନାହିଁ । ସୃଷ୍ଟିକର୍ମରୁ ବିରତ ହୋଇ ସେମାନେ ଗ୍ଲିଯିବା ପରେ ବ୍ରହ୍ମା ସୃଷ୍ଟି ଇଚ୍ଛାରେ ବହୁତ ବଡ଼ ତପସ୍ୟା କଲେ । ଏପରି ଦୀର୍ଘକାଳୀନ ତପସ୍ୟା କରିବା ସତ୍ତ୍ୱେ ତାଙ୍କର ଉଦ୍ଦେଶ୍ୟ ସଫଳ ନ ହେବାରୁ ତାଙ୍କ ମନରେ ବହୁତ ଦୁଃଖ ହେଲା । ପୁଣି ଦୁଃଖରୁ କ୍ରୋଧ ପ୍ରକଟ ହେଲା । କ୍ରୋଧାବିଷ୍ଟ ବ୍ରହ୍ମାଙ୍କ ଚକ୍ଷୁଦ୍ୱୟରୁ ଅଶ୍ରୁବିନ୍ଦୁମାନ ଝରିପଡ଼ିଲା ଏବଂ ସେଥିରୁ ଭୂତ-ପ୍ରେତ ଉତ୍ପନ୍ନ ହେଲେ । ଅଶ୍ରୁରୁ ଉତ୍ପନ୍ନ ଭୂତ-ପ୍ରେତଙ୍କୁ ଦେଖି ବ୍ରହ୍ମା ନିଜକୁ ନିନ୍ଦା କରିବାକୁ ଲାଗିଲେ । ସେତେବେଳେ କ୍ରୋଧ ଓ ମୋହ ହେତୁ ସେ ମୂର୍ଚ୍ଛିତ ହୋଇଗଲେ । କ୍ରୋଧାବିଷ୍ଟ ବ୍ରହ୍ମା ମୂର୍ଚ୍ଛିତ ହୋଇ ପ୍ରାଣତ୍ୟାଗ କରିଦେଲେ । ସେତିକିବେଳେ ପ୍ରାଣମାନଙ୍କ ସ୍ୱାମୀ ଭଗବାନ ନୀଳଲୋହିତ ରୁଦ୍ର ବ୍ରହ୍ମାଙ୍କ ଉପରେ ଅନୁପମ କୃପାବୃଷ୍ଟି କରିବା ନିମନ୍ତେ ତାଙ୍କ ମୁଖରୁ ପ୍ରକଟ ହେଲେ । ଜଗଦୀଶ୍ୱର ପ୍ରଭୁ ନିଜକୁ ଏଗାରଟି ରୂପରେ ପ୍ରକଟ କଲେ । ମହାଦେବ ନିଜର ସେହି ଏକାଦଶ ରୂପଙ୍କୁ କହିଲେ—"ମୁଁ ଜଗତ ପ୍ରତି ଅନୁଗ୍ରହ କରିବା ନିମନ୍ତେ ତୁମମାନଙ୍କୁ ସୃଷ୍ଟି କଲି, ତେଣୁ ତୁମେ ଆଳସ୍ୟରହିତ ହୋଇ ସମଗ୍ର ଭୁବନର ସ୍ଥାପନା, ହିତସାଧନ ଓ ପ୍ରଜା-ସନ୍ତାନବୃଦ୍ଧି ନିମନ୍ତେ ପ୍ରଯତ୍ନ କର ।"

ମହେଶ୍ୱର ଏପରି କହିବାରୁ ସେମାନେ କାନ୍ଦିବା ସହିତ ଗ୍ରିଆଡ଼କୁ ଦୌଡ଼ିବାକୁ ଲାଗିଲେ । ରୋଦନ କରିବାରୁ ଓ ଦୌଡ଼ିବାରୁ ସେମାନଙ୍କ ନାମ 'ରୁଦ୍ର' ହେଲା । ରୁଦ୍ରମାନେ ହିଁ ପ୍ରାଣ ଏବଂ ପ୍ରାଣମାନେ ହିଁ ରୁଦ୍ର । ତା'ପରେ ବ୍ରହ୍ମପୁତ୍ର ମହେଶ୍ୱର ଦୟା କରି ମୃତ ଦେବତା ପରମେଷ୍ଠୀ ବ୍ରହ୍ମାଙ୍କୁ ପୁନଃ ପ୍ରାଣଦାନ କଲେ । ବ୍ରହ୍ମାଙ୍କ ଶରୀରରେ ପ୍ରାଣସଂଗ୍ରର ହେବାରୁ ରୁଦ୍ରଦେବଙ୍କ ମୁଖ ପ୍ରସନ୍ନତାରେ ଉଲ୍ଲସିତ ହୋଇ ଉଠିଲା । ବିଶ୍ୱନାଥ ବ୍ରହ୍ମାଙ୍କୁ ଏହିପରି କହିଲେ—"ହେ ସୁବ୍ରତ ! ହେ ଜଗଦ୍‌ଗୁରୁ ମହାଭାଗ ବିରିଞ୍ଚି ! ଭୟ କର ନାହିଁ । ମୁଁ ତୁମକୁ ନବଜୀବନ ପ୍ରଦାନ କରିଛି, ତେଣୁ ସୁଖପୂର୍ବକ ଉଠ ।" ବ୍ରହ୍ମା ସ୍ୱପ୍ନରେ ଶୁଣିଲା ପରି ସେହି ମନୋହର କଥାକୁ ଶୁଣି ପ୍ରସ୍ଫୁଟିତ ପଦ୍ମ ସଦୃଶ ନେତ୍ରରେ ଧୀରେ ଧୀରେ ଭଗବାନ ହରଙ୍କ ଆଡ଼କୁ ଗ୍ହିଁଲେ । ତାଙ୍କ ପ୍ରାଣ ପୂର୍ବପରି ଫେରି ଆସିଥିଲା । ତେଣୁ ସେ କର ଯୋଡ଼ି ସ୍ନେହସିକ୍ତ ଗମ୍ଭୀର ବାଣୀରେ କହିଲେ—"ପ୍ରଭୋ ! ଆପଣ ଦର୍ଶନମାତ୍ରକେ ମୋର ମନକୁ ଆନନ୍ଦପ୍ରଦାନ କରୁଅଛନ୍ତି, ତେଣୁ ମୋତେ କୁହନ୍ତୁ ଯେ ଆପଣ କିଏ? ଯେଉଁ ଭଗବାନ ସମସ୍ତ ଜଗତ ରୂପରେ ସ୍ଥିତ, ଆପଣ କଣ ସେହି ଭଗବାନ ହିଁ ଏପରି ଏକାଦଶ ରୂପରେ ଅଭିବ୍ୟକ୍ତ ହୋଇଛନ୍ତି ।"

ତାଙ୍କ କଥା ଶୁଣି ଦେବଗଣଙ୍କ ସ୍ୱାମୀ ମହେଶ୍ୱର ନିଜର ପରମ ସୁଖଦାୟକ କରକମଳ ଦ୍ୱାରା ବ୍ରହ୍ମାଙ୍କୁ ସ୍ପର୍ଶ କରିବା ସହ କହିଲେ—"ଦେବ ! ତୁମେ ଜାଣିବା ଉଚିତ ଯେ ମୁଁ ପରମାତ୍ମା ହିଁ ଏବେ ତୁମର ପୁତ୍ର ହୋଇ ପ୍ରକଟ ହୋଇଛି । ଏ ଏକାଦଶ ରୁଦ୍ର ତୁମ ସୁରକ୍ଷା ଦୃଷ୍ଟିରୁ ଏଠାକୁ ଆସିଛନ୍ତି । ତେଣୁ ତୁମେ ମୋ ଅନୁଗ୍ରହରୁ ଏ ତୀବ୍ର ମୂର୍ଚ୍ଛା ତ୍ୟାଗ କରି ଜାଗ୍ରତ ହୁଅ ଏବଂ ପୂର୍ବବତ୍ ପ୍ରଜାସୃଷ୍ଟି କର ।"

ଭଗବାନ ଶିବ ଏପରି କହିବାରୁ ବିଶ୍ୱାତ୍ମା ବ୍ରହ୍ମାଙ୍କ ମନ ଅତ୍ୟନ୍ତ ପ୍ରସନ୍ନ ହେଲା । ସେ ଆଠଟି ନାମ ଦ୍ୱାରା ପରମେଶ୍ୱର ଶିବଙ୍କୁ ସ୍ତୁତି କଲେ ।

ବ୍ରହ୍ମା କହିଲେ–ଭଗବନ୍ ! ରୁଦ୍ର ! ଆପଣଙ୍କ ତେଜ ଅସଂଖ୍ୟ ସୂର୍ଯ୍ୟଙ୍କ ତୁଲ୍ୟ ଅନନ୍ତ । ଆପଣଙ୍କୁ ନମସ୍କାର । ରସସ୍ୱରୂପ ଓ ଜଳମୟ ରୂପଧାରୀ ଭବଙ୍କୁ ନମସ୍କାର । ନନ୍ଦୀ ଓ ସୁରଭି (କାମଧେନୁ) ଆପଣଙ୍କର ହିଁ ସ୍ୱରୂପ । ଆପଣ ପୃଥିବୀରୂପଧାରୀ ଶର୍ବ, ଆପଣଙ୍କୁ ନମସ୍କାର । ସ୍ପର୍ଶମୟ ବାୟୁରୂପଧାରୀ ଆପଣଙ୍କୁ ନମସ୍କାର । ଆପଣ ହିଁ ବସୁରୂପଧାରୀ ଈଶ, ଆପଣଙ୍କୁ ନମସ୍କାର । ଅତ୍ୟନ୍ତ ତେଜସ୍ୱୀ ଅଗ୍ନିରୂପ ପଶୁପତିଙ୍କୁ ନମସ୍କାର । ଆପଣ ଶବ୍ଦତନ୍ମାତ୍ରଯୁକ୍ତ ଆକାଶରୂପଧାରୀ ଭୀମଦେବ, ଆପଣଙ୍କୁ ନମସ୍କାର । ଆପଣ ସୋମରୂପ ଅମୃତମୂର୍ତ୍ତି ମହାଦେବ, ଆପଣଙ୍କୁ ନମସ୍କାର । ଆପଣ ଏହିପ୍ରକାର ଅଷ୍ଟମୂର୍ତ୍ତି ଓ ଅଷ୍ଟନାମଧାରୀ ଭଗବାନ, ଆପଣଙ୍କୁ ମୋର ନମସ୍କାର ।*

ଏହିରୂପେ ବିଶ୍ୱନାଥ ମହାଦେବଙ୍କୁ ସ୍ତୁତି କରି ଲୋକପିତାମହ ବ୍ରହ୍ମା ପ୍ରଣାମପୂର୍ବକ ତାଙ୍କୁ ପ୍ରାର୍ଥନା କଲେ–"ହେ ଭୂତ, ଭବିଷ୍ୟ ଓ ବର୍ତ୍ତମାନର ସ୍ୱାମୀ ! ହେ ମୋର ପୁତ୍ର ଭଗବାନ ମହେଶ୍ୱର ! ହେ କାମନାଶନ ! ଆପଣ ସୃଷ୍ଟି ନିମନ୍ତେ ମୋ ଶରୀରରୁ ଉତ୍ପନ୍ନ ହୋଇଛନ୍ତି, ତେଣୁ ହେ ଜଗତ୍‌ପ୍ରଭୋ ! ଏ ମହାନ୍ କାର୍ଯ୍ୟରେ ସଂଲଗ୍ନ ହୋଇଥିବା ମୋତେ ଆପଣ ସର୍ବତ୍ର ସହାୟତା କରନ୍ତୁ ଏବଂ ସ୍ୱୟଂ ମଧ୍ୟ ପ୍ରଜା ସୃଷ୍ଟି କରନ୍ତୁ ।"

ବ୍ରହ୍ମା ଏପରି ପ୍ରାର୍ଥନା କରିବାରୁ କଲ୍ୟାଣକାରୀ, ତ୍ରିପୁରନାଶକ ରୁଦ୍ରଦେବ ତାଙ୍କ କଥାକୁ ମାନିନେଲେ । ତା'ପରେ ବ୍ରହ୍ମା ପ୍ରସନ୍ନଚିତ୍ତ ମହାଦେବଙ୍କୁ ଅଭିନନ୍ଦନ କରି ଏବଂ ସୃଷ୍ଟି ନିମନ୍ତେ ତାଙ୍କ ଆଜ୍ଞା ପାଇ ଅନ୍ୟାନ୍ୟ ପ୍ରଜାସୃଷ୍ଟି ଆରମ୍ଭ କଲେ । ସେ ନିଜ ମନରୁ ମରୀଚି, ଭୃଗୁ, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ଦକ୍ଷ, ଅତ୍ରି ଓ ବଶିଷ୍ଠଙ୍କୁ ସୃଷ୍ଟି କଲେ । ଏ ସମସ୍ତେ ବ୍ରହ୍ମାଙ୍କ ପୁତ୍ର ବୋଲି କଥିତ ହୁଅନ୍ତି । ଧର୍ମ, ସଂକଳ୍ପ ଓ ରୁଦ୍ରଙ୍କୁ ମିଶାଇଲେ ଏମାନଙ୍କ ସଂଖ୍ୟା ବାର ହୁଏ । ଏମାନେ ସବୁ ପୁରୁଣା ଗୃହସ୍ଥ । ଦେବଗଣଙ୍କ ସମେତ ଏମାନଙ୍କର ବାରଟି ଦିବ୍ୟ ବଂଶ ରହିଛି, ଯାହା ପ୍ରଜାବାନ୍, କ୍ରିୟାବାନ୍ ଓ ମହର୍ଷିଙ୍କ ଦ୍ୱାରା ଅଲଂକୃତ । ତା'ପରେ ରୁଦ୍ରସମେତ ବ୍ରହ୍ମା ଜଳରେ ସ୍ଥିତ ହୋଇ ଦେବତା, ଅସୁର, ପିତୃଗଣ ଓ ମନୁଷ୍ୟଙ୍କୁ ସୃଷ୍ଟି କରିବାକୁ ଚିନ୍ତା କଲେ । ବ୍ରହ୍ମା ସୃଷ୍ଟି ନିମନ୍ତେ ସମାଧିସ୍ଥ ହୋଇ ଚିତ୍ତକୁ ଏକାଗ୍ର କଲେ । ତା'ପରେ ମୁଖରୁ ଦେବତାଙ୍କୁ, କୁକ୍ଷିରୁ ପିତୃଗଣଙ୍କୁ, କଟିର ସମ୍ମୁଖ ଭାଗରୁ ଅସୁରଙ୍କୁ ଏବଂ ପ୍ରଜନନେନ୍ଦ୍ରିୟ(ଲିଙ୍ଗ)ରୁ ସମସ୍ତ ମନୁଷ୍ୟଙ୍କୁ ଉତ୍ପନ୍ନ କଲେ । ତାଙ୍କର ଗୁଦସ୍ଥାନରୁ ରାକ୍ଷସ ଉତ୍ପନ୍ନ ହେଲେ, ଯେଉଁମାନେ ସଦା କ୍ଷୁଧାରେ ବ୍ୟାକୁଳ ରହିଥାନ୍ତି । ସେମାନଙ୍କ ଠାରେ ତମୋଗୁଣ ଓ ରଜୋଗୁଣର ପ୍ରାଧାନ୍ୟ ରହିଥାଏ । ସେମାନେ ରାତ୍ରିରେ ବିଚରଣ କରନ୍ତି ଏବଂ ବଳବାନ୍ ହୋଇଥାନ୍ତି । ସର୍ପ, ଯକ୍ଷ, ଭୂତ ଓ ଗନ୍ଧର୍ବ ମଧ୍ୟ ବ୍ରହ୍ମାଙ୍କ ଅଙ୍ଗରୁ ଉତ୍ପନ୍ନ ହେଲେ । ତାଙ୍କର ପକ୍ଷଭାଗରୁ ପକ୍ଷୀ ଉତ୍ପନ୍ନ ହେଲେ । ବକ୍ଷଃସ୍ଥଳରୁ ସ୍ଥାବର ପ୍ରାଣୀଙ୍କର ଜନ୍ମ ହେଲା । ମୁଖରୁ ଛାଗଳ ଓ ପାର୍ଶ୍ୱଭାଗରୁ ଭୁଜଙ୍ଗମାନଙ୍କର ଉତ୍ପତ୍ତି ହେଲା ।

---

* ବ୍ରହ୍ମୋବାଚ–

ନମସ୍ତେ ଭଗବନ୍ ରୁଦ୍ର ଭାସ୍କରାମିତତେଜସେ । ନମୋ ଭବାୟ ଦେବାୟ ରସାୟାମ୍ବୁମୟାତ୍ମନେ ॥
ଶର୍ବାୟ କ୍ଷିତିରୂପାୟ ନନ୍ଦୀସୁରଭୟେ ନମଃ । ଈଶାୟ ବସବେ ତୁଭ୍ୟଂ ନମଃ ସ୍ପର୍ଶମୟାତ୍ମନେ ॥
ପଶୂନାଂ ପତୟେ ଚୈବ ପାବକାୟାତିତେଜସେ । ଭୀମାୟ ବ୍ୟୋମରୂପାୟ ଶବ୍ଦମାତ୍ରାୟ ତେ ନମଃ ॥
ଉଗ୍ରାୟୋଗ୍ରସ୍ୱରୂପାୟ ଯଜମାନାତ୍ମନେ ନମଃ । ମହାଶିବାୟ ସୋମାୟ ନମସ୍ତ୍ୱମୃତମୂର୍ତ୍ତୟେ ॥
(ଶି. ପୁ. ବା. ସଂ. ପୂ. ଖ. ୧୨ । ୪୧–୪୪)

ଉଭୟ ପାଦରୁ ଘୋଡ଼ା, ହାତୀ, ଶରଭ, ନୀଳଗାଈ, ମୃଗ, ଓଟ, ଖଚ୍ଚର, ଶିଙ୍ଗଯୁକ୍ତ ହରିଣ ଓ ପଶୁଜାତିର ଅନ୍ୟାନ୍ୟ ପ୍ରାଣୀ ଉତ୍ପନ୍ନ ହେଲେ । ରୋମାବଳୀରୁ ଓଷଧିଗଣ ଓ ଫଳ-ମୂଳ ଉତ୍ପନ୍ନ ହେଲା । ବ୍ରହ୍ମାଙ୍କ ପୂର୍ବବର୍ତ୍ତୀ ମୁଖରୁ ଗାୟତ୍ରୀ ଛନ୍ଦ, ଋଗ୍‌ବେଦ, ତ୍ରିବୃତ୍ ସ୍ତୋମ, ରଥନ୍ତର ସାମ ଓ ଅଗ୍ନିଷ୍ଟୋମ ନାମକ ଯଜ୍ଞ ଉତ୍ପନ୍ନ ହେଲା । ତାଙ୍କର ଦକ୍ଷିଣ ମୁଖରୁ ଯଜୁର୍ବେଦ, ତ୍ରିଷ୍ଟୁପ୍ ଛନ୍ଦ, ପଞ୍ଚଦଶ ସ୍ତୋମ, ବୃହତ୍‌ସାମ ଓ ଉକ୍ଥ ନାମକ ଯଜ୍ଞ ଉତ୍ପନ୍ନ ହେଲା । ତାଙ୍କ ପଶ୍ଚିମ ମୁଖରୁ ସାମବେଦ, ଜଗତୀ ଛନ୍ଦ, ସପ୍ତଦଶ ସ୍ତୋମ, ବୈରୂପ୍ୟ ସାମ ଓ ଅତିରାତ୍ର ନାମକ ଯଜ୍ଞ ଉତ୍ପନ୍ନ ହେଲା । ତାଙ୍କର ଉତ୍ତରବର୍ତ୍ତୀ ମୁଖରୁ ଏକବିଂଶ ସ୍ତୋମ, ଅଥର୍ବବେଦ, ଆପ୍ତୋର୍ଯାମ ନାମକ ଯାଗ, ଅନୁଷ୍ଟୁପ୍ ଛନ୍ଦ ଓ ବୈରାଜ ନାମକ ସାମର ଆବିର୍ଭାବ ହେଲା । ତାଙ୍କ ଅଙ୍ଗରୁ ଆହୁରି ବହୁତ ପ୍ରକାର ଛୋଟ ଛୋଟ ପ୍ରାଣୀ ଉତ୍ପନ୍ନ ହେଲେ । ସେ ଯକ୍ଷ, ପିଶାଚ, ଗନ୍ଧର୍ବ, ଅପ୍ସରାଙ୍କ ସମୁଦାୟ, ମନୁଷ୍ୟ, କିଂନର, ରାକ୍ଷସ, ପକ୍ଷୀ, ପଶୁ, ମୃଗ ଓ ସର୍ପାଦି ସମସ୍ତ ନିତ୍ୟ ଓ ଅନିତ୍ୟ ସ୍ଥାବର-ଜଙ୍ଗମ ଜଗତକୁ ସୃଷ୍ଟି କଲେ । ସେମାନେ ସମସ୍ତେ ପୂର୍ବ-କଳ୍ପମାନଙ୍କରେ ଯେଉଁପରି କର୍ମରେ ଅଭ୍ୟସ୍ତ ଥିଲେ, ପୁନଃ ପୁନଃ ସୃଷ୍ଟି ହେବା ପରେ ସେହିପରି କର୍ମକୁ ଆଦରି ନେଲେ । ସେତେବେଳେ ସେମାନେ ପୂର୍ବଭାବରେ ଭାବିତ ହୋଇ ହିଂସା-ଅହିଂସାରେ ଯୁକ୍ତ ମୃଦୁ-କଠୋର, ଧର୍ମ-ଅଧର୍ମ ଓ ସତ୍ୟ-ମିଥ୍ୟା କର୍ମକୁ ଆଦରି ନିଅନ୍ତି; କାରଣ ପୂର୍ବ ବାସନାର ଅନୁକୂଳ କର୍ମ ହିଁ ସେମାନଙ୍କୁ ଭଲ ଲାଗିଥାଏ ।

ପୁନଶ୍ଚ ବିଧାତା ନିଜେ ଇନ୍ଦ୍ରିୟଙ୍କ ବିଷୟ, ଭୂତ ଓ ଶରୀର ଆଦିରେ ବିଭିନ୍ନତା ଓ ବ୍ୟବହାର ସୃଷ୍ଟି କଲେ । ପିତାମହ କଳ୍ପ ଆରମ୍ଭରେ ଦେବାଦି ପ୍ରାଣୀଙ୍କ ନାମ, ରୂପ ଓ କାର୍ଯ୍ୟବିସ୍ତାରକୁ ବେଦୋକ୍ତ ବର୍ଣ୍ଣନାନୁସାରେ ନିର୍ଦ୍ଧାରିତ କଲେ । ଋଷିମାନଙ୍କ ନାମ ଓ ଜୀବିକା-କର୍ମ ବେଦାନୁସାରେ ହିଁ ସ୍ଥିର କଲେ । ତାଙ୍କର ରାତ୍ରି ବିତିଯିବାରୁ ଅଜନ୍ମା ବ୍ରହ୍ମା ସ୍ୱରଚିତ ପ୍ରାଣୀଙ୍କୁ ସେହି ନାମ ଓ କର୍ମ ପ୍ରଦାନ କଲେ, ଯାହା ପୂର୍ବକଳ୍ପରେ ସେମାନଙ୍କୁ ପ୍ରାପ୍ତ ହୋଇଥିଲା । ଯେପରି ଭିନ୍ନ ଭିନ୍ନ ଋତୁ ପୁନଃ ପୁନଃ ଆସୁଥିଲେ ମଧ୍ୟ ସେଗୁଡ଼ିକର ଲକ୍ଷଣ ଓ ନାମରୂପାଦି ପୂର୍ବବତ୍ ରହିଥାଏ, ସେହିପରି ଯୁଗାଦି କାଳରେ ମଧ୍ୟ ସେମାନଙ୍କର ପୂର୍ବଭାବ ହିଁ ଦୃଷ୍ଟିଗୋଚର ହୋଇଥାଏ । ଏହିରୂପେ ସ୍ୱୟମ୍ଭୂ ବ୍ରହ୍ମାଙ୍କ ଲୋକସୃଷ୍ଟି ତାଙ୍କର ବିଭିନ୍ନ ଅଙ୍ଗରୁ ଉତ୍ପନ୍ନ ହେଲା । ମହତ୍ ଠାରୁ ଆରମ୍ଭ କରି ବିଶେଷ ପର୍ଯ୍ୟନ୍ତ ସବୁ କିଛି ପ୍ରକୃତିର ବିକାର । ଏହି ପ୍ରାକୃତ ଜଗତ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ପ୍ରଭାରେ ଉଦ୍ଭାସିତ, ଗ୍ରହ ଓ ନକ୍ଷତ୍ରରେ ମଣ୍ଡିତ, ନଦୀ, ପର୍ବତ ଓ ସମୁଦ୍ରମାନଙ୍କ ଦ୍ୱାରା ଅଳଂକୃତ ଏବଂ ବିଭିନ୍ନ ରମଣୀୟ ନଗର ତଥା ସମୃଦ୍ଧିଶାଳୀ ଜନପଦଗୁଡ଼ିକ ଦ୍ୱାରା ସୁଶୋଭିତ ଅଟେ । ଏହାକୁ ବ୍ରହ୍ମାଙ୍କର ବନ ବା ବ୍ରହ୍ମବୃକ୍ଷ କହନ୍ତି ।

ସେହି ବ୍ରହ୍ମବନରେ ଅବ୍ୟକ୍ତ ଏବଂ ସର୍ବଜ୍ଞ ବ୍ରହ୍ମା ବିଚରଣ କରନ୍ତି । ଉକ୍ତ ସନାତନ ବ୍ରହ୍ମବୃକ୍ଷ ଅବ୍ୟକ୍ତରୂପୀ ବୀଜରୁ ପ୍ରକଟ ଓ ଈଶ୍ୱରଙ୍କ ଅନୁଗ୍ରହରେ ସ୍ଥିତ ଅଟେ । ବୁଦ୍ଧି ଏହାର ସ୍କନ୍ଧ ଓ ବଡ଼ ବଡ଼ ଡାଳ । ଇନ୍ଦ୍ରିୟ କୋରଡ଼ । ମହାଭୂତ ଏହାର ସୀମା । ବିଶେଷ ପଦାର୍ଥ ଏହାର ନିର୍ମଳ ପତ୍ର । ଏଥିରେ ସୁଖ ଓ ଦୁଃଖ ରୂପୀ ଫଳ ଫଳେ ଏବଂ ଏହା ସମସ୍ତ ଭୂତଙ୍କ ଜୀବନର ଆଶ୍ରୟ । ଅଚିନ୍ତ୍ୟସ୍ୱରୂପ ମହେଶ୍ୱର ହିଁ ସମସ୍ତ ଭୂତଙ୍କ ନିର୍ମାତା । ବ୍ରାହ୍ମଣମାନେ ଦ୍ୟୁଲୋକକୁ ତାଙ୍କର ମସ୍ତକ, ଆକାଶକୁ ନାଭି, ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ନେତ୍ର, ଦିଗମାନଙ୍କୁ କାନ ଓ ପୃଥିବୀକୁ ତାଙ୍କର ପାଦ ବୋଲି କହନ୍ତି । ତାଙ୍କ ମୁଖରୁ

ବ୍ରାହ୍ମଣ ପ୍ରକଟ ହେଲେ । ବକ୍ଷଃସ୍ଥଳର ଉପରି ଭାଗରୁ କ୍ଷତ୍ରିୟ ଉତ୍ପନ୍ନ ହେଲେ, ଦୁଇ ଜଙ୍ଘରୁ ବୈଶ୍ୟ ଓ ଦୁଇ ପାଦରୁ ଶୂଦ୍ର ଉତ୍ପନ୍ନ ହେଲେ । ଏହିରୂପେ ତାଙ୍କ ଅଙ୍ଗରୁ ହିଁ ସମସ୍ତ ବର୍ଣ୍ଣର ଉତ୍ପତ୍ତି ହେଲା ।

(ଅଧ୍ୟାୟ ୭–୧୨)

★★★

## ବ୍ରହ୍ମାଙ୍କ ମୁଖରୁ ଭଗବାନ ରୁଦ୍ରଙ୍କର ପ୍ରାକଟ୍ୟ ହେବାର ରହସ୍ୟ, ରୁଦ୍ରଙ୍କ ମହାମହିମ ସ୍ୱରୂପର ବର୍ଣ୍ଣନା, ତାଙ୍କ ଦ୍ୱାରା ରୁଦ୍ରଗଣଙ୍କ ସୃଷ୍ଟି ତଥା ବ୍ରହ୍ମା ବାରଣ କରିବାରୁ ତାଙ୍କର ସୃଷ୍ଟିକର୍ମରୁ ବିରତ ହେବା ପ୍ରସଙ୍ଗ

ଋଷିମାନେ କହିଲେ–ପ୍ରଭୋ ! ଆପଣ ଚତୁରାନନ ବ୍ରହ୍ମାଙ୍କ ମୁଖରୁ ପରମାତ୍ମା ରୁଦ୍ରଦେବ ସୃଷ୍ଟି ହେଲେ ବୋଲି କହିବାରୁ ଆମର ସଂଶୟ ହେଉଛି । ଯେଉଁ ରୁଦ୍ର ପ୍ରଳୟକାଳରେ କୁପିତ ହୋଇ ବ୍ରହ୍ମା, ବିଷ୍ଣୁ ଓ ଅଗ୍ନିସମେତ ସମସ୍ତ ଭୁବନକୁ ସଂହାର କରିଦିଅନ୍ତି, ଯାହାଙ୍କୁ ବ୍ରହ୍ମା ଓ ବିଷ୍ଣୁ ଭୟରେ ପ୍ରଣାମ କରନ୍ତି, ପୁଣି ଯେଉଁ ଲୋକସଂହାରକ ମହେଶ୍ୱରଙ୍କ ବଶରେ ସେ ଦୁହେଁ ସଦା ରହିଥାନ୍ତି, ଯେଉଁ ମହାଦେବ ପୂର୍ବକାଳରେ ବ୍ରହ୍ମା ଓ ବିଷ୍ଣୁଙ୍କୁ ନିଜ ଶରୀରରୁ ପ୍ରକଟ କରିଥିଲେ, ପୁଣି ଯେଉଁ ପ୍ରଭୁ ସଦା ସେ ଦୁହିଙ୍କର ଯୋଗକ୍ଷେମ ନିର୍ବହନ କରିଥାନ୍ତି, ସେହି ଆଦିଦେବ ପୁରାତନ ପୁରୁଷ ଭଗବାନ ରୁଦ୍ର ଅବ୍ୟକ୍ତଜନ୍ମା ବ୍ରହ୍ମାଙ୍କ ପୁତ୍ର କିପରି ହେଲେ? ତାତ ! ଭଗବାନ ବ୍ରହ୍ମା ମୁନିଗଣଙ୍କୁ ଯେଉଁ କଥା କହିଥିଲେ, ତାହା ଆମ୍ଭମାନଙ୍କୁ କହନ୍ତୁ । ଭଗବାନ ଶିବଙ୍କ ଉତ୍ତମ ଯଶ ଶ୍ରବଣ କରିବା ପାଇଁ ଆମ ହୃଦୟରେ ବହୁତ ଶ୍ରଦ୍ଧା ରହିଛି ।

ବାୟୁଦେବ କହିଲେ–ହେ ବ୍ରାହ୍ମଣବୃନ୍ଦ ! ତୁମେମାନେ ଅତ୍ୟନ୍ତ ଜିଜ୍ଞାସୁ । ସେଥିପାଇଁ ଏପରି ପ୍ରଶ୍ନ କଲ । ମୁଁ ମଧ୍ୟ ପୂର୍ବକାଳରେ ପିତାମହ ବ୍ରହ୍ମାଙ୍କ ସମକ୍ଷରେ ଏହି ପ୍ରଶ୍ନ କରିଥିଲି । ଉତ୍ତରରେ ପିତାମହ ମୋତେ ଯାହା କିଛି କହିଥିଲେ, ତାହା ମୁଁ ତୁମମାନଙ୍କ ଆଗରେ କହିବି । ଯେପରି ରୁଦ୍ରଦେବ ଉତ୍ପନ୍ନ ହେଲେ ଏବଂ ଯେଉଁ ଉପାୟରେ ବ୍ରହ୍ମା ଓ ବିଷ୍ଣୁଙ୍କର ଉତ୍ପତ୍ତି ହେଲା, ସେହି ବିଷୟ ମୁଁ କହୁଛି । ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର–ଏ ତିନିହେଁ ହେଉଛନ୍ତି କାରଣାତ୍ମା । ସେମାନେ ଯଥାକ୍ରମେ ସଚରାଚର ଜଗତର ସୃଷ୍ଟି, ପାଳନ ଓ ସଂହାରର ହେତୁ ଅଟନ୍ତି ଏବଂ ସାକ୍ଷାତ୍ ମହେଶ୍ୱରଙ୍କ ଠାରୁ ପ୍ରକଟ ହୋଇଛନ୍ତି । ସେମାନଙ୍କ ଠାରେ ପରମ ଐଶ୍ୱର୍ଯ୍ୟ ବିଦ୍ୟମାନ । ସେମାନେ ପରମଶ୍ୱେରଙ୍କ ପ୍ରତି ଭାବିତ ଓ ତାଙ୍କ ଶକ୍ତିରେ ଅଧିଷ୍ଠିତ ହୋଇ ସଦା ତାଙ୍କରି କାର୍ଯ୍ୟ କରିବାକୁ ସକ୍ଷମ ହୋଇଥାନ୍ତି । ପୂର୍ବକାଳରେ ପିତା ମହେଶ୍ୱର ହିଁ ସେହି ତିନି ଜଣଙ୍କୁ ତିନୋଟି କର୍ମରେ ନିଯୁକ୍ତ କରିଥିଲେ । ବ୍ରହ୍ମା ସୃଷ୍ଟିକାର୍ଯ୍ୟରେ, ବିଷ୍ଣୁ ରକ୍ଷାକାର୍ଯ୍ୟରେ ଓ ରୁଦ୍ର ସଂହାରକାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । କଳ୍ପାନ୍ତରରେ ପରମେଶ୍ୱର ଶିବଙ୍କ ପ୍ରସାଦରେ ରୁଦ୍ରଦେବ ବ୍ରହ୍ମାଙ୍କୁ ଓ ନାରାୟଣଙ୍କୁ ସୃଷ୍ଟି କରିଥିଲେ । ଏହିପରି ଅନ୍ୟ କଳ୍ପରେ ଜଗନ୍ମୟ ବ୍ରହ୍ମା ରୁଦ୍ର ଓ ବିଷ୍ଣୁଙ୍କୁ ଉତ୍ପନ୍ନ କରିଥିଲେ । ପୁନଃ କଳ୍ପାନ୍ତରରେ ଭଗବାନ ବିଷ୍ଣୁ ମଧ୍ୟ ରୁଦ୍ର ଓ ବ୍ରହ୍ମାଙ୍କୁ ସୃଷ୍ଟି କରିଥିଲେ । ପୁନଃ ବ୍ରହ୍ମା ନାରାୟଣଙ୍କୁ ଏବଂ ରୁଦ୍ରଦେବ ବ୍ରହ୍ମାଙ୍କୁ ସୃଷ୍ଟି କରିଥିଲେ । ଏହିରୂପେ ବିଭିନ୍ନ କଳ୍ପରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ପରସ୍ପରଠାରୁ ଉତ୍ପନ୍ନ ହୁଅନ୍ତି ଏବଂ ଜଣେ ଅନ୍ୟର ହିତ ଗ୍ରହାନ୍ତି । ସେହି ସବୁ କଳ୍ପର ବୃତ୍ତାନ୍ତକୁ ନେଇ ମହର୍ଷିଗଣ ସେମାନଙ୍କ ପ୍ରଭାବ ବିଷୟରେ ବର୍ଣ୍ଣନା କରିଥାନ୍ତି ।

ପ୍ରତ୍ୟେକ କଳ୍ପରେ ଭଗବାନ ରୁଦ୍ରଙ୍କ ଆବିର୍ଭାବର ଯାହା କାରଣ ହୁଏ, ତାହା ମୁଁ କହୁଛି । ତାଙ୍କରି ଆବିର୍ଭାବ ହେତୁ ବ୍ରହ୍ମାଙ୍କ ସୃଷ୍ଟିର ପ୍ରବାହ ନିରବଚ୍ଛିନ୍ନ ରୂପରେ ଚ୍ଛଲି ଆସୁଛି । ବ୍ରହ୍ମାଣ୍ଡରୁ ଉତ୍ପନ୍ନ ବ୍ରହ୍ମା ପ୍ରତ୍ୟେକ କଳ୍ପରେ ଯେତେବେଳେ ସୃଷ୍ଟିର ବିସ୍ତାର ନ ହେବା ଫଳରେ ଅତ୍ୟନ୍ତ ଦୁଃଖରେ ମୂର୍ଚ୍ଛିତ ହୋଇଯାଆନ୍ତି, ସେତେବେଳେ ତାଙ୍କ ଦୁଃଖର ପ୍ରଶମନ ତଥା ପ୍ରଜାବର୍ଗର ବୃଦ୍ଧି ପାଇଁ ତତ୍ ତତ୍ କଳ୍ପରେ ରୁଦ୍ରଗଣଙ୍କ ସ୍ୱାମୀ କାଳସ୍ୱରୂପ ନୀଳଲୋହିତ ମହେଶ୍ୱର ରୁଦ୍ର ଆପଣା କାରଣଭୂତ ପରମେଶ୍ୱରଙ୍କ ଆଜ୍ଞାରେ ବ୍ରହ୍ମାଙ୍କ ପୁତ୍ର ହୋଇ ତାଙ୍କ ଉପରେ ଅନୁଗ୍ରହ କରନ୍ତି । ସେହି ତେଜୋରାଶି, ଅନାମୟ, ଅନାଦି, ଅନନ୍ତ, ଧାତା, ଭୂତସଂହାରକ ଓ ସର୍ବବ୍ୟାପୀ ଭଗବାନ ଈଶ ପରମ ଐଶ୍ୱର୍ଯ୍ୟରେ ସଂଯୁକ୍ତ, ପରମେଶ୍ୱରଙ୍କ ପ୍ରତି ଭାବିତ ଓ ସଦା ତାଙ୍କରି ଶକ୍ତିରେ ଅଧିଷ୍ଠିତ ହୋଇ ତାଙ୍କରି ଚିହ୍ନ ଧାରଣ କରନ୍ତି । ତାଙ୍କରି ନାମରେ ପ୍ରସିଦ୍ଧ ହୋଇ ତାଙ୍କରି ପରି ରୂପ ଧାରଣ କରି ତାଙ୍କରି କାର୍ଯ୍ୟ କରିବାରେ ସମର୍ଥ ହୋଇଥାନ୍ତି । ତାଙ୍କର ସମସ୍ତ ବ୍ୟବହାର ତାଙ୍କରି ପରି ହୋଇଥାଏ । ସେ ତାଙ୍କରି ଆଜ୍ଞାପାଳକ । ସହସ୍ର ସୂର୍ଯ୍ୟ ପରି ତାଙ୍କର ତେଜ । ସେ ଅର୍ଦ୍ଧଚନ୍ଦ୍ରକୁ ଆଭୂଷଣରୂପେ ଧାରଣ କରନ୍ତି । ସର୍ପ ହିଁ ତାଙ୍କର ହାର, ବାଜୁବନ୍ଧ ଓ କଡ଼ା ହୋଇଥାନ୍ତି । ସେ ମୁଞ୍ଜର ମେଖଳା ଧାରଣ କରିଥାନ୍ତି । ଜଳନ୍ଧର, ବିରିଞ୍ଚି ଓ ଇନ୍ଦ୍ର ତାଙ୍କ ସେବାରେ ଦଣ୍ଡାୟମାନ ରହିଥାନ୍ତି । ହସ୍ତରେ କପାଳଖଣ୍ଡ ତାଙ୍କର ଶୋଭା ବୃଦ୍ଧି କରେ । ଗଙ୍ଗାର ଉଚ୍ଚ ତରଙ୍ଗରେ ତାଙ୍କର ପିଙ୍ଗଳବର୍ଣ୍ଣ କେଶ ଓ ମୁଖ ଆର୍ଦ୍ର ହୋଇରହିଥାଏ । ତାଙ୍କର କମନୀୟ କୈଳାସ ପର୍ବତର ବିଭିନ୍ନ ପ୍ରାନ୍ତ ଭଗ୍ନଦନ୍ତ ସିଂହ ଇତ୍ୟାଦି ବନ୍ୟ ପଶୁଙ୍କ ଦ୍ୱାରା ଆକ୍ରାନ୍ତ ରହିଥାଏ । ତାଙ୍କ ବାମ କାନ ପାଖରେ ଗୋଲାକାର କୁଣ୍ଡଳ ଝିଲିମିଲି କରୁଥାଏ । ସେ ମହାନ୍ ବୃଷଭ ଉପରେ ଆରୂଢ଼ ହୋଇଥାନ୍ତି । ତାଙ୍କ ବାଣୀ ମେଘ ପରି ଗମ୍ଭୀର, କାନ୍ତି ପ୍ରଚଣ୍ଡ ଅଗ୍ନି ପରି ଉଦ୍ଦୀପ୍ତ ଓ ବଳ-ପରାକ୍ରମ ମଧ୍ୟ ମହାନ୍ । ବ୍ରହ୍ମପୁତ୍ର ମହେଶ୍ୱରଙ୍କ ଏତାଦୃଶ ବିଶାଳ ରୂପ ବଡ଼ ଭୟଙ୍କର । ସେ ବ୍ରହ୍ମାଙ୍କୁ ବିଜ୍ଞାନ ଦେଇ ସୃଷ୍ଟିକାର୍ଯ୍ୟରେ ତାଙ୍କୁ ସହାୟତା କରନ୍ତି । ତେଣୁ ରୁଦ୍ରଙ୍କ କୃପାପ୍ରସାଦରୁ ପ୍ରତ୍ୟେକ କଳ୍ପରେ ପ୍ରଜାପତିଙ୍କ ପ୍ରଜାସୃଷ୍ଟି ଅବିରତ ଚ୍ଛଲିଥାଏ ।

ଥରେ ବ୍ରହ୍ମା ନୀଳଲୋହିତ ଭଗବାନ ରୁଦ୍ରଙ୍କୁ ପ୍ରଜାସୃଷ୍ଟି କରିବାକୁ ପ୍ରାର୍ଥନା କଲେ । ଭଗବାନ ରୁଦ୍ର ମାନସିକ ସଂକଳ୍ପ ଦ୍ୱାରା ଅନେକ ପୁରୁଷଙ୍କୁ ସୃଷ୍ଟି କଲେ । ସେମାନେ ସମସ୍ତେ ତାଙ୍କରି ପରି ଥିଲେ । ସମସ୍ତେ ଜଟାଜୂଟଧାରୀ, ନିର୍ଭୟ, ନୀଳକଣ୍ଠ, ତ୍ରିଲୋଚନ ଏବଂ ଜରାମରଣରହିତ ଥିଲେ । ଉଜ୍ଜ୍ୱଳ ତ୍ରିଶୂଳ ସେମାନଙ୍କ ଆୟୁଧ ଥିଲା । ସେହି ରୁଦ୍ରଗଣ ସମଗ୍ର ଚଉଦ ଭୁବନକୁ ଆଚ୍ଛାଦିତ କରିଦେଲେ । ଏପରି ବିବିଧ ରୁଦ୍ରଙ୍କୁ ଦେଖି ପିତାମହ ବ୍ରହ୍ମା ରୁଦ୍ରଦେବଙ୍କୁ କହିଲେ— "ଦେବେଶ୍ୱର ! ଆପଣଙ୍କୁ ନମସ୍କାର । ଆପଣ ଏପରି ପ୍ରଜାଙ୍କୁ ସୃଷ୍ଟି ନ କରନ୍ତୁ । ଆପଣଙ୍କର କଲ୍ୟାଣ ହେଉ । ଏବେ ଅନ୍ୟ ପ୍ରଜାଙ୍କୁ ସୃଷ୍ଟି କରନ୍ତୁ, ଯେଉଁମାନେ ମରଣଧର୍ମା ହୋଇଥିବେ ।"

ବ୍ରହ୍ମାଙ୍କ କଥା ଶୁଣି ପରମେଶ୍ୱର ରୁଦ୍ର ହସି ହସି ତାଙ୍କୁ କହିଲେ—"ମୁଁ ଏପରି ପ୍ରଜାଙ୍କୁ ସୃଷ୍ଟି କରିବି ନାହିଁ । ଅଶୁଭ ପ୍ରଜାଙ୍କୁ ତୁମେ ସୃଷ୍ଟି କର ।" ବ୍ରହ୍ମାଙ୍କୁ ଏତିକି କହି ସମସ୍ତ ଭୂତଙ୍କର ସ୍ୱାମୀ ଭଗବାନ ରୁଦ୍ର ପ୍ରଜାସୃଷ୍ଟି କାର୍ଯ୍ୟରୁ ବିରତ ହୋଇଗଲେ । (ଅଧ୍ୟାୟ ୧୩-୧୪)

***

# ବ୍ରହ୍ମାଙ୍କ ଦ୍ୱାରା ଅର୍ଦ୍ଧନାରୀଶ୍ୱର ରୂପର ସ୍ତୁତି ଏବଂ ଉକ୍ତ ସ୍ତୋତ୍ରର ମହିମା

ବାୟୁଦେବ କହୁଛନ୍ତି—ବ୍ରହ୍ମାଙ୍କର ସୃଷ୍ଟିବିସ୍ତାର କାର୍ଯ୍ୟରେ ପୁଣି ବାଧା ଉତ୍ପନ୍ନ ହେଲା । ତେଣୁ ସେ ମୈଥୁନୀ ସୃଷ୍ଟି କରିବାକୁ ଚିନ୍ତା କଲେ । ଏହାପୂର୍ବରୁ ଈଶ୍ୱରଙ୍କ ଠାରୁ ନାରୀଙ୍କର ଉତ୍ପତ୍ତି ହୋଇ ନ ଥିଲା । ସେଥିପାଇଁ ପିତାମହ ମୈଥୁନୀ ସୃଷ୍ଟି କରିପାରି ନ ଥିଲେ । ସେ ମନେ ମନେ ସ୍ଥିର କଲେ ଯେ ମୈଥୁନୀ ସୃଷ୍ଟି ହିଁ ତାଙ୍କ ମନୋରଥକୁ ସିଦ୍ଧ କରିବାରେ ନିଶ୍ଚିତରୂପେ ସହାୟକ ହେବ । ସେ ପୁଣି ଭାବିଲେ ଯେ ପ୍ରଜାଙ୍କର ବୃଦ୍ଧି ପାଇଁ ପରମେଶ୍ୱରଙ୍କୁ ହିଁ ପଗ୍ଚରିବା ଉଚିତ; କାରଣ ତାଙ୍କ କୃପା ବିନା ପ୍ରଜା ବୃଦ୍ଧି ପାଇପାରିବେ ନାହିଁ । ଏହା ଭାବି ବିଶ୍ୱାତ୍ମା ବ୍ରହ୍ମା ତପସ୍ୟା କରିବାକୁ ପ୍ରସ୍ତୁତ ହେଲେ । ସେ ଆଦ୍ୟା, ଅନନ୍ତା, ଲୋକଭାବିନୀ, ସୂକ୍ଷ୍ମତରା, ଶୁଦ୍ଧା, ଭାବଗମ୍ୟା, ମନୋହରା, ନିର୍ଗୁଣା, ନିଷ୍ପ୍ରପଞ୍ଚା, ନିଷ୍କଳା, ନିତ୍ୟା ଓ ସଦା ଈଶ୍ୱରଙ୍କ ନିକଟରେ ନିତ୍ୟ ବିଦ୍ୟମାନ ରହୁଥିବା ତାଙ୍କର ପରମା ଶକ୍ତି ସମେତ ଭଗବାନ ତ୍ରିଲୋଚନଙ୍କୁ ନିଜ ହୃଦୟ ମଧ୍ୟରେ ଚିନ୍ତନ କରି କଠୋର ତପସ୍ୟା କଲେ । ପରମେଷ୍ଠୀ ବ୍ରହ୍ମାଙ୍କ ପିତା ମହାଦେବ ବ୍ରହ୍ମାଙ୍କ କଠୋର ତପସ୍ୟାରେ ଅଳ୍ପକାଳ ମଧ୍ୟରେ ସନ୍ତୁଷ୍ଟ ହୋଇଗଲେ । ତା'ପରେ ନିଜ ଅନିର୍ବଚନୀୟ ଅଂଶରୁ କୌଣସି ଅଦ୍ଭୁତ ମୂର୍ତ୍ତିରେ ଆବିଷ୍ଟ ହୋଇ ଭଗବାନ ମହାଦେବ ଅର୍ଦ୍ଧାଙ୍ଗରୁ ନାରୀ ଓ ଅପର ଅର୍ଦ୍ଧାଙ୍ଗରୁ ଈଶ୍ୱର ହୋଇ ସ୍ୱୟଂ ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହେଲେ । ବ୍ରହ୍ମା ସର୍ବବ୍ୟାପୀ, ସର୍ବପ୍ରଦାତା, ସତ୍-ଅସତ୍‌ରୁ ରହିତ, ଉପମାଶୂନ୍ୟ, ଶରଣାଗତବତ୍ସଳ ଓ ସନାତନ ଶିବଙ୍କୁ ଦଣ୍ଡବତ୍ ପ୍ରଣାମ କଲେ ଏବଂ ଉଠି ହାତ ଯୋଡ଼ି ଶିବ-ପାର୍ବତୀଙ୍କୁ ସ୍ତୁତି କରିବାକୁ ଲାଗିଲେ ।

ବ୍ରହ୍ମା କହିଲେ—ହେ ଦେବ ! ମହାଦେବ ! ଆପଣଙ୍କର ଜୟ ହେଉ । ଈଶ୍ୱର ! ମହେଶ୍ୱର ! ଆପଣଙ୍କର ଜୟ ହେଉ । ସର୍ବଗୁଣଶ୍ରେଷ୍ଠ ଶିବ ! ଆପଣଙ୍କର ଜୟ ହେଉ । ସକଳ ଦେବଙ୍କ ସ୍ୱାମୀ ଶଙ୍କର ! ଆପଣଙ୍କର ଜୟ ହେଉ । ପ୍ରକୃତିର ନାୟିକେ ! ଆପଣଙ୍କର ଜୟ ହେଉ । ପ୍ରକୃତିରୁ ଦୂରରେ ରହୁଥିବା ହେ ଦେବୀ ! ଆପଣଙ୍କର ଜୟ ହେଉ । ହେ ପ୍ରକୃତିସୁନ୍ଦରୀ ! ଆପଣଙ୍କର ଜୟ ହେଉ । ହେ ଅମୋଘ ମହାମାୟା ଓ ସଫଳ-ମନୋରଥଯୁକ୍ତ ଦେବ ! ଆପଣଙ୍କର ଜୟ ହେଉ, ଜୟ ହେଉ । ଅମୋଘ ମହାଲୀଳାଯୁକ୍ତ ତଥା ଅବ୍ୟର୍ଥବଳଯୁକ୍ତ ପରମେଶ୍ୱର ! ଆପଣଙ୍କର ଜୟ



ହେଉ । ସମସ୍ତ ଜଗତର ମାତା ଉମେ ! ଆପଣଙ୍କର ଜୟ ହେଉ । ହେ ବିଶ୍ୱଜଗନ୍ମୟୀ ! ଆପଣଙ୍କର ଜୟ ହେଉ । ହେ ବିଶ୍ୱଜଗଦ୍ଧାତ୍ରୀ ! ଆପଣଙ୍କର ଜୟ ହେଉ । ସମଗ୍ର ସଂସାରର ସଖୀ ଓ ସହାୟିକେ ! ଆପଣଙ୍କର ଜୟ ହେଉ । ପ୍ରଭୋ ! ଆପଣଙ୍କର ଐଶ୍ୱର୍ଯ୍ୟ ଓ ଧାମ ସନାତନ । ଆପଣଙ୍କର

ଜୟ ହେଉ, ଜୟ ହେଉ । ଆପଣଙ୍କ ରୂପ ଓ ଅନୁଚରବର୍ଗ ମଧ୍ୟ ଆପଣଙ୍କ ପରି ସନାତନ । ଆପଣଙ୍କର ଜୟ ହେଉ । ହେ ଦେବୀ! ଆପଣ ତିନିରୂପ ଦ୍ୱାରା ତ୍ରିଲୋକର ନିର୍ମାଣ, ପାଳନ ଓ ସଂହାର କରିଥାନ୍ତି । ଆପଣଙ୍କର ଜୟ ହେଉ, ଜୟ ହେଉ । ତ୍ରିଲୋକର ଅଥବା ଆତ୍ମା, ଅନ୍ତରାତ୍ମା ଓ ପରମାତ୍ମା—ଏ ତ୍ରି-ଆତ୍ମାଙ୍କର ନାୟିକେ ! ଆପଣଙ୍କର ଜୟ ହେଉ । ପ୍ରଭୋ ! ଜଗତର କାରଣ ହେଉଥିବା ତତ୍ତ୍ୱମାନଙ୍କର ଅବିର୍ଭାବ ଓ ବିସ୍ତାର ଆପଣଙ୍କ କୃପାଦୃଷ୍ଟିର ଅଧୀନ । ଆପଣଙ୍କର ଜୟ ହେଉ । ପ୍ରଳୟକାଳରେ ଆପଣଙ୍କ ଉପେକ୍ଷାଯୁକ୍ତ ଭ୍ରୂଭଙ୍ଗୀ-ମାତ୍ରକେ ଯେଉଁ ଭୟାନକ ଅଗ୍ନି ପ୍ରକଟ ହୁଏ, ତଦ୍ଦ୍ୱାରା ସମଗ୍ର ଭୌତିକ ଜଗତ ଭସ୍ମ ହୋଇଯାଏ, ଆପଣଙ୍କର ଜୟ ହେଉ ।

ହେ ଦେବୀ ! ଆପଣଙ୍କ ସ୍ୱରୂପର ସମ୍ୟକ୍ ଜ୍ଞାନ ଦେବତାଦିଙ୍କ ପାଇଁ ମଧ୍ୟ ଅସମ୍ଭବ । ଆପଣଙ୍କର ଜୟ ହେଉ । ଆପଣ ଆତ୍ମତତ୍ତ୍ୱର ସୂକ୍ଷ୍ମ ଜ୍ଞାନରେ ପ୍ରକାଶିତ ହୁଅନ୍ତି । ଆପଣଙ୍କର ଜୟ ହେଉ । ହେ ଈଶ୍ୱରୀ ! ଆପଣ ସ୍ଥୂଳ ଆତ୍ମଶକ୍ତିରେ ଚରାଚର ଜଗତକୁ ବ୍ୟାପ୍ତ କରି ରଖିଛନ୍ତି । ଆପଣଙ୍କର ଜୟ ହେଉ, ଜୟ ହେଉ । ପ୍ରଭୋ ! ବିଶ୍ୱର ତତ୍ତ୍ୱସମୁଦାୟ ଅନେକ ଓ ଏକରୂପରେ ଆପଣଙ୍କ ଆଧାରରେ ସ୍ଥିତ । ଆପଣଙ୍କର ଜୟ ହେଉ । ଆପଣଙ୍କ ଶ୍ରେଷ୍ଠ ସେବକଙ୍କ ସମୂହ ବଡ଼ ବଡ଼ ଅସୁରଙ୍କ ମସ୍ତକରେ ପାଦ ରଖିବାକୁ ସକ୍ଷମ । ଆପଣଙ୍କର ଜୟ ହେଉ । ହେ ପରମେଶ୍ୱରୀ ! ଆପଣ ଶରଣାଗତଙ୍କର ରକ୍ଷା କରିବାରେ ପରମ ସମର୍ଥ । ଆପଣଙ୍କର ଜୟ ହେଉ । ସଂସାରରୂପୀ ବିଷବୃକ୍ଷର ଅଙ୍କୁରକୁ ଉନ୍ମୂଳନ କରୁଥିବା ଉମେ ! ଆପଣଙ୍କର ଜୟ ହେଉ । ପ୍ରାଦେଶିକ ଐଶ୍ୱର୍ଯ୍ୟ, ବୀର୍ଯ୍ୟ ଓ ଶୌର୍ଯ୍ୟର ବିସ୍ତାରକାରୀ ଦେବ ! ଆପଣଙ୍କର ଜୟ ହେଉ । ବିଶ୍ୱର ପରେ ବିଦ୍ୟମାନ ଦେବ ! ନିଜ ବୈଭବ ଦ୍ୱାରା ଅନ୍ୟର ବୈଭବକୁ ତିରସ୍କୃତକାରୀ! ଆପଣଙ୍କର ଜୟ ହେଉ । ପଞ୍ଚବିଧ ମୋକ୍ଷରୂପ ପୁରୁଷାର୍ଥର ପ୍ରୟୋଗ ଦ୍ୱାରା ପରମାନନ୍ଦମୟ ଅମୃତ ପ୍ରଦାନ କରାଉଥିବା ପରମେଶ୍ୱରଙ୍କର ଜୟ ହେଉ । ପଞ୍ଚବିଧ ପୁରୁଷାର୍ଥର ବିଜ୍ଞାନରୂପୀ ଅମୃତସ୍ରୋତସ୍ୱରୂପିଣୀ ପରମେଶ୍ୱରୀଙ୍କର ଜୟ ହେଉ । ଅନାଦି କର୍ମଫଳ ଓ ଅଜ୍ଞାନରୂପୀ ଅନ୍ଧକାରରାଶିକୁ ଦୂର କରୁଥିବା ଚନ୍ଦ୍ରିକାରୂପିଣୀ ଶିବାଙ୍କର ଜୟ ହେଉ । ତ୍ରିପୁର ବିନାଶ ନିମନ୍ତେ କାଳାଗ୍ନିରୂପଧାରୀ ମହାଦେବଙ୍କର ଜୟ ହେଉ । ତ୍ରିପୁରଭୈରବୀଙ୍କର ଜୟ ହେଉ । ତ୍ରିଗୁଣରୁ ମୁକ୍ତ ମହେଶ୍ୱରଙ୍କର ଜୟ ହେଉ । ତ୍ରିଗୁଣ-ମର୍ଦ୍ଦନକାରିଣୀ ମହେଶ୍ୱରୀଙ୍କର ଜୟ ହେଉ । ଆଦିସର୍ବଜ୍ଞଙ୍କର ଜୟ ହେଉ । ସମସ୍ତଙ୍କୁ ଜ୍ଞାନ-ପ୍ରଦାନକାରିଣୀ ଦେବୀଙ୍କର ଜୟ ହେଉ । ହେ ଅତ୍ୟନ୍ତ ମନୋହର ଦିବ୍ୟାଙ୍ଗରେ ସୁଶୋଭିତ ଦେବ ! ଆପଣଙ୍କର ଜୟ ହେଉ । ହେ ମନୋବାଞ୍ଛିତ ବସ୍ତୁ ପ୍ରଦାୟିନୀ ଦେବୀ! ଆପଣଙ୍କର ଜୟ ହେଉ । ଭଗବନ୍ ! ହେ ପ୍ରଭୁ ! କାହିଁ ଆପଣଙ୍କର ଉତ୍କୃଷ୍ଟ ଧାମ ଆଉ କାହିଁ ମୋର ତୁଚ୍ଛ ବାଣୀ, ତଥାପି ଭକ୍ତିଭାବରେ ପ୍ରଳାପ କରୁଥିବା ମୋ ପରି ସେବକର ଅପରାଧକୁ କ୍ଷମା କରିଦିଅନ୍ତୁ ।*

ଏପରି ସୁନ୍ଦର ଉକ୍ତି ଦ୍ୱାରା ଏକାବେଳକେ

* ବ୍ରହ୍ମୋବାଚ–

ଜୟ ଦେବ ମହାଦେବ ଜୟେଶ୍ୱର ମହେଶ୍ୱର । ଜୟ ସର୍ବଗୁଣଶ୍ରେଷ୍ଠ ଜୟ ସର୍ବସୁରାଧିପ ॥
ଜୟ ପ୍ରକୃତିକଲ୍ୟାଣି ଜୟ ପ୍ରକୃତିନାୟିକେ । ଜୟ ପ୍ରକୃତିଦୂରେ ତ୍ୱଂ ଜୟ ପ୍ରକୃତିସୁନ୍ଦରି ॥
ଜୟାମୋଘମହାମାୟ ଜୟାମୋଘମନୋରଥ । ଜୟାମୋଘମହାଲୀଳ ଜୟାମୋଘମହାବଳ ॥

ଶିବ-ପାର୍ବତୀଙ୍କର ଗୁଣଗାନ କରି ଚତୁର୍ମୁଖ ବ୍ରହ୍ମା ରୁଦ୍ର ଓ ରୁଦ୍ରାଣୀଙ୍କୁ ବାରମ୍ବାର ନମସ୍କାର କଲେ । ବ୍ରହ୍ମାଙ୍କ ଦ୍ୱାରା ପଠିତ ଏହି ପବିତ୍ର ତଥା ଉତ୍ତମ ଅର୍ଦ୍ଧନାରୀଶ୍ୱରସ୍ତୋତ୍ର ଶିବ-ପାର୍ବତୀଙ୍କର ହର୍ଷବର୍ଦ୍ଧନ କରିଥାଏ । ଯେ ଭକ୍ତିପୂର୍ବକ କୌଣସି ଗୁରୁଶିକ୍ଷାରେ ଉକ୍ତ ସ୍ତୋତ୍ରକୁ ପାଠ କରେ, ସେ ଶିବ ଓ ପାର୍ବତୀଙ୍କୁ ପ୍ରସନ୍ନ କରି ନିଜ ଅଭୀଷ୍ଟ ଫଳ ଲାଭ କରିଥାଏ । ଯେ ସମସ୍ତ ଭୁବନର ପ୍ରାଣୀଙ୍କର ସ୍ରଷ୍ଟା, ଜନ୍ମମୃତ୍ୟୁରହିତ ଏବଂ ଶ୍ରେଷ୍ଠ ନର-ନାରୀରୂପରେ ଗୋଟିଏ ଶରୀର ଧାରଣ କରିଥାନ୍ତି, ସେହି କଲ୍ୟାଣକାରୀ ଶିବ ଓ ଶିବାଙ୍କୁ ମୁଁ ପ୍ରଣାମ କରୁଛି । (ଅଧ୍ୟାୟ ୧୫)

★★★

## ମହାଦେବଙ୍କ ଶରୀରରୁ ଦେବୀଙ୍କ ପ୍ରାକଟ୍ୟ ଓ ଦେବୀଙ୍କ ଭ୍ରୂମଧ୍ୟଭାଗରୁ ଶକ୍ତିଙ୍କ ଆବିର୍ଭାବ

ବାୟୁଦେବ କହୁଛନ୍ତି—ଏହାପରେ ମହାଦେବ ମହାମେଘର ଗର୍ଜନ ପରି ଗମ୍ଭୀର, ମଧୁର, ମନୋହର ଓ ମଙ୍ଗଳଦାୟିନୀ ବାଣୀରେ କହିଲେ—''ବ୍ରହ୍ମନ୍ ! ତୁମେ ଏବେ ପ୍ରଜାଜନଙ୍କ ବୃଦ୍ଧି ନିମନ୍ତେ ତପସ୍ୟା କରିଛ । ତୁମର ଏହି ତପସ୍ୟାରେ ମୁଁ ସନ୍ତୁଷ୍ଟ ଏବଂ ମୁଁ ତୁମକୁ ଅଭୀଷ୍ଟ ବର ଦେଉଛି ।'' ଏହିପରି ପରମ ଉଦାର ତଥା ସ୍ୱଭାବତଃ ମଧୁର ବଚନ କହି ଦେବେଶ୍ୱର ହର ନିଜ ଶରୀରର ବାମଭାଗରୁ ଦେବୀ ରୁଦ୍ରାଣୀଙ୍କୁ ପ୍ରକଟ କଲେ । ଯେଉଁ ଦିବ୍ୟ ଗୁଣସମ୍ପନ୍ନା ଦେବୀଙ୍କୁ ବ୍ରହ୍ମବେତ୍ତା ପୁରୁଷ ପରମାତ୍ମା ଶିବଙ୍କ ପରାଶକ୍ତି କହନ୍ତି ଏବଂ ଯାହାଙ୍କ ଠାରେ ଜନ୍ମ, ମୃତ୍ୟୁ ଓ ଜରା ଇତ୍ୟାଦି ବିକାରର ପ୍ରବେଶ ନାହିଁ, ସେହି ଭବାନୀ ସେତେବେଳେ ଶିବଙ୍କ ଅଙ୍ଗରୁ ପ୍ରକଟ ହେଲେ । ଯେଉଁ ସର୍ବଦେବାଧିଶ୍ୱରୀଙ୍କ ପରମଭାବକୁ ଦେବତା ମଧ୍ୟ ଜାଣନ୍ତି ନାହିଁ, ସେ ନିଜ ସ୍ୱାମୀଙ୍କ ଅଙ୍ଗରୁ ପ୍ରକଟ ହେଲେ । ସର୍ବଲୋକମହେଶ୍ୱରୀ ପରମେଶ୍ୱରୀଙ୍କୁ ଦେଖି ବିରାଟ ପୁରୁଷ ବ୍ରହ୍ମା

---

ଜୟ ବିଶ୍ୱଜଗନ୍ମାତର୍ଜୟ ବିଶ୍ୱଜଗନ୍ମୟି । ଜୟ ବିଶ୍ୱଜଗଦ୍ଧାତ୍ରି ଜୟ ବିଶ୍ୱଜଗତ୍ସାକ୍ଷି ॥
ଜୟ ଶାଶ୍ୱତିକୈଶ୍ୱର୍ଯ୍ୟେ ଜୟ ଶାଶ୍ୱତିକାଳୟ । ଜୟ ଶାଶ୍ୱତିକାକାର ଜୟ ଶାଶ୍ୱତିକାନୁଗ ॥
ଜୟାତ୍ମତ୍ରୟନିର୍ମାତ୍ରି ଜୟାତ୍ମତ୍ରୟପାଳିନି । ଜୟାତ୍ମତ୍ରୟସଂହର୍ତ୍ତ୍ରି ଜୟାତ୍ମତ୍ରୟନାୟିକେ ॥
ଜୟାବଲୋକନାୟତ୍ତଜଗତ୍କାରଣବୃଂହଣ । ଜୟୋପେକ୍ଷାକଟାକ୍ଷୋତ୍ଥହୁତଭୁଗ୍ଭୁକ୍ତଭୌତିକ ॥
ଜୟ ଦେବାଦ୍ୟବିଜ୍ଞେୟେ ସ୍ୱାତ୍ମସୂକ୍ଷ୍ମଦୃଶୋଜ୍ଜ୍ୱଲେ । ଜୟ ସ୍ଥୂଳାତ୍ମଶକ୍ତ୍ୟେଶେ ଜୟ ବ୍ୟାପ୍ତଚରାଚରେ ॥
ଜୟ ନାନୈକବିନ୍ୟସ୍ତବିଶ୍ୱତତ୍ତ୍ୱସମୁଚ୍ଚୟ । ଜୟାସୁରଶିରୋନିଷ୍ଠଶ୍ରେଷ୍ଠାନୁଗକଦମ୍ବକ ॥
ଜୟୋପାଶ୍ରିତସଂରକ୍ଷାସଂବିଧାନପଟୀୟସି । ଜୟୋନ୍ମୂଳିତସଂସାରବିଷବୃକ୍ଷାଙ୍କୁରୋଦ୍ଗମେ ॥
ଜୟ ପ୍ରାଦେଶିକୈଶ୍ୱର୍ଯ୍ୟବୀର୍ଯ୍ୟଶୌର୍ଯ୍ୟବିଜୃମ୍ଭଣ । ଜୟ ବିଶ୍ୱବହିର୍ଭୂତ ନିରସ୍ତପରବୈଭବ ॥
ଜୟ ପ୍ରଣୀତପଞ୍ଚାର୍ଥପ୍ରୟୋଗପରମାମୃତ । ଜୟ ପଞ୍ଚାର୍ଥବିଜ୍ଞାନସୁଧାସ୍ତୋତ୍ରସ୍ୱରୂପିଣି ॥
ଜୟାତିଘୋରସଂସାରମହାରୋଗଭିଷଗ୍ୱର । ଜୟାନାଦିମଳାଜ୍ଞାନତମଃପଟଳଚନ୍ଦ୍ରିକେ ॥
ଜୟ ତ୍ରିପୁରକାଳାଗ୍ନେ ଜୟ ତ୍ରିପୁରଭୈରବି । ଜୟ ତ୍ରିଗୁଣନିର୍ମୁକ୍ତ ଜୟ ତ୍ରିଗୁଣମର୍ଦ୍ଦିନି ॥
ଜୟ ପ୍ରଥମସର୍ବଜ୍ଞ ଜୟ ସର୍ବପ୍ରବୋଧିକେ । ଜୟ ପ୍ରଚୁରଦିବ୍ୟାଙ୍ଗ ଜୟ ପ୍ରାର୍ଥିତଦାୟିନି ॥
କ୍ୱ ଦେବ ତେ ପରଂ ଧାମ କ୍ୱ ଚ ତୁଚ୍ଛଂ ହି ନୋ ବଚଃ । ତଥାପି ଭଗବନ୍ ଭକ୍ତ୍ୟା ପ୍ରଳପନ୍ତଂ କ୍ଷମସ୍ୱ ମାମ୍ ॥

(ଶି. ପୁ. ବା. ସଂ. ପୂ. ଖଂ. ୧୫ । ୧୬–୩୧)

ପ୍ରଣାମ କଲେ । ତା'ପରେ ବ୍ରହ୍ମା ସର୍ବଜ୍ଞା, ସର୍ବବ୍ୟାପିନୀ, ସୂକ୍ଷ୍ମା, ସଦସଦ୍‌ଭାବବିରହିତା ଓ ଆପଣା ପ୍ରଭାରେ ସମଗ୍ର ଜଗତକୁ ଉଦ୍ଭାସିତ କରୁଥିବା ପରାଶକ୍ତି ମହାଦେବୀଙ୍କୁ ଏହିପରି କହିଲେ—

ବ୍ରହ୍ମା କହିଲେ—ହେ ସର୍ବଜଗନ୍ମୟୀ ଦେବୀ! ମହାଦେବ ସର୍ବପ୍ରଥମେ ମୋତେ ଉତ୍ପନ୍ନ କଲେ ଏବଂ ପ୍ରଜାଙ୍କ ସୃଷ୍ଟି କାର୍ଯ୍ୟରେ ନିଯୁକ୍ତ କଲେ । ତାଙ୍କରି ଆଜ୍ଞାରେ ମୁଁ ସମଗ୍ର ଜଗତର ସର୍ଜନା କରୁଛି । କିନ୍ତୁ ହେ ଦେବୀ ! ମୁଁ ମୋର ମାନସିକ ସଂକଳ୍ପରେ ଦେବତାଦି ସକଳ ପ୍ରାଣୀଙ୍କୁ ବାରମ୍ବାର ସୃଷ୍ଟି କରିବା ସତ୍ତ୍ୱେ ସେମାନେ ବୃଦ୍ଧି ପାଉ ନାହାନ୍ତି । ତେଣୁ ମୁଁ ଏବେ ମୈଥୁନୀ ସୃଷ୍ଟି କରି



ମୋର ସମସ୍ତ ପ୍ରଜାଙ୍କୁ ବୃଦ୍ଧି କରିବାକୁ ଚାହୁଁଛି । ଆପଣଙ୍କ ପୂର୍ବରୁ ନାରୀକୁଳର ଆବିର୍ଭାବ ହୋଇ ନ ଥିଲା । ତେଣୁ ନାରୀକୁଳକୁ ସୃଷ୍ଟି କରିବାକୁ ମୋର ସାମର୍ଥ୍ୟ ନାହିଁ । ସମସ୍ତ ଶକ୍ତିର ଆବିର୍ଭାବ ଆପଣଙ୍କ ଠାରୁ ହୁଏ । ତେଣୁ ସର୍ବତ୍ର ସମସ୍ତଙ୍କୁ ସବୁ ପ୍ରକାର ଶକ୍ତିପ୍ରଦାନ କରୁଥିବା ମାୟାରୂପିଣୀ ଦେବେଶ୍ୱରୀଙ୍କୁ ମୁଁ ପ୍ରାର୍ଥନା କରୁଛି । ହେ ସର୍ବବ୍ୟାପିନୀ ଦେବୀ ! ଏ ସଚରାଚର ଜଗତର ବୃଦ୍ଧି ପାଇଁ ଆପଣ ନିଜର ଗୋଟିଏ ଅଂଶରେ ମୋର ପୁତ୍ର ଦକ୍ଷର କନ୍ୟା ହୋଇଯାଆନ୍ତୁ ।

ବ୍ରହ୍ମଯୋନି ବ୍ରହ୍ମା ଏପରି ଯାଚନା କରିବାରୁ ଦେବୀ ରୁଦ୍ରାଣୀ ନିଜ ଭ୍ରୂଲତାର ମଧ୍ୟଭାଗରୁ ନିଜ ପରି ରୂପକାନ୍ତିସମ୍ପନ୍ନା ଶକ୍ତିଙ୍କୁ ଉତ୍ପନ୍ନ କଲେ । ତାଙ୍କୁ ଦେଖି ଦେବଦେବେଶ୍ୱର ହର ହସି ହସି କହିଲେ—''ତୁମେ ତପସ୍ୟା ଦ୍ୱାରା ବ୍ରହ୍ମାଙ୍କୁ ଆରାଧନା କରି ତାଙ୍କର ମନୋରଥ ପୂର୍ଣ୍ଣ କର ।'' ପରମେଶ୍ୱର ଶିବଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ସେହି ଦେବୀ ବ୍ରହ୍ମାଙ୍କ ପ୍ରାର୍ଥନାନୁସାରେ ଦକ୍ଷଙ୍କର କନ୍ୟା ହେଲେ । ଏହିରୂପେ ବ୍ରହ୍ମାଙ୍କୁ ବ୍ରହ୍ମରୂପିଣୀ ଅନୁପମ ଶକ୍ତି ପ୍ରଦାନ କରି ଦେବୀ ଶିବା ମହାଦେବଙ୍କ ଶରୀରରେ ପ୍ରବିଷ୍ଟ ହୋଇଗଲେ । ତା'ପରେ ମହାଦେବ ମଧ୍ୟ ଅନ୍ତର୍ହିତ ହୋଇଗଲେ । ସେହିଦିନ ଠାରୁ ଜଗତରେ ସ୍ତ୍ରୀଜାତିରେ ଭୋଗ ପ୍ରତିଷ୍ଠିତ ହେଲା ଏବଂ ମୈଥୁନ ଦ୍ୱାରା ପ୍ରଜାସୃଷ୍ଟି କାର୍ଯ୍ୟ ପ୍ରଚଳିତ ହେଲା । ମୁନିବରଗଣ ! ଏହାଦ୍ୱାରା ବ୍ରହ୍ମାଙ୍କୁ ମଧ୍ୟ ଆନନ୍ଦ ଓ ସନ୍ତୋଷ ଲାଭ ହେଲା । ଦେବୀଙ୍କ ଠାରୁ ଶକ୍ତି ଆବିର୍ଭାବ ହେବାର ପ୍ରସଙ୍ଗ ମୁଁ ତୁମକୁ କହିଦେଲି । ପ୍ରାଣୀଙ୍କ ସୃଷ୍ଟିପ୍ରସଙ୍ଗରେ ଏ କଥା କହିଲି । ଏହା ପୁଣ୍ୟବର୍ଦ୍ଧକ ହୋଇଥିବାରୁ ଅବଶ୍ୟ ଶ୍ରବଣୀୟ । ଯେ ପ୍ରତିଦିନ ଦେବୀଙ୍କ ଠାରୁ ଶକ୍ତିପ୍ରାକଟ୍ୟର ଏହି ଆଖ୍ୟାନକୁ କୀର୍ତ୍ତନ କରେ, ତାକୁ ସବୁ ପ୍ରକାର ପୁଣ୍ୟ ପ୍ରାପ୍ତ ହୁଏ ଏବଂ ସେ ଶୁଭଲକ୍ଷଣ ପୁତ୍ର ଲାଭ କରେ ।

(ଅଧ୍ୟାୟ ୧୬)

***

# ପାର୍ବତୀ ଓ ପାର୍ଷଦଗଣଙ୍କ ସହିତ ଭଗବାନ ଶିବଙ୍କର ମନ୍ଦରାଚଳ ଗମନ, ଶୁମ୍ଭ-ନିଶୁମ୍ଭଙ୍କ ବଧ ନିମନ୍ତେ ବ୍ରହ୍ମା ପ୍ରାର୍ଥନା କରିବାରୁ ମହାଦେବ ପାର୍ବତୀଙ୍କୁ 'କାଳୀ' କହି କୁପିତ କରିବା ଏବଂ କାଳୀ 'ଗୌରୀ' ହେବା ନିମନ୍ତେ ତପସ୍ୟା କରିବାକୁ ଅନୁମତି ମାଗିବା ପ୍ରସଙ୍ଗ

ବାୟୁଦେବ କହୁଛନ୍ତି—ଏହିରୂପେ ମହାଦେବଙ୍କ ଠାରୁ ସନାତନ ପରାଶକ୍ତିଙ୍କୁ ପ୍ରାପ୍ତ କରି ପ୍ରଜାପତି ବ୍ରହ୍ମା ମୈଥୁନୀ ପ୍ରଜା ସୃଷ୍ଟି କରିବା ଇଚ୍ଛାରେ ସ୍ୱୟଂ ମଧ୍ୟ ଅର୍ଦ୍ଧାଙ୍ଗରୁ ଅଦ୍ଭୁତ ନାରୀ ଓ ଆର ଅଧକରୁ ପୁରୁଷ ହୋଇଗଲେ । ତାଙ୍କ ଠାରୁ ଯେଉଁ ନାରୀ ଉତ୍ପନ୍ନ ହେଲା, ତାହାର ନାମ ଥିଲା ଶତରୂପା । ବ୍ରହ୍ମା ତାଙ୍କର ଅପର ଅର୍ଦ୍ଧ ପୁରୁଷ ଶରୀରରୁ ବିରାଟ୍‌କୁ ଉତ୍ପନ୍ନ କଲେ । ସେହି ବିରାଟ୍ ପୁରୁଷ ହିଁ ସ୍ୱାୟମ୍ଭୁବ ମନୁ ବୋଲାନ୍ତି । ଦେବୀ ଶତରୂପା ଅତ୍ୟନ୍ତ ଦୁଷ୍କର ତପସ୍ୟା କରି ଉଦ୍ଦୀପ୍ତଯଶା ମନୁଙ୍କୁ ହିଁ ପତିରୂପରେ ଲାଭ କଲେ ।

ଏହାପରେ ମନୁଙ୍କ ବଂଶ ତଥା ଦକ୍ଷଯଜ୍ଞବିଧ୍ୱଂସ ପ୍ରସଙ୍ଗ ପ୍ରଭୃତି ବର୍ଣ୍ଣନା କରିସାରି ବାୟୁଦେବ କହିଲେ ଯେ ଭଗବାନ ଶିବ ଦକ୍ଷଙ୍କର ଓ ଦେବତାଙ୍କର ଅପରାଧକୁ କ୍ଷମା କରିଦେଲେ ।

ଏହାପରେ ଋଷିମାନେ ପଚାରିଲେ—ପ୍ରଭୋ ! ଶିବ ତାଙ୍କର ଗଣ ତଥା ଦେବୀଙ୍କ ସମେତ ସେଠାରୁ ଅନ୍ତର୍ହିତ ହେଲା ପରେ କେଉଁଠିକି ଗଲେ, କେଉଁଠି ରହିଲେ ଏବଂ କ'ଣ କଲେ ?

ବାୟୁଦେବ କହିଲେ—ମହର୍ଷିଗଣ ! ବିଚିତ୍ର କନ୍ଦରରେ ସୁଶୋଭିତ ପରମ ସୁନ୍ଦର ପର୍ବତଶ୍ରେଷ୍ଠ ମନ୍ଦରାଚଳ ହିଁ ନିଜ ତପସ୍ୟା ପ୍ରଭାବରେ ଦେବାଧିଦେବ ମହାଦେବଙ୍କ ପ୍ରିୟ ନିବାସସ୍ଥାନ ହେଲା । ସେ ପାର୍ବତୀ ଓ ଶିବଙ୍କୁ ନିଜ ମସ୍ତକରେ ବହନ କରିବା ନିମନ୍ତେ ବହୁତ ବଡ଼ ତପସ୍ୟା କରିଥିଲା ଏବଂ ଦୀର୍ଘକାଳ ପରେ ତାକୁ ସେମାନଙ୍କ ଚରଣାରବିନ୍ଦ ସ୍ପର୍ଶର ସୁଖ ପ୍ରାପ୍ତ ହେଲା । ସେହି ପର୍ବତର ସୌନ୍ଦର୍ଯ୍ୟର ସବିସ୍ତାର ବର୍ଣ୍ଣନା ସହସ୍ର ମୁଖ ଦ୍ୱାରା କୋଟି କୋଟି ବର୍ଷରେ ମଧ୍ୟ କରାଯାଇ ପାରିବ ନାହିଁ । ତା' ସମ୍ମୁଖରେ ଅନ୍ୟ ସମସ୍ତ ପର୍ବତର ସୌନ୍ଦର୍ଯ୍ୟ ତୁଚ୍ଛ ହୋଇଯାଏ । ସେଥିପାଇଁ ମହାଦେବ ଦେବୀଙ୍କୁ ଖୁସୀ କରିବା ଇଚ୍ଛାରେ ପରମ ରମଣୀୟ ମନ୍ଦରାଚଳକୁ ନିଜର ଅନ୍ତଃପୁର କରିଥିଲେ । ଉକ୍ତ ସର୍ବଶ୍ରେଷ୍ଠ ପର୍ବତକୁ ସ୍ମରଣ କରି ରୈଭ୍ୟ-ଆଶ୍ରମ ସମୀପରୁ ଅମ୍ବିକାଙ୍କ ସହିତ ଭଗବାନ ତ୍ରିଲୋଚନ ଅନ୍ତର୍ହିତ ହୋଇ ସେଠାକୁ ଗଲେ । ମନ୍ଦରାଚଳର ଉଦ୍ୟାନରେ ପହଞ୍ଚି ଦେବୀ ଓ ମହେଶ୍ୱର ସେଠାକାର ରମଣୀୟ ତଥା ଦିବ୍ୟ ଅନ୍ତଃପୁର ଭୂମିରେ ରମଣ କରିବାକୁ ଲାଗିଲେ ।

ଏହିରୂପେ କିଛି କାଳ ବ୍ୟତୀତ ହୋଇଗଲା ଏବଂ ବ୍ରହ୍ମାଙ୍କ ମୈଥୁନୀ ସୃଷ୍ଟି ଦ୍ୱାରା ପ୍ରଜାଗଣ ବୃଦ୍ଧି ପାଇଲେ । ଇତିମଧ୍ୟରେ ଶୁମ୍ଭ ଓ ନିଶୁମ୍ଭ ନାମରେ ଦୁଇଟି ଦୈତ୍ୟ ଉତ୍ପନ୍ନ ହେଲେ । ସେମାନେ ପରସ୍ପର ଦୁଇ ଭାଇ ଥିଲେ । ସେମାନଙ୍କ ତପୋବଳରେ ପ୍ରଭାବିତ ହୋଇ ପରମେଷ୍ଠୀ ବ୍ରହ୍ମା ବର ଦେଇଥିଲେ ଯେ "ଜଗତର କୌଣସି ପୁରୁଷ ଦ୍ୱାରା ତୁମେ ଦୁହେଁ ମରିବ ନାହିଁ ।" ସେ ଦୁହେଁ ପ୍ରାର୍ଥନା କରିଥିଲେ ଯେ "ପାର୍ବତୀଦେବୀଙ୍କ ଅଂଶରୁ ଯଦି ଅଯୋନିଜା କନ୍ୟା ଉତ୍ପନ୍ନ ହେବ ଏବଂ ସେ ଯଦି ପୁରୁଷର ସ୍ପର୍ଶ ଓ ରତି ପ୍ରାପ୍ତ ହୋଇ ନ ଥିବ ତଥା ଅଲଙ୍ଘ୍ୟ ପରାକ୍ରମସମ୍ପନ୍ନା ହୋଇଥିବ, ତେବେ ତା'ପ୍ରତି ଆମେ କାମଭାବରେ ପୀଡ଼ିତ ହେଲେ ଯାଇ ଆମେ ଯୁଦ୍ଧରେ ତାହାରି ହାତରେ ନିହତ ହେବୁ ।" ତାଙ୍କ କଥାକୁ ବ୍ରହ୍ମା

'ତଥାସ୍ତୁ' କହି ସ୍ୱୀକୃତି ଦେଇଥିଲେ । ଏଣୁ ଯୁଦ୍ଧରେ ଇନ୍ଦ୍ରାଦି ଦେବତାଙ୍କୁ ପରାସ୍ତ କରି ସେହି ଦୈତ୍ୟ ଦୁହେଁ ସର୍ବତ୍ର ଅନୀତି ବିସ୍ତାର କରି ଜଗତକୁ ବେଦସ୍ୱାଧ୍ୟାୟରହିତ ଓ ବଷଟ୍‌କାରଶୂନ୍ୟ କରିଦେଲେ । ଏହାପରେ ବ୍ରହ୍ମା ସେ ଦୁହିଙ୍କ ବଧ ନିମନ୍ତେ ଦେବେଶ୍ୱର ଶିବଙ୍କୁ ପ୍ରାର୍ଥନା କରି କହିଲେ—"ପ୍ରଭୋ ! ଆପଣ ଏକାନ୍ତରେ ଦେବୀଙ୍କୁ ନିନ୍ଦା କରି ଯେକୌଣସି ପ୍ରକାରେ କ୍ରୋଧିତା କରି ଦିଅନ୍ତୁ । ତାଙ୍କ ରୂପରଙ୍ଗର ନିନ୍ଦା କଲେ ତାଙ୍କ ଠାରୁ ଯେଉଁ କାମଭାବରହିତା କୁମାରୀସ୍ୱରୂପା ଶକ୍ତି ଉତ୍ପନ୍ନ ହେବ, ତାହାକୁ ନିଶୁମ୍ଭ ଓ ଶୁମ୍ଭଙ୍କ ବଧ ପାଇଁ ଦେବତାଙ୍କ ନିକଟରେ ଅର୍ପଣ କରନ୍ତୁ ।"

ବ୍ରହ୍ମାଙ୍କ ପ୍ରାର୍ଥନା ଶୁଣି ଭଗବାନ ନୀଳଲୋହିତ ରୁଦ୍ର ଏକାନ୍ତରେ ପାର୍ବତୀଙ୍କୁ ସ୍ମିତହାସପୂର୍ବକ ନିନ୍ଦା କରି କହିଲେ, "ତୁମେ ତ କାଳୀ ।" ସୁନ୍ଦର ବର୍ଣ୍ଣଯୁକ୍ତା ଦେବୀ ପାର୍ବତୀ ନିଜ ଶ୍ୟାମବର୍ଣ୍ଣ ସମ୍ବନ୍ଧରେ ଏପରି ଆକ୍ଷେପ ଶୁଣି କୁପିତ ହୋଇ ଉଠିଲେ ଏବଂ ସ୍ୱାମୀଙ୍କୁ ସ୍ମିତହାସପୂର୍ବକ ସମାଧାନରହିତ ବାଣୀରେ କହିଲେ—

ଦେବୀ କହିଲେ—ପ୍ରଭୋ ! ଯଦି ମୋର ଏ କଳା ରଙ୍ଗ ପ୍ରତି ଆପଣଙ୍କର ପ୍ରେମ ନାହିଁ, ତେବେ ଏତେ ଦିନ ପର୍ଯ୍ୟନ୍ତ ଆପଣଙ୍କର ଏ ଇଚ୍ଛାକୁ ଦମନ କରି କାହିଁକି ରଖିଥିଲେ? କୌଣସି ସ୍ତ୍ରୀ ଯେତେ ସୁନ୍ଦର ହୋଇଥିଲେ ସୁଦ୍ଧା ଯଦି ସ୍ୱାମୀର ତା' ପ୍ରତି ପ୍ରେମ ନାହିଁ, ତେବେ ସକଳ ଗୁଣସମ୍ପନ୍ନା ହୋଇ ଜନ୍ମ ନେବା ତା' ପାଇଁ ବୃଥା । ନାରୀଙ୍କ ସୃଷ୍ଟି ସ୍ୱାମୀଙ୍କ ଭୋଗର ପ୍ରଧାନ ଅଙ୍ଗ । ଯଦି ନାରୀ ଏଥିରୁ ବଞ୍ଚିତ ରହିଲା, ତେବେ ତାହାର ଆଉ କେଉଁଠି ଉପଯୋଗ ହୋଇପାରିବ ଭଲା? ଏଣୁ ଆପଣ ଏକାନ୍ତରେ ଯେଉଁ ବର୍ଣ୍ଣକୁ ନିନ୍ଦା କରିଛନ୍ତି, ତାହାକୁ ତ୍ୟାଗ କରି ଏବେ ମୁଁ ଅନ୍ୟ ବର୍ଣ୍ଣ ଗ୍ରହଣ କରିବି ଅଥବା ନିଜେ ନଷ୍ଟ ହୋଇଯିବି ।

ଏପରି କହି ଦେବୀ ପାର୍ବତୀ ଶଯ୍ୟାରୁ ଉଠିପଡ଼ି ଛିଡ଼ା ହୋଇଗଲେ ଏବଂ ତପସ୍ୟା ନିମନ୍ତେ ଅଟଳ ନିର୍ଣ୍ଣୟ କରି ଗଦ୍‌ଗଦ କଣ୍ଠରେ ଯିବାକୁ ଅନୁମତି ମାଗିଲେ ।

ଏହିରୂପେ ପ୍ରେମଭଙ୍ଗ ହୋଇଯିବାରୁ ସ୍ୱୟଂ ଭଗବାନ ଭୂତନାଥ ଭୟଭୀତ ହୋଇ ଭବାନୀଙ୍କୁ ପ୍ରଣାମ କରି କହିଲେ—

ଭଗବାନ ଶିବ କହିଲେ—ପ୍ରିୟେ ! ମୁଁ କ୍ରୀଡ଼ା ବା ମନୋବିନୋଦରେ ଏକଥା କହିଛି । ମୋର ଅଭିପ୍ରାୟକୁ ନ ଜାଣି ତୁମେ ଏମିତି କୁପିତ କାହିଁକି ହୋଇଗଲ? ଯଦି ତୁମ ପ୍ରତି ମୋର ପ୍ରେମ ନାହିଁ, ତେବେ ଆଉ କାହା ପ୍ରତି ହୋଇପାରିବ ଭଲା? ତୁମେ ଏ ଜଗତର ମାତା ଆଉ ମୁଁ ପିତା ତଥା ଅଧିପତି । ପୁଣି ତୁମ ପ୍ରତି ମୋର କେମିତି ପ୍ରେମ ନ ହେବ ! ଆମ ଦୁହିଙ୍କର ପ୍ରେମ କ'ଣ କାମଦେବଙ୍କ ପ୍ରେରିତ, କଦାପି ନୁହେଁ; କାରଣ କାମଦେବଙ୍କ ଉତ୍ପତ୍ତି ପୂର୍ବରୁ ଏ ଜଗତର ଉତ୍ପତ୍ତି ହୋଇଛି । କାମଦେବଙ୍କୁ ତ ମୁଁ ସାଧାରଣ ଲୋକଙ୍କ ରତି ପାଇଁ ସୃଷ୍ଟି କରିଛି । କାମଦେବ ମୋତେ ସାଧାରଣ ଦେବତାଙ୍କ ପରି ଭାବି ଥରେ କିଛି ତିରସ୍କାର କରିଦେଇଥିଲେ, ତେଣୁ ମୁଁ ତାଙ୍କୁ ଭସ୍ମ କରିଦେଲି । ଆମ ଦୁହିଙ୍କର ଏ ଲୀଳାବିହାର ମଧ୍ୟ ଜଗତର ହିତ ନିମନ୍ତେ ଉଦ୍ଦିଷ୍ଟ; ତେଣୁ ଆଜି ମଧ୍ୟ ସେହି ଉଦ୍ଦେଶ୍ୟରେ ମୁଁ ତୁମକୁ ଏହି ପରିହାସଯୁକ୍ତ କଥା କହିଥିଲି । ମୋର ଏ କଥାର ସତ୍ୟତା ଖୁବ୍ ଶୀଘ୍ର ପ୍ରକଟିତ ହୋଇଯିବ ।

ଦେବୀ କହିଲେ—ଭଗବନ୍ ! ସ୍ୱାମୀଙ୍କ ପ୍ରୀତିରୁ ବଞ୍ଚିତ ହୋଇ ଯେଉଁ ନାରୀ ଆପଣା ପ୍ରାଣ ପରିତ୍ୟାଗ କରେ ନାହିଁ, ସେ କୁଳାଙ୍ଗନା ଓ ଶୁଭଲକ୍ଷଣା ହୋଇଥିଲେ ମଧ୍ୟ ସତ୍‌ପୁରୁଷଙ୍କ ଦ୍ୱାରା ନିନ୍ଦିତା ହୋଇଥାଏ । ମୋର ଶରୀର ଗୋରା ନୁହେଁ ବୋଲି

ଆପଣଙ୍କ ମନରେ ବହୁତ ଦୁଃଖ । ତା' ନ ହୋଇଥିଲେ କ୍ରୀଡ଼ା ବା ପରିହାସରେ ମଧ୍ୟ ଆପଣଙ୍କ ମୁଖରୁ ଏପରି ଶବ୍ଦ (କାଳୀ) ବାହାରି ନ ଥାନ୍ତା । ମୋର କଳା ରଙ୍ଗ ଆପଣଙ୍କୁ ପ୍ରିୟ ନୁହେଁ, ଏଣୁ ଏହା ସତ୍‌ପୁରୁଷଙ୍କ ଦ୍ୱାରା ମଧ୍ୟ ନିନ୍ଦିତ । ତେଣୁ ତପସ୍ୟା ଦ୍ୱାରା ଏହାକୁ ତ୍ୟାଗ ନ କରିବା ପର୍ଯ୍ୟନ୍ତ ମୁଁ ଏଠି ରହି ପାରିବି ନାହିଁ ।

ଶିବ କହିଲେ—ଯଦି କଳା ରଙ୍ଗ ପାଇଁ ତୁମ ମନରେ ଏତେ ସନ୍ତାପ, ତେବେ ଏଥିପାଇଁ ତପସ୍ୟା କରିବା କ'ଣ ଦରକାର? ତୁମେ ତ ମୋ ଇଚ୍ଛାମାତ୍ରକେ ଅଥବା ନିଜ ଇଚ୍ଛାରେ ବି ଅନ୍ୟ ବର୍ଣ୍ଣଯୁକ୍ତା ହୋଇଯାଇ ପାରିବ !

ଦେବୀ କହିଲେ—ମୁଁ ଆପଣଙ୍କ ଦ୍ୱାରା ମୋ ରଙ୍ଗର ପରିବର୍ତ୍ତନ କରାଇବାକୁ ଚାହେଁ ନାହିଁ କି ମୁଁ ସ୍ୱୟଂ ମଧ୍ୟ ଏହାକୁ ବଦଳାଇବାକୁ ସଙ୍କଳ୍ପ କରି ପାରିବି ନାହିଁ । ମୁଁ କେବଳ ତପସ୍ୟା ଦ୍ୱାରା ହିଁ ବ୍ରହ୍ମାଙ୍କୁ ଆରାଧନା କରି ଶୀଘ୍ର ଗୋରୀ ହେବାକୁ ଚାହେଁ ।

ଶିବ କହିଲେ—ହେ ମହାଦେବୀ ! ପୂର୍ବେ ମୋରି କୃପାରୁ ହିଁ ବ୍ରହ୍ମାଙ୍କୁ ବ୍ରହ୍ମପଦ ପ୍ରାପ୍ତ ହୋଇଥିଲା, ପୁଣି ତପସ୍ୟା ଦ୍ୱାରା ତାଙ୍କୁ ଆବାହନ କରି ତୁମେ କ'ଣ କରିବ?

ଦେବୀ କହିଲେ—ଏହା ନିଃସନ୍ଦେହ ଯେ ବ୍ରହ୍ମାଦି ଦେବତାଙ୍କୁ ଆପଣଙ୍କ ଲାଗି ହିଁ ଉତ୍ତମ ପଦ ପ୍ରାପ୍ତ ହୋଇଛି, ତଥାପି ଆପଣଙ୍କ ଆଜ୍ଞାରେ ମୁଁ ତପସ୍ୟା ଦ୍ୱାରା ବ୍ରହ୍ମାଙ୍କୁ ଆରାଧନା କରି ମୋର ଅଭୀଷ୍ଟ ସିଦ୍ଧି କରିବାକୁ ଚାହେଁ । ପୂର୍ବକାଳରେ ମୁଁ ଯେବେ ଦକ୍ଷଙ୍କ କନ୍ୟା ସତୀ ନାମରେ ଖ୍ୟାତ ହୋଇଥିଲି, ସେତେବେଳେ ମୁଁ ତପସ୍ୟା ଦ୍ୱାରା ଆପଣଙ୍କୁ ପତିରୂପରେ ଲାଭ କରିଥିଲି । ଏଣୁ ଆଜି ମଧ୍ୟ ମୁଁ ତପସ୍ୟା ଦ୍ୱାରା ବ୍ରାହ୍ମଣ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ଗୌରୀ ହେବାକୁ ଚାହୁଁଛି । ମୋତେ କୁହନ୍ତୁ ଯେ ଏଭଳି କରିବାରେ ଦୋଷ କଣ?

ମହାଦେବୀ ଏପରି କହିବାରୁ ବାମଦେବ ସ୍ମିତହାସପୂର୍ବକ ନୀରବ ରହିଲେ । ଦେବତାଙ୍କ କାର୍ଯ୍ୟ ସଫଳ କରିବା ଇଚ୍ଛାରେ ସେ ଦେବୀଙ୍କୁ ଜିଦି କରି ଅଟକାଇଲେ ନାହିଁ ।

(ଅଧ୍ୟାୟ ୧୭–୨୪)



## ପାର୍ବତୀଙ୍କ ତପସ୍ୟା, ଗୋଟିଏ ବାଘ ପ୍ରତି ତାଙ୍କର କୃପା, ବ୍ରହ୍ମାଙ୍କର ଆଗମନ ଓ ଦେବୀଙ୍କ ସହ ବାର୍ତ୍ତାଳାପ, ଦେବୀଙ୍କର ଆପଣା କାଳୀ ତ୍ୱଚ୍ ତ୍ୟାଗ ଏବଂ ସେଥିରୁ କୃଷ୍ଣବର୍ଣ୍ଣା କୁମାରୀ କନ୍ୟା ରୂପରେ ଉତ୍ପନ୍ନ କୌଶିକୀଙ୍କ ଦ୍ୱାରା ଶୁମ୍ଭ ଓ ନିଶୁମ୍ଭଙ୍କ ବଧ

ବାୟୁଦେବ କହୁଛନ୍ତି—ମହର୍ଷିଗଣ ! ଏହାପରେ ପତିବ୍ରତା ମାତା ପାର୍ବତୀ ସ୍ୱାମୀଙ୍କୁ ପରିକ୍ରମା କରି ଏବଂ ବିୟୋଗଜନିତ ଦୁଃଖକୁ କୌଣସି ପ୍ରକାରେ ହୃଦୟମଧ୍ୟରେ ଚାପି ରଖି ହିମାଳୟ ପର୍ବତକୁ ଚାଲିଗଲେ । ପୂର୍ବେ ଯେଉଁ ସ୍ଥାନରେ ସଖୀମାନଙ୍କ ସଙ୍ଗେ ରହି ସେ ତପସ୍ୟା କରିଥିଲେ, ସେହି ସ୍ଥାନ ପ୍ରତି ତାଙ୍କର ପ୍ରେମ ହୋଇଯାଇଥିଲା, ତେଣୁ ସେ ପୁନଃ ସେହି ସ୍ଥାନକୁ ତପସ୍ୟା ପାଇଁ ଚୟନ କଲେ । ପ୍ରଥମେ ସେ ପିତୃଗୃହକୁ ଯାଇ ପିତାମାତାଙ୍କୁ ଦର୍ଶନ ଓ ପ୍ରଣାମ କରିବା ପରେ ସବୁ ସମାଚାର କହି ତାଙ୍କର ଆଜ୍ଞା ନେଲେ ଏବଂ ନିଜର ସମସ୍ତ ଆଭୂଷଣ ଓହ୍ଲାଇ ପକାଇଲେ । ତପୋବନକୁ ଯାଇ ସ୍ନାନ କରିବା ପରେ ପରମ ପାବନ ତପସ୍ୱିନୀ ବେଶ ଧାରଣ କରି ଅତ୍ୟନ୍ତ ତୀବ୍ର ଓ ଦୁଷ୍କର

ତପସ୍ୟା କରିବାକୁ ସଂକଳ୍ପ କଲେ । ସେ ମନେ ମନେ ସ୍ୱାମୀଙ୍କ ଚରଣାରବିନ୍ଦକୁ ଚିନ୍ତନ କରି କୌଣସି କ୍ଷଣିକ ଲିଙ୍ଗରେ ତାଙ୍କୁ ଧ୍ୟାନ କରି ପୂଜନର ବାହ୍ୟ ବିଧି ଅନୁସାରେ ଜଙ୍ଗଲର ଫଳମୂଳାଦି ଉପକରଣ ଦ୍ୱାରା ତ୍ରିକାଳ ତାଙ୍କୁ ପୂଜା କରୁଥିଲେ । "ମହାଦେବ ହିଁ ବ୍ରହ୍ମାଙ୍କ ରୂପ ଧାରଣ କରି ମୋର ତପସ୍ୟାର ଫଳ ମୋତେ ପ୍ରଦାନ କରିବେ ।" ଏପରି ଦୃଢ଼ ବିଶ୍ୱାସ କରି ସେ ପ୍ରତିଦିନ ତପସ୍ୟାରେ ନିମଗ୍ନ ରହୁଥିଲେ । ଏହିପରି ତପସ୍ୟା କରୁ କରୁ ଦୀର୍ଘକାଳ ବିତିଗଲା । ଦିନେ ତାଙ୍କୁ ଗୋଟିଏ ବ୍ୟାଘ୍ର ଦୃଶ୍ୟ ହେଲା । ସେ ଦୁଷ୍ଟଭାବରେ ତାଙ୍କ ପାଖକୁ ଆସୁଥିଲା । ପାର୍ବତୀଙ୍କ ନିକଟକୁ ଆସୁ ଆସୁ ସେହି ଦୁରାତ୍ମାର ଶରୀର ଜଡ଼ବତ୍ ହୋଇଗଲା । ସେ ତାଙ୍କ ସମୀପରେ ଚିତ୍ରପ୍ରତିମା ପରି ହୋଇଗଲା । ଦୁଷ୍ଟ ଅଭିପ୍ରାୟରେ ଆସିଥିବା ସେହି ବ୍ୟାଘ୍ରକୁ ଦେଖି ମଧ୍ୟ ଦେବୀ ପାର୍ବତୀ ସାଧାରଣ ନାରୀଙ୍କ ପରି ବିଚଳିତ ହେଲେ ନାହିଁ । ବ୍ୟାଘ୍ରର ସକଳ ଅଙ୍ଗ ଅଚଳ ହୋଇଯାଇଥିଲା । ସେ କ୍ଷୁଧାରେ ବ୍ୟାକୁଳ ଥିଲା ଏବଂ ପାର୍ବତୀଙ୍କୁ ନିଜର ଭୋଜନ ବୋଲି ଭାବି ତାଙ୍କ ଆଡ଼କୁ ଏକଲୟରେ ଚାହିଁ ରହିଥିଲା । ଦେବୀଙ୍କ ସମ୍ମୁଖରେ ସ୍ଥାଣୁ ପରି ଛିଡ଼ା ହୋଇ ସେ ସତେ ଯେପରି ତାଙ୍କର ଉପାସନା କରିବାକୁ ଲାଗିଥିଲା । ଏଣେ ଦେବୀଙ୍କ ମନରେ ଏହି ଭାବ ବାରମ୍ବାର ଆସିଲା ଯେ –ଏ ବାଘଟି ମୋର ଉପାସକ, ଏ ମୋତେ ଦୁଷ୍ଟ ବନ୍ୟଜନ୍ତୁଙ୍କ ଠାରୁ ରକ୍ଷା କରିବ । ଏପରି ଭାବି ସେ ତା' ଉପରେ କୃପା କଲେ । ତାଙ୍କରି କୃପାରେ ତା'ର ତ୍ରିବିଧ ମଳ ନଷ୍ଟ ହୋଇଗଲା । ଏହାପରେ ବାଘକୁ ଅଗ୍ରନକ ଦେବୀଙ୍କ ସ୍ୱରୂପର ଅନୁଭବ ହେଲା ଏବଂ ତା'ର କ୍ଷୁଧା ନଷ୍ଟ ହୋଇଗଲା, ପୁଣି ତା'ର ଅଙ୍ଗମାନଙ୍କର ଜଡ଼ତା ମଧ୍ୟ ନଷ୍ଟ ହୋଇଗଲା । ଏହା ସହିତ ତା'ର ଜନ୍ମସିଦ୍ଧ ଦୁଷ୍ଟତା ମଧ୍ୟ ନଷ୍ଟ ହୋଇଗଲା ଏବଂ ନିରନ୍ତର ତାକୁ ତୃପ୍ତି ବୋଧ ହେଲା । ସେ ଉତ୍କୃଷ୍ଟ କୃତାର୍ଥତା ଅନୁଭବ କରି ସେହିକ୍ଷଣି ତାଙ୍କର ଭକ୍ତ ହୋଇଗଲା ଏବଂ ଅନ୍ୟ ଦୁଷ୍ଟ ବନ୍ୟ ପ୍ରାଣୀଙ୍କୁ ଘଉଡ଼ାଇ ତପୋବନରେ ପରମେଶ୍ୱରୀଙ୍କ ସେବା କରିବାକୁ ଲାଗିଲା । ଏଣେ ଦେବୀଙ୍କ ତପସ୍ୟା ମଧ୍ୟ କ୍ରମେ କ୍ରମେ ତୀବ୍ରତର ହେବାକୁ ଲାଗିଲା ।

ଇତିମଧ୍ୟରେ ଦେବଗଣ ଶୁମ୍ଭ ପ୍ରଭୃତି ଦୈତ୍ୟଙ୍କ ଦୁରାଗ୍ରହରେ ଦୁଃଖିତ ହୋଇ ବ୍ରହ୍ମାଙ୍କ ଶରଣକୁ ଗଲେ ଏବଂ ଶତ୍ରୁପୀଡ଼ନଜନିତ ଦୁଃଖ ନିବେଦନ କଲେ । ଶୁମ୍ଭ ଓ ନିଶୁମ୍ଭ ବରପ୍ରାପ୍ତିର ଗର୍ବରେ ଉନ୍ମତ୍ତ ହୋଇ ଦେବତାଙ୍କୁ ଯେପରି କଷ୍ଟ ଦେଉଥିଲେ, ତାହା ଶୁଣି ବ୍ରହ୍ମାଙ୍କ ମନରେ ଭାରି ଦୟା ଆସିଲା । ସେ ଦୈତ୍ୟବଧ ନିମନ୍ତେ ଭଗବାନ ଶିବଙ୍କ ସହିତ ହୋଇଥିବା ବାର୍ତ୍ତାଳାପକୁ ସ୍ମରଣ କରି ଦେବଗଣଙ୍କ ସଙ୍ଗେ ପାର୍ବତୀଙ୍କ ତପୋବନ ଅଭିମୁଖେ ଯାତ୍ରା କଲେ । ସେଠାରେ ସୁରଶ୍ରେଷ୍ଠ ବ୍ରହ୍ମା ଉତ୍ତମ ତପରେ ପରିନିଷ୍ଠିତ ପରମେଶ୍ୱରୀ ପାର୍ବତୀଙ୍କୁ ଦେଖିବାକୁ ପାଇଲେ । ସେ ସମଗ୍ର ଜଗତର ପ୍ରତିଷ୍ଠା ପରି ଦିଶୁଥିଲେ । ନିଜର, ଶ୍ରୀହରିଙ୍କର ଓ ରୁଦ୍ରଦେବଙ୍କର ମଧ୍ୟ ଜନ୍ମଦାତା ମହେଶ୍ୱରଙ୍କ ଭାର୍ଯ୍ୟା ଆର୍ଯ୍ୟା ଜଗନ୍ମାତା ଗିରିରାଜନନ୍ଦିନୀଙ୍କୁ ବ୍ରହ୍ମା ପ୍ରଣାମ କଲେ ।

ଦେବଗଣଙ୍କ ସଙ୍ଗେ ବ୍ରହ୍ମାଙ୍କୁ ଉପଗତ ଦେଖି ଦେବୀ ତାଙ୍କୁ ଯଥାଯୋଗ୍ୟ ଅର୍ଘ୍ୟାଦି ଦ୍ୱାରା ସ୍ୱାଗତ ସତ୍କାର କଲେ । ପ୍ରତିବଦଳରେ ଦେବୀଙ୍କର ମଧ୍ୟ ସତ୍କାର ଓ ଅଭିନନ୍ଦନ କରିସାରି ବ୍ରହ୍ମା ନ ଜାଣିବା ପରି ତାଙ୍କ ତପସ୍ୟାର କାରଣ ଜାଣିବାକୁ ପ୍ରଶ୍ନ କଲେ ।

ବ୍ରହ୍ମା କହିଲେ–ହେ ଦେବୀ ! ଏତେ କଠୋର ତପସ୍ୟା ଦ୍ୱାରା ଆପଣ ଏଠାରେ କେଉଁ ଅଭୀଷ୍ଟ ସିଦ୍ଧ କରିବାକୁ ଚାହାନ୍ତି? ତପସ୍ୟାର ସମସ୍ତ ଫଳ

ତ ଆପଣଙ୍କ ଅଧୀନ । ଯେଉଁ ପରମେଶ୍ୱର ସକଳ ଭୁବନର ସ୍ୱାମୀ, ତାଙ୍କୁ ସ୍ୱାମୀରୂପେ ପାଇ ତ ଆପଣ ତପସ୍ୟାର ସମସ୍ତ ଫଳ ଲାଭ କରିସାରିଛନ୍ତି । ଏ ସକଳ କ୍ରିୟାକଳାପ ତ ଆପଣଙ୍କର ଲୀଳାବିଳାସ । ତଥାପି ଆପଣ ଏତେ ଦିନରୁ ଏ ଯେଉଁ ମହାଦେବଙ୍କ ବିରହ-କଷ୍ଟକୁ ସହୁଛନ୍ତି, ଏହା ତ ବଡ଼ ଆଶ୍ଚର୍ଯ୍ୟର କଥା !

ଦେବୀ କହିଲେ—ବ୍ରହ୍ମନ୍ ! ସୃଷ୍ଟିର ଆଦିକାଳରେ ମହାଦେବଙ୍କ ଠାରୁ ଆପଣଙ୍କର ଉତ୍ପତ୍ତି ହୋଇଥିଲା, ସେ ଦୃଷ୍ଟିରୁ ସମସ୍ତ ପ୍ରଜାଙ୍କ ମଧ୍ୟରେ ପ୍ରଥମ ହୋଇଥିବାରୁ ଆପଣ ମୋର ଜ୍ୟେଷ୍ଠ ପୁତ୍ର ହେଲେ । ପୁଣି ପ୍ରଜାବୃଦ୍ଧି ପାଇଁ ଆପଣଙ୍କ ଲଲାଟରୁ ଭଗବାନ ଶିବଙ୍କର ଆବିର୍ଭାବ ହେଲା, ସେ ଦୃଷ୍ଟିରୁ ଆପଣ ମୋର ପତିଙ୍କର ପିତା ବା ମୋର ଶ୍ୱଶୁର ହେବା କାରଣରୁ ଗୁରୁଜନଙ୍କ ଶ୍ରେଣୀରେ ଗଣ୍ୟ ହେବେ; ପୁନଶ୍ଚ ମୁଁ ଯେତେବେଳେ ଭାବୁଛି ଯେ ସ୍ୱୟଂ ମୋ ପିତା ଗିରିରାଜ ହିମାଳୟ ଆପଣଙ୍କ ପୁତ୍ର, ସେତେବେଳେ ଆପଣ ମୋତେ ମୋର ସାକ୍ଷାତ୍ ପିତାମହ ପରି ଲାଗନ୍ତି । ଲୋକପିତାମହ ! ଏହିରୂପେ ଆପଣ ଲୋକଯାତ୍ରାର ବିଧାତା ଅଟନ୍ତି । ଅନ୍ତଃପୁରରେ ସ୍ୱାମୀଙ୍କ ସହ ଯେଉଁ ଘଟଣା ଘଟିଥିଲା, ତାହା ମୁଁ ଆପଣଙ୍କ ସମ୍ମୁଖରେ କେମିତି ଅବା ପ୍ରକାଶ କରିବି? ତେଣୁ ଏଠି ମୁଁ ଅଧିକ କିଛି କହୁନାହିଁ । କେବଳ ଏତିକି କହୁଛି ଯେ ମୋ ଦେହର ଏ କଳା ରଙ୍ଗକୁ ସାତ୍ତ୍ୱିକବିଧିରେ ତ୍ୟାଗ କରି ମୁଁ ଗୌରବର୍ଣ୍ଣା ହେବାକୁ ଚାହେଁ ।

ବ୍ରହ୍ମା କହିଲେ—ହେ ଦେବୀ ! ଏତିକି ମାତ୍ର ପ୍ରୟୋଜନ ପାଇଁ ଏତେ ବଡ଼ ତପସ୍ୟା ! କ'ଣ ଏତିକି ପାଇଁ ଆପଣଙ୍କ ଇଚ୍ଛା ହିଁ ପର୍ଯ୍ୟାପ୍ତ ନ ଥିଲା? ଏହା ତ ଆପଣଙ୍କର ଲୀଳାମାତ୍ର । ଜଗନ୍ମାତ ! ଆପଣଙ୍କ ଲୀଳା ତ ଲୋକହିତ ନିମନ୍ତେ ଉଦ୍ଦିଷ୍ଟ ହୋଇଥାଏ । ତେଣୁ ଏହି ଲୀଳା ଦ୍ୱାରା ଆପଣ ମୋର ଗୋଟିଏ ଅଭୀଷ୍ଟ ସିଦ୍ଧ କରନ୍ତୁ । ନିଶୁମ୍ଭ ଓ ଶୁମ୍ଭ ନାମରେ ଦୁଇଟି ଦୈତ୍ୟ ଅଛନ୍ତି । ସେ ଦୁହେଁ ମୋ ବର ପାଇ ଅତି ଗର୍ବିତ ହୋଇଯାଇଛନ୍ତି ଏବଂ ଦେବତାମାନଙ୍କୁ କଷ୍ଟ ଦେଉଛନ୍ତି । ସେମାନେ ଆପଣଙ୍କ ହାତରେ ମରିବେ ବୋଲି ବର ପାଇଛନ୍ତି । ତେଣୁ ଆଉ ବିଳମ୍ବ ନ କରନ୍ତୁ । ଆପଣ କ୍ଷଣକ ପାଇଁ ସୁସ୍ଥିର ହୋଇଯାଆନ୍ତୁ । ଆପଣଙ୍କ ଠାରୁ ଯେଉଁ ଶକ୍ତି ଉତ୍ପନ୍ନ ହେବ, ତାହାରି ଦ୍ୱାରା ସେ ଦୁହିଙ୍କର ମୃତ୍ୟୁ ହେବ ।

ବ୍ରହ୍ମା ଏପରି ପ୍ରାର୍ଥନା କରିବାରୁ ଗିରିରାଜ-କୁମାରୀ ଦେବୀ ପାର୍ବତୀ ସହସା ଆପଣା କଳା ତ୍ୱଗ୍‌ର ଆବରଣକୁ କାଢ଼ି ପକାଇ ଗୌରବର୍ଣ୍ଣା ହୋଇଗଲେ । ତ୍ୟାଗ କରିଥିବା ତ୍ୱଗ୍‌କୋଷ (କଳା ଚର୍ମର ଆବରଣ) ରୂପରେ ତାଙ୍କର ଯେଉଁ ଶକ୍ତି ବିଦ୍ୟମାନ ଥିଲା, ତାହା କଳାମେଘ ପରି କାନ୍ତିଯୁକ୍ତା କୃଷ୍ଣବର୍ଣ୍ଣା କନ୍ୟାରେ ପରିଣତ ହୋଇଗଲା । ସେହି ଶକ୍ତିଙ୍କର ନାମ 'କୌଶିକୀ' ହେଲା । ଦେବୀଙ୍କର ସେହି ମାୟାମୟୀ ଶକ୍ତି ହିଁ ଯୋଗନିଦ୍ରା ଓ ବୈଷ୍ଣବୀ ବୋଲାଇଲେ । ତାଙ୍କର ଆଠଟି ବିଶାଳ ଭୁଜ ଥିଲା । ସେହି ଭୁଜମାନଙ୍କରେ ସେ ଶଙ୍ଖ, ଚକ୍ର, ତ୍ରିଶୂଳ ପ୍ରଭୃତି ଆୟୁଧ ଧାରଣ କରିଥିଲେ । ତାଙ୍କର ତିନୋଟି ରୂପ ଥିଲା—ସୌମ୍ୟ, ଘୋର ଓ ମିଶ୍ର । ସେ ତ୍ରିନେତ୍ରଧାରିଣୀ ଥିଲେ । ତାଙ୍କ ମସ୍ତକରେ ଅର୍ଦ୍ଧଚନ୍ଦ୍ର ମୁକୁଟ ପରି ଶୋଭା ପାଉଥିଲା । ତାଙ୍କୁ ପୁରୁଷର ସ୍ପର୍ଶ ଓ ରତି ପ୍ରାପ୍ତ ହୋଇ ନ ଥିଲା ଏବଂ ସେ ଅତ୍ୟନ୍ତ ସୁନ୍ଦରୀ ଥିଲେ । ଦେବୀ ପାର୍ବତୀ ତାଙ୍କର ସେହି ସନାତନ ଶକ୍ତି କୌଶିକୀଙ୍କୁ ବ୍ରହ୍ମାଙ୍କ ହସ୍ତରେ ସମର୍ପି ଦେଲେ, ଯେ କି ଦୈତ୍ୟପ୍ରବର ଶୁମ୍ଭ ଓ ନିଶୁମ୍ଭଙ୍କର ବଧକାରିଣୀ ଥିଲେ । ସେତେବେଳେ

ବ୍ରହ୍ମା ପ୍ରସନ୍ନ ହୋଇ ତାଙ୍କ ସଙ୍ଗରେ ଆସିଥିବା ଗୋଟିଏ ବଳବାନ୍ ସିଂହକୁ ସେହି ପରାଶକ୍ତିଙ୍କର ବାହନରୂପେ ପ୍ରଦାନ କଲେ; ପୁଣି ତାଙ୍କୁ ନିବାସ ନିମନ୍ତେ ବିନ୍ଧ୍ୟପର୍ବତରେ ସ୍ଥାନ ଦେଲେ ଏବଂ ସେଠାରେ ନାନା ପ୍ରକାର ଉପଚାରରେ ତାଙ୍କୁ ପୂଜା କଲେ । ବିଶ୍ୱସ୍ରଷ୍ଟା ବ୍ରହ୍ମାଙ୍କ ଦ୍ୱାରା ସମ୍ମାନିତା ହୋଇ ସେହି ଶକ୍ତି ଆପଣା ମାତା ଗୌରୀଙ୍କୁ ଓ ବ୍ରହ୍ମାଙ୍କୁ ନମସ୍କାର କଲେ । ଏହାପରେ ଆପଣା ଅଙ୍ଗରୁ ନିଜ ପରି ଶକ୍ତିଶାଳିନୀ ବହୁସଂଖ୍ୟକ ଶକ୍ତିଙ୍କୁ ଉତ୍ପନ୍ନ କରି ସେମାନଙ୍କୁ ସଙ୍ଗରେ ଘେନି ଦୈତ୍ୟରାଜ ଶୁମ୍ଭ-ନିଶୁମ୍ଭଙ୍କୁ ବଧ କରିବା ପାଇଁ ବିନ୍ଧ୍ୟାଚଳ ଅଭିମୁଖେ ଯାତ୍ରା କଲେ । ସେ ରଣାଙ୍ଗନରେ ଦୈତ୍ୟ ଦୁହିଙ୍କୁ ବଧ କଲେ । ସେହି ଯୁଦ୍ଧର ବର୍ଣ୍ଣନା ଅନ୍ୟତ୍ର ହୋଇଛି, ତେଣୁ ଏଠାରେ ବିସ୍ତୃତ କଥା ବର୍ଣ୍ଣିତ ହେଉ ନାହିଁ । ଅନ୍ୟ ସ୍ଥାନରୁ ସେ କଥା ଗ୍ରହଣ କରି ବୁଝିବା ଉଚିତ । ଏବେ ମୁଁ ଶଂସିତ ପ୍ରସଙ୍ଗକୁ ଆଗକୁ ବଢ଼ାଉଛି । (ଅଧ୍ୟାୟ ୨୫)

***

## ଗୌରୀଦେବୀ ବ୍ୟାଘ୍ରକୁ ନିଜ ସଙ୍ଗରେ ନେବା ପାଇଁ ବ୍ରହ୍ମାଙ୍କୁ ଅନୁମତି ମାଗିବାରୁ ବ୍ରହ୍ମା ତାହାକୁ ଦୁଷ୍କର୍ମୀ ବୋଲି ଦର୍ଶାଇ ମନା କରିବା, ଦେବୀ ଶରଣାଗତକୁ ପରିତ୍ୟାଗ କରିବେ ନାହିଁ ବୋଲି କହିବାରୁ ବ୍ରହ୍ମା ଦେବୀଙ୍କ ମହତ୍ତ୍ୱ ପ୍ରତିପାଦିତ କରି ଅନୁମତି ଦେବା ଏବଂ ପିତାମାତାଙ୍କୁ ଭେଟିବା ପରେ ଦେବୀଙ୍କର ମନ୍ଦରାଚଳ ପ୍ରତ୍ୟାବର୍ତ୍ତନ

ବାୟୁଦେବ କହୁଛନ୍ତି—କୌଶିକୀଙ୍କୁ ଉତ୍ପନ୍ନ କରି ବ୍ରହ୍ମାଙ୍କ ହସ୍ତରେ ସମର୍ପି ଦେବା ପରେ ଗୌରୀଦେବୀ ପ୍ରତ୍ୟୁପକାର ନିମନ୍ତେ ପିତାମହଙ୍କୁ କହିଲେ—

ଦେବୀ କହିଲେ—ଆପଣ କ'ଣ ମୋ ଆଶ୍ରମରେ ରହୁଥିବା ଏ ବ୍ୟାଘ୍ରକୁ ଦେଖିଛନ୍ତି? ତପୋବନରେ ଦୁଷ୍ଟ ଜନ୍ତୁଙ୍କ ଠାରୁ ଏ ମୋତେ ରକ୍ଷା କରିଛି । ଏ ମୋଠାରେ ମନ ଲଗାଇ ଅନନ୍ୟଭାବରେ ମୋତେ ଭଜିଛି । ତେଣୁ ଏହାକୁ ସୁରକ୍ଷା ମିଳିବା ଉଚିତ; ଏହାର ସୁରକ୍ଷା ଭଳି ମୋର ଆଉ କିଛି ପ୍ରିୟ କାର୍ଯ୍ୟ ନାହିଁ । ଏ ମୋର ଅନ୍ତଃପୁରରେ ବିଚରଣ କରିବ । ଭଗବାନ ଶିବ ଏହାକୁ ପ୍ରସନ୍ନତାପୂର୍ବକ ଗଣେଶ୍ୱର ପଦ ପ୍ରଦାନ କରିବେ । ମୁଁ ଏହାକୁ ଆଗରେ ଚଲାଇ ସଖୀମାନଙ୍କ ସଙ୍ଗରେ ଏଠାରୁ ଫେରିବାକୁ ଚାହୁଁଛି । ଏଥିପାଇଁ ଆପଣ ମୋତେ ଆଜ୍ଞା ଦିଅନ୍ତୁ; କାରଣ ଆପଣ ପ୍ରଜାପତି ଅଟନ୍ତି ।

ଦେବୀ ଏପରି କହିବାରୁ ତାଙ୍କୁ ଭୋଳୀ ବୋଲି ବୁଝି ବ୍ରହ୍ମା ହସି ହସି ସେହି ବ୍ୟାଘ୍ରର ପୁରାତନ କ୍ରୂରତାପୂର୍ଣ୍ଣ ଇତିହାସ ବର୍ଣ୍ଣନା କଲେ ।

ବ୍ରହ୍ମା କହିଲେ—ହେ ଦେବୀ ! କାହିଁ ପଶୁଙ୍କ ମଧ୍ୟରେ କ୍ରୂର ବ୍ୟାଘ୍ର, ଆଉ କାହିଁ ଆପଣଙ୍କର ମଙ୍ଗଳମୟୀ କୃପା । ଆପଣ ବିଷଧର ସର୍ପ ମୁଖରେ ଅମୃତ କାହିଁକି ସିଞ୍ଚନ କରୁଛନ୍ତି? ଏ ତ ବ୍ୟାଘ୍ରରୂପରେ ରହୁଥିବା ଗୋଟିଏ ନିଶାଚର । ଏ ଅନେକ ଗାଈଙ୍କୁ ଓ ତପସ୍ୱୀ ବ୍ରାହ୍ମଣଙ୍କୁ ମାରି ଖାଇଯାଇଛି । ଆହୁରି ମଧ୍ୟ ଇଏ ପ୍ରାଣୀମାନଙ୍କୁ ମନଇଚ୍ଛା ସନ୍ତାପିତ କରିବା ସହ ଇଚ୍ଛାନୁସାରେ ରୂପ ଧାରଣ କରି ବିଚରଣ କରେ । ତେଣୁ ଏ ଆପଣା ପାପକର୍ମର ଫଳ ଅବଶ୍ୟ ଭୋଗ କରିବା ଉଚିତ । ଏପରି ଦୁଷ୍ଟ ପ୍ରତି ଆପଣ

କାହିଁକି କୃପା କରୁଛନ୍ତି? ଏତାଦୃଶ କଳୁଷିତଚିତ୍ତ ଦୁଷ୍ଟ ଜୀବ ଠାରେ ଦେବୀଙ୍କର କି କାମ?

ଦେବୀ କହିଲେ—ଆପଣ ଯାହା କିଛି କହିଲେ, ସବୁ ଠିକ୍ । ତଥାପି ଏ ମୋ ଶରଣକୁ ଆସିଥିବାରୁ ମୋ ପକ୍ଷେ ଏହାକୁ ତ୍ୟାଗ କରିବା ଉଚିତ ହେବ ନାହିଁ ।

ବ୍ରହ୍ମା କହିଲେ—ହେ ଦେବୀ ! ଆପଣଙ୍କ ପ୍ରତି ଏହାର ଭକ୍ତି ଅଛି ବୋଲି ନ ଜାଣି ମୁଁ ଆପଣଙ୍କ ସମକ୍ଷରେ ଏହାର ପୂର୍ବଚରିତ ବର୍ଣ୍ଣନା କରିଦେଲି । ଯଦି ଏହା ମନରେ ଭକ୍ତି ଅଛି, ତେବେ ପୂର୍ବ ପାପ ଏହାର କ'ଣ କରି ପାରିବ? କାରଣ ଆପଣଙ୍କ ଭକ୍ତର କଦାପି ବିନାଶ ହୁଏ ନାହିଁ । ଯେ ଆପଣଙ୍କ ଆଜ୍ଞା ପାଳନ କରେ ନାହିଁ, ସେ ପୁଣ୍ୟକର୍ମା ହୋଇ ମଧ୍ୟ କ'ଣ କରିବ? ହେ ଦେବୀ ! ଆପଣ ଅଜନ୍ମା, ବୁଦ୍ଧିମତୀ, ଆଦ୍ୟା ଶକ୍ତି ଓ ପରମେଶ୍ୱରୀ । ସମସ୍ତଙ୍କ ବନ୍ଧନ ଓ ମୋକ୍ଷର ବ୍ୟବସ୍ଥା ଆପଣଙ୍କ ଅଧୀନ । ଆପଣଙ୍କ ଛଡ଼ା ଆଉ ପରାଶକ୍ତି କିଏ ଅଛି? ଆପଣଙ୍କ ବିନା କଣ କାହାକୁ କର୍ମଜନିତ ସିଦ୍ଧି ପ୍ରାପ୍ତ ହୋଇପାରିବ? ଆପଣ ହିଁ ଅସଂଖ୍ୟ ରୁଦ୍ରଙ୍କର ବିବିଧ ଶକ୍ତି । ଶକ୍ତିରହିତ କର୍ତ୍ତା ତା' କାର୍ଯ୍ୟରେ କେଉଁ ସଫଳତା ବା ପାଇପାରିବ? ଭଗବାନ ବିଷ୍ଣୁଙ୍କୁ, ମୋତେ ତଥା ଅନ୍ୟ ଦେବତା, ଦାନବ ଓ ରାକ୍ଷସଙ୍କୁ ଐଶ୍ୱର୍ଯ୍ୟ ପ୍ରଦାନ କରିବା ପାଇଁ ଆପଣଙ୍କ ଆଜ୍ଞା ହିଁ କାରଣ ହୋଇଥାଏ । ଆପଣଙ୍କ ଆଜ୍ଞା ପାଳନ କରି କରି ଅସଂଖ୍ୟ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ଚ୍ଛଲିଗଲେଣି ଏବଂ ଭବିଷ୍ୟତରେ ମଧ୍ୟ କେତେ ଆସିବେ । ହେ ଦେବେଶ୍ୱରୀ! ଆପଣଙ୍କ ଆରାଧନା ନ କରି ଆମେ ସବୁ ଶ୍ରେଷ୍ଠ ଦେବତା ମଧ୍ୟ ଚତୁର୍ବର୍ଗ ସାଧନ କରିବାକୁ ଅସମର୍ଥ ହେଉ । ଆପଣଙ୍କ ସଂକଳ୍ପମାତ୍ରକେ ଅବିଳମ୍ବେ ବ୍ରହ୍ମତ୍ୱ ଓ ସ୍ଥାବରତ୍ୱରେ ଓଲଟ-ପାଲଟ ହୋଇଯାଏ ଅର୍ଥାତ୍ ବ୍ରହ୍ମା ସ୍ଥାବର (ବୃକ୍ଷାଦି) ହୋଇଯାଆନ୍ତି ଏବଂ ସ୍ଥାବର ବ୍ରହ୍ମା ହୋଇଯାଆନ୍ତି; କାରଣ ପାପପୁଣ୍ୟର ଫଳ ବ୍ୟବସ୍ଥା ତ ଆପଣଙ୍କ ଦ୍ୱାରା କୃତ । ଆପଣ ଜଗଦୀଶ୍ୱର ପରମାତ୍ମା ଶିବଙ୍କର ଆଦି-ମଧ୍ୟ-ଅନ୍ତବିହୀନା ସନାତନୀ ଶକ୍ତି । ଆପଣ ସମଗ୍ର ଜଗତର ସଂଗ୍ରହନ ପାଇଁ କୌଣସି ଅଦ୍ଭୁତ ମୂର୍ତ୍ତିରେ ଆବିଷ୍ଟ ହୋଇ ନାନା ପ୍ରକାରେ କ୍ରୀଡ଼ା କରନ୍ତି । ଆପଣଙ୍କୁ କିଏ ଭଲା ଯଥାର୍ଥ ରୂପରେ ଜାଣି ପାରିବ? ତେଣୁ ଏ ପାପାଚ୍ଛରୀ ବ୍ୟାଘ୍ରକୁ ବି ଆଜି ଆପଣଙ୍କ କୃପାରୁ ପରମ ସିଦ୍ଧି ପ୍ରାପ୍ତି କରିବାରେ କେହି ବାଧା ଦେଇପାରିବେ ନାହିଁ ।

ଏହିରୂପେ ଦେବୀଙ୍କର ପରମ ତତ୍ତ୍ୱକୁ ସ୍ମରଣ କରାଇ ବ୍ରହ୍ମା ପ୍ରାର୍ଥନା କରିବାରୁ ଗୌରୀଦେବୀ ତପସ୍ୟାରୁ ବିରତ ହେଲେ । ଏହାପରେ ଦେବୀଙ୍କ ଆଜ୍ଞା ନେଇ ବ୍ରହ୍ମା ଅନ୍ତର୍ହିତ ହୋଇଗଲେ । ତା'ପରେ ଦେବୀ ତାଙ୍କ ମାତାପିତା ମେନା ଓ ହିମବାନଙ୍କୁ ଦର୍ଶନ କରି ପ୍ରଣାମ କଲେ ଏବଂ ତାଙ୍କୁ ନାନା ପ୍ରକାରେ ଆଶ୍ୱାସନା ଦେଲେ; କାରଣ ସେମାନେ ତାଙ୍କ ବିରହରେ ବ୍ୟାକୁଳ ଥିଲେ । ଏହାପରେ ଦେବୀ ତପୋବନର ତପସ୍ୟାପ୍ରେମୀ ବୃକ୍ଷଗୁଡ଼ିକ ଆଡ଼କୁ ଚ୍ଛହିଁଲେ । ସେଗୁଡ଼ିକ ତାଙ୍କ ସମ୍ମୁଖରେ ପୁଷ୍ପବର୍ଷା କରୁଥିଲେ । ମନେ ହେଉଥିଲା, ସତେ ଯେପରି ବୃକ୍ଷମାନେ ଭାବୀ ବିୟୋଗର ଶୋକରେ ମର୍ମାହତ ହୋଇ ଅଶ୍ରୁବର୍ଷଣ କରୁଛନ୍ତି ଏବଂ ବୃକ୍ଷଶାଖାରେ ବସିଥିବା ବିହଙ୍ଗମାନଙ୍କ କଳରବ ଛଳରେ ସତେ ଯେପରି ବ୍ୟାକୁଳ ହୋଇ ଦୈନ୍ୟଭାବରେ ନାନା ପ୍ରକାରେ ବିଳାପ କରୁଛନ୍ତି । ଏହାପରେ ସ୍ୱାମୀଙ୍କ ଦର୍ଶନ ପାଇଁ ଉତ୍ସୁକ ହୋଇ, ସେହି ବ୍ୟାଘ୍ରକୁ ଔରସ ପୁତ୍ର ପରି ସ୍ନେହରେ ଆଗେ ଆଗେ ଚଲାଇ ଏବଂ ସଖୀଙ୍କ ସଙ୍ଗେ କଥାବାର୍ତ୍ତା କରିବା ସହିତ ନିଜ ଅଙ୍ଗକାନ୍ତିରେ ଦଶଦିଗକୁ ଉଦ୍ଭାସିତ କରି

କରି ଗୌରୀଦେବୀ ମନ୍ଦରାଚଳ ଅଭିମୁଖେ ଯାତ୍ରା କଲେ, ଯେଉଁଠି ତାଙ୍କ ସ୍ୱାମୀ ସମଗ୍ର ଜଗତର ଆଧାର, ସ୍ରଷ୍ଟା, ପାଳକ ଓ ସଂହାରକ ମହେଶ୍ୱର ବିରାଜମାନ ଥିଲେ । (ଅଧ୍ୟାୟ ୨୬)

✯✯✯

# ମନ୍ଦରାଚଳରେ ଗୌରୀଦେବୀଙ୍କ ସ୍ୱାଗତ, ସ୍ୱୟଂ ମହାଦେବ ଦେବୀଙ୍କର ଓ ନିଜର ଉତ୍କୃଷ୍ଟ ସ୍ୱରୂପ ତଥା ପାରସ୍ପରିକ ଅବିଚ୍ଛେଦ୍ୟ ସମ୍ବନ୍ଧ ଉପରେ ଆଲୋକପାତ କରିବା ପରେ ଦେବୀଙ୍କ ସଙ୍ଗରେ ଆସିଥିବା ବ୍ୟାଘ୍ରକୁ ନିଜର ଗଣାଧ୍ୟକ୍ଷ କରି ଅନ୍ତଃପୁରର ଦ୍ୱାରଦେଶରେ ସୋମନନ୍ଦୀ ନାମରେ ପ୍ରତିଷ୍ଠିତ କରିବା ପ୍ରସଙ୍ଗ

ଋଷିମାନେ ପଚ୍ଚାରିଲେ–ନିଜ ଶରୀରକୁ ଦିବ୍ୟ ଗୌରବର୍ଣ୍ଣ କରିବା ପରେ ଗିରିରାଜକୁମାରୀ ଦେବୀ ପାର୍ବତୀ ମନ୍ଦରାଚଳରେ ପ୍ରବେଶ କରି ସ୍ୱାମୀଙ୍କ ସଙ୍ଗେ କିପରି ମିଳିତ ହେଲେ? ପ୍ରବେଶକାଳରେ ତାଙ୍କ ଦ୍ୱାରଦେଶରେ ଥିବା ଗଣେଶ୍ୱରମାନେ କ'ଣ କଲେ ଏବଂ ମହାଦେବ ତାଙ୍କୁ ଦେଖି ତାଙ୍କ ସଙ୍ଗେ କିପରି ବ୍ୟବହାର କଲେ?

ବାୟୁଦେବ କହିଲେ–ଯେଉଁ ପ୍ରେମମୟ ରସ ଦ୍ୱାରା ଅନୁରାଗୀ ପୁରୁଷର ଚିତ୍ତ ହରଣ ହୋଇଯାଏ, ସେଭଳି ପରମ ରସକୁ ଯଥାର୍ଥରୂପେ ବର୍ଣ୍ଣନା କରିବା ଅସମ୍ଭବ । ଦ୍ୱାରପାଳ ଅତି ଉତ୍ସୁକ ହୋଇ ଦେବୀଙ୍କ ବାଟ ଚ୍ଛହିଁ ବସିଥିଲେ । ମହାଦେବ ମଧ୍ୟ ତାଙ୍କ ଆଗମନ ପାଇଁ ଉତ୍ସୁକ ଥିଲେ । ଦେବୀ ଭବନରେ ପ୍ରବେଶ କରିବାରୁ ସେ ଶଙ୍କିତ ହୋଇ ଅନୁରାଗଭରା ଚ୍ଛହାଣିରେ ତାଙ୍କ ଆଡ଼କୁ ଚ୍ଛହିଁଲେ । ଦେବୀ ମଧ୍ୟ ତାଙ୍କ ଆଡ଼କୁ ସେହି ଭାବରେ ଚ୍ଛହିଁଲେ । ସେତେବେଳେ ଭବନରେ ଥିବା ଶ୍ରେଷ୍ଠ ପାର୍ଷଦମାନେ ଦେବୀଙ୍କ ବନ୍ଦନା କଲେ । ତା'ପରେ ଦେବୀ ବିନୟଯୁକ୍ତ ବାଣୀ କହି ଭଗବାନ ତ୍ରିଲୋଚନଙ୍କୁ ପ୍ରଣାମ କଲେ । ସେ ପ୍ରଣାମ କରି ଉଠୁ ଉଠୁ ପରମେଶ୍ୱର ଆନନ୍ଦରେ ତାଙ୍କୁ ଦୁଇହାତରେ ଉଠାଇ ଆଲିଙ୍ଗନ କଲେ । ତା'ପରେ ସ୍ମିତହାସପୂର୍ବକ ଏକଲୟରେ ତାଙ୍କ ମୁଖଚନ୍ଦ୍ରର ସୁଧାପାନ କରିବାକୁ ଲାଗିଲେ । ଏହାପରେ ସେ ପ୍ରଥମେ ନିଜ ତରଫରୁ କଥା ଆରମ୍ଭ କଲେ ।

ଦେବାଧିଦେବ ମହାଦେବ କହିଲେ–ହେ ସର୍ବାଙ୍ଗସୁନ୍ଦରୀ! ପ୍ରିୟେ ! ତୁମର ମନୋବ୍ୟଥା କ'ଣ ଦୂର ହୋଇଗଲା? ସେତେବେଳେ ତୁମର କ୍ରୋଧ ଦେଖି ତୁମକୁ ଅନୁନୟ-ବିନୟ କରିବାର କୌଣସି ଉପାୟ ମୋତେ ଦିଶିଲା ନାହିଁ । ଯଦି ସାଧାରଣ ଲୋକଙ୍କ ପରି ଆମ ଦୁହିଙ୍କ ଭିତରେ ପରସ୍ପରକୁ ଅପ୍ରିୟ ଲାଗିବା ଭଳି କାରଣ ବିଦ୍ୟମାନ ରହିବ, ତେବେ ତ ଏ ସଚରାଚର ଜଗତ ନଷ୍ଟ ହୋଇଗଲା ବୋଲି ଜାଣ । ମୁଁ ଅଗ୍ନିର ମସ୍ତକରେ ସ୍ଥିତ ଆଉ ତୁମେ ସୋମ ମସ୍ତକରେ । ଆମ ଦୁହିଙ୍କ ହେତୁ ଏ ଅଗ୍ନି-ସୋମାତ୍ମକ ଜଗତ୍ ପ୍ରତିଷ୍ଠିତ । ଜଗତର ହିତ ପାଇଁ ସ୍ୱେଚ୍ଛାରେ ଶରୀର ଧାରଣ କରି ବିଚରଣ କରୁଥିବା ଆମ ଦୁହିଙ୍କ ବିୟୋଗରେ ଏ ଜଗତ ନିରାଧାର ହୋଇଯିବ । ଏଥିରେ ଶାସ୍ତ୍ରନିର୍ଦ୍ଦିଷ୍ଟ ଓ ଯୁକ୍ତିଯୁକ୍ତ ଅନ୍ୟ ଏକ କାରଣ ମଧ୍ୟ ଅଛି । ଏ ସ୍ଥାବର-ଜଙ୍ଗମରୂପ ଜଗତ ବାଣୀ ଓ ଅର୍ଥମୟ ଅଟେ । ତୁମେ ସାକ୍ଷାତ୍ ବାଣୀମୟ ଅମୃତ ଏବଂ ମୁଁ ଅର୍ଥମୟ ପରମ ଉତ୍ତମ ଅମୃତ । ଏ ଦୁଇଟି ଅମୃତ କ'ଣ ପରସ୍ପର ଠାରୁ ପୃଥକ୍ ହୋଇପାରିବ? ତୁମେ ମୋର ସ୍ୱରୂପକୁ ବୋଧ

କରାଉଥିବା ବିଦ୍ୟା ଅଟ ଏବଂ ମୁଁ ତୁମ ପ୍ରଦତ୍ତ ବିଶ୍ୱାସପୂର୍ଣ୍ଣ ବୋଧ ଦ୍ୱାରା ଜ୍ଞାତବ୍ୟ ପରମାତ୍ମା ଅଟେ । ଆମେ ଦୁହେଁ ଯଥାକ୍ରମେ ବିଦ୍ୟାତ୍ମା ଓ ବେଦ୍ୟାତ୍ମା । ତେବେ ଆମ ଦୁହିଙ୍କର ବିୟୋଗ ହେବା କ'ଣ ସମ୍ଭବ? ମୁଁ ମୋର ପ୍ରଯତ୍ନରେ ଜଗତର ସୃଷ୍ଟି ଓ ସଂହାର କରେ ନାହିଁ । ଏକମାତ୍ର ଆଜ୍ଞା ଦ୍ୱାରା ହିଁ ସମସ୍ତଙ୍କର ସୃଷ୍ଟି ଓ ସଂହାର ହୁଏ ଆଉ ସେହି ପରମ ଗୌରବପୂର୍ଣ୍ଣ ଆଜ୍ଞା ତୁମେ ଅଟ । ଐଶ୍ୱର୍ଯ୍ୟର ଏକମାତ୍ର ସାର ଆଜ୍ଞା (ଶାସନ); କାରଣ ତାହା ହିଁ ସ୍ୱତନ୍ତ୍ରତାର ଲକ୍ଷଣ । ଆଜ୍ଞାରୁ ବିଯୁକ୍ତ ହେବା ପରେ ମୋର ଐଶ୍ୱର୍ଯ୍ୟ ଆଉ କ'ଣ ରହିବ । ଆମେ ପରସ୍ପର ଠାରୁ ବିଯୁକ୍ତ ହୋଇ ରହିବା କଦାପି ସମ୍ଭବ ନୁହେଁ । ଦେବତାଙ୍କ କାର୍ଯ୍ୟସିଦ୍ଧି ଉଦ୍ଦେଶ୍ୟରେ ହିଁ ମୁଁ ସେଦିନ ଲୀଳାପୂର୍ବକ ବ୍ୟଙ୍ଗ୍ୟ ବଚନ କହିଥିଲି । ତୁମକୁ ବି ତ ଏକଥା ଅଜ୍ଞାତ ନ ଥିଲା । ପୁଣି ତୁମେ କୁପିତ କାହିଁକି ହୋଇଗଲ? ସୁତରାଂ ଏହା ମାନିବାକୁ ପଡ଼ିବ ଯେ ତୁମେ ମୋ ଉପରେ ଯେଉଁ କ୍ରୋଧ କଲ, ତାହା ବି ତ୍ରିଲୋକର ରକ୍ଷା ନିମନ୍ତେ ଅଭିପ୍ରେତ ଥିଲା; କାରଣ ତୁମଠାରେ ଏପରି କିଛି ବି ନାହିଁ, ଯାହା ଜଗତ ପାଇଁ ଅନର୍ଥକାରୀ ହେବ ।

ପରମେଶ୍ୱର ଶିବଙ୍କ ପ୍ରତି ଶୃଙ୍ଗାରରସର ସାରଭୂତ ଭାବର ଅକୃତ୍ରିମ ଜନ୍ମଭୂମି ଦେବୀ ପାର୍ବତୀ ସ୍ୱାମୀଙ୍କର ସେହି ମଧୁର ଓ ମନୋହର କଥାକୁ ସତ୍ୟ ମଣିଲେ ଏବଂ ସ୍ମିତହାସ କରି ନୀରବ ରହିଲେ; ଲଜ୍ଜାରେ କିଛି ଉତ୍ତର ଦେଇପାରିଲେ ନାହିଁ । କେବଳ କୌଶିକୀଙ୍କ ଯଶ ବର୍ଣ୍ଣନା ଛଡ଼ା ଅନ୍ୟ କୌଣସି କଥା କହିଲେ ନାହିଁ । କୌଶିକୀଙ୍କ ବିଷୟରେ ଦେବୀ ଯାହା କିଛି କହିଲେ, ତାହା ମୁଁ ବର୍ଣ୍ଣନା କରୁଛି ।

ଦେବୀ କହିଲେ—''ସ୍ୱାମୀ! ମୁଁ ଯେଉଁ କୌଶିକୀକୁ ସୃଷ୍ଟି କରିଛି, ଆପଣ ତାକୁ ଦେଖି ନାହାନ୍ତି କି? ସେପରି କନ୍ୟା ଏ ଜଗତରେ କେହି ନ ଥିଲା କି କେହି ହେବ ନାହିଁ ।'' ଏହା କହି ଦେବୀ କୌଶିକୀଙ୍କର ବିନ୍ଧ୍ୟପର୍ବତରେ ନିବାସ ତଥା ରଣାଙ୍ଗନରେ ଶୁମ୍ଭ ଓ ନିଶୁମ୍ଭଙ୍କୁ ବଧ କରି ସେମାନଙ୍କ ଉପରେ ବିଜୟିନୀ ହେବାର ପ୍ରସଙ୍ଗ କହି ତାଙ୍କ ବଳ ପରାକ୍ରମର ପରିଚୟ ଦେଲେ । ପୁଣି ଏକଥା ମଧ୍ୟ କହିଲେ ଯେ—''କୌଶିକୀ ତାଙ୍କର ଉପାସକକୁ ସଦା ପ୍ରତ୍ୟକ୍ଷ ଫଳ ପ୍ରଦାନ କରନ୍ତି ଏବଂ ନିରନ୍ତର ଜଗତକୁ ରକ୍ଷା କରିଥାନ୍ତି । ଏ ବିଷୟରେ ବ୍ରହ୍ମା ଆପଣଙ୍କୁ ଅନ୍ୟାନ୍ୟ ଆବଶ୍ୟକ କଥା କହିବେ ।''

ଏହିପରି କଥାବାର୍ତ୍ତା ଚାଲୁଥିବା ବେଳେ ଦେବୀଙ୍କ ଆଜ୍ଞାରେ ଜଣେ ସଖୀ ବ୍ୟାଘ୍ରକୁ ଆଣି ତାଙ୍କ ସମ୍ମୁଖରେ ଛିଡ଼ା କରାଇଦେଲା । ତାହାକୁ ଦେଖି ଦେବୀ କହିଲେ—''ସ୍ୱାମୀ ! ଏହି ବ୍ୟାଘ୍ରଟିକୁ ମୁଁ ଆପଣଙ୍କୁ ଭେଟିସ୍ୱରୂପ ପ୍ରଦାନ କରୁଛି । ଏହାକୁ



ଆପଣ ରଖନ୍ତୁ । ଏହା ପରି ମୋର ଉପାସକ ଆଉ କେହି ନାହିଁ । ଏ ତପୋବନରେ ଦୁଷ୍ଟ ଜନ୍ତୁଙ୍କ

ଠାରୁ ମୋତେ ରକ୍ଷା କରିଛି । ଏ ମୋର ବହୁତ ବଡ଼ ଭକ୍ତ ଏବଂ ମୋର ରକ୍ଷଣ କାର୍ଯ୍ୟ କରି ମୋର ବିଶ୍ୱାସପାତ୍ର ହୋଇଯାଇଛି । ମୋ ଖୁସୀ ପାଇଁ ଏ ନିଜ ସ୍ଥାନ ଛାଡ଼ି ଏଠାକୁ ଆସିଛି । ମହେଶ୍ୱର ! ଯଦି ମୁଁ ଆସିଥିବାରୁ ଆପଣ ଖୁସୀ ଏବଂ ଯଦି ଆପଣ ମୋତେ ବହୁତ ପ୍ରେମ କରନ୍ତି, ତେବେ ମୋ ଇଚ୍ଛା ଯେ ଏ ମଧ୍ୟ ନନ୍ଦୀର ଆଜ୍ଞାରେ ମୋର ଅନ୍ତଃପୁରର ଦ୍ୱାରଦେଶରେ ଅନ୍ୟ ରକ୍ଷକଙ୍କ ସହିତ ସେମାନଙ୍କ ପରି ଚିହ୍ନ ଧାରଣ କରି ସ୍ଥାନ ପାଉ ।''

ବାୟୁଦେବ କହୁଛନ୍ତି—ଦେବୀଙ୍କର ଏହି ମଧୁର ତଥା ପରିଣାମରେ ପ୍ରୀତିବର୍ଦ୍ଧନକାରୀ ଶୁଭ ବଚନ ଶୁଣି ମହାଦେବ କହିଲେ—''ମୁଁ ଏଥିରେ ବହୁତ ପ୍ରସନ୍ନ ।'' ଏହାପରେ ବ୍ୟାଘ୍ର ତତ୍‌କ୍ଷଣାତ୍ ରତ୍ନଜଟିତ ବିଚିତ୍ର କବଚ ତଥା ରକ୍ଷକୋଚିତ ବେଶରେ ଭୂଷିତ ହୋଇଗଲା ଏବଂ ସୁବର୍ଣ୍ଣଜଟିତ ଲହକା ବେତ ତଥା ସର୍ପାକୃତିର ଛୁରି ହାତରେ ଧରି ଗଣାଧ୍ୟକ୍ଷ ପଦରେ ପ୍ରତିଷ୍ଠିତ ହୋଇଗଲା । ସେ ଉମାଙ୍କ ସହିତ ମହାଦେବଙ୍କୁ ଓ ନନ୍ଦୀଙ୍କୁ ଆନନ୍ଦିତ କରିଥିଲା । ତେଣୁ ସେ ସୋମନନ୍ଦୀ ନାମରେ ବିଖ୍ୟାତ ହେଲା । ଏହିରୂପେ ଦେବୀଙ୍କର ପ୍ରିୟକାର୍ଯ୍ୟ କରିସାରି ଚନ୍ଦ୍ରାର୍ଦ୍ଧଭୂଷଣ ମହାଦେବ ତାଙ୍କୁ ରତ୍ନର ଦିବ୍ୟ ଆଭୂଷଣରେ ମଣ୍ଡିତ କଲେ । ଚନ୍ଦ୍ରଭୂଷଣ ଭଗବାନ ଶିବ ସର୍ବମନୋହାରିଣୀ ଗିରିରାଜକୁମାରୀ ଗୌରୀଦେବୀଙ୍କୁ ପଲ୍ୟଙ୍କରେ ବସାଇ ସ୍ୱୟଂ ନିଜ ହାତରେ ତାଙ୍କୁ ବେଶ କଲେ । (ଅଧ୍ୟାୟ ୨୭)



# ଅଗ୍ନି ଓ ସୋମଙ୍କ ସ୍ୱରୂପର ବିବେଚନା ଏବଂ ଜଗତର ଅଗ୍ନୀଷୋମାତ୍ମକତା ପ୍ରତିପାଦନ

ଋଷିମାନେ ପଚାରିଲେ—ପ୍ରଭୋ ! ଦେବୀ ପାର୍ବତୀଙ୍କୁ ବୁଝାଇବାବେଳେ ମହାଦେବ କାହିଁକି କହିଲେ ଯେ ''ସମଗ୍ର ବିଶ୍ୱ ହେଉଛି ଅଗ୍ନୀଷୋମାତ୍ମକ ଏବଂ ବାଗ୍-ଅର୍ଥାତ୍ମକ । ଐଶ୍ୱର୍ଯ୍ୟର ସାର ହେଉଛି ଏକମାତ୍ର ଆଜ୍ଞା ଏବଂ ସେହି ଆଜ୍ଞା ହେଉଛ ତୁମେ?'' ଏ ବିଷୟରେ ଆମେ ଯଥାର୍ଥ କଥା କ୍ରମାନୁସାରେ ଶୁଣିବାକୁ ଚାହୁଁ ।

ବାୟୁଦେବ କହିଲେ—ହେ ମହର୍ଷିଗଣ ! ରୁଦ୍ରଦେବଙ୍କ ଘୋର ତେଜୋମୟ ଶରୀରକୁ ଅଗ୍ନି କହନ୍ତି ଏବଂ ଅମୃତମୟ ସୋମ ହେଉଛି ଶକ୍ତିର ସ୍ୱରୂପ; କାରଣ ଶକ୍ତିର ଶରୀର ଶାନ୍ତିକାରକ । ଅମୃତ ହେଉଛି ପ୍ରତିଷ୍ଠା ନାମକ କଳା ଏବଂ ତେଜ ହେଉଛି ସାକ୍ଷାତ୍ ବିଦ୍ୟା ନାମକ କଳା । ସମସ୍ତ ସୂକ୍ଷ୍ମଭୂତଙ୍କ ଠାରେ ସେହି ରସ ଓ ତେଜ ବିଦ୍ୟମାନ । ତେଜର ବୃତ୍ତି ଦୁଇ ପ୍ରକାରର । ଗୋଟିଏ ସୂର୍ଯ୍ୟରୂପା ଓ ଅନ୍ୟଟି ଅଗ୍ନିରୂପା । ଠିକ୍ ଏହିପରି ରସବୃତ୍ତି ମଧ୍ୟ ଦୁଇ ପ୍ରକାରର— ଗୋଟିଏ ସୋମରୂପିଣୀ ଓ ଅନ୍ୟଟି ଜଳରୂପିଣୀ । ତେଜ ବିଦ୍ୟୁତ୍ ଆଦି ରୂପରେ ଏବଂ ରସ ମଧୁରତା ଆଦି ରୂପରେ ଉପଲବ୍ଧ ହୁଏ । ତେଜ ଓ ରସର ଭେଦ ହିଁ ଏ ଚରାଚର ଜଗତକୁ ଧାରଣ କରିଛି । ଅଗ୍ନିରୁ ଅମୃତର ଉତ୍ପତ୍ତି ହୁଏ ଏବଂ ଅମୃତସ୍ୱରୂପ ଘୃତରେ ଅଗ୍ନିର ବୃଦ୍ଧି ହୋଇଥାଏ । ତେଣୁ ଅଗ୍ନି ଓ ସୋମକୁ ଦିଆଯାଉଥିବା ଆହୁତି ଜଗତ ପାଇଁ ହିତକାରୀ ହୋଇଥାଏ । ଶସ୍ୟସମ୍ପତ୍ତି ହବିଷ୍ୟକୁ ଉତ୍ପନ୍ନ କରେ । ବର୍ଷା ଶସ୍ୟକୁ ବୃଦ୍ଧି କରେ । ଅତଏବ ବର୍ଷା ଦ୍ୱାରା ହିଁ ହବିଷ୍ୟ ଉତ୍ପାଦିତ ହୁଏ, ଯଦ୍ଦ୍ୱାରା ଏ ଅଗ୍ନୀଷୋମାତ୍ମକ ଜଗତ୍ ତିଷ୍ଠି ରହିଛି । ଅଗ୍ନି ସେତିକି ଉପରକୁ ବଢ଼େ, ଯେତିକି ଦୂର ପର୍ଯ୍ୟନ୍ତ

ସୋମସମ୍ବନ୍ଧିତ ପରମ ଅମୃତ ବିଦ୍ୟମାନ ଏବଂ ଯେପର୍ଯ୍ୟନ୍ତ ଅଗ୍ନିର ସ୍ଥାନ, ସେପର୍ଯ୍ୟନ୍ତ ସୋମସମ୍ବନ୍ଧିତ ଅମୃତ ତଳକୁ ଝରେ। ତେଣୁ କାଳାଗ୍ନି ତଳେ ଥାଏ ଓ ଶକ୍ତି ଉପରେ ଥାଏ। ଯେପର୍ଯ୍ୟନ୍ତ ଅଗ୍ନି ଅଛି, ତାହାର ଗତି ଉପରକୁ ହୋଇଥାଏ। ଜଳର ଆପ୍ଲାବନର ଗତି ନିମ୍ନଗାମୀ ହୋଇଥାଏ। ଆଧାରଶକ୍ତି ହିଁ ଏହି ଉର୍ଦ୍ଧ୍ୱଗାମୀ କାଳାଗ୍ନିକୁ ଧାରଣ କରିଛି ଏବଂ ନିମ୍ନଗାମୀ ସୋମ ଶିବଶକ୍ତିର ଆଧାରରେ ପ୍ରତିଷ୍ଠିତ। ଶିବ ଉପରେ ଓ ଶକ୍ତି ତଳେ; ପୁଣି ଶକ୍ତି ଉପରେ ଓ ଶିବ ତଳେ। ଏହିରୂପେ ଶିବ ଓ ଶକ୍ତି ସବୁକିଛିକୁ ବ୍ୟାପି ରହିଛନ୍ତି। ବାରମ୍ବାର ଅଗ୍ନି ଦ୍ୱାରା ପୋଡ଼ି ଏ ଜଗତ ଭସ୍ମୀଭୂତ ହୋଇଯାଏ। ଏହା ଅଗ୍ନିର ବୀର୍ଯ୍ୟ। ଭସ୍ମକୁ ହିଁ ଅଗ୍ନିର ବୀର୍ଯ୍ୟ କହନ୍ତି। ଏହିରୂପେ ଭସ୍ମର ଶ୍ରେଷ୍ଠ ସ୍ୱରୂପକୁ ଜାଣି ଯେଉଁ ବଦ୍ଧ ଜୀବ 'ଅଗ୍ନିଃ...' ଇତ୍ୟାଦି ମନ୍ତ୍ର ଦ୍ୱାରା ଭସ୍ମରେ ସ୍ନାନ କରେ, ସେ ପାଶରୁ ମୁକ୍ତ ହୋଇଯାଏ। ଅଗ୍ନିର ଭସ୍ମରୂପୀ ବୀର୍ଯ୍ୟକୁ ସୋମ ଅଯୋଗଯୁକ୍ତି ଦ୍ୱାରା ପୁନଃ ଆପ୍ଲାବିତ କଲା, ତେଣୁ ତାହା ପ୍ରକୃତିର ଅଧିକାରକୁ ଗ୍ଭଲିଗଲା। ଯଦି ଯୋଗଯୁକ୍ତିରେ ଶାକ୍ତ-ଅମୃତବର୍ଷା ଦ୍ୱାରା ସେହି ଭସ୍ମ ଗ୍ଭରିଆଡ଼େ ଆପ୍ଲାବିତ ହୁଏ, ତେବେ ତାହା ପ୍ରକୃତିର ଅଧିକାରକୁ ନିବୃତ୍ତ କରିଦିଏ। ତେଣୁ ଏପରି ଆପ୍ଲାବନ ସଦା ମୃତ୍ୟୁ ଉପରେ ବିଜୟ ଲାଭ କରିବା ନିମନ୍ତେ ଉଦ୍ଦିଷ୍ଟ। ଶିବାଗ୍ନି ସଙ୍ଗେ ଶାକ୍ତ-ଅମୃତର ସ୍ପର୍ଶ ହେବାଫଳରେ ଯେଉଁ ବ୍ୟକ୍ତି ଅମୃତରେ ଆପ୍ଲାବିତ ହୁଏ, ତାହାର ମୃତ୍ୟୁ ଭଲା କିପରି ହେବ! ଯେ ଅଗ୍ନିର ଏହି ଗୁହ୍ୟ ସ୍ୱରୂପକୁ ତଥା ପୂର୍ବୋକ୍ତ ଅମୃତପ୍ଲାବନକୁ ଯଥାର୍ଥରୂପେ ଜାଣେ, ସେ ଅଗ୍ନୀଷୋମାତ୍ମକ ଜଗତକୁ ତ୍ୟାଗ କରି ଆଉ ଜନ୍ମଗ୍ରହଣ କରେ ନାହିଁ। ଯେ ଶିବାଗ୍ନିରେ ଶରୀରକୁ ଦଗ୍ଧ କରି ଶକ୍ତିସ୍ୱରୂପ ସୋମାମୃତରେ ଯୋଗମାର୍ଗ ଦ୍ୱାରା ଆପ୍ଲାବିତ କରେ, ସେ ଅମୃତସ୍ୱରୂପ ହୋଇଯାଏ। ଏହି ଅଭିପ୍ରାୟକୁ ହୃଦୟରେ ଧାରଣ କରି ମହାଦେବ ଏ ସମଗ୍ର ଜଗତକୁ ଅଗ୍ନୀଷୋମାତ୍ମକ କହିଥିଲେ। ତାଙ୍କର ଏ କଥନ ସର୍ବଥା ଯୁକ୍ତିଯୁକ୍ତ।

(ଅଧ୍ୟାୟ ୨୮)

★★★

## ଜଗତ୍ 'ବାଣୀ ଓ ଅର୍ଥରୂପ ଅଟେ'—ଏହା ପ୍ରତିପାଦନ

ବାୟୁଦେବ କହୁଛନ୍ତି—**ମହର୍ଷିଗଣ!** ଏବେ ଜଗତର ବାଗର୍ଥାତ୍ମକତା କିପରି ସିଦ୍ଧ ହୋଇଛି, ତାହା କହୁଛି। ଛଅଟି ଅଧ୍ୱା (ମାର୍ଗ)ର ଜ୍ଞାନ ମୁଁ ସଂକ୍ଷେପରେ କହୁଛି, ବିସ୍ତାରରେ ନୁହେଁ। ଏମିତି କୌଣସି ଅର୍ଥ ନାହିଁ, ଯାହାର ଶବ୍ଦ ନ ଥିବ ଏବଂ ଏମିତି କୌଣସି ଶବ୍ଦ ନାହିଁ, ଯାହାର ଅର୍ଥ ନ ଥିବ। ତେଣୁ ସମୟାନୁସାରେ ସମସ୍ତ ଶବ୍ଦ ପୂର୍ଣ୍ଣତଃ ଅର୍ଥବୋଧକ ହୋଇଥାଏ। ପ୍ରକୃତିର ଏହି ପରିଣାମ ଶବ୍ଦଭାବନା ଓ ଅର୍ଥଭାବନା ଭେଦରେ ଦୁଇ ପ୍ରକାରର। ତାହାକୁ ପରମାତ୍ମା ଶିବ-ପାର୍ବତୀଙ୍କର ପ୍ରାକୃତ ମୂର୍ତ୍ତି କୁହାଯାଏ। ତାଙ୍କରେ ଶବ୍ଦମୟୀ ବିଭୂତିକୁ ବିଦ୍ୱାନ୍ ଲୋକେ ସ୍ଥୂଳା, ସୂକ୍ଷ୍ମା ଓ ପରା ନାମରେ ତିନୋଟି ଭେଦ କରିଥାନ୍ତି। ଯାହା କାନକୁ ପ୍ରତ୍ୟକ୍ଷ ଶୁଭେ, ତାହା ସ୍ଥୂଳା; ଯାହା କେବଳ ଚିନ୍ତନଯୋଗ୍ୟ, ତାହାକୁ ସୂକ୍ଷ୍ମା କୁହାଯାଏ ଏବଂ ଯାହା ଚିନ୍ତନର ସୀମାରୁ ମଧ୍ୟ ଅତୀତ, ତାହାକୁ ପରା କହନ୍ତି। ତାହା ଶକ୍ତିସ୍ୱରୂପା। ତାହା ହିଁ ଶିବତତ୍ତ୍ୱର ଆଶ୍ରିତ ପରାଶକ୍ତି ନାମରେ କଥିତ। ଜ୍ଞାନଶକ୍ତିର ସଂଯୋଗରେ ତାହା ହିଁ ଇଚ୍ଛାର ଉପୋଦ୍‌ବଳିକା (ଦୃଢ଼କାରିଣୀ) ହୁଏ।

ତାହା ସମସ୍ତ ଶକ୍ତିର ସମଷ୍ଟିରୂପା ଅଟେ । ତାହା ଶକ୍ତିତତ୍ତ୍ୱ ନାମରେ ବିଖ୍ୟାତ ହୋଇ ସମସ୍ତ କାର୍ଯ୍ୟସମୂହର ମୂଳ ପ୍ରକୃତିରୂପେ ଅଭିହିତ ହୁଏ । ତାହାକୁ ହିଁ କୁଣ୍ଡଳିନୀ କୁହାଯାଏ । ତାହା ହିଁ ବିଶୁଦ୍ଧାଧ୍ୱପରା ମାୟା । ତାହା ସ୍ୱରୂପତଃ ବିଭାଗରହିତ ହୋଇ ସୁଦ୍ଧା ଷଡଧ୍ୱାରୂପରେ ବିସ୍ତାରପ୍ରାପ୍ତ ହୋଇଛି । ସେହି ଷଡ଼ଧ୍ୱା ମଧ୍ୟରୁ ତିନୋଟି ଶବ୍ଦରୂପ ଓ ଅନ୍ୟ ତିନୋଟି ଅର୍ଥରୂପ । ସମସ୍ତଙ୍କୁ ଆତ୍ମଶୁଦ୍ଧି ଅନୁରୂପ ସମସ୍ତ ତତ୍ତ୍ୱର ବିଭାଗ ଅନୁସାରେ ଲୟ ଓ ଭୋଗର ଅଧିକାର ପ୍ରାପ୍ତ ହୁଏ । ସେହି ସମସ୍ତ ତତ୍ତ୍ୱ କଳା ଦ୍ୱାରା ଯଥାଯୋଗ୍ୟ ବ୍ୟାପ୍ତ ଅଟନ୍ତି । ପରା ପ୍ରକୃତିର ଯେଉଁ ପ୍ରାରମ୍ଭିକ ପାଞ୍ଚ ପ୍ରକାର ପରିଣାମ ହୁଏ, ତାହା ହିଁ ନିବୃତ୍ତି ଆଦି କଳା । ମନ୍ତ୍ରାଧ୍ୱା, ପଦାଧ୍ୱା ଓ ବର୍ଣ୍ଣାଧ୍ୱା ଶବ୍ଦ ସହ ସମ୍ବନ୍ଧିତ; ଅପରପକ୍ଷେ ଭୁବନାଧ୍ୱା, ତତ୍ତ୍ୱାଧ୍ୱା ଓ କଳାଧ୍ୱା ଅର୍ଥ ସହ ସମ୍ବନ୍ଧିତ । ଏଗୁଡ଼ିକରେ ବି ପରସ୍ପର ବ୍ୟାପ୍ୟ-ବ୍ୟାପକ ଭାବ ରହିଛି । ସମସ୍ତ ମନ୍ତ୍ର ପଦ ଦ୍ୱାରା ବ୍ୟାପ୍ତ; କାରଣ ବିଦ୍ୱାନ୍ ଲୋକେ ବର୍ଣ୍ଣସମୂହକୁ ହିଁ ପଦ କହନ୍ତି । ସେହି ବର୍ଣ୍ଣ ମଧ୍ୟ ଭୁବନମାନଙ୍କ ଦ୍ୱାରା ବ୍ୟାପ୍ତ; କାରଣ ଭୁବନରେ ହିଁ ସେଗୁଡ଼ିକର ଉପଲବ୍ଧି ହୁଏ । ଭୁବନ ମଧ୍ୟ ତତ୍ତ୍ୱସମୂହ ଦ୍ୱାରା ବ୍ୟାପ୍ତ; କାରଣ ସେଗୁଡ଼ିକର ଉତ୍ପତ୍ତି ତତ୍ତ୍ୱରୁ ହୋଇଛି । ସେହି କାରଣଭୂତ ତତ୍ତ୍ୱଗୁଡ଼ିକ ଠାରୁ ସେଗୁଡ଼ିକର ଆରମ୍ଭ ହୋଇଛି । ଅନେକ ଭୁବନ ସେଗୁଡ଼ିକର ଭିତରୁ ହିଁ ପ୍ରକଟ ହୋଇଛି । ତନ୍ମଧ୍ୟରୁ କେତେକ ଭୁବନ ପୁରାଣପ୍ରସିଦ୍ଧ ହୋଇଥିବା ସ୍ଥଳେ ଅନ୍ୟ କେତେକ ଭୁବନ ବିଷୟରେ ଶିବ ସମ୍ବନ୍ଧିତ ଆଗମରୁ ଜ୍ଞାନଲାଭ ହୋଇଥାଏ । କେତେକ ତତ୍ତ୍ୱ ସାଙ୍ଖ୍ୟ ଓ ଯୋଗଶାସ୍ତ୍ରରେ ମଧ୍ୟ ପ୍ରସିଦ୍ଧ ।

ଶିବଶାସ୍ତ୍ରରେ ପ୍ରସିଦ୍ଧ ତଥା ଅନ୍ୟାନ୍ୟ ଯେତେ ସବୁ ତତ୍ତ୍ୱ ରହିଛି, ସେସବୁ କଳାଗୁଡ଼ିକ ଦ୍ୱାରା ଯଥାଯୋଗ୍ୟ ବ୍ୟାପ୍ତ । ପରା ପ୍ରକୃତିର ପ୍ରାରମ୍ଭକାଳରେ ଯେଉଁ ପାଞ୍ଚ ପରିଣାମ ହେଲା, ସେଗୁଡ଼ିକ ହେଉଛି ନିବୃତ୍ତି ଆଦି କଳା । ସେହି ପାଞ୍ଚ କଳା ଉତ୍ତରୋତ୍ତର ତତ୍ତ୍ୱ ଦ୍ୱାରା ବ୍ୟାପ୍ତ । ତେଣୁ ପରା ଶକ୍ତି ସର୍ବତ୍ର ବ୍ୟାପକ । ତାହା ବିଭାଗରହିତ ହୋଇ ମଧ୍ୟ ଛଅଟି ଅଧ୍ୱା ରୂପରେ ବିଭକ୍ତ । ଶକ୍ତିଠାରୁ ଆରମ୍ଭ କରି ପୃଥିବୀତତ୍ତ୍ୱପର୍ଯ୍ୟନ୍ତ ସମସ୍ତ ତତ୍ତ୍ୱର ଆବିର୍ଭାବ ଶିବତତ୍ତ୍ୱରୁ ହୋଇଛି । ମାଠିଆ ପ୍ରଭୃତି ଯେପରି ମାଟି ଦ୍ୱାରା ବ୍ୟାପ୍ତ, ସମସ୍ତ ତତ୍ତ୍ୱ ସେହିପରି ଏକମାତ୍ର ଶିବତତ୍ତ୍ୱ ଦ୍ୱାରା ବ୍ୟାପ୍ତ । ଯାହା ଛଅଟି ଅଧ୍ୱା ଦ୍ୱାରା ପ୍ରାପ୍ତ ହୋଇଥାଏ, ତାହା ହେଉଛି ଶିବଙ୍କ ପରମ ଧାମ । ପଞ୍ଚତତ୍ତ୍ୱର ଶୋଧନରୁ ବ୍ୟାପିକା ଓ ଅବ୍ୟାପିକା ଶକ୍ତିକୁ ଜାଣିହୁଏ । ନିବୃତ୍ତିକଳା ଦ୍ୱାରା ରୁଦ୍ରଲୋକ ପର୍ଯ୍ୟନ୍ତ ବ୍ରହ୍ମାଣ୍ଡର ସ୍ଥିତିର ଶୋଧନ ହୁଏ । ପ୍ରତିଷ୍ଠା କଳା ଦ୍ୱାରା ତହିଁରୁ ଉପରେ ଯେପର୍ଯ୍ୟନ୍ତ ଅବ୍ୟକ୍ତର ସୀମା, ସେପର୍ଯ୍ୟନ୍ତ ଶୋଧନ କରାଯାଏ । ମଧ୍ୟବର୍ତ୍ତିନୀ ବିଦ୍ୟାକଳା ଦ୍ୱାରା ତହିଁରୁ ଉପରେ ଥିବା ବିଦ୍ୟେଶ୍ୱର ପର୍ଯ୍ୟନ୍ତ ସ୍ଥାନର ଶୋଧନ ହୋଇଥାଏ । ଶାନ୍ତିକଳା ଦ୍ୱାରା ତା'ଠାରୁ ଉର୍ଦ୍ଧ୍ୱ ସ୍ଥାନର ତଥା ଶାନ୍ତ୍ୟତୀତା କଳା ଦ୍ୱାରା ଅଧ୍ୱାର ଶେଷ ପର୍ଯ୍ୟନ୍ତ ଶୋଧନ ହୋଇଥାଏ । ତାହାକୁ 'ପରମ ବ୍ୟୋମ' କୁହାଯାଏ ।

ଏ ପାଞ୍ଚଟି ତତ୍ତ୍ୱ ଦ୍ୱାରା ହିଁ ସମଗ୍ର ଜଗତ ବ୍ୟାପ୍ତ । ସେଠାରେ ହିଁ ସାଧକ ଏ ସବୁକିଛିକୁ ଦେଖିବା ଉଚିତ; ଯେ ଅଧ୍ୱବ୍ୟାପ୍ତିକୁ ନ ଜାଣି ଶୋଧନ କରିବାକୁ ଚାହେଁ, ସେ ଶୁଦ୍ଧିରୁ ବଞ୍ଚିତ ରହିଯାଏ । ସେ ତାହାର ଫଳ ପାଏ ନାହିଁ । ତାହାର ସମସ୍ତ ପରିଶ୍ରମ ବୃଥା ତଥା ନରକ ପ୍ରଦାୟକ ହୁଏ । ଶକ୍ତିପାତର ସଂଯୋଗ ନ ହେଲେ ତତ୍ତ୍ୱଗୁଡ଼ିକ ସମ୍ବନ୍ଧରେ ଯଥାର୍ଥରୂପେ ଜ୍ଞାନ ହୁଏ ନାହିଁ । ସେଗୁଡ଼ିକର ବ୍ୟାପ୍ତି ଓ ବୃଦ୍ଧିର

ଜ୍ଞାନ ମଧ୍ୟ ଅସମ୍ଭବ । ଶିବଙ୍କର ଯେଉଁ ଚିତ୍‌ସ୍ୱରୂପା ପରମେଶ୍ୱରୀ ପରାଶକ୍ତି ଅଛି, ତାହା ହିଁ ଆଜ୍ଞା । ସେହି କାରଣରୂପା ଆଜ୍ଞାର ସହଯୋଗରେ ହିଁ ଶିବ ସମଗ୍ର ବିଶ୍ୱର ଅଧିଷ୍ଠାତା ହୁଅନ୍ତି । ବିଚାର କରି ଦେଖିଲେ ଜଣାପଡ଼େ ଯେ ଆତ୍ମାରେ କଦାପି ବିକାର ହୁଏ ନାହିଁ । ବିକାରର ପ୍ରତୀତି ମାୟାମାତ୍ର ଅଟେ । ବନ୍ଧନ ବୋଲି କିଛି ନାହିଁ କି ସେଥିରୁ ତ୍ରାଣ କରୁଥିବା ମୁକ୍ତି ବୋଲି କିଛି ନାହିଁ । ଶିବଙ୍କର ଅବ୍ୟଭିଚାରିଣୀ ପରାଶକ୍ତି ହିଁ ସମସ୍ତ ଐଶ୍ୱର୍ଯ୍ୟର ପରାକାଷ୍ଠା । ତାହା ତାଙ୍କରି ପରି ଧର୍ମଯୁକ୍ତ ଓ ବିଶେଷତଃ ତାଙ୍କରି ବିଲକ୍ଷଣ ଭାବମାନଙ୍କରେ ଯୁକ୍ତ । ସେହି ଶକ୍ତି ସଙ୍ଗରେ ଶିବ ଗୃହସ୍ଥ ହୋଇଛନ୍ତି ଏବଂ ସେ ମଧ୍ୟ ଶିବଙ୍କ ସଙ୍ଗେ ତାଙ୍କର ଗୃହିଣୀ ହୋଇ ରହିଛି । ପ୍ରକୃତିଜନିତ ଜଗତରୂପୀ କାର୍ଯ୍ୟ ହିଁ ସେହି ଶିବଦମ୍ପତିଙ୍କର ସନ୍ତାନ । ଶିବ କର୍ତ୍ତା ଏବଂ ଶକ୍ତି କାରଣ । ଏହା ହିଁ ସେ ଦୁହିଙ୍କ ମଧ୍ୟରେ ଭେଦ । ବାସ୍ତବରେ ଏକମାତ୍ର ସାକ୍ଷାତ୍ ଶିବ ହିଁ ଉକ୍ତ ଦ୍ୱିବିଧରୂପରେ ବିଦ୍ୟମାନ । କିଛି ଲୋକ ସ୍ତ୍ରୀ ଓ ପୁରୁଷ ରୂପରେ ତାଙ୍କର ଦୁଇଟି ଭେଦ ଦର୍ଶାଇଥାନ୍ତି । ଅନ୍ୟମାନେ କହନ୍ତି ଯେ ପରାଶକ୍ତି ସର୍ବଦା ଶିବଙ୍କ ଠାରେ ନିତ୍ୟ ସମବେତ ଥାଏ । ଯେପରି ପ୍ରଭା ସୂର୍ଯ୍ୟଙ୍କ ଠାରୁ ଭିନ୍ନ ନୁହେଁ, ଠିକ୍ ସେହିପରି ଚିତ୍‌ସ୍ୱରୂପିଣୀ ପରାଶକ୍ତି ଶିବଙ୍କ ଠାରୁ ଭିନ୍ନ ନୁହେଁ । ଏହା ହିଁ ସିଦ୍ଧାନ୍ତ । ସୁତରାଂ ଶିବ ହିଁ ପରମ କାରଣ ଏବଂ ତାଙ୍କର ଆଜ୍ଞା ହିଁ ପରମେଶ୍ୱରୀ । ତାହାରି ଦ୍ୱାରା ପ୍ରେରିତ ହୋଇ ଶିବଙ୍କ ଅବିନାଶୀ ମୂଳ ପ୍ରକୃତି କାର୍ଯ୍ୟଭେଦରେ ମହାମାୟା, ମାୟା ଓ ତ୍ରିଗୁଣାତ୍ମିକା ପ୍ରକୃତି—ଏପରି ତ୍ରିବିଧ ରୂପରେ ସ୍ଥିତ ହୋଇ ଛଅଟି ଅଧ୍ୱାକୁ ପ୍ରକଟ କରେ । ସେହି ଛଅ ପ୍ରକାର ଅଧ୍ୱା ବାଗର୍ଥମୟ, ତାହା ସମସ୍ତ ଜଗତ ରୂପରେ ସ୍ଥିତ, ସମସ୍ତ ଶାସ୍ତ୍ରସମୂହ ଏହି ଭାବକୁ ବିସ୍ତୃତରୂପେ ପ୍ରତିପାଦନ କରନ୍ତି ।

(ଅଧ୍ୟାୟ ୨୯)



## ଋଷିଗଣଙ୍କ ପ୍ରଶ୍ନର ଉତ୍ତରରେ ବାୟୁଦେବଙ୍କ ଦ୍ୱାରା ଶିବଙ୍କ ସ୍ୱତନ୍ତ୍ର ଏବଂ ସର୍ବାନୁଗ୍ରହକାରକ ସ୍ୱରୂପର ପ୍ରତିପାଦନ

ଏହାପରେ ଋଷିମାନେ ଅନେକ କାରଣ ଦର୍ଶାଇ ପଚାରିଲେ—**ବାୟୁଦେବ ! ଯଦି ଶିବ ସଦା ଶାନ୍ତଭାବରେ ରହି ସମସ୍ତଙ୍କ ଉପରେ ଅନୁଗ୍ରହ କରନ୍ତି, ତେବେ ସେ ସମସ୍ତଙ୍କର ଅଭିଳାଷ ଏକାଥରକେ କାହିଁକି ପୂରଣ କରି ଦିଅନ୍ତି ନାହିଁ? ଯେ ସବୁକିଛି କରିବାକୁ ସମର୍ଥ, ସେ ସମସ୍ତଙ୍କୁ ଏକାବେଳକେ ବନ୍ଧନରୁ କାହିଁକି ମୁକ୍ତ କରି ନ ପାରିବେ? ଏହା କହିବା ମଧ୍ୟ ଯୁକ୍ତିଯୁକ୍ତ ହେବ ନାହିଁ ଯେ ଅନାଦି କାଳରୁ ସମସ୍ତଙ୍କର ପୃଥକ୍ ପୃଥକ୍ ବିଚିତ୍ର ପ୍ରକାରର କର୍ମ ରହି ଆସିଛି, ତେଣୁ ସମସ୍ତଙ୍କୁ ଏକାପ୍ରକାର ଫଳ ମିଳିପାରିବ ନାହିଁ; କାରଣ ସେହି କର୍ମ ବି ତ ଈଶ୍ୱର କରାଉଥିବାରୁ ସମ୍ପନ୍ନ ହେଉଛି ! ତେବେ କର୍ମର ବିଚିତ୍ରତା ଏଠାରେ ନିୟାମକ କିପରି ହୋଇପାରିବ ! ଏ ବିଷୟରେ ଅଧିକ କହି କି ଲାଭ । ଉପରୋକ୍ତ ବିଭିନ୍ନ ପ୍ରକାର ଯୁକ୍ତି ଦ୍ୱାରା ବିସ୍ତାରିତ ହୋଇଥିବା ନାସ୍ତିକତା ଯେଉଁ ଉପାୟରେ ଶୀଘ୍ର ନିବୃତ୍ତ ହୋଇ ପାରିବ, ସେହିପରି ଉପଦେଶ ଦିଅନ୍ତୁ ।**

ବାୟୁଦେବ କହିଲେ—**ହେ ବ୍ରାହ୍ମଣବୃନ୍ଦ! ଆପଣମାନେ ଯୁକ୍ତି ଦ୍ୱାରା ଯେଉଁ ସଂଶୟ ଉପସ୍ଥାପିତ କଲେ, ତାହା ଯଥାର୍ଥ; କାରଣ**

କୌଣସି କଥାକୁ ଜାଣିବାର ଇଚ୍ଛା ଅଥବା ତତ୍ତ୍ୱଜ୍ଞାନ ନିମନ୍ତେ ଉଠାଯାଇଥିବା ପ୍ରଶ୍ନ ସାଧୁପୁରୁଷଙ୍କ ଭିତରେ ନାସ୍ତିକତା ଉତ୍ପନ୍ନ କରି ନ ପାରେ । ମୁଁ ଏ ବିଷୟରେ ଏପରି ପ୍ରମାଣ ଉପସ୍ଥାପିତ କରିବି, ଯାହା ସତ୍‌ପୁରୁଷଙ୍କ ମୋହକୁ ଦୂର କରିବାକୁ ସକ୍ଷମ ହେବ । ଅସତ୍‌ପୁରୁଷଙ୍କ ଠାରେ ଯେଉଁ ଅନ୍ୟଥା ଭାବ ଉଦୟ ହୁଏ, ସେଥିରେ ପ୍ରଭୁ ଶିବଙ୍କ କୃପାର ଅଭାବ ହିଁ କାରଣ । ପରମ ଅନୁଗ୍ରହ ବିନା ପରିପୂର୍ଣ୍ଣ ପରମାତ୍ମା ଶିବଙ୍କର ଅନ୍ୟ କିଛି ବି କର୍ତ୍ତବ୍ୟ ନାହିଁ ବୋଲି ନିର୍ଣ୍ଣୟ କରାଯାଇଛି । ପରାନୁଗ୍ରହ କର୍ମରେ ସ୍ୱଭାବ ହିଁ ପର୍ଯ୍ୟାପ୍ତ (ପୂର୍ଣ୍ଣ ସମର୍ଥ) ଅଟେ, ନିଃସ୍ୱଭାବ ପୁରୁଷ କାହାରି ଉପରେ ଅନୁଗ୍ରହ କରି ପାରିବ ନାହିଁ । ପଶୁ ଓ ପାଶରୂପୀ ସମଗ୍ର ଜଗତ ପର ନାମରେ ଖ୍ୟାତ । ସେ ଅନୁଗ୍ରହର ପାତ୍ର । ପରକୁ ଅନୁଗୃହୀତ କରିବା ପାଇଁ ପତିଙ୍କ ଆଜ୍ଞାର ସମନ୍ୱୟ ଆବଶ୍ୟକ । ପତି ଆଜ୍ଞାଦାତା, ସେ ସଦା ସମସ୍ତଙ୍କ ଉପରେ ଅନୁଗ୍ରହ କରନ୍ତି । ସେହି ଅନୁଗ୍ରହ ନିମନ୍ତେ ହିଁ ଆଜ୍ଞାରୂପୀ ଅର୍ଥକୁ ସ୍ୱୀକାର କରି କ'ଣ ଶିବ ପରତନ୍ତ୍ର ବୋଲାଇ ପାରିବେ? ଅନୁଗ୍ରାହକର ଅପେକ୍ଷା ନ ରଖି କୌଣସି ଅନୁଗ୍ରହ ସିଦ୍ଧ ହୋଇ ନ ପାରେ । ତେଣୁ ସ୍ୱାତନ୍ତ୍ର୍ୟ ଶବ୍ଦର ଅର୍ଥର ଅପେକ୍ଷା ନ ରଖିବା ହିଁ ଅନୁଗ୍ରହର ଲକ୍ଷଣ । ଯେ ଅନୁଗ୍ରାହ୍ୟ, ତାହାକୁ ହିଁ ପରତନ୍ତ୍ର କୁହାଯାଏ; କାରଣ ପତିର ଅନୁଗ୍ରହ ବିନା ତାକୁ ଭୋଗ ଓ ମୋକ୍ଷ ମିଳି ପାରି ନ ଥାଏ । ମୂର୍ତ୍ତ୍ୟାତ୍ମାମାନେ ମଧ୍ୟ ଅନୁଗ୍ରହର ପାତ୍ର; କାରଣ ସେମାନେ ମଧ୍ୟ ଶିବଙ୍କ ଆଜ୍ଞାର ବହିର୍ଭୂତ ନୁହନ୍ତି । ଏଠାରେ ଏପରି କୌଣସି ବସ୍ତୁ ନାହିଁ, ଯାହା ଶିବଙ୍କ ଆଜ୍ଞାର ଅଧୀନ ହୋଇ ନ ଥିବ । ଯେଉଁ ମୂର୍ତ୍ତି ବା ଲିଙ୍ଗ ସକଳ (ସଗୁଣ ବା ସାକାର) ହୋଇଥିଲେ ମଧ୍ୟ ତଦ୍ଦ୍ୱାରା ଆମେ ନିଷ୍କଳ (ନିର୍ଗୁଣ ବା ନିରାକାର) ଶିବଙ୍କୁ ପ୍ରାପ୍ତ ହୋଇଥାଉ, ସେହି ମୂର୍ତ୍ତି ବା ଲିଙ୍ଗ ରୂପରେ ସାକ୍ଷାତ୍ ଶିବ ହିଁ ବିରାଜିତ ଥାଆନ୍ତି । ତାହା 'ଶିବଙ୍କ ମୂର୍ତ୍ତି' ବୋଲି ଉପଗ୍ରରେ କୁହାଯାଇଛି । ଯେ ସାକ୍ଷାତ୍ ନିଷ୍କଳ ତଥା ପରମ କାରୁଣିକ ଶିବ, ସେ କାହାରି ଦ୍ୱାରା ସାକାର ଅନୁଭାବରେ ଯେ ଉପଲକ୍ଷିତ ହୁଅନ୍ତି ନାହିଁ, ଏକଥା ନୁହେଁ । ଏଠାରେ ପ୍ରମାଣଗମ୍ୟ ହେବା ତାଙ୍କ ସ୍ୱଭାବର ଉପପାଦକ ନୁହେଁ, ପ୍ରମାଣ ଅଥବା ପ୍ରତୀକମାତ୍ର ଦ୍ୱାରା ଅପେକ୍ଷା-ବୁଦ୍ଧି ଉଦିତ ହୁଏ ନାହିଁ । ସେ ପରମ ତତ୍ତ୍ୱର ଉପଲକ୍ଷଣମାତ୍ର ଅଟନ୍ତି, ଏହା ବ୍ୟତୀତ ତାଙ୍କର ଆଉ କୌଣସି ଅଭିପ୍ରାୟ ନାହିଁ । କୌଣସି ନା କୌଣସି ମୂର୍ତ୍ତି ହିଁ ଆତ୍ମାର ସାକ୍ଷାତ୍ ଉପଲକ୍ଷଣ ହୋଇଥାଏ । 'ଶିବଙ୍କ ମୂର୍ତ୍ତି' —ଏପରି କହିବା ଦ୍ୱାରା ପ୍ରମାଣିତ ହୁଏ ଯେ ସେହି ମୂର୍ତ୍ତିରୂପରେ ପରମ ଶିବ ହିଁ ବିରାଜମାନ । ମୂର୍ତ୍ତି ତାଙ୍କର ଉପଲକ୍ଷଣ । ଯେପରି କାଷ୍ଠ ଇତ୍ୟାଦି ଆଲମ୍ବନ ବିନା ଅଗ୍ନି ଏକାକୀ କେଉଁଠି ଉପଲବ୍ଧ ହୁଏ ନାହିଁ, ସେହିପରି ଶିବ ମଧ୍ୟ ମୂର୍ତ୍ତ୍ୟାତ୍ମାରେ ଆରୂଢ଼ ନ ହୋଇ ଉପଲବ୍ଧ ହୁଅନ୍ତି ନାହିଁ । ଏହା ହିଁ ବସ୍ତୁସ୍ଥିତି । କାହାକୁ 'ଅଗ୍ନି ଆଣ' ବୋଲି କହିଲେ ସେ ଯେପରି ଜଳନ୍ତା କାଠ ଇତ୍ୟାଦି ବିନା ସାକ୍ଷାତ୍ ଅଗ୍ନିକୁ ଆଣି ପାରେ ନାହିଁ, ସେହି ଦୃଷ୍ଟାନ୍ତ ଅନୁସାରେ ଶିବଙ୍କ ପୂଜନ ମଧ୍ୟ ମୂର୍ତ୍ତିରୂପରେ ହିଁ ହୋଇପାରେ, ଅନ୍ୟଥା ସମ୍ଭବ ନୁହେଁ । ସେଥିପାଇଁ ପୂଜା ଇତ୍ୟାଦିରେ 'ମୂର୍ତ୍ତ୍ୟାତ୍ମା'ର ପରିକଳ୍ପନା କରାଯାଇଥାଏ; କାରଣ ମୂର୍ତ୍ତ୍ୟାତ୍ମା ପ୍ରତି ଯାହା କିଛି କରାଯାଏ, ତାହା ସାକ୍ଷାତ୍ ଶିବଙ୍କ ପ୍ରତି କରାଯାଇଛି ବୋଲି ଧରାଯାଏ । ଲିଙ୍ଗ ଇତ୍ୟାଦି ବା ଅର୍ଚ୍ଚାବିଗ୍ରହକୁ ଯେଉଁ ପୂଜନାଦି କରାଯାଏ, ତାହା ଭଗବାନ ଶିବଙ୍କର ହିଁ ପୂଜନ । ସେହି ମୂର୍ତ୍ତିରୂପରେ ଶିବଙ୍କ ଭାବନା କରି

ଆମେମାନେ ଶିବଙ୍କର ହିଁ ଉପାସନା କରିଥାଉ । ଯେପରି ପରମେଷ୍ଠୀ ଶିବ ମୂର୍ତ୍ତ୍ୟାତ୍ମା ପ୍ରତି ଅନୁଗ୍ରହ କରିଥାନ୍ତି, ସେହିପରି ମୂର୍ତ୍ତ୍ୟାତ୍ମାରେ ସ୍ଥିତ ଶିବ ଆମ ପରି ପଶୁମାନଙ୍କ ପ୍ରତି ଅନୁଗ୍ରହ କରିଥାନ୍ତି । ପରମେଷ୍ଠୀ ଶିବ ଜଗତ ପ୍ରତି ଅନୁଗ୍ରହ କରିବା ନିମନ୍ତେ ସଦାଶିବ ପ୍ରଭୃତି ସମସ୍ତ ମୂର୍ତ୍ତ୍ୟାତ୍ମାଙ୍କୁ ଅଧିଷ୍ଠିତ ବା ନିଜ ଆଜ୍ଞାରେ ରଖି ଅନୁଗୃହୀତ କରିଛନ୍ତି ।

ଭଗବାନ ଶିବ ସମସ୍ତଙ୍କ ଉପରେ ଅନୁଗ୍ରହ କରିଥାନ୍ତି, କାହାରି ନିଗ୍ରହ କରି ନ ଥାନ୍ତି; କାରଣ ନିଗ୍ରହ କରୁଥିବା ଲୋକଙ୍କ ଠାରେ ଯେଉଁ ଦୋଷ ଥାଏ, ତାହା ଶିବଙ୍କ ଠାରେ ନ ଥାଏ । ବ୍ରହ୍ମାଦିଙ୍କ ପ୍ରତି ଯେଉଁ ନିଗ୍ରହ ହୋଇଥିବା ଦେଖାଯାଏ, ତାହା ମଧ୍ୟ ଶ୍ରୀକଣ୍ଠମୂର୍ତ୍ତି ଶିବଙ୍କ ଦ୍ୱାରା ଲୋକହିତ ଦୃଷ୍ଟିରୁ କରାଯାଇଛି । ବିଦ୍ୱାନଙ୍କ ଦୃଷ୍ଟିରେ ନିଗ୍ରହ ମଧ୍ୟ ସ୍ୱରୂପତଃ ଦୂଷିତ ନୁହେଁ । (ତାହା ରାଗ-ଦ୍ୱେଷ ରଖି କରାଗଲେ ହିଁ ନିନ୍ଦନୀୟ ହୋଇଥାଏ) । ଏଣୁ ଦଣ୍ଡନୀୟ ଅପରାଧୀଙ୍କୁ ରାଜା ଦଣ୍ଡ ଦେଲେ ତାହାକୁ ପ୍ରଶଂସା କରାଯାଇଥାଏ । ସାଧୁଙ୍କୁ ରକ୍ଷା କରିବାକୁ ହେଲେ ଅସାଧୁଙ୍କୁ ନିବାରଣ କରିବା ଆବଶ୍ୟକ ହୋଇପଡ଼େ । ପ୍ରଥମେ ସାମ ଆଦି ତିନୋଟି ଉପାୟରେ ଅସାଧୁଙ୍କୁ ନିବାରଣ କରିବାକୁ ଚେଷ୍ଟା କରାଯାଏ । ଯଦି ତାହା ସଫଳ ନ ହୁଏ, ଶେଷରେ ଚତୁର୍ଥ ଉପାୟ ଦଣ୍ଡର ହିଁ ଆଶ୍ରୟ ନିଆଯାଏ । କିନ୍ତୁ ଦଣ୍ଡାନ୍ତ ଅନୁଶାସନ ଲୋକହିତ ନିମନ୍ତେ ହିଁ କରାଯିବା ଉଚିତ । ଏହା ହିଁ ତାହାର ଔଚିତ୍ୟ ପ୍ରତିପାଦକ । ଯଦି ଅନୁଶାସନ ଏହାର ବିପରୀତ ହୁଏ, ତାହା ଅହିତକର ବୋଲାଇଥାଏ । ଯେଉଁମାନେ ସଦା ହିତକାର୍ଯ୍ୟରେ ରତ ରହିଥାନ୍ତି, ସେମାନେ ଈଶ୍ୱରଙ୍କ ଦୃଷ୍ଟାନ୍ତକୁ ନିଜ ସମ୍ମୁଖରେ ରଖିବା ଉଚିତ । (ଈଶ୍ୱର କେବଳ ଦୁଷ୍ଟଙ୍କୁ ଦଣ୍ଡ ଦିଅନ୍ତି, ତେଣୁ ସେ ନିର୍ଦ୍ଦୋଷ ବୋଲାନ୍ତି ।) ତେଣୁ ଯେ ଦୁଷ୍ଟଙ୍କୁ ଦଣ୍ଡ ଦିଏ, ସେ ତା'ର ସେହି ନିଗ୍ରହ କର୍ମ ପାଇଁ ସତ୍ପୁରୁଷଙ୍କ ଦ୍ୱାରା ଲାଞ୍ଛିତ ହୋଇ ନ ପାରେ । ଜଗତରେ ଯେଉଁଠି ବି ନିଗ୍ରହ ଦେଖିବାକୁ ମିଳେ, ତାହା ଯଦି ବିଦ୍ୱେଷପୂର୍ବକ କରା ନ ଯାଇଥାଏ, ତାହାକୁ ଉତ୍ତମରୂପେ ଗଣନା କରାଯାଏ । ପିତା ପୁତ୍ରକୁ ଦଣ୍ଡ ଦେଇ ତାକୁ ଅଧିକ ଶିକ୍ଷିତ କରିଥାଏ, ପିତାର ତା' ପ୍ରତି ଦ୍ୱେଷ ନ ଥାଏ ।

ଶିବଙ୍କ ଆଜ୍ଞାପାଳନ ହିଁ ହିତ ଏବଂ ଯାହା ହିତ, ତାହା ହିଁ ତାଙ୍କର ଅନୁଗ୍ରହ । ସେଥିପାଇଁ ସମସ୍ତଙ୍କୁ ହିତରେ ନିଯୁକ୍ତ କରୁଥିବା ଶିବ ସମସ୍ତଙ୍କ ପ୍ରତି ଅନୁଗ୍ରହକାରୀ ବୋଲାଇଥାନ୍ତି । ଉପକାର ଶବ୍ଦର ଅର୍ଥ ମଧ୍ୟ ଅନୁଗ୍ରହ; କାରଣ ଉପକାର ମଧ୍ୟ ହିତ ଅଟେ । ତେଣୁ ସମସ୍ତଙ୍କର ଉପକାରୀ ଶିବ ସର୍ବାନୁଗ୍ରାହକ ଅଟନ୍ତି । ଶିବଙ୍କ ଦ୍ୱାରା ଜଡ଼ ଚେତନ ସମସ୍ତେ ସଦା ହିତରେ ନିଯୁକ୍ତ ହୋଇଥାନ୍ତି । ମାତ୍ର ସମସ୍ତଙ୍କୁ ଏକାବେଳକେ ଏକାପ୍ରକାର ହିତ ଉପଲବ୍ଧି ନ ହେବାର କାରଣ ହେଲା—ଏଥିରେ ସେମାନଙ୍କର ସ୍ୱଭାବ ହିଁ ପ୍ରତିବନ୍ଧକ ହୋଇଥାଏ । ସୂର୍ଯ୍ୟ ତାଙ୍କ କିରଣ ଦ୍ୱାରା ସମସ୍ତ ପଦ୍ମକୁ ବିକଶିତ କରିବାକୁ ପ୍ରେରିତ କରନ୍ତି, କିନ୍ତୁ ସେମାନେ ନିଜ ନିଜ ସ୍ୱଭାବ କାରଣରୁ ଏକାବେଳକେ ଓ ଏକାପରି ବିକଶିତ ହୋଇ ପାରନ୍ତି ନାହିଁ । ସ୍ୱଭାବ ମଧ୍ୟ ପଦାର୍ଥଗୁଡ଼ିକର ଭାବୀ ଅର୍ଥର କାରଣ ହୋଇଥାଏ, କିନ୍ତୁ ତାହା ନଷ୍ଟ ହେଉଥିବା ଅର୍ଥକୁ କର୍ତ୍ତା ନିମନ୍ତେ ସିଦ୍ଧ କରି ପାରେ ନାହିଁ । ଅଗ୍ନିର ସଂଯୋଗ ସୁନାକୁ ତରଳାଇ ପାରେ, କୋଇଲା ବା ଅଙ୍ଗାରକୁ ନୁହେଁ, ଠିକ୍ ସେହିପରି ଯାହାଙ୍କର ମଳ (ମଳିନତା) ପରିପକ୍ୱ ହୋଇଯାଇଛି, ସେପରି ପଶୁଙ୍କୁ ହିଁ ଭଗବାନ ଶିବ ବନ୍ଧନରୁ ମୁକ୍ତ କରନ୍ତି, ଅନ୍ୟମାନଙ୍କୁ ନୁହେଁ । ଯେଉଁ ବସ୍ତୁ ଯେପରି ହେବା କଥା, ସେ ସ୍ୱୟଂ ସେପରି

ହୋଇପାରି ନ ଥାଏ। ସେପରି ହେବା ପାଇଁ ଆବଶ୍ୟକ ହୋଇଥାଏ କର୍ତ୍ତାର ଭାବନାର ସହଯୋଗ। କର୍ତ୍ତାର ଭାବନା ବିନା ଏପରି ହେବା ସମ୍ଭବ ନୁହେଁ, ତେଣୁ କର୍ତ୍ତା ସଦା ସ୍ୱତନ୍ତ୍ର ହୋଇଥାଏ।

ସମସ୍ତଙ୍କ ଉପରେ ଅନୁଗ୍ରହକାରୀ ଶିବ ସ୍ୱଭାବତଃ ନିର୍ମଳ ହୋଇଥିବା ବେଳେ 'ଜୀବ' ସଂଜ୍ଞା ଧାରଣ କରିଥିବା ଆତ୍ମା ସ୍ୱଭାବତଃ ମଳିନ ହୋଇଥାଏ। ଏପରି ନ ହୋଇଥିଲେ ସେହି ଜୀବମାନେ କାହିଁକି ନିୟମପୂର୍ବକ ସଂସାରରେ ଘୂରୁଥାନ୍ତେ ଏବଂ ଶିବ କାହିଁକି ସଂସାର ବନ୍ଧନରୁ ଉର୍ଦ୍ଧ୍ୱରେ ରହିଥାନ୍ତେ? ବିଦ୍ୱାନମାନେ କର୍ମ ଓ ମାୟାର ବନ୍ଧନକୁ ହିଁ ଜୀବର 'ସଂସାର' କହନ୍ତି। ବନ୍ଧନ ଜୀବକୁ ହିଁ ପ୍ରାପ୍ତ ହୁଏ, ଶିବଙ୍କୁ ନୁହେଁ। ଏଥିରେ ଜୀବର ସ୍ୱାଭାବିକ ମଳ ହିଁ କାରଣ ହୁଏ। ଏହି କାରଣଭୂତ ମଳ ଜୀବଙ୍କର ନିଜ ସ୍ୱଭାବ, ଏହା ଆଗନ୍ତୁକ ନୁହେଁ। ଯଦି ଆଗନ୍ତୁକ ହୋଇଥାନ୍ତା, ତେବେ କାହାରିକୁ ହେଲେ କୌଣସି କାରଣରୁ ବନ୍ଧନ ପ୍ରାପ୍ତ ହୋଇଯାଆନ୍ତା। ଏହି ହେତୁ ହେଉଛି ଏକ; କାରଣ ସବୁ ଜୀବଙ୍କର ସ୍ୱଭାବ ଏକାପରି। ଯଦ୍ୟପି ସମସ୍ତଙ୍କ ଠାରେ ଏକାପରି ଆତ୍ମଭାବ ଥାଏ, ତଥାପି ମଳର ପରିପାକ ଓ ଅପରିପାକ କାରଣରୁ କେତେକ ଜୀବ ବଦ୍ଧ ଓ କେତେକ ମୁକ୍ତ ଅଟନ୍ତି। ବଦ୍ଧ ଜୀବଙ୍କ ଭିତରେ କେତେକ ଲୟ ଓ ଭୋଗର ଅଧିକାର ଅନୁସାରେ ଉତ୍କୃଷ୍ଟ ଓ ନିକୃଷ୍ଟ ହୋଇ ଜ୍ଞାନ ଓ ଐଶ୍ୱର୍ଯ୍ୟ ଇତ୍ୟାଦିର ବିଷମତା ପ୍ରାପ୍ତ ହୋଇଥାନ୍ତି ଅର୍ଥାତ୍ କେତେକ ଲୋକ ଅଧିକ ଓ କେତେକ ଲୋକ କମ୍ ଜ୍ଞାନ ଓ ଐଶ୍ୱର୍ଯ୍ୟରେ ଯୁକ୍ତ ହୋଇଥାନ୍ତି। କେତେକ ମୂର୍ତ୍ତ୍ୟାତ୍ମା ହୋଇଥାନ୍ତି ଏବଂ ଆଉ କେତେକ ସାକ୍ଷାତ୍ ଶିବଙ୍କ ସମୀପରେ ବିଚରଣ କରିଥାନ୍ତି। ମୂର୍ତ୍ତ୍ୟାତ୍ମାଙ୍କ ମଧ୍ୟରେ କେତେକ ଶିବସ୍ୱରୂପ ହୋଇ ଷଡଧ୍ୱାର ଉପରେ ସ୍ଥିତ ହୋଇଥାନ୍ତି, ଆଉ କେତେକ ଅଧ୍ୱାର ମଧ୍ୟଭାଗରେ ମହେଶ୍ୱର ହୋଇ ରହନ୍ତି ଏବଂ ଆଉ କେତେକ ନିମ୍ନଭାଗରେ ରୁଦ୍ରରୂପରେ ସ୍ଥିତ ହୋଇଥାନ୍ତି। ଶିବଙ୍କ ସମୀପବର୍ତ୍ତୀ ସ୍ୱରୂପରେ ମଧ୍ୟ ମାୟାରୁ ଅତୀତ ହେବା କାରଣରୁ ଉତ୍କୃଷ୍ଟ, ମଧ୍ୟମ ଓ ନିକୃଷ୍ଟ ଭେଦରେ ତିନି ଶ୍ରେଣୀ ଥାଏ। ସେଠାରେ ନିମ୍ନ ସ୍ଥାନରେ ଆତ୍ମାର ସ୍ଥିତି, ମଧ୍ୟମ ସ୍ଥାନରେ ଅନ୍ତରାତ୍ମାର ସ୍ଥିତି ଏବଂ ସର୍ବୋତ୍କୃଷ୍ଟ ଶ୍ରେଣୀ ସ୍ଥାନରେ ପରମାତ୍ମାଙ୍କର ସ୍ଥିତି ରହିଛି। ଏମାନେ ହିଁ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ବୋଲାନ୍ତି। କେତେକ ବସୁ (ଜୀବ) ପରମାତ୍ମପଦର ଆଶ୍ରୟ ନେଇଥାନ୍ତି, କେତେକ ଅନ୍ତରାତ୍ମପଦର ଏବଂ ଆଉ କେତେକ ଆତ୍ମପଦରେ ପ୍ରତିଷ୍ଠିତ ହୋଇଥାନ୍ତି।

ଭଗବାନ ଶିବ ତ ଅନାୟାସରେ ସମସ୍ତ ପଶୁଙ୍କୁ ବନ୍ଧନରୁ ମୁକ୍ତ କରିବାକୁ ସମର୍ଥ। ତେବେ ସେ ସେମାନଙ୍କୁ ବନ୍ଧନରେ ପକାଇ ରଖି କାହିଁକି ଦୁଃଖ ଦିଅନ୍ତି? ଏପରି ସନ୍ଦେହ କରିବା ଉଚିତ ନୁହେଁ। କାରଣ ସାରା ସଂସାର ଦୁଃଖରୂପ ଅଟେ, ଏହା ବିଗ୍ରବାନଙ୍କର ନିର୍ଣ୍ଣୀତ ସିଦ୍ଧାନ୍ତ। ଯେ ସ୍ୱଭାବତଃ ଦୁଃଖମୟ, ସେ ଦୁଃଖରହିତ କିପରି ହୋଇପାରିବ! ସ୍ୱଭାବରେ ତ ଅଦଳ-ବଦଳ ହୋଇପାରିବ ନାହିଁ। ବୈଦ୍ୟର ଔଷଧରେ ରୋଗ ଅରୋଗ ହୋଇଯାଏ ନାହିଁ। ସେ ରୋଗପୀଡ଼ିତ ବ୍ୟକ୍ତିକୁ ତା'ର ଔଷଧ ଦ୍ୱାରା ସୁଖପୂର୍ବକ ଉଦ୍ଧାର କରିଦିଏ। ସେହିପରି ଯେଉଁ ପଶୁମାନେ ସ୍ୱଭାବତଃ ମଳିନ ଓ ସ୍ୱଭାବତଃ ଦୁଃଖୀ, ସେମାନଙ୍କୁ ଆଜ୍ଞାରୂପୀ ଔଷଧ ଦେଇ ଶିବ ଦୁଃଖରୁ ମୁକ୍ତି ପ୍ରଦାନ କରନ୍ତି। ରୋଗ ହେବାରେ ବୈଦ୍ୟ କାରଣ ନୁହେଁ, ମାତ୍ର ସଂସାରର ଉତ୍ପତ୍ତିରେ ଶିବ କାରଣ ହୋଇଥାନ୍ତି। ତେଣୁ ରୋଗ ଓ ବୈଦ୍ୟର ଦୃଷ୍ଟାନ୍ତ ସହ ଶିବ ଓ

ସଂସାରର ଦାର୍ଷ୍ଟାନ୍ତ ମେଳ ଖାଏ ନାହିଁ । ସେଦୃଷ୍ଟିରୁ ଏହାଦ୍ୱାରା ଶିବଙ୍କ ଉପରେ ଦୋଷାରୋପଣ କରାଯାଇ ନ ପାରେ । ଦୁଃଖ ଯଦି ସ୍ୱଭାବସିଦ୍ଧ, ତେବେ ପୁଣି ଶିବ ତାହାର କାରଣ କିପରି ହୋଇପାରିବେ? ଜୀବଠାରେ ଯେଉଁ ବାସ୍ତବିକ ମଳ ରହିଛି, ତାହା ହିଁ ତାକୁ ସଂସାରଚକ୍ରରେ ପକାଇଥାଏ । ସଂସାରର କାରଣଭୂତ ମଳ ବା ଅଚେତନ ମାୟା ଇତ୍ୟାଦି ଶିବଙ୍କ ସାନ୍ନିଧ୍ୟ ବିନା ଆପେ ଆପେ ଚେଷ୍ଟାଶୀଳ ହୋଇ ପାରନ୍ତି ନାହିଁ । ଚୁମ୍ବକ ଯେପରି ଲୁହାର ସାନ୍ନିଧ୍ୟ ପାଇଲେ ହିଁ ଉପକାରୀ ହୁଏ ଅର୍ଥାତ୍ ଲୁହାକୁ ଆକର୍ଷିତ କରେ, ସେହିପରି ଶିବ ମଧ୍ୟ ଜଡ଼ ମାୟା ଇତ୍ୟାଦିର ସାନ୍ନିଧ୍ୟ ପାଇଲେ ହିଁ ଉପକାରୀ ହୋଇଥାନ୍ତି, ତାହାକୁ ସଚେଷ୍ଟ କରିଥାନ୍ତି । ତାଙ୍କର ବିଦ୍ୟମାନ ସାନ୍ନିଧ୍ୟକୁ ଅକାରଣେ ହଟାଇ ଦିଆଯାଇ ପାରିବ ନାହିଁ । ତେଣୁ ଜଗତ ପାଇଁ ଯେଉଁ ଶିବ ସଦା ଅଜ୍ଞାତ, ସେ ହିଁ ଏହାର ଅଧିଷ୍ଠାତା । ଶିବଙ୍କ ବିନା ଏଠାରେ କେହି ବି ପ୍ରବୃତ୍ତ (ଚେଷ୍ଟାଶୀଳ) ହୋଇପାରେ ନାହିଁ, ତାଙ୍କ ଆଜ୍ଞା ବିନା ପତ୍ରଟିଏ ବି ହଲେ ନାହିଁ । ତାଙ୍କରି ଠାରୁ ପ୍ରେରିତ ହୋଇ ଏ ଜଗତ ବିଭିନ୍ନ ପ୍ରକାର ଚେଷ୍ଟା କରିଥାଏ, ତଥାପି ଶିବ କଦାପି ମୋହିତ ହୁଅନ୍ତି ନାହିଁ । ତାଙ୍କର ଆଜ୍ଞାରୂପିଣୀ ଶକ୍ତି ହିଁ ସମସ୍ତଙ୍କୁ ନିୟନ୍ତ୍ରଣ କରେ । ତାହାର ଚାରିଆଡ଼େ ମୁଖ ରହିଛି । ସେ ହିଁ ସବୁବେଳେ ଏ ସମଗ୍ର ଦୃଶ୍ୟପ୍ରପଞ୍ଚକୁ ବିସ୍ତାର କରିଛି; ତଥାପି ତାହାର ଦୋଷରେ ଶିବ ଦୂଷିତ ହୁଅନ୍ତି ନାହିଁ । ଯେଉଁ ଦୁର୍ବୁଦ୍ଧି ମାନବ ମୋହବଶତଃ ଏହାର ବିପରୀତ ଧାରଣା କରେ, ସେ ନଷ୍ଟ ହୋଇଯାଏ । ଶିବଙ୍କ ଶକ୍ତିର ବୈଭବରେ ହିଁ ସାରା ସଂସାର ସଂଚାଳିତ ହୁଏ, ତଥାପି ଏଥିରେ ଶିବ ଦୂଷିତ ହୁଅନ୍ତି ନାହିଁ ।

ଏତିକିବେଳେ ଆକାଶରୁ ଶୂନ୍ୟବାଣୀ ଶୁଭିଲା–"ସତ୍ୟମ୍ ଓମ୍ ଅମୃତଂ ସୌମ୍ୟମ୍"* ଏହି ଶବ୍ଦଗୁଡ଼ିକ ସେଠାରେ ସ୍ପଷ୍ଟ ଉଚ୍ଚାରିତ ହେଲା । ତାହାକୁ ଶୁଣି ସମସ୍ତେ ବହୁତ ପ୍ରସନ୍ନ ହେଲେ । ସେମାନଙ୍କର ସମସ୍ତ ସଂଶୟ ନଷ୍ଟ ହୋଇଗଲା ଏବଂ ମୁନିମାନେ ବିସ୍ମିତ ହୋଇ ପ୍ରଭୁ ପବନଦେବଙ୍କୁ ପ୍ରଣାମ କଲେ । ଏହିରୂପେ ମୁନିମାନଙ୍କୁ ସନ୍ଦେହରହିତ କରି ମଧ୍ୟ ବାୟୁଦେବ ଏ କଥା ମାନିଲେ ନାହିଁ ଯେ ସେମାନଙ୍କୁ ପୂର୍ଣ୍ଣଜ୍ଞାନ ହୋଇଗଲା । ସେମାନଙ୍କ ଜ୍ଞାନ ଏବେ ପ୍ରତିଷ୍ଠିତ ହୋଇ ନାହିଁ ବୋଲି ଅନୁଭବ କରି ସେ ଏହିପରି କହିଲେ–

ବାୟୁଦେବ କହିଲେ–ମୁନିଗଣ ! ପରୋକ୍ଷ ଓ ଅପରୋକ୍ଷ ଭେଦରେ ଜ୍ଞାନ ଦୁଇ ପ୍ରକାର । ପରୋକ୍ଷ ଜ୍ଞାନକୁ ଅସ୍ଥିର ଏବଂ ଅପରୋକ୍ଷ ଜ୍ଞାନକୁ ସୁସ୍ଥିର କୁହାଯାଇଛି । ଯୁକ୍ତିପୂର୍ଣ୍ଣ ଉପଦେଶ ଦ୍ୱାରା ଯେଉଁ ଜ୍ଞାନ ହୁଏ, ତାହାକୁ ବିଦ୍ୱାନ୍ ପୁରୁଷ ପରୋକ୍ଷ ଜ୍ଞାନ କହନ୍ତି । ତାହା ଶ୍ରେଷ୍ଠ ଅନୁଷ୍ଠାନ ଦ୍ୱାରା ଅପରୋକ୍ଷ ହୋଇଯାଏ । ଅପରୋକ୍ଷ ଜ୍ଞାନ ବିନା ମୋକ୍ଷ ହୁଏ ନାହିଁ, ଏହା ଜାଣି ତୁମେମାନେ ନିରଳସ ହୋଇ ଶ୍ରେଷ୍ଠ ଅନୁଷ୍ଠାନର ସିଦ୍ଧି ପାଇଁ ପ୍ରଯତ୍ନ କର ।

(ଅଧ୍ୟାୟ ୩୦-୩୧)



* ଏ ପଦଗୁଡ଼ିକର ସମ୍ମିଳିତ ଅର୍ଥ ହେଲା–ହଁ, ତାହା ସତ୍ୟ, ଅମୃତମୟ ଓ ସୌମ୍ୟ ଅଟେ ।

# ପରମ ଧର୍ମର ପ୍ରତିପାଦନ, ଶୈବାଗମ ଅନୁସାରେ ପାଶୁପତ ଜ୍ଞାନ ଓ ତାହାର ସାଧନର ବର୍ଣ୍ଣନା

ଋଷିମାନେ ପଚାରିଲେ—**ବାୟୁଦେବ ! କେଉଁ ଶ୍ରେଷ୍ଠ ଅନୁଷ୍ଠାନ ମୋକ୍ଷରୂପୀ ଜ୍ଞାନକୁ ଅପରୋକ୍ଷ କରିଦିଏ? ସେ ବିଷୟରେ ଓ ତାହାର ସାଧନ ବିଷୟରେ ଆଜି ଆମକୁ କୁହନ୍ତୁ ।**

ବାୟୁଦେବ କହିଲେ—**ଭଗବାନ ଶିବଙ୍କ କଥିତ ପରମ ଧର୍ମକୁ ହିଁ ଶ୍ରେଷ୍ଠ କୁହାଯାଇଛି । ତାହା ସିଦ୍ଧ ହୋଇଗଲେ ସାକ୍ଷାତ୍ ମୋକ୍ଷଦାତା ଶିବ ଅପରୋକ୍ଷ ହୋଇଯାଆନ୍ତି । ସେହି ପରମ ଧର୍ମ ପାଞ୍ଚ ପର୍ବ ହେତୁ ଯଥାକ୍ରମେ ପାଞ୍ଚ ପ୍ରକାରର ହୋଇଯାଏ । ସେହି ପର୍ବଗୁଡ଼ିକର ନାମ ହେଲା—କ୍ରିୟା, ତପ, ଜପ, ଧ୍ୟାନ ଓ ଜ୍ଞାନ । ଏଗୁଡ଼ିକ ଉତ୍ତରୋତ୍ତର ଶ୍ରେଷ୍ଠ । ସେହି ଉତ୍କୃଷ୍ଟ ସାଧନ ଦ୍ୱାରା ସିଦ୍ଧ ହୋଇଥିବା ଧର୍ମ ହିଁ ପରମ ଧର୍ମ ନାମରେ ବିବେଚିତ ହୁଏ, ଯେଉଁଠି ପରୋକ୍ଷ ଜ୍ଞାନ ମଧ୍ୟ ଅପରୋକ୍ଷ ଜ୍ଞାନ ହୋଇ ମୋକ୍ଷଦାୟକ ହୋଇଥାଏ । ବୈଦିକ ଧର୍ମ ଦୁଇ ପ୍ରକାରର—ପରମ ଓ ଅପରମ । ଧର୍ମ ଶବ୍ଦର ପ୍ରତିପାଦ୍ୟ ଅର୍ଥରେ ଆମର ଶ୍ରୁତି ହିଁ ପ୍ରମାଣ । ଯୋଗପର୍ଯ୍ୟନ୍ତ ଯେଉଁ ପରମ ଧର୍ମ ଅଛି, ତାହା ଶ୍ରୁତିମାନଙ୍କ ଶିରୋଭୂତ ଉପନିଷଦରେ ବର୍ଣ୍ଣିତ ଏବଂ ଅପରମ ଧର୍ମ ତାହାର ତଳେ ଶ୍ରୁତିର ମୁଖଭାଗରୁ ଅର୍ଥାତ୍ ସଂହିତା-ମନ୍ତ୍ର ଦ୍ୱାରା ପ୍ରତିପାଦିତ ହୋଇଛି । ଯେଉଁ ବେଦାନ୍ତବର୍ଣ୍ଣିତ ଧର୍ମରେ ପଶୁ (ବଦ୍ଧ) ଜୀବଙ୍କର ଅଧିକାର ନାହିଁ, ତାହାକୁ 'ପରମ ଧର୍ମ' ଧରାଯାଇଛି । ତହିଁରୁ ଭିନ୍ନ ଯାଗଯଜ୍ଞାଦିରେ ସମସ୍ତଙ୍କର ଅଧିକାର ଥିବାରୁ ତାହା ସାଧାରଣ ବା 'ଅପରମ ଧର୍ମ' ବୋଲାଏ । ଅପରମ ଧର୍ମ ହିଁ ପରମ ଧର୍ମର ସାଧନ । ଧର୍ମଶାସ୍ତ୍ରାଦି ଦ୍ୱାରା ତାହାର ବିସ୍ତାରପୂର୍ବକ ସାଙ୍ଗୋପାଙ୍ଗ ନିରୂପଣ ହୋଇଛି । ଭଗବାନ ଶିବଙ୍କ ଦ୍ୱାରା ଯେଉଁ ପରମ ଧର୍ମର ପ୍ରତିପାଦନ ହୋଇଛି, ତାହାର ନାମ ଶ୍ରେଷ୍ଠ ଅନୁଷ୍ଠାନ । ଇତିହାସ ଓ ପୁରାଣରେ ତାହା କୌଣସି ପ୍ରକାରେ ବିସ୍ତାରିତ ହୋଇଛି ସତ, କିନ୍ତୁ ଶୈବଶାସ୍ତ୍ରରେ ତାହାର ବିସ୍ତାରକୁ ସାଙ୍ଗୋପାଙ୍ଗ ନିରୂପଣ କରାଯାଇଛି । ସେଠାରେ ତାହାର ସ୍ୱରୂପକୁ ସମ୍ୟକ୍‌ରୂପେ ପ୍ରତିପାଦନ କରାଯାଇଛି । ତତ୍‌ସହିତ ତାହାର ସଂସ୍କାର ଓ ଅଧିକାର ମଧ୍ୟ ସମ୍ୟକ୍‌ରୂପେ ବିସ୍ତାରପୂର୍ବକ ବର୍ଣ୍ଣିତ ହୋଇଛି । ଶୈବ ଆଗମରେ ଶ୍ରୌତ ଓ ଅଶ୍ରୌତ ନାମରେ ଦୁଇ ଭେଦ ରହିଛି । ଯାହା ଶ୍ରୁତିର ସାରତତ୍ତ୍ୱରେ ସମ୍ପନ୍ନ, ତାହା ଶ୍ରୌତ; ଏବଂ ଯାହା ସ୍ୱତନ୍ତ୍ର, ତାହା ଅଶ୍ରୌତ । ସ୍ୱତନ୍ତ୍ର ଶୈବାଗମ ପ୍ରଥମେ ଦଶ ପ୍ରକାର ଥିଲା, ପରେ ଅଠର ପ୍ରକାର ହୋଇଗଲା । ତାହା କାୟିକ ଆଦି ସଂଜ୍ଞାରେ ସିଦ୍ଧ ହୋଇ ସିଦ୍ଧାନ୍ତ ନାମ ଧାରଣ କରିଥାଏ । ଶ୍ରୁତିସାରମୟ ଶୈବଶାସ୍ତ୍ର ଶହେ କୋଟି ଶ୍ଳୋକରେ ବିସ୍ତାରିତ । ସେଥିରେ ଉତ୍କୃଷ୍ଟ 'ପାଶୁପତ ବ୍ରତ' ଓ 'ପାଶୁପତ ଜ୍ଞାନ'ର ବର୍ଣ୍ଣନା କରାଯାଇଛି । ଯୁଗ ଯୁଗରେ ଶିଷ୍ୟଙ୍କୁ ତାହା ଉପଦେଶ ଦେବା ପାଇଁ ଭଗବାନ ଶିବ ସ୍ୱୟଂ ଯୋଗାଚାର୍ଯ୍ୟରୂପରେ ନାନା ସ୍ଥାନରେ ଅବତରିତ ହୋଇ ତାହାର ପ୍ରଚାର କରନ୍ତି ।**

**ଏହି ଶୈବଶାସ୍ତ୍ରକୁ ସଂକ୍ଷିପ୍ତ କରି ତାହାର ସିଦ୍ଧାନ୍ତକୁ ପ୍ରବଚନ କରିଥାନ୍ତି ମୁଖ୍ୟତଃ ଚାରିଜଣ ମହର୍ଷି । ସେମାନେ ହେଲେ—ରୁରୁ, ଦଧୀଚି, ଅଗସ୍ତ୍ୟ ଓ ମହାଯଶସ୍ୱୀ ଉପମନ୍ୟୁ । ସେମାନଙ୍କୁ ସଂହିତାଗୁଡ଼ିକର ପ୍ରବର୍ତ୍ତକ 'ପାଶୁପତ' ବୋଲି ବୁଝିବା ଉଚିତ । ସେମାନଙ୍କ ସନ୍ତାନ ପରମ୍ପରାରେ ଶହ ଶହ ହଜାର ହଜାର ଗୁରୁଜନଙ୍କର ଆବିର୍ଭାବ ହୋଇଛି । ପାଶୁପତ ସିଦ୍ଧାନ୍ତରେ ଯେଉଁ ପରମ**

ଧର୍ମ ବର୍ଣ୍ଣିତ, ତାହା ଚର୍ଯ୍ୟା* ଆଦି ଚାରୋଟି ପାଦ କାରଣରୁ ଚାରି ପ୍ରକାରର ହୋଇଛି । ସେଗୁଡ଼ିକ ମଧ୍ୟରେ ପାଶୁପତ ଯୋଗ ହିଁ ଦୃଢ଼ତାପୂର୍ବକ ଶିବଙ୍କର ସାକ୍ଷାତ୍କାର କରାଇବାକୁ ସମର୍ଥ । ଏଣୁ ପାଶୁପତ ଯୋଗ ହିଁ ଶ୍ରେଷ୍ଠ ଅନୁଷ୍ଠାନ ବୋଲି ଧରାଯାଇଛି । ସେଥିରେ ବି ବ୍ରହ୍ମା ଯେଉଁ ଉପାୟ କହିଛନ୍ତି, ଏବେ ତାହାରି ବର୍ଣ୍ଣନା କରାଯାଉଛି । ଭଗବାନ ଶିବଙ୍କ ପରିକଳ୍ପିତ 'ନାମାଷ୍ଟକମୟ ଯୋଗ' ଦ୍ୱାରା ସହସା 'ଶୈବୀ ପ୍ରଜ୍ଞା'ର ଉଦୟ ହୁଏ । ସେହି ପ୍ରଜ୍ଞାଦ୍ୱାରା ବ୍ୟକ୍ତି ଶୀଘ୍ର ସୁସ୍ଥିର ପରମ ଜ୍ଞାନ ଲାଭ କରିଥାଏ । ଯାହାର ହୃଦୟରେ ସେହି ଜ୍ଞାନ ପ୍ରତିଷ୍ଠିତ, ତା' ଉପରେ ଭଗବାନ ଶିବ ପ୍ରସନ୍ନ ହୁଅନ୍ତି । ତାଙ୍କ କୃପାପ୍ରସାଦରୁ ଶିବଙ୍କ ଅପରୋକ୍ଷ ଦର୍ଶନ କରାଉଥିବା ପରମ ଯୋଗ ସିଦ୍ଧ ହୁଏ । ଶିବଙ୍କ ବିଷୟରେ ଅପରୋକ୍ଷ ଜ୍ଞାନ ହୋଇଗଲେ ସଂସାର-ବନ୍ଧନର କାରଣ ଦୂର ହୋଇଯାଏ । ଏହିରୂପେ ସଂସାରରୁ ମୁକ୍ତ ହୋଇଥିବା ବ୍ୟକ୍ତି ଶିବଙ୍କ ସମାନ ହୋଇଯାଏ । ଏହା ବ୍ରହ୍ମାଙ୍କ ଦ୍ୱାରା କଥିତ ଉପାୟ । ତାହାକୁ ପୃଥକ୍ ବର୍ଣ୍ଣନା କରୁଛି । ଶିବ, ମହେଶ୍ୱର, ରୁଦ୍ର, ବିଷ୍ଣୁ, ପିତାମହ (ବ୍ରହ୍ମା), ସଂସାରବୈଦ୍ୟ, ସର୍ବଜ୍ଞ ଓ ପରମାତ୍ମା— ଏଗୁଡ଼ିକ ହେଲା ମୁଖ୍ୟତଃ ଆଠଟି ନାମ । ଏ ଆଠଟି ମୁଖ୍ୟ ନାମ ଶିବଙ୍କର ପ୍ରତିପାଦକ । ଏଥିମଧ୍ୟରୁ ପ୍ରଥମ ପାଞ୍ଚଟି ନାମ ଯଥାକ୍ରମେ ଶାନ୍ତ୍ୟତୀତା ଆଦି ପାଞ୍ଚ କଳା ସହ ସମ୍ବନ୍ଧିତ ହୋଇଥିବାରୁ ଏବଂ ସେହି ପାଞ୍ଚ ଉପାଧିକୁ ଗ୍ରହଣ କରିଥିବାରୁ ସଦାଶିବ ଆଦିଙ୍କ ବୋଧକ ହୋଇଥାନ୍ତି । ଉପାଧି ନିବୃତ୍ତ ହୋଇଗଲେ ଏହି ଭେଦର ନିବୃତ୍ତି ହୋଇଯାଏ । ସେହି ପଦ ହିଁ ନିତ୍ୟ । କିନ୍ତୁ ଯେଉଁମାନେ ସେହି ପଦରେ ପ୍ରତିଷ୍ଠିତ ହୋଇଥାନ୍ତି, ସେମାନେ ଅନିତ୍ୟ ବୋଲାନ୍ତି । ପଦ ପରିବର୍ତ୍ତିତ ହେଲେ ପଦବୀଯୁକ୍ତ ପୁରୁଷ ମୁକ୍ତ ହୋଇଯାଆନ୍ତି । ପରିବର୍ତ୍ତନ ପରେ ପୁନଃ ଅନ୍ୟ ଆତ୍ମାମାନେ ସେହି ପଦକୁ ପ୍ରାପ୍ତ ହୋଇଥାନ୍ତି ବୋଲି କୁହାଯାଏ ଏବଂ ସେମାନଙ୍କ ପାଇଁ ଉପରୋକ୍ତ ପ୍ରଥମ ପାଞ୍ଚଟି ନାମ ନିୟତ ହୋଇଥାଏ । ଉପାଦାନ ଆଦି ଯୋଗରେ ଅନ୍ୟ ତିନୋଟି ନାମ (ସଂସାରବୈଦ୍ୟ, ସର୍ବଜ୍ଞ ଓ ପରମାତ୍ମା) ମଧ୍ୟ ତ୍ରିବିଧ ଉପାଧିର ପ୍ରତିପାଦନ କରି ଶିବଙ୍କ ଠାରେ ହିଁ ଅନୁଗତ ହୁଅନ୍ତି ।

ଅନାଦି ମଳର ସଂସର୍ଗ ତାଙ୍କ ଠାରେ ଆଦୌ ନାହିଁ ଏବଂ ସେ ସ୍ୱଭାବତଃ ଅତ୍ୟନ୍ତ ଶୁଦ୍ଧରୂପ, ତେଣୁ 'ଶିବ' ବୋଲାନ୍ତି ଅଥବା ଈଶ୍ୱର ସମସ୍ତ କଲ୍ୟାଣମୟ ଗୁଣର ଏକମାତ୍ର ଘନୀଭୂତ ବିଗ୍ରହ ହୋଇଥିବାରୁ ଶିବତତ୍ତ୍ୱର ଅର୍ଥଜ୍ଞ ଶ୍ରେଷ୍ଠ ମହାତ୍ମା ତାଙ୍କୁ ଶିବ କହନ୍ତି । ତେଇଶ ତତ୍ତ୍ୱରୁ ଅତୀତ ଯେଉଁ ପ୍ରକୃତି ଅଛି, ତାହାର ଉର୍ଦ୍ଧ୍ୱରେ ପଚିଶତମ ତତ୍ତ୍ୱ ସ୍ଥାନରେ ପୁରୁଷକୁ ନିର୍ଦ୍ଦେଶିତ କରାଯାଏ, ଯାହାକୁ ବେଦର ଆଦିରେ ଓଁକାର ରୂପ କୁହାଯାଇଛି । ଓଁକାର ଓ ପୁରୁଷ ମଧ୍ୟରେ ବାଚ୍ୟ-ବାଚକ-ଭାବର ସମ୍ବନ୍ଧ ରହିଛି । ତାହାର ଯଥାର୍ଥ ସ୍ୱରୂପର ଜ୍ଞାନ ଏକମାତ୍ର ବେଦଦ୍ୱାରା ହିଁ ହୋଇଥାଏ । ସେ ହିଁ ବେଦାନ୍ତରେ ପ୍ରତିଷ୍ଠିତ । କିନ୍ତୁ ସେ ପ୍ରକୃତି ସହ ସଂଯୁକ୍ତ; ତେଣୁ ତାଙ୍କ ଠାରୁ ଉର୍ଦ୍ଧ୍ୱରେ ଯେଉଁ ପରମ ପୁରୁଷ ଅଛନ୍ତି, ତାଙ୍କର ନାମ 'ମହେଶ୍ୱର'; କାରଣ ପ୍ରକୃତି ଓ ପୁରୁଷ ଉଭୟର ପ୍ରବୃତ୍ତି ତାହାର ଅଧୀନ ଅଥବା ଅବିନାଶୀ ତ୍ରିଗୁଣମୟୀ ତତ୍ତ୍ୱକୁ ପ୍ରକୃତି ବୋଲି ବୁଝିବା ଉଚିତ । ଏହି ପ୍ରକୃତିକୁ ମାୟା କହନ୍ତି । ମାୟା ଯାହାଙ୍କର ଶକ୍ତି, ସେହି ମାୟାପତିଙ୍କ ନାମ ହିଁ 'ମହେଶ୍ୱର' । ମହେଶ୍ୱରଙ୍କ ସମ୍ବନ୍ଧରୁ ଯେ ମାୟା ଅଥବା ପ୍ରକୃତିରେ କ୍ଷୋଭ ଉତ୍ପନ୍ନ କରନ୍ତି, ତାଙ୍କୁ ଅନନ୍ତ ବା 'ବିଷ୍ଣୁ' କୁହାଯାଏ ।

* ଚର୍ଯ୍ୟା, ବିଦ୍ୟା, କ୍ରିୟା ଓ ଯୋଗ ହିଁ ସେହି ଚାରୋଟି ପାଦ ।

ସେ ହିଁ କାଳାତ୍ମା ଓ ପରମାତ୍ମା ନାମରେ କଥିତ ହୁଅନ୍ତି । ତାଙ୍କୁ ସ୍ଥୂଳ ଓ ସୂକ୍ଷ୍ମରୂପ ମଧ୍ୟ କୁହାଯାଏ । ଦୁଃଖ ଅଥବା ଦୁଃଖର ହେତୁର ନାମ 'ରୁତ୍' । ଯେଉଁ ପ୍ରଭୁ ତାହାକୁ ଦ୍ରାବଣ କରନ୍ତି—ତାହାକୁ ମାରି ଗୋଡ଼ାନ୍ତି, ସେହି ପରମ କାରଣ ଶିବଙ୍କୁ ସାଧୁ ପୁରୁଷ 'ରୁଦ୍ର' କହନ୍ତି । କଳା, କାଳ ଆଦି ତତ୍ତ୍ୱଠାରୁ ଆରମ୍ଭ କରି ପୃଥିବୀ ପର୍ଯ୍ୟନ୍ତ ଯେଉଁ ଛତିଶ ତତ୍ତ୍ୱ* ଅଛି, ସେଇଥିରୁ ଶରୀର ନିର୍ମିତ ହୁଏ । ସେହି ଶରୀର, ଇନ୍ଦ୍ରିୟ ଇତ୍ୟାଦିରେ ଯେଉଁ ଶିବ ତନ୍ଦ୍ରାରହିତ ହୋଇ ବ୍ୟାପକରୂପରେ ସ୍ଥିତ, ତାଙ୍କୁ ହିଁ 'ରୁଦ୍ର' କୁହାଯାଏ । ଜଗତର ପିତାରୂପରେ ଯେତେ ମୂର୍ତ୍ତ୍ୟାତ୍ମା ଅଛନ୍ତି, ସେ ସମସ୍ତଙ୍କର ପିତା ହେଉଛନ୍ତି ଭଗବାନ ଶିବ; ସେଥିପାଇଁ ତାଙ୍କୁ ପିତାମହ କୁହାଯାଇଛି । ରୋଗର ନିଦାନକୁ ଜାଣୁଥିବା ବୈଦ୍ୟ ଯେପରି ତଦନୁକୂଳ ଉପାୟ ଓ ଔଷଧ ଦ୍ୱାରା ରୋଗକୁ ଦୂର କରିଦିଏ, ଠିକ୍ ସେହିପରି ଈଶ୍ୱର ଲୟ-ଯୋଗାଧିକାରରେ ସଦା ସମୂଳେ ସଂସାରରୂପୀ ରୋଗକୁ ନିବୃତ୍ତ କରନ୍ତି, ତେଣୁ ସମସ୍ତ ତତ୍ତ୍ୱର ଜ୍ଞାତା ବିଦ୍ୱାନ୍ ତାଙ୍କୁ 'ସଂସାରବୈଦ୍ୟ' କହନ୍ତି । ଦଶ ବିଷୟର ଜ୍ଞାନ ନିମନ୍ତେ ଦଶ ଇନ୍ଦ୍ରିୟ ଥାଇ ମଧ୍ୟ ଜୀବମାନେ ତ୍ରିକାଳର ସ୍ଥୂଳ ଓ ସୂକ୍ଷ୍ମ ପଦାର୍ଥକୁ ପୂର୍ଣ୍ଣରୂପେ ଜାଣନ୍ତି ନାହିଁ; କାରଣ ମାୟା ହିଁ ସେମାନଙ୍କୁ ମଳ ଦ୍ୱାରା ଆବୃତ କରିଦେଇଛି । ମାତ୍ର ଭଗବାନ ସଦାଶିବ ସମସ୍ତ ବିଷୟର ଜ୍ଞାନ କରାଉଥିବା ଇନ୍ଦ୍ରିୟ ବିନା ମଧ୍ୟ ପ୍ରତ୍ୟେକ ବସ୍ତୁକୁ ଯଥାର୍ଥ ରୂପରେ ଜାଣନ୍ତି । ଏଣୁ ସେ 'ସର୍ବଜ୍ଞ' ବୋଲାନ୍ତି । ଯେ ଏ ସମସ୍ତ ଗୁଣରେ ନିତ୍ୟ ସଂଯୁକ୍ତ ହେବା କାରଣରୁ ସମସ୍ତଙ୍କର ଆତ୍ମା ଅଟନ୍ତି, ଯାହାଙ୍କ ପାଇଁ ନିଜ ଅତିରିକ୍ତ ଅନ୍ୟ କୌଣସି ଆତ୍ମାର ସତ୍ତା ନାହିଁ, ସେହି ଭଗବାନ ଶିବ ସ୍ୱୟଂ 'ପରମାତ୍ମା' ଅଟନ୍ତି ।

ଆଗ୍ରର୍ଯ୍ୟଙ୍କ କୃପାରେ ଏ ଆଠଟି ନାମର ଅର୍ଥସହିତ ଉପଦେଶ ପାଇ ଶିବାଦି ପାଞ୍ଚଟି ନାମ ଦ୍ୱାରା ନିବୃତ୍ତି ଆଦି ପଞ୍ଚକଳାର ଗ୍ରନ୍ଥିକୁ କ୍ରମାନୁସାରେ ଛେଦନ ଓ ଗୁଣାନୁସାରେ ଶୋଧନ କରି ଗୁଣିତ, ଉଦ୍‌ଘାତଯୁକ୍ତ ଓ ଅନିରୁଦ୍ଧ ପ୍ରାଣ ଦ୍ୱାରା ହୃଦୟ, କଣ୍ଠ, ତାଳୁ, ଭୂର ମଧ୍ୟଭାଗ ଓ ବ୍ରହ୍ମରନ୍ଧ୍ରଯୁକ୍ତ ପୁର୍ଯ୍ୟଷ୍ଟକକୁ ଭେଦନ କରି ସୁଷୁମ୍ନା ନାଡ଼ୀ ଦ୍ୱାରା ନିଜ ଆତ୍ମାକୁ ସହସ୍ରାର ଚକ୍ର ଭିତକୁ ନେଇଯିବେ । ତାହାର ବର୍ଣ୍ଣ ଶୁଭ୍ର । ତାହା ତରୁଣସୂର୍ଯ୍ୟ ତୁଲ୍ୟ ରକ୍ତିମ କେଶର ଦ୍ୱାରା ରଞ୍ଜିତ ଓ ଅଧୋମୁଖ ଅଟେ । ତାହାର ପଗ୍ୱଶ ପାଖୁଡ଼ାରେ ସ୍ଥିତ 'ଅ' ରୁ 'କ୍ଷ' ପର୍ଯ୍ୟନ୍ତ ସବିନ୍ଦୁ ଅକ୍ଷର-କର୍ଣ୍ଣିକା ମଧ୍ୟରେ ଗୋଲାକାର ଚନ୍ଦ୍ରମଣ୍ଡଳ ରହିଛି । ତାହା ଛତ୍ର ଆକାରର । ତାହା ଗୋଟିଏ ଉର୍ଦ୍ଧ୍ୱମୁଖ ଦ୍ୱାଦଶଦଳ କମଳକୁ ଆବୃତ କରି ରଖିଛି । ସେହି କମଳର କର୍ଣ୍ଣିକାରେ ବିଦ୍ୟୁତ୍ ସଦୃଶ ଅକଥାଦି ତ୍ରିକୋଣ ଯନ୍ତ୍ର ଅଛି । ଉକ୍ତ ଯନ୍ତ୍ରର ଗ୍ୱରିପଟରେ ସୁଧାସାଗର ଥିବାରୁ ତାହା ମଣିଦ୍ୱୀପ ଆକାରର ହୋଇଯାଇଛି । ଦ୍ୱୀପର ମଧ୍ୟଭାଗରେ ମଣିପୀଠ ରହିଛି । ତାହାର ମଧ୍ୟରେ ନାଦ ବିନ୍ଦୁର ଉପରେ ହଂସପୀଠ ରହିଛି । ତାହାରି ଉପରେ ପରମ ଶିବ ବିରାଜମାନ । ଉକ୍ତ ଚନ୍ଦ୍ରମଣ୍ଡଳ ଉପରେ ଶିବଙ୍କ ତେଜରେ ନିଜ ଆତ୍ମାକୁ ସଂଯୁକ୍ତ କରିବେ । ଏହିରୂପେ ଜୀବକୁ ଶିବଙ୍କ ଠାରେ ଲୀନ କରି ଶାକ୍ତ ଅମୃତବର୍ଷା ଦ୍ୱାରା ନିଜ ଶରୀର ଅଭିଷିକ୍ତ ହେବାର ଭାବନା କରିବେ । ତା'ପରେ ନିଜ ଅମୃତମୟବିଗ୍ରହ ଆତ୍ମାକୁ ବ୍ରହ୍ମରନ୍ଧ୍ରରୁ ଓହ୍ଲାଇ ଆଣି ହୃଦୟର ଦ୍ୱାଦଶଦଳ କମଳ ଭିତରେ ଥିବା ଚନ୍ଦ୍ରମାର ପରେ ଶ୍ୱେତକମଳ ଉପରେ ଅର୍ଦ୍ଧନାରୀଶ୍ୱର ରୂପରେ ବିରାଜମାନ

* କଳା, କାଳ, ନିୟତି, ବିଦ୍ୟା, ରାଗ, ପ୍ରକୃତି ଓ ଗୁଣ—ଏ ସାତଟି ତତ୍ତ୍ୱ, ପଞ୍ଚତନ୍ମାତ୍ର, ଦଶ ଇନ୍ଦ୍ରିୟ, ଗ୍ୱରିଟି ଅନ୍ତଃକରଣ, ପାଞ୍ଚଟି ଶବ୍ଦାଦି ବିଷୟ ତଥା ଆକାଶାଦି ପାଞ୍ଚ ଭୂତ ମିଶି ଛତିଶ ତତ୍ତ୍ୱ ହୁଅନ୍ତି ।

ମନୋହର ଆକୃତିଧାରୀ ନିର୍ମଳ ଦେବ ଭକ୍ତବତ୍ସଳ ମହାଦେବଙ୍କୁ ଚିନ୍ତନ କରିବେ । ତାଙ୍କର ଅଙ୍ଗକାନ୍ତି ଶୁଦ୍ଧସ୍ଫଟିକ ମଣି ପରି ଉଜ୍ଜ୍ୱଳ । ସେ ଶୀତଳ ପ୍ରଭାଯୁକ୍ତ ଓ ପ୍ରସନ୍ନ । ଏପରି ମନେ ମନେ ଧ୍ୟାନ କରି ଶାନ୍ତଚିତ୍ତ ହୋଇ ମନୁଷ୍ୟ ଶିବଙ୍କ ଅଷ୍ଟନାମ ଦ୍ୱାରା ହିଁ ଭାବମୟ ପୁଷ୍ପରେ ତାଙ୍କୁ ପୂଜା କରିବେ । ପୂଜା ଶେଷରେ ପୁନଃ ପ୍ରାଣାୟାମ କରି ଏକାଗ୍ରଚିତ୍ତରେ ଶିବନାମାଷ୍ଟକ ଜପିବେ । ତା'ପରେ ଭାବନା ଦ୍ୱାରା ନାଭିରେ ଆଠ ଆହୁତିର ହୋମ କରି ପୂର୍ଣ୍ଣାହୁତି ଦେବେ ଏବଂ ନମସ୍କାରପୂର୍ବକ ଆଠଟି ଫୁଲ ଦେଇ ଅନ୍ତିମ ଅର୍ଚ୍ଚନା ପୂର୍ଣ୍ଣ କରି ଚଳୁରେ ଧରିଥିବା ଜଳ ସଦୃଶ ନିଜକୁ ଶିବଙ୍କ ଚରଣରେ ସମର୍ପିତ କରିଦେବେ । ଏପରି କଲେ ଶୀଘ୍ର ମଙ୍ଗଳମୟୀ ପାଶୁପତ ଜ୍ଞାନ ପ୍ରାପ୍ତ ହୋଇଯିବ ଏବଂ ସାଧକ ସେହି ଜ୍ଞାନରେ ସ୍ଥିର ହୋଇଯିବ । ଏହାଛଡ଼ା ସେ ପରମ ଉତ୍ତମ ପାଶୁପତ-ବ୍ରତ ଓ ପରମ ଯୋଗକୁ ପ୍ରାପ୍ତ ହୋଇ ଯେ ମୁକ୍ତ ହୋଇଯିବ, ଏଥିରେ ସନ୍ଦେହ ନାହିଁ । (ଅଧ୍ୟାୟ ୩୨)

✯✯✯

## ପାଶୁପତ ବ୍ରତର ବିଧି ଓ ମହିମା ତଥା ଭସ୍ମଧାରଣର ମହତ୍ତ୍ୱ

ଋଷିମାନେ କହିଲେ–ଭଗବନ୍ ! ଆମେ ପରମୋତ୍ତମ ପାଶୁପତ ବ୍ରତ ବିଷୟରେ ଶୁଣିବାକୁ ଚାହୁଁ, ଯାହା ଅନୁଷ୍ଠାନ କରି ବ୍ରହ୍ମାଦି ସକଳ ଦେବତା ପାଶୁପତରୂପେ ବିଦିତ ହୋଇଛନ୍ତି ।

ବାୟୁଦେବ କହିଲେ–ମୁଁ ତୁମମାନଙ୍କ ଆଗରେ ଗୋପନୀୟ ପାଶୁପତ ବ୍ରତର ରହସ୍ୟ କହୁଛି, ଯାହା ଅଥର୍ବଶୀର୍ଷରେ ବର୍ଣ୍ଣିତ ହୋଇଛି । ଏହା ସମସ୍ତ ପାପ ନାଶ କରିଥାଏ । ଚିତ୍ରା ନକ୍ଷତ୍ରଯୁକ୍ତ ପୌର୍ଣ୍ଣମାସୀ ଏଥିନିମନ୍ତେ ଉତ୍ତମ କାଳ । ଶିବଙ୍କ ଦ୍ୱାରା ଅନୁଗୃହୀତ ସ୍ଥାନ ଏଥିପାଇଁ ଉତ୍ତମ ଦେଶ; ଅଥବା କ୍ଷେତ୍ର, ବଗିଚା ପ୍ରଭୃତି ଏବଂ ବନପ୍ରାନ୍ତ ମଧ୍ୟ ଶୁଭ ଓ ପ୍ରଶସ୍ତ ଦେଶ (ସ୍ଥାନ) । ପ୍ରଥମେ ତ୍ରୟୋଦଶୀ ଦିନ ଭଲଭାବରେ ସ୍ନାନ କରି ନିତ୍ୟକର୍ମ ସାରିବେ । ତା'ପରେ ନିଜ ଆଚାର୍ଯ୍ୟଙ୍କ ଆଜ୍ଞା ନେଇ, ତାଙ୍କୁ ପୂଜା ଓ ନମସ୍କାର କରି ବ୍ରତର ଅଙ୍ଗରୂପରେ ଦେବତାଙ୍କୁ ବିଶେଷରୂପେ ପୂଜା କରିବେ । ଉପାସକ ଶ୍ୱେତ ବସ୍ତ୍ର, ଶ୍ୱେତ ଉପବୀତ, ଶ୍ୱେତ ପୁଷ୍ପ ଓ ଶ୍ୱେତ ଚନ୍ଦନ ଧାରଣ କରିବା ଉଚିତ । ସେ କୁଶାସନ ଉପରେ ବସି, ହାତରେ ମୁଠାଏ କୁଶ ଧରି, ପୂର୍ବ ବା ଉତ୍ତର ଆଡ଼କୁ ମୁଖ କରି ତ୍ରିପ୍ରାଣାୟାମ କରିବା ପରେ ଶିବ-ପାର୍ବତୀଙ୍କୁ ଧ୍ୟାନ କରିବେ । ଏହାପରେ ସଂକଳ୍ପ କରିବେ ଯେ "ମୁଁ ଶିବଶାସ୍ତ୍ରରେ କଥିତ ବିଧି ଅନୁସାରେ ଏହି ପାଶୁପତ-ବ୍ରତ କରିବି ।" ସେ ଆଜୀବନ ଅଥବା ବାରବର୍ଷ, ଛଅବର୍ଷ ବା ତିନିବର୍ଷ ପାଇଁ; ଅଥବା ବାରମାସ, ଛଅମାସ, ତିନିମାସ ବା ଏକମାସ ପାଇଁ; ଅଥବା ବାରଦିନ, ଛଅଦିନ, ତିନିଦିନ ବା ଏକଦିନ ପାଇଁ ଏ ବ୍ରତର ଦୀକ୍ଷା ନେବେ । ସଂକଳ୍ପ କରିବା ପରେ ବିରଜା ହୋମ ପାଇଁ ବିଧିବତ୍ ଅଗ୍ନିସ୍ଥାପନ କରି ଯଥାକ୍ରମେ ଘିଅ, ସମିଧ ଓ ଚରୁରେ ହୋମ କରିବେ । ତା'ପରେ ତତ୍ତ୍ୱଶୁଦ୍ଧି ଉଦ୍ଦେଶ୍ୟରେ ମୂଳମନ୍ତ୍ର ପଢ଼ି ସେହି ସମିଧ ଆଦି ସାମଗ୍ରୀକୁ ଆହୁତି ଦେବେ । ସେତେବେଳେ ସେ ବାରମ୍ବାର ଏହିପରି ଚିନ୍ତନ କରିବେ ଯେ ମୋ ଶରୀରରେ ଯେଉଁ ସବୁ ତତ୍ତ୍ୱ ଅଛି, ସେସବୁ ଶୁଦ୍ଧ ହୋଇଯାଉ ।" ସେହି ତତ୍ତ୍ୱଗୁଡ଼ିକର ନାମ ହେଲା– ପଞ୍ଚଭୂତ, ପଞ୍ଚତନ୍ମାତ୍ର, ପାଞ୍ଚ ଜ୍ଞାନେନ୍ଦ୍ରିୟ, ପାଞ୍ଚ କର୍ମେନ୍ଦ୍ରିୟ, ପାଞ୍ଚ ବିଷୟ, ତ୍ୱଗାଦି ସପ୍ତଧାତୁ, ପ୍ରାଣାଦି ପଞ୍ଚବାୟୁ, ମନ, ବୁଦ୍ଧି, ଅହଂକାର, ପ୍ରକୃତି, ପୁରୁଷ, ରାଗ, ବିଦ୍ୟା, କଳା, ନିୟତି, କାଳ, ମାୟା, ଶୁଦ୍ଧ ବିଦ୍ୟା, ମହେଶ୍ୱର, ସଦାଶିବ,

ଶକ୍ତିତତ୍ତ୍ୱ ଓ ଶିବତତ୍ତ୍ୱ । ଏଗୁଡ଼ିକୁ ତତ୍ତ୍ୱ କହନ୍ତି ।

ବିରଜ ମନ୍ତ୍ରରେ ଆହୁତି ଦେଇ ହୋତା ରଜୋଗୁଣରହିତ ଓ ଶୁଦ୍ଧ ହୋଇଯାଏ । ତା'ପରେ ଶିବଙ୍କ ଅନୁଗ୍ରହ ପାଇ ସେ ଜ୍ଞାନବାନ୍ ହୋଇଯାଏ । ତା'ପରେ ଗୋବର ଆଣି ତାହାକୁ ପିଣ୍ଡ ତିଆରି କରିବେ । ତା'ପରେ ତାହାକୁ ଅଭିମନ୍ତ୍ରିତ କରି ଅଗ୍ନିରେ ପକାଇବେ । ଏହାପରେ ତାହାକୁ ପ୍ରୋକ୍ଷଣ କରି ସେଦିନ ବ୍ରତୀ କେବଳ ହବିଷ୍ୟ ଭକ୍ଷଣ କରି ରହିବେ । ରାତି ବିତି ସକାଳ ହେଲେ ଚତୁର୍ଦ୍ଦଶୀରେ ପୁନଃ ପୂର୍ବୋକ୍ତ ସମସ୍ତ କୃତ୍ୟ କରିବେ । ସେଦିନ ଅବଶିଷ୍ଟ ସମୟ ନିରାହାର ରହି ବିତାଇବେ । ତା'ପରେ ପୂର୍ଣ୍ଣିମା ଦିନ ସକାଳୁ ଏହିପରି ହୋମ ପର୍ଯ୍ୟନ୍ତ ସମସ୍ତ କୃତ୍ୟ ସମ୍ପାଦନ କରି ରୁଦ୍ରାଗ୍ନିର ଉପସଂହାର କରିବେ । ତା'ପରେ ଯତ୍ନପୂର୍ବକ ସେଥିରୁ ଭସ୍ମ ଗ୍ରହଣ କରିବେ । ତା'ପରେ ସାଧକ ଇଚ୍ଛାନୁସାରେ ଜଟା ରଖିପାରିବେ, ପୂରା ଲଣ୍ଡା ହୋଇପାରିବେ ଅଥବା ମୁଣ୍ଡରେ କେବଳ ଶିଖା ଧାରଣ କରିପାରିବେ । ଏହାପରେ ସ୍ନାନ କରିବେ । ସେ ଯଦି ଲୋକଲଜ୍ଜାରୁ ଉପରକୁ ଉଠି ସାରିଥାନ୍ତି, ତେବେ ସ୍ନାନ ପରେ ଦିଗମ୍ବର ରହିବେ, ନଚେତ୍ ଗେରୁଆବସ୍ତ୍ର, ମୃଗଚର୍ମ ବା ପୁରୁଣା ଚିରାକନା ପିନ୍ଧିବେ । ନଚେତ୍ ଗୋଟିଏମାତ୍ର ବସ୍ତ୍ର ଧାରଣ କରିବେ ଅଥବା ବଲ୍କଳ ଧାରଣ କରିବେ । କଟିରେ ମେଖଳା ଓ ହାତରେ ଦଣ୍ଡ ଧାରଣ କରିବେ । ଏହାପରେ ପାଦ ଧୋଇ ଆଚମନ କରିବେ । ବିରଜାଗ୍ନିରୁ ସୃଷ୍ଟ ଭସ୍ମକୁ ସଂଗ୍ରହ କରି 'ଅଗ୍ନିରିତି ଭସ୍ମ' ଇତ୍ୟାଦି ଛଅଟି ଅଥର୍ବବେଦୀୟ ମନ୍ତ୍ର ପଢ଼ି ତାହାକୁ ନିଜ ଶରୀରରେ ମସ୍ତକଠାରୁ ପାଦ ପର୍ଯ୍ୟନ୍ତ ସର୍ବତ୍ର ଭଲଭାବରେ ବୋଳିବେ । ଏହି କ୍ରମରେ ପ୍ରଣବ ବା ଶିବମନ୍ତ୍ର ଦ୍ୱାରା ସର୍ବାଙ୍ଗରେ ଭସ୍ମ ବୋଳି 'ତ୍ର୍ୟାୟୁଷମ୍' ଇତ୍ୟାଦି ମନ୍ତ୍ରରେ ଲଲାଟ ଇତ୍ୟାଦି ଅଙ୍ଗରେ ତ୍ରିପୁଣ୍ଡ୍ର କାଟିବେ । ଏହିରୂପେ ଶିବଭାବକୁ ପ୍ରାପ୍ତ ହୋଇ ଶିବଯୋଗ ଆଚରଣ କରିବେ । ତ୍ରିସଂଧ୍ୟାରେ ଏପରି କରିବେ । ଏହା ହିଁ ପାଶୁପତ ବ୍ରତ । ଏହା ଭୋଗ ଓ ମୋକ୍ଷ ପ୍ରଦାନ କରେ ଏବଂ ଜୀବଙ୍କର ପଶୁଭାବକୁ ନିବୃତ୍ତ କରେ । ଏପରି ପାଶୁପତ ବ୍ରତ ଅନୁଷ୍ଠାନ ଦ୍ୱାରା ପଶୁତ୍ୱ ପରିତ୍ୟାଗ କରି ଲିଙ୍ଗମୂର୍ତ୍ତି ସନାତନ ମହାଦେବଙ୍କୁ ପୂଜା କରିବା ଉଚିତ । ଯଦି ବୈଭବ ଥିବ, ତେବେ ସୁନାରେ ଏପରି ଅଷ୍ଟଦଳ ପଦ୍ମ ତିଆରି କରାଇବେ, ଯାହା ନବରତ୍ନଜଟିତ ହୋଇଥିବ । ସେଥିରେ କର୍ଣ୍ଣିକା ଓ କେଶର ଥିବ । ତାହାକୁ ଭଗବାନଙ୍କର ଆସନ କରିବେ । ଧନ ଅଭାବରେ ଲାଲ ବା ଧଳା ପଦ୍ମର ଆସନ ଅର୍ପିତ କରିବେ । ତାହା ନ ମିଳିଲେ କେବଳ ଭାବନାମୟ ପଦ୍ମ ଅର୍ପଣ କରିବେ ।

ସେହି ପଦ୍ମର କର୍ଣ୍ଣିକାରେ ଆଧାର ସମେତ ଛୋଟ ସ୍ଫଟିକ ଶିବଲିଙ୍ଗ ସ୍ଥାପନ କରି ବିଧିପୂର୍ବକ ପୂଜା କରିବେ । ପ୍ରଥମେ ଶାସ୍ତ୍ରୀୟ ବିଧି ଅନୁସାରେ ସେହି ଲିଙ୍ଗକୁ ଶୋଧନ କରି ସ୍ଥାପନା କରିବେ । ତା'ପରେ ଆସନ ଦେଇ ପଞ୍ଚମୁଖୀ ମୂର୍ତ୍ତିର କଳ୍ପନା କରି ନିଜ ସାମର୍ଥ୍ୟ ଅନୁସାରେ ସୁବର୍ଣ୍ଣ କଳସମାନଙ୍କରେ ପଞ୍ଚଗବ୍ୟସ୍ନାନ କରାଇବେ । ତା'ପରେ ସୁଗନ୍ଧିତ ଦିବ୍ୟ, କର୍ପୂର, ଚନ୍ଦନ ଓ କୁଙ୍କୁମ ଇତ୍ୟାଦିରେ ବେଦିସମେତ ଭୂଷଣଭୂଷିତ ଶିବଲିଙ୍ଗକୁ ଅନୁଲେପନ କରି ବିଲ୍ୱପତ୍ର, ରକ୍ତପଦ୍ମ, ଶ୍ୱେତପଦ୍ମ, ନୀଳପଦ୍ମ, ଅନ୍ୟାନ୍ୟ ସୁଗନ୍ଧିତ ପୁଷ୍ପ, ପବିତ୍ର ଓ ଉତ୍ତମ ପତ୍ର, ଦୂବ ତଥା ଅକ୍ଷତାଦି ବିଭିନ୍ନ ଉପଚାର ଅର୍ପଣ କରି ଯଥୋପଲବ୍ଧ ସାମଗ୍ରୀ ଦ୍ୱାରା ମହାପୂଜନ ବିଧିରେ ସେଥିରେ ମୂର୍ତ୍ତିର ଅଭ୍ୟର୍ଚ୍ଚନା କରିବେ । ତା'ପରେ ଧୂପ, ଦୀପ ଓ ନୈବେଦ୍ୟ ନିବେଦନ କରିବେ । ବୈଭବସମ୍ପନ୍ନ ହୋଇଥିଲେ ଶିବଙ୍କୁ ଉତ୍ତମ ବସ୍ତୁ ନିବେଦନ କରି ନିଜର କଲ୍ୟାଣ କରିବେ । ଏହି

ବ୍ରତରେ ବିଶେଷତଃ ସେହି ସବୁ ବସ୍ତୁ ଅର୍ପଣ କରିବେ, ଯାହା ନିଜର ଅଧିକ ପ୍ରିୟ ହୋଇଥିବ, ଶ୍ରେଷ୍ଠ ହୋଇଥିବ ଓ ନ୍ୟାୟପୂର୍ବକ ଉପାର୍ଜିତ ହୋଇଥିବ । ବିଲ୍ୱପତ୍ର, ଉତ୍ପଳ ଓ ପଦ୍ମର ସଂଖ୍ୟା ହଜାରେ ଲେଖାଏଁ ହେବା ଉଚିତ । ଅନ୍ୟ ପତ୍ର ଓ ପୁଷ୍ପ ଶହେଆଠ ଲେଖାଏଁ ହେବା ଉଚିତ । ଏସବୁ ସାମଗ୍ରୀ ଭିତରେ ବେଲପତ୍ର ବିଶେଷ ଅଟେ । ଭୁଲ୍‌ରେ ବି ବେଲପତ୍ରକୁ ଛାଡ଼ିବେ ନାହିଁ । ସୁନାରେ ନିର୍ମିତ ଗୋଟିଏ ପଦ୍ମ ହଜାରେ ପଦ୍ମଠାରୁ ଶ୍ରେଷ୍ଠ ବୋଲି କୁହାଯାଇଛି । ନୀଳପଦ୍ମ ବିଷୟରେ ମଧ୍ୟ ଏହି ନିୟମ ପ୍ରଯୁଜ୍ୟ । ଏସବୁ ବେଲପତ୍ର ପରି ମହତ୍ତ୍ୱପୂର୍ଣ୍ଣ । ଅନ୍ୟ ଫୁଲ ପାଇଁ କୌଣସି ନିୟମ ନାହିଁ; ଯେତେ ମିଳିବ, ସେତେ ଦେଇ ପାରିବେ । ଅଷ୍ଟାଙ୍ଗ ଅର୍ଘ୍ୟ ଉତ୍କୃଷ୍ଟ ଧରାଯାଏ । ଧୂପ ଓ ଆଲେପ (ଚନ୍ଦନ) ବିଷୟରେ ଗୋଟିଏ ବିଶେଷ କଥା ଏହି ଯେ 'ବାମଦେବ' ନାମକ ମୁଖରେ ଚନ୍ଦନ, 'ତତ୍‌ପୁରୁଷ' ନାମକ ମୁଖରେ ହିରତାଳ ଓ 'ଈଶାନ' ନାମକ ମୁଖରେ ଭସ୍ମ ଲଗାଇବା ଉଚିତ । କେହି କେହି ଭସ୍ମ ସ୍ଥାନରେ ଆଲେପନର ବିଧାନ କରିଛନ୍ତି । ଅନ୍ୟ ପ୍ରକାର ଧୂପର ବିଧାନ ହେବାରୁ କିଛି ଲୋକେ ପ୍ରସିଦ୍ଧ ଧୂପକୁ ନିଷେଧ କରନ୍ତି । 'ଅଘୋର' ନାମକ ମୁଖରେ ଶ୍ୱେତଅଗୁରୁ ଧୂପ ଦେବା ଉଚିତ । 'ତତ୍‌ପୁରୁଷ' ନାମକ ମୁଖ ପାଇଁ କୃଷ୍ଣଅଗୁରୁ ଧୂପର ବିଧାନ ଅଛି । 'ବାମଦେବ' ମୁଖ ପାଇଁ ଗୁଗୁଳ, 'ସଦ୍ୟୋଜାତ' ପାଇଁ ସୌଗନ୍ଧିକ ଓ 'ଈଶାନ' ପାଇଁ ଉଶୀର ଆଦି ଧୂପ ବିଶେଷରୂପେ ଦେବା ଉଚିତ । ଶର୍କରା, ମଧୁ, କର୍ପୂର, କପିଳା ଗାଈର ଘିଅ, ଚନ୍ଦନ ଚୂର୍ଣ୍ଣ ଓ ଅଗୁରୁ ପ୍ରଭୃତି କାଷ୍ଠର ଚୂର୍ଣ୍ଣକୁ ମିଶାଇ ଯେଉଁ ଧୂପ ପ୍ରସ୍ତୁତ କରାଯାଏ, ତାହା ସବୁ ଦେବତାଙ୍କ ପାଇଁ ସର୍ବମାନ୍ୟରୂପେ ଉପଯୋଗୀ । କର୍ପୂରବତୀ ଓ ଘିଅଦୀପ ଜଳାଇ ଦୀପମାଳା ଦେବା ଉଚିତ । ତା'ପରେ ପ୍ରତ୍ୟେକ ମୁଖ ପାଇଁ ପୃଥକ୍ ପୃଥକ୍ ଅର୍ଘ୍ୟ ଓ ଆଚମନ ଦେବାର ବିଧାନ ରହିଛି ।

ପ୍ରଥମ ଆବରଣରେ ଗଣେଶ ଓ କାର୍ତ୍ତିକେୟଙ୍କୁ ପୂଜା କରିବା ଆବଶ୍ୟକ । ସେମାନଙ୍କ ସହିତ ବାହ୍ୟ ଅଙ୍ଗମାନଙ୍କର ବି ପୂଜା କରିବା ଆବଶ୍ୟକ । ପ୍ରଥମାବରଣ ପୂଜା ହୋଇଯିବା ପରେ ଦ୍ୱିତୀୟ ଆବରଣରେ ଚକ୍ରବର୍ତ୍ତୀ ବିଘ୍ନେଶ୍ୱରଙ୍କୁ ପୂଜା କରିବା ଉଚିତ । ତୃତୀୟାବରଣରେ ଭବ ପ୍ରଭୃତି ଅଷ୍ଟମୂର୍ତ୍ତିଙ୍କ ପୂଜାର ବିଧାନ ଅଛି । ସେଇଠି ମହାଦେବ ଆଦି ଏକାଦଶ ମୂର୍ତ୍ତିଙ୍କୁ ବି ପୂଜା କରିବା ଆବଶ୍ୟକ । ଚତୁର୍ଥ ଆବରଣରେ ସମସ୍ତ ଗଣେଶ୍ୱର ପୂଜନୀୟ । ପଞ୍ଚମ ଆବରଣରେ ପଦ୍ମର ବାହ୍ୟଭାଗରେ କ୍ରମାନ୍ୱୟରେ ଦଶଦିଗପାଳ, ସେମାନଙ୍କ ଅସ୍ତ୍ର ଓ ଅନୁଚରଙ୍କୁ ପୂଜା କରିବା ଉଚିତ । ସେଠାରେ ବ୍ରହ୍ମାଙ୍କ ମାନସ ପୁତ୍ରଙ୍କୁ, ସମସ୍ତ ଜ୍ୟୋତିର୍ଗଣଙ୍କୁ, ସମସ୍ତ ଦେବୀ-ଦେବତାଙ୍କୁ, ସମସ୍ତ ଆକାଶଗ୍ରୀ ଓ ପାତାଳବାସୀଙ୍କୁ, ଅଖିଳ ମୁନୀଶ୍ୱରଙ୍କୁ, ଯୋଗୀଙ୍କୁ, ସମସ୍ତ ଯକ୍ଷଙ୍କୁ, ଦ୍ୱାଦଶ ଆଦିତ୍ୟଙ୍କୁ, ମାତୃକାଙ୍କୁ, ଗଣ ସମେତ କ୍ଷେତ୍ରପାଳଙ୍କୁ ଓ ସମଗ୍ର ଚରାଚର ଜଗତକୁ ପୂଜା କରିବା ଉଚିତ । ଏମାନଙ୍କୁ ଶିବଙ୍କର ବିଭୂତି ମଣି ଶିବଙ୍କ ପ୍ରସନ୍ନତା ନିମନ୍ତେ ପୂଜା କରିବା ଉଚିତ ।

ଏହିରୂପେ ଆବରଣପୂଜା ପରେ ପରମେଶ୍ୱର ଶିବଙ୍କୁ ପୂଜା କରି ସେମାନଙ୍କୁ ଭକ୍ତିପୂର୍ବକ ଘୃତ ଓ ବ୍ୟଞ୍ଜନସହିତ ମନୋହର ହବିଷ୍ୟ ନିବେଦନ କରିବା ଉଚିତ । ମୁଖଶୁଦ୍ଧି ନିମନ୍ତେ ତାମ୍ବୂଳାଦି ଦେଇ ନାନା ପ୍ରକାର ଫୁଲରେ ପୁନଃ ଇଷ୍ଟଦେବଙ୍କୁ ବେଶ କରିବେ । ଆଳତି କରିବେ । ତା'ପରେ ପୂଜନର ଅବଶିଷ୍ଟ କୃତ୍ୟ ପୂର୍ଣ୍ଣ କରିବେ । ଆଚମନୀ ପାତ୍ର ଓ ଦରକାରୀ ସାମଗ୍ରୀ ସହିତ ଶଯ୍ୟା ସମର୍ପିତ କରିବେ । ଶଯ୍ୟା ଉପରେ ଚନ୍ଦ୍ରକିରଣ ତୁଲ୍ୟ ଉଜ୍ଜ୍ୱଳ ହାର ଅର୍ପଣ କରିବେ । ରାଜୋଚିତ ମନୋହର ବସ୍ତୁ ସବୁ ପ୍ରକାରେ ସଜ୍ଜିତ କରି

ପ୍ରଦାନ କରିବେ । ନିଜେ ପୂଜା କରିବେ ଏବଂ ଅନ୍ୟମାନଙ୍କ ଦ୍ୱାରା ବି ପୂଜା କରାଇବେ ଏବଂ ପ୍ରତ୍ୟେକ ପୂଜାରେ ଆହୁତି ଦେବେ । ଏହା ପରେ ସ୍ତୁତି, ପ୍ରାର୍ଥନା ଓ ଜପ କରି ପଞ୍ଚାକ୍ଷରୀ ବିଦ୍ୟା ଜପିବେ । ପରିକ୍ରମା ଓ ପ୍ରଣାମ କରି ନିଜକୁ ସମର୍ପିତ କରିବେ । ତା'ପରେ ଇଷ୍ଟଦେବଙ୍କ ସମ୍ମୁଖରେ ଗୁରୁ ଓ ବ୍ରାହ୍ମଣଙ୍କୁ ପୂଜା କରିବେ । ଏହାପରେ ଅର୍ଘ୍ୟ ଓ ଆଠଟି ଫୁଲ ଦେଇ ପୂଜିତ ଲିଙ୍ଗ ବା ମୂର୍ତ୍ତିରୁ ଦେବତାଙ୍କୁ ବିସର୍ଜନ କରିଦେବେ । ତା'ପରେ ଅଗ୍ନିଦେବଙ୍କୁ ବି ବିସର୍ଜନ କରି ପୂଜା ସମାପ୍ତ କରିବେ । ମନୁଷ୍ୟ ପ୍ରତିଦିନ ଏହି ପ୍ରକାରେ ସେବା କରିବା ଆବଶ୍ୟକ । ପୂଜନ ଶେଷରେ ସୁବର୍ଣ୍ଣର ପଦ୍ମ ତଥା ଅନ୍ୟ ସବୁ ଉପକରଣ ସହିତ ସେହି ଶିବଲିଙ୍ଗକୁ ଗୁରୁଙ୍କ ହାତରେ ଟେକିଦେବେ ଅଥବା ଶିବାଳୟରେ ସ୍ଥାପିତ କରିଦେବେ । ଗୁରୁ, ବ୍ରାହ୍ମଣ ତଥା ବିଶେଷତଃ ବ୍ରତଧାରୀଙ୍କୁ ପୂଜା କରି ସାମର୍ଥ୍ୟ ଥିଲେ ଭକ୍ତ ବ୍ରାହ୍ମଣ ତଥା ଦୀନ ଓ ଅନାଥଙ୍କୁ ବି ସନ୍ତୁଷ୍ଟ କରିବେ । ସ୍ୱୟଂ ଉପବାସ ପାଇଁ ଅସମର୍ଥ ହେଲେ ଫଳମୂଳ ଆହାର କରି ଅଥବା କ୍ଷୀର ପିଇ ରହିବେ, ନଚେତ୍ ଭିକ୍ଷାନ୍ନଭୋଜୀ ହୋଇ ବା ଥରେମାତ୍ର ଭୋଜନ କରି ରହିବେ । ରାତିରେ ପ୍ରତିଦିନ ପରିମିତ ଆହାର କରିବେ ଏବଂ ପବିତ୍ର ଭାବରେ ଭୂମି ଉପରେ ଶୋଇବେ । ଭସ୍ମ ଉପରେ, ତୃଣ ଉପରେ ଅଥବା ବସ୍ତ୍ର ବା ମୃଗଚର୍ମ ଉପରେ ଶୟନ କରିବେ । ପ୍ରତିଦିନ ବ୍ରହ୍ମଚର୍ଯ୍ୟ ପାଳନ କରି ଏ ବ୍ରତ ଅନୁଷ୍ଠାନ କରିବେ । ସାମର୍ଥ୍ୟ ଥିଲେ ରବିବାର ଦିନ, ଆର୍ଦ୍ରା ନକ୍ଷତ୍ରରେ, ଉଭୟ ପକ୍ଷର ପୂର୍ଣ୍ଣିମା ଓ ଅମାବାସ୍ୟା ଦିନ, ଅଷ୍ଟମୀ ତଥା ଚତୁର୍ଦ୍ଦଶୀ ଦିନ ଉପବାସ କରିବେ । ମନ, ବାଣୀ ଓ କ୍ରିୟା ଦ୍ୱାରା ସବୁ ପ୍ରକାର ପ୍ରଯତ୍ନ କରି ଭଣ୍ଡ, ପତିତ, ରଜସ୍ୱଳା ନାରୀ, ସୂତକଗ୍ରସ୍ତ ବ୍ୟକ୍ତି ଓ ଅନ୍ତ୍ୟଜଙ୍କ ସମ୍ପର୍କରୁ ଦୂରେଇ ରହିବେ । ନିରନ୍ତର କ୍ଷମା, ଦାନ, ଦୟା, ସତ୍ୟଭାଷଣ ଓ ଅହିଂସାରେ ତତ୍ପର ରହିବେ । ସନ୍ତୁଷ୍ଟ ଓ ଶାନ୍ତ ରହି ଜପ ଓ ଧ୍ୟାନ କରିବେ । ତ୍ରିକାଳ ସ୍ନାନ କରିବେ ଅଥବା ଭସ୍ମସ୍ନାନ କରି ପାରିବେ । ମନ, ବାଣୀ ଓ କ୍ରିୟା ଦ୍ୱାରା ବିଶେଷ ପୂଜା କରିବେ । ଏ ବିଷୟରେ ଅଧିକ କହିବାରେ କି ପ୍ରୟୋଜନ । ବ୍ରତଧାରୀ ପୁରୁଷ କଦାପି ଅଶୁଭ ଆଚରଣ କରିବେ ନାହିଁ । ପ୍ରମାଦବଶତଃ ଯଦି ସେପରି ଆଚରଣ ହୋଇଯାଏ, ତେବେ ତା'ର ଗୁରୁତା ଓ ଲଘୁତାକୁ ଦେଖି ସେହି ଦୋଷର ନିବାରଣ ପାଇଁ ପୂଜା, ହୋମ ଓ ଜପ ଇତ୍ୟାଦି ଦ୍ୱାରା ଯଥୋଚିତ ପ୍ରାୟଶ୍ଚିତ୍ତ କରିବେ । ବ୍ରତସମାପ୍ତି ପର୍ଯ୍ୟନ୍ତ ଭୁଲରେ ମଧ୍ୟ ଅଶୁଭ ଆଚରଣ କରିବେ ନାହିଁ । ଧନ-ସମ୍ପତ୍ତି ଥିଲେ ଗୋଦାନ, ବୃଷୋତ୍ସର୍ଗ ଓ ପୂଜା କରିବେ । ଭକ୍ତ ଯାହା କିଛି କରିବେ, ନିଷ୍କାମଭାବରେ ଶିବଙ୍କ ପ୍ରୀତି ନିମନ୍ତେ ହିଁ କରିବେ । ମୁଁ ଏହିରୂପେ ବ୍ରତର ସାଧାରଣ ବିଧି ସଂକ୍ଷେପରେ କହିଦେଲି ।

ଏବେ ଶାସ୍ତ୍ରାନୁସାରେ ପ୍ରତ୍ୟେକ ମାସ ପାଇଁ ଯେଉଁ ବିଶେଷ କୃତ୍ୟ ରହିଛି, ତାହା କହୁଛି । ବୈଶାଖମାସରେ ହୀରାରେ ନିର୍ମିତ ଶିବଲିଙ୍ଗ ପୂଜା କରିବା ଉଚିତ । ଜ୍ୟେଷ୍ଠମାସରେ ମର୍କତମଣିର ଏବଂ ଆଷାଢ଼ରେ ମୋତିର ଶିବଲିଙ୍ଗ ପୂଜା କରିବା ଉଚିତ । ଶ୍ରାବଣମାସରେ ନୀଳମଣିର ଶିବଲିଙ୍ଗ ପୂଜିବା ଉଚିତ । ଭାଦ୍ରବରେ ପୂଜା ପାଇଁ ପଦ୍ମରାଗମଣିର ଶିବଲିଙ୍ଗ ଉତ୍ତମ ଧରାଯାଇଛି । ଆଶ୍ୱିନମାସରେ ଗୋମେଦମଣିର ଲିଙ୍ଗ ଉତ୍ତମ । କାର୍ତ୍ତିକରେ ପ୍ରବାଳର ଓ ମାର୍ଗଶିରରେ ବୈଦୂର୍ଯ୍ୟର ଲିଙ୍ଗ ପୂଜା କରିବାର ବିଧାନ ଅଛି । ପୌଷମାସରେ ପୁଷ୍ପରାଗ (ପୋଖରାଜ) ମଣିର ଏବଂ ମାଘମାସରେ ସୂର୍ଯ୍ୟକାନ୍ତମଣିର ଲିଙ୍ଗ ପୂଜା କରିବା ଉଚିତ । ଫାଲ୍‌ଗୁନରେ ଚନ୍ଦ୍ରକାନ୍ତମଣିର ଓ ଚୈତ୍ରରେ

ସୂର୍ଯ୍ୟକାନ୍ତମଣିର ଲିଙ୍ଗ ପୂଜା କରିବାର ବିଧି ଅଛି । ରତ୍ନଲିଙ୍ଗ ଅଭାବରେ ସବୁ ମାସରେ ସୁବର୍ଣ୍ଣ ଲିଙ୍ଗ ହିଁ ପୂଜା କରିବା ଉଚିତ । ସୁବର୍ଣ୍ଣ ଅଭାବରେ ରୁପା, ତମ୍ବା, ପଥର, ମାଟି, ଲାକ୍ଷା ବା ଅନ୍ୟ ଯେକୌଣସି ବସ୍ତୁ ସୁଲଭ ହେବ, ସେଥିରେ ଲିଙ୍ଗ ନିର୍ମାଣ କରିବେ ଅଥବା ନିଜ ରୁଚି ଅନୁସାରେ ସର୍ବଗନ୍ଧମୟ ଲିଙ୍ଗ ନିର୍ମାଣ କରି ପାରିବେ । ବ୍ରତର ସମାପ୍ତି ବେଳେ ନିତ୍ୟକର୍ମ ପୂର୍ଣ୍ଣ କରି ପୂର୍ବବତ୍ ବିଶେଷ ପୂଜା ଓ ହୋମ କରିବା ପରେ ଆଚାର୍ଯ୍ୟଙ୍କୁ ତଥା ବିଶେଷ କରି ବ୍ରତୀ ବ୍ରାହ୍ମଣଙ୍କୁ ପୂଜା କରିବେ । ତା'ପରେ ଆଚାର୍ଯ୍ୟଙ୍କ ଆଜ୍ଞା ନେଇ ପୂର୍ବ ବା ଉତ୍ତରମୁଖ ହୋଇ କୁଶାସନରେ ବସିବେ । ହାତରେ କୁଶ ଧରି, ପ୍ରାଣାୟାମ କରି, 'ସାମ୍ବସଦାଶିବ'ଙ୍କୁ ଧ୍ୟାନ କରିବା ସହ ଯଥାଶକ୍ତି ମୂଳମନ୍ତ୍ରକୁ ଜପ କରିବେ । ତା'ପରେ ପୂର୍ବବତ୍ ଆଜ୍ଞା ନେଇ ହାତ ଯୋଡ଼ି ନମସ୍କାର କରି କହିବେ—''ଭଗବନ୍ ! ଏବେ ମୁଁ ଆପଣଙ୍କ ଆଜ୍ଞାରେ ଏହି ବ୍ରତକୁ ଉତ୍ସର୍ଗ କରୁଛି ।'' ଏପରି କହି ଶିବଲିଙ୍ଗର ମୂଳଭାଗରେ ଉତ୍ତର ଆଡ଼କୁ କୁଶ ପକାଇଦେବେ । ତା'ପରେ ଦଣ୍ଡ, ବସ୍ତ୍ର, ଜଟା ଓ ମେଖଳା ମଧ୍ୟ ବର୍ଜନ କରିବେ । ଏହାପରେ ପୁନଃ ବିଧିପୂର୍ବକ ଆଚମନ କରି ପଞ୍ଚାକ୍ଷରମନ୍ତ୍ର ଜପିବେ ।

ଯେ ଆତ୍ୟନ୍ତିକ ଦୀକ୍ଷା ଗ୍ରହଣ କରି ଦେହାନ୍ତକାଳ ପର୍ଯ୍ୟନ୍ତ ଶାନ୍ତଭାବରେ ଏ ବ୍ରତର ଅନୁଷ୍ଠାନ କରେ, ସେ 'ନୈଷ୍ଠିକ ବ୍ରତୀ' ବୋଲାଏ । ତାକୁ ସମସ୍ତ ଆଶ୍ରମର ଊର୍ଦ୍ଧ୍ୱକୁ ଯାଇଥିବା ମହାପାଶୁପତ ବୋଲି ଜାଣିବା ଉଚିତ । ସେ ତପସ୍ୱୀଙ୍କ ମଧ୍ୟରେ ଶ୍ରେଷ୍ଠ ଓ ସେ ହିଁ ମହାନ୍ ବ୍ରତଧାରୀ । ଯେ ବାରଦିନ ପର୍ଯ୍ୟନ୍ତ ପ୍ରତିଦିନ ବିଧିପୂର୍ବକ ଏ ବ୍ରତ ଅନୁଷ୍ଠାନ କରେ, ସେ ମଧ୍ୟ ନୈଷ୍ଠିକ ତୁଲ୍ୟ; କାରଣ ସେ ତୀବ୍ର ବ୍ରତର ଆଶ୍ରୟ ନେଇଛି । ଯେ ନିଜ ଦେହରେ ଘିଅ ବୋଳି ହେବା ସହିତ ବ୍ରତର ସମସ୍ତ ନିୟମ ପାଳନରେ ତତ୍ପର ରହି ଦୁଇ-ତିନି ଦିନ ବା ଦିନକ ପାଇଁ ଏ ବ୍ରତ ଅନୁଷ୍ଠାନ କରେ, ସେ ବି ଏକ ପ୍ରକାର ନୈଷ୍ଠିକ । ଯେ ନିଷ୍କାମ ହୋଇ ନିଜର ପରମ କର୍ତ୍ତବ୍ୟ ମଣି ନିଜକୁ ଶିବଙ୍କ ଚରଣରେ ସମର୍ପିତ କରି ଏହି ଉତ୍ତମ ବ୍ରତ ସଦା ଅନୁଷ୍ଠାନ କରେ, ତା' ପରି କେହି ନାହିଁ । ବିଦ୍ୱାନ୍ ବ୍ରାହ୍ମଣ ଭସ୍ମ ଲଗାଇ ମହାପାତକଜନିତ ଅତ୍ୟନ୍ତ ଦାରୁଣ ପାପରୁ ମଧ୍ୟ ତତ୍କ୍ଷଣାତ୍ ମୁକ୍ତ ହୋଇଯାଏ । ରୁଦ୍ରାଗ୍ନିର ସବୁଠାରୁ ଉତ୍ତମ ବୀର୍ଯ୍ୟ (ବଳ) ହିଁ ଭସ୍ମ ବୋଲାଏ । ତେଣୁ ଯେ ସବୁବେଳେ ଭସ୍ମ ବୋଳି ହୋଇଥାଏ, ସେ ବୀର୍ଯ୍ୟବାନ୍ ଧରାଯାଏ । ଭସ୍ମରେ ନିଷ୍ଠା ରଖୁଥିବା ବ୍ୟକ୍ତିର ସମସ୍ତ ଦୋଷ ଭସ୍ମରୂପୀ ଅଗ୍ନିର ସଂଯୋଗରେ ଦଗ୍ଧ ହୋଇ ନଷ୍ଟ ହୋଇଯାଏ । ଯାହାର ଶରୀର ଭସ୍ମସ୍ନାନରେ ବିଶୁଦ୍ଧ, ତାକୁ ଭସ୍ମନିଷ୍ଠ କୁହାଯାଏ । ଯାହାର ଅଙ୍ଗରେ ଭସ୍ମ ଲାଗିଛି, ଯେ ଭସ୍ମରେ ଉଜ୍ଜ୍ୱଳ ଦିଶୁଛି, ଯେ ଭସ୍ମର ତ୍ରିପୁଣ୍ଡ୍ର ଲଗାଇଛି ଏବଂ ଯେ ଭସ୍ମରେ ସ୍ନାନ କରୁଛି, ତାକୁ ଭସ୍ମନିଷ୍ଠ ଧରାଯାଏ । ଭୂତ, ପ୍ରେତ, ପିଶାଚ ଓ ଅତ୍ୟନ୍ତ ଦୁଃସହ ରୋଗ ମଧ୍ୟ ଭସ୍ମନିଷ୍ଠ ବ୍ୟକ୍ତିଠାରୁ ଦୂରକୁ ପଳାଇ ଯାଆନ୍ତି, ଏଥିରେ ସଂଶୟ ନାହିଁ । ତାହା ଶରୀରକୁ ଭାସିତ କରୁଥିବାରୁ 'ଭସିତ' ବୋଲାଏ ଏବଂ ପାପକୁ ଭକ୍ଷଣ କରୁଥିବାରୁ ତାହାର ନାମ 'ଭସ୍ମ' । ଭୂତି (ଐଶ୍ୱର୍ଯ୍ୟ) କାରକ ହୋଇଥିବାରୁ ତାହାକୁ 'ଭୂତି' ବା 'ବିଭୂତି' କହନ୍ତି । ବିଭୂତି ରକ୍ଷା କରିଥାଏ, ତେଣୁ ତାହାର ଅନ୍ୟତମ ନାମ 'ରକ୍ଷା' । ଭସ୍ମର ମାହାତ୍ମ୍ୟ ବିଷୟରେ ଏଠି ଆଉ କେତେ ବା କହିବା, ଭସ୍ମରେ ସ୍ନାନ କରୁଥିବା ବ୍ୟକ୍ତି ସାକ୍ଷାତ୍ ମହେଶ୍ୱରଦେବ ବୋଲାଏ । ପରମେଶ୍ୱର (ରୁଦ୍ରାଗ୍ନି)

ଜନିତ ଭସ୍ମ ଶିବଭକ୍ତଙ୍କ ପାଇଁ ବହୁତ ବଡ଼ ଅସ୍ତ୍ର; କାରଣ ତାହା ଧୌମ୍ୟମୁନିଙ୍କ ବଡ଼ ଭାଇ ଉପମନ୍ୟୁଙ୍କ ତପସ୍ୟାରେ ଆସିଥିବା ବିପତ୍ତିକୁ ନିବାରଣ କରିଥିଲା । ସେଥିପାଇଁ ସର୍ବପ୍ରକାର ପ୍ରଯତ୍ନ କରି ପାଶୁପତବ୍ରତ ଅନୁଷ୍ଠାନ କରିବା ପରେ ହୋମଜନିତ ଭସ୍ମକୁ ଧନ ପରି ସଂଗ୍ରହ କରି ରଖି ସଦା ଭସ୍ମସ୍ନାନରେ ତତ୍ପର ରହିବା ଉଚିତ । (ଅଧ୍ୟାୟ ୩୩)

★★★

## ବାଳକ ଉପମନ୍ୟୁ କ୍ଷୀର ନ ପାଇ ଦୁଃଖରେ କାନ୍ଦିବାରୁ ମାଆ ତାଙ୍କୁ ଶିବଙ୍କ ଆରାଧନା ପାଇଁ ପ୍ରେରିତ କରିବା ପ୍ରସଙ୍ଗ ଏବଂ ଉପମନ୍ୟୁଙ୍କର ତୀବ୍ର ତପସ୍ୟା

ଋଷିମାନେ ପଚ୍ଚାରିଲେ—**ପ୍ରଭୋ ! ଧୌମ୍ୟଙ୍କ ବଡ଼ଭାଇ ଉପମନ୍ୟୁ ଯେତେବେଳେ ଛୋଟପିଲା ଥିଲେ, ସେତେବେଳେ ସେ କ୍ଷୀର ପାଇଁ ତପସ୍ୟା କରିଥିଲେ ଏବଂ ଭଗବାନ ଶିବ ପ୍ରସନ୍ନ ହୋଇ ତାଙ୍କୁ କ୍ଷୀରସାଗର ପ୍ରଦାନ କଲେ । ମାତ୍ର ଶୈଶବାବସ୍ଥାରେ ତାଙ୍କୁ ଶିବଶାସ୍ତ୍ର ପ୍ରବଚନର ଶକ୍ତି କିପରି ପ୍ରାପ୍ତ ହେଲା ଅଥବା ସେ କିପରି ଶିବତତ୍ତ୍ୱକୁ ଜାଣି ତପସ୍ୟାରେ ବ୍ୟାପୃତ ରହିଲେ? ତପଶ୍ଚରଣ ପର୍ବରେ ତାଙ୍କୁ କିପରି ଭସ୍ମ-ବିଜ୍ଞାନ ପ୍ରାପ୍ତି ହେଲା, ଯାହାଫଳରେ ରୁଦ୍ରାଗ୍ନିର ଉତ୍ତମ ବୀର୍ଯ୍ୟସ୍ୱରୂପ ଆତ୍ମରକ୍ଷକ ଭସ୍ମକୁ ସେ ଲାଭ କରିପାରିଲେ?**

ବାୟୁଦେବ କହିଲେ—**ମହର୍ଷିଗଣ ! ଏଭଳି ତପସ୍ୟା କରିଥିବା ଉପମନ୍ୟୁ କୌଣସି ସାଧାରଣ ବାଳକ ନ ଥିଲେ । ସେ ପରମ ବୁଦ୍ଧିମାନ୍ ମୁନି ବ୍ୟାଘ୍ରପାଦଙ୍କ ପୁତ୍ର ଥିଲେ । ତାଙ୍କୁ ଜନ୍ମାନ୍ତରରୁ ହିଁ ସିଦ୍ଧି ପ୍ରାପ୍ତ ଥିଲା । ମାତ୍ର କୌଣସି କାରଣରୁ ସେ ନିଜ ପଦରୁ ଚ୍ୟୁତ ଅର୍ଥାତ୍ ଯୋଗଭ୍ରଷ୍ଟ ହୋଇଯାଇଥିଲେ । ଏହାଫଳରେ ତାଙ୍କୁ ମୁନିକୁମାର ହୋଇ ଜନ୍ମ ଗ୍ରହଣ କରିବାକୁ ପଡ଼ିଲା । ଥରକର କଥା । ତାଙ୍କୁ ତାଙ୍କ ମାମୁଁଙ୍କ ଆଶ୍ରମରେ ଅଳ୍ପ ଟିକିଏ କ୍ଷୀର ପିଇବାକୁ ମିଳିଲା, କିନ୍ତୁ ତାଙ୍କ ମାମୁଁଙ୍କ ପୁଅ ମନଇଚ୍ଛା ଗରମ ଗରମ କ୍ଷୀର ପିଇ ତାଙ୍କ ଆଗରେ ଠିଆ ହୋଇଥିଲା । ଏହା ଦେଖି ବ୍ୟାଘ୍ରପାଦକୁମାର ଉପମନ୍ୟୁଙ୍କ ମନରେ ଈର୍ଷ୍ୟା ଉତ୍ପନ୍ନ ହୋଇଗଲା । ସେ ମାଆଙ୍କ ପାଖକୁ ଯାଇ ସ୍ନେହରେ କହିଲେ— ''ମାଆ ! ମହାଭାଗେ ! ହେ ତପସ୍ୱିନୀ ! ମୋତେ ଖୁବ୍ ସ୍ୱାଦିଷ୍ଟ ଗରମ ଗରମ କ୍ଷୀର ଅଧିକମାତ୍ରାରେ ଦେ । ମୁଁ ଏତିକି ଟିକିଏ କ୍ଷୀର ପିଇବିନି ।''**

**ପୁଅର କଥା ଶୁଣି ବ୍ୟାଘ୍ରପାଦଙ୍କ ତପସ୍ୱିନୀ ପତ୍ନୀଙ୍କ ମନରେ ବହୁତ ଦୁଃଖ ହେଲା । ସେ ପୁଅକୁ କୋଳକୁ ଟାଣିନେଇ ସ୍ନେହରେ ବୁଝାଇଲେ ଏବଂ ନିଜ ନିର୍ଦ୍ଧନତା କଥା ଭାବି ଦୁଃଖରେ କାନ୍ଦିବାକୁ ଲାଗିଲେ । ମହାତେଜସ୍ୱୀ ବାଳକ ଉପମନ୍ୟୁ କ୍ଷୀର କଥା ମନେ ପକାଇ ବାରମ୍ବାର 'କ୍ଷୀର ଦେ, କ୍ଷୀର ଦେ' କହି ଜିଦି ଧରି କାନ୍ଦିଲେ । ତାଙ୍କ ଜିଦି ଶାନ୍ତ କରିବା ପାଇଁ ତପସ୍ୱିନୀ ବ୍ରାହ୍ମଣୀ ଗୋଟିଏ ସୁନ୍ଦର ଉପାୟ କଲେ । ସେ ସ୍ୱୟଂ ଉଞ୍ଛବୃତ୍ତିରେ କିଛି ଶସ୍ୟ ସଂଗ୍ରହ କରିଥିଲେ । ସେହି ଶସ୍ୟକୁ ସେ ତୁରନ୍ତ ଚୂରି ପାଣିରେ ମିଶାଇଦେଲେ । ତା'ପରେ ମିଠା-ମିଠା କଥାରେ ଉପମନ୍ୟୁଙ୍କୁ ଭୁଲାଇ ତାଙ୍କ ହାତରେ ସେହି କୃତ୍ରିମ କ୍ଷୀର ଧରାଇ ଦେଲେ । ମାଆ ଦେଇଥିବା କ୍ଷୀରକୁ ପିଇବାମାତ୍ରେ ସେ ଜାଣିଗଲେ ଯେ ତାହା କ୍ଷୀର ନୁହେଁ । ସେ ଅତ୍ୟନ୍ତ ବ୍ୟାକୁଳ ହୋଇ କହିଲେ—''ମାଆ ! ଏ ତ କ୍ଷୀର**

ନୁହେଁ ।'' ଏହା ଶୁଣି ମାଆ ବହୁତ ଦୁଃଖପ୍ରକାଶ କଲେ । ସେ ପୁତ୍ରର ମୁଣ୍ଡ ଆଉଁସି ଦେଇ ଏବଂ ତା'ର କମଳତୁଲ୍ୟ ନେତ୍ରରୁ ଅଶ୍ରୁ ପୋଛି ଦେଇ କହିଲେ—''ବାପାରେ ! ଆମେ ବହୁତ ଅଭାବରେ ଅଛୁ, ସେଥିପାଇଁ ମୁଁ ଅଭାଗିନୀ ତୋତେ ଅଟାର ଘୋଳକୁ କ୍ଷୀର ବୋଲି କହି ପିଇବାକୁ ଦେଇଦେଲି । ତୁ ବାରଂବାର କ୍ଷୀର ମାଗି ମୋତେ କାହିଁକି ଦୁଃଖୀ କରାଉଛୁ? ଭଗବାନ ଶିବଙ୍କ କୃପା ବିନା ତୋ ପାଇଁ କେଉଁଠି ବି କ୍ଷୀର ନାହିଁ । ଅନୁଚରଙ୍କ ସଙ୍ଗରେ ବିଦ୍ୟମାନ ଭଗବାନ ଶିବପାର୍ବତୀଙ୍କ ଚରଣାରବିନ୍ଦରେ ଯାହା କିଛି ଭକ୍ତିପୂର୍ବକ ସମର୍ପିତ କରାଯାଇଥାଏ, ତାହା ହିଁ ସମସ୍ତ ସମ୍ପତ୍ତିର କାରଣ ହୁଏ । ମହାଦେବ ହିଁ ଧନଦାତା । ଆମେ ତାଙ୍କର ଆରାଧନା କରିନାହୁଁ । ସେଇ ପ୍ରଭୁ ହିଁ ସକାମ ବ୍ୟକ୍ତିଙ୍କୁ ସେମାନଙ୍କ ଇଚ୍ଛାନୁସାରେ ଫଳ ଦିଅନ୍ତି । ଆମେମାନେ ପୂର୍ବରୁ କେବେ ଧନକାମନାରେ ଭଗବାନ ଶିବଙ୍କୁ ପୂଜି ନାହୁଁ । ସେଥିପାଇଁ ଆମେ ଦରିଦ୍ର ହୋଇଯାଇଛୁ । ଏହି କାରଣରୁ ତୋତେ କ୍ଷୀର ମିଳିଲା ନାହିଁ । ବାପାରେ ! ପୂର୍ବଜନ୍ମରେ ଭଗବାନ ଶିବ ଅଥବା ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ଯାହା କିଛି ଦିଆଯାଇଥାଏ, ତାହା ହିଁ ବର୍ତ୍ତମାନ ଜନ୍ମରେ ମିଳେ, ଅଧିକ କିଛି ମିଳେ ନାହିଁ ।*

ଉପମନ୍ୟୁ କହିଲେ—ମାଆ ! ଯଦି ଭଗବାନ ଶିବ ଓ ମାତା ପାର୍ବତୀ ଅଛନ୍ତି, ତେବେ ଆଜିଠାରୁ ଆଉ ଶୋକ କରିବାର କିଛି ଆବଶ୍ୟକତା ନାହିଁ । ମହାଭାଗେ ! ଏଥର ଶୋକ ଛାଡ଼; ଜାଣ ଯେ ସବୁକିଛି ମଙ୍ଗଳମୟ ହେବ । ଯଦି କେଉଁଠି ମହାଦେବ ଥିବେ, ତେବେ ଶୀଘ୍ର ହେଉ ବା ବିଳମ୍ବରେ ହେଉ, ତାଙ୍କୁ ମାଗି ମୁଁ କ୍ଷୀରସାଗର ନେଇ ଆସିବି—

ବାୟୁଦେବ କହୁଛନ୍ତି—ମହାବୁଦ୍ଧିମାନ୍ ବାଳକର କଥା ଶୁଣି ତାହାର ମନସ୍ୱିନୀ ମାତା ସେତେବେଳେ ବହୁତ ପ୍ରସନ୍ନ ହେଲେ ଏବଂ କହିଲେ—

ମାଆ କହିଲେ—ପୁଅରେ ! ତୁ ବହୁତ ଭଲ କଥା କହିଛୁ । ତୋର ଏପରି ବିଗ୍ରହ ମୋତେ ଖୁସୀ କରିଦେଲା । ତୁ ଆଉ ବିଳମ୍ବ କରନା । ଶିବପାର୍ବତୀଙ୍କୁ ଭଜ । ଅନ୍ୟ ଦେବତାଙ୍କୁ ଛାଡ଼ି ମନ, ବାଣୀ ଓ କ୍ରିୟା ଦ୍ୱାରା ଭକ୍ତିଭାବରେ ପାର୍ଷଦଗଣଙ୍କ ସହିତ ଶିବପାର୍ବତୀଙ୍କୁ ଭଜ । 'ନମଃ ଶିବାୟ' ମନ୍ତ୍ର ସେହି ଦେବାଧିଦେବ ବରଦାୟକ ଶିବଙ୍କର ସାକ୍ଷାତ୍ ବାଚକ ବୋଲି ଧରାଯାଇଛି । ପ୍ରଣବସହିତ ଅନ୍ୟ ଯେଉଁ ସାତକୋଟି ମନ୍ତ୍ର ରହିଛି, ସେସବୁ ଏଇଥିରେ ଲୀନ ହୁଅନ୍ତି ଓ ଏଇଥିରୁ ପ୍ରକଟ ହୁଅନ୍ତି । ଏ ମନ୍ତ୍ର ଅନ୍ୟ ସମସ୍ତ ମନ୍ତ୍ର ଠାରୁ ବଳବାନ୍ । ଏହା ସମସ୍ତଙ୍କୁ ରକ୍ଷା କରିବାକୁ ସମର୍ଥ; ଅନ୍ୟ କିଛି ଇଚ୍ଛା କରିବା ଦରକାର ନାହିଁ । ତୁ ଅନ୍ୟ ମନ୍ତ୍ରକୁ ଇଚ୍ଛା ନ କରି କେବଳ ପଞ୍ଚାକ୍ଷର ଜପରେ ମନ ଲଗା । ଏ ମନ୍ତ୍ରକୁ ଜିହ୍ୱାରେ ଉଚ୍ଚାରଣ କରିବାମାତ୍ରେ ଇହଲୋକରେ କିଛି ବି ଦୁର୍ଲଭ ରହେ ନାହିଁ । ମୁଁ ଏ ଉତ୍ତମ ଭସ୍ମ ତୋ ବାପାଙ୍କ ଠାରୁ ପାଇଛି, ଏହା ବିରଜା ହୋମାଗ୍ନିରେ ସିଦ୍ଧ, ତେଣୁ ଏହା ବଡ଼ ବଡ଼ ବିପତ୍ତିହରଣକାରୀ । ମୁଁ ତୋତେ ଯେଉଁ ପଞ୍ଚାକ୍ଷର ମନ୍ତ୍ର କହିଲି, ତାହାକୁ ମୋ ଆଜ୍ଞାରେ ଗ୍ରହଣ କର । ତାହାକୁ ଜପିଲେ ଅତିଶୀଘ୍ର ତୋର ରକ୍ଷା ହେବ ।

ବାୟୁଦେବ କହୁଛନ୍ତି—ଏପରି ଆଜ୍ଞା ଦେଇ ଏବଂ 'ତୋର କଲ୍ୟାଣ ହେଉ' ବୋଲି ଆଶୀର୍ବାଦ ଦେଇ ମାଆ ଉପମନ୍ୟୁଙ୍କୁ ବିଦା କଲେ । ମୁନି ଉପମନ୍ୟୁ ମାଆଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି

---

* ପୁନର୍ଜନ୍ମନି ଯଦ୍ଦତ୍ତଂ ଶବମୁଦ୍ଦିଶ୍ୟ ବୈ ସୁତ । ତଦେବ ଲଭ୍ୟତେ ନାନ୍ୟଦ୍ ବିଷ୍ଣୁମୁଦ୍ଦିଶ୍ୟ ବା ପ୍ରଭୁମ୍ ॥
(ଶି. ପୁ. ବା. ସଂ. ପୂ. ଖ. ୩୪ । ୩୨)

ମାଆଙ୍କ ଚରଣରେ ପ୍ରଣାମ କଲେ ଏବଂ ତପସ୍ୟା ନିମନ୍ତେ ଯିବାକୁ ପ୍ରସ୍ତୁତ ହେଲେ । ସେତିକିବେଳେ ମାଆ ଆଶୀର୍ବାଦ ଦେଇ କହିଲେ 'ସକଳ ଦେବତା ତୋର ମଙ୍ଗଳ କରନ୍ତୁ ।' ମାଆଙ୍କ ଆଜ୍ଞା ପାଇବାମାତ୍ରେ ଉପମନ୍ୟୁ ହିମାଳୟ ପର୍ବତର ଗୋଟିଏ ଶିଖରକୁ ଯାଇ କେବଳ ବାୟୁ ପାନ କରି ଏକାଗ୍ରଚିତ୍ତରେ ଦୁଷ୍କର ତପସ୍ୟା ଆରମ୍ଭ କରିଦେଲେ । ସେ ଆଠଟି ଇଟାରେ ଗୋଟିଏ ମନ୍ଦିର ତିଆରି କରି ସେଥିରେ ମାଟିର ଶିବଲିଙ୍ଗଟିଏ ସ୍ଥାପନ କଲେ । ସେଥିରେ ପାର୍ବତୀ ଓ ଗଣଙ୍କ ସମେତ ମହାଦେବଙ୍କୁ ଆବାହନ କରିବା ସହିତ ଭକ୍ତିଭାବରେ ପଞ୍ଚାକ୍ଷରମନ୍ତ୍ର ଦ୍ୱାରା ବନର ପତ୍ରପୁଷ୍ପାଦି ଉପଚାରରେ ପୂଜା କରି ଦୀର୍ଘକାଳ ପର୍ଯ୍ୟନ୍ତ ଉତ୍ତମ ତପସ୍ୟାରେ ନିମଗ୍ନ ରହିଲେ । କୃଶକାୟ ଦ୍ୱିଜବାଳକଟି ଏକାକୀ ଏପରି ତପସ୍ୟା କରୁଥିବା ଦେଖି ମରୀଚିଙ୍କ ଶାପରେ ପିଶାଚତ୍ୱ ପ୍ରାପ୍ତ ହୋଇଥିବା କେତେକ ମୁନି ଆପଣା ରାକ୍ଷସସ୍ୱଭାବ ହେତୁ ତାଙ୍କୁ କଷ୍ଟ ଦେବା ସହିତ ତାଙ୍କ ତପସ୍ୟାରେ ବିଘ୍ନ ଉପସ୍ଥିତ କରିବାକୁ ଲାଗିଲେ । ସେମାନଙ୍କର ଉପଦ୍ରବରେ ମଧ୍ୟ ଉପମନ୍ୟୁ କୌଣସି ପ୍ରକାରେ ବିଚଳିତ ନ ହୋଇ ତପସ୍ୟାରେ ନିମଗ୍ନ ରହିଲେ ଏବଂ 'ନମଃ ଶିବାୟ'କୁ ଆର୍ତ୍ତନାଦ ପରି ଆହୁରି ଉଚ୍ଚସ୍ୱରରେ ଜପିଲେ । ସେହି ଶବ୍ଦକୁ ଶୁଣି ତପସ୍ୟାରେ ବିଘ୍ନ ସୃଷ୍ଟି କରୁଥିବା ମୁନି ତାଙ୍କୁ ହଇରାଣ କରିବା ଛାଡ଼ି ତାଙ୍କର ସେବା କରିବାକୁ ଲାଗିଲେ । ବ୍ରାହ୍ମଣକୁମାର ମହାତ୍ମା ଉପମନ୍ୟୁଙ୍କ ତପସ୍ୟା ପ୍ରଭାବରେ ସମଗ୍ର ସଚରାଚର ଜଗତ ପ୍ରଦୀପ୍ତ ଓ ସନ୍ତପ୍ତ ହୋଇ ଉଠିଲା ।

(ଅଧ୍ୟାୟ ୩୪)



## ଇନ୍ଦ୍ରରୂପଧାରୀ ଭଗବାନ ଶିବଙ୍କ ଦ୍ୱାରା ଉପମନ୍ୟୁଙ୍କ ଭକ୍ତିଭାବର ପରୀକ୍ଷା, ତାଙ୍କୁ କ୍ଷୀରସାଗର ସହିତ ଅନେକ ବର ପ୍ରଦାନ ତଥା ନିଜର ପୁତ୍ର ମଣି ପାର୍ବତୀଙ୍କ ହାତରେ ସମର୍ପଣ, ପରମ ଧନ୍ୟ ଉପମନ୍ୟୁଙ୍କର ନିଜ ମାଆଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ

ଏହାପରେ ଭଗବାନ ବିଷ୍ଣୁଙ୍କ ଅନୁରୋଧରେ ଶିବ ଇନ୍ଦ୍ରରୂପ ଧାରଣ କରି ଉପମନ୍ୟୁଙ୍କ ପାଖକୁ ଯିବାକୁ ଭାବିଲେ । ଶିବ ଓ ପାର୍ବତୀ ଶ୍ୱେତ ଐରାବତରେ ଆରୂଢ଼ ହୋଇ ସାକ୍ଷାତ୍ ଦେବରାଜ ଇନ୍ଦ୍ର ଓ ଶଚୀଙ୍କ ରୂପରେ ଦେବତା, ଅସୁର, ସିଦ୍ଧ ଓ ନାଗଗଣଙ୍କ ସଙ୍ଗେ ଉପମନ୍ୟୁଙ୍କ ତପୋବନ ଅଭିମୁଖେ ଯାତ୍ରା କଲେ । ସେତେବେଳେ ଐରାବତ ତା'ର ଡାହାଣ ଶୁଣ୍ଢରେ ଚାମର ଧରି ସେହି ଦିବ୍ୟ ରୂପଧାରୀ ଦେବରାଜ ଇନ୍ଦ୍ରଙ୍କ ପାଇଁ ଚାମରସେବା କରୁଥିଲା ଏବଂ ବାମ ଶୁଣ୍ଢରେ ତାଙ୍କ ଉପରେ ଶ୍ୱେତଛତ୍ର ଟେକି ଧରିଥିଲା । ଇନ୍ଦ୍ର ଓ ଶଚୀଙ୍କ ରୂପ ଧାରଣ କରିଥିବା ଉମା-ମହେଶ୍ୱର ସେହି ଶ୍ୱେତଛତ୍ର ହେତୁ ଉଦିତ ଚନ୍ଦ୍ରମଣ୍ଡଳରେ ମନ୍ଦରାଚଳ ଶୋଭା ପାଇବା ପରି ଅତ୍ୟନ୍ତ ସୁଶୋଭିତ ହେଉଥିଲେ । ପରମେଶ୍ୱର ଶିବ ଆପଣା ଭକ୍ତ ଉପରେ ଅନୁଗ୍ରହ କରିବା ନିମନ୍ତେ ଉପମନ୍ୟୁଙ୍କ ଆଶ୍ରମ ନିକଟରେ ପହଞ୍ଚିଲେ । ତାଙ୍କର ଆଗମନ ଦେଖି ମୁନିଶ୍ରେଷ୍ଠ ଉପମନ୍ୟୁ ମସ୍ତକ ନୁଆଁଇ ତାଙ୍କୁ ପ୍ରଣାମ କଲେ ଏବଂ କହିଲେ—''ଦେବେଶ୍ୱର ! ଜଗନ୍ନାଥ ! ଭଗବନ୍ ! ଦେବଶିରୋମଣେ ! ଆପଣ ଆପେ ଆପେ ଏଠାକୁ ଆସିଥିବାରୁ ମୋର ଆଶ୍ରମ ଆଜି ପବିତ୍ର ହୋଇଗଲା ।''

ଇନ୍ଦ୍ରରୂପଧାରୀ ଶିବ କହିଲେ—ହେ ସୁବ୍ରତ ! ହେ ଧୌମ୍ୟଙ୍କ ବଡ଼ଭାଇ ମହାମୁନି ଉପମନ୍ୟୁ ! ମୁଁ ତୁମ ତପସ୍ୟାରେ ବହୁତ ପ୍ରସନ୍ନ । ତୁମେ ବର ମାଗ, ମୁଁ ତୁମକୁ ସମସ୍ତ ଅଭୀଷ୍ଟ ବର ପ୍ରଦାନ କରିବି ।



ବାୟୁଦେବ କହୁଛନ୍ତି—ଇନ୍ଦ୍ରଦେବଙ୍କ କଥା ଶୁଣି ମୁନିପ୍ରବର ଉପମନ୍ୟୁ କର ଯୋଡ଼ି କହିଲେ—''ଭଗବନ୍ ! ମୁଁ ଶିବଙ୍କ ପ୍ରତି ଭକ୍ତିକୁ ବରରୂପେ ମାଗୁଛି ।'' ଏହା ଶୁଣି ଇନ୍ଦ୍ର କହିଲେ—''ତୁମେ କ'ଣ ମୋତେ ଜାଣନା? ମୁଁ ସକଳ ଦେବତାଙ୍କ ପାଳକ ଓ ତ୍ରିଲୋକର ଅଧିପତି ଇନ୍ଦ୍ର । ସବୁ ଦେବତା ମୋତେ ନମସ୍କାର କରନ୍ତି । ବ୍ରହ୍ମର୍ଷେ ! ମୋର ଭକ୍ତ ହୋଇଯାଅ । ସର୍ବଦା ମୋତେ ପୂଜା କର, ତୁମର କଲ୍ୟାଣ ହେବ । ମୁଁ ତୁମକୁ ସବୁକିଛି ଦେବି । ନିର୍ଗୁଣ ରୁଦ୍ରଙ୍କୁ ଛାଡ଼ିଦିଅ । ତାଙ୍କ ଦ୍ୱାରା ତୁମର କେଉଁ କାର୍ଯ୍ୟ ସିଦ୍ଧ ହୋଇପାରିବ ଯେ ? ସେ ତ ଦେବତାଙ୍କ ପଙ୍‌କ୍ତିରୁ ବାହାରିଯାଇ ପିଶାଚତ୍ୱ ପ୍ରାପ୍ତ ହୋଇଗଲେଣି ।''

ବାୟୁଦେବ କହୁଛନ୍ତି—ଏକଥା ଶୁଣିବା ମାତ୍ରେ ପଞ୍ଚାକ୍ଷର ମନ୍ତ୍ରଜପନିରତ ମୁନି ଉପମନ୍ୟୁ ଇନ୍ଦ୍ରଙ୍କୁ ଆପଣା ଧର୍ମରେ ବିଘ୍ନ ଉପସ୍ଥିତ କରିବାକୁ ଆସିଥିବା ଅନୁଭବ କରି କହିଲେ—

ଉପମନ୍ୟୁ କହିଲେ—ଯଦ୍ୟପି ତୁମେ ଭଗବାନ ଶିବଙ୍କ ନିନ୍ଦାରେ ତତ୍ପର, ତଥାପି କଥାପ୍ରସଙ୍ଗରେ ତୁମେ ମହାଦେବଙ୍କ ନିର୍ଗୁଣତା କଥା କହି ସ୍ୱୟଂ ନିଜ ମୁଖରେ ତାଙ୍କର ସମସ୍ତ ମହତ୍ତ୍ୱ ସ୍ପଷ୍ଟରୂପେ ସ୍ୱୀକାର କଲ । ଭଗବାନ ରୁଦ୍ର ଯେ ସମସ୍ତ ଦେବେଶ୍ୱରଙ୍କର ମଧ୍ୟ ଈଶ୍ୱର, ଏକଥା ତୁମକୁ ଜଣା ନାହିଁ । ସେ ବ୍ରହ୍ମା, ବିଷ୍ଣୁ ଓ ମହେଶଙ୍କର ମଧ୍ୟ ଜନକ ଏବଂ ପ୍ରକୃତିରୁ ମଧ୍ୟ ଅତୀତ । ବ୍ରହ୍ମବାଦୀ ଲୋକେ ତାଙ୍କୁ ସତ୍-ଅସତ୍, ବ୍ୟକ୍ତ-ଅବ୍ୟକ୍ତ, ନିତ୍ୟ, ଏକ ଓ ଅନେକ ବୋଲି କହିଥାନ୍ତି । ତେଣୁ ମୁଁ ତାଙ୍କୁ ହିଁ ବର ମାଗିବି । ଯେଉଁ ଭଗବାନ ଶିବ ଯୁକ୍ତିବାଦରୁ ଅତୀତ, ସାଂଖ୍ୟ ଓ ଯୋଗର ସାରଭୂତ ଅର୍ଥର ଜ୍ଞାନପ୍ରଦାତା, ତତ୍ତ୍ୱଜ୍ଞାନୀମାନେ ଉତ୍କୃଷ୍ଟ ବୋଲି ଜାଣି ଯାହାଙ୍କର ଉପାସନା କରନ୍ତି, ମୁଁ ତାଙ୍କୁ ହିଁ ବର ମାଗିବି । ଦେବାଧମ ! କ୍ଷୀର ପାଇଁ ମୋର ଯେଉଁ ଇଚ୍ଛା ଅଛି, ତାହା ପଛକେ ଅପୂର୍ଣ୍ଣ ରହିଯାଉ, ହେଲେ ତୁମକୁ ପ୍ରଥମେ ଶିବାସ୍ତ୍ର ଦ୍ୱାରା ବଧ କରି ତା'ପରେ ମୁଁ ବି ଏ ଦେହକୁ ତ୍ୟାଗ କରିଦେବି ।

ବାୟୁଦେବ କହୁଛନ୍ତି—ଏପରି କହିବା ପରେ ଉପମନ୍ୟୁ ସ୍ୱୟଂ ମରିଯିବାକୁ ସ୍ଥିର କରି ଏବଂ ଦୁଗ୍ଧର ଇଚ୍ଛା ତ୍ୟାଗ କରି ଇନ୍ଦ୍ରଙ୍କୁ ବଧ କରିବାକୁ ଉଦ୍ୟତ ହୋଇଗଲେ । ସେ ଅଘୋର ମନ୍ତ୍ରରେ ଅଭିମନ୍ତ୍ରିତ ଘୋର ଭସ୍ମକୁ ହାତରେ ଧରି ସିଂହନାଦ କରିବା ସହ ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ ନିକ୍ଷେପ କଲେ । ଏହାପରେ ଶମ୍ଭୁଙ୍କ ଚରଣାରବିନ୍ଦ ଯୁଗଳକୁ ଚିନ୍ତନ କରି ନିଜ ଦେହକୁ ମଧ୍ୟ ଦଗ୍ଧ କରିବା ପାଇଁ ପ୍ରସ୍ତୁତ ହେଲେ ଏବଂ ଆଗ୍ନେୟୀ ଧାରଣା କଲେ ।

ବ୍ରାହ୍ମଣ ଉପମନ୍ୟୁ ଏପରି କରିବାକୁ ଉଦ୍ୟମ

କରୁଥିବା ବେଳେ ଭଗନେତ୍ରହାରୀ ଶିବ ତାଙ୍କର ସେହି ଧାରଣାକୁ ନିଜ ସୌମ୍ୟଦୃଷ୍ଟିରେ ଅଟକାଇ ଦେଲେ । ଯୋଗୀ ଉପମନ୍ୟୁ ପ୍ରୟୋଗ କରିଥିବା ଅଘୋରାସ୍ତ୍ରକୁ ଶିବଙ୍କ ଆଜ୍ଞାରେ ଶିବବଲ୍ଲଭ ନନ୍ଦୀ ଅଧାବାଟରେ ଧରି ପକାଇଲେ । ତା'ପରେ ପରମେଶ୍ୱର ଶିବ ବାଳେନ୍ଦୁଶେଖର ରୂପ ଧାରଣ କରି ବ୍ରାହ୍ମଣ ଉପମନ୍ୟୁଙ୍କୁ ଦର୍ଶନ ଦେଲେ । କେବଳ ଏତିକି ନୁହେଁ, ପ୍ରଭୁ ହଜାର ହଜାର କ୍ଷୀରସାଗର, ସୁଧାସାଗର, ଦଧି ଇତ୍ୟାଦିର ସାଗର, ଘୃତସାଗର, ଫଳରସର ସମୁଦ୍ର ଏବଂ ଭକ୍ଷ୍ୟ-ଭୋଜ୍ୟ ପଦାର୍ଥର ସମୁଦ୍ର ସମେତ କାକରାର ପାହାଡ଼ ଉପସ୍ଥିତ କରାଇ ତାଙ୍କୁ ଦେଖାଇଲେ । ପୁଣି ଦେବୀ ପାର୍ବତୀଙ୍କ ସଙ୍ଗରେ ସ୍ୱୟଂ ମହାଦେବ ବୃଷଭ ଉପରେ ଆରୂଢ଼ ହୋଇ ଦର୍ଶନ ଦେଲେ । ସେତେବେଳେ ସେ ତାଙ୍କର ଗଣାଧ୍ୟକ୍ଷଙ୍କ ଗହଣରେ ତଥା ତ୍ରିଶୂଳାଦି ଦିବ୍ୟ ଅସ୍ତ୍ରରେ ସୁସଜ୍ଜିତ ଥିଲେ ।



ଦେବଲୋକରେ ଦୁନ୍ଦୁଭିମାନ ବାଜିଉଠିଲା, ଆକାଶରୁ ପୁଷ୍ପବୃଷ୍ଟି ହେଲା ଏବଂ ବ୍ରହ୍ମା, ବିଷ୍ଣୁ ଓ ଇନ୍ଦ୍ରାଦି ଦେବତାଙ୍କ ଦ୍ୱାରା ଦଶଦିଗ ଆଚ୍ଛାଦିତ ଦେଖାଗଲା ।

ଏହା ଦେଖି ଉପମନ୍ୟୁ ଆନନ୍ଦସାଗରରେ ନିମଜ୍ଜିତ ହୋଇଗଲେ । ସେ ଭକ୍ତିବିନମ୍ର ଚିତ୍ତରେ ଭୂମି ଉପରେ ଦଣ୍ଡ ପରି ଶୋଇଗଲେ । ଏତିକିବେଳେ ଭଗବାନ ଶିବ 'ଏଠାକୁ ଆସ, ମୋ ପାଖକୁ ଆସ' ବୋଲି ଡାକିଲେ ଏବଂ ସ୍ନେହରେ ତାଙ୍କ ମସ୍ତକ ଆଘ୍ରାଣ କରି ଅନେକ ବର ପ୍ରଦାନ କଲେ ।

ଶିବ କହିଲେ–"ବତ୍ସ ! ତୁମେ ତୁମର ଭାଇବନ୍ଧୁଙ୍କ ସହିତ ସର୍ବଦା ଇଚ୍ଛାନୁସାରେ ଏହି ଭକ୍ଷ୍ୟ-ଭୋଜ୍ୟ ପଦାର୍ଥକୁ ଉପଭୋଗ କର । ଦୁଃଖରୁ ମୁକ୍ତ ହୋଇ ସର୍ବଦା ସୁଖୀ ରୁହ । ତୁମ ହୃଦୟରେ ସର୍ବଦା ମୋ ପ୍ରତି ଭକ୍ତି ସର୍ବଦା ରହିଥାଉ । ମହାଭାଗ ଉପମନ୍ୟୁ ! ଏ ପାର୍ବତୀଦେବୀ ତୁମର ମାତା । ଆଜି ମୁଁ ତୁମକୁ ପୁତ୍ରରୂପେ ସ୍ୱୀକାର କଲି ଏବଂ ତୁମ ପାଇଁ ଏ କ୍ଷୀରସମୁଦ୍ର ପ୍ରଦାନ କଲି । କେବଳ କ୍ଷୀରସମୁଦ୍ର ନୁହେଁ, ମଧୁ, ଦଧି, ଶସ୍ୟ, ଘୃତ, ଅନ୍ନ ଓ ଫଳାଦି ରସର ସମୁଦ୍ର ମଧ୍ୟ ମୁଁ ତୁମକୁ ଦେଉଛି । ଏ କାକରା ପାହାଡ଼ ତଥା ଭକ୍ଷ୍ୟ-ଭୋଜ୍ୟ ପଦାର୍ଥର ସାଗର ମଧ୍ୟ ମୁଁ ତୁମକୁ ସମର୍ପିତ କରୁଛି । ମହାମୁନେ ! ଏସବୁ ଗ୍ରହଣ କର । ଆଜିଠାରୁ ମୁଁ ମହାଦେବ ତୁମର ପିତା ଓ ଜଗଦମ୍ବା ଉମା ତୁମର ମାତା । ମୁଁ ତୁମକୁ ଅମରତ୍ୱ ଓ ଗଣପତିଙ୍କ ସନାତନ ପଦ ପ୍ରଦାନ କଲି । ଏବେ ତୁମ ମନରେ ଆଉ ଯାହା କିଛି ଅଭିଳାଷ ଅଛି, ତାହା ମଧ୍ୟ ପ୍ରସନ୍ନଚିତ୍ତରେ ମାଗ । ମୁଁ ତୁମ ଉପରେ ସନ୍ତୁଷ୍ଟ । ତେଣୁ ସେସବୁ ନିଶ୍ଚୟ ପ୍ରଦାନ କରିବି; ଏ ବିଷୟରେ କୌଣସି ପ୍ରକାର ଅନ୍ୟଥା ବିଗ୍ଚର କର ନାହିଁ ।

ବାୟୁଦେବ କହୁଛନ୍ତି–ଏପରି କହି ମହାଦେବ ତାଙ୍କୁ ଦୁଇହାତରେ ତଳୁ ଉଠାଇ ଛାତିକୁ ଆଉଜେଇ

ନେଲେ ଏବଂ ତାଙ୍କ ମସ୍ତକ ଆଘ୍ରାଣ କରି ଦେବୀଙ୍କୁ ଅର୍ପଣ କରି କହିଲେ, "ତୁମର ଏ ପୁତ୍ରକୁ ନିଅ ।" ମାତା ପାର୍ବତୀ ପୁତ୍ର କାର୍ତ୍ତିକେୟ ପରି ସ୍ନେହରେ ତାଙ୍କ ମୁଣ୍ଡ ଉପରେ ହାତ ବୁଲାଇ ତାଙ୍କୁ ଅବିନାଶୀ କୁମାରପଦ ପ୍ରଦାନ କଲେ । କ୍ଷୀରସାଗର ମଧ୍ୟ ସାକାରରୂପ ଧାରଣ କରି ଆସି ତାଙ୍କ ହାତରେ ଅବିନାଶୀ ପିଣ୍ଡୀଭୂତ ସ୍ୱାଦିଷ୍ଟ ଦୁଗ୍ଧ ସମର୍ପିତ କଲା । ତା'ପରେ ପାର୍ବତୀଦେବୀ ସନ୍ତୋଷଚିତ୍ତରେ ତାଙ୍କୁ ଯୋଗଜନିତ ଐଶ୍ୱର୍ଯ୍ୟ, ସ୍ଥାୟୀ ସନ୍ତୋଷ, ଅବିନାଶୀ ବ୍ରହ୍ମବିଦ୍ୟା ଓ ଉତ୍ତମ ସମୃଦ୍ଧି ପ୍ରଦାନ କଲେ । ଏହାପରେ ଉପମନ୍ୟୁଙ୍କ ତପୋମୟ ତେଜକୁ ଦେଖି ଶମ୍ଭୁ ପ୍ରସନ୍ନଚିତ୍ତରେ ତାଙ୍କୁ ପୁନଃ ଦିବ୍ୟ ବର ପ୍ରଦାନ କଲେ । ପୁଣି ତାଙ୍କୁ ପାଶୁପତବ୍ରତ, ପାଶୁପତଜ୍ଞାନ, ତାତ୍ତ୍ୱିକ ବ୍ରତଯୋଗ ଓ ଦୀର୍ଘକାଳ ପର୍ଯ୍ୟନ୍ତ ପ୍ରବଚନ କରିବାରେ ପରମ ପଟୁତା ମଧ୍ୟ ପ୍ରଦାନ କଲେ । ଭଗବାନ ଶିବ ଓ ଶିବାଙ୍କ ଠାରୁ ଦିବ୍ୟ ବର ତଥା ନିତ୍ୟ କୁମାରତ୍ୱ ପାଇ ବ୍ରାହ୍ମଣ ଉପମନ୍ୟୁ ପ୍ରମୁଦିତ ହୋଇଉଠିଲେ । ଏହାପରେ ସେ ପ୍ରସନ୍ନଚିତ୍ତରେ କରବଦ୍ଧ ପ୍ରଣାମ କରି ଦେବଦେବ ମହେଶ୍ୱରଙ୍କୁ ଏହି ବର ମାଗିଲେ–

ଉପମନ୍ୟୁ କହିଲେ–**ଦେବଦେବେଶ୍ୱର ! ପ୍ରସନ୍ନ ହୁଅନ୍ତୁ । ପରମେଶ୍ୱର ! ପ୍ରସନ୍ନ ହୁଅନ୍ତୁ ଓ ମୋତେ ଆପଣଙ୍କ ଚରଣରେ ଦିବ୍ୟ ତଥା ଅବ୍ୟଭିଚାରିଣୀ ଭକ୍ତି ପ୍ରଦାନ କରନ୍ତୁ । ମହାଦେବ ! ସ୍ୱଜନ-ସମ୍ବନ୍ଧୀୟଙ୍କ ପ୍ରତି ମୋର ଶ୍ରଦ୍ଧା ରହିଥାଉ । ଏହାଛଡ଼ା ଆପଣଙ୍କ ଦାସତ୍ୱ, ଉତ୍କୃଷ୍ଟ ସ୍ନେହ ତଥା ନିତ୍ୟ ସାମୀପ୍ୟ ପ୍ରଦାନ କରନ୍ତୁ ।**

ଏତିକି କହି ବ୍ରାହ୍ମଣ ଉପମନ୍ୟୁ ପ୍ରସନ୍ନତା ଓ ହର୍ଷରେ ଗଦ୍‌ଗଦ ହୋଇ ମହାଦେବଙ୍କୁ ସ୍ତୁତି କଲେ ।

ଉପମନ୍ୟୁ କହିଲେ–**ଦେବଦେବ ମହାଦେବ ! ଶରଣାଗତବତ୍ସଳ ! କରୁଣାସିନ୍ଧୋ ! ସାମ୍ବ ସଦାଶିବ ! ଆପଣ ସର୍ବଦା ମୋ ଉପରେ ପ୍ରସନ୍ନ ରହନ୍ତୁ ।**

ବାୟୁଦେବ କହୁଛନ୍ତି–**ତାଙ୍କ କଥା ଶୁଣି ସମସ୍ତଙ୍କର ବରଦାତା ପ୍ରସନ୍ନାତ୍ମା ମହାଦେବ ମୁନିବର ଉପମନ୍ୟୁଙ୍କୁ ଏପରି ଉତ୍ତର ଦେଲେ ।**

ଶିବ କହିଲେ–**ବତ୍ସ ଉପମନ୍ୟୋ ! ମୁଁ ତୁମ ଉପରେ ସନ୍ତୁଷ୍ଟ । ସେଥିପାଇଁ ତୁମକୁ ଏସବୁ ପ୍ରଦାନ କଲି । ବ୍ରହ୍ମର୍ଷେ ! ତୁମେ ମୋର ସୁଦୃଢ଼ ଭକ୍ତ; ଏ ବିଷୟରେ ମୁଁ ତୁମର ପରୀକ୍ଷା ନେଇଛି । ତୁମେ ଏଥର ଅଜର-ଅମର, ଦୁଃଖରହିତ, ଯଶସ୍ୱୀ, ତେଜସ୍ୱୀ ଓ ଦିବ୍ୟ ଜ୍ଞାନସମ୍ପନ୍ନ ହେବ । ଦ୍ୱିଜଶ୍ରେଷ୍ଠ ! ତୁମର ବନ୍ଧୁ-ବାନ୍ଧବ, କୁଳ ଓ ଗୋତ୍ର ସଦା ଅକ୍ଷୟ ରହିବେ । ମୋ ପ୍ରତି ସର୍ବଦା ତୁମର ଭକ୍ତି ରହିଥିବ । ମୁଁ ତୁମ ଆଶ୍ରମରେ ନିତ୍ୟ ନିବାସ କରିବି । ତୁମେ ମୋ ନିକଟରେ ସାନନ୍ଦ ବିଚରଣ କରିବ ।**

ଏପରି କହି ଏବଂ ଉପମନ୍ୟୁଙ୍କୁ ଅଭୀଷ୍ଟ ବର ଦେଇ କୋଟିସୂର୍ଯ୍ୟତୁଲ୍ୟ ତେଜସ୍ୱୀ ଭଗବାନ୍ ମହେଶ୍ୱର ସେହିଠାରେ ଅନ୍ତର୍ହିତ ହୋଇଗଲେ । ପରମେଶ୍ୱରଙ୍କ ଠାରୁ ବର ପାଇ ଉପମନ୍ୟୁଙ୍କ ହୃଦୟ ପ୍ରସନ୍ନତାରେ ନାଚି ଉଠିଲା । ତାଙ୍କୁ ବହୁତ ଆନନ୍ଦ ମିଳିଲା । ସେ ତାଙ୍କ ଜନ୍ମଦାତ୍ରୀ ମାଆଙ୍କ ନିକଟକୁ ଫେରିଗଲେ । (ଅଧ୍ୟାୟ ୩୫)

***

## ॥ ବାୟବୀୟସଂହିତାର ପୂର୍ବଖଣ୍ଡ ସମ୍ପୂର୍ଣ୍ଣ ॥



# ବାୟବୀୟସଂହିତା (ଉତ୍ତରଖଣ୍ଡ)

## ଋଷିଗଣଙ୍କ ପ୍ରଶ୍ନର ଉତ୍ତରରୂପେ ବାୟୁଦେବଙ୍କ ଦ୍ୱାରା ଶ୍ରୀକୃଷ୍ଣ ଓ ଉପମନ୍ୟୁଙ୍କ ମିଳନ ପ୍ରସଙ୍ଗ ବର୍ଣ୍ଣନା, ଶ୍ରୀକୃଷ୍ଣଙ୍କୁ ଉପମନ୍ୟୁଙ୍କ ଠାରୁ ଜ୍ଞାନ ଓ ଶିବଙ୍କ ଠାରୁ ପୁତ୍ର ଲାଭ

ସୂତ ଉବାଚ

ନମଃ ସମସ୍ତସଂସାରଚକ୍ରଭ୍ରମଣହେତବେ ।
ଗୌରୀକୁଚତଟଦ୍ୱନ୍ଦ୍ୱକୁଙ୍କୁମାଙ୍କିତବକ୍ଷସେ ॥

ସୂତ କହୁଛନ୍ତି—ଯେ ସମସ୍ତ ସଂସାରଚକ୍ରର ପରିଭ୍ରମଣରେ କାରଣସ୍ୱରୂପ ଏବଂ ଗୌରୀଙ୍କ ଉରଜ ଯୁଗଳରେ ଲେପିତ କେଶରରେ ଯାହାଙ୍କ ବକ୍ଷଃସ୍ଥଳ ଅଙ୍କିତ, ସେହି ଉମାବଲ୍ଲଭ ଶିବଙ୍କୁ ନମସ୍କାର ।

ଉପମନ୍ୟୁଙ୍କୁ ଭଗବାନ ଶିବଙ୍କ କୃପାପ୍ରସାଦ ପ୍ରାପ୍ତ ହେବା ପ୍ରସଙ୍ଗ ଶୁଣାଇ ସାରି ମଧ୍ୟାହ୍ନକାଳରେ ନିତ୍ୟ-ନିୟମ ଉଦ୍ଦେଶ୍ୟରେ ବାୟୁଦେବ ପୁରାଣଚର୍ଚ୍ଚା (ପ୍ରବଚନ) ବନ୍ଦ କରି ଉଠିଗଲେ । ସେତେବେଳେ ନୈମିଷାରଣ୍ୟବାସୀ ଋଷିମାନେ ମଧ୍ୟ 'ଏଥର ଅମୁକ କଥା ପଚ୍ଚରିବା' ବୋଲି ମନସ୍ଥ କରି ଉଠିଲେ ଏବଂ ପ୍ରତିଦିନ ପରି ନିଜ ନିଜର ତାତ୍କାଳିକ ନିତ୍ୟକର୍ମ ସମାପ୍ତ କରିବା ପରେ ବାୟୁଦେବଙ୍କ ପୁନରାଗମନ ଦେଖି ପୁଣି ଆସି ତାଙ୍କ ପାଖରେ ବସିଗଲେ । ନିତ୍ୟ-ନିୟମ ସମାପ୍ତ କରିସାରି ନଭଜନ୍ମା ବାୟୁଦେବ ସଭାରେ ନିଜ ନିର୍ଦ୍ଧାରିତ ଆସନରେ ସୁଖପୂର୍ବକ ବିରାଜମାନ ହୋଇଯିବା ପରେ ଲୋକବନ୍ଦିତ ପରମଦେବ ପରମେଶ୍ୱରଙ୍କ ଶ୍ରୀସମ୍ପନ୍ନ ବିଭୂତିକୁ ମନେ ମନେ ଚିନ୍ତନ କରି କହିଲେ—"ମୁଁ ସେହି ସର୍ବଜ୍ଞ ଅପରାଜିତ ମହାନ୍ ଦେବ ଭଗବାନ ଶିବଙ୍କ ଶରଣ ଗ୍ରହଣ କରୁଛି, ଯାହାଙ୍କ ବିଭୂତି ସମଗ୍ର ସଚରାଚର ଜଗତ ରୂପରେ ବିସ୍ତାରିତ ହୋଇଛି ।"

ତାଙ୍କର ଶୁଭ ବାଣୀକୁ ଶୁଣି ନିଷ୍ପାପ ଋଷିଗଣ ଭଗବାନଙ୍କ ବିଭୂତିକୁ ବିସ୍ତାରପୂର୍ବକ ଶୁଣିବା ମାନସରେ ନିମ୍ନୋକ୍ତ ଉତ୍ତମ ବଚନ କହିଲେ ।

ଋଷିଗଣ କହିଲେ—ଭଗବନ୍ ! ଆପଣ ମହାତ୍ମା ଉପମନ୍ୟୁଙ୍କ ଚରିତ୍ର ଶୁଣାଇଲେ । ସେଥିରୁ ଜଣାପଡ଼ିଲା ଯେ ସେ କେବଳ କ୍ଷୀର ପାଇଁ ତପସ୍ୟା କରି ମଧ୍ୟ ପରମେଶ୍ୱର ଶିବଙ୍କ ଠାରୁ ସବୁକିଛି ଲାଭ କଲେ । ଆମେ ପୂର୍ବରୁ ଶୁଣିଛୁ ଯେ



ବସୁଦେବନନ୍ଦନ ଭଗବାନ ଶ୍ରୀକୃଷ୍ଣ କୌଣସି ସମୟରେ ଧୌମ୍ୟଙ୍କ ବଡ଼ଭାଇ ଉପମନ୍ୟୁଙ୍କୁ ଭେଟିଥିଲେ ଏବଂ ତାଙ୍କ ପ୍ରେରଣାରେ ପାଶୁପତବ୍ରତ

ଅନୁଷ୍ଠାନ କରି ପରମଜ୍ଞାନ ଲାଭ କରିଥିଲେ । ତେଣୁ ଆପଣ କୁହନ୍ତୁ ଯେ, ଭଗବାନ ଶ୍ରୀକୃଷ୍ଣ ପରମୋତ୍ତମ ପାଶୁପତଜ୍ଞାନ କିଭଳି ଲାଭ କଲେ ?

ବାୟୁଦେବ କହିଲେ—ନିଜ ଇଚ୍ଛାରେ ମାନବ ରୂପରେ ଅବତୀର୍ଣ୍ଣ ହୋଇଥିଲେ ସୁଦ୍ଧା ସନାତନ ବାସୁଦେବ ଲୋକସଂଗ୍ରହ ନିମନ୍ତେ ସେହି ନିନ୍ଦିତ ମାନବଶରୀରକୁ ଶୁଦ୍ଧ କରିଥିଲେ । ସେ ପୁତ୍ରପ୍ରାପ୍ତି ନିମିତ୍ତ ତପସ୍ୟା କରିବାକୁ ମହାମୁନି ଉପମନ୍ୟୁଙ୍କ ଆଶ୍ରମକୁ ଯାଇଥିଲେ । ସେତେବେଳେ ସେଠାରେ ଅନେକ ଋଷିମୁନି ଉପମନ୍ୟୁଙ୍କୁ ଦର୍ଶନ କରୁଥିଲେ । ଶ୍ରୀକୃଷ୍ଣ ମଧ୍ୟ ସେଠାକୁ ଯାଇ ତାଙ୍କୁ ଦର୍ଶନ କଲେ । ଉପମନ୍ୟୁଙ୍କର ସମଗ୍ର ଅଙ୍ଗ ଭସ୍ମରେ ଉଜ୍ଜ୍ୱଳ ଦିଶୁଥିଲା । ମସ୍ତକ ତ୍ରିପୁଣ୍ଡ୍ରମଣ୍ଡିତ ଥିଲା । ରୁଦ୍ରାକ୍ଷମାଳା ହିଁ ତାଙ୍କର ଆଭୂଷଣ ଥିଲା । ସେ ଜଟାଜୂଟରେ ଶୋଭିତ ଥିଲେ । ଶାସ୍ତ୍ରମାନଙ୍କ ମଧ୍ୟରେ ବେଦ ଶୋଭା ପାଇବା ପରି ସେ ତାଙ୍କର ଶିଷ୍ୟତୁଲ୍ୟ ମହର୍ଷିମାନଙ୍କ ଗହଣରେ ଶିବଙ୍କ ଧ୍ୟାନରେ ତତ୍ପର ହୋଇ ଶାନ୍ତଭାବରେ ବସି ଶୋଭା ପାଉଥିଲେ । ମହାତେଜସ୍ୱୀ ଉପମନ୍ୟୁଙ୍କୁ ଦର୍ଶନ କରି ଶ୍ରୀକୃଷ୍ଣ ତାଙ୍କୁ ନମସ୍କାର କଲେ । ସେତେବେଳେ ତାଙ୍କର ସମଗ୍ର ଶରୀର ରୋମାଞ୍ଚିତ ହୋଇଗଲା । ଶ୍ରୀକୃଷ୍ଣ ଅତ୍ୟନ୍ତ ଆଦରରେ ମୁନିଙ୍କୁ ତ୍ରିବାର ପରିକ୍ରମା କଲେ । ତା'ପରେ ଅତ୍ୟନ୍ତ ପ୍ରସନ୍ନତାର ସହିତ ମସ୍ତକ ଅବନତ କରି ବଦ୍ଧାଞ୍ଜଳିପୂର୍ବକ ତାଙ୍କୁ ସ୍ତୁତି କଲେ । ତା'ପରେ ଉପମନ୍ୟୁ ବିଧିପୂର୍ବକ 'ଅଗ୍ନିରିତି ଭସ୍ମ' ଇତ୍ୟାଦି ମନ୍ତ୍ରରେ ଶ୍ରୀକୃଷ୍ଣଙ୍କ ଶରୀରରେ ଭସ୍ମ ଲଗାଇଦେଇ ତାଙ୍କ ଦ୍ୱାରା ବାରମାସ ପାଇଁ ସାକ୍ଷାତ୍ ପାଶୁପତ ବ୍ରତ ଅନୁଷ୍ଠାନ କରାଇଲେ । ତା'ପରେ ମୁନି ତାଙ୍କୁ ଉତ୍ତମ ଜ୍ଞାନ ପ୍ରଦାନ କଲେ । ସେହି ସମୟଠାରୁ ଉତ୍ତମ ବ୍ରତ ପାଳନକାରୀ ସମସ୍ତ ଦିବ୍ୟ ପାଶୁପତ ମୁନି ଶ୍ରୀକୃଷ୍ଣଙ୍କୁ ଚାରିପଟରୁ ଘେରି ତାଙ୍କ ପାଖରେ ବସି ରହିବାକୁ ଲାଗିଲେ । ତା'ପରେ ଗୁରୁଙ୍କ ଆଜ୍ଞାରେ ପରମ ଶକ୍ତିମାନ୍ ଶ୍ରୀକୃଷ୍ଣ ପୁତ୍ରପ୍ରାପ୍ତି ନିମନ୍ତେ ଶିବପାର୍ବତୀଙ୍କ ଆରାଧନା ସହିତ ତପସ୍ୟା କଲେ । ତପସ୍ୟାରେ ସନ୍ତୁଷ୍ଟ ହୋଇ ଏକବର୍ଷ ପରେ ପାର୍ଷଦଗଣଙ୍କ ସହ ପରମ ଐଶ୍ୱର୍ଯ୍ୟଶାଳୀ ପରମେଶ୍ୱର ଶିବପାର୍ବତୀ ତାଙ୍କୁ ଦର୍ଶନ ଦେଲେ । ବରଦେବାକୁ ଉପସ୍ଥିତ ହୋଇଥିବା ସର୍ବାଙ୍ଗ ସୁନ୍ଦର ମହାଦେବଙ୍କୁ ଶ୍ରୀକୃଷ୍ଣ କର ଯୋଡ଼ି ପ୍ରଣାମ କଲେ ଏବଂ ସ୍ତୁତି କଲେ । ଗଣଙ୍କ ସହିତ ସାମ୍ବ ସଦାଶିବଙ୍କୁ ସ୍ତୁତି କରି ଶ୍ରୀକୃଷ୍ଣ ଗୋଟିଏ ପୁତ୍ର ଲାଭ କଲେ । ତପସ୍ୟାରେ ସନ୍ତୁଷ୍ଟ ହୋଇ ସାକ୍ଷାତ୍ ସାମ୍ବ ଶିବ ହିଁ ବିଷ୍ଣୁଙ୍କୁ ସେହି ପୁତ୍ର ଦେଇଥିଲେ । ଯେହେତୁ ସାମ୍ବ ଶିବ ତାଙ୍କୁ ଆପଣା ପୁତ୍ର ପ୍ରଦାନ କରିଥିଲେ, ସେଥିପାଇଁ ଶ୍ରୀକୃଷ୍ଣ ଜାମ୍ବବତୀକୁମାରର ନାମ ସାମ୍ବ ରଖିଲେ । ଏହିରୂପେ ଅମିତପରାକ୍ରମୀ ଶ୍ରୀକୃଷ୍ଣଙ୍କୁ ମହର୍ଷି ଉପମନ୍ୟୁଙ୍କ ଠାରୁ ଜ୍ଞାନ ତଥା ଭଗବାନ ଶିବଙ୍କ ଠାରୁ ପୁତ୍ର ଲାଭ ହେଲା । ମୁଁ ଏ ସମସ୍ତ ପ୍ରସଙ୍ଗ ଶୁଣାଇଦେଲି । ଯେ ପ୍ରତିଦିନ ଏହାକୁ କହେ ଓ ଶୁଣେ, ସେ ଭଗବାନ ବିଷ୍ଣୁଙ୍କ ସମ୍ବନ୍ଧରେ ଜ୍ଞାନ ଲାଭ କରି ତାଙ୍କ ସହିତ ପ୍ରମୁଦିତ ରହେ ।

(ଅଧ୍ୟାୟ ୧)



## ଉପମନ୍ୟୁଙ୍କ ଦ୍ୱାରା ଶ୍ରୀକୃଷ୍ଣଙ୍କୁ ପାଶୁପତ ଜ୍ଞାନର ଉପଦେଶ

ଋଷିଗଣ ପଚାରିଲେ—ପାଶୁପତ ଜ୍ଞାନ କ'ଣ? ଭଗବାନ ଶିବ ପଶୁପତି କିପରି ହେଲେ ? ଏବଂ ଅନାୟାସରେ ମହାନ୍ କର୍ମ କରୁଥିବା ଭଗବାନ ଶ୍ରୀକୃଷ୍ଣ ଉପମନ୍ୟୁଙ୍କୁ କିଭଳି ପ୍ରଶ୍ନ କରିଥିଲେ ?

ବାୟୁଦେବ! ଆପଣ ସାକ୍ଷାତ୍ ଶିବଙ୍କର ସ୍ୱରୂପ, ତେଣୁ ଏସବୁ ପ୍ରସଙ୍ଗ ଆମକୁ କୁହନ୍ତୁ । ତ୍ରିଲୋକରେ ଅନ୍ୟ କୌଣସି ବକ୍ତା ଆପଣଙ୍କ ପରି ଏ ବିଷୟକୁ ବୁଝାଇବାକୁ ସମର୍ଥ ନୁହେଁ ।

ସୂତ କହୁଛନ୍ତି–ମହର୍ଷିମାନଙ୍କ କଥା ଶୁଣି ବାୟୁଦେବ ଶିବଙ୍କୁ ସ୍ମରଣ କରି ଏହିରୂପେ ଉତ୍ତର ଦେବା ଆରମ୍ଭ କଲେ ।

ବାୟୁଦେବ କହିଲେ–ହେ ମହର୍ଷିବୃନ୍ଦ! ପୂର୍ବକାଳରେ ଥରେ ମହର୍ଷି ଉପମନ୍ୟୁ ତାଙ୍କ ଆସନରେ ବିରାଜମାନ ଥିବାବେଳେ ଶ୍ରୀକୃଷ୍ଣ-ରୂପଧାରୀ ଭଗବାନ ବିଷ୍ଣୁ ତାଙ୍କୁ ପ୍ରଣାମ କରି ନିମ୍ନୋକ୍ତ ନ୍ୟାୟସଙ୍ଗତ ପ୍ରଶ୍ନ କରିଥିଲେ ।

ଶ୍ରୀକୃଷ୍ଣ କହିଲେ–ଭଗବନ୍! ମହାଦେବ ଦେବୀ ପାର୍ବତୀଙ୍କୁ ଯେଉଁ ଦିବ୍ୟ ପାଶୁପତ ଜ୍ଞାନ ତଥା ନିଜର ସମସ୍ତ ବିଭୂତି ବିଷୟକ ଉପଦେଶ ଦେଇଥିଲେ, ମୁଁ ତାହା ଶୁଣିବାକୁ ଚାହେଁ । ମହାଦେବ ପଶୁପତି କିପରି ହେଲେ? ପଶୁ କାହାକୁ କହନ୍ତି? ସେହି ପଶୁମାନେ କେଉଁ ପାଶରେ ବାନ୍ଧି ହୋଇଯାଆନ୍ତି ଏବଂ କେଉଁ ପ୍ରକାରେ ସେଥିରୁ ମୁକ୍ତ ହୁଅନ୍ତି?

ମହାତ୍ମା ଶ୍ରୀକୃଷ୍ଣଙ୍କର ଏପରି ପ୍ରଶ୍ନ ଶୁଣି ଶ୍ରୀମାନ୍ ଉପମନ୍ୟୁ ମହାଦେବଙ୍କୁ ତଥା ଦେବୀ ପାର୍ବତୀଙ୍କୁ ପ୍ରଣାମ କରି ତାଙ୍କ ପ୍ରଶ୍ନର ଉତ୍ତର ଦେବା ଆରମ୍ଭ କଲେ ।

ଉପମନ୍ୟୁ କହିଲେ–ହେ ଦେବକୀନନ୍ଦନ! ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ତୃଣ ପର୍ଯ୍ୟନ୍ତ ଯେତେ ସବୁ ସଂସାରର ବଶବର୍ତ୍ତୀ ଚରାଚର ପ୍ରାଣୀ ଅଛନ୍ତି, ସମସ୍ତେ ଭଗବାନ ଶିବଙ୍କର ପଶୁ ବୋଲାନ୍ତି ଏବଂ ସେମାନଙ୍କର ପତି ହେବା କାରଣରୁ ଦେବେଶ୍ୱର ଶିବଙ୍କୁ ପଶୁପତି କୁହାଯାଏ । ସେହି ପଶୁପତି ତାଙ୍କ ପଶୁଙ୍କୁ ମଳ ଓ ମାୟା ଇତ୍ୟାଦି ପାଶରେ ବାନ୍ଧନ୍ତି ଏବଂ ସେମାନଙ୍କ ଦ୍ୱାରା ଭକ୍ତିପୂର୍ବକ ଆରାଧିତ ହେଲେ ନିଜେ ହିଁ ପାଶରୁ ମୁକ୍ତ କରନ୍ତି । ଚବିଶ ତତ୍ତ୍ୱ ହେଉଛି ମାୟାର କାର୍ଯ୍ୟ ଓ ଗୁଣ । ସେଗୁଡ଼ିକ ବିଷୟ ବୋଲାନ୍ତି ଏବଂ ବିଷୟ ହିଁ ଜୀବ (ପଶୁ)ଙ୍କୁ



ବାନ୍ଧିବାର ପାଶ । ଏହି ପାଶ ଦ୍ୱାରା ବ୍ରହ୍ମାଙ୍କ ଠାରୁ କୀଟ ପର୍ଯ୍ୟନ୍ତ ସମସ୍ତ ପଶୁଙ୍କୁ ବାନ୍ଧି ମହେଶ୍ୱର ପଶୁପତି ସେମାନଙ୍କ ଦ୍ୱାରା ନିଜର କାର୍ଯ୍ୟ କରାନ୍ତି । ସେହି ମହେଶ୍ୱରଙ୍କ ଆଜ୍ଞାରେ ପ୍ରକୃତି ପୁରୁଷୋଚିତ ବୁଦ୍ଧିକୁ ଜନ୍ମ ଦିଏ, ବୁଦ୍ଧି ଅହଂକାରକୁ ପ୍ରକଟ କରେ ଏବଂ ଅହଂକାର କଲ୍ୟାଣକାରୀ ଦେବାଧିଦେବ ଶିବଙ୍କ ଆଜ୍ଞାରେ ଏକାଦଶ ଇନ୍ଦ୍ରିୟ ଓ ପାଞ୍ଚ ତନ୍ମାତ୍ରକୁ ଉତ୍ପନ୍ନ କରେ । ତନ୍ମାତ୍ର ମଧ୍ୟ ସେହି ମହେଶ୍ୱରଙ୍କ ମହାନ୍ ଶାସନରେ ପ୍ରେରିତ ହୋଇ କ୍ରମାନ୍ୱୟରେ ପାଞ୍ଚ ମହାଭୂତକୁ ଉତ୍ପନ୍ନ କରେ । ସେହି ମହାଭୂତମାନେ ଶିବଙ୍କ ଆଜ୍ଞାରେ ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ତୃଣ ପର୍ଯ୍ୟନ୍ତ ସକଳ ଦେହଧାରୀଙ୍କ ପାଇଁ ଦେହ ସୃଷ୍ଟି କରନ୍ତି, ବୁଦ୍ଧି କର୍ତ୍ତବ୍ୟ ନିର୍ଦ୍ଧାରଣ କରେ

ଏବଂ ଅହଂକାର ଅଭିମାନ କରେ । ଚିତ୍ତ ଚେତାଇ ଦିଏ ଓ ମନ ସଂକଳ୍ପ-ବିକଳ୍ପ କରେ । ଶ୍ରବଣାଦି ଜ୍ଞାନେନ୍ଦ୍ରିୟ ପୃଥକ୍ ପୃଥକ୍ ବିଷୟମାନ ଗ୍ରହଣ କରନ୍ତି । ସେମାନେ ମହାଦେବଙ୍କ ଆଜ୍ଞାବଳରେ କେବଳ ନିଜ ନିଜ ବିଷୟକୁ ହିଁ ଗ୍ରହଣ କରନ୍ତି । ବାଗାଦି କର୍ମେନ୍ଦ୍ରିୟ ବୋଲାନ୍ତି ଏବଂ ସେମାନେ ଶିବଙ୍କ ଇଚ୍ଛାରେ ନିଜ ନିମନ୍ତେ ନିୟତ କର୍ମ ହିଁ କରନ୍ତି, ଅନ୍ୟ କିଛି ନୁହେଁ । ଶବ୍ଦାଦିକୁ ଜାଣି ହୁଏ ଏବଂ କହିବା ଇତ୍ୟାଦି କର୍ମ କରାଯାଏ । ଏମାନଙ୍କ ପକ୍ଷେ ଭଗବାନଙ୍କ ଗୁରୁତର ଆଜ୍ଞାର ଉଲ୍ଲଙ୍ଘନ କରିବା ଅସମ୍ଭବ । ପରମେଶ୍ୱର ଶିବଙ୍କ ଶାସନରେ ହିଁ ଆକାଶ ସର୍ବବ୍ୟାପୀ ହୋଇ ସମସ୍ତ ପ୍ରାଣୀଙ୍କୁ ଅବକାଶ ପ୍ରଦାନ କରେ । ବାୟୁତତ୍ତ୍ୱ ପ୍ରାଣ ଆଦି ନାମଭେଦରେ ବାହ୍ୟ-ଆଭ୍ୟନ୍ତର ସମସ୍ତ ଜଗତକୁ ଧାରଣ କରେ । ଅଗ୍ନିତତ୍ତ୍ୱ ଦେବତାଙ୍କ ପାଇଁ ହବ୍ୟ ଓ କବ୍ୟଭୋଜୀ ପିତୃଗଣଙ୍କ ପାଇଁ କବ୍ୟ ପହଞ୍ଚାଏ ଏବଂ ମନୁଷ୍ୟଙ୍କ ପାଇଁ ପାକ ଆଦି କାର୍ଯ୍ୟ ମଧ୍ୟ କରେ । ଜଳ ସମସ୍ତଙ୍କୁ ଜୀବନ ଦିଏ ଏବଂ ପୃଥିବୀ ସମଗ୍ର ଜଗତକୁ ଧାରଣ କରିଥାଏ ।

ଶିବଙ୍କ ଆଜ୍ଞା ସମସ୍ତ ଦେବତାଙ୍କ ପାଇଁ ଅଲଙ୍ଘନୀୟ । ତାଙ୍କରି ଆଜ୍ଞାରେ ପ୍ରେରିତ ହୋଇ ଦେବରାଜ ଇନ୍ଦ୍ର ଦେବତାଙ୍କ ପାଳନ, ଦୈତ୍ୟଙ୍କ ଦମନ ଓ ତ୍ରିଲୋକର ସଂରକ୍ଷଣ କରନ୍ତି । ବରୁଣଦେବ ସଦା ଜଳତତ୍ତ୍ୱର ଆଧିପତ୍ୟ ଓ ସଂରକ୍ଷଣାଦି କାର୍ଯ୍ୟ ସମ୍ଭାଳନ୍ତି ଏବଂ ଦଣ୍ଡନୀୟ ପ୍ରାଣୀଙ୍କୁ ନିଜର ପାଶଦ୍ୱାରା ବାନ୍ଧିପକାନ୍ତି । ଧନର ସ୍ୱାମୀ ଯକ୍ଷରାଜ କୁବେର ପ୍ରାଣୀଙ୍କୁ ସଦା ସେମାନଙ୍କ ପୁଣ୍ୟର ଅନୁରୂପ ଧନ ଦିଅନ୍ତି ଏବଂ ଉତ୍ତମ ବୁଦ୍ଧିସମ୍ପନ୍ନ ବ୍ୟକ୍ତିଙ୍କୁ ସମ୍ପତ୍ତି ସହିତ ଜ୍ଞାନ ମଧ୍ୟ ପ୍ରଦାନ କରନ୍ତି । ଈଶ୍ୱର ଅସାଧୁ ପ୍ରାଣୀଙ୍କୁ ନିଗ୍ରହ କରନ୍ତି ଏବଂ ଶେଷଦେବ ଶିବଙ୍କ ଆଜ୍ଞାରେ ନିଜ ମସ୍ତକ ଉପରେ ପୃଥିବୀକୁ ଧାରଣ କରନ୍ତି । ଶେଷଦେବଙ୍କୁ ଶ୍ରୀହରିଙ୍କ ତାମସୀ ରୌଦ୍ରମୂର୍ତ୍ତି କୁହାଯାଇଛି, ଯେ କି ଜଗତର ପ୍ରଳୟ କରନ୍ତି । ବ୍ରହ୍ମା ଶିବଙ୍କ ଆଜ୍ଞାରେ ହିଁ ସମଗ୍ର ଜଗତର ସୃଜନ କରନ୍ତି ଏବଂ ନିଜ ଅନ୍ୟ ମୂର୍ତ୍ତିମାନଙ୍କ ଦ୍ୱାରା ପାଳନ ଓ ସଂହାର କାର୍ଯ୍ୟ ବି କରନ୍ତି । ଭଗବାନ ବିଷ୍ଣୁ ନିଜ ତ୍ରିବିଧ ମୂର୍ତ୍ତିଦ୍ୱାରା ବିଶ୍ୱର ପାଳନ, ସୃଜନ ଓ ସଂହାର ବି କରନ୍ତି । ବିଶ୍ୱାତ୍ମା ଭଗବାନ ହର ମଧ୍ୟ ତ୍ରିବିଧ ରୂପରେ ବିଭକ୍ତ ହୋଇ ସମଗ୍ର ଜଗତର ସଂହାର, ସୃଷ୍ଟି ଓ ରକ୍ଷା କରନ୍ତି । କାଳ ସମସ୍ତଙ୍କୁ ଉତ୍ପନ୍ନ କରେ । ସେ ପ୍ରଜାଙ୍କୁ ସୃଷ୍ଟି କରେ ଏବଂ ବିଶ୍ୱର ପାଳନ କରେ । ସେ ଏସବୁ ସେହି ମହାକାଳଙ୍କ ଆଜ୍ଞାରେ ପ୍ରେରିତ ହୋଇ କରେ । ଭଗବାନ ସୂର୍ଯ୍ୟ ତାଙ୍କରି ଆଜ୍ଞାରେ ନିଜର ତିନି ଅଂଶଦ୍ୱାରା ଜଗତର ପାଳନ କରନ୍ତି, ନିଜ କିରଣଦ୍ୱାରା ବୃଷ୍ଟି ନିମନ୍ତେ ଆଦେଶ ଦିଅନ୍ତି ଏବଂ ନିଜେ ଆକାଶରେ ମେଘ ହୋଇ ବରଷନ୍ତି । ଚନ୍ଦ୍ରଭୂଷଣ ଶିବଙ୍କ ଶାସନକୁ ମାନି ଚନ୍ଦ୍ରମା ଓଷଧିମାନଙ୍କୁ ପୋଷଣ କରିବା ସହ ପ୍ରାଣୀମାନଙ୍କୁ ଆହ୍ଲାଦିତ କରନ୍ତି । ଏହାଛଡ଼ା ସେ ଦେବତାଙ୍କୁ ନିଜ ଅମୃତମୟୀ କଳା ପାନ କରାନ୍ତି । ଆଦିତ୍ୟ, ବସୁ, ରୁଦ୍ର, ଅଶ୍ୱିନୀକୁମାର, ମରୁଦ୍‌ଗଣ, ନଭଗ୍ରାହୀ ଋଷି, ସିଦ୍ଧ, ନାଗ, ମନୁଷ୍ୟ, ମୃଗ, ପଶୁ, ପକ୍ଷୀ, କୀଟ, ସ୍ଥାବର, ପ୍ରାଣୀ, ନଦୀ, ସମୁଦ୍ର, ପର୍ବତ, ବନ, ସରୋବର, ଅଙ୍ଗସହିତ ସମସ୍ତ ବେଦ, ଶାସ୍ତ୍ର, ମନ୍ତ୍ର, ବୈଦିକସ୍ତୋତ୍ର ଓ ଯଜ୍ଞାଦି, କାଳାଗ୍ନିଠାରୁ ଆରମ୍ଭ କରି ଶିବପର୍ଯ୍ୟନ୍ତ ଭୁବନ ଓ ସେଗୁଡ଼ିକର ଅଧିପତି, ଅସଂଖ୍ୟ ବ୍ରହ୍ମାଣ୍ଡ, ସେଗୁଡ଼ିକର ଆବରଣ, ବର୍ତ୍ତମାନ, ଭୂତ ଓ ଭବିଷ୍ୟ, ଦିଗବିଦିଗ, କାଳଚକ୍ରର କଳାଦି ଭିନ୍ନ ଭିନ୍ନ ଭେଦ ତଥା ଆଉ ଯାହାକିଛି ଏ ଜଗତରେ ଦେଖିବାକୁ ଓ ଶୁଣିବାକୁ ମିଳେ, ସେସମସ୍ତ ଭଗବାନ ଶିବଙ୍କ ଆଜ୍ଞା ବଳରେ

ହିଁ ତିଷ୍ଠି ରହିଛି । ତାଙ୍କ ଆଜ୍ଞା ବଳରେ ପୃଥିବୀ, ପର୍ବତ, ମେଘ, ସମୁଦ୍ର, ନକ୍ଷତ୍ରଗଣ, ଇନ୍ଦ୍ରାଦି ଦେବତା, ସ୍ଥାବର, ଜଙ୍ଗମ ଅଥବା ଜଡ଼ ଓ ଚେତନ ସମସ୍ତଙ୍କର ଅବସ୍ଥିତି ରହିଛି । (ଅଧ୍ୟାୟ ୨)

★★★

## ଶିବଙ୍କ ବ୍ରହ୍ମାଦି ପଞ୍ଚମୂର୍ତ୍ତି, ଈଶାନାଦି ବ୍ରହ୍ମମୂର୍ତ୍ତି ତଥା ପୃଥିବୀ ଓ ଶର୍ବ ଆଦି ଅଷ୍ଟମୂର୍ତ୍ତିଙ୍କର ପରିଚୟ ଏବଂ ତାଙ୍କର ସର୍ବବ୍ୟାପକତାର ବର୍ଣ୍ଣନା

ଉପମନ୍ୟୁ କହୁଛନ୍ତି—ଶ୍ରୀକୃଷ୍ଣ ! ମହେଶ୍ୱର ପରମାତ୍ମା ଶିବଙ୍କ ମୂର୍ତ୍ତିମାନଙ୍କ ଦ୍ୱାରା ଏ ସମଗ୍ର ଚରାଚର ଜଗତ କି ପ୍ରକାରେ ବ୍ୟାପ୍ତ, ତାହା ଶୁଣ । ବ୍ରହ୍ମା, ବିଷ୍ଣୁ, ରୁଦ୍ର, ମହେଶାନ ଓ ସଦାଶିବ—ଏମାନେ ହେଉଛନ୍ତି ସେହି ପରମେଶ୍ୱରଙ୍କର ପାଞ୍ଚ ମୂର୍ତ୍ତି, ଯାହାଙ୍କ ଠାରୁ ଏ ସମଗ୍ର ଜଗତ ବିସ୍ତାରପ୍ରାପ୍ତ ହୋଇଛି । ଏମାନଙ୍କ ବ୍ୟତୀତ ତାଙ୍କର ଆହୁରି ମଧ୍ୟ ପାଞ୍ଚଟି ଶରୀର ରହିଛି, ଯାହାକି ପଞ୍ଚବ୍ରହ୍ମ (ମନ୍ତ୍ର) ନାମରେ ପ୍ରସିଦ୍ଧ । ଏ ଜଗତରେ ଏପରି କୌଣସି ବସ୍ତୁ ନାହିଁ, ଯାହା ସେହି ମୂର୍ତ୍ତିମାନଙ୍କ ଦ୍ୱାରା ବ୍ୟାପ୍ତ ନ ହୋଇଥିବ । ଈଶାନ, ପୁରୁଷ, ଅଘୋର, ବାମଦେବ ଓ ସଦ୍ୟୋଜାତ—ଏମାନେ ମହାଦେବଙ୍କର ପାଞ୍ଚଟି ବ୍ରହ୍ମମୂର୍ତ୍ତି ନାମରେ ବିଖ୍ୟାତ । ଏମାନଙ୍କ ମଧ୍ୟରେ ଈଶାନ ନାମକ ପ୍ରଥମ ଓ ଶ୍ରେଷ୍ଠତମ ମୂର୍ତ୍ତି ହିଁ ପ୍ରକୃତିର ସାକ୍ଷାତ୍ ଭୋକ୍ତା କ୍ଷେତ୍ରଜ୍ଞଙ୍କୁ ବ୍ୟାପ୍ତ କରି ଅବସ୍ଥିତ ଅଟେ । ମୂର୍ତ୍ତିମାନ୍ ପ୍ରଭୁ ଶିବଙ୍କର ତତ୍ପୁରୁଷ ନାମକ ମୂର୍ତ୍ତି ଗୁଣମାନଙ୍କର ଆଶ୍ରୟରୂପୀ ଭୋଗ୍ୟ ଅବ୍ୟକ୍ତ (ପ୍ରକୃତି)ରେ ଅଧିଷ୍ଠିତ । ପିନାକପାଣି ମହେଶ୍ୱରଙ୍କ ପରମ ପୂଜିତ ଅଘୋର ନାମକ ମୂର୍ତ୍ତି ଧର୍ମାଦି ଅଷ୍ଟାଙ୍ଗଯୁକ୍ତ ବୁଦ୍ଧିତତ୍ତ୍ୱକୁ ନିଜର ଅଧିଷ୍ଠାନ କରି ରଖିଥାଏ । ବିଧାନକର୍ତ୍ତା ମହାଦେବଙ୍କ ବାମଦେବ ନାମକ ମୂର୍ତ୍ତିକୁ ଆଗମବେତ୍ତା ବିଦ୍ୱାନ୍ ଅହଂକାରର ଅଧିଷ୍ଠାତା ବୋଲି କହନ୍ତି । ବୁଦ୍ଧିମାନ୍ ଲୋକେ ଅମିତତେଜସ୍ୱୀ ଶିବଙ୍କର ସଦ୍ୟୋଜାତ ନାମକ ମୂର୍ତ୍ତିକୁ ମନର ଅଧିଷ୍ଠାତା କହିଥାନ୍ତି । ବିଦ୍ୱାନ୍ ଲୋକେ ଶିବଙ୍କର ଈଶାନ ନାମକ ମୂର୍ତ୍ତିକୁ ଶ୍ରବଣେନ୍ଦ୍ରିୟ, ବାଣୀ, ଶବ୍ଦ ଓ ବ୍ୟାପକ ଆକାଶତତ୍ତ୍ୱର ସ୍ୱାମୀ ମାନିଥାନ୍ତି । ପୁରାଣର ଅର୍ଥଜ୍ଞାନରେ ନିପୁଣ ବିଦ୍ୱାନମାନେ ମହେଶ୍ୱରଙ୍କ ତତ୍ପୁରୁଷ ନାମକ ବିଗ୍ରହକୁ ତ୍ୱକ୍, ହସ୍ତ, ସ୍ପର୍ଶ ଓ ବାୟୁତତ୍ତ୍ୱର ସ୍ୱାମୀ ମାନନ୍ତି । ମନୀଷୀ ମୁନିଗଣ ଶିବଙ୍କ ଅଘୋର ନାମକ ମୂର୍ତ୍ତିକୁ ନେତ୍ର, ପାଦ, ରୂପ ଓ ଅଗ୍ନିତତ୍ତ୍ୱର ଅଧିଷ୍ଠାତା ମଣନ୍ତି । ଶିବଙ୍କ ଚରଣରେ ଅନୁରାଗ ରଖୁଥିବା ମହାତ୍ମା ତାଙ୍କର ବାମଦେବ ନାମକ ମୂର୍ତ୍ତିକୁ ରସନା, ପାୟୁ, ରସ ଓ ଜଳତତ୍ତ୍ୱର ସ୍ୱାମୀ ବୁଝନ୍ତି ଏବଂ ସଦ୍ୟୋଜାତ ନାମକ ମୂର୍ତ୍ତିକୁ ଘ୍ରାଣେନ୍ଦ୍ରିୟ, ଉପସ୍ଥ, ଗନ୍ଧ ଓ ପୃଥିବୀତତ୍ତ୍ୱର ଅଧିଷ୍ଠାତା କହନ୍ତି । ମହାଦେବଙ୍କର ଏହି ପାଞ୍ଚଟି ମୂର୍ତ୍ତି କଲ୍ୟାଣର ଏକମାତ୍ର ହେତୁ । କଲ୍ୟାଣକାମୀ ବ୍ୟକ୍ତି ଏମାନଙ୍କୁ ସଦା ବନ୍ଦନା କରିବା ଉଚିତ । ସେହି ଦେବାଧିଦେବ ମହାଦେବଙ୍କ ଆଠଟି ମୂର୍ତ୍ତିଦ୍ୱାରା ଏ ଜଗତ ପରିବ୍ୟାପ୍ତ । ସୂତାରେ ନିର୍ମିତ ମାଳିଦାନାରେ ସୂତାର ଅସ୍ତିତ୍ୱ ପରି ଏ ସମଗ୍ର ବିଶ୍ୱ ତାଙ୍କ ଅଷ୍ଟମୂର୍ତ୍ତିରେ ଓତଃପ୍ରୋତ ରୂପେ ଅବସ୍ଥିତ । ଶର୍ବ, ଭବ, ରୁଦ୍ର, ଉଗ୍ର, ଭୀମ, ପଶୁପତି, ଈଶାନ ଓ ମହାଦେବ—ଏମାନେ ଶିବଙ୍କର ବିଖ୍ୟାତ ଅଷ୍ଟମୂର୍ତ୍ତି । ମହେଶ୍ୱରଙ୍କର ଏହି ଶର୍ବାଦି ଅଷ୍ଟମୂର୍ତ୍ତିଙ୍କ ଦ୍ୱାରା ଯଥାକ୍ରମେ ଭୂମି, ଜଳ, ଅଗ୍ନି, ବାୟୁ, କ୍ଷେତ୍ରଜ୍ଞ, ସୂର୍ଯ୍ୟ ଓ ଚନ୍ଦ୍ରମା ଅଧିଷ୍ଠିତ ଅଟନ୍ତି । ତାଙ୍କର ପୃଥିବୀମୟ ମୂର୍ତ୍ତି

ସଚରାଚର ଜଗତକୁ ଧାରଣ କରିଛି । ତାହାର ଅଧିଷ୍ଠାତାର ନାମ ଶର୍ବ । ସେଥିପାଇଁ ତାହା ଶିବଙ୍କ 'ଶାର୍ବୀ' ମୂର୍ତ୍ତି ବୋଲାଏ । ଏହା ଶାସ୍ତ୍ରର ନିର୍ଣ୍ଣୟ । ତାଙ୍କର ଜଳମୟ ମୂର୍ତ୍ତି ସମଗ୍ର ଜଗତ ପାଇଁ ଜୀବନଦାୟକ । ଜଳ ପରମାତ୍ମା ଭବଙ୍କ ମୂର୍ତ୍ତି, ସେଥିପାଇଁ ତାହାକୁ 'ଭାବୀ' ମୂର୍ତ୍ତି କହନ୍ତି । ଶିବଙ୍କର ତେଜୋମୟ ଶୁଭମୂର୍ତ୍ତି ବିଶ୍ୱର ବାହାର ଓ ଭିତରେ ବ୍ୟାପ୍ତ ଅଟେ । ସେହି ଘୋରରୂପୀ ମୂର୍ତ୍ତିର ନାମ ରୁଦ୍ର, ସେଥିପାଇଁ ତାହା 'ରୌଦ୍ରୀ' ବୋଲାଏ । ଭଗବାନ ଶିବ ବାୟୁରୂପରେ ସ୍ୱୟଂ ଗତିଶୀଳ ହୁଅନ୍ତି ଓ ଜଗତକୁ ଗତିଶୀଳ କରନ୍ତି । ତାଛଡ଼ା ସେ ଏହାର ଧାରଣ ପୋଷଣ ମଧ୍ୟ କରନ୍ତି । ବାୟୁ ଭଗବାନ ଉଗ୍ରଙ୍କର ମୂର୍ତ୍ତି, ତେଣୁ ସାଧୁପୁରୁଷ ତାହାକୁ 'ଔଗ୍ରୀ' କହନ୍ତି । ଭଗବାନ ଭୀମଙ୍କ ଆକାଶରୂପୀ ମୂର୍ତ୍ତି ସମସ୍ତଙ୍କୁ ଅବକାଶ ଦେଇଥାଏ; ତାହା ସର୍ବବ୍ୟାପକ ଓ ଭୂତ-ସମୁଦାୟଙ୍କର ଭେଦକ । ତାହା ଭୀମ ନାମରେ ପ୍ରସିଦ୍ଧ (ତେଣୁ ତାହାକୁ 'ଭୈମୀ' ମୂର୍ତ୍ତି ମଧ୍ୟ କହନ୍ତି) । ସମସ୍ତ ନେତ୍ରରେ ନିବାସକାରୀ ତଥା ସମସ୍ତ ଆତ୍ମାଙ୍କର ଅଧିଷ୍ଠାତା ଶିବମୂର୍ତ୍ତିକୁ 'ପଶୁପତି' ମୂର୍ତ୍ତି ବୁଝିବା ଉଚିତ । ତାହା ପଶୁମାନଙ୍କର ପାଶକୁ ଉଚ୍ଛେଦ କରିଥାଏ । ମହେଶ୍ୱରଙ୍କର 'ଈଶାନ' ନାମକ ମୂର୍ତ୍ତି ଦିବାକର (ସୂର୍ଯ୍ୟ) ନାମ ଧାରଣ କରି ସମଗ୍ର ଜଗତକୁ ଆଲୋକିତ କରି ଆକାଶରେ ବିଚରଣ କରିଥାଏ । ଯେଉଁ ଚନ୍ଦ୍ରଦେବଙ୍କ କିରଣରେ ଅମୃତ ପୂରି ରହିଛି ଏବଂ ଯେ ସମଗ୍ର ବିଶ୍ୱକୁ ସେହି ଅମୃତରେ ଆପ୍ୟାୟିତ କରନ୍ତି, ସେ ହେଉଛନ୍ତି ଶିବଙ୍କର ମହାଦେବ ନାମକ ବିଗ୍ରହ । ତେଣୁ ତାଙ୍କୁ 'ମହାଦେବ' ମୂର୍ତ୍ତି କହନ୍ତି । ଅଷ୍ଟମ ମୂର୍ତ୍ତି ହେଉଛି ପରମାତ୍ମା ଶିବଙ୍କର ସାକ୍ଷାତ୍ ସ୍ୱରୂପ ତଥା ଅନ୍ୟ ସବୁ ମୂର୍ତ୍ତିଙ୍କ ଠାରେ ବ୍ୟାପକ । ତେଣୁ ଏ ସମଗ୍ର ବିଶ୍ୱ ଶିବରୂପ ଅଟେ । ବୃକ୍ଷର ମୂଳରେ ପାଣି ଢାଳିଲେ ଯେପରି ତାହାର ଶାଖା-ପ୍ରଶାଖା ପୁଷ୍ଟ ହୁଅନ୍ତି, ଠିକ୍ ସେହିପରି ଶିବଙ୍କ ପୂଜାଦ୍ୱାରା ତାଙ୍କର ସ୍ୱରୂପଭୂତ ଏ ପ୍ରାଣୀଜଗତ ପୁଷ୍ଟ ହୋଇଥାଏ । ଏଣୁ ସମସ୍ତଙ୍କୁ ଅଭୟ ଦେବା, ସମସ୍ତଙ୍କ ଉପରେ ଅନୁଗ୍ରହ କରିବା, ସମସ୍ତଙ୍କର ଉପକାର କରିବା ଇତ୍ୟାଦି କର୍ମକୁ ଶିବଙ୍କର ଆରାଧନା ବୋଲି କୁହାଯାଇଛି । ଯେପରି ପୁତ୍ରପୌତ୍ରାଦି ପ୍ରସନ୍ନ ରହିଲେ ପିତା-ପିତାମହ ପ୍ରଭୃତିଙ୍କୁ ପ୍ରସନ୍ନତା ମିଳେ, ଠିକ୍ ସେହିପରି ସମଗ୍ର ଜଗତର ପ୍ରସନ୍ନତାରେ ଭଗବାନ ଶଙ୍କର ପ୍ରସନ୍ନ ହୁଅନ୍ତି । ଯଦି କୌଣସି ଦେହଧାରୀକୁ ଦଣ୍ଡ ଦିଆଯାଏ, ତେବେ ତଦ୍ୱାରା ନିଶ୍ଚିତରୂପେ ଅଷ୍ଟମୂର୍ତ୍ତିଧାରୀ ଶିବଙ୍କର ହିଁ ଅନିଷ୍ଟ କରାଯାଏ । ଅଷ୍ଟମୂର୍ତ୍ତିରେ ସମଗ୍ର ବିଶ୍ୱକୁ ବ୍ୟାପିଥିବା ଶିବଙ୍କୁ ତୁମେ ସର୍ବତୋଭାବେ ଭଜନ କର; କାରଣ ରୁଦ୍ରଦେବ ସମସ୍ତଙ୍କର ପରମ କାରଣ ।

(ଅଧ୍ୟାୟ ୩)

***

# ଶିବ ଓ ଶିବାଙ୍କ ବିଭୂତି ବର୍ଣ୍ଣନା

ଶ୍ରୀକୃଷ୍ଣ ପଚ୍ଚାରିଲେ—ଭଗବନ୍ ! ଅମିତ-ତେଜସ୍ୱୀ ଭଗବାନ ଶିବଙ୍କ ମୂର୍ତ୍ତି ଏ ଜଗତକୁ କିପରି ବ୍ୟାପି ରହିଛି, ତାହା ତ ମୁଁ ଶୁଣିଲି; ଏବେ ପରମେଶ୍ୱରୀ ଶିବା ଓ ପରମେଶ୍ୱର ଶିବଙ୍କର ଯଥାର୍ଥ ସ୍ୱରୂପ କ'ଣ, ତାହା ଜାଣିବାକୁ ମୋର ଇଚ୍ଛା ରହିଛି । ସେ ଦୁହେଁ ସ୍ତ୍ରୀ ଓ ପୁରୁଷ ରୂପରେ କିପରି ଏ ଜଗତକୁ ଧାରଣ କରିଛନ୍ତି ?

ଉପମନ୍ୟୁ କହିଲେ—ହେ ଦେବକୀନନ୍ଦନ ! ମୁଁ ଶିବା ଓ ଶିବଙ୍କର ଶ୍ରୀସମ୍ପନ୍ନ ଐଶ୍ୱର୍ଯ୍ୟ ଏବଂ ସେ ଦୁହିଙ୍କ ଯଥାର୍ଥ ସ୍ୱରୂପ କଥା ସଂକ୍ଷେପରେ

ବର୍ଣ୍ଣନା କରିବି । ବିସ୍ତାରପୂର୍ବକ ବର୍ଣ୍ଣନା ତ ସ୍ୱୟଂ ଶିବ ମଧ୍ୟ କରିପାରିବେ ନାହିଁ । ସାକ୍ଷାତ୍ ମହାଦେବୀ ପାର୍ବତୀ ଶକ୍ତି ଅଟନ୍ତି ଏବଂ ମହାଦେବ ଶକ୍ତିମାନ୍ ଅଟନ୍ତି । ସେ ଦୁହିଙ୍କର ବିଭୂତିର ଲେଶମାତ୍ର ଅଂଶ ହିଁ ସମ୍ପୂର୍ଣ୍ଣ ଚରାଚର ଜଗତରେ ସ୍ଥିତ । ଏଠି କେହି ଜଡ଼ ତ କେହି ଚେତନ । ଉଭୟ ମଧ୍ୟରେ ଶୁଦ୍ଧ-ଅଶୁଦ୍ଧ ଓ ପର-ଅପର ଭେଦ ରହିଛି । ଯେଉଁ ଚିନ୍ମଣ୍ଡଳ ଜଡ଼ମଣ୍ଡଳ ସହ ସଂଯୁକ୍ତ ହୋଇ ସଂସାରରେ ବିଚରଣ କରୁଛି, ତାହା ଅଶୁଦ୍ଧ ଓ ଅପର ସଂଜ୍ଞକ । ତହିଁରୁ ଭିନ୍ନ ଯାହା ଅଛି, ତାହା ଶୁଦ୍ଧ ଓ ପର ଏବଂ ତାହା ଜଡ଼ର ବନ୍ଧନରୁ ମୁକ୍ତ । ଅପର ଓ ପର ଚିତ୍-ଅଚିତ୍‌ସ୍ୱରୂପ ଅଟେ, ଏଗୁଡ଼ିକ ଉପରେ ସ୍ୱଭାବତଃ ଶିବା ଓ ଶିବଙ୍କର ସ୍ୱାମିତ୍ୱ ରହିଛି । ଏ ବିଶ୍ୱ ଶିବା ଓ ଶିବଙ୍କ ବଶରେ ରହିଛି, ଶିବା ଓ ଶିବ ବିଶ୍ୱର ବଶରେ ନାହାନ୍ତି । ଏ ଜଗତ ତାଙ୍କରି ଶାସନରେ ଥିବାରୁ ସେ ଦୁହେଁ ଏହାର ଈଶ୍ୱର ବା ବିଶ୍ୱେଶ୍ୱର ବୋଲାନ୍ତି । ଯେପରି ଶିବ, ସେହିପରି ଶିବାଦେବୀ; ଏବଂ ଯେପରି ଶିବାଦେବୀ, ସେହିପରି ଶିବ । ଚନ୍ଦ୍ର ଓ ତାହାର କିରଣ ମଧ୍ୟରେ ଯେପରି ଅନ୍ତର ନାହିଁ, ଶିବ ଓ ଶିବାଙ୍କ ମଧ୍ୟରେ ସେହିପରି କିଛି ଅନ୍ତର ନାହିଁ । ଚନ୍ଦ୍ରକିରଣ ବିନା ଚନ୍ଦ୍ର ସୁଶୋଭିତ ନ ହେବା ପରି ଶକ୍ତିଙ୍କ ବିନା ଶିବ ବିଦ୍ୟମାନ ଥାଇ ମଧ୍ୟ ସୁଶୋଭିତ ହୁଅନ୍ତି ନାହିଁ । ଯେପରି ପ୍ରଭା ବିନା ସୂର୍ଯ୍ୟ ଏବଂ ସୂର୍ଯ୍ୟ ବିନା ପ୍ରଭା ରହନ୍ତି ନାହିଁ, ସେ ଦୁହେଁ ପରସ୍ପରର ଆଶ୍ରିତ, ଠିକ୍ ସେହିପରି ଶକ୍ତି ଓ ଶକ୍ତିମାନ୍‌ଙ୍କୁ ପରସ୍ପରର ଅପେକ୍ଷା ରହିଥାଏ । ଶିବଙ୍କ ବିନା ଶକ୍ତି ଓ ଶକ୍ତିଙ୍କ ବିନା ଶିବ ରହିପାରନ୍ତି ନାହିଁ ।* ଯେଉଁ ଆଦ୍ୟା ଅଦ୍ୱିତୀୟା ଚିନ୍ମୟୀ ପରାଶକ୍ତିଙ୍କ ଦ୍ୱାରା ଶିବ ସଦା ଦେହଧାରୀଙ୍କୁ ଭୋଗ ଓ ମୋକ୍ଷ ପ୍ରଦାନ କରିବାକୁ ସମର୍ଥ ହୋଇଥାନ୍ତି, ସେ ଶିବଙ୍କର ଆଶ୍ରିତା ଅଟନ୍ତି । ଜ୍ଞାନୀ ପୁରୁଷ ସେହି ଶକ୍ତିଙ୍କୁ ହିଁ ସର୍ବେଶ୍ୱର ପରମାତ୍ମା ଶିବଙ୍କର ଅନୁରୂପ ଅଲୌକିକ ଗୁଣଗୁଡ଼ିକ ହେତୁ ତାଙ୍କର ସହଧର୍ମିଣୀ କହିଥାନ୍ତି । ଏକମାତ୍ର ସେହି ଚିନ୍ମୟୀ ପରାଶକ୍ତି ହିଁ ସୃଷ୍ଟିଧର୍ମିଣୀ । ସେ ଶିବଙ୍କ ଇଚ୍ଛାରେ ବିଭାଗପୂର୍ବକ ନାନା ପ୍ରକାର ବିଶ୍ୱ ରଚନା କରେ । ସେହି ଶକ୍ତି ମୂଳପ୍ରକୃତି, ମାୟା ଓ ତ୍ରିଗୁଣା ଭେଦରେ ତିନି ପ୍ରକାରର । ସେହି ଶକ୍ତିରୂପିଣୀ ଶିବା ହିଁ ଏ ଜଗତକୁ ବିସ୍ତାର କରିଛନ୍ତି । ବ୍ୟବହାରଭେଦରେ ଶକ୍ତିର ମଧ୍ୟ ଶହ-ଶହ, ହଜାର-ହଜାର ଭେଦ ହୋଇଯାଏ ।

ଶିବଙ୍କ ଇଚ୍ଛାରେ ପରାଶକ୍ତି ଶିବତତ୍ତ୍ୱ ସହିତ ଏକାକାର ହୋଇଥାଏ । ପୁନଃ କଳ୍ପର ଆରମ୍ଭରେ ତିଳରୁ ତେଲ ବାହାରିବା ପରି ସେଥିରୁ ଆବିର୍ଭୂତ ହୋଇଥାଏ । ତା'ପରେ ଶକ୍ତିମାନ୍‌ଙ୍କ ଠାରୁ ପ୍ରକଟିତା ଶକ୍ତିରେ କ୍ରିୟାମୟୀ ଶକ୍ତି ପ୍ରକଟ ହୁଏ । ସେଥିରେ ବିକ୍ଷୋଭ ସୃଷ୍ଟି ହେବାରୁ ଆଦିକାଳରେ ପ୍ରଥମେ ନାଦ ପ୍ରକଟ ହେଲା । ନାଦରୁ ବିନ୍ଦୁ ଏବଂ ବିନ୍ଦୁରୁ ସଦାଶିବ ଦେବଙ୍କର ପ୍ରାକଟ୍ୟ ହେଲା । ସଦାଶିବଙ୍କ ଠାରୁ ମହେଶ୍ୱର ପ୍ରକଟ ହେଲେ ଏବଂ ମହେଶ୍ୱରଙ୍କ ଠାରୁ ଶୁଦ୍ଧ ବିଦ୍ୟା ପ୍ରକଟ ହେଲା, ଯାହା କି ବାଣୀର ଈଶ୍ୱରୀ । ଏହିରୂପେ ତ୍ରିଶୂଳଧାରୀ ମହେଶ୍ୱରଙ୍କ ଠାରୁ ବାଗୀଶ୍ୱରୀ ନାମକ ଶକ୍ତିର ଆବିର୍ଭାବ ହେଲା, ଯାହା ବର୍ଣ୍ଣ (ଅକ୍ଷର) ରୂପେ ବିସ୍ତାରପ୍ରାପ୍ତ ହୋଇଛି ଏବଂ ମାତୃକା

* ଚନ୍ଦ୍ରୋ ନ ଖଲୁ ଭାତ୍ୟେଷ ଯଥା ଚନ୍ଦ୍ରିକୟା ବିନା । ନ ଭାତି ବିଦ୍ୟମାନୋଽପି ତଥା ଶକ୍ତ୍ୟା ବିନା ଶିବଃ ॥
ପ୍ରଭୟା ହି ବିନା ଯଦ୍ୱଦ୍‌ଭାନୁରେଷ ନ ବିଦ୍ୟତେ । ପ୍ରଭା ଚ ଭାନୁନା ତେନ ସୁତରାଂ ତଦୁପାଶ୍ରୟା ॥
ଏବଂ ପରସ୍ପରାପେକ୍ଷା ଶକ୍ତିଶକ୍ତିମତୋଃ ସ୍ଥିତା । ନ ଶିବେନ ବିନା ଶକ୍ତିର୍ନ ଶକ୍ତ୍ୟା ଚ ବିନା ଶିବଃ ॥
(ଶି. ପୁ. ବା. ସଂ. ଉ. ଖ. ୪ । ୧୦-୧୨)

ବୋଲାଇଛି । ତା'ପରେ ଅନନ୍ତଙ୍କ ସମାବେଶରୁ ମାୟା କାଳ, ନିୟତି, କଳା ଓ ବିଦ୍ୟାକୁ ସୃଷ୍ଟି କଲା । କଳାରୁ ରାଗ ତଥା ପୁରୁଷ ହେଲେ । ତା'ପରେ ମାୟାରୁ ହିଁ ତ୍ରିଗୁଣାତ୍ମକ ଅବ୍ୟକ୍ତ (ପ୍ରକୃତି) ହେଲା । ତ୍ରିଗୁଣାତ୍ମକ ଅବ୍ୟକ୍ତରୁ ସତ୍ତ୍ୱ, ରଜ ଓ ତମ ନାମକ ତିନିଗୁଣ ପୃଥକ୍ ପୃଥକ୍ ଭାବେ ପ୍ରକଟ ହେଲେ । ଏଗୁଡ଼ିକ ସମଗ୍ର ଜଗତରେ ପରିପୂର୍ଣ୍ଣ । ଗୁଣମାନଙ୍କରେ କ୍ଷୋଭ ସୃଷ୍ଟି ହେବାରୁ ସେଥିରୁ ଗୁଣେଶ ନାମକ ତ୍ରିମୂର୍ତ୍ତି ପ୍ରକଟ ହେଲେ । ତା'ଛଡ଼ା 'ମହତ୍' ଆଦି ତତ୍ତ୍ୱର କ୍ରମାନ୍ୱୟରେ ଆବିର୍ଭାବ ହେଲା । ସେଗୁଡ଼ିକରୁ ଶିବଙ୍କ ଆଜ୍ଞାନୁସାରେ ଅସଂଖ୍ୟ ଅଣ୍ଡ-ପିଣ୍ଡ ପ୍ରକଟ ହୋଇଥାଏ, ଯାହା ଅନନ୍ତ ପ୍ରଭୃତି ବିଦ୍ୟେଶ୍ୱର ଚକ୍ରବର୍ତ୍ତୀଙ୍କ ଦ୍ୱାରା ଅଧିଷ୍ଠିତ । ଦେହାନ୍ତରଭେଦରେ ଶକ୍ତିର ଅନେକ ଭେଦ ରହିଛି । ସ୍ଥୂଳ ଓ ସୂକ୍ଷ୍ମ ଭେଦରେ ସେଗୁଡ଼ିକର ଅନେକ ରୂପ ଅଛି ବୋଲି ବୁଝିବାକୁ ହେବ । ରୁଦ୍ରଙ୍କର ଶକ୍ତି ରୌଦ୍ରୀ, ବିଷ୍ଣୁଙ୍କର ବୈଷ୍ଣବୀ, ବ୍ରହ୍ମାଙ୍କର ବ୍ରହ୍ମାଣୀ ଏବଂ ଇନ୍ଦ୍ରଙ୍କର ଶକ୍ତି ଇନ୍ଦ୍ରାଣୀ ବୋଲାନ୍ତି । ଅଧିକ କେତେ ବା କହିବା, ଶରୀର ଅନ୍ତରାତ୍ମା ଦ୍ୱାରା ବ୍ୟାପ୍ତ ହୋଇଥିବା ପରି ଏ ବିଶ୍ୱ ଶକ୍ତ୍ୟାତ୍ମା ଦ୍ୱାରା ବ୍ୟାପ୍ତ ଅଟେ । ତେଣୁ ସମ୍ପୂର୍ଣ୍ଣ ସ୍ଥାବର-ଜଙ୍ଗମରୂପୀ ଜଗତ୍ ଶକ୍ତିମୟ ଅଟେ । ଏ ପରାଶକ୍ତି ପରମାତ୍ମା ଶିବଙ୍କର କଳା ବୋଲାଏ । ଏହିରୂପେ ପରାଶକ୍ତି ଈଶ୍ୱରଙ୍କ ଇଚ୍ଛାନୁସାରେ ସଚରାଚର ଜଗତକୁ ସୃଷ୍ଟି କରିଥାଏ ବୋଲି ବିଜ୍ଞଜନ ମତ ଦିଅନ୍ତି । ଶକ୍ତିମାନ୍ ଈଶ୍ୱର ହିଁ ତାଙ୍କର ଜ୍ଞାନଶକ୍ତି, କ୍ରିୟାଶକ୍ତି ଓ ଇଚ୍ଛାଶକ୍ତି ଦ୍ୱାରା ଅଖିଳ ବିଶ୍ୱକୁ ବ୍ୟାପ୍ତ କରିଅଛନ୍ତି । 'ଏହା ହେଉ ଓ ଏହା ନ ହେଉ'— ଏପ୍ରକାର କାର୍ଯ୍ୟନିୟନ୍ତ୍ରଣ କରିବାରେ ମହେଶ୍ୱରଙ୍କର ଇଚ୍ଛାଶକ୍ତି ନିତ୍ୟ । ତାଙ୍କର ଜ୍ଞାନଶକ୍ତି ବୁଦ୍ଧିରୂପ ହୋଇ କାର୍ଯ୍ୟ, କରଣ, କାରଣ ଓ ପ୍ରୟୋଜନକୁ ଯଥାର୍ଥରୂପେ ନିର୍ଣ୍ଣୟ କରିଥାଏ ଏବଂ ଶିବଙ୍କର କ୍ରିୟାଶକ୍ତି ସଂକଳ୍ପରୂପିଣୀ ହୋଇ ତାଙ୍କର ଇଚ୍ଛା ଓ ନିର୍ଣ୍ଣୟ ଅନୁସାରେ କାର୍ଯ୍ୟରୂପ ସମଗ୍ର ଜଗତକୁ କ୍ଷଣକ ମଧ୍ୟରେ କଳ୍ପନା କରିଦିଏ । ଏହିରୂପେ ତିନି ଶକ୍ତି ଦ୍ୱାରା ଜଗତର ଉତ୍ଥାନ ହୁଏ । ତାଙ୍କର ପ୍ରସବଧର୍ମିଣୀ ଶକ୍ତି ପରାଶକ୍ତି ଦ୍ୱାରା ପ୍ରେରିତ ହୋଇ ସମ୍ପୂର୍ଣ୍ଣ ଜଗତକୁ ସୃଷ୍ଟି କରେ । ଏହିରୂପେ ଶକ୍ତିର ସଂଯୋଗରୁ ଶିବ ଶକ୍ତିମାନ୍ ବୋଲାଇଥାନ୍ତି । ଶକ୍ତି ଓ ଶକ୍ତିମାନ୍‌ଙ୍କ ଠାରୁ ପ୍ରକଟ ହୋଇଥିବାରୁ ଏ ଜଗତ ଶାକ୍ତ ଓ ଶୈବ ବୋଲାଏ । ଯେପରି ମାତା-ପିତାଙ୍କ ବିନା ପୁତ୍ରର ଜନ୍ମ ସମ୍ଭବ ନୁହେଁ, ଠିକ୍ ସେହିପରି ଭବ ଓ ଭବାନୀଙ୍କ ବିନା ଏ ସଚରାଚର ଜଗତର ଉତ୍ପତ୍ତି ଅସମ୍ଭବ । ସ୍ତ୍ରୀ-ପୁରୁଷଠାରୁ ଉତ୍ପନ୍ନ ହୋଇଥିବା ଏ ଜଗତ ସ୍ତ୍ରୀ-ପୁରୁଷରୂପ ଅଟେ । ଏହା ସ୍ତ୍ରୀ ଓ ପୁରୁଷଙ୍କ ବିଭୂତି । ତେଣୁ ଏହା ସ୍ତ୍ରୀ ଓ ପୁରୁଷଙ୍କ ଠାରେ ଅଧିଷ୍ଠିତ । ଏଥିରେ ଶକ୍ତିମାନ୍ ପୁରୁଷରୂପ ଶିବ ହେଉଛନ୍ତି ପରମାତ୍ମା ଏବଂ ଶକ୍ତିରୂପିଣୀ ଶିବା ହେଉଛନ୍ତି ତାଙ୍କର ପରାଶକ୍ତି । ଶିବ ହିଁ ସଦାଶିବ ଏବଂ ଶିବା ମନୋନ୍ମନୀ ବୋଲି କଥିତ ହୁଅନ୍ତି । ଶିବଙ୍କୁ ମହେଶ୍ୱର ଓ ଶିବାଙ୍କୁ ମାୟା କୁହାଯାଏ । ପରମେଶ୍ୱର ଶିବ ପୁରୁଷ ଅଟନ୍ତି ଏବଂ ପରମେଶ୍ୱରୀ ଶିବା ପ୍ରକୃତି ଅଟନ୍ତି । ମହେଶ୍ୱର ଶିବ ହିଁ ରୁଦ୍ର ଓ ତାଙ୍କର ବଲ୍ଲଭା ଶିବାଦେବୀ ରୁଦ୍ରାଣୀ । ବିଶ୍ୱେଶ୍ୱର ଦେବ ହେଉଛନ୍ତି ବିଷ୍ଣୁ ଓ ତାଙ୍କର ପ୍ରିୟା ଶିବା ହେଉଛନ୍ତି ଲକ୍ଷ୍ମୀ । ଯେତେବେଳେ ସୃଷ୍ଟିକର୍ତ୍ତା ଶିବ ବ୍ରହ୍ମା ବୋଲାନ୍ତି, ସେତେବେଳେ ତାଙ୍କର ପ୍ରିୟା ବ୍ରହ୍ମାଣୀ ବୋଲାନ୍ତି । ଭଗବାନ ଶିବ ହେଉଛନ୍ତି ଭାସ୍କର ଏବଂ ଭଗବତୀ ଶିବା ହେଉଛନ୍ତି ପ୍ରଭା । କାମନାଶନ ଶିବ ହେଉଛନ୍ତି ମହେନ୍ଦ୍ର ଏବଂ ଗିରିରାଜନନ୍ଦିନୀ ଉମା ହେଉଛନ୍ତି ଶଚୀ । ମହାଦେବ ଅଗ୍ନି ଓ ତାଙ୍କ

ଅର୍ଦ୍ଧାଙ୍ଗିନୀ ଉମା ସ୍ୱାହା । ଭଗବାନ ତ୍ରିଲୋଚନ ଯମ ଏବଂ ଗିରିରାଜନନ୍ଦିନୀ ଯମପ୍ରିୟା । ଶିବ ନିର୍‌ଋତି ଏବଂ ପାର୍ବତୀ ନୈର୍‌ଋତୀ । ରୁଦ୍ର ବରୁଣ ଏବଂ ପାର୍ବତୀ ବାରୁଣୀ । ଚନ୍ଦ୍ରଶେଖର ଶିବ ବାୟୁ ଏବଂ ପାର୍ବତୀ ବାୟୁପ୍ରିୟା । ଶିବ ଯକ୍ଷ ଏବଂ ପାର୍ବତୀ ଋଦ୍ଧି । ଚନ୍ଦ୍ରାର୍ଦ୍ଧଶେଖର ଶିବ ଚନ୍ଦ୍ରମା ଏବଂ ରୁଦ୍ରବଲ୍ଲଭା ଉମା ରୋହିଣୀ । ପରମେଶ୍ୱର ଶିବ ଈଶାନ ଓ ପରମେଶ୍ୱରୀ ଶିବା ତାଙ୍କ ପତ୍ନୀ । ନାଗରାଜ ଅନନ୍ତଙ୍କୁ ବଳୟରୂପେ ଧାରଣ କରିଥିବା ଶଙ୍କର ଅନନ୍ତ ଏବଂ ତାଙ୍କର ବଲ୍ଲଭା ଶିବା ଅନନ୍ତା । କାଳଶତ୍ରୁ ଶିବ କାଳାଗ୍ନିରୁଦ୍ର ଓ କାଳୀ କାଳାନ୍ତକପ୍ରିୟା । ସାକ୍ଷାତ୍ ଶମ୍ଭୁ ସ୍ୱାୟମ୍ଭୁବ ମନୁ ଏବଂ ଶିବପ୍ରିୟା ଉମା ଶତରୂପା । ସାକ୍ଷାତ୍ ମହେଶ୍ୱର ଦକ୍ଷ ଏବଂ ପରମେଶ୍ୱରୀ ପାର୍ବତୀ ପ୍ରସୂତି । ଭବ ରୁଚି ଓ ଭବାନୀ ଆକୂତି । ମହାଦେବ ଭୃଗୁ ଓ ପାର୍ବତୀ ଖ୍ୟାତି । ରୁଦ୍ର ମରୀଚି ଏବଂ ଶିବବଲ୍ଲଭା ସମ୍ଭୂତି । ଗଙ୍ଗାଧର ଅଙ୍ଗିରା ଓ ସାକ୍ଷାତ୍ ଉମା ସ୍ମୃତି । ଚନ୍ଦ୍ରମୌଳି ପୁଲସ୍ତ୍ୟ ଓ ପାର୍ବତୀ ପ୍ରୀତି । ତ୍ରିପୁରାରୀ ଶିବ ପୁଲହ ଓ ପାର୍ବତୀ ତାଙ୍କର ପ୍ରିୟା । ଯଜ୍ଞବିଧ୍ୱଂସୀ ଶିବଙ୍କୁ କ୍ରତୁ କୁହାଯିବା ବେଳେ ତାଙ୍କ ପ୍ରିୟା ପାର୍ବତୀଙ୍କୁ ସଂନତି କୁହାଯାଏ । ଭଗବାନ ଶିବ ଅତ୍ରି ହେଲେ ଉମା ହେଉଛନ୍ତି ଅନସୂୟା । କାଳହନ୍ତା ଶିବ କଶ୍ୟପ ଓ ମହେଶ୍ୱରୀ ଉମା ଦେବମାତା ଅଦିତି । କାମନାଶନ ଶିବ ବଶିଷ୍ଠ ଓ ସାକ୍ଷାତ୍ ଦେବୀ ପାର୍ବତୀ ଅରୁନ୍ଧତୀ । ଭଗବାନ ଶିବ ହିଁ ସଂସାରର ସମସ୍ତ ପୁରୁଷ ଏବଂ ମହେଶ୍ୱରୀ ଶିବା ହିଁ ସମସ୍ତ ସ୍ତ୍ରୀ । ତେଣୁ ସମସ୍ତ ସ୍ତ୍ରୀ-ପୁରୁଷ ତାଙ୍କର ବିଭୂତି ଅଟନ୍ତି ।

ଭଗବାନ ଶିବ ବିଷୟୀ ହେଲେ ପରମେଶ୍ୱରୀ ଉମା ବିଷୟ ଅଟନ୍ତି । ଯାହା କିଛି ଶୁଣିବାକୁ ମିଳେ, ସବୁକିଛି ଉମାଙ୍କ ରୂପ ଏବଂ ଶ୍ରୋତା ହେଉଛନ୍ତି ସାକ୍ଷାତ୍ ଭଗବାନ ଶଙ୍କର । ଯାହା ବିଷୟରେ ପ୍ରଶ୍ନ ବା ଜିଜ୍ଞାସା ହୁଏ, ସେ ସମସ୍ତ ବସ୍ତୁସମୁଦାୟର ରୂପ ଧାରଣ କରନ୍ତି ଶଙ୍କରବଲ୍ଲଭା ଶିବା ଏବଂ ପଗ୍ରରିବା ଲୋକ ହୁଅନ୍ତି ଚନ୍ଦ୍ରଶେଖର ବିଶ୍ୱାତ୍ମା । ଭବବଲ୍ଲଭା ଉମା ହିଁ ଦ୍ରଷ୍ଟବ୍ୟ ବସ୍ତୁର ରୂପ ଧାରଣ କରନ୍ତି ଏବଂ ଦ୍ରଷ୍ଟାରୂପରେ ରହି ଶଶିଖଣ୍ଡମୌଳି ବିଶ୍ୱନାଥ ହିଁ ସବୁ କିଛି ଦେଖନ୍ତି । ସମସ୍ତ ରସ ମହାଦେବୀ ଏବଂ ସେହି ରସର ଆସ୍ୱାଦନକର୍ତ୍ତା ମଙ୍ଗଳମୟ ମହାଦେବ । ପ୍ରେମସମୂହ ହେଉଛନ୍ତି ପାର୍ବତୀ ଓ ପ୍ରିୟତମ ହେଉଛନ୍ତି ବିଷଭକ୍ଷଣକାରୀ ଶିବ । ଦେବୀ ମହେଶ୍ୱରୀ ସଦା ମନ୍ତବ୍ୟ ବସ୍ତୁର ରୂପ ଧାରଣ କରନ୍ତି ଓ ବିଶ୍ୱାତ୍ମା ମହେଶ୍ୱର ସେହି ବସ୍ତୁଗୁଡ଼ିକର ମନ୍ତା (ମନନକାରୀ) ହୋଇଥାନ୍ତି । ଭବବଲ୍ଲଭା ପାର୍ବତୀ ବୋଧବ୍ୟ (ଜ୍ଞେୟ) ବସ୍ତୁର ରୂପ ଧାରଣ କଲେ ବାଳେନ୍ଦୁଶେଖର ମହାଦେବ ହୋଇଥାନ୍ତି ସେହି ବସ୍ତୁଗୁଡ଼ିକର ଜ୍ଞାତା । ସାମର୍ଥ୍ୟଶାଳୀ ଭଗବାନ ପିନାକୀ ସମସ୍ତ ପ୍ରାଣୀଙ୍କର ପ୍ରାଣ ଅଟନ୍ତି ଏବଂ ସମସ୍ତଙ୍କ ପ୍ରାଣର ସ୍ଥିତି ଜଳରୂପିଣୀ ମାତା ପାର୍ବତୀ ଅଟନ୍ତି । ତ୍ରିପୁରାନ୍ତକ ପଶୁପତିଙ୍କ ପ୍ରାଣବଲ୍ଲଭା ପାର୍ବତୀ କ୍ଷେତ୍ର ହେଲେ କାଳର ମଧ୍ୟ କାଳ ଭଗବାନ ମହାକାଳ ହୁଅନ୍ତି କ୍ଷେତ୍ରଜ୍ଞ । ଶୂଳଧାରୀ ମହାଦେବ ଦିନ ଏବଂ ତାଙ୍କ ପ୍ରିୟା ରାତ୍ରି । କଲ୍ୟାଣକାରୀ ମହାଦେବ ଆକାଶ ଏବଂ ଶିବପ୍ରିୟା ପାର୍ବତୀ ପୃଥିବୀ । ଭଗବାନ ମହେଶ୍ୱର ସମୁଦ୍ର ହେଲେ ଗିରିରାଜକନ୍ୟା ଶିବା ତାହାର ତଟଭୂମି । ବୃଷଭଧ୍ୱଜ ବୃକ୍ଷ ହେଲେ ବିଶ୍ୱେଶ୍ୱରପ୍ରିୟା ଉମା ତା'ଉପରେ ମାଡ଼ୁଥିବା ଲତା । ସ୍ୱୟଂ ଭଗବାନ ତ୍ରିପୁରନାଶକ ମହାଦେବ ସମସ୍ତ ପୁଂଲିଙ୍ଗରୂପ ଧାରଣ କରନ୍ତି ଏବଂ ମହାଦେବମନୋରମା ଶିବା ସମସ୍ତ ସ୍ତ୍ରୀଲିଙ୍ଗରୂପ ଧାରଣ କରନ୍ତି । ଶିବବଲ୍ଲଭା ଶିବା ସମସ୍ତ ଶବ୍ଦଜାଳ ରୂପ ଧାରଣ କଲେ

ବାଳେନ୍ଦୁଶେଖର ଶିବ ସମସ୍ତ ଶବ୍ଦର ଅର୍ଥ ରୂପ ଧାରଣ କରନ୍ତି । ଯେଉଁସବୁ ପଦାର୍ଥର ଯାହାକିଛି ଶକ୍ତି ଅଛି ବୋଲି କୁହାଯାଏ, ବିଶ୍ୱେଶ୍ୱରୀ ଦେବୀ ଶିବା ହେଉଛନ୍ତି ସେ ସମସ୍ତ ଶକ୍ତି ଏବଂ ସାକ୍ଷାତ୍ ମହେଶ୍ୱର ହେଉଛନ୍ତି ସେହି ସମସ୍ତ ପଦାର୍ଥ । ଯେଉଁସବୁ ପଦାର୍ଥ ସବୁଠାରୁ ଶ୍ରେଷ୍ଠ, ପବିତ୍ର, ପୁଣ୍ୟମୟ ଓ ମଙ୍ଗଳରୂପ, ସେଗୁଡ଼ିକ ଶିବ ଓ ପାର୍ବତୀଙ୍କ ତେଜରୁ ବିସ୍ତାରିତ ହୋଇଛି ବୋଲି ମହାଭାଗ ମହାତ୍ମାମାନେ କହିଛନ୍ତି ।

ପ୍ରଜ୍ୱଳିତ ଦୀପର ଶିଖା ଯେପରି ସମ୍ପୂର୍ଣ୍ଣ ଘରକୁ ଆଲୋକିତ କରିଥାଏ, ସେହିପରି ଶିବ-ପାର୍ବତୀଙ୍କର ଏହି ତେଜ ବ୍ୟାପ୍ତ ହୋଇ ସମଗ୍ର ଜଗତକୁ ଆଲୋକିତ କରୁଛି । ଶିବା ଓ ଶିବ ସର୍ବସ୍ୱରୂପ ଅଟନ୍ତି ଓ ସମସ୍ତଙ୍କର କଲ୍ୟାଣକାରୀ ଅଟନ୍ତି । ତେଣୁ ସର୍ବଦା ଏ ଦୁହିଙ୍କୁ ପୂଜନ, ମନନ ଓ ଚିନ୍ତନ କରିବା ଉଚିତ ।

ଶ୍ରୀକୃଷ୍ଣ ! ଆଜି ମୁଁ ତୁମ ସମ୍ମୁଖରେ ମୋ ବୁଦ୍ଧି ଅନୁସାରେ ପରମେଶ୍ୱର ଶିବା ଓ ଶିବଙ୍କ ଯଥାର୍ଥ ରୂପର ପ୍ରତିପାଦନ କଲି, କିନ୍ତୁ ଇୟତ୍ତାପୂର୍ବକ ନୁହେଁ । ଅର୍ଥାତ୍ ଏକଥା ବୁଝିବା ଉଚିତ ନୁହେଁ ଯେ ସେ ଦୁହିଙ୍କର ଯଥାର୍ଥରୂପର ପୂର୍ଣ୍ଣତଃ ବର୍ଣ୍ଣନା ହୋଇଗଲା; କାରଣ ସେମାନଙ୍କ ସ୍ୱରୂପର ଇୟତ୍ତା ବା ସୀମା ନାହିଁ । ପରମେଶ୍ୱର ଶିବ ଓ ଶିବାଙ୍କର ଯେଉଁ ସ୍ୱରୂପ ସମସ୍ତ ମହାପୁରୁଷଙ୍କ ମନର ସୀମାରୁ ଅତୀତ, ତାହାକୁ ଯଥାର୍ଥରୂପେ କେମିତି ବା ବର୍ଣ୍ଣନା କରାଯାଇ ପାରିବ । ଯେଉଁମାନେ ନିଜ ଚିତ୍ତକୁ ମହେଶ୍ୱରଙ୍କ ଚରଣରେ ଅର୍ପଣ କରିଦେଇଛନ୍ତି ଏବଂ ଯେଉଁମାନେ ତାଙ୍କର ଅନନ୍ୟ ଭକ୍ତ, ସେଇମାନଙ୍କ ମନରେ ସେ ଆସିଥାନ୍ତି ଏବଂ ସେହିମାନଙ୍କ ବୁଦ୍ଧିରେ ସେ ଆରୂଢ଼ ହୋଇଥାନ୍ତି । ଅନ୍ୟମାନଙ୍କ ପାଇଁ ସେ ବୋଧଗମ୍ୟ ନୁହନ୍ତି । ମୁଁ ଏବେ ଯେଉଁ ବିଭୂତି ବର୍ଣ୍ଣନା କଲି, ତାହା ପ୍ରାକୃତ, ତେଣୁ ଅପରା ଅଟେ । ଏହାଠାରୁ ଭିନ୍ନ ଯେଉଁ ଅପ୍ରାକୃତ ଓ ପରା ବିଭୂତି ଅଛି, ତାହା ଗୁହ୍ୟ ଅଟେ । ତାଙ୍କର ଗୁହ୍ୟ ରହସ୍ୟକୁ ଜାଣୁଥିବା ବ୍ୟକ୍ତି ହିଁ ତାଙ୍କୁ ଜାଣନ୍ତି । ପରମେଶ୍ୱରଙ୍କର ଏହି ଅପ୍ରାକୃତ ପରା ବିଭୂତି ନିକଟରେ ତ ମନ ଓ ଇନ୍ଦ୍ରିୟ ସମେତ ବାଣୀ ବି ପହଞ୍ଚି ନ ପାରି ଲେଉଟି ଆସେ । ପରମେଶ୍ୱରଙ୍କର ସେହି ବିଭୂତି ହିଁ ଏଠାରେ ପରମ ଧାମ, ତାହା ହିଁ ଏଠାରେ ପରମଗତି ଓ ତାହା ହିଁ ଏଠାରେ ପରାକାଷ୍ଠା ଅଟେ* । ଶ୍ୱାସ ଓ ଇନ୍ଦ୍ରିୟଙ୍କ ଉପରେ ବିଜୟୀ ହୋଇଥିବା ଯୋଗୀଜନ ହିଁ ତାହାକୁ ପାଇବାକୁ ପ୍ରଯତ୍ନ କରନ୍ତି । ଶିବା ଓ ଶିବଙ୍କର ଏହି ବିଭୂତି ସଂସାରରୂପୀ ବିଷଧର ସର୍ପଦଂଶନରେ ମୃତ୍ୟୁର ସମୀପବର୍ତ୍ତୀ ହୋଇଥିବା ଜୀବ ନିମନ୍ତେ ସଂଜୀବନୀ ଓଷଧି ସଦୃଶ । ଏହାକୁ ଜାଣୁଥିବା ବ୍ୟକ୍ତି କଦାପି କାହାରିକୁ ଭୟ କରେ ନାହିଁ । ଯେ ଏହି ପରା ଓ ଅପରା ବିଭୂତିକୁ ଯଥାର୍ଥରୂପେ ଜାଣିପାରେ । ସେ ଅପରା ବିଭୂତିକୁ ଅତିକ୍ରମ କରି ପରା ବିଭୂତିକୁ ଅନୁଭବ କରିପାରେ ।

ଶ୍ରୀକୃଷ୍ଣ ! ପରମାତ୍ମା ଶିବ ଓ ପାର୍ବତୀଙ୍କର ଏହି ଯଥାର୍ଥ ସ୍ୱରୂପ କଥା ଗୋପନୀୟ ହୋଇଥିଲେ ସୁଦ୍ଧା ତୁମ ଆଗରେ ବର୍ଣ୍ଣନା କଲି; କାରଣ ତୁମେ ଶିବଭକ୍ତିର ଯୋଗ୍ୟ ପାତ୍ର । ଯେ ଶିଷ୍ୟ ହୋଇ ନ ଥିବ, ଶିବଙ୍କ ଉପାସକ ହୋଇ ନ ଥିବ ଓ ଭକ୍ତ ହୋଇ ନ ଥିବ, ସେପରି

* ଯତୋ ବାଚୋ ନିବର୍ତ୍ତନ୍ତେ ମନସା ଚେନ୍ଦ୍ରିୟୈଃ ସହ । ଅପ୍ରାକୃତା ପରା ଚୈଷା ବିଭୂତିଃ ପାରମେଶ୍ୱରୀ ॥
ସୈବେହ ପରମଂ ଧାମ ସୈବେହ ପରମା ଗତିଃ । ସୈବେହ ପରମା କାଷ୍ଠା ବିଭୂତିଃ ପରମେଷ୍ଠିନଃ ॥
(ଶି. ପୁ. ବା. ସଂ. ଉ. ଖ. ୪ । ୭୬-୭୭)

ଲୋକଙ୍କୁ କଦାପି ଶିବ-ପାର୍ବତୀଙ୍କର ଏହି ବିଭୂତିର ଉପଦେଶ ଦେବା ଉଚିତ ନୁହେଁ । ଏହା ବେଦର ଆଜ୍ଞା । ତେଣୁ ହେ କଲ୍ୟାଣମୟ ଶ୍ରୀକୃଷ୍ଣ ! ତୁମେ ଅନ୍ୟମାନଙ୍କୁ ଏହି ଉପଦେଶ ଦେବ ନାହିଁ । ଯେ ତୁମରି ପରି ଯୋଗ୍ୟ ହୋଇଥିବେ, ସେଇମାନଙ୍କୁ କହିବ; ନଚେତ୍ ମୌନ ରହିବ । ଯେ ଆଭ୍ୟନ୍ତରରେ ପବିତ୍ର, ଶିବଙ୍କର ଭକ୍ତ ଓ ବିଶ୍ୱାସୀ, ସେ ଯଦି ଏହା କୀର୍ତ୍ତନ କରେ, ତେବେ ମନୋବାଞ୍ଛିତ ଫଳ ଲାଭ କରିବ । ଯଦି ପୂର୍ବର କୌଣସି ପ୍ରବଳ ପ୍ରତିବନ୍ଧକ କର୍ମ ହେତୁ ପ୍ରଥମ ଥର ଫଳପ୍ରାପ୍ତିରେ ବାଧା ଉପୁଜେ, ତେବେ ମଧ୍ୟ ବାରମ୍ବାର ଏହି ସାଧନର ଅଭ୍ୟାସ କରିବା ଉଚିତ । ଏପରି କରୁଥିବା ବ୍ୟକ୍ତି ପାଇଁ ଏଠାରେ କିଛି ବି ଦୁର୍ଲଭ ନୁହେଁ । (ଅଧ୍ୟାୟ ୪)

***

## ପରମେଶ୍ୱର ଶିବଙ୍କ ଯଥାର୍ଥ ସ୍ୱରୂପ ଓ ତାଙ୍କ ଠାରେ ଶରଣ ଯାଉଥିବା ଜୀବଙ୍କ କଲ୍ୟାଣ ବିଷୟରେ କଥନ

ଉପମନ୍ୟୁ କହୁଛନ୍ତି—ହେ ଯଦୁନନ୍ଦନ ! ଏ ଚରାଚର ଜଗତ ଦେବାଧିଦେବ ମହାଦେବଙ୍କ ସ୍ୱରୂପ; ମାତ୍ର ପଶୁ (ଜୀବ) କଠିନ ପାଶରେ ବନ୍ଧା ହୋଇଥିବାରୁ ଜଗତକୁ ଏହି ରୂପରେ ଅନୁଭବ କରିପାରେ ନାହିଁ । ମହର୍ଷିଗଣ ମଧ୍ୟ ପରମେଶ୍ୱର ଶିବଙ୍କ ନିର୍ବିକଳ୍ପ ପରମ ଭାବକୁ ନ ଜାଣିଥିବାରୁ ସେହି ଏକମାତ୍ର ତତ୍ତ୍ୱକୁ ଅନେକ ରୂପରେ ବର୍ଣ୍ଣନା କରନ୍ତି । କେହି ଉକ୍ତ ପରମତତ୍ତ୍ୱକୁ ଅପର-ବ୍ରହ୍ମରୂପ କହନ୍ତି ତ ଆଉ କେହି ପରବ୍ରହ୍ମରୂପ କହନ୍ତି, ପୁଣି ଅନ୍ୟ କେହି ଆଦିଅନ୍ତରହିତ ଉତ୍କୃଷ୍ଟ ମହାଦେବସ୍ୱରୂପ କହନ୍ତି । ପଞ୍ଚମହାଭୂତ, ଇନ୍ଦ୍ରିୟ, ଅନ୍ତଃକରଣ ଓ ପ୍ରାକୃତ ବିଷୟରୂପ ଜଡ଼ ତତ୍ତ୍ୱକୁ ଅପର ବ୍ରହ୍ମ କୁହାଯାଇଛି । ଏହାଠାରୁ ଭିନ୍ନ ସମଷ୍ଟି ଚୈତନ୍ୟର ନାମ ପରବ୍ରହ୍ମ । ବୃହତ୍ ଓ ବ୍ୟାପକ ହେବା କାରଣରୁ ତାହାକୁ ବ୍ରହ୍ମ କହନ୍ତି । ପ୍ରଭୋ ! ବେଦ ଓ ବ୍ରହ୍ମାଙ୍କର ଅଧିପତି ପରବ୍ରହ୍ମ ପରମାତ୍ମା ଶିବଙ୍କର ହିଁ ସେହି ପର ଓ ଅପର ରୂପ । କେତେକ ଲୋକ ମହେଶ୍ୱର ଶିବଙ୍କୁ ବିଦ୍ୟା-ଅବିଦ୍ୟାସ୍ୱରୂପ କହନ୍ତି । ଏଥିରେ ବିଦ୍ୟା ଚେତନା ଓ ଅବିଦ୍ୟା ଅଚେତନା । ଏହି ବିଦ୍ୟା-ଅବିଦ୍ୟାରୂପ ବିଶ୍ୱ ଯେ ଜଗଦ୍‌ଗୁରୁ ଶିବଙ୍କର ହିଁ ରୂପ, ଏଥିରେ ସନ୍ଦେହ ନାହିଁ; କାରଣ ବିଶ୍ୱ ତାଙ୍କରି ବଶରେ ଅଛି । ଭ୍ରାନ୍ତି, ବିଦ୍ୟା ଓ ପରାବିଦ୍ୟା ବା ପରମ ତତ୍ତ୍ୱ ହେଉଛି ଶିବଙ୍କର ତିନୋଟି ଉତ୍କୃଷ୍ଟ ରୂପ । ପଦାର୍ଥମାନଙ୍କ ବିଷୟରେ ଯେଉଁ ଅନେକ ପ୍ରକାର ଅସତ୍ୟ ଧାରଣାମାନ ରହିଛି, ତାହାକୁ ଭ୍ରାନ୍ତି କହନ୍ତି । ଯଥାର୍ଥ ଧାରଣା ବା ଜ୍ଞାନର ନାମ ବିଦ୍ୟା ଏବଂ ବିକଳ୍ପରହିତ ପରମ ଜ୍ଞାନକୁ ପରମ ତତ୍ତ୍ୱ କହନ୍ତି । ପରମ ତତ୍ତ୍ୱ ହିଁ ସତ୍, ଏହାର ବିପରୀତକୁ ଅସତ୍ କୁହାଯାଏ । ସତ୍ ଓ ଅସତ୍ ଉଭୟର ପତି ହେବା କାରଣରୁ ଶିବ ସଦସତ୍‌ପତି ବୋଲାନ୍ତି । ଅନ୍ୟ ମହର୍ଷିଗଣ କ୍ଷର, ଅକ୍ଷର ଓ ଉଭୟରୁ ଅତୀତ ପରମ ତତ୍ତ୍ୱର ପ୍ରତିପାଦନ କରିଛନ୍ତି । ସମସ୍ତ ଭୂତ କ୍ଷର ଓ ଜୀବାତ୍ମା ଅକ୍ଷର ବୋଲାଏ । ଉଭୟେ ପରମେଶ୍ୱରଙ୍କ ରୂପ; କାରଣ ତାଙ୍କରି ଅଧୀନ । ଶାନ୍ତ ଶିବ ସେ ଦୁହିଙ୍କ ଠାରୁ ଅତୀତ ହୋଇଥିବାରୁ କ୍ଷରାକ୍ଷରପର ବୋଲାଇଥାନ୍ତି । କେତେକ ମହର୍ଷି ପରମ କାରଣରୂପ ଶିବଙ୍କୁ ସମଷ୍ଟି-ବ୍ୟଷ୍ଟିସ୍ୱରୂପ ତଥା ସମଷ୍ଟି ଓ ବ୍ୟଷ୍ଟିର କାରଣ କହନ୍ତି । ଅବ୍ୟକ୍ତକୁ ସମଷ୍ଟି ଓ ବ୍ୟକ୍ତକୁ ବ୍ୟଷ୍ଟି କହନ୍ତି । ଉଭୟେ ପରମେଶ୍ୱର ଶିବଙ୍କ

ରୂପ; କାରଣ ତାଙ୍କରି ଇଚ୍ଛାରେ ପ୍ରବୃତ୍ତ ହୁଅନ୍ତି। ଉଭୟଙ୍କ କାରଣରୂପରେ ସ୍ଥିତ ଭଗବାନ ଶିବ ପରମ କାରଣ ଅଟନ୍ତି। ତେଣୁ କାରଣାର୍ଥବେତ୍ତା ଜ୍ଞାନୀ ପୁରୁଷ ତାଙ୍କୁ ସମଷ୍ଟି-ବ୍ୟଷ୍ଟିର କାରଣ କହିଥାନ୍ତି। କେତେକ ଲୋକ ପରମେଶ୍ୱରଙ୍କୁ ଜାତି-ବ୍ୟକ୍ତି-ସ୍ୱରୂପ କହିଥାନ୍ତି। ଯାହାର ଶରୀରରେ ବି ଅନୁବର୍ତ୍ତନ ହୁଏ, ତାହାକୁ ଜାତି କହନ୍ତି। ଶରୀରର ଜାତି ଉପରେ ଆଶ୍ରିତ ହୋଇଥିବା ଯେଉଁ ବ୍ୟାବୃତ୍ତି ଦ୍ୱାରା ଜାତିଭାବନାର ଆଚ୍ଛାଦନ ଓ ବୈୟକ୍ତିକ ଭାବନାର ପ୍ରକାଶନ ହୁଏ, ତାହାର ନାମ ବ୍ୟକ୍ତି। ଜାତି ଓ ବ୍ୟକ୍ତି ଉଭୟେ ଭଗବାନ ଶିବଙ୍କ ଆଜ୍ଞାରେ ପରିପାଳିତ ହୁଅନ୍ତି, ତେଣୁ ମହାଦେବଙ୍କୁ ଜାତି-ବ୍ୟକ୍ତି-ସ୍ୱରୂପ କୁହାଯାଇଛି।

କେତେକ ଲୋକ ଶିବଙ୍କୁ ପ୍ରଧାନ, ପୁରୁଷ, ବ୍ୟକ୍ତ ଓ କାଳରୂପ କହନ୍ତି। ପ୍ରକୃତିର ନାମ ପ୍ରଧାନ। ଜୀବାତ୍ମାକୁ ହିଁ କ୍ଷେତ୍ରଜ୍ଞ କହନ୍ତି। ତେଇଶି ତତ୍ତ୍ୱକୁ ମନୀଷୀମାନେ ବ୍ୟକ୍ତ କହିଛନ୍ତି ଏବଂ କାର୍ଯ୍ୟ-ପ୍ରପଞ୍ଚର ପରିଣାମର ଯେ ଏକମାତ୍ର କାରଣ ଅଟେ, ତାହାର ନାମ କାଳ। ଭଗବାନ ଶିବ ଏ ସମସ୍ତଙ୍କର ଈଶ୍ୱର, ପାଳକ, ଧାରକ, ପ୍ରବର୍ତ୍ତକ, ନିବର୍ତ୍ତକ ଏବଂ ଆବିର୍ଭାବ ଓ ତିରୋଭାବର ହେତୁ ଅଟନ୍ତି। ସେ ସ୍ୱୟଂପ୍ରକାଶ ଓ ଅଜନ୍ମା। ସେଥିପାଇଁ ମହେଶ୍ୱରଙ୍କୁ ପ୍ରଧାନ, ପୁରୁଷ, ବ୍ୟକ୍ତ ଓ କାଳସ୍ୱରୂପ କୁହାଯାଇଛି। ତାଙ୍କୁ କାରଣ, ନେତା, ଅଧିପତି ଓ ଧାତା କୁହାଯାଇଛି। କେତେକ ଲୋକ ମହେଶ୍ୱରଙ୍କୁ ବିରାଟ୍ ଓ ହିରଣ୍ୟଗର୍ଭ କହିଥାନ୍ତି। ଯେ ସମଗ୍ର ଭୁବନର ସୃଷ୍ଟିର ହେତୁ, ତାଙ୍କରି ନାମ ହିରଣ୍ୟଗର୍ଭ ଏବଂ ବିଶ୍ୱରୂପକୁ ବିରାଟ୍ କହନ୍ତି। ଜ୍ଞାନୀ ପୁରୁଷ ଭଗବାନ ଶିବଙ୍କୁ ଅନ୍ତର୍ଯାମୀ ଓ ପରମ ପୁରୁଷ କହନ୍ତି। ଅନ୍ୟଲୋକେ ତାଙ୍କୁ ପ୍ରାଜ୍ଞ, ତୈଜସ ଓ ବିଶ୍ୱରୂପ କହିଥାନ୍ତି। କେତେକ ତାଙ୍କୁ ତୁରୀୟରୂପ ମାନନ୍ତି ତ କେତେକ ସୌମ୍ୟରୂପ ମାନନ୍ତି। କିଛି ବିଦ୍ୱାନ୍ କହନ୍ତି ଯେ ସେ ହିଁ ମାତା, ମାନ, ମେୟ ଓ ମତିରୂପ ଅଟନ୍ତି। ଅନ୍ୟ କେତେକ ତାଙ୍କୁ କର୍ତ୍ତା, କ୍ରିୟା, କାର୍ଯ୍ୟ, କରଣ ଓ କାରଣ ବୋଲି କହିଥାନ୍ତି। କେତେକ ଜ୍ଞାନୀ ତାଙ୍କୁ ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତିରୂପ କହିଥାନ୍ତି। କେତେକ ତାଙ୍କୁ ତୁରୀୟରୂପ ଓ ଅନ୍ୟ କେତେକ ତୁରୀୟାତୀତ କହିଥାନ୍ତି। କେତେକ ନିର୍ଗୁଣ ତ କେତେକ ସଗୁଣ କହନ୍ତି। କେହି ତାଙ୍କୁ ସଂସାରୀ କହେ ତ କେହି ଅସଂସାରୀ କହେ। କେହି ସ୍ୱତନ୍ତ୍ର ମାନେ ତ କେହି ଅସ୍ୱତନ୍ତ୍ର ମାନେ। କେହି ତାଙ୍କୁ ଘୋର ମଣେ ତ କେହି ସୌମ୍ୟ ମଣେ। କେହି ଅନୁରାଗୀ କହେ ତ କେହି ବୀତରାଗୀ କହେ। କେହି ନିଷ୍କ୍ରିୟ ତ କେହି ସକ୍ରିୟ କହେ। କେହି ତାଙ୍କୁ ନିରିନ୍ଦ୍ରିୟ ତ ଆଉ କେହି ସେନ୍ଦ୍ରିୟ କହେ। ଜଣେ ତାଙ୍କୁ ଧ୍ରୁବ କହିଲାବେଳେ ଆଉ ଜଣେ ଅଧ୍ରୁବ କହେ। କେହି ସାକାର ତ କେହି ନିରାକାର ମଣେ। କାହା ମତରେ ସେ ଅଦୃଶ୍ୟ ଓ କାହା ମତରେ ଦୃଶ୍ୟ। କେହି ତାଙ୍କୁ ବର୍ଣ୍ଣନୀୟ ତ ଆଉ କେହି ଅବର୍ଣ୍ଣନୀୟ ମଣେ। କାହା ମତରେ ସେ ଶବ୍ଦରୂପ ତ କାହା ମତରେ ଶବ୍ଦାତୀତ। କେହି ତାଙ୍କୁ ଚିନ୍ତନର ବିଷୟ ମାନେ ତ ଆଉ କେହି ଅଚିନ୍ତ୍ୟ ମାନେ। କେହି ତାଙ୍କୁ ଜ୍ଞାନସ୍ୱରୂପ କହେ ତ କେହି ବିଜ୍ଞାନର ସଂଜ୍ଞା ଦିଏ। କାହା ମତରେ ସେ ଜ୍ଞେୟ ଓ କାହା ମତରେ ଅଜ୍ଞେୟ। ତାଙ୍କୁ କେହି ପର କହେ, ତ କେହି ଅପର କହେ। ଏହିପରି ତାଙ୍କ ବିଷୟରେ ନାନା ପ୍ରକାରର କଳ୍ପନା କରାଯାଇଥାଏ। ଏଭଳି ନାନା ପ୍ରତୀତି କାରଣରୁ ମୁନିଜନ ପରମେଶ୍ୱରଙ୍କ ଯଥାର୍ଥ ସ୍ୱରୂପକୁ ନିର୍ଣ୍ଣୟ କରିପାରନ୍ତି ନାହିଁ। ଯେଉଁମାନେ ସର୍ବଭାବରେ ସେହି ପରମେଶ୍ୱରଙ୍କ ଶରଣକୁ ଚାଲିଯାଆନ୍ତି, ସେଇମାନେ ହିଁ ପରମ କାରଣ

ଶିବଙ୍କୁ ଅନାୟାସରେ ଜାଣିପାରନ୍ତି । ପଶୁ (ଜୀବ) ଯେପର୍ଯ୍ୟନ୍ତ ସର୍ବେଶ୍ୱର, ସର୍ବଜ୍ଞ, ପୁରାଣପୁରୁଷ ଓ ତ୍ରିଲୋକର ଶାସକ ଶିବଙ୍କୁ ନ ଦେଖିଛି, ସେପର୍ଯ୍ୟନ୍ତ ସେ ପାଶବଦ୍ଧ ହୋଇ ଏ ଦୁଃଖମୟ ସଂସାର-ଆବର୍ତ୍ତରେ ପଡ଼ି ଗାଡ଼ିଚକର ନେମି ପରି ଘୁରୁଥାଏ । ଯେତେବେଳେ ଦ୍ରଷ୍ଟା ଜୀବାତ୍ମା ସବୁରି ଶାସକ, ବ୍ରହ୍ମାଙ୍କର ମଧ୍ୟ ଆଦିକାରଣ, ସମଗ୍ର ଜଗତର ସ୍ରଷ୍ଟା, ସୁବର୍ଣ୍ଣୋପମ, ଦିବ୍ୟଜ୍ୟୋତିଃସ୍ୱରୂପ ପରମ ପୁରୁଷର ସାକ୍ଷାତ୍କାର ଲାଭ କରେ, ସେତେବେଳେ ପୁଣ୍ୟ ଓ ପାପରୁ ନିର୍ମଳ ହୋଇଥିବା ସେହି ଜ୍ଞାନୀ ମହାତ୍ମା ସର୍ବୋତ୍ତମ ସମତାକୁ ଲାଭ କରେ । (ଅଧ୍ୟାୟ ୫)

***

## ଶିବଙ୍କର ଶୁଦ୍ଧ, ବୁଦ୍ଧ, ମୁକ୍ତ, ସର୍ବମୟ, ସର୍ବବ୍ୟାପକ ଓ ସର୍ବାତୀତ ସ୍ୱରୂପ ଏବଂ ତାଙ୍କ ପ୍ରଣବରୂପତାର ପ୍ରତିପାଦନ

ଉପମନ୍ୟୁ କହୁଛନ୍ତି–ଯଦୁନନ୍ଦନ ! ଶିବଙ୍କୁ ଆଣବ ମଳର, କର୍ମର କିଂବା ମାୟାର ବନ୍ଧନ ପ୍ରାପ୍ତ ହୋଇ ନ ଥାଏ । ପ୍ରାକୃତ, ବୌଦ୍ଧ, ଅହଂକାର, ମନ, ଚିତ୍ତ, ଇନ୍ଦ୍ରିୟ, ତନ୍ମାତ୍ର ଓ ପଞ୍ଚଭୂତସମ୍ବନ୍ଧୀୟ କୌଣସି ବନ୍ଧନ ଛୁଇଁ ପାରି ନାହିଁ । ଅମିତତେଜସ୍ୱୀ ଶମ୍ଭୁଙ୍କୁ କାଳ, କଳା, ବିଦ୍ୟା, ନିୟତି ଓ ରାଗ-ଦ୍ୱେଷରୂପୀ ବନ୍ଧନ ବି ବାନ୍ଧି ପାରି ନାହିଁ । ତାଙ୍କଠାରେ ନା କର୍ମ ଅଛି, ନା କର୍ମର ପରିପାକ ଅଛି, ନା ତାହାର ଫଳସ୍ୱରୂପ ସୁଖ-ଦୁଃଖ ଅଛି, ନା ତାଙ୍କର କର୍ମବାସନା ଓ କର୍ମସଂସ୍କାର ସହ ସମ୍ବନ୍ଧ ଅଛି । ଭୂତ, ଭବିଷ୍ୟ ଓ ବର୍ତ୍ତମାନର ଭୋଗ ତଥା ତାହାର ସଂସ୍କାର ସହ ବି ତାଙ୍କର ସମ୍ପର୍କ ନାହିଁ । ତାଙ୍କର କେହି କାରଣ ନାହିଁ କି କର୍ତ୍ତା ନାହିଁ । ତାଙ୍କର ଆଦି ନାହିଁ କି ଅନ୍ତ ନାହିଁ କି ମଧ୍ୟ ନାହିଁ; କର୍ମ ନାହିଁ କି କରଣ ନାହିଁ । କର୍ତ୍ତବ୍ୟ ନାହିଁ କି ଅକର୍ତ୍ତବ୍ୟ ନାହିଁ; ତାଙ୍କର କେହି ବନ୍ଧୁ, ଅବନ୍ଧୁ, ନିୟନ୍ତା, ପ୍ରେରକ, ପତି, ଗୁରୁ ଓ ତ୍ରାତା ନାହିଁ । ତାଙ୍କଠାରୁ କେହି ଅଧିକ ବା କ'ଣ ହେବ, ତାଙ୍କ ସମାନ ମଧ୍ୟ କେହି ନାହିଁ । ତାଙ୍କର ଜନ୍ମ ନାହିଁ କି ମରଣ ନାହିଁ । ତାଙ୍କ ପାଇଁ କୌଣସି ବସ୍ତୁ ବାଞ୍ଛିତ ନୁହେଁ କି ଅବାଞ୍ଛିତ ନୁହେଁ । ତାଙ୍କ ପାଇଁ କିଛି ବିଧି କି ନିଷେଧ ନାହିଁ, ବନ୍ଧନ କି ମୁକ୍ତି ନାହିଁ । ଅକଲ୍ୟାଣକାରୀ ଦୋଷ ତାଙ୍କ ଠାରେ କଦାପି ରହି ନ ଥାନ୍ତି, ମାତ୍ର ସମସ୍ତ କଲ୍ୟାଣକାରୀ ଗୁଣ ତାଙ୍କଠାରେ ସଦା ରହିଥାନ୍ତି; କାରଣ ଶିବ ହେଉଛନ୍ତି ସାକ୍ଷାତ୍ ପରମାତ୍ମା । ସେ ତାଙ୍କ ଶକ୍ତି ଦ୍ୱାରା ସମଗ୍ର ଜଗତରେ ବ୍ୟାପ୍ତ ହୋଇ ରହି ସୁଦ୍ଧା ନିଜ ସ୍ୱଭାବରୁ ଚ୍ୟୁତ ହୋଇ ନ ଥାନ୍ତି । ସେଥିପାଇଁ ତାଙ୍କୁ ସ୍ଥାଣୁ କୁହାଯାଏ । ଏ ସଚରାଚର ସମଗ୍ର ଜଗତ ଶିବଙ୍କ ଠାରେ ହିଁ ଅଧିଷ୍ଠିତ, ତେଣୁ ଭଗବାନ ଶିବଙ୍କୁ ସର୍ବରୂପ ସ୍ୱୀକାର କରାଯାଇଛି । ଯେ ଏହି କଥାକୁ ଜାଣେ, ସେ ମୋହରେ ପଡ଼େ ନାହିଁ ।

ରୁଦ୍ର ସର୍ବରୂପ ଅଟନ୍ତି । ତାଙ୍କୁ ନମସ୍କାର । ସେ ସତ୍‌ସ୍ୱରୂପ, ପରମ ମହାନ୍ ପୁରୁଷ, ହିରଣ୍ୟବାହୁ, ହିରଣ୍ୟପତି, ଈଶ୍ୱର, ଅମ୍ବିକାପତି, ଈଶାନ, ପିନାକପାଣି ଓ ବୃଷବାହନ । ଏକମାତ୍ର ରୁଦ୍ର ହିଁ ପରବ୍ରହ୍ମ ପରମାତ୍ମା । ସେ ହିଁ କୃଷ୍ଣ-ପିଙ୍ଗଳ ପୁରୁଷ । ସେ ହୃଦୟସ୍ଥ କମଳର ମଧ୍ୟଭାଗରେ କେଶାଗ୍ର ପରି ସୂକ୍ଷ୍ମରୂପରେ ଚିନ୍ତନୀୟ । ତାଙ୍କ କେଶ ସ୍ୱର୍ଣ୍ଣାଭ ଓ ନେତ୍ର ପଦ୍ମସଦୃଶ ସୁନ୍ଦର । ଅଙ୍ଗକାନ୍ତି ଅରୁଣାଭ ଓ ତାମ୍ରବର୍ଣ୍ଣ ତୁଲ୍ୟ । ସେହି ସୁବର୍ଣ୍ଣମୟ ନୀଳକଣ୍ଠ

ଦେବ ସଦା ବିଚରଣଶୀଳ ଅଟନ୍ତି । ତାଙ୍କୁ ସୌମ୍ୟ, ଘୋର, ମିଶ୍ର, ଅକ୍ଷର, ଅମୃତ ଓ ଅବ୍ୟୟ କୁହାଯାଇଛି । ସେ ପୁରୁଷବିଶେଷ ପରମେଶ୍ୱର ଭଗବାନ ଶିବ କାଳର ମଧ୍ୟ କାଳ । ଚେତନ ଓ ଅଚେତନରୁ ଅତୀତ । ସେ ପ୍ରପଞ୍ଚରୁ ମଧ୍ୟ ପରାତ୍ପର । ଶିବଙ୍କ ଠାରେ ଯେପରି ଜ୍ଞାନ ଓ ଐଶ୍ୱର୍ଯ୍ୟ ରହିଛି, ତାହାଠାରୁ ବଳି ଜ୍ଞାନ ଓ ଐଶ୍ୱର୍ଯ୍ୟ ଅନ୍ୟ କେଉଁଠି ନାହିଁ । ମନୀଷୀଗଣ ଶିବଙ୍କୁ ଜଗତରେ ସର୍ବାଧିକ ଐଶ୍ୱର୍ଯ୍ୟଶାଳୀ ପଦରେ ପ୍ରତିଷ୍ଠିତ ବୋଲି କହିଛନ୍ତି । ପ୍ରତ୍ୟେକ କଳ୍ପରେ ଉତ୍ପନ୍ନ ହୋଇ ଏକ ସୀମିତ କାଳପର୍ଯ୍ୟନ୍ତ ରହୁଥିବା ବ୍ରହ୍ମାମାନଙ୍କୁ ଆଦିକାଳରେ ଭଗବାନ ଶିବ ହିଁ ବିସ୍ତାରପୂର୍ବକ ଶାସ୍ତ୍ରର ଉପଦେଶ ପ୍ରଦାନ କରିଥାନ୍ତି । ଏକ ନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ରହୁଥିବା ଗୁରୁଙ୍କର ମଧ୍ୟ ସେ ଗୁରୁ ଅଟନ୍ତି । ସେ ସର୍ବେଶ୍ୱର ଓ ସଦା ସମସ୍ତଙ୍କର ଗୁରୁ । କାଳର ସୀମା ତାଙ୍କୁ ଛୁଇଁ ପାରେ ନାହିଁ । ତାଙ୍କର ଶୁଦ୍ଧ ସ୍ୱାଭାବିକ ଶକ୍ତି ସର୍ବୋତ୍କୃଷ୍ଟ । ତାଙ୍କୁ ଅନୁପମ ଜ୍ଞାନ ଓ ନିତ୍ୟ ଅକ୍ଷୟ ଶରୀର ପ୍ରାପ୍ତ ଅଟେ । ତାଙ୍କ ଐଶ୍ୱର୍ଯ୍ୟର କେଉଁଠି ବି ତୁଳନା ନାହିଁ । ତାଙ୍କର ସୁଖ ଅକ୍ଷୟ ଓ ବଳ ଅନନ୍ତ । ତାଙ୍କଠାରେ ଅସୀମ ତେଜ, ପ୍ରଭାବ, ପରାକ୍ରମ, କ୍ଷମା ଓ କରୁଣା ପୂରି ରହିଛି । ସେ ନିତ୍ୟ ପରିପୂର୍ଣ୍ଣ । ତାଙ୍କର ସୃଷ୍ଟି ଇତ୍ୟାଦିରେ କୌଣସି ପ୍ରୟୋଜନ ନାହିଁ । ଅନ୍ୟମାନଙ୍କ ପ୍ରତି ପରମ ଅନୁଗ୍ରହ ହିଁ ତାଙ୍କର ସମସ୍ତ କର୍ମର ଫଳ । ପ୍ରଣବ ସେହି ପରମାତ୍ମା ଶିବଙ୍କ ବାଚକ । ଶିବ, ରୁଦ୍ର ଆଦି ନାମ ମଧ୍ୟରେ ପ୍ରଣବ ହିଁ ସର୍ବୋତ୍କୃଷ୍ଟରୂପେ ମାନ୍ୟ । ପ୍ରଣବବାଚ୍ୟ ଶମ୍ଭୁଙ୍କ ଚିନ୍ତନ ଓ ଜପ ଦ୍ୱାରା ଯେଉଁ ସିଦ୍ଧି ପ୍ରାପ୍ତ ହୁଏ, ତାହା ଯେ ପରା ସିଦ୍ଧି, ଏଥିରେ ସଂଶୟ ନାହିଁ ।

ଏଣୁ ଶାସ୍ତ୍ର-ପାରଙ୍ଗମ ମନସ୍ୱୀ ବିଦ୍ୱାନ୍‌ଗଣ ବାଚ୍ୟ ଓ ବାଚକର ଏକତା ସ୍ୱୀକାର କରି ମହାଦେବଙ୍କୁ ପ୍ରଣବରୂପ କହନ୍ତି । ଅକାର, ଉକାର, ମକାର ଓ ନାଦକୁ ମାଣ୍ଡୂକ୍ୟ ଉପନିଷଦରେ ପ୍ରଣବର ଚାରିମାତ୍ରା କୁହାଯାଇଛି । ଅକାରକୁ ଋଗ୍‌ବେଦ କହନ୍ତି । ଉକାର ଯଜୁର୍ବେଦ ରୂପ ଅଟେ । ମକାର ସାମବେଦ ଓ ନାଦ ଅଥର୍ବବେଦ ଅଟେ । ଅକାର ହେଉଛି ମହାବୀଜ; ତାହା ରଜୋଗୁଣ ଓ ସୃଷ୍ଟିକର୍ତ୍ତା ବ୍ରହ୍ମା ଅଟେ । ଉକାର ହେଉଛି ପ୍ରକୃତିରୂପା ଯୋନି; ତାହା ସତ୍ତ୍ୱଗୁଣ ତଥା ପାଳନକର୍ତ୍ତା ଶ୍ରୀହରି ଅଟେ । ମକାର ହେଉଛି ସଂହାରକର୍ତ୍ତା ରୁଦ୍ର । ନାଦ ହେଉଛି ପରମ ପୁରୁଷ ପରମେଶ୍ୱର; ତାହା ନିର୍ଗୁଣ ଓ ନିଷ୍କ୍ରିୟ ଶିବ ଅଟେ । ଏହିରୂପେ ପ୍ରଣବ ତାହାର ତିନିମାତ୍ରା ଦ୍ୱାରା ହିଁ ତିନି ରୂପରେ ଏ ଜଗତକୁ ପ୍ରତିପାଦନ କରି ନିଜ ଅର୍ଦ୍ଧମାତ୍ରା (ନାଦ) ଦ୍ୱାରା ଶିବସ୍ୱରୂପର ବୋଧ କରାଏ । ଯେଉଁ ପରମ ପୁରୁଷ ପରମେଶ୍ୱର ଶିବଙ୍କ ଠାରୁ ଶ୍ରେଷ୍ଠ ଆଉ କିଛି ନାହିଁ, ଯାହାଙ୍କ ଠାରୁ ବଳି ଅଧିକ ସୂକ୍ଷ୍ମ କି ମହାନ୍ କିଛି ନାହିଁ ଏବଂ ଯେ ଏକାକୀ ବୃକ୍ଷ ପରି ନିଶ୍ଚଳଭାବରେ ଆଲୋକମୟ ଆକାଶରେ ସ୍ଥିତ ଅଟନ୍ତି, ତାଙ୍କ ଦ୍ୱାରା ଏ ସମଗ୍ର ଜଗତ ପରିପୂର୍ଣ୍ଣ ଅଟେ ।*

(ଅଧ୍ୟାୟ ୬)



* ଯସ୍ମାତ୍ ପରଂ ନାପରମସ୍ତି କିଂଚିଦ୍ ଯସ୍ମାନ୍ନାଣୀୟୋ ନ ଜ୍ୟାୟୋଽସ୍ତି କଶ୍ଚିତ୍ ।
ବୃକ୍ଷ ଇବ ସ୍ତବ୍ଧୋ ଦିବି ତିଷ୍ଠତ୍ୟେକସ୍ତେନେଦଂ ପୂର୍ଣ୍ଣଂ ପୁରୁଷେଣ ସର୍ବମ୍ ॥
(ଶି. ପୁ. ବା. ସଂ. ଉ. ଖ. ୬ । ୩୧)

ଏ ମନ୍ତ୍ର ଅକ୍ଷରଶଃ ଶ୍ୱେତାଶ୍ୱତରୋପନିଷଦ୍ (୩ । ୯) ରେ ମଧ୍ୟ ଅଛି ।

# ଋଷିଗଣଙ୍କ ଦ୍ୱାରା ପରମେଶ୍ୱରଙ୍କ ଶକ୍ତିର ସାକ୍ଷାତ୍କାର, ଶିବଙ୍କ ପ୍ରସାଦରୁ ପ୍ରାଣୀଙ୍କର ମୁକ୍ତି, ଶିବଙ୍କ ସେବା, ଭକ୍ତି ତଥା ପାଞ୍ଚ ପ୍ରକାର ଶିବଧର୍ମର ବର୍ଣ୍ଣନା

ଉପମନ୍ୟୁ କହୁଛନ୍ତି—ପରମେଶ୍ୱର ଶିବଙ୍କ ସ୍ୱାଭାବିକ ଶକ୍ତି ବିଦ୍ୟା ଅଟେ, ଯାହା ସବୁଠାରୁ ବିଲକ୍ଷଣ। ସୂର୍ଯ୍ୟଙ୍କ ପ୍ରଭା ଯେପରି ଏକ ହୋଇଥିଲେ ସୁଦ୍ଧା ଅନେକ ରୂପରେ ପ୍ରକାଶିତ ହୁଏ, ଠିକ୍ ସେହିପରି ଉକ୍ତ ବିଦ୍ୟା ଏକ ହୋଇ ମଧ୍ୟ ଅନେକ ରୂପରେ ପ୍ରକାଶିତ ହୁଏ। ଅଗ୍ନିରୁ ଅନେକ ସ୍ଫୁଲିଙ୍ଗ ଉତ୍ପନ୍ନ ହେବା ପରି ସେହି ବିଦ୍ୟାଶକ୍ତିରୁ ଇଚ୍ଛା, ଜ୍ଞାନ, କ୍ରିୟା ଓ ମାୟା ଇତ୍ୟାଦି ଅନେକ ଶକ୍ତି ଉତ୍ପନ୍ନ ହୋଇଛି। ତାହାରି ଠାରୁ ସଦାଶିବ ଓ ଈଶ୍ୱର ଆଦି ତଥା ବିଦ୍ୟା ଓ ବିଦ୍ୟେଶ୍ୱର ପ୍ରଭୃତି ପୁରୁଷ ମଧ୍ୟ ପ୍ରକଟ ହୋଇଛନ୍ତି। ପରାତ୍ପର ପ୍ରକୃତି ମଧ୍ୟ ସେଇଥିରୁ ଉତ୍ପନ୍ନ ହୋଇଛି। ମହତତ୍ତ୍ୱରୁ ଆରମ୍ଭ କରି ବିଶେଷ ପର୍ଯ୍ୟନ୍ତ ସମସ୍ତ ବିକାର ତଥା ବ୍ରହ୍ମା ପ୍ରଭୃତି ମୂର୍ତ୍ତି ମଧ୍ୟ ସେଇଥିରୁ ଉତ୍ପନ୍ନ। ଏତଦ୍‌ବ୍ୟତୀତ ଅନ୍ୟ ସବୁ ବସ୍ତୁ ମଧ୍ୟ ନିଶ୍ଚିତରୂପେ ସେହି ଶକ୍ତିର କାର୍ଯ୍ୟ। ଶକ୍ତି ସର୍ବବ୍ୟାପିନୀ, ସୂକ୍ଷ୍ମା ଓ ଜ୍ଞାନାନନ୍ଦରୂପିଣୀ। ସେଇ ଶକ୍ତି ହେତୁ ଶୀତାଂଶୁଭୂଷଣ ଶିବ ଶକ୍ତିମାନ୍ ବୋଲାଇଛନ୍ତି। ଶକ୍ତିମାନ୍ ଶିବ ବେଦ୍ୟ ଏବଂ ଶକ୍ତିରୂପିଣୀ ଶିବା ବିଦ୍ୟା ଅଟନ୍ତି। ଶକ୍ତିରୂପିଣୀ ଶିବା ହିଁ ପ୍ରଜ୍ଞା, ଶ୍ରୁତି, ସ୍ମୃତି, ଧୃତି, ସ୍ଥିତି, ନିଷ୍ଠା, ଜ୍ଞାନଶକ୍ତି, ଇଚ୍ଛାଶକ୍ତି, କର୍ମଶକ୍ତି, ଆଜ୍ଞାଶକ୍ତି, ପରବ୍ରହ୍ମ, ପରା ଓ ଅପରା ନାମକ ଦ୍ୱିବିଧ ବିଦ୍ୟା, ଶୁଦ୍ଧ ବିଦ୍ୟା ଓ ଶୁଦ୍ଧ କଳା ଅଟନ୍ତି; କାରଣ ସବୁକିଛି ଶକ୍ତିର ହିଁ କାର୍ଯ୍ୟ। ମାୟା, ପ୍ରକୃତି, ଜୀବ, ବିକାର, ବିକୃତି, ଅସତ୍ ଓ ସତ୍ ଆଦି ଯାହା କିଛି ଉପଲବ୍ଧ ହୁଏ, ସେସବୁ ଶକ୍ତିଦ୍ୱାରା ହିଁ ବ୍ୟାପ୍ତ।

ଶକ୍ତିରୂପିଣୀ ଶିବାଦେବୀ ମାୟାଦ୍ୱାରା ସମସ୍ତ ଚରାଚର ବ୍ରହ୍ମାଣ୍ଡକୁ ଅନାୟାସରେ ମୋହରେ ପକାଇଦିଅନ୍ତି ଏବଂ ଲୀଳାପୂର୍ବକ ତାହାକୁ ମୋହ-ବନ୍ଧନରୁ ମୁକ୍ତ ମଧ୍ୟ କରିଦିଅନ୍ତି। ଶକ୍ତି ସତାଇଶ ପ୍ରକାରର। ଏହି ସତାଇଶ ପ୍ରକାର ଶକ୍ତି ସହିତ ସର୍ବେଶ୍ୱର ଶିବ ସମଗ୍ର ବିଶ୍ୱରେ ବ୍ୟାପି ରହିଛନ୍ତି। ତାଙ୍କରି ଚରଣରେ ମୁକ୍ତି ବିରାଜମାନ କରେ।

ପୂର୍ବକାଳର କଥା। ସଂସାରବନ୍ଧନରୁ ମୁକ୍ତି ଇଚ୍ଛା କରୁଥିବା କେତେକ ବ୍ରହ୍ମବାଦୀ ମୁନିଙ୍କ ମନରେ କେତେକ ସଂଶୟ ଉତ୍ପନ୍ନ ହେଲା। ସେମାନେ ପରସ୍ପର ମଧ୍ୟରେ ବିଚାର କଲେ ଯେ—ଏ ଜଗତର କାରଣ କ'ଣ? ଆମେ କାହାଠାରୁ ଉତ୍ପନ୍ନ ହୋଇଛେ ଏବଂ କାହା ପାଇଁ ଜୀବନ ଧାରଣ କରିଛେ? ଆମର ପ୍ରତିଷ୍ଠା କେଉଁଠି? ଆମର ଅଧିଷ୍ଠାତା କିଏ? ଆମେ କାହା ସହଯୋଗରେ ସଦା ସୁଖରେ ବା ଦୁଃଖରେ ରହୁଛୁ? କିଏ ଏ ବିଶ୍ୱର ଅଲଙ୍ଘ୍ୟ ବ୍ୟବସ୍ଥା କରିଛି? ଯଦି କାଳ, ସ୍ୱଭାବ, ନିୟତି (ନିଶ୍ଚିତ ଫଳଦାୟକ କର୍ମ) ଓ ଯଦୃଚ୍ଛା (ଆକସ୍ମିକ ଘଟଣା)କୁ ଏଥିର କାରଣ ବୋଲି କହିବା, ତାହା ଯୁକ୍ତିସଂଗତ ହେବ ନାହିଁ। ପଞ୍ଚମହାଭୂତ ଓ ଜୀବାତ୍ମା ମଧ୍ୟ କାରଣ ନୁହେଁ। ଏ ସମସ୍ତଙ୍କର ସଂଯୋଗ କିଂବା ଅନ୍ୟ କିଛି ବି କାରଣ ନୁହେଁ; କାହିଁକିନା କାଳ ଇତ୍ୟାଦି ଅଚେତନ। ଜୀବାତ୍ମା ଚେତନ ହୋଇଥିଲେ ସୁଦ୍ଧା ସେ ସୁଖଦୁଃଖରେ ଅଭିଭୂତ ତଥା ଅସମର୍ଥ ହୋଇଥିବାରୁ ଏ ଜଗତର କାରଣ ହୋଇ ନ ପାରେ। ଏଣୁ କିଏ ଏହାର କାରଣ, ଏହା ଉପରେ ବିଚାର କରିବା ଉଚିତ। ଏହିପରି

ପରସ୍ପର ମଧ୍ୟରେ ବିଗ୍ରହ-ବିମର୍ଶ କରିବା ସତ୍ତ୍ୱେ ଯୁକ୍ତି ଦ୍ୱାରା କୌଣସି ନିର୍ଣ୍ଣୟରେ ଉପନୀତ ହୋଇ ନ ପାରିବାରୁ ସେମାନେ ଧ୍ୟାନଯୋଗରେ ସ୍ଥିତ ହୋଇ ପରମେଶ୍ୱରଙ୍କ ସ୍ୱରୂପଭୂତା ଅଚିନ୍ତ୍ୟ ଶକ୍ତିର ସାକ୍ଷାତ୍କାର କଲେ, ଯେ କି ନିଜର ହିଁ ସତ୍ତ୍ୱାଦି ଗୁଣ ଦ୍ୱାରା ଆଚ୍ଛାଦିତ ଓ ତ୍ରିଗୁଣରୁ ଅତୀତ। ପରମେଶ୍ୱରଙ୍କର ସେହି ସାକ୍ଷାତ୍ ଶକ୍ତି ସମସ୍ତ ପାଶ ଛେଦନକାରୀ। ତାହାରି ଦ୍ୱାରା ବନ୍ଧନ ଛିନ୍ନ ହେବା ପରେ ଜୀବମାନେ ଆପଣା ଦିବ୍ୟଦୃଷ୍ଟିରେ ସର୍ବକାରଣକାରଣ, ଅପ୍ରମେୟ ଏବଂ କାଳଠାରୁ ଆରମ୍ଭ କରି ଜୀବାତ୍ମା ପର୍ଯ୍ୟନ୍ତ ପୂର୍ବୋକ୍ତ ସମସ୍ତ କାରଣ ଉପରେ ତଥା ସମଗ୍ର ବିଶ୍ୱ ଉପରେ ନିଜର ଏହି ଶକ୍ତି ଦ୍ୱାରା ଶାସନ କରୁଥିବା ପରମ ଶକ୍ତିମାନ୍ ମହାଦେବଙ୍କ ଦର୍ଶନ ପାଇପାରନ୍ତି। ତା'ପରେ ସେହି ମୁନିମାନେ ପରମେଶ୍ୱରଙ୍କ ପ୍ରସାଦଯୋଗ, ପରମଯୋଗ ଓ ସୁଦୃଢ଼ ଭକ୍ତିଯୋଗ ଦ୍ୱାରା ଦିବ୍ୟ ଗତି ପ୍ରାପ୍ତ ହେଲେ।

ଶ୍ରୀକୃଷ୍ଣ ! ଯେଉଁମାନେ ନିଜ ହୃଦୟ ମଧ୍ୟରେ ଶକ୍ତିସହିତ ଭଗବାନ ଶିବଙ୍କୁ ଦର୍ଶନ କରନ୍ତି, କେବଳ ସେଇମାନଙ୍କୁ ସନାତନ ଶାନ୍ତି ପ୍ରାପ୍ତ ହୁଏ, ଅନ୍ୟମାନଙ୍କୁ ନୁହେଁ। ଏହା ଶ୍ରୁତିର କଥନ। ଶକ୍ତିମାନ୍‌ଙ୍କର ଶକ୍ତିଠାରୁ କଦାପି ବିୟୋଗ ହୁଏ ନାହିଁ। ତେଣୁ ଉଭୟ ଶକ୍ତି ଓ ଶକ୍ତିମାନ୍‌ଙ୍କର ତାଦାତ୍ମ୍ୟରୁ ପରମାନନ୍ଦ ପ୍ରାପ୍ତି ହୁଏ। ମୁକ୍ତିପ୍ରାପ୍ତିରେ ନିଶ୍ଚିତରୂପେ ଜ୍ଞାନ ଓ କର୍ମର କୌଣସି କ୍ରମ ବିବକ୍ଷିତ ନୁହେଁ; ଶିବ ଓ ଶକ୍ତିଙ୍କ କୃପା ହୋଇଗଲେ ମୁକ୍ତି କରତଳଗତ ହୋଇଯାଏ। ଦେବତା, ଦାନବ, ପଶୁ, ପକ୍ଷୀ ଓ କୀଟ-ପତଙ୍ଗ ମଧ୍ୟ ତାଙ୍କ କୃପାରୁ ମୁକ୍ତ ହୋଇଯାଆନ୍ତି। ଗର୍ଭସ୍ଥ ଭ୍ରୂଣ, ଜନ୍ମିତ ଶିଶୁ, ବାଳକ, ତରୁଣ, ବୃଦ୍ଧ, ମୁମୂର୍ଷୁ, ସ୍ୱର୍ଗବାସୀ, ନାରକୀ, ପତିତ, ଧର୍ମାତ୍ମା, ପଣ୍ଡିତ ଅଥବା ମୂର୍ଖ ମଧ୍ୟ ସାମ୍ବସଦାଶିବଙ୍କ କୃପା ବଳରେ ତତ୍କାଳ ମୁକ୍ତ ହୋଇଯିବାରେ କିଛି ବି ସନ୍ଦେହ ନାହିଁ। ପରମେଶ୍ୱର ନିଜ ସ୍ୱାଭାବିକ କରୁଣା ବଳରେ ଅଯୋଗ୍ୟ ଭକ୍ତଙ୍କର ମଧ୍ୟ ବିବିଧ ମଳକୁ ଦୂର କରି ତା'ଉପରେ କୃପା କରନ୍ତି। ଭଗବାନଙ୍କ କୃପାରୁ ହିଁ ଭକ୍ତି ହୁଏ ଓ ଭକ୍ତିବଳରେ ହିଁ ତାଙ୍କ କୃପା ପ୍ରାପ୍ତ ହୁଏ। ଅବସ୍ଥାଭେଦର ବିଗ୍ରହ କରି ବିଦ୍ୱାନ୍ ଲୋକେ ଏ ବିଷୟରେ ମୋହିତ ହୁଅନ୍ତି ନାହିଁ। କୃପା-ପ୍ରସାଦପୂର୍ବକ ହେଉଥିବା ଭକ୍ତି ଭୋଗ ଓ ମୋକ୍ଷ ଉଭୟ ପ୍ରଦାନ କରିଥାଏ। ତାହାକୁ ମନୁଷ୍ୟ ଗୋଟିଏ ଜନ୍ମରେ ଲାଭ କରି ପାରେ ନାହିଁ। ଅନେକ ଜନ୍ମର ଶ୍ରୌତ-ସ୍ମାର୍ତ୍ତ କର୍ମର ଅନୁଷ୍ଠାନ କରି ସିଦ୍ଧ ହୋଇଥିବା ଅନାସକ୍ତ ଓ ଜ୍ଞାନସମ୍ପନ୍ନ ବ୍ୟକ୍ତି ଉପରେ ମହେଶ୍ୱର ପ୍ରସନ୍ନ ହୋଇ କୃପା କରିଥାନ୍ତି। ଦେବେଶ୍ୱର ପ୍ରସନ୍ନ ହୋଇଗଲେ ପଶୁ (ଜୀବ) ଠାରେ ବୁଦ୍ଧିପୂର୍ବକ ସାମାନ୍ୟ ଭକ୍ତି ଉଦିତ ହୋଇଥାଏ। ସେତେବେଳେ ସେ ଅନୁଭବ କରେ ଯେ ଭଗବାନ ଶିବ ତାହାର ସ୍ୱାମୀ। ତା'ପରେ ତପସ୍ୟାପୂର୍ବକ ସେ ନାନା ପ୍ରକାର ଶୈବଧର୍ମ ପାଳନରେ ସଂଲଗ୍ନ ହୁଏ। ଧର୍ମପାଳନରେ ବାରମ୍ବାର ସଂଲଗ୍ନ ହେବାରୁ ତା' ହୃଦୟରେ ପରାଭକ୍ତି ଉଦିତ ହୁଏ। ସେହି ପରାଭକ୍ତିରେ ପରମେଶ୍ୱରଙ୍କ ପରମ ପ୍ରସାଦ ଉପଲବ୍ଧ ହୁଏ। ପ୍ରସାଦରୁ ସମସ୍ତ ପାପରୁ ମୁକ୍ତି ମିଳେ ଏବଂ ତା'ପରେ ପରମାନନ୍ଦ ପ୍ରାପ୍ତି ହୁଏ। ଯେଉଁ ମନୁଷ୍ୟର ଭଗବାନ ଶିବଙ୍କ ଠାରେ ଟିକିଏ ବି ଭକ୍ତିଭାବ ଥିବ, ସେ ତିନିଜନ୍ମ ପରେ ଅବଶ୍ୟ ମୁକ୍ତ ହୋଇଯିବ। ତାକୁ ସଂସାରରେ ଯୋନିଯନ୍ତ୍ରର କଷ୍ଟ ଆଉ ଭୋଗିବାକୁ ପଡ଼ିବ ନାହିଁ। ଅଙ୍ଗସହିତ ବା ଅଙ୍ଗରହିତ ଯାହା କିଛି ସେବା ଅଛି, ତାହାକୁ ଭକ୍ତି କହନ୍ତି। ତାହାର ମଧ୍ୟ ଆହୁରି ତିନିଟି ଭେଦ ରହିଛି—ମାନସିକ, ବାଚିକ ଓ ଶାରୀରିକ। ଶିବଙ୍କ ରୂପ ଇତ୍ୟାଦିର ଚିନ୍ତନକୁ ମାନସିକ ସେବା

କହନ୍ତି । ଜପ ଇତ୍ୟାଦି ବାଚିକ ସେବା ଏବଂ ପୂଜନାଦି କାର୍ଯ୍ୟ ଶାରୀରିକ ସେବା ଅଟେ । ଉକ୍ତ ତ୍ରିବିଧ ସାଧନ ଦ୍ୱାରା ସମ୍ପନ୍ନ ହେଉଥିବା ସେବାକୁ 'ଶିବଧର୍ମ' ମଧ୍ୟ କହନ୍ତି । ପରମାତ୍ମା ଶିବ ତପ, କର୍ମ, ଜପ, ଧ୍ୟାନ ଓ ଜ୍ଞାନ ନାମରେ ପାଞ୍ଚପ୍ରକାର ଶିବଧର୍ମ କହିଛନ୍ତି । ଲିଙ୍ଗପୂଜନ ଆଦିକୁ 'କର୍ମ' କହନ୍ତି । ଚାନ୍ଦ୍ରାୟଣ ଆଦି ବ୍ରତକୁ 'ତପ' କହନ୍ତି । ବାଚିକ, ଉପାଂଶୁ ଓ ମାନସ ଏପରି ତିନିପ୍ରକାର ଶିବମନ୍ତ୍ରର ଅଭ୍ୟାସ (ଆବୃତ୍ତି)କୁ 'ଜପ' କହନ୍ତି । ଶିବଙ୍କ ଚିନ୍ତନକୁ 'ଧ୍ୟାନ' କୁହାଯାଏ । ଶିବସମ୍ବନ୍ଧୀୟ ଆଗମମାନଙ୍କରେ ଯେଉଁ ଜ୍ଞାନର ବର୍ଣ୍ଣନା ରହିଛି, ତାହାକୁ 'ଜ୍ଞାନ' କୁହାଯାଇଛି । ଶ୍ରୀକଣ୍ଠ ଶିବ ଶିବାଙ୍କୁ ଯେଉଁ ଜ୍ଞାନୋପଦେଶ ଦେଇଛନ୍ତି, ତାହା ଶିବାଗମ ଅଟେ । ସେ ଶିବଙ୍କ ଆଶ୍ରିତ ଭକ୍ତଜନଙ୍କ ଉପରେ କୃପା କରି କଲ୍ୟାଣର ଏକମାତ୍ର ସାଧନରୂପେ ଏହି ଜ୍ଞାନ ଉପଦେଶ ଦେଇଛନ୍ତି । ତେଣୁ କଲ୍ୟାଣକାମୀ ବୁଦ୍ଧିମାନ୍ ବ୍ୟକ୍ତି ସେହି ପରମ କାରଣ ଶିବଙ୍କ ପ୍ରତି ଭକ୍ତି ବୃଦ୍ଧି କରିବା ସହ ବିଷୟାସକ୍ତି ତ୍ୟାଗ କରିବା ଉଚିତ ।

(ଅଧ୍ୟାୟ ୭)

★★★

# ଶିବଜ୍ଞାନ, ଶିବୋପାସନା ଫଳରେ ଦେବତାଙ୍କୁ ଶିବଙ୍କ ଦର୍ଶନ, ସୂର୍ଯ୍ୟଦେବଙ୍କ ଠାରେ ଶିବଙ୍କୁ ପୂଜା କରି ଅର୍ଘ୍ୟ ଦେବାର ବିଧି ଓ ବ୍ୟାସାବତାରର ବର୍ଣ୍ଣନା

ଶ୍ରୀକୃଷ୍ଣ କହିଲେ—ଭଗବନ୍ ! ଏବେ ମୁଁ ସେହି ଶିବଜ୍ଞାନ ବିଷୟରେ ଶୁଣିବାକୁ ଚାହେଁ, ଯାହା ବେଦର ସାରତତ୍ତ୍ୱ ଓ ଯାହାକୁ ଭଗବାନ ଶିବ ତାଙ୍କ ଶରଣାଗତ ଭକ୍ତଙ୍କ ମୁକ୍ତି ପାଇଁ କହିଛନ୍ତି । ପ୍ରଭୁ ଶିବଙ୍କର ପୂଜା କିପରି କରାଯାଏ? ପୂଜା ଇତ୍ୟାଦିରେ କେଉଁମାନଙ୍କର ଅଧିକାର ଅଛି ଏବଂ ଜ୍ଞାନଯୋଗ ଇତ୍ୟାଦି କିପରି ସିଦ୍ଧ ହୁଏ? ହେ ସୁବ୍ରତ ମୁନିବର ! ଏ ସମସ୍ତ କଥା ମୋତେ ସବିସ୍ତାର କହନ୍ତୁ ।

ଉପମନ୍ୟୁ କହିଲେ—ଭଗବାନ ଶିବ ଯେଉଁ ବେଦୋକ୍ତ ଜ୍ଞାନକୁ ସଂକ୍ଷିପ୍ତ କରି କହିଛନ୍ତି, ତାହା ହିଁ ଶୈବଜ୍ଞାନ । ତାହା ନିନ୍ଦାସ୍ତୁତି ଇତ୍ୟାଦିରୁ ମୁକ୍ତ ଓ ଶ୍ରବଣମାତ୍ରକେ ବିଶ୍ୱାସ ଉତ୍ପନ୍ନ କରିଥାଏ । ସେହି ଦିବ୍ୟଜ୍ଞାନ ଗୁରୁକୃପାରୁ ପ୍ରାପ୍ତ ହୁଏ ଏବଂ ଅନାୟାସରେ ମୋକ୍ଷ ପ୍ରଦାନ କରିଥାଏ । ମୁଁ ମଧ୍ୟ ତାହାକୁ ସଂକ୍ଷେପରେ କହିବି; କାରଣ କେହି ତାହାକୁ ବିସ୍ତାରିତ ଭାବରେ ବର୍ଣ୍ଣନା କରିପାରିବ ନାହିଁ । ପୂର୍ବକାଳରେ ମହେଶ୍ୱର ଶିବ ସୃଷ୍ଟି-ଇଚ୍ଛାରେ ସତ୍କାର୍ଯ୍ୟ-କାରଣରେ ନିଯୁକ୍ତ ହୋଇ ସ୍ୱୟଂ ଅବ୍ୟକ୍ତରୁ ବ୍ୟକ୍ତରୂପେ ପ୍ରକଟ ହେଲେ । ସେତେବେଳେ ଜ୍ଞାନସ୍ୱରୂପ ଭଗବାନ ବିଶ୍ୱନାଥ ଦେବତାଙ୍କ ମଧ୍ୟରେ ସର୍ବପ୍ରଥମ ଦେବତା ବେଦପତି ବ୍ରହ୍ମାଙ୍କୁ ଉତ୍ପନ୍ନ କଲେ । ବ୍ରହ୍ମା ଉତ୍ପନ୍ନ ହେଲା ପରେ ନିଜ ପିତା ମହେଶ୍ୱରଙ୍କୁ ଦେଖିଲେ ଏବଂ ବ୍ରହ୍ମାଙ୍କ ଜନକ ମହାଦେବ ମଧ୍ୟ ଉତ୍ପନ୍ନ ହୋଇଥିବା ବ୍ରହ୍ମାଙ୍କୁ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ ଓ ତାଙ୍କୁ ସୃଷ୍ଟିରଚନା କରିବାକୁ ଆଜ୍ଞା ଦେଲେ । ରୁଦ୍ରଦେବ କୃପାଦୃଷ୍ଟିରେ ଦେଖିବାରୁ ସେ ସୃଷ୍ଟିର ସାମର୍ଥ୍ୟ ପ୍ରାପ୍ତ ହୋଇ ସମଗ୍ର ଜଗତକୁ ସୃଜନ କଲେ ଏବଂ ପୃଥକ୍ ପୃଥକ୍ ବର୍ଣ୍ଣ ଓ ଆଶ୍ରମର ବ୍ୟବସ୍ଥା କଲେ । ସେ ଯଜ୍ଞ ନିମନ୍ତେ ସୋମ ସୃଷ୍ଟି କଲେ । ସୋମରୁ ଦ୍ୟୁଲୋକ ସୃଷ୍ଟି ହେଲା । ତା'ପରେ ପୃଥିବୀ, ଅଗ୍ନି, ସୂର୍ଯ୍ୟ, ଯଜ୍ଞମୟ ବିଷ୍ଣୁ ଓ ଶଚୀପତି ଇନ୍ଦ୍ର ପ୍ରକଟ ହେଲେ । ସେମାନେ

ତଥା ଅନ୍ୟ ଦେବତାମାନେ ରୁଦ୍ରାଧ୍ୟାୟ ପଢ଼ି ରୁଦ୍ରଦେବଙ୍କୁ ସ୍ତୁତି କଲେ । ସେତେବେଳେ ମହେଶ୍ୱର ନିଜର ଲୀଳା ପରିପ୍ରକାଶ କରିବା ନିମନ୍ତେ ସେମାନଙ୍କ ଜ୍ଞାନ ହରଣ କରି ପ୍ରସନ୍ନବଦନରେ ସେହି ଦେବତାମାନଙ୍କ ସମ୍ମୁଖରେ ଛିଡ଼ା ହୋଇଗଲେ ।

ଦେବତାମାନେ ମୋହିତ ହୋଇ ତାଙ୍କୁ ପଚ୍ଚରିଲେ—"ଆପଣ କିଏ?" ଭଗବାନ ରୁଦ୍ର କହିଲେ—"ଶ୍ରେଷ୍ଠ ଦେବଗଣ ! ସର୍ବପ୍ରଥମେ କେବଳ ମୁଁ ଥିଲି । ଏବେ ମଧ୍ୟ ସର୍ବତ୍ର ମୁଁ ହିଁ ଅଛି ଏବଂ ଭବିଷ୍ୟତରେ ମୁଁ ହିଁ ରହିବି । ମୋ ଛଡ଼ା ଆଉ କେହି ନାହିଁ । ମୁଁ ମୋର ତେଜରେ ସମଗ୍ର ଜଗତକୁ ତୃପ୍ତ କରୁଛି । ମୋ ଠାରୁ ଅଧିକ ଶ୍ରେଷ୍ଠ ବା ମୋ ସମାନ ଆଉ କେହି ନାହିଁ । ଯେ ମୋତେ ଜାଣେ, ସେ ମୁକ୍ତ ହୋଇଯାଏ ।* ଏପରି କହି ଭଗବାନ ରୁଦ୍ର ସେଠାରୁ ଅନ୍ତର୍ହିତ ହୋଇଗଲେ । ଦେବତାମାନେ ମହେଶ୍ୱରଙ୍କୁ ଦେଖିବାକୁ ନ ପାଇ ସାମବେଦର ମନ୍ତ୍ରଦ୍ୱାରା ତାଙ୍କୁ ସ୍ତୁତି କଲେ । ଅଥର୍ବଶୀର୍ଷରେ ବର୍ଣ୍ଣିତ ପାଶୁପତ ବ୍ରତ ଗ୍ରହଣ କରି ସେହି ଅମରଗଣ ନିଜ ନିଜର ସର୍ବାଙ୍ଗରେ ଭସ୍ମ ବୋଳି ହେଲେ । ଏହା ଦେଖି ସେମାନଙ୍କ ଉପରେ କୃପା କରିବାକୁ ପଶୁପତି ମହାଦେବ ତାଙ୍କର ଗଣ ଓ ଉମାଦେବୀଙ୍କ ସହ ସେମାନଙ୍କ ନିକଟକୁ ଆସିଲେ । ପ୍ରାଣାୟାମ ଦ୍ୱାରା ଶ୍ୱାସକୁ ଜୟ କରି ନିଦ୍ରାରହିତ ଓ ନିଷ୍ପାପ ହୋଇଥିବା ଯୋଗୀଜନ ନିଜ ହୃଦୟ ମଧ୍ୟରେ ଯେଉଁ ମହାଦେବଙ୍କୁ ଦର୍ଶନ କରନ୍ତି, ତାଙ୍କୁ ସେହି ଦେବେଶ୍ୱରମାନେ ସେଠାରେ ପ୍ରତ୍ୟକ୍ଷ ଦର୍ଶନ କଲେ । ଯେଉଁ ବାମଲୋଚନା ଭବାନୀ ଈଶ୍ୱରଙ୍କ ଅନୁସରଣକାରିଣୀ ପରାଶକ୍ତି ବୋଲାନ୍ତି, ତାଙ୍କୁ ମଧ୍ୟ ମହେଶ୍ୱରଙ୍କ ବାମଭାଗରେ ବିରାଜିତା ଦେଖିଲେ । ସଂସାରକୁ ତ୍ୟାଗ କରି ଶିବଙ୍କ ପରମପଦ ଲାଭ କରିଥିବା ନିତ୍ୟ ସିଦ୍ଧ ଗଣେଶ୍ୱରଙ୍କୁ ମଧ୍ୟ ଦେବତାମାନେ ଦର୍ଶନ କଲେ । ତା'ପରେ ଦେବଗଣ ମହେଶ୍ୱରଙ୍କ ବୈଦିକ ଓ ପୌରାଣିକ ଦିବ୍ୟ ସ୍ତୋତ୍ର ଦ୍ୱାରା ଉମା-ମହେଶ୍ୱରଙ୍କୁ ସ୍ତୁତି କଲେ । ଏହାପରେ ବୃଷଭଧ୍ୱଜ ମହାଦେବ ମଧ୍ୟ ପ୍ରସନ୍ନ ଚିତ୍ତରେ ଦେବତାଙ୍କ ଆଡ଼କୁ କୃପାଦୃଷ୍ଟିରେ ଚ୍ଚହିଁ ମଧୁର ବାଣୀରେ କହିଲେ—"ମୁଁ ତୁମମାନଙ୍କ ଉପରେ ବହୁତ ସନ୍ତୁଷ୍ଟ ।" ପ୍ରାର୍ଥନୀୟ ଓ ପୂଜ୍ୟତମ ବୃଷଭଧ୍ୱଜ ପ୍ରସନ୍ନ ଥିବା ଦେଖି ଦେବତାମାନେ ତାଙ୍କୁ ପ୍ରଣାମ କରି ଆଦରପୂର୍ବକ ପଚ୍ଚରିଲେ—

ଦେବତାମାନେ କହିଲେ—**ଭଗବନ୍ !** ଏ ଭୂପୃଷ୍ଠରେ କେଉଁ ମାର୍ଗରେ ଆପଣଙ୍କର ପୂଜା କରାଯିବା ଉଚିତ ଏବଂ କେଉଁମାନଙ୍କର ସେଭଳି ପୂଜା କରିବାରେ ଅଧିକାର ଅଛି? କୃପା କରି ଏକଥା ଯଥାର୍ଥରୂପେ ବର୍ଣ୍ଣନା କରନ୍ତୁ ।

ଏହା ଶୁଣି ଦେବେଶ୍ୱର ଶିବ ଦେବୀଙ୍କ ଆଡ଼କୁ ସ୍ମିତହାସପୂର୍ବକ ଅବଲୋକନ କଲେ ଏବଂ ତାଙ୍କର ପରମ ଘୋର ସୂର୍ଯ୍ୟମୟ ସ୍ୱରୂପର ଦର୍ଶନ କରାଇଲେ । ସେହି ସ୍ୱରୂପ ସମସ୍ତ ଐଶ୍ୱର୍ଯ୍ୟ-ଗୁଣରେ ସମ୍ପନ୍ନ, ସର୍ବତେଜୋମୟ, ସର୍ବୋତ୍କୃଷ୍ଟ ତଥା ନାନା ଶକ୍ତି, ମୂର୍ତ୍ତି, ଅଙ୍ଗ, ଗ୍ରହ ଓ ଦେବତାଙ୍କ ଦ୍ୱାରା ପରିବେଷ୍ଟିତ ଥିଲା । ତାଙ୍କର ଆଠ ଭୁଜ ଓ ଚ୍ଚରି ମୁଖ ଥିଲା । ତାଙ୍କର ଅର୍ଦ୍ଧାଙ୍ଗ ଥିଲା ନାରୀରୂପ । ଏତାଦୃଶ ଅଦ୍ଭୁତ ଆକୃତିର

* ସୋଽବ୍ରବୀଦ୍ ଭଗବାନ୍ ରୁଦ୍ରୋ ହ୍ୟହମେକଃ ପୁରାତନଃ । ଆସଂ ପ୍ରଥମମେବାହଂ ବର୍ତ୍ତାମି ଚ ସୁରୋତ୍ତମାଃ ॥
ଭବିଷ୍ୟାମି ଚ ମତ୍ତୋଽନ୍ୟୋ ବ୍ୟତିରିକ୍ତୋ ନ କଶ୍ଚନ ।
ଅହମେବ ଜଗତ୍ ସର୍ବଂ ତର୍ପୟାମି ସ୍ୱତେଜସା । ମତ୍ତୋଽଧିକଃ ସମୋ ନାସ୍ତି ମାଂ ଯୋ ବେଦ ସ ମୁଚ୍ୟତେ ॥
(ଶି. ପୁ. ବା. ସଂ. ଉ. ଖ. ୮ । ୧୫–୧୭)

ଆଶ୍ଚର୍ଯ୍ୟଜନକ ରୂପକୁ ଦେଖିବାମାତ୍ରେ ଦେବଗଣ ଜାଣିଗଲେ ଯେ ସୂର୍ଯ୍ୟଦେବ, ପାର୍ବତୀଦେବୀ ତଥା ଚନ୍ଦ୍ର, ଆକାଶ, ବାୟୁ, ତେଜ, ଜଳ, ପୃଥିବୀ ଓ ଅବଶିଷ୍ଟ ସବୁକିଛି ପଦାର୍ଥ ଶିବଙ୍କର ହିଁ ସ୍ୱରୂପ । ସମଗ୍ର ସଚରାଚର ଜଗତ ଶିବମୟ । ପରସ୍ପର ମଧ୍ୟରେ ଏପରି କଥାବାର୍ତ୍ତା ହୋଇ ସେମାନେ ଭଗବାନ ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେଲେ ଏବଂ ନମସ୍କାର କଲେ । ଅର୍ଘ୍ୟ ଦେବାବେଳେ ସେମାନେ ଏହିପରି କହିଲେ—''ଯାହାଙ୍କ ବର୍ଣ୍ଣ ସିନ୍ଦୂର ପରି, ଯାହାଙ୍କ ମଣ୍ଡଳ ସୁନ୍ଦର ଏବଂ ଯେ ସୁବର୍ଣ୍ଣ ପରି କାନ୍ତିମାନ୍ ଆଭୂଷଣରେ ବିଭୂଷିତ, ଯାହାଙ୍କ ନେତ୍ର ପଦ୍ମତୁଲ୍ୟ, ଯାହାଙ୍କ ହାତରେ ପଦ୍ମ ସୁଶୋଭିତ, ଯେ ବ୍ରହ୍ମା, ଇନ୍ଦ୍ର ଓ ନାରାୟଣଙ୍କର ମଧ୍ୟ କାରଣ, ସେହି ଭଗବାନଙ୍କୁ ଆମର ନମସ୍କାର ।* ଏପରି କହି ସ୍ୱର୍ଣ୍ଣପାତ୍ରରେ ସୁନ୍ଦର ରତ୍ନ, ସୁବର୍ଣ୍ଣ, କୁଙ୍କୁମ, କୁଶ ଓ ପୁଷ୍ପଯୁକ୍ତ ଜଳ ଘେନି ସେହି ଦେବେଶ୍ୱର ଶିବଙ୍କୁ ଅର୍ଘ୍ୟ ଦେଲେ ଏବଂ କହିଲେ—''ଭଗବନ୍ ! ପ୍ରସନ୍ନ ହୁଅନ୍ତୁ । ଆପଣ ସମସ୍ତଙ୍କର ଆଦିକାରଣ । ଆପଣ ହିଁ ରୁଦ୍ର, ବିଷ୍ଣୁ, ବ୍ରହ୍ମା ଓ ସୂର୍ଯ୍ୟରୂପରେ ବିଦ୍ୟମାନ । ଆପଣ ହିଁ ଶାନ୍ତ ଶିବ । ଗଣଙ୍କ ସମେତ ଆପଣଙ୍କୁ ଆମର ନମସ୍କାର ।❦

ଯେ ଏକାଗ୍ର ଚିତ୍ତରେ ସୂର୍ଯ୍ୟମଣ୍ଡଳରେ ଶିବଙ୍କୁ ପୂଜା କରି ପ୍ରାତଃକାଳ, ମଧ୍ୟାହ୍ନକାଳ ଓ ସାୟଂକାଳରେ ତାଙ୍କ ପାଇଁ ଉତ୍ତମ ଅର୍ଘ୍ୟ ଦିଏ, ପ୍ରଣାମ କରେ ଏବଂ ଏହି ଶ୍ରବଣସୁଖଦ ଶ୍ଲୋକମାନ ପାଠ କରେ, ତା' ପାଇଁ କିଛି ବି ଦୁର୍ଲଭ ନୁହେଁ । ସେ ଭକ୍ତ ହୋଇଥିଲେ ଅବଶ୍ୟ ମୁକ୍ତ ହୋଇଯାଏ । ତେଣୁ ପ୍ରତିଦିନ ସୂର୍ଯ୍ୟରୂପୀ ଶିବଙ୍କୁ ପୂଜା କରିବା ଉଚିତ । ଧର୍ମ, ଅର୍ଥ, କାମ ଓ ମୋକ୍ଷ ନିମନ୍ତେ ମନ, ବାଣୀ ଓ କ୍ରିୟା ଦ୍ୱାରା ତାଙ୍କୁ ଆରାଧନା କରିବା ଉଚିତ ।

ତା'ପରେ ମଣ୍ଡଳରେ ବିରାଜମାନ ମହେଶ୍ୱର ଦେବଗଣଙ୍କୁ ଆଡ଼କୁ ଗ୍ରହିଁ ଓ ସେମାନଙ୍କୁ ସମସ୍ତ ଶାସ୍ତ୍ର ମଧ୍ୟରେ ଶ୍ରେଷ୍ଠ ଶିବଶାସ୍ତ୍ର ପ୍ରଦାନ କରି ଅନ୍ତର୍ହିତ ହୋଇଗଲେ । ସେହି ଶାସ୍ତ୍ରରେ ଶିବପୂଜାର ଅଧିକାର ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କୁ ଦିଆଯାଇଛି । ଏହା ଜାଣି ଦେବତାମାନେ ଦେବେଶ୍ୱର ଶିବଙ୍କୁ ପ୍ରଣାମ କରି ଯେମିତି ଆସିଥିଲେ ସେମିତି ଫେରିଗଲେ । ଦୀର୍ଘକାଳ ବିତିଯିବା ପରେ ସେହି ଶାସ୍ତ୍ର ଲୁପ୍ତ ହୋଇଯିବାରୁ ଭଗବାନ ଶିବଙ୍କ କୋଳରେ ବସିଥିବା ମହେଶ୍ୱରୀ ଶିବା ସ୍ୱାମୀଙ୍କୁ ଏ ବିଷୟରେ ପ୍ରଶ୍ନ କଲେ । ଦେବୀଙ୍କ ଦ୍ୱାରାଙ୍କ ପ୍ରେରିତ ହୋଇ ଚନ୍ଦ୍ରଭୂଷଣ ମହାଦେବ ବେଦମାନଙ୍କର ସାର ବାହାର କରି ସମସ୍ତ ଆଗମ ମଧ୍ୟରେ ଶ୍ରେଷ୍ଠ ଶାସ୍ତ୍ର ଉପଦେଶ ଦେଲେ । ତା'ପରେ ପରମେଶ୍ୱରଙ୍କ ଆଜ୍ଞାରେ ମୁଁ, ଗୁରୁଦେବ ଅଗସ୍ତ୍ୟ ଓ ମହର୍ଷି ଦଧୀଚି—ଆମେ ସମସ୍ତେ ଜଗତରେ ସେହି ଶାସ୍ତ୍ରକୁ ପ୍ରଚ୍ଚରିତ କଲୁ । ଶୂଳପାଣି ମହାଦେବ ସ୍ୱୟଂ ମଧ୍ୟ ଯୁଗେ ଯୁଗେ ପୃଥିବୀପୃଷ୍ଠରେ ଅବତରିତ ହୋଇ ତାଙ୍କ ଆଶ୍ରିତ ଲୋକଙ୍କ ମୁକ୍ତି ନିମନ୍ତେ ଜ୍ଞାନର ପ୍ରସାର କରନ୍ତି । ଋଭୁ, ସତ୍ୟ, ଭାର୍ଗବ, ଅଙ୍ଗିରା, ସବିତା, ମୃତ୍ୟୁ, ଇନ୍ଦ୍ର, ମୁନିବର ବଶିଷ୍ଠ, ସାରସ୍ୱତ,

---

* ସିନ୍ଦୂରବର୍ଣ୍ଣାୟ ସୁମଣ୍ଡଳାୟ ସୁବର୍ଣ୍ଣବର୍ଣ୍ଣାଭରଣାୟ ତୁଭ୍ୟମ୍ । ପଦ୍ମାଭନେତ୍ରାୟ ସପଙ୍କଜାୟ ବ୍ରହ୍ମେନ୍ଦ୍ରନାରାୟଣକାରଣାୟ ॥
(ଶି. ପୁ. ବା. ସଂ. ଉ. ଖ. ୮ । ୩୨)

❦ ପ୍ରଦତ୍ତମାଦାୟ ସହେମପାତ୍ରଂ ପ୍ରଶସ୍ତମର୍ଘ୍ୟଂ ଭଗବନ୍ ପ୍ରସୀଦ । ........................................................ ॥
ନମଃ ଶିବାୟ ଶାନ୍ତାୟ ସଗଣାୟାଦିହେତବେ । ରୁଦ୍ରାୟ ବିଷ୍ଣବେ ତୁଭ୍ୟଂ ବ୍ରହ୍ମଣେ ସୂର୍ଯ୍ୟମୂର୍ତ୍ତୟେ ॥
(ଶି. ପୁ. ବା. ସଂ. ଉ. ଖ. ୮ । ୩୩-୩୪)

ତ୍ରିଧାମା, ମୁନିଶ୍ରେଷ୍ଠ ତ୍ରିବୃତ୍, ଶତତେଜା, ସାକ୍ଷାତ୍ ଧର୍ମସ୍ୱରୂପ ନାରାୟଣ, ସ୍ୱରକ୍ଷ, ବୁଦ୍ଧିମାନ୍ ଆରୁଣି, କୃତଞ୍ଜୟ, ଭରଦ୍ୱାଜ, ଶ୍ରେଷ୍ଠ ବିଦ୍ୱାନ୍ ଗୌତମ, ବାଚଃଶ୍ରବା ମୁନି, ପବିତ୍ର ସୂକ୍ଷ୍ମାୟଣି, ତୃଣବିନ୍ଦୁ ମୁନି, କୃଷ୍ଣ, ଶକ୍ତି, ଶାକ୍ତେୟ (ପାରାଶର), ଉତ୍ତର, ଜାତୂକର୍ଣ୍ଣ୍ୟ ଓ ସାକ୍ଷାତ୍ ନାରାୟଣସ୍ୱରୂପ କୃଷ୍ଣଦ୍ୱୈପାୟନ ମୁନି—ଏ ସମସ୍ତେ ବ୍ୟାସାବତାର ଅଟନ୍ତି । ଏବେ କ୍ରମାନ୍ୱୟରେ କଳ୍ପ-ଯୋଗେଶ୍ୱରଙ୍କ ବିଷୟରେ ଶୁଣ । ଲିଙ୍ଗପୁରାଣରେ ଦ୍ୱାପର ଶେଷରେ ହେଉଥିବା ଉତ୍ତମ ବ୍ରତଧାରୀ ବ୍ୟାସାବତାର ଓ ଯୋଗାଗ୍ର୍ୟାବତାରଙ୍କ ବିଷୟରେ ତଥା ଭଗବାନ ଶିବଙ୍କର ପ୍ରସିଦ୍ଧ ଶିବଗଣଙ୍କ ବିଷୟରେ ବର୍ଣ୍ଣନା ଅଛି । ସେହିସବୁ ଅବତାର ସମୟରେ ଭଗବାନଙ୍କର ମୁଖ୍ୟତଃ ଚାରିଜଣ ମହାତେଜସ୍ୱୀ ଶିଷ୍ୟ ହୋଇଥାନ୍ତି । କାଳକ୍ରମେ ସେମାନଙ୍କର ମଧ୍ୟ ଶହ ଶହ, ହଜାର ହଜାର ଶିଷ୍ୟପ୍ରଶିଷ୍ୟ ହୋଇ ଯାଆନ୍ତି । ଜଗତରେ ସେମାନଙ୍କ ଉପଦେଶ ଅନୁସାରେ ଶିବଙ୍କ ଆଜ୍ଞା ପାଳନ କରିବା ଦ୍ୱାରା ଅନେକ ଭାଗ୍ୟବାନ୍ ପୁରୁଷ ଭକ୍ତିରେ ଅତ୍ୟନ୍ତ ଭାବିତ ହୋଇ ମୁକ୍ତ ହୋଇଯାଆନ୍ତି ।

(ଅଧ୍ୟାୟ ୮)



## ଶିବଙ୍କ ଅବତାରରୂପେ ଯୋଗାଗ୍ର୍ୟଙ୍କର ତଥା ସେମାନଙ୍କ ଶିଷ୍ୟଙ୍କର ନାମାବଳୀ

ଶ୍ରୀକୃଷ୍ଣ କହିଲେ—ଭଗବନ୍ ! ସମସ୍ତ ଯୁଗାବର୍ତ୍ତକ୍ରମରେ ଯୋଗାଗ୍ର୍ୟଙ୍କ ବାହାନାରେ ଭଗବାନ ଶଙ୍କରଙ୍କର ଯେଉଁସବୁ ଅବତାର ହୁଏ ଏବଂ ସେହି ଅବତାରଙ୍କର ଯେଉଁମାନେ ଶିଷ୍ୟ ହୁଅନ୍ତି, ସେମାନଙ୍କ ବିଷୟରେ କୁହନ୍ତୁ ।

ଉପମନ୍ୟୁ କହିଲେ—ଶ୍ୱେତ, ସୁତାର, ମଦନ, ସୁହୋତ୍ର, କଂକଲୌଗାକ୍ଷି, ମହାମାୟାବୀ ଜୈଗୀଷବ୍ୟ, ଦଧିବାହ, ଋଷଭ ମୁନି, ଉଗ୍ର, ଅତ୍ରି, ସୁପାଳକ, ଗୌତମ, ବେଦଶିରା ମୁନି, ଗୋକର୍ଣ୍ଣ, ଗୁହାବାସୀ, ଶିଖଣ୍ଡୀ, ଜଟାମାଳୀ, ଅଟ୍ଟହାସ, ଦାରୁକ, ଲାଙ୍ଗୁଳୀ, ମହାକାଳ, ଶୂଳୀ, ଦଣ୍ଡୀ, ମୁଣ୍ଡୀଶ, ସହିଷ୍ଣୁ, ସୋମଶର୍ମା ଓ ନକୁଳୀଶ୍ୱର—ଏମାନେ ବାରାହ କଳ୍ପର ଏ ସପ୍ତମ ମନ୍ୱନ୍ତରରେ ଯୁଗକ୍ରମରେ ଅଠେଇଶ ଜଣ ଯୋଗାଗ୍ର୍ୟରୂପେ ପ୍ରକଟ ହୋଇଛନ୍ତି । ପ୍ରତ୍ୟେକ ଯୋଗାଗ୍ର୍ୟଙ୍କର ଚାରିଜଣ ଲେଖାଏଁ ଶାନ୍ତଚିତ୍ତ ଶିଷ୍ୟ ଅଛନ୍ତି । ସେମାନଙ୍କ ନାମ ଶ୍ୱେତ ଠାରୁ ଆରମ୍ଭ କରି ଋଷ୍ୟ ପର୍ଯ୍ୟନ୍ତ ପ୍ରଦତ୍ତ ହୋଇଛି । ମୁଁ ସେମାନଙ୍କ ନାମ କ୍ରମାନ୍ୱୟରେ ବର୍ଣ୍ଣନା କରୁଛି । ଶ୍ୱେତ, ଶ୍ୱେତଶିଖ, ଶ୍ୱେତାଶ୍ୱ, ଶ୍ୱେତଲୋହିତ, ଦୁନ୍ଦୁଭି, ଶତରୂପ, ଋଚୀକ, କେତୁମାନ, ବିକୋଶ, ବିକେଶ, ବିପାଶ, ପାଶନାଶନ, ସୁମୁଖ, ଦୁର୍ମୁଖ, ଦୁର୍ଗମ, ଦୁରତିକ୍ରମ, ସନତ୍କୁମାର, ସନକ, ସନନ୍ଦନ, ସନାତନ, ସୁଧାମା, ବିରଜା, ଶଙ୍ଖ, ଅଣ୍ଡଜ, ସାରସ୍ୱତ, ମେଘ, ମେଘବାହ, ସୁବାହକ, କପିଳ, ଆସୁରି, ପଞ୍ଚଶିଖ, ବାଷ୍କଳ, ପରାଶର, ଗର୍ଗ, ଭାର୍ଗବ, ଅଙ୍ଗିରା, ବଳବନ୍ଧୁ, ନିରାମିତ୍ର, କେତୁଶୃଙ୍ଗ, ତପୋଧନ, ଲମ୍ବୋଦର, ଲମ୍ବ, ଲମ୍ବାତ୍ମା, ଲମ୍ବକେଶକ, ସର୍ବଜ୍ଞ, ସମବୁଦ୍ଧି, ସାଧ୍ୟ, ସିଦ୍ଧି, ସୁଧାମା, କଶ୍ୟପ, ବଶିଷ୍ଠ, ବିରଜା, ଅତ୍ରି, ଉଗ୍ର, ଗୁରୁଶ୍ରେଷ୍ଠ, ଶ୍ରବଣ, ଶ୍ରବିଷ୍ଟକ, କୁଣି, କୁଣବାହୁ, କୁଶରୀର, କୁନେତ୍ରକ, କାଶ୍ୟପ, ଉଶନା, ଚ୍ୟବନ, ବୃହସ୍ପତି, ଉତଥ୍ୟ, ବାମଦେବ, ମହାକାଳ, ମହାନିଳ, ବାଚଃଶ୍ରବା, ସୁବୀର, ଶ୍ୟାବକ, ଯତୀଶ୍ୱର, ହିରଣ୍ୟନାଭ, କୌଶଲ୍ୟ, ଲୋକାକ୍ଷି, କୁଥୁମି, ସୁମନ୍ତୁ, ଜୈମିନୀ, କୁବନ୍ଧ,

କୁଶକନ୍ଧର, ପ୍ଲକ୍ଷ, ଦାର୍ଭାୟଣି, କେତୁମାନ, ଗୌତମ, ଭଲ୍ଲବୀ, ମଧୁପିଙ୍ଗ, ଶ୍ୱେତକେତୁ, ଉଶିଜ, ବୃହଦଶ୍ୱ, ଦେବଳ, କବି, ଶାଳିହୋତ୍ର, ସୁବେଷ, ଯୁବନାଶ୍ୱ, ଶରଦ୍‌ବସୁ, ଛଗଳ, କୁମ୍ଭକର୍ଣ୍ଣ, କୁମ୍ଭ, ପ୍ରବାହୁକ, ଉଲୂକ, ବିଦ୍ୟୁତ୍, ଶମ୍ବୂକ, ଆଶ୍ୱଳାୟନ, ଅକ୍ଷପାଦ, କଣାଦ, ଉଲୂକ, ବତ୍ସ, କୁଶିକ, ଗର୍ଗ, ମିତ୍ରକ ଓ ଋଷ୍ୟ—ଏମାନେ ଯୋଗାଗ୍ରୀର୍ଯ୍ୟରୂପୀ ମହେଶ୍ୱରଙ୍କ ଶିଷ୍ୟ ଅଟନ୍ତି। ଏମାନଙ୍କ ସଂଖ୍ୟା ଏକଶହ ବାର। ସେମାନେ ସମସ୍ତେ ସିଦ୍ଧ ପାଶୁପତ ଅଟନ୍ତି। ଏମାନେ ସମସ୍ତ ଶାସ୍ତ୍ରତତ୍ତ୍ୱର ଜ୍ଞାତା, ବେଦ-ବେଦାଙ୍ଗରେ ପାରଙ୍ଗମ ବିଦ୍ୱାନ୍, ଶିବାଶ୍ରମରେ ଅନୁରକ୍ତ, ଶିବଜ୍ଞାନ-ପରାୟଣ, ସବୁପ୍ରକାର ଆସକ୍ତିରୁ ମୁକ୍ତ, ଏକମାତ୍ର ଶିବଙ୍କ ଠାରେ ମନୋନିବେଶକାରୀ, ଦ୍ୱନ୍ଦ୍ୱସହିଷ୍ଣୁ, ଧୀର, ସର୍ବଭୂତହିତକାରୀ, ସରଳ, କୋମଳ, ସ୍ୱସ୍ଥ, କ୍ରୋଧଶୂନ୍ୟ ଓ ଜିତେନ୍ଦ୍ରିୟ ହୋଇଥାନ୍ତି। ରୁଦ୍ରାକ୍ଷମାଳା ହିଁ ଏମାନଙ୍କର ଆଭୂଷଣ। ଏମାନଙ୍କ ମସ୍ତକରେ ତ୍ରିପୁଣ୍ଡ୍ର ଶୋଭା ପାଏ। ଏମାନଙ୍କ ମଧ୍ୟରୁ କେହି କେହି ଶିଖାପରି ଜଟାଧାରଣ କରିଥାନ୍ତି ତ କେତେକଙ୍କର ସମସ୍ତ କେଶରାଶି ଜଟାରୂପ ଅଟେ। କେତେକ ଜଟା ରଖି ନ ଥାନ୍ତି ତ ଆଉ କେତେକ ସମ୍ପୂର୍ଣ୍ଣ ଲୁଣ୍ଠିତ ରହିଥାନ୍ତି। ଏମାନେ ପ୍ରାୟ ଫଳମୂଳ ଆହାର କରିଥାନ୍ତି ଓ ପ୍ରାଣାୟାମପରାୟଣ ହୋଇଥାନ୍ତି। 'ମୁଁ ଶିବଙ୍କର' ଏହି ଅଭିମାନରେ ଯୁକ୍ତ ହୋଇଥାନ୍ତି ଓ ସର୍ବଦା ଶିବଙ୍କ ଚିନ୍ତନରେ ମଗ୍ନ ରହନ୍ତି। ଏମାନେ ସଂସାରରୂପୀ ବିଷବୃକ୍ଷର ଅଙ୍କୁରକୁ ଦଳି ଦେଇଥାନ୍ତି। ଏମାନେ ସଦା ପରମଧାମକୁ ଯିବାକୁ କଟିବଦ୍ଧ ହୋଇ ରହିଥାନ୍ତି। ଯେ ଯୋଗାଗ୍ରୀର୍ଯ୍ୟଙ୍କ ସହିତ ଏହି ଶିଷ୍ୟଙ୍କୁ ଜାଣି ଓ ମାନି ସଦା ଶିବଙ୍କୁ ଆରାଧନା କରେ, ସେ ନିଃସନ୍ଦେହରେ ଶିବଙ୍କ ସାଯୁଜ୍ୟ ଲାଭ କରିଥାଏ। (ଅଧ୍ୟାୟ ୯)

***

## ଶିବଙ୍କ ପ୍ରତି ଶ୍ରଦ୍ଧା-ଭକ୍ତିର ଆବଶ୍ୟକତା ପ୍ରତିପାଦନ, ଶିବଧର୍ମର ଚାରିପାଦ ଓ ଜ୍ଞାନଯୋଗର ସାଧନ ତଥା ଶିବଧର୍ମର ଅଧିକାରୀ ନିରୂପଣ, ଶିବପୂଜନର ପ୍ରକାର ଏବଂ ଅନନ୍ୟଚିତ୍ତରେ ଭଜନ କରିବାର ମହିମା

ଏହାପରେ ଶ୍ରୀକୃଷ୍ଣଙ୍କ ପ୍ରଶ୍ନାନୁସାରେ ଉପମନ୍ୟୁ ମନ୍ଦରାଚଳରେ ଘଟିତ ଶିବ-ପାର୍ବତୀ-ସଂବାଦର ଅବତାରଣା କରିବାକୁ ଯାଇ କହିଲେ—ଶ୍ରୀକୃଷ୍ଣ! ଥରେ ଦେବୀ ପାର୍ବତୀ ଭଗବାନ ଶିବଙ୍କୁ ପଚାରିଲେ—"ମହାଦେବ! ଯେଉଁ ମନ୍ଦମତି ମର୍ତ୍ତ୍ୟଲୋକବାସୀ ଜୀବାତ୍ମାମାନେ ଆତ୍ମତତ୍ତ୍ୱ ଇତ୍ୟାଦି ସାଧନରେ ରତ ନୁହନ୍ତି ଏବଂ ଯେଉଁମାନଙ୍କ ଅନ୍ତଃକରଣ ପବିତ୍ର ବା ବଶୀଭୂତ ନୁହେଁ, ଆପଣ କେଉଁ ଉପାୟରେ ସେମାନଙ୍କର ବଶ ହୋଇପାରିବେ?

ମହାଦେବ କହିଲେ—ହେ ଦେବୀ! ଯଦି ସାଧକ ମନରେ ଶ୍ରଦ୍ଧା-ଭକ୍ତି ନ ଥାଏ, ତେବେ ପୂଜାକର୍ମ, ତପ, ଜପ, ଆସନ, ଜ୍ଞାନ ଓ ଅନ୍ୟାନ୍ୟ କୌଣସି ସାଧନରେ ବି ମୁଁ ତାହାର ବଶବର୍ତ୍ତୀ ହୋଇ ନ ଥାଏ। ଯଦି ମନୁଷ୍ୟର ମୋ ପ୍ରତି ଶ୍ରଦ୍ଧା ଥିବ, ତେବେ ଯେକୌଣସି ନିମିତ୍ତ ଦ୍ୱାରା ମୁଁ ତାହାର ବଶ ହୋଇଯାଏ। ସେ ମୋର ଦର୍ଶନ, ସ୍ପର୍ଶ, ପୂଜା ଓ ମୋ ସହିତ ସମ୍ଭାଷଣ ମଧ୍ୟ କରିପାରେ। ତେଣୁ ମୋତେ ବଶ କରିବାକୁ ହେଲେ ପ୍ରଥମେ ମୋ ପ୍ରତି ଶ୍ରଦ୍ଧା କରିବା ଆବଶ୍ୟକ। ଶ୍ରଦ୍ଧା ହିଁ ସ୍ୱଧର୍ମର ହେତୁ ଏବଂ ତାହା

ହିଁ ଇହଲୋକରେ ବର୍ଣ୍ଣାଶ୍ରମୀ ମନୁଷ୍ୟଙ୍କୁ ରକ୍ଷା କରିଥାଏ । ଯେଉଁ ମାନବ ଆପଣା ବର୍ଣ୍ଣାଶ୍ରମଧର୍ମ ପାଳନରେ ତତ୍ପର ରହିଥାଏ, ତାହାର ମୋ ପ୍ରତି ଶ୍ରଦ୍ଧା ହୋଇଥାଏ, ଅନ୍ୟର ହୋଇ ନ ଥାଏ । ବର୍ଣ୍ଣାଶ୍ରମୀ ବ୍ୟକ୍ତିର ସମସ୍ତ ଧର୍ମ ବେଦଦ୍ୱାରା ସିଦ୍ଧ ଅଟେ । ପୂର୍ବକାଳରେ ବ୍ରହ୍ମା ମୋ ଆଜ୍ଞାନୁସାରେ ତାହା ବର୍ଣ୍ଣନା କରିଥିଲେ । ବ୍ରହ୍ମାଙ୍କ କଥିତ ସେହି ଧର୍ମ ଅତ୍ୟନ୍ତ ବ୍ୟୟବହୁଳ ଏବଂ ଅନେକ କ୍ରିୟାକଳାପରେ ସଂଯୁକ୍ତ । ତହିଁରୁ ମିଳୁଥିବା ଅଧିକାଂଶ ଫଳ ଅକ୍ଷୟ ହୋଇ ନ ଥାଏ ଏବଂ ସେହି ଧର୍ମାନୁଷ୍ଠାନରେ ଅନେକ ପ୍ରକାର କ୍ଳେଶ ସହିବାକୁ ଓ ପ୍ରଚେଷ୍ଟା କରିବାକୁ ପଡ଼ିଥାଏ । ସେହି ମହାନ୍ ଧର୍ମ ଦ୍ୱାରା ପରମ ଦୁର୍ଲଭ ଶ୍ରଦ୍ଧା ଲାଭ କରି ଯେଉଁ ବର୍ଣ୍ଣାଶ୍ରମୀ ଲୋକେ ଅନନ୍ୟଭାବରେ ମୋର ଶରଣକୁ ଆସନ୍ତି, ସେମାନଙ୍କୁ ସୁଗମତାପୂର୍ବକ ଧର୍ମ, ଅର୍ଥ, କାମ ଓ ମୋକ୍ଷ ମିଳିଯାଏ । ବର୍ଣ୍ଣାଶ୍ରମସମ୍ବନ୍ଧୀୟ ଆଗ୍ରହକୁ ମୁଁ ବାରମ୍ବାର ସୃଷ୍ଟି କରିଛି । ସେଥିପ୍ରତି ଭକ୍ତିଭାବ ରଖି ଯେଉଁ ବର୍ଣ୍ଣାଶ୍ରମୀମାନେ ମୋର ହୋଇ ଯାଇଛନ୍ତି, ସେମାନଙ୍କର ମୋ ଉପାସନାରେ ଅଧିକାର ରହିଛି, ଅନ୍ୟମାନଙ୍କର ନୁହେଁ । ଏହା ମୋର ନିଶ୍ଚିତ ଆଜ୍ଞା । ମୋ ଆଜ୍ଞାନୁସାରେ ଧର୍ମମାର୍ଗରେ ଚାଲୁଥିବା ବର୍ଣ୍ଣାଶ୍ରମୀ ମନୁଷ୍ୟ ମୋ ଶରଣକୁ ଆସି ମୋ କୃପାପ୍ରସାଦରେ ମଳ ଓ ମାୟା ଆଦି ପାଶରୁ ମୁକ୍ତ ହୋଇଯାଏ ଏବଂ ମୋର ପୁନରାବୃତ୍ତିରହିତ ଧାମରେ ପହଞ୍ଚି ମୋର ଉତ୍ତମ ସାନ୍ନିଧ୍ୟ ଲାଭ କରି ପରମାନନ୍ଦରେ ନିମଗ୍ନ ହୋଇଯାଏ । ତେଣୁ ମୋର କଥିତ ବର୍ଣ୍ଣଧର୍ମକୁ ପାଇ ଅଥବା ନ ପାଇ ମଧ୍ୟ ଯେଉଁ ବ୍ୟକ୍ତି ମୋ ଶରଣ ନେଇ ମୋର ଭକ୍ତ ହୋଇଯାଏ, ସେ ନିଜେ ନିଜ ଆତ୍ମାର ଉଦ୍ଧାର କରିଥାଏ । ଏହା କୋଟି କୋଟି ଗୁଣ ଅଲବ୍ଧ ଲାଭ । ତେଣୁ ମୋ ମୁଖରେ ପ୍ରତିପାଦିତ ବର୍ଣ୍ଣଧର୍ମକୁ ଅବଶ୍ୟ ପାଳନ କରିବା ଉଚିତ ।

ଯେ ମୋକ୍ଷମାର୍ଗରୁ ବିଚ୍ୟୁତ ହୋଇ ଅନ୍ୟ କୌଣସି ବସ୍ତୁ ପାଇଁ ଶ୍ରମ କରେ, ତାହା ତା' ପାଇଁ ବହୁତ ବଡ଼ କ୍ଷତି ଓ ବହୁତ ବଡ଼ ତ୍ରୁଟି; ତାହା ହିଁ ମୋହ, ଅନ୍ଧତ୍ୱ ଓ ମୂକତ୍ୱ ।* ହେ ଦେବେଶ୍ୱରୀ ! ମୋର ସନାତନଧର୍ମର ଚାରିଟି ଚରଣ ରହିଛି । ସେଗୁଡ଼ିକର ନାମ ହେଲା— ଜ୍ଞାନ, କ୍ରିୟା, ଚର୍ଯ୍ୟା ଓ ଯୋଗ । ପଶୁ, ପାଶ ଓ ପତିଙ୍କ ସମ୍ବନ୍ଧିତ ଜ୍ଞାନ ହିଁ ଜ୍ଞାନ ପଦବାଚ୍ୟ । ଗୁରୁଙ୍କ ଅଧୀନରେ ଯେଉଁ ଷଡ଼ଧ୍ୱଶୋଧନ କାର୍ଯ୍ୟ ହୁଏ, ତାହାକୁ କ୍ରିୟା କହନ୍ତି । ମୋଦ୍ୱାରା ବିହିତ ବର୍ଣ୍ଣାଶ୍ରମ ନିୟମରେ ମୋର ଯେଉଁ ପୂଜନ ଆଦି ଧର୍ମ ପାଳନ କରାଯାଏ, ତାହାର ନାମ ଚର୍ଯ୍ୟା । ମୋଦ୍ୱାରା ନିର୍ଦ୍ଦେଶିତ ମାର୍ଗରେ ସାଧକ ମୋଠାରେ ସୁସ୍ଥିରଭାବରେ ଚିତ୍ତ ନିବେଶ କରି ଅନ୍ତଃକରଣର ଅନ୍ୟ ବୃତ୍ତିଗୁଡ଼ିକୁ ନିରୋଧ କଲେ ତାହାକୁ ଯୋଗ କହନ୍ତି । ହେ ଦେବୀ ! ଚିତ୍ତକୁ ନିର୍ମଳ ଓ ପ୍ରସନ୍ନ କରି ରଖିବା ଅଶ୍ୱମେଧ ଯଜ୍ଞସମୂହ ଠାରୁ ମଧ୍ୟ ଶ୍ରେଷ୍ଠତର; କାରଣ ତାହା ମୁକ୍ତିଦାୟକ ହୋଇଥାଏ । ବିଷୟଭୋଗ ଅଭିଳାଷୀ ଲୋକଙ୍କ ପାଇଁ ଏଭଳି 'ମନଃପ୍ରସାଦ' ଦୁର୍ଲଭ ଅଟେ । ଯେ ଯମ ଓ ନିୟମ ଦ୍ୱାରା ଇନ୍ଦ୍ରିୟମାନଙ୍କ ଉପରେ ବିଜୟୀ ହୋଇଛି, କେବଳ ସେପରି ଅନାସକ୍ତ ବ୍ୟକ୍ତି ନିମନ୍ତେ ହିଁ ଯୋଗ ସୁଲଭ ବୋଲି କୁହାଯାଇଛି । ଯୋଗ ପୂର୍ବ ପାପଗୁଡ଼ିକୁ ହରଣ କରିଥାଏ । ବୈରାଗ୍ୟରୁ ଜ୍ଞାନ ହୋଇଥାଏ ଏବଂ ଜ୍ଞାନରୁ ଯୋଗ ହୋଇଥାଏ । ଯୋଗଜ୍ଞ ପୁରୁଷ

---

* ସା ହାନିସ୍ତନ୍ମହଚ୍ଛିଦ୍ରଂ ସ ମୋହଃ ସାନ୍ଧମୂକତା । ଯଦନ୍ୟତ୍ର ଶ୍ରମଂ କୁର୍ଯ୍ୟାନ୍ ମୋକ୍ଷମାର୍ଗବହିଷ୍କୃତଃ ॥
(ଶି. ପୁ. ବା. ସଂ. ଉ. ଖ. ୧୦ । ୨୯)

ପତିତ ହୋଇଥିଲେ ମଧ୍ୟ ସେ ମୁକ୍ତ ହୋଇଯାଏ, ଏଥିରେ ସଂଶୟ ନାହିଁ।

ପ୍ରାଣୀମାନଙ୍କ ପ୍ରତି ଦୟା କରିବା ଉଚିତ। ସଦା ଅହିଂସାଧର୍ମ ପାଳନ କରିବା ସମସ୍ତଙ୍କ ପାଇଁ କର୍ତ୍ତବ୍ୟ। ଜ୍ଞାନସଂଗ୍ରହ ମଧ୍ୟ ଆବଶ୍ୟକ। ସତ୍ୟ କହିବା, ଚୋରି ନ କରିବା, ଈଶ୍ୱର ଓ ପରୋପକାରରେ ବିଶ୍ୱାସ କରିବା, ମୋ ପ୍ରତି ଶ୍ରଦ୍ଧା କରିବା, ଇନ୍ଦ୍ରିୟଙ୍କୁ ସଂଯମରେ ରଖିବା, ବେଦ-ଶାସ୍ତ୍ର ଅଧ୍ୟୟନ ଓ ଅଧ୍ୟାପନ କରିବା, ଯଜ୍ଞ କରିବା ଓ କରାଇବା, ମୋର ଚିନ୍ତନ କରିବା, ଈଶ୍ୱରଙ୍କ ପ୍ରତି ଅନୁରାଗ ରଖିବା ଏବଂ ସଦା ଜ୍ଞାନଶୀଳ ରହିବା ବ୍ରାହ୍ମଣ ପାଇଁ ନିତାନ୍ତ ଆବଶ୍ୟକ। ଯେଉଁ ବ୍ରାହ୍ମଣ ଜ୍ଞାନଯୋଗର ସିଦ୍ଧି ପାଇଁ ସଦା ଉପରୋକ୍ତ ଧର୍ମ ପାଳନ କରେ, ସେ ଅତିଶୀଘ୍ର ବିଜ୍ଞାନ ପ୍ରାପ୍ତି କରି ଯୋଗସିଦ୍ଧ ହୋଇଯାଏ। ପ୍ରିୟେ! ଜ୍ଞାନୀ ପୁରୁଷ ଜ୍ଞାନାଗ୍ନି ଦ୍ୱାରା ଏହି କର୍ମମୟ ଶରୀରକୁ କ୍ଷଣକ ମଧ୍ୟରେ ଦଗ୍ଧ କରି ମୋ ପ୍ରସାଦରେ ଯୋଗର ଜ୍ଞାତା ହୋଇ କର୍ମବନ୍ଧନରୁ ମୁକ୍ତି ପାଇଯାଏ। ପାପ-ପୁଣ୍ୟମୟ କର୍ମକୁ ମୋକ୍ଷର ପ୍ରତିବନ୍ଧକ ବୋଲି କୁହାଯାଇଛି। ସେଥିପାଇଁ ଯୋଗୀ ଯୋଗ ଦ୍ୱାରା ପୁଣ୍ୟାପୁଣ୍ୟକୁ ପରିତ୍ୟାଗ କରିଦେବା ଉଚିତ। ଫଳକାମନାରେ ପ୍ରେରିତ ହୋଇ କର୍ମ କଲେ ହିଁ ମନୁଷ୍ୟ ବନ୍ଧନରେ ପଡ଼େ, କେବଳ କର୍ମ କଲେ ନୁହେଁ। ତେଣୁ କର୍ମଫଳକୁ ତ୍ୟାଗ କରିବା ଉଚିତ। ପ୍ରିୟେ! ପ୍ରଥମେ କର୍ମମୟ ଯଜ୍ଞ ଦ୍ୱାରା ବାହ୍ୟଭାବେ ମୋତେ ପୂଜା କରି ତା'ପରେ ଜ୍ଞାନଯୋଗରେ ତତ୍ପର ହୋଇ ସାଧକ ଯୋଗ ଅଭ୍ୟାସ କରିବେ। କର୍ମଯଜ୍ଞ ଦ୍ୱାରା ମୋର ଯଥାର୍ଥ ସ୍ୱରୂପର ବୋଧ ହୋଇଗଲେ ଜୀବ ଯୋଗଯୁକ୍ତ ହୋଇ ମୋ ଯଜନରୁ ବିରତ ହୋଇଯାଆନ୍ତି। ସେତେବେଳେ ସେମାନେ ମାଟି, ପଥର ଓ ସୁବର୍ଣ୍ଣରେ ସମଭାବ ରଖନ୍ତି। ମୋର ଯେଉଁ ଭକ୍ତ ନିତ୍ୟଯୁକ୍ତ ଓ ଏକାଗ୍ରଚିତ୍ତ ହୋଇ ଜ୍ଞାନଯୋଗରେ ତତ୍ପର ରହେ, ସେ ମୁନିମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ଯୋଗୀ ହୋଇ ମୋର ସାଯୁଜ୍ୟ ଲାଭ କରେ। ଯେଉଁ ବର୍ଣ୍ଣାଶ୍ରମୀ ବ୍ୟକ୍ତି ମନ ମଧ୍ୟରେ ଅନାସକ୍ତ ନୁହେଁ, ସେ ମୋର ଆଶ୍ରୟ ନେଇ ଜ୍ଞାନ, ଚର୍ଯ୍ୟା ଓ କ୍ରିୟାରେ ପ୍ରବୃତ୍ତ ହେବାର ଅଧିକାରୀ ଏବଂ ସେଗୁଡ଼ିକୁ ସେ ଅନୁଷ୍ଠାନ କରିବାକୁ ଯୋଗ୍ୟ। ମୋ ପୂଜା ଦୁଇ ପ୍ରକାରର— ବାହ୍ୟ ଓ ଆଭ୍ୟନ୍ତର। ପୁଣି ମାନସିକ, ବାଚିକ ଓ ଶାରୀରିକ ଭେଦରେ ମୋର ଭଜନ ତିନି ପ୍ରକାରର ହୋଇଯାଏ। ତପ, କର୍ମ, ଜପ, ଧ୍ୟାନ ଓ ଜ୍ଞାନ—ଏହା ହେଲା ମୋ ଭଜନର ପାଞ୍ଚଟି ସ୍ୱରୂପ; ତେଣୁ ସାଧୁପୁରୁଷ ତାହାକୁ ପାଞ୍ଚ ପ୍ରକାର ବୋଲି କହିଥାନ୍ତି। ମୂର୍ତ୍ତି ଇତ୍ୟାଦିରେ ମୋର ଯେଉଁ ପୂଜା ହୁଏ, ଯାହାକୁ ଅନ୍ୟମାନେ ମଧ୍ୟ ଜାଣିପାରନ୍ତି, ତାହା 'ବାହ୍ୟ ପୂଜନ'। ସେହି ପୂଜନ ବା ଭଜନ ଯେତେବେଳେ ମନଦ୍ୱାରା କରାଯାଏ, କେବଳ ନିଜ ଅନୁଭବର ବିଷୟ ହୁଏ, ତାହା 'ଆଭ୍ୟନ୍ତର ପୂଜନ' ବୋଲାଏ। ମୋଠାରେ ନିବିଷ୍ଟ ଚିତ୍ତ ହିଁ 'ମନ' ବୋଲାଏ। ସାଧାରଣ ଅର୍ଥରେ ପ୍ରଯୁକ୍ତ ମନକୁ ଏଠାରେ ମନ କୁହାଯାଇ ନାହିଁ। ଠିକ୍ ସେହିପରି ଯେଉଁ ବାଣୀ ମୋର ନାମର ଜପ ଓ କୀର୍ତ୍ତନରେ ରତ ଥାଏ, ତାହା ହିଁ ପ୍ରକୃତରେ 'ବାଣୀ' ପଦବାଚ୍ୟ, ସାଧାରଣ ବାଣୀ ନୁହେଁ। ଯେଉଁ ଶରୀର ମୋ ଶାସ୍ତ୍ରରେ ନିର୍ଦ୍ଦେଶିତ ତ୍ରିପୁଣ୍ଡ୍ର ଆଦି ଚିହ୍ନରେ ଅଙ୍କିତ ଓ ନିରନ୍ତର ମୋ ସେବାପୂଜାରେ ନିରତ ଥାଏ, ତାହା ହିଁ 'ଶରୀର', ଅନ୍ୟ ଶରୀର ଶରୀର ବୋଲାଇବା ଯୋଗ୍ୟ ନୁହେଁ। ମୋର ପୂଜାକୁ ହିଁ 'କର୍ମ' ବୋଲି ଜାଣିବା ଉଚିତ। ଅନ୍ୟ ବାହ୍ୟ ଯଜ୍ଞାଦିକୁ କର୍ମ କୁହାଯାଇ ନାହିଁ। ମୋ ପାଇଁ

ଶରୀରକୁ ଶୁଖାଇବା ହିଁ 'ତପ', କୃଚ୍ଛ୍ରଚାନ୍ଦ୍ରାୟଣ ଇତ୍ୟାଦି ତପ ନୁହେଁ। ପଞ୍ଚାକ୍ଷର ମନ୍ତ୍ରାଦିର ଆବୃତ୍ତି, ପ୍ରଣବ ଅଭ୍ୟାସ ଓ ରୁଦ୍ରାଧ୍ୟାୟ ଇତ୍ୟାଦିକୁ ବାରମ୍ବାର ପାଠ କରିବାକୁ ଏଠାରେ 'ଜପ' କୁହାଯାଇଛି, ବେଦାଧ୍ୟୟନ ଆଦିକୁ ନୁହେଁ। ମୋ ସ୍ୱରୂପର ଚିନ୍ତନ-ସ୍ମରଣ ହିଁ 'ଧ୍ୟାନ', ଆତ୍ମା ଆଦି ପାଇଁ କରାଯାଇଥିବା ସମାଧି ନୁହେଁ। ମୋର ଆଗମମାନଙ୍କ ଅର୍ଥକୁ ଭଲଭାବେ ଜାଣିବା ହିଁ 'ଜ୍ଞାନ', ଅନ୍ୟ କୌଣସି କଥାକୁ ବୁଝିବା ଜ୍ଞାନ ନୁହେଁ।

ହେ ଦେବୀ! ପୂର୍ବବାସନାବଶତଃ ବାହ୍ୟ ବା ଆଭ୍ୟନ୍ତର ଯେଉଁ ପ୍ରକାର ପୂଜନରେ ମନ ଲାଗେ, ସେଇଥିରେ ହିଁ ଦୃଢ଼ ନିଷ୍ଠା ରଖିବା ଉଚିତ। ବାହ୍ୟ ପୂଜନ ଠାରୁ ଆଭ୍ୟନ୍ତର ପୂଜନ ଶହେଗୁଣ ଶ୍ରେଷ୍ଠ; କାରଣ ସେଥିରେ ଦୋଷର ମିଶ୍ରଣ ହୁଏ ନାହିଁ ଏବଂ ପ୍ରତ୍ୟକ୍ଷତଃ ଦୋଷ ଘଟିବାର ସମ୍ଭାବନା ବି ନାହିଁ। ଆଭ୍ୟନ୍ତରୀଣ ଶୁଦ୍ଧି ହିଁ ପ୍ରକୃତ ଶୁଦ୍ଧି ବୋଲି ଜାଣ, ବାହ୍ୟ ଶୁଦ୍ଧିକୁ ଶୁଦ୍ଧି କହନ୍ତି ନାହିଁ। ଆନ୍ତରିକଶୁଦ୍ଧିଶୂନ୍ୟ ବ୍ୟକ୍ତି ବାହ୍ୟଭାବେ ଯେତେ ଶୁଦ୍ଧ ହୋଇଥିଲେ ମଧ୍ୟ ଅଶୁଦ୍ଧ ଅଟେ। ହେ ଦେବୀ! ବାହ୍ୟ ଓ ଆଭ୍ୟନ୍ତର ଉଭୟ ପ୍ରକାରର ଭଜନ ଭାବପୂର୍ବକ ବା ଅନୁରାଗପୂର୍ବକ ହେବା ଉଚିତ। ଭାବ ନ ଥାଇ ଯେଉଁ ଭଜନ କରାଯାଏ, ତାହା ଛଳନା। ମୁଁ ତ ସଦା କୃତକୃତ୍ୟ ଓ ପବିତ୍ର, ମନୁଷ୍ୟ ମୋର ଅବା କ'ଣ କରିବେ? ତଥାପି ସେମାନଙ୍କ ଦ୍ୱାରା କରାଯାଇଥିବା ବାହ୍ୟ ଅଥବା ଆଭ୍ୟନ୍ତର ପୂଜନରେ ସେମାନଙ୍କର ଯେତିକି ଭାବ (ପ୍ରେମ) ଥାଏ, ତାହାକୁ ହିଁ ମୁଁ ଗ୍ରହଣ କରିଥାଏ। ହେ ଦେବୀ! କ୍ରିୟାର ଏକମାତ୍ର ଆତ୍ମା ହେଉଛି ଭାବ। ତାହା ହିଁ ମୋର ସନାତନ ଧର୍ମ। ମନ, ବାଣୀ ଓ କର୍ମଦ୍ୱାରା କେଉଁଠି କିଞ୍ଚିନ୍ମାତ୍ର ଫଳେଚ୍ଛା ନ ରଖି କର୍ମ କରିବା ଉଚିତ। ଫଳର ଉଦ୍ଦେଶ୍ୟ ରଖିଲେ ମୋ ଆଶ୍ରୟ ଲଘୁ ହୋଇଯାଏ; କାରଣ ଫଳାର୍ଥୀକୁ ଫଳ ନ ମିଳିଲେ ସେ ମୋତେ ଛାଡ଼ିଦେଇ ପାରେ। ହେ ଅନିନ୍ଦିତେ! ଫଳାର୍ଥୀ ହୋଇଥିଲେ ସୁଦ୍ଧା ଯେଉଁ ସାଧକର ଚିତ୍ତ ମୋଠାରେ ହିଁ ପ୍ରତିଷ୍ଠିତ, ତାହାକୁ ତାହାର ଭାବ ଅନୁସାରେ ମୁଁ ଅବଶ୍ୟ ଫଳ ଦେଇଥାଏ। ଯାହାଙ୍କ ମନ ମୋଠାରେ ଲାଗିବାବେଳେ ଫଳେଚ୍ଛା ନ ଥିଲା, କିନ୍ତୁ ପରବର୍ତ୍ତୀକାଳରେ ସେ ଫଳ ଇଚ୍ଛା କଲେ, ସେପରି ଭକ୍ତ ବି ମୋର ପ୍ରିୟ। ଯେଉଁମାନେ ପୂର୍ବ ସଂସ୍କାରବଶତଃ ଫଳାଫଳର ଚିନ୍ତା ନ କରି ବିବଶ ହୋଇ ମୋର ଶରଣ ନେଇଥାନ୍ତି, ସେପରି ଭକ୍ତ ମୋର ଅଧିକ ପ୍ରିୟ। ସେପରି ଭକ୍ତଙ୍କ ପାଇଁ ମୋତେ ପାଇବା ଠାରୁ ବଳି ଆଉ କିଛି ବାସ୍ତବିକ ଲାଭ ନ ଥାଏ ଏବଂ ମୋ ପାଇଁ ମଧ୍ୟ ସେପରି ଭକ୍ତଙ୍କ ପ୍ରାପ୍ତି ଠାରୁ ବଳି ଅନ୍ୟ କୌଣସି ଲାଭ ନାହିଁ। ମୋ ଠାରେ ସମର୍ପିତ ସେମାନଙ୍କର ଭାବ ମୋ ଅନୁଗ୍ରହରୁ ସତେ ଯେପରି ସେମାନଙ୍କୁ ବଳପୂର୍ବକ ପରମ ନିର୍ବାଣରୂପୀ ଫଳ ପ୍ରଦାନ କରିଥାଏ।

ଯେଉଁମାନେ ଆପଣା ଚିତ୍ତକୁ ମୋତେ ସମର୍ପିତ କରିଦେଇଛନ୍ତି ଓ ମୋର ଅନନ୍ୟ ଭକ୍ତ, ସେପରି ମହାତ୍ମା ଲୋକେ ହିଁ ମୋ ଧର୍ମର ଅଧିକାରୀ। ସେମାନଙ୍କର ଆଠଟି ଲକ୍ଷଣ ଅଛି। ମୋର ଭକ୍ତଜନଙ୍କ ପ୍ରତି ସ୍ନେହ, ମୋ ପୂଜାର ଅନୁମୋଦନ, ସ୍ୱୟଂ ତାଙ୍କର ମୋ ପୂଜାରେ ଆନ୍ତରିକ ପ୍ରବୃତ୍ତି, ମୋ ପାଇଁ ଶାରୀରିକ ଚେଷ୍ଟା, ମୋ କଥାଚରିତ ଶୁଣିବାରେ ଭକ୍ତିଭାବ, କଥାଚରିତ ଶୁଣିବା ବେଳେ ସ୍ୱର, ନେତ୍ର ଓ ଅଙ୍ଗରେ ବିକାର ହେବା, ବାରମ୍ବାର ମୋତେ ସ୍ମରଣ କରିବା ଓ ସଦା ମୋର ଆଶ୍ରିତ ରହି ଜୀବନନିର୍ବାହ କରିବା—ଏ ଆଠଟି ଲକ୍ଷଣ ଯଦି କୌଣସି ମ୍ଳେଚ୍ଛଠାରେ ବି ପରିଲକ୍ଷିତ ହୁଏ,

ସେ ବିପ୍ରଶିରୋମଣି ଶ୍ରୀମାନ୍ ମୁନି ଅଟେ । ସେ ସଂନ୍ୟାସୀ ଓ ପଣ୍ଡିତ ଅଟେ । ଯେଉଁ ବ୍ୟକ୍ତି ମୋର ଭକ୍ତ ନୁହେଁ, ସେ ଚାରିବେଦର ଜ୍ଞାତା ବିଦ୍ୱାନ ହୋଇଥିଲେ ମଧ୍ୟ ମୋର ପ୍ରିୟ ନୁହେଁ । ମାତ୍ର ମୋ ଭକ୍ତ ଜାତିରେ ଚଣ୍ଡାଳ ହୋଇଥିଲେ ସୁଦ୍ଧା ମୋର ପ୍ରିୟ । ତାକୁ ଉପହାର ଦେବା ଉଚିତ, ତା'ଠାରୁ ପ୍ରସାଦ ଗ୍ରହଣ କରିବା ଉଚିତ ଏବଂ ସେ ମୋ ପରି ପୂଜନୀୟ । ଯେ ଭକ୍ତିଭାବରେ ମୋତେ ପତ୍ର, ପୁଷ୍ପ, ଫଳ ଅଥବା ଜଳ ସମର୍ପିତ କରେ, ତା' ପାଇଁ ମୁଁ ଅଦୃଶ୍ୟ ନୁହେଁ କି ମୋ ପାଇଁ ସେ ଅଦୃଶ୍ୟ ନୁହେଁ ।*

(ଅଧ୍ୟାୟ ୧୦)

***

## ବର୍ଣ୍ଣାଶ୍ରମଧର୍ମ ଓ ନାରୀଧର୍ମର ବର୍ଣ୍ଣନା; ଶିବଙ୍କ ଭଜନ, ଚିନ୍ତନ ଏବଂ ଜ୍ଞାନର ମହତ୍ତ୍ୱ ପ୍ରତିପାଦନ

ମହାଦେବ କହୁଛନ୍ତି–ହେ ଦେବେଶ୍ୱରୀ ! ଏବେ ମୁଁ ଅଧିକାରୀ, ବିଦ୍ୱାନ୍ ଓ ଶ୍ରେଷ୍ଠ ବ୍ରାହ୍ମଣ ଭକ୍ତଙ୍କ ପାଇଁ ସଂକ୍ଷେପରେ ବର୍ଣ୍ଣଧର୍ମର ବର୍ଣ୍ଣନା କରୁଛି । ତ୍ରିକାଳସ୍ନାନ, ଅଗ୍ନିହୋତ୍ର, ବିଧିବତ୍ ଶିବଲିଙ୍ଗ ପୂଜନ, ଦାନ, ଈଶ୍ୱରପ୍ରେମ, ସଦା ଓ ସର୍ବତ୍ର ଦୟା, ସତ୍ୟଭାଷଣ, ସନ୍ତୋଷ, ଆସ୍ତିକତା, କାହାରି ପ୍ରତି ହିଂସା ନ କରିବା, ଲଜ୍ଜା, ଶ୍ରଦ୍ଧା, ଅଧ୍ୟୟନ, ଯୋଗ, ନିରନ୍ତର ଅଧ୍ୟାପନ, ବ୍ୟାଖ୍ୟାନ, ବ୍ରହ୍ମଚର୍ଯ୍ୟ, ଉପଦେଶ ଶ୍ରବଣ, ତପସ୍ୟା, କ୍ଷମା, ଶୌଚ, ଶିଖାଧାରଣ, ଯଜ୍ଞୋପବୀତଧାରଣ, ପଗଡ଼ି ଧାରଣ କରିବା, ଉତ୍ତରୀୟ ଧାରଣ କରିବା, ନିଷିଦ୍ଧ ଦ୍ରବ୍ୟ ସେବନ ନ କରିବା, ରୁଦ୍ରାକ୍ଷ ମାଳା ପିନ୍ଧିବା, ପ୍ରତ୍ୟେକ ପର୍ବରେ ବିଶେଷତଃ ଚତୁର୍ଦ୍ଦଶୀକୁ ଶିବଙ୍କୁ ପୂଜା କରିବା, ବ୍ରହ୍ମକୂର୍ଚ୍ଚ[ψ] ପାନ, ପ୍ରତ୍ୟେକ ମାସରେ ବ୍ରହ୍ମକୂର୍ଚ୍ଚ ଦ୍ୱାରା ମୋତେ ସ୍ନାନ କରାଇ ମୋତେ ବିଶେଷରୂପେ ପୂଜା କରିବା, ସମସ୍ତ ପ୍ରକାର କ୍ରିୟାନ୍ନ ଓ ଶ୍ରାଦ୍ଧାନ୍ନ ପରିତ୍ୟାଗ, ବାସି ଅନ୍ନ ତଥା ବିଶେଷତଃ ଯାବକ (କୋଳଥ ବା ଦାଲୁଅ ଧାନ) ତ୍ୟାଗ, ମଦ୍ୟ ଓ ମଦ୍ୟଗନ୍ଧ ତ୍ୟାଗ, ଶିବଙ୍କୁ ନିବେଦିତ (ଚଣ୍ଡେଶ୍ୱରଙ୍କ ଭାଗ) ନୈବେଦ୍ୟ ତ୍ୟାଗ–ଏଗୁଡ଼ିକ ସମସ୍ତ ବର୍ଣ୍ଣ ପାଇଁ ସାଧାରଣ ଧର୍ମ ଅଟେ । ବ୍ରାହ୍ମଣଙ୍କ ପାଇଁ ବିଶେଷ ଧର୍ମ ହେଲା–କ୍ଷମା, ଶାନ୍ତି, ସନ୍ତୋଷ, ସତ୍ୟ, ଅସ୍ତେୟ (ଅଚୌର୍ଯ୍ୟ), ବ୍ରହ୍ମଚର୍ଯ୍ୟ, ଶିବଜ୍ଞାନ, ବୈରାଗ୍ୟ, ଭସ୍ମସେବନ ଓ ସବୁ ପ୍ରକାର ଆସକ୍ତିରୁ ନିବୃତ୍ତି । ଏହି ଦଶଟି ଧର୍ମକୁ ବ୍ରାହ୍ମଣଙ୍କର ବିଶେଷ ଧର୍ମ କୁହାଯାଇଛି ।

ଏବେ ଯୋଗୀ ବା ଯତିମାନଙ୍କର ଲକ୍ଷଣ କହୁଛି । ଦିନରେ ଭିକ୍ଷାନ୍ନ ଭୋଜନ ସେମାନଙ୍କର ବିଶେଷ ଧର୍ମ । ଏହି ନିୟମ ବାନପ୍ରସ୍ଥ ଆଶ୍ରମର ଲୋକଙ୍କ ପାଇଁ ମଧ୍ୟ ସମାନରୂପେ ପ୍ରଯୁଜ୍ୟ । ଏମାନେ ଓ ବ୍ରହ୍ମଚାରୀମାନେ ମଧ୍ୟ ରାତିରେ

---

* ନ ମେ ପ୍ରିୟଶ୍ଚତୁର୍ବେଦୀ ମଦ୍ଭକ୍ତଃ ଶ୍ୱପଚୋଽପି ଯଃ । ତସ୍ମୈ ଦେୟଂ ତତୋ ଗ୍ରାହ୍ୟଂ ସ ଚ ପୂଜ୍ୟୋ ଯଥା ହ୍ୟହମ୍ ॥
ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରୟଚ୍ଛତି । ତସ୍ୟାହଂ ନ ପ୍ରଣଶ୍ୟାମି ସ ଚ ମେ ନ ପ୍ରଣଶ୍ୟତି ॥
(ଶି. ପୁ. ବା. ସଂ. ଉ. ଖ. ୧୦ । ୭୧-୭୨)

[ψ] ପାରାଶରସ୍ମୃତିର ଏକାଦଶ ଅଧ୍ୟାୟରେ ବ୍ରହ୍ମକୂର୍ଚ୍ଚ ସମ୍ବନ୍ଧରେ ଏହିପରି ବିବରଣ ରହିଛି–
ଗୋମୂତ୍ରଂ ଗୋମୟଂ କ୍ଷୀରଂ ଦଧି ସର୍ପିଃ କୁଶୋଦକମ୍ । ନିର୍ଦ୍ଦିଷ୍ଟଂ ପଞ୍ଚଗବ୍ୟଂ ଚ ପବିତ୍ରଂ ପାପଶୋଧନମ୍ ॥ ୨୯ ॥
ଗୋମୂତ୍ରଂ କୃଷ୍ଣବର୍ଣ୍ଣାୟାଃ ଶ୍ୱେତାୟାଶ୍ଚୈବ ଗୋମୟମ୍ । ପୟଶ୍ଚ ତାମ୍ରବର୍ଣ୍ଣାୟା ରକ୍ତାୟା ଗୃହ୍ୟତେ ଦଧି ॥ ୩୦ ॥

ଭୋଜନ କରିବା ଉଚିତ ନୁହେଁ । ପଢ଼ାଇବା, ଯଜ୍ଞ କରାଇବା ଓ ଦାନ ନେବାର ବିଧାନ ମୁଁ ବିଶେଷତଃ କ୍ଷତ୍ରିୟ ଓ ବୈଶ୍ୟଙ୍କ ପାଇଁ କରି ନାହିଁ । ମୋ ଆଶ୍ରୟରେ ରହୁଥିବା ରାଜା ବା କ୍ଷତ୍ରିୟଙ୍କ ପାଇଁ ସଂକ୍ଷେପରେ ମୁଁ ଏହି ଧର୍ମସଂଗ୍ରହ ନିର୍ଦ୍ଦିଷ୍ଟ କରିଛି; ଯଥା–ସବୁ ବର୍ଣ୍ଣର ରକ୍ଷା, ଯୁଦ୍ଧରେ ଶତ୍ରୁଙ୍କ ବଧ, ଦୁଷ୍ଟ ପକ୍ଷୀ, ମୃଗ ଓ ଦୁରାଚାରୀ ମନୁଷ୍ୟଙ୍କୁ ଦମନ କରିବା, ସବୁ ଲୋକଙ୍କୁ ବିଶ୍ୱାସ ନ କରିବା, କେବଳ ଶିବଯୋଗୀଙ୍କ ଉପରେ ବିଶ୍ୱାସ ରଖିବା, ଋତୁକାଳରେ ସ୍ତ୍ରୀସଂସର୍ଗ କରିବା, ସେନା-ସଂରକ୍ଷଣ କରିବା, ଗୁପ୍ତଚର ପଠାଇ ଜଗତରେ ଘଟିତ ହେଉଥିବା ଘଟଣାର ସମାଚାର ଜାଣିବା, ସଦା ଅସ୍ତ୍ର ଧାରଣ କରିବା ଓ ଭସ୍ମମୟ କଂଚୁକ ଧାରଣ କରିବା । ଗୋରକ୍ଷା, ବାଣିଜ୍ୟ ଓ କୃଷି ହେଉଛି ବୈଶ୍ୟଙ୍କର ଧର୍ମ । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କର ସେବା ଶୂଦ୍ରଙ୍କର ଧର୍ମ ବୋଲି ପ୍ରତିପାଦିତ ହୋଇଛି । ବାଗ-ବଗିଚା ନିର୍ମାଣ, ମୋର ତୀର୍ଥସ୍ଥଳକୁ ଗମନ ଏବଂ ନିଜ ଧର୍ମପତ୍ନୀ ସହ ସମାଗମ–ଏସବୁ ଗୃହସ୍ଥ ପାଇଁ ବିହିତ ଧର୍ମ । ବନବାସୀ, ଯତି ଓ ବ୍ରହ୍ମଚାରୀଙ୍କ ପାଇଁ ବ୍ରହ୍ମଚର୍ଯ୍ୟ ପାଳନ ମୁଖ୍ୟଧର୍ମ । ନାରୀଙ୍କ ପାଇଁ ପତିସେବା ହିଁ ସନାତନଧର୍ମ, ତାଙ୍କର ଅନ୍ୟ କିଛି ଧର୍ମ ନାହିଁ । ହେ କଲ୍ୟାଣୀ ! ଯଦି ସ୍ୱାମୀଙ୍କ ଆଜ୍ଞା ଥିବ, ତେବେ ନାରୀ ମୋର ପୂଜନ ମଧ୍ୟ କରି ପାରିବ । ଯେଉଁ ସ୍ତ୍ରୀ ସ୍ୱାମୀର ସେବା

---

କପିଳାୟା ଘୃତଂ ଗ୍ରାହ୍ୟଂ ସର୍ବଂ କାପିଳମେବ ବା । ମୂତ୍ରମେକପଳଂ ଦଦ୍ୟାଦଙ୍ଗୁଷ୍ଠାର୍ଦ୍ଧଂ ତୁ ଗୋମୟମ୍ ॥ ୩୧ ॥
କ୍ଷୀରଂ ସପ୍ତପଳଂ ଦଦ୍ୟାଦ୍ଦଧି ତ୍ରିପଳମୁଚ୍ୟତେ । ଘୃତମେକପଳଂ ଦଦ୍ୟାତ୍ ପଳମେକଂ କୁଶୋଦକମ୍ ॥ ୩୨ ॥
ଗାୟତ୍ର୍ୟାଽଽଦାୟ ଗୋମୂତ୍ରଂ ଗନ୍ଧଦ୍ୱାରେତି ଗୋମୟମ୍ । ଆପ୍ୟାୟସ୍ୱେତି ଚ କ୍ଷୀରଂ ଦଧିକ୍ରାବ୍ଣସ୍ତଥା ଦଧି ॥ ୩୩ ॥
ତେଜୋଽସି ଶୁକ୍ରମିତ୍ୟାଜ୍ୟଂ ଦେବସ୍ୟ ତ୍ୱା କୁଶୋଦକମ୍ । ପଞ୍ଚଗବ୍ୟମୃଚାପୂତଂ ସ୍ଥାପୟେଦଗ୍ନିସଂନିଧୌ ॥ ୩୪ ॥
ଆପୋ ହି ଷ୍ଠେତି ଚାଲୋଡ୍ୟ ମା ନସ୍ତୋକେତି ମନ୍ତ୍ରୟେତ୍ । ସପ୍ତାବରାସ୍ତୁ ଯେ ଦର୍ଭା ଅଚ୍ଛିନ୍ନାଗ୍ରାଃ ଶୁକତ୍ୱିଷଃ ॥ ୩୫ ॥
ଏତୈରୁଦ୍ଧୃତ୍ୟ ହୋତବ୍ୟଂ ପଞ୍ଚଗବ୍ୟଂ ଯଥାବିଧି । ଇରାବତୀ ଇଦଂ ବିଷ୍ଣୁର୍ମା ନସ୍ତୋକେତି ଶଂବତୀ ॥ ୩୬ ॥
ଏତାଭିଶ୍ଚୈବ ହୋତବ୍ୟଂ ହୁତଶେଷଂ ପିବେଦ୍ ଦ୍ୱିଜଃ । ଆଲୋଡ୍ୟ ପ୍ରଣବେନୈବ ନିର୍ମଥ୍ୟ ପ୍ରଣବେନ ତୁ ॥ ୩୭ ॥
ଉଦ୍ଧୃତ୍ୟ ପ୍ରଣବେନୈବ ପିବେଚ୍ଚ ପ୍ରଣବେନ ତୁ । ଯତ୍ତ୍ୱଗସ୍ଥିଗତଂ ପାପଂ ଦେହେ ତିଷ୍ଠତି ଦେହିନାମ୍ ॥ ୩୮ ॥
ବ୍ରହ୍ମକୂର୍ଚଂ ଦହେତ୍ସର୍ବଂ ଯଥୈବାଗ୍ନିରିବେନ୍ଧନମ୍ । ପବିତ୍ରଂ ତ୍ରିଷୁ ଲୋକେଷୁ ଦେବତାଭିରଧିଷ୍ଠିତମ୍ ॥ ୩୯ ॥

"ଗୋମୂତ୍ର, ଗୋମୟ , କ୍ଷୀର, ଦହି, ଘିଅ ଓ କୁଶଜଳ–ଏଗୁଡ଼ିକୁ ପବିତ୍ର ଓ ପାପନାଶକ 'ପଞ୍ଚଗବ୍ୟ' କୁହାଯାଏ । (କୁଶୋଦକମିଶ୍ରିତ ପଞ୍ଚଗବ୍ୟ ହିଁ ବ୍ରହ୍ମକୂର୍ଚ ପଦବାଚ୍ୟ ।) ବ୍ରହ୍ମକୂର୍ଚର ବିଧାନ ପାଇଁ କାଳୀଗାଈର ଗୋମୂତ୍ର, ଧବଳୀ ଗାଈର ଗୋବର, ତାମ୍ରବର୍ଣ୍ଣା ଗାଈର କ୍ଷୀର, ନାଲୀ ଗାଈର ଦହି ଓ କପିଳା ଗାଈର ଘିଅ ଆଣିବା ଆବଶ୍ୟକ; ଅଥବା କେବଳ କପିଳା ଗାଈର ହିଁ ଉକ୍ତ ଗୋମୂତ୍ରାଦି ପାଞ୍ଚଟି ଦ୍ରବ୍ୟ ଅଣାଯାଇ ପାରେ । ଏକ ପଳ ଗୋମୂତ୍ର, ଅର୍ଦ୍ଧ-ଅଙ୍ଗୁଷ୍ଠ ପରିମାଣ ଗୋବର, ସାତ ପଳ କ୍ଷୀର, ତିନି ପଳ ଦହି, ଏକ ପଳ ଘିଅ ଓ ଏକ ପଳ କୁଶୋଦକ ଆବଶ୍ୟକ । 'ଗାୟତ୍ରୀ' ମନ୍ତ୍ରରେ ଗୋମୂତ୍ର, 'ଗନ୍ଧଦ୍ୱାରା' ମନ୍ତ୍ରରେ ଗୋବର, 'ଆପ୍ୟାୟସ୍ୱ' ମନ୍ତ୍ରରେ ଦୁଗ୍ଧ, 'ଦଧିକ୍ରାବ୍ଣ' ମନ୍ତ୍ରରେ ଦହି, 'ତେଜୋଽସି ଶୁକ୍ର' ମନ୍ତ୍ରରେ ଘିଅ ଓ 'ଦେବସ୍ୟ ତ୍ୱା' ମନ୍ତ୍ରରେ କୁଶୋଦକ ଗ୍ରହଣ କରିବେ । ଏହିରୂପେ ଋଚାମାନଙ୍କ ଦ୍ୱାରା ପବିତ୍ର କରାଯାଇଥିବା ସେହି ପଞ୍ଚଗବ୍ୟକୁ ଅଗ୍ନି ପାଖରେ ରଖିବେ । 'ଆପୋ ହି ଷ୍ଠା' ମନ୍ତ୍ରରେ ଗୋମୂତ୍ର ଇତ୍ୟାଦିକୁ ମିଶାଇବେ, 'ମା ନସ୍ତୋକେ' ମନ୍ତ୍ରରେ ଅଭିମନ୍ତ୍ରିତ କରିବେ (ମନ୍ଥିବେ); 'ଇରାବତୀ', 'ଇଦଂ ବିଷ୍ଣୁଃ', 'ମା ନସ୍ତୋକେ' ଓ 'ଶଂବତୀ'–ଏହି ଋଚାଗୁଡ଼ିକ ଦ୍ୱାରା ଅଗ୍ରଭାଗଯୁକ୍ତ ସାତଟି ହରିତ କୁଶରେ ପଞ୍ଚଗବ୍ୟକୁ ହୋମ କରିବେ । ହୋମରୁ ବଳିଥିବା ପଞ୍ଚଗବ୍ୟକୁ ଓଁକାର ଉଚ୍ଚାରଣ କରି ମିଶାଇବେ, ଓଁକାର ଉଚ୍ଚାରଣ କରି ମନ୍ଥିବେ, ଓଁକାର ଉଚ୍ଚାରଣ କରି ଉଠାଇବେ ଓ ଓଁକାର ଉଚ୍ଚାରଣ କରି ଦ୍ୱିଜ ପିଇବେ । ଏହା କଲେ ଅଗ୍ନି କାଠକୁ ଜାଳିଦେବା ପରି ବ୍ରହ୍ମକୂର୍ଚ ମନୁଷ୍ୟର ଚର୍ମ ଓ ହାଡ଼ରେ ଅବଲମ୍ବିତ ପାପଗୁଡ଼ିକୁ ଜାଳିଦିଏ । ଦେବତାଙ୍କ ଦ୍ୱାରା ଅଧିଷ୍ଠିତ ହୋଇଥିବାରୁ ବ୍ରହ୍ମକୂର୍ଚ ତ୍ରିଲୋକରେ ପବିତ୍ର ହୋଇଛି ॥ ୨୯–୩୯ ॥

ଛାଡ଼ି ବ୍ରତରେ ତତ୍ପର ହୁଏ, ସେ ନରକରେ ପଡ଼େ । ଏ ବିଷୟରେ ଅନ୍ୟଥା ବିଗ୍ଚର କରିବାର କିଛି ଆବଶ୍ୟକତା ନାହିଁ ।

ଏବେ ମୁଁ ବିଧବା ନାରୀଙ୍କ ସନାତନ ଧର୍ମର ବର୍ଣ୍ଣନା କରିବି । ବ୍ରତ, ଦାନ, ତପ, ଶୌଚ, ଭୂମିରେ ଶୟନ, କେବଳ ରାତ୍ରିରେ ଭୋଜନ, ସଦା ବ୍ରହ୍ମଚର୍ଯ୍ୟ ପାଳନ, ଭସ୍ମ ଅଥବା ଜଳରେ ସ୍ନାନ, ଶାନ୍ତି, ମୌନ, କ୍ଷମା, ବିଧିପୂର୍ବକ ସମସ୍ତ ଜୀବଙ୍କୁ ଅନ୍ନ ବିତରଣ, ଅଷ୍ଟମୀ, ଚତୁର୍ଦ୍ଦଶୀ, ପୂର୍ଣ୍ଣିମା ଏବଂ ବିଶେଷତଃ ଏକାଦଶୀକୁ ବିଧିବତ୍ ଉପବାସ ଓ ମୋର ପୂଜା—ଏସବୁ ହେଲା ବିଧବା ନାରୀଙ୍କର ଧର୍ମ । ହେ ଦେବୀ ! ମୁଁ ସଂକ୍ଷେପରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ସଂନ୍ୟାସୀ, ବ୍ରହ୍ମଚ୍ଚରୀ, ବାନପ୍ରସ୍ଥ ଓ ଗୃହସ୍ଥ ପାଇଁ ସେମାନଙ୍କ ଆଶ୍ରମ ଧର୍ମର ବର୍ଣ୍ଣନା କଲି । ଶୂଦ୍ର ଓ ନାରୀଙ୍କ ପାଇଁ ମଧ୍ୟ ସନାତନ ଧର୍ମର ଉପଦେଶ ଦେଲି । ହେ ଦେବେଶ୍ୱରୀ ! ତୁମେ ସଦା ମୋର ଧ୍ୟାନ ଓ ମୋର ଷଡକ୍ଷର ମନ୍ତ୍ର ଜପିବା ଉଚିତ । ଏହା ହିଁ ସମସ୍ତ ବେଦରେ କଥିତ ଧର୍ମ ଏବଂ ଏହା ହିଁ ଧର୍ମ ଓ ଅର୍ଥର ସଂଗ୍ରହ ।

ଜଗତରେ ଯେଉଁ ଲୋକେ ନିଜ ଇଚ୍ଛାରେ ମୋର ବିଗ୍ରହସେବାର ବ୍ରତ ଧାରଣ କରିଛନ୍ତି ଏବଂ ପୂର୍ବଜନ୍ମର ସେବା ସଂସ୍କାରଯୁକ୍ତ ହୋଇଥିବାରୁ ଅତ୍ୟଧିକ ଭାବସମ୍ପନ୍ନ, ସେମାନେ ସ୍ତ୍ରୀ ଆଦି ବିଷୟରେ ଅନୁରକ୍ତ ହୋଇଥାନ୍ତୁ ବା ଅନାସକ୍ତ ହୋଇଥାନ୍ତୁ, ସେମାନେ ପଦ୍ମପତ୍ର ଜଳରେ ଲିପ୍ତ ନ ହେବା ପରି ପାପରେ ଲିପ୍ତ ହୁଅନ୍ତି ନାହିଁ । ମୋ ପ୍ରସାଦରେ ବିଶୁଦ୍ଧ ହୋଇଥିବା ସେପରି ବିବେକୀ ବ୍ୟକ୍ତିଙ୍କୁ ମୋ ସ୍ୱରୂପର ଜ୍ଞାନ ହୋଇଯାଏ । ସେମାନଙ୍କ ପାଇଁ ଆଉ କର୍ତ୍ତବ୍ୟ-ଅକର୍ତ୍ତବ୍ୟର ବିଧି-ନିଷେଧ ରହେ ନାହିଁ । ସମାଧି ଓ ଶରଣାଗତି ମଧ୍ୟ ଆବଶ୍ୟକ ହୁଏ ନାହିଁ । ଯେପରି ମୋ ପାଇଁ କୌଣସି ବିଧି-ନିଷେଧ ନାହିଁ, ସେହିପରି ସେମାନଙ୍କ ପାଇଁ ମଧ୍ୟ ନାହିଁ । ପରିପୂର୍ଣ୍ଣ ହୋଇଥିବା କାରଣରୁ ଯେପରି ମୋ ପାଇଁ କିଛି ସାଧ୍ୟ ନାହିଁ, ଠିକ୍ ସେହିପରି ସେହି କୃତକୃତ୍ୟ ଜ୍ଞାନଯୋଗୀଙ୍କ ପାଇଁ ମଧ୍ୟ କୌଣସି କର୍ତ୍ତବ୍ୟ ବାକି ରହେ ନାହିଁ । ସେମାନେ ମୋ ଭକ୍ତଙ୍କ ହିତ ପାଇଁ ମାନବଭାବର ଆଶ୍ରୟ ନେଇ ଧରାପୃଷ୍ଠରେ ଜୀବନ ବିତାଇଥାନ୍ତି । ସେମାନଙ୍କୁ ନିଃସନ୍ଦେହରେ ରୁଦ୍ରଲୋକରୁ ପରିଭ୍ରଷ୍ଟ ରୁଦ୍ର ବୋଲି ବୁଝିବା ଉଚିତ । ଯେପରି ମୋ ଆଜ୍ଞା ବ୍ରହ୍ମାଦି ଦେବତାଙ୍କୁ କାର୍ଯ୍ୟରେ ପ୍ରବୃତ୍ତ କରାଇଥାଏ, ସେହିପରି ଉକ୍ତ ଶିବଯୋଗୀଙ୍କ ଆଜ୍ଞା ମଧ୍ୟ ଅନ୍ୟ ଲୋକଙ୍କୁ କର୍ତ୍ତବ୍ୟକର୍ମରେ ନିଯୁକ୍ତ କରିଥାଏ । ସେମାନେ ମୋ ଆଜ୍ଞାର ଆଧାର । ସେମାନଙ୍କ ଠାରେ ଅତିଶୟ ସଦ୍ଭାବ ମଧ୍ୟ ରହିଥାଏ । ତେଣୁ ସେମାନଙ୍କୁ ଦର୍ଶନ କରିବା ମାତ୍ରେ ପାପନାଶ ହୋଇଯାଏ ଏବଂ ପ୍ରଶସ୍ତ ଫଳପ୍ରାପ୍ତିକୁ ସୂଚିତ କରୁଥିବା ବିଶ୍ୱାସ ମଧ୍ୟ ବୃଦ୍ଧି ପାଇଥାଏ । ଯେଉଁମାନଙ୍କର ମୋ ପ୍ରତି ଅନୁରାଗ ରହିଛି, ସେମାନଙ୍କୁ ପୂର୍ବରୁ କେବେ ଦେଖି ନ ଥିବା, ଶୁଣି ନ ଥିବା ଓ ଅନୁଭବ କରି ନ ଥିବା ବିଷୟର ମଧ୍ୟ ଜ୍ଞାନ ହୋଇଯାଏ । ସେମାନଙ୍କ ଠାରେ ଅକସ୍ମାତ୍ କମ୍ପ, ସ୍ୱେଦ, ଅଶ୍ରୁପାତ, କଣ୍ଠାବରୋଧ ହେବା ସହ ଆନନ୍ଦାଦି ଭାବ ବାରମ୍ବାର ଉଦିତ ହେବାକୁ ଲାଗେ । ଏ ସମସ୍ତ ଲକ୍ଷଣ ସେମାନଙ୍କ ଠାରେ କେବେ ଗୋଟିଏ ଗୋଟିଏ କରି ତ କେବେ ସମସ୍ତ ଭାବ ଏକାବେଳକେ ଉଦିତ ହେବାକୁ ଲାଗେ । କଦାପି ବିଚ୍ୟୁତ ନ ହେଉଥିବା ଏହି ମନ୍ଦ, ମଧ୍ୟମ ଓ ଉତ୍ତମ ଭାବ ଦ୍ୱାରା ହିଁ ସେହି ଶ୍ରେଷ୍ଠ ବ୍ୟକ୍ତିଙ୍କୁ ଚିହ୍ନିବା ଉଚିତ ।

ଲୁହା ଅଗ୍ନିରେ ଉତ୍ତପ୍ତ ହୋଇ ଲାଲ

ହୋଇଯିବା ପରେ ଯେପରି ତାହା କେବଳ ଲୁହା ହୋଇ ରହିଯାଏ ନାହିଁ, ସେହିପରି ମୋର ସାନ୍ନିଧ୍ୟ ପ୍ରାପ୍ତ ହେଲା ପରେ ସେ କେବଳ ମନୁଷ୍ୟ ହୋଇ ରହେ ନାହିଁ; ସେ ମୋର ସ୍ୱରୂପ ହୋଇଯାଏ । ହାତ, ଗୋଡ଼ ଇତ୍ୟାଦିର ସାଧର୍ମ୍ୟରୁ ସେ ମାନବଶରୀର ଧାରଣ କରିଥିଲେ ସୁଦ୍ଧା ବାସ୍ତବରେ ସେ ରୁଦ୍ର ଅଟେ । ସେମାନଙ୍କୁ ପ୍ରାକୃତ ମନୁଷ୍ୟ ବୁଝି ବିଦ୍ୱାନ୍ ଲୋକେ କଦାପି ଅବହେଳା କରିବା ଉଚିତ ନୁହେଁ । ଯେଉଁ ମୂଢ଼ ଲୋକେ ସେମାନଙ୍କ ପ୍ରତି ଅବହେଳା କରନ୍ତି, ସେମାନେ ନିଜର ଆୟୁ, ଲକ୍ଷ୍ମୀ, କୁଳ ଓ ଶୀଳ ହରାଇ ନରକରେ ପଡ଼ନ୍ତି । ଅଧିକ ବା କ'ଣ କହିବା, ଯେକୌଣସି ଉପାୟରେ ବି ମୋ ଠାରେ ଚିତ୍ତକୁ ଲଗାଇବା କଲ୍ୟାଣପ୍ରାପ୍ତିର ଏକମାତ୍ର ସାଧନ ।

ଉପମନ୍ୟୁ କହୁଛନ୍ତି–ପରମାତ୍ମା ଶ୍ରୀକଣ୍ଠନାଥ ଶିବ ତ୍ରିଲୋକର ହିତ ପାଇଁ ଜ୍ଞାନର ସାରଭୂତ ଅର୍ଥସଂଗ୍ରହକୁ ପ୍ରକାଶ କରିଛନ୍ତି । ସମସ୍ତ ବେଦ, ଶାସ୍ତ୍ର, ଇତିହାସ, ପୁରାଣ ଓ ବିଦ୍ୟା ଏହି ବିଜ୍ଞାନସଂଗ୍ରହର ହିଁ ବ୍ୟାଖ୍ୟା ଅଟେ । ଏହାକୁ ଜ୍ଞାନ, ଜ୍ଞେୟ, ଅନୁଷ୍ଠେୟ, ଅଧିକାର, ସାଧନ ଓ ସାଧ୍ୟ– ଏ ଛଅଟି ଅର୍ଥର ସଂକ୍ଷିପ୍ତ ସଂଗ୍ରହ ବୋଲି କୁହାଯାଇଛି । ଶ୍ରୀକୃଷ୍ଣ ! ଯେ ଶିବ ଓ ଶିବାଙ୍କ ସମ୍ବନ୍ଧିତ ଜ୍ଞାନାମୃତରେ ତୃପ୍ତ ଏବଂ ସେମାନଙ୍କ ପ୍ରତି ଯାହାର ଭକ୍ତି ରହିଛି, ତା'ପାଇଁ ବାହ୍ୟ ଓ ଆଭ୍ୟନ୍ତରରେ କୌଣସି କର୍ତ୍ତବ୍ୟ ବାକି ନାହିଁ । ଏଣୁ କ୍ରମାନ୍ୱୟରେ ବାହ୍ୟ ଓ ଆଭ୍ୟନ୍ତରୀଣ କର୍ମକୁ ତ୍ୟାଗ କରି ଜ୍ଞାନବଳରେ ଜ୍ଞେୟର ସାକ୍ଷାତ୍କାର କରି ତା'ପରେ ସେହି ସାଧନଭୂତ ଜ୍ଞାନକୁ ମଧ୍ୟ ତ୍ୟାଗ କରିଦେବା ବିଧେୟ । ଯଦି ଚିତ୍ତ ଶିବଙ୍କ ଠାରେ ଏକାଗ୍ର ନାହିଁ, ତେବେ କର୍ମ କରିବାରେ କି ଲାଭ? ଯଦି ଚିତ୍ତ ଏକାଗ୍ର ଅଛି, ତେବେ ବି କର୍ମ କରିବାର କି ଆବଶ୍ୟକତା ଅଛି? ତେଣୁ ବାହ୍ୟ ଓ ଆଭ୍ୟନ୍ତରରେ କର୍ମ କରି ହେଉ ଅଥବା ନ କରି ହେଉ, ଯେକୌଣସି ଉପାୟରେ ହେଲେ ବି ଭଗବାନ ଶିବଙ୍କ ଠାରେ ଚିତ୍ତ ନିବେଶ କରିବା ଉଚିତ । ଯାହାର ଚିତ୍ତ ଶିବଙ୍କ ଠାରେ ନିବିଷ୍ଟ ଏବଂ ଯାହାର ବୁଦ୍ଧି ସ୍ଥିର, ସେପରି ସତ୍‌ପୁରୁଷଙ୍କୁ ଇହଲୋକ ଓ ପରଲୋକରେ ସର୍ବତ୍ର ପରମାନନ୍ଦପ୍ରାପ୍ତି ହୋଇଥାଏ । ଏଠାରେ 'ଓଁ ନମଃ ଶିବାୟ' ମନ୍ତ୍ରରେ ସକଳ ପ୍ରକାର ସିଦ୍ଧି ସୁଲଭ ହୋଇଯାଏ । ତେଣୁ ପରାବର ବିଭୂତି (ଉତ୍ତମ-ମଧ୍ୟମ ଐଶ୍ୱର୍ଯ୍ୟ) ପ୍ରାପ୍ତି ପାଇଁ ଏହି ମନ୍ତ୍ରର ଜ୍ଞାନ ଲାଭ କରିବା ଉଚିତ ।

(ଅଧ୍ୟାୟ ୧୧)

★★★

## ପଞ୍ଚାକ୍ଷର ମନ୍ତ୍ରର ମାହାତ୍ମ୍ୟ

ଶ୍ରୀକୃଷ୍ଣ କହିଲେ–ସର୍ବଜ୍ଞ ମହର୍ଷିପ୍ରବର ! ଆପଣ ଜ୍ଞାନର ମହାସାଗର । ଏବେ ମୁଁ ଆପଣଙ୍କ ମୁଖରୁ ପଞ୍ଚାକ୍ଷର ମନ୍ତ୍ରର ମାହାତ୍ମ୍ୟ ବିଷୟରେ ତତ୍ତ୍ୱତଃ ଶୁଣିବାକୁ ଚାହେଁ ।

ଉପମନ୍ୟୁ କହିଲେ–ହେ ଦେବକୀନନ୍ଦନ ! ପଞ୍ଚାକ୍ଷର ମନ୍ତ୍ରର ମାହାତ୍ମ୍ୟକୁ ବିସ୍ତାରପୂର୍ବକ ବର୍ଣ୍ଣନା କରିବା ତ ଶହେ କୋଟି ବର୍ଷରେ ମଧ୍ୟ ସମ୍ଭବ ହେବ ନାହିଁ; ତେଣୁ ସଂକ୍ଷେପରେ ଏହାର ମହିମା ଶୁଣ । ବେଦ ଓ ଶୈବାଗମ ଉଭୟ ସ୍ଥାନରେ ଏହି ଷଡକ୍ଷର (ପ୍ରଣବସହିତ ପଞ୍ଚାକ୍ଷର) ମନ୍ତ୍ର ଶିବଭକ୍ତମାନଙ୍କ ପାଇଁ ସମସ୍ତ ଅର୍ଥର ସାଧକ ବୋଲି କୁହାଯାଇଛି । ଏହି ମନ୍ତ୍ରରେ ଅକ୍ଷର ଅଳ୍ପ ସତ, କିନ୍ତୁ ଏହା ମହାନ୍ ଅର୍ଥସମ୍ପନ୍ନ । ଏହା ବେଦର ସାରତତ୍ତ୍ୱ, ମୋକ୍ଷପ୍ରଦାୟକ, ଶିବଙ୍କ ଆଜ୍ଞାରେ ସିଦ୍ଧ, ସନ୍ଦେହଶୂନ୍ୟ ଓ ଶିବସ୍ୱରୂପ ବାକ୍ୟ । ଏହା ନାନା ପ୍ରକାର ସିଦ୍ଧିରେ ସଂଯୁକ୍ତ,

ଦିବ୍ୟ, ଲୋକଙ୍କର ମନ ପ୍ରସନ୍ନକାରୀ ଓ ନିର୍ମଳକାରକ, ସୁନିଶ୍ଚିତ ଅର୍ଥଯୁକ୍ତ (ଅଥବା ସୁନିଶ୍ଚିତରୂପେ ମନୋରଥ ପୂର୍ଣ୍ଣକାରୀ) ଏବଂ ପରମେଶ୍ୱରଙ୍କ ଗମ୍ଭୀର ବଚନ । ଏହି ମନ୍ତ୍ରକୁ ମୁଖରେ ଉଚ୍ଚାରଣ କରିବା ସହଜ । ସର୍ବଜ୍ଞ ଶିବ ସକଳ ଦେହଧାରୀଙ୍କର ସମସ୍ତ ମନୋରଥର ସିଦ୍ଧି ପାଇଁ ଏହି 'ଓଁ ନମଃ ଶିବାୟ' ମନ୍ତ୍ରକୁ ପ୍ରତିପାଦନ କରିଛନ୍ତି । ଉକ୍ତ ଆଦ୍ୟ ଷଡକ୍ଷର ମନ୍ତ୍ର ସକଳ ବିଦ୍ୟା (ମନ୍ତ୍ର)ର ବୀଜ ବା ମୂଳ । ଯେପରି ବରଫଳର ସୂକ୍ଷ୍ମ ମଞ୍ଜି ଭିତରେ ମହାନ୍ ବୃକ୍ଷ ଲୁକ୍କାୟିତରୂପେ ରହିଥାଏ, ସେହିପରି ଅତ୍ୟନ୍ତ ସୂକ୍ଷ୍ମ ହେଲେ ମଧ୍ୟ ଏହି ମନ୍ତ୍ରକୁ ମହାନ୍ ଅର୍ଥରେ ପରିପୂର୍ଣ୍ଣ ବୋଲି ବୁଝିବା ଉଚିତ ।

'ଓଁ' ନାମକ ଏକାକ୍ଷର ମନ୍ତ୍ରରେ ତ୍ରିଗୁଣାତୀତ, ସର୍ବଜ୍ଞ, ସର୍ବକର୍ତ୍ତା, ଦ୍ୟୁତିମାନ୍, ସର୍ବବ୍ୟାପୀ ପ୍ରଭୁ ଶିବ ପ୍ରତିଷ୍ଠିତ ଅଟନ୍ତି । ଈଶାନ ଆଦି ଯେତେ ସୂକ୍ଷ୍ମ ଏକାକ୍ଷରରୂପ ବ୍ରହ୍ମ ଅଛି, ସେ ସମସ୍ତ 'ନମଃ ଶିବାୟ' ମନ୍ତ୍ରରେ କ୍ରମାନ୍ୱୟରେ ସ୍ଥିତ । ସୂକ୍ଷ୍ମ ଷଡକ୍ଷର ମନ୍ତ୍ରରେ ପଞ୍ଚବ୍ରହ୍ମରୂପଧାରୀ ସାକ୍ଷାତ୍ ଭଗବାନ ଶିବ ସ୍ୱଭାବତଃ ବାଚ୍ୟ-ବାଚକଭାବରେ ବିରାଜମାନ । ଅପ୍ରମେୟ ହେବା କାରଣରୁ ଶିବଙ୍କୁ ବାଚ୍ୟ ଓ ମନ୍ତ୍ରକୁ ତାଙ୍କର ବାଚକ ଧରାଯାଇଛି । ଶିବ ଓ ମନ୍ତ୍ର ମଧ୍ୟରେ ଏପରି ବାଚ୍ୟ-ବାଚକଭାବ ଅନାଦିକାଳରୁ ରହିଆସିଛି । ଏ ଘୋର ସଂସାର-ସାଗର ଯେପରି ଅନାଦି କାଳରୁ ରହିଛି, ସଂସାରରୁ ମୁକ୍ତ କରୁଥିବା ଭଗବାନ ଶିବ ମଧ୍ୟ ସେହିପରି ଅନାଦିକାଳରୁ ନିତ୍ୟ ବିରାଜମାନ । ଔଷଧ ଯେପରି ରୋଗର ସ୍ୱାଭାବିକ ଶତ୍ରୁ, ଭଗବାନ ଶିବ ସେହିପରି ସଂସାରଦୋଷର ସ୍ୱାଭାବିକ ଶତ୍ରୁ ରୂପେ ବିବେଚିତ । ଯଦି ସେ ବିଶ୍ୱନାଥ ହୋଇ ନ ଥାନ୍ତେ, ଏ ଜଗତ ଅନ୍ଧକାରମୟ ହୋଇଥାନ୍ତା; କାରଣ ପ୍ରକୃତି ଜଡ଼ ଓ ଜୀବାତ୍ମା ଅଜ୍ଞାନୀ । ତେଣୁ ଏମାନଙ୍କୁ ପରମାତ୍ମା ହିଁ ଆଲୋକ ପ୍ରଦାନ କରିଥାନ୍ତି । ପ୍ରକୃତିଠାରୁ ଆରମ୍ଭ କରି ପରମାଣୁ ପର୍ଯ୍ୟନ୍ତ ଯାହା କିଛି ଜଡ଼ରୂପ ତତ୍ତ୍ୱ ଅଛି, ତାହା କୌଣସି ବୁଦ୍ଧିମାନ୍ (ଚେତନ) କାରଣ ବିନା ସ୍ୱୟଂ 'କର୍ତ୍ତା' ହେବା ଦୃଷ୍ଟିଗୋଚର ହୁଏ ନାହିଁ । ଜୀବଙ୍କୁ ଧର୍ମ ପାଳନ କରିବାକୁ ଓ ଅଧର୍ମରୁ ଦୂରେଇ ରହିବାକୁ ଉପଦେଶ ଦିଆଯାଏ । ସେମାନଙ୍କ ବନ୍ଧନ ଓ ମୋକ୍ଷ ପରିଲକ୍ଷିତ ହୋଇଥାଏ । ସୁତରାଂ ବିଗ୍ଭର କଲେ ସର୍ବଜ୍ଞ ପରମାତ୍ମା ଶିବଙ୍କ ବିନା ପ୍ରାଣୀଙ୍କର ଆଦ୍ୟସର୍ଗ କଥା ସିଦ୍ଧ ହୋଇପାରେ ନାହିଁ । ରୋଗୀମାନେ ଯେପରି ବୈଦ୍ୟ ବିନା ସୁଖରହିତ ହୋଇ କ୍ଳେଶ ସହିଥାନ୍ତି, ସେହିପରି ସର୍ବଜ୍ଞ ଶିବଙ୍କ ଆଶ୍ରୟ ନ ନେଲେ ସଂସାରୀ ଜୀବ ନାନା ପ୍ରକାର କ୍ଳେଶ ଭୋଗିଥାନ୍ତି ।

ଏଥିରୁ ପ୍ରମାଣିତ ହେଲା ଯେ ଜୀବଙ୍କୁ ସଂସାରସାଗରରୁ ଉଦ୍ଧାରକାରୀ ସ୍ୱାମୀ ଅନାଦି ସର୍ବଜ୍ଞ ପରିପୂର୍ଣ୍ଣ ସଦାଶିବ ନିତ୍ୟ ବିଦ୍ୟମାନ ଅଟନ୍ତି । ସେହି ପ୍ରଭୁ ଆଦି-ମଧ୍ୟ-ଅନ୍ତରହିତ, ସ୍ୱଭାବତଃ ନିର୍ମଳ, ସର୍ବଜ୍ଞ ଓ ପରିପୂର୍ଣ୍ଣ । ତାଙ୍କୁ ଶିବ ନାମରେ ଜାଣିବା ଉଚିତ । ଶିବାଗମରେ ତାଙ୍କ ସ୍ୱରୂପ ବିଶଦରୂପେ ବର୍ଣ୍ଣିତ ହୋଇଛି । ପଞ୍ଚାକ୍ଷର ମନ୍ତ୍ର ହେଉଛି ତାଙ୍କର ଅଭିଧାନ (ବାଚକ) ଏବଂ ଶିବ ହେଉଛନ୍ତି ଅଭିଧେୟ (ବାଚ୍ୟ) । ଅଭିଧାନ ଓ ଅଭିଧେୟ (ବାଚ୍ୟ ଓ ବାଚକ) ରୂପ ହୋଇଥିବାରୁ ଏହି ପରମଶିବସ୍ୱରୂପ ମନ୍ତ୍ର ସିଦ୍ଧମନ୍ତ୍ରରୂପେ ଅଭିହିତ । 'ଓଁ ନମଃ ଶିବାୟ'—ଏହି ଷଡ଼କ୍ଷର ଶିବବାକ୍ୟ ହିଁ ଶିବଜ୍ଞାନ ଏବଂ ଏତିକି ହିଁ ପରମପଦ । ଏହା ଶିବଙ୍କର ବିଧିବାକ୍ୟ, ଏହା ଅର୍ଥବାଦ ନୁହେଁ । ଏହା ସେଇ ଶିବଙ୍କର ସ୍ୱରୂପ, ଯିଏ ସର୍ବଜ୍ଞ, ପରିପୂର୍ଣ୍ଣ ଓ ସ୍ୱଭାବତଃ ନିର୍ମଳ ।

ଯେଉଁ ଶିବ ଅଖିଳ ବ୍ରହ୍ମାଣ୍ଡ ଉପରେ ଅନୁଗ୍ରହ କରନ୍ତି, ସେ ମିଥ୍ୟା କାହିଁକି କହିବେ? ଯେ ସର୍ବଜ୍ଞ, ସେ ହିଁ ମନ୍ତ୍ରର ପୂର୍ଣ୍ଣଫଳ ବିଷୟରେ କହିବାକୁ ସମର୍ଥ। ଯେଉଁମାନେ ଆସକ୍ତି ବା ଅଜ୍ଞାନ ଇତ୍ୟାଦି ଦୋଷରେ ଗ୍ରସ୍ତ, ସେମାନେ ମିଥ୍ୟା କହିପାରନ୍ତି; ମାତ୍ର ଏପରି ଦୋଷ ତ ଈଶ୍ୱରଙ୍କ ଠାରେ ନାହିଁ, ତେଣୁ ସେ କାହିଁକି ବା ମିଥ୍ୟା କହିବେ? ଯେଉଁ ସର୍ବଜ୍ଞ ଶିବଙ୍କର ଏ ସମସ୍ତ ଦୋଷ ସହ କଦାପି ପରିଚୟ ହୋଇ ନାହିଁ, ତାଙ୍କ ଦ୍ୱାରା ପ୍ରଣୀତ ଏହି ନିର୍ମଳ ବାକ୍ୟ ବା ପଞ୍ଚାକ୍ଷରମନ୍ତ୍ର ଯେ ପ୍ରମାଣଭୂତ, ଏଥିରେ ସଂଶୟର ଅବକାଶ ନାହିଁ। ଏଣୁ ବିଦ୍ୱାନ୍ ଲୋକେ ତାଙ୍କ ବଚନ ପ୍ରତି ଶ୍ରଦ୍ଧା କରିବା ଉଚିତ। ଯଥାର୍ଥ ପୁଣ୍ୟ-ପାପ ବିଷୟରେ ଈଶ୍ୱରଙ୍କ ବଚନ ଉପରେ ଶ୍ରଦ୍ଧା ନ କରୁଥିବା ବ୍ୟକ୍ତି ନରକରେ ପଡ଼େ। ଶାନ୍ତ ସ୍ୱଭାବର ଶ୍ରେଷ୍ଠ ମୁନିଗଣ ସ୍ୱର୍ଗ ଓ ମୋକ୍ଷ ପ୍ରାପ୍ତି ନିମନ୍ତେ ଯେଉଁ ସୁନ୍ଦର କଥା କହିଛନ୍ତି, ତାହାକୁ ସୁଭାଷିତ ବୋଲି ବୁଝିବା ଉଚିତ। ଯେଉଁ ବାକ୍ୟ ଆସକ୍ତି, ଦ୍ୱେଷ, ଅସତ୍ୟ, କାମ, କ୍ରୋଧ ଓ ତୃଷ୍ଣାର ଅନୁସରଣ କରେ, ତାହା ନରକର ହେତୁ ହୋଇଥିବାରୁ ଦୁର୍ଭାଷିତ ପଦବାଚ୍ୟ।* ଅବିଦ୍ୟା ଓ ଆସକ୍ତିରେ ଯୁକ୍ତ ବାକ୍ୟ ଜନ୍ମ-ମରଣରୂପୀ ସଂସାର-କ୍ଳେଶ ପ୍ରାପ୍ତିରେ କାରଣ ହୋଇଥାଏ। ତେଣୁ ତାହା ଯେତେ କୋମଳ, ଲଳିତ ଅଥବା ସଂସ୍କୃତ (ସଂସ୍କାରଯୁକ୍ତ) ହୋଇଥିଲେ ବି କି ଲାଭ? ଯେଉଁ ବାକ୍ୟକୁ ଶୁଣିଲେ କଲ୍ୟାଣପ୍ରାପ୍ତି ହୁଏ ଏବଂ ଆସକ୍ତି ଇତ୍ୟାଦି ଦୋଷ ନଷ୍ଟ ହୁଏ, ତାହା ସୁନ୍ଦର ଶବ୍ଦାବଳୀରେ ଯୁକ୍ତ ନ ହୋଇଥିଲେ ବି ତାହା ଶୋଭନ ଓ ବୁଝିବାର ଯୋଗ୍ୟ। ମନ୍ତ୍ରର ସଂଖ୍ୟା ବହୁତ ହୋଇଥିଲେ ସୁଦ୍ଧା ଯେଉଁ ବିମଳ ଷଡ଼କ୍ଷର ମନ୍ତ୍ରକୁ ସର୍ବଜ୍ଞ ଶିବ ସୃଷ୍ଟି କରିଛନ୍ତି, ତାହା ସଦୃଶ ଆଉ କୌଣସି ମନ୍ତ୍ର ନାହିଁ।

ଷଡ଼କ୍ଷର ମନ୍ତ୍ରରେ ଷଡଙ୍ଗ ସମେତ ସମସ୍ତ ବେଦ ଓ ଶାସ୍ତ୍ର ବିଦ୍ୟମାନ ଅଟନ୍ତି, ତେଣୁ ତାହାପରି ଆଉ କୌଣସି ମନ୍ତ୍ର ନାହିଁ। ସାତକୋଟି ମହାମନ୍ତ୍ର ଏବଂ ଅନେକ ଉପମନ୍ତ୍ର ଠାରୁ ଏହି ଷଡକ୍ଷର ମନ୍ତ୍ର ଭିନ୍ନ, ଯେପରି ବୃତ୍ତିଠାରୁ ସୂତ୍ର ଭିନ୍ନ। ଯେତେ ସବୁ ଶିବଜ୍ଞାନ ଓ ବିଦ୍ୟାସ୍ଥାନ ରହିଛି, ସେସବୁ ହେଉଛି ଷଡକ୍ଷର ମନ୍ତ୍ରରୂପୀ ସୂତ୍ରର ସଂକ୍ଷିପ୍ତ ଭାଷ୍ୟ। ଯେଉଁ ବ୍ୟକ୍ତି ହୃଦୟରେ 'ଓଁ ନମଃ ଶିବାୟ' ଏହି ଷଡକ୍ଷର ମନ୍ତ୍ର ପ୍ରତିଷ୍ଠିତ, ତାହାର ଅନ୍ୟାନ୍ୟ ବହୁସଂଖ୍ୟକ ମନ୍ତ୍ର ଓ ଅନେକ ପ୍ରକାର ବିସ୍ତୃତଶାସ୍ତ୍ରରେ ବା କି ପ୍ରୟୋଜନ? ଯେ 'ଓଁ ନମଃ ଶିବାୟ' ମନ୍ତ୍ରକୁ ଦୃଢ଼ଭାବରେ ଆପଣାର କରିନେଇଛି, ଜାଣ ଯେ ସେ ସମସ୍ତ ଶାସ୍ତ୍ର ପଢ଼ିସାରିଛି ଏବଂ ସମସ୍ତ ଶୁଭ କୃତ୍ୟ କରିସାରିଛି। ଆଦିରେ 'ନମଃ' ପଦଯୁକ୍ତ 'ଶିବାୟ' ନାମକ ତ୍ରିଅକ୍ଷର ଯାହାର ଜିହ୍ୱାଗ୍ରରେ ବିଦ୍ୟମାନ, ତାହାର ଜୀବନ ସଫଳ ହୋଇଗଲା। ପଞ୍ଚାକ୍ଷର ମନ୍ତ୍ର ଜପରେ ନିମଗ୍ନ ବ୍ୟକ୍ତି ପଣ୍ଡିତ, ମୂର୍ଖ, ଅନ୍ତ୍ୟଜ ଅଥବା ଅଧମ ହୋଇଥିଲେ ବି ସେ ପାପପଞ୍ଜରରୁ ମୁକ୍ତ ହୋଇଯାଏ।

(ଅଧ୍ୟାୟ ୧୨)



* ରାଗଦ୍ୱେଷାନୃତକ୍ରୋଧକାମତୃଷ୍ଣାନୁସାରି ଯତ୍। ବାକ୍ୟଂ ନିରୟହେତୁତ୍ୱାତ୍ ତଦ୍ ଦୁର୍ଭାଷିତମୁଚ୍ୟତେ॥
(ଶି. ପୁ., ବା. ସଂ., ଉ. ଖ. ୧୨।୨୭)

# ପଞ୍ଚାକ୍ଷର ମନ୍ତ୍ରର ମହିମା, ସେଥିରେ ସମସ୍ତ ବାଙ୍ମୟର ସ୍ଥିତି, ତାହାର ଉପଦେଶର ପରମ୍ପରା, ଦେବୀରୂପା ପଞ୍ଚାକ୍ଷରୀବିଦ୍ୟାର ଧ୍ୟାନ, ସେଥିରେ ଥିବା ସମସ୍ତ ଓ ବ୍ୟସ୍ତ ଅକ୍ଷରଗୁଡ଼ିକର ଋଷି, ଛନ୍ଦ, ଦେବତା, ବୀଜ, ଶକ୍ତି ଓ ଅଙ୍ଗନ୍ୟାସ ଇତ୍ୟାଦିର ବିବେଚନା

ଦେବୀ କହିଲେ–ମହେଶ୍ୱର ! ଦୁର୍ଜୟ, ଦୁର୍ଲଙ୍ଘ୍ୟ ଓ କଳୁଷିତ କଳିକାଳରେ ସାରା ସଂସାର ଯେତେବେଳେ ଧର୍ମବିମୁଖ ହୋଇ ପାପମୟ ଅନ୍ଧକାରରେ ବୁଡ଼ିଯିବ, ବର୍ଣ୍ଣ ଓ ଆଶ୍ରମର ଆଗ୍ରହ ନଷ୍ଟ ହୋଇଯିବ, ଧର୍ମସଂକଟ ଉପସ୍ଥିତ ହୋଇଯିବ, ସବୁରି ଅଧିକାର ସନ୍ଦିଗ୍ଧ, ଅନିଶ୍ଚିତ ଓ ବିପରୀତ ହୋଇଯିବ, ସେତେବେଳେ ଉପଦେଶର ପ୍ରଣାଳୀ ନଷ୍ଟ ହୋଇଯିବ ଏବଂ ଗୁରୁଶିଷ୍ୟ ପରମ୍ପରା ମଧ୍ୟ ଲୁପ୍ତ ହେବାକୁ ଲାଗିବ; ସେଭଳି ପରିସ୍ଥିତିରେ ଆପଣଙ୍କ ଭକ୍ତ କେଉଁ ଉପାୟରେ ମୁକ୍ତ ହେବେ?

ମହାଦେବ କହିଲେ–ହେ ଦେବୀ! କଳିକାଳର ମନୁଷ୍ୟ ମୋର ପରମ ମନୋରମ ପଞ୍ଚାକ୍ଷରୀ ବିଦ୍ୟାର ଆଶ୍ରୟ ନେଇ ଓ ଭକ୍ତିଭାବିତ ରହି ସଂସାରବନ୍ଧନରୁ ମୁକ୍ତ ହୋଇଯାଆନ୍ତି । ଅଚିନ୍ତ୍ୟ ଓ ଅକଥନୀୟ ମାନସିକ, ବାଚିକ ଏବଂ ଶାରୀରିକ ଦୋଷମାନଙ୍କରେ ଯେଉଁମାନେ ଦୂଷିତ ଅଥବା କୃତଘ୍ନ, ନିର୍ଦୟ, ଛଳନାପରାୟଣ ଓ କୁଟିଳ ହୋଇଯାଇଛନ୍ତି, ସେମାନେ ମଧ୍ୟ ଯଦି ମୋଠାରେ ମନ ଲଗାଇ ମୋର ପଞ୍ଚାକ୍ଷରୀ ବିଦ୍ୟା ଜପ କରିବେ, ସେମାନଙ୍କ ପାଇଁ ସେହି ବିଦ୍ୟା ହିଁ ସଂସାରଭୟରୁ ତ୍ରାଣକାରୀ ହେବ । ହେ ଦେବୀ ! ମୁଁ ବାରମ୍ବାର ପ୍ରତିଜ୍ଞାପୂର୍ବକ ଏ କଥା କହିଛି ଯେ ପୃଥିବୀପୃଷ୍ଠରେ ମୋର ପତିତ ହୋଇଯାଇଥିବା ଭକ୍ତ ମଧ୍ୟ ଏହି ପଞ୍ଚାକ୍ଷରୀ ବିଦ୍ୟା ଦ୍ୱାରା ବନ୍ଧନରୁ ମୁକ୍ତ ହୋଇଯାଏ ।

ଦେବୀ କହିଲେ–ଯଦି ମନୁଷ୍ୟ ପତିତ ହୋଇଯିବାରୁ କର୍ମ କରିବାର ଯୋଗ୍ୟ ହୋଇ ରହେ ନାହିଁ, ତେବେ ତା'ଦ୍ୱାରା କୃତ କର୍ମ ତ ନରକକୁ ନେଇଯାଇଥାଏ । ଏପରି ସ୍ଥିତିରେ ପତିତ ମାନବ ଏହି ବିଦ୍ୟା ଦ୍ୱାରା କିପରି ମୁକ୍ତ ହୋଇପାରିବ ଭଲା?

ମହାଦେବ କହିଲେ–ହେ ସୁନ୍ଦରୀ ! ତୁମେ ବହୁତ ଭଲ କଥାଟିଏ ପଚାରିଛ । ଏହାର ଉତ୍ତର ଶୁଣ । ଏ ବିଷୟ ଗୁପ୍ତ ହୋଇଥିବାରୁ ପୂର୍ବରୁ ଏପର୍ଯ୍ୟନ୍ତ ମୁଁ ଏହାକୁ ପ୍ରକଟ କରି ନ ଥିଲି । ଯଦି ପତିତ ମନୁଷ୍ୟ ମୋହବଶତଃ (ଅନ୍ୟ) ମନ୍ତ୍ରୋଚ୍ଚାରଣ କରି ମୋତେ ପୂଜା କରେ, ସେ ନିଶ୍ଚୟ ନରକଗାମୀ ହୋଇପାରେ, କିନ୍ତୁ ପଞ୍ଚାକ୍ଷର ମନ୍ତ୍ର ପାଇଁ ଏପରି ପ୍ରତିବନ୍ଧକ ନାହିଁ । କେବଳ ଜଳ ପିଇ ବା ପବନ ଆହାର କରି ଅଥବା ନାନା ପ୍ରକାର ବ୍ରତ ଦ୍ୱାରା ନିଜ ଶରୀରକୁ ଶୁଖାଇ ତପସ୍ୟା କରୁଥିବା ଲୋକମାନଙ୍କୁ ଉକ୍ତ ବ୍ରତଦ୍ୱାରା ମୋ ଧାମ ପ୍ରାପ୍ତି ହୁଏ ନାହିଁ । ମାତ୍ର ଭକ୍ତିପୂର୍ବକ ପଞ୍ଚାକ୍ଷର ମନ୍ତ୍ରରେ ଯିଏ ଥରେ ବି ମୋତେ ପୂଜା କରିଥାଏ, ସେ ଏହି ମନ୍ତ୍ରର ପ୍ରଭାବରେ ମୋ ଧାମରେ ପହଞ୍ଚିଯାଏ । ଏଣୁ ତପ, ଯଜ୍ଞ, ବ୍ରତ ଓ ନିୟମ ପଞ୍ଚାକ୍ଷର ଦ୍ୱାରା ମୋର ପୂଜନର କୋଟିଏତମ ଅଂଶ ସଙ୍ଗେ ମଧ୍ୟ ସମାନ ହେବ ନାହିଁ । ବ୍ୟକ୍ତି ବଦ୍ଧ ହେଉ ବା ମୁକ୍ତ ହେଉ, ସେ ଯଦି ପଞ୍ଚାକ୍ଷର ମନ୍ତ୍ର ଦ୍ୱାରା ଭକ୍ତିଭାବରେ ମୋତେ ପୂଜା କରେ, ସେ ନିଶ୍ଚିତରୂପେ ସଂସାରପାଶରୁ ମୁକ୍ତି ପାଇଯାଏ । ଯେଉଁ ଷଡକ୍ଷର ବା ପଞ୍ଚାକ୍ଷର ମନ୍ତ୍ର ଈଶାନାଦି ପାଞ୍ଚ ବ୍ରହ୍ମର ଅଙ୍ଗ, ସେହି ମନ୍ତ୍ର ଦ୍ୱାରା ଯିଏ ଭକ୍ତିଭାବରେ ମୋତେ ପୂଜା କରେ, ସେ ମୁକ୍ତ ହୋଇଯାଏ । ବ୍ୟକ୍ତି ପତିତ

ହେଉ ବା ଅପତିତ, ସେ ପଞ୍ଚାକ୍ଷର ମନ୍ତ୍ରରେ ମୋତ ପୂଜା କରିବା ଉଚିତ । ମୋ ଭକ୍ତ ଗୁରୁଙ୍କ ଠାରୁ ପଞ୍ଚାକ୍ଷର ମନ୍ତ୍ର ଉପଦେଶ ନେଇଥାଉ ବା ନ ନେଇଥାଉ, ସେ କ୍ରୋଧକୁ ଜିଣି ଏହି ମନ୍ତ୍ରଦ୍ୱାରା ମୋତେ ପୂଜା କରିବା ଉଚିତ । ଦୀକ୍ଷା ନେଇ ନ ଥିବା ଲୋକ ଅପେକ୍ଷା ଦୀକ୍ଷା ନେଇଥିବା ଲୋକ କୋଟି କୋଟି ଗୁଣ ଭଲ । ତେଣୁ ହେ ଦେବୀ ! ଦୀକ୍ଷା ଗ୍ରହଣ କରି ହିଁ ଏହି ମନ୍ତ୍ରରେ ପୂଜା କରିବା ବିଧେୟ । ଯେ ମନ୍ତ୍ରଦୀକ୍ଷା ନେବା ସହ ମୈତ୍ରୀ, ମୁଦିତା (ଏବଂ କରୁଣା, ଉପେକ୍ଷା) ଆଦି ଗୁଣଯୁକ୍ତ ତଥା ବ୍ରହ୍ମଚର୍ଯ୍ୟପରାୟଣ ହୋଇ ଭକ୍ତିଭାବରେ ମୋତେ ପୂଜା କରେ, ସେ ମୋର ସମତା ପ୍ରାପ୍ତ ହୁଏ । ଏ ବିଷୟରେ ଅଧିକ ଆଉ କ'ଣ ବା କହିବି ! ସୁତରାଂ ଏହା ଶ୍ରେଷ୍ଠତର ମନ୍ତ୍ର । ପଞ୍ଚାକ୍ଷର ପ୍ରଭାବରେ ହିଁ ଲୋକ, ବେଦ, ମହର୍ଷି, ସନାତନଧର୍ମ, ଦେବତା, ଏପରିକି ସମଗ୍ର ଜଗତ ତିଷ୍ଠି ରହିଛି ।

ହେ ଦେବୀ ! ପ୍ରଳୟକାଳରେ ଯେତେବେଳେ ସଚରାଚର ଜଗତ ନଷ୍ଟ ହୋଇଯାଏ ଏବଂ ସମଗ୍ର ପ୍ରପଞ୍ଚ ପ୍ରକୃତିରେ ଲୀନ ହୋଇଯାଏ, ସେତେବେଳେ ଏକମାତ୍ର ମୁଁ ରହିଥାଏ, ଅନ୍ୟ କେହି ନ ଥାଏ । ସେତେବେଳେ ସମସ୍ତ ଦେବତା ଓ ଶାସ୍ତ୍ର ପଞ୍ଚାକ୍ଷର ମନ୍ତ୍ରରେ ସ୍ଥିତ ରହନ୍ତି । ଏଣୁ ମୋ ଶକ୍ତିରେ ପାଳିତ ହେବା କାରଣରୁ ସେମାନେ ନଷ୍ଟ ହୁଅନ୍ତି ନାହିଁ । ଏହାପରେ ମୋଠାରୁ ପ୍ରକୃତି-ପୁରୁଷଭେଦଯୁକ୍ତ ସୃଷ୍ଟିର ସୃଜନ ହୁଏ । ତା'ପରେ ତ୍ରିଗୁଣାତ୍ମକ ମୂର୍ତ୍ତିଙ୍କର ସଂହାର କରୁଥିବା ଗୌଣ ପ୍ରଳୟ ହୁଏ । ସେହି ପ୍ରଳୟକାଳରେ ଭଗବାନ ନାରାୟଣ ମାୟାମୟ ଶରୀରର ଆଶ୍ରୟ ନେଇ ଜଳଭିତରେ ଶେଷଶଯ୍ୟାରେ ଶୟନ କରନ୍ତି । ତାଙ୍କ ନାଭିକମଳରୁ ପଞ୍ଚମୁଖ ବ୍ରହ୍ମାଙ୍କର ଜନ୍ମ ହୁଏ । ବ୍ରହ୍ମା ତ୍ରିଲୋକକୁ ସୃଷ୍ଟି କରିବାକୁ ଚାହାନ୍ତି, କିନ୍ତୁ କୌଣସି ସହାୟକ ନ ଥିବାରୁ ତାହା କରିପାରନ୍ତି ନାହିଁ । ସେତେବେଳେ ସେ ପ୍ରଥମେ ଦଶଜଣ ଅମିତତେଜସ୍ୱୀ ମହର୍ଷିଙ୍କୁ ସୃଷ୍ଟି କରନ୍ତି, ସେମାନଙ୍କୁ ମାନସପୁତ୍ର କୁହାଯାଇଛି । ସେହି ପୁତ୍ରଙ୍କର ସିଦ୍ଧି ବର୍ଦ୍ଧନ ନିମନ୍ତେ ପିତାମହ ବ୍ରହ୍ମା ମୋତେ କହିଲେ—"ହେ ମହାଦେବ ! ମହେଶ୍ୱର ! ମୋର ପୁତ୍ରଙ୍କୁ ଶକ୍ତି ପ୍ରଦାନ କରନ୍ତୁ ।" ତାଙ୍କ ପ୍ରାର୍ଥନା କ୍ରମେ ମୁଁ ମୋର ପାଞ୍ଚମୁଖରେ ପ୍ରତ୍ୟେକରୁ ଗୋଟିଏ ଲେଖାଏଁ ଅକ୍ଷର ବ୍ରହ୍ମାଙ୍କୁ ଉପଦେଶ ଦେଲି । ଲୋକପିତାମହ ବ୍ରହ୍ମା ମଧ୍ୟ ତାଙ୍କ ପାଞ୍ଚମୁଖରେ କ୍ରମାନ୍ୱୟରେ ସେହି ପାଞ୍ଚଟି ଅକ୍ଷରକୁ ଗ୍ରହଣ କଲେ ଏବଂ ବାଚ୍ୟବାଚକଭାବରେ ମୋତେ ମହେଶ୍ୱର ବୋଲି ଜାଣିଲେ । ମନ୍ତ୍ର ପ୍ରୟୋଗକୁ ଜାଣି ପ୍ରଜାପତି ବିଧିବତ୍ ତାହାକୁ ସିଦ୍ଧ କଲେ । ତା'ପରେ ସେ ତାଙ୍କ ପୁତ୍ରମାନଙ୍କୁ ଯଥାବତ୍ ସେହି ମନ୍ତ୍ର ଓ ତାହାର ଅର୍ଥ ଉପଦେଶ ଦେଲେ । ସାକ୍ଷାତ୍ ଲୋକପିତାମହ ବ୍ରହ୍ମାଙ୍କ ଠାରୁ ସେହି ମନ୍ତ୍ରରତ୍ନକୁ ପାଇ ମୋର ଆରାଧନା କରିବାକୁ ଚାହୁଁଥିବା ସେହି ମୁନିମାନେ ତାଙ୍କ ଉପଦିଷ୍ଟ ପଦ୍ଧତି ଅନୁସାରେ ସେହି ମନ୍ତ୍ରକୁ ଜପି ଜପି ମେରୁର ରମଣୀୟ ଶିଖରରେ ମୁଞ୍ଜବାନ୍ ପର୍ବତ ନିକଟରେ ଏକହଜାର ଦିବ୍ୟବର୍ଷ ପର୍ଯ୍ୟନ୍ତ ତୀବ୍ର ତପସ୍ୟା କଲେ । ସେମାନେ ଲୋକସୃଷ୍ଟି ପାଇଁ ଅତ୍ୟନ୍ତ ଉତ୍ସୁକ ଥିଲେ । ସେଥିପାଇଁ ବାୟୁ ପାନ କରି କଠୋର ତପସ୍ୟା କରୁଥିଲେ । ଯେଉଁ ମୁଞ୍ଜବାନ୍ ପର୍ବତ ଉପରେ ସେମାନେ ତପସ୍ୟା କରୁଥିଲେ, ତାହା ମୋର ଅତି ପ୍ରିୟ ଏବଂ ମୋର ଭକ୍ତମାନେ ନିରନ୍ତର ତାହାକୁ ରକ୍ଷା କରିଛନ୍ତି ।

ସେହି ଆର୍ଯ୍ୟ ଋଷିମାନଙ୍କ ଭକ୍ତି ଦେଖି ମୁଁ ଅବିଳମ୍ବେ ସେମାନଙ୍କୁ ପ୍ରତ୍ୟକ୍ଷ ଦର୍ଶନ ଦେଲି ଏବଂ ପଞ୍ଚାକ୍ଷର ମନ୍ତ୍ରର ଋଷି, ଛନ୍ଦ, ଦେବତା, ବୀଜ, ଶକ୍ତି, କୀଳକ, ଷଡ଼ଙ୍ଗନ୍ୟାସ, ଦିଗ୍‌ବନ୍ଧ ଓ

ବିନିଯୋଗ ବିଷୟରେ ଜ୍ଞାନ ପ୍ରଦାନ କଲି । ସୃଷ୍ଟିର ବିସ୍ତାର ନିମନ୍ତେ ମୁଁ ସେମାନଙ୍କୁ ସମସ୍ତ ବିଧି କହିଦେଲି, ଏହାଫଳରେ ସେମାନେ ଉକ୍ତ ମନ୍ତ୍ରର ମାହାତ୍ମ୍ୟ ହେତୁ ତପସ୍ୟାରେ ବହୁତ ଅଗ୍ରଗତି କଲେ ଏବଂ ଦେବତା, ଅସୁର ଓ ମନୁଷ୍ୟଙ୍କ ସୃଷ୍ଟିକୁ ଉତ୍ତମରୂପେ ବିସ୍ତାର କଲେ ।

ଏବେ ଏହି ଉତ୍ତମ ବିଦ୍ୟା ପଞ୍ଚାକ୍ଷରୀର ସ୍ୱରୂପ ବର୍ଣ୍ଣନା କରୁଛି । ଆରମ୍ଭରେ 'ନମଃ' ପଦ ଓ ତା'ପରେ 'ଶିବାୟ' ପଦ ପ୍ରୟୋଗ କରିବା ଉଚିତ । ଏହା ହିଁ ପଞ୍ଚାକ୍ଷରୀ ବିଦ୍ୟା । ଏହା ସମସ୍ତ ଶ୍ରୁତିର ଶିରୋମଣି ଓ ସମସ୍ତ ଶବ୍ଦସମୂହର ସନାତନ ବୀଜ । ଏହି ବିଦ୍ୟା ପ୍ରଥମେ ମୋ ମୁଖରୁ ବାହାରିଥିଲା; ସେଥିପାଇଁ ଏହା ମୋ ସ୍ୱରୂପକୁ ପ୍ରତିପାଦିତ କରିଥାଏ । ଏହାକୁ ଜଣେ ଦେବୀଙ୍କ ରୂପରେ ଧ୍ୟାନ କରିବା ଉଚିତ । ସେହି ଦେବୀଙ୍କ ଅଙ୍ଗକାନ୍ତି ତପ୍ତସୁବର୍ଣ୍ଣ ସଦୃଶ । ତାଙ୍କର ପୀନ ପୟୋଧର ଉତ୍ତୁଙ୍ଗ । ସେ ଚାରିଭୁଜ ଓ ତ୍ରିନେତ୍ରରେ ସୁଶୋଭିତା । ତାଙ୍କ ମସ୍ତକରେ ବାଳଚନ୍ଦ୍ର ମୁକୁଟରୂପେ ଶୋଭାପାଉଛି । ଦୁଇ ହାତରେ ପଦ୍ମ ଓ ଉତ୍ପଳ ଏବଂ ଅନ୍ୟ ଦୁଇ ହାତରେ ବରଦ ଓ ଅଭୟ ମୁଦ୍ରା । ମୁଖାକୃତି ସୌମ୍ୟ । ସେ ସମସ୍ତ ଶୁଭଲକ୍ଷଣରେ ଓ ନାନା ଆଭୂଷଣରେ ବିଭୂଷିତା । ସେ ଶ୍ୱେତପଦ୍ମର ଆସନରେ ବିରାଜମାନା । ତାଙ୍କର କଳା-କଳା କୁଞ୍ଚିତ କେଶ ଅତ୍ୟନ୍ତ ଶୋଭନୀୟ । ତାଙ୍କ ଶରୀରରୁ ପାଞ୍ଚପ୍ରକାର ବର୍ଣ୍ଣର ରଶ୍ମି ବାହାରୁଛି । ସେଗୁଡ଼ିକ ହେଲା—ପୀତ, କୃଷ୍ଣ, ଧୂମ୍ର, ସ୍ୱର୍ଣ୍ଣିମ ଓ ରକ୍ତ । ଏହି ବର୍ଣ୍ଣଗୁଡ଼ିକୁ ଯଦି ପୃଥକ୍ ପୃଥକ୍ ପ୍ରୟୋଗ କରାଯାଏ, ତେବେ ଏଗୁଡ଼ିକୁ ବିନ୍ଦୁ ଓ ନାଦରେ ବିଭୂଷିତ କରିବା ଉଚିତ । ବିନ୍ଦୁର ଆକୃତି ଅର୍ଦ୍ଧଚନ୍ଦ୍ର ପରି ଏବଂ ନାଦର ଆକୃତି ଦୀପଶିଖା ପରି । ହେ ସୁମୁଖୀ! ଯଦିଓ ଏ ମନ୍ତ୍ରର ସମସ୍ତ ଅକ୍ଷର ବୀଜରୂପ ଅଟେ, ତଥାପି ସେଥିମଧ୍ୟରୁ ଦ୍ୱିତୀୟ ଅକ୍ଷରକୁ ଏହି ମନ୍ତ୍ରର ବୀଜ ବୁଝିବା ଉଚିତ । ଦୀର୍ଘସ୍ୱରଯୁକ୍ତ ଚତୁର୍ଥ ବର୍ଣ୍ଣକୁ କୀଳକ ଓ ପଞ୍ଚମ ବର୍ଣ୍ଣକୁ ଶକ୍ତି ବୁଝିବା ଉଚିତ । ଏହି ମନ୍ତ୍ରର ଋଷି ହେଉଛନ୍ତି ବାମଦେବ ଓ ଛନ୍ଦ ହେଉଛି ପଂକ୍ତି । ବରାନନେ ! ମୁଁ ଶିବ ହିଁ ଏହି ମନ୍ତ୍ରର ଦେବତା* । ବରାରୋହେ ! ଗୌତମ, ଅତ୍ରି, ବିଶ୍ୱାମିତ୍ର, ଅଙ୍ଗିରା ଓ ଭରଦ୍ୱାଜ ହେଲେ ଯଥାକ୍ରମେ ନ'କାରାଦି ବର୍ଣ୍ଣର ଋଷି । ଗାୟତ୍ରୀ, ଅନୁଷ୍ଟୁପ୍, ତ୍ରିଷ୍ଟୁପ୍, ବୃହତୀ ଓ ବିରାଟ୍ ହେଲା ଯଥାକ୍ରମେ ପାଞ୍ଚଅକ୍ଷରର ଛନ୍ଦ । ଇନ୍ଦ୍ର, ରୁଦ୍ର, ବିଷ୍ଣୁ, ବ୍ରହ୍ମା ଓ ସ୍କନ୍ଦ ହେଲେ ଯଥାକ୍ରମେ ସେହି ଅକ୍ଷରଗୁଡ଼ିକର ଦେବତା । ବରାନନେ ! ମୋର ପୂର୍ବାଦି ଚାରିଦିଗର ଓ ଉପରର ମୁଖ ଯଥାକ୍ରମେ ଉକ୍ତ ନ'କାରାଦି ଅକ୍ଷରର ସ୍ଥାନ । ପଞ୍ଚାକ୍ଷର ମନ୍ତ୍ରର ପ୍ରଥମ ଅକ୍ଷର ଏବଂ ଦ୍ୱିତୀୟ ଓ ଚତୁର୍ଥ ଅକ୍ଷର ଉଦାତ୍ତ ଅଟେ । ପଞ୍ଚମ ସ୍ୱରିତ ଓ ତୃତୀୟ ଅକ୍ଷର ଅନୁଦାତ୍ତ ଅଟେ । ଏହି ପଞ୍ଚାକ୍ଷର ମନ୍ତ୍ରର ମୂଳ ବିଦ୍ୟା ଶିବ, ଶୈବ, ସୂତ୍ର ଓ ପଞ୍ଚାକ୍ଷର ନାମ ବୋଲି ଜାଣିବା ଉଚିତ । ଶୈବ ବୀଜ ପ୍ରଣବ ମୋର ବିଶାଳ ହୃଦୟ, ନ'କାର ଶିର ଓ ମ'କାର ଶିଖା ବୋଲାଏ । 'ଶି' କବଚ, 'ବା' ନେତ୍ର ଓ ୟ'କାର ଅସ୍ତ୍ର ଅଟେ । ଏହି ବର୍ଣ୍ଣଗୁଡ଼ିକର ଶେଷରେ ଅଙ୍ଗଗୁଡ଼ିକର ଚତୁର୍ଥ୍ୟନ୍ତ

* ଓଁ ଅସ୍ୟ ଶ୍ରୀଶିବପଞ୍ଚାକ୍ଷରୀ ମନ୍ତ୍ରସ୍ୟ ବାମଦେବ ଋଷିଃ, ପଂକ୍ତିଶ୍ଛନ୍ଦଃ, ଶିବୋ ଦେବତା, ମଂ ବୀଜମ୍, ୟଂ ଶକ୍ତିଃ, ବାଂ କୀଳକଂ ସଦାଶିବକୃପାପ୍ରସାଦୋପଲବ୍ଧିପୂର୍ବକମଖିଳପୁରୁଷାର୍ଥସିଦ୍ଧୟେ ଜପେ ବିନିଯୋଗଃ ।' ଶିବପୁରାଣର ଏହି ବର୍ଣ୍ଣନାନୁସାରେ ଏହା ବିନିଯୋଗ ବାକ୍ୟ ଅଟେ । ମନ୍ତ୍ରମହାର୍ଣ୍ଣବ ଇତ୍ୟାଦିରେ ଯେଉଁ ବିନିଯୋଗ ଦିଆଯାଇଛି, ସେଥିରେ 'ଓଁ' ବୀଜମ୍, 'ନମଃ' ଶକ୍ତିଃ, 'ଶିବାୟ' ଇତି କୀଳକମ୍ —ଏତିକି ଅନ୍ତର ରହିଛି ।

ରୂପ ସହିତ ଯଥାକ୍ରମେ ନମଃ, ସ୍ୱାହା, ବଷଟ୍, ହୁମ୍, ବୌଷଟ୍ ଓ ଫଟ୍ ଯୋଗ କଲେ ଅଙ୍ଗନ୍ୟାସ ହୁଏ ।*

ହେ ଦେବୀ ! ସାମାନ୍ୟ ଭେଦ ସହ ଏହା ତୁମର ମଧ୍ୟ ମୂଳମନ୍ତ୍ର । ପଞ୍ଚାକ୍ଷର ମନ୍ତ୍ରରେ ଥିବା ପଞ୍ଚମବର୍ଣ୍ଣ 'ୟ'କୁ ଦ୍ୱାଦଶ ସ୍ୱରରେ ବିଭୂଷିତ କରାଗଲେ ଅର୍ଥାତ୍ 'ନମଃ ଶିବାୟ' ସ୍ଥାନରେ 'ନମଃ ଶିବାୟୈ' କହିଦେଲେ ଏହା ଦେବୀଙ୍କ ମୂଳମନ୍ତ୍ର ହୋଇଯାଏ । ତେଣୁ ସାଧକ ଏହି ମନ୍ତ୍ରରେ ମନ, ବାଣୀ ଓ ଶରୀର ଭେଦରେ ଆମ ଦୁହିଙ୍କର ପୂଜା, ଜପ ଓ ହୋମ କରିବା ଉଚିତ । (ମନ, ବାଣୀ ଓ ଶରୀର ଭେଦରେ ଏ ପୂଜନ ତିନିପ୍ରକାର ହୋଇଥାଏ, ଯଥା—ମାନସିକ, ବାଚିକ ଓ ଶାରୀରିକ ।) ହେ ଦେବୀ ! ଯାହାର ଯେତିକି ବୁଦ୍ଧି, ସମୟ, ଶକ୍ତି, ସମ୍ପତ୍ତି, ଉତ୍ସାହ, ଯୋଗ୍ୟତା ଓ ପ୍ରୀତି ଅଛି, ତଦନୁସାରେ ସେ ଶାସ୍ତ୍ରବିଧିରେ ଯେକୌଣସି ସମୟରେ, ଯେକୌଣସି ସ୍ଥାନରେ ଅଥବା ଯେକୌଣସି ସାଧନଦ୍ୱାରା ମୋର ପୂଜା କରିପାରିବ । ତା'ଦ୍ୱାରା କୃତ ସେବା ତାକୁ ଅବଶ୍ୟ ମୋକ୍ଷ ପ୍ରଦାନ କରିବ । ହେ ସୁନ୍ଦରୀ ! ମୋ'ଠାରେ ମନ ଲଗାଇ ଯାହାକିଛି କ୍ରମରେ ବା ବ୍ୟୁତ୍କ୍ରମରେ କରାଯାଇଥାଏ, ତାହା କଲ୍ୟାଣକାରୀ ଏବଂ ମୋ ପାଇଁ ପ୍ରୀତିକର ହୋଇଥାଏ । ତଥାପି ଯେଉଁମାନେ ମୋର ଭକ୍ତ ଅଟନ୍ତି ଏବଂ କର୍ମ କରିବାକୁ ଅତ୍ୟନ୍ତ ଅସମର୍ଥ ହୋଇ ନାହାନ୍ତି, ସେମାନଙ୍କ ପକ୍ଷେ ଶାସ୍ତ୍ରମାନଙ୍କରେ ମୋ ଦ୍ୱାରା କଥିତ ନିୟମମାନ ପାଳନୀୟ । ଏବେ ମୁଁ ମନ୍ତ୍ରଦୀକ୍ଷା ନେବାର ଶୁଭ ବିଧାନ କହୁଛି; କାରଣ ଏହା ବିନା ମନ୍ତ୍ରଜପ ନିଷ୍ଫଳ ହୋଇଥାଏ । ଦୀକ୍ଷାପୂର୍ବକ କୃତ ଜପକର୍ମ ଅବଶ୍ୟ ସଫଳ ହୁଏ । (ଅଧ୍ୟାୟ ୧୩)

***

## ଗୁରୁଙ୍କ ଠାରୁ ମନ୍ତ୍ର ନେବା ଓ ତାହାକୁ ଜପ କରିବାର ବିଧି, ପାଞ୍ଚପ୍ରକାର ଜପ ଓ ତାହାର ମହିମା, ମନ୍ତ୍ରଗଣନା ପାଇଁ ବିଭିନ୍ନ ପ୍ରକାର ମାଳାର ମହତ୍ତ୍ୱ ଏବଂ ଅଙ୍ଗୁଳି ଉପଯୋଗର ବର୍ଣ୍ଣନା, ଜପ ନିମନ୍ତେ ଉପଯୋଗୀ ସ୍ଥାନ ଓ ଦିଗ, ଜପରେ ବର୍ଜନୀୟ ବିଷୟ, ସଦାଚାରର ମହତ୍ତ୍ୱ, ଆସ୍ତିକତାର ପ୍ରଶଂସା ଓ ପଞ୍ଚାକ୍ଷରମନ୍ତ୍ରର ବିଶେଷତ୍ୱ

ମହାଦେବ କହୁଛନ୍ତି—ବରାନନେ ! ଆଜ୍ଞାହୀନ, କ୍ରିୟାହୀନ, ଶ୍ରଦ୍ଧାହୀନ ତଥା ବିଧିପାଳନାର୍ଥେ ଆବଶ୍ୟକ ହେଉଥିବା ଦକ୍ଷିଣା ନ ଦେଇ କରାଯାଉଥିବା ଜପ ସଦା ନିଷ୍ଫଳ ହୋଇଥାଏ । ମୋର ସ୍ୱରୂପଭୂତ ମନ୍ତ୍ର ଯଦି ଆଜ୍ଞାସିଦ୍ଧ, କ୍ରିୟାସିଦ୍ଧ ଓ ଶ୍ରଦ୍ଧାସିଦ୍ଧ ହେବା ସହ ଦକ୍ଷିଣାଯୁକ୍ତ ହୋଇଥାଏ,

* ଅଙ୍ଗନ୍ୟାସ ବାକ୍ୟର ପ୍ରୟୋଗ ଏହିପରି—'ଓଁ ଓଁ ହୃଦୟାୟ ନମଃ, ଓଁ ନଂ ଶିରସେ ସ୍ୱାହା, ଓଁ ମଂ ଶିଖାୟୈ ବଷଟ୍, ଓଁ ଶିଂ କବଚାୟ ହୁମ୍, ଓଁ ବାଂ ନେତ୍ରତ୍ରୟାୟ ବୌଷଟ୍, ଓଁ ୟଂ ଅସ୍ତ୍ରାୟ ଫଟ୍ ଇତି ହୃଦୟାଦିଷଡଙ୍ଗନ୍ୟାସଃ । କରନ୍ୟାସର ପ୍ରୟୋଗ ଏହିପରି—ଓଁ ଓଁ ଅଙ୍ଗୁଷ୍ଠାଭ୍ୟାଂ ନମଃ, ଓଁ ନଂ ତର୍ଜନୀଭ୍ୟାଂ ନମଃ, ଓଁ ମଂ ମଧ୍ୟମାଭ୍ୟାଂ ନମଃ, ଓଁ ଶିଂ ଅନାମିକାଭ୍ୟାଂ ନମଃ, ଓଁ ବାଂ କନିଷ୍ଠିକାଭ୍ୟାଂ ନମଃ, ଓଁ ୟଂ କରତଳକରପୃଷ୍ଠାଭ୍ୟାଂ ନମଃ । ବିନିଯୋଗରେ ଯେଉଁ ଋଷି ପ୍ରଭୃତିଙ୍କ ନାମ ରହିଛି, ସେମାନଙ୍କର ନ୍ୟାସ ଏହିପରି କରିବେ—ଓଁ ବାମଦେବର୍ଷୟେ ନମଃ ଶିରସି, ପଂକ୍ତିଛନ୍ଦସେ ନମଃ ମୁଖେ, ଶିବଦେବତାୟୈ ନମଃ ହୃଦୟେ, ମଂ ବୀଜାୟ ନମଃ ଗୁହ୍ୟେ, ୟଂ ଶକ୍ତୟେ ନମଃ ପାଦୟୋଃ, ବାଂ କୀଲକାୟ ନମଃ ନାଭୌ, ବିନିଯୋଗାୟ ନମଃ ସର୍ବାଙ୍ଗେ ।

ତାହା ସଫଳ ହୋଇଥାଏ ଏବଂ ସେଥିରୁ ମହାନ୍ ଫଳ ପ୍ରାପ୍ତି ହୋଇଥାଏ । ଶିଷ୍ୟ ପ୍ରଥମେ ତତ୍ତ୍ୱଜ୍ଞ ଆଗ୍ରର୍ଯ୍ୟ, ଜପଶୀଳ, ସଦ୍‌ଗୁଣସମ୍ପନ୍ନ, ଧ୍ୟାନଯୋଗ-ପରାୟଣ ଓ ବ୍ରାହ୍ମଣ ଗୁରୁଙ୍କ ସେବାରେ ଉପସ୍ଥିତ ହୋଇ ମନରେ ଶୁଦ୍ଧଭାବ ରଖି ପ୍ରଯତ୍ନପୂର୍ବକ ତାଙ୍କୁ ସନ୍ତୁଷ୍ଟ କରିବ । ବ୍ରାହ୍ମଣ ସାଧକ ନିଜ ମନ, ବାଣୀ, ଶରୀର ଓ ଧନରେ ଆଗ୍ରର୍ଯ୍ୟଙ୍କୁ ପୂଜା କରିବ । ବୈଭବ ଥିଲେ ଗୁରୁଙ୍କୁ ଭକ୍ତିଭାବରେ ହାତୀ, ଘୋଡ଼ା, ରଥ, ରତ୍ନ, କ୍ଷେତ୍ର ଓ ଗୃହ ଇତ୍ୟାଦି ଅର୍ପଣ କରିବ । ସିଦ୍ଧି ଗ୍ରହୁଁଥିବା ବ୍ୟକ୍ତି ଧନଦାନରେ କୃପଣତା କରିବା ଅନୁଚିତ । ତା'ପରେ ସମସ୍ତ ସାମଗ୍ରୀ ସହିତ ନିଜକୁ ଗୁରୁଙ୍କ ସେବାରେ ଅର୍ପଣ କରିବ ।

ଏପରି ଯଥାଶକ୍ତି ନିଶ୍ଛଳଭାବରେ ଗୁରୁଙ୍କୁ ବିଧିବତ୍ ପୂଜା କରିସାରି ଗୁରୁଙ୍କ ଠାରୁ ମନ୍ତ୍ର ଓ ଜ୍ଞାନ ଉପଦେଶ ଗ୍ରହଣ କରିବ । ଶିଷ୍ୟ ଅହଂକାରଶୂନ୍ୟ ହୋଇ ଉତ୍ସାହପୂର୍ବକ ବର୍ଷେ ପର୍ଯ୍ୟନ୍ତ ଗୁରୁଙ୍କ ସେବା କରିଥିବ ଏବଂ ଉପବାସ କରିବା ପରେ ସ୍ନାନ ସାରି ଆସିଥିବ । ଶିଷ୍ୟର ଏପରି ପୂଜାରେ ସନ୍ତୁଷ୍ଟ ହୋଇ ଗୁରୁ ତାହାକୁ ପୁନଃ ବିଶେଷ ଶୁଦ୍ଧି ନିମନ୍ତେ ପୂର୍ଣ୍ଣ କଳଶରେ ଥିବା ଦ୍ରବ୍ୟଯୁକ୍ତ ମନ୍ତ୍ରଶୁଦ୍ଧ ଜଳରେ ସ୍ନାନ କରାଇ ଚନ୍ଦନ, ପୁଷ୍ପମାଳା, ବସ୍ତ୍ର ଓ ଆଭୂଷଣ ଦ୍ୱାରା ଅଳଂକୃତ କରି ତାକୁ ସୁନ୍ଦର ବେଶଭୂଷାରେ ବିଭୂଷିତ କରିବେ । ତା'ପରେ ଗୁରୁ ଶିଷ୍ୟଦ୍ୱାରା ପୁଣ୍ୟାହ ବାଚନ ଓ ବ୍ରାହ୍ମଣଙ୍କ ପୂଜା କରାଇ ସମୁଦ୍ରତଟରେ, ନଦୀକୂଳରେ, ଗୋଶାଳାରେ, ଦେବାଳୟରେ, କୌଣସି ପବିତ୍ର ସ୍ଥାନରେ ଅଥବା ଘରେ ସିଦ୍ଧିଦାୟକ କାଳ ଉପସ୍ଥିତ ହେଲେ ଶୁଭ ତିଥି, ଶୁଭ ନକ୍ଷତ୍ର ଓ ସର୍ବଦୋଷଶୂନ୍ୟ ଶୁଭ ଯୋଗରେ ସେହି ଶିଷ୍ୟକୁ ଅନୁଗ୍ରହପୂର୍ବକ ବିଧି ଅନୁସାରେ ମୋର ଜ୍ଞାନ ପ୍ରଦାନ କରିବେ । ଏକାନ୍ତ ସ୍ଥାନରେ ଅତ୍ୟନ୍ତ ପ୍ରସନ୍ନଚିତ୍ତ ହୋଇ ଉଚ୍ଚସ୍ୱରରେ ଆମ ଦୁହିଙ୍କ ଉତ୍ତମ ମନ୍ତ୍ରକୁ ଶିଷ୍ୟଦ୍ୱାରା ଭଲଭାବେ ଉଚ୍ଚାରଣ କରାଇବେ । ବାରମ୍ବାର ଉଚ୍ଚାରଣ କରାଇ ଶିଷ୍ୟକୁ ଏହିପରି ଆଶୀର୍ବାଦ ଦେବେ—"ତୁମର କଲ୍ୟାଣ ହେଉ, ମଙ୍ଗଳ ହେଉ, ଶୋଭନ ହେଉ, ପ୍ରିୟ ହେଉ ।" ଏହିପ୍ରକାରେ ଗୁରୁ ଶିଷ୍ୟକୁ ମନ୍ତ୍ର ଓ ଆଜ୍ଞା ପ୍ରଦାନ କରିବେ ।* ଗୁରୁଙ୍କ ଠାରୁ ମନ୍ତ୍ର ଓ ଆଜ୍ଞା ପାଇବା ପରେ ଶିଷ୍ୟ ଏକାଗ୍ରଚିତ୍ତରେ ସଂକଳ୍ପ କରି ପୁରଶ୍ଚରଣପୂର୍ବକ ପ୍ରତିଦିନ ସେହି ମନ୍ତ୍ରକୁ ଜପିବ । ବଞ୍ଚିଥିବା ପର୍ଯ୍ୟନ୍ତ ଅନନ୍ୟଭାବରେ ତତ୍ପରତାପୂର୍ବକ ନିତ୍ୟ ଏକହଜାର ଆଠ ଥର ମନ୍ତ୍ର ଜପିବ । ଏପରି କରୁଥିବା ବ୍ୟକ୍ତି ପରମଗତି ଲାଭ କରେ । ଯେ ପ୍ରତିଦିନ ସଂଯମରେ ରହି କେବଳ ରାତିରେ ଭୋଜନ କରେ ଏବଂ ମନ୍ତ୍ରରେ ଯେତେ ଅକ୍ଷର ଅଛି, ସେତିକି ଲକ୍ଷର ଗ୍ରରିଗୁଣ ଜପ ଆଦରପୂର୍ବକ କରିପାରେ, ତାକୁ 'ପୌରଶ୍ଚରଣିକ' କୁହାଯାଏ । ଯେ ପୁରଶ୍ଚରଣ କରି ପ୍ରତିଦିନ ଜପ କରେ, ତା'ପରି ଏ ଜଗତରେ ଅନ୍ୟ କେହି ନାହିଁ । ସେ ସିଦ୍ଧିଦାୟକ ସିଦ୍ଧ ହୋଇଯାଏ ।

ସାଧକ ସ୍ନାନ କରି ପବିତ୍ର ସ୍ଥାନରେ ସୁନ୍ଦର ଆସନରେ ଉତ୍ତର ବା ପୂର୍ବକୁ ମୁଖ କରି ମୌନଭାବରେ ବସି ହୃଦୟ ମଧ୍ୟରେ ତୁମ ସହ ମୋତେ ଓ ନିଜ ଗୁରୁଙ୍କୁ ଚିନ୍ତନ କରିବା ଉଚିତ । ଚିତ୍ତକୁ ଏକାଗ୍ର କରି ତଥା ଦହନ-ପ୍ଲାବନ ଆଦି ଦ୍ୱାରା ପଞ୍ଚତତ୍ତ୍ୱକୁ ଶୁଦ୍ଧ କରି ମନ୍ତ୍ରାଦି ନ୍ୟାସ କରିବା ଉଚିତ । ଏହାପରେ ସକଳୀକରଣ କ୍ରିୟା

* ଶିବଂ ଗ୍ରସ୍ତୁ ଶୁଭଂ ଗ୍ରସ୍ତୁ ଶୋଭନୋଽସ୍ତୁ ପ୍ରିୟୋଽସ୍ତ୍ୱିତି । ଏବଂ ଦଦ୍ୟାଦ୍ ଗୁରୁର୍ମନ୍ତ୍ରମାଜ୍ଞାଂ ଚୈବ ତତଃ ପରାମ୍ ॥
(ଶି. ପୁ., ବା. ସଂ., ଉ. ଖ. ୧୪ । ୧୫)

ସମ୍ପନ୍ନ କରିସାରି ପ୍ରାଣ ଓ ଅପାନକୁ ନିୟମନ କରି ଆମ ଦୁହିଙ୍କ ସ୍ୱରୂପକୁ ଧ୍ୟାନ କରିବା ଉଚିତ ଏବଂ ବିଦ୍ୟାସ୍ଥାନ, ନିଜ ରୂପ, ଋଷି, ଛନ୍ଦ, ଦେବତା, ବୀଜ, ଶକ୍ତି ଓ ମନ୍ତ୍ରର ବାଚ୍ୟାର୍ଥରୂପେ ମୋତେ ସ୍ମରଣ କରି ପଞ୍ଚାକ୍ଷରୀ ଜପ କରିବା ଉଚିତ। ମାନସ ଜପ ଉତ୍ତମ, ଉପାଂଶୁ ଜପ ମଧ୍ୟମ ଏବଂ ବାଚିକ ଜପ ତା'ଠାରୁ ନିମ୍ନ ଶ୍ରେଣୀର ଧରାଯାଇଛି—ଏହା ଆଗମାର୍ଥବିଶାରଦ ବିଦ୍ୱାନଙ୍କର କଥନ। ଯେ ଉଚ୍ଚ ବା ନୀଚ ସ୍ୱରରେ ତଥା ସ୍ପଷ୍ଟ ବା ଅସ୍ପଷ୍ଟ ପଦ ଓ ଅକ୍ଷର ସହ ମନ୍ତ୍ରକୁ ବାଣୀଦ୍ୱାରା ଉଚ୍ଚାରଣ କରେ, ତାହାର ଜପକୁ 'ବାଚିକ' ଜପ କହନ୍ତି। ଯେଉଁ ଜପରେ କେବଳ ଜିହ୍ୱାମାତ୍ର ହଲି ଥାଏ ଅଥବା ଅତି ଅନୁଚ୍ଚ ସ୍ୱରରେ ଅକ୍ଷରଗୁଡ଼ିକର ଉଚ୍ଚାରଣ ହୁଏ ଏବଂ ଯାହା ଅନ୍ୟର କାନରେ ପଡ଼ିଲେ ସୁଦ୍ଧା ତାକୁ କିଛି ସ୍ପଷ୍ଟରୂପେ ଶୁଭେ ନାହିଁ, ତାହାକୁ 'ଉପାଂଶୁ' ଜପ କହନ୍ତି। ଯେଉଁ ଜପରେ ଅକ୍ଷର-ପଂକ୍ତିର ଗୋଟିଏ ବର୍ଣ୍ଣ ସହ ଅନ୍ୟ ବର୍ଣ୍ଣର, ଗୋଟିଏ ପଦ ସହ ଅନ୍ୟ ପଦର ଏବଂ ଶବ୍ଦ ଓ ଅର୍ଥର ବାରମ୍ବାର ଚିନ୍ତନ ମନଦ୍ୱାରା ହୁଏ, ତାହା 'ମାନସ' ଜପ ଅଟେ। ବାଚିକ ଜପ ଏକଗୁଣ ଫଳ ଦେବା ସ୍ଥଳେ ଉପାଂଶୁ ଜପ ଶହେଗୁଣ, ମାନସ ଜପ ହଜାରଗୁଣ ଏବଂ ସଗର୍ଭ ଜପ ତା'ଠାରୁ ବି ଶହେଗୁଣ ଫଳ ଦିଏ ବୋଲି କୁହାଯାଏ। ପ୍ରାଣାୟାମପୂର୍ବକ ଯେଉଁ ଜପ କରାଯାଏ, ତାହାକୁ 'ସଗର୍ଭ' ଜପ କହନ୍ତି। ଅଗର୍ଭ ଜପରେ ମଧ୍ୟ ଆଦି ଓ ଅନ୍ତରେ ପ୍ରାଣାୟାମ କରିବା ଉତ୍ତମ। ମନ୍ତ୍ରାର୍ଥବେତ୍ତା ବୁଦ୍ଧିମାନ୍ ସାଧକ ପ୍ରାଣାୟାମ କରିବାବେଳେ ଚାଳିଶ ଥର ମନ୍ତ୍ର ସ୍ମରଣ କରିବେ। ଯେ ଏପରି କରିବାକୁ ଅସମର୍ଥ, ସେ ନିଜ ଶକ୍ତି ଅନୁସାରେ ଯେତିକି ପାରିବେ, ସେତିକି ମାନସିକ ଜପ କରିବେ। ପାଞ୍ଚଥର, ତିନିଥର ଅଥବା ଥରେ ଅଗର୍ଭ ବା ସଗର୍ଭ ପ୍ରାଣାୟାମ କରିବେ। ଏ ଦୁଇଟି ମଧ୍ୟରୁ ସଗର୍ଭ ପ୍ରାଣାୟାମ ଶ୍ରେଷ୍ଠ ଧରାଯାଇଛି। ସଗର୍ଭ ଅପେକ୍ଷା ଧ୍ୟାନସହିତ ଜପ ଆହୁରି ସହସ୍ର ଗୁଣ ଅଧିକ ଫଳପ୍ରଦ। ଏ ପାଞ୍ଚ ପ୍ରକାର ଜପ ମଧ୍ୟରୁ ଯେକୌଣସି ପ୍ରକାର ଜପ ନିଜ ସାମର୍ଥ୍ୟ ଅନୁସାରେ ଚୟନ କରିବା ଉଚିତ।

ଅଙ୍ଗୁଳିରେ ଜପର ଗଣନା କରିବାର ଫଳ ଏକଗୁଣ ହେଲେ ରେଖାଦ୍ୱାରା ଗଣନା କରିବା ଆଠଗୁଣ ଉତ୍ତମ। ପୁତ୍ରଜୀବ ମଞ୍ଜିର ମାଳାରେ ଗଣନା କଲେ ଜପର ଦଶଗୁଣ ଅଧିକ ଫଳ ହୋଇଥାଏ। ଶଙ୍ଖମାଳିରେ ଶହେଗୁଣ, ପ୍ରବାଳ-ମାଳିରେ ହଜାରଗୁଣ, ସ୍ଫଟିକମାଳିରେ ଦଶହଜାର-ଗୁଣ, ମୋତିମାଳିରେ ଲକ୍ଷେଗୁଣ, ପଦ୍ମାକ୍ଷରେ ଦଶଲକ୍ଷଗୁଣ ଏବଂ ସୁବର୍ଣ୍ଣ ମାଳିଦାନାରେ ଗଣିଲେ କୋଟିଏ ଗୁଣ ଅଧିକ ଫଳ ମିଳେ ବୋଲି କୁହାଯାଇଛି। କୁଶଗଣ୍ଠିରେ ତଥା ରୁଦ୍ରାକ୍ଷରେ ଗଣନା କଲେ ଅନନ୍ତଗୁଣ ଫଳ ମିଳେ। ତିରିଶ ରୁଦ୍ରାକ୍ଷଦାନାର ମାଳାରେ ଜପିଲେ ଧନପ୍ରାପ୍ତି ହୋଇଥାଏ। ସତେଇଶ ଦାନାର ମାଳା ପୁଷ୍ଟିଦାୟକ, ପଚିଶ ଦାନାର ମାଳା ମୁକ୍ତିଦାୟକ ଏବଂ ପନ୍ଦର ରୁଦ୍ରାକ୍ଷଦାନାର ମାଳା ଅଭିଚାର-କର୍ମରେ ଫଳଦାୟକ ହୋଇଥାଏ। ଜପକର୍ମରେ ପ୍ରୟୋଗ ପାଇଁ ଅଙ୍ଗୁଷ୍ଠକୁ ମୋକ୍ଷଦାୟକ ଓ ତର୍ଜନୀକୁ ଶତ୍ରୁନାଶକ ବୋଲି ବୁଝିବା ଉଚିତ। ମଧ୍ୟମା ଅଙ୍ଗୁଳି ଧନ ଓ ଅନାମିକା ଶାନ୍ତି ପ୍ରଦାନ କରିଥାଏ। ଶହେଆଠ ଦାନାର ମାଳା ଉତ୍ତମୋତ୍ତମ ଅଟେ। ଶହେ ଦାନାର ମାଳା ଉତ୍ତମ ଓ ପଚାଶ ଦାନାର ମାଳା ମଧ୍ୟମ ଅଟେ। ଚଉବନ ଦାନାର ମାଳାକୁ ମନୋହାରିଣୀ ଓ ଶ୍ରେଷ୍ଠ ଧରାଯାଇଛି। ଏହିରୂପେ ମାଳାରେ ଜପ କରିବା ଉଚିତ। ଜପ କାହାରିକୁ ଦେଖାଇବେ ନାହିଁ। କନିଷ୍ଠିକା ଅଙ୍ଗୁଳିକୁ ଅକ୍ଷରଣୀ (ଜପର ଫଳ ଅକ୍ଷୟକାରିଣୀ) କୁହାଯାଏ; ତେଣୁ

ଜପକର୍ମରେ ଶୁଭ ଅଟେ । ଅନ୍ୟ ଅଙ୍ଗୁଳିମାନଙ୍କ ସହାୟତାରେ ଅଙ୍ଗୁଷ୍ଠଦ୍ୱାରା ଜପିବା ଉଚିତ; କାରଣ ଅଙ୍ଗୁଷ୍ଠ ବିନା କରାଯାଉଥିବା ଜପ ନିଷ୍ଫଳ ହୋଇଥାଏ ।

ଘରେ କରାଯାଉଥିବା ଜପ ସମାନ ଫଳ ବା ଏକଗୁଣ ଫଳଦାୟକ ବୋଲି ବୁଝିବା ଉଚିତ । ଗୋଶାଳାରେ ତାହା ଶହେଗୁଣ ହୋଇଯାଏ । ପବିତ୍ର ବନ ବା ଉଦ୍ୟାନରେ ତାହା ସହସ୍ରଗୁଣ ହୋଇଯାଏ । ପବିତ୍ର ପର୍ବତରେ ଦଶସହସ୍ରଗୁଣ, ନଦୀତଟରେ ଲକ୍ଷଗୁଣ, ଦେବାଳୟରେ କୋଟିଗୁଣ ଓ ମୋ ନିକଟରେ କରାଯାଉଥିବା ଜପ ଅନନ୍ତଗୁଣ ହୋଇଥାଏ । ସୂର୍ଯ୍ୟ, ଅଗ୍ନି, ଗୁରୁ, ଚନ୍ଦ୍ର, ଦୀପ, ଜଳ, ବ୍ରାହ୍ମଣ ଓ ଗୋରୁଙ୍କ ସମୀପରେ କରାଯାଉଥିବା ଜପ ଶ୍ରେଷ୍ଠ ବିବେଚିତ ହୁଏ । ପୂର୍ବାଭିମୁଖ ହୋଇ କରାଯାଉଥିବା ଜପ ବଶୀକରଣରେ ଓ ଦକ୍ଷିଣାଭିମୁଖ ଜପ ଅଭିଚାର-କର୍ମରେ ସଫଳତା ପ୍ରଦାନ କରିଥାଏ । ପଶ୍ଚିମାଭିମୁଖ ଜପ ଧନଦାୟକ ଓ ଉତ୍ତରାଭିମୁଖ ଜପ ଶାନ୍ତିଦାୟକ ବୋଲି ଜାଣିବା ଉଚିତ । ସୂର୍ଯ୍ୟ, ଅଗ୍ନି, ବ୍ରାହ୍ମଣ, ଦେବତା ଓ ଅନ୍ୟ ଶ୍ରେଷ୍ଠ ପୁରୁଷଙ୍କ ସମୀପରେ ତାଙ୍କ ଆଡ଼କୁ ପିଠି କରି ଜପ କରିବା ଉଚିତ ନୁହେଁ । ମୁଣ୍ଡରେ ପଗଡ଼ି ବାନ୍ଧି, ଜାମା ପିନ୍ଧି, ଉଲଗ୍ନ ହୋଇ, କେଶ ଖୋଲା କରି, ଗଳାରେ କନା ଗୁଡ଼ାଇ, ଅଶୁଦ୍ଧ ହାତରେ, ଅଶୁଦ୍ଧ ଶରୀରରେ ଏବଂ ବିଳାପ କରି କରି କଦାପି ଜପ କରିବା ଉଚିତ ନୁହେଁ । ଜପ କରିବା ସମୟରେ କ୍ରୋଧ ଓ ମଦଭାବନା ଆଣିବା, ଛିଙ୍କିବା, ଛେପ ପକାଇବା, ହାଇ ମାରିବା, କୁକୁର ଓ ନୀଚ ଲୋକଙ୍କୁ ଦେଖିବା ବର୍ଜିତ । ଯଦି ଏପରି ହୋଇଯାଏ, ତେବେ ଜାପକ ଆଚମନ କରିବେ ଅଥବା ତୁମ ସହ ମୋତେ (ଶିବ-ପାର୍ବତୀଙ୍କୁ) ସ୍ମରଣ କରିବେ ଅଥବା ଗ୍ରହ-ନକ୍ଷତ୍ରଙ୍କୁ ଚାହିଁବେ ଅଥବା ପ୍ରାଣାୟାମ କରିବେ ।

ବିନା ଆସନରେ ତଳେ ବସି, ଶୋଇ ରହି, ଚାଲିବା ବେଳେ ବା ଛିଡ଼ା ହୋଇ ଜପ କରିବେ ନାହିଁ । ଗଳିରେ ବା ସଡ଼କ ଉପରେ, ଅପବିତ୍ର ସ୍ଥାନରେ ଓ ଅନ୍ଧାରରେ ମଧ୍ୟ ଜପ କରିବେ ନାହିଁ । ଗୋଡ଼ ଲମ୍ବାଇ ବସି, କୁକ୍କୁଟ ଆସନରେ ବସି, ବାହନ ବା ଖଟ ଉପରେ ଚଢ଼ି ଅଥବା ଚିନ୍ତାରେ ବ୍ୟାକୁଳ ହୋଇ ଜପ ନ କରିବା ଉଚିତ । ଶକ୍ତି ଥିଲେ ଏସବୁ ନିୟମକୁ ପାଳନ କରି ଜପ କରିବେ । ଅଶକ୍ତ ବ୍ୟକ୍ତି ଯଥାଶକ୍ତି ଜପ କରିବେ । ଏ ବିଷୟରେ ଅଧିକ କହିବାରେ କିଛି ଲାଭ ନାହିଁ । ସଂକ୍ଷେପରେ ଏତିକି ଜାଣ ଯେ ସଦାଚାରୀ ମନୁଷ୍ୟ ଶୁଦ୍ଧଭାବରେ ଜପ ଓ ଧ୍ୟାନ କରି କଲ୍ୟାଣର ଭାଗୀ ହୋଇଥାଏ । ଆଚାର ପରମ ଧର୍ମ, ଆଚାର ଉତ୍ତମ ଧନ, ଆଚାର ଶ୍ରେଷ୍ଠ ବିଦ୍ୟା ଓ ଆଚାର ହିଁ ପରମ ଗତି । ଆଚାରହୀନ ବ୍ୟକ୍ତି ସଂସାରରେ ନିନ୍ଦିତ ହୋଇଥାଏ ଓ ପରଲୋକରେ ମଧ୍ୟ ସୁଖ ପାଏ ନାହିଁ । ତେଣୁ ସମସ୍ତେ ଆଚାରବାନ୍ ହେବା ଉଚିତ ।* ବେଦଜ୍ଞ ବିଦ୍ୱାନ୍‌ମାନେ ବେଦ-ଶାସ୍ତ୍ରର କଥନାନୁସାରେ ଯେଉଁ ବର୍ଣ୍ଣର ବ୍ୟକ୍ତି ପାଇଁ ଯେଉଁ କର୍ମ ବିହିତ ବୋଲି କହିଛନ୍ତି, ସେହି ବ୍ୟକ୍ତିମାନେ ତଦନୁସାରେ ଆଚରଣ କରିବା ଉଚିତ । ତାହା ହିଁ ତା'ପାଇଁ ସଦାଚାର, ଅନ୍ୟର ଆଚାର ସଦାଚାର ନୁହେଁ । ସତ୍‌ପୁରୁଷମାନେ ତାହାକୁ ଆଚରଣ କରିଛନ୍ତି, ସେଥିପାଇଁ ତାହା

---

* ଆଚାରଃ ପରମୋ ଧର୍ମ ଆଚାରଃ ପରମଂ ଧନମ୍ । ଆଚାରଃ ପରମା ବିଦ୍ୟା ଆଚାରଃ ପରମା ଗତିଃ ॥
ଆଚାରହୀନଃ ପୁରୁଷୋ ଲୋକେ ଭବତି ନିନ୍ଦିତଃ । ପରତ୍ର ଚ ସୁଖୀ ନ ସ୍ୟାତସ୍ମାଦାଚାରବାନ୍ ଭବେତ୍ ॥
(ଶି. ପୁ., ବା. ସଂ., ଉ. ଖ. ୧୪ । ୫୫-୫୬)

ସଦାଗ୍ଚର ବୋଲାଏ । ସଦାଗ୍ଚରର ମୂଳ କାରଣ ହେଲା ଆସ୍ତିକତା । ଯଦି ମନୁଷ୍ୟ ଆସ୍ତିକ ହୋଇଥିବ, ତେବେ ସେ ପ୍ରମାଦ ଆଦି କାରଣରୁ କଦାଚିତ୍ ସଦାଗ୍ଚରରୁ ଭ୍ରଷ୍ଟ ହେଲେ ମଧ୍ୟ ଦୂଷିତ ହୁଏ ନାହିଁ । ତେଣୁ ସଦା ଆସ୍ତିକତାର ଆଶ୍ରୟ ନେବା ଉଚିତ । ଇହଲୋକରେ ଯେପରି ସତ୍କର୍ମ କଲେ ସୁଖ ଓ ଦୁଷ୍କର୍ମ କଲେ ଦୁଃଖ ମିଳେ, ପରଲୋକରେ ମଧ୍ୟ ସେହିପରି ହୁଏ— ଏହି ବିଶ୍ୱାସକୁ ଆସ୍ତିକତା କହନ୍ତି ।

ସଦାଗ୍ଚରହୀନ, ପତିତ ଓ ଅନ୍ତ୍ୟଜଙ୍କର ଉଦ୍ଧାର ପାଇଁ କଳିଯୁଗରେ ପଞ୍ଚାକ୍ଷର ମନ୍ତ୍ର ଠାରୁ ବଳି ଆଉ କୌଣସି ଉପାୟ ନାହିଁ । କୌଣସି ବ୍ୟକ୍ତି ଅପବିତ୍ର ବା ପବିତ୍ର ଅବସ୍ଥାରେ ଥିବା ବେଳେ, ଗ୍ଚଲିବା-ବୁଲିବା ବେଳେ, ଠିଆ ହେବା ବେଳେ, ସ୍ୱେଚ୍ଛାନୁସାରେ କର୍ମ କରିବା ବେଳେ ଯଦି ଜପ କରେ, ତା'ର ସେହି ମନ୍ତ୍ରଜପ ନିଷ୍ଫଳ ଯାଏ ନାହିଁ । ଅନ୍ତ୍ୟଜ, ମୂର୍ଖ, ମୂଢ଼, ପତିତ, ମର୍ଯ୍ୟାଦାରହିତ ଓ ନୀଚ ପାଇଁ ମଧ୍ୟ ଏହି ମନ୍ତ୍ର ନିଷ୍ଫଳ ଯାଏ ନାହିଁ । ବ୍ୟକ୍ତି ଯେକୌଣସି ଅବସ୍ଥାରେ ପଡ଼ିଥିଲେ ମଧ୍ୟ ଯଦି ମୋ' ପ୍ରତି ଉତ୍ତମ ଭକ୍ତିଭାବ ରଖିଥାଏ, ତା'ପାଇଁ ଏ ମନ୍ତ୍ର ନିଃସନ୍ଦେହରେ ସିଦ୍ଧିପ୍ରଦ ହେବ, କିନ୍ତୁ ଅନ୍ୟ ପାଇଁ ନୁହେଁ । ପ୍ରିୟେ ! ଏ ମନ୍ତ୍ରକୁ ଜପିବା ପାଇଁ ଲଗ୍ନ, ତିଥି, ନକ୍ଷତ୍ର, ବାର ଓ ଯୋଗ ଆଦି ବିଷୟରେ ଅଧିକ ବିଗ୍ଚର କରିବା ଅପେକ୍ଷିତ ନୁହେଁ । ଏ ମନ୍ତ୍ର କଦାପି ସୁପ୍ତ ହୁଏ ନାହିଁ, ସଦା ଜାଗ୍ରତ ରହିଥାଏ । ଏ ମହାମନ୍ତ୍ର କଦାପି କାହାର ଶତ୍ରୁ ହୁଏ ନାହିଁ । ଏହା ସଦା ସୁସିଦ୍ଧ, ସିଦ୍ଧ ଅଥବା ସାଧ୍ୟ ହୋଇ ରହିଥାଏ । ଏହା ସିଦ୍ଧ ଗୁରୁଙ୍କ ଉପଦେଶରେ ପ୍ରାପ୍ତ ହୋଇଥିଲେ ସୁସିଦ୍ଧ, ଅସିଦ୍ଧ ଗୁରୁଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିଲେ ସିଦ୍ଧ ଏବଂ ଗୁରୁଙ୍କ ଦ୍ୱାରା ପ୍ରାପ୍ତ ନ ହୋଇ କେବଳ ପରମ୍ପରାକ୍ରମେ ପ୍ରାପ୍ତ ହୋଇଥିଲେ ସାଧ୍ୟ ବୋଲାଏ । ଯେ ମୋ'ଠାରେ, ମନ୍ତ୍ରରେ ଓ ଗୁରୁଙ୍କ ଠାରେ ଅତିଶୟ ଶ୍ରଦ୍ଧା ରଖିଥାଏ, ତାହାକୁ ପ୍ରାପ୍ତ ହୋଇଥିବା ମନ୍ତ୍ର କୌଣସି ଗୁରୁଙ୍କ ଦ୍ୱାରା ସାଧିତ ହୋଇଥାଉ ବା ଅସାଧିତ ହୋଇଥାଉ, ତାହା ନିଶ୍ଚୟ ସିଦ୍ଧ ହୋଇଥାଏ, ଏଥିରେ ସଂଶୟ ନାହିଁ । ଏଣୁ ଅଧିକାର ଦୃଷ୍ଟିରୁ ବିଘ୍ନଯୁକ୍ତ ହୋଇଥିବା ଅନ୍ୟ ମନ୍ତ୍ରମାନ ତ୍ୟାଗ କରି ବିଦ୍ୱାନ୍ ପୁରୁଷ ସାକ୍ଷାତ୍ ପରମା ବିଦ୍ୟା ପଞ୍ଚାକ୍ଷରୀର ଆଶ୍ରୟ ନେବା ଉଚିତ । ଅନ୍ୟ ମନ୍ତ୍ରମାନ ସିଦ୍ଧ ହୋଇଗଲେ ମଧ୍ୟ ଏହା ସିଦ୍ଧ ହୋଇ ନ ଥାଏ, ମାତ୍ର ଏ ମହାମନ୍ତ୍ର ସିଦ୍ଧ ହୋଇଗଲେ ଅନ୍ୟ ମନ୍ତ୍ର ଅବଶ୍ୟ ସିଦ୍ଧ ହୋଇଯାଏ । ହେ ମହେଶ୍ୱରୀ ! ଯେପରି ଅନ୍ୟ ଦେବତା ପ୍ରାପ୍ତ ହେଲେ ମଧ୍ୟ ମୁଁ ପ୍ରାପ୍ତ ହୋଇ ନ ଥାଏ ଏବଂ ମୁଁ ପ୍ରାପ୍ତ ହୋଇଗଲେ ସବୁ ଦେବତା ପ୍ରାପ୍ତ ହୋଇଯାଆନ୍ତି, ଠିକ୍ ସେହି ନିୟମ ଏସବୁ ମନ୍ତ୍ର ପାଇଁ ମଧ୍ୟ ପ୍ରଯୁଜ୍ୟ । ଅନ୍ୟ ସବୁ ମନ୍ତ୍ରରେ ଯେଉଁ ଦୋଷ ଅଛି, ଏଥିରେ ତାହା ନାହିଁ; କାରଣ ଏହା ଜାତି ଇତ୍ୟାଦିର ଅପେକ୍ଷା ନ ରଖି ପ୍ରବୃତ୍ତ ହୋଇଥାଏ । ତଥାପି ଛୋଟ ଛୋଟ ତୁଚ୍ଛ ଫଳ ପାଇଁ ସହସା ଏହି ମନ୍ତ୍ରକୁ ବିନିଯୋଗ କରିବା ଉଚିତ ନୁହେଁ; କାରଣ ଏହା ମହାନ୍ ଫଳ ପ୍ରଦାନ କରେ ।

ଉପମନ୍ୟୁ କହୁଛନ୍ତି—ଯଦୁନନ୍ଦନ ! ଏହିରୂପେ ତ୍ରିଶୂଳଧାରୀ ମହାଦେବ ତ୍ରିଲୋକର ହିତ ପାଇଁ ସାକ୍ଷାତ୍ ମହାଦେବୀ ପାର୍ବତୀଙ୍କୁ ପଞ୍ଚାକ୍ଷର ମନ୍ତ୍ରର ବିଧି କହିଥିଲେ । ଯେ ଏକାଗ୍ରଚିତ୍ତ ହୋଇ ଭକ୍ତିଭାବରେ ଏହି ପ୍ରସଙ୍ଗକୁ ଶୁଣେ ବା ଶୁଣାଏ, ସେ ସମସ୍ତ ପାପରୁ ମୁକ୍ତ ହୋଇ ପରମଗତି ଲାଭ କରେ ।

(ଅଧ୍ୟାୟ ୧୪)

✿✿✿

# ତ୍ରିବିଧ ଦୀକ୍ଷା ନିରୂପଣ, ଶକ୍ତିପାତର ଆବଶ୍ୟକତା ଓ ତାହାର ଲକ୍ଷଣ ବର୍ଣ୍ଣନ, ଗୁରୁଙ୍କ ମହତ୍ତ୍ୱ, ମୋକ୍ଷପ୍ରାପ୍ତିରେ ଜ୍ଞାନୀ ଗୁରୁଙ୍କ ଭୂମିକା ଏବଂ ଗୁରୁଙ୍କ ଦ୍ୱାରା ଶିଷ୍ୟର ପରୀକ୍ଷା

ଶ୍ରୀକୃଷ୍ଣ କହିଲେ—ଭଗବନ୍ ! ଆପଣ ମନ୍ତ୍ରର ମାହାତ୍ମ୍ୟ ତଥା ତାହାର ପ୍ରୟୋଗର ଯେଉଁ ବିଧାନ କହିଲେ, ତାହା ସାକ୍ଷାତ୍ ବେଦ ତୁଲ୍ୟ । ଏବେ ମୁଁ ଉତ୍ତମ ଶିବ-ସଂସ୍କାରର ବିଧି ଶୁଣିବାକୁ ଚାହୁଁଛି, ଯାହା ଆପଣ ମନ୍ତ୍ରଗ୍ରହଣ ପ୍ରକରଣରେ କିଞ୍ଚିତ୍ ସୂଚିତ କରିଥିଲେ । ସେହି କଥାକୁ ମୁଁ ଭୁଲି ନାହିଁ ।

ଉପମନ୍ୟୁ କହିଲେ—ଆଜ୍ଞା, ଠିକ୍ ଅଛି । ମୁଁ ତୁମକୁ ଶିବଙ୍କ କଥିତ ପରମ ପବିତ୍ର ସଂସ୍କାରର ବିଧାନ କହୁଛି । ଏହା ସମସ୍ତ ପାପ ଶୋଧନ କରିଥାଏ । ମନୁଷ୍ୟ ଯେଉଁ ଷଡ଼ଧ୍ୱଶୋଧନ କର୍ମ ପ୍ରଭାବରେ ପୂଜା ଇତ୍ୟାଦିରେ ଅଧିକାର ପାଇଥାଏ, ସେହି କର୍ମକୁ ସଂସ୍କାର କହନ୍ତି । ସଂସ୍କାର ଅର୍ଥାତ୍ ଶୁଦ୍ଧି କରୁଥିବା ହେତୁ ତାହାର ନାମ ସଂସ୍କାର ହୋଇଛି । ଏହା ବିଜ୍ଞାନ ଦାନ କରେ ଓ ପାଶବନ୍ଧନକୁ କ୍ଷୀଣ କରେ । ସେଥିପାଇଁ ଏହି ସଂସ୍କାରକୁ ଦୀକ୍ଷା ମଧ୍ୟ କହନ୍ତି । ଶିବଶାସ୍ତ୍ରରେ ପରମାତ୍ମା ଶିବ 'ଶାମ୍ଭବୀ', 'ଶାକ୍ତୀ' ଓ 'ମାନ୍ତ୍ରୀ' ନାମକ ତିନି ପ୍ରକାର ଦୀକ୍ଷା ବିଷୟରେ ଉପଦେଶ ଦେଇଛନ୍ତି । ଗୁରୁଙ୍କ ଦୃଷ୍ଟିପାତ ଦ୍ୱାରା, ସ୍ପର୍ଶଦ୍ୱାରା ଅଥବା ସମ୍ଭାଷଣଦ୍ୱାରା ଜୀବଙ୍କୁ ଯେଉଁ ତତ୍କାଳ ପାଶନାଶକାରୀ ସଂଜ୍ଞା ଅର୍ଥାତ୍ ସମ୍ୟକ୍ ବୁଦ୍ଧି ପ୍ରାପ୍ତ ହୁଏ, ତାହାକୁ 'ଶାମ୍ଭବୀ' ଦୀକ୍ଷା କହନ୍ତି । ସେହି ଦୀକ୍ଷାର ମଧ୍ୟ ଦୁଇଟି ଭେଦ ରହିଛି—ତୀବ୍ରା ଓ ତୀବ୍ରତରା । ପାଶ କ୍ଷୀଣ ହେବାରେ ଯେଉଁ ଶୀଘ୍ରତା ଓ ମନ୍ଦତା ହୁଏ, ସେହି ଆଧାରରେ ଏ ଦୁଇଟି ଭେଦ ହୋଇଛି । ଯେଉଁ ଦୀକ୍ଷାରୁ ତତ୍କ୍ଷଣାତ୍ ସିଦ୍ଧି ବା ଶାନ୍ତି ପ୍ରାପ୍ତି ହୁଏ, ତାହା ତୀବ୍ରତରା ଅଟେ । ଜୀବିତ ବ୍ୟକ୍ତିର ପାପର ପରିଶୋଧନ ପାଇଁ ଯେଉଁ ଦୀକ୍ଷା ଦିଆଯାଏ, ତାହାକୁ ତୀବ୍ରା କହନ୍ତି । ଗୁରୁ ଯୋଗମାର୍ଗରେ ଶିଷ୍ୟର ଶରୀରରେ ପ୍ରବେଶ କରି ଜ୍ଞାନଦୃଷ୍ଟିରେ ଯେଉଁ ଜ୍ଞାନବତୀ ଦୀକ୍ଷା ଦିଅନ୍ତି, ତାହା ଶାକ୍ତୀ ବୋଲାଏ । କ୍ରିୟାବତୀ ଦୀକ୍ଷାକୁ ମାନ୍ତ୍ରୀ ଦୀକ୍ଷା କହନ୍ତି । ଏଥିରେ ପ୍ରଥମେ ହୋମକୁଣ୍ଡ ଓ ଯଜ୍ଞମଣ୍ଡପ ନିର୍ମାଣ କରାଯାଏ । ତା'ପରେ ଗୁରୁ ବାହ୍ୟରୂପେ ମନ୍ଦ ବା ମନ୍ଦତର ଉଦ୍ଦେଶ୍ୟକୁ ନେଇ ଶିଷ୍ୟର ସଂସ୍କାର କରନ୍ତି । ଶକ୍ତିପାତ ଅନୁସାରେ ଶିଷ୍ୟ ଗୁରୁଙ୍କ ଅନୁଗ୍ରହର ଭାଜନ ହୋଇଥାଏ । ଶୈବ-ଧର୍ମର ଅନୁସରଣ ଶକ୍ତିପାତମୂଳକ ଅଟେ, ତେଣୁ ସଂକ୍ଷେପରେ ସେହି ବିଷୟରେ ଏଠାରେ କୁହାଯାଉଛି । ଯେଉଁ ଶିଷ୍ୟଠାରେ ଗୁରୁଙ୍କର ଶକ୍ତିପାତ ହୋଇ ନାହିଁ, ତା'ଠାରେ ଶୁଦ୍ଧତା ଆସେ ନାହିଁ ଏବଂ ତା'ଠାରେ ବିଦ୍ୟା, ଶିବାଗ୍ରର, ମୁକ୍ତି ଓ ସିଦ୍ଧି କିଛି ବି ଆସେ ନାହିଁ । ତେଣୁ ପ୍ରଚୁର ଶକ୍ତିପାତର ଲକ୍ଷଣକୁ ଦେଖି ଗୁରୁ ଜ୍ଞାନ ଅଥବା କ୍ରିୟାଦ୍ୱାରା ଶିଷ୍ୟକୁ ଶୋଧନ କରିବେ । ଯେଉଁ ଦୁର୍ବୁଦ୍ଧି ମୋହବଶତଃ ଏହାର ବିପରୀତ ଆଚରଣ କରେ, ସେ ନଷ୍ଟ ହୋଇଯାଏ । ତେଣୁ ଗୁରୁ ସବୁ ପ୍ରକାରେ ଶିଷ୍ୟର ପରୀକ୍ଷଣ କରିବା ଉଚିତ । ଉତ୍କୃଷ୍ଟ ବୋଧ ଓ ଆନନ୍ଦର ପ୍ରାପ୍ତି ହିଁ ଶକ୍ତିପାତର ଲକ୍ଷଣ; କାରଣ ସେହି ପରମାଶକ୍ତି ପ୍ରବୋଧାନନ୍ଦରୂପିଣୀ ଅଟେ । ଆନନ୍ଦ ଓ ବୋଧର ଲକ୍ଷଣ ହେଉଛି ଅନ୍ତଃକରଣର ସାତ୍ତ୍ୱିକ ବିକାର । ଅନ୍ତଃକରଣ ଦ୍ରବିତ ହେଲେ ବାହ୍ୟ ଶରୀରରେ କମ୍ପ, ରୋମାଞ୍ଚ,

ସ୍ୱରବିକାର[୧], ନେତ୍ରବିକାର[୨] ଓ ଅଙ୍ଗବିକାର[୩] ପରିଲକ୍ଷିତ ହୁଏ ।

ଶିଷ୍ୟ ମଧ୍ୟ ଶିବପୂଜନ ଇତ୍ୟାଦିରେ ଗୁରୁଙ୍କ ସମ୍ପର୍କ ପ୍ରାପ୍ତ ହୋଇ ଅଥବା ତାଙ୍କ ସହିତ ରହି ତାଙ୍କ ଠାରେ ପ୍ରକଟ ହେଉଥିବା ଏହି ଲକ୍ଷଣରୁ ଗୁରୁଙ୍କୁ ପରୀକ୍ଷା କରିବେ । ଶିଷ୍ୟ ଗୁରୁଙ୍କ ଠାରୁ ଶିକ୍ଷା ପାଇବାର ଯୋଗ୍ୟ ଅଟେ ଏବଂ ତାହାର ଗୁରୁଙ୍କ ପ୍ରତି ଗୌରବ ବା ସମ୍ମାନ ଥାଏ । ତେଣୁ ଶିଷ୍ୟ ସବୁପ୍ରକାର ପ୍ରଯତ୍ନ କରି ଏପରି ଆଚରଣ କରିବ, ଯାହା ଗୁରୁଙ୍କ ଗୌରବର ଅନୁକୂଳ ହେବ । ଗୁରୁ ହିଁ ଶିବ ଏବଂ ଶିବ ହିଁ ଗୁରୁ ବୋଲି କୁହାଯାଏ । ବିଦ୍ୟା ଆକାରରେ ଶିବ ହିଁ ଗୁରୁ ହୋଇ ବିଦ୍ୟମାନ ହୋଇଥାନ୍ତି । ଯେପରି ଶିବ, ସେପରି ବିଦ୍ୟା । ଶିବ, ବିଦ୍ୟା ଓ ଗୁରୁଙ୍କ ପୂଜନରେ ସମାନ ଫଳ ମିଳିଥାଏ । ଶିବ ସର୍ବଦେବାତ୍ମକ ଏବଂ ଗୁରୁ ସର୍ବମନ୍ତ୍ରମୟ । ତେଣୁ ଗୁରୁଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରିବାକୁ ସବୁ ପ୍ରକାର ପ୍ରଯତ୍ନ କରିବା ଉଚିତ । ନିଜର କଲ୍ୟାଣ ଚାହୁଁଥିବା ବୁଦ୍ଧିମାନ୍ ଶିଷ୍ୟ କଦାପି ଗୁରୁଙ୍କ ପ୍ରତି କାୟମନୋବାକ୍ୟରେ ମିଥ୍ୟାଚାର ବା କପଟପୂର୍ଣ୍ଣ ବ୍ୟବହାର କରିବା ଉଚିତ ନୁହେଁ । ଗୁରୁ ଆଜ୍ଞା ଦେଇଥାନ୍ତୁ ବା ନ ଦେଇଥାନ୍ତୁ, ଶିଷ୍ୟ ସଦୈବ ତାଙ୍କର ହିତ ଓ ପ୍ରିୟ କାର୍ଯ୍ୟ କରିବା ଉଚିତ । ତାଙ୍କ ସମ୍ମୁଖରେ ଓ ଅନ୍ତରାଳରେ ମଧ୍ୟ ତାଙ୍କରି କାର୍ଯ୍ୟ କରିବା ଉଚିତ । ଏପରି ଆଚାରସମ୍ପନ୍ନ, ଗୁରୁଭକ୍ତ, ସଦା ଉତ୍ସାହୀ ତଥା ଗୁରୁଙ୍କ ପ୍ରିୟକାରୀ ଶିଷ୍ୟ ହିଁ ଶୈବଧର୍ମ ଉପଦେଶ ପାଇବାର ଅଧିକାରୀ । ଗୁରୁ ଯଦି ଗୁଣବାନ୍, ବିଦ୍ୱାନ୍, ପରମାନନ୍ଦର ପ୍ରକାଶକ, ତତ୍ତ୍ୱବେତ୍ତା ଓ ଶିବଭକ୍ତ ହୋଇଥାନ୍ତି, ତେବେ ସେ ହିଁ ମୁକ୍ତି ପ୍ରଦାନକାରୀ ହୋଇଥାନ୍ତି, ଅନ୍ୟ କେହି ନୁହେଁ । ଜ୍ଞାନ ଉତ୍ପନ୍ନକାରୀ ପରମାନନ୍ଦଜନିତ ତତ୍ତ୍ୱକୁ ଯେ ଜାଣିସାରିଛନ୍ତି, ସେ ହିଁ ଆନନ୍ଦର ସାକ୍ଷାତ୍କାର କରାଇ ପାରନ୍ତି । ଜ୍ଞାନଶୂନ୍ୟ ନାମକୁମାତ୍ର ଗୁରୁ ଏପରି କରାଇପାରେ ନାହିଁ ।

ଗୋଟିଏ ନୌକା ଅନ୍ୟ ନୌକାକୁ ପାର କରାଇ ପାରେ, କିନ୍ତୁ ଗୋଟିଏ ଶିଳା କ'ଣ ଅନ୍ୟ ଶିଳାକୁ ତାରି ପାରେ? ନାମକୁମାତ୍ର ଗୁରୁଦ୍ୱାରା ନାମକୁମାତ୍ର ମୁକ୍ତି ହୋଇପାରେ । ଯାହାଙ୍କୁ ତତ୍ତ୍ୱଜ୍ଞାନ ହୋଇସାରିଛି, ସେ ହିଁ ସ୍ୱୟଂ ମୁକ୍ତ ହୋଇ ଅନ୍ୟମାନଙ୍କୁ ମୁକ୍ତ କରନ୍ତି । ତତ୍ତ୍ୱହୀନକୁ କିପରି ବା ବୋଧ ହୋଇପାରିବ ଏବଂ ବୋଧ ବିନା କିପରି ବା 'ଆତ୍ମା'ର ଅନୁଭବ ହେବ?* ଯେ ଆତ୍ମାନୁଭବଶୂନ୍ୟ, ସେ 'ପଶୁ' ବୋଲାଏ । ପଶୁର ପ୍ରେରଣାରେ କେହି ପଶୁତ୍ୱକୁ ଲଙ୍ଘିପାରେ ନାହିଁ, ତେଣୁ ତତ୍ତ୍ୱଜ୍ଞ ପୁରୁଷ ହିଁ 'ମୁକ୍ତ' ଓ 'ମୋଚକ' ହୋଇପାରନ୍ତି, ଅଜ୍ଞ ହୋଇ ନ ପାରେ । ସମସ୍ତ ଶୁଭ ଲକ୍ଷଣରେ ସମ୍ପନ୍ନ, ସମସ୍ତ ଶାସ୍ତ୍ରର ଜ୍ଞାତା ଓ ସମସ୍ତ ପ୍ରକାର ଉପାୟବିଧାନର ଅଭିଜ୍ଞ ହୋଇଥିଲେ ସୁଦ୍ଧା ଯେ ତତ୍ତ୍ୱଜ୍ଞାନବିହୀନ, ତା'ର ଜୀବନ ନିଷ୍ଫଳ । ଯେଉଁ ବ୍ୟକ୍ତିର ବୁଦ୍ଧି ଅନୁଭବ ପର୍ଯ୍ୟନ୍ତ ତତ୍ତ୍ୱର ଅନୁସନ୍ଧାନରେ ପ୍ରବୃତ୍ତ ହୁଏ, ତାହାର ଦର୍ଶନ-ସ୍ପର୍ଶନାଦିରେ ପରମାନନ୍ଦ ପ୍ରାପ୍ତି ହୋଇଥାଏ । ତେଣୁ ଯାହାର ସମ୍ପର୍କମାତ୍ରକେ ଉତ୍କୃଷ୍ଟ

୧. କଣ୍ଠରୁ ଗଦ୍‌ଗଦ ବାଣୀ ବାହାରିବା । ୨. ନେତ୍ରରୁ ଅଶ୍ରୁପାତ ହେବା । ୩. ଶରୀରରେ ସ୍ତମ୍ଭ (ଜଡ଼ତା) ଓ ସ୍ୱେଦ ଇତ୍ୟାଦି ଦେଖାଯିବା ।

* ଅନ୍ୟୋନ୍ୟଂ ତାରୟେନ୍ନୌକା କିଂ ଶିଳା ତାରୟେଚ୍ଛିଳାମ୍ । ଏତସ୍ୟ ନାମମାତ୍ରେଣ ମୁକ୍ତିର୍ବୈ ନାମମାତ୍ରିକା ॥
ଯୈଃ ପୁନର୍ବିଦିତଂ ତତ୍ତ୍ୱଂ ତେ ମୁକ୍ତ୍ୱା ମୋଚୟନ୍ତ୍ୟପି । ତତ୍ତ୍ୱହୀନେ କୁତୋ ବୋଧଃ କୁତୋ ହ୍ୟାତ୍ମପରିଗ୍ରହଃ ॥
(ଶି. ପୁ., ବା. ସଂ., ଉ. ଖ. ୧୫ । ୩୮-୩୯)

ବୋଧସ୍ୱରୂପ ଆନନ୍ଦପ୍ରାପ୍ତି ହେବା ସମ୍ଭବ, ବୁଦ୍ଧିମାନ୍ ବ୍ୟକ୍ତି ତାହାକୁ ହିଁ ନିଜର ଗୁରୁରୂପେ ଚୟନ କରନ୍ତୁ, ଅନ୍ୟକୁ ନୁହେଁ। ଶିଷ୍ୟ ଯେପର୍ଯ୍ୟନ୍ତ ଯୋଗ୍ୟ ଗୁରୁଙ୍କୁ ଭଲଭାବେ ଚିହ୍ନି ନ ପାରିଛି, ସେପର୍ଯ୍ୟନ୍ତ ବିନୟାଗ୍ରର-ଚତୁର ଶିଷ୍ୟ ତାଙ୍କର ନିରନ୍ତର ସେବା କରିବା ଆବଶ୍ୟକ। ତାଙ୍କୁ ଭଲଭାବେ ଜାଣିଗଲେ ସେ ତାଙ୍କ ପ୍ରତି ସୁସ୍ଥିର ଭକ୍ତି କରିବ। ଯେପର୍ଯ୍ୟନ୍ତ ତତ୍ତ୍ୱବୋଧ ନ ହୋଇଛି, ସେପର୍ଯ୍ୟନ୍ତ ନିରନ୍ତର ଗୁରୁସେବାରେ ନିମଗ୍ନ ରହିବା ଉଚିତ। ତତ୍ତ୍ୱକୁ ଛାଡ଼ିବା ଉଚିତ ନୁହେଁ କି ଉପେକ୍ଷା କରିବା ଉଚିତ ନୁହେଁ। ଯାହାଙ୍କ ପାଖରେ ବର୍ଷେ ରହିବା ପରେ ସୁଦ୍ଧା ଶିଷ୍ୟକୁ ଟିକିଏ ବି ଆନନ୍ଦ ଓ ପ୍ରବୋଧ ଉପଲବ୍ଧି ନ ହୁଏ, ସେ ଶିଷ୍ୟ ତାଙ୍କୁ ଛାଡ଼ି ଅନ୍ୟ ଗୁରୁଙ୍କ ଆଶ୍ରୟ ନେବା ଉଚିତ।

ଗୁରୁଙ୍କର ମଧ୍ୟ ଏହା କର୍ତ୍ତବ୍ୟ ଯେ ସେ ତାଙ୍କର ଆଶ୍ରିତ ବ୍ରାହ୍ମଣଜାତୀୟ ଶିଷ୍ୟକୁ ବର୍ଷେ ପର୍ଯ୍ୟନ୍ତ ପରୀକ୍ଷା କରିବେ। କ୍ଷତ୍ରିୟ ଶିଷ୍ୟକୁ ଦୁଇ ବର୍ଷ ଓ ବୈଶ୍ୟ ଶିଷ୍ୟକୁ ତିନି ବର୍ଷ ପର୍ଯ୍ୟନ୍ତ ପରୀକ୍ଷା କରିବେ। ପ୍ରାଣକୁ ସଂକଟରେ ପକାଇ ସେବା କରିବା ଓ ଅଧିକ ଧନାଦି ଦେବା ଭଳି ନାନା ଅନୁକୂଳ ଓ ପ୍ରତିକୂଳ ଆଦେଶ ଦେଇ, ଉତ୍ତମ ଜାତିର ଶିଷ୍ୟଙ୍କୁ ଛୋଟ କାମରେ ନିଯୁକ୍ତ କରି ଏବଂ ଛୋଟମାନଙ୍କୁ ଉତ୍ତମ କାର୍ଯ୍ୟରେ ନିଯୁକ୍ତ କରି ସେମାନଙ୍କର ଧୈର୍ଯ୍ୟ ଓ ସହନଶୀଳତାର ପରୀକ୍ଷା ନେବେ। ଗୁରୁ ତିରସ୍କାର ପ୍ରଭୃତି କଲେ ମଧ୍ୟ ଯେ ବିଷାଦଗ୍ରସ୍ତ ହୁଏ ନାହିଁ, ସେ ହିଁ ସଂଯମୀ, ଶୁଦ୍ଧ ଓ ଶିବ-ସଂସ୍କାର କର୍ମ ପାଇଁ ଯୋଗ୍ୟ। ଯେଉଁ ଆଗ୍ରର-ବ୍ୟବହାରଶୀଳ ଦ୍ୱିଜାତିମାନେ କାହାରି ପ୍ରତି ହିଂସା କରନ୍ତି ନାହିଁ, ସମସ୍ତଙ୍କ ପ୍ରତି ଦୟାଳୁ ହୋଇଥାନ୍ତି, ହୃଦୟରେ ଉତ୍ସାହ ରଖି ସଦା ସମସ୍ତ କାର୍ଯ୍ୟ କରିବାକୁ ଉଦ୍ୟତ ରହନ୍ତି, ଅଭିମାନଶୂନ୍ୟ, ବୁଦ୍ଧିମାନ୍ ଓ ସ୍ପର୍ଦ୍ଧାଶୂନ୍ୟ ହୋଇ ପ୍ରିୟ ବାକ୍ୟ କହନ୍ତି, ସରଳ, କୋମଳ, ସ୍ୱଚ୍ଛ, ବିନୟଶୀଳ, ସୁସ୍ଥିରଚିତ୍ତ, ଶୌଗ୍ରଗ୍ରରଯୁକ୍ତ ଓ ଶିବଭକ୍ତ ହୋଇଥାନ୍ତି, ସେମାନଙ୍କୁ ମନ, ବାଣୀ, ଶରୀର ଓ କ୍ରିୟା ଦ୍ୱାରା ଯଥୋଚିତ ରୀତିରେ ଶୁଦ୍ଧ କରି ତତ୍ତ୍ୱବୋଧ କରାଇବା ଉଚିତ। ଏହା ଶାସ୍ତ୍ରର ନିର୍ଣ୍ଣୟ। ଶିବ-ସଂସ୍କାର କର୍ମରେ ନାରୀର ସ୍ୱାଭାବିକ-ଭାବେ ଅଧିକାର ନାହିଁ। ଯଦି ସେ ଶିବଭକ୍ତା ହୋଇଥାଏ, ତେବେ ସ୍ୱାମୀର ଆଜ୍ଞାରେ ହିଁ ଉକ୍ତ ସଂସ୍କାରର ଅଧିକାରିଣୀ ହୁଏ। ବିଧବା ନାରୀ ପୁତ୍ରାଦିଙ୍କ ଅନୁମତି କ୍ରମେ ଓ କନ୍ୟା ପିତାଙ୍କ ଆଜ୍ଞାରେ ଶିବ-ସଂସ୍କାରରେ ଅଧିକାର ପାଇଥାଏ। ଶୂଦ୍ର, ପତିତ ଓ ବର୍ଣ୍ଣସଂକରଙ୍କ ପାଇଁ ଷଡଧ୍ୱଶୋଧନ (ଶିବ-ସଂସ୍କାର)ର ବିଧାନ ନାହିଁ। ସେମାନେ ଯଦି ପରମକାରଣ ଶିବଙ୍କ ଠାରେ ସ୍ୱାଭାବିକ ଅନୁରାଗ ରଖୁଥାନ୍ତି, ତେବେ ଶିବଙ୍କ ଚରଣୋଦକ ନେଇ ସେମାନେ ପାପ ପ୍ରକ୍ଷାଳନ କରିବେ।

(ଅଧ୍ୟାୟ ୧୫)



## ସମୟ-ସଂସ୍କାର ବା ସମୟାଗ୍ରର ଦୀକ୍ଷାର ବିଧି

ଉପମନ୍ୟୁ କହୁଛନ୍ତି—ହେ ଯଦୁନନ୍ଦନ! ଦୋଷଶୂନ୍ୟ ଶୁଦ୍ଧ ସ୍ଥାନ ଓ ପବିତ୍ର ଦିନରେ ଗୁରୁ ପ୍ରଥମେ ଶିଷ୍ୟର 'ସମୟ' ନାମକ ସଂସ୍କାର କରିବେ। ଗନ୍ଧ, ବର୍ଣ୍ଣ ଓ ରସାଦିରେ ବିଧିପୂର୍ବକ ଭୂମିକୁ ପରୀକ୍ଷା କରି ବାସ୍ତୁଶାସ୍ତ୍ର ନିର୍ଦ୍ଦେଶିତ ପଦ୍ଧତିରେ ସେଠାରେ ମଣ୍ଡପ ନିର୍ମାଣ କରିବେ। ମଣ୍ଡପର ମଧ୍ୟଭାଗରେ ବେଦି ତିଆରି କରି ଅଷ୍ଟଦିଗରେ ଛୋଟ ଛୋଟ କୁଣ୍ଡ ତିଆରି କରିବେ।

ତା'ପରେ ଐଶାନ୍ୟକୋଣରେ କିଂବା ପଶ୍ଚିମଦିଗରେ ପ୍ରଧାନକୁଣ୍ଡ ତିଆରି କରି ଗ୍ରୁନ୍ଦୁଆ, ଧ୍ୱଜା-ପତାକା ଏବଂ ନାନା ପ୍ରକାର ମାଳାରେ ତାହାକୁ ସଜାଇବେ। ତା'ପରେ ବେଦିର ମଧ୍ୟଭାଗରେ ଶୁଭଲକ୍ଷଣଯୁକ୍ତ ମଣ୍ଡଳ କାଟିବେ। ନାଲିରଙ୍ଗର ସୁବର୍ଣ୍ଣାଦି ଚୂର୍ଣ୍ଣରେ ମଣ୍ଡଳ ତିଆରି କରିବା ଉଚିତ। ତାହା ଏପରି ହେବା ଆବଶ୍ୟକ ଯେପରି ସେଥିରେ ଈଶ୍ୱରଙ୍କୁ ଆବାହନ କରାଯାଇପାରିବ। ନିର୍ଦ୍ଧନ ମନୁଷ୍ୟ ସିନ୍ଦୂର ବା ଶାରଦ ଗ୍ରୁଉଳ ବା ନୀବାର ଗ୍ରୁଉଳର ଚୂନାରେ ମଣ୍ଡଳ କରିପାରିବେ। ସେହି ମଣ୍ଡପରେ ହାତେ ବା ଦୁଇ ହାତ ଲମ୍ବାର ଶ୍ୱେତ ବା ଲାଲ ପଦ୍ମ ଆଙ୍କିବେ। ହାତିକିଆ ପଦ୍ମର କର୍ଣ୍ଣିକା ଆଠଆଙ୍ଗୁଳିର ଏବଂ ତାହାର କେଶର ଗ୍ରୁରିଆଙ୍ଗୁଳିର ହୋଇଥିବ ଏବଂ ଅବଶିଷ୍ଟ ଭାଗରେ ଅଷ୍ଟଦଳ ଆଦିର କଳ୍ପନା କରିବେ। ଦୁଇହାତିଆ ପଦ୍ମର କର୍ଣ୍ଣିକା ଇତ୍ୟାଦି ହାତିକିଆ ପଦ୍ମର ଦୁଇଗୁଣ ହେବା ଆବଶ୍ୟକ। ଉକ୍ତ ବେଦି ବା ମଣ୍ଡପର ଐଶାନ୍ୟକୋଣରେ ଆଉ ଗୋଟିଏ ବେଦି ତିଆରି କରି ହାତିକିଆ ବା ଗ୍ରୁଖଣ୍ଡିକିଆ ମଣ୍ଡଳଟିଏ ଆଙ୍କିବେ ଏବଂ ତାହାକୁ ଶୋଭାଜନକ ସାମଗ୍ରୀରେ ସୁଶୋଭିତ କରିବେ। ଉକ୍ତ ମଣ୍ଡଳକୁ ଧାନ, ଗ୍ରୁଉଳ, ସୋରିଷ, ତିଳ, ଫୁଲ ଓ କୁଶରେ ଆଚ୍ଛାଦିତ କରି ତା' ଉପରେ ଶୁଭଲକ୍ଷଣଯୁକ୍ତ ଶିବକଳଶ ସ୍ଥାପନ କରିବେ। ସେହି କଳଶ ସୁନା, ରୁପା, ତମ୍ବା ଅଥବା ମାଟିର ହୋଇଥିବା ଆବଶ୍ୟକ। ତା' ଉପରେ ଗନ୍ଧ, ପୁଷ୍ପ, ଅକ୍ଷତ, କୁଶ ଓ ଦୂବ ଅର୍ପଣ କରିବେ ଏବଂ କଳଶର ଗଳାରେ ଧଳା ସୂତା ଗୁଡ଼ାଇବେ। ଦୁଇଟି ନୂତନ ବସ୍ତ୍ରରେ ତାହାକୁ ଆଚ୍ଛାଦିତ କରିବେ। ସେଥିରେ ଶୁଦ୍ଧ ଜଳ ପୂର୍ଣ୍ଣ କରିବେ। କଳଶରେ ମୁଠାଏ କୁଶ ଉପରମୁହାଁ କରି ପକାଇବେ। ସୁନା ଇତ୍ୟାଦି ସେଥିରେ ପକାଇ ତାହାକୁ ଢାଙ୍କିଦେବେ। ଆସନରୂପୀ ପଦ୍ମର ଉତ୍ତର ଦଳରେ ସୂତ୍ର ବିନା ଝରି ବା ଗଡ୍ଡୁ, ବର୍ଦ୍ଧନୀ (ବିଶିଷ୍ଟ ଜଳପାତ୍ର), ଶଙ୍ଖ, ଚକ୍ର ଓ ପଦ୍ମପାଖୁଡ଼ା ଇତ୍ୟାଦି ସମସ୍ତ ସାମଗ୍ରୀ ସଂଗ୍ରହ କରି ରଖିବେ। ଉକ୍ତ ଆସନ-ମଣ୍ଡଳର ଅଗ୍ରଭାଗରେ ଚନ୍ଦନମିଶ୍ରିତ ଜଳପୂର୍ଣ୍ଣ ବର୍ଦ୍ଧନୀ ଅସ୍ତ୍ରରାଜଙ୍କ ପାଇଁ ରଖିବେ। ତା'ପରେ ମଣ୍ଡଳର ପୂର୍ବଭାଗରେ ପୂର୍ବବତ୍ ମନ୍ତ୍ରଯୁକ୍ତ କଳଶ ସ୍ଥାପନା କରି ଶିବଙ୍କର ବିଧିପୂର୍ବକ ମହାପୂଜା ଆରମ୍ଭ କରିବେ।

ସମୁଦ୍ର ବା ନଦୀର କୂଳରେ, ଗୋଶାଳାରେ, ପର୍ବତଶିଖରରେ, ଦେବାଳୟରେ ଅଥବା ଘରେ ବା ଅନ୍ୟ କୌଣସି ମନୋହର ସ୍ଥାନରେ ମଣ୍ଡପାଦି ରଚନା ନ କରି ପୂର୍ବୋକ୍ତ ସମସ୍ତ କାର୍ଯ୍ୟ କରିବେ। ତା'ପରେ ପୂର୍ବବତ୍ ମଣ୍ଡଳ ଓ ଅଗ୍ନିର ବେଦି କରି ଗୁରୁ ପ୍ରସନ୍ନମୁଖରେ ପୂଜାଭବନରେ ପ୍ରବେଶ କରିବେ। ସେଠାରେ ସବୁ ପ୍ରକାର ମଙ୍ଗଳକୃତ୍ୟ ସମ୍ପାଦନ ଓ ନିତ୍ୟକର୍ମ ଅନୁଷ୍ଠାନପୂର୍ବକ ମଣ୍ଡଳର ମଧ୍ୟଭାଗରେ ମହେଶ୍ୱରଙ୍କ ମହାପୂଜା କରିବା ପରେ ପୁନଃ ଶିବକଳଶରେ ଶିବଙ୍କୁ ଆବାହନ-ପୂଜନ କରିବେ। ପଶ୍ଚିମାଭିମୁଖ ହୋଇ ଯଜ୍ଞରକ୍ଷକ ଈଶ୍ୱରଙ୍କୁ ଧ୍ୟାନ କରି ଅସ୍ତ୍ରରାଜଙ୍କ ବର୍ଦ୍ଧନୀରେ ଦକ୍ଷିଣ ଆଡ଼କୁ ଈଶ୍ୱରଙ୍କ ଅସ୍ତ୍ରକୁ ପୂଜା କରିବେ। ତା'ପରେ ମନ୍ତ୍ରଯୁକ୍ତ କଳଶରେ ମନ୍ତ୍ର ଓ ମୁଦ୍ରା ଆଦିକୁ ନ୍ୟାସ କରିବେ। ଏହାପରେ ଦେଶିକଶିରୋମଣି ଗୁରୁ ପ୍ରଧାନ କୁଣ୍ଡରେ ଶିବାଗ୍ନି ସ୍ଥାପନ କରି ସେଥିରେ ହୋମ କରିବେ। ଏହାଛଡ଼ା ଅନ୍ୟ ବ୍ରାହ୍ମଣମାନେ ମଧ୍ୟ ଗ୍ରୁରିପଟରୁ ସେଥିରେ ଆହୁତି ଦେବେ। ସେମାନଙ୍କ ପାଇଁ ଆଗ୍ରୁର୍ଯ୍ୟଙ୍କର ଅଧା ବା ଏକଚତୁର୍ଥାଂଶ ହୋମ କରିବାର ବିଧାନ ଅଛି। ଶ୍ରେଷ୍ଠ ଆଗ୍ରୁର୍ଯ୍ୟ ପ୍ରଧାନ କୁଣ୍ଡରେ ହୋମ କରିବେ। ଅନ୍ୟମାନେ ସ୍ୱାଧ୍ୟାୟ, ସ୍ତୋତ୍ର ଓ

ମଙ୍ଗଳପାଠ କରିବା ଉଚିତ । ଅନ୍ୟ ଶିବଭକ୍ତ ମଧ୍ୟ ସେଠାରେ ବିଧିବତ୍ ଜପ କରିବେ । ନୃତ୍ୟ, ଗୀତ, ବାଦ୍ୟ ଓ ଅନ୍ୟ ମଙ୍ଗଳକୃତ୍ୟ ମଧ୍ୟ କରିବେ । ସଦସ୍ୟମାନଙ୍କର ବିଧିବତ୍ ପୂଜନ, ପୁଣ୍ୟାହବାଚନ ତଥା ପୁନଃ ଶିବପୂଜନ କରିସାରି ଆଗ୍ରର୍ଯ୍ୟ ଶିଷ୍ୟ ଉପରେ ଅନୁଗ୍ରହ କରିବା ଇଚ୍ଛାରେ ମହାଦେବଙ୍କୁ ଏପରି ପ୍ରାର୍ଥନା କରିବେ–

ପ୍ରସୀଦ ଦେବଦେବେଶ ଦେହମାବିଶ୍ୟ ମାମକମ୍ ।
ବିମୋଚୟୈନଂ ବିଶ୍ୱେଶ ଘୃଣୟା ଚ ଘୃଣାନିଧେ ॥

"ଦେବେଶ୍ୱର ! ପ୍ରସନ୍ନ ହୁଅନ୍ତୁ । ବିଶ୍ୱନାଥ ! ଦୟାନିଧେ ! ମୋ ଶରୀରରେ ପ୍ରବେଶ କରି ଆପଣ କୃପାପୂର୍ବକ ଏ ଶିଷ୍ୟକୁ ବନ୍ଧନମୁକ୍ତ କରାନ୍ତୁ ।"

ଏହାପରେ 'ମୁଁ ଏହିପରି କରିବି' ଏହିରୂପେ ଇଷ୍ଟଦେବଙ୍କ ଅନୁମତି (ସ୍ୱୀକୃତି) ପାଇସାରି ଗୁରୁ ଉପବାସ ବା ହବିଷ୍ୟ ଭୋଜନ କରିଥିବା ସେହି ଶିଷ୍ୟକୁ ନିଜ ପାଖକୁ ଡାକିବେ । ଶିଷ୍ୟ ଅନାସକ୍ତ ହୋଇଥିବ ଏବଂ ବଖତେ ଭୋଜନ କରିଥିବ । ସେ ସ୍ନାନ କରି ପ୍ରାତଃକାଳୀନ କୃତ୍ୟ ଶେଷ କରିଥିବ । ମଙ୍ଗଳକୃତ୍ୟ ସମ୍ପାଦନ କରି ପ୍ରଣବ ଜପ ଓ ମହାଦେବଙ୍କୁ ଧ୍ୟାନ କରୁଥିବ । ତାହାକୁ ପଶ୍ଚିମ ବା ଦକ୍ଷିଣ ଦ୍ୱାର ସମ୍ମୁଖସ୍ଥ ମଣ୍ଡଳରେ କୁଶାସନରେ ଉତ୍ତରମୁଖ କରି ବସାଇବେ ଓ ଗୁରୁ ସ୍ୱୟଂ ପୂର୍ବ ଆଡ଼କୁ ମୁଖ କରି ଛିଡ଼ା ହେବେ । ଶିଷ୍ୟ ମୁଣ୍ଡ ସିଧା କରି ହାତ ଯୋଡ଼ିବ । ଗୁରୁ ପ୍ରୋକ୍ଷଣୀ ଜଳରେ ଶିଷ୍ୟର ପ୍ରୋକ୍ଷଣ କରି ତାହାର ମୁଣ୍ଡ ଉପରକୁ ଅସ୍ତ୍ରମୁଦ୍ରା ଦ୍ୱାରା ଫୁଲ ଫୋପାଡ଼ିବେ । ତା'ପରେ ଅଭିମନ୍ତ୍ରିତ ନୂତନ ବସ୍ତ୍ର ବା ଅଧା ଉପବସ୍ତ୍ରରେ ତାହାର ଆଖି ବାନ୍ଧିଦେବେ । ଏହାପରେ ଶିଷ୍ୟକୁ ଦ୍ୱାରବାଟେ ମଣ୍ଡଳ ଭିତରକୁ ନେବେ । ଶିଷ୍ୟ ଗୁରୁଙ୍କ ଦ୍ୱାରା ପ୍ରେରିତ ହୋଇ ଶିବଙ୍କୁ ତିନିଥର ପ୍ରଦକ୍ଷିଣ କରିବ? ଏହାପରେ ପ୍ରଭୁଙ୍କୁ ସୁବର୍ଣ୍ଣମିଶ୍ରିତ ପୁଷ୍ପାଞ୍ଜଳି ଦେଇ ପୂର୍ବ ବା ଉତ୍ତରକୁ ମୁଖ କରି ଭୂମିଷ୍ଠ ଦଣ୍ଡବତ୍ ପ୍ରଣାମ କରିବ । ତା'ପରେ ଗୁରୁ ମୂଳମନ୍ତ୍ରରେ ଶିଷ୍ୟକୁ ପ୍ରୋକ୍ଷଣ କରି ପୂର୍ବବତ୍ ଅସ୍ତ୍ରମନ୍ତ୍ର ଦ୍ୱାରା ତା' ଉପରକୁ ଫୁଲ ଫୋପାଡ଼ିବା ପରେ ନେତ୍ରବନ୍ଧନ ଖୋଲିଦେବେ । ଶିଷ୍ୟ ପୁନଃ ମଣ୍ଡଳ ଆଡ଼କୁ ଗ୍ରହିଁ କର ଯୋଡ଼ି ପ୍ରଭୁଙ୍କୁ ପ୍ରଣାମ କରିବ । ଏହାପରେ ଶିବସ୍ୱରୂପ ଆଗ୍ରର୍ଯ୍ୟ ଶିଷ୍ୟକୁ ମଣ୍ଡଳର ଦକ୍ଷିଣରେ ନିଜ ବାମଭାଗରେ କୁଶାସନରେ ବସାଇବେ ଓ ମହାଦେବଙ୍କୁ ଆରାଧନା କରି ତା' ମସ୍ତକ ଉପରେ ଶିବଙ୍କର ବରଦ ହସ୍ତ ରଖିବେ । 'ମୁଁ ଶିବ' ଏହି ଅଭିମାନରେ ଗୁରୁ ନିଜ ଶିବତେଜସମ୍ପନ୍ନ ହସ୍ତକୁ ଶିଷ୍ୟ ମୁଣ୍ଡ ଉପରେ ରଖି ଶିବମନ୍ତ୍ର ଉଚ୍ଚାରଣ କରିବେ । ସେହି ହାତରେ ସେ ଶିଷ୍ୟର ସର୍ବାଙ୍ଗକୁ ସ୍ପର୍ଶ କରିବେ । ଶିଷ୍ୟ ଆଗ୍ରର୍ଯ୍ୟରୂପରେ ଉପସ୍ଥିତ ଈଶ୍ୱରଙ୍କୁ ସାଷ୍ଟାଙ୍ଗ ଭୂମିଷ୍ଠ ପ୍ରଣାମ କରିବ । ତା'ପରେ ଶିଷ୍ୟ ଶିବାଗ୍ନିରେ ମହାଦେବଙ୍କୁ ବିଧିବତ୍ ପୂଜା କରି ତିନିଟି ଆହୁତି ଦେବା ପରେ ଗୁରୁ ଶିଷ୍ୟକୁ ପୂର୍ବବତ୍ ନିଜ ପାଖରେ ବସାଇବେ । କୁଶାଗ୍ରରେ ତାକୁ ସ୍ପର୍ଶ କରି ବିଦ୍ୟା ବା ମନ୍ତ୍ରଦ୍ୱାରା ନିଜକୁ ତା' ଭିତରେ ଆବିଷ୍ଟ କରିବେ ।

ତା'ପରେ ମହାଦେବଙ୍କୁ ପ୍ରଣାମ କରି ନାଡ଼ୀସନ୍ଧାନ କରିବେ । ଶିବଶାସ୍ତ୍ରୋକ୍ତ ମାର୍ଗରେ ପ୍ରାଣର ନିଷ୍କ୍ରମଣ କରି ଶିଷ୍ୟର ଶରୀରରେ ପ୍ରବେଶ କରିବାର ଭାବନା କରିବେ ଏବଂ ଏହା ସହିତ ମନ୍ତ୍ରର ତର୍ପଣ ମଧ୍ୟ କରିବେ । ମୂଳମନ୍ତ୍ରର ତର୍ପଣ ପାଇଁ ସେହି ମନ୍ତ୍ରକୁ ଉଚ୍ଚାରଣ କରି ଦଶଟି ଆହୁତି ଦେବା ଉଚିତ । ତା'ପରେ ଅଙ୍ଗ ମନ୍ତ୍ର ଦ୍ୱାରା ଅଙ୍ଗମାନଙ୍କର ତର୍ପଣ କରି କ୍ରମାନ୍ୱୟରେ ତିନିଟି ଆହୁତି ଦେବେ । ତା'ପରେ ପୂର୍ଣ୍ଣାହୁତି ଦେଇ ମନ୍ତ୍ରବେତ୍ତା ଗୁରୁ ପ୍ରାୟଶ୍ଚିତ୍ତ ନିମିତ୍ତ ମୂଳମନ୍ତ୍ରରେ ପୁନଃ ଦଶଟି ଆହୁତି

ଦେବେ । ତା'ପରେ ଦେବେଶ୍ୱର ଶିବଙ୍କୁ ପୂଜନ କରି ସମ୍ୟକ୍ ଆଚମନ ଓ ହବନ କରିବା ପରେ ଯଥୋକ୍ତ ରୀତିରେ ଜାତିତଃ ବୈଶ୍ୟକୁ ଉଦ୍ଧାର କରିବେ । ଭାବନା ଦ୍ୱାରା ତାହାର ବୈଶ୍ୟତ୍ୱକୁ ବାହାର କରି ତା'ଠାରେ କ୍ଷତ୍ରିୟତ୍ୱ ଉତ୍ପନ୍ନ କରିବେ । ତା'ପରେ କ୍ଷତ୍ରିୟତ୍ୱକୁ ମଧ୍ୟ ଉଦ୍ଧାର କରି ଗୁରୁ ତା'ଠାରେ ବ୍ରାହ୍ମଣତ୍ୱ ଉଦ୍ଭାବନା କରିବେ । ଏହି ପ୍ରଣାଳୀରେ ଜାତିତଃ କ୍ଷତ୍ରିୟକୁ ବି ଉଦ୍ଧାର କରି ବ୍ରାହ୍ମଣରେ ପରିଣତ କରିବେ । ତା'ପରେ ସେହି ଦୁଇ ଶିଷ୍ୟଙ୍କ ଠାରେ ରୁଦ୍ରତ୍ୱ ଉତ୍ପତ୍ତି କରିବେ । ଯେଉଁ ଶିଷ୍ୟ ଜାତିରେ ବ୍ରାହ୍ମଣ, ତା'ଠାରେ କେବଳ ରୁଦ୍ରତ୍ୱକୁ ସ୍ଥାପନା କରିବେ । ତା'ପରେ ଶିଷ୍ୟକୁ ପ୍ରୋକ୍ଷଣ ଓ ତାଡ଼ନ କରି ତାହାର ଅଗ୍ନିସ୍ଫୁଲିଙ୍ଗ ତୁଲ୍ୟ ପ୍ରକାଶମାନ ଶିବସ୍ୱରୂପ ଆତ୍ମାକୁ ନିଜ ଆତ୍ମାରେ ସ୍ଥିତ ହେବାର ଭାବନା କରିବେ । ତା'ପରେ ପୂର୍ବୋକ୍ତ ନାଡୀରେ ଗୁରୁ ମନ୍ତ୍ରୋଚ୍ଚାରଣପୂର୍ବକ ବାୟୁ ରେଚନ କରିବେ । ବାୟୁ ରେଚନ କରି ସେହି ନାଡୀଦ୍ୱାରା ହିଁ ଶିଷ୍ୟ ହୃଦୟରେ ସେ ସ୍ୱୟଂ ପ୍ରବେଶ କରିବେ । ପ୍ରବେଶ କଲାପରେ ତାହାର ଚୈତନ୍ୟକୁ ନୀଳ ବିନ୍ଦୁ ସଦୃଶ ଚିନ୍ତନ କରିବେ । ପୁଣି ଏପରି ଭାବନା କରିବେ ଯେ ମୋ ତେଜରେ ଏହାର ସମସ୍ତ ମଳ ନଷ୍ଟ ହୋଇଗଲା ଏବଂ ଏ ପୂର୍ଣ୍ଣତଃ ଦୀପ୍ତିମନ୍ତ ହେଉଛି । ତା'ପରେ ସେହି ଜୀବ-ଚୈତନ୍ୟକୁ ନେଇ ନାଡୀରେ ସଂହାରମୁଦ୍ରା ଓ ପୂରକ ପ୍ରାଣାୟାମ ଦ୍ୱାରା ନିଜ ଆତ୍ମା ସହ ଏକୀଭୂତ କରିବା ପାଇଁ ସେଥିରେ ନିବିଷ୍ଟ କରିବେ । ପୁନଃ ରେଚକ ଭଳି କୁମ୍ଭକଦ୍ୱାରା ସେହି ନାଡ଼ୀ ମାଧ୍ୟମରେ ଜୀବ-ଚୈତନ୍ୟକୁ ସେଠାରୁ ନେଇ ଶିଷ୍ୟ ହୃଦୟରେ ସ୍ଥାପିତ କରିବେ । ତା'ପରେ ଶିଷ୍ୟକୁ ସ୍ପର୍ଶ କରି ଶିବଙ୍କ ଠାରୁ ଉପଲବ୍ଧ ଯଜ୍ଞୋପବୀତ ତାହାକୁ ଦେଇ ଗୁରୁ ତିନିଥର ଆହୁତି ପ୍ରଦାନପୂର୍ବକ ପୂର୍ଣ୍ଣାହୁତି ହୋମ କରିବେ । ଏହାପରେ ଆରାଧ୍ୟଦେବଙ୍କ ଦକ୍ଷିଣଭାଗରେ ଶିଷ୍ୟକୁ କୁଶ ଓ ଫୁଲରେ ଆଚ୍ଛାଦିତ କରି ଉତ୍ତମ ଆସନରେ ଉତ୍ତରାଭିମୁଖ କରି ସ୍ୱସ୍ତିକାସନରେ ବସାଇବେ । ଶିଷ୍ୟ ଗୁରୁଙ୍କ ଆଡ଼କୁ ଗ୍ରହିଁ ହାତ ଯୋଡ଼ିବ । ଗୁରୁ ପୂର୍ବାଭିମୁଖ ହୋଇ ଶ୍ରେଷ୍ଠ ଆସନରେ ଛିଡ଼ା ହେବେ ଏବଂ ପୂର୍ବରୁ ସ୍ଥାପିତ ସିଦ୍ଧ ପୂର୍ଣ୍ଣଘଟକୁ ହାତରେ ଧରି ଶିବଙ୍କ ଧ୍ୟାନପୂର୍ବକ ମନ୍ତ୍ରପାଠ ଓ ମଙ୍ଗଳ ବାଦ୍ୟନାଦ ମଧ୍ୟରେ ଶିଷ୍ୟକୁ ଅଭିଷେକ କରିବେ । ତା'ପରେ ଶିଷ୍ୟ ଅଭିଷେକ ଜଳକୁ ପୋଛି ଶ୍ୱେତବସ୍ତ୍ର ଧାରଣ କରିବ ଏବଂ ଆଚମନ କରି ଅଳଂକୃତ ହେବା ପରେ କର ଯୋଡ଼ି ମଣ୍ଡପକୁ ଯିବ । ଗୁରୁ ପୂର୍ବବତ୍ ତାକୁ କୁଶାସନରେ ବସାଇ ମଣ୍ଡଳରେ ମହାଦେବଙ୍କୁ ପୂଜା କରି କରନ୍ୟାସ କରିବେ । ଏହାପରେ ମନେ ମନେ ମହାଦେବଙ୍କୁ ଧ୍ୟାନ କରି ଉଭୟ ହାତରେ ଭସ୍ମ ନେଇ ଶିଷ୍ୟ ଅଙ୍ଗରେ ଶିବମନ୍ତ୍ର ଉଚ୍ଚାରଣପୂର୍ବକ ଲେପନ କରିବେ ।

ଏହାପରେ ଶିବାଗ୍ନ୍ୟର୍ଯ୍ୟ ମାତୃକାନ୍ୟାସ ମାର୍ଗରେ ଶିଷ୍ୟର ଦହନ-ପ୍ଲାବନାଦି ସକଳୀକରଣ କରି ତା' ମସ୍ତକ ଉପରେ ଶିବଙ୍କ ଆସନର ଧ୍ୟାନ କରିବେ ଏବଂ ସେଠାରେ ଶିବଙ୍କୁ ଆବାହନ କରି ଯଥୋଚିତ ରୀତିରେ ତାଙ୍କୁ ମାନସିକ ପୂଜା କରିବେ । ତା'ପରେ କର ଯୋଡ଼ି ମହାଦେବଙ୍କୁ ପ୍ରାର୍ଥନା କରିବେ— "ପ୍ରଭୋ ! ଆପଣ ନିତ୍ୟ ଏଠାରେ ବିରାଜମାନ ରହନ୍ତୁ ।" ଏପରି ପ୍ରାର୍ଥନା କରି ମନେ ମନେ ଭାବନା କରିବେ ଯେ ଶିଷ୍ୟ ଭଗବାନ ଶିବଙ୍କ ତେଜରେ ଦୀପ୍ତିମନ୍ତ ହେଉଛି । ତା'ପରେ ଗୁରୁ ପୁନଃ ଶିବଙ୍କୁ ପୂଜା କରି ଶିବାରୂପିଣୀ ଶୈବୀ ଆଜ୍ଞାରେ ଶିଷ୍ୟର କାନରେ ଧୀରେ ଧୀରେ ଶିବମନ୍ତ୍ର ଉଚ୍ଚାରଣ କରିବେ । ଶିଷ୍ୟ ହାତ ଯୋଡ଼ି ସେହି

ମନ୍ତ୍ରକୁ ଶୁଣି ସେଥିରେ ମନ ଲଗାଇ ଶିବାଗ୍ରର୍ଯ୍ୟଙ୍କ ଆଜ୍ଞାନୁସାରେ ଧୀରେ ଧୀରେ ତାହାକୁ ଆବୃତ୍ତି କରିବ । ତା'ପରେ ମନ୍ତ୍ରଜ୍ଞାନକୁଶଳ ଆଗ୍ରର୍ଯ୍ୟ ଶାକ୍ତମନ୍ତ୍ରର ଉପଦେଶ ଦେବେ, ତାହାର ସୁଖପୂର୍ବକ ଉଚ୍ଚାରଣ କରାଇ ଶିଷ୍ୟ ପ୍ରତି ମଙ୍ଗଳାଶଂସା କରିବେ । ତା'ପରେ ସଂକ୍ଷେପରେ ବାଚ୍ୟ-ବାଚକ ଯୋଗ ଅନୁସାରେ ଈଶ୍ୱରରୂପୀ ମନ୍ତ୍ର ଉପଦେଶ ଦେଇ ଯୋଗାସନର ଶିକ୍ଷା ଦେବେ । ତା'ପରେ ଶିଷ୍ୟ ଗୁରୁଙ୍କ ଆଜ୍ଞାରେ ଶିବ, ଅଗ୍ନି ଓ ଗୁରୁଙ୍କ ପାଖରେ ଭକ୍ତିଭାବରେ ପ୍ରତିଜ୍ଞାପୂର୍ବକ ନିମ୍ନ ପ୍ରକାରେ ଦୀକ୍ଷାବାକ୍ୟ ଉଚ୍ଚାରଣ କରିବ—

ବରଂ ପ୍ରାଣପରିତ୍ୟାଗଶ୍ଛେଦନଂ ଶିରସୋଽପି ବା ।
ନ ତ୍ୱନଭ୍ୟର୍ଚ୍ୟ ଭୁଞ୍ଜୀୟ ଭଗବନ୍ତଂ ତ୍ରିଲୋଚନମ୍ ॥

"ମୋର ପ୍ରାଣ ଗ୍ଲିଯାଉ ଅଥବା ମୁଣ୍ଡ କଟିଯାଉ ପଛେ ମୁଁ ଭଗବାନ ଶିବଙ୍କୁ ପୂଜା ନ କରି ଭୋଜନ କରିବି ନାହିଁ ।"

ମୋହ ଦୂର ନ ହେବା ପର୍ଯ୍ୟନ୍ତ ଶିଷ୍ୟ ଶିବଙ୍କ ଠାରେ ହିଁ ନିଷ୍ଠା ରଖି ତାଙ୍କରି ଆଶ୍ରିତ ହୋଇ ନିୟମପୂର୍ବକ ତାଙ୍କରି ଆରାଧନା କରିବ । ଏହାପରେ ଭଗବାନ ଶିବ ହିଁ ତାହାକୁ ଯୋଗକ୍ଷେମ ପ୍ରଦାନ କରିବେ । ଏପରି କଲେ ସେହି ଶିଷ୍ୟର ନାମ ହେବ 'ସମୟ' । ତାହାକୁ ଶିବାଶ୍ରମରେ ରହିବାର ଅଧିକାର ପ୍ରାପ୍ତ ହେବ । ସେଠାରେ ସେ ଗୁରୁଙ୍କ ଆଜ୍ଞା ପାଳନ କରି ସଦା ତାଙ୍କରି ଅଧୀନରେ ରହିବା ଆବଶ୍ୟକ । ତା'ପରେ ଗୁରୁ କରନ୍ୟାସ କରି ନିଜ ହାତରେ ଭସ୍ମ ନେଇ ମୂଳମନ୍ତ୍ର ଉଚ୍ଚାରଣପୂର୍ବକ ସେହି ଭସ୍ମ ତଥା ରୁଦ୍ରାକ୍ଷକୁ ଅଭିମନ୍ତ୍ରିତ କରି ଶିଷ୍ୟ ହାତରେ ଦେବେ । ତା'ଛଡ଼ା ମହାଦେବଙ୍କ ପ୍ରତିମା ଅଥବା ତାଙ୍କର ଗୂଢ଼ ଶରୀର (ଲିଙ୍ଗ) ଏବଂ ଯଥାସମ୍ଭବ ପୂଜା, ହୋମ, ଜପ ଓ ଧ୍ୟାନର ଉପକରଣ ମଧ୍ୟ ଦେବେ । ଶିଷ୍ୟ ଶିବାଗ୍ରର୍ଯ୍ୟଙ୍କ ଠାରୁ ସେହି ସବୁ ବସ୍ତୁକୁ ଆଦରରେ ଗ୍ରହଣ କରିବ । ତାଙ୍କ ଆଜ୍ଞାକୁ ଉଲ୍ଲଙ୍ଘନ କରିବ ନାହିଁ । ଆଗ୍ରର୍ଯ୍ୟଙ୍କ ଠାରୁ ପ୍ରାପ୍ତ ସମସ୍ତ ବସ୍ତୁକୁ ମସ୍ତକ ଉପରେ ଥୋଇ ନେଇଯିବ ଓ ସେଗୁଡ଼ିକୁ ରକ୍ଷା କରିବ । ନିଜ ରୁଚି ଅନୁସାରେ ମଠରେ ବା ଘରେ ଶିବଙ୍କୁ ପୂଜା କରିବ । ଏହାପରେ ଗୁରୁ ଭକ୍ତି, ଶ୍ରଦ୍ଧା ଓ ବୁଦ୍ଧି ଅନୁସାରେ ଶିଷ୍ୟକୁ ଶିବାଗ୍ରର ସମ୍ବନ୍ଧରେ ଶିକ୍ଷା ଦେବେ । ଶିବାଗ୍ରର୍ଯ୍ୟ ସମୟାଗ୍ରର ବିଷୟରେ ଯାହା କିଛି କହିଥିବେ, ଯେଉଁ ଆଜ୍ଞା ଦେଇଥିବେ ଅଥବା ଅନ୍ୟ ଯାହା କିଛି ମାର୍ଗଦର୍ଶନ କରିଥିବେ, ସେଗୁଡ଼ିକୁ ଶିଷ୍ୟ ଶିରୋଧାର୍ଯ୍ୟ କରିବ । ଗୁରୁଙ୍କ ଆଦେଶରେ ହିଁ ଶିବାଗମକୁ ଗ୍ରହଣ, ପଠନ ଓ ଶ୍ରବଣ କରିବ । ନିଜ ଇଚ୍ଛାରେ କି ଅନ୍ୟର ପ୍ରେରଣାରେ କିଛି କରିବ ନାହିଁ । ମୁଁ ସଂକ୍ଷେପରେ ସମୟାଖ୍ୟସଂସ୍କାର ବା ସମୟାଗ୍ରର ଦୀକ୍ଷା ବିଷୟରେ ବର୍ଣ୍ଣନା କରିଦେଲି । ଏହା ମନୁଷ୍ୟଙ୍କୁ ସାକ୍ଷାତ୍ ଶିବଧାମ ପ୍ରାପ୍ତି କରାଇବା ନିମନ୍ତେ ସବୁଠୁ ଉତ୍ତମ ସାଧନ ।

(ଅଧ୍ୟାୟ ୧୬)



# ଷଡଧ୍ୱଶୋଧନ ବିଧି

ଉପମନ୍ୟୁ କହୁଛନ୍ତି—ଯଦୁନନ୍ଦନ ! ଏହାପରେ ଗୁରୁ ଶିଷ୍ୟର ଯୋଗ୍ୟତା ଦେଖି ତାହାର ସମସ୍ତ ବନ୍ଧନର ନିବୃତ୍ତି ପାଇଁ ଷଡଧ୍ୱଶୋଧନ କରିବେ । କଳା, ତତ୍ତ୍ୱ, ଭୁବନ, ବର୍ଣ୍ଣ, ପଦ ଓ ମନ୍ତ୍ରକୁ ହିଁ ସଂକ୍ଷେପରେ ଛଅଟି ଅଧ୍ୱା କୁହାଯାଇଛି । ନିବୃତ୍ତି* ଆଦି ପାଞ୍ଚ କଳାକୁ ବିଦ୍ୱାନ୍ ଲୋକେ କଳାଧ୍ୱା କହନ୍ତି । ଅନ୍ୟ ପାଞ୍ଚଟି ଅଧ୍ୱା ଏହି ପାଞ୍ଚକଳାରେ ବ୍ୟାପ୍ତ ଅଟେ । ଶିବତତ୍ତ୍ୱ ଠାରୁ ଆରମ୍ଭ କରି ଭୂମି

* ନିବୃତ୍ତି, ପ୍ରତିଷ୍ଠା, ବିଦ୍ୟା, ଶାନ୍ତି ଓ ଶାନ୍ତ୍ୟତୀତା—ଏଗୁଡ଼ିକ ପାଞ୍ଚଟି କଳାର ନାମ ।

ପର୍ଯ୍ୟନ୍ତ ଯେଉଁ ଛବିଶଟି ତତ୍ତ୍ୱ ରହିଛି, ତାହାକୁ 'ତତ୍ତ୍ୱାଧ୍ୱା' କହନ୍ତି । ଅଧ୍ୱା ଶୁଦ୍ଧ ଓ ଅଶୁଦ୍ଧ ଭେଦରେ ଦୁଇ ପ୍ରକାରର । ଆଧାର ଠାରୁ ଉନ୍ମନା ପର୍ଯ୍ୟନ୍ତ 'ଭୁବନାଧ୍ୱା' ନାମରେ କଥିତ । ଭେଦ ଓ ଉପଭେଦକୁ ଛାଡ଼ି ଏହାର ସଂଖ୍ୟା ଷାଠିଏ ଅଟେ । ରୁଦ୍ରସ୍ୱରୂପ ପଚାଶଟି ବର୍ଣ୍ଣକୁ 'ବର୍ଣ୍ଣାଧ୍ୱା' ସଂଜ୍ଞା ଦିଆଯାଇଛି । ପଦଗୁଡ଼ିକୁ 'ପଦାଧ୍ୱା' କୁହାଯାଇଛି । ପଦାଧ୍ୱାର ଅନେକ ଭେଦ ରହିଛି । ସବୁପ୍ରକାର ଉପମନ୍ତ୍ର ଦ୍ୱାରା 'ମନ୍ତ୍ରାଧ୍ୱା' ହୁଏ, ଯାହାକି ପରମ ବିଦ୍ୟାରେ ବ୍ୟାପ୍ତ । ତତ୍ତ୍ୱନାୟକ ଶିବଙ୍କୁ ଯେପରି ତତ୍ତ୍ୱରେ ଗଣନା କରାଯାଏ ନାହିଁ, ସେହିପରି ସେହି ମନ୍ତ୍ରନାୟକ ମହେଶ୍ୱରଙ୍କୁ ମନ୍ତ୍ରାଧ୍ୱାରେ ଗଣନା କରାଯାଏ ନାହିଁ । କଳାଧ୍ୱା ବ୍ୟାପକ ଏବଂ ଅନ୍ୟ ଅଧ୍ୱା ବ୍ୟାପ୍ୟ । ଯେ ଏକଥାକୁ ଯଥାର୍ଥରୂପେ ଜାଣେ ନାହିଁ, ସେ ଅଧ୍ୱଶୋଧନର ଅଧିକାରୀ ନୁହେଁ । ଯେ ଛଅପ୍ରକାର ଅଧ୍ୱାର ରୂପ ଜାଣିନି, ସେ ବ୍ୟାପ୍ୟ-ବ୍ୟାପକ ଭାବକୁ ବୁଝି ପାରିବ ନାହିଁ । ତେଣୁ ଅଧ୍ୱାଗୁଡ଼ିକର ସ୍ୱରୂପ ତଥା ବ୍ୟାପ୍ୟ-ବ୍ୟାପକ ଭାବକୁ ଜାଣିବା ପରେ ହିଁ ଅଧ୍ୱଶୋଧନ କରିବା ଉଚିତ ।

ପୂର୍ବବତ୍ କୁଣ୍ଡ ଓ ମଣ୍ଡଳ ନିର୍ମାଣ କାର୍ଯ୍ୟ ସେଠାରେ କରି ପୂର୍ବଦିଗରେ ଦୁଇହାତ ଲମ୍ବ ଓ ଦୁଇହାତ ଚଉଡ଼ା କଳଶମଣ୍ଡଳ ତିଆରି କରିବେ । ତା'ପରେ ଶିବାଚାର୍ଯ୍ୟ ଶିଷ୍ୟସହିତ ସ୍ନାନ ଓ ନିତ୍ୟକର୍ମ କରି ମଣ୍ଡଳରେ ପ୍ରବିଷ୍ଟ ହୋଇ ପୂର୍ବପରି ଶିବପୂଜା କରିବେ । ତା'ପରେ ସେଠାରେ ପ୍ରାୟ ଚାରି ସେର ଚାଉଳରେ ଖିରି କରି ସେଥିରୁ ଅଧା ପ୍ରଭୁଙ୍କୁ ଭୋଗ ଲଗାଇବେ ଏବଂ ଅବଶିଷ୍ଟ ଖିରିକୁ ହୋମ ପାଇଁ ରଖିବେ । ପୂର୍ବଦିଗରେ ତିଆରି ହୋଇଥିବା ଅନେକ ବର୍ଣ୍ଣରେ ଅଳଂକୃତ ମଣ୍ଡଳରେ ଗୁରୁ ପାଞ୍ଚଟି କଳଶ ସ୍ଥାପନ କରିବେ । ଚାରିଟିକୁ ଚାରିଦିଗରେ ଓ ପଞ୍ଚମଟିକୁ ମଝିରେ ସ୍ଥାପନ କରିବେ । ସେହି କଳଶଗୁଡ଼ିକ ଉପରେ ମୂଳମନ୍ତ୍ର 'ନମଃ ଶିବାୟ'ର ପାଞ୍ଚ ଅକ୍ଷରକୁ ବିନ୍ଦୁ ଓ ନାଦ ସହ ସଂଯୁକ୍ତ କରି ତଦ୍ଦ୍ୱାରା କଳ୍ପବିଧିର ଜ୍ଞାତା ଗୁରୁ ଈଶାନ ଆଦି ବ୍ରହ୍ମଗୁଡ଼ିକୁ ସ୍ଥାପନ କରିବେ । ମଧ୍ୟବର୍ତ୍ତୀ କଳଶରେ 'ଓଁ ନଂ ଈଶାନାୟ ନମଃ, ଈଶାନଂ ସ୍ଥାପୟାମି' କହି ଈଶାନଙ୍କୁ ସ୍ଥାପନ କରିବେ । ପୂର୍ବବର୍ତ୍ତୀ କଳଶରେ 'ଓଁ ମଂ ତତ୍ପୁରୁଷାୟ ନମଃ', ତତ୍ପୁରୁଷଂ ସ୍ଥାପୟାମି' କହି ତତ୍ପୁରୁଷଙ୍କୁ, ଦକ୍ଷିଣ କଳଶରେ 'ଓଁ ଶିଂ ଅଘୋରାୟ ନମଃ, ଅଘୋରଂ ସ୍ଥାପୟାମି' କହି ଅଘୋରଙ୍କୁ, ବାମ ବା ଉତ୍ତର-ଭାଗରେ ଥିବା କଳଶରେ 'ଓଁ ବାଂ ବାମଦେବାୟ ନମଃ, ବାମଦେବଂ ସ୍ଥାପୟାମି' କହି ବାମଦେବଙ୍କୁ ଏବଂ ପଶ୍ଚିମ କଳଶରେ 'ଓଁ ୟଂ ସଦ୍ୟୋଜାତାୟ ନମଃ, ସଦ୍ୟୋଜାତଂ ସ୍ଥାପୟାମି' କହି ସଦ୍ୟୋଜାତଙ୍କୁ ସ୍ଥାପନ କରିବେ । ତା'ପରେ ରକ୍ଷାବିଧାନ କରି ମୁଦ୍ରା ବାନ୍ଧି କଳଶକୁ ଅଭିମନ୍ତ୍ରିତ କରିବେ । ଏହାପରେ ପୂର୍ବବତ୍ ଶିବାଗ୍ନିରେ ହୋମ ଆରମ୍ଭ କରିବେ । ପୂର୍ବରୁ ହୋମ ପାଇଁ ଯେଉଁ ଅଧା ଖିରି ରଖା ଯାଇଥିଲା, ତାହାକୁ ହବନ କରି ଶେଷଭାଗ ଶିଷ୍ୟକୁ ଖାଇବାକୁ ଦେବେ । ପୂର୍ବବତ୍ ମନ୍ତ୍ରଗୁଡ଼ିକର ତର୍ପଣାନ୍ତ କର୍ମ କରିସାରି ପୂର୍ଣ୍ଣାହୁତି ହୋମ କରିବା ପରେ ପ୍ରଦୀପନ କର୍ମ କରିବେ । ପ୍ରଦୀପନ କର୍ମରେ 'ଓଁ ହୁଂ ନମଃ ଶିବାୟ ଫଟ୍ ସ୍ୱାହା' ଉଚ୍ଚାରଣ କରି କ୍ରମାନ୍ୱୟରେ ହୃଦୟାଦି ଅଙ୍ଗକୁ ତିନୋଟି ଲେଖାଏଁ ଆହୁତି ଦେବେ । (ଅଙ୍ଗ ମଧ୍ୟରେ ହୃଦୟ, ଶିର, ଶିଖା, କବଚ, ନେତ୍ରତ୍ରୟ ଓ ଅସ୍ତ୍ର ଅନ୍ତର୍ଗତ ।) ପ୍ରତ୍ୟେକ ଅଙ୍ଗ ପାଇଁ ତିନି ତିନି ଥର ମନ୍ତ୍ର ପଢ଼ି ତିନୋଟି ଲେଖାଏଁ ଆହୁତି ଦେବେ । ସେଗୁଡ଼ିକୁ ତେଜସ୍ୱୀସ୍ୱରୂପରେ ଚିନ୍ତନ କରିବେ । ଏହାପରେ କୁମାରୀ ବ୍ରାହ୍ମଣକନ୍ୟା ହାତରେ କଟା ହୋଇଥିବା ଧଳାସୂତାକୁ ତିନିଗୁଣ କରିବାପରେ ପୁନଃ ତ୍ରିଗୁଣ କରି ତାହାକୁ ଅଭିମନ୍ତ୍ରିତ କରିବେ ଏବଂ ତାହାର

ଗୋଟିଏ ପ୍ରାନ୍ତ ଶିଷ୍ୟର ଶିଖାର ଅଗ୍ରଭାଗରେ ବାନ୍ଧିଦେବେ। ଶିଷ୍ୟ ମୁଣ୍ଡ ଉଠାଇ ଠିଆ ହୋଇପଡ଼ିବ ଏବଂ ସେତେବେଳେ ସେହି ସୂତା ପାଦାଙ୍ଗୁଷ୍ଠ ପର୍ଯ୍ୟନ୍ତ ଝୁଲିରହିବ। ସୂତାକୁ ଏହିପରି ଝୁଲାଇ ସେଥିରେ ସୁଷୁମ୍ନା ନାଡ଼ୀର ସଂଯୋଜନା କରିବେ। ତା'ପରେ ମନ୍ତ୍ରଜ୍ଞ ଗୁରୁ ଶାନ୍ତ ମୁଦ୍ରା ସହିତ ମୂଳମନ୍ତ୍ରରେ ତିନୋଟି ଆହୁତି ଦେଇ ସେହି ନାଡୀକୁ ନେଇ ସେହି ସୂତ୍ରରେ ସ୍ଥାପିତ କରିବେ। ତା'ପରେ ପୂର୍ବବତ୍ ଫୁଲ ଫୋପାଡ଼ି ଶିଷ୍ୟ ହୃଦୟକୁ ତାଡ଼ନ କରିବେ ଓ ସେଥିରୁ ଚୈତନ୍ୟକୁ ନେଇ, ବାରଥର ଆହୁତି ଦେବା ପରେ ଶିବଙ୍କୁ ନିବେଦିତ କରି ଓହଳିଥିବା ସୂତ୍ରକୁ ଗୋଟିଏ ସୂତାରେ ଯୋଡ଼ିବେ ଏବଂ 'ହୁଂ ଫଟ୍' ମନ୍ତ୍ରରେ ରକ୍ଷା କରି ସେହି ସୂତାକୁ ଶିଷ୍ୟର ଶରୀରରେ ଗୁଡ଼ାଇଦେବେ। ଏପରି ଭାବନା କରିବେ ଯେ ଶିଷ୍ୟର ଶରୀର ମୂଳମନ୍ତ୍ରମୟ ପାଶ ଅଟେ, ଭୋଗ ଓ ଭୋଗ୍ୟତ୍ୱ ହିଁ ତାହାର ଲକ୍ଷଣ, ତାହା ବିଷୟ, ଇନ୍ଦ୍ରିୟ ଓ ଦେହ ଇତ୍ୟାଦିର ଜନକ।

ତା'ପରେ ଆକାଶାଦି ତତ୍ତ୍ୱର ସ୍ୱରୂପ ଶାନ୍ତ୍ୟତୀତାଦି ପାଞ୍ଚ କଳାକୁ ସେହି ସୂତ୍ରରେ ସେଗୁଡ଼ିକର ନାମ ଉଚ୍ଚାରଣ କରି କରି ଯୋଡ଼ିବା ଆବଶ୍ୟକ। ଯଥା—

''ବ୍ୟୋମରୂପିଣୀଂ ଶାନ୍ତ୍ୟତୀତକଳାଂ ଯୋଜୟାମି, ବାୟୁରୂପିଣୀଂ ଶାନ୍ତିକଳାଂ ଯୋଜୟାମି, ତେଜୋରୂପିଣୀଂ ବିଦ୍ୟାକଳାଂ ଯୋଜୟାମି, ଜଳରୂପିଣୀଂ ପ୍ରତିଷ୍ଠାକଳାଂ ଯୋଜୟାମି, ପୃଥ୍ୱୀରୂପିଣୀଂ ନିବୃତ୍ତିକଳାଂ ଯୋଜୟାମି।'' ଇତି।

ଏହିରୂପେ କଳାଗୁଡ଼ିକୁ ଯୋଜନ କରି ସେଗୁଡ଼ିକର ନାମର ଶେଷରେ 'ନମଃ' ଯୋଗ କରି ପୂଜା କରିବେ। ଯଥା—''ଶାନ୍ତ୍ୟତୀତକଳାୟୈ ନମଃ, ଶାନ୍ତିକଳାୟୈ ନମଃ।'' ଇତ୍ୟାଦି। ଅଥବା ଆକାଶାଦିର ବୀଜଭୂତ (ହଂ ୟଂ ରଂ ବଂ ଲଂ) ମନ୍ତ୍ରରେ ବା ପଞ୍ଚାକ୍ଷରର ପାଞ୍ଚଟି ଅକ୍ଷରରେ ନାଦବିନ୍ଦୁ ଯୋଗ କରି ବୀଜରୂପ ହୋଇଥିବା ସେହି ମନ୍ତ୍ରାକ୍ଷର ଦ୍ୱାରା କ୍ରମାନ୍ୱୟରେ ପୂର୍ବୋକ୍ତ କାର୍ଯ୍ୟ କରି ତତ୍ତ୍ୱାଦିରେ ମଳାଦି ପାଶଗୁଡ଼ିକର ବ୍ୟାପ୍ତି ଚିନ୍ତନ କରିବେ। ପୁଣି ମଳାଦି ପାଶଗୁଡ଼ିକରେ ମଧ୍ୟ କଳାଗୁଡ଼ିକର ବ୍ୟାପ୍ତି ଦେଖିବେ। ତା'ପରେ ଆହୁତି କରି ସେହି କଳାଗୁଡ଼ିକୁ ସଂଦୀପିତ କରିବେ। ତା'ପରେ ଶିଷ୍ୟର ମସ୍ତକକୁ ପୁଷ୍ପଦ୍ୱାରା ତାଡ଼ନ କରି ତା' ଦେହରେ ଗୁଡ଼ା ହୋଇଥିବା ସୂତ୍ରକୁ ମୂଳମନ୍ତ୍ର ଉଚ୍ଚାରଣପୂର୍ବକ ଶାନ୍ତ୍ୟତୀତ ପଦରେ ଅଙ୍କିତ କରିବେ। ଏହିରୂପେ କ୍ରମାନ୍ୱୟରେ ଶାନ୍ତ୍ୟତୀତରୁ ଆରମ୍ଭ କରି ନିବୃତ୍ତିକଳା ପର୍ଯ୍ୟନ୍ତ ପୂର୍ବୋକ୍ତ କାର୍ଯ୍ୟ କରି ତିନିଟି ଆହୁତି ଦେଇ ମଣ୍ଡଳରେ ପୁନଃ ଶିବଙ୍କୁ ପୂଜା କରିବେ। ଏହାପରେ ଦେବତାଙ୍କ ଦକ୍ଷିଣଭାଗରେ ଶିଷ୍ୟକୁ କୁଶାସନ ଉପରେ ମଣ୍ଡଳରେ ଉତ୍ତରାଭିମୁଖ କରି ବସାଇ ଗୁରୁ ତାହାକୁ ହୋମାବଶେଷ ଚରୁ ଦେବେ। ଗୁରୁଙ୍କ ପ୍ରଦତ୍ତ ଚରୁକୁ ଶିଷ୍ୟ ଆଦରରେ ଗ୍ରହଣ କରି ଶିବଙ୍କ ନାମ ନେଇ ତାହାକୁ ଭକ୍ଷଣ କରିବ ଏବଂ ଦୁଇଥର ଆଚମନ କରି ଶିବମନ୍ତ୍ର ଉଚ୍ଚାରଣ କରିବ। ଏହାପରେ ଗୁରୁ ଦ୍ୱିତୀୟ ମଣ୍ଡଳରେ ଶିଷ୍ୟକୁ ପଞ୍ଚଗବ୍ୟ ଦେବେ। ଶିଷ୍ୟ ନିଜ ଶକ୍ତି ଅନୁସାରେ ତାହାକୁ ପିଇ ଦୁଇଥର ଆଚମନ କରି ଶିବଙ୍କୁ ସ୍ମରଣ କରିବ। ତା'ପରେ ଗୁରୁ ଶିଷ୍ୟକୁ ମଣ୍ଡଳରେ ବସାଇ ତାକୁ ଶାସ୍ତ୍ରୋକ୍ତ ଲକ୍ଷଣଯୁକ୍ତ ଦନ୍ତଧାବନ ଦେବେ। ଶିଷ୍ୟ ପୂର୍ବ ବା ଉତ୍ତରକୁ ମୁଖ କରି ବସି ମୌନଭାବରେ ସେହି ଦାନ୍ତକାଠିର ଅଗ୍ରଭାଗ ଦ୍ୱାରା ଦାନ୍ତ ଘଷିବ। ତା'ପରେ ଦାନ୍ତକାଠିକୁ ଧୋଇ ଫୋପାଡ଼ିଦେଇ କୁଳି କରିସାରିଲେ ମୁହଁ-ହାତ ଧୋଇ ଶିବଙ୍କୁ ସ୍ମରଣ କରିବ। ତା'ପରେ ଗୁରୁଙ୍କ ଆଜ୍ଞାରେ ଶିଷ୍ୟ କର ଯୋଡ଼ି ଶିବମଣ୍ଡଳରେ

ପ୍ରବେଶ କରିବ । ଫୋପାଡ଼ି ଥିବା ଦାନ୍ତକାଠିକୁ ଗୁରୁ ଯଦି ପୂର୍ବ, ଉତ୍ତର ବା ପଶ୍ଚିମ ଦିଗରେ ନିଜ ସମ୍ମୁଖରେ ଦେଖନ୍ତି, ତେବେ ମଙ୍ଗଳ; ଅନ୍ୟ ଦିଗରେ ଦେଖିଲେ ଅମଙ୍ଗଳ ହୁଏ । ଯଦି ନିନ୍ଦିତ ଦିଗରେ ତାହା ଦିଶେ, ତେବେ ସେହି ଦୋଷର ଶାନ୍ତି ପାଇଁ ଗୁରୁ ମୂଳମନ୍ତ୍ରରେ ଶହେଆଠ ବା ଚଉବନ ଆହୁତି ଦେଇ ହୋମ କରିବେ । ତା'ପରେ ଶିଷ୍ୟକୁ ସ୍ପର୍ଶ କରି ତା' କାନରେ 'ଶିବ' ନାମ ଜପି ମହାଦେବଙ୍କ ଦକ୍ଷିଣଭାଗରେ ତାକୁ ବସାଇବେ । ଶିଷ୍ୟ ନୂତନ ବସ୍ତ୍ର ଉପରେ ଅଭିମନ୍ତ୍ରିତ କୁଶାସନ ବିଛାଇ ତା' ଉପରେ ପବିତ୍ର ଭାବରେ ଶିବସ୍ମରଣପୂର୍ବକ ପୂର୍ବଦିଗକୁ ମୁଣ୍ଡ କରି ରାତିରେ ଶୋଇବ । ଶିଖାରେ ସୂତ୍ର ବନ୍ଧା ଥିବା ସେହି ଶିଷ୍ୟର ଶିଖାକୁ ଶିଖାରେ ହିଁ ବାନ୍ଧି ଗୁରୁ ହୁଂକାର ଉଚ୍ଚାରଣ କରି ନୂତନ ବସ୍ତ୍ର ଦ୍ୱାରା ତାହାକୁ ଢାଙ୍କିଦେବେ । ତା'ପରେ ଶିଷ୍ୟର ଚ୍ଚରିପଟରେ ଭସ୍ମ, ତିଳ ଓ ସୋରିଷରେ ତିନୋଟି ରେଖା କାଟି ଫଟ୍ ମନ୍ତ୍ର ଉଚ୍ଚାରଣପୂର୍ବକ ରେଖାର ବାହ୍ୟଭାଗରେ ଦିକ୍‌ପାଳଙ୍କୁ ବଳି ଅର୍ପଣ କରିବେ । ଶିଷ୍ୟ ମଧ୍ୟ ଉପବାସପୂର୍ବକ ସେଠାରେ ରାତିରେ ଶୋଇବ ଏବଂ ସକାଳୁ ଉଠି ସେ ଦେଖିଥିବା ସ୍ୱପ୍ନ ବିଷୟରେ ଗୁରୁଙ୍କୁ କହିବ । (ଅଧ୍ୟାୟ ୧୭)

✵✵✵

## ଷଡଧ୍ୱଶୋଧନ ବିଧି

ଉପମନ୍ୟୁ କହୁଛନ୍ତି–ଯଦୁନନ୍ଦନ ! ଏହାପରେ ଗୁରୁଙ୍କ ଆଜ୍ଞାରେ ଶିଷ୍ୟ ସ୍ନାନାଦି କର୍ମ ସମାପ୍ତ କରି ଶିବଚିନ୍ତନପୂର୍ବକ କର ଯୋଡ଼ି ଶିବମଣ୍ଡଳ ସମୀପକୁ ଯିବ । ସେଠାରେ ସେ ପୂଜା ଛଡ଼ା ପୂର୍ବଦିନର ଅନ୍ୟ ସମସ୍ତ କୃତ୍ୟ ନେତ୍ରବନ୍ଧନ ପର୍ଯ୍ୟନ୍ତ କରିସାରିଲେ ଗୁରୁ ତାକୁ ମଣ୍ଡଳ ଦର୍ଶନ କରାଇବେ । ଆଖିରେ ପଟି ବନ୍ଧା ହୋଇଥିବା ଅବସ୍ଥାରେ ଶିଷ୍ୟ କିଛି ଫୁଲ ପକାଇବ । ଯେଉଁଠି ଫୁଲ ପଡ଼ିଥିବ, ସେଠାରେ ଗୁରୁ ତାକୁ ଉପଦେଶ ଦେବେ । ତା'ପରେ ପୂର୍ବବତ୍ ତାକୁ ନିର୍ମାଲ୍ୟ ମଣ୍ଡଳକୁ ନେଇଯାଇ ଈଶାନଦେବଙ୍କ ପୂଜା କରାଇବେ ଏବଂ ଶିବାଗ୍ନିରେ ହୋମ କରିବେ । ଯଦି ଶିଷ୍ୟ ଦୁଃସ୍ୱପ୍ନ ଦେଖିଥିବ, ତେବେ ଦୋଷଶାନ୍ତି ନିମନ୍ତେ ଶହେ ବା ପଚିଶ ଥର ମୂଳମନ୍ତ୍ରରେ ଅଗ୍ନିରେ ଆହୁତି ଦେବେ । ତା'ପରେ ଶିଖାରେ ବନ୍ଧା ହୋଇଥିବା ସୂତ୍ରକୁ ପୂର୍ବବତ୍ ଲମ୍ବା ଓହଳାଇ ଦେଇ ଆଧାରଶକ୍ତି ପୂଜାଠାରୁ ଆରମ୍ଭ କରି ନିବୃତ୍ତିକଳା ସମ୍ବନ୍ଧୀୟ ବାଗୀଶ୍ୱରୀପୂଜନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ହୋମପୂର୍ବକ ସମ୍ପନ୍ନ କରିବେ ।

ଏହାପରେ ନିବୃତ୍ତିକଳାରେ ବ୍ୟାପକ ସତୀ ବାଗୀଶ୍ୱରୀଙ୍କୁ ପ୍ରଣାମ କରି ମଣ୍ଡଳରେ ମହାଦେବଙ୍କ ପୂଜାପୂର୍ବକ ତିନୋଟି ଆହୁତି ଦେବେ । ଶିଷ୍ୟକୁ ଏକାବେଳକେ ସମସ୍ତ ଯୋନିରେ ସ୍ଥାପିତ କରାଇବାକୁ ଭାବନା କରିବେ । ତା'ପରେ ଶିଷ୍ୟର ସୂତ୍ରମୟ ଶରୀରରେ ତାଡ଼ନ-ପ୍ରୋକ୍ଷଣ ଆଦି କରି ତାହାର ଆତ୍ମଚୈତନ୍ୟକୁ ନେଇ ଦ୍ୱାଦଶାନ୍ତରେ ନିବେଦନ କରିବେ । ତା'ପରେ ସେଠାରୁ ବି ଆହୁରି ଆଗକୁ ନେଇ ଆଗ୍ରର୍ଯ୍ୟ ମୂଳମନ୍ତ୍ରରେ ଶାସ୍ତ୍ରୋକ୍ତ ମୁଦ୍ରା ଦ୍ୱାରା ମାନସିକ ଭାବନାରେ ଏକାବେଳକେ ସମସ୍ତ ଯୋନିରେ ସଂଯୁକ୍ତ କରିବେ । ଦେବତାଙ୍କର ଆଠ ପ୍ରକାର ଜାତି ରହିଛି, ତା'ଛଡ଼ା ତିର୍ଯ୍ୟକ୍‌ଯୋନିଙ୍କର (ପଶୁ-ପକ୍ଷୀଙ୍କର) ପାଞ୍ଚଟି ଓ ମନୁଷ୍ୟଙ୍କର ଗୋଟିଏ ଜାତି ରହିଛି । ଏପରି ସର୍ବମୋଟ ଚଉଦ ଯୋନି ରହିଛି । ଏ ସମସ୍ତ ଯୋନିରେ ଶିଷ୍ୟକୁ ଏକାବେଳକେ ପ୍ରବେଶ କରାଇବା ନିମନ୍ତେ ଗୁରୁ ମନେ ମନେ ଭାବନା

ଦ୍ୱାରା ଶିଷ୍ୟର ଆତ୍ମାକୁ ଯଥୋଚିତ ରୀତିରେ ବାଗୀଶ୍ୱରୀଙ୍କ ଗର୍ଭରେ ନିବିଷ୍ଟ କରିବେ । ବାଗୀଶ୍ୱରୀଙ୍କ ଠାରେ ଗର୍ଭର ସିଦ୍ଧି ନିମନ୍ତେ ମହାଦେବଙ୍କ ପୂଜନ, ପ୍ରଣାମ ଓ ତାଙ୍କ ନିମିତ୍ତ ହବନ କରି ଭାବିବେ ଯେ ଯଥୋଚିତରୂପେ ସେହି ଗର୍ଭ ସିଦ୍ଧ ହୋଇଗଲା । ତା'ପରେ ଗର୍ଭର ଉତ୍ପତ୍ତି, କର୍ମାନୁବୃତ୍ତି, ସରଳତା, ଭୋଗପ୍ରାପ୍ତି ଓ ପରା ପ୍ରୀତିର ଚିନ୍ତନ କରିବେ । ତା'ପରେ ସେହି ଜୀବର ଉଦ୍ଧାର ତଥା ଜାତି, ଆୟୁ ଓ ଭୋଗର ସଂସ୍କାର ସାଧିତ କରିବା ନିମନ୍ତେ ଗୁରୁ ତିନୋଟି ଆହୁତି ଦେଇ ମହାଦେବଙ୍କୁ ପ୍ରାର୍ଥନା କରିବେ । ଭୋକ୍ତୃତ୍ୱବିଷୟକ ଆସକ୍ତି (ଅଥବା ଭୋକ୍ତୃତ୍ୱ ଓ ବିଷୟାସକ୍ତି) ରୂପୀ ମଳର ନିବାରଣପୂର୍ବକ ଶିଷ୍ୟର ଶରୀରକୁ ଶୋଧନ କରି ତାହାର ତ୍ରିବିଧ ପାଶକୁ ଉଚ୍ଛେଦ କରିବେ । କପଟ ବା ମାୟାରେ ବାନ୍ଧି ହୋଇଥିବା ଶିଷ୍ୟର ପାଶକୁ ଉତ୍ତମରୂପେ ଭେଦନ କରି ତାହାର ଚୈତନ୍ୟକୁ ପୂର୍ଣ୍ଣତଃ ସ୍ୱଚ୍ଛ ମାନିବେ । ତା'ପରେ ଅଗ୍ନିରେ ପୂର୍ଣ୍ଣାହୁତି ଦେଇ ବ୍ରହ୍ମାଙ୍କୁ ପୂଜା କରିବେ । ବ୍ରହ୍ମାଙ୍କ ପାଇଁ ତିନୋଟି ଆହୁତି ଦେଇ ତାଙ୍କୁ ଶିବଙ୍କ ଆଜ୍ଞା ଶୁଣାଇବେ ।

ପିତାମହ ତ୍ୱୟା ନାସ୍ୟ ଯାତୁଃ ଶୈବଂ ପରଂ ପଦମ୍ ।
ପ୍ରତିବନ୍ଧୋ ବିଧାତବ୍ୟଃ ଶୈବାଜ୍ଞୈଷା ଗରୀୟସୀ ॥

"ପିତାମହ ! ଏ ଜୀବ ଶିବପଦ ଲାଭ କରିବ । ତୁମେ ଏଥିରେ ବିଘ୍ନ ସୃଷ୍ଟି କରିବ ନାହିଁ । ଏହା ଶିବଙ୍କର ଗୁରୁତର ଆଜ୍ଞା ।"

ବ୍ରହ୍ମାଙ୍କୁ ଶିବଙ୍କର ଏହି ଆଦେଶ ଶୁଣାଇବା ପରେ ତାଙ୍କୁ ବିଧିବତ୍ ପୂଜା ଓ ବିସର୍ଜନ କରି ମହାଦେବଙ୍କ ଅର୍ଚନା କରିବେ ଏବଂ ତାଙ୍କ ପାଇଁ ତିନୋଟି ଆହୁତି ଦେବେ । ତା'ପରେ ନିବୃତ୍ତି ଦ୍ୱାରା ଶୁଦ୍ଧ ହୋଇଥିବା ଶିଷ୍ୟର ଆତ୍ମାକୁ ପୂର୍ବବତ୍ ଉଦ୍ଧାର କରି ନିଜ ଆତ୍ମା ଓ ସୂତ୍ରରେ ସ୍ଥାପିତ କରି ବାଗୀଶଙ୍କୁ ପୂଜା କରିବେ । ତାଙ୍କ ପାଇଁ ତିନୋଟି ଆହୁତି ଦେଇ ଓ ପ୍ରଣାମ କରି ବିସର୍ଜନ କରିଦେବେ । ତା'ପରେ ନିବୃତ୍ତ ପୁରୁଷ ପ୍ରତିଷ୍ଠାକଳା ସହିତ ସାନ୍ନିଧ୍ୟ ସ୍ଥାପନ କରିବେ । ସେତେବେଳେ ଥରେ ପୂଜା କରି ତିନି ଥର ଆହୁତି ଦେବେ ଏବଂ ଶିଷ୍ୟର ଆତ୍ମା ପ୍ରତିଷ୍ଠାକଳାରେ ପ୍ରବେଶ କରିବାର ଭାବନା କରିବେ । ଏହାପରେ ପ୍ରତିଷ୍ଠାକୁ ଆବାହନ କରି ପୂର୍ବୋକ୍ତ ସମସ୍ତ କାର୍ଯ୍ୟ ସମ୍ପନ୍ନ କରିବା ପରେ ସେଥିରେ ପୂର୍ଣ୍ଣେନ୍ଦୁମଣ୍ଡଳର କାନ୍ତିରେ ସୁଶୋଭିତା ବାଗୀଶ୍ୱରୀଦେବୀଙ୍କୁ ଧ୍ୟାନ କରିବେ । ଧ୍ୟାନ ପରେ ଅବଶିଷ୍ଟ କାର୍ଯ୍ୟ ପୂର୍ବବତ୍ କରିବେ ।

ତା'ପରେ ଭଗବାନ ବିଷ୍ଣୁଙ୍କୁ ପରମାତ୍ମା ଶିବଙ୍କ ଆଜ୍ଞା ଶୁଣାଇବେ । ତା'ପରେ ତାଙ୍କର ବି ବିସର୍ଜନାଦି ଅବଶେଷ କୃତ୍ୟ ପୂର୍ଣ୍ଣ କରି ପ୍ରତିଷ୍ଠାକୁ ବିଦ୍ୟା ସହିତ ସଂଯୋଗ କରିବେ । ସେଥିରେ ମଧ୍ୟ ପୂର୍ବବତ୍ ସମସ୍ତ କାର୍ଯ୍ୟ କରିବେ । ତା'ସହିତ ସେଥିରେ ବ୍ୟାପ୍ତ ବାଗୀଶ୍ୱରୀଦେବୀଙ୍କୁ ଚିନ୍ତନ ଓ ପୂଜନ କରି ଏବଂ ପ୍ରଜ୍ୱଳିତ ଅଗ୍ନିରେ ପୂର୍ଣ୍ଣହୋମାନ୍ତ ସମସ୍ତ କାର୍ଯ୍ୟ କ୍ରମାନ୍ୱୟରେ ସମ୍ପନ୍ନ କରି ପୂର୍ବବତ୍ ନୀଳରୁଦ୍ରଙ୍କୁ ଆବାହନ-ପୂଜନ ଇତ୍ୟାଦି କରିବେ । ତା'ପରେ ପୂର୍ବୋକ୍ତ ରୀତିରେ ତାଙ୍କୁ ମଧ୍ୟ ବିସର୍ଜନ କରି ଶିଷ୍ୟର ଦୋଷଶାନ୍ତି ପାଇଁ ବିଦ୍ୟାକଳାକୁ ନେଇ ତାହାର ବ୍ୟାପ୍ତିର ଅବଲୋକନ କରିବେ ଏବଂ ସେଥିରେ ବିଦ୍ୟମାନା ବାଗୀଶ୍ୱରୀଦେବୀଙ୍କୁ ପୂର୍ବବତ୍ ଧ୍ୟାନ କରିବେ । ତାଙ୍କର ଆକୃତି ପ୍ରାତଃକାଳୀନ ସୂର୍ଯ୍ୟଙ୍କ ପରି ଅରୁଣାଭ ଏବଂ ସେ ଦଶଦିଗକୁ ଉଦ୍ଭାସିତ କରୁଛନ୍ତି । ଏହିପରି ଧ୍ୟାନ କରି ଅବଶିଷ୍ଟ କାର୍ଯ୍ୟ ପୂର୍ବବତ୍ କରିବେ । ତା'ପରେ ମହେଶ୍ୱରଦେବଙ୍କୁ ଆବାହନ-ପୂଜନ ଓ ତାଙ୍କ ଉଦ୍ଦେଶ୍ୟରେ ହବନ କରି ତାଙ୍କୁ ମନେ ମନେ ଶିବଙ୍କର ପୂର୍ବୋକ୍ତ ଆଜ୍ଞା ଶୁଣାଇବେ । ତା'ପରେ ମହେଶ୍ୱରଙ୍କୁ ବିସର୍ଜନ କରି ଅନ୍ୟ ଶାନ୍ତିକଳାକୁ

ଶାନ୍ତ୍ୟତୀତାକଳା ନିକଟରେ ପହଞ୍ଚାଇ ତାହାର ବ୍ୟାପକତା ଅବଲୋକନ କରିବେ । ସେହି ସ୍ୱରୂପରେ ବ୍ୟାପିକା ବାଗୀଶ୍ୱରୀଦେବୀଙ୍କୁ ଚିନ୍ତନ କରିବେ । ତାଙ୍କର ସ୍ୱରୂପ ଆକାଶମଣ୍ଡଳ ପରି ବ୍ୟାପକ । ଏପରି ଧ୍ୟାନ କରି ପୂର୍ଣ୍ଣାହୁତି ହୋମ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ପୂର୍ବବତ୍ କରିବେ । ଅବଶିଷ୍ଟ କାର୍ଯ୍ୟ ପୂରଣ କରି ସଦାଶିବଙ୍କୁ ବିଧିବତ୍ ପୂଜା କରିବେ ଓ ତାଙ୍କୁ ମଧ୍ୟ ଅମିତ ପରାକ୍ରମୀ ଶମ୍ଭୁଙ୍କ ଆଜ୍ଞା ଶୁଣାଇଦେବେ । ତା'ପରେ ସେଠାରେ ମଧ୍ୟ ପୂର୍ବବତ୍ ଶିଷ୍ୟର ମସ୍ତକ ଉପରେ ଶିବଙ୍କୁ ପୂଜା କରି ସେହି ବାଗୀଶ୍ୱରଦେବଙ୍କୁ ପ୍ରଣାମ କରିବେ ଏବଂ ତାଙ୍କୁ ବିସର୍ଜନ କରିଦେବେ ।

ତା'ପରେ ଶିବମନ୍ତ୍ରରେ ପୂର୍ବବତ୍ ଶିଷ୍ୟଙ୍କ ମସ୍ତକକୁ ପ୍ରୋକ୍ଷଣ କରି ଏହିପରି ଚିନ୍ତନ କରିବେ ଯେ ଶାନ୍ତ୍ୟତୀତାକଳା ଶିବମନ୍ତ୍ରରେ ବିଲୟ ହୋଇଗଲା । ଷଡ଼ଧ୍ୱର ଉପରେ ଶିବଙ୍କର ଯେଉଁ ସର୍ବାଧ୍ୱବ୍ୟାପିନୀ ପରାଶକ୍ତି ଅଛି, ତାହା କୋଟି କୋଟି ସୂର୍ଯ୍ୟଙ୍କ ପରି ତେଜସ୍ୱିନୀ । ଏହିପରି ତାହାର ସ୍ୱରୂପକୁ ଧ୍ୟାନ କରିବେ । ତା'ପରେ ଶୁଦ୍ଧ ସ୍ଫଟିକ ପରି ନିର୍ମଳ ହୋଇଥିବା ଶିଷ୍ୟକୁ ନେଇ ସେହି ଶକ୍ତିର ଆଗରେ ବସାଇବେ ଏବଂ ଆଗ୍ରର୍ଯ୍ୟ କଇଁଚିକୁ ଧୋଇ ଶିବଶାସ୍ତ୍ରୋକ୍ତ ବିଧିରେ ସୂତ୍ର ସହିତ ତାହାର ଶିଖାକୁ କାଟିଦେବେ । କଟା ଶିଖାକୁ ପ୍ରଥମେ ଗୋବରରେ ରଖି ତା'ପରେ 'ଓଁ ନମଃ ଶିବାୟ ବୌଷଟ୍' ଉଚ୍ଚାରଣପୂର୍ବକ ଶିବାଗ୍ନିରେ ହବନ କରିଦେବେ । ତା'ପରେ କଇଁଚିକୁ ଧୋଇ ରଖିଦେବେ ଏବଂ ଶିଷ୍ୟର ଚେତନାକୁ ତାହାର ଶରୀର ନିକଟରେ ପ୍ରତ୍ୟର୍ପଣ କରିଦେବେ । ଏହାପରେ ଶିଷ୍ୟ ସ୍ନାନ, ଆଚମନ ଓ ସ୍ୱସ୍ତିବାଚନ କରିସାରିଲେ ତାକୁ ମଣ୍ଡଳ ନିକଟକୁ ଆଣିବେ ଓ ଶିବଙ୍କୁ ଦଣ୍ଡବତ୍ ପ୍ରଣାମ କରି କ୍ରିୟାଲୋପଜନିତ ଦୋଷର ମାର୍ଜନ ପାଇଁ ଯଥୋଚିତ ରୀତିରେ ପୂଜା କରିବେ । ତା'ପରେ ବାଚକ ମନ୍ତ୍ରକୁ ଧୀରେ ଧୀରେ ଉଚ୍ଚାରଣ କରି ଅଗ୍ନିରେ ତିନୋଟି ଆହୁତି ଦେବେ । ତା'ପରେ ମନ୍ତ୍ର-ଅଶୁଦ୍ଧିଜନିତ ଦୋଷର ନିରାକରଣ ପାଇଁ ଦେବେଶ୍ୱର ଶିବଙ୍କୁ ପୂଜା କରି ମନ୍ତ୍ରକୁ ମାନସିକ ଉଚ୍ଚାରଣ କରିବା ସହ ଅଗ୍ନିରେ ତିନୋଟି ଆହୁତି ଦେବେ । ସେଠାରେ ମଣ୍ଡଳରେ ବିରାଜମାନ ଅମ୍ବା ପାର୍ବତୀଙ୍କ ସହିତ ଶମ୍ଭୁଙ୍କୁ ସମାରାଧନା କରି ତିନୋଟି ଆହୁତି ଦେବା ପରେ ହାତ ଯୋଡ଼ି ଗୁରୁଙ୍କୁ ଏହିରୂପେ ପ୍ରାର୍ଥନା କରିବେ–

ଭଗବଂସ୍ତ୍ୱତ୍ପ୍ରସାଦେନ ଶୁଦ୍ଧିରସ୍ୟ ଷଡଧ୍ୱନଃ ।
କୃତା ତସ୍ମାତ୍ ପରଂ ଧାମ ଗମୟୈନଂ ତବାବ୍ୟୟମ୍ ॥

"ଭଗବନ୍ ! ଆପଣଙ୍କ କୃପାରୁ ଏ ଶିଷ୍ୟର ଷଡଧ୍ୱଶୁଦ୍ଧି କରାଗଲା । ଏବେ ଆପଣ ଏହାକୁ ନିଜ ଅବିନାଶୀ ପରମଧାମରେ ପହଞ୍ଚାଇ ଦିଅନ୍ତୁ ।"

ଏହିପରି ଭଗବାନଙ୍କୁ ପ୍ରାର୍ଥନା କରି ନାଡ଼ୀସନ୍ଧାନପୂର୍ବକ ପୂର୍ବବତ୍ ପୂର୍ଣ୍ଣାହୁତି ହୋମ ପର୍ଯ୍ୟନ୍ତ ସମସ୍ତ କର୍ମ ସମ୍ପାଦନ କରି ଭୂତଶୁଦ୍ଧି କରିବେ । ସ୍ଥିର ତତ୍ତ୍ୱ (ପୃଥିବୀ), ଅସ୍ଥିର ତତ୍ତ୍ୱ (ବାୟୁ), ଶୀତ ତତ୍ତ୍ୱ (ଜଳ), ଉଷ୍ଣ ତତ୍ତ୍ୱ (ଅଗ୍ନି) ଏବଂ ବ୍ୟାପକତା ଓ ଏକତାରୂପ ଆକାଶ ତତ୍ତ୍ୱକୁ ଭୂତଶୁଦ୍ଧି କର୍ମରେ ଚିନ୍ତନ କରିବେ । ଏହି ଚିନ୍ତନ ଉପରୋକ୍ତ ଭୂତମାନଙ୍କ ଶୁଦ୍ଧି ପାଇଁ କରିବା ଉଚିତ । ସେହି ଭୂତମାନଙ୍କର ଗ୍ରନ୍ଥି ଛେଦନ କରି ସେମାନଙ୍କ ଅଧିପତି ବା ଅଧିଷ୍ଠାତୃ ଦେବତାଙ୍କ ସମେତ ସେମାନଙ୍କୁ ତ୍ୟାଗ କରି ସ୍ଥିତିଯୋଗ ଦ୍ୱାରା ସେମାନଙ୍କୁ ପରମ ଶିବଙ୍କ ଠାରେ ନିୟୋଜିତ କରିବେ । ଏହିରୂପେ ଶିଷ୍ୟର ଶରୀରକୁ ଶୋଧନ କରି ତାହାକୁ ଭାବନା ଦ୍ୱାରା ଦହନ କରିବେ । ତା'ପରେ ତାହାର ଭସ୍ମକୁ ଭାବନା ଦ୍ୱାରା ହିଁ ଅମୃତକଣିକାରେ ଆପ୍ଲାବିତ କରିବେ । ତା'ପରେ ସେଥିରେ ଆତ୍ମାକୁ ସ୍ଥାପନା କରି ତାହାର ବିଶୁଦ୍ଧ

ଅଧ୍ୱମୟ ଶରୀର ନିର୍ମାଣ କରିବେ । ସେଥିରେ ପ୍ରଥମେ ସମସ୍ତ ଅଧ୍ୱରେ ବ୍ୟାପକ ଶୁଦ୍ଧ ଶାନ୍ତ୍ୟତୀତାକଳାକୁ ଶିଷ୍ୟର ମସ୍ତକରେ ନ୍ୟାସ କରିବେ । ତା'ପରେ ଶାନ୍ତିକଳାକୁ ମୁଖରେ, ବିଦ୍ୟାକଳାକୁ ଗଳାରୁ ନାଭିମଧ୍ୟରେ, ପ୍ରତିଷ୍ଠାକଳାକୁ ତାହାର ନିମ୍ନବର୍ତ୍ତୀ ଅଙ୍ଗରେ ଚିନ୍ତନ କରିବେ । ତା'ପରେ ବୀଜସହିତ ସୂତ୍ରମନ୍ତ୍ରକୁ ନ୍ୟାସ କରି ସର୍ବାଙ୍ଗୀଣରୂପରେ ଶିଷ୍ୟକୁ ଶିବସ୍ୱରୂପ ବୁଝିବେ । ତା'ପରେ ତାହାର ହୃଦୟକମଳରେ ମହାଦେବଙ୍କୁ ଆବାହନ କରି ପୂଜା କରିବେ । ଗୁରୁ ଶିଷ୍ୟଠାରେ ଭଗବାନ ଶିବଙ୍କର ନିତ୍ୟ ଉପସ୍ଥିତି ଅନୁଭବ କରି ଶିବଙ୍କ ତେଜରେ ତେଜସ୍ୱୀ ହୋଇଥିବା ସେହି ଶିଷ୍ୟର ଅଣିମା ଆଦି ଗୁଣକୁ ମଧ୍ୟ ଚିନ୍ତନ କରିବେ । ତା'ପରେ ଶିବଙ୍କୁ 'ଆପଣ ପ୍ରସନ୍ନ ହୁଅନ୍ତୁ' ବୋଲି କହି ଅଗ୍ନିରେ ତିନୋଟି ଆହୁତି ଦେବେ । ଏହିରୂପେ ପୁନଃ ଶିଷ୍ୟ ପାଇଁ ନିମ୍ନାଙ୍କିତ ଗୁଣଗୁଡ଼ିକୁ ଉପପାଦନ କରିବେ । ସର୍ବଜ୍ଞତା, ତୃପ୍ତି, ଆଦି-ଅନ୍ତରହିତ ବୋଧ, ଅଲୁପ୍ତଶକ୍ତିମତ୍ତା, ସ୍ୱତନ୍ତ୍ରତା ଓ ଅନନ୍ତଶକ୍ତି—ଏହି ଗୁଣଗୁଡ଼ିକୁ ସେଥିରେ ଭାବନା କରିବେ ।

ଏହାପରେ ମହାଦେବଙ୍କ ଠାରୁ ଆଜ୍ଞା ନେଇ ସେହି ଦେବେଶ୍ୱରଙ୍କୁ ମନେ ମନେ ଚିନ୍ତନ କରି ସଦ୍ୟୋଜାତାଦି କଳଶଦ୍ୱାରା କ୍ରମାନ୍ୱୟରେ ଶିଷ୍ୟକୁ ଅଭିଷେକ କରିବେ । ତା'ପରେ ଶିଷ୍ୟକୁ ନିଜ ପାଖରେ ବସାଇ ପୂର୍ବବତ୍ ଶିବଙ୍କ ଅର୍ଚ୍ଚନା କରିବା ପରେ ତାଙ୍କ ଆଜ୍ଞା ନେଇ ଶିଷ୍ୟକୁ ଶୈବୀ ବିଦ୍ୟା ଉପଦେଶ ଦେବେ, ଯାହାର ଆଦ୍ୟରେ 'ଓଁ' ଥିବ ଏବଂ ତାହା ଓଁକାର ଦ୍ୱାରା ହିଁ ସମ୍ପୁଟିତ ତଥା ଶେଷରେ 'ନମଃ' ସଂଯୁକ୍ତ ହୋଇଥିବ । ସେହି ବିଦ୍ୟା ଶିବ ଓ ଶକ୍ତି ଉଭୟରେ ସଂଯୁକ୍ତ ହୋଇଥିବା ଉଚିତ । ଯଥା— ଓଁ ଓଁ ନମଃ ଶିବାୟ ଓଁ ନମଃ । ଏହିରୂପେ ଶକ୍ତି ବିଦ୍ୟାକୁ ମଧ୍ୟ ଉପଦେଶ ଦେବେ । ଯଥା—ଓଁ ଓଁ ନମଃ ଶିବାୟୈ ଓଁ ନମଃ । ଏହି ବିଦ୍ୟା ସହ ଋଷି, ଛନ୍ଦ, ଦେବତା, ଶିବା ଓ ଶିବଙ୍କ ଶିବରୂପତା, ଆବରଣପୂଜା ଏବଂ ଶିବୋପାସନା ସମ୍ବନ୍ଧରେ ମଧ୍ୟ ଉପଦେଶ ଦେବେ । ତା'ପରେ ଦେବେଶ୍ୱର ଶିବଙ୍କୁ ପୁଣି ପୂଜା କରି କହିବେ—''ପ୍ରଭୁ ! ମୁଁ ଯାହା କିଛି କରିଛି, ସେସବୁକୁ ଆପଣ ସୁକୃତରେ ପରିଣତ କରି ଦିଅନ୍ତୁ ।'' ଏଭଳି ନିବେଦନ କରିବା ପରେ ଶିଷ୍ୟ ସହିତ ଗୁରୁ ଭୂମିରେ ଦଣ୍ଡବତ୍ ଶୋଇ ମହାଦେବଙ୍କୁ ପ୍ରଣାମ କରିବେ । ପ୍ରଣାମ ପରେ ସେହି ମଣ୍ଡଳରୁ ଓ ଅଗ୍ନିରୁ ତାଙ୍କୁ ବିସର୍ଜନ କରିଦେବେ । ତା'ପରେ ସମସ୍ତ ପୂଜନୀୟ ସଦସ୍ୟଙ୍କୁ କ୍ରମାନୁସାରେ ପୂଜା କରିବା ଉଚିତ । ସଦସ୍ୟ ଓ ଋତ୍ୱିଜମାନଙ୍କୁ ନିଜ ବୈଭବ ଅନୁସାରେ ସେବା କରିବା ଆବଶ୍ୟକ । ଆତ୍ମକଲ୍ୟାଣକାମୀ ସାଧକ ଧନଖର୍ଚ୍ଚରେ କୃପଣତା କରିବା ଉଚିତ ନୁହେଁ ।

(ଅଧ୍ୟାୟ ୧୮)

***

## ସାଧକ-ସଂସ୍କାର ଓ ମନ୍ତ୍ର-ମାହାତ୍ମ୍ୟ

ଉପମନ୍ୟୁ କହୁଛନ୍ତି—ଯଦୁନନ୍ଦନ ! ଏବେ ମୁଁ ସାଧକ-ସଂସ୍କାର ଓ ମନ୍ତ୍ର-ମାହାତ୍ମ୍ୟ ବିଷୟରେ ବର୍ଣ୍ଣନା କରିବି । ଏକଥା ମୁଁ ପୂର୍ବରୁ ସୂଚିତ କରିସାରିଛି । ପୂର୍ବବତ୍ ମଣ୍ଡଳସ୍ଥ କଳଶରେ ସ୍ଥାପିତ ମହାଦେବଙ୍କୁ ପୂଜା କରିବା ପରେ ହୋମ କରିବେ । ତା'ପରେ ଶିଷ୍ୟକୁ ମଣ୍ଡଳ ପାଖରେ ବସାଇବେ । ସେ ମୁଣ୍ଡରେ କିଛି ବସ୍ତ୍ରାଦି ବାନ୍ଧି ନ ଥିବ । ଗୁରୁ ପୂର୍ଣ୍ଣାହୁତି ହୋମପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ପୂର୍ବବତ୍ କରି ମୂଳମନ୍ତ୍ରରେ ଶହେ ଆହୁତି ଦେବେ । ଶ୍ରେଷ୍ଠ ଗୁରୁ ମୂଳମନ୍ତ୍ର ଉଚ୍ଚାରଣପୂର୍ବକ କଳଶ ଦ୍ୱାରା

ତର୍ପଣ କରି ସଂଦୀପନ କର୍ମ କରିବେ । ତା'ପରେ କ୍ରମାନ୍ୱୟରେ ପୂର୍ବୋକ୍ତ କର୍ମମାନ ସମ୍ପାଦନ କରି ଅଭିଷେକ କରିବେ । ତା'ପରେ ଶିଷ୍ୟକୁ ଉତ୍ତମ ମନ୍ତ୍ର ଦେବେ । ସେଠାରେ ବିଦ୍ୟୋପଦେଶାନ୍ତ ସମସ୍ତ କାର୍ଯ୍ୟ ବିସ୍ତାରପୂର୍ବକ ସମ୍ପାଦିତ କରି ପୁଷ୍ପଯୁକ୍ତ ଜଳ ସହିତ ଶିଷ୍ୟ ହାତରେ ଶୈବୀ ବିଦ୍ୟା ସମର୍ପିତ କରିବେ ଓ ଏଭଳି କହିବେ—

ତବୈହିକାମୁଷ୍ମିକୟୋଃ ସର୍ବସିଦ୍ଧିଫଳପ୍ରଦଃ ।
ଭବତ୍ୱେଷ ମହାମନ୍ତ୍ରଃ ପ୍ରସାଦାତ୍ପରମେଷ୍ଠିନଃ ॥

"ସୌମ୍ୟ ! ଏ ମହାମନ୍ତ୍ର ପରମେଶ୍ୱର ଶିବଙ୍କ କୃପାପ୍ରସାଦରେ ତୁମ ପାଇଁ ସମସ୍ତ ଐହିକ ତଥା ପାରଲୌକିକ ସିଦ୍ଧିର ଫଳ ପ୍ରଦାନକାରୀ ହେଉ ।"

ଏପରି କହିବା ପରେ ମହାଦେବଙ୍କ ପୂଜା କରି ତାଙ୍କ ଆଜ୍ଞାରେ ଗୁରୁ ସାଧକକୁ ସାଧନ ଓ ଶିବଯୋଗ ଉପଦେଶ ଦେବେ । ସେହି ଉପଦେଶକୁ ଶୁଣି ମନ୍ତ୍ରସାଧକ ଶିଷ୍ୟ ତାଙ୍କ ସମ୍ମୁଖରେ ବିନିଯୋଗ କରି ମନ୍ତ୍ରସାଧନ ଆରମ୍ଭ କରିବେ । ମୂଳମନ୍ତ୍ର ସାଧନକୁ ପୁରଶ୍ଚରଣ କହନ୍ତି; କାରଣ ବିନିଯୋଗ ନାମକ କର୍ମ ସର୍ବପ୍ରଥମେ ଆଚରଣରେ ଆଣିବାକୁ ହୋଇଥାଏ । ଏହା ହିଁ ପୁରଶ୍ଚରଣ ଶବ୍ଦର ବ୍ୟୁତ୍ପତ୍ତି । ମୁମୁକ୍ଷୁ ପାଇଁ ମନ୍ତ୍ରସାଧନ ନିତାନ୍ତ କରଣୀୟ; କାରଣ ମନ୍ତ୍ରସାଧନ ଇହଲୋକ ଓ ପରଲୋକରେ ସାଧକ ପାଇଁ କଲ୍ୟାଣପ୍ରଦ ହୋଇଥାଏ ।

ଶୁଭ ଦିନ ଓ ଶୁଭ ସ୍ଥାନରେ, ନିର୍ଦ୍ଦୋଷ କାଳରେ ଦାନ୍ତ ଓ ନଖ ପରିଷ୍କାର କରି ଭଲଭାବରେ ସ୍ନାନ କରିବେ ଏବଂ ପୂର୍ବାହ୍ନକାଳିକ କୃତ୍ୟ ଶେଷ କରି ଯଥାଲବ୍ଧ ଗନ୍ଧ, ପୁଷ୍ପମାଳା ଓ ଅଳଂକାରରେ ବିଭୂଷିତ ହୋଇ, ମୁଣ୍ଡରେ ପଗଡ଼ି ବାନ୍ଧି, ଉତ୍ତରୀୟ ପକାଇ ପୂର୍ଣ୍ଣତଃ ଶ୍ୱେତବସ୍ତ୍ର ପରିଧାନ କରି ଦେବାଳୟରେ, ଘରେ ବା ଅନ୍ୟ କୌଣସି ପବିତ୍ର ମନୋହର ସ୍ଥାନରେ ପର୍ବରୁ ଅଭ୍ୟସ୍ତ ଥିବା ସୁଖାସନରେ ବସି ଶିବଶାସ୍ତ୍ରୋକ୍ତ ପଦ୍ଧତି ଅନୁସାରେ ନିଜ ଶରୀରକୁ ଶିବରୂପ କରିବେ । ତା'ପରେ ଦେବଦେବେଶ ନକୁଳୀଶ୍ୱର ଶିବଙ୍କୁ ପୂଜା କରି ତାଙ୍କୁ ଖିରି ନୈବେଦ୍ୟରୂପେ ଅର୍ପଣ କରିବେ । କ୍ରମାନୁସାରେ ତାଙ୍କର ପୂଜା ସାରି ପ୍ରଭୁଙ୍କୁ ପ୍ରଣାମ କରିବେ ଏବଂ ତାଙ୍କ ଆଜ୍ଞା ନେଇ ଏକକୋଟି, ଅଧକୋଟି ଅଥବା କୋଟିର ଏକଚତୁର୍ଥାଂଶ ଶିବମନ୍ତ୍ର ଜପ କରିବେ ଅଥବା କୋଡ଼ିଏଲକ୍ଷ ବା ଦଶଲକ୍ଷ ଜପ କରିବେ । ତା'ପର ଠାରୁ ଦିନକୁ କେବଳ ଥରେମାତ୍ର ଖିରି ଏବଂ କ୍ଷାର-ଲବଣବିହୀନ ଅନ୍ୟ କୌଣସି ଖାଦ୍ୟ ଖାଇ ରହିବେ । ଅହିଂସା, କ୍ଷମା, ଶମ (ମନୋନିଗ୍ରହ), ଦମ (ଇନ୍ଦ୍ରିୟନିଗ୍ରହ) ପାଳନ କରିବେ । ଖିରି ଅଭାବରେ ଫଳମୂଳ ଇତ୍ୟାଦି ଭକ୍ଷଣ କରିବେ । ଭଗବାନ ଶିବ ନିମ୍ନ ପ୍ରକାର ଭୋଜ୍ୟ ପଦାର୍ଥର ବିଧାନ କରିଛନ୍ତି, ଯାହାକି ଉତ୍ତରୋତ୍ତର ଶ୍ରେଷ୍ଠ । ସେଗୁଡ଼ିକ ହେଲା—ଚରୁ, ଛତୁଆ, ଯବ ଅଟାର ହାଲୁଆ, ଶାଗ, ଦୁଗ୍ଧ, ଦହି, ଘିଅ, ମୂଳ, ଫଳ ଓ ଜଳ । ଏହି ଭକ୍ଷ୍ୟ-ଭୋଜ୍ୟ ପଦାର୍ଥକୁ ମୂଳମନ୍ତ୍ରରେ ଅଭିମନ୍ତ୍ରିତ କରି ପ୍ରତିଦିନ ମୌନଭାବରେ ଭୋଜନ କରିବେ । ଏହି ସାଧନାରେ ବିଶେଷରୂପେ ଏହିପରି କରିବାର ବିଧାନ ରହିଛି । ବ୍ରତୀ ବ୍ୟକ୍ତି ଶହେଆଠ ମନ୍ତ୍ରରେ ଅଭିମନ୍ତ୍ରିତ ପବିତ୍ର ଜଳରେ ସ୍ନାନ କରିବେ ଅଥବା ନଦ-ନଦୀର ଜଳକୁ ଯଥାଶକ୍ତି ମନ୍ତ୍ରଜପ ଦ୍ୱାରା ଅଭିମନ୍ତ୍ରିତ କରି ନିଜ ଶରୀରକୁ ପ୍ରୋକ୍ଷଣ କରିବେ, ପ୍ରତିଦିନ ତର୍ପଣ କରିବେ ଏବଂ ଶିବାଗ୍ନିରେ ଆହୁତି ଦେବେ । ସାତଟି, ପାଞ୍ଚଟି ବା ତିନିଟି ଦ୍ରବ୍ୟର ମିଶ୍ରଣରେ ହବନୀୟ ପଦାର୍ଥ ପ୍ରସ୍ତୁତ କରିବେ ଅଥବା କେବଳ ଘୃତରେ ହିଁ ଆହୁତି ଦେବେ ।

ଯେଉଁ ଶିବଭକ୍ତ ସାଧକ ଏହିରୂପେ

ଭକ୍ତିଭାବରେ ଶିବଙ୍କର ସାଧନା ବା ଆରାଧନା କରେ, ତା'ପାଇଁ ଇହଲୋକ ଓ ପରଲୋକରେ କିଛି ବି ଦୁର୍ଲଭ ରହେ ନାହିଁ। ଅଥବା ପ୍ରତିଦିନ ବିନା ଭୋଜନରେ ଏକାଗ୍ରଚିତ୍ତରେ ହଜାରେ ମନ୍ତ୍ର ଜପ କରିବା ଆବଶ୍ୟକ। ମନ୍ତ୍ରସାଧନା ବିନା ମଧ୍ୟ ଯେ ଏପରି କରେ, ତା'ପାଇଁ କିଛି ଦୁର୍ଲଭ ରହେ ନାହିଁ କି କେଉଁଠି ତା'ର ଅମଙ୍ଗଳ ହୁଏ ନାହିଁ। ସେ ଜଗତରେ ବିଦ୍ୟା, ଲକ୍ଷ୍ମୀ ଓ ସୁଖ ପ୍ରାପ୍ତି କରି ଶେଷରେ ମୋକ୍ଷ ଲାଭ କରେ। ସାଧନା, ବିନିଯୋଗ ଓ ନିତ୍ୟ-ନୈମିତ୍ତିକ କର୍ମରେ କ୍ରମାନୁସାରେ ଜଳରେ, ମନ୍ତ୍ରରେ ଓ ଭସ୍ମରେ ସ୍ନାନ କରି ପବିତ୍ର ହେବାପରେ ଶିଖା ବାନ୍ଧି, ଯଜ୍ଞୋପବୀତ ଧାରଣ କରି, ହାତରେ କୁଶବଟୁ ପିନ୍ଧି ଓ ଲଲାଟରେ ତ୍ରିପୁଣ୍ଡ୍ର କାଟି ରୁଦ୍ରାକ୍ଷ ମାଳାରେ ପଞ୍ଚାକ୍ଷରମନ୍ତ୍ର ଜପ କରିବା ଆବଶ୍ୟକ।

(ଅଧ୍ୟାୟ ୧୯)

✯✯✯

## ଯୋଗ୍ୟ ଶିଷ୍ୟର ଆଚାର୍ଯ୍ୟପଦରେ ଅଭିଷେକ ବିଷୟରେ ବର୍ଣ୍ଣନା ଏବଂ ସଂସ୍କାରର ବିବିଧତା ନିର୍ଦ୍ଦେଶ

ଉପମନ୍ୟୁ କହୁଛନ୍ତି–ଯଦୁନନ୍ଦନ ! ଯାହାର ଏପରି ସଂସ୍କାର କରାଯାଇଥାଏ ଏବଂ ଯେ ପାଶୁପତବ୍ରତ ଅନୁଷ୍ଠାନକୁ ପୂର୍ଣ୍ଣ କରିଥାଏ, ସେପରି ଶିଷ୍ୟ ଯଦି ଯୋଗ୍ୟ ହୋଇଥିବ, ଗୁରୁ ତାହାକୁ ଆଚାର୍ଯ୍ୟପଦରେ ଅଭିଷିକ୍ତ କରିପାରିବେ ଅଥବା ଯୋଗ୍ୟତା ନ ଥିଲେ ନ କରିପାରନ୍ତି। ଏ ଅଭିଷେକ ପାଇଁ ପୂର୍ବବତ୍ ମଣ୍ଡଳ ତିଆରି କରି ପରମେଶ୍ୱର ଶିବଙ୍କୁ ପୂଜା କରିବେ। ତା'ପରେ ପାଞ୍ଚଟି କଳସ ସ୍ଥାପନା କରିବେ। ଚାରିଟି ଚାରିଦିଗରେ ଓ ଗୋଟିଏ ମଧ୍ୟଭାଗରେ। ପୂର୍ବଦିଗର କଳସରେ ନିବୃତ୍ତିକଳାକୁ, ପଶ୍ଚିମ କଳସରେ ପ୍ରତିଷ୍ଠାକଳାକୁ, ଦକ୍ଷିଣ କଳସରେ ବିଦ୍ୟାକଳାକୁ, ଉତ୍ତର କଳସରେ ଶାନ୍ତିକଳାକୁ ଓ ମଧ୍ୟବର୍ତ୍ତୀ କଳସରେ ଶାନ୍ତ୍ୟତୀତାକଳାକୁ ନ୍ୟାସ କରି, ସେଗୁଡ଼ିକରେ ରକ୍ଷା ବିଧାନ ଇତ୍ୟାଦି କରି ଧେନୁମୁଦ୍ରା ଦ୍ୱାରା କଳସକୁ ଅଭିମନ୍ତ୍ରିତ କରି ପୂର୍ବବତ୍ ପୂର୍ଣ୍ଣାହୁତି ପର୍ଯ୍ୟନ୍ତ ହୋମ କରିବେ। ତା'ପରେ ମୁଣ୍ଡରେ କିଛି (ବସ୍ତ୍ରାଦି) ନ ପକାଇ ଶିଷ୍ୟକୁ ମଣ୍ଡଳକୁ ଆଣି ଗୁରୁମନ୍ତ୍ରର ତର୍ପଣ ଇତ୍ୟାଦି କରିବେ ଏବଂ ପୂର୍ଣ୍ଣାହୁତି ପର୍ଯ୍ୟନ୍ତ ହୋମ ଓ ପୂଜନ କରି ପୂର୍ବବତ୍ ଦେବେଶ୍ୱରଙ୍କ ଆଜ୍ଞା ନେଇ ଶିଷ୍ୟର ଅଭିଷେକ ପାଇଁ ତାକୁ ଉଚ୍ଚ ଆସନରେ ବସାଇବେ। ପ୍ରଥମେ ସକଳୀକରଣ କ୍ରିୟା କରି ପଞ୍ଚକଳାରୂପୀ ଶିଷ୍ୟ ଶରୀରରେ ମନ୍ତ୍ରନ୍ୟାସ କରିବେ। ତା'ପରେ ଶିଷ୍ୟକୁ ବାନ୍ଧି ଶିବଙ୍କୁ ସମର୍ପି ଦେବେ। ତା'ପରେ ନିବୃତ୍ତିକଳା ଆଦିରେ ଯୁକ୍ତ କଳସଗୁଡ଼ିକୁ କ୍ରମାନ୍ୱୟରେ ଉଠାଇ ସେହି ଜଳରେ ଶିଷ୍ୟକୁ ଶିବମନ୍ତ୍ରରେ ଅଭିଷେକ କରିବେ। ଶେଷରେ ମଧ୍ୟବର୍ତ୍ତୀ କଳସ ଜଳରେ ଅଭିଷେକ କରିବେ। ଏହାପରେ ଶିବଭାବପ୍ରାପ୍ତ ଆଚାର୍ଯ୍ୟ ଶିଷ୍ୟ ମସ୍ତକରେ ଶିବହସ୍ତ* ରଖିବେ ଏବଂ ତାକୁ ଶିବାଚାର୍ଯ୍ୟ ସଂଜ୍ଞା ଦେବେ। ତା'ପରେ

* ଗୁରୁ ପ୍ରଥମେ ଡାହାଣ ହାତରେ ସୁଗନ୍ଧ ଦ୍ରବ୍ୟଦ୍ୱାରା ମଣ୍ଡଳ ନିର୍ମାଣ କରିବେ, ତା'ପରେ ସେ ତାହାରି ଉପରେ ବିଧିପୂର୍ବକ ଭଗବାନ ଶିବଙ୍କୁ ପୂଜା କରିବେ। ଏପରି ସେ 'ଶିବହସ୍ତ' ହୋଇଯାଏ। 'ମୁଁ ସ୍ୱୟଂ ପରମ ଶିବ ଅଟେ' ଏଭଳି ନିର୍ଣ୍ଣୟ କରି ଶ୍ରୀଗୁରୁଦେବ ଅସନ୍ଦିଗ୍ଧଚିତ୍ତରେ ଶିଷ୍ୟର ମସ୍ତକକୁ ସ୍ପର୍ଶ କରନ୍ତି। ଏପରି 'ଶିବହସ୍ତ' ସ୍ପର୍ଶମାତ୍ରକେ ଶିଷ୍ୟର ଶିବତ୍ୱ ଅଭିବ୍ୟକ୍ତ ହୋଇଯାଏ।

ତାକୁ ବସ୍ତ୍ରାଭୂଷଣରେ ଅଳଂକୃତ କରି ଶିବମଣ୍ଡଳରେ ମହାଦେବଙ୍କ ଆରାଧନା କରି ଶହେଆଠ ଆହୁତି ଓ ପୂର୍ଣ୍ଣାହୁତି ଦେବେ । ତା'ପରେ ଦେବେଶ୍ୱରଙ୍କୁ ପୂଜା ଓ ସାଷ୍ଟାଙ୍ଗ ପ୍ରଣାମ କରିସାରି ଗୁରୁ ପୁନଃ ବଦ୍ଧାଞ୍ଜଳି ମସ୍ତକରେ ଲଗାଇ ମହାପ୍ରଭୁ ଶିବଙ୍କୁ ଏହିପରି ପ୍ରାର୍ଥନା କରିବେ–

ଭଗବଂସ୍ତ୍ୱତ୍ପ୍ରସାଦେନ ଦେଶିକୋଽୟଂ ମୟା କୃତଃ ।
ଅନୁଗୃହ୍ୟ ତ୍ୱୟା ଦେବ ଦିବ୍ୟାଜ୍ଞାସ୍ମୈ ପ୍ରଦୀୟତାମ୍ ॥

"ଭଗବନ୍ ! ଆପଣଙ୍କ କୃପାରୁ ମୁଁ ଏହି ଯୋଗ୍ୟ ଶିଷ୍ୟକୁ ଆଚାର୍ଯ୍ୟ କରିଦେଲି । ହେ ଦେବ ! ଏଥର ଆପଣ ଅନୁଗ୍ରହ କରି ଏହାକୁ ଦିବ୍ୟ ଆଜ୍ଞା ପ୍ରଦାନ କରନ୍ତୁ ।" ଏପରି କହି ଗୁରୁ ଶିଷ୍ୟ ସହିତ ପୁନଃ ଶିବଙ୍କୁ ପ୍ରଣାମ କରିବେ ଏବଂ ଦିବ୍ୟ ଶିବଶାସ୍ତ୍ରକୁ ଶିବଙ୍କ ପରି ପୂଜା କରିବେ । ଏହାପରେ ଶିବଙ୍କ ଆଜ୍ଞା ନେଇ ଆଚାର୍ଯ୍ୟ ଶିଷ୍ୟକୁ ନିଜ କରଦ୍ୱୟରେ ସେହି ଶିବସମ୍ବନ୍ଧୀୟ ପୁସ୍ତକ ପ୍ରଦାନ କରିବେ । ସେ ଉକ୍ତ ଶିବାଗମ ବିଦ୍ୟାକୁ ମୁଣ୍ଡରେ ଥୋଇବା ପରେ ବିଦ୍ୟାସନ ଉପରେ ରଖିବ ଓ ଯଥୋଚିତ ରୀତିରେ ପ୍ରଣାମ କରିବ । ତା'ପରେ ଗୁରୁ ତାକୁ ରାଜୋଚିତ ଚିହ୍ନ ପ୍ରଦାନ କରିବେ; କାରଣ ଆଚାର୍ଯ୍ୟପଦବୀ ପ୍ରାପ୍ତ ହୋଇଥିବା ପୁରୁଷ ରାଜ୍ୟ ପାଇବାର ମଧ୍ୟ ଯୋଗ୍ୟ ଅଟେ ।

ତା'ପରେ ଗୁରୁ ତାକୁ ପୂର୍ବାଚାର୍ଯ୍ୟଙ୍କ ଦ୍ୱାରା ଆଚରିତ ଶିବଶାସ୍ତ୍ରୋକ୍ତ ଆଚାରର ଅନୁଶାସନ କରିବେ, ଯଦ୍ଦ୍ୱାରା ସମଗ୍ର ଜଗତରେ ସମ୍ମାନ ହୁଏ । 'ଆଚାର୍ଯ୍ୟ' ପଦବୀପ୍ରାପ୍ତ ବ୍ୟକ୍ତି ଶିବଶାସ୍ତ୍ରୋକ୍ତ ଲକ୍ଷଣ ଅନୁସାରେ ଯତ୍ନପୂର୍ବକ ଶିଷ୍ୟମାନଙ୍କର ପରୀକ୍ଷା ନେଇ ସେମାନଙ୍କୁ ସଂସ୍କାରିତ କରିବା ପରେ ଶିବଜ୍ଞାନ ଉପଦେଶ ଦେବେ । ଏହିପରି ସେ ଅନାୟାସରେ ଶୌଚ, କ୍ଷମା, ଦୟା, ନିଃସ୍ପୃହତା ତଥା ଅନସୂୟା (ଈର୍ଷ୍ୟାତ୍ୟାଗ) ଆଦି ଗୁଣ ଯତ୍ନପୂର୍ବକ ନିଜ ଭିତରେ ସଂଗ୍ରହ କରିବେ । ଏହିରୂପେ ଶିଷ୍ୟକୁ ଆଦେଶ ଦେଇ ମଣ୍ଡଳରୁ ଶିବଙ୍କୁ, ଶିବକଳସଗୁଡ଼ିକୁ ଓ ଅଗ୍ନି ଆଦିଙ୍କୁ ବିସର୍ଜନ କରି ସଦସ୍ୟଙ୍କୁ ମଧ୍ୟ ପୂଜନ (ଦକ୍ଷିଣା ଇତ୍ୟାଦିରେ ସତ୍କାର) କରିବେ ।

ଅଥବା, ନିଜ ଗଣଙ୍କ ସହିତ ଗୁରୁ ଏକାବେଳକେ ସବୁ ସଂସ୍କାର କରିବେ । ଦୁଇ ତିନିଟି ସଂସ୍କାର ପ୍ରୟୋଗ କରିବାକୁ ହେଲେ ସେଥିପାଇଁ ନିମ୍ନ ବିଧି ନିର୍ଦ୍ଦେଶ କରାଗଲା । ଏ ପରିପ୍ରେକ୍ଷୀରେ ପ୍ରଥମରୁ ଅଧ୍ୱଶୁଦ୍ଧି ପ୍ରକରଣରେ ଥିବା ନିର୍ଦ୍ଦେଶ ଅନୁସାରେ କଳସ ସ୍ଥାପନ କରିବେ । ଅଭିଷେକ ଛଡ଼ା ସମୟାଚାର ଦୀକ୍ଷାର ସମସ୍ତ କର୍ମ କରି ଶିବଙ୍କ ପୂଜା ଓ ଅଧ୍ୱଶୋଧନ କରିବେ । ଅଧ୍ୱଶୁଦ୍ଧି ହୋଇଗଲା ପରେ ପୁଣି ମହାଦେବଙ୍କୁ ପୂଜା କରିବେ । ଏହାପରେ ହୋମ ଓ ମନ୍ତ୍ରତର୍ପଣ କରି ଦୀପନ କର୍ମ ଓ ମହେଶ୍ୱରଙ୍କ ଆଜ୍ଞା ନେଇ ଶିଷ୍ୟ ହାତରେ ମନ୍ତ୍ରସମର୍ପଣପୂର୍ବକ ଅବଶିଷ୍ଟ କାର୍ଯ୍ୟ ସମ୍ପନ୍ନ କରିବେ ।

ଅଥବା ସମସ୍ତ ମନ୍ତ୍ରସଂସ୍କାରକୁ କ୍ରମାନ୍ୱୟରେ ଅନୁଚିନ୍ତନ କରି ଗୁରୁ ଅଭିଷେକ ପର୍ଯ୍ୟନ୍ତ ଅଧ୍ୱଶୁଦ୍ଧି କାର୍ଯ୍ୟ ସମ୍ପନ୍ନ କରିବେ । ପୂର୍ବେ ଶାନ୍ତ୍ୟତୀତା ଆଦି କଳାମାନଙ୍କ ପାଇଁ ଯେଉଁ ବିଧି ପାଳନ କରାଯାଇଥିଲା, ସେ ସମସ୍ତ ବିଧାନ ତିନିତତ୍ତ୍ୱର ଶୁଦ୍ଧି ପାଇଁ ମଧ୍ୟ କରିବା କର୍ତ୍ତବ୍ୟ । ଶିବତତ୍ତ୍ୱ, ବିଦ୍ୟାତତ୍ତ୍ୱ ଓ ଆତ୍ମତତ୍ତ୍ୱ ଏହା ହେଲା ସେହି ତିନିପ୍ରକାର ତତ୍ତ୍ୱର ନାମ । ଶକ୍ତିରେ ପ୍ରଥମେ ଶିବଙ୍କର, ପରେ ବିଦ୍ୟାର ଏବଂ ତା'ପରେ ତା' ଆତ୍ମାର ଆବିର୍ଭାବ ହୋଇଛି । ଶିବଙ୍କ ଠାରୁ ଶାନ୍ତ୍ୟତୀତାଧ୍ୱା ବ୍ୟାପ୍ତ; ତାହାଠାରୁ 'ଶାନ୍ତିକଳାଧ୍ୱା', ତାହାଠାରୁ 'ବିଦ୍ୟାକଳାଧ୍ୱା', ବିଦ୍ୟାରୁ ପରିଶିଷ୍ଟ 'ପ୍ରତିଷ୍ଠାକଳାଧ୍ୱା' ଏବଂ ତାହାଠାରୁ 'ନିବୃତ୍ତିକଳାଧ୍ୱା' ବ୍ୟାପ୍ତ । ଶିବଶାସ୍ତ୍ରର ପାରଙ୍ଗତ ମନୀଷୀମାନେ

ମନ୍ତ୍ରମୂଳକ ଶାମ୍ଭବ (ଶୈବ) ସଂସ୍କାରକୁ ଦୁର୍ଲଭ ମାନି ଶାକ୍ତସଂସ୍କାରକୁ ପ୍ରତିପାଦନ କରନ୍ତି । ଶ୍ରୀକୃଷ୍ଣ ! ଏହିରୂପେ ମୁଁ ତୁମ ଆଗରେ ସମସ୍ତ ଚତୁର୍ବିଧ ସଂସ୍କାରକର୍ମକୁ ବର୍ଣ୍ଣନ କରିଦେଲି । ଏବେ ତୁମେ ଆଉ କ'ଣ ଶୁଣିବାକୁ ଚାହୁଁଛ?

(ଅଧ୍ୟାୟ ୨୦)

***

## ଅନ୍ତର୍ଯାଗ ଅଥବା ମାନସିକ ପୂଜାବିଧି ବର୍ଣ୍ଣନା

ଏହାପରେ ଶ୍ରୀକୃଷ୍ଣଙ୍କ ପ୍ରଶ୍ନାନୁସାରେ ଉପମନ୍ୟୁ ନିତ୍ୟ-ନୈମିତ୍ତିକ କର୍ମ ତଥା ନ୍ୟାସର ବର୍ଣ୍ଣନା କଲେ ଏବଂ ତା'ପରେ କହିଲେ—ଏବେ ମୁଁ ପୂଜାର ବିଧାନ ସଂକ୍ଷେପରେ ବର୍ଣ୍ଣନା କରୁଛି । ଏହା ଶିବଶାସ୍ତ୍ରରେ ଶିବ ଶିବାଙ୍କ ପ୍ରତି କହିଥିଲେ । ମନୁଷ୍ୟ ଅଗ୍ନିହୋତ୍ରପର୍ଯ୍ୟନ୍ତ ଅନ୍ତର୍ଯାଗ ଅନୁଷ୍ଠାନ କରି ପରେ ବହିର୍ଯାଗ (ବାହ୍ୟ ପୂଜନ) କରିବା ଉଚିତ । (ତାହାର ବିଧି ଏହିପରି—) ଅନ୍ତର୍ଯାଗରେ ପ୍ରଥମେ ପୂଜାଦ୍ରବ୍ୟକୁ ମନରେ କଳ୍ପିତ ଓ ଶୁଦ୍ଧ କରି ଗଣେଶଙ୍କୁ ବିଧିପୂର୍ବକ ଚିନ୍ତନ ଓ ପୂଜନ କରିବେ । ତା'ପରେ ଦକ୍ଷିଣ ଓ ଉତ୍ତରଭାଗରେ କ୍ରମାନ୍ୱୟରେ ନନ୍ଦୀଶ୍ୱର ଓ ସୁଯଶାଙ୍କୁ ଆରାଧନା କରି ବିଦ୍ୱାନ୍ ପୁରୁଷ ମାନସିକଭାବେ ଉତ୍ତମ ଆସନର କଳ୍ପନା କରିବେ । ସିଂହାସନ, ଯୋଗାସନ ଅଥବା ତ୍ରିତତ୍ତ୍ୱଯୁକ୍ତ ନିର୍ମଳ ପଦ୍ମାସନର ଭାବନା କରିବେ । ତହିଁର ଉପରେ ସର୍ବମନୋହର ସାମ୍ବ ଶିବଙ୍କୁ (ଅମ୍ବାଙ୍କ ସହିତ ଶିବଙ୍କୁ) ଏପରି ଧ୍ୟାନ କରିବେ । ସେ ସମସ୍ତ ଶୁଭଲକ୍ଷଣସମ୍ପନ୍ନ ଅବୟବରେ ଶୋଭମାନ । ସେ ସମସ୍ତଙ୍କ ଠାରୁ ଶ୍ରେଷ୍ଠ ଏବଂ ସକଳ ଆଭୂଷଣ ତାଙ୍କର ଶୋଭା ବଢ଼ାଉଛନ୍ତି । ତାଙ୍କ ହାତ ଓ ପାଦର ଲାଲିମା ମନୋରମ । ତାଙ୍କ ମୁଖମଣ୍ଡଳର ସ୍ମିତହାସ କୁନ୍ଦ ଓ ଚନ୍ଦ୍ର ପରି ଶୋଭା ପାଉଛି । ତାଙ୍କର ଅଙ୍ଗକାନ୍ତି ଶୁଦ୍ଧ ସ୍ଫଟିକ ପରି ନିର୍ମଳ ଏବଂ ତ୍ରିନେତ୍ର ପ୍ରଫୁଲ୍ଲିତ କମଳ ସଦୃଶ ସୁନ୍ଦର । ଚାରି ଭୁଜ, ଉତ୍ତମ ଅଙ୍ଗ ଏବଂ ମନୋହର ଚନ୍ଦ୍ରକଳାରୂପୀ ମୁକୁଟ ଧାରଣ କରିଥିବା ଭଗବାନ ହରଙ୍କ ଦୁଇଟି ହାତରେ ବର ଓ ଅଭୟ ମୁଦ୍ରା ଏବଂ ଅନ୍ୟ ଦୁଇଟି ହାତରେ ମୃଗମୁଦ୍ରା ଓ ଟଙ୍କ ଶୋଭା ପାଉଛି । ତାଙ୍କ କଚଟିରେ ସର୍ପର ମାଳା କଡ଼ା ପରି ଦିଶୁଛି । ଗଳାରେ ମନୋହର ନୀଳବର୍ଣ୍ଣ ଶୋଭିତ ହେଉଛି । ସେ ଅନୁପମ ଦିଶୁଛନ୍ତି । ସେ ତାଙ୍କର ଅନୁଚର ସେବକ ତଥା ଆବଶ୍ୟକ ଉପକରଣ ସହିତ ବିରାଜମାନ ଅଛନ୍ତି ।

ଶିବଙ୍କୁ ଏହିପରି ଧ୍ୟାନ କରି ତାଙ୍କ ବାମଭାଗରେ ମହେଶ୍ୱରୀ ଶିବାଙ୍କୁ ଚିନ୍ତନ କରିବେ । ଶିବାଙ୍କ ଅଙ୍ଗକାନ୍ତି ପ୍ରଫୁଲ୍ଲ କମଳଦଳ ପରି ପରମ ସୁନ୍ଦର । ତାଙ୍କର ନେତ୍ର ବିଶାଳ । ମୁଖ ପୂର୍ଣ୍ଣଚନ୍ଦ୍ର ପରି ସୁଶୋଭିତ । ମସ୍ତକ ଉପରେ କଳାକଳା କୁଞ୍ଚିତ କେଶ ଶୋଭା ପାଉଛି । ତାଙ୍କର କାନ୍ତି ନୀଳୋତ୍ପଳ ପରି । ମସ୍ତକରେ ଅର୍ଦ୍ଧଚନ୍ଦ୍ରର ମୁକୁଟ । ପୀନ ପୟୋଧର ବର୍ତ୍ତୁଳ, ସୁଘନ, ଉଚ୍ଚ ଓ ସ୍ନିଗ୍ଧ । ଶରୀରର ମଧ୍ୟଭାଗ କୃଶ ଓ ନିତମ୍ବଭାଗ ସ୍ଥୂଳ । ସେ ହଳଦିଆ ରଙ୍ଗର ଝୀନ ବସନ ପରିଧାନ କରିଛନ୍ତି । ସମସ୍ତ ଆଭୂଷଣ ତାଙ୍କର ଶୋଭାବର୍ଦ୍ଧନ କରୁଛନ୍ତି । ଲଲାଟସ୍ଥିତ ସୁନ୍ଦର ତିଳକ ହେତୁ ତାଙ୍କର ଶୋଭା ଆହୁରି ଅଧିକ ଉଜ୍ଜ୍ୱଳ ଦିଶୁଛି । ବିଚିତ୍ର ପୁଷ୍ପର ମାଳାରେ ଗୁମ୍ଫିତ କେଶପାଶ ତାଙ୍କର ଶୋଭା ବର୍ଦ୍ଧନ କରୁଛି । ତାଙ୍କର ଆକୃତି ସବୁଦୃଷ୍ଟିରୁ ସୁନ୍ଦର ଓ ସୁଠାମ । ମୁଖମଣ୍ଡଳରେ ରହିଛି କିଞ୍ଚିତ୍ ଲଜ୍ଜାର ଝଲକ । ସେ ଦକ୍ଷିଣ ହସ୍ତରେ ଶୋଭାମୟ ସୁବର୍ଣ୍ଣପଦ୍ମ

ଧରିଛନ୍ତି ଓ ଅନ୍ୟ ହସ୍ତଟି ସେଇ ମହାନ୍ ସିଂହାସନ ଉପରେ ଦଣ୍ଡ ପରି ରଖି ସେଠାରେ ଉପବେଶନ କରିଛନ୍ତି । ସମସ୍ତ ପାଶକୁ ଛେଦନ କରୁଥିବା ଶିବାଦେବୀ ସାକ୍ଷାତ୍ ସଚ୍ଚିଦାନନ୍ଦ-ସ୍ୱରୂପିଣୀ । ଏହିରୂପେ ମହାଦେବ ଓ ମହାଦେବୀଙ୍କୁ ଧ୍ୟାନ କରି ଶୁଭ ଏବଂ ଶ୍ରେଷ୍ଠ ଆସନରେ ସମସ୍ତ ଉପଗ୍ରହଯୁକ୍ତ ଭାବମୟ ପୁଷ୍ପଦ୍ୱାରା ତାଙ୍କର ପୂଜା କରିବେ ।

ଅଥବା ଉପର୍ଯ୍ୟୁକ୍ତ ବର୍ଣ୍ଣନା ଅନୁସାରେ ପ୍ରଭୁ ଶିବଙ୍କର ଏକ ମୂର୍ତ୍ତି ତିଆରି କରିବେ । ତାହାର ନାମ ଶିବ ବା ସଦାଶିବ ରଖିବେ । ଗୋଟିଏ ଶିବାଙ୍କ ମୂର୍ତ୍ତି ମଧ୍ୟ ରଖିବେ । ତାଙ୍କର ନାମ ରଖିବେ ମାହେଶ୍ୱରୀ ଷଡ୍‌ବିଂଶକା ଅଥବା 'ଶ୍ରୀକଣ୍ଠ' । ତା'ପରେ ମୂର୍ତ୍ତିରେ ନିଜ ଶରୀର ପରି ମନ୍ତ୍ରନ୍ୟାସ ଆଦି କରି ସେଥିରେ ସତ୍-ଅସତ୍‌ରୁ ଅତୀତ ମୂର୍ତ୍ତିମାନ୍ ପରମ ଶିବଙ୍କୁ ଧ୍ୟାନ କରିବେ । ତା'ପରେ ବାହ୍ୟପୂଜନ କ୍ରମରେ ହିଁ ମାନସିକ ପୂଜା ସମ୍ପାଦିତ କରିବେ । ତା'ପରେ ସମିଧ-ଘିଅ ଇତ୍ୟାଦି ଦ୍ୱାରା ନାଭିରେ ହୋମର ଭାବନା କରିବେ । ତା'ପରେ ଭ୍ରୂମଧ୍ୟରେ ଶୁଦ୍ଧ ଦୀପଶିଖା ଆକୃତିର ଜ୍ୟୋତିର୍ମୟ ଶିବଙ୍କୁ ଧ୍ୟାନ କରିବେ । ଏପରି ନିଜ ଅଙ୍ଗରେ ଅଥବା ସ୍ୱତନ୍ତ୍ର ବିଗ୍ରହରେ ଶୁଭ ଧ୍ୟାନଯୋଗ ଦ୍ୱାରା ହୋମ ପର୍ଯ୍ୟନ୍ତ ସମସ୍ତ ପୂଜନ କରିବା ଉଚିତ । ଏହି ବିଧି ସର୍ବତ୍ର ସମାନ । ଏପରି ଧ୍ୟାନମୟ ଆରାଧନାର ସମସ୍ତ କ୍ରମ ଶେଷ କରି ମହାଦେବଙ୍କୁ ଶିବଲିଙ୍ଗରେ, ବେଦିରେ ଅଥବା ଅଗ୍ନିରେ ପୂଜା କରିବେ ।

(ଅଧ୍ୟାୟ ୨୧–୨୩)

✯✯✯

## ଶିବପୂଜନ ବିଧି

ଉପମନ୍ୟୁ କହୁଛନ୍ତି—ହେ ଯଦୁନନ୍ଦନ ! ବିଶୁଦ୍ଧି ନିମନ୍ତେ ମୂଳମନ୍ତ୍ର ଉଚ୍ଚାରଣ କରି ଗନ୍ଧ ଓ ଚନ୍ଦନମିଶ୍ରିତ ଜଳରେ ପୂଜାସ୍ଥାନକୁ ପ୍ରୋକ୍ଷଣ କରିବା ଉଚିତ । ତା'ପରେ ସେଠାରେ ଫୁଲ ବିଛାଇଦେବେ । ଅସ୍ତ୍ର-ମନ୍ତ୍ର (ଫଟ୍) ଉଚ୍ଚାରଣ କରି ବିଘ୍ନ ଦୂର କରିବେ । ତା'ପରେ କବଚ ମନ୍ତ୍ର (ହୁମ୍) ରେ ପୂଜାସ୍ଥାନକୁ ସବୁଦିଗରୁ ଅବଗୁଣ୍ଠିତ କରିଦେବେ । ଅସ୍ତ୍ରମନ୍ତ୍ରକୁ ସବୁଦିଗରେ ନ୍ୟାସ କରି ପୂଜାଭୂମିର କଳ୍ପନା କରିବେ । ସେଠାରେ ଗ୍ୱରିଆଡ଼େ କୁଶ ବିଛାଇଦେବେ ଏବଂ ପ୍ରୋକ୍ଷଣ ଆଦି ଦ୍ୱାରା ଭୂମିକୁ ପ୍ରକ୍ଷାଳନ କରିବେ । ପୂଜାସମ୍ବନ୍ଧିତ ସମସ୍ତ ପାତ୍ରକୁ ଶୋଧନ କରି ଦ୍ରବ୍ୟଶୁଦ୍ଧି କରିବେ । ପ୍ରୋକ୍ଷଣୀପାତ୍ର, ଅର୍ଘ୍ୟପାତ୍ର, ପାଦ୍ୟପାତ୍ର ଓ ଆଚମନୀ ପାତ୍ରକୁ ପ୍ରକ୍ଷାଳନ, ପ୍ରୋକ୍ଷଣ ଓ ବୀକ୍ଷଣ କରି ସେଗୁଡ଼ିକରେ ପବିତ୍ର ଜଳ ପୂରାଇବେ ଏବଂ ଯାହା କିଛି ପବିତ୍ର ଦ୍ରବ୍ୟ ଉପଲବ୍ଧ ଥିବ, ତାହା ମଧ୍ୟ ସେଥିରେ ପକାଇବେ । ପଞ୍ଚରତ୍ନ, ସୁନା, ରୁପା, ଗନ୍ଧ, ପୁଷ୍ପ, ଅକ୍ଷତ ଇତ୍ୟାଦି ତଥା ଫଳ, ପଲ୍ଲବ ଓ କୁଶ ହେଉଛି ପବିତ୍ର ଦ୍ରବ୍ୟ । ସ୍ନାନ ଓ ପାନୀୟ ଜଳରେ ବିଶେଷତଃ ସୁଗନ୍ଧାଦି ଦ୍ରବ୍ୟ ଓ ଶୀତଳ ମନୋଜ୍ଞ ପୁଷ୍ପ ଆଦି ପକାଇବେ । ପାଦ୍ୟପାତ୍ରରେ ବେଣାଚେର ଓ ଚନ୍ଦନ ପକାଇବା ଉଚିତ । ଆଚମନୀପାତ୍ରରେ ବିଶେଷତଃ ଜାଇଫଳ, କଙ୍କୋଳ, କର୍ପୂର, ସଜନା ଓ ତମାଳର ଚୂର୍ଣ୍ଣ ପକାଇବା ଉଚିତ । ଅଳେଇଚ ସବୁ ପାତ୍ରରେ ପକାଇବାର ଯୋଗ୍ୟ । କର୍ପୂର, ଚନ୍ଦନ, କୁଶାଗ୍ରଭାଗ, ଅକ୍ଷତ, ଯଅ, ଧାନ, ତିଳ, ଘିଅ, ସୋରିଷ, ଫୁଲ ଓ ଭସ୍ମ—ଏସବୁକୁ ଅର୍ଘ୍ୟପାତ୍ରରେ ପକାଇବା ଉଚିତ । କୁଶ, ଫୁଲ, ଯଅ, ଧାନ, ସଜନା, ତମାଳ ଓ ଭସ୍ମ—ଏଗୁଡ଼ିକୁ ପ୍ରୋକ୍ଷଣୀପାତ୍ରରେ ପକାଇବା ଉଚିତ । ସର୍ବତ୍ର ମନ୍ତ୍ରନ୍ୟାସ କରି କବଚମନ୍ତ୍ରରେ ପ୍ରତ୍ୟେକ ପାତ୍ରକୁ

ବାହାରୁ ଆବେଷ୍ଟିତ କରିବେ । ତା'ପରେ ଅସ୍ତ୍ରମନ୍ତ୍ରରେ ତାହାକୁ ରକ୍ଷା କରି ଧେନୁମୁଦ୍ରା ଦେଖାଇବେ । ପୂଜାର ସମସ୍ତ ଦ୍ରବ୍ୟକୁ ପ୍ରୋକ୍ଷଣୀ-ପାତ୍ରର ଜଳରେ ମୂଳମନ୍ତ୍ର ଦ୍ୱାରା ପ୍ରୋକ୍ଷଣ କରି ବିଧିବତ୍ ଶୋଧନ କରିବେ । ଅଧିକ ପାତ୍ର ନ ଥିଲେ ସାଧକ ସବୁ କର୍ମରେ କେବଳ ପ୍ରୋକ୍ଷଣୀପାତ୍ରକୁ ସମ୍ପାଦିତ କରି ରଖିବେ ଏବଂ ତାହାରି ଜଳରେ ସାଧାରଣତଃ ଅର୍ଘ୍ୟାଦି ଦେବେ । ତା'ପରେ ମଣ୍ଡପର ଦକ୍ଷିଣ ଦ୍ୱାରଭାଗରେ ଭକ୍ଷ୍ୟ-ଭୋଜ୍ୟ ଆଦି କ୍ରମରେ ବିଧିପୂର୍ବକ ବିନାୟକ ଦେବଙ୍କୁ ପୂଜା କରିସାରି ଅନ୍ତଃପୁରର ସ୍ୱାମୀ ସାକ୍ଷାତ୍ ନନ୍ଦୀଙ୍କୁ ଭଲଭାବରେ ପୂଜା କରିବେ । ତାଙ୍କ ଅଙ୍ଗକାନ୍ତି ସ୍ୱର୍ଣ୍ଣପର୍ବତତୁଲ୍ୟ । ସମସ୍ତ ଆଭୂଷଣ ତାଙ୍କର ଶୋଭା ବର୍ଦ୍ଧନ କରନ୍ତି । ମସ୍ତକରେ ବାଳଚନ୍ଦ୍ର ମୁକୁଟ ପରି ଶୋଭାପାଏ । ତାଙ୍କର ମୂର୍ତ୍ତି ସୌମ୍ୟ । ସେ ତ୍ରିନେତ୍ରଧାରୀ ଓ ଚତୁର୍ଭୁଜ । ତାଙ୍କର ଚାରିଟି ହାତରେ ଦୀପ୍ତିମନ୍ତ ତ୍ରିଶୂଳ, ମୃଗୀ, ଟଙ୍କ ଓ ତୀକ୍ଷ୍ଣ ବେତ ଶୋଭା ପାଏ । ତାଙ୍କର ମୁଖକାନ୍ତି ଚନ୍ଦ୍ରମଣ୍ଡଳ ପରି ଉଜ୍ଜ୍ୱଳ ଏବଂ ମୁଖ ବାନରସଦୃଶ ।

ଦ୍ୱାରର ଉତ୍ତର ପାର୍ଶ୍ୱରେ ନନ୍ଦୀଙ୍କ ପତ୍ନୀ ସୁଯଶା ଥାଆନ୍ତି, ଯେ କି ମରୁଦ୍‌ଗଣଙ୍କ କନ୍ୟା । ସେ ଉତ୍ତମ ବ୍ରତପାଳନକାରିଣୀ ଓ ପାର୍ବତୀଙ୍କ ଚରଣଶୃଙ୍ଗାର ସେବାରେ ରତ ଥାଆନ୍ତି । ତାଙ୍କୁ ପୂଜା କରିସାରି ପରମେଶ୍ୱର ଶିବଙ୍କ ଭବନ ଭିତରକୁ ପ୍ରବେଶ କରିବେ ଏବଂ ସେହିସବୁ ଦ୍ରବ୍ୟରେ ଶିବଲିଙ୍ଗର ପୂଜା ସାରି ନିର୍ମାଲ୍ୟକୁ ସେଠାରୁ ଦୂରକୁ ହଟାଇଦେବେ । ତା'ପରେ ପୁଷ୍ପକୁ ପ୍ରକ୍ଷାଳନ କରି ଶିବଲିଙ୍ଗର ମସ୍ତକ ଉପରେ ତାହାର ଶୁଦ୍ଧି ପାଇଁ ଥୋଇବେ । ତା'ପରେ ହାତରେ ଫୁଲ ଧରି ଯଥାଶକ୍ତି ମନ୍ତ୍ର ଜପିବେ । ଏହାଦ୍ୱାରା ମନ୍ତ୍ରଶୁଦ୍ଧି ହୁଏ । ଈଶାନ୍ୟକୋଣରେ ଚଣ୍ଡୀଙ୍କୁ ଆରାଧନା କରି ତାଙ୍କୁ ପୂର୍ବୋକ୍ତ ନିର୍ମାଲ୍ୟ ଅର୍ପିତ କରିବେ । ତା'ପରେ ଇଷ୍ଟଦେବତାଙ୍କ ପାଇଁ ଆସନର କଳ୍ପନା କରିବେ । କ୍ରମାନୁସାରେ ଆଧାର ଇତ୍ୟାଦିକୁ ଧ୍ୟାନ କରିବେ ଅର୍ଥାତ୍ କଲ୍ୟାଣମୟୀ ଆଧାରଶକ୍ତି ଭୂପୃଷ୍ଠରେ ବିରାଜମାନ ହୋଇଛନ୍ତି ଏବଂ ତାଙ୍କର ଅଙ୍ଗକାନ୍ତି ଶ୍ୟାମ ଅଟେ । ତାଙ୍କ ଉପରେ ଫଣା ଟେକି ସର୍ପାକାର ଅନନ୍ତ ବସିଛନ୍ତି । ଅନନ୍ତଙ୍କ ଅଙ୍ଗକାନ୍ତି ଉଜ୍ଜ୍ୱଳ । ସେ ପାଞ୍ଚଫଣାଯୁକ୍ତ ଏବଂ ଆକାଶକୁ ଚାଟୁଥିବା ପରି ମନେ ହେଉଛନ୍ତି । ଅନନ୍ତଙ୍କ ଉପରେ ଭଦ୍ରାସନ ଅଛି ଏବଂ ତାହାର ଚାରିଟି ଗୋଡ଼ରେ ସିଂହର ଆକୃତି ନିର୍ମିତ ହୋଇଛି । ସେହି ଚାରିଗୋଡ଼ ଯଥାକ୍ରମେ ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟର ସ୍ୱରୂପ । ଧର୍ମ ନାମକ ଗୋଡ଼ ଆଗ୍ନେୟକୋଣରେ ଅଛି ଏବଂ ତାହାର ରଙ୍ଗ ଧବଳ । ଜ୍ଞାନ ନାମକ ଗୋଡ଼ ନୈର୍ଋତ୍ୟକୋଣରେ ଅଛି ଏବଂ ତାହାର ରଙ୍ଗ ଲାଲ୍ । ହଳଦିଆ ରଙ୍ଗର ବୈରାଗ୍ୟ ନାମକ ଗୋଡ଼ ବାୟବ୍ୟକୋଣରେ ଏବଂ ଶ୍ୟାମବର୍ଣ୍ଣର ଐଶ୍ୱର୍ଯ୍ୟ ନାମକ ଗୋଡ଼ ଈଶାନ୍ୟ-କୋଣରେ ରହିଛି । ଅଧର୍ମ ଇତ୍ୟାଦି ସେହି ଆସନର ପୂର୍ବାଦି ଭାଗରେ କ୍ରମାନ୍ୱୟରେ ସ୍ଥିତ ଅର୍ଥାତ୍ ଅଧର୍ମ ପୂର୍ବରେ, ଅଜ୍ଞାନ ଦକ୍ଷିଣରେ, ଅବୈରାଗ୍ୟ ପଶ୍ଚିମରେ ଏବଂ ଅନୈଶ୍ୱର୍ଯ୍ୟ ଉତ୍ତରରେ ଅବସ୍ଥିତ । ମନରେ ଭାବନା କରିବେ ଯେ ଏଗୁଡ଼ିକର ରଙ୍ଗ ରଜାବର୍ତ୍ତମଣି ସଦୃଶ । ଭଦ୍ରାସନକୁ ଗୋଟିଏ ଉଜ୍ଜ୍ୱଳ ଶ୍ୱେତପଦ୍ମର ଆସନ ଆଚ୍ଛାଦିତ କରିଛି । ଅଣିମା ଆଦି ଅଷ୍ଟୈଶ୍ୱର୍ଯ୍ୟ ସେହି ପଦ୍ମର ଆଠଟି ପାଖୁଡ଼ା । ବାମଦେବ ପ୍ରଭୃତି ରୁଦ୍ର ନିଜ ନିଜ ବାମା ଆଦି ଶକ୍ତିମାନଙ୍କ ସହ ଉକ୍ତ ପଦ୍ମର କେଶରରୂପେ ଅବସ୍ଥିତ ଅଟନ୍ତି । ମନୋନ୍ମନୀ ଆଦି ଅନ୍ତଃଶକ୍ତିମାନେ ହିଁ ତାହାର ବୀଜ, ଅପର ବୈରାଗ୍ୟ ହେଉଛି କର୍ଣ୍ଣିକା,

ଶିବଜ୍ଞାନସ୍ୱରୂପ ଜ୍ଞାନ ହେଉଛି ନାଳ, ଶିବଧର୍ମ ତାହାର କନ୍ଦ, କର୍ଣ୍ଣିକାର ଉପରେ ତିନୋଟି ମଣ୍ଡଳ (ଚନ୍ଦ୍ରମଣ୍ଡଳ, ସୂର୍ଯ୍ୟମଣ୍ଡଳ ଓ ବହ୍ନିମଣ୍ଡଳ) ରହିଛି ଏବଂ ମଣ୍ଡଳ ଉପରେ ଆତ୍ମତତ୍ତ୍ୱ, ବିଦ୍ୟାତତ୍ତ୍ୱ ଓ ଶିବତତ୍ତ୍ୱରୂପୀ ତ୍ରିବିଧ ଆସନ ରହିଛି । ଏହି ସବୁ ଆସନ ଉପରେ ବିଚିତ୍ର ବିଛଣା ବିଛାଯାଇଥିବା ଗୋଟିଏ ସୁଖଦ ଦିବ୍ୟ ଆସନର କଳ୍ପନା କରିବେ, ଯାହାକି ଶୁଦ୍ଧ ବିଦ୍ୟାରେ ଅତ୍ୟନ୍ତ ଦୀପ୍ତିମନ୍ତ ହେଉଥିବ । ଏହାପରେ ଆବାହନ, ସ୍ଥାପନ, ସଂନିରୋଧନ, ନିରୀକ୍ଷଣ ଓ ନମସ୍କାର କରିବେ । ଏସବୁର ପୃଥକ୍ ପୃଥକ୍ ମୁଦ୍ରା ମଧ୍ୟ ଦେଖାଇବେ ।*

ତଦନନ୍ତର ପାଦ୍ୟ, ଆଚମନ, ଅର୍ଘ୍ୟ, (ସ୍ନାନୀୟ, ବସ୍ତ୍ର, ଯଜ୍ଞୋପବୀତ,) ଗନ୍ଧ, ପୁଷ୍ପ, ଧୂପ, ଦୀପ, (ନୈବେଦ୍ୟ) ଓ ତାମ୍ବୂଳ ଦେଇ ଶିବା ଓ ଶିବଙ୍କୁ ଶୟନ କରାଇବେ ଅଥବା ଉପରୋକ୍ତ ପ୍ରକାରେ ଆସନ ଓ ମୂର୍ତ୍ତିର କଳ୍ପନା କରି ମୂଳମନ୍ତ୍ର ଓ ଅନ୍ୟ ଈଶାନାଦି ବ୍ରହ୍ମମନ୍ତ୍ର ଦ୍ୱାରା ସକଳୀକରଣ କ୍ରିୟା କରି ଦେବୀ ପାର୍ବତୀଙ୍କ ସହ ପରମକାରଣ ଶିବଙ୍କୁ ଆବାହନ କରିବେ । ଭଗବାନ ଶିବଙ୍କ ଅଙ୍ଗକାନ୍ତି ଶୁଦ୍ଧ ସ୍ଫଟିକ ତୁଲ୍ୟ ଉଜ୍ଜ୍ୱଳ । ସେ ନିଶ୍ଚଳ, ଅବିନାଶୀ, ସମସ୍ତ ଭୁବନର ପରମ କାରଣ, ସର୍ବଲୋକସ୍ୱରୂପ, ସବୁରି ବାହାରେ ଓ ଭିତରେ ବିଦ୍ୟମାନ, ସର୍ବବ୍ୟାପୀ, ଅଣୁଠାରୁ ବି ସୂକ୍ଷ୍ମ ଓ ମହାନ୍ ଠାରୁ ବି ମହାନ୍ । ସେ ଭକ୍ତଙ୍କୁ ଅନାୟାସରେ ଦର୍ଶନ ଦିଅନ୍ତି । ସେ ସମସ୍ତଙ୍କର ଈଶ୍ୱର ଓ ଅବ୍ୟୟ । ସେ ବ୍ରହ୍ମା, ବିଷ୍ଣୁ, ରୁଦ୍ର ପ୍ରଭୃତି ଦେବତାଙ୍କ ପାଇଁ ମଧ୍ୟ ଅଗୋଚର, ସମସ୍ତ ବେଦଙ୍କର ସାରତତ୍ତ୍ୱ । ସେ ବିଦ୍ୱାନ୍‌ଙ୍କ ଦୃଷ୍ଟିପଥର ମଧ୍ୟ ଅଗୋଚର, ପୁଣି ଆଦି-ମଧ୍ୟ-ଅନ୍ତରହିତ । ସେ ଭବରୋଗଗ୍ରସ୍ତ ପ୍ରାଣୀଙ୍କ ପାଇଁ ଔଷଧସ୍ୱରୂପ, ଶିବତତ୍ତ୍ୱରୂପରେ ବିଖ୍ୟାତ ଏବଂ ସମସ୍ତଙ୍କ କଲ୍ୟାଣ ପାଇଁ ଜଗତରେ ସୁସ୍ଥିର ଶିବଲିଙ୍ଗରୂପରେ ବିଦ୍ୟମାନ ।

ଏପରି ଭାବନା କରି ଭକ୍ତିଭାବରେ ଗନ୍ଧ, ପୁଷ୍ପ, ଧୂପ, ଦୀପ ଓ ନୈବେଦ୍ୟ (ପଞ୍ଚୋପଚାର) ଦ୍ୱାରା ଶିବଲିଙ୍ଗଙ୍କୁ ପୂଜା କରିବେ । ପରମାତ୍ମା ମହେଶ୍ୱରଙ୍କ ଲିଙ୍ଗମୟୀ ମୂର୍ତ୍ତିକୁ ସ୍ନାନ କରାଇବା ବେଳେ ଜୟଧ୍ୱନି, ମଙ୍ଗଳପାଠ ଇତ୍ୟାଦି କରିବେ । ପଞ୍ଚଗବ୍ୟ, ଘିଅ, କ୍ଷୀର, ଦହି, ମହୁ ଓ ଶର୍କରା ସହିତ ଫଳମୂଳର ସାରତତ୍ତ୍ୱରେ, ତିଳ, ସୋରିଷ, ବେସନର ଲେପରେ, ଉତ୍ତମ ଯଅ ଇତ୍ୟାଦିରେ, ବିରିଚୂନାରେ ଏବଂ ଅଟା ଇତ୍ୟାଦିରେ ଆଲେପନ କରି ଗରମ ପାଣିରେ ଶିବଲିଙ୍ଗଙ୍କୁ ସ୍ନାନ କରାଇବେ । ଲେପ ଓ ଗନ୍ଧର ନିବାରଣ ପାଇଁ ବେଲପତ୍ର ଇତ୍ୟାଦିରେ ଘଷି ଗାଧୋଇଦେବେ । ତା'ପରେ ଜଳରେ ସ୍ନାନ କରାଇ ଚକ୍ରବର୍ତ୍ତୀ ସମ୍ରାଟଙ୍କ ଉପଯୋଗୀ ଉପଚାରମାନଙ୍କରେ (ଅର୍ଥାତ୍ ସୁଗନ୍ଧିତ ତେଲ-ଅତର ଇତ୍ୟାଦିରେ) ସେବା କରିବେ । ସୁଗନ୍ଧିତ ଅଁଳା ଓ ହଳଦୀ ମଧ୍ୟ ଅର୍ପଣ କରିବେ । ଏସବୁ ବସ୍ତୁରେ ଶିବଲିଙ୍ଗ ଅଥବା ଶିବମୂର୍ତ୍ତିକୁ ଭଲଭାବରେ ଶୋଧନ କରି

---

* ଉଭୟ ହସ୍ତକୁ ଅଞ୍ଜଳି କରି ଅନାମିକା ଅଙ୍ଗୁଳି ମୂଳପବରେ ବୃଦ୍ଧାଙ୍ଗୁଳିକୁ ଲଗାଇଲେ 'ଆବାହନ' ମୁଦ୍ରା ହୁଏ । ଏହି ମୁଦ୍ରାକୁ ତଳମୁହାଁ କରି ଓଲଟାଇ ଦେଲେ 'ସ୍ଥାପନ' ମୁଦ୍ରା ହୁଏ । ଦୁଇ ହାତର ମୁଠାଭିତରେ ଅଙ୍ଗୁଷ୍ଠକୁ ପୂରାଇ ରଖି ଉଭୟ ମୁଠାକୁ ପରସ୍ପର ସହ ଯୋଡ଼ିଦେଲେ 'ସଂନିରୋଧନ' ମୁଦ୍ରା ହୁଏ । ଉଭୟ ମୁଠାକୁ ଉତ୍ତାନ କରିଦେଲେ 'ସମ୍ମୁଖୀକରଣ' ନାମକ ମୁଦ୍ରା ହୁଏ; ତାହାକୁ ହିଁ ଏଠାରେ 'ନିରୀକ୍ଷଣ' ନାମରେ କୁହାଯାଇଛି । ଦେବତାଙ୍କ ସମ୍ମୁଖରେ ଶରୀରକୁ ଦଣ୍ଡ ପରି ତଳମୁହାଁ କରି ଲୋଟାଇ ଦେଇ ଦୁଇ ହାତକୁ ଦେବତାଙ୍କ ଆଡ଼କୁ ବଢ଼ାଇଦେଲେ ସାଷ୍ଟାଙ୍ଗ ପ୍ରଣାମ ହୁଏ; ତାହାକୁ ହିଁ ଏଠାରେ 'ନମସ୍କାର' ମୁଦ୍ରା କୁହାଯାଇଛି ।

ଚନ୍ଦନମିଶ୍ରିତ ଜଳ, କୁଶ-ପୁଷ୍ପଯୁକ୍ତ ଜଳ, ସୁବର୍ଣ୍ଣ ଓ ରତ୍ନଯୁକ୍ତ ମନ୍ତ୍ରସିଦ୍ଧ ଜଳରେ କ୍ରମାନ୍ୱୟରେ ସ୍ନାନ କରାଇ। କଳସ, ଶଙ୍ଖ ଓ ବର୍ଦ୍ଧନୀରେ ଏବଂ କୁଶ ଓ ପୁଷ୍ପଯୁକ୍ତ କରଗତ ଜଳରେ ମନ୍ତ୍ରୋଚ୍ଚାରଣପୂର୍ବକ ଇଷ୍ଟଦେବଙ୍କୁ ସ୍ନାନ କରାଇବା ଆବଶ୍ୟକ। ସ୍ନାନ କରାଇବା ସମୟରେ ପବମାନସୂକ୍ତ, ରୁଦ୍ରସୂକ୍ତ, ନୀଳରୁଦ୍ରସୂକ୍ତ, ତ୍ୱରିତମନ୍ତ୍ର, ଲିଙ୍ଗସୂକ୍ତ, ଆଦିସୂକ୍ତ, ଅଥର୍ବଶୀର୍ଷ, ଋଗ୍‌ବେଦ, ସାମବେଦ ଓ ଶିବଙ୍କର ଈଶାନାଦି ପଞ୍ଚବ୍ରହ୍ମମନ୍ତ୍ର, ଶିବମନ୍ତ୍ର ଏବଂ ପ୍ରଣବ ପାଠ କରିବା ଆବଶ୍ୟକ ।

ମହାଦେବଙ୍କ ପରି ମହାଦେବୀଙ୍କୁ ମଧ୍ୟ ସ୍ନାନାଦି କରାଇବା ଉଚିତ। ସେ ଦୁହିଙ୍କ ମଧ୍ୟରେ କିଛି ଅନ୍ତର ନାହିଁ; କାରଣ ଦୁହେଁ ଅଭିନ୍ନ। ପ୍ରଥମେ ମହାଦେବଙ୍କ ଉଦ୍ଦେଶ୍ୟରେ ସ୍ନାନାଦି କ୍ରିୟା ସମ୍ପନ୍ନ କରିସାରି ତା'ପରେ ଦେବୀଙ୍କ ପାଇଁ ସେହି ଦେବାଧିଦେବଙ୍କ ଆଦେଶରେ ସବୁକିଛି କରିବେ। ଅର୍ଦ୍ଧନାରୀଶ୍ୱରଙ୍କ ପୂଜା କରୁଥିଲେ ସେଥିରେ ପୂର୍ବାପର କ୍ରମର ବିଚାର ନାହିଁ। ସେଥିରେ ମହାଦେବ ଓ ମହାଦେବୀଙ୍କୁ ଏକାସାଙ୍ଗରେ ପୂଜା କାରାଯାଇଥାଏ। ଶିବଲିଙ୍ଗରେ ବା ମୂର୍ତ୍ତି ଇତ୍ୟାଦିରେ ଅର୍ଦ୍ଧନାରୀଶ୍ୱରଙ୍କ ଭାବନା କରି ସମସ୍ତ ଉପଚାର ଶିବ ଓ ଶିବାଙ୍କ ପାଇଁ ଏକାବେଳକେ ଉପଯୋଗ କରାଯାଏ। ପବିତ୍ର ସୁଗନ୍ଧିତ ଜଳରେ ଶିବଲିଙ୍ଗର ଅଭିଷେକ କରି ତାହାକୁ ବସ୍ତ୍ରରେ ପୋଛିଦେବେ। ତା'ପରେ ନୂତନ ବସ୍ତ୍ର ଓ ଉପବୀତ ଅର୍ପଣ କରିବେ। ତା'ପରେ ପାଦ୍ୟ, ଆଚମନ, ଅର୍ଘ୍ୟ, ଗନ୍ଧ, ପୁଷ୍ପ, ଆଭୂଷଣ, ଧୂପ, ଦୀପ, ନୈବେଦ୍ୟ, ପାନୀୟ ଜଳ, ମୁଖଶୁଦ୍ଧି, ପୁନରାଚମନ, ମୁଖବାସ ଓ ନାନା ରତ୍ନଜଟିତ ସୁନ୍ଦର ମୁକୁଟ, ଆଭୂଷଣ, ନାନା ପ୍ରକାରର ପବିତ୍ର ପୁଷ୍ପମାଳ, ଛତ୍ର, ଚାମର, ବ୍ୟଜନ, ତାଳପତ୍ରର ପଙ୍ଖା ଓ ଦର୍ପଣ ଅର୍ପଣ କରି ସକଳ ପ୍ରକାର ମଙ୍ଗଳମୟୀ ବାଦ୍ୟଧ୍ୱନି ସହିତ ଇଷ୍ଟଦେବଙ୍କର ଆଳତି କରିବେ। ସେତେବେଳେ ନୃତ୍ୟ, ଗୀତ ଓ ଜୟନାଦ ମଧ୍ୟ ହେବା ଆବଶ୍ୟକ। ସୁନା, ରୁପା, ତମ୍ବା ଅଥବା ମାଟିର ପାତ୍ରରେ ପଦ୍ମ ଇତ୍ୟାଦି ସୁନ୍ଦର ପୁଷ୍ପ ରଖିବେ। ପଦ୍ମବୀଜ, ଦହି, ଅକ୍ଷତ ଇତ୍ୟାଦି ମଧ୍ୟ ରଖିବେ। ତ୍ରିଶୂଳ, ଶଙ୍ଖ, ଦୁଇଟି ପଦ୍ମ, ନନ୍ଦ୍ୟାବର୍ତ୍ତ ଶଙ୍ଖ, ଘସି-ନିଆଁ, ଶ୍ରୀବତ୍ସ, ସ୍ୱସ୍ତିକ, ଦର୍ପଣ, ବଜ୍ର ଓ ଅଗ୍ନି ଇତ୍ୟାଦିର ଚିତ୍ର ଅଙ୍କା ହୋଇଥିବା ପାତ୍ରରେ ଆଠଟି ଦୀପ ରଖିବେ। ଆଠଟି ଦୀପ ଆଠଦିଗରେ ରହିବ ଓ ମଝିରେ ଆଉ ଗୋଟିଏ ଦୀପ ରହିବ। ଏହି ନଅଟି ଦୀପରେ ବାମା ଆଦି ନଅ ଶକ୍ତିଙ୍କୁ ପୂଜା କରିବେ। ତା'ପରେ କବଚମନ୍ତ୍ରରେ ଆଚ୍ଛାଦନ ତଥା ଅସ୍ତ୍ରମନ୍ତ୍ରରେ ସବୁଆଡୁ ସଂରକ୍ଷଣ କରି ଧେନୁମୁଦ୍ରା ଦେଖାଇ ଦୁଇ ହାତରେ ପାତ୍ରକୁ ଧରି ଉଠାଇବେ। ଅଥବା ପାତ୍ରରେ ପାଞ୍ଚଟି ଦୀପ ରଖିବେ। ଚାରିଟିକୁ ଚାରିକୋଣରେ ଓ ଗୋଟିଏ ଦୀପ ମଧ୍ୟରେ ରଖିବେ। ତା'ପରେ ସେହି ପାତ୍ରକୁ ଉଠାଇ ମୂଳମନ୍ତ୍ର ଉଚ୍ଚାରଣ ସହିତ ଶିବଲିଙ୍ଗ ବା ମୂର୍ତ୍ତିଙ୍କ ସମ୍ମୁଖରେ ତିନି ଥର, ପ୍ରଦକ୍ଷିଣ କ୍ରମରେ ବୁଲାଇବେ। ତା'ପରେ ଲିଙ୍ଗର ମସ୍ତକରେ ଅର୍ଘ୍ୟ ଓ ସୁଗନ୍ଧିତ ଭସ୍ମ ଅର୍ପଣ କରିବେ। ତା'ପରେ ପୁଷ୍ପାଞ୍ଜଳି ଦେଇ ଉପହାର ନିବେଦନ କରିବେ। ତା'ପରେ ଆଚମନ ପାଇଁ ଜଳ ଦେବେ। ତା'ପରେ ସୁଗନ୍ଧ ଦ୍ରବ୍ୟଯୁକ୍ତ ପାଞ୍ଚଟି ତାମ୍ବୂଳ ଦେବେ। ତା'ପରେ ପ୍ରୋକ୍ଷଣୀୟ ପଦାର୍ଥର ପ୍ରୋକ୍ଷଣ କରି ନୃତ୍ୟଗୀତର ଆୟୋଜନ କରିବେ। ଲିଙ୍ଗ ବା ମୂର୍ତ୍ତିରେ ଶିବପାର୍ବତୀଙ୍କୁ ଚିନ୍ତନ କରି ଯଥାଶକ୍ତି ଶିବମନ୍ତ୍ର ଜପିବେ। ଜପ ପରେ ପ୍ରଦକ୍ଷିଣା, ନମସ୍କାର, ସ୍ତୁତିପାଠ, ଆତ୍ମ-ସମର୍ପଣ ବା ବିନୟପୂର୍ବକ କାର୍ଯ୍ୟର ବିଜ୍ଞାପନ

କରିବେ । ତା'ପରେ ଅର୍ଘ୍ୟ ଓ ପୁଷ୍ପାଞ୍ଜଳି ଦେଇ ବିଧିବତ୍ ଯୋଡ଼ହସ୍ତପୂର୍ବକ ଇଷ୍ଟଦେବଙ୍କୁ ତ୍ରୁଟି ନିମନ୍ତେ କ୍ଷମାପ୍ରାର୍ଥନା କରିବେ । ତା'ପରେ ମୂର୍ତ୍ତିସହିତ ଦେବତାଙ୍କୁ ବିସର୍ଜନ କରି ନିଜ ହୃଦୟରେ ତାଙ୍କୁ ଚିନ୍ତନ କରିବେ । ପାଦ୍ୟଠାରୁ ଆରମ୍ଭ କରି ମୁଖବାସ ପର୍ଯ୍ୟନ୍ତ ପୂଜା କରିବା ଆବଶ୍ୟକ । ଅଧିକ ସଂକଟ ସ୍ଥିତିରେ ଶ୍ରଦ୍ଧା ଓ ପ୍ରେମରେ କେବଳ ପୁଷ୍ପ ଅର୍ପଣ କରି ପାରିବେ । ପ୍ରେମପୂର୍ବକ କେବଳ ପୁଷ୍ପ ଅର୍ପଣ କରିଦେଲେ ମଧ୍ୟ ପରମ ଧର୍ମ ସମ୍ପାଦନ ହୋଇଯାଏ । ପ୍ରାଣ ଥିବା ପର୍ଯ୍ୟନ୍ତ ଶିବପୂଜା ନ କରି ଭୋଜନ କରିବେ ନାହିଁ । (ଅଧ୍ୟାୟ ୨୪)



## ଶିବପୂଜାର ବିଶେଷ ବିଧି ଓ ଶିବଭକ୍ତିର ମହିମା

ଉପମନ୍ୟୁ କହୁଛନ୍ତି–ଯଦୁନନ୍ଦନ ! ଦୀପଦାନ ପରେ ଓ ନୈବେଦ୍ୟ-ନିବେଦନ ପୂର୍ବରୁ ଆବରଣ ପୂଜା କରିବା ଉଚିତ ଅଥବା ଆଳତି ସମୟ ହେଲେ ଆବରଣ ପୂଜା କରିବେ । ସେଠାରେ ଶିବ ବା ପାର୍ବତୀଙ୍କ ପ୍ରଥମ ଆବରଣରେ ଈଶାନ ଠାରୁ ଆରମ୍ଭ କରି ସଦ୍ୟୋଜାତ ପର୍ଯ୍ୟନ୍ତ ଏବଂ ହୃଦୟ ଠାରୁ ଆରମ୍ଭ କରି ଅସ୍ତ୍ର ପର୍ଯ୍ୟନ୍ତ ପୂଜା କରିବେ ।* ଐଶାନ୍ୟରେ, ପୂର୍ବରେ, ଦକ୍ଷିଣରେ, ଉତ୍ତରରେ, ପଶ୍ଚିମରେ, ଆଗ୍ନେୟକୋଣରେ, ଐଶାନ୍ୟକୋଣରେ, ନୈର୍ଋତ୍ୟକୋଣରେ, ବାୟବ୍ୟକୋଣରେ, ପୁଣି ଐଶାନ୍ୟକୋଣରେ ତା'ପରେ ଚାରିଦିଗରେ ଗର୍ଭାବରଣ ଅଥବା ମନ୍ତ୍ରସଂଘାତ ପୂଜା କରାଯାଏ । ଅଥବା ହୃଦୟରୁ ଆରମ୍ଭ କରି ଅସ୍ତ୍ର ପର୍ଯ୍ୟନ୍ତ ଅଙ୍ଗମାନଙ୍କର ପୂଜା କରିବେ । ଏଗୁଡ଼ିକର ବାହ୍ୟଭାଗରେ ପୂର୍ବଦିଗରେ ଇନ୍ଦ୍ରଙ୍କୁ, ଦକ୍ଷିଣରେ ଯମଙ୍କୁ, ପଶ୍ଚିମରେ ବରୁଣଙ୍କୁ, ଉତ୍ତରରେ କୁବେରଙ୍କୁ, ଐଶାନ୍ୟକୋଣରେ ଈଶାନଙ୍କୁ, ଆଗ୍ନେୟକୋଣରେ ଅଗ୍ନିଙ୍କୁ, ନୈର୍ଋତ୍ୟ-କୋଣରେ ନିର୍ଋତିଙ୍କୁ, ବାୟବ୍ୟକୋଣରେ ବାୟୁଙ୍କୁ ନୈର୍ଋତ୍ୟ ଓ ପଶ୍ଚିମର ମଧ୍ୟଭାଗରେ ଅନନ୍ତ ବା ବିଷ୍ଣୁଙ୍କୁ ଏବଂ ଐଶାନ୍ୟ ଓ ପୂର୍ବର ମଧ୍ୟଭାଗରେ ବ୍ରହ୍ମାଙ୍କୁ ପୂଜା କରିବେ । ପଦ୍ମର ବାହ୍ୟଭାଗରେ ବଜ୍ରଠାରୁ ଆରମ୍ଭ କରି ପଦ୍ମ ପର୍ଯ୍ୟନ୍ତ ଲୋକେଶ୍ୱରଙ୍କ ସୁପ୍ରସିଦ୍ଧ ଆୟୁଧଗୁଡ଼ିକୁ ପୂର୍ବାଦି ଦିଗ କ୍ରମରେ ପୂଜା କରିବେ । ଏପରି ଧ୍ୟାନ କରିବେ ଯେ ସମସ୍ତ ଆବରଣ ଦେବତା ସୁଖପୂର୍ବକ କର ଯୋଡ଼ି ବସି ମହାଦେବ ଓ ମହାଦେବୀଙ୍କ ଆଡ଼କୁ ଚାହିଁଛନ୍ତି । ଏହାପରେ ସମସ୍ତ ଆବରଣ ଦେବତାଙ୍କୁ ପ୍ରଣାମ କରି ସେମାନଙ୍କ ନାମ ସହିତ 'ନମଃ' ସଂଯୋଗ କରିବା ସହ ପୁଷ୍ପୋଚ୍ଚାର ସମର୍ପଣପୂର୍ବକ କ୍ରମାନ୍ୱୟରେ ସେମାନଙ୍କୁ ପୂଜା କରିବେ । (ଯଥା– 'ଇନ୍ଦ୍ରାୟ ନମଃ ପୁଷ୍ପଂ ସମର୍ପୟାମି' ଇତ୍ୟାଦି) । ଏହିରୂପେ ଗର୍ଭାବରଣକୁ ମଧ୍ୟ ତାହାର ଆବରଣ ମନ୍ତ୍ରରେ ଯଜନ କରିବେ । ଯୋଗ, ଧ୍ୟାନ, ହୋମ, ଜପ, ବାହ୍ୟ ଅଥବା ଆଭ୍ୟନ୍ତରରେ ମଧ୍ୟ ଦେବତାଙ୍କୁ ପୂଜା କରିବା ଉଚିତ । ପୁଣି ସେମାନଙ୍କ ପାଇଁ ଛଅ ପ୍ରକାର ହବି ମଧ୍ୟ ଦେବା ଉଚିତ; ଯଥା–ଶୁଦ୍ଧ ଅନ୍ନରେ ପ୍ରସ୍ତୁତ ମୁଗମିଶ୍ରିତ ଅନ୍ନ ବା ଖେଚଡ଼ି, ଖିରି, ଦଧିଅନ୍ନ, ଗୁଡ଼ରେ ତିଆରି କୌଣସି ଏକ ପକ୍ୱାନ୍ନ ଓ ମଧୁମିଶ୍ରିତ

* ଅର୍ଥାତ୍–

ଈଶାନ, ତତ୍ପୁରୁଷ, ଅଘୋର, ବାମଦେବ ଓ ସଦ୍ୟୋଜାତ–ଏ ପାଞ୍ଚ ମୂର୍ତ୍ତିଙ୍କୁ ଏବଂ ହୃଦୟ, ମସ୍ତକ, ଶିଖା, କବଚ, ନେତ୍ର ଓ ଅସ୍ତ୍ର–ଏହି ଅଙ୍ଗଗୁଡ଼ିକୁ ପୂଜା କରିବା ଉଚିତ ।

ଭୋଜ୍ୟପଦାର୍ଥ । ଏଥିମଧ୍ୟରୁ ଗୋଟିଏ ପ୍ରକାର ବା ଅନେକ ପ୍ରକାର ହବିଷ୍ୟାନ୍ନ, ନାନା ପ୍ରକାର ବ୍ୟଞ୍ଜନ ଏବଂ ଗୁଡ଼ ଓ ଶର୍କରା (କନ୍ଦ) ଇତ୍ୟାଦି ନୈବେଦ୍ୟରୂପେ ଅର୍ପଣ କରିବା ଉଚିତ । ତା' ସହିତ ଲହୁଣି ଓ ଉତ୍ତମ ଦହି ବି ଅର୍ପଣ କରିବା ଉଚିତ । ପିଠା ଇତ୍ୟାଦି ଓ ସ୍ୱାଦିଷ୍ଟ ଫଳ ବି ଦେବା ଉଚିତ । ରକ୍ତଚନ୍ଦନ ଓ ପୁଷ୍ପବାସିତ ସୁଶୀତଳ ଜଳ ଦେବା ଉଚିତ । ମୁଖଶୁଦ୍ଧି ପାଇଁ ଅଳେଇଚରସଯୁକ୍ତ କଟା ଗୁଆ ଓ ଖଇର ଦେଇ ସ୍ୱର୍ଣ୍ଣିମ ବର୍ଣ୍ଣର ବିଡ଼ିଆ ପାନ, ଶିଳାଜିତ୍ ଚୂର୍ଣ୍ଣ, ବିଶୁଦ୍ଧ ଚୂନ, କର୍ପୂର, କଙ୍କୋଳ, ସୁନ୍ଦର ତଥା ନୂଆ ଜାଇଫଳ ଇତ୍ୟାଦି ଅର୍ପଣ କରିବେ । ଆଲେପନ ପାଇଁ ଚନ୍ଦନର ମୂଳକାଠ ଅଥବା ତାହାର ଚୂର୍ଣ୍ଣ, କସ୍ତୁରୀ, କୁଙ୍କୁମ, ମୃଗମଦାମୃକ ରସ ଆବଶ୍ୟକ । ଅର୍ପଣ ପାଇଁ ରଖିଥିବା ଫୁଲ ବି ସୁଗନ୍ଧିତ, ପବିତ୍ର ଓ ସୁନ୍ଦର ହୋଇଥିବା ଆବଶ୍ୟକ । ସୁଗନ୍ଧରହିତ, ଉତ୍କଟଗନ୍ଧଯୁକ୍ତ, ଦୂଷିତ, ବାସି ଓ ଆପେ ଆପେ ତଳେ ଖସିପଡ଼ିଥିବା ଫୁଲ ଶିବପୂଜାରେ ପ୍ରୟୋଗ କରିବା ଅନୁଚିତ । କୋମଳ ବସ୍ତ୍ର ହିଁ ଅର୍ପଣ କରିବା ଉଚିତ । ବିଶେଷତଃ ବିଦ୍ୟୁତ୍‌ପ୍ରଭା ପରି ଉଜ୍ଜ୍ୱଳ ସୁବର୍ଣ୍ଣ ଭୂଷଣ ହିଁ ଅର୍ପଣ କରିବା ଉଚିତ । ଏ ସମସ୍ତ ଦ୍ରବ୍ୟ କର୍ପୂର, ଗୁଗ୍‌ଗୁଳ, ଅଗୁରୁ, ଚନ୍ଦନ ଓ ପୁଷ୍ପସମୂହରେ ସୁଗନ୍ଧିତ ହୋଇଥିବା ଉଚିତ । ଚନ୍ଦନ, ଅଗୁରୁ, କର୍ପୂର, ସୁଗନ୍ଧିତ କାଠ ଓ ଗୁଗ୍‌ଗୁଳଚୂର୍ଣ୍ଣ, ଘିଅ ଓ ମହୁରେ ନିର୍ମିତ ଧୂପ ଉତ୍ତମ ଧରାଯାଏ ।

କପିଳା ଗାଈର ସୁଗନ୍ଧିତ ଘିଅରେ କର୍ପୂର ମିଶାଇ ଜଳାଯାଉଥିବା ଦୀପ ଶ୍ରେଷ୍ଠ ଧରାଯାଏ । ପଞ୍ଚଗବ୍ୟ, କପିଳା ଗାଈର ମିଠା କ୍ଷୀର, ଦହି ଓ ଘିଅ ଏସବୁ ଶିବଙ୍କର ସ୍ନାନ ଓ ପାନ ପାଇଁ ଅଭୀଷ୍ଟ । ସୁବର୍ଣ୍ଣ ଓ ରତ୍ନଜଟିତ ହାତୀଦାନ୍ତରେ ନିର୍ମିତ ଭଦ୍ରାସନ ଶିବଙ୍କ ପାଇଁ ଉତ୍ତମ ଧରାଯାଏ । ଆସନ ଉପରେ ବିଛାଇବା ପାଇଁ ସୁନ୍ଦର ଚଦର, କୋମଳ ଗଦି ଓ ତକିଆ ହେବା ଆବଶ୍ୟକ । ଏହାଛଡ଼ା ଆହୁରି ଅନେକ ଛୋଟ-ବଡ଼ ସୁଖଦ ଶଯ୍ୟା ହେବା ଆବଶ୍ୟକ । ସମୁଦ୍ରଗାମିନୀ ନଦୀ ଓ ନଦରୁ ଅଣା ହୋଇଥିବା ଓ ବସ୍ତ୍ରରେ ଛଣା ହୋଇଥିବା ଶୀତଳ ଜଳ ଶିବଙ୍କର ସ୍ନାନ ଓ ପାନ ପାଇଁ ଶ୍ରେଷ୍ଠ ଅଟେ । ଯେଉଁ ଛତ୍ର ଚନ୍ଦ୍ର ପରି ଉଜ୍ଜ୍ୱଳ ହୋଇଥିବ, ମୋତିର ଝାଲର ଲାଗିଥିବ, ନବରତ୍ନଜଟିତ, ଦିବ୍ୟ ଓ ସୁବର୍ଣ୍ଣଦଣ୍ଡରେ ସୁଶୋଭିତ ହେଉଥିବ, ତାହା ହିଁ ଶିବଙ୍କ ସେବାରେ ଅର୍ପଣ କରିବା ଯୋଗ୍ୟ । ସୁବର୍ଣ୍ଣଭୂଷିତ ଦୁଇଟି ଶ୍ୱେତ ଚାମର, ଯାହା ରାଜହଂସ ଆକାରର ହୋଇଥିବ ଓ ଯେଉଁଥିରେ ରତ୍ନମୟଦଣ୍ଡ ଲାଗିଥିବ, ତାହା ହିଁ ଶିବଙ୍କ ସେବାରେ ଅର୍ପଣ କରିବାଯୋଗ୍ୟ । ଦର୍ପଣ ଅତି ସୁନ୍ଦର, ସ୍ନିଗ୍ଧ, ଦିବ୍ୟଗନ୍ଧରେ ଅନୁଲିପ୍ତ, ଚାରିପଟରୁ ରତ୍ନଦ୍ୱାରା ଆଚ୍ଛାଦିତ ଓ ସୁନ୍ଦର ହାରରେ ବିଭୂଷିତ ହୋଇଥିବା ଆବଶ୍ୟକ । ତାଙ୍କ ପୂଜାରେ ହଂସ, କୁନ୍ଦ ଓ ଚନ୍ଦ୍ର ପରି ଉଜ୍ଜ୍ୱଳ ତଥା ଗମ୍ଭୀର ଧ୍ୱନି ଉତ୍ପନ୍ନ କରୁଥିବା ଶଙ୍ଖର ଉପଯୋଗ କରିବା ଉଚିତ, ଯାହାର ମୁଖ ଓ ପୃଷ୍ଠଭାଗ ରତ୍ନ ତଥା ସୁବର୍ଣ୍ଣରେ ଜଟିତ ହୋଇଥିବ । ଶଙ୍ଖ ଛଡ଼ା ନାନା ପ୍ରକାର ଧ୍ୱନି ଉତ୍ପନ୍ନ କରୁଥିବା ସୁନ୍ଦର କାହାଳୀ ବି ସୁବର୍ଣ୍ଣନିର୍ମିତ ଓ ମୋତିରେ ଅଳଂକୃତ ହୋଇଥିବା ଆବଶ୍ୟକ । ଏତଦ୍ ବ୍ୟତୀତ ଭେରୀ, ମୃଦଙ୍ଗ, ମୁରଜ, ଡିମିଣ୍ଡି ଓ ପଟହ ଇତ୍ୟାଦି ବାଦ୍ୟ ମଧ୍ୟ ସମୁଦ୍ରଗର୍ଜନ ପରି ଧ୍ୱନି ଉତ୍ପନ୍ନ କରୁଥିବା ଉଚିତ । ପୂଜାର ସମସ୍ତ ପାତ୍ର ଓ ଭାଣ୍ଡ ମଧ୍ୟ ସୁବର୍ଣ୍ଣର ହେବା ଉଚିତ । ପରମାତ୍ମା ଶିବଙ୍କର ମନ୍ଦିର ରାଜମହଲ ପରି ଏବଂ ଶିଳ୍ପଶାସ୍ତ୍ରରେ

କଥିତ ଲକ୍ଷଣ ଅନୁସାରେ ନିର୍ମିତ ହୋଇଥିବା ଉଚିତ । ତାହାର ଗ୍ଭରିପଟରେ ଉଚ୍ଚ ପାଚେରୀ ଥିବ, ତାହାର ଗୋପୁର ପର୍ବତ ପରି ଉଚ୍ଚ ହୋଇଥିବ, ତାହା ଅନେକ ପ୍ରକାର ରତ୍ନରେ ମଣ୍ଡିତ ହୋଇଥିବ ଏବଂ ତାହାର ଫାଟକ ସୁନାରେ ତିଆରି ହୋଇଥିବ । ମନ୍ଦିରର ମଣ୍ଡପରେ ତପ୍ତ ସୁବର୍ଣ୍ଣ ପରି ଉଜ୍ଜ୍ୱଳ ଦିଶୁଥିବା ସୁନା ଓ ରତ୍ନର ଶହ ଶହ ସ୍ତମ୍ଭ ଥିବ, ଗ୍ଭନ୍ଦୁଆରେ ମୋତିର ଝାଲର ଝୁଲୁଥିବ, ଫାଟକ ପ୍ରବାଳରେ ମଣ୍ଡିତ ହୋଇଥିବ, ମନ୍ଦିରର ଶିଖର ସୁନାରେ ନିର୍ମିତ ଦିବ୍ୟ କଳଶ ଆକାର ମୁକୁଟରେ ଅଳଂକୃତ ହେବା ସହ ତ୍ରିଶୂଳରେ ଚିହ୍ନିତ ହେଉଥିବ ।

ବିଶୁଦ୍ଧ ଓ ନ୍ୟାଯ୍ୟ ଧନରେ ଭକ୍ତିପୂର୍ବକ ମହାଦେବଙ୍କ ପୂଜା କରିବା ଉଚିତ । ଯଦି କେହି ଅନ୍ୟାୟରେ ଉପାର୍ଜିତ ଧନରେ ବି ଶିବଙ୍କୁ ପୂଜା କରେ, ତଥାପି ତାହାକୁ କୌଣସି ପାପ ଲାଗେ ନାହିଁ; କାରଣ ଭଗବାନ ଭାବର ବଶୀଭୂତ ଅଟନ୍ତି । କିନ୍ତୁ ଧନ ନ୍ୟାୟୋପାର୍ଜିତ ହୋଇଥିଲେ ସୁଦ୍ଧା ଯଦି କେହି ବିନା ଭକ୍ତିରେ ପୂଜା କରେ, ତାହାକୁ ତାହାର ଫଳ ମିଳେ ନାହିଁ; କାରଣ ପୂଜାର ସଫଳତାରେ ଭକ୍ତି ହିଁ କାରଣ । ଭକ୍ତିରେ ନିଜ ବୈଭବ ଅନୁସାରେ ଭଗବାନ ଶିବଙ୍କ ଉଦ୍ଦେଶ୍ୟରେ ଯାହା କିଛି କରାଯାଏ, ତାହା ଅଳ୍ପ ହେଉ ବା ବେଶୀ ହେଉ ଏବଂ କର୍ତ୍ତା ଧନୀ ହେଉ ବା ଗରିବ ହେଉ, ଉଭୟର ଫଳ ସମାନ ହୋଇଥାଏ । ଯାହା ପାଖରେ ଅଳ୍ପ ଧନ ଅଛି, ସେ ମଧ୍ୟ ଭକ୍ତିଭାବରେ ପ୍ରେରିତ ହୋଇ ଶିବଙ୍କୁ ପୂଜା କରି ପାରିବ; କିନ୍ତୁ ବ୍ୟକ୍ତି ମହା ବୈଭବଶାଳୀ ହୋଇ ସୁଦ୍ଧା ଯଦି ଭକ୍ତିହୀନ ହୋଇଥିବ, ତେବେ ତା'ପକ୍ଷେ ଶିବପୂଜନ କରିବା ଅନୁଚିତ । ଶିବଙ୍କ ପ୍ରତି ଭକ୍ତି ନ ଥିବା ବ୍ୟକ୍ତି ଯଦି ତା'ର ସର୍ବସ୍ୱ ଦେଇଦିଏ, ତଥାପି ସେ ତଦ୍ଦ୍ୱାରା ଶିବାରାଧନାର ଫଳ ପାଏ ନାହିଁ; କାରଣ ଆରାଧନାରେ ଭକ୍ତି ହିଁ କାରଣ ।* ଭକ୍ତିକୁ ଛାଡ଼ିଦେଲେ ଅନ୍ୟ କୌଣସି ଉଗ୍ର ତପସ୍ୟା କିଂବା ସମସ୍ତ ମହାଯଜ୍ଞ କରି ମଧ୍ୟ କେହି ଶିବଧାମକୁ ଯାଇ ପାରିବ ନାହିଁ । ତେଣୁ ହେ ଶ୍ରୀକୃଷ୍ଣ ! ସର୍ବତ୍ର ପରମେଶ୍ୱର ଶିବଙ୍କ ଆରାଧନାରେ ଭକ୍ତିର ହିଁ ମହତ୍ତ୍ୱ ରହିଛି । ଏହା ଗୁହ୍ୟରୁ ବି ଗୁହ୍ୟତର କଥା । ଏଥିରେ ସନ୍ଦେହ ନାହିଁ ।

ପାପର ମହାସାଗରକୁ ପାରି ହେବା ପାଇଁ ଭଗବାନ ଶିବଙ୍କ ଭକ୍ତି ନୌକା ତୁଲ୍ୟ ଅଟେ । ତେଣୁ ଯେ ଭକ୍ତିଯୁକ୍ତ ଅଟେ, ତା'ର ରଜୋଗୁଣ ଓ ତମୋଗୁଣରେ ବା କି ହାନି ହୋଇପାରିବ? ଶ୍ରୀକୃଷ୍ଣ ! ଅନ୍ତ୍ୟଜ, ଅଧମ, ମୂର୍ଖ ଅଥବା ପତିତ ଯଦି ଶିବଙ୍କ ଶରଣକୁ ଗ୍ଭଲିଯାଏ, ତେବେ ସେ ସମସ୍ତ ଦେବତା ଓ ଅସୁରଙ୍କ ପାଇଁ ମଧ୍ୟ ପୂଜନୀୟ ହୋଇଯାଏ । ତେଣୁ ସର୍ବ ପ୍ରକାର ପ୍ରଯତ୍ନ କରି ଭକ୍ତିଭାବରେ ହିଁ ଶିବଙ୍କୁ ପୂଜା କରିବା ବିଧେୟ; କାରଣ ଅଭକ୍ତଙ୍କୁ କେଉଁଠି ବି ଫଳ ମିଳେ ନାହିଁ ।

(ଅଧ୍ୟାୟ ୨୫)



* ଭକ୍ତ୍ୟା ପ୍ରଣୋଦିତଃ କୁର୍ଯ୍ୟାଦଳ୍ପବିତ୍ତୋଽପି ମାନବଃ । ମହାବିଭବସାରୋଽପି ନ କୁର୍ଯ୍ୟାଦ୍ ଭକ୍ତିବର୍ଜିତଃ ॥
ସର୍ବସ୍ୱମପି ଯୋ ଦଦ୍ୟାଚ୍ଛିବେ ଭକ୍ତିବିବର୍ଜିତଃ । ନ ତେନ ଫଳଭାକ୍ ସ ସ୍ୟାଦ୍ ଭକ୍ତିରେବାତ୍ର କାରଣମ୍ ॥
(ଶି. ପୁ., ବା. ସଂ., ଉ. ଖ. ୨୫ । ୫୧-୫୨)

# ପଞ୍ଚାକ୍ଷର ମନ୍ତ୍ର ଜପ ଓ ଶିବଙ୍କ ଭଜନ-ପୂଜନର ମହିମା, ଅଗ୍ନିକାର୍ଯ୍ୟ ପାଇଁ କୁଣ୍ଡ ଓ ବେଦି ଇତ୍ୟାଦିର ସଂସ୍କାର, ଶିବାଗ୍ନି ସ୍ଥାପନା ଓ ତାହାର ସଂସ୍କାର, ହୋମ, ପୂର୍ଣ୍ଣାହୁତି, ଭସ୍ମସଂଗ୍ରହ ଓ ରକ୍ଷଣ ବିଧି ଏବଂ ହବନ ସମାପ୍ତି କୃତ୍ୟ

ଉପମନ୍ୟୁ କହୁଛନ୍ତି– ଯଦୁନନ୍ଦନ ! କେହି ବହୁତ ବଡ଼ ପାପ କରି ମଧ୍ୟ ଯଦି ଭକ୍ତିଭାବରେ ପଞ୍ଚାକ୍ଷର ମନ୍ତ୍ରଦ୍ୱାରା ଦେବେଶ୍ୱର ଶିବଙ୍କୁ ପୂଜା କରେ, ସେ ସେହି ପାପରୁ ମୁକ୍ତ ହୋଇଯାଏ । ଯେ ପଞ୍ଚାକ୍ଷର ମନ୍ତ୍ରଦ୍ୱାରା ଥରେ ବି ଶିବପୂଜନ କରେ, ସେ ମଧ୍ୟ ଶିବମନ୍ତ୍ରର ମହତ୍ତ୍ୱ ହେତୁ ଶିବଧାମକୁ ଯାଇଥାଏ । ଯେଉଁ ମୂଢ଼ ବ୍ୟକ୍ତି ଦୁର୍ଲଭ ମାନବଜନ୍ମ ପାଇ ସୁଦ୍ଧା ଭଗବାନ ଶିବଙ୍କର ଅର୍ଚ୍ଚନା କରେ ନାହିଁ, ତାହାର ଜନ୍ମ ନିଷ୍ଫଳ; କାରଣ ସେ ମୋକ୍ଷର ସାଧକ ନୁହେଁ । ଯେଉଁମାନେ ମାନବଜନ୍ମ ପାଇ ପିନାକପାଣି ମହାଦେବଙ୍କୁ ଆରାଧନା କରନ୍ତି, ସେଇମାନଙ୍କ ଜନ୍ମ ସଫଳ ଏବଂ ସେଇମାନେ ହିଁ କୃତାର୍ଥ ଓ ଶ୍ରେଷ୍ଠ ମନୁଷ୍ୟ । ଯେଉଁମାନେ ଶିବଙ୍କ ଭକ୍ତିରେ ତତ୍ପର ରହନ୍ତି, ଯେଉଁମାନଙ୍କ ଚିତ୍ତ ଶିବଙ୍କ ସମ୍ମୁଖରେ ପ୍ରଣତ ରହେ ଏବଂ ଯେଉଁମାନେ ସଦା ଶିବଙ୍କ ଚିନ୍ତନରେ ନିମଗ୍ନ ରହନ୍ତି, ସେମାନେ କଦାପି ଦୁଃଖଭାଗୀ ହୁଅନ୍ତି ନାହିଁ ।* ମନୋହର ଭବନ, ହାବଭାବ ଓ ବିଳାସରେ ବିଭୂଷିତ ତରୁଣୀ ନାରୀ ଏବଂ ପୂର୍ଣ୍ଣତୃପ୍ତି ହେଲା ପରି ଧନ—ଏସବୁ ଭଗବାନ ଶିବଙ୍କ ଆରାଧନାର ଫଳ । ଯେଉଁମାନେ ଦେବଲୋକର ମହାନ୍ ଭୋଗ ଓ ରାଜ୍ୟ ଚ୍ହାହାନ୍ତି, ସେମାନେ ସଦା ଶିବଙ୍କ ଚରଣାରବିନ୍ଦକୁ ଚିନ୍ତନ କରନ୍ତି । ସୌଭାଗ୍ୟ, କାନ୍ତି, ବଳ, ତ୍ୟାଗ, ଦୟାଭାବ, ବୀରତ୍ୱ ଓ ବିଶ୍ୱରେ ଖ୍ୟାତି—ଏସବୁ ଶିବଙ୍କୁ ପୂଜା କରୁଥିବା ଲୋକଙ୍କୁ ହିଁ ସୁଲଭ ହୁଏ । ତେଣୁ ନିଜର କଲ୍ୟାଣ ଚାହୁଁଥିବା ଲୋକେ ସବୁ କିଛି ଛାଡ଼ି କେବଳ ଭଗବାନ ଶିବଙ୍କ ଠାରେ ମନ ଲଗାଇ ତାଙ୍କରି ଆରାଧନା କରିବା ଉଚିତ । ଜୀବନ ବା ଆୟୁ ଦ୍ରୁତ ଗତିରେ ସରି ସରି ଆସୁଛି, ଯୌବନ ବି ଶୀଘ୍ର ଶୀଘ୍ର ବିତି ଚାଲିଛି, ରୋଗ ତୀବ୍ର ଗତିରେ ମାଡ଼ି ଆସୁଛି, ତେଣୁ ସମସ୍ତେ ପିନାକପାଣିଙ୍କୁ ପୂଜା କରିବା ଉଚିତ । ଯେପର୍ଯ୍ୟନ୍ତ ମୃତ୍ୟୁ ଆସି ନାହିଁ, ବୃଦ୍ଧାବସ୍ଥା ଆକ୍ରମଣ କରି ନାହିଁ, ଇନ୍ଦ୍ରିୟଙ୍କର ଶକ୍ତି କ୍ଷୀଣ ହୋଇ ନାହିଁ, ତାହାରି ଭିତରେ ଭଗବାନ ଶଙ୍କରଙ୍କୁ ଆରାଧନା କରି ଜୀବନକୁ ସାର୍ଥକ କରିବା ଉଚିତ । ଶିବଙ୍କ ଆରାଧନା ପରି ଆଉ କୌଣସି ଧର୍ମ ଏ ଦୁନିଆରେ ନାହିଁ ।ˣ

* ଦୁର୍ଲଭଂ ପ୍ରାପ୍ୟ ମାନୁଷ୍ୟଂ ଯେଽର୍ଚୟନ୍ତି ପିନାକିନମ୍ ॥
ତେଷାଂ ହି ସଫଳଂ ଜନ୍ମ କୃତାର୍ଥାସ୍ତେ ନରୋତ୍ତମାଃ । ଭବଭକ୍ତିପରା ଯେ ଚ ଭବପ୍ରଣତଚେତସଃ ॥
ଭବସଂସ୍ମରଣୋଦ୍ୟୁକ୍ତା ନ ତେ ଦୁଃଖସ୍ୟ ଭାଗିନଃ ॥
(ଶି. ପୁ., ବା. ସଂ., ଉ. ଖ. ୨୬ । ୧୫–୧୭)

ˣ ତ୍ୱରିତଂ ଜୀବିତଂ ଯାତି ତ୍ୱରିତଂ ଯାତି ଯୌବନମ୍ ॥
ତ୍ୱରିତଂ ବ୍ୟାଧିରଭ୍ୟେତି ତସ୍ମାତ୍ପୂଜ୍ୟଃ ପିନାକଧୃକ୍ । ଯାବନ୍ନାୟାତି ମରଣଂ ଯାବନ୍ନାକ୍ରମତେ ଜରା ॥
ଯାବନ୍ନେନ୍ଦ୍ରିୟବୈକଲ୍ୟଂ ତାବତ୍ ପୂଜୟ ଶଙ୍କରମ୍ । ନ ଶିବାର୍ଚ୍ଚନତୁଲ୍ୟୋଽସ୍ତି ଧର୍ମୋଽନ୍ୟୋ ଭୁବନତ୍ରୟେ ॥
(ଶି. ପୁ., ବା. ସଂ., ଉ. ଖ. ୨୬ । ୨୧–୨୩)

ଏବେ ମୁଁ ଅଗ୍ନିକାର୍ଯ୍ୟ ବିଷୟରେ ବର୍ଣ୍ଣନା କରିବି । କୁଣ୍ଡରେ, ସ୍ଥଣ୍ଡିଳରେ, ବେଦିରେ, ଲୌହ ହବନପାତ୍ରରେ ବା ନୂତନ ମାଟିପାତ୍ରରେ ବିଧିପୂର୍ବକ ଅଗ୍ନିସ୍ଥାପନା କରି ତାହାକୁ ସଂସ୍କାର କରିବେ । ତା'ପରେ ସେଠାରେ ମହାଦେବଙ୍କୁ ଆରାଧନା କରି ହୋମକର୍ମ ଆରମ୍ଭ କରିବେ । କୁଣ୍ଡର ଲମ୍ବ ଓ ଓସାର ଦୁଇହାତ ବା ଏକହାତ ହେବା ଉଚିତ । ବେଦି ଗୋଲ ବା ଚାରିକୋଣିଆ ହେବା ଆବଶ୍ୟକ । ତତ୍‌ସହିତ ମଣ୍ଡଳ ବି ତିଆରି କରିବା ଆବଶ୍ୟକ । କୁଣ୍ଡଟି ବିସ୍ତୃତ ଓ ଗହିରିଆ ହେବା ଦରକାର । ତାହାର ମଧ୍ୟଭାଗରେ ଅଷ୍ଟଦଳ ପଦ୍ମ ଆଙ୍କିବେ । ତାହା ଦୁଇ-ଚାରି ଆଙ୍ଗୁଳି ଉଚ୍ଚ ହୋଇଥିବ । କୁଣ୍ଡ ଭିତରେ ଦୁଇ ଚାରିଖଣ୍ଡ ଉଚ୍ଚରେ ନାଭିର ସ୍ଥିତି ବୋଲି କଥିତ ଅଛି । ମଧ୍ୟମା ଅଙ୍ଗୁଳିର ମଧ୍ୟମ ଓ ଉତ୍ତମ ପର୍ବ ଆକାରର ମଧ୍ୟଭାଗ ବା କଟିଭାଗ ବୋଲି ଜାଣିବା ଉଚିତ । ସାଧୁଲୋକେ ଏକହାତର ପରିମାଣ ଚବିଶ ଅଙ୍ଗୁଳି ବୋଲି କହିଥାନ୍ତି । କୁଣ୍ଡର ତିନିଟି, ଦୁଇଟି ବା ଗୋଟିଏ ମେଖଳା ହେବା ଆବଶ୍ୟକ । ମେଖଳା ଏପରି ତିଆରି କରିବେ, ଯେପରି କୁଣ୍ଡର ଶୋଭା ବଢ଼ିବ । ସେଥିରେ ସୁନ୍ଦର ଓ ଚିକ୍କଣ ଯୋନି ତିଆରି କରିବେ, ଯାହା ଅଶ୍ୱତ୍ଥ ପତ୍ର ଆକୃତିର ଅଥବା ହାତୀର ଅଧରୋଷ୍ଠ ପରି ହୋଇଥିବ । କୁଣ୍ଡର ଦକ୍ଷିଣ ବା ପଶ୍ଚିମଭାଗରେ ମେଖଳାର ମଝିରେ ଯେଉଁ ସୁନ୍ଦର ଯୋନି ନିର୍ମାଣ କରିବେ, ତାହା ମେଖଳାଠାରୁ ଟିକିଏ ତଳକୁ ହେବ । ତାହାର ଅଗ୍ରଭାଗ କୁଣ୍ଡ ଆଡ଼କୁ ରହିବ ଏବଂ ତାହା ମେଖଳାକୁ ଟିକିଏ ଛାଡ଼ିକରି ରହିବ । ବେଦିର ଉଚ୍ଚତା ପାଇଁ କିଛି ନିର୍ଦ୍ଦିଷ୍ଟ ନିୟମ ନାହିଁ । ତାହା ମାଟି ବା ବାଲିରେ ହେବା ଆବଶ୍ୟକ । ଗାଈ ଗୋବରରେ ବା ଜଳରେ ମଣ୍ଡଳ ତିଆରି କରିବା ଆବଶ୍ୟକ । ପାତ୍ରର ପରିମାଣ ବିଷୟରେ କିଛି କୁହାଯାଇ ନାହିଁ । କୁଣ୍ଡ ଓ ମାଟିର ବେଦିକୁ ଗୋବରପାଣିରେ ଲିପିଦେବେ । ପାତ୍ରକୁ ଧୋଇସାରି ଗରମ କରିଦେବେ ଓ ଅନ୍ୟ ବସ୍ତୁଗୁଡ଼ିକୁ ଜଳରେ ପ୍ରୋକ୍ଷଣ କରିବେ । ନିଜ ନିଜ ଗୃହ୍ୟସୂତ୍ରରେ ନିର୍ଦ୍ଦେଶିତ ବିଧି ଅନୁସାରେ କୁଣ୍ଡରେ ଓ ବେଦିରେ ଉଲ୍ଲେଖନ (ରେଖା) କରିବେ । ରେଖା ଉପରୁ ମାଟି କାଢ଼ି ନେଇ ଐଶାନ୍ୟକୋଣରେ ପକାଇଦେବେ । ତା'ପରେ ଅଗ୍ନିଙ୍କର ସେହି ଆସନକୁ କୁଶରେ ବା ଫୁଲରେ ପାଣି ଛିଞ୍ଚି ପ୍ରୋକ୍ଷଣ କରିବେ । ତା'ପରେ ପୂଜା ଓ ହୋମ ପାଇଁ ସବୁ ପ୍ରକାର ଦ୍ରବ୍ୟ ସଂଗ୍ରହ କରିବେ । ଧୋଇବାଯୋଗ୍ୟ ବସ୍ତୁକୁ ଧୋଇ, ପ୍ରୋକ୍ଷଣୀର ଜଳରେ ତାହାକୁ ପ୍ରୋକ୍ଷଣ କରି ଶୁଦ୍ଧ କରିବେ । ତା'ପରେ ସୂର୍ଯ୍ୟକାନ୍ତମଣିରୁ ପ୍ରକଟ, କାଷ୍ଠରୁ ଉତ୍ପନ୍ନ, ଶ୍ରୋତ୍ରିୟଙ୍କ ଅଗ୍ନିଶାଳାରେ ସଂଚିତ ଅଥବା ଅନ୍ୟ କୌଣସି ଉତ୍ତମ ଅଗ୍ନିକୁ ଆଧାର ସହିତ ଆଣି ତାହାକୁ କୁଣ୍ଡ ବା ବେଦି ଉପରେ ତିନି ଥର ପ୍ରଦକ୍ଷିଣକ୍ରମରେ ବୁଲାଇ ଅଗ୍ନିବୀଜ 'ରଂ' ଉଚ୍ଚାରଣ କରିବା ସହ କୁଣ୍ଡ ବା ବେଦିର ଆସନରେ ସ୍ଥାପିତ କରିବେ । କୁଣ୍ଡରେ ସ୍ଥାପିତ କଲାବେଳେ ଯୋନିମାର୍ଗରେ ଅଗ୍ନିକୁ ଆଧାନ କରିବେ ଏବଂ ବେଦିରେ ନିଜ ସମ୍ମୁଖ ଦିଗରେ ଅଗ୍ନିସ୍ଥାପନା କରିବେ । ଯୋନିପ୍ରଦେଶ ପାଖରେ ସ୍ଥିତ ବିଦ୍ୱାନ୍ ସମସ୍ତ କୁଣ୍ଡରେ ଅଗ୍ନିସଂଯୋଗ କରିବେ । ସେ ଏହି ଭାବନା କରିବେ ଯେ ନିଜ ନାଭି ଭିତରେ ଯେଉଁ ଅଗ୍ନିଦେବ ବିଦ୍ୟମାନ, ସେ ହିଁ ନାଭିରନ୍ଧ୍ରରୁ ସ୍ଫୁଲିଙ୍ଗ ଆକାରରେ ବାହାରି ବାହ୍ୟ ଅଗ୍ନିରେ ମଣ୍ଡଳାକାର ହୋଇ ଲୀନ ହୋଇଛନ୍ତି । ଅଗ୍ନି ଉପରେ ସମିଧ ରଖିବା ଠାରୁ ଆରମ୍ଭ କରି ଘୃତସଂସ୍କାର ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ମନ୍ତ୍ରଜ୍ଞ ବ୍ୟକ୍ତି ଆପଣା ଗୃହ୍ୟସୂତ୍ରରେ ନିର୍ଦ୍ଦେଶିତ କ୍ରମରେ ମୂଳମନ୍ତ୍ର ଉଚ୍ଚାରଣପୂର୍ବକ କରିବେ ।

ତା'ପରେ ଶିବମୂର୍ତ୍ତିକୁ ପୂଜା କରି ଦକ୍ଷିଣପାର୍ଶ୍ୱରେ ମନ୍ତ୍ରନ୍ୟାସ କରିବେ ଏବଂ ଘୃତରେ ଧେନୁମୁଦ୍ରା ପ୍ରଦର୍ଶନ କରିବେ। ଧାତୁନିର୍ମିତ ସ୍ରୁବ ଓ ସ୍ରୁଚ ଗ୍ରହଣୀୟ, କିନ୍ତୁ କଂସା, ଲୁହା ଓ କାଚର ଗ୍ରହଣୀୟ ନୁହେଁ। ଯଜ୍ଞୀୟ କାଷ୍ଠର ସ୍ରୁବ ଓ ସ୍ରୁଚ ମଧ୍ୟ ଗ୍ରହଣୀୟ। ସ୍ମୃତି ବା ଶିବଶାସ୍ତ୍ରରେ ଯାହା ବିହିତ, ତାହା ମଧ୍ୟ ଗ୍ରାହ୍ୟ। ଏହା ନ ମିଳିଲେ ବ୍ରହ୍ମବୃକ୍ଷ (ପଳାଶ ବା ଉଡୁମ୍ବର) ଇତ୍ୟାଦିର ମଝିଭାଗ ଉଚ୍ଚ ହୋଇଥିବା ଦୁଇଟି ନିଶ୍ଛିଦ୍ର ପତ୍ର ନେଇ ତାହାକୁ କୁଶରେ ପୋଛି ଓ ଅଗ୍ନିରେ ଗରମ କରି ପ୍ରୋକ୍ଷଣ କରିବେ ଏବଂ ସେହି ପତ୍ରକୁ ସ୍ରୁବ ଓ ସ୍ରୁଚର ରୂପ ଦେବେ। ସେଇଥିରେ ଘିଅ ଉଠାଇ ନିଜ ଗୃହ୍ୟସୂତ୍ରରେ ନିର୍ଦ୍ଦେଶିତ କ୍ରମ ଅନୁସାରେ ଶିବବୀଜ (ଓଁ) ସହିତ ଆଠଟି ବୀଜାକ୍ଷର ଦ୍ୱାରା ଅଗ୍ନିରେ ଆହୁତି ଦେବେ। ଏହାଦ୍ୱାରା ଅଗ୍ନିସଂସ୍କାର ସମ୍ପନ୍ନ ହୋଇଥାଏ। ସେହି ବୀଜ ହେଲା—ଭ୍ରୁଂ ସ୍ତୁଂ ବ୍ରୁଂ ଶ୍ରୁଂ ପୁଂ ଡ୍ରୁଂ ଦ୍ରୁଂ। ଏ ସାତଟି ସହ ଶିବବୀଜ (ଓଁ)କୁ ସମ୍ମିଳିତ କଲେ ଆଠଟି ବୀଜାକ୍ଷର ହୁଏ। ଉପର୍ଯ୍ୟୁକ୍ତ ସାତଟି ବୀଜ କ୍ରମାନ୍ୱୟରେ ଅଗ୍ନିଙ୍କର ସପ୍ତଜିହ୍ୱାର ବୀଜ ଅଟେ। ତାଙ୍କର ମଧ୍ୟମ ଜିହ୍ୱାର ନାମ ବହୁରୂପା। ତାହାର ତିନୋଟି ଶିଖା ଅଛି। ସେଥିମଧ୍ୟରୁ ଗୋଟିଏ ଦକ୍ଷିଣକୁ, ଗୋଟିଏ ବାମ (ଉତ୍ତର) ଦିଗକୁ ଓ ମଧ୍ୟମ ଶିଖାଟି ମଝିରେ ହିଁ ପ୍ରକାଶିତ ହୁଏ। ଐଶାନ୍ୟକୋଣର ଜିହ୍ୱାର ନାମ ହିରଣ୍ୟା ଓ ପୂର୍ବଦିଗସ୍ଥ ଜିହ୍ୱାର ନାମ କନକା। ଆଗ୍ନେୟକୋଣରେ ରକ୍ତା, ନୈର୍ଋତ୍ୟ-କୋଣରେ କୃଷ୍ଣା ଓ ବାୟବ୍ୟକୋଣରେ ସୁପ୍ରଭା ନାମକ ଜିହ୍ୱା ପ୍ରକାଶିତ ହୋଇଥାଏ। ପଶ୍ଚିମ ଦିଗରେ ଯେଉଁ ଜିହ୍ୱା ପ୍ରଜ୍ୱଳିତ ହୋଇଥାଏ ତାହାର ନାମ ମରୁତ୍। ଏ ସମସ୍ତ ଜିହ୍ୱାର ପ୍ରଭା ନିଜ ନିଜ ନାମର ଅନୁରୂପ। ସେହିସବୁ ବୀଜ ସହିତ କ୍ରମଶଃ ସେମାନଙ୍କର ନାମ ଉଚ୍ଚାରଣ କରି ଶେଷରେ ସ୍ୱାହା ପ୍ରୟୋଗ କରିବା ଉଚିତ। ଏହିରୂପେ ହେଉଥିବା ଜିହ୍ୱାମନ୍ତ୍ରକୁ* ପଢ଼ି କ୍ରମାନ୍ୱୟରେ ପ୍ରତ୍ୟେକ ଜିହ୍ୱା ପାଇଁ ଗୋଟିଏ ଗୋଟିଏ ଆହୁତି ଦେବା ଆବଶ୍ୟକ; କିନ୍ତୁ ମଧ୍ୟମାର ତ୍ରିଶିଖାଯୁକ୍ତ ଜିହ୍ୱା ପାଇଁ ତିନୋଟି ଆହୁତି ଦେବା ଆବଶ୍ୟକ। କୁଣ୍ଡର ମଧ୍ୟଭାଗରେ 'ରଂ ବହ୍ନୟେ ସ୍ୱାହା' କହି ତିନୋଟି ଆହୁତି ଦେବେ। ଏ ଆହୁତି ଘିଅ ଅଥବା ସମିଧରେ ଦେବେ। ଆହୁତି ଦେଇସାରିଲେ ଅଗ୍ନିରେ ଜଳ ସିଞ୍ଚନ କରିବେ। ଏପରି କଲେ ସେହି ଅଗ୍ନି ଶିବଙ୍କର ହୋଇଯାଏ। ଏହାପରେ ସେଥିରେ ଶିବଙ୍କ ଆସନର ଚିନ୍ତନ କରିବେ ଏବଂ ସେଠାରେ ଅର୍ଦ୍ଧନାରୀଶ୍ୱର ଶିବଙ୍କୁ ଆବାହନ କରି ପୂଜା କରିବେ। ପାଦ୍ୟ-ଅର୍ଘ୍ୟ ଠାରୁ ଆରମ୍ଭ କରି ଦୀପଦାନ ପର୍ଯ୍ୟନ୍ତ ପୂଜନ କରି ଅଗ୍ନିକୁ ଜଳରେ ପ୍ରୋକ୍ଷଣ କରିବେ। ତା'ପରେ ସମିଧର ଆହୁତି ଦେବେ। ସମିଧ ପଳାଶ ବା ଯଜ୍ଞୋଡୁମ୍ବର ଇତ୍ୟାଦି ଯଜ୍ଞୀୟ ବୃକ୍ଷର ହେବା ଉଚିତ ଏବଂ ଲମ୍ବାରେ ତାହା ବାରଅଙ୍ଗୁଳି ହୋଇଥିବା ଉଚିତ। ସମିଧ ବଙ୍କା ହୋଇ ନ ଥିବ ଏବଂ ତାହା ଆପେ ଆପେ ଶୁଖି ନ ଥିବ, ତାହାର ଚ୍ଛେପା ଛାଡ଼ି ନ ଥିବ କିଂବା ତାହା କ୍ଷତବିକ୍ଷତ ହୋଇ ନ ଥିବ। ସବୁ ସିମିଧ ଏକ ପ୍ରକାରର ହୋଇଥିବା ଉଚିତ। ଦଶ ଅଙ୍ଗୁଳି ଲମ୍ବ ସମିଧ ମଧ୍ୟ ହୋମ ପାଇଁ ବିହିତ। ତାହା କାଣିଆଙ୍ଗୁଳି ପରି ମୋଟା ହୋଇଥିବା ଆବଶ୍ୟକ ଅଥବା ପ୍ରାଦେଶମାତ୍ର

* ଓଁ ଭ୍ରୁଂ ତ୍ରିଶିଖାୟୈ ବହୁରୂପାୟୈ ସ୍ୱାହା (ଦକ୍ଷିଣେ ମଧ୍ୟେ ଉତ୍ତରେ ଚ -୩ଟି) । ଓଁ ସ୍ତୁଂ ହିରଣ୍ୟାୟୈ ସ୍ୱାହା (ଐଶାନ୍ୟେ-୧ଟି)। ଓଁ ବ୍ରୁଂ କନକାୟୈ ସ୍ୱାହା (ପୂର୍ବସ୍ୟାମ୍ -୧ଟି)। ଓଁ ଶ୍ରୁଂ ରକ୍ତାୟୈ ସ୍ୱାହା (ଆଗ୍ନେୟ୍ୟାମ୍ -୧ଟି)। ଓଁ ପୁଂ କୃଷ୍ଣାୟୈ ସ୍ୱାହା (ନୈର୍ଋତ୍ୟାମ୍ -୧ଟି)। ଓଁ ଡ୍ରୁଂ ସୁପ୍ରଭାୟୈ ସ୍ୱାହା (ପଶ୍ଚିମାୟାମ୍ -୧ଟି)। ଓଁ ଦ୍ରୁଂ ମରୁଜ୍ଜିହ୍ୱାୟୈ ସ୍ୱାହା (ବାୟବ୍ୟେ -୧ଟି)।

(ଅଙ୍ଗୁଷ୍ଠ ଓ ତର୍ଜନୀକୁ ପ୍ରସାରିତ କଲେ ଯେତିକି ଲମ୍ବ ହେବ, ସେତିକି) ଲମ୍ବର ସମିଧ ଉପଯୋଗ କରିବା ଉଚିତ । ଯଦି ଉପଯୁକ୍ତ ସମିଧ ନ ମିଳେ, ତେବେ ଯାହା ମିଳିବ, ସେଥିରେ ହୋମ କରିପାରିବେ । ସମିଧ ହବନ ପରେ ଘିଅ ଆହୁତି ଦେବେ । ଘିଅର ଧାରା ଚାରି ଆଙ୍ଗୁଳି ଲମ୍ବା ଓ ଦୂବ ପରି ସରୁ ହେବା ଉଚିତ । ତା'ପରେ ଅନ୍ନର ଆହୁତି ଦେବେ, ଯାହାର ପ୍ରତ୍ୟେକ ଗ୍ରାସ ଷୋହଳ ମସା ପରିମାଣର ହୋଇଥିବ । ଖଇ, ସୋରିଷ, ଯଅ ଓ ତିଳକୁ ଘିଅରେ ଗୋଳାଇ ଯଥାସମ୍ଭବ ଭକ୍ଷ୍ୟ, ଲେହ୍ୟ ଓ ଚୋଷ୍ୟ ମଧ୍ୟ ମିଶ୍ରିତ କରିବେ ଏବଂ ଏଥିରେ ଯଥାଶକ୍ତି ଦଶଟି, ପାଞ୍ଚଟି ବା ତିନିଟି ଆହୁତି ଦେବେ ଅଥବା ଗୋଟିଏ ଆହୁତି ଦେବେ । ସ୍ରୁବରେ, ସମିଧରେ, ସ୍ରୁଚରେ ଅଥବା ହାତରେ ଆହୁତି ଦେବେ । ସେଥିରେ ବି ଦିବ୍ୟ ତୀର୍ଥରେ ଅଥବା ଋଷିତୀର୍ଥରେ ଆହୁତି ଦେବାର ବିଧାନ ଅଛି । ଯଦି ଉପରୋକ୍ତ ସମସ୍ତ ଦ୍ରବ୍ୟ ନ ମିଳେ, କୌଣସି ଗୋଟିଏ ପ୍ରକାର ଦ୍ରବ୍ୟରେ ଶ୍ରଦ୍ଧାପୂର୍ବକ ଆହୁତି ଦେବା ଉଚିତ । ପ୍ରାୟଶ୍ଚିତ୍ତ ନିମନ୍ତେ ମନ୍ତ୍ରରେ ଅଭିମନ୍ତ୍ରିତ କରି ତିନୋଟି ଆହୁତି ଦେବେ । ତା'ପରେ ହୋମାବଶିଷ୍ଟ ଘୃତରେ ସ୍ରୁଚକୁ ପୂର୍ଣ୍ଣ କରି ତାହାର ଅଗ୍ରଭାଗରେ ଫୁଲ ରଖି ତାହାକୁ ଦର୍ଭ (କୁଶ) ସହିତ ଅଧୋମୁଖ ସ୍ରୁବ ଦ୍ୱାରା ଢାଙ୍କି ଦେବେ । ଏହାପରେ ଠିଆ ହୋଇ ତାହାକୁ ଅଞ୍ଜଳିରେ ଧରି 'ଓଁ ନମଃ ଶିବାୟ ବୌଷଟ୍' ଉଚ୍ଚାରଣ କରି ଯଅ ତୁଲ୍ୟ ଘୃତଧାରାରେ ଆହୁତି ଦେବେ । ଏହିରୂପେ ପୂର୍ଣ୍ଣାହୁତି କରି ଅଗ୍ନିରେ ପୂର୍ବବତ୍ ଜଳଛିଟା ମାରିବେ । ତା'ପରେ ଦେବେଶ୍ୱର ଶିବଙ୍କୁ ବିସର୍ଜନ କରି ଅଗ୍ନିରକ୍ଷା କରିବେ । ତା'ପରେ ଅଗ୍ନିକୁ ମଧ୍ୟ ବିସର୍ଜନ କରି ଭାବନାଦ୍ୱାରା ନାଭିରେ ସ୍ଥାପିତ କରି ନିତ୍ୟ ଯଜନ କରିବେ ।

ଅଥବା ଶିବଶାସ୍ତ୍ରରେ କଥିତ ପଦ୍ଧତି ଅନୁସାରେ ବାଗୀଶ୍ୱରୀଙ୍କ ଗର୍ଭରୁ ପ୍ରକଟିତ ଅଗ୍ନିଦେବଙ୍କୁ ଆଣି ବିଧିବତ୍ ସଂସ୍କାର କରି ପୂଜା କରିବେ । ତା'ପରେ ସମିଧ ଆଧାନ କରି ଚାରିପଟରେ ପରିଧି ନିର୍ମାଣ କରିବେ । ତା'ପରେ ସେଠାରେ ଦୁଇଟି ଲେଖାଏଁ ପାତ୍ର ରଖି ଶିବଙ୍କୁ ଯଜନ କରି ପ୍ରୋକ୍ଷଣୀପାତ୍ରର ଶୋଧନ କରିବେ । ସେହି ପାତ୍ରର ଜଳରେ ପୂର୍ବୋକ୍ତ ଦ୍ରବ୍ୟଗୁଡ଼ିକୁ ପ୍ରୋକ୍ଷଣ କରି ଜଳପୂର୍ଣ୍ଣ ପ୍ରଣୀତାପାତ୍ରକୁ ଐଶାନ୍ୟ-କୋଣରେ ରଖିବେ । ଘୃତସଂସ୍କାର ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ କରିସାରି ସ୍ରୁଚ ଓ ସ୍ରୁବକୁ ଶୋଧନ କରିବେ । ତା'ପରେ ପିତା ଶିବଙ୍କ ଦ୍ୱାରା ମାତା ବାଗୀଶ୍ୱରୀଙ୍କ ଗର୍ଭାଧାନ, ପୁଂସବନ ଓ ସୀମନ୍ତୋନ୍ନୟନ-ସଂସ୍କାର କରି ପ୍ରତ୍ୟେକ ସଂସ୍କାର ନିମିତ୍ତ ପୃଥକ୍ ପୃଥକ୍ ଆହୁତି ଦେବେ ଏବଂ ଗର୍ଭରୁ ଅଗ୍ନି ଉତ୍ପନ୍ନ ହେବାର ଭାବନା କରିବେ । ଅଗ୍ନିଙ୍କର ତିନୋଟି ପାଦ, ସାତଟି ହାତ, ଚାରିଟି ଶିଙ୍ଗ, ଦୁଇଟି ମସ୍ତକ ଓ ତିନୋଟି ମଧୁ ପରି ପିଙ୍ଗଳ ନେତ୍ର ଅଛି । ମସ୍ତକରେ ଜଟାଜୂଟ ଓ ମୁକୁଟ ସ୍ଥାନରେ ଚନ୍ଦ୍ର ବିଦ୍ୟମାନ । ତାଙ୍କର ଅଙ୍ଗକାନ୍ତି ଲାଲ୍ । ଲାଲ୍ ରଙ୍ଗର ବସ୍ତ୍ର, ଚନ୍ଦନ, ମାଳା ଓ ଆଭୂଷଣ ତାଙ୍କର ଶୋଭା ବୃଦ୍ଧି କରନ୍ତି । ସେ ସର୍ବଲକ୍ଷଣସମ୍ପନ୍ନ, ଉପବୀତଧାରୀ ଓ ତ୍ରିଗୁଣ ମେଖଳା-ପରିହିତ ଅଟନ୍ତି । ତାଙ୍କ ଡାହାଣ ହାତମାନଙ୍କରେ ଶକ୍ତି, ସ୍ରୁଚ ଓ ସ୍ରୁବ ଅଛି ଏବଂ ବାଆଁ ହାତମାନଙ୍କରେ ତୋମର, ତାଳପତ୍ର ପଙ୍ଖା ଓ ଘୃତପୂର୍ଣ୍ଣ ପାତ୍ର ରହିଛି । ଏହିପରି ଆକୃତିରେ ଉତ୍ପନ୍ନ ଅଗ୍ନିଦେବଙ୍କୁ ଧ୍ୟାନ କରି ତାଙ୍କର 'ଜାତକର୍ମ' ସଂସ୍କାର କରିବେ । ତା'ପରେ ନାଳଚ୍ଛେଦନ କରି ସୂତକ-ଶୁଦ୍ଧି କରିବେ । ତା'ପରେ ଆହୁତି ଦେଇ ସେହି ଶିବାଗ୍ନିଙ୍କର ନାମ ରଖିବେ 'ରୁଚି' । ତା'ପରେ ମାତା-ପିତାଙ୍କୁ

ବିସର୍ଜନ କରି ଚୂଡ଼ାକର୍ମ ଓ ଉପନୟନ ଠାରୁ ଆରମ୍ଭ କରି ଆପ୍ତୋର୍ଯାମ ପର୍ଯ୍ୟନ୍ତ ସମସ୍ତ ସଂସ୍କାର କରିବେ।* ତା'ପରେ ଘୃତଧାରା ଇତ୍ୟାଦିରେ ହୋମ କରି ସ୍ୱିଷ୍ଟକୃତ୍ ହୋମ କରିବେ। ତା'ପରେ 'ରଂ' ବୀଜ ଉଚ୍ଚାରଣ କରି ଅଗ୍ନିରେ ଜଳ ଛିଟା ମାରିବେ। ତା'ପରେ ବ୍ରହ୍ମା, ବିଷ୍ଣୁ, ଶିବ, ଈଶ, ଲୋକେଶ୍ୱରଗଣ ଓ ସେମାନଙ୍କ ଅସ୍ତ୍ରମାନଙ୍କୁ କ୍ରମାନୁସାରେ ପୂଜା କରି ଧୂପ, ଦୀପ ଇତ୍ୟାଦିର ସିଦ୍ଧି ନିମନ୍ତେ ଅଗ୍ନିକୁ ପୃଥକ୍ ବାହାର କରି କର୍ମବିଧିଜ୍ଞ ବ୍ୟକ୍ତି ପୁନଃ ଘୃତଯୁକ୍ତ ହୋମ ଦ୍ରବ୍ୟ ପ୍ରସ୍ତୁତ କରି ଅଗ୍ନିରେ ଆସନର କଳ୍ପନା (ଭାବନା) କରିବେ ଏବଂ ତା'ଉପରେ ପୂର୍ବବତ୍ ମହାଦେବ ଓ ମହାଦେବୀଙ୍କୁ ଆବାହନ, ପୂଜନ କରି ପୂର୍ଣ୍ଣାହୁତି ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ସମ୍ପନ୍ନ କରିବେ।

ଅଥବା ନିଜ ଆଶ୍ରମ ପାଇଁ ଯାହା ଶାସ୍ତ୍ରବିହିତ ଅଗ୍ନିହୋତ୍ରକର୍ମ, ତାହା କରି ତାହାକୁ ଭଗବାନ ଶିବଙ୍କୁ ସମର୍ପିତ କରିବେ। ଶିବାଶ୍ରମୀ ବ୍ୟକ୍ତି ଏ ସମସ୍ତ କଥାକୁ ଦୃଷ୍ଟିରେ ରଖି ହୋମକର୍ମ କରିବେ। ଏଥିପାଇଁ ଅନ୍ୟ କୌଣସି ବିଧି ନାହିଁ। ଶିବାଗ୍ନିର ଭସ୍ମ ସଂଗ୍ରହଣୀୟ। ଅଗ୍ନିହୋତ୍ରକର୍ମର ଭସ୍ମ ମଧ୍ୟ ସଂଗ୍ରହଣୀୟ। ବୈବାହିକ ଅଗ୍ନିର ଭସ୍ମକୁ ମଧ୍ୟ ପରିପକ୍ୱ, ପବିତ୍ର ଓ ସୁଗନ୍ଧିତ ଦେଖି ସଂଗ୍ରହ କରି ରଖିବା ଉଚିତ। କପିଳା ଗାଈର ଗୋବର ଯଦି ତଳେ ନ ପଡୁଣୁ ହାତରେ ଧରି ନିଆଯାଇଥାଏ, ତାହାକୁ ଉତ୍ତମ ଧରାଯାଏ। ସେହି ଗୋବର ଯଦି ଅଧିକ ତରଳ କି ଅଧିକ ଟାଣ ହୋଇ ନ ଥାଏ, ଦୁର୍ଗନ୍ଧଯୁକ୍ତ ହୋଇ ନ ଥାଏ ଏବଂ ଶୁଖିଯାଇ ନ ଥାଏ, ତେବେ ତାହା ଉତ୍ତମ। ଯଦି ତଳେ ପଡ଼ିଯାଇଥାଏ, ତେବେ ତାହାର ଉପର ଓ ତଳଅଂଶକୁ ବାହାର କରିଦେଇ ମଝି ଅଂଶ ଗ୍ରହଣ କରିବା ଉଚିତ। ଉକ୍ତ ଗୋବରକୁ ଗୁଳା କରି ତାହାକୁ ଶିବାଗ୍ନି ଇତ୍ୟାଦିରେ ମୂଳମନ୍ତ୍ର ଉଚ୍ଚାରଣପୂର୍ବକ ପକାଇଦେବେ। ତାହା ଜଳିଗଲେ, କାଢ଼ି ଆଣିବେ। ସେଥିରୁ ଅର୍ଦ୍ଧଦଗ୍ଧ ଓ ଅତ୍ୟଧିକ ଦଗ୍ଧ ଅଂଶକୁ ଛାଡ଼ିଦେଇ କେବଳ ଶ୍ୱେତ ଭସ୍ମ ଗ୍ରହଣ କରିବେ ଏବଂ ତାହାକୁ ଫେଣ୍ଟି ଭସ୍ମ ପ୍ରସ୍ତୁତ କରି ପାତ୍ରରେ ରଖିବେ। ଭସ୍ମପାତ୍ରଟି ଦେଖିବାକୁ ସୁନ୍ଦର ଏବଂ ଧାତୁ, କାଠ, ମାଟି, ପଥର ଇତ୍ୟାଦିର ହୋଇଥିବା ଉଚିତ। ଭସ୍ମପାତ୍ରକୁ ଧନ ରଖିବା ପରି କୌଣସି ଶୁଭ, ପବିତ୍ର ଓ ସମତଳ ସ୍ଥାନରେ ରଖିବେ। ଭସ୍ମକୁ କୌଣସି ଅଯୋଗ୍ୟ ଓ ଅପବିତ୍ର ବ୍ୟକ୍ତି ହାତରେ ଦେବେ ନାହିଁ କି ଅପବିତ୍ର ସ୍ଥାନରେ ପକାଇବେ ନାହିଁ କି ନିମ୍ନାଙ୍ଗରେ ସ୍ପର୍ଶ କରିବେ ନାହିଁ। ଭସ୍ମକୁ ଉପେକ୍ଷା କରିବେ ନାହିଁ କି ଡେଇଁବେ ନାହିଁ। ଶାସ୍ତ୍ରନିର୍ଦ୍ଦିଷ୍ଟ କାଳରେ ପାତ୍ରରୁ ଭସ୍ମ ନେଇ ମନ୍ତ୍ରୋଚ୍ଚାରଣପୂର୍ବକ ଲଲାଟରେ ଧାରଣ କରିବେ। ଅନ୍ୟ ସମୟରେ ତାହାକୁ ଉପଯୋଗ କରିବେ ନାହିଁ କି ଅଯୋଗ୍ୟ ବ୍ୟକ୍ତି ହାତରେ ଦେବେ ନାହିଁ। ଭଗବାନ ଶିବଙ୍କୁ ବିସର୍ଜନ କରାଯିବା ପୂର୍ବରୁ ଭସ୍ମ ସଂଗ୍ରହ କରିବେ; କାରଣ ବିସର୍ଜନ ପରେ ସେଥିରେ ଚଣ୍ଡଙ୍କର ଅଧିକାର ହୋଇଯାଏ।

ଅଗ୍ନିକାର୍ଯ୍ୟ ସମ୍ପନ୍ନ ହୋଇଗଲେ ଶିବଶାସ୍ତ୍ରୋକ୍ତ ମାର୍ଗରେ କିଂବା ନିଜ ଗୃହ୍ୟସୂତ୍ରୋକ୍ତ ବିଧିରେ ବଳିକର୍ମ କରିବେ। ତା'ପରେ ଉତ୍ତମରୂପେ ଲିପାପୋଛା ହୋଇଥିବା ମଣ୍ଡଳରେ ବିଦ୍ୟାସନ

* ଉପନୟନ ଠାରୁ ଆପ୍ତୋର୍ଯାମ ପର୍ଯ୍ୟନ୍ତ ସଂସ୍କାରଗୁଡ଼ିକର ନାମ ନିମ୍ନରେ ଉଲ୍ଲେଖ ହେଲା–ଉପନୟନ, ବ୍ରତବନ୍ଧ, ସମାବର୍ତ୍ତନ, ବିବାହ, ଉପାକର୍ମ, ଉତ୍ସର୍ଜନ, (ସାତ ପାକଯଜ୍ଞ–) ହୁତ, ପ୍ରହୁତ, ଆହୁତ, ଶୂଳଗବ, ବଳିହରଣ, ପ୍ରତ୍ୟବରୋହଣ, ଅଷ୍ଟକାହୋମ, (ସାତ ହବିର୍ଯଜ୍ଞ ସଂସ୍ଥା–) ଅଗ୍ନ୍ୟାଧାନ, ଅଗ୍ନିହୋତ୍ର, ଦର୍ଶପୂର୍ଣ୍ଣମାସ, ଚାତୁର୍ମାସ୍ୟ, ଆଗ୍ରୟଣେଷ୍ଟି, ନିରୂଢପଶୁବନ୍ଧ, ସୌତ୍ରାମଣି, (ସାତ ସୋମଯଜ୍ଞ ସଂସ୍ଥା–) ଅଗ୍ନିଷ୍ଟୋମ, ଅତ୍ୟଗ୍ନିଷ୍ଟୋମ, ଉକ୍ଥ, ଷୋଡଶୀ, ବାଜପେୟ, ଅତିରାତ୍ର, ଆପ୍ତୋର୍ଯାମ।

ବିଛାଇ ତହିଁରେ ବିଦ୍ୟାକୋଶକୁ ସ୍ଥାପନ କରି କ୍ରମାନୁସାରେ ପୁଷ୍ପାଦିରେ ଯଜନ କରିବେ। ବିଦ୍ୟା ସମ୍ମୁଖରେ ଗୁରୁଙ୍କ ମଙ୍ଗଳ ତିଆରି କରି ସେଠାରେ ଉତ୍ତମ ଆସନ ପକାଇ ତା'ଉପରେ ପୁଷ୍ପାଦିରେ ଗୁରୁଙ୍କୁ ପୂଜା କରିବେ। ତା'ପରେ ପୂଜନୀୟ ବ୍ୟକ୍ତିଙ୍କୁ ପୂଜା କରିବେ ଏବଂ କ୍ଷୁଧାର୍ତ୍ତଙ୍କୁ ଭୋଜନ କରାଇବେ। ତା'ପରେ ନିଜେ ସୁଖରେ ବସି ପବିତ୍ର ଅନ୍ନ ଗ୍ରହଣ କରିବେ। ସେହି ଅନ୍ନ ଶିବଙ୍କୁ ଅର୍ପିତ ବା ଶିବଙ୍କ ପ୍ରସାଦ ହୋଇଥିବା ଆବଶ୍ୟକ। ଆତ୍ମଶୁଦ୍ଧି ନିମନ୍ତେ ଶ୍ରଦ୍ଧାପୂର୍ବକ ତାହା ଭୋଜନ କରିବେ। ଚଣ୍ଡଙ୍କୁ ଅର୍ପିତ ହୋଇଥିଲେ ତାହାକୁ ଲୋଭରେ ଗ୍ରହଣ କରିବେ ନାହିଁ। ଗନ୍ଧ, ଫୁଲମାଳା ପ୍ରଭୃତି ଅନ୍ୟ ଦ୍ରବ୍ୟ ମଧ୍ୟ ଚଣ୍ଡଙ୍କୁ ଅର୍ପିତ ହୋଇଥିଲେ ଗ୍ରହଣ କରିବେ ନାହିଁ। ସେଠାରେ ବିଦ୍ୱାନ୍ ପୁରୁଷ 'ମୁଁ ହିଁ ଶିବ ଅଟେ' ଏପରି ବୁଦ୍ଧି କରିବେ ନାହିଁ। ଭୋଜନ ଓ ଆଚମନ କରି ଶିବଙ୍କୁ ମନେ ମନେ ଚିନ୍ତନ କରି ମୂଳମନ୍ତ୍ର ଉଚ୍ଚାରଣ କରିବେ। ଅବଶିଷ୍ଟ ସମୟକୁ ଶିବଶାସ୍ତ୍ର ବା ଲୀଳାଚରିତ ଶ୍ରବଣାଦି କର୍ମରେ ବିତାଇବେ। ରାତ୍ରିର ପ୍ରଥମ ପ୍ରହର ବିତିଗଲେ ଭଲଭାବେ ପୂଜା କରି ଶିବ ଓ ଶିବାଙ୍କ ପାଇଁ ଗୋଟିଏ ସୁନ୍ଦର ଶଯ୍ୟା ପ୍ରସ୍ତୁତ କରିବେ। ତତ୍‌ସହିତ ଭକ୍ଷ୍ୟ, ଭୋଜ୍ୟ, ବସ୍ତ୍ର, ଚନ୍ଦନ ଓ ଫୁଲମାଳ ମଧ୍ୟ ରଖିବେ। ମାନସିକ ଓ କ୍ରିୟାତ୍ମକ ଭାବରେ ମଧ୍ୟ ସବୁ ପ୍ରକାର ସୁବ୍ୟବସ୍ଥା କରି ପବିତ୍ର ହୋଇ ମହାଦେବ ଓ ମହାଦେବୀଙ୍କ ଚରଣ ନିକଟରେ ଶୟନ କରିବେ। ଗୃହସ୍ଥ ହୋଇଥିଲେ ନିଜ ପତ୍ନୀ ସହିତ ସେଠାରେ ଶୟନ କରିବେ। ଗୃହସ୍ଥ ନ ହୋଇଥିଲେ ଏକୁଟିଆ ଶୋଇବେ। ଉଷାକାଳ ହୋଇଗଲେ ମନେ ମନେ ପାର୍ବତୀଦେବୀ ତଥା ପାର୍ଷଦଙ୍କ ସମେତ ଅବିନାଶୀ ଶିବଙ୍କୁ ପ୍ରଣାମ କରି ଦେଶକାଳୋଚିତ କାର୍ଯ୍ୟ ତଥା ଶୌଚାଦି କୃତ୍ୟ ପୂର୍ଣ୍ଣ କରିବେ। ତା'ପରେ ଯଥାଶକ୍ତି ଶଙ୍ଖାଦି ବାଦ୍ୟର ଦିବ୍ୟ ଧ୍ୱନି କରି ମହାଦେବ ଓ ମହାଦେବୀଙ୍କୁ ଉଠାଇବେ। ତା'ପରେ ପରମ ସୁଗନ୍ଧିତ ପୁଷ୍ପ ଦ୍ୱାରା ଶିବଙ୍କୁ ପୂଜା କରି ପୂର୍ବୋକ୍ତ କାର୍ଯ୍ୟ ଆରମ୍ଭ କରିବେ। (ଅଧ୍ୟାୟ ୨୭)



## କାମ୍ୟ କର୍ମ ପ୍ରସଙ୍ଗରେ ଶକ୍ତିସମେତ ପଞ୍ଚମୁଖୀ ମହାଦେବଙ୍କ ପୂଜା ବିଧାନ

ଏହାପରେ ଶିବାଶ୍ରମସେବୀମାନଙ୍କ ପାଇଁ ନୈମିତ୍ତିକ କର୍ମର ବିଧି ନିର୍ଦ୍ଦେଶ କରି ଉପମନ୍ୟୁ କହିଲେ–ହେ ଯଦୁନନ୍ଦନ ! ଏବେ ମୁଁ କାମ୍ୟ କର୍ମ ବିଷୟରେ ବର୍ଣ୍ଣନା କରିବି, ଯାହା ଇହଲୋକ ଓ ପରଲୋକରେ ଫଳ ଦେଇଥାଏ। ଶୈବ ଓ ମାହେଶ୍ୱରମାନେ କ୍ରମାନ୍ୱୟରେ ଅନ୍ତର ଭିତରେ ଓ ବାହ୍ୟରୂପେ ଏହା କରିବା ଉଚିତ। ଶିବ ଓ ମହେଶ୍ୱରଙ୍କ ଭିତରେ ଯେପରି ବିଶେଷ ପ୍ରଭେଦ ନାହିଁ, ସେହିପରି ଶୈବ ଓ ମାହେଶ୍ୱରଙ୍କ ଭିତରେ ବି ଅଧିକ ପ୍ରଭେଦ ନାହିଁ। ଯେଉଁ ଲୋକେ ଶିବଙ୍କ ଆଶ୍ରିତ ହୋଇ ଜ୍ଞାନଯଜ୍ଞରେ ତତ୍ପର ହୁଅନ୍ତି, ସେମାନେ ଶୈବ ବୋଲାନ୍ତି; ଆଉ ଯେଉଁ ଶିବାଶ୍ରିତ ଭକ୍ତମାନେ ଭୂପୃଷ୍ଠରେ କର୍ମଯଜ୍ଞରେ ସଂଲଗ୍ନ ରହନ୍ତି, ସେମାନେ ମାହେଶ୍ୱର ବୋଲାନ୍ତି। ତେଣୁ ଜ୍ଞାନଯୋଗୀ ଶୈବମାନେ ଆନ୍ତରିକ ଭାବଦ୍ୱାରା କର୍ମ ଅନୁଷ୍ଠାନ କରିବା ଉଚିତ ଆଉ ମାହେଶ୍ୱରମାନେ ବିହିତ ବାହ୍ୟ ଦ୍ରବ୍ୟ ଓ ଉପକରଣ ଦ୍ୱାରା ତାହା ସମ୍ପାଦନ

କରିବା ଉଚିତ । ଆଗକୁ ଯେଉଁ କର୍ମର ପ୍ରୟୋଗ କୁହାଯିବ, ସେଥିରେ ସେମାନଙ୍କ ପାଇଁ କୌଣସି ପ୍ରଭେଦ ନାହିଁ ।

ଗନ୍ଧ, ବର୍ଣ୍ଣ ଓ ରସ ଇତ୍ୟାଦି ଦୃଷ୍ଟିରୁ ଭୂମିକୁ ବିଧିପୂର୍ବକ ପରୀକ୍ଷା କରି ଅଭୀଷ୍ଟ ସ୍ଥାନରେ ଉପରେ ଚାନ୍ଦୁଆ ବାନ୍ଧିଦେବେ ଏବଂ ସେହି ସ୍ଥାନକୁ ଲିପାପୋଛା କରି ଦର୍ପଣ ପରି ସ୍ୱଚ୍ଛ କରିଦେବେ । ତା'ପରେ ଶାସ୍ତ୍ରୋକ୍ତ ମାର୍ଗରେ ସେଠାରେ ପ୍ରଥମେ ପୂର୍ବଦିଗର କଳ୍ପନା କରିବେ । ସେହି ଦିଗରେ ହାତେ ବା ଦୁଇହାତ ଆକାରର ମଣ୍ଡଳ ତିଆରି କରିବେ । ସେଥିରେ ସୁନ୍ଦର ଅଷ୍ଟଦଳ କମଳ ଆଙ୍କିବେ । କମଳରେ କର୍ଣ୍ଣିକା ଥିବ । ଯଥାସମ୍ଭବ ରତ୍ନ ଓ ସୁବର୍ଣ୍ଣ ଇତ୍ୟାଦିର ଚୂର୍ଣ୍ଣରେ ତାହା ଆଙ୍କିବେ । ତାହା ଅତ୍ୟନ୍ତ ଶୋଭାୟମାନ ଓ ପଞ୍ଚାବରଣରେ ଯୁକ୍ତ ହୋଇଥିବା ଆବଶ୍ୟକ । ପଦ୍ମର ଆଠଟି ପାଖୁଡ଼ାରେ ପୂର୍ବାଦି କ୍ରମରେ ଅଣିମା ଇତ୍ୟାଦି ଅଷ୍ଟସିଦ୍ଧିର କଳ୍ପନା କରିବେ ଏବଂ ତାହାର କେଶରରେ ଶକ୍ତିସହିତ ବାମଦେବ ପ୍ରଭୃତି ଅଷ୍ଟରୁଦ୍ରଙ୍କୁ ପୂର୍ବାଦି ଦଳ କ୍ରମରେ ସ୍ଥାପିତ କରିବେ । ପଦ୍ମର କର୍ଣ୍ଣିକାରେ ବୈରାଗ୍ୟକୁ ସ୍ଥାନ ଦେଇ ବୀଜରେ ନବଶକ୍ତିଙ୍କୁ ସ୍ଥାପିତ କରିବେ । ତାହାର କନ୍ଦରେ ଶିବସମ୍ବନ୍ଧୀୟ ଧର୍ମ ଓ ନାଳରେ ଶିବସମ୍ବନ୍ଧୀୟ ଜ୍ଞାନର ଭାବନା କରିବେ । କର୍ଣ୍ଣିକା ଉପରେ ଅଗ୍ନିମଣ୍ଡଳ, ସୂର୍ଯ୍ୟମଣ୍ଡଳ ଓ ଚନ୍ଦ୍ରମଣ୍ଡଳର ଭାବନା କରିବେ । ଏହି ମଣ୍ଡଳଗୁଡ଼ିକ ଉପରେ ଶିବତତ୍ତ୍ୱ, ବିଦ୍ୟାତତ୍ତ୍ୱ ଓ ଆତ୍ମତତ୍ତ୍ୱର ଚିନ୍ତନ କରିବେ । ସମଗ୍ର କମଳାସନରେ ସୁଖପୂର୍ବକ ବିରାଜିତ ଓ ନାନା ପ୍ରକାର ପୁଷ୍ପରେ ଅଳଂକୃତ ପଞ୍ଚାବରଣଯୁକ୍ତ ଶିବଙ୍କୁ ମାତା ପାର୍ବତୀଙ୍କ ସହିତ ପୂଜା କରିବେ । ଭଗବାନ ଶିବଙ୍କ ଅଙ୍ଗକାନ୍ତି ଶୁଦ୍ଧସ୍ଫଟିକମଣି ପରି ଉଜ୍ଜ୍ୱଳ । ସେ ସତତ ପ୍ରସନ୍ନ । ତାଙ୍କର ପ୍ରଭା ଶୀତଳ । ସେ ବିଦ୍ୟୁନ୍ମଣ୍ଡଳ ସଦୃଶ ଝଟକୁଥିବା ଜଟାରୂପୀ ମୁକୁଟ ଦ୍ୱାରା ସୁଶୋଭିତ । ସେ ବ୍ୟାଘ୍ରଚର୍ମ ଧାରଣ କରିଛନ୍ତି । ତାଙ୍କ ମୁଖାରବିନ୍ଦରେ ସ୍ମିତହାସର ଛଟା । ହାତ ପାପୁଲି ଓ ତଳିପା ପଦ୍ମତୁଲ୍ୟ ଅରୁଣାଭ । ସେ ସମସ୍ତ ଶୁଭଲକ୍ଷଣଯୁକ୍ତ ଓ ସବୁ ପ୍ରକାର ଭୂଷଣରେ ମଣ୍ଡିତ । ଶିବଙ୍କ ହସ୍ତରେ ଉତ୍ତମୋତ୍ତମ ଦିବ୍ୟ ଆୟୁଧ ଏବଂ ଅଙ୍ଗରେ ଚନ୍ଦନର ଲେପ ଶୋଭା ପାଉଛି । ତାଙ୍କର ପାଞ୍ଚଟି ମୁଖ ଓ ଦଶଟି ଭୁଜ । ଅର୍ଦ୍ଧଚନ୍ଦ୍ର ତାଙ୍କର ଶିଖାମଣି । ତାଙ୍କର ପୂର୍ବବର୍ତ୍ତୀ ମୁଖ ପ୍ରାତଃକାଳୀନ ସୂର୍ଯ୍ୟ ତୁଲ୍ୟ ଅରୁଣାଭ ଓ ସୌମ୍ୟ । ସେଥିରେ ତ୍ରିନେତ୍ରରୂପୀ ପଦ୍ମ ବିକଶିତ ତଥା ମସ୍ତକରେ ବାଳଚନ୍ଦ୍ରମାର ମୁକୁଟ ଶୋଭାୟମାନ । ଦକ୍ଷିଣମୁଖ ନୀଳଜଳଧର ତୁଲ୍ୟ ଶ୍ୟାମ ପ୍ରଭାରେ ଉଦ୍ଭାସିତ । ଲାଲ୍ ଲାଲ୍ ଗୋଲାକାର ଆଖି । କୁଟିଳ ଭୃକୁଟି ଦେଖିବାକୁ ଭୟାନକ । ଅଧର ପ୍ରକମ୍ପିତ । ଦନ୍ତପଂକ୍ତି ହେତୁ ସେହି ମୁଖ ବିକରାଳ ଦିଶେ । ସେହି ରୂପ ଅପରାଭବ । ତାଙ୍କର ଉତ୍ତରବର୍ତ୍ତୀ ମୁଖ ପ୍ରବାଳ ସଦୃଶ ରକ୍ତାଭ । କଳା କଳା କେଶ ତାହାର ଶୋଭା ବଢ଼ାଇଥାଏ । ସେଥିରେ ବିଭ୍ରମବିଳାସଯୁକ୍ତ ତିନୋଟି ନେତ୍ର ରହିଛି । ମସ୍ତକରେ ଅର୍ଦ୍ଧଚନ୍ଦ୍ର ବିରାଜିତ । ଶିବଙ୍କ ପଶ୍ଚିମ ମୁଖ ପୂର୍ଣ୍ଣଚନ୍ଦ୍ର ପରି ଉଜ୍ଜ୍ୱଳ ଓ ତ୍ରିନେତ୍ରରେ ଶୋଭମାନ । ସେହି ମସ୍ତକ ଚନ୍ଦ୍ରକଳାର ଶୋଭା ଧାରଣ କରିଛି । ତାହା ସୌମ୍ୟ ଓ ମନମୋହକ ମନ୍ଦ ମନ୍ଦ ହାସ୍ୟରେ ଶୋଭିତ । ତାଙ୍କର ପଞ୍ଚମ ମୁଖ ସ୍ଫଟିକମଣି ସଦୃଶ ନିର୍ମଳ, ଚନ୍ଦ୍ରକଳାରେ ସମୁଜ୍ଜ୍ୱଳ, ଅତ୍ୟନ୍ତ ସୌମ୍ୟ ଓ ତିନୋଟି ପ୍ରଫୁଲ୍ଲ ପଦ୍ମଲୋଚନରେ ଦେଦୀପ୍ୟମାନ ।

ଭଗବାନ ଶିବ ତାଙ୍କର ଡାହାଣ ହାତରେ ଶୂଳ, ପରଶୁ, ବଜ୍ର, ଖଡ୍ଗ ଓ ଅଗ୍ନି ଧାରଣ କରି ସେଗୁଡ଼ିକର ପ୍ରଭାରେ ଦେଦୀପ୍ୟମାନ ଦିଶୁଛନ୍ତି ।

ତାଙ୍କ ବାମ ହାତରେ ନାଗ, ଶର, ଘଣ୍ଟା, ପାଶ ଓ ଅଙ୍କୁଶ ତାଙ୍କର ଶୋଭା ବୃଦ୍ଧି କରନ୍ତି । ପାଦରୁ ଆରମ୍ଭ କରି ଆଣ୍ଠୁ ପର୍ଯ୍ୟନ୍ତ ନିବୃତ୍ତିକଳାରେ ସମ୍ବଦ୍ଧ । ତା'ଉପରକୁ ନାଭି ପର୍ଯ୍ୟନ୍ତ ପ୍ରତିଷ୍ଠା-କଳାରେ, କଣ୍ଠପର୍ଯ୍ୟନ୍ତ ବିଦ୍ୟାକଳାରେ, ଲଲାଟ ପର୍ଯ୍ୟନ୍ତ ଶାନ୍ତିକଳାରେ ଓ ତା'ର ଉପର ଭାଗ ଶାନ୍ତ୍ୟତୀତାକଳାରେ ସଂଯୁକ୍ତ । ଏହିରୂପେ ସେ ପଞ୍ଚାଧ୍ୱବ୍ୟାପୀ ତଥା ସାକ୍ଷାତ୍ ପଞ୍ଚକଳାମୟ ଶରୀରଧାରୀ ଅଟନ୍ତି । ଈଶାନମନ୍ତ୍ର ତାଙ୍କର ମୁକୁଟ । ତତ୍‌ପୁରୁଷମନ୍ତ୍ର ସେହି ପୁରାତନ ଦେବଙ୍କର ମୁଖ । ଅଘୋରମନ୍ତ୍ର ହୃଦୟ । ବାମଦେବମନ୍ତ୍ର ଗୁହ୍ୟଭାଗ ଏବଂ ସଦ୍ୟୋଜାତମନ୍ତ୍ର ସେହି ମହେଶ୍ୱରଙ୍କ ଚରଣଯୁଗଳ । ତାଙ୍କର ମୂର୍ତ୍ତି ଅଠତିରିଶ କଳାମୟ* ଅଟେ । ପରମେଶ୍ୱର ଶିବଙ୍କ ବିଗ୍ରହ ମାତୃକାମୟ (ବର୍ଣ୍ଣମାଳାମୟ), ପଞ୍ଚବ୍ରହ୍ମମୟ ('ଈଶାନଃ ସର୍ବବିଦ୍ୟାନାମ୍' ଇତ୍ୟାଦି ପଞ୍ଚମନ୍ତ୍ରମୟ), ପ୍ରଣବମୟ ଓ ହଂସଶକ୍ତିସମ୍ପନ୍ନ । ଇଚ୍ଛାଶକ୍ତି ତାଙ୍କ କୋଳରେ, ଜ୍ଞାନଶକ୍ତି ଦକ୍ଷିଣଭାଗରେ ଏବଂ କ୍ରିୟାଶକ୍ତି ବାମଭାଗରେ ବିରାଜମାନ । ସେ ତ୍ରିତତ୍ତ୍ୱମୟ ଅଟନ୍ତି ଅର୍ଥାତ୍ ଆତ୍ମତତ୍ତ୍ୱ, ବିଦ୍ୟାତତ୍ତ୍ୱ ଓ ଶିବତତ୍ତ୍ୱ ତାଙ୍କର ସ୍ୱରୂପ । ସଦାଶିବ ସାକ୍ଷାତ୍ ବିଦ୍ୟାମୂର୍ତ୍ତି ଅଟନ୍ତି । ଏହିରୂପେ ତାଙ୍କୁ ଧ୍ୟାନ କରିବା ଉଚିତ ।

ମୂଳମନ୍ତ୍ରରେ ମୂର୍ତ୍ତିର କଳ୍ପନା ଓ ସକଳୀକରଣ କ୍ରିୟା କରିବା ପରେ ସେହି ମୂଳମନ୍ତ୍ରରେ ହିଁ ଯଥୋଚିତ ରୀତିରେ କ୍ରମାନ୍ୱୟରେ ପାଦ୍ୟାଦି ବିଶେଷାର୍ଘ୍ୟ ପର୍ଯ୍ୟନ୍ତ ପୂଜନ କରିବେ । ତା'ପରେ ପରାଶକ୍ତି ସହିତ ସାକ୍ଷାତ୍ ମୂର୍ତ୍ତିମାନ୍ ଶିବଙ୍କୁ ପୂର୍ବୋକ୍ତ ମୂର୍ତ୍ତିରେ ଆବାହନ କରି ସଦସଦ୍-ବ୍ୟକ୍ତିରହିତ ପରମେଶ୍ୱର ମହାଦେବଙ୍କୁ ଗନ୍ଧାଦି ପଞ୍ଚୋପଚାରରେ ପୂଜା କରିବେ । ପାଞ୍ଚଟି ବ୍ରହ୍ମମନ୍ତ୍ରରେ, ଛଅଟି ଅଙ୍ଗମନ୍ତ୍ରରେ, ମାତୃକା-ମନ୍ତ୍ରରେ, ପ୍ରଣବରେ, ଶକ୍ତିଯୁକ୍ତ ଶିବମନ୍ତ୍ରରେ, ଶାନ୍ତ ତଥା ଅନ୍ୟ ବେଦମନ୍ତ୍ରରେ ଅଥବା କେବଳ ଶିବମନ୍ତ୍ରରେ ସେହି ପରମ ଦେବଙ୍କୁ ପୂଜା କରିବେ । ପାଦ୍ୟ ଠାରୁ ଆରମ୍ଭ କରି ମୁଖଶୁଦ୍ଧି ପର୍ଯ୍ୟନ୍ତ ପୂଜନ କରିସାରି ଇଷ୍ଟଦେବଙ୍କୁ ବିସର୍ଜନ ନ କରି କ୍ରମଶଃ ପଞ୍ଚାବରଣ ପୂଜା ଆରମ୍ଭ କରିବେ । (ଅଧ୍ୟାୟ ୨୮-୨୯)



## ଆବରଣ ପୂଜାର ବିସ୍ତୃତ ବିଧି ଓ ମହିମା

ଉପମନ୍ୟୁ କହୁଛନ୍ତି–ହେ ଯଦୁନନ୍ଦନ ! ପ୍ରଥମେ ଶିବପାର୍ବତୀଙ୍କ ଦକ୍ଷିଣ ଓ ବାମ ପାର୍ଶ୍ୱରେ ଯଥାକ୍ରମେ ଗଣେଶ ଓ କାର୍ତ୍ତିକେୟଙ୍କୁ ଗନ୍ଧାଦି ପାଞ୍ଚ ପ୍ରକାର ଉପଚାରରେ ପୂଜା କରିବେ । ତା'ପରେ ଏମାନଙ୍କ ଚାରିପଟରେ ଈଶାନଙ୍କ ଠାରୁ ଆରମ୍ଭ କରି ସଦ୍ୟୋଜାତ ପର୍ଯ୍ୟନ୍ତ ପାଞ୍ଚ ବ୍ରହ୍ମମୂର୍ତ୍ତିଙ୍କୁ ଶକ୍ତିସହିତ କ୍ରମାନୁସାରେ ପୂଜା କରିବେ । ଏହା ହେଲା ପ୍ରଥମ ଆବରଣର ପୂଜା । ସେହି ଆବରଣରେ ହୃଦୟ ଆଦି ଛଅଟି ଅଙ୍ଗ ତଥା ଶିବ ଓ ପାର୍ବତୀଙ୍କୁ ଅଗ୍ନିକୋଣରୁ ଆରମ୍ଭ କରି ପୂର୍ବଦିଗ ପର୍ଯ୍ୟନ୍ତ ଆଠ ଦିଗରେ କ୍ରମାନୁସାରେ ପୂଜା କରିବେ । ସେଠାରେ ବାମା ଇତ୍ୟାଦି ଶକ୍ତିଙ୍କ

* କଳା, କାଳ, ନିୟତି, ବିଦ୍ୟା, ରାଗ, ପ୍ରକୃତି ଓ ଗୁଣ–ଏହି ସପ୍ତତତ୍ତ୍ୱ, ପଞ୍ଚଭୂତ, ପଞ୍ଚତନ୍ମାତ୍ର, ଦଶଟି ଇନ୍ଦ୍ରିୟ, ଚାରିଟି ଅନ୍ତଃକରଣ ଏବଂ ପାଞ୍ଚଟି ଶବ୍ଦାଦି ବିଷୟ–ଏସବୁ ମିଶି ଛତିଶ ତତ୍ତ୍ୱ ହୁଅନ୍ତି । ଏ ସମସ୍ତ ତତ୍ତ୍ୱ ଜୀବର ଶରୀରରେ ଥାଆନ୍ତି । ପରମେଶ୍ୱରଙ୍କ ଶରୀରକୁ ଶାକ୍ତ (ଶକ୍ତିସ୍ୱରୂପ ଓ ଚିନ୍ମୟ) ତଥା ମନ୍ତ୍ରମୟ କୁହାଯାଇଛି । ଉକ୍ତ ଦୁଇଟି ତତ୍ତ୍ୱକୁ ମିଶାଇଲେ ଅଠତିରିଶ କଳା ହୁଏ । ସମଗ୍ର ଜଡ଼ ଓ ଚେତନ ପରମେଶ୍ୱରଙ୍କ ବିଗ୍ରହ ହୋଇଥିବାରୁ ତାଙ୍କ ମୂର୍ତ୍ତିକୁ ଅଠତିରିଶ କଳାମୟ କୁହାଯାଇଥାଏ । ଅଥବା ପାଞ୍ଚ ସ୍ୱର ଓ ତେତିଶ ବ୍ୟଞ୍ଜନରୂପ ହୋଇଥିବାରୁ ତାଙ୍କ ଶରୀରକୁ ଅଠତିରିଶ କଳାମୟ କୁହାଯାଏ ।

ସହିତ ବାମ ଆଦି ଅଷ୍ଟରୁଦ୍ରଙ୍କୁ ପୂର୍ବାଦି ଦିଗରେ କ୍ରମାନୁସାରେ ପୂଜା କରିବେ। ଏହି ପୂଜା ବୈକଳ୍ପିକ। ଯଦୁନନ୍ଦନ! ମୁଁ ତୁମକୁ ପ୍ରଥମ ଆବରଣ ବିଷୟରେ ବୁଝାଇଦେଲି।

ଏଥର ଦ୍ୱିତୀୟ ଆବରଣର ବର୍ଣ୍ଣନା କରୁଛି, ଶ୍ରଦ୍ଧାପୂର୍ବକ ଶ୍ରବଣ କର। ପୂର୍ବଦିଗର ପାଖୁଡ଼ାରେ ଅନନ୍ତଙ୍କୁ ଓ ତାଙ୍କ ବାମଭାଗରେ ତାଙ୍କ ଶକ୍ତିଙ୍କୁ ପୂଜା କରିବେ। ଦକ୍ଷିଣଦିଗର ପାଖୁଡ଼ାରେ ଶକ୍ତିସହିତ ସୂକ୍ଷ୍ମଦେବଙ୍କୁ ପୂଜା କରିବେ। ପଶ୍ଚିମଦିଗର ପାଖୁଡ଼ାରେ ଶକ୍ତିସହିତ ଶିବୋତ୍ତମଙ୍କୁ, ଉତ୍ତରଦିଗର ପାଖୁଡ଼ାରେ ଶକ୍ତିଯୁକ୍ତ ଏକନେତ୍ରଙ୍କୁ, ଐଶାନ୍ୟକୋଣର ପାଖୁଡ଼ାରେ ଏକରୁଦ୍ର ଓ ତାଙ୍କ ଶକ୍ତିଙ୍କୁ, ଆଗ୍ନେୟକୋଣର ପାଖୁଡ଼ାରେ ତ୍ରିମୂର୍ତ୍ତି ଓ ତାଙ୍କ ଶକ୍ତିଙ୍କୁ, ନୈର୍ଋତ୍ୟକୋଣର ପାଖୁଡ଼ାରେ ଶ୍ରୀକଣ୍ଠ ଓ ତାଙ୍କ ଶକ୍ତିଙ୍କୁ ଏବଂ ବାୟବ୍ୟକୋଣର ପାଖୁଡ଼ାରେ ଶକ୍ତିସମେତ ଶିଖଣ୍ଡୀଶଙ୍କୁ ପୂଜା କରିବେ। ସମସ୍ତ ଚକ୍ରବର୍ତ୍ତୀଙ୍କୁ ମଧ୍ୟ ଦ୍ୱିତୀୟ ଆବରଣରେ ପୂଜା କରିବା ଉଚିତ। ତୃତୀୟ ଆବରଣରେ ଶକ୍ତିଙ୍କ ସମେତ ଅଷ୍ଟମୂର୍ତ୍ତିଙ୍କୁ ପୂର୍ବାଦି ଆଠଦିଗରେ କ୍ରମାନ୍ୱୟରେ ପୂଜା କରିବେ। ଭବ, ଶର୍ବ, ଈଶାନ, ରୁଦ୍ର, ପଶୁପତି, ଉଗ୍ର, ଭୀମ ଓ ମହାଦେବ—ଏମାନେ ହେଲେ ଅଷ୍ଟମୂର୍ତ୍ତି। ଏହାପରେ ସେହି ଆବରଣରେ ଶକ୍ତିସମେତ ମହାଦେବ ପ୍ରଭୃତି ଏକାଦଶ ମୂର୍ତ୍ତିଙ୍କୁ ମଧ୍ୟ ପୂଜା କରିବା ଉଚିତ। ମହାଦେବ, ଶିବ, ରୁଦ୍ର, ଶଙ୍କର, ନୀଳଲୋହିତ, ଈଶାନ, ବିଜୟ, ଭୀମ, ଦେବଦେବ, ଭବୋଦ୍ଭବ ଓ କପର୍ଦ୍ଦୀଶ (ବା କପାଳୀଶ) —ଏମାନେ ହେଲେ ଏକାଦଶ ମୂର୍ତ୍ତି। ଏମାନଙ୍କ ମଧ୍ୟରୁ ପୂର୍ବୋକ୍ତ ଅଷ୍ଟମୂର୍ତ୍ତିଙ୍କୁ ଅଗ୍ନିକୋଣର ପାଖୁଡ଼ାରୁ ଆରମ୍ଭ କରି ପୂର୍ବଦିଗ ପର୍ଯ୍ୟନ୍ତ ଆଠ ଦିଗରେ ପୂଜା କରିବା ଉଚିତ। ଦେବଦେବଙ୍କୁ ପୂର୍ବଦିଗର ପାଖୁଡ଼ାରେ ସ୍ଥାପିତ କରି ପୂଜା କରିବେ ଏବଂ ଈଶାନଙ୍କୁ ପୁନଃ ଅଗ୍ନିକୋଣରେ ସ୍ଥାପନ ଓ ପୂଜନ କରିବେ। ତା'ପରେ ଉଭୟଙ୍କର ମଧ୍ୟରେ ଭବୋଦ୍ଭବଙ୍କୁ ପୂଜା କରିବେ ଏବଂ ତାଙ୍କ ପରେ କପାଳୀଶ ବା କପର୍ଦ୍ଦୀଶଙ୍କୁ ସ୍ଥାପନ ଓ ପୂଜନ କରିବେ। ସେହି ତୃତୀୟ ଆବରଣରେ ପୁନଃ ବୃଷଭରାଜଙ୍କୁ ପୂର୍ବରେ, ନନ୍ଦୀଙ୍କୁ ଦକ୍ଷିଣରେ, ମହାକାଳଙ୍କୁ ଉତ୍ତରରେ, ଶାସ୍ତାଙ୍କୁ ଆଗ୍ନେୟକୋଣର ପାଖୁଡ଼ାରେ, ମାତୃକାମାନଙ୍କୁ ଦକ୍ଷିଣଦିଗର ପାଖୁଡ଼ାରେ, ଗଣେଶଙ୍କୁ ନୈର୍ଋତ୍ୟକୋଣର ପାଖୁଡ଼ାରେ, କାର୍ତ୍ତିକେୟଙ୍କୁ ପଶ୍ଚିମଦିଗର ପାଖୁଡ଼ାରେ, ଜ୍ୟେଷ୍ଠାଙ୍କୁ ବାୟବ୍ୟ-କୋଣର ପାଖୁଡ଼ାରେ, ଗୌରୀଙ୍କୁ ଉତ୍ତରଦିଗର ପାଖୁଡ଼ାରେ, ଚଣ୍ଡଙ୍କୁ ଐଶାନ୍ୟକୋଣରେ ଏବଂ ମୁନୀନ୍ଦ୍ର ବୃଷଭଙ୍କୁ ଶାସ୍ତା ଓ ନନ୍ଦୀଶ୍ୱରଙ୍କ ମଧ୍ୟଭାଗରେ ଯଜନ କରିବେ। ମହାକାଳଙ୍କ ଉତ୍ତରଭାଗରେ ପିଙ୍ଗଳଙ୍କୁ, ଶାସ୍ତା ଓ ମାତୃକାମାନଙ୍କ ମଧ୍ୟଭାଗରେ ଭୃଙ୍ଗୀଶ୍ୱରଙ୍କୁ, ମାତୃକା ଓ ଗଣେଶଙ୍କ ମଝିରେ ବୀରଭଦ୍ରଙ୍କୁ, ସ୍କନ୍ଦ ଓ ଗଣେଶଙ୍କ ମଝିରେ ସରସ୍ୱତୀଙ୍କୁ, ଜ୍ୟେଷ୍ଠା ଓ କାର୍ତ୍ତିକେୟଙ୍କ ମଝିରେ ଶିବଚରଣର ଅର୍ଚ୍ଚୟିତା ଶ୍ରୀଦେବୀଙ୍କୁ, ଜ୍ୟେଷ୍ଠା ଓ ଗଣାମ୍ବା (ଗୌରୀ)ଙ୍କ ମଝିରେ ମହାମୋଟୀଙ୍କୁ ପୂଜା କରିବେ। ଗଣାମ୍ବା ଓ ଚଣ୍ଡଙ୍କ ମଝିରେ ଦୁର୍ଗାଦେବୀଙ୍କୁ ପୂଜା କରିବେ। ଏହି ଆବରଣରେ ପୁନଃ ଶିବଙ୍କ ଅନୁଚରବର୍ଗଙ୍କୁ ପୂଜା କରିବେ। ଅନୁଚରବର୍ଗଙ୍କ ମଧ୍ୟରେ ରୁଦ୍ରଗଣ, ପ୍ରମଥଗଣ ଓ ଭୂତଗଣ ଅନ୍ତର୍ଭୁକ୍ତ ଅଟନ୍ତି। ଏ ସମସ୍ତଙ୍କର ବିବିଧ ପ୍ରକାର ରୂପ ରହିଛି ଏବଂ ଏମାନେ ନିଜ ନିଜ ଶକ୍ତିଙ୍କ ସହିତ ଥାଆନ୍ତି। ଏମାନଙ୍କ ପରେ ଏକାଗ୍ରଚିତ୍ତ ହୋଇ ଶିବାଙ୍କ ସଖୀବର୍ଗଙ୍କୁ ମଧ୍ୟ ଧ୍ୟାନ ଓ ପୂଜନ କରିବା ଆବଶ୍ୟକ।

ଏହିରୂପେ ତୃତୀୟ ଆବରଣର ଦେବତାଙ୍କର

ବିସ୍ତାରପୂର୍ବକ ପୂଜା ହୋଇଯିବା ପରେ ତାହାର ବାହାରଭାଗରେ ଚତୁର୍ଥ ଆବରଣର ଚିନ୍ତନ ଓ ପୂଜନ କରିବା ଉଚିତ । ପୂର୍ବଦଳରେ ସୂର୍ଯ୍ୟଙ୍କୁ, ଦକ୍ଷିଣଦଳରେ ଚତୁର୍ମୁଖ ବ୍ରହ୍ମାଙ୍କୁ, ପଶ୍ଚିମଦଳରେ ରୁଦ୍ରଙ୍କୁ ଓ ଉତ୍ତରଦିଗର ଦଳରେ ଭଗବାନ ବିଷ୍ଣୁଙ୍କୁ ପୂଜା କରିବେ । ଏ ଚାରି ଦେବତାଙ୍କର ମଧ୍ୟ ପୃଥକ୍ ପୃଥକ୍ ଆବରଣ ଅଛି । ଏମାନଙ୍କର ପ୍ରଥମ ଆବରଣରେ ଛଅ ଅଙ୍ଗ ତଥା ଦୀପ୍ତା ପ୍ରଭୃତି ଶକ୍ତିମାନଙ୍କୁ ପୂଜା କରିବେ । ଦୀପ୍ତା, ସୂକ୍ଷ୍ମା, ଜୟା, ଭଦ୍ରା, ବିଭୂତି, ବିମଳା, ଅମୋଘା ଓ ବିଦ୍ୟୁତା—ଏହି ଶକ୍ତିମାନଙ୍କର ସ୍ଥାନ ହେଉଛି ପୂର୍ବାଦି ଅଷ୍ଟଦିଗ । ଦ୍ୱିତୀୟ ଆବରଣରେ ପୂର୍ବରୁ ଉତ୍ତର ପର୍ଯ୍ୟନ୍ତ ଚାରିମୂର୍ତ୍ତିଙ୍କୁ ଓ ତା'ପରେ ସେମାନଙ୍କ ଶକ୍ତିମାନଙ୍କୁ ପୂଜା କରିବେ । ଆଦିତ୍ୟ, ଭାସ୍କର, ଭାନୁ ଓ ରବି—ଏ ଚାରିମୂର୍ତ୍ତି ପୂର୍ବାଦି ଚାରିଦିଗରେ ପୂଜନୀୟ ଅଟନ୍ତି । ତା'ପରେ ଅର୍କ, ବ୍ରହ୍ମା, ରୁଦ୍ର ଓ ବିଷ୍ଣୁ—ଏ ଚାରିମୂର୍ତ୍ତି ମଧ୍ୟ ପୂର୍ବାଦି ଦିଗରେ ପୂଜନୀୟ ଅଟନ୍ତି । ପୂର୍ବଦିଗରେ ବିସ୍ତରା, ଦକ୍ଷିଣରେ ସୁତରା, ପଶ୍ଚିମରେ ବୋଧିନୀ ଓ ଉତ୍ତରରେ ଆପ୍ୟାୟିନୀଙ୍କୁ ପୂଜା କରିବେ । ଐଶାନ୍ୟକୋଣରେ ଉଷାଙ୍କୁ, ଆଗ୍ନେୟକୋଣରେ ପ୍ରଭାଙ୍କୁ, ନୈର୍ଋତ୍ୟକୋଣରେ ପ୍ରାଜ୍ଞାଙ୍କୁ ଓ ବାୟବ୍ୟକୋଣରେ ସଂଧ୍ୟାଙ୍କୁ ପୂଜା କରିବେ । ଏହିରୂପେ ଦ୍ୱିତୀୟ ଆବରଣରେ ଏ ସମସ୍ତଙ୍କୁ ବିଧିବତ୍ ସ୍ଥାପନା ଓ ପୂଜା କରିବା ଉଚିତ ।

ତୃତୀୟ ଆବରଣରେ ସୋମ, ମଙ୍ଗଳ, ବୁଦ୍ଧିମାନ୍‌ଙ୍କ ମଧ୍ୟରେ ଶ୍ରେଷ୍ଠ ବୁଧ, ବିଶାଳବୁଦ୍ଧି ବୃହସ୍ପତି, ତେଜୋନିଧି ଶୁକ୍ର, ଶନୈଶ୍ଚର ଓ ଧୂମ୍ରବର୍ଣ୍ଣାଭ ଭୟଙ୍କର ରାହୁ-କେତୁଙ୍କୁ ପୂର୍ବାଦି ଦିଗରେ ପୂଜା କରିବେ ଅଥବା ଦ୍ୱିତୀୟ ଆବରଣରେ ଦ୍ୱାଦଶ ଆଦିତ୍ୟଙ୍କୁ ଏବଂ ତୃତୀୟ ଆବରଣରେ ଦ୍ୱାଦଶ ରାଶିଙ୍କୁ ପୂଜା କରିବେ । ତାହାର ବାହ୍ୟଭାଗରେ ସାତ ସାତ ଗଣଙ୍କୁ ସର୍ବଦିଗରୁ ପୂଜା କରିବା ଉଚିତ । ଋଷି, ଦେବତା, ଗନ୍ଧର୍ବ, ନାଗ, ଅପ୍‌ସରା, ଗ୍ରାମଣୀ, ଯକ୍ଷ, ଯାତୁଧାନ, ସପ୍ତ ଛନ୍ଦମୟ ଅଶ୍ୱ ଓ ବାଳଖିଲ୍ୟମାନଙ୍କୁ ପୂଜା କରିବେ । ତୃତୀୟ ଆବରଣରେ ସୂର୍ଯ୍ୟଦେବଙ୍କ ପୂଜା ପରେ ତିନି ଆବରଣ ସହିତ ବ୍ରହ୍ମାଙ୍କୁ ପୂଜା କରିବେ ।

ପୂର୍ବଦିଗରେ ହିରଣ୍ୟଗର୍ଭଙ୍କୁ, ଦକ୍ଷିଣରେ ବିରାଟ୍‌ଙ୍କୁ, ପଶ୍ଚିମରେ କାଳଙ୍କୁ ଓ ଉତ୍ତରରେ ପୁରୁଷଙ୍କୁ ପୂଜା କରିବେ । ହିରଣ୍ୟଗର୍ଭ ନାମକ ପ୍ରଥମ ବ୍ରହ୍ମାଙ୍କ ଅଙ୍ଗକାନ୍ତି ପଦ୍ମତୁଲ୍ୟ । କାଳ ଜନ୍ମରୁ ହିଁ ଅଞ୍ଜନ ପରି କଳା ଓ ପୁରୁଷ ସ୍ଫଟିକମଣି ପରି ନିର୍ମଳ । ତ୍ରିଗୁଣ, ରାଜସ, ତାମସ ଓ ସାତ୍ତ୍ୱିକ—ଏ ଚାରୋଟି ମଧ୍ୟ ପୂର୍ବାଦି ଦିଗ କ୍ରମରେ ପ୍ରଥମ ଆବରଣରେ ରହିଥାନ୍ତି ।

ଦ୍ୱିତୀୟ ଆବରଣରେ ପୂର୍ବାଦି ଦିଗର ପାଖୁଡ଼ାରେ ଯଥାକ୍ରମେ ସନତ୍‌କୁମାର, ସନକ, ସନନ୍ଦନ ଓ ସନାତନଙ୍କୁ ପୂଜା କରିବା ଆବଶ୍ୟକ । ତା'ପରେ ତୃତୀୟ ଆବରଣରେ ଏକାଦଶ ପ୍ରଜାପତିଙ୍କୁ ପୂଜା କରିବେ । ସେମାନଙ୍କ ମଧ୍ୟରୁ ପ୍ରଥମ ଆଠ ଜଣଙ୍କୁ ପୂର୍ବାଦି ଆଠ ଦିଗରେ ଓ ଅବଶିଷ୍ଟ ତିନିଜଣଙ୍କୁ ପୂର୍ବାଦି କ୍ରମରେ ଅର୍ଥାତ୍ ପୂର୍ବ, ଦକ୍ଷିଣ ଓ ପଶ୍ଚିମରେ ସ୍ଥାପନ ଓ ପୂଜନ କରିବେ । ଦକ୍ଷ, ରୁଚି, ଭୃଗୁ, ମରୀଚି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ଅତ୍ରି, କଶ୍ୟପ ଓ ବଶିଷ୍ଠ—ଏମାନେ ଏକାଦଶ ପ୍ରଜାପତି ନାମରେ ବିଖ୍ୟାତ । ଏମାନଙ୍କ ସହିତ ଏମାନଙ୍କ ପତ୍ନୀମାନଙ୍କୁ ମଧ୍ୟ ପୂଜା କରିବା ଉଚିତ । ପ୍ରସୂତି, ଆକୃତି, ଖ୍ୟାତି, ସମ୍ଭୂତି, ଧୃତି, ସ୍ମୃତି, କ୍ଷମା, ସଂନତି, ଅନସୂୟା, ଦେବମାତା ଅଦିତି ଓ ଅରୁନ୍ଧତୀ—ଏ ସମସ୍ତ ଋଷିପତ୍ନୀ ପତିବ୍ରତା, ଶିବପୂଜନପରାୟଣା, କାନ୍ତିମତୀ ଓ ପ୍ରିୟଦର୍ଶନା (ପରମ ସୁନ୍ଦରୀ)

ଅଟନ୍ତି । ଅଥବା ପ୍ରଥମ ଆବରଣରେ ଚାରି ବେଦଙ୍କୁ ପୂଜନ କରିବେ, ତା'ପରେ ଦ୍ୱିତୀୟ ଆବରଣରେ ଇତିହାସ-ପୁରାଣର ଅର୍ଚ୍ଚନା କରିବେ ଏବଂ ତୃତୀୟ ଆବରଣରେ ଧର୍ମଶାସ୍ତ୍ରସହିତ ସମସ୍ତ ବୈଦିକ ବିଦ୍ୟାମାନଙ୍କୁ ସର୍ବଦିଗରେ ପୂଜା କରିବେ । ଚାରିବେଦଙ୍କୁ ପୂର୍ବାଦି ଚାରିଦିଗରେ ଏବଂ ଅନ୍ୟ ଗ୍ରନ୍ଥମାନଙ୍କୁ ନିଜ ରୁଚି ଅନୁସାରେ ଆଠ ବା ଚାରିଭାଗରେ ବିଭକ୍ତ କରି ସର୍ବଦିଗରେ ସେମାନଙ୍କୁ ପୂଜା କରିବେ । ଏହିପରି ଦକ୍ଷିଣରେ ତିନି ଆବରଣଯୁକ୍ତ ବ୍ରହ୍ମାଙ୍କୁ ପୂଜା କରି ପଶ୍ଚିମରେ ଆବରଣସହିତ ରୁଦ୍ରଙ୍କୁ ପୂଜା କରିବେ ।

ଈଶାନ ଆଦି ପାଞ୍ଚ ବ୍ରହ୍ମ ଓ ହୃଦୟ ଆଦି ଛଅଟି ଅଙ୍ଗକୁ ରୁଦ୍ରଦେବଙ୍କ ପ୍ରଥମ ଆବରଣ କୁହାଯାଏ । ଦ୍ୱିତୀୟ ଆବରଣ ବିଦ୍ୟେଶ୍ୱରମୟ* ଅଟେ । ତୃତୀୟ ଆବରଣରେ ପ୍ରଭେଦ ରହିଛି । ତେଣୁ ତାହାର ବର୍ଣ୍ଣନା କରାଯାଉଛି । ସେହି ଆବରଣରେ ପୂର୍ବାଦି ଦିଗ କ୍ରମରେ ତ୍ରିଗୁଣାଦି ଚାରିମୂର୍ତ୍ତିଙ୍କୁ ପୂଜା କରିବା ଉଚିତ । ପୂର୍ବଦିଗରେ ପୂର୍ଣ୍ଣରୂପ ଶିବ ନାମକ ମହାଦେବ ପୂଜିତ ହୁଅନ୍ତି, ତାଙ୍କୁ 'ତ୍ରିଗୁଣ' ସଂଜ୍ଞା ଦିଆଯାଏ (କାରଣ ସେ ହେଉଛନ୍ତି ତ୍ରିଗୁଣାତ୍ମକ ଜଗତର ଆଶ୍ରୟ) । ଦକ୍ଷିଣଦିଗରେ 'ରାଜସ' ପୁରୁଷ ନାମରେ ପ୍ରସିଦ୍ଧ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ପୂଜା କରାଯାଏ, ତାଙ୍କୁ ଭବ କୁହାଯାଏ । ପଶ୍ଚିମଦିଗରେ 'ତାମସ' ପୁରୁଷ ଅଗ୍ନିଙ୍କୁ ପୂଜା କରାଯାଏ, ତାହାଙ୍କୁ ସଂହାରକାରୀ 'ହର' କୁହାଯାଏ । ଉତ୍ତରଦିଗରେ 'ସାତ୍ତ୍ୱିକ' ପୁରୁଷ ସୁଖଦାୟକ ବିଷ୍ଣୁଙ୍କୁ ପୂଜା କରାଯାଏ । ସେ ବିଶ୍ୱପାଳକ 'ମୃଡ଼' ଅଟନ୍ତି । ପଶ୍ଚିମଭାଗରେ ଶମ୍ଭୁଙ୍କ ଶିବରୂପକୁ, ଯେ କି ପଚିଶ ତତ୍ତ୍ୱର ସାକ୍ଷୀ ଛବିଶତମ⁋ ତତ୍ତ୍ୱ ଅଟନ୍ତି, ତାଙ୍କୁ ପୂଜା କରି ଉତ୍ତରଦିଗରେ ଭଗବାନ ବିଷ୍ଣୁଙ୍କୁ ପୂଜା କରିବା ଉଚିତ ।

ଏହାଙ୍କର ପ୍ରଥମ ଆବରଣରେ ବାସୁଦେବଙ୍କୁ ପୂର୍ବରେ, ଅନିରୁଦ୍ଧଙ୍କୁ ଦକ୍ଷିଣରେ, ପ୍ରଦ୍ୟୁମ୍ନଙ୍କୁ ପଶ୍ଚିମରେ ଓ ସଂକର୍ଷଣଙ୍କୁ ଉତ୍ତରରେ ସ୍ଥାପିତ କରି ପୂଜା କରିବା ଉଚିତ । ଏହା ଗଲା ପ୍ରଥମ ଆବରଣ କଥା । ଏବେ ଦ୍ୱିତୀୟ ଶୁଭ ଆବରଣ କଥା କୁହାଯାଉଛି । ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ, ତିନି ରାମଙ୍କ ମଧ୍ୟରୁ ଜଣେ, ଆପଣ ଶ୍ରୀକୃଷ୍ଣ ଓ ହୟଗ୍ରୀବ—ଏମାନେ ଦ୍ୱିତୀୟ ଆବରଣରେ ପୂଜିତ ହୁଅନ୍ତି । ତୃତୀୟ ଆବରଣରେ ପୂର୍ବଭାଗରେ ଚକ୍ରକୁ, ଦକ୍ଷିଣଭାଗରେ ଅପ୍ରତିହତ ନାରାୟଣାସ୍ତ୍ରକୁ, ପଶ୍ଚିମରେ ପାଞ୍ଚଜନ୍ୟକୁ ଓ ଉତ୍ତରରେ ଶାର୍ଙ୍ଗଧନୁକୁ ପୂଜା କରାଯାଏ । ଏହିରୂପେ ତିନି ଆବରଣଯୁକ୍ତ ସାକ୍ଷାତ୍ ବିଶ୍ୱ ନାମକ ପରମ ହରି ମହାବିଷ୍ଣୁଙ୍କୁ, ଯେ କି ସଦା ସର୍ବତ୍ର ବ୍ୟାପକ, ତାଙ୍କୁ ମୂର୍ତ୍ତିରେ ଭାବନା କରି ପୂଜା କରିବା ଉଚିତ । ବିଷ୍ଣୁଙ୍କ ଚତୁର୍ବ୍ୟୂହକ୍ରମରେ ଚାରିମୂର୍ତ୍ତିଙ୍କୁ ପୂଜା କରି କ୍ରମାନୁସାରେ ଚାରିମୂର୍ତ୍ତିଙ୍କୁ ପୂଜା କରିବେ । ପ୍ରଭାଙ୍କୁ ଅଗ୍ନିକୋଣରେ, ସରସ୍ୱତୀଙ୍କୁ ନୈର୍ଋତ୍ୟକୋଣରେ, ଗଣାମ୍ବିକାଙ୍କୁ ବାୟବ୍ୟ-କୋଣରେ ଓ ଲକ୍ଷ୍ମୀଙ୍କୁ ଐଶାନ୍ୟକୋଣରେ ପୂଜା କରିବେ । ଭାନୁ ଆଦି ମୂର୍ତ୍ତି ଓ ତାଙ୍କର ଶକ୍ତିମାନଙ୍କୁ ପୂଜା କରି ସେହି ଆବରଣରେ ଲୋକେଶ୍ୱରଙ୍କୁ

* ପାଶୁପତଦର୍ଶନରେ ବିଦ୍ୟେଶ୍ୱରଙ୍କ ସଂଖ୍ୟା ଆଠ ବୋଲି କୁହାଯାଇଛି । ସେମାନଙ୍କର ନାମ ହେଲା—ଅନନ୍ତ, ସୂକ୍ଷ୍ମ, ଶିବୋତ୍ତମ, ଏକନେତ୍ର, ଏକରୁଦ୍ର, ତ୍ରିମୂର୍ତ୍ତି, ଶ୍ରୀକଣ୍ଠ ଓ ଶିଖଣ୍ଡୀ । ଏମାନଙ୍କୁ କ୍ରମାନୁସାରେ ପୂର୍ବାଦି ଦିଗରେ ସ୍ଥାପିତ କରି ପୂଜା କରିବେ । ଦ୍ୱିତୀୟ ଆବରଣରେ ଏଇମାନଙ୍କ ପୂଜା କଥା କୁହାଯାଇଛି ।

⁋ ସାଂଖ୍ୟୋକ୍ତ ୨୪ ଟି ପ୍ରାକୃତ ତତ୍ତ୍ୱର ସାକ୍ଷୀ ଜୀବକୁ ପଚିଶତମ ତତ୍ତ୍ୱ କୁହାଯାଇଛି । ସର୍ବସାକ୍ଷୀ ପରମାତ୍ମା ଶିବ ହେଉଛନ୍ତି ଏହାର ଉର୍ଦ୍ଧ୍ୱରେ ଥିବା ଛବିଶତମ ତତ୍ତ୍ୱସ୍ୱରୂପ ।

ପୂଜା କରିବେ । ସେମାନଙ୍କ ନାମ ହେଲା—ଇନ୍ଦ୍ର, ଅଗ୍ନି, ଯମ, ନିର୍ଋତି, ବରୁଣ, ବାୟୁ, ସୋମ, କୁବେର ଓ ଈଶାନ । ଏହିରୂପେ ଚତୁର୍ଥ ଆବରଣର ପୂଜା ବିଧିପୂର୍ବକ ସମ୍ପନ୍ନ କରିବା ପରେ ବାହ୍ୟ-ଭାଗରେ ମହେଶ୍ୱରଙ୍କ ଆୟୁଧଗୁଡ଼ିକର ଅର୍ଚ୍ଚନା କରିବେ । ଐଶାନ୍ୟକୋଣରେ ତେଜସ୍ୱୀ ତ୍ରିଶୂଳକୁ, ପୂର୍ବଦିଗରେ ବଜ୍ରକୁ, ଅଗ୍ନିକୋଣରେ ପରଶୁକୁ, ଦକ୍ଷିଣରେ ଶରକୁ, ନୈର୍ଋତ୍ୟକୋଣରେ ଖଡ୍‌ଗକୁ, ପଶ୍ଚିମରେ ପାଶକୁ, ବାୟବ୍ୟକୋଣରେ ଅଙ୍କୁଶକୁ ଓ ଉତ୍ତରଦିଗରେ ପିନାକକୁ ପୂଜା କରିବେ । ତା'ପରେ ପଶ୍ଚିମାଭିମୁଖ ରୌଦ୍ରରୂପଧାରୀ କ୍ଷେତ୍ରପାଳଙ୍କୁ ଅର୍ଚ୍ଚନା କରିବେ ।

ଏହିରୂପେ ପଞ୍ଚମ ଆବରଣ ପୂଜା ସମ୍ପନ୍ନ କରି ସମସ୍ତ ଆବରଣ ଦେବତାଙ୍କ ବାହ୍ୟଭାଗରେ ଅଥବା ପଞ୍ଚମ ଆବରଣରେ ହିଁ ମାତୃକାସହିତ ମହାବୃଷଭ ନନ୍ଦିକେଶ୍ୱରଙ୍କୁ ପୂର୍ବଦିଗରେ ପୂଜା କରିବେ । ତା'ପରେ ସମସ୍ତ ଦେବଯୋନିଙ୍କୁ ଚତୁର୍ଦ୍ଦିଗରେ ଅର୍ଚ୍ଚନା କରିବେ । ଏହାଛଡ଼ା ଆକାଶରେ ବିଚରଣକାରୀ ଋଷି, ସିଦ୍ଧ, ଦୈତ୍ୟ, ଯକ୍ଷ, ରାକ୍ଷସ, ଅନନ୍ତ ଆଦି ନାଗରାଜ, ସେହିସବୁ ନାଗେଶ୍ୱରଙ୍କ କୁଳରେ ଉତ୍ପନ୍ନ ଅନ୍ୟାନ୍ୟ ନାଗ, ଡାକିନୀ, ଭୂତ, ବେତାଳ, ପ୍ରେତ ଓ ଭୈରବନାୟକ, ନାନା ଯୋନିରେ ଉତ୍ପନ୍ନ ଅନ୍ୟ ପାତାଳବାସୀ ଜୀବ, ନଦୀ, ସମୁଦ୍ର, ପର୍ବତ, ବନ, ସରୋବର, ପଶୁ, ପକ୍ଷୀ, ବୃକ୍ଷ, କୀଟ-ପତଙ୍ଗାଦି କ୍ଷୁଦ୍ର ଜୀବ, ମନୁଷ୍ୟ, ନାନା ଆକାର-ପ୍ରକାରର ମୃଗ, କ୍ଷୁଦ୍ର ଜନ୍ତୁ, ବ୍ରହ୍ମାଣ୍ଡ ଭିତରର ନାନା ଭୁବନ, କୋଟି କୋଟି ବ୍ରହ୍ମାଣ୍ଡ, ବ୍ରହ୍ମାଣ୍ଡର ବାହାରେ ଥିବା ଅସଂଖ୍ୟ ଭୁବନ ଓ ସେଗୁଡ଼ିକର ଅଧୀଶ୍ୱର ତଥା ଦଶଦିଗରେ ସ୍ଥିତ ବ୍ରହ୍ମାଣ୍ଡର ଆଧାରଭୂତ ରୁଦ୍ରଙ୍କୁ ଏବଂ ଗୁଣଜନିତ, ମାୟାଜନିତ, ଶକ୍ତିଜନିତ ଓ ତହିଁରୁ ବି ଊର୍ଦ୍ଧ୍ୱରେ ଯାହା କିଛି ଶବ୍ଦବାଚ୍ୟ ଜଡ଼ଚେତନାତ୍ମକ ଜଗତ ରହିଛି, ସେସବୁକୁ ଶିବା ଓ ଶିବଙ୍କ ପାର୍ଶ୍ୱଭାଗରେ ସ୍ଥିତ ଜାଣି ସେମାନଙ୍କୁ ସାଧାରଣଭାବରେ ଯଜନ କରିବେ । ସେମାନେ ସମସ୍ତେ କରପତ୍ର ଯୋଡ଼ି ସସ୍ମିତବଦନରେ ପ୍ରେମପୂର୍ବକ ମହାଦେବ ଓ ମହାଦେବୀଙ୍କୁ ଦର୍ଶନ କରୁଛନ୍ତି— ଏପରି ଚିନ୍ତନ କରିବା ଉଚିତ । ଏଭଳି ଭାବରେ ଆବରଣ ପୂଜା ସମ୍ପନ୍ନ କରି ବିକ୍ଷେପ ଶାନ୍ତି ପାଇଁ ପୁନଃ ଦେବେଶ୍ୱର ଶିବଙ୍କୁ ଅର୍ଚ୍ଚନା କରିବା ପରେ ପଞ୍ଚାକ୍ଷରମନ୍ତ୍ର ଜପ କରିବେ । ତା'ପରେ ଶିବ ଓ ପାର୍ବତୀଙ୍କ ସମ୍ମୁଖରେ ଉତ୍ତମ ବ୍ୟଞ୍ଜନଯୁକ୍ତ ଅମୃତୋପମ ମଧୁର, ଶୁଦ୍ଧ ଓ ମନୋହର ମହାଚରୁ ନୈବେଦ୍ୟ ନିବେଦନ କରିବେ । ଏହି ମହାଚରୁ ବତିଶ ଆଢ଼କ ପରିମାଣର ହେବା ଉଚିତ । ଅତିକମ୍‌ରେ ଏକ ଆଢକ (ଗ୍ରିସେର) ହେଲେ ଚଳିବ; କିନ୍ତୁ ଏହା ନିମ୍ନ ଶ୍ରେଣୀର ଧରାଯାଏ । ନିଜ ବୈଭବ ଅନୁସାରେ ଯେତିକି ସମ୍ଭବ, ସେତିକି ମହାଚରୁ ପ୍ରସ୍ତୁତ କରି ଶ୍ରଦ୍ଧାପୂର୍ବକ ନିବେଦିତ କରିବେ । ତା'ପରେ ଜଳ ଓ ତାମ୍ବୂଳ-ଅଳେଇଚ ଇତ୍ୟାଦି ନିବେଦିତ କରିସାରି ଆଳତି କରି ପୂଜା ସମାପ୍ତ କରିବେ । ଯାଗରେ ଉପଯୋଗ ହେଉଥିବା ଦ୍ରବ୍ୟ, ଭୋଜନ, ବସ୍ତ୍ର ଆଦି ଉତ୍ତମ ଶ୍ରେଣୀର ହେବା ଉଚିତ । ଭକ୍ତିମାନ୍ ବ୍ୟକ୍ତି ବୈଭବ ଥାଇ ମଧ୍ୟ କୃପଣତା କରିବା ଉଚିତ ନୁହେଁ । ଯେ ଶଠ ବା କୃପଣ ଏବଂ ଯେ ପୂଜା ପ୍ରତି ଉପେକ୍ଷାଭାବ କରେ, ସେ ଯଦି କୃପଣତା ହେତୁ କର୍ମକୁ ଅଙ୍ଗହୀନ କରିଦିଏ, ତେବେ ସେହି କାମ୍ୟ କର୍ମ ସଫଳ ହୁଏ ନାହିଁ । ଏହା ସତ୍‌ପୁରୁଷଙ୍କର କଥନ ।

ଏଣୁ ଫଳସିଦ୍ଧି ଚାହୁଁଥିବା ମନୁଷ୍ୟ ଉପେକ୍ଷାଭାବ ନ କରି ସାଙ୍ଗୋପାଙ୍ଗ କାମ୍ୟ କର୍ମକୁ ସମ୍ପାଦନ କରିବା ଆବଶ୍ୟକ । ଏପରି

ପୂଜା ସମାପ୍ତ କରି ମହାଦେବ ଓ ମହାଦେବୀଙ୍କୁ ପ୍ରଣାମ କରିବେ। ତା'ପରେ ଭକ୍ତିଭାବରେ ମନକୁ ଏକାଗ୍ର କରି ସ୍ତୁତିପାଠ କରିବେ। ସ୍ତୁତି ପରେ ସାଧକ ଉତ୍ସୁକତାପୂର୍ବକ ଅତିକମ୍‌ରେ ଶହେଆଠ ଥର, ସମ୍ଭବ ହେଲେ ସହସ୍ରାଧିକ ବାର ପଞ୍ଚାକ୍ଷରୀ ବିଦ୍ୟା ଜପ କରିବେ। ତା'ପରେ କ୍ରମାନୁସାରେ ବିଦ୍ୟା ଓ ଗୁରୁଙ୍କୁ ପୂଜା କରି ନିଜ ଅଭ୍ୟୁଦୟ ଓ ଶ୍ରଦ୍ଧା ଅନୁସାରେ ଯଜ୍ଞମଣ୍ଡପର ସଦସ୍ୟଙ୍କୁ ବି ପୂଜା କରିବେ। ତା'ପରେ ଆବରଣସହିତ ଦେବେଶ୍ୱର ଶିବଙ୍କୁ ବିସର୍ଜନ କରି ଯଜ୍ଞର ଉପକରଣ ସମେତ ସମଗ୍ର ମଣ୍ଡଳକୁ ଗୁରୁଙ୍କୁ ଅଥବା ଶିବଚରଣାଶ୍ରିତ ଭକ୍ତଙ୍କୁ ଦେଇଦେବେ। ଅଥବା ତାହାକୁ ଶିବଙ୍କ ଉଦ୍ଦେଶ୍ୟରେ ଶିବକ୍ଷେତ୍ରରେ ସମର୍ପିତ କରିଦେବେ। ଅଥବା ସମସ୍ତ ଆବରଣ ଦେବତାଙ୍କୁ ଯଥୋଚିତ ରୀତିରେ ପୂଜା କରି ସାତ ପ୍ରକାର ହୋମସାମଗ୍ରୀ ଦ୍ୱାରା ଶିବାଗ୍ନିରେ ଇଷ୍ଟଦେବଙ୍କୁ ଯଜନ କରିବେ।

ଏହା ତ୍ରିଲୋକରେ ବିଖ୍ୟାତ ଯୋଗେଶ୍ୱର ନାମକ ଯୋଗ ଅଟେ। ଏହାଠାରୁ ବଳି କୌଣସି ଯୋଗ ତ୍ରିଭୁବନରେ ନାହିଁ। ସଂସାରରେ ଏପରି କୌଣସି ବସ୍ତୁ ନାହିଁ, ଯାହା ଏହାଦ୍ୱାରା ସାଧ୍ୟ ହୋଇ ନ ପାରିବ। ଇହଲୋକର ବା ପରଲୋକର ଯେକୌଣସି ପ୍ରକାର ଫଳ ଏହାଦ୍ୱାରା ପ୍ରାପ୍ତ ହେବା ସୁଲଭ ହୋଇପାରେ। ଅମୁକ ଫଳ ଏହାଦ୍ୱାରା ମିଳିବ ନାହିଁ—ଏପରି କିଛି ସୀମା-ନିୟନ୍ତ୍ରଣ ନାହିଁ; କାରଣ ସମସ୍ତ ଶ୍ରେୟରୂପୀ ସାଧ୍ୟର ଏହା ହିଁ ସାଧନ। ଏକଥା ସୁନିଶ୍ଚିତରୂପେ କୁହାଯାଇ ପାରିବ ଯେ ବ୍ୟକ୍ତି ଯାହା କିଛି ଫଳ ଚାହେଁ, ତାହା ଚିନ୍ତାମଣି ପରି ଏହାଦ୍ୱାରା ପ୍ରାପ୍ତ ହେବା ସମ୍ଭବ। ମାତ୍ର କୌଣସି କ୍ଷୁଦ୍ର ଫଳ ନିମନ୍ତେ ଏହାକୁ ପ୍ରୟୋଗ କରିବା ଉଚିତ ନୁହେଁ; କାରଣ କୌଣସି ମହାନ୍ ବସ୍ତୁଦ୍ୱାରା ଲଘୁ ଫଳ ଗ୍ରହୁଁଥିବା ବ୍ୟକ୍ତି ସ୍ୱୟଂ ଲଘୁତାକୁ ପ୍ରାପ୍ତ ହୋଇଥାଏ। ମହାଦେବଙ୍କ ଉଦ୍ଦେଶ୍ୟରେ ମହାନ୍ ବା ଅଳ୍ପ ଯାହା କିଛି କର୍ମ କରାଯାଏ, ତାହା ସିଦ୍ଧ ହୋଇଥାଏ। ତେଣୁ ତାଙ୍କରି ଉଦ୍ଦେଶ୍ୟରେ ଏ କର୍ମକୁ ପ୍ରୟୋଗ କରିବା ଉଚିତ। ଶତ୍ରୁ ବା ମୃତ୍ୟୁ ଉପରେ ବିଜୟ ଲାଭ କରିବା ଇତ୍ୟାଦି ଯେଉଁ ଫଳ ଅନ୍ୟ କୌଣସି ସାଧନ ଦ୍ୱାରା ସିଦ୍ଧ ହେବା ସମ୍ଭବ ହୁଏ ନାହିଁ, ସେପରି ଲୌକିକ ବା ପାରଲୌକିକ ଫଳ ନିମନ୍ତେ ବିଦ୍ୱାନ୍ ପୁରୁଷ ଏହାକୁ ପ୍ରୟୋଗ କରିପାରିବେ। ମହାପାତକରେ, ମହାଭୟଙ୍କର ରୋଗରେ, ଭୟରେ ଓ ଦୁର୍ଭିକ୍ଷ ଆଦିରେ ଯଦି ଶାନ୍ତିକରଣ ଆବଶ୍ୟକ ହୁଏ, ତେବେ ଏହାଦ୍ୱାରା ଶାନ୍ତି କରିପାରିବେ। ଅଧିକ କେତେ ବା କହିବା, ଏହି ଯୋଗକୁ ମହେଶ୍ୱର ଶିବ ଶୈବମାନଙ୍କ ପାଇଁ ବହୁତ ବଡ଼ ବିପତ୍ତିନିବାରଣକାରୀ ସ୍ୱକୀୟ ଅସ୍ତ୍ର ବୋଲି କହିଛନ୍ତି। ତେଣୁ ଏହାଠାରୁ ବଡ଼ ରକ୍ଷକ ଆଉ କେହି ନାହିଁ ବୋଲି ବୁଝି ଏହାକୁ ପ୍ରୟୋଗ କଲେ ବ୍ୟକ୍ତି ଶୁଭଫଳର ଭାଗୀ ହୋଇଥାଏ। ଯେ ପ୍ରତିଦିନ ପବିତ୍ର ହୋଇ ଏକାଗ୍ରଚିତ୍ତରେ କେବଳ ସ୍ତୋତ୍ର ବି ପାଠ କରେ, ସେ ମଧ୍ୟ ଅଭୀଷ୍ଟ ପ୍ରୟୋଜନର ଏକଅଷ୍ଟମାଂଶ ଫଳ ପାଇଥାଏ। ଯେ ଅର୍ଥର ଅନୁସନ୍ଧାନ କରି କରି ନିରବଚ୍ଛିନ୍ନଭାବେ ମାସେ ପର୍ଯ୍ୟନ୍ତ ସ୍ତୋତ୍ର ପାଠ କରେ ଏବଂ ପୂର୍ଣ୍ଣିମା, ଅଷ୍ଟମୀ ଓ ଚତୁର୍ଦ୍ଦଶୀ ଦିନ ବ୍ରତ କରେ, ସେ ସମସ୍ତ ଅଭୀଷ୍ଟ ଫଳର ଭାଗୀ ହୋଇଥାଏ।

(ଅଧ୍ୟାୟ ୩୦)

***

# ଶିବଙ୍କ ପାଞ୍ଚ ଆବରଣରେ ସ୍ଥିତ ସମସ୍ତ ଦେବତାଙ୍କ ସ୍ତୁତି ଏବଂ ସେମାନଙ୍କ ଠାରୁ ଅଭୀଷ୍ଟପୂର୍ତ୍ତି ଓ ମଙ୍ଗଳ ନିମନ୍ତେ କାମନା

### ଉପମନ୍ୟୁରୁବାଚ

ସ୍ତୋତ୍ରଂ ବକ୍ଷାମି ତେ କୃଷ୍ଣ ପଞ୍ଚାବରଣମାର୍ଗତଃ ।
ଯୋଗେଶ୍ୱରମିଦଂ ପୁଣ୍ୟଂ କର୍ମ ଯେନ ସମାପ୍ୟତେ ॥ ୧

ଉପମନ୍ୟୁ କହୁଛନ୍ତି—**ଶ୍ରୀକୃଷ୍ଣ ! ଏବେ ମୁଁ ତୁମ ଆଗରେ ପଞ୍ଚାବରଣ ପୂଜାର ଅଙ୍ଗଭୂତ ସ୍ତୋତ୍ରର ବର୍ଣ୍ଣନା କରିବି, ଯାହା ପାଠ କଲେ ଏହି ଯୋଗେଶ୍ୱର ନାମକ ପୁଣ୍ୟକର୍ମ ପୂର୍ଣ୍ଣତା ଲାଭ କରେ ॥ ୧ ॥**

ଜୟ ଜୟ ଜଗଦେକନାଥ ଶମ୍ଭୋ
ପ୍ରକୃତିମନୋହର ନିତ୍ୟଚିତ୍‌ସ୍ୱଭାବ ।
ଅତିଗତକଲୁଷପ୍ରପଞ୍ଚବାଗ୍-
ମପି ମନସାଂ ପଦବୀମତୀତତତ୍ତ୍ୱମ୍ ॥ ୨

**ଜଗତର ଏକମାତ୍ର ରକ୍ଷକ ! ନିତ୍ୟ ଚିନ୍ମୟସ୍ୱଭାବ ! ପ୍ରକୃତିମନୋହର ଶମ୍ଭୋ ! ଆପଣଙ୍କ ତତ୍ତ୍ୱ କଳୁଷରାଶିରହିତ ନିର୍ମଳ ଏବଂ ବାଣୀ ଓ ମନର ମଧ୍ୟ ଅଗୋଚର । ଆପଣଙ୍କର ଜୟ ହେଉ, ଜୟ ହେଉ ॥ ୨ ॥**

ସ୍ୱଭାବନିର୍ମଳାଭୋଗ ଜୟ ସୁନ୍ଦରଚେଷ୍ଟିତ ।
ସ୍ୱାତ୍ମତୁଲ୍ୟମହାଶକ୍ତେ ଜୟ ଶୁଦ୍ଧଗୁଣାର୍ଣ୍ଣବ ॥ ୩

**ଆପଣଙ୍କ ଶ୍ରୀବିଗ୍ରହ ସ୍ୱାଭାବିକରୂପେ ନିର୍ମଳ, ଆପଣଙ୍କ ଚେଷ୍ଟା ପରମ ସୁନ୍ଦର । ଆପଣଙ୍କର ଜୟ ହେଉ । ଆପଣଙ୍କ ମହାଶକ୍ତି ଆପଣଙ୍କ ତୁଲ୍ୟ । ଆପଣ ବିଶୁଦ୍ଧ କଲ୍ୟାଣମୟ ଗୁଣମାନଙ୍କର ମହାସାଗର, ଆପଣଙ୍କର ଜୟ ହେଉ ॥ ୩ ॥**

ଅନନ୍ତକାନ୍ତିସମ୍ପନ୍ନ ଜୟାସଦୃଶବିଗ୍ରହ ।
ଅତର୍କ୍ୟମହିମାଧାର ଜୟାନାକୁଳମଙ୍ଗଳ ॥ ୪

**ଆପଣ ଅନନ୍ତ କାନ୍ତିସମ୍ପନ୍ନ । ଆପଣଙ୍କ ଶ୍ରୀବିଗ୍ରହର ତୁଳନା ନାହିଁ । ଆପଣଙ୍କର ଜୟ ହେଉ । ଆପଣ ଅତର୍କ୍ୟ ମହିମାର ଆଧାର ଓ ଶାନ୍ତିମୟ ମଙ୍ଗଳର ନିକେତନ । ଆପଣଙ୍କର ଜୟ ହେଉ ॥ ୪ ॥**

ନିରଞ୍ଜନ ନିରାଧାର ଜୟ ନିଷ୍କାରଣୋଦୟ ।
ନିରନ୍ତରପରାନନ୍ଦ ଜୟ ନିର୍ବୃତିକାରଣ ॥ ୫

**ନିରଞ୍ଜନ (ନିର୍ମଳ), ଆଧାରରହିତ ଓ କାରଣରହିତ ଭାବେ ପ୍ରକଟ ହୋଇଥିବା ଶିବ ! ଆପଣଙ୍କର ଜୟ ହେଉ । ନିରନ୍ତର ପରମାନନ୍ଦମୟ ! ଶାନ୍ତି ଓ ସୁଖର କାରଣ ! ଆପଣଙ୍କର ଜୟ ହେଉ ॥ ୫ ॥**

ଜୟାତିପରମୈଶ୍ୱର୍ଯ୍ୟ ଜୟାତିକରୁଣାସ୍ପଦ ।
ଜୟ ସ୍ୱତନ୍ତ୍ରସର୍ବସ୍ୱ ଜୟାସଦୃଶବୈଭବ ॥ ୬

**ଅତିଶୟ ଉତ୍କୃଷ୍ଟ ଐଶ୍ୱର୍ଯ୍ୟରେ ସୁଶୋଭିତ ତଥା ଅତ୍ୟନ୍ତ କରୁଣାର ଆଧାର ! ଆପଣଙ୍କର ଜୟ ହେଉ । ପ୍ରଭୋ ! ଆପଣଙ୍କର ସବୁ କିଛି ସ୍ୱତନ୍ତ୍ର ତଥା ଆପଣଙ୍କ ବୈଭବ ତୁଲ୍ୟ ବୈଭବ ଆଉ କେଉଁଠି ନାହିଁ । ଆପଣଙ୍କର ଜୟ ହେଉ ॥ ୬ ॥**

ଜୟାବୃତମହାବିଶ୍ୱ ଜୟାନାବୃତ କେନଚିତ୍ ।
ଜୟୋତ୍ତର ସମସ୍ତସ୍ୟ ଜୟାତ୍ୟନ୍ତନିରୁତ୍ତର ॥ ୭

**ଆପଣ ବିରାଟ୍ ବିଶ୍ୱରେ ବ୍ୟାପ୍ତିଛନ୍ତି, କିନ୍ତୁ ଆପଣ କାହାରିଦ୍ୱାରା ବ୍ୟାପ୍ତ ନୁହନ୍ତି । ଆପଣଙ୍କର ଜୟ ହେଉ, ଜୟ ହେଉ । ଆପଣ ସବୁଠୁ ଉତ୍କୃଷ୍ଟ, କିନ୍ତୁ ଆପଣଙ୍କ ଠାରୁ ଶ୍ରେଷ୍ଠ ଆଉ କେହି ନାହିଁ । ଆପଣଙ୍କର ଜୟ ହେଉ, ଜୟ ହେଉ ॥ ୭ ॥**

ଜୟାଦ୍ଭୁତ ଜୟାକ୍ଷୁଦ୍ର ଜୟାକ୍ଷତ ଜୟାବ୍ୟୟ ।
ଜୟାମେୟ ଜୟାମାୟ ଜୟାଭବ ଜୟାମଳ ॥ ୮

**ଆପଣ ଅଦ୍ଭୁତ, ଆପଣଙ୍କର ଜୟ ହେଉ । ଆପଣ ଅକ୍ଷୁଦ୍ର (ମହାନ୍), ଆପଣଙ୍କର ଜୟ ହେଉ । ଆପଣ ଅକ୍ଷତ (ନିର୍ବିକାର), ଆପଣଙ୍କର ଜୟ ହେଉ । ଆପଣ ଅବିନାଶୀ, ଆପଣଙ୍କର ଜୟ ହେଉ । ଅପ୍ରମେୟ ପରମାତ୍ମନ୍ ! ଆପଣଙ୍କର ଜୟ ହେଉ । ମାୟାରହିତ ମହେଶ୍ୱର ! ଆପଣଙ୍କର ଜୟ ହେଉ । ଅଜନ୍ମା ଶିବ ! ଆପଣଙ୍କର ଜୟ ହେଉ ।**

**ନିର୍ମଳ ଶଙ୍କର ! ଆପଣଙ୍କର ଜୟ ହେଉ ॥ ୮ ॥**

ମହାଭୁଜ ମହାସାର ମହାଗୁଣ ମହାକଥ ।
ମହାବଳ ମହାମାୟ ମହାରସ ମହାରଥ ॥ ୯

**ମହାବାହୋ ! ମହାସାର ! ମହାଗୁଣ ! ମହତୀ କୀର୍ତ୍ତିକଥାଯୁକ୍ତ ! ମହାବଳୀ ! ମହାମାୟାବୀ ! ମହାନ୍ ରସିକ ତଥା ମହାରଥ ! ଆପଣଙ୍କର ଜୟ ହେଉ ॥ ୯ ॥**

ନମଃ ପରମଦେବାୟ ନମଃ ପରମହେତବେ ।
ନମଃ ଶିବାୟ ଶାନ୍ତାୟ ନମଃ ଶିବତରାୟ ତେ ॥ ୧୦

**ଆପଣଙ୍କ ପରି ପରମ ଆରାଧ୍ୟକୁ ନମସ୍କାର, ପରମ କାରଣକୁ ନମସ୍କାର । ଶାନ୍ତ ଶିବଙ୍କୁ ନମସ୍କାର ଓ ପରମ କଲ୍ୟାଣମୟ ପ୍ରଭୁଙ୍କୁ ନମସ୍କାର ॥ ୧୦ ॥**

ତ୍ୱଦଧୀନମିଦଂ କୃତ୍ସ୍ନଂ ଜଗଦ୍ଧି ସସୁରାସୁରମ୍ ॥ ୧୧
ଅତସ୍ତ୍ୱଦ୍‌ବିହିତାମାଜ୍ଞାଂ କ୍ଷମତେ କୋଽତିବର୍ତ୍ତିତୁମ୍ ॥ ୧୨

**ଦେବତା ଓ ଅସୁରଙ୍କ ସମେତ ଏ ସମଗ୍ର ବିଶ୍ୱ ଆପଣଙ୍କ ଅଧୀନ । ତେଣୁ ଆପଣଙ୍କ ଆଜ୍ଞାକୁ ଉଲ୍ଲଙ୍ଘନ କରିବାକୁ କିଏ ଅବା ସମର୍ଥ ହୋଇପାରିବ ଭଲା? ॥ ୧୧-୧୨ ॥**

ଅୟଂ ପୁନର୍ଜନୋ ନିତ୍ୟ ଭବଦେକସମାଶ୍ରୟଃ ।
ଭବାନତୋଽନୁଗୃହ୍ୟାସ୍ମୈ ପ୍ରାର୍ଥିତଂ ସମ୍ପ୍ରୟଚ୍ଛତୁ ॥ ୧୩

**ହେ ସନାତନ ଦେବ ! ଏ ସେବକ ଏକମାତ୍ର ଆପଣଙ୍କର ହିଁ ଆଶ୍ରିତ; ତେଣୁ ଆପଣ ଏ ଅଧୀନ ପ୍ରତି ଅନୁଗ୍ରହ କରି ଏହାକୁ ପ୍ରାର୍ଥିତ ବସ୍ତୁ ପ୍ରଦାନ କରନ୍ତୁ ॥ ୧୩ ॥**

ଜୟାମ୍ବିକେ ଜଗନ୍ମାତର୍ଜୟ ସର୍ବଜଗନ୍ମୟି ।
ଜୟାନବଧିକୈଶ୍ୱର୍ଯ୍ୟେ ଜୟାନୁପମବିଗ୍ରହେ ॥ ୧୪

**ଅମ୍ବିକେ ! ଜଗନ୍ମାତ ! ଆପଣଙ୍କର ଜୟ ହେଉ । ହେ ସର୍ବଜଗନ୍ମୟୀ ! ଆପଣଙ୍କର ଜୟ ହେଉ । ହେ ଅସୀମ ଐଶ୍ୱର୍ଯ୍ୟଶାଳିନୀ ! ଆପଣଙ୍କର ଜୟ ହେଉ । ଆପଣଙ୍କ ଶ୍ରୀବିଗ୍ରହର ଉପମା ନାହିଁ, ଆପଣଙ୍କର ଜୟ ହେଉ ॥ ୧୪ ॥**

ଜୟ ବାଙ୍ମନସାତୀତେ ଜୟାଚିଦ୍‌ଧ୍ୱାନ୍ତଭଞ୍ଜିକେ ।
ଜୟ ଜନ୍ମଜରାହୀନେ ଜୟ କାଳୋତ୍ତରୋତ୍ତରେ ॥ ୧୫

**ମନ-ବାଣୀରୁ ଅତୀତ ଶିବେ ! ଆପଣଙ୍କର ଜୟ ହେଉ । ହେ ଅଜ୍ଞାନାନ୍ଧକାର ଭଞ୍ଜନକାରିଣୀ ଦେବୀ ! ଆପଣଙ୍କର ଜୟ ହେଉ । ଜନ୍ମ-ଜରାରହିତ ଉମେ ! ଆପଣଙ୍କର ଜୟ ହେଉ । କାଳଠାରୁ ମଧ୍ୟ ଅତ୍ୟନ୍ତ ଉତ୍କୃଷ୍ଟ ଶକ୍ତିଧାରିଣୀ ଦୁର୍ଗେ ! ଆପଣଙ୍କର ଜୟ ହେଉ ॥ ୧୫ ॥**

ଜୟାନେକବିଧାନସ୍ଥେ ଜୟ ବିଶ୍ୱେଶ୍ୱରପ୍ରିୟେ ।
ଜୟ ବିଶ୍ୱସୁରାରାଧ୍ୟେ ଜୟ ବିଶ୍ୱବିଜୃମ୍ଭିଣି ॥ ୧୬

**ଅନେକ ପ୍ରକାର ବିଧାନରେ ସ୍ଥିତ ହେ ପରମେଶ୍ୱରୀ ! ଆପଣଙ୍କର ଜୟ ହେଉ । ବିଶ୍ୱନାଥପ୍ରିୟେ ! ଆପଣଙ୍କର ଜୟ ହେଉ । ହେ ସମସ୍ତ ଦେବତାଙ୍କ ଆରାଧ୍ୟା ଦେବୀ ! ଆପଣଙ୍କର ଜୟ ହେଉ । ସମସ୍ତ ବିଶ୍ୱର ବିସ୍ତାରକାରିଣୀ ଜଗଦମ୍ବିକେ ! ଆପଣଙ୍କର ଜୟ ହେଉ ॥ ୧୬ ॥**

ଜୟ ମଙ୍ଗଳଦିବ୍ୟାଙ୍ଗି ଜୟ ମଙ୍ଗଳଦୀପିକେ ।
ଜୟ ମଙ୍ଗଳଚାରିତ୍ରେ ଜୟ ମଙ୍ଗଳଦାୟିନି ॥ ୧୭

**ହେ ମଙ୍ଗଳମୟ ଦିବ୍ୟାଙ୍ଗଧାରିଣୀ ଦେବୀ ! ଆପଣଙ୍କର ଜୟ ହେଉ । ହେ ମଙ୍ଗଳ ପ୍ରକାଶିତକାରିଣୀ ! ଆପଣଙ୍କର ଜୟ ହେଉ । ହେ ମଙ୍ଗଳମୟ ଚରିତ୍ରଯୁକ୍ତା ସର୍ବମଙ୍ଗଳେ ! ଆପଣଙ୍କର ଜୟ ହେଉ । ହେ ମଙ୍ଗଳଦାୟିନୀ ! ଆପଣଙ୍କର ଜୟ ହେଉ ॥ ୧୭ ॥**

ନମଃ ପରମକଲ୍ୟାଣଗୁଣସଂଚୟମୂର୍ତ୍ତୟେ ।
ତ୍ୱତ୍ତଃ ଖଲୁ ସମୁତ୍ପନ୍ନଂ ଜଗତ୍ତ୍ୱୟ୍ୟେବ ଲୀୟତେ ॥ ୧୮

**ଆପଣ ପରମ କଲ୍ୟାଣମୟ ଗୁଣର ମୂର୍ତ୍ତି, ଆପଣଙ୍କୁ ନମସ୍କାର । ସମଗ୍ର ଜଗତ ଆପଣଙ୍କ ଠାରୁ ଉତ୍ପନ୍ନ ହୋଇଛି, ତେଣୁ ତାହା ଆପଣଙ୍କ ଠାରେ ହିଁ ଲୀନ ହେବ ॥ ୧୮ ॥**

ତ୍ୱଦ୍‌ବିନାତଃ ଫଳଂ ଦାତୁମୀଶ୍ୱରୋଽପି ନ ଶକ୍ନୁୟାତ୍ ।
ଜନ୍ମପ୍ରଭୃତି ଦେବେଶି ଜନୋଽୟଂ ତ୍ୱଦୁପାଶ୍ରିତଃ ॥ ୧୯
ଅତୋଽସ୍ୟ ତବ ଭକ୍ତସ୍ୟ ନିର୍ବର୍ତୟ ମନୋରଥମ୍ ।

**ହେ ଦେବେଶ୍ୱରୀ ! ଆପଣଙ୍କ ବିନା ଈଶ୍ୱର ମଧ୍ୟ ଫଳ ଦେବାକୁ ଅସମର୍ଥ ହୁଅନ୍ତି । ଏ ଭକ୍ତ**

**ଜନ୍ମରୁ ହିଁ ଆପଣଙ୍କ ଶରଣରେ ଅଛି, ତେଣୁ ହେ ଦେବୀ ! ଆପଣ ଏହି ଭକ୍ତର ମନୋରଥ ସିଦ୍ଧ କରନ୍ତୁ ॥ ୧୯ ୧/୨ ॥**

ପଞ୍ଚବକ୍ତ୍ରୋ ଦଶଭୁଜଃ ଶୁଦ୍ଧସ୍ଫଟିକସଂନିଭଃ ॥ ୨୦
ବର୍ଣ୍ଣବ୍ରହ୍ମକଳାଦେହୋ ଦେବଃ ସକଳନିଷ୍କଳଃ ।
ଶିବମୂର୍ତ୍ତିସମାରୂଢଃ ଶାନ୍ତ୍ୟତୀତଃ ସଦାଶିବଃ ।
ଭକ୍ତ୍ୟା ମୟାର୍ଚ୍ଚିତୋ ମହ୍ୟଂ ପ୍ରାର୍ଥିତଂ ଶଂ ପ୍ରଯଚ୍ଛତୁ ॥ ୨୧

**ପ୍ରଭୋ ! ଆପଣଙ୍କର ପାଞ୍ଚ ମୁଖ ଓ ଦଶ ଭୁଜ ରହିଛି । ଆପଣଙ୍କ ଅଙ୍ଗକାନ୍ତି ଶୁଦ୍ଧସ୍ଫଟିକ ତୁଲ୍ୟ ନିର୍ମଳ । ବର୍ଣ୍ଣ, ବ୍ରହ୍ମ ଓ କଳା ଆପଣଙ୍କର ବିଗ୍ରହ । ଆପଣ ସକଳ ଓ ନିଷ୍କଳ ଦେବତା । ଆପଣ ଶିବମୂର୍ତ୍ତିରେ ସଦା ବ୍ୟାପ୍ତ ରହିଥାନ୍ତି । ଆପଣ ହିଁ ସଦାଶିବ ରୂପରେ ଶାନ୍ତ୍ୟତୀତ ପଦରେ ବିରାଜମାନ ରହିଥାନ୍ତି । ମୁଁ ଭକ୍ତିଭାବରେ ଆପଣଙ୍କ ଅର୍ଚ୍ଚନା କରିଛି । ଆପଣ ମୋତେ ପ୍ରାର୍ଥିତ କଲ୍ୟାଣ ପ୍ରଦାନ କରନ୍ତୁ ॥ ୨୦-୨୧ ॥**

ସଦାଶିବାଙ୍କମାରୂଢା ଶକ୍ତିରିଚ୍ଛା ଶିବାହ୍ୱୟା ।
ଜନନୀ ସର୍ବଲୋକାନାଂ ପ୍ରଯଚ୍ଛତୁ ମନୋରଥମ୍ ॥ ୨୨

**ସଦାଶିବଙ୍କ ଅଙ୍କରେ ଆରୂଢ଼ା, ଇଚ୍ଛାଶକ୍ତି-ସ୍ୱରୂପା, ସର୍ବଲୋକଜନନୀ ଶିବା ମୋତେ ମନୋବାଞ୍ଛିତ ବସ୍ତୁ ପ୍ରଦାନ କରନ୍ତୁ ॥ ୨୨ ॥**

ଶିବୟୋର୍ଦୟିତୌ ପୁତ୍ରୌ ଦେବୌ ହେରମ୍ବଷଣ୍ମୁଖୌ ।
ଶିବାନୁଭାବୌ ସର୍ବଜ୍ଞୌ ଶିବଜ୍ଞାନାମୃତାଶିନୌ ॥ ୨୩
ତୃପ୍ତୌ ପରସ୍ପରଂ ସ୍ନିଗ୍ଧୌ ଶିବାଭ୍ୟାଂ ନିତ୍ୟସତ୍କୃତୌ ।
ସତ୍କୃତୌ ଚ ସଦା ଦେବୌ ବ୍ରହ୍ମାଦ୍ୟୈସ୍ତ୍ରିଦଶୈରପି ॥ ୨୪
ସର୍ବଲୋକପରିତ୍ରାଣଂ କର୍ତ୍ତୁମଭ୍ୟୁଦିତୌ ସଦା ।
ସ୍ୱେଚ୍ଛାବତାରଂ କୁର୍ବନ୍ତୌ ସ୍ୱାଂଶଭେଦୈରନେକଶଃ ॥ ୨୫
ତାବିମୌ ଶିବୟୋଃ ପାର୍ଶ୍ୱେ ନିତ୍ୟମିତ୍ଥଂ ମୟାର୍ଚ୍ଚିତୌ ।
ତୟୋରାଜ୍ଞାଂ ପୁରସ୍କୃତ୍ୟ ପ୍ରାର୍ଥିତଂ ମେ ପ୍ରଯଚ୍ଛତାମ୍ ॥ ୨୬

**ଗଣେଶ ଓ କାର୍ତ୍ତିକେୟ ହେଉଛନ୍ତି ଶିବ ଓ ପାର୍ବତୀଙ୍କର ପ୍ରିୟ ପୁତ୍ର, ସେ ଦୁହେଁ ଶିବଙ୍କ ପରି ପ୍ରଭାବଶାଳୀ, ସର୍ବଜ୍ଞ ତଥା ଶିବଜ୍ଞାନାମୃତପାନରେ ତୃପ୍ତ ରହିବା ସହ ପରସ୍ପର ପ୍ରତି ସ୍ନେହଶୀଳ । ଶିବା ଓ ଶିବଙ୍କ ଦ୍ୱାରା ସେ ଦୁହେଁ ନିତ୍ୟ ସତ୍କୃତ ତଥା ବ୍ରହ୍ମାଦି ଦେବତା ମଧ୍ୟ ସେ ଦୁହିଙ୍କୁ ସର୍ବଥା ସତ୍କାର କରିଥାନ୍ତି । ସେ ଦୁଇଭାଇ ନିରନ୍ତର ସମଗ୍ର ଜଗତକୁ ରକ୍ଷା କରିବାକୁ ଉଦ୍ୟତ ରହିଥାନ୍ତି ଏବଂ ନିଜର ବିଭିନ୍ନ ଅଂଶ ଦ୍ୱାରା ଅନେକ ଥର ସ୍ୱେଚ୍ଛାପୂର୍ବକ ଅବତାର ଧାରଣ କରିଥାନ୍ତି । ସେ ଦୁହେଁ ଶିବ ଓ ଶିବାଙ୍କ ପାର୍ଶ୍ୱଭାଗରେ ମୋ'ଦ୍ୱାରା ପୂଜିତ ହୋଇ ତାଙ୍କ ଆଜ୍ଞାରେ ମୋତେ ପ୍ରାର୍ଥିତ ବସ୍ତୁ ପ୍ରଦାନ କରନ୍ତୁ ॥ ୨୩–୨୬ ॥**

ଶୁଦ୍ଧସ୍ଫଟିକସଂକାଶମୀଶାନାଖ୍ୟଂ ସଦାଶିବମ୍ ।
ମୂର୍ଦ୍ଧାଭିମାନିନୀ ମୂର୍ତ୍ତିଃ ଶିବସ୍ୟ ପରମାତ୍ମନଃ ॥ ୨୭
ଶିବାର୍ଚ୍ଚନରତଂ ଶାନ୍ତଂ ଶାନ୍ତ୍ୟତୀତଂ ଖମାସ୍ଥିତମ୍ ।
ପଞ୍ଚାକ୍ଷରାନ୍ତିମଂ ବୀଜଂ କଳାଭିଃ ପଞ୍ଚଭିର୍ଯୁତମ୍ ॥ ୨୮
ପ୍ରଥମାବରଣେ ପୂର୍ବଂ ଶକ୍ତ୍ୟା ସହ ସମର୍ଚ୍ଚିତମ୍ ।
ପବିତ୍ରଂ ପରମଂ ବ୍ରହ୍ମ ପ୍ରାର୍ଥିତଂ ମେ ପ୍ରଯଚ୍ଛତୁ ॥ ୨୯

**ଯେଉଁ ପବିତ୍ର ପରବ୍ରହ୍ମ ଶୁଦ୍ଧ ସ୍ଫଟିକମଣି ତୁଲ୍ୟ ନିର୍ମଳ, ଈଶାନ ନାମରେ ପ୍ରସିଦ୍ଧ, ସଦା କଲ୍ୟାଣସ୍ୱରୂପ, ପରମାତ୍ମା ଶିବଙ୍କ ମୂର୍ଦ୍ଧାଭିମାନିନୀ ମୂର୍ତ୍ତି, ଶିବାର୍ଚ୍ଚନରେ ରତ, ଶାନ୍ତ, ଶାନ୍ତ୍ୟତୀତାକଳାରେ ପ୍ରତିଷ୍ଠିତ, ଆକାଶମଣ୍ଡଳରେ ସ୍ଥିତ, ଶିବ-ପଞ୍ଚାକ୍ଷରର ଅନ୍ତିମ ବୀଜସ୍ୱରୂପ, ପଞ୍ଚକଳାଯୁକ୍ତ ଓ ପ୍ରଥମ ଆବରଣରେ ସର୍ବପ୍ରଥମେ ଶକ୍ତିଙ୍କ ସହ ପୂଜିତ ହୁଅନ୍ତି, ସେ ମୋତେ ମୋର ଅଭୀଷ୍ଟ ବସ୍ତୁ ପ୍ରଦାନ କରନ୍ତୁ ॥ ୨୭–୨୯ ॥**

ବାଲସୂର୍ଯ୍ୟପ୍ରତୀକାଶଂ ପୁରୁଷାଖ୍ୟଂ ପୁରାତନମ୍ ।
ପୂର୍ବବକ୍ତ୍ରାଭିମାନଂ ଚ ଶିବସ୍ୟ ପରମେଷ୍ଠିନଃ ॥ ୩୦
ଶାନ୍ତ୍ୟାତ୍ମକଂ ମରୁଦ୍‌ସଂସ୍ଥଂ ଶମ୍ଭୋଃ ପାଦାର୍ଚ୍ଚନେ ରତମ୍ ।
ପ୍ରଥମଂ ଶିବବୀଜେଷୁ କଳାସୁ ଚ ଚତୁଷ୍କଳାମ୍ ॥ ୩୧
ପୂର୍ବଭାଗେ ମୟା ଭକ୍ତ୍ୟା ଶକ୍ତ୍ୟା ସହ ସମର୍ଚ୍ଚିତମ୍ ।
ପବିତ୍ରଂ ପରମଂ ବ୍ରହ୍ମ ପ୍ରାର୍ଥିତଂ ମେ ପ୍ରଯଚ୍ଛତୁ ॥ ୩୨

**ଯେଉଁ ପବିତ୍ର ପରମ ବ୍ରହ୍ମ ପ୍ରାତଃକାଳୀନ ସୂର୍ଯ୍ୟ ପରି ଅରୁଣପ୍ରଭାଯୁକ୍ତ, ପୁରାତନ, ତତ୍‌ପୁରୁଷ ନାମରେ ବିଖ୍ୟାତ, ପରମେଷ୍ଠୀ ଶିବଙ୍କ ପୂର୍ବବର୍ତ୍ତୀ**

ମୁଖର ଅଭିମାନୀ, ଶାନ୍ତିକଳାସ୍ୱରୂପ ବା ଶାନ୍ତିକଳାରେ ପ୍ରତିଷ୍ଠିତ, ବାୟୁମଣ୍ଡଳରେ ସ୍ଥିତ, ଶିବପାଦାର୍ଚ୍ଚନପରାୟଣ, ଶିବଙ୍କ ବୀଜରେ ପ୍ରଥମ ଓ ଗ୍ରରିକଳାଯୁକ୍ତ, ମୁଁ ପୂର୍ବଦିଗରେ ଭକ୍ତିଭାବରେ ଶକ୍ତିସହିତ ଯାହାଙ୍କୁ ପୂଜା କରିଛି, ସେ ମୋ ପ୍ରାର୍ଥନା ସଫଳ କରନ୍ତୁ ॥ ୩୦—୩୨ ॥

ଅଞ୍ଜନାଦିପ୍ରତୀକାଶମଘୋରଂ ଘୋରବିଗ୍ରହମ୍ ।
ଦେବସ୍ୟ ଦକ୍ଷିଣଂ ବକ୍ତ୍ରଂ ଦେବଦେବପଦାର୍ଚ୍ଚକମ୍ ॥ ୩୩
ବିଦ୍ୟାପଦଂ ସମାରୂଢଂ ବହ୍ନିମଣ୍ଡଳମଧ୍ୟଗମ୍ ।
ଦ୍ୱିତୀୟଂ ଶିବବୀଜେଷୁ କଳାସ୍ୱଷ୍ଟକଳାନ୍ୱିତମ୍ ॥ ୩୪
ଶମ୍ଭୋର୍ଦକ୍ଷିଣଦିଗ୍ଭାଗେ ଶକ୍ତ୍ୟା ସହ ସମର୍ଚ୍ଚିତମ୍ ।
ପବିତ୍ରଂ ପରମଂ ବ୍ରହ୍ମ ପ୍ରାର୍ଥିତଂ ମେ ପ୍ରଯଚ୍ଛତୁ ॥ ୩୫

ଯେଉଁ ପବିତ୍ର ପରବ୍ରହ୍ମ ଅଞ୍ଜନ ଇତ୍ୟାଦି ପରି ଶ୍ୟାମ, ଘୋର ଶରୀରଧାରୀ ଓ ଅଘୋର ନାମରେ ପ୍ରସିଦ୍ଧ, ମହାଦେବଙ୍କ ଦକ୍ଷିଣ ମୁଖର ଅଭିମାନୀ ତଥା ଦେବାଧିଦେବ ଶିବଙ୍କ ଚରଣର ପୂଜକ, ବିଦ୍ୟାକଳାରେ ଆରୂଢ ଓ ଅଗ୍ନିମଣ୍ଡଳର ମଧ୍ୟରେ ବିରାଜମାନ, ଶିବବୀଜରେ ଦ୍ୱିତୀୟ ଓ କଳାଗୁଡ଼ିକ ମଧ୍ୟରେ ଅଷ୍ଟକଳାଯୁକ୍ତ ଏବଂ ଶିବଙ୍କ ଦକ୍ଷିଣଭାଗରେ ଶକ୍ତିଙ୍କ ସହ ପୂଜିତ, ସେ ମୋତେ ଅଭୀଷ୍ଟ ବସ୍ତୁ ପ୍ରଦାନ କରନ୍ତୁ ॥ ୩୩—୩୫ ॥

କୁଙ୍କୁମକ୍ଷୋଦସଂକାଶଂ ବାମାଖ୍ୟଂ ବରବେଷଧୃକ୍ ।
ବକ୍ତ୍ରମୁତ୍ତରମୀଶସ୍ୟ ପ୍ରତିଷ୍ଠାୟାଂ ପ୍ରତିଷ୍ଠିତମ୍ ॥ ୩୬
ବାରିମଣ୍ଡଳମଧ୍ୟସ୍ଥଂ ମହାଦେବାର୍ଚ୍ଚନେ ରତମ୍ ।
ତୁରୀୟଂ ଶିବବୀଜେଷୁ ତ୍ରୟୋଦଶକଳାନ୍ୱିତମ୍ ॥ ୩୭
ଦେବସ୍ୟୋତ୍ତରଦିଗ୍ଭାଗେ ଶକ୍ତ୍ୟା ସହ ସମର୍ଚ୍ଚିତମ୍ ।
ପବିତ୍ରଂ ପରମଂ ବ୍ରହ୍ମ ପ୍ରାର୍ଥିତଂ ମେ ପ୍ରଯଚ୍ଛତୁ ॥ ୩୮

ଯେଉଁ ପବିତ୍ର ପରବ୍ରହ୍ମ କୁଙ୍କୁମଚୂର୍ଣ୍ଣ ତୁଲ୍ୟ ଅଥବା କେଶରଯୁକ୍ତ ଚନ୍ଦନ ତୁଲ୍ୟ ରକ୍ତ-ପୀତବର୍ଣ୍ଣଧାରୀ, ସୁନ୍ଦର ବେଶଧାରୀ ଓ ବାମଦେବ ନାମରେ ପ୍ରସିଦ୍ଧ, ଭଗବାନ ଶିବଙ୍କର ଉତ୍ତରବର୍ତ୍ତୀ ମୁଖର ଅଭିମାନୀ, ପ୍ରତିଷ୍ଠାକଳାରେ ପ୍ରତିଷ୍ଠିତ, ଜଳମଣ୍ଡଳରେ ବିରାଜମାନ ତଥା ମହାଦେବଙ୍କ ଅର୍ଚ୍ଚନାରେ ତତ୍ପର, ଶିବବୀଜରେ ଚତୁର୍ଥ ତଥା ତେର କଳାଯୁକ୍ତ ଏବଂ ମହାଦେବଙ୍କ ଉତ୍ତରଭାଗରେ ଶକ୍ତିଙ୍କ ସହ ପୂଜିତ ହୋଇଛନ୍ତି, ସେ ମୋ ପ୍ରାର୍ଥନା ପୂର୍ଣ୍ଣ କରନ୍ତୁ ॥ ୩୬—୩୮ ॥

ଶଙ୍ଖକୁନ୍ଦେନ୍ଦୁଧବଳଂ ସଦ୍ୟାଖ୍ୟଂ ସୌମ୍ୟଲକ୍ଷଣମ୍ ।
ଶିବସ୍ୟ ପଶ୍ଚିମଂ ବକ୍ତ୍ରଂ ଶିବପାଦାର୍ଚ୍ଚନେ ରତମ୍ ॥ ୩୯
ନିବୃତ୍ତିପଦନିଷ୍ଠଂ ଚ ପୃଥିବ୍ୟାଂ ସମବସ୍ଥିତମ୍ ।
ତୃତୀୟଂ ଶିବବୀଜେଷୁ କଳାଭିଶ୍ଚାଷ୍ଟଭିର୍ଯୁତମ୍ ॥ ୪୦
ଦେବସ୍ୟ ପଶ୍ଚିମେ ଭାଗେ ଶକ୍ତ୍ୟା ସହ ସମର୍ଚ୍ଚିତମ୍ ।
ପବିତ୍ରଂ ପରମଂ ବ୍ରହ୍ମ ପ୍ରାର୍ଥିତଂ ମେ ପ୍ରଯଚ୍ଛତୁ ॥ ୪୧

ଯେଉଁ ପବିତ୍ର ପରବ୍ରହ୍ମ ଶଙ୍ଖ, କୁନ୍ଦ ଓ ଚନ୍ଦ୍ର ପରି ଧବଳ, ସୌମ୍ୟ ଓ ସଦ୍ୟୋଜାତ ନାମରେ ବିଖ୍ୟାତ, ଭଗବାନ ଶିବଙ୍କ ପଶ୍ଚିମ ମୁଖର ଅଭିମାନୀ ଏବଂ ଶିବଙ୍କ ପାଦାର୍ଚ୍ଚନରେ ରତ, ନିବୃତ୍ତିକଳାରେ ପ୍ରତିଷ୍ଠିତ ତଥା ଭୂମଣ୍ଡଳରେ ସ୍ଥିତ, ଶିବବୀଜମଧ୍ୟରେ ତୃତୀୟ, ଅଷ୍ଟକଳାଯୁକ୍ତ ଓ ମହାଦେବଙ୍କ ପଶ୍ଚିମଭାଗରେ ଶକ୍ତିଙ୍କ ସହ ପୂଜିତ ହେଇଛନ୍ତି, ସେ ମୋତେ ପ୍ରାର୍ଥିତ ଫଳ ପ୍ରଦାନ କରନ୍ତୁ ॥ ୩୯—୪୧ ॥

ଶିବସ୍ୟ ତୁ ଶିବାୟାଶ୍ଚ ହୃନ୍ମୂର୍ତ୍ତୀ ଶିବଭାବିତେ ।
ତୟୋରାଜ୍ଞାଂ ପୁରସ୍କୃତ୍ୟ ତେ ମେ କାମଂ ପ୍ରଯଚ୍ଛତାମ୍ ॥ ୪୨

ଶିବ ଓ ଶିବାଙ୍କ ହୃଦୟରୂପୀ ମୂର୍ତ୍ତି ଶିବଭାବରେ ଭାବିତ ହୋଇ ସେ ଦୁହିଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମୋର ମନୋରଥ ପୂର୍ଣ୍ଣ କରନ୍ତୁ ॥ ୪୨ ॥

ଶିବସ୍ୟ ଚ ଶିବାୟାଶ୍ଚ ଶିଖାମୂର୍ତ୍ତୀ ଶିବାଶ୍ରିତେ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ତେ ମେ କାମଂ ପ୍ରଯଚ୍ଛତାମ୍ ॥ ୪୩

ଶିବ ଓ ଶିବାଙ୍କ ଶିଖାରୂପା ମୂର୍ତ୍ତି ଶିବଙ୍କ ଆଶ୍ରୟରେ ରହି ସେ ଦୁହିଙ୍କ ଆଜ୍ଞାର ଆଦର କରି ମୋତେ ମୋର ଅଭୀଷ୍ଟ ବସ୍ତୁ ପ୍ରଦାନ କରନ୍ତୁ ॥ ୪୩ ॥

ଶିବସ୍ୟ ଚ ଶିବାୟାଶ୍ଚ ବର୍ମଣା ଶିବଭାବିତେ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ତେ ମେ କାମଂ ପ୍ରଯଚ୍ଛତାମ୍ ॥ ୪୪

ଶିବ ଓ ଶିବାଙ୍କ କବଚରୂପା ମୂର୍ତ୍ତି

**ଶିବଭାବରେ ଭାବିତ ହୋଇ ଶିବ-ପାର୍ବତୀଙ୍କ ଆଜ୍ଞାର ସତ୍କାର କରି ମୋର କାମନା ସଫଳ କରନ୍ତୁ ॥ ୪୪ ॥**

ଶିବସ୍ୟ ଚ ଶିବାୟାଶ୍ଚ ନେତ୍ରମୂର୍ତ୍ତୀ ଶିବାଶ୍ରିତେ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ତେ ମେ କାମଂ ପ୍ରଯଚ୍ଛତାମ୍ ॥ ୪୫

**ଶିବ ଓ ଶିବାଙ୍କ ନେତ୍ରରୂପା ମୂର୍ତ୍ତି ଶିବଙ୍କ ଆଶ୍ରୟରେ ରହି ସେ ଦୁହିଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ମୋତେ ମୋର ମନୋବାଞ୍ଛିତ ଫଳ ପ୍ରଦାନ କରନ୍ତୁ ॥ ୪୫ ॥**

ଅସ୍ରମୂର୍ତ୍ତୀ ଚ ଶିବୟୋର୍ନିତ୍ୟମର୍ଚ୍ଚନତତ୍ପରେ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ତେ ମେ କାମଂ ପ୍ରଯଚ୍ଛତାମ୍ ॥ ୪୬

**ଶିବ ଓ ଶିବାଙ୍କ ଅସ୍ତ୍ରରୂପା ମୂର୍ତ୍ତି ନିତ୍ୟ ସେ ଦୁହିଙ୍କ ଅର୍ଚ୍ଚନରେ ତତ୍ପର ରହି ସେମାନଙ୍କ ଆଜ୍ଞାର ସତ୍କାର କରି ମୋତେ ମୋର ଅଭୀଷ୍ଟ ବସ୍ତୁ ପ୍ରଦାନ କରନ୍ତୁ ॥ ୪୬ ॥**

ବାମୋ ଜ୍ୟେଷ୍ଠସ୍ତଥା ରୁଦ୍ରଃ କାଲୋ ବିକରଣସ୍ତଥା ।
ବଲୋ ବିକରଣଶ୍ଚୈବ ବଲପ୍ରମଥନଃ ପରଃ ॥ ୪୭
ସର୍ବଭୂତସ୍ୟ ଦମନସ୍ତାଦୃଶାଶ୍ଚାଷ୍ଟଶକ୍ତୟଃ ।
ପ୍ରାର୍ଥିତଂ ମେ ପ୍ରଯଚ୍ଛନ୍ତୁ ଶିବୟୋରେବ ଶାସନାତ୍ ॥ ୪୮

**ବାମ, ଜ୍ୟେଷ୍ଠ, ରୁଦ୍ର, କାଳ, ବିକରଣ, ବଳବିକରଣ, ବଳପ୍ରମଥନ ଓ ସର୍ବଭୂତଦମନ— ଏ ଅଷ୍ଟ ଶିବମୂର୍ତ୍ତି ତଥା ଏହାଙ୍କର ଅଷ୍ଟ ଶକ୍ତି ଯଥା—ବାମା, ଜ୍ୟେଷ୍ଠା, ରୁଦ୍ରାଣୀ, କାଳୀ, ବିକରଣୀ, ବଳବିକରଣୀ, ବଳପ୍ରମଥନୀ ଓ ସର୍ବଭୂତଦମନୀ— ଏ ସମସ୍ତେ ଶିବ ଓ ଶିବାଙ୍କ ଶାସନରେ ମୋତେ ପ୍ରାର୍ଥିତ ବସ୍ତୁ ପ୍ରଦାନ କରନ୍ତୁ ॥ ୪୭-୪୮ ॥**

ଅଥାନନ୍ତଶ୍ଚ ସୂକ୍ଷ୍ମଶ୍ଚ ଶିବଶ୍ଚାପ୍ୟେକନେତ୍ରକଃ ।
ଏକରୁଦ୍ରସ୍ତ୍ରିମୂର୍ତ୍ତିଶ୍ଚ ଶ୍ରୀକଣ୍ଠଶ୍ଚ ଶିଖଣ୍ଡିକଃ ॥ ୪୯
ତଥାଷ୍ଟୌ ଶକ୍ତୟସ୍ତେଷାଂ ଦ୍ୱିତୀୟାବରଣେଽର୍ଚିତାଃ ।
ତେ ମେ କାମଂ ପ୍ରଯଚ୍ଛନ୍ତୁ ଶିବୟୋରେବ ଶାସନାତ୍ ॥ ୫୦

**ଦ୍ୱିତୀୟ ଆବରଣରେ ପୂଜିତ ହୋଇଥିବା ଅନନ୍ତ, ସୂକ୍ଷ୍ମ, ଶିବ (ଅଥବା ଶିବୋତ୍ତମ), ଏକନେତ୍ର, ଏକରୁଦ୍ର, ତ୍ରିମୂର୍ତ୍ତି, ଶ୍ରୀକଣ୍ଠ ଓ ଶିଖଣ୍ଡୀ ନାମକ ଅଷ୍ଟବିଦ୍ୟେଶ୍ୱର ତଥା ଏମାନଙ୍କର ଅନନ୍ତା, ସୂକ୍ଷ୍ମା, ଶିବା (ଅଥବା ଶିବୋତ୍ତମା), ଏକନେତ୍ରା, ଏକରୁଦ୍ରା, ତ୍ରିମୂର୍ତ୍ତି, ଶ୍ରୀକଣ୍ଠୀ ଓ ଶିଖଣ୍ଡିନୀ ନାମକ ଅଷ୍ଟଶକ୍ତି ଶିବା ଓ ଶିବଙ୍କ ଶାସନକୁ ମାନି ମୋର ମନସ୍କାମନା ପୂରଣ କରନ୍ତୁ ॥ ୪୯-୫୦ ॥**

ଭବାଦ୍ୟା ମୂର୍ତ୍ତୟଶ୍ଚାଷ୍ଟୌ ତାସାମପି ଚ ଶକ୍ତୟଃ ।
ମହାଦେବାଦୟଶ୍ଚାନ୍ୟେ ତଥୈକାଦଶମୂର୍ତ୍ତୟଃ ॥ ୫୧
ଶକ୍ତିଭିଃ ସହିତାଃ ସର୍ବେ ତୃତୀୟାବରଣେ ସ୍ଥିତାଃ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ଦିଶନ୍ତୁ ଫଳମୀପ୍ସିତମ୍ ॥ ୫୨

**ତୃତୀୟ ଆବରଣରେ ସ୍ଥିତ ଭବ ଆଦି ଅଷ୍ଟମୂର୍ତ୍ତି ଓ ସେମାନଙ୍କ ଶକ୍ତି ଏବଂ ଶକ୍ତିସମେତ ମହାଦେବଙ୍କ ଏଗାର ମୂର୍ତ୍ତି ଶିବ ଓ ପାର୍ବତୀଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମୋତେ ଅଭୀଷ୍ଟ ଫଳ ପ୍ରଦାନ କରନ୍ତୁ ॥ ୫୧-୫୨ ॥**

ବୃଷରାଜୋ ମହାତେଜା ମହାମେଘସମସ୍ୱନଃ ।
ମେରୁମନ୍ଦରକୈଳାସହିମାଦ୍ରିଶିଖରୋପମଃ ॥ ୫୩
ସିତାଭ୍ରଶିଖରାକାରକକୁଦା ପରିଶୋଭିତଃ ।
ମହାଭୋଗୀନ୍ଦ୍ରକଳ୍ପେନ ବାଲେନ ଚ ବିରାଜିତଃ ॥ ୫୪
ରକ୍ତାସ୍ୟଶୃଙ୍ଗଚରଣୋ ରକ୍ତପ୍ରାୟବିଲୋଚନଃ ।
ପୀବରୋନ୍ନତସର୍ବାଙ୍ଗଃ ସୁଚାରୁଗମନୋଜ୍ଜ୍ୱଳଃ ॥ ୫୫
ପ୍ରଶସ୍ତଲକ୍ଷଣଃ ଶ୍ରୀମାନ୍ ପ୍ରଜ୍ୱଳନ୍ ମଣିଭୂଷଣଃ ।
ଶିବପ୍ରିୟଃ ଶିବାସକ୍ତଃ ଶିବୟୋର୍ଧ୍ୱଜବାହନଃ ॥ ୫୬
ତଥା ତଚ୍ଚରଣନ୍ୟାସପାବିତାପରବିଗ୍ରହଃ ।
ଗୋରାଜପୁରୁଷଃ ଶ୍ରୀମାନ୍ ଶ୍ରୀମଚ୍ଛୂଳବରାୟୁଧଃ ।
ତୟୋରାଜ୍ଞାଂ ପୁରସ୍କୃତ୍ୟ ସ ମେ କାମଂ ପ୍ରଯଚ୍ଛତୁ ॥ ୫୭

**ଯେଉଁ ନନ୍ଦିକେଶ୍ୱର ବୃଷଭଙ୍କର ରାଜା, ମହାତେଜସ୍ୱୀ, ମହାମେଘ ପରି ଶବ୍ଦ କରିଥାନ୍ତି, ମେରୁ, ମନ୍ଦରାଚଳ, କୈଳାସ ଓ ହିମାଳୟର ଶିଖର ପରି ଉଚ୍ଚ ଏବଂ ଉଜ୍ଜ୍ୱଳ, ଶ୍ୱେତ ବାଦଲର ଶିଖର ପରି ଉଚ୍ଚ କକୁଦ୍ (ହାକୁଡ଼)ରେ ଶୋଭିତ, ମହାନାଗରାଜ (ଶେଷ)ଙ୍କ ଶରୀର ପରି ଲାଞ୍ଜ ଯାହାଙ୍କର ଶୋଭା ବୃଦ୍ଧି କରେ, ଯାହାଙ୍କ ମୁଖ, ଶିଙ୍ଗ ଓ ପାଦ ଲାଲ୍, ନେତ୍ର ମଧ୍ୟ ଈଷତ୍ ଲାଲ୍, ଯାହାଙ୍କ ଶରୀର ସ୍ଥୂଳ ଓ ଉନ୍ନତ, ଯେ**

ନିଜ ମନୋହର ଗ୍ରୀବାରେ ଶୋଭା ପାଆନ୍ତି, ଯାହାଙ୍କ ଠାରେ ଉତ୍ତମ ଲକ୍ଷଣ ବିଦ୍ୟମାନ, ଯେ ଉଜ୍ଜ୍ୱଳ ମଣିମୟ ଆଭୂଷଣରେ ମଣ୍ଡିତ ହୋଇ ଅତ୍ୟନ୍ତ ଦୀପ୍ତିମାନ୍ ଦୃଶ୍ୟ ହୁଅନ୍ତି, ଯେ ଭଗବାନ ଶିବଙ୍କର ପ୍ରିୟ ଓ ଶିବଙ୍କ ପ୍ରତି ହିଁ ଅନୁରକ୍ତ, ଶିବ ଓ ଶିବାଙ୍କର ଯେ ଧ୍ୱଜ ଓ ବାହନ ଏବଂ ସେ ଦୁହିଙ୍କ ପାଦସ୍ପର୍ଶରେ ଯାହାଙ୍କ ପୃଷ୍ଠ ପରମ ପବିତ୍ର ହୋଇଯାଇଛି, ଯେ ଗୋବଂଶର ରାଜପୁରୁଷ, ସେହି ଶ୍ରେଷ୍ଠ ଓ ଉଜ୍ଜ୍ୱଳ ତ୍ରିଶୂଳଧାରୀ ନନ୍ଦିକେଶ୍ୱର ମୋତେ ଅଭୀଷ୍ଟ ବସ୍ତୁ ପ୍ରଦାନ କରନ୍ତୁ ॥ ୫୩–୫୭ ॥

ନନ୍ଦୀଶ୍ୱରୋ ମହାତେଜା ନଗେନ୍ଦ୍ରତନୟାତ୍ମଜଃ ।
ସନାରାୟଣକୈର୍ଦେବୈର୍ନିତ୍ୟମଭ୍ୟର୍ଚ୍ଚ୍ୟ ବନ୍ଦିତଃ ॥ ୫୮
ଶର୍ବସ୍ୟାନ୍ତଃପୁରଦ୍ୱାରି ସାର୍ଦ୍ଧଂ ପରିଜନୈଃ ସ୍ଥିତଃ ।
ସର୍ବେଶ୍ୱରସମପ୍ରଖ୍ୟଃ ସର୍ବାସୁରବିମର୍ଦ୍ଦନଃ ॥ ୫୯
ସର୍ବେଷାଂ ଶିବଧର୍ମାଣାମଧ୍ୟକ୍ଷତ୍ୱେଽଭିଷେଚିତଃ ।
ଶିବପ୍ରିୟଃ ଶିବାସକ୍ତଃ ଶ୍ରୀମଚ୍ଛୂଳବରାୟୁଧଃ ॥ ୬୦
ଶିବାଶ୍ରିତେଷୁ ସଂସକ୍ତସ୍ତ୍ୱନୁରକ୍ତଶ୍ଚ ତୈରପି ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ସ ମେ କାମଂ ପ୍ରଯଚ୍ଛତୁ ॥ ୬୧

ଯେଉଁ ମହାତେଜସ୍ୱୀ ନନ୍ଦୀଶ୍ୱର ଗିରିରାଜନନ୍ଦିନୀ ପାର୍ବତୀଙ୍କ ପାଇଁ ପୁତ୍ରତୁଲ୍ୟ ପ୍ରିୟ, ବିଷ୍ଣୁ ଆଦି ଦେବତାଙ୍କ ଦ୍ୱାରା ନିତ୍ୟ ପୂଜିତ ଓ ବନ୍ଦିତ, ଭଗବାନ ଶଙ୍କରଙ୍କ ଅନ୍ତଃପୁରର ଦ୍ୱାରଦେଶରେ ପରିଜନଙ୍କ ସହିତ ଦଣ୍ଡାୟମାନ ରହନ୍ତି, ସର୍ବେଶ୍ୱର ଶିବଙ୍କ ପରି ତେଜସ୍ୱୀ ଅଟନ୍ତି ଏବଂ ସମସ୍ତ ଅସୁରଙ୍କୁ ଦମନ କରିବାରେ ସକ୍ଷମ, ସମସ୍ତ ଶିବଧର୍ମପାଳକ ଭକ୍ତଙ୍କ ଅଧ୍ୟକ୍ଷପଦରେ ଯାହାଙ୍କର ଅଭିଷେକ ହୋଇଛି, ଯେ ଭଗବାନ ଶିବଙ୍କର ପ୍ରିୟ, ଶିବଙ୍କ ପ୍ରତି ଅନୁରକ୍ତ ଏବଂ ତ୍ରିଶୂଳ ନାମକ ଶ୍ରେଷ୍ଠ ତେଜସ୍ୱୀ ଆୟୁଧ ଧାରଣ କରିଥାନ୍ତି, ଶିବଙ୍କ ଶରଣାଗତ ଭକ୍ତଙ୍କ ପ୍ରତି ଯାହାଙ୍କର ସ୍ନେହ ରହିଛି ତଥା ଶିବଭକ୍ତଙ୍କର ଯାହାଙ୍କ ପ୍ରତି ଅନୁରାଗ ରହିଛି, ସେହି ନନ୍ଦୀଶ୍ୱର ଶିବ-ପାର୍ବତୀଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମୋତେ ମନୋବାଞ୍ଛିତ ଫଳ ପ୍ରଦାନ କରନ୍ତୁ ॥ ୫୮–୬୧ ॥

ମହାକାଲୋ ମହାବାହୁର୍ମହାଦେବ ଇବାପରଃ ।
ମହାଦେବାଶ୍ରିତାନାଂ ତୁ ନିତ୍ୟମେବାଭିରକ୍ଷତୁ ॥ ୬୨

ଦ୍ୱିତୀୟ ମହାଦେବଙ୍କ ପରି ମହାତେଜସ୍ୱୀ ମହାବାହୁ ମହାକାଳ ମହାଦେବଙ୍କ ଶରଣାଗତ ଭକ୍ତଙ୍କୁ ନିତ୍ୟ ରକ୍ଷା କରନ୍ତୁ ॥ ୬୨ ॥

ଶିବପ୍ରିୟଃ ଶିବାସକ୍ତଃ ଶିବୟୋରର୍ଚ୍ଚକଃ ସଦା ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ସ ମେ ଦିଶତୁ କାଂକ୍ଷିତମ୍ ॥ ୬୩

ସେ ଭଗବାନ ଶିବଙ୍କର ପ୍ରିୟ, ଭଗବାନ ଶିବଙ୍କ ଠାରେ ତାଙ୍କର ଆସକ୍ତି ଅଛି ଏବଂ ସେ ସର୍ବଦା ଶିବ-ପାର୍ବତୀଙ୍କର ପୂଜକ; ତେଣୁ ଶିବ ଓ ପାର୍ବତୀଙ୍କ ଆଜ୍ଞାକୁ ଆଦର ଦେଇ ମୋତେ ମନୋବାଞ୍ଛିତ ବସ୍ତୁ ପ୍ରଦାନ କରନ୍ତୁ ॥ ୬୩ ॥

ସର୍ବଶାସ୍ତ୍ରାର୍ଥତତ୍ତ୍ୱଜ୍ଞଃ ଶାସ୍ତା ବିଷ୍ଣୋଃ ପରା ତନୁଃ ।
ମହାମୋହାତ୍ମତନୟୋ ମଧୁମାଂସାସବପ୍ରିୟଃ ।
ତୟୋରାଜ୍ଞାଂ ପୁରସ୍କୃତ୍ୟ ସ ମେ କାମଂ ପ୍ରଯଚ୍ଛତୁ ॥ ୬୪

ଯେଉଁ ନାଗରାଜ ଶେଷଦେବ ସମସ୍ତ ଶାସ୍ତ୍ରର ତାତ୍ତ୍ୱିକ ଅର୍ଥର ଜ୍ଞାତା, ଭଗବାନ ବିଷ୍ଣୁଙ୍କର ଦ୍ୱିତୀୟ ସ୍ୱରୂପ, ସମସ୍ତଙ୍କର ଶାସକ ଓ ମହାମୋହାତ୍ମା କଦ୍ରୁଙ୍କ ପୁତ୍ର, ମଧୁ, ଫଳର ଶସ ଓ ଆସବ ଯାହାଙ୍କର ପ୍ରିୟ, ସେ ଶିବ-ପାର୍ବତୀଙ୍କ ଆଜ୍ଞାକୁ ସମ୍ମୁଖରେ ରଖି ମୋ ଇଚ୍ଛା ପୂରଣ କରନ୍ତୁ ॥ ୬୪ ॥

ବ୍ରହ୍ମାଣୀ ଚୈବ ମାହେଶୀ କୌମାରୀ ବୈଷ୍ଣବୀ ତଥା ।
ବାରାହୀ ଚୈବ ମାହେନ୍ଦ୍ରୀ ଚାମୁଣ୍ଡା ଚଣ୍ଡବିକ୍ରମା ॥ ୬୫
ଏତା ବୈ ମାତରଃ ସପ୍ତ ସର୍ବଲୋକସ୍ୟ ମାତରଃ ।
ପ୍ରାର୍ଥିତଂ ମେ ପ୍ରଯଚ୍ଛନ୍ତୁ ପରମେଶ୍ୱରଶାସନାତ୍ ॥ ୬୬

ବ୍ରହ୍ମାଣୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ମାହେନ୍ଦ୍ରୀ ଓ ପ୍ରଚଣ୍ଡ ପରାକ୍ରମଶାଳିନୀ ଚାମୁଣ୍ଡାଦେବୀ—ଏହି ସର୍ବଲୋକଜନନୀ ସପ୍ତମାତା ପରମେଶ୍ୱର ଶିବଙ୍କ ଆଦେଶରେ ମୋତେ ମୋର

**ପ୍ରାର୍ଥିତ ବସ୍ତୁ ପ୍ରଦାନ କରନ୍ତୁ ॥ ୬୫-୬୬ ॥**

ମତ୍ତମାତଙ୍ଗବଦନୋ ଗଙ୍ଗୋମାଶଙ୍କରାତ୍ମଜଃ ।
ଆକାଶଦେହୋ ଦିଗ୍‌ବାହୁଃ ସୋମସୂର୍ଯ୍ୟାଗ୍ନିଲୋଚନଃ ॥ ୬୭
ଐରାବତାଦିଭିର୍ଦିବ୍ୟୈର୍ଦିଗ୍‌ଗଜୈର୍ନିତ୍ୟମର୍ଚିତଃ ।
ଶିବଜ୍ଞାନମଦୋଦ୍ଭିନ୍ନସ୍ତ୍ରିଦଶାନାମବିଘ୍ନକୃତ୍ ॥ ୬୮
ବିଘ୍ନକୃଚ୍ଚାସୁରାଦୀନାଂ ବିଘ୍ନେଶଃ ଶିବଭାବିତଃ ।
ସକୃତ୍ୟ ଶିବୟୋରାଜ୍ଞାଂ ସ ମେ ଦିଶତୁ କାଂକ୍ଷିତମ୍ ॥ ୬୯

**ଯେଉଁ ବିଘ୍ନରାଜ ଗଣେଶଙ୍କର ମୁଖ ମତ୍ତ ହସ୍ତୀ ତୁଲ୍ୟ, ଯେ ଗଙ୍ଗା, ଉମା ଓ ଶିବଙ୍କର ପୁତ୍ର, ଆକାଶ ଯାହାଙ୍କର ଶରୀର, ଦିଗ ଯାହାଙ୍କର ଭୁଜ, ଚନ୍ଦ୍ର-ସୂର୍ଯ୍ୟ-ଅଗ୍ନି ଯାହାଙ୍କର ତିନୋଟି ନେତ୍ର, ଐରାବତାଦି ଦିଗ୍‌ଗଜ ଯାହାଙ୍କୁ ନିତ୍ୟ ପୂଜା କରନ୍ତି, ଯାହାଙ୍କ ମସ୍ତକରୁ ଶିବଜ୍ଞାନମୟ ମଦର ଧାରା ବହୁଥାଏ, ଯେ ଦେବତାଙ୍କର ବିଘ୍ନ ନିବାରଣ କରନ୍ତି ଓ ଅସୁର ପ୍ରଭୃତିଙ୍କର କାର୍ଯ୍ୟରେ ବିଘ୍ନ ସୃଷ୍ଟି କରନ୍ତି, ସେ ଶିବଙ୍କ ଦ୍ୱାରା ଭାବିତ ହୋଇ ଶିବ ଓ ଶିବାଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମୋର ମନୋରଥ ପୂର୍ଣ୍ଣ କରନ୍ତୁ ॥ ୬୭–୬୯ ॥**

ଷଣ୍ମୁଖଃ ଶିବସମ୍ଭୂତଃ ଶକ୍ତିବଜ୍ରଧରଃ ପ୍ରଭୁଃ ।
ଅଗ୍ନେଶ୍ଚ ତନୟୋ ଦେବୋ ହ୍ୟପର୍ଣ୍ଣାତନୟଃ ପୁନଃ ॥ ୭୦
ଗଙ୍ଗାୟାଶ୍ଚ ଗଣାମ୍ବାୟାଃ କୃତ୍ତିକାନାଂ ତଥୈବ ଚ ।
ବିଶାଖେନ ଚ ଶାଖେନ ନୈଗମେୟେନ ସଂବୃତଃ ॥ ୭୧
ଇନ୍ଦ୍ରଜିଚ୍ଚେନ୍ଦ୍ରସେନାନୀସ୍ତାରକାସୁରଜିତ୍ତଥା ।
ଶୈଳାନାଂ ମେରୁମୁଖ୍ୟାନାଂ ବେଧକଶ୍ଚ ସ୍ୱତେଜସା ॥ ୭୨
ତପ୍ତଚାମୀକରପ୍ରଖ୍ୟଃ ଶତପତ୍ରଦଳେକ୍ଷଣଃ ।
କୁମାରଃ ସୁକୁମାରାଣାଂ ରୂପୋଦାହରଣଂ ମହତ୍ ॥ ୭୩
ଶିବପ୍ରିୟଃ ଶିବାସକ୍ତଃ ଶିବପାଦାର୍ଚ୍ଚକଃ ସଦା ।
ସକୃତ୍ୟ ଶିବୟୋରାଜ୍ଞାଂ ସ ମେ ଦିଶତୁ କାଂକ୍ଷିତମ୍ ॥ ୭୪

**ଯେଉଁ କାର୍ତ୍ତିକେୟ ଷଡ଼ାନନ, ଭଗବାନ ଶିବଙ୍କ ଠାରୁ ଯାହାଙ୍କର ଉତ୍ପତ୍ତି ହୋଇଛି, ଯେ ଶକ୍ତି ଓ ବଜ୍ର ଧାରଣ କରିଥାନ୍ତି, ଯେ ଅଗ୍ନିପୁତ୍ର ଓ ଅପର୍ଣ୍ଣାଙ୍କର ସନ୍ତାନ, ଗଙ୍ଗା, ଗଣାମ୍ବା ଓ କୃତ୍ତିକାଙ୍କର ମଧ୍ୟ ପୁତ୍ର, ବିଶାଖ, ଶାଖ ଓ ନୈଗମେୟ ନାମକ ତିନିଭାଇଙ୍କ ଦ୍ୱାରା ଯେ ସଦା ପରିବେଷ୍ଟିତ ରହନ୍ତି, ଯେ ଇନ୍ଦ୍ରବିଜୟୀ, ଇନ୍ଦ୍ରଙ୍କର ସେନାପତି ଓ ତାରକାସୁରବିଜେତା, ଯେ ନିଜ ଶକ୍ତିରେ ମେରୁ ଆଦି ପର୍ବତଙ୍କୁ ବିଦ୍ଧ କରିପାରିଛନ୍ତି, ଯାହାଙ୍କ ଅଙ୍ଗକାନ୍ତି ତପ୍ତସୁବର୍ଣ୍ଣ ପରି, ନେତ୍ର ପ୍ରଫୁଲ୍ଲିତ ପଦ୍ମ ସଦୃଶ ସୁନ୍ଦର, ଯେ କୁମାର ନାମରେ ପ୍ରସିଦ୍ଧ ଓ ସୁକୁମାର ରୂପର ସବୁଠାରୁ ବଡ଼ ଦୃଷ୍ଟାନ୍ତ, ଯେ ଶିବଙ୍କର ପ୍ରିୟ, ଶିବଙ୍କ ଠାରେ ଅନୁରକ୍ତ ଓ ନିତ୍ୟ ଶିବପାଦାର୍ଚ୍ଚନରତ, ସେହି ସ୍କନ୍ଦ ଶିବ ଓ ଶିବାଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମୋତେ ମନୋବାଞ୍ଛିତ ଫଳ ପ୍ରଦାନ କରନ୍ତୁ ॥ ୭୦–୭୪ ॥**

ଜ୍ୟେଷ୍ଠା ବରିଷ୍ଠା ବରଦା ଶିବୟୋର୍ଯଜନେ ରତା ।
ତୟୋରାଜ୍ଞାଂ ପୁରସ୍କୃତ୍ୟ ସା ମେ ଦିଶତୁ କାଂକ୍ଷିତମ୍ ॥ ୭୫

**ଭଗବାନ ଶିବ ଓ ପାର୍ବତୀଙ୍କ ପୂଜନରେ ସଂଲଗ୍ନ ରହୁଥିବା ସର୍ବଶ୍ରେଷ୍ଠ ତଥା ବରଦାୟିନୀ ଜ୍ୟେଷ୍ଠାଦେବୀ ସେ ଦୁହିଙ୍କ ଆଜ୍ଞା ମାନି ମୋତେ ମନୋବାଞ୍ଛିତ ଫଳ ପ୍ରଦାନ କରନ୍ତୁ ॥ ୭୫ ॥**

ତ୍ରୈଲୋକ୍ୟବନ୍ଦିତା ସାକ୍ଷାଦୁଲ୍କାକାରା ଗଣାମ୍ବିକା ।
ଜଗତ୍ସୃଷ୍ଟିବିବୃଦ୍ଧ୍ୟର୍ଥଂ ବ୍ରହ୍ମଣାଭ୍ୟର୍ଥିତା ଶିବାତ୍ ॥ ୭୬
ଶିବାୟାଃ ପ୍ରବିଭକ୍ତାୟା ଭ୍ରୁବୋରନ୍ତରନିଃସୃତା ।
ଦାକ୍ଷାୟଣୀ ସତୀ ମେନା ତଥା ହୈମବତୀ ହ୍ୟୁମା ॥ ୭୭
କୌଶିକ୍ୟାଶ୍ଚୈବ ଜନନୀ ଭଦ୍ରାକାଲ୍ୟାସ୍ତଥୈବ ଚ ।
ଅପର୍ଣ୍ଣାୟାଶ୍ଚ ଜନନୀ ପାଟଲାୟାସ୍ତଥୈବ ଚ ॥ ୭୮
ଶିବାର୍ଚ୍ଚନରତା ନିତ୍ୟଂ ରୁଦ୍ରାଣୀ ରୁଦ୍ରବଲ୍ଲଭା ।
ସକୃତ୍ୟ ଶିବୟୋରାଜ୍ଞାଂ ସା ମେ ଦିଶତୁ କାଂକ୍ଷିତମ୍ ॥ ୭୯

**ତ୍ରୈଲୋକ୍ୟବନ୍ଦିତା, ସାକ୍ଷାତ୍ ଉଲ୍କା ଆକୃତିଧାରିଣୀ ଗଣାମ୍ବିକା, ଯେ ଜଗତ-ସୃଷ୍ଟିର ବିସ୍ତାର ପାଇଁ ବ୍ରହ୍ମାଙ୍କ ପ୍ରାର୍ଥନା କ୍ରମେ ଶିବଙ୍କ ଶରୀରରୁ ପୃଥକ୍ ହୋଇଥିବା ଶିବାଙ୍କ ଭ୍ରୂକୁଟିଦ୍ୱୟ ମଧ୍ୟଭାଗରୁ ପ୍ରକଟ ହୋଇଥିଲେ, ଯେ ଦାକ୍ଷାୟଣୀ, ସତୀ, ମେନା ଓ ହିମବାନକୁମାରୀ, ଉମା ଇତ୍ୟାଦି ନାମରେ ପ୍ରସିଦ୍ଧ, ପୁଣି ଯେ କୌଶିକୀ, ଭଦ୍ରକାଳୀ, ଅପର୍ଣ୍ଣା ଓ ପାଟଳାଙ୍କର ଜନନୀ, ନିତ୍ୟ**

**ଶିବାର୍ଚନାରେ ତତ୍ପର ଏବଂ ରୁଦ୍ରବଲ୍ଲଭା ରୁଦ୍ରାଣୀ ବୋଲାନ୍ତି, ସେ ଶିବ ଓ ଶିବାଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମୋତେ ମନୋବାଞ୍ଛିତ ବସ୍ତୁ ପ୍ରଦାନ କରନ୍ତୁ ॥ ୭୬—୭୯ ॥**

ଚଣ୍ଡଃ ସର୍ବଗଣେଶାନଃ ଶମ୍ଭୋର୍ବଦନସମ୍ଭବଃ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ସ ମେ ଦିଶତୁ କାଂକ୍ଷିତମ୍ ॥ ୮୦

**ଶିବଙ୍କ ମୁଖରୁ ଉଦ୍ଭୂତ ତଥା ସମସ୍ତ ଶିବଗଣଙ୍କ ସ୍ୱାମୀ ଚଣ୍ଡ ଶିବ ଓ ଶିବାଙ୍କ ଆଜ୍ଞାକୁ ଆଦର କରି ମୋତେ ଅଭୀଷ୍ଟ ବସ୍ତୁ ପ୍ରଦାନ କରନ୍ତୁ ॥ ୮୦ ॥**

ପିଙ୍ଗଳୋ ଗଣପଃ ଶ୍ରୀମାନ୍ ଶିବାସକ୍ତଃ ଶିବପ୍ରିୟଃ ।
ଆଜ୍ଞୟା ଶିବୟୋରେବ ସ ମେ କାମଂ ପ୍ରୟଚ୍ଛତୁ ॥ ୮୧

**ଭଗବାନ ଶିବଙ୍କ ଠାରେ ଆସକ୍ତ ତଥା ଶିବପ୍ରିୟ ଗଣପାଳ ଶ୍ରୀମାନ୍ ପିଙ୍ଗଳ ଶିବ ଓ ଶିବାଙ୍କ ଆଜ୍ଞାରେ ହିଁ ମୋର ମନସ୍କାମନା ପୂରଣ କରନ୍ତୁ ॥ ୮୧ ॥**

ଭୃଙ୍ଗୀଶୋ ନାମ ଗଣପଃ ଶିବାରାଧନତତ୍ପରଃ ।
ପ୍ରୟଚ୍ଛତୁ ସ ମେ କାମଂ ପତ୍ୟୁରାଜ୍ଞାପୁରଃସରମ୍ ॥ ୮୨

**ଶିବଙ୍କ ଆରାଧନାରେ ତତ୍ପର ରହୁଥିବା ଭୃଙ୍ଗୀଶ୍ୱର ନାମକ ଗଣପାଳ ତାଙ୍କ ସ୍ୱାମୀଙ୍କ ଆଜ୍ଞାରେ ମୋତେ ମନୋବାଞ୍ଛିତ ବସ୍ତୁ ପ୍ରଦାନ କରନ୍ତୁ ॥ ୮୨ ॥**

ବୀରଭଦ୍ରୋ ମହାତେଜା ହିମକୁନ୍ଦେନ୍ଦୁସଂନିଭଃ ।
ଭଦ୍ରକାଳୀପ୍ରିୟୋ ନିତ୍ୟଂ ମାତୃଣାଂ ଗ୍ଚଭିରକ୍ଷିତା ॥ ୮୩
ଯଜ୍ଞସ୍ୟ ଚ ଶିରୋହର୍ତ୍ତା ଦକ୍ଷସ୍ୟ ଚ ଦୁରାତ୍ମନଃ ।
ଉପେନ୍ଦ୍ରେନ୍ଦ୍ରୟମାଦୀନାଂ ଦେବାନାମଙ୍ଗତକ୍ଷକଃ ॥ ୮୪
ଶିବସ୍ୟାନୁଚରଃ ଶ୍ରୀମାନ୍ ଶିବଶାସନପାଳକଃ ।
ଶିବୟୋଃ ଶାସନାଦେବ ସ ମେ ଦିଶତୁ କାଂକ୍ଷିତମ୍ ॥ ୮୫

**ହିମ, କୁନ୍ଦ ଓ ଚନ୍ଦ୍ରମା ସଦୃଶ ଉଜ୍ଜ୍ୱଳ, ଭଦ୍ରକାଳୀଙ୍କ ପ୍ରିୟ, ସଦା ମାତୃଗଣଙ୍କ ରକ୍ଷକ, ଦୁରାତ୍ମା ଦକ୍ଷଙ୍କର ଓ ତାଙ୍କ ଯଜ୍ଞର ମସ୍ତକ ଛେଦନକାରୀ, ଉପେନ୍ଦ୍ର, ଇନ୍ଦ୍ର ଓ ଯମାଦି ଦେବତାଙ୍କ ଅଙ୍ଗକୁ କ୍ଷତବିକ୍ଷତ କରିଥିବା ଶିବଙ୍କ ଅନୁଚର ଓ ଶିବଙ୍କ ଆଜ୍ଞାପାଳକ ମହାତେଜସ୍ୱୀ ଶ୍ରୀମାନ୍ ବୀରଭଦ୍ର ଶିବ ଓ ଶିବାଙ୍କ ଆଦେଶରେ ହିଁ ମୋତେ ମୋର ମନୋବାଞ୍ଛିତ ବସ୍ତୁ ପ୍ରଦାନ କରନ୍ତୁ ॥ ୮୩—୮୫ ॥**

ସରସ୍ୱତୀ ମହେଶସ୍ୟ ବାକ୍ସରୋଜସମୁଦ୍ଭବା ।
ଶିବୟୋଃ ପୂଜନେ ସକ୍ତା ସା ମେ ଦିଶତୁ କାଂକ୍ଷିତମ୍ ॥ ୮୬

**ମହେଶ୍ୱରଙ୍କ ମୁଖକମଳରୁ ପ୍ରକଟିତା ତଥା ଶିବ-ପାର୍ବତୀଙ୍କ ପୂଜନରେ ଆସକ୍ତା ସରସ୍ୱତୀଦେବୀ ମୋତେ ମନୋବାଞ୍ଛିତ ବସ୍ତୁ ପ୍ରଦାନ କରନ୍ତୁ ॥ ୮୬ ॥**

ବିଷ୍ଣୋର୍ବକ୍ଷଃସ୍ଥିତା ଲକ୍ଷ୍ମୀଃ ଶିବୟୋଃ ପୂଜନେ ରତା ।
ଶିବୟୋଃ ଶାସନାଦେବ ସା ମେ ଦିଶତୁ କାଂକ୍ଷିତମ୍ ॥ ୮୭

**ଭଗବାନ ବିଷ୍ଣୁଙ୍କ ବକ୍ଷଃସ୍ଥଳରେ ବିରାଜମାନା ତଥା ଶିବ ଓ ଶିବାଙ୍କ ପୂଜନରେ ସଂଲଗ୍ନା ଲକ୍ଷ୍ମୀଦେବୀ ଶିବଦମ୍ପତିଙ୍କ ଆଦେଶରେ ମୋର ଅଭିଳାଷ ପୂର୍ଣ୍ଣ କରନ୍ତୁ ॥ ୮୭ ॥**

ମହାମୋଟୀ ମହାଦେବ୍ୟାଃ ପାଦପୂଜାପରାୟଣା ।
ତସ୍ୟା ଏବ ନିୟୋଗେନ ସା ମେ ଦିଶତୁ କାଂକ୍ଷିତମ୍ ॥ ୮୮

**ମହାଦେବୀ ପାର୍ବତୀଙ୍କ ପାଦପଦ୍ମପୂଜା-ପରାୟଣ ମହାମୋଟୀ ପାର୍ବତୀଙ୍କ ଆଜ୍ଞାରେ ମୋତେ ମନୋବାଞ୍ଛିତ ବସ୍ତୁ ପ୍ରଦାନ କରନ୍ତୁ ॥ ୮୮ ॥**

କୌଶିକୀ ସିଂହମାରୂଢା ପାର୍ବତ୍ୟାଃ ପରମା ସୁତା ।
ବିଷ୍ଣୋର୍ନିଦ୍ରା ମହାମାୟା ମହାମହିଷମର୍ଦ୍ଦିନୀ ॥ ୮୯
ନିଶୁମ୍ଭଶୁମ୍ଭସଂହର୍ତ୍ତ୍ରୀ ମଧୁମାଂସାସବପ୍ରିୟା ।
ସତ୍କୃତ୍ୟ ଶାସନଂ ମାତୁଃ ସା ମେ ଦିଶତୁ କାଂକ୍ଷିତମ୍ ॥ ୯୦

**ପାର୍ବତୀଙ୍କର ସର୍ବଶ୍ରେଷ୍ଠ କନ୍ୟା ସିଂହବାହିନୀ କୌଶିକୀ, ଭଗବାନ ବିଷ୍ଣୁଙ୍କ ଯୋଗନିଦ୍ରା ମହାମାୟା, ମହାମହିଷମର୍ଦ୍ଦିନୀ, ମହାଲକ୍ଷ୍ମୀ ଏବଂ ମଧୁ, ଫଳଶସ ତଥା ରସକୁ ପ୍ରେମରେ ଭକ୍ଷଣ କରୁଥିବା ନିଶୁମ୍ଭ-ଶୁମ୍ଭଙ୍କ ସଂହନ୍ତ୍ରୀ ମହାସରସ୍ୱତୀ ମାତା ପାର୍ବତୀଙ୍କ ଆଜ୍ଞାରେ ମୋତେ ମନୋବାଞ୍ଛିତ ବସ୍ତୁ ପ୍ରଦାନ କରନ୍ତୁ ॥ ୮୯-୯୦ ॥**

ରୁଦ୍ରା ରୁଦ୍ରସମପ୍ରଖ୍ୟାଃ ପ୍ରମଥାଃ ପ୍ରଥିତୌଜସଃ ।
ଭୂତାଖ୍ୟାଶ୍ଚ ମହାବୀର୍ଯ୍ୟା ମହାଦେବସମପ୍ରଭାଃ ॥ ୯୧
ନିତ୍ୟମୁକ୍ତା ନିରୁପମା ନିର୍ଦ୍ୱନ୍ଦ୍ୱା ନିରୁପପ୍ଳବାଃ ।
ସଶକ୍ତୟଃ ସାନୁଚରାଃ ସର୍ବଲୋକନମସ୍କୃତାଃ ॥ ୯୨

ସର୍ବେଷାମେବ ଲୋକାନାଂ ସୃଷ୍ଟିସଂହରଣକ୍ଷମାଃ ।
ପରସ୍ପରାନୁରକ୍ତାଶ୍ଚ ପରସ୍ପରମନୁବ୍ରତାଃ ॥ ୯୩
ପରସ୍ପରମତିସ୍ନିଗ୍ଧାଃ ପରସ୍ପରନମସ୍କୃତାଃ ।
ଶିବପ୍ରିୟତମା ନିତ୍ୟଂ ଶିବଲକ୍ଷଣଲକ୍ଷିତାଃ ॥ ୯୪
ସୌମ୍ୟା ଘୋରାସ୍ତଥା ମିଶ୍ରାଶ୍ଚାନ୍ତରାଳଦ୍ୱୟାତ୍ମିକାଃ ।
ବିରୂପାଶ୍ଚ ସୁରୂପାଶ୍ଚ ନାନାରୂପଧରାସ୍ତଥା ॥ ୯୫
ସତ୍କୃତ୍ୟ ଶିବୟୋରାଜ୍ଞାଂ ତେ ମେ କାମଂ ଦିଶନ୍ତୁ ବୈ ।

**ରୁଦ୍ରଦେବଙ୍କ ପରି ତେଜସ୍ୱୀ ରୁଦ୍ରଗଣ, ପ୍ରଖ୍ୟାତପରାକ୍ରମୀ ପ୍ରମଥଗଣ ଓ ମହାଦେବଙ୍କ ପରି ତେଜସ୍ୱୀ ମହାବଳୀ ଭୂତଗଣ, ଯେଉଁମାନେ ନିତ୍ୟମୁକ୍ତ, ଅନୁପମ, ନିର୍ଦ୍ୱନ୍ଦ୍ୱ, ଉପଦ୍ରବଶୂନ୍ୟ, ଶକ୍ତି ଓ ଅନୁଚରଙ୍କ ସଙ୍ଗେ ନିବାସକାରୀ, ସର୍ବଲୋକବନ୍ଦିତ, ସମଗ୍ର ଜଗତର ସୃଷ୍ଟି ଓ ସଂହାର କାର୍ଯ୍ୟରେ ସମର୍ଥ, ପରସ୍ପରର ଅନୁରକ୍ତ ଓ ଭକ୍ତ, ପରସ୍ପର ପ୍ରତି ସ୍ନେହଶୀଳ, ପରସ୍ପରକୁ ନମସ୍କାରକାରୀ, ଶିବଙ୍କ ନିତ୍ୟ ପ୍ରିୟତମ, ଶିବଙ୍କର ଚିହ୍ନରେ ଲକ୍ଷିତ, ସୌମ୍ୟ, ଘୋର ଓ ଉଭୟ ଭାବଯୁକ୍ତ, ଉଭୟଙ୍କ ମଧ୍ୟରେ ସ୍ଥିତ ଦ୍ୱିରୂପ, କୁରୂପ, ସୁରୂପ ଓ ନାନାରୂପଧାରୀ ଅଟନ୍ତି । ସେମାନେ ଶିବ ଓ ଶିବାଙ୍କ ଆଜ୍ଞାକୁ ସମ୍ମାନ ଦେଇ ମୋତେ ମନୋବାଞ୍ଛିତ ଫଳ ପ୍ରଦାନ କରନ୍ତୁ ॥ ୯୧–୯୫½ ॥**

ଦେବ୍ୟାଃ ପ୍ରିୟସଖୀବର୍ଗୋ ଦେବୀଲକ୍ଷଣଲକ୍ଷିତଃ ॥ ୯୬
ସହିତୋ ରୁଦ୍ରକନ୍ୟାଭିଃ ଶକ୍ତିଭିଶ୍ଚାପ୍ୟନେକଶଃ ।
ତୃତୀୟାବରଣେ ଶମ୍ଭୋର୍ଭକ୍ତ୍ୟା ନିତ୍ୟଂ ସମର୍ଚ୍ଚିତଃ ॥ ୯୭
ସତ୍କୃତ୍ୟ ଶିବୟୋରାଜ୍ଞାଂ ସ ମେ ଦିଶତୁ ମଙ୍ଗଳମ୍ ।

**ଦେବୀଙ୍କର ପ୍ରିୟ ସଖୀସମୁଦାୟ, ଯେଉଁମାନେ ଦେବୀଙ୍କର ହିଁ ଲକ୍ଷଣରେ ଲକ୍ଷିତ ହୁଅନ୍ତି ଏବଂ ଭଗବାନ ଶିବଙ୍କ ତୃତୀୟ ଆବରଣରେ ରୁଦ୍ରକନ୍ୟା ଓ ଅନେକ ଶକ୍ତିଙ୍କ ସହିତ ନିତ୍ୟ ଭକ୍ତିଭାବରେ ପୂଜିତ ହୋଇଛନ୍ତି, ସେମାନେ ଶିବ-ପାର୍ବତୀଙ୍କ ଆଜ୍ଞାକୁ ସମ୍ମାନ ଦେଇ ମୋତେ ମଙ୍ଗଳ ଫଳ ପ୍ରଦାନ କରନ୍ତୁ ॥ ୯୬-୯୭½ ॥**

ଦିବାକରୋ ମହେଶସ୍ୟ ମୂର୍ତ୍ତିର୍ଦୀପ୍ତସୁମଣ୍ଡଳଃ ॥ ୯୮
ନିର୍ଗୁଣୋ ଗୁଣସଂକୀର୍ଣ୍ଣସ୍ତଥୈବ ଗୁଣକେବଳଃ ।
ଅବିକାରାତ୍ମକଶ୍ଚାଦ୍ୟ ଏକଃ ସାମାନ୍ୟବିକ୍ରିୟଃ ॥ ୯୯
ଅସାଧାରଣକର୍ମା ଚ ସୃଷ୍ଟିସ୍ଥିତିଲୟକ୍ରମାତ୍ ।
ଏବଂ ତ୍ରିଧା ଚତୁର୍ଦ୍ଧା ଚ ବିଭକ୍ତଃ ପଞ୍ଚଧା ପୁନଃ ॥୧୦୦
ଚତୁର୍ଥାବରଣେ ଶମ୍ଭୋଃ ପୂଜିତଶ୍ଚାନୁଗୈଃ ସହ ।
ଶିବପ୍ରିୟଃ ଶିବାସକ୍ତଃ ଶିବପାଦାର୍ଚ୍ଚନେ ରତଃ ॥୧୦୧
ସତ୍କୃତ୍ୟ ଶିବୟୋରାଜ୍ଞାଂ ସ ମେ ଦିଶତୁ ମଙ୍ଗଳମ୍ ।

**ଭଗବାନ ସୂର୍ଯ୍ୟ ମହେଶ୍ୱରଙ୍କ ମୂର୍ତ୍ତି ଅଟନ୍ତି, ତାଙ୍କର ସୁନ୍ଦର ମଣ୍ଡଳ ଦୀପ୍ତିମାନ୍ ଅଟେ, ସେ ନିର୍ଗୁଣ ହୋଇ ମଧ୍ୟ କଲ୍ୟାଣମୟୀ ଗୁଣମାନଙ୍କରେ ଯୁକ୍ତ, କେବଳ ସଦ୍‌ଗୁଣରୂପ; ସେ ନିର୍ବିକାର, ସମସ୍ତଙ୍କର ଆଦିକାରଣ ଓ ଅଦ୍ୱିତୀୟ; ଏହି ସାଧାରଣ ଜଗତ ତାଙ୍କରି ସୃଷ୍ଟି; ସୃଜନ, ପାଳନ ଓ ସଂହାର ରୂପରେ ତାଙ୍କର କର୍ମ ଅସାଧାରଣ; ଏହିରୂପେ ସେ ତିନି, ଚାରି ଓ ପାଞ୍ଚ ରୂପରେ ବିଭକ୍ତ । ଭଗବାନ ଶିବଙ୍କ ଚତୁର୍ଥ ଆବରଣରେ ଅନୁଚରଙ୍କ ସହିତ ତାଙ୍କର ପୂଜା ହୋଇଛି । ସେହି ଶିବପ୍ରିୟ, ଶିବଙ୍କ ଠାରେ ଆସକ୍ତ ଓ ଶିବଙ୍କ ପଦାରବିନ୍ଦ-ଅର୍ଚ୍ଚନାରେ ତତ୍ପର ସୂର୍ଯ୍ୟଦେବ ଶିବା ଓ ଶିବଙ୍କ ଆଜ୍ଞାକୁ ସମ୍ମାନ ଦେଇ ମୋତେ ମଙ୍ଗଳ ପ୍ରଦାନ କରନ୍ତୁ ॥ ୯୮–୧୦୧½ ॥**

ଦିବାକରଷଡଙ୍ଗାନି ଦୀପ୍ତାଦ୍ୟାଶ୍ଚାଷ୍ଟଶକ୍ତୟଃ ॥୧୦୨
ଆଦିତ୍ୟୋ ଭାସ୍କରୋ ଭାନୂ ରବିଶ୍ଚେତ୍ୟନୁପୂର୍ବଶଃ ।
ଅର୍କୋ ବ୍ରହ୍ମା ତଥା ରୁଦ୍ରୋ ବିଷ୍ଣୁଶ୍ଚାଦିତ୍ୟମୂର୍ତ୍ତୟଃ ॥୧୦୩
ବିସ୍ତରା ସୁତରା ବୋଧିନ୍ୟାପ୍ୟାୟିନ୍ୟପରାଃ ପୁନଃ ।
ଉଷା ପ୍ରଭା ତଥା ପ୍ରାଜ୍ଞା ସଂଧ୍ୟା ଚେତ୍ୟପି ଶକ୍ତୟଃ ॥୧୦୪
ସୋମାଦିକେତୁପର୍ଯ୍ୟନ୍ତା ଗ୍ରହାଶ୍ଚ ଶିବଭାବିତାଃ ।
ଶିବୟୋରାଜ୍ଞୟା ନୁନ୍ନା ମଙ୍ଗଳଂ ପ୍ରଦିଶନ୍ତୁ ମେ ॥୧୦୫
ଅଥ ବା ଦ୍ୱାଦଶାଦିତ୍ୟାସ୍ତଥା ଦ୍ୱାଦଶ ଶକ୍ତୟଃ ।
ଋଷୟୋ ଦେବଗନ୍ଧର୍ବାଃ ପନ୍ନଗାପ୍ସରସାଂ ଗଣାଃ ॥୧୦୬
ଗ୍ରାମଣ୍ୟଶ୍ଚ ତଥା ଯକ୍ଷା ରକ୍ଷସାଶ୍ଚ ସୁରାସ୍ତଥା ।
ସପ୍ତ ସପ୍ତଗଣାଶ୍ଚୈତେ ସପ୍ତଚ୍ଛନ୍ଦୋମୟା ହୟାଃ ॥୧୦୭

ବାଲଖିଲ୍ୟାଦୟଶ୍ଚୈବ ସର୍ବେ ଶିବପଦାର୍ଚ୍ଚକାଃ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ମଙ୍ଗଳଂ ପ୍ରଦିଶନ୍ତୁ ମେ ॥୧୦୮

**ସୂର୍ଯ୍ୟଦେବଙ୍କ ସହ ସମ୍ବନ୍ଧିତ ଷଡଅଙ୍ଗ, ତାଙ୍କର ଦୀପ୍ତା ଆଦି ଆଠ ଶକ୍ତି, ଆଦିତ୍ୟ, ଭାସ୍କର, ଭାନୁ, ରବି, ଅର୍କ, ବ୍ରହ୍ମା, ରୁଦ୍ର ଓ ବିଷ୍ଣୁ—ଆଦିତ୍ୟଙ୍କର ଏ ଅଷ୍ଟମୂର୍ତ୍ତି ଏବଂ ତାଙ୍କର ବିସ୍ତରା, ସୁତରା, ବୋଧିନୀ, ଆପ୍ୟାୟିନୀ ତଥା ସେମାନଙ୍କ ଅତିରିକ୍ତ ଉଷା, ପ୍ରଭା, ପ୍ରାଜ୍ଞା ଓ ସଂଧ୍ୟା ନାମକ ଶକ୍ତି; ଚନ୍ଦ୍ରଠାରୁ ଆରମ୍ଭ କରି କେତୁ ପର୍ଯ୍ୟନ୍ତ ଶିବଭାବିତ ଗ୍ରହ, ଦ୍ୱାଦଶ ଆଦିତ୍ୟ, ସେମାନଙ୍କ ବାରଜଣ ଶକ୍ତି ଏବଂ ଋଷି, ଦେବତା, ଗନ୍ଧର୍ବ, ନାଗ, ଅପ୍ସରାଙ୍କ ସମୂହ, ଗ୍ରାମଣୀ (ଅଗ୍ରଗାମୀ), ଯକ୍ଷ, ରାକ୍ଷସ—ଏମାନଙ୍କର ସପ୍ତ ସଂଖ୍ୟକ ଗଣ, ସାତ ଛନ୍ଦୋମୟ ଅଶ୍ୱ, ବାଲଖିଲ୍ୟାଦି ମୁନି—ଏମାନେ ସମସ୍ତେ ଭଗବାନ ଶିବଙ୍କ ଚରଣାରବିନ୍ଦର ଅର୍ଚ୍ଚନା କରିଥାନ୍ତି । ଏମାନେ ଶିବ ଓ ପାର୍ବତୀଙ୍କ ଆଜ୍ଞାକୁ ସମ୍ମାନ ଦେଇ ମୋତେ ମଙ୍ଗଳ ପ୍ରଦାନ କରନ୍ତୁ ॥୧୦୨—୧୦୮ ॥**

ବ୍ରହ୍ମାଥ ଦେବଦେବସ୍ୟ ମୂର୍ତ୍ତିର୍ଭୂମଣ୍ଡଳାଧିପଃ ।
ଚତୁଃଷଷ୍ଟିଗୁଣୈଶ୍ୱର୍ଯ୍ୟୋ ବୁଦ୍ଧିତତ୍ତ୍ୱେ ପ୍ରତିଷ୍ଠିତଃ ॥୧୦୯
ନିର୍ଗୁଣୋ ଗୁଣସଂକୀର୍ଣ୍ଣସ୍ତଥୈବ ଗୁଣକେବଳଃ ।
ଅବିକାରାତ୍ମକୋ ଦେବସ୍ତତଃ ସାଧାରଣଃ ପୁରଃ ॥୧୧୦
ଅସାଧାରଣକର୍ମା ଚ ସୃଷ୍ଟିସ୍ଥିତିଲୟକ୍ରମାତ୍ ।
ଏବଂ ତ୍ରିଧା ଚତୁର୍ଦ୍ଧା ଚ ବିଭକ୍ତଃ ପଞ୍ଚଧା ପୁନଃ ॥୧୧୧
ଚତୁର୍ଥାବରଣେ ଶମ୍ଭୋଃ ପୂଜିତଶ୍ଚ ସହାନୁଗୈଃ ।
ଶିବପ୍ରିୟଃ ଶିବାସକ୍ତଃ ଶିବପାଦାର୍ଚ୍ଚନେ ରତଃ ॥୧୧୨
ସତ୍କୃତ୍ୟ ଶିବୟୋରାଜ୍ଞାଂ ସ ମେ ଦିଶତୁ ମଙ୍ଗଳମ୍ ।

**ବ୍ରହ୍ମା ହେଉଛନ୍ତି ଦେବାଧିଦେବ ମହାଦେବଙ୍କ ମୂର୍ତ୍ତି ଓ ଭୂମଣ୍ଡଳର ଅଧିପତି । ସେ ଚଉଷଠି ଗୁଣର ଐଶ୍ୱର୍ଯ୍ୟରେ ଯୁକ୍ତ ଓ ବୁଦ୍ଧିତତ୍ତ୍ୱରେ ପ୍ରତିଷ୍ଠିତ । ସେ ନିର୍ଗୁଣ ହୋଇଥିଲେ ସୁଦ୍ଧା ଅନେକ କଲ୍ୟାଣମୟ ଗୁଣରେ ସମ୍ପନ୍ନ, ସଦ୍‌ଗୁଣରୂପ, ନିର୍ବିକାର ଦେବତା; ତାଙ୍କ ସମ୍ମୁଖରେ ଅନ୍ୟ ସମସ୍ତେ ସାଧାରଣ । ସୃଷ୍ଟି, ପାଳନ ଓ ସଂହାର କ୍ରମରେ ତାଙ୍କର ସମସ୍ତ କର୍ମ ଅସାଧାରଣ । ଏହିରୂପେ ସେ ତିନି, ଚାରି ଓ ପାଞ୍ଚ ଆବରଣ ବା ସ୍ୱରୂପରେ ବିଭକ୍ତ ଅଟନ୍ତି । ଭଗବାନ ଶିବଙ୍କ ଚତୁର୍ଥ ଆବରଣରେ ଅନୁଚରଙ୍କ ସହିତ ତାଙ୍କର ପୂଜା ହୋଇଛି । ସେ ଶିବଙ୍କ ପ୍ରିୟ, ଶିବଙ୍କ ଠାରେ ହିଁ ଆସକ୍ତ ଏବଂ ଶିବଙ୍କ ଚରଣାରବିନ୍ଦ-ଅର୍ଚ୍ଚନାରେ ତତ୍ପର । ଏତାଦୃଶ ବ୍ରହ୍ମା ଶିବା ଓ ଶିବଙ୍କ ଆଜ୍ଞାର ସତ୍କାର କରି ମୋତେ ମଙ୍ଗଳ ପ୍ରଦାନ କରନ୍ତୁ ॥୧୦୯—୧୧୨½ ॥**

ହିରଣ୍ୟଗର୍ଭୋ ଲୋକେଶୋ ବିରାଟ୍ କାଳଶ୍ଚ ପୂରୁଷଃ ॥୧୧୩
ସନତ୍କୁମାରଃ ସନକଃ ସନନ୍ଦଶ୍ଚ ସନାତନଃ ।
ପ୍ରଜାନାଂ ପତୟଶ୍ଚୈବ ଦକ୍ଷାଦ୍ୟା ବ୍ରହ୍ମସୂନବଃ ॥୧୧୪
ଏକାଦଶ ସପତ୍ନୀକା ଧର୍ମଃ ସଂକଳ୍ପ ଏବ ଚ ।
ଶିବାର୍ଚ୍ଚନରତାଶ୍ଚୈତେ ଶିବଭକ୍ତିପରାୟଣାଃ ॥୧୧୫
ଶିବାଜ୍ଞାବଶଗାଃ ସର୍ବେ ଦିଶନ୍ତୁ ମମ ମଙ୍ଗଳମ୍ ।

**ହିରଣ୍ୟଗର୍ଭ, ଲୋକେଶ, ବିରାଟ୍, କାଳପୁରୁଷ, ସନତ୍‌କୁମାର, ସନକ, ସନନ୍ଦନ, ସନାତନ, ବ୍ରହ୍ମାଙ୍କର ଦକ୍ଷାଦି ପୁତ୍ର, ଏକାଦଶ ପ୍ରଜାପତି ଓ ତାଙ୍କର ପତ୍ନୀମାନେ, ଧର୍ମ ଓ ସଂକଳ୍ପ—ଏ ସମସ୍ତେ ଶିବଙ୍କ ଅର୍ଚ୍ଚନାରେ ତତ୍ପର ଓ ଶିବଭକ୍ତିପରାୟଣ ଅଟନ୍ତି । ତେଣୁ ଶିବଙ୍କ ଆଜ୍ଞାର ଅଧୀନ ହୋଇ ମୋତେ ମଙ୍ଗଳ ପ୍ରଦାନ କରନ୍ତୁ ॥୧୧୩—୧୧୫½ ॥**

ଚତ୍ୱାରଶ୍ଚ ତଥା ବେଦାଃ ସେତିହାସପୁରାଣକାଃ ॥୧୧୬
ଧର୍ମଶାସ୍ତ୍ରାଣି ବିଦ୍ୟାଭିର୍ବୈଦିକୀଭିଃ ସମନ୍ୱିତାଃ ।
ପରସ୍ପରବିରୁଦ୍ଧାର୍ଥାଃ ଶିବପ୍ରକୃତିପାଦକାଃ ॥୧୧୭
ସତ୍କୃତ୍ୟ ଶିବୟୋରାଜ୍ଞାଂ ମଙ୍ଗଳଂ ପ୍ରଦିଶନ୍ତୁ ମେ ।

**ଚାରିବେଦ, ଇତିହାସ, ପୁରାଣ, ଧର୍ମଶାସ୍ତ୍ର ଓ ବୈଦିକ ବିଦ୍ୟାସମୂହ—ଏସବୁ କେବଳ ଶିବଙ୍କ ସ୍ୱରୂପର ପ୍ରତିପାଦନ କରିଥାନ୍ତି । ତେଣୁ ଏଗୁଡ଼ିକର ତାତ୍ପର୍ଯ୍ୟ ପରସ୍ପରର ବିରୋଧୀ ନୁହେଁ । ଏମାନେ**

**ଶିବ ଓ ଶିବାଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମୋର ମଙ୍ଗଳ କରନ୍ତୁ ॥ ୧୧୬-୧୧୭½ ॥**

ଅଥ ରୁଦ୍ରୋ ମହାଦେବଃ ଶମ୍ଭୋର୍ମୂର୍ତ୍ତିର୍ଗରୀୟସୀ ॥ ୧୧୮
ବାହ୍ନେୟମଣ୍ଡଳାଧୀଶଃ ପୌରୁଷୈଶ୍ୱର୍ଯ୍ୟବାନ୍ ପ୍ରଭୁଃ ।
ଶିବାଭିମାନସମ୍ପନ୍ନୋ ନିର୍ଗୁଣସ୍ତ୍ରିଗୁଣାତ୍ମକଃ ॥ ୧୧୯
କେବଲଂ ସାତ୍ତ୍ୱିକଶ୍ଚାପି ରାଜସଶ୍ଚୈବ ତାମସଃ ।
ଅବିକାରରତଃ ପୂର୍ବଂ ତତସ୍ତୁ ସମବିକ୍ରିୟଃ ॥ ୧୨୦
ଅସାଧାରଣକର୍ମା ଚ ସୃଷ୍ଟ୍ୟାଦିକରଣାତ୍ ପୃଥକ୍ ।
ବ୍ରହ୍ମଣୋଽପି ଶିରଶ୍ଛେତ୍ତା ଜନକସ୍ତସ୍ୟ ତତ୍ସୁତଃ ॥ ୧୨୧
ଜନକସ୍ତନୟଶ୍ଚାପି ବିଷ୍ଣୋରପି ନିୟାମକଃ ।
ବୋଧକଶ୍ଚ ତୟୋର୍ନିତ୍ୟମନୁଗ୍ରହକରଃ ପ୍ରଭୁଃ ॥ ୧୨୨
ଅଣ୍ଡସ୍ୟାନ୍ତର୍ବହିର୍ବର୍ତ୍ତୀ ରୁଦ୍ରୋ ଲୋକଦ୍ୱୟାଧିପଃ ।
ଶିବପ୍ରିୟଃ ଶିବାସକ୍ତଃ ଶିବପାଦାର୍ଚ୍ଚନେ ରତଃ ॥ ୧୨୩
ଶିବସ୍ୟାଜ୍ଞାଂ ପୁରସ୍କୃତ୍ୟ ସ ମେ ଦିଶତୁ ମଙ୍ଗଳମ୍ ।

**ମହାଦେବ ରୁଦ୍ର ହେଉଛନ୍ତି ଶମ୍ଭୁଙ୍କର ସବୁଠୁ ଗରିଷ୍ଠ ମୂର୍ତ୍ତି । ସେ ଅଗ୍ନିମଣ୍ଡଳର ଅଧୀଶ୍ୱର । ସମସ୍ତ ପୁରୁଷାର୍ଥ ଓ ଐଶ୍ୱର୍ଯ୍ୟରେ ସମ୍ପନ୍ନ, ସର୍ବସମର୍ଥ । ତାଙ୍କ ଭିତରେ ଶିବତ୍ୱର ଅଭିମାନ ଜାଗ୍ରତ ଥାଏ । ସେ ନିର୍ଗୁଣ ହୋଇ ସୁଦ୍ଧା ତ୍ରିଗୁଣରୂପ ଅଟନ୍ତି । ସେ କେବଳ ସାତ୍ତ୍ୱିକ, ରାଜସ ଓ ତାମସ ମଧ୍ୟ ଅଟନ୍ତି । ସେ ପ୍ରଥମରୁ ହିଁ ନିର୍ବିକାର । ସବୁ କିଛି ତାଙ୍କରି ସୃଷ୍ଟି । ସୃଷ୍ଟି, ପାଳନ ଓ ସଂହାର କରୁଥିବାରୁ ତାଙ୍କ କର୍ମକୁ ଅସାଧାରଣ କୁହାଯାଇଛି । ସେ ବ୍ରହ୍ମାଙ୍କର ମସ୍ତକ ଛେଦନ କରିଛନ୍ତି, ପୁଣି ସେ ବ୍ରହ୍ମାଙ୍କର ପିତା ଓ ପୁତ୍ର ମଧ୍ୟ । ଏହାଛଡ଼ା ସେ ବିଷ୍ଣୁଙ୍କର ମଧ୍ୟ ଜନକ, ପୁତ୍ର ଓ ତାଙ୍କର ନିୟନ୍ତ୍ରଣକାରୀ । ସେ ବ୍ରହ୍ମା ଓ ବିଷ୍ଣୁଙ୍କର ଜ୍ଞାନପ୍ରଦାତା ତଥା ନିତ୍ୟ ତାଙ୍କ ଉପରେ ଅନୁଗ୍ରହକାରୀ । ସେହି ପ୍ରଭୁ ବ୍ରହ୍ମାଣ୍ଡର ଭିତରେ ଓ ବାହାରେ ମଧ୍ୟ ବ୍ୟାପ୍ତ ଏବଂ ଇହଲୋକ ଓ ପରଲୋକର ଅଧିପତି ରୁଦ୍ର ଅଟନ୍ତି । ସେ ଶିବଙ୍କର ପ୍ରିୟ, ଶିବଙ୍କ ଠାରେ ଆସକ୍ତ ଓ ଶିବଙ୍କ ପଦାରବିନ୍ଦ ଅର୍ଚ୍ଚନାରେ ତତ୍ପର ରହନ୍ତି; ତେଣୁ ଶିବଙ୍କ ଆଜ୍ଞାକୁ ସମ୍ମୁଖରେ ରଖି ସେ ମୋର ମଙ୍ଗଳ କରନ୍ତୁ ॥ ୧୧୮–୧୨୩½ ॥**

ତସ୍ୟ ବ୍ରହ୍ମ ଷଡଙ୍ଗାନି ବିଦ୍ୟେଶାନାଂ ତଥାଷ୍ଟକମ୍ ॥ ୧୨୪
ଚତ୍ୱାରୋ ମୂର୍ତ୍ତିଭେଦାଶ୍ଚ ଶିବପୂର୍ବାଃ ଶିବାର୍ଚ୍ଚକାଃ ।
ଶିବୋ ଭବୋ ହରଶ୍ଚୈବ ମୃଡଶ୍ଚୈବ ତଥାପରଃ ।
ଶିବସ୍ୟାଜ୍ଞାଂ ପୁରସ୍କୃତ୍ୟ ମଙ୍ଗଳଂ ପ୍ରଦିଶନ୍ତୁ ମେ ॥ ୧୨୫

**ଭଗବାନ ଶଙ୍କରଙ୍କ ସ୍ୱରୂପଭୂତ ଈଶାନାଦି ବ୍ରହ୍ମ, ହୃଦୟାଦି ଛଅ ଅଙ୍ଗ, ଆଠ ବିଦ୍ୟେଶ୍ୱର, ଶିବ ପ୍ରଭୃତି ଚାରିମୂର୍ତ୍ତି ଯଥା—ଶିବ, ଭବ, ହର ଓ ମୃଡ—ଏମାନେ ସମସ୍ତେ ଶିବଙ୍କ ପୂଜକ । ଏମାନେ ଶିବଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମୋତେ ମଙ୍ଗଳ ପ୍ରଦାନ କରନ୍ତୁ ॥ ୧୨୪-୧୨୫ ॥**

ଅଥ ବିଷ୍ଣୁର୍ମହେଶସ୍ୟ ଶିବସ୍ୟୈବ ପରା ତନୁଃ ।
ବାରିତତ୍ତ୍ୱାଧିପଃ ସାକ୍ଷାଦବ୍ୟକ୍ତପଦସଂସ୍ଥିତଃ ॥ ୧୨୬
ନିର୍ଗୁଣଃ ସତ୍ତ୍ୱବହୁଳସ୍ତଥୈବ ଗୁଣକେବଲଃ ।
ଅବିକାରାଭିମାନୀ ଚ ତ୍ରିସାଧାରଣବିକ୍ରିୟଃ ॥ ୧୨୭
ଅସାଧାରଣକର୍ମା ଚ ସୃଷ୍ଟ୍ୟାଦିକରଣାତ୍ ପୃଥକ୍ ।
ଦକ୍ଷିଣାଙ୍ଗଭବେନାପି ସ୍ପର୍ଦ୍ଧମାନଃ ସ୍ୱୟମ୍ଭୁବା ॥ ୧୨୮
ଆଦ୍ୟେନ ବ୍ରହ୍ମଣା ସାକ୍ଷାତ୍ ସୃଷ୍ଟଃ ସ୍ରଷ୍ଟା ଚ ତସ୍ୟ ତୁ ।
ଅଣ୍ଡସ୍ୟାନ୍ତର୍ବହିର୍ବର୍ତ୍ତୀ ବିଷ୍ଣୁର୍ଲୋକଦ୍ୱୟାଧିପଃ ॥ ୧୨୯
ଅସୁରାନ୍ତକରଶ୍ଚକ୍ରୀ ଶକ୍ରସ୍ୟାପି ତଥାନୁଜଃ ।
ପ୍ରାଦୁର୍ଭୂତଶ୍ଚ ଦଶଧା ଭୃଗୁଶାପଚ୍ଛଳାଦିହ ॥ ୧୩୦
ଭୂଭାରନିଗ୍ରହାର୍ଥାୟ ସ୍ୱେଚ୍ଛୟାବାତରତ୍ କ୍ଷିତୌ ।
ଅପ୍ରମେୟବଲୋ ମାୟୀ ମାୟୟା ମୋହୟଜ୍ଜଗତ୍ ॥ ୧୩୧
ମୂର୍ତ୍ତିଂ କୃତ୍ୱା ମହାବିଷ୍ଣୁଂ ସଦାବିଷ୍ଣୁମଥାପି ବା ।
ବୈଷ୍ଣବୈଃ ପୂଜିତୋ ନିତ୍ୟଂ ମୂର୍ତ୍ତିତ୍ରୟମୟାସନେ ॥ ୧୩୨
ଶିବପ୍ରିୟଃ ଶିବାସକ୍ତଃ ଶିବପାଦାର୍ଚ୍ଚନେ ରତଃ ।
ଶିବସ୍ୟାଜ୍ଞାଂ ପୁରସ୍କୃତ୍ୟ ସ ମେ ଦିଶତୁ ମଙ୍ଗଳମ୍ ॥ ୧୩୩

**ଭଗବାନ ବିଷ୍ଣୁ ମଧ୍ୟ ମହେଶ୍ୱର ଶିବଙ୍କର ହିଁ ଉତ୍କୃଷ୍ଟ ସ୍ୱରୂପ । ସେ ଜଳତତ୍ତ୍ୱର ଅଧିପତି ଓ ସାକ୍ଷାତ୍ ଅବ୍ୟକ୍ତ ପଦରେ ପ୍ରତିଷ୍ଠିତ । ସେ ପ୍ରାକୃତ ଗୁଣରହିତ । ତାଙ୍କ ଠାରେ ସତ୍ତ୍ୱଗୁଣର ପ୍ରାଧାନ୍ୟ ରହିଛି; ସେ ବିଶୁଦ୍ଧ ଗୁଣସ୍ୱରୂପ ଅଟନ୍ତି । ତାଙ୍କ ଠାରେ ନିର୍ବିକାରରୂପତାର ଅଭିମାନ**

**ରହିଛି । ସାଧାରଣତଃ ତ୍ରିଲୋକ ହେଉଛି ତାଙ୍କର କୃତି । ସୃଷ୍ଟି, ପାଳନ ଇତ୍ୟାଦି କରୁଥିବାରୁ ତାଙ୍କର କର୍ମ ଅସାଧାରଣ । ସେ ରୁଦ୍ରଙ୍କର ଦକ୍ଷିଣଭାଗରୁ ପ୍ରକଟିତ ସ୍ୱୟମ୍ଭୂଙ୍କ ସହିତ ଥରେ ସ୍ପର୍ଦ୍ଧା କରିଛନ୍ତି । ସାକ୍ଷାତ୍ ଆଦିବ୍ରହ୍ମାଙ୍କ ଦ୍ୱାରା ଉତ୍ପନ୍ନ ହୋଇ ମଧ୍ୟ ସେ ତାଙ୍କର ଉତ୍ପାଦକ । ବ୍ରହ୍ମାଣ୍ଡର ଭିତରେ ଓ ବାହାରେ ବ୍ୟାପ୍ତ ହୋଇଥିବାରୁ ସେ ବିଷ୍ଣୁ ବୋଲାଇଥାନ୍ତି । ସେ ଉଭୟ ଲୋକର ଅଧିପତି, ଅସୁରଙ୍କ ଅନ୍ତକ, ଚକ୍ରଧାରୀ ଏବଂ ଇନ୍ଦ୍ରଙ୍କର ସାନଭାଇ । ସେ ଦଶ ଅବତାର ରୂପରେ ଆବିର୍ଭୂତ ହୋଇଛନ୍ତି । ପୁଣି ସେ ଭୃଗୁଙ୍କ ଅଭିଶାପକୁ ନିମିତ୍ତ କରି ପୃଥିବୀର ଭାର ଲାଘବ କରିବା ପାଇଁ ସ୍ୱେଚ୍ଛାରେ ଭୂତଳରେ ଅବତରିତ ହୋଇଛନ୍ତି । ତାଙ୍କର ବଳ ଅପ୍ରମେୟ । ସେ ମାୟାବୀ ଓ ନିଜ ମାୟା ଦ୍ୱାରା ଜଗତକୁ ମୋହିତ କରି ରଖିଛନ୍ତି । ସେ ମହାବିଷ୍ଣୁ ଅଥବା ସଦାବିଷ୍ଣୁଙ୍କ ରୂପ ଧାରଣ କରି ତ୍ରିମୂର୍ତ୍ତିମୟ ଆସନରେ ବୈଷ୍ଣବଙ୍କ ଦ୍ୱାରା ନିତ୍ୟ ପୂଜିତ ହୋଇଛନ୍ତି । ସେ ଶିବଙ୍କର ପ୍ରିୟ, ଶିବଙ୍କ ପ୍ରତି ଆସକ୍ତ ଓ ଶିବଙ୍କ ପଦାର୍ଚ୍ଚନରେ ତତ୍ପର । ସେ ଶିବଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମୋତେ ମଙ୍ଗଳ ପ୍ରଦାନ କରନ୍ତୁ ॥୧୨୬–୧୩୩॥**

ବାସୁଦେବୋଽନିରୁଦ୍ଧଶ୍ଚ ପ୍ରଦ୍ୟୁମ୍ନଶ୍ଚ ତତଃ ପରଃ ।
ସଂକର୍ଷଣଃ ସମାଖ୍ୟାତାଶ୍ଚତସ୍ରୋ ମୂର୍ତ୍ତୟୋ ହରେଃ ॥୧୩୪
ମତ୍ସ୍ୟଃ କୂର୍ମୋ ବରାହଶ୍ଚ ନାରସିଂହୋଽଥ ବାମନଃ ।
ରାମତ୍ରୟଂ ତଥା କୃଷ୍ଣୋ ବିଷ୍ଣୁସ୍ତୁରଗବକ୍ତ୍ରକଃ ॥୧୩୫
ଚକ୍ରଂ ନାରାୟଣସ୍ୟାସ୍ତ୍ରଂ ପାଞ୍ଚଜନ୍ୟଂ ଚ ଶାର୍ଙ୍ଗକମ୍ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ମଙ୍ଗଳଂ ପ୍ରଦିଶନ୍ତୁ ମେ ॥୧୩୬

**ବାସୁଦେବ, ଅନିରୁଦ୍ଧ, ପ୍ରଦ୍ୟୁମ୍ନ ଓ ସଂକର୍ଷଣ—ଶ୍ରୀହରିଙ୍କର ଏ ଚାରିଟି ବିଖ୍ୟାତ ମୂର୍ତ୍ତି ଏବଂ ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ପରଶୁରାମ, ରାମ, ବଳରାମ, ଶ୍ରୀକୃଷ୍ଣ, ବିଷ୍ଣୁ, ହୟଗ୍ରୀବ, ଚକ୍ର, ନାରାୟଣାସ୍ତ୍ର, ପାଞ୍ଚଜନ୍ୟ ଓ ଶାର୍ଙ୍ଗଧନୁ—ଏ ସମସ୍ତେ ଶିବ ଓ ପାର୍ବତୀଙ୍କ ଆଜ୍ଞାର ସତ୍କାର କରି ମୋତେ ମଙ୍ଗଳ ପ୍ରଦାନ କରନ୍ତୁ ॥୧୩୪–୧୩୬॥**

ପ୍ରଭା ସରସ୍ୱତୀ ଗୌରୀ ଲକ୍ଷ୍ମୀଶ୍ଚ ଶିବଭାବିତା ।
ଶିବୟୋଃ ଶାସନାଦେତା ମଙ୍ଗଳଂ ପ୍ରଦିଶନ୍ତୁ ମେ ॥୧୩୭

**ପ୍ରଭା, ସରସ୍ୱତୀ, ଗୌରୀ ଓ ଶିବଙ୍କ ପ୍ରତି ଭକ୍ତିଭାବ ରଖୁଥିବା ଲକ୍ଷ୍ମୀ—ଏମାନେ ସମସ୍ତେ ଶିବ ଓ ଶିବାଙ୍କ ଆଦେଶରେ ମୋର ମଙ୍ଗଳ କରନ୍ତୁ ॥୧୩୭॥**

ଇନ୍ଦ୍ରୋଽଗ୍ନିଶ୍ଚ ଯମଶ୍ଚୈବ ନିର୍ଋତିର୍ବରୁଣସ୍ତଥା ।
ବାୟୁଃ ସୋମଃ କୁବେରଶ୍ଚ ତଥେଶାନସ୍ତ୍ରିଶୂଳଧୃକ୍ ॥୧୩୮
ସର୍ବେ ଶିବାର୍ଚ୍ଚନରତାଃ ଶିବସଦ୍‌ଭାବଭାବିତାଃ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ମଙ୍ଗଳଂ ପ୍ରଦିଶନ୍ତୁ ମେ ॥୧୩୯

**ଇନ୍ଦ୍ର, ଅଗ୍ନି, ଯମ, ନିର୍ଋତି, ବରୁଣ, ବାୟୁ, ସୋମ, କୁବେର ଓ ତ୍ରିଶୂଳଧାରୀ ଈଶାନ—ଏମାନେ ସମସ୍ତେ ଶିବସଦ୍ଭାବରେ ଭାବିତ ହୋଇ ଶିବାର୍ଚ୍ଚନାରେ ତତ୍ପର ରହନ୍ତି । ଏମାନେ ଶିବ ଓ ଶିବାଙ୍କ ଆଜ୍ଞାର ଆଦର କରି ମୋତେ ମଙ୍ଗଳ ପ୍ରଦାନ କରନ୍ତୁ ॥ ୧୩୮-୧୩୯ ॥**

ତ୍ରିଶୂଳମଥ ବଜ୍ରଂ ଚ ତଥା ପରଶୁସାୟକୌ ।
ଖଡ୍‌ଗପାଶାଙ୍କୁଶାଶ୍ଚୈବ ପିନାକଶ୍ଚାୟୁଧୋତ୍ତମଃ ॥୧୪୦
ଦିବ୍ୟାୟୁଧାନି ଦେବସ୍ୟ ଦେବ୍ୟାଶ୍ଚୈତାନି ନିତ୍ୟଶଃ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ରକ୍ଷାଂ କୁର୍ବନ୍ତୁ ମେ ସଦା ॥୧୪୧

**ତ୍ରିଶୂଳ, ବଜ୍ର, ପରଶୁ, ଶର, ଖଡ୍‌ଗ, ପାଶ, ଅଙ୍କୁଶ ଓ ଶ୍ରେଷ୍ଠ ଆୟୁଧ ପିନାକ—ମହାଦେବ ଓ ମହାଦେବୀଙ୍କର ଏହି ଦିବ୍ୟ ଆୟୁଧମାନେ ଶିବ ଓ ଶିବାଙ୍କ ଆଜ୍ଞାକୁ ନିତ୍ୟ ସମ୍ମାନ ଦେଇ ସଦା ମୋତେ ରକ୍ଷା କରନ୍ତୁ ॥ ୧୪୦-୧୪୧ ॥**

ବୃଷରୂପଧରୋ ଦେବଃ ସୌରଭେୟୋ ମହାବଳଃ ।
ବଡବାଖ୍ୟାନଳସ୍ପର୍ଦ୍ଧୀ ପଞ୍ଚଗୋମାତୃଭିର୍ବୃତଃ ॥୧୪୨
ବାହନତ୍ୱମନୁପ୍ରାପ୍ତସ୍ତପସା ପରମେଶୟୋଃ ।
ତୟୋରାଜ୍ଞାଂ ପୁରସ୍କୃତ୍ୟ ସ ମେ କାମଂ ପ୍ରୟଚ୍ଛତୁ ॥୧୪୩

**ଯେଉଁ ବୃଷଭରୂପଧାରୀ ଦେବ ସୁରଭିଙ୍କ**

ମହାବଳଶାଳୀ ପୁତ୍ର, ବଡ଼ବା ସଙ୍ଗେ ସ୍ପର୍ଦ୍ଧା କରିଥାନ୍ତି, ପଞ୍ଚଗୋମାତାଙ୍କ ଦ୍ୱାରା ପରିବେଷ୍ଟିତ ଓ ନିଜ ତପସ୍ୟା ପ୍ରଭାବରେ ପରମେଶ୍ୱର ଶିବ ତଥା ପରମେଶ୍ୱରୀ ଶିବାଙ୍କ ବାହନ ହୋଇଛନ୍ତି, ସେ ଶିବଦମ୍ପତିଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମୋର ଇଚ୍ଛା ପୂର୍ଣ୍ଣ କରନ୍ତୁ ॥୧୪୨-୧୪୩॥

ନନ୍ଦା ସୁନନ୍ଦା ସୁରଭିଃ ସୁଶୀଳା ସୁମନାସ୍ତଥା ।
ପଞ୍ଚ ଗୋମାତରସ୍ତ୍ୱେତାଃ ଶିବଲୋକେ ବ୍ୟବସ୍ଥିତାଃ ॥୧୪୪
ଶିବଭକ୍ତିପରା ନିତ୍ୟଂ ଶିବାର୍ଚ୍ଚନପରାୟଣାଃ ।
ଶିବୟୋଃ ଶାସନାଦେବ ଦିଶନ୍ତୁ ମମ ବାଞ୍ଛିତମ୍ ॥୧୪୫

ନନ୍ଦା, ସୁନନ୍ଦା, ସୁରଭି, ସୁଶୀଳା ଓ ସୁମନା ନାମକ ପାଞ୍ଚ ଗୋମାତା ସଦା ଶିବଲୋକରେ ନିବାସ କରନ୍ତି । ସେମାନେ ନିତ୍ୟ ଶିବାର୍ଚ୍ଚନରେ ସଂଲଗ୍ନ ଥାଆନ୍ତି ଓ ଶିବଭକ୍ତିପରାୟଣା ଅଟନ୍ତି, ତେଣୁ ସେମାନେ ଶିବ ଓ ଶିବାଙ୍କ ଆଦେଶରେ ମୋର ଇଚ୍ଛା ପୂରଣ କରନ୍ତୁ ॥୧୪୪-୧୪୫॥

କ୍ଷେତ୍ରପାଲୋ ମହାତେଜା ନୀଲଜୀମୂତସଂନିଭଃ ।
ଦଂଷ୍ଟ୍ରାକରାଳବଦନଃ ସ୍ଫୁରଦ୍ରକ୍ତାଧରୋଜ୍ଜ୍ୱଳଃ ॥୧୪୬
ରକ୍ତୋର୍ଦ୍ଧ୍ୱମୂର୍ଦ୍ଧଜଃ ଶ୍ରୀମାନ୍ ଭ୍ରୂକୁଟୀକୁଟିଲେକ୍ଷଣଃ ।
ରକ୍ତବୃତ୍ତତ୍ରିନୟନଃ ଶଶିପନ୍ନଗଭୂଷଣଃ ॥୧୪୭
ନଗ୍ନସ୍ତ୍ରିଶୂଳପାଶାସିକପାଲୋଦ୍ୟତପାଣିକଃ ।
ଭୈରବୋ ଭୈରବୈଃ ସିଦ୍ଧୈର୍ଯୋଗିନୀଭିଶ୍ଚ ସଂବୃତଃ ॥୧୪୮
କ୍ଷେତ୍ରେ କ୍ଷେତ୍ରସମାସୀନଃ ସ୍ଥିତୋ ଯୋ ରକ୍ଷକଃ ସତାମ୍ ।
ଶିବପ୍ରଣାମପରମଃ ଶିବସଦ୍ଭାବଭାବିତଃ ॥୧୪୯
ଶିବାଶ୍ରିତାନ୍ ବିଶେଷେଣ ରକ୍ଷନ୍ ପୁତ୍ରାନିବୌରସାନ୍ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ସ ମେ ଦିଶତୁ ମଙ୍ଗଳମ୍ ॥୧୫୦

କ୍ଷେତ୍ରପାଳ ମହାତେଜସ୍ୱୀ ଅଟନ୍ତି, ତାଙ୍କର ଅଙ୍ଗକାନ୍ତି ନୀଳମେଘ ସଦୃଶ ଓ ମୁଖ ଭୟଙ୍କର ଦନ୍ତପଙ୍କ୍ତି ହେତୁ ବିକରାଳ ଜଣାପଡ଼େ । ମୁଣ୍ଡର କେଶ ଲାଲ୍ ଓ ଠିଆ-ଠିଆ । ତାଙ୍କର ପ୍ରକମ୍ପିତ ଓଷ୍ଠ ତାଙ୍କ ଶୋଭାକୁ ଆହୁରି ବୃଦ୍ଧି କରୁଥାଏ । ସେ ତେଜସ୍ୱୀ, ତାଙ୍କର ଭ୍ରୂକୁଟି ତଥା ନେତ୍ର କୁଟିଳ । ତାଙ୍କର ତିନୋଟି ଗୋଲାକାର ଚକ୍ଷୁ ରହିଛି । ଚନ୍ଦ୍ର ଓ ସର୍ପ ତାଙ୍କର ଆଭୂଷଣ । ସେ ସଦା ଉଲଗ୍ନ ରହନ୍ତି ଏବଂ ତାଙ୍କ ହାତରେ ତ୍ରିଶୂଳ, ପାଶ, ଖଡ୍ଗ ଓ କପାଳ ରହିଥାଏ । ସେ ଭୈରବ ଅଟନ୍ତି ଏବଂ ଅନେକ ଭୈରବ, ସିଦ୍ଧ ଓ ଯୋଗିନୀଙ୍କ ମେଳରେ ରହିଥାନ୍ତି । ସେ ପ୍ରତ୍ୟେକ କ୍ଷେତ୍ରରେ ସତ୍‌ପୁରୁଷଙ୍କର ରକ୍ଷକଭାବେ ବିଦ୍ୟମାନ ଥାଆନ୍ତି । ତାଙ୍କ ମସ୍ତକ ଶିବଙ୍କ ଚରଣରେ ସର୍ବଦା ଅବନତ ରହିଥାଏ, ସେ ସର୍ବଦା ଶିବଙ୍କ ସଦ୍ଭାବରେ ଭାବିତ ରହିଥାନ୍ତି ଏବଂ ଶିବଙ୍କ ଶରଣାଗତ ଭକ୍ତଙ୍କୁ ଔରସ ପୁତ୍ର ପରି ବିଶେଷରୂପେ ରକ୍ଷା କରିଥାନ୍ତି । ଏପରି ପ୍ରଭାବଶାଳୀ କ୍ଷେତ୍ରପାଳ ଶିବ ଓ ଶିବାଙ୍କ ଆଜ୍ଞାର ସତ୍କାର କରି ମୋତେ ମଙ୍ଗଳ ପ୍ରଦାନ କରନ୍ତୁ ॥୧୪୬–୧୫୦॥

ତାଳଜଙ୍ଘାଦୟସ୍ତସ୍ୟ ପ୍ରଥମାବରଣେଽର୍ଚ୍ଚିତାଃ ।
ସତ୍କୃତ୍ୟ ଶିବୟୋରାଜ୍ଞାଂ ଚତ୍ୱାରଃ ସମବନ୍ତୁ ମାମ୍ ॥୧୫୧

ତାଳଜଂଘ ପ୍ରଭୃତି ଯେଉଁ ଚ୍ୱରିଜଣ ଦେବତା ଶିବଙ୍କ ପ୍ରଥମ ଆବରଣରେ ପୂଜିତ ହୋଇଛନ୍ତି, ସେମାନେ ଶିବଙ୍କ ଆଜ୍ଞାର ଆଦର କରି ମୋତେ ରକ୍ଷା କରନ୍ତୁ ॥୧୫୧॥

ଭୈରବାଦ୍ୟାଶ୍ଚ ଯେ ଚ୍ୱନ୍ୟେ ସମନ୍ତାତସ୍ୟ ବେଷ୍ଟିତାଃ ।
ତେଽପି ମାମନୁଗୃହ୍ଣନ୍ତୁ ଶିବଶାସନଗୌରବାତ୍ ॥୧୫୨

ଯେଉଁ ଭୈରବ ପ୍ରଭୃତି ତଥା ଅନ୍ୟମାନେ ଶିବଙ୍କ ଚ୍ୱରିପଟରେ ଘେରି ରହିଥାନ୍ତି, ସେମାନେ ମଧ୍ୟ ଶିବଙ୍କ ଆଦେଶର ସମ୍ମାନ କରି ମୋ ପ୍ରତି ଅନୁଗ୍ରହ କରନ୍ତୁ ॥୧୫୨॥

ନାରଦାଦ୍ୟାଶ୍ଚ ମୁନୟୋ ଦିବ୍ୟା ଦେବୈଶ୍ଚ ପୂଜିତାଃ ।
ସାଧ୍ୟା ନାଗାଶ୍ଚ ଯେ ଦେବା ଜନଲୋକନିବାସିନଃ ॥୧୫୩
ବିନିର୍ବୃତ୍ତାଧିକାରଶ୍ଚ ମହର୍ଲୋକନିବାସିନଃ ।
ସପ୍ତର୍ଷୟସ୍ତଥାନ୍ୟେ ବୈ ବୈମାନିକଗଣୈଃ ସହ ॥୧୫୪
ସର୍ବେ ଶିବାର୍ଚ୍ଚନରତାଃ ଶିବାଜ୍ଞାବଶବର୍ତ୍ତିନଃ ।
ଶିବୟୋରାଜ୍ଞୟା ମହ୍ୟଂ ଦିଶନ୍ତୁ ସମକାଂକ୍ଷିତମ୍ ॥୧୫୫

ନାରଦାଦି ଦେବପୂଜିତ ଦିବ୍ୟ ମୁନି, ସାଧ୍ୟ, ନାଗ, ଜନଲୋକନିବାସୀ ଦେବତା, ବିଶେଷାଧିକାରସମ୍ପନ୍ନ ମହର୍ଲୋକନିବାସୀ, ସପ୍ତର୍ଷି ଓ ଅନ୍ୟ

**ବୈମାନିକଗଣ ସଦାଶିବଙ୍କ ଅର୍ଚ୍ଚନାରେ ତତ୍ପର ରହନ୍ତି । ସେମାନେ ଶିବଙ୍କ ଆଜ୍ଞାର ଅଧୀନ; ତେଣୁ ଶିବା ଓ ଶିବଙ୍କ ଆଜ୍ଞାରେ ମୋତେ ମନୋବାଞ୍ଛିତ ବସ୍ତୁ ପ୍ରଦାନ କରନ୍ତୁ ॥ ୧୫୩–୧୫୫ ॥**

ଗନ୍ଧର୍ବାଦ୍ୟାଃ ପିଶାଚାନ୍ତାଶ୍ଚତସ୍ରୋ ଦେବଯୋନୟଃ ।
ସିଦ୍ଧା ବିଦ୍ୟାଧରାଦ୍ୟାଶ୍ଚ ଯେଽପି ଚାନ୍ୟେ ନଭଶ୍ଚରାଃ ॥ ୧୫୬
ଅସୁରା ରାକ୍ଷସାଶ୍ଚୈବ ପାତାଳତଳବାସିନଃ ।
ଅନନ୍ତାଦ୍ୟାଶ୍ଚ ନାଗେନ୍ଦ୍ରା ବୈନତେୟାଦୟୋ ଦ୍ୱିଜାଃ ॥ ୧୫୭
କୂଷ୍ମାଣ୍ଡାଃ ପ୍ରେତବେତାଳା ଗ୍ରହା ଭୂତଗଣାଃ ପରେ ।
ଡାକିନ୍ୟଶ୍ଚାପି ଯୋଗିନ୍ୟଃ ଶାକିନ୍ୟଶ୍ଚାପି ତାଦୃଶାଃ ॥ ୧୫୮
କ୍ଷେତ୍ରାରାମଗୃହାଦୀନି ତୀର୍ଥାନ୍ୟାୟତନାନି ଚ ।
ଦ୍ୱୀପାଃ ସମୁଦ୍ରା ନଦ୍ୟଶ୍ଚ ନଦାଶ୍ଚାନ୍ୟେ ସରାଂସି ଚ ॥ ୧୫୯
ଗିରୟଶ୍ଚ ସୁମେର୍ବାଦ୍ୟାଃ କାନନାନି ସମନ୍ତତଃ ।
ପଶବଃ ପକ୍ଷିଣୋ ବୃକ୍ଷାଃ କୃମିକୀଟାଦୟୋ ମୃଗାଃ ॥ ୧୬୦
ଭୁବନାନ୍ୟପି ସର୍ବାଣି ଭୁବନାନାମଧୀଶ୍ୱରାଃ ।
ଅଣ୍ଡାନ୍ୟାବରଣୈଃ ସାର୍ଦ୍ଧଂ ମାସାଶ୍ଚ ଦଶ ଦିଗ୍‌ଗଜାଃ ॥ ୧୬୧
ବର୍ଣ୍ଣାଃ ପଦାନି ମନ୍ତ୍ରାଶ୍ଚ ତତ୍ତ୍ୱାନ୍ୟପି ସହାଧିପୈଃ ।
ବ୍ରହ୍ମାଣ୍ଡଧାରକା ରୁଦ୍ରା ରୁଦ୍ରାଶ୍ଚାନ୍ୟେ ସଶକ୍ତିକାଃ ॥ ୧୬୨
ଯଚ୍ଚ କିଞ୍ଚିଜ୍ଜଗତ୍ୟସ୍ମିନ୍ ଦୃଷ୍ଟଂ ଚାନୁମିତଂ ଶ୍ରୁତମ୍ ।
ସର୍ବେ କାମଂ ପ୍ରଯଚ୍ଛନ୍ତୁ ଶିବୟୋରେବ ଶାସନାତ୍ ॥ ୧୬୩

**ଗନ୍ଧର୍ବଙ୍କ ଠାରୁ ପିଶାଚ ପର୍ଯ୍ୟନ୍ତ ଯେଉଁ ଚାରି ପ୍ରକାର ଦେବଯୋନି ଅଛନ୍ତି, ସିଦ୍ଧ, ବିଦ୍ୟାଧର, ଅନ୍ୟ ଆକାଶଚାରୀ, ଅସୁର, ରାକ୍ଷସ, ପାତାଳବାସୀ ଅନନ୍ତାଦି ନାଗରାଜ, ଗରୁଡ଼ାଦି ଦିବ୍ୟ ପକ୍ଷୀ, କୂଷ୍ମାଣ୍ଡ, ପ୍ରେତ, ବେତାଳ, ଗ୍ରହ, ଭୂତଗଣ, ଡାକିନୀ, ଯୋଗିନୀ, ଶାକିନୀ ଓ ଅନ୍ୟାନ୍ୟ ନାରୀ, କ୍ଷେତ୍ର, ଆରାମ (ବଗିଚା), ଗୃହାଦି ତୀର୍ଥ, ଦେବମନ୍ଦିର, ଦ୍ୱୀପ, ସମୁଦ୍ର, ନଦୀ, ନଦ, ସରୋବର, ସୁମେରୁ ପ୍ରଭୃତି ପର୍ବତ, ଚତୁର୍ଦ୍ଦିଗରେ ବିସ୍ତାରିତ ବନ, ପଶୁ, ପକ୍ଷୀ, ବୃକ୍ଷ, କୃମି, କୀଟାଦି, ମୃଗ, ସମସ୍ତ ଭୁବନ, ଭୁବନେଶ୍ୱର, ଆବରଣସମେତ ବ୍ରହ୍ମାଣ୍ଡ, ବାରମାସ, ଦଶ ଦିଗ୍‌ଗଜ, ବର୍ଣ୍ଣ, ପଦ, ମନ୍ତ୍ର, ତତ୍ତ୍ୱ, ସେମାନଙ୍କ ଅଧିପତି, ବ୍ରହ୍ମାଣ୍ଡଧାରକ ରୁଦ୍ର, ଅନ୍ୟ ରୁଦ୍ର ଓ ସେମାନଙ୍କ ଶକ୍ତିଗଣ ଏବଂ ଏ ଜଗତରେ ଆଉ ଯାହା କିଛି ଦେଖିବା, ଶୁଣିବା ଓ ଅନୁମାନର ଅନ୍ତର୍ଗତ ହୋଇଥାଏ, ସେମାନେ ସମସ୍ତେ ଶିବା ଓ ଶିବଙ୍କ ଆଜ୍ଞାରେ ମୋର ମନୋରଥ ପୂରଣ କରନ୍ତୁ ॥ ୧୫୬–୧୬୩ ॥**

ଅଥ ବିଦ୍ୟା ପରା ଶୈବୀ ପଶୁପାଶବିମୋଚିନୀ ।
ପଞ୍ଚାର୍ଥସଂହିତା ଦିବ୍ୟା ପଶୁବିଦ୍ୟାବହିଷ୍କୃତା ॥ ୧୬୪
ଶାସ୍ତ୍ରଂ ଚ ଶିବଧର୍ମାଖ୍ୟଂ ଧର୍ମାଖ୍ୟଂ ଚ ତଦୁତ୍ତରମ୍ ।
ଶୈବାଖ୍ୟଂ ଶିବଧର୍ମାଖ୍ୟଂ ପୁରାଣଂ ଶ୍ରୁତିସମ୍ମିତମ୍ ॥ ୧୬୫
ଶୈବାଗମାଶ୍ଚ ଯେ ଚାନ୍ୟେ କାମିକାଦ୍ୟାଶ୍ଚତୁର୍ବିଧାଃ ।
ଶିବାଭ୍ୟାମବିଶେଷେଣ ଉତ୍କୃତ୍ୟେହ ସମର୍ଚ୍ଚିତାଃ ॥ ୧୬୬
ତାଭ୍ୟାମେବ ସମାଜ୍ଞାତା ମମାଭିପ୍ରେତସିଦ୍ଧୟେ ।
କର୍ମେଦମନୁମନ୍ୟନ୍ତାଂ ସଫଳଂ ସାଧ୍ୱନିଷ୍ଠିତମ୍ ॥ ୧୬୭

**ଯେ ପଞ୍ଚପୁରୁଷାର୍ଥସ୍ୱରୂପା ହୋଇଥିବାରୁ ପଞ୍ଚାର୍ଥା ନାମରେ କଥିତ, ଯାହାର ସ୍ୱରୂପ ଦିବ୍ୟ ତଥା ଯେ ପଶୁବିଦ୍ୟା ଶ୍ରେଣୀର ଊର୍ଦ୍ଧ୍ୱରେ, ପଶୁମାନଙ୍କୁ ପାଶରୁ ମୁକ୍ତ କରୁଥିବା ସେହି ଶୈବୀ ପରା ବିଦ୍ୟା ଏବଂ ଶିବଧର୍ମଶାସ୍ତ୍ର, ଶୈବଧର୍ମ, ଶ୍ରୁତିସମ୍ମତ ଶିବସଂଜ୍ଞକପୁରାଣ, ଶୈବାଗମ ତଥା ଧର୍ମକାମାଦି ଚତୁର୍ବିଧ ପୁରୁଷାର୍ଥ, ଯାହାଙ୍କୁ ଶିବ ଓ ଶିବାଙ୍କ ସମାନ ମାନି ସେମାନଙ୍କ ସମତୁଲ୍ୟ ପୂଜା ଦିଆଯାଇଛି–ଏ ସମସ୍ତେ ସେହି ଦୁହିଙ୍କ ଆଜ୍ଞା ନେଇ ମୋର ଅଭୀଷ୍ଟ ସିଦ୍ଧି ପାଇଁ ଏ କର୍ମର ଅନୁମୋଦନ କରନ୍ତୁ; ଏହାକୁ ସଫଳ ଓ ସୁସମ୍ପନ୍ନ ଘୋଷିତ କରନ୍ତୁ ॥ ୧୬୪–୧୬୭ ॥**

ଶ୍ୱେତାଦ୍ୟା ନକୁଲୀଶାନ୍ତାଃ ସଶିଷ୍ୟାଶ୍ଚାପି ଦେଶିକାଃ ।
ତତ୍ସଂତତୀୟା ଗୁରବୋ ବିଶେଷାଦ୍ ଗୁରବୋ ମମ ॥ ୧୬୮
ଶୈବା ମାହେଶ୍ୱରାଶ୍ଚୈବ ଜ୍ଞାନକର୍ମପରାୟଣାଃ ।
କର୍ମେଦମନୁମନ୍ୟନ୍ତାଂ ସଫଳଂ ସାଧ୍ୱନୁଷ୍ଠିତମ୍ ॥ ୧୬୯

**ଶ୍ୱେତଠାରୁ ନକୁଲୀଶପର୍ଯ୍ୟନ୍ତ ସମସ୍ତେ, ଶିଷ୍ୟଙ୍କ ସମେତ ସକଳ ଆଚାର୍ଯ୍ୟଗଣ, ସେମାନଙ୍କ ସନ୍ତାନପରମ୍ପରାରେ ଉତ୍ପନ୍ନ ଗୁରୁଜନ, ବିଶେଷତଃ ଜ୍ଞାନ ଓ କର୍ମରେ ତତ୍ପର ରହୁଥିବା ମୋର ଶୈବ ଓ ମାହେଶ୍ୱର ଗୁରୁମାନେ ମୋର ଏହି କର୍ମକୁ**

**ସଫଳ ଏବଂ ସୁସମ୍ପନ୍ନ ମଣନ୍ତୁ ॥ ୧୬୮-୧୬୯ ॥**

ଲୌକିକା ବ୍ରାହ୍ମଣାଃ ସର୍ବେ କ୍ଷତ୍ରିୟାଶ୍ଚ ବିଶଃକ୍ରମାତ୍ ।
ବେଦବେଦାଙ୍ଗତତ୍ତ୍ୱଜ୍ଞାଃ ସର୍ବଶାସ୍ତ୍ରବିଶାରଦାଃ ॥ ୧୭୦
ସାଂଖ୍ୟା ବୈଶେଷିକାଶ୍ଚୈବ ଯୋଗା ନୈୟାୟିକା ନରାଃ ।
ସୌରା ବ୍ରାହ୍ମାସ୍ତଥା ରୌଦ୍ରା ବୈଷ୍ଣବାଶ୍ଚାପରେ ନରାଃ ॥ ୧୭୧
ଶିଷ୍ଟାଃ ସର୍ବେ ବିଶିଷ୍ଟାଶ୍ଚ ଶିବଶାସନଯନ୍ତ୍ରିତାଃ ।
କର୍ମେଦମନୁମନ୍ୟନ୍ତାଂ ମମାଭିପ୍ରେତସାଧକମ୍ ॥ ୧୭୨

**ଲୌକିକ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ବେଦବେଦାଙ୍ଗର ତତ୍ତ୍ୱଜ୍ଞ ବିଦ୍ୱାନ୍, ସର୍ବଶାସ୍ତ୍ରକୁଶଳ, ସାଂଖ୍ୟବେତ୍ତା, ବୈଶେଷିକ, ଯୋଗଶାସ୍ତ୍ରର ଆଚାର୍ଯ୍ୟ, ନୈୟାୟିକ, ସୂର୍ଯ୍ୟୋପାସକ, ବ୍ରହ୍ମୋପାସକ, ଶୈବ, ବୈଷ୍ଣବ ଓ ଅନ୍ୟ ସମସ୍ତ ଶିଷ୍ଟ ଓ ବିଶିଷ୍ଟ ପୁରୁଷ ଶିବଙ୍କ ଆଜ୍ଞାର ଅଧୀନ ହୋଇ ମୋର ଏହି କର୍ମକୁ ଅଭୀଷ୍ଟସାଧନକାରୀ ମାନନ୍ତୁ ॥ ୧୭୦—୧୭୨ ॥**

ଶୈବାଃ ସିଦ୍ଧାନ୍ତମାର୍ଗସ୍ଥାଃ ଶୈବାଃ ପାଶୁପତାସ୍ତଥା ।
ଶୈବା ମହାବ୍ରତଧରାଃ ଶୈବାଃ କାପାଳିକାଃ ପରେ ॥ ୧୭୩
ଶିବାଜ୍ଞାପାଳକାଃ ପୂଜ୍ୟା ମମାପି ଶିବଶାସନାତ୍ ।
ସର୍ବେ ମାମନୁଗୃହ୍ଣନ୍ତୁ ଶଂସନ୍ତୁ ସଫଳକ୍ରିୟାମ୍ ॥ ୧୭୪

**ସିଦ୍ଧାନ୍ତମାର୍ଗୀ ଶୈବ, ପାଶୁପତ ଶୈବ, ମହାବ୍ରତଧାରୀ ଶୈବ ଓ ଅନ୍ୟ କାପାଳିକ ଶୈବ— ଏ ସମସ୍ତେ ଶିବଙ୍କ ଆଜ୍ଞାପାଳକ ଏବଂ ମୋର ପୂଜନୀୟ ଅଟନ୍ତି । ତେଣୁ ଶିବଙ୍କ ଆଜ୍ଞାରେ ଏ ସମସ୍ତଙ୍କର ମୋ ପ୍ରତି ଅନୁଗ୍ରହ ହେଉ ଏବଂ ଏମାନେ ଏହି କାର୍ଯ୍ୟକୁ ସଫଳ ଘୋଷିତ କରନ୍ତୁ ॥ ୧୭୩-୧୭୪ ॥**

ଦକ୍ଷିଣଜ୍ଞାନନିଷ୍ଠାଶ୍ଚ ଦକ୍ଷିଣୋତ୍ତରମାର୍ଗଗାଃ ।
ଅବିରୋଧେନ ବର୍ତ୍ତନ୍ତାଂ ମନ୍ତ୍ରଂ ଶ୍ରେୟୋଽର୍ଥିନୋ ମମ ॥ ୧୭୫

**ଯେଉଁମାନେ ଦକ୍ଷିଣାଗ୍ରର ଜ୍ଞାନରେ ପରିନିଷ୍ଠ ଓ ଦକ୍ଷିଣାଗ୍ରରର ଉତ୍କୃଷ୍ଟ ମାର୍ଗର ପଥିକ, ସେମାନେ ପରସ୍ପର ପ୍ରତି ବିରୋଧ ନ କରି ମନ୍ତ୍ର ଜପ କରନ୍ତୁ ଓ ମୋର କଲ୍ୟାଣକାମୀ ହୁଅନ୍ତୁ ॥ ୧୭୫ ॥**

ନାସ୍ତିକାଶ୍ଚ ଶଠାଶ୍ଚୈବ କୃତଘ୍ନାଶ୍ଚୈବ ତାମସାଃ ।
ପାଷଣ୍ଡାଶ୍ଚାତିପାପାଶ୍ଚ ବର୍ତ୍ତନ୍ତାଂ ଦୂରତୋ ମମ ॥ ୧୭୬
ବହୁଭିଃ କିଂ ସ୍ତୁତୈରତ୍ର ଯେଽପି କେଽପି ଚିଦାସ୍ତିକାଃ ।
ସର୍ବେ ମାମନୁଗୃହ୍ଣନ୍ତୁ ସନ୍ତଃ ଶଂସନ୍ତୁ ମଙ୍ଗଳମ୍ ॥ ୧୭୭

**ନାସ୍ତିକ, ଶଠ, କୃତଘ୍ନ, ତାମସ, ପାଷଣ୍ଡ ଓ ଘୋର ପାପୀ ପ୍ରାଣୀ ମୋଠାରୁ ଦୂରେଇ ରହନ୍ତୁ । ଏଠାରେ ଅନେକଙ୍କୁ ସ୍ତୁତି କରି କି ଲାଭ? ଯେତେ ବି ଆସ୍ତିକ ସନ୍ତ ଅଛନ୍ତି, ସେମାନେ ସମସ୍ତେ ମୋ ପ୍ରତି ଅନୁଗ୍ରହ କରନ୍ତୁ ଏବଂ ମୋତେ ମଙ୍ଗଳକର ଆଶୀର୍ବାଦ ଦିଅନ୍ତୁ ॥ ୧୭୬-୧୭୭ ॥**

ନମଃ ଶିବାୟ ସାମ୍ବାୟ ସସୁତାୟାଦିହେତବେ ।
ପଞ୍ଚାବରଣରୂପେଣ ପ୍ରପଞ୍ଚେନାବୃତାୟ ତେ ॥ ୧୭୮

**ଆପଣ ସଦାଶିବ ପଞ୍ଚାବରଣରୂପୀ ପ୍ରପଞ୍ଚ ଦ୍ୱାରା ପରବେଷ୍ଟିତ ଓ ସମସ୍ତଙ୍କର ଆଦିକାରଣ, ତେଣୁ ଆପଣଙ୍କୁ ମାତା ପାର୍ବତୀ ଓ ପୁତ୍ରାଦିଙ୍କ ସହିତ ନମସ୍କାର ॥ ୧୭୮ ॥**

ଇତୀକ୍ତ୍ୱା ଦଣ୍ଡବଦ୍ ଭୂମୌ ପ୍ରଣିପତ୍ୟ ଶିବଂ ଶିବାମ୍ ।
ଜପେଦ୍ ପଞ୍ଚାକ୍ଷରୀଂ ବିଦ୍ୟାମଷ୍ଟୋତ୍ତରଶତାବରାମ୍ ॥ ୧୭୯
ତଥୈବ ଶକ୍ତିବିଦ୍ୟାଂ ଚ ଜପିତ୍ୱା ତଦ୍ ସମର୍ପଣମ୍ ।
କୃତ୍ୱା ତଂ କ୍ଷମୟିତ୍ୱେଶଂ ପୂଜାଶେଷଂ ସମାପୟେତ୍ ॥ ୧୮୦

**ଏପରି କହି ଶିବ-ପାର୍ବତୀଙ୍କ ଉଦ୍ଦେଶ୍ୟରେ ଭୂମିଷ୍ଠ ଦଣ୍ଡବତ୍ ପ୍ରଣାମ କରିବେ ଏବଂ ଅତି କମ୍‌ରେ ଶହେଆଠ ଥର ପଞ୍ଚାକ୍ଷରୀ ବିଦ୍ୟା ଜପ କରିବେ । ଏହିରୂପେ ଶକ୍ତିବିଦ୍ୟା (ଓଁ ନମଃ ଶିବାୟୈ)କୁ ମଧ୍ୟ ଜପି ତାହାକୁ ସମର୍ପଣ କରିବେ ଏବଂ ମହାଦେବଙ୍କୁ କ୍ଷମା ମାଗି ଅବଶିଷ୍ଟ ପୂଜା ସମାପ୍ତ କରିବେ ॥ ୧୭୯-୧୮୦ ॥**

ଏତଦ୍ ପୁଣ୍ୟତମଂ ସ୍ତୋତ୍ରଂ ଶିବୟୋର୍ହୃଦୟଙ୍ଗମମ୍ ।
ସର୍ବାଭୀଷ୍ଟପ୍ରଦଂ ସାକ୍ଷାଦ୍ ଭୁକ୍ତିମୁକ୍ତ୍ୟେକସାଧନମ୍ ॥ ୧୮୧

**ଏହି ପରମ ପୁଣ୍ୟମୟ ସ୍ତୋତ୍ର ଶିବ ଓ ଶିବାଙ୍କ ହୃଦୟକୁ ଅତ୍ୟନ୍ତ ପ୍ରିୟ ଲାଗେ, ସମସ୍ତ ମନୋବାଞ୍ଛା ପୂରଣ କରେ ଏବଂ ଏହା ସାକ୍ଷାତ୍ ଭୋଗ ଓ ମୋକ୍ଷର ଏକମାତ୍ର ସାଧନ ॥ ୧୮୧ ॥**

ଯ ଇଦଂ କୀର୍ତ୍ତୟେନ୍ନିତ୍ୟଂ ଶୃଣୁୟାଦ୍ ବା ସମାହିତଃ ।
ସ ବିଧୂୟାଶୁ ପାପାନି ଶିବସାୟୁଜ୍ୟମାପ୍ନୁୟାତ୍ ॥୧୮୨

**ଯେ ଏକାଗ୍ରଚିତ୍ତ ହୋଇ ପ୍ରତିଦିନ ଏହାକୁ କୀର୍ତ୍ତନ ଅଥବା ଶ୍ରବଣ କରେ, ସେ ସମସ୍ତ ପାପକୁ ପ୍ରକ୍ଷାଳନ କରି ଭଗବାନ ଶିବଙ୍କ ସାୟୁଜ୍ୟ ପ୍ରାପ୍ତ ହୁଏ ॥ ୧୮୨ ॥**

ଗୋଘ୍ନଶ୍ଚୈବ କୃତଘ୍ନଶ୍ଚ ବୀରହା ଭ୍ରୂଣହାପି ବା ।
ଶରଣାଗତଘାତୀ ଚ ମିତ୍ରବିଶ୍ରମ୍ଭଘାତକଃ ॥୧୮୩
ଦୁଷ୍ଟପାପସମାଚାରୋ ମାତୃହା ପିତୃହାପି ବା ।
ସ୍ତବେନାନେନ ଜପ୍ତେନ ତତ୍ତତ୍ ପାପାତ୍ ପ୍ରମୁଚ୍ୟତେ ॥୧୮୪

**ଗୋହତ୍ୟାକାରୀ, କୃତଘ୍ନ, ବୀରଘାତୀ, ଭ୍ରୂଣହତ୍ୟାକାରୀ, ଶରଣାଗତହନ୍ତା, ମିତ୍ରପ୍ରତି ବିଶ୍ୱାସଘାତକାରୀ, ଦୁରାଚାରୀ, ପାପାଚାରପରାୟଣ ଓ ମାତୃପିତୃହନ୍ତା ମଧ୍ୟ ଏ ସ୍ତୋତ୍ରର ଜପଦ୍ୱାରା ତତ୍କାଳ ପାପମୁକ୍ତ ହୋଇଯାଏ ॥ ୧୮୩-୧୮୪ ॥**

ଦୁଃସ୍ୱପ୍ନାଦିମହାନର୍ଥସୂଚକେଷୁ ଭୟେଷୁ ଚ ।
ଯଦି ସଂକୀର୍ତ୍ତୟେଦେତନ୍ନ ତତୋଽନର୍ଥଭାଗ୍ ଭବେତ୍ ॥୧୮୫

**ଦୁସ୍ୱପ୍ନ ଆଦି ଘୋର ଅନର୍ଥସୂଚକ ଭୟ ଉପସ୍ଥିତ ହେଲେ ମଧ୍ୟ ଯଦି ମନୁଷ୍ୟ ଏ ସ୍ତୋତ୍ରକୁ କୀର୍ତ୍ତନ କରିବ, ସେ କଦାପି ଅନର୍ଥର ଭାଗୀ ହେବ ନାହିଁ ॥ ୧୮୫ ॥**

ଆୟୁରାରୋଗ୍ୟମୈଶ୍ୱର୍ଯ୍ୟଂ ଯଚ୍ଚାନ୍ୟଦପି ବାଞ୍ଛିତମ୍ ।
ସ୍ତୋତ୍ରସ୍ୟାସ୍ୟ ଜପେ ତିଷ୍ଠଂସ୍ତତ୍ସର୍ବଂ ଲଭତେ ନରଃ ॥୧୮୬

**ଏହାକୁ ଜପୁଥିବା ବ୍ୟକ୍ତି ଆୟୁ, ଆରୋଗ୍ୟ, ଐଶ୍ୱର୍ଯ୍ୟ ଓ ଆଉ ଯାହା କିଛି ମନୋବାଞ୍ଛିତ ବସ୍ତୁ ରହିଛି, ସେ ସମସ୍ତ ବସ୍ତୁ ଲାଭ କରିଥାଏ ॥ ୧୮୬ ॥**

ଅସମ୍ପୂଜ୍ୟ ଶିବଂ ସ୍ତୋତ୍ରଜପାତ୍ ଫଲମୁଦାହୃତମ୍ ।
ସମ୍ପୂଜ୍ୟ ଚ ଜପେ ତସ୍ୟ ଫଲଂ ବକ୍ତୁଂ ନ ଶକ୍ୟତେ ॥୧୮୭

**ଶିବଙ୍କର ପୂର୍ବୋକ୍ତ ପୂଜା ନ କରି କେବଳ ସ୍ତୋତ୍ରକୁ ପାଠ କଲେ ଯେଉଁ ଫଳ ମିଳେ, ତାହା ଏଠାରେ କୁହାଗଲା; କିନ୍ତୁ ଶିବଙ୍କୁ ପୂଜା କରି ଏହି ସ୍ତୋତ୍ରକୁ ପାଠ କଲେ ଯେଉଁ ଫଳ ମିଳେ, ତାହା ଅବର୍ଣ୍ଣନୀୟ ॥ ୧୮୭ ॥**

ଆସ୍ତାମିୟଂ ଫଲାବାପ୍ତିରସ୍ମିନ୍ ସଂକୀର୍ତ୍ତିତେ ସତି ।
ସାର୍ଧମମ୍ବିକୟା ଦେବଃ ଶ୍ରୁତ୍ୱୈବ ଦିବି ତିଷ୍ଠତି ॥୧୮୮
ତସ୍ମାନ୍ନଭସି ସମ୍ପୂଜ୍ୟ ଦେବଦେବଂ ସହୋମୟା ।
କୃତାଞ୍ଜଳିପୁଟସ୍ତିଷ୍ଠନ୍ ସ୍ତୋତ୍ରମେତଦୁଦୀରୟେତ୍ ॥୧୮୯

**ଉପରୋକ୍ତ ଫଳପ୍ରାପ୍ତି ତ ହୁଏ, ତା'ଛଡ଼ା ଏ ସ୍ତୋତ୍ରକୁ କୀର୍ତ୍ତନ କଲେ ଅଥବା ଏହା କାନରେ ପଡ଼ିବା ମାତ୍ରେ ମାତା ପାର୍ବତୀଙ୍କ ସହିତ ମହାଦେବ ଆସି ଆକାଶରେ ବିରାଜମାନ ହୋଇଯାଆନ୍ତି । ତେଣୁ ସେତେବେଳେ ଉମାଙ୍କ ସମେତ ମହାଦେବଙ୍କୁ ଆକାଶରେ ପୂଜା କରି କର ଯୋଡ଼ି ଠିଆ ହୋଇଯିବା ଉଚିତ ଏବଂ ଏ ସ୍ତୋତ୍ରକୁ ପାଠ କରିବା ଉଚିତ ॥ ୧୮୮-୧୮୯ ॥**

(ଅଧ୍ୟାୟ ୩୧)

★★★

# ଐହିକ ଫଳଦାୟକ କର୍ମସମୂହ ଓ ସେଗୁଡ଼ିକର ବିଧି, ଶିବପୂଜନର ବିଧି, ଶାନ୍ତି-ପୁଷ୍ଟି ଆଦି ବିବିଧ କାମ୍ୟ କର୍ମରେ ବିଭିନ୍ନ ହବ୍ୟ ପଦାର୍ଥର ଉପଯୋଗର ବିଧାନ

ଉପମନ୍ୟୁ କହୁଛନ୍ତି—**ଶ୍ରୀକୃଷ୍ଣ ! ମୁଁ ତୁମ ଆଗରେ ଇହଲୋକ ଓ ପରଲୋକରେ ସିଦ୍ଧି ପ୍ରଦାନ କରୁଥିବା କର୍ମ ବିଷୟରେ କହିଲି, ଯାହା କି ଉତ୍ତମ ହେବା ସଙ୍ଗେ ସଙ୍ଗେ କ୍ରିୟା, ଜପ, ତପ ଓ ଧ୍ୟାନର ସମୁଚ୍ଚୟ ଅଟେ । ଏବେ ମୁଁ ଶିବଭକ୍ତଙ୍କ ପାଇଁ ଇହଲୋକରେ ଫଳପ୍ରଦାୟକ ହେଉଥିବା ପୂଜା, ହୋମ, ଜପ, ଧ୍ୟାନ, ତପ ଓ ଦାନରୂପୀ ମହାନ୍ କର୍ମର ବର୍ଣ୍ଣନା କରିବି । ମନ୍ତ୍ରାର୍ଥର ଶ୍ରେଷ୍ଠ ଜ୍ଞାତା ପ୍ରଥମେ ମନ୍ତ୍ରକୁ ସିଦ୍ଧ କରିନେବା ଉଚିତ, ନଚେତ୍ ଇଷ୍ଟସିଦ୍ଧିକାରକ**

କର୍ମ ମଧ୍ୟ ଫଳଦାୟକ ହୁଏ ନାହିଁ । ମନ୍ତ୍ର ସିଦ୍ଧ ହୋଇଗଲେ ମଧ୍ୟ ଯେଉଁ କର୍ମର ଫଳ କୌଣସି ପ୍ରବଳ ଅଦୃଷ୍ଟର ପ୍ରଭାବରେ ପ୍ରତିବନ୍ଧ ହୋଇଥିବ, ତାହାକୁ ସହସା କରିବା ଅନୁଚିତ । ସେହି ପ୍ରତିବନ୍ଧକର ନିରାକରଣ କରାଯାଇପାରେ । କର୍ମ କରିବା ପୂର୍ବରୁ ଶକୁନ ଇତ୍ୟାଦି ଦ୍ୱାରା ତାହାର ପରୀକ୍ଷା କରିବେ ଏବଂ ପ୍ରତିବନ୍ଧକ ବିଷୟରେ ଜଣା ପଡ଼ିଗଲେ ତାହାକୁ ଦୂର କରିବାକୁ ପ୍ରଯତ୍ନ କରିବେ । ଯେଉଁ ବ୍ୟକ୍ତି ଏପରି ନ କରି ମୋହବଶତଃ ଐହିକ ଫଳଦାୟୀ କର୍ମ ଅନୁଷ୍ଠାନ କରେ, ସେ ଫଳଭାଗୀ ହୁଏ ନାହିଁ, ବରଂ ଜଗତରେ ଉପହାସର ପାତ୍ର ହୁଏ । ବିଶ୍ୱାସ ନ ଥିଲେ ଐହିକ ଫଳଦାୟକ କର୍ମର ଅନୁଷ୍ଠାନ କଦାପି କରିବା ଉଚିତ ନୁହେଁ; କାରଣ ତା ମନରେ ଶ୍ରଦ୍ଧା ନ ଥାଏ ଏବଂ ଶ୍ରଦ୍ଧାହୀନ ବ୍ୟକ୍ତିକୁ କର୍ମର ଫଳ ମିଳେ ନାହିଁ । କୃତକର୍ମ ନିଷ୍ଫଳ ହୋଇଗଲେ ମଧ୍ୟ ସେଥିରେ ଦେବତାଙ୍କର କୌଣସି ଅପରାଧ ନାହିଁ; କାରଣ ଶାସ୍ତ୍ରୋକ୍ତ ବିଧିରେ ଯଥାର୍ଥ ରୀତିରେ କର୍ମ କରୁଥିବା ବ୍ୟକ୍ତିକୁ ହିଁ ଇହଲୋକରେ ଫଳପ୍ରାପ୍ତି ହେବା ପରିଲକ୍ଷିତ ହୁଏ ।

ଯେଉଁ ସାଧକ ମନ୍ତ୍ରକୁ ସିଦ୍ଧ କରିଛନ୍ତି, ପ୍ରତିବନ୍ଧକକୁ ଦୂର କରିଛନ୍ତି, ମନ୍ତ୍ର ପ୍ରତି ବିଶ୍ୱାସ ରଖିଛନ୍ତି ଏବଂ ଯାହାଙ୍କର ଶ୍ରଦ୍ଧା ଅଛି, ସେପରି ସାଧକଙ୍କୁ କୃତ କର୍ମର ଫଳ ଅବଶ୍ୟ ମିଳେ । ଏଭଳି କର୍ମର ଫଳପ୍ରାପ୍ତି ନିମନ୍ତେ ବ୍ରହ୍ମଚର୍ଯ୍ୟ-ପରାୟଣ ହେବା ଆବଶ୍ୟକ । ସେ ରାତିରେ ହବିଷ୍ୟାନ୍ନ, କ୍ଷୀର ବା ଫଳ ଭକ୍ଷଣ କରି, ହିଂସାଦି ନିଷିଦ୍ଧ କର୍ମକୁ ମନରୁ ମଧ୍ୟ ବର୍ଜନ କରି, ସଦା ଶରୀରରେ ଭସ୍ମ ଲଗାଇ ସୁନ୍ଦର ଓ ପବିତ୍ର ବେଶଭୂଷା ଧାରଣ କରିବେ ଏବଂ ପବିତ୍ର ଭାବରେ ରହିବେ ।

ଏହି ପ୍ରକାରେ ଆଗ୍ରହବାନ୍ ହୋଇ ନିଜ ଅନୁକୂଳ ଶୁଭ ଦିନରେ ପୁଷ୍ପମାଳା ଇତ୍ୟାଦିରେ ସୁସଜ୍ଜିତ ହୋଇଥିବା ପୂର୍ବୋକ୍ତ ଲକ୍ଷଣଯୁକ୍ତ ସ୍ଥାନରେ ଏକହାତ ଭୂମିକୁ ଗୋମୟରେ ଲିପି ଓ ଭଦ୍ରାସନ ବିଛାଇ ତା'ଉପରେ ଗୋଟିଏ ଦୀପ୍ତିମନ୍ତ ପଦ୍ମ ଆଙ୍କିବେ । ତାହା ତପ୍ତକାଞ୍ଚନ ପରି ଉଜ୍ଜ୍ୱଳ ରଙ୍ଗର ହୋଇଥିବ । ସେଥିରେ କେଶର ସହିତ ଅଷ୍ଟଦଳ ଥିବ । ମଧ୍ୟଭାଗରେ କର୍ଣ୍ଣିକା ଥିବ ଓ ତାହା ରତ୍ନରେ ଅଳଂକୃତ ହୋଇଥିବ । ସେଥିରେ ପଦ୍ମର ଆକାର ପରି ନାଳ ଥିବ । ଏତାଦୃଶ ସ୍ୱର୍ଣ୍ଣନିର୍ମିତ ପଦ୍ମ ଉପରେ ସମଗ୍ରରୂପେ ଅଣିମା ଇତ୍ୟାଦି ସମସ୍ତ ସିଦ୍ଧିଙ୍କର ଭାବନା କରି ତା' ଉପରେ ରତ୍ନ, ସୁନା ଅଥବା ସ୍ଫଟିକମଣିର ଉତ୍ତମ ଲକ୍ଷଣଯୁକ୍ତ ପିଣ୍ଡିସମେତ ଶିବଲିଙ୍ଗ ସ୍ଥାପିତ କରିବେ ଏବଂ ସେଥିରେ ବିଧିପୂର୍ବକ ପାର୍ଷଦଙ୍କ ସହ ଅବିନାଶୀ ସାମ୍ବ ସଦାଶିବ (ଶିବ-ପାର୍ବତୀ)ଙ୍କୁ ଆବାହନ ଓ ପୂଜନ କରିବେ । ତା'ପରେ ସେଠାରେ ସାକାର ମହେଶ୍ୱରଙ୍କର ଭାବନାମୟୀ ମୂର୍ତ୍ତି ନିର୍ମିତ କରିବେ, ଯାହାଙ୍କର ଚାରିଭୁଜ ଓ ଚାରିମୁଖ ଥିବ । ସେ ସମସ୍ତ ଆଭୂଷଣରେ ବିଭୂଷିତ ହୋଇଥିବେ, ବ୍ୟାଘ୍ରଚର୍ମ ପରିଧାନ କରିଥିବେ । ତାଙ୍କ ମୁଖମଣ୍ଡଳରେ ଥିବ ସ୍ମିତହାସର ଛଟା । ତାଙ୍କର ଦୁଇଟି ହାତରେ ବରଦ ଓ ଅଭୟ ମୁଦ୍ରା ଥିବା ବେଳେ ଅନ୍ୟ ଦୁଇଟି ହାତରେ ଶୋଭା ପାଉଥିବ ମୃଗମୁଦ୍ରା ଓ ଟଙ୍କ । ଅଥବା ଉପାସକ ନିଜ ରୁଚି ଅନୁସାରେ ଅଷ୍ଟଭୁଜ ମୂର୍ତ୍ତିର ଭାବନା ମଧ୍ୟ କରିପାରିବେ । ଅଷ୍ଟଭୁଜଧାରୀ ମୂର୍ତ୍ତି ଡାହାଣ ଚାରିଟି ହାତରେ ତ୍ରିଶୂଳ, ପରଶୁ, ଖଡ଼ଗ ଓ ବଜ୍ର ଧାରଣ କରିଥିବେ ଏବଂ ବାମପଟର ଚାରି ହାତରେ ପାଶ, ଅଙ୍କୁଶ, ଖେଟ ଓ ନାଗ ଧାରଣ କରିଥିବେ । ତାଙ୍କର ଅଙ୍ଗକାନ୍ତି ପ୍ରାତଃକାଳୀନ ସୂର୍ଯ୍ୟଙ୍କ ତୁଲ୍ୟ ଲାଲ୍ ହୋଇଥିବ ଓ ପ୍ରତ୍ୟେକ ମୁଖରେ ତିନୋଟି

ଲେଖାଏଁ ନେତ୍ର ଥିବ । ସେହି ମୂର୍ତ୍ତିର ପୂର୍ବବର୍ତ୍ତୀ ମୁଖ ସୌମ୍ୟ ତଥା ନିଜ ଆକୃତିର ଅନୁରୂପ ଓ କାନ୍ତିମାନ୍ । ଦକ୍ଷିଣବର୍ତ୍ତୀ ମୁଖ ନୀଳମେଘ ତୁଲ୍ୟ ଶ୍ୟାମଳ ଓ ଦେଖିବାକୁ ଭୟଙ୍କର । ଉତ୍ତରବର୍ତ୍ତୀ ମୁଖ ପ୍ରବାଳ ତୁଲ୍ୟ ଲାଲ୍ ଏବଂ ମସ୍ତକର ନୀଳ ଅଳକାବଳୀ ତାହାର ଶୋଭା ବଢ଼ାଉଥାଏ । ପଶ୍ଚିମବର୍ତ୍ତୀ ମୁଖ ପୂର୍ଣ୍ଣଚନ୍ଦ୍ର ତୁଲ୍ୟ ଉଜ୍ଜ୍ୱଳ, ସୌମ୍ୟ ଓ ଚନ୍ଦ୍ରକଳାଧାରୀ । ସେହି ଶିବମୂର୍ତ୍ତିଙ୍କର କୋଳରେ ପରାଶକ୍ତି ମାହେଶ୍ୱରୀ ଷୋଡ଼ଶ ବର୍ଷିୟା ଶିବା ବିଦ୍ୟମାନ ହୋଇ ସମସ୍ତଙ୍କର ମନକୁ ମୋହି ନେଉଥାନ୍ତି ଓ ସେ ମହାଲକ୍ଷ୍ମୀଙ୍କ ନାମରେ ବିଖ୍ୟାତ ଅଟନ୍ତି ।

ଏହିରୂପେ ଭାବନାମୟୀ ମୂର୍ତ୍ତି ନିର୍ମାଣ ଓ ସକଳୀକରଣ କରି ସେଥିରେ ମୂର୍ତ୍ତିମନ୍ତ ପରମ କାରଣ ଶିବଙ୍କୁ ଆବାହନ ଓ ପୂଜନ କରିବେ । ସେଠାରେ ସ୍ନାନ କରାଇବା ପାଇଁ କପିଳା ଗାଈର ପଞ୍ଚଗବ୍ୟ ଓ ପଞ୍ଚାମୃତ ସଂଗ୍ରହ କରି ରଖିବେ । ବିଶେଷତଃ ଚୂର୍ଣ୍ଣ ଓ ଉପଯୋଗୀ ମଞ୍ଜିଗୁଡ଼ିକୁ ମଧ୍ୟ ପାଖରେ ରଖିବେ । ତା'ପରେ ପୂର୍ବଦିଗରେ ମଣ୍ଡଳ ତିଆରି କରି ତାହାକୁ ରତ୍ନଚୂର୍ଣ୍ଣ ଇତ୍ୟାଦିରେ ଅଳଂକୃତ କରି ପଦ୍ମର କର୍ଣ୍ଣିକାରେ ଈଶାନ-କଳଶ ସ୍ଥାପନ କରିବେ । ତା'ପରେ ତାହାର ଚତୁଷ୍ପାର୍ଶ୍ୱରେ ସଦ୍ୟୋଜାତାଦି ମୂର୍ତ୍ତିଙ୍କର କଳଶ ସ୍ଥାପନ କରିବେ । ତା'ପରେ ପୂର୍ବାଦି ଅଷ୍ଟଦିଗରେ କ୍ରମାନ୍ୱୟରେ ବିଦ୍ୟେଶ୍ୱରଙ୍କର ଆଠଟି କଳଶ ସ୍ଥାପନ କରି ଓ ସେଗୁଡ଼ିକୁ ତୀର୍ଥଜଳରେ ପୂର୍ଣ୍ଣ କରି ତା'ର କଣ୍ଠଦେଶରେ ସୂତା ଗୁଡ଼ାଇଦେବେ । ତା'ପରେ ସବୁଥିରେ ପବିତ୍ର ଦ୍ରବ୍ୟ ପକାଇ ମନ୍ତ୍ର ଓ ବିଧିପୂର୍ବକ ଶାଢ଼ୀ ବା ଧୋତି ଇତ୍ୟାଦିରେ କଳଶଗୁଡ଼ିକୁ ଆଚ୍ଛାଦିତ କରିବେ । ତା'ପରେ ମନ୍ତ୍ରୋଚ୍ଚାରଣପୂର୍ବକ ସେଗୁଡ଼ିକରେ ମନ୍ତ୍ରନ୍ୟାସ କରି ସ୍ନାନ ବେଳ ହେଲେ ନାନା ପ୍ରକାର ମାଙ୍ଗଳିକ ଧ୍ୱନି ଓ ବାଦ୍ୟନାଦ ସହିତ ପଞ୍ଚଗବ୍ୟ ଇତ୍ୟାଦି ଦ୍ୱାରା ପରମେଶ୍ୱର ଶିବଙ୍କୁ ସ୍ନାନ କରାଇବେ । ଗନ୍ଧ, ପୁଷ୍ପ ଇତ୍ୟାଦିରେ ସୁବାସିତ ତଥା ମନ୍ତ୍ରସିଦ୍ଧ କୁଶୋଦକ, ସ୍ୱର୍ଣ୍ଣୋଦକ ଓ ରତ୍ନୋଦକ ଇତ୍ୟାଦିକୁ କ୍ରମାନୁସାରେ ନେଇ ତଦ୍ଦ୍ୱାରା ମନ୍ତ୍ରୋଚ୍ଚାରଣପୂର୍ବକ ମହେଶ୍ୱରଙ୍କୁ ସ୍ନାନ କରାଇବେ । ତା'ପରେ ଗନ୍ଧ, ପୁଷ୍ପ ଓ ଦୀପାଦି ନିବେଦନ କରି ପୂଜାକର୍ମ ସମ୍ପନ୍ନ କରିବେ । ଆଲେପନ ବା ଉପଲେପ ଅତିକମ୍‌ରେ ଏକପଳ ଏବଂ ସର୍ବାଧିକ ଏଗାର ପଳ ହେବା ଆବଶ୍ୟକ । ସୁନ୍ଦର ସୁବର୍ଣ୍ଣମୟ ଓ ରତ୍ନମୟ ପୁଷ୍ପ ଅର୍ପିତ କରିବେ । ସୁଗନ୍ଧିତ ନୀଳପଦ୍ମ, ନୀଳକୁମୁଦ, ଅନେକ ବିଲ୍ୱପତ୍ର, ରକ୍ତପଦ୍ମ ଓ ଶ୍ୱେତପଦ୍ମ ମଧ୍ୟ ଶମ୍ଭୁଙ୍କୁ ଅର୍ପଣ କରିବେ । କର୍ପୂର, ଘିଅ ଓ ଗୁଗ୍‌ଗୁଳ ମିଶା କଳା ଅଗୁରୁ ଧୂପ ନିବେଦିତ କରିବେ । କପିଳା ଗାଈର ଘିଅରେ କର୍ପୂର ପକାଇ ବତୀରେ ଆଳତି କରିବେ । ଈଶାନାଦି ପଞ୍ଚବ୍ରହ୍ମ, ଷଡଙ୍ଗ ଓ ପାଞ୍ଚ ଆବରଣକୁ ପୂଜା କରିବା ଉଚିତ । ନୈବେଦ୍ୟରୂପେ ଦୁଗ୍ଧରେ ପ୍ରସ୍ତୁତ ପଦାର୍ଥ ନିବେଦନ କରିବେ । ଗୁଡ଼ ଓ ଘିଅ ମିଶ୍ରିତ ମହାଚରୁ ମଧ୍ୟ ଭୋଗ ଲଗାଇବେ । ପାଟଳ, ଉତ୍ପଳ ଓ କମଳ ଇତ୍ୟାଦିରେ ସୁଗନ୍ଧିତ ଜଳ ପାନୀୟରୂପେ ପ୍ରଦାନ କରିବେ । ପାଞ୍ଚପ୍ରକାର ସୁଗନ୍ଧଯୁକ୍ତ ଉତ୍ତମ ତାମ୍ବୂଳ ମୁଖଶୁଦ୍ଧି ନିମନ୍ତେ ପ୍ରଦାନ କରିବେ । ସୁବର୍ଣ୍ଣ ଓ ରତ୍ନର ଆଭୂଷଣ, ନାନା ପ୍ରକାର ନୂତନ, ସୂକ୍ଷ୍ମ ଓ ସୁଦର୍ଶନୀୟ ରଙ୍ଗିନ୍ ବସ୍ତ୍ର ଇଷ୍ଟଦେବଙ୍କୁ ଅର୍ପଣ କରିବେ । ସେତେବେଳେ ଗୀତ, ବାଦ୍ୟ ଓ କୀର୍ତ୍ତନ ଧ୍ୱନି ମଧ୍ୟ କରିବା ଉଚିତ ।

ଏକଲକ୍ଷ ମୂଳମନ୍ତ୍ର ଜପିବା ଉଚିତ । ପୂଜା ଅତିକମ୍‌ରେ ଥରେ, ନଚେତ୍ ଦୁଇ-ତିନି ଥର କରିବା ଉଚିତ; କାରଣ ଅଧିକର ଫଳ

ଅଧିକ ହୋଇଥାଏ । ପ୍ରତ୍ୟେକ ହୋମସାମଗ୍ରୀକୁ ଅତିକମ୍‌ରେ ଦଶଥର ଏବଂ ଅତିବେଶୀରେ ଶହେଥର ଆହୁତି ଦେବା ଉଚିତ । ମାରଣ ଓ ଉଚ୍ଚାଟନ ଇତ୍ୟାଦିରେ ଶିବଙ୍କର ଘୋରରୂପକୁ ଚିନ୍ତନ କରିବା ଉଚିତ । ଶାନ୍ତିକର୍ମ ବା ପୌଷ୍ଟିକକର୍ମ କରିବା ବେଳେ ଶିବଲିଙ୍ଗରେ, ଶିବାଗ୍ନିରେ ଏବଂ ଅନ୍ୟ ପ୍ରତିମାରେ ଶିବଙ୍କ ସୌମ୍ୟରୂପକୁ ଧ୍ୟାନ କରିବା ଉଚିତ । ମାରଣ ଇତ୍ୟାଦି କର୍ମରେ ଲୁହାର ସ୍ରୁବ ଓ ସ୍ରୁଚ ଉପଯୋଗ କରିବା ଆବଶ୍ୟକ । ଅନ୍ୟାନ୍ୟ ଶାନ୍ତି କର୍ମରେ ସୁବର୍ଣ୍ଣରେ ବା ଯଜ୍ଞୀୟ କାଷ୍ଠରେ ସ୍ରୁବ ଓ ସ୍ରୁଚ ତିଆରି କରିବା ଉଚିତ । ମୃତ୍ୟୁ ଉପରେ ବିଜୟ ପାଇବା ପାଇଁ ଘୃତ ଓ ଦୁଗ୍ଧ ମିଶ୍ରିତ ଦୂବରେ, ମଧୁରେ, ଘୃତଯୁକ୍ତ ଚରୁରେ ଅଥବା କେବଳ ଦୁଗ୍ଧରେ ହବନ କରିବା ଆବଶ୍ୟକ । ରୋଗ ଶମନ ପାଇଁ ତିଳରେ ଆହୁତି ଦେବା ଦରକାର । ସମୃଦ୍ଧି ଚାହୁଁଥିବା ବ୍ୟକ୍ତି ମହାଦାରିଦ୍ର୍ୟର ଶମନ ନିମନ୍ତେ ଘିଅ, ଦୁଗ୍ଧ ଅଥବା କେବଳ ପଦ୍ମଫୁଲରେ ହୋମ କରିବେ । ବଶୀକରଣ ପାଇଁ ଘୃତଯୁକ୍ତ ଜାଇଫୁଲରେ ହବନ କରିବେ । ଦ୍ୱିଜ ପକ୍ଷେ ଘୃତ ଓ କରବୀର ଫୁଲରେ ଆହୁତି ଦେଇ ଆକର୍ଷଣର ପ୍ରୟୋଗକୁ ସଫଳ କରିବା ଉଚିତ । ତେଲ ଆହୁତିରେ ଉଚ୍ଚାଟନ ଓ ମଧୁ ଆହୁତିରେ ସ୍ତମ୍ଭନ କର୍ମ କରିବେ । ସୋରିଷ ଆହୁତି ଦ୍ୱାରା ସ୍ତମ୍ଭନ କରାଯାଏ । ବଟବୀଜ ଓ ତିଳ ଆହୁତି ଦ୍ୱାରା ମାରଣ ଓ ଉଚ୍ଚାଟନ କରିବା ଉଚିତ । ନଡ଼ିଆ ତେଲ ଆହୁତି ଦେଇ ବିଦ୍ୱେଷଣ କର୍ମ କରିବାକୁ ହୁଏ । ରୋହୀବୀଜ ଆହୁତି ଦେଇ ବନ୍ଧନକୁ ତଥା ସମସ୍ତ ହୋମଦ୍ରବ୍ୟରେ ନାଲି ସୋରିଷ ମିଶ୍ରିତ କରି ତଦ୍ୱାରା ସେନା-ସ୍ତମ୍ଭନ ପ୍ରୟୋଗ କରାଯାଏ ।

ଅଭିଚାର କର୍ମରେ ହସ୍ତଚାଳିତ ଯନ୍ତ୍ରରେ ପ୍ରସ୍ତୁତ ତେଲ ଆହୁତି ଦେବା ଆବଶ୍ୟକ । କୁଟକୀର ଚୋପା, କପାର ବୀଜକୋଷ ଓ ତୈଳମିଶ୍ରିତ ସୋରିଷ ମଧ୍ୟ ଆହୁତି ଦିଆଯାଇପାରେ । ଦୁଗ୍ଧ ଆହୁତି ଜ୍ୱରଶାନ୍ତି କରେ ଓ ସୌଭାଗ୍ୟ ପ୍ରଦାନ କରେ । ମଧୁ, ଘୃତ ଓ ଦଧିର ମିଶ୍ରଣରେ, ଦୁଗ୍ଧ ଓ ଚାଉଳରେ ଅଥବା କେବଳ ଦୁଗ୍ଧରେ କରାଯାଇଥିବା ହୋମ ସମସ୍ତ ସିଦ୍ଧି ପ୍ରଦାନ କରିଥାଏ । ସାତଟି ସମିଧରେ ଶାନ୍ତିକ ଅଥବା ପୌଷ୍ଟିକ କର୍ମ ମଧ୍ୟ କରିବେ । ବିଶେଷତଃ ଦ୍ରବ୍ୟ ଦ୍ୱାରା ହୋମ କଲେ ବଶ୍ୟ ଓ ଆକର୍ଷଣର ସିଦ୍ଧି ହୋଇଥାଏ । ବିଲ୍ୱପତ୍ରରେ ହୋମ ବଶୀକରଣ ଓ ଆକର୍ଷଣର ସାଧକ ଓ ଲକ୍ଷ୍ମୀପ୍ରାପ୍ତିକାରକ ହୋଇଥାଏ । ପୁଣି ତାହା ଶତ୍ରୁ ଉପରେ ବିଜୟ ପ୍ରଦାନ କରିଥାଏ । ଶାନ୍ତିକାର୍ଯ୍ୟରେ ପଳାଶ ଓ ଖଇର ଇତ୍ୟାଦି ସମିଧରେ ହୋମ କରିବା ଉଚିତ । କ୍ରୂରତାପୂର୍ଣ୍ଣ କର୍ମରେ କନିଅର ଓ ଅରଖ ସମିଧ ପ୍ରୟୋଗ ହେବା ଆବଶ୍ୟକ । କଳହରେ କଣ୍ଟକିତ ଗଛର ସମିଧରେ ହୋମ କରିବା ଆବଶ୍ୟକ । ଶାନ୍ତି ଓ ପୁଷ୍ଟି କର୍ମକୁ ବିଶେଷତଃ ଶାନ୍ତଚିତ୍ତ ବ୍ୟକ୍ତି ହିଁ କରିବା ବିଧେୟ । ଆଭିଚାରିକ କର୍ମରେ ନିର୍ଦ୍ଦୟ ଓ କ୍ରୋଧୀ ଲୋକ ପ୍ରବୃତ୍ତ ହେବା ଉଚିତ ଏବଂ ସେ କେବଳ ସେତିକିବେଳେ ସେଭଳି କରିବ, ଯେତେବେଳେ ଦୁରବସ୍ଥା ଚରମ ସୀମାରେ ପହଞ୍ଚିଥିବ ଓ ତାହାର ନିରାକରଣର ଅନ୍ୟ କୌଣସି ଉପାୟ ନ ଥିବ । ସେତିକିବେଳେ ଆତତାୟୀକୁ ନଷ୍ଟ କରିବା ଉଦ୍ଦେଶ୍ୟରେ ଆଭିଚାରିକ କର୍ମ କରାଯାଇ ପାରେ । ନିଜ ରାଷ୍ଟ୍ରସ୍ୱାମୀଙ୍କର ହାନି ହେବା ଉଦ୍ଦେଶ୍ୟରେ କଦାପି ଆଭିଚାରିକ କର୍ମ କରିବା ଉଚିତ ନୁହେଁ । ଯଦି କୌଣସି ଆସ୍ତିକ, ପରମ ଧର୍ମାତ୍ମା ଓ ମାନନୀୟ ବ୍ୟକ୍ତିଙ୍କ ଦ୍ୱାରା କେବେ ଆତତାୟୀ-କାର୍ଯ୍ୟ ହୋଇଯାଏ, ତଥାପି ତାଙ୍କୁ ନଷ୍ଟ କରିବା

ଉଦ୍ଦେଶ୍ୟରେ ଆଭିଚାରିକ କର୍ମ ପ୍ରୟୋଗ କରିବା ଅନୁଚିତ । ଯେ ମନ, ବାଣୀ ଓ କ୍ରିୟା ଦ୍ୱାରା ଭଗବାନ ଶିବଙ୍କ ଆଶ୍ରିତ, ତା'ପାଇଁ ଏବଂ ରାଷ୍ଟ୍ରସ୍ୱାମୀଙ୍କ ପାଇଁ ଆଭିଚାରିକ କର୍ମ ପ୍ରୟୋଗ କଲେ ମନୁଷ୍ୟ ଖୁବ୍ ଶୀଘ୍ର ପତିତ ହୋଇଯାଏ । ଏଣୁ ନିଜର ସୁଖ ଚାହୁଁଥିବା ବ୍ୟକ୍ତି ନିଜ ରାଷ୍ଟ୍ରପାଳକ ରାଜାଙ୍କ ପ୍ରତି ଏବଂ ଶିବଭକ୍ତଙ୍କ ପ୍ରତି ଅଭିଚାର ଦ୍ୱାରା ହିଂସା ନ କରିବା ଉଚିତ । ଅନ୍ୟ କାହା ଉଦ୍ଦେଶ୍ୟରେ ମାରଣ ଇତ୍ୟାଦି ପ୍ରୟୋଗ କଲେ ପଶ୍ଚାତ୍ତାପପୂର୍ବକ ପ୍ରାୟଶ୍ଚିତ୍ତ କରିବା ଉଚିତ ।

ନିର୍ଦ୍ଧନ ବା ଧନବାନ୍ ବ୍ୟକ୍ତି ବାଣଲିଙ୍ଗ (ନର୍ମଦାରୁ ପ୍ରକଟିତ ଶିବଲିଙ୍ଗ), ଋଷିଙ୍କ ଦ୍ୱାରା ସ୍ଥାପିତ ଲିଙ୍ଗ ବା ବୈଦିକ ଲିଙ୍ଗରେ ଭଗବାନ ଶିବଙ୍କୁ ପୂଜା କରିବେ । ଏପରି ଲିଙ୍ଗର ଅଭାବରେ ସୁବର୍ଣ୍ଣର ଓ ରତ୍ନର ଶିବଲିଙ୍ଗ ପୂଜା କରିବେ । ସୁବର୍ଣ୍ଣ ଓ ରତ୍ନ ଉପାର୍ଜନର ଶକ୍ତି ନ ଥିଲେ ମନରେ ଭାବନାମୟୀ ମୂର୍ତ୍ତି ନିର୍ମାଣ କରି ମାନସିକ ପୂଜା କରିବେ ଅଥବା ପ୍ରତିନିଧି ଦ୍ରବ୍ୟ ଦ୍ୱାରା ଶିବଲିଙ୍ଗର କଳ୍ପନା କରିବେ । ଯେ କିଞ୍ଚିତ୍ ସମର୍ଥ ଓ କିଞ୍ଚିତ୍ ଅସମର୍ଥ, ସେ ଯଦି ନିଜ ସାମର୍ଥ୍ୟ ଅନୁସାରେ ପୂଜାକର୍ମ କରେ, ତାକୁ ପୂଜାର ଫଳ ଅବଶ୍ୟ ମିଳିଥାଏ । ଏଭଳି କର୍ମାନୁଷ୍ଠାନ କରିବା ସତ୍ତ୍ୱେ ଯେଉଁଠି ଫଳ ପରିଲକ୍ଷିତ ନ ହୁଏ, ସେ କ୍ଷେତ୍ରରେ ଏ କର୍ମକୁ ଦୁଇତିନି ଥର କରିବା ଉଚିତ । ଏପରି କଲେ ଫଳ ପରିଲକ୍ଷିତ ହେବ । ପୂଜାରେ ଲାଗିଥିବା ସୁବର୍ଣ୍ଣ, ରତ୍ନ ଆଦି ଉତ୍ତମ ଦ୍ରବ୍ୟକୁ ଗୁରୁଙ୍କୁ ଦେଇଦେବା ଉଚିତ ଏବଂ ଏହା ସହିତ ଦକ୍ଷିଣା ବି ଦେବା ଉଚିତ । ଗୁରୁ ନେବାକୁ ନ ଚାହିଁଲେ ଭଗବାନ ଶିବଙ୍କୁ ସମର୍ପି ଦେବେ ଅଥବା ଶିବଭକ୍ତଙ୍କୁ ଦେଇଦେବେ । ଏମାନଙ୍କ ଛଡ଼ା ଅନ୍ୟ କାହାକୁ ଦେବାର ବିଧାନ ନାହିଁ । ଯେ ଗୁରୁ ପ୍ରଭୃତିଙ୍କୁ ଅପେକ୍ଷା ନ କରି ସ୍ୱୟଂ ନିଜେ ଯଥାଶକ୍ତି ପୂଜା ସମ୍ପନ୍ନ କରେ, ସେ ମଧ୍ୟ ଏହିପରି କରିବ । ପୂଜାରେ ଅର୍ପିତ ବସ୍ତୁକୁ ନିଜେ ଗ୍ରହଣ କରିବ ନାହିଁ । ଯେଉଁ ମୂଢ଼ ଲୋଭରେ ପୂଜାର ଅଙ୍ଗଭୂତ ଉତ୍ତମ ଦ୍ରବ୍ୟକୁ ନିଜେ ଗ୍ରହଣ କରେ, ସେ ଅଭୀଷ୍ଟ ଫଳ ପାଏ ନାହିଁ । ଏଥିରେ କିଛି ସନ୍ଦେହ ନାହିଁ । ଅନ୍ୟ କାହା ଦ୍ୱାରା ପୂଜିତ ଶିବଲିଙ୍ଗଙ୍କୁ ଗ୍ରହଣ କରିବା ଅଥବା ନ କରିବା ସାଧକର ଇଚ୍ଛା ଉପରେ ନିର୍ଭର କରେ । ଯଦି ସେ ଗ୍ରହଣ କରେ, ତେବେ ନିଜେ ତାହାକୁ ନିତ୍ୟ ପୂଜା କରିବ ଅଥବା କାହା ଦ୍ୱାରା କରାଇବ । ଯେ ଏହି କର୍ମକୁ ଶାସ୍ତ୍ରୀୟ ବିଧିରେ ନିରନ୍ତର ଅନୁଷ୍ଠାନ କରେ, ସେ ଫଳରୁ କଦାପି ବଞ୍ଚିତ ହୁଏ ନାହିଁ । ଏହାଠାରୁ ବଳି ପ୍ରଶଂସାର କଥା ଆଉ କ'ଣ ଅଛି?

ତଥାପି ମୁଁ ସଂକ୍ଷେପରେ କର୍ମଜନିତ ଉତ୍ତମ ସିଦ୍ଧିର ମହିମା ବର୍ଣ୍ଣନା କରୁଛି । ଏହାଦ୍ୱାରା ଶତ୍ରୁପୀଡ଼ିତ ବ୍ୟକ୍ତି ଅଥବା ଅନେକ ପ୍ରକାର ବ୍ୟାଧିର ଶିକାର ହୋଇଥିବା ଓ ମୃତ୍ୟୁମୁଖରେ ପଡ଼ିଥିବା ମନୁଷ୍ୟ ମଧ୍ୟ ନିର୍ବିଘ୍ନରେ ସେଥିରୁ ମୁକ୍ତ ହୋଇଯାଏ । ଅତ୍ୟନ୍ତ କୃପଣ ମଧ୍ୟ ଉଦାର ଏବଂ ନିର୍ଦ୍ଧନ ମଧ୍ୟ କୁବେର ସଦୃଶ ହୋଇଯାଏ । କୁରୂପ ମଧ୍ୟ କାମଦେବ ପରି ସୁନ୍ଦର ଏବଂ ବୃଦ୍ଧ ମଧ୍ୟ ନବଯୁବକ ପରି ହୋଇଯାଏ । ଶତ୍ରୁ କ୍ଷଣକ ଭିତରେ ମିତ୍ର ହୋଇଯାଏ ଓ ବିରୋଧୀ କିଙ୍କର ହୋଇଯାଏ । ଅମୃତ ବିଷତୁଲ୍ୟ ଓ ବିଷ ଅମୃତତୁଲ୍ୟ ହୋଇଯାଏ । ସମୁଦ୍ର ସ୍ଥଳବତ୍ ଓ ସ୍ଥଳ ସମୁଦ୍ରବତ୍ ହୋଇଯାଏ । ଖାଇ ପାହାଡ଼ ପରି ଉଚ୍ଚ ଓ ପର୍ବତ ଖାଇ ପରି ଗଭୀର ହୋଇଯାଏ । ଅଗ୍ନି ସରୋବର ପରି ଶୀତଳ ଓ ଏବଂ ସରୋବର ଅଗ୍ନି ପରି ଦାହକ ହୋଇଯାଏ ।

ଉଦ୍ୟାନ ଜଙ୍ଗଲ ପରି ଓ ଜଙ୍ଗଲ ଉଦ୍ୟାନ ପରି ହୋଇଯାଏ । କ୍ଷୁଦ୍ର ମୃଗ ସିଂହ ପରି ଶୌର୍ଯ୍ୟଶାଳୀ ଓ ସିଂହ ମଧ୍ୟ କ୍ରୀଡ଼ାମୃଗ ପରି ଆଜ୍ଞାପାଳକ ହୋଇଯାଏ । ନାରୀମାନେ ଅଭିସାରିକା ହୋଇଯାଆନ୍ତି ଅର୍ଥାତ୍ ଅଧିକ ପ୍ରେମ କରନ୍ତି ଏବଂ ଲକ୍ଷ୍ମୀ ସୁସ୍ଥିର ହୋଇ ରହେ । ବାଣୀ ଇଚ୍ଛାନୁସାରେ ଦାସୀ ହୋଇଯାଏ ଏବଂ କୀର୍ତ୍ତି ଗଣିକା ପରି ସର୍ବତ୍ରଗାମିନୀ ହୋଇଯାଏ । ବୁଦ୍ଧି ସ୍ୱେଚ୍ଛାନୁସାରେ ବିଚରଣକାରୀ ଓ ମନ ହୀରକଭେଦୀ ସୂଚୀ ପରି ତୀକ୍ଷ୍ଣ ହୋଇଯାଏ । ଶକ୍ତି ତୋଫାନ ପରି ବଳଶାଳୀ ଓ ବଳ ମତ୍ତ ଗଜରାଜ ପରି ପରାକ୍ରମଶାଳୀ ହୋଇଯାଏ? ଶତ୍ରୁପକ୍ଷର ସମସ୍ତ ଉଦ୍ୟୋଗ ଓ କାର୍ଯ୍ୟ ସ୍ଥିର ବା ଅକାମୀ ହୋଇଯାଏ ଏବଂ ଶତ୍ରୁର ସମସ୍ତ ସୁହୃଦ୍ ତା'ପାଇଁ ବିପରୀତ ହୋଇଯାଆନ୍ତି । ଶତ୍ରୁ ତା'ର ବନ୍ଧୁସହୋଦର ସମେତ ଜୀବିତ ମୁର୍ଦ୍ଦାର ପରି ହୋଇଯାଏ ଏବଂ ସିଦ୍ଧପୁରୁଷ ନିଜେ ବିପତ୍ତିରେ ପଡ଼ିଥିଲେ ମଧ୍ୟ ଅରିଷ୍ଟଶୂନ୍ୟ ହୋଇଯାଏ । ସେ ଅମରତ୍ୱ ଲାଭ କଲା ପରି ହୋଇଯାଏ । ସେ ଅପଥ୍ୟ ଖାଇଲେ ବି ତାହା ତା'ପାଇଁ ରସାୟନ ପରି କାମ କରେ । ନିରନ୍ତର ରତିସୁଖ ସେବନ କରି ମଧ୍ୟ ସେ ନିତ୍ୟ-ନବୀନ ହୋଇ ରହେ । ଭବିଷ୍ୟର ସମସ୍ତ କଥା ତାକୁ କରତଳଗତ ଅଁଳା ପରି ପ୍ରତ୍ୟକ୍ଷ ଦୃଶ୍ୟ ହୁଏ । ଇଚ୍ଛାମାତ୍ରକେ ଅଣିମା ଇତ୍ୟାଦି ସିଦ୍ଧି ତାକୁ ଫଳ ପ୍ରଦାନ କରନ୍ତି । ଏ ବିଷୟରେ କେତେ ବା କହିବା, କେବଳ ଏ କର୍ମକୁ ସମ୍ପାଦନ କରିଦେବା ମାତ୍ରେ କାମ ଓ ଅର୍ଥ ସମ୍ବନ୍ଧିତ କୌଣସି ବସ୍ତୁ ଅପ୍ରାପ୍ୟ ହୋଇ ରହେ ନାହିଁ ।

(ଅଧ୍ୟାୟ ୩୨)

★★★

## ପାରଲୌକିକ ଫଳଦାୟକ କର୍ମ—ଶିବଲିଙ୍ଗ-ମହାବ୍ରତର ବିଧି ଓ ମହିମା

ଉପମନ୍ୟୁ କହୁଛନ୍ତି—ଯଦୁନନ୍ଦନ ! ଏବେ ମୁଁ କେବଳ ପରଲୋକରେ ଫଳଦାୟକ ହେଉଥିବା କର୍ମର ବିଧି କହିବି । ତ୍ରିଲୋକରେ ଏହାର ସମକକ୍ଷ ହେଲା ପରି ଆଉ କିଛି କର୍ମ ନାହିଁ । ଏହି ବିଧି ଅତିଶୟ ପୁଣ୍ୟମୟ ଓ ସମସ୍ତ ଦେବତା ଏହାକୁ ଅନୁଷ୍ଠାନ କରିଛନ୍ତି । ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଇନ୍ଦ୍ରାଦି ଲୋକପାଳ, ସୂର୍ଯ୍ୟାଦି ନବଗ୍ରହ, ବିଶ୍ୱାମିତ୍ର ଓ ବଶିଷ୍ଠାଦି ବ୍ରହ୍ମବେତ୍ତା ମହର୍ଷି, ଶ୍ୱେତ, ଅଗସ୍ତ୍ୟ, ଦଧୀଚି ଓ ମୋ ଭଳି ଶିବଭକ୍ତମାନେ, ନନ୍ଦୀଶ୍ୱର, ମହାକାଳ ଓ ଭୃଙ୍ଗୀଶ ଇତ୍ୟାଦି ମହାନାଗ, ସିଦ୍ଧ, ଯକ୍ଷ, ଗନ୍ଧର୍ବ, ରାକ୍ଷସ, ଭୂତ ଓ ପିଶାଚ—ଏ ସମସ୍ତେ ନିଜ ନିଜ ପଦ ଲାଭ କରିବା ପାଇଁ ଉକ୍ତ ବିଧିର ଅନୁଷ୍ଠାନ କରିଛନ୍ତି । ଏହି ବିଧିରେ ହିଁ ସକଳ ଦେବତା ଦେବତ୍ୱକୁ ପ୍ରାପ୍ତ ହୋଇଛନ୍ତି । ଏହି ବିଧିଦ୍ୱାରା ବ୍ରହ୍ମା ବ୍ରହ୍ମତ୍ୱକୁ, ବିଷ୍ଣୁ ବିଷ୍ଣୁତ୍ୱକୁ, ରୁଦ୍ର ରୁଦ୍ରତ୍ୱକୁ, ଇନ୍ଦ୍ର ଇନ୍ଦ୍ରତ୍ୱକୁ ଓ ଗଣେଶ ଗଣେଶତ୍ୱକୁ ପ୍ରାପ୍ତ ହୋଇଛନ୍ତି ।

ଶ୍ୱେତଚନ୍ଦନଯୁକ୍ତ ଜଳରେ ଲିଙ୍ଗସ୍ୱରୂପ ଶିବ ଓ ଶିବାଙ୍କୁ ସ୍ନାନ କରାଇ ପ୍ରସ୍ଫୁଟିତ ଶ୍ୱେତପଦ୍ମରେ ତାଙ୍କୁ ପୂଜା କରିବେ । ତା'ପରେ ତାଙ୍କ ଚରଣାରବିନ୍ଦରେ ପ୍ରଣାମ କରି ସେଠାରେ ଲିପିପୋଛି ପବିତ୍ର କରାଯାଇଥିବା ଭୂମିରେ ସୁନ୍ଦର ଶୁଭଲକ୍ଷଣ ପଦ୍ମାସନ ତିଆରି କରିବେ । ଧନ ଥିଲେ ନିଜ ଶକ୍ତି ଅନୁସାରେ ସୁନା ବା ରତ୍ନର ପଦ୍ମାସନ ତିଆରି କରିବା ଉଚିତ । ପଦ୍ମକେଶରର ମଧ୍ୟଭାଗରେ ଅଙ୍ଗୁଷ୍ଠ ଆକାରର ଗୋଟିଏ ଛୋଟିଆ ଶିବଲିଙ୍ଗ ସ୍ଥାପନ କରିବେ ।

ତାହା ସର୍ବଗନ୍ଧମୟ ଓ ସୁନ୍ଦର ହୋଇଥିବା ଉଚିତ। ତାହାକୁ ଦକ୍ଷିଣଭାଗରେ ସ୍ଥାପିତ କରି ବେଲପତ୍ରରେ ପୂଜା କରିବେ। ପୁଣି ତାହାର ଦକ୍ଷିଣଭାଗରେ ଅଗୁରୁ, ପଶ୍ଚିମଭାଗରେ ମନଃଶିଳା, ଉତ୍ତରଭାଗରେ ଚନ୍ଦନ ଓ ପୂର୍ବଭାଗରେ ହରିତାଳ ଅର୍ପଣ କରିବେ। ତା'ପରେ ସୁନ୍ଦର ସୁଗନ୍ଧିତ ବିଚିତ୍ର ପୁଷ୍ପଦ୍ୱାରା ପୂଜା କରିବେ। କଳା ଅଗୁରୁ ଓ ଗୁଗ୍‌ଗୁଳର ଧୂପ ଦେବେ। ଅତ୍ୟନ୍ତ ସୂକ୍ଷ୍ମ ଓ ନିର୍ମଳ ବସ୍ତ୍ର ନିବେଦନ କରିବେ। ଘୃତମିଶ୍ରିତ ଖିରି ଭୋଗ ଲଗାଇବେ। ଘିଅଦୀପ ଜଳାଇବେ। ମନ୍ତ୍ରୋଚ୍ଚାରଣପୂର୍ବକ ସବୁ କିଛି ଅର୍ପଣ କରି ପରିକ୍ରମା କରିବେ। ଭକ୍ତିଭାବରେ ଦେବେଶ୍ୱର ଶିବଙ୍କୁ ପ୍ରଣାମ କରି ତାଙ୍କୁ ସ୍ତୁତି କରିବେ ଏବଂ ଶେଷରେ ତ୍ରୁଟି ନିମନ୍ତେ କ୍ଷମାପ୍ରାର୍ଥନା କରିବେ। ତା'ପରେ ଶିବପଞ୍ଚାକ୍ଷର ମନ୍ତ୍ରରେ ସମସ୍ତ ଉପହାର ସହିତ ସେହି ଶିବଲିଙ୍ଗଙ୍କୁ ଶିବଙ୍କୁ ସମର୍ପିତ କରି ନିଜେ ଦକ୍ଷିଣାମୂର୍ତ୍ତିଙ୍କର ଆଶ୍ରୟ ନେବେ। ଯେ ଏହିପରି ପଞ୍ଚଗନ୍ଧମୟ ଶୁଭ ଲିଙ୍ଗର ନିତ୍ୟ ଅର୍ଚ୍ଚନା କରେ, ସେ ସମସ୍ତ ପାପରୁ ମୁକ୍ତ ହୋଇ ଶିବଲୋକରେ ପ୍ରତିଷ୍ଠିତ ହୋଇଯାଏ। ଏହି ଶିବଲିଙ୍ଗ-ମହାବ୍ରତ ସମସ୍ତ ବ୍ରତ ମଧ୍ୟରେ ଉତ୍ତମ ଓ ଗୋପନୀୟ। ତୁମେ ଭଗବାନ ଶିବଙ୍କ ଭକ୍ତ, ତେଣୁ ତୁମ ଆଗରେ ଏହାର ବର୍ଣ୍ଣନା କଲି। ସମସ୍ତଙ୍କୁ ଏହା କହିବା ଉଚିତ ନୁହେଁ। କେବଳ ଶିବଭକ୍ତଙ୍କୁ ହିଁ ଏହା ଉପଦେଶ ଦେବା ଉଚିତ। ପ୍ରାଚୀନକାଳରେ ଭଗବାନ ଶିବ ହିଁ ଏହି ବ୍ରତର ଉପଦେଶ ଦେଇଥିଲେ।

ଏହାପରେ ଲିଙ୍ଗର କାରଣରୂପତା ତଥା ଲିଙ୍ଗପ୍ରତିଷ୍ଠା ଏବଂ ପୂଜାର ବ୍ୟାଖ୍ୟା କରି ଉପମନ୍ୟୁ କହିଲେ—**ଯଦୁନନ୍ଦନ!** ଯଦି କୌଣସି ସ୍ଥାପିତ ଶିବଲିଙ୍ଗ ନ ମିଳେ, ତେବେ ଶିବଙ୍କ ସ୍ଥାନଭୂତ ଜଳ, ଅଗ୍ନି, ସୂର୍ଯ୍ୟ ଓ ଆକାଶରେ ଶିବଙ୍କୁ ପୂଜା କରିବା ଉଚିତ।

(ଅଧ୍ୟାୟ ୩୩—୩୬)



## ଯୋଗର ପ୍ରକାରଭେଦ, ତାହାର ଅଷ୍ଟାଙ୍ଗ ଓ ଷଡ଼ଙ୍ଗର ବିବେଚନା—ଯମ, ନିୟମ, ଆସନ, ପ୍ରାଣାୟାମ, ଦଶବିଧ ପ୍ରାଣଙ୍କୁ ଜୟ କରିବାର ମହିମା, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧିର ନିରୂପଣ

ଶ୍ରୀକୃଷ୍ଣ କହିଲେ—**ଭଗବନ୍!** ଆପଣ ଜ୍ଞାନ, କ୍ରିୟା ଓ ଚର୍ଯ୍ୟାର ସଂକ୍ଷିପ୍ତସାର ଉଦ୍ଧାର କରି ମୋତେ ବୁଝାଇଲେ। ଏସବୁ ଶ୍ରୁତିତୁଲ୍ୟ ଆଦରଣୀୟ ଏବଂ ଏହାକୁ ମୁଁ ମନଧ୍ୟାନ ଦେଇ ଶୁଣିଲି। ଏବେ ମୁଁ ଅଧିକାର, ଅଙ୍ଗ, ବିଧି ଓ ପ୍ରୟୋଜନ ସହିତ ପରମ ଦୁର୍ଲଭ ଯୋଗର ବର୍ଣ୍ଣନା ଶୁଣିବାକୁ ଚାହୁଁଛି। ଯଦି ଯୋଗାଦିର ଅଭ୍ୟାସ କରିବା ପୂର୍ବରୁ ମୃତ୍ୟୁ ହୋଇଯାଏ, ତେବେ ମନୁଷ୍ୟ ଆତ୍ମଘାତୀ ହୁଏ; ତେଣୁ ଆପଣ ଯୋଗର ଏପରି କିଛି ଉପାୟ କୁହନ୍ତୁ, ଯଦ୍ୱାରା ଶୀଘ୍ର ଯୋଗସିଦ୍ଧି ଲାଭ କରି ହେବ ଏବଂ ମନୁଷ୍ୟକୁ ଆତ୍ମଘାତୀ ହେବାକୁ ପଡ଼ିବ ନାହିଁ। ଯୋଗର ଅନୁଷ୍ଠାନ, ତାହାର କାରଣ, ତା'ପାଇଁ ଉପଯୁକ୍ତ ସମୟ, ସାଧନ ଓ ତାହାର ଭେଦର ତାରତମ୍ୟ କ'ଣ?

ଉପମନ୍ୟୁ କହିଲେ—**ଶ୍ରୀକୃଷ୍ଣ!** ତୁମେ ସମସ୍ତ ପ୍ରଶ୍ନର ତାରତମ୍ୟର ଜ୍ଞାତା। ତଥାପି ତୁମର ଏ ପ୍ରଶ୍ନ ଅତି ପ୍ରାସଙ୍ଗିକ, ତେଣୁ ମୁଁ ଏସମସ୍ତ ବିଷୟ ଉପରେ କ୍ରମାନୁସାରେ ଆଲୋକପାତ କରିବି। ତୁମେ ଏକାଗ୍ର ଚିତ୍ତରେ ଶ୍ରବଣ କର।

ଯେଉଁମାନଙ୍କର ଚିତ୍ତବୃତ୍ତି ଅନ୍ୟ ଦିଗରୁ ନିରୋଧ ହୋଇଗଲାଣି, ସେପରି ବୃତ୍ତିକୁ ଭଗବାନ ଶିବଙ୍କ ଠାରେ ନିଶ୍ଚଳ କରିଦେବାକୁ ସଂକ୍ଷେପରେ 'ଯୋଗ' କୁହାଯାଇଛି । ଏହି ଯୋଗ ପାଞ୍ଚ ପ୍ରକାରର— ମନ୍ତ୍ରଯୋଗ, ସ୍ପର୍ଶଯୋଗ, ଭାବଯୋଗ, ଅଭାବଯୋଗ ଓ ମହାଯୋଗ । ମନ୍ତ୍ରଜପ ଅଭ୍ୟାସବଳରେ ମନ୍ତ୍ରର ବାଚ୍ୟାର୍ଥରେ ସ୍ଥିତ ହୋଇଥିବା ବିକ୍ଷେପରହିତ ମନର ବୃତ୍ତିକୁ 'ମନ୍ତ୍ରଯୋଗ' କୁହାଯାଏ । ମନର ବୃତ୍ତି ଯେବେ ପ୍ରାଣାୟାମକୁ ପ୍ରାଧାନ୍ୟ ଦିଏ, ସେତେବେଳେ ତାହାକୁ 'ସ୍ପର୍ଶଯୋଗ' କୁହାଯାଏ । ସେହି ସ୍ପର୍ଶଯୋଗ ଯେତେବେଳେ ମନ୍ତ୍ରସ୍ପର୍ଶରହିତ ହୋଇଯାଏ ତାହା 'ଭାବଯୋଗ' ବୋଲାଏ । ଯେଉଁ ଯୋଗଦ୍ୱାରା ସମଗ୍ର ବିଶ୍ୱର ରୂପାତ୍ମକ ଅବୟବ ବିଲୀନ (ତିରୋହିତ) ହୋଇଯାଏ, ତାହାକୁ 'ଅଭାବଯୋଗ' କୁହାଯାଇଛି; କାରଣ ସେତେବେଳେ ସଦ୍‌ବସ୍ତୁର ମଧ୍ୟ ଆଭାସ ହୁଏ ନାହିଁ । ଏକମାତ୍ର ଉପାଧିଶୂନ୍ୟ ଶିବସ୍ୱଭାବର ଚିନ୍ତନ ହେଲେ ଓ ମନର ବୃତ୍ତି ଶିବମୟୀ ହୋଇଗଲେ ତାହାକୁ 'ମହାଯୋଗ' କହନ୍ତି ।

ସମସ୍ତ ଦୃଶ୍ୟ ଓ ଶ୍ରାବ୍ୟ ଲୌକିକ-ପାରଲୌକିକ ବିଷୟରୁ ଯାହାର ମନ ବିରକ୍ତ ବା ଉପରତ ହୋଇଗଲାଣି, କେବଳ ସେହି ବ୍ୟକ୍ତିର ଯୋଗରେ ଅଧିକାର ରହିଛି, ଅନ୍ୟ କାହାରି ନୁହେଁ । ଉଭୟ ଲୌକିକ ଓ ପାରଲୌକିକ ବିଷୟମାନଙ୍କରେ ଦୋଷଦର୍ଶନ ହେଲେ ଏବଂ ସର୍ବଦା ଈଶ୍ୱରଙ୍କ ଠାରେ ଗୁଣଦର୍ଶନ ହେଲେ ମନ ବିରକ୍ତ ହୋଇଯାଏ । ପ୍ରାୟ ସମସ୍ତ ପ୍ରକାର ଯୋଗର ଆଠଟି ବା ଛଅଟି ଅଙ୍ଗ ରହିଛି । ଯମ, ନିୟମ, ସ୍ୱସ୍ତିକାଦି ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି—ଏ ଆଠଟିକୁ ବିଦ୍ୱାନ୍‌ମାନେ ଯୋଗର ଆଠ ଅଙ୍ଗ ବୋଲି କହିଛନ୍ତି । ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି—ଏହା ହେଲା ସଂକ୍ଷେପରେ ଯୋଗର ଛଅ ଲକ୍ଷଣ । ଶିବଶାସ୍ତ୍ରରେ ଏହାର ପୃଥକ୍ ପୃଥକ୍ ଲକ୍ଷଣ ନିର୍ଦ୍ଦେଶିତ ହୋଇଛି । ଅନ୍ୟ ଶିବାଗମମାନଙ୍କରେ, ବିଶେଷତଃ କାମିକ ଆଦିରେ, ଯୋଗଶାସ୍ତ୍ରରେ ଓ ଅନ୍ୟ କିଛି ପୁରାଣରେ ଏଗୁଡ଼ିକର ଲକ୍ଷଣ ବର୍ଣ୍ଣିତ ହୋଇଛି । ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ—ଏଗୁଡ଼ିକୁ ସାଧୁଜନ ଯମ ଆଖ୍ୟା ଦେଇଛନ୍ତି । ଏହିରୂପେ ଯମ ପାଞ୍ଚ ଅବୟବଯୁକ୍ତ ଅଟେ । ଶୌଚ, ସନ୍ତୋଷ, ତପ, ଜପ (ସ୍ୱାଧ୍ୟାୟ) ଓ ପ୍ରଣିଧାନ—ଏହି ପାଞ୍ଚଭେଦଯୁକ୍ତ ଅନ୍ୟ ଏକ ଯୋଗାଙ୍ଗକୁ ନିୟମ କୁହାଯାଏ ଅର୍ଥାତ୍ ନିୟମ ନିଜର ଅଂଶଭେଦରେ ପାଞ୍ଚ ପ୍ରକାର । ଆସନର ଆଠ ପ୍ରକାର ଭେଦ ରହିଛି; ଯଥା—ସ୍ୱସ୍ତିକାସନ, ପଦ୍ମାସନ, ଅର୍ଦ୍ଧଚନ୍ଦ୍ରାସନ, ବୀରାସନ, ଯୋଗାସନ, ପ୍ରସାଧିତାସନ, ପର୍ଯ୍ୟଙ୍କାସନ ଓ ନିଜ ରୁଚି ଅନୁସାରେ କରାଯାଉଥିବା ଆସନ । ନିଜ ଶରୀରରେ ପ୍ରକଟ ହୋଇଥିବା ବାୟୁକୁ ପ୍ରାଣ କହନ୍ତି । ତାହାକୁ ଅଟକାଇବାର ନାମ ଆୟାମ । ଉକ୍ତ ପ୍ରାଣାୟାମର ତିନୋଟି ଭେଦ ରହିଛି— ରେଚକ, ପୂରକ ଓ କୁମ୍ଭକ । ନାସିକାର ଗୋଟିଏ ଛିଦ୍ରକୁ ବନ୍ଦ କରି ଅନ୍ୟ ଛିଦ୍ର ଦେଇ ଉଦରସ୍ଥ ବାୟୁକୁ ବାହାର କରିବାରୂପୀ କ୍ରିୟାକୁ 'ରେଚକ' କୁହାଯାଏ । ପୁନଃ ଅପର ଛିଦ୍ର ଦ୍ୱାରା ବାହ୍ୟ ବାୟୁକୁ ଶରୀର ଭିତରେ କମାରଭାତି ପରି ପୂରଣ କରାଯାଏ, ଏହି କ୍ରିୟାକୁ 'ପୂରକ' କୁହାଯାଏ । ପ୍ରାଣାୟାମରେ ଯେତେବେଳେ ସାଧକ ଭିତର ବାୟୁକୁ ବାହାର କରେ ନାହିଁ କି ବାହାର ବାୟୁକୁ ପୂରଣ କରେ ନାହିଁ, କେବଳ ପୂର୍ଣ୍ଣକୁମ୍ଭ ପରି ଅବିଚଳଭାବରେ ସ୍ଥିର ରହେ, ସେପରି ପ୍ରାଣାୟାମକୁ 'କୁମ୍ଭକ' ନାମ ଦିଆଯାଇଛି । ସାଧକ

ଏହି ତିନି ପ୍ରକାର ପ୍ରାଣାୟାମ କ୍ରିୟାରେ ବହୁତ ତରବର ହେବା ଅଥବା ବହୁତ ବିଳମ୍ବ କରିବା ଅନୁଚିତ। ସାଧନା ପାଇଁ ଉଦ୍ୟତ ହୋଇ କ୍ରମଯୋଗରେ ଏହା ଅଭ୍ୟାସ କରିବା ଉଚିତ।

ରେଚକ ଆଦିରେ ନାଡ଼ୀଶୋଧନପୂର୍ବକ ଯେଉଁ ପ୍ରାଣାୟାମ ଅଭ୍ୟାସ କରାଯାଏ, ତାହାକୁ ସ୍ୱେଚ୍ଛାରେ ଉତ୍‌କ୍ରମଣ ପର୍ଯ୍ୟନ୍ତ କରିବା ଉଚିତ। ଏହା ଯୋଗଶାସ୍ତ୍ରର ନିର୍ଦ୍ଦେଶ। କନିଷ୍ଠ ଆଦି କ୍ରମରେ ପ୍ରାଣାୟାମ ଚାରି ପ୍ରକାର। ମାତ୍ରା ଓ ଗୁଣର ତାରତମ୍ୟରେ ଏହି ଭେଦ ହୋଇଥାଏ। ଏ ଚାରୋଟି ମଧ୍ୟରୁ ଗୋଟିଏ ହେଲା କନ୍ୟକ ବା କନିଷ୍ଠ ପ୍ରାଣାୟାମ, ଏହାକୁ ପ୍ରଥମ ଉଦ୍‌ଘାତ* କୁହାଯାଇଛି। ଏଥିରେ ବାରଟି ମାତ୍ରା ରହିଛି। ମଧ୍ୟମ ପ୍ରାଣାୟାମ ଦ୍ୱିତୀୟ ଉଦ୍‌ଘାତ ଅଟେ ଏବଂ ଏଥିରେ ଚବିଶ ମାତ୍ରା ରହିଛି। ଉତ୍ତମ ଶ୍ରେଣୀର ପ୍ରାଣାୟାମ ତୃତୀୟ ଉଦ୍‌ଘାତ ଏବଂ ଏଥିରେ ଛତିଶ ମାତ୍ରା ରହିଛି। ତହିଁରୁ ବି ଶ୍ରେଷ୍ଠ ହେଉଛି ଚତୁର୍ଥ卐 ପ୍ରାଣାୟାମ, ଯାହାକି ଶରୀରରେ ସ୍ୱେଦ ଓ କମ୍ପ ଉତ୍ପନ୍ନ କରିଥାଏ।

ଯୋଗୀଠାରେ ଆନନ୍ଦଜନିତ ରୋମାଞ୍ଚ, ଅଶ୍ରୁପାତ, ଜଳ୍ପ, ଭ୍ରାନ୍ତି ଓ ମୂର୍ଚ୍ଛା ଇତ୍ୟାଦି ଭାବ ଉତ୍ପନ୍ନ ହୁଏ। ଆଣ୍ଠୁର ଚାରିପାଖରେ ହାତକୁ ପ୍ରଦକ୍ଷିଣକ୍ରମରେ ଘୂରାଇ ବେଶୀ ଶୀଘ୍ର କି ବେଶୀ ବିଳମ୍ବ ନ କରି ଚୁଟୁକି ଫୁଟାଇବେ। ଆଣ୍ଠୁ ଚାରିପଟରେ ଗୋଟିଏ ପରିକ୍ରମା କରି ଚୁଟୁକି ଫୁଟାଇବାକୁ ଯେତିକି ସମୟ ଲାଗେ, ତାହାର ମାନ ଏକ ମାତ୍ରା ଅଟେ। ମାତ୍ରାଗୁଡ଼ିକୁ କ୍ରମଶଃ ଜାଣିବା ଉଚିତ। ଉଦ୍‌ଘାତ କ୍ରମଯୋଗରେ ନାଡ଼ୀଶୋଧନପୂର୍ବକ ପ୍ରାଣାୟାମ କରିବା ଉଚିତ। ପ୍ରାଣାୟାମ ଅଗର୍ଭ ଓ ସଗର୍ଭ ଭେଦରେ ଦୁଇ ପ୍ରକାର। ଜପ ଓ ଧ୍ୟାନ ବିନା କରାଯାଉଥିବା ପ୍ରାଣାୟାମ 'ଅଗର୍ଭ' ପ୍ରାଣାୟାମ ଏବଂ ଜପ ଓ ଧ୍ୟାନର ସହଯୋଗରେ କରାଯାଉଥିବା ପ୍ରାଣାୟାମ 'ସଗର୍ଭ' ପ୍ରାଣାୟାମ ଅଟେ। ଅଗର୍ଭଠାରୁ ସଗର୍ଭ ପ୍ରାଣାୟାମ ଶହେଗୁଣ ଶ୍ରେଷ୍ଠ। ସେଥିପାଇଁ ଯୋଗୀଜନ ପ୍ରାୟ ସଗର୍ଭ ପ୍ରାଣାୟାମ କରିଥାନ୍ତି। ପ୍ରାଣବିଜୟଦ୍ୱାରା ହିଁ ଶରୀରସ୍ଥ ବାୟୁ ଉପରେ ବିଜୟ ହାସଲ କରାଯାଇ ପାରେ। ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ, ନାଗ, କୂର୍ମ, କୃକଳ, ଦେବଦତ୍ତ ଓ ଧନଞ୍ଜୟ—ଏଗୁଡ଼ିକ ହେଲା ଦଶ ପ୍ରାଣବାୟୁର ନାମ। ପ୍ରାଣ ପ୍ରୟାଣ କରିଥାଏ, ସେଥିପାଇଁ ଏହାର ନାମ 'ପ୍ରାଣ' ହୋଇଛି। ଯାହା କିଛି ଖିଆଯାଏ, ତାହାକୁ ଯେଉଁ ବାୟୁ ତଳକୁ ନେଇଯାଏ, ତାହାକୁ 'ଅପାନ' କହନ୍ତି। ଯେଉଁ ବାୟୁ ସମସ୍ତ ଅଙ୍ଗକୁ ବଢ଼ାଇବା ସହ ସେଥିରେ ବ୍ୟାପ୍ତ ରହିଥାଏ, ତାହାର ନାମ 'ବ୍ୟାନ'। ଯେଉଁ ବାୟୁ ମର୍ମସ୍ଥାନକୁ ଉଦ୍‌ବେଜିତ କରେ, ତାହାକୁ 'ଉଦାନ' ସଂଜ୍ଞା ଦିଆଯାଇଛି। ଯେଉଁ ବାୟୁ ସମସ୍ତ ଅଙ୍ଗକୁ ସମଭାବରେ ନେଇ ପ୍ରଚଳନ କରିଥାଏ, ତାହା ତା'ର ସେହି ସମ-ନୟନରୂପୀ କର୍ମ ହେତୁ 'ସମାନ' ବୋଲାଏ। ମୁଖରୁ କିଛି ବାନ୍ତି କରିବାରେ କାରଣ ହେଉଥିବା ବାୟୁକୁ 'ନାଗ' କୁହାଯାଏ। ଆଖି ଖୋଲିବାରେ କାରଣ ହେଉଥିବା ବାୟୁକୁ 'କୂର୍ମ' କହନ୍ତି। ଛିଙ୍କିବାରେ 'କୃକଳ' ଓ ହାଇ ମାରିବାରେ 'ଦେବଦତ୍ତ' ବାୟୁର ଭୂମିକା ରହିଛି। 'ଧନଞ୍ଜୟ' ନାମକ ବାୟୁ

* ଉଦ୍‌ଘାତର ଅର୍ଥ ନାଭିମୂଳରୁ ପ୍ରେରିତ ବାୟୁ ମସ୍ତକରେ ଆଘାତ କରିବା। ଏହା ହେଉଛି ପ୍ରାଣାୟାମରେ ଦେଶ, କାଳ ଓ ସଂଖ୍ୟାର ପରିମାଣ।

卐 ଯୋଗସୂତ୍ରରେ ଚତୁର୍ଥ ପ୍ରାଣାୟାମର ପରିଚୟ ଦେବାକୁ ଯାଇ କୁହାଯାଇଛି—'ବାହ୍ୟାନ୍ତରବିଷୟାକ୍ଷେପୀ ଚତୁର୍ଥଃ' ଅର୍ଥାତ୍ ବାହ୍ୟ ଓ ଆଭ୍ୟନ୍ତର ବିଷୟମାନଙ୍କୁ ବିତାଡ଼ିତ କରୁଥିବା ପ୍ରାଣାୟାମ ଚତୁର୍ଥ ଅଟେ।

ସମଗ୍ର ଶରୀରରେ ବ୍ୟାପ୍ତ ରହିଥାଏ; ତାହା ମୃତଦେହକୁ ମଧ୍ୟ ଛାଡ଼ି ନ ଥାଏ । କ୍ରମେ କ୍ରମେ ଅଭ୍ୟାସ କରିବା ଦ୍ୱାରା ପ୍ରାଣାୟାମ ଯେତେବେଳେ ଉଚିତ ପ୍ରମାଣ ବା ମାତ୍ରାରେ ଯୁକ୍ତ ହୋଇଯାଏ, ସେତେବେଳେ ତାହା କର୍ତ୍ତାର ସମସ୍ତ ଦୋଷକୁ ଦଗ୍ଧ କରିଦିଏ ଏବଂ ତାହାର ଶରୀରକୁ ରକ୍ଷା କରେ ।

ପ୍ରାଣ ଉପରେ ବିଜୟ ପାଇଲା ପରେ ସେଥିରୁ ପ୍ରକଟ ହେଉଥିବା ଲକ୍ଷଣକୁ ଭଲଭାବରେ ଲକ୍ଷ୍ୟ କରିବା ଆବଶ୍ୟକ । ପ୍ରଥମେ ବିଷ୍ଠା, ମୂତ୍ର ଓ କଫର ମାତ୍ରା କମ୍ ହୋଇଯାଏ । ଅଧିକ ଭୋଜନ କରିବାର ଶକ୍ତି ଆସିଯାଏ ଏବଂ ବିଳମ୍ବରେ ଶ୍ୱାସ ଚ୍ଛଲେ । ଶରୀର ହାଲୁକା ଲାଗେ, ଶୀଘ୍ର ଶୀଘ୍ର ଚ୍ଛଲିବାର ଶକ୍ତି ଆସିଯାଏ ଓ ହୃଦୟରେ ଉତ୍ସାହ ବୃଦ୍ଧି ପାଏ । ସ୍ୱରରେ ମଧୁରତା ଆସେ । ସମସ୍ତ ରୋଗ ନଷ୍ଟ ହୋଇଯାଏ । ବଳ, ତେଜ ଓ ସୌନ୍ଦର୍ଯ୍ୟ ବୃଦ୍ଧି ପାଏ । ଧୃତି, ମେଧା, ଯୁବାବସ୍ଥା, ସ୍ଥିରତା ଓ ପ୍ରସନ୍ନତା ଆସେ । ତପ, ପ୍ରାୟଶ୍ଚିତ୍ତ, ଯଜ୍ଞ, ଦାନ ଓ ବ୍ରତ ଇତ୍ୟାଦି ଯେତେ ସାଧନା ରହିଛି, ସେସବୁ ପ୍ରାଣାୟାମର ଗୋଟିଏ କଳା ସଙ୍ଗେ ମଧ୍ୟ ସମାନ ନୁହେଁ । ଯେଉଁ ସାଧନା ଦ୍ୱାରା ଇନ୍ଦ୍ରିୟମାନଙ୍କୁ ସେମାନଙ୍କ ବିଷୟରୁ ନିବୃତ୍ତ କରି ନିଜ ଭିତରେ ନିଗୃହୀତ କରାଯାଏ, ସେହି ସାଧନାକୁ 'ପ୍ରତ୍ୟାହାର' କହନ୍ତି । ମନ ଓ ଇନ୍ଦ୍ରିୟ ହିଁ ମନୁଷ୍ୟକୁ ସ୍ୱର୍ଗ ଓ ନରକକୁ ନେଇଥାନ୍ତି । ଯଦି ସେମାନଙ୍କୁ ବଶରେ ରଖାଯାଏ, ତେବେ ସେମାନେ ସ୍ୱର୍ଗପ୍ରାପ୍ତି କରାଇଥାନ୍ତି, ଅପରପକ୍ଷେ ସେମାନଙ୍କୁ ମୁକ୍ତ ଛାଡ଼ିଦେଲେ ସେମାନେ ନରକକୁ ଟାଣି ନେଇଥାନ୍ତି । ଏଣୁ ସୁଖ ଚ୍ଛହୁଁଥିବା ବ୍ୟକ୍ତି ଜ୍ଞାନ ଓ ବୈରାଗ୍ୟର ଆଶ୍ରୟ ନେଇ ଇନ୍ଦ୍ରିୟରୂପୀ ଅଶ୍ୱଙ୍କୁ ଯଥାଶୀଘ୍ର ନିଜ ନିୟନ୍ତ୍ରଣକୁ ଆଣି ନିଜେ ହିଁ ନିଜ ଆତ୍ମାର ଉଦ୍ଧାର କରିବା ଉଚିତ ।

ଚିତ୍ତକୁ କୌଣସି ସ୍ଥାନବିଶେଷରେ ସ୍ଥିର କରି ରଖିବା ହେଲା 'ଧାରଣା'ର ସ୍ୱରୂପ । ଶିବ ହିଁ ଏକମାତ୍ର ଉପଯୁକ୍ତ ସ୍ଥାନ; କାରଣ ଅନ୍ୟ ସ୍ଥାନରେ ତ୍ରିବିଧ ଦୋଷ ବିଦ୍ୟମାନ । ଏକ ନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ସ୍ଥାନସ୍ୱରୂପ ଶିବଙ୍କ ଠାରେ ଯେତେବେଳେ ମନ ଲକ୍ଷ୍ୟଚ୍ୟୁତ ନ ହୋଇ ସ୍ଥିର ଭାବରେ ରହେ, ସେତେବେଳେ ବୁଝିବାକୁ ହେବ ଯେ ଧାରଣା ସିଦ୍ଧ ହୋଇଗଲା; ଅନ୍ୟଥା ତାହା ସିଦ୍ଧ ହୋଇ ନାହିଁ । ମନ ପ୍ରଥମେ ଧାରଣା ଦ୍ୱାରା ହିଁ ସ୍ଥିର ହୁଏ, ତେଣୁ ଧାରଣା ଅଭ୍ୟାସରେ ମନକୁ ଧୀର କରିବା ଆବଶ୍ୟକ । ଏବେ ଧ୍ୟାନର ବ୍ୟାଖ୍ୟା କରୁଛି । ଧ୍ୟାନ ଶବ୍ଦରେ ଧାତୁ ହେଲା 'ଧ୍ୟୈ ଚିନ୍ତାୟାମ୍' । ଏହି ଧାତୁରେ ଲ୍ୟୁଟ୍ ପ୍ରତ୍ୟୟ କଲେ 'ଧ୍ୟାନ' ଶବ୍ଦର ସିଦ୍ଧି ହୁଏ । ତେଣୁ ବିକ୍ଷେପରହିତ ଚିତ୍ତରେ ଶିବଙ୍କୁ ବାରମ୍ବାର ଚିନ୍ତନ କରାଯିବା ହିଁ 'ଧ୍ୟାନ' । ଧ୍ୟେୟରେ ସ୍ଥିତ ଚିତ୍ତର ଯେଉଁ ଧ୍ୟେୟାକାର ବୃତ୍ତି ହୁଏ, ମଝିରେ ଅନ୍ୟ ବୃତ୍ତି ସେଥିରେ ବିକ୍ଷେପ ସୃଷ୍ଟି କରିପାରେ ନାହିଁ, ସେପରି ପ୍ରବାହ ରୂପରେ ସ୍ଥିର ରହୁଥିବା ଧ୍ୟେୟାକାର ବୃତ୍ତିକୁ 'ଧ୍ୟାନ' କୁହାଯାଏ । ଅନ୍ୟ ସବୁ ବସ୍ତୁକୁ ଛାଡ଼ି କେବଳ କଲ୍ୟାଣକାରୀ ପରମଦେବ ଦେବେଶ୍ୱର ଶିବଙ୍କୁ ହିଁ ଧ୍ୟାନ କରିବା ଉଚିତ । ସେ ହିଁ ସମସ୍ତଙ୍କର ପରମ ଧ୍ୟେୟ । ଏହା ଅଥର୍ବ ଶ୍ରୁତିର ଅନ୍ତିମ ନିର୍ଣ୍ଣୟ । ଶିବାଦେବୀ ମଧ୍ୟ ପରମ ଧ୍ୟେୟ । ଶିବ ଓ ଶିବା ଉଭୟେ ସମସ୍ତ ଭୂତଙ୍କ ଠାରେ ବ୍ୟାପ୍ତ । ଶ୍ରୁତି, ସ୍ମୃତି ଓ ଶାସ୍ତ୍ରମାନଙ୍କରୁ ଶୁଣାଯାଏ ଯେ ଶିବା ଓ ଶିବ ସର୍ବବ୍ୟାପକ, ସର୍ବଦା ଉଦିତ, ସର୍ବଜ୍ଞ ଓ ନାନା ରୂପରେ ନିରନ୍ତର ଧ୍ୟାନର ଯୋଗ୍ୟ । ଧ୍ୟାନର ଦୁଇଟି ପ୍ରୟୋଜନ ରହିଛି । ପ୍ରଥମ ପ୍ରୟୋଜନ ମୋକ୍ଷ ଏବଂ ଦ୍ୱିତୀୟଟି ଅଣିମାଦି

ସିଦ୍ଧି ପ୍ରାପ୍ତି । ଧ୍ୟାତା, ଧ୍ୟାନ, ଧ୍ୟେୟ ଓ ଧ୍ୟାନ-ପ୍ରୟୋଜନ—ଏ ଚାରିଟିକୁ ଭଲଭାବରେ ଜାଣି ଯୋଗବେତ୍ତା ପୁରୁଷ ଯୋଗାଭ୍ୟାସ କରିବା ଆବଶ୍ୟକ । ଯେ ଜ୍ଞାନ-ବୈରାଗ୍ୟସମ୍ପନ୍ନ, ଶ୍ରଦ୍ଧାଳୁ, କ୍ଷମାଶୀଳ, ମମତାରହିତ ଓ ସଦା ଉତ୍ସାହସମ୍ପନ୍ନ, ସେପରି ବ୍ୟକ୍ତିକୁ ଧ୍ୟାତା କୁହାଯାଇଛି ଅର୍ଥାତ୍ ସେ ହିଁ ଧ୍ୟାନ କରିବାରେ ସଫଳ ହୋଇଥାଏ ।

ସାଧକ ଜପ କରି କରି ଥକିଗଲେ ଧ୍ୟାନ କରିବ ଏବଂ ଧ୍ୟାନ କରି କରି ଥକିଗଲେ ପୁନଃ ଜପ କରିବ । ଏପରି ଜପ ଓ ଧ୍ୟାନରେ ନିମଗ୍ନ ରହୁଥିବା ବ୍ୟକ୍ତି ଶୀଘ୍ର ସିଦ୍ଧି ଲାଭ କରିଥାଏ । ବାରଟି ପ୍ରାଣାୟାମରେ ଗୋଟିଏ ଧାରଣା ହୁଏ ଏବଂ ବାରଟି ଧାରଣାରେ ଗୋଟିଏ ଧ୍ୟାନ ହୁଏ ଏବଂ ବାରଟି ଧ୍ୟାନରେ ଗୋଟିଏ ସମାଧି ହୁଏ ବୋଲି କୁହାଯାଇଛି । ସମାଧିକୁ ଯୋଗର ଅନ୍ତିମ ଅଙ୍ଗ କୁହାଯାଇଛି । ସମାଧିଦ୍ୱାରା ସର୍ବତ୍ର ବୁଦ୍ଧିରୂପୀ ଆଲୋକ ବ୍ୟାପ୍ତ ହୋଇଥାଏ । ଯେଉଁ ଧ୍ୟାନରେ କେବଳ ଧ୍ୟେୟ ହିଁ ଅର୍ଥରୂପରେ ଭାସିତ ହୁଏ, ଧ୍ୟାତା ନିଶ୍ଚଳ ମହାସାଗର ପରି ସ୍ଥିରଭାବରେ ରହିଥାଏ ଏବଂ ଧ୍ୟାନସ୍ୱରୂପରେ ଶୂନ୍ୟପରି ହୋଇଯାଏ, ତାହାକୁ 'ସମାଧି' କହନ୍ତି । ଯେଉଁ ଯୋଗୀ ଧ୍ୟେୟରେ ଚିତ୍ତ ନିବେଶ କରି ସୁସ୍ଥିରଭାବରେ ତାହାକୁ ଦର୍ଶନ କରେ ଏବଂ ନିର୍ବାପିତ ଅଗ୍ନି ତୁଲ୍ୟ ଶାନ୍ତ ରହେ, ସେ 'ସମାଧିସ୍ଥ' ବୋଲାଏ । ସେ ଶୁଣେ ନାହିଁ, କି ଶୁଙ୍ଘେ ନାହିଁ, କି କହେ ନାହିଁ, କି ଦେଖେ ନାହିଁ, କି ସ୍ପର୍ଶ ଅନୁଭବ କରେ ନାହିଁ, କି ମନରେ ସଂକଳ୍ପ-ବିକଳ୍ପ କରେ ନାହିଁ, କି ତା'ଠାରେ ଅଭିମାନର ବୃତ୍ତି ଉଦିତ ହୁଏ ନାହିଁ, କି ସେ ବୁଦ୍ଧିଦ୍ୱାରା କିଛି ବୁଝେ ନାହିଁ । କେବଳ କାଠ ପରି ସ୍ଥିର ରହେ । ଶିବଙ୍କ ଠାରେ ଏପରି ତଲ୍ଲୀନଚିତ୍ତ ଯୋଗୀକୁ ଏଠାରେ ସମାଧିସ୍ଥ କୁହାଯାଇଛି । ନିଃସ୍ପନ୍ଦ ବାୟୁରେ ଦୀପଶିଖା ଯେପରି ସ୍ଥିର ରହେ, ସମାଧିନିଷ୍ଠ ଶୁଦ୍ଧଚିତ୍ତ ଯୋଗୀ ସେହିପରି ସୁସ୍ଥିର ଓ ଅବିଚଳିତ ରହିଥାଏ । ଯୋଗକୁ ଏପରି ଅଭ୍ୟାସ କରିଥିବା ଯୋଗୀର ସମସ୍ତ ଅନ୍ତରାୟ ଶୀଘ୍ର ନଷ୍ଟ ହୋଇଯାଏ ଏବଂ ତାହାର ସମସ୍ତ ବିଘ୍ନ ମଧ୍ୟ ଧୀରେ ଧୀରେ ଦୂର ହୋଇଯାଏ ।

(ଅଧ୍ୟାୟ ୩୭)



# ଯୋଗମାର୍ଗର ବିଘ୍ନ, ସିଦ୍ଧିସୂଚକ ଉପସର୍ଗ ଓ ପୃଥିବୀଠାରୁ ବୁଦ୍ଧିତତ୍ତ୍ୱ ପର୍ଯ୍ୟନ୍ତ ଐଶ୍ୱର୍ଯ୍ୟଗୁଣର ବର୍ଣ୍ଣନା, ଶିବ-ଶିବାଙ୍କ ଧ୍ୟାନର ମହିମା

ଉପମନ୍ୟୁ କହୁଛନ୍ତି—**ଶ୍ରୀକୃଷ୍ଣ ! ଆଳସ୍ୟ, ତୀକ୍ଷ୍ଣ ବ୍ୟାଧି, ପ୍ରମାଦ, ସ୍ଥାନ-ସଂଶୟ, ଅନବସ୍ଥିତ-ଚିତ୍ତତା, ଅଶ୍ରଦ୍ଧା, ଭ୍ରାନ୍ତି-ଦର୍ଶନ, ଦୁଃଖ, ଦୌର୍ମନସ୍ୟ ଓ ବିଷୟଲୋଲୁପତା—ଏ ଦଶଟି ଯୋଗସାଧନରତ ବ୍ୟକ୍ତି ନିମନ୍ତେ ବିଘ୍ନ ଅଟେ ।*** ଯୋଗୀମାନଙ୍କ ଶରୀର ଓ ଚିତ୍ତରେ ଆଳସ୍ୟ ଆସିବାକୁ ଏଠାରେ

* ଯୋଗଦର୍ଶନ ସମାଧିପାଦର ୩୦ ତମ ସୂତ୍ରରେ ନଅ ପ୍ରକାର ଚିତ୍ତବିକ୍ଷେପକୁ ଯୋଗର ଅନ୍ତରାୟରୂପେ ଦର୍ଶାଯାଇଛି ଏବଂ ୩୧ତମ ସୂତ୍ରରେ ପାଞ୍ଚ 'ବିକ୍ଷେପସହଭୂ' ସଂଜ୍ଞକ ବିଘ୍ନ ଅଥବା ପ୍ରତିବନ୍ଧକ କଥା କୁହାଯାଇଛି । କିନ୍ତୁ ଏଠାରେ ଶିବପୁରାଣୋକ୍ତ ଦଶ ପ୍ରକାର ଅନ୍ତରାୟ ନିର୍ଦ୍ଦେଶିତ ହୋଇଛି । ଏଥିରେ ଯୋଗଦର୍ଶନ କଥିତ 'ଅଲବ୍ଧଭୂମିକତ୍ୱ'କୁ ଛାଡ଼ି ଦିଆଯାଇଛି ଏବଂ 'ବିକ୍ଷେପସହଭୂ' ରେ ପରିଗଣିତ ଦୁଃଖ ଓ ଦୌର୍ମନସ୍ୟକୁ ସମ୍ମିଳିତ କରାଯାଇଛି । ଯୋଗସୂତ୍ରରେ 'ସ୍ତ୍ୟାନ ଓ ସଂଶୟ'କୁ ଭିନ୍ନ ଭିନ୍ନ ଦୁଇଟି ଅନ୍ତରାୟ କୁହାଯାଇଥିବା ସ୍ଥଳେ ଏଠାରେ 'ସ୍ଥାନ-ସଂଶୟ' ନାମରେ ଗୋଟିଏ ଅନ୍ତରାୟ ଧରାଯାଇଛି । ଏହାଛଡ଼ା ଏ ପୁରାଣରେ 'ଅଶ୍ରଦ୍ଧା' କୁ ମଧ୍ୟ ଗୋଟିଏ ଅନ୍ତରାୟ ରୂପେ ଗଣାଯାଇଛି ।

'ଆଳସ୍ୟ' କୁହାଯାଇଛି । ବାତ, ପିତ୍ତ ଓ କଫର ବିଷମତାଜନିତ ଦୋଷକୁ 'ବ୍ୟାଧି' କହନ୍ତି । କର୍ମଦୋଷରୁ ବ୍ୟାଧି ଉତ୍ପନ୍ନ ହୁଏ । ଅସାବଧାନତା କାରଣରୁ ଯୋଗସାଧନା ହୋଇ ନ ପାରିବା ହେଉଛି 'ପ୍ରମାଦ' । 'ଏହା ଅଛି କି ନାହିଁ'—ଏପରି ଉଭୟ ପ୍ରକାର ଭାବନାରେ ଆକ୍ରାନ୍ତ ଜ୍ଞାନକୁ 'ସ୍ଥାନ-ସଂଶୟ' କୁହାଯାଏ । ମନ କେଉଁଠି ସ୍ଥିର ହୋଇ ନ ରହିବା 'ଅନବସ୍ଥିତଚିତ୍ତତା' (ଚିତ୍ତର ଅସ୍ଥିରତା) ଅଟେ । ଯୋଗମାର୍ଗରେ ମନର ଭାବଶୂନ୍ୟ (ଅନୁରାଗଶୂନ୍ୟ) ବୃତ୍ତିକୁ 'ଅଶ୍ରଦ୍ଧା' କୁହାଯାଇଛି । ବିପରୀତଭାବନାଯୁକ୍ତ ବୃତ୍ତିକୁ 'ଭ୍ରାନ୍ତି' କହନ୍ତି । କଷ୍ଟକୁ 'ଦୁଃଖ' କହନ୍ତି । ଏହାର ତିନୋଟି ଭେଦ ଅଛି—ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ । ମନୁଷ୍ୟ ଚିତ୍ତରେ ଯେଉଁ ଅଜ୍ଞାନଜନିତ ଦୁଃଖ ହୁଏ, ତାହାକୁ ଆଧ୍ୟାତ୍ମିକ ଦୁଃଖ ବୁଝିବା ଉଚିତ । ପୂର୍ବକୃତ କର୍ମର ପରିଣାମରେ ଶରୀରରେ ଉତ୍ପନ୍ନ ହେଉଥିବା ରୋଗାଦିକୁ ଆଧିଭୌତିକ ଦୁଃଖ କହନ୍ତି । ବଜ୍ରପାତ, ଅସ୍ତ୍ର-ଶସ୍ତ୍ର ଓ ବିଷ ଇତ୍ୟାଦିରୁ ଯେଉଁ କଷ୍ଟ ଉପସ୍ଥିତ ହୁଏ, ତାହାକୁ ଆଧିଦୈବିକ ଦୁଃଖ କହନ୍ତି । ଇଚ୍ଛା ଉପରେ ଆଘାତ ହେଲେ ମନରେ ଯେଉଁ କ୍ଷୋଭ ହୁଏ, ତାହାକୁ 'ଦୌର୍ମନସ୍ୟ' କହନ୍ତି । ବିଚିତ୍ର ବିଚିତ୍ର ବିଷୟମାନଙ୍କରେ ଯେଉଁ ସୁଖର ଭ୍ରମ ହୁଏ, ତାହାର ନାମ 'ବିଷୟ-ଲୋଲୁପତା' ।

ଯୋଗପରାୟଣ ଯୋଗୀର ଏହି ବିଘ୍ନଗୁଡ଼ିକ ଶାନ୍ତ ହୋଇଗଲେ ଯେଉଁସବୁ 'ଦିବ୍ୟ ଉପସର୍ଗ' (ବିଘ୍ନ) ପ୍ରାପ୍ତ ହୁଏ, ସେଗୁଡ଼ିକ ସିଦ୍ଧିର ସୂଚକ । ପ୍ରତିଭା, ଶ୍ରବଣ, ବାର୍ତ୍ତା, ଦର୍ଶନ, ଆସ୍ୱାଦ ଓ ବେଦନା—ଏ ଛଅ ପ୍ରକାର ସିଦ୍ଧି ହିଁ 'ଉପସର୍ଗ' ବୋଲାଏ, ଯାହା କି ଯୋଗଶକ୍ତିର ଅପବ୍ୟୟରେ କାରଣ ହୋଇଥାଏ । ଯେଉଁ ଘଟଣା ଅତ୍ୟନ୍ତ ସୂକ୍ଷ୍ମ ହୋଇଥିବ, କାହାରି ଆଢୁଆଳରେ ହେଉଥିବ, ଭୂତକାଳରେ ହୋଇଥିବ, ବହୁତ ଦୂର ଅଥବା ଭବିଷ୍ୟତରେ ହେବାକୁ ଥିବ, ତାହା ଯଥାର୍ଥରୂପେ ପ୍ରତିଭାସ (ଜ୍ଞାନ) ହୋଇଯିବା 'ପ୍ରତିଭା' ବୋଲାଏ । ଶୁଣିବାକୁ ଚେଷ୍ଟା ନ କରି ମଧ୍ୟ ସମସ୍ତ ଶବ୍ଦ ଶୁଭିବା 'ଶ୍ରବଣ' ଅଟେ । ସମସ୍ତ ଦେହଧାରୀଙ୍କ କଥାକୁ ବୁଝିଯିବା 'ବାର୍ତ୍ତା' ଅଟେ । ବିନା ପ୍ରଚେଷ୍ଟାରେ ଦିବ୍ୟ ପଦାର୍ଥ ଦୃଶ୍ୟ ହେବା 'ଦର୍ଶନ' ବୋଲାଏ । ଦିବ୍ୟ ରସର ସ୍ୱାଦ ପ୍ରାପ୍ତ ହେବା 'ଆସ୍ୱାଦ' ଅଟେ । ଅନ୍ତଃକରଣଦ୍ୱାରା ଦିବ୍ୟ ସ୍ପର୍ଶକୁ ତଥା ବ୍ରହ୍ମଲୋକ ପର୍ଯ୍ୟନ୍ତ ଗନ୍ଧାଦି ଦିବ୍ୟ ଭୋଗକୁ ଅନୁଭବ କରିବା 'ବେଦନା' ନାମରେ ବିଖ୍ୟାତ ।

ସିଦ୍ଧ ଯୋଗୀଙ୍କ ପାଖରେ ଆପେ ଆପେ ରତ୍ନମାନ ଉପସ୍ଥିତ ହୋଇଯାଆନ୍ତି ଏବଂ ଅନେକ ପଦାର୍ଥ ପ୍ରଦାନ କରନ୍ତି । ମୁଖରୁ ଇଚ୍ଛାନୁରୂପ ନାନା ପ୍ରକାର ମଧୁର ବାଣୀ ବାହାରେ । ସବୁ ପ୍ରକାର ରସାୟନ ଓ ଦିବ୍ୟ ଔଷଧିମାନ ସିଦ୍ଧ ହୋଇଯାଏ । ଦେବାଙ୍ଗନାମାନେ ସେହି ଯୋଗୀକୁ ପ୍ରଣାମ କରି ମନୋବାଞ୍ଛିତ ବସ୍ତୁ ପ୍ରଦାନ କରନ୍ତି । ମୁଁ ଯେପରି ଦେଖିଛି ବା ଅନୁଭବ କରିଛି, ତଦନୁସାରେ ଯୋଗସିଦ୍ଧିର କିଞ୍ଚିତ୍ ଅଂଶର ସାକ୍ଷାତ୍କାର ହୋଇଗଲେ ବି ମୋକ୍ଷରେ ମନ ଲାଗିଯାଏ ଅର୍ଥାତ୍ ମୋକ୍ଷ ମଧ୍ୟ ହୋଇପାରେ । କୃଶତା, ସ୍ଥୂଳତା, ବାଲ୍ୟାବସ୍ଥା, ବୃଦ୍ଧାବସ୍ଥା, ଯୁବାବସ୍ଥା, ନାନା ଜାତିର ସ୍ୱରୂପ ପ୍ରାପ୍ତ କରିବା; ପୃଥିବୀ, ଜଳ, ଅଗ୍ନି ଓ ବାୟୁ ତତ୍ତ୍ୱର ଶରୀର ଧାରଣ କରିବା; ନିତ୍ୟ ଅପାର୍ଥିବ ଓ ମନୋହର ଗନ୍ଧ ଗ୍ରହଣ କରିବା—ଏଗୁଡ଼ିକ ହେଲା ପାର୍ଥିବ ଐଶ୍ୱର୍ଯ୍ୟର ଆଠଟି ଗୁଣ ।

ଜଳରେ ନିବାସ କରିବା, ଭୂମିରୁ ଜଳ ବାହାରିବା, ଇଚ୍ଛା କରିବା ମାତ୍ରେ ଆତୁର ନ ହୋଇ ସମୁଦ୍ରକୁ ମଧ୍ୟ ପିଇଯିବାକୁ ସମର୍ଥ

ହେବା, ଯେକୌଣସି ସ୍ଥାନରେ ଜଳର ଦର୍ଶନ ମିଳିବା, ମାଠିଆ ଇତ୍ୟାଦି ପାତ୍ର ବିନା ହାତରେ ହିଁ ଜଳରାଶିକୁ ଧାରଣ କରିବା, କୌଣସି ବିରସ ବସ୍ତୁକୁ ଖାଇବାକୁ ଇଚ୍ଛା କରିବା ମାତ୍ରେ ତାହା ସରସ ହୋଇଯିବା, ଜଳ, ତେଜ ଓ ବାୟୁ ତତ୍ତ୍ୱର ଶରୀର ଧାରଣ କରିବା, ବ୍ରଣ, ବଥ, କ୍ଷତ ଇତ୍ୟାଦିରୁ ଶରୀର ମୁକ୍ତ ରହିବା—ପାର୍ଥିବ ଐଶ୍ୱର୍ଯ୍ୟର ଆଠ ଗୁଣକୁ ମିଶାଇ ଏ ଷୋହଳଟି ଜଳୀୟ ଐଶ୍ୱର୍ଯ୍ୟର ଅଦ୍ଭୁତ ଗୁଣ ଅଟେ ।

ଶରୀରରୁ ଅଗ୍ନି ପ୍ରକଟ କରିଦେବା, ଅଗ୍ନିତାପରେ ଜଳିବାର ଭୟ ଦୂର ହୋଇଯିବା, ଇଚ୍ଛାମାତ୍ରକେ ଅକ୍ଳେଶରେ ଜଗତକୁ ପୋଡ଼ି ଭସ୍ମ କରିଦେବାର ଶକ୍ତି ପ୍ରାପ୍ତ ହେବା, ପାଣି ଉପରେ ଅଗ୍ନିକୁ ସ୍ଥାପିତ କରିଦେବା, ହାତରେ ଅଗ୍ନିକୁ ଧାରଣ କରିବା, ସୃଷ୍ଟିକୁ ପୋଡ଼ି ଦେଇ ପୁନଃ ପୂର୍ବବତ୍ କରିଦେବାର ସାମର୍ଥ୍ୟ, ମୁଖରେ ହିଁ ଅନ୍ନ ଇତ୍ୟାଦିକୁ ହଜମ କରିବାର ସାମର୍ଥ୍ୟ ଏବଂ ତେଜ ଓ ବାୟୁ ତତ୍ତ୍ୱଦ୍ୱାରା ଶରୀରକୁ ସୃଷ୍ଟି କରିଦେବା—ଏ ଆଠଟି ଗୁଣ ଉପରୋକ୍ତ ଜଳୀୟ ଐଶ୍ୱର୍ଯ୍ୟର ଷୋହଳ ଗୁଣ ସହିତ ମିଶି ଚବିଶ ଗୁଣ ହୁଏ । ଏ ଚବିଶଟିକୁ ତୈଜସ ଐଶ୍ୱର୍ଯ୍ୟର ଗୁଣ କୁହାଯାଏ । ମନ ପରି ବେଗବାନ୍ ହେବା, ପ୍ରାଣୀଙ୍କ ଭିତରେ କ୍ଷଣକ ମଧ୍ୟରେ ପ୍ରବେଶ କରିଯିବା, ଅକ୍ଳେଶରେ ପର୍ବତାଦିର ଗୁରୁ ଭାରକୁ ଉଠାଇ ପାରିବା, ଓଜନିଆ ହୋଇଯିବା, ହାଲୁକା ହୋଇଯିବା, ହାତରେ ବାୟୁକୁ ଧରି ପାରିବା, ଅଙ୍ଗୁଳି ଅଗ୍ରଭାଗର ଆଘାତମାତ୍ରକେ ଭୂମିକୁ ପ୍ରକମ୍ପିତ କରିଦେବା, ଏକମାତ୍ର ବାୟୁତତ୍ତ୍ୱ ଦ୍ୱାରା ଶରୀରକୁ ନିର୍ମାଣ କରିଦେବା—ଏ ଆଠଟି ଗୁଣ ତୈଜସ ଐଶ୍ୱର୍ଯ୍ୟର ଚବିଶ ଗୁଣ ସହ ମିଶିଲେ ବତିଶ ହୁଏ । ବିଦ୍ୱାନ୍‌ମାନେ ଏଗୁଡ଼ିକୁ ବାୟବୀୟ ଐଶ୍ୱର୍ଯ୍ୟର ବତିଶିଟି ଗୁଣ ବୋଲି ସ୍ୱୀକାର କରିଛନ୍ତି । ଶରୀରର ଛାୟା ନ ପଡ଼ିବା, ଇନ୍ଦ୍ରିୟମାନେ ଅଦୃଶ୍ୟ ହୋଇଯିବା, ଆକାଶରେ ଇଚ୍ଛାନୁସାରେ ବିଚରଣ କରିବା, ଇନ୍ଦ୍ରିୟମାନଙ୍କର ସମସ୍ତ ବିଷୟର ସମନ୍ୱୟ ହେବା, ଆକାଶକୁ ଲଂଘିଯିବା, ନିଜ ଶରୀରରେ ତାହାକୁ ନିବେଶ କରିବା, ଆକାଶକୁ ପିଣ୍ଡପରି କଠିଣ କରିଦେବା ଓ ନିରାକାର ହୋଇଯିବା—ଏ ଆଠଟି ଗୁଣ ଅଗ୍ନିର ବତିଶ ଗୁଣ ସହ ମିଶି ଚାଳିଶି ହୁଏ । ଏଗୁଡ଼ିକ ହେଲା ବାୟୁସମ୍ବନ୍ଧୀୟ ଐଶ୍ୱର୍ଯ୍ୟର ଚାଳିଶଟି ଗୁଣ । ଏହା ହିଁ ସମସ୍ତ ଇନ୍ଦ୍ରିୟଙ୍କ ଐଶ୍ୱର୍ଯ୍ୟ, ଏହାକୁ 'ଐନ୍ଦ୍ର' ଏବଂ 'ଆମ୍ବର' (ଆକାଶ ସମ୍ବନ୍ଧୀୟ) ଐଶ୍ୱର୍ଯ୍ୟ ମଧ୍ୟ କହନ୍ତି ।

ଇଚ୍ଛାନୁସାରେ ସମସ୍ତ ବସ୍ତୁର ଉପଲବ୍ଧି, ଇଚ୍ଛାନୁସାରେ ସବୁସ୍ଥାନକୁ ଯାଇପାରିବା, ସମସ୍ତଙ୍କୁ ଅଭିଭୂତ କରିଦେବା, ସମସ୍ତ ଗୁହ୍ୟ ଅର୍ଥର ଦର୍ଶନ ହେବା, କର୍ମର ଅନୁରୂପ ନିର୍ମାଣ କରିବା, ସମସ୍ତଙ୍କୁ ବଶୀଭୂତ କରିଦେବା, ସଦା ପ୍ରିୟ ବସ୍ତୁର ଦର୍ଶନ ମିଳିବା ଏବଂ ଗୋଟିଏ ସ୍ଥାନରେ ସମଗ୍ର ସଂସାର ଦୃଶ୍ୟମାନ ହେବା—ଏ ଆଠଟି ଗୁଣ ପୂର୍ବୋକ୍ତ ଚାଳିଶ ଐଶ୍ୱର୍ଯ୍ୟ-ଗୁଣ ସହ ମିଶି ଅଠଚାଳିଶ ହୁଏ । ଚାନ୍ଦ୍ରମସ ଐଶ୍ୱର୍ଯ୍ୟ ଏ ଅଠଚାଳିଶ ଗୁଣରେ ଯୁକ୍ତ ଅଟେ । ଏହା ପୂର୍ବୋକ୍ତ ଐଶ୍ୱର୍ଯ୍ୟ ଠାରୁ ଅଧିକ ଗୁଣଯୁକ୍ତ । ଏହାକୁ 'ମାନସ ଐଶ୍ୱର୍ଯ୍ୟ' ମଧ୍ୟ କହନ୍ତି । ଫୋଡ଼ିବା, ପିଟିବା, ବାନ୍ଧିବା, ଖୋଲିବା, ସଂସାରର ବଶରେ ଥିବା ପ୍ରାଣୀଙ୍କୁ ଗ୍ରହଣ କରିବା, ସମସ୍ତଙ୍କୁ ପ୍ରସନ୍ନ ରଖିବା, ମୃତ୍ୟୁକୁ ଜୟ କରିବା, କାଳ ଉପରେ ବିଜୟ ପାଇବା—ଏ ସମସ୍ତ ଅହଂକାର ସମ୍ବନ୍ଧୀୟ ଐଶ୍ୱର୍ଯ୍ୟର ଅନ୍ତର୍ଗତ । ଆହଂକାରିକ ଐଶ୍ୱର୍ଯ୍ୟକୁ 'ପ୍ରାଜାପତ୍ୟ' ମଧ୍ୟ କହନ୍ତି । ଚାନ୍ଦ୍ରମସ ଐଶ୍ୱର୍ଯ୍ୟ ସହ ଏ ଆଠଗୁଣ ମିଶି ଛପନ ହୁଏ । ଏ ଛପନଟି ମହାନ୍ ଆଭିମାନିକ ଐଶ୍ୱର୍ଯ୍ୟର ଗୁଣ ଅଟେ ।

ସଂକଳ୍ପମାତ୍ରକେ ସୃଷ୍ଟିର ରଚନା କରିବା, ପାଳନ କରିବା, ସଂହାର କରିବା, ସମସ୍ତଙ୍କ ଉପରେ ନିଜର ଅଧିକାର ସାବ୍ୟସ୍ତ କରିବା, ପ୍ରାଣୀଙ୍କ ଚିତ୍ତକୁ ପ୍ରେରିତ କରିବା, ସମସ୍ତଙ୍କ ଠାରୁ ଅନୁପମ ହେବା, ଏ ଜଗତରୁ ଭିନ୍ନ ନୂତନ ଜଗତ ସୃଷ୍ଟି କରିଦେବା ଏବଂ ଶୁଭକୁ ଅଶୁଭ ତଥା ଅଶୁଭକୁ ଶୁଭ କରିଦେବା—ଏଗୁଡ଼ିକ ହେଲା 'ବୌଦ୍ଧ ଐଶ୍ୱର୍ଯ୍ୟ' । ପ୍ରାଜାପତ୍ୟ ଐଶ୍ୱର୍ଯ୍ୟର ଗୁଣକୁ ମିଶାଇଲେ ଏହାର ଚଉଷଠି ଗୁଣ ହୁଏ । ଉକ୍ତ ବୌଦ୍ଧ ଐଶ୍ୱର୍ଯ୍ୟକୁ 'ବାହ୍ୟ ଐଶ୍ୱର୍ଯ୍ୟ' ମଧ୍ୟ କହନ୍ତି । ଏହାଠାରୁ ଉତ୍କୃଷ୍ଟ ହେଲା ଗୌଣ ଐଶ୍ୱର୍ଯ୍ୟ, ଯାହାକୁ ପ୍ରାକୃତ ମଧ୍ୟ କହନ୍ତି । ତାହାରି ନାମ 'ବୈଷ୍ଣବ ଐଶ୍ୱର୍ଯ୍ୟ' । ତ୍ରିଲୋକର ପାଳନ ତାହାରି ଅନ୍ତର୍ଗତ । ସେ ସମସ୍ତ ବୈଷ୍ଣବ ପଦ ବିଷୟରେ ନା ବ୍ରହ୍ମା କହିପାରିବେ ନା ଆଉ କେହି ତାହାର ପୂର୍ଣ୍ଣ ଐଶ୍ୱର୍ଯ୍ୟକୁ ବର୍ଣ୍ଣନା କରିପାରିବେ । ତାହାକୁ ପୌରୁଷପଦ ମଧ୍ୟ କହନ୍ତି । ଗୌଣ ଓ ପୌରୁଷପଦରୁ ଉତ୍କୃଷ୍ଟ ହେଉଛି ଗଣପତିପଦ । ତାହାକୁ ଈଶ୍ୱରପଦ ମଧ୍ୟ କହନ୍ତି । ସେହି ପଦ ବିଷୟରେ କିଞ୍ଚିତ୍ ଜ୍ଞାନ ବିଷ୍ଣୁଙ୍କର ରହିଛି । ଅନ୍ୟମାନେ ତାହାକୁ ଜାଣି ପାରନ୍ତି ନାହିଁ । ଏ ସମସ୍ତ ବିଜ୍ଞାନସିଦ୍ଧି ଔପସର୍ଗିକ ଅଟେ । ଏଗୁଡ଼ିକୁ ପରମ ବୈରାଗ୍ୟଦ୍ୱାରା ପ୍ରଯତ୍ନପୂର୍ବକ ଅଟକାଇବା ଉଚିତ । ଉପରୋକ୍ତ ଅଶୁଦ୍ଧ ପ୍ରାତିଭାସିକ ଗୁଣରେ ଯାହାର ଚିତ୍ତ ଆସକ୍ତ, ତାହାର ସମସ୍ତ କାମନାପୂରଣକାରୀ ନିର୍ଭୟ ପରମ ଐଶ୍ୱର୍ଯ୍ୟ ସିଦ୍ଧ ହୁଏ ନାହିଁ ।

ତେଣୁ ଦେବତା, ଅସୁର ଓ ରାଜାଙ୍କର ଗୁଣ ଓ ଭୋଗକୁ ଯେ ତୃଣ ପରି ତୁଚ୍ଛ ମଣି ତ୍ୟାଗ କରିଦିଅନ୍ତି, ତାଙ୍କୁ ହିଁ ଉତ୍କୃଷ୍ଟ ଯୋଗସିଦ୍ଧି ପ୍ରାପ୍ତ ହୁଏ । ଅଥବା ଜଗତ ଉପରେ ଅନୁଗ୍ରହ କରିବାକୁ ଇଚ୍ଛା ଥିଲେ ସେହି ଯୋଗସିଦ୍ଧ ମୁନି ଇଚ୍ଛାନୁସାରେ ବିଚରଣ କରିପାରିବେ । ସେ ଜୀବନକାଳରେ ଗୁଣ ଓ ଭୋଗମାନ ଉପଭୋଗ କରି ଶେଷରେ ମୋକ୍ଷ ଲାଭ କରିବେ ।

ଏବେ ମୁଁ ଯୋଗ ପ୍ରୟୋଗ ବିଷୟରେ ବର୍ଣ୍ଣନା କରୁଛି । ଏକାଗ୍ରଚିତ୍ତ ହୋଇ ଶୁଣ । ଶୁଭକାଳରେ, ଶୁଭଦେଶରେ, ଶିବକ୍ଷେତ୍ରରେ, ଏକାନ୍ତ, ଜୀବଜନ୍ତୁଶୂନ୍ୟ, କୋଳାହଳଶୂନ୍ୟ ଏବଂ ବାଧା-ବିଘ୍ନଶୂନ୍ୟ ସ୍ଥାନରେ ଭୂମିକୁ ଲିପାପୋଛା କରି ସ୍ଥାନଟିକୁ ଗନ୍ଧ ଓ ଧୂପାଦିରେ ସୁବାସିତ କରି ସେଠାରେ ଫୁଲ ବିଛାଇଦେବେ ଏବଂ ଚନ୍ଦୁଆ ବାନ୍ଧି ସୁନ୍ଦରରୂପେ ସଜାଇଦେବେ । ସେଠାରେ କୁଶ, ପୁଷ୍ପ, ସମିଧ, ଜଳ ଓ ଫଳମୂଳର ସୁବିଧା ଥିବା ଆବଶ୍ୟକ । ଏଭଳି ସ୍ଥାନରେ ଯୋଗ ଅଭ୍ୟାସ କରିବେ । ଅଗ୍ନି ସମୀପରେ, ଜଳ ସମୀପରେ ଓ ଶୁଖିଲା ପତ୍ରଗଦା ନିକଟରେ ଯୋଗାଭ୍ୟାସ କରିବା ଅନୁଚିତ । ଯେଉଁଠି ମଶା, ଡାଆଁଶ, ସାପ ଓ ହିଂସ୍ର ଜନ୍ତୁଙ୍କର ପ୍ରାବଲ୍ୟ ଥିବ, ଦୁଷ୍ଟ ପଶୁ ନିବାସ କରୁଥିବେ, ଭୟର ସମ୍ଭାବନା ଥିବ ଏବଂ ଯେଉଁ ସ୍ଥାନରେ ଦୁଷ୍ଟଜନ ରହୁଥିବେ, ସେଠାରେ ଯୋଗାଭ୍ୟାସ କରିବା ଅନୁଚିତ । ଶ୍ମଶାନରେ, ଚୈତ୍ୟବୃକ୍ଷ ତଳେ, ଉଇହୁଙ୍କା ନିକଟରେ, ଜୀର୍ଣ୍ଣଶୀର୍ଣ୍ଣ ଘରେ, ଛକସ୍ଥାନରେ, ନଦ-ନଦୀ ଓ ସମୁଦ୍ରର କୂଳରେ, ଗଳି ବା ସଡ଼କର ମଝିରେ, ବିଧ୍ୱସ୍ତ ଉଦ୍ୟାନରେ, ଗୋଷ୍ଠ ଇତ୍ୟାଦିରେ, ଅନିଷ୍ଟକାରୀ ଓ ନିନ୍ଦିତ ସ୍ଥାନରେ ମଧ୍ୟ ଯୋଗାଭ୍ୟାସ କରିବା ଅନୁଚିତ । ଆହୁରି ମଧ୍ୟ ଶରୀରରେ ଅଜୀର୍ଣ୍ଣତା ଇତ୍ୟାଦି କ୍ଲେଶ ଥିଲେ, ଖଟା ଢେକୁର ଆସୁଥିଲେ, ମଳମୂତ୍ରରେ ଶରୀର ଦୂଷିତ ହୋଇଥିଲେ, ସର୍ଦ୍ଦି ବା ଅତିସାର ରୋଗର ପ୍ରକୋପ ହୋଇଥିଲେ, ଅଧିକ ଭୋଜନ କରିଥିଲେ ବା ଅଧିକ ପରିଶ୍ରମରେ ଦେହ ଥକି ଯାଇଥିଲେ, ଅତ୍ୟନ୍ତ ଚିନ୍ତାରେ ବ୍ୟାକୁଳ

ହେଉଥିଲେ, ଅଧିକ କ୍ଷୁଧାତୃଷା କଷ୍ଟ ଦେଉଥିଲେ କିଂବା ନିଜ ଗୁରୁଜନଙ୍କ କାର୍ଯ୍ୟରେ ବ୍ୟାପୃତ ଥିଲେ ମନୁଷ୍ୟ ଯୋଗାଭ୍ୟାସ କରିବା ଉଚିତ ନୁହେଁ।

ଯାହାର ଆହାର-ବିହାର ସଂଯତ ଓ ପରିମିତ, ଯେ କର୍ମରେ ଯଥୋଚିତ ଚେଷ୍ଟା କରେ, ଉଚିତ ସମୟରେ ଶୁଏ, ଉଚିତ ସମୟରେ ଉଠେ ଏବଂ ସର୍ବଥା ଆୟାସରହିତ, ସେ ହିଁ ଯୋଗାଭ୍ୟାସରେ ତତ୍ପର ହେବା ଉଚିତ। ବସିବା ପାଇଁ ଆସନ କୋମଳ, ସୁନ୍ଦର, ବିସ୍ତୃତ, ଚାରିପଟରୁ ସମାନ ଓ ପବିତ୍ର ହୋଇଥିବା ଉଚିତ। ପଦ୍ମାସନ ଓ ସ୍ୱସ୍ତିକାସନ ଇତ୍ୟାଦି ନାନା ଯୌଗିକ ଆସନରେ ମଧ୍ୟ ଅଭ୍ୟସ୍ତ ହେବା ଉଚିତ। ପ୍ରଥମେ ନିଜ ଆଚାର୍ଯ୍ୟଙ୍କ ପର୍ଯ୍ୟନ୍ତ ଗୁରୁପରମ୍ପରାକୁ କ୍ରମାନ୍ୱୟରେ ପ୍ରଣାମ କରିବେ। ବେକ, ମୁଣ୍ଡ ଓ ଛାତିକୁ ସିଧା ରଖିବେ। ଓଷ୍ଠ ଓ ନେତ୍ର ଅଧିକ ଚିପି ହେବ ନାହିଁ। ମସ୍ତକ ସିଧା ରହିବ। ଦାନ୍ତରେ ଦାନ୍ତ ଚାପିହେବ ନାହିଁ। ଦାନ୍ତର ଅଗ୍ରଭାଗରେ ଜିହ୍ୱାକୁ ଅବିଚଳ ଭାବରେ ସ୍ଥିର ରଖି ଦୁଇଟି ଗୋଇଠିରେ ଅଣ୍ଡକୋଷ ଓ ଜନନେନ୍ଦ୍ରିୟକୁ ରକ୍ଷା କରିବା ସହ ଉଭୟ ଜଙ୍ଘ ଉପରେ ଅନାୟାସରେ ଦୁଇ ଭୁଜକୁ ରଖିବେ। ତା'ପରେ ଡାହାଣ ହାତର ପୃଷ୍ଠଭାଗକୁ ବାଆଁ ହାତର ପାପୁଲି ଉପରେ ରଖି ଧୀରେ ଧୀରେ ପିଠିକୁ ସିଧା କରି ଛାତିକୁ ଆଗପଟରୁ ସୁସ୍ଥିର ରଖି ନାସିକାର ଅଗ୍ରଭାଗରେ ଦୃଷ୍ଟି ସ୍ଥିର କରିବେ। ଅନ୍ୟ ଦିଗ ଆଡ଼କୁ ଦୃଷ୍ଟିପାତ କରିବେ ନାହିଁ। ପ୍ରାଣସଂଚାରକୁ ଅଟକାଇ ପାଷାଣ ପରି ନିଶ୍ଚଳ ହୋଇଯିବେ। ନିଜ ମାନସ-ମନ୍ଦିରରେ ହୃଦୟପଦ୍ମର ଆସନ ଉପରେ ଶିବପାର୍ବତୀଙ୍କୁ ଚିନ୍ତନ କରି ଧ୍ୟାନ-ଯଜ୍ଞଦ୍ୱାରା ତାଙ୍କୁ ପୂଜା କରିବେ।

ମୂଳାଧାର ଚକ୍ରରେ, ନାସିକାର ଅଗ୍ରଭାଗରେ, ନାଭିରେ, କଣ୍ଠରେ, ତାଲୁର ଉଭୟ ଛିଦ୍ରରେ, ଭ୍ରୂଲତାର ମଧ୍ୟଭାଗରେ, ଦ୍ୱାରଦେଶରେ, ଲଲାଟରେ ବା ମସ୍ତକରେ ଶିବଙ୍କୁ ଚିନ୍ତନ କରିବେ। ଶିବା ଓ ଶିବଙ୍କ ପାଇଁ ଯଥୋଚିତ ରୀତିରେ ଉତ୍ତମ ଆସନର କଳ୍ପନା କରି ସେଠାରେ ସାବରଣ ବା ନିରାବରଣ ଶିବଙ୍କୁ ସ୍ମରଣ କରିବେ। ଦ୍ୱିଦଳ, ଚତୁର୍ଦ୍ଦଳ, ଷଡ଼ଦଳ, ଦ୍ୱାଦଶଦଳ ଅଥବା ଷୋଡ଼ଶଦଳ କମଳର ଆସନରେ ବିରାଜମାନ ଶିବଙ୍କୁ ବିଧିବତ୍ ସ୍ମରଣ କରିବା ଉଚିତ। ଉଭୟ ଭ୍ରୂର ମଧ୍ୟଭାଗରେ ଦ୍ୱିଦଳ ପଦ୍ମର ଅବସ୍ଥିତି, ସେହି ପଦ୍ମର ଦକ୍ଷିଣ ଓ ଉତ୍ତରରେ ଦୁଇଟି ଦଳ ବା ପାଖୁଡ଼ା ବିଦ୍ୟୁତ୍ ପରି ଦୀପ୍ତିମାନ୍। ସେଥିରେ ଦୁଇଟି ଅନ୍ତିମ ବର୍ଣ୍ଣ 'ହ' ଓ 'କ୍ଷ' ଅଙ୍କିତ ହୋଇଛି। ଷୋଡ଼ଶଦଳ ପଦ୍ମର ପାଖୁଡ଼ା ଷୋହଳ ସ୍ୱରରୂପ ଅଟେ। ସେଥିରେ 'ଅ' ଠାରୁ ଆରମ୍ଭ କରି 'ଅଃ' ପର୍ଯ୍ୟନ୍ତ ଅକ୍ଷର କ୍ରମରେ ଅଙ୍କିତ ହୋଇଛି। ପଦ୍ମନାଡ଼ର ମୂଳଭାଗରୁ ବାରଟି ପାଖୁଡ଼ା ବାହାରିଛି ଏବଂ ସେଥିରେ 'କ' ଠାରୁ 'ଠ' ପର୍ଯ୍ୟନ୍ତ ବାରଟି ଅକ୍ଷର କ୍ରମାନ୍ୱୟରେ ଅଙ୍କିତ ହୋଇଛି। ସୂର୍ଯ୍ୟ ତୁଲ୍ୟ ଉଜ୍ଜ୍ୱଳ ଏହି ପଦ୍ମର ଦ୍ୱାଦଶ ଦଳକୁ ନିଜ ହୃଦୟ ଭିତରେ ଧ୍ୟାନ କରିବେ। ତା'ପରେ ଗୋ-ଦୁଗ୍ଧ ପରି ଉଜ୍ଜ୍ୱଳ ଦଶଦଳକୁ ଚିନ୍ତନ କରିବେ। ସେଥିରେ କ୍ରମାନ୍ୱୟରେ 'ଡ' ଠାରୁ ଆରମ୍ଭ କରି 'ଫ' ପର୍ଯ୍ୟନ୍ତ ଅକ୍ଷର ଲେଖାଯାଇଛି। ତା'ପରେ ତଳମୁହାଁ ପାଖୁଡ଼ା ଥିବା ଷଡ଼୍ଦଳ ପଦ୍ମ ଅଛି ଏବଂ ସେଥିରେ 'ବ' ଠାରୁ 'ଲ' ପର୍ଯ୍ୟନ୍ତ ଅକ୍ଷର ଅଙ୍କିତ ହୋଇଛି। ଏ ପଦ୍ମର କାନ୍ତି ଧୂମ୍ରଯୁକ୍ତ ଅଙ୍ଗାର ପରି ଅଟେ। ମୂଳାଧାରରେ ସ୍ଥିତ ପଦ୍ମର କାନ୍ତି ସୁବର୍ଣ୍ଣ ତୁଲ୍ୟ। ସେଥିରେ ଅବର୍ଗୀୟ 'ବ' ଠାରୁ 'ସ' ପର୍ଯ୍ୟନ୍ତ ଅକ୍ଷର ଚାରିଟି ଦଳ ରୂପରେ ରହିଛି। ଏହି ପଦ୍ମଗୁଡ଼ିକ ମଧ୍ୟରୁ ଯେଉଁଟା

ମନକୁ ଭଲ ଲାଗିବ, ସେଥିରେ ମହାଦେବ ଓ ମହାଦେବୀଙ୍କୁ ଧୀର ବୁଦ୍ଧିରେ ଚିନ୍ତନ କରିବେ । ତାଙ୍କୁ ଅଙ୍ଗୁଷ୍ଠମାତ୍ର ସ୍ୱରୂପରେ ଦେଖି ନିର୍ମଳ ତଥା ଦୀପ୍ତିମାନ୍ ବୋଲି ଚିନ୍ତନ କରିବେ । ଅଥବା ଭାବିବେ ଯେ, ସେ ଶୁଦ୍ଧଦୀପଶିଖା ଆକାରର ଓ ନିଜ ଶକ୍ତିରେ ପୂର୍ଣ୍ଣତଃ ମଣ୍ଡିତ । ଅଥବା ତାଙ୍କର ରୂପ ଚନ୍ଦ୍ରକଳା ବା ତାରା ପରି ଅଥବା ସେ ନୀବାରର କାଠି ବା ପଦ୍ମନାଳରୁ ବାହାରୁଥିବା ସୂତ୍ର ପରି । କଦମ୍ବର ଗୋଲକ ବା କାକର ବିନ୍ଦୁ ପରି ମଧ୍ୟ ସେହି ରୂପର ଉପମା ଦିଆଯାଇ ପାରେ । ସେହି ରୂପ ପୃଥିବୀ ଆଦି ପଞ୍ଚତତ୍ତ୍ୱ ଉପରେ ବିଜୟୀ । ଧ୍ୟାନ କରୁଥିବା ବ୍ୟକ୍ତି ଯେଉଁ ତତ୍ତ୍ୱ ଉପରେ ବିଜୟ ପାଇବାକୁ ଇଚ୍ଛା କରନ୍ତି, ସେହି ତତ୍ତ୍ୱର ଅଧିପତିଙ୍କ ସ୍ଥୂଳ ମୂର୍ତ୍ତିକୁ ଚିନ୍ତନ କରିବେ । ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ସଦାଶିବଙ୍କ ପର୍ଯ୍ୟନ୍ତ ସମସ୍ତ ମୂର୍ତ୍ତିଙ୍କୁ ଏବଂ ଭବ ଇତ୍ୟାଦି ଅଷ୍ଟମୂର୍ତ୍ତିଙ୍କୁ ହିଁ ଶିବଶାସ୍ତ୍ରରେ ଶିବଙ୍କ ସ୍ଥୂଳମୂର୍ତ୍ତିରୂପେ ନିର୍ଣ୍ଣୀତ କରାଯାଇଛି । ମୁନୀଶ୍ୱରମାନେ ତାଙ୍କୁ 'ଘୋର', 'ଶାନ୍ତ' ଓ 'ମିଶ୍ର' ଏପରି ତିନି ପ୍ରକାରେ ବ୍ୟକ୍ତ କରିଛନ୍ତି । ଫଳଆଶା ନ କରୁଥିବା ଧ୍ୟାନକୁଶଳ ଲୋକେ ଏହାଙ୍କୁ ଚିନ୍ତନ କରିବା ଉଚିତ । ଯଦି ଘୋର ମୂର୍ତ୍ତିର ଚିନ୍ତନ କରାଯାଏ, ତେବେ ସେ ଶୀଘ୍ର ପାପ ଓ ରୋଗ ନାଶ କରିଥାନ୍ତି । ମିଶ୍ର ମୂର୍ତ୍ତିରେ ଶିବଙ୍କୁ ଚିନ୍ତନ କଲେ ଦୀର୍ଘକାଳରେ ସିଦ୍ଧି ପ୍ରାପ୍ତି ହୁଏ । ସୌମ୍ୟ ମୂର୍ତ୍ତିରେ ଶିବଙ୍କୁ ଧ୍ୟାନ କଲେ ସିଦ୍ଧି ପ୍ରାପ୍ତି ହେବାରେ ଅଧିକ ବିଳମ୍ବ ହୁଏ ନାହିଁ କି ଅଧିକ ଶୀଘ୍ର ହୁଏ ନାହିଁ । ସୌମ୍ୟ ମୂର୍ତ୍ତିରେ ଧ୍ୟାନ କଲେ ବିଶେଷତଃ ମୁକ୍ତି, ଶାନ୍ତି ଓ ଶୁଦ୍ଧବୁଦ୍ଧି ପ୍ରାପ୍ତି ହୁଏ । କ୍ରମାନୁସାରେ ସମସ୍ତ ସିଦ୍ଧି ଯେ ପ୍ରାପ୍ତ ହୋଇଯାଏ, ଏଥିରେ ସଂଶୟ ନାହିଁ ।

(ଅଧ୍ୟାୟ ୩୮)

***

## ଧ୍ୟାନ ଓ ତାହାର ମହିମା, ଯୋଗଧର୍ମ ଓ ଶିବଯୋଗୀଙ୍କ ମହତ୍ତ୍ୱ, ଶିବଭକ୍ତ ବା ଶିବଙ୍କ ପାଇଁ ପ୍ରାଣ ଦେବା ଦ୍ୱାରା ଅଥବା ଶିବକ୍ଷେତ୍ରରେ ମରଣ ଦ୍ୱାରା ତତ୍କାଳ ମୋକ୍ଷପ୍ରାପ୍ତିର ବର୍ଣ୍ଣନା

ଉପମନ୍ୟୁ କହୁଛନ୍ତି—**ଶ୍ରୀକୃଷ୍ଣ ! ଶ୍ରୀକଣ୍ଠନାଥଙ୍କୁ** ସ୍ମରଣ କରୁଥିବା ଲୋକଙ୍କର ସମସ୍ତ ମନୋରଥ ଅଚିରେ ପୂରଣ ହୋଇଥାଏ ବୋଲି ଜାଣି କେତେକ ଯୋଗୀ ତାଙ୍କୁ ଧ୍ୟାନ କରିଥାନ୍ତି । କେତେକ ଲୋକ ମନର ସ୍ଥିରତା ପାଇଁ ସ୍ଥୂଳରୂପର ଧ୍ୟାନ କରିଥାନ୍ତି । ସ୍ଥୂଳରୂପର ଚିନ୍ତନ କରି ମନ ନିଶ୍ଚଳ ହୋଇଗଲେ ତାହା ସୂକ୍ଷ୍ମରୂପରେ ସ୍ଥିର ହୋଇଯାଏ । ଭଗବାନ ଶିବଙ୍କ ଚିନ୍ତନ କଲେ ସମସ୍ତ ସିଦ୍ଧି ପ୍ରତ୍ୟକ୍ଷ ସିଦ୍ଧ ହୋଇଯାଏ । ଅନ୍ୟ ମୂର୍ତ୍ତିକୁ ଚିନ୍ତନ କଲେ ସୁଦ୍ଧା ଶିବରୂପକୁ ଅବଶ୍ୟ ଚିନ୍ତନ କରିବା ଉଚିତ । ଯେଉଁ ରୂପରେ ମନ ସ୍ଥିର ହେଉଥିବ, ତାହାକୁ ବାରମ୍ବାର ଧ୍ୟାନ କରିବା ଉଚିତ । ଜ୍ଞାନୀଜନ କହନ୍ତି ଯେ ଧ୍ୟାନ ପ୍ରଥମେ ସବିଷୟ ହୁଏ, ତା'ପରେ ନିର୍ବିଷୟ ହୁଏ । ଏ ବିଷୟରେ କେତେକ ସଜ୍ଜନଙ୍କର ମତ ଯେ କୌଣସି ଧ୍ୟାନ ନିର୍ବିଷୟ ହୋଇ ନ ଥାଏ । ବୁଦ୍ଧିର କୌଣସି ପ୍ରବାହରୂପା ସନ୍ତତି 'ଧ୍ୟାନ' ବୋଲାଏ, ଏଣୁ ନିର୍ବିଷୟ ବୁଦ୍ଧି ନିର୍ଗୁଣ-ନିରାକାର ବ୍ରହ୍ମରେ ହିଁ ପ୍ରବୃତ୍ତ ହୋଇଥାଏ ।

ସବିଷୟ ଧ୍ୟାନ ପ୍ରାତଃକାଳୀନ ସୂର୍ଯ୍ୟଙ୍କ କିରଣ ସଦୃଶ ଜ୍ୟୋତିର ଆଶ୍ରୟ ନେଉଥିବା

ସ୍ଥଳେ ନିର୍ବିଷୟ ଧ୍ୟାନ ସୂକ୍ଷ୍ମତତ୍ତ୍ୱ ଉପରେ ଅବଲମ୍ବିତ । ଏ ଦୁଇଟି ଛଡ଼ା ଅନ୍ୟ କୌଣସି ଧ୍ୟାନ ବାସ୍ତବରେ ନାହିଁ । ଅଥବା ସବିଷୟ ଧ୍ୟାନ ସାକାର ସ୍ୱରୂପ ଉପରେ ଅବଲମ୍ବିତ ହେଉଥିବା ସ୍ଥଳେ ନିରାକାର ସ୍ୱରୂପର ବୋଧ ବା ଅନୁଭବ ହିଁ ନିର୍ବିଷୟ ଧ୍ୟାନ ବୋଲାଏ । ଉକ୍ତ ସବିଷୟ ଓ ନିର୍ବିଷୟ ଧ୍ୟାନ ହିଁ ଯଥାକ୍ରମେ ସବୀଜ ଓ ନିର୍ବୀଜ ଧ୍ୟାନ ବୋଲାଏ । ନିରାକାରର ଆଶ୍ରୟ ନେଲେ ନିର୍ବୀଜ ଓ ସାକାରର ଆଶ୍ରୟ ନେଲେ ସବୀଜ ସଂଜ୍ଞା ହୁଏ । ତେଣୁ ପ୍ରଥମେ ସବିଷୟ ବା ସବୀଜ ଧ୍ୟାନ କରି ଶେଷରେ ସବୁ ପ୍ରକାର ସିଦ୍ଧି ନିମନ୍ତେ ନିର୍ବିଷୟ ବା ନିର୍ବୀଜ ଧ୍ୟାନ କରିବାକୁ ହୁଏ । ପ୍ରାଣାୟାମ କଲେ ଶାନ୍ତି ପ୍ରଭୃତି ଦିବ୍ୟ ସିଦ୍ଧି ପ୍ରାପ୍ତ ହୋଇଥାଏ । ସେଗୁଡ଼ିକର ନାମ ହେଲା–ଶାନ୍ତି, ପ୍ରଶାନ୍ତି, ଦୀପ୍ତି ଓ ପ୍ରସାଦ । ସମସ୍ତ ବିପଦର ଶମନ ହେବାକୁ ଶାନ୍ତି କୁହାଯାଇଛି । ତମ (ଅଜ୍ଞାନ) ବାହାରୁ ଓ ଭିତରୁ ନଷ୍ଟ ହୋଇଯିବାର ନାମ ପ୍ରଶାନ୍ତି । ବାହ୍ୟ ଓ ଆଭ୍ୟନ୍ତରରେ ଯେଉଁ ଜ୍ଞାନର ଆଲୋକ ବିଚ୍ଛୁରିତ ହୁଏ, ତାହାର ନାମ ଦୀପ୍ତି । ବୁଦ୍ଧିର ସ୍ୱଚ୍ଛତା (ଆତ୍ମନିଷ୍ଠତା)କୁ ପ୍ରସାଦ କୁହାଯାଏ । ବୁଦ୍ଧିର ପ୍ରସାଦରୁ ବହିଃକରଣ ଓ ଅନ୍ତଃକରଣ ଖୁବ୍ ଶୀଘ୍ର ପ୍ରସନ୍ନ (ନିର୍ମଳ) ହୋଇଯାଏ ।

ଧ୍ୟାତା, ଧ୍ୟାନ, ଧ୍ୟେୟ ଓ ଧ୍ୟାନ-ପ୍ରୟୋଜନ–ଏ ଚାରିଟିକୁ ଜାଣି ଧ୍ୟାନ କରିବା ଆବଶ୍ୟକ । ଯେଉଁ ବ୍ୟକ୍ତି ଜ୍ଞାନ-ବୈରାଗ୍ୟସମ୍ପନ୍ନ, ସଦା ଶାନ୍ତଚିତ୍ତ, ଶ୍ରଦ୍ଧାଳୁ ଓ ଯାହାର ବୁଦ୍ଧି ପ୍ରସାଦଗୁଣରେ ଯୁକ୍ତ, ସେପରି ସାଧକକୁ ସନ୍ଥମାନେ ଧ୍ୟାତା ବୋଲି କହିଛନ୍ତି । 'ଧ୍ୟୈ ଚିନ୍ତାୟାମ୍' ଏହା ଧାତୁ । ଏହାର ଅର୍ଥ ଚିନ୍ତନ । ଭଗବାନ ଶିବଙ୍କର ବାରମ୍ବାର ଚିନ୍ତନ ହିଁ ଧ୍ୟାନ ବୋଲାଏ । ଯେପରି ଅଳ୍ପ ଟିକିଏ ଯୋଗାଭ୍ୟାସ ବି ପାପ ନାଶ କରିଥାଏ, ସେହିପରି କ୍ଷଣେମାତ୍ର ଧ୍ୟାନ କରୁଥିବା ବ୍ୟକ୍ତିର ବି ସମସ୍ତ ପାପ ନଷ୍ଟ ହୋଇଯାଏ । ଶ୍ରଦ୍ଧାପୂର୍ବକ, ବିକ୍ଷେପରହିତ ଚିତ୍ତରେ ପରମେଶ୍ୱରଙ୍କୁ ଚିନ୍ତନ କରିବାର ନାମ 'ଧ୍ୟାନ' । ବୁଦ୍ଧିର ପ୍ରବାହରୂପୀ ଧ୍ୟାନର ଆଲମ୍ବନ ବା ଆଶ୍ରୟକୁ ସାଧୁଜନ 'ଧ୍ୟେୟ' ବୋଲି କହିଥାନ୍ତି । ସ୍ୱୟଂ ସାମ୍ବ ସଦାଶିବ ହିଁ ସେହି ଧ୍ୟେୟ । ମୋକ୍ଷସୁଖର ପୂର୍ଣ୍ଣ ଅନୁଭବ ଓ ଅଣିମାଦି ଐଶ୍ୱର୍ଯ୍ୟର ଉପଲବ୍ଧି ହିଁ ଶିବଧ୍ୟାନର ସାକ୍ଷାତ୍ ପ୍ରୟୋଜନ । ଧ୍ୟାନରୁ ସୌଖ୍ୟ ଓ ମୋକ୍ଷ ପ୍ରାପ୍ତ ହୋଇଥାଏ । ସେଥିପାଇଁ ମନୁଷ୍ୟ ସବୁକିଛି ଛାଡ଼ି ଧ୍ୟାନରେ ମନୋନିବେଶ କରିବା ଉଚିତ । ଧ୍ୟାନ ବିନା ଜ୍ଞାନ ହୁଏ ନାହିଁ, ଯେ ଯୋଗସାଧନା ନ କରିଛି, ତାହାର ଧ୍ୟାନ ସିଦ୍ଧ ହୁଏ ନାହିଁ । ଯେ ଧ୍ୟାନ ଓ ଜ୍ଞାନ ଉଭୟ ହାସଲ କରିଛି, ଜାଣ ଯେ ସେ ଭବସାଗରକୁ ପାର ହୋଇଗଲା । ଯୋଗାଭ୍ୟାସପରାୟଣ ଯୋଗୀର ହିଁ ନିରୁପାଧିକ ନିର୍ମଳ ଜ୍ଞାନ ଏବଂ ଏକାଗ୍ରତାପୂର୍ଣ୍ଣ ଧ୍ୟାନ ସିଦ୍ଧ ହୋଇଥାଏ । ଯାହାର ସମସ୍ତ ପାପ ନଷ୍ଟ ହୋଇଯାଇଛି, ତାହାରି ବୁଦ୍ଧି ଜ୍ଞାନ ଓ ଧ୍ୟାନରେ ଅଭିରତ ହୋଇଥାଏ । ପାପଦୂଷିତ ଲୋକ ପାଇଁ ଉଭୟ ଜ୍ଞାନ ଓ ଧ୍ୟାନ ଅତ୍ୟନ୍ତ ଦୁର୍ଲଭ । ପ୍ରଜ୍ୱଳିତ ଭୀଷଣ ଅଗ୍ନି ଯେପରି ଶୁଷ୍କ ଓ ଆର୍ଦ୍ର ସବୁପ୍ରକାର କାଷ୍ଠକୁ ଜାଳିଦିଏ, ସେହିପରି ଧ୍ୟାନାଗ୍ନି ଶୁଭାଶୁଭ ସମସ୍ତ କର୍ମକୁ କ୍ଷଣକ ଭିତରେ ଦଗ୍ଧ କରି ଦେଇଥାଏ । ଛୋଟିଆ ଦୀପଟିଏ ମଧ୍ୟ ଯେପରି ବିଶାଳ ଅନ୍ଧକାରକୁ ନଷ୍ଟ କରିଦେଇଥାଏ, ସେହିପରି ଅଳ୍ପ ଟିକିଏ ଯୋଗାଭ୍ୟାସ ମଧ୍ୟ ଘୋର ପାପକୁ

ବିନଷ୍ଟ କରିଦିଏ। ଶ୍ରଦ୍ଧାପୂର୍ବକ କ୍ଷଣକ ପାଇଁ ମଧ୍ୟ ପରମେଶ୍ୱରଙ୍କୁ ଧ୍ୟାନ କରୁଥିବା ବ୍ୟକ୍ତିକୁ ଯେଉଁ ମହାନ୍ ଶ୍ରେୟ ଲାଭ ହୁଏ, ତାହାର ସୀମା ନାହିଁ।*

ଧ୍ୟାନ ପରି କୌଣସି ତୀର୍ଥ ନାହିଁ, ଧ୍ୟାନ ପରି କୌଣସି ତପ ନାହିଁ ଏବଂ ଧ୍ୟାନ ପରି କୌଣସି ଯଜ୍ଞ ନାହିଁ। ତେଣୁ ନିଶ୍ଚିତରୂପେ ଧ୍ୟାନ କରିବା ଉଚିତ।ᵠ ନିଜର ଆତ୍ମା ଓ ପରମାତ୍ମାଙ୍କ ବୋଧ ପ୍ରାପ୍ତ କରିଥିବାରୁ ଯୋଗୀଜନ କେବଳ ଜଳମୟ ତୀର୍ଥ ଓ ପଥର ବା ମୃତ୍ତିକା ନିର୍ମିତ ଦେବମୂର୍ତ୍ତିର ଆଶ୍ରୟ ନେଇ ନ ଥାନ୍ତି (ସେମାନେ ଆତ୍ମତୀର୍ଥରେ ଅବଗାହନ କରନ୍ତି ଓ ଆତ୍ମଦେବଙ୍କ ଭଜନରେ ନିମଗ୍ନ ରହନ୍ତି)। ଅଯୋଗୀ ବ୍ୟକ୍ତିକୁ ଯେପରି ମାଟି ଓ କାଠ ଇତ୍ୟାଦିରେ ନିର୍ମିତ ମୂର୍ତ୍ତି ପ୍ରତ୍ୟକ୍ଷ ପରି ମନେ ହୋଇଥାଏ, ଯୋଗୀମାନଙ୍କୁ ସେହିପରି ଈଶ୍ୱରଙ୍କ ସୂକ୍ଷ୍ମରୂପର ପ୍ରତ୍ୟକ୍ଷ ଦର୍ଶନ ହୋଇଥାଏ। ରାଜାଙ୍କୁ ନିଜ ଅନ୍ତଃପୁରର ସ୍ୱଜନ ପରିଜନ ଯେତେ ପ୍ରିୟ ହୋଇଥାନ୍ତି, ବାହାର ଲୋକ ସେତେ ପ୍ରିୟ ହୋଇ ନ ଥାନ୍ତି, ଠିକ୍ ସେହିପରି ଭଗବାନ ଶଙ୍କରଙ୍କୁ ଅନ୍ତଃକରଣରେ ଧ୍ୟାନ କରୁଥିବା ଭକ୍ତ ଯେତେ ପ୍ରିୟ ହୋଇଥାନ୍ତି, ବାହ୍ୟ କର୍ମକାଣ୍ଡୀ ଲୋକ ସେତେ ପ୍ରିୟ ହୋଇ ନ ଥାନ୍ତି। ଜଗତରେ ଦେଖାଯାଏ ଯେ ବାହ୍ୟ ଲୋକେ ରାଜାଙ୍କ ଭବନରେ ରାଜପୁରୁଷୋଚିତ ଫଳ ଉପଭୋଗ କରିପାରନ୍ତି ନାହିଁ, କେବଳ ଅନ୍ତଃପୁରର ଲୋକେ ହିଁ ତାହା ଭୋଗ କରିପାରିଥାନ୍ତି, ଠିକ୍ ସେହିପରି ଧ୍ୟାନଯୋଗୀକୁ ଯେଉଁ ଫଳ ସୁଲଭ ହୁଏ, ତାହା ବାହ୍ୟକର୍ମ କରୁଥିବା ପୁରୁଷକୁ ମିଳି ପାରେ ନାହିଁ।

କୌଣସି ବ୍ୟକ୍ତି ଜ୍ଞାନଯୋଗର ସାଧନା ପାଇଁ ଉଦ୍ୟତ ହୋଇ ଯଦି ଅଧାରୁ ମରିଯାଏ, ତେବେ ସେ ତା'ର ସେହି ଉଦ୍ୟମ ବଳରେ ହିଁ ରୁଦ୍ରଲୋକକୁ ଯିବ। ସେଠାରେ ଦିବ୍ୟ ସୁଖ ଉପଭୋଗ କରି ସେ ପୁନଃ ଯୋଗୀମାନଙ୍କ କୁଳରେ ଜନ୍ମ ନେବ ଏବଂ ପୁନଃ ଜ୍ଞାନଯୋଗ ପ୍ରାପ୍ତ ହୋଇ ସଂସାରସାଗରରୁ ପାର ହୋଇଯିବ। ଯୋଗର ଜିଜ୍ଞାସୁ ମଧ୍ୟ ଯେଉଁ ଗତି ଲାଭ କରେ, ତାହାକୁ ଯଜ୍ଞକର୍ତ୍ତା ସମସ୍ତ ମହାଯଜ୍ଞ ଅନୁଷ୍ଠାନ କରି ମଧ୍ୟ ପାଇ ପାରେ ନାହିଁ। କୋଟି କୋଟି ବେଦବେତ୍ତା ଦ୍ୱିଜଙ୍କୁ ପୂଜା କଲେ ଯେଉଁ ଫଳ ମିଳେ, ତାହା କେବଳ ଜଣେ ଶିବଯୋଗୀକୁ ଭିକ୍ଷା ଦେଲେ ମିଳିଯାଏ। ଯଜ୍ଞ, ଅଗ୍ନିହୋତ୍ର, ଦାନ, ତୀର୍ଥସେବନ ଓ ହୋମ—ଏ ସମସ୍ତ ପୁଣ୍ୟକର୍ମର ଅନୁଷ୍ଠାନ ଦ୍ୱାରା ବ୍ୟକ୍ତିକୁ ଯେଉଁ ଫଳ ମିଳେ, ସେହି ସମସ୍ତ ଫଳ କେବଳ ଶିବଯୋଗୀଙ୍କୁ ଅନ୍ନଦାନ ଦେବା ମାତ୍ରକେ ମିଳିଯାଏ। ଯେଉଁ ମୂଢ଼ ଲୋକେ ଶିବଯୋଗୀଙ୍କୁ ନିନ୍ଦା କରନ୍ତି, ସେମାନେ ତାହା ଶୁଣୁଥିବା ଲୋକଙ୍କ ସମେତ ନରକରେ ପଡ଼ନ୍ତି ଏବଂ ପ୍ରଳୟକାଳ ପର୍ଯ୍ୟନ୍ତ ସେଠାରେ ରହନ୍ତି। କେହି ଶ୍ରୋତା ଥିବାରୁ ହିଁ ତ ନିନ୍ଦୁକ ବକ୍ତା ଶିବନିନ୍ଦା କରିଥାଏ; ଅତଏବ

---

* ଯଥା ବହ୍ନିର୍ମହାଦୀପ୍ତଃ ଶୁଷ୍କମାର୍ଦ୍ରଂ ଚ ନିର୍ଦହେତ୍। ତଥା ଶୁଭାଶୁଭଂ କର୍ମ ଧ୍ୟାନାଗ୍ନିର୍ଦହତେ କ୍ଷଣାତ୍॥
ଧ୍ୟାୟତଃ କ୍ଷଣମାତ୍ରଂ ବା ଶ୍ରଦ୍ଧୟା ପରମେଶ୍ୱରମ୍। ଯଦ୍ଭବେତ୍ ସୁମହଚ୍ଛ୍ରେୟସ୍ତସ୍ୟାନ୍ତୋ ନୈବ ବିଦ୍ୟତେ॥
(ଶି. ପୁ., ବା. ସଂ., ଉ. ଖ. ୩୯। ୨୫ ଓ ୨୭)

ᵠ ନାସ୍ତି ଧ୍ୟାନସମଂ ତୀର୍ଥଂ ନାସ୍ତି ଧ୍ୟାନସମଂ ତପଃ। ନାସ୍ତି ଧ୍ୟାନରୂପୋ ଯଜ୍ଞସ୍ତସ୍ମାଦ୍ଧ୍ୟାନଂ ସମାଚରେତ୍॥
(ଶି. ପୁ., ବା. ସଂ., ଉ. ଖ. ୩୯। ୨୮)

ମହାପୁରୁଷଙ୍କ ମତରେ ସେହି ନିନ୍ଦାକୁ ଶୁଣୁଥିବା ବ୍ୟକ୍ତି ମଧ୍ୟ ଘୋର ପାପୀ ଓ ଦଣ୍ଡ ପାଇବାର ଯୋଗ୍ୟ । ଯେଉଁମାନେ ସର୍ବଦା ଭକ୍ତିଭାବରେ ଶିବଯୋଗୀମାନଙ୍କର ସେବା କରନ୍ତି, ସେମାନେ ମହାନ୍ ଭୋଗ ଉପଭୋଗ କରନ୍ତି ଏବଂ ଶେଷରେ ଶିବଯୋଗ ମଧ୍ୟ ଲାଭ କରନ୍ତି । ସେଥିପାଇଁ ଭୋଗାର୍ଥୀ ବ୍ୟକ୍ତି ଶିବଯୋଗୀଙ୍କୁ ରହିବାର ସ୍ଥାନ, ଭୋଜନ, ଶଯ୍ୟା ଇତ୍ୟାଦି ଉପଲବ୍ଧ କରାଇ ସର୍ବଦା ସେମାନଙ୍କ ସେବା-ସତ୍କାର କରିବା ଉଚିତ । ଯୋଗଧର୍ମ ଅତ୍ୟନ୍ତ ବଳବାନ୍, ଏଣୁ ପାପରୂପୀ ମୁଦ୍‌ଗରଦ୍ୱାରା ତାହାକୁ ଭେଦ କରାଯାଇ ପାରିବ ନାହିଁ । ବଜ୍ର ଓ ତନ୍ଦୁଳ ମଧ୍ୟରେ ଯେତେ ଅନ୍ତର, ଯୋଗଧର୍ମ ଓ ପାପ-ମୁଦ୍‌ଗର ମଧ୍ୟରେ ସେତିକି ଅନ୍ତର ଅଛି ବୋଲି ବୁଝିବା ଉଚିତ । ସେଥିପାଇଁ ଯୋଗୀଜନ ପଦ୍ମପତ୍ର ପାଣିରେ ଲିପ୍ତ ନ ହେବା ପରି ପାପତାପରେ ଲିପ୍ତ ହୁଅନ୍ତି ନାହିଁ ।

ଶିବଯୋଗପରାୟଣ ମୁନି ଯେଉଁ ସ୍ଥାନରେ ନିତ୍ୟ ନିବାସ କରନ୍ତି, ସେହି ସ୍ଥାନ ବି ପବିତ୍ର ହୋଇଯାଏ । ପୁଣି ସ୍ୱୟଂ ତାଙ୍କର ପବିତ୍ରତା ସମ୍ବନ୍ଧରେ ଅଧିକ କ'ଣ ବା କହିବା? ତେଣୁ ଚତୁର ଓ ବିଦ୍ୱାନ୍ ବ୍ୟକ୍ତି ସମସ୍ତ କୃତ୍ୟକୁ ଛାଡ଼ି ସକଳ ଦୁଃଖରୁ ତ୍ରାଣ ପାଇବା ନିମନ୍ତେ ଶିବଯୋଗ ଅଭ୍ୟାସ କରିବା ଆବଶ୍ୟକ । ଯେଉଁ ଯୋଗୀଙ୍କର ଯୋଗଫଳ ସିଦ୍ଧ ହୋଇଯାଇଛି, ସେ ଯଥେଷ୍ଟ ଭୋଗ ଉପଭୋଗ କରି ସମଗ୍ର ଜଗତର ହିତକାମନାରେ ସଂସାରରେ ବିଚରଣ କରିପାରନ୍ତି ବା ନିଜ ସ୍ଥାନରେ ହିଁ ରହିପାରନ୍ତି ଅଥବା ବିଷୟସୁଖକୁ ଅତ୍ୟନ୍ତ ତୁଚ୍ଛ ମଣି ଛାଡ଼ି ଦେଇପାରନ୍ତି ନଚେତ୍ ବୈରାଗ୍ୟଯୋଗରେ ସ୍ୱେଚ୍ଛାପୂର୍ବକ କର୍ମମାନ ପରିତ୍ୟାଗ କରିଦେଇ ପାରନ୍ତି । ଯେଉଁ ବ୍ୟକ୍ତି ଅନେକ ଅରିଷ୍ଟ ଦେଖି ନିଜ ମୃତ୍ୟୁକୁ ସମୀପବର୍ତ୍ତୀ ଅନୁଭବ କରେ, ସେ ଯୋଗାନୁଷ୍ଠାନରେ ସଂଲଗ୍ନ ହୋଇ ଶିବକ୍ଷେତ୍ରର ଆଶ୍ରୟ ନେବା ଉଚିତ । ଯଦି ଧୀରଚିତ୍ତ ହୋଇ ସେ ସେଠାରେ ନିବାସ କରିବ, ତେବେ ରୋଗାଦି ବିନା ମଧ୍ୟ ସ୍ୱୟଂ ପ୍ରାଣ ପରିତ୍ୟାଗ କରିପାରିବ । ଅନଶନ (ଭୋଜନତ୍ୟାଗ) କରି, ଶିବାଗ୍ନିରେ ଶରୀରକୁ ଆହୁତି ଦେଇ ଅଥବା ଶିବତୀର୍ଥରେ ଅବଗାହନ-ପୂର୍ବକ ନିଜ ଶରୀରକୁ ଜଳରେ ବିସର୍ଜିତ କରି ଶିବଶାସ୍ତ୍ରୋକ୍ତ ବିଧିରେ ଯିଏ ନିଜ ପ୍ରାଣତ୍ୟାଗ କରେ, ସେ ଯେ ଅବିଳମ୍ବେ ମୁକ୍ତ ହୋଇଯାଏ, ଏଥିରେ ସନ୍ଦେହର ଅବକାଶ ନାହିଁ । ରୋଗାଦିରେ ବିବଶ ହୋଇ ଶିବକ୍ଷେତ୍ରର ଶରଣ ନେଉଥିବା ବ୍ୟକ୍ତିର ଯଦି ସେଠାରେ ମୃତ୍ୟୁ ହୋଇଯାଏ, ସେ ମଧ୍ୟ ନିଶ୍ଚୟ ସେହିପରି ମୁକ୍ତ ହୋଇଥାଏ । ତେଣୁ ଲୋକେ ଭୋଜନାଦି ତ୍ୟାଗ କରି ଶିବକ୍ଷେତ୍ରରେ ଶ୍ରେଷ୍ଠ ମରଣର କାମନା କରିଥାନ୍ତି; କାରଣ ଶାସ୍ତ୍ରବିଶ୍ୱାସପରାୟଣ ଧୀର ମନଦ୍ୱାରା ଏତାଦୃଶ ମୃତ୍ୟୁକୁ ବରଣ କରାଯାଏ । ଯେ ଶିବଙ୍କ ପାଇଁ ଅଥବା ଶିବଭକ୍ତଙ୍କ ପାଇଁ ପ୍ରାଣତ୍ୟାଗ କରେ, ତା'ପରି ଅନ୍ୟ କେହି ମୁକ୍ତିମାର୍ଗରେ ସ୍ଥିତ ନୁହେଁ । ଏହି କାରଣରୁ ତାହାର ଖୁବ୍ ଶୀଘ୍ର ଏ ସଂସାରମଣ୍ଡଳରୁ ମୁକ୍ତି ହୋଇଯାଏ । ଏଥିମଧ୍ୟରୁ କୌଣସି ଗୋଟିଏ ଉପାୟକୁ ଯେକୌଣସି ପ୍ରକାରେ ଅବଲମ୍ବନ କରି ଅଥବା ବିଧିବତ୍ ଷଡଧ୍ୱଶୋଧନ କରି ଯଦି କେହି ମୃତ୍ୟୁବରଣ କରେ, ତା'ପାଇଁ ଅନ୍ୟ ପ୍ରାଣୀଙ୍କ ପରି ଏଠାରେ ଔର୍ଦ୍ଧ୍ୱଦୈହିକ ସଂସ୍କାର କରିବାର ଆବଶ୍ୟକତା ନାହିଁ । ବିଶେଷତଃ ତାହାର ପୁତ୍ରାଦିଙ୍କୁ ତା'ର ମୃତ୍ୟୁରେ ଅଶୌଚ

ଲାଗେ ନାହିଁ । ଏପରି ବ୍ୟକ୍ତିର ମୃତ ଶରୀରକୁ ମାଟିରେ ପୋତି ଦିଆଯାଉ ବା ପବିତ୍ର ଅଗ୍ନିରେ ଦାହ କରିଦିଆଯାଉ ଅଥବା ଶିବରୂପଜଳରେ ବିସର୍ଜିତ କରି ଦିଆଯାଉ ଅଥବା ଟେକା ବା କାଠ ପରି କେଉଁଠି ଫୋପାଡ଼ି ଦିଆଯାଉ, ତା'ପାଇଁ ସବୁ କିଛି ସମାନ । ଏପରି ବ୍ୟକ୍ତି ପାଇଁ ଯଦି କୌଣସି କର୍ମ କରିବାକୁ କାହାର ଇଚ୍ଛା ହୁଏ, ସେ ଅନ୍ୟମାନଙ୍କର କଲ୍ୟାଣ କରିବା ଉଚିତ ଏବଂ ନିଜ ଶକ୍ତି ଅନୁସାରେ ଶିବଭକ୍ତଙ୍କୁ ତୃପ୍ତ କରିବା ଉଚିତ । ତାହାର ଧନକୁ ଶିବଭକ୍ତ ହିଁ ଗ୍ରହଣ କରିବା ବିଧେୟ । ଯଦି ତାହାର ସନ୍ତାନ ଶିବଭକ୍ତ ହୋଇଥିବେ, ତେବେ ସେମାନେ ମଧ୍ୟ ଗ୍ରହଣ କରି ପାରିବେ । ଏହା ନ ହୋଇଥିଲେ ତାହାର ଧନକୁ ଶିବଙ୍କୁ ସମର୍ପି ଦେବା ଉଚିତ । କିନ୍ତୁ ତାହାର ପଶୁସନ୍ତତି (ଶିବଭକ୍ତିବିହୀନ ସନ୍ତାନ) ସେହି ଧନକୁ ଗ୍ରହଣ ନ କରିବା ବିଧେୟ ।

(ଅଧ୍ୟାୟ ୩୯)



## ବାୟୁଦେବଙ୍କ ଅନ୍ତର୍ଦ୍ଧାନ, ଋଷିଗଣଙ୍କର ସରସ୍ୱତୀରେ ଅବଭୃଥ ସ୍ନାନ ଓ କାଶୀରେ ଦିବ୍ୟ ତେଜର ଦର୍ଶନ ଲାଭ କରି ବ୍ରହ୍ମାଙ୍କ ନିକଟକୁ ଗମନ, ବ୍ରହ୍ମା ସେମାନଙ୍କୁ ସିଦ୍ଧିପ୍ରାପ୍ତିର ସୂଚନା ଦେଇ ମେରୁପର୍ବତର କୁମାରଶିଖରକୁ ପଠାଇବା ପ୍ରସଙ୍ଗ

ସୂତ କହୁଛନ୍ତି—ଏହିରୂପେ କ୍ରୋଧଜୟୀ ଉପମନ୍ୟୁଙ୍କ ଠାରୁ ଯଦୁକୁଳନନ୍ଦନ ଶ୍ରୀକୃଷ୍ଣ ଯେଉଁ ଜ୍ଞାନଯୋଗ ଲାଭ କରିଥିଲେ, ତାହା ପ୍ରଣତଭାବରେ ଉପବିଷ୍ଟ ମୁନିମାନଙ୍କୁ ଉପଦେଶ ଦେଇ ଆତ୍ମଦର୍ଶୀ ବାୟୁଦେବ ସାୟଂକାଳରେ ଆକାଶମାର୍ଗରେ ଅନ୍ତର୍ହିତ ହୋଇଗଲେ । ତା'ପରେ ସକାଳୁ ସକାଳୁ ନୈମିଷାରଣ୍ୟର ସମସ୍ତ ତପସ୍ୱୀ ମୁନି ସତ୍ର ଶେଷରେ ଅବଭୃଥ ସ୍ନାନ କରିବାକୁ ଉଦ୍ୟତ ହେଲେ । ସେତେବେଳେ ବ୍ରହ୍ମାଙ୍କ ଆଦେଶରେ ସାକ୍ଷାତ୍ ସରସ୍ୱତୀଦେବୀ ସ୍ୱାଦିଷ୍ଟ ଜଳରେ ପୂର୍ଣ୍ଣ, ସ୍ୱଚ୍ଛ ଓ ସୁନ୍ଦର ନଦୀରୂପରେ ସେଠାରେ ପ୍ରବାହିତ ହେଲେ । ସରସ୍ୱତୀ ନଦୀକୁ ଦେଖି ମୁନିମାନେ ମନେ ମନେ ବହୁତ ଆନନ୍ଦିତ ହେଲେ । ସେମାନେ ସତ୍ର ସମାପ୍ତ କରି ସେଥିରେ ଅବଗାହନ କଲେ । ନଦୀର ମଙ୍ଗଳମୟ ଜଳରେ ଦେବତା ପ୍ରଭୃତିଙ୍କୁ ତର୍ପଣ କରି ପୂର୍ବବୃତ୍ତାନ୍ତକୁ ସ୍ମରଣ କରିବା ସହ ସମସ୍ତେ ବାରାଣସୀପୁରୀ ଅଭିମୁଖେ ଯାତ୍ରା କଲେ । ସେତେବେଳେ ହିମାଳୟର ପାଦଦେଶରୁ ବାହାରି ଦକ୍ଷିଣ ଆଡ଼କୁ ବହୁଥିବା ଭାଗୀରଥୀଙ୍କୁ ଦର୍ଶନ କରି ସେହି ଋଷିମାନେ ସେଥିରେ ସ୍ନାନ କଲେ ଏବଂ ତାହାରି କୂଳେ କୂଳେ ଆଗକୁ ବଢ଼ିଲେ । ତା'ପରେ ବାରାଣସୀରେ ପହଞ୍ଚି ସେମାନଙ୍କୁ ବହୁତ ଆନନ୍ଦ ଅନୁଭବ ହେଲା । ସେଠାରେ ଉତ୍ତରବାହିନୀ ଗଙ୍ଗାରେ ସ୍ନାନ କରି ସେମାନେ ଅବିମୁକ୍ତେଶ୍ୱର ଲିଙ୍ଗର ଦର୍ଶନ-ପୂଜନ କଲେ । ପୂଜା ସାରି ସେମାନେ ସେଠାରୁ ବାହାରିବାବେଳେ ଆକାଶରେ ଗୋଟିଏ ଦିବ୍ୟ ଓ ପରମ ଅଦ୍ଭୁତ ଉଜ୍ଜ୍ୱଳ ଜ୍ୟୋତି ଦେଖିବାକୁ ପାଇଲେ, ଯାହା କୋଟି ସୂର୍ଯ୍ୟତୁଲ୍ୟ ଭାସ୍ୱର ଥିଲା । ତାହା ସମଗ୍ର ଦିଗନ୍ତକୁ ଉଦ୍ଭାସିତ କରୁଥିଲା । ଏହାପରେ ଯେଉଁ ସିଦ୍ଧ ପାଶୁପତ ମୁନିଗଣ ନିଜ ଶରୀରରେ

ଭସ୍ମ ଲେପନ କରିଥିଲେ, ସେମାନେ ଶହ ଶହ ସଂଖ୍ୟାରେ ସେହି ଜ୍ୟୋତି ନିକଟକୁ ଯାଇ ସେଥିରେ ଲୀନ ହୋଇଗଲେ । ତପସ୍ୱୀମାନେ ଏପରି ଲୀନ ହୋଇଯିବା ପରେ ସେହି ଜ୍ୟୋତି ଅଦୃଶ୍ୟ ହୋଇଗଲା । ତାହା ଥିଲା ଏକ ଅଦ୍ଭୁତ ଘଟଣା । ଏପରି ଆଶ୍ଚର୍ଯ୍ୟଜନକ ଘଟଣା ଦେଖି ନୈମିଷାରଣ୍ୟର ମହର୍ଷିମାନେ 'ତାହା କଣ ଥିଲା' ଜାଣି ନ ପାରି ବ୍ରହ୍ମବନ ଅଭିମୁଖେ ଯାତ୍ରା କଲେ ।

ସେମାନେ ପହଞ୍ଚିବା ପୂର୍ବରୁ ଲୋକପାବନ ପବନଦେବ ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହୋଇ ନୈମିଷାରଣ୍ୟବାସୀ ଋଷିମାନଙ୍କ ସହିତ ତାଙ୍କର ଯେପରି ସାକ୍ଷାତ୍କାର ହେଲା, ଯେପରି ସେମାନଙ୍କ ସଙ୍ଗେ କଥାବାର୍ତ୍ତା ହେଲା, ସେହି ଋଷିମାନଙ୍କ ଶୁଦ୍ଧବୁଦ୍ଧି ଯେପରି ସପାର୍ଷଦ ସାମ୍ବ ସଦାଶିବଙ୍କ ଠାରେ ସଂଲଗ୍ନ ଥିଲା ଏବଂ ଯେପରି ସେହି ଯଜ୍ଞପରାୟଣ ଋଷିମାନଙ୍କର ଦୀର୍ଘକାଳୀନ ଯଜ୍ଞ ପୂର୍ଣ୍ଣ ହୋଇଥିଲା, ସେସବୁ କଥା ଜଗତ୍‌ସ୍ରଷ୍ଟା ବ୍ରହ୍ମଯୋନି ବ୍ରହ୍ମାଙ୍କୁ କହିଲେ । ତା'ପରେ ସେ ତାଙ୍କ ଠାରୁ ଆଜ୍ଞା ନେଇ ନିଜ କାର୍ଯ୍ୟରେ ବାହାରିଗଲେ । ତା'ପରେ ବ୍ରହ୍ମା ନିଜ ଆସନରେ ବିରାଜମାନ ହୋଇ ଗାନକଳାରେ ସ୍ପର୍ଦ୍ଧା କରୁଥିବା ତୁମ୍ବୁରୁ ଓ ନାରଦଙ୍କ ଠାରୁ ସଂଗୀତରସ ଆସ୍ୱାଦନ କରିବା ସହିତ ସେଠାରେ ମଧ୍ୟସ୍ଥତା କରିବାକୁ ଲାଗିଲେ । ସେତେବେଳେ ସେ ଗନ୍ଧର୍ବ ଓ ଅପ୍ସରାଗଣଙ୍କ ଦ୍ୱାରା ସେବିତ ହୋଇ ସୁଖପୂର୍ବକ ବିଦ୍ୟମାନ ଥିଲେ । ସେହି ସମୟରେ କୌଣସି ବାହାର ବ୍ୟକ୍ତିକୁ ସେଠାକୁ ଯିବାକୁ ଅନୁମତି ନ ଥିଲା । ସେତିକିବେଳେ ନୈମିଷାରଣ୍ୟ ମୁନିମାନେ ସେଠାରେ ପହଞ୍ଚିବାରୁ ଦ୍ୱାରପାଳମାନେ ସେମାନଙ୍କୁ ଦ୍ୱାରଦେଶରେ ଅଟକାଇ ଦେଲେ । ମୁନିମାନେ ବ୍ରହ୍ମଭବନର ବାହାରେ ଗୋଟିଏ କଡ଼ରେ ବସିଗଲେ । ଏଣେ ସଂଗୀତ ପ୍ରତିଯୋଗିତାରେ ନାରଦ ତୁମ୍ବୁରୁଙ୍କର ସମାନତା ପ୍ରାପ୍ତ ହେଲେ । ତେଣୁ ପରମେଷ୍ଠୀ ବ୍ରହ୍ମା ତାଙ୍କୁ ତୁମ୍ବୁରୁଙ୍କ ସଙ୍ଗରେ ରହିବାକୁ ଆଜ୍ଞା ଦେଲେ ଏବଂ ସେମାନେ ପାରସ୍ପରିକ ପ୍ରତିସ୍ପର୍ଦ୍ଧା ତ୍ୟାଗ କରି ପରମ ମିତ୍ର ହୋଇଗଲେ । ତା'ପରେ ଗନ୍ଧର୍ବ ଓ ଅପ୍ସରାଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ନାରଦ ନକୁଳେଶ୍ୱର ମହାଦେବଙ୍କୁ ବୀଣାନାଦ ଶୁଣାଇ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ତୁମ୍ବୁରୁଙ୍କ ସଙ୍ଗରେ ବାଦଲ ଆଢୁଆଳରୁ ସୂର୍ଯ୍ୟ ବାହାରିଲା ପରି ବ୍ରହ୍ମଭବନରୁ ବାହାରିଲେ ।

ସେତିକିବେଳେ ମୁନିବର ନାରଦଙ୍କୁ ଦେଖି ସେହି ଷଟ୍‌କୁଳୋଦ୍ଭବ ଋଷିମାନେ ପ୍ରଣାମ କଲେ ଏବଂ ସସମ୍ମାନ ବ୍ରହ୍ମାଙ୍କ ସଙ୍ଗେ ଭେଟିବାର ସମୟ ପଚାରିଲେ । ନାରଦଙ୍କ ଚିତ୍ତ ସେତେବେଳେ ଅନ୍ୟତ୍ର ସଂଲଗ୍ନ ଥିଲା, ସେ ବ୍ୟସ୍ତ ଥିଲେ । ତେଣୁ ସେ କହିଦେଲେ, "ଏହା ହିଁ ସମୟ, ଆପଣମାନେ ଭିତରକୁ ଯାଆନ୍ତୁ ।" ଏତିକି କହିଦେଇ ସେ ଚାଲିଗଲେ । ତା'ପରେ ଦ୍ୱାରପାଳମାନେ ବ୍ରହ୍ମାଙ୍କୁ ଋଷିମାନଙ୍କ ଆଗମନର ସୂଚନା ଦେଲେ । ତାଙ୍କ ଆଜ୍ଞା ପାଇ ସେମାନେ ଏକସଙ୍ଗରେ ବ୍ରହ୍ମାଙ୍କ ଭବନରେ ପ୍ରବେଶ କଲେ । ଭିତକୁ ଯାଇ ସେମାନେ ଦୂରରୁ ହିଁ ଭୂମିଷ୍ଠ ଦଣ୍ଡବତ୍ ପ୍ରଣାମ କଲେ । ତା'ପରେ ଆଦେଶ ପାଇ ସେମାନେ ତାଙ୍କ ସମୀପକୁ ଗଲେ ଏବଂ ତାଙ୍କୁ ଘେରି ବସିଗଲେ । ସେମାନଙ୍କୁ କମଳାସନ ବ୍ରହ୍ମା କୁଶଳବାର୍ତ୍ତା ପଚାରିଲେ ଏବଂ କହିଲେ, "ମୋତେ ତୁମମାନଙ୍କର ସବୁ କଥା ଜଣା । ବାୟୁଦେବ ଆସି ସବୁ କଥା କହିଛନ୍ତି । ଏବେ କୁହ ଯେ ବାୟୁଦେବ ତୁମମାନଙ୍କୁ କଥା-ଆଖ୍ୟାନ

ଶୁଣାଇ ସାରି ଅଦୃଶ୍ୟ ହୋଇଯିବା ପରେ ତୁମେମାନେ କ'ଣ କଲ ?''

ଦେବେଶ୍ୱର ବ୍ରହ୍ମାଙ୍କ ପ୍ରଶ୍ନର ଉତ୍ତରରେ ସେମାନେ କହିଲେ ଯେ ସେମାନେ ଅବଭୃଥ ସ୍ନାନ କରିବା ପରେ ଗଙ୍ଗାତୀର୍ଥକୁ ଗଲେ, ବାରାଣସୀ ଯାତ୍ରା କଲେ, ସେଠାରେ ଦେବେଶ୍ୱରଙ୍କ ଦ୍ୱାରା ସ୍ଥାପିତ ଶିବଲିଙ୍ଗ ଓ ଅବିମୁକ୍ତେଶ୍ୱରଲିଙ୍ଗର ଅର୍ଚ୍ଚନା କଲେ, ଆକାଶରେ ସେମାନଙ୍କୁ ପରମ ତେଜଃପୁଞ୍ଜର ଦର୍ଶନ ମିଳିଲା ଏବଂ କତିପୟ ମହର୍ଷି ସେଥିରେ ଲୀନ ହୋଇଗଲେ ଏବଂ ତା'ପରେ ସେହି ତେଜ ମଧ୍ୟ ଆକାଶରେ ବିଲୀନ ହୋଇଗଲା । ଏସବୁ କଥା ସେମାନେ ବ୍ରହ୍ମାଙ୍କ ଆଗରେ ସସମ୍ମାନ ବିସ୍ତାରପୂର୍ବକ ବର୍ଣ୍ଣନା କଲେ । ତା'ଛଡ଼ା ସେମାନେ ଏହା ମଧ୍ୟ କହିଲେ, ''ଆମେ ନିଜ ମନ ମଧ୍ୟରେ ବହୁତ ପ୍ରକାର ବିଗ୍ରହ କରି ସୁଦ୍ଧା ସେହି ତେଜ ବିଷୟରେ କିଛି ଜାଣି ପାରିଲୁ ନାହିଁ ।'' ମୁନିମାନଙ୍କ କଥା ଶୁଣି ବିଶ୍ୱସ୍ରଷ୍ଟା ଚତୁର୍ମୁଖ ବ୍ରହ୍ମା ଟିକିଏ ମୁଣ୍ଡ ହଲାଇ ଗମ୍ଭୀର ବାଣୀରେ କହିଲେ– ''ମହର୍ଷିଗଣ ! ତୁମମାନଙ୍କୁ ପରମୋତ୍ତମ ପାରଲୌକିକ ସିଦ୍ଧି ପ୍ରାପ୍ତି ହେବାର ସମୟ ନିକଟ ହୋଇ ଆସିଲାଣି । ତୁମେମାନେ ଦୀର୍ଘକାଳୀନ ସତ୍ର ଦ୍ୱାରା ପ୍ରଭୁଙ୍କୁ ଚିର ଆରାଧନା କରିଛ । ତେଣୁ ସେ ପ୍ରସନ୍ନ ହୋଇ ତୁମମାନଙ୍କ ଉପରେ କୃପା କରିବାକୁ ଉତ୍ସୁକ । ତୁମେ ବାରାଣସୀରେ ଆକାଶରେ ଯେଉଁ ଦୀପ୍ତିମାନ୍ ଦିବ୍ୟ ତେଜଃପୁଞ୍ଜର ଦର୍ଶନ ପାଇଲ, ସେଥିରୁ ଏହି କଥା ସୂଚିତ ହେଉଛି । ତାହା ସାକ୍ଷାତ୍ ଜ୍ୟୋତିର୍ମୟ ଲିଙ୍ଗ ହିଁ ଥିଲା; ତାହାକୁ ମହେଶ୍ୱରଙ୍କର ଉତ୍କୃଷ୍ଟ ତେଜ ବୋଲି ବୁଝ । ଯେଉଁ ମୁନିମାନେ ପୂର୍ଣ୍ଣତଃ ସ୍ୱଧର୍ମନିଷ୍ଠ ଥିଲେ ତଥା ଯେଉଁମାନେ ନିଜ ପାପକୁ ଦଗ୍ଧୀଭୂତ କରି ସାରିଥିଲେ, ସେମାନେ ସେହି ତେଜରେ ଲୀନ ହୋଇଗଲେ । ସେମାନେ ସେଥିରେ ଲୀନ ହୋଇ ସ୍ୱସ୍ଥ ଓ ମୁକ୍ତ ହୋଇଗଲେ । ସେହି ମାର୍ଗରେ ତୁମମାନଙ୍କୁ ମଧ୍ୟ ଅଚିରେ ମୁକ୍ତି ମିଳିବ । ତୁମମାନଙ୍କୁ ହୋଇଥିବା ତେଜଃପୁଞ୍ଜ ଦର୍ଶନରୁ ଏହି କଥା ସୂଚିତ ହେଉଛି । ଦୈବବଶତଃ ତୁମମାନଙ୍କ ପାଇଁ ସେହି ସମୟ ଉପସ୍ଥିତ ହୋଇଗଲାଣି । ତୁମେମାନେ ଏବେ ଦେବଗଣସେବିତ ମେରୁପର୍ବତର ଦକ୍ଷିଣ ଶିଖରକୁ ଯାଅ । ସେଠାରେ ମୋ ପୁତ୍ର ମୁନିବର ସନତ୍କୁମାର ନିବାସ କରୁଛନ୍ତି । ସେ ସାକ୍ଷାତ୍ ଭୂତନାଥ ନନ୍ଦୀଙ୍କ ଆଗମନର ପ୍ରତୀକ୍ଷାରେ ଅଛନ୍ତି ।

ପୂର୍ବକାଳର କଥା । ଏକଦା ସନତ୍କୁମାର ଅଜ୍ଞାନବଶତଃ ନିଜକୁ ସମସ୍ତ ଯୋଗୀଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ମାନି ନେଇଥିଲେ । ସେଥିପାଇଁ ସେ ଦୁର୍ବିନୀତ ହୋଇଯାଇଥିଲେ । ଏଣୁ ସେ ପରମେଶ୍ୱର ଶିବଙ୍କୁ ସମ୍ମୁଖରେ ଦେଖି ସୁଦ୍ଧା ତାଙ୍କୁ ଯଥୋଚିତ ସତ୍କାର କଲେ ନାହିଁ । ସେ ନିଜ ସ୍ଥାନରେ ନିର୍ଭୟରେ ବସି ରହିଲେ । ତାଙ୍କର ଏହି ଅପରାଧରେ ନନ୍ଦୀ କୁପିତ ହୋଇ ତାଙ୍କୁ ବହୁତ ବଡ଼ ଓଟ କରିଦେଲେ । ଏ କଥା ଜାଣି ମୋତେ ବହୁତ ଦୁଃଖ ହେଲା । ମୁଁ ଦୀର୍ଘକାଳ ପର୍ଯ୍ୟନ୍ତ ମହାଦେବ ଓ ମହାଦେବୀଙ୍କ ଉପାସନା କରିବା ସହ ନନ୍ଦୀଙ୍କୁ ମଧ୍ୟ ବହୁତ ଅନୁନୟ ବିନୟ କଲି । ଏହିରୂପେ ବହୁ ଚେଷ୍ଟା କରି ମୁଁ କୌଣସି ପ୍ରକାରେ ତାଙ୍କୁ ଓଟ ଯୋନିରୁ ମୁକ୍ତ କଲି । ତାଙ୍କୁ ପୁନଃ ପୂର୍ବବତ୍ ସନତ୍କୁମାର ରୂପ ମିଳିଲା । ସେତେବେଳେ ମହାଦେବ ସ୍ମିତହାସ୍ୟପୂର୍ବକ ତାଙ୍କ ଗଣାଧ୍ୟକ୍ଷ ନନ୍ଦୀଙ୍କୁ କହିଲେ–''ଅନଘ ! ସନତ୍କୁମାର ମୁନି ମୋତେ ଅବହେଳନା କରି ନିଜର ଅହଂକାର ପ୍ରକାଶ

କରିଥିଲେ, ତେଣୁ ତୁମେ ତାଙ୍କୁ ମୋର ଯଥାର୍ଥ ସ୍ୱରୂପ ବିଷୟରେ ଉପଦେଶ ଦିଅ। ବ୍ରହ୍ମାଙ୍କ ଜ୍ୟେଷ୍ଠ ପୁତ୍ର ମୃତ୍ୟୁ ପରି ମୋତେ ସ୍ମରଣ କରୁଛନ୍ତି, ତେଣୁ ମୁଁ ତାଙ୍କୁ ତୁମର ଶିଷ୍ୟରୂପେ ପ୍ରଦାନ କରୁଛି; ତୁମଠାରୁ ଉପଦେଶ ପାଇ ସେ ମୋର ଶିବଜ୍ଞାନର ପ୍ରବର୍ତ୍ତକ ହେବେ ଏବଂ ସେ ହିଁ ତୁମକୁ ଧର୍ମାଧ୍ୟକ୍ଷ ପଦରେ ଅଭିଷିକ୍ତ କରିବେ।''

ମହାଦେବ ଏପରି କହିବାରୁ ସମସ୍ତ ଭୂତଗଣଙ୍କ ଅଧ୍ୟକ୍ଷ ନନ୍ଦୀ ସକାଳୁ ସକାଳୁ ନତମସ୍ତକ ହୋଇ ସ୍ୱାମୀଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କଲେ ଏବଂ ଏବେ ସନତ୍କୁମାର ମଧ୍ୟ ମୋ ଆଜ୍ଞାରେ ଗଣରାଜ ନନ୍ଦୀଙ୍କୁ ପ୍ରସନ୍ନ କରିବା ପାଇଁ ମେରୁ ପର୍ବତରେ ଦୁଷ୍କର ତପସ୍ୟା କରୁଛନ୍ତି। ଗଣାଧ୍ୟକ୍ଷ ନନ୍ଦୀଙ୍କ ସମାଗମ ପୂର୍ବରୁ ହିଁ ତୁମେମାନେ ସନତ୍କୁମାରଙ୍କ ସଙ୍ଗେ ଭେଟ କର; କାରଣ ତାଙ୍କ ଉପରେ କୃପା କରିବା ପାଇଁ ନନ୍ଦୀ ଶୀଘ୍ର ସେଠାକୁ ଆସିବେ।

ବିଶ୍ୱଯୋନି ବ୍ରହ୍ମା ଏପରି ଆଦେଶ ଦେଇ ପଠାଇବାରୁ ମୁନିମାନେ ଅବିଳମ୍ବେ ମେରୁ ପର୍ବତର ଦକ୍ଷିଣବର୍ତ୍ତୀ କୁମାର-ଶିଖର ଅଭିମୁଖେ ଯାତ୍ରା କଲେ। (ଅଧ୍ୟାୟ ୪୦)



## ମେରୁଗିରିର ସ୍କନ୍ଦସରୋବର ତଟରେ ମୁନିମାନଙ୍କର ସନତ୍କୁମାରଙ୍କ ସଙ୍ଗେ ଭେଟ, ନନ୍ଦୀଙ୍କର ସେଠାକୁ ଆଗମନ ଓ ଦୃଷ୍ଟିପାତ ମାତ୍ରକେ ପାଶଛେଦନ ଏବଂ ଜ୍ଞାନଯୋଗର ଉପଦେଶ ଦେବା ପରେ ପ୍ରସ୍ଥାନ, ଶିବପୁରାଣର ମହିମା ଏବଂ ଗ୍ରନ୍ଥର ଉପସଂହାର

ସୂତ କହୁଛନ୍ତି–ମେରୁପର୍ବତ ଉପରେ ସମୁଦ୍ର ପରି ଗୋଟିଏ ବିଶାଳ ସରୋବର ଅଛି, ଯାହାର ନାମ ସ୍କନ୍ଦସର ଅଟେ। ତାହାର ଜଳ ଅମୃତ ତୁଲ୍ୟ ସ୍ୱାଦିଷ୍ଟ, ଶୀତଳ, ସ୍ୱଚ୍ଛ, ଅଗାଧ ଓ ହାଲୁକା। ଚତୁର୍ଦିଗରେ ସ୍ଫଟିକମଣି ଶିଳାଖଣ୍ଡର ବେଷ୍ଟନୀ ମଧ୍ୟରେ ସେହି ସରୋବର ରହିଛି। ତାହାକୁ ଗ୍ରିପଟରେ ଆଚ୍ଛାଦିତ କରି ରଖିଛନ୍ତି ସବୁଋତୁରେ ଫୁଲରେ ଲଦି ହୋଇ ରହୁଥିବା ବୃକ୍ଷପଂକ୍ତି। ଶୈବାଳ, ଉତ୍ପଳ, କମଳ ଓ କୁମୁଦ ପୁଷ୍ପମାନ ସେଥିରେ ତାରାଗଣ ପରି ଶୋଭା ପାଉଥାନ୍ତି ଏବଂ ଲହରି ବାଦଲ ପରି ତରଙ୍ଗାୟିତ ହେଉଥାଏ, ଯାହାଫଳରେ ଆକାଶ ପୃଥିବୀପୃଷ୍ଠକୁ ଓହ୍ଲାଇ ଆସିଥିବା ପରି ମନେ ହେଉଥାଏ। ସହଜରେ ସରୋବର ଭିତରକୁ ଯିବା ପାଇଁ ଓ ଉପରକୁ ଆସିବା ପାଇଁ ଅନେକ ଘାଟ ଓ ପାହାଚ ନିର୍ମିତ ହୋଇଥାଏ। ସେଠାକାର ଭୂମି ନୀଳବର୍ଣ୍ଣର ଶିଳାରେ ଆଚ୍ଛନ୍ନ। ଉକ୍ତ ସରୋବରଟି ଅଷ୍ଟଦିଗରୁ ଅତ୍ୟନ୍ତ ଶୋଭନୀୟ ଦୃଶ୍ୟ ହୁଏ। ଅନେକ ଲୋକ ସେଠାରେ ସ୍ନାନ କରିବାକୁ ଯାଆନ୍ତି ଏବଂ ସ୍ନାନ ସାରି ଫେରି ଆସନ୍ତି। ଅନେକ ଶ୍ୱେତ ଉପବୀତଧାରୀ, ଉଜ୍ଜ୍ୱଳ କୌପୀନଧାରୀ, ବଲ୍କଲଧାରୀ, ଜଟାଧାରୀ ବା ଶିଖାଧାରୀ ଅଥବା ଲଣ୍ଡିତମସ୍ତକ ବୈରାଗ୍ୟବିମଳ ମୁନିକୁମାର ସେଠାରେ ସ୍ନାନ ସାରି ତ୍ରିପୁଣ୍ଡ୍ର ଧାରଣ କରି ସସ୍ମିତ ବଦନରେ ଫେରିଲାବେଳେ କଳଶରେ, କମଣ୍ଡଳୁରେ ଏବଂ ପଦ୍ମପତ୍ରରେ ନିଜ

ପାଇଁ ବା ଅନ୍ୟମାନଙ୍କ ପାଇଁ, ବିଶେଷତଃ ପୂଜା ଉଦ୍ଦେଶ୍ୟରେ ନିତ୍ୟ ସେଠାରୁ ଜଳ ଓ ଫୁଲ ନିଅନ୍ତି । ସେଠାରେ ଇଷ୍ଟ ଓ ଶିଷ୍ଟ ବ୍ୟକ୍ତିମାନେ ସ୍ନାନ କରିବାର ଦେଖାଯାଆନ୍ତି । ସରୋବର କୂଳରେ ଥିବା ଶିଳାଗୁଡ଼ିକ ଉପରେ ଉପଯୋଗ ହୋଇଥିବା ତିଳ, ଅକ୍ଷତ, ଫୁଲ ଓ କୁଶ ଇତ୍ୟାଦି ଦୃଷ୍ଟିଗୋଚର ହେଉଥାଏ । ସ୍ଥାନେ ସ୍ଥାନେ ଅନେକ ପ୍ରକାର ପୁଷ୍ପବଳି ଇତ୍ୟାଦି ଦିଆହୁଏ । କେହି ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦିଏ ତ ଆଉ କେହି ବେଦି ଉପରେ ବସି ପୂଜା ଇତ୍ୟାଦି କରେ ।

ଏପରି ମନୋହର ସରୋବରର ଉତ୍ତର ତଟରେ ଗୋଟିଏ କଳ୍ପବୃକ୍ଷ ତଳେ ହୀରକ ଶିଳାରେ ନିର୍ମିତ ବେଦି ଉପରେ କୋମଳ ମୃଗଚର୍ମ ବିଛାଇ ଶାଶ୍ୱତ ବାଳକରୂପଧାରୀ ସନତ୍‌କୁମାର ବସିଥିଲେ । ସେ ସେହିକ୍ଷଣି ନିଜ ଅବିଚଳ ସମାଧିରୁ ଉପରତ ହୋଇଥାନ୍ତି । ଅନେକ ମୁନି-ଋଷି ତାଙ୍କ ସେବାରେ ଉପସ୍ଥିତ ଥାଆନ୍ତି ଏବଂ ଯୋଗୀଶ୍ୱରମାନେ ମଧ୍ୟ ତାଙ୍କୁ ପୂଜା କରୁଥାନ୍ତି । ଏତିକିବେଳେ ନୈମିଷାରଣ୍ୟର ମୁନିମାନେ ସନତ୍‌କୁମାରଙ୍କୁ ଦର୍ଶନ କଲେ । ତାଙ୍କ ପାଦତଳେ ପ୍ରଣିପାତ କରି ନିକଟରେ ବସିଗଲେ । ସନତ୍‌କୁମାର ସେମାନଙ୍କ ଆଗମନର କାରଣ ପଚାରିଲେ । ଋଷିମାନେ ଉତ୍ତର ଦେବାକୁ ଆରମ୍ଭ କରିବାମାତ୍ରେ ଆକାଶରେ ତୁମୁଳ ନାଦରେ ଦୁନ୍ଦୁଭିମାନ ବାଜି ଉଠିଲା । ସେତିକିବେଳେ ଗୋଟିଏ ସୂର୍ଯ୍ୟ ପରି ତେଜସ୍ୱୀ ବିମାନ ଦୃଷ୍ଟିଗୋଚର ହେଲା, ଯାହା ଅସଂଖ୍ୟ ଗଣେଶ୍ୱରଙ୍କ ଦ୍ୱାରା ପରିବେଷ୍ଟିତ ଥିଲା । ସେଥିରେ ଅପ୍ସରାମାନେ ଓ ରୁଦ୍ରକନ୍ୟାମାନେ ମଧ୍ୟ ବିରାଜମାନ ଥିଲେ । ମୃଦଙ୍ଗ, ଢୋଲ ଓ ବୀଣାର ଧ୍ୱନି ନିନାଦିତ ହେଉଥିଲା । ଉକ୍ତ ବିମାନରେ ଚିତ୍ର-ବିଚିତ୍ର ରତ୍ନଜଟିତ ଗ୍ରନ୍ଥୁଆ ଟଣା ହୋଇଥିଲା ଏବଂ ମୋତିର ଝାଲର ତାହାର ଶୋଭାବର୍ଦ୍ଧନ କରୁଥିଲା । ଅନେକ ମୁନି, ସିଦ୍ଧ, ଗନ୍ଧର୍ବ, ଯକ୍ଷ, ଚାରଣ ଓ କିନ୍ନର ନୃତ୍ୟ-ଗୀତ ଓ ବାଦ୍ୟନାଦ କରି ସେହି ବିମାନର ଚତୁଷ୍ପାର୍ଶ୍ୱରେ ବେଷ୍ଟିତ ହୋଇ ରହିଥିଲେ । ସେଥିରେ ବୃଷଭଚିହ୍ନିତ ଓ ପ୍ରବାଳଦଣ୍ଡରେ ଶୋଭିତ ଧ୍ୱଜା ଓ ପତାକାମାନ ଉଡୁଥିଲା, ଯାହା କି ତାହାର ଗୋପୁରର ଶୋଭା ବଢ଼ାଉଥିଲା । ବିମାନର ମଧ୍ୟଭାଗରେ ମଣିମୟ ଦଣ୍ଡ ଲାଗିଥିବା ଚନ୍ଦ୍ରତୁଲ୍ୟ ଉଜ୍ଜ୍ୱଳ ଛତ୍ର ତଳେ ଦିବ୍ୟ ସିଂହାସନରେ ଶିଳାଦପୁତ୍ର ନନ୍ଦୀ ତାଙ୍କର ପତ୍ନୀ ସୁଯଶା ସହିତ ବିରାଜମାନ ଥିଲେ । ତାଙ୍କର ଉଭୟପାର୍ଶ୍ୱରେ ଚାମର ପଡୁଥିଲା ଏବଂ ସେ ନିଜ କାନ୍ତିରେ ତଥା ତ୍ରିନେତ୍ରଯୁକ୍ତ ଶରୀରର ଶୋଭାରେ ସୁଶୋଭିତ ହେଉଥିଲେ । ଭଗବାନ ମହେଶ୍ୱରଙ୍କୁ ସୂଚନା ପ୍ରଦାନକାରୀ ନନ୍ଦୀ ସତେ ଯେପରି ଜଗତ୍‌ସ୍ରଷ୍ଟା ଶିବଙ୍କର ଅଲଙ୍ଘନୀୟ ଆଦେଶର ମୂର୍ତ୍ତିମନ୍ତ ବିଗ୍ରହ ପରି ହୋଇ ସେଠାକୁ ଆସିଥିଲେ ଅଥବା ସତେ ଯେପରି ସାକ୍ଷାତ୍ ଶମ୍ଭୁଙ୍କର ଅନୁଗ୍ରହ ହିଁ ସାକାରରୂପ ଧାରଣ କରି ନନ୍ଦୀଙ୍କ ରୂପରେ ସେଠାରେ ସମସ୍ତଙ୍କ ସମ୍ମୁଖରେ ଉପସ୍ଥିତ ହୋଇଥିଲା । ଶୋଭାମୟ ଶ୍ରେଷ୍ଠ ତ୍ରିଶୂଳ ହିଁ ଥିଲା ତାଙ୍କର ଆୟୁଧ । ସେ ହେଉଛନ୍ତି ବିଶ୍ୱେଶ୍ୱରଙ୍କର ଗଣାଧ୍ୟକ୍ଷ ଏବଂ ଦ୍ୱିତୀୟ ବିଶ୍ୱନାଥଙ୍କ ପରି ଶକ୍ତିଶାଳୀ । ତାଙ୍କଠାରେ ବିଶ୍ୱସ୍ରଷ୍ଟା ବିଧାତାଙ୍କୁ ମଧ୍ୟ ନିଗ୍ରହ ଓ ଅନୁଗ୍ରହ କରିବାର ଶକ୍ତି ରହିଛି । ସେତେବେଳେ ସେ ଚତୁର୍ଭୁଜରୂପରେ ଶୋଭାପାଉଥିଲେ ଏବଂ ଅଙ୍ଗପ୍ରତ୍ୟଙ୍ଗରେ ଉଦାରତା ସୂଚିତ ହେଉଥିଲା । ସେ ଚନ୍ଦ୍ରଲେଖାରେ ସୁଶୋଭିତ ଥିଲେ । କଣ୍ଠରେ ନାଗ ଓ ମସ୍ତକରେ ଚନ୍ଦ୍ରମା ତାଙ୍କର ଅଳଂକାର

ହୋଇଥିଲା । ସେ ସାକାର ଐଶ୍ୱର୍ଯ୍ୟ ଓ ସକ୍ରିୟ ସାମର୍ଥ୍ୟର ମୂର୍ତ୍ତିମନ୍ତ ବିଗ୍ରହ ପରି ଜଣାପଡୁଥିଲେ ।

ତାଙ୍କୁ ଦେଖିବାମାତ୍ରେ ଋଷିଗଣଙ୍କ ସମେତ ବ୍ରହ୍ମାଙ୍କ ପୁତ୍ର ସନତ୍‌କୁମାରଙ୍କ ମୁଖ ପ୍ରସନ୍ନତାରେ ଉଲ୍ଲସିତ ହୋଇଉଠିଲା । ସେ ଦୁଇ କର ଯୋଡ଼ି ତାଙ୍କ ନିକଟରେ ଆତ୍ମସମର୍ପଣ କରିବା ପରି ଉଠି ଛିଡ଼ା ହୋଇଗଲେ । ଇତିମଧ୍ୟରେ ବିମାନଟି ଭୂମିରେ ଅବତରଣ କଲା । ସନତ୍‌କୁମାର ନନ୍ଦୀଦେବଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ତାଙ୍କୁ ସ୍ତୁତି କଲେ ଏବଂ ମୁନିମାନଙ୍କର ପରିଚୟ ଦେଇ କହିଲେ—"ଏମାନେ ହେଉଛନ୍ତି ଷଟ୍‌କୁଳୋଦ୍ଭବ ଋଷିଗଣ । ଏମାନେ ନୈମିଷାରଣ୍ୟରେ ଦୀର୍ଘକାଳରୁ ସତ୍ର ଅନୁଷ୍ଠାନରେ ରତ ଥିଲେ । ବ୍ରହ୍ମାଙ୍କ ଆଦେଶରେ ଆପଣଙ୍କ ଦର୍ଶନ ନିମିତ୍ତ ଏମାନେ ପ୍ରଥମରୁ ଏଠାକୁ ଆସିଛନ୍ତି ।" ସନତ୍‌କୁମାରଙ୍କ ବାକ୍ୟ ଶୁଣି ନନ୍ଦୀ ଦୃଷ୍ଟିପାତମାତ୍ରକେ ସେମାନଙ୍କର ପାଶକୁ ତତ୍‌କ୍ଷଣାତ୍ କାଟିଦେଲେ ଏବଂ ସେମାନଙ୍କୁ ଐଶ୍ୱରୀୟ ଶୈବଧର୍ମ ଏବଂ ଜ୍ଞାନଯୋଗର ଉପଦେଶ ଦେଇ ପୁନଃ ମହାଦେବଙ୍କ ସମୀପକୁ ଫେରିଗଲେ । ସନତ୍‌କୁମାର ସେହି ସମସ୍ତ ଜ୍ଞାନ ସାକ୍ଷାତ୍ ମୋର ଗୁରୁ ବ୍ୟାସଙ୍କୁ ଦେଇଥିଲେ ଏବଂ ପୂଜନୀୟ ବ୍ୟାସ ମୋତେ ତାହା ସଂକ୍ଷେପରେ କହିଥିଲେ । ତ୍ରିପୁରାରି ଶିବଙ୍କର ଏହି ପୁରାଣରତ୍ନକୁ ବେଦ ଜାଣି ନ ଥିବା ଲୋକଙ୍କୁ ଉପଦେଶ ଦେବା ଉଚିତ ନୁହେଁ । ଯେ ଭକ୍ତ କି ଶିଷ୍ୟ ନ ହୋଇଥିବ, ତାହାକୁ ତଥା ନାସ୍ତିକମାନଙ୍କୁ ମଧ୍ୟ ଏ ଉପଦେଶ ଦେବା ଅନୁଚିତ । ଯଦି ମୋହବଶତଃ ଉକ୍ତ ଅନଧିକାରୀଙ୍କୁ ଏହି ପୁରାଣ ଉପଦେଶ ଦିଆଯାଏ, ଏହା ନରକ ପ୍ରଦାନ କରେ । ଯେଉଁ ଲୋକେ ସେବାନୁଗତମାର୍ଗରେ ଏ ପୁରାଣ ଉପଦେଶ ଦିଅନ୍ତି, ନିଅନ୍ତି, ପଢ଼ନ୍ତି ବା ଶୁଣନ୍ତି, ସେମାନଙ୍କୁ ଏହା ସୁଖ ତଥା ଧର୍ମାଦି ତ୍ରିବର୍ଗ ପ୍ରଦାନ କରେ ଏବଂ ପରିଶେଷରେ ନିଶ୍ଚିତରୂପେ ମୋକ୍ଷ ପ୍ରଦାନ କରେ । ଏହି ପୌରାଣିକ ମାର୍ଗର ସମ୍ବନ୍ଧ ହେତୁ ଆପଣମାନେ ଓ ମୁଁ ପରସ୍ପରର ଉପକାର କଲେ; ତେଣୁ ମୁଁ ସଫଳମନୋରଥ ହୋଇଗଲି । ଏବେ ମୁଁ ଯାଉଛି । ଆମ୍ଭମାନଙ୍କର ସଦା ସବୁପ୍ରକାରେ ମଙ୍ଗଳ ହେଉ ।

ସୂତ ମୁନି ଆଶୀର୍ବାଦ ଦେଇ ଚ୍ଚାଲିଯିବାରୁ ଏବଂ ପ୍ରୟାଗରେ ଅନୁଷ୍ଠିତ ମହାଯଜ୍ଞ ପୂର୍ଣ୍ଣ ହୋଇଯାଇଥିବାରୁ ସେହି ସଦାଚ୍ଚାରୀ ମୁନିମାନେ ବିଷୟକଳୁଷିତ କଳିକାଳର ଆଗମନରେ କାଶୀ ନିକଟରେ ହିଁ ନିବାସ କଲେ । ଏହାପରେ ପଶୁପାଶରୁ ବିମୁକ୍ତ ହେବା ଇଚ୍ଛାରେ ସେମାନେ ସମସ୍ତେ ପୂର୍ଣ୍ଣରୂପେ ପାଶୁପତବ୍ରତର ଅନୁଷ୍ଠାନ କଲେ ଏବଂ ସମସ୍ତ ବୋଧ ଏବଂ ସମାଧି ଉପରେ ଅଧିକାର ହାସଲ କରି ସେହି ଅନିନ୍ଦ୍ୟ ମହର୍ଷିମାନେ ପରମାନନ୍ଦ ଲାଭ କଲେ ।

### ବ୍ୟାସ ଉବାଚ

ଏତଚ୍ଛିବପୁରାଣଂ ହି ସମାପ୍ତଂ ହିତମାଦରାତ୍ ।<br>
ପଠିତବ୍ୟଂ ପ୍ରୟତ୍ନେନ ଶ୍ରୋତବ୍ୟଂ ଚ ତଥୈବ ହି ॥<br>
ନାସ୍ତିକାୟ ନ ବକ୍ତବ୍ୟମଶ୍ରଦ୍ଧାୟ ଶଠାୟ ଚ ।<br>
ଅଭକ୍ତାୟ ମହେଶସ୍ୟ ତଥା ଧର୍ମଧ୍ୱଜାୟ ଚ ॥<br>
ଏତଚ୍ଛ୍ରୁତ୍ୱା ହ୍ୟେକବାରଂ ଭବେତ୍ ପାପଂ ହି ଭସ୍ମସାତ୍ ।<br>
ଅଭକ୍ତୋ ଭକ୍ତିମାପ୍ନୋତି ଭକ୍ତୋ ଭକ୍ତିସମୃଦ୍ଧିଭାକ୍ ॥<br>
ପୁନଃ ଶ୍ରୁତେ ଚ ସଦ୍‌ଭକ୍ତିର୍ମୁକ୍ତିଃ ସ୍ୟାଚ୍ଚ ଶ୍ରୁତେ ପୁନଃ ।<br>
ତସ୍ମାତ୍ ପୁନଃ ପୁନଶ୍ଚୈବ ଶ୍ରୋତବ୍ୟଂ ହି ମୁମୁକ୍ଷୁଭିଃ ॥<br>
ପଞ୍ଚାବୃତିଃ ପ୍ରକର୍ତ୍ତବ୍ୟା ପୁରାଣସ୍ୟାସ୍ୟ ସଦ୍ଧିୟା ।<br>
ପରଂ ଫଳଂ ସମୁଦ୍ଦିଶ୍ୟ ତତ୍‌ପ୍ରାପ୍ନୋତି ନ ସଂଶୟଃ ॥<br>
ପୁରାତନାଶ୍ଚ ରାଜାନୋ ବିପ୍ରା ବୈଶ୍ୟାଶ୍ଚ ସତ୍ତମାଃ ।<br>
ସପ୍ତକୃତ୍ୱସ୍ତଦାବୃତ୍ୟାଲଭନ୍ତ ଶିବଦର୍ଶନମ୍ ॥<br>
ଶ୍ରୋଷ୍ୟତ୍ୟଥାପି ଯଶ୍ଚେଦଂ ମାନବୋ ଭକ୍ତିତତ୍ପରଃ ।<br>
ଇହ ଭୁକ୍ତ୍ୱାଖିଳାନ୍ ଭୋଗାନନ୍ତେ ମୁକ୍ତିଂ ଲଭେଚ୍ଚ ସଃ ॥

ଏତଚ୍ଛିବପୁରାଣଂ ହି ଶିବସ୍ୟାତିପ୍ରିୟଂ ପରମ୍ ।
ଭୁକ୍ତିମୁକ୍ତିପ୍ରଦଂ ବ୍ରହ୍ମସମ୍ମିତଂ ଭକ୍ତିବର୍ଦ୍ଧନମ୍ ॥
ଏତଚ୍ଛିବପୁରାଣସ୍ୟ ବକ୍ତୁଃ ଶ୍ରୋତୁଶ୍ଚ ସର୍ବଦା ।
ସଗଣଃ ସସୁତଃ ସାମ୍ବଃ ଶଂ କରୋତୁ ସ ଶଙ୍କରଃ ॥
(ଶି. ପୁ., ବା. ସଂ., ଉ. ଖ. ୪୧ । ୪୩–୫୧)

ବ୍ୟାସଦେବ କହୁଛନ୍ତି–ଏହି **ଶିବପୁରାଣ ଏଠାରେ ସମ୍ପୂର୍ଣ୍ଣ ହେଲା । ଉକ୍ତ ହିତକର ପୁରାଣକୁ ଅତ୍ୟନ୍ତ ଆଦର ତଥା ପ୍ରଯତ୍ନପୂର୍ବକ ପଢ଼ିବା ଓ ଶୁଣିବା ଉଚିତ । ନାସ୍ତିକ, ଶ୍ରଦ୍ଧାହୀନ, ଶଠ, ଶିବଭକ୍ତିବିହୀନ ଓ ଧର୍ମଧ୍ୱଜୀ (ଭଣ୍ଡ)କୁ ଏହା ଶୁଣାଇବା ଅନୁଚିତ । ଏହାକୁ ଥରେମାତ୍ର ଶ୍ରବଣ କଲେ ମଧ୍ୟ ସମସ୍ତ ପାପ ଭସ୍ମ ହୋଇଯାଏ, ଭକ୍ତିହୀନ ବ୍ୟକ୍ତି ଭକ୍ତି ଲାଭ କରେ ଏବଂ ଭକ୍ତ ଭକ୍ତିର ସମୃଦ୍ଧି ଲାଭ କରେ । ଦ୍ୱିତୀୟ ଥର ଶ୍ରବଣ କଲେ ଉତ୍ତମ ଭକ୍ତି ଓ ତୃତୀୟ ଥର ଶ୍ରବଣ କଲେ ମୁକ୍ତି ସୁଲଭ ହୋଇଯାଏ । ଏଣୁ ମୁମୁକ୍ଷୁ ବ୍ୟକ୍ତି ଏହାକୁ ବାରମ୍ବାର ଶ୍ରବଣ କରିବା ଉଚିତ । କୌଣସି ଉତ୍ତମ ଫଳ ଲାଭ କରିବାକୁ ଚାହିଁଲେ ଶୁଦ୍ଧବୁଦ୍ଧିରେ ଉକ୍ତ ପୁରାଣକୁ ପାଞ୍ଚବାର ଆବୃତ୍ତି କରିବା ଆବଶ୍ୟକ । ଏପରି କଲେ ମନୁଷ୍ୟ ନିଶ୍ଚିତରୂପେ ଉଲ୍ଲିଖିତ ଫଳ ଲାଭ କରେ । ପ୍ରାଚୀନ କାଳର ରାଜା, ବ୍ରାହ୍ମଣ ଓ ଶ୍ରେଷ୍ଠ ବୈଶ୍ୟମାନେ ଏହାକୁ ସାତ ଥର ଆବୃତ୍ତି କରି ଶିବଙ୍କର ସାକ୍ଷାତ୍ ଦର୍ଶନ ଲାଭ କରିଥିଲେ । ଯେଉଁ ମନୁଷ୍ୟ ଭକ୍ତିପରାୟଣ ହୋଇ ଏହାକୁ ଶ୍ରବଣ କରିବ, ସେ ଇହଲୋକରେ ସମସ୍ତ ଭୋଗ ଉପଭୋଗ କରିବା ସହ ପରିଶେଷରେ ମୋକ୍ଷପ୍ରାପ୍ତି କରିବ । ଉକ୍ତ ଶ୍ରେଷ୍ଠ ଶିବପୁରାଣ ଭଗବାନ ଶିବଙ୍କର ଅତ୍ୟନ୍ତ ପ୍ରିୟ । ଏହା ବେଦତୁଲ୍ୟ ଅତ୍ୟନ୍ତ ମାନନୀୟ; ଭୋଗ ଓ ମୋକ୍ଷପ୍ରଦାୟକ ତଥା ଭକ୍ତିବର୍ଦ୍ଧକ । ମାତା ପାର୍ବତୀ ତାଙ୍କର ଦୁଇ ପୁତ୍ର ତଥା ପ୍ରମଥଗଣଙ୍କ ଗହଣରେ ବିରାଜିତ ଭଗବାନ ସଦାଶିବ ହିଁ ଏହି ପୁରାଣର ବକ୍ତା ଓ ଶ୍ରୋତାଙ୍କର ସର୍ବଦା କଲ୍ୟାଣ କରନ୍ତୁ ।**

(ଅଧ୍ୟାୟ ୪୧)

✽✽✽

## *॥ ବାୟବୀୟସଂହିତା ସମ୍ପୂର୍ଣ୍ଣ ॥*



## ॥ ଶିବପୁରାଣ ସମାପ୍ତ ॥

**ଶ୍ରୀଚନ୍ଦ୍ରମୌଳିପଦାରବିନ୍ଦୟୋଃ ସମର୍ପଣମସ୍ତୁ**

